# ବଳରାମ ଦାସଙ୍କ
# ରଚନା ସମ୍ଭାର

## ଜଗମୋହନ (ଦାଣ୍ଡି) ରାମାୟଣ (ସଂପୂର୍ଣ୍ଣ)
## ଓ
## ଅନ୍ୟାନ୍ୟ ରଚନା




ଜଗମୋହନ ରାମାୟଣ
ସଂପାଦନା
ଡକ୍ଟର କୃଷ୍ଣ ଚରଣ ସାହୁ

ସଂଯୋଜନା ଓ ସଂକଳନ
ଯତୀନ୍ଦ୍ର ମୋହନ ମହାନ୍ତି

## ବଳରାମ ଦାସ ରଚନା ସମ୍ଭାର

ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀର କବି ବଳରାମ ଦାସଙ୍କର ପ୍ରସିଦ୍ଧ ଜଗମୋହନ ବା 'ଦାଣ୍ଡୀ ରାମାୟଣ' ଓ ଅନ୍ୟାନ୍ୟ ବିଶିଷ୍ଟ ଲେଖା ମାନଙ୍କର ସଂକଳନ । ଏପରି ସଂକଳନ ଓଡ଼ିଆରେ ପ୍ରଥମ । ପାଞ୍ଚଶହ ବର୍ଷ ତଳେ ଲେଖା ଯାଇଥିଲେ ବି ବଳରାମଙ୍କର ଲେଖାର କାବ୍ୟ-ଗୁଣ, ଭକ୍ତି-ପ୍ରାଣତା ଓ ସମକାଳୀନ-ସଚେତନତା ପାଠକଙ୍କୁ ମୁଗ୍ଧ କରେ । ବିଶ୍ୱାସ ଏହି ସଂକଳନ ପାଠକପାଠିକାମାନଙ୍କୁ ଆନନ୍ଦ ଦେବା ସଙ୍ଗେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏକ ପ୍ରଧାନ ଐତିହ୍ୟ ସଂପର୍କରେ ସେମାନଙ୍କୁ ସଚେତନ କରିବ ।

# ବଳରାମ ଦାସ ରଚନା ସମ୍ଭାର

## ଜଗମୋହନ (ଦାଣ୍ଡି) ରାମାୟଣ (ସଂପୂର୍ଣ୍ଣ)

ଓ

## ଅନ୍ୟାନ୍ୟ ରଚନା


ଜଗମୋହନ ରାମାୟଣ

ସଂପାଦନା

**ଡକ୍ଟର କୃଷ୍ଣ ଚରଣ ସାହୁ**

ସଂଯୋଜନା ଓ ସଂକଳନ

**ଯତୀନ୍ଦ୍ର ମୋହନ ମହାନ୍ତି**



ଭୁବନେଶ୍ୱର

# ବଳରାମ ଦାସ ରଚନା ସମ୍ଭାର

## ଜଗମୋହନ (ଦାଣ୍ଡି) ରାମାୟଣ (ସଂପୂର୍ଣ୍ଣ)

## ଓ ଅନ୍ୟାନ୍ୟ ରଚନା

**ଜଗମୋହନ ରାମାୟଣ** ସଂପାଦନା : **ଡକ୍ଟର କୃଷ୍ଣ ଚରଣ ସାହୁ**

ସଂଯୋଜନା ଓ ସଂକଳନ : **ଯତୀନ୍ଦ୍ର ମୋହନ ମହାନ୍ତି**


ପ୍ରକାଶକ ଡଃ. ବିଜୟ ସେନାପତି
ଶ୍ରୀମତୀ ବିଷ୍ଣୁପ୍ରିୟା ସାହୁ ଓ ବନ୍ଦିତା ସାହୁ
ଏନ୍-୧-୪୬, ଆଇଆରସି ଭିଲେଜ୍, ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଅକ୍ଷର ଶାରଳା ଗ୍ରାଫିକ୍ସ, ମୋ : ୯୪୩୭୭୫୬୭୬୦
ମୁଦ୍ରଣ ଓ ବଂଧେଇ : ପ୍ରିଣ୍ଟ୍‌ଟେକ୍ ଅଫସେଟ୍ ପ୍ରା. ଲି., ଭୁବନେଶ୍ୱର-୨୪
ବଂଧେଇ ସ୍ୱାଧୀନ ବାଇଣ୍ଡରସ୍, ତୁଳସୀପୁର , କଟକ
ପ୍ରକାଶ ବର୍ଷ ୨୦୧୨
ମୂଲ୍ୟ ୫୦୦ ଟଙ୍କା
ବିତରକ ବିଦ୍ୟା
୧୫୭୩, ଭକ୍ତମଧୁ ନଗର, ଭୁବନେଶ୍ୱର-୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧
ସହଯୋଗୀ ବିତରକ : ଏ.କେ.ମିଶ୍ର ଏଜେନ୍ସି ପ୍ରା.ଲି, ବାପୁଜିନଗର, ଭୁବନେଶ୍ୱର
ଜ୍ଞାନଯୁଗ ପବ୍ଲିକେସନ୍ସ, ନୟାପଲ୍ଲୀ, ଭୁବନେଶ୍ୱର
ସରସ୍ୱତୀ ବୁକ୍ ଷ୍ଟୋର, ବାଦାମବାଡି, କଟକ


**BALARAM DAS RACHANA SAMBHAR**
**(Collected Work of Balaram Das)**
**JAGAMOHAN RAMAYANA** Edited by **Krushna Charan Sahoo**

Co-ordinated & Compiled by : **Jatindra Mohan Mohanty**


Publisher : **Dr. Bijay Senapati**
**Smt Bishnupriya Sahoo &**
**Bandita Sahoo**
N/1-46, IRC Village, Nayapalli, Bhubaneswar-15

D.T.P : **Sarala Graphics**, (M) 9437756760

Printed at : **Print-Tech Offset Pvt. Ltd.,**
Chandaka Industrial Area, Bhubaneswar-24

Binding Swadhin Binders, Tulasipur, Cuttack

Distributer : **Vidya**
1573 Bhaktamadhu Nagar, Bhubaneswar-751030
Ph: (0674) 2350289 / 2350511

Published-**2012**

Price **Rs 500.00**

**I.S.B.N.No. 978-81-903438-9-3**

# ଉତ୍ସର୍ଗ

ବନ୍ଦଇ ବାଲ୍ମିକ ମୁନିର ଚରଣେ
ଯାହାର ମୁଖରୁ ରାମାୟେଣ ହୋଇଲା ଉଚ୍ଚାରଣେ ।
ସଂସାର ତିମିରିକି ତୁହି ସେ ପ୍ରଦୀପ
ବ୍ରହ୍ମାକୁ ସମାନ୍ୟ ଅଟୁ ଅନୁରୂପ ।
ତୋହୋରେ ମେଳଛାଦି ମୁକତ ହୋଇଲେ
ତିନି ତଇଲୋକ ତୋହୋରେ ପାର ଗଲେ ।
ତୁ ଯେବେ ନ କହନ୍ତୁ ରାମାୟେଣ କାହାଣୀ
ସଂସାର ବୁଡନ୍ତାନି ମହାର୍ଣ୍ଣବ ପାଣି ।
ତୁ ସେ ମହାରଷି ସଂସାର ହିତ ଜାଣୁ
ଶ୍ରୀରାମ ଚରିତ ମୁଖରେ ବଖାଣୁ ।
ଧନ୍ୟ ବଦନ ତୋର ମହିମା ଅଗୋଚର
ତୋହୋର କଣ୍ଠେ ବିଜେ କଲେ ଚକ୍ରଧର
ତୋହୋର ହୃଦରେ ଶ୍ରୀହରି ଆସନ
ଭୋ ମୁନି ମୋତେ ହୋଇବାକ ପ୍ରସନ୍ନ ।

**ସୁନ୍ଦରା କାଣ୍ଡ**

## କୃତଜ୍ଞତା

ବିଭୂତିଭୂଷଣ ସାହୁ,

ଶ୍ରୀମତୀ ରତ୍ନମାଳା ସ୍ୱାଇଁ,

ଡକ୍ଟର ବିଷ୍ଣୁପ୍ରସାଦ ମହାପାତ୍ର,

ଓଡ଼ିଶା ଫାଉଣ୍ଡେସନ

ଡକ୍ଟର ଦେବୀପ୍ରସାଦ ମିଶ୍ର

ଶ୍ରୀମତୀ ସରୋଜିନୀ ମିଶ୍ର ।

# ସୂଚୀପତ୍ର

## ଜଗମୋହନ (ଦାଣ୍ଡି) ରାମାୟଣ (ସଂପୂର୍ଣ୍ଣ)
## (ପାଠ-ସଂପାଦନା : ଡକ୍ଟର କୃଷ୍ଣଚରଣ ସାହୁ)

**ଲଙ୍କାକାଣ୍ଡ** **ପୃ.୪୪୨-୭୦୦**

ଜଗନ୍ନାଥ ବନ୍ଦନା; ଦୂତର ସମ୍ବାଦ, ଶୁକ ଓ ସାରଣର ଦୌତ୍ୟ, ଶାର୍ଦ୍ଦୋଳର ସୈନ୍ୟ କଳନା; ରାବଣର ଅବକାଶ ଓ ସେନାପତିମାନଙ୍କ ସହ ମନ୍ତ୍ରଣା,ଗଡ଼ଦ୍ୱାର ନିରୋଧ, ପୂର୍ବ ଦ୍ୱାରରେ ପ୍ରଶସ୍ତ, ପଶ୍ଚିମ ଦ୍ୱାରରେ ଇନ୍ଦ୍ରଜିତ, ଦକ୍ଷିଣ ଦ୍ୱାରରେ ପାରାଶ ଓ ମୋହୋଦର ଓ ଉତ୍ତର ଦ୍ୱାରରେ ରାବଣ; ଶ୍ରୀରାମ ଆକ୍ରମଣ ବ୍ୟବସ୍ଥା, ପୂର୍ବ ଦ୍ୱାରକୁ ସୁଗ୍ରୀବ, ପଶ୍ଚିମକୁ ହନୁମନ୍ତ, ଦକ୍ଷିଣକୁ ଅଙ୍ଗଦ ଓ ଉତ୍ତରକୁ ଶ୍ରୀରାମ ବିଭିନ୍ନ ଯୂଥପତିଙ୍କ ରଣବେଶ; ରାବଣର ରାମ ଓ ଲକ୍ଷ୍ମଣଙ୍କ ମାୟାଶିର ସହ ସୀତାଙ୍କ ନିକଟକୁ ଗମନ, ମାୟାଶିର ଦର୍ଶନେ ସୀତାଙ୍କର ଶୋକ, ରାବଣର ପ୍ରତ୍ୟାବର୍ତ୍ତନ; ବାନରମାନଙ୍କର ଲଙ୍କାଗଡ଼ରେ ପ୍ରବେଶ, ରାବଣର ପୁଷ୍ପକ ଯାନ ଆରୋହଣ, ବିଭୀଷଣଙ୍କୁ ଗଦା ନିକ୍ଷେପ, ହନୁମାନର ଅଧାବାଟରୁ ଗଦା ଧରି ବିଭୀଷଣଙ୍କୁ ରକ୍ଷା କରିବା, ଶ୍ରୀରାମଙ୍କ ଦ୍ୱାରା ରାବଣର ଲକ୍ଷେ ଛତ୍ରେ ଛେଦନ; ଦୂତ ରୂପେ ଅଙ୍ଗଦର ଲଙ୍କା ଗମନ; ବାନର ସେନାଙ୍କ ଲଙ୍କା ପ୍ରବେଶ ଓ ଅସୁରମାନଙ୍କ ସହ ଯୁଦ୍ଧ, ରାମସେନାଙ୍କ ପ୍ରତ୍ୟାବର୍ତ୍ତନ , ପ୍ରଶସ୍ତ, ବଜ୍ରମୁଷ୍ଟି ବିଧ୍ୱଂସ, କୁଳୁପାକ୍ଷର ମୃତ୍ୟୁ; ଦ୍ୱିତୀୟ ଦିନ ଯୁଦ୍ଧ ପ୍ରସ୍ତୁତି- ହନୁମାନର ଦୌତ୍ୟ -ଶ୍ରୀରାମଙ୍କ ଶ୍ରୀମୁଖ ରାମଙ୍କ ଆତ୍ମ ପ୍ରଶଂସା ; ରାବଣର ଆତ୍ମ ପ୍ରଶଂସା, ହନୁମାନର ପ୍ରତ୍ୟାବର୍ତ୍ତନ; ଶ୍ରୀରାମଙ୍କ ଯୁଦ୍ଧବେଶ-ରାବଣର ଯୁଦ୍ଧ ସଜ୍ଜା; ଅଶ୍ୱ, ଗଜ,ରଥ ଓ ପାଦାନ୍ତି ସୈନ୍ୟଙ୍କ ବର୍ଣ୍ଣନା; ଇନ୍ଦ୍ରଜିତକୃତ ଲକ୍ଷ୍ମଣ ଶକ୍ତିଭେଦ; ତୃତୀୟ ଦିନ ଯୁଦ୍ଧ-ଇନ୍ଦ୍ରଜିତର ଯୁଦ୍ଧ ଯାତ୍ରା-ନାଗପାଶରେ ରାମ ଓ ଲକ୍ଷ୍ମଣ ବନ୍ଧନ-ଗରୁଡ଼ର ଆଗମନ; ଚତୁର୍ଥ ଦିନ ଯୁଦ୍ଧ- ଧୂମାକ୍ଷର ଯୁଦ୍ଧଯାତ୍ରା-ଶ୍ରୀରାମଙ୍କ ବିଜୟ; କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ, ପଞ୍ଚମ ଦିନ ଯୁଦ୍ଧ, କୁମ୍ଭକର୍ଣ୍ଣ ବଧ ରାବଣର ଶୋକ; ମହାପାରୁଶର ଯୁଦ୍ଧଯାତ୍ରା- ଷଷ୍ଠ ଦିନ ଯୁଦ୍ଧ, ରାବରଣ ଷଡପୁତ୍ରଙ୍କ ମୃତ୍ୟୁ, ନରାନ୍ତେକ, ଦେବାନ୍ତେକ, ମହୋଦର, ତ୍ରିଶିରା, ଅତିକାୟ, ମହାପାରୁଶ; ଇନ୍ଦ୍ରଜିତର ଯୁଦ୍ଧଯାତ୍ରା- ସପ୍ତମ ଦିନ ଯୁଦ୍ଧ- ବ୍ରହ୍ମାସ୍ତ୍ର ପ୍ରୟୋଗ, ହନୁମନ୍ତର ହେମବନ୍ତ ଯାତ୍ରା- ଅମର ମଉଷଧି ଆଣିବା ରାମ ଓ ଲକ୍ଷ୍ମଣଙ୍କ ଜୀବନପ୍ରାପ୍ତି, ଲଙ୍କା ଆକ୍ରମଣ, ଷଡରଥୀଙ୍କ ମୃତ୍ୟୁ; ଇନ୍ଦ୍ରଜିତର ଯୁଦ୍ଧଯାତ୍ରା- ଅଷ୍ଟମ ଦିନ ଯୁଦ୍ଧ- ମାୟାସୀତା ବଧ; ଲକ୍ଷ୍ମଣର ଯୁଦ୍ଧ ଯାତ୍ରା- ନବମ ଦିନ ଯୁଦ୍ଧ ଇନ୍ଦ୍ରଜିତ ବଧ ସାତ ପୁତ୍ରଙ୍କ ନିଧନ ରାବଣର ଶୋକ ସୀତାଙ୍କୁ ମାରିବା ପାଇଁ ଅଶୋକ ବନ ଗମନ, ତ୍ରିଜଟାର ସାନ୍ତ୍ୱନା, ରାବଣର ଶିବ ପୂଜା; ରାବଣରଯୁଦ୍ଧ ଯାତ୍ରା, ଦଶମ ଦିନ ଯୁଦ୍ଧ, ରାବଣର ବ୍ରହ୍ମଶକ୍ତି ପ୍ରୟୋଗ, ହନୁମାନର ଗନ୍ଧମାର୍ଦ୍ଦନ ପର୍ବତକୁ ଯାତ୍ରା, କାଳନେମି ପ୍ରସଙ୍ଗ, ଭରତ ଓ ହନୁମାନ ଭେଟ - ସୀତାନାରୀ ଉପାଖ୍ୟାନ - ଷଡରଥୀ ବଧ- ରାବଣର ଶୋକ- ମନ୍ଦୋଦରୀ ଓ ରାବଣର କଥୋପକଥନ ରାବଣର ଅଭିଶାପ କଥା, ରାବଣର ଅଶୋକବନରେ ପ୍ରବେଶ ; ରାବଣର ଯୁଦ୍ଧ ଯାତ୍ରା, ଏକାଦଶ ଦିନ ଯୁଦ୍ଧ- ସାତଦିନ କାଳ ଯୁଦ୍ଧ, ରାବଣର ମୃତ୍ୟୁ; ବିଭୀଷଣର ଶୋକ, ମନ୍ଦୋଦରୀର ଶୋକ, ବିଭୀଷଣ ଓ ମନ୍ଦୋଦରୀର ରାଜ୍ୟାଭିଷେକ; ହନୁମାନ ଦ୍ୱାରା ସୀତାଙ୍କୁ ସମ୍ବାଦ ଦାନ- ବିଭୀଷଣର ଶ୍ରୀରାମଙ୍କୁ ଭଣ୍ଡାର ସମର୍ପଣ-ଶ୍ରୀରାମଙ୍କ ଗ୍ରହଣ ନକରିବା- ସୀତାଙ୍କର ଆଗମନ- ଅଗ୍ନି ପରୀକ୍ଷା - ଦେବତାମାନଙ୍କର ସ୍ତୁତି-ସୀତା ଗ୍ରହଣ; ଶ୍ରୀରାମଙ୍କ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ଅଯୋଧ୍ୟାର ପୁନର୍ନିର୍ମାଣ ଶ୍ରୀରାମଙ୍କ ରାଜ୍ୟାଭିଷେକ ସୀତାଙ୍କର ବହୁରୂପ ଧାରଣ ଓ ବାନର, ଋକ୍ଷ, ଶବର ସେନାଙ୍କୁ ପ୍ରସାଦ ପରିବେଷଣ ରାମ ଓ ସୀତାଙ୍କ ନିଅବକାଶ

**ଉତ୍ତରାକାଣ୍ଡ** **ପୃ.୭୦୧-୮୭୦**

ଜଗନ୍ନାଥ ବନ୍ଦନା; ରାବଣ ଚରିତ; ହନୁମନ୍ତ ଚରିତ; ଶ୍ରୀରାମଙ୍କ ମହିମା; ସୀତା ବନବାସ; ଶ୍ରୀରାମଙ୍କ ମୃଗୟା; ଲବଣ ବଧ, ଲବକୁଶ ଜନ୍ମ; ଶୁଦ୍ରକ ମୁନି ବଧ; ଅଶ୍ୱମେଧ ଯାଗ, ଲବ ଓ କୁଶଙ୍କର ରାମାୟଣ ଗାନ, ସୀତାଙ୍କର ପାତାଳପୁର ପ୍ରବେଶ; ଲକ୍ଷ୍ମଣଙ୍କର ଦଶକାଳ ଓ ଚନ୍ଦ୍ରକେଳି ରାଜ୍ୟ ଜୟ, କାଳିଞ୍ଜନ ମୁନି ଆଗମନ, ଲକ୍ଷ୍ମଣ ନିର୍ବାସନ; ଶ୍ରୀରାମଙ୍କ ସ୍ୱର୍ଗାରୋହଣ

# ଭୂମିକା

(୧)

ବଳରାମ ଦାସଙ୍କର ଜନ୍ମ ଓ ମୃତ୍ୟୁ ସଂପର୍କରେ ନିର୍ଦ୍ଦିଷ୍ଟ ବର୍ଷ ବିଷୟରେ ଗବେଷକ ମାନେ ଏକମତ ନୁହନ୍ତି । ସାଧାରଣ ଭାବରେ କୁହାଯାଇ ପାରେ ସେ ପଞ୍ଚଦଶ ଶତାବ୍ଦୀର ଶେଷାର୍ଦ୍ଧରେ, ଆନୁମାନିକ ୧୪୭୩ ଖ୍ରୀଷ୍ଟାବ୍ଦରେ, ଜନ୍ମଗ୍ରହଣ କରିଥିଲେ ଓ ପ୍ରାୟ ୬୦ବର୍ଷ ବା ୬୦ ବର୍ଷରୁ ଉର୍ଦ୍ଧ୍ୱକାଳ ବଂଚି ରହି ଷୋଡଶ ଶତାବ୍ଦୀର ମଝି ସମୟରେ ଦେହତ୍ୟାଗ କରିଥିଲେ । ସେହି ସମୟ ଓଡ଼ିଶାର ଗୌରବମୟ ସମୟ ବୋଲି କୁହାଯାଏ, ଯେତେବେଳେ ସୂର୍ଯ୍ୟବଂଶୀୟ ଗଜପତି ରାଜାମାନେ ରାଜତ୍ୱ କରୁଥିଲେ । ସୂର୍ଯ୍ୟବଂଶର ପ୍ରଥମ ପରାକ୍ରମୀ ରାଜା କପିଳେନ୍ଦ୍ର ଦେବ ୧୪୩୫ରୁ ୧୪୬୮ ଓ ତାଙ୍କ ପରେ ପରେ ପୁରୁଷୋତ୍ତମ ଦେବ ୧୪୬୮ରୁ ୧୪୯୭, ଓ ପ୍ରତାପରୁଦ୍ର ଦେବ ୧୪୯୭ରୁ ୧୫୩୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଅର୍ଥାତ୍ ବଳରାମ ଦୁଇ ଗଜପତି ରାଜା ପୁରୁଷୋତ୍ତମ ଓ ପ୍ରତାପରୁଦ୍ରଙ୍କ ରାଜତ୍ୱ ସମୟରେ ବଂଚି ରହିଥିଲେ, ଓ କବି ଓ ଭକ୍ତ ହିସାବରେ ଖ୍ୟାତି ଲାଭ କରିଥିଲେ ।

ସେହିପରି ବଳରାମଙ୍କର ପିତାମାତା, ପରିବାର ଓ ଜନ୍ମସ୍ଥାନ ସଂପର୍କରେ ମଧ୍ୟ ଗବେଷକମାନେ ଏକମତ ହୋଇ ପାରିନାହାନ୍ତି । ଏ ଯେ କେବଳ ଗବେଷଣାର ସ୍ୱଳ୍ପତା ତା ନୁହେଁ, ପ୍ରାଚୀନ ଲେଖକମାନେ ନିଜ ସଂପର୍କରେ ପ୍ରାୟ କିଛି କହୁ ନ ଥିଲେ, ବା ଯଦି କିଛି କହୁଥିଲେ କୌଣସି ନିର୍ଦ୍ଦିଷ୍ଟ ମତାମତରେ ପହଞ୍ଚିବା ପାଇଁ ତା ଯଥେଷ୍ଟ ନ ଥିଲା । ଏପରିକି ଅନ୍ୟ ଯେଉଁମାନେ ଲେଖକମାନଙ୍କ ସଂପର୍କରେ ଲେଖୁଥିଲେ ବା ସୂଚନା ଦେଉଥିଲେ ସେମାନଙ୍କର ମତ ପାର୍ଥକ୍ୟରୁ ସେହି ସେହି ଲେଖକମାନଙ୍କ ସଂପର୍କରେ କିଛି ନିର୍ଭୁଲ ଧାରଣା କରିବା ସହଜ ନ ଥିଲା । ଓଡ଼ିଶାର ଶ୍ରେଷ୍ଠ କବି ସାରଳା ଦାସ ଏହାର ପ୍ରକୃଷ୍ଟ ଉଦାହରଣ । ଏହା ସତ୍ତ୍ୱେ ବଳରାମଙ୍କ ସଂପର୍କରେ କିଛି ନିର୍ଭରଯୋଗ୍ୟ ଧାରଣା କରାଯାଇ ପାରେ । ଯେପରିକି, ବଳରାମ ଗୋଟିଏ ସ୍ୱଚ୍ଛଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ସୋମନାଥ ମହାପାତ୍ର ଗଜପତି ଶାସନର ସଂଗଠନରେ ଜଣେ ଉଚ୍ଚ ରାଜକର୍ମଚାରୀ ଥିଲେ, ଓ ଶାସନର ମୁଖ୍ୟ ସ୍ଥାନ ପୁରୀରେ ହିଁ ରହୁଥିଲେ । ତେଣୁ ବଳରାମଙ୍କର ଉଭୟ ଜନ୍ମସ୍ଥାନ ଓ ମୁଖ୍ୟ ବାସସ୍ଥାନ ପୁରୀ ବୋଲି ଧରି ନିଆଯାଇ ପାରେ, ଓ ଏଥିପାଇଁ ତାଙ୍କର ଲେଖାମାନଙ୍କରେ ମଧ୍ୟ ଯଥେଷ୍ଟ ଇଂଗିତ ରହିଛି । କେବଳ ଯାହା ସୂଚନା ମିଳେ ପୁରୀଠାରୁ ଦୂରରେ, କୋଣାର୍କ ନିକଟବର୍ତ୍ତୀ ଏରବଙ୍ଗ ଗ୍ରାମର, କବିଙ୍କର ବାସସ୍ଥାନ ଭାବରେ ପ୍ରସିଦ୍ଧି ଅଛି । ଏଠାରେ ସିଦ୍ଧ ବଳରାମଙ୍କର ଗୋଟିଏ ମନ୍ଦିର ଅଛି, ଓ ଏରବଙ୍ଗ ନିକଟବର୍ତ୍ତୀ ଅନ୍ୟ ଗୋଟିଏ ଗ୍ରାମ ବେଗୁନିଆରେ କବି ବୋଧହୁଏ ସମାଧିସ୍ଥ ହୋଇଥିଲେ, ଯେଉଁଠି ଏବେ ବି 'ବଳରାମଙ୍କ ସମାଧି' ଦେଖିବାକୁ ମିଳେ ।

ନିଜର ପିତା ଉଚ୍ଚ ରାଜକର୍ମଚାରୀ ହୋଇଥିଲେ ମଧ୍ୟ ବଳରାମ ରାଜକାର୍ଯ୍ୟରେ ଯୋଗଦେଇ ନ ଥିଲେ । ସେ ବିଷ୍ଣୁଭକ୍ତ ଥିଲେ, ତରୁଣ ବୟସରେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ ଓ ତରୁଣ ବୟସରୁ ମଧ୍ୟ ଲେଖାଲେଖି ଆରମ୍ଭ କରିଥିଲେ । କୁହାଯାଏ, ସ୍ୱାଧୀନ ଭାବରେ, ନିଜର ଆଗ୍ରହ ଓ ବିଶ୍ୱାସରେ ଚଳିବା ପାଇଁ, ନିଜର ଲେଖାଲେଖିକୁ ବାହ୍ୟ ପ୍ରଭାବରୁ ମୁକ୍ତ କରିବା ପାଇଁ, ଓ ଜଗନ୍ନାଥଙ୍କ ପ୍ରତି ନିଜର ଭକ୍ତି ଓ ଆନୁଗତ୍ୟର ବିସ୍ତାର ପାଇଁ ସେ ପୈତୃକ ସଂପଦ ପରିତ୍ୟାଗ କରି ଭିକ୍ଷାକୁ ଜୀବିକା ନିର୍ବାହର ଏକମାତ୍ର ଅବଲମ୍ବନ ରୂପେ ଗ୍ରହଣ କରିଥିଲେ ଓ ପୁରୀ ନଗରର କେତେକ 'ମହତ ଜନ'ଙ୍କର ବଦାନ୍ୟତା ଉପରେ ନିର୍ଭର କରି ଚଳୁଥିଲେ । ସେ ଯାହା ହେଉ କବି ବୈଷ୍ଣବ ହେଲେ ବି ସନ୍ୟାସୀ ନ ଥିଲେ, ସାଧାରଣ ଗୃହସ୍ଥ ପରି ପରିବାର ଘେନି ଚଳୁଥିଲେ, ଓ ଖୁବ୍ ସ୍ୱଚ୍ଛଳ ନ ହେଲେ ମଧ୍ୟ ତାଙ୍କର ଚଳିବା ପରି ସ୍ୱଚ୍ଛଳତା

ଥିଲା । ଏହି ସଂପର୍କରେ 'ଜଗମୋହନ ରାମାୟଣ'ର ଶେଷରେ କବି ନିଜର ଲେଖା, ଜଗନ୍ନାଥଙ୍କ ପ୍ରତି ନିଜର ଭକ୍ତି ଓ ନିଜର ପାରିବାରିକ ସ୍ୱଚ୍ଛଳତା ବିଷୟରେ ସୂଚନା ଦେଇଛନ୍ତି:

ଭାବଗ୍ରାହୀ ପ୍ରଭୁ ମୋତେ ଦୟା କଲେ
ହୃଦୟରେ ବସି ମୋତେ ରାମାଏଣ କହିଲେ ।
ସେ ପ୍ରଭୁ କବିତ୍ୱ ଅଟଇ ଏଥିର
ଲୋଭେ ମୋହର ନାମ ଭଣାଇଲି ଗ୍ରନ୍ଥର ।
ପଣ୍ଡିତ ଜନ ଶୁଣି ନ ଧର ମୋର ଦୋଷ
ସମୁଦ୍ର ପହଁରିବାକୁ କଲଇଂ ସାହସ ।
ନାରାଏଣ ପ୍ରସାଦେ ଭବ ସିନ୍ଧୁ ତରି
ଏହା ଜାଣିଣ ଶରଧା ହୋଇଲା ମୋହୋରି ।
ଜନ୍ମେଣ ଶୂଦ୍ର ମୁଁ ଅଳପ ବଏସ
ଗ୍ରନ୍ଥ କରିବା କାଳେ ବୟସ ବତିଶ ।
ଦାରା ସୁତ ଧନ ସୁଖ ଭୋଗ ଶିରୀ
ଅରୋଗୀ ଦାତାପଣ ଦେଇଛନ୍ତି ହରି ।
ଏ ମର୍ତ୍ତ୍ୟଲୋକେ ମୁଁ ଜଗନ୍ନାଥଙ୍କୁ ସେବିବି
ଇଚ୍ଛା ହୋଇଲେ ପୁଣ ବୈକୁଣ୍ଠକୁ ଯିବି ।   (ପୃ.୮୬୩)

ଗଜପତି ସମ୍ରାଟ ପୁରୁଷୋତ୍ତମ ଓ ପ୍ରତାପରୁଦ୍ରଙ୍କ ସମୟ ବଳରାମଙ୍କ ସମୟ, ଯେତେବେଳେ ଓଡ଼ିଶାର ଗୌରବ ଓ ଗାରିମା ପ୍ରତିଷ୍ଠିତ ହୋଇଥିଲା । ଏ ଠିକ୍ ପୂର୍ବବର୍ତ୍ତୀ ସମ୍ରାଟ କପିଳେନ୍ଦ୍ରଙ୍କ ସମୟ ପରି ଯେତେବେଳେ ରାଜତ୍ୱର ପ୍ରତିପତ୍ତିର ପ୍ରତିଫଳନ ଆମେ ସାରଳା ଦାସଙ୍କ ଲେଖାରେ ଦେଖୁ । ଉଭୟ ସାରଳା ଓ ବଳରାମଙ୍କ ଲେଖାର ପୃଷ୍ଠଭୂମିରେ ଓଡ଼ିଶାର ଗୋଟାଏ ଗୌରବମୟ ସମୟର ବିଭିନ୍ନ ଆୟତନ ରହିଛି, ଓ ସେମାନଙ୍କର ମହାକାବ୍ୟ ଓ ବିଭିନ୍ନ ଲେଖାଦ୍ୱାରା ସେମାନେ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ସ୍ଥାପନ କରିବା ସାଙ୍ଗେ ସାଙ୍ଗେ ନିଜର ଭାବ, ଭାଷା ଓ ଦୃଷ୍ଟିଭଙ୍ଗୀ ଦ୍ୱାରା ଭବିଷ୍ୟତ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧିର ଦିଗ ଚିହ୍ନିତ କଲେ ।

ବଳରାମଙ୍କର ସ୍ଥାନ ଓ ଜୀବନକାଳ ସଂପର୍କରେ ଯେପରି ବିଭିନ୍ନ ମତ ରହିଛି, ତାଙ୍କର ଲେଖାମାନଙ୍କ ସଂପର୍କରେ ମଧ୍ୟ ସେହିପରି ଗବେଷକମାନେ ଏକମତ ହୋଇପାରି ନାହାନ୍ତି । ବଳରାମ ଦାସଙ୍କ ଭଣିତା ଥିବା ଅନେକ ଗ୍ରନ୍ଥ ଦେଖିବାକୁ ମିଳେ, ଯିଏକି ସପ୍ତଦଶ ଶତାବ୍ଦୀର ମୂଳ ବଳରାମ ଦାସ ନୁହନ୍ତି, ସେହି ସମୟର ଅନ୍ୟ କେହି ବା ପରବର୍ତ୍ତୀ ସମୟର । ଦ୍ୱିତୀୟରେ, ଅନେକ ପ୍ରକ୍ଷିପ୍ତ, ଅର୍ଥାତ୍ ଅନ୍ୟ କେହି କବି ତାଙ୍କର ନିଜ ଲେଖାକୁ ପ୍ରସିଦ୍ଧି ଲାଭ କରିଥିବା ମୂଳ ବଳରାମ ଦାସଙ୍କ ନାମରେ ଭଣିତା କରିଛନ୍ତି, ଯାହାକି ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରାୟ ଏକପ୍ରକାର ପ୍ରଚଳିତ ରୀତି ଥିଲା । ଏହା ସତ୍ତ୍ୱେ ଗବେଷକମାନେ ନିଜ ନିଜର ଗବେଷଣା ଅନୁଯାୟୀ ବଳରାମଙ୍କର ବିଭିନ୍ନ ତାଲିକାମାନ ପ୍ରସ୍ତୁତ କରିଛନ୍ତି । ଏଠାରେ ଏହିପରି କେତେକ ତାଲିକାର ଉଲ୍ଲେଖ କରାଯାଇ ପାରେ । ଯେପରି ପଣ୍ଡିତ ବିନାୟକ ମିଶ୍ର ୩୧ଖଣ୍ଡ ଗ୍ରନ୍ଥର ତାଲିକା ଦେଇଛନ୍ତି, ଓ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ୧୦ଖଣ୍ଡର । ପଣ୍ଡିତ ଦାସଙ୍କର ତାଲିକା ହେଲା :

୧. ଜଗମୋହନ ରାମାୟଣ
୨. ଅମରକୋଷ ଗୀତା

୩. ବେଦାନ୍ତ ସାର ଗୁପ୍ତଗୀତା

୪. ବଟ ଅବକାଶ

୫. ଗୁପ୍ତ ଗୀତା

୬. ବ୍ରହ୍ମାଣ୍ଡ ଭୂଗୋଳ

୭. ବେଢ଼ା ପରିକ୍ରମା

୮. ସପ୍ତାଙ୍ଗ ଯୋଗସାର ଟୀକା

୯. ଭାବ ସମୁଦ୍ର

୧୦. ଶ୍ରୀ ଭଗବଦ୍ ଗୀତା ଅର୍ଥ ।

ଏ ତାଲିକା ବ୍ୟତୀତ ପ୍ରଫେସର ବଂଶୀଧର ମହାନ୍ତି ଆଉ କେତେକ ନୂତନ ଗ୍ରନ୍ଥର ସୂଚନା ଦେଇଛନ୍ତି । ଯେପରି :

୧. ଜ୍ଞାନ ଉଜ୍ଜ୍ୱଳମଣି ଗୀତା

୨. ବିରାଟ ଗୀତା

୩. ଲକ୍ଷ୍ମୀପୁରାଣ

୪. ଦୀପ୍ତିସାର ଗୀତା

୫. ପଣସ ଚୋରୀ

୬. ମନୁ ଗୀତା

୭. ଗୁପ୍ତ ଟୀକା

୮. ମାଳ ଶ୍ରୀ

୯. ଜ୍ଞାନ ପରଚେ ଚୂଡ଼ାମଣି (ଗଦ୍ୟ)

୧୦. ମୃଗୁଣୀ ସ୍ତୁତି

ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ନିଜର 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ' ସଂକଳନରେ ବଳରାମଙ୍କର 'ବ୍ରହ୍ମଗୀତା' ଗଦ୍ୟ ଗ୍ରନ୍ଥରୁ ଗୋଟିଏ ଅଧ୍ୟାୟ ଉଦ୍ଧାର କରିଛନ୍ତି । ଏ ଗୋଟିଏ ନୂତନ ବହି । ବଳରାମଙ୍କ ସଂପର୍କରେ ଦୀର୍ଘ ଦିନ ଧରି ଗବେଷଣା କରିଥିବା ପ୍ରଫେସର କୃଷ୍ଣଚରଣ ସାହୁ ଏ ସବୁକୁ ମିଳିତ କରି, ବିଶେଷ କରି ଓଡ଼ିଶାର ପୋଥି-ପାଠାଗାର ସବୁରେ ସେ ନିଜେ ଦେଖିଥିବା, ଓ ବଳରାମଙ୍କର ଭଣିତା ଥିବା ବହୁ ଗ୍ରନ୍ଥର ଗୋଟିଏ ତାଲିକା ଦେଇଛନ୍ତି । ସେ ହେଲା :

୧. 'ଅମର କୋଷ ଗୀତା', ୨. 'ଉଦ୍ଧବ ଗୀତା'(ଅନୁବାଦ), ୩. 'କର୍ଣ୍ଣଦାନ', ୪. 'କମଳ ଲୋଚନ ଚଉତିଶା', ୫.'କାକ ପୋଇ', ୬. 'କାନ୍ତ କୋଇଲି', ୭. 'ଛ ଚଉପଦୀ', ୮. 'ଛତ୍ରିଶ ଗୁପ୍ତଗୀତା', ୯. 'ଜଗମୋହନ ରାମାୟଣ', ୧୦. 'ଦୀପ୍ତିସାର ଗୀତା', ୧୧. 'ପଣସ ଚୋରୀ', ୧୨. 'ପରଚେ ଚୂଡ଼ାମଣି', ୧୩. 'ପ୍ରଳମ୍ୱସାର ଗୀତା', ୧୪. 'ପାଦ ବର୍ଣ୍ଣନା', ୧୫. 'ବଟ ଅବକାଶ', ୧୬. 'ବେଢ଼ା ପରିକ୍ରମା', ୧୭. 'ବେଦାନ୍ତ ସାର ଗୁପ୍ତ ଗୀତା', ୧୮. 'ବ୍ରହ୍ମ କୁଣ୍ଡଳୀ', ୧୯. ବ୍ରହ୍ମ ଗୀତା (ଗଦ୍ୟ), ୨୦. 'ବ୍ରହ୍ମ ପୁରାଣ', ୨୧. 'ବ୍ରହ୍ମାଣ୍ଡ ଭୂଗୋଳ', ୨୨. 'ଭାବ ସମୁଦ୍ର', ୨୩. 'ମନୁ ଗୀତା', ୨୪. 'ଲକ୍ଷ୍ମୀ ପୁରାଣ', ୨୫. 'ଶ୍ରୀମଦ୍‌ଭଗବତ ଗୀତା'(ଅନୁବାଦ), ୨୬. 'ସପ୍ତାଙ୍ଗ ଯୋଗସାର ଟୀକା'ଓ ୨୭. 'ହନୁମନ୍ତ ଚଉତିଶା' । ଏହା ବ୍ୟତୀତ ବହୁ ଭଜନ ଓ କ୍ଷୁଦ୍ର କବିତା । ଏସବୁ ଗ୍ରନ୍ଥ ଗୁଡ଼ିକରେ 'ବଳରାମ ଦାସ' ଭଣିତା ଥିଲେ ମଧ୍ୟ ପ୍ରଫେସର ସାହୁଙ୍କ ମତରେ ଏଥିରୁ ଅନେକ ପ୍ରକ୍ଷିପ୍ତ । ଅନ୍ୟ କେହି ବଳରାମ ଦାସ ବା ସଂପୂର୍ଣ୍ଣ ଅନ୍ୟ କେହି ଲୋକ ସେସବୁ ଲେଖି ମୂଳ ବଳରାମ ଦାସଙ୍କ ନାମରେ ଭଣିତା କରିଛନ୍ତି । ଏହା ବ୍ୟତୀତ କେତେକ ଗ୍ରନ୍ଥରେ

ବଳରାମ ନିଜେ ନିଜର ମହିମା ବା ଅଲୌକିକତାର ବିବରଣୀ ଦେଇଛନ୍ତି, ଯାହାକି ସାଧାରଣ ଭାବରେ ସ୍ୱାଭାବିକ ନୁହେଁ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ମୂଳ ଲେଖକ ସଂପର୍କରେ ଏ ପ୍ରକାର ବିଭ୍ରାନ୍ତି ଅନେକ ରହିଛି । କିନ୍ତୁ ବଳରାମଙ୍କର କ୍ଷେତ୍ରରେ ମନେହୁଏ ଏ ପ୍ରକାର ବିଭ୍ରାନ୍ତି ବେଶ ବ୍ୟାପକ । ଏସବୁ ସତ୍ତ୍ୱେ ତାଙ୍କର ଯେଉଁ ଯେଉଁ ଲେଖାକୁ ନିଶ୍ଚିତ ଭାବରେ ତାଙ୍କର ବୋଲି ଗବେଷକ ଓ ସୁଧୀ ପାଠକମାନଙ୍କ ଦ୍ୱାରା ଚିହ୍ନିତ କରାଯାଇଛି, ସେସବୁ ହେଲା- ୧. 'ଜଗମୋହନ ରାମାୟଣ' ବା 'ଦାଣ୍ଡି ରାମାୟଣରେ', ଯାହା ସାତକାଣ୍ଡ ସଂପୂର୍ଣ୍ଣ, ଓ ମୂଳ ସଂସ୍କୃତ ରାମାୟଣର ସ୍ୱାଧୀନ ଅନୁବାଦ ୨. 'ବ୍ରହ୍ମାଣ୍ଡ ଭୂଗୋଳ', ଯାହା ତତ୍ତ୍ୱମୂଳକ ଓ ପିଣ୍ଡ ବ୍ରହ୍ମାଣ୍ଡବାଦର ବିବରଣୀ; ୩. 'ଗୁପ୍ତ ଗୀତା' ବା 'ବ୍ରହ୍ମଗୀତା', ଗଦ୍ୟପଦ୍ୟର ସଂଗଠନ ଓ ବ୍ରହ୍ମଜ୍ଞାନର ବିବରଣୀ ; ୪. 'ଅମରକୋଷ ଗୀତା' ଓ ୫. 'ବିରାଟ ଗୀତା', ଉଭୟରେ ମଧ୍ୟ ବ୍ରହ୍ମଜ୍ଞାନର ଆଲୋଚନା; 'ଜ୍ଞାନଚୂଡ଼ାମଣି', ଗଦ୍ୟ ଲେଖା, ଯୌଗିକ ପ୍ରଣାଳୀ ଓ ଶୃଙ୍ଖଳାର ଆଲୋଚନା; ୭. 'ଶ୍ରୀମଦ୍ ଭଗବତ୍ ଗୀତା' (ଅନୁବାଦ), ସହଜ ସରଳ ଓଡ଼ିଆରେ, ଅତ୍ୟନ୍ତ ଲୋକପ୍ରିୟ; ୮. 'ଲକ୍ଷ୍ମୀ ପୁରାଣ', କ୍ଷୁଦ୍ର କାବ୍ୟ, ନାରୀ ସଶକ୍ତିକରଣ ଓ ଭକ୍ତିର ମିଶ୍ରଣ, ଅତ୍ୟନ୍ତ ଲୋକପ୍ରିୟ । ଏହା ବ୍ୟତୀତ ଭଜନ ଓ 'କାନ୍ତ କୋଇଲି' ଓ 'କମଳ ଲୋଚନ ଚଉତିଶା' ପରି ଲୋକପ୍ରିୟ କ୍ଷୁଦ୍ର କବିତା । ବଳରାମଙ୍କର ଲେଖାସବୁକୁ ଆଭିମୁଖ୍ୟ ଦିଗରୁ କେତୋଟି ବିଭାଗରେ ବିଭକ୍ତ କରାଯାଇ ପାରେ । ମୁଖ୍ୟ ଆଭିମୁଖ୍ୟ ରାମକଥାର ପ୍ରଚାର ଓ ପ୍ରସାର, ଯେଉଁଥିପାଇଁ ସେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅଦ୍ୱିତୀୟ, ଓ ତାଙ୍କର ମୁଖ୍ୟ ଗ୍ରନ୍ଥ 'ଜଗମୋହନ ରାମାୟଣ' ଅଦ୍ୱିତୀୟ ଗ୍ରନ୍ଥ, ଓ ଉତ୍କୃଷ୍ଟତା ଦୃଷ୍ଟିରୁ ଏକମାତ୍ର ସାରଳାଙ୍କର 'ମହାଭାରତ' ସହିତ ତୁଳନୀୟ । ଅନ୍ୟ ଭାବରେ, ଓଡ଼ିଆ ସାହିତ୍ୟର ଆରମ୍ଭ ସମୟରେ ଯେଉଁ କେତେକ ବିଶିଷ୍ଟ ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି ସ୍ଥାପନ କରି ଓଡ଼ିଆ ସାହିତ୍ୟର ଅଭିବୃଦ୍ଧିକୁ ଚିହ୍ନିତ କରିଥିଲେ, ଯେପରିକି ସାରଳାଙ୍କର 'ମହାଭାରତ', ଜଗନ୍ନାଥଙ୍କର 'ଶ୍ରୀମଦ୍‌ଭାଗବତ' ଓ ଅଚ୍ୟୁତଙ୍କର 'ହରିବଂଶ', 'ଜଗମୋହନ ରାମାୟଣ' ସେମାନଙ୍କ ମଧ୍ୟରେ ଅନ୍ୟତମ । କବି ବଳରାମଙ୍କର କବିତ୍ୱର ଆକଳନ ମୁଖ୍ୟତଃ ବଳରାମଙ୍କର ଏହିସବୁ ଗ୍ରନ୍ଥ, ବିଶେଷ କରି 'ଜଗମୋହନ ରାମାୟଣ' ଉପରେ ପର୍ଯ୍ୟବସିତ ।

(୨)

'ଜଗମୋହନ ରାମାୟଣ' ବାଲ୍ମିକୀ ରାମାୟଣର ଆକ୍ଷରିକ ଅନୁବାଦ ନୁହେଁ, ସ୍ୱାଧୀନ ଅନୁବାଦ । ଅର୍ଥାତ୍ କବି ରାମାୟଣ ମହାକାବ୍ୟର ସଂଗଠନକୁ ଗ୍ରହଣ କରିଛନ୍ତି, ଓ ରାମାୟଣର ମୂଳ ବିବରଣୀର ବ୍ୟତିକ୍ରମ କରି ନାହାନ୍ତି । କିନ୍ତୁ ଅନ୍ୟ ଭାବରେ ବ୍ୟତିକ୍ରମ କରାଯାଇଛି, ଯେପରି, ପ୍ରଥମରୁ, ସେ ମୂଳ ରାମାୟଣର ସାତଟି ବିଭାଗ ବା କାଣ୍ଡକୁ ଅକ୍ଷୁର୍ଣ୍ଣ ରଖିଥିଲେ ମଧ୍ୟ, 'ବାଳକାଣ୍ଡ'କୁ 'ଆଦିକାଣ୍ଡ' ନାମରେ ଓ 'ଯୁଦ୍ଧକାଣ୍ଡ'କୁ 'ଲଙ୍କାକାଣ୍ଡ' ନାମରେ ନାମିତ କରିଛନ୍ତି । ଦ୍ୱିତୀୟରେ, ସେ ଦୀର୍ଘ ବିବରଣୀର ବିଭିନ୍ନ ସ୍ଥାନରେ ମୂଳ ରାମାୟଣରେ ନ ଥିବା ବହୁତ ନୂଆ ନୂଆ ଗଳ୍ପକୁ ସଂଯୋଜନ କରିଛନ୍ତି, ଓ ସେ ସବୁକୁ ସୀମିତ ହେଲେ ମଧ୍ୟ ପୂର୍ଣ୍ଣ ବିବରଣୀ ଭାବରେ ଉପସ୍ଥାପନ କରିଛନ୍ତି । ଏହି ଗଳ୍ପ ସବୁକୁ ସେ ବାଲ୍ମିକୀ ରାମାୟଣର ବାହାରେ ବିଭିନ୍ନ ପୁରାଣ ଓ ଲୋକକଥାରୁ ସଂଗ୍ରହ କରିଛନ୍ତି, ଓ ସମୟକ୍ରମେ ସେସବୁ 'ଜଗମୋହନ ରାମାୟଣ'ର ପ୍ରତିଷ୍ଠା ଓ ପ୍ରସାର ଯୋଗୁଁ ସାଧାରଣ ଭାବରେ ରାମାୟଣର ଗଳ୍ପ ଭାବରେ ଗୃହୀତ ହୋଇଯାଇଛି । ତୃତୀୟରେ, ସେ ମୂଳ ରାମାୟଣର ବହୁ ଉପାଖ୍ୟାନକୁ ସେହି ସେହି ଉପାଖ୍ୟାନରେ ମୂଳ ସୀମା ଭିତରେ ନ ରଖି ବହୁ ଭାବରେ ବିସ୍ତାରିତ କରିଛନ୍ତି, ଯାହା ଫଳରେ ସେହି ସେହି ଉପାଖ୍ୟାନ ଗୁଡ଼ିକ କ୍ଷୁଦ୍ର ହେଲେ ମଧ୍ୟ ପ୍ରାୟ ସ୍ୱୟଂସଂପୂର୍ଣ୍ଣ ବିବରଣୀ ହୋଇଯାଇଛି ଓ ମୂଳ ରାମାୟଣର ମୁଖ୍ୟ ବିବରଣୀକୁ ଋଦ୍ଧିମନ୍ତ କରି ପାରିଛି । ଚତୁର୍ଥରେ, ଆମେ ବଳରାମଙ୍କର 'ରାମାୟଣ' ଲେଖିବାର ଉଦ୍ଦେଶ୍ୟ ସହିତ ସାରଳା ଦାସଙ୍କର 'ମହାଭାରତ' ଲେଖିବାର ଉଦ୍ଦେଶ୍ୟକୁ ତୁଳନା କରିପାରିବା, ଯେ କବିମାନେ ପାଠକ

ବା ଶ୍ରୋତାମାନଙ୍କୁ ଖାଲି ଆନନ୍ଦ ଦେବା, ଶିକ୍ଷିତ କରିବା ବା ଚରିତ୍ରବାନ କରିବା ଉଦ୍ଦେଶ୍ୟରେ ରାମାୟଣ ଓ ମହାଭାରତ ଲେଖି ନାହାନ୍ତି, ଅନ୍ୟତମ ମୁଖ୍ୟ ଉଦ୍ଦେଶ୍ୟ ଓଡ଼ିଶା ବା ଉତ୍କଳର ପରିଚୟ ଦେବା ସାଙ୍ଗେ ସାଙ୍ଗେ ଓଡ଼ିଶାକୁ ଏକ ଅତ୍ୟନ୍ତ ପୁଣ୍ୟ ସ୍ଥାନ ଓ ଓଡ଼ିଆ ଜାତିକୁ ଏକ ଜୀବନ୍ତ, ଜୀବନ-ପରିପୂର୍ଣ୍ଣ ଜାତି ଭାବରେ ପ୍ରତିଷ୍ଠିତ କରିବା । ହଜାର ହଜାର ବର୍ଷ ତଳର କୌଣସି ଲୁପ୍ତ ସମାଜର ବିବରଣୀ ନୁହେଁ, ସମସାମୟିକ ଗଜପତି ରାଜତ୍ୱର ରାଜନୈତିକ ଓ ସାମାଜିକ ଗୌରବ ସାରଳା ଓ ବଳରାମଙ୍କ ଲେଖାରେ ସାହିତ୍ୟିକ ଗୌରବରେ ରୂପାନ୍ତରିତ ହୋଇଯାଇଛି । ସାରଳାଙ୍କ 'ମହାଭାରତ' ଓ ବଳରାମଙ୍କ 'ରାମାୟଣ'ରେ ଆମେ ସେହି ଓଡ଼ିଶାକୁ ଦେଖୁ ଯାହା ନିଜର ପରିପୂର୍ଣ୍ଣ ଜୀବନୀଶକ୍ତିରେ ଗୋଟିଏ ଅଗ୍ରଗଣ୍ୟ ଜାତି ଭାବରେ ବର୍ତ୍ତମାନର ପାଠକକୁ ମଧ୍ୟ ପ୍ରଣୋଦିତ କରି ପାରୁଛି । ପଞ୍ଚମରେ, 'ଜଗମୋହନ ରାମାୟଣ'ର ଅନ୍ୟ ଏକ ବିଶିଷ୍ଟ ବ୍ୟତିକ୍ରମ ହେଉଛି ଏହାର ଭକ୍ତି ଭାବନା, ବା ଲେଖାର ସଂଗଠନରେ ବାରମ୍ବାର ପ୍ରକାଶ ପାଇଥିବା ଏହାର ଭକ୍ତିର ଆୟତନ । ଏହି ଆୟତନକୁ ଦୁଇଟି ଦିଗରୁ ଦେଖାଯାଇ ପାରେ । ପ୍ରଥମ ହେଉଛି ବଳରାମ ନିଜର ରାମାୟଣ ଲେଖିବା ସମୟରେ ମୂଳ ବାଲ୍ମିକୀ ରାମାୟଣରୁ ଯାହା ସ୍ୱାଭାବିକ ଭାବରେ ଗ୍ରହଣ କରିଥିଲେ, କାରଣ ରାମାୟଣ ବର୍ଣ୍ଣନାତ୍ମକ ମହାକାବ୍ୟ ହେଲେ ବି ଭକ୍ତି ଭାବନା ବା ଭକ୍ତିର ପରଂପରା ଏହା ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇ ରହିଛି, ଓ ଦେବଦ୍ୱିଜରେ ଭକ୍ତି ପ୍ରସାରିତ କରିବା ଏହାର ଅନ୍ୟତମ ଉଦ୍ଦେଶ୍ୟ । ଏହାହିଁ ରାମାୟଣ ଓ ମହାଭାରତ ପରି ପ୍ରାଚୀନ ଭାରତୀୟ ମହାକାବ୍ୟର 'ଇଲିୟାଡ୍', 'ଅଡିସି' ଓ 'ଇନିଡ' ପରି ପ୍ରାଚୀନ ୟୁରୋପୀୟ ମହାକାବ୍ୟ ବା ପରବର୍ତ୍ତୀ ସମୟର ମହାକାବ୍ୟ ମିଲ୍‌ଟନ୍‌ଙ୍କର 'ପାରାଡାଇସ୍ ଲଷ୍ଟ' (ନଷ୍ଟ ବୈକୁଣ୍ଠ) ଠାରୁ ପାର୍ଥକ୍ୟ । କୁହାଯାଇପାରେ, ପ୍ରାଚୀନ ବେଦ ଉପନିଷଦ ପ୍ରଭୃତିକୁ ବାଦ ଦେଲେ ରାମାୟଣ ଓ ମହାଭାରତ ସାମଗ୍ରିକ ଆର୍ଯ୍ୟ ଜୀବନର ପରଂପରାରେ ଭକ୍ତିପୁଷ୍ଟ ଜୀବନଶୈଳୀକୁ ପ୍ରତିଷ୍ଠା କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ତେଣୁ ଉଭୟ ସାରଳା ଓ ବଳରାମ ଯଥାକ୍ରମେ 'ମହାଭାରତ' ଓ 'ରାମାୟଣ' ଲେଖିବା ସମୟରେ ନିଜ ନିଜର ଲେଖାର ସଂଗଠନରେ ଯେ ପାରଂପରିକ ଭକ୍ତିଭାବନା ଦ୍ୱାରା ପ୍ରଭାବିତ ହେବେ ଏହା ସ୍ୱାଭାବିକ । ତାହାହିଁ ଘଟିଛି, ଓ ପାଠକ ଓ ଶ୍ରୋତାମାନଙ୍କ ପାଇଁ ରାମାୟଣ ଓ ମହାଭାରତର ବିବରଣୀ ଉପସ୍ଥାପନାର ଶୈଳୀ ନୁହେଁ, ମୂଳ ଆକର୍ଷଣ ହେଉଛି ଧର୍ମ ଓ ଭକ୍ତିର ଚେତନା ଓ ଏହି ଚେତନା ମଣିଷ ଜୀବନକୁ କିପରି ଭାବରେ ସଂସ୍କୃତ ଓ ମାର୍ଜିତ କରି ପାରିବ ସେହି ମନୋଭାବ । ଏହା ଗୋଟିଏ ଦିଗ । ଅନ୍ୟ ଦିଗରେ ବଳରାମଙ୍କର ଭକ୍ତିଭାବନା କେବଳ ପରଂପରାରୁ ଗୃହୀତ ଭକ୍ତିଭାବନାରେ ସୀମିତ ହୋଇ ରହିନାହିଁ । ଏହା ପରଂପରାରୁ ନିଜର ସମସାମୟିକ, ବିଶେଷ କରି ବ୍ୟକ୍ତିଗତ ନିଷ୍ଠାକୁ ପ୍ରସାରିତ ହୋଇଯାଇଛି । ଅର୍ଥାତ୍, ଭକ୍ତିଭାବନା ପରଂପରାର ନିରପେକ୍ଷତାକୁ ଓ ବାହ୍ୟ ଆବରଣକୁ ଅତିକ୍ରମ କରି ଗଭୀରତର ହେବା ସଙ୍ଗେ ସଙ୍ଗେ ଅଧିକତର ନିଜର ବ୍ୟକ୍ତିଗତ ଅନୁଭୂତିରେ, ଅଧିକତର ବ୍ୟକ୍ତି-ନିଷ୍ଠ ଭାବରେ ଓ ନିଜର ଇଷ୍ଟଦେବତାଙ୍କୁ ଉପଲକ୍ଷ୍ୟ କରି ପ୍ରକାଶ ପାଇଛି । ସାରଳାଙ୍କର କ୍ଷେତ୍ରରେ ମଧ୍ୟ ତାହାହିଁ ଘଟିଛି । କିନ୍ତୁ ବଳରାମଙ୍କ କ୍ଷେତ୍ରରେ ତାହା ସ୍ପଷ୍ଟତର ଓ ଅଧିକତର ପ୍ରସାରିତ ଓ ପ୍ରତିଷ୍ଠିତ । ଏହାହିଁ ବଳରାମଙ୍କର 'ରାମାୟଣ'ର ପ୍ରାଚୀନ ରାମାୟଣଠାରୁ ଗୋଟିଏ ବଡ଼ ବ୍ୟତିକ୍ରମ । ଭକ୍ତିଭାବନା ରହିଛି, କିନ୍ତୁ ଏହି ଭକ୍ତିର ଭାବନା ବା ଭକ୍ତିର ଧାରାରେ କବିଙ୍କ ନିଜସ୍ୱ ଭକ୍ତି ଚେତନା ଓ ତାଙ୍କର ନିଜର ଉଷ୍ଟଦେବତା ଜଡ଼ିତ ହୋଇଯାଇଛନ୍ତି । ଏହି ଇଷ୍ଟଦେବତା ଜଗନ୍ନାଥ । କିଛି ଅତିରଂଜନ ହେଲେ ବି କୁହାଯାଇପାରେ ବଳରାମଙ୍କର 'ରାମାୟଣ' ଜଗନ୍ନାଥଙ୍କ ପ୍ରତି ଏକ ଦୀର୍ଘ ମହିମ୍ନ ସ୍ତବ । ସେହିଯୋଗୁ ସେ ନିଜର 'ରାମାୟଣ'ର ନାମ ଜଗନ୍ନାଥଙ୍କୁ ସ୍ମରଣ କରି 'ଜଗମୋହନ ରାମାୟଣ' ରଖିଲେ, ଓ ଅତି ଆଶ୍ଚର୍ଯ୍ୟଜନକ ଭାବରେ ଯେତେବେଳେ ରାମ, ଲକ୍ଷ୍ମଣ, ସୀତା ନୀଳାଚଳକୁ ଆସି ଜଗନ୍ନାଥଙ୍କୁ ଦର୍ଶନ କଲେ, ସେମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ମିଳି ଏକାତ୍ମ ହୋଇଗଲେ । ତେଣୁ ଯେଉଁକଥା ଆଗରୁ କୁହାଯାଇଥିଲା, ଯେ 'ଜଗମୋହନ ରାମାୟଣ' ବାଲ୍ମିକୀ ରାମାୟଣର ସ୍ୱାଧୀନ ଅନୁବାଦ । କବି ରାମାୟଣ ସଂଗଠନରେ ବିଭିନ୍ନ ଭାବରେ

ବ୍ୟତିକ୍ରମ କରି ନିଜର ଅନୁଭୂତି, ମନୋଭାବ ଓ ଚିନ୍ତାଧାରାକୁ ପ୍ରକାଶ କରି ପାରିଛନ୍ତି, ଓ 'ଜଗମୋହନ ରାମାୟଣ'କୁ ଷୋଡଶ ଶତାବ୍ଦୀର ପ୍ରାରମ୍ଭରେ ଲେଖାଯାଇଥିବା ଗୋଟିଏ ମୌଳିକ ଓଡ଼ିଆ ଗ୍ରନ୍ଥ ଭାବରେ ଗ୍ରହଣ କରିବା ଯୁକ୍ତିଯୁକ୍ତ ହେବ ।

(୩)

'ଜଗମୋହନ ରାମାୟଣ'ରେ ଗବେଷକମାନେ ବହୁ ନୂତନ ଗଳ୍ପ ଓ ଉପନ୍ୟାସ ସବୁ ସଂଯୋଜିତ ହୋଇଥିବା ଉଲ୍ଲେଖ କରିଛନ୍ତି । ଏ ସଂପର୍କରେ ପ୍ରଫେସର ସାହୁ ମଧ୍ୟ ଗୋଟିଏ ଦୀର୍ଘ ତାଲିକା ଦେଇଛନ୍ତି । କେତେକ ବିଶିଷ୍ଟ ଗଳ୍ପ ବା ଉପାଖ୍ୟାନ ହେଲା : ୧. ରାଜା ଦଶରଥ ଓ ଶନିଙ୍କର କଳହ, ୨. ଋଷ୍ୟଶୃଙ୍ଗ ଉପାଖ୍ୟାନ, ୩. ଗଂଗାବତରଣ, ୪. ଅହଲ୍ୟା ଉପାଖ୍ୟାନ (ଆଦିକାଣ୍ଡ); ୫. ରାମଙ୍କର ଗୁହକ ସହ ବଂଧୁତା, ୬. ପରଶୁରାମ ଉପାଖ୍ୟାନ, ୭. ମନ୍ଥରାର ପୂର୍ବ ଜନ୍ମ, ୮. ଦିତି ଓ ଅଦିତିଙ୍କର କଳହ, ୯. ସଓରା ସ୍ତ୍ରୀଲୋକମାନଙ୍କର ସହିତ ସୀତାଙ୍କର କଥୋପକଥନ ('ଅଯୋଧ୍ୟା କାଣ୍ଡ'); ୧୦. ଦଣ୍ଡକାରଣ୍ୟର ଋଷିମାନଙ୍କର ବିବରଣୀ, ୧୧. ରାମଙ୍କର ତୀର୍ଥ ଯାତ୍ରା, ୧୨.ସୀତାଙ୍କ ପ୍ରତି ଲକ୍ଷ୍ମଣଙ୍କର ଅଭିଶାପ, ୧୩. ମାୟା ଓ ଛାୟା ସୀତା, ୧୪. ରାମଙ୍କର ଶବର ଶବରୀମାନଙ୍କ ସହ ସାକ୍ଷାତ ('ଆରଣ୍ୟକ କାଣ୍ଡ'), ୧୫.ବାଳି ଓ ସୁଗ୍ରୀବର ପୂର୍ବଜନ୍ମ, ୧୬.ଲୀଳାବତି ଗଳ୍ପ, ୧୭.ସାରସ ଗଳ୍ପ, ('କିଷ୍କିନ୍ଧା କାଣ୍ଡ'); ୧୮. ଲଙ୍କାର ପୁନର୍ଗଠନ, ୧୯.ଗୁଣ୍ଡୁଚିମୂଷା ଉପାଖ୍ୟାନ ('ସୁନ୍ଦରା କାଣ୍ଡ'), ୨୦.ସନ୍ଥ ପଣ୍ଡା ଗଳ୍ପ, ୨୧.ରାବଣ ଓ ମନ୍ଦୋଦରୀର ସ୍ୱପ୍ନ, ୨୨.ହନୁମାନଙ୍କୁ ଓ ଦଣ୍ଡକାରଣ୍ୟର ଋଷିମାନଙ୍କୁ ରାମଙ୍କର ବରଦାନ (ଲଙ୍କାକାଣ୍ଡ); ୨୩. ଲଙ୍କାର ସୃଷ୍ଟି, ୨୪. ବିରଜା କ୍ଷେତ୍ରର ବିବରଣୀ; ୨୫.ରାବଣର ବିବାହ ଓ ତାର ପରିବାର, ୨୬.ବେଦବତୀଙ୍କ ବିବରଣୀ (ଉତ୍ତରାକାଣ୍ଡ) ଇତ୍ୟାଦି । 'ଜଗମୋହନ ରାମାୟଣ'ର ସମଗ୍ର ପରିସରରେ ଏହିପରି ଓ ଆହୁରି ଅନେକ ଗଳ୍ପ ଓ ଉପାଖ୍ୟାନର ସଂଧାନ ମିଳେ ଯାହାକି ମୂଳ ବାଲ୍ମୀକି ରାମାୟଣରେ ନାହିଁ, ବଳରାମଙ୍କର ନିଜସ୍ୱ ସୃଷ୍ଟି, ଓ ପରବର୍ତ୍ତୀ ସମୟରେ ସେସବୁ ରାମକଥାର ପରଂପରାରେ ଲୋକ ମାନସ ଓ ଲୋକ କଥାରେ ଜଡ଼ିତ ହୋଇ ଯାଇଛି ।

ତେବେ, ଆଗରୁ ଯାହା କୁହାଯାଇଛି, 'ଜଗମୋହନ ରାମାୟଣ'ର ସଂଗଠନରେ ଏ କେବଳ ନୂତନ ନୂତନ ଉପାଖ୍ୟାନର ସଂଯୋଜନା ନୁହେଁ, ପ୍ରତ୍ୟେକ ଉପାଖ୍ୟାନର ବିସ୍ତୃତ ବିବରଣୀ ଦେବା 'ଜଗମୋହନ ରାମାୟଣ'ର ଅନ୍ୟତମ ବିଶିଷ୍ଟତା । ଏହିପରି ଗୋଟିଏ ଭଲ ସ୍ଥାନୀୟ ଉଦାହରଣ ହେଉଛି 'ଆଦିକାଣ୍ଡ'ର ଋଷ୍ୟଶୃଙ୍ଗ ଉପାଖ୍ୟାନ । ମୂଳ ବାଲ୍ମୀକି ରାମାୟଣରେ ମହାରାଜା ଦଶରଥଙ୍କର ସାରଥୀ ସୁମନ୍ତ୍ରର ବିବରଣୀରେ ଏହି ଉପାଖ୍ୟାନର ସୂଚନା ରହିଛି । ବିବରଣୀଟି ସଂକ୍ଷିପ୍ତ । ବଳରାମ ଏହି ଉପାଖ୍ୟାନର ମୁଖ୍ୟ ଧାରାଗୁଡ଼ିକୁ ନିଜ ବିବରଣୀରେ ଗ୍ରହଣ କରି ନେଇଛନ୍ତି । ଯେପରିକି, ଅଙ୍ଗ ଦେଶରେ ବର୍ଷା ନ ହେବା, ରାଜାଙ୍କର ବ୍ୟସ୍ତତା, ମନ୍ତ୍ରୀ ଓ ବ୍ରାହ୍ମଣମାନେ ରାଜାଙ୍କୁ ଦେଇଥିବା ଉପଦେଶ, ଅରଣ୍ୟରୁ ଋଷ୍ୟଶୃଙ୍ଗଙ୍କୁ ଆଣିବା ପାଇଁ ବାରାଙ୍ଗନାମାନଙ୍କର ନିଯୁକ୍ତି, ଋଷ୍ୟଶୃଙ୍ଗଙ୍କ ସଂପର୍କରେ ବାରଙ୍ଗନାମାନଙ୍କର କୂଟ କୌଶଳ, ଋଷ୍ୟଶୃଙ୍ଗଙ୍କର ଅଙ୍ଗଦେଶକୁ ଆସିବା ଓ ଅଙ୍ଗଦେଶରେ ବର୍ଷା ହେବା । କିନ୍ତୁ ମୂଳ ରାମାୟଣର ସଂକ୍ଷିପ୍ତ ସୂଚନା 'ଜଗମୋହନ ରାମାୟଣ'ରେ ଏକ ବିସ୍ତାରିତ ରୂପ ନେଇଛି, ଓ ଯାହା ଗୋଟାଏ ମୋଟାମୋଟି ଚଳିଲା ପରି ବିବରଣୀ ଥିଲା ସେଥିରେ ବହୁ ବର୍ଣ୍ଣନା, ଆବେଗ ଓ ମାନବିକ ସୂଚନା ପୂର୍ଣ୍ଣ ହୋଇଯାଇଛି । କୁହାଯାଇ ପାରେ 'ଜଗମୋହନ ରାମାୟଣ'ର ବିବରଣୀ ଏକ ସ୍ୱୟଂସଂପୂର୍ଣ୍ଣ ଆଖ୍ୟାୟିକା ଭିତ୍ତିକ ଉପାଖ୍ୟାନ ଯାହାକୁ କି ରାମାୟଣର ପୃଷ୍ଠଭୂମିରୁ ବିଚ୍ଛିନ୍ନ କରି ମାନବିକ ଆବେଦନରେ ପରିପୂର୍ଣ୍ଣ ଏକ ସ୍ୱାଧୀନ ଉପାଖ୍ୟାନ ଭାବରେ ଗ୍ରହଣ କରିହେବ । ଗୋଟିଏ ଦିଗରୁ ଆଧୁନିକ ବିଚାରରେ ଏହି ଘଟଣାର ପ୍ରତୀକତା, ଯାହାକୁ କି ଏଲିଅଟଙ୍କର ପ୍ରସିଦ୍ଧ କାବ୍ୟ 'The Waste Land'ର ସୂଚନା ସହିତ ତୁଳନା କରାଯାଇପାରେ – ଯେ, ରାଜ୍ୟରେ ବର୍ଷାର ଅଭାବ, ତେଣୁ ଜମିରେ ଉର୍ବରତାର ଅଭାବ, ତେଣୁ ରାଜ୍ୟରେ ଓ ଜନଜୀବନରେ ଦୁର୍ଦ୍ଦଶା, ଓ

ରାଜାଙ୍କର ବ୍ୟସ୍ତତା ଓ ଅସହାୟତା । ଅନ୍ୟ ଦିଗରେ ସରଳତା ଓ ପବିତ୍ରତାର ଆଦର୍ଶ ଓ ଆଦିରୂପ କିପରି ନାଗରିକ ଜୀବନରେ କାମଜ କୌଶଳପୂର୍ଣ୍ଣ ଛଳନା ଓ ସଂସ୍କୃତି ଦ୍ୱାରା ପ୍ରତାରିତ ହୋଇ ପରିଣାମରେ ପରାଜିତ ହୋଇପାରେ ତା'ର ସୂଚନା । ଏ ମୂଳ ଅନୁଭବ ସହିତ ଯୁକ୍ତ ହୋଇ ରହିଛି ଅନ୍ୟାନ୍ୟ ବହୁ ଅନୁଭବ ଓ ଦୃଶ୍ୟ । ଯେପରିକି ବିଭିନ୍ନ ସ୍ଥାନ, ପ୍ରକୃତିର ଦୃଶ୍ୟର ବିଭିନ୍ନତା, ପଶୁପକ୍ଷୀଙ୍କର ବ୍ୟବହାର ପ୍ରଭୃତି । ଅର୍ଥାତ୍, ନୌକାରେ ନଦୀ ଗର୍ଭରେ ଯିବା ସମୟରେ ବାରାଙ୍ଗନାମାନେ ନଦୀର ଦୁଇ କୂଳରେ ଦେଖିଥିବା ଦୃଶ୍ୟସବୁ, ଓ ପରେ ବିଭାଣ୍ଡକଙ୍କର ଆଶ୍ରମରେ ଆଶ୍ରମ ପରିସରର ବର୍ଣ୍ଣନା ପ୍ରଭୃତି । ଏସବୁର ବିସ୍ତାରିତ ବିବରଣୀ ମୂଳ ରାମାୟଣରେ ନାହିଁ । ଏହା ସହିତ ଯେଉଁମାନେ ଏ ଦୁରୂହ କାର୍ଯ୍ୟ କରିବାକୁ ଗଲେ ସେମାନଙ୍କର ମାନସିକ ସ୍ଥିତିର ସୂଚନା, ଯେପରିକି ଅଜଣା, ଅଗମ୍ୟ ବିପଦ-ପରିପୂର୍ଣ୍ଣ ଦୀର୍ଘ ନଦୀପଥରେ ଯାତ୍ରା କରିବାର ଭୟ, ଅନିଶ୍ଚିତତା ଓ ଉତ୍ତେଜନା, ଓ ସେଥି ସହିତ ଦୂର ଅରଣ୍ୟରେ, ସଂପୂର୍ଣ୍ଣ ଅପରିଚିତ ଋଷି ଆଶ୍ରମରେ ନିଜର କାର୍ଯ୍ୟର ସଫଳତା ସଂପର୍କରେ ଯଥେଷ୍ଟ ଅସ୍ଥିରତା । ଅଙ୍ଗଦେଶରୁ ଚାରୋଟି ପାହାଡ଼ ମଝିରେ ଥିବା ଅରଣ୍ୟ ଓ ବିଭାଣ୍ଡକ ଋଷିଙ୍କର ଆଶ୍ରମକୁ ଯାଇଁ ଫେରି ଆସିବାକୁ ବାରାଙ୍ଗନାମାନଙ୍କୁ ୪୦ଦିନ ଲାଗିଥିଲା । ଏହି ଚାଳିଶ ଦିନର ବିବରଣୀ 'ଜଗମୋହନ ରାମାୟଣ'ରେ ଅତ୍ୟନ୍ତ ଚିତ୍ତାକର୍ଷକ, ଓ ବଳରାମଙ୍କର କଳ୍ପନା ଓ କବିତ୍ୱର ଏକ ପ୍ରକୃଷ୍ଟ ଉଦାହରଣ । ଯେପରି, ଗୋଟିଏ ଦିଗରେ, ନୌକାକୁ ଜଣେ ମୁନିର ପର୍ଣ୍ଣକୁଟୀର ପରି ସଜ୍ଜିତ କରାଗଲା :

> ନଉକା ଉପରେ ବିବିଧ ଗଛ ରୂପୀ, ଫଳିଲା ଫୁଟିଲା ବୃକ୍ଷନ୍ତ ନେଇ ଥାପି ।
> ଆମ୍ବ ପଣସ ଯେ କଦଳୀ ନଡ଼ୀକାଳ, ଟଭା ନାରଙ୍ଗ ଯେ ମାତଙ୍ଗ ଫଳଫୁଲ ।
> ବେଲ କଇଥ ଯେ ଅଁଳା ଖଜୁର, ଚଂପା ନାଗେଶ୍ୱର ବକୁଳ ତଗର ।
> ତରାଟ ମନ୍ଦାର ଅଶୋକ ମଲ୍ଲୀ ଜାଇ, କଟଣ କଣିଆର ଯେ କେତକୀ ଅଛଇ ।
> ଲବଙ୍ଗ ଗୁଳୁଚି ପିପଳି ପାନଲତା, ପ୍ରତକ୍ଷେ ବନ କିସେ ରଞ୍ଚିଲା ବିଧାତା ।
> ଋଷିର ମଢ଼ିଆ ପ୍ରାୟେକ ପର୍ଣ୍ଣକୁଟୀ, ନାବ ମଧେ ରଞ୍ଚିଲେ ଅପୂର୍ବ ପୁର ଗୋଟି ।     (ପୃ.୧୦)

ଅନ୍ୟ ଦିଗରେ ଏହି 'ଅପୂର୍ବ ପୁର' ହିଁ ବିଳାସ-କକ୍ଷ, ଋଷ୍ୟଶୃଙ୍ଗଙ୍କ ପାଇଁ ଅଭିପ୍ରେତ :

> ଉପରେ ଚନ୍ଦ୍ରାତପ ଟାଣିଲେ ଗୋପ୍ୟ କରି, ବାହାରକୁ ନ ଦିଶଇ ଭିତରକୁ ଉହାଡି ।
> ଶେତ ଚାମର ମୁକୁତା ମଣିଝରା, ଚଉପାଶେ ଟାଣିଲେ ଅପୂର୍ବ ପାଟ ଟେରା ।
> ପଲଙ୍କ ଉପରେ ଅଛଇ ପାଟ ଶେଜ, ତଥିରେ ଶେଜାଇଲା ଅଛି ବସ୍ତ୍ରରାଜ ।
> କୁସୁମ ପାଖୁଡ଼ା ଯେ କର୍ପୂରର ଧୂଳି, ସୁବର୍ଣ୍ଣରେ ଜଡ଼ିତ ସିନ୍ଧୁଆ ମୁଚୁଳି ।
> ଅଗର ଧୂପ ବାସ କରଇ ଚଉକତି, ନାବ ଚଉପାଶେ ମାଣିକର ବତୀ ।
> ସୁବାସ ଫଳମାନ ଥୋଇଲା ତହିଁ ନେଇ, ଦୁଧ ଘୃତ ଶାକର ଯେ ଅମୃତ ଭିଆଇ ।     (ପୃ.୧୦)

ଏଥି ସହିତ ନାରୀର କାମ-ଉଦ୍ଦୀପକ ସୌନ୍ଦର୍ଯ୍ୟ ଯାହା ଏହି ବିଳାସିତାର ଅଂଶ :

> ଆୟେ ଅଳଂକାର ଦିବ୍ୟ ବାସ ପିନ୍ଧି, କର୍ଣ୍ଣେଣ ତଡ଼କି ବାହେ ବିଦ ମୁଦି ।
> କର୍ଣ୍ଣେଣ ପଦେକ ଯେ ମୁକୁତାର ହାର, ଯଉବନ ଉପରେ ଲୁଳଇ ମୋତି ମାଳ ।
> ପାଦରେ ନୂପୁର ଯେ ହସ୍ତରେ ରତ୍ନ ବାହି, ଲଲାଟରେ କସ୍ତୁରୀ ଚିତା ତାମ୍ବୋଳ ରସ ଖାଇ ।
> ସ୍ତନ ଜାନୁ ଜଘନ ବଳିଣ କାଖପଶା, କେ ଜାଣି ପଟାନ୍ତର ସ୍ୱର୍ପର ନାୟେକା ।
> କରେ ତାଳ ମର୍ଦ୍ଦଳ ବଇଁଶୀ ବେଣୁ ଘେନି, ନୃତ୍ୟ ରସ ସଜ ଘେନନ୍ତି କାମେନୀ । (ପୃ.୧୦)

ପରେ ପରେ ନୌକା-ଯାତ୍ରା, ଦୁଃସାହସିକ ଅଭିଯାନର ଉତ୍ତେଜନା, ଓ କବି କଳ୍ପନାର ସମାନ ବିସ୍ତୃତି :

ରାତ୍ର ଦିବସରେ ନ ବିଶ୍ରାମି ଗଲେ, ଅନେକ ଘୋର ଗିରି ବନସ୍ତ ଜିଣିଲେ ।
ଦୁସହ ଦୁର୍ଗମ ଗହନ ବନେ ଯାନ୍ତି, ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି ।
କାହିଁ ଗଜେ ଗଜେ ହୁଅନ୍ତି ଚଣ୍ଡଦନ୍ତ, କେବଣ ଶାର୍ଦ୍ଦୂଳ ଖେଦଇ ମୃଗନ୍ତ...
କାହିଁ ମତ୍ତହସ୍ତୀକି ବିଦାରଇ ସିଂହ, ସର୍ବାଙ୍ଗେ ଶ୍ରୋଣିତ ଦିଶଇ ଦେହରଙ୍ଗ ।
କାହିଁ ସର୍ପକଇ ମାରଇ ବଣ ଗୋରୁ, କାହିଁ ବାଘ ଡରେ ପଳାବନ୍ତି ଗୋରୁ ଦୂରୁ ।
କେବଣ ଜୀବଯନ୍ତୁ ନଦୀକୁ ଚାହାଁନ୍ତି, ନାବ ଚଳିଯାନ୍ତେ ଦିଶନ୍ତି ପନ୍ତି ପନ୍ତି ।
ପରାକ୍ରମ କରି ହୁଅନ୍ତି ଆଗୁସାର, କେହୁ ଭୟକରି ପଶନ୍ତି ଲତାର ।
କେହୁ ପଛକଇ ଚାହିଁ ଆଡ଼େ ହୋଇଯାନ୍ତି, ଥୋକାୟେକ ଦୂର ଯାଇ ଲେଉଟି ଆସନ୍ତି ।...
ଚିତ୍ର ମୟୂର ଯେ କରନ୍ତି ନୃତ୍ୟ ରସ, କାହିଁ ବର ପାରୁଆ ଉଡନ୍ତି ଚଉପାଶ ।
ଗହନ ବନସ୍ତରେ ବୋବାଇ ଏକ ଜୀବ, ହୁଳହୁଳି ପ୍ରାୟେକ ଶୁଭଇ ଶବଦ ।... (ପୃ.୧୧)

ଏହା ସହିତ ନାରୀମାନଙ୍କର ବେଶ-ସଜ୍ଜା ଓ ଅଳଂକାରପ୍ରିୟତା :

କେରି କେରି କରି ମଣ୍ଡିଲେ ଅଳକା, କସ୍ତୁରୀ ଚିତା ଘେନିଲେ ସୁନ୍ଦରୀ ନାୟେକା ।
କର୍ଣ୍ଣେଣ ଚାପ ଯେ ମୁକୁତା ଫେରି କମ, କାହାର କର୍ଣ୍ଣରେ ପଦ୍ମ ତଡ଼କି ଅନୁପାମ ।
ୟେକଗୋଟିଆ ଗଜ ମୁକୁତା ବେଣ୍ଟୋଲା, କେବଳ ବାମା ଶ୍ରବଣ ଶିଖରେ ଖଞ୍ଜିଲା ।
କାହାର ନାସାରେ ମାଣିକ୍ୟର ବସଣି, କାହାର ନାସାରେ ଲୁଳଇ ନୀଳମଣି ।
ପଞ୍ଚ ଗଜମୋତି କାହାର ନାସାଫୁଲ, ତାମ୍ବୁଳ ରଙ୍ଗେ କାହାର ଅଧର ଅମୂଲ୍ୟ ।
କାହାଇ ଗଳାରେ ଲମ୍ବନ୍ତି ଚାପସରି, ମୁକୁତା କଣ୍ଠିମାଳ ହୃଦରେ କେହୁ ଭରି ।
କେହୁ ଖଞ୍ଜନ୍ତି ଗଳେ ଯାଉଁଳି ସୁନାସୂତା, କାହାର ହୃଦରେ ପଦେକ ମୁକୁତା ।
କାହାର ରତ୍ନନିଆଳ ଲୁଳଇ ଉରଯାୟେ, ମର୍କତ ତୋଡର କେ ଖଞ୍ଜି ନିଜ ପାୟେ ।.... (ପୃ.୧୨)

ଏହାହିଁ ବଳରାମଙ୍କ ଲେଖାର ଶୈଳୀ । ସେ ମୂଳ ରାମାୟଣରୁ ବିଭିନ୍ନ ଉପାଖ୍ୟାନର ବିଭିନ୍ନ ସୂଚନା ସବୁ ନେଇଛନ୍ତି, ଓ ସେ ସବୁକୁ ବିଭିନ୍ନ ଅନୁଭବ, ସାଙ୍କେତିକତା ଓ ବର୍ଣ୍ଣରେ ରଂଜିତ କରିଛନ୍ତି ଓ ବହୁଭାବରେ ବିସ୍ତାରିତ ବି କରିଛନ୍ତି । ଆଉ ଗୋଟିଏ ଭଲ ଉଦାହରଣ, ରାମଙ୍କର ମଥୁରା ପ୍ରବେଶ, ଶିବଧନୁ ଭାଙ୍ଗିବା ଓ ସୀତାଙ୍କ ସହିତ ବିବାହ ପ୍ରଭୃତିର ବିବରଣୀ । ବାଲ୍ମୀକି ରାମାୟଣରେ ଏହି ଉପାଖ୍ୟାନ ସଂକ୍ଷେପରେ ଦିଆଯାଇଛି । ଶିବଧନୁ ରାମଚନ୍ଦ୍ରଙ୍କୁ ଦେଖେଇବା ପାଇଁ ଜନକଙ୍କୁ ବିଶ୍ୱାମିତ୍ରଙ୍କ ଅନୁରୋଧ ଠାରୁ ଆରମ୍ଭ କରି, ରାମଚନ୍ଦ୍ର ସଫଳ ହେବା ପରେ ଜନକଙ୍କର ଆନନ୍ଦ ଓ ଦଶରଥଙ୍କୁ ଜଣେଇବା ପାଇଁ ଅଯୋଧ୍ୟାକୁ ଦୂତ ପଠେଇବା ପର୍ଯ୍ୟନ୍ତ । ବାଲ୍ମୀକିଙ୍କ ବିବରଣୀ ପ୍ରାସଙ୍ଗିକ, ବାସ୍ତବଧର୍ମୀ, ଏଥିରେ କଳ୍ପନାର ବିସ୍ତାର ନାହିଁ । କିନ୍ତୁ ବଳରାମଙ୍କ ବିବରଣୀ ବିସ୍ତାରିତ ବିବରଣୀ । କବି ବାଲ୍ମୀକିଙ୍କ ବିବରଣୀକୁ କେବଳ ମୂଳ ବିବରଣୀ ଭାବରେ ଗ୍ରହଣ କରି, ସେଥିରେ ବହୁ ସୂଚନା ଓ ଆୟତନ ଯୁକ୍ତ କରିଛନ୍ତି, ଓ 'ଜଗମୋହନ ରାମାୟଣ'ରେ ରାମ-ସୀତାଙ୍କର ବିଭାଘରର ଘଟଣା ଗୋଟିଏ ସ୍ୱୟଂସଂପୂର୍ଣ୍ଣ ଉପାଖ୍ୟାନ ଭାବରେ ଉପସ୍ଥାପିତ ହୋଇଛି, ଯେଉଁଠି ଉଭୟ ରାମ ଓ ସୀତା ଅତ୍ୟନ୍ତ ତତ୍ପର ଓ ଜୀବନ୍ତ, ଓ ସେମାନଙ୍କର ମାନସିକ ପ୍ରକ୍ରିୟା ବିଭା ହେବାକୁ ଯାଉଥିବା ଯେ କୌଣସି ତରୁଣ ତରୁଣୀଙ୍କ ମାନସିକ ପ୍ରକ୍ରିୟା ପରି ସ୍ୱାଭାବିକ । ଯେପରି ସୀତାଙ୍କର ରୂପ ବର୍ଣ୍ଣନା :

...କେ ବୋଲଇ ଦେହ ସୁବର୍ଣ୍ଣ କାନ୍ତି ଦିଶଇ, କୁଙ୍କୁମ ଘସିବାରେ ଅଧିକ ପ୍ରକାଶଇ ।

ଛଣପଟ ଫୁଲ ଗୁଡ଼ାଯେ ଯେସନେ ବିରାଜି, ଶିରୀଷ-କୁସୁମକୁ କୋମଳ ଭାବ ଭଜି ।
କେ ବୋଲଇ ସୋରିଷ ପୁଷ୍ପ ପ୍ରାୟେ ଦିଶନ୍ତି, କେ ବୋଲଇ ବିଧାତା ଗଢ଼ିଲା ରୂପବନ୍ତୀ ।
କେ ବୋଲଇ ଭଲା ଭଳିଲା ସୁବର୍ଣ୍ଣ, ଯହୁଁ ଦେଖିଲେ ଯେ ସୀତ୍ୟାର ଦେହବର୍ଣ୍ଣ ।....
କେ ବୋଲଇ ମୁଖ ଶରଦଚନ୍ଦ୍ର କାନ୍ତି, କି ଜାଣି ଆକାଶେ କି ଉଇଁଲା ନିଶାପତି ।
କେ ବୋଲଇ ନୟନ ନୀଳେନ୍ଦୀ ଦଳ ଜାଣି କେ ବୋଲଇ ମୃଗ ତହୁଁ ଅଛି ଆଣି ।
ତରଳ ଲୋଚନ ଯେ ତରଳଇ କର୍ଣ୍ଣ ଯାଯେ, ଶ୍ୱେତପଦ୍ମ ହି କି ସୃଷ୍ଟିକ ଥୋପା ପ୍ରାୟେ ।
କେ ବୋଲଇ ନାସିକା ତିଳ ଫୁଲ ସମ, କେ ବୋଲଇ ତହୁଁ ଅଧିକ ତାର କମ ।
କେ ବୋଲଇ ଶର୍ବଣ ଏହାର କାମଦେବ ଫାଶୀ, ଯେଣେ ଜଗତ ତନୁ ଧରଇ ଆକ୍ରେଷି ।
କେ ବୋଲଇ ଅଧର ବଧୁକ ପୁଷ୍ପଜୋତି, ଦନ୍ତ ସୁନ୍ଦର କି ତୁଳଇ ଗଜମୋତି ।....
କେ ବୋଲଇ ଭୁଜ ପଦ୍ମନାଡ ଜାଣି, ଗୁଣ ଗୁଣି ମନେ ବିଚାରନ୍ତି ପୁଣି ।
କେ ବୋଲଇ ସ୍ତନଯୁଗଳ ଭରା ଗରୁ, ଭାଜି ପଡଇ ନ ପୁଣ ମଝା ଖଣ୍ଡି ସରୁ ।
କେ ବୋଲଇ ସିଂଘ ଲୁଚିଲା କେଣେ ଲାଜେ, ଯେଥେ ଥିବ ଅବା କେବଣ ହିଁ କାର୍ଯ୍ୟେ ।
କେ ବୋଲଇ ଜାନୁ ଉଲଟ କଦଳୀ, କେ ବୋଲଇ ଅତି ସୁରଙ୍ଗ ପାଦତଳି ।
କେ ବୋଲଇ ଅଙ୍ଗୁଷ୍ଠି ଚରଣ ସଂଯାତ, ଓକେଶର କଢ଼ି ଅଟଇ ଯେବର ମତ ....

(ପୃ.୧୨୬, ୧୨୭, ୧୨୮...)

ବା ସୀତାଙ୍କର ଅଳଂକାରର ବିବରଣୀ :

..ଶର୍ବଣ ଶିଖରେ ଯେ ଖଂଜିଲେ ବେଷ୍ଟୁଲା, ସରୁ ମୋତି ଭଳି ତହିଁକି ଘୋଟିଲା ।
ଉପରେ ନୀଳମଣି ନାଏକ ବସଇ, ଶରଦ ମଲ୍ଲୀକି ଲୋଭେ ଭ୍ରମର ଆସଇ ।
ସୁଦୀର୍ଘ ନାସିକାରେ ବସଣି ନେଇ ଲାଇ, ପଞ୍ଚ-ଗଜ ମୁକୁତା ତହିଁ ଖଂଜିଲା ଅଛଇ ।
କାର୍ତ୍ତିକ ଫଂଜା ଯେହ୍ନେ ନୀଳ ମେଘେ ଦିଶେ, ସୀତ୍ୟାର ନାସାଯେ ମଣିରତ୍ନ ତେସନେ ଆଭାସେ ।
କଣ୍ଠହାର ତାର ସପତସରି ମୋତି, ମାଣିକ୍ୟ ନାୟେକ ଯେ ଅରୁଣି ଜାଣି ଜୋତି ।...
ବାହେଣ ତାଡ ଯେ ହୀରାର ଫେରି କତି, ମଧେଣ ଅଛଇ ଯେ ତାହାର ଗଜମୋତି ।
ବେନି ଭୁଜ ମୂଳରେ ରତ୍ନ ବିଦମାଳି, ରଙ୍ଗ ପାଟେଣ ଯେ ଗୁନ୍ଥିଲେ ନେଇ ବାଳୀ ।
କରେଣ କଙ୍କଣ ସୁବର୍ଣ୍ଣ ଶିଙ୍କୁଳି, ରତ୍ନ ବେନି ଚୂଡ଼ି ବିଜୁଳି ଜାଣି ଝଳି ।
ଅଙ୍ଗୁଷ୍ଠିର ମୁଦି ଚାରି ଭିନ୍ନ ଭିନ୍ନ, କାହିଁରେ ତୀରକ କାହିଁ ମଛ ଚିହ୍ନ ।
କଟିରେ କଟିମେଖଳା ଖଂଜିଲେ ଯତ୍ନ କରି, ବସିଲା କାହାର ଯେ କଣ୍ଠକୁ ଆବୋରି ।
ଗଜମୋତିମାନ ଝଲକନ୍ତି ନିରନ୍ତର, କି ଜାଣି ପୂର୍ଣ୍ଣ ଶଶୀ ନୁହଇ ପଟାନ୍ତର ।... (ପୃ.୧୨୫)

ବା, ରାମ ଓ ସୀତାଙ୍କର ବାସର ଶଯ୍ୟାର ବିବରଣୀ ("ଗଜଦନ୍ତ ପଲ୍ୟଙ୍କେ ସୁବର୍ଣ୍ଣ ପିତୁଳି/ ରତ୍ନମୟେ କମ ଛଡ଼ବକ୍ଷେ ଅଙ୍ଗଢ଼ାଳି / ତହିଁର ଉପରେ ପାଟତୁଳା ପଡି / ଉପରେ ବିଛାଇଲେ ଶୁକଳ ପାଛୋଡି । /ନେତର ମୁଚୁଳି ମୁଚୁଳା ଆନ ରୂପ / ପାଶେ ଯୋଗାଇଲେ ଅଗ୍ର ଧୂଆଁ ଧୂପ । /ଶେଯରେ ବିଛିଲେ ନେଇ ପାଖୁଡ଼ା ସେବତୀ / କର୍ପୂର ଧୂଳି ତହିଁ ଛିଞ୍ଚାଡି ପକାନ୍ତି ।") (ପୃ.୧୩୭), ବା ବାସର-ରାତିରେ ରାମ ଓ ସୀତାଙ୍କର ପାରସ୍ପରିକ ପ୍ରଣୟ-ସଂପର୍କ - "ସଖୀଗଣ ଗଲେ ଯହୁଁ ସୀତ୍ୟା ଛାଡି / ସିତ୍ୟା ପଣନ୍ତ ରାମ ଧଇଲେ ଉଛୁଡି / କୋଳ କରିନେଇ ବସାଇଲେ ଶେଯେ / ବଧୂକ ଓଷ୍ଟଗୋଟି ଧଇଲେ

ଶ୍ରୀଭୁଜେ / ଚାଟୁ ବଚନ କଥା କହିଲେ ବହୁତ / କିମ୍ପାଇ ବିସ୍ମୟେ ତୁ ଧଣୁ ଅଛୁ ଚିର / ମୁହିଁ ତୋହର ଦେହ ତୁ ମୋହୋର ପ୍ରାଣ / ସେ କଥା ନିଶ୍ଚୟେ ତୁ ତଥ୍ୟ କରି ଜାଣ,/ ...ଆସ ଆସ ସଖିରେ ଆଲିଙ୍ଗନ କର / ଭୁଜେ ଭୁଜ ଭିଡ଼ି ଲଗାଅସି ଉର., / ଅଧରେ ଅଧର ପାନ ଦିଅରେ ପ୍ରାଣସଖି / ତୁହି ଶାଳୀଅନ୍ନ ମୁଁ ଉପବାସୀ,/ ...ଯହୁଁ ଜାନେକୀର ଭାଜିଲା ସଙ୍କୁଚ / ଶ୍ରୀରାମ ଶ୍ରୀକରେ ଧଇଲେ ତାଙ୍କ କୁଚ / ମୁଖେ ଚୁମ୍ବ ଦେଇ ଅଧର ପାନ କଲେ / ଚରଣେ ଚରଣ ଲଗାଇ ଛନ୍ଦିଲେ,/ ଯହୁଁ ବେନିଜନେ ଯେକମନ ହୋନ୍ତି / ବିବିଧ ବିନୋଦେ କରନ୍ତି ପୀରତି । (ପୃ.୧୩୮, ୧୪୦) ।

ସେହିପରି, ରାମଙ୍କର ମିଥିଳା ପ୍ରବେଶ ସମୟରେ, ବା ପରବର୍ତ୍ତୀ ସମୟରେ ସେ ବରବେଶ ହୋଇ ମିଥିଳାର ରାଜଦାଣ୍ଡରେ ଯିବା ସମୟରେ ମିଥିଳାର ନାରୀ ମାନଙ୍କର କ୍ରିୟା ପ୍ରତିକ୍ରିୟାର ବିବରଣୀ ମୂଳ ରାମାୟଣରେ ନାହିଁ । 'ଜଗମୋହନ ରାମାୟଣ'ରେ ଏହି ବିବରଣୀ ଅତ୍ୟନ୍ତ ଜୀବନ୍ତ ଓ ଆନନ୍ଦ ଦାୟକ । ଯେପରି ରାମଙ୍କର ମିଥିଳା ପ୍ରବେଶ ସମୟରେ :

ଗହଗହ ଶବଦ ଶୁଭଇ ମୁଖ ବାଣୀ, କଟକେ ପ୍ରବେଶ ହୋଇଲେ ରଘୁମଣି ।
ରାଜମାର୍ଗେ ଯାନ୍ତେ ଦେଖନ୍ତି ସର୍ବଜନ, ସାଧୁ ସାଧୁ ଧ୍ୱନି ବୋଲନ୍ତି ବଚନ ।
ଯେକ କହନ୍ତେ ଆରେକ ଆଗ ସରି, ରାମକଇ ବେଢି ଦେଖନ୍ତି ନରନାରୀ ।
ନଗ୍ର ନରନାରୀ ଧୁଁଆଧୋଇ ହୋନ୍ତି, ଯେକ ତୁଣ୍ଡୁ ଆରେକ ଶୁଣିଣ ଧାମନ୍ତି ।
ଯୁବା ସୁନ୍ଦେରୀ ଯେ ଶ୍ରୀରାମକୁ ଦେଖି, ମଦନ ଶର ଘାତେ ହୋଇଲେ ସର୍ବେ ଦୁଖୀ ।
ବସ୍ତ୍ର ଆଡ଼େ କରି ଦେଖାନ୍ତି ଯଉବନ, କେବଳ ଯୁବତୀଙ୍କର ଦିଶଇ ଜଘନ ।
କେହୁ ଅଛ ହସି ଆଖିଲଟା ମାରି, କେ କାଖ ଦେଖାଇଣ ଦିଅନ୍ତି ଅଙ୍ଗମୋଡି ।
କାହାର ମୁଣ୍ଡେ ଖୋଷା ନିହାଇ ପାରଇ, ଆସିବାର ବେଗେକେ ବାମକରେ ଧରଇ ।
କାହାର ଖୋଷା ଯେ ଧାଉଁ ଧାଉଁ ଫିଟି, ବକୁଳର ମାଳ ପଡିଲା ଭୂମି ଲୋଟି ।...
କାହାର ଜାଲି ବେଣ୍ଟୁଲା ଖସି ପଡି, କାହାର ଗଳାରୁ ଚାପସରି ଗଲା ଛିଡ଼ି ।
କେବଣ୍ଟ ସୁନ୍ଦେରୀ ଯେ ସୁବେଶ ହୋଉଥିଲା, ରାମଙ୍କୁ ଦେଖିବ ବୋଲି ଧାଇଁଣ ଅଇଲା ।
ଆଖିର କଜଳ ଯେ ନୁଆରିଲା ଘେନି, ଅଙ୍ଗୁଷ୍ଠିର ଅଗ୍ରେ ଲମ୍ଭାଇଲା କାମେନୀ ।
କେ ପାନପିକ ଚରଣେ ଲଗାଇଲା, ଅଳତା ନୁହଇଁ କି ହୋଇ ଜାଣି ନ ପାରିଲା ।
ସିନ୍ଦୁର ଟୀକା କେ ଘେନୁଥିଲା ନାରୀ, ଗନ୍ଧ ଗୁଣ୍ଡି ବୋଲି ଦେହେ ଲିପିଲା ପାଶୋରୀ...
କାହାର ଆନନ୍ଦ ଯେ ନୟନୁ ଜଳ ଧାଡି, ସରୁଲୁଗା ତିନ୍ତି ଦୁଇ କୁଚ ଜଡ଼ି ।
କାହାର କଙ୍କଣ ବାଜଇ ରୁଣଝୁଣ, କେବଣ ନାଗରୀ କୁଙ୍କୁମ ବିଲୋପନ ।
କେବଣ ନାଗରୀ ବିହାଇ ଉକୁଟାଇ ଘଟି, ବସ୍ତ୍ର ଉଡିଣ କାହାର ଦିଶୁଅଛି ପିଠି ।
ଦାଣ୍ଡ ଗହଳି ସେ ଯେ ପଶିତ ଠାବ ନାହିଁ, କେ ବୋଲଇ ଆହୋ ଶ୍ରୀରାମଚନ୍ଦ୍ର କାହିଁ । (ପୃ.୭୬,୭୭)

ଅନ୍ୟତ୍ର (ପୃ.୧୩୨), ବର ଦେଖିବାକୁ ମଧ ସେହି ବିବ୍ରତ, ବ୍ୟସ୍ତଭାବ :

ଲୋକେ ଆନନ୍ଦେ ଧାମନ୍ତି ବର ଦେଖି, ଯେ ଯାହାର କାର୍ଯ୍ୟମାନନ୍ତ ଉପେକ୍ଷି ।
ମାନିତ ଗଉରୋବ ହୋଇଲେ ମିଶାମିଶି, ଯୁବାଯୁବତୀ ଥାଠେ ପଶିଯାନ୍ତି ଝାସି ।
କାହା ବାସମାନ ହୋଯେ ଠିଆ ଚିରି, ଅଞ୍ଚଳ ଚିରିଗଲା କାହାର ସରୁ ଶାଢ଼ୀ ।
କାହାର କର୍ଣ୍ଣକାପ ପଡିଲାକ ତଳେ, ଗଜମୋତି ମାନ କାର ତୁଟିଲା ଗହଳେ ।
କେବଣ ସୁନ୍ଦେରୀର ତୁଟିଲାକ ବାହି, କାର ନେପୁର ଚରଣୁ ଖସି ଯାଇ ।

କେ ନାସା ବସଣୀ ନାକରୁ କାଢନ୍ତି,  ହଜିବ ବୋଲି କେ ତାହା ତୁଣ୍ଡରେ ଧରନ୍ତି ।
କାହାର ଖୋଷା ଫିଟିଣ କାଳମେଲା, କେହୁ ଯଉବନ ଧରିଣ ଧାଇଁଲା ।
ହସ୍ତୀ ଘୋଡା ରଥ ଗହଳେଣ ପଶି ଶ୍ରୀରାମଙ୍କୁ ଦେଖିତ ଧାମନ୍ତି ଶୁଭ୍ରକେଶୀ ।

ବାଲ୍ମୀକିଙ୍କଠାରୁ ବ୍ୟତିକ୍ରମ ଓ ବଳରାମଙ୍କର ନିଜସ୍ୱ କବି-ପ୍ରତିଭା ଓ କବି କଳ୍ପନାର ଆଉ ଗୋଟିଏ ଉଲ୍ଲେଖନୀୟ ଉଦାହରଣ ଆମେ ହନୁମାନଙ୍କର ଲଙ୍କା ପରିଦର୍ଶନର ବିବରଣୀରେ ଦେଖୁ । ହନୁମାନ ଲଙ୍କାକୁ ଆସିଛନ୍ତି ଓ ସୀତାଙ୍କୁ ଅନୁସଂଧାନ କରୁଛନ୍ତି । ଏହି ଅନୁସଂଧାନ କ୍ରମରେ ସେ ରାବଣର ଶୟନ ପୁରୀକୁ ଆସିଛନ୍ତି ଓ ସେ ରାବଣ, ରାବଣର ପତ୍ନୀ ମନ୍ଦୋଦରୀ ଓ ରାବଣର ଅନ୍ୟ ପତ୍ନୀ ଓ ପରିଚାରିକାମାନଙ୍କୁ ଦେଖିଛନ୍ତି । ସମସ୍ତେ ଶୋଇଛନ୍ତି । ବାଲ୍ମିକୀଙ୍କର ବିବରଣୀ ବିସ୍ତାରିତ ବିବରଣୀ, ଓ ନାନାବିଧ ଉପମା ଉପମେୟରେ ପୂର୍ଣ୍ଣ "ପରେ ହନୁମାନ ଶୟନ ଗୃହରେ ଇତସ୍ତତଃ ଦୃଷ୍ଟି ପ୍ରସାରଣ ପୂର୍ବକ ଏକ ସ୍ଫଟିକ ନିର୍ମିତ ବେଦୀ ନିରୀକ୍ଷଣ କଲେ । ରତ୍ନଖଚିତ ଓ ଏକାନ୍ତ ରମଣୀୟ, ଭୂଲୋକରେ ଏହାର ଉପମା ବିରଳ । ଏହି ବେଦୀ ଉପରେ ନୀଳକାନ୍ତମୟ ପଲଙ୍କ । ଏହି ପଲଙ୍କର ଖୁରାଗୁଡ଼ିକ ହସ୍ତିଦନ୍ତ ରଚିତ ଓ ସ୍ୱର୍ଣ୍ଣମଣ୍ଡିତ । ସର୍ବୋପରି ମହାମୂଲ୍ୟ ଆସ୍ତରଣରେ ଅପୂର୍ବ ଶୋଭା ପାଉଅଛି । ପଲଙ୍କଟି ଅତ୍ୟନ୍ତ ଉଜ୍ଜ୍ୱଳ ଓ ଅଶୋକମାଳାରେ ସୁଶୋଭିତ । ଏହାର ଏକାଂଶରେ ଗୋଟିଏ ଶଶାଙ୍କ ସଦୃଶ ଶ୍ୱେତଛତ୍ର ଅଛି । ସର୍ବତ୍ର ଯନ୍ତ୍ରନିର୍ମିତ  ପୁତ୍ତଳିକାମାନେ ଚାମର ବ୍ୟଜନ କରୁଛନ୍ତି । ଏହା ବିଭିନ୍ନ ଗଂଧଦ୍ରବ୍ୟରେ ସୁରଭିତ ଓ ଅଗୁରୁ ଧୂପରେ ସୁବାସିତ... ଏହି ପଲଙ୍କରେ ରାକ୍ଷସରାଜ ରାବଣ ନିଦ୍ରିତ ଅଛନ୍ତି । ତାଙ୍କର ସର୍ବାଙ୍ଗ ସୁଗନ୍ଧ ରକ୍ତଚନ୍ଦନରେ ଚର୍ଚ୍ଚିତ, ବର୍ଣ୍ଣ ଘନ ମେଘପରି ନୀଳ, ନେତ୍ରଯୁଗଳ ଆରକ୍ତ, କର୍ଣ୍ଣରେ ଉଜ୍ଜ୍ୱଳ କୁଣ୍ଡଳ, ପରିଧାନ ସ୍ୱର୍ଣ୍ଣଖଚିତ ବସ୍ତ୍ର, ଏବଂ ଅଙ୍ଗରେ ନାନାବିଧ ଉତ୍କୃଷ୍ଟ ଅଳଂକାର । ସେ ସଂଧ୍ୟା ରାଗରଂଜିତ ବିଦ୍ୟୁତଗୁଣ ଜଡ଼ିତ ଜଳଦର ପରି ବିରାଜ କରୁଛନ୍ତି । ତାଙ୍କୁ ଦେଖିଲେ ମନେହେବ ଯେପରି ତରୁଲତା ସଂକୁଳ ମନ୍ଦର ଗିରି ଧରାପୃଷ୍ଠରେ ପତିତ ହୋଇଛି । ସେ କାମରୂପୀ ଓ ସୁରୂପ, ପାନ ପ୍ରମୋଦରୁ ବିରତ ହୋଇ ନିଦ୍ରିତ ଓ ମାତଙ୍ଗ ପରି ଘନ ଘନ ଦୀର୍ଘନିଶ୍ୱାସ ପରିତ୍ୟାଗ କରୁଛନ୍ତି.... ଏହି ସମୟରେ ଶଯ୍ୟା ଗୃହର ଚତୁର୍ଦ୍ଦିଗରେ ଚାରୋଟି ସ୍ୱର୍ଣ୍ଣ ପ୍ରଦୀପ ଦୀପ୍ୟମାନ । ତାହାଦ୍ୱାରା ବିଦ୍ୟୁଗୁଣରେ ଜଳଦ ପରି ରାବଣଙ୍କର କୃଷ୍ଣ କଳେବର ସୁସ୍ପଷ୍ଟ ନିରୀକ୍ଷିତ ହେଉଥିଲା । ପତ୍ନୀମାନେ ତାଙ୍କର ପଦତଳେ ନିପତିତ । ସେମାନଙ୍କର ମୁଖଶ୍ରୀ ଶଶାଙ୍କ ସୁନ୍ଦର, କର୍ଣ୍ଣରେ ନୀଳକାନ୍ତ ଖଚିତ ସ୍ୱର୍ଣ୍ଣକୁଣ୍ଡଳ, ହସ୍ତରେ ହୀରକଶୋଭିତ କେୟୁର ଏବଂ ଗଳାରେ ଅମ୍ଳାନ ମାଳା । ସେମାନଙ୍କର ମୁଖଶ୍ରୀରେ ପଲଙ୍କ ତାରକାକୀର୍ଣ୍ଣ ଗଗନ ପରି ଶୋଭିତ ହୋଇଅଛି । ସେମାନେ ନୃତ୍ୟଗୀତରେ ଅତିଶୟ ପଟୁ, କ୍ରୀଡ଼ାକୌତୁକରେ ପରିଶ୍ରାନ୍ତ ହୋଇ ପ୍ରସୁପ୍ତ ହୋଇଛନ୍ତି... ଅନନ୍ତର ହନୁମାନ ଏହି ସବୁ କାମିନୀମାନଙ୍କ ମଧ୍ୟରେ ରାବଣଙ୍କର ପ୍ରିୟ ମହିଷୀ ମନ୍ଦୋଦରୀଙ୍କୁ ନିରୀକ୍ଷଣ କଲେ, ସେ ଏକ ସ୍ୱତନ୍ତ୍ର ଶଯ୍ୟାରେ ଶାୟିତ, ମଣିମୁକ୍ତା ଖଚିତ ଅଳଂକାରରେ ସୁସଜ୍ଜିତ, ନିଜର ଶ୍ରୀସୌନ୍ଦର୍ଯ୍ୟରେ ଯେପରି ଶୟନଗୃହକୁ ଶୋଭିତ କରୁଛନ୍ତି । ତାହାଙ୍କର ବର୍ଣ୍ଣ କନକଗୌର, ସେ ସମସ୍ତ ଅନ୍ତଃପୁରର ଅଧୀଶ୍ୱରୀ । ହନୁମାନ ମନ୍ଦୋଦରୀଙ୍କୁ ଦେଖି ତାଙ୍କର ରୂପ ଓ ଯୌବନ ପ୍ରଭାବରେ ଅନୁମାନ କଲେ ଏ ବୋଧହୁଏ ଜାନକୀ । ଏକଥା ଚିନ୍ତା କରି ହନୁମାନଙ୍କର ମୁଖ ସହସା ପ୍ରଫୁଲ୍ଲ ହେଲା, ଓ ମନ ହର୍ଷତୋଫୁଲ୍ଲ ହୋଇ ଉଠିଲା । ସେ ନିଜର କପିପ୍ରକୃତି ପ୍ରଦର୍ଶନ କରି କେତେବେଳେ କ୍ରୀଡ଼ା, କେତେବେଳେ ଗାନ ଓ କେତେବେଳେ ସ୍ତମ୍ଭରେ ଆରୋହଣ କରିବାକୁ ଲାଗିଲେ । ଅନନ୍ତର ହନୁମାନ କପିବୁଦ୍ଧି ପରିତ୍ୟାଗ ପୂର୍ବକ ସ୍ଥିରଭାବରେ ଭାବିଲେ ଜାନକୀ ରାମଙ୍କ ପ୍ରତି ଏକାନ୍ତ ଅନୁରକ୍ତ । ସେ ଯେ ଏଇ ବିରହଦଶାରେ ପାନାହାର ଓ ସୁଖଭୋଗ ପ୍ରତି ଆସକ୍ତ ହେବେ ଏହା ସମ୍ଭବ ନୁହେଁ । ବେଶବିନ୍ୟାସ ତାହାଙ୍କ ପକ୍ଷରେ ଏକାନ୍ତ ଅସମ୍ଭବ । ଅନ୍ୟ ବ୍ୟକ୍ତିକୁ, ଏପରିକି ସୁରରାଜ ଇନ୍ଦ୍ରଙ୍କୁ ଯେ ସେ ପ୍ରାର୍ଥନା କରିବେ ଏହା ବିଶ୍ୱାସ ଯୋଗ୍ୟ ନୁହେଁ । ରାମ ସର୍ବପ୍ରଧାନ, ଦେବଗଣମାନଙ୍କ ମଧ୍ୟରେ ବି ତାଙ୍କର ତୁଳନୀୟ କେହି ନାହାନ୍ତି । ତେଣୁ ବର୍ତ୍ତମାନ ଯେଉଁ ରମଣୀଙ୍କୁ ଦେଖୁଛି ସେ ବୋଧହୁଏ ଅନ୍ୟ କେହି ହେବେ ।"

ପରେ ପରେ ହନୁମାନ ପାର୍ଶ୍ୱବର୍ତ୍ତୀ ଗୃହମାନଙ୍କୁ ଅନୁସଂଧାନ କରିବାକୁ ଗଲେ, ଓ ବାଲ୍ମୀକି ବିସ୍ତାରିତ ଭାବରେ ସେହିସବୁ ବିବରଣୀ ଦେଇଛନ୍ତି, ଯଥା - "କେଉଁଠି କାମିନୀମାନେ ପାଶକ୍ରୀଡ଼ାରେ ଶ୍ରାନ୍ତ ହୋଇ ଶୟନ କରିଛନ୍ତି, କେଉଁଠି ନୃତ୍ୟ, କେଉଁଠି ଗୀତ, ବା କେଉଁଠି ଅତି ପାନରେ ବିହ୍ୱଳ ହୋଇ ଭୂମିରେ ପତିତ ହୋଇଛନ୍ତି.." ବା ଆହାର୍ଯ୍ୟ ବସ୍ତୁର ପ୍ରାଚୁର୍ଯ୍ୟ- "ପାନଗୃହରେ ବିବିଧ ଆହାର୍ଯ୍ୟବସ୍ତୁ ପ୍ରସ୍ତୁତ ହୋଇରହିଛି । ମୃଗ, ମହିଷ ଓ ବରାହମାଂସ ସ୍ତୁପାକାରେ ସଂଚିତ ହୋଇଛି । ପ୍ରଶସ୍ତ ସ୍ୱର୍ଣ୍ଣପାତ୍ରରେ ଅଭୁକ୍ତ ମୟୂର ଓ କୁକ୍କୁଟମାଂସ... ଶୂଳପକ୍ୱ ମୃଗ ମାଂସ, ନାନାପ୍ରକାର କୃକଳ ଛାଗ, ଅର୍ଦ୍ଧଭୁକ୍ତ ଶଶାଙ୍କ ଏବଂ ସୁପକ୍ୱ ଏକଶଲ୍ୟ ମତ୍ସ୍ୟ"... ଇତ୍ୟାଦି । ନାରୀମାନେ ସମସ୍ତେ ସୁପ୍ତ - "କାମିନୀମାନେ ପରସ୍ପର ପରସ୍ପରର ଆଲିଙ୍ଗନପାଶରେ ଆବଦ୍ଧ, ଜଣେ ଅନ୍ୟ ଜଣର ବସ୍ତ୍ରଗ୍ରହଣ କରି ଓ ତଦ୍ୱାରା ନିଜର ଅଙ୍ଗ ଆବରଣ କରି ନିଦ୍ରିତ ଅଛି । ବାୟୁ ଶୀତଳ ଚନ୍ଦନ ପରି, ମଧୁର ମଦ୍ୟ ଏବଂ ବିବିଧ ପ୍ରକାର ମାଳା ଓ ଧୂପର ଗନ୍ଧ ହରଣ କରି ପ୍ରବାହିତ ହେଉଛି । ହନୁମାନ ଏହି ଅନ୍ତଃପୁରର ସମସ୍ତ ସ୍ଥାନ ପର୍ଯ୍ୟଟନ କଲେ, କିନ୍ତୁ କେଉଁଠି ଜାନକୀଙ୍କୁ ପାଇଲେ ନାହିଁ ।" ସୁନ୍ଦରାକାଣ୍ଡ', ୧୦ମ, ୧୧ଶ ଅଧ୍ୟାୟ) ହେମଚନ୍ଦ୍ର ବନ୍ଦୋପାଧ୍ୟାୟଙ୍କର ଗଦ୍ୟ ଅନୁବାଦରୁ ଅନୂଦିତ ।

ବାଲ୍ମୀକିଙ୍କର ବିବରଣୀର ବିସ୍ତାର ଓ ରାଜକୀୟ ସମୃଦ୍ଧି ବଳରାମଙ୍କର ବିବରଣୀରେ ନାହିଁ । ଏହାର ସୂଚନା କେତେଗୁଡ଼ିଏ ସହଜ ସୂଚନା, ଓ ପରିବେଶ ସମସ୍ତେ ବୁଝିଲା ପରି ବା ସମସ୍ତଙ୍କର ପରିଚିତ ସାଧାରଣ, ସରଳ ପରିବେଶ । ହନୁମାନ ସୀତାଙ୍କୁ ଖୋଜୁ ଖୋଜୁ ଗୋଟିଏ ସୁସଜ୍ଜିତ ଉଦ୍ୟାନରେ ପହଞ୍ଚିଛନ୍ତି -

ଏତେ ବୋଲି ତହୁଁ ଗଲାକ ମାରୁତି, ତୋଟାପୁର ମଧ୍ୟେ ଲୋଡଇ ମହାସ୍ୟତୀ ।
ଜାମ୍ବୁ ଜାମ୍ବିକ କଦଳୀ ନଟିକାଳ, ବେଲ ଅଁଳା ସୁନ୍ଦର ଗହଳ ।
ପାଟେଳି ବଧୁକ ଶିମୂଳି ପାଳଧୁଆ, ତରାଟ ବକୁଳ ଲଣ୍ଡା ବଗୁଲି କିଆ ।
ବିବିଧ କୁସୁମ ଅଛି ତହିଁ ଫୁଟି , ମଧୁର ଲୁବୁଧେ ଭ୍ରମର ଏକଗୋଷ୍ଠୀ । (ପୃ.୩୫୫)

ପରେ ପରେ ଆହୁରି ବିବିଧ ବୃକ୍ଷଲତାଙ୍କର ଏକ ଲମ୍ବା ତାଲିକା :

କେନ୍ଦୁ ପଣସ ଅୟେଂଳା ଆମ୍ବଗଛ, ତାଳ ପେଣ୍ଡି ଖଜୁରୀ ସଳପ ଦାରାକ୍ଷ ।
ବୀରଭଦ୍ର ଅନୁପାମ ମନ୍ଦାର ତୁଳସୀ, ପୁନାଗ ଦୟେଣା କେତକୀ ଜଟାମାସୀ ।
ନାଗେଶ୍ୱରୀ ମଲ୍ଲୀ ଛୁରୀଅନା ଜାଇ , ଚମ୍ପେକ କୁରୁବେଲୀ କରୁଣା ଅଛଇ । (ପୃ.୩୫)

ଏ କେବଳ ରାବଣର ବିସ୍ତୃତ ଉଦ୍ୟାନ ନୁହେଁ, ଏ ଚାରିପାଖରେ ଘେରି ରହିଥିବା ବୃକ୍ଷଲତା ବା ପ୍ରକୃତି ପ୍ରତି କବି ବଳରାମଙ୍କର ସାଧାରଣ ପ୍ରତିକ୍ରିୟା - ବୃକ୍ଷଲତାର ବିସ୍ତୃତ ବିବରଣୀ, ଓ 'ଜଗମୋହନ ରାମାୟଣ'ର ବିଭିନ୍ନ ସ୍ଥାନରେ ଆମେ ଏହିପରି ବିବରଣୀ ବାରମ୍ବାର ଦେଖୁ । ଉପମା ଉପମେୟର ସୂଚନା ବା ରାଜକୀୟ ସମୃଦ୍ଧିର ଅନୁଭବ ଯାହା ବାଲ୍ମୀକି ରାମାୟଣରେ ପ୍ରାୟ ଅଛି ଏଠାରେ ସ୍ୱଳ୍ପ ଓ ସୀମିତ । ଯେପରି ଏହି ବିବରଣୀରେ :

କୋକିଳ ଚଢ଼ାଇ ଯେ ଭାଷନ୍ତି ଘନଘନ, କି ଜାଣି ଇନ୍ଦ୍ରର ନନ୍ଦନ, ବିପୁଣ୍ୟ ।
ସୁବର୍ଣ୍ଣର ଚଉରା କର୍ପୂରରେ ଧୂଳି, ପନୀର ପାଣି ସେ ବୃକ୍ଷଙ୍କର ମୂଳେ ଢାଳି... (ପୃ.୩୫୫)

ବରଂ ହନୁମାନ ଯେତେବେଳେ ଉଦ୍ୟାନ ଛାଡ଼ି ରାବଣର ପୁର ମଧ୍ୟକୁ ପ୍ରବେଶ କରିଛନ୍ତି, ସେଠାରେ ସ୍ୱାଭାବିକ ଭାବରେ କିଛି କିଛି ରାଜକୀୟ ସମୃଦ୍ଧି ରହିଛି ଓ କିଛି କିଛି ଉପମା ଉପମେୟର ସୂଚନା । ଏହା ସତ୍ତ୍ୱେ ବଳରାମଙ୍କ ବିବରଣୀ ବାଲ୍ମୀକିଙ୍କ ବିବରଣୀ ତୁଳନାରେ ସାଦା ସିଧା, ସରଳତର ବିବରଣୀ, ଯେଉଁଠି କଳ୍ପନା ନୁହେଁ, ବାସ୍ତବତାର ଅନୁଭବ ହିଁ ମୁଖ୍ୟ:

ତୋଟାର ଭିତରେ ଅଛଇ ଦିବ୍ୟ ପୁର, ତିନିକୋଣ ଦୀର୍ଘ ଦୁଇକୋଣ ଓସାର ।

ମାଣିକ୍ୟର ଖମ୍ବ ନୀଳାର ରୁଅମାନ, ମର୍କତର ପୀଢ ପୋୟୋଳା ଚାନ୍ଦମାନ ....

ସୁବର୍ଣ୍ଣର ଝିଙ୍କର ମୁକୁତାର ଚୂନ, ବାରଗୋଟି କଳସ ଅନୁଆନ ବର୍ଣ୍ଣ ।

ନେତର ଚିରାଳ କାହିଁ ପାଟର ପାତାଙ୍ଗ, ରଙ୍ଗ ଝିନପତନୀ ଉଡନ୍ତି ଏକ ଲାଗ ।... (ପୃ.୩୫୬)

ଉପମା ଉପମେୟର ସୂଚନା ସୀମିତ :

ଚନ୍ଦ୍ରକିରଣ ଜାଣି ଚାନ୍ଦୁଆ ବିରାଜି, ନବରତ୍ନେ ଖଞ୍ଜି ଅଛି ତାହା ସାଜି ।

ମଧରେ ଚନ୍ଦନ କାଠର ପଲଙ୍କ, ଜାଣି ପଟାନ୍ତର ଶରଦ ଶଶାଙ୍କ ।

ମାଣିକ୍ୟର ଖୁରା ମର୍କତର ପିତୁଳୀ, ହାତୀଦାନ୍ତର ପଗଡ଼ ମୁକୁତା ମାଳିମାଳି ।

ନୀଳାମଣି ଝରା ବଉଳା କାଠି ହୀରା, କି ଜାଣି ଗଗନେ ଉଦୟେ ଲକ୍ଷେ ତାରା ।...(ପୃ.୩୫୬)

ଏହି ପ୍ରସଙ୍ଗରେ ଦୁଇ ତିନୋଟି ସୂଚନା ଲକ୍ଷ୍ୟ କରାଯାଇ ପାରେ । ପ୍ରଥମେ, ଶୟନରତ ରାବଣ ବା ମନ୍ଦୋଦରୀଙ୍କର ଯେଉଁ ବିସ୍ତାରିତ ବର୍ଣ୍ଣନା ବାଲ୍ମୀକି ରାମାୟଣରେ ଅଛି, ଯେଉଁଥିରେ ହନୁମାନଙ୍କର ଭୟ, ବିସ୍ମୟ ଓ ହୀନମନ୍ୟତା ପ୍ରକାଶ ପାଇଛି ସେସବୁ 'ଜଗମୋହନ ରାମାୟଣ'ରେ ନାହିଁ । କବି ଶୟନରତ ରାବଣ ଓ ମନ୍ଦୋଦରୀଙ୍କ ବିଷୟରେ ଅତି ସଂକ୍ଷେପରେ ସୂଚନା ଦେଇ ନିଜର ବିବରଣୀ ଶେଷ କରିଛନ୍ତି ("ତହିଁ ରାବଣେଶ୍ୱର ବୀରବେଶ ହୋଇ / ମନ୍ଦୋଦରୀକି କୋଳେ ଘେନି ଅଛି ଶୋଇ ।" ଓ "ଦେଖିଲା ପଲଙ୍କେ ଶୋଇଅଛଇ ଲଙ୍କପତି / ମନ୍ଦୋଦରୀ ରାଣୀ ରାଜାର କୋଳେ ଅଛି ।" ପୃ.୩୫୬) । ଦ୍ୱିତୀୟରେ, ବାଲ୍ମୀକି ରାମାୟଣରେ କେବଳ ରାବଣ ବା ମନ୍ଦୋଦରୀ ନୁହନ୍ତି, ରାବଣର ଅନ୍ୟାନ୍ୟ ପତ୍ନୀମାନେ ଓ ପାନରତ ଅନ୍ୟାନ୍ୟ କାମିନୀମାନେ ସମସ୍ତେ ଶୋଇଛନ୍ତି । ଯାହା ହନୁମାନ ଦେଖିଲେ ଏହି ରମଣୀମାନଙ୍କର ବିସ୍ରସ୍ତ ବେଶ ବିନ୍ୟାସ ଓ ବିଳାସିତାରେ ପରିପୂର୍ଣ୍ଣ ଗୃହର ବିପର୍ଯ୍ୟସ୍ତ ସ୍ଥିତି । 'ଜଗମୋହନ ରାମାୟଣ'ରେ କେବଳ ରାବଣେଶ୍ୱର ଓ ମନ୍ଦୋଦରୀଙ୍କୁ ବାଦ ଦେଲେ ଅନ୍ୟ ସମସ୍ତେ ଜାଗ୍ରତ ଓ ସେବାରତ – "ଅନେକ ଯୁବତୀ ପାଶେ ଖଟିଛନ୍ତି / କେହୁ ଛୁରୀ ଖଣ୍ଡା କେହୁ ଆଲଟ ବିଞ୍ଚନ୍ତି । / କେହି ଶ୍ୱେତଚାମର ଢାଳନ୍ତି ବିଳାସୁଣୀ / ଦିଉଡି ଧରି ଉଭା କେବଣ ତରୁଣୀ, / କେ ପୁଷ୍ପ ବିଞ୍ଚଣା କେ ଧରନ୍ତି ଧୂପକାଠି / ପାଦୁକା ଧରି ଉଭା କେବଣ ବିମ୍ବୋଷ୍ଠୀ ।... କେ ଯନ୍ତ୍ରବଜାଇ ଗାବନ୍ତି ସୁସର / କେହି ବାଉଁସୀ ବଜାନ୍ତି ଧୀରଧୀର । ...କେହୁ ଆଳାପ କରି ଗୀତ ଗାଇ / କେହୁ ଗୁଣ୍ଡକେରୀ ରାଗେଣ ବୀଣା ବାଇ ।" ଇତ୍ୟାଦି, (ପୃ.୩୫୬) । ତୃତୀୟରେ, ରାବଣେଶ୍ୱର କୋଳରେ ମନ୍ଦୋଦରୀ ଶୋଇବାର ଦେଖି ହନୁମାନଙ୍କର ପ୍ରତିକ୍ରିୟା ବାଲ୍ମୀକି ଓ ବଳରାମ ଉଭୟ କ୍ଷେତ୍ରରେ ସମାନ । ଅର୍ଥାତ୍, ମନ୍ଦୋଦରୀ ହିଁ ସୀତା ଏହି ବିଚାର । କିନ୍ତୁ ପରେ ପରେ ଏହି ବିଚାର ଭିନ୍ନ ଭିନ୍ନ ହୋଇଛି । ବାଲ୍ମୀକିଙ୍କ କ୍ଷେତ୍ରରେ ଉତ୍‌ଫୁଲ୍ଲତାର ଅନୁଭବ, କିନ୍ତୁ ବଳରାମଙ୍କର କ୍ଷେତ୍ରରେ ବିଷାଦ ଓ କ୍ରୋଧ "ମନ୍ଦୋଦରୀ ରାଣୀ ରାଜାର କୋଳେ ଅଛି / ବିଷାଦ ହୋଇଲା ହନୁମନ୍ତ ଦେଖି । /ମନେ ବିଚାରଇ ଏ ଅଟଇ ବଇଦେହୀ / ଜନେକର ନନ୍ଦିନୀ ଶ୍ରୀରାମ ନାରୀ ଏହି । / ଶ୍ରୀରାମକୁ ଯାଇଁ ମୁଁ କହିବି ବାରତା / ରାବଣକୁ ଦେହ ଦେଲା ତୋହର ସୀତ୍ୟା । / ଚାଣ୍ଡାଳ ଯୁବତୀ ଏ ଅଟଇ ଅଗିଆନ / ଶ୍ରୀରାମର ଆଶ ଛାଡିଲା ଯେହାର ମନ । / ରାବଣ ତୁଲେ ଯହୁଁ ଏଡ଼େକ ପୀରତି / ପୋଡୁ ଏ କେମନ୍ତ ବୋଲାଇ ମହାସ୍ୟତୀ/..." (ପୃ.୩୫୬) । ଏହାର ପରବର୍ତ୍ତୀ ପ୍ରତିକ୍ରିୟା ମଧ ଭିନ୍ନ ଭିନ୍ନ । ବାଲ୍ମିକୀରେ ହନୁମାନ ଯୁକ୍ତିଯୁକ୍ତି ଭାବରେ ନିଜର ସ୍ଥିର ବୁଦ୍ଧିରେ ଚିନ୍ତା କରି ସମାଧାନରେ ପହଞ୍ଚିଛନ୍ତି । ବଳରାମଙ୍କ କ୍ଷେତ୍ରରେ 'ସ୍ଥିର ବୁଦ୍ଧି'ରେ ନୁହେଁ, ହନୁମାନ ନିର୍ଦ୍ଦିଷ୍ଟ ଭାବରେ ପରୀକ୍ଷା କରି ଯୁକ୍ତିଯୁକ୍ତ ନିଷ୍ପତ୍ତିରେ ପହଞ୍ଚିଛନ୍ତି – "ମାରିବି ରାବଣ ସୀତ୍ୟା ବେନିଜନ / ଯେତେ ବୋଲି ଭ୍ରମର ହୋଇଲା ହନୁମାନ । / ମନ୍ଦୋଦରୀ ନିକଟକୁ ଗଲା ବୀର ଯହୁଁ / ମନ୍ଦିର ବାସଗନ୍ଧ ଗନ୍ଧାଇଲା ତହୁଁ । / ଯେହୁ ସୀତ୍ୟା ନୋହଇ ବୋଲିଣ ବାହୁଡ଼ିଲା / ହୃଦରେ ବିଚାରିଣ ଭ୍ରାନ୍ତି ସେ ଛାଡିଲା ।" (ପୃ.୩୫୬) । ପୂର୍ବବର୍ତ୍ତୀ ଋଷ୍ୟଶୃଙ୍ଗ ଉପାଖ୍ୟାନକୁ ହନୁମାନଙ୍କର ରାବଣଙ୍କର ଗୃହରେ ସୀତାଙ୍କର ଅନୁସଂଧାନର ବିବରଣୀ ସହିତ ତୁଳନା କଲେ ବଳରାମଙ୍କର

ଶୈଳୀର ବିଭିନ୍ନତା ଲକ୍ଷ୍ୟ କରାଯାଇପାରେ । ଋଷ୍ୟଶୃଙ୍ଗ ଉପାଖ୍ୟାନରେ ମୂଳ ରାମାୟଣର ସଂକ୍ଷିପ୍ତ ସୂଚନାକୁ ବଳରାମ ବିସ୍ତାରିତ କରିଛନ୍ତି, ଯେଉଁଥିରେ କଳ୍ପନାର ବିଳାସ ସହିତ ସ୍ଥାନ, ପରିବେଶ ଓ ବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ କରାଯାଇଛି । ମନେ ହେବ ଯେପରି କବି ନିଜର ପରିଚିତ ସ୍ଥାନ ଓ ବ୍ୟକ୍ତିମାନଙ୍କର ବିବରଣୀ ଦେଉଛନ୍ତି । ଏଠାରେ ଏହି ଅନୁସଂଧାନର ବିବରଣୀରେ କବି ମୂଳର ବିସ୍ତାରିତ ବିବରଣୀ ଓ ବର୍ଣ୍ଣନାକୁ ସଂକ୍ଷିପ୍ତ କରିଛନ୍ତି, ଓ ରାବଣ ମନ୍ଦୋଦରୀ ପ୍ରଭୃତିଙ୍କ ବିଷୟରେ ମୂଳ ରାମାୟଣରେ ଯେଉଁ ଭୟମିଶ୍ରିତ ବିସ୍ମୟ ଓ ପ୍ରଶଂସାର ମନୋଭାବ ରହିଛି ଏଠାରେ ତା ନାହିଁ । ବଳରାମଙ୍କର ଭକ୍ତି ମନୋଭାବ ହୁଏତ ଏହାର କାରଣ ହୋଇପାରେ, ଯେ ସେ ନିଜର ଇଷ୍ଟଦେବତାଙ୍କର ଶତ୍ରୁକୁ ପ୍ରଶଂସା କରିବାକୁ ଚାହାନ୍ତି ନାହିଁ, ଓ ଯାହା ସେ କିଛି ବିସ୍ତାରିତ ଭାବରେ ଦେଇଛନ୍ତି ସେ ନାରୀ ମାନଙ୍କର ଗୀତ ଓ ବାଦ୍ୟର ସାଂସ୍କୃତିକ ଯୋଗ୍ୟତା ଯାହା ସହିତ ସେ ନିଜେ ହୁଏତ ଅନ୍ୟଭାବରେ ପରିଚିତ ଥିବେ ।

ବଳରାମଙ୍କର ବିବରଣୀର ସଂକ୍ଷିପ୍ତତା ଓ ସରଳତା ହନୁମାନଙ୍କର ପରବର୍ତ୍ତୀ ଅଶୋକ ବନର ଅନୁସଂଧାନରେ ମଧ ଲକ୍ଷ୍ୟ କରାଯାଇପାରେ । ବାଲ୍ମୀକିଙ୍କର ଅଶୋକ ବନର ବିବରଣୀ ବେଶ ବିସ୍ତାରିତ ବିବରଣୀ । କବି ବାରମ୍ବାର ଅଶୋକ ବନର ସୌନ୍ଦର୍ଯ୍ୟ କଥା କହିଛନ୍ତି, ବହୁ ଉପମା ଉପମେୟର ପ୍ରୟୋଗ କରିଛନ୍ତି, ଓ ଅପ୍ରତ୍ୟକ୍ଷ ଭାବରେ ରାବଣଙ୍କର ଗୌରବ, ଗାରିମା ଓ ସମୃଦ୍ଧିର ସୂଚନା ଦେଇଛନ୍ତି । ଯେପରି, ଅଶୋକ ବନର ଦର୍ଶନରେ ହନୁମାନଙ୍କର ଆନନ୍ଦ ଓ ଉତ୍ତେଜନା - 'ହନୁମାନଙ୍କର ସର୍ବାଙ୍ଗ ପୁଲକିତ ହୋଇ ଉଠିଲା । ସେ ଦେଖିଲେ ନାନାପ୍ରକାର ବୃକ୍ଷ ବସନ୍ତାଦି ସମସ୍ତ ଋତୁର ଫଳ ପୁଷ୍ପରେ ଶୋଭିତ ହୋଇଅଛି । ଶାଳ, ଅଶୋକ, ଚଂପକ, ଉଦ୍ଦାଳକ, ନାଗକେଶର ଓ ଆମ୍ର ପ୍ରଭୃତି ବୃକ୍ଷ ଏବଂ ନାନାରୂପ ଲତାଜାଳ ପୁଷ୍ପଶ୍ରୀ ବିସ୍ତାର କରିଅଛି । ହନୁମାନ ଶରାସନଚ୍ୟୁତ ଶରପରି ମହାବେଗରେ ବୃକ୍ଷ ବାଟିକାରେ ଲମ୍ଫ ପ୍ରଦାନ କଲେ । ଏ ସ୍ଥାନ ସୁରମ୍ୟ, ସର୍ବତ୍ର ମୃଗ ଓ ବିହଙ୍ଗର କଳରବ, ଭୃଙ୍ଗ ଓ କୋକିଳଗଣ ଉନ୍ମତ୍ତ ହୋଇ ସଂଗୀତ ଗାନ କରୁଛନ୍ତି, ବୃକ୍ଷଶ୍ରେଣୀ ଫଳପୁଷ୍ପରେ ଅନବତ, ମୟୂର ମାନଙ୍କର କେଳରବରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଉଛି ।... ବନଭୂମି ବୃକ୍ଷଚ୍ୟୁତ ପୁଷ୍ପରେ ସମାକୀର୍ଣ୍ଣ ହୋଇ ସୁବେଶା ରମଣୀପରି ଶୋଭିତ ହେଉଛି... ଅଶୋକ ବନର କେଉଁଠି କେଉଁଠି ମଣିଭୂମି, କେଉଁଠି ରଜତଭୂମୀ, ଓ କେଉଁଠି ସ୍ୱର୍ଣ୍ଣଭୂମି । କେଉଁଠି ସ୍ୱଚ୍ଛସଲିଳ ପୂର୍ଣ୍ଣ ଦୀପିକା, ତାର ଚାରିପାଖରେ ମଣିସୋପାନ, ମୁକ୍ତାରେଣୁ, ପ୍ରବାଳର ବାଲୁକା, ଏବଂ ସ୍ଫଟିକର କୁଟ୍ଟିମ । ତୀରରେ ସ୍ୱର୍ଣ୍ଣମୟ ତରୁଶ୍ରେଣୀ, ପଦ୍ମସକଳ ପ୍ରସ୍ଫୁଟିତ, ଏବଂ ହଂସ ସାରସ ପ୍ରଭୃତି ଜଳଚରଗଣ ବିଚରଣ କରୁଛନ୍ତି... ପୁନ୍ନାଗ, ସପ୍ତପର୍ଣ୍ଣ, ଚଂପକ ଓ ଉଦ୍ଦାଳକ ବୃକ୍ଷସମୂହ କୁସୁମିତ । କାନନ ମଧ୍ୟରେ ବହୁସଂଖ୍ୟକ ଅଶୋକ ବୃକ୍ଷ କେଉଁଟି ସ୍ୱର୍ଣ୍ଣବର୍ଣ୍ଣ, କେଉଁଟି ଅଗ୍ନିପରି ପ୍ରଦୀପ୍ତ ଏବଂ କେଉଁଟି ନୀଳାଞ୍ଜନ ପରି ସୁନ୍ଦର । ଏ ଅଶୋକ ବନ ଦେବକାନନ ନନ୍ଦନ ପରି ଏବଂ ଧନାଧିପତି କୁବେରର ଉଦ୍ୟାନ ଚିତ୍ରରଥ ପରି ସୁଦୃଶ୍ୟ । କୁହାଯାଇପାରେ ଏହା ସେସବୁ ଉଦ୍ୟାନଠାରୁ ଅଧିକତର ମନୋହର... ଏ ଯେପରି ଦ୍ୱିତୀୟ ଆକାଶ, ପୁଷ୍ପସବୁ ଗ୍ରହନକ୍ଷତ୍ର ପରି ଦୃଷ୍ଟ ହେଉଛି, ବା ଯେପରି ପଞ୍ଚମ ସମୁଦ୍ର, ନାନାବିଧ ପୁଷ୍ପ ନିଜର ରତ୍ନଶ୍ରୀ ପ୍ରଦର୍ଶନ କରୁଛନ୍ତି...' ('ସୁନ୍ଦରା କାଣ୍ଡ', ୧୪ଶ ଓ ୧୫ଶ ପର୍ବ) । ବଳରାମଙ୍କର ଅଶୋକ ବନର ବର୍ଣ୍ଣନାରେ ବାଲ୍ମୀକିଙ୍କର କଳ୍ପନାର ବିସ୍ତାର ଓ ସମୃଦ୍ଧିର ଅନୁଭବ ନାହିଁ । ତାଙ୍କର ବର୍ଣ୍ଣନା ସରଳ, ସଂକ୍ଷିପ୍ତ, ଉପମା ଉପମେୟର ବାହୁଲ୍ୟ ନାହିଁ, ଓ କେବଳ କେତେକ ପରିଚିତ ପ୍ରକୃତିର ସୌନ୍ଦର୍ଯ୍ୟ ଓ କାର୍ଯ୍ୟର ବର୍ଣ୍ଣନାରେ ସମାପ୍ତ ହୋଇଛି- "ଏତେ ଭାଳି ବୀର ତହୁଁ ଚଳିଗଲା / ଅଶୋକ ବିପୁନ୍ୟେ ସେ ପ୍ରବେଶ ହୋଇଲା । / ଦେଖିଲା ବନସ୍ତ ଯେ ଅତିହ ଚାରୁଶୋଭା / ଧୀର ପବନ ବହଇ ନାହିଁ ସୂର୍ଯ୍ୟପ୍ରଭା । ଫଳନ୍ତି, ଫୁଟନ୍ତି ପାବନ୍ତି ତରୁମାନ / ସର୍ବଦା ବସନ୍ତ ବହଇ ସେହି ସ୍ଥାନ । / ...ତୋଟାର ଭିତରେ ପୋଖରୀ ଏ ଅଛି / କ୍ରୀଡ଼ା କରୁଛନ୍ତି ବିବିଧ ବନେ ପକ୍ଷୀ । / ପଦ୍ମକୁମୁଦ ଯେ ଫୁଟନ୍ତି ନିରନ୍ତର / ମର୍କତର ପାବଛ ବାନ୍ଧିଲା ଚଉକତିର । / ମଧ୍ୟେ ସୁବର୍ଣ୍ଣର ଅଛଇ ଦୀପଦଣ୍ଡି / ଆଜି ହୁଁ ଗଢ଼ିଛି ତାହା ନବରତ୍ନେ ମଣ୍ଡି । / ...ହଂସ ଚକ୍ରବାକ ଡାହୁକ ହଂସରାଳି / ପଦ୍ମ ମକରନ୍ଦେ ଭ୍ରମର କରେ କେଳି । ...

(ପୃ.୩୫୭)

ପରେ ପରେ ସୀତାଙ୍କ ବିଷୟରେ, ବିଶେଷ କରି ତାଙ୍କର ମାନସିକ ଅବସ୍ଥା ଓ ଶାରୀରିକ ସୌନ୍ଦର୍ଯ୍ୟ ସଂପର୍କରେ ଯାହା କୁହାଯାଇଛି ସେଥିରେ ମଧ୍ୟ ବିଭିନ୍ନତା ଅଛି । ବାଲ୍ମିକୀଙ୍କର ବର୍ଣ୍ଣନା ବିସ୍ତୃତ, ପୁଙ୍ଖାନୁପୁଙ୍ଖ, ଚିତ୍ର କଳାପରି ଓ ଉପମା ଉପମେୟର ବାରମ୍ବାର ବ୍ୟବହାର କରାଯାଇଛି । ଯେପରି "ସେ ଶୁକ୍ଳପକ୍ଷୀୟ ନବୋଦିତ ଶଶିକଳାପରି ନିର୍ମଳ, ତାହାଙ୍କର କାନ୍ତି ଧୂମଜାଳ ଜଡ଼ିତ ଅଗ୍ନିଶିଖା ପରି ଉଜ୍ଜ୍ୱଳ... ସେ ସରୋଜଶୂନ୍ୟ ଦେବୀ କମଳାଙ୍କ ପରି ଦିଶୁଛନ୍ତି । ତାଙ୍କର ଦୁଃଖସନ୍ତାପ ଅତିଶୟ ପ୍ରବଳ, ନୟନ ଯୁଗଳରୁ ଅନର୍ଗଳ ବାରିଧାର ବହୁଅଛି । ସେ କେତୁଗ୍ରହ ନିପୀଡିତ ରୋହିଣୀ ପରି ଏକାନ୍ତ ଦୀନ, ଶୋକରେ ଯେପରି ନିରନ୍ତର ହୃଦୟ ମଧ୍ୟରେ କାହାର ଚିନ୍ତା କରୁଛନ୍ତି ।... ସେ ଯୁଥଭ୍ରଷ୍ଟ କୁକ୍କୁର ପରିବୃତ କୁରଙ୍ଗୀ ପରି, ତାହାଙ୍କର ପୃଷ୍ଠରେ କାଳଭୁଜଙ୍ଗୀ ପରି ଏକମାତ୍ର ବେଣୀ ଲମ୍ବିତ, ସେ ବର୍ଷାର ଅବସାନରେ ସୁନୀଳ ବନରେଖାରେ ଚିହ୍ନିତ ଅବନୀ ପରି ଶୋଭା ପାଉଛନ୍ତି...। ଜାନକୀଙ୍କର ମୁଖ ପୂର୍ଣ୍ଣଚନ୍ଦ୍ର ପରି ପ୍ରିୟଦର୍ଶନ, ସ୍ତନଯୁଗଳ ବର୍ତ୍ତୁଳ ଓ ସୁନ୍ଦର, ସେ ନିଜର ପ୍ରଭାପୁଞ୍ଜରେ ସମସ୍ତ ଦିଗକୁ ତିମିରମୁକ୍ତ କରିଛନ୍ତି । ତାହାଙ୍କର କଣ୍ଠରେ ମରକତ ରାଗ, ଅଧର ବିମ୍ବପରି ଆରକ୍ତ, କଟିଦେଶ କ୍ଷୀଣ ଏବଂ ଗଠନ ଅତି ସୁଦୃଶ୍ୟ । ଇତ୍ୟାଦି...' (ସୁନ୍ଦରା କାଣ୍ଡ, ୧୫ଶ ସର୍ଗ) ବାଲ୍ମୀକିଙ୍କ ବର୍ଣ୍ଣନାରେ ସୀତାଙ୍କୁ ଜଣେ ଦୁଃଖ ବେଦନାରେ ଭାରାକ୍ରାନ୍ତ ସୌନ୍ଦର୍ଯ୍ୟମୟୀ ରମଣୀ ଭାବରେ ଚିତ୍ର କରାଯାଇଛି । ମନେହେବ ଯେପରି ବାଲ୍ମୀକି ପୁରୁଷୋତ୍ତମ ଶ୍ରୀରାମଙ୍କର ପତ୍ନୀ ଦେବୀ ସୀତାଙ୍କ ବିଷୟରେ କହୁନାହାନ୍ତି, ସଂସ୍କୃତ ସାହିତ୍ୟର ପରଂପରାରେ ପରିଚିତ କୌଣସି କାବ୍ୟନାୟିକା ବିଷୟରେ କହୁଛନ୍ତି । ବଳରାମଙ୍କର ଚିତ୍ରଣରେ ଏସବୁ କିଛି ନାହିଁ । ତାଙ୍କର ବର୍ଣ୍ଣନା ଅତ୍ୟନ୍ତ ସଂଯତ ଓ ସଂକ୍ଷିପ୍ତ । ତାଙ୍କ ପାଇଁ ସୀତା ଦେବୀ ସୀତା, ତାଙ୍କର ଇଷ୍ଟଦେବତାଙ୍କର ପତ୍ନୀ । ତାଙ୍କର ଆଭିମୁଖ୍ୟ ମୁଖ୍ୟତଃ ଭକ୍ତିର ଆଭିମୁଖ୍ୟ ଓ ତାଙ୍କର ବର୍ଣ୍ଣନା ସୂଚନାତ୍ମକ- "ସୁବର୍ଣ୍ଣର ମଣ୍ଡୋପ ନବରତ୍ନ ମୟେ / ସହସ୍ରେକ ଅସୁରୀ ବେଢ଼ି ବସିଥାଏ / ମଧ୍ୟରେ ଜାନେକୀ ସଂପୂର୍ଣ୍ଣ ଚନ୍ଦ୍ରଜାଣି / ଦେଖି ବିଚାରଇ କପି କୁଳମଣି । / ଯେ ସେ ବଇଦେହୀ ଶ୍ରୀରାମର ନାରୀ / ସ୍ୱୟଂ କମଳିଣୀ ଅଛି ଅବତରୀ ।"... (ପୃ.୩୫୭) ।

ଏହି ପ୍ରସଙ୍ଗରେ ହନୁମାନଙ୍କ ଅଭିଯାନରୁ ଆଉ ଗୋଟିଏ ଉଦାହରଣ ଦିଆଯାଇ ପାରେ– ଲଙ୍କାପୋଡି । ବାଲ୍ମୀକି ଓ ବଳରାମଙ୍କ ଉଭୟଙ୍କ ବର୍ଣ୍ଣନାରେ ଉପାଖ୍ୟାନ ଦିଗରୁ ସାଦୃଶ୍ୟ ଅଛି, କିନ୍ତୁ କେତେକ ଛୋଟ ଛୋଟ ଘଟଣାକୁ ବା ଘଟଣାର କ୍ରମକୁ ଅଲଗା ଅଲଗା ଭାବରେ ଦିଆଯାଇଛି । ବଡ଼ କଥା ହେଲା ବଳରାମଙ୍କର ବର୍ଣ୍ଣନା ଆଗ ପରି ସଂଯତ ବା ସଂକ୍ଷିପ୍ତ ନୁହେଁ । ତୁଳନାତ୍ମକ ଭାବରେ ବଳରାମଙ୍କର ବର୍ଣ୍ଣନାର ବିସ୍ତୃତି ବେଶୀ - ପୂର୍ବର ଋଷ୍ୟଶୃଙ୍ଗ ଉପାଖ୍ୟାନ ପରି । କବିଙ୍କର ପୁଙ୍ଖାନୁପୁଙ୍ଖ ବିବରଣୀ, କଳ୍ପନାର ବିସ୍ତାର ଓ ମାନବିକ ଉପାଦାନର ସୂଚନା ସବୁ ଉଲ୍ଲେଖନୀୟ । ଯେପରି ଲଙ୍କାପୋଡ଼ି ଓ ତାର ପରିଣାମ - "ଅଗ୍ନି ଘେନିଣ ବହିଲା ଅଣଚାଷ / ମେଢ଼ ମୋଣ୍ଡପ ଜଗତୀ ହୋଇଲା ବିନାଶ । / ଦଶ ଯୋଜନ ଯେ ଲଙ୍କାର ଆକୃତି / ତକ୍ଷଣେ ଧୂମାନ୍ତ ତାହା କରଇ ମାରୁତି । / ଆସ୍ଥାନ ନବର ନୃତ୍ୟ ରଙ୍ଗଶାଳ / ଦେବାର୍ଚ୍ଚନ ନବର ଦୋହୋରା ଯେ ଆଳ । ରାଣୀହଂସପୁର ତୋଟାପୁର ଜଗତୀ / ତିନିପୁର ମେଢ଼ ପୋଡଇ ଚଉକତି । /ଘୋଡ଼ାଶାଳ ଯେ ଭଣ୍ଡାର ଘର ମାନ / ପ୍ରଳୟ କାଳ ଜାଣି ଦହଇ ହୁତାଶନ ।/... ନଗ୍ର ନରନାରୀ ବିକଳେ ବୋବି ଦ୍ୟନ୍ତି / କେହୁ ଆୟେଦାୟେ ଘେନିଣ ପଳାନ୍ତି ।/ କେହୁ ହସ୍ତେ ଲୁଗା ପୁତ୍ରନ୍ତ ହସ୍ତ ଧରି / ପୋଖରୀ କୂଳକୁ ପଳାନ୍ତି ଖର କରି । କେ ବୋଲଇ ବାବୁ କେ ବୋଲଇ କକା / କେ ବୋଲଇ ଆଗେ ପୋଡୁ ବିତ୍ତ ପକା / ...କେ ଆସି ନ ପାରି ଘରେ ପଶି ମଲା / କାହାର ତାଟକା ହୋଇଣ ପ୍ରାଣ ଗଲା । / କେହୁ ବତାଗୁଳି ହୋଇଣ ପ୍ରାଣ ଦେଲା / କେହୁ ବାଟ ନ ପାଇଂଣ କୋନ୍ଦିରେ ପଡି ମଲା । / କେ ବୋଲଇ ବାବୁ ପୁଅ ମୋର କାହିଁ / କେ ବୋଲଇ କେଣେ ଗଲା ମୋ ଗୋସାଇଁ / କେ ବୋଲଇ ମୋର ଜନନୀ ନଇଲା / କେ ବୋଲଇ ମୋହୋର ଭାଇ କେଣେ ଗଲା ।" ଇତ୍ୟାଦି (ପୃ.୩୯୭) । ବଳରାମ ବେଶ ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି ।

କେବଳ ପୁରୁଷ ସ୍ତ୍ରୀ, ପିଲାବୁଢ଼ା ଯେ ପୋଡି ମରିଛନ୍ତି ତା ନୁହେଁ,ଅସଂଖ୍ୟ ଘରଦ୍ୱାର ନଷ୍ଟ ହୋଇଛି । ଅସଂଖ୍ୟ ପଶୁପକ୍ଷୀ ମରିଛନ୍ତି ଓ ବୃକ୍ଷଲତା, ବାଗ ବଗିଚା ମଧ୍ୟ ନଷ୍ଟ ହୋଇଛି । ମନେହୁଏ ପୂର୍ବବର୍ତ୍ତୀ ଋଷିଶୃଙ୍ଗ ଉପାଖ୍ୟାନର ଜଳଯାତ୍ରାର ବିବରଣୀ ପରି ଲଙ୍କାପୋଡିର ବିବରଣୀର ପୃଷ୍ଠଭୂମି କବିଙ୍କର ନିଜ ଅଭିଜ୍ଞତାପ୍ରସୂତ ଓ ସେହି ଦୃଷ୍ଟିରୁ ଅତ୍ୟନ୍ତ ବାସ୍ତବ । ଏହାହିଁ ବାଲ୍ମିକୀଙ୍କ ଠାରୁ କବିଙ୍କର ପ୍ରଭେଦ । ବାଲ୍ମୀକି ବହୁ ଉପାଖ୍ୟାନ- ଭିତ୍ତିକ ଉପମା ଉପମେୟର ବହୁଳ ପ୍ରୟୋଗ ସହିତ ଦୀର୍ଘ ବର୍ଣ୍ଣନାତ୍ମକ କାବ୍ୟ ବା ମହାକାବ୍ୟ ରଚନା କରିଛନ୍ତି । ତାଙ୍କର ବର୍ଣ୍ଣନା ନିରପେକ୍ଷ, କାବ୍ୟସ୍ୱର ନିରପେକ୍ଷ, ଆଭିମୁଖ୍ୟ ମୁଖ୍ୟତଃ ସାର୍ବଜନୀନ, ମାନବ ଚରିତ୍ରର ବିଶ୍ଳେଷଣ ଓ ଜଟିଳ ମାନବ ଜୀବନର ଉପସ୍ଥାପନ । ବଳରାମ ନିଜର 'ଜଗମୋହନ ରାମାୟଣ'ରେ ବାଲ୍ମୀକିଙ୍କର ଏହିସବୁ ସାଂଗଠନିକ ଆଦର୍ଶକୁ ମାନି ନେଇଛନ୍ତି । କିନ୍ତୁ ସେଥିସହିତ ସେ ନିଜର କଳ୍ପନା, ଅଭିଜ୍ଞତା, ବିଶ୍ୱାସ ଓ ସ୍ଥାନୀୟତା ଅନୁଯାୟୀ ଯେଉଁଠି ଯେଉଁଠି ଆବଶ୍ୟକ ହୋଇଛି ସେଠି ସଂଗଠନରେ ଓ ଆଭିମୁଖ୍ୟରେ ପରିବର୍ତ୍ତନ ଓ ପରିମାର୍ଜନ କରିଛନ୍ତି । ଏହି ପରବର୍ତ୍ତନର ଧାରା ଓ ବିନ୍ୟାସ 'ଜଗମୋହନ ରାମାୟଣ'ର ସାଂଗଠନିକ ମୌଳିକତା ।

ତେଣୁ ଆବଶ୍ୟକ ସ୍ଥଳେ ବାଲ୍ମିକୀଙ୍କର ମୂଳ ବର୍ଣ୍ଣନା ହୁଏତ ସଂପ୍ରସାରିତ ହୋଇଛି ବା ସଂକୁଚିତ ହୋଇଛି । କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ କବିଙ୍କର ମୂଳ ଲକ୍ଷ୍ୟ ସ୍ଥିର । ଅର୍ଥାତ୍, ରାମାୟଣ ଲେଖିବା ଦ୍ୱାରା ଗୋଟିଏ ମହାନ ଗ୍ରନ୍ଥ ଓ ମହାନ ଚରିତ୍ରର କାର୍ଯ୍ୟାବଳୀ ବିଷୟରେ ସରଳ, ନିଷ୍କପଟ, ଧର୍ମପ୍ରାଣ ଶ୍ରୋତା ଓ ପାଠକମାନଙ୍କୁ ସଚେତ କରିବା ସଙ୍ଗେ ସଙ୍ଗେ ଗୋଟିଏ ମହାକାବ୍ୟର ବର୍ଣ୍ଣନାର ବିନ୍ୟାସରୁ ଆନନ୍ଦ ଆଣିଦେବା । 'ଜଗମୋହନ ରାମାୟଣ'ର ଦୁଇଟି ଭିତ୍ତିଭୂମି । ଗୋଟିଏ ସାଂଗଠନିକ, ଯାହା ବଳରାମ ମୁଖ୍ୟତଃ ମୂଳ ବାଲ୍ମୀକି ରାମାୟଣରୁ ଆହରଣ କରିଛନ୍ତି, ଓ ସେହି ଭାବରେ ନିଜର ସଂଗଠନକୁ ସଜ୍ଜିତ କରିଛନ୍ତି । ଏ ଦିଗରୁ ସାରଳାଙ୍କ 'ମହାଭାରତ' ସହିତ 'ଜଗମୋହନ ରାମାୟଣ'କୁ ତୁଳନା କରାଯାଇ ପାରେ- ଉଭୟ ସମଗୋତ୍ରୀୟ । ଅର୍ଥାତ୍, ଉଚ୍ଚକୋଟିର ଉପାଖ୍ୟାନ ଓ ବର୍ଣ୍ଣନା- ଭିତ୍ତିକ ସାହିତ୍ୟ ସୃଷ୍ଟି, ଯାହା ଗୋଟିଏ କ୍ଷେତ୍ରରେ ମହାଭାରତ ଉପରେ ଆଧାରିତ ଓ ଅନ୍ୟଟି ରାମାୟଣ ଉପରେ, ଓ ଯାହା ଉଭୟ କ୍ଷେତ୍ରରେ ସମାନ ଭାବରେ ପାଠକର ବିଚାରବୋଧ ଓ ସମ୍ବେଦନଶୀଳତାକୁ ଜାଗ୍ରତ କରେ । କିନ୍ତୁ ଦ୍ୱିତୀୟ ଭିତ୍ତିଭୂମିର ମୂଳ ଅନ୍ୟତ୍ର- ସମକାଳୀନ ଭକ୍ତି ସାହିତ୍ୟ ବା ପଂଚସଖା ପରଂପରା । ଅର୍ଥାତ୍ 'ଜଗମୋହନ ରାମାୟଣ'ର ସାମଗ୍ରିକ ସଂଗଠନରେ ଭକ୍ତି ଏକ ଆବଶ୍ୟକୀୟ ଅଂଶ, ଓ ଏହା ଏହି ସଂଗଠନକୁ ପୁଷ୍ଟ କରିବା ସଙ୍ଗେ ସଙ୍ଗେ ଏହି ସଂଗଠନରେ ଏକ ଅଦ୍ୱିତୀୟତା ଆଣି ଦେଇପାରିଛି ।

ଏହି ସାମଗ୍ରିକ ସଂଗଠନର ଗୋଟିଏ ଭଲ ଉଦାହରଣ 'ଆରଣ୍ୟକ କାଣ୍ଡ'ର ସୀତା ଅପହରଣର ପରବର୍ତ୍ତୀ ସ୍ଥିତି । ରାମଚନ୍ଦ୍ରଙ୍କର ମାନସିକ ସ୍ଥିତି ଏଠାରେ ମୁଖ୍ୟ ସାଂଗଠନିକ ଧାରା, ଓ ସମଗ୍ର ବର୍ଣ୍ଣନାରେ ଏହି ସ୍ଥିତିର ହତାଶା ଓ ବେଦନା ପୂର୍ଣ୍ଣ ହୋଇ ରହିଛି:

ଦେଖିଲେ ପର୍ଣ୍ଣକୁଟୀ ହୋଇଅଛି ତୁଚ୍ଛା, ସୀତା ନ ଦେଖି ରାମ ପଡିଲେ ମୂର୍ଚ୍ଛା ।
ଲକ୍ଷଣ ତୋଳି ଧଇଲେକ ଯାଇ, ଛଣେକେ ଚାହିଁ ବୋଲନ୍ତି ବଚନ
କେ ମୋହୋର ହରି ନେଲାକ ଜୀବନ , ଦେହ ଥୋଇଣ କେ ପ୍ରାଣ ଘେନିଗଲା
କେବଣ ଦଇବ ଏହା ମୋତେ କଲା..., ଯେତେ ବୋଲି ରାମ ଶିରରେ କର ତାଡି
ଅଜ୍ଞାନ ହୋଇଣ ଯେଣେ ତେଣେ ପଡି , ପୁଣି ଉଠିଣ ଲୋଡନ୍ତି ଯେଣେ ତେଣେ
ଭାଇ ଭୁଜ ଧରି ରଘୁକୁଳ ରାଣେ , ସୀତା ସୀତ୍ୟା ବୋଲି ଉଚେଂ ରାବ ଦ୍ୟନ୍ତି... (ପୃ.୨୫୨)
ଆହା ଜାନେକୀ ଗୋ ଜନେକ ଦୋହିତା, ମୋତେ ଛାଡି କେଣେ ଗଲୁସି ଗୋ ସୀତ୍ୟା ।
ଲତାଙ୍କର ମଧ୍ୟେ କି ଅଛୁ ଲୁଚା ଦେଇ, ଯେତେ ବୋଲି ରାମ ଉଠିଣ ଗଲେ ଧାଇଁ ।

ଲକ୍ଷଣ ଗୋଡ଼ାଇଅଛି ପଛକତି, ବାଳୁତ ପ୍ରାୟେ ହୋଇ ଚାହାନ୍ତି ଚଉକତି । (ପୃ.୨୫୩)

ବର୍ଣ୍ଣନାର ଏ ଗୋଟିଏ ଦିଗ - ଦୁଃଖପୂର୍ଣ୍ଣ ମାନବିକ ଆବେଗର ଧାରା । ଯାହା ବର୍ଣ୍ଣନାର ନିରପେକ୍ଷତାରୁ ଦୂରେଇ ଯାଇ ମାନବିକ ଆବେଗର ଅନ୍ତରଙ୍ଗତାରେ ସମଗ୍ର ବର୍ଣ୍ଣନାକୁ ସଂଜୀବିତ କରି ପାରିଛି । କିନ୍ତୁ ନିରପେକ୍ଷତା ବି ଅଛି, ଯାହା ଆବେଗର ଅନ୍ତରଂଗତା ସହିତ ମିଳିତ ହୋଇ ସମଗ୍ର ବର୍ଣ୍ଣନାକୁ ଏକ ନୂତନ, ଶକ୍ତିଶାଳୀ ରୂପ ଦେଇପାରିଛି । ଯେପରି ଅରଣ୍ୟର ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟର ବର୍ଣ୍ଣନାରେ, ଓ ଋତୁଚକ୍ରର ସୂଚନାରେ । ପ୍ରଥମେ ପମ୍ପା ସରୋବରର ବର୍ଣ୍ଣନା :

ତହୁଂଣ ଶ୍ରୀରାମ ଲକ୍ଷଣ ବେନି ଯାନ୍ତି, ପିମ୍ପା ସରୋବର କୂଳରେ ମିଳନ୍ତି ।
ବାବୁ ପୁଷ୍କରିଣୀ ଅମୃତମେୟ ଜଳ, ଯେତେ ତେତେ କଳଣା ନାହିଁ ଥଳକୂଳ ।
ଶଉଚ ନିର୍ମଳ ଜଳ ପଙ୍କ ନାସ୍ତି, ନାନା ବର୍ଣ୍ଣେ ପଦ୍ମ ଫୁଟିଣ ଅଛନ୍ତି ।
ରଜତ କୁମୁଦ ଫୁଲ ପନ୍ତି ପନ୍ତି, ପଲ୍ଲବି ବୃକ୍ଷମାନେ ପତ୍ର ଝଡ଼ା ଦ୍ୟନ୍ତି ।....
ଚମ୍ପା ବକୁଳ କେତକୀ ଦୟଣା, ଜାତି ନାଗେଶ୍ୱର କଦମ୍ବ କରୁଣା ।
ପୁନାଙ୍ଗ ଛୁରିଅନା ଓଶେକ ମନ୍ଦାର, ପୁଷ୍ପ୍ୟକ ଚୁମ୍ବନ୍ତି ଅନେକ ମଧୁକର ।.... (ପୃ.୨୫୬)

ସେହିପରି, ଋତୁଚକ୍ରର ସୂଚନାରେ ମାଲ୍ୟବନ୍ତ ଗିରିର ବର୍ଣ୍ଣନା - ବର୍ଷା ଋତୁ :

ଯେଥୁ ଅନନ୍ତରେ ଗୋ ଶୁଣିମା ହେମବନ୍ତୀ, ମାଲ୍ୟବନ୍ତ ପର୍ବତେ ରହିଲେ ରଘୁପତି ।
ଗ୍ରୀଷମ ଋତୁ ଶେଷ ହୋଇଲା ଦିନୁ ଦିନ, ପ୍ରଥମ ଆଷାଢ଼େ ହୋଇଲା ବରଷଣ ।...
ହାଥୀ ମୁଣ୍ଡା ମେଘମାନେ ଗର୍ଜନ୍ତି , ନିର୍ଘାତ ଶବଦେଣ ପର୍ବତେ ଚମକନ୍ତି ।
ଶୀତଳ ବନ ବହଇ ଚଉକତି, ପୂର୍ବ ଦିଗରୁ ମେଘେ ପଶ୍ଚିମକୁ ଚଳନ୍ତି ।....
ଇନ୍ଦ୍ରଧନୁ ପୁଣ ଉଦୟେ ଘନ ଘନ, ଅସ୍ତକାଳେ ଆଦିତ୍ୟ ଦିଶନ୍ତି ରଙ୍ଗବର୍ଣ୍ଣ ।
ଦିବସେ ମଣ୍ଡଳ ଯେ ରାତ୍ରେଣ କୁହୁକ, ପ୍ରଚଣ୍ଡ ପବନ ବହଇ ଝାଙ୍କ ଝାଙ୍କ ।....
ଦିବସେ ଗରଜିଣ କରଇ ଗମଗମ, ଭୂମି କମ୍ପିଣ ହୋଅଇ ଦମଦମ ।
ଆଷାଢ଼ ପ୍ରବେଶ ହୋଇଲାକ ଯହୁଁ , ଝିମି ଝିମି କରିଣ ବରଷଇ ତହୁଁ ।...
ବୃକ୍ଷେ ପଲ୍ଲବିଲେ କଅଁଳିଲେ ଲତା, ମୟୂର ପକ୍ଷୀମାନେ ମଦନେ ଉନମତା ।
ମୃଗେ ଭୟ ଛାଡି ଚରନ୍ତି ଯେଣେ ତେଣେ, କୋକିଳ ଝିଙ୍କାରି ପଶିଲେ ଗହନ କାନନେ ।
କଦମ୍ବ ପୁଷ୍ପମାନ ଫୁଟନ୍ତି ଘନ ଘନ, ଜମ୍ବୁଫଳ ପାଚିଣ ପଡନ୍ତି ଭୂମିରେଣ ।... (ପୃ.୩୦୩, ୩୦୪)

ଓ ଶରତ ଋତୁ :

ଯେମନ୍ତେ ଚାରିମାସ ବରଷା ଋତୁ ଗଲା, ଆଶିନ୍ୟ ଭାଦ୍ରବ ମାସ ଆସି ପ୍ରବେଶ ହୋଇଲା ।
ନିର୍ମଳ ଥିର ଜଳେ କୁମୁଦ ଫୁଟିଲା, ଅୟେଂଳା ବଉଳିଲା କରମଙ୍ଗା ପାଚିଲା ।
ପତ୍ର ପଲ୍ଲବିଣ ଫୁଟଇ ମୁନିଗା, କାଶ କୁସୁମ ଫୁଟି ଫୁଟଇ ବାଲୁଙ୍ଗା ।
ପାଚିଲା ନାରଙ୍ଗ ଆବର କରୁଣା , ନିର୍ମଳ ଆକାଶେ କି ଚନ୍ଦ୍ରମା ଉପମା ।...(ପୃ.୩୧୨)

ବା, ସୁବଳୟା ଗିରିର ବର୍ଣ୍ଣନା :

ଦେଖନ୍ତି ପର୍ବତ ଅପୂର୍ବ ରମ୍ୟସ୍ଥାନ, ସୁସ୍ୱାଦୁ ଫଳ ଅଛଇ ପୂରିବନ ।
ବିବିଧ ପ୍ରକାରେ କୁସୁମେ ଅମୋଦନ୍ତି ବାସ, ଦେବନଦୀ ଝରଝର ବହଇ ଚଉପାଶ ।
ଶୁକଳ ବର୍ଣ୍ଣ ଅଟଇ ଗିରିବର, ଦୁଇକୋଶ ଅଟଇ ଉର୍ଦ୍ଧ୍ୱର ଶିଖର । ....(ପୃ. ୪୩୯)

ବା, ଆରମ୍ଭରୁ 'ଅଯୋଧ୍ୟା କାଣ୍ଡ'ରେ, ଶ୍ରୀରାମଙ୍କର ପ୍ରଥମ ଅରଣ୍ୟବାସର ସ୍ଥାନ, ଚିତ୍ରକୂଟ ପର୍ବତର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା :

...ପାରିଜାତେକ ପୁଷ୍ପ ଅଛନ୍ତି ପନ୍ତି ପନ୍ତି, ନାଗେଶ୍ୱର କରୁଣା ଯେ କଦମ୍ବ ଅଛନ୍ତି ।
ପଟେଳି ପାଳଧୁଆ ଶିମୁଳି ମନ୍ଦାର, ତରାଟ କାଞ୍ଚନ ଯେ ରଙ୍ଗଣୀ କଣେଆର ।
କାହିଁ ଛୁରିଅନା ଯେ ପୁନାଙ୍ଗ ନକୁଳ, ଚମ୍ପା କସ୍ତୁରୀ ଯେ ଓଶେକ ମାଳମାଳ ।...
ସିଂହ ଗଜ ଭଲ୍ଲୁକ ପନ୍ତି ପନ୍ତି, ମୃଗ ଶାର୍ଦ୍ଦୂଳ ଯେ ମଇଁଷି ଅଛନ୍ତି ।
ଗଣ୍ଡା ଗୟଳ ଯେ ମହାସର୍ପ ମୃଗ, ହରିଣୀ ବାହୁଟିଆ ଚରନ୍ତି ଏକ ସଙ୍ଗ ।....
ଶୁକସାରୀ ରାବ ଦିଅନ୍ତି ଘନ ଘନ, କୋକିଳ ଭାଷନ୍ତି ଜାଣିଣ ମଧୁବନ ।....
ମଧ୍ୟଅଗ୍ନି ନଦୀ ବହଇ ଝରଝର, ପଦ୍ମବନ ତହିଁ ଅଛଇ ଅପାର ।
କାହିଁ ଉତ୍ପଳ କାହିଁ ଶିଉଳୀ ଅଛି ଫୁଟି, ଉରଂଗ କୁମୁଦ ଯେ କେବଣ ଠାବେ ଉଠି । (ପୃ.୧୧୩, ୧୯୪)

ବା, ପରେ ସୀତା ଅପହରଣ ପରେ କିଷ୍କିନ୍ଧା କାଣ୍ଡ'ରେ, ଋଷିମୁଖ ପର୍ବତ ସଂପର୍କରେ, ପୂର୍ବପରି ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା :

ଅଗମ୍ୟ ବନରେ ପଥ ବହିଯାନ୍ତି, ଋଷିମୁଖ ପର୍ବତରେ ଯାଇଣ ଉଠନ୍ତି ।
ବାବୁ ସେ ପର୍ବତକୁ ନାହିଁ ପଟାନ୍ତର, ଶିଖରୁ ଝର ଫୁଟି ବହଇ ଝରଝର ।
ଚନ୍ଦନ ଅଗର ଯେ ପୁଷ୍ପଙ୍କର ବାସ, ମଳୟ ପବନ ଯେ ବହଇ ଚଉପାଶ ।
ଲବଙ୍ଗ ମରିଚ ଜାଇଫଳ ଆଦି ଛନ୍ତି, ଆତ ପଣସ ଗୁଆ ନଡିଆ ପନ୍ତି ପନ୍ତି...
ଶୁକ ସାରୀମାନେ ଯେ ଉଡନ୍ତି ଯୁଗ ଯୂଥ, କେବଣ ଠାବରେ ଅଛନ୍ତି ପାରୁଆ ବହୁତ ।
ଶେତ ନେଉଳ କାହିଁ ଯେ ଖେଦା ଖେଦା ହୋଇ, ଭୂମି ଖୋଳିଣ କେହୁ ଆହାର ଭକ୍ଷଇ ।...
କାହିଁ ଅଜଗରେ ପିଅନ୍ତି ପବନ, କାହିଁ ହସ୍ତୀମାନେ ଯେ କରନ୍ତି ଗରଜନ ।
ମାତଙ୍ଗ ଫଳମାନେ ପଡି ଭୂମିରେ ଗଡ଼ନ୍ତି , ଶୁଖିଲା ପତ୍ରପଡି ପବନେ ଉଡନ୍ତି । (ପୃ.୨୭୧)

'ଜଗମୋହନ ରାମାୟଣ'ର ବିଭିନ୍ନ ସ୍ଥାନରେ, ପୃଷ୍ଠଭୂମି ଭାବରେ, ଓ ଘଟଣାର କ୍ରମ ସହିତ ମିଶିକରି ମଧ୍ୟ, ସଂକ୍ଷେପରେ ଓ ବିସ୍ତୃତ ଭାବରେ ଆମେ ପ୍ରକୃତିର ବର୍ଣ୍ଣନା ବା ପ୍ରକୃତି ସଂପର୍କରେ ସୂଚନା ଦେଖୁ । 'ଜଗମୋହନ ରାମାୟଣ'ର କାବ୍ୟ-ସଂଗଠନର ଏ ଗୋଟିଏ ମୁଖ୍ୟ ଦିଗ ଓ ସଂଗଠନରେ ପରିବ୍ୟାପ୍ତ ମାନବିକ ଆବେଗର ଧାରା ସହିତ ଏହା ଅନ୍ତରଂଗ ଭାବରେ ଜଡ଼ିତ ହୋଇରହିଛି । ଏ କେବଳ ମୂଳ ରାମାୟଣ ବା ମୂଳ ରାମାୟଣ ଯେଉଁ ସଂସ୍କୃତ କାବ୍ୟ ସାହିତ୍ୟର ପରଂପରାରେ ଲେଖା ଯାଇଥିଲା ସେ ପରଂପରାର ପ୍ରଭାବ ନୁହେଁ । ଯେଉଁ ସମୟରେ ବଳରାମ ରାମାୟଣ ଲେଖିଲେ ବା ତାଙ୍କର କିଛି ପୂର୍ବରୁ ସାରଳା ଦାସ ମହାଭାରତ ଲେଖିଥିଲେ, ସେ ସମୟରେ ସମଗ୍ର ଓଡ଼ିଶା ଅପରୂପ ପ୍ରାକୃତିକ ଐଶ୍ୱର୍ଯ୍ୟ ଓ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ହୋଇ ରହିଥିଲା ଯାହାକି ଯେ କୌଣସି ସମ୍ବେଦନଶୀଳ କବିକୁ ଗଭୀର ଭାବରେ ପ୍ରଭାବିତ କରିବା ସ୍ୱାଭାବିକ । ବଳରାମଙ୍କର ଲେଖାରେ (ବା ତାଙ୍କ ପୂର୍ବରୁ ସାରଳାଙ୍କ ଲେଖାରେ ବି) ଆମେ ବାରମ୍ବାର, ବିଭିନ୍ନ ଭାବରେ, ପ୍ରକୃତିର ବର୍ଣ୍ଣନା ଦେଖୁ, ଓ ମନେହୁଏ ଏ ସବୁ କେବଳ ପରଂପରାଗତ ନୁହେଁ, କବିଙ୍କର ନିଜସ୍ୱ ଅଭିଜ୍ଞତା ଉପରେ ଆଧାରିତ । ଋଷ୍ୟଶୃଙ୍ଗ ଉପାଖ୍ୟାନର ଜଳଯାତ୍ରା ହେଉ, ବା ବର୍ଷାରେ ମାଲ୍ୟବନ୍ତ ଗିରିର ବର୍ଣ୍ଣନା ହେଉ, ବା ଏପରିକି ଅଶୋକ ବନର ବର୍ଣ୍ଣନାରେ ହେଉ, ପ୍ରତ୍ୟେକ କ୍ଷେତ୍ରରେ ବାସ୍ତବତାର ସ୍ପର୍ଶ କବିଙ୍କର ପ୍ରକୃତି ବର୍ଣ୍ଣନାକୁ ଏକ ସ୍ପଷ୍ଟ, ନିର୍ଦ୍ଦିଷ୍ଟ ଓ ଆନନ୍ଦଦାୟକ ଆୟତନ ଆଣିଦେଇ ପାରିଛି ।

ତେଣୁ 'ଜଗମୋହନ ରାମାୟଣ'ର ସଂଗଠନରେ ମାନବିକ ଆବେଗ, ଓ ପ୍ରକୃତିର ଅନୁଭବ ଦୁଇଟି ମୁଖ୍ୟ ଧାରା ।

ଅନ୍ୟ ଯେଉଁ ମୁଖ୍ୟ ଧାରାଟି ବିଷୟରେ ବିଚାର କରାଯାଇପାରେ ସେ ଭକ୍ତି ଅନୁଭବ ବା ବାରମ୍ବାର ପ୍ରକାଶ ପାଇଥିବା ଭକ୍ତିଧାରା । ଏହି ଭକ୍ତି ଅନୁଭବ 'ଜଗମୋହନ ରାମାୟଣ'ର ସାମଗ୍ରିକ ସଂଗଠନରେ ଦୁଇ ବିଭିନ୍ନ ଭାବରେ ପ୍ରକାଶ ପାଇଛି । ପ୍ରଥମତଃ, ବର୍ଣ୍ଣନାର ଧାରା ଓ ଆଭିମୁଖ୍ୟର ଅଂଶ ଭାବରେ, ଓ ଦ୍ୱିତୀୟରେ, ଏ ସବୁରୁ ଦୂରଇ ଯାଇ ନିରପେକ୍ଷ ଓ ସ୍ୱାଧୀନ ଅନୁଭବ ଭାବରେ । 'ଜଗମୋହନ ରାମାୟଣ'ର ବହୁ ବିଭିନ୍ନ ସ୍ଥାନରେ ଉପାଖ୍ୟାନ ଓ ବର୍ଣ୍ଣନାର ଅଂଶ ଭାବରେ ଶ୍ରୀରାମଙ୍କୁ ପରମ ପୁରୁଷ ଅବତାରୀ ଭାବରେ ସମ୍ମାନ କରାଯାଇଛି ଓ ବନ୍ଦନା କରାଯାଇଛି । କେତୋଟି ଉଦାହରଣ ଦିଆଯାଇ ପାରେ । ଯେପରି, 'ଆଦିକାଣ୍ଡ'ରେ, ଶ୍ରୀରାମଙ୍କ ଠାରେ ପରାଜୟ ସ୍ୱୀକାର କରି ପର୍ଶୁରାମଙ୍କର ସ୍ୱୀକୃତି- 'ଯହୁ ତ୍ରୀଜିବୀ ହୋଇଲା ପ୍ରଶୁଧର / ଶ୍ରୀରାମଙ୍କୁ ପ୍ରଶଂସା କଲାକ ଅପାର / ତୁହି ସେ ନାରାୟେଣ ହୋଇଅଛୁ ଜାତ / ବିଷ୍ଣୁ ନୋହିଲେ କି ଏଡ଼େକ ସାମରଥ / ତାଡ଼େକୀ ମାରିବାର ଶୁଣିଲି ଯେବଣ ଦିନ / ବୋଇଲି ଅବତାର ହୋଇଲେ ଭଗବାନ, /...ଯେବେ ଦେଖିଲି ପ୍ରତ୍ୟକ୍ଷେ ବେନି ଡୋଳେ / ତୁ ସେ ପରମବ୍ରହ୍ମ ଦଶରଥ ବାଳେ,/ ନିଶ୍ଚୟେ ଜାଣିଲୁତ ବିଷ୍ଣୁ ଅବତାର / ତୋହୋର ସେ ଉଶ୍ୱାସ ହୋଇବ ମେଦିନୀର ଭାର ।" (ପୃ.୧୪୮) । ବା 'ଆରଣ୍ୟକ କାଣ୍ଡ'ରେ ଶବରୀର ପ୍ରାର୍ଥନା - 'ଲକ୍ଷଣ ଯେ ସୁଖେ ଆମ୍ବ ଗ୍ରାସ କଲା / ରାମକୁ ଆଚୋବନ ଶବରୀ କରାଇଲା । / ମୃଗଛାଲେ ବସାଇ ଚାପଇ ଚରଣ / ବୋଲଇ ଦୟା ମୋତେ କଲେ ନାରାୟଣ / ତୁମ୍ଭେ ପ୍ରମବ୍ରହ୍ମ ଶଙ୍ଖ ଚକ୍ରଧାରୀ / ଅବତାର ହୋଇଅଛୁ ରାବଣକୁ ମାରି / ମୁନିମାନେ ମୋତେ ଯାହା ଛନ୍ତି କହି / ତୋ ପାଦ ସେବି ମୁଁ ମୁକତି ଗତି ପାଇବଇଁ' (ପୃ.୨୫୫) । ବା, ଅନ୍ୟତ୍ର, 'କିସ୍କିନ୍ଧା କାଣ୍ଡ'ରେ, ବାଳୀର ସ୍ୱୀକାରୋକ୍ତିରେ- "ବାଳୀ ବୋଇଲା ମୁଁ ନ କରଇ ଯେହା / ତୁ ରାମ ପ୍ରତକ୍ଷେ ଅଟୁ ଚଉବାହା / ଦେବଙ୍କର ଚୂଳେ ତୁ ଜନ୍ମିଲୁ ବ୍ରହ୍ମରାଶି / ଅବତାର ହୋଇଅଛୁ ଦୁଷ୍ଟଗଣେ ନାସି /ମୋହୋର ଭାଗ୍ୟେଣ ଦେଖିଲି ରାମ ତୋତେ / ସ୍ୱହସ୍ତେ ବାଣ ପେଷି ବଧ କଲୁ ମୋତେ /..' (ପୃ.୨୯୯) । ବା ଶ୍ରୀରାମଙ୍କ ବିଷୟରେ ଲକ୍ଷ୍ମଣଙ୍କର ମତାମତ - 'ସାମାନ୍ୟ ପୁରୁଷ କି ତୁ ଅଟୁ ଦାଶରଥି / ତୋହୋର ଶୋକ କଲେଣ ନାଶ ଯିବଟି ବସୁମତୀ / ସେ କିସ ରାବଣ କେତେକ ତାର ବଳ / ଯାହାକଇ ତୃପ୍ତି କରଇ ଦିଗପାଳ । / ବ୍ରାହ୍ମଣ ଠାକୁର ତୁମ୍ଭେ ଶଙ୍ଖଚକ୍ର ଧାରୀ / ପରମ ଲକ୍ଷ୍ମୀ ଅଟନ୍ତି ଜନେକ କୁମାରୀ ।..." (ପୃ.୩୦୫)

ପରେ, ଶ୍ରୀରାମ ଓ ରାବଣର ଶେଷ ଯୁଦ୍ଧ ସମୟରେ ମଧ ଏହି ଏକା ମନୋଭାବ ପ୍ରକାଶ ପାଇଛି । ଯୁଦ୍ଧ ସମୟରେ ଶ୍ରୀରାମଙ୍କୁ ସାହାଯ୍ୟ କରିବା ପାଇଁ ଯେତେବେଳେ ମାତଳି ସହିତ ଦେବରଥ ଆସି ପହଞ୍ଚିଛି ଶ୍ରୀରାମ ପ୍ରଥମେ ସନ୍ଦେହ କରିଛନ୍ତି - 'ରାଘେବ ବୋଲନ୍ତି କି ହୋ ବିଭୀଷେଣ / ଏ ରଥ ଆସିଅଛି ହୋ କେବଣ କାରଣ / ଇନ୍ଦ୍ର ପେଷିଲା କି ରାବଣର କପଟ...' (ପୃ.୬୩୨) । ବିଭୀଷଣ ଶ୍ରୀରାମଙ୍କୁ ଆଶ୍ୱାସ ଦେଇ ନିଶ୍ଚିତ କରିଛନ୍ତି - 'ଭୋ ରଘୁନନ୍ଦନ ତୁ କ୍ଷେତ୍ରୀଙ୍କ ଶିରୋମଣି / ନିଶ୍ଚୟ ଏହାକୁ ପେଷିଛି ବଜ୍ରପାଣି / ଏ ଯେ ମାତଳି ସୁରଗଣଙ୍କ ସାର / ଏ କଥାକୁ ସ୍ୱାମୀ କିଛି ନ ବିଚାର / ସ୍ୱୟଂ ନାରାୟଣ ଅଟୁ ତୁ ରଘୁନାଥ / ନୋହିଲେ କି ଆନକୁ ଆସଇ ଦେବରଥ ।" ସର୍ବଶେଷରେ, ରାବଣକୁ ମାରିବା ସମୟରେ, ମାତଳୀର ପ୍ରାର୍ଥନାରେ ('ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ଚକ୍ରପାଣି / ତୋହରେ ସଂଚିଲ ଯେ ଅଟେ ଚାରିଖାନି) ଶ୍ରୀରାମଙ୍କର ନିଜ ସଂପର୍କରେ ବ୍ରହ୍ମଜ୍ଞାନ ଉଦିତ ହୋଇଛି - 'ଶୁଣି ରଘୁନାଥ ପରମ ତୋଷ ମନ / ହୃଦପଦ୍ମ ମଧ୍ୟେ ବିଚାରିଲେ ବ୍ରହ୍ମଜ୍ଞାନ / ଜୀବ ପରମ ଆତ୍ମା ଏକ ମେଳ କଲେ /.... ମୁହିଁ ସେ ଶ୍ରୀହରି ଜଗତର ନାଥ / ମୋହର ସଞ୍ଚିଲା ସିନା ଅଟଇ ଜଗତ । / ପାପପୁଣ୍ୟ ବୋଲି ମୁହିଁ ସେ ଭିଆଇଲି / ଧର୍ମ ଆଗ କରି ପାପ ପଛ କଲି / ବେଦ ବଉଦ ମୋହୋର ଦୁଇ ମତ / ମୁହିଁ ସେ ଭିଆଇଲି ଦେବତା ଦଇତା ।/ ସନ୍ଥ ପ୍ରତିପାଳି ଦୃଷ୍ଟନ୍ତ ନାଶଇ / ରାକ୍ଷାସକୁ ମାରି ବୃନ୍ଦାକ ସଞ୍ଚଇ/ ମୁହିଁ ସେ ଅପାପୀ ପୁରୁଷ ନାରାୟେଣ ।/ ସର୍ବ ପାପ ଦହନ୍ତି ଜନେ ମୋତେ ସେବାକରି / ଜଗତ ରଖିଲି ମୁଁ ରାବଣକୁ ମାରି ।"/ (ପୃ.୬୩୯) । ଏହାହିଁ ବଳରାମଙ୍କର ନିଜସ୍ୱ ଭକ୍ତି-ଦୃଷ୍ଟିଭଙ୍ଗୀ, ସେ ଶ୍ରୀରାମଙ୍କୁ ପରମ ବ୍ରହ୍ମ ଭାବରେ ସ୍ୱୀକାର କରି ନିଜର ଭକ୍ତିପୂତ ଭାବନା

ବାରମ୍ବାର ପ୍ରକାଶ କରିଛନ୍ତି ("ଯେ ସେ ଶ୍ରୀରାମ ପରମ ବ୍ରହ୍ମ ହରି / ଜଗତର ହିତେ ମାନବ ରୂପ ଧରି / ଶ୍ରୀରାମ ଚରଣେ ନିତ୍ୟ ମୋର ଆଶ / ବଳରାମ ଦାସ ମୁଁ ଶ୍ରୀରାମର ଦାସ ।", (ପୃ.୨୫୯) ।

ଦ୍ୱିତୀୟରେ, 'ଜଗମୋହନ ରାମାୟଣ'ରେ ଭକ୍ତି-ଭାବନାର ଧାରା ବିଭିନ୍ନ ବର୍ଣ୍ଣନା ଓ ପରିବେଶଠାରୁ ବିଛିନ୍ନ ହୋଇ, ସ୍ୱୟଂ ସଂପୂର୍ଣ୍ଣ ଭାବରେ, କବିଙ୍କର ବିଭିନ୍ନ ଦେବଦେବୀ, ବିଶେଷ କରି ଜଗନ୍ନାଥଙ୍କର ବନ୍ଦନାରେ ପ୍ରକାଶ ପାଇଛି । 'ରାମାୟଣ'ର ଆରମ୍ଭ ('ଆଦିକାଣ୍ଡ') ଜଗନ୍ନାଥଙ୍କର ବନ୍ଦନାରେ, ପରେ 'ଲଂକାକାଣ୍ଡ' ଆରମ୍ଭରେ ବିସ୍ତୃତ ଭାବରେ, ଓ 'ଉତ୍ତରାକାଣ୍ଡ'ର ଆରମ୍ଭରେ ଜଗନ୍ନାଥଙ୍କର ବନ୍ଦନା, 'ଅଯୋଧ୍ୟାକାଣ୍ଡ' ଆରମ୍ଭରେ ବିଷ୍ଣୁଙ୍କ ପତ୍ନୀ ଦେବୀ କମଳାଙ୍କର । 'ଆରଣ୍ୟକ କାଣ୍ଡ'ର ଆରମ୍ଭରେ ଜଗନ୍ନାଥଙ୍କର ଅଗ୍ରଜ ହଳଧାରୀ ବଳରାମଙ୍କର । 'କିଷ୍କିନ୍ଧାକାଣ୍ଡ'ର ଆରମ୍ଭରେ ହୁତାଶନଙ୍କର, ଓ 'ସୁନ୍ଦରାକାଣ୍ଡ'ର ଆରମ୍ଭରେ ବିଶ୍ୱନାଥଙ୍କର । ଏହା ବାହାରେ 'ଆରଣ୍ୟକ କାଣ୍ଡ'ରେ ଦେବୀ ଦୁର୍ଗାଙ୍କର ଓ 'ରାମାୟଣ'ର ବହୁ ବିଭିନ୍ନ ସ୍ଥାନରେ ଜଗନ୍ନାଥଙ୍କ ସଂପର୍କରେ ସୂଚନା ରହିଛି ଯେଉଁଠି କବି ବାରମ୍ବାର ନିଜକୁ 'ଜଗନ୍ନାଥଙ୍କର ଦାସ'ଓ ତାଙ୍କରି ଦୟାରେ ସେ ରାମାୟଣ ରଚନା କରୁଛନ୍ତି ବୋଲି ଘୋଷଣା କରିଛନ୍ତି । 'ରାମାୟଣ'ର ଆରମ୍ଭ ଜଗନ୍ନାଥଙ୍କ ବନ୍ଦନାରୁ : "ବନ୍ଦଇ ଜଗନ୍ନାଥ କମଳା ଦେବୀ ପତି / ନୀଳଗିରି ଶିଖରେ ଅପୂର୍ବ ମୂରତି । / ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା / କି ଜାଣି ପଟାନ୍ତର କଳାମେଘ ପ୍ରଭା । / ନୟନ ଯୁଗଳ କି ଶରଦର ଶଶୀ / ଜଗତଜନ ହୃଦେ ଅଛୁ ପ୍ରଭୁ ବସି । / ସର୍ବଦେବ ନିସ୍ତାରଣ ସୁରଗଣ ସାହା / ସୁବର୍ଣ୍ଣର ଶଂଖଚକ୍ର ଶୋଭେ ବେନି ବାହା, / ...ବ୍ରହ୍ମା ରୁଦ୍ରଇନ୍ଦ୍ର ଚିନ୍ତିନ୍ତି ଯାକୁ ଧ୍ୟାନେ / ସେ ପ୍ରଭୁ ଅବତାର ମଞ୍ଚେଣ ଆପଣେ / ଦେଖିତେ ସୁଲଭ ନୟନେ ଅଗୋଚର / ପରଂବ୍ରହ୍ମ ରୂପ ଦିଶନ୍ତି ଶୋଭାକର / ଅବୟେ ଅଶେଷ ଅରୂପ ରୂପକାୟା / ଅବର୍ଣ୍ଣ ଅଜାତ ଅବିବେକ ମାୟା / ଅନନ୍ତ କୋଟି ବ୍ରହ୍ମାଣ୍ଡେ ଏକଇ ଈଶ୍ୱର / ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁ ତୀର ।" /....ଇତ୍ୟାଦି, କ୍ଷେତ୍ର ବର୍ଣ୍ଣନା ସହିତ ପ୍ରାୟ ୧୭୦ ଧାଡି, ଓ ପରିଶେଷରେ ଜଗନ୍ନାଥଙ୍କଠାରେ ସଂପୂର୍ଣ୍ଣ ଆତ୍ମ ସମର୍ପଣ :

ସର୍ବଦେବ ନିସ୍ତାରଣ ସର୍ବଜୀବ ଅନ୍ତର୍ଯ୍ୟାମୀ, ବନ୍ଦଇ ଜଗନ୍ନାଥ ପରମବ୍ରହ୍ମ ସ୍ୱାମୀ ।
ମୁହିଁ ତୋହୋରେ ଶରଣ ପଶିଲି ଜଗନ୍ନାଥ, ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର ହସ୍ତ, (ପୃ.୨)

'ଲଙ୍କାକାଣ୍ଡ'ର ଆରମ୍ଭରେ ସେହିପରି, ସମାନଭାବରେ ଶ୍ରୀଜଗନ୍ନାଥ ଓ ପୁରୁଷୋତ୍ତମ କ୍ଷେତ୍ରର ଦୀର୍ଘ ବର୍ଣ୍ଣନା- 'ବନ୍ଦଇ ଜଗନ୍ନାଥ କମଳାର ପତି / ସର୍ବବେଦ ନିସ୍ତାରଣ ପ୍ରେମବ୍ରହ୍ମ ମୂର୍ତ୍ତି / ଜଗତ ଜନ୍ତୁ ହୃଦେ ସର୍ବଦା ଯାହାର ବାସ / ଭଗତ ମଛଳି ସ୍ୱାମୀ ପୁରାଣ ପୁରୁଷ/ ... ନବରତ୍ନହାର ଯେ ଶୋହଇ ଗଣ୍ଡସ୍ଥଳ / ଶ୍ରବଣେ ମକର କୁଣ୍ଡଳ ଯୁଗଳ । / ମଉଳି କିରଟୀ ଯେ ମୁକୁଟ ବିତପନ / ମଣିଗଣ କିରଣ ବିରାଜଇ ଛନଛନ, / ଗଳାରେ ଲମ୍ବଇ ଯେ ଗଜମୋତି ହାର / ମାଣିକ୍ୟର ପଗଡ଼ ନୀଳାର କେଶର ।/ ଶ୍ରବଣ ଶିଖରେ ସ୍ଫଟିକ ଚାରୁ ଛନ୍ଦ / ଜାଣି ଅବତଂସ ସକତ କୁବିନ୍ଦ/ ...' (ପୃ.୪୪୧)। ଏଠାରେ ମଧ୍ୟ ପୂର୍ବପରି ଆତ୍ମସମର୍ପଣର ମନୋଭାବ ଓ ଜଗନ୍ନାଥଙ୍କ ଦୟାରେ ଯେ 'ରାମାୟଣ' ସମ୍ଭବ ହେଲା ସେହି ସ୍ୱୀକୃତି- 'ଜଗନ୍ନାଥ ସ୍ୱାମୀ ନୀଳଗିରିରେ ଯାର ବାସ / ସେ ପ୍ରଭୁର ଦାସ ମୁଁ ଯେ ବଳରାମ ଦାସ/...ଯହୁଁ ପିତା ମୋର ବିଷ୍ଣୁରେ ଭଗତ / ତେଣୁ ଜଗନ୍ନାଥ ଦୟା ମୋତେ କଲେ / ରାମାୟେଣ ଗ୍ରନ୍ଥ ମୋ ମୁଖରୁ ଉଚ୍ଚାରିଲେ /" (ପୃ.୪୪୨)। 'ଉତ୍ତରାକାଣ୍ଡ'ର ଆରମ୍ଭ ମଧ୍ୟ ଜଗନ୍ନାଥ ବନ୍ଦନାରେ ଓ ପୁରୁଷୋତ୍ତମ କ୍ଷେତ୍ରର ସୂଚନାରେ 'ବନ୍ଦଇଁ ଶ୍ରୀ ଜଗନ୍ନାଥ ମୋହର ଗୋସାଇ / ତ୍ରୈଲୋକ୍ୟ ଲକ୍ଷ୍ମୀର ଯେହୁ ଅଟଇ ସାଇଁ / ଅନନ୍ତ କୋଟି ବ୍ରାହ୍ମାଣ୍ଡର ଠାକୁର ପୁରୁଷ / ଯାହାର ଆଗ୍ରକେ ପ୍ରଭୁ ଅଛନ୍ତି ତ୍ରିଦଶ୍ୟ / ...ଧନ୍ୟ ଧନ୍ୟ କ୍ଷେତ୍ର ଶ୍ରୀ ପୁରୁଷୋତ୍ତମ / ଯହିଁ ବିଜୟେ ପ୍ରଭୁ ଦେବଙ୍କ ଉତ୍ତମ / ପ୍ରାସାଦ ମଧ୍ୟରେ ସୁବର୍ଣ୍ଣ ମଣ୍ଡୋପ / ମଣିମୟ ସିଂହାସନେ ବିଜୟେ ତିନିରୂପ / ବଳଭଦ୍ର ସେଭେଦ୍ରା ଜଗନ୍ନାଥ ସ୍ୱାମୀ / ବାମ ପାଶେଛନ୍ତି ସାହେର ବନ୍ଦିନୀ ।" (ପୃ.୭୦୦,୭୦୧) ।

ଜଗନ୍ନାଥଙ୍କ ପ୍ରତି ଭକ୍ତି ମନୋଭାବ 'ଜଗମୋହନ ରାମାୟଣ'ରେ ମୁଖ୍ୟ ଭକ୍ତି-ଧାରା ଭାବରେ ପ୍ରସାରିତ ହୋଇଛି । କିନ୍ତୁ ଏଥି ସହିତ, ଯାହା ଆଗରୁ କୁହାଯାଇଛି, କବି ଅନ୍ୟାନ୍ୟ ଦେବଦେବୀଙ୍କ ପ୍ରତି ମଧ୍ୟ ସମାନ ଆଗ୍ରହରେ ନିଜର ଭକ୍ତିଭାବନା ପ୍ରକାଶ କରିଛନ୍ତି । ଯେପରି, 'ସୁନ୍ଦରା କାଣ୍ଡ' ରେ ବିଶ୍ୱନାଥଙ୍କ ପ୍ରତି- "ବନ୍ଦଇ ନାରାୟଣ ବାନ୍ଧବ ତ୍ରିପୁରାରି / ତ୍ରିଶୂଳ ଡମ୍ବରୁ ବେନି କରେ ଧରି / ବିଭୂତି ବିଲୋପନ ଜୟ ତୁ ବିଶ୍ୱନାଥ / ଚନ୍ଦ୍ରଶିଖର ସ୍ୱାମୀ ତୁ ଗିରିଜାର କାନ୍ତ । / ପବିତ୍ର ଶରୀର ଶୁଦ୍ଧ ସ୍ଫଟିକର ଆଭା / ଫଣିମଣି କୁଣ୍ଡଳ ଦିଶଇ ମାହା ଶୋଭା / ..." (ପୃ.୩୬୯) ବା 'ଆରଣ୍ୟକ କାଣ୍ଡ'ରେ ଦେବୀ ଦୁର୍ଗା- "ବନ୍ଦଇ ଶରଣମଚ୍ଛଳ ଦୁର୍ଗା ଦେବୀ / ସୁର ନର କିନ୍ନର ଗୋ ତୋହୋର ପାଦେ ସେବି/ ...ନାରାୟଣୀ ଭଦ୍ରକାଳୀ ସାବିତ୍ରୀ ଗୌରୀ / ଜୟ ଜୟ ପାର୍ବତୀ ଗୋ ଶଙ୍କର ମନୋହାରୀ / ବ୍ରହ୍ମାୟେଣୀ ଭଗବତୀ ଭବାନୀ କାଳରାତ୍ରି / ଭଇରୋବୀ ବିକଟା ଅମ୍ବିକା ନାମ ଗୋ ଗାୟତ୍ରୀ,/" (ପୃ.୨୫୭), ବା, 'ଅଯୋଧ୍ୟା କାଣ୍ଡ'ରେ ଦେବୀ କମଳା - "ବନ୍ଦଇ କମଳା ଦେବୀ ବିଷ୍ଣୁର ପାଟରାଣୀ / ଅନନ୍ତ କୋଟି ବ୍ରହ୍ମାଣ୍ଡର ତୁହି ଠାକୁରାଣୀ.../ ସିନ୍ଧୁର ଦୁଲଣୀ ତୋ ନାମ ସର୍ବଭୂତା / ମେଧା ସୁମଧା ତୁ ଜଗତ ଜନମାତା /..." (ପୃ.୧୫୦); ବା, 'ଆରଣ୍ୟକ କାଣ୍ଡ'ରେ ହଳଧାରୀ - "ବନ୍ଦଇ ଜଗନ୍ନାଥ ଅଗ୍ରଜ ହଳଧାରୀ / ରୋହେଣୀ ନନ୍ଦନ ପ୍ରଳୟ ଅନ୍ତକାରୀ/ .... ତାଳଧ୍ୱଜ ଆରୋହଣ ଯେକଇ କୁଣ୍ଡଳ / ଶ୍ରୀମୁଖ ଶୋଭାବନ ଚନ୍ଦ୍ରମା ମଣ୍ଡଳ / ମୁଖ୍ୟ ସ୍ଫଟିକ ପ୍ରାୟେକ ତନୁବର୍ଣ୍ଣ / ଶଙ୍ଖ ଆକାର କୁଣ୍ଡଳ ବେନି କର୍ଣ୍ଣ ।" (ପୃ. ୨୧୮), ଓ 'କିଷ୍କିନ୍ଧା କାଣ୍ଡ'ରେ ଅଗ୍ନିଦେବ - "ନମଇ ହୁତାଶନ ସାହେର ବିଳାସ / ସର୍ବଜୀବ ଜଠରେ ତୁ କରିଅଛୁ ବାସ /.... ରଜତ କୁମୁଦ ପ୍ରାୟେ ଶରୀର ଦିବ୍ୟ ତେଜ / ନୟନ ଯୁଗଳ କି ପ୍ରଭାତର ସୂର୍ଯ୍ୟ / ପିଙ୍ଗଳ କେଶ ତୋର ସୁବର୍ଣ୍ଣ କାନ୍ତି ଜିଣି / ଶିରରେ କିରଟୀ ବିବିଧ ରତ୍ନମଣି /... ରଙ୍ଗବସ୍ତ୍ର ପରିହରଣ ମନ୍ଦାର ପୁଷ୍ପମାଳା / ଯେକମୁଖୀ ରଦ୍ରାକ୍ଷ ଶୋହଇ ତୋର ଗଳା / ବାମକରେ ଅଗ୍ନି ଡାହାଣ କରେ ଜପାମାଳି / କଳାମେଘେ ଯେସନେକ ଝଟକ ବିଜୁଳି ।...' (ପୃ.୨୬୨)

ତେଣୁ ଭକ୍ତିଧାରାର ସ୍ରୋତ 'ଜଗମୋହନ ରାମାୟଣ'କୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସଂଜୀବିତ କରି ରଖିଛି । ଅର୍ଥାତ୍, 'ଜଗମୋହନ ରାମାୟଣ'ର ଘଟନାବଳୀ କେବଳ ବାଲ୍ମିକୀ ରାମାୟଣର ଘଟନାବଳୀର ଅନୁସରଣ ନୁହେଁ, ଭକ୍ତିହିଁ ଏହାର ପ୍ରଧାନ ଆଭିମୁଖ୍ୟ ଯାହା ବିଶେଷ କରି ଜଗନ୍ନାଥଙ୍କୁ ଉପଲକ୍ଷ୍ୟ କରି ପ୍ରକାଶ ପାଇଛି । 'ଲଙ୍କାକାଣ୍ଡ'ରେ ଥିବା 'ଜଗନ୍ନାଥ ଭଜନ' ଏହି ଦୃଷ୍ଟିରୁ ତାତ୍ପର୍ଯ୍ୟ ପୂର୍ଣ୍ଣ :

ଜଗନ୍ନାଥ ଦେଖିବି ଚାହିଁବି ଜଗନ୍ନାଥ, ଜଗନ୍ନାଥ ଛାମୁରେ ଯୋଡିବି ଦୁଇହାତ ।
ଜଗନ୍ନାଥ ବୋଲି ମୁଁ ବଞ୍ଚଇ ହାଦେ ଦିନ, ଜଗନ୍ନାଥ ବିନୁ ଆନେ ନ ବଳଇ ମନ ।
ଜଗନ୍ନାଥ ଶରଣ ମୁଁ ଜଗନ୍ନାଥ ଶାଖା, ଜଗନ୍ନାଥ ବିନୁ ମୋର ଆନେ ନାହିଁ ଲେଖା ।
ଜଗନ୍ନାଥ ମୋହର ପ୍ରାଣର ଆଦିପତି, ଜଗନ୍ନାଥ ବିନୁ ମୁଁ ଆନେ ନ ପାଇବି ମୁଗତି ।
ଜଗନ୍ନାଥ ବିତର୍କେ ନାହିଁ ଆନ ସୁଖ, ଜଗନ୍ନାଥ ମୋହର ଅଟନ୍ତି ପଞ୍ଚଭୂତ ।
ଜଗନ୍ନାଥ ସୁନ୍ଦର ମୁଖ ଚାହିଁ ଚାହିଁ, ହୋଇଲି ବଶ ମୁଁ ଆନେ କାର୍ଯ୍ୟ ନାହିଁ ।

ଆଉ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସୂଚନା 'ଆରଣ୍ୟକ କାଣ୍ଡ'ରେ ଲକ୍ଷ୍ୟ କରାଯାଇ ପାରେ, ଯେଉଁଠି କବି ରାମ,ଲକ୍ଷ୍ମଣ,ସୀତାଙ୍କୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ଏକୀଭୂତ କରିଛନ୍ତି- 'ଦକ୍ଷିଣ ମଉଦଧିରେ ସ୍ନାହାନ ରାମ କଲେ / ଦାରୁ ବ୍ରହ୍ମରୂପେ ଯାଇଣ ଦେଖିଲେ, / ନୀଳଗିରି ସୁନ୍ଦର ଅନନ୍ତ ମୂରତି / ତ୍ରିବିଧ ସ୍ୱରୂପ ଯେ ଦେଖିଲେ ସୀତାପତି / ଶ୍ରୀଜଗନ୍ନାଥ ଆଗେ ଶ୍ରୀରାମ ଉଭା ହୋଇ / ଲକ୍ଷ୍ମଣ ବଳଭଦ୍ର ଛାମୁରେଣ ରହି / ସୀତା ସୁଭଦ୍ରା ଯେ ହୋଇଲେ ଭେଟ ବେନି / ତିନି ଦେବତା ଜାତ ମାନବ ଦେହ ଘେନି /" (ପୃ.୨୨୯) । ଅର୍ଥାତ୍, ରାମଚନ୍ଦ୍ର ଜଗନ୍ନାଥ, ଓ ସେହିହିଁ ପରମ ବ୍ରହ୍ମ ଯେ କି ଦୁଷ୍ଟ ଦଳକ ପାଇଁ ଅବତାର ଗ୍ରହଣ କରିଛନ୍ତି । 'ଜଗମୋହନ ରାମାୟଣ'ର ସଂଗଠନରେ ଏହାହିଁ କବିଙ୍କର ବିଚାରଧାରା ଓ ଦୃଷ୍ଟିଭଙ୍ଗୀ ।

(୪)

'ଜଗମୋହନ ରାମାୟଣ' ବଳରାମଙ୍କର ଶ୍ରେଷ୍ଠ କୃତି, ଓ ଗତ ଛଅଶହ ବର୍ଷର ସମଗ୍ର ଓଡ଼ିଆ ସାହିତ୍ୟରେ ଅନ୍ୟତମ ଶ୍ରେଷ୍ଠ ରଚନା । ଏହାର ଏକମାତ୍ର ତୁଳନୀୟ ସାରଳାଙ୍କ 'ମହାଭାରତ', ଓ ଉଭୟ ଗ୍ରନ୍ଥ, ପରସ୍ପରଠାରୁ ପ୍ରାୟ ୫୦ ବର୍ଷ ବ୍ୟବଧାନରେ, ୧୫ଶ, ୧୬ଶ ଶତାବ୍ଦୀରେ, ଓଡ଼ିଆ ସାହିତ୍ୟର ମୂଳ ଭିତ୍ତି ସ୍ଥାପନ କରିଥିଲେ, ଓ ଓଡ଼ିଆ ଜାତିର ନିଜସ୍ୱ ପରିଚୟ ପ୍ରତିଷ୍ଠିତ କରିଥିଲେ । ଏ କେବଳ ରାଜନୈତିକ ଓ ସାମାଜିକ ନୁହେଁ, ସାଂସ୍କୃତିକ ବି । ବିଶେଷ କରି ଶ୍ରୀଜଗନ୍ନାଥ ଓ ପୁରୀକୁ କେନ୍ଦ୍ର କରି ଜୀବନ ସଂପର୍କରେ ଯେଉଁ ନୂତନ ଅବବୋଧ ଓ ଚିନ୍ତାଧାରା ପ୍ରକାଶ ପାଇଲା, ଓ ଯେଉଁ ସାଧକ କବିମାନେ ପ୍ରଧାନ ପ୍ରବକ୍ତା ଭାବରେ ଏହି ନୂତନ ଚିନ୍ତାଧାରାକୁ ପ୍ରସାରିତ କଲେ ବଳରାମ ସେମାନଙ୍କ ମଧ୍ୟରେ ଅନ୍ୟତମ । କୁହାଯାଇପାରେ ଗୋଟିଏ ନୂତନ ପରଂପରାର ଆରମ୍ଭ ହେଲା ଓ ଏହି ପରଂପରା ଜନଜୀବନରେ ପ୍ରତିଷ୍ଠିତ ହେଲା । ଏ କେବଳ ସମକାଳୀନ ଧର୍ମ, ଦର୍ଶନ ବା ଜୀବନର ନୀତି ସଂପର୍କରେ ଆଲୋଚନା ନୁହେଁ । ମୂଳ ଉଦ୍ଦେଶ୍ୟ ସରଳ କାବ୍ୟ-ସଂଗଠନରେ ଓ ଲୋକମାନେ ସହଜରେ ବୁଝି ପାରୁଥିବା ଚଳନ୍ତି ଭାଷାରେ ଲୋକ-ଚରିତ୍ରର ଉନ୍ନତି ପାଇଁ, ଲୋକମାନଙ୍କ ମନରେ ସାହସ ଓ ଦମ୍ଭ ଆଣିଦେବା ପାଇଁ, ଧର୍ମ ଓ ଜୀବନ ଦଶର୍ନର ମୂଳ କଥା ସବୁକୁ ବ୍ୟାଖ୍ୟା କରିବା । ଷୋଡଶ ଶତାବ୍ଦୀର ପରିବର୍ତ୍ତିତ ରାଜନୈତିକ ଅବସ୍ଥାରେ ସମାଜର ଚଳଣିରେ ସଙ୍ଗତି ଓ ସଂହତି ଆଣିବା ପାଇଁ ଏପରି ଲେଖା ସବୁର ଆବଶ୍ୟକତା ଥିଲା, ଓ ବଳରାମ ଓ ତାଙ୍କର ସହଯୋଗୀମାନଙ୍କର (ଯେଉଁମାନଙ୍କୁ ପରେ ପଂଚସଖା ବୋଲି କୁହାଗଲା) ଲେଖାମାନଙ୍କରେ ବିଶିଷ୍ଟ ଭାବରେ ଏହି ଆବଶ୍ୟକତାର ପୂରଣ ହେଲା । ବଳରାମଙ୍କର 'ବ୍ରହ୍ମାଣ୍ଡ ଭୂଗୋଳ' ଏହିପରି ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥ । ଏଥିରେ ଉଭୟ ଆଧିଭୌତିକ ଓ ଆଧିବିଦ୍ୟକ ଶୃଙ୍ଖଳା ବିଷୟରେ କୁହାଯାଇଛି । ବ୍ୟକ୍ତି ଯେଉଁ ଜ୍ଞାନ ଲାଭ କରେ ସେ କୌଣସି ବାହାରର ଅନୁଭୂତି ନୁହେଁ, ସେ ନିଜ ଭିତରୁ ଆସେ । ଲୋକ ନିଜର ଜ୍ଞାନ ବା ନିଜର ଧାର୍ମିକ ବ୍ୟବହାରର ପ୍ରଚାର ପାଇଁ ଯେତେ କାର୍ଯ୍ୟ କରେ, ସେସବୁ ନିଜ ସତ୍ତାର ବାହାରର ବସ୍ତୁ, ପ୍ରକୃତ ଜ୍ଞାନ ସହିତ ତାର ସଂପର୍କ ନାହିଁ, ବା ସେ ସବୁରୁ ସେ କୌଣସି ପ୍ରକୃତ ଜ୍ଞାନ ଆହରଣ କରି ପାରେନା । ସେଥିପାଇଁ ନିଜର ସତ୍ତାକୁ ଦେଖିବାକୁ ହେବ, କାରଣ ଏକମାତ୍ର ନିଜ ଠାରେ ହିଁ ପ୍ରକୃତ ଜ୍ଞାନ ରହିଛି, ଓ ସେହିହିଁ ପ୍ରକୃତ ଜ୍ଞାନୀ ଯେ ଏ କଥାକୁ ବୁଝିପାରେ, ଓ ଜ୍ଞାନ ଆହରଣ କରି ନିଜକୁ ସେହି ଜ୍ଞାନର ଧାରାରେ ପରିଚାଳିତ କରିପାରେ । ଏହି ଜ୍ଞାନର ମୂଳସୂତ୍ର ହେଉଛି ପରମବ୍ରହ୍ମଙ୍କ ସଂପର୍କରେ ସଚେତ ହେବା, ଯେ କି ସବୁ ଗୁଣର ଉର୍ଦ୍ଧ୍ୱରେ, 'ତ୍ରିକୂଟ'ର ଶୀର୍ଷରେ ଅବସ୍ଥାନ କରନ୍ତି, ଓ ସଂପୂର୍ଣ୍ଣ ଆଲୋକିତ ସ୍ଥିତିରେ ନିଜକୁ ପ୍ରକାଶିତ କରନ୍ତି । ସେ ଭସ୍ମରେ ଅଗ୍ନିପରି, ଜଳରେ ଦେହର ପ୍ରତିବିମ୍ବ ପରି, ବା ଦର୍ପଣରେ ମୁହଁର ପ୍ରତିଛାୟା ପରି । ତାଙ୍କ ବିଷୟରେ ସଚେତ ହେଲେ ପ୍ରଦୀପ ଅଂଧକାର ଦୂରୀଭୂତ କଲା ପରି ମନର ଅଂଧକାର ଦୂରୀଭୂତ ହୋଇଯାଏ, ଓ ଦେହର ଉତ୍ତାପ ଶୀତଳ ହୁଏ:

ବୋଲନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଅର୍ଜୁନ ଗ୍ୟାନ ବାଣୀ ।
ଯେ ଗ୍ୟାନଂ ତହିଁ ଉପଦେଶ । ଜାଣିଲେ ତା'ପ ହୁଏ ନାଶ,
ଗୃହ ଯେସନେ ଅନ୍ଧକାର । ପ୍ରଦୀପ ଜାଳନ୍ତେ ନିର୍ମଳ ।
ତେମନ୍ତ ମୋହର ବଚନ । ପ୍ରଦୀପ ଅଟଇ ଅର୍ଜୁନ ।
ସଂସାରେ ମୂଢ଼ ପ୍ରାଣୀମାନେ । ଗ୍ୟାଂନ ନ ଜାଣି ଟାଣପଣେ ।
ମିଛେ ହେଁ ଟାଣି ହଉଥାନ୍ତି । ଆମ୍ଭେ ଗ୍ୟାଂନ ଜାଣୁ ବୋଲନ୍ତି ।

କେ ଅବା ସଂସାର ସାଗରେ । ବୈଷ୍ଣବ ବେଶ ନିରନ୍ତରେ ।
ମାଳା ତିଳକ ଧରିଥାନ୍ତି । ବ୍ୟଅର୍ଥେ ସଂସାରେ ଭ୍ରମନ୍ତି ।
ଜଟା ବିଭୂତି କେ ଭୂଷଣ । କେ ଫଳ ଆହାର କରିଣ ।
କେ ବ୍ରତ ବାର ନିୟମରେ, କେ ତୀର୍ଥ ସାଗରକୁ ଗଲେ ।
କେ ବା ନାନା ତୀର୍ଥର ଭ୍ରମଇ । କେ ବା ନିଶୋହା ହୋଇ ରହି ।
ଯେ ସର୍ବମିଥ୍ୟା ହୋ ଅର୍ଜୁନ । ମୁଇ ସତ୍ୟ ଗ୍ୟାନୀ ନିର୍ଗୁଣ ।
ଅନିତ୍ୟ ଶ୍ୱରୀର ନିର୍ଗୁଣ । ତ୍ରିକୂଟ ପରେ ଦେଖ ବୀର ।
ଭସ୍ମ ଭିତରେ ଅଗ୍ନି ଯେହ୍ନେ । ମୋ ରୂପ ତ୍ରିକୂଟରେ ତେହ୍ନେ ।
ପାଣି ଭିତରେ ଦେହ ଯେହ୍ନେ । ବ୍ରହ୍ମ ଦ୍ରୋଛନା ଦେହ ତେହ୍ନେ ।
ଦର୍ପଣେ ମୁଖ ଯେହ୍ନେ ଦିଶି । ଧ୍ୟାନେ ଚାହାନ୍ତେ ତେହ୍ନେ ଦିଶି । (ପୃ. ୮୭୮)

ଶୂନ୍ୟ ଶୂନ୍ୟରେ ଅବସ୍ଥାନ କରେ । ଏ ଠିକ୍ ଦର୍ପଣର ଉଜ୍ଜ୍ୱଳତା ପରି, ବା ଅଗ୍ନିର ଜ୍ୟୋତି ପରି । ପ୍ରତ୍ୟେକ ଭକ୍ତ ବା ସାଧକର ନିଜର ଦେହ ବା ଘଟରେ ଯେ ପରମ ବ୍ରହ୍ମ ରହିଛନ୍ତି, ଏହା ବୁଝିବା ଏକାନ୍ତ ଆବଶ୍ୟକ । ଏହାହିଁ ପ୍ରକୃତ ଜ୍ଞାନ । ପ୍ରତୀକତାରେ ଓ ଧନ୍ଦାମୂଳକ ଆଚ୍ଛାଦନରେ କବି ନିଜର ଅନୁଭୂତି ପ୍ରକାଶ କରିଛନ୍ତି । ଯେପରି ଦ୍ୱାଦଶ ଅଧ୍ୟାୟରେ :

ଯେ ଅଣାକାର ଶୂନ୍ୟ ଭୂଇଁ । ତହିଁରେ ଚନ୍ଦ୍ରସୂର୍ଯ୍ୟ ନାହିଁ ।
ଯେ ଯେତେ ଜାଗଯଜ୍ଞମାନ । ସେ ଆନେ ନାହିଁ ହୋ ଅର୍ଜୁନ ।
ସେ ବ୍ରହ୍ମରୂପ ନିର୍ବିକଳ୍ପେ, ଅନାଦି ପରମ ଅଗୋପ୍ୟ ।
ଉତୁସୀ (ଅତସି) ପୁଷ୍ପ ପ୍ରାୟେ ବର୍ଣ୍ଣ, ତା ମଧ୍ୟେ ପ୍ରଭୁ ନିରଞ୍ଜନ ।
ତା ମଧ୍ୟେ ଜ୍ୟୋତି ବ୍ରହ୍ମ ରହି । ମଧ୍ୟେ ବାଳୁତ ଦିଶଇ ।
ବାଳୁତ ମଧ୍ୟେ ମହାବ୍ରହ୍ମ । ସେ ବ୍ରହ୍ମ ସକଳ ଘଟଣ । (ପୃ. ୮୭୬)

ବଳରାମ ଏକାଧାରରେ କବି, ଭକ୍ତ ଓ ସାଧକ, ଓ ପ୍ରତ୍ୟେକ କ୍ଷେତ୍ରରେ ସେ ଅନନ୍ୟ ଗୁଣର ଅଧିକାରୀ ହୋଇଥିଲେ । ସେ ଷୋଡଶ ଶତାବ୍ଦୀର ସାହିତ୍ୟିକ ପରଂପରା, ବିଶେଷ କରି ଭକ୍ତି ସାହିତ୍ୟର ପରଂପରାରେ ବଢ଼ି ଉଠିଥିଲେ ଓ ଏହି ପରଂପରାର ତିନୋଟି ମୁଖ୍ୟ ଧାରା - ଜ୍ଞାନ, ଯୋଗ ଓ ଭକ୍ତିର ସମିଶ୍ରଣ ତାଙ୍କ ଲେଖାମାନଙ୍କରେ ହୋଇଥିଲା, ଓ ସେ ନିଜସ୍ୱ ଉପସ୍ଥାପନା ଓ ବିଶ୍ଳେଷଣରେ ଏହି ପରଂପରାକୁ ଋଦ୍ଧିମନ୍ତ କରିଥିଲେ । ବଳରାମଙ୍କର କାବ୍ୟ-ପ୍ରତିଭାର ବିଚାରର ଏ ଗୋଟିଏ ଦିଗ । ଅନ୍ୟ ଦିଗରେ, ସାରଳା ଦାସଙ୍କ ପରି, ତାଙ୍କର ମାନସିକ ଅବବୋଧ ଓ ଦୃଷ୍ଟିଭଙ୍ଗୀର ବିଚିତ୍ରତା ଓ ବିସ୍ତାର ବର୍ତ୍ତମାନ କାଳର ପାଠକକୁ ବିସ୍ମିତ କରେ । ଏହାହିଁ ବଳରାମଙ୍କର ଲେଖାର ବିଶେଷତ୍ୱ । ତାଙ୍କର 'ଜଗମୋହନ ରାମାୟଣ', 'ଲକ୍ଷ୍ମୀପୁରାଣ' ବା 'କାନ୍ତ କୋଇଲି' ପରି କବିତା ଗୋଟା ନିର୍ଦ୍ଦିଷ୍ଟ ସମୟର ପରିପ୍ରେକ୍ଷୀରେ ଲେଖା ହେଲେ ବି ସେ ସବୁର ମାନବିକ ଆବେଗ, ମାନସିକ କ୍ରିୟା ପ୍ରତିକ୍ରିୟା ଓ ପାଠକୀୟ ସମପ୍ରାଣତା କୌଣସି କାଳର ଅବଧିର ସୀମିତ ନୁହେଁ । ଏହାହିଁ ସାରଳାଙ୍କ ପରି ବଳରାମଙ୍କର ପ୍ରାସଙ୍ଗିକତା ଓ ଗୁରୁତ୍ୱ ।

ଯତୀନ୍ଦ୍ର ମୋହନ ମହାନ୍ତି

# ଉପକ୍ରମ

ଜଗମୋହନ ରାମାୟଣ ଓଡ଼ିଆ ସାହିତ୍ୟର ଚତୁର୍ଥ ପୁରାଣ ଓ ପ୍ରଥମ ସମ୍ପୂର୍ଣ୍ଣ ରାମାୟଣ । ନୀଳାଚଳପତି ଜଗନ୍ନାଥ ନିଜେ ଏହାର କବି । ବଳରାମ ଦାସ ଏହାର ଲେଖନକାର । ଜଗନ୍ନାଥ ଡାକନ୍ତି, ହୃଦରେ ବସି କହି ଦିଅନ୍ତି ଓ ବଳରାମ ଲେଖିଯାଆନ୍ତି । ବେଳେବେଳେ ଲେଖନୀ ଅଟକିଯାଏ । ପଦସ୍ଫୁରଣ ହୁଏନାହିଁ । ବିଶେଷକରି ଗୋଟିଏ କାଣ୍ଡରୁ ଆର କାଣ୍ଡକୁ ଯିବାବେଳେ ବଳରାମ ଏହି ଅସୁବିଧାର ସମ୍ମୁଖୀନ ହେଉଥିଲେ । ସେତେବେଳେ ସେ ଜଗନ୍ନାଥ ବା ତାଙ୍କ ପରିବାରର ଲୋକଙ୍କୁ ବା ଗ୍ରନ୍ଥର ବକ୍ତା ଶିବଙ୍କୁ ସ୍ମରଣ କରି ନୂତନ ପ୍ରେରଣାରେ ଶକ୍ତିମାନ ହୋଇ ପୁଣି ଲେଖିବାକୁ ଆରମ୍ଭ କରୁଥିଲେ । ଭକ୍ତକବି ଓ ଭଗବାନଙ୍କ ଏହି ଲୀଳାଖେଳା ମଧ୍ୟରେ ଏହି ଗ୍ରନ୍ଥର ସୃଷ୍ଟି ଓ ବିକାଶ । ଏ ଦୃଷ୍ଟିରୁ ଏହା ଏକ ଅପୂର୍ବ ଗ୍ରନ୍ଥ । କବି କହିଛନ୍ତି-

ମହାପାତ୍ର ସମନାଥର ଅଟଇ ତନୟେ
ବଳରାମ ଦାସ ଅପୂର୍ବ ଗୀତ ଗାଏ । (ଉତ୍ତରା କାଣ୍ଡ)

ଏହି ଅପୂର୍ବ ଗୀତାର ଆଦିକବି ହେଲେ ମହାମୁନି ବାଲ୍ମୀକି । କବି ମତରେ 'ଯେହାଉଂ ଆଗତ ଯେ ପୁରାଣ ନଥିଲା, ଯେହାର ଉଦେ ହୁଅନ୍ତେ ଜଗତେ ପ୍ରକାଶିଲା ।' ତେବେ ଏହି ଗ୍ରନ୍ଥ ପ୍ରକାଶର ଏକ ନିର୍ଦ୍ଦିଷ୍ଟ କ୍ରମ ଥିଲା । ଈଶ୍ୱର ପୁରୁଷ ସବୁ ସୃଷ୍ଟି କଲାପରି ବେଦ ପୁରାଣ ମଧ୍ୟ ସୃଷ୍ଟି କରିଥିଲେ । ଏହି ଗ୍ରନ୍ଥର ମୂଳ କଥା ବ୍ରହ୍ମା କହିଲେ ନାରଦଙ୍କୁ । ନାରଦ କହିଲେ ବାଲ୍ମୀକିଙ୍କୁ । ଏହି କଥାର ସୂତ୍ର ବାଲ୍ମୀକିଙ୍କ ହୃଦୟ ମଧ୍ୟରେ କେଉଁ ଅଜଣା କୋଣରେ ଲୁଚି ରହିଥିଲା । ଦିନେ କୌଣସି ଏକ ବ୍ୟାଧ କ୍ରୌଞ୍ଚ ଦମ୍ପତିକୁ ଶରବିଦ୍ଧ କଲା । କ୍ରୌଞ୍ଚୀର କ୍ରନ୍ଦନରେ ବାଲ୍ମୀକିଙ୍କ ଶାନ୍ତ ଚିତ୍ତ ବିଗଳିତ ହୋଇଗଲା । ଅକସ୍ମାତ୍ ତାଙ୍କ ମୁଖରୁ ନିର୍ଗତ ହେଲା ଗୋଟିଏ ଶ୍ଳୋକ । କରୁଣ ରସାଶ୍ରିତ ଏହି ଶ୍ଳୋକଟି ହେଲା ରାମାୟଣ ସୃଷ୍ଟିର ମୂଳ ଉତ୍ସ । ଜଗତରେ ସୁଖ କ୍ଷଣିକ, ଆନନ୍ଦ ଅପେକ୍ଷା ନିରାନନ୍ଦ ଅଧିକ । ଏହି ବାଣୀ ହିଁ ରାମାୟଣରେ ପ୍ରଚାରିତ । ରାମ ଜନ୍ମ ନେଲେ ଜଣେ ଅପୁତ୍ରକ ପିତାର ସନ୍ତାପ ମଧ୍ୟରୁ । ଜନ୍ମହେବାର ଆନନ୍ଦ କିଛି ଦିନ ପରେ ଅପସାରିତ ହୋଇଗଲା । ବିଶ୍ୱାମିତ୍ର ଆସିଲେ ଅଯୋଧ୍ୟାକୁ ରାମଙ୍କୁ ନେବାପାଇଁ । ରାମ ଗଲେ ଲକ୍ଷ୍ମଣଙ୍କ ସହିତ । ତାଡ଼କୀ, ସୁବାହୁକୁ ବଧ କଲେ । ବିଶ୍ୱାମିତ୍ରଙ୍କ ଯଜ୍ଞ ପୂର୍ଣ୍ଣ ହେଲା । ସେଠାରୁ ସେ ଗଲେ ମିଥିଳାକୁ । ଧନୁଭଗ୍ନ କରି ସୀତାଙ୍କୁ ବିବାହ କଲେ । ଫେରି ଆସିଲେ ଅଯୋଧ୍ୟାକୁ । ଅଭିଷେକର ଆୟୋଜନ ହେଲା । ବିବାହ, ମିଳନ ଓ ଅଭିଷେକର ଆନନ୍ଦ କ୍ଷଣକ ମଧ୍ୟରେ ଉଭେଇ ଗଲା । ରାମ ପୁଣି ଚାଲିଲେ ବନକୁ । ଏଥର ଲକ୍ଷ୍ମଣଙ୍କ ସହ ସୀତା ମଧ୍ୟ ବନକୁ ଗଲେ । ରାଜ୍ୟରୁ ନିର୍ବାସିତ ହୋଇ ମଧ୍ୟ ଶ୍ରୀରାମ ବନରେ ଶାନ୍ତି ପାଇଲେ ନାହିଁ । ବଣ ପର୍ବତରେ ବୁଲୁଥିବାବେଳେ, ସେହି ଦୈହିକ ଦୁଃଖ ମଧ୍ୟରେ ସୀତାହରଣ ପର୍ବ ଅନୁଷ୍ଠିତ ହେଲା । ରାମ କାନ୍ଦିଲେ, ଲକ୍ଷ୍ମଣ ବି କାନ୍ଦିଲେ । ଏହି କାନ୍ଦ ମଧ୍ୟରେ ସୁଗ୍ରୀବ ସହ ମିତ୍ର ହେଲେ । ବାଳୀ ବଧ କଲେ । ସୈନ୍ୟ ସଜ କରି ଲଙ୍କା ଆକ୍ରମଣ କଲେ । ରାବଣକୁ ବଧ କରି ଫେରି ଆସିଲେ ଅଯୋଧ୍ୟାକୁ । ଅଭିଷେକ ହେଲା । ଶ୍ରୀରାମ ରାଜାଧିରାଜ ହୋଇ ସୁଖ ଓ ଶାନ୍ତିରେ ପ୍ରଜାପାଳନ କଲେ ସତ, କିନ୍ତୁ ନିଜ ସୁଖକୁ ନିଜେ ଆୟତ୍ତ କରିପାରିଲେ ନାହିଁ । ରାଜାର ଆଦର୍ଶ ପାଇଁ ନିଜ ପ୍ରାଣପ୍ରିୟା ପତ୍ନୀ ସତୀ ଶିରୋମଣି ସୀତାଙ୍କୁ ବଣରେ ଛାଡିଦେଲେ ଅତି ନିଷ୍ଠୁର ଭାବେ । ପତ୍ନୀ ବିରହରେ ପୁଣି କାନ୍ଦିବାକୁ ଆରମ୍ଭ କଲେ । ରାଜା ଭାବେ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ, ନିଜର

ପ୍ରତିଷ୍ଠା ପ୍ରଦର୍ଶନ କରିବା ପାଇଁ । ଅଥଚ ସେହି ଆନନ୍ଦ ମିଳେଇ ଗଲା ସୀତାଙ୍କ ପାତାଳ ପ୍ରବେଶରେ ଏବଂ ପରେ ପରେ ଲକ୍ଷ୍ମଣଙ୍କ ବିସର୍ଜନରେ । ରାମାୟଣରେ କେବଳ ରାମ ଯେ କାନ୍ଦିଥିଲେ ତାହା ନୁହେଁ । ସେ କନ୍ଦେଇଥିଲେ, ପିତା, ମାତା, ଭ୍ରାତା, ପତ୍ନୀ, ବନ୍ଧୁବାନ୍ଧବ ଓ ଶେଷରେ ପ୍ରଜାମାନଙ୍କୁ । ଏପରିକି ସ୍ଥିତପ୍ରଜ୍ଞ ଋଷିମାନେ ମଧ୍ୟ ରାମଙ୍କ ଏହି ଦୁଃଖରେ ନ କାନ୍ଦି ରହି ପାରି ନ ଥିଲେ । ଦୁଃଖ, ଶୋକ, ନିରାଶ ଓ ନିରାନନ୍ଦ ମଧ୍ୟରେ ରାମାୟଣର ଗତି । ଶୋକରୁ ଏହାର ଆରମ୍ଭ, ଶୋକରେ ଏହାର ସମାପ୍ତି । ଶୋକ ବା କରୁଣ ରସ ହେଲା ଏହି ମହାନ୍ ଗ୍ରନ୍ଥର ଆତ୍ମା ।

କରୁଣରସର ଏହି ମହାକାବ୍ୟ ଭାରତରେ ବହୁ କବି, ନାଟ୍ୟକାର, ଏପରିକି ଆଳଙ୍କାରିକଙ୍କୁ ଆକୃଷ୍ଟ କଲା । ପ୍ରାୟ ସବୁ ପୁରାଣରେ ଏହି କଥା ପ୍ରଚାରିତ ହେଲା । ଧୀରେ ଧୀରେ ଏହି ଗ୍ରନ୍ଥର ମହିମା ଭାରତର ସୀମାକୁ ଅତିକ୍ରମ କରି ସମସ୍ତ ବିଶ୍ୱରେ ପ୍ରସାରିତ ହେଲା । ପୃଥିବୀରେ ଏପରି ଏକ ଦେଶ ନାହିଁ, ଯେଉଁଠି ରାମାୟଣ ନାହିଁ ।

ସଂସ୍କୃତ ଭାଷାର ଏକାଧିପତିତ୍ୱ ସବୁଦିନେ ସମାନ ଭାବେ ରହିବା ସମ୍ଭବ ହେଲାନାହିଁ । ଏକପକ୍ଷରେ ସଂସ୍କୃତ, ପାଲି, ପ୍ରାକୃତ, ଅପଭ୍ରଂଶ ଭାଷା ମଧ୍ୟ ଦେଇ ଯେପରି ଆଧୁନିକ ଭାରତୀୟ ଭାଷା ସବୁର ସୃଷ୍ଟି ହେଲା, ସେହିପରି ଅନ୍ୟପକ୍ଷରେ ତାମିଲ୍, ତେଲୁଗୁ, କାନାଡା ପ୍ରଭୃତି ଦ୍ରାବିଡୀୟ ଭାଷାର ବିକାଶ ହେଲା । ସବୁ ଭାଷାରେ ସମସ୍ତେ ଚାହିଁଲେ ରାମାୟଣ ଲେଖିବାକୁ । ସମସ୍ତେ ଚାହିଁଲେ ନିଜ ମାତୃଭାଷାରେ ରାମାୟଣ ପଢିବାକୁ । ଓଡ଼ିଆ ଭାଷାରେ ଆଦିକବି ସାରଳା ଦାସ ଏହି କାର୍ଯ୍ୟ ଆରମ୍ଭ କରିଥିଲେ ସତ; କିନ୍ତୁ ସାତକାଣ୍ଡ ବିଶିଷ୍ଟ ସମ୍ପୂର୍ଣ୍ଣ ରାମାୟଣ ଲେଖିଲେ ଭକ୍ତକବି ବଳରାମ ଦାସ । ଗ୍ରନ୍ଥର ସମାପ୍ତ କଲାବେଳେ ସେ ସେଥିପାଇଁ ସଦମ୍ଭରେ କହିଲେ-

'ସାତକାଣ୍ଡ ରାମାୟଣ ଅଟଇ ଲକ୍ଷେ ପଦ
ଶୁଣ ମୋହର ଗ୍ରନ୍ଥ ଅଟଇ ସମ୍ପଦ ।' (ଉତ୍ତରାକାଣ୍ଡ)

ବାଲ୍ମୀକି ଓ ବଳରାମଙ୍କ ମଧ୍ୟରେ ପ୍ରାୟ ତିନିହଜାର ବର୍ଷର ବ୍ୟବଧାନ । ଏହି ଦୀର୍ଘକାଳ ମଧ୍ୟରେ ବାଲ୍ମୀକି ରାମାୟଣ ବହୁ ଭାବେ ପରିବର୍ତ୍ତିତ ହୋଇଗଲା । ଆଲୋଚକଙ୍କ ମତରେ ପ୍ରଥମେ ଏଥିରେ ଆଦି ଓ ଉତ୍ତରାକାଣ୍ଡ ନଥିଲା । ଏହି ଦୁଇଟି କାଣ୍ଡ ରାମାୟଣରେ ପରବର୍ତ୍ତୀ ସଂଯୋଜନା । ସେହିପରି ଗ୍ରନ୍ଥ ମଧ୍ୟରେ ବହୁ ନୂଆ ପଦ ଓ ନୂଆ ପ୍ରସଙ୍ଗ ସଂଯୋଜିତ ହେବାକୁ ଲାଗିଲା । ଏହି ବିକାଶକ୍ରମରେ ଏପରି ଏକ ସମୟ ଆସିଲା, ଯେତେବେଳେ ରାମାୟଣର ମୂଳ ରୂପରେ ପ୍ରାୟ ଏକତୃତୀୟାଂଶ ଆଞ୍ଚଳିକ ଭେଦରେ ଅଲଗା ହୋଇଗଲା । ସମାଲୋଚକମାନେ ଏହି ପାର୍ଥକ୍ୟକୁ ଦୃଷ୍ଟିରେ ରଖି ରାମାୟଣର ତିନୋଟି ରୂପ ସ୍ଥିର କଲେ- ଦକ୍ଷିଣରେ ଦାକ୍ଷିଣାତ୍ୟ ପାଠ, ଉତ୍ତର ପଶ୍ଚିମରେ ଉତ୍ତର ପଶ୍ଚିମୀୟ ପାଠ ଓ ପୂର୍ବାଞ୍ଚଳରେ ପୂର୍ବୀ ପାଠ ବା ଗୌଡ଼ୀୟ ପାଠ । ବଳରାମ ପୂର୍ବାଞ୍ଚଳର ଅଧିବାସୀ ହୋଇଥିବାହେତୁ ତାଙ୍କ ରାମାୟଣ ଉପରେ ପୂର୍ବୀପାଠର ପ୍ରଭାବ ଅଧିକ ଭାବେ ପରିଦୃଷ୍ଟ ହୁଏ ।

ଭାରତୀୟ ଧର୍ମ ଓ ସଂସ୍କୃତିର ଚେତନା ପ୍ରମାଣିତ ହୁଏ ମହାଭାରତ ଓ ରାମାୟଣରେ । ପ୍ରଥମଟିର ନାୟକ ଶ୍ରୀକୃଷ୍ଣ ଓ ଦ୍ୱିତୀୟର ନାୟକ ଶ୍ରୀରାମ । କାଳକ୍ରମେ ଉଭୟେ ମହାମାନବରୁ ଭଗବାନରେ ପରିଣତ ହେଲେ । ମହାଭାରତ ଓ ରାମାୟଣର ମୂଳକଥାରେ ଭଗବାନଙ୍କ ଲୀଳାତତ୍ତ୍ୱ ସମାବିଷ୍ଟ ହେଲା । ଉଭୟ ଗ୍ରନ୍ଥ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହେଲା । ରାମ ଓ କୃଷ୍ଣଙ୍କ ଭଗବାନତ୍ୱ ପ୍ରଦର୍ଶନ କରିବା ପାଇଁ ନୂଆ ନୂଆ ଗ୍ରନ୍ଥ ରଚିତ ହେଲା । ରାମ କଥାକୁ ନେଇ ରଚିତ ହେଲା, କାଳିଦାସଙ୍କ ବିଶ୍ୱବିଶ୍ରୁତ ମହାକାବ୍ୟ 'ରଘୁବଂଶମ୍' । ହନୁମାନ ରଚନା କଲେ 'ମହାନାଟକ' ଓ ଭବଭୂତି ରଚନା କଲେ 'ଉତ୍ତର ରାମ ଚରିତମ୍' । ରାମ କଥାକୁ ନେଇ ରଚିତ ହେଲା 'ଅଧ୍ୟାତ୍ମ ରାମାୟଣ', 'ଯୋଗବାଶିଷ୍ଠ ରାମାୟଣ' ଓ 'ଅଦ୍ଭୁତ ରାମାୟଣ' ପରି ଅନୁପମ ଗ୍ରନ୍ଥ । ଏସବୁ ନାଟକ, କାବ୍ୟ, ପୁରାଣ ମଧ୍ୟଦେଇ ରାମକଥାର ସୁଅ ବହି ଆସିଲା ଓଡ଼ିଶା ଭିତରକୁ ।

ସେଥିପାଇଁ ରାମକବି ବଳରାମ ବାଲ୍ମୀକି ରାମାୟଣକୁ ଆଦର୍ଶ ରୂପେ ଗ୍ରହଣ କରିଥିଲେବି ଜଗମୋହନ ରାମାୟଣ କେବଳ ବାଲ୍ମୀକି ରାମାୟଣର କଥାବସ୍ତୁ ଉପରେ ଆଧାରିତ ନୁହେଁ । ବଳରାମ ତାଙ୍କ ଦେଶରେ ସେତେବେଳେ ଲୋକପ୍ରିୟ ହୋଇଥିବା ରାମକଥାକୁ ତାଙ୍କ ଗ୍ରନ୍ଥରେ ସ୍ଥାନ ଦେଲେ । ଏହା କେତେବେଳେ ତାମିଲ ଭାଷାର ସୀମାକୁ ସ୍ପର୍ଶ କଲା ତ କେତେବେଳେ ହିମାଳୟର ପାଦଦେଶକୁ ଆଲିଙ୍ଗନ କଲା, କେତେବେଳେ ପଶ୍ଚିମାଞ୍ଚଳରେ ପରିଭ୍ରମଣ କଲା ତ କେତେବେଳେ ପୂର୍ବାଞ୍ଚଳରେ ବିଚରଣ କଲା । ତାଙ୍କ ରାମକଥାକୁ ସରସ, ସୁନ୍ଦର, ଲୋକପ୍ରିୟ କରିବା ପାଇଁ ବିଶେଷ କରି ଜଗତକୁ ମୋହିବା ପାଇଁ ସେ ଯେଉଁଠି ଯେଉଁ ନୂଆ କଥା ପାଇଲେ, ତାକୁ ତାଙ୍କ ଗ୍ରନ୍ଥରେ ଯଥାସ୍ଥାନରେ ରଖି ତାଙ୍କ ରାମାୟଣର 'ଜଗମୋହନ' ନାମକୁ ସାର୍ଥକ କରିଥିଲେ । ତାଙ୍କ ରାମାୟଣ ମୂଳତଃ ବାଲ୍ମୀକି ରାମାୟଣକୁ ଆଶ୍ରୟ କରିଥିଲେ ବି, ଏଥିରେ 'ଅଧ୍ୟାତ୍ମ ରାମାୟଣ', 'ବ୍ରହ୍ମପୁରାଣ', 'ରଘୁବଂଶ', 'ମହାନାଟକ', 'ଉତ୍ତରରାମଚରିତ', 'ଅନର୍ଘ ରାଘବ', 'ପ୍ରସନ୍ନ ରାଘବ'ର କଥାକୁ ଦେଖାଯାଇପାରେ । ଏଥିରେ କେବଳ ସଂସ୍କୃତ ଭାଷାରେ ରଚିତ ଗ୍ରନ୍ଥର ପ୍ରଭାବ ନୁହେଁ, ତାଙ୍କ ପୂର୍ବରୁ ଲେଖାଯାଇଥିବା ତାମିଲ, ତେଲୁଗୁ, ଆସାମୀ ରାମାୟଣର ସ୍ପର୍ଶ ମଧ୍ୟ ମିଳିଥାଏ । ଏହି ଦୃଷ୍ଟିରୁ ଦେଖିଲେ ତାଙ୍କ ରାମାୟଣ ରାମକଥାର ଏକ ବିଶ୍ୱକୋଷ ।

ବଳରାମ ଜାତିରେ ଶୂଦ୍ର ଥିଲେ । 'ଜନ୍ମେଣ ଉତ୍ତମ ମୁଁ ଅଟଇ ଶୂଦ୍ରଜାତି ।' ଶୂଦ୍ର ଜାତିର ପରିଭାଷା ଅତି ବ୍ୟାପକ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କ ବ୍ୟତୀତ ଆଉ ଯେଉଁମାନେ ରହିଗଲେ ସମସ୍ତେ ଶୂଦ୍ର । ଷୋଡଶ ଶତାବ୍ଦୀ ବେଳକୁ ଗୀତାର ଏହି ମହାନ୍ ବାକ୍ୟ ଦ୍ୱାରା ଜାତି ବିଚାର କରିବା ସମ୍ଭବ ନଥିଲା । ସେତେବେଳକୁ ଏ ଦେଶରେ ବହୁ ଉପଜାତିର ସୃଷ୍ଟି ହୋଇସାରିଥିଲା । ମୁସଲମାନଙ୍କ ଆଗମନ ପରେ ଭାରତୀୟ ଜାତି-ପ୍ରଥା ଆହୁରି ବିଶୃଙ୍ଖଳିତ ହୋଇଗଲା । ବୁଦ୍ଧଦେବ, ମହାବୀର ଜୈନଙ୍କ ପ୍ରଚାର ଫଳରେ ଧର୍ମପ୍ରଚାରର ଦାୟିତ୍ୱ ବ୍ରାହ୍ମଣଙ୍କ ହାତଛଡ଼ା ହୋଇଗଲା । ଷୋଡଶ ଶତାବ୍ଦୀର ବହୁପୂର୍ବରୁ ଧର୍ମ ପ୍ରଚାର ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କୁ ଛାଡି ଶୂଦ୍ର ଜାତିକୁ ଆଶ୍ରୟ କରିଥିଲା । ଯଜ୍ଞ, ବେଦ, ମୂର୍ତ୍ତିପୂଜା, ତୀର୍ଥସ୍ନାନ, ବ୍ରତ, ଉପବାସ ଓ ତୀର୍ଥ ଦର୍ଶନ ପ୍ରଭୃତି ହିନ୍ଦୁଧର୍ମର ବିଧାନ ସବୁକୁ ଲୋକେ ସନ୍ଦେହ ଚକ୍ଷୁରେ ଦେଖିବାକୁ ଆରମ୍ଭ କରିଥିଲେ । ରାମାନନ୍ଦ, କବୀର, ନାନକ, ଦାଦୁ ଓ ତାଙ୍କ ପରମ୍ପରାରେ ଆସିଥିବା ବଳରାମ ପ୍ରଭୃତି ସନ୍ଥକବିମାନେ ହିନ୍ଦୁଧର୍ମର ସବୁ ସଂସ୍କାରକୁ ମୂଳରୁ ଉପାଡି ଫୋପାଡି ଦେବାକୁ ଚାହୁଁଥିଲେ । 'ଜନ୍ମେଣ ଉତ୍ତମ ମୁଁ ଅଟଇ ଶୂଦ୍ରଜାତି'ରେ ଏହି ଭାବନା ପ୍ରକଟିତ । କବି ଶୂଦ୍ର ସତ, ସେ କିନ୍ତୁ ଅଧମ, ପତିତ, ଅଜ୍ଞାନୀ ନୁହନ୍ତି । ସେଥିପାଇଁ କବି ନିଜର ବିନମ୍ରତା ପ୍ରକାଶ କରି କହିଛନ୍ତି-

ମୁଇଁ ପାମର ଯେ ବିଶେଷେ ଶୂଦ୍ରଯୋନି
ସୁଗ୍ୟଂ ଜନେ କୋପ ନ କରିବା ଏହା ଶୁଣି ।
ନୀଳଗିରି ଜଗନ୍ନାଥ କିଛୁ ଦୟା କଲା
ତେଣୁ ସେ ଗ୍ରନ୍ଥ ମୋ ମୁଖରୁ ସ୍ଫୁରିଲା
ବଳରାମ ଦାସ ମୁଂ ଶ୍ରୀହରି ସେବକ
ଶୁଣି ଉପହାସ ନ କର ଦୁଷ୍ଟ ଲୋକ । (ଅଯୋଧ୍ୟା କାଣ୍ଡ)

ମଣିଷ ବ୍ରାହ୍ମଣ ଘରେ ଜନ୍ମ ନେଲେ ଯେ ବ୍ରାହ୍ମଣ ହୋଇଯିବ, ଏପରି କଥା ନୁହେଁ । କର୍ମ ମଣିଷକୁ ବଡ଼ କରେ, ସାନ କରେ । ରାମକଥା କହିବା ପାଇଁ ବାଲ୍ମୀକିଙ୍କ ସଦୃଶ ମହର୍ଷି ସମର୍ଥ ସତ; କିନ୍ତୁ 'ଲଲାଟ ଲେଖନ କେ କରିବ ଆନ ।'

ଯେ ଯାହାର ଦେହରେ ଯେବଣ ଗୁଣ ଥାଇ

ଚଣ୍ଡାଳ କର୍ମେ ଯେ ଶ୍ରୀକର୍ପୂର ଖାଇ
ବ୍ରାହ୍ମଣ ଅଭାବେ ଚାଲଇ ମଦ ବାଟେ
ଯାହା ସେ ବିଧାତା ବିହିଲା ଲଲାଟେ ।
ଏ ମୋର କର୍ମେ ଯେବେ ଅଛଇ ଯେମାନ
ଶ୍ରୀଜଗନ୍ନାଥ ସ୍ୱାମୀ ମୋତେ ହୋଇଲେ ପରସନ
ରାମାୟଣ ଗ୍ରନ୍ଥ ବଖାଣିବି ମୁହିଂ
ଶଏ କୋଟି ଚରିତ୍ର ଥୋକାଏ ଯିବି କହି (ଅଯୋଧ୍ୟା କାଣ୍ଡ)

କବି ଶୂଦ୍ରଘରେ ଜନ୍ମ ହୋଇଥିଲେ ବି ରାମାୟଣ ରଚନା କରିବାର ସୌଭାଗ୍ୟକୁ ସେ ନିଜ ପୂର୍ବଜନ୍ମର ସୁକୃତ ବୋଲି ଗ୍ରହଣ କରିଥିଲେ । ତାଙ୍କ ପିତା ସୋମନାଥ ମହାପାତ୍ର ମଧ୍ୟ ବିଷ୍ଣୁ ସେବକ ଥିଲେ । କେଉଁଠି କେଉଁଠି ମହାପାତ୍ର, ମହାମନ୍ତ୍ରୀ, ମହନ୍ତ ଓ ପାତ୍ରରେ ପରିଣତ ହୋଇଛି ଏବଂ ଏହା ଉପରେ ବହୁ ଅନୁମାନ କରାଯାଇଛି । ସେ ମନ୍ତ୍ରୀ ପୁଅ ଥିବାର ଉଲ୍ଲେଖ ଆଉ କେଉଁଠି ମିଳେ ନାହିଁ । ସେ ନିଜ ସମ୍ପର୍କରେ ଯେତିକି କହିଛନ୍ତି, ପରମ୍ପରାରେ ଯାହା ପ୍ରଚଳିତ ସେଥିରୁ ସେ ଯେ ଜଣେ ବିନୟୀ ବୈଷ୍ଣବ ଥିଲେ, ତାହାହିଁ ଜଣାଯାଏ । ସେଥିପାଇଁ ପିଲାଦିନୁ କବି ଭଗବାନ ଆରାଧନାରେ, ଶାସ୍ତ୍ରଚର୍ଚ୍ଚାରେ ମନୋନିବେଶ କରିଥିଲେ । ଯେଉଁଠି ପୁରାଣ ଆଲୋଚନା ହେଉଥିଲା, ସେଠି ବସି ସେ ସବୁ ଶୁଣୁଥିଲେ, 'ହୃଦୟରେ ଚିତୋଇ ମନେ ମନେ ଗୁଣି', ସେ ସବୁକୁ ଆୟତ୍ତ କରୁଥିଲେ । ଏଥିରେ ସଂଯୋଗକୁ ମିଶିଗଲା ଭଗବାନଙ୍କ କରୁଣା । କବି ଭାବିଲେ ରାମାୟଣ ଗ୍ରନ୍ଥ ରଚନା କରିବା ପରି କାର୍ଯ୍ୟ ଆଉ ନାହିଁ । ଏଥିରେ ଦୁଇଟି ଲାଭ । ପ୍ରଥମଟି ହେଲା, ଯେତେଦିନ ପର୍ଯ୍ୟନ୍ତ ରାମକଥାର ମହିମା ପ୍ରଚାରିତ ହେଉଥିବ, ସେତେଦିନ ପର୍ଯ୍ୟନ୍ତ 'ଜଗମୋହନ ରାମାୟଣ' ବଞ୍ଚିଥିବ, କବିଙ୍କ ନାମ ମଧ୍ୟ ତା'ସହ ଯୋଡି ହୋଇ ରହିଯିବ । ଦ୍ୱିତୀୟ ଲାଭ ହେଲା 'ଶ୍ରୀରାମ ଚରିତ ଉଚ୍ଚାରଣ କଲେ ମଣିଷ ଅକାଳ ମରଣ ଲାଭ କରେନାହିଁ । ଶ୍ରୀରାମଙ୍କ ନାମର ମହିମା ଅଶେଷ । ଏହା କେବଳ ଜୀବନରେ ମୁକ୍ତି ଦିଏନାହିଁ, ମରଣ ପରେ ମଧ୍ୟ ସ୍ୱର୍ଗରେ ଠାବ ଦିଏ । ବୈକୁଣ୍ଠ ପ୍ରାପ୍ତି କରାଏ । ସେଥିପାଇଁ କବି କହିଛନ୍ତି-

ଜୀବନ୍ତେ ମୁକତ ମଲେ ସ୍ୱର୍ଗ ଯିବି
ବଇକୁଣ୍ଠେ ବିଷ୍ଣୁ ପାଶେ ଖଟିଥିବି
ଏତେ ଲାଭ ଛାଡି କରିବି କିମ୍ପା ଆନ
ଦୟା ଯେବେ ମୋତେ କଲେ ଭଗବାନ । (ଆଦି କାଣ୍ଡ)

ଜଗମୋହନ ରାମାୟଣର ସୃଷ୍ଟି ହେଲା ଏହିପରି ଏକ ପୃଷ୍ଠଭୂମିରେ । ବାଲ୍ମୀକି ରାମାୟଣରେ ନ ଥିବା ବହୁ ତତ୍ତ୍ୱ ଏଥିରେ ଅନୁପ୍ରବେଶ କଲା । ପ୍ରତି କାଣ୍ଡର ଆରମ୍ଭରେ ରହିଲା, ଜଗନ୍ନାଥ, ବଳରାମ ବା କୌଣସି ଦେବତା ଓ ଦେବୀଙ୍କ ବନ୍ଦନା । ଏ ସବୁ ବନ୍ଦନା ସତ୍ତ୍ୱେ ଜଗନ୍ନାଥ ହିଁ ଥିଲେ କବିଙ୍କର ପରମ ଆରାଧ୍ୟ । 'ଜଗନ୍ନାଥ ପିତା ମୋର ଜଗନ୍ନାଥ ମାତା' । ଜଗନ୍ନାଥ ହିଁ ରାମ କଥାର ବକ୍ତା, ଲେଖକ, ପ୍ରେରଣାଦାୟକ ଓ ଆଉ ସେଥିପାଇଁ ମଧ୍ୟ ଗ୍ରନ୍ଥର ନାମ 'ଜଗମୋହନ' । ଶିବ ଓ ପାର୍ବତୀଙ୍କ ସମ୍ବାଦରେ ଏହା ରଚିତ ହୋଇ ପୁରାଣର ଶୈଳୀକୁ ଗ୍ରହଣ କଲା । ଏହାର ଶ୍ରୀରାମ ହେଲେ ଜଗନ୍ନାଥଙ୍କ ସପ୍ତମ ଅବତାର । ପ୍ରତ୍ୟେକ ଚରିତ୍ର ପରିଚାଳିତ ହେଲେ ବର ବା ଅଭିଶାପ ଦ୍ୱାରା । ଏସବୁ ଉପରେ ରହିଲା ଦେବତାମାନଙ୍କର ହସ୍ତକ୍ଷେପ । ଶ୍ରୀରାମ ଭଗବାନ ହେଲେବି ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଦୈବୀଶକ୍ତି ଦ୍ୱାରା ନିୟନ୍ତ୍ରିତ ହେଲା । ଜନ୍ମାନ୍ତରବାଦର ପ୍ରଭାବ ପ୍ରତ୍ୟେକ ଚରିତ୍ରରେ ପରିଦୃଷ୍ଟ ହେଲା । ଶ୍ରୀରାମ ସୀତାଙ୍କ ବିରହରେ ସାଧାରଣ ଲୋକଙ୍କ ପରି ବିଳାପ କଲେ, ବା

ଦଶରଥ ଶ୍ରୀରାମଙ୍କୁ ଜୀବନରୁ ବଳି ଭଲ ପାଉଥିଲେ ବି କୈକେୟୀଙ୍କ କଥାରେ ଦୁର୍ବଳ ହୋଇଯାଇ ରାମଙ୍କୁ ବନ ଯିବା ପାଇଁ ଆଦେଶ ଦେଲେ ବା ରାବଣ ଦ୍ୱାରା ସୀତା ହରଣ ହେଲା ବା କୈକେୟୀ ଶ୍ରୀରାମଙ୍କ ପ୍ରତି ଯେଉଁ ଖଳ ବିଚାର ବା ଅବିଚାର କଲେ, ଏସବୁ ମୂଳରେ ଥିଲେ ଦେବତାମାନେ । ସେମାନେ କେତେବେଳେ ନିଜେ ଆସି, କେତେବେଳେ ଦୂତ ପଠାଇ, କେତେବେଳେ ଋକ୍ଷ, ବାନର ବା ଅନ୍ୟ କୌଣସି ଜୀବ ରୂପରେ ଜନ୍ମଗ୍ରହଣ କରି ଗ୍ରନ୍ଥରେ ଦୈବୀ ପ୍ରଭାବକୁ ସୁଦୃଢ଼ କଲେ । ଶେଷକୁ 'ଜଗମୋହନ ରାମାୟଣ'ରେ ଦୈବୀ ପ୍ରଭାବ ଏତେ ପ୍ରବଳ ହୋଇଗଲା ଯେ, ପ୍ରତ୍ୟେକ ଚରିତ୍ରକୁ ତା'ର ପୂର୍ବଜନ୍ମର ପୃଷ୍ଠଭୂମିରୁ ବିଚାର କରିବାକୁ ହେଲା । ଦେବତାମାନେ ସବୁବେଳେ ସତର୍କ ଦୃଷ୍ଟିରେ ରାମଙ୍କ କାର୍ଯ୍ୟାବଳୀକୁ ନିରୀକ୍ଷଣ କରିବାକୁ ଲାଗିଲେ । ଟିକିଏ ଏପଟ ସେପଟ ହେବାବେଳକୁ ସେମାନେ ହସ୍ତକ୍ଷେପ କରି ଶ୍ରୀରାମଙ୍କୁ ତାଙ୍କ କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରିଦେଉଥିଲେ । ଏପରିକି ବିଷ୍ଣୁଙ୍କୁ ଅବତାର ନେବାପାଇଁ ଅନୁରୋଧ କଲାବେଳେ ବ୍ରହ୍ମା ସେ ରାମରୂପରେ କେଉଁ କେଉଁ କାର୍ଯ୍ୟ କରିବେ, ସେସବୁର ଏକ ନିର୍ଦ୍ଦିଷ୍ଟ ଖସଡ଼ା ତାଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ ।

ବାଳକ କାଳେ ଯଜ୍ଞ ରଖିବୁ ଦେବହରି
ଯୁବାକାଳେ ବନସ୍ତ ଯିବୁ ମୁନିଙ୍କ ରକ୍ଷାକରି
ବିପିନେ ଭାରିଯା ତୋର ରାବଣ ହରିନେବ
ଦୁଃଖେଣ ଦିନ ତୁ ବଞ୍ଚିବୁ ରାଘେବ
ଦେବଙ୍କର ନିମିତ୍ତେ ପାଇବୁ ଅନେକ କଷ୍ଟ
ନୋହିଲେ ଅସୁର ନୁହନ୍ତି ନା ନଷ୍ଟ
ରିକ୍ଷ ବାନର ଯେ ସଙ୍ଗେନି ଘେନିଯିବୁ
ମାନବ ରୂପ ଧରି ରାବଣ ମାରିବୁ । (ଆଦି କାଣ୍ଡ)

ଏହା ହେଉଛି ଜଗମୋହନ ରାମାୟଣରେ ବ୍ରହ୍ମାଙ୍କର ବିଷ୍ଣୁଙ୍କ ପାଇଁ ନିର୍ଦ୍ଦେଶ । ଏଥିମଧ୍ୟରେ ରାମାୟଣର ଯେଉଁ ସଂକ୍ଷିପ୍ତ ରୂପ ପ୍ରକାଶ ପାଏ, ତାହା ଆଦିରୁ ଲଙ୍କା ଯାଏ ଆବଦ୍ଧ। ସମାଲୋଚକଙ୍କ ମତରେ ଏହାହିଁ ଥିଲା ରାମାୟଣର ଆଦିରୂପ । ବଳରାମଙ୍କ ଦୃଷ୍ଟିରୁ ଏହାକୁ ଦୁଇଟି ମୁଖ୍ୟ ଭାବରେ ବିଭକ୍ତ କରାଯାଇପାରେ । ପ୍ରଥମରେ ବାଳକ କାଳେ ଯଜ୍ଞରକ୍ଷା ଏବଂ ଦ୍ୱିତୀୟରେ ଯୁବାକାଳେ ବନବାସ, ମୁନିମାନଙ୍କ ରକ୍ଷା, ରାବଣକୃତ ସୀତାହରଣ ଏବଂ ରାବଣବଧ ପ୍ରଭୃତି । ଶ୍ରୀହରି ମଧ୍ୟ ବ୍ରହ୍ମାଙ୍କ କଥାରେ ରାଜି ହୋଇ ଶ୍ରୀରାମ ଅବତାରେ ବୈଶିଷ୍ଟ୍ୟ ପ୍ରକାଶ କରି କହିଲେ -

ତୁମ୍ଭର ଛଳେ ମୁଂ ମାନବ ତନୁ ଧରି
ମାରିବି ଦାନେବ ବଳ ନିଶୋଧନ କରି
ଧନୁ ଶସ୍ତ୍ର ବହିବି ନୋହିବି ଚକ୍ରଧର
ନ ଚଢ଼ିବି ଗରୁଡ଼ ବିନତା କୁମର । (ଆଦିକାଣ୍ଡ)

ଏସବୁ ଦୈବୀ ପ୍ରଭାବ ସତ୍ତ୍ୱେ ରାମାୟଣର ବିଭିନ୍ନ ଚରିତ୍ରରେ ମୂଳ ଚରିତ୍ରର କିଛି କିଛି ପ୍ରବୃତ୍ତିକୁ ଲକ୍ଷ୍ୟ କରାଯାଇପାରେ; କିନ୍ତୁ ରାବଣ ଚରିତ୍ର ସମ୍ପୂର୍ଣ୍ଣ ଭାବେ ପରିବର୍ତ୍ତିତ ହୋଇଗଲା । ରାବଣ ଓ କୁମ୍ଭକର୍ଣ୍ଣ ଉଭୟେ ସେମାନଙ୍କ ପୂର୍ବଜନ୍ମରେ ବିଷ୍ଣୁଙ୍କ ଦ୍ୱାରପାଳ ଥିଲେ । ସେମାନଙ୍କ ନାମ ଥିଲା, ଜୟ ଓ ବିଜୟ । ସେମାନେ ଦୁର୍ବାସା ମୁନି ଓ ଲକ୍ଷ୍ମୀଙ୍କ ଅଭିଶାପ ଫଳରେ ଅସୁର ରୂପ ପରିଗ୍ରହ କରି ବିଷ୍ଣୁଙ୍କର ଶତ୍ରୁରେ ପରିଣତ ହେଲେ । ଭକ୍ତଙ୍କ ଏ ଦୁର୍ଦ୍ଦଶାରେ ବ୍ୟଥିତ ହୋଇ ବିଶେଷକରି ଭକ୍ତଙ୍କୁ

ଉଦ୍ଧାର କରିବା ପାଇଁ ଲକ୍ଷ୍ମୀ ଜନ୍ମ ନେଲେ ସୀତା ରୂପେ ଓ ଶ୍ରୀବିଷ୍ଣୁ ହେଲେ ଶ୍ରୀରାମ । ରାବଣ ଏସବୁ ଭଲ ଭାବେ ଜାଣିଥିଲା । ସେ ତା' ଆଖିରେ ଦେଖୁଥିଲା, ରାମ ଦଣ୍ଡକାରଣ୍ୟରେ ଯେଉଁ ମୃଗମାନଙ୍କୁ ବଧ କରୁଥିଲେ, ସମସ୍ତଙ୍କର ସ୍ୱର୍ଗପ୍ରାପ୍ତି ହେଉଥିଲା । ଏସବୁ ଦୃଶ୍ୟ ସ୍ୱଚକ୍ଷୁରେ ଦେଖୁଥିଲେ ବି ମାୟାମୋହରେ ଅନ୍ଧ ହୋଇଥିବା ହେତୁ, ସେ ଏସବୁକୁ ବେଳେବେଳେ ବିଶ୍ୱାସ କରୁ ନଥିଲା । ସେ ଜାଣିଶୁଣି ସୀତାଙ୍କୁ ହରଣ କଲା । ଅଶୋକ ବନରେ ରଖି ବେଳେବେଳେ ପ୍ରଲୋଭିତ କରିବାକୁ ଚେଷ୍ଟା କଲା । କାଳେ ସୀତା ଲକ୍ଷ୍ମୀ ନ ହୋଇ ଆଉ କେହି ହୋଇଥିବେ । କାଳେ ସେ ତାକୁ ଗ୍ରହଣ କରିନେବେ । ଏହି ଆଶାରେ ହିଁ ସେ ରହିଗଲା । ଅନ୍ୟପକ୍ଷରେ ଦିଗ୍‌ବିଜୟୀ ରାବଣର ଲଙ୍କପୁରୀରେ ଗୋଟାଏ ବାନର ପଶି ସବୁ ଧ୍ୱସ୍ତବିଧ୍ୱସ୍ତ କରିଦେଲା, ରାମ ବାଳିକୁ ବଧ କଲେ, ଋକ୍ଷ, ବାନର ସହ ମିତ୍ରତା ବାନ୍ଧିଲେ, ସାଗର ପାରି ହୋଇ ସୁବଳୟାରେ ଆସ୍ଥାନ ଜମାଇଲେ, ଅସୁରଙ୍କୁ ନ ଡରି ଲଙ୍କାପୁରକୁ ଛିନ୍ନଛତ୍ର କରିଦେଲେ, କୁମ୍ଭକର୍ଣ୍ଣ ମଲା, ଇନ୍ଦ୍ରଜିତ ମଲା, ଲଙ୍କାପୁରର ସମସ୍ତ ସେନାପତି, ରାବଣର ପୁତ୍ର, ନାତି ସମସ୍ତେ ଯୁଦ୍ଧରେ ନିହତ ହେଲେ- ଏସବୁ ଅଘଟଣ ଲଙ୍କାପୁରରେ ଗୋଟିକ ପରେ ଗୋଟିଏ ଘଟି ଯାଉଥିଲେ ବି ରାବଣ ଜାଣିଶୁଣି ସବୁ ନୀରବରେ ସହ୍ୟ କରିନେଉଥିଲା । ଇନ୍ଦ୍ରଜିତ ମୃତ୍ୟୁପରେ ମନ୍ଦୋଦରୀ ଆଉ ସହ୍ୟ କରି ନ ପାରି ନାରଦ ମୁନିଙ୍କ ଭବିଷ୍ୟତ ବାଣୀ କଥା ରାବଣ ସମ୍ମୁଖରେ ଯେତେବେଳେ ପ୍ରକାଶ କଲା, ସେତେବେଳେ ରାବଣ ତାର ମନ କଥା ଖୋଲି କହିଦେଲା । ସେତେବେଳେ ସେ କହିଲା, ତା'ଉପରେ ଥିବା ଲକ୍ଷ୍ମୀ ଓ ଦୁର୍ବାସାଙ୍କ ଅଭିଶାପ କଥା । ରାମ ଯେ ବିଷ୍ଣୁ ଏକଥା ମଧ୍ୟ ସେ ଜାଣିଥିବା କଥା ପ୍ରକାଶ କଲା । କିନ୍ତୁ ଯୁଦ୍ଧକ୍ଷେତ୍ରରେ ଶ୍ରୀରାମଙ୍କ ହାତରେ ବଧ ହେଲେ, ସେ ଫେରିଯିବ ନିଜ ପୂର୍ବ ସ୍ଥାନକୁ । ଯଦି ରାମ ବିଷ୍ଣୁ ହୋଇ ନ ଥିବେ ଏବଂ ସେ ରାବଣ ହାତରେ ପ୍ରାଣ ଦେବେ, ତା'ହେଲେ ସେ ଛପନଗଣ୍ଡା ଯୁଗ ପାଇଁ ତ୍ରିଲୋକ ବିଜୟୀ ହୋଇ ରହିଯିବ । ଉଭୟ କ୍ଷେତ୍ରରେ ତା'ର ଲାଭ । ଏତେବଡ଼ ସୁଯୋଗ ଯେତେବେଳେ ତାକୁ ମିଳିଛି, ସେ ତାକୁ ଛାଡି ଶ୍ରୀରାମଙ୍କ ପାଖରେ ଶରଣ ପଶିବ କେଉଁ ଲାଭ ଆଶାରେ । ରାବଣର ପ୍ରତ୍ୟୁତ୍ତର ଶୁଣି ମନ୍ଦୋଦରୀ ନୀରବ ହୋଇଗଲା । ରାବଣ ଚରିତ୍ରରେ ଏହି ପରିବର୍ତ୍ତନ ଆକସ୍ମିକ ନ ଥିଲା । ପୁତ୍ର, ମିତ୍ର, ଭ୍ରାତା ଓ ସେନାପତିମାନଙ୍କୁ ଯୁଦ୍ଧରେ ହରାଇ ଶୋକରେ ଅଧୀର ହୋଇ ସେ ଏପରି କହି ନ ଥିଲା, ଏହା ହେଲା ତା' ଜୀବନ ଓ ଚରିତ୍ରର ମୂଳ ସ୍ୱର । ଆଦିକାଣ୍ଡରୁ ଏହାର ସୂଚନା ମଧ୍ୟ ମିଳିଥାଏ । ପ୍ରଥମେ ଯେତେବେଳେ ସେ ମିଥିଳାରେ ଶ୍ରୀରାମଙ୍କ ଧନୁଭଗ୍ନ ଦୃଶ୍ୟ ସ୍ୱଚକ୍ଷୁରେ ଦେଖିଲା, ସେତେବେଳେ ସେ ଆଶ୍ଚର୍ଯ୍ୟ ହୋଇ ଭାଇ ବିଭୀଷଣକୁ ନିଜର ମନୋଭାବ ପ୍ରକାଶ କରି କହିଥିଲା-

ମିଥିଳା କଟକେ ଜନେକ ମହାମୁନି
ସୀତ୍ୟା ନାମେ ତାର ଯେକଇ ନନ୍ଦିନୀ
ଧନୁ ସୟେମ୍ବର କରିଥିଲା ଆଜ
ଦଶରଥ ନାମେଣ ଅଯୋଧ୍ୟା ମହାରାଜ
ତାହାର ଜ୍ୟେଷ୍ଠ ତନୟେ ଶ୍ରୀରାମ ଯେ ନାମ
ସେ ସେ ଆମଞ୍ଚିଲା ଶିବ ଶରାସନ
ଭାଙ୍ଗି ପକାଇଲା ବେନି ଖଣ୍ଡ କରି
ରତ୍ନମାଳା ଦେଇ ସୀତ୍ୟା ଗଳା ବରି
ଦେଖିଣ ଚମତ୍କାର ଲାଗିଲାକ ମୋତେ
ବାର ବରଷ ପୁଅ କଲା ଯେଡ଼େ କୃତ୍ୟେ

ଯେବଣ କୋଦଣ୍ଡ ଇନ୍ଦ୍ର ତୋଳି ନ ପାରଇ

ସାନ ହୋଇଂ ରାମ ତା' ବାମଭୁଜେ ଧରଇ ॥ (ଆଦିକାଣ୍ଡ)

ରାବଣ ଏତେ କଥା କହିଲେ ମଧ୍ୟ ଅସଲ କଥା ଛାଡିଗଲା । ସେ ଯେ ଦିନେ ଧନୁ ଭାଙ୍ଗିବା ପାଇଁ ମିଥିଳାକୁ ଯାଇ ଧନୁ ଭାଙ୍ଗି ନ ପାରି, ସଭାରେ ଉପହସିତ ହୋଇ ଫେରି ଆସିଥିଲା, ସେ କଥାକୁ ସେ ଲୁଚେଇ ଦେଲା । ବିଭୀଷଣ ଯେତେବେଳେ କହିଲା, 'ରାବ ଅବତାର ସ୍ୱୟଂ ଅଟନ୍ତି ହରି । ଲକ୍ଷ୍ମୀ ଅଟନ୍ତି ସେ ଜନେକ କୁମାରୀ' 'ଆଉ ତୋର କୁମାର୍ଗ ପାଇଁ ସୁରଗଣ 'ରବିତଳେ ଜାତ କଲେକ ନାରାୟଣ', ସେତେବେଳେ ରାବଣ ସଦମ୍ଭରେ ଟହ ଟହ ହସରେ ସେ କଥାକୁ ଉଡ଼ାଇ ଦେଇ କହିଥିଲା,

ଦେବେ ମେଳି ହେଲେ ମୋହୋର କିସ ହୋଇ

ଶ୍ରୀରାମର ମୋହୋର ଅପ୍ରୀତି ନୁହଇ ।

ସେ ଅଯୁଧ୍ୟାର ରାଜା ମୁଂ ଲଙ୍କାର ଅଧିପତି

ତାହାର ମୋହୋର କିମ୍ପା ହୋଇବ ଅପ୍ରୀତି ।

ଯଦ୍ୟପି ଦଣ୍ଡ ସେ ବାହିବ ମୋହୋର ଉପରକଇଂ

ସମୁଦ୍ର ଯେଣେ ସେ ପାଇବ ମୋତେ କାହିଂ ।

ଯଦ୍ୟପି ପର୍ବତେ ସେ ପୋତିବ ମହାବଳ

ସେ ସେ ମନିଷ୍ୟ ମୁଂ ଅସୁର ଅଚାର୍ଗଳ ।

ମନୁଷ୍ୟ ହୋଇ ଯେବେ ଆସିବ ମୋତେ ମାରି

ଯେକଇ କନ୍ଧ ତ ନୁହଇ ମୋହରି ।

ଦଶଶିର ଛେଦିଲେ ପୁଣିହିଂ ମୁଣ୍ଡ ଲାଗଇ

କ୍ଷତ୍ରୀ ସମ ମୋତେ ନାହିଂ ଭୂମି ଭାଗଇ ।

ଯଦ୍ୟପି ସମ ମୋତେ ହୋଇବ ରଘୁନାଥ

ତାହାର ବାଣେ ଯେବେ ତୁଟିବ ମୋର ମାଥ

ବିଷ୍ଣୁ ହାଥେ ମଲେ ନିଶ୍ଚିନ୍ତେ ଯିବି ସ୍ୱର୍ଗ

ତେବେ ସେ ପ୍ରାପତ ମୋତେ ହୋଇବ ପୁଣ୍ୟ ଭାଗ । (ଆଦି କାଣ୍ଡ)

ଆଦିକାଣ୍ଡର ଏହି ଭାବବିହ୍ୱଳ ଆତ୍ମପ୍ରକାଶ ମଧରେ ରାବଣର ପ୍ରକୃତ ଚରିତ୍ରକୁ ଚିହ୍ନିବାରେ ଅସୁବିଧା ହୁଏନାହିଁ । ନିଜ ବାହୁର ପରାକ୍ରମରେ ପୁଣି ତପସ୍ୟା ବଳରେ ତିନି ଜଗତକୁ ଜିଣିଥିବା ପ୍ରତାପୀ ରାବଣ, ଏତେ ସହଜରେ ସେ ସବୁକୁ ପର ହାତରେ ଟେକି ଦେବାକୁ ଚାହିଁ ନାହିଁ । ଏହା କ୍ଷତ୍ରିୟର ଧର୍ମ ମଧ ନୁହେଁ । ଯଦି କେହି କେବେ ଏତେ ଅସମ୍ଭବକୁ ସମ୍ଭବ କରିପାରିବା ପାଇଁ ସମର୍ଥ ହେବ, ସେ ଯେ ବିଷ୍ଣୁ, ଏହା ନିଶ୍ଚିତ । ବିଷ୍ଣୁଙ୍କ ସହ ଯୁଦ୍ଧ କରିବାର ସୌଭାଗ୍ୟ କେତେଜଣଙ୍କୁ ମିଳେ ? ସେ ସେଥିପାଇଁ ସେହିଦିନ ପାଇଁ ଅପେକ୍ଷା କରି ରହିଲା, ଆଦିରୁ ଲଙ୍କାଯାଏ । କେବଳ ରାବଣ ଚରିତ୍ର ନୁହେଁ, ବାଲ୍ମୀକି ରାମାୟଣରେ ନଥିବା ବହୁ ଚରିତ୍ର ଜଗମୋହନ ରାମାୟଣର କଳେବର ମଣ୍ଡିତ କରିବା ସଙ୍ଗେ ସଙ୍ଗେ ଭକ୍ତିତତ୍ତ୍ୱ ପ୍ରଚାରରେ ସହାୟକ ହୁଏ । ସେ ସବୁ ହେଲେ ବଗ, କୁକୁଡ଼ା, ଗୁଣ୍ଡୁଚି ମୂଷା, ଚକ୍ରବାକ ଓ ଗୋପାଳ ପ୍ରଭୃତି ।

ବଗ ଓ ବଗୁଲୀ କଥାରେ କୁହାଗଲା ସ୍ୱାମୀ ଓ ସ୍ତ୍ରୀ ଅଭେଦ । ଏମାନେ କେବେ ସାନ ବଡ଼ ନୁହନ୍ତି । ଦାମ୍ପତ୍ୟ

ଜୀବନର ମହିମା ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ କାର୍ତ୍ତିକ ଦଶମୀରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ପାଞ୍ଚ ଦିନକୁ ବକ ପଞ୍ଚକ କୁହାଗଲା । ଏହା ହେଲା ବର୍ଷକ ମଧ୍ୟରେ ପାଞ୍ଚୋଟି ଅହିଂସାର ଦିନ । କଥାରେ ଅଛି, ଏତେବେଳେ ବଗ ମଧ୍ୟ ମାଛ ଛାଡି ଦିଏ । ବକ ଉପାଖ୍ୟାନ ମାଧ୍ୟମରେ କବି ବଳରାମ ଓଡ଼ିଆ ସମାଜକୁ ଦେଲେ ଦାମ୍ପତ୍ୟ ଜୀବନର ମହାନତା ତଥା ଅହିଂସା ଧର୍ମର ପାଞ୍ଚୋଟି ପୁଣ୍ୟ ଦିବସ ।

ବଣରେ କୁକୁଡାଟିଏ ରହୁଥିଲା । ସେ ମଧ୍ୟ ଶ୍ରୀରାମଙ୍କୁ ସୀତାଙ୍କ ଖବର ଦେଇ ଆଶୀର୍ବାଦ ପାଇଲା ସପ୍ତଶିଖ ମୁକୁଟ । ରାମ ଚାଲିଗଲେ । ମୁଣ୍ଡରେ ମୁକୁଟ ଦେଖି ତା'ର ଆଶା ବଢ଼ିଗଲା । ସେ ରାମଙ୍କ ପଛେ ପଛେ ଦଉଡ଼ିଲା । ଆହୁରି କିଛି ମାଗିବା ପାଇଁ । ସେହିଦିନୁ ସେ ଆଜିଯାଏ ସକାଳୁ ଡାକ ଦିଏ 'ଚକ୍ରଧର ରକ୍ଷାକର' 'ଚକ୍ରଧର ରକ୍ଷାକର' । ଏ କଥାରେ କୁହାଯାଇଛି, ଆଶାର ଅନ୍ତ ନାହିଁ । ଆଶା ପଛରେ ଗୋଡ଼ାଇଲେ ନିରାଶା ହିଁ ସାର ହୁଏ । ଭଗବାନ ଅହେତୁକ କୃପାରୁ ଯାହା ମିଳେ, ସେତିକିରେ ସନ୍ତୁଷ୍ଟ ହେଲେ ଜୀବନରେ ଶାନ୍ତି ମିଳେ ।

ଗୁଣ୍ଡୁଚି ମୂଷା ସମୁଦ୍ରରେ ବନ୍ଧ ବାନ୍ଧିବା ବେଳେ ନିଜ ଶରୀରରେ ଧୂଳି ବୋଳି ହୋଇ ବନ୍ଧ ଉପରେ ଝାଡି ଏହାକୁ ସମତୁଲ କରିବାରେ ସାହାଯ୍ୟ କରିଥିଲା । ଏହା ହେଉଛି ନିଃସ୍ୱାର୍ଥ ପରୋପକାରର ଦୃଷ୍ଟାନ୍ତ । ଶ୍ରୀରାମ ତା' ଉପରେ ଖୁସି ହୋଇ ତା'ର ପୃଷ୍ଠ ଦେଶରେ ଆଙ୍କିଦେଲେ ସ୍ନେହାଶୀଷର ତିନୋଟି ରେଖା ।

ଚକ୍ରବାକ ଓ ଚକ୍ରବାକୀ କେଳି କରୁଥିଲେ ପମ୍ପା ସରୋବରରେ । ରାମ ତାଙ୍କୁ ପଚାରିଲେ ସୀତାଙ୍କ ସମ୍ବାଦ । କେଳିରେ ବାଧା ସୃଷ୍ଟି ହେବାରୁ ଚକ୍ରବାକ ରାଗି ଯାଇ ରାମଙ୍କୁ କହିଲା ଶାସ୍ତ୍ର ବାଣୀ । ପରର ଆନନ୍ଦ ବେଳେ ବିଶେଷ କରି ରତିକ୍ରୀଡ଼ାରେ ବାଧା ଦେଲେ ଅସୀମ ପାପ ହୁଏ । ରାମ ତ ନୀରବରେ ଶୁଣିଗଲେ, କିନ୍ତୁ ଲକ୍ଷ୍ମଣ ସହିପାରିଲେ ନାହିଁ । ଚକ୍ରବାକ ଦମ୍ପତିକୁ ଦେଲେ ଚିର ବିରହର ଅଭିଶାପ । ଚକ୍ରବାକ ନିଜର ଭୁଲ ବୁଝି, ରାମଙ୍କ ଠାରେ ଶରଣ ଗଲା । ରାମ ଲକ୍ଷ୍ମଣଙ୍କ ଅଭିଶାପ ଲାଘବ କରିଦେଲେ । ତେବେ ସେମାନଙ୍କ ବିରହ ହେଲା କେବଳ ରାତିରେ ।

ଦୟାଳୁ ଶ୍ରୀରାମଙ୍କର ଏହି ଚିତ୍ର ମିଳେ ପୁଣି ଗୋପାଳ ଉପାଖ୍ୟାନରେ । ରାମଙ୍କୁ ଶୋଷ ହେଲା । ଲକ୍ଷ୍ମଣ ଗଲେ ପାଣି ଖୋଜିବାକୁ । ଦୂରରେ ଦେଖିଲେ ଗୋ ପଲ ଓ ଗୋପାଳଙ୍କୁ । ରାମଙ୍କ ମଣି ବନ୍ଧା ଦେଇ କିଛି କ୍ଷୀର ମାଗିବାକୁ ନିର୍ବୋଧ ଗୋପାଳ ମଣିର ମୂଲ୍ୟ ନ ବୁଝି ମନା କରିଦେଲା । ଲକ୍ଷ୍ମଣ ରାଗି ଅଭିଶାପ ଦେଲେ । କ୍ଷୀର ସବୁ ରକ୍ତ ହୋଇଗଲା । ଗୋପାଳ ନିଜର ଭୁଲ୍ ଜାଣିପାରି ରାମଙ୍କ ଠାରେ ଶରଣ ପଶିଲା । ରାମ ଖୁସି ହେଲେ । ଆଞ୍ଜୁଳାଏ କ୍ଷୀର ଦେଇ ରାମଙ୍କ ପ୍ରାଣ ରକ୍ଷା କରିଥିବାରୁ ପରଜନ୍ମରେ ଅର୍ଥାତ୍ କୃଷ୍ଣ ଅବତାରରେ ସେ ହେଲା ତାଙ୍କ ପିତା ନନ୍ଦ ।

ଶ୍ରୀରାମଙ୍କ ଅସୀମ ଦୟା ବଳରେ ଯେପରି ବହୁ ନିରୀହ ପ୍ରାଣୀଙ୍କର ଉଦ୍ଧାର ହୋଇଥିଲା, ସେହିପରି ରାମ କାହାରି ଗର୍ବ ସହ୍ୟ କରି ପାରୁନଥିଲେ । ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କାଳରେ ରାମ ଭରଦ୍ୱାଜଙ୍କ ଆଶ୍ରମରେ ଆଶ୍ରୟ ନେଲେ । ଭରଦ୍ୱାଜଙ୍କ ସମ୍ମୁଖରେ ନିଜ ବୀରତ୍ୱର କାହାଣୀ କହୁଥିବାବେଳେ ହନୁମାନ ସେ ସବୁ ଶୁଣୁଥିଲା । ସେ ମନେ ମନେ ନିଜ ବୀରତ୍ୱର କଥା ଭାବି ନେଲା । ସର୍ବଜ୍ଞାତା ଶ୍ରୀରାମ ହନୁମାନର ଗର୍ବ କଥା ଜାଣିପାରି ତାକୁ ପଠାଇଲେ ବଣକୁ ମନ ଖୁସିରେ ଫଳ ଖାଇବାକୁ । ହନୁମାନ ବନରେ ପହଞ୍ଚି ଦେଖିଲା ବନର ସବୁ ପ୍ରାଣୀ ଭୀତତ୍ରସ୍ତ ହୋଇ ପଳାଇବାରେ ଲାଗିଛନ୍ତି । ପଚାରି ବୁଝିଲା ସେ ଦିନ ଅସୁର ରାଜା ବଳିଙ୍କ ଅଷ୍ଟମଲ୍ଲ ମଧ୍ୟରୁ ଜଣଙ୍କର ପାଳି । ସେ ବର୍ଷକେ ଥରେ ସେଠାକୁ ଆସେ ଏବଂ ଜୀବଜନ୍ତୁ ଯାହା ପାଏ ତାହା ଭକ୍ଷଣ କରେ । ହନୁମାନ ସେମାନଙ୍କୁ ଅଭୟ ଦେଲା । ଅଥଚ ସେହି ଅସୁରକୁ ବଧ କରିପାରିଲା ନାହିଁ । ବରଂ ତା କବଳରେ ପଡି ରକ୍ଷା ପାଇବା ପାଇଁ ଶ୍ରୀରାମଙ୍କୁ ସ୍ମରଣ କଲା । ରାମ ନାମ ଶୁଣି ସେହି ଅସୁର ହନୁମାନଙ୍କୁ ଛାଡିଦେଲା । ହନୁମାନ ବୁଝିପାରିଲା ନିଜ ଦୋଷ । ସେ ଆସି ଶ୍ରୀରାମଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲା ।

ବାଲ୍ମୀକିରେ ଏ ସବୁ କଥା ନଥିଲା । ଏଥିରୁ କିଛି ସଂସ୍କୃତର ଅନ୍ୟ ଗ୍ରନ୍ଥରେ, କିଛି ଆଦିବାସୀ ସମ୍ପ୍ରଦାୟରେ ପୁଣି ଆଉ କିଛି ଇଣ୍ଡୋନେସିଆରେ ମିଳେ । କବି ବଳରାମ ଏହିପରି ବହୁ କଥା ବହୁ ବିଭିନ୍ନ ସ୍ରୋତରୁ ଆଣି ଶ୍ରୀରାମଙ୍କ ମହିମା ପ୍ରଚାର କଲେ । ରାବଣ ଚରିତ୍ରର ଏହି ପରିବର୍ତ୍ତନ ଜଗମୋହନ ରାମାୟଣକୁ ତାଙ୍କ ଆଦର୍ଶ ଗ୍ରନ୍ଥ ଠାରୁ କେବଳ ସ୍ୱତନ୍ତ୍ର କରିଦେଲା ତାହା ନୁହେଁ; ଏହାର ଆତ୍ମାରେ ଆଉ ଏକ ନୂତନ ତତ୍ତ୍ୱକୁ ସ୍ଥାନ ଦେଲା । ସେହି ତତ୍ତ୍ୱଟି ହେଲା 'ଭକ୍ତିତତ୍ତ୍ୱ' । କାବ୍ୟୋଚିତ କରୁଣ ରସ ସ୍ଥାନରେ ରହିଲା ଧର୍ମଗ୍ରନ୍ଥୋଚିତ ଭକ୍ତିଭାବନା । ଏଥିରେ କୁହାଗଲା ଭଗବାନ ବିଷ୍ଣୁଙ୍କର କେହି ଶତ୍ରୁ କି ମିତ୍ର ନୁହନ୍ତି । ଯିଏ ତାଙ୍କୁ ଯେଉଁ ଭାବରେ ସ୍ମରଣ କଲେବି ସେ ତାଙ୍କର ପ୍ରିୟରେ ପରିଣତ ହୁଏ । ବିଭୀଷଣ, ସୁଗ୍ରୀବ, ହନୁମନ୍ତ ରାମଙ୍କ ଠାରେ ଶରଣ ନେଲେ । ସମ୍ପୂର୍ଣ୍ଣ ଭାବେ ଆତ୍ମସମର୍ପଣ କରିଦେଲେ । ନିଜ ସ୍ୱାର୍ଥକୁ ଭୁଲି ରାମଙ୍କ ପାଇଁ ଜୀବନ ଦେବା ପାଇଁ ପ୍ରସ୍ତୁତ ହେଲେ । ସେମାନେ ଯେପରି ଅନବରତ ରାମ ନାମ ସ୍ମରଣ କଲେ, ରାବଣ ବି ସେହିପରି ନିଜର ଆଶଙ୍କା, ଆକୁଳତା, ଆବିଳତା, ରଣସଜ୍ଜା ଓ ଯୁଦ୍ଧ ମଧ୍ୟରେ ରାମନାମ ଅନବରତ ସ୍ମରଣ କରିଥିଲା । ସେଥିପାଇଁ ସେ ମଧ୍ୟ ହେଲା ଶ୍ରୀରାମଙ୍କର ପ୍ରିୟ । ଜଗନ୍ନାଥ ଶ୍ରୀରାମ ରୂପରେ ମର୍ତ୍ତ୍ୟକୁ ଆସିଥିଲେ, ଜଗତ ଉଦ୍ଧାର ପାଇଁ । ତାଙ୍କ ଅମୃତ କରସ୍ପର୍ଶରେ ତାଡକା ଅସୁରୀ ଠାରୁ ଆରମ୍ଭ କରି କବନ୍ଧ ପର୍ଯ୍ୟନ୍ତ ସମସ୍ତ ଚରିତ୍ର କେବଳ ଶତ୍ରୁତା ଆଚରଣ କରିଥିଲେ ବି, ଶ୍ରୀରାମଙ୍କ ହସ୍ତରେ ମୃତ୍ୟୁଲାଭ କରି ଯେତେବେଳେ ସ୍ୱର୍ଗଲୋକକୁ ଗମନ କଲେ, ସେତେବେଳେ ରାବଣ ଯେକି ପୂର୍ବଜନ୍ମରେ ବିଷ୍ଣୁସେବକ ଥିଲା ଏବଂ ଅଭିଶାପ ପାଇ ଅସୁର ହେଲା, ସେ ଶ୍ରୀରାମଙ୍କ ହସ୍ତରେ ନିହତ ହୋଇ ନିଜ ପୂର୍ବସ୍ଥାନକୁ ଫେରିଯିବାରେ ଆଦୌ ବିଚିତ୍ରତା ନଥିଲା ।

ବାଲ୍ମୀକିଙ୍କ ପରି ବଳରାମ ତାଙ୍କ ରଚନାରେ କାବ୍ୟୋଚିତ ସବୁ ରସର ସମାହାର କରିଥିଲେ । ନାରୀ ରୂପ ବର୍ଣ୍ଣନାରେ, ସମ୍ଭୋଗ ଉପଭୋଗରେ ତାଙ୍କ ଲେଖନୀ ଯେପରି ବାଡ଼ବତା ମାନୁ ନ ଥିଲା , ସେହିପରି ପ୍ରକୃତି ବର୍ଣ୍ଣନାରେ ସେ ନିଜର ଭାରସାମ୍ୟ ହରାଇ ବସୁଥିଲେ । ଏ ସବୁ ବର୍ଣ୍ଣନାରେ ପୁନରୁକ୍ତି ଦୋଷ ତାଙ୍କ ରଚନାକୁ ଭାରାକ୍ରାନ୍ତ କରୁଥିଲେ ବି, ସେ ବର୍ଣ୍ଣନା ମୋହରେ ଏଥିପ୍ରତି ଦୃଷ୍ଟି ଦେଇ ନ ଥିଲେ । କଥା ଦୃଷ୍ଟିରୁ ମଧ୍ୟ ସେ ବାରମ୍ବାର ଗୋଟିଏ କଥାର ପୁନରାବୃତ୍ତି କରୁଥିଲେ ।  ରାବଣ ଚରିତ ତାଙ୍କର ଥିଲା ଅତି ପ୍ରିୟ । ଗ୍ରନ୍ଥର ଆରମ୍ଭରେ ରାବଣର ସଂକ୍ଷିପ୍ତ ପରିଚୟ ଦେଇ, ପୁଣି ସେହି କାଣ୍ଡରେ ବିଷ୍ଣୁଙ୍କ ଆବିର୍ଭାବ ପୂର୍ବରୁ ରାବଣ କଥା କହିଛନ୍ତି । ଏହିପରି ଗ୍ରନ୍ଥ ମଧ୍ୟରେ ରାବଣର ମହିମା ବିଭିନ୍ନ ଚରିତ୍ର ମୁଖରେ ବଖାଣ କଲାପରେ ଉତ୍ତରାକାଣ୍ଡରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସବୁ କଥାକୁ ପୁଣି ଥରେ ଦୋହରେଇଛନ୍ତି । ସେହିପରି ଶ୍ରୀରାମଙ୍କ ବଂଶାବଳୀ ଜନ୍ମଠାରୁ ନିର୍ବାସନ ପର୍ଯ୍ୟନ୍ତ କଥାକୁ ସେ ବାରମ୍ବାର କହିଛନ୍ତି । ରୂପ ବର୍ଣ୍ଣନାରେ ସେ ପ୍ରାୟ ସମାନ ଉପମାନ ସବୁକୁ ସବୁ ନାରୀ ଚରିତ୍ର ପାଇଁ ପ୍ରୟୋଗ କରିଛନ୍ତି । ଏ ସବୁ ଏକ ପକ୍ଷରେ କାବ୍ୟ-ସୌନ୍ଦର୍ଯ୍ୟ ବୃଦ୍ଧି କରିବା ପାଇଁ ଉଦ୍ଦିଷ୍ଟ ଥିଲେ ହେଁ ଅନ୍ୟପକ୍ଷରେ ପାଠକର ମନକୁ ଭାରାକ୍ରାନ୍ତ କରିଦିଏ ବୋଲି କେହି କେହି ମତ ଦେଇଥାନ୍ତି । ସେହିପରି 'ଜଗମୋହନ ରାମାୟଣ'ର କଳେବର ବୃଦ୍ଧି ପାଇଁ କବି ବଳରାମଙ୍କ ବର୍ଣ୍ଣନା ପ୍ରୀତି ବିଶେଷ ଭାବେ ଦାୟୀ ବୋଲି କାହାରି କାହାରି ମତ। ତେବେ ବଳରାମ ପ୍ରତ୍ୟେକ କଥାକୁ ଏତେ ନିବିଡ଼ ଭାବେ ଉପସ୍ଥାପିତ କରୁଥିଲେ ଯେ କୌଣସି ଦୃଶ୍ୟ ତାଙ୍କ ପାଇଁ ଅନାବଶ୍ୟକ ମନେ ହେଉ ନ ଥିଲା । ଉର୍ବଶୀ, ରମ୍ଭା, ମେନକା ଏପରିକି ସୀତା ଓ ମନ୍ଦୋଦରୀଙ୍କ ରୂପ ବର୍ଣ୍ଣନା କଲାବେଳେ ଏକା ପ୍ରକାର ଉପମା ଏକ ପ୍ରକାର ଶୈଳୀ ପ୍ରଯୁକ୍ତ ହୋଇଥିଲେ ବି, ସେ ଏଥିରୁ କାହାକୁ ଛାଡିଥାନ୍ତେ ? ଯେଉଁ ପରିବେଶରେ ଏମାନଙ୍କର ଆବିର୍ଭାବ ସେତେବେଳେ ଏମାନଙ୍କର ରୂପ ବର୍ଣ୍ଣନା ଅତ୍ୟନ୍ତ ଆବଶ୍ୟକ । ଏ ଦୃଷ୍ଟିରୁ ଦେଖିଲେ ତାଙ୍କ ବର୍ଣ୍ଣନା ସବୁବେଳେ ପ୍ରସଙ୍ଗ ଅନୁଯାୟୀ ହୋଇ ଗ୍ରନ୍ଥକୁ ଏକ ବାସ୍ତବ ପରିବେଶ ପ୍ରଦାନ କରିଛି।

ରାମାୟଣ ପରି ଭକ୍ତି-ଗ୍ରନ୍ଥ ମଧ୍ୟରେ ନାରୀ ରୂପର ଶୃଙ୍ଗାରିକ ବର୍ଣ୍ଣନା ପ୍ରତି କେହି କେହି ଆକ୍ଷେପ କରିଥାନ୍ତି । 'ରାମ

ଚରିତ ମାନସ' ପରି ଗ୍ରନ୍ଥକୁ ତୁଳନାରେ ରଖି ବିଚାର କଲେ ଏହି ପାର୍ଥକ୍ୟ ଆହୁରି ସ୍ପଷ୍ଟ ହୋଇଯାଏ । ତୁଳସୀ ଦାସ ଶୃଙ୍ଗାରିକ ବର୍ଣ୍ଣନାକୁ ତାଙ୍କ ମହାନ୍ ଗ୍ରନ୍ଥରୁ ପ୍ରାୟ ବହିଷ୍କାର କରିଥିବା ବେଳେ ବଳରାମ ଏଥିରେ ଅତ୍ୟଧିକ ରୁଚି ରଖିଥିବା ପରି ମନେହୁଏ । ସେ ଦୃଷ୍ଟିରୁ ଦେଖିଲେ ରମ୍ଭା ଧର୍ଷଣ, ସ୍ନାନରତା ଉର୍ବଶୀଙ୍କ ଦ୍ୱାରା ବିଭାଣ୍ଡକ ଉଚ୍ଚାଟନ, ଜରତା କାମମୋହିନୀ ପ୍ରଭୃତି ବେଶ୍ୟାଙ୍କ ଦ୍ୱାରା ଋଷ୍ୟଶୃଙ୍ଗ ବଶୀକରଣ ଏବଂ ମେନକା ଅପସରୀ ଦ୍ୱାରା ବିଶ୍ୱାମିତ୍ରଙ୍କ ତପ ଭଗ୍ନ, ଏପରିକି ରାବଣର ଅନ୍ତଃପୁର ବର୍ଣ୍ଣନା, ବେଦମତୀ ଉପାଖ୍ୟାନ ପ୍ରଭୃତି 'ଜଗମୋହନ ରାମାୟଣ'ରେ ନ ରହିବା କଥା । ଏସବୁ ଉପାଖ୍ୟାନ ବାଲ୍ମୀକିଙ୍କ ବର୍ଣ୍ଣନା ଠାରୁ ଆହୁରି ଉତ୍ତେଜକ । ବଳରାମ ଏସବୁ ବର୍ଣ୍ଣନା କଲାବେଳେ ଯେପରି ସୀମା ଅତିକ୍ରମ କରିଛନ୍ତି, ସୀତାଙ୍କ ରୂପ ବର୍ଣ୍ଣନାରେ ଓ ଶ୍ରୀରାମଙ୍କ ମିଳନ ବେଳାରେ ପୁଣି ସୀତାଙ୍କ ପ୍ରସଙ୍ଗ ଅନ୍ୟ ସ୍ଥଳରେ ସେହିପରି ସଂଯମତାର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ତାଙ୍କର ସମସ୍ତ ରସିକତାକୁ ସେ ସେତେବେଳେ ଶୃଙ୍ଗାରମୁଖୀ ନ କରି ଭକ୍ତିମୁଖୀ କରିଛନ୍ତି । ସୀତା ସ୍ୱୟଂ ଲକ୍ଷ୍ମୀ, ଜଗତର ମାତା । ଏହି ଭାବନା ସେତେବେଳେ କବି ବଳରାମଙ୍କୁ ଭକ୍ତ ବଳରାମରେ ପରିଣତ କରିଦେଇଛି । ଏହି ପାର୍ଥକ୍ୟକୁ ଦୃଷ୍ଟିରେ ରଖି ବିଚାର କଲେ ବଳରାମଙ୍କ ପ୍ରକୃତ ସ୍ୱରୂପ ଜାଣିହୁଏ । ସେତେବେଳେ କାବ୍ୟ ଓ ପୁରାଣର ରଚନା କେବଳ ଭକ୍ତିରସପାୟୀ ପାଠକଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା । ପୁରାଣର ଶ୍ରୋତା ଭାବେ ସବୁ ଶ୍ରେଣୀୟ ଲୋକଙ୍କର ସମାବେଶ ହେଉଥିଲା । ସମସ୍ତଙ୍କୁ ଆନନ୍ଦ ଦେବା ଥିଲା, ପୁରାଣର ଲକ୍ଷ୍ୟ । ପୁଣି ଏସବୁ ବର୍ଣ୍ଣନା ଏତେ ଜୀବନମୁଖୀ ଯେ ଏହା ପାଠକ ମନରେ ବାସ୍ତବ ଜୀବନର ସ୍ପର୍ଶ ଆଣେ । ଏ ସବୁର କୁପ୍ରଭାବ ସଂପର୍କରେ ପାଠକ ସଚେତନ ହୋଇଯାଇ ଏପରି କୁକର୍ମରୁ ବିରତ ହୋଇଯାଏ । ପୁରାଣ ହେଉଛି ସମାଜର ଦର୍ପଣ ସଦୃଶ । ଜୀବନର ବାସ୍ତବ ଚିତ୍ର ଦେଇ ଲୋକଙ୍କୁ ଅଧର୍ମରୁ ନିବୃତ୍ତ କରିବା ଏବଂ ଧର୍ମ ପ୍ରତି ଆକୃଷ୍ଟ କରିବା ଏହାର ଲକ୍ଷ୍ୟ । ପୁଣି ଉତ୍ତର ଭାରତର ବିଦେଶୀ ଶାସନରେ ଭୟଭୀତ ତଥା ତ୍ରସ୍ତ ସମାଜ ଓଡ଼ିଶାରେ ସେତେବେଳେ ସୃଷ୍ଟି ହୋଇ ନ ଥିଲା । ଓଡ଼ିଶା ଥିଲା ସ୍ୱାଧୀନ ରାଜ୍ୟ । ଭକ୍ତିର ସହ ରସିକତାର ରସ ଆସ୍ୱାଦନ କରିବାରେ ଅସୁବିଧା ନଥିଲା । ସେ ଦୃଷ୍ଟିରୁ ହୁଏତ ବଳରାମ ଲକ୍ଷ୍ୟଚ୍ୟୁତ ହୋଇନଥିଲେ ।

ସବୁ କଥା, ସବୁ ଚରିତ୍ର ଓ ସବୁ ବର୍ଣ୍ଣନା ମଧ୍ୟରେ ବଳରାମଙ୍କ ମୁଖ୍ୟ ଲକ୍ଷ୍ୟ ହେଲା ଶ୍ରୀରାମଙ୍କ ମହିମା ବ୍ୟାଖ୍ୟାନ ମାଧ୍ୟମରେ ଏକ ବାସ୍ତବ ଜୀବନର ଚିତ୍ର ଦେବା, ମନୁଷ୍ୟଙ୍କୁ ମନୁଷ୍ୟ ଭାବରେ ଉପସ୍ଥାପିତ କରିବା । ଶ୍ରୀରାମ ଯେପରି ଗୁହ ଶବର, ବାନର ପତି ସୁଗ୍ରୀବ, ଅସୁର ରାଜା ବିଭୀଷଣ, ଋକ୍ଷପତି ଜମ୍ୱେବଙ୍କୁ କୋଳେଇ ନେଇଥିଲେ, ଯେପରି ପର ଆପଣା ଭେଦକୁ ଭୁଲି ଯାଇଥିଲେ, କବି ବଳରାମ ମଧ୍ୟ ସେହିପରି ସମାଜର ସବୁ ବର୍ଗକୁ, ସବୁ ପ୍ରକାର କାର୍ଯ୍ୟକୁ ସମାନ ଭାବେ ଉପସ୍ଥାପିତ କରୁଥିଲେ । ଶ୍ରୀରାମଙ୍କ ପରମ ମିତ୍ର ଗୁହ ଶବର ଉପାଖ୍ୟାନ କହିବା ବେଳେ ସେ ଯେପରି ସମସ୍ତ ଶବର ଜାତିର ବେଶ, ଭୂଷା, ଆଚାର, ବ୍ୟବହାର ସଂପର୍କରେ ପାଠକଙ୍କୁ ଅବଗତ କରାଇଲେ, ସେହିପରି ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଜାତିର ଧର୍ମ ଉପସ୍ଥାପନ କଲାବେଳେ ସେ କାହାରି ପ୍ରତି ବିତୃଷ୍ଣା ପ୍ରଦର୍ଶନ କରି ନ ଥିଲେ । ତେବେ ଭକ୍ତ, ଶୁଦ୍ର ଓ ନାରୀ ପରି ସମାଜର ଅବହେଳିତ ଜାତିର ମହତ୍ତ୍ୱ ପ୍ରତି ସେ ବିଶେଷ ଭାବେ ସହାନୁଭୂତି ପ୍ରଦର୍ଶନ କରୁଥିଲେ । 'ଜଗମୋହନ ରାମାୟଣ'ର ଶୁଦ୍ରକ ମୁନି ଉପାଖ୍ୟାନ, ନାରୀ ମହତ୍ତ୍ୱ ପ୍ରତିଷ୍ଠା ପ୍ରସଙ୍ଗ ଓ ସୁଗ୍ରୀବ, ହନୁମାନ ଓ ବିଭୀଷଣଙ୍କ ପରି ନିଃସ୍ୱାର୍ଥପର ଭକ୍ତଙ୍କ ସଂପର୍କରେ ତାଙ୍କ ବର୍ଣ୍ଣନା ପାଠକଲେ ଏହାହିଁ ଜାଣିହୁଏ । ଏଠି କେବଳ ଭକ୍ତ ମହିମା କଥା କୁହାଯାଇଛି । ପ୍ରସଙ୍ଗ ହେଲା ଜୀର୍ଣ୍ଣ, ପରିତ୍ୟକ୍ତ ଅଯୋଧ୍ୟା ନଗରୀର ପୁନସଂସ୍କାର । ଶ୍ରୀରାମ ଅଯୋଧାରୁ ନିର୍ବାସିତ ହେବା ପରେ ଭରତ ମଧ୍ୟ ଅଯୋଧ୍ୟା ନ ଆସି ନନ୍ଦି ଗ୍ରାମରେ ଅବସ୍ଥାନ କଲେ । ଚଉଦ ବର୍ଷ ପରେ ଶ୍ରୀରାମ ଅଯୋଧାକୁ ଫେରିବା ବେଳେ ଏହି ପରିତ୍ୟକ୍ତ ନଗରୀର ପୁନରୁଦ୍ଧାର କାର୍ଯ୍ୟ ଆରମ୍ଭ ହେଲା । ହିନ୍ଦୁ ଧର୍ମର ନିୟମ ଅନୁଯାୟୀ ନୂଆ ଘର ହେଲେ ବ୍ରାହ୍ମଣର

ମନ୍ତ୍ରପାଠରେ ଏହା ଶୁଦ୍ଧ ହୁଏ । ହିନ୍ଦୁଧର୍ମର ପୃଷ୍ଠପୋଷକ ଭାବେ ବଶିଷ୍ଠ ଓ ଭରତ ତାହାହିଁ ଚାହୁଁଥିଲେ । ଅଥଚ ଶ୍ରୀରାମ ଅଯୋଧ୍ୟା ନଗରୀକୁ ଦେଖି ଆସିବା ପାଇଁ ପଠାଇଲେ, ତାଙ୍କ ଅନୁରକ୍ତ ଭକ୍ତ ସୁଗ୍ରୀବ, ବିଭୀଷଣ ଓ ହନୁମାନଙ୍କୁ । ସେମାନେ ଯିବା ପରେ ଶ୍ରୀରାମ ନିଜେ ଘୋଡ଼ା ଚଢ଼ି ଅଯୋଧ୍ୟା ଅଭିମୁଖେ ଯାତ୍ରା ଆରମ୍ଭ କଲେ । ଏହା ଦେଖି ବଶିଷ୍ଠ ଓ ଭରତ ଏକ ସ୍ୱରରେ ଏହାର ପ୍ରତିବାଦ କଲେ । ସେମାନେ କହିଲେ ଅଯୋଧ୍ୟା ଏବେବି ଏକ ଅପ୍ରତିଷ୍ଠା ନଗରୀ । ଯଜ୍ଞ ହୋଇ ନାହିଁ, ହୋମ ହୋଇନାହିଁ, ବ୍ରାହ୍ମଣ ମନ୍ତ୍ର ଉଚ୍ଚାରଣ କରିନାହାନ୍ତି, ଏପରି ଅପବିତ୍ର ନଗରୀରେ ଶ୍ରୀରାମଙ୍କ ପ୍ରବେଶ ଶାସ୍ତ୍ରାନୁମୋଦିତ ନୁହେଁ । ବଶିଷ୍ଠ ଓ ଭରତଙ୍କ ଅଭିଯୋଗ ଶୁଣି ଶ୍ରୀରାମ ଯେଉଁ ଉତ୍ତର ଦେଲେ, ସେଥିରେ ଭକ୍ତି ଧର୍ମର ମୂଳ ତତ୍ତ୍ୱ ପ୍ରକାଶିତ ହେଲା । ଭକ୍ତି ଧର୍ମ ଜାତି ବିଚାର କରେ ନାହିଁ, ଶାସ୍ତ୍ରନିୟମ ଅପେକ୍ଷା ମାନବିକ ଗୁଣକୁ ଅଧିକ ପ୍ରାଧାନ୍ୟ ଦିଏ । ବିଭୀଷଣ ଅସୁର ଜାତିର, ସୁଗ୍ରୀବ ଓ ହନୁମାନ ବାନର ଜାତିର ହେଲେ ବି ସେମାନେ ମାନବର ଶ୍ରେଷ୍ଠ ଗୁଣ ପରୋପକାରର ପୋଷକ ଥିଲେ । କୌଣସି ବର୍ତ୍ତନ ବା ପାରିଶ୍ରମିକ ନ ନେଇ ସୀତା ଉଦ୍ଧାର କାର୍ଯ୍ୟରେ ସେମାନେ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଏପରି ପରୋପକାରୀ ଲୋକଙ୍କ ପଦରଜ ଯେ ଶାସ୍ତ୍ରକଥିତ ବିଧିବିଧାନ ଠାରୁ ଶ୍ରେଷ୍ଠତର, ଏହାହିଁ ହେଲା 'ଜଗମୋହନ ରାମାୟଣ'ରେ ଶ୍ରୀରାମଙ୍କ ଉକ୍ତି । ସେଥିପାଇଁ ସେ କହିଥିଲେ,

'ପର ଉପକାରୀ ଏ ଅଟନ୍ତି ତିନିଜଣ,
ଏମାନଙ୍କୁ ସମ ନୁହନ୍ତି ସୁରଗଣ
ଏ ପୁଣ୍ୟ ପ୍ରାଣୀଙ୍କର ପାଦରେଣୁ ଲାଗି
ଦୁଷ୍କୃତମାନେ ପକାଇଲେ ଭାଙ୍ଗି ।
ଅଶ୍ୱମେଧ ଯାଗ ଯେବଣଠାରେ କରି
ଏହାଙ୍କ ଚରଣ ପଡିବା ଠାବରୁ ନୋହେ ସରି ।' (ଲଙ୍କାକାଣ୍ଡ)

ସେହିପରି ଶ୍ରୀରାମ ଲଙ୍କାରୁ ଫେରି ଭରଦ୍ୱାଜ ଆଶ୍ରମରୁ ହନୁମନ୍ତଙ୍କୁ ଯେତେବେଳେ ଭରତଙ୍କ ନିକଟକୁ ସମ୍ବାଦ ପ୍ରେରଣ କଲେ, ସେତେବେଳେ ସେ ଗୁହ ଶବରକୁ ଭୁଲି ନ ଥିଲେ । ବାଟରେ ନିଜର ପରମ ମିତ୍ର ଗୁହ ଶବରକୁ ଖବର ଦେବା ପାଇଁ ହନୁମାନଙ୍କୁ ବିଶେଷ ଭାବେ ସଚେତନ କରି ଦେଇଥିଲେ ।

ବାଲ୍ମୀକି ରାମାୟଣରେ ଶୁଦ୍ରକ ମୁନି ଉପାଖ୍ୟାନ ଥିଲା । ଏଥିରେ ଶ୍ରୀରାମ କୌଣସି ବ୍ରାହ୍ମଣର ସନ୍ତାନକୁ ଅକାଳ ମରଣରୁ ରକ୍ଷା କରିବାପାଇଁ ଶୁଦ୍ରକ ମୁନିକୁ ବଧ କରିଥିଲେ । ସେହି ଯୁଗରେ ଯେତେବେଳେ ବାଲ୍ମୀକି ରାମାୟଣ ଲେଖୁଥିଲେ ସେତେବେଳେ ଶୁଦ୍ରମାନଙ୍କର ତପସ୍ୟା କରିବାର ଅଧିକାର ନ ଥିଲା । ଶୁଦ୍ରମାନେ ତପସ୍ୟା କଲେ ଦେଶରେ ଅନାଚାର ସୃଷ୍ଟି ହେଉଥିଲା । ବ୍ରାହ୍ମଣ ପୁତ୍ର ସବୁ ଅକାଳରେ ମରଣ ବରଣ କରୁଥିଲେ । ଏହାର ପ୍ରତିବିଧାନ ପାଇଁ ଶ୍ରୀରାମଙ୍କୁ ଶୁଦ୍ରକ ମୁନିଙ୍କୁ ହତ୍ୟା କରିବାକୁ ହୋଇଥିଲା । ବଳରାମ କଥାରେ ବିଶେଷ ପରିବର୍ତ୍ତନ କଲେ ନାହିଁ । କଥାକୁ ସେହି ଭାବରେ ରଖି ଏହାକୁ ଏକ ସ୍ମରଣୀୟ ପୁଣ୍ୟ ଦିବସରେ ପରିଣତ କରିଦେଲେ । ଶ୍ରୀରାମଙ୍କ ହସ୍ତରେ ନିହତ ହୋଇ ଶୁଦ୍ର ମୁନିଙ୍କର କେବଳ ସ୍ୱର୍ଗପ୍ରାପ୍ତି ହୋଇ ନ ଥିଲା, ସେହି ଦିନଠାରୁ ସେହି ଦିବସ ଏକ ପୁଣ୍ୟତିଥିରେ ପରିଣତ ହୋଇଗଲା । ସେହି ଋଷି ପଞ୍ଚମୀ ଦିନ, ଯେଉଁମାନେ ଶୁଦ୍ର ମୁନିଙ୍କୁ ସ୍ମରଣ କରିବେ, ସେମାନେ ସମସ୍ତ ପାପରୁ ମୁକ୍ତିଲାଭ କରି ସ୍ୱର୍ଗର ଅଧିକାରୀ ହେବେ । ଏହିସବୁ ପରିବର୍ତ୍ତନ ମଧ୍ୟରେ କବିଙ୍କ ସମାଜ ସଚେତନତାକୁ ଲକ୍ଷ୍ୟ କରାଯାଇପାରେ ।

'ଜଗମୋହନ ରାମାୟଣ' ରଚନାର ମୂଳ ଲକ୍ଷ୍ୟ ହେଲା, ଶ୍ରୀରାମଙ୍କ ନାମ-ମହିମା ପ୍ରଚାର । ବିଷ୍ଣୁଙ୍କ ସବୁ ନାମ ମଧ୍ୟରେ ରାମ ନାମ ଶ୍ରେଷ୍ଠ । ବିଷ୍ଣୁଙ୍କର ଗୋଟିଏ ନାମ ଚାରିବେଦ ସହିତ ସମାନ । ଯିଏ ବିଷ୍ଣୁ ସହସ୍ର ନାମ ପାଠ କରେ ବା

ସ୍ମରଣ କରେ, ସେ ଯେତିକି ଫଳ ପାଏ, କେବଳ ରାମ ନାମ ଜପ କଲେ, ତା'ଠାରୁ ଅଧିକ ଫଳ ମିଳେ । ରାମ ନାମ ହେଉଛି ସକଳ ବେଦର ସାର । ବ୍ରହ୍ମା ଏହି ନାମ ସ୍ମରଣ କରି ଜଗତର ପିତା ହେଲେ । ଲକ୍ଷ୍ମୀ ହେଲେ 'ବିଷ୍ଣୁନାଥ ପ୍ରିୟା' । ଏହାର ଅନ୍ୟ ନାମ 'ତାରେକ ବ୍ରହ୍ମ ଜ୍ଞାନ' । ବ୍ରହ୍ମ ହତ୍ୟା ଓ ଦକ୍ଷ ଯଜ୍ଞ ନାଶ ଦୋଷରୁ ମୁକ୍ତି ପାଇବା ପାଇଁ ଶିବ ଯେପରି ଏହି ନାମ ଜପ କରିଥିଲେ, ପାର୍ବତୀ ମଧ୍ୟ ସେହିପରି ଅସୁରଦଳନ ପାପରୁ ମୁକ୍ତି ପାଇବା ପାଇଁ ଶିବଙ୍କ ମୁଖରୁ ରାମ କଥାକୁ ଆମୂଳ ଚୂଳ ଶୁଣିଥିଲେ । କବି ବଳରାମ ମଧ୍ୟ ସେହି ନାମକୁ ଜପ କରିବା ପାଇଁ ରଚନା କଲେ, 'ଜଗମୋହନ ରାମାୟଣ' । ନିଚେ ତରିଲେ, ଜଗତକୁ ତାରିବା ପାଇଁ ସଂକଳ୍ପ ନେଲେ । ଏ ଗ୍ରନ୍ଥରେ ମହିମା ଅଶେଷ । କବି କହିଛନ୍ତି,

ପରମବ୍ରହ୍ମ ଯେ ସ୍ୱୟେଂ ରାମ ଅବତାର
ଦୁଃଖୀଜନ ନିସ୍ତାରନ୍ତା ମ୍ଳେଚ୍ଛ ନିବାର ।
ଜଗତଜନ ହିତେ ସୁରଗଣ ଛଳେ
ପରମାନନ୍ଦ ଅବତାର ହୋଇଲେ ରବିତଳେ ।
ନାମ ସୁମରିଲେ ମୋ ଯେତେ ପାପ ଥାଇ
ତେତେକ ଦୁସ୍ତରୁ ଯେ ନିସ୍ତାର ତ୍ରୈଲୋକ୍ୟ ଗୋସାଇଁ ।
****************

ପଞ୍ଚମ ବେଦ ଏହା ଏକ ମନେ ଶୁଣ
ଶ୍ରୀରାମ ଚରିତ ଯେ ନାମ ରାମାୟେଣ ।
ପୁତ୍ର ପ୍ରାପତ ଯେ ହୁଅନ୍ତି ଅପୁତ୍ରିକେ
ସମାପତ କରି ଶୁଣ ହୋ ସୁଜ୍ଞ ଲୋକେ ।

**କୃଷ୍ଣ ଚରଣ ସାହୁ**

# ଆଦି କାଣ୍ଡ

ବନ୍ଦଇ ଜଗନ୍ନାଥ କମଳାଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା
କି ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।
ସର୍ବଦେବ ନିସ୍ତାରଣ ସୁରଗଣ ସାହା
ସୁବର୍ଣ୍ଣର ଶଙ୍ଖଚକ୍ର ଶୋଭେ ବେନି ବାହା ।
ସର୍ବାଙ୍ଗେ ଚନ୍ଦନ ଲେପନ ମୁରାରି
ବିଚିତ୍ର ଝିନବାସ ପରିହରଣ କରି । ୧୦
ଅତିଅନ୍ତ ଶୋଭିତ ପବିତ୍ର ନେତ ଗୋଟା
ଶ୍ରୀହରି ଅଙ୍ଗେଣ କାଛେଣି ଚାରୁଛଟା ।
ଶିରରେ ମୁକୁଟ କୁଣ୍ଡଳ ଶୋଭାବନ
ବିରାଜନ୍ତି ମଣି କିରଣ ଛନଛନ ।
ଲଲାଟେ ଶୋହଇ ନବରତ୍ନ ଚିତା
ଗଗନ ମଣ୍ଡଳେ କି ଶୋହଇ ସବିତା ।
ଅଳକା ଲମ୍ବିତ ଯେ ମୁକୁତାର ଝରା
ଚନ୍ଦ୍ର ସନ୍ନିଧେ ଯେହ୍ନେ ଉଦୟେ ଲକ୍ଷେ ତାରା ।
ଗଣ୍ଡ ସ୍ଥଳେ ମଣ୍ଡିତ ସୁସଞ୍ଚ ଚାରୁଚିତା
ହୃଦରେ ପଦେକ ଉରେ ସୁବର୍ଣ୍ଣ ପଇତା ।୨୦
ସୁରଙ୍ଗ ଅଧର ସୁଦୀର୍ଘ ସଞ୍ଚ ରେଖା
ଜଳଧର କୋଳେ କି ବିଜୁଳିର ଶିଖା ।
ସୁସଞ୍ଚ ନାସିକାକୁ ପଟାନ୍ତର ନାହିଁ କିଛି
ଆପଣେ ଆପଣାକୁ ଘଟଇ ଶ୍ରୀବସି ।
ତଇଲୋକ ବଶ ହୁଅଇ ଯାହାକୁ ଚାହିଁ
ଯେ ସେ ଜଗନ୍ନାଥ ଯେ ଜଗମୋହନ ଗୋସାଇଁ ।
କଟିରେ କଟିମେଖଳା ଶୋଭିତ ଦିବ୍ୟ କାନ୍ତି
ବାମେ ଯମଦାଢ଼ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତି ।
ରତ୍ନ ଟକାୟେଣ ନେତର ତୂଳି ପାଢ଼ି
ବିଜୟେ ଜଗନ୍ନାଥ ବଡ଼ିମା ପଣ ଛାଡ଼ି ।୩୦
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚିନ୍ତନ୍ତି ଯାକୁ ଧ୍ୟାନେ
ସେ ପ୍ରଭୁ ଅବତାର ମଣ୍ଡେଣ ଆପଣେ ।
ଦେଖିତେ ସୁଲଭ ନୟନେ ଅଗୋଚର
ପରଂବ୍ରହ୍ମ ରୂପ ଦିଶନ୍ତି ଶୋଭାକର ।
ଅବୟେ ଅଶେଷ ଅରୂପ ରୂପକାୟା
ଅବର୍ଣ୍ଣ ଅଜାତ ଅବିବେକ ମାୟା ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଯେକଇ ଈଶ୍ୱର
ସାକ୍ଷାତେ ବିଜୟେ ଦକ୍ଷିଣ ସିନ୍ଧୁ ତୀର ।
ଦଣ୍ଡ ସିଂହାସନ ଚାମର ଶ୍ୱେତଛତ୍ର
ରାଜ ରାଜେଶ୍ୱର ନୃପତି ପବିତ୍ର । ୪୦
ପାଟ ମହାଦେଇ ରୁକ୍ମିଣୀ ସତ୍ୟଭାମା
ମନ୍ତ୍ରୀଗଣ ସହିତରେ ଜ୍ୟେଷ୍ଠ ବଳରାମା ।
ଭଗ୍ନୀ ସୋଭଦ୍ରା ସେ ସମ୍ଭାଳଇ ଅର୍ଥ
ଭଣ୍ଡାରେ ପରିପୂର୍ଣ୍ଣ ବିବିଧ ପଦାର୍ଥ ।
ବଜ୍ର ସମ ପ୍ରାସାଦ ପାଷାଣ ନବର
ଧ୍ୱଜେ ଚକ୍ର ଚିହ୍ନ ବିରାଜ ଫରହର ।
ଆଗେ ଦ୍ୱାରପାଳ ବିନତାର ବଛ
ଦକ୍ଷିଣ ପାରୁଶେଣ କଳପବଟ ବୃକ୍ଷ ।
ଲବଣ ମାହାଜଳ ଗଡ଼କଇ ଖଣା
ଲାଉକେଶ୍ୱର ଲିଙ୍ଗ ପଶ୍ଚିମ କଣେ ଠଣା । ୫୦
ପାଟଣାର ନାମ ଶ୍ରୀପୁରୁଷୋତ୍ତମ ପୁରୀ
ବ୍ରହ୍ମା ସ୍ରିଜିଲା ତାହା ଶଙ୍ଖ ମତି କରି ।
ମାରକଣ୍ଡେଶ୍ୱର ଲିଙ୍ଗ ନଗ୍ରକୁ ଦଣ୍ଡପାଟ
ଚାରିଦ୍ୱାରେ ବସଇ ମୁକତି ଚାରିହାଟ ।
ସୁବର୍ଣ୍ଣମୟେ ପୁର ଦିଶଇ ଅତି ଶୋଭା
ଯହିଁ ନ ଭେଦଇ କଳିକାଳ ପ୍ରଭା ।
ଦଶ ସହସ୍ର ଘର ଅଷ୍ଟାଦଶ ଜାତି
ସବିହେଁ ଚତୁର୍ଭୁଜ ସ୍ୱର୍ଗକଇ ଦିଶନ୍ତି ।
ଭାଳିଣ ଦେବତାଏ ପୁଚ୍ଛନ୍ତି ପିତାମହ
ଏଥିରେ ସଂଶୟେ ଦେବ ବିଚାରିଣ କହ । ୬୦
ମର୍ତ୍ତ୍ୟ ଲୋକେ ଭ୍ରଥ ଖଣ୍ଡେ ପୂର୍ବଦିଗ ଶେଷ
ଦକ୍ଷିଣ ମଉଦଧି ଉତ୍ତର ତଟ ଦେଶ ।
ନୀଳଗିରି ପର୍ବତେ ବିଜୟେ ଚକ୍ରଧାରୀ
ଚର୍ମ ନୟନରେ ଦେଖିଣ ଲୋକେ ତରି ।
ନଗ୍ରହିଁ ସୁସଞ୍ଚ ବହୁତ ଲୋକ ଅଛି
ସଭିଏ ଦିଶନ୍ତି ପ୍ରତକ୍ଷେ ଶ୍ରୀବଛି ।
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁର୍ଭୁଜ
କିରୀଟୀ କୁଣ୍ଡଳ ପୀତବାସ ଦିବ୍ୟ ତେଜ ।
ଏଥିରେ ମଧ୍ୟ କେ ଅଟଇ ଜଗନ୍ନାଥ
କେମନ୍ତେ ଜାଣିମା ଏହା କହସି ଜଗତର ତାତ ।୭୦
ହସିଣ ବ୍ରହ୍ମା ବୋଲନ୍ତି ସମସ୍ତ ଦେବେ ଶୁଣ
ପୁରୁଷୋତ୍ତମ ଲୋକେ ସମସ୍ତେ ନାରାୟେଣ ।
ଏ ସେ ନିଦାବିଷ୍ଣୁ ପରମ ବ୍ରହ୍ମ ହରି
ଚର୍ମ ଲୋଚନେ ଦେଖିଲେ ଯାହା ତରି ।
ସର୍ବଲୋକେ ଯହୁଁ ହୋଇଲେ ଚତୁର୍ଭୁଜ
ଆପଣାର କର ଛାଡ଼ିଲେ ଦେବରାଜ ।
ଚରଣ ନ ଘେନିଲେ ଦେବଗଣ ହିତେ
ଗୁପତ କଲେ ହରି ଶ୍ରବଣ ସହିତେ ।
ଆଙ୍କୁ ହେତୁ କରିଥିବ ଯେହା ଚିହ୍ନି
ଆନନ୍ଦ ହୋଇଲେ ଶୁଣି ସୁରସିଦ୍ଧ ମୁନି । ୮୦
ବ୍ରହ୍ମା ସହିତେଣ ଅଇଲେ ଦେବେ ଦେଖି
ସୁଫଳ ହୋଇଲେ ସେ ଗୋବିନ୍ଦଙ୍କୁ ନିରେଖି ।
ଦୁଇବାହୁ ଟେକିଣ ଯାଚନ୍ତି ଶରଣ
ଯେବଣ ନାମ ଗୋଟି ଜଗତ ଉଦ୍ଧାରଣ ।

ଦାସ ଜନକଇ ଦେଖିଲେ ହସନ୍ତି
ତେଣୁ ସେ ସୁରଙ୍ଗ ଅଧର ବିଘଂସନ୍ତି ।
ଚକ୍ଷୁ ନିଚଳ କରିଣ ଦେବ ଚାହେଁ
ନପୁଣ ମୋହର ଭଗତ ଦୁଃଖ ପାୟେ ।
କଟି ପୀତବାସ ପିନ୍ଧନ୍ତି କାଛି କରି
ସେବକ ନିମିତ୍ତେଣ ଧାମନ୍ତି ଚକ୍ରଧାରୀ ।୯୦
ଚାରିକତି ବହଇ ଚତୁଧାମ ନଦୀ
ଆରତ ଭଞ୍ଜନ ବାନା ଯାହାର ପ୍ରସିଦ୍ଧି ।
କୁସୁମ ଚନ୍ଦନ ସୁଗନ୍ଧ ଝିନ ବାସ
ରତ୍ନ ଆଭରଣ ଭୋଗ ଯେ ବିଳାସ ।
ଦେଖିଣ ଦେବତାଏ ହୋଇଲେ ତ୍ରିପୁତି
ଜାଣିଲେ ବାସୁଦେବ ବାସନା ପ୍ରକୃତି ।
ଦେବେଣ ଦୁର୍ଲ୍ଲଭ ମାନବେ ଅଗୋଚର
ଜୟ ଜୟ ମାଧବେ ତୁ ପରମ ନିରାକାର ।
ଅନନ୍ତ ପୁରୁଷୋତ୍ତମ ତୁ ସହସ୍ର ମୂରତି
ସହସ୍ରେ କର ସହସ୍ରେ ସୂର୍ଯ୍ୟ
ଜ୍ୟୋତି । ୧୦୦
ସହସ୍ରେକ ଶିର ସହସ୍ରେ ଲୋଚନ
ସହସ୍ରେ କୋଟି ଯୁଗ କଳାକ ବିମୋଚନ ।
ସ୍ୱୟମ୍ଭୁ ମୁନି ସହସ୍ରେ ସୃଷ୍ଟି ଅନ୍ତେ ତ୍ରିଦଶ
ଦ୍ୱାଦଶ ଆଙ୍ଗୁଳ ଯେ ବେଦାନ୍ତ ପୁରୁଷ ।
ସତ ଶାନ୍ତ ସାତୁକ୍ୟ ଅଟୁନା ଗୋସାଇଁ
ଭାବଗ୍ରାହୀ ନାଥ ତୁ ତୋ ତହୁଁ ଆନ ନାହିଁ ।
ଅପାର ମହିମା ନାଥ ବିଚିତ୍ର ତୋର କେଳି
ଜାଣିତ ଭାର୍ଜନ ନୋହନ୍ତି ଦେବ ଶୂଳୀ ।
ଦାସବତ୍ସଳ-ନାଥ କରୁଣାମୟେ ସିନ୍ଧୁ
ଧଉର୍ଯ୍ୟେଣ ମେରୁ ଦୁଃଖିଜନବନ୍ଧୁ ।୧୦
ସୁରଗଣଙ୍କଇ ଶାଖା ଦତ୍ୟ କୁଳ କାଳ
ନମୋ ନାରାୟେଣ ଗୋବିନ୍ଦ ଗୋପାଳ ।
ନମୋ ଦାମୋଦର ଶ୍ରୀରଙ୍ଗ ମଧୁହାରୀ
ନମୋ ନମୋ ବିଷ୍ଣୁ ସାରଙ୍ଗ ଚକ୍ରଧାରୀ ।
ନମୋ ଭଗବାନ ଜଗୁଜନଆତ୍ମା
ଉତପତି ପ୍ରଳୟ ତୁ କରନ୍ତା ମହାତମା ।
ସୃଷ୍ଟି ସ୍ରିର୍ଜନ୍ତା ଦୁଃଖ ସୁଖ ଦାନୀ
ଅବିକ୍ଷଣେ ଦାତା ପାପ ପୁଣ୍ୟ ଜ୍ଞାନୀ ।
ଭାଇ ଭାରିଯା ଭୟେଣୀ ସହିତେ
ନୀଳଗିରି ବିଜୟେ ଜଗତ ଜନ
ହିତେ । ୨୦
ବିବିଧ ବିନୋଦେ ତୁ କରୁ କ୍ରୀଡ଼ାରସ
ତୀର୍ଥଯାତ୍ରା ନାନା ବିଧାନ ସରସ ।
ପାଟଛତ୍ର ଚାମର ଦାସ ଦାସୀ ଜନ
ଅବିକାର ପାତନା ତୋ ନ ଜାଣନ୍ତି ଆନ ।
ଯାହାକଇ ସୁଦୟା କରୁ ବ୍ରହ୍ମରାଶି
ସେ ତୋହୋର ଚରଣେ ଶରଣ ପଶଇ
ଆସି ।
ଇହ ଲୋକେଣ ଭକ୍ତି ଅନ୍ତେଣ ସ୍ୱର୍ଗଯାଇ
ଦେବଙ୍କର ତୁଲେ ଯୁଗେ ଯୁଗେ ଥାଇ ।
ତୁ ସେ ନାରାୟେଣ ଶରଣ ରଖନ୍ତା
କାହୁଂ ବହୁ ସବୁହିଁ ଯେକଇ
ଦେଖନ୍ତା । ୩୦
ଧନୀ ନିର୍ଦ୍ଧନୀ ଅବଳ ବଳ ନାହିଁ
ତୋହୋର ଆଗେ ସ୍ୱାମୀ ଜପ ମନ୍ତ୍ର କାହିଁ ।
ବେଦ ପୁରାଣେ ତୁ ଅଟୁ ଆଦିପତି
ତୋହର ଆଗେ କିସ ମୋ ମୁକତି ।
ବ୍ରହ୍ମା ତରସ୍ତ ହୁଅଇ ଯାର ଆଗେ
ରୁଦ୍ର ସମାନ୍ୟ ନୋହଇ ଯାକୁ ଯୋଗେ ।
ସର୍ବ ଦେବ ନିସ୍ତାରଣ ସର୍ବଜୀବ ଅନ୍ତର୍ଯ୍ୟାମୀ
ବନ୍ଦଇ ଜଗନ୍ନାଥ ପରମବ୍ରହ୍ମ ସ୍ୱାମୀ ।
ମୁହିଁ ତୋହୋରେ ଶରଣ ପଶିଲି ଜଗନ୍ନାଥ
ଉଦ୍ଧରି ଧର ମୋତେ ଶଙ୍ଖ ଚକ୍ର
ହସ୍ତ ।୪୦
ତୁ ଦେବ ଉଦ୍ଧାରଣ ବୋଲିଣ ଭଜିଲି
ଭୟେ ନ କରିଣ ତୋରେ ଶରଣ ପଶିଲି ।
ଶାହାସ୍ତ୍ର ଆଗମ ମୁଁ ଶୁଣିଲି ବିପ୍ରମୁଖେ
ତୋତେ ସେବା ସ୍ୱାମୀ କରିଥିବି ସୁଖେ ।
ତୋହୋର ଆଜ୍ଞାରେଣ ସୁରଗଣ ବଳୀ
ତୋତେ ଦ୍ୱେଷ କରିଣ ଅସୁରେ ଯାନ୍ତି
ଜଳି ।
ସ୍ୱର୍ଗ ମଞ୍ଚ ପାତାଳ ଚଉଦ ଭୁବନ
ତୋତେ ଆଶ୍ରେ କରିଣ ଅଛନ୍ତି ସର୍ବଜନ ।
ଯେ ତୋହୋରି ଦୟା ଅଛଇ ଦେବେ ପାଇ
ବ୍ରହ୍ମାଣ୍ଡ ଭିତରେ ତାକୁ ସରି ସମ
ନାହିଁ ।୫୦
ଜୟ ତୁ ଶ୍ରୀବସ୍ସ-ଲାଞ୍ଛନ ମୁରାରି
କଉସ୍ତୁଭ ମଣି ମଣ୍ଡିତ ଦଇତାରି ।
ପୁରାଣ ପୁରୁଷ ତୁ କମଳ ପତ୍ରାକ୍ଷ
ପ୍ରସନ୍ନ ହୁଅ ମୋତେ ପ୍ରେମଜ୍ଞାନ ଦକ୍ଷ ।
ମୁହିଁ ବଳରାମ ଦାସ ଅଟଇ ତୋହର
ତୁ ଦେବ ହୃଦରେ ବସସି ମୋହୋର ।
ଶ୍ରୀରାମ ରୂପ ଜାନକୀପତି ମୂର୍ତ୍ତି
ସପ୍ତମ ଅବତାର ହୋଇଲେ ଶ୍ରୀପତି ।
ରାବଣର ଦର୍ପ ଧଂସିଲେ ଯେବଣ କୃତ୍ୟେ
ତାହା ମୁଁ ବିଚାରି ରଚିବଇଁ ଗୀତେ ।୬୦
ଯେ ଜନ୍ମ ମୋହର ସାର୍ଥକ କରିବି ତୋତେ
ସେବି
ଯାହା ସେ ବଖାଣ କଲା ବାଲମ୍ମିକ
ମହାକବି ।
ତାହା ମୁଂ ସୁମରିଣ ଧଂସିବି ପାପରାଶି
କରସି କରୁଣା ମୋତେ ନୀଳଗିରିବାସୀ ।
ଶୁଣିଣ ପ୍ରସନ୍ନ ମୋତେ ହୋଇଲେ ଜଗନ୍ନାଥ
ହୃଦେ ପ୍ରକାଶ ମୋର ଶଙ୍ଖ ଚକ୍ର ହସ୍ତ ।
ସ୍ୱାମୀର ଆଜ୍ଞା ପ୍ରମାଣେ ଶିରେ ଧରି
ଗ୍ରନ୍ଥ ବଖାଣିମି ବୋଲି ମନରେ ବାଞ୍ଛା
କରି ।
ଶୁଣିମା ସୁଜ୍ଞ ଜନେ ଶ୍ରୀରାମ ମହିମା
ସଦାଶିବ ଆଗେ ଯାହା ପଚାରିଲେ
ଉମା । ୭୦
ପ୍ରସନ୍ନ ଚିତ୍ତ ହୋଇଣ କହନ୍ତି ଶୂଳପାଣି
ମୁହିଂ ତାହା ପଣ୍ଡିତ ମୁଖୁଂ ଅଛି ଶୁଣି ।
ନୀଳସୁନ୍ଦର ଗିରି ଜଗନ୍ନାଥଙ୍କ ପ୍ରସନେ
କହିବି ରାମାୟେଣ ଅମୃତ ବଚନେ ।
କପିଳାସ କନ୍ଦରେ ଅଛନ୍ତି ବିଶ୍ୱନାଥ

ଯେସନ ସମୟେ ଯାଇ ମିଳିଲେ
ଚଉମାଥ ।
ଦେଖିଣ କୃତକୃତ ହୋଇଲେ ତ୍ରିପୁରାରି
ଉଠିଣ ବିଧାତାକୁ କୋଳାଗ୍ରତ କରି ।
ପୀରତି କରିଣ ବସାଇଲେ ନେଇ
ବ୍ରହ୍ମାଙ୍କୁ ଦେଖିଣ ଆନନ୍ଦ
ରମାସାଇଂ । ୮୦
ଏକ ଆରେକେଣ ପୁଚ୍ଛନ୍ତି କୁଶଳ
ସୃଷ୍ଟିର କଥା ବ୍ରହ୍ମା କହିଲେ ସକଳ ।
ସଦାଶିବ ବୋଲନ୍ତି ଶୁଣିମା ପିତାମହ
ବଳ ଖିନ୍ନ ଭଗ୍ନ ହୋଇଲା ମୋର ଦେହ ।
ପାର୍ବତୀ ବିକଳ ବହୁତ ମୋତେ ଦେଖି
କେବଣ କାରଣଯେ ବୁଝ ଅଷ୍ଟ ଆଖି ।
ବ୍ରହ୍ମା ବୋଇଲେ ଦେବ ଅଛଇ ମୁହିଂ ଜାଣି
ଯେଣେ ସେ ମୁଂ ଅଇଲି ତାହା ଶୁଣ
ଶୂଳପାଣି ।
ଧର୍ମ ନ ଥାପିଣ ମହାଯାଗ ଭାଙ୍ଗିଲୁ
ଦକ୍ଷ ପ୍ରଜାପତିକୁ ଅନେକ ଗଞ୍ଜିଲୁ । ୯୦
ସେ ଦୋଷେ ତୋହୋର ଶରୀର ସୁସ୍ଥ ନାହିଁ
ତୁହି ସିନା ଭିଆଇଂ ଅଛୁ ଉମା ସାଇଂ ।
ପାପ ପୁଣ୍ୟ ବୋଲିଣ ଦୁଇ ପଛ କଲୁ
ପୁନ୍ୟେଣ ପାପେ ଦଗଧି ହୋଇଲୁ ।
ଯାଗ ଯଜ୍ଞ ଜପ ତପ ଦାନ ଧର୍ମ
ଯେହା ଝିଙ୍ଘାସନ୍ତେ ପାଇ ପାପ କର୍ମ ।
ଅହନ୍ତା ଘେନିଣ ଯେ ବିଚାର ନ କଲୁ
ତେଡ଼େ ମହାଧର୍ମ ହେଲେ ଝିଙ୍ଘାସିଲୁ ।
ତହିଂର ପାପେଣ ବଢ଼ିଲା ତୋତେ ରୋଗ
ଶରୀର ଅସୁସ୍ଥେଣ ଅସାଧନ
ଯୋଗ । ୧୦୦।
ଯେବେ ସଦାଶିବ ମୋହୋର ବୋଲକର
ତାରେକ ବ୍ରହ୍ମରାମ ନାମ ତୁ ଉଚ୍ଚାର ।
ଯେ ସେ ପ୍ରମବ୍ରହ୍ମ ସଂସାର ଏଣେ ତରି
ରାମ ନାମ ସୁମରଣା କର ତ୍ରିପୁରାରି ।
ବିଶ୍ୱାମିତ୍ର ମୁନି ଅନୁଷ୍ଟୁପ ଛନ୍ଦ
ଯେ ସେ ରାମ ନାମ ହୃଦରେଣ ବନ୍ଧ ।
ହେଉ ପରାପତ ତୋତେ କଳପ ପଦାର୍ଥ
କଳୁଷ ବିସର୍ଜିଣ ହୁଅ ତୁ ସୁଆର୍ଥ ।
ଯେତେ ବୋଲି ବ୍ରହ୍ମା ଚତୁର୍ବେଦ ଘୋଷି
ରୁଦ୍ରକଇ ଆଶିଷ କହିଲେ କମଳ
କୋଷୀ ।୧୦
କୃତଆଞ୍ଜୋଳି ହୋଇଣ ସଦାଶିବ
ବୋଲନ୍ତି ତୁମ୍ଭେ ଶୁଣ ହୋ ଦେବଙ୍କର
ଦେବ ।
ଅନେକ ସ୍ତୁତି ଯେ କଲା ଶୂଳପାଣି
ତୁ ସେ ପିତାମହ ମୋହୋର ମନ ଜାଣି ।
ଆଜୁଂ ରାମ ନାମ ଜପିବି ଅନୁବ୍ରତେ
ତୋହୋରେ ପ୍ରସନ୍ନ ମୋତେ ହଉ
ପରାପତେ ।
ଏଥୁଅନନ୍ତରେ ଗଲାକ ଶୂଳପାଣି
ସଦାଶିବ ହରଷେ ଭଣଇ ରାମବାଣୀ ।
ନିତି ନିତ୍ୟକର୍ମ ସାରିଣ ଶଙ୍କର
ଜପଇ ରାମ ନାମ ବେନି ଯେ
ଅକ୍ଷର ।୨୦
ଦିନୁ ଦିନୁ ଶରୀର ହୋଇଲାକ ସୁସ୍ଥ
ପରମ ସନ୍ତୋଷ ହୋଇଲେ ଶୂଳହସ୍ତ ।
କ୍ଷଣହେଂ ନ ଛାଡନ୍ତି ଶ୍ରୀରାମର ନାମ
ହୃଦ ପଦ୍ମ ମଧେ କଲାକ ବିଶ୍ରାମ ।
ଯେସନେକ କେତେକାଳ ଯହୁଂ ଗଲା
ହେମବନ୍ତର ନନ୍ଦିନୀ ତାହା ସେ ଜାଣିଲା ।
ଦିନେକ ସଦାଶିବ ଜପିବାର ବେଳେ
ପାର୍ବତୀ ନମଇଂ ଈଶ୍ୱର ପାଦତଳେ ।
ଭୋ ଦେବ ଈଶ୍ୱର କେବଣ ଜପ ଜପୁ
ମୋତେ ହେଂ ମାୟା ଯେ ଅଛି ତୋର
ବପୁ । ୩୦
ମୁହିଂ ତୋର ଚରଣେ ସର୍ବଦା ଅଟଇ ଦାସୀ
କର ଅନୁଗ୍ରହ ମୋତେ କପିଳାସ ବାସୀ।
ଯେତେ ବୋଲି ଦେବୀ ନମଇଂ ପୁଣ ପୁଣି
ହସନ୍ତି ସଦାଶିବ ବଦନ୍ତି ପ୍ରିୟବାଣୀ ।
ଉଠ ଉଠ ସଖି ଗୋ ମମ ପ୍ରାଣ ସରି
ତୋତେ କି ଗୁପତ ଯେ ଅଛଇ ମୋହରି ।
ଆପଣେ ଶ୍ରୀଭୁଜେ ତୋଳିଲେ ଦେବଶୂଳୀ
ଜାନୁରେ ବସାଇଣ କହନ୍ତି ରାମକେଳି ।
ଶୁଣ ଶଶିମୁଖୀ ଗୋ କହଇ ମୁହିଂ ତୋତେ
ପିତାମହ ଗୁପତେ ଯାହା କହିଗଲେ
ମୋତେ ।୪୦
ବିଷ୍ଣୁର ଏକ ନାମ ସର୍ବ ବେଦ ସରି
ସହସ୍ରେକ ନାମ ଯେ ଉଚ୍ଚାରଣ କରି ।
ଯେ ଯେତେକ ଫଳ ହୋଯେ ସୁମରନ୍ତେ
ଯେଥୁ ଅଧିକ ହୋଇବ ରାମନାମ
ଜପନ୍ତେ ।
ଯେ ସେ ସକଳ ବେଦର ଅଟଇ ସାର
ଯେହା ସୁମରନ୍ତେ ଖଣ୍ଡଇ କ୍ଳେଶ ଭାର ।
ରାମନାମ ବୋଲିଣ ସୁମରନ୍ତି ମୁନି
ରାମନାମ ଜପିଲେ ସେ ବୋଲନ୍ତି
ବ୍ରହ୍ମଜ୍ଞାନୀ ।
ରାମନାମ ସୁମରି ବ୍ରହ୍ମା ଜଗତର ପିତା
ରାମନାମ ସୁମରିଲେ ହୁଅଇ ଜଗତ
ଜିତା । ୫୦
ଶ୍ରୀରାମ ସୁମରଣା କରଇ ଦେବୀ ଶ୍ରୀଆ
ତେଣୁ ସେ କମଳା ବିଷ୍ଣୁନାଥ ପ୍ରିୟା ।
ତାରେକ ବ୍ରହ୍ମଜ୍ଞାନ ଯାହା ହାଦେ ଭଣି
ଯେ ସେ ମହାମନ୍ତ୍ର ସମରିକ୍ଷ ବାଣୀ ।
ମୁହିଂ ତାହା ଜପଇ ପରମ ଯୋଗ ତତୁଂ
ତେଣୁ ସେ ଶରୀରକଇ ନ ବାଧଇ ମୃତ୍ୟୁ ।
ଉମା ବୋଇଲେ ଦେବ କହିଲସି ଯାହା
ନାରାୟଣ ସ୍ୱାମୀ ସେ ସର୍ବଦେବ ନାହା ।
କେବଣ ଅବତାର ରାମ ନାମ କହି
କିମର୍ଥେ ଅବତାର ହୋଇଲେ ସେ
ମହୀ । ୬୦
ଅବର୍ଣ୍ଣ ଅରୂପ ଅଶ୍ରୁତି ନାମ ଯାର
ମୃତ୍ୟୁ ଲୋକେ କିପାଇଁ ସେ ହୋଇଲେ
ଅବତାର ।

ଯେହା ସଂକ୍ଷେପି ମୋତେ କହ ପ୍ରାଣନାଥ
ଶୁଣିମି ଶ୍ରୀରାମର ରବିତଳେ ଜାତ ।
ବୋଲନ୍ତି ଦିଗବାସ ଶିବା ମୁଖ ଚାହିଁ
ବିଷ୍ଣୁର ପୁରାଣ ତୁ ଶୁଣ ପ୍ରାଣସହି ।
ବ୍ରହ୍ମାର ବେଦ ପଢ଼ନ୍ତେ ପୁରୁଷେକ ଜାତ
ତାହାଙ୍କ ନାମ ଧାତା ଦେଲାକ ପଉଲୋସ୍ତ୍ୟ ।
ପଉଲୋସ୍ତିର ସୁତ ବିଶର୍ବା ମହାଋଷି
ଦଶଗ୍ରୀବ ନାମେଣ ହୋଇଲା ତାହାରି
ଶିଷି । ୭୦
ସୁମାଳି ଦୋହିତା ନଉକେଶୀ ତହୁଁ ଜାତ
ମାତା ଗୁଣ ଘେନି ସେ ହୋଇଲା ଦଇତ ।
ବ୍ରହ୍ମାର ବୋଲେ ସେ ସାଧିଲା ତିନିଲୋକ
ସୁର ମୁନିମାନଙ୍କୁ ଦେଲାକ ମହାଦୁଃଖ ।
ବଇମାତ୍ର ଭାଇ ତାର ଅଟଇ କୁବେର
ତାହାକୁହିଁ ଲଙ୍କାପୁରୁ କଲାକ ବାହାର ।
କପିଳାସ କନ୍ଦରେ ପଶିଲାକ ଯାଇ
ତହିଁ କି ଧାଇଂଲା ବୀର ପ୍ରତିଜ୍ଞା ଦେଖାଇଂ ।
ଯୁଦ୍ଧେ ଜିଣି ତାହାର ଆଣିଲା ବିମାନ
ଦେବେ ସେ ଆରୋହନ୍ତି ପୁଷ୍ପେକ ନାମେ
ଯାନ ।୮୦
ତିନିପୁର ଗମନ କରଇ ଦେବ ରଥ
ତହିଁ ବସି ଜିଣିଲା ସକଳ ଦେବତାନ୍ତ ।
ସ୍ୱର୍ଗକଇ ଦିଗବିଜେ କରିଣ ହାଦେ ଗଲା
ମରୁତ ଯାଗ କାଳେ ପ୍ରବେଶ ହୋଇଲା ।
ଦେଖିଣ ଦେବତାଏ ଗଲେ ଅପସରି
ମରତ ରାଜାକଇ ଜିଣିଲାକ ଧରି ।
ମଯେ ଦଇତର ଦୋହିତା ମନ୍ଦୋଦରୀ
ନାହିଂ ପଟାନ୍ତର ସେ ଅପୂର୍ବ ସୁନ୍ଦେରୀ ।
ତାହାକଇ ବିଭା ହୋଇଲା ବିଂଶପାଣି
ସେ ସେ ସୁଲକ୍ଷଣୀ ତାହାର
ପାଟରାଣୀ । ୯୦
ବ୍ରହ୍ମା ପ୍ରସନେ ଯେ ଦେଲାକ ଦିବ୍ୟ ଅସ୍ତ୍ର
ତେଣୁ ସେ ଦ୍ରୁର୍ପିଷ୍ଟ ସାଧିଲା ଜଗତ ।
ପୃଥିର ରାୟେ ନୋହିଲେ କେହି ସରି

ଅରଣ୍ୟ ରାଜାକଇ ଅଯୋଧ୍ୟାୟେ ମାରି ।
ପୃଥି ବୁଲିଣ ସେ କପିଳାସକଇଂ ଗଲା
ପର୍ବତ ଉପାଡ଼ି ତୋଳିଣ ଧଇଲା ।
ରାବଣ ନାମେ ତହିଂ ପାଇଲା ଅଭୟେ ବର
ଯମକଇ ଜିଣିଲା ପଶିଣ ଯମପୁର ।
ପାତାଳେ ବାସୁକି ସଙ୍ଗେ ଯୁଦ୍ଧ କଲା
ତହିଁ ବଳି ଚକ୍ରବର୍ତ୍ତୀ କି ଦେଖିଲା ।
ପାତାଳ ବଇକୁଣ୍ଠେ ଦେଖି ଦେବ ହରି
ମାନଧାତା ସଙ୍ଗେ ମଞ୍ଚେ ଯୁଦ୍ଧ କରି ।୧୦୦
ହୋଇ ହୋଇ ଦେଶରେ ସହସ୍ରାଅର୍ଜୁନ
ତାହାର ତୁଲେ ଯୁଦ୍ଧ କଲାକ ଦଶାନନ ।
ନର ବାନରେ ହତ ହୋଇବ ତାର ବଂଶ
ଯେସନେକ ବିଧାନ ଅଛଇ ପୂର୍ବର ଭବିଷ ।
ମୁହିଂ ତାହା ଜାଣି ଅଛଇ ନିର୍ଭାଇ
କଶ୍ୟପ ମୁନି ଜାତ ହୋଉ ମୃତ୍ୟୁପୁରେ
ଯାଇଂ ।
ତାହାର ତହୁଁ ଜାତ ହୋଇବେ ମାଧବ
ମନୁଷ୍ୟ ରୂପ ଧରି ବଧିବେ
ଦାନବ ।୧୦୦
ତୁମ୍ଭେ ଦେବତାୟେ ରକ୍ଷ କପି ହୋଇଂ
ଯେ ଯାହାର ବଳ ଘେନି ଅବତାର ଯାଇଂ ।
ଅଳପ ସମୟରେ ହୋଇବ ଦୁଖୁଂ
ପାର । ୧୦
ଯେସନେକ ବଚନ ବୋଇଲେ କୁଶଧର ।
ଶୁଣ ଗୋ ଭବାନୀ କହନ୍ତି ବଚନ
ଯେସେ ରାମା (ବା)ୟେଣ ପବିତ୍ର ଅଛାନ ।
ଜମ୍ବୋଦ୍ୱୀପ ଭ୍ରଥ ଖଣ୍ଡ ମଧଭାଗ ମହୀ
ଦକ୍ଷିଣ କୋଶଳେ ପବିତ୍ର ଦିବ୍ୟ ଭୂଇଂ ।
ଅଯୋଧ୍ୟା ନାମେ ନଗ୍ର ସରୟୁ ନଦୀ ତଟେ
ଅଳକାପୁର ଯେହ୍ନେ ଗଣ୍ଡକୀ ନଦୀର
ନିକଟେ ।
ନଗ୍ର ପରିମଳ ଅତିହିଂ ଚାରୁ ଶୋଭା
କି ଜାଣି ପଟାନ୍ତର ଶରଦଶଶୀ ପ୍ରଭା ।
ରାଜାର ମନ୍ଦିର ଦିବ୍ୟ ଚାରୁ କାନ୍ତି । ୨୦

ମେଢ ମଣ୍ଡପ ଅଟାଳି ଜଗତୀ ।
ଅଗର ଚନ୍ଦନ ଖମ୍ଭ ରଥ ସେଣି
ଉପରେ ତେଜପତ୍ର ଛାଇଲା ଛାୟେଣୀ ।
ମୁକୁତାର ଝରା ନୀଳା ରତ୍ନ ଜଡ଼ି
ସୁବର୍ନ୍ୟର ପ୍ରତିମା ପିତୁଳି କମ ଗଢ଼ି ।
ମର୍କତର କଳସ ନେତର ଚିରାଳ
ଚନ୍ଦ୍ରାତପ ତେଜ ଆଦିତ୍ୟ ପ୍ରବାଳ ।
ସାମନ୍ତ ମନ୍ତ୍ରୀଙ୍କର ଉଆସ ଦିବ୍ୟପୁରୀ
ଘରେ ଘରେ ବିଜୟେକି ସାହେର କୁମାରୀ ।
ଅଷ୍ଟାଦଶ ଜାତି ଭିନେ ଭିନେ ପୁରୀ । ୩୦
କୂପ ବାମ୍ପି ବହୁତ ଅଛଇ ପୋଖରୀ ।
ସ୍ୱର୍ଗର ଲୋକ ଜାଣି ଦିଶନ୍ତି ନରନାରୀ
ସ୍ୱୟେଂ ବିଶ୍ୱକର୍ମା ଗଢ଼ିଲା ସେ ପୁରୀ ।
ରାଜା ଦଶରଥ ପାପ ପୁଣ୍ୟ ଗ୍ୟାନୀ
ଦୁଃଖୀ ଦରିଦ୍ରେ ଯେ ଅବିକ୍ଷଣେ ଦାନୀ ।
ଯମର ପ୍ରାୟେକ ବିଚାରଇ ନୃପତି ।
ଧର୍ମର ପ୍ରାୟେକ ଅଟଇ ଶାନ୍ତି ମୂର୍ତ୍ତି ।
ଚନ୍ଦ୍ରମା ପ୍ରାୟେକ ଆହ୍ଲାଦ ଗୁଣ
ରଶ୍ମି ପଟାନ୍ତର ସହସ୍ରେ କିରଣ ।
ଅଗ୍ନିର ତେଜ ଯେ ବହଇ ନୃପତି । ୪୦
ପବନହୁଂ ବେଗ ଯେ ଚଳିବାର ଗତି ।
ବରୁଣ ଗୁଣେ ଯେ ସକଳ ଆଶ୍ୱାସି
ଅଇଶ୍ୱର୍ଯ୍ୟେ ଇନ୍ଦ୍ର ପ୍ରାୟେକ ବିଳସି ।
ବଡ଼ିମାୟେ ମେରୁ ସହନ୍ତେ ମେଦିନୀ
ରୂପରେ କାମଦେବ ବୃହସ୍ପତି ସମଗ୍ୟାନୀ ।
ଦାନେଣ ସାଚା ଯେ କ୍ଷତ୍ରି କୁଳମଣି
ବିବେକ ଆଚାର ଧର୍ମଶାସ୍ତ୍ର ଜାଣି ।
ଧନୁ ଧରନ୍ତେଣ ଯୋଧା ସମ ନାହିଂ
ଅକଣ୍ଟେକ ରାଜ୍ୟ କରଇ ନରସାଇଂ ।
କଯେକୟା କଉଶୁଲା ସୁମିତ୍ରା ତିନି
ନାରୀ । ୫୦
ରାଜାର ପାଟ ମାହାଦେଈ ମନୋହାରୀ ।
ସାତଶ ପଞ୍ଚାଶ ଯେ ମାହାଦେଈମାନ
ଯେଥିରେ ମଧ ତିନିହେଁ ମୋକ୍ଷପାନ ।

ଜ୍ୟେଷ୍ଠ ପାଟରାଣୀ ଅଟଇ କଉଶୁଲା
ସଉଭାଗ୍ୟବନ୍ତୀ କଯେକୟା ଯେ ହୋଇଲା ।
ତିନି ଭୁବନେ ପ୍ରତାପୀ ମହାରାଜା
ଭୟେଣ ଅଇରି ବଳ କରନ୍ତି ପାଦପୂଜା ।
ମନ୍ତ୍ରୀ ବଶିଷ୍ଠ ପାତ୍ର ସେ ସୁମନ୍ତ
ଭଟ୍ଟ ମିଶ୍ର ବାମଦେବ ତାହାର ପ୍ରୋହିତ ।
ଯାବାଳି କଶ୍ୟପ ଜାଣନ୍ତି ସମସ୍ତ । ୬୦
ରାଜାର ଛାମୁରେ ମିଳନ୍ତି ପାତ୍ରନ୍ତ ।
ରାଜାର ଆସ୍ଥାନ ଦେବସଭା ଜାଣି
ନୃପତି ପଟାନ୍ତର କି ଯେ ବଜ୍ରପାଣି ।
ଯୋଦ୍ଧା ରାଉତ ମାହୁନ୍ତ ମହାପାତ୍ର
ଅଛନ୍ତି ପଣ୍ଡିତେ ଜାଣନ୍ତି ସର୍ବଶାସ୍ତ୍ର ।
ସହସ୍ରେ ପଢ଼ିହାରୀ ଉଗାଳ ପାତ୍ର କରେ
ପଟୋଆର ପଡ଼ିଥାଇ କେତେହେଁକ ଦୂରେ ।
ଶିର ଉପରେ ଉଡ଼ଇ ଶ୍ୱେତଛତ୍ର
ସୂର୍ଯ୍ୟ ବଂଶେ ମହୀପତି ଅତିହିଁ ପବିତ୍ର ।
ସହସ୍ରେକ ଶ୍ୱେତ ଚାମର ଘେନି ସେହୁ ବାଳୀ ।୭୦
ମଳୟ ପବନ ନିମନ୍ତେ ତାହା ଢାଳି ।
ରତ୍ନର ବିଚଂଣୀ ଆଗରେ ଧୂପକାଠି
ଆସ୍ଥାନେ ବିଜୟେ ରାଜା ଘେନି ନିଜ ଗୋଷ୍ଠୀ ।
ରଥ ଗଜ ଅଶ୍ୱ ପାଇକ ବହୁତ
ଉଡ଼ନ୍ତି ଆଲମ୍ବ ଚିରାଳ ବୀର ନେତ ।
ବିଲମ୍ବ ପାଟଛତ୍ର ଉଡ଼ଇ ଉଲାଖ
ଭିନେ ଭିନେ ଉଭାରି ଅଛନ୍ତି ରେଖ ରେଖ ।
ଢୋଲ ଦମା ଚମକ ବାଜଇ ବୀର ତୂର
ଶଙ୍ଖ ମହୁରୀ ଭେରୀ ଯନ୍ତଂ ସପତ ସ୍ୱର ।
କମ କାହାଳ ବିଜିଘୋଷ ନାଦ । ୮୦
ତାଳ ତାଳି ଘଣ୍ଟ କଂସାଳ ଶବଦ ।
ବାଜନ୍ତି ମର୍ଦ୍ଦଳ ବାଜନ୍ତି ବାଉଁଶୀ
ନାଚନ୍ତି ନାଚୁଣୀ ଅପଛରୀ ମିଶି ।
ରାଜା ଦିବ୍ୟଜ୍ଞାନୀ ରାଜ୍ୟ କରଇ ଚିନ୍ତା
ପରଜା ପାଳିଣ ପରଦେଶରେ ଅହନ୍ତା ।
ଏସନେକ ସମୟେ ପାଟ ଜଉତିଷ
ସପତାଙ୍ଗ ପାଞ୍ଜି କହଇ ରାଜା ପାଶ ।
ଶୁଣିମା ସାବଧାନେ ଅଯୋଧା ନରପତି
ଅଇରି ଦର୍ପଗଞ୍ଜନ ବୀରବର ଚକ୍ରବର୍ତ୍ତୀ ।
ଆଦିତ୍ୟ ଆଦିକରି ନବଗ୍ରହଗଣ । ୯୦
ଭୋ ଦେବ ଦଶରଥ ତୋତେ କରନ୍ତି କଇଲ୍ୟାଣ ।
ସତାଇଶ ନକ୍ଷତ୍ର ପନ୍ଦର ଯେ ତିଥି
ଯେ ତୋତେ ଅନୁଗ୍ରହ କରନ୍ତି କ୍ଷିତିପତି ।
ବ୍ରହ୍ମା ମୁରାରି ତ୍ରିପୁରା ଅନ୍ତକାରୀ
ଯେ ତୋତେ ଶୁଭ ବାଞ୍ଛନ୍ତି ଦଣ୍ଡଧାରୀ ।
କହିବି କଥାଏ କରଇ ଦେବ ଭୟେ
ଯେ ତୋହୋର ନକ୍ଷତ୍ରକୁ ଶନିଚର ବିଜୟେ ।
ବୃଷରାଶିକି ଭେଦ ହୋଇବ ସୂର୍ଯ୍ୟପୁତ୍ର
ଯେଣେ ସେ ପୀଡ଼ା ଦେବ ପାଇବ ଜଗତ । ୯୯
ଇନ୍ଦ୍ରହିଁ ନ ପାଳିବ ନୋହିବ ରାଜ୍ୟେ ବୃଷ୍ଟି
ହାଡ଼ ମାଳ କଙ୍କାଳ ହୋଇବ ନବ ସୃଷ୍ଟି ।
ତୁମ୍ଭର ନକ୍ଷତ୍ର ଯେ ରୋହିଣୀ ବୃଗୁଁଷ
ଯେଣୁ ସେ ପୀଡ଼ା ଦେବ ପାଇବ ଅବଶ୍ୟ ।
ଯମର ଭାଇ ଯେ ସ୍ୱୟେଂ କାଳମୂର୍ତ୍ତି
ସକଳ ସୁର ତାର ନାମେଣ କମ୍ପନ୍ତି ।
ଯେହାକୁ ସେବ ରାଜା ପୂଜାବିଧି ଦେଇ
ତେବେ ସେ ସନ୍ତୋଷ ଯେ ହୋଇବ ଗ୍ରହ ଯାଇଂ ।
ତାହାକୁ ଶାନ୍ତି ଦେବ କରିବା ମହୀପାଳ
ବଶିଷ୍ଠକୁ ପୁଛି ଚିନ୍ତା କର ମହୀପାଳ ।୧୦
ଶୁଣିଣ ନୃପତି ବିସ୍ମୟେ ମତି ହୋଇ
ଖରତର ନିଶ୍ୱାସ ସେ ବଶିଷ୍ଠ ମୁଖ ଚାହିଁ ।
ବୋଇଲେ ଶଉରୀ ଯେବେ ଭେଦିବ ମୋର ରାଶି ।
ଆଜ ମହାଗ୍ରହକୁ ମୁଁ ପକାଇବି ନାଶି ।
ସଂସାର କଷ୍ଟ ମୁଁ ଫେଡ଼ିବି ତାକୁ ମାରି
କୋପେଣ କୋଦଣ୍ଡ ଯେ ଦଶରଥ ଧରି ।
ତୀକ୍ଷ ନାରାଜ୍ଞେକ ବସାଇଲା ଗୁଣେ
ବିନ୍ଧିବି ଶନିଶ୍ଚରକୁ କେ ରଖନ୍ତୁ ଦେବଗଣେ ।
ଓଷ୍ଠ କାମୋଡ଼ିଣ ଯେ ପ୍ରଚଣ୍ଡ ମୂରତି ହୋଇ
ଆକର୍ଣ୍ଣ ପରିଯନ୍ତେ ବାଣ ଅଛଇ ପୂରୋଇ । ୨୦
ଶନିଶ୍ଚର ମଣ୍ଡଳରେ ହୋଇଲା ଅରିଷ୍ଟି
ଅଦଭୂତ ହୋଇ ରୁଧିର କଲା ବୃଷ୍ଟି ।
ଇନ୍ଦ୍ରାଦି ସହିତେଣ କମ୍ପିଲେ ଦିଗପାଳ
ସାତସିନ୍ଧୁ ଉଚ୍ଛୁଳିଲା ଲଘିଲାକ କୂଳ ।
ଦଶରଥ କୋପ ଦେଖିଣ ମହାଗ୍ରହ
ଦେବତାକୁ ଚାହିଂଣ କହଇ ରବିପୁଅ ।
ଶୁଣ ହେ ଦେବାଦି ମୁଁ କହଇ ତୁମ୍ଭଙ୍କୁ
ଦଶରଥ କୋପ କଲା କିମ୍ପାଇ ଆମ୍ଭଙ୍କୁ ।
ମନୁଷ୍ୟ ହୋଇଣ ସେ ଦେବଙ୍କୁ କୋପବହି
ଭସ୍ମ କରିବି ବୋଲି ଶନିଶ୍ଚର ବୋଲଇ । ୩୦
ମଞ୍ଚର ରାଜା ହୋଇ ତାହାର କିସ ବଳ
ନ ଜାଣିଣ କୋପ କରଇ ମହୀପାଳ ।
ପୁର ସହିତେଣ ଯେ କରିବି ଭସ୍ମରାଶି
କଥା ଗୁହାଇବି ଯାବତ ସୂର୍ଯ୍ୟବଂଶୀ ।
ବ୍ରହ୍ମା ବୋଇଲେ ନ ଧର ମନେ ରୋଷ
ପୂର୍ବର କଥା ହାଦେ ଅଛଇ ଭବିଷ ।
ଦେବ କାର୍ଯ୍ୟ ତାହାରେ ହୋଇବ ହୋ ଶନି
ନ କର କୋପେ ତାକୁ ମୋହୋର ବୋଲ ଘେନି ।
ତାହାର କୋଳେ ବିଷ୍ଣୁ ହୋଇବାକ ଜାତ
ଦୁଷ୍ଟ ରାବଣକୁ କରିବେ ପ୍ରାଣହତ ।୪୦
ତେବେ ସେ ଦେବଗଣେ ରହିବେ ସ୍ୱର୍ଗପୁରୀ
ଶୁଣିଣ ସନ୍ତୋଷ ହୋଇଲା ଶଉରୀ ।
ପ୍ରସନ୍ନ ବଦନ ହୋଇ ଦେଲାକ ସେ ବର

ଦଶରଥ ଯୋଗେ ଯେବେ ଦେବଙ୍କୁ
ଉପକାର ।
ଆଜହୁଁ ଯେହାର ମୁଁ ନ ଭେଦିବି ରାଶି
ନ କରିବି ପୀଡ଼ା ମୁଁ ଶୁଣ ସ୍ୱର୍ଗବାସୀ ।
କେବଳ ମାତ୍ର ମୁଁ ବସିବି ପୂର୍ବ ହେତୁ
ନାହିଁ ମୋର କୋପ ଶୁଣ କୁଶକେତୁ ।
ଯେହା ଶୁଣି ଦେବେ କଲେ ପୁଷ୍ପ ବୃଷ୍ଟି
ଦଶରଥ ପ୍ରସାଦେ ସୁସ୍ଥ ହୋଇ ସୃଷ୍ଟି । ୫୦
ଅଦ୍ୟାପି ଶନି ରୋହେଣୀ ଭେଦ ନୋହେ
ଯାବତ କାଳକଇ କୀର୍ତ୍ତି କଥା ରହେ ।
ଶୁଣ ଶଶିମୁଖୀ ଗୋ କହନ୍ତି ତ୍ରିପୁରାରି
ରବିତଳେ ଦଶରଥକୁ ନାହିଁ ସମସରି ।
ପ୍ରତିଜ୍ଞାବନ୍ତ ରାଜା ବୋଲନ୍ତି ତ୍ରିପୁର
ସ୍ୱର୍ଗେଣ ପ୍ରଶଂସା କରଇ ବଜ୍ରଧର ।
ଯେଥୁ ଅନନ୍ତରେ ଅଯୋଧ୍ୟାର ପତି
ସଭାକରି ବିଜୟେ ଯେ ବୀର ଚକ୍ରବର୍ତ୍ତୀ ।
ମନ୍ତ୍ରୀ ଅମାନାତ୍ୟ ଘେନିଣ ନୃପମଣି
ବଶିଷ୍ଠଙ୍କୁ ଚାହିଁ କହଇ ମୃଦୁବାଣୀ ।୬୦
ଭୋ ମହାମୁନି ମୁଁ ପଚାରଇ ତୋତେ
ଅନୁଗ୍ରହ ବଚନେ କହିବାକ ମୋତେ ।
ସୂର୍ଯ୍ୟବଂଶ ମୋହୋର ଧାର୍ମିକ ସତ୍ୟବାଦୀ
ତିନି ଲୋକରେ ସେ ମହିମା ପ୍ରସିଦ୍ଧି ।
ଇକ୍ଷ୍ୱାକୁରୁ ମାନଧାତା ହରିଚନ୍ଦନ ନୃପତି
ଦିଲୀପ ଭାଗ୍ୟରଥୀ ରଘୁ ଚକ୍ରବର୍ତ୍ତୀ ।
ଯେହାଙ୍କର କଥା ମୁନି ପୁରାଣେ ବଖାଣି
ଧର୍ମ ଶାହାସ୍ତ ବେଦ ଆଗମନ୍ତ ଜାଣି ।
ପୁତ୍ର ସମ କରି ସେ ପାଳିଲେ ଜନପ୍ରଜା
ଅନେକ ଯାଗଯଜ୍ଞ କଲେକ
ମହାରାଜା । ୭୦
ଯେହାଙ୍କର କାଳେ ନୋହିଲା ଅନାବୃଷ୍ଟି
ଦିଗପାଳେ ପାଳନ୍ତି ସୁଲଭେ ନବସୃଷ୍ଟି ।
ତାହାଙ୍କର କୁଳେ ହୋଇଲି ମୁହିଁ ଜାତ
ମୋହୋର ଅନୀତି ନାହିଁ କଦାଚିତ ।
ନଉଶତ ବରଷ ହୋଇଲା ମୋତେ ଆସି
କିମ୍ପାଇ କୁଳ ମୋର ହୋଇଲାକ ଧ୍ୱଂସି ।
ପୁତ୍ରର ବିହୁନେ ଜୀବନେ କିସ କାର୍ଯ୍ୟ
ପୁତ୍ରର ବିହୁନେ ପରକୁ କରଇ ଲାଜ ।
ଅପୁତ୍ରିକ ହୋଇଲେ ନରକେ ବସେ ଯାଇ
ପୁତ୍ର ନ ଥିଲେଣ ଘରେ ସୁସ୍ଥ ନାହିଁ । ୮୦
ପୁତ୍ର ନୋହିଲେଣ ସୁସ୍ଥ ନାହିଁ ଜାଣ
ପୁତ୍ର ଅଟଇ ଯେ ପିଣ୍ଡକୁ କାରଣ ।
ଅପୁତ୍ରିକ ମୁଖ ଚାହିଁ ନ ଯୋଗାଇ
ଅପୁତ୍ରିକ ଲୋକର ଅନ୍ନ ହିଁ ନ ଖାଇ ।
ଅପୁତ୍ରିକ ସଙ୍ଗେ ନୋହିବ ସଦଗୋଷ୍ଠୀ
ଅପୁତ୍ରିକ ବାପୁଡ଼ା ଅଟଇ ପରମକଷ୍ଟୀ ।
ପୁତ୍ର ନ ଥିଲେଣ ଧନେ କିସ କାର୍ଯ୍ୟ
ପରକଇ ଯେବେ ହୋଇବ ଗ୍ରାହିଯ ।
ଅନେକ ଛନ୍ଦେଣ ଅର୍ଜନ୍ତି ଜନେ ବିତ୍ତ
ପୁତ୍ର ନ ଥିଲେ ତା ନୁହଇ ଜାଣ ହିତ ।୯୦
ପରବିତ୍ତ ଧ୍ୱଂସିଲେ କିସ କାର୍ଯ୍ୟ ଅଛି
ପୁତ୍ର ବିହୁନେ ଦେହ ନ ଯୋଗାଇ କିଛି ।
ସକଳ ଧର୍ମର ହାଦେ ପୁତ୍ର ହିଁ ସେ ମୂଳ
ପୁତ୍ର ନଥିଲେ ହେଁ ନ ରହଇ କୁଳ ।
ମୁହିଁ ମହାରାଜା ପୁତ୍ର ମୋର ନାହିଁ
କାହାକୁ ହିଁ ରାଜ୍ୟ ଅନ୍ତେ ଦେବି ମୁହିଁ ।
କରିବି ବନବାସ ପିନ୍ଧିଣ କଷାବାସ
ପୁତ୍ର ବିହୁନେ ମୋର ରାଜ୍ୟକୁ କିସ ଆଶ ।
କହିଣ ଗଦ ଗଦ ନୃପତି ଶିରୋମଣି
ବଶିଷ୍ଠଙ୍କ ମୁଖଚାହିଁ ରୋଦଇ ପୁଣ ପୁଣି ।
ରାଜାର ବୈକୁଲ୍ୟ ଦେଖିଣ
ମନ୍ତ୍ରୀଗଣ ।୧୦୧
ପୁରାତନ କଥା କହି କରନ୍ତି ତିଆରଣ ।
କିମ୍ପା ତୁ ଆରତ ହୋଉ ଚକ୍ରବର୍ତ୍ତୀ
ନ କର ଶୋଚନା ତୁ ଅଯୋଧ୍ୟାର ପତି ।
ଯେତେବେଳେ ଯାହାକୁ ପ୍ରାପତ ଯେହ୍ନେ
ଯୋଗ
ସେ କଥା ବିଚାରିଣ ଅଛଇ ଭୋଗାଭୋଗ ।
ଉଚ୍ଛୁକ ହୋଇଲେ କି ତହିଁର ଫଳ ପାଇ
ଯେ ଯାହାର ଅର୍ଜିଲା ମେଣ୍ଟଣା ନ ଯାଇ ।
ପୂର୍ବେ ଯାହା କରି ଏବେ ତାହା ଭୁଞ୍ଜି
ଶୁଭାଶୁଭ ଲେଖନ ସେ ଧାତାର ପୂର୍ବପାଞ୍ଜି ।
ତୁମ୍ଭେ ଯେବେ ତପ କରିଅଛ
ରାୟେ । ୧୦
ଅଳପ ସମୟେ ତୋର ହୋଇବ ତନୟେ ।
ମନ୍ତ୍ରୀ ତହୁଁ ଯେସନେକ ଶୁଣିଣ ବୃତ୍ତାନ୍ତ
କର ଯୋଡିଣ କହଇ ସୁମନ୍ତ ।
କଥାଏ କହିବି ମୁଁ ନୁହଇ ନା ଆନ
ସାବଧାନ ହୋଇ ତୁମ୍ଭେ ଶୁଣ ସଭାଜନ ।
ଭୋ ଦେବ ଦଶରଥ ଶୁଣ ପୂର୍ବ ବାଣୀ
ସନନ୍ତ କୁମାରଙ୍କ ତହୁଁ ଅଇଲି ମୁହିଁ ଶୁଣି ।
ଗଙ୍ଗା କୂଳେଣ ଯେ ଅନେକ ଋଷି ଥିଲେ
କଥା ପଟାନ୍ତରେ ଏହା ବଖାଣିଲେ ।
ଦଶରଥ ରାଜା ଯେ ଅତି ପୁଣ୍ୟବାନ ।୨୦
କିମ୍ପାଇ କୋଳେ ତାର ନୋହିଲା ନନ୍ଦନ ।
ଶୁଣିଣ କହନ୍ତି ଦେବେ ସନନ୍ତକୁମାର
ସ୍ୱର୍ଗରେ ଆଜ ହୋଇଥିଲାକ ବିଚାର ।
ମୃତ୍ୟୁ ଲୋକେଣ ଯେ ଦଶରଥ ରାଜା
ବାସୁଦେବେ ହୋଇବେ ତାହାର ତନୁଜା ।
ରାବଣ ମାରିବେ ଦେବଙ୍କର ହିତେ
ତେବେ ସେ ସ୍ୱର୍ଗେଣ ଦେବେ ବସିବାକୁ
ସୁସ୍ତେ ।
ଯେସନେକ ବିଚାର ବସି କରନ୍ତେ
ଦେବଗଣ
ଦଶରଥ ରାଜାକୁ କଲେକ କଲ୍ୟାଣ ।
ସ୍ୱର୍ଗର ବାରତା ନୋହଇ ପୁଣି ଆନ । ୩୦
ସୁରଗଣ ସଭାରେ ବିଚାର ଏସନ ।
ସନନ୍ତକୁମାରଙ୍କ ଯେସନେକ ବାଣୀ
ମୁନି ଜନେ ଆନନ୍ଦ ହୋଇଲେ ତାହା ଶୁଣି ।
ପୁଣ ପୁଣ ତପଶୀଳେ ପଚାରନ୍ତି ରହି
କଥାଯେକ ପଚାରିବୁ ଯିବ ତୁମ୍ଭେ କହି ।
କେତେକାଳେ ପୁତ୍ର ହୋଇବ ଦଶରଥ
ଯେହା ସଞ୍ଚପିଣ କହସି ଯଥାର୍ଥ ।

ସନନ୍ତକୁମାର ବୋଲନ୍ତି ଶୁଣ ଋଷି
ଋଷିଶିଂଘ ମୁନି ଯେ ବିଭାଣ୍ଡେକ ଶିଷି ।
ସେ ଯଦି ଅଯୋଧ୍ୟାକୁ ଆସିବେ
ଯେହିକ୍ଷଣି ।୪୦
ପୁତ୍ର ପ୍ରାପତ ହୋଇବ ଦଶରଥ ନୃପମଣି ।
ଯେତେ କହିଗଲେ ସନନ୍ତକୁମାର
ମୁହିଁ ତାହା ଶୁଣିଲି କଥା ତତୁ ସାର ।
ସେ ସେ ମହାତପୀ ଅଟନ୍ତି ବ୍ରହ୍ମବେତ୍ତା
ତାହାଙ୍କର ବୋଲ କି ହୋଇବ ଅନ୍ୟଥା ।
ଭାଳି ଦଶରଥ ବିଚାରଇ ମନେ
ବିଭାଣ୍ଡେକର ପୁତ୍ର ହୋଇଲା କେସନେ ।
ସେ ସେ ମହାଋଷି ଅଟଇ ଉର୍ଦ୍ଧ୍ୱରେତା
କହ ସୁମନ୍ତ ହୋ କେବଣ ଏ କଥା ।
ରାଜାର ଅଗ୍ରତେ ଯେ ବୋଲନ୍ତି
ମନ୍ତ୍ରୀବର । ୫୦
ଶୁଣ ଦେବ ଦଶରଥ ଅଯୋଧ୍ୟା ଈଶ୍ୱର ।
ବ୍ରହ୍ମାର ମନୁ ଯେ ମରଚୀ ମୁନି ଜାତ
ମରଚୀର ସୁତ ଯେ କାଶ୍ୟପ ତପୋବନ୍ତ ।
କାଶ୍ୟପର ସୁତ ଯେ ବିଭାଣ୍ଡେକ ମୁନି
ବ୍ରହ୍ମାର ସମାନ୍ୟେ ଯେ ଉଠଇ ତାର ଧ୍ୱନି ।
ତପ ଜପ ମନ୍ତ୍ର ବ୍ରହ୍ମ ବିଦ୍ୟା ଜାଣଇ
ପୁରାତନ କଥାନ୍ତ ନିତ୍ୟେ ବଖାଣଇ ।
ଶୁଧ ଶରୀର ଯେ କଳଙ୍କ ନାହିଁ କିଛି
ସାଧୁ ମହିମା ସେ କଶ୍ୟପର ବଛି ।
ଅନେକ ତୀର୍ଥକଇ ଗମିଣ ତପକଲା ।୬୦
ବ୍ରହ୍ମଋଷିପଣେ ଗଣିତା ହୋଇଲା ।
କେତେହେଁକ ସମୟେ କଉସିକ ନଦୀ
ତୀରେ
ପର୍ଣ୍ଣକୁଟୀ କରି ରହିଲେ ବନ ଘୋରେ ।
କାଳେଣ ଉର୍ଭାସି(ଉର୍ବଶୀ) ଯେ
ଦାସୀଗଣ ଘେନି
ଜଳକ୍ରୀଡ଼ା କରିଣ ଅଇଲା କାମେନୀ ।
ବିପିନ ଭିତରେ ଅଛଇ ସରୋବର
କମଳ ପୁଷ୍ପ ତହିଁ ଅଛଇ ଅପାର ।
ସ୍ଫଟିକର ପାବଚ୍ଛ ଅଛଇ ଚଉକତି
ନାନା ଜୀବ ଜଳରେ ଅଛନ୍ତି ଅପ୍ରମିତି ।
ହିୟାୟେକ ପାଣିରେ ନିଜରୂପ ଦେଖି ।୭୦
ଶଉଚ ନିର୍ମଳ ଅମୃତମଏ ରାଶି ।
କୂଳେଣ ଅପଛରା ଯେ ଆସି ହେଲା ଉଭା
ପରିଜନ ସଙ୍ଗେ ଦିଶଇ ମହାଶୋଭା ।
ଜଳେ ପଶି ବାଳୀ ପଖାଳଇ ଅଙ୍ଗ
ଝିନବାସ ତିନ୍ତି ଦିଶଇ ଥନ ଜଙ୍ଘ ।
ସ୍ୱଭାବେ ଯୁବତୀ ଯେ ସ୍ୱର୍ଗର ଅପଛରୀ
ନାହିଁ ପଟାନ୍ତର ଉପମା ଦେବା ସରି ।
ତପୀଙ୍କର ତପ କି ସେ ଦେଖିଲେଣ ଥିବ
ଯାହାର ଆଗେ ତରସ୍ତ ହୋଇବ
କାମଦେବ ।
ମୁଖ ଦେଖି ଚନ୍ଦ୍ର ଗଲାକ ପଳାଇ । ୮୦
ଦୁଇ ଲକ୍ଷ ଯୋଜନେ ସେ ରହିଲାକ ଯାଇ ।
ନୟନ ଯୁଗଳ ଦେଖି ନୀଳ-ଉତ୍ପଳ
ବୁଡ଼ି ମରିବ ବୋଲି ପଶିଲାକ ଜଳ ।
ନାସା ତିଳଫୁଲି ପଟାନ୍ତର କରି
ପଛେ ଲୁଚିଲା ସେ ମରିତ ମନ କରି ।
ଚାମର କେଶ ତାର ଦେଖିଣ ଚାମେରୀ
ବନରେ ରହିଲା ସେ ଗୋରୁ ରୂପ ଧରି ।
କର୍ଣ୍ଣ ଦୁଇ ଯମ ବରୁଣର ଫାଶୀ
ନୁହନ୍ତି ସମ ବୋଲି ଗଲେ ତହୁଁ ଖସି ।
ଡାହାଣବର୍ତ୍ତ ଶଙ୍ଖ ଜାଣି କର୍ଣ୍ଣ ଶୋଭା ।୯୦
ସମୁଦ୍ରେ ପଶିଲାକ ନୋହିଲାକ ଉଭା ।
ପଦ୍ମନାଡ ଜାଣି ଶୋହଇ ହସ୍ତ ବେନି
ନୋହଇ ସମ ସେ କଣ୍ଟକ ଭାବ ଘେନି ।
ରତ୍ନର କଳସେ ଅମୃତ ପୂରୋଇ
ତେସନ ସଂଯାତ ସେ ଦିଶଇ କୁଚଦୁଇ ।
ମାତୁଳଙ୍ଗ ଫଳ ସେ ଯେ ପଟାନ୍ତର କରି
ପକ୍ୱ ହୋଇଲେ ସେ ଦିଶଇ ସୁସରି ।୯୭
ମଝା ଦେଖି ସିଂଘ ବନକଇ ଗଲା
ଉଦରକଇ ପଦ୍ମ ପତ୍ର ସରି ସମ ନୋହିଲା ।
ନାଭି ଗଭୀରକି ନଦୀର ଭଉଁରୀ ।୧୦୦
କଟିଭାଗ ଶୋଭା ନୁହଇ ପଟାନ୍ତରି ।
ମଦନ ମହୀପତି ସିଂହାସନ କି ସେ
ଜାନୁ ଉଲଟ କଦଳୀ ଜାଣି ଦିଶେ ।
ଚରଣ ଅଙ୍ଗୁଷ୍ଠି ଓଶେକ କଢ଼ି ଆଭା
ପାଦପଦ୍ମ ତଳି ଅଳତା ରଙ୍ଗ ପ୍ରଭା ।
କରତଳ ଅଙ୍ଗୁଷ୍ଠି କନେକ ଚମ୍ପାକଢ଼ି
ନଖ ସେବତୀ କୁସୁମ ପାଖୁଡ଼ି । ୧୦
ଜାଇ-ପୁଷ୍ପ ଜାଣି ଦିଶଇ ସର୍ବ ନଖ
କି ଅବା ଅଧର ଡାଳିମ୍ୱ ପୁଷ୍ପରେଖ ।
ଦନ୍ତ ଗଜମୋତି ସିନ୍ଦୂରେଣ ମଣ୍ଡି
କଟାକ୍ଷ ଚାହାଣୀରେ ତପୀୟେ ହୋନ୍ତି
ଭଣ୍ଡି ।
ପୁଞ୍ଜି ପୁଞ୍ଜି ହୋଇ ବସନ୍ତି ରୋମପନ୍ତି
ହସି କହିଲେଣ ମୃତୁଜୀବ ଜୀବନ୍ତି ।
ସ୍ୱଭାବେ ସୁନ୍ଦେରୀ ଯେ ରୂପେ ଗୁଣେ ସାର
ସର୍ବଦା ଯୁବା ଶରୀର ଅଟଇ ତାଙ୍କର ।
ସ୍ୱର୍ଗର ସୁନ୍ଦେରୀ ସେ ଅପଛରୀ ଶ୍ରେଷ୍ଠ
ରତ୍ନ ଅଳଙ୍କାର ଭୂଷଣ ଗରିଷ୍ଠ । ୨୦
ଜଳେ ପଶିଣ ସେ କରଇ ଜଳକେଳି
ଚାରୁ ଗନ୍ଧ କୁଙ୍କୁମ ଘେନିଣ ଅଙ୍ଗେ ବୋଳି ।
ନିଗମ ସ୍ଥାନ ଦେଖି ଲଜ୍ଜା ଭୟ ନାହିଁ
କାଖ ପଖା ଯେ ଜାନୁ ଜଘନ ଦେଖାଇ ।
ବସ୍ତ୍ର ଖସିଣ ଦିଶଇ ଯଉବନ
ଅପାଙ୍ଗ ଦୃଷ୍ଟିରେ ସେ ଡାଳଇ ନୟନ ।
ଅଳପ ହସିଣ ଚାହାଇଁ କାମେନୀ
ନାସିକା ଫୁଲାଇଣ ଚକୋର ଚାହାଣୀ ।
ସୁନ୍ଦେରୀ ମଦନ ଚେଷ୍ଟା ବିକାର
କିଛି ଦୂରେ ଥାଇ ଦେଖିଲେ
ମୁନିବର । ୩୦
ସରୋବର କୂଳରେ ଯେ ତପ କରୁଥିଲା
କେତେହେଂକ ବେଳେ ତାର ଧ୍ୟାନ ସେ
ଭାଙ୍ଗିଲା
ଦେଖିଲାକ ଉର୍ଭାସୀ କରଇ ସ୍ନାହାନ
ଦିଶୁଅଛି ତାହାର ମଦନ ମରମ ସ୍ଥାନ ।

ବିଭାଣ୍ଡେକ ନୟନ ପଡ଼ିଲାକ ତହିଁ
ଆସି ନ ପାରଇ କାମେ ବଶ ହୋଇ ।
ନୟନ ପଡ଼ିଲାରୁ ମନହିଁ ରହିଲା
ଦେହ ଛାଡି ପ୍ରାଣ ପ୍ରକୃତି ଘେନିଗଲା ।
ନଖ ମୁଖ ଆଖି ବୁଲିଣ ପଞ୍ଚପ୍ରାଣ
ସ୍ତନ ଜଘନ ସେ ଭ୍ରମିଲା ପୁଣ ପୁଣ ।୪୦
ଅଧର ପୟୋଧର ମଧରେଣ ଗଲା
ନାଭି ଜିଣି ଯାଇ କାମ ମଣ୍ଡଳେ ମିଶିଲା ।
ଆସି ନ ପାରଇ ସଙ୍ଗ ମର୍ମ ସନ୍ଧି
ମୋହେ ଋଷି ମନ ହୋଇଲା ତହିଁ ବନ୍ଦୀ ।
ଘନ ଘନ ନିଶ୍ୱାସ ଛାଡଇ ବିଭାଣ୍ଡେକ
କନ୍ଦର୍ପ ଧ୍ୱଂସିଲା ତାର ମର୍ଯ୍ୟାଦା ବିବେକ ।
ହାଇ ଘନ ଘନ ଅଳସ କରି ଚାହିଁ
ବିରହ ବିଭଳେଣ ହୋଇଲା କାମବାଇ ।
ଧଇର୍ଯ୍ୟ ହତେ ଅଧାରଣ କାୟେ
ଅପଛରୀଙ୍କ ମୁଖ ଦେଖିଣ ମୋହ
ଯାୟେ । ୫୦
ସେ ସେ ସୁନ୍ଦୋରୀ ଯୁବତୀ ରତ୍ନରାଶି
ଇନ୍ଦ୍ର ଯାହାକଇ କଥା କହଇ ହସି ।
ବ୍ରହ୍ମାକଇ ମୋହି ପାରଇ ଯେବଣ ନାରୀ
ମୁଖ ଦେଖି ଯାହାକୁ ପ୍ରସନ୍ନ ତ୍ରିପୁରାରି ।
ନୃତ୍ୟରଙ୍ଗେ ମୋହଇ ସ୍ୱର୍ଗର ସୁରଗଣ
ମୁନିଜନ ଦେଖିଲେ ହୁଅନ୍ତି ରଣଭଣ ।
ବିଭାଣ୍ଡେକ ମୁନି ଅଟଇ ଉର୍ଦ୍ଧ୍ୱରେତା
ତାହାକୁହିଁ ହେଳେ ମୋହିଲା ବନିତା ।
ସେ ଋଷି ଅଜ୍ଞାନ ହୋଇଲେ କାମବାଣେ
ବଶ୍ୟ ହୋଇଲା ସେ ଯୁବତୀ ରତ୍ନ
ଗୁଣେ ।୬୦
ଅନେକ କାଳର ସେ ଥିଲା ବପୁ ରଖି
ଖଳିତ ହୋଇଲା ଯେ ଅପଛରୀ କି ଦେଖି ।
ଗ୍ୟାନ ଭ୍ରଷ୍ଟ ହୋଇ ପଡ଼ିଲା ମୁନିବର
ପୁଣି ପ୍ରାଣ ଆସି ପଶିଲା ଶରୀର ।
କ୍ଷଣକେ ଚେତନା ସେ ପାଇଣ ଉଠିବସି
ଅନେକ ଚିନ୍ତାର୍ଥ ସେ ହୋଇଲାକ ଋଷି ।

ବୋଇଲା ତପ ମୋର ହୋଇଲାକ ଖଣ୍ଡି
ଯେ ସେ ସୁନ୍ଦେରୀ ମୋର ପ୍ରାଣ ନେଲା
ଭଣ୍ଡି ।
ଆତ୍ମା ସଙ୍କୋଚ କରି କରଇ ସନ୍ତାପ
ବୋଇଲା ତପୀ ମୋତେ ଆକର୍ଷିଲା
ପାପ । ୭୦
ଯେଥୁ ଅନନ୍ତରେ ସେ ଉର୍ଭାସୀ ଅପଛରୀ
ଦାସୀଗଣ ସହିତ ଗଲା ସ୍ୱର୍ଗପୁରୀ ।
ଦିବ୍ୟ ବିମାନେଣ ବସିଲା ଯୁବତୀ
ପ୍ରବେଶ ହୋଇଲା ସେ ଅମର ବାରସ୍ୱତୀ ।
ଯହୁଁ ବିଦ୍ୟାଧରୀ ସ୍ୱର୍ଗକଇ ଗଲା
ତପସ୍ଥାନ ଉପେଖି ବିଭାଣ୍ଡେକ ଉଠିଲା ।
ସଂକୋଚ ଭରେ ସେ ଲଜ୍ଜାଭର ହୋଇ
ସରୋବର ଭିତରେ ପଶିଲା ମୁନି ଯାଇ ।
ସ୍ନାହାନ ସାରିଣ କଉପୁନି ପଖାଳି
ଜଳରେ ପଡ଼ି ରେତ ସ୍ଫଟିକ ମତ
ଢଳି । ୮୦
ନିର୍ଜ୍ଜୀବ ହୋଇ ମୁନି ମଢ଼ିଆକୁ ଗଲା
ନିଜ ଆସନେ ବସିଣ ଚିନ୍ତା କଲା ।
ଯେବଣ ବୀର୍ଯ୍ୟ ମୁନି ଜଳରେ ଗଲା ଛାଡ଼ି
ସେ ଅମୋହ ବୀର୍ଯ୍ୟ ଜଳରେ ନ ବୁଡ଼ି ।
ମଦନିକା ଅପଛରୀ ପୂର୍ବର ଶାପ ପାଇ
ସେ ବିପିନେ ଥିଲା ସେ ମୃଗୁଣୀ ରୂପ
ହୋଇ ।
ତୃଷାର ଆରତେ ସେ ଧାଇଁଣ ଅଇଲା
ସେହି ସରୋବରେ ଜଳ ସେ ଭକ୍ଷିଲା ।
ପାଣିର ସଙ୍ଗେ ସେ ଭକ୍ଷିଲା ଋଷିବୀର୍ଯ୍ୟ
କୁରଙ୍ଗୀର ଗର୍ଭେ ରହିଲା ମହାତେଜ ।୯୦
ଅମୋହ ରେତ ସେ ଯେ ଜୀର୍ଣ୍ଣ ଯେ
ନୋହିଲା
ମୃଗୁଣୀର ନାଭି ପଦ୍ମ ଆବୋରି ରହିଲା ।
ଗର୍ଭବାସ ଯହୁଁ ହୋଇଲା କୁରଙ୍ଗୀ
ଏକାୟେ ରହିଲା ସେ ନୋହିଲା ଯୂଥସଙ୍ଗୀ ।
ସେହି ସରୋବର ତଟରେ ବିପିନ

ତହିଁ ରହି କୁରଙ୍ଗୀ ହରିଲାକ ଦିନ ।
ଯଥାକାଳେ ତାହାର ହୋଇଲାକ ପୁତ୍ର ଜାତ
ସୁସଞ୍ଚ ସୁନ୍ଦର ସେ ହୋଇଲା ତାର ଗାତ୍ର ।
ମନୁଷ୍ୟ ଶରୀର ଶିରରେ ବେନି ଶିଙ୍ଗ
ଜାଣି ପଟାନ୍ତର ନାହିଁ ନା ଅନଙ୍ଗ ।
ପୁତ୍ରଜାତ କରି କୁରଙ୍ଗୀ ସ୍ୱର୍ଗଗଲା । ୧୦୧
ପୂର୍ବର ଅଭିଶାପେ ହେଲେଣ ନାଶଗଲା ।
ସ୍ୱର୍ଗରେ ଗଉରୋବ କଲାକ ବଜ୍ରପାଣି
ପୂର୍ବରୁ ବିସ୍ରୋତି ତାର ଯୋଡ଼ିଲାକ ଆଣି ।
ଯହୁଁ ସେ ମୃଗୁଣୀ ସ୍ୱର୍ଗକଇ ଗଲା
ଜନନୀ କି ନ ଦେଖି ପୁତ୍ର ଶୋକ କଲା ।
ରାତିକ ରୋବିଲା ସେ ପୋଖରୀର କୂଳେ
ଆହାର ବିହୁନେ ସେ କ୍ଷୁଧାର ବିକଳେ ।
ବିଭାଣ୍ଡେକ ମଢିଆକୁ ଶୁଭିଲା ଶବଦ
ଶୁଣିଣ ମହାଯତି ହୋଇଲା ତବଦ ।
ପ୍ରଭାତ କାଳେଣ ସେ ଗଲା ତପୀସାଇଁ ।୧୦
ବାଳୁତ ଦେଖି ପଞ୍ଚୁ ମନେଣ ଭାଳଇ ।
କିସ ଅପୂର୍ବ ଏ କାହୁଁଣ ଅଇଲା
ଅରଷି ଜୀବ ବୋଲି ବିଭାଣ୍ଡେକ
ବୋଇଲା ।
ମନୁଷ୍ୟେ ଶରୀର ଶିରରେ ଶୃଙ୍ଗ ଦୁଇ
ଉଧକଇ ଚାହିଁ ବିସ୍ମୟେ ମୁଖ ହୋଇ ।
ଆକାଶୁ ଶବଦ ଶୁଭିଲା ଅନ୍ତରୀକ୍ଷ
ଭୋ ମୁନି ବିଭାଣ୍ଡେକ ତୋହର ଯେ ବଛ ।
ଉର୍ଭାସୀକି ଦେଖିଣ ତୁ ଛାଡିଲୁ ଯେବଣ
ରେତ
ଜଳର ମଧରେ ତୁ ଯାହା ଯେ କଲୁ ଗୁପତ ।
ମଦନିକା ଅପକ୍ଷରୀ ଶାପ୍ୟେ ମୃଗୁଣୀ
ହୋଇଥିଲା ।୨୦
ତୃଷାର କାଳେ ସେ ନୀର ଭକ୍ଷି ଗଲା ।
ପୁତ୍ରେ ଜାତ କରି ଅଇଲା ଅପକ୍ଷରୀ
ସଂଭାଳ ବିଭାଣ୍ଡେକ ଯେ ତନୟେ
ତୋହରି ।
ଯେଣେ ଦେବକାର୍ଯ୍ୟ ଅଛଇ ବହୁତ

ଯେହାର ପ୍ରସାଦେ ସକଳ ଦେବେ ସୁସ୍ଥ ।
ବାସୁଦେବ ଉପୁଜିବେ ଯେହାର ଯାଗ
କଲେ
ଶାପ୍ୟ ପାଇବୁଟି ସଂଗ୍ରହଣ ନ କଲେ ।
ଯେ ପୁତ୍ରର ନାମ ହାଦେ ଅଟଇ ଋଷିଶିଙ୍ଗ
ସ୍ୱର୍ଗେ ବସିବ ଯେ ବ୍ରହ୍ମମୁନି ସଙ୍ଗ ।
ସ୍ୱର୍ଗର ବାଣୀ ହାଦେ ବିଭାଣ୍ଡେକ ଶୁଣି ।୩୦
ତଲଯେ କରିଣ ଯେ ଯୋଗ ବଳେ ଜାଣି ।
ଯେହାର ଆହୂତି ଦେଲେ ବିଷ୍ଣୁ ହେବେ ଜାତ
ତେବେ ସେ ନାଶିବେ ରାବଣ ଦଇତ ।
ସମୟ ଜାଣିଣ ଯେ ପୁତ୍ରକୁ ଘେନିଗଲା
ପ୍ରାଣହୁଁ ଅଧିକ କରି ପୁତ୍ରକୁ ପାଳିଲା ।
ଦୋହୋରା ଅଗ୍ନିର ପ୍ରସାଦେ ପୁତ୍ର ବଳୀ
ସୁରଭିର କ୍ଷୀରେଣ ଯେ ପୁତ୍ର ତା ଅଗୁଳି ।
ବିଭାଣ୍ଡେକ ଋଷିର ସେ ଦେଖିଣ ତପକଲା
ପ୍ରସନ୍ନ ହୋଇଣ ଯେ ଇନ୍ଦ୍ର ତାକୁ ବର
ଦେଲା ।
ହୋଅତୁ ଆରୋଗ୍ୟ ଅମର ତନୁ ବହ ।୪୦
ତୋହର ମନବାଞ୍ଛା ମୋହର ଆଗେ କହ ।
ଋଷିଶୃଙ୍ଗ ବୋଇଲା ଶୁଣ ଆଖଣ୍ଡଳ
ଯେତେବେଳେ ଲୋଡିବି ବରଷିବ ଜଳ ।
ଶରୀର ତୀକ୍ଷ ମୋର ଅଟଇ ସୁରପତି
ଲୋଡିଲେ ବୃଷ୍ଟି ତୁ କରିବୁ ତତତି ।
ଅସ୍ତୁ ହୋଉ ବୋଲି ଗଲାକ ବଜ୍ରଧର
ଆନନ୍ଦ ହୋଇଲାକ ଶୁଣି ଋଷିଶୃଙ୍ଗ କୁମର ।
ଦଶରଥ ଆଗେ ଯେହା ସୁମନ୍ତ କହିଲା
ଶୁଣ ଗୋ ଭବାନୀ ଯେହା ଶଙ୍କର
ବୋଇଲା ।
ଯେ ସେ ରାମାୟଣ ଆଦିକାଣ୍ଡ ବାଣୀ ।୫୦
ଅଯୋଧାର ରାଜା ସନ୍ତୋଷ ଏହା ଶୁଣି ।
ଯେସନେ ସମୟେ ଅଯୋଧାର ଚାର
ଆସିଣ ପ୍ରବେଶ ହୋଇଲା ସିଂହଦ୍ୱାର ।
ଦ୍ୱାରପାଳ କହି ଭିତରକୁ ଗଲା
ଆସ୍ଥାନ ବେଳେ ଯାଇ ରାଜାକୁ ଭେଟିଲା ।

ଶିରୁ ବାସ କାଢି ନିଉଛାଳି କରି
ପ୍ରଣମ୍ୟ ହୋଇଉଠିଲା କରପତ୍ର ଯୋଡି ।
ଭୋ ଦେବ ଦଶରଥ ନୃପତି ଶିରୋମଣି
ଅପୂର୍ବ କଥାଯେକ ଅଇଲି ଦେବଶୁଣି ।
ଚମ୍ପାବତୀ ଦେଶେ ଦେବ ଲମ୍ବପାଦ
ରାୟେ ।୬୦
ଇନ୍ଦ୍ର ଅନାବୃଷ୍ଟି ତାହାର ରାଜ୍ୟେ କଯେ ।
ବ୍ରାହ୍ମଣର କୋପେ ନ ପାଳଇ ବାସବ
ତୁ ତାହାର ଅଟୁ ମଇତ୍ର ବାନ୍ଧେବ ।
ପୂର୍ବେଣ ରାଜା ଯେ ଅନେକ ଦାନ ଦେଲା
ଯେକଇ ବ୍ରାହ୍ମଣେକ ଆହୁରି ମାଗିଲା ।
ତାହାକଇ ରାଜା ବୋଇଲା ଅସ୍ୱୀକାର
ଗଲଥି ବ୍ରାହ୍ମଣଙ୍କୁ କଲାକ ବାହାର ।
ଜଣକର ଦୋଷେ ସବୁକୁହିଁ ମନ୍ଦ ବୋଲି
ଥୋକଯେକ ଦିଜଙ୍କୁ ପକାଇଲା ପେଲି ।
ଅପମାନ ପାଇ ବୋଇଲେ ବିଦ୍ୱଜ୍ଜନ ।୭୦
ସମସ୍ତେ ହେଁ କୋପକରି ବୋଇଲେ
ବଚନ ।
ତୁ ଯେ ନୃପତି ହୋଇ ଆମ୍ଭଙ୍କୁ କୋପକଲୁ
ଦୋଷ ନ ବିଚାରି ଅନେକ ଦୋଷିଲୁ ।
ଆମ୍ଭେ ଯେବେ ବ୍ରାହ୍ମଣ ବେଦମନ୍ତ୍ର ଜାଣୁ
ଜପତପ ଧାୟେ ଧାରଣା ପରିମାଣୁ ।
ଅଦୋଷେ ଆମ୍ଭଙ୍କୁ କଲୁ ଉପହାସ
ଦେବ ଇନ୍ଦ୍ର ବୃଷ୍ଟି ନ କରୁ ତୋର ଦେଶ ।
ଶାପ୍ୟ ଦେଇଗଲେ ବ୍ରାହ୍ମଣ ସକଳ
ଜାଣି ଗୋଡ଼ାଇଲେ ଲମ୍ବପାଦ ମହୀପାଳ ।
ଅନେକ କାର୍ପୁଣ୍ୟ ହୋଇ ବ୍ରାହ୍ମଣଙ୍କୁ
ବୋଇଲା ।୮୦
ଭୋ ଦ୍ୱିଜବର ମୋର ଅଭାଗ୍ୟ ହୋଇଲା ।
ମୂର୍ଖ ପଣେ ନ ଜାଣି କଲି ମୁହିଁ ଦୋଷ
ସେ ଦୋଷ ଛାଡ଼ ତୁମ୍ଭେ ମହତ ପୁରୁଷ ।
ବିପ୍ରଙ୍କର ଚରଣେ ପଡଇ ପୁଣ ପୁଣି
ଦଇନି କରିଣ କହଇ ମୃଦୁବାଣୀ ।
ଅନେକ ଆକୁଳ ଯହୁଁ ହୋଇଲା ନୃପତି

କୋପ ସଙ୍ଘରିଣ ହୋଇଲେ ଶାନ୍ତି ମୂର୍ତ୍ତି ।
ଯାହା ସ୍ୱେ ଶାପ୍ୟ ଦେଲେ ନୁହଇ ପୁଣ ଆନ
ଆଣିପାରୁ ଯେବେ ବିଭାଣ୍ଡେକ ନନ୍ଦନ ।
ଋଷିଶୃଙ୍ଗ ଅଇଲେ ବରଷିବ ଜଳ ।୯୦
ଶୁଣିଣ ସନ୍ତୋଷ ସେ ହୋଇଲା ଭୂପାଳ ।
ନବରେ ପ୍ରବେଶ ବିସ୍ମୟେ ମନ ହୋଇ
ବିଚାର କରେ ରାଜା ମନ୍ତ୍ରୀଗଣ ବସାଇ ।
ଋଷିଶୃଙ୍ଗ ଆଣିବାକୁ ବୁଦ୍ଧି କାହାର ଅଛି
ଜଣେ ଜଣେ ମହୀପତି ସମସ୍ତଙ୍କୁ ପୁଛି ।
ମନ୍ତ୍ରୀ ବୋଇଲେ ଭୋଦେବ ଅଛଇ ମୋର
ବୁଧି
ଯେଣେ ସେ ହୋଇବଇ ଆମ୍ଭର
କାର୍ଯ୍ୟସିଧି ।
ରତ୍ନ ଚାଙ୍ଗୁଡି ଏକ ଦୋସାଧି ହାତେ ଦେବା
ଦୁନ୍ଦୁଭି ବଜାଇଣ ନଗ୍ର ବୁଲାଇବା ।
ଯେହୁ ଋଷିଶୃଙ୍ଗଙ୍କୁ ପାରିବାକ ଆଣି
ସେ ଏହା ପରିଗ୍ରହ କରୁ ନୃପମଣି ।
ଶୁଣି ସନମତ ଯେ କଲା ଲମ୍ବପାଦ
ରତ୍ନ ଚାଙ୍ଗୁଡି ଦେଇ ବଜାଇଲା ବାଦ୍ୟ ।
ହୀରାମଣି ମାଣିକ୍ୟ ଯେ ମୁକୁତା
ଚନ୍ଦ୍ରକାନ୍ତି ।୧୦
ଶୁଦ୍ଧ ସୁବର୍ଣ୍ଣ ଜଡିଲା ଅଳଙ୍କାର
ଶୋଭାପାନ୍ତି ।
ଆଗରେ ଦାଉଣ୍ଡି ବାଜଇ ବୀର ତୂର
ଦୋସାଧି ଡାକଇ ତୁମ୍ଭେ ଶୁଣିମା ନଗ୍ରନର ।
ଋଷିଶୃଙ୍ଗ ମୁନି ଯେ ବିଭାଣ୍ଡେକ ଶିଷ
କଉଶିକ ନଦୀତୀରେ ଅଟଇ ତାର ବାସ ।
ସେ ମୁନିକି ଆଣିଲେ ଯେ କରିବ ଜଳବୃଷ୍ଟି
କେ ପାରିଲେ ଆଣ ଯେ ରକ୍ଷାକର ସୃଷ୍ଟି ।
ଏସନେକ ବୋଲି ଯେ ଡାକଇ ଶବଦାଇ
ହାଟ ବାଟ ରାଜ୍ୟ ଦାଣ୍ଡରେ ବୁଲୋଇ ।
ନଗ୍ର ନରନାରୀ ଗୋଡ଼ାଇ ଦେଖନ୍ତି ।୨୦
ଯେକ ଆରକେଣ ଯେ ବିଚାରି ସାହସନ୍ତି ।
ଜରତାକୋଷୀ ନାମେଣ ଯେ ଏକଇ
ନଟନାରୀ

ବିଧାତା ଉପାୟେଣ ଅଛଇ ଅବତରି ।
ସେ ଆସି ସୁବର୍ଣ୍ଣ ଚାଙ୍ଗୁଡି ଧଇଲା
ମୁହିଁ ଋଷିଶୃଙ୍ଗଙ୍କୁ ଆଣିମି ବୋଇଲା ।
ଶୁଣିଣ ଦୋସାଧୁ ହରଷ ମନ ହୋଇ
ରାଜାର ଛାମୁକୁ ତାକୁ ଗଲାକ ଘେନାଇ ।
ଦେଖିଣ ସନ୍ତୋଷ ହୋଇଲା ମହୀପାଳ
ଜରତାକୁ ଦେଲା ସେ କନେକ ପଦ୍ମମାଳ ।
ଅନେକ ପ୍ରବୋଧ ସେ କଲାକ
ନୃପମଣି । ୩୦
ଯେ ମୋହର ରାଜ୍ୟ ଉଧର ତରୁଣୀ ।
ସୁନ୍ଦେରୀ ବୋଇଲା ଯୋଡିଣ ବେନିକର
ଶୁଣ ଲମ୍ବପାଦ ଯେ ଠାକୁର ମୋହୋର ।
ଯେ ତୋହୋର ଆଜ୍ଞା ଶିରେ ଦେବ ଧରି
ସେ ମହାଋଷିଙ୍କି ମୁଂ ଆଣିମି ହେଳୁ କରି ।
ଯେ ତୋହୋର କଟକେ ସର୍ବଜନେ ସୁଖୀ
ବିଶେଷେଣ ବେଶ୍ୟା ନୋହୁ ଆମ୍ଭେ ଦୁଃଖୀ ।
ବନ ପର୍ବତ ଯେ ଶାଳ ଶିଳ ବାଟ
ପାଦେଣ ଗମନ୍ତେ ଯେ ପାଇବୁ ଆମ୍ଭେ
କଷ୍ଟ ।
ନାବ ସଜ କରିଦିଅ ନୃପବର । ୪୦
ଅପ୍ରମାଦେ ଆଣିମି ମୁଁ ଋଷିର କୁମର ।
ନୃପତି ସନ୍ତୋଷ ହୋଇଲା ତାହା ଶୁଣି
ନାବ ଭିଆଣ ସେ କଲାକ ନୃପମଣି ।
ନଉକା ଉପରେ ବିବିଧ ଗଛ ରୂପି
ଫଳିଲା ଫୁଟିଲା ବୃକ୍ଷନ୍ତ ନେଇ ଥାପି ।
ଆମ୍ବ ପଣସ ଯେ କଦଳୀ ନଟୀକାଳ
ଟଭା ନାରଙ୍ଗ ଯେ ମାତଙ୍ଗ ଫଳଫୁଲ ।
ବେଲ କଇଥ ଯେ ଅଏଂଳା ଖଜୁର
ଚମ୍ପା ନାଗେଶ୍ୱର ବକୁଳ ଡଗର ।
ତରାଟ ମନ୍ଦାର ଅଶୋକ ମଲ୍ଲୀ ଜାଇ ।୫୦
କଚଣ କଣିଆର ଯେ କେତକୀ ଅଛଇ ।
ଇବଙ୍ଗ ଗୁଳୁଚି ପିପ୍ପଳି ପାନଲତା
ପ୍ରତକ୍ଷେ ବନ କି ସେ ରଚ୍ଛିଲା ବିଧାତା ।
ଋଷିର ମଢ଼ିଆ ପ୍ରାୟେକ ପର୍ଣ୍ଣକୁଟୀ
ନାବ ମଧ୍ୟେ ରଚ୍ଛିଲେ ଅପୂର୍ବ ପୁର ଗୋଟି ।

ବାହିବାକୁ ପାଞ୍ଚନାବ ହାବେଳି ଯେକ ଗାର
କଇବ୍ରତ ଅସଭାବ ଅଛି ପାଞ୍ଚ ଡଙ୍ଗାର ।
ଯେସନେକ କୋଡିଯେ ନାବ ସଜ କଲେ
ଲତାଙ୍କ ଭିତରେ ସେ ପଲଙ୍କ ପାରିଲେ ।
ଉପରେ ଚନ୍ଦ୍ରାତପ ଟାଣିଲେ ଗୋପ୍ୟ
କରି । ୬୦
ବାହାରକୁ ନ ଦିଶଇ ଭିତରକୁ ଉହାଡି ।
ଶେତ ଚାମର ମୁକୁତା ମଣିଝରା
ଚଉପାଶେ ଟାଣିଲେ ଅପୂର୍ବ ପାଟଟେରା ।
ପଲଙ୍କ ଉପରେ ଅଛଇ ପାଟ ଶେଯ
ତଥିରେ ଶେଜାଇଲା ଅଛି ବସ୍ତ୍ରରାଜ ।
କୁସୁମ ପାଖୁଡ଼ା ଯେ କର୍ପୂରର ଧୂଳି
ସୁବର୍ଣ୍ଣରେ ଜଡ଼ିତ ସିନ୍ଧୁଆ ମୁଚୁଳି ।
ଅଗର ଧୂପ ବାସ କରଇ ଚଉକତି
ନାବ ଚଉପାଶେ ମାଣିକର ବତୀ ।
ସୁବାସ ଫଳମାନ ଥୋଇଲା ତହିଂ
ନେଇ ।୭୦
ଦୁଧ ଘୃତ ଶାକର ଯେ ଅମୃତ ଭିଆଇ ।
ଗନ୍ଧ ଚନ୍ଦନ ଯେ କର୍ପୂର କସ୍ତୁରୀ
ସୁବର୍ଣ୍ଣ ଗଡୁ ଅଛଇ ଖୋରା ଖୋରି ।
ଆଲଟ ଚାମର ଯେ ମୁକୁତା ଦ୍ରର୍ପଣ
କନେକ ପଦାର୍ଥ ଯେ କାଚର ଘଟଣ ।
ଶୁଭ ଅନୁକୂଳ ଘେନିଣ ଜରତା
କାମମୋହେନୀ ମୂଳେ ବାରହ ବନିତା ।
ସଙ୍ଗତେ ଅଛନ୍ତି ଯେ ଅନେକ ପରିବାରୀ
ନଉକାରେ ବସିଲେ ଯେ ହରଷ ମନ
ଧରି ।
ଆଯେ ଅଳଙ୍କାର ଦିବ୍ୟ ବାସ ପିନ୍ଧି । ୮୦
କର୍ଣ୍ଣେଣ ତଡ଼କି ବାହେ ବିଦ ମୁଦି ।
କର୍ଣ୍ଣେଣ ପଦେକ ଯେ ମୁକୁତାର ହାର
ଯଉବନ ଉପରେ ଲୁଳଇ ମୋତି ମାଳ ।
ପାଦରେ ନୂପୁର ଯେ ହସ୍ତରେ ରତ୍ନ ବାହି
ଲଲାଟରେ କସ୍ତୁରୀ ଚିତା ତାମ୍ବୋଳ ରସ
ଖାଇ ।

ସ୍ତନ ଜାନୁ ଜଘନ ବଳିଣ କାଖପଖା
କେ ଜାଣି ପଟାନ୍ତର ସ୍ୱର୍ଗର ନାୟେକା ।
କରେ ତାଳ ମର୍ଦ୍ଦଳ ବଂଇଶୀ ବେଣୁ ଘେନି
ନୃତ୍ୟ ରସ ସଜ ଘେନନ୍ତି କାମେନୀ ।
କନ୍ୟାର ଆସନ୍ତେ ନୃପତି ଗୋଡ଼ାଇ । ୯୦
ମନ୍ତ୍ରୀ ଅମାନାତ୍ୟ ଘେନିଣ ପ୍ରବୋଧଇ ।
ତୁ ମୋହୋର ଜରତା ଗୋ ଅଟୁସି ବିଶ୍ୱାସ
ଯେମନ୍ତ ପାରୁ ତୁ ମୁନିକି ଘେନି ଆସ ।
କାମମୋହେନୀ ଘେନି ଜରତାକୋଷା ନାରୀ
ବାରହ ବନିତାଯେ ନୃପତି ପାଦେ ପଡ଼ି ।
ତୁ ଦେବ ବାହୁଡ଼ିଣ ଯାସି ନୃପମଣି
ଆଣିମୁଂ ଋଷିଶୃଙ୍ଗ ବନଗଜ ଠାଣି ।
ଯେଥେ ବିଋର ତୁ ନ କର ଦେବ କିଛି
କାଲି ଆଣି ତୋତେ ଦେବି ଋଷି ବଛି ।୯୯
ରାଜା ପ୍ରସନ୍ନ ହୋଇ ଫୁଲ ପାନ ଦେଲା
ଶୁଧ ସୁବର୍ଣ୍ଣ ଯେ ବୃଷ୍ଟି କରାଇଲା ।
ଆଗ୍ୟାଂ ଦେଲା ଶୁଭ ଅନୁକୂଳେ ଯାଅ
ମୁନିର କୁମରକୁ ବେଗେ ଭେଟ ପାଅ ।
ପଥେଣ ତୁମ୍ଭକୁ ରଖନ୍ତୁ ଦେବୀ ଦୁର୍ଗା
ଯାନ୍ତେ ଅନୁଗ୍ରହ କରନ୍ତୁ ଦେବୀ ଗଙ୍ଗା ।
ବିନାୟେକ ତୁମ୍ଭର ହରନ୍ତୁ ବିଘ୍ନଦୋଷ
ଶ୍ରୀମାଧବ ତୁମ୍ଭର ହରନ୍ତୁ କଲୁଷ ।
ଲକ୍ଷ୍ମୀ ନରସିଂହ କରନ୍ତୁ ସଦୟା
ଶ୍ରୀପୁରୁଷୋତ୍ତମ ରଖନ୍ତୁ ତୁମ୍ଭର କାୟା ।୧୦
ମଙ୍ଗଳ ଅଷ୍ଟକ ଯେ ପଢ଼ନ୍ତି ଜଉତିଷ
ବ୍ରାହ୍ମଣେ ବେଦ କରନ୍ତି ଆଗେ ଘୋଷ ।
ଲୋକେ ଧନି ଧନି ବୋଲନ୍ତି ବେଗେ ଯାଅ
ମାହିନ୍ଦ୍ର ବେଳେ ଯେ ନାବ ପେଲି ଦିଅ ।
ନୃପତିଙ୍କି ଓଳଗି ବୋଲଇ ଜରତା
ବାହୁଡ଼ା ବିଜୟେ ଦେବ କର ଶତୃଜିତା ।
ବୋଲଇ ମହୀପାଳ ଆମ୍ଭରେ କିସ କାର୍ଯ୍ୟ
ତୋହୋରେ ଗଲେ ରକ୍ଷା ହୋଇବ ସିନା
ରାଜ୍ୟ।

ନାବ ଚଳିଯାନ୍ତେ କୂଳେ ବଜାଇଲେ ବାଜା
ଉଛବ ରାଜ୍ୟରେ କଲେ ଲମ୍ବପାଦ
ରାଜା । ୨୦
ଚଳିଲାକ ନାବ ଯେ ଯେକ ଲୟେ ହୋଇ
ପ୍ରସାଦ ପାଇ କଇବର୍ତ୍ତେ ନାବ ନେଲେ
ବାହି ।
ବନ ପର୍ବତ କି ଚଳଇ ନଦୀ ମଧେ
ଆକାଶେ ଆନନ୍ଦ ହୋଇଲେ ସୁର ସିଧେ ।
ରାତ୍ର ଦିବସରେ ନ ବିଶ୍ରାମି ଗଲେ
ଅନେକ ଘୋର ଗିରି ବନସ୍ତ ଜିଣିଲେ ।
ଦୁସହ ଦୁର୍ଗମ ଗହନ ବନେ ଯାନ୍ତି
ଅପୂର୍ବ ପଦାର୍ଥ କୂଳରେ ଦେଖନ୍ତି ।
କାହିଂ ଗଜେ ଗଜେ ହୁଅନ୍ତି ଚଉଦନ୍ତ
କେବଣ ଶାର୍ଦ୍ଦୂଳ ଖେଦଇ ମୃଗନ୍ତ । ୩୦
କାହିଂ ଋକ୍ଷ ପୋଏ ଖେଳନ୍ତି ଖେଡ଼ରସ
କାହିଂ ହସ୍ତୀ ଦେଖି ବାନରେ ହରଷ ।
କାହିଂ ସୁରତି ଯେ କରନ୍ତି ଗଜ ବେନି
ନାବକୁ ଚାହିଂକେ ହୁଅନ୍ତି ଅନ୍ୟୋଅନ୍ୟି ।
କାହିଂ ମତ୍ତହସ୍ତୀକି ବିଦାରଇ ସିଂହ
ସର୍ବାଙ୍ଗେ ଶ୍ରୋଣିତ ଦିଶଇ ଦେହ ରଙ୍ଗ ।
କାହିଂ ସର୍ପକଇ ମାରଇ ବଣ ଗୋରୁ
କାହିଂ ବାଘ ଡରେ ପଳାବନ୍ତି ଗୋରୁ ଦୂରୁ ।
କେବଣ ଜୀବଜନ୍ତୁ ନଦୀକୁ ଚାହାଂନ୍ତି
ନାବ ଚଳି ଯାନ୍ତେ ଦିଶନ୍ତି ପନ୍ତି ପନ୍ତି ।୪୦
ପରାକ୍ରମ କରି ହୁଅନ୍ତି ଆଗୁସାର
କେହୁ ଭୟକରି ପଶନ୍ତି ଲତାର ।
କେହୁ ପଛକଇ ଚାହିଂ ଆଡ଼େ ହୋଇଯାନ୍ତି
ଥୋକାଯେକ ଦୂର ଯାଇ ଲେଉଟି ଆସନ୍ତି ।
ଚାମରୀ ଯୂଥ କାହିଂ ପାଣି ପିଇ ଆସଇ
ନାବ ଦେଖିଣ ଯେ ଥୋକାଏ ଦୂରେ ରହି ।
କେବଣ ଠାବେ ତାଙ୍କୁ ଝାମ୍ପଇ ଶାର୍ଦ୍ଦୂଳ
ବଣ ମାର୍ଜାର କାହିଂ କରନ୍ତି ମୁଖଗୋଳ ।
କାହିଂ ଶେତ ନେଉଳ ଖେଦାଖେଦା ହୋଇ
ନେପାଳି ମୂଷାକୁ ଯେ ଅଛନ୍ତି
ଗୋଡ଼ାଇ ।୫୦

ଚିତ୍ର ମୟୂର ଯେ କରନ୍ତି ନୃତ୍ୟ ରସ
କାହିଂ ବଣ ପାରୁଆ ଉଡ଼ନ୍ତି ଚଉପାଶ ।
ଗହନ ବନସ୍ତରେ ବୋବାଇ ଏକ ଜୀବ
ହୁଳହୁଳି ପ୍ରାୟେକ ଶୁଭଇ ଶବଦ ।
ପର୍ବତ ଉପରେ ଥାଇ ଦେଖଇ ଗୟଳ
ନାବ ଦେଖି ଧାଇଁ ଅଇଲା ନଦୀକୂଳ ।
ବଳିଆ ଗୋଡ଼ାଇ ଅଛନ୍ତି ଗଣ୍ଡାକୁ
ନାବ ଦେଖି ଦୁହେଂ ହୋଇଲେ ତେକୁ
ତେକୁ ।
ନଦୀର ଭିତରେ ଚରନ୍ତି ଜଳଚର
ହଂସ କାରଣ୍ଡକ ଚକୁଆ ଅପାର । ୬୦
କଣ୍ଠା ପାଣିକୁଆ ହଂସରାଳି ପକ୍ଷୀ
ବସା ଛାଡ଼ିଣ ଯେ ପଳାନ୍ତି ନାବ ଦେଖି ।
କେହୁ ତହିଂ ବୁଡ଼ି ରହନ୍ତି ବସା ଆଶେ
କେବଣ ଚଢ଼ାଇ ଯେ ରହିଲେ
ଡିମ୍ବ ଆଶେ ।
କେହୁ ତହିଂ ପରେ ଉଡ଼ନ୍ତି ରଡ଼ି ଦେଇ
ନାବ ଗଲେଣ କେ ଦେଖନ୍ତି ବସା ଯାଇ ।
କେବଣ ଠାବରେ ଯେ ଅଛନ୍ତି ପଦ୍ମଲତା
ନଉକା ମାଡ଼ିଗଲା ନୋହିଲା ଦେଖନ୍ତା ।
ନାନା ପକ୍ୱଫଳ ଭୁଞ୍ଜନ୍ତି ଶାଳୀଅନ୍ନ
ନୃତ୍ୟ ଗୀତେ ହରଷେ ଦିନ ନିଅନ୍ତି
ଅନୁକ୍ଷଣ ।୭୦
ଗଭୀର ଜଳ ଦେଖି ନିଶାରେ ନାବ ଖାଞ୍ଚ୍ଚି
ପ୍ରଭାତେ ଚଳିଯାନ୍ତେ ନିଦ୍ରାରସ ବଞ୍ଚି ।
ଯେମନ୍ତେ କୋଡ଼ିଏ ଦିବସ ବହିଗଲା
କଉଶିକ ନଦୀ ତୀରେ ପ୍ରବେଶ ହୋଇଲା ।
ପଶ୍ଚିମକଇ ଉଭାରି ନାବ ବାହିଯାନ୍ତି
କେତେହେଂକ ଦୂରେ ଚାରିପର୍ବତ
ଦେଖନ୍ତି ।
ତହୁଂ ଯାଇ ପ୍ରବେଶ ବିଭାଣ୍ଡେକର ସୀମା
ଯେବଣ ଥାନ ପୂର୍ବେ ଭିଆଇଲା ବ୍ରହ୍ମା ।
ଉତ୍ତର ଦିଗରେ ପଞ୍ଚକୋଶ ଗଲେ
ତେଇଶ ଦିନେ ମୁନି ସନ୍ନିଧେ
ମିଳିଲେ । ୮୦

ପରିମଳ ଠାବ ଦେଖିଲେ ରହନ୍ତି
ନାବ ଖଟାଇଣ ସୁନ୍ଦେରୀ ଓହ୍ଲାନ୍ତି ।
ଖୋଜିଣ ଜାଣିଲେ ଯେ ବିଭାଣ୍ଡେକ ଘର
ଅର୍ଦ୍ଧ କୋଶକ ସେ ଅଟଇ ନଦୀ ତୀର ।
ତହିଂ ରହିଲେ ଯେ ଉତ୍ତମ ସ୍ଥାନ ଦେଖି
ବିଚ୍ଛର କରନ୍ତି ଯେ ଶରଦଚନ୍ଦ୍ର ମୁଖୀ ।
ବିଭାଣ୍ଡେକ ନ ଥିବା ଜାଣିଣ ଯେ ଯିବା
ସେ ମୁନି ଜାଣିଲେ ଶାପ୍ୟ ସେ ପାଇବା ।
ଯେଥୁ ଅନନ୍ତରେ ଗଲାକ ଦିନ ଚାରି
ବିଭାଣ୍ଡେକ ନ ଥିବାରେ ଜାଣିଲେ
ଚତୁରୀ । ୯୦
କାମମୋହେନୀ କି ରାଇଣ ଜରତା
ସାଙ୍ଗରେ ପେଶିଲେ ସେ ବାରହ ବନିତା ।
ଅନେକ ମତେ ତାଙ୍କୁ ତିଆରି କହିଲା
ପ୍ରେମ ରସ ଗୁଣ ଅନେକ ଶିଖାଇଲା ।
ଯାଆଯା ସୁନ୍ଦେରୀ ଲୋ ରାଜକାର୍ଯ୍ୟ କର
ଯେମନ୍ତେ ଭଣ୍ଡି ହୁଅଇ ଋଷିର କୁମର ।
ଶୁଣିଣ ସୁନ୍ଦେରୀ ଯେ ଦିବ୍ୟ ବେଶ ହୋଇ
ଅଲେଖ ତିଲେଖ ଯେ ହୋଇଲେ
ଚାନ୍ଦମୁହୀଂ ।
ମୁକୁତା ସିଉସ୍ଥାନ ସେ ଉପରେ
ପକାଇ । ୧୦୦
ଖୋଷା ଖୋଷିଲେ ସେ ଅନେକ
ଫୁଲଲାଇ ।
କେରି କେରି କରି ମଣ୍ଡିଲେ ଅଳକା
କସ୍ତୁରୀ ଚିତା ଘେନିଲେ ସୁନ୍ଦେରୀ
ନାୟେକା ।
କର୍ଣ୍ଣେଣ କାପ ଯେ ମୁକୁତା ଫେରି କମ
କାହାର କର୍ଣ୍ଣରେ ପଦ୍ମ ତଡ଼କି ଅନୁପାମ ।
ଯେକଗୋଟିଆ ଗଜ ମୁକୁତା ବେଣ୍ଡୋଲା
କେବଣ ବାମା ଶ୍ରବଣ ଶିଖରେ ଖଞ୍ଜିଲା ।
କାହାର ନାସାରେ ମାଣିକ୍ୟର ବସଣି
କାହାର ନାସାରେ ଲୁଳଇ ନୀଳମଣି ।
ପାଞ୍ଚ ଗଜମୋତି କାହାର ନାସାଫୁଲ ।୧୦

ତାମ୍ବୁଳ ରଙ୍ଗେ କାହାର ଅଧର ଅମୂଲ୍ୟ ।
କାହାର ଗଳାରେ ଲମ୍ୱନ୍ତି ଚାପସରି
ମୁକୁତା କଣ୍ଠିମାଳ ହୃଦରେ କେହୁ ଭରି ।
କେହୁ ଖଞ୍ଜନ୍ତି ଗଳେ ଯାଉଂଳି ସୁନା ସୂତା
କାହାର ହୃଦରେ ପଦେକ ମୁକୁତା ।
କାହାର ରତ୍ନନିଆଳ ଲୁଳଇ ଉର ଯାଏ
ମର୍କତ ତୋଡ଼ର କେ ଖଞ୍ଜି ନିଜ ପାଏ ।
କେ ନେତ୍ ପିନ୍ଧିଣ ଉପୁରାଣ ଦେଇ
କେ ରଙ୍ଗ ପଟନୀ ଯେ ଆଭରଣ କରି ।
କେହି ଚତୁସମ କେହୁ କୁଙ୍କୁମ ଘଷନ୍ତି ।୨୦
ଗଣ୍ଠିଅନା ଚନ୍ଦନ କେ ମିଶାଇ ଘେନନ୍ତି ।
କେ କରେଣ ଯନ୍ତ୍ର କେ ଧରିଲେ କରତାଳ
କେହୁ ସଜ ହୋଇଲା ଘେନିଣ ମର୍ଦ୍ଦଳ ।
କେହୁ ଚାମର କେହୁ ମୁଖ ଦରପଣ
କେହୁ ଭୁଜେ କରନ୍ତି ବିବିଧ ଆଭରଣ ।
କାହାର ହସ୍ତରେ ଦାରାକ୍ଷର ଫଳ
କେହୁ ପଣା କେହୁ ଘେନିଲେ ବାସ ଜଳ ।
କେହି ଦିବ୍ୟବସ୍ତ୍ର କେ ଘେନିଲେ ପୁଷ୍ପମାଳି
କେ ଗନ୍ଧ ଚନ୍ଦନ କେ କର୍ପୂରର ଧୂଳି ।
କେ ସୁବର୍ଣ୍ଣର କଠାଉ କେ ସୁବର୍ଣ୍ଣ
କମଣ୍ଡଳ । ୩୦
କେହୁ ଧୂପକାଠି କେ ଘେନିଲେ ତାମ୍ବୋଳ ।
କେ କରେଣ ପାଟଛତି କେ କରେଣ ଖଟୁଳି
କେ ରତ୍ନଝରି କେ ପାଟଇ ମୁଚୁଳି ।
ଅନେକ ସମ୍ଭାର ଯେ ଘେନିଣ ଯୁବତୀ
ଜଗତାର ଆଜ୍ଞା ଘେନିଣ ଚଳିଯାନ୍ତି ।
ବେଳ ତିନି ଘଡ଼ିମାନେ ସେ ତହୁଁ
ଚଳିଗଲେ
ପ୍ରହରକ ପ୍ରବେଶେ ଯାଇ ମୁନିଙ୍କି
ଦେଖିଲେ ।
ମଢ଼ିଆ ଦୁଆରେ ଯେ ଅଛଇ ବେଲଗଛି
ତହିଁର ତଳେ ବସି ଅଛଇ ମୁନି ବଛି ।
କୃଷ୍ଣାଜିନ ଛାଲ ସେ ପାଡ଼ିଣ
ବ୍ରହ୍ମଚାରୀ । ୪୦
ବାମ ପାଖେ ଥୋଇ ଅଛଇ ଆଧାରି ।

ଛାମୁରେ ଅଛଇ ଶାଳଗ୍ରାମ ଶିଳା
ଗୋମଳ ପାଉଂଶ ଭୂଷଣ ମୁନିବଳା ।
କର୍ଣ୍ଣରେ ଅଛି ବେନି ଚମ୍ପାର କୁଣ୍ଡଳ
କଣ୍ଠରେ ରୁଦ୍ରାକ୍ଷ ତୁଳସୀ କାଠମାଳ ।
ପଦ୍ମ ପୁଷ୍ପର ମାଳେକ କଣ୍ଠେ ଲୁଳି
ନବ ଯୁବା ପୁରୁଷ ଅପୂର୍ବ ତପଶାଳୀ ।
ଶୁଦ୍ଧ ସ୍ଫଟିକ ଯେ ଅଠାଇଶ ଗୋଟି
ଅକ୍ଷୟେ ମାଳା ଘେନି ଜପଇ ତପନିଷ୍ଠି ।
ଅଜପା ସୁମରଇ ଅନାମିକା ପଢ଼ି ।୫୦
ଛତିଶ କୋଟି ଯେ ଜପଇ ଏକ ଘଡ଼ି ।
ଶିରରେ ସୁନ୍ଦର ଦିଶଇ ଚାରୁ ଜଟ
ଶିଙ୍ଗ ଦୁଇଗୋଟି କି ଦିଶଇ ମୁକୁଟ ।
ତଳୟେ କରିଣ ଯେ ଅଛଇ ମହାମୁନି
ଯେସନେକ ସମୟେଣ ମିଳିଲେ
କାମେନୀ ।
କାମମୋହେନୀ ଯାଇ ଓଳଗଇ ମୁନିପାଦ
ତାହାକଇ ମୁନି କରଇ ଆଶୀର୍ବାଦ ।
କନ୍ୟାଙ୍କର ରୂପ ମନୋହର ଦେଖି
ଉଠିଲେ ଋଷିପୁତ୍ର ଆସନ ଉପେଖି ।
କୃତାଞ୍ଜଳି ହୋଇ ବୋଲଇ ବିନୋଇ ।୬୦
ଜନ୍ମହୁଁ ଯୁବତୀ ଯେ ଦେଖିଲା ତାର ନାହି ।
ପୁଛଇ ଋଷିଶୃଙ୍ଗ ଯୁବତୀଙ୍କି ଚାହିଁ
ଭୋ ତପୀଜନେ ଅଇଲ ତୁମ୍ଭେ କାହିଁ ।
କେବଣ ଦେଶୀ ତୁମ୍ଭେ କେବଣ ପ୍ରକାର
କେବଣ ବେଦବିଦ୍ୟା ଅଭ୍ୟାସ ତୁମ୍ଭର ।
କେବଣ ନଦୀ ତୀରେ ମଢ଼ିଆ କରିଥିଲ
କେବଣ କାରଣେ ତପୀ ଯେଥକୁ
ଯେବେ ଅଇଲ ।
କିସ ନାମ ତୁମ୍ଭର କେବଣ କୁଳେ ଜାତ
ଯେକ ଥାନେ ଥାଅ କି ସକଳ ତପୋବନ୍ତ ।
କାମମୋହେନୀ ବୋଇଲା ଋଷିର
କଥାଶୁଣି । ୭୦
ଆମ୍ଭର ଦେଶ ସ୍ୱାମୀ ଅଟଇ ଉଜାଣି ।
ନଖ ଦନ୍ତ ଆହୁତି ଦେଇତ ସର୍ବ ଜାଣୁ

ମଦନ ଅନଙ୍ଗେ ଯେ ରତିଶାସ୍ତ୍ର ଭଣୁ ।
କାମ କ୍ରୀଡ଼ା ରସ ଜାଣୁ ଯେ ଅପାର
ଚୁମ୍ବନ ଚାହାଣୀ ଯେ ପୀରତି ଆମ୍ଭର ।
ଧନ ଅର୍ଥେ ପରପୁରୁଷଙ୍କୁ ଖଟୁ
ମହା ମହତପୀଙ୍କି ହରି ତପ ବାଣ୍ଟୁ ।
ଇଚ୍ଛା ସୁଖେ ଆମ୍ଭେ ସର୍ବପୁର ଯାଉ
ଦିବ୍ୟ ପୁରୁଷେକ ତହିଁ ପୂଜା ପାଉ ।
ପ୍ରୟାଗ ତୀର୍ଥେ ଆମେ ମକର ମାସେ
ଝାସିଲୁ । ୮୦
କୁମ୍ଭେ ଶିବରାତ୍ରୀ ବାଣରାଶିରେ କଲୁ ।
ଚଇତେ ଗଙ୍ଗା ଜଗନ୍ନାଥ ଘାଟେ
ବୈଶାଖେ ଅଇଲୁ ଯେ ହର ତପ ବାଟେ ।
ପ୍ରଥମ ଜ୍ୟେଷ୍ଠେ ଭେଟିଲୁ ଆସି ତୋତେ
ଅଯୋଧ୍ୟାକୁ ଯିବାର ଅଛଇ ଦିନା କେତେ ।
ଶୁଣି ଋଷିଶୃଙ୍ଗ ହରଷ ହୋଇଲା
ପାଦ ପଖାଳ ବୋଲି କମଣ୍ଡଳୁ ଦେଲା ।୯୦
ଶାର୍ଦ୍ଦୂଳଛାଲ ମୁନି ଦେଲା ଯେ ବସିତ
ଗୋମଳ ପାଉଂଶ ଗାତ୍ର ଭୂଷିତ ।
ହରିଡ଼ା ବାହାଡ଼ା ଅୟେଂଳା ଫଳ ଦେଲା
କନ୍ଦମୂଳ କିଛୁ ଉପଗତ କଲା ।
ହସିଣ ଚତୁରୀ ଯେ ବୋଲନ୍ତି ନାକମଳି
କିସ କିସ ପଦାର୍ଥ ଦେଲ ତପଶାଳୀ ।
ମୁନି ବୋଇଲେ ଯେ ଅଟଇ କନ୍ଦଫଳ
ପାଦ ପଖାଳିତ ଦେଇଅଛୁ ଜଳ ।
ତୁମ୍ଭେ ଯେ ଅତିଥି ଅଇଲ ଆମ୍ଭ ଘର
ତପସ୍ଥାନେ ଯାଇ ଯେ ଅଛି ଆମ୍ଭ ପିଅର ।
ମୁହିଁ ବାଳୁତ ତନୁ ନ ଜାଣଇ କିଛି
ଭଗତି ହୋଇତ କି ମୋହର ବୁଦ୍ଧି
ଅଛି । ୯୯
ତୁମ୍ଭେ ମହାତପୀ ପରମ ବ୍ରହ୍ମଜ୍ଞାନୀ
ମୁଂକି ସମ୍ଭାଳି ପାରିବି ଭୋ ମୁନି ।
ତୁମ୍ଭେ ସଦୟା ଯେ ଘେନିବା ମୋର ସେବା
ପ୍ରସନ୍ନ ହୋଇଣ ଯେହା ପରିଗ୍ରହ କରିବା ।
କାମମୋହେନୀ ବୋଲଇ ଶୁଣସି ହେ ଋଷି

ଯେ ସେ ଉପହାର ମୋହୋର ଆଖିକି ନ
ଦିଶି।
ହରତକୀ ଅୟେଂଳା ଆମ୍ଭେ କି ଯେହା ଖାଇ
ଯେକି କନ୍ଦମୂଳ ଖାଇଲେ କ୍ଷୁଧା ଯାଇ ।
ଯେହି ପାଣି ଖାଇଲେ କି ହରଇ ହାଦେ
ତୃଷା
ବାହାଡ଼ା ଫଳ ଏତ ଲାଗଇ ବଡ଼ କଷା ।୧୦
ଯେହୁ ବନେ ଯେହି ଫଳ ଉପୁଜଇ
ଅଭାଗ୍ୟବନ୍ତ ଋଷି ଯେ ସେ ଯେ ଫଳ
ଭୁଂଜଇ।
ଆମ୍ଭର ବନ ଫଳ ଭୁଞ୍ଜ ମହାଯତି
ଦେଖ ହୋ ଆମ୍ଭର ତପର ଶକତି ।
ଆମ୍ଭର ବିପୁନ୍ୟର ଗଛର ବକଳ
ଆମ୍ଭ ପର୍ବତର ନିର୍ଝର ଯେହୁ ଜଳ ।
ଯେତେ ବୋଲି ନାରୀ ସୁବାସିଲା ପାଣି
ରତ୍ନ ଝରେ ଭରି ବେଗେ ଦେଲେ ଆଣି ।
ସନ୍ତୋଷେ ଋଷିପୁତ୍ର ପଖାଳିଲା ପାଦ
ଆଚମନ କରନ୍ତେ ମଣିଲା ସୁସ୍ୱାଦ ।୨୦
କାମମୋହେନୀ ଯେ ଘେନିଣ ଝିନବାସ
ଯେ ତରୁ ବକଳଟି ହୋ ବିଭାଣ୍ଡେକର
ଶିଷ ।
ରଙ୍ଗରାଜ ନେତ ପୁଣ ହିଂ ବାଛିଲା
ଯେତେ ବୋଲି ମୁନି ଯେ ଶ୍ୟରୀର
ପୋଛିଲା ।
କୁଞ୍ଚେ ଉଛିଣ ସେ ବୋଲଇ ମୁନି ପିନ୍ଧ
ଶ୍ୟରୀରେ ଆପଣେ ଯେ ଲେପିଲେ
ଚାରୁଗନ୍ଧ ।
ରତ୍ନ କମ୍ବଳେକ ପାଡ଼ିଣ ତହିଂ ଦେଲା
ଯେ ସେ ପଶୁଚର୍ମ ବୋଲିଣ ବୋଇଲା ।
କର୍ପୂର ଗୁଣ୍ଡି ଅଙ୍ଗେ ଘଷାଇଲା ନେଇ
ଯେ ସେ ବିଭୂତି ମୁନି ଆମ୍ଭର ଦେଶେ
ପାଇ ।
କର୍ଣ୍ଣରେ ଖଞ୍ଜିଲେ ହାଦେ ମକରକୁଣ୍ଡଳ
ଗଳାରେ ଲମ୍ବାଇଲେ ମୁକୁତାର ମାଳ ।

ବାହାରେ ତାଡ଼ ଯେ ବିଚିତ୍ର ବାହୁଟି
ପୟରେ ନୂପୁର ଯେ ଖଞ୍ଜିଲେ ପ୍ରପଟି ।
ଦୁଧ ଶାକର ବିବିଧ ପରକାର
ଆମ୍ବ ପନସ ସେ କଦଳୀ ଦିବ୍ୟସାର ।
ଯେ ସେ ବନଫଳ ବୋଲିଣ ଭୁଜାଇଂଲେ
ପୁଣିହିଂ ଗଙ୍ଗବାଣ ପାଣି ପିଆଇଲେ ।
ଶାକର ସାଚି ଚିଣି ଆବର ଖଣ୍ଡ ଖଜା
ହରଷେ ଭୁଞ୍ଜାଇ ଏହା ଋଷିର ତନୁଜା ।୪୦
ଦୁଧ ଲଡୁ ଖାଇ ପଚ୍ଛରଇ ମୁନି
ବାବୁ ତପନିଷ୍ଟେ ମହିମା ତୁମ୍ଭ ଧନି ।
ଯେଡ଼େ ସ୍ୱାଦଫଳ ତୁମ୍ଭର ବନେ ଥାଇ
ଜାଣିଲି ତୁମ୍ଭର ସେ ତପସିଦ୍ଧ ହୋଇ ।
କେବଣ ବନ ତୁମ୍ଭର କେମନ୍ତ ଦେଖିବା
ଯେ ମୋହର ମନ ତୁମ୍ଭ ସଙ୍ଗେ
ଯିବା ।
କାମମୋହେନୀ ଯେ ଯତିର ବାଣୀ ଶୁଣି
ହିଆ ଲଗାଇଣ ବସିଲା ତରୁଣୀ ।
ଇକ୍ଷୁ କାନ୍ତାରି ଯେ ଛଡ଼ାଇଲା ଥିଲା
ପାଚିଲା ଡାଳିମ ମଞ୍ଜି ପୁଣି ଖୁଆଇଲା ।୫୦
ଗଙ୍ଗବାଣ ପଇଡ଼ ଯେ ପିଆଇଲେ ନେଇ
କେତେବେଳେହେଂ ସର ପାପୁଡ଼ି ଖୁଆଇ ।
ଦୁଧ ବହଳ ଯେ ରସକୋରା ନାଳି
ପୁଣି ନେଇ ଦେଲା ଅମୃତବାନି କଦଳୀ ।
ନାନା ପଦାର୍ଥ ଦେଲା ଋଷିଙ୍କରି
ଭୁଞ୍ଜିଣ ସନ୍ତୋଷ ଯେ ହୋଇଲେ
ତପସ୍ୱରୀ ।
କାମମୋହେନୀ ଯେ ପିଠି କତି ବସି
ମୁନିଙ୍କୁ କଥାଯେ ବୁଝାବଇ ବସି ।
ଆଚମନ କରାଇଲେ ଅଗ୍ରବାସ ପାଣି
ମୁଖବାସକଇ ଚନ୍ଦନ ଗୁଆ ଆଣି ।୬୦
ଆଚୋବନ କରାଇ ପୋଛିଲେକ ମୁଖ
ଋଷିଙ୍କର ପୁତ୍ର ପାଇଲା ବଡ଼ ସୁଖ ।
କର୍ପୂର ବାସ ଗୁଆ ଉତ୍ତମ ତାମ୍ବୋଳ
ଭୁଞ୍ଜିଣ ତପସ୍ୱୀ ଯେ ହୋଇଲାକ ଭୋଳ ।

ଶିରେ କୁସୁମ କଣ୍ଠେ ଉତ୍ତମ ତାମ୍ବୋଳି
ପୁଣି ଚତୁସମ ଲେପିଲେକ ବାଳୀ ।
କେବଣ ବିଳାସୁଣୀ ବିଞ୍ଚନ୍ତି ବିଞ୍ଚଣୀ
ଚାମର ଢାଳନ୍ତି କେବଣ ତରୁଣୀ ।
କେହୁ ପାଟଛତ୍ର ଉଭାରିଲା ଶିରେ
ପୁଣି ବସାଇଲେ ରତ୍ନ ଖଟୁଲି ଉପରେ ।୭୦
ଉଂକାର ଆଳାପ କରିଣ ଗୀତ ଗାଇ
ଅତି କୋମଳ ରାଗେ କେଦାର ଉଚ୍ଚାରଇ ।
ବୀଣା ଯନ୍ତ୍ର ଘେନି ବଜାଇଲେ ମର୍ଦ୍ଦଳ
କେହୁ କରତାଳ ବାଇ କେ ବଜାନ୍ତି
କଂସାଳ ।
ମଧୁକେରୀ ରାଗେ କେ ପ୍ରବନ୍ଧେ ଗୀତ ଗାଇ
ମୁନିଙ୍କ ମୁଖ ଚାହିଂ ନୃତ୍ୟ କେ କରଇ ।
କେ ଧୂପକାଠି ଘେନିଣ ଉଭା ହୋଇଛନ୍ତି
କେହି ରତ୍ନ ପାଦୁକା ନେଇ ପାଦେ ଦ୍ୟନ୍ତି ।
କେବଣ ସୁନ୍ଦରୀ ଯେ ଦର୍ପଣ ଦେଖାଇଲେ
ଯେଥି ମୁନି ମୁଖ ଚାହାଂସି
ବୋଇଲେ ।୮୦
କାମମୋହେନୀର କୋଳରେ ବସି ଯତି
ପରମ ହରଷେଣ ଦର୍ପଣ ନିରୋପନ୍ତି ।
ଦେଖିଲାକ ମୁଖ କସ୍ତୁରୀ ଚାରୁ ଚିତା
କର୍ଣ୍ଣର କୁଣ୍ଡଳ ଯେ ସୁନ୍ଦର ଭ୍ରୂଲତା ।
କଣ୍ଠେଣ ହାର ଯେ ଶିରରେ ଫୁଲ ଗଭା
ମଦନ ପ୍ରତିମା ଠାଣି ଦିଶଇ ମୁନି ଶୋଭା ।
ଆପଣାର ମୁଖ ଦେଖି ମୁନି ମୋହମାନ
କାମମୋହେନୀ କି ବୋଲଇ ବଚନ ।
ଯେଡ଼େ ଅପୂର୍ବତ ଦେଖିଲା ମୋର ନାହିଂ
ଆପଣା ଶରୀର ରୂପ ସମସ୍ତ ଦିଶଇ ।୯୦
ସାଧୁ ସାଧୁ ତୁମ୍ଭେ ସାଧୁ ତୁମ୍ଭର ପୁଣ୍ୟ
ଯୁବତୀଙ୍କ ମୁଖ ଚାହିଂ ବୋଲନ୍ତି ମହାମୁନ୍ୟ ।
ହସି କାମମୋହେନୀ ମୁନିଙ୍କି କୋଳ କଲା
ଯଉବନ ଲଗାଇ ମୁଖେ ଚୁମ୍ବନ ଦେଲା ।
ବୋଇଲା ଏ ଆମ୍ଭର ତପର ଶକତି ।୯୫
ତପର ବଳେ ଏଥେ ଦିଶଇ ନିଜମୂର୍ତ୍ତି ।

ଜଘେ ଲଖ ଦେଇ ଚଳାଇଲା ଲଖ
ପୁଣହିଂ ଲେଉଟି ଚାହାଇଂ ଋଷିମୁଖ ।
ହିଆ ଆଉଜାଇ କୁଚ ଠାବ କଲା
ହସ ହସ ହୋଇଣ ମୁନି ପଚାରିଲା ।
ଯେ ଅପୂର୍ବତ ମୋର ତହିଂ ନାହିଂ
ଯେଡ଼େ ଭଲ ପଦାର୍ଥ ପାଇଲ ତୁମ୍ଭେ
କାହିଂ ।
କାମମୋହେନୀ ଯେ ବୋଲଇ ଶୁଣ ଋଷି
ଯେଥିର ଭିତରେ ହାଦେ ଅମୃତ ପୂରିଅଛି ।
ଯେଣେ ସେ ଆମ୍ଭରି ଅଗ୍ରହଣ ହୋଇ
ଦେହ ।୧୦
ଯଜ୍ଞର ଫଳ ଆମ୍ଭର ଅଟଇ ସର୍ବଂସହ ।
ନୀଳମୁଖ ବିଷ୍ଣୁ ଯେଥେ ଭାବେଣ ବିଜେକଲା
ଦାସବତ୍ସଳ ନାମ ଯେଣେ ସେ ବହିଲା ।
ଅବର୍ଣ୍ଣ ଅରୂପ ଯେ ପୟ ପାଣି ନାହିଂ
ଅଛି ପୟ ପାଣିତ କ୍ଷମ କାହାର କାହିଂ ।
କର ଆଶ୍ୱାସ ପ୍ରସନ ତୋତେ ହୋନ୍ତୁ
ମନେ ଯାହା ବାଞ୍ଛିବୁ ସେ ବର ତୋତେ
ଦିଅନ୍ତୁ।
ହିଆରେ ଆଉଜାଇ ଆଣିଲା କୋଳକରି
ହରଷେ ଅଧର ଯେ ଚୁମ୍ବିଲାକ ଧରି ।
ଶରୀର ଆଉଂଷି ଯେ ଚାହିଂଲା ପ୍ରେମ
ରସେ ।୨୦
ମୁନି ମନ ହରିଲା ଏକଇ ନିମିଷେ ।
ବିବିଧ ସ୍ୱାଦ ଫଳ ଯେ ଭୋଗକଲା ଋଷି
ଚନ୍ଦନ କର୍ପୂର ଯେ ଗନ୍ଧ ଅଙ୍ଗେ ଘଷି ।
ତାମ୍ବୁଳ ଭୁଞ୍ଜିଣ ରତ୍ନ ଆଭରଣ କରି
ନୃତ୍ୟ ରଙ୍ଗ ରସେ ଭେଭଳ ତପଋରୀ ।
କାମମୋହେନୀକି ବୋଇଲାକ ହସି
ତୁମ୍ଭର ଆଶ୍ରମେ ଆସିବୁ ଆମ୍ଭେ ପଶି ।
ଚାଲ ଯିବା ଆମ୍ଭେ ଦେଖିବା ମନ୍ଦିର
ଯେତେକ ବୋଲିଣ ଯେ ଉଠିଲେ
ମୁନିବର ।
ନୃତ୍ୟ ଗୀତ ରୁହାଇ ବୋଲଇ
କାମମୋହେନୀ । ୩୦

ଆଜ ନ ଯିବା ତୁମ୍ଭେ ଶୁଣ ତପୋଧନୀ ।
ଯେବେ ଆମ୍ଭେ ଯିବୁ ଦେବତା ପୂଜାକରି
ଆହାର୍ଣ୍ଣିକ ବେଳ ଯେ ହୋଇଲା ତପଋରୀ ।
କାଲି ଆସି ତୋହୋର ଗଲେ ଘେନିଯିବୁ
ଯେ କଥା ସତ୍ୟ ସତ୍ୟ ଅବଶ୍ୟ କରିବୁ ।
ମୁନି ମୃଛଇ ଛାଡ଼ି ତ ଇଚ୍ଛା ନାହିଂ
ତୁମ୍ଭେ ତପୀଜନ ନ ଆସ ଆଜ ଯାଇ ।
ଆସିବା ବୋଲି ଯୁବତୀ ସତ୍ୟ କଲେ
ପିତା ତୁମ୍ଭର ଦୁଷ୍ଟ ବୋଲିଣ ଡିଆରିଲେ ।
ଯେ ସେ ଆଭରଣ ପିନ୍ଧିବାର ବକଳ । ୪୦
ଲୁଚାଇ ଥୋଇଥାଅ ବିଭାଣ୍ଡେକର ବାଳ ।
ଯେ ଗୁଣ୍ଡି ଛଡ଼ାଇଣ ଘେନସି ବିଭୂତି
ପିତା ଆଗେ ନ କହିବୁ ଯେସନେକ ରୀତି ।
ଯେତେ ବୋଲି ନାରୀ ଅଇଲେ ପିଠି ଦେଇ
ଥୋକାଯେକ ଦୂରେ ଲେଉଟି ପୁଣି ଚାହିଂ ।
ମୁନି ଅନାଇ ବୋଇଲେ କାଲି ଆସ
ମୁହିଂ ତୁମ୍ଭର ଯେ ଅଟଇ ନିଜ ଦାସ ।
ସୁନ୍ଦେରୀ ଅଳପ ହୋଇଣ ହସିଲେ
ଆସିବୁ ଆସିବୁ ବୋଲିଣ ବୋଇଲେ ।
ଅଦୃଶ ପରିଯନ୍ତେ ଅନାଉଥିଲା ମୁନି ।୫୦
ଜରତା ଛାମୁରେ ସେ ମିଳିଲେ କାମେନୀ ।
ଯେସନେକ କଥା ହୋଇଲା ସେହୁଦିନ
ଶୁଣି ଜରତା କନ୍ୟା ପରମ ତୋଷ ମନ ।
ଯେଥୁ ଅନନ୍ତରେ ଋଷିଶୃଙ୍ଗ ମୁନି
ଯୁବତୀଙ୍କର ଗଳାକୁ ଭାଳଇ ତପୋଧନୀ ।
ନ ପୁଣ ନ ଆସନ୍ତି ଅପୂର୍ବ ତପଋରୀ
ପୁଣିହିଂ ବିଋରଇ ସାଷ୍ଟାମ ମନେ ଧରି ।
ଆସିବୁ ବୋଲି ଯେ ବୋଇଲେ ତପଋରୀ
କାଲି ଆସିବେ ସେ ପ୍ରାତସ୍ନାନ କରି ।
ପିତା ଆସିବାର ଜାଣିଲାକ ବେଳ ।୬୦
ବସ୍ତ୍ର ଅଳଙ୍କାର କାଢ଼ି ଋଷିବାଳ ।
ଗନ୍ଧ ଚନ୍ଦନ ଯେ ପକାଇଲା ପୋଛି
ଶିରର ପୁଷ୍ପ ସେ ପକାଇଲା ଲେଛି ।
ଦୋହୋରା ଘରେ ପଶି ବିଭୂତି ବୋଳିଲା

କନ୍ଦ ଫଳ ମୂଳ ଜଳାଦି ଆଣିଲା ।
କାମଧେନୁ ସମ୍ଭାଳିଣ କଲାକ ଦୋହନ
ଯୁବତୀଙ୍କ ତହିଂ ଅଛଇ ତାର ମନ ।
ଯେଥୁ ଅନନ୍ତରେ ରବି ଅସ୍ତ ଗଲା
ତପସ୍ଥାନ ତେଜି ବିଭାଣ୍ଡେକ ଅଇଲା ।
ଋଷିଶୃଙ୍ଗ କଥା ବିକୃତ ମଣିଲା । ୭୦
ମାୟା ମୁନିଙ୍କର ଆସିବା ଜାଣିଲା ।
ପୁତ୍ରକୁ ପଋରିଲା କୋଳରେ ବସାଇ
ଶରୀର ଆଉଂଶିଣ ମୁଖେ ଚୁମ୍ବ ଦେଇ ।
କିରେ ବାବୁ କିସ ପ୍ରକଟଇ ଗନ୍ଧ
ତପୀଙ୍କି ନ ଯୋଗାଇ ଅଟଇ ଏ ମନ୍ଦ ।
କିପାଇଂ ଯେଥି ସେ ହୋଇଲେ ପରବେଶ
କହିବା ମୋତେ ଯେଥିର ସନ୍ଦେଶ ।
ଋଷିଶୃଙ୍ଗ ବୋଇଲେ ଶୁଣ ତୁ ପିତାମହ
ଆଜ ସେ ସଫଳ ହୋଇଲା ମୋ ଦେହ ।
ଅପୂର୍ବ ତପୀ ଦେଖିଲି ଆଜି ମୁହିଂ
ତାତ । ୮୦
ରୂପେଣ ମୋହି ସେ ପାରନ୍ତି ଜଗତ ।
ଯେ ଆମର ଜଟା ପିଙ୍ଗଳ ବର୍ଣ୍ଣ କେଶ
ତାଙ୍କର ଶିରରୁହ ଭ୍ରମର ସାଦୃଶ ।
ରୁଦ୍ରାକ୍ଷ କାଠମାଳ ଆଭରଣ ନାହିଂ
ଅପୂର୍ବ ଅଳଙ୍କାର ଅଛନ୍ତି ସେ ଲାଇ ।
ହଯେଂଲା ହରିଡ଼ାସେ ଦେଖିଣ ହସିଲେ
ସ୍ୱାଦ ପଦାର୍ଥ ସେ ଫଳ ବୋଲିଣ
ଆଣିଦେଲେ ।
ତାହାଙ୍କର ପର୍ବତୁ ଯେବଣ ଝରପାଣି
ତାହା ଖାଇଲେ ପିତା ତପ ପରାପତି ଜାଣି ।
ତରୁ ବକଳ ତାତ ଅପୂର୍ବ କମ ଅଛି ।୯୦
ଆମ୍ଭର ବକଳ ତାତ ପକାଇଲେ ଲେଛି ।
ଆମ୍ଭର ପରାଯେ ବେଦ କରାଣ୍ଡି ନ ବହନ୍ତି
ତାହାଙ୍କର ଦେବତାକୁ ହୃଦରେ ବହିଥାନ୍ତି ।
ମୁଖବାସ ସହିତେଣ ଯେବଣ ପତ୍ର ଦେଲେ
ଆପଣେ ଦିଶଇତ ପଦାର୍ଥ ଦେଖାଇଲେ ।
ଭୋ ତାତ ଧନ୍ୟ ଧନ୍ୟ ତପ ତାହାଙ୍କର

ଛଦ୍ମ ତପ ତ ଦେଖିଲି ତୁମ୍ଭର ।
ଅଙ୍ଗନ୍ୟାସ କରନ୍ତି ଥାନମାନ ଛୁଇଂ
ତୋହୋର ଶପତ ତାତ ଅଗ୍ୟାନ
ହୋଇଲଇଂ ।
ବିଭାଣ୍ଡେକ ବୋଲନ୍ତି ସେ ନୋହନ୍ତିଟି
ଯତି ।୧୦୦
ଯାହା ସେ କହିଲୁ ବାବୁ ରାକ୍ଷାସୁଣୀ ପ୍ରକୃତି ।
ବିବିଧ ରୂପ ସେ ହୁଅନ୍ତି ଦଇତୁଣି
ତପୀଙ୍କି ଭଣ୍ଡନ୍ତି ସେ ମାୟାରେ ପିଋଶୁଣି ।
ତୁ ବାବୁ ତାହାଙ୍କୁ ବିଶ୍ୱାସ ନ ଯିବୁ
ଯେବେ ମୋହୋର ବୋଲ ପ୍ରତି
ପାଳିଥିବୁ ।
ପିତା ତିଆରିଲେ ପୁତ୍ର ତୋଷ ନାହିଂ
ରଏଣୀ ବଞ୍ଚିଲେ ସେ ବିବିଧ କଥା କହି ।
ପ୍ରଭାତେ ବିଭାଣ୍ଡେକ ତପ ସ୍ଥାନେ ଗଲେ
ସ୍ନାହାନ ତର୍ପଣ ସେ ରଷିଶୃଙ୍ଗ କଲେ ।
ଅଗ୍ନିପୂଜା ସାରି ଦୁହିଂଲେକ ଗାଇ ।୧୦
କନ୍ୟାଙ୍କ ଆସିବାର ନିରେଖିଣ ଚାହିଂ ।
ଗହନ ବନେ ନେଇ ଗୁହାଇଲା ଗାଈ ।
ଛନ ଛନ ମନ ବାଛୁରୀ ବାନ୍ଧଇ ।
କୃଷ୍ଣାଜିନ ଛାଲ ମାଡ଼ିଣ ବସଇ
ପୁଣି ହିଂ ବେଲ ଗଛ ତଳେ ଉଭା ହୋଇ ।
ଜପ କରନ୍ତେଣ ନୋହିଲାକ ମନ୍ତ୍ର ସିଧ
ଚିତ୍ତ ବିଚଳିତ ପାଶୋରିଲା ବେଦ ।
କେଶ ଫେଡ଼ିଣ ସେ ଘେନିଲା ଗନ୍ଧବାସ
କାଖ ଆଉଂଷିଣ ପାଇଲା ବଡ଼ ରସ ।
ଗତ ଦିବସର ଭୋଜନ ସୁମରି ।୨୦
ଚତୁରୀଙ୍କ କଲା ପ୍ରେମ ଅନୁସରି ।
ତଳେ ନ ବସଇ ଉଠି ଉଭା ହୋଇ
ଚକିତ ହୋଇଣ ସେ ଚଉକତି ଚାହିଂ ।
ମନେ ବିଋରିଲେ ତପୀତ ନଇଲେ
ତେଡ଼େ ମହାରଷି ଭଣ୍ଡିତ ମୋତେ ଗଲେ ।
ପୂର୍ବ ଭାଗ୍ୟ ଥିଲେ ଦେଖା ତ ପାଇବା
ମନେ ମନେ ଭାଳଇ କେମନ୍ତ କରିବା ।
ଯହୁଂ ସେ ପହରେ ହୋଇଲାକ ବେଳ
ବିଭାଣ୍ଡେକ ବାଳ ଚିତ୍ତ ସମାକୁଳ ।
ନଇଲେ କି ନା ବୋଲି ବୃକ୍ଷେ ଉଠି
ଚାହିଂ ।୩୦
ଯେଣେ ନଦୀ କୂଳେ ଅଛନ୍ତି ସର୍ବସହୀ ।
ବେଶ ବେଶନ ସେ ହୋଇଣ ଅଳଙ୍କାର
ଧୂପ ଦୀପ ବାସ ଚନ୍ଦନ ଅଗର ।
ଗୀତ ଗାଇଣ ସେ କରନ୍ତି ନୃତ୍ୟ ରସ
ଦୂରୁହୁଂ ଦେଖିଲା ତାହା ବିଭାଣ୍ଡେକର
ଶିଷ ।
ତରତର ହୋଇଣ ସେ ଗଛରୁ ଓହ୍ଲାଇଲା
କନ୍ୟାଙ୍କର ତହିଂକି ସେ ଅନ୍ତର
ହୋଇଗଲା ।
ଅଧକୋଶେକ ଯେ ଅଟଇ ତହିଂ ପଥ
ଦଣ୍ଡକର ଭିତରେ ମିଳିଲେ ତପୋବନ୍ତ ।
ଦୂରୁହୁଂ ଦେଖିଣ କାମମୋହେନୀ
ବୋଇଲା ।୪୦
ଦେଖ ଦେଖ ଜରତା ଗୋ ରଷିଶୃଙ୍ଗ
ଅଇଲା ।
ଅନେକ ରସ ତହିଂ ଉପୁଜିଲା କାଳି
ମୁରୁଛି ନ ପାରିଲା ଅଇଲା ମୁନି ଭୁଲି ।
ନିକଟ ହୁଅନ୍ତେଣ ବୋଲଇ ବ୍ରହ୍ମଚାରୀ
ବାରହ ବନିତାଯେ ଚରଣେ ଯାଇ ପଡ଼ି ।
ରଷିଶୃଙ୍ଗ ବୋଇଲେ ଶୁଣ ତପସ୍ୱିନୀ
ଯେ ମୋତେ ଅକଲ୍ୟାଣ ଅଟଇ ମହାମୁନି ।
ତୁମ୍ଭେ ପୁଣ୍ୟଦେହୀ ରୂପେଣ ଗରୁହଂସୀ
ମୁହିଂ ବାଳୁତ ଯେ ଅଟଇ ତୁମ୍ଭର ଶିଷି ।
ମହନ୍ତଙ୍କ ସଙ୍ଗେ ପୀରତି ଥିବା ଅର୍ଥେ
ଆରତ ହୋଇଲି ଅଇଲଇଂ ଯେଥେ ।
ପିତା ମୋହୋର ବହୁତ ତିଆରିଲେ ଆସି
ବୋଇଲେ ବାବୁରେ ସେ ଅଟନ୍ତି ରାକ୍ଷାସୀ ।
ତାହାକୁଇଂ ପରତେ ନ ଯିବୁ ବାଳପୋଇ
ତାହାଙ୍କର ପରସାଦେ ତପନାଶ ଯାଇ ।
ଅନେକ ତିଆରିଣ ଗଲେ ମୋର ତାତ
ମୁହିଂ ତାହାଙ୍କର ବୋଲ ନ କଲି ଗ୍ରାହିତ ।
ତୁମ୍ଭନ୍ତ ନ ଦେଖି ମୋର ଚିତ୍ତ ଥଏ ନାହିଂ
ସପନେ ତୁମ୍ଭ ସଙ୍ଗତେ ଥିଲି ଆଜ ମୁହିଂ ।
ବାବୁ ମହାତମା ତପ ତୁମ୍ଭର ସାର ।୬୦
ବଶ୍ୟ ହୋଇଲି ଦେଖି ତୁମ୍ଭର ଆଋର ।
କାମମୋହେନୀ ବୋଲଇ ଶୁଣ ମହାମୁନି
ତୋହୋର ଆଗେ ଉଭା ଯେବଣ
କାମେନୀ ।
ଯେ ଆମ୍ଭର ମୋକ୍ଷ ଜରତାକୋଷା ନାମ
ତପେଣ ମନାଇଲା ପଞ୍ଚଶର କାମ ।
ଯେହାକଇ ପ୍ରୀତି ହୁଅ ମହାମୁନି
ସାକ୍ଷାତ ରୂପବନ୍ତୀ ଯେ ମଦନ ରସଦାନୀ ।
ଶୁଣିଣ ରଷିଶୃଙ୍ଗ ଜରତାକଇ ଚାହିଂ
ଅଳସ ଦୃଷ୍ଟିରେ ସେ ଅଛଇ ଉଭା ହୋଇ ।
ମୁନି ମୁଖ ଚାହିଂ ସେ ଅଳପ ହସିଲା ।୭୦
ଚରଣ ଜ୍ୟେଷ୍ଠ ଅଙ୍ଗୁଳି ଭୂମିରେ ଘଷିଲା ।
କର ପ୍ରସାରିଣ ଧଇଲା ମୁନି ହସ୍ତ
ବୋଇଲା ସୁଦୟା ମୋତେ କରିବ
ତପୋବନ୍ତ ।
କାମମୋହେନୀ ଯେ ବିଞ୍ଚଇ ବିଞ୍ଚଣୀ
ଚାମର ଢାଳନ୍ତି ଯେ କେବଣ ତରୁଣୀ ।
କରେ ପାଟଛତ୍ର କେ ତୋଳିଣ ଧରନ୍ତି
କେ ପାଦେ ପାଦୁକା ନେଇଣ ଯୋଋନ୍ତି ।
ମୁନି ବୋଇଲେ ଧନ୍ୟ ତୁମ୍ଭର ଦେବ ପୂଜା
ରଖିଅଛି ତୁମ୍ଭକୁ ଧନ୍ୟ ସେହୁ ରାଜା ।
କେବଣ ପୁନ୍ୟ କୁଟୀରେ ଥାଅ ତୁମ୍ଭେ
ରହି ।୮୦
କାମମୋହେନୀ କହିଲା ଅଙ୍ଗୁଷ୍ଠି ଦେଖାଇ ।
ଯଦି ଦୟା ତୋର ଅଛି ତପଶାଳୀ
ଆଜ ଆମ୍ଭର ପାପ ହୋଇଲା ପଖାଳି ।
ଯେ ତୋହୋର ପବିତ୍ର ଚରଣ ଯୁଗଳ
ଯେଣେ ସେ ମଢ଼ିଆ ଆମ୍ଭର ହୋଇବ
ସୁଫଳ ।
ବିଋରେ ଯୋଗାଇଛେ ଦେଖିବା ଦେବ
ପଣି

ଚାଲଯିବା ବୋଲି ବୋଇଲେ ମହାଋଷି ।
ତପୀର ବାମକର ଧରିଣ ଜରତା
ନିଜ କୁଚକୁମ୍ଭେ ଦେଲାକ ବନିତା ।
କାମମୋହେନୀ ଯେ ବିଞ୍ଚଇ ଆଲଟ ।୯୦
ଯତିର ପିଠିରେ ଲଗାଇଲେ ସ୍ତନ ତଟ ।
ସ୍ୱାଦ ଫଳମାନ ଅଛନ୍ତି ଫଳି ତରୁ
କେ ଫୁଲ ଫୁଟନ୍ତି କେ ଅଛନ୍ତି କଢ଼ି ଧରୁ ।
ପର୍ଣ୍ଣକୁଟୀ ଭିତରେ ଯାଇଣ ସମ୍ଭାଇଲେ
ରତ୍ନ ପଲଙ୍କ ଉପରେ ମୁନିଙ୍କି ବସାଇଲେ ।
ନେତର ସୁପାଟି ଉପରେ ଝିନ ବାସ
ଜରତାକଇ ଘେନି ବସିଲେ ମୁନି
ଶିଷ ।୯୭
ପାଦ ପଖାଳିଣ ଅଞ୍ଚଳେ ପୋଛିଲେ
କର୍ପୂର କସ୍ତୁରୀ ମିଶାଇ ଘଷିଲେ ।
ସ୍ୱାଦ ଦ୍ରବ୍ୟମାନ ଭୁଞ୍ଜିତ ଦେଲେ ଆଣି
ଆଚୋବନ କରାଇଲେ ଅଗ୍ରବାସ ପାଣି ।
କର୍ପୂର ତାମ୍ବୋଳ ଦେଇଣ ତୋଷ କଲେ
ରତ୍ନ ଅଳଙ୍କାର ଶରୀରେ ଲାଇଲେ ।
କାମମୋହେନୀ କି ଜରତା ଦେଲା ଠାରି
ଆଡ଼ ହୋଇଲେ ସେ ନିଷ୍କଳ ଟେରାପାଡ଼ି ।
ଚାପେଣୀ କାଟି ତକ୍ଷଣେ ନାବ ମେଲି
କୂଳେ ଥିଲା ଲୋକେ ବେଗେ ଦେଲେ
ପେଲି ।୧୦
ଧାଡିକାରେ କଳବ୍ରତ ବାହିଦେଲା ନାବ
କେହି ନ ଜାଣଇ ଚଳିବାର ଠାବ ।
ଜରତା କନ୍ୟା କୋଳେ ଅଛଇ ମୁନି ବସି
ସୁନ୍ଦେରୀ ମୁନିଙ୍କି କଥା କହଇ ହସି ।
ଦେହ ଆଉଂଶିଣ ବିଳାସ କଥା କରି
ଅଧର ଚୁମ୍ବିଲା ସେ ଚାରୁହ ସୁନ୍ଦେରୀ ।
କୋଳେଣ ଘେନିଣ ମୁନିଙ୍କି ଉଭାରି
ଶୁଆଇଲା
ବିବିଧ ଛନ୍ଦେଣ ସେ ରମଣ କରାଇଲା ।
ହିଆରେ ହିଆ ଲଗାଇ ଭୁଜରେ ଭୁଜ ଭିଡ଼ି
ମଦନ ଘାରିଲା ଘେନି ଜରତା ବାସ
ଫେଡ଼ି ।୨୦

ମୁନି ନ ଜାଣଇ ସୁରତିର ସୁଖ
ପୁଣ ପୁଣ ସୁନ୍ଦେରୀ ଚୁମ୍ବଇ ମୁନି ମୁଖ ।
ମୁଖେ ଚୁମ୍ବ ଦେଇ ଉଦ୍ଧ୍ୟାନେ ଚାହିଁଲା
ନିଜ ସ୍ତନ ଅଗ୍ର ମୁନି ମୁଖେ ଦେଲା ।
ଦଶନ କ୍ଷତ କଲା ଗଣ୍ଡସ୍ଥଳ
ତେଣୁ ସ୍ରବିଲା ସେ ମୁନିର ଧାତୁ ଜଳ ।
କାମକଳାବନ୍ଧ ଜାଣଇ ସୁନ୍ଦେରୀ
ରତି ଶାହାସ୍ତ୍ର ପଢ଼ି ଅଛଇ ଚତୁରୀ ।
ଶୃଙ୍ଗାର ରସେ ସେ ମୁନିଙ୍କି ମୋହ କଲା
ଲଜ୍ଜା ଛାଡ଼ିଣ ସେ ରମଣି ଦାନ ଦେଲା ।୩୦
ଅଚୃତ ଅବୟ ନାଗରୀ ସଙ୍ଗେ ପ୍ରୀତି
ପଞ୍ଚଶରେ ମୟାଣ ଘାରିଲା ମାହାଯତି ।
ମୁନିବର ପ୍ରସନେ କଲାକ ରମଣୀ
ଘନ ଘନ ପ୍ରେମ ରସେ ପୀଡ଼ିଲା ତରୁଣୀ ।
କେତେହେଁକ ବେଳେ ଖଳିତ ହୋଏ
ରେତ
କନ୍ୟାକୁ ଛାଡ଼ି ମୁନିବର ଅଚେତ ।
କଣ୍ଠ ଶୁଖିଲା ବୁଜିଲାକ ଆଖି
ଖରତର ନିଶ୍ୱାସ ଆସଇ ମୁନିକି ।
ବୁକୁ ଦମଦମ ଯେ ବାହାରକୁ ଚଳଇ
ଜାଣି ପଟାନ୍ତର କି ମୃତ୍ୟୁ ପିଣ୍ଡ ଲାଇ ।୪୦
ତକ୍ଷଣେ ଜରତା ସମ୍ଭାଳିଲା ବାସ
କୋଳ କରି ଧଇଲା ବିଭାଣ୍ଡେକର ଶିଷ ।
ଶୀତଳ ଜଳ ଘେନି ମୁଖ ପଖାଳିଲା
କର୍ପୂର ପକାଇ ଚତୁଃସମ ବୋଳିଲା ।
ଆଇଟ ଘେନିଣ ବିଞ୍ଚି କଲାକ ସାକ୍ଷମ
ମୁନି ମୁଖ ଚାହିଁ ଆଚ୍ଛାଦଇ କାମ ।
ପୁଣି ହିଁ ଚୁମ୍ବଦେଇ ଲଗାଇଲା ବୁକୁ
ପଚରଇ ମୁନି ହେ କିସ ଲାଗିଲା ତୁମକୁ ।
ଶୀତଳ ପଦାର୍ଥ ସେ କିଛି ଖୁଆଇଲା
ସୁଗନ୍ଧ ପୁଷ୍ପମାଳ କଣ୍ଠେ ଲମ୍ବାଇଲା ।୫୦
ହସି ମହାମୁନି ଜରତାକୁ ଚାହିଁ
ଆଚମନ ସାରି କର୍ପୂର ତାମ୍ବୁଳ ଖାଇ ।
ମୁନିକି କୁଚେ ଆଉଜାଇ ବସାଇଲା ପୁଣି

ଅଧର ଚୁମ୍ବାଇ ଯେ କହଇ ପ୍ରିୟ ବାଣୀ ।
ପୁଣି ହିଁ ପ୍ରେମ ରସେ ମୁନିଙ୍କି ବଶ କଲା
ଚଉଷଠି ପରିବନ୍ଧେ ରମଣ କରାଇଲା ।
ରାଜକାର୍ଯ୍ୟ ଅର୍ଥେ ସୁନ୍ଦେରୀ ଜରତା
ଅନେକ ଛନ୍ଦେଣ ମୋହିଲା ବ୍ରହ୍ମବେତା ।
କ୍ଷଣେ କ୍ଷଣେ ରମଣ କରଇ ମୁନିବର
ନାବ ଚଳିବାର ସେ ନ ଜାଣଇ
ବେଭାର । ୬୦
ଯେକେ ଆରକେ ସେ ପାଲଟିଆ ହୋଇ
ମୁନି କୁମାରଙ୍କୁ ଅଛନ୍ତି ନାରୀ ମୋହି ।
ରାତ୍ରେଣ ଦୀପ ଦିହୁଡ଼ି ହୁଳା ଧରି
ରଜନୀ ଦିବସ ଏକବ୍ଦ ପ୍ରାୟେ କରି ।
କ୍ଷଣକେ କାମମୋହେନୀ କ୍ଷଣକେ ଜରତା
କ୍ଷଣକେ ଖଟିଥାନ୍ତି ବାରହ ବନିତା ।
ହେଠ ସ୍ରୋତେ ନାବ ଚଳଇ ଅତିବେଗେ
ଚମ୍ପାବତୀ ନଗ୍ରେ ଯାଇଣ ସେ ଲାଗେ ।
ଯିବାର ବେଳେଣ ଯେ ତେଇଶି ଦିନେ
ଗଲେ
ବାର ଦିବସେଣ ବାହୁଡ଼ି ଅଇଲେ । ୭୦
ତହିଁ ପାଞ୍ଚଦିନ ରହିଲେ ସୁନ୍ଦେରୀ
ଚାଳିଶି ଦିନେ ହେଲା ଚମ୍ପାବତୀ ପୁରୀ ।
ନଦୀର ଘାଟେ ସେ ଲାଗିଲା ନାବ ଯାଇ
ଜରତା କୋଳରେ ଅଛଇ ମୁନି ଶୋଇ ।
ଏକେଣ ଯତି ସେ ଶୃଙ୍ଗାରେ ଶ୍ରମ ପାଇ
ନାବ ଚଳିବାରେ ଉଷୁମ ଭାବ ବହିଁ ।
ନାବର ଭିତରେ ଯେ ଅଛଇ ଟେରା ପଡ଼ି
ରତ୍ନ ପଲଙ୍କେ ମୁନି ଅଛନ୍ତି ପହୁଡ଼ି ।
ମୁନି ବିୟରଇ ଶରୀରେ ମୋର ତାପ
ପାଇବା କି ଜରତା ଗୋ ନିର୍ଝରର
ଆପ ।୮୦
କର ଦୁଇ ଯୋଡ଼ିଣ ବୋଲଇ ଯୁବତୀ
ଯେସେ ନଗ୍ର ଦେବ ଅଟଇ ଚମ୍ପାବତୀ ।
ଲୋମପାଦ ରାଜା ବ୍ରାହ୍ମଣଙ୍କୁ ଦ୍ରୋହ କଲା
ସେ ଦୋଷେ ଯେ ନଗ୍ରେ ଇନ୍ଦ୍ର ନ ପାଳିଲା ।

ନିର୍ଝର ଆପ ପାଇବା ଯେଥି କାହିଁ
ନଦୀ ସେ ନ ବହି ଯେ ପୋଖରୀରେ ପାଣି
ନାହିଁ ।
ଦ୍ୱାଦଶ ବର୍ଷ ଯେ ଇନ୍ଦ୍ର ନ କଲାକ ବୃଷ୍ଟି
ଜଳ ବିହୁନେଣ ବିକଳ ହୋଏ ସୃଷ୍ଟି ।
ରାଜା ଆରତେଣ ଅନେକ ଧର୍ମ କଲା
ଜଳ ତପ କରାଇ ଅତିଥିନ୍ତ ବରିଲା ।୯୦
ବାରୁଣୀରେ ହୋମ କରନ୍ତି ସୁଗ୍ୟାଂ ଦ୍ୱିଜ
ପାଣି ପଣା ଦାନ ଦେଲାକ ମହାରାଜ ।
କେବେହେଁ ବୃଷ୍ଟି ନ କରିଲା ସୁରପତି
ଅପାର ଚିନ୍ତା ଯେଥେ ପାଇଲା ନୃପତି ।
ରାଜାର ଭାଳନ୍ତେଣ ପୁଣ ବ୍ରାହ୍ମଣ
ବରଦେଲେ
ଋଷିଶୃଙ୍ଗ ଅଇଲେ ଯେଥି ବରଷିବ
ବୋଇଲେ ।
ଶୁଣିଣ ହରଷ ଯେ ହୋଇଲେ ମହୀପାଳ
କେମନ୍ତେ ଆଣିବି ମୁଁ ବିଭାଣ୍ଡେକର
ବାଳ । ୯୮
ମନ୍ତ୍ରୀର ବଚନେ ସେ ପେଷିଲାକ ମୋତେ
ଶୁଭ ଯୋଗେ ଯାଇଂ ଯେ ଭେଟ ମୁହିଂ
ତୋତେ ।୧୦୦
ପ୍ରସନ ହୋଇଲୁ ତୁ ମୋହର ଭାବ ଘେନି
ନାବରେ ବସାଇ ତୋତେ ଆଣିଲୁ
ତପୋଧନି ।
ମୁହିଂ ବେଶ୍ୟା ନାରୀ ଅଟଇ ନଟ ଜାତି
ନୁହଇ ପୁରୁଷ ନୁହଇଂ ମୁହିଂ ଯତି ।
ବାରହ ବନିତାୟେ ପଡ଼ିଲେ ବିକଳେ
ମୁନିର ପାଦତଳେ ପଡ଼ି ବୋଲନ୍ତି
ସକଳେ ।
ନ କର କୋପ ମୁନି ନ ଦିଅ ଆମ୍ଭକୁ ଶାପ
ସ୍ୱାମୀର ଆଜ୍ଞାରେ ଯେ ଆମ୍ଭେ କଲୁ ଯେତେ
ଧାପ ।
ଜଳ ବୃଷ୍ଟି ନୋହିଲେ ତ ଜଗତ ଜନ୍ତୁ ମରି
ତେଣୁ ସେ ଆଣିଲୁ ଦେବ ପ୍ରାଣକୁ ନ ଡରି ।

ଯେଣେ ସେ ଦେବ ଶୀତଳ ପାଣି ନାହିଂ
ଯେ ଆମ୍ଭର ଦୁଃଖ ଘେନ ତପସାଇଂ ।
ଶୁଣିଣ ମହାମୁନି ଯେ ତ୍ରିପୁତି ହୋଇଲେ
ଉଠ ଉଠ ଯୁବତୀ ଗୋ ବୋଲିଣ
ବୋଇଲେ ।
ସକଳ ଦୋଷ ତୁମ୍ଭର କଲୁ ଆମ୍ଭେ କ୍ଷମା
ଆମ୍ଭନ୍ତ ସୁରତି ଦେଇ ତୋଷିଲ ରେ ବାମା ।
ହୋଇଲୁ ପ୍ରସନ୍ନ ଆମ୍ଭେ ଉଠ ଉଭା ହୋଅ
ହରଷ ମନେ ସଖି ହସିଣ କଥା କହ ।୨୦
ଶୁଣିଣ ସୁନ୍ଦେରୀ ଯେ ଭୟ ତେଜି ଉଠି
କରପତ୍ର ଯୋଡ଼ି ଉଭା ହୋଇଲେ
ବିମ୍ୱୋଷ୍ଠୀ ।
ମୁନି ବୋଇଲେ ଯେଥେ ନାହିଂ ଯେବେ
ଜଳ
ବୃଷ୍ଟି କର ବୋଲି ବୋଇଲେ ତପଶୀଳ ।
ତୁମ୍ଭର ସୀମା ହାଦେ ଅଟଇ ଯେତେ ଦୂର
ଯେତେବେଳେ ଇଚ୍ଛା ବରଷିବ ଜଳ ।
ଋଷିର ମୁଖୁ ହାଦେ ଏସନ ବାକ୍ୟ ଶୁଣି
ମେଘନ୍ତ ହକାରି ବୋଇଲା ବଜ୍ରପାଣି ।
ଲୋମପାଦ ରାଜ୍ୟେ ଯେତେକଟି ଦେଶ
ବୃଷ୍ଟି କର ବୋଲି ଦେଲାକ ଆଦେଶ ।୩୦
ତତକ୍ଷଣେ ଆବର୍ତ୍ତକ ସାମ୍ବର୍ତ୍ତକ ଦ୍ରୋଣ
ପୁଷ୍କର ସହିତେ ଆଚ୍ଛାଦିଲା ଯେ ପୟାଣ ।
ବିଜୁଳି ଘଡ଼ଘଡ଼ି ପବନ ଯୁଗତେ
ଆକାରେ ମେଘ ଯେ ଦେଖିଲେ ସମସ୍ତେ ।
କି ଯେ ଅପୂର୍ବ କେବଣ କଥା ହୋଇ
ଯେତେ ବୋଲି ଲୋକେ ଉର୍ଦ୍ଧକଇ ଚାହିଂ ।
ଦେଖୁ ଦେଖୁ ବୃଷ୍ଟି କଲାକ ଅତିଘୋର
ନିରନ୍ତରେ ବୃଷ୍ଟି ଯେ ଅଖଣ୍ଡିତ ନୀର ।
ରାଜ୍ୟର ଲୋକେ ଦେଖି ହରଷ ମୁଖ ହୋଇ
ଅତି ଆନନ୍ଦେଣ ହୁଅନ୍ତି କୁହାକୁହି । ୪୦
ଇନ୍ଦ୍ର ଯେବେ ବୃଷ୍ଟି କଲା ହୋଇଲା ସୁଫଳ
ପ୍ରବେଶ ହୋଇଲା ଆସି ବିଭାଣ୍ଡେକ
ବାଳ ।

ଯେସନେକ ସମୟେ କହିଲାକ ଚାର
ଶୁଣ ଦେବ ଲୋମପାଦ ମୋହର ଠାକୁର ।
ଜରତା ଯେ ଗଲା ନାବ ସଜ କରି
କାମମୋହେନୀ ସହିତେ ବାରନାରୀ ।
ବାହୁଡ଼ିଣ ପ୍ରବେଶ ଦେଖିଲୁ ତାଙ୍କର
ଦୂରୁଣ ନାବ ହାଦେ ଦିଶଇ ନୃପବର ।
ଆଲମ୍ୱ ଚିତ୍ର ଦେବ ଦେଖିଣ ଅଇଲୁ
କୂଳେ ଲାଗିବାର ତ ତଥ୍ୟ ନ ଜାଣିଲୁ ।୫୦
କଥା ହୁଅନ୍ତେଣ ଅରେକ ଚାର ଆସି
ବୋଇଲା ପ୍ରବେଶ ଦେବ ଋଷିଶୃଙ୍ଗ ଋଷି ।
ଜରତାକୋଷା କାମମୋହେନୀ ସକଳ
ନାବ ଆସି ଦେବ ଲାଗିଲାଣି କୂଳ ।
ନାଉରିଆ କହିଲା ମୁନିର ଆଗତ
ନୋହିଲେକ ବୃଷ୍ଟି କିମ୍ପା କଲା ପୁରୁହୂତ ।
ଶୁଣିଣ ନୃପତି ସନ୍ତୋଷ ମନ ହୋଇ
ଚାରକଇ ବହୁତ ଗଉରବ କରଇ ।
ଦେଶ ଘୋଷ ଦାନ ଦେଲାକ ଶୁଦ୍ଧ ଚିତ୍ତେ
ନଗ୍ରେ ଉଛବ ସେ କରାଇଲା
ତୁରିତେ । ୬୦
ଦିବ୍ୟ ସୁବର୍ଣ୍ଣ କଳସେ ମଣ୍ଡପ କରାଇଲା
ବାରତା ତଥ୍ୟ ଜାଣି ମନ୍ତ୍ରୀଙ୍କି ପେଷିଲା ।
ରାଜାର ଆଜ୍ଞାରେ ଯେ ମନ୍ତ୍ରୀ ଗଲା ଚଳି
ଦେଖିଲାକ ନାବ ସେ କାଳନ୍ଦୀରେ ମିଳି ।
ଲୋକନ୍ତ ପଠିଆଇ ସେ କନ୍ୟାନ୍ତ ରାଇଲା
ଜରତାକୋଷା ଋଷିର ଛାମୁରେ ଜଣାଇଲା ।
ଭୋ ଦେବ ରାଜାର ମନ୍ତ୍ରୀ ଅଛି ଆସି
ଆଜ୍ଞା ହୋଇଲେ ସେ ଆସିବ ମହାଋଷି ।
ମୁନି ବୋଇଲେ ଗୋ ରାଜା ତୁମ୍ଭର କାହିଂ
କାମମୋହେନୀ ବୋଇଲେ ଶୁଣ ତୁ
ଗୋସାଇଂ ।୭୦
ତୋହୋର ଆଗ୍ୟାଂ ହୋଇଲେ ଆସିବ
ନୃପତି
ତଥ୍ୟ ଜାଣିବାର ନିମନ୍ତେ ଆସିଅଛି ।
ଋଷି ବୋଇଲେ ନୃପତିକି ବେଗେ ଆଣ
ଶୁଣି କାମମୋହେନୀ ଯେ ଗଲା ତତକ୍ଷଣ ।

ନାବରେ ଥାଇଂ ସେ ମନ୍ତ୍ରୀକି ବୋଇଲା
ନୃପତିକି ଆଣ ଋଷି ଆଜ୍ଞା ଦେଲା ।
କାମମୋହେନୀର ଏସନ ବାଣୀ ଶୁଣି
ମନ୍ତ୍ରୀ ଗଲା ବେଗେ ନୃପତିକୁ ଆଣି ।
ଶୁଣସି ଦେବ ତୁ ଚମ୍ପାବତୀ ନଗ୍ର ସାଇଂ
ତୋହୋର ପୁରେ ପ୍ରବେଶ ଋଷିଶୃଙ୍ଗ
ଗୋସାଇଂ । ୮୦
ତେଣୁ ସେ ବୃଷ୍ଟି ଦେବ କଲାକ ସୁରପତି
ଆସ ଆସ ରାଜା ଦେଖିବା ମହାଯତି ।
ତପୀର ପ୍ରସନ୍ନ ମୋତେ କହିଲାକ ନାରୀ
ବୋଇଲେ ଘେନି ଆସ ତୋର ଦଣ୍ଡଧାରୀ ।
ତୋତେ ସେ ଶୀଘ୍ରେ ମୁଁ ଅଇଲାଇଂ ନେଇ
ଶୁଣିଣ ସନ୍ତୋଷ ଯେ ଲମ୍ବପାଦ ହୋଇ ।
ଅନେକ ଉପହାର ବିବିଧ ପଦାର୍ଥ
ବିବିଧ ଝିନବାସ ଘେନିଣ ନୃପନାଥ ।
ନାନା ପକ୍ୱଂ ଫଳ ଚନ୍ଦନ ଗନ୍ଧ ବାସ
ଆପଣେ ନୃପବର ହୋଇଲାକ
ସୁବେଶ । ୯୦
ରାଜା ବିଜେ କଲେ ବାଜଇ ବୀର ତୂର
ଶୁଣିଣ ପୁଛିଲେ ଯେ ବିଭାଣ୍ଡେକ କୁମର ।
କିସ ଶବଦ ୟେ ଶୁଭଇ ଗୋଳବାଣୀ
ବେନି କର ଯୋଡ଼ି କହନ୍ତି ତରୁଣୀ । ୯୪
ରାଜା ଲୋମପାଦ ଯେ ଦେଖି ତୋତେ ଆସି
ଶୁଣିଣ ଋଷ୍ୟଶୃଙ୍ଗ ଅଳପ ହୋଇ ହସି ।
ବୃଷ୍ଟି ଥିର ହୋଉ ଆସିବ ଯେବେ ରାଜା
ତେବେ ସେ ଆମ୍ଭନ୍ତ ଦେଖିବେ ଜନପ୍ରଜା ।
ତକ୍ଷଣେ ଜଳ ବୃଷ୍ଟି ହୋଇଲାକ ଥିର
ଘଡ଼ିକେ ପୂରୋଇଲା ନଦୀ ସରୋବର ।
ରାଜା ଆସନ୍ତେଣ ଆନନ୍ଦ ସର୍ବ ଲୋକ
ଧାମନ୍ତି ନରନାରୀ ହୋଇଣ ଉଛୁକ ।
ପାତ୍ରମନ୍ତ୍ରୀ ଘେନିଣ ଲମ୍ବପାଦ ରାୟେ
ନଦୀର କୂଳେ ସେ ପ୍ରବେଶ ରାଜା
ହୋୟେ ।୧୦
ଋଷ୍ୟଶୃଙ୍ଗ ଆଗ୍ୟାଂ ଦେଲେ ରହୁ ରାଜା ତହିଂ
ଆମ୍ଭେହେଂ ନାବରୁ ଯିବାକ ଓହ୍ଲାଇ ।
ତପୀର ଆଗ୍ୟାଂ ପାଇଣ ନୃପବର
ସଇନି ଘେନିଣ ରହି ନଦୀ ତୀର ।
ପୁଣ୍ୟ କୁଟୀରୁ ଯେ ବାହାର ଋଷ୍ୟଶୃଙ୍ଗ
କି ଜାଣି ପଟାନ୍ତର ଯୁବା ଯେ ଅନଙ୍ଗ ।
କର୍ପୂରର ବିଭୂତି କସ୍ତୁରୀର ଚିତା
କଣ୍ଠେ ରତ୍ନହାର ସୁବର୍ଣ୍ଣ ପଇତା ।
ତାଡ଼ ବାହୁଟି ଯେ ବିଦ ମୁଦି ତେଜା
ପାଟ ପରିହେରଣ ବିଭାଣ୍ଡେକ ତନୁଜା ।୨୦
ବାମ ଭୁଜମୂଳ ଆଧାରି ଗୋଟି ଅଛି
ଶିରର ଜଟାରେ ବିବିଧ ପୁଷ୍ପ ରଞ୍ଛି ।
କପାଳେଣ ଶିଙ୍ଗ ବାଳମୃଗ ପରାୟେ
ନୀଳଉତ୍ପଳ ନୟନ ଢଳଇ କର୍ଣ୍ଣଯାୟେ ।
ସୁଦୀର୍ଘ ନାସା ତାର ଅଧର ବିମ୍ବ ପ୍ରଭା
ଆଜାନୁ ବେନି ବାହୁ ବିସ୍ତାର ବପୁ ଶୋଭା ।
ପଦ୍ମପତ୍ର ଜାଣି ଉଦର ଶୋଭା ଦିଶି
ମଝା ସିଂହ ସାନ ଡମ୍ବରୁ ସାଦୃଶି ।
କଟିଭାଗ ବିସ୍ତାର ସୁବଳିତ ଜାନୁ
ନାହିଂ ପଟାନ୍ତର ବିଭାଣ୍ଡେକ ତନୁ । ୩୦
ନାବରେ ଉଭା ଧରାଇ ପାଟଛତ୍ର
ପାଦରେଣ ରତ୍ନ ପାଦୁକା ପବିତ୍ର ।
ଦେଖିଲେ ନୃପତି ନଦୀ କୂଳେ ଥାଇ
ଋଷିଶିଙ୍ଗ ମୁନି ଅଛଇ ଉଭା ହୋଇ ।
ପୁଣ ଉଠଇ ପୁଣ କରଇ ନମସ୍କାର
ଜରତା ଜଣାଇଲା ଋଷିର ଛାମୁର ।
ଭୋ ମୁନି ଏଟି ଲମ୍ବପାଦ ରାଜା
ନାନା ଦ୍ରବ୍ୟ ଘେନିଣ କରଇ ତୋତେ
ପୂଜା ।
ଶୁଣିଣ ସନ୍ତୋଷ ଋଷ୍ୟଶୃଙ୍ଗ ମୁନି
ନାବୁ ଓହ୍ଲାଇଣ ଅଇଲେ ତପୋଧନି ।୪୦
ଚାରପଟା ଜିଣି ଆସନ୍ତେଣ ଋଷି
ରଜା କରଯୋଡ଼ି କହିଲାକ ଆସି ।
ସୁଖାସନ ଆରୋହ କରସି ତପୋବନ୍ତ
ପାଦେ ଗମିବା ଦେବ ନୋହଇ ଉଚିତ ।
ଏସେ ନଗ୍ରବାଟ ବିଶେଷ ଜଳସାଇ
ଅବିକାର ଲୋକେ ଅଛନ୍ତି ଏଣେ ଯାଇ ।
ତୁ ପରମ ପୁରୁଷ ପରମ ବ୍ରହ୍ମଜ୍ଞାନୀ
ଏ ମୋହର ଭଗତି ଘେନିମା ମହାମୁନି ।
ଶୁଣିଣ ସନ୍ତୋଷ ହୋଇଲେ ତପଋରୀ
ଆଣ ସୁଖାସନ ବୋଇଲେ ଅବଧାରି ।୫୦
ତକ୍ଷଣେ ଯାନ ଆଣି କଲେକ ଉପଗତ
ସନ୍ତୋଷେ ବିଜୟେ ତହିଂ କଲେ
ତପୋବନ୍ତ ।
ରାଜାକଇ ଦରଶନ କଲାକ ଜରତା
କାମମୋହେନୀ ମୂଳେ ବାରହ ବନିତା ।
ହସିଣ ନୃପତି ପ୍ରଶଂସା କରଇ
ଋଷି ଚଳିଯାନ୍ତେ ପଛେଣ ଗୋଡ଼ାଇ ।
ଧରାନ୍ତି ପାଟଛତ୍ର ବଜାବନ୍ତି ବୀରତୂର
ଲୋକ ଗହଗହ ଗହଳ ଅପାର ।
ବାଳ ବୃଦ୍ଧ ଯୁବା ସକଳ ନରନାରୀ
ଋଷିଙ୍କି ଦେଖିତ ଶରଧା ସବୁଙ୍କରି । ୬୦
ରାଜାର ନବରେ ହୋଇଲେ ପ୍ରବେଶ
ଦିବ୍ୟପୁରେ ବିଜେ ବିଭାଣ୍ଡେକ ଶିଷ ।
ଜରତା ସହିତେ ଅଛନ୍ତି ମୁନି ପାଶେ
ବାରହ ବନିତାୟେ ଖଟନ୍ତି ବିଶୁଆସେ ।
ରାଜା କର ଯୋଡ଼ିଣ ଛାମୁରେ ଉଭା ହୋଇ
କୃତାଞ୍ଜଳି ହୋଇ ବିନୟ ନରସାଇଂ ।
ଋଷିଶୃଙ୍ଗ ଯାଇଂ ବିଜୟେ ଖଟଦୋଳି
ଚାମର ଆଲଟ ତହିଂ ମନ୍ତ୍ରୀଗଣେ ଢାଳି ।
ରାଜାର ମୁଖ ଚାହିଂ ପଋରଇ ଋଷି
ତୁ ହୋ ଲମ୍ବପାଦ ଚମ୍ପା ନଗ୍ରବାସୀ । ୭୦
କ୍ଷମେଣ ପାଳୁନା ସକଳ ଜନପ୍ରଜା
ସୁସ୍ନେଣ ବ୍ରତି ଅଛୁନା ମହାରାଜା ।
ପାତ୍ର ମନ୍ତ୍ରୀ ତୋହୋର ଆଗ୍ୟାଂରେ ଥାନ୍ତି
ଟିକି
କଟକାଇ କରୁନା ଶତ୍ରୁର ତହିଂକି ।
ଅନ୍ତପୁର କଥା ଜାଣୁନା ତୁ ଭଲେ
ବିଶ୍ୱାସ ଯାଉଟିକି ତୁ ଅମନାତ୍ୟଙ୍କର
ବୋଲେ ।

ରଥ ଗଜ ଅଶ୍ୱ ପାଦାନ୍ତି ସନ୍ୟ ବଳ
ଯେ ତୋହର ଆଗ୍ୟାଂରେ ଚଳନ୍ତିନା
ସକଳ ।
ରାଜ୍ୟ ନୀତି କଥା ପଚାରଇ ମୁନି
ଶୁଣି କରଯୁଗଳ ଯୋଡ଼ଇ ନୃପମଣି ।୮୦
ବୋଲଇ ଭୋ ଋଷି ତୋହୋର ପରସାଦେ
ସକଳ ଦୁଃଖ ମୋର ଗଲା ଅପ୍ରମାଦେ ।
ଆଜ୍ଜୁ ସୁଫଳ ମୁନି ହୋଇଲା ମୋର ରାଜ୍ୟ
ଯହୁଂ ମୋହର ପୁରେ ବିଜୟେ ବିଭାଣ୍ଡେକର
ତନୁଜ
ଜଳ ବୃଷ୍ଟି ହୋଇବାରେ ସକଳ ଦୁଃଖ ଗଲା
ଋଷି ପାଦେ ପଡ଼ି ନୃପତି ବୋଇଲା ।
ଉଠ ଉଠ ରାଜା ହୋ ବୋଲଇ ତପସ୍ୱରୀ
ଜରତାକୁ ଚାହିଂ ବୋଲଇ କର ଯେ
ପ୍ରସାରି ।
ଯେହାକୁ ଗଉରୋବ କର ହୋ ନୃପତି
ଯେହାଙ୍କରେ ସୁସ୍ଥ ତୁ ହୋଇଲୁ
ଚକ୍ରବର୍ତ୍ତୀ ।୯୦
ଯେସେ ଆମ୍ଭକଇ କଲେ ବହୁତ ସେବା
ଯେହାଂକଇ ନୃପତି ଯେ ପୁରୁଷାର୍ଥ କରିବା ।
ତପୀର ଆଜ୍ଞାରେ ସେ ନୃପତି ଶିରୋମଣି
ଅନେକ ଗଉରୋବ କଲାକ ବିଧି ଜାଣି ।
କାମମୋହେନୀକି ସେହି ରୂପେ ଗଉରୋବ
ବାରହ କନ୍ୟାଙ୍କଇ ବହୁଧନ ଦ୍ରବ୍ୟ ।
ଦେଶ ଘୋଷ ଦାନ ଅନେକ
ଅଳଙ୍କାର ।୯୭
ବିବିଧ ପାଟ ନେତ ବିଚିତ୍ର ମନ୍ଦିର ।
ହସ୍ତୀ ଚଢ଼ି ନିଜ ବାସକଇ ଗଲା
ସବୁକରି ମୁଖେ ସାଧୁ ବଚନ ପାଇଲା ।
ପୁଣି ଯେ ଯାହାର ନିତ୍ୟକର୍ମ ସାରି
ମୁନିକି ସେବା କରିଥାନ୍ତି ସର୍ବ ନାରୀ ।
ରାଜା ଅନୁବ୍ରତେ ଥାଇ ମୁନି ପାଶ
ଭୋଜନେ ଶୟନେ ନାହିଂ ତାର ଆଶ ।
ନିଅବକାଶ ବେଳ ସକଳ ମହାଦେଈ
ମୁନିକି ଦର୍ଶନ କଲେ ତହିଂ ଯାଇ ।
ଜରତା ଜଣାବଇ ଶୁଣ ମହାପତି ।୧୦
ଲୋମପାଦ ରାଜାର ଯେ ଅଟନ୍ତି ଯୁବତୀ ।
ଶୁଣିଣ ତପସ୍ୱରୀ କଲ୍ୟାଣ ସେ କଲା
ଶତେକ ତନୟ ତୁମ୍ଭର ହୋଉ ଯେ
ବୋଇଲା ।
ରାଜା ସନ୍ତୋଷ ମହାଦେଈଙ୍କ କହନ୍ତେ
ଚମ୍ପାବତୀ ନଗ୍ରେ ଆନନ୍ଦ ସମସ୍ତେ ।
ନିଧନେ ଧନେ କି ସେ ଅନ୍ଧ ଚକ୍ଷୁ ଦାନ
ଅପୁତ୍ରିକେ ପୁତ୍ର ଅପାବନେ ପାବନ ।
ଋଷିଶୃଙ୍ଗ ପ୍ରସାଦେଣ ରୋଗ ଶୋକ ତେଜି
ନିଶ୍ଚିନ୍ତ ହୋଇଲେ ସେ ଲୋମପାଦ ରାଜି ।

ଅଅଅ

ଦଶରଥ ରାଜାର ଦାଣ୍ଡୁଆ ଚାର ଥିଲା
ରାଜାର ଛାମୁରେ ଯାଇଣ ଜଣାଇଲା ।
ଯେ କଥା ତଥ୍ୟ ଦେବ ଅଇଲଙ୍ଗ ମୁହିଂ
ଜାଣି
ଶୁଣ ତୁ ଅଯୋଧ୍ୟା ନୃପତି ଶିରୋମଣି ।
ଋଷିଶୃଙ୍ଗ ଅଇଲେ ଲୋମପାଦ ଦେଶ
ବୃଷ୍ଟି କରାଇଲା ଉପୁଜିଲା ଶସ୍ୟ ।
ଯେ କଥା ମାୟା ତୁ ନ ବୁଝ ନୃପବର
କର ଦୁଇ ଯୋଡ଼ିଣ ସେ କହିଲାକ ଚାର ।
ଶୁଣିଣ ସନ୍ତୋଷ ହୋଇଲା ଦଶରଥ
ବଶିଷ୍ଠ ଜାବାଳି କଶ୍ୟପ ତପୋବନ୍ତ ।
ବାମଦେବ ସୁମନ୍ତ ସଙ୍ଗରେ ସର୍ବଜନ ।୩୦
ରାଜା ମୁଖ ଚାହିଂ ବୋଲନ୍ତି ବଚନ ।
ଭୋ ଦେବ ସୁମନ୍ତ କହିଲା ଯେବଣ କଥା
କାଳବେଳ ଆସି ହୋଇଲା ମହାରଥା ।
ଚାଲ ଶୁଭଯୋଗେ ଲମ୍ପପାଦ ପୁରୀ
ଋଷିଶୃଙ୍ଗ ମୁନିଙ୍କି ଆଣିମା ପୁରସରି ।
ବଶିଷ୍ଠେ ବୋଲନ୍ତି ତୁ ସାଧୁ ଦଶରଥ
ଦୂରକଥା ତୋତେ ନିକଟେ ପରାପତ ।
ସୁମନ୍ତ କହିବାର ସ୍ୱରୂପ ହୋଇଲା
ବିଭାଣ୍ଡେକ ପୁତ୍ର ଯେବେ ଯେଥକୁ
ଅଇଲା ।
ସନତକୁମାରଙ୍କ କାହାଣୀ ସ୍ୱରୂପ ।୪୦
ସ୍ୱର୍ଗର ବିସ୍ତର ହାଦେ ବୋଇଲେ ଯାହା
ନୃପ ।
ସେହୁକି ଅନ୍ତର ହୋଇବ ତପୀ ବାଣୀ
ନ କର ହେଳା ଦେବ ଅଯୋଧ୍ୟା ନୃପମଣି ।
ଶୁଣି ଦଶରଥ ଦେଲାକ ଆଦେଶ
ସକଳ ସଇନି ମୋର ସଜ ହୋଇ ଆସ ।
ଯାବତ ଚରଚା ସୁମନ୍ତକଇ କହି
ଆନୁଂ ବିଜେ କରିଗଲେ ନରସାଇଂ ।
ସ୍ନାହାନ ସାରିଣ ଦେବତା ପୂଜାକରି
ସକାଳ ମୁଣୋହି କଲାକ ଦଣ୍ଡଧାରୀ ।
ମୁଣୋହି ସାରିଣ ସେ କଲା ଆଚମନ ।୫୦
ସୁମନ୍ତ ପାତ୍ର ଯାଇ କଲାକ ଦରଶନ ।
କର ଦୁଇ ଯୋଡ଼ି ଜଣାଇଲାକ ଯାଇ
ଥାଟ ସଜ ହୋଇ ଅଇଲେ
ଗୋସାଇଂ ।୬୦
ଶୁଣିଣ ସନ୍ତୋଷ ହୋଇଲେ ନୃପବର
ଆଜ୍ଞା ଦେଲାକ ସେ ଚାରକୁ ହକାର ।
ତକ୍ଷଣେ ସୁମନ୍ତ ବାରତିଆକୁ ଆଣି
ଦେଶ ଘୋଷ ଦାନ ଦେଲାକ ନୃପମଣି ।
ଆଚମନ ସାରିଣ ତାମ୍ବୁଳ ଲାଗି ହୋଇ
ବିବିଧ ବେଶ ତହିଂ ହୋଇଲେ
ନରସାଇଂ ।
ସୁମନ୍ତ ସାରଥି ରଥ କଲା ଆଣି
ବୀରଛତ୍ର ଧରାଇ ବିଜେ ନୃପମଣି ।
ବାଜଇ ଟମକ ଢୋଲ ଦମା ଭେରୀ
ବିବିଧ ବାଦ୍ୟ ବାଜଇ ଶଙ୍ଖମହୁରୀ ।
ପାଟଛତ୍ର ନିରନ୍ତରେ ଚିରାଳ ଉଡ଼ନ୍ତି
ଉଦଣ୍ଡ ଉଲାଖ ଆଲମ୍ବ ପନ୍ତିପନ୍ତି ।
ହସ୍ତୀ ଘୋଡ଼ା ରଥୀ ପାଦାନ୍ତି ନିରନ୍ତର
ରହୁବରେ ବସିଣ ଚଳଇ ନୃପବର ।
ବଶିଷ୍ଠକୁ ସମର୍ପିଲା ନିଜ ରାଜ୍ୟ ଦେଶ

ସୁମନ୍ତକୁ ସାଙ୍ଗେଣ ନେଲାକ ସୂର୍ଯ୍ୟବଂଶ ।
ଯାନ୍ତେଣ ତିନି ଦିବସ ବାଟରେ
ରହିଲେ । ୭୦
ଚମ୍ପାବତୀ ନଗ୍ରେଣ ପ୍ରବେଶ ହୋଇଲେ ।
ଲମ୍ବପାଦ ଆସି ପାଛୋଟି ଘେନିଗଲା
ଶୁଭ ଯୋଗେ ମୁନିଙ୍କ ଛାମୁରେ ଜଣାଇଲା ।
ମୁନି ପଚ୍ଚରନ୍ତେ ଯେ ଅଇଲେକ କାହୁଁ
ଲମ୍ବପାଦ ବୋଇଲା ସେ ଅଯୋଧ୍ୟାର ରାହୁ ।
ସୂର୍ଯ୍ୟବଂଶେ ଅଜ ନୃପତିର ଶିଷ
ନାମ ଦଶରଥ ଏ ମୋହର ମଇତ୍ର ।
ଜୀବନ ସୁଫଳ କରି ହୋଇବ ପବିତ୍ର
ତୋହୋର ଚରଣେ ଯେ ହୋଇବ ଭଗତ ।
ଶୁଣିଣ ଋଷିଶୃଙ୍ଗ ଗଉରୋବ କରି ।୮୦
ଦଶରଥ ଉଭା ଛାମୁରେ ଯେ କରଯୋଡ଼ି ।
ଯତି ପଚ୍ଚରନ୍ତି ତୁ ହୋ ଦଶରଥ
ପରଜା ପାଳୁନା ତୁ ପୁତ୍ରର ସଂଜାତ ।
ଅମନାତ୍ୟ ପୋଷୁନା ଅତି ଯତ୍ନ କରି
ମୟେମତ୍ତ ଗଜ ଥାଇନା ଦୁଆରି ।
ପୁରାତନ ଲୋକ ଘେନି କରୁନା ବିଚ୍ଚର
ନୀତିଶାସ୍ତ୍ର ଶୁଣି ଘେନୁନା ଆଚ୍ଚର ।
ପରଦେଶ ବାରତା ପାଉକି ନା ସନ୍ଧି
ମନ୍ତ୍ରୀ ତୋହୋର ଅଟଇ ନା ସୁବୁଧି ।
ବ୍ରାହ୍ମଣ ପଢ଼ନ୍ତି ନା ବେଦଶାସ୍ତ୍ରମାନ । ୯୦
ସାଧୁତେ ସଂଗ୍ରହଣ କରନ୍ତିଟିକି ଧନ ।
ପୁତ୍ରେ କରନ୍ତିଟିକି ମାତାପିତାଙ୍କର ସେବା
ସବୁଙ୍କରି ହୃଦେ ବସଇଟିକି ଦୟା ଦେବା ।
ନଗ୍ର ନରନାରୀ ଅଟନ୍ତିଟିକି ସୁନ୍ଦର
କାଳ ଜାଣି ବୃଷ୍ଟି କରଇଟି ବଜ୍ରଧର ।
ଅନ୍ତେଶ୍ୱର କଥା ବୁଝୁଟିକି ନିତି
ଦେଶରେ ଦଣ୍ଡପାଟ ନ କରନ୍ତି ନା ଅନୀତି ।
ବରଷାରେ ନଦୀରେ ଥାଇଟିକି ନାବ
ସୁଜନେ ଟସକର ସଙ୍ଗେ ନୁହନ୍ତି ନା
ଭାବ । ୯୯
ପତିଙ୍କ ଭଗତି ହୁଅନ୍ତି ନା ଯୁବତୀ
ବିଶ୍ୱାସଘାତକେତା ସଙ୍ଗେ ନୁହନ୍ତି ନା
ପୀରତି ।
ବୃଇଦେ ଉପଚ୍ଚର ଜାଣନ୍ତିଟିକି ବ୍ୟାଧି
ତପୀଏ ଅଛନ୍ତିଟିକି ଅଗ୍ନିକି ଆରାଧି ।
ସେବକ ପେଷିଲେ ନୋହନ୍ତି ନା ବିମୁଖ
ସାଂଗ୍ରାମେ କ୍ଷତ୍ରୀଙ୍କର ହରଷଟିକି ମୁଖ ।
ଦେବତାରେ ପୂଜା ବ୍ରାହ୍ମଣେଣ ଦାନ
କୁଳୀଣ ଲୋକମାନେ ମାନନ୍ତି ନା ମାନ୍ୟ ।
ସୁଜ୍ଞାନୀ ଦ୍ୱିଜମାନେ କରନ୍ତିନା ହୋମ
ମନ୍ତ୍ରେଣ ସିଦ୍ଧ କରନ୍ତି ନିନା କାମ ।୧୦
ଅପନ୍ତରା ବାଟେ ପାଣି ପଣା ଦାନ
ପ୍ରାସାଦ ଅଟାଳି ଅଛନ୍ତି ନା ବୃକ୍ଷମାନ ।
ବଧୂନ୍ତ ଆଛାଦି ଅଛନ୍ତି ନା ଗୃରସ୍ତ
ଦୋସାଧୁ ରଖନ୍ତି ନା ଗୃହବାସ ବିର ।
ଅଗାଦ ଜଳ ଅଛଇଟିକି ଦେଶ ଲାଗେ
ଭୃତ୍ୟ ମାୟା ନ କରନ୍ତି ନା ସ୍ୱାମୀଙ୍କର
ଆଗେ ।
ବେଦଶାସ୍ତ୍ର ପଣ୍ଡାଏ ହୁଅନ୍ତି ନା ଗୋଷ୍ଠୀ
ପୁତ୍ରଥାନ୍ତେ ପିତାଏ ନୋହନ୍ତି ନା କଷ୍ଟି ।
ଦରିଦ୍ରକଇ ଦୟା କରନ୍ତିଟିକି ସାଧୁ
ଲଜ୍ଜାବନ୍ତ ହୋଇଣ ଅଛନ୍ତି ନା
କୁଳବଧୂ । ୨୦
ଓଷଧେଣ ରୋଗୀ ହୁଅନ୍ତି ନା ରକ୍ଷା
ଶିଷ୍ୟେ ପାଳନ୍ତି ନା ଗୁରୁବଚନ ଦୀକ୍ଷା ।
ପ୍ରଚଣ୍ଡ ହୋଇଣ ନ ବହଇ ନା ପବନ
ମିଥ୍ୟା ନ କହନ୍ତି ନା ବଣିଜାର ଜନ ।
କୁଛିତ ବୁଧି ନ ପଶଇ ନା ତୋହୋର ଚିତ୍ତେ
ସଦା ଅନୁରାଗୀ ଅଟୁନା ନରନାଥେ ।
ନଟେ ଉଦର ପୋଷନ୍ତି ନା ନୃତ୍ୟ କରି
ବେଶ୍ୟାଏ ପାରନ୍ତି ନା ପର ମନ ହରି ।
ଚଞ୍ଚଳ ଅଟନ୍ତି ନା ସାହାଣର ଘୋଡ଼ା
ହସ୍ତୀ ମାରଇଟିକି ଗୋଡ଼ାଇଣ ବେଢ଼ା ।୩୦
ସାରଥି ସୂତ୍ରେଣ ବାହାଇ ନା ରଥ
ପାଦାନ୍ତି ପାଦେଣ ଅଟନ୍ତି ନା ସାମରଥ ।
ଢେଣୁକି ବିନ୍ଧିଲେଣ ଫୁଟଇଟିକି ବାଣ
ବିକଟାଳ ହୋଇଣ ବାଜଇଟିକି ନିଶାଣ ।
ଅଲୋଭୀ ସିଠ ନିର୍ଲୋଭୀ କରଣ
ରସ ଗୁଣ୍ଡି ଆଭରଣ କରୁନା ସଂହରଣ ।
ଦୀନ ଦୁଃଖୀଜନଙ୍କୁ ଅଟୁ ନିନା ବଳ
ଯେ ଯାହାର ବସନ୍ତେ ପାଇନା ସ୍ୱାଦଫଳ ।
ସୁରଭି ଦୁଧ ଦୁହାଂନ୍ତି ନା ଗାଈ
ବିଷ୍ଠା ନ ଖାନ୍ତି ନା ଚରିବାର ପାଇ ।୪୦
ଚଷାୟେ ବଇଲେ ନ କରନ୍ତି ନା ପ୍ରାସ
ବାଟ ବୃକ୍ଷମାନ ନ କରନ୍ତି ନା ନାଶ ।
ଚିତ୍ର ଲେଖନ ଲେଖନ୍ତିଟିକି ଘର
ଇଚ୍ଛାୟେ ବ୍ରତନ୍ତି ନା ବାଣ ବଣିଜାର ।
ପରିବାରୀ ସେବକେ ନୋହନ୍ତି ନା କଷ୍ଟି
କୃଷି ପାଗ ଜାଣି କରଇ ନା ବୃଷ୍ଟି ।
ଯେ ଯାହାର ଋତୁ କରନ୍ତି ନା ଦିଗପାଳ
ଭଗ୍ନ ନୋହଇ ନା ପକ୍ଷୀଙ୍କର ଆଳ ।
ଧୂର୍ମଖେତୁ ଉଦୟେ ନୋହଇ ନା ଗଗନେ
ପୁତ୍ରେ ତୋହର ଅନୀତି ନ କରନ୍ତି ନା
ଭୁବନେ ।୫୦
ଯେଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମଉନ ହୋଇ ଶୁଣୁଥିଲାକ ନୃପତି ।
ଶୁଣି ଦଶରଥ ପ୍ରଳମ୍ବ କରି ଶୋଇ
ଶୋକଭର ହୋଇଣ ସେ ଉଠିଣ କଥା
କହି ।
ନୟନୁ ଅଶ୍ରୁଜଳ ପଡ଼ଇ ଘନ ଘନ
କର ଦୁଇ ଯୋଡ଼ିଣ ବୋଲଇ ରାଜନ ।
ଭୋ ମୁନି ଯାହା ତୁ ପଚ୍ଚରିଲୁ ମୋତେ
ତୋହୋର ପ୍ରସାଦେ ଅଛଇ ସବୁ ସୁସ୍ତେ ।
ପୁତ୍ର ବୋଲି ଯାହା ପଚ୍ଚରିଲୁ ତପଚ୍ଚରୀ
ଅପୁତ୍ରିକ ହୋଇ ମୁଂ ଅଛଇ
ଦେହଧରି । ୬୦
ନବ ସହସ୍ର ବରଷ ଭୋଗକଲି କର୍ମବଳେ
ପୁତ୍ର ପ୍ରାପତ ସେ ନୋହିଲା ଯେତେ
କାଳେ ।

ନିଲଜ ପ୍ରାଣ ନ ଯାଇ ଦେହୁ ଛାଡ଼ି
ଅଭିମାନ ସମୋଦ୍ରେ ଅଛଇ ମୁହିଁ ବୁଡ଼ି ।
ଆଜ ମୁଂ ଦେଖିଲି ବିଭାଣ୍ଡେକ ସୁତ
ସର୍ବ ସମ୍ପଦ ମୋତେ ହୋଇଲା ପରାପତ ।
ମୋହୋଠାରୁ ଯେ ଶେଷ ମୋର ବଂଶ
ପୁତ୍ର ବିହୁନେଣ ରାଜ୍ୟରେ କାର୍ଯ୍ୟ କିସ ।
ଦୋହିତା ଗୋଟିଏ ମୋର ହୋଇଲା କେବଣ
ପୁଣ୍ୟେ
ସେହି ପ୍ରଦାନ ନୋହିଲାକ ଆନେ ।୭୦
ଯୁବା ବୟସ ସେ ସାଦୃଶେ ନାହିଁ ବର
ମନେ ବିଚରଇ କରିବି ସ୍ୱୟମ୍ବର ।
ଚିତ୍ତ ଅସନ୍ତୋଷ ସେହି ଯେଥେ ଥାଇ
ଯେହି ମୋର ବଂଶ ରହିବ ଆର କାହିଁ ।
ଅନେକ ଆକୁଳ ଯହୁଁ ହୋଇଲା ନୃପତି
ରାଜାକଇ ତହୁଁ ଚାହିଁ ବୋଲଇ ମହାଯତି ।
ତୁ ଯେବେ ବିସ୍ମୟେ ନୁହସି ନୃପବର
ଆମ୍ଭେ ପ୍ରାପତ ତୋତେ କରିବୁ କୁମର ।
ଯେଥକଇଂ ଭ୍ରାନ୍ତି ତୁ ନ କର ହୋ କିଛି
ପୁତ୍ର ପ୍ରାପତ ତୋତେ କର୍ମେଣ ଯେ
ଅଛି ।୮୦
ନୁହସି ବିକଳ ତୁ ଅଳପ ଦିନ ରହ
ଦୋହିତା କେଡ଼େ ତୋହର ମୋହୋର
ଆଗେ କହ ।
ବିଭା କଲୁନି କି ନାମ ତାର କିସ
କେତେମାନ ସୁନ୍ଦର କେତେକ ବୟସ ।
ଦଶରଥ କହଇ ଯୋଡ଼ିଣ ବେନି କର
ଶୁଣିମା ମହାମୁନି ତପୀଙ୍କ ଈଶ୍ୱର ।
ସାତଶ ପଞ୍ଚାଶ ମୋର ମହାଦେଈ ଅଛି
ଯେଥିରେ ତିହ୍ନିଯେ ଉତ୍ତମ ମନ ରଚି ।
କଉଶୁଲା ସୁମୈତ୍ରା କୟେକୟା ସୁନ୍ଦେରୀ
ଯେ ମୋହୋର ପାଟ ସେ ଅଟନ୍ତି
ମନୋହାରୀ ।୯୦
କଉଶୁଲା ରାଣୀ ସବୁରି ତହୁଁ ଶ୍ରେଷ୍ଠ
ତାହାକଇ ଘେନି ମୁଂ ବସିଲଇଂ ପାଟ ।
କେବଣ ପୁନ୍ୟେ ତାହାର ଗର୍ଭ ଏକ ଫଳି
କାଳେଣ ପ୍ରସବିଲା ଏକଇ ଦୁଲାଳୀ ।
ତାହା ଦେଖି ମୁହିଁ ଛାଡ଼ିଲଇଂ ଚିନ୍ତା
ଶାନ୍ତି ହୋଇ ନାମ ଦେଲଇଂ ଶାଏନ୍ତା ।
ପ୍ରାଣୁଂ ଅଧିକେ କରି ପାଳିଲଇ ତାହା ।୯୭
ଯୁବା ବୟେସେଣ ନ କଲି ତାକୁ ବେହା ।
ଯେ ମୋହୋର ମଇତ୍ର ଲମ୍ପାଦ ରାୟେ
କେବଣ ପାପେ ଯେହାର ନୋହିଲା
ତନୟେ ।
ଦୁହେଂ ଅପୁତ୍ରିକ ହୋଇଲୁ କର୍ମହୀନ
ଯେକା ଦୋହିତାକୁ ପାଳୁ ବେନିଜନ ।
ମଇତ୍ର ବିକଳ ଦେଖିଣ ଭୋ ଯତି
ଯେହାକଇଂ ଝିଅ ଦେଲଇଂ ପ୍ରିୟମତି ।
ତାହାକଇଂ ପାଳଇ ନିଜ ପୁରେ ଆଣି
ଯେହାର ଘରେ ଦେବ ଅଛଇ ଦୁଲଣୀ ।
ମୁନି ପଋରଇ ଲୋମପାଦକଇଂ ଚାହିଁ
ଦଶରଥ ନନ୍ଦିନୀ ଅଛଇ ରାୟେ କାହିଁ ।
ଶୁଣିଣ ବୋଲଇ ଚମ୍ପାବତୀ ନଗ୍ରପତି
ମୁହିଁ ପ୍ରତିପାଳଇ ଦଶରଥ ଦୂହିତୀ ।୧୦
ତାହାର ମୋହୋର ଅଟଇ ଏକପ୍ରାଣ
ମୋହୋର ଅର୍ଥେ କାରେଣୀ ଅଯୋଧ୍ୟାର
ରାଣ ।
ମୁନି ବୋଲଇ ଯେବେ ତୋହୋର ଘରେ
ଥାଇ
ଆମ୍ଭର ଛାମୁକୁ ସେ ନୁଆସଇ କିପାଇଂ ।
ରାଜା ବୋଇଲା ସ୍ୱାମୀ ଅପ୍ରତିଷ୍ଠା ନାରୀ
ତେଣୁ ସେ ନୁଆସଇ ଶାପକୁ ଭୟକରି ।
ଅଣାଥ ବୋଲି ବୋଇଲେ ବିଭାଣ୍ଡେକର
ଶିଷ
ତକ୍ଷଣେ ଲମ୍ପାଦ ଭିତରେଣ ପ୍ରବେଶ ।
ଶାଇନ୍ତା କନ୍ୟାକଇ ବେଗେଣ ସଜକରି
ବହନ ହୋଇ ତହିଂ ଅଇଲା
ଦଣ୍ଡଧାରୀ ।୨୦
ଦିବ୍ୟ ବିଳାସୁଣୀ କରାଇଲେ ବେଶ
ଅଳଙ୍କାର ଲାଇ ପିନ୍ଧାଇ ଝିନବାସ ।
ନୟେନ କଜ୍ଜ୍ୱଳ ଶିରେଣ ଫୁଲଗଭା
ମୁଖେଣ ତାମ୍ବୁଳ ଲଲାଟେ ଚନ୍ଦନ ଟୋପି
ଶୋଭା ।
କର୍ଣ୍ଣରେ ତଡ଼କୀ ମଥାରେ ମଥାମଣି
ଗଳାରେ ଚାପସରି ନାସାରେ ବସଣୀ ।
ବାହେ ବିଦସେ କରେଣ କଙ୍କଣ
ଅଙ୍ଗୁଷ୍ଠିରେ ମୁଦ୍ରିକା ତା ସୂର୍ଯ୍ୟର କିରଣ ।
ପୟରେ ନେପୁର ଚରଣେ ଅଳତା
ବିବିଧ ବେଶକରି ଆଣିଲେ ବନିତା ।୩୦
ଧାଇ ମୁଦୁସୁଲି ଝଡ଼ା ସଙ୍ଗେ ଆଇ
ପଛେଣ ଆସଇ ଯେ ଶରଦଚନ୍ଦ୍ର ମୁହାଁ ।
ମତ୍ତଗଜ ଗମନୀ ଧୀରେ ଧୀରେ ଚାଲେ
ଦାସୀ ପରିବାରୀ ଆଢ଼ୋ ଆଢ଼ୋ
ବୋଇଲେ ।
ଲାଜ ଭରେ ମଥା ପୋତିଣ ସୁନ୍ଦେରୀ
କର ଯୁଗଳରେ ଅଛି ଶ୍ରୀଫଳ ଗୋଟିଧରି ।
ଲମ୍ପାଦ ଆଗେ କଢ଼ାଇଣ ବାଟ
ଆସିଣ ହୋଇଲେ ମହାରଷିର ନିକଟ ।
ଦଶରଥ ଦେଖିଣ ବୋଇଲେ ଆଗୋ ମାୟେ
ପ୍ରଳମ୍ଭ କର ମାତା ମୁନିଙ୍କର ପାୟେ ।୪୦
ଶୁଣିଣ ସୁନ୍ଦେରୀ ଯେ ଶ୍ରୀଫଳ ପୁଷ୍ପ ଦେଇ
ଋଷିଶୃଙ୍ଗ ଚରଣେ ପଡ଼ିଲାକ ଯାଇ ।
ଦେଖିଣ ମୋହମାନ ହୋଇଲାକ ଯତି
ବୋଇଲେ ଉଠ ଉଠରେ ଯୁବତୀ ରତ୍ନକାନ୍ତି ।
ହୁଅସି କଲ୍ୟାଣ ଦୀର୍ଘ ଆଶ୍ୟ ପାଅ
ସୁପୁରୁଷ ବର ପ୍ରାପତେ ଦିନ ନିଅ ।
ପୁତ୍ରବନ୍ତୀ ଯଶବନ୍ତୀ ଧନବନ୍ତୀ ତିନି
ଯେ ତୋତେ ପ୍ରାପତ ହୋଉରେ କାମେନୀ ।
ଶୁଣିଣ ସୁନ୍ଦେରୀ ଉଠିଣ ଉଭା ହୋଇ
ଦଶରଥକୁ ଚାହିଂଣ ଋଷିଶୃଙ୍ଗ
ବୋଲଇ ।୫୦
ଯେ ତୋହୋର ଦୋହିତୀ ଶରଦଚନ୍ଦ୍ର କାନ୍ତି
ଆମ୍ଭକଇ ପ୍ରଦାନ କରସି ନୃପତି ।

କ୍ଷତ୍ରୀଙ୍କର ଝିଅ ଋଷିଙ୍କି ଗ୍ରାହିତ
ତୋହୋର କୁଳଗୋତ୍ର ଅଟଇ ପବିତ୍ର ।
ଆମ୍ଭେ ବିଭାଣ୍ଡେକ ପୁତ୍ର ବ୍ରହ୍ମବଂଶୀ
ନକର ଚିନ୍ତା ତୁ କନ୍ୟା ମୋତେ ଦେସି ।
ଶୁଣିଣ ଦଶରଥ ଋଷିର ପାଦେ ପଡ଼ି
ହରଷ ହୋଇଣ କହଇ କରଯୋଡ଼ି ।
ମୁହିଂତ ଭାର୍ଜନ ନୋହଇ ବୋଲିବାକୁ
ତୋତେ କି ଭାର୍ଜନ ମୁଂ କନ୍ୟାଯେ
ଦେବାକୁ । ୬୦
ତୁମ୍ଭେ ବ୍ରହ୍ମଚାରୀ ମହତ ମହାଋଷି
ହୁଅସି ବିଭା ମୁନି ଯେମନ୍ତେ ତୋତେ
ଆସି ।
ମୁହିଂକି କ୍ଷେମ ତାହା ତୁଣ୍ଡରେ ବସାଇ
ଯେହା ଶୁଣି ବୋଇଲେ ଚମ୍ପାନଗ୍ର ସାଇଂ ।
କିମ୍ପାଇ ମଇତ୍ର ହୋ ସଙ୍କୁଚ ଧର ମନେ
ଆମ୍ଭର ପୁନ୍ୟେ ଯେବେ ପ୍ରକାଶଇ
ଯେସନେ ।
ଋଷିଶୃଙ୍ଗ ଜୁଆଇଂ ହୋଇବ ଯେମନ୍ତ
ଯେହେନେକ କରି ନିର୍ଭା କରିଛି ବିଧାତ ।
ଆମ୍ଭର କୁଳ ଯେବେ ମୁନିଙ୍କରେ ହୋଇବ
ରକ୍ଷ
ହୋଅନ୍ତୁ ବିଭା ଯେଣେ ପୂରଇ
ମନବାଞ୍ଛା । ୭୦
ଶୁଣିଣ ବିଭାଣ୍ଡେକ ପୁତ୍ର ଦରହସି
ଲୋମପାଦଙ୍କଇ ବଚନ ପ୍ରକାଶି ।
ଦଶରଥ ସଙ୍ଗେ ହୋଅ ତୁମ୍ଭେ କଥା
ଯେ ବଚନ ଶୁଣି ବୋଇଲ ଦଶରଥା ।
କିସ କଥା ଆମ୍ଭେ ହୋଇବଇଂ ଆଉ
ତୋହୋର ଠହିଂ ମୋହର ଭଗତି ଯେ
ଥାଉ ।
ହୋଅସି ବିଭା ତୁମ୍ଭେ ବିଚାରି ଇଗ୍ନ ବେଳ
ଶୁଣିଣ ପ୍ରସନ ଯେ ବିଭାଣ୍ଡେକର ବାଳ ।
ତକ୍ଷଣେ ଆପଣା କଣ୍ଠର ରତ୍ନମାଳି
କନ୍ୟାର କଣ୍ଠେ ନେଇ ଲମ୍ବାଇଲେ
ତପଶାଳୀ । ୮୦

ଧାଇ ମୁଦୁସୁଲୀ ହୁଳହୁଳି ଦେଲେ
ମନ୍ତ୍ରୀଗଣେ ମିଳି ମଙ୍ଗଳ ଉଚ୍ଚରିଲେ ।
ମୁନି ବିଚାରଇ ଯେତ ଜ୍ୟେଷ୍ଠମାସ
ଶୁକଳ ପକ୍ଷ କାଲି ପଞ୍ଚମୀ ଦିବସ ।
ରବିବାର ମଘା ନକ୍ଷତ୍ର ପ୍ରସିଧି
ଦଶ ଯୋଗ ଚକ୍ର ବିଚାରିଣ ବିଧି ।
ଶୁଭ ନାମେ ଯୋଗ ଅଟଇ ପୁଣ୍ୟକାଳ
କଇଲବ ନାମେ କରଣ ବୃହସ୍ପତିଙ୍କ
ବେଳ ।
ଯେକାଦଶ ଘଡ଼ି କନ୍ୟା ଲଗ୍ନ ବେଳେ
ଆମ୍ଭକଇ କନ୍ୟା ସମର୍ପ ମହୀପାଳେ । ୯୦
କନ୍ୟାର ନକ୍ଷତ୍ର ଅଟଇ କିସ କହ
ଜାଣିମାନା ହାନି ଅପଚୟେ ଯେବଣ ଗ୍ରହ ।
ଦଶରଥ ବୋଇଲା ଦେବ ମକର ଯେହାର
ରାଶି
ଶ୍ରବଣା ନକ୍ଷତ୍ର ସେ ଶନିଶ୍ଚର ଦୋଷୀ ।
ମୁନି ବୋଇଲେ ମୋର ଆରଦ୍ରା ମିଥୁନ
ଓହୋ କୁଳ ପ୍ରୀତି ବଢ଼ିବ ଦିନୁଦିନ ।
ଶନିଶ୍ଚର ଯେବେ କନ୍ୟା ଅର୍ଥେ ଥିବ
ଲବଣ ଦାନ ଦେବା ଦୋଷ ପାର ଯିବ ।
କନ୍ୟାର ପଞ୍ଚମେ ଅଛଇ ଦିନମଣି
ଆମ୍ଭଙ୍କୁ ଦ୍ୱାଦଶ ଦୋଷ କଲା ଜିଣି । ୧୦୦
ସଂକରାତିକି ସତାଇଶ ଦିନ ଆଙ୍କୁଂ ଯାଇଂ
କକଡ଼ା ରାଶିରେ ଯେବେ ଦେବଗୁରୁ
ଥାଇ ।
ଆମ୍ଭଙ୍କୁ ତୃତୀଅ କନ୍ୟାକୁ ଅଷ୍ଟମ ବେଳ
ପ୍ରସନ୍ନ ମନ ତୁ କର ମହୀପାଳ ।
ବୁଧ ଚନ୍ଦ୍ର ଏକ ଆସନେଣ ସ୍ଥିତି
ରାହୁ ଗ୍ରହ ଅଛି ଏହାକଂର କତି ।
ଶନିଶ୍ଚର ଅଛି ରିକ୍ଷଭେ ବିଜେ କରି
ବିଛାରେ ଶୁକ୍ର କେତୁ ଯହିଂ ଅଧିକାରୀ ।
ଯେହାଙ୍କର ସଙ୍ଗେ ଅଛଇ ଭୂମିବଛ
ଦୋଷକଇ ଦାନ ବିହିବା ପ୍ରତକ୍ଷ । ୧୦
ବିଶେଷେ ଆମ୍ଭେତ ଅଟୁ ତପୀଜନ
ଆମ୍ଭକଇ ବେଳକାଳ ନାହିଂ ନା ରାଜନ ।

ଦେବତା ବ୍ରାହ୍ମଣ ଅସୁର ନୃପତି
ଏହାକଇ ସୋଧି ନ ଯାଇ ଲଗ୍ନ ତିଥି ।
ବଳେ ଆମ୍ଭନ୍ତ ଯେ ନିଅ ତୁ ଆବୋରି
ଏହାକୁ ସଂଶୟେ ନାହିଂ ଦଣ୍ଡଧାରୀ ।
ଦଶରଥ ବୋଲଇ ଯେ ତୋହୋର ବିଚାର
ସେ କଥା ଆମ୍ଭଙ୍କୁ ଶୁଭ ମଙ୍ଗଳ ସୁଲଭ
ଲଗ୍ନ ସାର ।
ଲମ୍ବପାଦ ନୃପତି ଯେହି କଥା କହି
କନ୍ୟା ଯାଉ ବୋଲି ମୁନି ଆଗ୍ୟାଂ
ଦେଇ । ୨୦
ନମସ୍କାର କରି ଶାଇନ୍ତା ଭିତରକୁ ଗଲା
ଦଶରଥ ଭୁଜଧରି ଲୋମପାଦ ନେଲା ।
ଅନ୍ତର ସ୍ଥାନେ ଯେ ଭାଳନ୍ତି ଦୁହେଂ ବସି
ତହିଂ ଯାଇ ପ୍ରବେଶ ହୋଇଲେ ଋଷ୍ୟଶୃଙ୍ଗ
ଆସି ।
ମୁନି ପଚାରନ୍ତି କିସ କିସ ଭାଳ
ଦେଖିଣ ଉଠିଲେ ଯେ ଦୁଇ ମହୀପାଳ ।
କରଯୋଡ଼ି ଲୋମପାଦ ଦଶରଥ କହି
ଆଉ କିସ ବିଚାର ଅଛଇ ତପସାଇଂ ।
ଆମ୍ଭର ଭାଗ୍ୟ ଯେବେ ଯେସନେକ କଲୁ
ଋଷିଶୃଙ୍ଗ ଋଷିଙ୍କି ଜୁଆଇଂ ପାଇଲୁ । ୩୦
ତୋହୋର ପୁନ୍ୟେ ଅବା ଆମ୍ଭର ବଂଶ ରହି
ଯେସନେକ ବୋଲି ସେ ବେନି ରାଜା
କହି ।
ଯେଥୁ ଅନନ୍ତରେ ଯେ ଦିନ ଅବଶେଷ
ମେରୁଗିରି ଉହାଡ଼େ ଯେ କଶ୍ୟପର ଶିଷ ।
ଋଷିଶୃଙ୍ଗ ଯାଇ ନିଜପୁରେ ବିଜେ କଲା
ଦଶରଥ ଘେନି ଲମ୍ବପାଦ ଗଲା ।
ଯେକାନ୍ତ ହୋଇ ଭାଳିଲେ ବେନି ନୃପବର
ସାରିଲେ ସ୍ନାହାନ ଭୋଜନ ବେଭାର ।
ରଜନୀ ବଞ୍ଚିଲେ ବିବିଧ କଥା କହି
ଆନନ୍ଦଭରେ ଅତି ଉଛତ ସେ ହୋଇ ।୪୦
ପ୍ରଭାତେ ନିତ୍ୟକର୍ମ ସାରିଣ ନୃପବେନି
ଯାଇ ଓଳଗିଲେ ଋଷ୍ୟଶୃଙ୍ଗ ମୁନି ।

ଦେବତା ପୂଜା ସେ ସାରିଣ ବ୍ରହ୍ମଋଷି
ଲମ୍ପାଦକଇ ଚାହିଁ ବୋଇଲେକ ହସି ।
ମଣ୍ଡ ହୋ ନବର ସଞ୍ଜ ହୋ ସର୍ବକର୍ମ
କିପାଇଁ କାର୍ଯ୍ୟକୁ ହେଉଅଛୁ ଭ୍ରମ ।
ବେଳ ନିକଟୟେ ହୋଇବ ଏହିକ୍ଷଣି
ଦ୍ରବ୍ୟନ୍ତ ସମ୍ପାଦ ତୁ କର ହୋ ନୃପମଣି ।
ଶୁଣି ଲମ୍ପାଦ ମନ୍ତ୍ରୀକୁ ଆଜ୍ଞା ଦେଲା
ରାଜା ବୋଲେ ମନ୍ତ୍ରୀ ସମସ୍ତ
ଭିଆଇଲା ।୫୦
ଦଶଘଡ଼ି ଯହୁଁ ହୋଇଲାକ ବେଳ
ପାଟ ଜଉତିଶ କହିଲା ଅନୁକୂଳ ।
ବରକନ୍ୟା ବସାଇ ଦିବ୍ୟ ବେଶ କଲେ
ସୁବନ୍ୟ ବେଦୀରେ ଆଣି ଶୁଭେ
ବସାଇଲେ ।
ଉପରେ ଛାଆର ମଣ୍ଡୋପ ମଣ୍ଡାଇଣ
କି ଜାଣି ଶରଦଚନ୍ଦ୍ର ଶୋଭାବନ ।
ନଗର ନର ନାରୀ ଉଚ୍ଛୁକେ ହରଷ
ରାଜାର ମନ୍ଦିରେଣ ହୋଇଲେ ପରବେଶ ।
ଦେଖନ୍ତି ବିଭା ଶାଏନ୍ତା ଋଷିଶୃଙ୍ଗ
ଜାଣି ପଟାନ୍ତର ରତି କି ଅନଙ୍ଗ ।୬୦
ଦଶରଥ କୋଳେ ଅଛଇ ଦୁଲଣୀ
ଆବୋରି ବସିଲା ମୁନି ଘେନିଣ କୁଶପାଣି ।
ୟେକାଦଶ ଘଡ଼ି ସମୟେଣ ବେଳ
ଜଉତିଷ ବୋଇଲା ହୋଇଲା ଅନୁକୂଳ ।
ମୁନି ଦିଜବର ଅଛନ୍ତି ବହୁତ
ବରକନ୍ୟାକୁ ଆଶିଷ ଦିଅନ୍ତି ତପୋବନ୍ତ ।
କୁଶେଣ ବନ୍ଧନ କଲେକ ବେନିକର
ଯଉତୁକ ବିଧାନ ଦେଲାକ ଅପାର ।
ଲକ୍ଷେକ ରତ୍ନ ଯେ ଶଙ୍ଖରେ ପୂରାଇ
ଦଶରଥ ଋଷିଶିଂଘ କରେ ଦେଲେ
ନେଇ ।୭୦
କୁଶ ଗଣ୍ଠି ଫେଡ଼ିଣ କଲେ ଅଗ୍ନିପୂଜା
ଉଠିଣ ଉଭା ହୋଇଲେ ଦଶରଥ ରାଜା ।
ବିଭାଣ୍ଡେକ ତନୟ ଋଷିଶୃଙ୍ଗ ମୁନି
ୟେହାକଇ ଦେଲି ମୋହର ନନ୍ଦିନୀ ।
ଯଉତୁକ ଦେବାକୁ ମୁଁ ନୁହଇ ଭାରଜନ
ସମର୍ପି ହୋଇଲି ମୁଁ ଶୁଣ ସଭାଜନ ।
ମୁନି ବୋଇଲେ ମୁଁ ହୋଇଲଇଁ ତୋଷ
ଯେ ମୋହରେ ରକ୍ଷା ହୋଇବ ତୋର
ବଂଶ ।
ଶୁଣି ଦଶରଥ ଲୋମପାଦ ରାୟେ
ବ୍ରାହ୍ମଣ ଅର୍ଚ୍ଚନା ଦକ୍ଷିଣା ବିଧି କ ୟେ ।୮୦
ସୁଲକ୍ଷଣୀ ନାରୀ ବନ୍ଦାଇଲେ ଆସି
ବରକନ୍ୟା ଭିତରକୁ ନେଲେ ଶୁଭ୍ରକେଶୀ ।
ଅନ୍ତେସ୍ୱରେ ରାଜା ମହାଦେଈମାନ
ଆନନ୍ଦେ ବନ୍ଦାବନ୍ତି ବିଭାଣ୍ଡେକର ନନ୍ଦନ ।
ଏକା ପତ୍ରେ ଭୋଜନ କଲେ ବରକନ୍ୟା
ଦୂର୍ବା ଅକ୍ଷତ ଘେନି କରନ୍ତି ବନ୍ଦାପନା ।
ଲୋମପାଦକଇ ଯେ ବୋଲଇ ଋଷି ଚାହିଁ
ଯେତେକ ଯଉତୁକ ଅଛଇ ମୁହିଁ ପାଇ ।
ପିତା ଆଶ୍ରମକୁ ଚଳାଇଣ ଦିଅ
ସମସ୍ତ କଥା ଗଲା ଲୋକ ଆଗେ
କହ ।୯୦
ତକ୍ଷଣେ ଲୋମପାଦ ଯଉତୁକମାନ
ସଜ କରାଇଲା ଲକ୍ଷେକ ଗୋଧନ ।
ଶତେକ ଅଶ୍ୱ ଯେ ଚାରିଶତ ଗଜ
ବିବିଧ ରତ୍ନ ଭଣ୍ଡାର କଲେକ ଯେ ସଜ ।
ଶତେକ ପରିବାରୀ ଶାଏନ୍ତା ସଙ୍ଗେ ରହି
ସହସ୍ରେକ ଲୋକ ବୋଝ ଭାର ବହି ।
ଖଟ ଦୋଳି ଶେଯ ପାଦଦାନ ମାନ
ଆଲଟ ଚାମର ଯେ ବିବିଧ ବସନ ।
ଗଡୁ ଗରେଆ ଥାଳି ଖୋରା ଖୋରି
ହାତଧୁଆ ମଣ୍ଡା ନାଲୁଆ ରତ୍ନଝରି ।୧୦୦
ସିଠ ବରଗିଣ ଚଳାଇଲେ ସବୁ
ବୋଇଲେ ସମର୍ପ ନେଇ ଋଷିଶୃଙ୍ଗ ବାବୁ ।
ନାବେ ଗଲାର ଅଣାଇଲେ ଜଣେ
ୟେହାକଂର ସଙ୍ଗତେ ପେଷିଲେ
ମନ୍ତ୍ରୀଗଣେ ।
ନଦୀର କୂଳେ କୂଳେ ପଥ ବହିଗଲେ
ଚଉଦ ଦିନେ ଯାଇ ପ୍ରବେଶ ହୋଇଲେ ।
ବିଭାଣ୍ଡେକ ଆଶ୍ରମ ସନ୍ନିଧେ ଗୋଗୁଚରି
ୟେଥୁ ଅନନ୍ତରେ ଶୁଣ ଗୋ ଶାକମ୍ୱେରୀ ।

ଋଷିଶିଂଘ ଋଷିକି ଆଣିଲେ ଯହୁଁ ହରି
ସନ୍ଧ୍ୟା ସମୟେଣ ପିତା ଅଇଲେ
ନିଜପୁରୀ ।୧୦
ଦେଖିଲେ ମଢ଼ିଆ ଯେ ହୋଇଅଛି ତୁଚ୍ଛା
ପୁତ୍ରକୁ ନ ଦେଖି ମୁନି ପଡ଼ିଗଲେ ମୁର୍ଚ୍ଛା ।
ସଚେତ ହୋଇଣ ସେ ସୁମରଇ ସୁତ
ବୋଇଲେ ଆହା ମୋର ତନୟେ ପବିତ୍ର ।
କାହିଁକି ଗଲୁ ବାବୁ ନ କହିଣ ମୋତେ
ଅନେକ ଦୁଖେଣ ପାଳିଲଇଁ ତୋତେ ।
ବ୍ରହ୍ମଋଷି ସଙ୍ଗେ ହୋଇଲୁ ଗଣିତା
ଯାହାକଇ ପ୍ରଶଂସା କଲାକ ବିଧାତା ।
ପ୍ରସନ୍ନ ହୋଇଣ ଇନ୍ଦ୍ର ଦେଲା ବର
ବାଲୁକା ପୂଜା କଲେ ବିଜେ କରଇ
ଶଙ୍କର ।୨୦
ତପେଣ ନିର୍ଜିତ ତୋର ଶୁଦ୍ଧମୟେ ତନୁ
ନକ୍ଷତ୍ର ନିର୍ମଳ ଯେ ତେଜମୟ ଭାନୁ ।
ଚଉକତି ବନ ନାହିଁ ଦେଶ ଗ୍ରାମ
କେଣେ ଗଲୁ ବାବୁରେ ଅଭିନବ କାମ ।
ମାୟା ମୁନି ଅଇଲେ ମୋତେ ଯେ କହିଲୁ
ପିତାଶୁଣୀଙ୍କର ସ୍ୱରୂପେ ମୋହିଲୁ ।
କପଟେ ରାକ୍ଷାସୁଣୀ ମୁନିଙ୍କି ଭକ୍ଷନ୍ତି
କେଣେ ଗଲୁ ବାବୁରେ ପବିତ୍ର ତନୟ
ଗୋଟି ।
ବାଳତୁ କାଳୁ ବାବୁ ପାଳିଲଇ ତୋତେ
ବିଧାତା ବିଚ୍ଛେଦ ଯେ କରାଇଲା
ମୋତେ ।୩୦
କାହାକୁ ପୁଚ୍ଛିବି ଯେ ପର୍ବତ କନ୍ଦର
ବାଇ ପ୍ରାୟେ ହୋଇ ଲୋଡ଼ଇ କୁମର ।
ଆହାର ନ ରୁଚଇ ମନେ ସୁସ୍ଥ ନାହିଁ

ଜପ ତପ ମନ୍ତ୍ର ନାହିଁ ତପସାଇଂ ।
ଦିନୁ ଦିନୁ ତନୁ ହୋଇଲାକ ଖିନ୍ନ
କି ଜାଣି ପଟାନ୍ତର ଅନ୍ଧାର ପକ୍ଷ ଜହ୍ନ ।
ପୁତ୍ରକଇ ସୁମରି ସେ ରୋଦଇ ମହାମୁନି
ଯେସନ ସମୟେ ଶୁଣିଲା ବେଣୁଧ୍ୱନି ।
ଋଷି ବିଚାରନ୍ତି ଯେ କେବଣ କୃତ୍ୟ
ଶ୍ରବଣକୁ ଶୁଭିଲା ଶବଦ ବିପରୀତ ।୪୦
ଶୂନ୍ୟ କୁଟିରୁ ବାହାର ମୁନି ତ୍ରି ଦଣ୍ଡୀ ହାଥେ
ଘେନି
ସୁରଭିର ଚରନ୍ତେ ଦେଖିଲେ ମହାମୁନି ।
ନିକଟେ ପୁଛନ୍ତି ଯେ କାହାର ଗୋରୁ
କାହାର ଆଜ୍ଞାରେ ଅଛନ୍ତି ଯେ ଚରୁ ।
ଯେ ମୋହର ରକ୍ଷା ଯେ ଅଟଇ ଯେ ବିପିନ
କିମ୍ବା ଯେଥେ ଉପଦର୍ପ କର ଦୁଷ୍ଟଜନ ।
ରକ୍ଷାପାଳେ ବୋଇଲେ ଶୁଣସି ହୋ ଯତି
ଆମ୍ଭର ନଗ୍ର ହାଦେ ଅଟଇ ଚମ୍ପାବତୀ ।
ଲୋମପାଦ ରାଜାର ମଇତ୍ର ଦଶରଥ
ଶାୟେନ୍ତା ନାମେଣ ଯେ ତାହାରି
ଦୋହିତ । ୫୦
ସେ ସେ କନ୍ୟା ଋଷିଶିଂଘକୁ ବିଭାକଲା
ଯେ ସର୍ବ ପଦାର୍ଥ ଯଉତୁକ ଦେଲା ।
ଗଜ ଅଶ୍ୱ ବସ୍ତ୍ର ଧେନୁ ଅଳଙ୍କାର
ପିତାର ତହିଂକି ସେ ପେଷିଲା ମୁନିବର ।
ବିଭାଣ୍ଡେକ ନାମେଣ ଅଟଇ ତାହା ତାତ
ତାହାକଇ ଗୋଚରେ ସମର୍ପିବୁ ବିତ୍ତ ।
ଶୁଣି ମହାଋଷି ହରଷ ମନ ହୋଇ
ସେ ମୋହୋର ପୁତ୍ର ବୋଲିଣ ବୋଲଇ ।
ଅଛି ନା କୁଶଳେ କହ ତଥ୍ୟ ବାଣୀ
ସିଠ ନମସ୍କାର କଲେ ତାହା ଶୁଣି । ୬୦
ବୋଇଲେ ଭୋ ଋଷି ତୋହର ଏ ବିତ୍ତ
ଋଷିଶୃଙ୍ଗ ମୁନି ପେଷିଲା ଆମ୍ଭନ୍ତ ।
ଦଶରଥ ଝିଅ ଶାୟେନ୍ତା ବିଭା ହୋଇଂ
ଏ ସର୍ବ ପଦାର୍ଥ ଯଉତୁକ ପାଇଂ ।
ଶୁଣି ମହାମୁନି ବୋଇଲେ ବାବୁ ରହ
ମୋହୋର ଆସିବା ଯାଏ ସମ୍ଭାଳିଣ
ଥାଅ।
ମଢ଼ିଆ ଦେଖାଇଣ ଗୁହାଇଲେ ତାହାନ୍ତ
ପୁତ୍ରର ତହିଂକି ଚଳିଗଲେ ତପୋବନ୍ତ ।
ମନ୍ତ୍ରବଳେ ପବନୁ ବେଗେଣ ଅଇଲା
ଚମ୍ପାବତୀ ନଗ୍ରେ ଘଡ଼ିକେ ପ୍ରବେଶ
ହୋଇଲା ।୭୦
ରାଜାର ନବରେ ପ୍ରବେଶ ଯାଇ ହୋୟେ
ଋଷିଶିଂଘ ଦେଖିଣ ପଡ଼ଇ ପିତା ପାୟେ ।
କୋଳ କରିଣ ପୁତ୍ରକୁ ମୁନି ଚୁମ ଦେଇ
ନ କହି କେମନ୍ତେ ବାବୁ ଅଇଲୁ
ବୋଲଇ ।
ତୋତେ ଲୋଡ଼ି ମୋତେ ନ ଦିଶଇ ପନ୍ଥ
ଆହାର ନିଦ୍ରା ମୁହିଂ ଛାଡ଼ିଲି ସମସ୍ତ ।
ଶରୀର ଦେଖ ମୋର ସୁସ୍ଥ ନାହିଂ
ଅତି ବେଗେ ଅଇଲି ବାରତା ତୋ ପାଇ ।
ପୁତ୍ର ବୋଲଇ ହୋ ତାତ ତୋହରି
ପରସାଦେ
ଆଜଦିନ ସରିକି ମୁଂ ଅଛି ଅପ୍ରମାଦେ ।୮୦
ଯେ ନଗ୍ରେ ଇନ୍ଦ୍ର ହାଦେ ନ ପାଳିଲା ଯହୁଂ
ପ୍ରକାରାନ୍ତର କରି ଆଣିଲେ ମୋତେ ତହୁଂ ।
ଯେ ମୋହର ଆସନ୍ତେଣ ହୋଇଲା ଯେଥେ
ବୃଷ୍ଟି
ଶସ୍ୟ ଉପୁଜିଲା ସୁଲଭ ହୋୟେ ସୃଷ୍ଟି ।
ଲୋମପାଦ ନାମେଣ ଯେ ନଗ୍ରର ରାଜା
ଦେଖ ତୋହୋର ଚରଣେ କରୁଅଛି ପୂଜା ।
ଯେ ଯେ ଦଶରଥ ଅଯୋଧ୍ୟାର ପତି
ବିଭା ହୋଇଲି ମୁଂ ଯେହାର ଦୋହିତୀ ।
ଉପହାରମାନ ଯେହି ସବୁ ଦେଲା ଚଳାଇ
ଗଲା ଲୋକଙ୍କ ଆଗେ ବାରତା
କହିଲଇ ।୯୦
ବିଭାଣ୍ଡେକ ବୋଲନ୍ତି ଲୋମପାଦକଇ ଚାହିଂ
ତୋତେ କୋପ ହାଦେ କରୁଥିଲି ମୁହିଂ ।
ଯେବେ ସନ୍ତୋଷ ହାଦେ ହୋଇଲି ପୁତ୍ର ଦେଖି
ବନ୍ଧୁ ହୋଇଲୁ ଯହୁଂ ପୂର୍ବର କର୍ମ ଲେଖି ।
ଯେ ସେ ଦଶରଥ ଅଟଇ ମୋହର ଭାଇ
ଯହୁଂ ପୁତ୍ରକୁ ମୋର ଦେଲାକ ତନଇ ।
ନାହିଂ ମୋହର କୋପ ହୋଇଲୁ ପରସନ
ମାଗ ତୁମ୍ଭେ ବର ଦୁଇ ଯେ ରାଜନ ।
ଶୁଣି ଦଶରଥ ଲୋମପାଦ ବେନି
କର ଦୁଇଯୋଡ଼ି ବୋଲନ୍ତି ଭୋ
ମୁନି ।୧୦୦
ଦୁହେଂ ଆମ୍ଭେ ଅପୁତ୍ରିକ ପୁତ୍ର ଦାନ ଦେବା
ଯଦ୍ୟପି ମହାମୁନି ଘେନିଲୁ ଆମ୍ଭ ସେବା ।
ଅସ୍ତୁ ହୋଉ ବୋଲି ବୋଇଲେକ ମୁନି
ତୁମ୍ଭେ ଯାଗ କର ଋଷିଶୃଙ୍ଗଙ୍କୁ ଘେନି ।
ଯେଥୁଅନନ୍ତରେ ବିଭାଣ୍ଡେକ ଋଷି
ପୁତ୍ର କୋଳେ ଧରି ସିଘାଂସନେ ବସି ।
ଦୁଇ ରାଜା ଯେ ଅଛନ୍ତି ଉଭା ହୋଇ
ବିଭାଣ୍ଡେକ ବୋଇଲେ ଲୋମପାଦକଇ ।
ଦଶରଥ ନନ୍ଦିନୀକି ଅଣାଅ ମୋର ପାଶ
ଦେଖିବି କୁଳବଧୂ ହୋଇବି ହରଷ ।୧୦
ଶୁଣି ଲୋମପାଦ ଅଣାଇଲା ବାଳୀ
ଯାହାର ରୂପ ଦେଖି ସୁର ମୁନି ଢଳି ।
ଶଶୁରଙ୍କ ପାଦେ ଫଳ ପୁଷ୍ପ ଥୋଇ
ସମ୍ପୂର୍ଣ୍ଣ ଚନ୍ଦ୍ର ବଦନୀ ଓଳଗିଣ ଶୋଇ ।
ଦେଖିଣ ମହାମୁନି କଲ୍ୟାଣ ବାଞ୍ଛଇ
ସାଧୁ ଦଶରଥ ବୋଲିଣ ବୋଲଇ ।
ଯେ ତୋହୋର କୁଳେ କମଳିଣୀ ଜାତ
ମୋହୋ ଭାଗ୍ୟେ ମୋହୋର ପୁତ୍ରକୁ
ହୋଇଲା ପରାପତ ।
ଧନ୍ୟ ଋଷିଶୃଙ୍ଗ ଧନ୍ୟ ତୋହୋର ତପ
କୁଳବଧୂ ପାଇଲୁ ଚଞ୍ଚଳା ସ୍ୱରୂପ । ୨୦
ଉଠ ଉଠ ମାୟେ ଗୋ ମୋର କୁଳର ମଣ୍ଡଣି
ଶତେକ ପୁତ୍ର ତୋର ହୋଉରେ ସୁଲକ୍ଷଣି ।
ଭର୍ତ୍ତାରେ ସଉଭାଗୀ ହୋଇଣ ଦିନ ନିଅ
ଯୁବା ମୂର୍ତ୍ତି ହୋଇ ଯୁଗେ ଯୁଗେ ଥାଅ ।
ଦଶରଥକୁ ଚାହିଂଣ ମହାଋଷି

ସାଧୁ ସାଧୁ ରାଜା ତୁ ଅଟୁ ସୂର୍ଯ୍ୟବଂଶୀ ।
ଧନ୍ୟ ତୋହୋର ମହିମା ଧନ୍ୟ ତୋହୋର
ଜୀବନ
ବର ମାଗ ସତ୍ୟ ସତ୍ୟ ଦେବଇ ବହନ ।
ଯେ ତୋହୋର ବାଞ୍ଛା କରିବଇଂ ସିଦ୍ଧି
ପୁତ୍ରକୁ ଦେଲୁ ମୋର ଯୁବତୀ ରତ୍ନନିଧି ।୩୦
ସେ ମୋର କୂଳବଧୂ କରିବ କୂଳରକ୍ଷା
ତୋହୋର ପ୍ରସାଦେ ଅଜ ନୃପତିର ବଞ୍ଛା ।
ମୋତେ ଯେବେ ହୋଇଲା ତୋହୋରେ
ଯେଡ଼େ ଯଶ
ମୁହିଂ କେହ୍ନେ ତୋତେ ନୋହିବି ବିଶ୍ୱାସ ।
ମାଗ ମାଗ ବର ସତ୍ୟ ମନେ ଦେବି
ଯାବତ ଚନ୍ଦ୍ର ସୂର୍ଯ୍ୟ କଥା ରୁହାଇବି ।
ମୁନିବର ବଚନେ ଦଶରଥ ନୃପତି
କରଯୋଡ଼ି ବୋଇଲା ଶୁଣ ବ୍ରହ୍ମପତି ।
କିସ ବର ମାଗିବି ମୋହୋର ପୁତ୍ର ନାହିଂ
ଦେସି ପୁତ୍ର ଦାନ ମୋର କୂଳରକ୍ଷା
ପାଇ ।୪୦
ତୋହୋର ନନ୍ଦନକଇ ଦେଲି ମୋର ଝିଅ
ଅନୁଗ୍ରହ କର ଯେବେ ପାଇବଇଂ ପୁଅ ।
ତିନି ପୁରେ କଥା ହୋଇବ ବିଖ୍ୟାତ
ଝିଅ ଦେଇ ପାଇଲା ଦଶରଥ ।
ପାରୁ ଯେବେ ହେ ଋଷିହୁଅ ପରସନ
ବଂଶରକ୍ଷା ହଉ ମୋତେ ଦିଅ ପୁତ୍ରଦାନ ।
ଶୁଣି ବିଭାଣ୍ଡେକ ହରଷ ମନ ହୋଇ
ବୋଇଲେ ବଂଶ ତୋର ରଖିବଇ ମୁହିଂ ।
ବିଷ୍ଣୁର ସମାନ୍ୟେ ହୋଇବ ତୋର ପୁତ୍ର
ତାହାରେଣ ରକ୍ଷା ହୋଇବ ତୋହର
ଗୋତ୍ର । ୫୦
ଲୋମପାଦକୁ ଯେ ବୋଇଲେ ମହାମୁନି
ତୋହୋର ପ୍ରସାଦେ ପୁତ୍ର ମୋ ପାଇଲା
କାମିନୀ ।
ତୋତେ ବର ଦେବି ମାଗ ଯାହା ପାର
କର ଦୁଇ ଯୋଡ଼ି କହଇ ଲୋମପାଦ
ବୀର ।

ଦିଅସି ପୁତ୍ରଦାନ କଲୁ ଯେବେ ଦୟା
ତୋହୋରେଣ ଗଣିତା ହୋଇବ ମୋହୋର
କାୟା ।
ମହାମୁନି ବୋଲନ୍ତି ପୁତ୍ର ମୁଖ ଚାହିଂ
ହୋମକର ବାବୁ ତପବଳ ଦେଖାଇ ।
ତିନି ଦିନେ ତପ ଚରୁ ସିଦ୍ଧ ଯେ ହୋଇବ
ଚମ୍ପାବତୀ ରାଜା ସନ୍ତତି ପାଇବ । ୬୦
ଶୁଣି ଋଷିଶୃଙ୍ଗ ଲୋମପାଦକଇ ଚାହିଂ
ବୋଲନ୍ତି ସମ୍ଭାରଣ ଭିଆଅ ତୁ ଯାଇ ।
ଅଯୋଧା ରାଜ୍ୟେଣ ଦଶରଥ ଯାଗ କରୁ
ଆମ୍ଭେ ଯେବେ ତୋତେ ଦେବାକ
କଣଚରୁ ।
ଶୁଣି ଲୋମପାଦ ଭିଆଇଲା ଦ୍ରବ୍ୟ
ସମ୍ପାଦିଣ ଗୁଣ୍ଡକଲା ଆଣି ସର୍ବ ।
ଶଶୁର କଲ୍ୟାଣ ଘେନି ଦେବୀ ଶାନ୍ତି
ଅନ୍ତପୁରେ ପ୍ରବେଶ ହୋଇଲେ ରୂପବନ୍ତୀ ।
ଜ୍ୟେଷ୍ଠ ଶୁକଳ ଯେ ଦଶମୀ ଗୁରୁବାର
ସେଦିନ ହସ୍ତା ନକ୍ଷତ୍ର ସୀଉକାର । ୭୦
ପିତା ପୁତ୍ର ହୋଇଣ ଅଗ୍ନିରେ ହୋମ ଦେଲେ
ତିନି ଦିନ ପ୍ରବେଶେ ପୂର୍ଣ୍ଣ ଆହୁତି କଲେ ।
ଚରୁ ସିଧ କରିଦେଲେ ମନ୍ତ୍ର ଭଣି
ଆନନ୍ଦେ ଘେନିଲେ ଲୋମପାଦ ନୃପମଣି ।
ଶତେ ମହାଦେଈକି ବାଣ୍ଟିଣ ଚରୁଦେଲା
କାଳେଣ ଶତେକ ପୁତ୍ର ଉପୁଜିଲା ।
ଚମ୍ପାବତୀ ନଗ୍ର ରାଜାର ପାଟରାଣୀ
ବସନ୍ତା ନାମରେ ସୁଭାଗୀ ତରୁଣୀ ।
ତାହାର ପୁତ୍ର ଯେ ହୋଇଲା ନୀଳଧର
ଦୂତୀ କନ୍ଦର୍ପ ପ୍ରାୟେକ ଦିଶଇ
ପଟାନ୍ତର । ୮୦
ଶତେକ ପୁତ୍ର ତାର ନଳିଣୀ ଦଳ ଜାଣି
ଦେଖିଣ ହରଷ ଲୋମପାଦ ନୃପମଣି ।
ଋଷିଶୃଙ୍ଗ ପ୍ରସନ୍ନ ହୋଇଣ ଚରୁଦେଲା
ଦେଖି ଦଶରଥ ତ୍ରିପୁତି ହୋଇଲା ।
ବିଭାଣ୍ଡେକ ଚରଣେ କରଇ ନମସ୍କାର

ବୋଲନ୍ତି ପ୍ରସନ୍ନ ମୋତେ ହୁଅସି ମୁନିବର ।
ଯେ ମୋହର ନଗ୍ର ଅଯୋଧା ଚାଲଯିବା
ପୁତ୍ର ଅର୍ଥେ ମୋତେ କାରଣ କରିବା ।
ବିଭାଣ୍ଡେକ ବୋଲନ୍ତି ତୁମେ ଶୁଣ ଦଶରଥ
ଅଯୋଧାକୁ ଯିବ ହୋ ତୋହୋର ଜାମାତ ।
ଦୋହିତା ସହିତେ ତୋର ଜୁଆଇଂ କି ନେସି
ଅତି ଆରମ୍ଭକରି ଯଜ୍ଞ ତୁ କରସି ।
ପୁତ୍ର ପାଇବୁ ତୁ ସ୍ୱୟଂ ନାରାୟେଣ
ରୂପେ ପଟାନ୍ତର ନୋହିବାକ କାମ ।
ମୋହୋର ମନ ସନ୍ତୋଷେ ଦେଲଇ ତୋତେ
ବର
କୂଳରକ୍ଷା ଯିବ ହୋଇବ କୁମର ।
ଯାଅ ତୁ ନ ରହ ହୋ ଯାଗ କର ଯାଇ
ପୁତ୍ରକଇ ବିଭାଣ୍ଡେକ ବୋଇଲେକ ଚାହିଂ ।
ଦଶରଥ ରାଜା ଯେ ତୋହୋର ଶଶୁର
ସୂର୍ଯ୍ୟବଂଶୀ ରାଜା ସେ ପବିତ୍ର
ନୃପବର ।୧୦୦
ଯେହାକଇ ବାବୁ ପୁତ୍ର କରାଅ ପରାପତ
ମୁହିଂ ଆଶ୍ରମକୁ ଯିବଇଂ ହୋ ସୁତ ।
ଯଉତୁକ ଆୟେ ଚଳାଇଲୁ ଯାହା
ଯାଇଣ ସଂଭାଳଣ କରିବଇଂ ତାହା ।
ଦଶରଥକଇ ପୁତ୍ର ଦାନ ଦେଇ
କୂଳବଧୂ ଘେନି ଆସ ବେଗ ହୋଇ ।
ମୁହିଂ ଯେଥେ ରହି ନ ପାରଇ ବାବୁ
ଅସମ୍ଭାଳ ହୋଇଣ ଦ୍ରବ୍ୟ ପଡ଼ିଅଛି ସବୁ ।
ଯେତେ ବୋଲିଣ ଯେ ରାଜାନ୍ତ ତିଆରି
ପୂଜା ଘେନିଣ ଚଳଇ ମନ୍ତ୍ରଧାରୀ । ୧୦
ଲୋମପାଦ ବୋଇଲା ମୁନି ବାହାନ
ଆରୋହ
ଶୁଣି ତପଶୀଳେ ହସଇ ଟହ ଟହ ।
କିସ କରିବୁ ଆମ୍ଭେ ଯାନ ସୁଖାସନ
ମନ ପବନ ଯୋଗେ କରିବୁ ଗମନ ।
ଯେତେ ବୋଲିଣ ଯେ ବିଭାଣ୍ଡେକ ଯତି
ପ୍ରବେଶ ହୋଇଲେ ନିଜ ଆଶ୍ରମ କତି ।

ଦୁଇ ଦଣ୍ଡେ ମିଳିଲେ ଆସି କଉଶିକ ନଦୀ
ତୀରେ
ଦେଖିଲେକ ଗୋରୁ ଚରୁଅଛନ୍ତି ଆଗରେ ।
ସିଠମାନକଇଂ ଅର୍ଚ୍ଚନା କରାଇ
ଆସନ୍ତା ଲୋକଙ୍କୁ ମୁନି ଦେଲେ
ପଠିଆଇ ।୪୦
ଗୋପାଳଙ୍କ ମେଳେ ଧେନୁ ସମର୍ପିଲେ
ଆବର ପଦାର୍ଥ ଯତନ କରି ସାଇତିଲେ ।
ତପ ଆଶ୍ରେ କରି ରହିଲେ ମୁନି ପୁଣି
କହନ୍ତି ହର ଶୁଣ ହେମବନ୍ତ ଦୁଲଣୀ ।

ଯହୁଂ ବିଭାଣ୍ଡେକ ଗଲା ନିଜ ପୁରୀ
ଅଯୋଧ୍ୟାକୁ ଆସଇ ଦଶରଥ ଦଣ୍ଡଧାରୀ ।
ଲୋମପାଦ ସହିତେ ଋଷିଶିଂଘ ଘେନି
ସଙ୍ଗେ ବହୁତ ବଳ ଅଛଇ
ସଇନି ।
ରତ୍ନ ହାନ୍ଦୋଳାରେ ଶାୟେନ୍ତା ବିଜେ କଲା
ବିଚିତ୍ର ପାଟଟେରା ଓହାଡ଼ ପଡ଼ିଲା ।୩୦
ଶତେକ ପରିବାରୀ ହାନ୍ଦୋଳର ତୁଳେ
ଋଷିଶୃଙ୍ଗ ବିଜେ କଲାକ ଚଉଦୋଳେ ।
ଲୋମପାଦ ରାଜା ଚଢ଼ିଲା ମତ୍ତହସ୍ତୀ
ଗହୁବରେ ବସିଲେ ଦଶରଥ ନୃପତି ।
ସୁମନ୍ତ ସାରଥି ରଥ ବାହାଇ ଘନ ଘନ
ଉଦଣ୍ଡ ପାଟଛତ୍ର ଆଲମ୍ବ ବିତପନ ।
ନେତର ଚିରାଳ ବିଜୟ ରଥଧ୍ୱଜ
ସମ୍ବର୍ବ ହୋଇଣ ଚଳନ୍ତି ବେନିରାଜ ।
ଆଗେ ଦଶରଥ ଋଷ୍ୟଶୃଙ୍ଗ ମଝି
ପଛେ ଲୋମପାଦ ହସ୍ତୀଦଣ୍ଡ ସାଜି ।୪୦
ବାଜଇ ଟମକ ନିଶାଣ ବୀରତୂର
ଶଙ୍ଖ ମହୁରି ଯନ୍ତ୍ର ସପତ ସ୍ୱର ।
ନାନା ବିନୋଦେଣ କରନ୍ତି କଉତୁକ
ପାରୋଆ ଉଡ଼ାଇ କେ ବୋଲନ୍ତି ଦେଖ
ଦେଖ ।
ବାଟେଣ ନଟେ ଯେ ଗଛରେ ଉଠନ୍ତି
ଅବଧାନ ବୋଲି କେ ତଳରେ ପଡ଼ନ୍ତି ।
ସାଙ୍ଗେଣ ଗୋଡ଼ାଇ ଅଛନ୍ତି ବେଶ୍ୟାନାରୀ
ପରିମଳ ଠାବନ୍ତ ଦେଖିଲେ ନୃତ୍ୟକରି ।
ମର୍ଦ୍ଦଳ କଂସାଳ ତାଳ ବେଣୁବାନ୍ତି
ମଧୁର ସୁରେଣ ଗୋଡ଼ାଇ ଗୀତ ଗାନ୍ତି ।୫୦
ଯାନ୍ତେଣ ଦୁଇଦିନେ ପଥ ବହିଗଲେ
ତିନି ଦିନେ ଅଯୋଧ୍ୟାରେ ପ୍ରବେଶ
ହୋଇଲେ ।
ନବରେ ପ୍ରବେଶ ଲୋମପାଦ ଦଶରଥ
ଶାଇନ୍ତା ସହିତେ ଋଷିଶିଂଘ ତପୋବନ୍ତ ।
ବଶିଷ୍ଟଙ୍କୁ ଦେଖି ନମସ୍କାର କଲେ
ଯେ ବିଧି ଯାହାକଇ କଲ୍ୟାଣ ଚିନ୍ତିଲେ ।
ସୁମନ୍ତକୁ ହକାରି ଅଯୋଧ୍ୟାର ପତି
ଲୋମପାଦକୁ ପୁରେକ ଦେଲେ ବାରସ୍ୱତୀ ।
ଋଷିଶିଂଘକଇ ଦିବ୍ୟ ଉଆସେକ ଦେଇ
ଜନନୀ କି ଦେଖି ତାର ଗଲାକ
ତନଇ ।୬୦
ଅନ୍ତସ୍ୱରେ ପ୍ରବେଶି ଓଳଗଇ ମାତା
ଦେଖିଣ ଆନନ୍ଦ ଦଶରଥଙ୍କ ବନିତା ।
ଦୋହିତା କୋଳେଧରି ଚୁମ୍ବନ ଦିଅନ୍ତି
କଉଶଲ୍ୟା କୈକେୟା ସୁମିତ୍ରା ଦେଖନ୍ତି ।
ହସ ହସ ହୋଇ କରଇ ଲାଜ ଲାଜ
ମାୟେ ବୋଇଲେ ଗୋ ହୋଇଲା
ଶୁଭକାର୍ଯ୍ୟ । ।
ଋଷିଶୃଙ୍ଗ ଯେବେ ହୋଇଲେ ତୋହୋର ପତି
ବଂଶରକ୍ଷା ଆମ୍ଭର କରସି ମହାସତୀ ।
ଯେଥୁ ଅନନ୍ତରେ ଦଶରଥ ରାୟେ
ଲୋମପାଦ ଘେନି ସ୍ନାହାନ ଭୋଜନ
କୟେ ।୭୦
ଋଷିଶିଂଘକଇ ମଣୋହିର ବିଧି
ଶାୟେନ୍ତା ସକଳ ପାକ କଲାକ ସେ ସିଧି ।
ସ୍ନାହାନ ସାରିଣ ଦେବ ପୂଜା କରି
ଭୋଜନ କରଇ ମୁନି ପରଷଇ ନାରୀ ।
ଆଞ୍ଚୋବନ ସାରିଣ କର୍ପୂର ତାମ୍ବୋଳ ଖାଇ
ପଲଙ୍କେ ବିଜୟେ କଲେ ବିଭାଣ୍ଡେକ
ତନଇ ।
ଦିନକର ଅନ୍ତେ ବିଧି କର୍ମ କଲା
ପ୍ରିୟା ଘେନି ମୁନି ରଜନୀ ବଞ୍ଚିଲା ।
ଲୋମପାଦ ଦଶରଥ ଯେ ଯାହାର ପୁରେ
ପ୍ରବେଶ ହୋଇଲେ ସେ ଶୟନ ମନ୍ଦିରେ ।
ପ୍ରଭାତେ ଯେ ଯାହାର ନିତ୍ୟକର୍ମ ସାରି
ଆସ୍ଥାନେ ବିଜଏ ଦଶରଥ ଦଣ୍ଡଧାରୀ ।
ଲୋମପାଦ ରାଏ ସେ ମିଳିଲେକ ଆସି
ଋଷିଶିଂଘ ବଶିଷ୍ଠ ଅଛନ୍ତି ସର୍ବ ବସି ।
ବାମଦେବ ଜାବାଳି କଶ୍ୟପ ତପୋବନ୍ତ
ସଭାପଣ୍ଡା ବିପ୍ର ଅଛନ୍ତି ଅମନାତ୍ୟ ।
ଋଷିଶୃଙ୍ଗ ବୋଇଲେ ବଶିଷ୍ଠ ତୁମ୍ଭେ ଶୁଣ
ଯାଗ କରିବଇଂ ଦଶରଥ କାରଣ ।
ଚରୁ ଦେଲେ ନାରୀ ହୋଇବେ ଗର୍ଭବାସ
ପୁତ୍ର ଜାତ ହୋଇବେ ସମ୍ପୂର୍ଣ୍ଣ
ଦଶମାସ ।୯୦
ବଶିଷ୍ଠେ ବୋଇଲେ ତୁ ଦୟା ଯେବେ କଲୁ
ଯେ ତୋହୋର ମୁଖେଣ ଯାହା ତୁ
ବୋଇଲୁ ।
କର ଯଥା ବିଧି କୀରତି ତୋର ଥାଉ
ପୁତ୍ରବନ୍ତ ହୋଉ ଅଯୋଧ୍ୟାର ପ୍ରଭୁ ।
ଋଷିଶିଂଘ ବୋଇଲେ ଶୁଣ ଦଶରଥ
ଯାଗକୁ ପଦାର୍ଥ ତୁ ଭିଆଅ ସମସ୍ତ ।
ରାଜାକୁ ନିମନ୍ତ୍ରଣ ପେଷ ବେଗେ ଚାର
ବନ୍ଧୁଜନମାନନ୍ତ ଅଣାଅ ନୃପବର ।
ଯଜ୍ଞଶାଳ ଶୋଧନ ତୁ କରାଅ ଲୋକ ପେଷି
ଶୋଧି ବିୟର ତୁମ୍ଭେ ଲଙ୍ଗଳେ ଭୂମି
ଚଷି ।୧୦୦
ପୁରନ୍ତ ମଣ୍ଡ ତପୀଜନନ୍ତ ବର
ତିଳ ଘୃତ ଯବ ସମିଧ ସଜକର ।
ତକ୍ଷଣେ ନୃପତି ସୁମନ୍ତକୁ ରାଇ
ଯାଜ୍ଞର ବିଧି ଭିଆଅ ଆଜ୍ଞା ରାଜା ଦେଇ ।
ଶୁଣିଣ ପାତ୍ର ବେଗେ ପ୍ରମନ୍ତିଲା ଦୂତ

ନାନା ଦେଶ ରାଜାନ୍ତ ଦେଲାକ ବାରତ ।
ମୁନି ଜନମାନନ୍ତ ନିମନ୍ତ୍ରଣ କଲା
ମହାରଣା ଯଜ୍ଞ ଶାଳନ୍ତ ଶୁଭଦେଲା ।
ମଣ୍ଡନ୍ତି କଟେକ ବିବିଧ ଚାରୁ ଶୋଭା କରି
କଦଳୀ ଗଛ ପୋତନ୍ତି ଦ୍ୱାରେଣ
ସବୁରି ।୧୦
ଉଭା ସରି ତ୍ରୋଣା ଲମ୍ବାନ୍ତି ଚିରାଳ
ପୂର୍ଣ୍ଣକୁମ୍ଭ ଚୂତପତ୍ର ନଟୀକାଳ ।
ପିଢ଼ାଙ୍କର ଉପରେ ସୁବର୍ଣ୍ଣ କଳସ
ନେତର ପାତାଗ ଉଡ଼ଇ ଚଉପାଶ ।
ଚଉକତି ପାଟପତନି ଚାମର
ଦ୍ରପଣ ପନ୍ତିପନ୍ତି ଶୋଭା ଦିଶେ ଘର ।
ଚିତ୍ର ଲେଖନ ଯେ ଚନ୍ଦନ ଗନ୍ଧ ବାସ
ନିରନ୍ତରେ ଲମ୍ବନ୍ତି ଶୁକଳ ରଙ୍ଗ ପୁଷ୍ପ ।
ଦାଣ୍ଡ ପରିମଳ ଚତୁସମ ଛିଞ୍ଚା ଯାଇ
ସରୁ ବହଳ ପାଟ ବସ୍ତ୍ରନ ପକାଇ । ୨୦
ତଥିର ଉପରେ ପୁଷନ୍ତ ସିଞ୍ଚିଲେ
କର୍ପୂର ଗୁଣ୍ଡି ଧୂଳି ଉପରେ ବିଞ୍ଚିଲେ ।
ଠାବେ ଠାବେ ନୃତ୍ୟ ଗୀତ ବାଇଲେ ବାଦ୍ୟ
ବୀଣା
ନର ନାରୀ ରୂପ ଏକୁ ଆରେ ଜିଣା ।
ବିବିଧ ବେଶ ହୋଇ ଅଳଙ୍କାର ଭରି
ବିବିଧ ପାଟନେତ ପରିହରଣ କରି ।
ମୁଖେଣ ତାମ୍ବୋଳ ମୁଣ୍ଡେଣ ଫୁଲଗଭା
ସର୍ବାଙ୍ଗେ ଚନ୍ଦନ ଦିଶଇ ମହାଶୋଭା ।
ଘରେ ଘରେ ଉଚ୍ଛବ ମଙ୍ଗଳ ଗୀତ ଗାଇ
ସାତ ପାଞ୍ଚ ହୋଇଣ ନଗ୍ର ବୁଲି ଯାଇ ।୩୦
ଚତୁର ପୁରୁଷ ନାଗରୀ ନାରୀ ଦେଖି
କାମଭର ହୋଇ ଠାରି ଦ୍ୟନ୍ତି ଆଖି ।
କେ ମୁଖେ ହସିଣ କେ ଗେଲ କଥା କହି
କେ ପାଦ ଅଙ୍ଗୁଷ୍ଠି ଘେନି ଭୂମିରେଣ ଲିହି ।
କେହି ଦୂରୁ ଅଙ୍ଗୁଷ୍ଠି ଦେଖାଇଣ ଠାରି
କେବଣ ପୁରୁଷଙ୍କୁ ହାବୋଡ଼ି ଗଲେ ନାରୀ ।
ଲୋକର ଗହଳ ନ ଯାଇ କହିତ

ଟମକ ନିଶାଣ ବାଜଇ ବହୁତ ।
ନଟେ ନୃତ୍ୟ ଗୀତ ଠାବେ ଠାବେ କରି
କାହିଁ ମେଲାମେଲି ଯୋଧାମାନନ୍ତ
କରି ।୪୦
କାହିଁ ଅଶ୍ୱଆର ଅଶ୍ୱନ୍ତ ଧୁଆଁନ୍ତି
କାହିଁ କଉତୁକେ ପାରୁଆ ମେଲନ୍ତି ।
ଦଣ୍ଡା ଖଣ୍ଡା ସାଧନ କରନ୍ତି ବହୁତ
ମାଲେ ମାଲେ ଉଭାରି ମାରନ୍ତି ମାଥେ
ମାଥ ।
କେହୁ ଉଡ଼ାବନ୍ତି ତାଳପତ୍ର ଚକି
ଅତି ଉଚ୍ଚେ ଉଭାହୋଇ ଭିତର ଲୋକ
ଦେଖି ।
ନାନା ଦେଶରୁ ଅଇଲେ ନୃପବର
ଚୂଡ଼ଙ୍ଗ ଗଉଡ଼ ମାଳେବ ଗୁର୍ଜ୍ଜର ।
ତିରୁହୁତି ମଗଧ ତେଲଙ୍ଗ କର୍ଣ୍ଣାଟ
ମହ୍ଲାର କନ୍ଦଳୀ ଖଇରା କାମରାଷ୍ଟ ।୫୦
ଦୋହୋରା ଉଜାଣି ମୁଗଲ କୁଚ ରାୟେ
ଶ୍ରୀହଟ ଚମ୍ପାବତୀ ନେପାଳ ନୃପରାୟେ ।
କାଞ୍ଚି ମଥୁରା ଉତ୍କଳଦେଶୀ
କଳିଙ୍ଗ ଗାନ୍ଧାର ମିଥିଳା କାଶୀବାସୀ ।
କାଉଂରୀ କନାଉଜ ଗୁଞ୍ଜରାଷ୍ଟ ଭୋଟ
ପଶୁପତ୍ର କେଦାର ମଲ୍ଲିକା ସଉରାଷ୍ଟ୍ର ।
ଦେବଗିରି ରାଜା ପ୍ରବେଶ ହୋୟେ ଆସି
କେ ଗଙ୍ଗବଂଶୀ କେ ହୋଇ ହୋଇ
ବଂଶୀ ।
କେ ସୋମବଂଶୀ କେ ସୂର୍ଯ୍ୟବଂଶେ ଜାତ
କାହାର ବଂଶାବଳୀ ଅଟଇ ବିଧାତ ।୬୦
କେ ବଛ ଗୋତ୍ରୀ କେ ମରୁତର ବଂଶୀ
କେହୁ ଭାରତଦ୍ୱାଦଶ ଗୋତ୍ର କେ ଅଟଇ
ହରିବଂଶୀ।
କେ ଅଗ୍ନି ଗୋତ୍ରୀ କେ ସୁଷୁମ୍ନା ଗୋତ୍ରୀ
ଛତିଶ କୁଳୁଂ ସେ ଅଇଲେ ବୀର କ୍ଷେତ୍ରୀ ।
ଯେ ଯାହାର ସନ୍ୟ ରଥ ଗଜ ଅଶ୍ୱ
ମୁଖରାବ ଶବଦ ଶୁଭଇ ସିନ୍ଧୁଘୋଷ ।

ଉପରେଣ ରତ୍ନ କଳସ ବସାଇଲେ
ତଥିର ଉପରେ ଗିଲିମି ବେଢ଼ାଇଲେ ।
ସରୁ ନେତ ପାଟପତନି ତ୍ରୋଣା ବାନ୍ଧି
ଫୁଲ ମାଳ ମାଳ ଏଣେ ତେଣେ ଛନ୍ଦି ।୭୦
ଶିଖରେ ସୁବର୍ଣ୍ଣ କଳସ ବସାଇ
ବିଚିତ୍ର ଝିନନେତ ଚିରାଳ ଉଡ଼ାଇ ।
ଦ୍ରର୍ପଣ ପନ୍ତି ପନ୍ତି ଚାମର ଶ୍ୱେତକଳା
ଚଉକତି ଲମ୍ବଇ ଗଜମୋତି ମାଳା ।
ଚାରି ଦ୍ୱାରେଣ ଯେ ଭିନ୍ନ ଭିନ୍ନ ଚାରି
ଇନ୍ଦ୍ରଭୁବନ କି ପଟାନ୍ତର କରି ।
ମର୍କତର ପୀଢ଼ ସ୍ଫଟିକ ନିର୍ବାଣ
କେବଣ ଠାବେ କାଚ ସୁବର୍ଣ୍ଣ ରସାଣ ।
କାହିଁ ପୋୟେଳା ଯେ କାହିଁ ନୀଳା ଜଡ଼ି
କେବଣ ଠାବରେ ରତ୍ନ ପିତୁଳାଛନ୍ତି
ପଡ଼ି ।୮୦
ବାଜଣାର ଘାଏ କୁରୁମ ଉଚ୍ଛୁଳି
ପାଦ ଭରେ କମ୍ପିଲା ସେହୁ ମହୀଆଳି ।
ଅଯୋଧ୍ୟାରେ ପ୍ରବେଶ ସକଳ ନୃପତି
ବିଚିତ୍ର ଚାରୁ ମଣ୍ଡଣ କଟେକ ଦେଖନ୍ତି ।
ନାନା ଦେଶର ରାଜା ଭାଷା ଭିନ ଭିନ
ଶୁଣି ହସ ହସ ହୁଅନ୍ତି ଆନ ଜନ ।
ସୁମନ୍ତ ସମ୍ଭାଳଇ ନବରପୁର ଦେଇ
ରହନ୍ତି ରାଜାମାନେ ସେ ହରଷ ମୁଖ
ହୋଇ ।
ଥାଟକୁ ଅସଭାବ ରାଜାଙ୍କୁ ଯୋଗାଣ
ସମସ୍ତ ଆଗହୁଂ ସେ କରିଛି ଭିଆଣ ।୯୦
ଅନେକ ତୀର୍ଥରୁ ଅଇଲେ ତୀର୍ଥବାସୀ
ଯତି ଭିକ୍ଷୁକ ଯୋଗୀ ଚଉର୍ଯ୍ୟ ଜନ ଆସି ।
ଅଯୋଧ୍ୟାରେ ମିଳି ଦେଖନ୍ତି ଯେଣେ ତେଣେ
ଅନ୍ନ ବସ୍ତ୍ର ଦାନ ଦିଅନ୍ତି ଜଣେ ଜଣେ ।
ତଇଳ ଗନ୍ଧ ପୁଷ୍ପ ତାମ୍ବୋଳ ଯାଚନ୍ତି
ପାଣି ପଣା ପଇଡ଼ ଘେନି ଲୋକେ ଯାନ୍ତି ।
ଯେ ଯାହା ଇଛନ୍ତି ସେ ପାବନ୍ତି ସର୍ବବିଧି
ସୁମନ୍ତ କରୁଅଛି ସର୍ବ କାର୍ଯ୍ୟ ସିଦ୍ଧି ।

ସରଯୁ ନଦୀର ଉତ୍ତର ପାରୁଶେ
ଦାରାକ୍ଷ ବିପିନ ଅଛଇ ତହିଁ
ପାଶେ ।୧୦୦
ଚୂତବନ ନିକଟେ ପୋତିଲେ ଯାଗ ଶାଳ
ଚନ୍ଦନ କାଠର ଯେ ଗୁଅ ଖମ୍ବ ଚାଳ ।
ପାଟ ଲଇ ଗଣ୍ଠି ଲବଙ୍ଗ ଲତା ଲତା
ତେଜପତ୍ର ଛାୟେଣି ଛାଇଲେ କତିକତା ।
ମଧରେ ବେଦି ଯେକ ପବିତ୍ର ଶୁଦ୍ଧ ମାଟି
ଶତେ ଶତେ ହାଥ ଚାରିତୁଳ ପାଟି ।
ତଥିର ଭିତରେ ଅଛଇ ହୋମକୁଣ୍ଡ
ଦୀର୍ଘ ପ୍ରତି ପ୍ରମାଣ ବାରହାଥ ଦଣ୍ଡ ।
ଯେତେକ ଗଭୀର ସୂତ୍ରିଲେ ସୂତ୍ରକାରୀ
ପ୍ରବେଶ ହୋଇଲେ ଯାଇ ସକଳ
ତପଚାରୀ ।
ଅଗସ୍ତି ପାରେଶ୍ୱର କୁଶଧ୍ୱଜ ଗ୍ୟାନୀ
ଚ୍ୟବନ ଗଉତମ ବିଶ୍ୱାମିତ୍ର ମୁନି ।
ପୌଲସ୍ତି ବିଶର୍ବା ଆସନ୍ତି ପିତା ପୁତ୍ର
କଣ୍ଡୁ କପିଳ ଶରଭଙ୍ଗ ତପୋବନ୍ତ ।
ଭାରଦ୍ୱାଜ ଦେବ ମୁନି ରାଜ ମୁନି
ବେଦବଳ ଶକତି ଯେ ଦୁର୍ବାସ୍ୟା
ତପୋଧନି ।
ଏହାଙ୍କର ମୂଳେ ଅଇଲେ ଅନେକ ମୁନି
ଅଯୋଧ୍ୟା କଟକେଣ ମିଳିଲେ ତପୋଧନି ।
ଦଶରଥ ନମସ୍କାର କରିଣ ବୋଇଲା
ଆଜ ସେ ସୂର୍ଯ୍ୟବଂଶ ସୁଫଳ
ହୋଇଲା । ୨୦
ବ୍ରହ୍ମଋଷି ଦେବଋଷି ରାଜଋଷିମାନେ
ପ୍ରବେଶ ହୋଇଲେ ଯହୁଁ ମୋହର
ଭୁବନେ ।
କଲ୍ୟାଣ କର ମୁନି ପୁତ୍ର ମୋର ହଉ
ତୁମ୍ଭରି କଲ୍ୟାଣେ ସୂର୍ଯ୍ୟବଂଶ ରହୁ ।
ତପୀ ଜନେ ବୋଇଲେ ତୁ ଶୁଣ ମହୀପାଳ
ଯହୁଁ ତୁ ଦେଖିଲୁ ହୋ ବିଭାଣ୍ଡେକର
ବାଳ ।

ଆବର କି ଚିନ୍ତାକରୁ ହୋ ପୁତ୍ର ପାଇଂ
ନୁହସି ଆରତ ହୋ ରଘୁକୁଳ ସାଇଂ ।
ଯେହୁ ଯାଗରେ ସେ ହୋଇବ ତୋର ପୁତ୍ର
ଆମ୍ଭର କଲ୍ୟାଣେ ବିସ୍ତାର ହେଉ
ଗୋତ୍ର ।୩୦
ଯେଥୁ ଅନନ୍ତରେ ସୁମନ୍ତ ଆସି ମିଳି
ମନ୍ତ୍ରୀକି ଚାହିଁ ଆଜ୍ଞା ଦେଲାକ ନୃପଶାଳୀ ।
ଯେସେ ମହାଋଷି ଅଛନ୍ତି ସର୍ବେ ମିଳି
ଯେମାନନ୍ତ ତୁମ୍ଭେ ଦିଅ ଅନ୍ନହୋଳି ।
ଶୁଣିଣ ସୁମନ୍ତ ସନ୍ତୋଷ ଚିତ୍ତ ହୋନ୍ତି
ରାଜାଙ୍କ ଆଜ୍ଞା ପାଇ ତପୀଙ୍କି ଘେନି ଯାନ୍ତି ।
ଯେ ଯାହା ଅନୁରୂପେ ରହିତ ଠାବଦେଲା
କନ୍ଦମୂଳ ଫଳ ଜଳ ସମର୍ପିଲା ।
ସୁସ୍ଥ ହୋଇଣ ରହିଲେ ସର୍ବ ଋଷି
ନିଜ ରାଜ୍ୟ ଜିଣି ପରଜା ଦେଖିବାରେ
ଆସି ।୪୦
ଲୋମପାଦକଇ ବୋଇଲେ ଦଶରଥ
ପୂର୍ବ ଦ୍ୱାରକଇ ତୁମ୍ଭେ ରଖସି ମଇତ୍ର ।
କଉଶଲାର ଭାଇ ରଖୁସି ଉତ୍ତର ଦ୍ୱାର
ଦକ୍ଷିଣେ ଥିବେ କଯେୟାର ପିୟର ।
ସୁମିତ୍ରାର ଭାଇ ପଶ୍ଚିମ ଦ୍ୱାର ରଖୁ
ସର୍ବ ଲୋକନ୍ତ ସେ ଯେକ କରି ଦେଖୁ ।
ସୁମନ୍ତ ସମ୍ଭାଳିବ ନୃପତିଗଣମାନ
ତପୀଙ୍କି ବଶିଷ୍ଟେ ଦେବେ ସନମାନ ।
ଜାବାଳି ସମିଧ ତଣ୍ଡୁଳ ତିଳ ଜଗୁ
ବାମଦେବକଇ ଭଣ୍ଡାର ଧନ ଲାଗୁ ।୫୦
କଶ୍ୟପ ରଖନ୍ତୁ ଘୃତ ଗନ୍ଧ ପୁଷ୍ପ
ଚାରି ଦ୍ୱାରେ ଥାଉ ଲକ୍ଷଣବନ୍ତ ଅଶ୍ୱ ।
ମତ୍ତ ମାତଙ୍ଗ ଯେ ଦିବ୍ୟ ରଥମାନ
ବେଶ୍ୟାୟେ ନୃତ୍ୟ କରୁଥିବେ ଅବିଚ୍ଛିନ୍ନ ।
ଯେ ଯାହା ମାଗିବ ନିରାଶ ନ କରିବ
ଅନ୍ନ ବସ୍ତ୍ର ଧନ ଦ୍ରବ୍ୟମାନ ଦେବ ।
ଆଷାଢ଼ ଶୁକଳ ଦଶମୀ ଗୁରୁବାର
ଜ୍ୟେଷ୍ଠା ନକ୍ଷତ୍ର ଦଶରଥକୁ ସାଧେକ ତାର ।

ସପତମ ଚନ୍ଦ୍ର ସିଂଘ ଲଗ୍ନ ବେଳେ
ଶୁକ୍ର ଅଧିକାରୀ ଅଟନ୍ତି ତତକାଳେ ।୬୦
ବାରୁଣି ବେଳେ ଯେ ଧଇଲେ ଅନୁକୂଳ
ଦଶରଥକୁ ବୋଇଲେ ବିଭାଣ୍ଡେକର ବାଳ ।
ଯେତେକ ତୋହୋର ହୋ ଅଛନ୍ତି
ମହାଦେଇ
ତାହାକୁ କହ ତୁ ହୋ ନିୟମବ୍ରତ ହୋଇ ।
ପ୍ରଭାତେ ସ୍ନାହାନ ସାୟଂକାଳେ ଭୋଗ
ମଉନ ବ୍ରତ ଯେହ୍ନେ ବ୍ରହ୍ମା ସାଧଇ ଯୋଗ ।
ଅବିଛିନ୍ନେ ଅନ୍ନ ଦେବେ ଦୁଃଖୀ ଜନେ
କୁତ୍ସିତ କଥାମାନ ନ ବସିବେ
ମନେ ।
ଯେ ମନ୍ତ୍ର ଗୋଟି ଜପିବେ ଯେକ ଧ୍ୟାନେ
ଋଷିଶୃଙ୍ଗ କହିଲେ ଦଶରଥ କାନେ ।୭୦
ଦିନକେ ସହସ୍ରେ ବେଳ ଯେହା ଜପ
ଭ୍ରାନ୍ତି କଲେ ରାଜା ପାଇବୁ ତୁ ପାପ ।
ଯେକାନ୍ତ ଠାବେ ବସି ଜପି ପରମୁଖ ନ
ଦେଖି
ତାହା ସେ ବ୍ରତ କଲା ବୋଲି ଲେଖି ।
ହବିଷ ଭୋଜନ ସ୍ୱଂୟେ ପାକ କରି
କାଙ୍କୁ ଅନ୍ନ ତୁମେ ଭୁଞ୍ଜିବ ଦଣ୍ଡଧାରୀ ।
ନିର୍ଦ୍ଦୋଷୀ ଗାଈର ଯେ ଜ୍ୟେଷ୍ଠ ପୁତ୍ର
ତାହାର ମଳ ସେ ଯେଥକୁ ପବିତ୍ର ।
ତହିଁ ବସିବ ଯେ ପଶ୍ଚିମମୁଖ ହୋଇ
ପୀତ ବସ୍ତ୍ର ପରିହରଣ ଶିରେ ବଦରୀ ପତ୍ର
ଦେଇ ।୮୦
ସତାଇଶ ଗୋଟି ହୋଇବ କୁଶଗଣ୍ଠି
ମନ୍ତ୍ର ପଢ଼ିବ ଯେକ ଗୋଟିକ ପାଲଟି ।
ଗଳାରେ ଥିବ ହାଦେ ତୁଳସୀର ମାଳି
ଛାମୁରେ ଯେ ଗୁଆ ଘୃତ ଦୀପାବଳି ।
ଯେତେଦିନେ ପୂର୍ଣ୍ଣ ଆହୁତି ପରାପତ
ତେତେଦିନ ଯାଏ ଆଚରିବୁ ବ୍ରତ ।
ଶୁଣିଣ ନୃପତି ନବରେ ପରବେଶ
ହକରାଇ ଆଣିଲେ ସମସ୍ତ ରାଣୀହଂସ ।

ଋଷିଶୃଙ୍ଗ କହିଲେ ଯେତେଯେତେ ବାଣୀ
ମହାଦେଈମାନନ୍ତ କହିଲେ ନୃପମଣି ।୯୦
ସମସ୍ତେ ଶୁଣିଣ ଆଚରିଲେ ବ୍ରତ
ଆପଣେ ଡାକି ଦୀକ୍ଷା ଦେଲେ ତପୋବନ୍ତ ।
ଶୁଣ ମହାମାୟା କହନ୍ତି ଶୂଳପାଣି
ଏ ସେ ଆଦିକାଣ୍ଡ ରାମାୟେଣ ବାଣୀ ।
ଶ୍ରୀରାମ ଜନମ ହୋଇବେ ଯେହ୍ନୁ ଯାଗେ
ଶୁଣିମାକୁ ତୁମେ ଭାର୍ଜନ ପୂର୍ବ ଭାଗ୍ୟେ ।
ଗଉରୀ କରଯୋଡ଼ି ବୋଲଇ ଦେବ ଶୁଣ
ଯେ ମୋହର ପାପ ହୋଇବ ଦହନ ।
ତୋହୋର ପରସାଦେ ଅରଜିଲି ଯେତେ
ଧର୍ମ
କହ ପ୍ରାଣନାଥ ଶ୍ରୀରାମର ଆଦି
ଜନ୍ମ ।୧୦୦

ଶଙ୍କର ବୋଲନ୍ତି ଯେ ପାର୍ବତୀ ମୁଖ ଚାହିଁ
ଶ୍ରୀରାମ ଚରିତ୍ର ଗୋ କହଇ ତୋତେ ମୁହିଁ ।
ଦଶରଥ ନୃପତି ଯହୁଂ ଆଚରିଲେ ବ୍ରତ
ଦୀକ୍ଷା ଘେନିଲେ ତାହାର ମହାଦେଈ
ସମସ୍ତ ।
ଋଷିଶୃଙ୍ଗ ଆପଣେ ଶୁଚିବନ୍ତ ହୋଇ
ତପ ଆଚରିଲା ଯୁବତୀ ନ ଛୁଇଂ ।
ଯଜ୍ଞେ ପ୍ରବେଶ ଯେ ବ୍ରହ୍ମଋଷି ମୁନି
ଅଜପା ଗାୟତ୍ରୀ କହଇ ମହାମୁନି ।
ବ୍ରାହ୍ମଣ ବରଣ ସେ କଲେ ଜଣ ଚାରି
ବ୍ରହ୍ମା ବରଣ ସେ ଗଉତମ ଋଷିକି
କରି ।୧୦
ଚେବନ ମହାଋଷି ନେଲେ ସୂତ୍ର ଦୀକ୍ଷା
ଅଷ୍ଟବକ୍ର ହୋତା ଅଧର୍ଯ୍ୟୁ ପୌଲସ୍ତିର ବଛା ।
ଏମନ୍ତ ପ୍ରକାରେ ସପତ ଜଣ ବରି ।୪୦
କୁଣ୍ଡଳ ବିଦ ମୁଦି ବିଚିତ୍ର ପରିହରଣ କରି ।
ଋଷିଶୃଙ୍ଗ ମୁନି ଯାଗରେ ଆଶ୍ଚର୍ଯ୍ୟ
ମାରକଣ୍ଡ ଋଷି ହୋଇଲେ ଋତୁଜ ।
ଅଗ୍ନି ସ୍ଥାପିଣ ସେ ବେଦ ମନ୍ତ୍ର ପଢ଼ି

କୁଶ ପଲାଶ ସମିଧ ଯୋଡ଼ି ଯୋଡ଼ି ।
ଯବଧାନ ଗୁଆ ନଡ଼ିଆ ଦୁଧ ଘୃତ
ତିଳ ସୁବର୍ଣ୍ଣ କୃଷ୍ଣ ବର୍ଣ୍ଣ ପାତ୍ର । ୨୦
ଯେ ବିଧି ଯଜ୍ଞ କରନ୍ତି ତପଚାରୀ
ଚନ୍ଦନ କୁସୁମ ଗନ୍ଧ ସଜ କରି ।
ଯେବଣ ଦେବତାକୁ ଯେବଣ ମନ୍ତ୍ରେ ପୂଜା
ଧୂପଦୀପ ସମିଧ ଦିଅନ୍ତି ବିପ୍ରଦ୍ୱିଜା ।
ବାଦ୍ୟ ବାଜଇ ବିବିଧ ବନେ ତୂର
ଅତିହିଂ ଗହଳ ଯେ ଉଛବ ନଗ୍ରପୁର ।
ସ୍ୱର୍ଗ ମଞ୍ଚ ପାତାଳ ଆନନ୍ଦ ତିନିପୁର ଲୋକ
ଯେଣେ ସୁରଗଣେ ତେଜିବେ ଚିର
ଶୋକ ।
ପାଞ୍ଚଦିନେ ଯାଗ ହୋଇଲା ସମାପତ
ପୂର୍ଣ୍ଣ ଆହୁତି ଦିଅନ୍ତି ସକଳ
ତପୋବନ୍ତ ।୩୦
ଯହୁଂ ଋଷିଶୃଙ୍ଗ ଦେଲାକ ଆହୂତି
ସର୍ବଦେବ ଘେନି ଅଇଲା ବେଦପତି ।
ନବଗ୍ରହ ଯେକାଦଶ ରଦ୍ର ଆୟେ
ଅଷ୍ଟବସୁ ଦଶ ଦିଗପାଳ ଯାୟେ ।
ସର୍ବ ଦେବତାଏ ମୂର୍ତ୍ତିବନ୍ତ ହୋଇ
ହବି ଭୁଞ୍ଜନ୍ତି ଯେ ପରମ ସୁଖ ପାଇ ।
ବ୍ରହ୍ମା ସହିତେଣ ସକଳ ଦେବ ଦେଖି
ଋଷିଶୃଙ୍ଗ ଉଠିଲେ ଆସନ ଉପେଖି ।
ଶୃହା ପ୍ରୋକ୍ଷଣି ଛାଡ଼ି ମହାଯତି
କର ଯୋଡ଼ିଣ କରଇ ଅନେକ ସ୍ତୁତି ।
ଧନ୍ୟ ମୋର ପୁଣ୍ୟ ଧନ୍ୟ ମୋର ତପ
ପ୍ରତ୍ୟକ୍ଷେ ଦେଖିଲି ମୁଂ ସୁରଗଣଙ୍କ ସ୍ୱରୂପ ।
ଦଶରଥକୁ କଲ୍ୟାଣ ସମସ୍ତେ ଯେବେ କର
ପୁତ୍ରବନ୍ତ ହଉ ଅଯୋଧ୍ୟା ନୃପବର ।
ଯେ ମୋହର ଯଶ ରହୁ ଯେହାର ତହିଁ
ଧର୍ମ ଆଶ୍ରେକେ ପୁତ୍ର ଲଭୁ ନରସାଇଂ ।
ମନ୍ତ୍ରବଳ ତପବଳ ଧର୍ମବଳ ତିନି
କଥା ବ୍ରତିଥାଉ ଯାବତ ମେଦିନୀ ।
ତୁମ୍ଭେ ସୁର ଯେବେ ହୋଇଲ ସନ୍ତୋଷ

କର ଅନୁଗ୍ରହ ହାଦେ ରହୁ ସୂର୍ଯ୍ୟବଂଶ ।୫୦
ଯେତେ ବୋଲି ମୁନି ପ୍ରଳମ୍ଭ କରି ଶୋଇ
ଯେସନେକ ସମୟେ ବାସୁଦେବ ଯାଇ
ହୋଇ ।
ଦେଖି ସୁରଗଣେ ବିଷ୍ଣୁଙ୍କୁ ସ୍ତୁତି କଲେ
ଜୟ ଜୟ ପରମଈଶ୍ୱର ବୋଇଲେ ।
ଜୟ ତୁ ନାରାୟଣ ଜୟ ମଧୁହାରି
ଜଗତ ନିସ୍ତାରଣ ଜୟ ଜଗଜ୍ଜନ ବେହାରି ।
ପରମପୁରୁଷ ବ୍ରହ୍ମ ସର୍ବଜୀବ ଅନ୍ତର୍ଯାମୀ
ନମୋ ପୁରୁଷୋତ୍ତମ ପରମାନନ୍ଦ ସ୍ୱାମୀ ।
ସଂସାର ତାରଣ ଯେ ସୁରଗଣ ନାଥ
ଅପାର ମହିମା ଦେବ ଶଙ୍ଖ ଚକ୍ର
ହସ୍ତ ।୬୦
ଶ୍ରୀବଚ୍ଛ ଲକ୍ଷଣ ଯେ କିରୀଟି କୁଣ୍ଡଳ
କଣ୍ଠେ କଉସ୍ତୁଭ ମଣି ଆଦିତ୍ୟ ମଣ୍ଡଳ ।
କଟିରେ ପୀତବାସ ବାହେଣ ବିଦ ମୁଦି
ହୃଦରେ ବନମାଳା ବିଜୁଳି ପ୍ରସିଦ୍ଧି ।
ଆରତଭଞ୍ଜନ ଦେବ ଭଗତବଚ୍ଛଳ
ଶରଣରକ୍ଷଣ ସ୍ୱାମୀ ଅସୁରକ୍ଷୟକାଳ ।
ଶ୍ରୀବନ୍ତ ପୁରୁଷ ତୁ ଶ୍ରୀହରି ଜଗତ୍ରମିତ୍ର
ଶ୍ରୀ ନାରାୟଣ କେଶବ ମାଧବ ଅଚ୍ୟୁତ ।
କର କରୁଣା ଦେବ ଅପାର ମହିମା
ଯେସନେକ ବୋଲି ସ୍ତୁତି କଲା ବ୍ରହ୍ମା ।୭୦
ଶ୍ରୀହରି ବୋଇଲେ ହୋ କରିବି କିସ କାର୍ଯ୍ୟ
କିମ୍ପା ସ୍ତୁତି କଲ କହ ବିପ୍ରରାଜ ।
ବିଧାତା ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମୀ
ଜଗୁଜନ ହୃଦେ ତୁ ସେ ଅନ୍ତର୍ଯାମୀ ।
ଉତପତି ସ୍ଥିତି ପ୍ରଳୟ କରନ୍ତା
ତୋ ତହୁଂ ଆନ କେ ସୃଷ୍ଟି ଉଧରନ୍ତା ।
ତୋହୋର ପ୍ରସାଦେ ଆମ୍ଭେ ସୁସ୍ଥ ଥାଉ
ତୋହୋର ଅଦୟାରେ ସୃଷ୍ଟି ରହିବ କାହୁଂ ।
ତୁହି ସେ ଠାକୁର ଆମ୍ଭେ ସବୁ ଭୃତ୍ୟ
ଭୃତ୍ୟକଇ କାରେଣୀ କର
ଶଙ୍ଖଚକ୍ରହସ୍ତ ।୮୦

ଶୁଣ ଦେବ ବ୍ରହ୍ମାଣ୍ଡନାୟେକ ମୁରାରି
ହେତି ପ୍ରହେତି ବୋଲି ପୂର୍ବେ ଦୁଇ ଦଇତ
ଅବତରି
ସୁକେଶା ନାମେଣ ଯେ ତାହାଙ୍କର ପୁତ୍ର
ବଡ଼ାଇ ଧାର୍ମିକ ସେ ଅଟଇ ତପୋବନ୍ତ ।
ସେ ସେ ମହାତମା ପାପପୁଣ୍ୟଜ୍ଞାନୀ
ନ୍ୟାୟବନ୍ତ ପଣେ ସମାନ୍ୟ ମହାମୁନି ।
ତାହାର ତନୟ ସେ ବିଦ୍ୟୁତକେଶା ହୋଇ
ପ୍ରତାପୀ ପଣେ ତାକୁ ସମାନ୍ୟ ନାହିଁ କେହି ।
ତାହାର ତିନିପୁତ୍ର ହୋଇଲାକ ଜାତ ।୯୦
ମାଳି ସୁମାଳି ଯେ ଆବର ମାଲ୍ୟବନ୍ତ ।
ଦୁଷ୍ଟପଣ କରି ଧର୍ମ ଜିଘାସିଲେ
ତପୀ ଜପୀ ମାରି ବ୍ରାହ୍ମଣ ନାଶିଲେ ।
ପରଦେଶ ପରନାରୀ ହରିଲେ ପରଧନ
ତୁ ତାହା ଚକ୍ରଧରି କଲୁ ନିଶୋଧନ ।
ମାଳି ମାଲ୍ୟବନ୍ତ ମଲେ ଯେ ତୋର ହସ୍ତେ
ଡରେ ପଳାଇଲା ସୁମାଳି ନାମେ ଦତ୍ୟେ ।
ବଳ ଘେନିଣ ଯେ ପାତାଳେ ଯାଇ ଲୁଚି
ନଉକେଶୀ ନାମେ ଝିଯେକ ତାର ଅଛି ।
କାଳେଣ ତାହା ବିଶର୍ବା ଋଷିଙ୍କି ବିଭାକଲା
ମୁନିର ବୀର୍ଯ୍ୟେ ତିନିପୁତ୍ର ଉପୁଜିଲା ।୧୦୦
ରାବଣ କୁମ୍ଭକର୍ଣ୍ଣ ଏ ଅତି ବଳବନ୍ତ
ଦେବାସୁର ମୁନି ଡରିଲେ ଏହାନ୍ତ ।
ଜଗତ୍ର ସାଧିଲେ ସେ ଦୁଷ୍ଟ ବେନି ଭାଇ
ରାବଣର ତନୁଜେ ମେଘନାଦ ନାମେ
ହୋଇ ।
ଇନ୍ଦ୍ରକଇ ଜିଣି ତାର ନାମ ଇନ୍ଦ୍ରଜିତ
ଆବର ନରାନ୍ତକ ଦେବାନ୍ତକ ବେନି ପୁତ୍ର ।
ଅତିକାୟେ ଅମୟେ ସମଏ ତ୍ରିଶିରା
ଅକ୍ଷୟେ ଅଶୋକ ଅକମ୍ପନ ମହାବୀରା ।
ଜମ୍ବୋମାଳି ଶତ୍ରୁଜିତ ସହସ୍ରାଜିତ ଘେନି
ଯେହାଙ୍କର ଚାଇନ୍ତେ କମ୍ପଇ
ମେଦିନୀ ।୧୧୦
ଅଜୟେ ମାହାକାୟେ ଯେ ପୃଥିକି ମହାଭାର
କୁମ୍ଭ ନିକୁମ୍ଭ ଯେ ମହୀରାବଣ ବୀର ।
କୁମ୍ଭେକ ମକରାକ୍ଷସ ବିରୂପାକ୍ଷ
ମହାପାରୁଶ ମହୋଦର ଜୁଳୁପାକ୍ଷ ।
ପ୍ରହସ୍ତ ଶୁକ ଯେ ସାରଣ ମହାବଳୀ
ଯେହାନ୍ତ ଘେନି ରାବଣ ଦେବତାନ୍ତ ଦଳି ।
କୁବେରକୁ ଜିଣିନେଲା ପୁଷ୍ପେକ ବିମାନ
ସୁରଗଣ ବଶ କଲାକ ଦଶାନନ ।
ଯେବେ ତୁ ନାରାୟେଣ ଦଇତନ୍ତ ମାର
ତୋହୋର ସେବକଜନନ୍ତ ରକ୍ଷାକର ।୧୨୦
ବାଳୀକି ଚାପିଲୁ ବାମନ ରୂପ ହୋଇ
କଶ୍ୟପର କୁଳେ ଜନମିଲୁ ଗୋସାଇଂ ।
ସେ ସେ କଶ୍ୟପ ଯେବେ ଦଶରଥ
ଯେକାବେଳେକେ କଉଶୁଲା ଗର୍ଭେ ହୁଅ
ଜାତ ।
ବାଳକକାଳେ ଯଜ୍ଞ ରଖିବୁ ଦେବ ହରି
ଯୁବକାଳେ ବନସ୍ତ ଯିବୁ ମୁନିନ୍ତ ରକ୍ଷାକରି ।
ବିପିନେ ଭାରିଯା ତୋର ରାବଣ ହରି ନେବ
ଦୁଃଖେଣ ଦିନ ତୁ ବଞ୍ଚିବୁ ରାଘେବ ।
ଦେବଙ୍କର ନିମିତ୍ତେ ପାଇବୁ ଅନେକ କଷ୍ଟ
ନୋହିଲେ ଅସୁର ନୁହନ୍ତି ନା ନଷ୍ଟ ।୩୦
ରିକ୍ଷ ବାନର ଯେ ସଇନି ଘେନିଯିବୁ
ମାନବ ରୂପଧରି ରାବଣ ମାରିବୁ ।
ଶୁଣିଣ ସନମତ କଲେ ଚକ୍ରଧାରୀ
ହୋଇବି ମୁଁ ଜାତ ଅସୁରନ୍ତ ମାରି ।
ତୁମ୍ଭର ଦୁଃଖ ମୁହିଂ କି ପାରଇ ଯେ ସହି
ଦତ୍ୟେବଳ ଦଳିଣ ମୁହିଂ ଉଧରିବି ମହୀ ।
ଶ୍ରୀହରି ପ୍ରସନ୍ନ ବଦନ ବେଳ ଜାଣି
ମୁହିଂ ସ୍ତୁତି କଲଇ ଗୋ ହେମବନ୍ତର
ଦୁଲଣୀ ।
ବୋଇଲି ଜଗନ୍ନାଥ ଜଗତଉଧାରଣ
ଆମ୍ଭେ ଦେବତାୟେଟି ତୋହୋରେ
ଶରଣ ।
ତୁ ଦେବ ନାରାୟେଣ ଅବୟ ଅଚୁତ
ମହାର୍ଣ୍ଣବ ଜଳରେ ଶୟନ ପଦ୍ମନେତ୍ର ।
ଶ୍ରୀଚରଣ ଚାପଇ ବଗୁଣକୁମାରୀ
ଅନନ୍ତଶଯ୍ୟାରେ ବିଜୟେ ଚକ୍ରଧାରୀ ।
କର୍ଣ୍ଣ ଦୁଇଗୁହାରୁ କାଢ଼ିଲୁ ଦେବ ମଳି
ସେ ଦୁଇ ପୁରୁଷେ ହୋଇଲେ ମହାବଳୀ ।
ମଧୁ କଇଟବ ନାମ ତାହାଙ୍କର
ଆକାଶେଣ ଯାଇ ଲାଗିଲାକ ଶିର ।
ସମୁଦ୍ର ମଧରେ ତାଙ୍କୁ ହୋଇଲା ଆଣ୍ଠୁଆଣି
ଚଳି ଆସନ୍ତେ ଯେ ହୋଇଲା
ବିକରାଳି ।୫୦
ଲକ୍ଷ୍ମୀଙ୍କୁ ଦେଖିଣ ବୋଇଲେ ଦୁଷ୍ଟମତି
ତୁହିରେ କାମେନୀ ହୁଅ ଆମ୍ଭର ଯୁବତୀ ।
ଯେହାର ତହିଂ ତୁମ୍ଭେ ପାଇବ କିସ ସୁଖ
ଆମ୍ଭର ବୋଲକର ଯେହାଙ୍କୁ ଉପେଖ ।
ଆମ୍ଭେ ସେ ସୃଷ୍ଟିରେ ହୋଇବୁ ଅଧିପତି
ଭୋଗ କରିବଇ ଅମର ବାଚସ୍ପତୀ ।
ଆମ୍ଭେ ସେ ପାଳିବଇ ଦଶଦିଗପାଳ
ଆମ୍ଭେ ସେ କରିବୁ ସ୍ୱର୍ଗ ମଞ୍ଚ ପାତାଳ ।
ଆସ ଆସ ସୁନ୍ଦେରୀ ଗୋ ଆନ ମନ ନ
ଧର
ରଖ ପ୍ରାଣ ଆମ୍ଭର ସୁରତି ଦାନ କର ।୬୦
ଭୁଜେ ଭୁଜ ଭିଡ଼ି କରସି ଆଲିଙ୍ଗନ
ଯେ ତୋହୋର କୁଚ ଲାଖେ କରିବୁ
ବିଦ୍ଦାରଣ ।
ଅଧର ଚୁମ୍ବିବଇଂ ଅମୃତ ପାନ ଜାଣି
ଉଠ ଉଠ ସଖିଗୋ ଜାତି କମଳିଣୀ ।
ହୋଇବୁ ପାଟରାଣୀ ବସିବୁ ଆମ୍ଭର କୋଳେ
ତୋହୋର ରୂପ ଦେଖି ବୁଡ଼ିଲୁ କାମଜଳେ ।
ଶୁଣିଣ ଚଞ୍ଚଳା ଯେ ବୋଇଲେକ ହସି
ଯେ ମୋହୋର ସ୍ୱାମୀ ମୁଁ ଯେହାର ଦାସୀ ।
ଯେହାଙ୍କୁ ତୁମେ ଯେବେ ପାରିବ ହାଦେ
ଜିଣି
ତେବେ ସେ ତୁମ୍ଭର ହୋଇବି ଘରଣୀ ।୭୦
ଶୁଣିଣ ଅସୁରେ ବୋଇଲେ ବେଗେ ତୋଳ
ନିଶ୍ଚୟେ ଯେହାକଇ ଭେଟିଲା ଆସି କାଳ ।

ଲକ୍ଷ୍ମୀ ବୋଇଲେ ମୁଂ ନ ଭାଙ୍ଗଇ ନିଦ
ତୁମ୍ଭେ ସେ ତୋଳନା କରିବ ଯେବେ
ଦ୍ୱନ୍ଦ୍ୱ ।
ଯେହାଙ୍କର କଥା ସେ ଶୁଣିଣ ଦେବ ହରି
ଚକ୍ଷୁ ମଳିଣ ସେ ଉଠିଲେ ଚକ୍ରଧାରୀ ।
କମଳାକୁ ଚାହିଂଣ ବୋଇଲେ ଚକ୍ରଧର
ଯେ ଦୁଇ ପୁରୁଷେ କାହୁଂ ହୋଇଲେ
ବାହାର ।
ଲକ୍ଷ୍ମୀ ବୋଇଲେ ଦେବ ନ ଜାଣଇ ମୁହିଂ
ତୁମ୍ଭେ ପଚ୍ଛର ବୋଲି ବୋଇଲେ
ମାହାମାଇ ।୮୦
ହରି ବୋଲନ୍ତି ହୋ କିସ କିସ ବୋଲ
ଦଇତେ ବୋଲନ୍ତି ଯୁଝିବୁ ତୋର ତୁଲ ।
ତୋତେ ଜିଣି ତୋର ନେମୁ ଯେ ଘରଣୀ
ଯେ ସେ ଆମ୍ଭଙ୍କଇ ଯୋଗାଇ ରମଣୀ ।
ହସିଣ ସ୍ୱାମୀ ଯେ ବୋଇଲେ ବନମାଳୀ
ଆମ୍ଭେ ତ ତୋହୋ ସଙ୍ଗେ ନ କଲୁ ନା
କଳି ।
ସଧ ତୁମ୍ଭର ଥିଲେ ସମର କର ଆସ
ହସ୍ତ ବଢ଼ାଇଣ ଦେଲେ ବିଶ୍ୱବାସ ।
ଦଇତ ବୋଇଲେ ହୋ ଉଠି ଉଭା ହୋଅ
ହସି ବୋଇଲେ ପ୍ରଭୁ ପାରିଲେ ଧରି
ନିଅ ।୯୦
ଶୁଣିଣ କୋପ ଯେ କଲେ ବୀର ବେନି
ଦୁଇ ଭୁଜେ ରହିଲେ ବିନ୍ଧାଣ ଗତି ଘେନି ।
ଅନେକ ସମର କଲେ ବେନି ବୀର
ଶ୍ରମ ଉପୁଜିଲା ସ୍ୱାମୀଙ୍କ ଶ୍ୟରୀର ।
ଦୁହିଙ୍କି ଆକ୍ରେଷିଣ ଆଣିଲେ ପଦ୍ମନେତ୍ର
ଦୃଢ଼ ଗତିକରି ଲୁଚ୍ଛଇଲେ କରପତ୍ର ।
ଶିର ମୋଡ଼ିବାକୁ ବୁଦ୍ଧିକଲେ ଯହୁଂ
ଆକୁଳେ ଦଇତେ ଯେ ରାବ ଦେଲେ
ତହୁଂ ।
ଭୋ ଦେବ ନାରାୟେଣ ଯେକ ବର ଦେବା
ଜଳ ନ ଥିବା ଠାରେନ୍ତ ମାରିବା । ୧୦୦

ଶୁଣିଣ ଶ୍ରୀହରି ପଦ୍ମ ଆସନେଣ ଥାଇ
ଦୁଇ ଦଇତକୁ ମର୍ଦ୍ଦିଲେ କରେ ଲାଇ ।
କଞ୍ଚା ମାଟି ଯେହ୍ନେ ପିଞ୍ଚଇ କୁରାଳ
ପିଠୋଉ ପ୍ରାୟେ ସାନ୍ଧିଲେ ଆଦିମୂଳ ।
ନଖ ମୁଖ ଗୋଡ଼ ମାଉଂସ ରକତ
ଗୋଟି କରି ଯନ୍ତ କଲେ ଯେକ ପତ୍ର ।
ତାହାଙ୍କର ମେଦ ମାଂସ ମେଦିନୀ କରି ସଞ୍ଚ
ସଂସାର କରିବାକୁ ବ୍ରହ୍ମାୟେକ ରଞ୍ଚ ।
ତେଣୁ ସେ ସୃଷ୍ଟି ହୋଇଲାକ ଥିର
ଅନନ୍ତ କୋଟିବ୍ରହ୍ମାଣ୍ଡକୁ ତୁହି ସେ
ଠାକୁର ।୧୦
ବ୍ରହ୍ମାର ବେଦ ପୋଥି ଶଙ୍ଖାସୁର ନେଲା
ଜାଣି ପିତାମହ ତୋହୋ ଆଗରେ କହିଲା ।
ତୁ ଦେବ ମଛ ଅବତାର ହୋଇ
ମହାଜଳେ ପଶି ହାନ୍ଦୋଳିଲୁ ଗୋସାଇଂ ।
ଲକ୍ଷେକ ଯୋଜନ ଏ ଲବଣ ଅକୁପାର
ଶିଶୁ ମୃଗ ମାଇଲ ସେ ସିଂହର ଆକାର ।
ତୁ ସ୍ୱାମୀ ଅକର୍ମ କଲୁ ମହାପାଣି
ସମୁଦ୍ର ଗଳିଲାତ ପୂରିଲା ନ ଜାଣି ।
ନିଶ୍ଚଳ ହୋଇଣ ରହିଲୁ ପୀତାମ୍ବର
ଦେଖି ତୁଷ୍ଟି ତୋତେ କଲେ
ବେଦବର ।୨୦
ଶଙ୍ଖାସୁର ଦତ୍ୟକୁ ପ୍ରାଣେ ହତକରି
ବିଧାତା ଗୋଚରେଣ ଦେଲୁ ବେଦ ଚାରି ।
କୂର୍ମ ରୂପେ ତୁ ଯେ ବହିଲୁ ମହୀଭାର
ବନ ଗିରି ନଦୀ ସପତସାଗର ।
ତିଳମନ୍ଦାପ୍ରମାଣେ ନାଥ ସମସ୍ତ ଧଇଲୁ
ଯାବତ କାଳକୁ ନାଥ କଥା ଗୁହାଇଲୁ ।
ନୋହିଲେଣ ମେଦିନୀ ନାଥ ପଡ଼ନ୍ତା
ରାସାତଳେ
ତୋହୋର ନ ଧଇଲେ କି ଥାଆନ୍ତେ
ଦିଗପାଳେ ।
ହିରଣାକ୍ଷ ଦଇତ ହରିନେଲା ମହୀ
ବରାହ ମୂର୍ତ୍ତି ଯେ ଦେବ ଧଇଲୁ ଯେ
ତୁହି । ୩୦

ଶୂନ୍ୟେଣ ଥାଇ ପୃଥ୍ୱି ଦାନ୍ତେ ଗୁହାଇଲୁ
କଉମୋଦୀ ଗଦାୟେଣ ଦଇତ ମାରିଲୁ ।
ଅମୋହ ଶସ୍ତ୍ରେଣ ନୋହିଲା ତାର ମୃତ୍ୟୁ
ଦେବଗଣ ଘେନିଣ ରୋଦିଲା କୁଶକେତୁ ।
ଦକ୍ଷିଣ ଭୁଜେ ଦେବ ଦେବଙ୍କୁ ଗୁହାଇ
ବାମ କରେ ଦତ୍ୟକୁ ମାଇଲୁ କୋପ ବହି ।
ହିରଣାକ୍ଷ ଶିର ପଡ଼ିଲାକ ତଳ
ତତକ୍ଷଣେ ଶିର ହୋଇଲା ଶତେ ଫାଳ ।
ଅସୁର ମାଇଲୁ ରଖିଲୁ ମେଦିନୀ
ତେଣୁ ସେ ସୁସ୍ତେଣ ରହିଲେ ପୁର
ତିନି । ୪୦
ହିରଣ୍ୟ ଦଇତ ଯେ ପ୍ରତାପୀ ତିନିପୁରେ
ଯାହାର ନାମେ କମ୍ପନ୍ତି ଯେ ସୁରନରେ ।
ପ୍ରହଲାଦ ଛଳେ ନରସିଂହ ରୂପ ଧରି
ଦତ୍ୟକୁ ଧରି ବୁକୁ ବିଦାରିଲୁ ଦେବ ହରି ।
କୋଟିୟେକ ବଜ୍ର ଆଣ୍ଡ ସମ ଯେହୁ
ତୋର କରକଇ ଲବଣୀ ପ୍ରାୟେ ସେହୁ ।
ବୁକୁ ବିଦାରିଣ କାଢ଼ିଲୁ ତାର ଅନ୍ତ
ତେଣୁ କରି ସ୍ଥିର ହୋଇଲା ଜଗତ ।
ପ୍ରତାପୀ ବଳି ରାଜା ତିନିପୁରେ ରାୟେ
ସର୍ଗକୁ କୁଚ ଯେ ଦିଗବିଜେ କୟେ ।୫୦
ଦାନେଣ ରାଜା ଜିଣିଲା ଜଗତ
ବଳେଣ ବଳିରାଜା ଅଟଇ ସାମରଥ ।
ତାହାର ଲୋକେ ଆବୋରିଲେ ବ୍ରହ୍ମାଣ୍ଡେ
ଅସୁରେ ଦିଗପାଳେ ହୋଇଲେ ପ୍ରଚଣ୍ଡେ ।
ଅତିହିଂ ଉତ୍ପାତ ହୋଇଲା ଯହୁଂ ବଳି
ବାମନ ରୂପ ଦେବ ହୋଇଲୁ ବନମାଳୀ ।
ଛନ୍ଦେଣ ତାହାକଇ ଜିଣିଲୁ ଦେବହରି
ପାତାଳେ ଥୋଇଲୁ ତାକୁ ଅତି ଯତ୍ନ କରି ।
ଅସୁର ଗଞ୍ଜି ସୁରକୁଳକଇ ସ୍ୱର୍ଗଭୋଗ ଦେଲୁ
ସକଳ ଜନପ୍ରଜା ସୁସ୍ତ ଦେବ କଲୁ ।୬୦
କ୍ଷତ୍ରୀମାନେ ଯହୁଂ ହୋଇଲେ ପ୍ରବଳ
ସୃଷ୍ଟି ଆଚ୍ଛର ସେ ଭାଙ୍ଗିଲେ ସକଳ ।
ପ୍ରଜାହିଂ ନ ପାଳିଲେ ହରିଲେ ପର ବିତ୍ତ

ତେଣୁକରି ଅଶୋଭା ପାଇଲା ଜଗତ ।
ରାଜା ଅ ପାଳଣେ ବ୍ରାହ୍ମଣେ ତପ ତେଜି
ଦେବତାୟେ ହବି ସେ ନ ପାରିଲେ ଭୁଞ୍ଜି ।
ପୃଥ୍ୱୀ ନ ସହଇ ଦୁଷ୍ଟଙ୍କର ଭାର
ପରଶୁରାମ ଅବତାର ହୋଇଲୁ ଚକ୍ରଧର ।
ଯମଦଗ୍ନି ସୁତ ରେଣୁକା ଗର୍ଭୁ ଜାତ
ଦ୍ରପିଷ୍ଟ ବଳ ଦେବ କଲୁସି ନିପାତ ।୭୦
ଅକ୍ଷୟେ ତ୍ରୋଣ ସେ ବୈଷ୍ଣବା ଧନୁଧରି
ସହସ୍ରାର୍ଜ୍ଜୁନକୁ ହେଳେଣ ନିବାରି ।
ଯେକୋଇଶ ବାର କ୍ଷତ୍ରିକୁଳ ନାଶି
ନାମ ବୋଲାଇଲୁ ପର୍ଶୁରାମ ଋଷି ।
ସଂସାର ରକ୍ଷା ଦେବ ହୋଇଲା ତୋର
କୃତେ
ଦେହ ଘେନି ଜନମିଲୁ ଜଗତର ହିତେ ।
ଯେବେ ଦେବ ଅସୁରେ ହୋଇଲେ ମଯେମନ୍ତା
ଦେବାସୁରନରେ ପାଇଲେ ବଡ଼ ଚିନ୍ତା ।
ଦଶଗ୍ରୀବ ଘାତ ଦେବ ନ ସହଇ ପୃଥ୍ୱୀ
ଲଙ୍କାୟେ ବିକଳେ ଭାଳଇ ସୁରପତି ।
ଅସୁରେ ଦ୍ରପିଷ୍ଟ ଯେ ଋଷି ଗୋରୁ ଖାନ୍ତି
ପାରିଲେ ରକ୍ଷା ଦେବ କର ଯେହୁ ଘାନ୍ତି ।
ଆନ କେ ରଖିବଟି ତୋହୋର ହେଳ
କଲେ
ବ୍ରହ୍ମାଶଙ୍କର କରଯୋଡ଼ି ଯେ କଥା
କହିଲେ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ମଧୁହାରୀ
ବୋଲନ୍ତି ଶୁଣ ହୋ ବିଧାତା ଶୂଳଧାରୀ ।
ତୁମ୍ଭର ଛଳେ ମୁଂ ମାନବ ତନୁ ଧରି
ମାଗିବେ ଦାନେବ ବଳ ନିଶୋଧନ କରି ।
ଧନୁ ଶସ୍ତ୍ର ବହିବି ନୋହିବି ଚକ୍ରଧର
ନ ଚଢ଼ିବି ଗରୁଡ଼ ବିନତାକୁମର ।୯୦
ତୁମ୍ଭର ଛଳେ ମାନବେ ହୋଇବି ଅବତାର
ମାରିବି ରାବଣ ଯେ ଦ୍ରପିଷ୍ଟ ଅସୁର ।
ହୋଇଲି ତ୍ରିପୁତି ଯାଅ ସୁରଗଣ
ଯେସନେକ ଆଜ୍ଞା ଦେଲେକ ନାରାୟେଣ ।

ବିଷ୍ଣୁର ବୋଲେ ଦେବେ ମହାହର୍ଷ ହୋଇ
ଯେ ଯାହାର ପୁରେ ପ୍ରବେଶ ଦେବେ
ହେଲେ ଯାଇ ।
ଶ୍ରୀବିଷ୍ଣୁର ପୂର୍ବକଥା ହେତୁ କଲେ
ଜୟେ ବିଜୟେ ଚରିତ୍ର ମନରେ ଧଇଲେ ।
ଦଶରଥ ହୋମରେ ବିଜୟ ଚକ୍ରପାଣି
ଋଷିଶୃଙ୍ଗ ଉଠି ନମସ୍କାର କଲେକ ପୁଣି ।
ଆନନ୍ଦେ କୃତଆଞ୍ଜୋଳି ସମର୍ପିଲା
ପୂର୍ଣ୍ଣର ଆହୁତି ଯେ ମାହେନ୍ଦ୍ର ବେଳେ.
ଦେଲା ।
ଦର୍ପଣେ ଯେସନେକ ଦିଶଇ ନିଜ ଛାୟା
ମୁନିକି ଦୃଶ ହୋଇଲା ବିଷ୍ଣୁର ନିଜ କାୟା ।
ଚନ୍ଦ୍ର ସୂର୍ଯ୍ୟ ଯେସନେ ଯେକ ଦେହ ବହି
ତେସନେକ ପ୍ରକାଶ ବାସୁଦେବ ଦେହୀ ।
ଋଷିଙ୍କି ପ୍ରସନ୍ନ ହୋଇଲେ ପଦ୍ମନେତ୍ର
ଶ୍ରୀକରେ ଧରିଛନ୍ତି ସୁବର୍ଣ୍ଣର ପାତ୍ର ।
ଚରୁ ପୂରାଇଣ ବୋଇଲେ ମହାପ୍ରଭୁ
ହେ ଋଷି ତୋହୋର କାର୍ଯ୍ୟ ସିଦ୍ଧ
ହୋଉ ।୧୦
ଦଶରଥ ରାଜାର ମହାଦେଈମାନ
ବାଣ୍ଟିଣ ଭୁଞ୍ଜନ୍ତୁ ଉପଜନ୍ତୁ ନନ୍ଦନ ।
ଚରୁ ସମର୍ପିଣ ଅନ୍ତରୀକ୍ଷେ ଦେବ ଗଲେ
ଚରୁ ପାତ୍ର ଘେନିଣ ଋଷିଶୃଙ୍ଗ ଅଇଲେ ।
ଦେବେ ଜୟେ ଜୟେ କଲେ ସ୍ୱର୍ଗେ ଥାଇ
ଚରୁ ଘେନି ମୁନି ଦଶରଥକଇ ଚାହିଁ ।
ବୋଲନ୍ତି ଭୋ ରାଜା କାର୍ଯ୍ୟ ସିଧ ହଉ
ଆମ୍ଭର ବଚନ ଅନ୍ୟଥା ହାଦେ ନୋହୁ ।
ଅତି ଉତ୍ତମ ପୁତ୍ରେ ହୋଇବେ ତୋର ଜାତ
ସଂସାର ରଖିତେ ହୋଇବେ
ସାମରଥ ।୨୦
ଅତି ଆନନ୍ଦେଣ ଦଶରଥ ରାୟେ
ଚରୁ ଘେନିଣ ସେ ଅନ୍ତପୁରେ ଯାୟେ ।
ରାଣୀକି ହକରାଇ ଶୋଧନ କଲେ ବ୍ରତ
ତିନି ମହାଦେଈ ଆଚରିଛନ୍ତି ସତ୍ୟ ।

ଆବର ଯୁବତୀ ନ ପାରିଲେ ପାଳି
ବିଧାତାର ଉପାୟେ ଛାଡ଼ିଲେ ସର୍ବବାଳୀ ।
ରାଜା ବୋଇଲାକ ରାଣୀଙ୍କ ମୁଖ ଚାହିଁ
ବ୍ରତ ଛାଡ଼ିଲ ତୁମ୍ଭେ ଅଜ୍ଞାନମତ ହୋଇ ।
ଯେ ତୋହୋର କର୍ମେ ଅଛଇ ପୂର୍ବ ଦୋଷ
ସେ ଫଳ ଭୁଞ୍ଜ ତୁମ୍ଭେ ସକଳ
ରାଣୀହଂସ ।୩୦
ଏତେ ବୋଲି ରାଏ ଉଦବେଗ ଚିତ୍ତ
ଦୁଇ ଭାଗ କରି ଚରୁ ଘେନିଲା ଦୁଇ ହସ୍ତ ।
କଉଶୁଲା କକୟା ସମର୍ପିଲା ନେଇ
ଘେନିଲେ ବେନି ସପତଣୀ ହରଷମୁଖ
ହୋଇ ।
ସୁମିତ୍ରାକୁ ଚାହିଂଣ ଯେ ବୋଲଇ କଉଶୁଲା
ଭୋ ସ୍ୱାମୀ ଯେହାକୁ ଦୟାତ ନୋହିଲା ।
ଏ ସେ ବ୍ରତ ଯେ ରଖିଛି ଶଶୀମୁଖୀ
ତୋହୋର ହସ୍ତ ଧରି ହୋଇବକି ଦୁଃଖୀ ।
କର ଅନଗ୍ରହ ଦୟା ବେଗେ ହୋଉ
ଆମ୍ଭର ତହୁଂ ଯେ କୋଣେ ଚରୁ ଖାଉ ।
ନୃପତି ବୋଇଲେ ମୁଂ ଯେ ମଣିତ ନ
ପାରିଲି
ତାହାଙ୍କର ସଙ୍ଗତେ ଯେହାକୁ ଗଣିଲି ।
ଯେହୁ ଯେବେ ପାଳି ଅଛଇ ମହାବ୍ରତ
ଯେହାକଇ ତନୟେ ହୋଇବେ ପରାପତ ।
ଦିଅ କୋଣେ ଚରୁ କଲ୍ୟାଣ କ୍ଷେମ ହୋଉ
ଯେସନେକ ବୋଇଲା ଯେ ଅଯୋଧାର
ପ୍ରଭୁ ।
ଶୁଣି କଉଶୁଲା କକୟା ବେନି ରାଣୀ
ସୁମିତ୍ରାର କରେ ଚରୁ କିଛୁ କିଛୁ ଦେଲେ
ଆଣି ।
ତାହାର ପୁନ୍ୟେ ସେ ପାଇଲା ଭାଗ ଦୁଇ
ବିଷ୍ଣୁ ସୁମରିଣ ତିନିହେଂ ଚରୁ ଖାଇ ।୪୦
ଆଷାଢ଼ ଶୁକଳ ପୂର୍ଣ୍ଣମୀ ଦିବସ
ସେ ଦିନ ତିନି ରାଣୀ ହୋଇଲେ ଗର୍ଭବାସ ।
ସାଧୁ ମହିମା ସେ କଉଶୁଲା ରାଣୀ

ଗର୍ଭେ ଧଇଲା ସେ ଦେବଙ୍କ ଶିରୋମଣି ।
ଯେଥୁ ଅନନ୍ତରେ ଯାଗ ସମାପତ
ଶାଆନ୍ତା କନ୍ୟା ଘେନି ମୁନି ତପୋବନ୍ତ ।
ସମ୍ପଦ ଘେନି ପିତା ଆଶ୍ରମକୁ ଗଲା
କିଛି ଦୂରେ ରାଜା ପାଛୋଟି ଯାଇଣ
ଅଇଲା ।
ଧନ ବସ୍ତ୍ର ଅଶ୍ୱ ଗଜ ରଥ ଦେଇ
ଅନେକ ପ୍ରବୋଧି ବୋଇଲା
ନରସାଇଂ ।୬୦
ଦୋହିତାକୁ ଡିଆରି ଜୁଆଇଂକି ପ୍ରବୋଧି
ବାହୁଡ଼ି ଅଇଲାକ ଦଶରଥ ମହାଯୋଧି ।
ଆବର ଯେତେକ ଆସିଥିଲେ ମୁନି
ଯେ ଯାହା ଆଶ୍ରମକୁ ଗଲେ ଗଉରୋବ
ଘେନି ।
ଯାଗର ଦକ୍ଷିଣା ଦେଲାକ ନୃପତି
ସନ୍ତୋଷ ହୋଇଣ ଗଲେ ସର୍ବ ଯତି ।
ନିଜ ପୁରକଇ ଲୋମପାଦ ଗଲା
ଚମ୍ପାବତୀ ନଗ୍ରେ ପ୍ରବେଶ ହୋଇଲା ।
ଯେତେକ ଦେଶରୁ ଆସିଥିଲେ ରାଜା
ଯେ ଯାହା ଅନୁରୂପେ ପାଇଲେକ
ପୂଜା ।୭୦
ଅକ୍ଷତ ଘେନିଣ ଚଳିଲେ ମହୀପତି
ଯେଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ଦଶରଥ ରାଣୀ ଯହୁଁ ହୋଇଲେ ଗର୍ଭବାସ
ଦିନେ ଦିନେ ପଡିର ଛାଡ଼ିଲା ମୁହାଂସ ।
ଆହାର ନ ରୁଚଇ ବୁଲାଇ ବଦନ
ଶଳି ମଣିଲେ ଯେ ଗନ୍ଧ ପୁଷ୍ପ ଚନ୍ଦନ ।
ଚନ୍ଦ୍ର ମଳିଣ ଯେ ଗମ୍ଭାରେ ପଶଇ ଥାନମାନ
ମନ ଛନ ଛନ ପ୍ରକୃତି ହୋୟେ ଆନ ।
ଶୀତଳ ମଳୟ ପବନ ଲୋଡ଼ିଲେ
ବେନି ମାସ ଯାଆନ୍ତେ ଅଳସ ଯେ
କଲେ ।୮୦
ଯାହା ଭୁଞ୍ଜନ୍ତି ତାହା ତକ୍ଷଣେ ଉଦ୍‌ଗାରି
ଶୁତିଲା ଠାବରୁ ଉଠି ନ ପାରନ୍ତି ନାରୀ ।

ଶରଧା କରନ୍ତି ଅପୂର୍ବ ଦ୍ରବ୍ୟ ଖାଇ
ନୃପତି ଜାଣିଣ ସମସ୍ତ ନିରିଭାଇ ।
ତିନିମାସ ହୁଅନ୍ତେଣ ଖସିଲା ବେନିସ୍ତନ
କୁଚର ଉପରେ ଦିଶିଲା କଳାବର୍ଣ୍ଣ ।
ଦେହ ପାଣ୍ଡୁର ଯେ ସିଠୁଆ ଓଷ୍ଠ ଦିଶି
ବସ୍ତ୍ର ଖୋଷନ୍ତେଣ ପୁଣ ପୁଣ ଯାଇ ଖସି ।
ଚତୁର୍ଥ ମାସରେ ଚଳିତ ଅଶକତ
ଉଠିଲେଣ ହାଇ ମାରନ୍ତି ତୁରିତ ।୯୦
ଦେଖି ଦଶରଥ ମନେ ମନେ ତୋଷ
ପାଞ୍ଚ ମାସେ ବନ୍ଧାପନା ହୋଇଲା
ସୂର୍ଯ୍ୟବଂଶ ।
ଛଡ଼ ମାସେ ଦେଈଙ୍କ ଗର୍ଭ ଗୁରୁହୋଇ
ଜୀବପାଇ ପୁତ୍ର ଯେ ଗର୍ଭରେ ବୁଲଇ ।
ଏକ ଆରକରେ କହନ୍ତି ବଚନ
ପେଟରେ ଦେଖ ଆଗୋ ସଖି ବୁଲନ୍ତି
ନନ୍ଦନ ।
କେ ଯାଇ ଉଷତେ ରାଜାଙ୍କୁ କହନ୍ତି
ମହାଦେଈଙ୍କ ଗର୍ଭେ ଦେବ କୁମର ବୁଲନ୍ତି ।
ଶୁଣିଣ ବଧାଇ ଯେ ଦେଲେ ମହୀପାଳ
ଆପଣେ ଦେଖିଲେ ପେଟେ ବୁଲୁଛି
ଦୁଲାଳ ।୧୦୦
ସାତମାସ ହୁଅନ୍ତେଣ ଚଡ଼ଚଡ଼ ପେଟ
କର ଆଉଂସିଣ ନାରୀ ଯେ ମଣନ୍ତି ବଡ଼
କଷ୍ଟ ।
ନାଭି ତଳରେ ଯେ ଜଳାଶିରା ଟାଣି
ଦେଖିଣ ଉଷତ ହୁଅନ୍ତି ତରୁଣୀ ।
ସ୍ତନରେଣ କ୍ଷୀର ସ୍ରବଇ ନୀର ଜାଣି
ଅଳପ ଆହାରେ ସନ୍ତୋଷ ତରୁଣୀ ।
ଅଷ୍ଟମାସ ପଶନ୍ତେ ରାଜା ଦଶରଥ
ସଭା କରାଇଣ ବିଚାରଇ ନରନାଥ ।
ବଶିଷ୍ଠ ବାମଦେବ ଜାବାଳି ମୁଖ ଚାହିଁ
କଶ୍ୟପ ସୁମନ୍ତ ମନ୍ତ୍ରୀକି ହକରାଇ ।୧୦
ବୋଲନ୍ତି ନୃପତି ଶୁଣ ହୋ ସମସ୍ତ
ଯେ ମୋହୋର ଆନନ୍ଦ ହାଦେ କହଇ
ତୁମ୍ଭନ୍ତ ।

ମହାଦେଈମାନନ୍ତ ଗର୍ଭବାସ ଗଣିତା
ଅଷ୍ଟମାସ ପ୍ରବେଶ ହୋଇଲେ ବନିତା ।
ହୋଇବଇଂ ସୀମନ୍ତ ଖୋଜ ଅନୁକୂଳ
ଜଉତିଷ ରାଇଣ ଖୋଜିଲେ ଲଗ୍ନବେଳ ।
ମାଘ ଶୁକଳ ଯେ ଅଷ୍ଟମୀ ରବିବାର
ଅଶ୍ୱିନୀ ନକ୍ଷତ୍ର କନ୍ୟାକୁ ସମ୍ପଦ ତାର ।
କଉଶୁଲା ନକ୍ଷତ୍ର ରେବତୀ ମୀନରାଶି
କୟେକୟାର ମୂଳାଧନୁ ମୁଦ୍‌ସୁଲୀ କହେ
ଆସି ।୨୦
ମଘା ସିଙ୍ଘ ଅଟଇ ସୁମେତ୍ରାର ନିଜ ଋକ୍ଷ
ତିନିହେଂ ଯେକଦ୍ କର୍ମ ଅଟଇ ପ୍ରତକ୍ଷ ।
ଯେଣେ ସେ ତିନିରାଣୀଙ୍କର ତିନିରାଶି
ଅନୁକୂଳ ବିଚରିଣ କହଇ ପାଟ ଜଉତିଷି ।
ଦଶରଥ ରାଜା ଯେ ବଶିଷ୍ଠକଇ ଚାହିଁ
ମୁନି ବୋଲନ୍ତି ରାୟେ ମାହେନ୍ଦ୍ର ଯୋଗ
ହୋଇ ।
ସକଳ ନଗ୍ରମାନ କରସି ନିମନ୍ତ୍ରଣ
ହୋଅସି ସୀମନ୍ତ ତୁ ଅଯୋଧ୍ୟାର ରାଣ ।
ବାରତା ପାଇଣ ଲୋମପାଦ ଅଇଲା
ଅଯୋଧ୍ୟା କଟକରେ ସେ ପ୍ରବେଶ
ହୋଇଲା ।୩୦
ସୁମନ୍ତ ପାତ୍ରକଇ ନୃପତି ଆଜ୍ଞା ଦେଲା
ଯେ ବିଧି ବିଧାନ କରସି ବୋଇଲା ।
ତକ୍ଷଣେ ମଣ୍ଡିଲେ ଦିବ୍ୟପୁରମାନ
ଘରେ ଘରେ ଚିତ୍ର ବିଚିତ୍ର ଲେଖନ ।
ଦ୍ୱାରେଣ ପୂର୍ଣ୍ଣକୁମ୍ଭ କଦଳୀ ଗଛ ପୋତି
ସୁବର୍ଣ୍ଣର କଳସ ଚିରାଳ ଉଡ଼ାନ୍ତି ।
ରାଜାମାନନ୍ତ ଯେ କଲେ ନିମନ୍ତ୍ରଣ
ଶୁଣିଣ ଅଇଲେ ସେ ସକଳ ନୃପରାଣ ।
ଋଷି ମହଋଷି ଆସନ୍ତି ତପଋରୀ
ଅଯୋଧ୍ୟା ଗହଳ ସକଳ ନରନାରୀ ।୪୦
ଅନ୍ନବସ୍ତ୍ର ପୁଷ୍ପ ଗନ୍ଧ ତାମ୍ବୋଳ ଯାଚି ଦ୍ୟନ୍ତି
ଯେ ଯେତେ ନେନ୍ତି ଦୁଗୁଣ କରି ଦ୍ୟନ୍ତି ।
ଘରେ ଘରେ ଉଚ୍ଛବ ମଙ୍ଗଳ ଗୀତ ଗାଇ

ନଗ୍ର ନରନାରୀ ଦିବ୍ୟବେଶ ହୋଇ ।
ଚନ୍ଦନ କାଠ ନେଇ ଛାମୁଡ଼ିଆ କଲେ
ନେତ ପାଟ ମଣ୍ଡଣି ମୁକୁତା ଲମ୍ୱାଇଲେ ।
ମଧରେ ରଞ୍ଜିଲେ ତହିଁ ପୋହଳାର ବେଦି
ବିଜୁଳିର ତେଜକି ଗଗନେ ଆଛାଦି ।
ବିଚିତ୍ର ଚାନ୍ଦୁଆ ଖଞ୍ଜିଲେ ଉପରେ
ବୈଦୁର୍ଯ୍ୟର କଳସ ଚିରାଳ
ଫରହରେ ।୫୦
ବିଚିତ୍ର ଚାମର ବିଚିତ୍ର ଝିନବାସ
ମୁକୁତା କେରି କେରି କେରି ଉଡ଼ଇ
ଚଉପାଶ ।
ଦିନେ ଥାଉଂଣ ଯେ ମଙ୍ଗଳ ବିଧି କଲେ
ଦେବତା ବ୍ରାହ୍ମଣ କୁଙ୍କୁମ ଲେପିଲେ ।
ଦଶରଥ ସହିତେ ସକଳ ନୃପଗଣ
ମହରଷିମାନେ ହୋଇଲେ ମଙ୍ଗଳଣ ।
ରାଣୀ ମହାଦେଈ ମୁଦୁସୁଲୀ ଝଡ଼ା
ହଳଦୀ ବିଲୋପିଣ ନଗ୍ରରେ ଦେଲେ
ଛେରା ।
କୁଙ୍କୁମ ଖେଳ ଯେ କଲେ ସର୍ବ ଘର
ଆନନ୍ଦେ ଆଜ୍ଞା ଦେଲେ ଦଶରଥ
ନୃପବର ।୬୦
ଶୁଣସି ଗୋ ଉମା ବିଚିତ୍ର ରସବାଣୀ
ହୋଇଲେ ସୀମନ୍ତ ଦଶରଥ ନୃପମଣି ।
ଯେକ ଦେହ ତିନି ମୂରତି ହୋଯେ ଜାତ
ସତ ସୁକୃତ ସାତ୍ତ୍ୱିକ ଯେ ଅଟଇ ଯେକତ ।
ଯେହାଙ୍କର ଗର୍ଭରୁ ଜାତ ହୋଇବେ
ଦଇତାରି
ଯେକଇ ନାରାୟଣ ଚତୁଧା ମୂରତି ଧରି ।
ଅଦିତିର ସତ ରଜ ତମ ତିନିଗୁଣ
କଇକୟା କଉଶଲ୍ୟା ସୁମେତ୍ର ତିନିଜଣ ।
ଯେବଣ ଦିନ ସେ ହୋଇଲା ଅନକୂଳ
ନାନ୍ଦୀ ଶ୍ରାଦ୍ଧ କଲେ ପାଞ୍ଚଘଡ଼ି ବେଳ ।୭୦
ହୋମ କରିଣ ନାରୀଙ୍କି ଦେଲେ ନ୍ୟାସ
ଆପଣେ ଦେଲା ନେଇ ଅଜ ନୃପ ଶିଷ ।

ସଭାଙ୍କଇ ବରକନ୍ୟା ବେଗେଣ ଅଇଲେ
ଅଷ୍ଟମାସ ବନ୍ଦାପନା ସମସ୍ତ ସାରିଲେ ।
ସୂର୍ଯ୍ୟମଣ୍ଡଳ ସ୍ଥାପି ଅର୍ଘ୍ୟ ଦିଅନ୍ତି ଆଣି
ଆଶିଷ ପାଇ ଭିତରକୁ ଯାନ୍ତି ପୁଣି ।
ଇଷ୍ଟଦେବତାକୁ କରନ୍ତି ନମସ୍କାର
ତହିଁ ବନ୍ଦାପନା ଅନେକ ବେଭାର ।
ପିଙ୍ଗଳ ଶାଢ଼ୀ ସେ ପିନ୍ଧିଣ ଯୁବତୀ
ଗଇଣ୍ଠାଳ ହୋଇଣ ଆସଇ ନରପତି ।୮୦
ଛାୟା ମଣ୍ଡୋପର ତଳେ ଉଭାହୋଇ
ବରୁଣ ପୂଜାକରି ଯାଆନ୍ତି ଆଶିଷ ପାଇ ।
ସଭାଜନକଇ ଅକ୍ଷତ ପୁଷ୍ପ ଦେଇ
ବସ୍ତ୍ର ଅଳଙ୍କାର ତାମ୍ବୁଳ ଫଳ ଥୋଇ ।
ଚତୁସମ ଲେପନ ହୁଅନ୍ତି ନୃପତି
ଯେଥିଅନନ୍ତରେ ଭୋଜନ କରନ୍ତି ।
ରବି ଅସ୍ତକାଳେ ନବଶ୍ରାହୀ ଗନ୍ଧା
ତିନିରାଣୀ ସହିତେ ସ୍ନାହାନ ମହାଯୋଧା ।
ନବତନ ବସ୍ତ୍ର ପିନ୍ଧି ଉପରାଣ ଘେନି
ବେଶବେସନ ତହିଁ ହୋଇଲେ
କାମେନୀ ।୯୦
ମାଳ ମୁକୁଟ ଯେ ଭୂଷଣ ଗନ୍ଧ ପୁଷ୍ପ
ହୁଳହୁଳି ଧ୍ୱନି ଶୁଭଇ ଚଉପାଶ ।
ଶଙ୍ଖମହୁରୀ ଯେ ମର୍ଦ୍ଦଳ ନୃତ୍ୟଗୀତ
ବାହାରେଣ ସଭା ସମ୍ପରେ ପୂରିତ ।
ଅଛନ୍ତି ନାନା ଦେଶ ମହୀପାଳ
ନଗ୍ର ନରନାରୀ ଦେଖନ୍ତି ସକଳ ।
ତପୀଜନେ ବସିଅଛନ୍ତି ସଭାମଧେ
ସ୍ୱର୍ଗେ ଆନନ୍ଦ ଯେ ହୁଅନ୍ତି ସୁରସିଦ୍ଧେ ।
ରାଜାରାଣୀଙ୍କର ଶ୍ରୀହସ୍ତେ ଶ୍ରୀଫଳ
ଆବର ଘେନିଣ ଅଛନ୍ତି ତଣ୍ଡୁଳ ।୧୦୦
ଆଗେ ଦ୍ୱିଜବର ଆଶିଷମାନ ଭଣି
ମଙ୍ଗଳ ଯୋଗେଣ ଆସନ୍ତି ରାଜାରାଣୀ ।
ବେଦିରେ ବିଜଯେ ତଣ୍ଡୁଳ ଫଳ ଥୋଇ
ପୂର୍ଣ୍ଣକୁମ୍ଭ ସନିଧେ ଦୁରିତେ ବସେ ଯାଇ ।
ଚଉପାଶେ ଜଳଇ ଦୀପ ଦିହୁଡ଼ି ହୁଳା

ଲୋକ ଦେଖି ଲାଜ ପାଆନ୍ତି ଅବଳା ।
ହରଷେ ସଂକୁଚେ ଗୃହତମାନ କଲେ
ଅଳପ ହସିଣ ମୁଖ ଲମ୍ୱାଇଲେ ।
ବ୍ରାହ୍ମଣେ ହୋମ ଅଗ୍ନି କରି ଆଚ୍ଛାଦନ
ସମିଧ ଘେନି ଚରୁ କରନ୍ତି ରନ୍ଧନ ।୧୦
ଦିଗପାଳକଇ ଘୃତ ହବି ଦେଲେ
ଝିଙ୍କ ପକ୍ଷୀ ଘେନି କେଶ ବିରୋଳିଲେ ।
ରାଣୀଙ୍କର ମଉଳି ଆପଣେ ନୃପମଣି
ମନ୍ତ୍ର ଶୁଣାଇଣ ପାରିଲେ ତିନିବେଣୀ ।
କପାଳେ ଚନ୍ଦନ ଲେପନ କଲେ ରାଯେ
ମଥାରେ ଗୁରୁଡ଼ା କାଣ୍ଡେକ ଖଞ୍ଜି ଆଯେ ।
ବ୍ରାହ୍ମଣେ ବେଦ ପଢ଼ିଲେ ମନ୍ତ୍ର ଯୋଗେ
ଦଶରଥ ବଶିଷ୍ଠ ବସିଲେ ଯୁବତୀଙ୍କ
ଆଗେ ।
ତୀର୍ଥଙ୍କର ନାମ ସୁମରିଲେ ନୃପମଣି
କଲ୍ୟାଣ ଘେନି ଭିତରକୁ ଗଲେକ
ରାଜନି ।୨୦
ପୁରେ ପ୍ରବେଶନ୍ତେ ଯାଇ ଅର୍ଘ୍ୟ ଦେଲେ
ଦେବଗଣ ସ୍ୱର୍ଗରେ ବସିଣ ଭାଳିଲେ ।
ଦଶରଥ ନୃପତି ସୀମନ୍ତର କାଳେ
ଉପୁଜିବ ନାରାୟଣ ଏହାଙ୍କର କୋଳେ ।
ଆମ୍ଭକଇ ରକ୍ଷା କରିବେ ଦଇତାରି
ତେବେ ସେ ପାରିବା ନା ସ୍ୱର୍ଗ ଭୋଗକରି ।
ଦଶରଥ ଯୋଗେ ହୋଇବା ନା ସୁସ୍ଥ
ଯେଥକଇ ଅକ୍ଷତ ଦେବାର ଯୁଗତ ।
ବିଚର କରି ଦେବ ପବନକୁ ରାଇ
ଅକ୍ଷତ ଦେବତାଯେ ଦେଲେ
ପଠିଆଇ ।୩୦
ରାଜାମାନେ ଯେ ଯାହା ଅନରୂପେ
ପୂଜାକଲେ
ଯେଥୁ ବରକନ୍ୟା ଭିତରକୁ ଗଲେ ।
ଭୋଜନ ଶୟନ ସେ କରନ୍ତି ଯଥାବିଧି
ଶୁଣ ଗୋ ବରାନନେ ବୋଲନ୍ତି ଅନାଦି ।
ଦଶରଥ ଯହୁଁ ହୋଇଲେ ସୀମନ୍ତ

ଯେ ଯାହା ପୁରେ ଗଲେ ନୃପତି ସମସ୍ତ ।
ସନମାନ ପାଇଣ ଗଲେ ସର୍ବ ଯତି
ଲୋମପାଦ ଗଲେ ନଗ୍ର ଚମ୍ପାବତୀ ।
କଯେକୟା ଦୁଇ ପିତା ପୁତ୍ର ଘେନି
ଗଲେ କଉଶୁଲା ସୁମିତ୍ରା ଭାଇ
ବେନି । ୪୦
ଅଯୋଧ୍ୟାର ନୃପତି ପରମ ସାନନ୍ଦ
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ।
ଅଷ୍ଟମାସ ସମ୍ପୂର୍ଣ୍ଣ ନବମାସ ପଶି
ଅପସର ଆଉଜି ବସନ୍ତି ରାଣୀ ଆସି ।
ବିଶେଷେ ସେବା କରୁଥାନ୍ତି ଅନୁବ୍ରତ
ଯତନକରି ନିଯୋଗୀ କରିଛି ଦଶରଥ ।
ଦଶମାସ ସମ୍ପୂର୍ଣ୍ଣେ ଚଇତ୍ର ପଖେ ଗଲା
ଦିନବଢ଼ା କୋଡ଼ିଏ ଦିବସ ଭୋଗକଲା ।
ଯେସନେକ ଦଶମାସ ଅନ୍ତରେଣ ଦିନ
ଅଷ୍ଟମୀ ତିଥିରେ ନବମୀ ବର୍ଦ୍ଧମାନ ।୫୦
କଉଶୁଲା ଦେହ ହୋଇଲା ଅଥିର
ଚିର ଅନ୍ତରାଳ ପବନ ବହଇ ଖର ।
ପେଟ ବଥାଇ ଯେ ହାଇ ଘନ ଘନ
ମୁଦୁସୁଲୀ ଯାଇ ଜଣାନ୍ତି ରାଜନ ।
ଭୋ ଦେବ ଦଶରଥ ନୃପତି ଶିରୋମଣି
ଶ୍ରୀଅଙ୍ଗ ଅଳସ ତୋ କଉଶୁଲା ପାଟରାଣୀ ।
ପୁଣିହିଂ ଜଣେକ ଯେ ଯେସନ ସମୟେ
ଜଣାଇଲା ଆସି ଅଯୋଧ୍ୟାର ରାୟେ ।
ଭୋ ଦେବ କଇକୟା ସୁମିତ୍ରା ପେଟବ୍ୟଥା
ଶୁଣିଣ ଭିତରକୁ ଯେ ଗଲା
ମହାରଥା ।୧୦୦
ସମସ୍ତ ଯୁବତୀଙ୍କି ବୋଇଲାକ ରାଇ
ଯେ ତିନିହିଂକି ଜଗ ତୁମ୍ଭେ ଅନୁବ୍ରତେ
ଥାଇ ।
ପୁଣି ବାହାରକୁ ଅଇଲେ ମହୀପତି
ବଶିଷ୍ଠ ସୁମନ୍ତକୁ ଘେନିଣ ଭାଳନ୍ତି ।
ମହାଦେଈମାନଙ୍କର ପେଟ ବଥାଇଲା
ଶୁଣିଣ ସୁମନ୍ତ କରଯୋଡ଼ି ଜଣାଇଲା ।

ଶୁଣ ଦେବ ଦଶରଥ ନୃପତି ତିଳେକ
ହୋଇଲା ମାସ କେତେ ତାହା ଯେବେ
ଲେଖ ।
ବଶିଷ୍ଠ ବୋଇଲେ ଆଷାଢ଼ ମାସ ଯାନ୍ତେ
ପୂର୍ଣ୍ଣମୀର ଦିବସ ଚତୁର୍ଦ୍ଦଶୀ ଅନ୍ତେ । ୧୦
ସେଦିନ ରାଣୀ ଯେ ଚରୁକଲେ ଗ୍ରାସ
ବଢ଼ାଦିନ ଗଣନ୍ତେ କୋଡ଼ିଏ ଦିବସ ।
ଆଜହିଂ ଚଇତ୍ର ଶୁକ୍ଳ ଅଷ୍ଟମୀ
ନବମୀ ତିଥି ଯେ ଅଛଇ ଉତକର୍ମି ।
ବଢ଼ା ଲେଖିଲେ ଦଶମାସ ହୋଇ
ପୁତ୍ର ଜାତ କରିବେ ଅବଶ୍ୟ ମହାଦେଈ ।
ଦିନ ବଢ଼ିଲେ ଦୋହିତା ବୋଲି ଜାଣି
ପୂର୍ବର କଥାଯେ ଅପୂର୍ବ ରସବାଣୀ ।
ବିଶେଷେ ଆଷାଢ଼ର ଦିବସେକ ଗଲା
ଗର୍ଭଲେଖାକୁ ମାସେ ବଶିଷ୍ଠ
ବୋଇଲା ।୨୦
ଦଶମାସ ସମ୍ପୂର୍ଣ୍ଣେ ପ୍ରସବ ହୋନ୍ତି ନାରୀ
ଯେକଥା ସ୍ୱରୂପ ତୁ ଜାଣ ଦଣ୍ଡଧାରୀ ।
ପ୍ରସବିଲା କାଳ ହୋଇଲାକ ଆସି
ଯେଥିକଇ ଭ୍ରାନ୍ତି ନ କର ଅଜଶିଷି ।
ଶୁଣି ଦଶରଥ ସୁମନ୍ତକଇ ବୋଲି
ବହୁତ ପୁତ୍ରବନ୍ତୀ ଅଣାଅ ବୁଦୁସୁଲୀ ।
ଆଜ୍ଞାପାଇ ମନ୍ତ୍ରୀ ଆଣିଲେ ସୁଲକ୍ଷଣୀ
ଭିତରେ ନିଅ ଆଜ୍ଞା ଦେଲେ ନୃପମଣି ।
ଯେଥୁଅନନ୍ତରେ ଯେ ସୂର୍ଯ୍ୟ ଅସ୍ତ ଗଲା
ପେଟବ୍ୟଥା କରି ଶୂଳ ପେଲାଇଲା ।୩୦
ଅନେକ ଯୁବତୀ ଯେ ବେଢ଼ି ଧରିଛନ୍ତି
କଷ୍ଟରେ ରାଣୀମାନେ ମାତା ସୁମରନ୍ତି ।
ପେଟ ମୋଡ଼ିଣ ଯେ ବୋଲନ୍ତି ଆଈ ଆଈ
ସିଉଲୁଣି ଦେହେ ଅଛନ୍ତି ଲଗାଇ ।
ଥୋକାଯେକ ବେଳେ ଅଇଲା ମୁତୁପୁଡ଼ା
ତାହାର କନ୍ଧରେ ରାଣୀ ଦେଇଛି
ହସ୍ତଯୋଡ଼ା ।
ପୁଣ ପୁଣ ଶୂଳ ଆସଇ ଘନକାଇ

ବିକଳେ କଉଶୁଲା ସୁମରଇ ଆଈ ଆଈ ।
ଧନ୍ୟ ସେ ସାଧବୀ ଧନ୍ୟ ତାର ପେଟ
ଗର୍ଭେ ଧରିଅଛି ବ୍ରହ୍ମାଣ୍ଡର ଶ୍ରେଷ୍ଠ । ୪୦
ସାତ ଦ୍ୱୀପ ସାତସିନ୍ଧୁ ନଦୀ ବନ
ପର୍ବତ ଜଳ ସ୍ଥଳ ଚଉଦ ଭୁବନ ।
ଦଶଦିଗପାଳେ ମେରୁ କପିଳାସ
ଚନ୍ଦ୍ରସୂର୍ଯ୍ୟ ଯାହାର ଦେହରେ କରିଛନ୍ତି
ବାସ ।
ସେ ସେ କଉଶୁଲା ରାଣୀର ଗର୍ଭେ ଅଛି
ଦେହ ଧଇଲା କେହ୍ନେ ପ୍ରାଣ ଯେ ନ ମୁଛି ।
ବାବୁ ମହିମା ଦାସବତ୍ସଳ ମୁରାରି
ଦଶରଥ ରାଣୀ ନୋହିଲା ଯେଣେ ଭାରି ।
ପୁତ୍ରଗତି ପାଇଲେ ଯେ ନର୍କଗତି ତେଜି
ଯହୁଂ ବାସୁଦେବ ଯେ ଓଦରେ
ଉପୁଜି ।୫୦
କିସ ପଟାନ୍ତର ଦେବା ଆନେ ତାହା
ଯାହାର ତନୟେ ହୋଇବେ ଚଉବାହା
ଅନେକ ପୁଣ୍ୟେ ସେ ପାଇବେ ଯେହ୍ନୁ ଫଳ
ସେ ଘେନି ମନେ ଦୁଃଖ ନ କରନ୍ତି ବିକଳ ।
ହରିହରି ନାରାୟଣ ସୁମରି କଉଶୁଲା
ଧର୍ମବଳେ ପୁତ୍ରେକ ସେ ଜନ ହୋଇଲା ।
ସ୍ୱର୍ଗରେ ଆନନ୍ଦ ହୋଇଲେ ସୁରଗଣ
ଆଜ୍କୁଂ ପଳାଇଲା ଯେ ସର୍ବ ଆପଦ ଜାଣ ।
ଦୁନ୍ଦୁଭି ବଜାଇଣ ପୁଷ୍ପ ବୃଷ୍ଟି କଲେ
କିନ୍ନରୀ ଗୀତ ଗାଇ ଅପଛରୀ
ନାଚିଲେ ।୬୦
ଦିଗମ୍ବର ବୋଲନ୍ତି ଗୋ ଶୁଣ ପ୍ରାଣସହୀ
ଜଗନ୍ନାଥ ଜନମ ହୋଇଲେ ଯହୁଂ ମହୀ ।
ଧାଇ ମୁଦୁସୁଲୀ ଦେଖିତ ଅଇଲେ
ରାଜାର ଆଗେଯାଇ ତକ୍ଷଣେ ଜଣାଇଲେ ।
ଭୋ ଦେବ ଦଶରଥ ବଧାଇ ବେଗେ
ଦେବା
ପୁତ୍ରେକ ଜାତ ହୋଇଲା ସମାନ୍ୟ ମଘବା ।
ଶୁଣିଣ ନୃପତି ଯେ ହରଷ ମୁଖ ହୋଇ

ଆନନ୍ଦେ ଭ୍ରମ୍ମୀଭୂତ ସମସ୍ତଙ୍କୁ ଚାହିଁ ।
ଦେବଇ ବଧାଇ ଯେ ତଥ୍ୟ ଜାଣି ଆସ
କଉଶଲ୍ୟା ମହାଦେଈ କରୁଅଛି କିସ ।୭୦
କଥା ହୁଅନ୍ତେ ଯେ ଶୁଭିଲାକ ଗୋଳ
ଧାଇଁ ଯାଇ ମୃଦୁସୁଲୀ କହିଲା ମହୀପାଳ ।
ଭୋ ଦେବ କଯେକୟା ଅଟଇ ତୋର
ରାଣୀ
ପୁତ୍ରେକ ହୋଇଲା ଯେ ସମାନ ଦିନମଣି ।
ପରମ ସାନନ୍ଦେଣ ଅଯୋଧାର ରାଜା
ବିଚାରଇ ପ୍ରାପତ ମୋତେ ହୋଇଲା
ତନୁଜା ।
ପୁଣିହିଂ କ୍ଷଣକେ ବାରତା ପାଇଲା
ସୁମେତ୍ରାର ବେନିପୁତ୍ର ଜନମ ହୋଇଲା ।
କାମଦେବ କାର୍ତ୍ତିକେଶ୍ୱର ପଟାନ୍ତର
ତାହା ତପେ ପ୍ରାପତ ବେନି ଯେ
କୁମର ।୮୦
ଚାରି ତନଯେ ଯହୁଁ ହୋଇଲାକ ଜାତ
ଆପଣେ ଦେଖିତ ଅଇଲେ ନରନାଥ ।
ଲାଜି କମଳେ ଲାଗିଅଛି ନାଡ଼
ଶୁଦ୍ଧ ସୁବର୍ଣ୍ଣ ଯେ ଦେଲେ ଲକ୍ଷେ ମାଢ଼ ।
ଦେଖିଣ ନିର୍ମଳ ହୋଇଲା ମୋର ନେତ୍ର
ମନେ ବିଚାରଇ ରକ୍ଷା ହୋଇଲା ସୂର୍ଯ୍ୟ
ଗୋତ୍ର ।
ବୃଦ୍ଧାନାରୀଙ୍କି ଯେ ବୋଇଲା ନୃପବର
ଯେ ବିଧ୍ ବିଧାନ ସକଳ ନିଭାକର ।
ଆପଣେ ବାହାରେ ବିଜେ କଲା ଆସି
ଧନରତ୍ନ ଅଳଙ୍କାର ବହୁତ ବିଧ୍ୱଂସି ।୯୦
ଜଣେ ଜଣେ ପ୍ରସାଦ ସନମାନ କଲେ
ଅନେକ ସଞ୍ଚା ପଦାର୍ଥ ବିଳୋହିଣ ଦେଲେ ।
ରାଣୀ ରାଣୀହଂସ ବହୁତ ଦେଲେ ଆୟେ
ବସ୍ତ୍ରଙ୍କର ତୁଳେ ହୋଇଲା ତୁଚ୍ଛାକାୟେ ।
ନବରର ଧାଇ ମୃଦୁସୁଲୀ ମାନ
ଯେ ଯାହାର ଇଚ୍ଛାଏ ବହିନେଲେ ଧନ ।
କେ ଘେନି ଆସନ୍ତି ବସ୍ତ୍ର ପେଡ଼ା ପେଡ଼ା

ଥାଳି ଝରି ଡାବରି ଆବୋରିଲେ ଝଡ଼ା ।
ନବର ତୁଚ୍ଛାକଲେ ନାନା ଦ୍ରବ୍ୟ ବହି
ଦେଖିଣ ହରଷ ଯେ ଅଯୋଧାର
ସାଇଂ ।୧୦୦
ଦେଖିଣ ଡରିଲେ ଅସୁର ସୁର ଗଣ
ପର୍ବତ ପକାଇ ଗଲେ ପଳାଇଣ ।
ମଢ଼ିଆଳ ପେଣ୍ଡ ନେଲେ ଖଣ୍ଡେ ମାରି
ଧୋବା ଦୁଠ କ୍ରୂର କରିନେଲେ ଦୁଇଚାରି ।
ରାତ୍ର ଅର୍ଦ୍ଧମାନେ ରାମଚନ୍ଦ୍ର ଜନମ ଯେ
ହୋଇ
ବଶିଷ୍ଠଙ୍କୁ ନୃପତି ଆଣିଲା ହକରାଇ ।
ସୁମନ୍ତ ସହିତେଣ ପଣ୍ଡିତ ଜନ ଘେନି
ଜନ୍ମ କର୍ମ ବିଧ୍ ଖୋଜନ୍ତି ମହାମୁନି ।
ଗ୍ରହପୁତ୍ର ଆସି ଥାପିଲେ ଜାତକ କୋଠି
ବୋଇଲେ ତିନିପାଦେ ବୃହସ୍ପତି ଦେଲେ
ଦୃଷ୍ଟି ।୧୦
ଧନୁଲଗ୍ନେ ହୋଇଲେ ଜ୍ୟେଷ୍ଠପୁତ୍ର ଜାତ
ମକରେଣ ଜାତ ଆବର ତିନିପୁତ୍ର ।
ପୁଷ୍ୟା ନକ୍ଷତ୍ର ଘେନି କକଡ଼ା ରାଶି ହୋୟେ
ଜନ୍ମିଲା ଯେହୁ ତୋର ପ୍ରଥମ ତନୟେ ।
ଆବର ତିନିଙ୍କରି ଅଶ୍ଳେଷା ନକ୍ଷତ୍ର
କକଡ଼ା ରାଶି ଯେ ହୋଇଲା ଚାରିପୁତ୍ର ।
ଶୁଭ ବେଳ ଜାତ ସର୍ବଗ୍ରହେ ବଳୀ
ଚାରିଗୋଟା ଗ୍ରହ ସମ୍ମୁଖେ ଛନ୍ତି ମିଳି ।
ଧନୁ ଲଗ୍ନେଣ ଯେ ଅଛନ୍ତି ଗ୍ରହଚାରି
ୟେକମାତ୍ର ଦେବଗୁରୁ ହୋଇଛନ୍ତି
ଅତିଚାରୀ ।୨୦
ଯେ ପୁତ୍ର ଧାର୍ମିକ ହୋଇବେ ନରସାଇଂ
ତିନିପୁରେ ଯେହାଙ୍କୁ ବଳେ ସମ ନାହିଁ ।
ଧାର୍ମିକ କୁଶଳ ହୋଇବେ ଶାନ୍ତିଶୀଳ
ସୁଜନ ସୁବୁଦ୍ଧି ହୋଇ ଉଧରିବେ କୁଳ ।
ରାଶିପତ୍ର ଲିହି ଯେ ସମର୍ପିଲେ ଆଣି
ଲକ୍ଷେକ ବ୍ରାହ୍ମଣ ଭୋଜନ ଦେଲେ
ନୃପମଣି ।

ଶଙ୍କର ଆଳେ ଲକ୍ଷେ ଗୋଦୁହନ କରାଇ
ଚଣ୍ଡୀ ଅପରାଜିତ ଲକ୍ଷେ ବ୍ରାହ୍ମଣଙ୍କୁ ରାଇ ।
ପାତ୍ର ସୁମନ୍ତଙ୍କୁ ରାଏ ଦେଲେ ଶାଢ଼ୀ
ଯେ ଯାହା ମନ୍ଦିରକୁ ଗଲେ ହସ୍ତୀ ଚଢ଼ି ।୩୦
ରାଜା ପରବେଶ ଅନ୍ତପୁରେ ଯାଇ
ଦେଖିଲା ଅନ୍ତୁଡ଼ିରେ ରାଣୀ ଛନ୍ତି ଶୋଇ ।
ବୃଦ୍ଧିବନ୍ତ ନାରୀ ଅଛନ୍ତି ବହୁତ
ଯେ ବିଧ୍ ବିଧାନ କରନ୍ତି ସମସ୍ତ ।
ଲାହିକାଟି ପୁତ୍ରନ୍ତ ସ୍ନାହାନ କରାଇଲେ
ଅଗର ଚନ୍ଦନ କାଠ ଅନ୍ତୁଡ଼ି ଲଗାଇଲେ ।
ନେତପାଟ ଶେଯ ରଞ୍ଚିଲେ ଯତ୍ନକରି
ଉପରେଣ ଚାନ୍ଦୁଆ ବିଚିତ୍ର ମଶେରୀ ।
ଧାଇ ଧରାଇଣ ଗାଈ ଦୁଧ ଦେଲେ
ପ୍ରାଣୁ ଅଧିକ କରି ପୁତ୍ରନ୍ତ ପାଳିଲେ ।୪୦
କଶ୍ୟପ ଅଦିତି ଯେହ୍ନେ ଇନ୍ଦ୍ର ପୁତ୍ର ପାଇ
ଦଶରଥ ରାଣୀ ତେହ୍ନେ ଆନନ୍ଦ ଯେ
ହୋଇ ।
ଦାସୀଙ୍କର ଚେଷ୍ଟା ଆନୁଆନ ରୀତି
ନବରୁ ବାହାର ହୋଇ ଦାଣ୍ଡରେ ବୁଲନ୍ତି ।
ତୁଣ୍ଡରେ ପାନ ମୁଣ୍ଡରେ ଫୁଲ ଖୋଷା
ଆଡ଼େ କରି ଚାହିଂଣ ଦିଅନ୍ତି ମୃଗିହସା ।
ଲମ୍ବ ପଣତ ଯେ ଫରହର ଉଡ଼ି
କ୍ଷଣେ ଚାଲି କ୍ଷଣେ ଦିଅନ୍ତି ଧାଉଡ଼ି ।
ଗାଲରେ ହଳଦୀ ଯେ ଆଖିରେ କଜ୍ଜଳ
ପୁଣ ପୁଣ ଫେଡ଼ନ୍ତି ଯେ ଖୋପାର
ଫୁଲମାଳ ।୫୦
ହିଆରୁ ପଣତ ଯେ ଆଡ଼ କରି ଦ୍ୟନ୍ତି
ଅଳପ ହସିଣ ଆଖି ଛଟା ଯେ ମାରନ୍ତି ।
ନଗ୍ର ନରନାରୀ ଆନନ୍ଦ ସମସ୍ତ
ବୃଦ୍ଧାରାଜା ଆମ୍ଭର ପାଇଲା ଚାରିପୁତ୍ର ।
ଚମ୍ପାବତୀ ନଗ୍ରରେ ଯେ ଲୋମପାଦ ରାୟେ
ପୁତ୍ର ଜାତ ଶୁଣି ତତକ୍ଷଣେ ଆୟେ ।
କଉଶଲ୍ୟା ଭାଇ କଇକୟା ପିତା
ଅଯୋଧାକୁ ଅଇଲେ ପାଇଣ ବାରତା ।

ସୁମିତ୍ରାର ଭାଇ କଇକୟାର ଭାଇ
ପୁତ୍ର ଜନ୍ମ ଶୁଣିଣ ସେମାନେ ଅଇଲେ
ଧାଇଁ ।୬୦
ଦେଖିଲେ ଦଶରଥର ଚାରି ତନୟ ଜାତ
ଅତି ଉଷତେଣ ଦେଖିଲେ ପରମାର୍ଥ ।
ଯେଥୁ ଅନ୍ତରେ ଗଲାଦିନ ଚାରି
ପାଞ୍ଚଦିନେ ମଉଳା ଜଗନ୍ତି ପାହାରି ।
ଯୋଗିଜନ ଯାହାକୁ ହୃଦରେଣ ଚିନ୍ତି
ଅନେକ ଯତ୍ନ କରି ତାହାକୁ ଜଗନ୍ତି ।
ପୁଅଙ୍କ ମଉଳାକୁ ବଧାଇ ରାଜା ଦେଲା
ଧନବସ୍ତ୍ର ଦେଇ ପୁରୁଷାର୍ଥ କରାଇଲା ।
ରଜନୀ ପ୍ରଭାତେ ହୋଇଲା ଷଠୀଆରି
ଅନ୍ତୁଡ଼ି ମନ୍ଦିର ତହିଁ ଲିପନ୍ତି ନାରୀ ।
ପୁର ମଣ୍ଡାଇଣ ସେ ଜାଲ ବେଢ଼ାଇଲେ
ମୀନରୂପେ ହରିଙ୍କି ରଖିତ ମନକଲେ ।
ସୁବର୍ଣ୍ଣ କଉଡ଼ି ଘେନି ତୋଳାଇଲେ
ଷଠୀଘର
ହୁଳହୁଳି ଶବଦ ଶୁଭଇ ଅପାର ।
ଦିଉଛାଇଙ୍କି ପୂଜା କରନ୍ତି ନାରୀ ମିଳି
ଛାଗ ମହିଷି ଯେ ଦିଅନ୍ତି ନେଇ ବଳି ।
ଅନ୍ନ ପିଷ୍ଟକ ଯେ ବିଭିନ୍ନ ଗନ୍ଧ ପୁଷ୍ପ
ଧୂପ ଦୀପେ ପୂଜା କରନ୍ତି ବିଶେଷ ।
ଯେଥୁ ଅନନ୍ତରେ ଯେ ସାତଦିନ ଉଠିଆରି
ଅଷ୍ଟମ ଦିବସେ ବୃଧ ଆଠୁଆରି ।୮୦
ମହାଦେଈ ତିନି ହୋଇଲେ ମାଜଣା
ଅନେକ ଧନ ଦେଲେ ଦଶରଥ ରଣା ।
ଦିନୁ ଦିନୁ ଦଶନ୍ତି ପୋୟେ ଆନୁଆନ
ଅଗାଦ ଜଳେ ଯେସନେ ବଢ଼ଇ ପଦ୍ମବନ ।
ଶୁକଳ ପକ୍ଷରେ ଚନ୍ଦ୍ରମା ଯେହ୍ନେ ଦିଶି
ଏକବିଂଶ ରାତ୍ର ହୋଇଲାକ ଆସି ।
ବୈଶାଖ କୃଷ୍ଣ ଯେ ଚତୁର୍ଦ୍ଦଶୀ ଦିନ
ନଗ୍ର ମଣ୍ଡାଇଲେ ଅଯୋଧା ରାଜନ ।
ତୀର୍ଥଜଳେ ପୁତ୍ରନ୍ତ ସ୍ନାହାନ କରାଇଲେ
ରତ୍ନଖଟ ଦୋଳି ଉପରେ ଶୁଆଇଲେ ।୯୦

ଗ୍ରହଶାନ୍ତି କରିଣ ଦକ୍ଷିଣା ଦାନ ଦ୍ୟନ୍ତି
ଅନ୍ନ ବସ୍ତ୍ର ଛତ୍ର ତୈଳ ବିଳୋହନ୍ତି ।
ନଗ୍ର ନରନାରୀ ଅଇଲେ ବନ୍ଦାଇ
ଢୋଲ ଦମା ଟମକ ନିଶାଣ ବାଜଇ ।
ନୃତ୍ୟ ଠାବେ ଠାବେ କରନ୍ତି ନରନାରୀ
ସ୍ୱର୍ଗେ ସାଧୁ ସାଧୁ ଦେବତାୟେ କରି ।
ବଶିଷ୍ଠ ମହାମୁନି ଅଗ୍ନିରେ ଆହୁତି ଦେଲେ
ବେଦମନ୍ତ୍ର ପଢ଼ି ଆଶିଷ ବାଂଛିଲେ ।
ଶତେକ ଶଙ୍ଖ ଯେ ଶତେକ ମହୁରି
ସହସ୍ରେକ କନ୍ୟା ହୁଳହୁଳି
ଧ୍ୱନିକରି ।୧୦୦
ଦଧି ମାଛ ପୂର୍ଣ୍ଣକୁମ୍ଭ ଆଗରେଣ ଥାପି
ଶ୍ୱେତ ପାରୁଆ ଯେ ରାଜହଂସ ପକ୍ଷୀ ।
ମଙ୍ଗଳ ଅଷ୍ଟକ ପଢ଼ନ୍ତି ଜଉତିଷ
ସୁଜ୍ଞ ଦ୍ୱିଜବରେ କରନ୍ତି ଆଶିଷ ।
ମନ୍ତ୍ରୀ ଅମନାତ୍ୟ ଘେନିଣ ଦଶରଥ
ମନରେ ଆନନ୍ଦ ହୋଇଲା ନରନାଥ ।
ବଶିଷ୍ଠ ମହାମୁନି ଜ୍ୟେଷ୍ଠପୁତ୍ର କର୍ଣ୍ଣେ
ସାରସ୍ୱତ ମନ୍ତ୍ର କହିଲେ ମହାମୁନ୍ୟେ ।
ଋଷି ପଚରନ୍ତି କେବଣ ନାମ ଦେବା
ଭୋ ପଣ୍ଡିତ ଜନେ ବିଚାରି କହିବା ।୧୦
ଦଶରଥ ବୋଇଲେ ତୁ ଭୂତ ଭବିଷ୍ୟ ଜ୍ଞାତା
ସବୁରି ସନମତେ ତୁମ୍ଭର ଯିସ କଥା ।
ବ୍ରହ୍ମମୁନି ବୋଇଲେ ଏ ତୁମ୍ଭର ଜ୍ୟେଷ୍ଠ ପୁତ୍ର
ଦେଖିଣ ରମ୍ୟ ଉପୁଜଇ ଯେ ମୋହୋର
ଯେ ନେତ୍ର ।
ଆବର ସୁନ୍ଦର ଯେ ମଧୁର ମୂରତି ଶ୍ୟାମ
ଯେହାର ନାମ ଗୋଟି ହେଉ ଯେ ଶ୍ରୀରାମ ।
ଯେହାର କନେଷ୍ଟ ଯେ ଭାରା ଅର୍ଥେ ଜାତ
ଯେହାର ନାମ ଗୋଟି ହୋଇବାକ ଭ୍ରଥ ।
ଯେହାର କନେଷ୍ଟ ଯେ ସୁମିତ୍ରାର ବଳା
ରୂପ ଗୁଣେ ସୁନ୍ଦର ଅଟଇ ଅନର୍ଗଳା ।୨୦
ଯେହାର ନାମ ଗୋଟି ହୁଅଇ ଲକ୍ଷ୍ମଣ
ସବୁହୁଁ ସାନ ଯେ ଅଟଇ ବିଚକ୍ଷଣ ।

ଶତ୍ରୁ ଦର୍ପ ହାଦେ ମର୍ଦ୍ଦିବାକ ବୀର
ଶତ୍ରୁଘନ ନାମ ହୋଉ ଯେ ପୁତ୍ରର ।
ଯହୁଁ ପୁତ୍ରଙ୍କର ନାମ ବଶିଷ୍ଠ ଯେ ଦେଲେ
ଶୁଣିଣ ସମସ୍ତେ ସନ୍ତୋଷ ହୋଇଲେ ।
ଯେ ଯାହାର ପୁରେ ଗଲେ ନରନାରୀ
ବୋଲି ଶୁଆଣି ସେ ନାମ ତହିଁ ସାରି ।
ରାମ ଲକ୍ଷ୍ମଣ ଭ୍ରଥ ଶତ୍ରୁଘନଙ୍କଇ ଦେଖି
ଦଶରଥ ନିର୍ମଳ ହୋଇଲା ବେନି
ଆଖି ।୩୦

* * *

ଦିନୁଦିନ ପୋୟେ ବଢ଼ନ୍ତି ଚନ୍ଦ୍ର ଜାଣି
ଯେକା ପେଟୁ ଜନ୍ମପ୍ରାୟେ ପାଳନ୍ତି
ସର୍ବରାଣୀ ।
ଉଠିଆଣି ଶେଜେ ଶୋଇଥିଲେ ପୋୟେ
ତିନିମାସ ପ୍ରବେଶେଣ ଅଣିଆଇଁ ଶୋୟେ ।
ଉବୁରି ହୋଇ ଯେ ବାହାନ୍ତି ଗୁଲୁଗୁଞ୍ଚା
ଖେଳନ୍ତି ଖେଳ ଯେ ତାହାଙ୍କ ମନଇଛା ।
କଟି ପାଟ ଡୋର ଘାଗୁଡ଼ି ଘଣ୍ଟି ଗୁନ୍ଥା
ବାହେଣ ବାହୁଟି ଗଳାରେ ସୁନା ସୂତା ।
କେବଣହିଁ ଦିନେ ରାମ ପୀତବସ୍ତ୍ର ପିନ୍ଧି
ହସ ହସ ହୋଇଣ ପରମ ସାନନ୍ଦି ।୪୦
ପିତାଙ୍କୁ ଦେଖିଣ ରାମ ଲାଜ ଲାଜ କରି
ଧାଈର କୋଳେ ଧାଇଁ ପଶନ୍ତି ବାହୁଡ଼ି ।
ଦଶରଥ ବୋଲଇ ଆସ ଆସ ବାବୁ
ଯେ ମୋହୋର ସମ୍ପଦ ତୋହୋର ସିନା
ସବୁ ।
ନୀଳ ମୁଖ ଗୋଟି ତୋର ପରିମୁଣ୍ଡା ଯାଇ
ଯେ ମୋହୋର ରଘୁବଂଶର କାରେଣୀ ଅଟୁ
ନା ତୁ ସାଇଁ ।
ଭ୍ରଥ ସହିତେଣ ଲକ୍ଷ୍ମଣ ଶତ୍ରୁଘନ
ବେଢ଼ି ଅଛନ୍ତି ଯେ ମହାଦେଈମାନ ।
ଧାଈଙ୍କର କୋଳେ ଅଛନ୍ତି ଚାରି ପୋୟେ
ରାଜା ପଚରଇ କେତେକ ବୟେସ
ହୋୟେ ।୫୦

କୈକୟା ବୋଲଇ ଦେବ ବେନି ବରଷ
ଯେ ପୂରି
ଅଢ଼ାଇ ବରଷ ହୋଇଲାନି ଦଣ୍ଡଧାରୀ ।
ଯେହି ଜ୍ୟେଷ୍ଠକୁ ଦେବ ଛବିଶ ମାସ ହୋଇ
ମହାଦେଈ କଥା ଶୁଣି ଦଶରଥ କହଇ ।
ଅଢ଼ାଇ ବରଷ ତ ହୋଇଲା ପରବେଶ
କର୍ଣ୍ଣବେଧ କରାଇବା ଯେହୁ ଆଷାଢ଼ ମାସ ।
ଚନ୍ଦ୍ରମାସ୍ୟା ପଣନ୍ତେ ନୋହିବାକ କିଛି
ବଂଶାବଳୀ କର୍ମ ଯାହା ପୂର୍ବେ ଅଛି ।
ଯେତେକ ବୋଲିଣ ଯେ ଦଶରଥ ରାୟେ
ବାହାରେ ଅବକାଶ ବଶିଷ୍ଠ
ହକରାୟେ । ୬୦
ସୁମନ୍ତ ମନ୍ତ୍ରୀ ଘେନି ଯେ କରନ୍ତି ବିଚାର
ଗଣକ ଗଣିଲା ସେ ନକ୍ଷତ୍ର ତିଥି ବାର ।
କର୍ଣ୍ଣବେଧ ଅନୁକୂଳ ଦିଅ ବେଗେ ଖୋଜି
ଯେସନେକ ବୋଇଲେ ଯେ ଅଯୋଧାର
ରାଜି ।
ଶୁଣି ଜଉତିଷ କହଇ ଖଡ଼ି କାଢ଼ି
ଆଷାଢ଼ ଶୁକଳ ଯେ ଦଶମୀ ଚାରିଘଡ଼ି ।
ଗୁରୁବାର ସ୍ୱାତୀ ନକ୍ଷତ୍ର ପ୍ରସିଦ୍ଧି
କର୍ଣ୍ଣବେଧ ନକ୍ଷତ୍ରକୁ ଅଟଇ ମହାସିଦ୍ଧି ।
ଶ୍ରୀରାମ ନକ୍ଷତ୍ରକୁ ଅଟଇ ମୈତ୍ର ତାର
ଚତୁର୍ଥ ଚନ୍ଦ୍ର ତାର ଅଟଇ ଦେବ
ତୁଳର ।୭୦
ଯେ ଦିନ ସ୍ୱାମୀ ଦୁଇ ଘଡ଼ି ବେଳ
ଆବର ତିନିପୁତ୍ରଙ୍କୁ ଅଟଇ ଅନୁକୂଳ ।
ଶୁକ୍ରଙ୍କର ବେଳେ ନକ୍ଷତ୍ର ଦେବ ଚିତ୍ରା
ତହିଁକି ସାଧେକ ତାର ହୋଇଛି ପବିତ୍ରା ।
ଚତୁର୍ଥ ଚନ୍ଦ୍ର ଯେ ସବୁଙ୍କୁ ଅଟଇ
ମିଥୁନ କକଡ଼ା ଦୁଇ ଲଗ୍ନ ଅଛଇ ।
କର ସର୍ବ କର୍ମ ସାମନ୍ତ ବେଳ ହଉ
ରାମକୁହିଁ ଯେ ମଘାରେ ଅଟେ ରାହୁ ।
ଦେବଗୁରୁ ପଞ୍ଚମେ ଷଷ୍ଠରେ ସୂର୍ଯ୍ୟ ପୁତ୍ର
କର କର୍ଣ୍ଣବେଧ କାଲହିଁ ପବିତ୍ର । ୮୦

ଶୁଣି ନୃପତି ଯେ ସୁମନ୍ତକୁ ଚାହିଁ
କରାଅ ସମ୍ଭାର ବୋଲିଣ ବୋଲଇ ।
ରୁଦ୍ର କହନ୍ତି ଗୋ ଶୁଣ ତୁ ପାର୍ବତୀ
ନଗ୍ରପୁର ମଣ୍ଡାଇଲେ ଅଯୋଧା ଭୂପତି ।
ଆଷାଢ଼ ଶୁକଳ ଯେ ଦଶମୀ ଗୁରୁବାର
ସ୍ୱାତୀ ନକ୍ଷତ୍ର ସେ ଅଟଇ ଉପଚ୍ଛର ।
ଛାୟା ମଣ୍ଡପ ତଳେ ବିଜୟେ ଦଶରଥ
ପୁତ୍ରନ୍ତ ଘେନିଣ ବିଜୟେ ନରନାଥ ।
କୁଳର ପୁରୋହିତ ବଶିଷ୍ଠ ମହାମୁନି
ଅଗ୍ନି ଆଚ୍ଛାଦନ କରନ୍ତି ମନ୍ତ୍ର ଘେନି । ୯୦
ପୂର୍ଣ୍ଣକୁମ୍ଭ ଥାପି ବରୁଣ ପୂଜା କଲେ
ଶୁଭଲଗ୍ନ ବେଳେ କର୍ଣ୍ଣ ବିନ୍ଧାଇଲେ ।
ନବଗ୍ରହ ପୂଜନ୍ତି ଆପଣେ ତପଚ୍ଛରୀ
ବାଦ୍ୟମାନ ବଜାନ୍ତି ଶଙ୍ଖ ଯେ ମହୁରୀ ।
ପହରକ ଭିତରେ ସାରିଲେ ସର୍ବକର୍ମ
ଦେଖିଣ ସାନନ୍ଦ ଯେ ନୃପତିର ମନ ।
ରାଜା ବହୁତ ଯେ ଦେଲା ଦାନ ଧର୍ମ
ଯେ ଯାହା ମାଗନ୍ତି ଅନ୍ନ ବସ୍ତ୍ର ଦାନ ।
ଦିନାକେତେ ଗଲାରୁ ଶର୍ବଣ ଘାତ ଶୁଖି
ସୁବର୍ଣ୍ଣ ନୋଳିମାନ ପୁଅଙ୍କ କର୍ଣ୍ଣେ
ସଞ୍ଚି ।୧୦
ପୁତ୍ରଙ୍କର କର୍ଣ୍ଣେ ରତ୍ନ ଆଭରଣ କଲେ
ଶୁଣ ପ୍ରିୟା ଭବାନୀ ଗୋ ଦିଗମ୍ବର
କହିଲେ ।
ପୁତ୍ରଙ୍କୁ ଦେଖିଣ ନୃପତି ହୋୟେ ତୋଷ
ଯେସନେକ ପ୍ରବେଶ ଯେ ପଞ୍ଚମ
ବୟେସ ।
ପଣ୍ଡିତ ହକରାଇ ଶୁଭ ଯୋଗ ଘେନି
ଆପଣେ ବିଚ୍ଛରଇ ବଶିଷ୍ଠ ତପୋଧନି ।
ମାର୍ଗଶିର ପଞ୍ଚମୀ କୃଷ୍ଣପକ୍ଷ ରବିବାର
ପୁଷ୍ୟା ନକ୍ଷତ୍ର ଯେ ରାମଙ୍କ ସାଧ ତାର ।
ପହରେକ ଭିତରେଣ ବସିବେ ପାଠପଢ଼ି
ବୃହସ୍ପତି ଉଦୟେ ବେଳ ପାଞ୍ଚଘଡ଼ି । ୧୦
ଅନୁକୂଳ ବିଚ୍ଛରି ତଣ୍ଡୁଳ ଫଳ ଦେଇ

ପୁତ୍ରଙ୍କୁ ସମର୍ପିଲେ ଓଝାକଇ ନେଇ ।
ବିଘ୍ନରାଜ ସରସ୍ୱତୀ ପୂଜା ଆଚରିଣ
ଶ୍ରୀରାମ ଲକ୍ଷ୍ମଣ ଯେ ଭ୍ରଥ ଶତୃଘନ ।
ପଢ଼ନ୍ତି କୁମାରେ ସେ ଶ୍ଳୋକ ଶାସ୍ତ୍ର ଗୀତ
ଦିନୁଦିନୁ ବିଦ୍ୟା ହୋଇଲା ପରାପତ ।
ଯାହାର ଦାସୀ ଯେ ଅଟଇ ଶାରଦା
ତାହାକୁ ବିଚିତ୍ର କି ଅଟଇ ବେଦବିଦ୍ୟା ।
ସଂସାରର ହିତେ ମାନେବ ତନୁ ଧରି
ବିବିଧ ପାଠ ସେ ପଢ଼ନ୍ତି ଦଇତାରି ।୨୦
ସାତ ବରଷକ ହୋଇଲାକ ଆସି
ବଶିଷ୍ଠଙ୍କୁ ଘେନି ଭାଳଇ ଦଶରଥ ବସି ।
ଶ୍ରୀରାମଙ୍କୁ ଦେଖି ମୋର ଆନନ୍ଦ ଚିତ୍ତ
ଦେସି ଆଜ୍ଞା ମୁନି ରାମଙ୍କୁ କରାଇବା ବ୍ରତ ।
ଗଣକ ଗଣାଇ ଯେ ଘେନିଲେ ଅନୁକୂଳ
ଗର୍ଭ ଆଠମାସ ବୋଲି କହଇ ଗ୍ରହପାଳ ।
ଜ୍ୟେଷ୍ଠ ଶୁକ୍ଳ ସପତ ଯେ ଶ୍ରବଣା ନକ୍ଷତ୍ର
ବୃହସ୍ପତି ବାର କାଲହିଁ ପବିତ୍ର ।
ଯେ ବିଧି ବିଧାନ ସଜ କରାଇଲେ
ଇଷ୍ଟ ବନ୍ଧୁମାନ ନିମନ୍ତ୍ରଣ କଲେ । ୩୦
କଉଶଲ୍ୟା କୈକୟା ସୁମିତ୍ରାର ଭ୍ରାଥ
ଲୋମପାଦ ଅଇଲେ ପାଇଣ ବାରତ ।
ନଗ୍ର ନରନାରୀ ଆନନ୍ଦ ହୋୟେ ଚିତ୍ତ
ମଣ୍ଡନ୍ତି ଘର ଯେ ବିବିଧ ରତ୍ନ ମତ ।
ବଶିଷ୍ଠ ମହାମୁନି କୁଳର ପୁରୋହିତ
ବ୍ରତ ବିଧାନ ସେ କରନ୍ତି ସମସ୍ତ ।
ଦିନେକ ଥାଉଣ ସେ ମଙ୍ଗଳ ବିଧି କରି
ଜାତ କର୍ମମାନ ବେଦ ଆଭରଣ କରି ।
ଚୂଡ଼ାକର୍ମ ଭିକ୍ଷାପାତ୍ର ଷଡ଼କର୍ମ ହୋମ
ପଇତା ପ୍ରଦାନ ହୋଇଲେ ଶ୍ରୀରାମ । ୪୦
ଦେବେ ଜୟେ ଜୟେ କରନ୍ତି ଆନନ୍ଦେ
ସ୍ୱର୍ଗେ ଥାଇ
କୁସୁମ ବରଷନ୍ତି ସାନନ୍ଦ ମନ ହୋଇ ।
ଶଙ୍କର କହନ୍ତି ଶୁଣ ଗୋ ଦେବୀ ଉମା
ତ୍ରୈଲୋକ୍ୟେ ଶୁଭିଲା ଯହୁଁ ଶ୍ରୀରାମ
ମହିମା ।

ବ୍ରତ ହୋଇଣ ସେ ସର୍ବ ବିଦ୍ୟା ଶିଖି
ରଥ ଗଜ ଅଶ୍ୱ ଖେଳା ଢେଣୁଆ ଧନୁକି ।
ଗଦା ପାଞ୍ଚେଣି ମାଲବିନ୍ଧାଣି ଫଡ଼ି ଧାପ
ଉଭା ଚାହାଣୀ ଠିଆ ବିତା ହାଥ ।
ଭଇଡ଼ା ସାପଇ ତାଳ ଚଉରାସ
ସକଳ ବିଦ୍ୟା ବିଧାନ ଶିଖିଲେ
ରଘୁଶିଷ । ୫୦
ଯେଥୁ ଅନନ୍ତରେ ଦଶବରଷ ଗଲା
କୁମରଙ୍କୁ ବିଦ୍ୟା ପ୍ରାପତ ହୋଇଲା ।
ସାଙ୍ଗେଣ ସୁମନ୍ତ ପାତ୍ର ସାମନ୍ତ ଘେନି
ବେଣ୍ଟ ଯାନ୍ତି ରାମ ସାଜିଣ ସଇନି ।
ସିଂଘ ଗଜ ଶାର୍ଦ୍ଦୋଳ ଯେ ମୃଗ ଭାର ଭାର
ଗଣ୍ଡା ମହିଷି ଯେ ଗୟେଳ ଅପାର ।
କଟକେ ପଶନ୍ତେ ଦେଖନ୍ତି ସର୍ବ ଜନ
ଧୂର୍ଜଟୀ କହନ୍ତି ଗୋ ଚନ୍ଦ୍ରବଦନୀ ଶୁଣ ।
ପରମବ୍ରହ୍ମ ସେ ସ୍ୱୟେଂ ରାମ ଅବତାର
ଦୁଃଖୀଜନ ନିସ୍ତାରନ୍ତା ମ୍ଳେଚ୍ଛ ନିବାର ।୬୦
ଜଗତଜନ ହିତେ ସୁରଗଣ ଛଳେ
ପରମାନନ୍ଦ ଅବତାର ହୋଇଲେ
ରବିତଳେ ।
ନାମ ସୁମରିଲେ ଗୋ ଯେତେ ପାପ ଥାଇ
ତେତେକ ଦୁସ୍ତରୁ ଯେ ନିସ୍ତାର ତ୍ରୈଲୋକ୍ୟ
ଗୋସାଇଂ ।
ଯେ ସେ ଆଦିକାଣ୍ଡ ସାମ ବେଦ ବାଣୀ
ବାଲମିକ ମହାମୁନି ଯାହା ସେ ବଖାଣି ।
ମୁଂ ତାହା ପ୍ରସନେ କହଇ ସଖୀ ତୋତେ
ତୁ ଯେବେ ବିନୋଇ ପୁଛାକଲୁ ମୋତେ ।
ପଞ୍ଚମ ବେଦ ଯେହା ଏକମନେ ଶୁଣ
ଶ୍ରୀରାମ ଚରିତ ଯେ ନାମ ରାମାୟେଣ ।୭୦
ପୁତ୍ର ପ୍ରାପତ ଯେ ହୁଅନ୍ତି ଅପୁତ୍ରିକେ
ସମାପତ କରି ଶୁଣ ହୋ ସୁଜ୍ଞ ଲୋକେ ।
ବକତା ଜନହିଂ ଯେ ପାଆନ୍ତି ସଦଗତି
ମୋହୋର ଆଗେ ଯେ ଯେ କହିଛନ୍ତି
ବେଦପତି ।

ସଦାଶିବ ମୁଖରୁ ଯେ ବଚନ ପାଇ
ଉମା ନମସ୍କାର ଶିରେ କର ଦେଇ ।
ପ୍ରାଣର ବଲ୍ଲଭ ଶଙ୍କର ତ୍ରିପୁରାରି
ଯେଥୁଉତ୍ତାରେ କଥା କହନ୍ତି ଶୂଳଧାରୀ ।
ହୋଇବି ମୁକ୍ତ ମୁଂ ଯେ ଶୁଣିମି ରାମବାଣୀ
ତୋହୋର ସୁଦୟା କଲେଣ କପାଳୀ ।୮୦
* * *
ହର କହନ୍ତି ଗୋ ଯେଥୁଅନନ୍ତରେ
ବିଶ୍ୱାମିତ୍ର ମୁନି ଯେ କଉଶିକ ନଦୀ ତୀରେ ।
ଯଜ୍ଞ ଆରମ୍ଭ ସେ କଲେ ତପୋବନ୍ତ
ନିମନ୍ତ୍ରି ଆଣିଲେ ସେ ସକଳ ମୁନିନ୍ତ ।
ଯଜ୍ଞଶାଳ କରି ତିନି ଘର ତୋଳି
ସମିଧ ଯବ ଘୃତ ସଞ୍ଚଇ ତପଶାଳୀ ।
ପ୍ରଥମ ଦିବସେ ଅଗ୍ନିରେ ହୋମ ଦେଲେ
ପୁଣି ଦଇତ ବଳ ଧାଇଂଣ ପଡ଼ିଲେ ।
ହୋମ ଘର ଭାଙ୍ଗି ମୁନିନ୍ତ କରଝଡ଼ି
କେବଣ ତପୀଙ୍କର ମୁଛନ୍ତ ଓପାଡ଼ି ।୯୦
ସେହି ଅଗ୍ନିରେ ପୋଡ଼ିଲେ ତିନି ଛେଳି
ଭୋଜନ କରିଲେ ତାହା ତିଳ ଘୃତ ଗୋଳି ।
ବୋଲନ୍ତି ଅସୁରେ ତୁମ୍ଭର କିସ ଯଜ୍ଞ
ଭଲା ପଳାଇଲ ଅଛଇ ତୁମ୍ଭର ଭାଗ୍ୟ ।
ତୋଟି ରକଟିଣ ପିଅନ୍ତୁ ରକତ
ବୁକୁ ବିଦାରିଣ କାଢ଼ନ୍ତୁ ତୁମ୍ଭର ଅନ୍ତ ।
ଋଷିଙ୍କର ମାୟେଂସେ ତୋଷନ୍ତୁନା ପିଣ୍ଡ
ଯେହି ଦନ୍ତେ ଚାପି ଭାଙ୍ଗନ୍ତୁ ନିନା ମୁଣ୍ଡ ।
କେମନ୍ତେ ଜାଣିଲରେ ଭଲା ତରକିଲ
ଗୋଚର କଥା କିରେ ପ୍ରାଣ ଘେନି
ଗଲ ।୧୦୦
ଯେମନ୍ତେ ବୋଲି ଦତ୍ୟେ ଚଳିଗଲେ ଯହୁଂ
ବିଶ୍ୱାମିତ୍ର ଯଜ୍ଞଶାଳ ଦେଖିଲେ ଆସି ତହୁଂ ।
ଭଗ୍ନ ମନ୍ଦିର ପଦାର୍ଥ ନାରଖାର
ସଞ୍ଚିଲା ଦ୍ରବ୍ୟମାନ ନାଶ ଗଲା ଅପାର ।
ମୁନି ବିଚ୍ଛରଇ ଦେବି ଯେବେ ଶାପ
ଧର୍ମ କ୍ଷୟେ ଯିବ ପାଇବଇଂ ପାପ ।

ଅସୁରେ ପ୍ରବଳ ହୋଇଲେ ମହାଦୁଷ୍ଟ
ଯାଗ ଯଜ୍ଞ ଭାଙ୍ଗିଲେ ଦେଲେ ମହା କଷ୍ଟ ।
କେମନ୍ତେ ତପ ଅବା କରିବା ବନେ ଥାଇ
ଯେତେ ବୋଲି ମୁନି ମଢ଼ିଆକୁ
ଯାଇଂ ।୧୦
ଶୁଚିବନ୍ତ ହୋଇ ମୁନି ବସିଲାକ ଧ୍ୟାନେ
ଦନୁଜ ବଳ ହତ ହୋଇବ କେସନେ ।
ଯୋଗବଳେ ଦିଶିଲା ଦଶରଥ ସୁତ
ସେ ସେ ସଂହାରିବ ଅସୁର କୁଳ ଗୋତ୍ର ।
ଧ୍ୟାନମନେ ଜାଣିଲେ ସେ ମହାଋଷି
ଅଯୋଧ୍ୟା ନଅରକୁ କୋପଭରେ ଆସି ।
ବାଟରେ ଆସି ସେ ବିଚ୍ଛରଇ ମୁନ୍ୟ
ଯେବେ ସେ ଦତ୍ୟବଳ ହୋଇବେ
ନିଧନ ।
ଶ୍ରୀରାମର କଥା ସୁମରଇ ପଥେ ଯାଉ
ପୀତବସ୍ତ୍ର ଶଙ୍ଖ ଚକ୍ର ଚତୁର୍ବାହୁ । ୨୦
ଶ୍ରୀବଛ ଲକ୍ଷଣ ସେ କଉସ୍ତୁଭ ହାର
କିରୀଟି କୁଣ୍ଡଳ ଯେ ତେଜେ ପରଖର ।
ଗରୁଡ଼ ପିଠିରେ ଶଙ୍ଖ ଚକ୍ର ଧରି
ମୁନିକି ଦିଶଇ ଯେ ମେଦିନୀରେ ଅବତରି ।
ଦଶରଥ ରାଜାର ଅଟଇ ଜ୍ୟେଷ୍ଠ ବଳା
କଉଶୁଲା ଗର୍ଭରୁ ଜାତ ବିଷ୍ଣୁର ନିଜ କଳା ।
ରାବଣ ମାରିବେ ସେ ଦେବତାଙ୍କ ଛଳେ
ତେଣୁ ସେ ଅବତାର ହୋଇଲେ
ରବିତଳେ ।
ଋଶିଶୃଙ୍ଗ ମୁନି ସିଦ୍ଧ ଚରୁ ଦେଲା
ଯେସନେକ ବିଧାନ ବିଶ୍ୱାମିତ୍ରକୁ
ଦିଶିଲା । ୩୦
ଯେଥୁ ଅନନ୍ତରେ ଅଯୋଧ୍ୟାୟେ ପ୍ରବେଶ
ଦେଖନ୍ତି ମୁନି ଚନ୍ଦ୍ର କିରଣ ଜାଣି ଦେଶ ।
ଅଷ୍ଟରତ୍ନ ମଣ୍ଡିତ କଳସ ପନ୍ତି ପନ୍ତି
ଭିନ ଭିନ ପରି ଚିରାଳ ଉଡ଼ନ୍ତି ।
ନଗ୍ର ନରନାରୀ ଯେ ଦିଶନ୍ତି ସୁନ୍ଦର
ସ୍ୱର୍ଗର ଲୋକ କି ଜାଣି ପଟାନ୍ତର ।

ଯେବଣ ଦିନୁଂ ରାମ ହୋଇଲେ ତହିଁ ଜାତ
ସେହିଦିନୁ ସୁଫଳ ଅଯୋଧ୍ୟାର ସମସ୍ତ ।
ନିଧନେ ଧନ ଅପୁତ୍ରିକେ ପୁତ୍ର ଜାତ
ଆରୋଗ୍ୟ ହୋଇଲେ ସର୍ବଜନ ଗାତ୍ର ।୪୦
ସୁଖେଣ ପଣ୍ଡିତ ଯେ କାଳକୃତ୍ୟ ଘେନି
ଅଦାତ୍ରିକ ଲୋକେ ହୋଅନ୍ତି ମହାଦାନୀ ।
ନାରୀ ସଉଭାଗୀ ପୁରୁଷେ ଶାନ୍ତିଶୀଳ
ଯେ ଯାହାର ବସନ୍ତେ ବୃକ୍ଷେ ଦିଅନ୍ତି ଫଳ ।
ଇନ୍ଦ୍ର ପାଳଇ ଯେ ଅନାବୃଷ୍ଟି ନୋହେ
ବହୁତ କ୍ଷୀର ଯେ ଦୁହାଇଲେ ଗାଏ ।
ଯେ ଯାହାର କାଳେ ଭୋଗ କରଇ ରୀତି
ଦ୍ରବ୍ୟ ପରିପୂର୍ଣ୍ଣ ଯହିଂର ଯେ ଗତି ।
ଦେଖିଣ ପ୍ରଶଂସଇ କଉଶିକ ଯତି
ସାଧୁ ଯେ ନଗ୍ର ଚଞ୍ଚଳା ଯେଥି ସ୍ଥିତି ।୫୦
ବାସୁଦେବ ଯେବେ ହୋଇଲେ ଯେଥେ ଜାତ
ତେଣୁ ଯେ କଟକ ଯେ ଯେସନେ
ସଂଜାତ ।
ରଥ ଗଜ ଅଶ୍ୱ ଦେଖଇ ମୁନି ଯାନ୍ତେ
ପୁର ଗହଗହ କେ କରିବ ତଦନ୍ତେ ।
ଡଗରା ଜଣାଇଲା ନୃପତିକି ଯାଇ
ବିଶ୍ୱାମିତ୍ର ମୁନି ଆସୁଛନ୍ତି ଗୋସାଇଂ ।
ଶୁଣି ଦଶରଥ ତଡ଼ବେଗେ ଆସି
ବାଟରୁ ପାଛୋଟି ନେଲା ମହାଋଷି ।
ନବରେ ପ୍ରବେଶ ସେ ଯେ କରଇ
ପାଦପୂଜା
ଷଡ଼ ଅର୍ଘ୍ୟ ଦେଇ ପରରଇ
ମହାରାଜା ।୬୦
ନମସ୍କାର କରି ଯୋଡ଼ଇ ବେନିକର
ସିଂଘାସନେ ବସାଇ ପୁଚ୍ଛଇ ମୁନିବର ।
ଧନ୍ୟ ଆଜ ଜୀବନ ଦେଖିଲି ଗାଧି ଶିଷ
ଧନ୍ୟ ମୋହୋର ଜୀବନ ଧନ୍ୟ ମୋହୋର
ଦେଶ ।
ବିଶ୍ୱାମିତ୍ର ମୁନି ବ୍ରହ୍ମାର ସମାନ
ସେ ମୋର ମନ୍ଦିରକୁ କଲେ ଆଗମନ ।

କଉଶିକ ବୋଲଇ ଶୁଣ ଦଶରଥ
କୁଶଳ ଅଟଇ ନା ତୋ ବାରତା ସମସ୍ତ ।
ପ୍ରଜା ତୁ ପାଳୁନା ପୁତ୍ର ସମ କରି
ଇନ୍ଦ୍ର ବୃଷ୍ଟି କରଇ ନା ତୋହୋର ନିଜ
ପୁରୀ ।୭୦
କାଳେ କାଳେ କରି ଅଛୁନା ଗଡ଼ ସାଜି
ଅବଶ୍ୟ ଶତ୍ରୁ ଯେ ପଡ଼ଇ ମହାରାଜି ।
ଗଡ଼ର ଭିତରେ ଅଛି ନା ଝରପାଣି
ଧନ ସଞ୍ଚି ନା ଅଛୁ ନୃପମଣି ।
ଫରି ପାରିଦଣ୍ଡ ବାଣ, ପଞ୍ଚାବିଧି
କାଣ୍ଡ ଖଣ୍ଡା କୋଦଣ୍ଡ ସକଳ କାର୍ଯ୍ୟ ସିଦ୍ଧି ।
ଗଡ଼ ଯୁଝା ପାଇକ ଅଛୁନା ତୁ ସଞ୍ଚି
ଲେନ୍ତି ପଥର କାଣ୍ଡ ବିଶେଷେଣ ରଞ୍ଚି ।
ଅରେଖ ଅଙ୍ଗାର ଗୋରୁ ଅସ୍ଥିମାନ
ଯବଖାର ତପତ ଚିକ୍କଣ ବିଧାନ ।୮୦
ଖାଇ ଖଣା ଟୋପ ଟାଙ୍ଗୁ କମଳଶିରା
ଗଧାଇ ରଣ ପଞ୍ଚା ଦନ୍ତନା କାଙ୍ଗୁଲା ।
କୋନ୍ତ ଆବର ହାଥଖୁଲା ଦଉଡ଼ି
ଯେମାନ ସବୁ ଅଛିଟିକି ହୋ ଦଣ୍ଡଧାରୀ ।
ଜଡ଼ା ତେଲ ଦାରୁ ଅଚଳ ପଥର
ଶଗଡ଼ି ଶିକଳି କବାଟ ଅରଗଳ ।
ଶୂନ୍ୟ ଛିଟିକିଣି ଅଛି ନା ମହୀପାଳ
ସମସ୍ତ କୁଶଳ ଯେ ପୁଚ୍ଛଇ ଗାଧିବାଳ ।
ଭାଜିଲେ ପଳାଇନ୍ତ ଅଛି ନା ବଣ ବାଟ
ଚୋରୀ ଦ୍ୱାର ଲାଗଇ ନା ନିର୍ବାଣ
କବାଟ ।୯୦
ରଣେ ପଶି ବିମୁଖ ନୁହନ୍ତି ନା ସଇନି
ରହ ବୋଲି ବୋଇଲେ ରହନ୍ତି ନା ତୋହୋର
ବୋଲ ଘେନି ।
ବସି ଯୁଝାଇତ ଅଛି ନା ଭଲ ଠାବ
ପାତ୍ର ଜାଣଇଟିକି ଯୁଝିବାର ଭାବ ।
ରାତ୍ରରେଣ ଜଗି ସେ ପାରନ୍ତିଟିକି ଠଣା
କ୍ଷୀଣ ଶତ୍ରୁ ଦେଖି ଦିଅଇଟିକି ରାତି ହଣା ।
ବାହାର ଗଡ଼େ ବସଇଟିକି ହାଟ

ସର୍ବଦା ଯେଥି ରହଇ ନା ବଳ ଥାଠ ।
ଗଡ଼ରକ୍ଷା କରିଅଛି ନା ଦେବତା
ତାହାଙ୍କୁ ପୂଜା କରୁ ନା ମହାରଥା ।୧୦୦
ବୀର ଡାକ ହୁଳହୁଳି ପଡ଼ଇ ନା ଯୁଝିବାର
ବେଳେ
ମତ୍ତ ହସ୍ତୀ ଦ୍ୱାରେ ଥାଇ ନା ସର୍ବକାଳେ ।
ତିନିପୁରେ ପାଚେରୀ ଅଛଇ ନା ବଜ୍ରବାଣ
ଲୁହାର କବାଟେଣ ଦୁଇ ଦୁଇ କିଳିଣ ।
ଗଡ଼ ଜୟେ ଯିବାର କେହି ନ ଜାଣନ୍ତି ନା
ସନ୍ଧି
ତହିଂର ଭିତରେ ନ ଥାଇ ନା ବନ୍ଦୀ ।
ନସକର ଘେନିଣ ପଶୁ ନା ଭିତରେ
ରାତିହଣା ଦେଉ ନା ଶତ୍ରୁର ଉପରେ ।
ଯୁଦ୍ଧକାଳେ ଯୋଦ୍ଧାକୁ ଦେଉ ନା ପରସାଦ
ସମରେ ବାଜଇଟିକି ବିବିଧ ବୀର
ବାଦ୍ୟ ।୧୦
ପଳାଇଲା ଶତ୍ରୁକୁ ଗୋଡ଼ାଉନା ପିଠି ପାଡ଼ି
ଧାଡ଼ି ଉପରେର ତୁ ଦେଉନା ବିଷମ ଧାଡ଼ି ।
ଶତ୍ରୁର ସମ୍ପଦ ତୁ ଘେନୁ ନା ଛଡ଼ାଇ
ପର ସୀମା ପରିଯନ୍ତେ ଥାଉନା ଗୋଡ଼ାଇ ।
ଅଇରିକି ମନେ ତୋର ଥାଇଟିକି ତ୍ରାସ
ପର ସୀମା ଘେନିଲେ ମନେ ନୋହୁ ନା
ସନ୍ତୋଷ ।
ସାଧନା କରୁଟିକି ଆଖଡ଼ାରେ ପଶି
କେଡ଼େ ହୋଇଲେଣିଟି ତୋହୋର ଚାରି
ଶିଷି ।
ଦଶରଥ ବୋଲଇ କରପତ୍ର ଯୋଡ଼ି
ତୋହୋର ପ୍ରସାଦେ ସର୍ବ କୁଶଳ
ମୋହୋରି ।୨୦
ପୋୟେ ସାନ ସାନ ବାରହ ବରଷ
କିସ କାର୍ଯ୍ୟେ ତୁମ୍ଭେ ଅଇଲ ଗାଧି ଶିଷ ।
ମୁନି ବୋଲନ୍ତି ମୁଂ ଯେବଣ କାର୍ଯ୍ୟେ ଆଗତ
ତାହା ତୋହୋର ଆଗେ କହଇ ସୂର୍ଯ୍ୟ
ଗୋତ୍ର ।

ଯଜ୍ଞ ଆରମ୍ଭ ଆମ୍ଭେ ବିପୁନ୍ୟେଣ କଲୁ
ଅସୁରଙ୍କର ଭୟେ ଆମ୍ଭେ ନିର୍ବାଇ ନ
ପାରିଲୁ ।
ଯେବେ ମହାରାଜ କହିଲୁ ତୋତେ ଆସି
ରାଜାଙ୍କର ବାହୁ ବଳେ ତପୀଙ୍କର ତପସି ।
ପାପ ପୁନ୍ୟେଣ କାରେଣୀ ଅଟଇ ଯେ ରାଜା
ରାଜା ପ୍ରସାଦେ ଦେବତାଏ ପାନ୍ତି ପୂଜା ।୩୦
ମୁହିଂ ମହାମୁନି କରିବଇଂ ଯାଗ
ତୋହୋର ନୃପତି ହୋଇବ ପୁଣ୍ୟ ଭାଗ୍ୟ ।
ଦେବେ ସନ୍ତୋଷ ହୋଇବେ ହବି ପାନେ
କଲ୍ୟାଣ ପାଇବୁ ତୁ ଦଶରଥ ରାଜନେ ।
ଦେସି ନନ୍ଦନ ତୋହୋର ଶ୍ରୀରାମ ନାମ ଯେହୁ
ଅସୁର ମାରି ଯଜ୍ଞ ରଖିବାକ ସେହୁ ।
ଆନରେ ନିବାରି ହାଦେ ନୁହନ୍ତି ଦନୁଜ
ରାମ ସେ ଧଂସିବ ଦଇତଙ୍କର ବଳବୀର୍ଯ୍ୟ ।
ତୁ ହୋ ଦଶରଥ ନ ଧର ମନେ ଭୀତି
ଶ୍ରୀରାମ ବିଷ୍ଣୁୟେ ଜଗତ ରଖନ୍ତି । ୪୦
ବ୍ରହ୍ମାର ବୋଲେ ଯେ ଜାତ ତୋହୋର
କୋଳେ
ରାବଣ ମାରିବେ ଯେ ଦେବତାଙ୍କର
ଛଳେ ।
ଯେସନ ବିଧାନ ମୋତେ କହିଲାନି ଇନ୍ଦ୍ର
ନାରାୟଣ ଅବତାର ହୋଇଲେ ରାମଚନ୍ଦ୍ର ।
ବଶିଷ୍ଠକୁ ପଚ୍ଛର ଅଟଇଟିକି ଯେହୁ
ଶ୍ରୀରାମ ସେ ନାରାୟଣ ଶଙ୍ଖ ଚକ୍ର ବାହୁ ।
ଆନରେ ଦତ୍ୟ ବଳ ନୁହଇ ନିପାତି
ଶୁଣିକରି କରପତ୍ର ଯୋଡ଼ଇ ଦଶରଥ
ମହୀପତି ।
ପଞ୍ଚ ମନେ ଭାଳି କହଇ ଧୀର କରି
ବାରହ ବରଷ ସେ ତନୟ ମୋହୋରି ।୫୦
ଧାଇ ଦୁଧେ ପିଣ୍ଡ ସେ ରଖିଣ ଅଛନ୍ତି
ଅନ୍ତେସ୍ୱର ଭିତରୁ ବାହାର ନୁହନ୍ତି ।
ନାହାଲ ବେଲି ଧନୁ କାକ ପକ୍ଷୀ ଶର
ଆଜକୁ ଶ୍ରୀରାମ ମୋର ଯେମନ୍ତ ଧନୁର୍ଦ୍ଧର ।

ଯେ କେହ୍ନେ ଜାଣିମ ମୁନି ଯାଗ ରକ୍ଷାକରି
ପ୍ରାଣ ଛାଡ଼ିବ ସେ ଦଇତନ୍ତ ଦେଖି କରି ।
ଦିଗପାଳଙ୍କ ହସ୍ତେ ନ ମରନ୍ତି ଯେହୁ
ରାମକୁ ଆକ୍ରେଷି ମୁନି ଯିବେ କିମ୍ପା ସେହୁ ।
ଶଗଡ଼ିଆ ବଳଦ କାହିଂ ଥୋରି ବହି ଜାଣି
ମୋହୋରି ପୁତ୍ର କାହିଂ ପାରିବ ଦତ୍ୟ,
ହାଣି ।୬୦
ବାବୁ ବାଳୁତ ପୁତ୍ର ସେ ଯେ ନ ଜାଣଇ
କିଛି ।
ଖେଳିବା ଭୁଞ୍ଜିବାର୍ଗ ବୟେସ ହୋଇଅଛି ।
ଯୁବା ବୟେସେ ସିନା କରିବେ ସେହୁ ଯୁଦ୍ଧ
ତୁ ହୋ ମହାମୁନି ବିଚ୍ଛର କରି ବୁଝ ।
ବୃଦ୍ଧକାଳେ ମୋତେ ପ୍ରାପତ ତନୟେ
ନଦେଖି ମହାମୁନି ମୁଂ ମରିବି ନିଶ୍ଚୟେ ।
ତୁ ତ ସୁବୁଦ୍ଧି ଦୟା ହୋ କର ତପଶୀଳ
ମୋହୋର କର୍ମେ କିମ୍ପା ହୋ ହୋଇଲୁ
ବିଫଳ ।
ଚନ୍ଦ୍ର ଯେହ୍ନେ ଶୀତଳ ଲାଗଇ ସର୍ବ ତନୁ
କାମିକ ଜନକଇ ଆଛାଦଇ ଭାନୁ । ୭୦
ତୁ ମୋତେ ତେସନ ହୋଇଲୁ ଗାଧି ଶିଷ
ବାଳୁତ ପୁଅ ଯେ ରାମ କରିବଇଂ କିସ ।
ତୋହୋର ଆଜ୍ଞା ଦେଲେ ସନ୍ୟ ବଳ ଘେନି
ମୁହିଂ ତୋହୋର ଯାଗ ରଖିବି ମହାମୁନି ।
ବିଶ୍ୱାମିତ୍ର ବୋଇଲେ ହୋ ତୋତେ ନାହିଂ
ଯଶ
ତୋହୋରେ କି ଅସୁର ବଳ ହୋଇବେ
ବିନାଶ ।
ଦୃପିଷ୍ଟ ଅସୁରେ ସେ ଦେବଙ୍କୁ ନ ଡରନ୍ତି
ତୋତେ ଦେଖିଲେ କି ସେ ଆପଦେ ହେବ
ଶାନ୍ତି । ୮୦
ରାଜା ପଚ୍ଛରଇ ଶୁଣ ଗାଧିଶିଷ
କାହା କୁଳେ ଦନୁଜ ହୋଇଛନ୍ତି ଜାତ ।
ଋଷି ବୋଲନ୍ତି ସେ ରାବଣ ମହାବୀର
କୋଡ଼ିୟେ ଭୁଜ ତାର ଅଟଇ ଦଶ ଶିର ।

ମଧୁ ଦତ୍ୟ ଲବଣ ନାମେ ପୁତ୍ର
ଅକଳିତ ସଇନି ଦାନବ କୁଳ ଗୋତ୍ର ।
ସିନ୍ଧୁଳ ଗୋସିନ୍ଧୁଳ କୁଳେ ଅବତାର
ତାଡ଼େକୀ ସୁବାହୁ ଯେ ବେନି ଯେ ଅସୁର ।
ଖର ଦୂଷଣ ଯେ ତ୍ରିଶିରା ସହିତେ
ଦେବେଣ ବଧ ଯେ ନୁହନ୍ତି
ଦଇତ୍ୟେ ।୯୦
ଅଗ୍ନି ଯେହ୍ନେ କାଠରୁ ଉତପନ ହୋଇ
ପାଣି ପକାନ୍ତେ ସେ ତକ୍ଷଣେ ଲିଭଇ ।
ଶ୍ରୀରାମ ନୀର ସେ ଦଇତେ ହୁତାଶନ
ଆବର କାହାରେ ସେ ନୋହିବେ ନିଧନ ।
ଯାଅ ମହାରାଜା ହୋ ନ ଭାଙ୍ଗ ଆମ୍ଭ ବାଣୀ
ନ କର ଅଦୟା ତୁ ନୃପତି ଶିରୋମଣି ।
ଶ୍ରୀରାମ ସେ ବଜ୍ର ଦଇତେ ପରବତ
ଆନ କେ ଭାଗଜନ ତାହା କରିବାକୁ ହତ ।
ଶୁଣିଣ ନୃପତି ନ ଦେଲା ବଚନ
ଶିର ଲମ୍ୱାଇଣ ହୋଇଲା ମଉନ ।୧୦୦
ଦଶରଥ ଯହୁଂ ନ କଲା ସନମତ
କୋପ ଘନ ଘନ ସେ ବଢ଼ଇ ଗାଧିସୁତ ।
ବୋଇଲା କାକୁସ୍ଥ ବଂଶେ ଅନେକ ନୃପତି
ଥିଲେ
ଯେତେ ନ ଜାଣିମା ପଣ କେହି ତ ନ
କହିଲେ ।
ରାଜାପୁତ୍ର ହୋଇ ରଖିବେ ମୁନି ଯାଗ
ଯେ ସେ ତାହାଙ୍କର ଅଟଇ ପରମ ଭାଗ୍ୟ ।
ତପୀଙ୍କର କଲ୍ୟାଣେ ରାଜା ବର୍ଦ୍ଧମାନ
ଯେହା ତୁ ବିଚାର ନ କରୁ ମୂଢ଼ ଯେ
ରାଜନ ।
ଭସ୍ମ କିରିବି ମୁଂ ଅଯୋଧା ନଗ୍ର ପୁର
ଶୁଣିଣ ବଶିଷ୍ଠ ଯେ ବୋଲନ୍ତି ମଧୁର ।୧୦
ଭୋ ମୁନି କଉଶିକ ସମ୍ଭାଳ ତୋର କ୍ରୋଧ
ଯେ ମୋହୋର ବଚନେ ତୁ ଯେ ହୁଅସି
ପ୍ରବୋଧ ।
ଯେ ସେ ବୃଦ୍ଧ ରାଜା ପୁତ୍ର ସୋକ କରି

ରାମର ବଳ ବୀର୍ଯ୍ୟ ଗୁଣ ନ ବିଚାରି ।
ବଶିଷ୍ଠଙ୍କ ବଚନେ ବିଶ୍ୱାମିତ୍ର ଶାନ୍ତି
ଗଉରୀ ଅଗ୍ରତେ ଯେହା ଶଙ୍କର କହନ୍ତି ।
ଶୁଣ ସିଂଘବାହେନୀ ଗୋ ଯେଥୁ ଅନନ୍ତରେ
ବଶିଷ୍ଟେ ଡିଆରନ୍ତି ଦଶରଥ ନୃପବରେ ।
ଭୋ ରାଜା ଶ୍ରୀରାମଙ୍କୁ ନେଉ ବିଶ୍ୱାମିତ୍ର
କୁଳ ରକ୍ଷା କରିଥିବ ଯେ ତୋହୋର
ପୁତ୍ର ।୨୦
ଯେ ମୁନି କୋପକୁ ଡରନ୍ତି ସୁରରାଣେ
ବିଶେଷେ କୋପ କରଇ ରାଜା ସେ
କାରଣେ ।
ଅନ୍ତେସ୍ୱରେ ବିଷାଦ ସେ ସକଳ ରାଣୀମାନ
ସ୍ତମ୍ଭୀଭୂତ ହୋଇ ସେ ଅଛନ୍ତି ସର୍ବ ଜନ ।
ଯହୁଂ ସେ ନିଶବଦ ହୋଇଲାକ ପୁର
ହସିଣ ଧନୁ ଯେ ଧଇଲେ ରାମବୀର ।
ବାଣ ଘେନିଣ ସେ ପିତାର ମୁଖ ଚାହିଁ
ମାରିବି ଦତ୍ୟନ୍ତ ବୋଲି କହନ୍ତି ବଡ଼ାଇ ।
ଯଜ୍ଞ ରଖିବି ମୁଂ କରିବି ଦେବ କାର୍ଯ୍ୟ
ପିତାର ଚରଣେ ସେ ଓଳଗି ହୋଇଲେ ନିଜ
ସଜ ।୩୦
ପିତାଙ୍କୁ ନମସ୍କାର ବଶିଷ୍ଠଙ୍କୁ ପୂଜା କରି
ଜାବାଳି ବାମଦେବଙ୍କୁ କର ଦୁଇ ଯୋଡ଼ି ।
ଲକ୍ଷଣଙ୍କୁ ତୁଲେ ଘେନିଣ ରଘୁନାଥ
ସେ ତାହାର ଡାହାଣ ବାହାଟି ସାନ ଭ୍ରାଥ ।
ଆଦ୍ୟ କାଳହୁଂ ସେ ଅଟଇ ଯେକ ପିଣ୍ଡ
କଉଶୁଲା ସୁମିତ୍ରା କଲେ ବେନି ଖଣ୍ଡ ।
ଶ୍ରୀରାମ ଲକ୍ଷଣ ପଦାର୍ଥ ଭିନ ନୋହେ
କାଳର କାରଣକୁ ଭିନ୍ନ ମୂର୍ତ୍ତି ହୋଏ ।
ଭ୍ରଥ ଶତୃଘନ ଅଟଇ ଯେକ ଚରୁ
ଯେକଇ ପଦାର୍ଥ ଯେ ଚାରି ମୂର୍ତ୍ତି ଧରୁ ।୪୦
ଯେ ଯାହାର ପଛେ ଆଶ୍ରେ କଲେ ଯାଇ
ଶ୍ରୀରାମର ପଛେ ଲକ୍ଷଣ ଗୋଡ଼ାଇ ।
ବିଶ୍ୱାମିତ୍ର ମୁନିକି ନମସ୍କାର କରି
ବୋଲନ୍ତି ଆଗ ହୁଅ ତୁମ୍ଭେ ତପଋରୀ ।

ଶୁଣିଣ ସନ୍ତୋଷ ଗାଧିର ନନ୍ଦନ
ଶ୍ରୀରାମଙ୍କୁ କଲ୍ୟାଣ କରିଣ ଆଗମନ ।
ଯାନ୍ତେଣ ମଙ୍ଗଳ ପଢ଼ନ୍ତି ବିଦୁଜନ
ହୁଳହୁଳି ଶବଦ ଶୁଭଇ ଘନ ଘନ ।
ଦୁନ୍ଦୁଭି ଶବଦ ଯେ କରନ୍ତି ଶଚୀକାନ୍ତେ
ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ଯାନ୍ତେ ।୫୦
ପୁଷ୍ପ ବୃଷ୍ଟି କଲେ ସକଳ ସୁରଗଣ
ଯେଥୁ ଅନନ୍ତରେ ଶ୍ରୀରାମ ଲକ୍ଷ୍ମଣ ।
ସରଯୁ ନଦୀ ତୀରେ ହୋଇଲେ ପରବେଶ
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ।
ଶୁଣ ସୁଜ୍ଞଜନେ ଶ୍ରୀରାମର କାହାଣୀ
ଶ୍ରୀଜଗମୋହନ ରାମାୟଣର ବାଣୀ ।
ଈଶ୍ୱର ବକତା ପାର୍ବତୀ ଦେବୀ ଶ୍ରୋତା
ବାଲମିକ ଆଗେ ଯାହା କହିଲେ ବିଧାତା ।
ମୁହିଁ ତାହା ବଖାଣଇ ତରିବାର ଅର୍ଥେ
ନିତ୍ୟେ ରାମ ନାମ ସୁମରିବା
ନିମନ୍ତେ ।୬୦
ଶ୍ରୀରାମ ଜନମ ଆଦିକାଣ୍ଡ ଯେହୁ
ଉମାର ଆଗରେ କହନ୍ତି ରଦ୍ର ପ୍ରହୁ ।

* * *

ଶୁଣ ଶଶୀମୂର୍ଦ୍ଧୀଂ ଗୋ ଯେଥୁ ଅନନ୍ତରେ
ରଘୁନାଥ ରହିଲେ ସରଯୁ ନଦୀ ତୀରେ ।
ରଜନୀ ବଞ୍ଚିଲେ ବିବିଧ କଥା କହି
ପ୍ରଭାତେଣ ସ୍ନାହାନ ସନ୍ଧ୍ୟା କଲେ ତହିଁ ।
ଶ୍ରୀରାମଙ୍କୁ ସକଳ ବିଦ୍ୟା ମୁନି ଦେଲେ
ବେଦ ବିଦ୍ୟା ମନ୍ତ୍ର ଉପଦେଶ କହିଲେ ।
ସ୍ନାହାନ ତର୍ପଣ ମନ୍ତ୍ର ସନ୍ଧ୍ୟା ଯେଣେ କରି
ସେ ସେ ମନ୍ତ୍ରମାନ କହିଲେ
ତପଋରୀ ।୭୦
ଶ୍ରୀରାମ ଲକ୍ଷ୍ମଣଙ୍କୁ ଯେଣେ ବିଦ୍ୟା ପ୍ରାପତ
ତହୁଂ ତିନିଜଣ ଚଳିଗଲେ ତୁରିତ ।
ଗଙ୍ଗାର କୂଳେ ଯେ ପ୍ରବେଶ ହେଲେ ଯାଇ
ଋଷିଗଣେ ତପ କରୁଛନ୍ତି ତହିଁ ।
ବିବିଧ ବୃକ୍ଷ ତହିଁ ଅଛନ୍ତି ପନ୍ତି ପନ୍ତି

ହରିଡ଼ା କେଉଟ ବେଲ ଯେ ଅଛନ୍ତି ।
ନାଗେଶ୍ୱର କରୁଣା ବକୁଳ ଚମ୍ପାବନ
ପଳାଶ ଅଶୋକ କଞ୍ଚନ ବିତପନ ।
ଚୂତ ବଦରୀ ଲେମ୍ୱାଉ ଟଭା ମିଶି
ବାହାଡ଼ା ଉଆଉ ପନସ କେନ୍ଦୁ କସି ।୮୦
ଜମ୍ୱିଳ କରମଙ୍ଗା ତିନ୍ତୁଡ଼ି ଦାରାକ୍ଷ
ବରୁଣ ଅଶ୍ୱସ୍ଥ ଶାଳ ତାଳ ଗଛ ।
ସୁନାରୀ ବଇଂଚ କେଉଟ ଡିମିରି
ହିଙ୍ଗୋଳ କଦମ୍ବ ଶିରିଷ ଗମ୍ଭାରୀ ।
ଅୟେଂଳା ଖଜୁରିଆ ନଟୀକାଳ
ରାହି ମହୁଲ ସେ ଶିଆଳି ପିଆଶାଳ ।
ଚନ୍ଦନ ବାସଙ୍ଗ ଅଗର ଦେବଦାରୁ
କଞ୍ଚନ କରଡ଼ା କଇଥ କୃତତରୁ ।
ସଡ଼ପ କୋଚିଲା ସାନ ଆମ୍ବ ବେଣୁ
ଗୁଆ ଆଂକୋଆ ଯେ ଜାମ୍ବୁ
ପରବେଣୁ ।୯୦
ମଞ୍ଜାରୀ ପାଳଧୂଆ ବଡ଼ ମହାଲିମ୍ବ
କିସ କହିବା ସେ ବନର ଆରମ୍ଭ ।
ବାଘ ଭାଲୁକ ଯେ ମଇଂଷି ଗୟେଳ
ଶଶା ମୟୂର ଓଧ ହରଡ଼ ଗୋକୁଳ ।
ଖୁରାଣ୍ଡି ଘୋଡ଼ଙ୍ଗ ନକୁଳ ମଞ୍ଜାରୀ
ଶାର୍ଦ୍ଦୂଳ ଶିଆଳ ଗଜ ଆଦି କରି ।
ଗଣ୍ଡିଆନା ଚଢ଼ାଇ କସ୍ତୁରୀ ନାମେ ଜୀବ
ଲବଙ୍ଗଲତାରେ ପଶିଛି ଶିଶୁ ସିଂଘ ।
ଗଳିଣ ଭିତରେ କେ ଦେଖାଉଅଛି ମୁଖ
ମରିଚ ଚୋବାଇ କେବଣ ଜୀବ
ବିମୁଖ ।୧୦୦
କେହୁ ଶିଆଳି ଲତାରେ ଖେଳ ଖେଳି
କେବଣ ଠାବରେ ମାଙ୍କଡ଼େ ହ୍ୱନ୍ତି ଦୋଳି ।
କାହିଁ ଅଜଗର ମଣିଚୂଳ ସାପ
ପିଅନ୍ତି ପବନ ଚଳିତ ନାହିଁ ଧାପ ।
ସୁଆଦ ସାଳେହୀ ମିଶାମିଶି ପଲ
ମନୁଷ୍ୟ ଦେଖିଲେ ଚାହାନ୍ତି ଫଲଫଲ ।
ଜାଇ ଫୁଲ ବୃକ୍ଷେ ସେ ବଳେଆ ଉଠିଥିଲା

ଲୋକ ରାବ ଶୁଣି ସେ ତଳକୁ ଓହ୍ଲାଇଲା ।
ମହୁଲ ଗଛ ତଳେ ସେ ଖେଳନ୍ତି ନେଉଳ
ବନର କୁକୁଟ ମଥାରେ ରଙ୍ଗଫୁଲ । ୧୦
ନାଚନ୍ତି ଚଢ଼ାଇ ବିବିଧ ଧ୍ୱନିକରି
ପକ୍ଷୀ ପିଚରାନ୍ତି ତିତିରି ମୟୋରୀ ।
କାଠକଟା ବାୟା କପୋତା ଗେଣ୍ଡାଳିୟା
ପୋଷାପିକ ପାରୁଆ ନୀଳକଣ୍ଠ ବକ
ଭାରଥିଆ ।
ଶୁକ କୋକିଳ ଶୋରିକ୍ଷିୟା ଶାରୀ
ଚକ୍ରବାକ ଡାହୁକ ଭାବ ଯେହୁ କରି ।
ଡେଣ୍ଡୋଇ ପେଚ୍ଛ ଶାଗୁଣା ପାତିଶୁଆ
ସାରସ ଚଢ଼ାଇ ସାରେଙ୍ଗା କୁମ୍ଭାଟୁଆ ।
କୋଳାହଳ ଶବଦ ଶୁଭଇ ଘନଘନ
ବିବିଧ କୁସୁମେଣ ବିପିନ
ଶୋଭାବନ ।୨୦
ଫଳନ୍ତି ତରୁବରେ ଲୋଟନ୍ତି ଧରଣୀ
ବସନ୍ତ ମନ୍ଦିର କି ପଟାନ୍ତର ଜାଣି ।
ଦେଖିଣ ସନ୍ତୋଷ ହୋଇଲେ ଶ୍ରୀରାମ
ଋଷିକି ପୁଛନ୍ତି ଯେ ବନର କିସ ନାମ ।
ବୋଲନ୍ତି ମହାମୁନି ଶୁଣ ନରନାଥ
କାମଦହନ ଯେ ହୋଇଲାକ ଯେଥ ।
କାମ ଆଶ୍ରମ ଯେ ବନସ୍ତକଇ ବୋଲି
ସର୍ବଦା ଯେ ବୃକ୍ଷେ ଅଟନ୍ତି ନହୁଲି ।
ଶ୍ରୀରାମ ଲକ୍ଷ୍ମଣ ବଶ୍ୱାମିତ୍ର ମୁନି
ତହିଁ ଯାଇ ବିଶ୍ରାମ କଲେ ଜଣ ତିନି ।୩୦
ତପୀମାନେ ଆସି ଜଳ ଫଳ ଦେଲେ
ସେ ଦିନ ରହି ତହିଁ ରଜନୀ ବଞ୍ଚିଲେ ।
ପ୍ରଭାତେଣ ଯାଇ ମିଳିଲେ ଗଙ୍ଗା କୂଳେ
ନିତ୍ୟକର୍ମ ସାରିଲେ ଆଦିତ୍ୟ ଉଦେ
ବେଳେ ।
ନାଉରିଆ ନାବ ଯୋଗାଇଲା ଆଣି
ଶରଧା ହୋଇଣ ବସିଲେ ରଘୁମଣି ।
ଲକ୍ଷ୍ମଣ ବିଶ୍ୱାମିତ୍ର ଯାନ୍ତି ନାବ ଚଢ଼ି
କଇବ୍ରତି ନାବ ବାହଇ କାତ ଧରି ।

ଅଗାଦ ହୁଅନ୍ତେଣ ଘେନିଲେ କେରୁଆଳ
ସୁର୍ଖାସିନ କାଖେ ଚାପିଣ ମଙ୍ଗୁଆଳ ।୪୦
ନଦୀର ମଧ୍ୟେ ହୋଇଲା ନାବ ଯାଇ
ଶବଦ ଶୁଭଇ ଜଳ ମଧ୍ୟେ ଗୋଳ ହୋଇ ।
ଶ୍ରୀରାମ ପୁଛନ୍ତି ତୁମ୍ଭେ ଶୁଣ ମହାମୁନି
ଯେଠାରେ ଶବଦତ ବହୁତ ଶୁଭେ ଧ୍ୱନି ।
ମୁନି ବୋଲନ୍ତି ହୋ ପୂର୍ବେଣ ବିଧାତା
ରତ୍ନଗିରି ଉପରେ ଥିଲା ଜଗଜିତା ।
ମନରୁ ସରୋବରେ କଲା ଉତପତି
ତାହା ନେଇ ଥୋଇଲା ସେ ମେରୁ ପୂର୍ବ
କତି ।
ତାହାର ନାମ ହାଦେ ମାନ ସରୋବର
ତହିଁରୁ ଝରିଣ ଆସଇ ଯେହୁ ଧାର ।୫୦
ଶରୀରରୁ ଜାତ ଯେ ସରଯୁ ଯେହାର ନାମ
ଗଙ୍ଗାର ସାଙ୍ଗେ ଯେ ହୋଇଛି ସଙ୍ଗମ ।
ଥୋକାଯେକ ଦୂରେ ସେ ଯେକତ୍ର ହୋଇ
ବହି
ପୁଣି ବାରି ହୋଇଣ ସେ ବହିଅଛି ନଈ ।
ତୋହୋର ଅଯୋଧ୍ୟା ବେଢ଼ିଅଛି ଚଉକତି
ଗଙ୍ଗା ସରଯୁ ଯେକା ରଘୁପତି ।
ଶୁଣି ରଘୁନାଥ ଋଷିଙ୍କର ବାଣୀ
ନଦୀରୁ ମୁଠାଯେ ଜଳ ସିଞ୍ଚିଲେକ ଆଣି ।
ଯେଥୁଅନନ୍ତରେ ସେ ଯେ ବାହିଦେଲେ
ତେଣିର କୂଳେ ଯାଇ ତକ୍ଷଣେ
ଲାଗିଲେ ।୬୦
ନାବୁଁ ଓହ୍ଲାଇଲେ ରାମ ଲକ୍ଷଣ ବିଶ୍ୱାମିତ୍ର
ମୁନି
ନାଉରିଆ ବାହୁଡ଼ି ଆସଇ ନାବ ଘେନି ।
ଦେଖିଲେ କୂଳେଣ ନିବିଡ଼ ବନ ଘନ
ଅତି ଭୟାଙ୍କାର ଗହନ କାନନ ।
ରାମ ପଚରନ୍ତି ଶୁଣ ମହାମୁନି
କିସ ଯେ ବନସ୍ତର ନାମ କହିବା
ତପୋଧନି ।
ବିଶ୍ୱାମିତ୍ରେ ବୋଇଲେ ପୂର୍ବେ ଶୁଚି ଦଇତ

ଯେଥି ରହିଥିଲେ ଶୁଣ ରଘୁନାଥ ।
ତାହାର ନାମେ ଯେ କମ୍ପନ୍ତି ତିନି ପୁରୀ
ଦେବତାଯେ ଇନ୍ଦ୍ର ଆଗେ କରନ୍ତି
ଗୁହାରି ।୭୦
ଶୁଣିଣ ବାସେବ ଯେ ଅଇଲା ବଳ ଘେନି
ଦନୁଜଙ୍କ ତୁଲେ ଯୁଦ୍ଧ କଲା ସହସ୍ର ଯୋନି ।
ଅନେକ ସମୟରେ ଯେ ନୁଆରିଲା ଜିଣି
ଅସୁର ଛାମୁରେ ଗଲା ହାରି ସୁରମଣି ।
ଦେବତା ବଳ ଘେନି ଭାଳଇ ସୁରପତି
ବିଚ୍ଛରଇ ଅସୁର ସଙ୍ଗେ ହୋଇବି ଯେବେ
ପ୍ରୀତି ।
ଅନେକ ଯୋଗାଡ଼ କୁସୁମ ଫଳ ଘେନି
ଅସୁରଁ ତୁଲେ ମଇତ୍ର ହୋଇଲେ ସହସ୍ର
ଯୋନି ।
ଦିନେ ଦିନେ ପ୍ରୀତି ବଢ଼ାଇବା ପାଇଁ
ଅପୂର୍ବ ପଦାର୍ଥ ସେ ଦେଇଣ
ପଠିଆଇ ।୮୦
ଯେସନେକେ କେତେ ଦିନ ଯହୁଁ ଗଲା
ମର୍ମଥାନ ଦେଖି ଦଇତକୁ ମାଇଲା ।
ପୃଥ୍ୱି ଥିର କଲା ସେ ଦଇତକୁ ମାରି
ବାସେବକୁ ସୁରଗଣେ ଅବିଷେକ କରି ।
ମୈତ୍ର ଦ୍ରୋହକରି ସେ ଅସୁରକୁ ନାଶିଲା
ପାପକୁ ଡରି ସେ ବନସ୍ତେ ପଶିଲା ।
ସମୟେକେ ଦୋଷ ହୋଇଲା ଯହୁଁ ପାର
ବିଶ୍ୱାସଘାତକା ଦୋଷ ଗଲା ଅପହାର ।
ଯହୁଁ ଶଚୀପତି ନିର୍ମଳ ହୋଇଲା
ନିର୍ମଳ ନାମ ଯେ ବନସ୍ତ
ବୋଲାଇଲା ।୯୦
ଆବର କଥା ଯେ ଶୁଣ ତୁ ଶ୍ରୀରାମ
ପୂର୍ବେ ଯେ ଯାହାର ଅଟଇ ବିଶ୍ରାମ ।
ତାହା ତୋହୋ ଆଗେ କହଇ ରଘୁନାଥ
ଯେ ସେ ସତ୍ୟବାଣୀ ଅଟଇ ଯଥାର୍ଥ ।
ଯହୁଁ ସେ ଇନ୍ଦ୍ରର ପାପକ୍ଷୟେ ଗଲା
ଯେ ସେ ପୁଣ୍ୟସ୍ଥାନ ଜଗତେ ଶୁଭିଲା ।

ମିତ୍ର ବରୁଣ ତନୟେ ସେ ଅଟନ୍ତି ଅଗସ୍ତି
ସେ ମହାମୁନି ଯେ ତପ କଲା ଯେଥି ।
ଉର୍ଦ୍ଧରେତା ହୋଇଣ ଅନେକ କାଳ ଥିଲା
ବ୍ରହ୍ମଋଷି ସମାନେ ଗଣିତା
ହୋଇଲା ।୧୦୦
ଅନେକ କଷ୍ଟେ ରେ ତପ କଲା ଯହୁଁ
ପିତୃଲୋକେ ଆସି ବୋଇଲେକ ତହୁଁ ।
ପୁତ୍ର ନ ଥିଲେଣ ତପରେ କିସ କାର୍ଯ୍ୟ
ସକଳ ଧର୍ମର ମୂଳଟି ତନୁଜ ।
ପୁତ୍ରକଇ ଚିନ୍ତା କର ମହାଋଷି
ପଛେଣ ଯୋଗ ତପ ଯଜ୍ଞ ତୁ କରସି ।
ପିତୃଗଣଙ୍କର ଶୁଣିଣ ସିଦ୍ଧାନ୍ତ
ମନେ ବିଚାରନ୍ତି ଅଗସ୍ତି ତପୋବନ୍ତ ।
ପୁତ୍ର ସେ କାରଣ ଆନରେ କାର୍ଯ୍ୟ ନାହିଁ
କୁଳରକ୍ଷା ନିମନ୍ତେ ସେ ଗଲେ ଯାହା
କହି ।୧୦
ପିତୃଲୋକଙ୍କ ସେ ପାଳିବି ବଚନ
ଅବଶ୍ୟ ଜାତ ମୁଁ କରିବି ନନ୍ଦନ ।
ଯେତେକ ବିଚାରି ବୈଧବ ରାଜାପୁରେ
ପ୍ରବେଶ ହୋଇଲେ ସେ ଅଗସ୍ତି
ମୁନିବରେ ।
ଦେଖିଣ ମହାରାଜା କଲାକ ପୂଜା ବିଧି
ବୋଇଲେ ଧନ୍ୟ ମୋର ଅଇଲେ
ତପୋନିଧି ।
ବ୍ରହ୍ମା ସମାନେଣ ମୁନିଙ୍କି ଦେଖିଲି
ଅନେକ ଜନ୍ମର ମୁଁ ପାପକ୍ଷୟେ କଲି ।
କେବଣ କାର୍ଯ୍ୟେ ଯେଥେ ଅଇଲ ମହାମୁନି
ବୈଧବର ବଚନେ ସେ ବୋଲନ୍ତି
ତପୋଧନି ।୨୦
ବୋଇଲେ ତୋହୋର ଯେ ଅଛଇ ଦୋହିତା
ଲୋପାମୁଦ୍ରା ବୋଲି ଚାରୁ ଯେ ବନିତା ।
ଆମ୍ଭକଇ ବିଭା କରାଅ ରୂପବନ୍ତୀ
ଶୁଣିଣ ବୋଇଲା ବଇଧବ ନୃପତି ।
ଯେ ତୋହୋର ଆଜ୍ଞା ନ କରିବି ଆନ
ଲୋପାମୁଦ୍ରା ତୋତେ କରିବି ପ୍ରଦାନ ।
ଯେତେ ବୋଲି ରାଜା ମଣ୍ଡାଇଲା ନଗ୍ରପୁର
ବେଶ କରାଇଣ ଦୋହିତାକୁ ଅଣାଇଲା
ନୃପବର ।
ଗନ୍ଧର୍ବ ବିଧିକରି ବିଭା କରାଇଲା
ଅନେକ ଧନରତ୍ନ ଯଉତୁକ ଦେଲା ।୩୦
ସେ କନ୍ୟାକୁ ଘେନିଣ ଅଇଲେ ଅଗସ୍ତି
ନିଜ ଆଶ୍ରମେଣ ପ୍ରବେଶ ହୋଅନ୍ତି ।
ଅନେକ ଭୋଗ୍ୟ ତହିଁ କଲା ତାକୁ ଘେନି
କାଳେଣ ପୁତ୍ରେକ ଉପୁଜାଇଲା ମହାମୁନି ।
ଧନବାହାନ ନାମ ହୋଇଲା ତାହାର
କି ଜାଣି ପଟାନ୍ତର ଦ୍ୱିତୀୟ ପିଅର ।
ଶୁଣସି ଶ୍ରୀରାମ ହୋ ଅଗସ୍ତିଙ୍କ କଥା
ସେ ମୁନି ଧାର୍ମିକ ଅଟଇ ମହାଗ୍ୟାଂତା ।
ପୂର୍ବେଣ ଅସୁରେକ ଥିଲାକ ବାତାପି
ସାନଭାଇ ତାର ଅଟଇ ଆତାପି ।୪୦
ବନସ୍ତ ଭିତରେ ବାତାପି ମାୟାଯେକ ରଞ୍ଚି
ପଥଶ୍ରାନ୍ତିମାନ ଦେଖି ତାକୁ ଭଖି ।
ଆତାପିକି ମେଣ୍ଢାଏ କରିଣ ବାନ୍ଧିଥାଇ
କୁଣୁଆଙ୍କୁ ନିମନ୍ତି ସେ ଜୀବକୁ ମାରଇ ।
ମାୟାରେଣ ବ୍ରାହ୍ମଣେକ ହୋଇଣ ପାକ ରାନ୍ଧି
ଅତିଥି ଜନମାନେ ସେ ହୋଅନ୍ତି ଆନନ୍ଦି ।
ଯେକାନ୍ତେଣ ଯେକ ଆରକେ ଭାଳନ୍ତି
ଆଜ ସେ ଜୀବନ ହୋଇବାକ ଶାନ୍ତି ।
ସ୍ନାହାନ କରିଣ ଆସନ୍ତି ସର୍ବଜନ
ବାତାପି ମାୟାରୂପେ ପରଷନ୍ତି ଅନ୍ନ ।୫୦
ସେ ସେ ମେଣ୍ଢାମାଂସ ବ୍ୟଞ୍ଜନ ଆଣି ଦ୍ୟଇ
ପରବାସୀ ଲୋକ ଭୁଞ୍ଜିଣ ତୋଷହୋଇ ।
ଆଚୋବନ ସାରି ଭୁଞ୍ଜନ୍ତି ତାମ୍ବୁଳ
ଏକ ସ୍ଥାନ ହୋଇ ବସନ୍ତି ସକଳ ।
ବାତାପି ବୋଲଇରେ ଆତାପି ବେଗେ ଆସ
ଭୁଞ୍ଜିବୁ ଟିକି ବାବୁ ସୁରସଞ୍ଚ ମଧୁମାଂସ ।
ଶୁଣିଣ ଆତାପି ଯେ ମନୁଇ ପେଟେ ଥାଇ
ଗର୍ଭରୁ ବାହାର ହୋଇ ନିଜ ରୂପ ଧରଇ ।
ପେଟ ମାଡ଼ିଣ ଯେ ପଥିକି ପଡ଼ନ୍ତି
ହରଷେ ଦୁଇଭାଇ ତାହାକୁ ଭକ୍ଷନ୍ତି ।୬୦
ଯେହିମତି ନିତି ପଥିକି ଜନ ମାରି
ହରଷେ ଭୋଜନ କରନ୍ତି ରନ୍ଧନ ବିଧିକରି ।
ଜାଣିଣ ପଥିକି ସେ ବାଟ ନ ବହିଲେ
ନ ଜାଣିମା ଲୋକେ ଅନେକ ତହିଁ ମଲେ ।
ବାଟ ପଡ଼ିଲା ସେ ଜନଗମ୍ୟ ନାହିଁ
ବ୍ରହ୍ମାର ଆଗେ ତାହା କହିଲେ ଦେବେ
ଯାଇ ।
ଶୁଣି ପିତାମହ ଅଗସ୍ତିକି ପେଷି
ଯାଅ ବେଗେ ଆସ ଦତ୍ୟ ଦୁଇ ନାଶି ।
ଧାତାର ବଚନେ ଗଲେ କୁମ୍ଭସୁତ
ଦେଖି ଗୁହାଇଲା ବାତାପି ଦଇତ ।୭୦
ଭୋ ମୁନି ମୋହର ପିତାଦିନ ଆଜ
ତୋତେ ଦେଖିଲି ମୁଁ ହୋଇଲା ବଡ଼
କାର୍ଯ୍ୟ ।
କ୍ଷଣକେ ବିଶ୍ରାମ ମୁନି କରି ଯାସି
ଭଲ ମେଣ୍ଢା ଗୋଟାଏ ଅଛଇ ମୁହିଁ
ପୋଷି ।
ତାହା ମାରିବି ମୁଁ ପିତା କାର୍ଯ୍ୟ ହିତେ
ପୟା ଶ୍ରାଦ୍ଧ ଫଳ ପ୍ରାପତ ହୋଉ ମୋତେ ।
ହସି ମୁନିବର ବୋଲନ୍ତି ବଚନ
କର ତୁ ଯୋଗାଡ଼ ଆମ୍ଭେ କରିବୁ ଭୋଜନ ।
ଶୁଣିଣ ବାତାପି ମାଇଲା ମାୟା ମେଷ
ଆପଣେ ପାଗ ସମ୍ପାଦିଲା ଷଡରସ ।୮୦
ସ୍ନାହାନ କରିଣ ଯେ ଅଇଲେ କୁମ୍ଭ ସୁତ
ପତ୍ର ପାଣି ଘେନି ବସିଲେ ତପୋବନ୍ତ ।
ବାତାପି ବ୍ରାହ୍ମଣ ରୂପେ ପରଷଇ ଅନ୍ନ
ମାଂସେ ଋଷିଙ୍କି ତୁଷ୍ଟ କରାଇଲା ଭୋଜନ ।
ମୁନି ପଚାରଇ ଅଛିଟିକି ଆଉ
ଆମ୍ଭକଇ ସନ୍ତୋଷ କରାଅ ଭାଗ୍ୟ ତୋର
ରହୁ ।
ହସିଣ ବାତାପି ପରଷଇ ଆଣି
ସନ୍ତୋଷ ହୋଇଣ ଭୁଞ୍ଜଇ ମୁନି ଜାଣି ।

ଆଚୋବନ ସାରିଣ ବସିଲେ ମହାରଷି
କମଣ୍ଡଳୁ ଜଳ ପିଇଲେ କୁମ୍ଭ ଶିଷି । ୯୦
ମନ୍ତ୍ର ପଢ଼ି ମୁନି ପେଟ ଆଉଂଶିଲେ
ଯେତେକ ଭୁଞ୍ଜିଥିଲେ ତେତେକ ଭସ୍ମ
କଲେ ।
ଯେଥୁ ଅନନ୍ତରେ ବାତାପି ଦଇତ
ଋଷିର ଆଗରେ ସେ ମିଳିଲା ତୁରିତ ।
ଉଚ୍ଚେ ଡାକେ ଦିଅଇ ଆତାପି ନାମଧରି
ଆସ ଆସ ଭାଇରେ ମମ ପ୍ରାଣ ସରି ।
କାହୁଁ ଆସିବ ସେ ଜୀର୍ଣ୍ଣ ହୋଇଗଲା
ଅନେକ କରିଣ ସେ ବାତାପି ଡାକ ଦେଲା ।
ମୁନି ବୋଇଲେ ସେ ଆସିବ କେମନ୍ତେ
ମେଷ କରି ମାରି ଭୁଞ୍ଜାଇଲୁ
ମୋତେ ।୧୦୦
ଜୀର୍ଣ୍ଣ ହୋଇଲାଣି ସେ ଆସିବ ଆଉ କାହିଁ
ମାଇଲା ମନୁଷ୍ୟକୁ ଅଛୁ ତୁ ସେ ରାଇ ।
ଶୁଣିଣ ବାତାପି ସେ ତବଦ ହୋଇଲା
କମଣ୍ଡଳୁ ଜଳ ଘେନି ମୁନି ତାହାକୁ
ମାଇଲା ।
ହୋଇଲା ଭସ୍ମ ସେ ବାତାପି ଅସୁର
ଦେଖିଣ ଦେବେ ବରଷନ୍ତି କୁସୁମ ମୁନିଶିର ।
ଦତ୍ୟନ୍ତ ବିନାଶି ମୁନି ବୁହାଇଲା ପଥ
ସାଧୁ ମହିମା ସେ ଅଗସ୍ତି ତପୋବନ୍ତ ।
ସପତ ସମୁଦ୍ର ସେ ଯେକ ଚଳୁ କଲା
ଗର୍ଭକଇ ଖେପନ୍ତେ ସେ ଜୀର୍ଣ୍ଣ
ହୋଇଗଲା ।୧୦
ଶୁଣ ତୁ ଶ୍ରୀରାମ ସେ ମହାତମାର କାହେଣୀ
ଅପାର ମହିମା କେ ଅବା ପରିମାଣି ।
ବାବୁ ଯେବଣ କାଳେ ଆଦିତ୍ୟ ମନ୍ଦର
ବାଦକଲେ
ଦେବଙ୍କର ବୋଲେ ସେ ନିବର୍ତ୍ତ
ନୋହିଲେ ।
ଯୁଦ୍ଧ ଅବିଶ୍ରାମ ନ ରହନ୍ତି କ୍ଷଣେ
ଦେଖିଣ ବିସ୍ମୟ ହୋଇଲେ ସୁରଗଣେ ।

ବ୍ରହ୍ମା ପେଷିଲେକ ଅଗସ୍ତିଙ୍କି ରାଇ
ଯେହାଙ୍କର ଦ୍ୱନ୍ଦ୍ୱ ମୁନି ସମୋଧ କରଯାଇ ।
ଶୁଣିଣ ଅଇଲେ କୁମ୍ଭମୁନି ସୁତ
ଦେଖିଲା ଚଳିତ ନୁଆରଇ ଆଦିତ । ୨୦
ମନ୍ଦର ଗିରି ଜଗି ଅଛଇ ବାଟ ତହିଁ
ଛାୟାର ବଲ୍ଲଭ ଯେ ନପାରଇ ଯାଇ ।
ମୁନି ବୋଇଲେ ତୁ ଶୁଣ ଗିରିବର
ଆମ୍ଭେ କଥାଯେ ମାଗିବୁ ସତ୍ୟ ତୁମ୍ଭେ
କର ।
ମନ୍ଦର ବୋଇଲା ଯେ ତୋହୋର ଇଛା
ମାଗ ତାହା ମୁଂ ପୂରାଇବି ମନବାଞ୍ଛା ।
ଅଗସ୍ତି ବୋଇଲେ ମୁଂ ଦକ୍ଷିଣକୁ ଯିବି
ଯେତେଦିନେ ତହୁଂ ଲେଉଁଟି ନଆସିବି ।
ତେତେ ଦିନଯାଏ ତୁ ଯେ ନ କରିବୁ କୋପ
ଉତକର୍ମ ଛାଡ଼ି ଧରିବୁ ନିଜ ରୂପ । ୩୦
ଶୁଣି ମନ୍ଦର ଗିରି ସାମାନ୍ୟ ହୋଇଲା
ତୋହୋର ଅଇଲେ ସେ ବଢ଼ିବି
ବୋଇଲା ।
ସତ୍ୟ ମନାଇ ସେ ମହାମୁନି ଗଲେ
ଲୋପାମୁଦ୍ରାକୁ ଘେନି ସେ ଅନେକ ଭୋଗ
କଲେ ।
ଆର ବେଳେ ମୁନି ନଇଲେ ଉତ୍ତର
ବାଟ ଚାହିଁଅଛି ମନ୍ଦର ଗିରିବର ।
ଆଦିତ ଆନନ୍ଦେଣ ମେରୁ ପ୍ରଦକ୍ଷିଣ କରି
ସତ୍ୟ ପାଳି ମନ୍ଦର ନିରୋଧି ନପାରି ।
ଯେବେ ସେ ଅଗସ୍ତି ମୁନି ନୋହନ୍ତେ ମଧସ୍ଥ
ଯେ ବେନି ଯୁଦ୍ଧେ ହତ ହୁଅନ୍ତା
ଜଗତ ।୪୦
ତେଣୁକରି ସେ ମୁନି ଦକ୍ଷିଣ ଦିଗକୁ ଗଲା
ଭାରିଯାକୁ ଘେନି ମୁନି ଅନେକ ଭୋଗ୍ୟ
କଲା ।
ଯେଥୁ ଅନନ୍ତରେ ଶୁଣିମା ଦାଶରଥି
ଅଗସ୍ତି ମୁନିବର ରହିଥାନ୍ତି ଯେଥି ।
ଦକ୍ଷର ଦୋହିତା ଯେ ତାଡ଼େକୀ ନାମେ ବାଳୀ

ମତ୍ତଗଜ ସହସ୍ରେକ ଅଟଇ ଅଗ୍ଗୁଳି ।
ଯେତକଇ ବଳ ବହଇ ଯେକ ନାରୀ
ଆନ ଯୁବତୀକି ପଟାନ୍ତର କରି ।
ଧେନୁକର ପୁତ୍ର ଦୁନ୍ଦୁଭି ଅସୁର
ସେ ସେ ଶ୍ରୀରାମ ହୋ ତାଡ଼େକୀର
ବର ।୫୦
ତାଡ଼େକୀର ଗର୍ଭୁ ମାରୀଚ ଜାତ ହୋଇ
ଅକାଳେ ଦୁନ୍ଦୁଭି ଯହୁଂ ମୃତୁ ଗତି ପାଇ ।
ଶ୍ରୀରାମ ପଚ୍ଚରନ୍ତି ଶୁଣ ମହାମୁନି
ଯେତେ ପ୍ରାକର୍ମ କିମ୍ପା ପାଇଲା ଦକ୍ଷର
ନନ୍ଦିନୀ ।
ଯେହା ମୋତେ ସଞ୍ଚପି କହିବା ତପଋଷୀ
ହସି ବିଶ୍ୱାମିତ୍ର କହନ୍ତି ବିଋରି ।
ଶୁଣ ରଘୁନାଥ ପଋରିଲୁ ଯିସ
ସୁକେଶା ନାମେଣ ଦକ୍ଷ ଗୁରୁହଂସ ।
ସେହୁ ମହାତମା ଅନେକ ତପ କଲା
କର୍ମହୀନେ ତାହାର ତନୟେ
ନୋହିଲା ।୬୦
କଷ୍ଟୋର ତପ ସେ କରନ୍ତେଣ ଜାଣି
ପ୍ରସନେ ବର ତାକୁ ଦେଲେ କୁଞ୍ଜପାଣି ।
ଦକ୍ଷ ବୋଇଲା ମୋତେ ପୁତ୍ର ଦାନ ଦେବା
ଯେବେ ପିତାମହ ଘେନିଲୁ ମୋର ସେବା ।
ଧାତା ବୋଇଲେ ତୋତେ ପ୍ରାପତ ନାହିଁ
ପୁତ୍ର
ଦୋହିତାଏ ବର୍ଦ୍ଧିତ ହୋଇବ ତୋର
ଗୋତ୍ର ।
ଅତିବଳ ପ୍ରାକର୍ମ ସେ ହୋଇବ ନନ୍ଦିନୀ
ବର ଦେଇଣ ଗଲେ ତାକୁ ପଦ୍ମଯୋନି ।
ଦକ୍ଷକଣ୍ଠ ଦୋହିତା ହୋଇଲା ପ୍ରାପତ
ଭୟାଂକର ଦେଖି କମ୍ପଇ ଜଗତ । ୭୦
ତାହାର ତନୟେ ଯେ ମାରୀଚି ହୋଇଲା
ଶୁଣ ଦାଶରଥି ବିଶ୍ୱାମିତ୍ର କହିଲା ।
ଦୁନ୍ଦୁଭି ଦଇତ ଯହୁଂ ହୋଇଲାକ ହତ
ତାଡ଼କୀ ଦୁଷ୍ଟପଣ କଲାକ ବହୁତ ।

ପୁତ୍ର ସଙ୍ଗେ ଘେନି ଯେଣେ ତେଣେ ଯାଇ
ଅନ୍ୟାୟେ ଉପଦର୍ପ ବହୁତ କରଇ ।
ଅଗସ୍ତି ମହାମୁନି ଯେଥେ ରହିଥିଲେ
ନିଶାୟେ ମୁନିଙ୍କର ଆଶ୍ରମ ଭାଙ୍ଗିଲେ ।
କୋପେଣ ଶାପ୍ୟ ତାକୁ ଦେଲେ ତପଋରୀ
ଯେଡ଼େ ଦୁଷ୍ଟପଣ କିମ୍ପା କଲ ନ
ବିଚାରି ।୮୦
ଯେ ବନେ ଥାଅ ତୁମ୍ଭେ ରାକ୍ଷସୀ ଦେହ ଘେନି
ରାକ୍ଷସୀ ପ୍ରକୃତି ଧରି ତୁମ୍ଭେ ବେନି ।
ମୁନିର କୋପେ ସେ ଯେ ବନବାସୀ ହୋଇ
ବାଟ ପାଡ଼ନ୍ତି ସେ ବିପ୍ରୁନ୍ୟେଣ ଥାଇ ।
ତେଣେ ସେ ଯେ ବନେ ନ ବହନ୍ତି ଜନ
ଉପଦର୍ପ ପାଇ ଯେଥୁ ଗଲେ ମୁନିଜନ ।
ଆଶ୍ରମ ତେଜି ଯେଥୁ ଅଗସ୍ତି ହିଂ ଗଲେ
ଯେଣୁ ରାକ୍ଷସୀର ଦୁଷ୍ଟପଣ ଦେଖିଲେ ।
ସୁରନର କିନ୍ନରେ ସେ ନକରଇ ଭୟେ
ଅନେକ ଅସୁର ସେ ସଂଗତେ ଘେନି
ଆୟେ ।୯୦
ଯେହିକ୍ଷଣି ଭେଟ ସେ ପାଇବା ଯେହି ବନେ
ବୋଲନ୍ତି ମୁନି ଶୁଣ ଦଶରଥ ନାନେ ।
ଅଗମ୍ୟ ବନୟେ ଅଟଇ ଯେଥିର ନାମ
ଯହୁ ସେ ଯେ ବନେ ନବହଇ ଜନ ।
ଆମ୍ଭେ ହେଂ ନଜାଣି ଅଇଲୁ ଯେ ବାଟେ
ଅକାରେଣ ଆସି ପଡ଼ିଲୁ ସଂକଟେ ।
ଦୁଷ୍ଟ ରାକ୍ଷାସୁଣୀ ଓପ୍ରଧ ନକରଇ
ପଥେ ଗଲା ଲୋକଙ୍କର ଜୀବନ ହରଇ ।
ଶୁଣିଣ ଶ୍ରୀରାମ ଯେ ବୁଲାଇଲେ ଧନୁ
ଋଷିର ମୁଖକୁ ଚାହିଂ ବୋଲନ୍ତି
ବଚନୁ ।୧୦୦
ତୁ କିମ୍ପା ମହାମୁନି ବିଋର ନ କରୁ
ଦଇତୁଣୀ ଛାରକୁ ଯେଡ଼େ ଭୟ କରୁ ।
ଯଦ୍ୟପି ଭେଟ ସେ ପଡ଼ିବାକ ଆସି
ପ୍ରାଣ ଘେନି ସେ ଯିବ କି ରାକ୍ଷସୀ ।
ଯେ ତୋହୋର ଚରଣ ପ୍ରସାଦେ ଗାଧିସୁତ
ଅସୁରକୁ ଆଜ ମୁଂ କରିବି ପ୍ରାଣହତ ।
ଯେତେ ବୋଲି ଗୁଣ ଟଙ୍କାର ରାମ କରି
ଅଗମ୍ୟ ବନେଥାଇ ରାକ୍ଷାସୁଣୀ ବିଋରି ।
ଆହାର ନିମନ୍ତେଣ ଧାଇଲା ଖରକରି
ଜିଭ ଲହ ଲହ ଅତି ଭୟାଙ୍କାର ଧରି ।୧୦
ଆକାଶେଣ ଶିର ଲାଗିଲାକ ଯାଇ
ବିକଟାଳ ବଦନ ବିସ୍ମେୟେ ମୁଖ ହୋଇ ।
ପେଟ ଖାଂଖର ତାର ରଡ଼ି ଘନ ଘନ
ଧୂରୁହୁଂ ଧାଇଂଲା ଡରିଲେ ମହାମୁନ୍ୟ ।
ବୋଲନ୍ତି ବିଶ୍ୱାମିତ୍ର ଶୁଣ ରଘୁନାଥ
ଯେବାଟ ଛାଡ଼ି ଆମ୍ଭେ ଘେନିବା ଆନ ପଥ ।
ଦୁଷ୍ଟ ରାକ୍ଷାସୁଣୀ ଅନର୍ଥ କରିବ
ଯେ ବାଟ ଛାଡ଼ି ଯିବା ହୋ ରାଘେବ ।
ରାମ ବୋଲନ୍ତି ମୁନି ହୋଇଲକି ବାଇ
ନିଶାଚରୀ ଛାରକୁ କି ବାଟ ଛାଡ଼ିଯାଇ ।୨୦
ଆଜ ଯେବେ ଯେହାକୁ ମୁଂ ନକରିବି ହତ
ଯଜ୍ଞ କେହ୍ନେ ରଖିବି ମୁଂ ଗାଧିସୁତ ।
ଅନେକ ଅସୁରେ ଯେ ମିଳିବେ ତହିଂ ଯାଇ
ଯେଠାରୁ ମୁଇଂ ଯେବେ ଯିବଇ ପଳାଇ ।
ସେ ଦଇତକୁ କେହ୍ନେ କରିବି ଆଉ ବଧ
କିମ୍ପା ମହାମୁନି ହେ ଯେ କଥା ନ ବୁଝ ।
କ୍ଷତ୍ରିୟ ପୁଅ ମୁଂ ଡରିବି କିସ ପାଇଂ
ଯେଥକୁ ସେ ମୁନି ଆଣିଅଛୁ ଯାଇ ।
କୋପେଣ ରାଘେବ କମ୍ପନ୍ତି ଥରହର
ଧନୁଧରି ଆଗ ହୋଇଲେ ରଘୁବୀର ।୩୦
ଥୋକାଏକ ଦୂର ଗଲେ ପଥ ବହି
ଦେଖିଲେ ତାଡ଼େକୀ ସେ ଆସୁଅଛି ଧାଇଂ ।
ମୁନି ବୋଲନ୍ତି ରାମ ଅସୁରୀକି ଚାହାଂ
କୁରାଳ ଚକ୍ର ଜାଣି ବୁଲାଉଅଛି ବାହା ।
ମାତିଅଛି ଅସୁରୀ ମୁନିଙ୍କ ମାଂସ ଖାଇ
ଏ ବୋଲ ଶୁଣିଣ ବୋଲନ୍ତି ରଘୁସାଇଂ ।
ସ୍ତୀରୀବଧ ଦୋଷକୁ ଅଛି ମୁଂ ଅପସରି
ନୋହିଲେ କି ଏତେବେଳ ଥାଆନ୍ତା
ଅସୁରୀ ।
ବିଶ୍ୱାମିତ୍ର ବୋଲନ୍ତି ଶୁଣ ରାମଚନ୍ଦ୍ର
ପୂର୍ବେ ସ୍ତିରୀ ଏକ ମାରିଅଛି ଇନ୍ଦ୍ର ।୪୦
ବାବୁ ଦୁଷ୍ଟ ଜନକଇ ନାଶିଲେ ଧର୍ମପାଇ
ବ୍ରାହ୍ମଣ ଯୁବତୀ କି ହୋଉ ବାପଭାଇ ।
ଲକ୍ଷ୍ମଣ ପ୍ରତିବାଦ ଋଷିଙ୍କ ଉତ୍ତାରେ
ମାର ରାକ୍ଷସୀକି ଶୁଣ ରଘୁବୀରେ ।
ଯେ ମୁନି ସାକ୍ଷାତେ ଧର୍ମଶାସ୍ତ୍ର ଜାଣଇ
ବେଦବିଦ୍ୟା ବହୁତ ଆଗମ ବଖାଣଇ ।
ଯେ ଯେବେ ବୋଇଲେ ନାହିଂ ଯେଥି ଦୋଷ
ସନ୍ଦେଶ ଫିଟିଲା ତୁ ରାକ୍ଷସୀ କି ନାଶ ।
ଶୁଣିଣ ରଘୁନାଥ ଧଇଲେ ନାରାଜ
ବୋଇଲେ ରାକ୍ଷସୀକି ମୁନି ମାରିବି
ଆଜ ।୫୦
ଶୁଣିଣ ତାଡ଼କୀ ଯେ ବୋଇଲାକ ହସି
ଆପଣେ ଆପଣେ ହୋଇ ପରଶଂସି ।
ଆଜକି ଉବୁରିବ ମୋହର ମୁଖେ ପଡ଼ି
ତୋଟି ରକଟି ଖାଇବି ଅନ୍ତ କାଢ଼ି ।
ଯେତେ ବୋଲି ଆଣି ବିଧାୟେ ମାଇଲା
ଶ୍ରୀରାମ ଅଙ୍ଗ ଢାଳିଣ ଫେରାଇଲା ।
ଯହୁଂ ଶୂନ୍ୟ ତାର ହୋଇଲାକ ମୁଷ୍ଟି
ଅଧର କାମୋଡ଼ିଣ ଦଇତୁଣୀ ଉଠି ।
ବୃକ୍ଷେକ ଉପାଡ଼ି ଅଇଲାକ ଖରେ
ଆର ହାଥେ ଧଇଲା ଯେ ମହତ
ପଥରେ ।୬୦
ଅନ୍ତରୀକ୍ଷେ ବୁଲାଇ ତାହାକୁ ମାଇଲା
ବିଚିତ୍ର ଗତିକରି ଶ୍ରୀରାମ ଫେରାଇଲା ।
କୋପେଣ ରାକ୍ଷାସୁଣୀ କଲାକ ଅନ୍ଧକାର
ଅଦୃଶ୍ୟ ହୋଇଲା ବିପୁନ୍ୟ ବନ ଘୋର ।
ରାମ ପଋରନ୍ତି ଶୁଣ ମହାମୁନି
ଦିବସ ବେଳେ ତ ହୋଇଲା ରଜନୀ ।
ବିଶ୍ୱାମିତ୍ର ବୋଇଲେ ନ ଡର ଦାଶରଥି
ସୂର୍ଯ୍ୟାବ୍ରତ ଅସ୍ତ୍ର ଯେ କରିବା ନା ଯେଥି ।
ଫିଟୁ ଅନ୍ଧକାର ଯେ ମୋହୋର ବୋଲକର
ଶ୍ରୀରାମ ସୁମରିଲେ ଯେ ପେଷିଲେ
ଯନ୍ତାଶର ।୭୦

ତକ୍ଷଣେ ତିମିରି ଗଲାକ ପଳାଇ
ଦିଶିଲା ସକଳ ହସନ୍ତି ରଘୁସାଇଁ ।
ଅର୍ଦ୍ଧଚନ୍ଦ୍ର ବାଣ ଗୁଣରେ ବସାଇ
ପେଷନ୍ତି ରଘୁନାଥ କୋପ ମୁଖ ହୋଇ ।
ପବନହୁଁ ବେଗେ ଶସ୍ତ୍ର ଚଳିଗଲା
ଅସୁରୀ କଣ୍ଠରେ ଯାଇଣ ପଡ଼ିଲା ।
ଛିଡ଼ିଲାକ ବକ୍ଷସ୍ଥଳ ପଡ଼ିଲାକ ଶିର
କାଟିଲା ବୃକ୍ଷ ଜାଣି ପଡ଼ିଲା ଭୂମିର ।
ଗଲାକ ଜୀବନ ପାର୍ଥିବ ଦେହ ଛାଡ଼ି
ଅନାସ୍ତ ହୋଇଣ ରାକ୍ଷାସୁଣୀ ଭୂମିରେ
ପଡ଼ି ।୮୦
ଦେବତାୟେ ଆସି ଯୁଦ୍ଧ ଦେଖୁଥିଲେ
ଦଇତୁଣୀ ପଡ଼ିବା ଦେଖି ହରଷ
ହୋଇଲେ ।
ପୁଷ୍ପ ବୃଷ୍ଟି କଲେ ସେ ଶ୍ରୀରାମର ଶିରେ
ସାଧୁ ସାଧୁ ବଚନ ଶୁଭିଲା ସ୍ୱର୍ଗପୁରେ ।
ବିଶ୍ୱାମିତ୍ର ମୁନିଙ୍କି ବୋଲନ୍ତି ସୁରଗଣ
ଭୋ କଉଶିକ ଆମ୍ଭର ବୋଲ ଶୁଣ ।
ବ୍ରହ୍ମା ତଲୟେକ ଅସ୍ତ୍ରବିଦ୍ୟା ଯେତେ
ପୂର୍ବେ ମହାତମା ସମର୍ପିଲା ତୋତେ ।
ଯେବେ ତୁ ସେ ବିଦ୍ୟା ଶ୍ରୀରାମକୁ ଦେସି
ଯେସନେକ ବୋଲି ଗଲେ
ସ୍ୱର୍ଗବାସୀ ।୯୦
ସେ ଦିନ ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର
ବିଶ୍ରାମ କରି ତହିଁ ବଞ୍ଚିଲେ ଏକ ରାତ୍ର ।
ରଜନୀ ପ୍ରଭାତେ ସ୍ନାହାନ ତହିଁ କଲେ
ଶ୍ରୀରାମକୁ ବିଶ୍ୱାମିତ୍ର ବିଦ୍ୟା ସମର୍ପିଲେ ।
ଜୟା ବିଜୟା ଯେ ଦୁଇମନ୍ତ୍ର କହି
ବୋଲନ୍ତି ମହାମୁନି ଶୁଣ ରଘୁସାଇଁ ।
ଆଦି ମନ୍ତ୍ରେ ହାଦେ ଚଳନ୍ତି ଅସ୍ତ୍ରେ ଏଣେ
ବିଷ୍ଣୁର ତେଜୁଂ ଜାତ କଲାକ ବ୍ରାହ୍ମଣେ ।
ଯେମନ୍ତେ ସକଳ ଶସ୍ତ୍ର ସାଧ କରିପାରି
ପଦେ ପଦେ ପ୍ରତକ୍ଷେ ଅଟନ୍ତି
ମୁରାରି ।୧୦୦

ଯେତେ ବୋଲିଣ ଯେ ଅସ୍ତ୍ର ସମର୍ପିଲା
ବ୍ରହ୍ମ ଅସ୍ତ୍ର ବିଦ୍ୟା ପ୍ରତକ୍ଷେ କହିଲା ।
ପାଶୁପତ୍ର ଶର ନାରାୟଣ ଅସ୍ତ୍ର ବେନି
ଯଜ୍ଞ ଅସ୍ତ୍ର କାଳାନଳ ଅସ୍ତ୍ର ଦେଲେ ମୁନି ।
ବରୁଣା ଅସ୍ତ୍ର ଅଗ୍ନି ଶସ୍ତ୍ର ଇନ୍ଦ୍ର ଅସ୍ତ୍ର ଦିଅନ୍ତି
ଶଙ୍କରା ଅସ୍ତ୍ର କୁବେର ଅସ୍ତ୍ର ଗର୍ଜନ ଶସ୍ତ୍ର
ସମର୍ପନ୍ତି ।
କପାଳ ବିମୋଚନା ସମୋକର୍ଣ୍ଣା ଅସ୍ତ୍ର
ଦେଲେ
ମୋହୋନା ନାମ ଅସ୍ତ୍ର ସମସ୍ତ ସମର୍ପିଲେ ।
ଜୟା ଅସ୍ତ୍ର ବ୍ରହ୍ମା ବ୍ରହ୍ମାୟେଣୀ କାଣ୍ଡ ବ୍ରହ୍ମଶିରା
ତିନି
କୁବେରା ଅସ୍ତ୍ର ପନ୍ନଗା ଅସ୍ତ୍ର ଦେଲେ
ମୁନି ।୧୦
ଗରୁଡ଼ା ଅସ୍ତ୍ର ଦାନବା ଅସ୍ତ୍ର ଗନ୍ଧର୍ବା ମାନବା
ସର୍ଜନା ଗର୍ଜନା ସୋମ ସୂର୍ଯ୍ୟ ଆଭା ।
ସାବେତ୍ରୀ କାଳ ବରୁଣା ଅଧାଚନ୍ଦ୍ର ବଜ୍ରମୁନା
ତିନିମୁଖା ଚାରିମୁଖା ନବମୁଖା ପଞ୍ଚକନା ।
ଜୟା ଶକ୍ତି ଯେ ବିଜୟା ଶକ୍ତି ଦ୍ୟନ୍ତି
ଅମୋହ ଶକ୍ତି ଯେ ବ୍ରହ୍ମଶକ୍ତି ସମର୍ପଣ
କରନ୍ତି ।
ଇନ୍ଦ୍ର ଶକ୍ତି ଯେ ସେ ଦ୍ୟନ୍ତି କୁମାର,ଶକ୍ତି
ଏଥକୁ ତୁଳଣା ଯେ ନାହିଁ ଆନ-ପ୍ରତି ।
କଉଶିକ କୋଦଣ୍ଡ ଯମ ମ୍ରୋଟ ଫରି
ଲୋଭ ମୋହ ଗଦା କାଳ ଗଦା ଆଦି
କରି ।୨୦
କଉମୋଦୀ ଗଦା ବଜ୍ର ମୁଦ୍‌ଗର
ବ୍ରହ୍ମପାଶ କାଳପାଶ ରୁଦ୍ର ପାଶ ଶର ।
ବରୁଣପାଶ ମୋହୋନାପାଶ ନାଗପାଶ ଜୟା
ପାଇ
ଅମୃତା ଅସ୍ତ୍ର ଯେହାକଇ ନୁଆସଇ ।
ମହାମାୟାସ୍ତ୍ର ବଜ୍ରଶୂଳ ଶିବଶୂଳ
ବ୍ରହ୍ମାଶୂଳ ସୁଦର୍ଶନ ଅସ୍ତ୍ରଙ୍କର ମୂଳ ।

ବୈଷ୍ଣବୀ ଅସ୍ତ୍ରକୁ ଆନ ପଟାନ୍ତର ନାହିଁ
ଜୟା ବିଜୟା ମନ୍ତ୍ରେ ଏ ଚଳନ୍ତି ରଘୁସାଇଁ ।
ଯେଥିରୁ ମେଘ ଯେ ଯେଥିରୁ ପବନ
ଏଣେ ଆତଜାତ ହୁଅନ୍ତି ରଘୁନାନ ।୩୦
ଶୁଣିଣ ଶ୍ରୀରାମ ଘେନିଲେ ସର୍ବବାଣ
ଶୂଳଶକତି ବଜ୍ର ଶକତି ଛାଡ଼ିଣ ।
ଯେ ବେନି ନଘେନିଲେ କୌଶଲ୍ୟା ସୁତ
ଯେସନେ ସ୍ପୁରିଲା ବାବନାର ଭୂତ ।
ମନ୍ତ୍ର ସୁମରିଲେ ଯେ ଜପିଲେ ତକ୍ଷଣେ
ଆସିଣ ଅସ୍ତ୍ରମାନେ ମିଳିଲେ ଗଗନେ ।
ବନ ପରବତ ନ ଦିଶଇ କିଛି
ତେଜହୀନ ହୋଇଣ ଆଦିତ୍ୟ ଉଇଂଅଛି ।
ଅସ୍ତ୍ରଙ୍କର ତେଜରେ ସେ କମ୍ପଇ ମେଦିନୀ
ଅରିଷ୍ଟି ହୋଇଲା ଉଲ୍କାପାତ ଜାଣି ।୪୦
ସିନ୍ଧୁ ଉଚ୍ଛୁଳିଣ ଲଙ୍ଘିବାକ କୂଳ
ସୂର୍ଯ୍ୟ ଶନି ହତ କି ହୋଇଲା ଅକାଳ ।
ସ୍ୱର୍ଗ ପୁରେ ଡରି କମ୍ପନ୍ତି ସୁରଗଣ
ଭୟେ କରି ବ୍ରହ୍ମାରେ ପଶିଲେ ଶରଣ ।
ଧାତା ଅନ୍ତରୀକ୍ଷେ ବୋଇଲାକ ଆସି
ଯେକାବେଳେ ଯେମାନ କିମ୍ପା ସୁମରିଲା
ରଘୁଋଷି ।
ଅସ୍ତ୍ରଙ୍କର ତେଜ କେହୁ ସହି ଯେ ପାରିବ
ସଂସାର ଆକୁଳ ଯେ ହୋଇଲା ରାଘେବ ।
କାର୍ଯ୍ୟକାଳେ ରାମ ଏମାନ ସୁମରିବ
ସବୁ ଯେକାବେଳେ ମନେ ନ
ଧରିବ ।୫୦
ସକଳ ଦେବତାଙ୍କର ତେଜ ଯେ ଅସ୍ତ୍ରମାନ
ଯେହାଙ୍କର ଉଦୟେ ହୋଅନ୍ତେ କି ରହଇ
ଭୁବନ ।
ମୋହୋର ବୋଲ ତୁମ୍ଭେ ଶୁଣ ରଘୁବୀର
ସେ ସର୍ବ ଅସ୍ତ୍ର ତୁମ୍ଭେ ସଂହରଣ କର ।
ରାମ ପଚାରନ୍ତି ବ୍ରହ୍ମାର ବୋଲ ଘେନି
କେମନ୍ତେ ସଂହରଣ କରିବି ମହାମୁନି ।

ବିଶ୍ୱାମିତ୍ର ମୁନି ହରଷ ହୋଇ କହି
ପଞ୍ଚବିଂଶ ଶସ୍ତ୍ର ଯେ ଯେଣେ ସଂହରଣ
ହୋଇ ।
ଊର୍ଦ୍ଧ୍ୱରେ ଶସ୍ତ୍ର ଡାକ ଦିଅନ୍ତି ଯେମାନେ
କି କି କରିବୁ ଆଜ୍ଞା ଦିଅସି ରଘୁନାନେ ।୬୦
ଶ୍ରୀରାମ ବୋଇଲେ ହୋ ଶସ୍ତ୍ରମାନ ଶୁଣ
ତୁମ୍ଭନ୍ତ ସୁମରିଲୁ ଆମ୍ଭେ ପରୀକ୍ଷା
ନିମନ୍ତେଣ ।
ଯେ ଯେବେ ଯାହାର ଆଶ୍ରମକୁ ଯିବ
ମୋହୋର ସୁମରିଲେ ବହନ ଆସିବ ।
ଶୁଣିଣ ଅସ୍ତ୍ରମାନେ ବାହୁଡ଼ିଣ ଯାନ୍ତି
ଘଡ଼ଘଡ଼ି ପ୍ରାୟେ ଶବଦ କରୁଛନ୍ତି ।
ଅସ୍ତ୍ରଙ୍କର ଗଲେ ସେ ଅରଷି ଥିର ହୋଇ
ଆଦିତ୍ୟର ହାଦେ ତେଜ ବିକାଶଇ ।
ତହୁଂ ଦେବତାଯେ ଗଲେ ନିଜ ସ୍ଥାନ
ଶ୍ରୀରାମ ଲକ୍ଷ୍ମଣଙ୍କର ହରଷ ବଦନ । ୭୦
ବିଶ୍ୱାମିତ୍ର ମୁନି ସେ ହୋଇଲେ ଆନନ୍ଦ
ମୁଖ ବିକାଶଇ ପୌର୍ଣ୍ଣମୀର ଚାନ୍ଦ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ବହୁତ ପ୍ରଶଂସିଲା
ପ୍ରସନ ହୋଇ ମୁନି ବ୍ରହ୍ମଜ୍ଞାନ କହିଲା ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ରାମ ଲକ୍ଷ୍ମଣଙ୍କୁ ବିଦ୍ୟାଦେଲେ ଯତି ।
ସନ୍ତୋଷ ହୋଇଣ ତହୁଂ ଚଳିଗଲେ
ଯାଉ ଯାଉ ଦିବ୍ୟ ବିପିନେକ ଦେଖିଲେ ।
ନାନା ତରୁବରେ ପଲ୍ଲବି ଅଛନ୍ତି
ବସନ୍ତ ଜାଣିଣ ଫୁଟନ୍ତି ଫଳନ୍ତି । ୮୦
ଅପୂର୍ବ ବୃକ୍ଷ ଦେଖି ପଚାରନ୍ତି ରାମ
କହ ମହାମୁନେ୍ୟ ଯେ ବନସ୍ତର ନାମ ।
ବୋଇଲନ୍ତି ମହାମୁନି ଶୁଣ ରଘୁବୀର
ଯାହା ତୁ ପଚାରିଲୁ ଦଶରଥ କୁମର ।
ବାବୁ ସତ୍ୟଯୁଗେ ବଳି ବୋଲିଣ ନୃପତି
ତିନିପୁରେ ସେ ଯେ ହୋଇଲା ଯେକ
ଛତ୍ରୀ ।
ଦାନେ ଖାଣ୍ଡେ ସାତା ବଢ଼ାଇଲା ଯଶ
ଇନ୍ଦ୍ରପଦ ଘେନିଲା ବଳଲୋଚନର ଶିଷ ।
ଦେବେ ପଳାଇଣ ହୋଇଲେ ଏକ ଗୋଷ୍ଠୀ
ନାରାୟଣଙ୍କୁ ଧାୟେ କଲେ
ପରମେଷ୍ଠି ।୯୦
ବ୍ରହ୍ମା ସ୍ତୁତି କରନ୍ତେଣ ଜାଣିଲେ ପଦ୍ମନାଭ
ଆସିଣ ମିଳିଲେ ସେ କଣ୍ଠେଣ କଉସ୍ତୁଭ ।
ଦେଖିଣ ନମସ୍କାର କଲେ ଦେବଗଣ
ହସ ହସ ହୋଇଣ ବୋଲନ୍ତି ନାରାୟଣ ।
କେବଣ କାର୍ଯ୍ୟ ତୁମ୍ଭର କରିବି ଯେବେ କହ
ତୁମ୍ଭେ ଦେବତାଏ ଅଟ ମୋର ଦେହ ।
କର ଯୋଡ଼ିଣ ସେ ବୋଲଇ ବେଦପତି
ବଳିରାଜା ଦେବ କଲାକ ଅନୀତି ।
ଦାନେ ଖାଣ୍ଡେ ସାତା ଅଟଇ ବଳିଆର
ତିନିପୁରେ ଗାରିମା କଲା ମହାବୀର ।୧୦୦
ଇନ୍ଦ୍ରପଦେ ବସିଣ କରିବ ବଇଭୋଗ
ଅସୁରେ ଆବୋରିଲେ ସକଳ ଦେଶ ଭାଗ ।
କର ପ୍ରତିକାର ହର ତାର ଦର୍ପ
ଦେବେ ମଣ୍ଡୂକୀ ସେ ଅଟଇ କାଳ ସର୍ପ ।
ଅତି ଉଗ୍ର ହୋଇଲା ବଳଲୋଚନର ସୁତ
ସତ୍ୟ ଗୁଣ ଘେନିଣ ସେ ସାଧିଲା ଜଗତ ।
କର ଅନଗ୍ରହ ଦଇତ ବଳ ନାଶ
କଶ୍ୟପର କୁଳେ ଜାତ ହୁଅ ପୀତବାସ ।
ଅଦିତିର କୋଳେ ଅବତାର ହୋଇ
ସଂସାର ରକ୍ଷାକର କମଳାର ସାଇଁ ।୧୦
ଶୁଣିଣ ବାସୁଦେବ ସନମତ କଲେ
ତୋର ଛଳେ ଜାତ ହୋଇବି ବୋଇଲେ ।
ଯେଥୁ ଅନନ୍ତରେ ଗଲେ ନିଜ ସ୍ଥାନ
ଅଦିତିର ଗର୍ଭେ ବିଜୟେ ଭଗବାନ ।
ଯଥା କାଳେଣ ଯେ ହୋଇଲେ ଦେବ ଜାତ
ବାଆନ ଆଙ୍ଗୁଳ ଅଟଇ ତାର ଗାତ୍ର ।
ଶୁଦ୍ଧ ସ୍ଫଟିକକି ଚାପିଲା ତାର ବର୍ଣ୍ଣ
ନୀଳେନ୍ଦି ଦଳ ଜାଣି ଦିଶଇ ନୟନ ।
ବୋଇଲନ୍ତି ମହାମୁନି ଶ୍ରୀରାମଚନ୍ଦ୍ର ଶୁଣ
ଦିନେ ଦିନେ ତନୁ ଯେ ବିସ୍ତାରିଲେ
ନାରାୟଣ ।୨୦
କର୍ଣ୍ଣବେଧ ବ୍ରତ ବିଧାନ ପାଠ ପଢ଼ି
ଧର୍ମଶାସ୍ତ୍ର ବେଦ ଆଗମ ନିବାଡ଼ି ।
ଦେବଙ୍କର ଅର୍ଥେ ଗଲେ ଚକ୍ରପାଣି
ଦଇତ ପତିର ଯଜ୍ଞ ବେଳ ଜାଣି ।
ବହୁତ ନୃପତି ଅଛନ୍ତି ତହିଂ ମିଳି
ଋଷି ବ୍ରାହ୍ମଣ ଯେ ଅଛନ୍ତି ତପଶାଳୀ ।
ବୃହସ୍ପତିଙ୍କର ସଙ୍ଗତେ ଦେବ ଯାନ୍ତି
ଦେଖିଣ ପଚାରଇ ବଳି ଯେ ନୃପତି ।
ଯେ ଦ୍ୱିଜ ଗୋଟି ଯେ ଅଟଇ ତୋର କିସ
ବାମନ ବୋଲଇ ମୁଂ କଶ୍ୟପର ଶିଷ ।୩୦
ତୁହୋ ମହାରାଜା କରୁଅଛୁ ଯାଗ
ମାଗନ୍ତାମାନଙ୍କର ଅଟଇ ପରମ ଭାଗ୍ୟ ।
ହସିଣ ବୋଇଲେ ହୋ ବଳି ନୃପମଣି
ତୁହି କିସ ମାଗୁ କହୁକିନା ପୁଣି ।
ଦାନ ଘେନିଣ କି ପାରିବୁ ପାରକରି
ବୟସେଣ ସାନ ନୋହୁନା ମନ୍ତ୍ର ଉଚ୍ଚରି ।
ବାମନ ବୋଲଇ ହୋ ଜାଣିମା କେମନ୍ତେ
ତୁ ରାୟେ ଶାସ୍ତ୍ର ଶୋଧିବୁ ଯେମନ୍ତେ ।
ଯାହା ତୁ ପଚାରିବୁ ପାରିବି ଯେବେ କହି
ସତ୍ୟ ଉତ୍ତର ଦେବୁ ତିନିପାଦ ମହୀ । ୪୦
ବାମନ ଶରୀରେ ଉଉରୀ ପଇତା
କରେ କୁଶ ଗଣ୍ଠି ଧୋତି ଚାଗୁଚିତା ।
ଲୋଟଣି ଜୁଡ଼ା ଗୋଟି ତାହାକୁ ଯେ ଶୋହି
ରୂପେଣ ପଟାନ୍ତର ସଭାଜନ ମୋହି ।
ବଳି ମୁଖ ଚାହିଂ କରନ୍ତି ବେଦ ଧ୍ୱନି
ସ୍ୱର୍ଗେ ଚାହୁଂଣ ଅଛନ୍ତି ସୁର ମୁନି ।
ସାମ ଗାୟନ ଯେ ଗାନ୍ଧାର ରାଗେ କରି
ଦକ୍ଷିଣ କରେ କରତାଳ ମାରି ।
ଶୁଣି ମୋହ ମାନ ଯେ ହୋଇଲେ ନୃପତି
ଯେକଥା ମନ୍ତ୍ରୀକି ଚାହିଂଣ ପୁଚ୍ଛନ୍ତି । ୫୦
ଶୁକ୍ର ବୋଲନ୍ତି ତୁ ନିବର୍ତ୍ତ ନୃପବର
ଅପୂର୍ବ ବ୍ରାହ୍ମଣ ଯେ ଅଟଇ ଚକ୍ରଧର ।
ଦେବେ ଯହୁଂ କହିଲେ ତୋହୋର ଦୁଷ୍ଟପଣ
ତେଣୁ ସେ ଯେବେ ଆସି ହୋଇଲେ
ନାରାୟଣ ।

ମାୟା ପ୍ରକାରେ ହରି ହରିବେ ତୋର ଶିରୀ
ଅମରଗଣଙ୍କ ଛଳେ ଜାତ ହୋଇଲା
ମୁରାରି ।
ତୁ କିମ୍ପା ଯେହାକୁ ଦାନ ଯେବେ ଯାଚୁ
ଆପଣାର ସମ୍ପଦ ପରକୁ ଦେଇ ସଞ୍ଚୁ ।
ରାଜା ବୋଇଲେ ଯେ ଯେବେ ଦାମୋଦର
ଯଜ୍ଞ ସମ୍ପଦତ ହୋଇଲା ମୋହୋର ।୬୦
ଦେବଇ ଦାନ ମୁଂ ଯେ ଘେନିବେ
ବନମାଳୀ
ପୂର୍ବର ପାପ ମୋର ହୋଇବ ପଖାଳି ।
ଶୁକ୍ର ଡିଆରିଲା ଜାଣିଲେ ଜଗନ୍ନାଥ
ଠାରିଣ ତାହାଙ୍କୁ ଦେଲେ ବାମ ହସ୍ତ ।
ଜାଣିଣ ତବଦ ହୋଇଲାକ ସେହି
ଶ୍ରୀହରି ବୋଲନ୍ତି ସେ ତୁ ପୁନ୍ୟଦେହୀ ।
ସତ୍ୟ ଯାହା କଲୁ ହୋଇଲୁ କିମ୍ପା ତୁନି
ଯେ ମୋହୋର ବେଦତ ଶୁଣିଲେ
ସର୍ବମୁନି ।
ତୋହୋର ସତ୍ୟ ଏବେ ସମସ୍ତେ
ଶୁଣିଛନ୍ତି । ୭୦
ଦେବୁ କି ନଦେବୁ କହସି ନୃପତି ।
ହସିଣ ବୋଇଲେ ବଳି ନୃପମଣି
ବାଇକି ବାତୁଳ ଯେ କହୁ ତୁ ନ ଜାଣି ।
ଯାହା ବୋଇଲି ମୁଂ ନୋହଇ ନା ଆନ
ନେସି ଧନରତ୍ନ ଯାନ ସୁକାସନ ।
ବାମନ ବୋଲନ୍ତି ମୋର ବିଭେ କାର୍ଯ୍ୟ
ନାହିଂ
ପାଶୋରିଲୁ କି ରାଜା ଯାହା ମାଗିଲଇଂ
ମୁହିଂ ।
ରାଜା ବୋଇଲେ ତୋତେ ବିଭା କରାଇବି
ବାଡ଼ି ବୃଭି ଖଞ୍ଜିବି ଶାସନ ମଣ୍ଡପ
ତୋଳାଇବି ।
ସ୍ୱାମୀ ବୋଲନ୍ତି ତୁ ଛାଡ଼ିଲୁ ପ୍ରକୃତି
ଅଜ୍ଞାନ ପ୍ରକାର ଯେ କହୁ ହୋ
ନୃପତି ।୮୦

ଯାହା ମାଗିଲି ମୁଂ ତାହା ନ ଚିତୋଉ
କେମେନ୍ତ ଆନେ ତୁ ମହାଦାନୀ ବୋଲାଉ ।
ଭଲା ଆଶାକରି ଅଇଲି ମୁହିଂ ତୋତେ
ତୁରେ ନିରାପେକ୍ଷ କଲୁ ରାଜା ମୋତେ ।
ଧିକ ହଉ ତୋର ସତ୍ୟଶୀଳ ପଣ
ଯାଗ ଦାନ ଧର୍ମ ଅଟଇ ଅକାରଣ ।
ମାୟାରେ ଗର୍ବେ ତୁ ଜିଣିଲୁ ଜଗତ
ଅସୁରଙ୍କ ବିଧିନିକି ରଖନ୍ତି ଯତସତ ।
ମତ୍ତଗଜ ଯେହ୍ନେ ବେଣୁ ଘାୟେ କମ୍ପଇ
ବାମନ କୋପ ଦେଖି ତେହ୍ନେ ବଳି
ନୃପଇ ।୯୦
ଆସ ଆସ ବ୍ରାହ୍ମଣ ହୋ ଘେନ କୁଶପାଣି
ପ୍ରସନ୍ନ ହୋଇଣ ଯେ ବୋଲଇ ନୃପମଣି ।
ଆହୋ ବ୍ରାହ୍ମଣ ତୁ ତ ନଜାଣୁ ଯେ କିଛି
ଅଳପ ଦାନ ଦେବାକୁ ମନ ମୋହର
ନୋହୁଛି ।
ତେଣୁ ସେ ଭାଳଇ ମୁଂ ମନେ ମନେ ପୁଣି
ବିମୁଖ ହୋଇଲୁ ତୁ ନ ଦେବା ପ୍ରାୟେ
ମଣି ।
ବ୍ରାହ୍ମଣ ବୋଇଲେ ମୁଂ ଯେତକୁ ଭାର୍ଜନ
ସକ୍ଷ ଅନରୂପେ ଘେନିମି ସିନା ଦାନ ।
ତିନି ଅଗ୍ନିକି ତୁ ଦେବୁ ତିନିପାଦ
ହୋମ କରିବି ମୁଂ ତୋହୋର
ପ୍ରସାଦ ।୧୦୦
ଶୁଣିକରି ରାଜା ଘେନିଲା କୁଶ ପାଣି
ବାମନ କରେ ତାହା ସମର୍ପିଲା ଆଣି ।
ରତ୍ନଝରି ଘେନିଣ ଧୁଅନ୍ତେଣ ପାଦ
ଅସୁର ମନ୍ତ୍ରୀମାନେ ସେ ହୋଇଲେ
ବିଷାଦ ।
ରାଜାର ସମ୍ପଦ ଯେହିକ୍ଷଣି ଯିବ
ମାୟା ବ୍ରାହ୍ମଣ ତ ଅଟଇ ମାଧବ ।
କହିଲେଣ ରାଜା ବୋଲ ମୋ ନକଲା
ଅତି ସତ୍ୟେ ଯେଢ଼େ ରାଜା ନାଶେ ଗଲା ।
ଯେମନ୍ତ ମଣି ଶୁକ୍ର ବିଚାରିଲା ବୁଦ୍ଧି

ଝରିରେ ପଶି ମୁହିଂ ମୁଖ ନିରୋଧିବି ।୧୦
ଯେତେ ବୋଲିଣ ପାଣି ଝରିରେ ପଶିଲା
ଜଳ ନପଡୁ ବୋଲି ନାଳ ନିରୋଧିଲା ।
ନୀରେ ରହିଲାରୁ ଜାଣିଲେ ମୁରାରି
କୋପେଣ କୁଶ ଅଗ୍ର ମାଇଲେ ଦଇତାରି ।
ଶୁକ୍ରର ଆଖିରେ ସେ ବାଜିଲାକ ଯାଇ
କଣା ହୋଇଣ ସେ ଗଲାକ ପଳାଇ ।
ଯହୁଂ ସେ ଝରିରୁ ଶୁକ୍ର ହୋଇଲା ବାହାର
ବିଷ୍ଣୁର ଚରଣେ ଯେ ପଡ଼ିଲା ନୀରଧାର ।
ବଳି ବୋଇଲେ ମୁଂ ସତ୍ୟେ ଦେଲି ଦାନ
ତିନିପାଦ ମହୀ ସିନା ଘେନ ହୋ
ବ୍ରାହ୍ମଣ ।୨୦
ଶୁଣିକରି ହରି ଚରଣ ବଢ଼ାଇଲେ
ଏକା ପାଦକେ ମର୍ତ୍ତ୍ୟପୁର ଗୋପ୍ୟ କଲେ ।
ଦେଖି ନୃପତି ଯେ ହୋଇଲା ଚକିତ
ବୋଇଲା କେବଣ ଏ ହେଲା ବିପରୀତ ।
ଶ୍ରୀହରି ବୋଲନ୍ତି ଶୁଣ ନୃପବର
କାହିଂ ବିଶ୍ରାମିବା ଆରେକ ପୟର ।
ରାଜା ବୋଇଲା ସ୍ୱର୍ଗ ମୋର ଦେଶ
ତହୁଂ ଯେ ପାଦେକ ଘେନ ପୀତବାସ ।
ଶୁଣି ବାମ ପାଦ ବଢ଼ାଇଲେ ହରି
ବ୍ରହ୍ମଲୋକ ଯାଏ ଗଲା ପାଦ ବଢ଼ି ।୩୦
ଶ୍ରୀହରି ପାଦପଦ୍ମ ଦେଖିଣ ବିଧାତା
ଗଙ୍ଗା ଘେନି ଅବିଷେକ କଲା
ଜଗତର ପିତା ।
ବଳି ବିଚରଇ ଯେସେ ଅଟନ୍ତି ଦେବହରି
ମୋହୋର ସତ୍ୟ ବିଡ଼ି ଅଇଲେ ମାୟା
ରୂପଧରି ।
ରାଜା ଭାଳେଣି ଜାଣିଲେ ଶ୍ରୀପତି
କିମ୍ପାଇ ବିସ୍ମୟ ତୁ ହୋଉ ଚକ୍ରବର୍ତ୍ତୀ ।
ଆରେକ ପାଦ ମୋତେ ଦିଅସି ତୁ ଦାନ
ବଳି ବୋଇଲା ତୁ ଶୁଣସି ଜନାର୍ଦ୍ଦନ ।
ଆବର ଚରଣ ଯେ ଅଛି ତୋର କାହିଂ
ଶୁଣିଣ ନାଭିରୁ ଯେ ପାଦେକ କାଢ଼ିଲେ
ଗୋସାଇଂ ।୪୦

ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲା ନୃପତି
ବିସ୍ମରଇ ହରି ମୋର ହରିଲେ ବିଭୂତି ।
ଯେତେ ବୋଲି ଶିର ଯେ ପାତିଲାକ ଆଣି
ବଳିର ମଥାରେ ପାଦ ଦେଲେ ଚକ୍ରପାଣି ।
ଅତି ଦୃଢ଼େ ଚାପି ସେ ପାତାଳକୁ ନେଲେ
ଅତିତାଳ ପୁରେ ନେଇଣ ଥୋଇଲେ ।
ସତ୍ୟର ଫଳେ ଦିବ୍ୟ ଭୁବନେକ ଦେଇ
ଆପଣେ ଜଗିଛନ୍ତି ମୂର୍ତ୍ତିଯେକ ହୋଇ ।
ଯହୁଁ ସେ ବଳିରାଜା ପାତାଳକୁ ଗଲା
ସୁରଗଣ ଘେନି ବ୍ରହ୍ମା ସ୍ତୁତି କଲା । ୫୦
ତ୍ରିବିକ୍ରମ ରୂପ ଧରି ସ୍ୱାମୀ ଏଥ
ଦତ୍ୟର ଦର୍ପ ସେ ହରିଲେ ଜଗନ୍ନାଥ ।
ଦେବଙ୍କର ଇଚ୍ଛା ହୋଇଲା ଯହୁଁ ସିଧ
ସିଦ୍ଧବନ ନାମ ଯେହାର ଦେଲେ ବିବୁଧ ।
ଯେ ବନେ ସକଳ କାର୍ଯ୍ୟ ସିଦ୍ଧ ହୋଇ
ଯେଥେ ଯେ ଆଶ୍ରମ ମୁଁ କରିଥିଲି
ରଘୁସାଇଂ ।
ଚାଲ ଏବେ ରାମ ବାମନ ଦେଖିବା
ଯାବତ ଦୁଃଖ ହାଦେ ଦୁସ୍ତରୁ ତରିବା ।
ପ୍ରତିମା ରୂପେ ହାଦେ ଅଛନ୍ତି ବ୍ରହ୍ମରାଶି
ଦେଖିବା ରଘୁନାଥ ସ୍ୱାମୀଛନ୍ତି ବସି ।୬୦
ତହୁଁ ଚଳିଣ ଯେ ଗଲେ ତିନି ଜଣ
ଦେଖିଲେ ବିଜୟେ ବାମନ ନାରାୟଣ ।
ପାଷାଣ ପିଣ୍ଡ ହାଦେ ବାମନ ମୂରତି
ଉଭରୀ ପଇତା ଯେ କରେଣ ଚିତାଛତି ।
କରେ କୁଶ ଗଣ୍ଠି ଶୁକଳ ବସନ
କୁଶ ବଟୁ ଜୁଡ଼ା ବଦନ ଶୋଭାବନ ।
ଦେଖିଣ ନମସ୍କାର କରନ୍ତି ଜଣ ତିନି
ରାମ ବୋଲନ୍ତି ତୋହର ପ୍ରସାଦେ ହୋ
ମୁନି ।
ବିଷ୍ଣୁଙ୍କୁ ଦେଖିଲି ପାପ ମୋର ଗଲା
ଯେ ଜନ୍ମର ସୁଫଳ ଯେବେ ସେ
ହୋଇଲା ।୭୦
ହସିଣ ବିଶ୍ୱାମିତ୍ର ବୋଲନ୍ତି ହୋଇ ହୋଇ
ଆଜ ସେ ପାପ ମୋର ଗଲା ରଘୁସାଇଂ ।
ଶୁଚିବନ୍ତ ହୋଇ ସେ ଅଇଲେ ଗାଧିସୁତ
ବାମନ ପ୍ରସାଦ ଆଣି ଦେଲେ ଶ୍ରୀରାମହସ୍ତ ।
ଲକ୍ଷ୍ମଣର କରେ ଦେଲେ ବ୍ରହ୍ମଚରୀ
ଚାହିଁଣ କରିଣ ଯେ ଶୋଇଲେ
ଚାପଧାରୀ ।
କୃତ କୃତ ହୋଇ ଯେ ମୁନି ଅର୍ଘ୍ୟ ଦେଲେ
କନ୍ଦମୂଳ ଫଳ ଜଳ ସମର୍ପିଲେ ।
ତହୁଁ ତିନିଜଣ ଚଳିଲେ ଅନୁକ୍ରମେ
ପ୍ରବେଶ ହୋଇଲେ ବିଶ୍ୱାମିତ୍ରର
ଆଶ୍ରମେ । ୮୦
ଏଥୁ ଅନନ୍ତରେ ଗଲା ଦିନ ତିନି
ଯଜ୍ଞ ଆରୋପିଲେ ବିଶ୍ୱାମିତ୍ର ମୁନି ।
ଅନେକ ମୁନିମାନେ ଅଇଲେ ଯାଗ ଶୁଣି
ଯେଥୁଅନନ୍ତରେ ଶୁଣିମା ରସବାଣୀ ।
ଯହୁଁ ଘୃତ ତିଳ ଅଗ୍ନିରେ ହୋମ ଦେଲେ
ଶୁଣିଣ ଅସୁର ବଳ ଧାଇଁଣ ପଡ଼ିଲେ ।
ମାରୁଚି ଆପଣେ ହୋଇଲା ଆଗୁସାର
ଶତେପୁର କରି ବେଢ଼ିଲେ ହୋମଘର ।
ମୁନି ବୋଲନ୍ତି ହୋ ଶ୍ରୀରାମଚନ୍ଦ୍ର ଶୁଣ
ଯେହିକ୍ଷଣି ଅସୁରେ କରିବେ ମୂର୍ଖପଣ ।
ଶୁଣି ରାମ ଲକ୍ଷ୍ମଣ ଧଇଲେ ଧନୁଶର
ତୀକ୍ଷ ବାଣେ ଛେଦିଲେ ଅନେକ
ଅସୁର ।୯୦
ଆଗଭର ହୋଇଣ ଯୁଝିଲା ମାରୁଚି
ପବନାଶର ରାମ ଧନୁରେଣ ଯୋଚି ।
ମନ୍ତ୍ର ସୁମରି ଯେ ପେଷିଲେକ ବାଣ
ଚଳିଲାକ ବାଣ ଶବଦ ଗରୁ ଟାଣ ।
ଦତ୍ୟର ଅଙ୍ଗେ ଯେ ବାଜିଲାକ ଯାଇଂ
ହୁଙ୍କାର ଶବଦକରି ଦେଲାକ ଉଡ଼ାଇ ।
ବନ ପରବତ ଉପରେ ଉଡ଼ିଗଲା
ସହସ୍ର ଯୋଜନେ ନେଇ ତାହାକୁ
ପକାଇଲା ।
ମାରୁଚି ଅସୁର ଗଲାକ ଯହୁଁ ଉଡ଼ି
ସୁବାହୁ ଧାଇଁଲା ଯେ ହୁଙ୍କାର ଧ୍ୱନି
କରି ।୧୦୦
ରାମର ଉପରକୁ ପଡ଼ିଲାକ ଧାଇଁ
ଅଗ୍ନି ଅସ୍ତ୍ର ଘେନି ତାହାକୁ ହେଲେ ଦହି
ରଘୁସାଇଂ ।
ଜଳିଣ ଗଲା ସେ ସୁବାହୁ ଅସୁର
ମାନବା ଅସ୍ତ୍ରରେ ସେ ମାଇଲେ ରଘୁବୀର ।
ମନ୍ତ୍ର ପଢ଼ିଣ ଯେ ବିନ୍ଧିଲେ ରଘୁମଣି
ଆବର ଅସୁର ସନ୍ୟ ପକାଇଲେ ହାଣି ।
ରକତ ନଦୀ ଯେ ବହିଲାକ ବନେ
ଅଧା ସ୍ୱର୍ଗେ ଥାଇଣ ଦେଖନ୍ତି
ଦେବତାମାନେ ।
ପ୍ରଶଂସା କରିଣ ଯେ କୁସୁମ ବରଷି
ସାନନ୍ଦ ହୋଇ ଦେବେ ବାହୁଡ଼ିଗଲେ
ଆସି ।୧୦
ଯେଥୁ ଅନନ୍ତରେ ଯାଗ ସମାପତ
ଅବଭୃର୍ଥ ସ୍ନାନ କଲେ ତପୋବନ୍ତ ।
ମନ୍ତ୍ର ପଢ଼ିଣ ଆଶିଷ ଦେଲେ ଶ୍ରୀରାମଙ୍କୁ
ଚିରଜୀବୀ ହୋଇଥାଅ ଅପାର କାଳକୁ ।
ବିଶ୍ୱାମିତ୍ର ମନେ ବିଚାରଇ ପୁଣି
ଦଶରଥ ପୁତ୍ର ଯେ ଅଇଲି ମୁହିଂ ଘେନି ।
କିସ ଉପକାର କରିବି ମୁହିଂ ପୁଣ ।
ଅସୁର ମାରି ଯେ ରଖିଲେ ମୋର ପଣ ।
ଶ୍ରୀରାମଙ୍କୁ ଯେବେ ମୁଂ ଦେଇ ପାରଇ ସୀତା
ଯେ ମହୀମଣ୍ଡଳେ ରହିବ ମୋର
କଥା ।୨୦
ରାମ ଲକ୍ଷ୍ମଣଙ୍କୁ ପଚ୍ଚରଇ ଋଷି
ମିଥିଳା କଟକରେ ରାମ ଆସିବାକି ପଶି ।
ଜନେକ ମହାମୁନି କରିଅଛି ଯାଗ
ମହତଙ୍କ ତପ ଦେଖିଲେ ବଡ଼ ଭାଗ୍ୟ ।
ଶ୍ରୀରାମ ବୋଇଲେ ମୁନି ଯେ ତୋହୋର
ଇଚ୍ଛା
ଯେ ମୋହୋର ମନ ସେ ମିଳଇ ସୁଇଚ୍ଛା ।
ଶ୍ରୀରାମର ବଚନ ଯେ ଯେସନେକ ଶୁଣି

ବିଶ୍ୱାମିତ୍ର ସଙ୍ଗେ ଅନେକ ତପୋଜନ
ଘେନି ।
ରାମ ଲକ୍ଷ୍ମଣ ଘେନି ତହୁଁ ଗଲେ ଚଳି
ବାଟରେ ଦେଖିଲେ ଅସୁର ବଳ
ଦଳି ।୩୦
ଶ୍ରୋଣିତ ନଦୀ ତୀରେ ରହିଲେ ସେଦିନ
କନ୍ଦ ଫଳ ମୂଳ କରନ୍ତି ଭୋଜନ ।
ରାମ ପଚ୍ଚାରନ୍ତି ସେ କଉଶିକକୁ ଚାହିଁ
କାହାର ଦେଶ ଯେଟି କହ ତପସାଇଁ ।
ମୁନି ବୋଲନ୍ତି ହୋ ଶ୍ରୀରାମ ଉତ୍ତରେ
କୁଶ ବୋଲି ବ୍ରହ୍ମାର ହୋଇଲା କୁମରେ ।
ଯେହାର ଚାରିପୁତ୍ର ହୋଇଲେ ଉତପତି
କୁସାମ୍ବ ନାମେଣ ଯେ ବ୍ରହ୍ମାର
ଜ୍ୟେଷ୍ଠନାତି ।
ଦ୍ୱିତୀୟ ପୁତ୍ର ତାର କୁଶଲାଭ ନାମ
ତୃତୀୟ ଅମୃତ ରଜ ଅନୁପାମ ।୪୦
ବସୁ ବୋଲିଣ ସବୁହୁଁ ସାନ ପୁତ୍ର
ଚାରିହେଁ ବଳବନ୍ତ ହୋଇଲେ ପବିତ୍ର ।
କୌସାମ୍ବୀ ନାମେ ଦେଶେ କୁସାମ୍ବ ଯେ ନୃପତି
ମହୋଦୟ ପୁରେ କୁଶଲାଭ ନୃପତି ।
କାମେରୀ ପୁରେ ଯେ ମାର ଜୋତିଷ ପୁରେ
ଅମୃତରଜ ରହି ହୋଇଲେ ନୃପବରେ ।
ବେଦି ଦେଶେ ହାଦେ ବିରାଜ ନାମେ ପୁରୀ
ବସୁ ନାମେ ନୃପତି ଯେଥି ରାଜ୍ୟ
କରି ।
ପ୍ରତଗ୍ୟାଂବନ୍ତ ଯେ ଅଟଇ ବସୁରାଜା
ପଦ ଅଇରି ବଳ କରନ୍ତି ପାଦପୂଜା ।୫୦
କଟକ ନିକଟେଣ ଆରେକ ପୁର କଲା
ଧର୍ମପୁର ବୋଲି ତାହାର ନାମ ଦେଲା ।
ଯେ ଯେ ଦିଶୁଅଛି ପଞ୍ଚହିଁ ପର୍ବତ
ସୁପଞ୍ଚ ଜଳ ଯେଥି ବହଇ ରଘୁନାଥ ।
ପାଞ୍ଚ ଗିରିରେ ବେଢ଼ି ନଦୀ ବହି
ସଦାଶିବ ମାଥେ ଯେହ୍ନେ ମାଳତୀମାଳ
ଥାଇ ।

ଯହୁଁ ସେ ମାଗଧି ଆସଇ ଗିରି ବୁଲି
ତହୁଁ ସେ ମଗଧ ଦେଶ ଯେହାକୁ ଯେ
ବୋଲି ।
ମୋହୋଦୟ ପୁରେ କୁଶଲାଭ ରାୟେ
ଦେବକନ୍ୟାନ୍ତ ସେ ରମଣୀ ସୁଖ-
କଯେ ।୬୦
ଘୃତାଚୀ ନାମେଣ ତାହାର ଯୁବତୀ
ଶତେକ ଦୋହିତା ଯେ ତାହାର ଉତପତି ।
ରୂପେଣ ପଟାନ୍ତର ନାହିଁ ତିନିପୁର
ମନେ ବିଚ୍ଚରଇ କୁଶଲାଭ ନୃପବର ।
ଦୁହିତାୟେ ସୁନ୍ଦର ଯୁବା ଯେ ବୟେସ
ଅନରୂପେ ବର ନାହିଁ କରିବି ଯେହା କିସ ।
ଯେତେକ ବୋଲିଣ ନଗ୍ର ଅଭ୍ୟନ୍ତରେ
ବିଚିତ୍ର ପୁରେକ ତହିଁ ରଚ୍ଚିଲା ନୃପବରେ ।
ନାନା ତରୁବର ରୂପିଲା ଅଛି ତହିଁ
କନ୍ୟାୟେ ନାନାକ୍ରୀଡ଼ା କରନ୍ତି ତହିଁ
ରହି ।୭୦
ଦିନେକ କୁଶଲାଭ ନନ୍ଦିନୀ କି ଦେଖି
କାମଭରେ ପବନ ଲଜ୍ଜାତ ଉପେଖି ।
କନ୍ୟାକୁ ଚାହିଁଣ ବୋଲଇ ମରୁତ
ସ୍ୱର୍ଗର ଦେବତା ମୁଁ ରୂପରେ ଆନିନ୍ଦିତ ।
ସର୍ବ ଜୀବରେ ଥାଇ ମୁଁ ବିଜେକରି
ମୋହୋର ପ୍ରସାଦେ ଜୀବନ ସଭିଙ୍କରି ।
ମୁହିଁ ସେ ପବନରେ ଦେଖ ମୋହୋର
ମୁଖ
ମୋତେ ବିଭାହୋଇ ଭୁଞ୍ଜ ସ୍ୱର୍ଗ ସୁଖ ।
ମୁହିଁ ତୁମ୍ଭନ୍ତ ବଶ ହୋଇଲିରେ ସୁନ୍ଦେରୀ
ମଦନେ ଅଧୀର ଅଙ୍ଗ ଯେ
ମୋହୋରି ।୮୦
ଶୁଣିଣ ସୁନ୍ଦେରୀ ଲଜ୍ଜାଭର ହୋଇ
ଶତେକ ଯୁବତୀ ଓଳଗିଣ ଶୋଇ ।
ବୋଲନ୍ତି ସୁନ୍ଦେରୀ ଶୁଣ ହେ ମରୁତ
କୁଶଲାଭ ରାଜାର ଆମ୍ଭେ ଅଟୁ ଯେ
ଦୋହିତ ।

ସବିହେଁ ଅବିବାହୀ ଭ୍ରଥା ହିଁ ଜାଣି ନାହୁଁ
ପିତା ନ ଦେଲେ ତୋତେ ବରିବଇ କାହୁଁ ।
ପିତାର ଆଜ୍ଞା ନ ଭାଙ୍ଗୁ ଆମ୍ଭେ କେହି
ପିତା ଅରଜିଲାର ସିନା ଆମ୍ଭର ଦେହୀ ।
ପିତା ନ ବରିଲେ ନ ବରିବୁ ତୋତେ
ବିଅର୍ଥ ହୋଇବ ସିନା କହିବୁ ତୁ
ଯେତେ ।୯୦
ଶୁଣିଣ ସଙ୍କୋଚ ପାଇଲା ପବନ
ସୁନ୍ଦେରୀଙ୍କି ଶାପ ଦେଲା କୋପମନ ।
ଯେ ମୋର ବଚନ ନ ପାଳିଲ ବାଳୀ
କୁବୁଜ ହୁଅ ତୁମ୍ଭେ ସୁନ୍ଦର ରୂପ ହାରି ।
ଯେତେ ବୋଲି ଅନ୍ତରୀକ୍ଷେ ଗଲାକ ମରୁତ
କୁବୁଜ ହୋଇଲେ ରାଜା ଶତେକ
ଦୋହିତ ।
ଲଜାୟେ ପୁରକୁ ନ ଗଲେ ସୁନ୍ଦେରୀ
ବାରତା ପାଇଣ ଅଇଲେ କୁଶଲାଭ
ଦଣ୍ଡଧାରୀ ।
ଦୋହିତାକୁ ଦେଖି ବିକଳିତ ମନ
ପଚ୍ଚରଇ ତୁମ୍ଭେ କିମ୍ପା ହୋଇଲ
ଏସନ ।୧୦୦
ଦୋହିତାଏ ବୋଇଲେ ଶୁଣସି ପିଅର
ପୁରୁଷେକ ଆସି ହୋଇଲେ ଆମ୍ଭର
ଆଗର ।
ବୋଇଲାକ ମୋତେ ବରରେ ସୁନ୍ଦେରୀ
ମୁହିଁ ତୁମ୍ଭ ଭର୍ତ୍ତା ହୋଇବିରେ ନାରୀ ।
ଆମ୍ଭେ ନାସ୍ତି କଲୁ ତାହାର ବୋଲ ଶୁଣି
ବୋଇଲୁ ପିତା ସେ ଆମ୍ଭ ଜୀବର
କାରେଣୀ ।
ସେ ସେ ଯାହାକଇ ସମର୍ପିଇ ଆମ୍ଭନ୍ତ
ସେ ସେ ଆମ୍ଭର ହୋଇବ ନିଜ କାନ୍ତ ।
ଯେହା ଶୁଣି ଆମ୍ଭନ୍ତ ସେ କଲା ବହୁତ କୋପ
ବୋଇଲା କୁବୁଜ୍ଜ ହୋଉଲୋ ତୁମ୍ଭର
ସ୍ୱରୂପ ।୧୧୦
ଯେତେ ବୋଲି ମହାତ୍ମା ଯେ ଅନ୍ତରୀକ୍ଷେ
ଗଲା

ଶୁଣିଣ କୁଶଲାଭ ହରଷ ହୋଇଲା ।
ବୋଇଲା ମୋହୋର ଧନ୍ୟ ଅଟଇ କୁଳ
ତୁମ୍ଭର ପ୍ରସାଦେ ଲୋ ହୋଇଲି ନିର୍ମଳ ।
ଅନେକ ପ୍ରଶଂସା କଲେକ ନୃପମଣି
ସାଧୁ ସାଧୁ କଲେ ନଗ୍ରଲୋକେ ଶୁଣି ।
ଯେଥୁଅନନ୍ତରେ ଦୋହିତାନ୍ତ ଘେନି ରାୟେ
ନିଜ ନବରେଣ ପ୍ରବେଶ ଆସି
ହୋୟେ ।
ରାମ ପଚ୍ଚରନ୍ତି ଶୁଣ ହୋ ମହାମୁନି
ବିଭା ହୋଇଲେଟି କି କୁଶଲାଭ
ନନ୍ଦିନୀ ।୨୦
ବିଶ୍ୱାମିତ୍ର କହନ୍ତି ଶୁଣ ହୋ ରଘୁନାଥ
ଚୂଳି ନାମେଣ ଯେ ଯେକଇ ତପୋବନ୍ତ ।
ସେ ସେ ଉର୍ଧରେତା ଯତ ସତ ଗ୍ୟାଂନୀ
ତାହାର ତପକୁ ଡରନ୍ତି ସହସ୍ର ଯୋନି ।
ମନେ ମନେ ଇନ୍ଦ୍ର ବିଚ୍ଚରଇ ନିତି
ସ୍ୱର୍ଗର ସମ୍ପଦ ମୋର ହରଇ ନିକି ଯତି ।
ଯେତେ ଭାଳିଣ ଯେ ଶଚିଦେବୀର ସାଇଂ
ଉନ୍ମାଜ ଗନ୍ଧର୍ବକୁ ବୋଇଲାକ ରାଇ ।
ସୋମଦା ନାମେଣ ଯେ ତୋହୋର
ଦୋହିତା
ଅବିଭାଇ ହୋଇତ ଅଛଇ ବନିତା ।୩୦
ରୂପେଣ ସୁନ୍ଦେରୀ ଅଟଇ ଯୁବାନାରୀ
ମୋହୋର ବୋଲକରି ଯାଉ ସେ
ସୁନ୍ଦେରୀ ।
ଚୂଳିକ ମୁନିର ସେ ତପକରୁ ନାଶ
ତୁ ଯେବେ ମୋହୋର ଗୋ ଅଟୁ ନିଜ
ଦାସ ।
ଶୁଣିଣ ଉନ୍ମାଜ ଅଇଲା ତତ୍‌ଖତି
ପାଶେଣ ବସାଇଣ ଡିଆରେ ଦୋହିତି ।
ତୁ ମୋହୋର ନନ୍ଦିନୀରେ ଅଟୁ କୁଳ ସାର
ମୋତେ ରାଇ ଯାହା ବୋଇଲେ
ବଜ୍ରଧର ।
ଚୂଳିକ ମହାମୁନି କରଇ ଘୋର ତପ

ଅବଶ୍ୟ ହୋଇବ ସେ ସୁରପୁରେ
ନୃପ ।୪୦
ଇନ୍ଦ୍ରହିତେ ତୁ ଯେହିକ୍ଷଣି ଯିବୁ
ମୁନି ମନ ତୁ ହେଲେଣ ମୋହିବୁ ।
ବିଭା ହୋଇବୁ ତୁ ମୋହୋର ସନମତ
ଶୁଭ ଯୋଗେ ଯାଇ ଭେଟ ତପୋବନ୍ତ ।
ପିଅର ବଚନେ ଯେ ଅଇଲାକ ବାଳୀ
ଚୂଳିକ ଋଷିର ସନିଧ୍ୟେ ଯାଇଂ ମିଳି ।
ନିତି ସେବା କରିଥାଇ ମୁନି ପାଶ
ମଢ଼ିଆ ଲିପଇ ଆଣଇ ଗନ୍ଧ ପୁଷ୍ପ ।
ଧୂପ ଦୀପ ଜଳ କୁଶ ସଜକରି
ଅନୁବ୍ରତେ ଖଟିଥାଇ ମନ୍ତ୍ରଧାରୀ ।୫୦
ଯହୁଂ ସେ ସେବା କଲା ଅନୁଛନ
ଦିନେକ ପଚାରିଲେ ଚୂଳି
ତପୋଧନ ।
କିସ ନାମ ତୋହୋର କାହାର କୁଳେ ଜାତ
କେଣେ କାରଣେ ତୁ ଏଥିକି ଆଗତ ।
କନ୍ୟା ବୋଇଲା ଯେ ନମସ୍କାର କରି
ଉନ୍ମାଜ ଗନ୍ଧର୍ବ ପିଅର ମୋହୋରି ।
ପ୍ରମଦା ଅପକ୍ଷରୀ ଗର୍ଭେ ମୁହିଂ ଜାତ
ସୋମଦା ନାମ ମୋହୋର ଶୁଣ
ତପୋବନ୍ତ ।
ଅବିଭାଇ କନ୍ୟା ମୁଂ ପିତାଘରେ ଥିଲି
ବର ଲୋଡ଼ିବାରେ ମୁଂ ଯେଥକୁ
ଅଇଲି ।୬୦
ବନସ୍ତ ଭିତରେ ମୁଂ ନ ଦେଖିଲି ଆନ
ତୋତେ ସେବା କରୁଅଛି ଅବିଛନ ।
ଯତି ସନ୍ତୋଷ ହୋଇଲେ ତାହା ଶୁଣି
ହସି ବୋଇଲେ ଯତି ଶୁଣରେ ତରୁଣୀ ।
ଯେବେ ରୂପବନ୍ତୀ ଅଟୁ ଅବିଭାଇ
ଆମ୍ଭେ ବର ଯେବେ ତୋ ମନକୁ
ଯୋଗାଇ ।
ଶୁଣି କରଯୋଡ଼ି କହଇ ଯୁବତୀ
ଅନେକ ପୁନ୍ୟେ ସିନା ପାଇବି ତୋତେ
ପତି ।

ତୋହୋର ଚିତ୍ତକୁ ଯେବେ ରୁଚଇ ଭୋ
ମୁନି
ହୁଅ ବିଭା ମୋତେ ଭଗତି ଭାବ
ଘେନି ।୭୦
ସେ କନ୍ୟାର କଥା ଶୁଣିଣ ଚୂଳି ଋଷି
ଗନ୍ଧର୍ବମତେ ବିଭା ହୋଇଲେ ଶୁଭ୍ରକେଶୀ ।
ବନ ପରବତେ ଘେନିଣ ଭୋଗ କଲା
ଶୃଙ୍ଗାର ରସେଣ ମୁନିଙ୍କି ତୋଷିଲା ।
କାଳେ ପୁତ୍ରେକ ଯେ ହୋଇଲା ତାର ଜାତ
ବ୍ରହ୍ମତେଜ ନାମ ଦେଲା ତାହାର ତାତ ।
ରୂପେଣ ସୁନ୍ଦର ଯେ ନାହିଂ ପଟାନ୍ତରି
ବ୍ରହ୍ମା ବିଷ୍ଣୁ ରୁଦ୍ର ସେ ଯେକଇ
ରୂପଧରି ।
ତେଜେଣ ଅଗ୍ନିକି ପ୍ରତିଜ୍ଞାୟେ ଯମ
ଧଇର୍ଯ୍ୟେଣ ମେରୁ ସେ ବିଚ୍ଚରେଣ
ଧର୍ମ ।୮୦
କ୍ଷତ୍ରି ହୋଇବାକୁ ନାହିଂ ସମସରି
କାଶୀ ଦେଶେଣ ସେ ହୋଇଲେ
ଦଣ୍ଡଧାରୀ ।
ମହା ପ୍ରତିଜ୍ଞାବନ୍ତ ସେ ଅଇରି ଭରସଲ
ରବିତଳେ ଯେକା ହୋଇଲା ମହାମଲ ।
କୁଶଲାଭ ରାଜାର ଯେତେକ ଝିଅ ଥିଲା
ବ୍ରହ୍ମତେଜ ରାଜାକୁ ବିଭାୟେଣ ଦେଲା ।
ପବନର ଶାପେ କନ୍ୟାୟେ କୁବୁଜ
ହୋଇଥିଲେ
ବ୍ରହ୍ମତେଜ ଲାଗି ସେ ସୁନ୍ଦର
ହୋଇଲେ ।
ଦେଖିଣ କୁଶଲାଭ ହୋଇଲା ସନ୍ତୋଷ
ନିଜ ପୁରେ ଗଲା ଚୂଳିକ ମୁନି ଶିଷ ।୯୦
ବିଶ୍ୱାମିତ୍ର ବୋଇଲେ ଶୁଣ ରଘୁନାଥ
କନ୍ୟାଏ ଯେ କୁବୁଜ ହୋଇଲେ ଯେଥ ।
କାନ୍ୟକୁବ୍‌ଜ ଯେ ଏ ଦେଶର ନାମ ହୋଇ
ଶ୍ରୀରାମ ଆଗେ ଯେହା କଉଶିକ ମୁନି କହି ।
ଅନେକ କାଳ ଯେଥି କୁଶଲାଭ ରାଜ୍ୟ
କଲା

କର୍ମେଣ ତାହାର ପୁତ୍ର ଜାତ ନୋହିଲା ।
ଶତେକ ଦୋହିତା ବ୍ରହ୍ମତେଜକଇ ଦେଇ
ଯଜ୍ଞ ଆରମ୍ଭ ସେ କଲାକ ନରସାଇଁ ।
ହୋମ କରନ୍ତେଣ ଆକାଶେ ଶୁଭଇ ବାଣୀ
ଯଜ୍ଞ ନ କରତୁ ଶୁଣ ହୋ ନୃପମଣି ।୧୦୦
ଅଳପ ସମୟେ ହୋଇବ ତୋର ପୁତ୍ର
ସେ ସେ ଉଧରିବ ଯେ ତୋହୋରି ଗୋତ୍ର ।
ଆକାଶୁ ଯେସନେକ ଶୁଣିଣ ବଚନ
ଯାଗ ଗୁହାଇଲା କୁଶଲାଭ ରାଜନ ।
କାଳେଣ ପୁତ୍ରେକ ଯେ ହୋଇଲାକ ଜାତ
କଉସ୍ତୁଭ ନାମ ତାକୁ ଦେଲାକ ବିଧାତ ।
ରୂପେଣ ମଦନ ପବନ ସମ ବଳୀ
ନାହିଁ ପଟାନ୍ତର ଅଟଇ ଶୁଦ୍ଧଶାଳୀ ।
ଯେହାର ତନୟେ କଉଶିକ ହୋଇ
କଉଶିକ କୋଳେ ଗାଧି ଉପୁଜଇ ।୧୦
ଗାଧିର ତନୟେ ହୋଇଲାକ ଜାତ
ସେ ସେ ପୁତ୍ର ମୁହିଁ ଅଟଇ ରଘୁନାଥ ।
ଯହୁଁ ସେ କଉଶିକ ରାଜାର ମୁଁ ଅଟଇ ନାତି
କଉଶିକ ବୋଲି ମୋତେ ଜଗତେ ବୋଲନ୍ତି ।
ମୋହୋର ସାନ ଭୟେଣୀ ଯେ ସତ୍ୟବତୀ ନାମ
ଋଷିଙ୍କି ପିତା ତାହା କଲାକ ପ୍ରଦାନ ।
ପତିବ୍ରତା ପଣେ ସ୍ୱର୍ଗେ ବସିଥିଲା
ଅନେକ ପୁନ୍ୟେଣ ସେ ନଦୀୟେକ ବୋହିଲା ।
ଶୁଭବାହିନୀ ନାମେଣ ହେମ ଭେଦିଣ ଆସଇ
ବନଗିରି ଜିଣିଣ ସାଗରେ ମିଶଇ ।୨୦
ନଦୀ ରୂପେଣ ସେ ଜଗତ ପବିତ୍ର କଲା
ଅଜାର ନାମୟେ ଯେ କଉଶିକ ହୋଇଲା ।
କଉଶିକ ନଦୀ ଯେ ଯେ ଜଗତେ ପ୍ରସିଦ୍ଧି
ପବିତ୍ର ଜଳ ଯେ ଯେ ଝରେଇ ହେମ ମଝି ।
ଭଉଣୀର ସଙ୍ଗ ମୁଁ ଛାଡ଼ି ନ ପାରିଲି
ହେମଗିରି ନିକଟେ ତେଣୁ ସେ ରହିଲି ।
ଅନେକ କାଳ ମୁଁ ଥିଲଇ ତପକରି
ଭଗ୍ନୀର ସଙ୍ଗେ ମୁହିଁ ଆନନ୍ଦ ମନଧରି ।
ଯହୁଁ ଶୁଣିଲି ମୁଁ ସିଦ୍ଧବନର ମାହାତମ
ତେଣୁ ସେ ସିଦ୍ଧବନେ ରହିଲି ଶ୍ରୀରାମ ।୩୦
ଯେବେ ତୋହୋରେ ସେ କାର୍ଯ୍ୟସିଧ୍ୟ କଲି
ଯାଗ କରିଣ ଅନେକ ଧର୍ମ ମୁଁ ପାଇଲି ।
କଥା ହୁଅନ୍ତେଣ ହୋଇଲା ଅଧରାତି
ଅଷ୍ଟମୀ ନିଶାୟେ ଦିଶିଲା ଚନ୍ଦ୍ରଜ୍ୟୋତି ।
ମୁନିମାନେ ବୋଇଲେ ଶୁଣ ଗାଧିଶିଷ୍ୟ
ଶ୍ରୀରାମ ଅଳପ ଅଟଇ ବୟେସ ।
ଅର୍ଦ୍ଧରାତ୍ର ଯେବେ ହୋଇଲାଣି ନିଶି
କେତେ ଉଜାଗର ହୋଇଥିବ ବସି ।
କଥା ଗୁହାଅ ତୁମ୍ଭେ ଶ୍ରୀରାମ ନିଦ୍ରାଯାଉ
କୋମଳ ଦେହ ଗୋଟି ଆଶ୍ୱାସନା ପାଉ ।୪୦
କଉଶିକ ବୋଇଲେ ହୋ କଥାଇ ସରିଲା
ରାତ୍ର ଯେବେ ଆସି ଅର୍ଦ୍ଧରୁ ଗଡ଼ିଲା ।
ଶୁଣସି ଶ୍ରୀରାମ ହୋ ନିଦ୍ରା ବାବୁ ଯାଅ
ବାଟ ଚାଲିଯିବା ଅଳସ ଯେବେ ଛଡ଼ାଅ ।
ଯେଥୁଅନନ୍ତରେ ଶୁତିଲେ ସକଳ
ରଜନୀ ସରିଲା ଉଦୟେ କଶ୍ୟପର ବାଳ ।
ଶେଯ୍ୟା ଛାଡ଼ିଣ ଯେ ଶୁଚିବନ୍ତ ହୋଇ
ଶ୍ରୋଣିତ ନଦୀତୀରେ ମିଳିଲେକ ଯାଇ ।
ନାବେ ବସିଣ ଯେ ହୋଇଲେ ନଦୀ ପାରି
ଶ୍ରୀରାମ ଲକ୍ଷ୍ମଣ ମୁନି ଆଦି କରି ।୫୦
କେତେହେଂକ ଦୂରେ ଗଙ୍ଗା ଯାଇ
ବୋଲନ୍ତି ବିଶ୍ୱାମିତ୍ର ଶୁଣ ରଘୁସାଇଁ ।
ଯେ ସେ ପୁନ୍ୟନଦୀ ସ୍ନାହାନ ଯେଥି କର
ପାପନାଶିନୀ ଯେ ଅଟଇ ରଘୁବୀର ।
ଯେହାର ଅପାର ସେ ଅଟଇ ମହିମା
ଚତୁମୁଖେ କହି ନ ପାରିଲେ ବ୍ରହ୍ମା ।
ଶ୍ରୀରାମ ବୋଇଲେ ଯେ କାହାର ବଂଶେ ଜାତ
ସଂଶୟ ଫେଡ଼ି ମୋତେ କହିବା ତପୋବନ୍ତ ।
ମୁନି ବୋଇଲେ ହୋ ଶ୍ରୀରାମଚନ୍ଦ୍ର ଶୁଣ
ପୂର୍ବର କଥାୟେ ପୁରାଣେ ବଖାଣ ।୬୦
ମେରୁର ଦୋହିତା ମେନକା ନାମେ ବାଳୀ
ହେମବନ୍ତକଇ ବିଭା କଲାକ ସେ ଭାଳି ।
ତହୁଁ ଜାତ ହାଦେ ହୋଇଲେ ଝିଅ ଦୁଇ
ଗଙ୍ଗା ଜ୍ୟେଷ୍ଠ ହାଦେ ଗଉରା ସାନ ହୋଇ ।
ରାମ ପଚାରନ୍ତି ଗଙ୍ଗା ଯେ ସ୍ୱର୍ଗବାସୀ
ମର୍ତ୍ତ୍ୟପୁରେ ସେ କିମ୍ପା ବୋହିଲାକ ଆସି ।
ମୁନି ବୋଲନ୍ତି ତୁ ଶୁଣ ରଘୁସାଇଁ
ତୋହୋର ଉପରବଂଶେ ସଗର ରାଜାହୋଇ ।
ବଇଧବୀ ସବ୍ୟା ବୋଲି ତାହାର ବେନି ବାମା
ରବିତଳେ ନୃପତି ସେ ବଡ଼ାଇ ଗାରିମା ।୭୦
ପୁତ୍ର ନାହିଁ ବୋଲି ସବ୍ୟା ବଇଧବୀ
କଶ୍ୟପ ଋଷିକି ସେ ଥାନ୍ତି ବାଳୀ ସେବି ।
କାଳେ ପ୍ରସନ୍ନ ହୋଇଲେ ମହାମୁନି
ଅନେକ ପୁତ୍ର ତୋର ହୋଉରେ କାମିନୀ ।
ସବ୍ୟାକୁ ବୋଇଲେ ଯେ ପୁତ୍ରେକ ତୋର ହୋଉ
ଏ ମୋହୋର ବଚନ ବିଫଳ ଯେ ନୋହୁ ।
ଦଶମାସ ସମ୍ପୂର୍ଣ୍ଣେ ସବ୍ୟା ପ୍ରସବଇ
ପୁତ୍ରେକ ସେ ଜାତ କଲା ମହାଦେଇ ।
ଅଶ୍ୱଜା ନାମ ଯେ ହୋଇଲା ତାହାର
ରୂପ ଗୁଣେ ସୁନ୍ଦର ନାହିଁ ପଟାନ୍ତର ।୮୦
ଯେଥୁଁ ବଇଧବୀର ଶୁଣିମାକ ରୀତି
ତିମ୍ୱେକ ଉପୁଜାଇଲା ସଗର ଯୁବତୀ ।
ବିମୋହ ହୋଇଣ ପକାଇବ ମନ କଲା

ଯେମନ୍ତେ ସ୍ୱର୍ଗରେ ଶବଦେକ ଶୁଭିଲା ।
ଯେହା ତୁ ବିନାଶ ନ କର ଗୋ ନାରୀ
ଭିତର ଦେଖ ତୁ ବେନି ଖଣ୍ଡ କରି ।
ଲାଭ ମଞ୍ଜି ସମାନ୍ୟେ ଅଛନ୍ତି ନାନା ସୁତ
ଘୃତକୁଣ୍ଡେ ଯେହା କରସି ଗୃହୀତ ।
ଯେତେକ ମଞ୍ଜି ତେତେକ କୁମ୍ଭ ଘେନ
ଯତ୍ନ କରିଣ ଥୁଅ ଉପୁଜୁ ନନ୍ଦନ । ୯୦
ଶୁଣିଲାକ ମହାମାଈ ସ୍ୱର୍ଗର ଶୂନ୍ୟବାଣୀ
ଅନେକ ଘୃତକୁଣ୍ଡ ସମ୍ପାଦିଲା ଆଣି ।
ଡିମ୍ବ କାଟିଣ ଯେ ଭିତର ଦେଖିଲା
କୁମ୍ଭେକ ମଞ୍ଜିଯେ କରିଣ ଥୁଆଇଲା ।
ଷାଠିଯେ ସହସ୍ରେକ ହୋଇଲାକ ବୀଜ
ଘୃତକୁଣ୍ଡେ ଥୋଇଲା ସଗର ମହାରାଜ ।
ରକ୍ଷା କରିଣ ଯେ ଥୋଇଲା ଯତ୍ନମତେ
ଦଶମାସ ସମ୍ପୂର୍ଣ୍ଣେ ଡିମ୍ୱେ ହୋଇଲେ
ପୁତ୍ରେ ।
ଷାଠିଯେ ସହସ୍ର କୁମର ଉପୁଜିଲେ
ତେଜ ପ୍ରତାପେ ସେ ଅଗ୍ନିକି
ଗଞ୍ଜିଲେ ।୧୦୦
ଦିନେ ଦିନେ ବଢା ହୋଇଲେ ବର୍ଧମାନ
ଦେଖିଣ ଆନନ୍ଦ ସଗର ରାଜନ ।
ନୃପତି ବିଚରଇ କରିବଇ ଯଜ୍ଞ
ଯେ ମହୀମଣ୍ଡଳେ ରହୁ ମୋର ଭାଗ୍ୟ ।
ଯେତେ ବୋଲି ସେ ଆରମ୍ଭ କଲାକ ଯଜ୍ଞଶାଳ
ଯବ ତିଳ ସମିଧ ସର୍ବ ସଞ୍ଚିଲା ମହୀପାଳ ।
ଇଷ୍ଟବନ୍ଧୁ ନିମନ୍ତ୍ରେଣ କଲାକ ନୃପତି
ଆସିଣ ପ୍ରବେଶ ସେ ହୋଇଲେ ସର୍ବ
ଯତି ।
ଅଶ୍ୱମେଧ ବିଧି କଲାକ ବରଣ
ନାନା ଦ୍ରବ୍ୟମାନ ସମ୍ପାଦିଲା ନୃପରାଣ ।୧୦
ଲକ୍ଷଣବନ୍ତ ଅଶ୍ୱ ବାନ୍ଧିଲା ପୂଜାକରି
ନଗର ପୁର ମଣ୍ଡାଇଲା ସଗର ଦଣ୍ଡଧାରୀ ।
ଯେଥୁଅନନ୍ତରେ ଶୁଣ ରଘୁନାଥ
ଚଣ୍ଡର୍ଯ ରୂପ ଧରି ଅଇଲା ପୁରୁହୂତ ।
ଯାଗଶାଳୁ ଅଶ୍ୱ ଘେନିଗଲା ଫେଡ଼

କପିଳ ମୁନି ପଛେ ବାନ୍ଧିଲାକ ନେଇ ।
ରାତ୍ର ପାହିଲାରୁ ଦେଖିଲେ ନାହିଁ ଅଶ୍ୱ
ସଗର ବିଚରଇ କାରଣ ଯେ କିସ ।
ପୁତ୍ରକୁ ରାଇଣ ବୋଲଇ ନୃପତି
ଯେତ୍ତେ ଧର୍ମ ମୋର ହୋଇଲା
ଅଗତି ।୨୦
ତୁମ୍ଭର ଥାନ୍ତେ ବାବୁରେ ଅଶ୍ୱ କେ
ଘେନିଗଲା
ପୁତ୍ରଙ୍କ ମୁଖ ଚାହିଁ ନୃପତି ବୋଇଲା ।
ଶୁଣିଣ କୁମରେ ଯେ କହନ୍ତି କରଯୋଡ଼ି
ନୁହସି ବିସ୍ମୟେ ରାଜା ଆଣିମୁଁ ଅଶ୍ୱଲୋଡ଼ି ।
ପିତାକୁ ପ୍ରବୋଧିଣ ଚଳିଗଲେ ବୀରେ
ଲୋଡ଼ନ୍ତି ଘୋର ବନ ପର୍ବତ ଉପରେ ।
କେଣେହେଂ ନ ଦେଖି ଯେ ଖୋଜିଲେ
ବସନ୍ଧରୀ
ପାତାଳେ କେ ଅବା ଥୋଇଲା ଗୁପତ
କରି ।
ଲହେ ବିଦାରିଲେ ମେଦିନୀର ଦେହ
ଅଶ୍ୱ ନ ପାଇଣ କଲେ ଗରୁ କୋହ ।୩୦
ଜୀବଜନ୍ତୁ ଦେଖିଣ ସେ କରନ୍ତି ପ୍ରାଣେ ହତ
ଭୟେ ଥରହର ସେ ହୋଇଲା ଜଗତ ।
ବ୍ରହ୍ମାର ଅଗ୍ରତେ କହିଲେ ପୃଥ୍ୱୀଯାଇ
ସଗରର ପୋୟେ ଧ୍ୱଂସିଲେ ଗୋସାଇଂ ।
ବନଗିରି ଖୋଜିଣ ମେଦିନୀ ଖୋଳିଲେ
ଯାଗ ଘୋଡ଼ା ଚିହ୍ନ ନ ପାଇ ଭାଳିଲେ ।
ବାହୁଡ଼ିଣ କହିଲେ ପିତାର ଆଗେ ଯାଇଂ
ଅନେକ ଲୋଡ଼ିଲୁ ଦେବ ଅଶ୍ୱ କାହିଂ
ନାହିଂ ।
ପିତା ବୋଇଲେରେ ପୁତ୍ରେ ହୋଇଲଟି
ଅଜ୍ଞାନ
ଜୀଇଂ କିସ କରିବରେ ହୁଅସି
ଦହନ ।୪୦
ଷାଠିଯେ ସହସ୍ର ଯାହାର ଅଛଇ ତନୟେ
ତୁମ୍ଭେନ୍ତ ଥାଆନ୍ତେ କେହୁ ନେଲା ଯଜ୍ଞ
ହୟେ ।

ଯେତ୍ତେ ଧର୍ମ ମୋର ହେଲେଣ ନାଶ ଗଲା
ନିଜ କପୋଳେ ହାଥ ମାରି ସଗରରାଜ
ବୋଇଲା ।
ପିତା ଏସନେକ ବୋଇଲେ ଯହୁଂ ବାଣୀ
ଭାଳିଣ କୁମରେ ଯେ ଲୋଡ଼ିଗଲେ ପୁଣି ।
ବନ ପର୍ବତ ସେ ନଦୀ ଜିଣିଗଲେ
ପୂର୍ବ ଦିଗରେ ସେ ପ୍ରବେଶ
ହୋଇଲେ ।
ଦେଖିଲେ ହସ୍ତୀ ଯେକ ଅଛଇ ପୃଥ୍ୱୀ ଧରି
ବିରୁପାକ୍ଷ ନାମ ଅଟଇ ତାହାରି । ୫୦
ସେ ଯେବେ ଚଳଇ ହଲଇ ବସୁମତୀ
ଦେଖିଣ କୁମରେ ଯେ ନମସ୍କାର କରନ୍ତି ।
ତହୁଂ ଚଳିଗଲେ ସଗର ରାଜସୁତ
ଦକ୍ଷିଣ ଦିଗକଇ କଲେକ ଗମନ୍ତ ।
ପଦ୍ମଗଜ ବୋଲି ଅଛଇ ଯେକ ହସ୍ତୀ
ମନ୍ଦର ଗିରି ସମାନ ଦିଶଇ ଦିଗଦନ୍ତୀ ।
ତାହାକୁ ନମସ୍କାର କରିଣ ତହୁଂ ଗଲେ
ପଶ୍ଚିମେ ମଣିଭଦ୍ରା ହସ୍ତୀକି
ଦେଖିଲେ ।
କପିଳାସ ପରବତ ସମାନ ଦେହ ଦିଶି
ତାହାକଇ ଓଳଗ ମେଲାଇଲେ ସଗରର
ଶିଷି ।୬୦
ଉତ୍ତରେ ଦିଗେ ସେ ଦେଖିଲେ ଭଦ୍ରାଗଜ
ହେମଗିରି ଜିଣିଣ ଯେ ଦିଶଇ ଧଉର୍ଯ ।
ନମସ୍କାର କରିଣ ପୁଚ୍ଛିଲେ ତାହାକୁ
ସେ ମହାଗଜ ଯେ କହିଲା ଯେହାଙ୍କୁ ।
ଏହିକ୍ଷଣି ପାଇବ ନୁହସି ବିମନ
ଶୁଣିଣ ସନ୍ତୋଷ ଯେ ସଗର ନନ୍ଦନ ।
ଲୋଡ଼ନ୍ତେଣ ବିମ୍ୱର ଦେଖିଲେ ଭୟାଙ୍କର
ଖୋଳି ମହାବୀରେ ପଶିଲେ ଭିତର ।
ଅନେକ ଦୂର ଯେ ନେଲେ ମହୀ ଖୋଳି
ଦେଖିଲେ କୁମର ଯେ କପିଳ
ତପଶାଳୀ ।୭୦
ଧ୍ୟାୟେ କରିଣ ଯେ ଅଛଇ ମୁନି ବସି

ଘୋଡ଼ା ବାନ୍ଧି ତାର ଅଛଇ ପଛକତି ।
ଦେଖିଣ କୁମାରେ ଯେ କୋପମୁଖ ହୋଇ
ଭାଳନ୍ତି ଯେ ଋଷି ଆଣିଲା ଚୋରାଇ ।
ଯେଡ଼େ ଧର୍ମ ଆମ୍ଭର କଲାକ ଯେ ନାଶ
ଭଣ୍ଡ ତପସୀ କି ନ ଯାଇ ବିଶ୍ୱାସ ।
ଏତେ ବୋଲି କୋପ ସେ ଯେ କଲେ
ରାଜପୁତ୍ରେ
ଋଷିକି ଭ୍ରଛନା ସେ କଲେକ ଅନେକ
ମତେ ।
ଦାଢ଼ି ଧରି ବୀରେ ଝିଙ୍କିଲେ ରୋଷଭରେ
ଘୋଡ଼ା ଚୋରାଇଲୁରେ ମାୟା
ମୁନିବରେ ।୮୦
କେହି ମୃଗଛାଲ ଉଛୁଡ଼ିଣ ନିଅନ୍ତି
ଆଧାରି ନେଇ କେ କାନ ରଗଡ଼ି ଦିଅନ୍ତି ।
ଧ୍ୟାନ ଭାଙ୍ଗିଣ ଯେ କପିଳ ମୁନି ଚାହିଁ
ସଗରର ପୁତ୍ରେ ସେ ସର୍ବେ ହେଲେ ଦହି ।
ଯେଥୁଅନନ୍ତରେ ଶୁଣିମା ରଘୁପତି
ସଗର ପୁତ୍ର ଯେ ଅସଜା ଦୁଷ୍ଟମତି ।
ତାହାଙ୍କର ପିତା ନବରୁ ବାହାର କଲା
ତାହାଙ୍କ ସଙ୍ଗେ ସେ ମାତ୍ର ଯେକାହିଁ
ନଗଲା ।
ତାହାଙ୍କର ତନଏ ଯେ ନାମ ଅଶ୍ୱବନ୍ତ
ନାତିକି ସେନେଧ ଛାଡ଼ିଲା ନୃପତ୍ୟ ।୯୦
ଯହୁଁ ସେ କୁମରେ ହୋଇଲେ ସର୍ବେ ଦହି
ଅଶ୍ୱବନ୍ତ ଆଗେ ନାରଦ ଯାଇ କହି ।
ଖୁଡୁତାମାନେ ତୋହୋର ଅଶ୍ୱ ଲୋଡ଼ିଗଲେ
କପିଳମୁନି କୋପେ ଦହନ ହୋଇଲେ ।
ଶୁଣିଣ ଅଶ୍ୱବନ୍ତ ପିତାକୁ କହିଲା
ଶୁଣିଣ ସଗର ରାଜା ବିସ୍ମୟ ହୋଇଲା ।
ବୋଇଲା ବିପରୀତ ହୋଇଲା ମୋତେ ଆସି
ଅକାରଣେ କୁଟୁମ୍ବତ ହୋଇଲେ ମୋର
ଧ୍ୱଂସି ।
ଯଜ୍ଞ ନ ପୂରିଲା କରନ୍ତି ବନବାସ
ଆବର ରାଜ୍ୟକୁ କି ଅଛଇ ମୋର ଆଶ ।

ଅଶ୍ୱବନ୍ତ ବୋଇଲା ତୁ ଶୁଣ ମହୀପତି
ମଲାର ପ୍ରାଣୀ ହାଦେ କେବେହେଁ ନ
ଆସନ୍ତି ।
ଯେବେ ସେ ଅଶ୍ୱକୁ ମୁଁ ଆଣିମଇଁ ଯାଇଁ
କର ତୁ ଯଜ୍ଞ ହୋ ହରଷ ମନ ହୋଇ ।
ଯେତେ ବୋଲି ଅଶ୍ୱବନ୍ତ ଅଶ୍ୱ ଲୋଡ଼ିଗଲା
ପୂର୍ବଦିଗେ ବିରୁପାକ୍ଷ ଗଜକୁ ଦେଖିଲା ।
ତାହାକୁ ପୁଛିଲା ସେ ବୋଇଲା ଏଥେ ନାହିଁ
ଯେହିବାଟେ ଗଲେ ଦେଖିଲଇଁ
ମୁହିଁ ।
ଶୁଣିଣ କୁମର ଦଖିଣ ଦିଗେ ଯାଇ
ପଦ୍ମଲାଭ ଗଜକୁ ଯାଇଣ ଦେଖଇ ।୧୦
ସେହି ସେ କହିଲା ଯେ ଯେହିଦିଗେ ଗଲେ
ବାରତା ନ ପାଇଲୁ କାହିଁ କିସ କଲେ ।
ତହୁଁ ଅଶ୍ୱବନ୍ତ ଗମନ କରିଗଲା
ପଶ୍ଚିମ ଦିଗେ ଯାଇ ପ୍ରବେଶ ହୋଇଲା ।
ମଣିବନ୍ତ ଗଜକୁ ଦେଖିଲାକ ଯାଇ
ବାରତା ପୁଛଇ ସେ କୃତାଞ୍ଜଳି ହୋଇ ।
ସେହି ବୋଲେ ସେ ଯେହି ଦିଗେ ଗଲେ
ଯଜ୍ଞ ତୁରଙ୍ଗମ ଲୋଡ଼ି ଆସିଥିଲେ ।
ଶୁଣିଣ ଅଶ୍ୱବନ୍ତ ମନରେ ବିରସ
ଉତ୍ତର ଦିଗେ ଯାଇ ହୋଇଲା
ପରବେଶ ।୨୦
ଯେ ସେ ମହାତମା ସକଳ କହିଲା
ଊର୍ଦ୍ଧ୍ୱଗଜକଇ ଦେଖିଣ ପୁଛାକଲା ।
ବୋଇଲା ତୁ ଯେଥୁ ଥୋକାଯେ ଦୂର ଯାଅ
ପିତା ଭ୍ରାଥାମାନଙ୍କୁ ନିକଟେ ଭେଟ ପାଅ ।
ତଥ୍ୟ ବାରତା ଯେ ପାଇଲା ଅଶ୍ୱବନ୍ତ
କେତେହେଁକ ଦୂରେ ଦେଖିଲା ଅଛି
ପାତାଳକୁ ପଥ ।
ତହିଁ ପଶିଲା ସେ ଭୟେ ଭୀତି ଛାଡ଼ିକରି
ଦେଖିଲା ପିତାମହେ ଯାଉଛନ୍ତି ଜଳି ।
କୁମର ପଚାରଇ ତବଦ ମନ ହୋଇ
କାହିଁର କିମ୍ପା ତୁମ୍ଭେ ହେଉଅଛ ଦହି ।୩୦

ଜଳିବାର ଲୋକେ ବୋଇଲେ ତାହା ଶୁଣି
ଇକ୍ଷ୍ୱାକୁରୁ ବଂଶେ ସେ ଯେ ସଗର
ନୃପମଣି ।
ତାହାର ଆମ୍ଭେ ଯେ ଷାଠିଯେ ସହସ୍ର ସୁତ
କର୍ମର ବିପାକେ ଯେ ହୋଇଲୁ ବିପରୀତ ।
ପିତା ଆମ୍ଭର ଯେ ଅଶ୍ୱମେଧ ଯାଗ କଲା
ଲକ୍ଷଣବନ୍ତ ଅଶ୍ୱକୁ କେ ଚୋରାଇ
ଘେନିଗଲା ।
ପିତାର ବଚନେ ଆମ୍ଭେହେଁ ଲୋଡ଼ିତ
ଅଇଲୁ
ପାତାଳ ବିୟର ଭିତରେ ଠାବ କଲୁ ।
ଯେ ସେ ମହାମୁନି ଯେ ଅଛଇ ଯେଥେ
ତପେ
ଚିହ୍ନି ପାଇଲୁ ଅଶ୍ୱ ଯେହାଙ୍କ ସମୀପେ ।୪୦
ପଚ୍ଚରିଲୁ ଯତି ଯେ ନ ଜାଣି କୋପକଲା
କୋପ ଅଗ୍ନି ଘେନି ଆମ୍ଭନ୍ତ ଦହିଲା ।
ଆବର କଥାଯେକ ବୋଇଲା ନ ବିଚାରି
ଯେତେକ ଦହନ ହୋଇବ ଦିନସରି ।
ନିଶାଭାଗେ ପୁଣ କଅଁଳୁଥିବ ଦେହୀ
ଆରେକ ଭାଗ ପୁଣ ହେଉଥିବ ଦହି ।
ଜଳ ହୀନ କର୍ମ ଆମ୍ଭଙ୍କୁ ମୁନି ଦେଲା
ଶୁଣି ଅଶ୍ୱବନ୍ତ ଅନେକ ଶୋକ କଲା ।
କପିଳ ମୁନିଙ୍କି ସେ ପଚ୍ଚରିଲା ଯାଇ
ଯେ ସେ ଦହନ ହେଉଅଛନ୍ତି
ଗୋସାଇଁ ।୫୦
କେବଣ ପ୍ରକାରେ ଯେ ହୋଇବ ଶୀତଳ
ପ୍ରତିକାର ବଚନ କହିବା ତପଶୀଳ ।
ମୁନି ବୋଇଲେ ଏ ପୂର୍ବର ଭବିଷ୍ୟ
ଯେହ୍ନେ ପାପ କରିଅଛଇ ପୂର୍ବଦୋଷ ।
ସେ ଫଳ ଭୁଞ୍ଜୁଅଛନ୍ତି ସର୍ବପ୍ରାଣୀ
ଆକାଶର ଗଙ୍ଗାକୁ ଯେ ପାରଇ ମଣ୍ଡକୁ
ଆଣି ।
ତେବେ ସେ ଶୀତଳ ହୋଇବ ଯେହାଙ୍କର
ଦେହୀ

ଆନ ଭାର୍ଜନ ଯେ ନୁହନ୍ତା ଜାଣ
କେହି ।
ଯେହାଙ୍କର ତନୟେ ଯେ ହୋଇବ
ଭାଗୀରଥି
ଜଗତେ ବିଖ୍ୟାତ ହୋଇବ ଯେହାଙ୍କର
କୀର୍ତ୍ତି ।୬୦
ସେ ସେ ଆକାଶୁଂ ପାରିବ ଗଙ୍ଗା ଆଣି
ସପତ ସମୁଦ୍ର ଯେ ପୂରୋଇବ ପାଣି ।
ପିତୃଗଣେ ସନ୍ତୋଷ ଯେ ହୋଇବେ
ଯେହାଙ୍କର କୃତ୍ୟେ
ଆନ କେ ଭାର୍ଜନ ହୋଇ ରଖିବ ଯେହାର
ଗୋତ୍ରେ ।
ଶୁଣିଣ ଅଶ୍ୱବନ୍ତ ଆସଇ ଅଶ୍ୱ ଘେନି
ପ୍ରବେଶ ହୋଇଲା ଆସି ଆପଣା ମେଦିନୀ ।
ଅଜାର ଛାମୁରେ ସେ ତୁରଙ୍ଗ ଆଣି ଦେଲା
ଯେ ବିଧି ବିଧାନ ସେ ସକଳ
କହିଲା ।
ଶୁଣିଣ ସଗର ନୃପତି ମନେ ଭାଳି
ଯେଡ଼େ କୁଳ ମୋର ଅକାରଣେ
ଜଳି ।୭୦
ଯେତେ ବିଚାରିଣ ଯାଗ ଆରମ୍ଭିଲା
ଅଶ୍ୱମେଧ ଧର୍ମ ସେ ପ୍ରାପତ ହୋଇଲା ।
ଯହୁଂ ସେ ଯାଗ ହୋଇଲା ସମାପତ
ଅବଭୃତ ସ୍ନାହାନ କଲା ନୃପନାଥ ।
ପୁତ୍ରଙ୍କର ପାଇଁ ଅନେକ ଦାନ ଦେଲା
ଅଶ୍ୱବନ୍ତକଇ ରାଜ୍ୟ ସମର୍ପିଲା ।
କାଳେଣ ରାଜାକଇ ଯେ ସ୍ୱର୍ଗପ୍ରାପତ
ଯେଥୁଅନନ୍ତରେ ଶୁଣ ରଘୁନାଥ ।
ଅଶ୍ୱବନ୍ତ ରାଜା ହୋଇଲାକ ଯହୁଂ
ସମୟକେ ସୃଷ୍ଟି ପାଳିଲାକ ତହୁଂ ।୮୦
ଅନେକ ତପ ଯାଗ ଧର୍ମ କଲା
ଦିଲୀପି ନାମେ ତାର ପୁତ୍ରେକ ଜନମିଲା ।
କାଳେକ ତାହାକଇ ଯୁଗରାଜା କରି
ସ୍ୱର୍ଗକଇ ଗଲା ଅଶ୍ୱବନ୍ତ ଦଣ୍ଡଧାରୀ ।

ଦିଲୀପ ରାଜା ଯେ ପ୍ରତିଜ୍ଞା ବଳବନ୍ତ
ଚାରି ସମୁଦ୍ରେ ସେ ଅଟଇ ନୃପତ୍ୟ ।
ତାହାର ତନୟେ ଯେ ଭାଗୀରଥି ହୋୟେ
ପୁତ୍ରକଇ ରାଜ୍ୟ ଦେଇ ଦିଲୀପି ସ୍ୱର୍ଗ
ଯାୟେ ।
ଭାଗୀରଥି ରାଜା ଅଟଇ ସତ୍ୟବାଦୀ
ପୁତ୍ରସମ କରି ଯେ ପ୍ରଜାହିଂ ସେ
ଆହ୍ଲାଦି ।୯୦
ଦାନେ ଖାଣ୍ଡେସାଚା ହୋଇଲାକ ରାୟେ
ଅଇରି ନୃପତି ଯେ ପଳାନ୍ତି ପ୍ରାଣ ଭୟେ ।
ଦିନେକ ନୃପତି ମୃଗୟା ବିଜେ କଲା
ଅଶ୍ୱେକ ଚଢ଼ିଣ ସେ ବିପୁନ୍ୟେ ବୁଲିଲା ।
କୃଷ୍ଣାଜିନ ମୃଗେକ ଆଗେଣ ରାଜା ଦେଖି
ତୀର ପୂରାଇଣ ବିନ୍ଧିଲା ରାଜା ଯୋଖି ।
ବାଣ ପଡ଼ନ୍ତେଣ ମୃଗ ପଳାଇଲା
ତୁରଙ୍ଗମ ଧୂଆଁଇଣ ରାଜା
ଗୋଡ଼ାଇଲା ।
ଅତ୍ୟନ୍ତ ଆରତ ହୋଇଲା ମୃଗ ଗୋଟି
ପାତାଳ ବିମ୍ବରେ ସେ ପଶିଲା ଯାଇ
ଫୁଟି ।୧୦୦
ରାଜାଇ ଗୋଡ଼ାଇଣ ତାହାର ସଙ୍ଗେ ଗଲା
ପାତାଳ ବିମ୍ବରେ ଯାଇଣ ଦେଖିଲା ।
ତାହାର ପିତୃଗଣେ ହୋଉଛନ୍ତି ଦହି
ତରସ୍ତ ହୋଇଣ ଯେ ନୃପତି ବାହୁଡ଼ଇ ।
ନିଜପୁରେ ଯାଇ ପ୍ରବେଶ ହୋଇଲା ନୃପତି
ସ୍ନାହାନ ଭୋଜନ ସେ ସାରିଲା ତଡ଼ତି ।
ଆସ୍ଥାନେ ବିଜେ କଲା ମନ୍ତ୍ରୀଗଣ ରାଇ
କହଇ ରାଜା ସଭା ନିଶବଦ କରାଇ ।
ଅପୂର୍ବ ପଦାର୍ଥେ ହୋଇ ଦେଖିଲୁ ଆମ୍ଭେ
ଆଜ
ଅନେକ ଲୋକ ହେଉଛନ୍ତି ଦହିଜ ।୧୦
ମୃଗ ପଳାନ୍ତେଣ ଗୋଡ଼ାଇ ମୁଂ ଗଲି
ପାତାଳପୁରେ ମୁଂ ଯେସନେକ ଚରିତ
ଦେଖିଲି ।

ଶୁଣିଲା ଥିଲେ ମୋହୋର ଆଗେ କହ
ବିପରୀତ ଦେଖିଲୁ ମଣିଲୁ ସନ୍ଦେହ ।
ରାଜାର ବଚନ ଶୁଣିଣ ମନ୍ତ୍ରୀଗଣ
ବୋଲନ୍ତି ରାଜା ତୁମ୍ଭେ ସାବଧାନେ ଶୁଣ ।
ତୋହୋର ଉପର ବଂଶେଣ ନୃପତି
ସଗର ନାମେଣ ଅଟଇ ଚକ୍ରବର୍ତ୍ତୀ ।
ଷାଠିଯେ ସହସ୍ର ଯେ ଅଟଇ ତାହାର ପୁତ
ଯେକେ ଯେକେ ଜିଣି ପାରନ୍ତି ଜଗତ ।୨୦
ଅଶ୍ୱମେଧ ଯାଗ ସଗର ରାଜା କଲା
ଲକ୍ଷ୍ମଣବନ୍ତ ଅଶ୍ୱ କେ ଚୋରାଇ ଘେନିଗଲା ।
ରାଜାର ବଚନେ ସେ ଲୋଡ଼ିଲେ ପୁତ୍ରମାନେ
କପିଳ ମୁନି କୋପେ ସେ ହୋଇଲେ
ଦହନେ ।
ଶ୍ରୀରାମ ପଚାରନ୍ତି ଶୁଣ ଗାଧିସୁତ
କିମ୍ବା ସେ ଅଶ୍ୱ ହରିନେଲା ପୁରୁହୂତ ।
ପୁତ୍ରେ ଜଳିଲେ ସେ କେବଣ ଗୁଣ ପାଇ
ଯେହା ସଞ୍ଚପି ମୋତେ କହିବା
ତପସାଇଂ ।
ମୁନି ବୋଲନ୍ତି ହୋ ଶ୍ରୀରାମଚନ୍ଦ୍ର ଶୁଣ
ପୂର୍ବର କଥାୟେ ପୁରାଣେ ବଖାଣ ।୩୦
କାଳକେୟ ଅସୁର ଦୁଷ୍ଟପଣ ମନେ ଧରି
ଅନେକ ଉପଦର୍ପ କଲା ଯେହୁ ପୁରୀ ।
ଦିବସ କାଳେ ସମୁଦ୍ରେ ପଶିଥାନ୍ତି
ନିଶାରେ ବାହାରହୋଇ ପରଜାକଇ ଦୁଖ
ଦ୍ୟନ୍ତି ।
ଋଷି ବ୍ରାହ୍ମଣ ଯେ ଗୋରୁ ସ୍ତିରୀ ସର୍ବଜନ
ରଜନୀ ଭାଗେ ଯେହା କରନ୍ତି ଭୋଜନ ।
ପଳାଇଣ ଲୋକେ ପଶନ୍ତି ଯେଣେ ତେଣେ
ଖୋଜିଣ ଭକ୍ଷନ୍ତି ସେ ଯେହା ହେ
ଆପଣେ ।
ସମୟେକ ଲୋକେ ତୁଟିଲେ ମହୀଆଳି
ଅସ୍ତିମୟେ ପୃଥ୍ୱି ଦେଖିଲା ବ୍ରହ୍ମାଭାଳି ।୪୦
ଦେବଗଣ ଘେନି ସେ କରନ୍ତି ବିଚର
ସୃଷ୍ଟି ନାଶଗଲା କହିବା ଯେବେ ହର ।

ଯେତେ ବୋଲି ଗଲେ କପିଳାସ ପୁରୀ
ବୋଇଲେ ରକ୍ଷାକର ଦେବ ତ୍ରିପୁରାରି ।
କାଳେକ ଅସୁରୋ ଯେ ସିନ୍ଧୁ ମଧ୍ୟେ ଥାନ୍ତି
ତହୁଁ ବାହାର ହୋଇ ନିଜ ପ୍ରଜା ଖାନ୍ତି ।
ଅସ୍ତିମୟେ ପୃଥ୍ୱି ହୋଇଲା ଗୋସାଇଁ
ଜନ ଜନ୍ତୁ ବୋଲି ଦେଖିବାକୁ ନାହିଁ ।
ତୁହୋ ଜଗତର ଅଟୁ ଅଧିପତି
କର ପ୍ରତିକାର ହୋ ପଞ୍ଚଇ ମୂରତି । ୫୦
ବ୍ରହ୍ମାର ବଚନ ସେ ଶୁଣିଣ ତ୍ରିପୁରାରି
ହୃଦପଦ୍ମ ମଧ୍ୟେ ସେ କଥାନ୍ତ ବିଚାରି ।
ବ୍ରହ୍ମାଙ୍କୁ ବୋଇଲା ସେ କହିବା ଯାଇ ହରି
ସେ ସେ ଅସୁରବଳ ପାରିବ ସଂହାରି ।
ଆନେ କି ସଂସାର ହୋଇବାକ ଥିର
ସେ ସେ ଅଟଇ ନା ଆମ୍ଭର ଠାକୁର ।
ଯେତେ ବୋଲି ହରି ସନିଧେ ଦେବଗଣ
ବିଷ୍ଣୁ ଚରଣେ ଯାଇ ପଶନ୍ତି ଶରଣ ।
କହିଲେ ସଂସାର ଦୁଃଖ ଗରୁଭାର
ଭୋ ଦେବ ନାରାୟଣ ପ୍ରତିକାର କର ।୬୦
ଅସୁରେ ପ୍ରବଳ ପରଜା ଜନ ଖାନ୍ତି
ଦିବସେ ସମୁଦ୍ର ଭିତରେ ଲୁଚିଥାନ୍ତି ।
ତୁ ଦେବ ଜଗତ ଧାରଣ ବ୍ରହ୍ମରାଶି
ସୃଷ୍ଟି ରକ୍ଷାକର ଦେବ ଦଇତ ବିନାଶି ।
ସ୍ୱାମୀ ବୋଲନ୍ତି ତୁ ଶୁଣ ପିତାମହ
ମୋହୋ ବୋଇଲା ବୋଲି ଅଗସ୍ତିଙ୍କି କହ ।
ସେ ସେ ନିବର୍ତ୍ତି କରିବ ଅବଶ୍ୟ
ଶୁଣିଣ ଦେବତାୟେ ଗଲେ ମୁନି ପାଶ ।
ବ୍ରହ୍ମା ବୋଇଲେ ସେ ଅଗସ୍ତିଙ୍କି ଚାହିଁ
ବାସୁଦେବ ଆଜ୍ଞା ଯେ ଅଟଇ ତୋର ତହିଁ ।୭୦
ଦିବାକାଳେ ଅସୁରେ ସମୁଦ୍ରେ ପଶିଥାନ୍ତି
ନିଶା ହୋଇଲେ ସେ ପରଜା ଜନ ଖାନ୍ତି ।
ଯେଥକଇ କାରଣ ତୁ କର ତପଚାରୀ
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେ ଚଳ ଦେବପୁରୀ ।

ଅବଶ୍ୟ କରିବଇଁ ଯାହା କହିଲେ ଦେବହରି
ଶୁଣି ଦେବତାଏ ଗଲେ ନିଜ ପୁରୀ ।
ଦେବଙ୍କର ବୋଲେ ଗଲା ସିନ୍ଧୁକୂଳ
ଯେକ ଚଳୁକରି ଧଇଲା ମହାଜଳ ।
ସପ୍ତସିନ୍ଧୁ ମୁନି ପିଇଲେ ଅବହେଳେ
ଅଗୋଚର କର୍ମ କଲା ତପଶୀଳେ ।୮୦
ପାଣି ଶୋଷନ୍ତେଣ ଦିଶିଲେ ଅସୁର
ଦେବତାଙ୍କ ସଙ୍ଗେ ଅନେକ ସମର ଘୋର ।
ଧର୍ମବଳ ଘେନି ଅମରଗଣେ ଯେ ବଳୀ
ଯୁଦ୍ଧ କରନ୍ତି ଯେ ଅସୁରଗଣ ଦଳି ।
ଦାନବ କୁଳ ହୋଇଲେ ଯହୁଁ ହତ
ପୁଣି ସଂସାର ଯେ ରଞ୍ଚିଲେ ବିଧାତ ।
ଅଗସ୍ତିଙ୍କି ଦେବତାୟେ ପ୍ରଶଂସା ଯେ କରି
ଧନ୍ୟ ଧନ୍ୟ ମହିମା ତୋହର ତପଚାରୀ ।
ସପ୍ତସିନ୍ଧୁ ମୁନି ଯେକ ଚଳୁ କଲୁ
ମହାଯୋଗବଳେ ଉଦରେ ଭସ୍ମକଲୁ । ୯୦
ତୋହୋର ପ୍ରସାଦେ ଯେ ଅସୁର ବଳ ହତ
ଯେବେ ସେ ଥିର ହୋଇଲା ଜଗତ ।
ସିନ୍ଧୁ ଶୋଷିଲୁ ତୁ ଜଗତର ହିତେ
ପୁନରପି ସମୁଦ୍ର ପୂରାଅ ତପୋବନ୍ତେ ।
ଅଗସ୍ତି ବୋଇଲେ ମୁଂ ଦେବି କାହୁଂ ଆଣି
ଜୀର୍ଣ୍ଣ ହୋଇଲାଣି ସପତସିନ୍ଧୁ ପାଣି ।
ଶୁଣିଣ ଦେବତାୟେ କହିଲେ ମୁରାରି
ଅଗସ୍ତି ପିଇଲା ସପତ ସିନ୍ଧୁ ବାରି ।
ମାଗିଲେ ନ ଦେଲା ସେ ଜୀର୍ଣ୍ଣକଲା ସେହୁ
ତାହାଶୁଣି ହସିଲେ ଦେବ ଚଉବାହୁ ।୧୦୦
ତୁମ୍ଭେ ଦେବତାୟେ ନିଜପୁରେ ଯାଅ
କେତେହେଂକ କାଳ ପଠାରିଣ ଥାଅ ।
ମୁହିଂ ଯେଥକଇ ଜାଣଇ ନା ବୁଦ୍ଧି
ଯେଣେ ସେ ପୂରିବ ସପତ ପୟୋଧି ।
ଲକ୍ଷ୍ମୀପତି ତହୁଁ ଏସନ ବୋଲ ପାଇ
ଦେବଗଣ ଘେନି ଧାତା ଗଲେ ତୋଷହୋଇ ।

ଶୁଣ ତୁ ଶ୍ରୀରାମ ହୋ ଗାଧିସୁତ କହେ
ତହୁଁଣ ଶ୍ରୀହରି କପିଳମୁନି ରୂପ ହୋଏ ।
ପାତାଳ ପୁରେ ସେ ତପ କରଇ ଯେକା ବସି
ସେ ଘେନି ସଗର ପୁତ୍ର ହୋଇ ଧ୍ୱଂସି ।୧୦
ସେ କଥା ହେତୁ ହାଦେ ହରିଲା ଇନ୍ଦ୍ର ଅଶ୍ୱ
କପିଳ ମୁନି ପାଶେ ବାନ୍ଧିବାର ଅଶ୍ୱ ।
ପିତାର ଆଜ୍ଞା ଘେନି ପୁତ୍ର ଲୋଡ଼ି ଗଲେ
ପୂର୍ବକର୍ମ ଘେନି ଦହନ ହୋଇଲେ ।
ଯେହାଙ୍କର ଅଂଶେ ଭାଗୀରଥି ଜାତ
ମୃଗୟା ନିମିତ୍ତେ ସେ ଗଲା ନରନାଥ ।
ପାତାଳ ଭୁବନେ ଦେଖିଲାକ ଯାଇ
ଅଗ୍ନି ଜଳୁଅଛି ପ୍ରତାପ ତେଜ ହୋଇ ।
ତୈଲୋକ୍ୟ ଦହିବ କି ସେ ପ୍ରଳୟ ଅନଳ
ଦେଖି ଭୟେ କଲେ ଭାଗୀରଥି ମହୀପାଳ ।୨୦
ବାହୁଡ଼ି ଆସି ରାଜା ନିଜପୁରେ ଯାଇ
ମନ୍ତ୍ରୀ ଅମନାତ୍ୟ ରାଇଣ ପଚ୍ଚରଇ ।
ପାତ୍ର ମନ୍ତ୍ରୀ କହିଲେ ପୂର୍ବର ଯିସ କଥା
ଶୁଣିଣ ବିସ୍ମୟେ ହୋଇଲେ ମହାରଥା ।
ବୋଇଲା କେମନ୍ତ ଶୀତଳ ହୋଇ ମୋହର ବଂଶ
ପ୍ରତିକାର ନ କଲେ ଜୀବନେ କାର୍ଯ୍ୟ କିସ ।
ମନ୍ତ୍ରୀ ବୋଇଲେ ତୁ ଶୁଣ ନୃପମଣି
ଆକାଶୁଂ ଗଙ୍ଗାକୁ ତୁ ପାରିବୁ ଯେବେ ଆଣି ।
ତେବେ ସେ ରକ୍ଷା ହୋଇବ ତୋର କୁଳ
ଶୁଣିଣ ସନ୍ତୋଷ ଯେ ହୋଇଲା ମହୀପାଳ । ୩୦
ମନ୍ତ୍ରୀଙ୍କର ଗୋଚରେ ରାଜ୍ୟ ସମର୍ପିଲା
ଗୋକର୍ଣ୍ଣକା ତୀର୍ଥକୁ ହିଂ ତପ କରିଗଲା ।
ବିରଜା ମଣ୍ଡଳେ ଦଶ ସହସ୍ର ପୁରୀ
ବାରେହା ମୂର୍ତ୍ତି ରୂପେ ଅଛନ୍ତି ଶ୍ରୀହରି ।

ଆଖଣ୍ଡଳେଶ୍ୱର ମୂରତି ତ୍ରିଲୋଚନ
ବିରଜା ବିଜୟେ ପାପ ବିମୋଚନ ।
ବଇତରଣୀ ନଦୀ ଦଶାଶ୍ୱମେଧ ଘାଟ
ଗଙ୍ଗା ଭେଦିଅଛି ପାତାଳକୁ ବାଟ ।
ବ୍ରହ୍ମଲାଭି ଆସ୍ଥାନ ଦୁତୀ ବାଣରାଶି
ଭାଗୀରଥି ପ୍ରବେଶ ହୋଇଲା ତହିଁ
ଆସି ।୪୦
ଊର୍ଦ୍ଧ୍ୱ ବାହୁ ହୋଇଣ ତପ କରଇ ରାଏ
ଶୀତ ଖରା ବରଷା ଷଡ଼ରିତୁ ସହେ ।
ଯୋଗେଣ ବ୍ରହ୍ମା ସେ ପୁରକୁ ଆସିଥିଲେ
ଗୋକର୍ଣ୍ଣକା ତୀର୍ଥେ ଭାଗୀରଥିକି
ଦେଖିଲେ ।
ବ୍ରହ୍ମା ବୋଇଲା ରାଏ କିମ୍ପା କରୁ ତପ
ମୁହିଁ ସେ ବିଧାତା ଜଗତର ବାପ ।
ଶୁଣିଣ ନମସ୍କାର କଲାକ ନୃପତି
କର ଦୁଇ ଯୋଡ଼ିଣ ସେ ବୋଲଇ
ଭାଗୀରଥି ।
ଭୋ ପିତାମହ କର ତୁ ମୋତେ ଦୟା
ଦହନ ହେଉଅଛି ପିତୃଲୋକଙ୍କର
କାୟା ।୫୦
କପିଳ ମୁନି କୋପେ ସର୍ବେ ହୋଇଲେ
ହତ
ବଂଶ ରକ୍ଷାକର ମୋର ଜଗତର ତାତ ।
ଆକାଶରୁ ଗଙ୍ଗା ମୋତେ ଆଣିତ ବୁଦ୍ଧି କହ
ରାଜା ବଚନ ଶୁଣିଣ ବୋଲନ୍ତି ପିତାମହ ।
ବିଷ୍ଣୁର ଚରଣେ ସେ ଅଛନ୍ତି ସୁରାସୁରୀ
ବାମନ ମୂରତି ଯହୁଁ ଧଇଲେ ମୁରାରି ।
ବଳିର ତହୁଁ ଯେ ଘେନିଲେ ଭୂମିଦାନ
ତ୍ରିବିକ୍ରମ ରୂପ ଧଇଲେ ନାରାୟଣ ।
ଆକାଶକଇ ପାଦ ବଢ଼ାଇଲେ ହରି
ମୁହିଁତହିଁ ଅବିଷେକ କଲଇ ମୁରାରି ।୬୦
ବାସୁଦେବର ବିଶ୍ୱରୂପ ଲଖ କୋଣେ
ରହିଲା ଗଙ୍ଗା ଦେବୀ ଦେଖିଲେ
ସୁରଗଣେ ।

ତୁ ଏବେ ନୃପତି ବିଷ୍ଣୁକୁ ଧାୟେ କର
ଯେକ ଚିତ୍ତ ହୋଇ ନାରାୟଣକୁ ସୁମର ।
ଅବଶ୍ୟ ପ୍ରାପତ ହୋଇବ ଗଙ୍ଗା ତୋତେ
ଯୋଗବଳେ ଦୃଶ ହୋଇଲାକ ମୋତେ ।
ଯେତେ ବୋଲି ଧାତା ନିଜପୁରେ ଯାଇ
ଭାଗୀରଥି ବିଷ୍ଣୁଚରଣେ ଚିତ୍ତ ଦେଇ ।
କଠୋର ତପ ସେ ଯେ କରଇ ନରସାଇଁ
ଯେକା ଅଙ୍ଗୁଷ୍ଠିରେ ବରଷେ ଉଭା
ହୋଇ ।୭୦
ନାରାୟଣ ନାମ ଜପଇ ଅନୁବ୍ରତେ
କାଳେଣ ପ୍ରସନ୍ନ ହୋଇଲେ ପଦ୍ମନେତ୍ରେ ।
ନୀଳ ଜଳଧର ତନୁ ଶୋଭାବନ
ବିଜୁଳି ରେଖା ଜାଣି ପୀତବସନ
ପରିହରଣ ।
କଟିମେଖଳା ମଣି ଉଡୁପ ଗଣ କାନ୍ତି
କମଳା ବଲ୍ଲଭ କଣ୍ଠେ କଉସ୍ତୁଭ ଜୋତି ।
ବାଟୁଳ ମୁକୁତା ଶତେ ସରି ମାଳି
ନବରତ୍ନ ପଦେକ ଶ୍ରୀହରି କଣ୍ଠେ
ଲୁଳି ।
କର୍ଣ୍ଣର କୁଣ୍ଡଳ ଶୁଦ୍ଧ ହେମ ମୟେ
ଗୁରୁ ଶୁକ୍ର ଘେନି କି ପୂର୍ଣ୍ଣମୀ ଉଦୟେ ।
ନୀଳ ପଦ୍ମଫଳ ଯେହ୍ନେ ପଦ୍ମକର ବେନି
ଗୋବିନ୍ଦର ମୁଖ ତେସନ ଶୋଭାବନି ।
ସୁଦୀର୍ଘ ନାସା କସ୍ତୁରୀ ରେଖ ନିଶ
ଦରଫୁଟି କୁସୁମ ଜାଣି ହୁଅନ୍ତି ହସହସ ।
ସିନ୍ଦୂର ଅଧର ଦନ୍ତ ମୁକୁତାର ଆଭା
ନୀଳମଣି ଦୀପିତ ଦାଢ଼ୀ ରୋମ ପ୍ରଭା ।
ଲଲାଟେ କସ୍ତୁରୀ ଚିତା ଶୋଭାବନ
ଶିରରେଣ ମୁକୁଟ ଯେ କିରଟୀ
ବିତପନ ।୯୦
ରତ୍ନଙ୍କର ଗହଣ କି ଗ୍ରହଙ୍କର ମେଳା
ଗଳାରେ ଲମ୍ବଇ ପଞ୍ଚପୁଷ୍ପ ମାଳା ।
ସର୍ବାଙ୍ଗେ ଚନ୍ଦନ ଅଗ୍ରଗନ୍ଧ ମିଶି
ନିବିଡ଼ କସ୍ତୁରୀ ପାଣ୍ଡୁର ବର୍ଣ୍ଣଦିଶି ।

ଶ୍ରୀବତ୍ସ ଲାଂଛନ ଉରେ ବିରାଜଇ
ବିପୁଳ ଚତୃହସ୍ତେ ଶଙ୍ଖ ଚକ୍ର ସାଜଇ ।
ସାରଙ୍ଗ ଧନୁ ଶୋହେ କୌମୋଦୀ ଗଦା
କରେ
ଗରୁଡ଼ ପିଠିରେ ବିଜୟେ
ଚକ୍ରଧରେ ।୧୦୦
ଭାଗୀରଥି ଛାମୁରେ ମିଳିଲେ ସ୍ୱାମୀ ଆସି
ବର ମାଗ ବୋଲି ଯେ କହିଲେ ଅଳପ
ହସି ।
ଦେଖି ନୃପମଣି କରଇ ନମସ୍କାର
ବୋଲଇ ଭୋ ନାଥ ମୋତେ କର
ପ୍ରତିକାର ।
କପିଳମୁନି କୋପେ ବଂଶ ମୋର ଦହି
ଇହ ପରଲୋକେ ଗୋତ୍ରକୁ ଲାଜ ହୋଇ ।
ତୋହୋର ଚରଣେ ଅଛଇ ସୁରନଦୀ
ତାହା ମାଗି ତ କରଇ ଦେବ ବୁଧି ।
ତେବେ ସେ ଶୀତଳ ହୋଇବ ମୋର କୁଳ
ଦେସି ଗଙ୍ଗାଦେବୀ ଗୋବିନ୍ଦ
ଗୋପାଳ ।
ସ୍ୱାମୀ ବୋଇଲେ ଯେବେ ଦେବୀ ସୁରାସୁରୀ
ତାହାର ଅର୍ଦ୍ଧୋଳି କି ସହିବ
ବସୁନ୍ଧରୀ ।୧୦
ରୁଦ୍ର ଅବା ବଳେ ଧରିପାରଇ ଶିରେ
ତାହା ମଣାଇ ତୁ ଆଣ ନୃପବରେ ।
ତାହାର ଅଇଲେ ସେ ଦେବଇ ଗଙ୍ଗା ମୁହିଁ
ଯେତେ ବୋଲି ଅନ୍ତରୀକ୍ଷେ ଗଲା
ଶ୍ରୀୟାସାଇଁ ।
ହରିର ଏସନ ବଚନ ଶୁଣି ରାୟେ
ଗଙ୍ଗାଧରକଇ ସୁମରି ତପକୟେ ।
ନୀର ଆହାର କରି ବାଲୁକା ଲିଙ୍ଗ ଥାପି
ହୃଦ କମଳେ ମନ ନୟନ ନିରୋପି ।
ରୋମର ମୂଳେ ତମ୍ୟାର ସୂଚୀ ଫୋଡ଼ି
ବସ୍ତ୍ର ତଇଳ ଦେଇ ଜାଳଇ ଦିହୁଡ଼ି ।୨୦
ଅନେକ କଠୋର ତପ ଯହୁଁ କଲା

ସଦାଶିବ ଜାଣି ପ୍ରସନ୍ନ ହୋଇଲା ।
ବୃଷଭ ବାହାନ ଉଡ଼ଙ୍ଗ ଚର୍ମବାସ
ତ୍ରିଶୂଳ ଡମ୍ବରୁ କରେ ଅହି ପାଶ ।
ବାସୁକି ନାଗ ଯେ କଣ୍ଠେଣ ତାହାର
ଜଟା ମୁକୁଟ ଅର୍ଦ୍ଧଚନ୍ଦ୍ର ଶୋହଇ ଶିରର ।
ଶୁଦ୍ଧ ସ୍ଫଟିକର ଦିଶଇ ତନୁବର୍ଣ୍ଣ
ନୃପତିର ଆଗେ ବିଜୟେ ତ୍ରିଲୋଚନ ।
ଶଙ୍କର ବୋଲନ୍ତି ହୋ କିସ ଅର୍ଥେ ସେବା
ମାଗ ହୋ ନୃପତି ବର ତୋତେ
ଦେବା ।୩୦
ଶୁଣିଣ ରାଜନ ନମସ୍କାର କରିଣ ଶୋଇ
କର ଦୁଇ ଯୋଡ଼ି କହଇ ଉଭା ହୋଇ ।
ଭୋ ଦେବ ସଦାଶିବ ଶଙ୍କର ଶୂଳଧାରୀ
କପିଳ ଋଷି ମୋର ଗୋତ୍ରକୁ ଲୋପ୍ୟ
କରି ।
ସଗର ରାଜାର ଷାଠିଯେ ସହସ୍ରେ ସୁତ
ନୟନ ତେଜେ ସେ ଦହିଲା ତପୋବନ୍ତ ।
ତେଣେ ଦୁଃଖୀ ମୁହିଂ ହୋଇଲି ଗୋସାଇଂ
ରାଜ୍ୟ ସୁଖ ଭୋଗେ ପ୍ରୟୋଜନ
ନାହିଂ ।
ଗଙ୍ଗା ଆଣିଲେ ସେ କୁଟୁମ୍ବ ହୋଇବେ ସୁସ୍ଥ
ତେଣୁ ସେ ଅନେକ ପାଇଲଇଂ ଦୁଃଖ ।୪୦
ଶ୍ରୀହରି ପ୍ରସନ୍ନ ହୋଇଲେ ଆସି ମୋତେ
ଗଙ୍ଗ ମାଗିଲି ମୁଂ ବଂଶରକ୍ଷା ନିମତ୍ୟେ ।
ଶ୍ରୀହରି ବୋଇଲେ ମୁଂ ଦେବଇଂ ସୁରାସୁରୀ
ଶଙ୍କର ସେ ତାହା ପାରିବନୀ ଧରି ।
ପୃଥୀ ନ ରହଇ ତାହାର ପାଦଭରେ
ଆନକେ ଭାର୍ଜନ ହୋଇବ ତାହାରେ ।
ଯେବେ ତୁ ମଣାଇ ଆଣ ଦେବ ହର
ଦେବଇଂ ଗଙ୍ଗା ସତ୍ୟ ହୋଇଲା
ମୋହୋର ।୫୦
ତେଣୁ ସେ ସ୍ୱାମୀ କଲି ତୋତେ ପୂଜା
ତୁ ହୋ ତ୍ରିଲୋଚନ ଲିଙ୍ଗ ମହାରାଜା ।
କର ଅନୁଗ୍ରହ ସ୍ୱାମୀ ଧର ସୁରାସୁରୀ

ଗୋତ୍ର ମୋର ରକ୍ଷାକର ହେ ତ୍ରିପୁରାରି ।
ଏତେ ବୋଲି ରଜା ସଦାଶିବ ପୟରେ
ପ୍ରଣମ୍ୟ କରଇ କର ଦୁଇ ଦେଇ ଶିରେ ।
ଅନେକ ସ୍ତୁତି କରଇ କାର୍ପଣ୍ୟ ମତିହୋଇ
ରାଜା ବିକଳ ଦେଖି ସଦାଶିବ ବୋଲଇ ।
ଧରିବଇଂ ଗଙ୍ଗା ଦେଉ କମଳାର ସାଇଂ
କହୁଅଛି ସତ୍ୟ ବଚନ ମୋର ଏହି ।
ସୁମରିଲେ ଆସିବି ବୋଲି ଗଲେ ଶୂଳପାଣି
ବାସୁଦେବ ଧାୟେ ସେ ରହଇ
ନୃପମଣି ।୬୦
ପ୍ରସନ୍ନ ହୋଇଲେ ତାକୁ ଦେବ ଚକ୍ରଧାରୀ
ଭାଗୀରଥି ହିତେ ହରି ଛାଡ଼ିଲେ ପବିତ୍ର
ବାରି ।
ଜାଣିଣ ସଦାଶିବ ଧରିଲେ ତାହା ଶିରେ
ରହିଲା ଗଙ୍ଗା ରୁଦ୍ର ଜଟାର ଭିତରେ ।
ବିଷ୍ଣୁ ପାଦୁକ ପାଇଣ ଶିବ ତୋଷ
ଭାଗୀରଥି ହିତେ ତାହା ଧଇଲେ ମହେଶ ।
ଜଟା ମେଲାଇଣ ଗଙ୍ଗା ଦେଲେ ଛାଡ଼ି
ମେରୁର ଭିତରେ ଯାଇ ସୁରାସୁରୀ
ପଡ଼ି ।
ଆସି ନ ପାରିଣ ସେ ରହିଲା ଗୁପତେ
ମେରୁକୁ ସ୍ତୁତି ପୁଣ କରଇ ନୃପତ୍ୟେ ।୭୦
ଭୋ ମହାମେରୁ ମୁହିଂ ଅଟଇ ମହାଦୁଃଖୀ
ତୁ ଯେବେ ଛାଡ଼ିଦିଅ ଧବଳ ମୁଖୀ ।
ପିତୃଲୋକେ ମୋହୋର ହେଉଛନ୍ତି ଦହି
ତାହାଙ୍କର କଷ୍ଟେ ମୁଂ ନାରାୟଣକୁ ଧାଇ ।
ସେ ମୋତେ ପ୍ରସନ୍ନ ହୋଇଣ ଗଙ୍ଗା ଦେଲେ
ସଦାଶିବ ତାହା ଶିରରେ ଧଇଲେ ।
ମୋହୋର ଭଗତି ଘେନିଣ ପୁଣ ଛାଡ଼ି
ତୋହୋର ଉପରେ ଆସି ଜଳ
ପଡ଼ି ।
ତୁ ସେ ମହାଗିରି ନକର ଗୁପତ
ଦେସି ଗଙ୍ଗା ମୋହୋର ଶୀତଳ ହୋଉ
ଗୋତ୍ର ।୮୦

ମେରୁ ବୋଇଲା ହୋ ଯାଇତ ବାଟ ନାହିଂ
ତେଣୁ ସେ ଗଙ୍ଗା ଦେବୀ ଅଛଇ ଯେଥେ
ରହି ।
ତୁହୋ ନୃପତି ପ୍ରବୋଧନା ତାଙ୍କୁ କର
ମେରୁର ଉତ୍ତର ଶୁଣିଣ ନୃପବର ।
ହେମବନ୍ତ ନନ୍ଦିନୀକି ସେ ବହୁତ ସ୍ତୁତି କଲା
କାର୍ପୂନ୍ୟ ମତ ହୋଇ ଭାଗୀରଥି କହିଲା ।
ଅନେକ ଦୁଃଖେ ମାଗୋ ଆଣିଲି ତୋତେ
ମାଗି
ତୁ କିମ୍ପା ରହୁ ମାଗୋ ଯେଣେ ତେଣେ
ଲାଗି ।
ଯେ ମୋର ଆକୁଳ ନ ଦେଖୁ କିମ୍ପା ମାୟେ
କର ଅନୁଗ୍ରହ ଯିବା ତହିଂ ଯାୟେ ।୯୦
ଗଙ୍ଗା ବୋଇଲେ ମୁଂ ଅଟଇ ଯୁବତୀ
ବାଟ ନ ପାଇଣ ଯିବି କେଉଂ କତି ।
ତୁ ଯେବେ ପାରୁ ରାଜା ଅଇରାବ୍ରତ ଆଣି
ସେ ଯେବେ ଦାନ୍ତେଣ ପାରଇ ମେରୁ
ହାଣି ।
ତେବେ ସେ ବାହାର ହୋଇ ମୁହିଂ ଯିବି
ତୋହୋର ବଚନ ନିଶ୍ଚୟେ ପାଳିବି ।
ଶୁଣି ଭାଗୀରଥି ବିସ୍ମୟ ମନ ହୋଇ
ଅଇରାବତ ହସ୍ତୀକି ଭେଟିଲେ ସ୍ୱର୍ଗେ
ଯାଇ ।
ବୋଇଲା ମହାତମା ହୋ ମୋତେ ଦୟାକର
ଗଙ୍ଗା ପଶିଅଛି ମେରୁର ଭିତର ।୧୦୦
ବାଟ ନ ପାଇଣ ନୁଆରଇ ଆସି
ତୁହୋ ମହାଗଜ ଆମ୍ଭଙ୍କୁ ପଥ ଦେସି ।
ଗଙ୍ଗା ନେଲେ ମୋହୋର ବଂଶ ରକ୍ଷାହୋଇ
କର ଦୁଇ ଯୋଡ଼ି ନୃପତି ସ୍ତୁତି କରଇ ।
ଶୁଣିଣ ଅଇରାବତ ସନମତ କଲା
ନୃପତିକି ରାଇ ଯେକାନ୍ତେ ବୋଇଲା ।
ଇନ୍ଦ୍ର ସେ ସ୍ୱାମୀ ମୋର ଅଟଇ ବିଶ୍ୱାସ ମିତ୍ର
ତାହାକୁହିଂ କଥାଯେ କହହୋ
ନୃପତ୍ୟ ।

ନ କହିଣ ଗଲେ ବୋଲିବ ମତେ ମନ୍ଦ
ଯାଅ ନୃପବର କହ ଯାଇ ଇନ୍ଦ୍ର ।୧୦
ଶୁଣିଣ ମହାରଥୀ ଗଲା ଖର କରି
ବାସେବ ଆଗେ ସେ କହଇ କରଯୋଡ଼ି ।
ଭୋଦେବ ସୁରପତି କଥାଯେ ମୋତେ
ଦେବା
ତିନିପୁରେ ସ୍ୱାମୀ ଅଟୁ ତୁ ମଘବା ।
ପିତୃଲୋକମାନେ ଦହ୍ୟ ହେଉଛନ୍ତି
ଗଙ୍ଗା ଦେଲେ ସେ ଯେ ମୁକ୍ତିକୁ ଲଭନ୍ତି ।
ବାସୁଦେବ ପ୍ରସନେ ମୋତେ ଦେଲେ
ସୁରାସୁରୀ
ମହେଶ୍ୱର ମଉଳିଲେ ଧଇଲେ ପବିତ୍ର
ବାରି ।
ମୋହୋ ହିତେ ରୁଦ୍ର ବେଗେ ଛାଡ଼ିଦେଲେ
ମେରୁର ଶିଖରେ ସେ ଆସିଣ
ପଡ଼ିଲେ ।୨୦
ବାଟ ନ ପାଇଣ ସେ ନ ପାରନ୍ତି ଆସି
ତୁ ଯେବେ ସ୍ୱାମୀ ଅଇରାବ୍ରତ ଦେସି ।
ତାହା ଦନ୍ତେଣ ଫୁଟିବ ମେରୁ ଶୃଙ୍ଗ
ତେଣୁ ପ୍ରାପତ ମୋତେ ହୋଇବ
ଦେବୀଗଙ୍ଗ ।
ଶୁଣିଣ ପ୍ରସନ ଯେ ହୋଇଲେ ସୁରପତି
ଅଇରାବତ ରାଇ ବୋଇଲେ ତଡ଼ତି ।
ଯାଅ ତୁ ମହାଗଜ ଭାଗୀରଥି ସଙ୍ଗେ
ମେରୁ ଫୁଟାଇଣ ତୁ ବାହାର କର
ଗଙ୍ଗେ ।
ଇନ୍ଦ୍ର ଆଦେଶ ପାଇଣ ମହାଗଜ
ଗର୍ଜ୍ଜନ କରିଣ ସେ ଧାଇଂଲା
ମହାତେଜ ।୨୦
ଥୋକାୟେକ ଦୂରେ ସେ ରାଜାକଇ ରାଇ
ଯେକାନ୍ତେ କରିଣ ସେ ଗୁପତେ କହଇ ।
ତୁ ହୋ ନୃପବର ଶୁଣ ମୋହୋର ବାଣୀ
ମେରୁକୁ ମୁହିଂ ଯେ ପକାଇବି ହାଣି ।
ଗଙ୍ଗା ରମଣୀ କରାଇବୁ ହାଦେ ମୋତେ
ନୋହିଲେ ଯେଡ଼େ କର୍ମ ମୁଂ କରିବି
କେମନ୍ତେ ।
ସେ ଯେ ଗିରିବର ପୃଥୀକି ଧରଣୀ
ଅଦୋଷେ ପାଇବା କିମ୍ପା ଯେଡ଼େକ
ବୋଲଣୀ ।
ରଜା ବୋଇଲେ ଯେ ଗଉରୋବ ସ୍ତିରୀ
ମୁହିଂ କେମନ୍ତେ ଜାଣିମି ହୋ ଚରିତ
ତାହାରି ।୩୦
ଭୋ ମତଗଜ ତୁ ନ ଧର ଆନ ମନ
ମୁହିଂ ସେ ନିରେଖ ଅଟଇ ଆରତ ଜନ ।
ଚାଲ ଯେବେ ଯିବା ହୋ ଦୁଷ୍ଟପଣ ଛାଡ଼
ତଇଲୋକେ ତୋତେବୋଲନ୍ତି ମହାଗାଢ଼ ।
ଧଉର୍ଯ୍ୟ ନୋହି ତୁ ଅସାଷମ କଥା କହିଲୁ
ନଜାଣି କିମ୍ପା ତୁ ଦେଉଳ ମୁଣ୍ଡେ ପେଲୁ ।
ହସ୍ତୀ ବୋଇଲା ତୁ ପଚାରି ଆସ ଯାଇ
ଯେକେ କଥା ନୋହିଲା ମୁଂ କେବେହେଂ
ନଯାଇ ।୪୦
ଶୁଣିଣ ନୃପତି ଭାଳଇ ପଞ୍ଚଭୂତ
କେମନ୍ତେ ପୁଚ୍ଛିବି ସେ ଅଟଇ ଦେବମାତ ।
ପୋତୁ ମୋହୋର କର୍ମ କିମ୍ପା ମୁଂ ଜାଇଂଅଛି
ଯେକଥା କେହ୍ନେ ଗଙ୍ଗାକଇ ପୁଚ୍ଛି ।
ବିସ୍ମୟେ ଚିନ୍ତେ ସେ ଗଲା ରାୟେ ଚଳି
କରଦୁଇ ଯୋଡ଼ି ସୁରାସୁରୀ ଆଗେ ମିଳି ।
ଦେବୀ ପଚରନ୍ତି ହୋଇ ଅଇଲାକି ହସ୍ତୀ
ଲାଞ୍ଜେଣ ଶିର ଲୁଛଇଲାକ ଭାଗୀରଥି ।
ଯୋଗବଳେ ଗଙ୍ଗା ଜାଣିଲେକ ତାହା
ଭାଗୀରଥି ଆଗେ ଗଜ କହିଲାକ ଯାହା ।୫୦
କୋପେଣ ସୁରାସୁରୀ କମ୍ପଇ ଥରହର
ତରଙ୍ଗ ରଙ୍ଗେ ଯେ ତେଜ ପରଖର ।
ଦେବୀ ବୋଇଲା ତୁ ଆଣ ତାକୁ ରାଇ
ଧରି ପାରିବ ଯେବେ ହୋଉ ମୋହର
ସାଇଂ ।
ଆମ୍ଭେ ସ୍ତିରୀ ଜନେ ଅବଳା ନାମ ବହୁ
ବଳେଣ ଯେ ନିଅଇ ତାହାର ତହିଂ ରହୁ ।
ନିର୍ବଳ ଲୋକକଇଂ ଆମ୍ଭେ ନଯାଉଂ
ବିଶ୍ୱଆସ
ଯେହି କଥା କହି ଯେ ତୁହି ଘେନି ଆସ ।
ରାଜା ପଚରଇ ଶୁଣିମା ମହାମାୟେ
ମୁହିଂ ଯେହା କହିବାକୁ କରଇ
ମହାଭୟେ ।୬୦
ସେ ଯେ ଗଜଇନ୍ଦ୍ର ତୁ ଯେ ସୁରାସୁରୀ
ମୁହିଂ ପାମର ଯେ ଅଟଇ ଦଣ୍ଡଧାରୀ ।
କାହାକୁହିଂ ସାନ ବୋଲିତ ନ ପାରଇ
ଯେକଥାକୁ ସଂକୋଚ ମାଗୋ ବହୁତ
କରଇ ।
ଲୋକପାବେନୀ ବୋଇଲେ ରାୟେ ଶୁଣ
ଗଜମୂର୍ଖ ବୋଲି ପୁରାଣେ ବଖାଣ ।
ତୋହୋର ନିମିତ୍ୟେ ତାକୁ ବଚନେ
ବୋଲିବା
କେତେକ ବଳ ବହଇ ତାହା ବିଚରିବା ।
ଯାଅତୁ ଅଳସ ନକର ନୃପତି
ଯେହି କଥା କହି ଘେନି ଆସ ହସ୍ତୀ ।
ଗଙ୍ଗାର ଚରଣେ ରାଜା ନମସ୍କାର କରି
ଅଇରାବତ ସନିଧିକୁ ଗଲା ଖର କରି ।୭୦
ଦେଖି ଗଜଇନ୍ଦ୍ର ବୋଇଲାକ ହସି
କିସ ବୋଇଲା ସେ ଚାରୁ ଶୁଭ୍ରକେଶୀ ।
କଲାଟିକି ସନମତ ତୋହୋର ଭକ୍ତି ଘେନି
ନାସ୍ତି ବୋଇଲା ଅବା ଚତୁର କାମେନୀ ।
କହସି ନୃପବର ଶୁଣିମା ତାର କଥା
କର ଦୁଇ ଯୋଡ଼ି ସେ ବୋଇଲା ମହାରଥା ।
ଯାହା ତୁ ପ୍ରକାଶିଲୁ କହିଲି ତାହା ମୁହିଂ
ଶୁଣିଣ ହସିଲା ସେ ଶରଦ
ଚନ୍ଦ୍ରମୁହିଂ ।
ବୋଇଲା ବରୁଣ ଯେ ଅଟଇ ମୋହୋର
ନାହା
ତାହା ଛାଡ଼ି କେମନ୍ତେ ବରିବଇ
ଯେହା ।୮୦
କିସ ବୋଲି ମୋତେ ବୋଲିବେ ଜଗତ

ମୋହୋର ଯିବାର ନମିଳଇ ଯୁଗତ ।
ତାହାର କାର୍ଯ୍ୟ ଥିଲେ ଧରି ମୋତେ ନେଉ
ଲୋକାଉରକୁ ସେ ମୋହୋ ଦୋଷ
ନୋହୁ ।
ଶୁଣିଣ ହରଷ ଯେ ଗଜରାଜ ହୋଇ
ବୋଇଲାକ ତୋର କାର୍ଯ୍ୟ ସୁଫଳ
ନରସାଇଂ ।
ଚାଲ ଦେଖା ମୋତେ ଗଙ୍ଗା ଅଛି କାହିଂ
ମେରୁ ଫୋଡ଼ି ତାକୁ ଆଣିମି ବୁହାଇ ।
ବଳେ ଧରି ତାକୁ କରିବି ଯୁବତୀ
ଆଗ ହୋଇ ବାଟ କଢ଼ାଅ ମହୀପତି ।୯୦
ଶୁଣିଣ ସନ୍ତୋଷ ଯେ ହୋଇଲା ନରସାଇଂ
ଗଜରାଜକୁ ଘେନି ସେ ହରଷେ ଚଳଇ ।
ଯାନ୍ତେଣ ମାତଙ୍ଗ ଯେ ଫୁକାରଇ ରାବ
ଥୋର ହସ୍ତ ଟେକି ଧାମଇଂ ବେଗ ବେଗ ।
ଲାଞ୍ଜ ବିଂଚିଣ ଯେ ରୋଷ ଗରୁତର
ଯାନ୍ତେଣ ବୀରଘଣ୍ଟ ବାଜଇ ପର ଖର ।
ଚଉଦ ଘାତ ଯେ କୋପେ ମାଇଲାକ ନେଇ
ମେରୁ ଫୁଟିଣ ଯେ କମ୍ପିଲାକ ମହୀ ।
ଲବଣ ପର୍ବତେ ଯେହ୍ନେ ତୀକ୍ଷଭାଲ ବସେ
ତେସନ ପଟାନ୍ତର ଚଉଦନ୍ତ ଦିଶେ ।୧୦୦
ଯହୁଂ ଗିରିବର ଶ୍ୱରୀର ଫୁଟିଲା
ଚତୃଦନ୍ତ ମୁନି ଗିରି ଶ୍ୟରୀରେ କଣ୍ଟିଲା ।
ଦ୍ୱାର ପାଇ ଗଙ୍ଗା ହୋଇଲା ବାହାର
ଦଶନ କାଢ଼ି ନ ପାରିଲା କରୀବର ।
ଗର୍ଜନ କରି ଗଙ୍ଗା ଝଲକି ଅଇଲା
ଗଜଇନ୍ଦ୍ରକଇ ସେ ବଳେ ପେଲାଇଲା ।
ଆରତେ ଅଇରାବତ ଗଜ ନ ପାରିଲା
ସମ୍ଭାଳି
ତିନିଦାନ୍ତ ବଳେ ଉପାଡ଼ିଲା ମହାବଳୀ ।
ନଦୀର କର୍ଦ୍ଦନ ନ ପାରିଲା ସହି
ଦାନ୍ତେକ ଭାଙ୍ଗିଣ ମେରୁରେଣ ରହି ।୧୦
ହେଠକୁ ଧାଇଂଣ ପଡ଼ିଲାକ ପାଣି
ସୋହୋତିର ଘାତେ କମ୍ପିଲା ଧରଣୀ ।

କୋପଭରେ ହୋଇ ଗଙ୍ଗା ଯହୁଂ ବହି
ଅଇରାବତ ଗଜ ନ ପାରିଲା ସହି ।
ଅସମ୍ଭାଳ ହୋଇ ଭାସିଲା ମାତଙ୍ଗ
ଅତି ପ୍ରବଳହୋଇ ବହିଲା ଦେବୀ ବେଗ ।
କ୍ଷଣେ ବୁଡ଼ି କ୍ଷଣେ ଦିଶଇ କିଛି ଦୂରେ
ମନ୍ଦର ପରବତ କି ସିନ୍ଧୁର ଭିତରେ ।
ତେଡ଼େ ମହାଗଜ ହୋଇଲା ନିସତ
ଗୌରବ ସ୍ତିରୀ ଯହୁଂ ଲୋଡ଼ିଲା
ରମିତ ।୨୦
ତେଡ଼େ ମହାଗଜ ନିଜ ତେଜ ଛାଡ଼ି
ଗଙ୍ଗା ବିଶ୍ୱରୂପେ ଗଜଇନ୍ଦ୍ର ବୁଡ଼ି ।
ଚଉଷଠି କାଠି ଅଟଇ ସୁରାସୁରୀ
ଭାସଇ ଗଜଇନ୍ଦ୍ର ସ୍ଥଳ ନପାଇ କରି ।
ଦନ୍ତେକ ଭାଜିଅଛି ତେଣେ ଶିରୀ ହତ
ବିଶେଷେଣ ଲୋଭ ଧରିଥିଲା ଚିତ୍ତ ।
ମେରୁ ତାହାକଇ ଅଟଇ ନିର୍ଦ୍ଦୋଷୀ
ପର ବୋଲେ ଗଲା ସେ ତାହାକଇ ଧ୍ୱଂସି ।
ତିନିଗୁଣେ ଯହୁଂ ହୋଇଲାକ ଛନ୍ଦ
ତେଣୁକରି ଲାଜ ପାଇଲା ଗଜଇନ୍ଦ୍ର ।୩୦
କେତେହେଂକ ଦୂରେ ସୋହୋତିରେ ଗଲା
ଧର୍ମ ବଳେ ହାତୀ ଚେତନା ପାଇଲା ।
ସମ୍ଭାଳିହୋଇ ହାତୀ ଲାଗିଲା କେତେ ଦୂର
ତାହାର ନାମ ହୋଇଲା ହସ୍ତିନା ନଗର ।
ଶୁଣିମା ଶ୍ରୀରାମ କହନ୍ତି ଗାଧିସୁତ
ଅଇରାବ୍ରତ ମେରୁରେ ଯେ ମାଇଲା
ଚଉଦନ୍ତ ।
ଦନ୍ତେକ ବଳେ ଧଇଲା ଗିରିବର
ସେ ଦନ୍ତେକ ରହିଲା ମେରୁର ଭିତର ।
ଆବର ତିନିଦାନ୍ତେ ସେ ତିନିବାଟ ଫୁଟି
ତିନିଧାର ହୋଇ ବାହାର ବିମ୍ବଗୁଟି ।୪୦
ସ୍ୱର୍ଗେ ସାଧୁ ସାଧୁ କରନ୍ତି ସୁରମୁନି
ଚତୃବେଦ ଓଂକାର କରନ୍ତି ପଦ୍ମଯୋନି ।
ଅପକ୍ଷରାମାନେ ହୁଳହୁଳି ଦିଅନ୍ତି
ଗନ୍ଧର୍ବ କିନ୍ନର କୁସୁମ ବରଷନ୍ତି ।
ଦୁନ୍ଦୁଭି ବଜାଇଣ ଇନ୍ଦ୍ର ତୋଷ ଚିତ୍ତ

ଯେବେ ସେ ନୀରହାଦେ ପୂରିବ ସିନ୍ଧୁସାତ ।
ଯେଥୁ ଅନନ୍ତରେ ସୁରାସୁରୀ ଦେବୀ
ତିନି ମୂରତି ଧରି ବହିଲା ଭଇରୋବୀ ।
ଆକାଶେ ଗଙ୍ଗା ଯେ ବହିଲା ସୁରାସୁରୀ
ମନ୍ଦାକିନୀ ନାମ ଯେ ହୋଇଲା
ତାହାରି ।୫୦
ଆରେକ ଧାର ଯେ ପାତାଳକଇ ଗଲା
ଭୋଗବତୀ ନାମ ତହିଂ ଯେ ପାଇଲା ।
ଭଗୀରଥ ଘେନି ଅଇଲା ଯେବଣ ଧାର
ଭାଗୀରଥି ଗଙ୍ଗା ନାମ ହୋଇଲା ତାହାର ।
ମୃତ୍ୟୁ ଲୋକେଣ ଯେ ବହିଲା ଯେକ ମୂର୍ତ୍ତି
ଆଗେଣ ବାଟ ଯେ କଢ଼ାଇଅଛନ୍ତି
ଭାଗୀରଥି ।
ହେମଗିରି ପ୍ରଦକ୍ଷିଣ କରିଣ ବାଳୀ ଆସି
ହୁଂକାର ଶବଦେ କରିଣ ଶୁଭ୍ରକେଶୀ ।
ମଞ୍ଚେଣ ବିକ୍ରମି ସେ ଆସଇ ସୁରାସୁରୀ
ତରଙ୍ଗର ଘାତେ କମ୍ପଇ ବସୁନ୍ଧରୀ ।୬୦
ଅଶ୍ୱେକ ଆରୋହି ନୃପତି ହୋଯେ ଆଗ
ପ୍ରବେଶ ହୋଇଲେ ପବିତ୍ର ଥାନ ପ୍ରୟାଗ ।
ଉତ୍ତର ପଶ୍ଚିମକୁ ପଡ଼ିଲା ଦେବୀ ଝାସି
ଯମୁନାର ସଙ୍ଗେ ସଙ୍ଗ ହୋଯେ ଆସି ।
ସେହି ଦିନ ମକରେ ପ୍ରବେଶ ଦିନକର
ସଂକଳ୍ପ ବେଳଯେ ହୋଇଛି ନିକର ।
ବିଶେଷେ ସ୍ତିରୀକି ସ୍ତିରୀର ବଡ଼ପ୍ରୀତି
ଦେଖିଣ ଶରଧା କଲାକ ଯୁବତୀ ।
କୁଳ ସମ୍ଭାଷଣା କୁଶଳ ପୁଛାପୁଛି
ଯେକ ଆରେକ ସେ ଛାଡ଼ି ନ ପାରନ୍ତି
ମୁଛି ।୭୦
ଯେସନେକ ଗଙ୍ଗା ରହିଲା ତହିଂ ମାସେ
ଭାଗୀରଥି ରହିଥାଇ ତାହାର ବିଶ୍ୱାସେ ।
ଯହୁଂ ବହୁତ ଦିନ ଦେବୀ ରହିଲା
କର ଦୁଇ ଯୋଡ଼ି ନୃପତି କହିଲା ।
ଭୋ ମାତ ଲୋକପାବେନୀ ସୁରାସୁରୀ
ମୋତେ କିମ୍ପା ଅଦୟା ଅଛଇ ତୋହରି ।

ଯେତେକ ଦୁଃଖେ ତୋତେ ଆଣିଲି ଗୋ
ମାଯେ
ଯେତେ ବୋଲି ରାଜା ପଡ଼ଇ ତାର ପାଯେ ।
ଯମୁନାହିଁ ଗଙ୍ଗାକୁ ଅନେକ କହିଲା
ଶୁଣିଣ ସୁରାସୁରୀ ସନମତ କଲା । ୮୦
ପୂର୍ବମୁଖ ହୋଇ ଅଇଲା ଚହୁଁ ବହି
କାଳନ୍ଦୀ ସଙ୍ଗେ ହାଥ ଧରାଧରି ହୋଇ ।
ଶରଧନୁ ପରିଯନ୍ତେ ଅଇଲେ ବେନି ବାମା
ଚହିଁ କୋଳ କଲେ ବରୁଣର ବାମା
ଯାଅସି ସୁଲକ୍ଷଣୀ କଲ୍ୟାଣ ହୁଅସି
କୋଟିଯେ ତୀର୍ଥର ପୂଜିବା ପାଅସି ।
ମୁହିଁ ତୋତେ ବରଷେକେ ଭେଟ
ହୋଉଥିବି
ମକର ଆଦିତ୍ୟେ ତୋର ଘରକଇଁ ଯିବି ।
ସେଦିନ ସ୍ନାହାନ କରିବ ଯେହୁ ଆସି
ବହ୍ମାର ସମାନେ ସେ ସ୍ୱର୍ଗରେ ଥିବ
ବସି ।୯୦
ଅମୃତ ଭୁଞ୍ଜିବ ସେ ଦେବତାଙ୍କର ସଙ୍ଗେ
ଅପଛରୀ ଘେନି ବ୍ରତିମାକ ରଙ୍ଗେ ।
ଅଗ୍ନିରେ ପଖାଳିଣ ପିନ୍ଧିବ ଝିନବାସ
ଶ୍ରୀଖଣ୍ଡ ଚନ୍ଦନ କେଶେ ପାରିଜାତ ପୁଷ୍ପ ।
ଶୁଦ୍ଧ ସୁବର୍ଣ୍ଣର ଅଳଙ୍କାର ଲାଇ
ଅନେକ ଭୋଗ କରିବ ସୁରପୁରେ ଥାଇ ।
ଯେକା ଦିବସେକେ ସ୍ନାହାନେ ଯେତେ
ପୁନ୍ୟ
ଯେ ଅବା ମାସେକ କରିବ ସ୍ନାହାନ ।
ବ୍ରହ୍ମା ଯେ ଜାଣଇ ମହିମା ଯେଥି ଯିସ
ପ୍ରଜାପତି କଲେ ବିଷ୍ଣୁର ସଙ୍ଗବାସ ।୧୦୦
ଯେତେ ବୋଲି ଦେବୀ ଯମୁନାକୁ ପ୍ରବୋଧି
ପୂର୍ବମୁଖ ହୋଇ ସେ ଚଳଇ ମହାନଦୀ ।
ଯେବଣ ଠାବରୁ ଦୁହେଁ ଛଡ଼ାଛଡ଼ି ହୁଅନ୍ତି
ସମତୀର୍ଥ ବୋଲି ତହିଁର ନାମ ଦେନ୍ତି ।
କାଳନ୍ଦୀ ଗଲେ ତହିଁ ଯେ ଅଇଲେ ସୁରାସୁରୀ
ଆଗେ ହୋଇଅଛି ଭାଗୀରଥି ଦଣ୍ଡଧାରୀ ।

କେତେହେଂକ ଦୂରେ ଲୋକ ପାବେନୀ
ପୁଛଇ
ବାମଭାଗେ ରାଜା କେବଣ ପୁରୀ ଅଛଇ ।
ସୁବର୍ଣ୍ଣ କଳସ ଧବଳ କାନ୍ଥ ଘର
ବିଚିତ୍ର ଚିରାଳ ଉଡ଼ଇ ଫରହର ।୧୦
ନୃପତି ବୋଇଲାଯେ ବାରାଣସୀ ପୁରୀ
ଯେଥେ ବିଜେ କରିଛନ୍ତି ତ୍ରିପୁରାରୀ ।
ବରଣା ଅସୀ ବୋଲି ଦୁଇ ନଦୀର ମଧେ
ଯେଥି ସେ ମରଣ ଇଛନ୍ତି ବିବୁଧେ ।
ପାଞ୍ଚକୋଶ ନଗ୍ର ଧନୁ ଆକାର ପୁରୀ
ରୁଦ୍ରଦେବ ବିଜେ ଯେଥି ପାର୍ବତୀ କୋଳେ
ଧରି ।
ବିଷ୍ଣୁଙ୍କୁ ଲୟେ କରି ଯୋଗୀଜନେ ଥାନ୍ତି
ଯେଥେ ମଲେ ପ୍ରାଣୀ କୁରୁମି ନୁହନ୍ତି ।
ଥାବର ଜଙ୍ଗମ କୀଟ ପକ୍ଷୀମାନ
ଯେତେକ ହୁଅନ୍ତି ଦେହ ଅବସାନ ।୨୦
ପ୍ରାଣ ଗଲାବେଳେ ଶ୍ରୀରାମର ବାଣୀ
ପ୍ରାଣୀଙ୍କର କର୍ଣ୍ଣେ କହନ୍ତି ଶୂଳପାଣି ।
ତେଣେ ଜୀବଜନ୍ତୁ ମୁକତି ଗତି ପାଇ
ପୃଥୀର ମଧେ ଯେ ଅଟଇ ସାର ମହୀ ।
ଚକ୍ରଘେନି ଶ୍ରୀହରି ଖୋଳିଲେ ଯେବଣ ସର
ଚକ୍ର ପୁଷ୍କରିଣୀ ନାମ ଅଟଇ ତାହାର ।
କାଳେଣ ସଦାଶିବ ଦେଖିଲାକ ଆସି
ଚକ୍ର ପୁଷ୍କରିଣୀକି ଚାହିଁ ବୋଇଲାକ ହସି ।
ଦୁ ଯେ ବାସୁଦେବର ଚକ୍ର ପୁଷ୍କରିଣୀ
ଯେସନେକ ବୋଲି ଶଙ୍କର ଶିର
ଝୁଣି ।୩୦
ମୁଣ୍ଡ ହଲନ୍ତେ ଯେ କର୍ଣ୍ଣର କୁଣ୍ଡଳ
ଖଞ୍ଜା ଫିଟିଯାଇ ପଡ଼ିଲାକ ଜଳ ।
ତେଣୁ ସେ ମଣିକର୍ଣ୍ଣିକା ନାମ ବହି
ଗଙ୍ଗାର ଆଗରେ ଯେହା ଭାଗୀରଥି କହି ।
ଶୁଣ ଦୁ ଶ୍ରୀରାମ କହନ୍ତି ଗାଧିସୁତ
ପୁଣ ନୃପବର କଲା ଯିସ କୃତ୍ୟ ।
ସୁରାସୁରୀ ଶୁଣଇ ନୃପତିର ବାଣୀ

ଆନନ୍ଦେଣ ଦିଲୀପ ତନଯେ ବଖାଣି ।
ଭୋ ମାତ ଗଙ୍ଗାଯେ ପୁର ଅନ୍ତରୀକ୍ଷ
ପ୍ରଳୟ କାଳେଯେ ଧରି ବିରୂପାକ୍ଷ ।୪୦
କପାଳ ବିମୋଚନ ତୀର୍ଥ ଯେଥେ ଅଛି
ବ୍ରହ୍ମହତ୍ୟା ଦୋଷ ଶଙ୍କର କ୍ଷଣକେ ଲେଛି ।
ଋଣ ବିମୋଚନ ଯେଥି ସ୍ନାହାନ କଲେ ଯାଇ
ସୂର୍ଯ୍ୟ କୁଣ୍ଡଳ ନାମେ ତୀର୍ଥେକ ଅଛଇ ।
ଅର୍କବାରେ ଯେଥି ସୂର୍ଯ୍ୟ ଅର୍ଘ୍ୟ ଦେଲେ
ହବିଷ ଭୋଜନ ସାୟଂକାଳେ କଲେ ।
ସୂର୍ଯ୍ୟଲୋକେ ବସି ଅମିୟ ପାନ କରି
ସହସ୍ରେ ଯୁଗ ଥାଇ ଯୋଗମୂର୍ତ୍ତି ଧରି ।
ତହୁଁ ଆସି ଉତ୍ତମ କୁଳେ ଜାତ ହୋଇ
ରାଜାହୋଇ ସାତ ଜନମ ହୁଅଇ । ୫୦
ପାପପୁନ୍ୟ ଅନରୂପେ ହୁଅଇ ପୁଣ ଜନ୍ମ
ଶୁଣିମା ଭଇରବୀ ଯେଥି କଥା ହେନ
ପୁଣ୍ୟ ।
କର୍ଣ୍ଣ କୁଣ୍ଡଳ ବୋଲି ଅଛଇ ଯେବଣ ହ୍ରଦ
ସୋମବାରେ ସ୍ନାହାନ କରିବ ତହିଁର ମଧ ।
ଶ୍ୱେତଦୁବ ଦେଇ ପୂଜିବ କଳାନିଧି
ଯେ ଯାହାର ବାଞ୍ଛା ସେ ହୋଇବାକ ସିଦ୍ଧି ।
ଗୁରୁବାରେ ସ୍ନାହାନ ଲକ୍ଷ୍ମୀ କୁଣ୍ଡେ କରି
ଦଧି ଗୁଡ଼ ଅନ୍ନ ସମକରି ଭରି ।
ବୃହସ୍ପତି ସୁମରିଣ ବ୍ରାହ୍ମଣେ ଦେବ ତାହା
ଆପଣେ ପାଳଣା କରିବାକ ଯାହା । ୬୦
ସେହି ଶାଳୀ ଅନ୍ନ ଦଧିଗୁଡ଼ ଯୋଗେ
ନକ୍ଷତ୍ର ଚାହିଁ ସେ କରିବ ବଇଭୋଗେ ।
ଲକ୍ଷ୍ମୀ ନ ଛାଡ଼ଇ କନ୍ଧରୁ ତାହାର
ଅନ୍ନବସ୍ତ୍ର ମିଳଇ ଅତୁଟ ଆହାର ।
କୁଣ୍ଡଳୀ କର୍ଣ୍ଣ ବୋଲି ଯେବଣ ତୀର୍ଥନାମ
ବୁଡ଼ି ଯେବେ ଦଣ୍ଡେ କରିବ ସ୍ନାହାନ ।
ସ୍ୱର୍ଗର ଦୁନ୍ଦଭି ଶବଦ କର୍ଣ୍ଣେ ପଶି
ଯେକୁଂ ଯେକ ତୀର୍ଥେ ଅଛନ୍ତି ଗରୁହଂସୀ ।
ସ୍ୱର୍ଗମର୍ତ୍ତ୍ୟ ପାତାଳେ ଅଛଇ ଯେତେ ଜଳ
ପୁଷ୍କର ସହିତେ ଯେ ତୀର୍ଥ ସକଳ । ୭୦

ଯେହାଙ୍କ ଉପରେ ହାଦେ ପ୍ରୟାଗ ଅଧିପତି
ମଧ୍ୟାହ୍ନ କାଳେ ସେ ନିତିଥାଇ ଏଥି ।
ମଣିକର୍ଣ୍ଣକାୟେ କରିବ ସ୍ନାହାନ
ନିଜ ପୁରକୁ ଯାଇ ପ୍ରୟାଗ ରାଜନ ।
ଅସୀ ବାରଣା ଯହୁଂ ବହଇ ଦୁଇନଦୀ
ବାରାଣସୀ ନାମ ତହୁଂ ହୋଇଲା ପ୍ରସିଦ୍ଧି ।
ସମୟେକେ ଈଶ୍ୱର ରହିଲେ ଯେଥି ଆସି
ତେଣୁ ସେ ଯେ ପୁର ବୋଲାଇଲା କାଶୀ ।
ଯେବଣ ଜନ ସେ ହାରଇ ଯେଥି ଦେହୀ
ଅନ୍ତେଣ ଶମ୍ଭୁ ସ୍ୱରୂପ ହୁଅନ୍ତି ସେହି ।୮୦
ପୂର୍ବେ ଦେଇଥିଲେ ଭୋଗଭାଗ୍ୟ ପାଆନ୍ତି
ନ ଦେଇଥିଲେ ଅଭୋଗ୍ୟ ମୂର୍ତ୍ତିମାତ୍ରେ
ହୁଅନ୍ତି ।
ବ୍ରହ୍ମାର ଦିବସେକେ କଳପେ ଭୋଗ ଯାଇ
ତେତେ ସମୟ ରୁଦ୍ର ତନୁ ବହିଥାଇ ।
ମୃତ୍ୟୁ ଲୋକକଇ ଯେବେ ନ କରଇ ଗ୍ୟାନ
ସେ ଦୋଷେ କାରେଣୀ ଅଟଇ ଈଶାନ୍ୟ ।
ସେ କଥା ଅବଶ୍ୟ ପାଳଇ ଶୂଳଧାରୀ
ବିଷ୍ଣୁର ଆଗେ ସେ ଅଛି ସତ୍ୟକରି ।
ଯେକ ଯତିୟେ ସେ ବ୍ରହ୍ମଚାରୀ ବ୍ରତ
ଧ୍ୟାୟେ ଧାରଣା ସେ ପାଳଇ ଯତସତ ।୯୦
ପୟ ପାନେଣ ସେ ତୋଷଇ ନିଜ କାୟେ
ଗଙ୍ଗା କୂଳେ ଥାଇ ବେଳ ଅସ୍ତଯାୟେ ।
ଦିନ ଶେଷେଣ ଆସଇ ନିଜବାସ
ନିଶାୟେ ଉଜାଗର କନ୍ଦମୂଳ ଗ୍ରାସ ।
ଦିନେକ ଗଙ୍ଗାକୂଳରେ ତପେ ଅଛି
ଯେକାନ୍ତ ହୋଇଣ ସେ ଜଞ୍ଜାଳନ୍ତ ଲେଛି ।
ରୁଦ୍ର ଜପଇ ସେ ଆହାହ୍ନିକ ସାରି
କ୍ଷଣେ ଚକ୍ଷୁ ବୁଜିଣ କ୍ଷଣେ ଚାହାଂଇ
ତପଚାରୀ ।
ଶୁଣ୍ଡୀର ବୋହୂ ହାଦେ ଗଲା ପାଣି ଆଣି
ରୂପ ଗୁଣେ ସୁନ୍ଦେରୀ ସେ ଅଟଇ
ତରୁଣୀ ।୧୦୦
ନିତି ସ୍ନାହାନ ସେ କରଇ ଗଙ୍ଗାଜଳେ

ତେଣୁ ସେ ତନୁ ତାର ଅଟଇ ନିର୍ମଳେ ।
ବିଶେଷେ ଲାବନ୍ୟ ତନୁ ତା ଅଟଇ
ପିନ୍ଧିଣ ଅଛଇ ଦେବାଙ୍ଗଚାରୁ ପାଟଇ ।
ଅଳଙ୍କାର ଯୋଗଇ ସେ କୁମ୍ଭ କରେ ଘେନି
ସୁରନଦୀରେ ସେ ମିଳିଲାକ କାମେନୀ ।
ପାଣି ଆଣନ୍ତେଣ ତାକୁ ଦେଖିଲାକ ତପୀ
ପାପ ଆକ୍ରୋଷିଲା ମଦନ ମନେ ବ୍ୟାପି ।
ମନ ନୟନ ଚିତ୍ତୁ ସେ ଧାରଣା ନ ଯାଇ
କାମଭରେ ମହାତ୍ମା ସେ ହୋଇଲାକ
ବାଇ ।୧୦
ଧର୍ମ ପୁଣ ସୁମରି ସେ ଆସନୁ ଉଠିଲା
ସୁନ୍ଦେରୀ ଆସନ୍ତେଣ ଆଗେ ଓଗାଳିଲା ।
• ବୋଇଲା ସଖି ଆରେ ମୋର ପ୍ରାଣ ରଖ
ମଦନ ଶରେ ମୁଂ ଯେ ହୋଇଲି ନିରେଖ ।
ତୋତେ ଦେଖି ମୋର ମନଥିର ନୋହେ
ପଞ୍ଚପ୍ରାଣ ମୋହୋର ତୋହର ରୂପ
ମୋହେ ।
ଶୁଣିଣ ସୁନ୍ଦେରୀ ଯେ ହୋଇଲା ଆଶ୍ଚିର୍ଯ
ବୋଇଲା ତପୀ କିନା ହୋଇଲୁ ଅଧଇର୍ଯ ।
ତୁହି ବ୍ରହ୍ମଚାରୀ ମୁହିଂ ଜାତିହୀନ
ଯେହେନେକ ଛାର କଥାକୁ ବଳିଲା ତୋର
ମନ ।୨୦
ତପୀ ବୋଇଲା ମୁଂ ହୋଇଲି ସଖି ବାଇ
ତୋ ରୂପ ଦେଖି ଚିତ୍ତ ଧରଣା ନ ଯାଇ ।
କର ଅନୁଗ୍ରହ ନକର ନିରାଶ
ମୋହୋର ମୁଖରେ ତୁ ଚୁମ୍ୱନ୍ୟ ଦିଅ ଆସ ।
ହସିଣ ସୁନ୍ଦେରୀ ଯେ ବୋଇଲା ତୁମ୍ଭେ ଶୁଣ
ଦଇବ ଯେବେ ଆଣି କଲାକ ନିର୍ବାଣ ।
ଯେ ତୋହୋର ବୋଲ ଭାଙ୍ଗିତ ମୋର
ନାହିଂ
ଦେବଇ ସୁରତି ମୁଂ ବେଳକାଳ ଚାହିଂ ।
ଯେବେ ତ ଦିବସ ସ୍ୱଭାବେଣ ନଦୀକୂଳ
ଅନେକ ଲୋକ ଯେଥି ହୋଉଛନ୍ତି
ଚହଳ ।୩୦

ଘରେ ତ ଶାଶୁ ନଣନ୍ଦ ମୋର ଥାନ୍ତି
ମୁଂତ ସ୍ୱଭାବେଣ ଅଟଇ ରୂପବନ୍ତୀ ।
ତେଣୁ କରି ମୋତେ ଥାନ୍ତି ଅନୁମାନି
ସଭାବେ ମୁଂତ ଆସିନପାରଇ ରଜନୀ ।
ଯେ ଯେ ଆସନ୍ତା ପୂର୍ଣ୍ଣମୀର ତିଥି
ଚନ୍ଦ୍ରଗ୍ରହଣ ଯେ ହୋଇବାକ ଯେଥି ।
ସେଦିନ ରଜନୀ ଗଙ୍ଗାକୁ ଲୋକେ ଯିବେ
ସ୍ନାହାନ ଭୋଜନ ବ୍ରାହ୍ମଣେ ଦାନ ଦେବେ ।
ମୁହିଂ ଯେକା ଘର ଥିବି ରକ୍ଷାକରି
ସେହିକାଳ ଜାଣି ତୁ ଆସିବୁ ତପଚାରୀ ।୪୦
ଯେତେ ବୋଲିଣ ସେ ଗଲାକ ସୁନ୍ଦେରୀ
ଗ୍ରହଣ ଲେଖା ଯେ କରଇ ତପଚାରୀ ।
ଯେମନ୍ତେ କେତେ ହେଂ ଦିନ ବହିଗଲା
ପୌର୍ଣ୍ଣମୀ ତିଥି ସେ ଆସିଣ ହୋଇଲା ।
ନିଶି ପାଞ୍ଚ ଘଡ଼ିରେ ହୋଇଲା ଚନ୍ଦ୍ରଗ୍ରାସ
ତପୀ ରମଣୀକି କରିଅଛି ଆଶ ।
ଗଙ୍ଗାକୁ ସ୍ନାହାନ କରିତ ଲୋକେ ଗଲେ
ଘରେକ ଜଣେ ଜଣେ ମାତ୍ରକ ରହିଲେ ।
ଯେସନ ସମୟେକ ଜାଣିଣ ବ୍ରହ୍ମଚାରୀ
ପ୍ରବେଶ ହୋଇଲା ଶୁଣ୍ଡୀର ଦୁଆରି ।୫୦
ଯେସନ ସମୟେ ଘରର ଗୁରସ୍ତ
ଶତେଭାର ସୁରା ଘେନି ମିଳିଲା ତୁରିତ ।
ନିଜପୁରେ ପ୍ରବେଶି ଜାଣିଲା ତାର ବୋହୂ
ବୋଇଲାକ ସୁରା ବାହାରେ କ୍ଷଣେ ରହୁ ।
ଯେତେ ବୋଲି ଯତିକି ଲୁଚଇଲା ନେଇ
ତୁଚ୍ଛା ସୁରା ଭାଣ୍ଡ ଭିତରେଣ ଥୋଇ ।
ସ୍ନାହାନ କରିତ ଯେ ଯେଣେ ଯାଇଥିଲେ
କ୍ରମେ କ୍ରମେ ଆସି ପ୍ରବେଶ ହୋଇଲେ ।
ଘରେ ଗହ ଗହ ପୂରିଲେ ସର୍ବଜନ
ସେ ବେନି ପ୍ରାଣୀଙ୍କର ବିକଳିତ ମନ ।୬୦
ଯେଥୁ ଅନନ୍ତରେ ଗୃହର ନାୟେକ
ସଂଗ୍ରହଣ କରି ସୁରା ଦ୍ରବ୍ୟେ ଥୋୟେକ ।
ଯେବଣ ଭାଣ୍ଡେ ଭୋ ତପୀ ବସିଥିଲା
ତୁଚ୍ଛା ବୋଲିକରି ମଦିରା ପୂରୋଇଲା ।

ବହୁତ ଡରି ତପୀ ନକହଇ କଥା
ସୁରା ପୂରାବନ୍ତେ ମନରେ ମହାବ୍ୟଥା ।
ଲାଜେଣ ସମସ୍ୟା ସେ ନ ଦେଲା ସନ୍ନ୍ୟାସୀ
ଆଖି କାନ ତୁଣ୍ଡ ବନ୍ଧିଣ ଅଛି ବସି ।
ଦଶଦ୍ୱାର ଯହୁଁ ହୋଇଲାକ ନିରୋଧ
ସାହାସ ପ୍ରବେଶ ଯେ ହୋଇଲାକ
ଉର୍ଦ୍ଧ ।୭୦
ମୂର୍ଦ୍ଧୁନୀ ଫାଟିଣ ଯାଆନ୍ତେ ତାର ପ୍ରାଣ
ଶୂଳପାଣି ଯାଇ ଧଇଲେ ତତକ୍ଷଣ ।
ସେହି ତପୀ କର୍ଣ୍ଣେ ମହାମନ୍ତ୍ର କହି
ଶିବଙ୍କଇଂ ନ ଦେଖି ପାର୍ବତୀ ବିକଳ
ହୋଇ ।
ଯେହିକ୍ଷଣି ଥିଲେ ସ୍ୱାମୀ ଗଲେ କାହିଁ
ଯୋଗେ ଜାଣିକରି ଅଇଲେ ଦେବୀ ଧାଇଁ ।
ରୁଦ୍ରଙ୍କଇ ଆସି ଦେଖିଲେ ଭାବେନି
ଗ୍ରୀଆଙ୍କର ଧରି ବାହୁଡ଼ିଲେ ମହାଜ୍ଞାନୀ ।
ବାଟେଣ କହନ୍ତି ରୁଦ୍ର ଶୁଣ ଗୋ ଗଉରୀ
ତପୀ ଯାଇଥିଲା ପରନାରୀ ହରି ।୮୦
ଲୋକ ଦେଖିଂଡରେ ଲୁଚିଲାକ ଯହିଁ
ବଣିଜାର ସୁରା ପୂରୋଇଲା ତହିଁ ।
ଲାଜେ ମହାତମା ଛାଡ଼ିଲା ଜୀବନ
ମୁହିଂ ଯାଇ ରାମ ନାମ କହିଲି ତା କର୍ଣ୍ଣ ।
ଶୁଣିଣ ସନ୍ତୋଷ ହୋଇଲେ ପାର୍ବତୀ
କରତାଳି ମାରି ହସିଲେ ଉମା ପତି ।
ଯହୁଁ ସେ ଶଙ୍କର ଗଲେ ମନ୍ତ୍ର କହି
ପ୍ରାଣ ଛାଡ଼ିଲା ଯତି ସୁରାଭାଣ୍ଡେ ଥାଇ ।
ଶ୍ରୀରାମ ନାମ ଯହୁଁ ଈଶ୍ୱର କହିଗଲେ
ସୁରା ଭାଣ୍ଡେଶ୍ୱର ବୋଲି ଲିଙ୍ଗେକ
ହୋଇଲେ ।୯୦
ସେ ସେପୁରେ ମଲେଣ ଲିଙ୍ଗେ ଅବଶ୍ୟ
ରୁଦ୍ର ହୋଇ
ପୂର୍ବେ ଦେଇଥିଲେ ଭୋଗ୍ୟ ହିଂ କରଇ ।
ଯତ୍ନେଶ୍ୱର ଦେବତା ଅଛଇ ବିଜେ କରି
ତାହାର ପ୍ରସନ୍ନେ ହାଦେ ନ ଯାଇ
ଯମପୁରୀ ।

କୁବେର ପୂଜିଲାକ କୁବରେଶ୍ୱର ବାଣ
ଆବର ଅଛଇ ସେ ଦେବ ନାରାୟଣ ।
ବିଘ୍ନରାଜ ବିଜୟେ ବିନାୟକ ରୂପେ
କାଳାନଳ ଅଗ୍ନି ପ୍ରତକ୍ଷେ ସ୍ୱରୂପେ ।
ବରେହା ମୂର୍ତିଧରି ଦାମୋଦର ଯେ ଥାନ୍ତି
ବ୍ରହ୍ମ ପ୍ରଳୟେ ମହୀ ଦନ୍ତରେ ଧରନ୍ତି ।୧୦୦
ଯେତେକ ଜନ ତହିଁ ନାଶନ୍ତି ସର୍ବେ ଶିବ
ନାରୀଙ୍କର ଅଙ୍ଗେ ଉମାର ତେଜ ସର୍ବ ।
କାର୍ତ୍ତିକେଶ୍ୱର ଆବର ଗଣପତି
ନଗ୍ର ପୁଅଙ୍କର ସଙ୍ଗରେ ଖେଳନ୍ତି ।
ଯେସନେକ ବାଗେ ଯେ ଅଛନ୍ତି ଯେଥେ
ହର
ଯେ ମହା ଭୈରବ ଯେ ରଖଇ ସିଂଘଦ୍ୱାର ।
ଦଣ୍ଡପାଣି ଘେନି ବୁଲନ୍ତି ନଗ୍ରପୁର
ପାପକଲେ ଯେଥି ପଳାଇ ପଶେ ସୁର ।
ବିଷ୍ଣୁ ଯତ୍ନେ ଯେ ନଗ୍ର ଜାତ କଲା
ଅନେକ ଓପ୍ରୋଧେ ସେ ରୁଦ୍ରକଇ
ଦେଲା ।୧୦
ଯେସେ ଧର୍ମ ଦେଶ ଅଟଇ ଶିଧ୍ୟ କ୍ଷେତ୍ର
ଯେଥେ ବସନ୍ତେ ଜନ ସଭିଯେ ପବିତ୍ର ।
ଭାଗୀରଥି ମୁଖୁଁ ଯେସନ ବାଣୀ ଶୁଣି
ସନ୍ତୋଷ ହୋଇଲେ ଯେ ବରୁଣ
ପାଟରାଣୀ ।
ଭୋ ନୃପମଣି କଥାଯେ ମୋତେ କର
ମଣିକର୍ଣ୍ଣିକା ଦେଖିବାକୁ ଶରଧା
ମୋହୋର ।
ବାଟ କଢ଼ାଅ ତୁ ଯିବା ତେଣେ ହୋଇ
ଦେଖିବା ପ୍ରତକ୍ଷେ ସେ ପାର୍ବତୀର ସାଇଂ ।
ଅଶ୍ୱ ପିଠି ଚଢ଼ି ରଜା ଆଗୁସାର
ପଛେ ପଛେ ବହି ଆସଇ ଗଙ୍ଗାଧର ।୨୦
ପୂର୍ବ ମୁଖେ ସେ ଯେ ଯାଉଥିଲା ବୋହି
ବାହୁଡ଼ି ବୋହିଲା ସେ ଉତ୍ତରାମୁଖ ହୋଇ ।
ଯହିଁ ବିଶ୍ରାମଇ ତହିଁ ତୀର୍ଥ ହୋଇ
କାହୁଁ ପଞ୍ଚନଦୀ ସ୍ନାହାନ ଫଳ ପାଇ ।

କାହିଁ ଦଶାଶ୍ୱମେଧ ଯଜ୍ଞ ପୁଣ୍ୟ
କେବଣ ଠାବରେ ଯେ ମହିମା ଅକଥନ ।
ମଣିକର୍ଣ୍ଣିକାକୁ ଦେଖି ଦେବୀ କଲା କୋଳ
ଅନ୍ୟୋଅନ୍ୟ ହୋଇ ଯେ ପୁଛନ୍ତି କୁଶଳ ।
ଗଙ୍ଗା ବୋଇଲେ ମଣିକର୍ଣ୍ଣିକାକୁ ଚାହିଁ
ତୁ ଗୋ ହୁଅସି କଲ୍ୟାଣ ସୁଲକ୍ଷଣୀ କ୍ଷେମ
ହୋଇ ।୩୦
ବାର ବରଷେ ଯେ ଭେଟିବି ବେଳେ ତୋତେ
ମୋକ୍ଷୋଦୋରୀ ବୋଲି ହୋଇଲା ସେ
ତୀର୍ଥେ ।
ଯେଉଂ ନର ଅବା ଝାସିବ ଦାନ ଦେଇଂ
ମୁକତି ହୋଇ ବସିବ ଜନ୍ମ ତାର ନାହିଁ ।
ଯେତେ ବୋଲିଣ ସେ ଗଲେ ତହୁଁ ଚଳି
ଚନ୍ଦ୍ରାବତୀ କଟକ ନିକଟେ ଯାଇ ମିଳି ।
ଉତ୍ତର ବାହିନୀ ହୋଇ ଯେତେ ଦୂର ଗଲା
ପୁଣ ପୂର୍ବମୁଖ ହୋଇଣ ବହିଲା ।
ବାରାଣସୀ ବାଟେ ଗଲା ଯହୁଁ ସୁରାସୁରୀ
ଧନୁ ଆକାର ଯେ ଦିଶିଲାକ ପୁରୀ ।୪୦
ପୁଣ୍ୟଗଙ୍ଗା ନାମ ଯେ ହୋଇଲା ତାହାରି
ମଣିକର୍ଣ୍ଣିକା ତହିଂ ହୋଇଲାକ ସରି ।
ଈଶ୍ୱର ସେ ଧନୁ ବିନ୍ଧଇ ସେ ଧରି
ପାପ କୁଳଧନ ବିଧ୍ୱଂସେ ତ୍ରିପୁରାରି ।
ଯେଥୁଅନନ୍ତରେ ଶୁଣ ରଘୁନାଥ
ଗଉଡ଼ ଦେଶେ ପ୍ରବେଶ ଗଙ୍ଗା ଭଗୀରଥ ।
ସିନ୍ଧୁଘୋଷ ଦେବୀ ଶ୍ରବଣକୁ ଶୁଭିଲା
ରାଜାକୁ ନ ଦେଖି ସେ ତେଣିକି
ଧାଇଂଗଲା ।
କାମରୀ ଦେଶର ସେ ସନ୍ନିଧ୍ୟ ପାର ହୋଇ
ଥୋକାଯେକ ଦୂରେ ରାଜା ଲେଉଟି
ଅନାଇ ।୫୦
ଗଙ୍ଗା ନ ଦେଖି ସେ ଲେଉଟିଲା ଧାଡି
ଦକ୍ଷିଣର ମୁଖେ ବହଇ ମହାସ୍ୟତୀ ।
ଅଶ୍ୱ ଧୂଆଂଇଣ ନୃପତି ବେଗେ ଗଲା
ଅଗେ ଓଗାଳିଣ ସେ ଅନେକ ସ୍ତୁତି କଲା ।

ଭୋ ମାତ ସୁରାସୁରୀ ନୁହଇ ଯେ ବାଟ
ତୁ କିମ୍ପା ମୋତେ ମାଗୋ ଦେଉଅଛୁ କଷ୍ଟ ।
ଯେତେ କଷ୍ଟେ ଆଣିଲି ତାହା ତୁତ ଜାଣୁ
ବାଳୁତ ପ୍ରକୃତି ଧରି ଆନ ଆନ ମଣୁ ।
ଯେଣେ ମୋହୋର କାର୍ଯ ନାହିଂ ଗୋ ଧବଳମୁଖୀ
ଚାଲ ବାହୁଡ଼ିଣ ଯିବା ସେ ନକର ମୋତେ ଦୁଃଖୀ ।୬୦
ଦେବୀ ବୋଇଲେ କେ ଜାଣଇ କେଣେ ଯାଇ
ତୁ ରାଜା ଯାଉଛୁ କି କାହାଳ ବଜାଇ ।
ତେବେ ସେ ଥିବି ମୁଂ ତୋହୋର ସଙ୍ଗେ ସଙ୍ଗେ
ଏସନେକ ବୋଲି ସେ ବୋଇଲେ ଦେବୀ ଗଙ୍ଗେ ।
ଶୁଣିଣ ଭାଗୀରଥୀ ଯୋଡ଼ିଲା ବେନିକର
ଯେ ତୋହୋର ଆଜ୍ଞା ପାଳିବି ନିକର ।
ଯେତେ ବୋଲି ରାୟେ କାହାଳ ବଜାଇ
ଶବଦ ଶୁଣି ଦେବୀ ସୁରାସୁରୀ ଧାଇଂ ।
ଗଙ୍ଗାର ଆଜ୍ଞା ଯେ ପାଳିଲା ସୂର୍ଯ୍ୟବଂଶ
ରାଜା ଆପଣେ ସେ କଲା କାହାଳ ନିଘୋଷ ।୭୦
ବୀର କାହାଳ ସେ ବୋଲିଣ ବୋଲି ଯାହା
ଲୋକପାବେନୀ ବୋଲି ପାଳିଲା ନରନାହା ।
ଯେଥୁ ଅନନ୍ତରେ ଶୁଣ ରଘୁଶିଷି
ବାହୁଡ଼ି ଗଉଡ଼ ଦେଶେ ପ୍ରବେଶ ହୋଯେ ଆସି ।
କାହାଳୀ ବଜାଇ ରାଜା ଆଣିଲା ଯେବଣ ଧାର
କାହାଳିଆ ଗଙ୍ଗା ନାମ ହୋଇଲା ତାହାର ।
ସାନଭଗ୍ନୀ ହିତେ ସେ ମୂର୍ତ୍ତିଯେକ ରହିଲା
ତାହାର ନାମ ସେ ଗଉରା ହୋଇଲା ।
ଭାଗୀରଥି ବୋଲଇ ଗୋ ଶୁଣ ମହାମାଈ
ଆଗ ହୋଇ ବାଟ ଜାଣି ଆସଇ ମୁହିଂ ଯାଇ ।୮୦
ଯେହି ଠାବରେ ମାଗୋ କ୍ଷଣେ ରହି ଥାସି
ମୋହୋର ଶପଥଟି କେଣିକି ନ ଯାସି ।
ସତ୍ୟ କରାଇଣ ନୃପତି ଛାଡ଼ିଗଲା
ଠାବକରି ପୁଣି ବାହୁଡ଼ି ଅଇଲା ।
ଦେଖିଣ ଗଙ୍ଗାଦେବୀ ବିସ୍ମୟ ମୁଖ ହୋଇ
ସିନ୍ଧୁ ସନ୍ନିଧକୁ ମୂର୍ତ୍ତିଯେକ ଗଲା ବୋହି ।
ତାହାର ନାମ ସେ ମହା ଭଇରୋବୀ
ତାହାର ଚରଣ ସେ ସୁରନର ସେବି ।
ଦେଖିଣ ନୃପତି ଯେ ହୋଇଲା ଚକିତ
କେବଣ କାରଣେ ମାଗୋ କଲୁସି ବିପରୀତ ।୯୦
ଗଙ୍ଗା ବୋଇଲେ ମୁଂ ଅଟଇ ଯୁବତୀ
ସ୍ୱଭାବେ ଚଞ୍ଚଳ ମୋର ଅଟଇ ପ୍ରକୃତି ।
ଯେକ ଠାବେ ହୋଇ ନ ପାରଇ ରହି
ତେଣୁ ସେ ଧାରେକ ଗଲା ଯେଣେ ବୋହି ।
ଯେବେ ତୋ ପିତୃକୁ ଆଇଲୁ ଯେବେ ଖୋଜି
ଆଗ ହୋଇକରି କଢ଼ାଅ ମହାରାଜି ।
ଶୁଣି ନୃପତିବର ଗଲା ଆଗ ସରି
ତାହାର ପଛେ ପଛେ ଗୋଡ଼ାଇ ସୁରେଶ୍ୱରୀ ।
ଯେବଣ ଠାବରେ ରୁହାଇ ରାଜା ଗଲା
ତେଣିକି ନ ଯିବ ବୋଲି ନିୟମ ଗଙ୍ଗା କଲା ।୧୦୦
ତାହାର ନାମ ଯେ ହୋଇଲା ନିମ ଘାଟ
ସ୍ନାହାନ କରନ୍ତେ ତହିଂ ଦିଶଇ ସ୍ୱର୍ଗ ବାଟ ।
ପବିତ୍ର ସ୍ଥାନ ଦେଖି ଇନ୍ଦ୍ର ତହିଂ ସ୍ନାହାନ କଲା
ଶଚି ସହିତେଣ ସେ ତୀର୍ଥରେ ନାହିଲା ।
ଇନ୍ଦ୍ର ଘରଣୀକି ଦେଖିଲା ସୁରେଶ୍ୱରୀ
ଅନେକ କୁଶଳ ପୁଛିଲା କୋଳ କରି ।
ଶଚି ବୋଇଲା ମୋ ଘେନିମାକ ସେବା
ପ୍ରସନ୍ନ ହୋଇ ମାଗୋ କଥାଯେ ମୋତେ ଦେବା ।
ଯେ ଥାନରେ ତୋହୋର ମୋହୋର ହୋଇଲା ଭେଟ
ଏ ଥାନର ନାମ ହୋଇବ ଇନ୍ଦ୍ରାଯେଣୀ ଘାଟ ।୧୦
ସନ୍ତୋଷ ହୋଇଣ ଗଙ୍ଗା ସନମତ କଲା
ଯେ ଘାଟ ଇନ୍ଦ୍ରାଯେଣୀ ନାମ ବୋଲାଇଲା ।
ତହୁଂ ଭାଗୀରଥି କଢ଼ାଇଲା ବାଟ
ପିତୃଲୋକଙ୍କର ହୋଇଲା ନିକଟ ।
ଦେଖିଲା ମଣ୍ଡୋଳି ଯେ ପୋଡ଼ଇ ପିତୃଗଣ
ଘୋଡ଼ା ଧୂଆଇଣ ଗଲା ଭାଗୀରଥି ମହାରାଣ ।
ଗଙ୍ଗାକୁ ବୋଇଲା ମାଗୋ ଅଗ୍ନିକି ଶାନ୍ତି କର
ଶୁଣିଣ ସୁରେଶ୍ୱରୀ ବୋଲଇ ଉତ୍ତର ।
ତୁ ଯେଣିକି ଯିବୁ ମୁଁ ତେଣିକି ସିନା ଯାଇ
ଆଣିଅଛୁ ତୁ ଯେ ମୋତେ ସତ୍ୟ କରାଇ ।୨୦
ତୁ ଯେବେ ଅଗ୍ନିରେ ଝାସିବୁ ରାୟେ ଆଗ
ତେବେ ସେ ପଶିବି ମୁହିଂ ତୋର ସଙ୍ଗ ।
ସ୍ୱର୍ଗେ ସୁରଗଣ ସେ କରନ୍ତି ବିଚାର
ଘୋଡ଼ା ଧୂଆଂଇଣ ସେ କେବଣ ଅଶ୍ୱଆର ।
ବ୍ରହ୍ମା ବୋଇଲେ ଯାହାର ପୋଡ଼ଇ ମଣ୍ଡୋଳ
ସେ ସେ ଘୋଡ଼ା ଧୂଆଇଂଟି ଭାଗୀରଥି ମହୀପାଳ ।
ଶୁଣିଣ ଦେବତାଯେ ସାଧୁ ସାଧୁ କଲେ
ଧନ୍ୟ ତୁ ନୃପତି ହୋ ବୋଲିଣ ବୋଇଲେ ।
ଯେଥୁ ଅନନ୍ତରେ ଦିଲ୍ଲୀପିର ସୁତ
ଅଗ୍ନିରେ ପଶିଲା ଯେ ଧରିଣ ଶୁଦ୍ଧ ଚିତ୍ତ ।୩୦
ଯହୁଂ ନୃପତିବର ପଶିଲାକ ଯାଇ
ସାଙ୍ଗେ ସାଙ୍ଗେ ଗଙ୍ଗା ପଶିଲାକ ଧସାଇ ।
ହୋଇଲେ ଶୀତଳ ଯେ ସଗର ରାଜା ପୋୟେ

ଦେବାସୁର ମୁନି ସାଧୁ ସାଧୁ କହେ ।
ରାଜା ଭଗୀରଥି ହୋଇଲା ବାହାର
କୂଳେଣ ବିଜୟେ କଲାକ ନୃପବର ।
ସାନେନ୍ଦେଣ ଉତସଲ୍ୟ ସୂର୍ଯ୍ୟବଂଶ ନୃପତି
ସ୍ୱର୍ଗେ ଦେବତାୟେ କୁସୁମ ବରଷନ୍ତି ।
ଦକ୍ଷିଣାବର୍ତ୍ତ ହୋଇ ଯେ ବହିଲା ସୁରେଶ୍ୱରୀ
ଦହନ ଲୋକଙ୍କୁ ଶୀତଳ ଯେ କରି ।୪୦
ହୋଇଲେ ମୁକତି ସଗର ରାଜା ସୁତ
ଯୋଗ ମୂର୍ତ୍ତିରେ ବସିଲେ ଦେବଙ୍କ ସଙ୍ଗତ ।
ଚକ୍ର ଆକାର ହୋଇ ବୁଲିଲେ ସୁରେଶ୍ୱରୀ
ଚକ୍ରଘାଟ ନାମ ହୋଇଲା ତାହାରି ।
ଭାଗୀରଥି କାର୍ଯ୍ୟ ଦେବୀ ନିର୍ଭାକଲା
ଦେବଙ୍କର ଅର୍ଥେ ପୂର୍ବକୁ ବହିଲା ।
ସାତକୋଶ ତହିଁକି ଅଟଇ ସିନ୍ଧୁକୂଳ
ଯାଇଣ ଗଙ୍ଗା ଯେ ଭେଟିଲେ ମହାଜଳ ।
ପତିର ସଙ୍ଗେ ଯହୁଁ ଭେଟ ସେ ହୋଇଲା
ସାଗର ସଙ୍ଗମ ବୋଲି ନାମ
ବୋଲାଇଲା ।୫୦
ତହିଁ ସ୍ନାହାନ କରନ୍ତି ଯେବଣ ପ୍ରାଣୀ
ଯେହି ଦେହେ ମୁକତି ପୁରାଣେ ବଖାଣି ।
ଗଙ୍ଗାର ସଙ୍ଗତେ ଯେ ସଙ୍ଗମ ତୀର୍ଥରାଜ
ଦର୍ଶନ କରନ୍ତେ ସକଳ ସୁଫଳ କାର୍ଯ୍ୟ ।
ମ୍ଳେଚ୍ଛ ମୁକତ ଯେ ପୁଣ୍ୟ ତନୁ ବହି
କଳା ପଦାର୍ଥ ଯେ ଶୁକ୍ଳ ମୂର୍ତ୍ତି ହୁଅଇ ।
ପରୀକ୍ଷ ନିମିତ୍ୟେ ଯେ ଅଇଲେ ଦେବଗଣେ
ରକତ ମନ୍ଦାର ପୁଷ୍ପ ମାଳେକ ଘେନିଣ ।
ଜଳେଣ ଖେପନ୍ତେ ସେ ହୋଇଲାକ ଶେତ
ଦେଖି ଦେବତାୟେ ହୋଇଲେ
ଉଷତ ।୬୦
ଗଙ୍ଗା ସାଗରେ ସେ କଳେଜ ସ୍ନାହନ
ସନ୍ତୋଷ ଚିତ୍ତ ଯେ ହୋଇଲେ ସୁରଗଣ ।
ସେ ସେ ଯେ ଗଙ୍ଗା ସପତ ସାଗର ପୂରିଲା
ତେଣୁ ସେ ଜଗତ ଆନନ୍ଦ ହୋଇଲା ।
ସଙ୍ଗମ ସ୍ଥାନେ ଅଛି ମାଧେବ ପ୍ରତିମା
ତାହାଙ୍କୁ ଦ୍ରଶନ କଲେ ନ ଯାଇ ଯମ
ସୀମା ।
କାର୍ତ୍ତିକେଶ୍ୱର ପାଷାଣ ଦିବ୍ୟକାୟେ
ଯେ ଯେହା ଦେଖେସେ କପିଳାସ ପାୟେ ।
ଯେବଣ ଠାବରେ ସେ ସଗର ପୁତ୍ରେ ଥିଲେ
ସେ ସେ ସପ୍ତଦୀପ ପୁରାଣେ
ବୋଲାଇଲେ ।୭୦
ସଙ୍କେତ ମାଧେବ ସଙ୍କେତ ହର ଅଛି
ଉତ୍ତର ଅଭିମୁଖେ ବିଜୟେ ଶିରୀବଛି ।
ଚକ୍ରଘାଟକଇ ଯେ ଶତେକ ଧନୁ ଅନ୍ତେ
ଶ୍ରୀୟାକୁ ଘେନି ତହିଁ ବିଜୟେ ଅନନ୍ତେ ।
ମୁକ୍ତି କୁଣ୍ଡଳେ ଯେ ମୁକ୍ତି ହୋନ୍ତି ପ୍ରାଣୀ
ଯେହୁ ତୀର୍ଥ କଥା ପୁରାଣ ବଖାଣି ।
ମୃତ୍ୟୁଜୀବମାନେ ସ୍ନାହାନ କଲେ ପ୍ରାଣ ପାଇ
ଅନ୍ତକାଳେ ସେ ପ୍ରାଣୀ ସ୍ୱର୍ଗକଇ ଯାଇ ।
ଗଙ୍ଗାକଇ ଯୋଜନେ ବୋଲନ୍ତି ଜାଣ ସ୍ୱର୍ଗ
ପ୍ରୟାଗକୁ ଦୁକୋଶ ଦେବା ନଳ ମାର୍ଗ ।୮୦
ଶ୍ରୀପୁରୁଷୋତ୍ତମକୁ କୋଶେ କହି
ହାତ ବଢ଼ାଇଲେଣ ସାହାସେଣ ପାଇ ।
ଗଙ୍ଗାଜଳେ ମଲେ ପ୍ରାପତ ପ୍ରାଣୀ
ନିଶ୍ଚୟେ ଏହୁ କଥା ପୁରାଣେ ବଖାଣି ।
ବାରାଣସୀ ପୁରେ ଜଳ ସ୍ଥଳେ ମୁକ୍ଷ
ଯହିଁ ବିଜେ କରିଛନ୍ତି ବିରୂପାକ୍ଷ ।
ସାଗରେ ସ୍ଥଳେ ଅନ୍ତରୀକ୍ଷେ ଯେବେ ମରି
ପ୍ରତକ୍ଷେ ଗତି ମୁକ୍ତି ପାଆନ୍ତି ନରନାରୀ ।
ସେ ଚକ୍ରଘାଟେ ଦିଅନ୍ତି ଯେବେ ଦାନ
କହିଲେ ନ ସରଇ ତହିଁର
ପୁଣ୍ୟମାନ ।୯୦
ସର୍ବଦେବେ ଯହିଁ ହୋଇଛନ୍ତି ଯେକ
ଗୋଷ୍ଠୀ
ତେବେ ସେ ଗଙ୍ଗା ବୋଲାଇଲା ତୀର୍ଥ
ଶ୍ରେଷ୍ଠୀ ।
କପିଳ ମହାମୁନି ସେ ଦଖିଣ ପାରୁଶେ
ବସିଣ ତପ କରଇ ସୁରେଶ୍ୱରୀ ପାଶେ ।
ସେ ଧାରର ନାମ ତାରଣ ଗଙ୍ଗା ହୋଇଂ
ଅନନ୍ତ ମୂରତି ହୋ ବହୁଅଛି ନଈ ।
ଶୁଣ ତୁ ଶ୍ରୀରାମ ହୋଇ ଯେଥିର କାହାଣୀ
ଯେହାର ମହିମା ଯେ ବିଧାତା ନ ଜାଣି ।
ଯେ ପୁଣ୍ୟ ନଦୀ ପୁଣ୍ୟ କରଇ ଶରୀରି
ତେଣୁ ସେ ନାମ ହୋଇଲା
ସୁରେଶ୍ୱରୀ ।୧୦୦
ସ୍ନାହାନ କରନ୍ତେ ଅପାବନେ ପାବେନୀ
ହୁଅନ୍ତି
ଲୋକପାବେନୀ ବୋଲି ତେଣୁ ସେ
ବୋଲାନ୍ତି ।
ବିଷ୍ଣୁର ପାଦେକୟେ ଥିଲା ଯହୁଁ ରହି
ବିଷ୍ଣୁପଦୀ ନାମ ତେଣୁ ନାମ ବହି ।
ଯେହାଙ୍କୁ ଶିରେ ଘେନିଣ ତ୍ରିପୁରାରି
ଗଙ୍ଗାଧର ନାମ ବହଇ ତ୍ରିପୁରାରି ।
ଯେହାକଇ ଆନ ତୀର୍ଥ ପଟାନ୍ତର ନାହିଁ
ଯେଥେ ତୁ ସ୍ନାହାନ କର ରଘୁସାଇଂ ।
ବିଶ୍ୱାମିତ୍ରର ଯେସନ ବଚନ ଶୁଣି
ଶ୍ରୀରାମ କରଯୋଡ଼ି ପଚରନ୍ତି ପୁଣି ।୧୦
ଗଙ୍ଗା ସାନ ଭୟେଣୀ ଅଟଇ ଉମା ଦେଈ
କାର୍ତ୍ତିକେଶ୍ୱର ତାର କେମନ୍ତେ ପୁତ୍ର ହୋଇ ।
ବିଶ୍ୱାମିତ୍ର ବୋଇଲେ ଶୁଣ ରଘୁନାଥ
ଦକ୍ଷର ଯାଗ ଧ୍ୱଂସିଣ ଶୂଳହସ୍ତ ।
ପାର୍ବତୀ ନ ପାଇଣ ବିକଳ ତ୍ରିପୁରାରି
ହେମବନ୍ତେ ଯାଇ ଅନେକ ତପକରି ।
ତାଡ଼କାସୁର ବୋଲି ସେ ଦଇତେକ ହୋଇ
ଭୋଗ କଲା ବଳେ ସେ ତିନିପୁର ମହୀ ।
ବ୍ରହ୍ମାର ଆଗେ କହିଲେ ଦେବେ ଯାଇ
ଜଗତ ସଂସାର ରଖ ତୁ ଗୋସାଇଂ ।୨୦
ତାଡ଼କାସୁର ବୋଲି ଅସୁରେକ ଉତପତି
ତ୍ରୈଲୋକ୍ୟ କ୍ଷୋଭ କଲାକ ନୃପତି ।
ବିଧାତା ବୋଇଲା ପଠାରହୋ କାଳ
ସଦାଶିବର ଯେବେ ହୋଇବ ଦୁଲାଳ ।
ସେ ସେ ଦଇତ୍ୟ କରିବ ବିନାଶ

ଶୁଣି ଅମରଗଣେ ସେ ହୋଇଲେ ହରଷ ।
ବୋଇଲେ ହର ଯେ ଅଛଇ ତପେ ବସି
କେ ତାହାର ଯୋଗ ଭାଙ୍ଗି ଆସ ନାଶି ।
ତେବେ ସେ ହେମବନ୍ତ ନନ୍ଦନୀକି ବିଭା
ହୋଇ
ପୁତ୍ର ଉପୁଜିଲେ ଦନୁଜ ନାଶ ହୋଇ ।୩୦
ଯେକ ସ୍ଥାନ ହୋଇ ବିଚରିଲେ ସୁର
କାମଦେବକୁ ଚାହିଁ ବୋଇଲେ କୁଶଧର ।
ତୁ ହୋ ମଦନ ଦେବକାର୍ଯ୍ୟ ପାଇଂ
ସଦାଶିବର ତପ ଭଗ୍ନ କର ଯାଇ ।
ତେବେ ସେ ହରଗଉରୀ ବିଭା ହୋନ୍ତି
ପୁତ୍ର ଉପୁଜିଲେ ଅସୁର ନାଶ ଯାନ୍ତି ।
ଶୁଣି କରଯୋଡ଼ି ବୋଲଇ ପଞ୍ଚଶର
ଭୋ ଦେବ ଦ୍ରୋହ କରିବି କେହ୍ନେ ଦେବ
ହର ।
ସୋମ ସୂର୍ଯ୍ୟ ବହ୍ନି ଯାହା ତିନି ନେତ୍ର
ଚାହିଁଲେଣ ଦହନ ହୋଇବ ମୋର
ଗାତ୍ର ।୪୦
ତୁମ୍ଭର ଆଜ୍ଞା କି ପାରିବି ମୁହିଁ ଭାଙ୍ଗି
ଯେ ମୋହୋର ଦେହ ହେଉ ପଛେ ଗଞ୍ଜି ।
ଯେତେ କହି ବ୍ରହ୍ମାକଇ କଲା ନମସ୍କାର
ହେମଗିରି ନିକଟେ ବିଜୟେ କାମବୀର ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଶୁଣ
ତହିଁ ତପେ ଶିବ ସେ ଅଛଇ ବସିଣ ।
ହେମର ନନ୍ଦିନୀ ଯେ ଉମା ତହିଁ ଅଛି
ବନ ବୁଲି ଅଇଲା ସେ ସମାନ୍ୟ ମୃଗାକ୍ଷୀ ।
ଶଙ୍କରକୁ ଦେଖି ତୋଷ ତାହାଙ୍କର ମନ
ବିଚରଇ ଯେ ମୋତେ ବରପଣେ
ଭାର୍ଜନ ।୫୦
ଶୁଦ୍ଧ ସ୍ଫଟିକ ଗୋକ୍ଷୀର ବର୍ଣ୍ଣ ଗାତ୍ର
ନିକଳଙ୍କ ଚନ୍ଦ୍ରମା ଜାଣି କାନ୍ତି ପବିତ୍ର ।
ବାସୁକି ନାଗ ଯେ ଅଛଇ କଣ୍ଠେ ହାର
ସର୍ବାଙ୍ଗେ ଅଛଇ ଯେ ବ୍ୟାଳ ଅଳଙ୍କାର ।
ଶାର୍ଦ୍ଦୂଳ ଚର୍ମ ଯେ ଅଛଇ କଟିତଟ

ଶିରରେ ଶୋଭାବନ ଦିବ୍ୟ ଚାରୁ ଜଟ ।
କର୍ଣ୍ଣରେ ମଣିକୁଣ୍ଡଳ ଶିରରେ ଦୁଜା ଶଶୀ
ଯୋଗତଳଯେ କରିଣଛନ୍ତି ବସି ।
ଉମା ବିଚରଇ ଯେ ଅପୂର୍ବ ପୁରୁଷ
ନିଷ୍ଚୟେ ଜାଣିଲି ଯେ ଅଟନ୍ତି
ଦିଗବାସ ।୬୦
ଜନ୍ମେ ଜନ୍ମେ ଯେ ଅଟଇ ମୋର ପତି
ମୁହିଁ ସେ ଯେହାର ଅଟଇ ଅର୍ଦ୍ଧଅଙ୍ଗ
ଯୁବତୀ ।
ଯେହାକଇ ଛାଡ଼ି ଯିବଇ ଆର କାହିଁ
ପିଅର ଜନନୀରେ ମୋହୋର କାର୍ଯ୍ୟ
ନାହିଁ ।
ଯେତେ ବୋଲି ଦେବୀ ହରର ନିକଟେ
ସେହି ତପ କଲା ଗଙ୍ଗ ନଦୀର ତଟେ ।
ଯେଥୁ ଅନନ୍ତରେ ଶୁଣ ତୁ ଶ୍ରୀରାମ
ତହିଁ ଯାଇ ପ୍ରବେଶ ହୋଇଲାକ କାମ ।
ସଦାଶିବ ଦେଖି ଯେ ପଞ୍ଚବାଣ ମାରି
ତପଭଗ୍ନ ହୋଇଣ ଚାହିଁଲେ
ତ୍ରିପୁରାରି ।୭୦
କପାଳ ନୟନେ ଯେ କାମକୁ ଦୃଷ୍ଟି ଦେଇ
ପାଉଂଶ କୁଢ଼ ହୋଇଲା କନ୍ଦର୍ପର ଦେହୀ ।
ଯହୁଂଧ୍ୟାନ ଭଗ୍ନ ହୋଇଲେ ତ୍ରିପୁରାରି
ଆଗେ ଦେଖିଲେ ଅଛି ଯେ ହେମବନ୍ତ
କୁମାରୀ ।
ରୂପ ଦେଖି ଦେବ ହୋଇଲେ ହରଷ
ପୁଛନ୍ତି ଶଙ୍କର କେ ତୋହୋର କୁଳ
ଗୋତ୍ର ।
ଉମା ବୋଇଲେ ମୁଂ ହେମବନ୍ତର ଦୋହିତା
ମେନକା ନାମେ ହାଦେ ଅଟଇ ମୋହୋର
ମାତା।
ଗଙ୍ଗା ଜ୍ୟେଷ୍ଠ ଭଗ୍ନୀ ଅଟଇ ମୋହରି
ଗଉରା ନାମ ମୁଂ ଯେ ବହଇ
ତ୍ରିପୁରାରି ।୮୦
କ୍ରୀଡ଼ା କରିତ ମୁଂ ଯେ ଅଇଲଇଂ ବନ

ତୋତେ ଦେଖି ମୋର ମୋହିତ ହେଲା
ମନ ।
ଯୋଗେ ଜାଣିଲି ତୁ ଅଟୁ ବିଶ୍ୱନାଥ
ଯେ ମୋହର ଠାକୁର ତୁ ଅଟୁ ଶୂଳହସ୍ତ ।
ହୁଅସି ବିଭା ନାଥ ମୁହିଁ ଯୁବାନାରୀ
ଶୁଣିଣ ସନ୍ତୋଷ ଯେ ହୋଇଲେ ତ୍ରିପୁରାରି ।
ରୁଦ୍ର ବୋଇଲେ ଯେ ଅଟଇ ପାର୍ବତୀ
ପ୍ରାଣର ଧାରଣା ଯେ ମୋ ଅର୍ଦ୍ଧଅଙ୍ଗ
ଯୁବତୀ ।
ବ୍ରହ୍ମାକଇ ସୁମରଣା କଲେ ଶୂଳପାଣି
ଅଇଲେକ ପିତାମହ ହଂସ ପିଠି ଚଢ଼ି ।୯୦
ସଦାଶିବ ବୋଇଲେ ଶୁଣସି ହୋ ବ୍ରହ୍ମା
ଯେ ମୋହୋର ପୂର୍ବର ରମଣୀ ଅଟଇ
ବାମା ।
ଅନେକ ଦୁଃଖ ପାଇଲି ମୁଂ ଯେହାର
ବିହୁନେ
ଯେତେ କାଳେ ଭେଟ ପାଇଲି କେବଣ
ପୁନ୍ୟେ ।
ତୁହୋ ପିତାମହ କରସି ମୋତେ ବିଭା
ଚାରୁ ସୁନ୍ଦେରୀ ଯେ ହୋଇଲାନି ଯୁବା ।
ଶୁଣି ବିଧାତାର ପ୍ରମୋଦିତ ଚିତ୍ତ
ଦେଶ କାଳ ବାକ୍ୟ ଯେ ବିଧି ଉଚିତ ।
ହର ଗଉରୀ କରଯୋଡ଼ିଣ କୁଶ ବାନ୍ଧି .
ହୁଅନ୍ତି ବେନି ଜନେ ପରମ
ସାନନ୍ଦି ।୧୦୦
ଆଶିଷ ଦେଇ ବ୍ରହ୍ମା ଫେଡ଼ଇ କୁଶଗଣ୍ଠି
ବିଭା ବିଧି ସାରିଗଲା ପରମେଷ୍ଠୀ ।
ଯହୁଂ ସେ ପିତାମହ ନିଜପୁର ଗଲା
ପାର୍ବତୀଙ୍କି ଚାହିଁ ଈଶ୍ୱର ବୋଇଲା ।
ଭୋ ସଖୀ ମୋତେ ଗୋ ରମଣୀ ଭୋଗଦେସି
ଅନେକ କାଳହୁଂ ମୁଂ ସୁରତି ଉପବାସୀ ।
ଉମା ବୋଇଲେ ସ୍ୱାମୀ ଆହାର ତୋର ନାହିଁ
ଅନେକ କାଳ ତପେ ଥିଲ ଯେ
ଗୋସାଇଂ ।
ବଳକ୍ଷିନ ହୋଇ ଅଛଇ ତୋହର ଦେହୀ

ଯେ କାଳେ ରମଣୀ କି କରୁଅଛୁ କେହ୍ନେ
ସ୍ନେହୀ ।୧୦
ନିର୍ବଳ ମନୁଷ୍ୟକି ପାରଇ ଗତି କରି
ଯେ ବଚନ ଶୁଣି ବୋଇଲେ ତ୍ରିପୁରାରି ।
ତୁ ଗୋ ସଖି ମୋତେ ମଣିଲୁ କି ସାନ
ମୁହିଂ ସେ ଅଟଇ ହାଦେ ଜଗତ ଈଶାନ୍ୟ ।
ଆହାର ବିହିନେ କି ମୋହୋର ବଳ ତୁଟଇ
ଯେ କଥା କି ସଖିରେ ତୋ ଚିତ୍ତକୁ ଆସଇ ।
ଆସ ଆସ ରମଣ କରିବା ପ୍ରାଣସହୀ
ଯେ ଯେଥେ ହାରଇ ସେ ତାହାର ଭୃତ୍ୟ
ହୋଇ ।
ହସି ଶୁଭ୍ରକେଶୀ ସନମତ କଲେ
ହସ୍ତ ଧରି ରୁଦ୍ର ଉମାକଇ ନେଲେ । ୨୦
ନଦୀର ତଟରେ ବିପୁଳ ଚାରୁବନ
ଦର୍ପଣ ଶିଳାରେ ବିଜୟେ ବେନିଜନ ।
ରତି ଆଚ୍ଛାଦିଲେ ଲଜା ଭାବ ଛାଡ଼ି
ଯେକଜଇ ଆରେକ ବିବିଧ ଗତି ଭିଡ଼ି ।
କରନ୍ତି ରମଣ ସେ ନ ଘୁଚନ୍ତି କେହି
ଯେମନ୍ତେଣ ଅନେକ ଦିବସ ଗଲା ବହି ।
ଦେବ ବରଷେଣ ଶୟେ ବରଷ ଗଲା
ଶଙ୍କର ଗିରିଜାଙ୍କର ଶୃଙ୍ଗାର ନ ସରିଲା ।
ପୃଥିବୀ କମ୍ପିଲା ଡରିଲେ ଦିଗପାଳେ
ଭାଳିଣ ଦେବତାଏ ହୋଇଲେ
ଯେକମେଳ ।୩୦
ବ୍ରହ୍ମା ସହିତେଣ ଅଇଲେ ଦେବଗଣ
ସ୍ତୁତି କରନ୍ତି ଯେ ହୋଇଣ କାର୍ପୁନ୍ୟ ।
ରଖ ସଦାଶିବ ରମଣୀ ଭୋଗ ଲେଛ
ସଂସାର ଦହିଜ ଯେ ହୋଉଅଛି ବିରୂପାକ୍ଷ ।
ଶୁଣିଲା ସଦାଶିବ ଦେବଙ୍କର ବାଣୀ
ରତିଭୋଗ ଛାଡ଼ିଲେ କାକୁସ୍ତ ବାଣୀ ଶୁଣି ।
ବୀର୍ଯ୍ୟ ଉଛୁଳିଣ ପଡ଼ିଲାକ ମହୀ
ପୃଥିଦେବୀ ଉଚ୍ଚସ୍ୱରେଣ ରୋଦଇ ।
ତୁମ୍ଭେ ଦେବତାୟେ କରୁଅଛ ଅନୀତି
ହର ବୀର୍ଯ ବହିବାକୁ କି ମୁଂ ଯେ
ଶକତି ।୪୦

ପାରିଲେ ଆନଠାରେ ଥୁଅ ଯେହା ନେଇ
ରାସାନ୍ତଳେ ପଡ଼ିବ ମୋହର ଦୋଷ
ନାହିଂ ।
ପୃଥୀର ଆକୁଳ ଦେଖି ଜଗତର ପିତା
ଅଗିନିକି ରାଇଂଣ ଯେ ବୋଇଲା ବିଧାତା ।
ପୃଥୀ ନ ସହଇ ହରର ବୀର୍ଯ ଭାର
ବେଗକରି ସଂଘର ତୁ ସଂସାର ରକ୍ଷାକର ।
ଅଗ୍ନି ବୋଇଲା ମୁଂ ପାରିବିଟିକି ବହିଂ
ଦେଖୁ ଦେଖୁ କାମ ହୋଇଲାକ ଦହିଂ ।
ତୋହର ଆଗ୍ୟାଂ ତ ନ କରିବି ଆନ
ଯେତେ ବୋଲି ବୀର୍ଯ ଧଇଲା
ହୁତାଶନ ।୫୦
ପାର୍ବତୀ ବିଚାରଇ ଯେତ ସାର ବୀର୍ଯ
ମୋହର ଗର୍ଭେ ଯେବେ ରହନ୍ତା ଯେ
ତେଜ ।
ପୁତ୍ର ପ୍ରସବନ୍ତି ମହାଦେବ ସରି
ଦେବତାଏ ଆସି ମନ୍ଦକୃତ୍ୟ କରି ।
ଯେତେକ ବୋଲି ଦେବୀ ମନେ
କୋପକଲେ
ସୁରଗଣଙ୍କର ମୁଖ ଚାହିଂଣ ବୋଇଲେ ।
ପୁତ୍ରବନ୍ତା ଗୁଣ ଯେ ଭାଙ୍ଗିଲ ତୁମ୍ଭେ ଆସି
ନାରଖାର କଲ ଯେତ୍ତେକ ତେଜରାଶି ।
ନିଜ ପତିର ବୀର୍ଯ ମୋ ଗର୍ଭରେ ରହନ୍ତା
ପୁତ୍ର
ଯେ ମୋହର ଗର୍ଭ ହୁଅନ୍ତା ନା ପବିତ୍ର ।୬୦
ତୁମ୍ଭର ଭାରିଜାଙ୍କ ରମଣେ ପୁତ୍ର ନୋହୁ
ଯେ ମୋହୋର ବଚନେ ଅସ୍ତୁବାଣୀ
ହୋଉ ।
ଶୁଣିଣ ଦେବତାୟେ ହୋଇଲେ ମଉନ
କରପତ୍ର ଯୋଡ଼ିଣ ବୋଲଇ ହୁତାଶନ ।
ତୁମ୍ଭର ବଚନ ତ ନ କରଇ ଆନ
ମୋହୋର ଶ୍ୱରୀର ହୋଇଲା ଦହନ ।
କର ପ୍ରତିକାର ଯେବେ କରିବଇଂ କିସ
ନୋହିଲେଣ ପ୍ରାଣ ହୋଇବଟି ବିନାଶ ।

ବ୍ରହ୍ମା ବୋଇଲା ଯେ ଅଗ୍ନିର ଉତ୍ତରେ
ଗଙ୍ଗାର ଗୋଚରେ ତୁ ଦେସି
ବୈଶ୍ୱାନରେ ।୭୦
ଶୁଣିଣ ହୁତାଶନ ସୁରେଶ୍ୱରୀକି ଦେଲା
ବ୍ରହ୍ମା ବୋଇଲେ ବୋଲିଣ ସମର୍ପିଲା ।
ଗଙ୍ଗାଦେବୀ ବୋଇଲା ପାରିବିକି ମୁହିଂ ଧରି
ଯେ ସେ ତେଜ ବୀର୍ଯ ସ୍ୱୟେଂ ତ୍ରିପୁରାରି ।
ଦେବଙ୍କର ଆଜ୍ଞା ମୁଁ ପାଳିବି ଅବଶ୍ୟ
ନୋହିଲେ ନା ମୋର ହୋଇବ ନା ଦୋଷ ।
ଯେତେ ବୋଲି ଦେବୀ କର ଯେ ପ୍ରସାରି
ଘେନିଲାକ ବୀର୍ଯ ସଙ୍କୁଚ ମନେ ଧରି ।
ମୁଖେ ଭରିଣ ଯେ ଭୋଜନ କଲେ ବାଳୀ
ପେଟେ ପଡ଼ନ୍ତେଣ ହୋଇଲା
ଅନ୍ତରାଳି ।୮୦
ଦେହ ବୁଲାଇଣ ଯେ ଅଇଲା ଉପଚିଆଇ
କଣ୍ଠତଟେ ବୀର୍ଯ ହୋଇଲାକ ଯାଇ ।
ମୁଖେ ଉଦ୍‌ଗାରି ଯେ ପକାଇଲା ମହାରସ
ଉଛୁଳି ପଡ଼ିଲା ନ ରହିଲା ଗର୍ଭବାସ ।
ବିକଳେଣ ଗଙ୍ଗା ଯେ ଆଞ୍ଜୁଳି କରିଧରି
କପିଳାସ କନ୍ଦରକୁ ପକାଇଲା ତୋଳି ।
ବିଛୁଳି ହୋଇଣ ଯେ ପଡ଼ିଲାକ ବୀର୍ଯ
ସେ ସେ ପାଷାଣ ଖଣ୍ଡ ଭିନ୍ନେ ଭିନ୍ନେ
ତେଜ ।
ଅଷ୍ଟଧାତୁ ତହୁଂ ହୋଇଲା ଉତପତି
କାଚ ହେଙ୍ଗୁଳା ହରିତାଳ ମୂର୍ତ୍ତି । ୯୦
ମଣିଶିଳ ଅଂଶେ ପାରାଶିଳା ଯୁତ
ସ୍ୟଟିକ ଘେନିଣ ଅନେକ ମୂର୍ତ୍ତି ଜାତ ।
ସେ ସେ ମହାରସ ଗିରିବରେ ପଡ଼ି
ଠାବେ ଠାବେ ହୋଇଣ ସେ ଅଷ୍ଟଧାତୁ
ଜଡ଼ି ।
ଦେବେ ବିଚାରିଲେ କରିବା ବୁଦ୍ଧି କିସ
ଅକ୍ଷୟେ ମହାବୀର୍ଯ ହେଉଅଛି ବିନାଶ ।
ବ୍ରହ୍ମା ବିଚାରିଣ ଯେ ଷଡ଼ କୃତ୍ତିକାକୁ ରାଇ
ବହୁତ ତୁଷ୍ଟି ଧାତା କଲା ତାଙ୍କୁ ଚାହିଂ ।

ବୋଇଲେ ଜଗତ ଯେ ତୁମ୍ଭେ ରକ୍ଷାକର
ହରବୀର୍ଯ୍ୟ ନେଇ ଗର୍ଭରେ ତୁମ୍ଭେ
ଭର ।୧୦୦
ଯେହାର ଜନମ ହୋଅନ୍ତେ ତାଡ଼େକା
ଜୀବହତ
ତୁମ୍ଭେ ସେ ହୋଇବ କୁମାରଙ୍କର ମାତ ।
ପୂର୍ବେଣ ଶାପ ଯେ ତୁମ୍ଭକଇ ଅଛି
ସପତରଷିଙ୍କର ଭାରିଯା ହୋଇଥିଲ
ପଙ୍କଜାକ୍ଷି ।
ଅଗ୍ନି ତୁମ୍ଭକଇତ କପଟେ ଭୋଗ କଲା
ନିଜ ନାରୀ ବୁଦ୍ଧିରେ ତୁମ୍ଭନ୍ତ ଏହା କଲା ।
ତାହା ଜାଣି ଭ୍ରଥାଏ ତୁମ୍ଭନ୍ତ ଶାପ୍ୟ ଦେଲେ
ଯାଅ ବୋଲି ପୁଣ ଅନୁଗ୍ରହ କଲେ ।
ବୋଇଲେ ହରବୀର୍ଯ୍ୟ କରିବ ସମ୍ଭାଳଣ
ତେବେ ସେ ତୁମ୍ଭେ ଗୋ ପାଇବ
କାରଣ ।୧୦
ଯେ ଅଗ୍ନି ମାୟାରେ ଯେ ମନ୍ଦକର୍ମ କରି
ଯେ ଯାଇ ତୁମ୍ଭର ପୁତ୍ର ହୋଉରେ ସୁନ୍ଦରୀ ।
ତେଣୁ ସେ ହରର ରମଣର କାଳେ
ବୀର୍ଯ୍ୟ ପତନ ହୋଇଲା ଅଗ୍ନିର ବେଳେ ।
ତେଜମୟେ ଧାତୁ କେହି ସଂହରି ନପାରିଲେ
ପୃଥୀ ହୁତାଶନ ଗଙ୍ଗା ଭୟେ କଲେ ।
କପିଳାସ କନ୍ଦରେ ଯେବେ ପଡ଼ିଅଛି
ତୁ ଯାଇ ସମ୍ଭାଳ ଯେ ହୋଉ ତୋହୋର
ବଛି ।
ବ୍ରହ୍ମାର ବଚନେ ଷଡ଼ କୃତ୍ତିକାଏ ଗଲେ
ସେ ସେ ମହାରସ ଗର୍ଭରେ ଧଇଲେ ।୨୦
ତତକ୍ଷଣେ ପୁତ୍ର ସେ ପ୍ରସବିଲା ନାରୀ
ଆଦିତ୍ୟ ଅଇଲାକି ତିମିରି ବିଦାରି ।
ଛଡ଼ମୁଖ ସୁନ୍ଦର ଦ୍ୱାଦଶ ଭୁଜ ଅଛି
ଦେଖି କୃତିକାୟେ ନ ପାରନ୍ତି ମୂର୍ଚ୍ଛି ।
କୋଳରେ ଧରି ପୁତ୍ର ମୁଖେ କ୍ଷୀର ଦେଲେ
ଏ ବଚନ ଶୁଣି ଶ୍ରୀରାମ ବୋଇଲେ ।
ଛଡ଼ କୃତ୍ତିକାୟେ କି ଅଟନ୍ତି ଏକ ଦେହ
କିମ୍ବା ଷଡ଼ ଶ୍ୟରୀର ସଞ୍ଚପି ମୋତେ କହ ।
ଏକା ଜଣକ କି ଗର୍ଭରେ ଧଇଲା
କିଅବା ଛଡ଼ଙ୍କର ଗର୍ଭରେ ରହିଲା ।୩୦
ଛଡ଼ ମୁଖ ହୋଇ ହୋଇଲେ କିମ୍ବା ଜାତ
ଆବର ବିଶେଷେ ଯେ ହୋଇଲା
ବାରହସ୍ତ ।
ମୁନି ବୋଲନ୍ତି ହୋ ଶ୍ରୀରାମଚନ୍ଦ୍ର ଶୁଣ
କୃତ୍ତିକାକୁ ଚାହିଁ ଯେ ପେଷିଲେ
ଦେବଗଣ ।
ବ୍ରହ୍ମାର ଆଜ୍ଞାରେ ସେ ଅଇଲେ ଷଡ଼ନାରୀ
ବୀର୍ଯ୍ୟପାନ କଲେ ଯେ ଷଡ଼ଭାଗ କରି ।
ଷଡ଼ଗର୍ଭୁ ଜାତ ହୋଇଲେ ଷଡ଼ପୁତ୍ର
ଯେକ କରି ନେଇ ଥୋଇଲେ ପଦ୍ମନେତ୍ର ।
ଚୁମ୍ବକ ଲୁହାପଥରେ ଯେହ୍ନେ ଲାଗଇ
ସେ ଛଡ଼ ଶ୍ୟରୀର ହୋଇଲା ଯେକଇ ।୪୦
ତେଣୁକରି ପୁତ୍ର ହୋଇଲା ଛଡ଼ ଶିର
କୁମାର ନାମ ତାର ହୋଇଲା ପ୍ରଚାର ।
ଦ୍ୱିତୀୟ ଦିବସ ହୋଅନ୍ତେଣ ପୁତ୍ର
ବିଧାତା ଆଣିଣ ଯେ ଦେଲା ଦେବ ଶହସ୍ର ।
ହେମବନ୍ତର ସେ ଅଟଇ ଯହୁଁ ନାତି
ମୟୂରେକ ଆଣି ଦେଲା ଗିରିପତି ।
ତାହାର ପିଠିରେ ଆରୋହନ୍ତି ବୀର
କି ଜାଣି ଦିଶଇ ଦୂତୀ ଚକ୍ରଧର ।
ଦେବତାୟେ ଆସି ଅଭିଷେକ କଲେ
ଅମୋହ ଶକତି ଆଣିଣ ସମର୍ପିଲେ ।୫୦
ତେଣୁ ସେ ନାମ ଅଟଇ ଶକ୍ତିଧର
ଦେବ ସନ୍ୟେ ସେନାପତି କଲେ
ବେଦବର ।
ଅନେକ ସ୍ତୁତି ଯହୁଁ କଲେ ସୁରଗଣ
କୁମାର ବୋଲଇ ତୁମ୍ଭେ ସର୍ବଦେବ ଶୁଣ ।
କେବଣ କାର୍ଯ୍ୟ ତୁମ୍ଭର କରିବଇଂ କହ
ଆଗ ହୋଇ ବଚନ କହନ୍ତି ପିତାମହ ।
ତାଡ଼କାସୁର ଯେ ଦଇତ ମହାବଳ
ତାହାର ଭୟେ ହାଦେ କମ୍ପନ୍ତି ଦିଗପାଳ ।
ସ୍ୱର୍ଗେ ସୁରପତି ନ ପାରନ୍ତି ରହି
ତାଡ଼କାର ଭୋଗ ହୋଇଲା ସ୍ୱର୍ଗମହୀ ।୬୦
ଶୁଣିଣ କୁମର କଲେକ ସନମତ
ଦତ୍ୟର ଉପରକୁ ଧାଇଂଲା ତୁରିତ ।
ଦେବସନ୍ୟ ଘେନି ବହୁତ ଯୁଦ୍ଧ କଲେ
ଯେ ଯାହାର ଶସ୍ତ୍ର ସେ ଘେନିଣ ମାଇଲେ ।
ବହୁତ ସମର କାର୍ତ୍ତିକେଶ୍ୱର କଲା
ଦେବ ବରଷେ ଶଏ ବରଷ ଯୁଝିଲା ।
ଶକତି ଘେନି ବୀର ମାଇଲା କୋପଭରେ
ପଡ଼ଲା ଦତ୍ୟର ହୃଦୟ ଉପରେ ।
ବୁକୁଫୁଟି ପିଠକି ହୋଇଲା ବାହାର
ଜ୍ଞାନ ହାରିଣ ସେ ପଡ଼ିଲା ନିଶାଚର ।୭୦
ପ୍ରାଣଗଲା ତାର ପାର୍ଥିବ ଦେହ ଲେଛି
ଦେଖି ଦେବତାୟେ କୁମରକୁ ପୂଜି ।
ଜୟ ଶଙ୍ଖ ବଜାଇଣ ସ୍କନ୍ଦ ତହୁଁ ଚଳିଗଲା
କପିଳାସେ ମାତା ପିତାଙ୍କୁ ଦେଖିଲା ।
ନମସ୍କାର କରି ପିତାର ପାଦେ ପଡ଼ି
ଜନନୀକି ଦେଖି କୋଳରେ ଯାଇ ବସି ।
ହର ଗଉରୀ ପୁତ୍ରକୁ ବହୁତ ସ୍ନେହ କରି
ଉତ୍ତର ଦ୍ୱାରେ ତାକୁ ଦ୍ୱାରପାଳ ବରି ।
ଶୁଣସି ଭବାନୀ ଗୋ କହନ୍ତି ସଦାଶିବ
ଯେ ସର୍ବ କଥା କଉଶିକ ରାମକୁ
କହିବ ।୮୦
ରାଘବ ସନ୍ତୋଷ ଯେ ହୋଇଲେ ଯେହା
ଶୁଣି
ଗଙ୍ଗାରେ ସ୍ନାହାନ କରନ୍ତି ରଘୁମଣି ।
ଧନ୍ୟ ଯେ ନଦୀ ବାବୁ ଧନ୍ୟ ତାର ରୂପ
ପୃଥୀ କି ପରିହର ଝିନ ବସ୍ତ୍ର ରୂପ ।
ମଧ୍ୟେ ଯେ ଶୁକ୍ଳ ହିଂ ଦିଶେ ସୁରେଶ୍ୱରୀ
କେଜାଣି ପିଙ୍ଗଳ ଦିଶଇ ହରେ ହରି ।
ପିନ୍ଧିଣ ଅଛଇ ଯେ ପୃଥ୍ୱୀ ଦେବୀ ତାହା
ଆପଣେ ମନକୁ ପ୍ରଶଂସଇ ଉଛାହା ।
ଶାଢ଼ୀର ଖଞ୍ଜାଣୀକି ପାଟତଣ୍ଡୀ ହୋୟେ
ଦୁଇ ତଟ ବାଲି ସୁବର୍ଣ୍ଣ ରଜ ପ୍ରାୟେ ।୯୦

ଧୀର ଧୀର ହୋଇ ବହନ୍ତି ଲହରୀ
ପାଟ ଜାଲି ବୋଲି ପଟାନ୍ତର କରି ।
ନାନା ପକ୍ଷୀ ଜନ୍ତୁ କ୍ରୀଡ଼ନ୍ତି ସେ ଜଳେ
ଫୁଲ ପଡ଼ିଲେ କି ଶାଢ଼ୀର ଅଞ୍ଚଳେ ।
ପବନହୁଂ ବେଗେ ସୋହୋତ ଖରତର
କେଢାଣି ପଟାନ୍ତର ଦିଶଇ ପରହର ।
ସାଧୁ ଧବଳମୁଖୀ ଧବଳ ତନୁ ଦିଶି
ତହିଂ ସ୍ନାହାନ ଯେ କରନ୍ତି ରଘୁଶିଷି ।
ବିଶ୍ୱାମିତ୍ର ମୁନି ଯେ ସକଳ ଋଷିଗଣ
ସୁରନଦୀ ଜଳେ କରନ୍ତି ସ୍ନାହାନ । ୧୦୦
ନିତ୍ୟକର୍ମ ସାରି ନାବରେ ବସନ୍ତି
ଦକ୍ଷିଣ ତଟକଇ ପାରି ହୋଇଯାନ୍ତି ।
ନାବୁ ଓହ୍ଲାଇଣ ବିପୁନ୍ୟେ ପରବେଶ
ମୁହିଂ ବଳରାମ ଶ୍ରୀରାମର ଦାସ ।
ଯେଥୁଅନନ୍ତରେ ବିପୁଳ ବନେ ପଶି
ଶ୍ରୀରାମ ଲକ୍ଷଣ ସହିତେ ମହଋଷି ।
ଦେଖିଲେ ତପୀଗଣେ ତପ କରୁଛନ୍ତି
ଶ୍ରୀରାମ ଲକ୍ଷଣ ତାଙ୍କୁ ନମସ୍କାର କରନ୍ତି ।
କଲ୍ୟାଣ ପାଇଣ ତହୁଂ ଚଳିଗଲେ
ବୈଶାଳୀ ରାଜ୍ୟେ ଯାଇ ପ୍ରବେଶ
ହୋଇଲେ ।୧୦
ଦେଖିଲେ ସେ ଦେଶ ଅତି ଶୋଭାବନ
ବିଚିତ୍ର ଚିରାଳ ଉଡ଼ନ୍ତି ଛନଛନ ।
କାହିଂ ସୁବର୍ଣ୍ଣ କଳସ କାହିଂରେ ଯେ କାଚ
ବିଚିତ୍ର ଲେଖନ,ଘର ଦିଶଇ ସୁସଞ୍ଚ ।
ତୋଟା ଉପବନ ମଣ୍ଡପ ଜଗତୀ
କୂପ ବାମ୍ପୀ ନଦୀ ପୋଖରୀ ଅଛନ୍ତି ।
ଦେଉଳ ଅଟାଳି ଯେ ମେଢ଼ ମେଘନାଦ
ସୁସ୍ୱର ଗାୟନ ମଧୁର ଚାରୁ ବାଦ୍ୟ ।
ପୁର ଶୋଭାବନ ଗହଳ ହାଟ ବାଟ
ରଥ ଗଜ ଅଶ୍ୱ ଚତୁବିଧି ଥାଠ । ୨୦
ମନୋହର ଦେଖି ପୁଚ୍ଛନ୍ତି ଶ୍ରୀରାମ
ଭୋ ମୁନି କହ ଯେ ନଗ୍ରର କିସ ନାମ ।
ରଘୁନାଥଙ୍କର ଯେସନ ବାଣୀ ଶୁଣି
କହନ୍ତି ଗାଧିସୁତ ଅମୃତ ରସ ବାଣୀ ।
ଶୁଣ ତୁ ଶ୍ରୀରାମ ହୋ ରଘୁବଂଶ ନାହା
ମୋହୋର ଆଗରେ ଇନ୍ଦ୍ର କହିଅଛି ଯାହା ।
ତାହା ମୁଁ ତୋହୋ ଆଗେ କହଇ ରଘୁସାଇଂ
ଦକ୍ଷ ପ୍ରଜାପତିଙ୍କର ଷାଠିଯେ ଦୋହିତା ଜନମ
ହୋଇ ।
କଶ୍ୟପ ଋଷିଙ୍କି ବିଭାଯେ କନ୍ୟା ଦେଲେ
ଧାର୍ମିକ ବୋଲିଣ ତାକୁ ଦୋହିତା ଦାନ
କଲେ ।୩୦
ଦିତି ଅଦିତି,ଯେ ଉତ୍ତମ ବେନି ନାରୀ
ଦେବେ ଅସୁରେ ଯେହାଙ୍କ ଗର୍ଭୁ ଅବତରି ।
ଦିତିର ଗର୍ଭୁ ଯେ ଦେବମାନେ ଜାତ
ଅଦିତିର ଗର୍ଭୁ ହାଦେ ଦଇତେ ସମ୍ଭୂତ ।
ବୈମାତ୍ରି ଗୁଣେ ସେ କରିଥାନ୍ତି କଳି
ପୁଣି ବିଚାରନ୍ତି ହୋଇ ଯେକ ମେଳି ।
କ୍ଷୀର ସମୁଦ୍ର ଯେ ମନ୍ଥିବା ଚାଲ ଯାଇ
ବ୍ରହ୍ମା ବିଷ୍ଣୁ ରୁଦ୍ର ଯେ ଭାଳିଲେ ସର୍ବେ
ଥାଇଂ ।
ଅନେକ ଅପୂର୍ବ ଅଛଇ ସାର ଆୟେ
ଆସ ଆସ ସମେସ୍ତ ହେଂ ଯିବା
ତହିଂଯାୟେ ।୪୦
ଯେତେ ବୋଲି ଦେବେ ଦଇତେ ମେଳି
ହୋଇ
ମନ୍ଦର ଗିରି ତଳେ ମିଳିଗଲେ ଯାଇଂ ।
ବୋଇଲେ ଯେହା ଘେନି ମନ୍ଥିବା ସାଗର
ସଭିଏଂ ହୋଇଣ ଓପାଡ଼ିବା ଗିରିବର ।
ନଟଳଇ ପରବତ ଦୁତୀୟ ମେରୁ ଜାଣି
ସଭିଯେ ହୋଇ ଧଇଲେ ନିବିଡ଼େ କଷି
ଟାଣି ।
ପୁଣି ହୁକା ହୁକା ହୋଇଣ ଟାଳନ୍ତି
ବିଶ୍ୱାସ ଧରିଣ ମନ ନ ଭାଙ୍ଗନ୍ତି ।
ଭୂମି ଭଡ଼ା ଦେଇ ଲୋଡ଼ିଲେ ଯହୁଂ ତୋଳି
ସବୁଙ୍କରି ମୁଖରୁ ରୁଧିର ନିକିଳି । ୫୦
ବ୍ରାହ୍ମା ବୋଇଲେ ବାସୁଦେବ ଚାହିଂ
କିମ୍ପାଇଂ ତୁନି ଯେ ହୋଇଲ ଗୋସାଇଂ ।
ଉଭର ମୁଖେ କି ପର୍ବତ ହୋୟେ ତୋଳି
ତୋହୋର ନ ଉପାଡ଼ିଲେ କେ ଉପାଡ଼ିବ
ବନମାଳୀ
ହରଇ ଅନେକ ସେ ବୋଇଲେ ହରିଙ୍କି
କିସପାଇଂ ଓପ୍ରଧ ହୋ କର ତୁ ଗିରିକି ।
ନ କର ହେଳା ଦେବ ନ ଦେଖ
ଯେହାଙ୍କର ଦୁଃଖ
ବ୍ରହ୍ମା ରୁଦ୍ର ଚାହିଂ ହସନ୍ତି ପଦ୍ମମୁଖ ।
ହରି ବୋଲନ୍ତି ଯେ ପାରନ୍ତି ନା ପୁଣି
କେ କାହାର ବଳ ଅଛଇ ହୋ ଜାଣି ।୬୦
ଯେକକୁ ଆରେକ ଅଟନ୍ତି ମହାବୀର
ମିଶାମିଶି ହୋଇଅଛନ୍ତି ସୁର ଅସୁର ।
ଯେକେ ଯେକେ ଯହୁଂ ପାରନ୍ତି ପୃଥିଧରି
ଆଜ ସେ ପ୍ରାକର୍ମ ହୋ ଜାଣିମା ସବୁଙ୍କରି ।
ଶୁଣିଣ ସମସ୍ତେ ହୋ ଶିରେ କର ଦେଲେ
ଭୋସ୍ୱାମୀ ନାରାୟେଣ ରଖସି ବୋଇଲେ ।
ଦେବ ଅସୁରଙ୍କର ଆକୁଳ ଭାବ ଯହୁଂ
ବାମକରେ ମନ୍ଦର ଧଇଲେ ଦେବ ତହୁଂ ।
କିଆ କଢ଼ ଯେହ୍ନେ ଉପାଡ଼ଇ ମତ୍ତହସ୍ତୀ
ପର୍ବତ ଉପାଡ଼ିଲେ ଦେବ ଶିରୀପତି ।୭୦
ଦେଖିଣ ପ୍ରଶଂସା କଲେ ସର୍ବଜନ
ସାଧୁ ସାଧୁ ବୋଲି ଉଠିଲା ବଚନ ।
ଯହୁଂ ମନ୍ଦର ଗିରି ଉପାଡ଼ିଲେ ହରି
ସଭିୟ ହୋଇ କନ୍ଧେ ନେଲେ ତାହାଙ୍କରି ।
କ୍ଷୀର ସମୁଦ୍ର କୂଳରେ ଥୋଇଲେ
ବାସୁକି ନାଗ ହକାରି ବ୍ରହ୍ମା ଯେ
ବୋଇଲେ ।
ତୁହୋ ମହା ଅହି ଯେଥକୁ ରଜୁ ହୁଅ
ଦେବ ଦାନବଙ୍କ ତହିଂ ପୂଜା ପାଅ ।
ବାସୁକି ବୋଇଲେ ଯେ ମନ୍ଦର ମହାଗିରି
ଧରିତ ଶକତି କି ହୋଇବ ମୋହରି । ୮୦
ଧାତା ବୋଇଲା ତୁ ମହୀ ଭାରା ବହୁ
ଯେବେ ପୁଣି ଆମ୍ଭ ବୋଲେ ଯେହା କହୁ ।

ତୋ ତହୁଁ ସାମରଥ ଅଛି କେହୁ ଆନ
ପୃଥ୍ୱ ଧରିବାକୁ ତୁହି ସେ ଭାର୍ଜନ ।
ଆସ ଆସ ଯେବେ ଦେବ କାର୍ଯ୍ୟ କର
ଶୁଣିଣ ସନ୍ତୋଷ ଯେ ହୋଇଲା ମହୀଧର ।
ଦେବ ଦାନବେ ମିଳି ଗିରି ଟୋଳି ଧଇଲେ
ରଜ୍ଜୁ ପ୍ରାୟେ କରି ବାସୁକି ବେଢ଼ାଇଲେ ।
ଗିରିପଛଗିରି ମୁଣ୍ଡି ମନ୍ଥିବାକୁ କରି
ଖୁଆ ପ୍ରାୟେ କରି ଟୋଳିଣ ତାହା ଧରି ।୯୦
ନାଗର ଲାଞ୍ଜ ଯାଇ ଧାଇଲେ ସର୍ବସୁର
ମୁଣ୍ଡ ଆଡ଼ ଧରିଅଛନ୍ତି ଅସୁର ।
ଦହି ମଥିବା ପ୍ରାୟେକ ମନ୍ଥନ୍ତି
ହକାହକି ହୋଇ ରେଜୁ ଓଟାରନ୍ତି ।
ସମୁଦ୍ର ତଳେ ଯାଇ ପଡ଼ିଲେ ପରବତ
କୂର୍ମ ରୂପେ ପିଠି ପାତିଲେ ପଦ୍ମନେତ୍ର ।
ସେ ସେ ହୋଇଲା ଦଧି ଭାଣ୍ଡର ଖପର
ନବୁଡ଼ି ବିଶ୍ରାମ ସେ କଲାକ ମହୀଧର ।
ଦେବଙ୍କର ସଙ୍ଗେ ସ୍ୱାମୀ ମୂର୍ତ୍ତିଯେକ ହୋଇ
ଦଉଡ଼ିୟେ ଧରିଣ ଯେ ଉଠିଲେ
ଶ୍ରୀୟାସାଇଁ ।୧୦୦
ପୁଣି ମଥନ୍ତେ କୁରୁମ ପିଠିଲାଗି
ଉପରକୁ ପର୍ବତ ଉଠିଗଲାକ ବେଗି ।
ପୁଣି ଦାମୋଦର ସେ ପୁରୁଷକ ହୋଇ
ମହାଗିରି ଉପରେ ବସିଲେ ଗୋସାଇଁ ।
ତେବେ ସେ ସୁସ୍ଥ ଯେ ହୋଇଲା ଖୁଆଦଣ୍ଡ
ଦେବ ଦାନବ ସେ ମଥନ୍ତି ପରଚଣ୍ଡ ।
ରିକ୍ଷ ନୃପତି ଯେ ଜମ୍ୱେବ ତହିଁ ଥାଇ
ତାହାକଇ ବ୍ରହ୍ମା ବୋଇଲାକ ରାଇ ।
ଯେତେ ଦୂରେ ହୋ ଅଛନ୍ତି ମଉଷଧି
ବେଗକରି ଛେଚି ପକାଅ ବାରାନିଧି ।୧୦
ପିତାର ବଚନେ ଜମ୍ୱେବ ରାୟେ ଗଲା
ଯେକା ଦିବସେକେ ପୃଥିବୀ ବୁଲିଲା ।
ଯାବତ କଞ୍ଚ ପଦାର୍ଥ ଗୁଣ୍ଡିଆଇ
ଛେଚି ମହାରସ ସମୋଦ୍ରେ ପକାଇ ।
ଯେସନ ସମୟେ ବରୁଣ ଦୋହିତୀ
ସୁରାକୁମ୍ଭ ଘେନି ସେ ସମୁଦ୍ରୁ ଉତପତି ।
ଦେବତାୟେ ବୋଇଲେ ଆମ୍ଭଙ୍କୁ ଯେହା
ଦିଅ
ପୁଣି ଯାହା ପାଇବ ତାହା ତୁମ୍ଭେ ନିଅ ।
ଦେବଙ୍କର ବଚନେ ଶାନ୍ତ ହୋଇଲେ ଅସୁର
ଦେବଗଣେ ସୁରା ଘେନି ଗଲେ
ସିନ୍ଧୁତୀର ।୨୦
ବରୁଣର ତହିଁ ଥୋଇଲେ ମହାରସ
ତେଣୁ ସେ ହରଷ ହୋଇଲେ ତ୍ରିଦଶ ।
ପୁଣ ମଥନ୍ତେଣ ଧନ୍ୱନ୍ତରି ନାରୀ
ଅମୃତ କୁମ୍ଭ ଘେନିଣ ଅବତରି ।
ଯେବେଣ ମଉଷଧି ଜମ୍ୱେବ ପକାଇଲେ
ସେ ସେ ବେନି ପଦାର୍ଥ ହୋଇଲେ ।
ଦେଖିଣ ଦତ୍ୟ ଆବୋରିଲେ ଯାଇ
ଦେବତାୟେ ଚାହାନ୍ତି ଯେ ଆଶ୍ଚର୍ଯ୍ୟ ମୁଖ
ହୋଇ ।
ପୁଣ ମଥିଲେ ଯେ ଲକ୍ଷ୍ମୀ ହୋଏ ଜାତ
କୋଠରେ ଥୋଇଲେ ସକଳ ପଦାର୍ଥ ।୩୦
ନାନା ମଣି ରତ୍ନ ଉପୁଜିଲେ ପୁଣି
ଅପଛରୀ ବୃନ୍ଦ ଗଜ ଶିରମଣି ।
କଳ୍ପତରୁ ଅମୃତ କୁଣ୍ଡଳ ବେଦମନ୍ତ
ଉଚ୍ଚୈଃଶ୍ରବା ହୟ ବିବିଧ ଅସ୍ତ୍ର ଶସ୍ତ୍ର ।
ମୂର୍ଚ୍ଛି ନ ପାରିଣ ବୋଲନ୍ତି ଦେବଗଣ
ତୁମ୍ଭେ ଅସୁର ହୋ ଆମ୍ଭର ବୋଲ ଶୁଣ ।
ଯେ ଅମୃତ ତୁମ୍ଭେ ଆମ୍ଭକଇ ଦିଅ
ଯେବେ ଯାହା ଉପୁଜିବ ତାହା ପଛେ
ନିଅ ।
ଦଇତେ ବୋଇଲେ ତୁମ୍ଭର ଲୋଭ କଥା
ଯାହା ପାଇ ତାହା ମାଗ ହୋ
ଦେବତା ।୪୦
ଆଗେ ସୁରାକୁମ୍ଭ ନେଲ ବଳ କରି
ଯେବେ ଅମୃତ ମାଗି ଲୋଭ କରି ।
କିମ୍ପା ଦେବୁ ଯେବେ ଭକ୍ଷିବୁ ତାହା
ଯେ ବଚନ ଶୁଣି ବୋଇଲେ ଚଉବାହା ।
ତୁମ୍ଭେ ହୋ ଲୋଭ ନ କର ଯେକା ହୋଇ
ବାଣ୍ଟିଣ ଭୁଞ୍ଜିବା ପରଷିବି ମୁହିଁ ।
ଶୁଣି ସନମତ ଦାନବମାନେ କଲେ
ଦେବେ ନେଇ ଅମୃତ କୋଠକରି
ଥୋଇଲେ ।
ଈଶ୍ୱର ବୋଇଲେ ପୁଣ କରିବା ମଥନ
ତୁମ୍ଭେ ସମସ୍ତେ ହେ କରିଥିବ ନିୟମ ।୫୦
ଯେବେ ଯାହା ପାଇବା ସେ ଆମ୍ଭର
ହୋଇବ
ହୋଉ ହୋଉ ବୋଲି ବୋଇଲେ ସର୍ବଦେବ
ଦାନେବ।
ଏତେ ବିଚାରିଣ ମଥିଲେ ସର୍ବେ ପାଣି
ବିଷ ଜାତ ହୋଇଲା କାଳାନଳ ଜାଣି ।
ଦେଖିଣ ଡରିଲେ ଅସୁର ସୁରଗଣ
ପର୍ବତ ପକାଇ ଗଲେ ପଳାଇଣ ।
ତ୍ରୈଲୋକ୍ୟ ଦହନ କରିଣ ବିଷ ଆସଇ
ଡରି ସମସ୍ତେହେଁ ଈଶ୍ୱରଙ୍କୁ ଚାହିଁ ।
ଭୋ ଦେବ ଶଙ୍କର ସଂସାର ରକ୍ଷାକର
ଯେ କାଳକୂଟ ତୋ ଗର୍ଭରେ ସଂହର ।୬୦
ବ୍ରହ୍ମା ନାରାୟଣ କଲେ ବହୁତ ସ୍ତୁତି
ଭୋ ଦେବ ବିରୁପାକ୍ଷ କପାଳି ପଶୁପତି ।
ଜୟ ଜୟ ମୃତୁଞ୍ଜୟ ଜୟ ସଦାଶିବ
ଜୟ ଜୟ ଚନ୍ଦ୍ରଶେଖର ମହାଦେବ ।
ପ୍ରଳୟ କାଳ ଅନଳ ପ୍ରାୟେ ବିଷ
ଦେଖ ଦେଖ ବହି ଆସଇ ଦଶଦିଶ ।
ଶୁଣିଲେ ଶଙ୍କର ବ୍ରହ୍ମା ବିଷ୍ଣୁଙ୍କ ସ୍ତୁତି
ଚଳୁକରି ବିଷ ଧଇଲେ ପଶୁପତି ।
ମୁଖକଇ ଘେନି କଣ୍ଠକଇ ଢୋକିଲେ
ନୀଳକଣ୍ଠ ନାମ ସର୍ବଦେବ ଦେଲେ ।୭୦
ଯେଥୁଅନନ୍ତରେ ବାଣ୍ଟିଲେ ସର୍ବଦେବ
ଗୁଣ୍ଡକରି ଥୋଇ ଗୁଳା କରିଦେଲେ ସର୍ବ ।
କର୍ମେଣ ଲକ୍ଷ୍ମୀକି ପାଇଲେ ଦେବହରି
ଆବର କଉସ୍ତୁଭମଣି ଆଦିକରି ।
ଆଦିତ୍ୟ ପାଇଲା ସୁମନ୍ତେକ ମଣି

ଆବର ଉଚ୍ଚୈଶ୍ରବା ଅଶ୍ୱ ସୂର୍ଯ୍ୟ ଜିଣି ।
ଇନ୍ଦ୍ର ପାଇଲେ ଯେ ଅଷ୍ଟ ଅପଚ୍ଛରୀ
କଳପତରୁ ଐରାବତ ଆଦି କରି ।
ଅମୃତ କୁଣ୍ଡଳ ଯେ ଆବର ବେଦମନ୍ତ୍ର
ସୁରାକୁମ୍ଭ ଆବର ଅସ୍ତ୍ର ଯେ ଶହସ୍ର ।୮୦
ବରୁଣର ଗୋଚରେ ଥୋଇଲେ କୋଠକରି ।
ଅମୃତ ଖାଇବେ ବୋଲି ମନେଛନ୍ତି ଧରି ।
ସୁରେ ଅସୁରେ ଯେ ଅଛନ୍ତି ଦୁଇପନ୍ତି
ଶ୍ରୀହରି ଅମୃତ ନେଇଣ ପରଷନ୍ତି ।
ଆଗ ଦେବତାଙ୍କ ଆଡ଼ରୁ ଦେଇଆଣି
ମାୟା ହୋଇଲା ବୋଲି ରାହୁ ତାହା ଜାଣି ।
ଭାଳିଣ ଦେବତାଙ୍କ ସଙ୍ଗେ ଯାଇ ମିଶି
ଚନ୍ଦ୍ର ସୂର୍ଯ୍ୟଙ୍କର ମଧରେ ଥାଇ ବସି ।
ନାରାୟଣ ପରଷନ୍ତି ସୁଧାରସ ନେଇ ।୯୦
ଇହକେ ରାହୁର ପତ୍ରରେ ଦେଲେ ନେଇ ।
ଅମୃତପାନ ଆଗେ କଲାକ ଦଇତ
ସେକଥା ଜାଣିଲେ ଚନ୍ଦ୍ର ଯେ ଆଦିତ ।
ବିଷ୍ଣୁକୁ ବୋଇଲେ ଦେବ ମନ୍ଦକୃତ୍ୟ କଲୁ
ନ ଜାଣି ଅମୃତ ରାହୁକୁ ଦେଇଗଲୁ ।
ଶୁଣିଣ ଶ୍ରୀହରି ତାହା ମୁଖକୁ ଚାହିଁଲେ
ନିଷ୍ଫଳ ନୋହଇ ଆଖି ବୋଲିଣ ଜାଣିଲେ ।
ଚକ୍ର ଘେନିଣ ଯେ ମାଇଲେ ରୋଷକରି
ତତକ୍ଷଣି ପକାଇଲେ ବେନିଖଣ୍ଡ କରି ।
ଅମୃତ ଖାଇଣ ସେ ନୋହିଲାକ ହତ
ପ୍ରସନ୍ନ ହୋଇ ବର ଦେଲେ
ପଦ୍ମନେତ୍ର ।୧୦୦
ଯାଇ ବେନି ଖଣ୍ଡହୁଅ ବେନି ଗ୍ରହ
ସାତବାର ଆଦିତ୍ୟଙ୍କ ସଙ୍ଗେ ରହ ।
ଯେତେ ବୋଲି ହରି ଅମିଅ ପରଷନ୍ତି
ଅସୁରେ ବସିଥାନ୍ତି ଦେବଙ୍କର କତି ।
ଯିସ ଅବା ଥିଲା ଆପଣେ ତାହା ଭୁଞ୍ଜି
ଦାନବେ ଲାଜ ଯେ ପାଇଲେ ସଭା ମଝି ।
ବିଷ୍ଣୁକୁ ବୋଇଲେ କୋପମୁଖ କରି
ଯେ ତୋହୋର ବିଚାରକୁ ମିଳଇ କିହୋ
ହରି ।

ଯେତେ ଦୁଃଖେଣ ଯେତେ କୃତ୍ୟ କଲୁ
ଜାଣି କଡ଼ାକରେ ଯୋଗ୍ୟତା ନୋହିଲୁ ।୧୦
ଥୋକାଯେକ ତାଟୁ କରିଣ ମାଗି ଘେନିଗଲୁ
ଥୋକାଯେକ ଦ୍ରବ୍ୟ ଯେ ବଳେ
ପଶିନେଲୁ ।
ଥୋକାଯେକ ବରୁଣ ତହିଁ କଲୁ କୋଠ
ଥୋକାଯେକ ଦ୍ରବ୍ୟ ଆପଣେ କଲୁ ବାଣ୍ଟ ।
ଯେବେ ଆଶାକରି ଅଛୁ ଆମ୍ଭେ ବସି
ଦେବତାଙ୍କୁ ଆଗେ ଆସିଲୁ ପରଷି ।
ଯିସ ଉଗାଳିଲୁ ଆପେଣ ଖାଇଲୁ
ଆମ୍ଭ ବେଳକୁ କିଛି ନାହିଁ ନା ବୋଇଲୁ ।
ତୁହି ଯେବେ ଆମ୍ଭର ଅଟୁ ନା ବଇରି
ମାର ସେ ଯେହାକୁ ବୋଲି ଦତ୍ୟେ କଲେ
ହୁରି ।୨୦
ଦେବ ଦାନବରେ ବାଜିଲା ରଣଗୋଳ
ଅସ୍ତ୍ରେ ଅସ୍ତ୍ରେ ଯେ କରନ୍ତି ପଡ଼ିତାଳ ।
ଅମୃତ ଖାଇଣ ଦେବେ ବଳୀଆରି
ଦନୁଜ ବଳକୁ ପକାଇଲେ ମାରି ।
ବିଷ୍ଣୁଙ୍କ ହାଥେ ଦନୁଜେ ଯହୁଁ ମଲେ
ଦେବତାଯେ ମିଳି ଦଇତାରି ନାମ ଦେଲେ ।
ଯହୁଁ ସେ ଅସ୍ତ୍ରରେ ହୋଇଲେ ସର୍ବେ ହତ
ଶୁଣିଣ କୋପକଲା ଅସୁରଙ୍କ ମାତ ।
ହାର ଛିଡ଼ାଇଣ ନ ସମ୍ଭାଳଇ ବାହି
ପୁତ୍ରଙ୍କର ମୁଖ ଚାହିଁ ପଡ଼ିଲାକ ମହୀ ।୩୦
ଅନେକ ବିକଳ ହୋଇ ସେ କରଇ
କାରୁଣ୍ୟ
ନିଜ ପତି କଶ୍ୟପ କରନ୍ତି ତିଆରଣ ।
ତୁହି ସେ ସୁନ୍ଦେରୀ ନଧର ମନେ କ୍ରୋଧ
ପୋଯେ ତୋର କ୍ଷତ୍ରୀ ସେ ମଲେ ରଣ
ମଧ ।
ଯେଥିକି ଶୋଚନା ତୁ ସେ କରୁ କାହିଁପାଇଁ
ଘେନ ମୋର ବର ଶୁଚିମନ୍ତ ହୋଇ ।
ପୁତ୍ରେକ ହୋଇବ ସେ ଅତି ବଳବାନ
ଦେବତାଯେ ରଣେ ନୋହିବେ ସମାନ ।
କଳପି ହୋଇବ ଯେ ନୋହି ଆର ମୃତ୍ୟୁ
ପୁତ୍ରବନ୍ତୀ ଲେଖାଯେ ଗଣିତା ହୋଇବୁ
ତୁ ।୪୦
ଯେ ମୋହୋର ବଚନ ତୁ ତଥ୍ୟ କରିଥିବୁ
ଅବେଭାର କଥାକୁ ତୁ କେବେହେଁ ନ
ଯିବୁ ।
ଅମାର୍ଗେ ଚଳିଲେ ହୋଇବ ବିପତ୍ତି
ଧର୍ମବଳେ ପୁତ୍ର ହୋଇବ ଉତପତ୍ତି ।
ପ୍ରାଣନାଥଙ୍କର ଆଗ୍ୟାଂ ଶିରେ ଧରି
ପାଳିବି ତୋହୋର ବୋଲ ବୋଲିଣ
ସତ୍ୟକରି ।
କାଳେ ସେ ନାରୀ ହୋଇଲା ଗର୍ଭବାସ
ଜାଣି ଦେବତାଯେ ପାଇଲେ ମନ ତ୍ରାସ ।
ବ୍ରହ୍ମା ତିଆରିଲେ ଇନ୍ଦ୍ରକଇ ରାଇ
ଦିତିର ପାଶେ ତୁ ଗୁପତେ ଥିବୁ ରହି ।୫୦
ଯେମନ୍ତେ ପୁତ୍ରକଇ ପ୍ରାଣେ କରୁ ହତ
ତେସନ ପ୍ରକାର ତୁ କର ପୁରୁହୂତ ।
ଶୁଣିଣ ଦିତିର ସନ୍ନିଧ୍ୟେ ଇନ୍ଦ୍ର ଗଲା
ଗୁପତେ ରହିଣ ସବୁ ଠାବ କଲା ।
ଗର୍ଭରେ ରହିଲା ଶତେକ ବରଷ
ପ୍ରସବ ନିକଟେ ସେ ହୋଇଲା ଅଳସ ।
ଅଳସେ ସେହୁ ସେ ସୁମରେ ଆଇ ଆଇ
ପେଟ ଚଡ଼ଚଡ଼ ମୁଖରୁ ଆସଇ ହାଇ ।
ସୀମ ସ୍ଥାନ ପାଖରେ ଚରଣ କରି ଶୁତିଲା
ଅବେଭାର କଥା ତାର ଇନ୍ଦ୍ରହିଁ
ବୁଝିଲା ।୬୦
ଛିଦ୍ର ପାଇ ତାର ଗର୍ଭରେ ପ୍ରବେଶ
ପେଟର ପୁତ୍ରକୁ ବଜ୍ରେ କଲା ନାଶ ।
ସାତଖଣ୍ଡ କରି କାଟି ପକାଇଲା
ପୁଣି ଖଣ୍ଡକ ଯେ ସାତଖଣ୍ଡ କଲା ।
ଯେଣେ ସେ ଅଣଚାଶ ଖଣ୍ଡ ଯେ ହୋଇଲା
ପୂର୍ବର ଭବିଷ ଯେ କାହାର ଆନ କଲା ।
କଶ୍ୟପ ଦେଲା ଯେ ଅକ୍ଷୟେ ଶ୍ୟରୀର
ଗର୍ଭେ ଥାଇ ରୋଦିଲେ ଯେ ଗର୍ଭର
କୁମର ।

ମାତା ଜାଣିକରି ଇନ୍ଦ୍ରକୁ ଶାପ୍ୟ ଦ୍ୟନ୍ତେ
ଡରେଣ ଛାମୁରେ ମିଳିଲେଶଚିନାଥେ ।୭୦
ଦିତି ବୋଇଲା ତୁ ଏଡ଼େ କୃତ୍ୟ କଲୁ
ଗର୍ଭେ ପଶି ମୋର ପୁତ୍ରକୁ ମାଇଲୁ ।
ଡରେଣ ସହସ୍ରାକ୍ଷ କମ୍ପଇ ଥରହର
ଭୋ ମାତା ଦୋଷ ଗୋ ହୋଇଲାକ
ମୋର ।
ନଦେବ ଶାପ ଗୋ କଲଇ ମୁହିଂ ଦ୍ରୋହ
ଶୁଣିଣ ଅସୁର ମାତା ଛାଡ଼ିଲାକ କୋହ ।
ବୋଇଲା ତୋହୋର ଭାଇକି ଯେବେ
ଜୀଆଅ
ଅମୃତ ଆଣି ତୁ ଯେହାକୁ ବେଗେ ଦିଅ ।
ଶୁଣି ତା ବଜ୍ରଧାରୀ ଆଣିଲା ଅମୃତ
ଭୁଞ୍ଜିଣ ପୋଯେ ତାହା ହୋଇଲେ
ବଳବନ୍ତ ।୮୦
ଅଣଚାଶ ଖଣ୍ଡ ଭିନ୍ନ ଭିନ୍ନ ମୂର୍ତ୍ତି
ପୁତ୍ରନ୍ତ ପ୍ରସବ କଲାକ ଦେବୀ ଦିତି ।
ତହୁଂ ସେ ପବନ ହୋଇଲା ଅବତାର
ସଦା ଚଞ୍ଚଳ ଯେ ପ୍ରକୃତି ତାହାର ।
ଶ୍ରୀରାମ ଆଗେ ଯେହା ବିଶ୍ୱାମିତ୍ର କହି
ସଦାଶିବ ବକତା ପାର୍ବତୀ ଶୁଣଇ ।
ଶ୍ରୀରାମ ପଚାରିଲେ କହିଲେ ମୁନି ଯେହା
ଶୁଣ ତୁ ରଘୁନାଥ ପଚାରିଲୁ ଯାହା ।
ଉଦେକ ଶର୍ବଣ କଟକର ନାମ
ଆନ ଠାବ ଏଠାକୁ ଯେହେ ସରିସମ ।୯୦
ଯେଥି ସେ ଦିତି ଯେ କରିଥିଲେ ତପ
ଯେଥି ଅବତାର ପବନଙ୍କ ସ୍ୱରୂପ ।
ଶ୍ୟରୀର କାଟନ୍ତେଣ ଅଣଚାଶ ଖଣ୍ଡି ହୋଇ
ତେଣୁ ସେ ଯେ ପୁର ବିସ୍ତାର ନାମ କହି ।
ଇନ୍ଦ୍ର ବଜ୍ରଘାତେ କାୟେ କ୍ଷୟ ଯେ ନୋହିଲା
ପବନର କାୟେ ଯେ ବିସ୍ତାର ହୋଇଲା ।
ଯେତେ ଖଣ୍ଡି ହୋଇଲା ତେତେ ମୂର୍ତ୍ତିବନ
ବିସ୍ତାର ଦେଖି ଦୃଢ଼ କଲା ପଞ୍ଚମନ ।
କଉଶିକ କହନ୍ତି ତୁମେ ଶୁଣ ରଘୁନାଥ

ତୋହୋର ବଂଶେ ବସା କରିଥିଲେ
ଏଥ ।୧୦୦
ରାମ ବୋଇଲେ ସେ ହୋଇଥିଲେ ରାଜା
କେତେ ପାଟ ଯେଥି ପାଇଥିଲେ ପୂଜା ।
କହ ମହାମୁନି ପୁଣ୍ୟ ରସ କଥା
ଯେ ଭୂମିରେ ପିତୃ ମୋର ହୋଇଥିଲେ
ମହାରଥା ।
ଅଯୋଧ୍ୟା ତାହାଙ୍କର ଅଟଇ ନିଜ ମହୀ
ଯେଥି ରାଜ୍ୟ ଆସି କେମନ୍ତ କଲେ ସେହି ।
ମୁନି ବୋଇଲେ ତାହା ଶୁଣ ଇକ୍ଷ୍ୱାକୁ ନୃପତି
ଅଳଂଭୁସ ନାମେଣ ଯେ ତାହାର ଯୁବତୀ ।
ବଇଶର୍ବା ନାମେଣ ଯେ ପୁତ୍ରେକ ଅନୁପାମ
ପିତା ବିଚାରଇ ପୁତ୍ର ଅତି ବଳବାନ । ୧୦
ମନେ ମନେ ବିଚାରି ଯେ ଏଥି ରାଜା ତାକୁ
କଲା
ତହୁଂ ଏ ବଇଶାଳୀପୁର ବୋଲାଇଲା ।
ବୃଷାଳର ପୁତ୍ର ହେମବନ୍ତ ରାୟେ
ସୁଚନ୍ଦ ନୃପତି ତାହାର ତନୟେ ।
ବଡ଼ାଇ ପ୍ରତାପୀ ଯେସେ ଜାଣନ୍ତି ତିନିପୁର
ସ୍ୱର୍ଗରେ ପ୍ରଶଂସା କରନ୍ତି ସୁରେଶ୍ୱର ।
ଧର୍ମ ବୋଲି କରି ତାହାର ତନୟେ
ପିତାର ଅନ୍ତେ ସେ ମହୀପତି ହୋୟେ ।
ଯେଂହା ତହୁଂ ଜାତ ଶୃଗୟେ ନୃପତି
ଅଶ୍ୱମେଧ କରି ସେ ହୋଇଲେ
ଚକ୍ରବର୍ତ୍ତୀ ।୨୦
ଯେହାର ତନୟେ ଯେ ବିଜୟେ ନରବର
ବୃହଦନ୍ତ ବୋଲି ହୋଇଲା ଯେହାର ।
ବୃହଦନ୍ତର ପୁତ୍ର ଯେ ସୁରଜନ ବୀର
ସୋମଦତ୍ତ ବୋଲି ଯେହାର କୁମର ।
ସୋମଦତ୍ତର ପୁତ୍ର ଜନ୍ମଜୟେ ହୋଇ
ଯେହାର ତନୟେ ପ୍ରମତ୍ତ ସାଧଇ ମହୀ ।
ମୁନି ବୋଲନ୍ତି ତୁ ଶୁଣ ରଘୁନାଥ
ଯେତେ ପାଟ ତୋର ରାଜହିଂ କଲେ ଏଥ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ରାଘବ

ବଇଶାଳୀପୁରେ ପ୍ରବେଶ ରାମଦେବ ।୩୦
ପ୍ରମତ୍ତ ଆସିଣ ଯେ ପାଛୋଟି ଘେନିଗଲା
ଗଉରୋବ କରି ମୁନିଙ୍କି ପଚାରିଲା ।
ଭୋ ମୁନି ଯେ ପୁତ୍ର କାହାର ଯେ ବେନି
ହରିହର ଜନମିଲେ କି ମାନେବ ଦେହ
ଘେନି ।୪୦
କାହାର ପୁତ୍ର ଯେ କାହାର ବଂଶେ ଜାତ
କାହାର ନନ୍ଦନ ଯେ ଯେଙ୍କର କେହୁ
ମାତ ।
ଶୁଣି ବିଶ୍ୱାମିତ୍ର କହିଲେ ସକଳ
ଦଶରଥ ନାମେଣ ଅଯୋଧ୍ୟା ମହୀପାଳ ।
ତାହାର ପୁତ୍ର ଯେ ରାମ ଲକ୍ଷ୍ମଣ ବେନି
ଯାଗ ରଖିବା ନିମିତ୍ତ୍ୟେ ଅଇଲୁ ଆମ୍ଭେ
ଘେନି ।୪୦
ଧନୁ ଉଚ୍ଛବ ଯାଗ ଜନେକ ରାଜା ଘରେ
ଦେଖିବ ବୋଲି ଯେ ଯାଉଛନ୍ତି ଖରେ ।
ଶୁଣିଣ ପ୍ରମତ୍ତ ଗଉରୋବ କଲା
ଆଦର କରିଣ ସେଦିନ ରୁହାଇଲା ।
ରାତ୍ର ପ୍ରଭାତେଣ ତହୁଂ ଚଳିଗଲେ
ବିପୁଳ ବନେ ଯାଇ ପ୍ରବେଶ ହୋଇଲେ ।
ଘୋର ବନ ଦେଖି ପଚାରନ୍ତି ରାମ
କହ ମହାମୁନି ଯେ ବନର କିସ ନାମ ।
ରାଘବ ବଚନେ ବୋଲନ୍ତି ବିଶ୍ୱାମିତ୍ର
ବିପୁଳ ବନ ଯେ ଅଟଇ ପବିତ୍ର । ୫୦
ଗଉତମ ଋଷି ଯେଥି ତପ କରୁଥିଲା
ତାହାର ଭାବାନୀ ନାମ ଯେ ଅଟଇ
ଅହିଲା ।
ତୁଚ୍ଛା ପର୍ଣ୍ଣକୁଟୀ ଅଛଇ ଯେବେ ଦେଖ
ଗଉତମ ଅହିଲାକୁ କଲେ ଏଥି କୋପ ।
ଯାଗକୁଣ୍ଡର ଯେଥି ଥିଲା ସଞ୍ଚାମାନ
ଶ୍ରୀରାମକୁ ଦେଖାନ୍ତି ଗାଧିର ନନ୍ଦନ ।
ବୋଇଲେ ଷଡ଼ରତୁଏ ନ ବାଧଇ ଏଥ
ଯେ ସେ ବିପୁଳ ବନ ହୋ ଦେଖ
ରଘୁନାଥ ।

ଦେଖ ଧୁ ଶ୍ରୀରାମ ଆଗେ ପଥରେକ ଅଛି
ଏହୁ ଅହଲ୍ୟା ବୋଇଲେ ଗାଧିବଛି ।୬୦
ଗୌତମ ନାରୀ ଏ ଯେ ଅହିଲା ଏହା ନାମ
ପୁରାଣର କଥା ତୁ ଶୁଣ ହୋ ଶ୍ରୀରାମ ।
ପୂର୍ବେ ବିଧାତା ଯେ ମନରେ ବିଚାରି
ସକଳ ରୂପଗୁଣ ଏକ ଠାବ କରି ।
ଲାବଣ୍ୟମୟେ କରି କନ୍ୟାଏକ କଲା
ଅହଲ୍ୟା ରୂପ ତାର ଅହିଲା ନାମ ଦେଲା ।
ଦେଖିଣ ମୋହ ଗଲେ ସକଳ ସୁରମୁନି
ଦେବତାଙ୍କୁ ଚାହିଁ ବୋଲଇ ପଦ୍ମଯୋନି ।
ଯେ ଅବା ପୃଥିବୀ ପ୍ରଦକ୍ଷିଣ କରି ଆସଇ
ତାହାର ଯେ ନାରୀ ବୋଲି ପିତାମହ
ଭାଷଇ ।୭୦
ଶୁଣିଣ ସୁର ଅସୁର ମୁନିଗଣ
ପୃଥ୍ୱି ବୁଲିବାକୁ ଗଲେ ତତକ୍ଷଣ ।
ବ୍ରହ୍ମା ବୋଇଲେ ଯେ ଗଉତମ ଚାହିଁ
କିମ୍ପା ଯେଥି ଅବା ଅଛ ଉଭା ହୋଇ ।
ତୁହି ଯେବେ ମହୀ ପ୍ରଦକ୍ଷିଣ କରି ଆସ
ଆଗ ହୋଇ ଅଇଲେ କନ୍ୟା ତୋହୋର
ଅବଶ୍ୟ ।
ଶୁଣିଣ ଗଉତମ ହରଷ ମନ ହୋଇ
ପ୍ରଦକ୍ଷିଣ କଲା ତିନିବେଳ ସୁରଭିକି ଯାଇଁ ।
ବ୍ରହ୍ମାର ଆଗରେ ଯେ ମିଳିଲେ ମହାଋଷି
ଦେଖି ପିତାମହ ଯେ ମନେ ମନେ
ହସି ।୮୦
ହୋଇଲା ପ୍ରାପତ ତୋତେ ଅହିଲା ଯୁବତୀ
ଯେତେ ବୋଲି କନ୍ୟା ଯେ ସମର୍ପିଲେ
ବେଦପତି ।
ବିଭା କରାଇଲେ କୁଳଗୋତ୍ର ସୁମରି
ଦେବ ଅଇଲେ ପୃଥ୍ୱି ପ୍ରଦକ୍ଷିଣ କରି ।
ଦେଖିଲେ ଗଉତମ ହୋଇଲେନି ବିହା
ମନେ ମନେ କୋପ କଲେ ସୁରନାହା ।
ଯେଥିଅନନ୍ତରେ ଯେ ବିଧାତା ଆଜ୍ଞାପାଇ
ଅହିଲାକୁ ଘେନି ସେ ଅଇଲେ ଗଉତମ
ଗୋସାଇଁ ।

ଯେ ବନେ ଆସି ଅନେକ କାଳ ଥିଲା
ରମଣୀ ଘେନି ସେହୁ ଅନେକ ଭୋଗ
କଲା ।୯୦
ସତ୍ୟାନନ୍ଦ ବୋଲି ଯେ ହୋଇଲା ଯେକ
ପୁତ୍ର
ସାକ୍ଷାତେ ଧାର୍ମିକ ଅଟଇ ନ୍ୟାୟେବନ୍ତ ।
ଯେଥି ଅନନ୍ତରେ ଶୁଣସି ଶ୍ରୀରାମ
ଅହିଲା ବିଭାଦିନୁ ଇନ୍ଦ୍ର ଭାଳଇ ମନେ
ମନ ।
ନିତି ସହସ୍ରାକ୍ଷ ଯେ ଭାଳଇ ପଞ୍ଚମନ
ଅହିଲା ରମିଲେ ଯେ ସୁଫଳ ଜୀବନ ।
ଯେତେ ବିଚାରି ସେ ଆଶ୍ରମକୁ ଗଲା
ଯେସନେକ ସମୟେ ଋଷି ସ୍ନାହାନକୁ
ଗଲା ।
ନିର୍ଜନବେଳ ଜାଣିଣ ବଜ୍ରଧର
ପ୍ରବେଶ ହୋଇଲା ଯାଇଁ ଗଉତମ
ଘର ।୧୦୦
ଅହିଲାକୁ ଦେଖି ସେ ବୋଲଇ ଶୁଣ ସଖି
କାମ ପଞ୍ଚଶରେ ହୋଇଲାଇଁ ମୁଁ ଦୁଖି ।
ଯେ ତୋହୋର ଅଧର ଯେ ଚୁମ୍ବିତ ମୋର
ମନ
କର ଦୁଇ ଛନ୍ଦି କରସି ବନ୍ଧନ ।
ଯେ ମୋହୋର ହୃଦରେ କୁଚ ତୋର ଲାଗୁ
ପ୍ରସନ ହୁଅ ସହୀ ବିରହ ଜ୍ୱର ଭାଙ୍ଗୁ ।
କନ୍ୟା ବୋଇଲା ତୁ ସୁରପତି ହୋଇ
ଯେତେ ଅବିଚାର କଥା କହୁ କାହିଁପାଇଁ ।
ମୁହିଁ ଋଷିଆଣୀ ତୁହି ଦେବରାଜ
କେମନ୍ତେ ସୁରପତି ନ ପାଇଲୁ ଲାଜ ।୧୦
ଯତିର ଭାରିଯା ମୁଁ ପତିବ୍ରତା ସତୀ
ମତେ ହରିବୁ ତୁ ଯେହ୍ନେଂ ତୋର ମତି ।
ଯାଅ ସର୍ଗପୁର ନ ଥାଅ ତୁ ଯେଥ
ଯେହିକ୍ଷଣି ଆସିବେ ଯେ ମୋହୋର
ପ୍ରାଣନାଥ ।
ଈଶ୍ୱର ଯୋଗେଣ କାମ ଧ୍ୱଂସ ଗଲା

ତୁହି ଆଜ ନାଶଯିବୁ ଅହିଲା ବୋଇଲା ।
ଅହିଲାର ନିରାଶେ ଯେ ଗଲା ସୁରପତି
ଅହିଲାର ରୂପଗୁଣ ବିଚାରଇ ମତି ।
କେତେହେଂକ ଦିନେ ପୁଣ ଇନ୍ଦ୍ର ଯେ
ଆସଇ
ଗଉତମ ବନ ନିକଟେ ମିଳଇ । ୨୦
ଯେସନ ସମୟେ ଆହାନିକ ବେଳ ହୋଇ
ଗଉତମ ସ୍ନାହାନ କରିଗଲେ ନଈ ।
ତକ୍ଷେଣ ବାସେବ ମାୟା ରୂପ ଧରି
ଅହିଲା ଛାମୁରେ ମିଳିଲେ ବଜ୍ରଧାରୀ ।
କନ୍ୟା ବୋଇଲା ଋଷି ସ୍ନାହାନ କରିତ ଗଲ
କରମ ନ ସାରିଣ ଲେଉଟି ଅଇଲ ।
ମାୟା ରୂପଧରି ବୋଲଇ ବଜ୍ରପାଣି
ଶୁଣ ଶଶିମୁଖୀ ଗୋ ଗୁପତ ରସବାଣୀ ।
ଜଳଘାଟେ ଦେଖିଲି ଅଛଇ ଉର୍ବଶୀ
ସ୍ନାହାନ କରଇ ସେ ପବିତ୍ର ଜଳେ
ପଶି ।୩୦
ଜାନୁ ଯଉବନ ମର୍ମଥାନ ଦେଖି
ବାହୁଡ଼ି ଅଇଲି ମୁଁ କାମଭରେ ଦୁଖୀ ।
ଦେସି ଆଲିଙ୍ଗନ କରାଅ ସୁରତି
ଯେ ମୋହୋର ଅଧୀର ପଞ୍ଚ ଯେ ପ୍ରକୃତି ।
ଯେତେ ବୋଲି ଯାଇ ଅହିଲାକୁ ଧରି
ବିବିଧ ରତି କରି ରମଣୀ ଭୋଗକରି ।
ଯେମନ୍ତ ସମୟେ ଗଉତମ ଋଷି
ସ୍ନାହାନ ସାରି ମୁନି ମିଳିଲେ ଦ୍ୱାରେ ଆସି ।
ଦେଖିଣ ବେନି ଜନେ ହୋଇଲେ ତରସ୍ତ
ମାର୍ଜାରୀ ରୂପେକ ଯେ ଧଇଲେ
ପୁରୁହୂତ ।୪୦
ଜଳାକବାଟି ବାଟେ ଗଳି ପଳାଇଲା
ମାୟା ଚରିତ ଯେ ଅହିଲା ବୋଇଲା ।
ତତକ୍ଷଣେ ସତୀ ଯେ ସମ୍ଭାଳିଲେ କେଶବାସ
ମୁନିଯାଇ ଭିତର ପୁରେଣ ପରବେଶ ।
ଇନ୍ଦ୍ର ଯେ ମାର୍ଜାରୀ ରୂପଧରି ଗଲା
ଅହିଲାକୁ ସେ କଥା ଗଉତମ ପଚାରିଲା ।
ଜଳାର ବାଟେ କେ ହୋଇଲା ବାହାର

ଅହିଲା ବୋଇଲା ସେ ଅଟଇ ମାର୍ଜାର ।
ଶୁଣି ଗଉତମ ଯେ ସମ୍ପ୍ରତେ ନ ଗଲା
ଧ୍ୟାୟେ କରି ଋଷି ଯୋଗେଣ
ଜାଣିଲା ।୫୦
ବୋଇଲା ଇନ୍ଦ୍ର ଆରେ ଭୋଗିଲୁ ମୋର
ନାରୀ
ଯେତେ଼ ଅକର୍ମ କଥା କଲୁ ନ ବିଚାରି ।
ଯତିର ଭାରିଯା ତୁ ଏଥିକି ଦ୍ରୋହ କଲୁ
ଦେବରାୟେ ହୋଇ ଯେ ଅନ୍ୟାୟେ
ଆଚରିଲୁ ।
ଅନେକ ଅପକ୍ଷରୀ ବିଦ୍ୟାଧରୀମାନ
କିନ୍ନରୀ ତୋର ଆଗେ କରନ୍ତି ଗାୟନ ।
ସୁର ସୁନ୍ଦେରୀ ଯେ ତ୍ରିଭୁବନେ ନାହିଁ
ସେମାନ ଭୋଗ୍ୟ ତୁରେ କରୁ ସୁରସାଇଂ ।
ସ୍ୱର୍ଗର ସମ୍ପଦ ତୁ ହେଲେ ବିଳସିଲୁ
ଯକ ସ୍ତିରୀୟେ ମୋର ମୁରୁଛି ନ
ପାରିଲୁ ।୬୦
ଜାଣିଲି ଯୋନିକି ଶରଧା ତୋର ହୋଇ
ଯେତେ କାଳ ତୋର ଶରୀରେ ପ୍ରାଣ
ଥାଇ ।
ତେତେକ ସମୟ ତୁ ଅନେକ ଯୋନି ଧର
ସହସ୍ର ଭଗ ହେଉ ତୋହୋର ଶ୍ୟରୀର ।
ଯେବଣ ଅଣ୍ଡେ ତୁ ହରିଲୁ ମୋର ନାରୀ
ସେ ଅଣ୍ଡ ଛିଡ଼ି ତୋହୋର ପଡୁରେ
ବଜ୍ରଧାରୀ ।
କୋପେ ମହାରଷି ଶାପ୍ୟ ତାକୁ ଦେଲା
ସୁରପତି ଅଣ୍ଡ ତତକ୍ଷଣେ ଛିଡ଼ିଲା ।
ସହସ୍ରେକ ଯୋନି ହୋଇଲା ତାର କାଏ
ଦେଖି ଦେବରାଏ ବହୁତ ଭୟ
ପାୟେ ।୭୦
ପଳାଇ ଯାଇ ମାନସରୋବରେ ପଶି
ଶଙ୍କୁଚ ପାଇ ତହିଁ ଅଛଇ ବୀର ବସି ।
ରାଜା ନ ଥିବାରେ ଯେ ରାଜ୍ୟ ହୋଇ ଗୋଳ
ବୃଷାଳ ଦୁଷ୍ଟଜନେ କରନ୍ତି ତହିଁ ଗୋଳ ।

ବଣିଜାର ଧନ ଚୋର ନେଲେ ବହି
ପରଜାୟେ ସେ କଥା ଯେକେତ ନ କହି ।
ଦଣ୍ଡ ଦଣ୍ଡିଲେ ସେ ସାଧୁତ ଜନ ଦେଖି
ସବୁ ଜନ ପ୍ରାଣୀ ହୋଇଲେ ମାହା ଦୁଃଖୀ ।
ଦିଗପାଳେ ଯାଇ ବ୍ରହ୍ମାକୁ କହିଲେ
ଭୋ ଦେବ ଦୁର୍ଜନୟେ ପ୍ରବଳ
ହୋଇଲେ ।୮୦
ସୁରପତି ନାହିଁ ହତ ପାଟ ରାଜ୍ୟ
କାହାକୁହିଁ କେହି ନ କରନ୍ତି ପୂଜ୍ୟ ।
ବିଧାତା ବୋଇଲେ ମୁଂ ଅଇଲି ତାହା ଜାଣି
ଗଉଉମ ନାରୀକି ହରିଲା ବଜ୍ରପାଣି ।
ଜାଣି ମହାରଷି କୋପେ ଶାପ୍ୟ ଦେଲା
ସହସ୍ରେକ ଯୋନି ତୁ ବହସି ବୋଇଲା ।
ତପୀର କୋପେ ଯେ ଛିଡ଼ିଲା ତାର ଅଣ୍ଡ
ତେଣେ ସେ ଗୋଳ ହୋଇଲା ସ୍ୱର୍ଗଖଣ୍ଡ ।
ମାନସରୋବରେ ଇନ୍ଦ୍ର ଅଛି ପଶି
ଦୃଭାର କୋପ ଯେ କଲାକ
ମହାରଷି ।୯୦
ଚାଲ ଆମ୍ଭେ ଯିବା ହୋ ଗଉତମ କତି
ତେବେ ସେ ଇନ୍ଦ୍ର ଯେ ପାଇବ ସଦଗତି ।
ଯେତେକ ବିଚ୍ଛରି ବ୍ରହ୍ମା ସୁରଗଣ ଘେନି
ଗଉତମଙ୍କ ଆଶ୍ରମେ ମିଳିଲେ ପଦ୍ମଯୋନି ।
ଦେବ ଇନ୍ଦ୍ର ପାଇଂ କହିଲେ ଅନେକ ମତେ
ପ୍ରବୋଧ ହୋଇଲେ ମହାତପୋବନ୍ତେ ।
ମୁନି ବୋଇଲେ ମୋ ବଚନ ନୁହଇଂ ଯେ
ଆନ
ସହସ୍ରେ ଯୋନି ହୋଇବ ସହସ୍ରେ
ଲୋଚନ ।
ମେଷ ଅଣ୍ଡେକ ଲଗାଅ ତାହା ତହିଁ
ଗଉତମ ବୋଇଲେ ପ୍ରସନ ମୁଖ
ହୋଇ ।୧୦୦
ଶୁଣିଣ ସୁରଗଣ ଧାତାକୁ ଘେନିଗଲେ
ମାନସରୋବରେ ଯାଇଂ ଇନ୍ଦ୍ରକୁ ଦେଖିଲେ ।
ଗଉତମ ଆଗ୍ୟାଂ କହିଲେକ ଯହୁଂ

ସହସ୍ରେ ଲୋଚନ ହୋଇଲାକ ତହୁଂ ।
ଜଳୁ ବାହାର ହୋଇଲେ ସୁରପତି
ମେଷର ଅଣ୍ଡ ଆଣି ଲଗାଇଲେ ଧାତି ।
ସ୍ୱର୍ଗରେ ନେଇଣ ତାକୁ କଲେ ଅଭିଷେକ
ତହୁଂ ସେ ପାଳିଲା ସଂସାର ତଇଲୋକ୍ୟ ।
ଅହିଲାକୁ ଶାପ୍ୟ ଦେଲେ ମହାରଷି
ବୋଇଲା ତୋହୋରେ ହୋଇଲି ମୁହିଂ
ଦୋଷୀ ।୧୦
ତୁହିଲୋ ଦୋସ୍ଥରୀ ନ ଛୁଅଂ ମୋର ଦେହ
ପାଷାଣ ହୋଇଂ ତୁ ବନସ୍ତେ ପଡ଼ି ରହ ।
ଶୁଣିଣ ସୁନ୍ଦେରୀ ଯୋଡ଼ଇ ବେନି କର
ମୁନି ଦୋଷ ଯେ ନାହିଂ ନା ମୋହୋର ।
ମାୟା ହୋଇ ଅଇଲା ତୁମ ରୂପ ଧରି
ମୁହିଂ କେହ୍ନେ ଜାଣିମି ସେ ଅଟଇ
ବଜ୍ରଧାରୀ ।
ପୂର୍ବେ କାହାର ମୁଂ ଛିନାଇଥିଲି ଆଶ
ତେଣୁ ସେ ଘର ବରେ ହୋଇଲି ନିରାଶ ।
ଢାଳେ ହେଂ ନିରେଖ ସ୍ୱାମୀ କୃପା ମୋତେ
କର
ଜାଣିମାରେ ଦୋଷ କଲା ନାହିଂ ନା
ମୋହୋର ।୨୦
ପ୍ରତିକାରକୁ କାରଣ କହ ମହାମୁନି
ଭାରିଯା ବିକଳ ଦେଖି ବିରସ ମହାଗ୍ୟାନି ।
ବୋଇଲେ ତୁ ଯେବେ ପାଷାଣ ହୋଇଥିବୁ
ରାମଚନ୍ଦ୍ରଙ୍କୁ ଦେଖିଲେ ମୁକତି ହୋଇବୁ ।
ଦଶରଥ ନନ୍ଦନ ସ୍ୱୟେଂ ବ୍ରହ୍ମରାଶି
ଜନମ ହୋଇବେ ସେ ରାବଣ ଦର୍ପ ଧ୍ୱଂସି ।
ଯାଗ ରଖିବାକୁ ତାକୁ ଆଣିମେ ଗାଧିସୁତେ
ମିଥିଳାକୁ ଯାଉଂ ବାଟେ ଦେଖିବେ
ତୋତେ ।
ଚରଣ ଲଗାଇବେ ପୂର୍ବର କଥା ଶୁଣି
ପାଇବୁ ନିଜ ତନୁ ଯୁବତୀ
ଶିରୋମଣି ।୩୦
ଶ୍ରୀରାମ ଛୁଅନ୍ତେ ଦୋଷ ତୋର ଯିବ

ତେବେ ସେ ତୋହୋର ସଙ୍ଗେ ମୋହୋର
ଯେ ଭାବ ।
ଯେତେ ବୋଲି ମୁନି ଆଶ୍ରମକୁ ଗଲେ
ନାନା ତୀର୍ଥ କରି ଅନେକ ତପ କଲେ ।
ଗଉତମର ଯାନ୍ତେ ଅହିଲା ବିକଳ
ପାଷାଣ ହୋଇଲା ସେ ଅଛଇ ଏତେକାଳ ।
ଭୋ ରାମ ଯେବେ ତୋର ଚରଣ ଯେଥେ
ଲଦ
ତାଙ୍କୁ ଗଉତମ କୁମନ୍ତ କୋପ ଦ୍ୱନ୍ଦ ।
ଯେ କନ୍ୟା ମୁକତି ହୋଉ ତୋର ଫଳେ
କଥା ରହିଥାଉ ଯେ ମହୀମଣ୍ଡଳେ । ୪୦
ଶୁଣିଲେ ଶ୍ରୀରାମ ବିଶ୍ୱାମିତ୍ର ବାଣୀ
ପାଷାଣ ଉପରେ ବିଜଏ ରଘୁମଣି ।
ଶ୍ରୀରାମ ଚରଣ ଲାଗନ୍ତେ ପାଷାଣ
ଦିବ୍ୟ ସ୍ତିରୀଯେକ ହୋଇଲେ ତତକ୍ଷଣ ।
ପୂର୍ବର ତହୁଂ ଶତେ ଗୁଣ ଉଗୁଳି
ଅର୍ଘ୍ୟ ଘେନି ଉଭା ଯେ ହୋଇଅଛି ବାଳୀ ।
ଶ୍ରୀରାମ ଶିରେ ଦୃବାକ୍ଷତ ଦେଲା
ସ୍ୱର୍ଗେ ସାଧୁ ସାଧୁ ଶବଦ ଶୁଭିଲା ।
ନିତ ତନୁ ପାଇଲା ଗଉତମ ନାରୀ
ତେବେ ସେ ସଂଶୟେ ଫିଟିଲା
ମୋହୋରି ।୫୦
ଶ୍ରୀରାମଙ୍କୁ ଅର୍ଘ୍ୟ ଦେଇଗଲା ବାଳୀ
ଯହିଁଛନ୍ତି ଗଉତମ ତହିଁ ଯାଇ ମିଳି ।
ଦେଖିଣ ହରଷ ଯେ ହୋଇଲେ ଗଉତମ
ବୋଇଲେ ସଖି ତୁ ଭେଟିଲୁ ଶ୍ରୀରାମ ।
ଆସ ଆସ ସଖି ତୁ ହୋଇଲୁ ସଉଭାଗୀ
ବିଷ୍ଣୁର ଶ୍ରୀପୟର ତୋହୋର ଶିରେ ଲାଗି ।
ଯେତେ ବୋଲି ଅହିଲାକୁ ପୂଜାବିଧି କଲେ
ସଂଗ୍ରହଣ କରି ଦୋଷ ନ ଘେନିଲେ ।
ଯେଥୁଅନନ୍ତରେ ଶୁଣ ଗୋ ପାର୍ବତୀ
ଅହିଲାକୁ ମୁକତି କରାଇଣ ରଘୁପତି ।୬୦
ବିଶ୍ୱାମିତ୍ର ସଙ୍ଗେ ଗଲେ ତହୁଂ ଚଳି
ଆବର ଅନେକ ଯେ ଅଛନ୍ତି ତପଶାଳୀ ।
ମିଥିଳା ନଗରେ ହୋଇଣ ପ୍ରବେଶ

ଦେଖିଲେ ଚନ୍ଦ୍ରକିରଣ ଜାଣି ଦେଶ ।
ମେଢ଼ ମଣ୍ଡୋପ ଯେ ପ୍ରାସାଦ ଜଗତୀ
ସୁବର୍ଣ୍ଣ କଳସ ଦିଶନ୍ତି ପନ୍ତି ପନ୍ତି ।
ବିଚିତ୍ର ଚିରାଳ ଯେ ଉଡ଼ଇ ଫର ଫର
ଚିତ୍ରଲେଖନ ଯେ ସବୁଙ୍କରି ଘର ।
ସ୍ଫଟିକର ପାବଛ ବାନ୍ଧିଲା ଅଛି ଦ୍ୱାର
ସାଧୁ ସରଜନ ବାଣ ବଣିଜାର । ୭୦
ଦାଣ୍ଡ ପହରାଙ୍କ କର୍ପୂର ଧୂଳି ବିଞ୍ଚ
ଚନ୍ଦନରେ ଛେରା ଦେଇ କର୍ପୂର ପାଣି
ସିଞ୍ଚ ।
ନଗ୍ର ପରିମଳ ରାଜ ବାଟ ଘାଟ
ରଥ ଗଜ ଅଶ୍ୱ ଚତୁରଙ୍ଗ ଥାଟ ।
ନଦୀ ପୁଷ୍କରିଣୀ କୂପ ବାମ୍ପି ତଳା
ପୁଷ୍ପ ଫଳ ତୋଟା କେ କରିବ ଶଙ୍ଖଳା ।
ଗହଗହ ଶବଦ ଶୁଭଇ ମୁଖ ବାଣୀ
କଟକେ ପ୍ରବେଶ ହୋଇଲେ ରଘୁମଣି ।
ରାଜମାର୍ଗେ ଯାନ୍ତେ ଦେଖନ୍ତି ସର୍ବଜନ
ସାଧୁ ସାଧୁ ଧ୍ୱନି ବୋଲନ୍ତି ବଚନ । ୮୦
ଯେକ କହନ୍ତେ ଆରେକ ଆଗ ସରି
ରାମକଇ ବେଢ଼ି ଦେଖନ୍ତି ନରନାରୀ ।
ନଗ୍ର ନରନାରୀ ଧୁଂଆଧୋଇ ହୋନ୍ତି
ଯେକ ତୁଣ୍ଡୁ ଆରେକ ଶୁଣିଣ ଧାମନ୍ତି ।
ଯୁବା ସୁନ୍ଦେରୀ ଯେ ଶ୍ରୀରାମକୁ ଦେଖି
ମଦନ ଶରଘାତେ ହୋଇଲେ ସର୍ବେ ଦୁଖୀ ।
ବସ୍ତ୍ର ଆଡ଼େକରି ଦେଖାନ୍ତି ଯଉବନ
କେବଣ ଯୁବତୀଙ୍କର ଦିଶଇ ଜଘନ ।
କେହୁ ଅଛ ହସି ଆଖିଲଟା ମାରି
କେ କାଖ ଦେଖାଇଣ ଦିଅନ୍ତି
ଅଙ୍ଗମୋଡ଼ି ।୯୦
କାହାର ମୁଣ୍ଡେ ଖୋଷା ନିହାଇ ପାରଇ
ଆସିବାର ବେଗେକେ ବାମକରେ ଧରଇ ।
କାହାର ଖୋଷା ଯେ ଧାଉଂ ଧାଉଂ ଫିଟି
ବକୁଳର ମାଳ ପଡ଼ିଲା ଭୂମି ଲୋଟି ।
କାହାର ମୁକୁତା ସୀମନ୍ତିରୁ ତୁଟିଲା
ଛାମୁକୁ ଲମ୍ବୁଅଛି ଖଞ୍ଜା ଫିଟିଗଲା ।

କାହାର ଜାଲି ବେଣ୍ଟୁଲା ଖସି ପଡ଼ି
କାହାର ଗଳାରୁ ଚାପସରି ପଡ଼େ ଛିଡ଼ି ।
କେବଣ ସୁନ୍ଦେରୀ ଯେ ସୁବେଶ ହୋଉଥିଲା
ରାମଙ୍କୁ ଦେଖିବ ବୋଲି ଧାଇଂଣ
ଅଇଲା ।୧୦୦
ଆଖିର କଜ୍ଜଳ ଯେ ନୁଆରିଲା ଘେନି
ଅଙ୍ଗୁଷ୍ଠିର ଅଗ୍ରେ ଲମ୍ଭାଇଲା କାମେନୀ ।
କାହା ହସ୍ତେ ଅଛି ହାଦେ ଗନ୍ଧପେଡ଼ି
ତରତରେ ଆସୁ ନ ପାରିଲା ଫେଡ଼ି ।
କେ ପାନପିକ ଚରଣେ ଲଗାଇଲା
ଅଳତା ନୁହଇଂ କି ହୋଇ ଜାଣି ନ
ପାରିଲା ।
ସିନ୍ଦୂର ଟୀକା କେ ଘେନୁଥିଲା ନାରୀ
ଗନ୍ଧ ଗୁଣ୍ଡି ବୋଲି ଦେହେ ଲିପିଲା
ପାଶୋରି ।
କେବଣ ଚତୁରୀ ହସି ହସି ଧାଇଂ
ମୁଖ ପାନପିକ ରଙ୍ଗ ଜୋତି ବଳି
ପଡ଼ଇ ।୧୦
କେବଣ ସ୍ତିରୀ ବସ୍ତ୍ର ପିନ୍ଧନ୍ତେ ଆସଇ ଖର
କରି
ଅଧକ ପିନ୍ଧି ଅର୍ଦ୍ଧେକ ଧରିଅଛି ଶାଢ଼ୀ ।
ହିଆର ବସ୍ତ୍ର ଯେ ଉଡ଼ଇ କାହାର ବାୟେ
ନେପୁର ପଡ଼ିଲା କାହାର ଧାଇଂମାର
ଘାୟେ ।
କେବଣ ନାଗେରୀ ବୋଲଇ ପଛେ ଥାଇଂ
ଆଗ ହୋଇ କେଣେ ଯାଉଛ ପଳାଇ ।
କ୍ଷଣେ ପଠାର ହୋ ଦୁଇ ସଖୀ ସଙ୍ଗ
ହୋଇଯିବା
ହସ୍ତ ଧରାଧରି ହୋଇ ଶ୍ରୀରାମଙ୍କୁ ଦେଖିବା ।
ସପତ ମେଣ୍ଟିଣ ଗଲା କେବଣ ନାରୀ
ଉଲଟ ଛନ୍ଦେଣ କେ ପିନ୍ଧିଛନ୍ତି ଶାଢ଼ୀ ।୨୦
କାହାର ନାସାରୁ ବସଣି ଗଲା ଖସି
କେବଣ ନାଗରୀ ଯେ ମୁଗି ହସାହସି ।
କେହି ନ ମାନିଲେ ଗୁରୁ ଗଉରୋବ
ମାନିନ୍ତ ଲୋକଙ୍କୁ ହାବୋଡ଼ିଣ ଯିବ ।

କେ ମଳାଶୁରକୁ ପୁଚ୍ଛଇ ରାମ କାହିଁ
ନିକଟେ ଦେଖିଣ ସେ ଜିଭ କାମୋଡ଼ଇ ।
ଜେଷ୍ଠ ଶଶୁରକୁ କେ ପୁଚ୍ଛଇ ରାମ କାହିଁ
ଶ୍ରୀରାମଙ୍କୁ ତୁମ୍ଭେକି ଦେଖିଲଣି ଯାଇ ।
ଯେତେ ବୋଲିଣ ସେ ପାଶରେ ହେଲା
ଯାଇଂ
ମାନିତ ଦେଖି ଜିଭ କାମୋଡ଼ି ପକାଇ ।୩୦
କେହୁ ଶଶୁରଙ୍କୁ ଯେ ହାଦେ ଛାଡ଼ିଣ ଗଲା
ଥେକାଯେ ଦୂର ଯାଇଂ ଲେଉଟି ଲୟେ
କଲା ।
କାହାର ହସ୍ତେ ଘେନି ଅଛଇ ଗୋଡ଼ ବଳା
କଟିରେ ଖଞ୍ଜଇ କେ ଚଉସରା ମାଳା ।
କେ ପାଟବ୍ରତ ଯେ ବାହେ ବାନ୍ଧୁଥିଲା
ରାମ ଦେଖିବାକୁ ଧାଇଂଣ ଅଇଲା ।
କେବଣ ସୁନ୍ଦେରୀ ଯେ ଯଉବନେ ଭାରି
ଧାଇଂ ଆସନ୍ତେଣ ଦୁଇହସ୍ତେ ଧରି ।
ଖୁଆ ହଲନ୍ତେଣ ଚାପଇ ପୁଣି ପୁଣି
ଯେକକୁ ଆରେକ ଯେ ଧାପରେ ଯାନ୍ତି
ଜିଣି ।୪୦
କାହାର ଆନନ୍ଦ ଯେ ନୟନୁ ଜଳ ଧାଡ଼ି
ସରୁ ଲୁଗା ତିନ୍ତି ଦୁଇ କୁଚ ଜଡ଼ି ।
କାହାର କଙ୍କଣ ବାଜଇ ରୁଣଝୁଣ
କେବଣ ନାଗରୀ କୁଙ୍କୁମ ବିଲୋପନ ।
କେବଣ ନାଗରୀ ନିହାଇ ଉକୁଟାଇ ଘଟି
ବସ୍ତ୍ର ଉଡ଼ିଣ କାହାର ଦିଶୁଅଛି ପିଠି ।
ଦାଣ୍ଡ ଗହଳି ସେ ଯେ ପଶିତ ଠାବ ନାହିଁ
କେ ବୋଲଇ ଆହୋ ଶ୍ରୀରାମଚନ୍ଦ୍ର କାହିଁ ।
କେ ବୋଲଇ ଦେଖ ବିଶ୍ୱାମିତ୍ର ପାଶେ
ନୂଆ ଦୁର୍ବାଦଳ ପ୍ରାୟେକ ତନୁ ଦିଶେ ।୫୦
ଶରଦ ପୂର୍ଣ୍ଣମୀ ଚନ୍ଦ୍ରମା ପ୍ରାୟେ ମୁଖ
ରାଜୀବ ପତ୍ରକି ଦୁଇ ନେତ୍ର ଦେଖ ।
ଆଜାନୁ ବାହୁ ବିସ୍ତାର ବକ୍ଷସ୍ଥଳ
ଫରହର ଉଡ଼ଇ ବସ୍ତ୍ରର ଅଞ୍ଚଳ ।
ଉପରେ ରଙ୍ଗବସ୍ତ୍ର ଅଛଇ ବେଢ଼ାଇଲା

ଧନୁବାଣ ସଖି ଗୋ ଯେହାକୁ ମୋହିଲା ।
ଜାଇଫୁଲରେ ଗୋ ଶିରରେ ଗଭାଗୋଟି
ହେଲେ ନୋହିଲା ଯେ ସଂସାର ନବସୃଷ୍ଟି ।
କର୍ଣ୍ଣରେ କୁଣ୍ଡଳ ଯେ ଗଳାରେ ମୋତିମାଳା
ନିର୍ମଳ ଶଶୀରେ କି ଉଦୟେ ଲକ୍ଷେ
ତାରା ।୬୦
ଚମ୍ପାପୁଷ୍ପ ବର୍ଣ୍ଣ ଦିଶଇ ସାନ ଭାଇ
ଧନ୍ୟ ଯେହାର ଯେ ଗର୍ଭଧାରୀ ଆଈ ।
ଆମ୍ଭ ମିଥିଳାରେ ଗୋ ବଡ଼ ପୁଣ୍ୟ ଆଜ
କାହୁଁ ଆସି ପ୍ରବେଶ ହୋଇଲେ ରୂପରାଜ ।
ଦେହଯାକ କିମ୍ପା ଆମ୍ଭର ନାହିଁ ନୟନ
ଯେହାଙ୍କୁ ଦେଖିଲେ ତ ଶାନ୍ତି ନୋହେ
ମନ ।
କେ ବୋଲଇ କେମନ୍ତେ ଛୁଇଂବା ଯେହାର
ଦେହ
ଯେଥକୁ ସଖି ଆରେ ଉପାୟେ ମୋତେ
କହ ।
କେ ବୋଲଇ ଯେହାକୁ ଗୋ ଚୁମ୍ବନ ଆମ୍ଭେ
ଦେବା
ଯେହା ସଙ୍ଗେ ଯେବେ ଗୋ ଗୋଡ଼ାଇଣ
ଥିବା ।୭୦
କେ ବୋଲଇ ଆମ୍ଭର ଗୋ ଜୀବନ ଧିକ
ହେଉ
ଶ୍ରୀରାମ ଯେବେ ଆମ୍ଭର ନୋହିଲେନି ପ୍ରଭୁ ।
ଯେକୁ ଯେବେ ଗୋ ମର୍ଦ୍ଦିବଟି କରେ ଧରି
ତେବେ ସେ ସୁଫଳ ଗୋ ଜୀବନ ଆମ୍ଭରି ।
ଯେହୁ ସଙ୍ଗେ ଯେବେ ଗୋ କରିବା ରମଣି
ତେବେ ସେ ବର୍ତ୍ତିବାର ଗୋ ସଫଳ
ସଙ୍ଗାଦୁଣି ।
ଯେହାକୁ ଘେନି ଯେବେ ଗୋ ପଲଙ୍କେ
ଶୋଇଥିବା
ସ୍ୱର୍ଗେ ଯେବେ ଯାଇ ଆମ୍ଭେ କି ଭୋଗ
କରିବା ।
ଚାଇନ୍ତେ ଶ୍ରୀରାମର ହଲଇ ବଦନ

ଯୁବା ଯୁବତୀଙ୍କି ଘାରିଲା ମଦନ ।୮୦
କେ ବୋଲଇ ଘର ଦ୍ୱାରେ କାର୍ଯ୍ୟ ନାହିଁ
କେ ବୋଲଇ ଆଉ ଥିବା କିସ ପାଇଂ ।
କାହୁଁ ପରବେଶ ହୋଇଲେ ଯେ ପୁରୀ
ଯୁବା ଯୁବତୀଙ୍କ ପ୍ରାଣ ନେମ ହରି ।
ନିଶ୍ଚୟେ ଆଜ ଯେ କରିବ ସ୍ତିରୀ ବଧ
ଚାହିଁବା ଛଟକେ ଯେଥି ପଡ଼ିବ ପରମାଦ ।
ହସି କଥା କହିଲେ ମରିବେ ଅନେକ ନାରୀ
ଅବଶ୍ୟ ପ୍ରାଣ ଯେ ଘେନିମ ସଭିଙ୍କରି ।
ଯେବଣ ସୁନ୍ଦେରୀ ଯେ ହୋଇଛନ୍ତି ଯୁବା
ବିଚାରନ୍ତି ଯେବେ ନୋହିଥାନ୍ତୁ ବିଭା ।୯୦
ଆଗହୁ ଆସିଥିଲେ ହୁଅନ୍ତୁ ଆମ୍ଭେ ନାରୀ
ପିତା ମାତା ନ ଜାଣୁ ଥାନ୍ତୁ ଆମ୍ଭେ ବରି ।
ବୃଧା ସ୍ତିରୀମାନେ ସନ୍ତାପି ହେଉଛନ୍ତି
ବୟେସ ଥିଲେ ଯେ ହୁଅନ୍ତେ ଆମ୍ଭ ପତି ।
ଯେହାଙ୍କୁ ଘେନି ଆମ୍ଭେ କରନ୍ତୁ ବଇଭୋଗ
ଯେହି ସେ ଆମ୍ଭକଇଣ ଭ୍ରଥା ପଣେ
ଯୋଗ ।
ପୁରୁଷେ ବୋଲନ୍ତି ଯେ ସାଧୁ ଯେହାର ମୂର୍ତ୍ତି
ଦେଖିଲା ନ ଥିଲା ଶୁଣିଲା ନାହିଁ ଶ୍ରୁତି ।
ଅପୂର୍ବ ସୁନ୍ଦର କୁମାର ବୟେସ
ଯେଥକୁ ଅଇଲା ଧନ୍ୟ ଯେହୁ
ଦେଶ ।୧୦୦
ପୋୟେ ବିଚ୍ଛେରନ୍ତି ଯେବେ ଯେହାଙ୍କ
ସଙ୍ଗେ ଖେଳି
ତେବେ ସେ ସୁନ୍ଦର ଦିଶଇ ବାଳ ମେଳି ।
ବୃଦ୍ଧ ଜନେ ବୋଇଲେ ଯେ ଦେବତା
ସ୍ୱରୂପ
ମନିଷ୍ୟର କାହିଁ ହୋଇବ ଯେଡ଼େ ଦର୍ପ ।
ନାରୀଗଣେ ମନ ମୂର୍ଚ୍ଛି ନ ପାରନ୍ତି
ଶ୍ରୀରାମର ସଙ୍ଗେ ଗୋଡ଼ାଇଣ ଅଛନ୍ତି ।
ସାମନ୍ତ ପାତ୍ରଙ୍କର ଯୁବତୀମାନେ ମିଳି
ଜଗତୀରେ ଉଠି ଚାହାଂନ୍ତି ସର୍ବ ବାଳୀ ।
ଅଙ୍ଗୁଷ୍ଠି ଦେଖାଇ କେ ଚିହ୍ନାନ୍ତି ରଘୁନାଥ

କଳାମେଘର ବର୍ଣ୍ଣ ଗୋ ଧନୁ ଶସ୍ତ୍ର
ହସ୍ତ ।୧୦
ସିଘ ଛୁଆ ପ୍ରାୟେ ଚାଲିବାର ଠାଣି
ପାଷାଣ ଫୁଟଇ ଚାହାନ୍ତେ ଚାହାଣି ।
ଯେଥୁଅନନ୍ତରେ ବିଶ୍ୱମିତ୍ର ମୁନି
ଶ୍ରୀରାମ ଲକ୍ଷ୍ମଣଙ୍କୁ ଗଲେ ତହୁଁ ଘେନି ।
ଅନେକ ନଗନାରୀ ଅଛନ୍ତି ଗୋଡ଼ାଇ
ରାଜାର ନବରେ ପ୍ରବେଶ ହୋଇଲେ
ଯାଇଂ ।
ଯାଗ କରଇ ସେ ଜନେକଂ ମହାରଷି
ଶ୍ରୀରାମ ଲକ୍ଷ୍ମଣ ହୋଇଲେ ତହିଂ ଆସି ।
ବିଶ୍ୱାମିତ୍ର ସଙ୍ଗେ ଅନେକ ମୁନିଗଣ
ଦେଖନ୍ତି ପ୍ରଚଣ୍ଡ ଜଳଇ ହୁତାଶନ ।୨୦
ମୂଷଳ ପ୍ରମାଣେ ପଡ଼ଇ ଘୃତ ଧାର
ସଞ୍ଚପି କହିବ କେ ଯାଗର ସମ୍ଭାର ।
ଅନ୍ନବସ୍ତ୍ର ତହିଂ ପଇଡ଼ ପାଣି ପଣା
ଅନେକ ଦୂରୁ ଆସି ଅଛନ୍ତି ରାୟେ ରଣା ।
ବ୍ରାହ୍ମଣେ ବହୁତ ହୋ ଯତି ଯେ ସନ୍ନ୍ୟାସୀ
ନାନା ତ୍ରିଥରୁ ଯେ ଅଛନ୍ତି ହାଦେ ଆସି ।
ଯାଗେଣ ଅଛଇ ଯେ ଜନେକଂ ତପଋରୀ
ନାନା ମଣି ରତ୍ନ ଆଭରଣ କରି ।
ବିଶ୍ୱାମିତ୍ରକଇ ଦେଖି ଅନେକ ପୂଜା କଲା
ଆସନେ ବସାଇଣ କୁଶଳ ପୁଚ୍ଛିଲା ।୩୦
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖିଲାକ ଯହୁଁ
ତାହାଙ୍କୁ ଅନାଇ ଯେ ରଷିଙ୍କି କଥା କହୁଁ ।
ମୁରୁଛି ନ ପାରିଲା ରୂପ ଗୁଣ ଚାହିଂ
ଜନେକ ପଋରଇ ବିନୟ ମତ ହୋଇ ।
ଭୋ ମହାମୁନି କଥାଯେ ମୋତେ କହ
ଯେ ଦୁଇଗୋଟି ଅଟନ୍ତି କାହାର ଯେ ପୁଅ ।
କଉଶିକ ବୋଲନ୍ତି ଜନେକ ବୋଲ ଶୁଣି
ଅଯୋଧ୍ୟାର ରାଜା ଯେ ଦଶରଥ ନୃପମଣି ।
ଯେ ରାମ ଲକ୍ଷ୍ମଣ ଯେ ତାହାର ପୁତ୍ର ବେନି
ଯାଗ୍ୟ ରଖିବାକୁ ଅଇଲୁ ଆମ୍ଭେ
ଘେନି ।୪୦

ବାଟରେ ତାଡ଼କୀ ଅସୁରୀ ଓଗାଳିଲା
ଏ ରାମ ତାହାକୁ ଯେ ନାରାଚେ ମାଇଲା
ଦୁଇଖଣ୍ଡ କରି ପକାଇଲା କାଟି
ଅଗମ୍ୟ ବିପୁନ୍ୟେଣ ତାଡ଼କା ଦେହ ଲୋଟି
ତହୁଂ ଆସି ମୋର ଯାଗ୍ୟ ରକ୍ଷା କଲା
ମାନବା ଅସ୍ତ୍ରେ ସେ ଦୁଇ ଦତ୍ୟଙ୍କୁ ନାଶିଲା ।
ମାରୁଚିକି ନେଲା ପବନେ ଉଡ଼ାଇ
ଅଗ୍ନିବାଣ ଘେନି ସୁବାହୁକୁ ଦହି ।
ଧନୁ ଯାଗ୍ୟ ତୋର ଶୁଣିଲାକ ଯହୁଂ
ଦେଖାଇବି ବୋଲି ଆଣିଲଇଂ ତହୁଂ ।୫୦
ବିପୁଳ ବନେଣ ଗଉତମ ନାରୀ
ଶାପେଣ ଥିଲା ସେ ପାଷାଣ ରୂପ ଧରି ।
ଯେ ରାମ ଚରଣ ଲାଗନ୍ତେଣ ତହିଂ
ଦିବ୍ୟ ଶ୍ୟରୀର ସେ ସେ ହୋଇଲା
ପାପଦେହୀ ।
ପୂର୍ବହୁଂ ଶତେ ଗୁଣେ ଅଗୁଳି ତାର ରୂପ
କି ଜାଣି ଚଞ୍ଚଳା ସେ ଅହିଲା ସ୍ୱରୂପ ।
ରାମକଇ ଅର୍ଘ୍ୟ ଦେଲାକ ସେ ସ୍ୟତୀ
ଆନନ୍ଦେ ଚଳିଗଲା ଯହିଂ ତାହାର ପତି ।
ବିଶ୍ୱାମିତ୍ର କହନ୍ତେ ସତ୍ୟାନନ୍ଦ ଜାଣି
କଉଶିକର ଅଗ୍ରତେ ପଚାରଇ ପୁଣି ।୬୦
ଭୋ ମୁନି କହ ମୋତେ ଜନନୀ ମୁକତ
ଶୁଣିଣ କହନ୍ତି ବିଶ୍ୱାମିତ୍ର ତପୋବନ୍ତ ।
ସେ ଶ୍ରୀରାମର ଲାଗନ୍ତେ ଚରଣ
ତୋହୋର ଜନନୀ ପାଇଲା ମୁକତି
କାରଣ ।
ପାଷାଣ ରୂପ ଲେଛି ନିଜ ତନୁ ଧରି
ତହୁଂ ଶତେ ଗୁଣେ ବଳବନ୍ତ ସୁନ୍ଦେରୀ ।
ଶ୍ରୀରାମଙ୍କୁ ଅର୍ଘ୍ୟ ଦେଇଂଣ ମହାସ୍ୟତୀ
ଯାଇଂ ଭେଟିଲା ସେ ତାହାର ନିଜ ପତି ।
ଶୁଣି ସତ୍ୟାନନ୍ଦ ପ୍ରମୋଦିତ ଚିତ୍ତ
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ବହୁତ ।୭୦
ତୁ ଯେ ଜନନୀ ଦାନ ମୋତେ ହାଦେ ଦେଲୁ
ଗରୁତର ଲଜ୍ୟାରୁ ମୁକତି ମୋତେ କଲୁ ।
ତୁ ଯେ ପରମପୁରୁଷ ମହାଗ୍ୟାଂନ ଦାତା

ତୋହୋର ମହିମା ଅଟଇ ଅସଂକ୍ଷତା ।
ଚରଣେ ଲାଗନ୍ତେ ତୋର ପାଷାଣ ହେଲା
ନାରୀ
ତ୍ରିଭୁବନେ ତାକୁ ନାହିଂ ପଟାନ୍ତରି ।
ବିଶ୍ୱାମିତ୍ର ତୋତେ ଚିହ୍ନିଲେ କେମନ୍ତେ
ଯେଡ଼େ କଥା ଜାଣି ଆଣିଲେ କେମନ୍ତେ ।
କଉଶିକ ସେ ଅଟଇ ମହାଗ୍ୟାଂନୀ
ଯେହାଙ୍କର ପ୍ରଶଂସା କରଇ
ପଦ୍ମଯୋନି ।୮୦
ଯେହାର କଥା ହାଦେ ଅଶୃତି ଅଗୋଚର
ଯେକ ମନ ହୋଇ ତୁ ଶୁଣ ରଘୁବୀର ।
କୁଶେ ହସ୍ତ ହୋଇଣ ଦିନେକ ବେଦପତି
ଧ୍ୟାନ କରୁ ପୁତ୍ରେକ ହୋଇଲା ଉତପତି ।
ତାହାର ନାମ ସେ ହୋଇଲାକ କୁଶ
ବେଦୁଂ ଜାତ ଯହୁଂ ତେଣୁ ବେଦି ବଂଶ ।
କୁଶର ଗର୍ଭୁ ଚାରି ତନୟେ ହୋଇଲା
କୁଶାଖ୍ୟ ବୋଲି କରି ଜେଷ୍ଟର ନାମ
ଦେଲା ।
କୁଶନାଭ ବୋଲି ତାହାର ସାନ ଭାଇ
ଯେହାର ଅନୁଜ ବସୁ ନାମ ହୋଇ ।୯୦
ବସୁହୁଂ ସାନ ତାର ନାମ ଅଟଇ ସ୍ୱତୀ
ଚାରି କୁମାରେ ଯେ ହୋଇଲେ ନୃପତି ।
କୁଶଲାଭର ପୁତ୍ର କଉସୁଭ ନୃପତି
ଚାରି ସମୁଦ୍ରେ ସେ ଯେ ଅଟଇ ଚକ୍ରବର୍ତ୍ତୀ ।
ଯେହାର ତନୟେ ଯେ ଗାଧିରାଜା ହୋଇ
ଭୁଜବଳେ ସାଧ୍ୟ କଲାକ ସର୍ବମହୀ ।
ଗାଧିର ତନୟେ ଯେ ବିଶ୍ୱାମିତ୍ର ହୋୟେ
ଅଇରିବଳ ପୂଜା କରନ୍ତି ସର୍ବ ଭୟେ ।
ଅତିହିଂ ପ୍ରତାପୀ ସେ ଅଟଇ ନୃପମଣି
ନବରେ ପ୍ରବେଶ ହୋଇଲା ପୁଣ୍ୟ
ପ୍ରାଣୀ ।୧୦୦
ଦିନେକ ବଳଘେନି ନୃପତି ଶିଖର
ମୃଗୟା ବିନୋଦେ ପଶିଲା ବନ ଘୋର ।
ଅନେକ ଶୂକର ହରିଣ ମାଇଲେ
ମୟେମତ୍ତ ଗଜ ଅନେକ ବନ୍ଦୀ କଲେ ।

କ୍ଷୁଧା ବେଳ ଯହୁଂ ହୋଇଲାକ ଆସି
ଯାଇଂଣ ଭେଟିଲେ ସେ ବଶିଷ୍ଠ ମହାଋଷି ।
ଦେଖି ମହାମୁନି ଗଉରୋବ କଲେ
ଯେ ନୀତି ଅଟଇ ବିବିଧି ବିଧି କଲେ ।
ବୋଇଲେ ବିଶ୍ରାମ କ୍ଷଣକେ ରାଜା କର
ଯେ ତୋହୋର ସଇନ୍ୟକୁ ଦେବଇଂ
ଆହାର ।୧୦
ତୁହି ମଣୋହି କରିଣ ରଜା ଯାସି
ଯେଥୁ ଅନନ୍ତରେ ଶୁଣ ରଘୁଶିଷି ।
ରାଜାଙ୍କୁ ରୁହାଇ ସେ ବଶିଷ୍ଠ ମହାମୁନି
ତତକ୍ଷଣେ ପାଶକୁଂ ରାଇଲା ନନ୍ଦିନୀ ।
ତୁହିଂ ଗୋ ସୁରଭି ସମ୍ଭାଳ ବିଶ୍ୱାମିତ୍ର
ଆଜ ଜାଣିମା ଗୋ ତୋହୋର ଚରିତ୍ର ।
ଶୁଣିଣ ସୁରଭି କଲା ସର୍ବବିଧି
ଯହୁଂ ଆଗ୍ୟାଂ ଦେଲେ ବଶିଷ୍ଠ ତପୋନିଧି ।
ରାଜାଙ୍କୁ ନବର ପାତ୍ରକଇ ଉଆସ
ଯେକସର ଲୋକଙ୍କୁ ଅନରୂପେ
ବାସ ।୨୦
ଅନ୍ନ ବ୍ୟଞ୍ଜନ ବିବିଧ ପରକାର
ଦଧି ଦୁଧ ସର ବିବିଧ ସମ୍ଭାର ।
ଗନ୍ଧ ଚନ୍ଦନ ବିବିଧ ବସ୍ତ୍ରମାନ
ଯେ ଯାହାର ଅନରୂପେ ଦେଲାକ
ଭୋଜନ ।
ମୁଣୋହି କରିଣ ଦେଲାକ ତ୍ରିପୁତି
ବଶିଷ୍ଠଙ୍କୁ ପୁଚ୍ଛା କଲାକ ନୃପତି ।
ଭୋ ମହାଯତି ତୁ ଯେ ଯେକସରେ ଥାଇଂ
ଯେ ମୋହୋର ସନ୍ୟଙ୍କୁ ଭୋଜନ କେହ୍ନେ
ଦେଇ।
ମୁନି ବୋଇଲେ ମୋ ସୁରଭି ଭିଆଇଲା
ସେ କାମଧେନୁ ତୋତେ ଭୋଜନ ହାଦେ
ଦେଲା ।୩୦
ଶୁଣିଣ ଆଶ୍ଚର୍ଯ ହୋଇଲେ ନୃପବର
ମନେ ମନେ କଥା କରଇ ବିଋର ।
ବୋଇଲା ମୁହିଂ ଯେ କରଇ କଟକାଇ
ସେ କଥା ଭଲ ମୋତେ ଯୋଗାଇ ଯେ
ଗାଈ ।
ବନ ପରବତେ ଯୋଗାଣ ଭିଆଇବ
ମୋହୋର ରାଇଜକୁ କଷ୍ଟ ଯେ ନ ଥିବ ।
ଯେତେ ବୋଲି ରାଜା ଯେ ବଶିଷ୍ଠଙ୍କୁ
ଚାହିଂ
ସୁରଭିକି ପ୍ରତିତୁଲ୍ୟ ଦେବା ଆନ ଗାଈ ।
ଯେ ଯେ ଗାଈ ଗୋଟି ମୁନି ମୋତେ ଦେବା
ଯେବେ ମହାମୁନି ଘେନିଲୁ ମୋର
ସେବା ।୪୦
ମୁନି ବୋଲନ୍ତି ଯେ ତୋତେ ନ ଯୋଗାଇ
ତପୀଜନଙ୍କର ଯେ ଅଟଇ ଯଜ୍ଞ ଗାଈ ।
ତୁହି ଯେ ନୃପତି ଅପୂର୍ବ ତୋତେ କିସ
ଯାହା ତୁ କଲୁ ଯେ ତୋହୋର ବଡ଼ ଦୋଷ ।
ରାଜା ବୋଲଇ ମୁଂ ପାଲଟା ଗାଈ ଦେବି
ତୋହୋର ତହୁଂ ଅବଶ୍ୟ ଗାଈ ଘେନି
ଯିବି ।
ଚଉଦ ସହସ୍ର ହୋ ଅଛଇ ମୋର ହାଥୀ
ଯୋଦ୍ଧା ସହିତେଣ ଘେନ ମହାଯତି ।
ଆଠ ସହସ୍ର ରଥ ଘେନସି ଆବର
ଉଚିଶର୍ବା ଅଶ୍ୱ ଅହିବ୍ରତ ହୟବର । ୫୦
ଲକ୍ଷେକ ଧେନୁ ସୁରଭିକି ସମକରି
ଜମ୍ବୁନଦ ସୁନିଆଂ ଦେବଇଂ ତପଋରୀ ।
କୋଟିଏକ କନ୍ୟା ଅଳଙ୍କାର ଯୁଗତେ
ରାଜ୍ୟହିଂ ଅର୍ଧ ଦେବି ସୁରଭି ଦିଅ ମୋତେ ।
ବଶିଷ୍ଠ ମୁନି ନାସ୍ତି କଲେ ତାହା ଶୁଣି
କୋପଭର ହୋଇ ବୋଲଇ ନୃପମଣି ।
ରାଗେଣ ତନୁ ତାର କମ୍ପଇ ଥରହର
ସନ୍ୟଙ୍କୁ ରାଇ ଆଜ୍ଞା ଦେଲେ ନୃପବର ।
ଅଡ଼ାଅ ସୁରଭିକି କଟକକୁ ନେବା
ପଛେ ଯାହା କରିପାରୁ ଯେ ଋଷିକି
ଦେବା ।୬୦
ଯେତେ ବୋଲି ରାୟେ ସୁରଭିକି ନେଲା
ଜାଣି ସୁରଭି ଯେ ଋଷିଙ୍କି ବୋଇଲା ।
ବୋଇଲା କିମ୍ପାଇ ତୁ ଅଦୟା କଲୁ ମୋତେ
ମୋହୋରତ ଦୋଷ କଲା ନାହିଂଟି
ତୋତେ ।
କିମ୍ପା ଉପେଖିଲୁ କିବା ଅବିଗୁଣ
ବଶିଷ୍ଠେ ବୋଲନ୍ତି କାମଧେନୁ ଶୁଣ ।
ମାଗୋ ବଳେ ରାଜା ହାଦେ ନେଉଂଅଛି
ତୋତେ
କିମ୍ପାଇ ସୁରଭି ମନ୍ଦ ବୋଲୁ ମୋତେ ।
ରାଜା ବାହୁବଳେ ତପ ଆମ୍ଭେ କରୁ
ବନ ପରବତ କନ୍ଦରେ ଦିନ ହରୁଂ ।୭୦
ରଜାଙ୍କର କଲ୍ୟାଣ କରୁ ଆମ୍ଭେ ନିତି
ଅଗ୍ନିମୁଖେ ସମର୍ପୁ ପୂର୍ଣ୍ଣ ଯେ ଆହୂତି ।
ତେଣେ ଦେବେ ହୁଅନ୍ତି ପରମ ତୋଷ
ଦିଗପାଳେ ପାଳନ୍ତି ଉପୁଜନ୍ତି ଶସ୍ୟ ।
ଶସ୍ୟ ବର୍ଦ୍ଧମାନେ ପ୍ରଜାୟେ ବ୍ରତନ୍ତି
ପ୍ରଜାଙ୍କର କ୍ଷେମେ ନୃପତି କୁଶଳ ହୁଅନ୍ତି ।
ନୃପତିର ତୋଷେ ବଳମାନ କାୟେ
ରାଜା ବଳମାନେ ଅଇରି ପଳାୟେ ।
ଅଇରି ପଳାବନ୍ତେ ଦୁଷ୍ଟ ଭୟ ନାହିଂ
ଦୁଷ୍ଟ ନ ଥିଲେ ସେ ରହିଂ ଯହିଂ ତହିଂ ।୮୦
ଯହିଂ ଥିଲେଣ ଯେ ନିର୍ଭୟେ ତପ କରି
ତେଣୁ ସେ ଆମ୍ଭେ ଯେ ଅଟୁଂ ତପଋରୀ ।
ତପୀମାନଙ୍କର ରାଜା ଧର୍ମପିତା
ରାଜାର ସେ ତପୀ ଅଟଇ ଦେବତା ।
ଦେବତା ଆରାଧନା କରନ୍ତି ଯେବଣ ପ୍ରାଣୀ
ସେ ସେ ସୁଜ୍ଞ ଜନେ ପୁରାଣେ ବଖାଣି ।
ରାଜା ହୋଇ ଯେବେ ଦୁଷ୍ଟ ପଣ କରଇ
ଧର୍ମ ନ ଥାପିଣ ପର ଆୟେ ହରଇ ।
ମୁଂ କିସ କରିବି ଶୁଣସି ଗୋ ମାୟେ
ମୁଂ କିମ୍ପା ବିଳୋହିବି ମୋହୋର ବିତ୍ତ
ଆୟେ ।୯୦
ନୃପତି ବଳେ ତୋତେ ଯାଉଅଛି ଘେନି
ମୁହିଂ କିସ କରିବି ଶୁଣ ଗୋ ନନ୍ଦିନୀ ।
ଶୁଣି ସୁରଭି ଯେ ବଶିଷ୍ଠଙ୍କର ବାଣୀ

ଖରତର ନିଶ୍ୱାସ ନିଘାତ ବାତ ଜାଣି ।
ହେମା କରିଣ ଯେ ରାବେକ ଦେବୀ ଦେଲା
ଦେବ ସନ୍ୟ ତହୁଂ ଉପଗତ ହେଲା ।
ଶିଙ୍ଗରୁ ଗନ୍ଧର୍ବ ବଳ ହୋଇଲାକ ଜାତ
ଚାରି ଖୁରାରୁ ଜାତ ସେ ହୋଇଲେ ଦଇତ ।
ହାଣ ହାଣ ମାର ମାର ଶୁଭଇ ଶବଦ
ଶୁଣିଣ ବିଶ୍ୱାମିତ୍ର ହୋଇଲେ ତବଦ ।୧୦୦
ବାଜିଲା ରଣଗୋଳ ଓହୋବଳ ଥାଠ
ରାଜାର ସନ୍ୟ ଆଉ ନ ପାଇଲେ ବାଟ ।
ସୁର ଅସୁର ନନ୍ଦିନୀ ଜାତ କଲା
ତାହାଙ୍କର ହାଥରେ ରାଜାର ବଳ ମଲା ।
ବିଶ୍ୱାମିତ୍ରର ଶତେକ ପୁତ୍ର ଥିଲେ
ଅନେଶ୍ୱତ ଭାଇ ଯୁଦ୍ଧରେ ତାର ମଲେ ।
ଗୋଟିଏ ଉବୁରି ନଇଲେ ସଇନି
ପଳାଇଲେ ବିଶ୍ୱାମିତ୍ର ସଙ୍କୋଚ ମନ
ଘେନି ।
ସଙ୍ଗରେ ଜେଷ୍ଠ ପୁତ୍ରକୁ ଘେନି ଗଲା
ନିଜ ପୁରେ ଯାଇ ପ୍ରବେଶ ହୋଇଲା ।୧୦
ଅଭିମାନେ ପୁତ୍ରକୁ ଯୁବରାଜା କରି
ଭାରିଯାକୁ ସଙ୍ଗେ ଘେନିଣ ଦଣ୍ଡଧାରୀ ।
ହେମାଞ୍ଚଳେ ଯାଇ ଅନେକ ତପ କଲା
ପୁଣି ହିଂ ଚାରି ପୁତ୍ର ସେ ଉପୁଜିଲା ।
ହରିଚନ୍ଦନ ମଧୁଚନ୍ଦନ ହିତଚନ୍ଦନ ନାମ
ମୋହଚନ୍ଦନ ଘେନି ଚାରିହେଂ ଉତପନ ।
ପୁଣିହିଂ ରାଜାର ଚାରିପୁତ୍ର ହୋଇଲାକ ଜାତ
କି ଜାଣି ପୋୟେ ଯେ ଅପୂର୍ବ ସୁରଜିତ ।
ଅନେକ ତପ ଯହୁଂ ଗାଧିସୁତ କଲା
ପ୍ରସନ୍ନ ହୋଇ ତାଙ୍କୁ ଈଶ୍ୱର ବର
ଦେଲା ।୨୦
ନାନା ଶହସ୍ର ତହିଂ ହୋଇଲା ପରାପତ
ବର ପାଇ କୋପେ ଆସଇ ବିଶ୍ୱାମିତ୍ର ।
ବଶିଷ୍ଠଙ୍କ ଆଶ୍ରମେ ମିଳିଲାକ ଯାଇ
କୋପେ ମଢ଼ିଆରେ ଅଗ୍ନି ଲଗାଇଲା
ନେଇଂ ।
ଯହୁଂ ସେ ମଢ଼ିଆରେ ଲାଗିଲାକ ଜୁଇ
ତ୍ରିଦଣ୍ଡ ଘେନି ବଶିଷ୍ଠ ବାହାର ଯେ ହୋଇ ।
ଦେଖି କଉଶିକ ଯେ ଅସ୍ତ୍ରଶସ୍ତ୍ର ପେଷି
ବ୍ରହ୍ମଦଣ୍ଡ ବୁଲାଇ ନିବାରଇ ମହାଋଷି ।
ଦେବ ଅସ୍ତ୍ରମାନ ହୋଇଲା ବିଅର୍ଥ
ମୁନିର ରୋମମୂଳୁଂ ହୋଇଲାକ ଜାତ ।୩୦
ସ୍ୱର୍ଗେଣ ଥାଇ ଯେ ବୋଲନ୍ତି ସୁରଗଣ
ତୋହୋର ହୋ ବିଶ୍ୱାମିତ୍ର ନୁହଇଂ ଭଲ
ପୁଣ ।
ବ୍ରାହ୍ମଣକଇ କ୍ଷତ୍ରୀ ନୁହଇ ସମ ସରି
ବଶିଷ୍ଠର କୋପେ ଆଜି ନାଶିବ ବସୁନ୍ଧରୀ ।
ତୁ ହୋ ନୃପମଣି ନ କରସି ସମର
ଆମ୍ଭର ବୋଲ କର ବେଳେକ ଅପସର ।
ଶୁଣିଣ ଗାଧିସୁତ ହୋଇଲା ମଉନ
ତପୀଙ୍କୁ ପ୍ରଶଂସା କରଇ ମନେ ମନ ।
ବଶିଷ୍ଠର ଶାନ୍ତି ସ୍ୱର୍ଗର ବୋଲ ଶୁଣି
ତପଇ ସେ ସାର ବିଶ୍ୱାମିତ୍ର ଜାଣି ।୪୦
ଲଜ୍ୟାୟେ ନୃପବର ବାହୁଡ଼ିଣ ଗଲା
ଅଯୁଧ୍ୟା ପୁରରେ ଯାଇ ପ୍ରବେଶ
ହୋଇଲା ।
ପୁତ୍ର ଭାରିଯାକୁ ଥୋଇଲାକ ତହିଂ
ସାଗର କୂଳକୁ ଗଲା ତପ କରିବାର ପାଇଂ ।
ଶ୍ରୀରାମ ପଚ୍ଛରନ୍ତି ଶୁଣ ସତ୍ୟାନନ୍ଦ
ସେ ବେଳେ କେ ଅଯୁଧ୍ୟାରେ ଅଟଇ
ନରିନ୍ଦ୍ର ।
ସତ୍ୟାନନ୍ଦ ବୋଲଇ ତୋହେର ଉପର
ବଂଶରେ ରାଜା
ସୁଚିତେଣ ପାଳୁଥିଲେ ଜନ ପ୍ରଜା ।
ଅସଶରର ପୁତ୍ର ବସୁ ନାମ ହୋୟେ
ବିଶ୍ୱାମିତ୍ର ତାରେ ପୀରତି ଉପୁଜାୟେ ।୫୦
ବଡ଼ ପ୍ରତାପୀ ସେ ଅଟଇ ମହୀପତି
କଉଶିକ ନେଇ ଥୋଇଲା ତହିଂ ଯୁବତୀ ।
ପୁତ୍ର ସହିତେଣ ସମର୍ପଣ କରି
ତପ କରିଗଲା ମନେ କୋପଧରି ।
ବସୁ ରାଜା ତାହା ସମ୍ଭାଳଣ କଲା
କାଳେ ନରପତି ସ୍ୱର୍ଗକଇ ଗଲା ।
ବିଷ୍ଣୁପାରୁଶ ବୋଲି ତନୟେ ତାହାର
ଅଯୁଧ୍ୟା ରାଜ୍ୟେ ସେ ହୋଇଲା ନୃପବର ।
ସତ୍ୟବ୍ରତ ବୋଲି ଯେହାର କୁମର
ରୂପ ଗୁଣେ ସୁନ୍ଦର ନାହିଂ ପଟାନ୍ତର ।୬୦
ପିତା ସ୍ନେହଭରେ ଯୁଗ ରାଜା କଲା
ସକଳ ସମ୍ପଦ ଅର୍ଥ ସମର୍ପିଲା ।
ଦିନେକ ସତ୍ୟବ୍ରତ ନଗ୍ର ଭ୍ରମି ଯାଇ
ଦେଖିଲା ବ୍ରାହ୍ମଣ ଝିଅ ଅବିଭାଇ ।
ରୂପ ଗୁଣେ ସୁନ୍ଦର ହୋଇଲାଣି ଯୁବା
ସାନ୍ଦ୍ରିଶେ ବର ନ ପାଇଂ ନୋହିଅଛି ବିଭା ।
ଦୁଆରେ ଉଭା ହୋଇ ଅଛଇ ସୁନ୍ଦେରୀ
ସତ୍ୟବ୍ରତ ଦେଖି ମଦନ ଶରେ ଘାରି ।
ସେହି ସେ କନ୍ୟା ଯେ କୁମରକୁ ଚାହିଂ
ଅଥିର ଶ୍ୟରୀର ମଦନେ ବଶ୍ୟ
ହୋଇ ।୭୦
ଦୁଇ ମନ ଯହୁଂ ହୋଇଲା ଏକମତ
କନ୍ୟାକୁଇ ଘେନି ଅଇଲା ରାଜପୁତ୍ର ।
ନିଜ ପୁରେ ନେଇ ରମଣୀ ଭୋଗ କଲା
ବ୍ରାହ୍ମଣ ଜାଣି ସିଂଘଦ୍ୱାରକଇ ଗଲା ।
ଗୁହାରି କରନ୍ତେଣ ଜାଣିଲା ନୃପବର
ସତ୍ୟବ୍ରତ ରାଇଂ ବୋଲଇ ଉତ୍ତର ।
କିରେ ପାପିଷ୍ଠ ତୁ କଲୁ ମନ୍ଦ କୃତ୍ୟ
ରମଣୀ କେନ୍ହେ କଲୁ ବ୍ରାହ୍ମଣ ଦୋହିତ ।
ରାଜା ବୋଲିଣ ଯେ ସାରିଲି ତୋତେ ଟୀକା
ମୋହୋର ଥାଉଂ ଥାଉଂ କରୁଅଛୁ
ଡକା ।୮୦
ଯାଅ ତୁ ଚଣ୍ଡାଳରେ ନ ଥାଅ ମୋର ପୁର
ତାହା ଶୁଣି କୁମର ହୋଇଲା ବାହାର ।
ନଗ୍ର ବାହାରେ ରହିଲା ଆଶ୍ରମେକ କରି
ବଶିଷ୍ଠ ମୁନିକି କୋପମନ ଧରି ।
ବିଚାରିଲା ପିତା ଅବା ମୋତେ କୋପ କଲା
ଯେ ଯେ ମନ୍ତ୍ରୀ କିବା ତିଆରଣ ନ କଲା ।

ମୁହିଂ ବନବାସୀ ହୋଇଲଇଂ ତହୁଂ
ଯେହାର ବଇଗୁନ୍ୟ ଅଛଇ ମନେ ଯହୁଂ ।
ଯେତେକ ବିଋରି ସେ ରାଜାର କୁମର
ଦୁଃଖେଣ ରହିଲା ସେ ନଗ୍ରର ବାହାର ।୯୦
ବିଶ୍ୱାମିତ୍ରଙ୍କର କୁଟୁମ୍ବ ଯହିଂ ଥିଲା
ହେଳେଣ ନୃପତି ସେ ତାହା ପାଶୋରିଲା ।
ବଶିଷ୍ଟେ ନ କହିଲେ ଅହନ୍ତା ମନେ ଧରି
ତେଣୁ ସେ ଦୁଃଖ ପାଇଲେ ବିଶ୍ୱାମିତ୍ର
ନାରୀ ।
ଦୁର୍ଭିକ୍ଷ କାଳ ଯହୁଂ ପଡ଼ିଲାକ ଆସି
ଅଷ୍ଟଗୋଟି ପୁତ୍ର ଘେନି ଭାଳଇ ବାଳୀ
ବସି ।
କି ବୁଦ୍ଧି କରିବି ମୁଂ ଯିବି କେଉଂ କତି
ଦୁର୍ଭିକ୍ଷ ଦେଖି ପଳାଇଲାକ ମୋର ପତି ।
ରାଜାର ଗୋଚରେ ସେ ସମର୍ପିଣ ମୋତେ
ଗଲା
ରାଜ୍ୟ ଭୋଗ ପାଇ ଯେ ମୋତେ
ପାଶୋରିଲା ।୧୦୦
କେ ମୋତେ ପୋଷିବ କାନ୍ତାରର କାଳେ
ଦଶଦିଶକୁ ଚାହିଂ ସେ ହୋଇଲା
ଅନ୍ତରାଳେ ।
ବୋଲଇ ଉପବାସେ ପାରିବି ମୁହିଂ ଥାଇଂ
ପୋୟେ ମୋର ସାନ ଯେ ଲୋଡ଼ନ୍ତି ଅନ୍ନ
ଖାଇ ।
ବାବୁ ବିଧାତାରେ ରାଜାର ମୁହିଂ ରାଣୀ
ଯେତେ କଷ୍ଟ ବିହିରେ ଦେଲାକ ମୋତେ
ପୁଣି ।
ଅନ୍ନ ବସ୍ତ୍ର ବିହୁନେ ମୁଂ ବଂଚିବି କେମନ୍ତେ
ଭୋ ଧର୍ମଦେବତା ପ୍ରତିକାର କର
ମୋତେ ।
ଯେତେ ବିଋରିଣ ରୋବୋଇ ମହାସ୍ୟତୀ
ଯେଥୁଅନନ୍ତରେ ପାହିଲାକ ରାତି । ୧୦
ଭାବିଲାକ ମୋର ଆନେ ପାର ନାହିଂ
ପୁତ୍ରେକ ହାଟରେ ବିକିବଇଂ ନେଇ ।

ଯେ କଥା ଦୃଢ଼କରି କଲାକ ସନମତ
ପୁତ୍ରଙ୍କ ବସାଇଂ ବୋଲଇ ତହିଂ ମାତ ।
ଶୁଣ ମୋର ବାବୁରେ ଦୁଃଖିର ତନୟେ
ମହରଗ ଦେଖିଣ ପିତା ଛାଡ଼ିଣ ପଳାୟେ ।
କେବଣ ପ୍ରକାରେ ବାବୁରେ ପୋଷିବି ତୁମ୍ଭନ୍ତ
ଅହନ୍ତା କଲେ ବାବୁ ବଶିଷ୍ଟ ତପୋବନ୍ତ ।
ରାଜାକୁ ପିତା ତୁମ୍ଭର ସମର୍ପିଣ ଗଲା
କର୍ମର ବିପାକେ ନୃପତି ପାଶୋରିଲା ।୨୦
ଯେତେଦିନ ଭିକ୍ଷା ମାଗିଣ ବ୍ରତିଲ
ଝାଉ ପେଜ ଭଖି ଦୁଃଖେଣ ଦିନ ନେଲ ।
ଭିକ୍ଷାହିଂ ନ ପାଇଲି କାଲି ମାଗି ଯାଇ
ଅଷ୍ଟପ୍ରାଣୀ ବାବୁରେ ଜୀଇଂମ କେମନ୍ତ
ହୋଇ ।
ଗାଲ୍ୟଭକୁ ବିକି ଆଣିମି କିରେ ଧନ
ନୋହିଲେ ତୁମ୍ଭନ୍ତରେ ନ ମିଳଇ ଅନ୍ନ ।
ସେହି ବ୍ରତିବ ବାବୁରେ ପର ଘରେ ଥାଇଂ
ତୁମ୍ଭେ ଜୀଇଂବରେ ଆନେ ପାର ନାହିଂ ।
ମାତାର ବୋଲ ଶୁଣି ବୋଲନ୍ତି କୁମର
ଗାଲ୍ୟଭ ବୋଲଇ ଯେ ଅଟଇ
ବେଭାର ।୩୦
ମୋତେ ବିକିଲେ ଯେବେ ତୁମ୍ଭେ ସୁସ୍ତେ
ଥିବ
ଯେହା ସେ ନିର୍ବା ଯେବେ କରିଛି ଦଇବ ।
ଯେତେ ବୋଲି ବଳା ହୋଇଲା ଆଗୁସାର
ପଛେଣ ଜନନୀ ଗୋଡ଼ାଇ ତାହାର ।
ନୟନୁଂ ଅଶ୍ରୁଜଳ ଗଳଇ ଅବିଛନ୍ନେ
ପିନ୍ଧିଲା ବସନେ ତାହା ପୋଛଇ ଘନେ
ଘନେ ।
ଆବର ସାତ ପୁତ୍ରେ ଅଛନ୍ତି ଗୋଡ଼ାଇଂ
ଅଯୁଧ୍ୟାର ହାଟେ ମିଳିଗଲେ ଯାଇଂ ।
ଗାଲ୍ୟଭକୁ ଆଗ କରିଣ ଅଛନ୍ତି ବସି
ବିକିବ ବୋଲି ତାହାକୁ ଯତନ ହିଂ
ଭାଷି ।୪୦
ହାଟ ବେଳ ହିଂ ଭାଜିଲା କେହି ଘେନନ୍ତା
ନୋହିଲା

ନଗ୍ରଯାକ ବୁଲାଇ ବାହୁଡ଼ି ଅଇଲା ।
ନଗ୍ରପ୍ରାନ୍ତେ ଯାଇ ବସି କାନ୍ଦୁଣ ଅଛନ୍ତି
ନଗ୍ର ବାହାରେ ଯାଇ ସତ୍ୟବନ୍ତକୁ
ଦେଖନ୍ତି ।
କୁମର ପଚାରଇ କିମ୍ପାଇଂ ଶୋକ କର
କନ୍ୟା ବୋଇଲା ବାବୁ ବହୁତ କଷ୍ଟ
ଆମ୍ଭର ।
ବିଶ୍ୱାମିତ୍ର ରାଜାର ମୁଂ ଅଟଇ ଘରଣୀ
ଯେ ଅଷ୍ଟପୁତ୍ର ମୋର ଅଟନ୍ତି କୁମରମଣି ।
ମୋହୋର ଭ୍ରଥାର ଅଯୁଧ୍ୟା ରାଜାର ପୀରତି
ତେଣୁ ସେ ଆମ୍ଭକୁ ଯେଥେ ଛାଡ଼ିଗଲେ
ଯତି ।୫୦
କେତେଦିନ ରାଜା ସମ୍ଭାଳିଣ ଥିଲା
ସମୟେକ ଭୋଳ ହୋଇଂ ନୃପତି
ପାଶୋରିଲା ।
ବଶିଷ୍ଟ ଯେ ରାଜ୍ୟେ ଅଟଇ ଯହୁଂ ମନ୍ତ୍ରୀ
ତେଣୁ ସେ ଯେଥି ଦୁଃଖୀ ହୋଇଅଛି ଯନ୍ତ୍ରି ।
ରାଜା ପାଶୋରିଲା ମନ୍ତ୍ରୀ ହିଂ ନ କହିଲା
ଅହନ୍ତା ଖଣ୍ଡି ଯହୁଂ ହୃଦରେ ବହିଲା ।
ଦୁର୍ଭିକ୍ଷ କାଳ ଯହୁଂ ହୋଇଲାକ ଆସି
ତେଣେ ସେ ପୁତ୍ରମାନ ନ ପାରିଲି ପୋଷି ।
ଗାଲ୍ୟଭ ନାମେଣ ଯେ ମୋହୋର ସାନପୁତ୍ର
ହାଟକୁ ନେଇଥିଲି ଯେହାକୁ ବିକିତ ।୬୦
କେହି କିଣନ୍ତା ନୋହିଲେ ମୋର ବଛି
ପୁଅନ୍ତ ଘେନି କ୍ରୋଧେ ବାହୁଡ଼ି ଯାଉଅଛି ।
କାଲି ଉପବାସେ ନ ପାଇଲି ଭିଖ
ତେଣୁ ସେ ଶୁଖିଅଛି ପୁତ୍ରଙ୍କର ମୁଖ ।
ଅନାସ୍ତ ହୋଇଲି ବାବୁ ଯିବୁ କେବଣ କତି
ଯେତେକର ହତ୍ୟା ଘେନିଲା ବଶିଷ୍ଟ
ମହାଯତି ।
ଯେତେ ବୋଲି ରାଣୀ ରୋବଇ ଉଚ୍ଚ ସ୍ୱରେ
ଶୁଣିଣ ଆଶ୍ୱାସନା କଲାକ କୁମରେ ।
ନ ରୋବ ସୁନ୍ଦେରୀଲୋ ପୁତ୍ରକୁ ଧନ ଦେବା
ବିଶ୍ୱାମିତ୍ରକୁ ଯେ ଥାଉ ମୋର ସେବା ।୭୦

ଯେତେ ବୋଲି ଧନ ଦେଲାକ କୁମର
ଶତେକ ଧେନୁ ସମାନ୍ୟେ ଯେ କୁମର ।
ଆପଣାର ପାଶରେ ଗୁହାଇଲା ନେଇ
ନିତି ନିତି ଅନ୍ନ ବ୍ୟଞ୍ଜନ'ପଡ଼ି ଦେଇ ।
ଗାଲ୍ୟଭ ତାହା ସଙ୍ଗେ ବିଚରେ ହୋଇଥାଇଂ
ସତ ଅନୁକର୍ମେ ବିଶ୍ୱାସ ଅଟଇଂ ।
ଯେତେକ ଧନ ସେ ପୁତ୍ରକୁ ବିକି ନେଲେ
କେତେହେଂକ ଦିନେ ସେ ଧନହିଂ
ସାରିଲେ ।
କାଳ ମହରଗ ଦିନେ ଦିନେ ପଡ଼ି
ଦୁର୍ଭିକ୍ଷ କାନ୍ତାରେ ଯେ ଅନେକ ଲୋକ
ମରି ।୮୦
ସତ୍ୟବ୍ରତ ଆଶ୍ରମେ ରହିଲେ ଆଠ ପ୍ରାଣୀ
କୁମାର ଆହାର ଦିଅଇ ଯେ ଯେଣୁ ତେଣୁ
ଆଣି ।
ମୃଗ ଶୂକର ମାୟେଂସ ଦେଇଂଣ ସେ ପୋଷି
ଯେମନ୍ତ ଦିନେ କଷ୍ଟୋର ହୋୟେ ଆସି ।
ଦିନେକ ସେ ସତ୍ୟବ୍ରତ ନ ପାଇଲା କିଛି
ଦେଖିଲା ବଶିଷ୍ଟଙ୍କର ସୁରଭି ଚରୁଅଛି ।
କାଣ୍ଡକେ ବିନ୍ଧି ମାରିଆଣି କେଳାଇଲା
ଶୂକର ମାଂସ ବୋଲି ତାହା ଆଣିଦେଲା ।
ବିଶ୍ୱାମିତ୍ର ଘରଣୀ ତା'ଘେନିଲା ତୋଷ ଚିତ୍ତେ
ରନ୍ଧନ କଲା ତାହା ଆହାର ନିମନ୍ତେ ।୯୦
ପୁଅନ୍ତ ଦେଇଣ ସେ ଭୁଞ୍ଜିଲା ଆପଣ
ଯେଥୁଅନନ୍ତରେ ହୋ ଶ୍ରୀରାମଚନ୍ଦ୍ର ଶୁଣ ।
ମେରୁ ଉହାଡ଼େ ଯହୁଂ ଆଦିତ୍ୟ ହୋଇଲା
ବଶିଷ୍ଟଙ୍କ ଗାଈ ଘରକୁ ନଗଲା ।
ଯୋଗବଳେ ତାହା ଜାଣିଲେ ମହାରଷି
ସତ୍ୟବ୍ରତ ତହିଂକି କୋପ ମନେ ଆସି ।
ବୋଇଲେ ଚାଣ୍ଡାଳରେ ମନ୍ଦକୃତ୍ୟ କଲୁ
କାମଧେନୁକୁ ମୋର ପ୍ରାଣେଣ ମାଇଲୁ ।
ଲଭିଲୁ ଗୋହତ୍ୟାରେ ପାର ତୋତେ ନାହିଂ
ଆବର ସଦଗତି ପାଇବୁ ତୁ କାହିଂ ।୧୦୦
ପିତା ବଚନ ତୁ ଭାଙ୍ଗିଲୁରେ ଦୁଷ୍ଟ
ସକଳ ପାପରେ ସେହୁ ଅଟଇ ଗରିଷ୍ଠ ।

ଆବର ବ୍ରାହ୍ମଣର ହରିଲୁ ଦୋହିତା
ଯେହାକର ପ୍ରାଣ୍ଡିତରେ ନ ବିନ୍ଧିଲା ବିଧାତା ।
ଯେ ସେ ଦୁଇ ପାପ ଅଟଇ ଦୃଭାର
ଯେବେ ପୁଣି ଗୋହତ୍ୟା କଲୁରେ ପାମର ।
ଯେ ତିନି ପାପକୁ ବିଚର ନ କଲୁ
ଅଧର୍ମ କଥାକୁରେ ବହୁତ ମନ ଦେଲୁ ।
ତ୍ରିଶଙ୍କୁର ନାମ ଆଜହୁଂ ତୋହୋର ହେଉ
ଯାବତ କାଳକଇ ଅପକୀରତି
ରହିଥାଉ ।୧୦
ଯେତେ ବୋଲି ବାହୁଡ଼ି ଗଲେ ମହାରଷି
ସତ୍ୟବ୍ରତ ମନେ ଅନେକ ଭାଳଇ ବସି ।
ଯେ ଦେହ ଆଉ ମୁଂ ରଖିବି କେତେ କାଳ
ମନେ ବିଚାରଇ ହୋଇଲି ଚାଣ୍ଡାଳ ।
ଯେ ସେ ବିଚରି ସେ ଦେଶାନ୍ତର କଲା
ସିନ୍ଧୁକୂଳେ ବିଶ୍ୱାମିତ୍ରକୁ ଦେଖିଲା ।
ତପେ କଉଶିକ ହୋଇଲେନି ରଷି
ସତ୍ୟବ୍ରତକୁ ଚାହିଂ ପଚରଇ ହସି ।
ବାବୁ କିରାତ ରୂପତ ଦେଖିଲି ତୋହୋର
ଆତ୍ମା ବିକଳିତ ହୋଇଲା ମୋହୋର ।୨୦
କୁମର ବୋଇଲା ଶାପ୍ୟେ ମୁହିଂ ବଡ଼ ଦୁଃଖୀ
ତୋହୋର ପ୍ରସାଦେ ମୁଂ ହୋଇଲି
ନିରିମାଖି ।
ତୁ ଯେ ତୋହୋର କୁଟୁମ୍ବ ଥୋଇଲୁ
ଅଯୁଧ୍ୟାୟେ
ଦୃଭିକ୍ଷ କାଳେ ଅନେକ ଦୁଃଖ ପାୟେ ।
ରାଜା ପାଶୋରିଲା ଅଇଶ୍ୱର୍ଯ୍ୟ ପଣେ
ବଶିଷ୍ଟ ନ କହିଲେ ଅହନ୍ତା କାରଣେ ।
ପୁତ୍ରନ୍ତ ଘେନିଣ ସେ ତୋହୋର ଘରଣୀ
ବହୁତ ଦୁଃଖ ସେ ଯେ ପାଇଲା ତରୁଣୀ ।
ମୁହିଂ ତାହାର କଷ୍ଟ ଦେଖିଲଇଂ ଯହୁଂ
ମୋହୋର ସନ୍ନିଧେ ଗୁହାଇଲି ତହୁଂ ।୩୦
ମୃଗ ସୟେମ୍ବର ଆଣଇ ନିତି ମାରି
ପୁତ୍ର ଭାରିଯାଙ୍କୁ ତୋର ଦିଅଇଂ ତପଚାରୀ ।
କେବଣ ହିଂ ଦିନେ ନ ପାଇଲି କିଛି
ଦେଖିଲି ବଶିଷ୍ଟଙ୍କ ଗାଈ ଚରୁଅଛି ।

ତାହା ମୁହିଂ ଆଣି ବିନ୍ଧି କେଳାଇଲି
ତୋହୋର କୁଟୁମ୍ବଙ୍କୁ ତାହା ନେଇ ଦେଲି ।
ଶୂକର ମାୟେଂସ ବୋଲି ତାହା ଭୁଞ୍ଜାଇଲି
କୁକାଳ ଦେଖିଣ ଗୁପତ ମୁହିଂ କଲି ।
ବଶିଷ୍ଟ ମୁନି ଜାଣି କୋପେ ଶାପ୍ୟ ଦେଲେ
ଯାଅରେ ଚାଣ୍ଡାଳ ତୁ ହୁଅରେ
ବୋଇଲେ ।୪୦
ବିଶ୍ୱାମିତ୍ର ବୋଇଲେ ଯେ ତୋତେ ବଶିଷ୍ଟେ
କଲେ କୋପ
ଶୁଣିଣ କିସ ବୋଇଲା ତୋହୋର ବାପ ।
ସତ୍ୟବ୍ରତ ବୋଇଲା ଶୁଣିମା ମହାରଷି
ପିତାଙ୍କର ମୁହିଂ ଯେ ଅଟଇ ବଡ଼ ଦୋଷୀ ।
ବ୍ରାହ୍ମଣ ଦୋହିତାୟେ ଥିଲା ଅବିଭାଇ
ତାହାକଇ ହରିଲି ମୁଂ କାମେଣ ବଶ
ହୋଇ ।
ତାହା ଶୁଣି ପିଅର ମୋତେ କୋପ କଲା
ନଗରୁ ମୋତେ ସେ ବାହାର କରିଦେଲା ।
ବଶିଷ୍ଟ ନ କହିଲା ପିତାର ଅଗ୍ରତେ
ତେଣୁ ସେ ଉପେକ୍ଷା କଲା ତାତ
ମୋତେ ।୫୦
ନଗ୍ର ବାହାରେ ମୁଂ କୁଡ଼ିଯାୟେ କରି
ଜୀବ ମାରିଣ ମୁଂ ସୁସ୍ତେ ବଞ୍ଚଇ ତପଚରୀ ।
ଯେସନ ସମୟେ ଦେଖିଲି ତୋର ନାରୀ
ହାଟକୁ ଯାଇଥିଲା ସେ ପୁତ୍ରକୁ ବିକ୍ରେକରି ।
ବିକ୍ରେ ନ ଗଲା ସେ ବାହୁଡ଼ି ଅଇଲା
ଅଷ୍ଟପୁତ୍ର ଘେନି ସେ ଅନେକ ଶୋକକଲା ।
ମୁହିଂ ପଚରିଲି କିମ୍ପା ବାଳୀ କାନ୍ଦୁ
କିୟେ ତୋହୋର ନାଶିଲା କୁଳ ଗୋତ୍ର
ବନ୍ଧୁ ।
ରାଣୀ ବୋଇଲା ମୁଂ ବିଶ୍ୱାମିତ୍ର ଘରଣୀ
ଅନ୍ନ ଶାସ୍ତି ମୋତେ ବିଧାତା ଦେଲା
ଆଣି ।୬୦
ପୁତ୍ର ବିକିତ ମୁଂ ନ ପାଇଲି ଧନ
ତେଣୁ ସେ ବିକଳିତ ଅଟଇ ମୋର ମନ ।

ତାହା ଶୁଣି ମୁହିଂ ପାଇଲି ବଡ଼ ଚିନ୍ତା
ସମ୍ଭାଳିଲି ନେଇ ତୋହୋର ପୁତ୍ର ବନିତା ।
ତାହା ଜାଣି ମୋତେ ବଶିଷ୍ଠ କୋପ କଲା
ତ୍ରିଶଙ୍କୁର ଚାଣ୍ଡାଳ ବୋଲି ମୋହୋର ନାମ ଦେଲା ।
ତେଣୁ ମୁହିଂ ଲାଜେ ସେ ବାହୁଡ଼ି ଅଇଲି
ଦେଶାନ୍ତର କରିବାକୁ ମୁଂ ଅଇଲଇଂ ବୁଲି ।
ଯୋଗେ ତୋହୋର ମୋହୋର ହୋଇଲାକ ଭେଟ
ପାଗୁ ଯେବେ ମହାତମା ଫେଡ଼ ମୋହୋର କଷ୍ଟ ।୭୦
ଶୁଣିଣ ବୋଲଇ ବିଶ୍ୱାମିତ୍ର ମହାଋଷି
ମୋହୋର ମହିମା ତୁ ଦେଖ ସୂର୍ଯ୍ୟବଂଶୀ ।
ଯାବତ କାଳକଇ କଥା ଗୁହାଇବି
ଯାଗ କରି ତୋତେ ସ୍ୱର୍ଗେ ବାସାଇବି ।
ଯେତେ ବୋଲି ଦେବ ଯାଗ ଆରମ୍ଭିଲା
ସକଳ ତପଚାରୀଙ୍କି ନିମନ୍ତ୍ରଣ କଲା ।
ବିଶ୍ୱାମିତ୍ରଙ୍କର ଭୟେ ଅଇଲେ ସର୍ବଋଷି
ତାହାଙ୍କୁ ବାହୁଡ଼ାଇ ବଶିଷ୍ଟେ ନେଲେ ଆସି ।
ବୋଇଲେ ଚାଣ୍ଡାଳ ତ କରିବ ସେ ଯାଗ
ତୁମ୍ଭେ କେହ୍ନେ ତାହାଙ୍କୁ ଦେବ ହବି ଭାଗ ।୮୦
ଯେହା ଶୁଣି ବାହୁଡ଼ିଗଲେ ସର୍ବ ଋଷି
ଶିଷ୍ୟଗଣେ ବିଶ୍ୱାମିତ୍ରଙ୍କୁ କହିଲେ ଯେ ଆସି ।
ଶୁଣିଣ କୋପକଲେ ଗାଧିର ତନୟେ
ଚାଣ୍ଡାଳମାନନ୍ତ ବ୍ରାହ୍ମଣଦୀକ୍ଷା ଦିୟେ ।
ଆଗ୍ୟାଂ ପରମାଣେ ଶିଖିଲେ ଚାରିବେଦ
ଜାଣିଲେ ମନ୍ତ୍ରପୂଜା ଅଙ୍ଗନ୍ୟାସ ମୁଦ୍ରା ଭେଦ ।
ପଢ଼ି ତ୍ରିଶଙ୍କୁରକୁ ବ୍ରହ୍ମ ଯାଗ କଲା
ବିଶ୍ୱାମିତ୍ର ମୁନି ଆଋର୍ଯ୍ୟ ହୋଇଲା ।
ଯବ ତିଳ କୁଶ ସମିଧ ଅପାର
ଯାଗ ଆରମ୍ଭିଲେ ଦଖିଣ ସିନ୍ଧୁତୀର ।୯୦
ଅଗ୍ନିରେ ଆହୁତି ସମର୍ପିଲେ ନେଇ
ଦେବତାଗଣମାନେ ଭାଳନ୍ତି ସ୍ୱର୍ଗେ ଥାଇଂ ।

ସତ୍ୟାନନ୍ଦ କହଇ ଶୁଣ ରଘୁନାନ
ଚାଣ୍ଡାଳ ନୁହଇଂ ଯାଗକୁ ଭାର୍ଜନ ।
ଯେତେ ବିଚାରିଣ ନଇଲେ ସର୍ବସୁର
ବିଶ୍ୱାମିତ୍ର ମନେ କୋପ ଗରୁତର ।
ବୋଇଲେ ଆନ ଦେବତା ମୁହିଂ ଭିଆଇବି
ଯେତେ ବୋଲି ଅଗ୍ନିରେ ସମର୍ପିଲେ ହବି ।
ସ୍ୱର୍ଗେ ଦେବତାୟେ ହୋଇଲେ ବିକଳ
ନିଷ୍ଚୟେ ବିଶ୍ୱାମିତ୍ର କରିବ ଆନ ଦିଗପାଳ ।୧୦୦
ଯେତେ ବୋଲି ବ୍ରହ୍ମା ସହିତେଣ ଦେବଗଣ
ଅନ୍ତରିକ୍ଷେ ଥାଇଣ କହନ୍ତି ବଚନ ।
ନ ଶୁଣଇ ମୁନି କୋପେ ପରଚଣ୍ଡ
ବୋଇଲା ତ୍ରିଶଙ୍କୁ ଯାଅସି ସ୍ୱର୍ଗଖଣ୍ଡ ।
ମୁନିର ଆଗ୍ୟାଂରେ ଗଲାକ ନୃପତି
ଦବତା ଅନ୍ତରିକ୍ଷେ ସେ ବୋଲନ୍ତି ଉର୍ଧଗତି ।
ତ୍ରିଶଙ୍କୁରକୁ ସେ ବାହୁଡ଼ ବୋଇଲେ
ଭସ୍ମ ହୋଇବୁ ତୁ ସ୍ୱର୍ଗକୁ ଅଇଲେ ।
ଦେବଙ୍କର ବୋଲେ ସେ ବାହୁଡ଼ଇ ନୃପତି
ରକ୍ଷାକର ବିଶ୍ୱାମିତ୍ର ହୋ ପଡ଼ିଲା ଦୁର୍ଗତି ।୧୦
ଅତି ବିକଳ ହୋଇଂ ଡାକଇ ସତ୍ୟବନ୍ତ
କୋପେଣ ପ୍ରଜଳିତ ଗାଧିରାଜା ସୁତ ।
ଇନ୍ଦ୍ରାଦି ଦେବତାଙ୍କୁ କରିବି ମୁଂ ଆନ
ଯେତେ ବିଋରି ମୁନି କରଇ ପୁଣି ହୋମ ।
ବ୍ରହ୍ମା ବୋଇଲେ ତୁ ଶୁଣ ବିଶ୍ୱାମିତ୍ର
କିମ୍ପା ଅବିଚାର ତୁ କରୁଛୁ ଜଗତ ।
ଚାଣ୍ଡାଳ ସ୍ୱର୍ଗେ ଆସି ବସିବ କେମନ୍ତେ
ଯେ କଥା ସିଦ୍ଧ କି ହୋଇବ କଦାଣ୍ଟିତେ ।
ଦେବଙ୍କର ସଙ୍ଗେ ବସିବ କେହ୍ନେ ଯାଇ
ଯେହା ତୁ ବିଋର ହୋ ନ କର କିସ ପାଇଂ ।୨୦
ନୁହସି ବଇରାଗ ଶାନ୍ତି ମନ ଧର
ମହତ ହୋଇ ତୁ ଅବେଭାର ନ କର ।

ବ୍ରହ୍ମାର ବଚନେ ବୋଲଇ ଗାଧିସୁତ
ତୁ ସେ ପିତାମହ ଅଟୁ ଜଗତର ତାତ ।
ତ୍ରିଶଙ୍କୁର ଯେ ମୋହୋର ହିତେ ଥିଲା
ପୁତ୍ର ଭାରିଯା ମୋର ସେ ମହରଗେ ପୋଷିଲା ।
ଯେଥକୁ କାରଣ ମୁଂ କରିବି ଅବଶ୍ୟ
ଭୁଞ୍ଜାଇବି ଅମୃତ ଦେବି ସ୍ୱର୍ଗ ବାସ ।
ଧାତା ବୋଇଲେ ଏ ନୁହଇଂ ଉଚିତ
ବଶିଷ୍ଠ କୋପେ ଚାଣ୍ଡାଳ ସତ୍ୟବ୍ରତ ।୩୦
ବିଶ୍ୱାମିତ୍ର ବୋଇଲେ ତୁ ଶୁଣ କୁଶଧାରୀ
ତ୍ରିଶଙ୍କୁର ମୋତେ ସେ ବହୁତ ଉପଗାରି ।
ତାହାଙ୍କୁ ସ୍ୱର୍ଗେ ମୁଂ ଅବଶ୍ୟ ବସାଇବି
ଯାବତ କାଳକଇ କଥା ଗୁହାଇବି ।
ଶୁଣିଣ ବିଧାତାର ନ ସ୍ଫୁରଇ କିଛି
ବିଶ୍ୱାମିତ୍ର ମହା କଟାଳ କରିଅଛି ।
ତ୍ରିଶଙ୍କୁର ଅଛି ଅଧା ସ୍ୱର୍ଗେ ରହି
ବ୍ରହ୍ମା ବୋଲଇ ବିଶ୍ୱାମିତ୍ରଙ୍କ ମୁଖ ଚାହିଂ ।
ଅନରୂପେ ସ୍ଥାନ ଯେହାକଇ ଦେବା
ମୋହୋର ବଚନେ ତୁ ସନ୍ତୋଷ ହୋଇବା ।୪୦
ଶୁଣି ବିଶ୍ୱାମିତ୍ର ସନ୍ତୋଷ ମନ ହୋଇ
ଦଖିଣ ସ୍ୱର୍ଗେ ତାଙ୍କୁ ବସାଇଲେ ନେଇ ।
ସ୍ୱର୍ଗେ ସାଧୁ ସାଧୁ ଉଠିଲାକ ରାବ
ଧନ୍ୟ ବିଶ୍ୱାମିତ୍ର ଧନ୍ୟ ତୋହୋର ଭାବ ।
ଗୋହତ୍ୟା କରିଣ ବ୍ରାହ୍ମଣ ସ୍ତିରୀ ହରି
ଆବର ପିଅର ବଚନ ଭ୍ରଷ୍ଟ କରି ।
ଯେ ସେ ତିନି ପାପ ଯେବଣ ଜନ କଲା
ବଶିଷ୍ଠ ଯାହାକଇ ଚାଣ୍ଡାଳ ବୋଇଲା ।
ଦେବେ ନ ଚାହିଂଲେ ମହାପାପୀ ବୋଲି
ତାହାଙ୍କୁ ସ୍ୱର୍ଗେ ବସାଇଲୁ ପେଲି ।୫୦
ବାବୁ ମହାତମା ଧନ୍ୟ ତୋହୋର ଧର୍ମ
ତୋହୋରେ ଯେ କରି ହୋଇଲା ଯେତ୍ତେ କର୍ମ ।
ଯେତେ ବୋଲି ଦେବେ ସ୍ୱର୍ଗକଇ ଗଲେ

ସକଳ ରାଜା ଶୁଣି ସାଧୁ ସାଧୁ କଲେ ।
ଶୁଣ ତୁ ଶ୍ରୀରାମ ହୋ ଯେ ମୁନିର ମହିମା
ଯେହାକଇ ପ୍ରଶଂସା ଯେ କଲା ବ୍ରହ୍ମା ।
ଯେ ଯେହା ପଢ଼ଇ ଶୁଣଇ ପୁଣ୍ୟ ପ୍ରାଣୀ
ବ୍ରହ୍ମ ସ୍ତିରୀ ହରଣ ଦୋଷ ଯାଇ ଜିଣି ।
ଗ୍ୟାଂନେ ଅଗ୍ୟାଂନେ ଯେ କରଇ ମନ୍ଦ କୃତ୍ୟ
ଯେ ଗ୍ରନ୍ଥ ଶୁଣିଲେ ନ ବାଧଇ ଦୁରିତ ।୬୦
ଯେ ସେ ଅବା ଯୋଗେ କରନ୍ତି ଗୋରୁବଧ
ଯେହା ଶୁଣିଲେ ଆତ୍ମାକୁ ନୁହଇଂ ବିରୋଧ ।
ପିତାର ବଚନ ଯେ ଭାଙ୍ଗନ୍ତି ମନ୍ଦପଣେ
ସେ ଦୋଷ ବାଧା ନ ଲାଗଇ ଯେଣେ ।
ଶ୍ରୀରାମ ଚରିତ୍ର ଯେ ସାମବେଦ ବାଣୀ
ବାଲମିକ ମହାମୁନି ଯାହା ସେ ବଖାଣି ।
ସତ୍ୟାନନ୍ଦ କହଇ ଶ୍ରୀରାମର ଆଗ
ଜନେକ ମହାରଷି କରିଅଛି ମହାଯାଗ ।
ତହିଂ ମିଳିଛନ୍ତି ଅନେକ ମୁନିଗଣ
ଯହୁଂ ଶୁଣିଲେ ସେ ବିଶ୍ଵାମିତ୍ରଙ୍କର
ଯେସନେକ ଗୁଣ ।୭୦
ଅନେକ ପ୍ରଶଂସା ତାଙ୍କୁ କଲେକ ସର୍ବଯତି
ଯେ ସେ ଗାଧିସୁତ ଧନ୍ୟ ଯେହାର କୀର୍ତ୍ତି ।
ଥୋକାଯେ ବୋଲନ୍ତି ସେ ଶର୍ବଣେ ଶୁଣିଥିଲୁ
ପୂର୍ବର ଭାଗ୍ୟ ହାଦେ ନୟନେ ଦେଖିଲୁ ।
ଯେଥିର ପୂର୍ବକଥା କହ ସତ୍ୟାନନ୍ଦ
ଚିତ୍ତ ହୋଉ ମୋର ପରମ ସାନନ୍ଦ ।
ମୁନିମାନେ ଯହୁଂ ହୋଇଲେ ଶ୍ରୋତାବନ୍ତ
ଶ୍ରୀରାମଙ୍କ ଅଗ୍ରତରେ କହଇ ଗଉତମଙ୍କର
ସୁତ ।
କହଇ ବିଶ୍ଵାମିତ୍ର ପୂର୍ବର କଥାମାନ
ଶୁଣ ତୁ ରଘୁନାଥ କଉଶିକର ବିଧାନ ।୮୦
ଯହୁଂ ସେ ତ୍ରିଶଙ୍କୁର ସ୍ଵର୍ଗକଇ ଗଲା
ତହୁଂ ବିଶ୍ଵାମିତ୍ର ବଶିଷ୍ଟଙ୍କୁ କୋପକଲା ।
ବୋଇଲା ତୁ ମୋହୋର ଯାଗକୁ ନଇଲୁ
ଆସନ୍ତା ଲୋକଙ୍କୁ ବାହୁଡ଼ାଇ ନେଲୁ ।
ଯେତେ଼ ରାଗୀ କିମ୍ପା ସେ ପୃଥ୍ଵି ଅଛି ସହି
ଅନ୍ୟାୟେ ଆଚରିଲେ ଧର୍ମ ନାଶ ଯାଇ ।
ଶତେକ ପୁତ୍ର ମୋର ମଲେ ସୁରଭିର ହାଥେ
ତୋହୋର ଯୋଗୁଂ ସିନା ଗଲେ ଯମ
ପଥେ ।
ତୋହରିହିଂ ଶତେ ପୁତ୍ର ହତ ହେଉ
ଯେ ମୋହୋର ବୋଲ ଆନ ବାକ୍ୟ
ନୋହୁଂ ।୯୦
ଯେତେ ବୋଲିଣ ଶିଷ୍ୟଗଣ ଘେନି
ଅଯୁଧ୍ୟାରେ ପ୍ରବେଶ ବିଶ୍ଵାମିତ୍ର ମୁନି ।
ଦେଖିଲା ଭାରିଯା ଯେ ଅଛି ଦୁଃଖ ପାଇଂ
ଅଷ୍ଟପୁତ୍ର ବାଳୀ ସମର୍ପିଲା ନେଇଂ ।
ପିତାର ଚରଣେ ପୁତ୍ରେ କଲେକ ନମସ୍କାର
ଘରଣୀକି ମୁନି ପ୍ରଶଂସା କଲାକ ଅପାର ।
ବୋଇଲା ଯେ ମୋହୋର ପୁତ୍ର ସମ୍ଭାଳିଲୁ
ମହାସ୍ୟତୀରେ ତୁ ଗଣିତା ହୋଇଲୁ ।
ଯେତେ ବୋଲି ମୁନି ତହୁଂ ଗଲା ଚଳି
ତପ କରିବ ବୋଲି ମନେ ମନେ
ଭାଳି ।୧୦୦
ହରିଚନ୍ଦନ ମୋକ୍ଷଚନ୍ଦନ ହିତଚନ୍ଦନ ନାମ
ମନୋହର ଗାଲ୍ୟଭ ଅଟନ୍ତି ଅନୁପାମ ।
ଲୋକରଥ ସୁରଥ ଦେବରଥ ବୀର
ସଙ୍ଗରେ ଘେନିଣ ଅଷ୍ଟ ଯେ କୁମର ।
ଯେହାନ୍ତ ଘେନିଣ ଯେ ମୁନି ଚଳିଗଲା
ପୁଷ୍କର ତୀର୍ଥେ ଯାଇଂ ଅନେକ ତପ କଲା ।
ଯେଥୁ ଅନନ୍ତରେ ଶୁଣ ରଘୁନାଥ
ହରିଚନ୍ଦନ ନାମେ ସତ୍ୟବନ୍ତର ସୁତ ।
ଅଙ୍ଗାର କତିରେ ସେ ଥିଲା ଅନେକ କାଳ
ନାତିକିଂ ଯୁଗରାଜା କଲା ମହୀପାଳ ।୧୦
ଅନ୍ତେଣ ସ୍ଵର୍ଗକଇ ଗଲାକ ସେ ରାୟେ
ଅଯୁଧ୍ୟାରେ ନୃପତି ହରିଚନ୍ଦନ ହୋୟେ ।
ବଡ଼ାଇ ପ୍ରତଗ୍ୟାଂ ଯେ ଅଟଇ ତାହାର
ଦାନେ ଖାଣ୍ଡେସାରେ ସେ ତ୍ରିଶଙ୍କୁର କୁମର ।
ରାଜସୁ ଯାଗ କରିଣ ତାର ବୁଧି
ସକଳ ପଦାର୍ଥ ସେ କଲାକ ରାଏ ସିଧି ।
ବିଚାରଇ କାହାକୁ ଆଚାର୍ଯ୍ୟ କରିବି
ବିଶ୍ଵାମିତ୍ର ମୁନିକି ମୁଂ ଯାଗରେ ବରିବି ।
ସେ ମୋହୋର ପିତାଙ୍କୁ ସ୍ଵର୍ଗ ଗତି ଦେଲା
ଯେହୁ ସେ ମିଳଇ ବୋଲି ନୃପତି
ବୋଇଲା ।୨୦
ପୁଷ୍କର ତୀର୍ଥକୁ ସେ ଗଲାକ ଖର କରି
ବିଶ୍ଵମିତ୍ର ସନ୍ନିଧ୍ୟରେ ମିଳିଲାକ ଦଣ୍ଡଧାରୀ ।
ପ୍ରଣମ୍ୟ କରିଣ ସେ ବୋଲଇ ଶୁଣ ଋଷି
ମୁହିଂ ତୋହୋର ତହିଂକି ଯତନେ
ଆସିଅଛି ।
ରାଜସୁ ଯାଗ ମୁନି କରିବଇଂ ମୁହିଂ
ତୁମେ ତହିଂ ଆଚାର୍ଯ୍ୟ ହୋଇବ ଯେ
ଯାଇଂ ।
ଶୁଣିଣ ସନ୍ତୋଷ ହୋଇଲେ ମହାମୁନି
ଅଯୁଧ୍ୟାକୁ ଗଲେ ହରିଚନ୍ଦନକୁ ଘେନି ।
ହରିଚନ୍ଦନ ବରିଲେ ସକଳ ନୃପବର
ପ୍ରବେଶ ହୋଇଲେ ଯାଇଂ ସକଳ
ସମ୍ଭାର ।୩୦
ନାନା ତୀର୍ଥରୁ ସେ ଅଇଲେ ତୀର୍ଥବାସୀ
ଅଯୁଧ୍ୟା କଟକେଣ ମିଳିଲେ ସର୍ବେ ଆସି ।
ପୁର ମଣ୍ଡିଲେ ସେ ଯାଗ ଆରମ୍ଭିଲେ
ଅନ୍ନ ବସ୍ତ୍ର ଦାନ ଅନେକ ଅର୍ନ୍ନଛତ୍ର ଦେଲେ ।
ମୂଷଳ ପ୍ରମାଣେ ଯେ ଅଗ୍ନିରେ ଦେଲେ ଘୃତ
ହବି ପାବନ୍ତି ସେ ହୋଇଣ ସନ୍ତୋଷ ଚିତ୍ତ ।
ଦେବତାୟେ ଅଇଲେ ମୂର୍ତ୍ତିବନ୍ତ ହୋଇ
ସୋମପାନ କଲେ ପରମ ସୁଖ ପାଇଂ ।
କଲ୍ୟାଣ କରି ତହୁଂ ଦେବତାୟେ ଗଲେ
ନିଜପୁରେ ଯେ ଯାହାରେ ପ୍ରବେଶ
ହୋଇଲେ ।୪୦
ପୁନ୍ୟ ଆହୂତି ସେ ଦେଲେ ଯାଗ ସାରି
ଯେ ଯାହାର ରାଜ୍ୟକୁ ଗଲେ ଦଣ୍ଡଧାରୀ ।
ମୁନିମାନେ ଯେ ଯାହାର ସ୍ଥାନରେ ପରବେଶ
ହରିଚନ୍ଦନକଇ ବୋଲନ୍ତି ଗାଧିଶିଷ୍ୟ ।
ଦିଅ ଦକ୍ଷିଣା ହୋ ଯିବଇଂ ତପକରି
ଶୁଣିଣ ସନ୍ତୋଷ ଯେ ହୋଇଲେ
ଦଣ୍ଡଧାରୀ ।

ଚାରିଲକ୍ଷ ଶୁଦ୍ଧ ସୁବର୍ଣ୍ଣ ଆଣିଦେଲେ
କାର୍ପୁନ୍ୟ ମତ ହୋଇ ଅନେକ ବୋଇଲେ ।
ବିଶ୍ୱାମିତ୍ର ମୁନି ନୋହିଲେ ତ୍ରିପୁତି
ପୁଣ ଆଣି ରାଜା ଦେଲାକ ଲକ୍ଷେ
ହସ୍ତୀ ।୫୦
ସୁବର୍ଣ୍ଣର ଶିକୁଳି ଆବର ପାଟକାଛ
ନେତ ପତନି ଯେ ମଣ୍ଡଣୀ ସୁସଞ୍ଚ ।
ମୁନି ଗ୍ରାହିତ ଯେ ନ କଲେକ ତାହା
ସହସ୍ରେ ଅଶ୍ୱ ପୁଣି ଆଣିଲା ନରନାହା ।
ରତ୍ନମୟେ ବାଖର ସୁବର୍ଣ୍ଣ କଳେଆର
କଳା ଶେତ ଚାମର ଯେ ମଣ୍ଡିଲେ ତହିଁର ।
ଦେଖି ବିଶ୍ୱାମିତ୍ର ଉପହାସ କଲା
ଯେଣେ କି ଦଖିଣା ହୋ ଶୁଝିବୁ ବୋଇଲା ।
ଶୁଣି ନୃପବର ଯେ ସହସ୍ରେକ ଯୁବତୀ
ଅଳଙ୍କାର ଯୋଗକରି ଆଣିଲା ତଡ଼ତି ।୬୦
ମୁନି ବୋଇଲେ ହୋ ଯେଣେ ନୁହଇଂ କିଛି
ତୁ ରାୟେ କୃପଣ ଯେ ନ ପାରୁ ଧନ ମୁଛି ।
ରାଜ୍ୟ ତୋର ଦେଲେ ଶୁଝି ନ ପାରିବୁ
ଯେମାନ ଦେଇଂ କି ଭଣ୍ଡି ମୋତେ ଦେବୁ ।
ରାଜା ବୋଇଲା ତୁ ବୋଇଲୁସି ଯାହା
ଘେନ ମହାମୁନି ଦେବଇଂ ମୁହିଂ ତାହା ।
ଯେତେ ବୋଲି ରାୟେ ରାଜ୍ୟ ସମର୍ପିଲା
ବିଶ୍ୱାମିତ୍ର ବୋଇଲେ ଯେହିତ ନ ଅଣ୍ଟିଲା ।
ରାଜୁସି ଯାଗ ଯେହା ଅତିଧର୍ମେ କରି
ଶତେକ ଅଶ୍ୱମେଧ ତହିଂକି ନୁହଇଂ
ସମସରି ।୭୦
ସଂସାର କ୍ଷୋଭ ପାଇବାକ ଯେଣେ
ଏ ଯୋଗେ ଆଗ୍‌ଚର୍ଯ୍ୟ ନୁହନ୍ତି ମୁନିଗଣେ ।
ତୁ ସେ ଭଣ୍ଡି ମୋତେ ଆଣିଲୁ ମହୀପତି
ତ୍ରିଶଙ୍କୁର ହିତେ ହୋଇଲୁ ତୋରେ ପ୍ରୀତି ।
ଯେଡ଼େ ପାପଭାରା ହୋ ବହିଲଇଂ ଶିରେ
ଦକ୍ଷିଣା ଦେବାକୁ ତୁ ନିସତ ନୃପବରେ ।
ରାଜା ବୋଇଲେ ହୋ ଧନ ମୋହାର ନାହିଂ
ତେଣୁ ସେ ରାଜ୍ୟ ସମର୍ପିଲି ମୁହିଂ ।

ଋଷି ବୋଇଲେ ତୋର ଭାରିଯା ପୁତ୍ର ବିକ
ଆପଣେ ବିକ୍ରେ ହୁଅ ନୃପତି
ତିଳେକ ।୮୦
ଶୁଣି ହରିଚନ୍ଦନ ହୋଇଲାକ ତୋଷ
ବୋଇଲା କ୍ଷେଣେ ତୁ ରହ ଗାଧିଶିଷ୍ୟ ।
ବିକ୍ରେ ହୋଇଂ ତୋତେ ମୁଂ ଆଣି ଦେବଇଂ
ଧନ
ବିଶ୍ୱାମିତ୍ରେ ବୋଇଲେ ତୁ ଶୁଣସି ରାଜନ ।
ପୃଥି ଦେଲୁ ମୋତେ ସନ୍ତୋଷ ଯେ ଚିତ୍ତ
ମୋହୋର ହୋଇଲାଣି ସକଳ ପଦାର୍ଥ ।
ମୁହିଂ ରାଜା ସେ ସପତ ଦୀପା ମହୀ
ଯେଥି ପାପ ପୁଣ୍ୟ ମୋହୋର ସେ ହୋଇ ।
ତୋହୋର ଥିଲାରେ ମୁଂ ଯେ ହୋଇ
ଅଧିକାରୀ
ଯେବେ ରାଜ୍ୟ ମୋତେ ଦେଲୁ ସତ୍ୟ
କରି ।୯୦
ଥାବର ଜଙ୍ଗମ କୀଟ ପକ୍ଷୀମାନ
ଯେ ମହୀମଣ୍ଡଳେ ମୁହିଂ ସେ ରାଜନ ।
ସବୁଙ୍କରି ବିତ୍ତ ଅର୍ଥ ପ୍ରାଣ ଧନ
ମୁହିଂ ସେ କରତା ଅବିବେକ କର୍ମ ।
ଏ ପୃଥି ଛାଡ଼ିଣ ତୁ ଅନ୍ତରିକ୍ଷେ ଯାଅ
ଶୂନ୍ୟପୁରୁ ଆଣି ଧନ ମୋତେ ଦିଅ ।
ରାଜା ବୋଇଲେ ଯେ ବିସ୍ମୟେ ମୁଖ ହୋଇ
କେବଣ ଥାନୁ ଧନ ଆଣିମାଇଂ ଯାଇଂ ।
ଅନ୍ତରିକ୍ଷେ ବୋଲି ଯେ ସ୍ୱର୍ଗକଇ ବୋଲି
ଯେ ଦେହେଂ ତହିଂକିତ ଭାର୍ଜନ
ନୋହିଲି ।୧୦୦
କାହୁଂ ଆଣିମି ଧନ କରିବି କିସ ବୁଧି
ହରିଚନ୍ଦନ କର୍ଣ୍ଣେ କହନ୍ତି ବଶିଷ୍ଠ ତପନିଧି ।
ବାରଣାସୀ ପୁରେ ଯେ ଅନ୍ତରିକ୍ଷେ ଅଛି
ରହିଂ
ବେଦ ପୁରାଣେ ହୋ ଅଛଇ ଯେହା କହିଂ ।
ତହିଂରେ ଯାଇଂ ବିକ୍ରେ ହୋଇଂ ଧନ ଆଣି
ବଶିଷ୍ଠ କହନ୍ତେ ବିଶ୍ୱାମିତ୍ର ଜାଣି ।

କୋପେ ଥରହର କମ୍ପଇ ମହରଷି
ବୋଇଲା ଆଜର ମଧ୍ୟେ ଧନ ଦେସି ।
ବେଳ ଅସ୍ତ ହୁଅନ୍ତେ ବାହୁଡ଼ାଇ ଦେବି
ଦିନେକର ମଧ୍ୟେ ଦେଇଲେଣ
ଘେନିବି ।୧୦
ଯେତେ ବୋଲି ମୁନି ବସିଲା ନିଠାଇ
କାଶୀପୁରକଇ ହରିଚନ୍ଦନ ଯାଇଂ ।
ସବ୍ୟା ମହାଦେଈ ଲୋହିତାକ୍ଷ କୁମର
ତିନିହେଂ ପ୍ରବେଶ ବାରଣାସୀ ପୁର ।
ମଣିକର୍ଣ୍ଣିକାୟେ ସ୍ନାହାନ ଯାଇ କରି
ପ୍ରାସାଦ ଭିତରେ ଦେଖିଲେ ତ୍ରିପୁରାରି ।
ବାଞ୍ଛାକଲେ ବିଶ୍ୱନାଥକଇ ଚାହିଂ
ବିଶ୍ୱାମିତ୍ର ଧନ ମୁଂ ଶୁଝିବି ଗୋସାଇଂ ।
ତୋହୋର ଚରଣେ ସ୍ୱାମୀ ପଶିଲି ଶରଣ
ଯେତେ ବୋଲି ନଗ୍ରେ ବୁଲନ୍ତି
ତିନିଜଣ ।୨୦
ବିକ୍ରେ ହେବ ବୋଲି ଆପଣେ ଡାକ ଦ୍ୟନ୍ତି
କିଣିମା ଲୋକେ ଦାଣ୍ଡେ ଉଭାରି ହୁଅନ୍ତି ।
ସତ ବିଡ଼ିବା ନିମନ୍ତେ ଦେବତା
ଆନ ଲୋକ ନଗ୍ରେ ନୋହିଲେ ଘେନନ୍ତା ।
ଯମ ଚାଣ୍ଡାଳ ରୂପେ ରାଜାଙ୍କୁ କିଣିଲେ
ଅଗ୍ନି ବ୍ରାହ୍ମଣ ହୋଇଣ ରାଣୀକି ଧନ
ଦେଲେ ।
ପୁତ୍ର ରାଣୀ ସହିତେ ବିକେ ହରିଚନ୍ଦ୍ର
ଯେସନ ସମୟେ ଯାଇ ବିଶ୍ୱାମିତ୍ର କଲେ
ଦ୍ୱନ୍ଦ ।
କିହୋ ନୃପତି ତୁ ଅଳସ କିମ୍ପା କଲୁ
ମୋତେ ଭଣ୍ଡିଣ ଯେଥେ ଲୁଚି ତ
ରହିଲୁ ।୩୦
ବେଳ ତିନି ପହର ହୋଇଲାନି ଆସି
କେତେବେଳେ ଧନ ଭିଆଉ ନଗ୍ରେ ପଶି ।
ରାଜା ବିଳୋପଇ କର ଦୁଇ ଯୋଡ଼ି
ତୋହୋର ଧନ ମୁଂ ଆଣିଲିନି ଲୋଡ଼ି ।
ପୁତ୍ର ଭାରିଯା ମୋର ବ୍ରାହ୍ମଣ କିଣି ନେଇଲା
ଚାଣ୍ଡାଳ ଧନ ଦେଇ ମୋତେ ସେ ରଖିଲା ।

ଘେନ ତିନିଲକ୍ଷ ବିତ୍ତ ଯେ ସୁବର୍ଣ୍ଣ
ଯେତେ ବୋଲି ଆଣି ସମର୍ପିଲା ଧନ ।
ସେ ଧନ ମୁନି ବିଶ୍ୱନାଥକଇଁ ଦେଲା
ସେ ଧନରେ ରତ୍ନ ମେଢ଼େକ
ଭିଆଇଲା ।୪୦
ମେଢ଼ ମଣ୍ଡପ ଯେ ଜଗତାଏ କରି ଥୋଇଂ
ଯେ ଯାହାର ଜାତିକି ଯେ ଗଉରୋବ
କରାଇ ।
ଯେଥୁଅନନ୍ତରେ ବିଶ୍ୱାମିତ୍ର ଗଲା
ଅଯୁଧ୍ୟାରେ ଯାଇଂ ବଶିଷ୍ଠଙ୍କୁ ଦଖିଲା ।
ବୋଇଲା କିମ୍ପା ତୁ ମୋହାର ରାଜ୍ୟେ ଅଛୁ
ଆବର ଯେଥେ ତୁ କିସ ବୁଧି ସଞ୍ଚୁ ।
ହରିଚନ୍ଦନ ରାଜାର ଅଟୁ ତୁହୋ ମନ୍ତ୍ରୀ
ତାହାଙ୍କୁ ନେଇଂଣ ଥୋଇଲି ଦୀପାନ୍ତି ।
ତୋତେ ହୋ ବାହାର କରି ଯେଥି ଦେବି
ପୁତ୍ର ଭାରିଯାଙ୍କର କଷ୍ଟ ପାଶୋରିବି । ୫୦
ଯେହି ରାଜ୍ୟେ ସେହୁ ମାଗୁଥିଲେ ଭିଖ
ଯେବେ ବିଳସିବେ ହୋଇ ମହାସୁଖ ।
ତୁ ଯେହିକ୍ଷଣି ଯାଅ ଯେ ପୁରରେ ମୋର
ନ ଥା ।
ଦଣ୍ଡେହେଂ ଥିଲେ ଯେଥି ନୁହଇ ଭଲ
କଥା ।
ଯେତେ ବୋଲି ଯାଇ ଗଳଥି ପକାଇଲା
ଦେଖିଣ ବଶିଷ୍ଠ ମୁନି ଖଗେକ ହୋଇଲା ।
ଡେଣା ବୁଲାଇଣ ଗର୍ଜିଣ ଧାଇଂଲା
ଦେଖି ବିଶ୍ୱାମିତ୍ର ମୁନି ବକେକ ହୋଇଲା ।
ଶରେ ଯୁଣ ବଢ଼ିଲା ଦୁହିଙ୍କର ଶ୍ୟରୀର
କିଜାଣି ଦିଶନ୍ତି ସେ ମହତ ଗିରିବର ।୬୦
ଡେଣାୟେ ଡେଣାୟେ ସେ ହୁଅନ୍ତି ପିଟାପିଟି
କେ କାହାର ଅଣ୍ଟେ କାମୋଡ଼ଇ ତୋଟି ।
ଲାହୁଡ଼ ଘେନି କେ ବିଦାରଇ ଅଙ୍ଗ
ରୋଧିର ବିଲୋପନ ଦିଶଇ ସୁରଙ୍ଗ ।
ବନ ପରବତ ସେ ଚଳିଲା ମହୀଆଳି
ଦେଶ ଗ୍ରାମ ଭାଜି ହୋଇଲା ଯେକସ୍ଥଳୀ ।

ବ୍ରହ୍ମା ବିକେ କଲେ ସମସ୍ତ ଦେବ ଘେନି
ଦେଖନ୍ତି ଯୁଧ୍ୟ ଯେ କରନ୍ତି ଦୁଇମୁନି ।
ପକ୍ଷିର ପବନେ ଗଗନେ ଉଡ଼େ ଧୂଳି
ସଂସାର ତ୍ରଇଲୋକ ହୋଇଲା
ବିକଳି ।୭୦
ଅନେକ ଦେଶର ନୃପତିଗଣ ମଲେ
ରଥ ଗଜ ସଇନି ଅନେକ କ୍ଷୟେ ଗଲେ ।
ଦୁହେଂ ନ ଘୁଞ୍ଚନ୍ତି ସମସରି ପକ୍ଷୀ
ନାରଦ ନୃତ୍ୟ ଯେ କରନ୍ତି ତାହା ଦେଖି ।
ଯୁଧ୍ୟ ଗରୁତର ବାଜିଲା ରଣଗୋଳ
ଶୂନ୍ୟପୁରେ ଥାଇଂ ଦେଖନ୍ତି ଦିଗପାଳ ।
ନବ ଗ୍ରହଗଣ ଅଷ୍ଟବସୁ ଥାନ୍ତି
ଦଶଦିଗପାଳ ଦେଖିଣ ଆସନ୍ତି ।
ଯୁଦ୍ଧ ଦେଖିଣ ଥୋକାୟେ ଭୟେ କଲେ
ପାଞ୍ଚ ବିଶ୍ୱଂଦେବା ଘୁଞ୍ଚି ପଳାଇଲେ ।୮୦
ଆବର ପାଞ୍ଚେହେଂ ବିଶ୍ୱାମିତ୍ରଙ୍କୁ ଚାହିଂ
ଧିକାର ବଚନ ସେ ବୋଇଲେ ଶବଦାଇ ।
ତୁ ହୋ କଉଶିକ ବଡ଼ାଇ ନିଲଜ
ସଂସାର ହତ ହୋଇବ ତୋହୋର ଯୋଗୁଂ
ଆଜ ।
ରାଜା ହୋଇଂଣ ତୁ ତପୀର ଗୋରୁ ଆଣୁ
ଧର୍ମେ ପଳାଇଲୁ ଥିଲେ ତହିଂ ହାଣୁ ।
ବଳ ସହିତେ ପୁତ୍ର ସଂମୁତେ ହରାଇଲୁ
ବଶିଷ୍ଠକଇ ଜିଣିମୁ ବୋଲି ତପ କଲୁ ।
ହର ପରସନେ ପାଇଲୁ ତହିଂ ବର
ପୁନରପି ଯୁଦ୍ଧ କଲୁ ମୁନିର ସଙ୍ଗର ।୯୦
ତହିଂ ହାରି ପୁଣ ପଳାଇଂଣ ଗଲୁ
ପୁତ୍ର ଭାରିଯାଙ୍କୁ ଅଯୁଧ୍ୟାରେ ଥୋଇଲୁ ।
ସେ ତହିଂ ଅନ୍ନ କଷ୍ଟେଣ ଦୁଖ ପାନ୍ତି
ଭୋଖର ନିମନ୍ତେ ସେ ଗୋରୁ ମାଂସ ଖାନ୍ତି ।
ତୁ ତାହା ନ ଜାଣୁ ସମୁଦ୍ର କୂଳେ ଥାଇଂ
ଚାଣ୍ଡାଳକଇଂ ସ୍ୱର୍ଗେ ବସାଇଲୁ ନେଇଂ ।
ନାସ୍ତି ବୋଇଲେଣ ନବ ସୃଷ୍ଟି କରୁ
ପାପ ପୁଣ୍ୟ ଦୁଇ ବିଚାର ନ କରୁ ।

ହରିଚନ୍ଦନ ରାଜା ରାଜୁସି ଯାଗ କଲା
ମହତ ଦେଖି ତୋତେ ଆଚାର୍ଯେ
ବରିଲା ।୧୦୦
ତାହାକୁ ରାଜ୍ୟରୁ କଲୁସି ବାହାର
ଅର୍ଥ ସମ୍ପଦ ଶିରୀ ଘେନିଲୁ ତାହାର ।
ଯେବେ ଯୁଦ୍ଧ କଲୁ କିସ ଗୁଣ ପାଇଂ
ଲାଜ ସଙ୍କୁଚ ହୋ ଦୁଇ ତୋର ନାହିଂ ।
ଅନେକ ବଚନ ବୋଇଲେ ବିଶ୍ୱଦେବା
ତ୍ରିଶଙ୍କୁର ତୋତେ କରିଥିଲା ସେବା ।
ସେ ଗୁଣ କରି ହରିଚନ୍ଦନଙ୍କୁ ଦିପାନ୍ତିଲୁ
ପୁଅ ମାଇପ ତାର ବିକ୍ରେ କରାଇଲୁ ।
ଧିକ ଯାଉ ତୋର ମାୟା ଜପ ତପ
ଆନ ଋଷି କିମ୍ପା ହୋଇବ ଯେତେ
ପାପ।୧୦
ଶୁଣିଣ କୋପକଲେ ବିଶ୍ୱାମିତ୍ର ମୁନି
ଯୁଦ୍ଧ ଛାଡ଼ି ଉର୍ଦ୍ଧ୍ୱକୁ କଲାକ ମୁର୍ଦ୍ଧୁନି ।
କୋପେ ଥରହର ହୋଇଣ ଶାପ୍ୟ ଦେଲା
ମନିଷ୍ୟ ଶରୀର ତୁମ୍ଭେ ହୁଅସି ବୋଇଲା ।
ନର୍କ ଯୋନିରେ ତୁମ୍ଭେ ହୁଅସି ଜାତ
ଅଦୋଷେ ଉପହାସ୍ୟ କଲରେ ଆମ୍ଭନ୍ତ ।
ଦେବତା ପଣ ଛାଡ଼ି ତୁମ୍ଭେ ମନିଷ୍ୟ ଅବତାର
ଶୁଣିଣ କମ୍ପିଲେ ଯେ ସକଳ ଦେବାସୁର ।
ବିଶ୍ୱଦେବାକଇ ଯହୁଂ ଶାପ୍ୟ ଦେଲା
ବଶିଷ୍ଠଙ୍କର ସଙ୍ଗତେ ପୁଣିହିଂ ଯୁଦ୍ଧ
କଲା ।୨୦
ବ୍ରହ୍ମା ମଧେ ପଶି ଗୁହାଇଲା କଳି
ବୋଇଲେ ଶୁଣ ତୁମ୍ଭେ ଦୁଇ ତପଶାଳୀ ।
ଜଗତ ନାଶିଲ ଯେ ତୁମ୍ଭର କନ୍ଦଳେ
ନିଶ୍ଚୟେ ମେଦିନୀ ପଡ଼ିବ ରସାତଳେ ।
ମୋହୋର ବୋଲକରି ଛାଡ଼ ତୁମ୍ଭେ ଦ୍ୱେଷ
ବିଧାତାର ବଚନେ ଛାଡ଼ିଲେ
ଦୁହେଂ ରୋଷ ।
ପକ୍ଷି ଦେହ ଛାଡ଼ି ନିଜ ତନୁ ଧରି
ଧାତାର ବଚନେ ତ୍ରିପୁତି ତପଚାରୀ ।

ବିଶ୍ୱାମିତ୍ରଙ୍କର ପ୍ରସନ୍ନ ବଦନ ଦେଖି
ବିଶ୍ୱଦେବାଙ୍କଇ ଠାରିଲେ ଅଷ୍ଟଆଖି ।୩୦
କଥା ଜାଣିଣ ବିଶ୍ୱଦେବାୟେ ଅଇଲେ
ବିଶ୍ୱାମିତ୍ରଙ୍କୁ ଯେ ଅନେକ ପ୍ରବୋଧିଲେ ।
ଭୋ ମୁନି ଯେବେ ତୁ ଆମ୍ଭଙ୍କୁ ରକ୍ଷାକର
ଅଗ୍ୟାନେ ବୋଇଲା ଦୋଷ ତୁ ନ ଧର ।
ଶୁଣିଣ ବିଶ୍ୱାମିତ୍ର ହୋଇଲେ ତ୍ରିପୁତି
ଅନୁଗ୍ରହ କରିଣ ବୋଲେ ମହାଯତି ।
ଯାହା ବୋଇଲି ସେ ନୁହଇଂ ପୁଣ ଆନ
ତୁମ୍ଭେ ଜନମ ହୋଇବ ମଞ୍ଚପୁର ଥାନ ।
ଅନେକ ଯୁଗର ଅନ୍ତେ ଦ୍ୱାପର ଯୁଗ ଶେଷେ
କୃଷ୍ଣ ଅବତାର ହୋଇବେ
ପୀତବାସେ ।୪୦
କାଳନଉମି ଦତ୍ୟଙ୍କର ସ୍ୱରୂପେଣ ଜାତ
ମଥୁରାୟେ ରାଜା ସେ ଉଗ୍ରେସନ ସୁତ ।
ପୃଥି ନ ସହିବ ତାହାଙ୍କ ପାଦଭାର
ତେଣୁ କୃଷ୍ଣ ଅବତାର ହୋଇବେଟି ପୃଥିର ।
କୁରୁକୁଳ ବଂଶେ ଯେ ଦ୍ରିଯୋଧନ ନାଥ
ସଙ୍ଗେ ଘେନିଥିବ ଅନେଶ୍ୱତ ଭ୍ରାଥ ।
ଧର୍ମ ଅଂଶେଣ ଯେ ଯୁଧିଷ୍ଠି ମହୀପାଳ
ଅଶ୍ୱନୀ କୁମାର ଯେ ସହଦେବ ନକୁଳ ।
ଇନ୍ଦ୍ରରୁ ଅର୍ଜୁନ ପବନୁଂ ଭୀମସେନ
ବରୁଣ ଅବତାର ହୋଇବେ
ଶାୟେନ୍ତନ ।୫୦
ଭୀଷ୍ମ ଉରୁବସୁ ଅଭିମନ୍ୟୁ ଇନ୍ଦ୍ର
କର୍ଣ୍ଣ ସେ ଅଟଇ ଗ୍ରହଙ୍କର ଚନ୍ଦ୍ର ।
ସାଲୁ ଶିଶୁପାଳ ଜରାସନ୍ଧ ରାୟେ
ଯେହାଙ୍କର ତେଜେ ପୃଥିବୀ ଭାରା ପାୟେ ।
ମାୟାରେ ଶ୍ରୀହରି ଭାରା ନିବାରିବ
ଯୁଦ୍ଧ କରିବେ ସେ ପାଣ୍ଡବ କଉରୋବ ।
ଆପଣେ ଆପେଣେ ହୋଇବେ ସଂଘାରି
ଦୃପତୀ ବୋଲି ସେ ହୋଇବେ ପାଣ୍ଡେବଙ୍କ
ନାରୀ।
ତାହାର ଗର୍ଭରୁ ହୋଇବ ତୁମ୍ଭେ ଜାତ

ଶୁତିଲା ଠାବରେ ତୁମ୍ଭଙ୍କୁ ହୋଇବ
ଶସ୍ତପାତ ।୬୦
ଅଳପ ସମୟେ ଆସିବ ସ୍ୱର୍ଗପୁରୀ
ଯେସନେକ ବୋଇଲା ବିଶ୍ୱାମିତ୍ର
ତପଋରୀ ।
ଯେଥୁ ଅନନ୍ତରେ ଶୁଣ ଦିବ୍ୟ ରୀତି
କଳି ଗୁହାଇଣ ଗଲେ ବେଦପତି ।
ଦେବେ ପ୍ରବେଶ ଯେ ହୋଇଲେ ଯେଝା
ପୁରେ
ସତ୍ୟାନନ୍ଦ କହଇ ଶୁଣ ରଘୁବୀରେ ।
ବଶିଷ୍ଠେ ବିଶ୍ୱାମିତ୍ରେ ଶାନ୍ତି ହୋଇଗଲେ
ଦୁଇ ତପଋରୀ ଦେବତାଙ୍କ ବୋଲ କଲେ ।
ପୁଷ୍କର ତୀର୍ଥେ ଯେ ପ୍ରବେଶ ଗାଧିସୁତ
ଗାଇଲାଭ ବୋଲିଣ ଯେ ଏକଇ
ନୃପତ୍ୟ ।୭୦
ଅଶ୍ୱମେଧ ଯାଗ କରିତ ଯେହାର ବୁଧି
ଭିଆଇଲା ରାଜା ଯେ ସକଳ ସମ୍ବୁଧି ।
ନୃପତିମାନନ୍ତ କଲାକ ନିମନ୍ତ୍ରଣ
ନାନା ତ୍ରିଥରୁ ଯେ ଅଇଲେ ତପୀଗଣ ।
ଘୃତ ତିଳ ଯବ ସମିଧ ସଜକରି
ବିଶ୍ୱାମିତ୍ର ତହିଂକି ଗଲେ ଦଣ୍ଡଧାରୀ ।
କରପତ୍ର ଯୋଡ଼ିଣ ଯେ କହିଲା ତାର ଆଗ
ବୋଇଲା କରିବି ମୁଂ ଅଶ୍ୱମେଧ ଯାଗ ।
ତୁ ତହିଂ ଆଚାର୍ଯ୍ୟ ହୋଇବୁ ଗାଧିଶିଷ
ଶୁଣିଣ ବିଶ୍ୱାମିତ୍ର ପରମ ସନ୍ତୋଷ ।୮୦
ଗାଲ୍ୟଭର ସଙ୍ଗେ ଅଇଲେ ମହାମୁନି
କଟକେ ପ୍ରବେଶ ହୋଇଲା ତତକ୍ଷଣି ।
ଯେଣୁ କଉଶିକ ତାର ପୁରକଇ ଗଲା
ଯାଗରେ ଆପଣେ ସେ ଆଚାର୍ଯ୍ୟ
ହୋଇଲା ।
ଅଗ୍ନିର ମୁଖେ ନେଇ ସମର୍ପିଲା ଘୃତ
ହବି ଭାଗ ଘେନିମାଙ୍କୁ ଅଇଲେ ଦଇବତ ।
ପୂର୍ଣ୍ଣ ଆହୂତି ସେ ସମର୍ପିଲା ନେଇ
ଯାଗ ସମାପତ ଷୋଡ଼ଶ ଦିନେ ହୋଇଂ ।

ଦେବେ ତୋଷହୋଇ ଗଲେ ସ୍ୱର୍ଗପୁରୀ
ଯେ ଯାହା ରାଜ୍ୟେ ସେ ପ୍ରବେଶ
ଦଣ୍ଡଧାରୀ ।୯୦
ତପୀ ଜପୀମାନେ ନିଜ ପୁର ଗଲେ
ବିଶ୍ୱାମିତ୍ର ମୁନି ଗାଲ୍ୟଭକୁ ବୋଇଲେ ।
ତୁହୋ ନୃପତି ଦକ୍ଷିଣା ମୋତେ ଦିଅସି
ଯେ ତୋହୋର ଧର୍ମ ସୁଫଳ କରସି ।
ଶୁଣିଣ ନୃପତି ଦେଲାକ ବହୁତ ଧନ
ପରମ ସନ୍ତୋଷ ହୋଇଲା କଉଶିକର
ମନ ।
ରାଜାର ତ୍ରିପୁତି ସେ ନୋହିଲାକ ଚିତ୍ତ
ମନେ ବିଋରଇ ଦେବଇଂ ଆଉ ବିତ୍ତ ।
ଋଷିଙ୍କ ବୋଇଲା ପ୍ରସନ ବଦନ ହୋଇଂ
ଆବର ଦକ୍ଷିଣା ମାଗ ମୁନି ଦେବଇଂ
ମୁହିଂ ।୧୦୦
ଋଷି ବୋଇଲେ ମୁଂ ହୋଇଲି ତ୍ରିପୁତି
ସୁଖେ ରାଜ୍ୟ ଭୋଗ ତୁ କରସି ନୃପତି ।
ବିଶ୍ୱାମିତ୍ରଙ୍କର ଯେସନ ବାକ୍ୟ ଶୁଣି
ଗଲ୍ୟଭ ବୋଇଲା ସେ ମନେ ମନେ ଗୁଣି ।
ତୁ ମୋତେ ମାଗ ମୁନି ଦେବଇଂ ଆଉ ଧନ
ନୋହିଲେଣ ଯିସ ପୂରଇ ତୋର ମନ ।
ଶୁଣିଣ ଗରୁତର କୋପ ମୁନି କଲା
ଅଧର କମ୍ପାଇଣ ବଚନ ବୋଇଲା ।
ଦିଅ ମୋତେ ଅଶ୍ୱ ଆଠଶ ସବୁ ଶ୍ୱେତ
ସର୍ବାଙ୍ଗ ଲକ୍ଷଣ ହୋଇବ ଶ୍ରୀବନ୍ତ ।୧୦
କନ୍ଧର ମୂଳେ ଯେ ଥିବାକ ଭ୍ରମର
ଅତି ଉଚ ଅତି ନୋହିବ ଆଗଭର ।
ଶେତ ଚାମର ଦିଶିବାକ ଲାଂଜ
ମୋତେ ଯେହା ଦେଇ ମନ ମୋର ରଞ୍ଜ ।
ଅତିହିଂ ଚଞ୍ଚଳ ଯେ ଅତି ବଳମାନ
ଯେକକୁ ଆରେକ ନୋହିବାକ ସାନ ।
ସମସରି ବୟସ କେହି ନୋହିବାକୁ ମାଇଂ
ସମସ୍ତେ ହେଂ ଯୋଗ୍ୟ ହୋଇବେ
ଯଜ୍ଞକଇଂ ।

ସୁବାହୁ ଭକ୍ତଙ୍କ ଶାନ୍ତି ମୂର୍ତ୍ତି ଧରି
ସୁବର୍ଣ୍ଣ ଛିନ ବାଘର ଆଣ ଦଣ୍ଡଧାରୀ ।୨୦
ଛୋଟ ଚଉକିଆ ମୋଟ ହୋଇବ ପିଠି
ପାରୁଶକଇ କାହାର ନୋହିବାକ ଦୃଷ୍ଟି ।
ମନେ ଯାହା ବୋଲିବ ତହିଁକି ଯାନ ଯିବ
ଦିବସେକେ ମେଦିନୀ ବୁଲିଣ ଆସିବ ।
ଯେମନ୍ତ କରି ଆଠଶ ଶେତ ଅଶ୍ୱ ଦେସି
ଶୁଣି ରାଜାର ଯେ ଛାଡ଼ିଗଲା ସାହାସି ।
ମୋହୋର ଦୋଷେ ସିନା ଯେ କଥା ଉପୁଜିଲା
ମନେ ବିଚାରଇ ରଷି ମୋତେ କୋପକଲା ।
ଯାହା ସେ ମୁନି ଅଶ୍ୱ ମାଗିଲା ଆଠଶତ
ଲକ୍ଷେ ବାଛିଲେ ସିନା ପାଇବାନା ଯେମନ୍ତ ।୩୦
ମୁହିଁ କିସ ରାଜା କେତେକ ମୋହୋର ମହୀ
ଯେ ଦୁଲଭ କଥା କି ପାରିବି ଭିଆଇ ।
ଯେତେ ବୋଲି ଗାଲ୍ୟଭ ମୁନିର ପାଦେ ପଡ଼ି
କାର୍ପୁନ୍ୟ ହୋଇଣ ବେନି କରଯୋଡ଼ି ।
ଭୋ ମହାମୁନି ମୋତେ ପ୍ରତିକାର କର
ଯେ ମହାକଷଣୁ ବାରେକ ଉଧର ।
ମୁହିଁ ଅଗ୍ୟାନ ଯେ ନ ଜାଣି ଗର୍ବ କଲି
ତହିଁର ଫଳ ମୁନି ଯେବେ ସେ ପାଇଲି ।
ଶୁଣିଣ କଉଶିକ ହୋଇଲା ସନ୍ତୋଷ
ପ୍ରସନ ହୋଇ ମୁନି ବୋଇଲା ସ୍ୱର୍ଗେ ବସ ।୪୦
ତତକ୍ଷଣେ ରାଜା ପାଇଲା ସ୍ୱର୍ଗପୁରୀ
ଯହୁଁ ଆଗ୍ୟା ଦେଲା ବିଶ୍ୱାମିତ୍ର ତପଚାରୀ ।
ଶୁଣ ହୋ ଶ୍ରୀରାମ ମୁନିର ଚରିତ
ସାକ୍ଷାତେ ଧାର୍ମିକ ଯେ ଅଟଇ ପବିତ୍ର ।
ତୋହୋର ଉପର ବଂଶେ ଅମରୀଷ ମହୀପତି
ଚାରି ସମୁଦ୍ରେ ସେ ଯେକଇ ଚକ୍ରବର୍ତ୍ତୀ ।
ନରମେଧ ଯାଗ୍ୟ କରିତ ମନ କଲା
ଲକ୍ଷଣବନ୍ତ କରି ପୁରୁଷ ଭିଆଇଲା ।
ଘୃତ ଯବ ତିଳ ସମିଧ ସଜକରି
ମଣ୍ଡଣ ହୋଇଲେ ଯେ ଅଯୁଧ୍ୟା ନରନାରୀ ।୫୦
ନୃପତିଗଣମାନେ ମିଳିଲେ ସର୍ବେ ଆସି
ଆବର ଅଇଲେ ଯେ ଅନେକ ମହାରଷି ।
ଯଜ୍ଞ କରନ୍ତେଣ ତାହା ବାସେବ ଜାଣିଲା
ଲକ୍ଷଣବନ୍ତ ପୁରୁଷକୁ ହରି ଘେନିଗଲା ।
ବିଘର କଲା ମନେ ସ୍ୱର୍ଗର ନୃପତି
ଯାଗ୍ୟ ସମାପତେ ହୋଇବ ସୁରପତି ।
ଶତେକ ଅଶ୍ୱମେଧ ଅଛଇ ପୂର୍ବେ କରି
ଯେତେକ ଭାଳି ଇନ୍ଦ୍ର ଅଇଲାକ ଡରି ।
ଲକ୍ଷଣବନ୍ତ ପୁରୁଷକୁ ହରି ଘେନିଗଲା
ରାତ୍ର ପାହିଲା ଅମରୀଷ ନୃପତି ଜାଣିଲା ।୬୦
ବୋଇଲାକ ମୋତେ ହୋଇଲା ବିପରୀତ
ଯେବେ ପୁଣି ମୁହିଁ ହୋ କରିବି କେମନ୍ତ ।
ରଷିମାନନ୍ତ ରାଜା ପୁଚ୍ଛଇ ବସାଇଂ
ରଷି କହିଲେ ଶାହାସ୍ତ୍ର ବଳ ଦେଖାଇ ।
ଗଲା କଥାକୁ ରାୟେ ନ କରସି ଚିନ୍ତା
ଖୋଜି ଆଣ ଯେବେ ଲକ୍ଷଣବନ୍ତ ପୁରୁଷ ବଳବନ୍ତା ।
ଯାଗ୍ୟ ସମାପତ ଦିନକର କାର୍ଯ୍ୟ
ଯହିଁ ପାରୁ ଖୋଜି ଆଣ ମହାରାଜ ।
ଆମ୍ଭେ ଅଗ୍ନିରେ ଘୃତ ଦେଉଂଥିବୁ
କ୍ଷଣକଇ ହୋମ ପଠନ ନ ଛାଡ଼ିବୁ ।୭୦
ଶୁଣିଣ ନୃପବର ବିବାନ ଆରୋହିଂ
ଦେଶେ ବିଦେଶେ ଯେ ବୁଲଇ ନୃପସାଇଂ ।
ଅନେକ ଧୂର ଯେ ଭ୍ରମିଣ ରାୟେ ଗଲା
ରୁଚିକ ମହାମୁନି ଆଶ୍ରମେ ମିଳିଲା ।
ଲକ୍ଷଣବନ୍ତ ତାର ତିନିପୁତ୍ର ଅଛଇ
ଅମରୀଷ ରାଜା ତାହାକଇଂ ପୁଚ୍ଛଇ ।
ନମସ୍କାର କରିଣ ଯେ ପୁଚ୍ଛଇ ନୃପତି
କଥାଯେ କହିବି ମୁଂ ଶୁଣ ମହାଯତି ।
ନରମେଧ ଯାଗ୍ୟ ଆରମ୍ଭ ମୁହିଂ କଲି
ସକଳ ପଦାର୍ଥ ଆଣିଣ ସମ୍ପାଦିଲି ।୮୦
ଲକ୍ଷ୍ମଣବନ୍ତ ପୁରୁଷକୁ ନେଲାକ କେ ହରି
ଯେ ମହୀମଣ୍ଡଳେ ମୁଂ ନ ପାରିଲି ଲୋଡ଼ି ।
ତୋହୋର ତିନିପୁତ୍ର ଅଛଇ ମୁନିମ୍ୱର
ଧନ ନେଇ ଯେକ ପୁତ୍ର ଦିଅସି ତୁମ୍ଭର ।
ତୋହୋର ପୁତ୍ରେ ମୁନି ହେଉ ମୋତେ ଧର୍ମ
ନୋହିଲେ ଖଣ୍ଡିତ ମୋର ହୋଇଲା ଯେତେ କର୍ମ ।
ଶୁଣିଣ କଶ୍ୟପ ସୁତ ଭାଳଇ ମନେ ମନ
ଯେହିକ୍ଷଣି ପାଇବି ମୁଂ ଲକ୍ଷେକ ସୁବର୍ଣ୍ଣ ।
ଦରିଦ୍ର ଦୋଷ ମୋ ଯିବ ଅପହରି
ଦେବି ପୁତ୍ରେକ ସେ ବୋଇଲା ବିଚାରି ।୯୦
ଅମରୀଷ ରାଜାକଇ ବୋଇଲାକ ଚାହିଂ
ଜେଷ୍ଠ ପୁତ୍ର ଗୋଟି ମୁଂ ଦେଇତ ନ ପାରଇ ।
ଯେହାକୁ ବହୁତ ସୋଗ ମୋର ଅଛି
କ୍ଷଣେହେଂ ନ ଦେଖିଲେ ମୁଂ ନ ପାରଇ ମୂର୍ଚ୍ଛି ।
ଯେ ବୋଲ ଶୁଣିଣ ଯେ ବୋଲଇ ରଷିଆଣୀ
ସାନ ପୁତ୍ର ମୋର ପ୍ରାଣର କାରେଣୀ ।
ଯେହାକଇଂ ମୁଚ୍ଛି ନ ପାରଇଂ ମୁହିଂ
କୋଡ଼ର ପୁତ୍ର ଗୋଟି କେମନ୍ତେ ଛାଡ଼ିବଇଂ ।
ମାତାପିତାଙ୍କର ଯେସନ ବଚନ ପାଇଂ
ମଝିଆଂ ପୁତ୍ର ଗୋଟି ଯେ ବୋଇଲାକ ଥାଇଂ ।୧୦୦
ଜେଷ୍ଟ ପୁତ୍ରକର ଯେବେ ସମ୍ଭାଳିଲେ ତାତ
କନେଷ୍ଟ ପୁତ୍ରକଇ ଆବୋରିଲେ ଦେବୀ ମାତ ।
ମୋତେ ଆଉ ରଖନ୍ତା ନୋହିଲେକ କେହି

ମୁହିଂ ଆନେ କିସ କରିବି ଜୀଇଂ ଥାଇଂ ।
ଭୋ ରାଜା ଧନ ଦେଇଂ ମୋତେ କିଣ
ନିରେଖ ହୋଇଂଥିବାର ସେ କେବଣ
କାରଣ ।
ଶୁଣିଣ ସନ୍ତୋଷ ଯେ ହୋଇଲା ନୃପତି
ପିତାମାତାଙ୍କର ଜାଣିଲା ସନମତି ।
ଲକ୍ଷେକ ଧନ ରାଜା ଦେଲା ତତକ୍ଷଣ
ଶୂନସେଫ କୁମରକୁ ନେଲା ରଥେ
ବସାଇଣ ।୧୦
ଧାତିକାରେ ଲେଉଟି ଚଳିଲା ମହୀପତି
ପୁଷ୍କର ତୀର୍ଥେ ପ୍ରବେଶ ହୋଇଲାକ ଧାତି ।
ସ୍ନାହାନ କଲେ ତହିଂ ଋଷିପୁତ୍ର ସହିତେ
ଯାଇଂଣ ମିଳିଲେ ସେ ବିଶ୍ୱାମିତ୍ର ଅଗ୍ରତେ ।
ନମସ୍କାର କରିଣ ରାଜା ଉଭାହୋଇ
ଶୂନସେଫ ଋଷିବର ଚରଣେ ଶରଣ
ପଶଇ ।
ଭୋ ବିଶ୍ୱାମିତ୍ର ମୋତେ ସେ ରକ୍ଷାକର
ମୋହୋରେଣ ନରମେଧ ଯାଗ କରିବେ
ନୃପବର।
ପିତା ମାତା ବିକିଲେ ଧନ ଘେନି
ପ୍ରାଣଦାନ ମୋତେ ଦେସି ମହାମୁନି ।୨୦
ଶୁଣି ବିଶ୍ୱାମିତ୍ର ରଖିବି ବୋଇଲେ
ଅମରୀକ୍ଷ ରାଜା ଶୁଣି ବିସ୍ମୟେ ହୋଇଲେ ।
ଶୂନସେଫ ବୋଇଲା ତୁ ନ ଭାଳ ନୃପତି
ମୋତେ ଯେବେ ପ୍ରାଣ ଦେଲାକ ଏହୁ
ଯତି ।
ତୋତେ ପ୍ରତିକାର କରିବ ଯେ ମୁନି
ପିତା ମାତା ମୋତେ ବିକିଲେ ଧନ ଘେନି ।
ତିନିକୁଳ ବିଶୁଦ୍ଧ କରିବି ସିନା ମୁହିଂ
ନୋହିଲେଣ ପ୍ରାଣ ମୁଂ ରଖିବି କିସ ପାଇଂ ।
ବିଶ୍ୱାମିତ୍ରକୁ ଚାହିଂ ସେ ବୋଲଇ କୁମର
ମୋତେ ଯେବେ ପ୍ରାଣଦାନ ଦେଲୁ
ମୁନିବର ।୩୦
ଲକ୍ଷେକ ସୁବର୍ଣ୍ଣ ଦେଲା ଅମରୀକ୍ଷ ରାୟେ
ଋଣୀ ହୋଇବେକି ମୋହୋର
ବାପମାୟେ ।
ପିଅର ଜନନୀରେ ହୋଇବି ଦୋରେହା
କାରଣ ଯଦି ଯେଥି ନ ପାଇବେ
ନରନାହା ।
ମୁନି ବୋଇଲେ ତୁ ଶୁଣ ଶୂନସେଫ
ଆମ୍ଭେ ଯାହା ବୋଇଲୁ ନୁହଇ ସତ୍ୟଭଙ୍ଗ ।
ତୋହୋର ନିମନ୍ତେ ମୁଂ ଦେବି ଯେକ ପୁତ୍ର
ଅମରୀଷ ରାଜାକୁ ପ୍ରାପତ ହୋଇବ ହୋତ୍ର ।
ଯେତେ ବିଚ୍ଚରି କଉଶିକ ନିଜ ପୁତ୍ର ରାଇ
କତିରେ ବସାଇଂଣ ବିଶ୍ୱାସ କଥା
କହିଂ ।୪୦
ଶୁଣସି ନନ୍ଦନନ୍ତ ମୋହୋର ଯେ କଥା
ଯେସେ ଅମରୀଷ ଅଯୁଧ୍ୟା ମହାରଥା ।
ଋଷିର ପୁତ୍ର ଯେ ନେଉଅଛି କିଣି
ନରମେଧ ଯାଗ୍ୟ ଯେ କରିବ ନୃପମଣି ।
ଶୂନସେଫକଇ ଘେନି ଯାଉଅଛି
ମୋତେ ଦେଖିଣ ଶରଣ ପଶିଲା ରୁଚିକ
ମୁନିର ବଛି।
ସତ୍ୟ କରିଣ ମୁଂ ରଖିଲଇଂ ଯେହା
କେମନ୍ତେ ଯାଗ ଯେ କରିବ ନରନାହା ।
ଯେ ମୋହୋର ଧର୍ମ ରଖିବାର ପାଇଂ
ଜଣକର ଦେହ ଯଗ୍ୟେଂ ଦିଅ ନେଇ ।୫୦
ଯଦି ବାବୁ ତୁମ୍ଭେ ମୋହୋର ବହ ହିତ
ଦେହ ଦେଇଂଣ ରଖ ମୋହୋର ସତ୍ୟ ।
ଶୁଣିଣ ପୋୟେ ବୋଇଲେ ହସିକରି
ପରକଇ ରଖି ଆପଣା ପୁଅ ମାରି ।
ବାଇଙ୍କର କଥା ସେ ଯେ ଅଟଇ ଯେମନ୍ତ
ଯେ ବୋଲି କିମ୍ପା ତୁ ବୋଲୁ ସିଦ୍ଧାନ୍ତ ।
ଆମ୍ଭେ କିମ୍ପାଇ ପରପାଇଂ ଦେହ ଦେବୁ
କେବଣ କାରଣେ ତାତ ଦେହ ହରାଇବୁ ।
ଶୁଣିଣ ବିଶ୍ୱାମଇତ୍ର ବିସ୍ମୟେ ହୋଇଲା
ପୁତ୍ରଙ୍କର ତହିଂ ଯହୁଂ କଥା ନ ରହିଲା ।୬୦
ଶୂନସେଫକଇ ବୋଇଲାକ ରାଇଂ
ଯାସି ରାଜା ସଙ୍ଗେ ତୋତେ କିଛି ଭୟେ
ନାହିଂ ।
ଯେ ମନ୍ତ୍ରଂ ଗୋଟି ତୁ ଜପିବୁ ଯେକ ଧାନେ
ମହାମନ୍ତ୍ର କହିଲେ ଋଷି କୁମରର କର୍ଣ୍ଣେ ।
ଊର୍ଦ୍ଧ ଚରଣ କରି ଯେହା ଜପୁଥିବୁ
ପ୍ରୋକ୍ଷଣି ବେଳେ ତୁ ଯେହା ସୁମରିବୁ ।
ବାସେବ ରଖିବ ଯେ ତୋହୋରି ନିଜ ପ୍ରାଣ
ନୋହିଲେ ନ ଥିବ ଯେ ତାହାରି ଇନ୍ଦ୍ରପଣ ।
ଯେତେ ବୋଲି ମୁନି ଅମରୀଷକଇ ଚାହିଂ
ଯେ ଲକ୍ଷ୍ମଣବନ୍ତ ପୁରୁଷକୁ ନେସି
ନରସାଇଂ ।୭୦
କର ତୋର ଯାଗ ପ୍ରାପତ ତୋତେ ହୋଉ
ଯେ ମୋହୋର କୀରତି ତୋହୋର ଠାବେ
ରହୁ ।
ବିଶ୍ୱାମଇତ୍ରଙ୍କର ଯେସନ ବଚନ ଶୁଣି
ଶୂନସେଫକଇ ଘେନିଗଲା ଅମରୀଷ
ନୃପମଣି ।
ଅଯୁଧା ପୁରେ ଯାଇ ହୋଇଲା ପ୍ରବେଶ
ଦେଖିଲା ନଗ୍ର ଯେ ମଙ୍ଗଳ ଚଉପାଶ ।
ଅନେକ ବ୍ରାହ୍ମଣ ମିଳି ଅଗ୍ନିରେ ଦିଅନ୍ତି ହୋମ
ଅମରୀଷ ରାଜା ପ୍ରବେଶ ନିଜ ଗ୍ରାମ ।
ନୃପତିକି ଦେଖି ହରଷ ସର୍ବଜନ
ଲକ୍ଷ୍ମଣବନ୍ତ ପୁରୁଷ ଯହୁଂ ଆଣିଲା
ରାଜନ ।୮୦
ମନ୍ତ୍ରୀ ଅମନାତ୍ୟ ମିଳିଲେ ସକଳ
ବିଚ୍ଚର କରଇ ସେ ଅଯୁଧା ମହୀପାଳ ।
ଶତଘାନ୍ତି ବୈଗୁନ୍ୟ ଉପୁଜିଲା ଯେଥ
ଯେବେ ଯେହା ରକ୍ଷଣ କରିବା ଯତ୍ନମତ ।
ଶୁଣିଣ ମନ୍ତ୍ରୀଗଣେ ଉପାୟ ବୁଧି କଲେ
ପୁଷ୍କରିଣୀ ଦୀପଦଣ୍ଡିରେ ବାନ୍ଧିଲେ ।
କୂଳେଣ ଲୋକ ଜଗିଛନ୍ତି ଚଉକତି
ଯାଗ୍ୟରେ ବିଜୟେ କଲେକ ନୃପତି ।
ଯବ ତିଳ ଘୃତ ଯେ ସମିଧ ଅପାର
ସାଧୁ ସାଧୁ ଧ୍ୱନି ଶୁଭିଲା ତିନିପୁର । ୯୦

ଯାଗ୍ୟ ସମାପତ ବେଳ ଆସି ହେଲଂ
ମାର୍ଜ୍ଜଣା କରିଣ ଆଣିଲା ରୁଚିକ ମୁନିର
ତନଇ ।
ପଶୁ ପ୍ରୋକ୍ଷୋଣି କରନ୍ତି ହୋମ ବେଢ଼ି
କଉଶିକ କହିଲା ମନ୍ତ୍ର ଯେ ଶୂନସେଫ
ପଢ଼ି ।
'ଇନ୍ଦ୍ରଇତି' ସ୍ୱାହା ବୋଲନ୍ତେଣ ଯତି
ଦେବତାଗଣ ଘେନି ମିଳିଲା ସୁରପତି ।
ରାଜାକଇ ପ୍ରଶଂସା ଯେ କଲାକ ବଜ୍ରଧର
ପ୍ରସନ କରାଇ ମାଗିଲା କୁମର ।
ବୋଇଲା ତାହାକୁ ତୁ ନ କର ପ୍ରାଣନାଶ
ସମସ୍ତ ଦେବତାୟେ ହୋଇଲୁ ଆମ୍ଭେ
ତୋଷ ।୧୦୦
ଯେ ପ୍ରାଣୀର ଦେହ ଦେସି ମୋତେ ଦାନ
ଯାଗ୍ୟର ଫଳତୁ ପାଇବୁ ରାଜନ ।
ଶୁଣିଣ ନୃପତି ସନ୍ତୋଷ ମନ ହୋଇ
ଋଷିର ପୁତ୍ରକୁ ଯେ ଦେଲା ମୁକୁଳାଇ ।
ତକ୍ଷଣେ ଶୂନସେଫ ତହୁଂ ଚଳିଗଲା
ପିତାମାତାଙ୍କ ସନିଧେ ଯାଇଂ ମିଳିଲା ।
ଦେଖି ପରଘରିଲେ ପିଅର ଜନନୀ
ପୁତ୍ର ବୋଇଲା ରଖିଲେ ସହସ୍ର ଯୋନି ।
ବିଶ୍ୱାମିତ୍ରଙ୍କର ଉପାୟେ ଅଇଲି
ତିନି କୁଳ ଦୋଷ ବିଶୁଦ୍ଧ ମୁହିଂ କଲି ।୧୦
ଶୁଣିଣ ସନ୍ତୋଷ ଯେ ହୋଇଲେ ତାତମାତ
ଯେଥୁ ଅନନ୍ତରେ ତୁମେ ଶୁଣ ରଘୁନାଥ ।
ଅମରୀଷ ରାଜା ଯହୁଂ ଇନ୍ଦ୍ର ବୋଲ କଲା
ତୋଷ ହୋଇ ସୁରପତି ସ୍ୱର୍ଗକଇ ଗଲା ।
ଅମରୀଷ ରାଜାକଇ ଧର୍ମ ପରାପତ
ବ୍ରାହ୍ମଣେ ଦକ୍ଷିଣା ସେ ଦେଲାକ ବହୁତ ।
ଯାଗ୍ୟ ସାରିଣ ସେ ଗଲେ ସକଳ ରାୟେ
ତପୀ ସନ୍ୟାସୀ ନିଜ ପୁରେ ଯାୟେ ।
ସତ୍ୟାନନ୍ଦ ବୋଲଇ ଶୁଣ ରଘୁପତି
ପୁଷ୍କର ତୀର୍ଥେ କଉଶିକ ଥାନ୍ତି ।୨୦
ସହସ୍ରେ ବରଷ ସେ ତହିଂ ତପ କଲା
ଦେବତାନ୍ତ ଘେନି ବିଧାତା ଅଇଲା ।
ବର ମାଗ ବୋଲି ଯେ ବୋଇଲେ ପିତାମହ
କିମ୍ପାଇ ଘୋର ତପେ କକର୍ଥି ଅଛୁ ଦେହ ।
ବିଶ୍ୱାମିତ୍ର ବୋଲଇ ମୁଂ ହୋଇବି ବ୍ରହ୍ମଋଷି
ପ୍ରସନ ହୋଇଲୁ ଯେବେ ବର ମୋତେ
ଦେସି ।
ସେ ହୋଉ ବୋଲି ଯେ ବୋଇଲେ ବିଧାତା
ଯେ ଯାହାପୁରେ ବିଜେ କଲେ ଦେବତା ।
ଯେଥୁ ଅନନ୍ତରେ କଉଶିକ ଋଷି
ଅହନ୍ତା ମନେ ଧରି ତପ କରଇ ବସି ।୩୦
ଷଡ଼ ଋତୁ ବଞ୍ଚଇ ସହଇ ଶୋଷ ଭୋଖ
ଦେବେ ଡରିଣ ଯେ କହନ୍ତି ଚଉମୁଖ ।
ଶୁଣ ପିତାମହ ଆମ୍ଭର ଯେ ବାଣୀ
କଉଶିକ ତପ ଅଇଂଲୁ ଆମ୍ଭେ ଜାଣି ।
ଅତି ଦୁସ୍ତର କରିତ ତନୁ ଦଗଧଇ
ବରଷାୟେ ତିନ୍ତଇ ସେ ଶୀତେଣ ଜଳେ
ଥାଇ ।
ଅନ୍ନ ପାଣି ଆଧାର କିଛି ହିଂ ତାର ନାହିଂ
କରସି କାରଣ ନାଥ ତପ ସେ ଗୁହାଇ ।
ନୋହିଲେଣ ସେ ଯେ ହୋଇବ ସୁରପ୍ରଭୁ
ଆମ୍ଭେ ସୁରଗଣେ ସମୋଡ଼େ
ନାଶଯିବୁ ।୪୦
ଇନ୍ଦ୍ରାଦି ଦେବତାଙ୍କର ଯେସନ ବଚନ ଶୁଣି
ମେନକାକୁ ରାଇ ବୋଇଲେ କୁଶପାଣି ।
ତୁ ଗୋ ସୁନ୍ଦେରୀ ଯେହିକ୍ଷଣି ଯିବୁ
ବିଶ୍ୱାମିତ୍ର ମୁନିର ତପ ବିନାଶିବୁ ।
ତେବେ ସେ ସୁସ୍ତ ହେଉ ଦେବପୁର
ଆମ୍ଭ ଛଳେ ସୁନ୍ଦେରୀ ଯେ ଯେ କାର୍ଯ୍ୟ ତୁ
କର ।
ବେନି କର ଯୋଡ଼ି ବୋଲଇ ମେନକା
ଅଗୋଚର ତପ ସେ କରଇ ମୁନିଯେକା ।
ମୁହିଂକି ଭାର୍ଜନ ହୋଇବି କୁଶଧର
ସର୍ବଦା କୋପୀ ସେ ଅଟଇ ମୁନିବର ।୫୦
କାମବଶ୍ୟ ଯାଇ ଯାହାର କୋପଭର
ମୁଂ ଛାର ମାତର ଭାର୍ଜନ କି ପ୍ରକାର ।
କୋପେ ଚାହିଂ ସେ ଯେବେ ପାଷାଣ ଯାଇ
ଜଳି
ରାଜା ହୋଇ ତପେ ସେ ବ୍ରାହ୍ମଣ
ବୋଲାଇ ।
ବଶିଷ୍ଠ ଋଷି ସଙ୍ଗେ ଯାହାର ଯେ ବାଦ
ହେଳେ ଘେନିଲା ଯେ ହରିଚନ୍ଦନ ସମ୍ପଦ ।
ତ୍ରିଶଙ୍କୁର ଚାଣ୍ଡାଳକୁ ସ୍ୱର୍ଗେ ବସାଇଲା
ପ୍ରତିଗ୍ୟାଂ କରି ନବ ସୃଷ୍ଟି ଭିଆଇଲା ।
ମୋତେ ଯେ ଆଗ୍ୟାଂ ଦେଲ ତୁଷ୍ଟ ରାଇ
ଆବର କି ଯେ ଦେହଥିବ ଜୀବ
ପାଇ ।୬୦
କାମ ଯେହ୍ନେ ହର ନୟନେ ଧ୍ୱଂସ ଗଲା
ସେ ସଂଯୋଗ ଆସି ମୋତେ ନିଷ୍ଟଏ
ହୋଇଲା ।
ନ ଗଲେ କୋପ କରିବେ ଦେବଗଣ
ଗଲେତ ନିଷ୍ଟଏ ମୋର ପାଇନାହିଂ ପ୍ରାଣ ।
ଯେକା ଯିବଇ କି ସଙ୍ଗେଣ ଲୋକ ଯିବ
ମେନକା ବୋଲ ଶୁଣି ବୋଲଇ ଦଇବ ।
ବସନ୍ତ ମଳୟ ପବନ ଯେ ଯାନ୍ତୁ
କାମଦେବ ସହିତେ ଉଚ୍ଚାଟ କରାନ୍ତୁ ।
ପାର ଯେମନ୍ତେ ତୁମ୍ଭେ ଦେବ କାର୍ଯ୍ୟକର
ପ୍ରବୋଧ କରିଣ ଯେ କହିଲେ
କୁଶଧର ।୭୦
ଦେବାଧିଦେବଙ୍କର ଆଗ୍ୟାଂ ଶିରେ ଘେନି
ବସନ୍ତ ପବନ ମୂଳେ ଯେ ଚଳିଲେ
କାମେନୀ ।
ପୁଷ୍କର ତୀର୍ଥେଣ ସେ ପ୍ରବେଶ ହୋନ୍ତି ଯାଇ
ବସନ୍ତ ପ୍ରବେଶେ ବନ ପଲ୍ଲବଇ ।
ମଳୟ ପବନ ଯେ ବହଇ ଧୀରେ ଧୀରେ
କାମଦେବ ବିଜଏ କଲାକ ଶରୀରେ ।
ଗ୍ୟାଧିସୁତ ଅଛଇ ଯହିଂ ତପେ ବସି
ମେନକା ପରବେଶ ହୋଇଲା ତହିଂ ଆସି ।
ପୁଷ୍କର ତୀର୍ଥେ ପଶି କରଇ ସେ ସ୍ନାହାନ

ଯେସନ ସମୟେ ମୁନିର ଫିଟିଗଲା
ଧ୍ୟାନ ।୮୦
ଦେଖିଲା ସୁନ୍ଦରୀ ଯେ ଜଳତଟେ ଅଛି
ଶରୀରେ କୁଙ୍କୁମ ଲେପଇ ମୃଗାକ୍ଷୀ ।
ଝିନବାସ ଫୁଟି ଦିଶଇ ସ୍ତନ ଜଘ
ଦେଖିଣ ମୁନିକି ଯେ ପିଡ଼ିଲା ଅନଙ୍ଗ ।
ସ୍ୱଭାବେ ମେନକା ଯେ ସର୍ଗର ଅପକ୍ଷରୀ
ଯତନେ ଆସିଅଛି ମୁନିର ମନ ହରି ।
ଚକୋର ଚାହାଣୀ ଯେ ଚାହିଁଲା ବକ୍ରଦୃଷ୍ଟି
ଋଷିର ପ୍ରାଣ କି ଗଲା ହିଆ ଫୁଟି ।
କାଖ ଟେକିଣ ଯେ ଲଗାଇ ହଳଦୀ
ବିଶ୍ୱାମଇତ୍ରର ମନ ମଦନ ଅନଳେ
ଦଗଧି ।୯୦
ମନେ ବିଚାରଇ ସାଧୁ ଏ ସୁନ୍ଦରୀ
ତିନି ଭୁବନେ ଏହାକୁ ନାହିଁ ପଟାନ୍ତରି ।
କେବଣ କାରଣେ ଯେ ପ୍ରବେଶ ଆସି ଏଥ
ପଚାରିବି ବୋଲି ଉଠିଲା ତପୋବନ୍ତ ।
ସ୍ନାହାନ ସାରିଣ କୂଳେଣ ଉଭା ନାରୀ
ଭିଡ଼ିଣ ପିନ୍ଧିଲା ସେ ସରୁଝିନ ଶାଢ଼ୀ ।
କେଶ ସଜାଡ଼ଇ ଯେ ଅଳଙ୍କାର ଲାଇ
ଚରଣ ଅଙ୍ଗୁଷ୍ଠିରେ ଅଳତା ରଞ୍ଜଂଇ ।
ଶିରରେ ସୁନ୍ଦର ଯେ କସ୍ତୁରୀର ଚିତା
କଉଶିକ ପୁଛଇ ଶୁଣରେ ବନିତା ।୧୦୦
କାହୁଂ ଅଇଲୁ କେ ତୋହୋର ପିତା
କେବଣ ଦେଶରୁ ଯେ ଅଇଲ କେ
ତୋହୋର ମାତା ।
କିସ ନାମ ଅଟଇ ତୋହୋର କେ ପତି
ସ୍ୱରୂପ କରିଣ କହରେ ଯୁବତୀ ।
କନ୍ୟା ବୋଇଲା ମୁଂ ସ୍ୱର୍ଗର ଅପକ୍ଷରୀ
ମେନକା ନାମ ସେ ଅଟଇ ମୋହରି ।
ପବିତ୍ର ତୀର୍ଥ ବୋଲି ବାରତା ପାଇଲି
ସ୍ନାହାନ କରିଣ ମୁଂ ଏଥକୁ ଅଇଲି ।
ମୁନି ବୋଇଲେ ତୋତେ ଦେଖି ହୋଇଲି
ମୁଂ ବାଇ

ତୋହୋର ରୂପଦେଖି ଚିତ ମୋ ଧାରଣା
ନ ଯାଇ।୧୦
ସୁରଙ୍ଗ ଅଧରେ ମୋତେ ଚୁମ୍ବନ ବେଗେ
ଦେସି
ହୃଦରେ ମୋର ଦୁଇ କୁଚ ଲଗାଅସି ।
ବାହା ବାହା ଭିଡ଼ି ମୋତେ ଗୋ କୋଳକରି
ମଦନ ଜଳେ ବୁଡ଼ିଲି ବାରେ ଧର ଉଦ୍ଧରି ।
ଏତେ ବୋଲି ମୁନି କାମଭଳେ ବାଇ
ମେନକାକୁ ବେଗେ କୋଳକଲା ଯାଇ ।
ଦେଖିଣ ସୁରଗଣେ ହୋଇଲେ ଆନନ୍ଦ
ସ୍ୱର୍ଗେ ଉଛବ କରାଇଲା ଇନ୍ଦ୍ର ।
ଯେଥୁ ଅନନ୍ତରେ ବିଶ୍ୱାମିତ୍ର ଋଷି
ମେନକାକୁ ଘେନି ମଢ଼ିଆରେ ପଶି ।୨୦
କଲାକ ରମଣ ଯେ ବିବିଧ ଗତିକରି
ପୂର୍ବର ଭୋଗ ବିଳାସ ମନେ ଧରି ।
ନିଗମ ବନେ ପଶି କରଇ ସୁରତି
ପର୍ବତ ଶିଖରେ ଯେ କାହିଁ ନଦୀକତି ।
ବାର ବରଷ ମେନକାକୁ ଶୃଙ୍ଗାରେ ବଶ କଲା
ମଦନ ଭୋଳେ ଏକ ଦିବସ ମଣିଲା ।
କାଳେ ଦୋହିତାଏ ପ୍ରସବିଲା ନାରୀ
ଶକୁନ୍ତଳା ନାମ ଦେଲାକ ତାହାରି ।
ଦୋହିତା ପ୍ରସବି ମେନକା ସ୍ୱର୍ଗକଇ ଗଲା
କାଳେ ମୁନି ତାହାକୁ ଭ୍ରଥାକାଇ
ଦେଲା ।୩୦
ଏଥୁ ଅନନ୍ତରେ କଥା ଶୁଣ ରଘୁପତି
ପୁଣି ହିଂ ତପ କଲା ବିଶ୍ୱାମିତ୍ର ଯତି ।
ହେମବନ୍ତ ସନିଧେ କଉଶିକ ନଦୀ ତୀରେ
ଏକାନ୍ତ ତପ କରଇ ସେ ବନ ଘୋରେ ।
ଏମନ୍ତେଣ ସହସ୍ରେ ବରଷ ଭୋଗକଲା
ଜାଣିଣ ସ୍ୱର୍ଗେ ଇନ୍ଦ୍ର ମହାଭଏ କଲା ।
ଦେବେ ଡରିଲେ ଅମରପୁରେ ଥାଇ
ବ୍ରହ୍ମା ଆଗରେ ସେ କହିଲେ ଦେବେ
ଯାଇ ।
ଭୋ ଦେବ ତପ ପୁଣି ସେ କରଇ ଗ୍ୟାଧିସୁତ

ନିଶ୍ଚେଏ ସଂସାର ସେ କରିବାକ ହତ ।୪୦
ଚାଲ ଯେବେ ପ୍ରବୋଧ କରିବା ତାକୁ ଯାଇ
ବ୍ରହ୍ମା ବୋଇଲେ ସେ ଦେବତାନ୍ତ ଚାହିଁ ।
ଚାଲ ସମସ୍ତେ କରିବା ଯାଇ ପୁଛା
ବ୍ରହ୍ମଋଷି ହୋଇବାକୁ ସେ କରୁଅଛି ବାଞ୍ଛା ।
ଏତେ ବୋଲି ଧାତା ସହିତେ ଦେବଗଣ
ବିଶ୍ୱାମିତ୍ର ସିନିଧେ ମିଳିଲେ ତତକ୍ଷଣ ।
ବିଧାତା ବୋଇଲେ ମାଗସି ତୁ ବର
ଯେ ଅବା ବାଞ୍ଛା ଅଛଇ ମନେ ହୋ
ତୋହୋର ।
ବେଦପତି ମୁଖୁ ଏସନେକ ଶୁଣି
ବିଶ୍ୱାମଇତ୍ର ବୋଲନ୍ତି ବ୍ରହ୍ମାକଇ
ବାଣୀ ।୫୦
ବ୍ରହ୍ମଋଷି ନ ବୋଇଲେ ନ ଛାଡ଼ଇ ତପ
ପାରୁ ଯେବେ କାରଣ କର ଜଗତର ବାପ ।
ଧାତା ବୋଇଲେ ତୁ ଛାଡ଼ ଲୋଭ ମୋହ
କାମ କ୍ରୋଧ ଛାଡ଼ିଲେ ତୁ ବ୍ରହ୍ମଋଷି ହୁଅ ।
ଯେସନେକ ବୋଲିଣ ଗଲେ ସର୍ବସୁର
ଗ୍ୟାଧିସୁତ ମନେ କରନ୍ତି ବିଚାର ।
ତପ ମୋହୋର କେବେ ନୋହିଲାକ ସିଧି
ନିଶ୍ଚେଏ ଅହନ୍ତା ମୋତେ କଲେ କବି ବୁଧି ।
ଏତେ ବୋଲି ପୁଣ ଉପରକୁ ଚାହିଁ
ପୁଣି ହିଂ ତପକଲା ବିସ୍ମଏ ମୁଖ
ହୋଇ ।୬୦
ଇନ୍ଦ୍ର ବୋଇଲେ ରମ୍ଭାକଇ ଚାହିଁ
ବିଶ୍ୱାମିତ୍ର ତପ ଭଗ୍ନ କର ଯାଇ ।
ବୋଲଇ ରମ୍ଭା ତୁ ଶୁଣ ସୁରସାଇଂ
ବିଶ୍ୱାମିତ୍ର ତପ ଗରୁତର କରଇ ।
ଦେଖିଲେଣ ଦହିଜ ହୋଇବ ମୋର ଦେହ
ବେଳେକ ରକ୍ଷା କରିପାରିବ କେ କୁହ ।
ଇନ୍ଦ୍ର ବୋଇଲା ମୁଂ କୋକିଳ ହୋଇଥିବି
ମଦନ ଘେନିଣ ତୋହୋର ତୁଳେ ଯିବି ।
ଯନ୍ତ୍ର ବଜାଇଣ ଗାଇବୁ ତୁ ଗୀତ
କ୍ଷଣକେ ମୋହିବାତ ବିଶ୍ୱାମିତ୍ର ଚିତ୍ତ ।୭୦

ମଦନ ବିନ୍ଧିବ ଯେ ପଞ୍ଚବାଣ ଘେନି
କୋକିଳ ହୋଇଣ ମୁଂ କରିବି ମୃଦୁବାଣୀ ।
ଏତେ ବୋଲି ଆଗୁସାର ହୋଇଲା ସୁରପତି
ମଦନଙ୍କୁ ଘେନିଣ ସଙ୍ଗେ ସେ ଆସନ୍ତି ।
ଦେବଙ୍କର ଡରେ ସେ ଗଲା ଯନ୍ତବାଇ
ରମ୍ଭା ସୁନ୍ଦେରୀର ଯାଇତ ମନ ନାହିଁ ।
ଋଷିର ତପସ୍ଥାନେ ହୋଇଲା ପରବେଶ
ବନ ପଲବିଲା ହୋଇଲା ମଧୁମାସ ।
ମଦନ ଆଚ୍ଛାଦିଲା ସର୍ବ ଜୀବ କାଏ
ଯେସନ ସମୟେ ଯେ ରମ୍ଭା ଆସି
ହୋଏ ।୮୦
କୋକିଳ ରୂପ ଧଇଲେ ବଜ୍ରଧର
କୁହୁ କୁହୁ ରାବ କରଇ ଉଚ୍ଚ ସ୍ୱର ।
ବିଶ୍ୱାମିତ୍ର ଯୋଗ ଲଏ ଏକ ଚିତ୍ତ
ଉର୍ଧବାହୁ ହୋଇ ଉଭା ଗାଧିସୁତ ।
ରମ୍ଭା ଗାୟନ କରଇ ଯନ୍ତବାଇ
ବିଶ୍ୱାମିତ୍ରର ଶ୍ରବଣେ ଶବଦ ସମ୍ଭାଇ ।
ଉନିକ ନୟନେ ଦେଲା ମୁନି ଦୃଷ୍ଟି
ଆଗେ ଉଭା ହୋଇଛି ବଧୁକ ପୁଷ୍ପଓଷ୍ଟୀ ।
ମେନକା ପରାଏ ପଚରଇ ଋଷି
ତୁ ମୋହୋର ରମଣୀ ଅଟୁକି
ଶୁଭ୍ରକେଶୀ ।୯୦
ସୁନ୍ଦେରୀ ବୋଇଲା ମୁଂ ନୁହଇ ମେନକା
ରମ୍ଭା ନାମ ମୋର ସ୍ୱର୍ଗର ନାଏକା ।
ଅପକ୍ଷରୀ ଶ୍ରେଷ୍ଠ ବୋଲି ମୋତେ ଲେଖି
ସ୍ୱର୍ଗରୁ ଅଇଲି ମୁଂ ତୋହୋର ରୂପ ଦେଖି ।
ସେବା କରିଥିବି ଯେ ତୋହୋର ପାଶ
ଶୁଣି କୋପଭର ଗାଧିରାଏ ଶିଷ ।
କିମ୍ପା ତୁ ଅଇଲୁ କେବଣ ଗୁଣ ପାଇଂ
ଜାଣିଲି ଦେବେ ତୋତେ ଅଛନ୍ତି ପଠିଆଇ ।
ଏ ମୋହୋର ତପ ନାଶି ତୁମେ ଆସ
ଅନଙ୍କ ନୟନେ ତୋତେ କରନ୍ତିଟି
ଧ୍ୱଂସ ।୧୦୦
ସ୍ତିରୀ ଯୋନି ବୋଲି ଆଜ ପାଇଲୁ ତୁ ପ୍ରାଣ
ଯାଅସି ସୁନ୍ଦେରୀ ତୁ ହୁଅସି ପାଷାଣ ।
ଶୁଣିଣ ରମ୍ଭା ଯେ କମ୍ପଇ ଥରହର
ଭୋ ମୁନି ମୋତେ ତୁ କରସି ପ୍ରତିକାର ।
ଋଷି ବୋଇଲା ଯେ ଅପକ୍ଷରୀକି ଚାହିଁ
ଏହିକ୍ଷଣି ମୁକତି ତୁ ପାଇବୁ ଆଉ କାହିଁ ।
ଯେତେକାଳେ ମୁହିଂ ବୋଲାଇବି ବ୍ରହ୍ମଋଷି
ସେ କାଳେ କାରଣ ପାଇବୁ ଶୁଭ୍ରକେଶୀ ।
ଯହୁଂ କଉଶିକ ବୋଇଲା ଏ ବାଣୀ
ତତକ୍ଷଣେ ପାଷାଣ ହୋଇଲା ତରୁଣୀ ।୧୦
ଦେଖି ପଳାଇଲେ ଇନ୍ଦ୍ର କାମଦେବ
ଜାଣିଲେ ମହାମୁନି ଆମ୍ଭଙ୍କୁ ଶାପ୍ୟ ଦେବ ।
ଏତେ ବିଚାରିଣ ଗଲେ ବେନି ଜନ
ବ୍ରହ୍ମାଙ୍କୁ କହେ ଯାଇ ସହସ୍ରଲୋଚନ ।
ଧର୍ମେଣ ଅଇଲୁ ଆମ୍ଭେ ପ୍ରାଣ ପାଇ
ରମ୍ଭା ପଥରେକ ହୋଇଲା ଗୋସାଇଂ ।
କିସ ବୁଦ୍ଧି ଯେବେ କରିବା ତାହା କହ
ଶୁଣିଣ ଆପଣେ ଯେ ହସିଲେ ପିତାମହ ।
ହେମଗିରି ଲାଗେ କଉଶିକ ନଦୀ ତୀରେ
ଦେବଗଣ ଘେନି ବିଜଏ
ବେଦବରେ ।୨୦
ଋଷିକି ବୋଇଲେ ତୁ କିମ୍ପାଇ ତପ କରୁ
ଦେହକ କର୍ଷନ କରି ଦୁଃଖ ପାଇ ମରୁ ।
କହ କିସ ଇଛା ଦେବା ତୋତେ ବର
ମୁହିଂ ହାଦେ ବ୍ରହ୍ମା ଜଗତ ଈଶ୍ୱର ।
ବିଧାତାର ବଚନେ କହଇ କଉଶିକ
ଭୋ ଦେବ ପିତାମହ ମୋତେ ଦେବାକ
ବରେକ।
ବ୍ରହ୍ମଋଷି ହୋଇବାକୁ ମୋହରି ବଡ଼ ମନ
ଦିଅସି ଆଗ୍ୟାଂ ମୋତେ ଚତୁର ବଦନ ।
ବ୍ରହ୍ମା ବୋଇଲେ ତୁ ହୁଅସି ବ୍ରହ୍ମଋଷି
ଶୁଣିଣ ସନ୍ତୋଷ ଗାଧିରାଜା ଶିଷି ।୩୦
ଏଥୁ ଅନନ୍ତରେ ଦେବେ ଗଲେ ନିଜ ପୁର
ବିଶ୍ୱାମିତ୍ର ଅତି ଆନନ୍ଦ ଶରୀର ।
ବଶିଷ୍ଠ ସନିଧ୍ୟକୁ ଗଲାକ ହରଷେ
ଦେଖି ପଚାରିଲେ ପିତାମହ ଶିଷେ ।
କ୍ଷେମେ ବ୍ରତିଣ ଅଛନା ତପଚାରୀ
ଜଳ ଫଳ ମୂଳ ସ୍ଥାନେ ମିଳଇନା
ତୋହରି ।
ବିଶ୍ୱାମିତ୍ର ବୋଇଲେ ତୋହୋର ପରସାଦେ
ବିପୁନ୍ୟେଣ ତପ କରଇ ଅପ୍ରମାଦେ ।
ତୋହୋର କୁଶଳେ ଅଛି ନା ସମସ୍ତ
ବଶିଷ୍ଟେ ବୋଇଲେ ତୁ ଶୁଣ
ତପୋବନ୍ତ ।୪୦
ଆଜ କୁଶଳ ମୋହର ସକଳ ହୋଇଲା
ରାଜଋଷି କଉଶିକ ଯେବେ ମୋର ପୁରକୁ
ଅଇଲା।
ଶୁଣି ବିଶ୍ୱାମିତ୍ର କୋପେ ଥରହର
ଲେଉଟି ମଳିଲା ଯାଇ ସେହୁ ବନଘୋର ।
କଷ୍ଟୋର ତପ ସେ କଲାକ ବହୁତ
ପୁଣିହିଂ ପ୍ରବେଶ ହୋଇଲେ ଜଗତର
ତାତ ।
ବିଧାତା ବୋଇଲା ହୋ କେବଣ ତୋର କଥା
ଏଡ଼େ ଘୋର ତପ କିମ୍ପା କରୁ
ମହାଗ୍ୟାଂତା ।
ଧାତା ବୋଇଲେ ତୋତେ ବ୍ରହ୍ମଋଷି କଲି
ପୁଣି କିମ୍ପା ତୁ ହୋ ମାୟରେ ମରୁ
ଭୁଲି ।୫୦
କଉଶିକ ବୋଇଲେ ବଶିଷ୍ଠ ଯେବେ ଅଛଇ
ତେବେ ସେ ବୋଲିବେ କି ବ୍ରହ୍ମଋଷି
ସଂସାରଇ ।
ଶୁଣି ଟହଟହ ହସିଲେ ବେଦପତି
ବିଚାରନ୍ତି କୋପ ହାଦେ ନିହାଇ ଛାଡ଼ଇ
ଯତି ।
ବିଶ୍ୱାମିତ୍ରକୁ ବୋଇଲେ କୁଶଧାରୀ
ବଶିଷ୍ଠ ତହିଂକି ତୁ ଯାଆସି ତପଚାରୀ ।
ସେ ଯେବେ ତୋତେ ହୋ ନ କରିବ ଆଦର
ରାଜଋଷି ବୋଇଲେ ତୁ ଆସିବୁ ଧାତିକାର ।
ଯେବେ ବଶିଷ୍ଠଙ୍କୁ ପିଠିଆଇ ଆସୁ

ସେ ମହାତମା ହୋଇବ ଧୂଳି ପାଂଶୁ ।୬୦
ଯେ କଥା ତତ୍ତ୍ୱଟି ହୋ ଜାଣ କଉଶିକ
ଯେତେ ବୋଲି ବ୍ରହ୍ମା ଚଳିଲେ ବ୍ରହ୍ମଲୋକ ।
ଶୁଣିଣ ବିଶ୍ୱାମିତ୍ର ପରମ ତୋଷହୋଇ
ବଶିଷ୍ଠର ଆଗେ ମିଳିଲାକ ଯାଇ ।
ଦେଖି ପଚ୍ଚରଇ ବ୍ରହ୍ମାର ତନୟେ
କି କାରଣେ ରାଜରଷି ଗମନ କରିଆୟେ ।
ଗ୍ୟାଧିର ନନ୍ଦନ ଏସନ ବଚନ ଶୁଣି
ବିଚ୍ଚରଇ ସେହୁ ଯେ ମନେ ମନେ ଗୁଣି ।
ପିଠି ଦେଇଗଲେ ମରିବ ଏଡ଼େ ରଷି
ନୋହିଲେଣ ଧାତାର ବଚନ ହୋଏ
ଧଂସି ।୭୦
ଏ କଥା ଦୁଇ ମୋତେ ସଂକଟ ହୋଇଲା
ଯେତେ ବୋଲି ମୁନି ପଛଘୁଞ୍ଚା ଦେଲା ।
ବଶିଷ୍ଠ ଜାଣିଲେ କ୍ରୋଧ ଯେହାର ଗଲା
ଯେବେ ସେ ବ୍ରହ୍ମମୁନିରେ ଗଣିତା
ହୋଇଲା ।
ଯେତେ ବୋଲି ବଶିଷ୍ଠ ବିଶ୍ୱାମିତ୍ର ରାଇ
ଆସ ଆସ ବ୍ରହ୍ମରଷି ଯାଅ କିସ ପାଇଂ ।
ଗଉରୋବ କରି ସିନିଧ୍ୟେ ବସାଇଲା
ସତ୍ୟାନନ୍ଦ ଯେହା ଶ୍ରୀରାମଙ୍କୁ କହିଲା ।
ଅଦ୍ୟାପି ସପତ ରଷିଙ୍କର ଏକ
ବ୍ରହ୍ମମୁନି ହୋଇ ବସିଲା କଉଶିକ ।୮୦
ସତ୍ୟାନନ୍ଦ ମୁଖୁ ଯେସନ ବାକ୍ୟ ଶୁଣି
ମୁନିମାନେ ସନ୍ତୋଷ ହୋଇଲେ ଯେ ପୁଣି ।
କଉଶିକ ପାଦେ ହୋଇଲେ ନମସ୍କାର
ସାଧୁ ସାଧୁ ମହିମା ଯେ ବିଶ୍ୱାମିତ୍ର ମୁନିମ୍ବର ।
ଯେଥୁଅନନ୍ତରେ ଜନେକ ତପଚାରୀ
କିସ କାର୍ଯ୍ୟେ ଗମନ କଲ ଆମ୍ଭ ପୁରୀ ।
ବିଶ୍ୱାମିତ୍ର ବୋଇଲେ ଯେ ଦଶରଥ ନନ୍ଦନ
ଈଶ୍ୱର ଧନୁ ଦେଖିତ ଯେହାର ଯେ ମନ ।
ତେଣୁ ସେ ଆମ୍ଭେ ଯେ ଅଇଲୁ ଯେହାନ୍ତ
ଘେନି
ହୁଅ ପରସନ ଜନେକ ରାଜମୁନି ।୯୦

ପୁରାତନ ଧନୁ ପୁନ୍ୟ ହେଉ ଦେଖି
ଶ୍ରୀରାମର ନିର୍ମଳ ହେଉ ବେନି ଆଖି ।
ବିଶ୍ୱାମିତ୍ର ବଚନେ ବୋଇଲେ ଜନେକ
ଯେ କିସ କରିବ ଯେ ଦେଖିଣ କାର୍ମୁକ ।
ବିଷ୍ଣୁର ତେଜରୁ ଯେବଣ ଧନୁ ଜାତ
ହର ବହିବାକୁ ଯେ ଅଟଇ ସାମରଥ ।
ଦକ୍ଷରାଜା ବିଧଂସିଲା ଏହି ଧନୁ ଧରି
ଦେବତାଙ୍କୁ କାଟିଲା ଖଣ୍ଡ ଖଣ୍ଡ କରି ।
ଯହୁଂ ସେ ଦୃଷ୍ଟି କଲାକ ପିତାମହ
ତେଣୁକରି ଲଗାଇଲା ଯେକ ଦେହ ।୧୦୦
ସୁରଗଣ ଗର୍ବ ନିବାରିଣ ଶଙ୍କର
ପ୍ରବେଶ ହୋଇଲେ କପିଳାସ କନ୍ଦର ।
ମୋହୋରି ଉପର ବଂଶେ ନିମିନାଥ ନୃପତି
ତହୁଂଣ ଅଷ୍ଟପୁରୁଷେ ଅଧିପତି ।
ତାହାର ଗୋଚରଣେ ଥୋଇଲା ଶରାସନ
ରୁଦ୍ର ଭଗତି ଯେ ଅଟଇ ରାଜନ ।
ପ୍ରସନ ହୋଇଣ ଯେ ବୋଇଲେ ତ୍ରିପୁରାରି
କୋଦଣ୍ଡ ଥୋଇଣ ତୁ ଥାଆସି ଦଣ୍ଡଧାରୀ ।
ଯେହାକୁ ପୂଜାକଲେ ଆଇଶ ହୋ ପାଇ
ଧନ ସମ୍ପଦ ହୋ ଯଶ ଶିରୀ ହୋଇ ।୧୦
ଶତ୍ରୁର ଦର୍ପ ଗଞ୍ଜାଇ ଧନୁର ହୋ କୋପେ
ଅକଳବଳ ଧନୁ ବହଇ ଅପ୍ରମିତେ ।
ଦଶଦିଗପାଳେ ନ ପାରନ୍ତି ତୋଳି
ସ୍ୱଂଏ ଧନୁ ଅଟଇ ଯେ ମହାଦେବ
ବନମାଳୀ ।
ମୁଇ ସେ ଧନୁ ତୋଳିବାକୁ ସାମରଥ
ଠାବରୁ ତୋଳି ଯେ ନ ପାରଇ ଶଚିନାଥ ।
ଯେ ଧନୁ ଥୋଇଣ ଥିବୁ ହୋ ଯତ୍ନକରି
ରବି ତଳେ ଜାତ ହୋଇବେ ଚକ୍ରଧାରୀ ।
ବାମ ଭୁଜେ କୋଦଣ୍ଡ ଧରିବେ କଥା ଛଳେ
ତୋହୋ ବଂଶେ ଜାତହୋଇ ଦେଖିବ
ବେନି ତୋଳେ ।୨୦
ଏତେ ବୋଲି ଧନୁ ଦେଲେକ ଦେବ ହର
ବୋଲନ୍ତି ଜନେକ ଯେ ଶୁଣ ମୁନିମ୍ବର ।

ମୋହୋର ପିତୃଲୋକେ ପୂଜିଲେ ଶରାସନ
ଇଷ୍ଟଦେବତା ଜାଣି କରନ୍ତି ସନମାନ ।
ପୂର୍ବର କଥା ଶୁଣି ପୂଜା ଯେ କରଇ
ମନ ବଚନ କର୍ଣ୍ଣବ୍ୟେ ଆନ ନ ବିଚ୍ଚରଇ ।
ବସ୍ତୁ ଦେବତା ଜାଣି ଆରାଧିଣ ଅଛି
ଆବର କଥା ଏକ ଶୁଣ ଗାଧି ବଛି ।
ଅଯୋନି ଜାତ ମୋର ଅଟଇ ଦୋହିତା
ସର୍ବ ସୁଲକ୍ଷଣୀ ଅଟଇ ନାମ ହାଦେ
ସୀତା ।୩୦
ରୂପ ଗୁଣେ ସୁନ୍ଦର ପଟାନ୍ତର ନାହିଂ
ବଚ୍ଚରଇ ଯେହାକୁ ବିଭା କରିବଇ କାହିଂ ।
ଯହୁଂ ମୁଂ ଅନରୂପେ ନ ପାଇଲି ବର
ସତ୍ୟ ଉଚ୍ଚରିଲି ଏ ଧନୁର ଆଗର ।
ଭୋ ଶରାସନ ମୋତେ ଈଶ୍ୱର
ତୋତେ ଦେଲା
ପ୍ରତକ୍ଷେ ନାରାଏଣ ବୋଲିଣ ବୋଇଲା ।
ତୁ ଯେବେ ପ୍ରତକ୍ଷେ ଅଟୁ ଚକ୍ରପାଣି
ସୀତୟା ନାମେ ଯେ ମୋହୋର ଦୁଲଣୀ ।
ତାହାକଇ ବର ସ୍ୱରୂପେ ନ ପାଇଲି
ତେଣୁ ସେ ତୋହୋର ଆଗରେ
କହିଲି ।୪୦
ଯେ ତୋତେ ପ୍ରାକର୍ମେ ପାରଇ ଅବା ତୋଳି
ତାହାକଇ ବିଭା କରିବି ମୋହୋର
ଦୁଲଣୀ ।
ମୋହୋର ସତ୍ୟ ଯେ ନୁହଇ ଦେବ ଆନ
ପ୍ରସନ ହୁଅ ମୋତେ ହର ଶରାସନ ।
ଯେତେକ ବୋଲିଣ ଯେ ସତ୍ୟ ମୁହିଂ କଲି
ପୃଥିବୀ ରାଜାମାନନ୍ତ ବରିଣ ଆଣିଲି ।
ନଗ୍ରପୁର ମଣ୍ଡଣ କରାଇଲି ତୋଷେ
ଧନୁ ସମର୍ପିଲି ରାଜାଙ୍କର ପାଶେ ।
ବୋଇଲି ଶୁଣ ତୁମ୍ଭେ ସକଳ ଦେଶ ରାଏ
ଅଯୋନି ସମ୍ଭୂତ ମୋର ଅଛି ଦୋହିତା
ଗୋଟିଏ ।୫୦
ରୂପଗୁଣେ ସୁନ୍ଦର ନାହିଂ ପଟାନ୍ତରି

ଯୁବା ବୟେସ ହୋଇଲାନି କୁମାରୀ ।
ଯେ ଧନୁ ଧରି ଯେବେ ଗୁଣ ତୁମ୍ଭେ ଦେଇପାର
ଯୁବତୀ ରତ୍ନମଣି ହୋଇବ ତାହାର ।
ଯେ ମୋହୋର ସତ୍ୟ ନୁହଇ ପୁଣ ଆନ
ଶୁଣିଣ ସନମତ କଲେ ସକଳ ରାଜନ ।
ବଳେ ଧନୁ କେହି ନୁଆରିଲେ ଟୋଳି
କନ୍ୟା ନେମାକୁ ମନେ ଅଛଇ ସବୁଙ୍କରି ।
ମୁହି ତାହା ଜାଣିଲି ଯୋଗବଳ ଘେନି
ମନୁ ଜାତକଲି ଚତୁରାଙ୍ଗ ସଇନି ।୬୦
ଦେଖି ସଙ୍କୋଚ ସେ ନୃପତିଗଣ କଲେ
ନିରାଶ ହୋଇ ପୁଣ ମୁରୁଛି ନ ପାରିଲେ ।
ବରଷେ ବେଢ଼ିଣ ବସିଲେ ମୋର ପୁରୀ
କନ୍ୟା ନେମାକୁ ଅନେକ ଯତ୍ନକରି ।
ଆକ୍ରୋଷି ନ ପାରିଣ ବାହୁଡ଼ି ଯେ ଗଲେ
ସେହିଦିନୁ ମୋତେ ଅହନ୍ତ ବହିଲେ ।
ଏଥୁଅନନ୍ତରେ କେତେକ କାଳ ଗଲା
ହରର ଆଗେ ବାଣାସୁର ବହୁତ ତୁଷ୍ଟି କଲା ।
ଭୋ ଦେବ ଶୂଳପାଣି ପାର୍ବତୀର ସାଇଂ
ମୋତେ ସରିସମ ପୃଥିରେ କେହି ନାହିଂ ।୭୦
ମୋହୋର ବଳତ ମୋତେ ଅଗୋଚର
ଆବର ଅଟଇ ସହସ୍ରେକ କର ।
ମୋ ତହୁଂ ବଳବନ୍ତ ଅଟଇ କେ ଆନ
ଏ କଥା ମୋତେ କହସି ଈଶାନ ।
ହର ହସିଲେ ବାଣାସୁର ବଚନ ଶୁଣି
ଗର୍ବ ବହିଲା ବୋଲି ଭାବିଲେ ଶୂଳପାଣି ।
ଅସୁରକଇ ଚାହିଂ ବୋଲନ୍ତି ତ୍ରିପୁରାରି
କେତେକ ବଳ ବହୁ ଜାଣିତ ନ ପାରି ।
ଜନେକ ଘରେ ଯେ ଅଛଇ ଶରାସନ
ଯେ ତାହା ଟୋଳିତ ହୋଇବ ଭର୍ଜନ ।୮୦
ଭୂଜଂରୁ ଛଡ଼ାଇଲେ ବୋଲିବା ବଳିଆର
ତାହାକୁ ହାଦେ ସମ ନାହିଂ ତିନିପୁର ।
ଯାଅସି ମିଥିଳାକୁ ଚଳିଣ ବହନ
ଧନୁ ଧରି ପାରିଲେ ବୋଲିବା ବଳମାନ ।
ସଦାଶିବର ବଚନ ଶୁଣିଣ ବାଣାସୁର
ବଇଦେହୀ ମଣ୍ଡୋଳେ ମିଳିଲା ଧାତିକାର ।
ମୋତେ ବୋଇଲା ସେ ଧନୁ ଆଣି ଦେଖା
ବଳ ପରୀକ୍ଷା ନିମନ୍ତେ ଆସିଅଛି ଏକା ।
ହରର ଆଗ୍ୟାଂରେ ଟୋଳିବି ଶରାସନ
ଏସନ ସମଏ ମିଳିଲା ଦଶାନନ ।୯୦
ଧନୁ ଆଣ ବୋଲି ବୋଇଲାକ ମୋତେ
ଶୁଣି ଶାୟେକ ମୁଂ ଅଣାଇଲି ତୁରିତେ ।
ସହସ୍ରେକ ଭୁଜ ବାଣାସୁର ରାଜା
ଟୋଳି ନ ପାରିଣ ପାଇଲାକ ଲଜ୍ୟା ।
ଅଗ୍ୟାଂନ ହୋଇଣ ବସିଲା ନୃପବର
ରୁଧିର ବାହାର ହୋଇଲା ମୁଖର ।
ରାବଣ ଟୋଳିତ କରଇ ମନେ ମନେ
ମୁହିଂ ତାହା ଜାଣି ବୋଇଲି ଦଶାନନ ।
କେବଣ କାରଣେ ତୁ ଧରିବୁ କୋଦଣ୍ଡ
ଶୁଣିଣ ରାବଣ କୋପେ ପରଚଣ୍ଡ ।୧୦୦
ବିଂଶ ଭୁଜେ ଟୋଳିବି ବୋଲଇ ଦଶମାଥ
କେ ଅବା ନ ଜାଣଇ ମୋ ପ୍ରକର୍ମ କଥାନ୍ତ ।
ସାତଦୀପ ସାତସିନ୍ଧୁ ବନ ଗିରି
ଯେବଣ ନାଗ ଯେ ଅଛଇ ପୃଥି ଧରି ।
ସେ ଅହି ସଦାଶିବ କଣ୍ଠେ ଅଟଇ ହାର
ସଙ୍ଗେଣ ସଇନି ଅଛଇ ଅପାର ।
ନନ୍ଦୀ ମହାକାଳ ବିଘ୍ନରାଜ ସହିତେ
କାର୍ତ୍ତିକେଶ୍ୱର ଭବାନୀ ଆବର ଶୂଳହସ୍ତେ ।
ମଣିଭଦ୍ର ବୀରଭଦ୍ର ଭଇରୋବଗଣ
ଚଣ୍ଡ ପରଚଣ୍ଡ ଆବର ଶିବଗଣ ।୧୦
ପର୍ବତ ସହିତେ ଉପାଡ଼ିଣ ହେଲେ
ଟୋଳି ବସାଇଲି ବାମକର ସ୍ଥଳେ ।
ଯେ ମୋର ପ୍ରାକର୍ମ ଜାଣନ୍ତି ସର୍ବଲୋକେ
କିସ ପ୍ରାକର୍ମ ଯେ ବହଇ କାର୍ମୂକେ ।
ଯେତେ ବୋଲି ଧନୁ ଛୁଇଂଲାକ ଯହୁଂ
ଅଗ୍ୟାଂନ ହୋଇଣ ସେ ପଡ଼ିଲାକ ତହୁଂ ।
ଦଶ ବଦନରୁ ବାହାର ରୋଧିର
କ୍ଷଣକେ ଚେତନା ପାଇଲା ମହାବୀର ।
ନାଜେଣ ନ କହି ଗଲା ଦଶମାଥ
ଉପହାସ କଲେ ନୃପତି ସମସ୍ତ ।୨୦
ଦେଖିଣ ବାଣାସୁର ଉପହାସ କଲା
ଦେବ ଧନୁ ବୋଲି ସେହି ବାହୁଡ଼ିଣ ଗଲା ।
ଶୁଣ ତୁ କଉଶିକ ହୋ ଧନୁର ବଡ଼ପଣ
ଯାଗ୍ୟାଂକଇ ଆସିଥିଲା ଶଚୀର ରମଣ ।
ମୋତେ ବୋଇଲା ସେ ଯେକାନ୍ତେଣ ରାଇ
ବିଶ୍ୱନାଥ ଧନୁ ଦେଖିବା ଚାଲ ଯାଇଂ ।
ପବନ ସହିତେଣ ତିନିହେଂ ଆମ୍ଭେ ଗଲୁ
ମହାଗିରି ସମାନେ ଶାୟେକ ଦେଖିଲୁ ।
ଦେଖିଣ ବାସେବ ଛୁଇଂଲାକ ଶର୍ବେଣ
ମୁରୁଛି ନ ପାରି ଟୋଳିଲାକ ପୁଣ ।୩୦
ଭୁଜବଳ ପ୍ରାକର୍ମେ ନ ପାରିଲା ଟୋଳି
ମୋହୋର ନ ଧଇଲେ ପଡ଼ନ୍ତା ନା ଢଳି ।
ପବନ କର ଧରି ସେ ବାହୁଡ଼ିଲା ଧାତି
ଦେଖିଣ ତାହାକଇଂ ପଗ୍ରରିଲେ ବେଦପତି ।
ତୁହି ଅଙ୍ଗାର କି ମାଡ଼ିଲୁ ବଜ୍ରପାଣି
ବିଶ୍ୱନାଥ ଧନୁ କି ଛୁଇଂଲୁ ନ ଜାଣି ।
ତେଣୁ ଶିରୀ ହତ ଦିଶଇ ତୋର ମୁଖ
ନ ଜାଣିମା ପଣ ତୁ କଲୁ ସହସ୍ରାକ୍ଷ ।
ସେ ସେ ଦେବଧନୁ ପ୍ରତକ୍ଷେ ବାସୁଦେବ
ଅବଜ୍ଞା ପଣେ ତୁ ଛୁଇଂଲୁ ମହାରୂପ ।୪୦
ଯେବେ ତୁ ଯାଗ୍ୟାଂର ଧୂମ ଭୋଗ୍ୟକର
ଅଜାଣିମା ପଣ ଯାଉ ଅପହର ।
ଶୁଣିମା ବିଶ୍ୱାମଇତ୍ର ଏ ଧନୁର ମହିଂମା
ପ୍ରତକ୍ଷେ ଶୁଣିଲି ଯାହା କହିଲାକ ବ୍ରହ୍ମା ।
ସେ ଦିନୁ ଯତ୍ନକରି ସେ ବିହି ନାନା ମତେ
ଈଶ୍ୱରହୁଂ ଆନ କେ ଧରିବାକ ହସ୍ତେ ।
ବିଶ୍ୱାମିତ୍ର ବୋଇଲେ ଯେ ଅଟଇ ମହାରୂପ
କେ ତାହା ଆମଞ୍ଚବ କାହାର ଯେଡ଼େ ଦର୍ପ ।
ମୁହିଂ ବୋଲି ପାରିବିକି ରାମ ଓଟାରିବ

କେବଳ ଶରଧାୟେ ବେଳେକ
ଦେଖିବ ।୫୦
ଅପ୍ରମାଦେ ଯେବେ ଯେ ଆମନ୍ତ୍ରିବ ଧରି
ତୋତେ ହେଂ ସୁକାର୍ଯ୍ୟ ଅଟଇ ତପଚ୍ଚରୀ ।
ତାଡ଼କୀ ମାଇଲା ଯେ ଅହିଲା କଲା ମୁକତ
ମୁହିଂ ଜାଣଇ ରାମ ବଳ ଅପ୍ରମିତ ।
ସୀତ୍ୟା ସୁଲକ୍ଷଣୀ ଜନ୍ମିଲା ଶୁଭ ବେଳେ
ବର ଅବା ତାକୁ ମିଳିଲା ଯେତେ କାଳେ ।
ଦେସି ଆଗ୍ୟାଂ ରାମ ଆଣନ୍ତୁ ଶରାସନ
ଶୁଣି ଜନେକ ମୁନି ପରମ ତୋଷ ମନ ।
ସେଦିନ ଗୁହାଇଲା ଗଉରୋବ କରି
ସଦାଶିବ କହନ୍ତି ଶୁଣ ଗୋ
ଶାକେମ୍ୱରୀ ।୬୦
ଯେଥୁଅନନ୍ତରେ ଜନେକ ମହାଋଷି
ନଗ୍ରପୁର ମଣ୍ଡନ କଲା ଲୋକ ପେଷି ।
ସ୍ୱଭାବେଣ ଯାଗ୍ୟଂକୁ ରାଜାଏ ଆସିଛନ୍ତି
ନାନା ତୀର୍ଥର ଯେ ଯତିମାନେ ଛନ୍ତି ।
ନଗ୍ରେ ଘୋଷଣ ଯେ ଦିଆଇଲା ଋଷି
ଧନୁ ସୟମ୍ୱର ଦେଖିବ ଲୋକ ଆସି ।
ଶୁଣି ନଗ୍ରନାରୀ ହୋଇଲେ ସନ୍ତୋଷ
ଆନନ୍ଦେଣ ସମସ୍ତେ ହୁଅନ୍ତି ହସ ହସ ।
ସଭାର ମଣ୍ଡପ ଯେ ଅତି ବିତପନ
ନେତର ଚିରାଳ ଉଡ଼ଇ ଛନ ଛନ ।୭୦
ବିଚିତ୍ର କଳସ ଧବଳ ଘର ପିଢ଼ା
ଚଉକତି ଲମ୍ୱଇ ମୁକୁତାର ଝରା ।
ସ୍ୱାଷ୍ଟିକର ପାବଚ୍ଛ ସୁବର୍ଣ୍ଣର ଖମ୍ବ
ଉଦଣ୍ଡ ପାଟଛତ୍ର ଚିରାଳ ଆଲମ୍ବ ।
ଢୋଲ ଟମକ ଶଙ୍ଖ ମହୁରୀ ବାଜେ
ଲୋକ ଗହ ଗହ କି ଗଗନେ ମେଘ
ଗର୍ଜେ ।
ରାଜାମାନେ ସଭାରେ ବସିଣ ଅଛନ୍ତି
ତପୀଗଣମାନେ ବେଢ଼ିଣ ଅଛନ୍ତି ।
ବେଢ଼ିଣ ଅଛନ୍ତି ନଗ୍ର ନରନାରୀ
ସର୍ଗୁଂ ଦେଖିତ ଅଇଲେ ଅପ୍ସରୀ ।୮୦

ବ୍ରହ୍ମା ସହିତେଣ ଦେବାଧିଦେବଗଣ
ବିମାନ ଆରୋହିଣ ରହିଛନ୍ତି ଅନ୍ତରିକ୍ଷେଣ ।
ସ୍ୱର୍ଗେ ଧୂଆଂଧୋଇ ଯେ ରୋଆରୋଇ
ହୁଅନ୍ତି
ଯେକକୁ ଆରେକ ଯେ ଆଗସରି ଯାନ୍ତି ।
ଗନ୍ଧର୍ବ କିନ୍ନରୀ ଦକ୍ଷ ବିଦ୍ୟାଧରୀ
ଯେକକୁ ଆରେକ ଯେ ହୁଅନ୍ତି ଆଗୁଂସରି ।
ଆସ ହୋ ଦେଖିବା ଶ୍ରୀରାମ ଚରିତ
ଶିବଧନୁ ଆଜ ଭାଙ୍ଗିବେ ପଦ୍ମନେତ୍ର ।
ନୟନ ସୁଫଳ କରିବାକ ଆଜ
ବୀରପଣ ଆଜ କରିବେ ରାମ ରାଜ ।୯୦
ଯେତେ ବିଚାରିଣ ଅଇଲେ ସୁରଗଣ
ଦେଖିବାକୁ ଶ୍ରୀରାମର ବୀରଶୂର ପଣ ।
ମିଥିଳା ନଗ୍ରରେ ବସିତ ଠାବ ନାହିଂ
ସକଳ ଦେଶ ରାଜା ଆସିଛନ୍ତି ବାହିଂ ।
ଋଷି ବ୍ରାହ୍ମଣ ତପୀ ଯତିମାନ
ଗହଗହ ଗହଳି ପୂରିଣ ଆସ୍ଥାନ ।
କନେକର ମଣ୍ଡୋପ ଉପରେ ରତ୍ନଝଳ
ମୁକୁତାର ତ୍ରୋଣା ଲମ୍ୱନ୍ତି ମାଳ ମାଳ ।
ଗଜମୋତି ଝରା ଲମ୍ୱନ୍ତି ଚଉକତି
ବିବିଧ କୁସୁମରେ ମଣ୍ଡିଣ ଅଛନ୍ତି ।୧୦୦
ମଧ୍ୟରେ ପଲ୍ୟଙ୍କ ଯେ ଗଜଦନ୍ତ ଖୁରା
ସୁବର୍ଣ୍ଣର ପିଡୁଳି ନିର୍ବାଣର ଝଡ଼ା ।
ତଥିର ଉପରେ ଦେବାଙ୍ଗ ପାଟତୂଳି
ନାଗେଶ୍ୱର କେଶର ଗୁଣ୍ଡିର ମୁଚୁଳି ।
ଶେଜ ସେଜାଇଲା ପତଳି ପାଛୋଡ଼ି
କର୍ପୂରର ଧୂଳି ଉପରେ ସିଞ୍ଚାଡ଼ି ।
ତହିଂ ବିଜୟେ କରିଅଛନ୍ତି ଦେବୀ ସୀତା
ଲଲାଟେ ସିନ୍ଦୂର କପାଳେ ଗନ୍ଧଚିତା ।
ନାନା କୁସୁମେଣ ଖୋଷିଅଛି ଖୋଷା
ପୀତ ପଟନୀ ଯେ ଉପରେଣ ଶୋଭା ।୧୦
ନୟନେ କଜ୍ଜୋଳ କର୍ଣ୍ଣେ ରତ୍ନକାପ
ଗଳାରେ ଶେହୋଇ ଯେ ମୁକୁତା ସରିଚ୍ଛପ ।
ନାସାର ଅଗ୍ରରେ ଯେ ଶୋହୋଇ ଗଜମୋତି

ଦେହ ପଟାନ୍ତର ଦଗ୍‌ଧ ହେମ ଜୋତି ।
ନିକଳଙ୍କ ଚନ୍ଦ୍ରମା ପ୍ରାୟେକ ବଦନ
ରୂପ ଦେଖି କର ଯୋଡ଼ଇ ମଦନ ।
ହୃଦର ମଧ୍ୟେ ସପତ ପଦ୍ମ ବସଇ
ଶ୍ରୀମୁଖ ଶତଦଳ କମଳ ବିଘସଂଇ ।
ବେନିକର ସ୍ଥଳେ କମଳ ଦୁଇ ଅଛି
ଚରଣେ ବେନି ପଦ୍ମ ବହଇ ମୃଗାଖି ।୨୦
ନୀଳ ଉତ୍ପଳ ଜାଣି ନୟନ ଯୁଗଳ
ଯେମନ୍ତେ ବସଇ ସପତ କମଳ ।
ସାମବେଦରୁ ସେ ହୋଇଲା ସମ୍ଭୂତ
ମେଦନୀ ଦେବୀ ଅଟଇ ତାର ମାତ ।
ସ୍ୱୟେଂ ଚଞ୍ଚଳା ଯେ ଅଛି ବିଜେକରି
ତ୍ରୈଲୋକେ ପଟାନ୍ତର ନାହିଂ ସମସରି ।
ସ୍ୱଭାବେ ହସ ହସ ପ୍ରସନ ବଦନ
ଅଧର ଡାଳିମ୍ବ କୁସୁମ ଶୋଭାବନ ।
କୋଟି ଯେ ପାର୍ବତୀର ଆଗୁଳି ରୂପଗୁଣ
ନୟନ ଦୁଇ ତାର ମଦନ ପଞ୍ଚବାଣ ।୩୦
ଚାହିଂମା ଛଟକେ ବସ୍ତ୍ର ଜରଜର
ନାଗେଶ୍ୱର ପୁଷ୍ପେକ ଧରିଅଛି କର ।
ସାଙ୍ଗେଣ ଅନେକ ଅଛନ୍ତି ପରିବାରୀ
କେହୁ ଆଇଟ କେ ଚାମର କରେ ଧରି ।
କେ କର ଯୋଡ଼ି ଯେ ବୁଝାବନ୍ତି କଥା
ଯେଥୁଅନନ୍ତରେ କଉଶିକ ମହାଗ୍ୟାଂତା ।
ଶ୍ରୀରାମ ଲକ୍ଷ୍ମଣକୁ ଆଗୁସାର କରି
ଦୁହିଂଙ୍କର ଭୁଜ ଦୁଇ କରେ ଧରି ।
ପ୍ରବେଶ ହୋଇଲେ ଯାଇ ସଭାର ମଧ୍ୟସ୍ଥାନ
ଦେଖିଣ ଆନନ୍ଦ ହୋଇଲେ ସର୍ବଜନ ।୪୦
କେ ବୋଲଇ କାହାର ଗୋ ଯେ ତନୟ
ବେନି
ହରିହର ଅଇଲେ କି ମାନେବ ଦେହ
ଘେନି ।
ନୃପତିଗଣମାନେ ଦେଖି ଅଚାଭୁଆ
ମତ ଗଜ ମେଳେ କି ପ୍ରବେଶ ସିଂଘଛୁଆ ।
କଉଶିକ ପାଶେଣ ଅଛନ୍ତି ଭାଇ ବେନି

ଚନ୍ଦ୍ର ଉଇଂଅଛି କି ଗୁରୁଶୁକ୍ର ଘେନି ।
କଶ୍ୟପର ସଙ୍ଗେ ଯେହ୍ନେ କେଶବ
ବାସେବ
ରାମ ଲକ୍ଷ୍ମଣ ମୁନି ତେସନ ଦିଶିବ ।
ଗଉରୋବ ପାଇ ବସିଲେ ସଭା ମଧ୍ୟେ
କାର୍ତ୍ତିକ ଗଣେଶ କି ଈଶ୍ୱର ସନ୍ନିଧ୍ୟେ ।୫୦
ବ୍ରହ୍ମାର ସମୀପେ କି ବିଷ୍ଣୁ ରଦ୍ର ଅଛି
ବିଶ୍ୱାମିତ୍ର ସନିଧ୍ୟେ ତେସନ ରଘୁବଛି ।
ଯେସନେକ ସମୟେ ଜନେକ ମହାଋଷି
ଆସ୍ଥାନର ମଧ୍ୟେ ପ୍ରବେଶ ହୋଇଲେ
ଆସି ।
ସଭାକଇ ଚାହିଂ ବୋଲଇ ଜନେକ
ନୃପତିଗଣ ତୁମ୍ଭେ ମିଳିଲ ଅନେକ ।
କହିବି କଥାଯେ ଶୁଣିମା ଯେକମନେ
ଆବର ଅଛନ୍ତି ହାଦେ ଅନେକ
ତପୋଧନେ ।
ଯେ ମୋହୋର ସତ୍ୟ ଅଛଇ ପୂର୍ବେ କଲା
ତୁମ୍ଭର ତ ଯେହା ଅଛଇ ଶୁଣିଲା ।୬୦
ଆଜହୁଂ ଦଶ ସହସ୍ର ବରଷର ତଳେ
ପୁତ୍ର ନାହିଂ ବୋଲି ମୁଂ ଭାଳଇ ବିକଳେ ।
ଯାଗ୍ୟଂ କରିବାକୁ କଲଇ ମୁଂ ବୁଧି
ପବିତ୍ର ଭୂମି ଯେ ଲଙ୍ଗଳେଣ ଶୋଧି ।
ଯେସନ ସମୟେ ମେନକା ଅପକ୍ଷରୀ
ବିମାନ ଆରୋହିଂ ସେ ଗଗନେ ଯାଇଂ
ମିଳି ।
ଶକୁନ୍ତ୍ୟ ଦେଖି ମୁଂ ଯେ ମନେ ବିଚାରିଲି
ଯେସନ ଦୋହିତାଯେ ହୋଇବୁ ବୋଇଲି ।
କନ୍ୟା ଜାଣିଲା ସେ ମୋହୋର ମନ କଥା
ମୋତେ ବୋଇଲା ତୁ ଶୁଣ
ମହାଗ୍ୟାଂତା ।୭୦
ବ୍ରହ୍ମାର ଶାପ୍ୟେ ମୁହିଂ ଥିଲି ଅବତରି
ସର୍ଗକୁ ଯାଉଂଅଛି ମୁଂ ପାପକ୍ଷୟେ କରି ।
ନୋହିଲେଣ ଜାତ ହୋନ୍ତି ତୋର ପୁରେ
ଯେବେ ଚିନ୍ତା ତୁ ଯେ ନକର ମହୀଧରେ ।

ଯେ ମୋହୋର ତେଙ୍କୁ କୋଟୀୟେ ଗୁଣ
ହୋଇ
ଯେହିକ୍ଷଣି ପ୍ରାପତ ତୋତେ ହୋଇବ
ତନଇ ।
ଯେସନ ସମୟେ ଯେ ଲଙ୍ଗଳେ ଭୂମି ଚଷୁ
ତଳର ମାଟି ଯେ ଉପରକୁ ଆସୁ ।
ଫାଳର ମୁନେ ଯେ ଉକୁଟିଲା ବାଳୀ
ସ୍ୱୟେଂ ଜାତ ହୋଇଲା ଦେବୀ
ମହୀଆଳି ।୮୦
ଶୁକଳ ପକ୍ଷରେ ଦୁତୀଆ ଦିନ ଶଶୀ
ଶ୍ୱେତପଦ୍ମବାସେନୀ କି ସେ ପ୍ରତକ୍ଷେଣ
ଆସି ।
ସର୍ଗର ସୁନ୍ଦେରୀ ଯେ ଗଲା ଶବଦାଇ
ସମ୍ଭାଳସି ଜନେକ ଋଷି ଦୋହିତାକୁ
ନେଇ ।
ଯେ ସେ ଉଧରିବ ସେ ତୋହୋର କୁଳଗୋତ୍ର
ଯେଣେ ସେ ବଂଶ ତୋର ହୋଇବ
ପବିତ୍ର ।
ଯେତେ ବୋଲିଣ ସେ ଗଲା ଅପକ୍ଷରୀ
ତାହାର ବଚନ ମୁଂ ମନେ ହେତୁ କରି ।
କନ୍ୟା ପାଳିଲଇଂ ଅତି ଯତ୍ନ ମତେ
ସୀତ୍ୟା ନାମ ତାର ଦେଲଇଂ
ଯୁଗତେ ।୯୦
ଲଙ୍ଗଳର ମୁନେ ହୋଇଲା ଯହୁଂ ଜାତ
ଫାଳ ଅଗ୍ରଖଣ୍ଡି ହାଦେ ଅଟଇ ଶେତ ।
ତେଣୁ ଉକୁଟିଲା ନାମ ତାର ସୀତା
ଗୁପତେ କହିଂ ମୋତେ ଗଲାକ ବିଧାତା ।
ଯେ କନ୍ୟାକୁ କାହାକୁଟି ନ କରିବୁ ପ୍ରଦାନ
ଯେହାକୁ ହିଂ ବର ପଣେ ବିଷ୍ଣୁ ସେ
ଭାର୍ଜନ ।
ଅଯୋନି ସମ୍ଭୂତ ଯେ ସ୍ୱୟେଂ କମଳିଣୀ
ଯେହାକୁ ବିଭାୟେ ବରିବୁଟି
ଚକ୍ରପାଣି ।୧୦୦
ମୁହିଂ ବୋଇଲି ମୁଂ ମନିଷ୍ୟ ଶ୍ୟରୀର

ଚର୍ମଲୋଚନେ କେମନ୍ତେ ଚିହ୍ନିମି
ଚକ୍ରଧର ।
ବିଧାତା ବୋଇଲା ତୁ ପଣ କରିଥିବୁ
ଯେ ଧନୁ ଭାଙ୍ଗିବ ତାହାକୁ ଝିଅ ଦେବୁ ।
ଈଶ୍ୱର ଧନୁ ସେ ବିଷ୍ଣୁର ତହୁଂ ଜାତ
ହର ସେ ବହିବାକୁ ଅଟଇ ସମରଥ ।
ଯେତେ କହି ବିଧାତା ସୋର୍ଗକଇ ଗଲା
ଯେଥିଅନନ୍ତରେ କନ୍ୟା ହିଂ ବଢ଼ିଲା ।
ବ୍ରହ୍ମାର ବଚନ ମୁଂ ହେତୁ କରିଥିଲି
ରାଜାମାନଙ୍କୁ ସେ ନିମନ୍ତିଂ ଅଣାଇଂଲି ।
ଧନୁ ଦେଖିଣ ସେ ସର୍ବେ ଗଲେ ଭାଜି
ବରଷେ କଟକ ବେଢ଼ି ବସିଲେ
ବଳସାଜି ।୧୦
ତାହା ଦେଖି ମୁହିଂ ଯେ ସୁମରିଲି
ସଦାଶିବହିଂ
ଚତୁରାଙ୍ଗ ବଳ ଘେନି ଆସିଣ ମିଳଇଂ ।
ଦେଖିଣ ପଳାଇଲେ ସକଳ ନୃପତି
ବେଳେକ ଆସିଥିଲା ପ୍ରଶୁରାମ କ୍ଷତ୍ରୀ ।
ଧନୁ ଦେଖିଣ ଯେ ପୂଜା ବିଧିକଲା
ଯେକାନ୍ତେ ମୋହୋର କର୍ଣ୍ଣେଣ କହିଲା ।
ବୋଇଲା ପ୍ରତକ୍ଷେ ଯେ ଧନୁ ବାସୁଦେବ
ହରିହୁଂ ଆନକେ ଆମଛି ପାରିବ ।
ସୁରେ ଅସୁରେ ଯେ ନୁହଇ ପ୍ରବୋଧ
କପିଳାସବାସୀର ଯେ ଅଟଇ ଆୟୁଧ ।୨୦
ଯେ ଧନୁ ଯତନ କରିଣ ଥୋଇଥିବୁ
ଅବଶ୍ୟ ନୟନେ ତୁ ଶ୍ରୀହରି ଦେଖିବୁ ।
ଯେତେ କହିଣ ଯେ ଗଲା ଭୃଗୁପତି
ଯତନେ କହନ୍ତି ଜନେକ ମହାଯତି ।
ଯେବେ ବିଶ୍ୱାମିତ୍ର ଅଇଲା ମୋର ପୁର
ସଙ୍ଗେ ଦଶରଥର ବେନି ଯେ କୁମର ।
କୋଦଣ୍ଡ ଦେଖିତ ଶରଧା ପୋୟେ କଲେ
କଉଶିକ ଅଗ୍ରତେ ଯେକାନ୍ତେ ବୋଇଲେ ।
ଈଶ୍ୱର ଧନୁ ଯେ ବିଷ୍ଣୁର ତହୁଂ ଜାତ
ଦ୍ରଶନ ପାଇଲେ ଯେ ହୋଇବେ
ମୁକତ ।୩୦

ଯେ କଥା ମୋତେ ଯେ କହିଲା ଗାଧିଶିଷ
ତେଣୁ ମୁଂ ଶାୟେକ କାଢ଼ିବି ଅବଶ୍ୟ ।
ସମସ୍ତେ ଯେକ ଠାବ ହୋଇଂ ତୁମ୍ଭେ ଥିବ
ଯେ ଧନୁ ଧରିବ ସେ କନ୍ୟା ଘେନିଯିବ ।
ଯେ ମୋହୋର ସତ୍ୟ ବିଅର୍ଥ ନ କର
ଶୁଣି ବୋଲନ୍ତି ସକଳ ନୃପବର ।
ଆଣ ଆଣ ଧନୁ ଦେଖନ୍ତୁ ସର୍ବଲୋକ
ଯେ ଅବା ପାରୁ ସେ ଉଛୁତୁ କାର୍ମୁକ ।
ଲୋଭ ନ କରିବୁ ଆମ୍ଭଙ୍କୁ ନିଅମ
ଯେ ଧନୁ ଭାଙ୍ଗିବ ସେ କନ୍ୟା ଯେଥୁ ନେମ ।୪୦
ଯହୁଂ ନୃପଗଣେ ଦୃଢ଼ ବ୍ରତ କଲେ
ସତ୍ୟ ସତ୍ୟ ତିନିବେଳ ଉଚାରିଲେ ।
ଶୁଣିଣ ଜନକ ସତ୍ୟାନନ୍ଦକଇ ରାଇ
ଆଣ ଧନୁ ବୋଲିଣ ତକ୍ଷଣେ ଆଗ୍ୟାଦେଇ ।
ଯହିଂ ସେ କୋଦଣ୍ଡ ଅଛଇ ପୂଜା କଲା
ଗଉତମ ତନୟେ ତହିଂ ସେ ମିଳିଲା ।
ନଗ୍ରର ବଳି ଆରମାନ ଗୁଣ୍ଡକରି
ମହାପୁରୁଷ ଲକ୍ଷଣ ଅଛନ୍ତି ଯେତେଧରି ।
ତେସନେକ ଆଠଶତ ପୁରୁଷ ବଳବାନ
ଆଣ ଆଣ ବୋଲିଣ ବୋଲନ୍ତି ଶରାସନ ।୫୦
ବଜାନ୍ତି ଟମକ ଯେ ନିଶାଣ ମର୍ଦ୍ଦଳ
ଗହ ଗହ ଶବଦ ଶୁଭଇ ମହାଗୋଳ ।
ନାଚେଣୀ ନାଚନ୍ତି ଯେ ଭାଟ କଏବାର
ଆଲମ୍ୱ ପନ୍ତି ପନ୍ତି ଚିରାଳ ଅପାର ।୬୦
ଧୀର ଧୀର କରି ବହି ଘେନିଯାନ୍ତି
କୁସୁମ ବିଞ୍ଚଣ ହୁଳହୁଳି ଦ୍ୟନ୍ତି ।
ଦେଖିଣ ଆସନ୍ତି ନଗ୍ର ନରନାରୀ
ବିଞ୍ଚଣୀ ଚାମର ଗଣିକାମାନେ ଧରି ।
ହସ୍ତୀ ଘୋଡ଼ା ପାଇକ ରଥ ପଟୋଆର
ପଡ଼ିହାରୀମାନେ ରହନ୍ତି ଓଗାଳି ଅପାର ।
ଲୋହାର ମଞ୍ଜୁଷମଣ୍ଡିଲା ଅଛି ସଞ୍ଚ
ନେତ ପାଟ ପତନୀ ଫୁଲମାଳ ଘଞ୍ଚ ।

ଶ୍ୱେତ ଚାମର ଯେ ମଣ୍ଡିତ ଚଉପାଶ
କିଣି କିଣି ଘଣ୍ଟି ଘାଗୁଡ଼ିର ଘୋଷ ।
ଦ୍ରପଣ ଝଟ ଝଟ ଚନ୍ଦ୍ରକାନ୍ତି ଜାଣି
କଟିର ଉପରେ ଲମ୍ୱଇ ନୀଳମଣି ।
ବଜ୍ରର କିଳଣି ତ୍ରିଶୂଳର ମୁଦି
ପାଟ ଦଉଡ଼ି ବାନ୍ଧି ଅଛଇ ତ୍ରିଛନ୍ଦି ।
ଜମ୍ବୁନନ୍ଦ ସୁନିଆଂ ଘଣ୍ଟିରେ ଅଛି ଢାଳି
ଚାରିତାଳ ଉଚ୍ଚ ଯେ ମର୍କତ ମଣି ଲୁଳି ।୭୦
ଚଳନ୍ତେ କପ କପ ବାଜଇ ମଞ୍ଜୁଷ
ଧର ଧର ଶବଦ ଯେ ଶୁଭଇ ଆକାଶ ।
ଆଗରେ ପଡ଼ଇ ଯେ ଚନ୍ଦନର ଛେରା
ଦେବାଙ୍ଗ ପାଟ ଯେ ପାଡ଼ନ୍ତି ପୟେଡ଼ା ।
ଗୋଳ ବାଜନ୍ତେଣ ବୋଲନ୍ତି ନୃପତି
କେବଣ କାରଣେ ଲୋକେ ଧୋଆଂ ଧୋଙ୍ଗ ହେଉଛନ୍ତି ।
ଜନେକ ବୋଇଲା ସେ ଆସଇ କୋଦଣ୍ଡ
ଭୂମି ହଲିଣ କମ୍ପଇ ମହୀ ନବଖଣ୍ଡ ।
ଶୁଣି ନୃପଗଣେ ହୋଇଲେ ତରସ୍ତ
ମୁଖ ଚୁହାଂଚୁହିଂ ହୋଇଲେ ସମସ୍ତ ।୮୦
କେ ବୋଲଇ ଯେ ଧନୁ ଈଶ୍ୱର ବହଇ
ଆନ କେହୁ କ୍ଷମ କାହା ଦେହ ଯେ ସହଇ ।
ଯେହିଂ ମଣ୍ଡଳରେ ଯେ ପ୍ରଶୁରାମ ବଳୀ
ସେହି ଶରାସନକୁ ନ ପାରିଲା ତୋଳି ।
ଇନ୍ଦ୍ର ଧରି ତ ଯେ ନୋହିଲା ସାମରଥ
ଅଗ୍ନି ପବନ ସେ ବରୁଣ ନଇରୁତ ।
ଦଶଦିଗପାଳେ ନୁହନ୍ତି ଭାରଜନ
ଯେକମାତ୍ର ଯେହା ଯେ ବହଇ ତ୍ରିଲୋଚନ ।
ଅକଳଣା ବଳ ସେ ଅଟଇ ଯେହାର
ବଳେ ଯେହା ଆମଞ୍ଚିବାକୁ ଶକତି କାହାର ।୯୦
ଯେମନ୍ତ ସମୟେ ମିଳିଲା ଧନୁ ଆସି
ବଳବନ୍ତମାନେ ଭୟେ କଲେ ତ୍ରାସି ।
ସଭାର ମଧ୍ୟେ ଆସି ମିଳିଲା ମଞ୍ଜୁଷ

ନ ଜାଣିମା ଲୋକେ ବୋଲନ୍ତି ଯେହୁଂ କିସ ।
କେ ବୋଲଇ ଯେଥି ଭିତରେ ଧନୁ ଅଛି
ଯେକକୁ ଆରେକ ହୁଅନ୍ତି ପୁଛାପୁଛି ।
ଅଧା ସୋର୍ଗରେ ଥାଇଂଣ ଦେଖନ୍ତି ଦେବଗଣ
ଦେଖିବାନା ଶ୍ରୀରାମର ବୀର ସୁରପଣ ।
ସଭାଜନେ ତବନ୍ଦ ହୋଇଂ ଦେଖୁଛନ୍ତି
ଯେକକୁ ଆରେକ କଥା ନ କୁହନ୍ତି ।୯୦
ସଖୀଜନନ୍ତ ଚାହିଂ ସେ ବୋଲନ୍ତି ଜାନେକୀ
ଧନୁ ଦେଖିଣ ସେ ଆତ୍ମା ମୋର ଶଙ୍କି ।
ବେଳେବେଳେ ନୃପତିଗଣେ ଦେଖି ଭାଜି
ଯେବେ କିମ୍ପା ଆସିଛନ୍ତି ବଳ ସାଜି ।
ମେରୁ ସମୟେ ଧନୁ ଯେ ତୋଳନ୍ତେ ସମ ନାହିଂ
କେବଣ କାରଣେ ରାୟେ ଅଇଲେ ଚଳାଇଂ ।
ପ୍ରଶୁରାମ ଯାହା ସେ ନ ପାରଇ ଧରି
ଭୂମିରୁ ଛଡ଼ାଇ ନ ପାରି ଭୃଗୁ ଗଲା ହାରି ।
ପିତା ମୋର ସତ୍ୟ କଲାକ ନ ଜାଣି
ତେଣୁ ମୁଂ ଦୁଃଖୀ ଗୋ ହୋଇଲି ସଗାଂତୁଣୀ ।୧୦
କେତେ କାଳେ ଦୁଃଖ ଗୋ ଯିବଇ ମୋର ପର
ଭୋ ଧର୍ମ ଦେବତା ମୋତେ ପ୍ରତିକାର କର ।
ଶୁଣି ସଖିଜନେ ତ୍ରିଆରନ୍ତି ସୀତା
ନୁହସି ବିସ୍ମୟେ ଗୋ ଜନେକ ଦୋହିତା ।
ସର୍ବଦା କାଳରେ ସେ ନୁହଇ ନା ହାନି
ଶୁଭାଶୁର କର୍ମ ସେ ଜାଣଇଂ ପଦ୍ମଯୋନି ।
ଯେ ସେ ପଦ୍ମଯୋନି ସେ ସେ ପିତାମହ
ଯେ ସେ ପିତାମହ ଅର୍ଜ୍ଜିଲା ଯେହୁ ଦେହ ।
ଯେବଣ ଦେହ ସେ ଅରଜିଲା ଜଗତର ପିତା

ସେ ସେ ପିତାମହ ପରମ ଦେବତା ।୨୦
ସେ ଯାହା ସଂକଳ୍ପ ଅଛି ମନେ ଧରି
ଯେ ଧନୁ ଭାଙ୍ଗିବ ଦେବଙ୍କ କୁମାରୀ ।
ସେ ସେ ଧର୍ମଶିଷି ଅଟଇ ଧର୍ମଗ୍ୟାଂତା
ତାହାର ବୋଲକି ହୋଇବ ଅନ୍ୟସ୍ଥା ।
ନ ଜାଣି ସତ୍ୟ କି କରିଅଛି ଋଷି
ଭୂତ ଭବିଷ କଥା ଜାଣଇ ତପ୍ରସୀ ।
ତୁ ଅବା ବୋଇଲୁ ସଖି ଅନେକ କାଳ
ଗଲା
କେହି ଯେ ଧନୁକୁ ଧରି ନୁଆରିଲା ।
ଯେତେବେଳେ ଯାହାକୁ ଅଛଇ ଯେଉଂ
ଯୋଗ
କାଳବେଳ ଜାଣି ବିଧାତା କରଇ
ଭୋଗ ।୩୦
ଉମା ସେ ହେମବନ୍ତ ଘରେ ଉପୁଜିଲା
ଦେହ ଗଞ୍ଜାଇ ହାଦେ ଅନେକ ତପ କଲା ।
ସଂଯୋଗ ସମୟ ହୋଇଲାକ ଯହୁଂ
ସଦାଶିବଙ୍କର ବାଜୀ ଭେଟିଲାକ ତହୁଂ ।
ବିଭା ହୋଇଣ ସେ ଅନେକ ଭୋଗ କଲା
ଆଗତେ କାର୍ଯ୍ୟ ମାଗୋ ନୁହଇ ନା ଭଲା ।
ଦେବ ଅସୁରେ ଯେ ମନ୍ଥିଲେ ସିନ୍ଧୁଜଳ
ତହୁଂ ଜାତ ହୋଇଲା ପଦାର୍ଥ ସକଳ ।
ବିଷ୍ଣୁର ଭାଗେ ସେ ହୋଇଲେ କମଳଣୀ
କାଳକୂଟ ବିଷ ପ୍ରାପତଟି ଶୂଳପାଣି ।୪୦
ଦେବେ ସୁଖେଣ ଯେ ଅମୃତ ଭୋଗକଲେ
ଅସୁରେ ଭଗାରି କିଛି ନ ପାଇଲେ ।
ଦତ୍ୟ ହୋଇ ରାହୁ ଖାଇଲା ଅମୃତ
ତାହାକୁ ସେ ଭୋଗ ଅଛଇ ପ୍ରାପତ ।
ଇନ୍ଦ୍ର ଯେ ପବନଙ୍କୁ କାଟିଲା ବିକୋଟି
ଯେକଇ ଶ୍ୟରୀର ଅଣଞ୍ଚାଶ ମୂର୍ତ୍ତି ।
ଦୁଇଖଣ୍ଡ ହୋନ୍ତେ ପ୍ରାଣୀ ନ ପାନ୍ତି ଜୀବନ
କର୍ମେଣ ଅଣଞ୍ଚାଶ ମୂର୍ତ୍ତି ଯେ ପବନ ।
ସବୁ ଦେବତାହୁଂ ହୋଇଲା ମହାବଳୀ
ଜନ୍ତୁଙ୍କର ଠାକୁର ସେ ପ୍ରାଣହୁଂ
ଅଗୁଂଳି ।୫୦

ଦକ୍ଷ ପ୍ରଜାପତିର ସତାଇଶ ଦୋହିତା
ଚନ୍ଦ୍ରକୁ ବିଭାୟେଣ ଦେଲା ତାର ପିତା ।
ଯେକର ପେଟୁ ଜାତ ସେ ଯେ ଯେକଇ
ପିଅର
ସବୁ ଭଗ୍ନୀଙ୍କର ସେ ଯେ ଚନ୍ଦ୍ର ଅଟଇ
ବର ।
ସଉଭାଗ୍ୟବନ୍ତୀ ସେ ହୋଇଲା ରୋହେଣୀ
ବଡ଼ ଦୁର୍ଭାଗ୍ୟବନ୍ତୀ ସେ ଆବର ଛବିଶ
ଭୟେଣୀ ।
ଅବଶ୍ୟ କାର୍ଯ୍ୟ ଆଜ ଲଭିବୁ ମୃଗାକ୍ଷୀ
ସଭା ସୁନ୍ଦର ଗୋ ଆଜ ଦିଶୁଅଛି ।
ଋଷିଙ୍କର ମୁଖକମଳ ବିଘସଇ
ଶତଦଳ କମଳ ଜାଣିଣ ଦିଶଇ ।୬୦
ଯେ ତୋହୋର ବର ଗୋ ପ୍ରବେଶ ଯେଥି
ଆସି
ବିଶ୍ୱାମଇତ୍ର ସଙ୍ଗତେ ଅଛନ୍ତିଟି ବସି ।
ଯେହା ଶୁଣି ହସି ବୋଲଇ ମହିସ୍ଥଳୀ
କିମ୍ପାଇ ସଖି କଲୁ ଗୋ ଢମାଳି ।
ଯେ ଅବା ଧନୁ ଆଜ ଆକ୍ରୋଷି ପାରଇ
ତାହାକୁ ପିଅର ବର ପଣେ ବରଇ ।
ତୁ କେହ୍ନେ ଆଗହୁଂ ଖୋଜି ଆଣିଲୁ ସଙ୍ଘାତୁଣି
ନିକଟେହେଂ ପତି ଦେଲୁ ମୋତେ ଆଣି ।
ଯେ ବୋଲ ଶୁଣିଣ ଯେ ବୋଲଇ ମନମାୟା
ମୁହିଂ ଯେହା ସତ ଗୋ ଜାଣଇଂ
ସୀତୟା ।୭୦
ଯେବଣ ଯେବଣ ନୃପତି ବସିଅଛନ୍ତି
ଆସ୍ତାନେ
ଯେ ତୋତେ ବରପଣେ ଗୋ ନୁହନ୍ତି
ଭାର୍ଜନେ ।
ତପୀଗଣେ ସ୍ୱଭାବେ ଅଟନ୍ତି ପିତାମହ
ପବିତ୍ର ଅଙ୍ଗ ଯେ ନ ଛୁଇଂତ ତୋ ଦେହ ।
ତୁ ଗୋ ପ୍ରତକ୍ଷେ ଲକ୍ଷ୍ମୀ ଅଂଶେ ଜାତ
ବିଷ୍ଣୁ ସେ ତୋହୋର ହୋଇବ ପ୍ରାଣନାଥ ।
ଅଯୋନିସମ୍ଭୂତ ଗୋ ସଂଯେ କମଳଣୀ

ତୋତେ ବରପଣେ ଗୋ ଯୋଗାଇ
ଚକ୍ରପାଣି ।
ଯେ ସେ ଚକ୍ରପାଣି ସେ ସେ ଦେବ ହରି
ଯେ ସେ ଶ୍ରୀହରି ସେ ଜଗତ
ଅଧିକାରୀ ।୮୦
ସର୍ବଜନମନ ମୋହି ପାରନ୍ତି ସେ ହରି
ସେହୁ ସେ ଜଗନ୍ନାଥ ଅଟଇ ଅଧିକାରୀ ।
ଯାହାକଇ ଅଟଇ ସର୍ବଜନ ମନ
ତାହା ସେ ବୋଲି ସଖି ପୁରୁଷକଇ
ମୋକ୍ଷପାନ ।
ସେ ଯେ ପୁରୁଷଙ୍କର ମୋକ୍ଷପାନ ହୋଇ
ତାହାକୁ ଦେଖିଲେ ସର୍ବଜନ ମୋହିଂ
ହୋଇ ।
ଯାହାକୁ ସକଳ ଜନ ମୋହି ହୋନ୍ତି
ଜଗତମୋହନ ସେ ତାହାକୁ ବୋଲନ୍ତି ।
ଯେ ଜଗତମୋହନ ତାହାକୁ ଦେଖିଲେ ସେ
ବଶ୍ୟହୋଇ
ଯାହାକଇ ବଶ୍ୟହୋଇ ତାହାକୁ ଭଲ
କହି ।୯୦
ଯାହାକୁ ଭଲପାଇ ସେହି ସେ ଭାଗ୍ୟବନ୍ତ
ଯେ ସେ ଭାଗ୍ୟବନ୍ତ ସେ ଯେ ତୋର
କାନ୍ତ ।
ଯେ ସେ ତୋହୋର କାନ୍ତ ସେ କଉଶିକ
ପାଶେ
ସଭାଲୋକେ ଦେଖି ଚାହାନ୍ତି ହରଷେ ।
ଅପୂର୍ବ ପଦାର୍ଥକଇ ସବୁରି ଶରଧା ଥାଇ
ତେଣୁ ସେ ଯେକ ଦୃଷ୍ଟିକରି ସମସ୍ତେ ଛନ୍ତି
ଚାହିଂ ।
ଯହୁ ସେ ଯେକ ଦୃଷ୍ଟି ଚାହାନ୍ତି ସଭାଜନ
ତହୁଂ ସେ ସଖି ଗୋ ପ୍ରସନ ହୋଇଲା
ମନ ।
ଯହୁଂ ସେ ମନ ଗୋ ପ୍ରସନ ହୋଇଲା
ତେଣୁ ଜାଣିଲି ବୋଲି ମନମାୟା
କହିଲା ।୧୦୦

ତୁ ସଖି ହୃଦରେ ନ କର ଗୋ ଚିନ୍ତା
ନିଶ୍ଚୟେ ପ୍ରାପତ ତୋତେ ହୋଇବ ନିଜ
କାନ୍ତା ।
ମନମାୟା ମୁଖୁଂ ଯେସନ ବାଣୀ ଶୁଣି
ହସ ହସ ହୋଇ ଯୁବତୀ ଶିରୋମଣି ।
ଯେଥିଅନନ୍ତରେ ଜନେକ ମହାରଷି
ଧନୁପ୍ରବେଶ ହୋଇଲା ଯହୁଂ ଆସି ।
ରାଜାଗଣେ ଚାହିଂ ବୋଲନ୍ତି ତୁମ୍ଭେ ଶୁଣ
ଆଜ ବୁଝିବା ନା ତୁମ୍ଭର ବଳପ୍ରାଣ ।
ଯେ ଅବା ସାମରଥ ଆଗହୋଇ ଆସ
ଯେ ଧନୁ କଷଟୀରେ ସୁନା ବଳ
କଷ ।୧୦
କେ କେତେ ବିକଇ ଜାଣିମା ନା ମୂଲ
କେବଣ ରାଜା ହୋଇବ ଜମ୍ବୁନଦ ତୁଲ ।
ତାହା ଅଳଙ୍କାର କରି ଗଢ଼ାଇବା
ବ୍ରହ୍ମଜାତି ହୀରା ସୀତା ତହିଂ ଜଡ଼ାଇବା ।
ତେବେ ସେ ହୋଇବନା ଦେବ ଆଭରଣ
ଜନେକର କଥା ଶୁଣିଲେ ନୃପଗଣ ।
ସୋମକେଶୀ ବୋଲି ମାଳବ ଦେଶର ରାଜା
ଲୋକନାଥ ନୃପତିର ଅଟଇ ତନୁଜା ।
ସେହି ବୋଇଲା ଯେ ଜନେକ ମୁଖ ଚାହିଂ
ମଞ୍ଜୁଷ କବାଟ ଫେଡ଼ାଅ ଆଗ୍ୟାଂ
ଦେଇ ।୨୦
ଦେଖିବା ଧନୁ ଯେ ଜାଣିମା କେଡ଼େ ବଳ
ଯେ ବୋଲ ବୋଇଲେ ଯେ ନୃପତି
ସକଳ ।
ମଞ୍ଜୁଷ ଦ୍ୱାରେ ଧନୁକୁ ଦେଲେ ଦୃଷ୍ଟି
ଧନୁ ଦେଖିବେ ବୋଲି ନୃପତିଗଣ ଉଠି ।
ବାଘ ଯେହ୍ନେ ଯନ୍ତା ଭିତରେ ଜୀଇଂଥାଇ
ଛେଳି ଯେହ୍ନେ ତାକୁ ଦେଖିଲେ ପଳାଇ ।
ଶରାସନ ଦେଖି ତେସନ ସୋମକେଶୀ
ଆବର ରାଜାନ୍ତ ରାଇଲାକ ହସି ।
ବୋଲଇ କେ କେ ହୋ ନୃପତିମାନେ ପାର
ବଳବନ୍ତା ହୋଇଲେ ହୁଅ ଆଗୁସାର ।୩୦

ମୁହିଂ ଦେଖିଣ ଯେ ହୋଇଲି ହତବୀର୍ଯ୍ୟ
ଶୁଣି ନୃପତିଗଣେ ଯେ ହୋଇଲେ ଆଶ୍ଚିଯ ।
ଉଭୁରା ଉଭୁରି ହୋଇଣ ଉଠିଗଲେ
ମଞ୍ଜୁଷ ଭିତରକୁ ସମସ୍ତେ ଦୃଷ୍ଟିଦେଲେ ।
ଶ୍ୱେତ ନାଗ ଯେହ୍ନେ ପେଡ଼ାରେ ଶୋଇଥାଇ
ଲାଂଯ ପାଶରେ ଯେହ୍ନେ ତାକୁ ମୂଷାୟେକ
ଚାହିଂ ।
ତେହ୍ନେ ଭୟେ ପାଇଲେ ନୃପତି ସକଳ
ପଞ୍ଚଘୁଞ୍ଚା ଦେଇ ଆସନ୍ତି ମହୀପାଳ ।
ଭାଳିଣ ବୋଇଲେ ତୁମ୍ଭେ ଶୁଣ ମହରଷି
ଯେ ଧନୁ ଆମ୍ଭେ ଯେ ନ ପାରୁ
ଆକ୍ରୋଷି ।୪୦
ଯେ ପାରୁ ଧନୁ ତୋଳିଣ କନ୍ୟା ବିଭା ହେଉ
ତାହାର କୀରତି ଯେ ଯୁଗେ ଯୁଗେ ଥାଉ ।
ଯେତେ ବୋଲି ସଭାୟେ ବସିଲେ ନୃପଗଣ
ଜନେକ ବୋଇଲେ ତୁମ୍ଭେ ସକଳ ଜନେ
ଶୁଣ ।
ଯେ ଧନୁ ଧରିଣ ଯେ ପାରିବାକ ବଳେ
ସେ ମୋର ଦୋହିତାକୁ ନେବ ସଭାତଳେ ।
ସତ୍ୟ ସତ୍ୟ ଏ ବଚନ ମୁଂ ଯେ ନ କରଇ
ଆନ
ଶୁଣିଣ ସ୍ତମ୍ଭୀଭୂତ ହୋଇଲେ ସର୍ବଜନ ।
ଉତ୍ତର ସମାସ୍ୟା ଦିଅନ୍ତା କେହି ନାହିଂ
ନିଶବଦ ହୋଇଂ ଲୋକେ ଛନ୍ତି
ତହିଂ ।୫୦
କ୍ଷଣେ ତୁନିହୋଇ ଜନେକ ବୋଇଲେ
ଧନୁ ଧରନ୍ତା କେହି ଭାଜନ ନୋହିଲେ ।
ବାହୁଡ଼ାଇ ନେଇଂଣ ଥୋଇବି ଧନୁ ଗୁଣ
ଭୋ ବିଶ୍ୱାମଇତ୍ର ବୋଇଲୁ ଯେ ଧନୁ
ଆଣ ।
ରାମ ଧନୁ ଦେଖିବ ବୋଲି କଢ଼ାଇଲୁ
ଯେବେତ ପ୍ରତକ୍ଷେ କଥାନ୍ତ ବୁଝିଲୁ ।
ଜନେକର ବଚନେ ବିଶ୍ୱାମଇତ୍ର ଭାଷି
କିମ୍ପା ବିମୁଖ ତୁମ୍ଭେ ହୁଅ ବ୍ରହ୍ମରଷି ।

ଯାହା ତୁ ସତ୍ୟ କଲୁ ପୂର୍ବର ଯେ ବାଣୀ
କାଳ ଅପସରିଥିବୁ ତୁହି ସିନା ଜାଣି ।୬୦
ଯେବଣ କାଳେ ପ୍ରାପତ ଯେବଣ ହିଂ ଯୋଗ
କର୍ମ ଅନୁସାରେ ବିହି ଦେଇ ଭୋଗ ।
ନୁହସି ଆରତ ତୁ ସମ୍ଭାଳି କାର୍ଯ୍ୟକର
ବଳବୀର୍ଯ୍ୟେ ପ୍ରତାପୀ ଯେ ଅଟେ
ମୁନିବର ।
ଯେ ଯେବେ ନ ପାରିବେ କରିବା ଆମ୍ଭେ
କିସ
ଭୁଞ୍ଜିବ ସୀତା କର୍ମେ ଅଛି ଯିସ ।
ଯେବେ ତୁ ବାହୁଡ଼ାଇଂ ନ ନିଅ ଶରାସନ
ରାମ ଯେବେ ଦେଖିବାକୁ କରିଅଛି ମନ ।
ଯେହାର ଦେଖିଲେ ପଛେ ବାହୁଡ଼ାଇ ନିଅ
ଶରଧା କରିଅଛି ଯେବେ ଦଶରଥ
ପୁଅ ।୭୦
ଉଠ ଉଠ ଶ୍ରୀରାମ ହୋ ଧନୁ ଦେଖ ଯାଇଂ
ଜନେକ ଝଗଡ଼ ପାଇଲେଣି ତୋହୋରି ଯେ
ପାଇଂ ।
ଦେଖି ଆସ ରାମ ଶରାସନ ବେଗେ ଯାଉ
କି ଅବା ସୀତୟା ପ୍ରାପତ ତୋତେ ହେଉ ।
ବିଶ୍ୱାମିତ୍ର ତହୁ ଯେସନେ ବଚନ ଶୁଣି
ଲାଜ ଲାଜ ହୋଇ ଉଠିଲେ ରଘୁମଣି ।
କଉଶିକ ପାଦେ କରନ୍ତି ନମସ୍କାର
ଲକ୍ଷ୍ମଣକୁ ଘେନି ଶ୍ରୀରାମ ଆଗୁସାର ।
ଦେଖି ବିଚାରନ୍ତି ସକଳ ସଭାଜନ
ଯେ ଦୁଇଗୋଟି ହାଦେ କାହାର
ନନ୍ଦନ ।୮୦
କେହୁ ବୋଲନ୍ତି ବିଶ୍ୱାମିତ୍ର ଆଣିଛନ୍ତି
କେହୁ ବୋଲନ୍ତି ଯେ ଦୁଇଗୋଟି କାହାର
ବଛି ।
ଯେବେ କିମ୍ପାଇଂ ଯେ ଉଠିଲେ ଆସନୁ
କେ ବୋଲଇ ଅବା ଦେଖିବେ ଯେ ଧନୁ ।
କେ ବୋଲଇ ଯେ ଦେଖି କରିବେଟି କିସ
କେ ବୋଲଇ ଆହୋ ନ କର ଉପହାସ ।

ବିଧାତା ଭିଆଇଣ ଅଛି ଅବା ସଞ୍ଚ
ଯେ ଅବା ଧନୁକୁ ଯେ ପାରିବେ ଆମଞ୍ଚ ।
କେ ବୋଲଇ ତୁମ୍ଭେ ହୋଇଲକି ବାଇ
ଦେଉଳ କି ମୁଣ୍ଡେ ପେଲିଲେ ପଡ଼ଇ ।୯୦
ଟେଳା ମାଇଲେ କି ଟଳଇ ପରବତ
କେ ବୋଲଇ କିମ୍ପା ହୋ କହିଲ ଯେମନ୍ତ ।
ସାନ ବୋଲିଣକି ଅଭରସା କର
ସୀତ୍ୟା ଅବା ଭାରିଯା ହୋଇବ ଯେହାର ।
ଅଗସ୍ତିଟି ସାନ ଶୋଷିଲା ସିନ୍ଧୁ ସାତ
ପ୍ରହ୍ଲାଦ ସାନ ପ୍ରସନ କଲା ପଦ୍ମନେତ୍ର ।
ତିବିକ୍ରମ ରୂପ ତିନି ଭୁବନ ବ୍ୟାପିଲା
ବାମନ ଯେ ସାନ ବଳିକି ଚାପିଲା ।
ଧ୍ରୁବ ସାନ ପୁଅ ବିଷ୍ଣୁଙ୍କୁ ତୋଷ କଲା
ଭାଗ୍ୟରଥି ସାନ ଗଙ୍ଗାକୁ ବୁହାଇଲା ।୧୦୦
କିମ୍ପା ଯେହାକୁ ହୋ କର ତୁମ୍ଭେ ସାନ
ଧାତା ଜାଣଇଂ ଯେ ଯହିଂକି ଭାଗଜନ ।
ନିର୍ଭା କରିଣ ଅଛଇ ଅବା ଆଣି
ପୁରୁଷର ଭାଗ୍ୟ ହୋ କେବେହେଂ
ନ ଜାଣି ।
ଭରସା ନ ପାଇଲେ ଉଠିକି ଆସଇ
ଚାଲିବା ଛଟକେ ଭୂମିକି ଆକ୍ରଶଇ ।
କେ ବୋଲଇ ଦୁହେଂ ଅଟନ୍ତି ଦୁଇଭାଇ
କେ ଯେଥେ ବଡ଼ ସାନ ବାରିତ ନୁହଇ ।
କେ ବୋଲଇ ଆହା ନ ଜାଣ ତୁମ୍ଭେ କିଛି
ବଡ଼ ସାନ ଆକୃତି ସଭାବେ ଦିଶୁଅଛି ।୧୦
ଦୃଷ୍ଟାନ୍ତର କଥା ଦେଖିଲେ ନ ଜାଣ
ଯାହାର ଶ୍ୟରୀର ମର୍କତ ରସାଣ ।
ନୀଳ ଉତ୍ପଳ ରାଜୀବ ଦଳ ବେନି ଆଖି
ପଦ୍ମରାଗ ମାଣିକଂ ଅଧରକଇ ସାକ୍ଷୀ ।
ସୁଦୀର୍ଘ ନାସା ଯେହ୍ନେ ମାରାଗ ମଣିଦଣ୍ଡ
କର୍ଣ୍ଣକୁଣ୍ଡଳମଣି କିରଣ ପରଚଣ୍ଡ ।
ଶିରେଣ ପୁଷ୍ପ ଜାଇଫୁଲ ଗଭା
କପୋଳେ କସ୍ତୁରୀ ଚିତା ବଡ଼ ଶୋଭା ।
ସର୍ବାଙ୍ଗେ ଚନ୍ଦନ କଣ୍ଠେଣ ମୋତିମାଳ

ନବରତ୍ନ ପଦେକ ଲମ୍ବଇ ବକ୍ଷସ୍ଥଳ ।୨୦
ବାହେଣ ତାଡ଼ ଯେ ଭୁଜେଣ କଙ୍କଣ
ଜାଣି ପଟାନ୍ତର ସୂର୍ଯ୍ୟର କିରଣ ।
ଅଙ୍ଗୁଷ୍ଠିରେ ଶୋହଇ ନବରତ୍ନ ବନ୍ଧ ମୁଦି
ବିଜୁଳି ତେଜକି କଳାମେଘେ ସାଜି ।
କଟୀରେ ସିଂଘ ମଝା ପତନୀ ପାଟପିନ୍ଧି
ଉପରେ ସୁରଙ୍ଗ ପାଟ ଦୋଷଡ଼ା କରି
ବାନ୍ଧି ।
ପୟରେ ନୂପୁର ରୁଣୁଝୁଣୁ ବାଜେ
ସୁନ୍ଦର କୁମାର ବୟେସ ଯେହାକୁ ସେ
ସାଜେ ।
ଯେହ୍ନୁ ଜ୍ୟେଷ୍ଠ ଭାଇ ଦୃଷ୍ଟାନ୍ତରେ ଦିଶି
ସଙ୍ଗେଣ ସାନୁଜ ଯେ ଘେନିଣ ଅଛି
ଆସି ।୩୦
ଯେ ଧନୁ ଧରିବ ସଂଶୟ ଏଥି ନାହିଂ
ବିଧାତା ନିର୍ଭାଇ ଥୋଇଥିଲା କାହିଂ ।
କେ ବୋଲଇ ଦେଖ ଗୋ ଚାଲିବାର ଗତି
ଦୃଷାୟେ ନଦୀକି ଯେହ୍ନେ ଚାଲଇ
ମଉହସ୍ତୀ ।
ସୁନ୍ଦର ପଣ ତ ସରିସମ ନାହିଂ
ପାଦକୁ ପଟାନ୍ତର କୋଟୀୟେ କାମ
ନୋହି ।
କେ ବୋଲଇ ଅଟଇ ଆଜାନୁ ଯେହା ବାହା
କେ ବୋଲଇ ଯେକ ଖଣ୍ଡ କପୋଳ ଶଶୀ
ଚାହାଂ ।
କେ ବୋଲଇ ଯେହାର ନିବିଡ଼ ବକ୍ଷସ୍ଥଳ
କେ ବୋଲଇ ଚାମର ଅଟଇ ଯେହାର
ବାଳ ।୪୦
କେ ବୋଲଇ ମଝା ସମ୍ପୂର୍ଣ୍ଣ ସିଂହ ଠାଣି
କେ ବୋଲଇ ଦନ୍ତ ସିନ୍ଦୂର ମୋତି ଜାଣି ।
କେ ବୋଲଇ ଧନ୍ୟ ମାତା ଗର୍ଭଧାରୀ
ଯେହାରି
କେ ବୋଲଇ ସାଧୁ ସାଧୁ ପିଅଇ କୁମ୍ଭରି ।
କେ ବୋଲଇ ଧନ୍ୟ ଯେ ବିଶ୍ବାମିତ୍ର ମୁନି

କେବଣ ଦେଶରୁ ଅଇଲା ଯେ କାହୁଂ
ଘେନି ।
କେ ବୋଲଇ ଆମ୍ଭର ଜୀବନ ସୁଫଳ
ଯେହାକୁ ଦେଖିଲୁ ଯେ ପୂର୍ବ ପୁନ୍ୟ ଫଳ ।
କେ ବୋଲଇ ଜନେକ ଋଷି ପୁଣ୍ୟ କଲା
କେ ବୋଲଇ ସୀତ୍ୟାର ଆଜୁଂ କଷ୍ଟ
ଗଲା ।୫୦
ବାଉୁଅ ହୋଇ ଯେଥେ ସୁଥାନେ ପଡ଼ିଲା
ଜାଣି ବିଧାତା ନିର୍ମାଣ ଆସି କଲା ।
ନିଶ୍ଚୟେ ଧନୁ ଯେ ଆମଞ୍ଚିବ ଆଜ
ଆଜର ନୋହିଲେ ନୁହଇ କିଛି କାର୍ଯ୍ୟ ।
କେ ବୋଲଇ ବାଳୁତ ପ୍ରକୃତି ବଚନ
ସେ ଧନୁ ମହିମା ନ ଜାଣ ହୋ ଆନ ।
କେ ବୋଲଇ ପୁଣି ନ ପାରଇ ଧରି
କେ ବୋଲଇ ପ୍ରସନ ହୋଇବାକ ହରି ।
କେ ବୋଲଇ ପ୍ରସନ ହୋଇବେ ସଦାଶିବ
ତାହାର କୋଦଣ୍ଡ ସେ ଅଟଇ ଯେହୁ
ଅବ ।୬୦
ସେହି ବୋଲିଛନ୍ତି ଜନେକଂ ଆଗର
ଯେ ଧନୁ ଆମଞ୍ଚିବସେହି କନ୍ୟା ବର ।
ସେ କଥା ସନମତ କଲା ମହାଋଷି
ଯେ ବେଳେ କାଳ ହୋଇଲାକ ଆସି ।
ତୋହୋର ବୋଲି ଅନ୍ୟସ୍ଥା ଦେବ ନୋହୁ
ଯେହାକଇ ଧନୁ ପ୍ରସନ ଯେବେ ହୋଉ ।
ସୀତା ସୁଲକ୍ଷଣୀ ଯେ କୁମାର ବୟସ
ଯେହାକୁ ବର ଯେ ମିଳଇ ସାଦ୍ରିଶ ।
ଯେମନ୍ତ ବୋଲିଣ ଯେ ମଙ୍ଗଳ ବାଣୀ ଘୋଷି
ମଞ୍ଜୁଷ ଦ୍ୱାରେ ରାମ ହୋଇଲା ଆସି ।୭୦
ସଖିଜନମାନେ ସୀତ୍ୟାଙ୍କୁ କହନ୍ତି
ଦେଖ ଦେଖ ସଖି ଯେ ପୁରୁଷ ରତ୍ନକାନ୍ତି ।
ଧନୁ ଧରିବ ବୋଲି ହୋଇଅଛି ଉଭା
ତାରାଗଣ ମଧ୍ୟେଂ ଯେହ୍ନେ ପୂର୍ଣ୍ଣମୀ
ଚନ୍ଦ୍ରଶୋଭା ।
ଦେବଙ୍କର ଗୋଷ୍ଠୀରେ ଶ୍ରୀହରି ଯେହ୍ନେ ଦିଶି

ବନଜୀବ ମେଳେକି ବିକ୍ରମ ସିଂଘ ଆସି ।
ଯେ ତୋହୋର ରୂପକୁ ଗୋ ମିଳଇ
ସଖିବର
ଭାଗ୍ୟ ଥିଲେ ସଖି ଧରିବୁ ଯେହାର କର ।
ସଖୀଙ୍କ ଯେସନ ବଚନ ଶୁଣି ସୀତ୍ୟା
ଶ୍ରୀରାମଙ୍କୁ ଚାହାଇଂ ଜନେକ ଦୁହିତା ।୮୦
କୁମୁଦ ଚନ୍ଦ୍ରକି ହୋଇଲେ ଭେଟାଭେଟି
ସୂର୍ଯ୍ୟଙ୍କୁ ଦେଖି ପଦ୍ମ ପୁଷ୍ପ ଫୁଟି ।
ଚୁମ୍ବେକ ଲୁହା ଦେଖି ଯେହ୍ନେ ପଥର ଜଡ଼ଇ
ସ୍ୱର୍ଗରୁ କି ଚନ୍ଦ୍ର ଛାଡ଼ି ତାରା ଖସିଣ
ପଡ଼ଇ ।
ପର୍ବତ ଶିଖରୁ କି ପଥର ଝଡ଼ଇ
ସମୋଦ୍ର କି ଲହଡ଼ି ସୁଖରେ ପଡ଼ଇ ।
ପାରା ରସ ଯେହ୍ନେ ବିଞ୍ଚି ହୋଇଯାଇ
ମିଶାଇଲେ ଯେକତ୍ର ହୋଇଣ ଲାଗଇ ।
ତେସନକ ବୃତ୍ତାନ୍ତ ଶ୍ରୀରାମକୁ ଦେଖି ସୀତ୍ୟା
କପାଳେ କର ମାରି ସୁମରଇ
ବିଧାତା ।୯୦
ଭୋ ବିହି ବିଧାତା ଦଇନି କରଇଂ ତୋତେ
ଯେ ବର ନିରାଶ ପୁଣି ନକର ଗୋ
ମୋତେ ।
ଅନେକ କାଳହୁଂ ଅଛଇଂ ଦୁଃଖ ସହିଂ
ମଦନ ଅନୁକର୍ମେ ଯୁବା ତନୁ ବହିଂ ।
ତୁ ମୋତେ ଅନୁରାଗ କର ଦେବରାଜ
କରୁଅଛି ଦଇନି ମୁଂ ଛାଡ଼ିଣ ସର୍ବକାର୍ଯ୍ୟ ।
ଯେ ବର ଯେବେ ମୋତେ କରିବୁ ପରାପତ
ତେବେ ସେ ପରାଣ ମୁଂ ଧରିବି ନିଅତ ।
ନୋହିଲେ ଆଜ ମୁହିଂ କରିବି ପ୍ରାଣ ହତ୍ୟା
କିମ୍ପାଇଂ ତୋତେ ବୋଲିବେ ଜଗତର
ପିତା ।୧୦୦
ଯେସନେକ ସମଯେ ଶୁଭିଲା ହୁଳହୁଳି
ବାମ ଚକ୍ଷୁ ଡେଇଂଲା ଉଷତ ମହି ସ୍ଥଳୀ ।
ମନମାୟାକଇ ପୁଛଇ ଉଷତ ମନ ହୋଇଂ
ବାମ ଚକ୍ଷୁ ମୋର ଡେଇଂଲା ଗୋ ସହି ।

ଶୁଣି ମନମାୟା ବୋଇଲାକ ହସି
ମୋହୋର ବୋଲ ପ୍ରତେ ଗୋ ନକଲୁ
ଶୁଭ୍ରକେଶୀ ।
ଯେହି ବର ତୋତେ ଗୋ ହୋଇବ
ପରାପତ
ମୁହିଂ ଯାହା କହଇଂ ଗୋ ଅଟଇ ଦୃଢ଼ବ୍ରତ ।
ଯେଥିଅନନ୍ତରେ ଶୁଣ ଗୋ ଶାକେମ୍ବରୀ
ଶ୍ରୀରାମ ବିଜଯେ ଲକ୍ଷ୍ମଣ ଭୁଜଧରି ।
ଶ୍ରୀମୁଖ ଲୁଆଇଂ ମଞ୍ଜୁଷକଇ ଚାହିଂ
ସିଂଘ ଯେହ୍ନେ ହସ୍ତୀକି କନ୍ଧରେ
ନିରୋପଇ ।
ଧନୁ ଦେଖି ଯେ ଶ୍ରୀରାମ ତୋଷ ଚିତ୍ତ
ଜନେକଙ୍କୁ ଚାହିଂ ବୋଲନ୍ତି ରଘୁନାଥ ।
ବାହାରକୁ କାଢ଼ିକି ଆଣିମି ଶରାସନ
ତୁ ଯେବେ ମହାରଷି ହୋଇବୁ ପରସନ ।
ସଦାଶିବର ଧନୁ ଛୁଇଂଲେ ପାପ ମୋର
ଯାଉ
ତୋଷ ଚିତ୍ତେ ସ୍ୱାମୀ ଆଗ୍ୟାଂ ମୋତେ
ହୋଉ ।
ଶ୍ରୀରାମ ବଚନେ ବୋଲଇ ଜନେକ
ତୁ ଯେହା କେମନ୍ତେ ବୁଝିଲୁ କଉଶିକ ।
ଅକଳଣା ଧନୁ ବାହାରକୁ ଲୋଡୁ ଆଣି
ଯେଥିର ସନ୍ଦେଶ ପାରୁଟିକି ଜାଣି ।
ବିଶ୍ୱାମିତ୍ର ବୋଇଲେ କଲା ଯେବେ ଶଧ
ପାରିଲେ ଆଣଇଂ କିନା ନ କର ବିରୋଧ ।
ଅସକ୍ଷ କଥା ଯେହୁ ବୁଝି କି ନା ଦେଖି
ଆଣିପାରିଲେ ଯେହାକୁ ବଳବନ୍ତ ପଣେ
ଲେଖି ।
ଜନେକ ବୋଇଲା ବିଶ୍ୱାମଇତ୍ର ମୁଖ ଚାହିଂ
ମହାଦେବ ଧନୁ ଛୁଇଂବାକୁ କେହି ନାହିଂ ।
ଅନେକ ଦେଶର ରାଜା ମିଳିଣ ଅଛନ୍ତି
ଧରି ନ ପାରି ଲଜ୍ୟା ପାଇଲେ ବେନି
ଘାନ୍ତି ।
ଯେ ବାଳପୋଯେ ଧନୁ ଯେ କେମନ୍ତେ
ଆମାଣିବେ

ଚିରକୁ ନ ଆସଇ କେମନ୍ତେ ଆଣିବେ ।
ଜନେକର ମୁଖୁଂ ଯେସନେକ ବାଣୀ ଶୁଣି
ରାଜାମାନେ ସମସ୍ତେ ବୋଇଲେ ଏକ
ବାଣୀ ।
ଭୋ ରଷି କିମ୍ପା ଯେ ନ ବୋଲୁ ଧନୁ ଆଣ
ବୁଝିବା ନା କେତେକ ଯେହାର ବଳ
ପ୍ରାଣ ।
ଜଳନ୍ତା ଅଗ୍ନିରେ ଯେବେ ପଶିତ ମନ
କରଇ
ସାମାନ୍ୟ ଭରସା କି ସମୋଦ୍ର ପଂହରଇ ।
ଆମ୍ଭେମାନେ ଭାଙ୍ଗିଂ ଅଇଲାରତ ଦେଖିଲା
କେବଣ ଦର୍ପରେ ଯେ ଭରସା ଯେତେ
କଲା ।୪୦
ବୋଲ ହୋ ଜନେସ୍ୱ ଯେ ଧନୁ ଘେନି
ଆସୁ
ବାହାରକୁ ଆଣି କୋଦଣ୍ଡ ଆକ୍ରୋଷୁ ।
ସବୁଙ୍କରି ଯହୁଂ ହୋଇଲା ସନମତ
ହସିଣ ବୋଇଲେ ଜନେକ ତପୋବନ୍ତ ।
ତୁ ରାମ ବାଳୁତ ଅଳପ ବୟସ
ଧନୁ ଧରିବାକୁ ବଳ ତୋର କିସ ।
ବଳବନ୍ତମାନେ ଗଲେ ଯେଥୁ ଫାଟି
ତୁ କିସ କରିବୁ କଯେଂଲା ପୁଅ ଗୋଟି ।
ଧନୁର ଯେକ ଗୁଣ ଅଛି ଯେବେ ଜାଣ
ଛୁଇଂବା ମାତ୍ରକେ ଅଗ୍ୟାନ ହୋଯେ
ପ୍ରାଣ ।୫୦
କାଳେ ବୋଲିବୁ ମୋତେ ନ କହିଲା ବୋଲି
ମୋହୋର ଦୋଷ ନାହିଂ ତୋତେ ଯେ
କହିଲି ।
ଶ୍ରୀରାମ ହସିଣ କହନ୍ତି କର ଯୋଡ଼ି
ପାରିଲେ ସିନା ମୁଂ ଆଣିମି ଉଛୁଡ଼ି ।
ନୋହିଲେଣ ସିନା ନେମ୍ଭ ବାହୁଡ଼ାଇ
ଆଗ୍ୟାଂଦେଲେ ମୁଇଂ ଆଣିମଇଂ ଯାଇଂ ।
ରାମର ନିଷ୍ଠୁର ଯେ ବଚନ ଶୁଣି
ଜନେକ ବୋଇଲେ ଯେ ମନେ ମନେ
ଗୁଣି ।

ପାରିଲେ ଧନୁ ଆଣ କିସ ଆଗ୍ୟାଂ ମାଗୁ
ସ୍ୱଭାବେ ବାଳୁତ ଯେ ଗେଧିଆ ହୋଇ
ଲାଗୁ ।୬୦
ଜନେକ ବଚନ ଶୁଣି ରଘୁସାଇଂ
ମଞ୍ଜୁଷ ଦ୍ୱାରେ ରାମ ବିକ୍ରମି ଯାଇ ହୋଇ ।
ସୋର୍ଗରେ ତବତ ହୋଇଲେ ଦେବତାଯେ
ତାହିଂ
ମଞ୍ଚର ନରମାନେ ଭଷତେ କୁହାକୋହି ।
ଯେମନ୍ତେ ପାର ବାବୁ ଆକର୍ଷଣ ଧନୁ ଧର
ଯିସ ତିସ ପରକାରେ ବାରେକ ଆମଞ୍ଚନ
କର ।
ଜନେକର ବଚନ ତୋରେ ସେ ସିଧ ହୋଉ
ସୀତା ସୁଲକ୍ଷଣୀ ବିଭା ଯୋଗ ପାଉ ।
ଯେକ ଆରକେଣ ହୁଅନ୍ତେଣ ଗୋଳ
ଅଙ୍ଗୁଷ୍ଟି ଦେଖାଇଂ ଚିହ୍ନାନ୍ତି ସକଳ ।୭୦
ମଞ୍ଜୁଷ ଭିତରେ ଶ୍ରୀରାମଚନ୍ଦ୍ର ପଶି
ବାମ ଭୁଜେ ଧନୁ ଅଇଲେ ଆକ୍ରେଷି ।
ବାହାର କରି ଧନୁ ଘେନି ଅଇଲେ ରଘୁନାଥ
ଦେଖନ୍ତି ସର୍ବଜନ କୋଦଣ୍ଡ ଅଛି ହସ୍ତ ।
ଆନନ୍ଦେ ଉଷତ ହୁଅନ୍ତି ନରନାରୀ
ଧଇଲାରେ ଧନୁ ସମସ୍ତେ ଗୋଳକରି ।
ଦେଖି ବିଶ୍ୱାମଇତ୍ରର ପୁଲକଇ ଶରୀର
ସାଧୁ ସାଧୁ ଶବଦ ଶୁଭଇ ତିନିପୁର ।
ଧନୁ ଘେନି ରାମ ଅଛନ୍ତି ଉଭାହୋଇ
ଲକ୍ଷ୍ମଣ ବୋଲନ୍ତି ଦଶଦିଗଙ୍କଇ ଚାହିଂ ।୮୦
ସାବଧାନ ହୋଇ ତୁମ୍ଭେ ଶୁଣ ରଘୁବୀର
ମିଳିଅଛନ୍ତି ଯେ ସକଳ ନୃପବର ।
ହେଠ ମାଥ ହୋଇଣ ଯେ ନଧର
ଧନୁ ହାଥ
ନମସ୍କାର କଲା ପ୍ରାୟେ ମଣିମେ ଜଗତ ।
ଯେସନେକ ବୋଲି ଯେ ବୀର ପୃଥିକି
ପୁଣ ଚାହିଂ
ଭୋ ପୃଥିବୀ ରହସି ଥିର ହୋଇ ।୯୦
ତୋହୋର ଇଚ୍ଛାୟେ ତୁ ଥିର ହୋଇ ଆସି
ଅସମ୍ଭାଳ ହୋଇଲେ ହାଦେ ଯିବୁଟି ଭାସି ।

ବାସୁକି ଧରୁ ତୋତେ ସାବଧାନ ହୋଇ
କୂର୍ମରାଜ ତୋତେ ଥାଉ ଅବଧାନ ହୋଇ ।
ଦିଗପାଳମାନେ ଶୁଣ ସାବଧାନେ
ଅଳପକରି ଗର୍ବ ନ ଧରିବ ମନେ ।
ମନ୍ଦବୀର୍ଯ୍ୟ ହୋଇଲେ ଧଉର୍ଯ୍ୟପଣ ଯିବ
ଈଶ୍ୱର ଧନୁ ଆଜ ଶ୍ରୀରାମ ଆମଞ୍ଚିବ ।
ଯେଥିଅନନ୍ତରେ ଶୁଣିମା ରସବାଣୀ
ନିଶବଦ ହୋଇ ଦେଖନ୍ତି ସର୍ବପ୍ରାଣୀ ।
କୋଦଣ୍ଡ ଧରିଣ ଅଛନ୍ତି ଦାଶରଥି
ପୁଣ ଦେବଙ୍କଇଂ ବିଚାରନ୍ତି ମତି ।
ପୃଥିର ଭିତରୁ ଶୁଭିଲା ବଚନ
ମୋତେ ରକ୍ଷାକର ରଘୁକୁଳ ନାନ ।୧୦୦
ଧନୁହୁଳ ଯେବେ ଦେବୁ ମୋହୋ ତହିଂ
ନିଷ୍ଚୟେ ରାସାନ୍ତଳେ ପଡ଼ିବି ଗୋସାଇଂ ।
ମେରୁହୁଂ ଶତଗୁଣେ କୋଦଣ୍ଡ ଅଟଇ ଗୁରୁ
ମୁହିଂ ତାହା ବହିବାକୁ ନୁହଇ ବଳି ଆରୁ ।
ଶୁଣିଣ ଶ୍ରୀରାମ ପୃଥିକି ଦୟାକଲେ
ନିଜ ବାମପଦ ଅଗୁଂଷ୍ଟି ବଢ଼ାଇଲେ ।
ବୃଦ୍ଧା ଅଙ୍ଗୁଷ୍ଟିର ନଖର ଉପରେ
ତହିଂ ଧନୁହୁଳ ନଦିଲେ ରଘୁବୀରେ ।
ଶରାସନ ମଉଳିକି ବାମ କରେ ଧରି
ଗୁଣ ଦେବାକଇ ଆଣନ୍ତି ଓଟାରି ।୧୦
ମଡ଼ ମଡ଼ ଶବଦ ଶୁଭଇ କୋଦଣ୍ଡ
ଥର ଥର କମ୍ପଇ ମେଦିନୀ ନବଖଣ୍ଡ ।
ଗୁଣ ଫାସି ରାମ ଦଖିଣ କରେ ଧରି
ଧନୁହୁଳ ଉପରେ ନେଇକରି ଭରି ।
ଯହୁଂ ସେ ଶାୟେକ ଓଟାରି ଦେଲେ ଗୁଣ
ଶିର ଲମ୍ୱାଇଲେ ସକଳ ରାଜାଗଣ ।
ବାର ବରଷର ପୁଅ ଯେହା କଲା
ସବୁରି ମୁଖରେ ଯେ କାଳି ଲଗାଇଲା ।
ଗୁଣ ଦେଇ ଯହୁଂ ଧଇଲେ ସଜ କରି
ସଭାଜନ ମନ ଆନନ୍ଦ ସବୁଙ୍କରି ।୨୦
ଧନୁ ଧରି ରାମ ଗୁଣ ଟଙ୍କାରନ୍ତି
ଦେଖି ଜନେକର ଫିଟିଲା ମନ ଭ୍ରାନ୍ତି ।
ମନେ ବିଚାରଇ ଯେ ସେ ବାସୁଦେବ

ନୋହିଲେ କି ଯେ ଧନୁ ଆନ ଆମଞ୍ଚିବ ।
ରୁଦ୍ର ସେ ବହିବାକୁ ଅଟନ୍ତି ସାମରଥ
ସୟେଂ ନାରାୟଣ ହୋଇଛନ୍ତି ଜାତ ।
ଅବହେଳେ ଧନୁ କଲାକ ଆୟତ
ନିଷ୍ଚୟେ ସୀତୟା ଯେ ଯେହାକୁ ପରାପତ ।
ଯେଥିଣ ଶ୍ରୀରାମ ଶାୟେକ କରେ ଧରି
ଦଖିଣ କରେ ଧନୁ ଆଣିଲେ ଉଛୁଡ଼ି ।୩୦
ଧନୁ ବୋଇଲା ତୁ ଶୁଣ ରଘୁନାଥ
ହେଳେ ନାଶ ନକର ମୋହୋର
ପୁରୁଷାର୍ଥ ।
ଅକଳବଳ ଯେ ଅଟଇ ମୋର ପାଇଂ
କ୍ଷତ୍ରୀଗଣେକଇ ମୁଂ ଆକ୍ରୁଷଣ ନ ଯାଇଂ ।
ନାନା ଦେଶର ନୃପତି ଗଲେ ଭାଜି
ଈଶ୍ୱର ସେ ବଳେ ପାରଇ ମୋତେ ସାଜି ।
ତୁ ଯେବେ ଆମଞ୍ଚିଲୁ ଧନ୍ୟ ତୋହୋର ବଳ
ଯଶ ପଉରୋଷ ରହିଲା ରବି ତଳ ।
ମୁହିଂ ପ୍ରସନ୍ନ ହୋଇଲଇଂ ଯହୁଂ ତୋତେ
ତେଣୁକରି ରାମ ଆକ୍ରେଷିଲୁ ମୋତେ ।୪୦
ଯେବେ ଥିରିକରି ଆକ୍ରୋଷ ରଘୁବୀର
କରୁଣାସାଗର ବାନା ଅଟଇ ତୋହୋର ।
ଧନୁର କାକୁସ୍ତ ବଚନ ରାମ ଶୁଣି
ହୃଦ କମଳ ମଧ୍ୟେ ହସନ୍ତି ରଘୁମଣି ।
ବୋଲନ୍ତି କିମ୍ପା ତରସ୍ତ ହୋଉ ଚାପ
କଥା ନ ବୁଝିଣ ପାଉ ଗରୁ ତାପ ।
ତୋତେ ଆକ୍ରୁଷଣ ଯେବେ ନ କରିବି ମୁହିଂ
ଲଜ୍ୟା ପାଇବି ନା ରାଜାଙ୍କର ତହିଂ ।
ତୁ ଯେବେ ଧାର୍ମିକ ହୋ ଅଟୁ ଜ୍ଞାନବନ୍ତ
କାର୍ଯ୍ୟବେଳେ କିମ୍ପା ନ ଜାଣୁ କଥାନ୍ତ ।୫୦
ତୋତେ ଘେନି ହର ଦକ୍ଷ ଯଗ୍ୟଂ ନାଶି
ଦେବଙ୍କୁ କୋପିଲା ସେ କପିଳାସବାସୀ ।
ସେ କାଳର ପ୍ରାୟେ ମଣିଲୁକି ଆଜ
ଦେହ ଦେଇ ଆଜ କର ପରକାର୍ଯ୍ୟ ।
ଯେସନେକ ଯୋଗ ଅଛଇ ତୋତେ ପୂର୍ବେ
ପୂର୍ବେ ଯାହା ସେ ଲେଖନ
କରିଛି ଦଇବେ ।

ଯେତେକ ସମୟେ ତୋହୋର ଆଇଶ ଥିଲା
କାହାର ବୋଲେ ସେ ହୋୟେ
ଆନ କଲା ।
ଯେସନେକ ବୋଲି ଅଛି ପୂର୍ବର ଭିଆଣ
ସୀତ୍ୟା ବିଭା ଦିନ ସରିବ ତୋର ପ୍ରାଣ ।୬୦
ସେ କଥା ନିକଟ ହୋଇଲାକ ଆସି
ଯେବେ ହୋ ଶରାସନ ନାଶ ତୁ ହୁଅସି ।
ଯେସନେକ ବଚନେ ତବଦ ଶରାସନ
ଗୁଣଧରି ରାମ ଉଛୁଡ଼ନ୍ତି ପୁଣ ।
ଦକ୍ଷିଣ କର୍ଣ୍ଣଯାୟେ ଓଟାରିଣ ଆଣୁ
ଲାଠି ପରାୟେକ ହୋଇଲା ଶିବଧନୁ ।
ଶ୍ରୀରାମ ବିକ୍ରମ ରୂପ ଦେଖିଣ ଯେ ସୀତ୍ୟା
ମନ ପ୍ରକୃତି ଯେକକରି ଜନେକ
ଦୋହିତା ।
ନୟନର ସଙ୍ଗେ ପେଷିଲା ଯେହାନ୍ତ
ବିଚ୍ଚରଇ ଏ ସେ ଅଟଇ ମୋର କାନ୍ତ ।୭୦
ଧନୁ ଗୁଣ ରାମ ଯହୁଂ ଆମଞ୍ଚିଲେ
ସୀତୟାର ମନ ତହିଁର ସଙ୍ଗେ ନେଲେ ।
ସ୍ୱର୍ଗେ ସାଧୁ ସାଧୁ କଲେ ସୁରଗଣ
ଧନ୍ୟ ଶ୍ରୀରାମ ତୋ କ୍ଷତ୍ରୀବୃତ୍ତ ପୁଣ ।
ଆସ୍ତାନରେ ଲୋକେ ଆଶ୍ରିଯ ହେଲେ ତାହିଂ
କେ ବୋଲଇ କେବଣ ସ୍ତିରୀ ଅଟଇ ଯେହାର
ଆଇ।
ଅସଂଖ୍ୟ କଥା ଯାହା ଶୁଣିଲା ନ ଥିଲା
ଯେବେ ଦେଖିଲୁ ପାତକ ଆମ୍ଭ ଗଲା ।
ଯେଥୁଅନନ୍ତରେ ଶ୍ରୀରାମ ଧନୁ ଧରି
ପୁଣ ପୁଣ ଗୁଣ ଆଣନ୍ତି ଉଛୁଡ଼ି ।୮୦
ଆତଯାତ କରି ଉଛୁଡ଼ିଲେ ଯହୁଂ
ନିସତ ଚିତ୍ତ ଧନୁ ହୋଇଲାକ ତହୁଂ ।
ଅତିହିଂ ଆମଞ୍ଚନ୍ତେ ନିର୍ବଳ ଶରାସନ
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ ।
ମଧରୁ ଭାଜିଲା ବେନିଖଣ୍ଡ ହୋଇ
ପୃଥି କମ୍ପିଲା ଯେ ଉଲୁକାପାତ ହୋଇ ।
ଆଦିତ୍ୟ ଦେବତା ଭୟେଣ ଅଛି ରହି

ଥମ୍ୟୀଭୂତ ହେଲା ସପତ ଦୀପା ମହୀ ।
ସପତ ସମୋଦ୍ର ଲହରୀ ହୋୟେ ଥିର
ଡରେ ଧୀର ଧୀର ବହଇ ସମୀର ।୯୦
ପ୍ରଶୁରାମ ଶୁଣି ଭାଜିଲା ତାର ଗର୍ବ
ବୋଇଲା କିମ୍ଭୂତ ହୋଇଲା ଅପୂର୍ବ ।
ଧ୍ୟାନେଣ ଜାଣିଲେ ଧନୁ ଭଗ୍ନ କଲା
ଜାଣି ପ୍ରଶୁରାମ ମନେ ଶଙ୍କା କଲା ।
କପିଳାସ କନ୍ଦରେ ଶଙ୍କର ଗଉରୀ
ବିଷାଦେଣ ବସି ଅଛନ୍ତି କଳି କରି ।
ସଦାଶିବ ଉମାକୁ ସମାଦ ଦେଇ ମନ
ପୁଣି ଲାଜ ଲାଜ କରନ୍ତି ତ୍ରିଲୋଚନ ।
ପାର୍ବତୀଙ୍କି ରୁଦ୍ର ଅଛନ୍ତି ପଛ କରି
କଥା ବଇଗୁନ୍ୟ ଅଛନ୍ତି ମନେ ଧରି ।୧୦୦
ହସ ହସ ହୋଇ ଭାଳନ୍ତି ଶୂଳପାଣି
କେମନ୍ତେ କଥା ମୋତେ କହଇ
ହେମବନ୍ତର ଦୁଲଣୀ ।
ଯେମନ୍ତ ସମୟେ ଭାଜିଲା କୋଦଣ୍ଡ
ଥରହର ହୋଇ କମ୍ପିଲା ମେଦିନୀ
ନବଖଣ୍ଡ ।
କପିଳାସ ପୁରକୁ ଶୁଭିଲା ଶବଦ
ଶୁଣି ବନଜନ୍ତୁ ହୋଇଲେ ତବଦ ।
ଲକ୍ଷେକ ବଜ୍ର କି ପଡ଼ିଲା ଯେକ ହୋଇ
ଭୟେଣ ଉମାଦେଇ ଗଲେକ ପଳାଇ ।
ତରସ୍ତ ହୋଇଣ ରୁଦ୍ରଙ୍କୁ କୋଳକଲା
କୁଚକୁମ୍ଭ ଦୁଇ ଲଗାଇ ଭିଡ଼ିଲା ।୧୦
ଡରେଣ ଥର ହର କମ୍ପିଲା ପାର୍ବତୀ
ଅତି ଆନନ୍ଦେଣ ହସନ୍ତି ପଶୁପତି ।
ମନେ ବିଚ୍ଚରନ୍ତି ଧନ୍ୟ ରଘୁନାଥ
ତୋହୋରେ ଦେଲା ମୋତେ ଯେତେକ
ପୁରୁଷାର୍ଥ।
ଭାଙ୍ଗୁ ସେ ଧନୁ ନାହିଂ ମୋର ଖେଦ
ପାର୍ବତୀ ପ୍ରୀତି ମୋର ସକଳ ସମ୍ପଦ ।
ଅନେକ ଦ୍ରବ୍ୟ ମୋର ହେଉ କି ନା କ୍ଷୟେ
ଯେକଥା ସେ ମୋତେ ବହୁତ ଭଲ
ହୋୟେ ।

ପ୍ରସନ୍ନେ ଶଙ୍କର ରାମଙ୍କୁ ବର ଦେଲା
ସୀତା ପ୍ରାପତ ତୋତେ ହେଉସି
ବୋଇଲା ।୨୦
ଯେଥୁଅନନ୍ତରେ ଶୁଣ ରସବାଣୀ
ଅକଳବଳ ଧନୁ ଭାଙ୍ଗିଲେ ରଘୁମଣି ।
ଆସ୍ତାନର ମଧେ ଅଛନ୍ତି ବିଜେ କରି
ମନେ ବିଚ୍ଚରଇ ଜନେକ ତପଚ୍ଚରୀ ।
କି ଯେ ରଦ୍ର ଗୋବିନ୍ଦ ଦୁଇ ରୂପ ଯେକ
ଆନର ବେଳେ କି ଭାଙ୍ଗଇ କାର୍ମୁକ ।
ତୋଳିତ ଭାର୍ଜନ ନୋହୋଇ ଆନ ଲୋକ
ଈଶ୍ୱର ସେ ତୋଳି ପାରଇ କାର୍ମୁକ ।
ଯେସନଙ୍କଂ ସମୟେ ବିଶ୍ୱାମିତ୍ର ଉଠି
ଜନେକ ସହିତେଣ ହୋଇଲେ ଯେକ
ଗୋଷ୍ଠୀ ।୩୦
ମୁନିମାନେ ରଣ୍ଡ ହୋଇଣ ବିଚ୍ଚରି
ରାମର ବଳେ ସେ ଯେ କର୍ମ ହୋୟେ
କରି ।
ଅନେକ କାଳୁହୁଂ ଆମ୍ଭେ ଆଶ କରିଥିଲୁ
ଧନୁ ସୟେମ୍ବର ଯେବେ ସେ ଦେଖିଲୁ ।
ଦଶରଥ ରାଜାର କି ସାମାନ୍ୟ ପୁଣ୍ୟ ହୋଇ
ଯେସନେକଂ ପୁଅ ଅରଜି ଅଛି ସେହି ।
ଦେଖଣାହାରୀମାନେ ଦେଖୁଣ ଅଛନ୍ତି
ଧନି ଧନି ବୋଲି ରାମଙ୍କୁ ପ୍ରଶଂସା କରନ୍ତି ।
ବାଳୁତ ପୁଅ ଗୋଟି କୋମଳ ତୋର ବାହୁ
ବଜ୍ର ସମ ଧନୁ ଭାଙ୍ଗିଲୁ ବାବୁ କାହୁଂ ।୪୦
ମଧୁର ମୁଖ ଗୋଟି ଯାଉ ନିଉଛାଳି
ତୁ ସେ ଶ୍ରୀରାମ ହୋ ସବୁରି ଦୁଲାଳି ।
ଶ୍ୟାମଳ ସୁନ୍ଦର ହୋ ପବିତ୍ର ତୋହୋର ଅଙ୍ଗ
ପାଦକୁ ପଟାନ୍ତର ନୋହେ କୋଟିୟେ
ଅନଙ୍ଗ ।
କାହିଂ ବିଧାତା ଥିଲା ତୋତେ ଥୋଇ
ସୀତାଇ ଅଛି ଯେବେ ଅବିଭାଇ ହୋଇ ।
ଯେ ଦୁଇକଥା ଯେ ଦଇବ ଆୟେତ
ଯେତେ କାଳେ ଆଣି କଲାକ ସଯୁଂତ ।

କଉଶିକ ବୋଲଇ ଜନେକ ମୁଖ ଚାହିଁ
ଯେବଣ ସତ୍ୟ କରିଅଛ ତପସାଇଂ ।୫୦
ସେ ବ୍ରତ ପୂରିଲା ସୀତ୍ୟାକୁ ବିଭାକର
ତାହାର ସାଦ୍ରିଶେ ମିଳିଲା ଯେବେ ବର ।
ଶୁଣିଣ ଜନେକ ହରଷ ମନ ହୋଇ
ସତ୍ୟାନନ୍ଦକଇ ରାଇଣ ଆଗ୍ୟା ଦେଇ ।
ନଗ୍ର ଉଛବ ତୁ କରାଅ ବୋଇଲା
ସୀତା ସନିଧକୁ ଆପଣେ ଚଳିଗଲା ।
ପିତାକୁ ଦେଖି ବାଳୀ ଲାଜ ଲାଜ କରି
ସଖିଙ୍କ ମଧେ ଉହାଡ଼ ହୋଇଲେ ସୁନ୍ଦେରୀ ।
ଜନେକ ବୋଲଇ ଗୋ ଆସ ଆସ ମାୟେ
ତୋହୋର ସାଦ୍ରିଶେ ଗୋ ବର ମୁହିଂ
ପାୟେ ।୬୦
ଦଶରଥ ରାଜା ସୂର୍ଯ୍ୟବଂଶେ ଜାତ
ଶ୍ରୀରାମ ନାମେଣ ଯେ ତାହାର ଅଟେ ସୁତ ।
ବର୍ଣ୍ଣେଣ ସୁନ୍ଦର ଅଳପ ବୟସ
ସର୍ବ ସୁଲକ୍ଷଣ ଦେବତା ସାଦ୍ରିଶ ।
କ୍ଷତ୍ରୀପଣେ ତାକୁ ନାହିଂ ସମସରି
ଅଗମ୍ୟ ବିପୁଣ୍ୟେଣ ତାଡ଼କୀ ବଧକରି ।
ବିଶ୍ୱାମିତ୍ର ଯାଗ୍ୟ ରଖିଲା ବାହୁବଳେ
ଅନେକ ଦତ୍ୟ ସେ ମାଇଲା ବାଳକାଳେ ।
ଶାପେଣ୍ୟ ଅହିଲା ପାଷାଣ ହୋଇଥିଲା
ଶ୍ରୀରାମ ପାଦ ଲାଗି ଶରୀର ପାଇଲା ।୭୦
ସ୍ୱର୍ଗେ ଦେବତାୟେ ବହୁତ ପ୍ରଶଂସାକଲେ
ବିଶ୍ୱାମିତ୍ର ସଙ୍ଗେ ଯେଥିକୁ ଅଇଲେ ।
ଈଶ୍ୱରଙ୍କ ଧନୁ ଅଟଇ ଅକଳ ବଳ
ଭୂମିରୁ ଛଡ଼ାଇ ନ ପାରନ୍ତି ସକଳ
ଦିଗପାଳ ।
ପ୍ରଶୁରାମ ଯାହା ଦେଖିଲେ ଅପସରଇ
କ୍ଷତ୍ରୀ ହୋଇଂ ଆନ ଧରିତ ନ ପାରଇ ।
ସେ ଧନୁ ରାମ ଯେ ଧଇଲେ ଭୁଜବଳେ
ତୁହିତ ଦେଖିଲୁ ନୟନର ତୋଳେ ।
ଯେବେ ତୁ ଆସ ଶରଦ ଚାନ୍ଦମୁହିଂ
ଶ୍ରୀରାମଙ୍କୁ ବର ଗୋ ପୁଷ୍ୟମାଳା ଦେଇ ।

ଯେ ମୋହୋର ସତ୍ୟ ବଚନ ପୂରିଲାକ
ଶ୍ରୀରାମ ଆମଞ୍ଚନ କଲାକ କାର୍ମୁକ ।
ଆସ ଆସ ମାୟେ ଗୋ ବିଳମ୍ବ ନକର
ମାହିନ୍ଦ୍ର ଯୋଗ ବେଳ ଯେ ଶ୍ରୀରାମଙ୍କୁ
ବର ।
ପିଅର ମୁଖରୁ ଯେସନ ବାକ୍ୟ ଶୁଣି
ଉଠିଣ ଉଭା ହୋଇଲେ ଯୁବତୀ
ଶିରୋମଣି ।
ସନ୍ତୋଷ ଚିତ୍ତେଣ ଆସନ୍ତି ଧୀର ଧୀର
ସଙ୍ଗେ ପରିବାରୀ ଅଛନ୍ତି ଅପାର ।
ନବରତ୍ନମାଳା ଦେବୀ କରେ ଘେନି
ହେଳୁ ହେଳୁଂ ଚାଲଇ ଜାତି
କମଳିଣୀ ।୯୦
ଶ୍ରୀରାମ ସନ୍ନିଧେ ମିଳିଲାକ ଯାଇଂ
ଅତି ଆନନ୍ଦେଣ ହରଷ ମନ ହୋଇ ।
ପିତାର ଆଗ୍ୟାଂ ଦେବୀ ସନମତ କରି
ନବରତ୍ନମାଳା ଦେବୀ କରେ ଅଛି ଧରି ।
ଶ୍ରୀରାମର କଣ୍ଠେ ଲମ୍ବାଇଲେ ନେଇ
ଚାରିଚକ୍ଷୁ ଭେଟ ହୋଇଲାକ ତହିଂ ।
ମୁଖ ମୁଖ ଯହୁଂ ନିକଟ ହୋଇଲା
ଭ୍ରମରକି ଶ୍ୱେତ ପଦ୍ମକୁ ଚୁମ୍ବିଲା ।
ଭେଟ ପଡ଼ନ୍ତେଣ ହସନ୍ତି ବେନି ଜନ
ଆନନ୍ଦେଣ ସନ୍ତୋଷ ହୋଇଲା
ବେନି ମନ ।୧୦୦
ସ୍ୱର୍ଗେ ସାଧୁ ସାଧୁ ଶୁଭିଲାକ ଧ୍ୱନି
ଚାରିବେଦ ଆଧାନ କରନ୍ତି ସୁରମୁନି ।
ଅପକ୍ଷରୀମାନେ ଦିଅନ୍ତି ହୁଳହୁଳି
କି ଜାଣି ସେ ଧ୍ୱନି ସାହେର ଉଛୁଳି ।
ଦେଖଣାହାରୀ ଲୋକେ ଜୟେ ଜୟେ କରି
ଯେକକୁ ଆରେକ ଉବୁରା ଉବୁରି ।
କେ ବୋଲଇ ସୀତ୍ୟା କେବଣ ତପକଲା
ରୂପ ଅନରୂପେ ଯେ ବର ପାଇଲା ।
ଦେଖନ୍ତି ଶ୍ରୀରାମ ବିଜୟେ ସଭା ମଝି
ଦକ୍ଷିଣ ଦିଗେ ଉଭା ଜନେକଂ ଆତ୍ମଜି ।୧୦

ବାମେଣ ଲକ୍ଷ୍ମଣ ଅଛଇ ବୀରମଣି
ଗହ ଗହ ଶବଦ ଶୁଭଇ ଗୋଳବାଣୀ ।
ଟମକ ନିଶାଣ ମହୁରୀ ଶଙ୍ଖଧ୍ୱନି
ହୁଳହୁଳି ଦେଉଛନ୍ତି ଅହିଅ କାମିନୀ ।
ଅନ୍ତରିକ୍ଷେ ଥାଇଂଣ ଦେଖନ୍ତି ସୁରଗଣ
ଯେସନକ ସମୟେ ଆସି ମିଳିଲା ରାବଣ ।
ପୁଷ୍ପକ ବିମାନ ଆରୋହଣ କରି
ବ୍ରହ୍ମାର ଆଗେ ଯାଇ ବିଜୟେ ଦଶଶିରି ।
ଦେଖି ସୁରଗଣେ ପାଇଲେ ଭୟେ ମନ
ଯେକକୁ ଆରେକ ପୁଛନ୍ତି ବଚନ ।୨୦
କେ ବୋଲଇ କିମ୍ପାଇଂ ଅଇଲା ଲଙ୍କପତି
କେ ବୋଲଇ ଯେହାର ଯେ ସାରିବ
ବିଭୂତି ।
ତାହାକଇ ଦେଖି ଅଇଲା ଭଲ କାଳେ
ତୁନି ହୋଇଂଥାଅ ସକଳ ଦିଗପାଳେ ।
ଯେଥୁ ଅନନ୍ତରେ ବ୍ରହ୍ମାକଇଂ ଚାହିଂ
କର ଦୁଇ ଯୋଡ଼ି ବୋଲଇ ଲଙ୍କାସାଇଂ ।
ଭୋ ପିତାମହ ତୁମ୍ଭେ କେବଣ କାରଣେ
ସ୍ୱର୍ଗ ତେଜ୍ୟାକରି ଅଇଲ ସୁରଗଣେ ।
ବିଧାତା ବୋଇଲା ପୃଥିକି ଯେବେ ଚାହାଂ
ମିଥିଳା ନାମେ କଟକ ବୋଲିଟି
ଯାହା ।୩୦
ଯେଥିର ନୃପତି ଜନେକ ମହାମୁନି
ସୀତୟା ନାମେଣ ଯେ ତାହାର ନନ୍ଦିନୀ ।
ତାହାର ବିଭାକାଳ ସୟେମ୍ବର ଆଜ
ଧନୁ ପରୀକ୍ଷ କଥା ଶୁଣ ଲଙ୍କରାଜ ।
ଦକ୍ଷ ପ୍ରଜାପତି ଇଷ୍ଟ ଯାଗ୍ୟ କଲା
ଅହନ୍ତା କରିଣ ଈଶ୍ୱର ନ ବରିଲା ।
ଆମ୍ଭର ବୋଲ ଯେ ବୁଝିଲାକ ଖଗଂ
ଅନେକ ତିଆରିଣ କହିଲେ ଶ୍ରୀରଙ୍ଗ ।
କାହାରିହିଂ ବୋଲ ନ କଲାକ ଦକ୍ଷ
ଶୁଣି କୋପ ତହୁଂ କଲା ବିରୂପାକ୍ଷ ।୪୦
କ୍ରୋଧକରି ଯେକ ଧନୁୟେ ଜାତକଲା
ବିଷ୍ଣୁ ତେଜ ଘେନି ଶାୟେକ ଉପୁଜିଲା ।

ଅକଳବଳ ନାମ ଅଟଇ ଯେହାରି
ବାରକୋଟି ବଳ ଶରାସନ ଧରି ।
ଯେକାଦଶ ରୁଦ୍ରଙ୍କର ଯେଗାର କୋଟି ପ୍ରାଣ
ତାହା ସେ ଆଏତ କରଇ ପାର୍ବତୀ ରମଣ ।
ବିଷ୍ଣୁର କୋଟିଯେ ବଳ ଅଛି ମିଶି
ତାହା ସଦାଶିବ ନ ପାରଇ ଆକ୍ରେଷି ।
ନାରାୟଣ ସୁମରିଲେ ପାରନ୍ତେ ଧନୁ ଧରି
ଆମଞ୍ଚିବା କାଳେ ବିଷ୍ଣୁଙ୍କୁ ସୁମରି ।୫୦
ନାରାଜ ପୂରାଇଂ ଯେ କୋପେ ସଦାଶିବ
ସୁରଗଣକଇ ସମସ୍ତ ପ୍ରହାରିବ ।
ସୁରଗଣକଇ ବାଣେ କଲାକ ପ୍ରହାର
ମୋହୋର କହିଲେ କୋପକଲା ଥିର ।
ଚାପୋଡ଼େକ ମାରି ଦକ୍ଷ ମୁଣ୍ଡ କାଟି
ତହିଂ ଲଗାଇଲା ଛେଳି ମୁଣ୍ଡ ଗୋଟି ।
ମୋହୋର ତିଆରନ୍ତେ ପ୍ରବୋଧ ହୋଇଲା
ହେମବନ୍ତ ଶିଖରେ ଯାଇଂଣ ମିଳିଲା ।
ପାର୍ବତୀ ବିହୁନେ ତପସ୍ୟା କରିତ ମନ
ବିଚ୍ଚରଇ କାହିଂ ଥୋଇବି ଶରାସନ ।୬୦
ଜନେକ ଉପର ବଂଶେ ଯେକଇ ନୃପତି
ତାହାର ଗୋଚରେ ନେଇ ଥୋଇଲା
ପଶୁପତି ।
ଶରାସନ ଦେଇ ବୋଲନ୍ତି ତ୍ରିପୁରାରି
ନିତି ପୂଜୁଥିବୁ ସତ୍ୟ ମନେ ଧରି ।
ତୋହୋର ବଂଶେ ଜାତ ହୋଇବ କମଳଣୀ
ତାହାକଇ ବିଭାଯେ ଯେ ବରିବୁ ଚକ୍ରପାଣି ।
ଯେହାକୁ ଅବଶ୍ୟ ରାମ ଆମଞ୍ଚିବ ଧରି
ତୋହୋର ଗୋତ୍ର ଦୋଷ ହରିବେ
ମଧୁହାରୀ ।
ଯେତେ କହି ହର ଧନୁ ଦେଇଗଲା
ହେମଗିରି ନିକଟେ ଅନେକ ତପ
କଲା ।୭୦
ସେ ରାଜା କୋଦଣ୍ଡ ପୂଜିଲାକ ନେଇ
ଭୋଗରାଗ ଭିଆଇ କୋଦଣ୍ଡ ଘରେ
ଥୋଇ ।

କାଳେ ସେ ନୃପତି ସ୍ୱର୍ଗକଇ ଗଲା
ପୁତ୍ର ରାଜା ହୋଇ ଶାଯେକ ପୂଜିଲା ।
ପୁରୁଷ ଅନୁକର୍ମେ ଗଲା ସେ ଯେତେ କାଳ
ଯେବେ ଆସି ଜନେକ ହୋଇଲା
ମହୀପାଳ ।
ସେହୁ ପୂଜୁଥିଲା ପୂର୍ବର ହେତୁ ଘେନି
ଦୋହିତା ଜାତ ତାର ହୋଇଲା ଅଯୋନି ।
ଯାଗଶାଳ ଭୂମି ଲଙ୍ଗଳରେ ଚଷୁ
ମେନକା ଅପକ୍ଷରୀ ମୋକ୍ଷ ହୋଇ
ଆସୁ ।୮୦
ଯେସନେକ ସମଯେ ବସନ୍ଧରୀ ଫାଟୁ
କନ୍ୟା ଯେକ ଉପୁଜିଲା ତହିଂ ଲଙ୍ଗଳ
ଉକୁଟୁ ।
ତାହାଙ୍କ ନାମ ଯେ ହୋଇଲାକ ସୀତା
ଦେଖିଣ ଅନେକ ତୋଷ ଜନେକ
ବ୍ରହ୍ମବେତ୍ତା ।
ଅନେକ ଯତନେ ପାଳିଲାକ ନେଇ
ଯେମନ୍ତେ କେତେହେଂକ କାଳ ଗଲା
ତହିଂ ।
ବିଭା ବୟସ ହୋଇଲାକ ଯହୁଂ
ଧନୁ ସଯେମ୍ବର କଲା ରାଯେ ତହୁଂ ।
ଯେ ଧନୁ ଭାଙ୍ଗିବ ତାହାକୁ ଝିଅ ଦେବି
ଅଯୋନିସମ୍ଭବ ଯେ କାହାକୁ
ସମର୍ପିବି ।୯୦
ଅଯୋନିସମ୍ଭୂତ ଯେ ଅଟଇ ଶରାସନ
ଯେ ତୋଳିପାରିବ ସେ ବିଷ୍ଣୁର ସମାନ ।
ତାହାକଇ ବିଭା କରିବଇଂ ସୀତା
ଯେସନ ବିଚ୍ଚରଇ ମୁନି ବ୍ରହ୍ମବେତ୍ତା ।
ଦେଖିଣ ଅଇଲେ ଅନେକ ନୃପତି
ଧନୁ ଧରିଣ କେହି ଭାର୍ଜନ ନୁହନ୍ତି ।
ଏତେକାଳେ ଆସି ହୋଇ ବିପରୀତ
ଦଶରଥ ନନ୍ଦନ ଅତି ହିଂ ବାଳୁତ ।
ବାରବର୍ଷ ପୁଅ ଧନୁ ଆମଞ୍ଚିଲା
ଭୁଜବଳ ନ ସହଇ କାର୍ମୁକପ
ଭଗ୍ନକଲା ।୧୦୦

ଜନେକ ସତ୍ୟବ୍ରତ ପୂରିଲାକ ଯହୁଂ
ରତ୍ନମାଳା ଦେଇ ସୀତା ବରିଲାକ ତହୁଂ ।
ତାହା ଦେଖିବାରେ ଅଇଲୁ ଦେବଗଣ
ଶୁଣି ସଙ୍କୁଚ ମନ ପାଇଲା ରାବଣ ।
ବ୍ରହ୍ମା ବଚନେ ତଳକୁ କଲା ଦୃଷ୍ଟି
ଦେଖିଲାକ ଶୋଭା ପାଉଅଛି ସୃଷ୍ଟି ।
ନୃପତିଗଣେ ପଳାଇଲେ ଲାଜ ପାଇ
ପର୍ବତୁ ଯେସନେକ ନଦୀ ଯାଏ ବହି ।
ମୁନିଜନମାନେ ରାମଙ୍କୁ ବେଢ଼ିଛନ୍ତି
କେଜାଣି ଫଳିଲା ବୃକ୍ଷେ ପଡ଼ିଛନ୍ତି । ୧୦
ନଗ୍ର ନରନାରୀ ଦେଖନ୍ତି ସମସ୍ତ
ଗହନ ବନରେ କି ବନଜନ୍ତୁ ଯୂଥଯୂଥ ।
ଶ୍ରୀରାମ ଧରିଣ ଅଛନ୍ତି ସିଙ୍ଘ ମୃତି
ସିଙ୍ଘଣୀ ଅଟଇ ଜନେକ ଦୋହିତି ।
ଲକ୍ଷଣ ଶାର୍ଦ୍ଦୋଳ ସହିତେ ବନପତି
ସୀତ୍ୟା ସଖୀଜନେ ଅଟନ୍ତି ମଉହସ୍ତୀ ।
ଦୁଇଖଣ୍ଡ ହୋଇ ଅଛଇ ଧନୁ ପଡ଼ି
କିବା ପର୍ବତ ଯାଇଛି ଗଗନକୁ ବଢ଼ି ।
ଗଙ୍ଗାନଦୀ ପ୍ରାୟେ ଦିଶଇ ତାର ଗୁଣ
ଦେଖିଣ ଶଙ୍କାକଲା ମନରେ ରାବଣ ।୨୦
ତରସ୍ତ ହୋଇ ପୁଣି ନେଉଟି ସେ ଗଲା
ଇନ୍ଦ୍ର ମୁଖ ଚାହିଂ ବିଧାତା ହସିଲା ।
ପବନର କରେ ଅଗ୍ନି କର ଦେଇ
ଦୁହେଂ ହସିଲେ ଯେ କୁବେର ମୁଖ ଚାହିଂ ।
ଯେଥୁଅନନ୍ତରେ ଦଶଗ୍ରୀବ ରାଯେ
ଲଙ୍କାପୁରରେ ଯେ ପ୍ରବେଶ ଯାଇଂ
ହୋଯେ ।
ସଭା କରିଣ ଯେ ବସିଲା ଆସ୍ଥାନ
ବିଭୀଷେଣେ ଚାହିଂ ବୋଲଇ ବଚନ ।
ଆମ୍ଭେ ଆଜ ଅପୁବ ଦେଖିଣ ଅଇଲୁ
ଅନ୍ତରିକ୍ଷେ ବିମାନେ ଚଢ଼ିଣ ଯାଇଥିଲୁ ।୩୦
ବ୍ରହ୍ମା ସହିତେଣ ଦେଖିଲୁ ସୁରଗଣ
ରହି ଅଛନ୍ତି ସେ ଅନ୍ତରିକ୍ଷ ମାର୍ଗେଣ ।
ମିଥିଳା କଟକେ ଜନେକ ମହାମୁନି

ସୀତ୍ୟା ନାମେ ତାର ଯେକଇ ନନ୍ଦିନୀ ।
ଧନୁ ସୟେମ୍ବର କରିଥିଲା ଆଜ
ଦଶରଥ ନାମେଣ ଅଯୋଧ୍ୟା ମହାରାଜ ।
ତାହାର ଜ୍ଯେଷ୍ଟ ତନୟେ ଶ୍ରୀରାମ ଯେ ନାମ
ସେ ସେ ଆମଞ୍ଚିଲା ଶିବ ଶରାସନ ।
ଭାଙ୍ଗି ପକାଇଲା ବେନିଖଣ୍ଡ କରି
ରତ୍ନମାଳା ଦେଇ ସୀତ୍ୟା ଗଲା ବରି ।୪୦
ଦେଖିଣ ଚମତ୍କାର ଲାଗିଲାକ ମୋତେ
ବାର ବରଷ ପୁଅ କଲା ଯେଡ଼େ କୃତ୍ୟେ ।
ଯେବଣ କୋଦଣ୍ଡ ଇନ୍ଦ୍ର ତୋଳି ନ ପାରଇ
ସାନ ହୋଇଂ ରାମ ତା ବାମଭୁଜେ ଧରଇ ।
ବିଭୀଷେଣ ବୋଇଲା ରାବଣ ବଚନ ଶୁଣି
ଆଜ ତୁ ଯାହା ଦେଖିଲୁ ଲଙ୍କମଣି ।
ରାମ ଅବତାର ସ୍ୱୟଂ ଅଟନ୍ତି ହରି
ଲକ୍ଷ୍ମୀ ଅଟନ୍ତି ସେ ଜନେକ କୁମାରୀ ।
ତୋହୋର କୁମାର୍ଗ ଦେଖିଣ ସୁରଗଣ
ରବିତଳେ ଜାତ କଲେକ ନାରାୟଣ ।୫୦
ତାହାଙ୍କୁ ଶାଖୀ କରି ଯୁଝିବେ ତୋର ସଙ୍ଗେ
ଯେ ବାଦ ଅରଜିଲା ଅଟଇ ତୋର ଅଙ୍ଗେ ।
ଶୁଣିଣ ରାବଣ ହସଇ ଟହ ଟହ
ମୋତେ କିମ୍ପା ତୁମ୍ଭେରେ ଯେମନ୍ତ କଥା କହ ।
ଦେବେ ମେଳି କଲେ ମୋହୋର କିସ ହୋଇ
ଶ୍ରୀରାମର ମୋହୋର ଅପ୍ରୀତି ନୁହଇ ।
ସେ ଅଯୁଧ୍ୟାର ରାଜା ମୁଂ ଲଙ୍କାର ଅଧିପତି
ତାହାର ମୋହୋର କିମ୍ପା ହୋଇବକ ଅପ୍ରୀତି ।
ଯଦ୍ୟପି ଦଣ୍ଡ ସେ ବାହିବ ମୋହୋର ଉପରକଇ
ସମୁଦ୍ର ଯେଣେ ସେ ପାଇବ ମୋତେ କାହିଁ ।୬୦
ଯଦ୍ୟପି ପର୍ବତେ ସେ ପୋତିବ ମହାଜଳ
ସେ ସେ ମନିଷ୍ୟ ମୁଂ ଅସୁର ଅଚାର୍ଗଳ ।

ମନୁଷ୍ୟ ହୋଇ ଯେବେ ଆସିବ ମୋତେ ମାରି
ଯେକଇ କନ୍ଧ ତ ନୁହଇ ମୋହରି ।
ଦଶ ଶିର ଛେଦିଲେ ପୁଣିହିଂ ମୁଣ୍ଡ ଲାଗଇ
କ୍ଷତ୍ରୀ ସମ ମୋତେ ନାହିଂ ଭୂମି ଭାଗଇ ।
ଯଦ୍ୟପି ସମ ମୋତେ ହୋଇବ ରଘୁନାଥ
ତାହାର ବାଣେ ଯେବେ ତୁଟିବ ମୋର ମାଥ ।
ବିଷ୍ଣୁ ହାଥେ ମଲେ ନିଶ୍ଚିନ୍ତେ ଯିବି ସ୍ୱର୍ଗ
ତେବେ ସେ ପ୍ରାପତ ମୋତେ ହୋଇବ ପୁନ୍ୟ ଭାଗ ।୭୦
ଯେକା ଜଣକୁ ଯେବେ କେହି ନ ସହିବ
ତାହାକୁ ରଖିତ କି ପାରଇ ଗୋବିନ୍ଦ ।
ଛପନ ଗଣ୍ଡା ଯୁଗକୁ ପାଇଲି ଆୟୁଷ
ଦଶଦିଗପାଳନ୍ତ କଲି ମୁହିଂ ବଶ୍ୟ ।
ସୁବର୍ଣ୍ଣ ମୟେପୁର ମୁଂ ଭୁଂଜିଲି ବିଭୂତି
ଅଠର ଗଣ୍ଡା କୁମର ତେର ଶତ ନାତି ।
ଭାଇ କୁବେର ମୋର ଦେବତା ସଙ୍ଗେ ଗଣି
କନେଷ୍ଟ କୁମ୍ଭକର୍ଣ୍ଣ କ୍ଷତ୍ରୀ ଶିରୋମଣି ।
ପୁତ୍ର ମେଘନାଦ ନାମ ଇନ୍ଦ୍ରଜିତ
ସ୍ୱର୍ଗେ ପଶିଣ ଜିଣିଲା ପୁରୁହୂତ ।୮୦
ବ୍ରହ୍ମାର ନାତି ମୁଂ ସ୍ୱୟେଂ ବିଂଶକର
ଆବର ବିଶେଷେ ମୋର ଅଟଇ ଦଶଶିର ।
ପୁଷ୍ପେକ ବିମାନ ଦେବଗଣେ ଅଜୟେ
ତହିଂ ବସି ମୁଂ ଦିଗବିଜେ କୟେ ।
ଆହୁଟ କୋଟି ସେ ଅଟଇ ମୋର ରାଣୀ
ଭଣ୍ଡାରେ ଅଛି ମୋର ବିବିଧ ରତ୍ନମଣି ।
ସୁବର୍ଣ୍ଣ ମୟେପୁର କଟେକ ମୋର ଲଙ୍କା
ସୁର ଅସୁରନ୍ତ ନାହିଂ ମୋର ଶଙ୍କା ।
ଯେଡ଼େକ ସମ୍ପଦ ଯେବେ ଶ୍ରୀରାମ ବିଧଂସିବ
କାହାର ବୋଲେ ଭାଇ ଆନ ସେ ହୋଇବ ।୯୦
ନକର ଶୋଚନା ନାହିଂ ମୋର ବ୍ୟଥା
ଯେହିକ୍ଷଣି ନୁହଇ ପଛର ଅଟଇ ନା କଥା ।

ଯେତେ ବୋଲି ରାୟେ ଅନ୍ତେଶ୍ୱରକଇ ଗଲା
ପାର୍ବତୀ ଆଗରେ ଯେହା ଈଶାନ୍ୟ କହିଲା ।

x x x x

ଶୁଣ ଗୋ ଶାକେମ୍ବରୀ ଶ୍ରୀରାମର ବାଣୀ
ଅପୂର୍ବ କଥାୟେ ପୁରାଣେ ବଖାଣି ।
ଆନନ୍ଦ ହୋଇଂଣ ତହିଂ ସକଳ ସୁରଗଣ
ବାହୁଡ଼ି ବିଜେ କଲେ ଯେ ବ୍ରହ୍ମା ସହିତେଣ ।
ସମସ୍ତେ ପ୍ରବେଶ ଯେ ଯାହାର ପୁରେ
ଶୁଣିମା କାହାଣୀ ଯେଥୁଅନନ୍ତରେ ।୧୦୦
ମିଥିଳା କଟକେ ଶ୍ରୀରାମଚନ୍ଦ୍ର ଅଛି
ଦକ୍ଷିଣ ପାରୁଶେ ସୀତ୍ୟା କମଳାକ୍ଷି ।
ବାମେଣ ଲକ୍ଷ୍ମଣ ଅଛି ଉଭା ହୋଇ
ଧନୁ ଭଗ୍ନକରି ଶ୍ରୀରାମ ଗୋସାଇଂ ।
ଆନନ୍ଦେ ହରଷ ପ୍ରସନ ବଦନ
ସୀତୟା ପରାପତ ପ୍ରସନ ତୋଷ ମନ ।
ଲୋକେ ପ୍ରଶଂସା କରନ୍ତି ଆଗରେ ଉଭାହୋଇ
ବୀରତୂର ଶବଦ ଧରଣୀ କମ୍ପଇଂ ।
ବିଶ୍ୱାମଇତ୍ର ବୋଇଲେ ତୁ ଶୁଣ ହୋ ଜନେକ
ରାମ ଆମଞ୍ଚିଲା ଈଶ୍ୱର କାର୍ମୁକ ।୧୦
ତୁ ଯାହା ମନେ ହୋ ସତ୍ୟ କରିଥିଲୁ
ସେ କଥା ଫଳିଲା ପ୍ରତକ୍ଷେ ଦେଖିଲୁ ।
ଯେବେ ଶ୍ରୀରାମକୁ ସୀତ୍ୟା ବିଭାକର
ଶୁଣିଣ ସନ୍ତୋଷ ଜନେକ ମୁନିମ୍ବର ।
ଶ୍ରୀରାମଙ୍କୁ ବୋଇଲେ ତୁ ଶୁଣ ଦାଶରଥି
ସୀତୟା ନାମେଣ ଯେ ମୋହୋର ଦୋହିତି ।
ତାହାକଇ ବିଭା କରିବି ମୁହିଂ ତୋତେ
ତୁ ରାମ ଉପଗାର କଲୁ ଯେବେ ମୋତେ ।
ଧନୁ ଧରିଣ ଯେବେ ରଖିଲୁ ମୋର ଧର୍ମ
ତୋହୋରେ ସେ କରି ହୁଅଇ ଯେଡ଼େ କର୍ମ ।୨୦
ଅନେକ ନୃପତି ବାହୁଡ଼ିଣ ଗଲେ

କେହି ଶରାସନ ଆମଞ୍ଚି ନ ପାରିଲେ ।
ପୂର୍ବେଣ ନିଅମ ଅଛଇ ମୋହୋର
ଯେ ଧନୁ ଭାଙ୍ଗି ବ ସେ ସୀତୟାର ବର ।
ସେ କଥା ପ୍ରାପତ ହୋଇଲାକ ମୋତେ
ହୁଅସି ବିଭା ଏବେ ଦଶରଥ ସୁତେ ।
ଜନେକର ମୁଖୁଂ ଯେସନ ବାକ୍ୟ ଶୁଣି
ଶ୍ରୀରାମ କହନ୍ତି ହୃଦୟ ମଧେ ଗୁଣି ।
ତୁ ଯାହା ମହରଷି କହିଲୁସି ସତ
ମୋତେ ଯେବେ ଅନୁଗ୍ରହ କଲୁନି
ତପୋବନ୍ତ ।୩୦
ଦୋହିତା ସତ ମନେ ଦେବୁ ଯେବେ
ମୋତେ
ମୁହିଂ ପ୍ରାର୍ଥନା ଯେ କରୁଅଛି ତୋତେ ।
ପିତା ଦଶରଥ ଅର୍ଜିଲା ମୋର ଦେହୀ
ପ୍ରାଣର ଅଧିକାରୀ ଅଟଇ ନା ସେହି ।
ତାହାକୁ ନ କହି ହୋଇବି କେହ୍ନେ ବିଭା
ପିତାର ଅସନମତେ ନ ପାଇବ ଶୋଭା ।
ତୁମ୍ଭେ ମୋତେ ବିଚାରି କହ ମହରଷି
ଶୁଣି ବିଶ୍ୱାମିତ୍ର ଜନେକ ଦୁହେଂ ହସି ।
ସଭାର ଲୋକେ ଶୁଣି ହୋଇଲେ ଉଷତ
ଧନ୍ୟ ଧନ୍ୟ ରାମ ତୁ ପିତାର ଭଗତ ।୪୦
ନୋହିଲେ କି ପ୍ରାପତ ହୋଇଲା ଯେଡ଼େ
କର୍ମ ତୋତେ
ସାଧୁ ସାଧୁ ଶବଦ ଶୁଭିଲା ଜଗତେ ।
ଜନେକ ବିଶ୍ୱାମିତ୍ର ଭାଳି ବେନି ଜନ
ନିଜ ନବରକୁ ସେ କରନ୍ତି ଗମନ ।
ଶ୍ରୀରାମ ଲକ୍ଷ୍ମଣ ସୀତୟା ସହିତେ
ଦେଖଣାହାରୀମାନେ ଗୋଡ଼ାଇଛନ୍ତି ପଛେ ।
ଜନେକ ମନ୍ଦିରେ ପ୍ରବେଶ ଯାଇଂ ହୋନ୍ତି
ଅନ୍ତେଶ୍ୱରକଇ ଗଲା ଦେବୀ ସ୍ୟତୀ ।
ଜନନୀକି ଦେଖିଣ କରଇ ନମସ୍କାର
ଜନେକ ରାଣୀମାନେ ମିଳିଲେ
ଅପାର ।୫୦
କୋ କୋଳେ ଧରିଣ ମୁଖେ ଚୁମ୍ବ ଦେଇ

କେ ବୋଲଇ ସହି ସଙ୍ଗାତୁଣୀ ମୋର ଆଇ ।
କେ ବୋଲଇ ମାଗୋ ଅପୂର୍ବ ରୂପରାଶି
ଅନରୂପେ ବର ମିଳିଲାକ ଆସି ।
ସୀତା ସୁଲକ୍ଷଣୀ ପୋତିଅଛି ଶିର
ହସ ହସ ହୋଇ ନ ଦିଅଇ ଉତ୍ତର ।
କେ ବୋଲଇ ଆଗୋ ରାମଙ୍କୁ ଦେଖିଯିବା
ଜଳାକବାଟି ବାଟେ ଚାହିଂବା ।
କେ ବୋଲଇ ରାମ ଏହାକୁ ସେ ହରଇ
ନୋହିଲେ କି ଈଶ୍ୱର ଧନୁ ଭାଙ୍ଗି
ପାରଇ ।୬୦
କେ ବୋଲଇ ଆଗୋ ଦେଖିବା ଯେବେ
ଆସ
ଯେତେକ ବୋଲିଣ ଜନେକ ରାଣୀହଂସ ।
ସମସ୍ତେ ରୁଣ୍ଡ ହୋଇଣ ଓହାଡ଼େଣ ଥାଇ
ଆନନ୍ଦ ହୋଇଲେ ଶ୍ରୀରାମଙ୍କୁ ଚାହିଂ ।
ଦେଖିଲେ ପ୍ରକଟ ପ୍ରାୟେକ ପ୍ରତିମା
ମଦନ ଶରେ ପୀଡ଼ିଲେ ସର୍ବ ବାମା ।
କେ ବୋଲଇ ସାଧୁ କେ ବୋଲଇ ଧନି
ଯେତେ ବୋଲି ପ୍ରଶଂସି ବାହୁଡ଼ିଲେ
କାମେନୀ ।
ଶ୍ରୀରାମ ଲକ୍ଷ୍ମଣ ଜନେକ ଗାଧିସୁତ
ଆବର ଅଛନ୍ତି ଅନେକ ତପୋବନ୍ତ ।୭୦
ଅଯୁଧ୍ୟାକୁ ଲୋକେ ପେଷିଣ ବିଚାରି
ଭାଳିଣ ସତ୍ୟାନନ୍ଦକୁ ଆଣିଲେକ ହକାରି ।
କଉଶିକ ବୋଲନ୍ତି ତୁମ୍ଭେ ଶୁଣ ଗଉତମର
ସୁତ
ଅଯୁଧ୍ୟା ରାଜ୍ୟକୁ ନେମୁସି ବାରତ ।
ବିଶ୍ୱନାଥ ଧନୁ ଶ୍ରୀରାମ ଆମଞ୍ଚିଲା
ସୀତୟାକୁ ଦେବି ବୋଲି ଜନେକ
ସତ୍ୟକଲା ।
ଶ୍ରୀରାମ ବୋଇଲେ ମୁଂ ପିଅର ଭଗତି
ନ କହିଲେ ବିଭାଯେ ମୋର ନ ବଳଇ
ମତି ।
ଯେ କଥା କହିବୁ ତୁ ଦଶରଥ ରାଇ

ଆସିବାର ହୋଇଲେ ଆସୁଂ
ନରସାଇଂ ।୮୦
ନେଉଟାଣି ବାରତା ବେଗେ ବାହୁଡ଼ାଇଂ
ଆଣ
ଆମ୍ଭଙ୍କୁ ସମାଦ ଅବା ଦେବ ମହାରାଣ ।
ବୋଲିବ ବିଶ୍ୱାମିତ୍ର ଜନେକ ଯେବେଛନ୍ତି
ମୋହୋର ପୁତ୍ରେକି ତାହାଙ୍କର ନୁହନ୍ତି ।
ସେ ଯେବେ ଅଛନ୍ତି ଶ୍ରୀରାମର ପାଶ
ମୁହିଂ ଯାଇଂ ମହାତ୍ମା ହୋ କରିବଇଂ କିସ ।
ଯେସନେକ ବୋଇଲେ ତୁ ଆସ ଖରକରି
ଶୁଣି ସତ୍ୟାନନ୍ଦ କହଇ କର ଦୁଇଯୋଡ଼ି ।
ଯେ ତୋହୋର ଆଗ୍ୟାଂ ଯିବି ଯେହି କ୍ଷଣ
ଶ୍ରୀରାମକୁ ଚାହିଂ ବୋଲନ୍ତି ଲକ୍ଷ୍ମଣ ।୯୦
ଲେଖ ଗୋଟିଯେକ ଦିଅ ତୁମ୍ଭେ ଲିହି
ବିନୋଇ ଉତ୍ତର ଆମ୍ଭେ ଦେବାକ
ଗୋସାଇଂ ।
ଶୁଣିଣ ଶ୍ରୀରାମ ତାଳପତ୍ର ଘେନି
ଦକ୍ଷିଣ କରେ ରାମ ଧଇଲେ ଲେଖନୀ
ନିଜ ପିତାଙ୍କଇ ବିନୋଇ ଉତ୍ତର
କାର୍ପୁନ ହୋଇଂ ଦେବ ଲିହନ୍ତି ପତର ।
ଭୋ ପିତା ଦକ୍ଷିଣ କୋଶଳ ଅଧିପତି
ଅଯୁଧାର ରାୟେ ବୀର ଚକ୍ରବର୍ତ୍ତୀ ।
ଭୁଜବଳ ପ୍ରାକର୍ମେ ନିଜ ରାଜ୍ୟ ରଖୁ
ଦୟାକଲା ଲୋକାମାନଙ୍କୁ ଯେକକରି
ଲେଖୁ ।୧୦୦
ଦାନେଣ ସାଚା ଖାଣ୍ଡେଣ ଗାରିମା
ଡରେ ଅଇରିବଙ୍କ ନ ମାଡ଼ନ୍ତି ସୀମା ।
ଅନେକଂ ଗୁଣ ଅଛି ତୋର ତହିଂ
ମୁହିଂକି ସେବା କରିବି ବାଳୁତ ତନୁ ବହିଂ ।
ତୋହର ଚରଣେ ମୋହରଟି ନମସ୍କାର
ନିତି ଭଗତିକି ବିଚାର ମୋହୋର ।
ଭୋ ପିତା ମୋତେ ଅରଜିଲୁ ଦୁଃଖ ପାଇ
ବିଶ୍ୱାମିତ୍ର ମୁନି ମାଗିଲେ ମୋତେ ଯାଇଂ ।
ତୁ ଯେ ସତ୍ୟଶୀଳ ଓପ୍ରୋଧେ ସମର୍ପିଲୁ

ବହୁତ ମନେ ଭାଳି ହୃଦେ ଚିନ୍ତା କଲୁ ।୧୦
ମୁଛି ନ ପାରି ଋଷିର ପାଦ ଧରି
ମୋତେ ସମର୍ପିଲୁ ଅତି ଯତ୍ନ କରି ।
ତୋହୋର ବଚନେ ହୋଇଲା ମୁନି ତୋଷ
ମୋତେ ଘେନି ଅଇଲେ ଗାଧିରାଜା ଶିଷ ।
ସରଯୁ ପାରିହୋଇ ପଶିଲେ ଘୋରବନେ
ସୁରନନ୍ଦୀ ଜିଣି ଆସିଲୁ ବେନି ଦିନେ ।
ଗଙ୍ଗା ଜିଣି ଆସି ଅଗମ୍ୟ ବନେ ପଶି
ହେଲେ ନାଶକଲି ତାଡ଼କୀ ରାକ୍ଷାସୀ ।
ଦେବେ କୁସୁମ ବରଷିଲେ ମୋର ଶିରେ
ସାଧୁ ସାଧୁ ଶବଦ ଶୁଭଇ ସ୍ୱର୍ଗପୁରେ ।୨୦
ବ୍ରହ୍ମାର ଆଗ୍ୟାଂ ପାଇଣ କଉଶିକ
ଶହସ୍ର ବିଦ୍ୟା ମୋତେ କହିଲା ଅନେକ ।
ଲକ୍ଷ୍ମଣଙ୍କୁ ଯେହି ପ୍ରମାଣେ ବିଦ୍ୟା କହି
ତହୁଂ କେତେହେଂକ ଦୂର ଗଲୁ ପଥ
ବହିଂ ।
ଅପୂର୍ବ ବନ ଦେବ ଦେଖିଲୁ ଅପାର
ତପୀଙ୍କର ମଢ଼ିଆ ପର୍ବତ ବନ ଘୋର ।
ବିଶ୍ୱାମିତ୍ର ଆଶ୍ରମେ ହୋଇଲୁ ପରବେଶ
ଯାଗ ଆରମ୍ଭିଲା ଗାଧି ରାଜା ଶିଷ ।
ଅନେକ ମୁନିମ୍ବର ଅଇଲେ ହୋମ କାଳେ
ମୋତେ ଦେଖି ପ୍ରଶଂସା କରନ୍ତି
ସକଳେ ।୩୦
ଯାଗ ରଖିଲଇଂ ଲକ୍ଷ୍ମଣକୁ ସଙ୍ଗେ ଘେନି
ଦତ୍ୟଙ୍କର ଶିର ନାରାଜରେ ଛିନି ।
ମାରୁଚି ରାକ୍ଷାସକୁ ଗଗନେ ଉଡ଼ାଇଲି
ସୁବାହୁ ଦତ୍ୟକୁ ଅନଳେ ଦହିଲି ।
ଯାଗ ସମାପତ ହୋଇଲାକ ଯହୁଂ
ପଶ୍ଚିମ ପରଦେଶକୁ ଗମନ କଲୁ ତହୁଂ ।
ଶୋଣିତ ନଦୀ ଜିଣି ବହୁତ ଦୂରଗଲୁ
କର୍ଣ୍ଣକୁବ୍ଜ ଦେଶ ଯାଇଂଣ ଦେଖିଲୁ ।
ବିପୁଳ ବନରେ ଗଉତମ ବାସ
ତାହା ଭେଟାଇଲା ଗାଧିରାଜା ଶିଷ ।୪୦
ଗଉତମର ଭାରିଯା ଅହିଲ୍ୟା ନାମେ ବାଳୀ
ଶାପ୍ୟେଣ ଥିଲା ସେ ପାଷାଣ ରୂପଧରି ।
ମୋହୋର ପାଦ ଲାଗନ୍ତେ ନିଜ ତନୁ ବହି
ମୋତେ ଅର୍ଘ୍ୟ ଦେଇ ସେ ମୁନିର ପାଶେ
ଯାଇ ।
ତହୁଂ ମିଥିଳା ପୁରେ ହୋଇଲୁ ପରବେଶ
ଜନେକର ଯାଗ୍ୟଂ ଦେଖିଲୁ ମହାରସ ।
ଧନୁ ସୟେମ୍ବର କରିଛି ମହଋଷି
ଅନେକ ଦେଶର ନୃପତି ଥିଲେ ଆସି ।
କେହି ସେ ଧନୁ ନ ପାରିଲେ ତୋଳି
ଛୁଇଂମା ମାତ୍ରକେ ମୁହୁଁ ରୋଧିର ଗଳି ।୫୦
ବିଶ୍ୱାମଇତ୍ର ବୋଲେ ତୋଳିଲି କୋଦଣ୍ଡ
ଗୁଣଦେଇ ଆମଞ୍ଚିଲି ହୋଇଲା ବେନିଖଣ୍ଡ ।
ସେ ଧନୁ ଭାଙ୍ଗିଲାକୁ ଜନେକ ମହାମୁନି
ସୀତ୍ୟା ନାମେ ତାର ଅବିଭାଇ ନନ୍ଦିନୀ ।
ତାହାକଇ ଆଣି ସମର୍ପିଲା ମୋତେ
ବୋଇଲା ବିଭାୟେ ରାମ ଦେବଇଂ
ତୋତେ।
ଯେତେ ବୋଲିଣ ସେ ନବରତ୍ନ ମାଳି
ମୋହୋର କଣ୍ଠରେ ଲମ୍ବାଇଲା ତାହାର
ଦୁଲାଳୀ ।
ବିଭା କରିବାକୁ ଖୋଜିଲେକ ଅନକୂଳ
ମୁହିଂ ବୋଇଲି ଯେକଥା ଅଟଇ
ବିଫଳ ।୬୦
ପିତା ମୋହୋର ଅଟଇ ପ୍ରାଣର ଅଧିକାରୀ
ତାହାଙ୍କୁ ନକହି କି ଯେ କୃତ୍ୟହିଂ କରି ।
ଶୁଣିଣ ସମସ୍ତେ ହୋଇଲେ ସନ୍ତୋଷ
ସତ୍ୟାନନ୍ଦକୁ ଦୂତ ପେଷିଲେ ତୁମ୍ଭ ପାଶ ।
ଯେ ଯିସ କହଇ ତୁମ୍ଭେ ଶୁଣିମା ନୃପବର
କରିବୁ ଯେ ତୋହୋର ମିଳଇ ବିଚାର ।
ଯେ ମୋହୋର ଲେଖର ନ ଧରିବା ଦୋଷ
ଚିତ୍ତକୁ ଯୋଗାଇଲେ ବେଗ ହୋଇ ଆସ ।
ଯେତେ ବୋଲି ରାମ ଲେଖ ଲିହି ମୁଦି
ସତ୍ୟାନନ୍ଦ ହାଥେ ଦେଲେ ନେଇଂ
ପ୍ରୋବୋଧି ।୭୦
ମୋହୋର ସମାଦ ମୁନି ନୃପତିଠାରେ ଦେସି
ସକଳ କଥା କୁଶଳ ବୋଲିଣ କହସି ।
ଯେତେ ବୋଲି ରାମ କଲେ ନମସ୍କାର
ଦେଖିଣ ହସନ୍ତି ସକଳ ମୁନିବର ।
ସତ୍ୟାନନ୍ଦ ବୋଇଲା ତୁ କଲ୍ୟାଣ ହୁଅସି
ସୀତ୍ୟାକଇ ବିଭା ହୋଇଣ ଯେଥି ଯାସି ।
ଶୁଣିଣ ଶ୍ରୀରାମ ହସନ୍ତି ଅଳପ ହୋଇ
ଲକ୍ଷ୍ମଣ ଭୁଜ ଧରି ତହୁଂ ସ୍ୱାମୀ ଉଠିଯାଇ ।
ସତ୍ୟାନନ୍ଦକଇଂ ରାଇଣ ଜନେକ
ଦୃଷ୍ଟାନ୍ତର କଥାମାନ କହନ୍ତି ଅନେକ ।୮୦
ତୁ ସେ ମହାମୁନି ଅଟୁ ମୋହୋର ମନ୍ତ୍ରୀ
ବିଭା ସମଧ କଥା କହସି ନୃପତି ।
ସେ ସେ ରାଜା ସୂର୍ଯ୍ୟବଂଶେ ଅବତାର
ଭାଗ୍ୟ କାଳ ଆସି ହୋଇଲା ମୋହୋର ।
ସେ ସେ ରତ୍ନାକର ମୁହିଂ କ୍ଷୁଦ୍ରନନ୍ଦୀ
ତାହାରେ ଶରଣ ପଶିତ ମୋର ବୁଧି ।
ସେ ସେ ହେମଗିରି ମୁହିଂ ମେଘ ଦ୍ରୋଣ
ଆଶ୍ରେ କରିତ ମୁହିଂ କରଇଂ ବିଚାରଣ ।
ତୁହି ମନ୍ତ୍ରୀ ମୋର ଜାଣୁ କୁଳଗୋତ୍ର
ବୁଝାଇ କହ ଯାଇ ନୃପତି ପବିତ୍ର ।୯୦
ତାହା ପୁତ୍ରକଇ ମୋହୋର ଝିଅ ଦେବି
ଅଯୁଧା ନୃପତି ସମୁଧି ପାଇବି ।
ଯେ କଥା ସତ୍ୟାନନ୍ଦ ହୋ କରିଆସ ଯାଇ
ପଥେ ତୋତେ ରକ୍ଷା କରନ୍ତୁ ଉମାସାଇଂ ।
ଶୁଭ ଯୋଗବଳେ କର ତୁ ଗମନ
ଶୁଣି ସନ୍ତୋଷ ଯେ ଅହିଲା ନନ୍ଦନ।
ଜନେକ ବିଶ୍ୱାମିତ୍ର ଆବର ଅନେକ ମୁନି
ତାହାଙ୍କ ପାଦେ ସତ୍ୟାନନ୍ଦ କଲାକ ମୁଧୁନି ।
ପବନ ବେଳ ଖୋଜି ପାଦ ବଢ଼ାଇଲା
ସାନନ୍ଦ ଚିତ୍ତେ ଅଯୋଧ୍ୟାକୁ ଗଲା ।୧୦୦
ପ୍ରଥମ ଦିନେ ବଇଶାଳୀ ନଗ୍ରେ ରହିଲା
ଆରଦିନେ ଶ୍ରୋଣିତ ନଦୀ ତୀରେ ଗଲା ।
ଅତି ଉଛୁକେ ମୁନି ଚଳିଗଲେ
ସିଦ୍ଧବନେ ଯାଇ ପ୍ରବେଶ ହୋଇଲେ ।

ଚତୁର୍ଥ ଦିବସେ ସେ ଅଗମ୍ୟ ବନେ ପାଇଂ
ପାଞ୍ଚଦିନେ ଗଙ୍ଗା ପାରିହୋଇ ଯାଇ ।
ସରଯୁ ନଦୀତୀରେ ରହିଲେ ଷଷ୍ଠ ଦିନରାତି
ସାତଦିନେ ଅଯୁଧାରେ ପ୍ରବେଶ ମହାଯତି ।
ଦେଖିଲାକ ନଗ୍ର ଅତିଅ ବିତପନ
ନେତ ପାତାଙ୍ଗ ଉଡ଼ନ୍ତି ଛନ ଛନ।୧୦
କାହିଂ କାଚକୁମ୍ଭ କାହିଁ ବଇଡୂର୍ଯ୍ୟ
କାହିଁ ସ୍ଫଟିକର ଚନ୍ଦ୍ରମା ପ୍ରାୟେତେଜ ।
କାହିଂ ସୁବର୍ଣ୍ଣ କଳସ ପନ୍ତି ପନ୍ତି
ଦେଉଳ ମଣ୍ଡପ ଅଟାଳି ଜଗତୀ ।
ମେଘନାଦ ମଣ୍ଡୋପ ଜଗତୀ ଠାବ ଠାବ
ନଗ୍ର ପରିମଳ ସୁରପୁର ସଭାବ ।
ରୂପ ଗୁଣେ ସୁନ୍ଦର ସକଳ ନରନାରୀ
ଦେଖିଣ ସନ୍ତୋଷ ହୋଇଲେ ତପଚାରୀ ।
ରାଜା ସିଂଘଦ୍ୱାରେ ପ୍ରବେଶ ହୋଇଲେ
ଯାଇଂ
ଦ୍ୱାରପାଳକଇ କହିଲେ ମଣାଇ ।୨୦
ଶୁଣ ହୋ ଦ୍ୱାରପାଳ ଯେ ମୋହୋର ବାଣୀ
ଶ୍ରୀରାମର ବାରତା ଅଛୁ ଆମ୍ଭେ ଆଣି ।
ବଇଦେହୀ ଦେଶରେ ମିଥିଳା ନାମେ ପୁର
ଜନେକ ମହରଷି ତହିଂ ନୃପବର ।
ତାହାର ଦୁହିତା ସୀତୟା ନାମେ ବାଳୀ
ଶ୍ରୀରାମଙ୍କୁ ବିଭା ଦେବ ତପଶାଳୀ ।
ଈଶ୍ୱର ଧନୁ ଜନେକ ଘରେ ଥିଲା
ଦଶରଥ ନନ୍ଦନ ତାହା ହେଲେ ଆମଞ୍ଚିଲା ।
ତେଣୁ ସେ ଦୋହିତା ଦେବାକୁ ତାହାର ମତି
ବିଶ୍ୱାମିତ୍ର ସହିତେ ବିଚାରି ସର୍ବଯତି ।୩୦
ମୋତେ ପଠିଆଇଲେ ରାଜାକୁ ଜଣାଇ
ଯେ ସର୍ବକଥା ସବୁ କହିବୁ ମଣାଇଂ ।
ନିକଟେ ଅନକୂଳ ସେ ଅଛନ୍ତି ବିଚାରି
ତେଣୁ ସେ ହାଦେ ମୁଂ ଅଇଲି ଖରକରି ।
ଗଉତମ ତନୟେ ଅହିଲା ଗର୍ଭୁ ଜାତ
ନାମ ସତ୍ୟାନନ୍ଦ ଜନେକ ପୁରୋହିତ ।
ଯେହାବୋଲି କହିଲେ ଜାଣନ୍ତି ସିନା ରାୟେ

ଶୁଣି ଦ୍ୱାରପାଳ ଉଲ୍ଲସଇ କାୟେ ।
ସାନନ୍ଦ ହୋଇଣ ବହିଲା ଅଶ୍ରୁଜଳ
ସତ୍ୟାନନ୍ଦକଇ ବୋଇଲା ଦ୍ୱାରପାଳ ।୪୦
କ୍ଷଣେକ ବିଶ୍ରାମ କରି ତୁମ୍ଭେ ଯେଥେ ବସ
ରାଜା ହୋଇଅଛି ବଡ଼ ଅବକାଶ ।
ଯେହିକ୍ଷଣି ଜଣାଇ ଘେନିଯିବ ତୋତେ
ତହୁଂ ଦ୍ୱାରପାଳ ଗମଇଂ ତୁରିତେ ।
ଭିତର ଦ୍ୱାରେ ଅଛଇ ପଡ଼ିହାରୀ
ତାହାର ଆଗରେ କହଇ କରଯୋଡ଼ି ।
ଶ୍ରୀରାମର ଦୂତ ଯେ ଛନ୍ତି ଦ୍ୱାରେ ରହିଂ
ଦୃଶନ କରାଅ ତୁମ୍ଭେ ନୃପତି ଆଗେ କହି ।
ଶୁଣିଣ ପଡ଼ିହାରୀ ବାରିକ ଚଳିଗଲା
ବେହେରା ଖୁଣ୍ଟିଆ ଆଗେ ବାରତା
କହିଲା ।୫୦
ଶ୍ରୀରାମର ବାରତା ଅଛଇ ଜଣେ ଆଣି
ବୋଇଲା ବେଗେ ଜଣା ନୃପତି
ଶିରୋମଣି ।
ଯହୁଂ ପଡ଼ିହାରୀ ଯେ ବୋଲ ବୋଇଲା
ସତଟିକି ବୋଲି ବେହେରା ପଚାରିଲା ।
ପଡ଼ିହାରୀ ବାରିକ ବୋଲଇ ଗୋସାଇଂ
ସିଂଘଦ୍ୱାରେ ଲୋକ ଅଇଲି ବସାଇ ।
ଶୁଣି ବେହେରା ଖୁଣ୍ଟିଆ ଚଳିଗଲା
ରାଜାର ଆସ୍ଥାନେ ଯାଇଣ ଉଠିଲା ।
ବଶିଷ୍ଟଙ୍କ କାନେ କହିଲା ତୁନିକରି
ଶୁଣିଣ ମହରଷି ଖୁଣ୍ଟିଆ କରଧରି ।୬୦
କାହିଂ ଅଛି ଲୋକ କେ ତୋତେ କହିଲା
ବଶିଷ୍ଟଙ୍କ ବଚନେ ଖୁଣ୍ଟିଆ ବୋଇଲା ।
ପଡ଼ିହାରୀ ପାଇକ କହିଲା ମୋତେ ଆସି
ଶ୍ରୀରାମର ଦୂତ ସେ ଦ୍ୱାରେ ଅଛି ବସି ।
ତାହା ଶୁଣି ମୁଇଂ ଅଇଲଇ ବେଗେ
ତୁମ୍ଭେ ଜଣାଅ ଯାଇଂ ନୃପତିର ଆଗେ ।
ଖୁଣ୍ଟିଆର ତୁଲେ ବଶିଷ୍ଟ କଥା ହୁଅନ୍ତେ
ପଚାରିଲା ଆସି ମନ୍ତ୍ରୀ ଯେ ସୁମନ୍ତେ ।
କିସ କିସ କଥା ଭାଳ ହୋ ଗୁପତ

ବଶିଷ୍ଟ ବୋଇଲେ ତୁମ୍ଭେ ଶୁଣ ହୋ
ସୁମନ୍ତ ।୭୦
ଶ୍ରୀରାମର ଦୂତ ବାରତା ଅଛି ଆଣି
ଶୁଣିଣ ତଲୟେ ତାକୁ କଲେ ନୃପମଣି ।
ରାମର ଶବଦ ଯହୁଂ ଶୁଭିଲାକ କର୍ଣ୍ଣେ
ବଶିଷ୍ଟକଇ ଚାହିଂ ବୋଲଇ ରାଜନେ ।
କିମ୍ପା ରାମନାମ ସୁମରିଲୁ ମୁନି
ଶୁଣିଣ ବଶିଷ୍ଟେ ଖୁଣ୍ଟିଆକୁ ଗଲେ ଘେନି ।
ରାଜାର ଛାମୁରେ ଜଣାନ୍ତି ତପଚାରୀ
ଶୁଣ ତୁ ଅଯୁଧା ନୃପତି ଦଣ୍ଡଧାରୀ ।
ଶ୍ରୀରାମ ବାରତା ଘେନିଣ ଚାର ଦୂତ
ସିଂଘଦ୍ୱାରେ ଆସି ହୋଇଛି ଉପଗତ ।୮୦
ଯେହିରୂପେ ଖୁଣ୍ଟିଆ କହିଲା ମୋତେ ଆସି
ସେ କଥା ସୁମନ୍ତ୍ର ଆଗେ ପରକାଶି ।
ଶୁଣିଣ ନୃପତି ଖୁଣ୍ଟିଆକୁ ଚାହିଂ
କେ ଦୂତ ଆସିଅଛି ଦେଖିଲୁଟି କି ତୁହି ।
ବେହେରା ଜଣାଇଲା ଦେବ ବାରିକ କହିଲା
ସିଂଘଦ୍ୱାରେ ଦୂତ ଅଛଇ ବୋଇଲା ।
ଶୁଣିଣ ନୃପବର ଉଦବେଗ ମନ
ଆଗ୍ୟାଂ ଦେଲା ଦୂତ ଅଣାଅଂ ବହନ ।
ଶୁଣିଣ ଧାଇଂଲେ ଖୁଣ୍ଟିଆ ଜଣ ଚାରି
ଆଗ୍ୟାଂ ପାଇ ବେଗେ ଗଲା ପଡ଼ିହାରୀ ।୯୦
ତାହାର ପଛେ ପଛେ ସୁମନ୍ତଇଂ ଗଲା
ରାମ ପ୍ରାୟେ ମଣି ଭ୍ରଥଇଂ ଧାଇଂଲା ।
ଶତ୍ରୁଘନ ସହିତେ ଅନେକ ଲୋକ ଗଲେ
ମୁଦୁସୁଲି ଯାଇଂ ଭିତରେ ଜଣାଇଲେ ।
ଶୁଣ ଗୋ ଦେବୀ ଦଶରଥ ପାଟରାଣୀ
ଶ୍ରୀରାମର ବାରତା ଗୋ ଅଇଲୁ ଆମ୍ଭେ
ଜାଣି।
ଦୂତ ଆସିଅଛି ବୋଲିଣ ଶୁଣିଲୁ
ଲୋକ ଧାଇଂମାରୁ ଅଇଲା ପ୍ରାୟେ ମଣିଲୁ ।
ଶୁଣି କଉଶୁଲା ଆସନୁ ଉଠଇ
ବିକଳିତ ମନେ ପେଟ ଆଉଂଶଇ ।୧୦୦
ଦାସୀନ୍ତ ହକାରି ବୋଲଇ ରାମ ମାତା

ତଥ୍ୟକରି ମୋତେ କହ ଲୋ ବାରତା ।
ପୁତ୍ରର ମୁଖ ମୁଂ ଚାହିଂମି କେମନ୍ତେ
କେ ଆଣି ଶ୍ରୀରାମଙ୍କୁ ଭେଟାଇବ ମୋତେ ।
କଯେକୟା ଆନନ୍ଦ କହିଲେ ନ ସରଇ
ଲୋଚନ ଯୁଗଳୁ ଅଶ୍ରୁଜଳ ବହଇ ।
ସୁମିତ୍ରା ବଦନ ଶରଦେଚନ୍ଦ୍ର ଜାଣି
ଚାତେକ ପାଇଲା କି ଆକାଶର ପାଣି ।
ଆବର ଯେତେକ ଅଛନ୍ତି ରାଣୀମାନ
ଶ୍ରୀରାମ ବାରତାକୁ ଟେକିଛନ୍ତି କର୍ଣ୍ଣ ।୧୦
କଉଶଳା ପୁରେ ସମସ୍ତେ ଗୁଣ୍ଡ ହୋଇଛନ୍ତି
ବାରତା ଜାଣିମେ ବୋଲି ଝଡ଼ାନ୍ତ ପେଷନ୍ତି ।
ଯେଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଦୂତ ଅଇଲା ବୋଲି ବହୁତ ରାବ ପୂରି ।
ଦ୍ୱାରପାଳ ବୋଇଲା ଶୁଣ ତପୋବନ୍ତ
ରାଜା ଆଗ୍ୟାଂ ହେଲା ଆସିବୁ ତୁରିତ ।
ଯେସନ ସମଯେ ଯେ ଖୁଣ୍ଟିଆମାନେ ଯାନ୍ତି
ଶ୍ରୀରାମ ଦୂତକେ ଆସ ହୋ ବୋଲନ୍ତି ।
ଶୁଣି ସତ୍ୟାନନ୍ଦ ଯୋଗବଳ ଘେନି
ରାଜାର ମନ୍ଦିରେ ପ୍ରବେଶ ମହାମୁନି ।୨୦
ସୁମନ୍ତ ଦେଖି ତାକୁ ଚିହ୍ନିଲା ତତକ୍ଷଣ
ଅହିଲା ସୁତ ଯେ ପବିତ୍ର ବିଲକ୍ଷଣ ।
ଯେତେ ବୋଲି ମନ୍ତ୍ରୀ କଲା ନମସ୍କାର
କୁଶଳଟିକି ମୁନି ରାମ ଲକ୍ଷ୍ମଣ ଶୋରୀର ।
ସତ୍ୟାନନ୍ଦ କହଇ ସକଳ କ୍ଷମ କାର୍ଯ୍ୟ
କାହିଂ ଅଛି ତୋହୋର ଅଯୁଧ୍ୟା ମହାରାଜ ।
ସୁମନ୍ତ ବୋଲଇ ନୃପତି ଅବକାଶ
ଭୋ ଋଷି କୁମର ତୁ ବେଗେ ହୋଇଂ ଆସ ।
ଭ୍ରଥ ଶତୃଘନ ଋଷିର ପାଦେ ପଡ଼ି
କୁଶଳ ପଚାରନ୍ତି ବେନି କର ଯୋଡ଼ି ।୩୦
ଶ୍ରୀରାମ ଲକ୍ଷ୍ମଣ କି କ୍ଷେମେ ଛନ୍ତି ବୃଦ୍ଧି
କଲ୍ୟାଣ କରିଣ ବୋଲଇ ମହାଯତି ।
ସର୍ବଶୁଭ ବାରତା ଶ୍ରୀରାମ ଲକ୍ଷ୍ମଣ
ରାଜାର ଆଗେ କଥା କହିବା ଯେହିକ୍ଷଣ ।
ଚାରିଦ୍ୱାର ଜିଣି ଦିଶିଲାକ ଦୂତ

ଦେଖି ବିଚାରନ୍ତି ବଶିଷ୍ଠ ତପୋବନ୍ତ ।
ଗଉତମ ସୁତ ଯେ ଅହିଲା ତନଯେ
ଜନେକ ମହରଷି ପୁରୋହିତ ହୋଯେ ।
ଯେ ଯେବେ ଅଇଲାଟି ସକଳ କାର୍ଯ୍ୟ ଭଲ
ଶୁଣ ତୁ ଦଶରଥ ଅଯୁଧ୍ୟାର ମଲ୍ଲ ।୪୦
ଯେ ସେ ସତ୍ୟାନନ୍ଦ ପରମବ୍ରହ୍ମ ଜାଣଇ
ମହାଋଷି ସଙ୍ଗତରେ ବିଧାତା ଗଣଇଂ ।
ରାମ ଆଗ୍ୟାଂ ପାଇ ସେ ଅଇଲା ଏଡ଼େ
ମୁନି
ବାବୁ ଦଶରଥ ମହିମା ତୋର ଧନୀ ।
ରାଜା ବଶିଷ୍ଠଙ୍କର କଥାର ସମଯେ
ଆସ୍ଥାନେ ପରବେଶ ସତ୍ୟାନନ୍ଦ ହୋଯେ ।
ତାହାର ପଛକତି ଅନେକ ସଇନି
ପଟୁଆର ପଡ଼ିଲେ ଆନନ୍ଦ ରସଘେନି ।
ରାଉତ ମାହୁନ୍ତ ଖୁଣ୍ଟିଆ ପଡ଼ିହାରୀ
ପାତ୍ର ସାମନ୍ତ କେ ବାରିତ ନ ପାରି ।୫୦
ଝଡ଼ା ମୁଦୁସୁଲୀ ଭିତରେଣ ଥାନ୍ତି
କବାଟ ଆଉଜାଇଂ କଥାନ୍ତ ବୁଝନ୍ତି ।
ଯେଥୁ ଅନନ୍ତରେ ସତ୍ୟାନନ୍ଦ ଆସି
ବଶିଷ୍ଠଙ୍କ ମୁଖ ଚାହିଂ ଅଳପ ହୋଇ ହସି ।
ନିକଟେଣ ଚାହିଂ କଲେ ନମସ୍କାର
କୋଳକଲେ ଯାଇଂ ବ୍ରହ୍ମାର କୁମର ।
ଦଶରଥ ରାଜା ଆନରୁ ଉଠି
ଶିରେ ଲଗାଇଲା ନେଇ ଋଷିର
ପାଦଗୋଟି ।
ଯେ ଯଥାବିଧି କରିଣ ବସାଇ
ସତ୍ୟାନନ୍ଦ ବୋଲଇ ଶୁଣ ନରସାଇଂ ।୬୦
ଯାବାଳି କଶ୍ୟପ ତପୋବନ୍ତ ଦେଖି
ପୂଜାକଲେ ପୂର୍ବ କଥା ଉପଲେଖି ।
ସଭାଜନେ ହୋଇ ଅଛନ୍ତି ତବଦ
ଆଜ ଶୁଣିମା ନା ଶ୍ରୀରାମ ସମ୍ବାଦ ।
ଯେକକୁ ଆରେକ ଆଗୁଂସାର ପେଲାପେଲି
ଖୁଣ୍ଟିଆ ପଡ଼ିହାରୀ ହେଲୁ ହେଲୁ ବୋଲି ।
ଯେସନ ସମଯେ ସତ୍ୟାନନ୍ଦ ଋଷି
ବଶିଷ୍ଠଙ୍କ ଦଖିଣ ପାଶୁଶେ ଆସି ବସି ।

ଦଶରଥକଇ ଚାହିଂ ବୋଲନ୍ତି ମୁନିବର
ଶୁଣସି ନୃପବର ହୋ ଅଯୁଧ୍ୟା ଠାକୁର ।୭୦
ଶ୍ରୀରାମ ବାରତା ଅଛୁ ଆମ୍ଭେ ଆଣି
ଜୀବନ ସୁଫଳ କରସି ତାହା ଶୁଣି ।
ଶୁଣ ସାବଧାନେ କହଇଂ ମୁହିଂ ତଥ୍ୟ
ଯେଥୁ ଯାଇଂ ଯିସ କଲେ ତୋହୋର
ସୁତ ।
ବିଶ୍ୱାମିତ୍ର ଯାଗ ରଖିଣ ରଘୁନାଥ
ସଙ୍ଗେ ଲକ୍ଷ୍ମଣ ଅଛି ସାନ ଭ୍ରାଥ ।
ମିଥିଳା ପୁରକଇ କଲେକ ଗମନ
କଉଶିକ ସହିତେ ଅନେକ ତପୀଜନ ।
ବିପୁଳ ବନରେ ପ୍ରବେଶ ହୁଅନ୍ତି
ମୋହୋର ପିତାର ପୂର୍ବ ଆଶ୍ରମ
ଦେଖନ୍ତି ।୮୦
ବିଶ୍ୱାମିତ୍ର ମୁନି କଢ଼ାଇଣ ନେଲେ
ପୂର୍ବର କଥା ଜାଣି ସେଠାରେ ମିଳିଲେ ।
ମାତା ମୋ ଅହିଲା ପାଷାଣ ହୋଇଥିଲା
ରାମପାଦ ଲାଗି ନିଜ ଶ୍ୟରୀର ପାଇଲା ।
ତହୁଂ ତୋର ପୁତ୍ର ତପୀଙ୍କର ମେଳେ
ପ୍ରବେଶ ହୋଇଲେ ଯାଇଂ ମିଥିଳା
ମଣ୍ଡୋଳେ ।
ଦେଖିଣ ଜନେକ ଅନେକ ଗଉରୋବ କଲା
ରାମଙ୍କୁ ନେଇଂ ରୁଦ୍ରଧନୁ ଦେଖାଇଲା ।
ଅନେକ ନୃପତି ଥିଲେ ତହିଂ ମିଳି
କେହି ଶରାସନ ନ ପାରିଲେ ତୋଳି ।୯୦
ତୋର ପୁତ୍ର ଶ୍ରୀରାମ ଧନୁ ଆମଞ୍ଚିଲା
ବେନିଖଣ୍ଡ କରି ଭାଙ୍ଗି ପକାଇଲା ।
ଦେଖିଣ ଜନେକ ତୋଷ ମନ ହୋଇ
ସୀତା ନାମେ ତାର ନନ୍ଦନୀ ଅଟଇ ।
ଶ୍ରୀରାମଙ୍କୁ ଦେବାକୁ ତାହା ସନମତ କଲା
ପଞ୍ଚରତ୍ନ ମାଳା ଦେଇଣ ସୀତୟା ବରିଲା ।
ବିଭାର ବିଧାନ ରଞ୍ଚିଲା ସମସ୍ତ
ରାମ ବୋଇଲେ ଯେ କଥା ନୁହଇ ଯୁଗତ ।
ପିତାକୁ ନ କହିଲେ ନୁହଇଂ ମୁହିଂ ବିଭା
ଯେକଥା କଦାଣ୍ଡିତେ ନୁହଂଇ ମୋତେ
ଶୋଭା ।୧୦୦

ଶୁଣିଣ ମୁନିଙ୍କନେ ହୋଇଲେ ପ୍ରମ ତୋଷ
ଭାଳିଣ ସଭିଯେ ମୋତେ ପେଷିଲେ ତୋର
ପାଶ।
ତୁ ଯେବେ ଯିବୁ ରାଜା ହୁଅ ବେଗେ ସଜ
ହେଳା ନ କର ତୁ ଅଯୁଧ୍ୟା ମହାରାଜ ।
ଶ୍ରୀରାମ ହିଂ ଲେଖ ଗୋଟିଯେ ଅଛି ଦେଇ
ଯେତେବୋଲି ଲେଖ ସମର୍ପିଲେ ନେଇ ।
କୃତ ଆଜୋଂଳି ହୋଇ ଘେନିଲେ ଦଶରଥ
ହୃଦେ ଲଗାଇ ଦେଲା ବଶିଷ୍ଟଙ୍କ ହାଥ ।
ପଢ଼ ମହାମୁନି ଶ୍ରୀରାମ ସନ୍ଦେଶ
ଶୁଣ ସଭାଜନ ଶ୍ରୀରାମ ଦିବ୍ୟରସ।୧୦
ବ୍ରାହ୍ମାଙ୍କର ତନଯେ ଲେଖ କରେ ଧରି
ଶ୍ରୀରାମର ମୁଦ ସମସ୍ତ ଠାବ କରି ।
ଚନ୍ଦନ ମୁଦ ଗୋଟି ପକାଇଲେ ଭାଙ୍ଗିଂ
ଯେକ ପତନ କରି ଧଇଲେ ପତ୍ର ସାଜି ।
ମନେ ମନେ ଲେଖନ ପଢ଼ନ୍ତି ସୁମରି
ପ୍ରସ୍ତାପ ଠାବରେ ହସନ୍ତି ବ୍ରହ୍ମଚାରୀ ।
ପଢ଼ିଣ ଲେଖ ଗୋଟି ସମାପାତ କଲେ
ନୃପତି ମୁଖ ଚାହିଂ ବଚନ ବୋଇଲେ ।
ଶୁଣ ତୁ ଦଶରଥ ପୁତ୍ରର ମହିମା
ଦନୁଜନ୍ତ ଜିଣି ରାମ ରୁହାଇଲା ସୀମା ।୨୦
ଅଗମ୍ୟ ବନେ ତାଡ଼େକୀ ବଧକରି
ବିଶ୍ୱାମିତ୍ର ମୁନିର ଯାଗ ରକ୍ଷାକରି ।
ସୁବାହୁ ମାରୁଚିକି ଅନେକ ଦଗଧିଲା
କଉଶିକ ପ୍ରସନ୍ନ ହୋଇଂ ଶସ୍ତ୍ରଦେଲା ।
ଅହିଲା ମୁକତ କଲା ତୋର ପୁତ୍ର
ସାଧୁ ସାଧୁ ବୋଲି ଶୁଭିଲା ଜଗତ ।
ମିଥିଳା ନଗ୍ର ଜନେକର ଘରେ
ସଦାଶିବ ଦନୁ ଧଇଲେ ବାମକରେ ।
ଗୁଣ ଦେଇକରି ଓଟାରିଲେ ଯହୁଂ
ଅକଳବଳ ଧନୁ ଭାଙ୍ଗିଂଲାକ ତହୁଂ ।୩୦
ଦେଖିଣ ଜନେକ ବହୁତ ପ୍ରଶଂସିଲା
ସୀତ୍ୟା ନାମେ ଦୋହିତା ଦେବଇଂ
ବୋଇଲା।

ପଞ୍ଚୁ ରତ୍ନମାଳା ଦେଇକରି ବରି
ସେହିଦିନ ସେ ଲୋଡ଼ିଲେ ବିଭାକରି ।
ରାମ ବୋଇଲେ ଯେ ନୁହଇ ଯୁଗତ
ପିତା ଅଟଇ ନା ମୋହୋର ପ୍ରାଣନାଥ ।
ତାହା ଅସନମତେ ନୋହଇଂ ନା ବିଭା
ଜନେକ ମହାମୁନି ଶୁଣିଲାକ ଯେହା ।
ବିଶ୍ୱାମିତ୍ର ସହିଂତେ ଭାଜିଲେ ସର୍ବଯତି
ସତ୍ୟାନନ୍ଦକଇ ପେଷିଣ ଅଛନ୍ତି ।୪୦
ତୁ ଯେବେ କିସ କରିବୁ ନୃର୍ପବର
ପରମ ଭାଗ୍ୟେ ଶ୍ରୀରାମକୁ ପାଇଲୁ କୁମର।
ଯେବଣ ଋଷିଙ୍କି ସେ ଦେବେ ପ୍ରଶଂସନ୍ତି
ତେଡ଼େ ତେଡ଼େ ଲୋକ ରାମ ବନ୍ଧୁ
ହୋଅନ୍ତି।
ଧନ୍ୟ ସୂର୍ଯ୍ୟବଂଶ ଧନ୍ୟ ଅଯୁଧ୍ୟା ନାମେ ପୁରୀ
ଧନ୍ୟ ଦଶରଥ ଧନ୍ୟ କଉଶୁଲ୍ୟା ନାରୀ ।
ଶ୍ରୀରାମ ତୋହୋର ବଂଶେଣ ଉତପତି
ଜନେକଙ୍କୁ ସମୁଧି ତୁ ପାଇବୁ ନୃପତି ।
ବିଶ୍ୱାମିତ୍ର ସଙ୍ଗେନା ଦେଇଥିଲୁ ପୁତ୍ର
କଉଶିକ ପ୍ରସାଦେ ତୋ ଉଜ୍ୱଳ ହେଲା
ଗୋତ୍ର।୫୦
ଧନ୍ୟ ଗାଧିସୁତ ଯେ ଗୁଣ ତୋତେ କଲା
ଜନେକ ଋଷିଙ୍କି ସମୁଧି ଭିଆଇଲା ।
ଶୁଣି ଦଶରଥ ପରମ ସାନନ୍ଦ
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ।
ଆନନ୍ଦେ ଅଶୃଜଳ ବହଇ ଘନ ଘନ
ବଶିଷ୍ଟଙ୍କୁ ଚାହିଂ ସେ ବୋଲନ୍ତି ରାଜନ ।
ଭୋ ମୁନି ଯାହା ସତ୍ୟାନନ୍ଦ କହିଲା
ଯେ କଥା ବିଚାର ମୋତେ ସଂଶଂୟ
ଲାଗିଲା ।
ତାଡ଼କୀ ମାଇଲା କଥା ଲାଗଇ ଅପୂରୁବ
ଯାଗ ରଖିବା କଥା ଅଟଇ ଅସମ୍ଭବ ।୬୦
ଅହିଲା ମୁକତି ଅଶୃତି ଅଗୋଚର
ସବୁହିଂ ବଳିଲା ଧନୁ ସଯେମ୍ବର ।
ଅକଳବଳ ଧନୁ ରଦ୍ରହିଂ ବହଇ

ତାହାର ଶରାସନଙ୍କୁ ସମ ନୋହି କେହି ।
ଈଶ୍ୱର କୋପୁଂ ବିଷ୍ଣୁ ତେଜୁ ଜାତ
ଭୂମିରୁ ଛଡ଼ାଇଂ ନ ପାରଇ ସୁରନାଥ ।
ବଳିର ପୁତ୍ର ହାଦେ ବାଣାସୁର ରାଜ
ସଦାଶିବର ସେ ଯେ ଧର୍ମର ତନୁଜ ।
ବଳ ପରୀକ୍ଷ ନିମନ୍ତେ ସେ ରାଜା ଅଇଲା
ସହସ୍ର ଭୁଜେ ଧନୁ ତୋଳି ନ
ପାରିଲା ।୭୦
ଲଙ୍କାର ରାଜା ହାଦେ ଅଟଇ ଦଶାନନ
ସେହି ସେ ତୋଳି ନ ପାରଇ ଶରାସନ ।
ପ୍ରଶୁରାମହୁଂ ଆନ ନାହିଂ ବଳିୟାର
ସେ ଧନୁ ଦେଖି ଗର୍ବ ସେ ଗଳିଲା ତାହାର ।
ଲବଣ ନାମେଣ ମଧୁବନ ରାୟେ
ଧନୁ ପରୀକ୍ଷକୁ ସେ ମିଥିଳାକୁ ଆୟେ ।
ଶରାସନଙ୍କୁ ଦେଖି ହାରିଲାକ ଗ୍ୟାନ
ହତବୀର୍ଯ୍ୟ ହୋଇଣ ସେ ପଳାଇଲା
ରାଜନ।
ନର ନାରାୟଣ ଋଷି ଆସିଥିଲେ ।୮୦
ଶାୟେକ ଦେଖି ସେ ଅନେକ ପୂଜାକଲେ ।
ନର ଋଷି ମନେ ବିଘରଣ କଲେ
ନାରାୟଣ ଆଗ୍ୟାଂରେ ଧନୁ ଧରିବୁ
ବୋଇଲେ ।
ସର୍ବଗ୍ୟଂ ପୁରୁଷ ଜାଣିଲେ ତାହା ମନ
ବୋଇଲେ ନର ଋଷି ଉଛୁତ ଶରାସନ ।
ନାରାୟଣ ଆଗ୍ୟାଂ ପାଇଣ ନର ଋଷି
ଅକଳବଳ ଧନୁ ଧଇଲେ ଆକ୍ରେଷି ।
ବଡ଼ବାୟେ ଯେହ୍ନେ ନ ଚଳଇ ଗିରି
ଅସୁରେ ହରି ଲୋଡ଼ନ୍ତି ଯେହ୍ନେ ଦେବତାଙ୍କ
ଶିରୀ।
ମୁଣ୍ଡେ ପେଲିଲେ କି ଦେଉଳ ଗୁଞ୍ଝଯାଇ
ଈଶ୍ୱର ଧନୁ କି ନର ଋଷିଙ୍କି ସାଜଇ ।୯୦
ଅବିଗ୍ୟଂ ପଣେ ଯହୁଂ ଛୁଇଂଲେ ଶରାସନ
ଶୁଖରୁ ରୁଧିର ତାର ବହଇ ତ଼ତକ୍ଷଣ ।
ନୟନର କୋଣେ ସେ ଦିଶିଲା ରକତ

ନାସିକାରର ଦ୍ୱାରେ ସେ ଗଳଇ ଶୋଣିତ ।
ଶ୍ରବଣ ବମ୍ବରୁ ଯେ ଝରଇ ଅବିଛିନ୍ନ
ଚକ୍ଷୁ ପ୍ରାୟେ ହୋଇଂ ସେ ବୁଲଇ ନୟନ ।
ଝାଇଂମାରି ମୁନି ପଡ଼ିଲା ଭୂମି ତଳେ
ଦେଖି ଉପହାସ୍ୟ କରନ୍ତି ସକଳେ ।
ନାରାୟଣ ଋଷିଙ୍କି ଧଇଲେ କୋଳକରି
ମୁଖେ ପାଣି ସିଞ୍ଚି ତୋଳିଲେ
ବ୍ରହ୍ମଚାରୀ ।୧୦୦
ଋଷିମାନେ ବୋଇଲେ ତୁ ଶୁଣ ନରମୁନି
ମୋହୋମାନ ହୋଇ କିମ୍ପା ପଡ଼ିଲୁ
ମେଦିନୀ।
ଋଷି ବୋଇଲା ମୁଁ ଅଗ୍ୟାଂନ ମତି କଲି
ଯେ ଦେବ ଧନୁକୁଂ ଗର୍ବ ସେ ବହିଲି ।
ତେଣୁକରି ଚେତନା ହୁଡ଼ିଲା ମୋହୋର
ମନ ଛନ ଛନ ହୋଇଲା ଅନ୍ଧକାର ।
ଲଜ୍ୟା ପାଇଲଇଂ ସଂସାର ତ୍ରଇଲୋକ୍ୟେ
ଯେତେ ବୋଲି ମୁନି ଭାଳଇ ଗରୁଶୋକେ।
ନାରାୟଣ ବୋଇଲେ ତୁ ପାଇଲୁ ବହୁତ
ପାପ
ଅବଗ୍ୟା କରିଣ ଧଇଲୁ ଶିବରୂପ । ୧୦
ଯେ ଦୋଷେ ଜାତ ତୁ ହୋଇବୁ ମୃତ୍ୟୁ ପରେ
ଜନମ ମରଣ ଦୁଃଖ ତୁ ପାଇବୁ ମୁନିବରେ ।
ଶୁଣି ନରଋଷି ପାଇଲା ମନେ ବ୍ୟଥା
ତୋହୋରେ ସେ ନିର୍ଭାଇଲା ଯେହୁ କଥା ।
ମୁନି ମନେ ଧରିଣ ବୋଇଲାକ ଫୁଟି
ତୁ ଯେବେ ଶାପ୍ୟ ମୋତେ ଦେଲୁ
ନନ୍ଦଘାଟି।
ତୋହୋର ବୋଲେ ମୁହିଂ ଭରସା ପାଇଲି
ମହାଦେବ ଧନୁ ଅଗ୍ୟାନେ ଧଇଲି ।
ତେଣୁ ସେ ମୋହୋ ଚିତ ହୋଇଲା ଅଥିର
ଆଶ୍ୱାସନା ଦେଇ ତୁ ଯେ ଦେଖିଲୁ
ବୁଧିର ।୨୦
ମୁହିଂ ଯେବେ ସଂସାରେ ପାଇବି ମୃତ୍ୟୁ ଜନ୍ମ
ତୁହି ଜନ୍ମ ମରଣ ଲଭିବୁ ପରମ ବ୍ରହ୍ମ ।

ଓହୋକୁଳ ଶାପ୍ୟ ହୋଇଲା ପରାପତ
ଜନ୍ମ ହୋଇବେ ସେ ଦ୍ୱାପର ଯୁଗ ଅନ୍ତ ।
ବସୁଦେବ ଘରେ ଜାତ ହୋଇବେ ଶ୍ରୀହରି
ନର ଋଷି ପଣ୍ଡୁର ଘରେ ଅବତରି ।
ଅର୍ଜ୍ଜୁନ ନାମେ ହୋଇବ ଅବତାର
ଶାପ୍ୟ ଭୋଗକରି ପାଇବ କଳେବର ।
ଇସ୍କିନ୍ଦା କଟକେ ବାନର ଅଧିପତି
ବାଳୀ ନାମେଣ ବୀରର ଚକ୍ରବର୍ତ୍ତୀ । ୩୦
ମୃଗୟାକୁ ଆସି ଦେଖିଲାକ ଧନୁ
ଦେଖିବା ମାତ୍ରକେ ସେ କମ୍ପମାନ ତନୁ ।
ଶର୍ବଣ ଛୁଇଂ ସେ ବାହୁଡ଼ିଣ ଗଲା
ବେଳକ ସହସ୍ରାର୍ଜ୍ଜୁନ ଆସିଥିଲା ।
ଧନୁ ଧରିବାକୁ କରଇ ମନେ ମନ
ପୁଣି ବିରଚଇ ମୁହିଂ ନୁହଇଂ ଭାର୍ଜନ ।
ସମଦଣ୍ଡ ଘେନି ସେ ବାହୁଡ଼ିଲା ଧାତି
ଧନୁ ଦେଖି ବେଳେ ଅଇଲା ଗଣପତି ।
ଥୋର ହସ୍ତେ ଧରି ତୋଳିତ ମନଙ୍କଲା
ହୁଙ୍କାର ଧ୍ୱନିକରି ରାଗେଣ ଉଛୁଡ଼ିଲା ।୪୦
ପେଟେ ପଶିଲା ତାର କର ଚରଣ ବୁକୁ
ଲୋକେ ଉପହାସ୍ୟ କରନ୍ତି ତାହାକୁ ।
ତେଣୁ ସେ ଥୋନ୍ଦୋର ଅଟଇ ବିଘ୍ନରାଜ
ବାହୁଡ଼ିଣ ଗଲା ପାଇଣ ବହୁତ ଲାଜ ।
କାର୍ତ୍ତିକେଶ୍ୱର ଦିନେକ ଆସିଥିଲା
ଏକଥା ଶୁଣି ସେ ବାଟୁଂ ବାହୁଡ଼ିଲା ।
କାମଦେବ ଅଇଲା ଧନୁ ଗୁଣ ଶୁଣି
କଠୋର ଦେଖି ବାଟୁ ବାହୁଡ଼ିଲା ପୁଣି ।
ମୋହୋର ଉପରବଂଶେ ନାମ ମୁଚୁକୁନ୍ଦ
ଅସୁରଙ୍କ ସଙ୍ଗତେ ସେ କଲା ବହୁତ ଦ୍ୱନ୍ଦ୍ୱ।
ଦେବତାଙ୍କ ସରି ହୋଇଲା ବାହୁବଳେ
କ୍ଷତ୍ରୀ ସମ ତାକୁ ନାହିଂ ରବି ତଳେ ।
ସେହି କୋଦଣ୍ଡ ନ ପାରିଲା ତୋଳି
ଏକଥା ଶୁଣିଣ ବହୁତ ମୁହିଂ ଭାଳି ।
ଜନେକ ପ୍ରସନେ ମୁଂ ଧନୁକୁ ଦେଖିଲି
ସୁବର୍ଣ୍ଣର ପୁଷ୍ପଦେଇ ମୁଂ ଧନୁକୁ ପୂଜିଲି ।

ପର୍ବତ ସମାନ୍ୟ ଦିଶଇ ଶରାସନ
ଛୁଇଂତ ରାଜାମାନେ ନୋହିଲେ ଭାର୍ଜନ ।
ସୁଧର୍ମା ନାମେ ରାୟେ ଧନୁ ମାଗି ଗଲା
ନ ପାରି ଟେକି ସେ ଅଭିମାନେ ମଲା ।
ସଂକାସନ ପ୍ରିୟ ଯହୁଂ ହୋଇଲାକ ଦୁଚ୍ଛା
ଜନେକଂର ଭାବ ସେ କଟେକ ପରିଚ୍ଛା ।
ଯେବେ ଅପପୂର୍ବ ଶୁଣିଲି ତୋହୋ ତହୁଂ
ଶ୍ରୀରାମ ଧଇଲେ ବୋଲି କହୁଂଅଛ ଯହୁଂ ।
ସତ୍ୟାନନ୍ଦ ବୋଇଲା ମୁଂ କହିବି କିମ୍ପା
ଯେକ
ରାଜାମାନେ ତହିଂ ମିଳିଲେ ଅନେକ ।
ତପୀ ଜପୀ ଋଷି ମହାମୁନିମାନେ
ଅନେକ ଦେଶର ହାଦେ ଅଇଲେ
ରାଜାମାନେ।
କେହି ସେ ଧନୁକୁ ନ ପାରିଲେ ତୋଳି
ଆଠ ଶତ ଲୋକେ ତାହା ନିଅନ୍ତି
ଉଛୁଡ଼ି ।୭୦
ତାହା ତୋହୋର ପୁତ୍ର ଧଇଲା ବାମକରେ
ଦେଖୁଣ ଅଛନ୍ତି ସକଳ ମହୀପାଳେ ।
ଗୁଣଦେଇ ଯହୁଂ ଆମଞ୍ଚିଲେ କୋଦଣ୍ଡେ
ଅକଳବଳ ଧନୁ ହୋଇଲା ବେନି ଖଣ୍ଡେ।
ସ୍ୱର୍ଗେ ସାଧୁ ସାଧୁ ଶୁଭିଲାକ ବାଣୀ
ଭୟେ ପଳାଇଲେ ସକଳ ନୃପମଣି ।୮୦
ଜନେକ ଆନନ୍ଦେ ଦୁହିତା ସମର୍ପିଲା
ପଞ୍ଚ ରତ୍ନମାଳା ଦେଇଂ ସୀତୟା ବରିଲା ।
ରାମ ସନମତ କଲେ କରନ୍ତେଣ ବିଭା
ତୁ ଯେବେ ଭ୍ରାନ୍ତି କିମ୍ପା କର ନୃପଦେବା ।
ବଶିଷ୍ଠେ ବୋଇଲେ ତୁ ଶୁଣ ଦଶରଥ
ସତ୍ୟାନନ୍ଦ କଥା ଅଟଇ ଯଥାର୍ଥ ।
ଶ୍ରୀରାମ ସକଳ ଗୁଣେ ଅଟଇ ସେ ସାର
ସ୍ୱୟେଂ ନାରାୟଣ ହୋଇଲେ ଅବତାର ।
ନୋହିଲେ କି ଆନେ ପାରଇ ଯେହାକରି
ଶୁଣିଣ ସନ୍ତୋଷ ଅଯୁଧ୍ୟା ଦଣ୍ଡଧାରୀ ।
ଜାବାଳି କାଶ୍ୟପ ସୁମନ୍ତ ବାମଦେବ

ସଭିଙ୍କର ମନ ଆନନ୍ଦ କେ କହିବ ।
ଆସ୍ଥାନର ଲୋକେ ବୋଲନ୍ତି ଧନି ଧନି
ବାବୁ ଶ୍ରୀରାମ କୀରତି ଥୋଇଲୁ
ମେଦନୀ ।୯୦
କେତେବେଳେ ତୋର ଦେଖିବୁ ପଦ୍ମ ମୁଖ
ତେବେ ସେ ପାଶୋରିବୁ ସଂସାର ଘୋର
ଦୁଖ ।
ନଗ୍ର ନରନାରୀ ଶୁଣି ତୋଷ ଚିତ୍ତ
ମୁଦୁସୁଲୀ ଯାଇଂ କହିଲେ ରାମ ମାତ ।
ଶୁଣ ଗୋ ଦଶରଥ ଅଯୋଧ୍ୟା ପାଟରାଣୀ
ଶ୍ରୀରାମର କଥା ଗୋ ଅଇଲୁ ଆମ୍ଭେ ଶୁଣି ।
ତାଡ଼କୀ ରାକ୍ଷସୀକି ମାଇଲାକ ବନେ
ବିଶ୍ୱାମିତ୍ର ମୁନି ବିଦ୍ୟାଦେଲା ପରମ ତୋଷ
ମନେ।
ମାରୁଚୀ ସୁବାହୁ ମାଇଲେ ବେନି ବୀର
ଆବର ବିନାଶିଲେ ଅନେକ
ଅସୁର ।୧୦୦
କଉଶିକର ଯାଗ ରଖିଲେ ବେନି ଭାଇ
ଅହିଲା ମୁକତ କଲେ ବେଗେ ଯାଇଂ ।
ମିଥିଲା କଟକେ ଜନେକର ଘର
ଅକଳବଳ ଧନୁ ଥୋଇଥିଲେ ହର ।
ସେ ଧନୁ ମାଗୋ କେହି ନୁଆରିଲେ ଧରି
ଆଠଶତ ଲୋକେ ଯାହା ଆଣନ୍ତି ଉଚ୍ଛୁରି ।
ତାହା ତୋର ପୁତ୍ର ଧଇଲା ବାମ ହସ୍ତ
ଭାଙ୍ଗି ପକାଇଲା ଇକ୍ଷୁ ପ୍ରାୟେ ମତ ।
ଜନେକ ମହାରଷି ସତ୍ୟ କରିଥିଲା
ଯେ ଧନୁ ଧରିବ ଝିଅ ଦେବଇଂ
ବୋଇଲା।୧୦
ସୀତା ନାମେଣ ତାର ଅଛଇ ରୂପବନ୍ତୀ
ସୁର ନର ମୁନି ଦେଖିଲେ ବଶ୍ୟ ହୋନ୍ତି ।
ସେ କନ୍ୟା ଦେବ ସେ ପୁତ୍ରକୁ ତୋହୋର
ବଧାଇ ମାଗିବାରଟି ବେଭାର ମିଳଇ
ଆମ୍ଭର।
ଶୁଣିଣ ବୋଲନ୍ତି ଯେ ଶ୍ରୀରାମର ଆଇ

ପୁତ୍ର ନ ଦେଖିଲେ ପ୍ରତେ ଯାଇ ନାହିଁ ।
ମାର୍ଗଶିର ମାସେ ଗଲେ ଆମ୍ଭର ବଳା
ମଝି ସମୁଦ୍ରରେ ମୋର ବୁଡ଼ାଇଲା ଭେଳା ।
ଯେବେ ବୈଶାଖକୁ ଛମାସ ପୂରିଲା
ବୈଇକୁଲ୍ୟୋ କଉଶୁଲାର ଅଶ୍ରୁଜଳ
ଗଳିଲା ।୨୦
ନିଜ ବାସ ଘେନି ପୋଛିଲାକ ଝାଡି
କେତେବେଳେ ଦେଖିବି ମୋ ପ୍ରାଣର
ସଂଗ୍ରାଂତି।
ଦ୍ୱାଦଶ ବରଷ ଯାୟେ କୋଳେ
ଶୁଆଇଲାଇଂ
ଯୋଗେ ଅବା ବେଳେ ପିଠିଦେଇ ଶୋଇଂ।
ତତକ୍ଷଣେ ଚିଆଇଂ ରାମ ବୋଲନ୍ତି ମାଆ
ମରି
କୋଳରେ ଆଉଜି ଶୁଅଇ ଗଳାଧରି ।
ଛମାସ ହୋଇଲା ଶ୍ରୀରାମ ମୋର ଗଲା
ଯେତେ ବୋଲି ଦେବୀ ବହୁତ ରୋଦନ
କଲା ।
ଯେଥୁ ଅନନ୍ତରେ ଦଶରଥ ନୃପତି
ବଶିଷ୍ଟଙ୍କୁ ବୋଲଇ ତୁମେ ଶୁଣ
ମହାଯତି ।୩୦
ଜନେକ ଯେବେ ଶ୍ରୀରାମଙ୍କୁ ଦେବ ସୀତା
ଯେହେର୍ଣ୍ଣେକ ଘଟସୂତ୍ର କରିଛି ବିଧାତା ।
ତୁମ୍ଭର ମୋହୋର ବୋଲେ ନୁହଇ ସେ
ଆନ
ଯାହା ପ୍ରଜାପତି କରିଛି ଲେଖନ ।
ସତ୍ୟାନନ୍ଦ ଯେବେ ଅଇଲାନି କହି
ବିଭା କରାଇଣ ଯିବା ଆମ୍ଭେ ତହିଁ ।
ସୁମନ୍ତକଇ ଚାହିଁ ବୋଲଇ ନୃପବର
ଚତୁରାଙ୍ଗ ବଳ ମୋର ସବୁ ସଜକର ।
କାଲି ରଜନୀ ପ୍ରଭାତେ ଆମ୍ଭେ ଯିବା
ଜନେକ କଉଶିକ ଶ୍ରୀରାମଙ୍କୁ
ଦେଖିବା ।୪୦
ତୁମ୍ଭେ ବଶିଷ୍ଟେ ଯେବେ ଘେନିଯାଅ
ସତ୍ୟାନନ୍ଦ

ଗଉରୋବ କରି ଯେବେ ଦିଅ ଫଳ ସ୍ୱାଦ ।
ଯେତେ ବୋଲି ରାୟେ ଆସ୍ଥାନୁ ଉଠିଗଲା
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକ
ଦେଲା।
ଶ୍ରୀରାମର ଲେଖା ବଶିଷ୍ଟ ହାଥୁଂ ଘେନି
ଅନ୍ତପୁରେ ବିଜୟେ କଲେକ ରାଜନି ।
ମୁଦୁସୁଲୀ ପହଣ୍ଡ ମଣାଇ ଘେନିଗଲେ
ନିଅବକାଶେ ରାୟେ ପ୍ରବେଶ ହୋଇଲେ ।
କଉଶୁଲ୍ୟା କୟେକୟା କଲେ ଦରଶନ
ସୁମୈତ୍ରା ସହିତେ ସକଳ ରାଣୀମାନ ।୫୦
ରାଜା କହନ୍ତି କଉଶୁଲ୍ୟା ମୁଖ ଚାହିଁ
ଶ୍ରୀରାମ ଲେଖ ଗୋଟିୟେ ଗୋ ଦେଇଛି
ପଠିଆଇ।
ଯେଉଁଦିନୁ ତାକୁ କଉଶିକ ନେଲା
ସେହିଦିନୁ ରାମ ବହୁତ କର୍ମ କଲା ।
ତାଡ଼େକୀ ରାକ୍ଷାସୀକି ବାଟେ ହତକରି
ବିଶ୍ୱାମଇତ୍ର ଯାଗ ହେଲେଣ ରକ୍ଷାକରି ।
ଦେବଙ୍କର ଅସ୍ତ୍ରଶସ୍ତ୍ର କଉଶିକ ସମର୍ପିଲା
ମିଥିଳା ନଗ୍ରକୁ ହାଦେ ଶ୍ରୀରାମକୁ
ଘେନିଗଲା।
ଅହିଲାକୁ ମୁକତ କଲେ ପଥେ ଯାନ୍ତେ
ସଙ୍ଗତେ ଅଛନ୍ତି ଗୋ ବହୁତ
ତପୋବନ୍ତେ ।୬୦
ମିଥିଳା ନଗ୍ରେ ଗୋ ପ୍ରବେଶ ଯାଇଂ ହୋଇ
ହରର ଧନୁ ଗଲା ଜନେକ ଘରେ ଥୋଇଂ ।
ଦେବାସୁର ନରେ ନ ପାରନ୍ତି ତୋଳି
ବାମ ଭୁଜେ ଧନୁ ଧଇଲା ଆକଳି ।
ଗୁଣ ଚଢ଼ାଇଂଣ ଆମଝିଲେ ଯହୁଂ
ଦୁଇଖଣ୍ଡ ହୋଇ ଭାଜିଲାକ ତହୁଂ ।
ଦେଖି ଜନେକ ମୁନି ବହୁତ ପ୍ରଶଂସା କଲେ
ସୀତ୍ୟା ନାମେ ଝିଅ ଦେବଙ୍କଂ ବୋଇଲେ ।
ପଞ୍ଚ ରତ୍ନମାଳା ଦେଇଣ ବରିଲେ
ସେହିଦିନ ବିଭା କରିଣ ଛୋଡ଼ିଲେ ।୭୦
ରାମ ସନମତ ନ କଲାକ ତାହା

ପିତା ନ ଜାଣିଲେ ନୁହଇଂ ମୁହିଂ ବିଭା ।
ସେକଥା ଜାଣି ହାଦେ ଜନେକ ମହରଷି
ମୋହୋର ତହିଂକିଂ ହାଦେ ଦୂତ
ପେଷିଅଛି ।
ଶ୍ରୀରାମ ଆପଣେ ଲିହି ଲେଖ ଦେଲା
ଯେ ବଚନ ଶୁଣି କଉଶୁଲା ବୋଇଲା ।
ଭୋ ରାଜ ଯେହା ମୁଂ ନ ମଣଇ ସତ
ରାମଙ୍କୁ ଦେଖି ପ୍ରତେ ଯିବଇଂ ନିଅତ ।
ଛ ମାସ ହେଲା ଗଲା ମୋହୋର ପୁଅ
ସେହିଦିନୁ ମୋହର ନ ରହଇ ଲୁହ ।୮୦
କିଛି ନ କରି ସେ ଶୁତେ ବ୍ରତି ଥାଉ
ଯେ ମୋହୋର ଅପୁତ୍ରିକ ଅବସ୍ଥା ପାର
ଯାଉ ।
ଯେତେ ବୋଲି ଆଖି କଲା ଥନଥନ
ଦେଖି ଦଶରଥ ବିକଳ ତାର ମନ ।
ବୋଲଇ ସଖି ଆଗୋ ନୁହସି ଆରତ
ଯେବେ ତୋ ସର୍ବ ସୁଖେ ପାଇଲୁ ବାରତ ।
କାଲି ସ୍ୱଭାବେ ଆମେ ଯାଇଂତ ହୋଉଅଛି
ଅଳପ ଦିନେ ପୁତ୍ର ଗୋ ଦେଖିବ ମୃଗାଖି ।
ହରଷ ବେଳେ ଗୋ ନକର ଶୋକ ଜାତ
ରାମଙ୍କୁ ମୋହୋର ପ୍ରଶଂସା କରନ୍ତି
ବହୁତ ।୯୦
ରଷିସିଙ୍ଘ ମୁନି ସତ୍ୟ ମନେ ଚରୁ ଦେଲା
ତେଣୁ ସେ ପୁତ୍ର ମୋହୋର ବିକ୍ଷାତ
ହୋଇଲା ।
କଉଶୁଲାକୁ ତିଆରି ନୃପ ଶିରୋମଣି
ବାହାରେ ଅବକାଶ ହୋଇଲାକ ପୁଣି ।
ମର୍ଦ୍ଦନ ମାର୍ଜ୍ଜଣା ମୁଣୋହିଂବିଧି ସାରି
ଦିବସ ଶେଷେ ହୋନ୍ତେ ପ୍ରବେଶ ତିମିରି ।
କଉଶୁଲା ପୁରେ ପ୍ରବେଶ ମହୀପାଳ
ରଜନୀ ଶେଷେ ଶଙ୍ଖ ପୁରଇ ଦେବଆଳ ।
ଶେଯ୍ୟା ଛାଡ଼ିଣ ଉଠିଲେ ମହୀପତି
ଅବକାଶ ହୋଇଂ ବୋଲନ୍ତି ନୃପତି ।୧୦୦
ବିହୁଡ଼ି ହୁକାମାନ ଜଳଇ ନିରନ୍ତର
ଖୁଣ୍ଟିଆକୁ ରାଇ ବୋଲଇ ନୃପବର ।
ଦେଶେ ଦାଉଣ୍ଡି ତୁ ଦିଆଅ ବେଗ ହୋଇଂ
ସନ୍ୟ ମୋର ଆସନ୍ତୁ ବେଗେ ସଜ ହୋଇଂ ।
ଯେତେବୋଲି ଖୁଣ୍ଟିଆ ଆଗ୍ୟାଂ ଘେନିଲା
ଟମକିଆର ନାମ ଧରି ବେଗେ ରାବ
ଦେଲା ।
ଶୁଣି ଟମକିଆ ଗଲା ଖର କରି
ଓଟଶାଳେ ପ୍ରବେଶ ଆନନ୍ଦ ମନ ଧରି ।
ଦଉଡ଼ିରୁ ଫେଡ଼ି କଲା ଓଟ ସଜ
ପଲାଣ ଭିଡ଼ିଣ କରଇ ତାହା ଉଜ ।୧୦
ଟମକ ବାନ୍ଧିଣ ଭିଡ଼ିଲା ଦୃଢ଼କରି
ଆପଣେ ଚଢ଼ିଲା ଯାଇଂ ଦୁଗାକୁ ସୁମରି ।
ସିଂଘଦ୍ୱାରେ ମିଳିଲା ଯାଇଂ ସେ ତଡ଼ତି
ଦୁଇ ହାଥେ ଧଇଲା ବହଳ ଚମପାତି ।
ଉଗୁଇଂ କରିଣ ନିଶାଣେ ପିଟିଲା ନେଇଂ
ବାଜିଲା ଟମକ ଘୋର ରାବ ହୋଇଂ ।
କି ଜାଣି ଆଷାଢ଼ ମାସେଣ ମେଘ ସାଜେ
ବିବିଧ ଛନ୍ଦେଣ ନିଶାଣ ଧ୍ୱନି ବାଜେ ।
ଶୁଣିଲେ ଅଯୁଧ୍ୟା ନଗ୍ର ନରନାରୀ
ରାଜାର ସେବକମାନେ ଆସନ୍ତି
ଖରକରି ।୨୦
ରାଜାଙ୍କୁ ଦ୍ରଶନ କଲେ ସେ ଯାଇଂ ଝାଟି
ସୁମନ୍ତ ପାତ୍ର ସେ ଅଇଲା ତଡ଼ତି ।
ମନ୍ତ୍ରୀ ମୁଖ ଚାହିଂ ବୋଲଇ ଦଣ୍ଡଧାରୀ
ଚତୁରାଙ୍ଗ ବଳ ମୋର ଆଣ ବେଗେ
ସଜକରି ।
ପାତ୍ର ବୋଇଲେ ଦେବ ଭିଆଇଂ ଅଛି ଯାହା
ସଙ୍ଗେ ଯିବେ ଯେତେବେଳେ ଆଗ୍ୟାଂ
ଦେବୁ ତାହା ।
ନୃପତି ଆଗ୍ୟାଂଦେଲେ ଶୁଣହୋ ସୁମନ୍ତ
ବିଭାର ବିଧାନ ପଦାର୍ଥମାନନ୍ତ ।
ସମସ୍ତ ସଜ କରାଇଂ ଯିବୁ ତୁ ଘୋନାଇଂ
ଯେସନେକ ସମୟେ ବଶିଷ୍ଟ ହୋନ୍ତି
ଯାଇଂ ।୩୦
ରାଜା ନିତ୍ୟକର୍ମ ସାରିଣ ତଡ଼ତି
ବଶିଷ୍ଠଙ୍କ ପାଦେ ନମଇଂ ନୃପତି ।
ଭୋ ମୁନି ମିଥିଳା ପୁରକୁ ଚାଲ ଯିବା
ଶ୍ରୀରାମର ମୁଖ କମଳ ଦେଖିବା ।
ଜନକ ରଷି ଯେବେ ଦୟା ମୋତେ କଲା
ଆଜ୍ଜୁଂ ସେ ଜୀବନ ମୋର ସଫଳ
ହୋଇଲା ।
ବଶିଷ୍ଟେ ବୋଇଲେ ତୁ ଶୁଣ ନୃପମଣି
ଆଜ୍ଞା ଦେସି ଆଗେ ଯାନ୍ତୁ ଆଗିଆଣି ।
ଜାବାଳି ବାମଦେବ କଶ୍ୟପ ଆସି ମିଳି
ପ୍ରବେଶ ହୋଇଲେ ଯାଇଂ ସତ୍ୟାନନ୍ଦ
ତପଶାଳୀ ।୪୦
ଭ୍ରଥ ଶତୃଘନ ଅଇଲେ ସଜ ହୋଇ
ଗଗନେ ଉଦୟେ ହୋଇଲେ ପ୍ରାଚୀ ସାଇଂ ।
ରଥ ଗଜ ଅଶ୍ୱ ପାଦାନ୍ତି ନିରନ୍ତର
ସର୍ବେ ସଜହୋଇ ମିଳିଲେ ସିଙ୍ଘଦ୍ୱାର ।
ବଜାନ୍ତି ଟମକ ନିଶାଣ ତାଳି ତାଳ
ଦମା ଦାଉଡ଼ି ବଜାନ୍ତି ମର୍ଦ୍ଦଳ ।
ଆଲମ୍ୱ ବିଲମ୍ୱ ପାଟଛତ୍ର ମାନ
ଯେ ଯାହା ବଳ ସାଜି ଅଇଲେ ସର୍ବଜନ ।
ବଶିଷ୍ଠଙ୍କୁ ଚାହିଂଣ ବୋଲନ୍ତି ନୃପବର
ଲାଗୁତି ଘେନାଇଂ ଆଗେ ଯାଅ
ନୃପବର ।୫୦
ସୁମନ୍ତ ପାତ୍ର ଆଗିଆଣି ଆଗେ ହେଉ
ସହସ୍ରେ ରଥ ମୁନି ଯେହାର ସଙ୍ଗେ ଯାଉ ।
ଅହିବ୍ରତେକ ଗଜ ସତୁରି ସହସ୍ର ଅଶ୍ୱ
ଦୁଇଲକ୍ଷ ପାଦାନ୍ତି ଥାଉ ଯେହାର ପାଶ ।
ଆଗ୍ୟା ପାଇ ସୁମନ୍ତ ହୋଇଲା ବାହାର
ରାଜାର ବୋଲେ ବଳ ଘେନି ଆଗୁସାର ।
ମନୋରଥ ବୋଲି ରାଜାର ଲାଗି ଅଶ୍ୱ
ତାହା ଆରୋହିଲା ମନରେ ହରଷ ।
ନୃପତି ଅଶ୍ୱ ଅଛି ତାଙ୍କୁ ଦେଇ
ସୁମନ୍ତ ଅଶ୍ୱ ବେଗେ ନେଲାକ
ଗୋସାଇଂ ।୬୦
କିଜାଣି ସେ ଅଶ୍ୱ ଆଦିତ୍ୟ ବାହାନ

ଯା ବୋଇଲେ ଯାଇ ପବନହୁଁ ବହନ ।
ସର୍ବେ ଶ୍ୱେତ ଲାଂଜ ଛୋଟ ମୋଟ ବୁକୁ
ରତ୍ନମୟେ ବାଖର ପଲାଣ ଅଛି ତାକୁ ।
ପାଟ ପଟାହାର ଦୁଇଗୋଟି ଭିଡ଼ି
ବେଗୁଆର ବାନ୍ଧି ଚମଦଳା ଦଉଡ଼ି ।
ରଙ୍ଗ ପାଟ ପତନି ରଙ୍ଗ ମଣିମାଳେ
କୃଷ୍ଣ ଶ୍ୱେତ ଚାମର ହୃଦୟରେ ଲୁଳେ ।
ବାଗର ଉପରେ ସୁବର୍ଣ୍ଣ ଅଛି ଘୋଟି
କେଳାଣି ବାଟ ଶୁଆଣି ବାସୁକି ଫେରୁ ଟେକି ।୭୦
ପଛେ ପଛାଉର ଘାଘୁରି ଘଣ୍ଟି ଖଂଜା
ଠାବେ ଠାବେ ଖଂଜା ଗଜମୋତି ପୁଞ୍ଜାଂ ପୁଞ୍ଜାଂ ।
ଗଙ୍ଗ ଦୟେଣା ଚାମର ପିଠିରେ ପିଠୁଆଳି
ଲାଙ୍ଗଂ ପରିଯନ୍ତେ ପଡ଼ିଅଛି ବଳି ।
ଦୁଇ ପାଶରେ ଚାମର ଦୁଇ ଗୋଟା
ବୀର କେଦାର ବାନ୍ଧି ଦିଶଇ ମହାଛଟା ।
ସୁରଙ୍ଗଣୀ ପାଟେ ସୁନ୍ଦର ଦିଶଇ ଗଦି
ଶଶୀ ବିହୁନେ କି ବିଜୁଳି ଗଗନେ ଭେଦି ।
ସୁବର୍ଣ୍ଣର କଡ଼ିଆଳ ନବରତ୍ନେ ଖଂଜା
ବୀର କେଦାର ଲାଗି ନ ଦିଶଇ ଥାନ ମଝା ।
ଶିରକେଶ ଫେଡ଼ିବାର ସଞ୍ଚାମାନ ଦିଶଇ
ଯାଉଂଳି ସୁନାସୁତା କଣ୍ଠମୂଳେ ବସଇ ।
ଖିଦ୍ର ଘଣ୍ଟି ଘାଗୁଡ଼ି ବାଜଇ ରଣ ଝୁଣ
ଶୁକଳ ପାଟ ଜାଣି ଦିଶି ଅଶ୍ୱ ରୋମ ।
ଫରହର ଉଡ଼ାଇ ଦୁଇ ବେଢ଼ ନେତ
ଦୁଇଖଣ୍ଡା ଡାବ ଅଛଇ ସବୁ ଶେତ ।
ଗୁଣା ଶିକଳି କମେ ଗୁଚ୍ଛି ବାଗକଳା
ରଙ୍ଗ ପାଟ ପତ ଉପରେ ବେଢ଼ାଇଲା ।
ଖଞ୍ଜିଲା ସୁନା ସୂତା ଅଛଇ ଭଲ କରି
ସଜକରି ବାହୁକ ଅଛି ଅଶ୍ୱ ଧରି ।୯୦
ସୁମନ୍ତକଇ ଦେଖି ଦରଶୁଆଇଲା ଆଣି
ଅଶ୍ୱ ଉଭା ହୋଇଲା ବାମପାଖ ଦେଇ ପୁଣି ।
ଦୋସରି ଶିକୁଳି ସୁବର୍ଣ୍ଣ ଅକୋଆଣି
ବାମ ପାଦ ଦେଲା ତହିଁ ମନ୍ତ୍ରୀ ଶିରୋମଣି ।
କା କା ଆସନ ଚଢ଼ି ବସିଲା ଅଶ୍ୱ ପିଠି
ଦକ୍ଷିଣ ଅକୋଆଣିରେ ଖଞ୍ଜିଲା ଡାହାଣ ପାଦଗୋଟି ।
ହସ୍ତର ପିଛ ନେଇଂ ପାଗଡ଼େ ବେଗେ ଦେଲା
ଆବର ପାଟ ଚାବୁକ ସମର୍ପିଲା ।
ଚଳିଲାକ ଅଶ୍ୱ ପବନହୁଁ ବେଗେ
ସହସ୍ରେକ ଅଶ୍ୱ ଅଛଇ ତାହାର ସଙ୍ଗେ ।୧୦୦
ପାଟଛତ୍ର ଧରାଇଂ ଚଳିଲା ମନ୍ତ୍ରୀବର
ପଛେଣ ବାଜଇ ଟମକ ନିରନ୍ତର ।
ସହସ୍ରେକ ଆଳମ୍ବ ସହସ୍ରେକ ବିଲମ୍ବ
ରେଣୁ ଘାୟେ ନ ଦିଶଇ ଅନ୍ତରାଳ ।
ଫଡ଼ିକାର ପାଇକେ ଗହଳେ ଧାପ ଦ୍ୟନ୍ତି
ଖଣ୍ଡା ବୁଲାଇଂ ଫଡ଼ିଶର କରନ୍ତି ।
କେ ବାଣ ଶରେ କେ ଦେବୀଙ୍କ ଅସ୍ତ୍ରେ ରହି
ଜାଉଂଳି ପଟା ଧରି କେ ସକାଂରଣ ଥାଇ ।
ଫଳା ଧରିଣ କେ ସାଗ୍ରାଂମେଣ ଉଠି
କେବଣ ପାଇକେ ଖଣ୍ଡା ଛଡ଼ାବନ୍ତି ସୃଷ୍ଟି ।୧୦
ଢୁଣ୍ଡୁକି ପାଇକେ କାଣ୍ଡନ୍ତ ପୂରାଇ
ଆରେ ଆରେ ବୋଲି ଆଗକୁ ଯାନ୍ତି ଧାଇଂ ।
କଟିରେ ଘଣ୍ଟିମାନେ କରନ୍ତି ଶବଦ
ଧନୁର ଗୁଣ ଫରିକାର ଠେସ ନାଦ ।
ଅଶ୍ୱଙ୍କର ଟାପୁରେ କମ୍ପଇ ମେଦିନୀ
ହିଂସାରାବ ଘାୟେ ଶୁଭଇ ଘୋର ଧ୍ୱନି ।
ହସ୍ତୀଙ୍କର ଗରଜନେ କମ୍ପଇ ମହୀଆଳି
ଘଣ୍ଟିମାଳରେ କୁରୁମ ଉଛୁଳି ।
ସମ୍ଭର୍ବ ହୋଇଂ ଚଳଇ ମନ୍ତ୍ରୀବର
ସ୍ୱର୍ଗେ ପ୍ରଶଂସା କରନ୍ତି ଦେବାସୁର ।୨୦
ଦଶରଥ ରାୟେ ଏଥୁ ଅନନ୍ତରେ
ଆପଣେ ସଜ ହୋଇଲେ ନୃପବରେ ।
ଦିବ୍ୟ ଦେବାଙ୍ଗ ବାସ କନ୍ଥା ପିନ୍ଧି
ଶିରରେ ବୀର କେଦାର ଠେକ ପାଗ ବାନ୍ଧି ।
ରତ୍ନମୟେ ମୁକୁଟ ଶୋହଇ ସପ୍ତଶାଖା
କିରଣ ମଣିମୟେ ବିରାଜଇ ଯେକୁଂଯେକା ।
କର୍ଣ୍ଣେଣ କୁଣ୍ଡଳ କଣ୍ଠେ ରତ୍ନମାଳ
ରତ୍ନ ପଦକେ ଲୁଳଇ ବକ୍ଷ ସ୍ଥଳ ।
ବାହେଣ ବାହୁଟି ତାଡ଼ ଦିବ୍ୟକାନ୍ତି
ଅଗୁଂଷ୍ଟିରେ ରତ୍ନ ମୁଦ୍ରିକା ବିରାଜନ୍ତି ।୩୦
କଟିରେ କଟିମେଖଳା ମୁକୁତା ମଣିଝରା
ବାମେଣ ଛୁରୀ ନେତ ପତନି ଥରହରା ।
ପୟରେ ନେପୁର କ୍ଷତ୍ରୀ ଉରଶଳ
ସଜ ହୋଇଲାକ ଅଯୁଧ୍ୟା ମହୀପାଳ ।
ବଶିଷ୍ଠେ ଦେଲେ ନେଇଂ ମଙ୍ଗଳ ଆଳତୀ
ଗୋରଚନା ଚିତା ସୁନ୍ଦରର ଜ୍ୟୋତି ।
ଦୁଂବାଙ୍କୁର ରାୟେ ଶିରରେଣ ଧରି
ବ୍ରାହ୍ମଣ ଜନକଇ ନମସ୍କାର କରି ।
ଯାତ୍ରା ସିଦ୍ଧି ନିମନ୍ତେ ଦଧିମାଛ ଅଛି
ପୂର୍ଣ୍ଣ କୁମ୍ଭ ନଟୀକାଳ କଦଳୀ ବୃକ୍ଷ ରଞ୍ଚି ।୪୦
ଶେତ ପାରୁଆ ରାଜହଂସ ପକ୍ଷିମାନ
ମଙ୍ଗଳ ଅର୍ଥେଣ ଅଛନ୍ତି ଥାନେ ଥାନ ।
ବିପ୍ର ଜନେ ବେଦ ଆଧ୍ୟାନ କରନ୍ତି
ସହସ୍ର ଶିରିଣା ପାଠ ସୁମରଣ କରନ୍ତି ।
ଭାଟକୟେବାର ଆଗେ ଶିବା ବାଣୀ ଘୋଷ
ମଙ୍ଗଳା ଅଷ୍ଟକ ଯେ ପଢ଼ନ୍ତି ପାଟ ଜଉତିଷ ।
ସଂଝଂକାରି ନାରୀ ଦିଅନ୍ତି ହୁଳହୁଳି
ନିଶ୍ୱାସ ଖୋଜି ପାଦ ବଢ଼ାଇ ମହାବଳୀ ।
ଶୁଭ ଯୋଗେ ବାହାର ହୋଇଲା ନରନାଥ
ସଙ୍ଗରେ ଅଛନ୍ତି ତାର ଶତ୍ରୁଘନ ଭ୍ରଥ ।୫୦
ଗଜ ପିଠି ଆରୋହଣ କଲାକ ନୃପତି
ସୁମନ୍ତର ପୁତ୍ର ଟୋଳି ଧଇଲା ପାଟ ଛତ୍ରି ।
ଭ୍ରଥକଇ ରାୟେ ଆଗ୍ୟାଂ ଦେଲା ରାଇଂ
ପଛିଆଣି ଦଣ୍ଡେ ଥାଅସି ବେନି ଭାଇ ।

ଶୁଣିଣ ଭ୍ରତ ଶତ୍ରୁଘନ ବେଗେ ଯାନ୍ତି
ଯୁଦ୍ଧ ବାରୁ ଚଢ଼ି ପଛରେ ରହନ୍ତି ।
ଅକଳିତ ବଳ ରହିଲେ ତାଙ୍କ ତୁଲେ
ପଛ ପଟୋଆରେ ରହିଲେ ପିତା ବୋଲେ ।
କଉଶୁଲା କଯେକୟା ସୁମେତ୍ରା ତିନି ରାଣୀ
ରାଜା ଆଗ୍ୟାଂ ଦେଲେ ଯେତେକ
ତରୁଣୀ ।୬୦
ସମସ୍ତେ ହେଂ ଆଜ ଯିବା ମିଥିଳାକୁ
ବିଭା କରାଇବା ଯାଇଂ ଶ୍ରୀରାମକୁଂ ।
ଶୁଣିଣ ସଜ ହୋଇଲେ ରାଣୀ ହଂସ
ରାଜା ଆଗ୍ୟାଂ ପାଇଁଣ ସମସ୍ତେ ହରଷ ।
ହାଦୋଳୟେ ବସି ହୋଇଲେ ବାହାର
ବଶିଷ୍ଟ ଚଳାଣ ଯେ ଅଟନ୍ତି ତାହାଙ୍କର ।
ଲୋକନ୍ତ ଦୂରକରି ଦିଅନ୍ତି ଭୁତୁଙ୍ଗିଆ
ଦୂର ହୋଇଯାଅ ବୋଲି ଡାକ ଦିଆ ।
ପାଶ ପରିଜନେ ଗୋଡ଼ାଇ ଅଛନ୍ତି
କେ ଶେତ ଚାମର ବିଞ୍ଚଣି ବିଞ୍ଚନ୍ତି ।୭୦
କଉଶୁଲା ହାଦୋଳାରେ ପଞ୍ଚୁରତ୍ନ ଓହାଡ଼ି
ସୁବର୍ଣ୍ଣର ରଙ୍ଗ ପତନି ଅଛି ବେଢ଼ି ।
କୁସୁମ ମାଳନ୍ତ ମଣ୍ଡିଳା ତହିଂ ଅଛି
ଚାରିଗୋଟି ପାଟଛତ୍ର ଅଛଇ ତହିଂ ପାଛୁ ।
କଯେକୟା ସୁମଇତ୍ରାକୁ ଯେ ଯେସନେ
ଆବର ରାଣୀମାନଙ୍କୁ ଓହାଡ଼ି ନାନା ବର୍ଣ୍ଣେ ।
ଦଶ ସହସ୍ର ପାଇକ ପଚିମ ଦ୍ୱାର ରଖଇ
ଆଡ଼ୋ ବୋଲି ଡାକିଲେ ଅନ୍ତରିକ୍ଷେ
ପାଟଇ ।
ଦୁଇ ସହସ୍ର ଘୋଡ଼ା ପଖା ରଖିଥାଇ
ଆଗ ପଛ ହାଥୀ ଶୟେ ଶୟେ ଥାଇ ।
ବଶିଷ୍ଟ ମହାମୁନି ପାଲକିଂ ଆରୋହି
ରାଣୀ ହଂସ ଚଳାଇଂ ଆସନ୍ତି ପଛ ହୋଇ ।
ଡଗରା ପଶରାଇତା ଅଛନ୍ତି ସର୍ବବେଢ଼ି
ସୁବର୍ଣ୍ଣ ରଙ୍ଗ ପାଲକିଂ ଆସନ୍ତି ମୁନି ଚଢ଼ି ।
ଯେହାଙ୍କର ପଛେ ଆସନ୍ତି ନୃପତି
ନିଘୋଡ଼ ହୋଇଂଛନ୍ତି ସହସ୍ରେକ ହାଥୀ ।

କେବଣ ହସ୍ତୀ ମୁଖ ସିନ୍ଦୂର ଭୂଷଣ
କେବଣ ହସ୍ତୀ ଦିଶଇ ବିଭୂତି ବିଲୋପନ ।
କେବଣ ହିଂ ଗଜର ବହଇ ମଦ ଖଳ ଖଳ
ଅବିଛନେ ଝରୁ ଅଛଇ କର୍ଣ୍ଣ ମୂଳ ।୯୦
କେବଳ ମତ୍ତ ଗଜ ଅଛଇ ଉଶ୍ୱାସି
ବାହାର ହୋଇଂ ଯାଇ ସେ ସାହାଣେ
ନପଶି ।
ରାଜା ଚଢ଼ି ଅଛଇ ଶତ୍ରୁଜୟେ କନ୍ଧେ
ଅଇରାବ୍ରତ ଚଢ଼ିକି ଅଇଲା ଦେବ ଇନ୍ଦ୍ରେ ।
ଦିଗ ଗଜ ପ୍ରାୟେକ ଦିଶଇ ପଟାନ୍ତର
ସର୍ବାଙ୍ଗେ ମଣ୍ଡିଲା ଅଛି ଶେତ ଯେ ଚାମର ।
ବୀର ନେତ ଦୁଇ ଉଡ଼ଇ ଦୁଇ ପାଶ
ମଣ୍ଡିଲା ଅଛି ବିବିଧ ଝିନ ବାସ ।
ପାଟର ଦଉଡ଼ି ସୁବର୍ଣ୍ଣର ଶିକୁଳି
କଂସା ଘଣ୍ଟି ଉପରେ ରୂପାଅଛି
ଢାଳି ।୧୦୦
ଲୁହାର ଥୋପା ଘଣ୍ଟି ମୂଳରେ ଅଛି ଖଂଜି
ହସ୍ତୀର ଚଳନ୍ତେ ଶବଦ କରେ ବାଜି ।
ଚାରି ଚରଣେ ଘାଗୁଡ଼ି ମାଳ ମାଳ
ପାଦେ ଚାଳନ୍ତେ ବାଜଇ ଝଞ୍ଜାଳ ।
ଉପରେ ଘାଁଗୁଡ଼ି ମାଳ ରୁଣଝୁଣ ବାଜେ
ବରଷା ରଜନୀରେ କି ଦ୍ରୋଣମେଘ
ଗର୍ଜେ ।
ସୁବାସ ଶେତ ଚାମର କର୍ଣ୍ଣ ମୂଳେ ଅଛି
ରଙ୍ଗପାଟ ଲୁହା ଆରେଣି ଟେଙ୍କ ଲେଖି ।
ପୁସ୍ୟେଣ ଶୋଭାବନ ଦିଶଇ ମାତଙ୍ଗ
କପୋଳେ ଘଷିଲା ଅଛଇ ଅଭଙ୍ଗ ।୧୦
କର୍ଣ୍ଣ ପର୍ବତ ପରିଯନ୍ତେ କସ୍ତୁରୀ ଲେଖନ
ରତ୍ନରେ ଲଲାଟ ପାଟି ଦିଶଇ ଶୋଭାବନ ।
ମୁକୁତାର ଝରା ଲମ୍ବଇ ଗଣ୍ଡ ତଳ
ନୀଳା ମଣି ସଙ୍ଗେ ପୋୟେଲା ମାଳ ମାଳ ।
ଶିରେଣ ସିଞ୍ଚିଅଛି ସେବତୀ ପାଖୁଡ଼ି
ଗଗନୁ ତାରାମାନେ ପଡ଼ିଲେକ ଝଡ଼ି ।
ନେତର ତୁଳି ପାଡ଼ିଲା ଅଛି ଗଜ କନ୍ଧ

ନିଷ୍କଳ କରି କଲାକ ପରିବନ୍ଧ ।
ତହିଂର ଉପରେ ଅଛି ରାୟେ ବସି
ପାଟ କାଛ ଉପରେ ଚରଣ ଦୁଇ
ଖୋଷି ।୨୦
ବାମକରେ ଆରଣ ଡାହାଣକରେ ଅକୁଂଶଇ
ସମ୍ଭର ହୋଇଣ ସେ ନୃପତି ତହିଂ ବସଇ ।
ଉଠି ମହାଗଜ ଚଳଇ ଘନ ଘନ
ବିକ୍ରମି ଉର୍ଦ୍ଧକଇ କଲାକ ଗମନ ।
ଦଶନେ ସୁବର୍ଣ୍ଣ ବଳା ଝଟକନ୍ତି
ଥୋର ହସ୍ତ ଟୋଳିଣ ଚଳିଲା ପାଟହସ୍ତୀ ।
ଯେ ତାହାର ମାହୁନ୍ତ ପାଶେଣ ବସଇ
ରାଜାର ପାଖେ ସେ ଖଦି ଘେନି ବିଞ୍ଚଇ ।
ଦଖିଣ ପାରୁଶରେ ସୁମନ୍ତର ବଳା
ନାମ ବିଦ୍ୟାଧର ବର୍ଣ୍ଣେଣ ଶାମଳା ।୩୦
ବଇରି ବିଭାଣ୍ଡକର କନ୍ଧେଣ ବସିଥାଇ
ବୀର ଛତ୍ର ଧରଇ ସେ ରାଜାର ଶିରକଇ ।
ବାମେଣ ଜାବାଳି ପୁତ୍ର ସୋମଧର
ଶତ୍ରୁମର୍ଦ୍ଦନ ନାମେଣ ଚଢ଼ିଛି କରୀବର ।
ରାଜାକଇ ତାମ୍ବୁଳ ଯୋଗାଣ କରାଉଛି
ନାଗି କରଇ ସେ ଯେତେବେଳେ ଇଛି ।
ମମତୁଲ ହୋଇଂଣ ଚଳନ୍ତି ତିନି ଗଜ
ମଧ୍ୟେଂ ଶୋଭା ପାଉଛି ଅଯୁଧ୍ୟାର ରାଜ ।
ଆଗେ ପଛେ ସୈନ୍ୟ ଚଳଇ ବହୁତ
ଉଦଣ୍ଡ ଉଲାଖ ଉଡ଼ଇ ବୀରନେତ ।୪୦
ଆଲମ୍ୱ ପାଟଛତ୍ର ବିଲମ୍ୱ ପନ୍ତି ପନ୍ତି
ରାଜା ଛାମୁରେ ସେ ବେଢ଼ି ଧରିଛନ୍ତି ।
ଘଣ୍ଟି ଘରଘରି ରଥ ଗୋଷ ଧ୍ୱନି
ମୁଖ ରାବ ଶବଦେ କମ୍ପଇ ମେଦିନୀ ।
ଢୋଲ ଦମା ଦାଉଣ୍ଡି ମୃଦଙ୍ଗର ତାଳ
ତାଳ କରତାଳ ମହୁରୀ କଂସାଳ ।
ପିଟା ଘଣ୍ଟ ଶଙ୍ଖ ଗିଡ଼ି ଗିଡ଼ି କାହାଳୀ
ରାଜାଙ୍କୁ ଦେଖି ନାରୀ ଦିଅନ୍ତି ହୁଳହୁଳି ।
ଚରଣ ଧୂଳି ଘାୟେ ଗଗନ ନଦିଶି
କେ ଜାଣି ଦିବସ ହୋଇଲାକ ନିଶି ।୫୦

ରତ୍ନଙ୍କର ତେଜେ ଦିଶୁଅଛି ବାଟ
ନୋହିଲେଣ ବଣା ହୁଅନ୍ତେନି ଥାଟ ।
ସହସ୍ରେକ ଚାମର ପଡ଼ଇ ରାଜା ଯାନ୍ତେ
ଗହଳେ ହସ୍ତୀ ଚଢ଼ି ଚଳନ୍ତି ଅମନାତ୍ୟେ ।
ବାମଦେବ କଶ୍ୟପ ଜାବାଳି ଯେ ତିନି
ପଛ ପଟୋଆରେ ଭ୍ରଥ ଶତୃଘନ ଭାଇ
ବେନି ।
ସୁଖାସନ ଚଢ଼ି ଅଛନ୍ତି ମନ୍ତ୍ରୀ ବେନି
ପଟୋଆରେ ପଶି ରାଉତେ ଝଲକନ୍ତି
ପୁଣି ।
କେ ଖଣ୍ଡା କାଢ଼ନ୍ତି କେ ବୁଲାନ୍ତି ଶାବେଳି
ଛାଟ ଦେଖାଇଂ କେ ଘୋଡ଼ା ଦିଅନ୍ତି
ଚାଳି ।୬୦
ହାକି ଧୂଆଇଂ ତୁରଙ୍ଗ ଚଳାବନ୍ତି
ତରକସ ଭିଡ଼ିଣ କେ କମାୟେଣ
ଓଟାରନ୍ତି ।
ଘୋଡ଼ାକେ ନେଇଂଣ ଗଜ ମୁଖେ ଉଭାରନ୍ତି
କେବଣ ରାଉତ କାହିଂ ଖୁରି କରାବନ୍ତି ।
ଥାଠ ଚଳନ୍ତେଣ ନଗ୍ର ନରନାରୀ
ଗୋଡ଼ାଇଂ ଦେଖନ୍ତି କେ ଯେକକୁ
ଆଗସରି ।
ରାଜାର ଛାମୁରେ ସେ ଅଛନ୍ତି ନିଯୋଗି
ଯେ ଯାହାର ନିଯୋଗ ଜାଣି ଆସନ୍ତି ବେଗି
ବେଗି ।
କେ ରଥେ ବସି କେ ବସଇ ଗଜ ପିଠି
କେ ଅଛି ଆରୋହିଂ କେ ଆସଇ ବେଗି
ବେଗି ଉଠି ।୭୦
କେ ସୁଖାସନ ପାଲଟି ଆରୋହିଂ
କେହୁ ପୟେକାର ଆସଇ ସଜ ହୋଇ ।
ଖୁଣ୍ଟିଆ ପଢ଼ିହାରୀ ଲେଙ୍କା ଲମ୍ଭହତା
ସାତ ପାଞ୍ଚ ହୋଇଂ ଆସନ୍ତି କହି କଥା ।
ନଟ ଭାଟ ଗଣିକାୟେ ଅଛନ୍ତି ଅପାର
ଅଛନ୍ତି ବିନୋଦିଆୟେ ଘେନିଣ ସମ୍ଭାର ।
ଥୋକାୟେକ ଦୂରେ ମାରନ୍ତି ବଜ୍ର ବାଣ

ଆଦ୍ୟ ଆଷାଢ଼େକି ଗର୍ଜ୍ଜଇ ମେଘ ଦ୍ରୋଣ ।
ନଜାଣିମା ଲୋକେ ହୋଇଲେ ଆରତ
ପୁଣି ବିଚାରନ୍ତି ହୋଇଣ ଉଷତ ।୮୦
ଭଣ୍ଡାର ଅଧିକାରୀ ଭଣ୍ଡାର ଘେନି ଚଳି
ଦଶ ସହସ୍ର ପାଇକ ରଖନ୍ତି ତାହା ମିଳି ।
ଦଣ୍ଡ ସିଂହାସନ ମୁଦ ହୋଇଂ ଚଳୁଥାଇ
ଆବୋରି ନେଉଛନ୍ତି କଶ୍ୟପର ଭାଇ ।
ସୁଜାଣ ନାମେଣ ରାଜାର ବିଶ୍ୱାସ
ସେ ସେ ସମ୍ଭାଳଇ ଭଣ୍ଡାର ରତ୍ନ କୋଷ ।
ନିତି ପରିଛଦ ନୃପତିର ଯେତେ
ଆଚ୍ଛାଦିଣ ନିଅନ୍ତି ସକଳ ସେବାଇତେ ।
ସରଯୁ କୂଳେ ଯାଇ ହୋଇଲେ ନୃପବର
ଥାଠ ଚାଳିକରି ପଶିଲେ ଜଳର ।୯୦
ସୁମନ୍ତ ପାରିହୋଇଂ ଅଛଇ ତହିଂ ରହି
ଜାବାଳି କି ରାୟେ ପଠିଆଇଲେ
ବାହୁଡ଼ାଇଂ ।
ତୁମ୍ଭେ ମୋହୋର ବିଶ୍ୱାସ ଗୁରୁ ଅଟ
ମୋହୋର ଆସିବା ଯାୟେ ରଖିଥାଅ
ରାଷ୍ଟ୍ର ।
ଲକ୍ଷେକ ପାଇକ ସହସ୍ରେକ ହାଥୀ
ଦଶ ସହସ୍ର ଅଶ୍ୱ ଯେ ଦୁଇଶତ ରଥୀ ।
ଯେତେ ବୋଲି ବିଜୟେ କଲେ ନରନାଥେ
ତୁମ୍ଭର ସଙ୍ଗତେ ଯେ ଥିବେ ଅନୁବ୍ରତେ ।
ଜାବାଳି ବାହୁଡ଼ି ଆସଇ ଅଯୁଧ୍ୟା
କଟକେ ରକ୍ଷାକରି ରହିଲେ
ମହାବୁଧା ।୧୦୦
ବୃହସ୍ପତି ସାମାନ୍ୟ ଅଟଇ ଯେବଣ ଦିଜ
ବିଚାରି ଛାଡ଼ିଗଲେ ଅଯୁଧ୍ୟା ମହାରାଜ ।
ଶୁଣସି ପାର୍ବତୀ ଗୋ ଦଶରଥ କାହାଣୀ
କଟକ ଶୂନ୍ୟ ଯହୁଂ ବିଜେ ନୃପମଣି ।
ନଗ୍ର ବାହାରେ ରାଜା ମନେ ବିଚାରିଲା
ମୋହୋର ବିଜୟେ ନଗ୍ରଶୂନ୍ୟ ହୋଇଲା ।
କଟକ ରକ୍ଷାପାତ୍ର ଯେବେ ନ ଛାଡ଼ିଣ ଯିବି
ରାଜାଗଣ ମୁଖେ ମୁଂ ବଡ଼ ନିନ୍ଦାଟି ପାଇବି ।

ଶତ୍ରୁ କଳିଣ ଘେନିମ ମୋହୋର ପୁର
ଯେତ୍ରେ ସମ୍ପଦ ମୋର ହୋଇବ
ନାରଖାର ।୧୦
ଯେତେ ବୋଲି ରାଜା ମନରେ ବିଚାରି
ଜାବାଳି କି ଗଲା କଟେକ ରକ୍ଷାକରି ।
ଯେଥୁ ଅନନ୍ତରେ ସରଯୁ ପାରି ହୋଇଂ
ଉତ୍ତର କୂଳେଣ ପ୍ରବେଶ ନରସାଇଂ ।
ହସ୍ତୀରୁ ଓହ୍ଲାଇ ସେ ପଲଙ୍କେ ବିଜେ କଲା
ସତ୍ୟାନନ୍ଦକୁଂ ନ ଦେଖି କ୍ଷଣକେଂ ରହିଲା ।
ଯେସନେକ ସମୟେ ଗଉତମ ତନୟେ
ଆୟେ
ପାଦଗାମୀ ଦେଖି ତାଙ୍କୁ ପଚାରଇ ରାୟେ ।
କିମ୍ପାଇଂ ଆରୋହଣ ନ କଲ ବାହନ
ଇତର ଲୋକ ପ୍ରାୟେ କଲତ ଗମନ ।୨୦
ସତ୍ୟାନନ୍ଦ ବୋଲଇ ରାଜା ମୁହିଂ ତପଚାରୀ
ଚରଣେ ଚାଲିବାକୁ ଶରଧା ଆମ୍ଭରି ।
ରାଜା ବୋଇଲେ ତୁମ୍ଭେ ସୁକାସନେ ବସ
ତେବେତ ମୁନି ମୋତେ ହୋଇବ
ପଉରୋଷ ।
ଶୁଣି ସତ୍ୟାନନ୍ଦ ସନମତ କଲା
ଦିବ୍ୟ ସୁକାସନେ ଯାଇଣ ବସିଲା ।
ଭ୍ରଥ ଶତୃଘନ ପଲ୍ୟାଙ୍କ ଆରୋହି
ଶୁଭେଣ ସନ୍ୟବଳ ସରଯୁ ପାରି ହୋଇଂ ।
ରାଜା ପୟେଣାୟେ ଦୁଇକୋଶ ଗଲେ
ସେହି ସରଯୁର ଉପରେ ରହିଲେ ।୩୦
ଭୋଜନ ଶୟନ ସାରିଣ ତହୁଂ ଗଲେ
ତିନିଦିନେ ଯାଇ ଗଙ୍ଗା ପାରି ହୋଇଲେ ।
ଅନୁକର୍ମେ ଥାଠ ସମ୍ଭରେ ଚଳିଯାନ୍ତି
ଶ୍ରୋଣିତ ନଦୀ ଜିଣି ବହୁତ
ଗମନ୍ତି ।
ମିଥିଳାରେ ପ୍ରବେଶ ଯେ ପାଞ୍ଚଦିନେ ହୁଅନ୍ତି
ଯେଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ବାରତା ପାଇଲା ଜନେକ ମହରଷି
ସମ୍ଭର ହୋଇଣ ପାଛୋଟି ନେଲା ଆସି ।

ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ସହିତେ
ଦେଖିଣ ଆନନ୍ଦ ହୋଇଲା ରାଜା
ଦଶରଥେ ।୪୦
ପିତାଙ୍କୁ ନମସ୍କାର କଲେ ବେନି ଭାଇ
କୋଳକରି ରାୟେ ମୁଖେ ଚୁମ୍ବ ଦେଇଂ ।
ଭ୍ରଥ ଶତ୍ରୁଘନ ଶ୍ରୀରାମ ପାଦେ ପଡ଼ି
କାର୍ପୁଣ୍ୟ ହୋଇଣ ବେନିକର ଯୋଡ଼ି ।
ଲକ୍ଷ୍ମଣ ଲୟଇ ଭ୍ରଥର ଚରଣେ
ଶତ୍ରୁଘନ ଲକ୍ଷ୍ମଣଙ୍କୁ ଭଗତି ବିଦ୍ୟମାନେ ।
ଜନେକର ପାଦେ ପଡ଼ଇ ଦଶରଥ
ସଙ୍ଗେ ଘେନିଅଛି ଶତ୍ରୁଘନ ଭ୍ରଥ ।
କଉଶିକ ପାଦେ ଓଳଗଇ ପୁଣି
ଭ୍ରଥ ଶତ୍ରୁଘନଙ୍କୁ ସଙ୍ଗେ ଘେନି
ନୃର୍ପମଣି ।୫୦
ବିଶ୍ୱାମିତ୍ର ବୋଲନ୍ତି ଶୁଣସିହୋ ରାୟେ
ଶୁଭେଣ ଅଛନ୍ତି ରାଜା ତୋହୋର ବେନି
ତନୟେ ।
ଦେବାର ବେଳେ ମୋତେ ଅପ୍ରତେ
କରୁଥିଲୁ
ଯେବେତ ପୁତ୍ରଙ୍କୁ ତୋର ପ୍ରତକ୍ଷେ
ଦେଖିଲୁ ।
ଦଶରଥେ ବୋଇଲେ ତୁମ୍ଭେ ନଧର ମନେ
ରୋଷ
ତୋହୋରେ ଉଧରି ସେ ହୋଇଲା
ମୋହୋର ବଂଶ ।
ଜନକ ମହାରଷି ଦୟା ମୋତେ କଲା
ଯେ ସମ୍ପଦ ମୋର ତୋହୋରେ ସିନା
ହେଲା ।
ଯେଥୁ ଅନନ୍ତରେ ହୋଇଲେ ସର୍ବେ ରୁଣ୍ଡ
ଥାଠେ ଗହଳ ସେ ମିଥିଳାର ଦାଣ୍ଡ ।୬୦
ଦିବ୍ୟ ଭୁବନେକ ଜନେକ ତୁଳା କଲା
ଦଶରଥ ରାଜାଙ୍କୁ ସେ ତହିଂ ବସାଇଲା ।
ସୁମନ୍ତ ପାତ୍ରକଇ ଉଆସେକ ଦେଇଂ
ଆବର ଯେତେକ ପରିଜନ ହୋଇ ।

ଯେ ଯାହା ଅନରୂପେ ବାସମାନ ଦେଲା
ଯୋଗାଡ଼ ସଞ୍ଚାଦେଇ ଗଉରୋବ କଲା ।
ନଗୁତି ଘେନିଣ ବଶିଷ୍ଠ ମୁନି ଆୟେ
ଦଶରଥ ବସାୟେ ପ୍ରବେଶ କରାୟେ ।
ତାହାକୁଇ ଜନେକଂ ପୂଜା ବିଧି କୟେ
ନଗ୍ରପରି ଉଆସ ତୁଳାକରି ଦିୟେ ।୭୦
ଥାଠ ଗହ ଗହ ପଶିତ ଠାବ ନାହିଂ
ମିଥିଳା କଟକେ ଥାଠ ପୂରିଲାକ ଯାଇ ।
ହସ୍ତୀ ଘୋଡ଼ା ପାଇକ ରଥୀ ନିରନ୍ତର
ମୁଖ ରାବ ଶବଦ ଶୁଭଇ ଅପାର ।
ଦଶରଥ ରାୟେ ମନ୍ଦିରେ ପରବେଶ
ପଶ୍ଚିମ ଦ୍ୱାର ବାଟେ ପଶିଲେ ରାଣୀହଂସ ।
କଉଶୁଲା କୟେକୟା ସୁମୈତ୍ରା ତିନିରାଣୀ
ଯେହାନ୍ତ ମୋକ୍ଷକରି ସକଳ କାମେନୀ ।
ଶ୍ରୀରାମ ଲଇକ୍ଷଣ କରନ୍ତି ନମସ୍କାର
ଦେଖି କଉଶୁଲା ହୋଇଲା ଆଗୁସାର ।୮୦
ଶ୍ରୀରାମଙ୍କୁ କୋଳ କଲାକ ସ୍ନେହ ଭରେ
ଲକ୍ଷ୍ମଣଙ୍କୁ ବସାଇଲା ଦକ୍ଷିଣ ପାରୁଶରେ ।
ଦୁହିଂଙ୍କର ମୁଖେ ଦେଲାକ ଚୁମ୍ବନ
ସ୍ନେହ ଭରେ ଆଖି କଲାକ ଥନଥନ ।
ରାମ ମୁଖ ଚାହିଂ ବୋଲଇ କଉଶୁଲା
ଆଜ ସେ ବାବୁ ମୋର ଦୁଖ କେଣେ
ଗଲା ।
ହୃଦରେ ସାହାସ ବାବୁରେ ପଶିଲା
ମୋହୋର
ନଦେଖି ଥିର ଯେ ମୋହୋର ଶୋରୀର ।
ଦୁଖୀର ସଂଗାତ ବାବୁରେ ଅନ୍ଧର ନୟନ
ତୋତେ ନ ଦେଖି ଥିର ନୋହଇ ମୋ
ମନ ।୯୦
ଛମାସ ହୋଇଲାଣି ଛାଡ଼ିବାର ତୋତେ
ନିରାଶ ହୋଇଂ ମୁଛି ରହିଲୁ କେବଣହିଂ
ମତେ ।
କାହାର କୋଳେ ରହି ବଞ୍ଚିଲୁ ତୁ ରାତି
କେ ତୋହୋର ଅଳିରେ ସହିଲା ସଙ୍ଘାତି ।

ଚାଲି କେଉଁଣେ ଅଇଲୁରେ ଯେତେ ଦୂରପଥ
ଈଶୋର ଧନୁ କେହ୍ନେ ସହିଲା ତୋର
ହାଥ ।
ଅତି କୋମୋଳ ତୋହୋର କର ସ୍ଥଳ
ବ୍ୟଥା ପାଇଲୁଟିକି ଧନୁ ଧରିବାର ବେଳ ।
ଈଶ୍ୱର ଧନୁ ସେ ବଜ୍ର ହୁ ଅତି ଆଣ୍ଟ
ବଳୀଙ୍କର ବଳ ଜାଣିମାରେ କଷ୍ଟ ।୧୦୦
ତାହାକୁ ବାବୁରେ ଭାଙ୍ଗିଲୁ କରେ ଧରି
ବ୍ୟଥା ନ ପାଇଲୁନା ତନୟେ ମୋହେରି ।
ଯେତେ ବୋଲି ଦେବୀ ଆଉଂଷନ୍ତି କାୟେ
ଆବର ପ୍ରଶଂସା କରନ୍ତି ସର୍ବମାୟେ ।
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟ ରୀତି
ମାର୍ଜଣା ମୁଣୋହି ସାରିଲା ନୃର୍ପତି ।
ସେଦିନ ବିଶ୍ରାମ କଲାକ ନୃର୍ପମଣି
ଯେଥୁ ଅନନ୍ତରେ ଶୁଣଗୋ ହେମବନ୍ତର
ଦୁଲଣୀ ।
ଯହୁଂ ଦଶରଥ ମିଥିଳାରେ ପ୍ରବେଶ
ଜନେକ ମହାମୁନି ଅନେକ ହରଷ ।୧୦
ସତ୍ୟାନନ୍ଦ ଘେନି କଥାନ୍ତ ବିଚାରିଲା
ବିଶ୍ୱାମଇତ୍ରଙ୍କ ସଙ୍ଗେ ରାତ୍ରେଣ ଭାଳିଲା ।
ଆରଦିନ ସେ ଯେ ପେଷିଲେକ ଚାର
ଇକ୍ଷୁଂମତୀ ନଦୀତୀରେ ସଂକାଂସନ ବୋଲି
ପୁର ।
ତହିଂର ରଜା ଜନେକଂ ସାନଭାଇ
ଅତି ଧାର୍ମିକଂ ନାମ କୁଶଧୋଜ ହୋଇ ।
ତାହାକଇ ହକାରି ପେଷିଲେକ ଦୂତ
ଲେଖରେ ଲିହିଦେଲା ସକଳ ବୃତ୍ତାନ୍ତ ।
ଚାର ଆଗେ ସର୍ବ ବଚନ କହିଲା
କୁଶଧୋଜକଇ ଘେନି ଆସ ହୋ
ବୋଇଲା ।୨୦
ରାଜାର ବଚନେ ଚଳିଲାକ ଦୂତ
ସଂକାଂସନ ନଗ୍ରରେ ମିଳିଲା ତୁରିତ ।
କୁଶଧ୍ୱଜକଇ ସେ ଲେଖ ନେଇଂ ଦେଲା
ଜନେକ ଆଗ୍ୟାଂ ତୁମ୍ଭେ ଆସହୋ
ବୋଇଲା ।

ଶୁଣି କୁଶଧ୍ୱଜ ହୋଇଲାକ ସଜ
ବାଜି ଟମକ ଢୋଲ ପଖାଉଜ ।
ବିଲମ୍ବ ପାଟଛତ୍ର ନାନା ପରକାର
ବହୁତ ସନ୍ୟ ତାର ଅଛଇ ସଙ୍ଗର ।
ଆପଣେ ରଥେକ ଚଢ଼ି କୁଶଧ୍ୱଜ
ମିଥିଳାରେ ପ୍ରବେଶ ହୋଇଲା ମହାରାଜ ।୩୦
ବଇଦେହୀ ମଣ୍ଡୋଳକୁ ପାଞ୍ଚକୋଶ ବାଟ
ଇକ୍ଷୁମତୀ ନଦୀତୀରେ ଅଟଇ ତାର ରାଷ୍ଟ୍ର ।
ବାରତା ପାଇଣ ଆସଇ ଖର କରି
ସେହିଦିନ ପ୍ରବେଶ ହୋଇଲା ସନ୍ଧ୍ୟାଘଡ଼ି ।
ରଥରୁ ଓହ୍ଲାଇ ସେ ଭିତରେ ପ୍ରବେଶ
କରେ ଘେନିଅଛି ଦେଖୁଣି ଦିବ୍ୟ ବାସ ।
ଜନେକଙ୍କୁ ଦେଖି ଥୋଇଲାକ ତାହା
ପ୍ରଲମ୍ବ କରି ଶୋଇଲା ସଂକାଂସନର ନାହା ।
ଉଠି ଉଭାହୋଇ ସେ ଶିରେ କରଯୋଡ଼ି
ସନ୍ନିଧ୍ୟାକୁ ହକରାଇ ଜନେକ ପ୍ରିୟ କରି ।୪୦
ସନିଧ୍ୟାକୁ ବସାଇ କଲାକ ସନମତ
ଆଦି ଅନ୍ତ କଥାମାନ କହିଲା ସମସ୍ତ ।
ଦୁଇଭାଇଙ୍କର ବିଚାରେ ଯୋଗାଇଲା
ଯେଥୁ ଅନନ୍ତରେ ରଜନୀ ପାହିଲା ।
ନିତ୍ୟକର୍ମ ସାରି ଜନେକ ମହୀପତି
ସଭା ମଣ୍ଡୋପେ ପ୍ରବେଶ ହୋଇଲା ଧାଡ଼ି ।
ଦଶରଥ ତହିଁକି ପେଷିଲା ସତ୍ୟାନନ୍ଦ
ତୁହି ଯାଇଂ ଆଣହୋ ଅଯୁଧ୍ୟା ନରେନ୍ଦ୍ର ।
ଶୁଣି ଗଉତମ ସୁତ ବେଗେ ଚଳିଗଲା
ଦଶରଥ ଆଗେ ଯାଇଂ ମଣାଇଂ କହିଲା ।୫୦
ଶୁଣି ନୃପବର ଅଇଲା ସଜ ହୋଇଂ
ଆସ୍ତାନରେ ପ୍ରବେଶ ହୋଇଲାକ ଯାଇଂ ।
ବଶିଷ୍ଠ ବାମଦେବ କଶ୍ୟପ ସୁମନ୍ତ
ଆବର ଅଛନ୍ତି ଅନେକ ସାମନ୍ତ ।
ଦଶରଥ ନମଇଂ ଜନେକଂ ଋଷି ପାୟେ
ସମୋଧି ହୋଇଂଣ ଯେ ବସିଲେ ବେନି ରାୟେ ।
ମହାଋଷିମାନେ ଅଛନ୍ତି ତହିଁ ବସି
ଭାଷାଏ କହନ୍ତି ଜନେକ ମହାରଷି ।
ଶୁଣସି ଦଶରଥ ମୋହୋର ଯେ ବାଣୀ
ସୀତ୍ୟା ନାମେ ମୋର ଜେଷ୍ଠଇ ନନ୍ଦନୀ ।୬୦
ପୂର୍ବକାଳେ ମୁହିଁ ସତ୍ୟ କରିଥିଲି
ଯେ ଧନୁ ଧରିବ ତାହାକୁ ଝିଅ ଦେବଇଂ ବୋଇଲି ।
ସେ କଥା ଯେବେ ମୋତେ ପ୍ରାପତ ହେଲା ଆସି
ତୋହୋର ଜେଷ୍ଠପୁତ୍ର ଶାୟେକ ଆକ୍ରେଷି ।
ସଙ୍କଳ୍ପ ପୂରିଲା ଯେ ସରିଲା ମୋର ବ୍ରତ
ତୋ ପୁତ୍ରକଇ ଦେବି ମୋ ଦୋହିତ ।
ଶ୍ରୀରାମ ସୀତୟା ହୋଇବେ ବେନି ବିଭା
ଚନ୍ଦ୍ର ରୋହିଣୀ ଜାଣି ଦିଶିବେକ ଶୋଭା ।
ସୀତାଉଂ କନେଷ୍ଠ ଉର୍ମିଳା ନାମେ ବାଳୀ
ଲକ୍ଷ୍ମଣକୁ ଦେବି ବୋଇଲା ତପଶାଳୀ ।୭୦
ଯେ ମୋହୋର ସାନଭାଇ କୁଶଧ୍ୱଜ
ସଂକାଂସନ ନଗ୍ର ତହିଁର ଯେ ରାଜ ।
ଯେହାର ଦୋହିତା ଅଛି ଅବିଭାଇ
ଭ୍ରଥ ଶତୃଘନଙ୍କୁ ଦେବି ତାହାକଇଂ ।
ଚାରିପୁତ୍ରଙ୍କୁ ତୋର ଦେବଇ ଚାରିଝିଅ
ତୁହୋ ମହାରାଜା ପ୍ରସନ୍ନ ମୋତେ ହୁଅ ।
ଯେ ମୋହୋର ସତ୍ୟ ସଭାଜନେ ଶୁଣ
ଯେତେ ବୋଲି ପୁଣ ବିଳାପଇ ପୁଣ ପୁଣ ।
ତୁ ପୁନ୍ୟ ସିନ୍ଧୁ ମୁଂ ଅଟଇଂ ମହାନଦୀ
ତୋତେ ଆଶ୍ରେ କରିତ ମୋହୋର ବୁଦ୍ଧି ।୮୦
ଈଶ୍ୱରେ ଯେମନ୍ତେ ଶିରେ ବହିଛନ୍ତି ଶଶୀ
ଜଗତ ହିତେ କପାଳୀ ଗରଳ ସଂଗ୍ରାସି ।
ତୁହୋ ମହୀପତି ସଂଘରସି ମୋତେ
କିସ ବୋଲି ଆଉ ବୋଲିବି ଯେ ତୋତେ ।
କୃତାଞ୍ଜୋଳି ହୋଇ ବୋଲଇ ଜନେକ
ଶୁଣିଣ ସାଧୁ ବୋଲନ୍ତି ସଭା ଲୋକ ।
ଜନେକଂ ନୃପତିକି ପ୍ରଶଂସଇ ଦଶରଥ
ତୁହୋ ମହାରଷି ଅଟସି ମହତ ।
ଦେବେ ପ୍ରଶଂସା କରନ୍ତି ମୁନି ତୋତେ
କେବଣ ଗୁଣେ ମୁନି ଦୟାକଲୁ ମୋତେ ।୯୦
ମୋହୋରତ ପୂର୍ବର ଅଛଇ ବହୁତ ପୁନ୍ୟ
ସମ୍ବନ୍ଧ ପାଇଲି ମୁଂ ଜନେକ ରାଜନ ।
ସୂର୍ଯ୍ୟବଂଶ ମୋର ହୋଇଲା ଉଧରି
ତୁ ଯେବେ ଦୟା ମୋତେ କଲୁ ଉପଚାରୀ ।
ଶ୍ରୀରାମ ବାଳବଛି ମୋର ନ ଜାଣଇ କିଛି
ତୋହୋର ହୃଦେ ତାକୁ ଯେଡ଼େ ଭାବ ଅଛି ।
ମୁହିଁ ବୋଲିବି କିସ ମୋହର ତନୟେ ତୋହୋର
ପ୍ରସନ ହୋଇଂ ଦେଲା ଋଷିଶିଙ୍ଗ ମୁନିଶ୍ୱର ।
ବଶିଷ୍ଠ କଲ୍ୟାଣେ ଦେଲା ପୁତ୍ର ଗତି
ବଂଶ ଧବଳିଲା ମୋର ବିଶ୍ୱାମଇତ୍ର ଯତି ।୧୦୦
ଯେବେ ତୁ ସପକ୍ଷ ହୋଇଲୁ ମୁନି ମୋତେ
କିସ ଦେଇ ଯେହା ଶୁଝିବି ମୁଂ ତୋତେ ।
ଶୁଣିଣ ଜନେକ ହୋଇଲାକ ତୁଷ୍ଟି
ସ୍ୱର୍ଗରୁ ହୋଇଲାକ ଶ୍ୟାନ୍ତି ଜଳ ବୃଷ୍ଟି ।
ଯେଥୁ ଅନନ୍ତରେ ବଶିଷ୍ଠ ମହାଯତି
ଜନେକ ଋଷିଙ୍କି ତାହିଂ ବଚନ ବୋଲନ୍ତି ।
ଶୁଣ ତୁ ମିଥିଳା ନଗ୍ର ନୃପବର
ଦଶରଥ ରାଜା ଅଯୁଧ୍ୟା ଈଶ୍ୱର ।
ଦେବତାୟେ ପ୍ରଶଂସା କରନ୍ତି ତାହାଙ୍କୁ
ଧାର୍ମିକ ଲେଖାୟେ ଗଣନା କରନ୍ତି ଯେହାକୁ ।୧୦
ବୀର ବଂଶେଣ ଯେ ଅଟଇ ଉତପତି
ବଡ଼ ଗରିଷ୍ଠ ଯେହାର ଉପର ବଂଶ ମାନନ୍ତି ।
ଗୁଣେଣ କୁଶଳ ଅଟଇ ଯେ ସାର
ପର ଭୂମି ଯେ ଘେନଇଂ ନି ଭୁଜବଳ ।

ଦାନେଣ ସାଚା ଯେ ମାନେଣ ମହିଂମା
ପ୍ରତାପୀ ଅତି ଗରିଷ୍ଟ ଯେହାର ଗାରିମା ।
ଶୁଣତୁ ଜନେକ ହୋ ଉପର ବଂଶ କଥା
ଅବତାର ହୋଇଥିଲେ ମହା ମହାରଥା ।
ଆଦି ସମ୍ଭୂତ ଯେ ହୋଇଲେକ ଯହୁଂ
ତୋହର ଆଗେ ଆମ୍ଭେ ସଞ୍ଚପି ଯେହା
କହୁଂ ।୨୦
ମହାପ୍ରଳୟ ଯହୁଂ ହୋଇଲାକ କାଳ
ଶଯଳ ସଂସାର ହୋଇଲା ମହାଜଳ ।
ସେ ମହାଜଳରୁ ବୁଦୁବୁଦା ହୋଯେ ଜାତ
ତହୁଂ ଡିଯେକ ହୋଇଲାକ ସମ୍ଭୂତ ।
ପକ୍ଷୀ ରୂପ ଧରି ଦେବ ନାରାୟଣ
ସେ ଡିମ୍ଭ ଗୋଟି ଫୋଡ଼ିଲେ ଲାଉଡ଼େଣ ।
ସେ ଡିମ୍ଭ ଭିତରୁ ପୁରୁଷେ ବାହାର
ସେ ସେ ସ୍ରିଜିଲା ଜଗତ ସଂସାର ।
ସେ ଅଣ୍ଡ ଗୋଟି ବ୍ରହ୍ମାଣ୍ଡ ହୋଇଲା
ଜନେକ ଆଗେ ଯେହା ବଶିଷ୍ଟ
କହିଲା ।୩୦
ଯେବଣ ପୁରୁଷ ଡିମ୍ଭୁ ହୋଇଲାକ ଜାତ
ତାହାର ନାମ ହୋଇଲା ବିଧାତ ।
ଚଉଦ ପୁରକରି ବ୍ରହ୍ମାଣ୍ଡ ପାତିଲା
ଚତୃର୍ବେଦକଇ ନେଇଂଣ ଶୁଭ ଦେଲା ।
ମନିଷ୍ୟ ଚାରିଯୁଗ ପୁଣ କଲା ଜାତ
ବେଦରୁ ପୁରୁଷେକ ହୋଇଲା ସମ୍ଭୂତ ।
ସେ ସେ ବିଧାତା ଜାଣଇ ବ୍ରହ୍ମଗ୍ୟାନ
ବ୍ରହ୍ମା ବୋଲିଣ ନାମ ବିଦ୍ୟମାନ ।
ବ୍ରହ୍ମାର ତନଯେ ହୋଇଲାକ ଜାତ
ମରୁଚି ନାମ ତାର ଅଟଇ ନିଅତ ।୪୦
ମରୁଚିର ପୁତ୍ର କଶ୍ୟପ ମହରଷି
ଅଶ୍ୱମାଳି ବୋଲି ଅଟଇ ଯେହାର ଶିଷି ।
ତେଜ ଗୁଣ ପ୍ରାକ୍ରମେ ଅଟଇ ଦୁତୀଭାନୁ
ଅଶ୍ୱମାଳିର ପୁତ୍ର ବଇବସ୍ୱତ ମନୁ ।
ଯେହାର ତନଯେ ଇକ୍ଷାକୁରୁରାଯେ
ଅଯୁଧ୍ୟା ନଗ୍ରରେ ସେ ଆଦିପାଟ ହୋଯେ ।

ରବିତଳେ ସମ ନାହିଂ ଚକ୍ରବର୍ତ୍ତୀ
ଇକ୍ଷା ସ୍ୱଇଛାଏ ଗମଇ ସପ୍ତଦୀପା ପୃଥ୍ୱୀ ।
ଇକ୍ଷାକୁରୁବଂଶେ ହୋଇଲା ଅବତାର
ଇକ୍ଷାକୁରୁବଂଶ ବୋଲନ୍ତି ମୁନିମ୍ୟର ।୫୦
ଇକ୍ଷାକୁରୁ ତହୁଂ ବିକୋପ ହୋଯେ ଜାତ
ଯୁଧାପଣେ ସମ ନାହିଂ ତ୍ରିଜଗତ ।
ଆପଣାର ନାଏ କଟେକ ନାମ ଦେଲା
ତେଣୁ ସେ ନଗ୍ର ହାଦେ ଅଯୁଧ୍ୟା ହୋଇଲା ।
ବିକୋପର ପୁତ୍ର ପରିସାର ମହୀପତି
ଚାରି ସମୁଦ୍ରେ ସେ ଅଟଇ ଚକ୍ରବର୍ତ୍ତୀ ।
କାକୁସ୍ତ ନାମେଣ ତାହାର ତନଯେ
କାକୁସ୍ତ ବଂଶ ବୋଲି ତେଣୁ ନାମ ବହେ ।
କାକୁସ୍ତର ନନ୍ଦନ ଅକ୍ଷୟ ସେନ ବୀର
ବିଂଶ ପ୍ରଭୁ ବୋଲି ତାହାର କୁମର ।୬୦
ଯେହାର କୁମର ଅସ୍ୱଜା ନୃପତି
ସଇଲସୁ ନାମେଣ ଯେହାର ଅଧିପତି ।
ଆବିର ବୋଲି ସେ ନନ୍ଦନ ଯେହାର
ବର୍ତ୍ତ ଦେଇଂ ସେ ହୋଇଲା ଯେଥୁ
ଅବତାର ।
କୁବଳୟା ଅଶ୍ୱ ତାହାର ତହୁଂ ଜାତ
ତ୍ରିଭୁବନେ ଯାହାର ମହିମା ବିଖ୍ୟାତ ।
କୁବଳୟା ଅଶ୍ୱର ହୋଇଲା କୁନ୍ଦସାର
ସୁକୃତସେନ ବୋଲି ତନଯେ ତାହାର ।
ସୁକୃତା ନନ୍ଦନ କୁଶା ମନୁପତି
ପ୍ରସନାଜିତ ବୋଲି ଯେହାର ସନ୍ତତି ।୭୦
ପ୍ରସସେନ କୁମର ଜୀବନ ମହୀଧର
ବଡ଼ାଇ ପ୍ରତାପୀ ଅଟଇ ମହୀଧର ।
ସେ ଜୀବନାଶର ହାଦେ ବହୁତ କୀରତି
ପୁତ୍ର ନାହିଂ ବୋଲି ଭାଳଇ ନୃପତି ।
ଅଷ୍ଟବକ୍ର ମୁନିକି ସେ ବାରେ ମଣାଇଲା
ଭଗତି ଘେନି ମୁନି ସେ ତାହାକୁ
ଦୟାକଲା ।
କାଲି ତୁ ମୋହର ଆଶ୍ରମକୁ ଆସିବୁ
ବୋଇଲା

ଅନ୍ଧେଣ ନୟନକି ଦରିଦ୍ରେ ଧନ ଦେଲା ।
ଶୁଣି ନୃପବର ପ୍ରଭାତେଣ ଯାଇ
ଅଷ୍ଟାବକ୍ର ଋଷିର ଆଶ୍ରମେଣ ମିଳଇ ।୮୦
ଋଷି ବୋଇଲା ତୁ ଶୁଣ ନୃପବର
ଯେ ମହାମନ୍ତ୍ର ପାଣି ଘେନି ଚଳ ।
ମହାଦେଈମାନନ୍ତ ବାଣ୍ଟିକରି ଦିଅ
ତୋହୋରି ସମାନେ ଉପୁଜିବେ ପୁଅ ।
ଯେତେ ବୋଲି ମୁନି ତପଥାନେ ଗଲା
ମନ୍ତ୍ରଂଜଳ ଘେନି ରାଜା ବାହୁଡ଼ିଲା ।
ଦଇବ ମାୟା ହାଦେ ବୁଝିତ ନ ପାରି
ସେ ପାଣି ନୃପତି ହାଦେ ପିଇଲା
ପାଶୋରି ।
ଆପଣେ ଗର୍ଭବାସ ହୋଇଲା ରାଜନ
ଦିନେ ଦିନେ ଉଦରେ ତାର ବଢ଼ିଲା
ନନ୍ଦନ ।୯୦
ଅଷ୍ଟବକ୍ର ଋଷି କହିଲେ ପ୍ରତିକାର
ପେଟ ଚିରି ରାଜା ପାଇଲା କୁମର
ତେଣୁ ପୁତ୍ର ନାମ ହୋଇଲା ମାନଧାତା
ଯେ ମହୀମଣ୍ଡଳେ ଗୁହାଇଲା କଥା ।
ମାନଧାତା ତହୁଂ ମୁଚୁକୁନ୍ଦ ଜାତ
ବାଣ ବୋଲିଣ ହୋଇଲା ତାହାର ପୁତ୍ର ।
ବାଣର ପୁତ୍ର ଅରଣ୍ୟକ ବୋଲି ରାଯେ
ରାବଣ ତୁଲେ ସେ ଅନେକ ଯୁଧ କଯେ ।
ସାଗ୍ରାଂମେଣ ବିଜଯେ ଅଟେ ଦଶଶିରି
ସଂଗ୍ରାମେ ଜିଣିଲା ସେ ଦେବାସୁର
ଧରି ।୧୦୦
ରଣଗୋଳ କରିଣ ସେ ମାଇଲାକ ବଳେ
ପ୍ରାଣ ହାରିଲା ସେ ଅରଣ୍ୟକ ମହୀପାଳେ ।
ସମରେ ପଡ଼ିଣ ସେ ସ୍ୱର୍ଗକଇ ଗଲା
ରଣ ଜଯେକରି ରାବଣ ବାହୁଡ଼ିଲା ।
ଅରଣ୍ୟର ପୁତ୍ର ବସୁ ନାମେ ବୀର
ସେ ଯେ ହୋଇଲାଟି ଅଯୁଧ୍ୟା ଈଶ୍ୱର ।
ସତ୍ୟବ୍ରତ ବୋଲି ଯେହାର ତନଯେ
କର୍ମେ ତିଶଙ୍କୁର ନାମ ତାର ହୋଯେ ।

ଯେହାର ତହୁଁ ହରିଚନ୍ଦନ ଜାତ
ଦାନେ ଖାଣ୍ଡେସାଚା କୀରତି ବିକ୍ଷାତ ।୧୦
ତାହାର ତନୟେ ଲୋହିତାକ୍ଷ ହୋଇ
ସୁମେରୁ ନାମେ ତାର ପୁତ୍ରେକ ଉପୁଜଇ ।
ସୁମେରୁର ପୁତ୍ର ବସନ୍ଧର ନାମେ ରାଏ
ଭ୍ରଥ ନାମେ ତାର ପୁତ୍ରେକ ଉପୁଜାଏ ।
ରାଜା ହୋଇଂ ତାକୁ ନାହିଂ ସମସରି
ଯେକଛତ୍ର ରାଜା ଭ୍ରଥ ଦଣ୍ଡଧାରୀ ।
ଭ୍ରଥ ପାଳନ୍ତେ ନାମ ଭ୍ରଥଖଣ୍ଡ ମହୀ
ଯେହିକ୍ଷଣି ମହାପୁରାଣେ ଅଛି କହି ।
ଅସିତର ନାମେ ଯେ ଭ୍ରଥର ତନୁଜ
ଯେହାର କୁମର ବାହୁକ ନାମେ
ରାଜ ।୨୦
ବାହୁକର ତନୟେ ସଗର ନୃପତି
ଅଶ୍ୱଯା ବୋଲିକରି ଯେ ଯେହାର ସନ୍ତତି ।
ଅଶ୍ୱଯାର ପୁତ୍ର ଅଶ୍ୱବନ୍ତ ହୋଗ
ଯେହାର ପୁତ୍ର ଦିଲୀପି ସାଧଇ ସର୍ବମହୀ ।
ଦିଲୀପର ତନୟେ ଅଟଇ ଭାଗ୍ୟରଥି
ସ୍ୱର୍ଗର ଗଙ୍ଗା ଆଣି ବୁହାଇଲା ପୃଥି ।
ସେ ଭାଗ୍ୟରଥିର ପୁତ୍ର ସୁରସେନ
ନାଭ ନାମେଣ ତାହାର ନନ୍ଦନ ।
ନାଭର ନନ୍ଦନ ସିନ୍ଧୁରଦିଗ ହୋୟେ
ସିନ୍ଧୁଦିଗ ପୁତ୍ର କୃତି ରାଜା ହୋୟେ ।୩୦
କୃତିର ନନ୍ଦନ ଅଖିଳ ନୃପତି
ରତୁପନ ନାମେଣ ଯେହାର ସନ୍ତତି ।
ଯେହୁ ରତୁପନ ନଳକୁ ସମ୍ଭାଳିଲା
ଚାରିଯୁଗେ ତାର କୀରତି ରୁହାଇଲା ।
ରତୁପନ କୁମର ନଳ ସମ୍ପଦ
ନାହିଂ ପଟାନ୍ତର ତ୍ରିଭୁବନ ମଧ ।
ଯେ ନଳ କୁମର ତନୟେ ଶଙ୍ଖ ରାଜା
ସକଳ ନୃପତି ଯେହାରେ ପାଇଲେ ସେ
ପୂଜା ।
ସୂତିସେନ ନାମେ ସଙ୍ଖର ନନ୍ଦନ
ପିତାର ଭାବେଣ ଅଯୁଧାୟେ ରାଜନ ।୪୦

ସୁତିସେନର ନନ୍ଦନ ଅଗ୍ନିବନ୍ତ ହୋଇ
ସିଙ୍ଘଗ୍ରାହା ବୋଲି ଯେହାର ପୁତ୍ରେକ
ଉପୁଜଇ ।
ସିଙ୍ଘଗ୍ରାହା ନନ୍ଦନ ମନୁ ନାମେ ରାୟେ
ସୁଗ୍ରିବର ବୋଲିଣ ତାହାର ତନୟେ ।୫୦
ଅମରୀଷ ରାଜା ତାହାର ତହୁଁ ଜାତ
ଅମରୀଷ ନନ୍ଦନ ଘୋଷ ନରନାଥ ।
ତପେ ନ ଘୋଷଇ ଇନ୍ଦ୍ରପଦ ପାଇଂ
ତାହାର ତନୟେ ଯଯାତି ନାମ ହୋଇ ।
ଯଯାତିର ପୁତ୍ର ନିଭାଗ ବୋଲି ରାୟେ
ସର୍ବକାମ ବୋଲି ଯେହାର ତନୟେ ।
ନଭଭଦ୍ର ବୋଲି ସର୍ବକାମ ସନ୍ତତି
ଯେହାର ତନୟେ ହୋଇଲେ ବିଘ୍ନ ନୃପତି ।
ବିଘ୍ନର ପୁତ୍ର ଦ୍ରୀର୍ଘବାହୁ ହୋୟେ
ରଘୁ ନାମେଣ ଯେହାର ତନୟେ ।
ରଘୁର ମହିଂମା ଅଶ୍ରୁତି ଅଗୋଚର
ଯାହାକଇ ପ୍ରଶଂସା କରନ୍ତି ବଜ୍ରଧର ।
ରଘୁର ତନୟେ ଅଜୟେ ମହୀପାଳ
ଦଶରଥ ନାମେଣ ତାହାର ଦୁଲାଳ ।
ଯେ ଦଶରଥ ଅଯୁଧ୍ୟାର ରାୟେ
ଋଷିଶିଙ୍ଘ ଦୟାରେ ଚାରିପୁତ୍ର ପାୟେ ।୬୦
ଶ୍ରୀରାମ ଲକ୍ଷ୍ମଣ ଭ୍ରଥ ଶତୃଘନ
ରୂପ ଗୁଣେ ସୁନ୍ଦର ଚାରି ଯେ ନନ୍ଦନ ।
ଦକ୍ଷିଣ କୋଶଳ ରାଜାର ଦୁଲଣୀ
କଉଶୁଲା ନାମେଣ ରାଜାର ପାଟରାଣୀ ।
ତାହାର ଗର୍ଭୁ ଶ୍ରୀରାମ ହୋୟେ ଜାତ
ଓହୋକୂଳ ବିଶୁଦ୍ଧ ଅଟଇ ବିକ୍ଷାତ ।
କଇକୟା ନୃପତିର ଦୋହିତା ରୂପବନ୍ତୀ
କୟେକୟା ନାମେଣ ଏକଇ ଯୁବତୀ ।
ଦଶରଥ ରାଜାର ସେ ସାନ ମହାଦେଇ
ତାହାର ଗର୍ଭୁ ଭ୍ରଥ ଉପୁଜଇ । ୭୦
ସୁମେତ୍ର ନୃପତିର ଦୋହିତା ସୁମିତ୍ରା
ଲକ୍ଷ୍ମଣ ଶତୃଘନର ଅଟଇ ଯେ ମାତା ।
ଶୁଣ ହୋ ଜନେକଂ ଦଶରଥ ମହିଂମା

ଆଦିବଂଶ ନୃପତି ଅଟଇ ସତ୍ୟବ୍ରହ୍ମା ।
ଚଉଷଠି ପୁରୁଷରେ ଦଶରଥ ହୋୟେ ଜାତ
ମୁହିଂ ଅଟଇ ଯେହାର କୁଳର ପୁରୋହିତ ।
ବଶିଷ୍ଠଙ୍କ ମୁଖରୁ ଯେସନେକ ବାଣୀ ଶୁଣି
କୃତ କୃତ ହୋଇଲା ଜନେକଂ ମନେ ପୁଣି ।
ବୋଇଲା ଭୋ ମୁନି ତୁମ୍ଭେ କହିଲୁସି ଯାହା
ସର୍ବଗୁଣେଣ ସୁନ୍ଦର ଯେ ଦଶରଥ
ନାହା ।୮୦
ତୋହୋର କହନ୍ତେ ଶୁଣିଲି ଯେହାର ବଂଶ
ଗତ ପାପମାନ ହୋଇଲା ମୋର ଧ୍ୱଂସ ।
ମୋହୋର କୁଳଗୋତ୍ର ଶୁଣିମା ମହରଷି
ବିଭାକାଳେଣ ଅବଶ୍ୟ ଯେହା ଭାଷି ।
ସତ୍ୟାନନ୍ଦ ମୋହୋର କୁଳର ପୁରୋହିତ
ଯେହାର ମୁଖରୁ ଶୁଣ ହୋ ମୋହୋର
କୁଳଗୋତ୍ର ।
ଶୁଣି ଅହିଲା ସୁତ ବୋଲଇ ଅମୃତ ବାଣୀ
ସାବଧାନ ହୋଇ ଶୁଣ ଦଶରଥ ନୃପମଣି ।
ସତ୍ୟାନନ୍ଦ କହଇ ଶୁଣ ମୁନି ବଶିଷ୍ଠ
ଇକ୍ଷାକୁରୁ ନାମେ ରାଜା ଅତିଅ ଗରିଷ୍ଠ ।୯୦
ନିଦ୍ରାଭ ନାମେଣ ଯେହାର ତନୟେ
ଚାରି ସମୁଦ୍ରେ ସେ ହୋଇଲା ମହାରାୟେ ।
ସବ୍ୟା ବିକ୍ଷାତ ସେ ହୋଇଲା ମହୀପତି
ପ୍ରସନ ହୋଇଲା ତାକୁ ଶିବ ଯେ ଶକତି ।
ନିଦ୍ରାଭର ପୁତ୍ର ନିମିରାଜା ହୋଇ
ଯେହାର ତହୁଂ ମୁନି ମିଥିଳା ଉପୁଜଇ ।
ମିଥିଳା ନାମେ ନୃପତି ବଡ଼ାଇ ପ୍ରତାପୀ
ଆପଣାର ନାମ ଦେଇଂଣ ପୃଥି ଥାପି ।
ତେଣୁ ସେ କଟେକ ମିଥିଳା ନାମ ହୋଇ
ତାହାକଇ ଶିବ ହାଦେ ଧନୁ
ସମର୍ପଇ ।୧୦୦
ଦେବରାଜା ଧନୁକୁ ବହୁତ ପୂଜା କଲା
ଭୋଗରାଗ କରି ଭଣ୍ଡାରେ ଥୋଇଲା ।
ଦେବରାଜର ପୁତ୍ର ବୃହରାଜା ହୋଇ
ମହାରାଜା ବିରୁଜା ବୋଲି ତାହାର ତନଇ ।
ବଡ଼ାଇ ଧାର୍ମିକ ରାଜା ଯେ ହୋଇଲା

କୀରତି ବୋଲିକରି ତାର ପୁତ୍ରେକ
ଉପୁଜିଲା ।
ହରିଯଶ ନାମେ ତାହାର ସନ୍ତତି
ମରୁତା ନନ୍ଦନ ରାୟେ ଯେହାର ପୁତ୍ର
ହୋଅନ୍ତି ।
ମରୁତାର ତନୟେ ପ୍ରସୁ ମହୀପାଳ
ମଉକତୀର୍ଥ ନାମେ ସେ ଅଟଇ ଯେହାର
ବାଳ । ୧୦
ମଉକତୀର୍ଥ ତନୟେ ଦେବମିତ୍ର ହୋଇ
ବିବିଧ ବୋଲିକରି ପୁତ୍ରେକ ଉପୁଜଇ ।
ଅନକିତ ନାମେ ଯେହାର ତନୟେ
ପୀରତି ବୋଲିକରି ତାହାର ପୁତ୍ର ହୋୟେ ।
ଶକ୍ରୁ ନାମେଣ ଯେ ତନୟେ ଯେହାର
ରୋମ ନାମେ ନୃପତି ଯେଥୁ ଅବତାର ।
ରୋମନାମର ନନ୍ଦନ ସୋମନାମ ହୋଇ
ସହସ୍ରନାମ ବୋଲି ତାହାର ତନଇ ।
ସହସ୍ର ନାମ ରାଜାର ହୋଇଲା ବେନିପୁତ୍ର
ଜନେକ କୁଶଧ୍ୱଜ ବୋଲିଣ ପବିତ୍ର । ୨୦
ଯେ ସେ ଜନେକ ଯେ କୁଶଧ୍ୱଜ ବେନି
ତୋହୋର ପୁତ୍ରକଇ ଦେବାକ ନନ୍ଦନୀ ।
ଯେହାକଇ ଅନୁଗ୍ରହ କର ଦଶରଥ
ମୁହିଂ ଯେହାର ଯେ କୁଳର ପୁରୋହିତ ।
ସତାଇଶ ବଂଶ କହିଲି ଯେହାର
ଇଛାକୁରୁ ବଂଶେ ଯେ ଜାତ ନୃପବର ।
ଦେବରାଜ ଠାରୁ ଯେ ଧନୁକୁ ପୂଜନ୍ତି
ଧର୍ମକୂଳ ରାଜା ଯେ ଅଟଇ ମହୀପତି ।
ସୁଧର୍ମା ରାଜା ଯେ ଶୁଣିଲା ଧନୁକଥା
ଆପଣା ମାଗି ସେ ଗଲା ମହାରଥା । ୩୦
ଜନେକ ତାହାକଇ ନଦେଲା ଶରାସନ
ରୋଷେ ଯୁଧ୍ୟ କଲେ ଦୁଇ ଯେ ରାଜନ ।
ଈଶ୍ୱର ଧନୁ ସେ ଲୋଭକରି ନେଇ ଆୟେ
ଜନେକ ସଙ୍ଗେ ସେ ଅନେକ ଯୁଧ
କୟେ ।
ସାଗ୍ରାଂମେଣ ଭାଜି ବାହୁଡ଼ିଣ ଯାୟେ
ଅଭିମାନେ ମଲା ସୁଧର୍ମା ନାମେ ରାୟେ ।

ତାହାର କଟେକ ଯହୁଂ ହେଲା ଶୂନ୍ୟ
ବଳେ ଘେନିଲା ତାହା ଜନେକ ରାଜନ ।
ସୁଧର୍ମା ରାଜାର ଯେ ପୁତ୍ର ଭ୍ରାଥା ଥିଲା
ଜନେକର ଭୟେ ସେ ଦୂରେ
ପଳାଇଲା । ୪୦
ଦେଖ ଯେ କୁଶଧ୍ୱଜ ଜନେକ ସାନଭାଇ
ଶଂକାଂସନ ନଗ୍ରରାଜା ଅଟଇ ହାଦେ
ଯେହି ।
କୁଶଧ୍ୱଜର ହାଦେ ଅଟଇ ଝିଅ ବେନି
ଜନେକର ବୋଲେ ଅଇଲା ଦୁଇ
ଦୋହିତାଙ୍କୁ ଘେନି ।
ମାଲୁଣି ନାମେ ସେ ଜେଷ୍ଟ ଯେ ତନଇ
ତାହାକଇ ବିଭାୟେଣ ଦେବାକ ଭ୍ରଥକଇ ।
ସୁକ୍ରିତା କନ୍ୟା ଯେ ଶତୃଘନ ବିଭାହେବ
ଯେହାଙ୍କର ସଙ୍ଗେ ସ୍ନେହ ତୋ ରହିବ ।
ଲକ୍ଷ୍ମଣକୁ ଉର୍ମିଳା ଶ୍ରୀରାମଙ୍କୁ ସୀତ୍ୟା
ଯତନେ ହେ ଜାତ କଲାକ ବିଧାତା । ୫୦
ଶୁଣି ସମସ୍ତେ ଯେ ହୋଇଲେ ଆନନ୍ଦ
ମୁଖ ବିକାଶଇ ପୂର୍ଣମୀର ଚାନ୍ଦ ।
ବଶିଷ୍ଟଙ୍କୁ ଚାହିଂ ସେ ବୋଲନ୍ତି ସର୍ବଜନ
ଭୋ ମହାମୁନି ଅନକୂଳ ବେଗେ ଘେନ ।
ଜନେକ ଦଶରଥ ଦୃଢ଼ ବଚନ ଶୁଣି
ବଶିଷ୍ଟ ଲଗ୍ନ ଯେ ବିଚାରନ୍ତି ମନେ ଗୁଣି ।
ଜେଷ୍ଟ ଶୁକଳ ଯେ ଯେକାଦିଶୀ ଦିନ
ରବିବାର ହସ୍ତା ନକ୍ଷତ୍ର ବିଦ୍ୟମାନ ।
ସିଦ୍ଧନାମେ ଯୋଗ କରଣ ତୈତିଳା
ରାତ୍ର ପାଞ୍ଚଘଡ଼ି ସୋମର ଅଟଇ
ବେଳା । ୬୦
ଧନୁ ଲଗ୍ନେ ଶ୍ରୀରାମ ହୋଇବେ ଯେବେ
ବିଭା
ସେଦିନ ସିଦ୍ଧ ନାମେ ଯୋଗ ଅଟଇ ଯେ
ପ୍ରଭା ।
ଶ୍ରୀରାମ ଲକ୍ଷ୍ମଣଂକୁ ଅଟଇ ସାଧେକ ତାର
ତୃତୀୟ ଚନ୍ଦ୍ର ଯେ ଶୁଭ ଯେ ବିଚାର ।

ସୀତ୍ୟାକଇ ତାର ମୈତ୍ର ଯେ ସେଦିନ
ଦ୍ୱାଦଶ ଚନ୍ଦ୍ର ଦୋଷକୁ ଦେବା ଶଙ୍ଖ ଦାନ ।
ଦଶମ ଚତୁର୍ଥ ଅଟଇ ମହାପ୍ରୀତି
ବର କନ୍ୟାଙ୍କର ଅଟଇ ଦେବତା ଜାତି ।
ଦଶଯୋଗ ଚକ୍ରେ ଦୋଷ ନାହିଂ କିଛି
ସପତଶାଳା ରେଖାଭେଦି ଯେ ଜାଣିଲେ
ବ୍ରହ୍ମବନ୍ଧି । ୭୦
ନାଗନାଡ଼ି ଚକ୍ରେ ସେ ହୋଇଲା ବଳମାନ
ଯେହି ସେ ଶୁଭ ରାଜା ବିଭା ସେହିଦିନ ।
ଭ୍ରଥ ଲକ୍ଷ୍ମଣ ଶତୃଘ୍ନ କ୍ଷମେ ଯେ ଆସଇ
ଅଶ୍ଳେଷା କକଡ଼ା ବୋଲି ଯେହାକୁ ଭାଷଇ ।
ମାଲୁଣି କନ୍ୟାର ସେ ଅଟଇ ବିଛା ରାଶି
ଦୁହେଂ ବ୍ରହ୍ମା ଅସୁର ଯେଣେ ବିଭା ଆସି ।
ଉର୍ମିଳାର ରେବତୀ ମୀନ ସେ ଜାତିରେ
ଦେବତା
ଲକ୍ଷ୍ମଣର ଯେହି ଯେ ହୋଇବ ବନିତା ।
ସୁକ୍ରିତାର ଅଶ୍ଳେଷା ଜାତିରେ ଅସୁର
ଶତୃଘନ ଯେହାକଇ ମିଳିଲାକ ବର । ୮୦
ଚାରି ବରକଇ ଯୋଗାଇଲା ସେଦିନ
ବିଚାରି କହିଲେ ବଶିଷ୍ଟ ତପୋଧନ ।
ଦିବସ ପହରେ ଶୁକ୍ରଙ୍କର ବେଳ
ମିଥୁନ ଲଗ୍ନ ଯେ ବରଣ ଅନକୂଳ ।
କାଲି ନବମୀ ଯେ ହୋଇବ ଶୁକ୍ରବାର
ବୁଧର ବେଳ ପହରକ ଭିତର ।
ମିଥୁନ ଲଗ୍ନ ବେଳ ସୀତ୍ୟାଂକୁ ଦେଖୁଣି
ସଭାଜନେ ସନ୍ତୋଷ ହୋଇଲେ ତାହା
ଶୁଣି ।
ଯେଥୁ ଅନନ୍ତରେ ଯେ ମଉଳଇ ଆସ୍ଥାନ
ଯେ ଯାହା ନବରକୁ ଚଳିଲେ
ରାଜାମାନ । ୯୦
ବିବିଧ ଛନ୍ଦେଣ ବାଜଇ ବୀରତୂର
ଲୋକ ଗହ ଗହ ଯେ ଗହଳ ଅପାର ।
ନିଜପୁରେ ଜନେକ ଯେ ପ୍ରବେଶ ହୋଇଲା
ସତ୍ୟାନନ୍ଦକଇ ଯେ ରାଇଣ ବୋଇଲା ।

ନଗ୍ର ମଣ୍ଡଣି ଯେ କରହୋ ଉଛବ
ବିଭାର ବିଧାନ ତୁ କର ହୋ ସମ୍ଭର୍ବ ।
ଶୁଣି ପୁରୋହିତ ଯେ କଲାକ ସର୍ବବିଧି
ବିଭାର ବିଧାନ ଯେ ସକଳ ସମ୍ପୃଧି ।
ଯେଥୁ ଅନନ୍ତରେ ଗୋ ଶୁଣିମା ଶାକେମ୍ବରୀ
ଯାହା ସେ ଶୁଣିଲେ ଦୂରିତ କ୍ଷୟ
କରି ।୧୦୦
ଭ୍ରଥର ମଉଳା ଯେ ଯୋଦ୍ଧାଂକୁର ବୀର
କୟେକୟା ରାଜାର ସେ ଅଟଇ କୁମର ।
ସେ ଆସି ମିଥିଳାରେ ପରବେଶ ହୋଇ
ସଙ୍ଗେ ରଥ ଗଜ ସନ୍ୟ ବହୁତ ଅଛଇ ।
ଦଶରଥକୁ ଦେଖି କରଇ ନମସ୍କାର
କର ଯୋଡ଼ିଣ ଯେ ଉଭା ହୋଇଂ ବୀର ।
ରାଜା ପଚାରଇ ଥିଲୁ ତୁହୋ କାହିଂ
ଯୁଧାଙ୍କୁର କହଇ ଶୁଣ ନରସାଇଂ ।
ମୋହୋର ପିତାର ଦେବ ଚତୃଥ କାଳ
ହୋୟେ
ଭ୍ରଥକଇ ଦେଖିତ ଶରଧା କରଇ
ରାୟେ ।୧୦
ମୋତେ ବୋଇଲା ତୁ ଘେନିଆସ ଯାଇ
ଦୋହିତାର ନନ୍ଦନକୁଂ ନୟନେ ଦେଖଇ ।
ପିତାର ଆଗ୍ୟାଂରେ ମୁଂ ଅଇଲଇ ଖରେ
ସାତଦିନେ ପ୍ରବେଶ ଅଯୋଧା ନବରେ ।
ଜାବାଲିଙ୍କୁ ଦେଖି ଯେ ପଚାରିଲି ଯହୁଂ
ସେ ସର୍ବବିଧାନ କହିଲେ ମୋତେ ତହୁଂ ।
ଭୋ ଦେବ ମିଥିଳାକୁ ଅଇଲି ତହୁଂ ମୁହିଂ
ପିତାର ଆଗ୍ୟାଂ ମୋତେ ଭ୍ରଥକୁ ନେମା
ପାଇଂ ।
ଶୁଣି ଦଶରଥ ଯେ ଗଉରୋବ କଲା
ଯେଥୁ ଢାଳେ ଘେନି ଯାଆସି
ବୋଇଲା ।୨୦
ମାଜଣା ମୁଣୋହିଂ ସେ ସାରିଣ ନୃର୍ପତି
ଦିନକଂର ନାଥ ଯେ ମେରୁ ଉହାଡ଼େ
ଗମନ୍ତି ।
ରଜନୀ ପରବେଶ ଯେ ହୋଇଲାକ ଆସି
ପାତ୍ରମନ୍ତ୍ରୀ ଘେନି ଯେ ଦଶରଥ ରାୟେ
ବସି ।
ଆନନ୍ଦ ହୋଇ ଯେ କହଇ ନୃର୍ପବର
କାଲି ଦେଖୁଣି ଯେ ପହରକ ଭିତର ।
ଏବେ ମନ ମୋର ହୋଇବାକ ସୁସ୍ଥ
ଗୋତ୍ର ଧବଳିଲା ମୋର ଜନେକ
ତପୋବନ୍ତ ।
ଏଣେ ସେ ପୁତ୍ର ମୋର ପବିତ୍ର ହୋଇବେ
ଜନକର ଜ୍ଵଆଇଂ ବୋଲିଣ
ବୋଲାଇବେ ।୩୦
ବଶିଷ୍ଟେ ବୋଲନ୍ତି ତୁମ୍ଭେ ଶୁଣ ନୃପବର
ରବିତଳେ କୀରତି ରହିଲା ତୋହର ।
ଯାହାର ଶ୍ରୀରାମ ଅଛନ୍ତି ତନୟେ
ତିନି ଭୁବନେ କି ଅଛଇ ତାହାର ଭୟେ ।
ଜନେକ ସେ ପୁଣ୍ୟଋଷି ସତ୍ୟବାଦୀ
ତାହାର ଭାଗ୍ୟ ଯେ ତ୍ରଇଲୋକ୍ୟେ ପ୍ରସିଦ୍ଧି ।
ଚାରିପୁତ୍ରଙ୍କୁ ତୋର ଚାରି ଝିଅ ଦେବ
କନ୍ୟାଦାନ ଫଳେ ସେ ସ୍ଵର୍ଗରେ ବସିବ ।
ଭାଳେଣି ଭାଳନ୍ତେ ଅର୍ଦ୍ଧ ହୋଇଲାକ ରାତି
ବଶିଷ୍ଟଙ୍କୁ ଚାହିଂ ବୋଲଇ ନୃପତି ।୪୦
ବହୁତ ରଜନୀ ଯେ ହୋଇଲାକ ଆସି
ନିଜ ନବରକୁ ଗଲେ ମହଋଷି ।
ଶୁଣି ପାତ୍ରମନ୍ତ୍ରୀ ଅମନାତ୍ୟଗଣ ଯାନ୍ତି
ନୃପତି ଯାଇଂଣ ନିଜ ଶେଯ୍ୟାରେ
ପହୁଡ଼ନ୍ତି ।
ଯେଥୁ ଅନନ୍ତରେ ରଜନୀ ପରଭାତେ
ଶୀତଳ ଘେନିଣ ଯେ ବହଇ ମରୁତେ ।
ଶେଯ୍ୟା ଛାଡ଼ିଣ ଯେ ଉଠିଲେ ନୃର୍ପବର
ସାରନ୍ତି ନିତ୍ୟକର୍ମ ଯେ ବିଧି ବେଭାର ।
ଯେସନେକ ସମୟେ ଯେ ଜନେକ ଦୂତ
ଆସି
ସଭାରେ ବିଜେ କରିବ ବୋଲି ଭାଷି ।୫୦
ଶୁଣି ଦଶରଥ ଦେବାର୍ଚ୍ଚନ ସାରି
ହୟ ପିଠିରେ ଆରୋହି ଆସଇ ଦଣ୍ଡଧାରୀ ।
ଶିରରେ ବୀରଛତ୍ର ଉଡ଼ଇ ଫରହର
ଚତୁରାଂଗ ବଳ ଯେ ସହିତ ନୃର୍ପବର ।
ଅଶ୍ୱରୁ ଉତୁରି ଯେ ଆସ୍ଥାନେ ପ୍ରବେଶ
ଜନେକ ପଦେ ଲମ୍ଭଇ ଅଙ୍ଗ ନୃର୍ପଶିଷ ।
ବଶିଷ୍ଟ ବିଶ୍ୱାମିତ୍ର ଯେତେକ ଋଷିମାନେ
ତାହାଙ୍କୁ ନମସ୍କାର କରଇ ରାଜନେ ।
କଲ୍ୟାଣ କରନ୍ତି ସମସ୍ତ ମହାଯତି
ଗଉରୋବ ପାଇ ବସିଲା ନୃର୍ପତି ।୬୦
ବଶିଷ୍ଟେ ବୋଇଲେ ଜନେକ ଋଷି ଶୁଣ
ସଜ କରାଇଂଣ ତୁ ସୀତୟାକୁ ଆଣ ।
ବୁଧର ବେଳ ଯେ ହୋଇଲାକ ଆସି
ଗୁରୁଙ୍କର ଦୁଇଘଡ଼ି ଥିଲା ଯେବେ ବାସି ।
ଗୁରୁଙ୍କର ବାର ଯେ ଆବର ଚାରିଦଣ୍ଡ
ଉଦୟେ ହୋଇଂ ଭୋଗ କଲାକ ମାଗତଣ୍ଡ ।
ଯେବେ ତିନିଘଡ଼ି ରାତି ପରବେଶ
ହୋଇଲାକ ଆସି
ସଜକରି ଆଣ ତୁ ସୀତୟା ଚାରୁକେଶୀ ।
ଶୁଣି ଜନେକ ଯେ କୁଶଧ୍ୱଜକୁ ରାଇ
ସୀତୟାକୁ ବେଗେ ଆଣ ଆଗ୍ୟାଂ
ଦେଇ ।୭୦
ଉର୍ମିଳା ସହିତେ ତୋହୋର ଝିଅ ବେନି
ସଜ କରାଇଂ ତୁ ଆସ ବେଗେ ଘେନି ।
ଆଗ୍ୟାଂ ପାଇଂଣ ଯେ କୁଶଧ୍ୱଜ ଯାଇଂ
ମୃଦୁସୁଲୀ ଆଗେ ଯେ ଭିତରକୁ କହିଂ ।
ତୁ ଯାଇଂ ଜଣାଅ ବେଗେ ଜନେକଂର ରାଣୀ
ସୀତୟାକୁ ସଜକରି ଦିଅ ମୋତେ ଆଣି ।
ତକ୍ଷଣେ ମୃଦୁସୁଲୀ କହିଲାକ ଯାଇଂ
ସୀତୟାଂକୁ ସଜକରି ଦିଅ ବେଗ ହୋଇଂ ।
ରାଜାର ଆଜ୍ଞାରେ ନେବ କୁଶଧ୍ୱଜ
ଅନୁକୂଳ ହୋଇଲା ବେଗେ କର
ସଜ ।୮୦
ଶୁଣି ଜନକ ରାଜାର ରାଣୀମାନେ
ମୃଦୁସୁଲୀ ବଚନେ ହୁଅନ୍ତି ହରଷ ମନେ ।
ସୁବର୍ଣ୍ଣ ପୀଢ଼ାରେ ନେଇ ବସାଇଲେ ସୀତା
ବେଢ଼ିଣ ଅଛନ୍ତି ଯେ ସକଳ ବନିତା ।

ସର୍ବତୀର୍ଥ ଜଳମାନନ୍ତ ସଞ୍ଚକରି
ରତ୍ନ ଗରିଆରେ ତାହା ନେଇଂ ଭରି ।
ଶତେକ ଘଟ ସେ ବସାଇଲେର ନେଇଂ
ସୀତୟାର ଅଙ୍ଗେ ଯେ ସୁଗନ୍ଧ ତଇଳ
ଲେପଦେଇ ।
ଶରୀରେ ମୂଳପାଗ ନଡ଼ପ ଲଗାନ୍ତି
ଠିକ ଅଂୟେଳା ଘେନି ଘଟାନ୍ତ
ଛଡ଼ାବନ୍ତି ।୯୦
ନବଗ୍ରାହୀ ଅୟେଂଳା କସ୍ତୁରୀ ମିଶାଇ
ସୀତୟାର କେଶେ ଲାଗାଇଲେ ତାହା
ନେଇ ।
ଅନେକ ଘଟୀ ଘେନି ତଇଳମାନ ଲେଛି
ସରୁ ଝିନବାସ ଘେନି ଶ୍ରୀଅଙ୍ଗ ଯେ ପୋଛି ।
ମହାସୁଗନ୍ଧ ଯେ ଲେପିଲେ ପୁଣ ନେଇଂ
ଅଷ୍ଟାଙ୍ଗଶ୍ୟରୀରଯାକରେ ଲଗାଇ ।
ତ୍ରୀଥ ଜଳ ଘେନି ପଖାଳିଲେ କେଶ
ମଥା ପୋଛନ୍ତି ଯେ ଘେନିଣ ଝିନବାସ ।
ସୁରଙ୍ଗ ହଳଦୀରେ ଟଭାରସ ଭରି
ପୁଣିହିଂ ସୀତୟାର ଶ୍ରୀଅଙ୍ଗେ ନେଇ
ବୋଳି ।୧୦୦
ସୁବାସ ପାଣି ଘେନି ପଖାଳିଲେ କାୟେ
ବସ୍ତ୍ର ଘେନି ଅଙ୍ଗ ପୋଛିଲେ ସର୍ବମାୟେ ।
ଶୁଧ ସୁବର୍ଣ୍ଣ କରିଣ ରସାଣିଲା ଜାଣି
ତାହାକୁ ଶତେଗୁଣ ଶୋଭା ଦିଶଇ ଜନେକ
ଦୂଲଣୀ ।
କେଶ ଶୁଖାଇଲେ ବିଞ୍ଚଣୀ ଘେନି ବିଞ୍ଚି
ଚାଚର ଚିକୋର ଦିଶଇ ମହାସଞ୍ଚି ।
କୃଷ୍ଣ ଚାମରୁ ସେ ଦିଶଇ ମହାକଳା
ସୁସଞ୍ଚ କାବେରୀ ଦିଶି ଭ୍ରମରର ମାଳା ।
ମୟୂର କଣ୍ଠ ଜାଣି ଝଟଝଟ ଦିଶି
କି ଅବା ଗୁଞ୍ଜରା ମୁଣ୍ଡେ ଅଛି ଖୋଷି ।୧୦
ଶିଖ ପରିଯନ୍ତେ କୟେରା ଭାବ ନାହିଂ
ବସିଲେଣ କେଶ ଲାଗଇ ଯାଇ ଭୂଇଂ ।
ଶରଧାରେ ବାଛୀ ବସଇ କେଶ ଫେଇ

ସୁବର୍ଣ୍ଣ କାଠି ଚିରିଣି ଘେନି କେଶ
ବିରୋଳଇ ।
ଭିତରୁ ଓଦା ଛାଡ଼ିଲା ଯହୁଂ କେଶ
ଛାମୁରେ କଲେ ଆଣି ବିବିଧ ନାନା ପୁଷ୍ପ ।
ନାନା ପୁଷ୍ପେ କେଶ ସାଞ୍ଚୋଇକରି ବାଲୀ
ଚମ୍ପା ବକୁଳ ଯେ ସେବତୀ ନେଇଂ ଭରି ।
ଗୋଟା ନାଗେଶ୍ୱର ଯେ ମରୁଆ କୁରୁବଲୀ
ଥୋକାୟେକ ତହିଂ ଯେ ମିଶିଲେ ବସନ୍ତ
ମଲ୍ଲୀ ।୨୦
କୁସୁମ ଘେନିଲେ ଯେ ସମଭାଗ କରି
ଉପରେ ମାଖିଲେ କର୍ପୂର କସ୍ତୁରୀ ।
ସୀତୟାର କେଶ ଯେ ବିରୋଳକରି ଖୋଷି
ତାରାଗଣ ମଧ୍ୟେ ଉଦୟେ ଯେହ୍ନେ ଶଶୀ ।
ଖୋଷା ଖୋଷିଲେ ଯେ ଅତିଯତ୍ନ କରି
ଉପରେ କେତେକୀ ପାଖୁଡ଼ାନ୍ତ ଭରି ।
ପଛକୁ ଓହାଡ଼ି ଖୋଷା ବସିଲାକ ଯହୁଂ
ସୁନ୍ଦର ମୁଖ ଗୋଟି ଶୋଭା ପାୟେ ତହୁଂ ।
ବେଲ ବଳିଲା ପ୍ରାୟେ ଦିଶିଲା ବଳିଣ
ସ୍ୱୟେଂ ବିଶ୍ୱକର୍ମା ଗଢ଼ି କଲାକ
ନିର୍ମାଣ ।୩୦
କି ଅବା ଚିତ୍ରକାର ଚିତ୍ରକରି ଲେଖିଲା
ଖୋଷିଲା ଖୋଷା ଯେ ସୀତ୍ୟାଙ୍କୁ ସାଜିଲା ।
ଖୋପାର ଲାଗି ଯେ ଭ୍ରମର ଛନ୍ଦେ ବୁଲଇ
ତହିଂ ଖଂଜିଲେ ନେଇ ଯେ ଫୁଟିଲା ପଦ୍ମ
ଫୁଲଇ।
ଦିବ୍ୟ ବେସନ କରି ଆଣିଲେ ବିଚାରି
ନେତର ବନ୍ଧଣି ଯେ ପତନି ପତନି
ପରିସାରି ।
ତାରା ମଣ୍ଡୋର୍ନ୍ଦଛିଣି କୁସୁମ ପନ୍ତି ପନ୍ତି
ପାଟର ଅଞ୍ଚଳେ ଖଂଜିଲା ଗଜ ମୋତି ।
ସେ ବସ୍ତ୍ର ଉଞ୍ଛୁଳିଣ ଯେ ପିନ୍ଧାଇଲେ ନେଇ
ରତ୍ନ ପୀଢ଼ାରୁ ଦେବୀ ଅଇଲେ ଓହ୍ଲାଇ ।୪୦
ପାଟ ଖରଡ଼ ଉପରେ ଦେବୀ ବସି
କେବଣ ଜନନୀ ଯେ ଆୟେ ଘେନି ଆସି ।

କର୍ଣ୍ଣରେ ଖଂଜିଲେ ଯେ ମୁକୁତାର କାପ
ହୀରାର ବହ୍ଲକ କି ଆଦିତ୍ୟର ଧାପ ।
କେବଣ ଠାବରେ ଯେ ହୀରାର ନାୟେକ
କାହିଂ ବସଇ ଯେ ପଦ୍ମରାଗ ମାଣିକ ।
କାହିଂ ପୁସ୍ୟରାଗ କାହିଂ କୁରୁବିନ୍ଦ
ଚନ୍ଦ୍ରକାପ ଘଟଣ ଫୁଟିଲା ଅରବିନ୍ଦ ।
ଶର୍ବଣ ଶିଖରେ ଯେ ଖଂଜିଲେ ବେଣ୍ଟୁଲା
ସରୁ ମୋତି ଭଳି ତହିଂକି ଘଟିଲା ।୫୦
ଉପରେ ନୀଳମଣି ନାଏକ ବସଇ
ଶରଦ ମଲ୍ଲୀକି ଲୋଭେ ଭ୍ରମର ଆସଇ ।
ସୀତ୍ୟାର କର୍ଣ୍ଣେ ସେ କାପ ଶୋଭା ପାନ୍ତି
ପୂର୍ବେ କେବଣ ଯେ ତପ କରିଣ ଅଛନ୍ତି ।
ସୁଦୀର୍ଘ ନାସିକାରେ ବସଣି ନେଇ ଲାଇ
ପଞ୍ଚ-ଗଜ ମୁକୁତା ତହିଂ ଖଂଜିଲା ଅଛଇ ।
କାର୍ତ୍ତିକ ପୁଂଜା ଯେହ୍ନେ ନୀଳ ମେଘେ ଦିଶେ
ସୀତ୍ୟାର ନାସାୟେ ମଣିରତ୍ନ ତେସନ
ଆଭାସେ ।
କଣ୍ଠହାର ତାର ସପତସରି ମୋତି
ମାଣିକ୍ୟ ନାୟେକ ଯେ ଅରୁଣି ଜାଣି
ଜୋତି ।୬୦
ତହିଂର ତଳେ ଯେ ଦୋସରି ସୁନାସୂତା
ମଧରେ ଅଛି ଯେ ଏକଇ ମୁକୁତା ।
ଶୁକ୍ର ଦେବତାର କିରଣ ତାହାର
ତହିଂର ପାଶେ ଯେ ନୀଳମଣି ହାର ।
ଚଉସରା ମାଳୀ ମାଣିକ୍ୟ ମୁକୁତା
ଯତନ କରିଣ କି ଗଢ଼ିଛି ବିଧାତା ।
ୟେକ ଗୋଟି ମୁକୁତା କପୋଳର ମାଳ
ଶୋଭା ପାଇଲା ସେ ଦେବୀର ବକ୍ଷସ୍ଥଳ ।
ରତ୍ନପଦ୍ମେକ ଯେ ଶ୍ୟରୀରେ ଭୂଷଣ
ଶରଦ ଆଦିତ୍ୟ ହୋଇବ ଦୂଷଣ ।୭୦
ବାହେଣ ତାଡ଼ ଯେ ହୀରାର ଫେରି କତି
ମଧେଣ ଅଛଇ ଯେ ତାହାର ଗଜମୋତି ।
ବେନି ଭୁଜ ମୂଳରେ ରତ୍ନ ବିଦମାଳି
ରଙ୍ଗ ପାଟେଣ ଯେ ଗୁନ୍ଥିଲେ ନେଇ ବାଳୀ ।

କରେଣ କଙ୍କଣ ସୁବର୍ଣ୍ଣ ଶିଙ୍କୁଳି
ରତ୍ନ ବେନି ଚୂଡ଼ି ବିଜୁଳି ଜାଣି ଝଳି ।
ଅଙ୍ଗୁଷ୍ଠିର ମୁଦି ଚାରି ଭିନ୍ନ ଭିନ୍ନ
କାହିଂରେ ତୀରକ କାହିଂ ମଛ ଚିହ୍ନ ।
କଟିରେ କଟିମେଖଳା ଖଂଜିଲେ ଯତ୍ନକରି
ବସିଲା କାହାର ଯେ କଣ୍ଠକୁ
ଆବୋରି ।୮୦
ଗଜମୋତିମାନେ ଝଲକନ୍ତି ନିରନ୍ତର
କି ଜାଣି ପୂର୍ଣ୍ଣ ଶଶୀ ନୁହଇ ପଟାନ୍ତର ।
ପୟରେ ନୂପୁର ରତ୍ନମଏ କମ
ଚଳନ୍ତେ ଶବଦ ସେ କରଇ ଝମଝମ ।
ପାଦରେ ମୁଦ୍ରିକା ଅଙ୍ଗୁଷ୍ଠିରେ ଝଲକନ୍ତି
ବିବିଧ ମଣିମାନେ ତହିଂ ଲାଗିଛନ୍ତି ।
ଆବର ଅନେକ ବିବିଧ ହାର ଲାଇ
ମାତାଙ୍କ ସନିଧେ ବିଜଏ ଚାନ୍ଦମୁହୀ ।
ଶିରେ ସୀମନ୍ତିନୀ ଯେ ଖଞ୍ଜିଲେ ମୋତିମାଳି
ତହିଂର ତଳେ ତିଳକ ଲଲାଟେ ଅଛି
ଲୁଳି ।୯୦
ତାମ୍ବୁଳ ଭୁଞ୍ଜାଇଣ ରଞ୍ଜିଲେ କଜ୍ଜ୍ୱଳ
ସ୍ୱଭାବେ ନୟନ ତାର ନୀଳ ଯେ ଉତ୍ପଳ ।
କଜ୍ଜ୍ୱଳ ଦିଅନ୍ତେ ଦେବୀ ଦିଶିଲା ସୁନ୍ଦର
କୁସୁମ ଆବୋରି କି ରହିଲା ଭ୍ରମର ।
ଅଞ୍ଜନ ରଞ୍ଜିଲେ ଅତି ସରୁକରି
ଚକ୍ଷୁରେ ଲାଗନ୍ତେ ସେ ହୋଇଲା ବିସ୍ତାରି ।
ଦେଖି ମନେ ମନେ ଭାଳନ୍ତି ନାରୀଗଣ
ମଦନ ରାଏକି ସନ୍ଧିଲା ତୀକ୍ଷଣ ବାଣ ।
ସରୁ କଜ୍ଜ୍ୱଳ ଯହୁଂ ବ୍ୟାପିଲା ଆକ୍ଷି
ସ୍ୱାମୀର ସଉଭାଗୀ ହୋଇବ
ଶଶୀମୁଖୀ ।୧୦୦
ଏତେ ବୋଲି କପୋଳେ ଚନ୍ଦନ ବୋଳନ୍ତି
ଉର୍ଦ୍ଧ୍ୱକଇ ନେଇ କସ୍ତୁରୀ ଚିତା ଦ୍ୟନ୍ତି ।
ସିନ୍ଦୂର ଚିତା ଯେ ତହିଂ ମଧରେ ଶୋହେ
କିଜାଣି ଅରୁଣ ଚନ୍ଦ୍ରମା ପାଶେ ରହେ ।
ଅଳତା ରଙ୍ଗେଣ ଯେ ଚରଣ ଚିତ୍ରକଲେ
କର୍ପୂର କସ୍ତୁରୀ ମିଶାଇ ଘଷିଲେ ।
ଅଳକା ମଣ୍ଡିଲେ ଯେ ଶ୍ରୀକରେ କେରି
କେରି
ବିକଚ କମଳ କି ଭ୍ରସଳ ଆବୋରି ।
ବିଚିତ୍ର ପାଟେକ ତହିଂ ଉପରାଣ କଲେ
ଶ୍ରୀଫଳ ଗୋଟାୟେ ତାହାଙ୍କ ହସ୍ତରେ
ସମର୍ପିଲେ ।୧୦୦
କୋଳକରି ଆସି ଯେ କୁଶଧ୍ୱଜ ଘେନିଗଲା
ଆସ୍ଥାନ ତଳେ ନେଇଂ ଜନେକ କୋଳେ
ଦେଲା ।
ଦେଖି ଚମତ୍କାର ନାଗିଲା ସବୁନ୍ତି
ଚନ୍ଦ୍ର କି ଖସିଆସି ପଡ଼ିଲାକ ପୃଥ୍ୱୀ ।
କେ ବୋଲଇ ଧନ୍ୟ ଯେ ଯୁବତୀ
ଶିରୋମଣି
କେ ବୋଲଇ ଅଟଇ ସକଳ ରୂପଖଣି ।
କେ ବୋଲଇ ଧାତା ସକଳ ଚିନ୍ତା ଛାଡ଼ି
ଅନେକ ଯତନେ ଅଛଇ ହାଦେ ଯେହା
ଗଢ଼ି ।
କେ ବୋଲଇ ସୃଷ୍ଟିରେ ଯେତେକ ଗୁଣ ଥିଲା
ଭାଳିଣ ପିତାମହ ଯେକ ସ୍ଥାନ କଲା ।୨୦
କେ ବୋଲଇ ଯେ ଯେ ଅଟଇ ଗୁଣନିଧି
ଯେହାର ତହିଂସିନା ଅଟଇ ଅଷ୍ଟନିଧି ।
କେ ବୋଲଇ ଆହୋ ଯେ କେବଣ ଯୁବତୀ
ଶାପ୍ୟେ ଅବତାର ହୋଇଅଛି ପୃଥ୍ୱୀ ।
କେ ବୋଲଇ ସ୍ୱୟେଂ ଅଟଇ କମଳିଣୀ
କେ ବୋଲଇ ନିଷ୍ଟେ ଇନ୍ଦ୍ରର ଘରଣୀ ।
କେ ବୋଲଇ ବ୍ରହ୍ମାର ସାବିତ୍ରୀ ଅବା ଯେହୁ
କେ ବୋଲଇ ପାର୍ବତୀ ବୋଲାଇବ ଯେହୁ ।
ସେ ଅବା ମଞ୍ଚେ ଆସି ହୋଇଲା ଅବତାର
କେ ବୋଲଇ ରତି ଯେହୁ ରମଣୀ
କନ୍ଦର୍ପର ।୩୦
କେ ବୋଲଇ ସ୍ୱୟେଂ ସୂର୍ଯ୍ୟର ଘରଣୀ
କେ ବୋଲଇ ଛାୟା ଯେହାର ସପତଣୀ ।
କେ ବୋଲଇ ସ୍ୱାହା ଅବା ଅଗ୍ନିର ଯୁବତୀ
କେ ବୋଲଇ ତାରା ଯେ ବୃହସ୍ପତିଙ୍କ
ପ୍ରୀତି ।
କେ ବୋଲଇ ଗଙ୍ଗା ଯେ ବରୁଣର ରାଣୀ
କେ ବୋଲଇ ଯମୁନା ଯେ ଯମର
ଭୟେଣୀ ।
କେ ବୋଲଇ ସାବିତ୍ରୀ ଯେ ବ୍ରହ୍ମାର ବନିତା
କେ ବୋଲଇ ସ୍ୱରସ୍ୱତୀ ଧାତାର ଦୁହିତା ।
କେ ବୋଲଇ ଅବା ଅଷ୍ଟ ଅପଛରୀ
ବିହି ନିର୍ମାଣିଲା ଯେକ ଦେହକରି ।୪୦
କେ ବୋଲଇ ଆହୋ ନ ଦେବା ପଟାନ୍ତର
ଯେହାକୁ ସମନାହିଂ ତ୍ରିଭୁବନ ଭିତର ।
କେ ବୋଲଇ ଆହୋ ହୋଇଲ କି ବାଇ
ଯେହାକୁ ସମ କି ବ୍ରହ୍ମାଣ୍ଡେ ଅଛଇ ।
ସ୍ୱୟେଂ ପରମ ଲକ୍ଷ୍ମୀ ଜଗତର ମାତା
ଯେହାଙ୍କର ତହୁଂ ଜାତ ସକଳ ଦେବତା ।
ତାହାଙ୍କର ନାରୀ କିୟେହାଙ୍କୁ ସମ ହୋନ୍ତି
ଯେ ସେ ପରମ ଲକ୍ଷ୍ମୀ ଯୁବତୀ ରତ୍ନକାନ୍ତି ।
କେ ବୋଲଇ ଆମ୍ଭର ଯେ ବେନି ଚକ୍ଷୁ
ଅନେକ ନାରୀ ସୋରୂପ ଆମ୍ଭେ
ଦେଖିଅଛୁ ।୫୦
ସୀତ୍ୟାର ସହସ୍ରେକ ଗୁଣେ ଯେକା ଗୁଣ
କେବଣ ରୂପବନ୍ତୀ ନ ବହନ୍ତି ଏ ଲକ୍ଷଣ ।
କେ ବୋଲଇ ଦେହ ସୁବର୍ଣ୍ଣ କାନ୍ତି ଦିଶଇ
କୁଙ୍କୁମ ଘଷିବାରେ ଅଧିକ ପ୍ରକାଶଇ ।
ଛଣପଟ ଫୁଲ ଗୁଡ଼ାୟେ ଯେସନେ ବିରାଜି
ଶିରୀଷ-କୁସୁମକୁ କୋମଳ ଭାବ ଭଜି ।
କେ ବୋଲଇ ସୋରିଷ ପୁଷ୍ପ ପ୍ରାୟେ ଦିଶନ୍ତି
କେ ବୋଲଇ ବିଧାତା ଗଢ଼ିଲା ରୂପବନ୍ତୀ ।
କେ ବୋଲଇ ଭଲା ଭଳିଲା ସୁବର୍ଣ୍ଣ
ଯହୁଂ ଦେଖିଲେ ଯେ ସୀତ୍ୟାର
ଦେହବର୍ଣ୍ଣ ।୬୦
ପଳାଇଂ ପଶିଲା ସେ ଯାଇଣ ବନସ୍ତେ
ଲାଜେ ଲୁଚିଲା ସେ ହେମ ପରବତେ ।
ଜମ୍ବୁନଦୀ ଭିତରେ ଗୁପତେ ଅଛି ରହି
ତେବେ ସେ ଦେବତାୟେ ସ୍ୱର୍ଗେ ସୁସ୍ତେ
ଥାଇ ।

ଆପଣାର ମହିମା ଜାଣଇଂ ଆପଣ
ଧନ୍ୟ ଧନ୍ୟ ସୁବର୍ଣ୍ଣ ତୋହୋର ବଡ଼ପଣ ।
ଯେ ଅବା ତୋହୋର ବଂଶେଣ ଅବତାର
ଗର୍ବ କରିଣ ସେ ଛାଡ଼ିଲା ବନଘୋର ।
ତୋହର ତିଆରିବା ବୋଲନ୍ତ ନ କଲେ
ଚଞ୍ଚଳ ଜଳ ସଙ୍ଗେ ବହିଂତ ଅଇଲେ ।୭୦
ନଗ୍ର ନିକଟରେ ହୋଇଲା ଯହୁଂ ଆସି
ଧୋଓରା ବଳହିଂ ଯେ ବିଧାତା ଦେଲା
ପେଷି ।
ସୀତୟା ରୂପକୁ ଯେ ଅହନ୍ତା ଭାବ କରି
ନିଜ ସ୍ଥାନ ଛାଡି ଯେବଣ ହେମଗରି ।
ତାହାକୁ ବେଗେ ତୁମ୍ଭେ ଧରି ଘେନି ଆସ
ଯେମନ୍ତେଣ ପାର ତେମନ୍ତେ କରି ନାଶ ।
ବ୍ରହ୍ମାର ବଳ ପାଇଂ ଧୋଓରା ବଳ ଗଲେ
ନଦୀଙ୍କର ଭିତରେ ସେ ପଶିଣ ଲୋଡ଼ିଲେ ।
ଖୋଜି ପାଇଂଣ ସେ ବାନ୍ଧିଲେ ଯତ୍ନକରି
ବ୍ରହ୍ମା ତିଆରିଲା କଥାନ୍ତ ମନେ ଧରି ।୮୦
ନଗ୍ରେଣ ପଶିଣ ଭେଟିଲେ ସୁନାରି
ସୁନା ଦହିଂବ ବୋଲି ଶହସ୍ର ଅଛି ଧରି ।
ତାହାର ଆଗେଣ ଯେ ଯାଇଂଣ ସମ୍ବାଦି
ବୋଇଲେ ତୋହୋର ଆମ୍ଭେ ଧରିଅଛୁ
ବାଦୀ ।
ତୁ କିସ ବଧାଇ ଦେବୁନି ଆମ୍ଭନ୍ତ
ତେବେ ସେ ବଇରୀ ସମର୍ପିବୁ ତୋତ ।
ଶୁଣି ହେମବୈରୀ ଯେ ବୋଇଲା ଦେଖା
ଫେଡ଼ି
କେତେମାନ ଶତ୍ରୁ ଚିହ୍ନିମା ନା ବାରି ।
ଆୟେ ଅନରୂପେ ଦେବା ନା ବଧାଇ
ଯେଡ଼େ ରିପୁ ଯେବେ ଦେବା ନ
ସଧାଇଂ ।୯୦
ଶୁଣି ଧୋଓରାଏ ଫେଡ଼ନ୍ତି ସୁବର୍ଣ୍ଣ
ବଣିଆର ହସ୍ତେ ଦେଲେ ନେଇଂ ଧନ ।
କରେ ଧରି ସୁନାରୀ ତୁଳକଷ କଲା
ଅଗ୍ନିରେ ପୋଡ଼ି ସେ ବିକୋଟି କାଟିଲା ।
ଆଣିଲା ରୂପକୁ ଆନ ରୂପ କରି
ବିବିଧ ପଦାର୍ଥ ସେ ଦେଲାକ ସୁନାରି ।
ସେ ଶୁଧ ହେମକାୟେ ମିଶାଇଲା କଂସା
ବେଦାନ୍ତି ବ୍ରାହ୍ମଣ ଯେହ୍ନେ ଶୁଣ୍ଡିଘରେ ବସା ।
ତମ୍ଭା ମିଶାଇଣ ପୁଣିହିଂ ଜାଳ ଦେଲା
ସୁରପାନେ ଯେହ୍ନେ ବ୍ରାହ୍ମଣ
ନାଶଗଲା ।୧୦୦
ଚକ୍ଷୁ ଅଙ୍ଗାରେ ଯେ ପୋଡ଼ିଟି ତାହା ନେଇଂ
ଆବର ଅନେକ ସେ ବିବିଧ କଷ୍ଟ ଦେଇଂ ।
ଶୁଧ ସୁବର୍ଣ୍ଣ ସେ ହୋଇଲା କ୍ଷୀରକ୍ଷାର
ଖାଠିୟେ ବାନି ସୁନା ବିକ୍ରୀୟେ ପଣ ବାର ।
ମଦାରି ଲୁଣ ଦେଇ ଜାତି ନାଶକଲେ
ଶାତକୁମ୍ଭା ବୋଲି ନାମକରି ଅଇଲେ ।
ସୀତୟା ରୂପକୁ ବହିଲେ ଅହନ୍ତା
ତେଣୁ ମନ୍ଦ ହାଦେ ବିହିଲା ବିଧାତା ।
ଶୁଦ୍ଧ ହାଟକ ଜାଣିମା ପଣ କଲା
ଦେବତାମାନଙ୍କର ଆଭରଣ ହୋଇଲା ।
କେ ବୋଲଇ ମୁଖ ଶରଦଚନ୍ଦ୍ର କାନ୍ତି
କି ଜାଣି ଆକାଶେ କି ଉଇଂଲା ନିଶାପତି ।
ଦେଖିଣ ଧିକାର କରନ୍ତି ଦେବତାଗଣ
ସୀତ୍ୟା ମୁଖ ଚାହିଂମାକୁ ଉଇଂଲୁ କେସନ ।
ଲଜ୍ୟା ନ ପାଇଲୁ ଯେଡ଼େ ଲୋକ ହୋଇଂ
ଦେଖି କେହ୍ନେମତେ ଅଛୁ ଡିଆଇଂ ।
ବଡ଼ପଣ ଘେନି ଉଦୟେ ହୋଇଲୁ
ସୀତ୍ୟା ମୁଖ ଚାହିଂ ସଙ୍କୁଚ ନ ପାଇଲୁ ।
ଯେ କଥା ତୋହୋର ନ ଯୋଗାଇ ଶଶୀ
ଦୁତୀୟା ଚନ୍ଦ୍ରକୁ ସରି ତୁ ନୋହୁସି ।୨୦
ସେ ସେ ମାହାତ୍ମା ଯେ ଅଟଇ ସାଧୁଜନ
ତାହାଙ୍କୁ ନରେ ଦେଖି ଯେ କରନ୍ତି ଧନ୍ୟ
ଧନ୍ୟ ।
ନ ଜାଣି ଉଦୟେ ହୋଇଲା ଶଶୀ ଯହୁଂ
ମନେ ମନେ ବିଚାରି ବୋଇଲାକ ତହୁଂ ।
ବୋଇଲା କିପାଂଇ ମୁଂ ଉଦୟେ ହୋଇବି
ଯେ ମହୀମଣ୍ଡଳେ ମୁଂ ଉପହାସ୍ୟ ପାଇବି ।
ସୀତ୍ୟାର ମୁଖ ଯେ ତିନି ଭୁବନେ ମଣ୍ଡଇଂ
ମହାଘୋର ତିମିର ଯେ ହେଲେଣ ଖଣ୍ଡଇ ।
ସେ ଯେବେ ଉଦୟେ ହୋଇଛି ରବିତଳେ
ମୁହିଂ କିଂପା ଦୃଶ୍ୟ ହୋଇଂ ପାଇବି
ବିଫଳେ ।୩୦
ଯେତେ ବୋଲି ଚନ୍ଦ୍ର ଯେ ବାହୁଡ଼ିଣ ଗଲା
ବାଟେ ଯାଉଂ ରୁଦ୍ରଦେବଙ୍କୁ ଦେଖିଲା ।
ଶିବ ପଚାରନ୍ତି କାହିଂଥିଲୁ ଶଶୀ
ମୋହୋର ଆଗରେ ତୁ ଯୋରୂପ କହସି ।
ଶଶୀକର ବୋଲଇ ତୁମ୍ଭେ ଶୁଣ ଶୂଳକର
ଆକାଶେ ଉଦୟେ ପ୍ରସ୍ତାପ ମୋହୋର ।
ଜଗତର ନିମନ୍ତେ ଦେଲଇଂ ଯହୁଂ ଦେଖା
ମଳିଣ ଭାବ ମୋର ଦିଶିଲାକ ଶାଖା ।
ନିରୋପି ଚାହିଂଲି ମୁଁ ମନେ ହେତୁ କରି
ସୀତା ଚନ୍ଦ୍ରମୁଖୀ ଅବନୀରେ ଅବତରି ।୪୦
ତାହାକୁଂ ଦେଖି ମୁଂ ପଳାଇଲି ଲାଜେ
ଆବର ଉଦୟେ ହୋଇବି କେବଣ
କାର୍ଯ୍ୟେ ।
ଶୁଣିଣ ମହାଦେବ ଯେ ପ୍ରସନ ମୁଖ ହୋଇଂ
ଚନ୍ଦ୍ରକୁ ପ୍ରଶଂସା କରନ୍ତି ଉମାସାଇଂ ।
ଧନ୍ୟ ମହିଂମା ହୋ ଅଟୁ ତୁହୋ ଶଶୀ
ଆସ ଆସ ମୋହୋର ଶିରେ ଥାଅ ବସି ।
ଯେତେ ବୋଲି ଦେବ ଯେ ଧଇଲେ
ଶଶୀକର
ନାମ ବୋଲାଇଲେ ହର ଚନ୍ଦ୍ରଶିଖର ।
ଯହୁଂ ସେ ମାହାତ୍ମା ମହତ ପଣକଲା
ଭବାନୀପତିର ସେ ମଉଳିରେ
ବସିଲା ।୫୦
ଯେ ମହୀମଣ୍ଡଳେସେ ପୂଜା ଯେବେ ପାଇ
ଯେତେ ବୋଲିଣ ଯେ ତାହାକୁ ବନ୍ଦାଇ ।
ଷୋଳହ ଗୁଣେ ଯେ ତାହାକୁଂ ଅଟେ ବଡ଼
ସୀତାକୁ ଅହନ୍ତା କଲୁ ପ୍ରକୃତି କଲୁ ରାଢ଼ ।
ଯେ ମହୀମଣ୍ଡଳେ ପୂଜା ତୁ ନ ପାଅ
ଅସୁରଙ୍କ ହାଥରେ ଗଞ୍ଜି ହୋଉଥାଅ ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ବୋଲି ନ କରିବେ ଆଦର

ଧର୍ମ ଭୋଗକର ଦ୍ୱତୀୟା ନିଶାକର ।
ଯେତେ ବୋଲିଣ ଯେ ସକଳ ଜନେ ଭାଳି
ଚନ୍ଦ୍ରମାର ମୁଖେ ଲଗାଇଲେ କାଳି ।୬୦
ତେଣୁ ସେ କଳଙ୍କ ହୋଇଲେ ଶଶଧର
ଯେସନ ବୋଲି ନରେ କରନ୍ତି ବିଚାର ।
କେ ବୋଲଇ ନୟନ ନୀଳେନ୍ଦୀ ଦଳ ଜାଣି
କେ ବୋଲଇ ମୃର୍ଗ ତହୁଂ ଅଛି ଆଣି ।
ତରଳ ଲୋଚନ ଯେ ତରଳଇ କର୍ଣ୍ଣଯାଏ
ଶ୍ୱେତପଦ୍ମ ହିଂ କି ସ୍ୱସ୍ତିକ ଥୋପା ପ୍ରାଏ ।
କେ ବୋଲଇ ନାସିକା ତିଳ ଫୁଲ ସମ
କେବୋଲଇ ତହୁଂ ଅଧିକ ତାର କମ ।
କେ ବୋଲଇ ଶର୍ବଣ ଏହାର କାମଦେବ
ଫାଶୀ
ଯେଣେ ଜଗତ ତନୁ ଧରଇ ଆକ୍ରେଷି ।୭୦
କେ ବୋଲଇ ଅଧର ବଧୁକ ପୁଷ୍ପକୋଟି
ଦନ୍ତ ସୁନ୍ଦର କି ତୁଳଇ ଗଜମୋତି ।
କେ ବୋଲଇ ଭ୍ରୂଲତା ମଦନ ଶରାସନ
ତହିଂକି ନାରାଜ ଅଟଇ ବେନି ଯେ
ନୟନ ।
ତାହା ପୂରାଇ ଯେ ବିନ୍ଧିବ ଯଦି ଟାଣି
କାମୀ ଜନକଇଂ ସେ ଯେ ପକାଇବ ହାଣି ।
ଯେ ଅସ୍ତ୍ର କାମଦେବ ଈଶ୍ୱରଙ୍କୁ କଲା
ହର କୋପାନଳେ ଆପଣେ ନାଶଗଲା ।
ନାରାଜ ଗୁଣେ ପୁଣ ଭାଜିଲା ଶିବ ତପ
ବିରହେ ଚଳିଲେ ଉମାର ସମୀପ ।୮୦
ଯେବଣଠାରେ କାମ ହୋଇଲା ଭସ୍ମରାଶି
କନ୍ଦର୍ପ ଭାରିଯା ରତି ଦେଖିଲା ତାହା ଆସି ।
ଧନୁ ଶସ୍ତ୍ର ଘେନି ବାହୁଡ଼ଇ ବାଳୀ
କାହିଂ ଥୋଇବି ବୋଲି ମନେ ମନେ
ଭାଳି ।
ସ୍ତରୀଙ୍କର ସ୍ତିରୀ ଅଟନ୍ତି ନା ପ୍ରୀତି
ସୀତାର ତହିଂକି ଚଳିଲା ତଡ଼ତି ।
ଧନୁଶର ଆଣି ଥୋଇଲାକ ତହିଂ
ତପ କରିଗଲା ଭ୍ରଥାର ହିତ ପାଇଂ ।
ସୀତୟା ସେ ଶାୟେକ କଲା ଯହୁଂ ଯତ୍ନ
ଭ୍ରୂଲତାଯେ ଗୁପତେ ଲୁଚାଇ ସ୍ତିରୀ
ରତ୍ନ ।୯୦
ନୟନର ପାଶେ ଥୋଇଲା ବେନି ଶର
ଯେସନେକ ବୋଲି ନରେ କରନ୍ତି
ବିଚାର ।
କପାଳେ ଚନ୍ଦନ ଶୋହଇ ଆଡ଼କେରା
କେଜାଣି ଶେତ ଚାମର ଉଡ଼ଇ ଫରହରା ।
ଉର୍ଦ୍ଧ କରିଣ ସେ କସ୍ତୁରୀ ଚିତାଦେଲା
କିଜାଣି ପାତାଙ୍ଗ ତହିଂରେ ଖଂଜିଲା ।
ସିନ୍ଦୂର ଚିତାଗୋଟି ଲୀଳାରେ ଅଛି ବସି
କିଅବା ଅରୁଣ ଉଦେ ହୋଇଂଆସି ।
କେ ବୋଲଇ ଅଳକା ଦିଶଇ ସୁନ୍ଦରଂ
ଫୁଟିଲା ପୁସ୍ୟ ଯେହ୍ନେ ଚୁମ୍ବଇ
ଭ୍ରମର ।୧୦୦
କେ ବୋଲଇ ଶିରରେ ଯେ ସୀମନ୍ତିନୀ
ମୋତିମାଳି
ମେରୁ ଶିଖରୁ କି ଗଙ୍ଗା ପଡ଼ଇ ଢଳି ।
କେ ବୋଲଇ ଶଙ୍ଖ ଆକାର କଣ୍ଠ ଦିଶଇ
ମଣି ରତ୍ନ ଭୂଷଣେ ସେ ଅଧିକ ବିକାଶଇ ।
କେ ବୋଲଇ ଭୁଜ ପଦ୍ମନାଡ଼ ଜାଣି
ଗୁଣ ଗୁଣି ମନେ ବିଚାରନ୍ତି ପୁଣି ।
ଗଜଦନ୍ତ ପ୍ରାୟେ ଦିଶଇ ବେନି ଲହଡ଼ି
କାମଦେବର କି ସେ ବିଶ୍ୱାସ ଦଉଡ଼ି ।
ଯେଣେ ସେ ଜଗତ ବାନ୍ଧଇ ମନସିଜ
ଯେବେ ସେ ହୋଇଂଅଛି ସୀତୟାର
ଭୁଜ ।୧୦
କେ ବୋଲଇ କର ଅଙ୍ଗୁଷ୍ଠି ଚମ୍ପାକଢ଼ି
ନଖର ପଟାନ୍ତର ଜାଇର ପାଖୁଡ଼ି ।
କରସ୍ଥଳ କାନ୍ତି ସୁନ୍ଦର ମନ୍ଦାର
ଉର୍ଦ୍ଧରେଖରେ ଯେ ଶଙ୍ଖଚକ୍ର ମଗର
ଯବ ଡାମର ଧ୍ୱଜ ରେହମାନ
ସଧବା ଲକ୍ଷଣ ଆଶ୍ୟ ବିବର୍ଦ୍ଧନ ।
ଅତୁଟ ପରାଣ ଅରୋଗୀ ତନୁହେତୁ
ଦୂଆରେ ଦେଖୁଣି କଲାକ କୁଶକେତୁ ।
ବୋଲଇ ହୃଦୟ ଅଟଇ ବୃଶାଳ
ସମଦୀର୍ଘ ଲକ୍ଷଣ ଯେହାର ଅଟଇ
କୁଶଳ ।୨୦
କେ ବୋଲଇ ସ୍ତନଯୁଗଳ ଭାର ଗରୁ
ଭାଜି ପଡ଼ଇ ନ ପୁଣ ମଝା ଖଣ୍ଡି ସରୁ ।
କେ ବୋଲଇ ସିଂଘ ଲୁଚିଲା କେଣେ
ଲାଜେ
ଯେଥେ ଥିବ ଅବା କେବଣ ହିଂ କାର୍ଯ୍ୟେ ।
ଯେତେଦିନ ସୀତୟା ନୋହିଥିଲା ଜାତ
ସିଙ୍ଘ ପ୍ରାୟେ ମଝା ପ୍ରଶଂସନ୍ତି ଜଗତ ।
ତହୁଂ ସରୁ ଅଟଇ ଯେହାର ଅଣ୍ଟା
କେଶରୀ କି ହୋଇଲା ଯେ ସପତଣୀ କଣ୍ଟା
ତେଣୁ ସେ ମୃଗଇନ୍ଦ୍ର ଗଲାକ ପଳାଇ
ଦୁର୍ଗା ତାହାକୁ ସମ୍ଭାଳିଲା ନେଇ ।୩୦
କେ ବୋଲଇ ଅତି ବିସ୍ତାର ଚାରୁବନ୍ଧ
ବସ୍ତ୍ର ପିନ୍ଧିବାରେ ଆନନ୍ଦୁ ସୁଛନ୍ଦ ।
କେ ବୋଲଇ ଜାନୁ ଉଲଟ କଦଳୀ
କେ ବୋଲଇ ଅତି ସୁରଙ୍ଗ ପାଦତଳି ।
କେ ବୋଲଇ ଅଗୁଂଷ୍ଠି ଚରଣ ସଂଯାତ
ଓଷେକର କଢ଼ି ଅଟଇ ଯେବଣ ମତ ।
ଗଜ ମୁକୁତା କି ଦିଶଇ ଲଖପନ୍ତି
ଅଳତା ରଙ୍ଗେଣ ସେ ଦୁଗୁଣ ଶୋଭାପାନ୍ତି ।
ନେପୁର ମୁଦ୍ରିକା ବିରାଜନ୍ତି ରତ୍ନମାନ
ସାଧୁ ସାଧୁ ସୀତୟା ଯୁବତୀ କୁଳରତ୍ନ ।୪୦
ଆଗକୁ ଉଭାର ପଛକୁ ଶୋଭା ଦିଶି
କେତେ କାଳ ବିହି ଗଢ଼ିଲାକ ବସି ।
ଧନ୍ୟ ଧନ୍ୟ ସୁନ୍ଦେରୀ ଯେ ଜନେକ
ଦୋହିତା
ଭଲା ଘଟିଅଛି ନାମ ଗୋଟି ସୀତା ।
ଶ୍ରୀରାମ ଯେହାକୁଂ ଅନୁରୂପେ ବର ହୋଇ
ଈଶ୍ୱର ଧନୁ ଆନ ଧରି ନପାରଇ ।
ବିଧାତା ଯେହାକୁ ଗୋ ଭିଆଇଅଛି ଜାଣି
ବେଳ କାଳ ଯୋଗେ ଭେଟାଇଲା ଆଣି ।
ଯେତେକ ପ୍ରଶଂସା କରନ୍ତି ସଭାଜନ

ମୁହିଁ ତାହା କହିବାକୁ ନୁହଁଇ
ଭାଜନ ।୫୦
ସୀତ୍ୟାଙ୍କୁ ଦେଖି ହାଦେ ସର୍ବେ ହେଲେ
ମୋହି
କେ ବୋଲେ ଯେହାଂକୁ ସାମାନ୍ୟ ନୋହେ
କେହି ।
ରଜନୀକାଳେ ଯେହ୍ନେ ବେଣ୍ଟ ଯେ
ବିପିନ୍ୟେ
ଦିହୁଡ଼ି ଜଳନ୍ତେ ଯେ ଦେଖନ୍ତି ଜୀବମାନେ ।
ତେସନ ପ୍ରାୟେ ହୋଇଂ ଚାହାନ୍ତି
ସଭାଲୋକେ
ଆଗସରି ଦେଖନ୍ତି ଯେକକୁ ଆରକେ ।
ବଶିଷ୍ଟେ ବୋଇଲେ ତୁ ଶୁଣ ଦଶରଥ
ଯେ ସେ କନ୍ୟା ତୋର ପୁତ୍ରକୁ ପରାପତ ।
ଶୁଣି ନରପତି ଯୋଡ଼ଇ ବେନିକର
ଦୟାକଲେ ମୋତେ ଜନେକ
ମୁନିମ୍ବର ।୬୦
ବିଶ୍ୱାମିତ୍ର ଯୋଗେ ହୋଇଲା ଯେତେ କଥା
ତୋହୋର କଲ୍ୟାଣ ଅଟଇ ବ୍ରହ୍ମବେତ୍ତା ।
ଏଥୁଅନନ୍ତରେ ଶୁଣ ଗୋ ପାର୍ବତୀ
ପିତାର କୋଳରେ ବସିଲେ ମହାସୋତୀ ।
ପହରେ ଦିନକର ହୋଇଲେକ ଯହୁଂ
ପାଟ ଜଉତିଷ ଜଣାଇଲା ତହୁଂ ।
ନାଡ଼ି ଘଡ଼ିଆ କହିଲା ବେଳର ବିଧାନ
ବଶିଷ୍ଟେ ବୋଇଲେ ଶୁଣ ଦଶରଥ
ରାଜନ ।
ମାହେନ୍ଦ୍ର ବେଳେ ରାଜା ଦେଖୁଣି ବିଧି ସାର
ସୁମନ୍ତ ଆଣିଲା ଯେ ସକଳ ସମ୍ଭାର ।୭୦
ବାଜଇ ଟମକ ନିଶାଣ ମହୁରୀ
କମ କାହାଳୀ ମର୍ଦ୍ଦଳ ଶଙ୍ଖ ଭେରୀ ।
ତାଳ କଂସାଳ ଦାଉଡ଼ି ଦରଗଳ
ବାଜଂଶୀ ଦୋସରି କାହାର ଝଂଝାଳ ।
ନଗ୍ର ନରନାରୀ ଅଇଲେ ସର୍ବେ ଶୁଣି
ନାଚନ୍ତି ନଟନାରୀ ଗାଆନ୍ତି ଗାୟେଣୀ ।

ଚଉକଟି ଲୋକେ ବେଢ଼ିଣ ଅଛନ୍ତି
ସାଧୁ ସାଧୁ ସୀତା ବୋଲଇ ପ୍ରଶଂସା
କରନ୍ତି ।
ଭାଟ କୟେବାର କରନ୍ତି ଆଗେ ମିଳି
ବେଳଜାଣି ନାରୀୟେ ଦିଅନ୍ତି
ହୁଳହୁଳି ।୮୦
ମଙ୍ଗଳା ଅଷ୍ଟକ ପଢ଼ନ୍ତି ପାଟ ଜଉତିଷ
ବ୍ରାହ୍ମଣେ ସମୂହରେ ଚତୁର୍ବେଦ ଘୋଷ ।
ତପୀ ଜପୀମାନେ କଲ୍ୟାଣ କରନ୍ତି
ଅମୃତ ଯୋଗ ହୋଉ ବୋଲିଣ ବୋଲନ୍ତି ।
ଉପହାର ଯୋଗାଡ଼ ସୁମନ୍ତ ନେଇକରି
ବଶିଷ୍ଠ ମହାମୁନି ମନ୍ତ୍ର ଯେ ଉଚାରି ।
ନିଜ କରେ ଚନ୍ଦନ ଯେ ଘେନି ଦଶରଥ
ନେଇ ଲଗାଇଲା ଜାନେକୀର ମାଥ ।
କପାଳ ପାଟୀରେ ଶ୍ରୀଖଣ୍ଡି ଶୋହିଲା
ଦେଖିଣ ଅଯୁଧ୍ୟା ପତି ଆନନ୍ଦ
ହୋଇଲା ।୯୦
ସୀତୟାର ମୁଖ ଦେଖିତ କରଇ ମନ
ବିଚାରିଣ କପୋଳ ଟେକଇ ରାଜନ ।
ଲାଜେ ମହାସୋତୀ ନ ତୋଳଇ ଶିର
ଯତନେ ନୁଆଇଲା ମୂର୍ଦ୍ଧୁନି ତାହାର ।
ମନେ ମନେ ଦଶରଥ ବିଚାରି ହସଇ
ଚନ୍ଦ୍ର କି ପାତାଳେ ପଶିବା ଦିଶଇ ।
ଚନ୍ଦନ ଲେପିଣ ରାଜା ଶିରେ ପୁଷ୍ପ ଖୋଷି
କଣ୍ଠେ ରତ୍ନମାଳା ଲମ୍ବାଇ ଅଳଶିଷି ।
ରଙ୍ଗପାଟ ରାଜା ଦୁଇସସ୍ର ଦେଲା
ଲକ୍ଷେକ ସ୍ୱର୍ଣ୍ଣନେଇ ମାଥେ
ନିଉଡ଼ିଲା ।୧୦୦
ଜୟ ଜୟ ଶବଦ କରନ୍ତି ସ୍ୱର୍ଗବାସୀ
ଆବର ତିନିକନ୍ୟା ସେ ସଜହୋଇ ଆସି ।
ତାହାକୁ ଦେଖୁଣି ଏହି ବିଧିରେ କଲେ
ଘରକଇ ଦୋହିତାନ୍ତ ବାହୁଡ଼ାଇ ନେଲେ ।
ଜନେକ ଦଶରଥ ଉଠି ହନ୍ତି ଉଭା
ଏସନେକ ସମୟରେ ମଉଳିଲା ସଭା ।

ଯେ ଯାହା ମନ୍ଦିରକୁ ସର୍ବଜନେ ଯାଇଂ
ଶୁଣ ଗୋ ମହାମାୟା ଶଙ୍କର କହଇ ।
ଏଥୁଅନ୍ତେ ମଧ୍ୟରେ ଏକଦିନ ଗଲା
ଏକାଦଶୀ ଦିବସ ପ୍ରବେଶ ହୋଇଲା ।୧୦
ଶ୍ରୀରାମକୁ ବରିବ ବୋଲିଣ ଜନେକ
ନାନା ଦ୍ରବ୍ୟନ୍ତ ସମାଦ କଲାକ ବହୁତ ।
ଛାୟା ମଣ୍ଡୋପେକ କରାଇ ନିର୍ମାଣ
ମଧ୍ୟରେ ସୁବର୍ଣ୍ଣର ମଣ୍ଡୋପ ଭିୟାଣ ।
ବିବିଧ ବସ୍ତ୍ର ତହିଁ ମଣ୍ଡିଲା ବିତପନ
ରତ୍ନର କିରଣ ତହିଁ ଦିଶଇ ଛନ୍ନ ଛନ୍ନ ।
ପାଶେଣ ଗଜମୋତି ଝରାୟେ ଲମ୍ବନ୍ତି
ପଞ୍ଚବର୍ଣ୍ଣ କୁସୁମେ ମାଳାରେ ଶୋଭାପାନ୍ତି ।
ଶ୍ୱେତ ଚାମର ଦ୍ରପଣ ଠାବ ଠାବ
କିଜାଣି ପଟାନ୍ତର ସୁରପୁର ଭାବ ।୨୦
ସୁବର୍ଣ୍ଣ ମଣ୍ଡୋପ ମଧ୍ୟେ କନେକର ବେଦୀ
ଶତେକ ଆଙ୍ଗୁଳ ପ୍ରମାଣେ ପ୍ରସିଦ୍ଧି ।
ଚାରିକୋଣେ ସୁବର୍ଣ୍ଣ ଚାରି କୁମ୍ଭ ଅଛି
ଚୂତପତ୍ର ନଟୀକାଳ ରମ୍ଭା ଚାରି ଗଛି ।
ଚନ୍ଦନ କାଷ୍ଟର ପୋତିଲେ ସ୍ତମ୍ଭମାନ
ତହିଁ ବେଢ଼ାଇଲେ ବିବିଧ ବସନ ।
ଅଗର କାଷ୍ଟର କରାଇଂ ଗୁଅ ଶେଣୀ
କାଚ କଳସେକ ଅଛଇ ନିର୍ବାଣି ।
ଗଣ୍ଡିଅନାବନ୍ତା ରଙ୍ଗପାଟ ଗଣ୍ଡି
କଟିକତା ପଗଡ଼ ହସ୍ତୀଦନ୍ତ କାଠି ।୩୦
ନେତବସ୍ତ୍ର ଗିଲିମା ଖଣ୍ଡାଶାଳ ମାଡ଼ି
ତେଜପତ୍ର ଛାଇଂଲା ମେଲାଇଂ ପ୍ରଗଡ଼ି ।
ଠାବେ ଠାବେ ରତ୍ନର କଳସ ବସାଇଲା
ଝିନ ବସ୍ତ୍ର ଚିରାଳ ଉପରେ ଉଡ଼ାଇଲା ।
ଦେଖି ଲୋକେ ପ୍ରଶଂସା କରନ୍ତି ଛାମୁଡ଼ିଆ
ଜାଣି ପଟାନ୍ତର ଯେହ୍ନେ ସୁବର୍ଣ୍ଣ ମଣ୍ଡୁଆ ।
ପାଶେ ପାଶେ ଝରଇ ମୁକୁତାର ଝରା
ଶତେକ ଚାମର ଉଡ଼ଇ ଉଭାସରା ।
ଆସ୍ତାନର ଆକ୍ରାନ୍ତି ଯେ ମକ୍ରତର ଶିଳା
କର୍ପୂରର ଧୂଳି ତହିଁ ଉପରେ ସିଞ୍ଚିଲା ।୪୦

ସୁବାସ କୁସୁମ ପାଖୁଡ଼ା ବହଳ
ମାଣିକ୍ୟର ଦୀପ ଜଳଇ ନିରନ୍ତର ।
ଦେଖିଣ ସନ୍ତୋଷ ହୋଇଲା ଜନେକ
ମନ୍ତ୍ରୀକି ପ୍ରଶଂସା କରନ୍ତି ଅନେକ ।
କୁଶଧ୍ୱଜକଇ ବୋଇଲାକ ଚାହିଁ
ଦଶରଥ ପୁତ୍ରକୁ ହୋ ବରି ଆଣ ଯାଇ ।
ଶୁଣି ସଜ ହୋଇଲା ଜନେକ ସାନ ଭ୍ରାଥ
ସମ୍ଭର ହୋଇଣ ଚଳିଲେ ସମସ୍ତ ।
ସଙ୍ଗେଣ ବଳ ଚଳିଲେ ଅପାର
ଯାଇଣ ପ୍ରବେଶ ଦଶରଥ ସିଂହଦ୍ୱାର ।୫୦
ଖୁଣ୍ଟିଆ ପଡ଼ିହାରୀ ରାଜାଙ୍କୁ ଜଣାଇ
ଦ୍ୱାରେଣ ଅଛି ଜନେକ ସାନଭାଇ ।
ରାମ ଲକ୍ଷ୍ମଣନ୍ତ ସଙ୍ଗେ ଘେନି ଯିବ
ଶୁଭ ଯୋଗ ବେଳେ ବରଣ କରିବ ।
ଶୁଣି ଦଶରଥ ହୋଇଲା ହରଷ ମନ
ପୁତ୍ରନ୍ତ ସଜକର ବୋଇଲା ରାଜନ ।
ଚତୁରାଙ୍ଗ ବଳ ଆଣ ମୋର ରାଇ
ଏମନ୍ତ ବୋଲେ ରାଜା ସୁମନ୍ତକୁ ଚାହିଁ ।
ଆପଣେ ସଜ ହୋଇଲା ମହୀପାଳ
ରଥ ଗଜ ଅଶ୍ୱ ସାଜିଲେ ସକଳ ।୬୦
ପାଇକ ରାଉତ ମାହୁନ୍ତ ସକଳ ମହାରଥୀ
ସଜହୋଇ ରାଜା ଆଗ୍ୟାଂରେ ଆସନ୍ତି ।
ବାଜଇ ଟମକ ଯେ ନିଶାଣ ଦମାଭେରୀ
ଶଙ୍ଖ ମର୍ଦ୍ଦଳ ଯେ ବାଉଂଶୀ ମହୁରୀ ।
ତାଳ କଂସାଳ ଯେ ଦରଗଳ ଢୋଲ
ଦାଉଣ୍ଡି ବଜାଇଂ ଚାଲନ୍ତି ଗେଲ ଗେଲ ।
ଘଣ୍ଟ ଘଣ୍ଟି କାହାଳୀ ମଇଂଷି ସିଙ୍ଘ ବାଜେ
ସଇନି ମୁଖରାବେ ଗଗନ କି ସାଜେ ।
ଗଜଙ୍କ ଗରଜନ ଅଶ୍ୱଙ୍କର ହିଂସାରବ
ସିନ୍ଧୁଘୋଷ ଜାଣି ରଥଙ୍କ ଗତି ଭାବ ।୭୦
ନଟେ ଭାଟେ କୟେବାର କରନ୍ତି ସର୍ବେ
ମିଳି
ଦେଖିତ ଅଇଲେ ଜନେକ ନଗ୍ରଲୋକେ
ସର୍ବେ ଭାଳି ।
ଯେଥୁ ଅନନ୍ତରେ ଦଶରଥ ରାୟେ
ଚୋରିପାଣି ଘେନି ଶ୍ରୀରାମକୁ ଗାଧୁଆୟେ ।
ତୀର୍ଥଜଳ ଯହୁଂ ନିଶାକାଳେ ଆଣି
ତେଣୁ ସେ ନୀର ହାଦେ ହୋଇଲା
ଚୋରିପାଣି ।
ବିଷ୍ଣୁର ଚରଣୁ ଝରଇ ସୁରେଶ୍ୱରୀ
ରଜନୀ ଭାଗେ ତାହା ଆଣିଲେ ଚତୁରୀ ।
ତହିଂର ନୀର ବୋଲି ନ ଜାଣନ୍ତି ଜଗତ
ତେଣୁ ସେ ଚୋରିପାଣି ବୋଲନ୍ତି
ସମସ୍ତ ।୮୦
ଆବର ବିଶେଷେ ଶୁଦ୍ଧ ସ୍ତିରୀଜନ
ରାତ୍ର ଥାଉଂ ଥାଉଂ ଉଠି ଚାହାନ୍ତି ଗଗନ ।
ଯେକକୁ ଆରେକ ଅନ୍ତରେ ରାବ ଦ୍ୟନ୍ତି
ଉଠିଣ ଆସ ଗୋ ହୋଇଲାଣି ପାହାନ୍ତି ।
ଦେବତାଙ୍କ ଆଳେ ଶୁଭଇ ଶଙ୍ଖ ଧ୍ୱନି
କୁକୁଟ ଉଡ଼ିଲାନି ନିକଟ ହୋଇଲା
ରଜନୀ ।
ପାଣ୍ଡୁର ବର୍ଣ୍ଣ ପ୍ରାୟେ କଟେକ ଦିଶଇ
କାକ ନିଦ୍ରାଭଗ୍ନ ହୋଇଣ ଡାଳେ ବସଇ ।
ଚନ୍ଦ୍ର ଅସ୍ତ ହୋଇଲା ଘଡ଼ି ଦୁଇ ହୋୟେ
କେତେବେଳେ ସଜ ହୋଇବେ ଗୋ
ପୋୟେ ।୯୦
ଯେ ବାଣୀ ଶୁଣିଣ ସକଳ ଯୁବତୀ
ସାତ ଅହିଓ କାଖେ ଘେନିଲେ କଳସୀ ।
ନଗ୍ରେ ବୁଲିଯାନ୍ତି ମଙ୍ଗଳ ଗୀତଗାଇ
ଦ୍ୱାରେ ଦ୍ୱାରେ ପାଣି ମାଗନ୍ତି ସେ ଯାଇ ।
ଘରେ ଥାଇଂ ସେ ଜାଣନ୍ତି ତାହାଙ୍କର ବାଣୀ
ବରଘର ଲୋକେ ଅଇଲେ ତୋଳି ପାଣି ।
ଅହିଓ ଯୁବତୀ ଶୁଚିବନ୍ତ ହୋଇ
ପବିତ୍ର ଜଳ ଆଣି ଦିଅନ୍ତି ବଢ଼ାଇ ।
ଯେମନ୍ତେଣ ନାରୀ ଅନେକ ନୀର ନେଲେ
ବରଘର ଲୋକେ ଅମ୍ଳୃତ
ଘେନିଗଲେ ।୧୦୦
ସାତକୁମ୍ଭ ଯହୁଂ ପୂରିଲାକ ପାଣି
ବାହୁଡ଼ି ଆସନ୍ତି ସକଳ ତରୁଣୀ ।
ଦିବସେ ନ ଆଣି ଆଣିଲେ ଯହୁଂ ରାତି
ତହୁଂ ଚୋରିପାଣି ବୋଲିଣ ବୋଲନ୍ତି ।
ରତ୍ନ ପୀଢ଼ାରେ ନେଇଂ ଶ୍ରୀରାମଙ୍କୁ ବସାଇ
ନବଗ୍ରାହୀ ଗନ୍ଧ କେଶରେ ଲଗାଇଂ ।
ସେ ଜଳ ଘେନି ଶିରେ ଅଭିଷେକ କଲେ
ତଥିର ଉପରେ ସୁଗନ୍ଧ ଲିପିଲେ ।
ସୁବାସ ଜଳେ ରାମକୁ ସ୍ନାହାନ କରାଇ
କେ ପୋଛିଲେ ନେଇ ଝିନବାସ
ଦେଇଂ ।୧୦
ଶ୍ରୀଅଙ୍ଗ ପଖାଳି ଝିନବାସ ଘେନି
ରାମର ଦେହୁଂ ପାଣି ଛଡ଼ାନ୍ତି କାମେନୀ ।
ଦେବାଙ୍ଗ ପଟନୀ ପିନ୍ଧାଇଲେ ନେଇଂ
ଘରକୁ ଘେନିଗଲେ କଠାଉ ମଡ଼ାଇଂ ।
ଜନନୀର କୋଳେ ବସି ରଘୁନାଥ
ପଞ୍ଚାମୃତ ଯୋଗାଡ଼ ଭୁଞ୍ଜିଂଲେ ଗୁଡ଼ ଭାତ ।
ଆଚୋବନ ସାରି ଭୁଞ୍ଜିଲେ ତାମ୍ବୋଳ
ସୁବର୍ଣ୍ଣ ପୀଢ଼ାରେ ବସନ୍ତି ରଘୁବାଳ ।
କଉଶୁଲା କୟେକୟା ସୁମିତ୍ରା ମହାଦେଈଂ
ମାତାଗଣେ ବେଢ଼ି ଅଛନ୍ତି ରାମକଇଂ ।୨୦
ବେଶ ବେସନ କରିତ ବିଚାରନ୍ତି ନାରୀ
ବାଟିଲା ହଳଦୀରେ ଟଭାରସ ଭରି ।
ଶ୍ରୀରାମର ଅଙ୍ଗେ ଲେପନ୍ତି ନେଇ ତାହା
ଯେକକୁ ଆରେକ ହୋଇଣ ଉଛାହା ।
କେ କରେ ମୁଖେ ନେଇଂ ହଳଦୀ ସେ
ଘଷି
କେହୁ ଚରଣେ କେହୁ ପିଠିରେ ନେଇ
ଲେସି ।
କେହୁ ବାହାସ୍ଥଳେ କୁକୁମ ଛଡ଼ାଇଂ
କଳାଦେହ ରାମର ସୁନ୍ଦର ଦିଶଇ ।
ଅରୁଣ ପ୍ରକାଶେ ଯେସନ୍ତେ ପୂର୍ବଦିଗ ଦିଶିଲା
ମ୍ରକତ ପ୍ରତିମାକୁ ବି ସୁନ୍ଦର ଘଂଷିଲା ।୩୦
ରଘୁନାଥ ଶୋରୀର ତେସନ ପ୍ରକାଶି
ନନ୍ଦୀଘୋଷେକି ଶ୍ରୀ ଜଗନ୍ନାଥ ଛନ୍ତି ବସି ।
କମଳ ପୁଷ୍ପକି ଭ୍ରମର ଚୁମ୍ବିଲା
ପୁଷ୍ପ୍ୟରେଣୁ ତାହା ଶୋରୀରେ ଲାଗିଲା ।

ତେସନ ସାଦ୍ରିଶ ଦିଶଇ ରାମ କାୟେ
ଦେଖିଣ ସାନନ୍ଦ ହୁଅନ୍ତି ରାମମାୟେ ।
କେଶ ଶୁଖାବନ୍ତି ଚିରିଣୀ ଘେନିଚିରି
କୃଷ୍ଣ ଚାମର ଜାଣି ଦିଶଇ କବେରୀ ।
ବିବିଧ କୁସୁମେ ସୁଗନ୍ଧ ଲିପିଲେ
କର୍ପୂରଗୁଣ୍ଡି ଉପରେ ସିଞ୍ଚିଲେ । ୪୦
ଶ୍ରୀରାମର ବାଳେ ତାହା ମିଶାଇଲେ ନେଇଁ
ବିଚିତ୍ର ଗଭା ବାନ୍ଧି ମୁଧ୍ଧୁନିରେ ବସାଇଁ ।
ବାହାର କରିଣ ଦେଖାଇଲେ କେଶର
କି ଜାଣି ଗଗନେ କି ଉଦୟେ ନିଶାକର ।
ଶ୍ରୀରାମ ମୁଖକୁ ଦିଶିଲାକ ଶୋଭା
ତାକୁ ଆଦରି ଯହୁଁ ରହିଲାକ ଗଭା ।
ସରୁ ବହଳ ନୂଆ ବସନ୍ତ ପଟନି
କଟିବନ୍ଧା ନେତ ବିଚିତ୍ର ଲେଖନି ।
ତାରା ମଣ୍ଡଳ ପ୍ରାୟ କୁସୁମ ମୁଖ ଦିଶଇ
ଦୀର୍ଘ ପ୍ରତି ଆବର ତିନିହାଥେ
ହୋଇଁ ।୫୦
ମଧରେ ସରୁରଙ୍ଗ ଫୁଲ ପଡ଼ିଅଛି
ସେ ବସ୍ତ୍ର ରାମକୁ ପିନ୍ଧାଇଲା କାଛି ।
କଳାମେଘେ ଯେହ୍ନେ ବିଜୁଳି ପ୍ରକାଶଇ
ଶ୍ରୀରାମ ଦେହକୁ ପୀତବସ୍ତ୍ର ସାଜଇ ।
ହୀରାମୟେ କୁଣ୍ଡଳ ଶ୍ରବଣେ ସାଜନ୍ତି
ମୁକୁତା ମୋରିଆ କାନେ ଫୁଲ ଲାନ୍ତି ।
ସମ୍ପୂର୍ଣ୍ଣ ଚନ୍ଦ୍ରମା ଯେହ୍ନେ ଭୃଗୁ ଗୁରୁ ବସଇ
ଶ୍ରୀରାମର ମୁଖକୁ କୁଣ୍ଡଳ ତେସନ ଦିଶଇ ।
କଣ୍ଠେଣ ଖଞ୍ଜିଲେ ଯାଉଁକି ସୁନା ସୁତା
ଦୋସରି କଣ୍ଠମାଳ ବର୍ତ୍ତୁଳ ମୁକୁତା । ୬୦
ନୀଳା ମାଣିକ ଗଜମୋତି ଚଉସରା
ରତ୍ନମୟେ ପଦକ ବ୍ରହ୍ମଜାତି ହୀରା ।
ବାହେଣ ତାଡ଼ ଯେ ବାହୁଟି ବିଦମୁଦି
କଟିରେ କଟିମେଖଳା କିରଣ ପ୍ରସିଧି ।
ବାମେଛୁରୀ ବୀରନେତ ଉଡ଼େ ଫରହର
ଚରଣେ ଖଞ୍ଜିଲେ ନେଇଁ ମର୍କତ ତୋ
ଡର ।

ନୀଳ ପଦ୍ମମାଳେ ଯେହ୍ନେ ଭ୍ରମର ବଶଇ
ଶ୍ରୀରାମର ଶ୍ରୀପୟରେ ନେପୁର ତେସନ
ଦିଶଇ ।
ଶ୍ରୀରାମର ଶ୍ରୀପୟରେ ଲେପିଲେ ଅଳତା
ତଳିପା ଓହଳକୁ ସେ ନିନ୍ଦି ହେଲା
ରତା ।୭୦
ଶ୍ରୀରାମର ରୂପ ବାହୁନି କି ପାରି
କୋଟିୟେ କାମ ଯାହାର ପାଦକୁ ନୋହେ
ସରି ।
ସ୍ନେହଭରେ ମାୟେ ନେଇଁ ବସାଇଲେ
କୋଳେ
କଜ୍ଜଳ ରଞ୍ଜିଲେ କୋମଳ ଦୁଇ ଡୋଳେ ।
କର୍ଣ୍ଣର ପରିଯନ୍ତେ ଲାଜଂ ଦେଲେ ମେଲି
ନୀଳଉତ୍ପଳ କଣ୍ଟକି ନାଡ଼େ ଅଛି ଫୁଲି ।
କର୍ପୂର କସ୍ତୁରୀ ସିନ୍ଦୂରେ ମିଶାଇଲେ
ତାହାନେଇ ରାମ କପୋଳେ ଚିତା
ଦେଲେ ।
ବର ମଣ୍ଡୋଳ ବୋଲି ଦେଲେ ଚିତା
ଉଛବ କାଳେ ଯେହ୍ନେ ଦିଶଇ
ସବିତା ।୮୦
ଶିରରେ ଠେକ ପାଗ ବାନ୍ଧିଲେ ବୀରନେତ
ବୀରବର ବାନା ଉଡ଼ଇ ଅବିରତ ।
ଶିରରେ ସପତ ଶାଖା ମୁକୁଟ ମଣିମୟେ
ଶ୍ରୀରାମର ମସ୍ତକେ ତାହା ବନ୍ଧାୟେ ।
ବରବେଶ କରାଇଁ ଦେଖନ୍ତି ଯୁବତୀ
ଅତି ଉଷତେ ନାରୀ ହୁଳହୁଳି ଦିଅନ୍ତି ।
ଭ୍ରଥ ଲକ୍ଷ୍ମଣ ଶତୃଘନ ତିନି
ଯେହାନ୍ତ ବରବେଶ କରାନ୍ତି କାମେନୀ ।
ମଙ୍ଗଳ ଗୀତ ହାଦେ କରନ୍ତି ଗାୟେଣୀ
ହାଥଖୁଣ୍ଟା ଝଡ଼ଇ ମାଇପଙ୍କ ଗୀତ
ଧ୍ୱନିଶୁଣି ।୯୦
ରାମ ଲଇକ୍ଷଣ ଭ୍ରଥ ଶତୃଘନ
ସଜ ହୋଇଲେ ଯହୁଁ ଚାରି ଯେ ନନ୍ଦନ ।
ମଙ୍ଗଳ ଆଳତୀ ବନ୍ଦାପନ୍ତି ନେଇ

ଦୂବ ଅକ୍ଷତ ତଣ୍ଡୁଳ ଶିରରେ ଚଢ଼ାଇଁ ।
ମୁଧ୍ଧୁନି ଆଗ୍ରାହାଣ କରନ୍ତି ଜନନୀ
କେ ଆଗ ହୋଇଛନ୍ତି ଦଧିମାଛ ଘେନି ।
କେ ଧରିଛନ୍ତି ରାଜହଂସ ପକ୍ଷୀ
କାହାର ହସ୍ତରେ ଶେତ ପାରୁଆୟେ ଅଛି ।
କେହି ଆଣିଦ୍ୟନ୍ତି ଗୋରୋଚନା ଚିତା
ହୁଳହୁଳି ଦେଉଛନ୍ତି ଅହିଅ ବନିତା ।୧୦୦
ମାତାଙ୍କୁ ନମସ୍କାର କରି ଚାରି ଭାଇ
ପୂର୍ଣ୍ଣକୁମ୍ଭ ଚୂତ ନଟୀକାଳ ଦେଖିଯାଇ ।
ପିତା ପାଦେ ଯାଇ ଓଳଗନ୍ତି ପୋୟେ
ଦେଖି ପରମ ତୋଷ ଦଶରଥ ରାୟେ ।
ବଶିଷ୍ଠଙ୍କ ପାଦରଜ ଚାରି ପୁତ୍ରେ ଘେନି
ପ୍ରଳମ୍ଭ କଲା ପାଦେ ଅଯୁଧ୍ୟା ରାଜା ପୁଣି ।
ବିଶ୍ୱାମିତ୍ର ସହିତେ ଯେତେ ଋଷି ଆସିଥିଲେ
ଦଶରଥ ପୋୟେ ତାଙ୍କୁ ନମସ୍କାର କଲେ ।
ବ୍ରାହ୍ମଣଙ୍କ ମୁଖେ କଲ୍ୟାଣ ବାଣୀ ପାଇଁ
ପୁତ୍ରନ୍ତ ଘେନି ବିଜେ ଅଯୁଧ୍ୟାର ସାଇଁ ।୧୦
ବାଜଇ ବାଜଣା ବସନ୍ତ ରାଗେ ଭେଦି
ଦେଖି ସର୍ବଜନେ ହୋଇଲେ ଆନନ୍ଦି ।
ଲକ୍ଷେକ ଶଙ୍ଖ ସ୍ଫୁରଇ ଘନଘନ
ସମ୍ଭର୍ବ ହୋଇଛନ୍ତି ଚତୁରାଙ୍ଗ ସନ୍ୟ ।
ଦଶରଥ ରାୟେ ଆରୋହିଲେ ଗଜ
ଶତୃଜୟେ କନ୍ଧେ ଆରୋହି ମହାରାଜ ।
ସୁମନ୍ତ ମନ୍ତ୍ରୀ ଶିରେ ଧଇଲାକ ଛତି
ଆରୋହିଣ ଅଛି ରଣ ସିଂହା ହାର୍ଥୀ ।
ଜାବାଳିର ତନୟେ ଯୋଗାଇଁ ନେଇ ପାନ
ଚାମର ଧରିଛନ୍ତି ଆବର ପାତ୍ରମାନ । ୨୦
ଭ୍ରଥର ମାତୁଳ ସମ୍ମୁଖେ ଦ୍ରପଣ ଧରି
ଆଗ ହୋଇଲା ସେ ଗଜଇନ୍ଦ୍ର ଚଢ଼ି ।
ସୁମନ୍ତ ତନୟେ ଧରିଚି ଧୂପକାଠି
ବସିଚି ବୈରୀ ବିଭାଣ୍ଡେକ ପିଠି ।
ବଶିଷ୍ଠ ବିଶ୍ୱାମିତ୍ର ସୁକାସନ ଚଢ଼ି
ପଛ ପଟୁଆରେ ଆସନ୍ତି ସେ ପଡ଼ି ।
ସୁବର୍ଣ୍ଣମୟେ ରଥେ ବିଜୟେ ରଘୁନାଥ

କୁସୁମ ଧନୁଶର ଧରିଛନ୍ତି ହସ୍ତ ।
ନନ୍ଦିଘୋଷ ରଥେ କି ବାସୁଦେବ ବିଜେ
ବରୁଣପୁରକୁ ବିଜୟେ ଲକ୍ଷ୍ମୀ କାର୍ଯ୍ୟେ ।୩୦
ଭ୍ରତ ଲକ୍ଷଣ ଶତୃଘ୍ନ ତିନିଭାଇ
ରଥେ ରଥେ ଚଢ଼ି ସେ ରାମର ପାଶେ
ଥାଇ ।
ଆଗିଆଣି ଦଣ୍ଡେ ଅଛନ୍ତି ଚାରି ପୋୟେ
ମଧ୍ୟେ ବିଜେକଲେ ଦଶରଥ ରାୟେ ।
ପାଟଛତ୍ରମାନଙ୍କରେ ନ ଦିଶଇ ଗଗନ
ଆଲମ୍ବ ବିଲମ୍ବ ଚିରାଳ ଗହନ ।
ରଥ ଘୋଷ ଘାୟେ କମ୍ପୁଅଛି ମେଦିନୀ
ଗଜ ଘଣ୍ଟ ହୟର ହିଂସାରବ ଧ୍ୱନି ।
ପାଦାନ୍ତିଙ୍କ ମୁଖରାବ ପଢ଼ିଆରି କରେ ଡାକ
ହେଳ ଘେନୁଅଛି ସଂସାର
ତ୍ରୈଲୋକ୍ୟ ।୪୦
ନଗ୍ର ନରନାରୀ ଦେଖିଣ ଆସନ୍ତି
ଯେ ନ ଚିହ୍ନନ୍ତି ଆନ ଦେଖାଇ ଦିଅନ୍ତି ।
ଏଥୁ ଅନନ୍ତରେ ଲମ୍ପୋପାଦ ରାୟେ
ଚମ୍ପାବତୀ ରାଜ୍ୟ ତେଜିଣ ସେହୁ ଅୟେ ।
ଦଶରଥ କହିଲେ ନିକଟେ ଅନୁକୂଳ
ବାରତା ପାଇଣ ଅଇଲା ମହୀପାଳ ।
ଥାଠେ ପଶିଲା ସେ ସମ୍ଭର୍ବ ହୋଇଆସି
ଦଶରଥ ଲମ୍ପୋପାଦ ହୋଇଲେ ହସାହସି ।
ଲମ୍ପୋପାଦ ବସିଅଛି ଗଜ ପିଠି
ଅଯୁଧା ରାୟେ ଯାଙ୍କୁ ଠାରିଦେଲେ
ଅଙ୍ଗୁଷ୍ଠି ।୫୦
ସହସ୍ରେକ ହସ୍ତୀ ଘେନିଣ ସଙ୍ଗେ ସାହା
ଆଗିଆଣି ହୋଇଲା ଚମ୍ପାବତୀ ନଗ୍ରନାହା ।
ଦୁଇ ରାଜାଙ୍କର ବାଜିଲା ଟମକ
ସକଳ ଭୁବନେ ପଡ଼ିଲା ଚମକ ।
ଲୋକେ ଆନନ୍ଦେ ଧାମନ୍ତି ବର ଦେଖି
ଯେ ଯାହାର କାର୍ଯ୍ୟମାନନ୍ତ ଉପେଖି ।
ମାନିତ ଗଉରୋବ ହୋଇଲେ ମିଶାମିଶି
ଯୁବା ଯୁବତୀ ଏ ଥାଠେ ପଶିଯାନ୍ତି ଝାସି ।

କାହା ବାସମାନ ହୋୟେ ଠିଆ ଚିରି
ଅଞ୍ଚଳ ଚିରିଗଲା କାହାର ସରୁଶାଢ଼ୀ ।୬୦
କାହାର କର୍ଣ୍ଣକାପ ପଡ଼ିଲାକ ତଳେ
ଗଜମୋତିମାନ କାର ତୁଟିଲା ଗହଳେ ।
କେବଣ ସୁନ୍ଦେରୀର ତୁଟିଲାକ ବାହି
କାର ନେପୁର ଚରଣୁ ଖସି ଯାଇ ।
କେ ନାସା ବସଣୀ ନାକରୁ କାଢ଼ନ୍ତି
ହଜିବ ବୋଲି କେ ତାହା ତୁଣ୍ଡରେ ଧରନ୍ତି ।
କାହାର ଖୋଷା ଫିଟିଣ ବାଳ ମେଲା
କେହୁ ଯଉବନ ଧରିଣ ଧଇଂଲା ।
ହସ୍ତୀ ଘୋଡ଼ା ରଥ ଗହଳେଣ ପଶି
ଶ୍ରୀରାମକୁ ଦେଖିତ ଧାମନ୍ତି
ଶୁଭ୍ରକେଶୀ ।୭୦
କେ ବୋଲଇ ସଖୀ ଆଗ ହସ୍ତୀରେକେ
ବୀରଛତ୍ର ଧରାଇ ଆସଇ କେ ସୁଖେ ।
ଜାଣିମାର ଲୋକେ ବୋଲନ୍ତି ହୋ ଶୁଣ
ଦଶରଥ ମିତ୍ର ଲମ୍ପୋପାଦ ନୃପରାଣ ।
କେ ବୋଲଇ ରାମ କେବଣ ଠାବେ ଅଛି
କେ ବୋଲଇ ପଠାରହୋ ଜାଣିମାନା ପୁଛି ।
କେ ବୋଲଇ ଆଗୋ ମଧ ଦଣ୍ଡ ଦେଖ
ଗହଳ ହୋଇଣ ଉଡ଼ଇ ଉଲାଖ ।
ରତ୍ନମୟେ ରଥେ କଳସ ବସନ୍ତି
ଚୂର୍ଣ୍ଣ ଚିରାଳ ଯେ ଫରହର ଉଡ଼ନ୍ତି ।୮୦
ଶ୍ରୀରାମ ଯେ ବିଜେ କରିଛନ୍ତି ତହିଂ
ଡାହାଣେ ଭ୍ରତ ବୀର ଅଟଇ ବର ଭାଇ ।
ଶ୍ରୀରାମର ପ୍ରାୟେ ଦିଶଇ ଦେହବର୍ଣ୍ଣ
ଏହାଙ୍କ ରଥ ଗୋ ଶୁଧ ଯେ ସୁବର୍ଣ୍ଣ ।
ବାମପାଶେ ଅଛଇ ଲକ୍ଷ୍ମଣ କୁମାର
କରେ ଧରିଣ ସେ ଅଛଇ ଅସିବର ।
ନୀଳାମୟେ ରଥ ଏହାଙ୍କୁ ଶୋହଇ
ଚମ୍ପାବର୍ଣ୍ଣ ଶ୍ୟରୀର ଯେ ଜଗତ ମୋହଇ ।
ପଛେ ଶତୃଘନ ଲକ୍ଷ୍ମଣ ସାନଭାଇ
ଉତମ ରଥବରେ ଅଛଇ ଆରୋହି ।୯୦
ଜନେକ ଝିଅ ଯେବେ କେବଣ ପୁଣ୍ୟକଲା

ରୂପ ଅନୁରୂପେ ବର ସେ ପାଇଲା ।
ଧନ୍ୟ ତୁ ସୀତୟା ଗୋ ଧନ୍ୟ ତୋର ତପ
ଶ୍ରୀରାମକୁ ବରକରି ବରିଲୁ ସ୍ୱରୂପ ।
ତୁ ସେ ପରମ ଲକ୍ଷ୍ମୀ ଶ୍ରୀରାମ ନାରାୟଣ
ଅବନୀରେ ଅବତରିଲ ବିଧାତା ଭିଆଣ ।
ଜନକର ପୁଣ୍ୟ କି କହିତ ସକ୍ଷ ଅଛି
ଦୋହିତା ପାଇଲା ଜାତି କମଳାକ୍ଷି ।
ଏଥି ଉତ୍ତାରେ ଯେ ନାହିଂ ଆନ ତପ
ସାଧୁ ସାଧୁ ଜନେକ ତୁ ସୀତ୍ୟା ଦେବୀର
ବାପ ।୧୦୦
ଯେସନେକ ବୋଲି ଯେ ପ୍ରଶଂସନ୍ତି
ନରନାରୀ
କେ ବୋଲଇ ଏଗୋ ଦଶରଥ ଦଣ୍ଡଧାରୀ ।
କେ ବୋଲଇ ସଖି ଧବଳ ଛତ୍ରମାଳ
ହସ୍ତୀଲାଗି ହୋଇଅଛି ମହୀପାଳ ।
ପାଟଛତ୍ର ଘାୟେ ନ ଦିଶଇ ଗଗନ
ଲକ୍ଷେକ ଚାମର ଯେ ଉଡ଼ଇ ଅବିଛନ ।
ଏ ସେ ଦଶରଥ ଶ୍ରୀରାମର ପିତା
ଯତନେ ଏହାକୁ ଜାତ କଲାକ ବିଧାତା ।
ଏହାରେ ସେ ପୃଥିବୀ ହେବାକ ଉଧରି
ଯହୁଂ ଏହାର କୁଳେ ଶ୍ରୀରାମ
ଅବତରି ।୧୦
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ଜନେକ ମନ୍ଦିରେ ରାମ ପ୍ରବେଶ ହୁଅନ୍ତି ।
ଗଜ ପୃଷ୍ଟରୁ ଉତୁରି ଦଶରଥ
ଛାମୁଡ଼ିୟା ତଳେ ବିଜୟେ ନରନାଥ ।
ବଶିଷ୍ଟ ବିଶ୍ୱାମିତ୍ର ସୁମନ୍ତ ଜାବାଳି
ବାମଦେବ ସହିତ ଅନେକ ତପଶାଳୀ ।
ଶ୍ରୀରାମ ଲକ୍ଷ୍ମଣ ଭ୍ରତ ଶତୃଘନ
ଯୁଧାଙ୍କୁରୁ ସହିତେ ଲମ୍ପୋପାଦ ରାଜନ ।
ଜନେକ ମୁନି ଆରାଧନା କଲେକ ବହୁତ
ଆସ୍ଥାନ ଘେନିଣ ବସିଲେ ସମସ୍ତ ।୨୦
ଦଶରଥଙ୍କ କୋଳେ ବସନ୍ତି ଶ୍ରୀରାମ
ବ୍ରହ୍ମାଙ୍କର ପାଶେ କି ଅଛଇ କାମ ।

ଲକ୍ଷ୍ମଣ ଭରଥ ଶତ୍ରୁଘ୍ନ ସହିତେ
ଦେଖି ସଭାଜନେ ଭାଳନ୍ତି ସମସ୍ତେ ।
କି ଯେ ହରିହର ବିରଞ୍ଚି ବଜ୍ରପାଣି
କି ଯେ ଅଗ୍ନି ବରୁଣ ଚନ୍ଦ୍ର ଦିନମଣି ।
ମହୀରେ ଅବତରିଲେ କେବଣ ଗୁଣପାଇଁ
ଏ ରବିତଳେ ଆନ ପଟାନ୍ତର ନାହିଁ ।
ବାବୁ ଶ୍ରୀରାମଙ୍କୁ ଜଳାଘନ ବର୍ଣ୍ଣ
ବିଦ୍ଯୁ ଝଟକ କି ପିନ୍ଧିଲା ବସନ ।୩୦
କୋଟିଏ କନ୍ଦର୍ପ ପୁଣି ଏକ ଠାବକଲେ
ପାଦକୁ ସମ ଯେ ନୁହଇ ରୂପ ତୁଲ୍ୟେ ।
ଲକ୍ଷେ ଲକ୍ଷଣ ପୂରିଛି ଯାର କାୟେ
ଧନ୍ୟ ଧନ୍ୟ ଯେହାର ଗର୍ଭଧାରୀ ମାୟେ ।
ଏଥୁ ଅନନ୍ତରେ ବଶିଷ୍ଠ ମହାଋଷି
ଜନେକ ରାଜାକୁ ବଚନ ପ୍ରକାଶି ।
ପ୍ରହରେ ଆସି ହୋଇଲାକ ବେଳ
ଅମୃତ ଯୋଗବେଳେ ବରଣ ଅନକୂଳ ।
ଆଣ ହୋ ଯୋଗାଡ଼ ସମସ୍ତ ସଜକରି
ଶୁଭ ଯୋଗେ ଶ୍ରୀରାମ ହେଉ ଆଗେ
ବରି ।୪୦
ଶୁଣିଣ ଜନେକ କୁଶଧ୍ଵଜକଇ;ଚାହିଁ
ବରଣ ଯୋଗାଡ଼ ବୋଲାଉଣି
ଆଗ୍ୟାଦେଇ ।
ଆଗ୍ୟା ପ୍ରମାଣେ କୁଶଧ୍ଵଜ ଗଲା
ଯେ ବିଧିବିଧାନ ସମସ୍ତ ସାଜିଲା ।
ବେଦୀରେ ଶ୍ରୀରାମଙ୍କୁ ବସାଇଲେ ନେଇଁ
ପୂର୍ଣ୍ଣକୁମ୍ଭ ଆଗେ କରି ବସିଲେ ରଘୁସାଇଁ ।
ପୂର୍ବାଭିମୁଖେ ବସିଲେ ଜନେକ
ବଶିଷ୍ଠ ମହାମୁନି କରୁଛନ୍ତି ବାକ୍ୟ ।
ସୁବର୍ଣ୍ଣ କୁମ୍ଭକଇ ବରୁଣ ପୂଜାକଲେ
ଇନ୍ଦ୍ରାଦି ଦଶ ଦିଗପାଳନ୍ତ ବରିଲେ ।୫୦
ନବଗ୍ରହ ପୂଜା ସାରିଲେ ମହାମୁନି
ଦେଶକାଳ ବାକ୍ୟ କରନ୍ତି ବେଦଧ୍ଵନି ।
ଲଗ୍ନ ଯୋଗ କରଣ ନକ୍ଷତ୍ର ସୁମରି
ବେଦ ଉକ୍ତ ମନ୍ତ୍ରେ ଯେ ପାଦ ପୂଜାକରି ।
ବସ୍ତ୍ର ଅଳଙ୍କାର ଶ୍ରୀଫଳ ସହିତେ

ଜନେକ ସମର୍ପଇ ଶ୍ରୀରାମର ହସ୍ତେ ।
ଶିରେ ଚନ୍ଦନ ଲେପିଲାକ ନେଇ
ଶୁଧ ସୁବର୍ଣ୍ଣର ପାତ୍ରେକ ସେ ଦେଇଁ ।
ବାସେକ ପିନ୍ଧାଇ ବସ୍ତ୍ରେକ ଉପରାଣ
ଜନେକ କୁଣ୍ଡଳ କରନ୍ତି ଆଭରଣ ।୬୦
ସୁବର୍ଣ୍ଣର ପଇତା କଣ୍ଠେଣ କଣ୍ଠିମାଳ
ଅଙ୍ଗୁଳିରେ ରତ୍ନମୁଦି ଉରଳ ବାହେଣ ।
କୁସୁମ ଶ୍ରୀଫଳ ଦେଇ ରାମକଇ ବରି
ଦୋହିତା ଗୋଟି ଦେବି ବୋଲି ସତ୍ୟକରି ।
ଚାରି ଭାଇକି ବରିଲେ ଯେହିମତେ
ବସ୍ତ୍ର ଅଳଂକାର ଶ୍ରୀଫଳ ସହିତେ ।
ଅଥିଅନନ୍ତରେ ଯେ ମଙ୍ଗଳ ବିଧି
ସାନନ୍ଦେ କାମେନୀ ବାଟିଲେ ହଳଦୀ ।
ବେଦୀରୁ ଉଠି ଅଧିବାସେ ଗଲେ ବର
ଜନେକ ସାରଇ ନାନ୍ଦୀମୁଖୀ
ଶ୍ରାଧବେଭାର ।୭୦
ସତ୍ୟାନନ୍ଦକୁ ଘେନି ସାରଇ ସର୍ବକାର୍ଯ୍ୟ
ପୂଜା କରନ୍ତି ବାସୁକି ନାଗରାଜ ।
ଅଷ୍ଟାକୁଳ ନାଗକଇ ଅର୍ଚ୍ଚନା ବିଧି ସାରି
ବୈଶାନର ପୋତନ୍ତି ଯେ ବିଞ୍ଚଣ
ପଞ୍ଚବାରି ।
ଲମ୍ବାବନ୍ତି ମାଳା ପୂର୍ଣ୍ଣକୁମ୍ଭ ନଟୀକାଳ
ବେଦୀର ଉପରେ ଯେ କୁଶର ଚିରାଳ ।
ଯେଥୁ ଅନନ୍ତରେ ଅହ୍ୟ ସ୍ଵତୀମାନେ
ଗ୍ରାମଦେବୀ ମଙ୍ଗୁଳି ଆସନ୍ତି ଯେ
ବିଧିବିଧାନେ ।
କେହୁ ଦୁର୍ବାକ୍ଷତ ଧୂପଦୀପ ଘେନି
ପଥେ ଯାନ୍ତେ ଗୀତ ଗାବନ୍ତି ତରୁଣୀ ।୮୦
ନଗ୍ର ପରିମଳି ଯେ ବୁଲନ୍ତି ରାଜବାଟ
ଯୁବତୀ ଯିବାରେ ଶୋଭା ପାଉଅଛି ରାସ୍ତ ।
ଦେବୀ ପୂଜାସାରି ନିଜପୁରେ ଆସି
ବର ମଙ୍ଗୁଳିତ ସଜ ଶୁଭ୍ରକେଶୀ ।
ସୁବର୍ଣ୍ଣ ଖୋରାୟେ କୁଙ୍କୁମ ଆଣନ୍ତି
ଶ୍ରୀରାମଙ୍କୁ ବେଢ଼ି ଯେ ହୁଳହୁଳି ଦ୍ୟନ୍ତି ।
କେହୁ ହୃଦେ କେହୁ ପୃଷ୍ଠରେ ଲଗାଇ

କେ ମୁଖେ ଲଗାନ୍ତି ଆନନ୍ଦେ ସୁଖପାଇଁ ।
କେବଣ ହିଂ ନାରୀ ହଳଦୀ ଛଡ଼ାବନ୍ତି
ଶ୍ରୀରାମର ଗାଲ କେ ଗେଲେ
ଚିପିଦ୍ୟନ୍ତି ।୯୦
କେ ହସ୍ତ ଧରିଣ ଆଣନ୍ତି ଉଛୁଡ଼ି
ଆପଣାର କୁଚେ ଲଗାନ୍ତି ନେଇ ଲୋଡ଼ି ।
ଏକ ଚରଣ ନେଇ ନିଜ ଜଙ୍ଘେ ଲଦି
ତଳିପା ମର୍ଦ୍ଦଣ ଲଗାନ୍ତି ହଳଦୀ ।
କାମଭର ହୋଇଣ କେବଣ ଯୁବତୀ
ଶ୍ରୀରାମ ପୃଷ୍ଠରେ ନେଇଁ କୁଚ ଆଉଜାନ୍ତି ।
କେ କୋଳେ କରଦେଇ ପ୍ରେମ ରସଭରେ
ହିୟା ଲଗାଇଣ ଭିଡ଼ଇ ଆଣ୍ଡରେ ।
ଶାଳୀ ଶଳା ଭାଉଜମାନେ କରନ୍ତି ଢମାଳି
କେ ନାସା ଉଛୁଡ଼ି ଦିଅନ୍ତି ହୁଳହୁଳି ।୧୦୦
ଲାଭିର ଭିତରୁ କେ ଛଡ଼ାଇ ମଳକୁଟି
କେହୁ ଶ୍ରୀରାମର ଫୁଟାନ୍ତି ଅଙ୍ଗୁଷ୍ଠି ।
ନାସା ଡିଆଇଣ କେବଣ ବିୟୋଷ୍ଟି
ଆଖିଲଟା ମାରିଣ କେ ରାମଙ୍କୁ ଠାରି
ଦ୍ୟନ୍ତି ।
ଶୂନ୍ୟେ ଶୂନ୍ୟେ ଚୁମ୍ବ ଦେଇଣ ଭାଳନ୍ତି
ମଦନ ଭୋଳେ ଶାଢ଼ୀ ସମ୍ଭାଳି ନ ପାରନ୍ତି ।
ସ୍ତମ୍ଭୀଭୂତ ହୋଇ ଅଛଇ କେବଣହିଂ ନାରୀ
ରାମ ରୂପେ କାମଶରେ ଗ୍ୟାନ ହାରି ।
କେ ବୋଲଇ ସୀତ୍ୟାକୁ ପାଳିବଟି ଭଲେ
କୋପ କେବେ ନକରିବ
ଦୋଷକଲେ ।୧୦
ଆବର ବିଭା ତୁମ୍ଭେ ନୋହିବଟି ପୁଣି
ଏକଥା ଆମ୍ଭର ଯେ ଅଟଇ ମାଗୁଣି ।
ଏ ରୂପେ ପରିହାସ ଯହୁଁ କରନ୍ତି ଯୁବତୀ
ଅଳପ ହୋଇଣ ହସନ୍ତି ରଘୁପତି ।
ଚାରିବରଙ୍କର ସରିଲା ମଙ୍ଗଳଣ
ସୀତ୍ୟାକୁ ମଙ୍ଗୁଳି ଚଳନ୍ତି ନାରୀଗଣ ।
କନିଷ୍ଠ ତିନି ଭଗ୍ନୀ ସହିତେଣ ସତୀ
ଯେ ବିଧିବିଧାନ ସେ ମଙ୍ଗୁଳି ହୁଅନ୍ତି ।
ଏଥୁଅନନ୍ତରେ ମୁଦୁସୁଲୀମାନେ

କୁଙ୍କୁମ ଘେନିଣ ସେ ରାଜା
ସନିଧାନେ ।୨୦
ଭୟେ ଭରସି ନ ପାରନ୍ତି ନେଇ
ଦଶରଥ ଆପଣେ ବୋଇଲାକ ଚାହିଁ ।
ଆଣ ହଳଦୀ ଗୋ ନକର ତୁମ୍ଭେ ଭୀତି
ଏ ମୋର ଅଙ୍ଗେ ଲେପରେ ଯୁବତୀ ।
ପୁତ୍ରଙ୍କରେ ବିଭା ଉଛବ ମୋହୋର
ହଳଦୀକି ବିମୁଖ କି ବସଇ ଶରୀର ।
ଆଗ୍ୟାଂ ପାଇଣ ମୁହୁସୁଲୀମାନେ
ରଜାକୁ କୁକୁଂମ ଲେପନ୍ତି ବହନେ ।
ସର୍ବାଙ୍ଗେ ବୋଳନ୍ତେ ଦିଶିଲା ସୁନ୍ଦର
ସୁବର୍ଣ୍ଣ ଗୁଣା ଜାଣି ଦାଢ଼ି ପଟାନ୍ତର ।୩୦
ପାଚଲା ବାଳରେ ହଳଦୀରସ ମିଶି
ଦଶରଥ ରାଜାର ବଦନ ଶୋଭାଦିଶି ।
ବଶିଷ୍ଠ ବାମଦେବ ବିଶ୍ୱାମିତ୍ର ମୁନି
ମଙ୍ଗୁଳି ହୁଅନ୍ତି ଯେ ଅନେକ ଋଷି ଘେନି ।
ଲମ୍ୱୋପାଦ ରାଜା ଯୋଧାକୁରୁ ସହିତେ
ବରଜାତି ପଣେ ଯାଇଥିଲେ ଯେତେ ।
ନଗ୍ରର ନରନାରୀ ମଙ୍ଗୁଳି ହୁଅନ୍ତି
ସୁବର୍ଣ୍ଣର ମୟେ ଦିଶିଲାକ ପୃଥୀ ।
ଦାଣ୍ଡେଣ ହଳଦୀ ହାଥେକ ବହଳ
ମଙ୍ଗଳ ଉଛବ ନଗ୍ରେ ହେଲା ଗୋଳ ।୪୦
ଚାରି ରାଜାଙ୍କର ଯେତେ ବଳ ଥିଲେ
ସବୁଙ୍କୁ ହିଂ କୁକୁମ ଦାନ ଜନେକହିଁ
ଦେଲେ ।
ସର୍ବାଙ୍ଗେ ନଡ଼ପ ଘଷିଣ ବରଜାତି
ନଦୀ ପୋଖରୀକି ସ୍ନାନ କରିଯାନ୍ତି ।
ରାଜା ଦଶରଥ ଲମ୍ୱୋପାଦ ସହିତେ
ମାର୍ଜଣା ମଣୋହି ସେ ସାରିଲେ ତୁରିତେ ।
ଜନେକ ମନ୍ଦିରେ ମିଳିଲେ ସର୍ବେ ଯାଇ
ଭୁଞ୍ଜିଣ ବସିଲେ ସେ ଗୌରବ ପାଇଂ ।
ଦଶରଥ ଲମ୍ୱୋପାଦ ଯୋଧାକୁରୁ ଯେ ତିନି
ସଙ୍ଗେଣ ସକଳ ଅମନାତ୍ୟ ଘେନି ।୫୦
ସନ୍ୟ ଲୋକକୁ ଅନରୂପେ ଠାବଦେଲେ
ପତ୍ର ପାଣି ଦେଇ ଅନ୍ନ ପରଷିଲେ ।

ନାନା ବ୍ୟଞ୍ଜନ ଯେ ଦିଅନ୍ତି ଜଣେ ଜଣେ
ଦୁଗ୍ଧ ଘୃତର ନାନାଦି ଭିଆଣେ ।
ପାଣି ପଣା ପଇଡ଼ ମିଷ୍ଟକ କଦଳୀ
ଭୁରି ଭୋଜନ କରିଦେଲା ତପଶାଳୀ ।
ସନ୍ତୋଷ ହୋଇଣ ଉଠିଲେ ସର୍ବଜନ
ବାସପାଣି ଘେନି କରନ୍ତି ଆଞ୍ଚୋବନ ।
କର୍ପୂର କସ୍ତୁରୀ ମିଶାଇ ଭୁଞ୍ଜନ୍ତି ତାମ୍ବୁଳ
ଏସନେକ ସମୟେ ଅସ୍ତଗଲା ବେଳ ।୬୦
ଛାୟା ମଣ୍ଡୋପ ମଣ୍ଡିଲେ ଦିହୁଡ଼ି ଦୀପଜାଳି
ମାଣିକ୍ୟ ପ୍ରଦୀପ ଠାବେ ଠାବେ ତୋଳି
ବାଳୀ ।
ବରବେଶ ହୋଇଣ ବସିଲେ ଚାରି ଭାଇ
ଶ୍ରୀରାମ ବେଦିକାୟେ ବିଜେକଲେ ଯାଇ ।
ଏସନେକ ସମୟେ ଆସଇ ଦେବୀ ସୀତ୍ୟା
ହୁଳହୁଳି ଦିଅନ୍ତି ସକଳ ବନିତା ।
ଫଳ ପୁଷ୍ପ ଦେଇଣ ଶ୍ରୀରାମକୁ ନମଇ
ହାନ୍ଦୋଳାୟେ ବସି ଅହିଗ୍ୟାଂ ସ୍ଥାନେ
ଚଳଇ ।
ସହସ୍ରେ ଯୁବତୀ ଅଛନ୍ତି ପାଶେ ବେଢ଼ି
ଅତି କୋଳାହଳ ହୁଳହୁଳି ପଡ଼ି ।୭୦
ଅହିଗ୍ୟାଂ ସାରି ଦେବୀ ଆସଇ ଧାତିକାରେ
ଗହଗହ ଲୋକ ଗହଳ ସଙ୍ଗତରେ ।
ମନ୍ଦିରେ ପ୍ରବେଶ ହୋଇଲେ ଦେବୀ ଯାଇଂ
ଲବଣ ଚାମେରୀ ସେ ଆରମ୍ଭିଲେ ତହିଁ ।
ଏକମନ ହୋଇଣ ପୂଜଇ ଦେବୀ ସ୍ୱତୀ
କେତେବେଳେ ଶ୍ରୀରାମ ହେବେ ମୋର
ପତି ।
ଚାରି କନ୍ୟାୟେ ପୂଜନ୍ତି ଶାକାମ୍ଭେରୀ
ଯେ ଯାହା ମନବାଞ୍ଛା ମନେ ହେତୁ କରି ।
ଅନକୂଳ ବେଳ ସେ ହୋଇଲା ନିକଟ
ଅହିଗ୍ନ୍ୟ ବିଧାନ ସୀତା ଯିବେ
ପାଣିଘଟ ।୮୦
ତତକ୍ଷଣେ ହାନ୍ଦୋଳା କରନ୍ତି ବେଗେ ସଜ
କୋଳକରି କନ୍ୟାକୁ ଆଣଇ କୁଶଧ୍ୱଜ ।
ଆଞ୍ଜୋଳିକରି ଦେବୀ ତଣ୍ଡୁଳ ଧରିଥିଲା

ଶ୍ରୀରାମର ଉପରକୁ ବିଞ୍ଚିଣ ପକାଇଲା ।
ବର ଉପରେ ଉହାଡ଼ିଲେ ବାସ
ମନେ ମନେ ଶ୍ରୀରାମ ହୋଇଲେ ହସ
ହସ ।
ଶ୍ରୀରାମ ଉପରେ ଦେବୀ ବିଞ୍ଚିଣ ତଣ୍ଡୁଳ
ଅହିଗ୍ନ୍ୟ ବିଧାନେ ଦେବୀ ଗଲେ ନାରୀକୁଳ ।
ମନ୍ଦିରେ ପ୍ରବେଶ ହୋଇଲେ ଦେବୀ ସୀତ୍ୟା
ଯାଇଂ
ଶ୍ରୀରାମକୁ ଅଳପ ଆଡ଼କରି ଚାହିଁ ।୯୦
ଏଥୁ ଅନନ୍ତରେ ଶୁଣ ଗୋ ମାହେଶ୍ୱରୀ
ତୃତୀଅ ଘଡ଼ି ଯହୁଂ ହୋଇଲା ତିମିରି ।
ବେଦୀରେ ଶ୍ରୀରାମ ବରବେଶ ହୋଇ
ଦଶରଥ କୋଳେ ବସିଲେ ରଘୁସାଇଂ ।
ଦୁଧ ପଇଡ଼ ସେ ନେଇଣ ପୁଣ ଢାଳି
କନ୍ୟାର ଭାଇ ଦିଅଇ ପାଣି ତୋଳି ।
ପୟର ତଳେ ସୁବର୍ଣ୍ଣ ଖୋରା ଦେଇଂ
ପାଦ ଉଦକ ଯେ ଧଇଲାକ ତହିଁ ।
ବାମନ ଅବତାରେ ଯେବଣହିଂ ପାଦ
ପଖାଳି ନପାରି ବ୍ରହ୍ମା ହୋଇଲା
ବିଷାଦ ।୧୦୦
ଚଉରାଶି କୋଠି ଗଙ୍ଗା ନ ଅଣ୍ଟିଲା ଧୋଇ
ସେ ପାଦ ଉଦେକ ଶଙ୍କର ନପାଇ ।
ସେ ବିଷ୍ଣୁ ଚରଣ ପଖାଳି ଜନେକ
ପୂର୍ବରେ ତପ ଯହୁଂ କଲାକ ଅନେକ ।
ଏଥୁ ଅନନ୍ତରେ ଯେ ବିଭାର ବିଧାନ
ପୁନରପି ପୁଷ୍ପବୃଷ୍ଟି କରନ୍ତି ବିପ୍ରଜନ ।
ଗଡୁପାଣି ଘେନି ଅର୍ଘେ ଯେ ଦିଅନ୍ତି
ମନ୍ତ୍ର ପଢ଼ିଣ ଯେ ଆଚମନ କରାନ୍ତି ।
ଧୂପ ଆରୋପଣ ମଧୁପର୍କ କରି
ତଣ୍ଡୁଳ ଘେନିଣ ଯେ ବେଦ ମନ୍ତ୍ର
ଉଚାରି ।୧୦
ଏଥୁଅନନ୍ତରେ ବ୍ରାହ୍ମଣ ଭୋଜନ
ଡାକହାକ ଦିଅନ୍ତି ଭାଟ ବିଦୁଜନ ।
ସୀତ୍ୟାକୁ ଆଣିଲେ କନ୍ୟାବେଶ କରି
ଶିରରେ ମୁକୁଟ ଗଳାରେ ମାଳଭରି ।

ପିତାର କୋଳରେ ବସିଲେ ଦେବୀ ଆସି
ଦେଖିଣ ସମସ୍ତେ ବୋଲନ୍ତି ପ୍ରଶଂସି ।
ସାଧୁ ସାଧୁ ସୀତ୍ୟା ଶ୍ରୀରାମଙ୍କୁ ବରଇ
ଏହା ରୂପକୁ ଶ୍ରୀରାମ ହୋ ପଟାନ୍ତର
ଘଟଇ ।
ଧନ୍ୟ ଧନ୍ୟ ଶ୍ରୀରାମ ହୋ ସର୍ବାଙ୍ଗ ସୁନ୍ଦର
ସୀତାର ରୂପକୁ ଅନରୂପେ ବର । ୨୦
ଜନେକର କୋଳେ ଅଛଇ ଦୁଲଣୀ
ବରୁଣ ବସିଲାକି ଘେନିଣ କମଳାଣୀ ।
ଶ୍ରୀରାମ ଅଛନ୍ତି ଦଶରଥ କୋଳେ
ନାହିଂ ପଟାନ୍ତର ଯେ ମହୀମଣ୍ଡଳେ ।
ବିଭାଲଗ୍ନ ବେଳ ହୋଇଲାକ ଯହୁଂ
ସ୍ୱର୍ଗରେ ଦୁନ୍ଦଭି ବାଜିଲାକ ତହୁଂ ।
ବ୍ରହ୍ମା ସହିତେଣ ଇନ୍ଦ୍ରାଦି ଦେବଗଣ
ମାତେଳି କି ରାଇଂ ସେ ବୋଲନ୍ତି ବଚନ ।
ତୁ ଯାଇଂ ଶ୍ରୀରାମର ବିଭା ଦେଖି ଆସ
ଶୁଣିଣ ମାତେଳି ହୋଇଲା ହରଷ ।୩୦
ବୈଦେହୀ ମଣ୍ଡଳେ ପ୍ରବେଶ ହେଲା ଆସି
ବିଶ୍ୱାମିତ୍ର ସନିଧେ ଗୌରବ ପାଇ ବସି ।
ଶୁଣ ପାର୍ବତୀ ଗୋ ଏଥୁଅନନ୍ତରେ
କୁଳ ଗୋତ୍ର ଉଚାରିଲେ ବଶିଷ୍ଠ
ମୁନିମ୍ବରେ ।
ଦେଶକାଳ ମହା ବାକ୍ୟନ୍ତ ଉଚାରି
ଶ୍ରୀରାମ ଦକ୍ଷହସ୍ତ ଆଣି ଧରି ।
ସୀତ୍ୟାର ଦକ୍ଷିଣ କରସ୍ଥଳେ ନେଇ
ମନ୍ତ୍ର ପଢ଼ିଣ କୁଶ ରଜ୍ଜୁରେ ବାନ୍ଧଇ ।
ଶଙ୍ଖେ ପାଣି ଆଣି ଜନେକ ଋଷି ଦେଲା
ଶ୍ରୀରାମଙ୍କୁ ନିଜ ଦୋହିତା ସମର୍ପିଲା ।୪୦
ହୁଳହୁଳି ଧ୍ୱନି ଶୁଭଇ ଅପାର
ବିବିଧ ଶବଦେ ବାଜଇ ବୀର ତୂର ।
କୋଟୀଯେକ ଶଙ୍ଖ ସ୍ବରଇ ଘନ ଘନ
ସୁସର ସ୍ୱରେ ଯେ କରନ୍ତି ଗାୟନ ।
ଦେବେ ଆନନ୍ଦ ଯେ ସ୍ୱର୍ଗପୁରେ ଥାଇ
କୁସୁମ ବରଷନ୍ତି ବରକନ୍ୟା ଶିରେ ନେଇଂ ।
ଶ୍ରୀରାମ ସୀତାଙ୍କୁ ପରିଗ୍ରହକରି
କୁଙ୍କୁମ ନାଇଲାକି ମର୍କତ ପୋଖରୀ ।
କନ୍ୟାଦାନ ଦେଇ ଦକ୍ଷିଣା ମୁନି ଦେଲା
ଲକ୍ଷେକ ଶୁଦ୍ଧ ସୁବର୍ଣ୍ଣ ସମର୍ପିଲା ।୫୦
ଲକ୍ଷେକ ସୁବର୍ଣ୍ଣ ଶ୍ରୀରାମର ଶିରେ
ଆନନ୍ଦେ ନିଉଡ଼ିଲା ଜନେକ ମୁନିମ୍ବରେ ।
ବିବିଧ ଅଳଂକାର ଦେଲାକ ବହୁତ
ରୂପାସୁନା ଯୋଗାଡ଼ ବିବିଧ ପଦାର୍ଥ ।
ଗଡୁ ଗରିଆ ନାଲୁଆ ରତ୍ନଝରି
ଗୋଡ଼ଧୁଆ ହାତଧୁଆ ପାଇଁ ଯେ ଡାବୁରି ।
ମଣ୍ଡା ତାଟିଆ ମୁଖ ଦରପଣ
ଖଣ୍ଡା ଶାବେଳି ଯେ ତୀର କମାୟେଣ ।
ଲକ୍ଷେକ ଗଜ ନିଘୋଡ଼କରି ସାଜି ଆଣି
ଯୋଧା ସହିତେଣ ଅଛନ୍ତି ଆଡ଼େଣି ।୬୦
କୋଟୀଯେ ଅଶ୍ୱ ସଲକ୍ଷଣ ସହିତେ
ଆଡ଼ବାଖର କରି ସାଜିଣ ରାଉତେ ।
ଲକ୍ଷେକ ଗୋରୁ ଯେ ସମବଚ୍ଛା କରି
ଲକ୍ଷେକ ପରିବାରୀ ଅଳଙ୍କାର ଭରି ।
ଲକ୍ଷେକ ଦେଲା ରାଜା ଶୁଦ୍ଧ ଚାରୁନୀଳା
ଲକ୍ଷେକ ହୀରା ଯେ ବେନି ଲକ୍ଷ
ପୋଏଲା ।
ଅଇବ୍ରତେକ ରଥରଥୀଙ୍କ ସହିତେ
ରତ୍ନମୟ କରି ମଣ୍ଡିଲେ ଶ୍ୱେତନେତେ ।
ଲକ୍ଷେକ ଚାମର ଲକ୍ଷେକ ପାଟଛତ୍ର
ଲକ୍ଷେକ ଦେଲା ରାଜା ସୁରଙ୍ଗଣୀ
ପାଟ ।୭୦
ଲକ୍ଷେକ ମୁକୁତା ଚନ୍ଦ୍ରକାନ୍ତି ଜାଣି
ଲକ୍ଷେକ ଦେଲେ ରାଜା ପଦ୍ମରାଗ ମଣି ।
କଠାଉ ବିଞ୍ଚଣି ସବୁ ରତ୍ନମୟେ
ରତ୍ନ ପଲଙ୍କରେ ନେତ ତୂଳି ଶୋହେ ।
ରଙ୍ଗ ପାଟରେ ନିର୍ମିତ ମୁଚୁଳି
ହାଥୀଦାନ୍ତ ପଗଡ଼ ଖଟ ଦୋଳି ।
ବିଚିତ୍ର ଚାନ୍ଦୁଆରେ ସୂଚୀ କମଟେରା
ରତ୍ନ ସିଂହାସନେ ମୁକୁତାର ଝରା ।
ତାଡ଼ ବାହୁଟି ବିଦମୁଦି ଶିକୁଳି
ଚରଣକଇ ତୋଡ଼ର କଟିରେ
ମେଖଳି ।୮୦
ଅଙ୍ଗୁଷ୍ଠିକି ମୁଦ୍ରିକା ଭୁଜକୁ କଙ୍କଣ
ଭୁଜକଇ ବଳୟ ମ୍ରକତ ରସାଣ ।
ହୃଦକୁ ପଦେକ କଣ୍ଠକୁ ଦିବ୍ୟହାର
କର୍ଣ୍ଣକୁ କୁଣ୍ଡଳ ବିବିଧ ପ୍ରକାର ।
ସମ୍ପର୍ବ କରି ରାଜା ଦେଲା ଯଉତୁକ
ଦେଖିଣ ଆନନ୍ଦ ହୋଇଲେ ସର୍ବଲୋକ ।
ଭଣ୍ଡାର ସହିତେ ସମର୍ପିଲା ଆଣି
ଚତୁରାଙ୍ଗ ବଳ ଦେଲା ଶଙ୍ଖେ ଘେନି ପାଣି ।
ଆସ୍ଥାନୁ ଉଠି ରାଜା ଯୋଡ଼ଇ ବେନି କର
ଦଶରଥ ରାଜା ଅଯୁଧ୍ୟା ଈଶ୍ୱର । ୯୦
ଯଉତୁକ ଦେବାକୁ ମୁ ନୁହଇ ଭାର୍ଜନ
ଦେଶ ଘୋଷ ନାହିଂ ମୁଂ ନୁହଇ ରାଜନ ।
ଏ ମୋର ଦୋହିତା ସୀତା ନାମେ ବାଳୀ
ରୂପଗୁଣେ ସମାନ ନାହିଂ ମହୀଆଳି ।
ଦଶରଥ ପୁତ୍ରଙ୍କୁ ଦୋହିତା ମୋର ଦେଲି
ରଘୁନାଥ ବଂଶକୁ ମୁଂ ସମର୍ପି ହୋଇଲି ।
ଶୁଣି ଦଶରଥ ବୋଇଲାକ ଥାଇଂ
ହୋଇଲି ତ୍ରିପୁତି ମୁ ତୁମ୍ଭେ ବସ ନରସାଇଂ ।
ତୋହୋର ଦୋହିତା ମୋ ପୁତ୍ରକଇ ଦେଲୁ
ଅଯୁଧ୍ୟାରେ କାରେଣୀ ତୁ ଆଜହୁଂ
ହୋଇଲୁ ।୧୦୦
ଏଥୁ ଜନେକ ଯେ ବସଇ ତୋଷହୋଇ
ଇଷ୍ଟବନ୍ଧୁ ଲୋକେ ଯଉତୁକ ଦେଇ ।
କନ୍ୟାର ମାତା ଭୟେଣୀ ଖୁଡ଼ୀ ଆଇ
ବନ୍ଦାଇ ଯଉତୁକ ଦିଅନ୍ତି ମୁଖଚାହିଂ ।
ଅନ୍ୟନାରୀ ମିଳି ଗଣ୍ଠିଲେ ବନ୍ଦାପନା ଶାଢ଼ୀ
ହସ୍ତ ବନ୍ଧଣି କୁଶଗଣ୍ଠି ଫେଡ଼ି ।
ଅଗ୍ନିସ୍ଥାପନ ଯେ କରନ୍ତି ବିଦୁଜନ
ଇଷ୍ଟ ହୋମେଣ ପୂଜନ୍ତି ହୁତାଶନ ।
ଭ୍ରଥା ହୋମ ବୋଲି ଅଟନ୍ତି ଯେ ପୁଣି
ରାଷ୍ଟ୍ରର ହୋମ ଯେ ଆଚରନ୍ତି ଆଣି । ୧୦
ଲଜା ହୋମକଲେ ତଥିର ଉପରେ
ଘୃତରେ ତୋଷ ହୋଇଲେ
ଅଗ୍ନିବଶ୍ୟାନରେ ।
ହୋମର ଧୂମ ଉର୍ଧ ଧାଇଂ ଯାଇ

ସୀତୟାର ମୁଖ ସନିଧେ ଯାଇପାଇ ।
ଫୁଟିଲା ପଦ୍ମରେ ଯେହ୍ନେ ଭ୍ରମର ଆଶକତ
ମଧୁର ଲୁବୁଧେ ହୋଇଣ ପ୍ରମତ୍ତ ।
ହୋମ ପୂର୍ଣ୍ଣେଣ ଦକ୍ଷିଣା ବିଧି ସାରି
ଆଶିଷ ଦିଅନ୍ତି ସେ ସକଳ ତପଚାରୀ ।
ଆଦିତ୍ୟ ଦୋହିତା ପଢ଼ନ୍ତି ବଶିଷ୍ଠ
ପୂର୍ବର ଭିଆଣ ଅଛଇ ଯେହୁ ପାଠ ।୨୦
ଅର୍ଘ୍ୟ ଯୁବତୀଯେ ଆସନ୍ତି ବନ୍ଦାଇ
ଏକକୁ ଆରେକ ଯେ ଆଗସରି ଧାଇଂ ।
ଚଉଷଠି କାଣ୍ଡି ବିଭାର ମନ୍ତ୍ରବେଦ
ବଶିଷ୍ଠ ସୁମରଣା କଲେ ପଦେ ପଦ ।
ସେହି ବେଦୀରେ ଯେ ଭ୍ରଥକୁ ବିଭାକରି
ମାଲୁଣୀ ନାମେ କୁଶଧ୍ୱଜ କୁମାରୀ ।
ଜନେକ କନ୍ୟାକୁ ସମର୍ପଣ କଲା
ଅନେକ ବିଧିମତେ ଯଉତୁକ ଦେଲା ।
ଲକ୍ଷ୍ମଣ ବିଭା ଯେଥିଅନନ୍ତରେ
ବରବେଶ ହୋଇ ବସିଲେ
ବେଦୀପରେ ।୩୦
ସୀତାର କନିଷ୍ଠ ଉର୍ମିଳା ନାମେ ବାଳୀ
ଜନେକ ରାଜାର ସେ ଅଟଇ ଦୁଲାଳୀ ।
ତାହାକଇ ଲକ୍ଷ୍ମଣ ହୋଇଲାକ ବିଭା
ଚନ୍ଦ୍ର ରୋହୋଣୀ ଜାଣି ଦିଶିଲାକ ଶୋଭା ।
ଲକ୍ଷ୍ମଣ କନିଷ୍ଠ ନାମ ଶତୃଘନ
ଦଶରଥ ରାଜାର ସେ କୋଡ଼ର ନନ୍ଦନ ।
ଜନେକର କୋଳେ ଅଛି ଭାଇର ତନଇ
ଦଶରଥର କୋଳେ ଅଛି ଲକ୍ଷ୍ମଣର ଭାଇ ।
ସୁକ୍ରିତା ନାମ ଯେ ଅଟଇ ତାହାର
ରୂପେ ତୁଲାଇତ ନାହିଂ ପଟାନ୍ତର ।୪୦
କୁଶଧ୍ୱଜ ଝିଅ ମାଲୁଣୀ ତହୁଂ ସାନ
ତାହାକଇ ବିଭା ହୋଇଲେ ଶତୃଘନ ।
ଚାରିବରଙ୍କର ପାଶେ ଚାରିକନ୍ୟା
ନାହିଂ ତୁଲାଇତ ଆନ ଯେ ପ୍ରତିମା ।
ଅର୍ଘ୍ୟ ନାରୀମାନେ ବନ୍ଦାପନ୍ତି ଆସି
ବର କନ୍ୟାଯେ ଜନେକ ମନ୍ଦିରେ
ଯାଇବସି ।

ସୀତାର ପଛେ ଆସନ୍ତି ଶ୍ରୀରାମ
ରତିକି ଗୋଡ଼ାଇଅଛି କିବା କାମ ।
ଜନକ ଅନ୍ତପୁରେ ଯାଇ ସର୍ବେ ମିଳି
ଆସିଣ ବେଢ଼ିଲେ ସକଳ ଯେ
ବାଳୀ ।୫୦
ନେତ ତୁଳିରେ ବସନ୍ତି ବରକନ୍ୟା
ଜୁଅ ଖେଳନ୍ତି ବିବିଧ ରଞ୍ଚନା ।
ସୁବର୍ଣ୍ଣର କଉଡ଼ି କୁଢ଼ାବନ୍ତି ନେଇ
ବାଳୀଯେ ବାଛନ୍ତି ବରକନ୍ୟାଙ୍କ ପାଇଂ ।
ଦୁଇବାଳୀ ମିଶାଇ ସୀତାର ହସ୍ତେ ଦେଲେ
ଖେଳ ହାର ଜିତାକୁ ପରିଜା ପୁଣ କଲେ ।
କନ୍ୟାଙ୍କର ଲୋକେ ବୋଲନ୍ତି ତହିଂ ଥାଇଂ
ଶ୍ରୀରାମର ପତିହୁଂ ଅନ୍ୟ ଆମ୍ଭର ନାହିଂ ।
ବର ପାଶ ଲୋକେ ବୋଲନ୍ତି ତୁମ୍ଭେ ଶୁଣ
ସୀତା ଘେନି ଆମ୍ଭେ ନେବୁ ଦିନ ନିଷ୍ଠେ
ଜାଣ ।୬୦
ଆନ ଯୁବତୀ ନୋହିବୁ ଆମ୍ଭେ ବିଭା
ପରନାରୀ ନ ହରିବୁ ପାଳିଲୁ ଆମ୍ଭେ ଏହା ।
ଦୁଇକୁଳ ଯହୁଂ ହୋଇଲା ସନମତ
କଉଡ଼ି ପାଡ଼ଇ ଦେବୀ ଜନେକ ଦୋହିତ ।
ସୀତାର ପାଳି ପଡ଼ିଲାକ ଯହୁଂ
ନାରୀମାନେ ହୁଳହୁଳି ଦେଲେ ତହୁଂ ।
ଆମ୍ଭେ ଜିଣିଲୁ ବୋଲି ବୋଲନ୍ତି
କନ୍ୟାଲୋକେ
ପୁଣି ବିଚାର କରନ୍ତି ତହିଂ ଥୋକେ ।
ଆବରବେଳେ ଏବେ ଶ୍ରୀରାମ ପାଡୁ ପାଳି
ତେବେ ସେ ମଣିମାନା ଆମ୍ଭେ
ସରିକରି ।୭୦
ଏକାବେଳେକେ ଯେ ନ ବୁଝିଲୁ ସନ୍ଧି
ସମସ୍ତେ ବୋଇଲେ ରୁଚଇ ଏବିଧି ।
ସୀତାର କରୁ ଯେ କଉଡ଼ି ଘେନିଗଲେ
ନାଗରୀ ନାରୀ ନେଇ ଶ୍ରୀରାମ କରେ
ଦେଲେ ।
ଶ୍ରୀରାମ ସନ୍ଧିଣ ପାଡ଼ିଲେକ ପାଳୀ
ପୁଣିହିଂ ଜିଣିଲା ଯେ ଜନେକର ବାଳୀ ।

କନ୍ୟାଙ୍କ ଲୋକେ ହୁଳହୁଳ ଦିଅନ୍ତି
କୋପଭରର ହୋଇ ଶ୍ରୀରାମ କହନ୍ତି ।
ଏବେ ଯେ ହାରଇ ସେ ତାହାର ସେବକ
ସାକ୍ଷୀ ହୋଇଥିବ ତୁମ୍ଭେ ସର୍ବଲୋକ ।୮୦
ଶୁଣିଣ ସମସ୍ତେ ସନ୍ତୋଷ ହୁଅନ୍ତି
ଶ୍ରୀରାମ କଉଡ଼ି ତୋଳିଣ ଅଛନ୍ତି ।
କନ୍ୟାଙ୍କ ଲୋକେ ବୋଲନ୍ତି ତୁମ୍ଭେ ଛାଡ଼
ଏଥର ହୋଇବ ଆମ୍ଭର ଯେ ପୀଡ଼ ।
ସୀତା ପକାଇବ ଆମ୍ଭେ ସର୍ବେ ଜାଣି
ତୁମ୍ଭେ କଉଡ଼ି କିମ୍ପା ଅଛ ଆଣି ।
ହସିଣ ଶ୍ରୀରାମ ଯେ କଉଡ଼ି ଛାଡ଼ିଦେଲେ
ଯୁବତୀମାନେ ନେଇ ଜାନକୀ ହସ୍ତେ
ଦେଲେ ।
ପାଳି ବାଳାଧରି ଝମକାଇ ସ୍ୱତୀ
ଅଳପ ହସିଣ ସେ ହୋଇଣ ତୋଷ
ମତି ।୯୦
ପକାନ୍ତେ ହେଂ ପଡ଼ିଲା ପୁଣ ସୀତା ପାଳି
ଜଗତଜିତାକୁ ଜିଣିଲା ଜନେକଦୁଲାଳୀ ।
ଏଥିଅନନ୍ତରେ ଜୁଅର ବିଧିସାରି
ବନ୍ଦାଇ ଆସନ୍ତି ଜନେକ ନଗ୍ରନାରୀ ।
ଦୁର୍ବା ଅକ୍ଷତ ଯେ ଶ୍ରୀରାମ ଶିରେଦ୍ୟନ୍ତି
ପରିହାସ ଲୋକେ ନାସିକା ଉଛୁଡ଼ନ୍ତି ।
ଗହଳେ ହୁଳହୁଳି ପଡ଼ଇ ନିରନ୍ତର
ଲକ୍ଷ୍ମୀ ନାରାୟଣ ବିଜୟେ ଜନେକ ମନ୍ଦିର ।
ବନ୍ଦାପନା ବିଧି ସରିଲାକ ଯହୁଂ
ଭୁଞ୍ଜିବାକୁ ପୁଣି ଠାବ କଲେ ତହୁଂ ।୧୦୦
ଏକଇ ସୁବର୍ଣ୍ଣ ଥାଳି ଆଣି ଦେଲେ
ବରକନ୍ୟା ଏଥି ଭୁଞ୍ଜସି ବୋଇଲେ ।
ରତ୍ନଝରିରେ ଦିଅନ୍ତି ପାଣି ତୋଳି
ଅନେକ ଯୁବତୀ ଅଛନ୍ତି ତହିଂମିଳି ।
ଜନେକର ଘରଣୀ ପରଷଇ ଅନ୍ନ
ବାଣମୁଖି ଅନ୍ନ ମୁକୁତାର ବର୍ଣ୍ଣ ।
ଲବଣ ଗୁଣ୍ଡି ଯେ ବସିଲା ଘିଅ ଦେଲା
ଜମ୍ବିଳ ଦେଇ ଅଦାରସ ସମର୍ପିଲା ।
ମୁଗ ପଇତି ଯେ ସୁବର୍ଣ୍ଣ କାନ୍ତିଜାଣି

ଆନନ୍ଦ ଚିତ୍ତେ ତାହା ଭୁଞ୍ଜନ୍ତି
ଚାପପାଣି ।୧୦
ସୀତୟା କର ଯେ ଅନ୍ନକୁ ବଢ଼ାଇଲା
ରତ୍ନଚୂଡ଼ିରେ ଶ୍ରୀରାମ ଛାୟା ଯେ ଦିଶିଲା ।
ପୀତ ବସନ ଯେ ମୁକୁଟ କୁଣ୍ଡଳ ହାର
ଶିଖୀକଣ୍ଠ ପ୍ରାୟେ ବିରାଜିଲା ଶ୍ୟାମ ଶରୀର ।
ଦେଖିଣ ଜାନେକୀ ନ କାଢ଼ଇ ହସ୍ତ
ଏହି ସେ ମୋହୋର ଯେ ଅଟଇ
ପ୍ରାଣନାଥ ।
ଅନେକ ତପେଣ ପାଇଲି ଏହୁ ବର
ଧନ୍ୟ ଶ୍ରୀରାମ ତୁମ୍ଭେ ସର୍ବାଙ୍ଗ ସୁନ୍ଦର ।
ଏତେ ବିଚାରି ଦେବୀ ନିରୋପଇ ପୁଣ ପୁଣି
ଦେଖି ବିଚାରନ୍ତି ସକଳ ତରୁଣୀ ।୨୦
କେ ବୋଲଇ କିମ୍ପା ଗୋ ନ ଭୁଞ୍ଜଇ ସ୍ୟତୀ
କେ ବୋଲଇ ଆଗ ଭୁଞ୍ଜିଲେ ବୋଲି
ପତି ।
ଉଚିଷ୍ଟ ବୋଲି ଅବା ନ କଲେ ଆହାର
ବିଭାର କାଳେ ମାଗୋ ଏସନେକ
ବେଭାର ।
କେ ବୋଲଇ ଅବା ଆମ୍ଭଙ୍କୁ ଲାଜକଲା
ବହୁତ ଲୋକ ଦେଖି ଅନ୍ନ ନ ଭୁଞ୍ଜିଲା ।
ଚାଲ ଏହାଙ୍କ ଆଗୁଂ ଆମ୍ଭେ ଉଠିଯିବା
ଦିନକ ଉପାସୀଏ ଯାଙ୍କ ସନ୍ନିଧ୍ୟେ ନ
ଥିବା ।
ବିଚାରି ବୋଲନ୍ତି ସେ ଥୋକାଏ ସ୍ତିରୀଜନ
ଆମ୍ଭେ ଜାଣିଲୁନି ସୀତୟାର ମନ ।୩୦
ଅନ୍ନ ଭୁଞ୍ଜିତ ସେ ବଢ଼ାଇଲା ହସ୍ତ
ରତ୍ନ ବାହିରେ ଯେ ଦିଶିଲେ ପ୍ରାଣନାଥ ।
ସ୍ୱାମୀର ବଦନ ଦେଖିଣ ସୁନ୍ଦେରୀ
ଅନ୍ନ ନ ଭୁଞ୍ଜି ସେ ଅଛି ଲୟେ କରି ।
ହସ୍ତ କାଢ଼ିଦେଲେ ନ ଦିଶିବେ ନାହା
ତେଣୁକରି ଦେବୀ ନ ଚାଳଇ ବାହା ।
ଯହୁଂ ଗୁପତ ସେ ପ୍ରଘଟ ହୋଇଲା
ଏକାନ୍ତର କଥା ସେ ଜଗତ ଜାଣିଲା ।
ତେଣୁକରି ବେଗେ ଭୁଞ୍ଜିଲେ ସୀତ୍ୟା ଭାତ

ବିବିଧ ବ୍ୟଞ୍ଜନ ସୁସ୍ୱାଦୁ ପଦାର୍ଥ ।୪୦
ଝଡ଼ାବଡ଼ା ତିଉଣ ଛଡ଼ରସ ବିଧି
ନଳବିଧି ରାନ୍ଧଣା ହୋଇଛି ପ୍ରସିଧି ।
ଘୃତରେ ପକ୍ୱ କଟୁତିକ୍ତ ଆମ୍ବିଳ
ଦୁଧ ଖଣ୍ଡ ଗୋଟିକା ପରଷନ୍ତି ଅମୂଲ୍ୟ ।
ଶ୍ରୀରାମ ଭୁଞ୍ଜିଣ ପ୍ରଶଂସା କରନ୍ତି
ଦୁଧ ଲଡୁ ଛେନାନାଡ଼ି ମନୋହର ଶ୍ରୀରାମ
ଭୁଞ୍ଜନ୍ତି ।
ଖିରି ଖିରିସା ଆଣି ପରଷନ୍ତି ଅପାର
ସର ପାପୁଡ଼ି ଛେନା ପିଠା ଶାକର ।
ବଡ଼ା କାକରା ନାନାବର୍ଣ୍ଣ ପୁଳି
ରସକୋରା ଖଣ୍ଡଖଜା ଯେ ସୁଆଳି ।୫୦
ଡାଳିମ୍ବ ଆମ୍ବ ପାଚଲା ପନସ
ଫୁଟି କାକୁଡ଼ି ନାନା ଫଳରସ ।
ପଇଡ଼ ସଙ୍ଗତରେ ନବାତ ଗୋଳିଦେଇ
ମରିଚ କର୍ପୂର ତହିଂ ଅଛନ୍ତି ମିଶାଇ ।
ଗଙ୍ଗବାସ ପାଣି ସଙ୍ଗତେ ତାହାଦେଲେ
ଅମୃତ ପାଣି କଦଳୀ ନେଇ ପରଷିଲେ ।
ମୁଣୋହି ସାରିଣ ସନ୍ତୋଷ ବର ଚାରି
ଏଥୁଅନନ୍ତରେ ଆଞ୍ଚୋବନ ସାରି ।
ଶ୍ରୀମୁଖ ପୋଛିଣ ଭୁଞ୍ଜନ୍ତି ଗୁଆପାନ
ଶୟନ ମନ୍ଦିର ମଣ୍ଡନ୍ତି ନାରୀମାନ ।୬୦
ଗଜଦନ୍ତ ପଲ୍ୟଙ୍କେ ସୁବର୍ଣ୍ଣ ପିତୁଳି
ରତ୍ନମୟେ କମ ଛଡ଼ବକ୍ଷେ ଅଗଡ଼ାଳି ।
ତହିଂର ଉପରେ ପାଟତୂଳା ପଡ଼ି
ଉପରେ ବିଛାଇଲେ ଶୁକଳ ପାଛୋଡ଼ି ।
ନେତର ମୁଚୁଳି ମୁଚୁଳା ଆନ ରୂପ
ପାଶେ ଯୋଗାଇଲେ ଅଗ୍ର ଧୂଆଁ ଧୂପ ।
ଶେଯରେ ବିଛିଲେ ନେଇ ପାଖୁଡ଼ା ସେବତୀ
କର୍ପୂର ଧୂଳି ତହିଂ ଛିଆଡ଼ି ପକାନ୍ତି ।
ଉପରେ ଚାନ୍ଦୁଆ ଗଗନ ପଟାନ୍ତର
ତାରାଗଣ ଘେନି ଉଦୟେ ଶଶଧର ।୭୦
ଠାବେ ଠାବେ ପଦ୍ମ ଅଛଇ ଉକୁଟି
ମାଣିକ୍ୟ ମୁକୁତା ମର୍କତ ମଣି ଛଡ଼ି ।
ସରୁ ପଟଳି ବାସ ଚଉକଟି ଟେରା

ଚାମର କୁସୁମରେ ଲୁଳେ ମୁକୁତାର ଝରା ।
ଦିବ୍ୟ ପଲ୍ୟଙ୍କ ମଣ୍ଡିଲେ ଯହୁଂ ନାରୀ
ତହିଂ ଶ୍ରୀରାମ ବିଜୟେ ଯାଇ କରି ।
ସୀତୟାଙ୍କୁ ବେଶ କରାବନ୍ତି ନାରୀ
ବହୁତ ତିଆରନ୍ତି ସେ ପୂର୍ବର କଥାପରି ।
ତୁଗୋ ଜାନେକୀ ଗୋ ଆମ୍ଭର ବୋଲକର
ଶ୍ରୀରାମ ତୋହୋର ଗୋ ଅଟନ୍ତି ଯେ
ବର ।୮୦
ତୁ ଆଜ ରଜନୀ ମନାଇଂମୁ ତାହାନ୍ତ
ଯେ କଥା ଦେବୀ ତୋତେ ଅଟଇ ଗୋ
ହିତ ।
ସେ ଯେବେ ମନେ ନ ଧରଇ ଗୋ ଆନ
ତେତେ ସେବାକରି ହାରିବୁ ଗୋ ମନ ।
ପ୍ରଥମ କାଳେ ଯେବେ ସ୍ୱାମୀକି ସେବିପାରି
ଦେହ ଥିବା ଯାଏ ସୁଖ ଭୋଗକରି ।
ପ୍ରଥମେ ସ୍ୱାମୀଙ୍କି ଯେବେ ଉପୁଜଇ ରୋଷ
ସର୍ବଦା ସେ ନାରୀ ଗୋ ହୁଅନ୍ତି ବିରସ ।
ତୁ ସର୍ବ ସୁଲକ୍ଷଣୀ ତୁ ଜାଣୁ ସର୍ବ
ଭେଦ ।୯୦
ଯେସନେଙ୍କେ ଗୁରସ୍ତ ନ ବହଇ ଖେଦ ।
ସେ ମନେ ଯେବେ କରିବେ ଯାହାଇଚ୍ଛା
ତୁହି ପୂରୋଇବୁ ଗୋ ତାହାଙ୍କ ମନବାଞ୍ଛା ।
ସେ ତୋହୋର ସ୍ୱାମୀ ତୁ ତାହାଙ୍କରି ନାରୀ
ଯେକ ଦେହ ଯେହା କେ ବେଗଳ
କରିପାରି ।
ଯେତେବେଳେ କୁଶରଜ୍ଜୁ ବାନ୍ଧିଲେ ଦ୍ୱିଜବର
ସେତେବେଳୁ ଶ୍ରୀରାମ ହୋଇଲେ ତୋ
ପ୍ରାଣର ଈଶ୍ୱର ।
ତୁ ତାହାର ଦାସୀ ଅଟୁ ଶରତ ଚନ୍ଦ୍ରମୁଖୀ
ଶ୍ରୀରାମ ପ୍ରସାଦେ ତୁ ହୋଇବୁ ପରମ
ସୁଖୀ ।
ଯେ ନବଯଉବନ ବିଧଂସିବେ ରାମ
ତ୍ରଇଲୋକେ ଆନ କେ ନୋହଇ ଗୋ
କ୍ଷମ ।୧୦୦
ଯେ ତୋହୋର ଅଧର ଚୁମ୍ବିବେ ରଘୁନାଥ

ତେଣେ ସେ ତୋତେ ଗୋ ଅଟଇ
ପୁରୁଷାର୍ଥ ।
ଶ୍ରୀରାମ ହୃଦରେ ଯେବେ ତୋ ଯଉବନ
ଲାଗଇ
ତେବେ ସେ ଜାଣିମା ହୋ ତୋହୋର
ସୁହାଗଇ ।
ରଘୁନାଥର ସଙ୍ଗେ କରିବୁ ଯେବେ କେଳି
ତେବେ ସେ ଜୀବନ ସାର୍ଥକ ମହି ସ୍ଥଳୀ ।
ତୁ କିସ ନ ଜାଣୁ ତୋତେ ତିଆରିବୁ କିସ
ସର୍ବ କୁଶଳ ତୁ ଚଞ୍ଚଳା ସ୍ୱରୂପ ।
ଯେତେ ବୋଲିଣ ସେ ସକଳ ନାରୀଗଣ
ସୀତୟାକୁ ନେଲେ ଶ୍ରୀରାମ ଶୟନ
ମନ୍ଦିରେଣ ।୧୦
ଲାଜ ଲାଜ କରି ସେ ଚାଲଇ ଦେବୀ ଧୀରେ
ଆଗେ ଯୁବତୀୟେ କଢ଼ାଇ ଅଛଇ
ସଧୀରେ ।
କେ ବୋଲଇ ମାୟେ ଗୋ ନ ଧର ମନେ
ଆନ
ଆସ ଆସ ସୁନ୍ଦେରୀ ଯୁବତୀ ମୋକ୍ଷପାନ ।
କଢ଼ାଇନେଇଂ କଲେ ଶ୍ରୀରାମର ପାଶ
ଶେଯ୍ୟାରେ ବିଜେ କରିଅଛନ୍ତି ପୀତବାସ ।
ସୀତ୍ୟାଙ୍କୁ ଦେଖି ପରମ ତୋଷ ମତି
ପଲ୍ୟଙ୍କ ତଳେ ଉଭା ହୋଇଲା ଯାଇ
ସ୍ୟତୀ ।
ଅନେକ ଯୁବତୀ ଅଛନ୍ତି ତାହାଙ୍କର ମେଳେ
ଶ୍ରୀରାମଙ୍କୁ ତିଆରିଣ କରନ୍ତି
କୁତୂହୋଳେ ।୨୦
ତୁମ୍ଭେ ରଘୁନାଥ ପୁରୁଷଙ୍କ ଉତ୍ତମ
ସୀତ୍ୟା ଅଗ୍ୟାଂନ ଯେହାର ଦୋଷ ନ
ଘେନ ।
ଜନେକ ରାଜାର ଅଲିଅଳ ଜେମା
ଦଶଦୋଷ ଅପ୍ରାଧ କରିବା ଯେହାର କ୍ଷମା ।
ଯେ ବାଳୁତ କୁମାରୀ ନ ଜାଣଇ କିଛି
ପାଳି ବଇଭୋଗ କର ଯେ ମୃଗାକ୍ଷି ।
ସାଧୁଝିଅ ଗୋଟି ଯେ ଅଳ୍ପ ବୟସ
ତୁମ୍ଭଙ୍କୁ ସେବା ଯେ ଜାଣିମଟି କିସ ।
ଅବୋଧ ସୁନ୍ଦେରୀ ଯେ ନୁହଇଂ ଛିଣ୍ଡାଳି
ତୁମ୍ଭର ସଙ୍ଗେ କିସ କରିବ ଢମାଳି । ୩୦
ତୁମ୍ଭେ ମହତ ନ କରିବ ରୋଷ
ସଭାବେ ସ୍ତିରୀଙ୍କର ବହୁତ ମନେ ରୋଷ ।
ତୁମ୍ଭେତ ନାଗର ଆମ୍ଭେ କି ବୋଲିବୁ ଆଉ
ଯେସନେକେ ବାମା ମନେ ନ ଧରଇ
ଆଉ ।
ନିରାଶ ନ କର ତୁମ୍ଭେ କର ଭୋଗ
ବିଧାତା ଆଣି ଯେବେ କଲା ଏହେନ୍ନେକ
ଯୋଗ ।
ତୁମ୍ଭର ଆୟେ ତୁମ୍ଭଙ୍କୁ ସମର୍ପିଲୁ
ବଧାଇ ବୋଲିତ ଆନ ନ ମାଗିଲୁ ।
ସୀତୟାକୁ ପାଳିଲେ ସବୁହିଂ ଯେ ହେଲା
କେବଣ ନାଗେରୀ ଯେତେ
କହିଗଲା ।୪୦
କେ ବୋଲଇ ସଖି ନିଦ ମୋତେ ମାଡ଼ଇ
ବେହାର ଝଗଡ଼େ ଗୋ ଅଳସ ନ ଛାଡ଼ଇ ।
ହାଇ ଘନ ଘନ ଶୋଇବି ମୁହିଂ ଯାଇ
ଅନିଦ୍ରା ହୋଇଲା ଗୋ ନ ପାରଇ ମୁହିଂ
ରହି ।
ଯେତେ ବୋଲି ବାଳୀୟେ ଡାକ ଦେଇଗଲା
ସଙ୍ଗେ ସଖିୟେକ ହସ୍ତ ଧରିନେଲା ।
ଆରେକ ଯୁବତୀ ଯେ ବୋଇଲା କ୍ଷଣେ
ରହ
ଶ୍ରୀରାମଙ୍କୁ ପ୍ରବୋଧି କଥାୟେକ କହ ।
କେ ବୋଲଇ ଆମ୍ଭେ କହିଲେ କିସ ହୋଇ
ଯେ ଯାହାର ଆୟେ ସେହି ସେ
ରଖଇ ।୫୦
ତିଆରିବା କଥା ପାଳଇ କେତେକାଳ
ତୁମ୍ଭେ କିଛି ଯେହ୍ୱା ଗୋ ମନରେ ନ ଭାଳ ।
ଆସ ଆସ ଯିବା ବୋଲିଣ ଠରାଠରି
ଯେକକୁ ଆରେକ ହୋଇଣ ଧରାଧରି ।
ଧାତିକାରେ ହୋଇଂଣ ସର୍ବ ନାରୀ ଗଲେ
ବାହାର କିଳଣି କରି କବାଟ କିଳିଲେ ।
ସଖୀଗଣ ଗଲେ ଯହୁଂ ସୀତ୍ୟା ଛାଡ଼ି
ସୀତ୍ୟା ପଣନ୍ତ ରାମ ଧଇଲେ ଉଚ୍ଛୁଡ଼ି ।
କୋଳ କରିନେଇ ବସାଇଲେ ଶେଯେ
ବଧୂଙ୍କ ଓଷ୍ଠ ଗୋଟି ଧଇଲେ
ଶ୍ରୀଭୁଜେ ।୬୦
ଚାଟୁ ବଚନ କଥା କହିଲେ ବହୁତ
କିମ୍ପାଇଂ ବିସ୍ମୟେ ତୁ ଧରୁଅଛୁ ଚିତ୍ତ ।
ମୁହିଂ ତୋହୋର ଦେହ ତୁ ମୋହୋର ପ୍ରାଣ
ଯେ କଥା ନିଶ୍ଚୟେ ତୁ ତଥ୍ୟ କରି ଜାଣ ।
ତୁ ମୋହୋର ସଖୀ ମୁଂ ତୋହୋର ସଙ୍ଗାତ
ନ କର ଶୋଚନା ଗୋ ମୋହୋର
ପଞ୍ଚଭୂତ ।
ତୁ ରାଜକୁମାରୀ ମୁହିଂ ରାଜପୁତ୍ର
ବିମନ ମୋରେ ଗୋ ନ ଧର ସଙ୍ଗାତ ।
ତୋହୋର ମୋହୋର ହୋଇଲାକ ଯୋଗ
ଯେ ନବ ଯଉବନ କରିବି ମୁହିଂ ତୋର
ଭୋଗ ।୭୦
ତୁହି ବାଳୁତ ମୁହିଂ ଯେ ବୟସରେ ସାନ
ତୁହିରେ ସୁନ୍ଦେରୀ ମୋତେ ନ ଧର ମନେ
ଆନ ।
ମୁହିଂ ତୋତେ ବଶ ହୋଇବିରେ ସହୀ
ଯେକାନ୍ତ କଥା ହାଦେ ତୋତେ ସେ
କହଇ ।
ଯେ ତୋହୋର ମୁଖ ଫୁଟିଲା କମଳ
ମୁହିଂ ଯେଥକୁ ସଖି ଅଟଇ ଭ୍ରମର ।
ଆସ ଆସ ସଖିରେ ଆଲିଙ୍ଗନ କର
ଭୁଜେ ଭୁଜ ଭିଡ଼ି ଲଗାଅସି ଉର ।
ଅଧରେ ଅଧର ପାନ ଦିଅରେ ପ୍ରାଣସଖି
ତୁହି ଶାଳୀଅନ୍ନ ମୁଂ ଉପବାସୀ । ୮୦
ଭୋଗକଲେ ତୋତେ ହୋଇବ ପ୍ରାଣ ଥିର
ମୁହିଂ ଚାତେକ ତୁ ଆକାଶର ନୀର ।
ପୃଥିର ଜଳ ମୁଂ ନ କରଇ ଗ୍ରାସ
ସର୍ବଦା ସଖି ତୋତେ ଅଟଇ ମୋହୋର
ଆଶ ।
ତୁ କାଳ ଗରଳ ମୁଂ ଅଟଇ ସଦାଶିବ

ତୋହୋର ମୋହୋର ସେ ଅଟଇ
ସଦଭାବ ।
ତୁହି ବେଦ ପୋଥି ମୁହିଂ ଅଟଇ ବେଦପାଣି
ଆନକି ତୋହୋର ଗୁଣଗ୍ରାମ ଜାଣି ।
ମୁହିଂ ସୁରପତି ତୁ ଅଟୁ ସୁଧାରସ
ଆନକି ଭାର୍ଜନ ତୋତେ କରିପାରେ
ଗ୍ରାସ ।୯୦
ମୁହିଂ ଅଗସ୍ତି ତୁ ସପତ ସାଗର
ତୁହିଂ କୁମୁଦ ମୁଂ ଯେ ଅଟଇ ନିଶାକର ।
ତୋତେ ଦେଖିଲେ ମୋହୋର ଆନନ୍ଦ
ହୋଯେ ପ୍ରାଣ
ତୁ ସଖୀ ପଦ୍ମ ମୁଂ ଛାୟାର ରମଣ ।
ମୁହିଂ କାମଦେବ ତୁହି ସେ ଅଟୁ ରତି
ତୋହୋର ସ୍ୱରୂପକୁ ମୁଂ ଅନରୂପେ ପତି ।
ଯେ ତୋହୋର ନୟନ ପଞ୍ଚଶର ଜାଣି
ଯେଣେ ସଖି ମୋହୋର ହୃଦୟ ଅଛୁ
ହାଣି ।
ହସି କଥା କହି ରଖୁ କିନା ପ୍ରାଣ
ତୁ ସେ ଲକ୍ଷ୍ମୀ ମୁଂ ଯେ ଅଟଇ
ନାରାୟେଣ ।୧୦୦
ଅସୁର ନିବାରିବି ଦେବଙ୍କ ହିତେ
ମୃତୁପୁରେ ଜାତ ହୋଇଲୁ ଭୋ ମିତେ ।
ମୁହିଂ ଦଶରଥ ଘରେ ଅବତରି
ତୁ ସଖୀ ହୋଇଲୁ ଜନେକ କୁମାରୀ ।
ସ୍ୱାମୀର ମୁଖରୁ ଏସନ ବଚନ ଶୁଣି
ଗତ ଜନ୍ମ ସୁମରିଲେ ନୟନ ହରିଣୀ ।
ଶ୍ରୀରାମ ପାଦପଦ୍ମେ କଲାକ ନମସ୍କାର
ପୁଣ ପୁଣ ବିନୋଇ ନମଇଂ ଶତେବାର ।
ତୁମ୍ଭେ ମୋର ସ୍ୱାମୀ ଅଟ ପ୍ରାଣନାହା
ସଦୟା କରି ମୋତେ ହୋଇଲ ଯେ
ବେହା ।୧୦
ଯେତେକାଳ ଥିବ ତୁମ୍ଭେ ନୋହିବ ଆନ
ନାରୀ
ତେତେକାଳ ମୋତେ ଥିବ ଦୟାକରି ।
କୋଟି ଯେ ଯୁବତୀର ଧରିବ ତୁମ୍ଭେ ହାଥ

ତେତେବେଳେ ଦୟା ଛାଡ଼ିବ ପ୍ରାଣନାଥ ।
ସପତଣୀ ମୋତେ ବୋଲିବେ ମନ୍ଦବାଣୀ
ତୁମ୍ଭେହେଂ କୋପ ଯେ କରିବ ତାହା ଶୁଣି ।
ଯେକାଳ କଥା ତୁମ୍ଭେ ଛାଡ଼ିବ ପ୍ରାଣନାଥ
ଜ୍ୟେଷ୍ଠ ଭାରିଜା ହୋଇଂ ମୁଂ ହୋଇବି
ଅନାସ୍ତ ।
ମାୟା ସଂସାର ଯେ ଦେଖୁ ଦେଖୁ ଆନ
ଥୋକାୟେକ ସମୟେ ମୋର ଯିବ
ଯଉବନ ।୨୦
ଯୁବା କନ୍ୟାନ୍ତ ଦେଖିଲେ କରିବ ତୁମ୍ଭେ
ପ୍ରୀତି
ମୋତେ ଅଭିମାନ ଦେବ ରଘୁପତି ।
ଯେବେ ଦିନାକେତେ ହୋଇବି ସଉଭାଗୀ
ଯେହି ଦେହେ ପୁଣ ହୋଇବି ଅଭାଗୀ ।
ଲୋକେଣ ଲାଜ କଥା ସ୍ୱାମୀ ଆପଣାକୁଂ
ବ୍ୟଥା
ଯେତେ ବୋଲି ଶ୍ରୀରାମ ଚରଣେ ଦେଲା
ମଥା ।
ଥନ ଥନ ନୟନ କରିଣ ଚନ୍ଦ୍ରମୁଖୀ
ଭୋ ପ୍ରାଣନାଥ ମୋତେ ସଦୟା ଭାବ ରଖି ।
ଯେ ମୋହୋର ପ୍ରାଣର ତୁମ୍ଭେ ଅଟ
ଅଧିକାରୀ
ଶୁଣିଣ ସ୍ୟତୀକି ରାମ ପ୍ରବୋଧନା
କରି ।୩୦
ତୁ ଯାହା କହିଲୁ ଯେ ଅଟଇ ତଥ୍ୟ ବାଣୀ
ମୋହୋର ଦେହେଂ ତୋତେ ନ କରିବି
ସପତଣୀ।
ନୋହିବି ଅନ୍ୟ ବିଭା ନ ଛୁଇଂମି ଅନ୍ୟ
ନାରୀ
ଆଜହୁଂ ମାତୃସମ ମୋର ଅଟଇ ପରନାରୀ ।
ତୋତହୁଂ ରମଣୀ ମୁଂ ନ କରିବି ଆନ
ଆଉ ଯୁବତୀକି ମୁଂ ନ ଧରିବି ମନ ।
ମୋହୋର ଥାନ୍ତେ ଯେବେ ହରାଇବୁ ପ୍ରାଣ
ତଥାପି ଅବା ନ କରିବି ସ୍ତ୍ରୀ ଯେ ରମଣ ।
ତୋହୋର ନାମ ଦେଇଂ ସୁବର୍ଣ୍ଣ ପ୍ରତିମା

ପତ୍ନୀଭ୍ରଷ୍ଟ ନିମନ୍ତକୁ ହୋଇଥିବି ବାମା ।୪୦
ଆନ ସ୍ତିରୀ ଘେନି ନ କରିବି ରତ
ଯେ ମୋହୋର ସଖୀରେ ଅଲଘିତ ବ୍ରତ ।
ସତ୍ୟ କରୁଅଛି ମୁଂ ଯେ କୁଳଦୀପ ଛୁଇଂ
ତୁ ଅବା ମୋତେ ଛାଡୁ ଗୋ ଶରଦ
ଚନ୍ଦ୍ରମୁହିଂ ।
ସ୍ତିରୀ ଚଞ୍ଚଳା ଚିତ୍ତ ଯେ ଅଥିର
ମନ ପ୍ରକୃତି ଥିର ନୁହଇଂ ତାହାଙ୍କର ।
ଭ୍ରଥା ଯଦ୍ୟପିରେ ଜାଣନ୍ତି କାମକଳା
ବିଦ୍ୟାବନ୍ତ ପଣେ ହୋଇବ କୁଶଳା ।
ନିରିମଳ ବଂଶେ ଅଟଇ ଅବତାର
ଯୁବା ବୟସ ଯେ ଅଟଇ ତାହାର ।୫୦
ଅବିଛନ୍ନେ ଦାନୀ ଧନେଣ ଗରିଷ୍ଠ
ଅସଙ୍ଖ ସମ୍ପଦ ଯେହୁ କୁଳଗୋତ୍ର ଶ୍ରେଷ୍ଠ ।
ସ୍ତିରୀଙ୍କ ଶୃଙ୍ଗାରେ ପାରଇ ତୋଷକରି
ପ୍ରାଣରୁ ଅଧିକକରି ଘେନିଥାନ୍ତି ନାରୀ ।
ଯେସନେକଂ ଭ୍ରଥାକୁଂ ତେଜନ୍ତି ଯୁବତୀ
ଅନ୍ୟ ପୁରୁଷେ ସେ ଯେ କରଇ
ମେଳମତି ।
ତେଣୁକରି ତୋତେ ତିଆରଇ ଭୋ ସହି
ଯେ ବଚନ ଶୁଣି ବୋଲଇ ବଇଦେହୀ ।
ଭୋ ନାଥ ଶ୍ରୀରାମ ତୁ ମୋହୋର ପ୍ରାଣପତି
ତୋ ତହୁଂ ଆନେ ଯେ ମୋହୋର ନ
ବଳଇ ମତି ।୬୦
ଯଦ୍ୟପି ମୋତେ ଯେବେ ବଳେ
ନେବ ଆନ
ସେହିଦିନୁଂ ସ୍ୱାମୀ ମୁଂ ତେଜିବଇଂ ଅନ୍ନ ।
ନ ଖାଇବି ପାଣି ନ କହିବି କଥା
ନ ରହିବି କାର ସଂଗେ ନ ଟେକିବି ମଥା ।
ବେଶ ବେସନ ଯେ ଛାଡ଼ିବି ସୁଖ ଭୋଗ
ପୁଣି ସେତେବେଳେ ହୋଇବି ତୋର
ଭୋଗ ।
ତେତେବେଳେ ସ୍ନାହାନ ଭୋଜନ କରିବି
ଯେ ତୋହୋର ଚରଣେ ସେବା କରିଥିବି ।
ଯେ ମୋହୋର ସତ୍ୟ କୁଳଦୀପ ଅଛି

ଯେତେ ବୋଲି ଅଗ୍ନି ଛୁଇଂଲା ମୃଗାକ୍ଷି ।୭୦
ସୀତ୍ୟାର ବଚନକୁ ଶ୍ରୀରାମହିଂ ପ୍ରତେ ଗଲେ
ରାମ ବଚନକୁ ସୀତ୍ୟାହିଂ ପ୍ରତେ ଗଲେ ।
ଯହୁଂ ପତି ପତ୍ନୀ ହୋଇଲେ ଏକ ମନ
ଗଜଦନ୍ତ ପଲ୍ୟଙ୍କେ କରନ୍ତି ଶୟନ ।
ସୀତ୍ୟା ଶୋଇଲା ଯେ ଶ୍ରୀରାମଙ୍କୁ ପିଠି ଦେଇ
ତାହାଙ୍କର ପଛେ ଯେ ଶୋଇଲେ ରଘୁସାଇଂ ।
ରାମହିଂ ସୀତ୍ୟାଙ୍କୁ ଯେ ଶୋଇଲେ ପଛକରି
ନିଦେ ଅଚେତନ ଯେ ଜନେକ କୁମାରୀ ।
ଶ୍ରୀରାମ ଚାହିଂଣ ଅଛନ୍ତି ତୁନି ହୋଇ
ନିଦ୍ରା ବୋଲି ତାହାର ଅଳସହିଂ ନାହିଂ ।୮୦
ଶ୍ରୀରାମ ସୀତ୍ୟାରୂପ ହୃଦୟରେ ଧରି
କଡ଼ ଲେଉଟାଇ ଲୋଡ଼ନ୍ତି କୋଳକରି ।
ପୁଣିହିଂ ସଙ୍କୋଚେ କରନ୍ତି ଲାଜ ଲାଜ
ସୀତୟାର ହୃଦେ ଦେଲେ ନେଇ ଭୁଜ ।
ଥୋକାୟେକେ ବେଳେ ବିଭୋଳେ ଭୋଳ ହୋଇ
ସଖୀ ସଖୀ ବୋଲି କଡ଼ ଲେଉଟାଇଂ ।
ଅତି ଗାଢ଼େ ରାମ ଭିଡ଼ନ୍ତି କୋଳକରି
ନିଦ୍ରାଭଗ୍ନ ହୋଇଲା ଜନେକ କୁମାରୀ ।
ଲଜ୍ୟା ଛାଡ଼ିଣ ଯେ ଶ୍ରୀରାମଙ୍କୁ କୋଳ କଲା
ମୁଖେ ମୁଖ ଲଗାଇ ହିଆକୁ ହିଆ ଦେଲା ।୯୦
ଯହୁଂ ଜାନେକୀର ଭାଙ୍ଗିଲା ସଙ୍କୁଚ
ଶ୍ରୀରାମ ଶ୍ରୀକରେ ଧଇଲେ ତାଙ୍କ କୁଚ ।
ମୁଖେ ଚୁମ୍ବ ଦେଇ ଅଧର ପାନ କଲେ
ଚରଣେ ଚରଣ ଲଗାଇ ଛନ୍ଦିଲେ ।
ଯହୁଂ ବେନିଜନେ ୟେକମନ ହୋନ୍ତି
ବିବିଧ ବିନୋଦେ କରନ୍ତି ପୀରତି ।
ୟେଥୁଅନନ୍ତରେ ରଜନୀ ହୋୟେ ଶେଷ
ଦେବତାଙ୍କ ଆଳେ ଶୁଭିଲା ଶଙ୍ଖ ଘୋଷ ।
ବେଣୁ ବୀଣା ବାଦ୍ୟ ଯେ ତାଳ କଂସାଳ ଗୀତ ଗାନ୍ତି
ଢୋଲ ଦମା ଟମକ ନିଶାଣ ବାଜନ୍ତି ।୧୦୦
ଶ୍ରୀରାମ ସୀତ୍ୟା ବିଷାଦ ମନେ ହୋଇ
ଆଜର ରଜନୀ ତ ଅଳପରେ ସରଇ ।
ସଧ ନ ସରିଲା ନୋହିଲା କିଛି କଥା
ୟେଥୁଅନନ୍ତରେ ଦଶରଥ ମହାରଥା ।
ଶେଯ୍ୟା ଛାଡ଼ିଣ ଯେ ଉଠିଲେ ତଡ଼ତି
ଦମାଲୁ ଦିଅ ଆଗ୍ୟାଂ ଦେଲା ମହୀପତି ।
ସନ୍ୟ ସଜକର ବୋଲିଣ ବୋଇଲା
ଆଗହୋଇ ଆପଣେ ଷଟକର୍ମ ସାରିଲା ।
ଲକ୍ଷ୍ମଣ ଶତୃଘନ ଭ୍ରଥ ଯେ ଶ୍ରୀରାମ
ଟମକ ଶୁଣିଣ ସାରନ୍ତି ନିତ୍ୟକର୍ମ ।
ଶେଯ୍ୟା ଛାଡ଼ିଣ ଉଠନ୍ତି ଭ୍ରାଥ ଚାରି
ଯେ ବିଧି ନିତ୍ୟକର୍ମ ସାରିଲେ ଯେ ଯାହାରି ।
ଆୟେ ଅଳଙ୍କାର ଦିବ୍ୟ ବେଶହୋଇ
ସୀତ୍ୟାର ସନିଧ୍ୟେ ମିଳିଗଲେ ଯାଇଂ ।
ୟେଥୁଅନନ୍ତରେ ଜନେକ ମହାଋଷି
ଦଶରଥ ପାଶେ ମିଳିଲେକ ଆସି ।
ସମୋଧ ଯୋଗାଡ଼ ବସ୍ତ୍ର ଅଳଂକାର
ରଥ ଗଜ ହୟ ଅନେକ ସମ୍ଭାର ।
ଶ୍ରୀରାମର ପିତାଙ୍କୁ ଚନ୍ଦନ ଗନ୍ଧ ଦେଇ
ବୋଲଇ ଜନକ ଯେ କୃତକୃତ ହୋଇ ।୨୦
ତୁ ଯେ ଦଶରଥ ସୂର୍ଯ୍ୟବଂଶେ ରାଜା
ସକଳ ନୃପତି ତୋତେ କରନ୍ତି ପାଦପୂଜା ।
ସ୍ୱର୍ଗେ ପ୍ରଶଂସା ଯେ କରନ୍ତି ସୁରନର
ଯେ ତୋହୋର କୋଳେ ଉପୁଜିଲେ ଚାରି ଯେ କୁମର ।
ଧାର୍ମିକ ପବିତ୍ର ଅତି ଯେ ଶୂରବନ୍ତ
ଶ୍ରୀରାମ ତୋହୋର ଅଟଇ ଜ୍ୟୋଷ୍ଠପୁତ୍ର ।
ତାହାଙ୍କ ମହିମା ଯେ ତିନିଭୁବନେ ବିଖ୍ୟାତ
ଶୂରବନ୍ତ ଗୁଣବନ୍ତ ଅଟଇ ପବିତ୍ର ।
ଈଶ୍ୱର ଧନୁ ଯେ ବଳେ ଆମାଣ୍ଟିଲା
ଶତ୍ରୁର ଦର୍ପ ସେହିଦିନୁ ଘୁଞ୍ଚିଗଲା । ୩୦
ଧନୁ ଧରନ୍ତେଣ ପୂରିଲା ମୋର ବ୍ରତ
ରାମଙ୍କୁ ବିଭାୟେ ଦେଲି ମୋହୋର ଦୋହିତ ।
ଆବର ତିନିପୁତ୍ରଙ୍କୁ ତିନି ଝିଅ ଦେଲି
ତୋହୋର ତହିଂ ମୁଂ ସେ ସମର୍ପି ହୋଇଲି ।
ତୁହୋ ମହାରାଜା ଗଙ୍ଗାର ମରୁତ
ତୋତେ ଆଶ୍ରେକରି ମୁଂ ହୋଇଲି ବିଖ୍ୟାତ ।
ଯେ ମୋହୋର ଦୋହିତାଙ୍କର ଯେତେ ଅବିଗୁଣ
ତୁ ତାହା ନ ଘେନିମୁ ମୋହୋର ବୋଲ ଶୁଣ ।
ଯେ ତୋହୋର ପୁତ୍ରଙ୍କର ଅଟନ୍ତି ସେ ଦାସୀ
ଭୋ ରାଜା ତାହାଙ୍କୁ ଥିବୁଟି ଆଶ୍ୱାସି ।୪୦
ଯେ ମୋହୋର ଭଗତି ତୁ ଘେନ ନୃପବର
ଦୋହିତାଙ୍କର ଦୋଷ କ୍ଷମାୟେକ କର ।
ୟେତେ ବୋଲି ଯାଇ ଧରଇ ଦୁଇହସ୍ତ
ଆପଣେ କୋଳକଲେ ରାଜା ଦଶରଥ ।
ଜନକ ଚରଣେ ପଡ଼ଇ ମହୀପତି
ବ୍ରହ୍ମାର ଚରଣୁ ତୁ ଅଟୁ ଉତପତି ।
ତୋହୋର କଲ୍ୟାଣେ ସେ ପୁତ୍ର ବର୍ଦ୍ଧମାନ
ସୁଖ ଭୋଗ ଧନଧାନ୍ୟ ଅରଜି ସେ ୟେମାନ ।
ଧର୍ମବନ୍ତ ଶୂରବନ୍ତ ହୋଇବେ ମହାବୀର
ଯେ ତୋହୋର ପରମ ଦୟା ମୁନିବର ।୫୦
ଦଶରଥ ଯହୁଂ ହୋଇଲେ ଦୃପତି
ଲୋମପାଦ ପାଶେ ଗଲା ଜନେକ ମହୀପତି ।
ଧନବସ୍ତ୍ର ଅଳଂକାର ବହୁତ ବିଧିକଲା
ସମର୍ପି ହୋଇଣ ସେ ଅନେକ ବୋଇଲା ।
କୟେକୟା ରାଜାର ତନୟେ ଯୋଧ୍ୟାଙ୍କୁ
ଯେ ବିଧିରେ ପୂଜାକଲା ସେ ତାହାଙ୍କୁ ।
ଦିବ୍ୟ ବସନୟେ ଆଭରଣ କାୟେ
ଦେଇଣ ମହାମୁନି ପ୍ରବୋଧନା କୟେ ।

ଷଡ଼ଅର୍ଘ୍ୟ ଦେଇ ବଶିଷ୍ଠଙ୍କୁ ପୂଜାବିଧି କରି
ସମର୍ପି ହୋଇଛି ବୋଲି ବେନିକର
ଯୋଡ଼ି ।୬୦
ବିଭାର ବିଧାନ ରାଜା କଲାକ ଅକ୍ଷତ
ଜାବାଳି ବାମଦେବ ଆବର ସୁମନ୍ତ ।
ଯେମାନଙ୍କୁ ଆବର ଗଉରୋବ କଲା
ଧନବସ୍ତ୍ର ଦେଇ ପ୍ରବୋଧି କହିଲା ।
ବିଶ୍ୱାମିତ୍ରଙ୍କୁ ବହୁତ କଲା ପୂଜା
ଉପହାର ଦେଇ କୋଳ କଲାକ ରାଜା ।
ତୁ ସେ ମହାରଷି ଦୟା ମୋତେ କଲୁ
ଦଶରଥ ସଂଗେ ସମ୍ବଧି ଭିଆଇଲୁ ।
ଯେ ସମ୍ପଦରେ ତୁ ଅଟୁସିକାରେଣୀ
କଉଶିକ ତୋଷ ହୋଇଲା ଯେହା
ଶୁଣି ।୭୦
ଆବର ଯେତେକ ଥିଲେ ବରଜାତି
ଅକ୍ଷତ ଦେଇଣ ତୋଷିଲେ ମହାଯତି ।
ରଷିମାନଙ୍କ ସେ ବହୁତ ପୂଜାକଲା
ପରିବାରୀ ସେବକଙ୍କ ବଧାଇ ବିଧି ଦେଲା ।
ହୋଇଲେ ତ୍ରିପ୍ତତି ସକଳହିଂ ଜନ
ତହୁଂ ଚଳିଗଲେ ଜନେକ ରାଜନ ।
ନିଜ ମନ୍ଦିରେ ସେ ହୋଇଲେ ପରବେଶ
ଆସିଣ ମିଳିଲେ ସକଳ ରାଣୀହଂସ ।
ସୀତ୍ୟାଙ୍କୁ ତିଆରିଣ କହନ୍ତି ବସାଇ
ତୁ ମୋହୋର କୁଳର ଉଦ୍ଧାରଣ ଆଇ ।୮୦
ପ୍ରାଣର ଧାରଣା ଅଟୁସି ଗୋ ମାୟେ
କିସ ବୋଲିଣ ମୁଂ ତିଆରିବି ତୋୟେ ।
ଶ୍ରୀରାମଙ୍କୁ ତୋତେ ବିଭାୟେଣ ଦେଲି
କନ୍ୟାଦାନ ଫଳ ଧରମ ଅରଜିଲି ।
ଯେତେ କାଳ ତୁଗୋ ଥିଲୁ ମୋହୋର କତି
ସେ ବେଳ କଥା ଯେବେ ନୁହଇଂଟି ଗୋ
ସ୍ୟତୀ ।
ଶଶୁର ଘରକଇ ଯିବୁ ଆଜହୁଂ ରେ ବାମା
ତହିଂରେ ତୁ ନ କରିବୁ ଯେଠାର ଗାରିମା ।
ଶାଶୁଙ୍କୁ ଦେଖିଲେ ତୁ ଆସନୁ ଉଠିବୁ
ନମସ୍କାର କରିଣ ଉଭା ହୋଇଥିବୁ ।୯୦
ବିଚଳିତ କଥା ଗୋ ନ କହିବୁ କିଛି
ଅକାରଣେ ହାସ୍ୟ ନ କରିବୁ ମୃଗାଖି ।
ସାବତ ଶାଶୁଙ୍କୁ ଗୋ ଥିବୁ ସେବାକରି
ଛାୟା ଦେଖିଲେ ଗୋ ଉଠିବୁ କରଯୋଡ଼ି ।
ଦାସୀଙ୍କର ସଙ୍ଗେ ନୋହିବୁ ମେଳମତି
ଅନୁବ୍ରତେ ହୋଇଥିବୁ ପତିରେ ଭଗତି ।
ଗରିମା ପଣ ମାଗୋ ନ କରିବୁ ସ୍ୱାମୀ ପାଶ
ଯେସନେକ ସ୍ୱାମୀ କରନ୍ତି ବିଶ୍ୱାସ ।
ସେ କଥା ପରିମାଣି ଗୋ ଥିବୁ ସେବାକରି
ସଙ୍କୁଚ ଚିତ୍ତେ ସଲଜିତ ମନେ
ଧରି ।୧୦୦
ଯିସ ଆଜ୍ଞା ତୋତେ ଦେବ ଭରଥାରାଇ
ତାହାଙ୍କର ବୋଲ ତୁ ଯେ ନ କରିବୁ
ନାହିଂ ।
ଅପୂର୍ବ କଥାଏ ତୁ ଗୋ ଦେଖିଲେ ନ ମାଗିବୁ
ରାତ୍ର ଦିବସ ତହିଂକି ବିନୟ ହୋଇଥିବୁ ।
ସ୍ୱାମୀର ଶରଧା ବେଳେଣହିଆୟେ
ତାହା ଯତ୍ନକରି ଗୋ ଭିଆଇ ଗୋ ମାୟେ ।
ଯେସନେକ କୋପ ନ କରନ୍ତି କାନ୍ତ
ତେସନେକ ସେବା କରିଥିବୁଟି ତାହାନ୍ତ ।
ପତିଭକ୍ତି କଲେ ଇହଲୋକ ଯଶ ପାଇ
ଅନ୍ତେ ସ୍ୱର୍ଗ ଭୁବନେ ବସଇ ହାଦେ
ଯାଇ ।୧୦
ମୁଂ କିସ ତିଆରିବି ନ ଜାଣୁ କିସ ପୁଣ
ଭ୍ରଥା ସେବା ମାଗୋ କର ଯେକ ମନ ।
ଚାରିଝିଅଙ୍କୁ ରାଜା ତିଆରିଲା ଯାଇଂ
ମଧୁର ବାଣୀ ପୂର୍ବ କଥାନ୍ତ ଦେଖାଇ ।
ସୀତୟାର ଭୁଜ ଧରଇ ଜନେକ
ଶ୍ରୀରାମଙ୍କୁ ସମୋଧନା କଲାକ ଅନେକ ।
ତୁହି ସେ ଦଶରଥ ସୁତ ରଘୁନାଥ
ଇଶ୍ୱର ଧନୁବଳେ କଲ ହତାୟତ ।
ତେଣୁ ଯେ ମୋ ଦୋହିତାକୁ ବିଭା ଯେବେ
ଦେଲି
ବଡ଼ କୁଳ ବୋଲି ମୁଂ ସମର୍ପି
ହୋଇଲି ।୨୦
ଯେ ସୀତ୍ୟା ବାଳୁତ ନ ଜାଣଇ ସେବା
ଯେହାର ଦୋଷ ଯେ ଅପ୍ରାଧ ମୋତେ
ଦେବା ।
ପୃଥିରୁ ଜାତ ହୋଇଲା ଯେ ଯଜ୍ଞକାଳେ
ଯେତେକ ବରଷ ରାମ ବଢ଼ିଲା ମୋ
କୋଳେ ।
ପ୍ରାଣୁ ଅଧିକ କରି ପାଳିଲଇଂ ଯେହା
ପୂର୍ବର କର୍ମବଳେ ପାଇଲା ତୁମ୍ଭନ୍ତ ନାହା ।
ଯେହାକଇ ତୁମ୍ଭେ ଦୟା କରିଥିବ
ଅପ୍ରାଧ କଲେ ଯେ ଦୋଷ ମୋତେ
ଦେବ ।
ମୋହୋର ଘରେ ଯେହୁ ଦୁଲଣା ପଣେ ଥିଲା
ବାଳୁତ ରୂପେ ଯେତେ କାଳ
ବହିଗଲା ।୩୦
ଯେବେ ଯେ ତୁମ୍ଭର ହୋଇଲାକ ଦାସୀ
ଯେତେ ବୋଲି କ୍ରୋଧ କରଇ ମହାରଷି ।
ସୀତୟାର ନୟନୁ ବହଇ ଅଶ୍ରୁଜଳ
ଜନକ ରାଣୀ ଯେ କରଇ ହାହାକାର ।
ଘୃତ ଚଞ୍ଚୁ ଦେଇ ପାଳିଲୁ ଗୋ ତୋତେ
ପରକରି ଦେଲୁ ସଭୁରି ସନମତେ ।
ଆଜହୁଂ ଦଶଦିଗ ହୋଇଲାକ ଶୂନ୍ୟ
ତୋହୋର ମୁଖ ଚାହିଂଲାର କଲୁ ଯେବେ
ପୁନ୍ୟ ।
ତୋହୋର ମନ ଆମ୍ଭେ ରଞ୍ଜିଥିଲୁ ନିତି
ତୁ କେହ୍ନେ ପରମନ ରଞ୍ଜିବୁ ଗୋ
ସ୍ୟତୀ ।୪୦
ପୁରୁଷ ଅଭାଗୀ ଗୋ ଧରନ୍ତି ଅବିଗୁଣ
ମିଛହେଂ କୋପ ସେ କରନ୍ତି ଅକାରଣ ।
ଯେ ବଚନ ଶୁଣି ସେ ହସନ୍ତି ଦାଶରଥି
ଜନେକ ଦୋହିତା ନେଇଣ ସମର୍ପନ୍ତି ।
ଆବର ସେ ତିନି ଦୋହିତି ସମର୍ପିଲା
ତିନି ଦୋହିତାଙ୍କୁ ବହୁତ ତିଆରିଲା ।
ଯେଥୁଅନନ୍ତରେ ଗଇଂଣ୍ଡାଳ ହୁଅନ୍ତି
ଅହିଅ ନାରୀମାନେ ବନ୍ଦାଇ ଆସନ୍ତି ।
ସୁକାସନ ମଣ୍ଡିଆ ଦେଲେ ସଜକରି

ତହିଁ ବିଜେ ରାମ ସୀତ୍ୟା ଭୁଜ ଧରି ।୫୦
ଭ୍ରଥ ଲକ୍ଷ୍ମଣ ଶତୃଘନ ତିନି
ସୁକାସନ ଚଢ଼ିଲେ ଯେ ଯାହା କନ୍ୟା
ଘେନି ।
ଉପରେ ପାଟଛତ୍ର ଆଳମ୍ବ ନିରନ୍ତର
ପଞ୍ଚ ଶବଦ ଯେ ବାଜଇ ନିରନ୍ତର
ବୀରତୂର ।
ରାଛ ଖେଳିଣ ଯେ ଯାନ୍ତି ବରଚାରି
ବେଢ଼ି ହୁଳହୁଳି ଦିଅନ୍ତି ନରନାରୀ ।
ସୀତୟାର ସଖି ଗୋଡ଼ାଇଣ ଛନ୍ତି
ହାଟବାଟ ରାଜ ପରିମଳ ଯାନ୍ତି ।
ଅକ୍ଷତ ଦେଇଣ ଯେ ବନ୍ଦାନ୍ତି ଘରେ ଘର
ପ୍ରବେଶ ହୋଇଲେ ଯାଇ ଦଶରଥ ନବର
ଦ୍ୱାର ।୬୦
ଦୋଳାରୁ ଓହ୍ଲାଇଣ ଭିତରକୁ ଗଲେ
ନିଜ ମାତାଙ୍କୁ ଦେଖି ନମସ୍କାର କଲେ ।
ଘରେ ପଶନ୍ତେ ଯେ ଶୁଭଇ ହୁଳହୁଳି
ପ୍ରଳୟ କାଳ ଜାଣି ସାହେର ଉଛୁଳି ।
ଶ୍ରୀରାମଙ୍କୁ ଦେଖି ଆନନ୍ଦ ହୋଇଲେ
ପୁତ୍ରବଧୂ ଦେଖି ଉଷତ କଉଶୁଳେ ।
ଶ୍ରୀରାମ ସୀତ୍ୟା ଯେ ବସନ୍ତି ତାର କୋଳେ
ଆଦିତ୍ୟର କୋଳେକି ଶଚୀସୁର ପାଳେ ।
ପୁତ୍ରବଧୁ ମୁଖ ଚାହିଁଣ ଜନନୀ
ପୂଜା କଲାକ ସେ ଲକ୍ଷେ ସୁବର୍ଣ୍ଣ
ଘେନି ।୭୦
ମୁଖେ ଚୁମ୍ବ ଦେଇଣ ଶ୍ୟରୀର ଆଉସଇଂ
କୁଳର ଆଳୀ ହଂସ ବୋଲିଣ ପ୍ରଶଂସଇ ।
ଯେସନେକ ସମୟେ ଯେ ଆଇଲା ମନ୍ଥୁଡ଼ି
ପରିହାସ ଗୀତ ଯେ ଗାଇଲା ଗର୍ବକରି ।
ବିଭାର ବିଧିୟେ ଯେ ଅଛଇ ପୂର୍ବବାଣୀ
ଶ୍ରୀରାମ କୋପ ଯେ କଲେ ତାହା ଶୁଣି ।
ମାତାର କୋଳରୁ ସେ ଉଠିଲେ ଧାତିକାର
ପାଦ ପହୁଡ଼ିଲେ ମନ୍ଥେଡ଼ି ଉପର ।
କୁଜ ପିଠିୟେ ପଡ଼ିଲା ଯହୁଂ ପାଦ
ଲାଜ ପାଇ ଦାସୀ ଯେ ହୋଇଲା
ଚବଦ ।୮୦

ଶ୍ରୀରାମଙ୍କର ଯେ ତାହାଙ୍କ ତରାଟି
ରକତବର୍ଣ୍ଣ ହୋଇଲା ବେନି ଆଖି ଗୋଟି ।
ଶ୍ରୀରାମ ବୋଇଲେ ଲୋ କିସ ମୋତେ
ଚାହୁଂ
ଗୁରୁସ୍ଥାନେଣ ତ ବିହ୍ୱଳିତ କହୁ ।
ପୁଣି ମାରିବେ ବୋଲି କହିଲେ ରଘୁପତି
ମାତାମାନେ ଯାଇ ରାମଙ୍କୁ ଧରନ୍ତି ।
ପଳାଇ ମନ୍ଥେଡ଼ି ଯେ ପଶିଲା ଭିତରେ
ଶୁଣିମା କାହାଣୀ ଯେ ଯେଥୁଅନନ୍ତରେ ।
କଇକେୟା ସୁମିତ୍ରା ଯେ ଆବର ବେନି
ନାଗୀ
ପୁତ୍ରବଧୂ ଅଛନ୍ତି ନିଜ କୋଳେ ଧରି ।୯୦
ସୀତ୍ୟା ରୂପ ଗୁଣ ଯେ ବାହୁନନ୍ତି ବେଢ଼ି
କେତେ କାଳ ବସି ବିହି ଯେହାଙ୍କୁ ସେ
ଗଢ଼ି ।
ସର୍ବଜନଙ୍କର ଯେତେ ସୁନ୍ଦର ପଣ ଥିଲା
ଭାଳିଣ ପିତାମହ ଯେକଠାବ କଲା ।
ଶୁଦ୍ଧ ସୁବର୍ଣ୍ଣ ରସ ମିଶାଇଲା ନେଇ
ପରଶୁ ପଥରେ ତାହା ବାଟିଲା ମିଶାଇ ।
ମିଶାଇକରି ତାହା ଗଢ଼ିଲା ପ୍ରତିମା
ନଖ ମୁଖ ନାସିକା କଲାକ ଉପମା ।
ଚନ୍ଦ୍ରମଣ୍ଡଳ ଜାଣିଣ ବଦନ ଗଢ଼ିଲା
ତିଳ ପୁଷ୍ପ ପ୍ରାୟେକ ନାସିକା
ଠଣାକଲା ।୧୦୦
କୁରଙ୍ଗୀର ଚକ୍ଷୁ ସାଦୃଶେ ନେତ୍ର ଦୁଇ
ମଦନ ଧନୁବାଣ ଯେ ଭୂଲତା କରଇ ।
କୃଷ୍ଣଚାମର ହି ଗୁଣେ ଯେ କେଶ ସଞ୍ଚି
ଯମ ବରୁଣ ଫାଶୀ ଶର୍ବଣ ଦୁଇ ରଚି ।
ଅଧର ଡାଳିମ୍ବ କୁସୁମର ବର୍ଣ୍ଣ
ସିନ୍ଦୂର ଗଜମୋତି ଜାଣି ଦିଶଇ ଦଶନ ।
ଡାହାଣ ବ୍ରତେକ ଶଙ୍ଖ ପ୍ରାୟେ କଣ୍ଠ ଦିଶି
ବିସ୍ତାର ହୃଦୟେ ଯେ କୁଚ ଦୁଇ ବସି ।
ସୁବର୍ଣ୍ଣ ହସ୍ତୀର ଯେ କୁମ୍ଭ ସ୍ତନ ବେନି
ଅମୃତ ପୂରାଇଣ ଅଛି ଯେଥି ଆଣି ।୧୦
କି ଅବା ମଦନ ରାଜାର ଭଣ୍ଡାର

ସ୍ୱୟେଂ ବିଶ୍ୱକର୍ମା କଲାକ ତିଆର ।
ଚଉଷଠି ବନ୍ଧ ଭିତରେ ଥୋଇଥିଲା
ନୀଳାର ଢାଙ୍କେଣି ଉପରେ ଘୋଡ଼ାଇଲା ।
କସ୍ତୁରୀ ସନ୍ତେକ କଲା କମ ମୁଦି
ଗଜ ମୁକୁତା ଉପରେ ଅଛି ଲଦି ।
କିଅବା ମାତଙ୍ଗ ପାଚିଲା ଶ୍ରୀଫଳ
ତେସନେକ ଦିଶୁଅଛି ଉରଜ ଯୁଗଳ ।
ପଦ୍ମନାଡ଼ ଜାଣି ଦିଶଇ ବାହୁ ବେନି
ବିରହୀ ଜନନ୍ତ କାମ ସାଧଇ ଯାହା
ଘେନି ।୨୦
ବିଦ ମୁଦି ବାହୁଟି ଯେସନେ ଶୋଭା ଦିଶଇ
ଚମ୍ପାକଢ଼ି ପ୍ରାୟେ ଅଙ୍ଗୁଳି ପ୍ରକାଶଇ ।
ଜାଇ କୁସୁମ ଯେ ଶୋଭା ଜାଣି ଲଖ
ଘଟଣ ତୀକ୍ଷ ପ୍ରାୟେ ଶିଖର ମହାତୀକ୍ଷ ।
ସରୁ ଅଣ୍ଟା ଗୋଟି ଗୋ ତାହାକୁ ଶୋହିଲା
କଟି ଦେଖି ସିଂଘ ବନକୁ ପଳାଇଲା ।
ପିମ୍ପୁଡ଼ି ପେଟ ପ୍ରାୟେ ମଝା ଯେ ଦିଶଇ
ତହିଁର ଉପରେ ଯେ କୁଚ ଭାର ବଶଇ ।
ବାଲନ୍ତେଣ ଟଳ ଟଳ ହେଉଥାଇ ଅଙ୍ଗ
ଭାଜି ପଡ଼ଇ ନା ଜାଣିମାନା ଯେତେ
ରଙ୍ଗ ।୩୦
କିମ୍ବା ବିଧାତା ଯେ କଲା ଯେସନେକ ବିଧି
ଇହୁଣୀ ଦେହେ ପଥରମାନ ଲଦି ।
କେତେବେଳ ଯାୟେ ଯେଥେ ଯେହୁ ରହି
କୋନ୍ତ ମୁନରେ କି ପର୍ବତ ଥିବ ବହି ।
ସୁନ୍ଦର ନାଭି ଗୋଟି ଦଖିଣକୁ ବୁଲଇ
ରୋମରାଜି ଦେଖ ସର୍ପ ପ୍ରାୟେ ଦିଶଇ ।
କଟିଭାଗ ନିତମ୍ବ ଦିଶଇ ମହାଶୋଭା
କି ଜାଣି ମରକତ ସିଂଘାସନ ପ୍ରଭା ।
ପିନ୍ଧନ୍ତେଣ ସୁନ୍ଦର ଦିଶଇ ସରୁ ଶାଢ଼ୀ
କଟୀ ମେଖଳା ଯେ ଉପରେ ଅଛି
ଭିଡ଼ି ।୪୦
ସୁନ୍ଦର ସୁବଳିତ ଜାନୁ ଯେ ଯୁଗଳ
ଆଣ୍ଠୁଗଣ୍ଠି ପିଠି ସବୁ ହି ସମାନ ।
ସୁବର୍ଣ୍ଣର ପାଷାଣ ପ୍ରାଏକ ଉଚ ଜଙ୍ଘ

କାମଦେବର ଜାଣି କନକର ଖମ୍ଭ ।
ଉଲଟ କରିଣ ଅଛଇ ତାହା ତେରି
କଟକାଇ ବେଳେ ଥିବ ସଜ କରି ।
ପାଦର ତଳିପା ଅରୁଣ ରଙ୍ଗବର୍ଣ୍ଣ
ଓଣେକ କଢ଼ି ଚରଣ ଅଙ୍ଗୁଷ୍ଠିମାନ ।
ସେବତୀ ପାଖୁଡ଼ା ପ୍ରାୟେକ ଲଖ ପନ୍ତି
ଅଲତା ରଙ୍ଗେ ଯେ ବହୁତ ଶୋଭା
ପାନ୍ତି ।୫୦
କଞ୍ଚା ହଳଦୀ ପ୍ରାୟେ ଦେହ ତାର ଦିଶଇ
ପୁଂଜି ପୁଂଜି ହୋଇ ରୋମାବଳୀ ଦିଶଇ ।
ଲକ୍ଷେକ ଲକ୍ଷଣ ଯେ ପୂରିତ ଶ୍ୟରୀର
ଅଣ୍ଡିରା କୋକିଳର ଆଣିଲା ତାର ସ୍ୱର ।
ମତ୍ତଗଜ ଚାଲି ଯେହାର ତହିଂ ଦେଲା
ନାନା ରୂପ ଗୁଣ ଯେକଠାବ କଲା ।
ଅନେକ କାଳ ସେ ନିବାଡ଼ିଲା ବସି
ପ୍ରାଣ ପାଇଲା ଅମୃତ ସଞ୍ଜିବନୀ ପଶି ।
ଅପୂର୍ବ ଦ୍ରବ୍ୟ ଶ୍ରୀରାମଙ୍କୁ ଆଣିଦେଲା
ତେବେ ସେ ବ୍ରହ୍ମାର ବ୍ରହ୍ମପଦ ରହିଲା ।୬୦
ସ୍ୱୟେଂ ଲକ୍ଷ୍ମୀ ଯେ ଅଛଇ ଅବତରି
ଶ୍ରୀରାମ ପ୍ରତକ୍ଷେ ଅଟନ୍ତି ଚକ୍ରଧାରୀ ।
ଯେ ମହୀମଣ୍ଡଳେ ଯେ ଅନେକ ଲୋକ
ଅଛି
ଯେ ଦୁହିଂକି ଦେଖିଲେ ଆନରୂପ ଲେଛି ।
କନ୍ୟାକୁ ଯେ ବର ବରକୁ ଯେ କନ୍ୟା
ବିଧାତା ଘଟଣା କଲାକ ରଚନା ।
ଶ୍ରୀରାମଙ୍କୁ ମାତାଗଣେ ପ୍ରଶଂସନ୍ତି ବହୁତ
ଦେଶୀ ପରଦେଶୀ ଦେଖନ୍ତି ଲୋକନ୍ତ ।
ଧାଇଁ ମୁଦୁସୁଲୀ ଅନେକ ଝଡ଼ାଗଣ
ନିରୋପି ଚାହାନ୍ତି ସୀତ୍ୟା ରୂପ ଗୁଣ ।୭୦
ଅଯୋଧ୍ୟା ଯିବାକୁ ଦଶରଥ ସଜ
ବିବିଧ ଛନ୍ଦେଣ ଯେ ବଜାଇ ତୂର ବାଦ୍ୟ ।
ଚାରି ବର ଚାରି କନ୍ୟାଙ୍କୁ ଘେନି ଆସି
ମଣ୍ଡିଲା ରତ୍ନ ଯେ ସିଂଘାସନେ ବସି ।
କଉଶଲ୍ୟା କୈକେୟୀ ସୁମେତ୍ରା ସହିତେ
ହାନ୍ଦୋଳା ଆରୋହଣ କରନ୍ତି ସମସ୍ତେ ।

ଆବର ଯେତେ ରାଣୀହଂସ ମାନ
ସଜ ହୋଇ ବସିଲେ ଯେ ଯାହାର ଯାନ ।
ରାମ ଦଶରଥ ପାଲିଙ୍କିରେ ବିଜେ
ରଘୁବର ଚଢ଼ି ଲୋମପାଦ ରାଜେ ।୮୦
ବଶିଷ୍ଟେ ବିଶ୍ୱାମିତ୍ରେ ସୁକାସନେ ବସି
ଲଗୁଡି ଚଳାଇ ଯେ ବିଜେ କରି ଆସି ।
ଭ୍ରଥର ମଉଳା ଯେ ଚଢ଼ିଲାକ ହାଥୀ
ସୁମନ୍ତ ରାଜାକୁ ତୋଳି ଧଇଲାକ ଛତ୍ରି ।
ସୁଜାଣ ନାମେଣ ଗଜ ପିଠିରେ ବସିଥାଇ
ଶେତ ଛତ୍ର ଧରି ମନ୍ତ୍ରୀବର ଚଳିଯାଇ ।
ଜାବାଳି ବାମଦେବ ଯେହୁ ସୁକାସନ
ଆବର ଯେତେକ ପାତ୍ର ଅମନାତ୍ୟଗଣ ।
ରଥ ଗଜ ଅଶ୍ୱ କେ ଚଢ଼ିଣ ବିମାନ ।୯୦
ଯେ ଯାହା ଇଚ୍ଛାୟେ ଆରୋହିଲେ ଯାନ ।
ଲୋକର ଗହଳେ ଯାଇତ ବାଟ ନାହିଂ
ମିଥିଳାର ନରନାରୀ ଯାଉଛନ୍ତି ଗୋଡାଇଂ ।
ସୀତ୍ୟା ସଙ୍ଗତେଣ ସଙ୍ଗାତୁଣୀ ଦାସୀ
ଶ୍ରୀରାମ ସୁକାସନ ଦୁଇ ପାଶେ ବସି ।
ଗୋଡ଼ାଇ ଅଛନ୍ତି ଯେ ସ୍ନେହଭର ହୋଇ
ବହୁତ ଶ୍ରୀରାମଙ୍କୁ ଦେଖିବାର ପାଇଂ ।
ଯୁବା ଯୁବତୀ ସେ ମଦନ ଶରେ ବାଇ
ସ୍ନେହଭରେ କେ ଶ୍ରୀରାମଙ୍କୁ କୁଚେ
ଆଉଜାଇ ।
କେ ହାତ ଧରିଣ କେ ସମର୍ପଇ ସୀତ୍ୟା
ଆଜହୁଂ ସୀତ୍ୟାର ରାମ ପିତା ମାତା ।୧୦୦
ଯେମନ୍ତେ ସୁନ୍ଦେରୀ ହୋଅନ୍ତି କାମରେ
ଭୋଳ
ଜାନେକୀର ସଙ୍ଗରେ ରାମଙ୍କୁ କରନ୍ତି
କୋଳ ।
ସଖି ବୋଲି କେ ରାମଙ୍କୁ ଚୁମ୍ବ ଦେଇ
ବିଳସ ଦୃଷ୍ଟିରେ ଯେ ଜଘନ ଆଉଂଶଇ ।
ଲଜ୍ୟା ଛାଡ଼ିଲେ ଯେ ମିଥିଳାର ନାରୀ
ଭୟ ଶଙ୍କା ନାହିଂ ମନେ ତାହାଙ୍କରି ।
ସୀତ୍ୟା ଶ୍ରୀରାମ ବୋଲନ୍ତି ବାହୁଡ଼ିଣ ଯାଅ
କ୍ଷେମେ କଲ୍ୟାଣ ହୋଇଣ ଘରେ ଥାଅ ।

ବାହୁଡ଼ିତ ସତ ନ ବଳଇ କାହାରି
ଝରଝର ନୟନୁ ବହଇ ସଭିଙ୍କରି
ବାରି ।୧୦
କେହୁ ବିକଳେ ଯେ ଅରୁଣ ବର୍ଣ୍ଣ ମୁଖ
ବାହୁଡ଼ି ଯିବାକୁ ମଣଇ ମାହାଦୁଃଖ ।
ସୀତ୍ୟା ବୋଲିଣ କେ ଆଉଂଶଇ ରାମ
ପେଟ
ଯାଉଅଛୁ ବୋଲିଣ କେ ଦେଖାନ୍ତି
କୁଚବେଣ୍ଟ ।
ଆଖି ମାରିଣ କେ ନାସିକା ଡିଆଇଂ
ଯାଉ ଯାଉ କେହୁ ବାଟରୁ ବାହୁଡ଼ଇ ।
ରାମଙ୍କୁ ବୋଲନ୍ତି ସୀତ୍ୟାଙ୍କୁ ଭଲେ ପାଳ
ଶୁଣିଣ ହସନ୍ତି ଯେ ଦଶରଥ ବାଳ ।
ବାହୁଡ଼ି ଯାଅ ନ ଆସ ଦୁଃଖ ପାଇ
କେତେହେଂକ ଦୂରଥିବ ଯେ
ଗୋଡ଼ାଇ ।୨୦
କେ ବୋଲଇ ଆମ୍ଭର ଘରେ ନାହିଂ କାର୍ଯ
ତୋହୋର ସଙ୍ଗରେ ଥିବୁ ରଘୁରାଜ ।
ଦାସୀପଣେ ଥିବୁ ତେତେ ସେବାକରି
ତେବେ ସେ ଆମ୍ଭର ସକଳ ଦୁଃଖ ସରି ।
ଶ୍ରୀରାମ ବୋଇଲେ ଯେ ନୋହଇନା କିଛି
ବାହୁଡ଼ି ଯାଅ ଥୋକାୟେ ଦୁଃଖ ତହିଂ ଅଛି ।
କୁଳବଧୂ ହୋଇ ଯେ ଘରଛାଡ଼ି ଆସ
ଇଷ୍ଟ କୁଟୁମ୍ବ ତୁମ୍ଭର ବୋଲିବେଟି କିସ ।
ନିରାଶ ବଚନ ବୋଇଲେ ଯହୁଂ ରାମ
ଯୁବତୀଙ୍କ ବୁକୁ ହୋଇଲାକ ଦମ
ଦମ ।୩୦
ନିରାଶ ହୋଇଣ ବାହୁଡ଼ିଣ ଯାନ୍ତି
ଥୋକାୟେକ ଦୂରୁଂ ଲେଉଟି ଚାହାନ୍ତି ।
ପ୍ରାଣ ଯିବାବେଳେ ଯେହ୍ନେ ଶ୍ୟରୀର ବିକଳ
ମିଥିଳା ନରନାରୀ ତେସନ ସକଳ ।
ଯେଥିଅନନ୍ତରେ ଦଶରଥ ରାୟେ
ମିଥିଳା ନଗରରୁ କଟକାଇ ଯାୟେ ।
ବିବିଧ ଛନ୍ଦେଣ ଯେ ବାଜଇ ବୀରତୂର
ଆଲମ୍ବ ଚିରାଳ ଯେ ଉଡ଼ଇ ଫରହର ।

ପାଟଛତ୍ର ଘାୟେ ନ ଦିଶଇ ଗଗନ
ହୁଳହୁଳି ଶବଦ ଶୁଭଇ ଘନଘନ । ୪୦
ପୁସ୍ୟର ବିଞ୍ଚଣୀ ଚନ୍ଦନର ଛେରା ଦେଇ
କେହୁ ନବରତ୍ନ ବୃଷ୍ଟିକରି ଯାଇ ।
ହସ୍ତୀଙ୍କର ରାବ ଯେ ଘୋଡ଼ାଙ୍କର ଗର୍ଜନ
ଘଣ୍ଟି ଘାଗୁଡ଼ି ଯେ ବାଜଇ ବିଦ୍ୟମାନ ।
ପାଇକଙ୍କର ଫରି ରାବ ଗୁଣଙ୍କର ଟଙ୍କାର
ରଥଘୋଷ ଘାତ ଅତି ଅଗୋଚର ।
ସ୍ତିରୀଙ୍କର ହୁଳହୁଳି ବ୍ରାହ୍ମଣଙ୍କର ବେଦ
ଆବର ବାଜଇ ବୀରତୂର ବାଦ୍ୟ ।
ସର୍ବରାବ ହୋଇ ଯେକରାବ ହୋଇ ଉଠଇ
ଧୂଳି ଉଡ଼ନ୍ତେଣ ଯେ ଗଗନ ଘୋଟଇ ।୫୦
ବରୁଣ ପୁରୁ ଯେହ୍ନେ ଲକ୍ଷ୍ମୀ ନିଅନ୍ତି ହରି
ସୀତ୍ୟାଙ୍କୁ ଶ୍ରୀରାମ ନିଅନ୍ତି ତେହ୍ନେ କରି ।
ମିଥିଳା କଟକରୁ ସେ ହୋଇଲେ ବାହାର
ବାଟେ ରାଜାମାନେ ଦିଅନ୍ତି ଉପହାର ।
ସେ ଦିନ ବୈଶାଳୀ ପୁରେ ରହିଲେ
ରଜନୀ ପ୍ରଭାତେଣ ତହୁଁ ଚଳିଗଲେ ।
ସୁରନଦୀ ଜିଣି ବିପୁଳ ବନେ ପାଇ
ସେଦିନ ନିଶି ତହିଁ ବିଶ୍ରାମିଲେ ଯାଇ ।
ସିଦ୍ଧବନେ ଯାଇ ରହିଲେ ଆରଦିନ
ବିଶ୍ଵାମିତ୍ରଙ୍କ ଆଶ୍ରମ ସେ ଅତିଅ
ବିତପନ ।୬୦
ଚଉଠି ସମ୍ଭାର ବିଧି ତହିଁ କଲେ
ନିଶି ପ୍ରଭାତରୁ ତହୁଁ ଚଳିଗଲେ ।
ସେଦିନ ଦଶରଥ ଦେଖିଲା ବିପରୀତ
ପର୍ବତ ଉପରେ ପଡ଼ିଲା ନିରିଘାତ ।
ବାମନୟନ ସେ ସ୍ଫୁରଇ ଘନ ଘନ
ଗିଧପକ୍ଷୀ ଉପରେ ଉଡ଼ଇ ପୁନ ପୁନ ।
ମନୁଷ୍ୟ ଶ୍ୟରୀର ଉପରେ ବସଇ ଆସି କାକ
ଉପସର୍ଗ ବି ଯେ ବୋଲନ୍ତି ଥୋକେ
ଲୋକ ।
ଶ୍ରୀରାମର ଆଗରେ ଶୃଗାଳ ରାବ ଦ୍ୟନ୍ତି
କୁହୁଡ଼ି ହୋଇଣ ଆକାଶେ କୁହୁ
ଝଟକନ୍ତି ।୭୦
ସୂର୍ଯ୍ୟଙ୍କର କିରଣ ହୋଇଲା ନିଉନ
କି ଜାଣି ଦିନକର ପୂର୍ଣ୍ଣମୀର ଜହ୍ନ ।
ଧୂମକେତୁ ଉଦୟେ ହୋଇଲା କି ଗଗନେ
ଦିବସେଣ ଉଦେ ହୋଇଲା ତାରାମାନେ ।
କୁହୁଡ଼ି କଲା ପ୍ରାୟେ ନ ଦିଶଇ ଦିବସ
ପ୍ରବଳ ହୋଇଣ ଯେ ବହଇ ବତାସ ।
ଦଶରଥ ବିଚାରେ ଉପସର୍ଗ କଥା
ବଶିଷ୍ଠକୁ ରାଇ ବିଚାରେ ମହାରଥା ।
ଯେ ଶକୁନ୍ୟମାନ ଯେ ବିପରୀତ ଦିଶଇ
ମୋହୋର ମନକୁ ଯେ ଶୁଭ ନ
ଆସଇ ।୮୦
ଅବଶ୍ୟ ବିପରୀତ ହୋଇବାକ ଆଜ
ପ୍ରମାଦ ହୋଇବ ଯେ ମୋହୋର ଯେତେ
ଶୁଭକାର୍ଯ୍ୟ ।
ମୁନିଯେ ବୋଇଲେ ହୋ ଆନ ନାହିଁ କିଛି
ଯେକ କଥାଯେକ ଭ୍ରାନ୍ତ ତୋର ଅଛି ।
କ୍ଷତ୍ରୀଙ୍କର ଅଇରି ଯେ ଅଟଇ ପର୍ଶୁରାମ
ସିଦ୍ଧବନେ ଯେହ୍ନୁ କରିଅଛଇ ଆଶ୍ରମ ।
ସେ ନ ପୁଣ ହୋ ଭେଟ ପଡ଼ିଯାଇ ଆଜ
ତାହାକୁ ଦେଖିଲେ ଯେ ହୋଇବ
ମନ୍ଦକାର୍ଯ୍ୟ ।
ଯେତେ ବୋଲି ତହୁଁ ଯେ କରନ୍ତି ଗମନ
ଧ୍ୟାନେ ବସିଥିଲା ଯେ ରେଣୁକା
ନନ୍ଦନ ।୯୦
ଧ୍ୟାନ ଛାଡ଼ିଲା ଯେ ପ୍ରର୍ଶୁରାମ ମୁନି
ସମାଦି ଭାଜିଲା ଯେ ବୀରତୂର ଶୁଣି ।
ମନେ ବିଚାରଇ ସେ କିସ ଯେ ଶବଦ
ଶର୍ବଣକୁ ଶୁଭଇ ସେ ବୀରତୂର ବାଦ୍ୟ ।
ଆବର କି ବୀରେ ଅଛନ୍ତି ଦେହ ଘେନି
ବୀରନ୍ତ ମାରି ଶୂନ୍ୟ କଲଇ ମେଦିନୀ ।
ପୁଣି ବୀରତୂର ଶୁଭିଲାକ ମୋତେ
କେବଣ ବୀର ପ୍ରତାପୀ ହୋଇଲା ଜଗତେ ।
ପୂର୍ବର କଥାମାନ ନାହିଁକି ସେ ଶୁଣି
ବୀରତୂର ବଜାଇ ଯେ କେବଣ
ଗୁଣ ଘେନି ।୧୦୦
ବୀରଦର୍ପ ଗଂଜନ ମୁଂ ବୀରଙ୍କର ନାଥ
ଯେ ବୀର ବୋଲିବ ଛେଦଇ ତାର ମାଥ ।
ବୀର ବୋଲି ମୁଂ ଯେ ନ ଥୋଇଲି ସୀମା
ଯେତେବୋଲି କୋପକଲାକ ପ୍ରର୍ଶୁରାମ ।
ନିଃଶ୍ୱାସ ଖରତର କାଳସର୍ପ ଜାଣି
ଘନ ଘନ କୋପ ଯେ କରଇ ପ୍ରର୍ଶୁମଣି ।
ବନସ୍ତରୁ ବାହାର ହୋଇ ଦିଶିଲାକ ଋଷି
କଳାମେଘ ବିଦାରିକି ବାହାର ହୋଯେ
ଶଶୀ ।
ଶିରରେ ନାଗବନ୍ଧ ପିଙ୍ଗଳବର୍ଣ୍ଣ ଜଟା
ଶର୍ବଣେ କୁଣ୍ଡଳ କଟିରେ କାଛଟା ।୧୦
କଣ୍ଠେଣ ତୁଳସୀ ରୁଦ୍ରାକ୍ଷମାଳ ସାଜି
ପୁଇଂ ଚାନ୍ଦିଆ ମାଳ ହୃଦରେ ବିରାଜି ।
କୃଷ୍ଣଜିନ ଛାଲ କଟିରେ ଓହାଡ଼ି
ଅଣ୍ଟାଯେଣ ତାହାର ଅଛଇ ଯେ ଭିଡ଼ି ।
କଷାବସ୍ତ୍ର ପରିହରଣ କଟିରେ କାଛଟୀ
ପବିତ୍ର ଉତୁରୀ କରିଣ କୁଶଗଣ୍ଠି ।
ଯାଗ ଯଗ୍ୟଂ ପାଉଂଶ ବିଲୋପନ ଅତିଦୀର୍ଘ
ଦାଢ଼ି
ଫରହର ନିଶ ଅଛଇ ହାଦେ ଉଡ଼ି ।
ପିଠିରେ ପକାଇ ଅଛଇ ବ୍ୟାଘ୍ର ଛାଲ
କପୋଳେ ତିନିଖଣ୍ଡ କରିଅଛି ଭାଲ ।୨୦
ଶ୍ରୋହା ପ୍ରୋକ୍ଷଣି ଯେ କୁଶମନ୍ତ ପୋଥି
କାଖମୂଳରେ ଯେ ଅଧାରି ଗୋଟି ଅଛି ।
ବେଦ କରାଣ୍ଡି ଉଦୁବାଳେକ ବନ୍ଧା
ଖଣନ୍ତି କମଣ୍ଡଳ ବ୍ରହ୍ମଚର୍ଯ୍ୟ ଦୀକ୍ଷା ।
ବାମକରେ ଧନୁ ଡାହାଣେ କୋଠାର
କଣ୍ଠତଟେ ଶୋହିଁ ଅଛି ତ୍ରୋଣଭାର ।
ବୈଷ୍ଣବା ନାମେ କୋଦଣ୍ଡେ ଗୁଣ ଦେଇ
ପଇତା ଛନ୍ଦେଣ ଯେ ଅଛଇ ତା ଲାଗିଂ ।
ନୟନର ତେଜକି ମିଥୁନର ବିଜୁଳି
ଯେଣେ ସେ ଚାହାଇଂ ତେଣେ ଅଗ୍ନି
ଜଳି ।୩୦
ନିଃଶ୍ୱାସ ବହନ୍ତେ ହଲଇ ନାସାର ବିମ୍ବର
ରୋମ ଟାଙ୍କୋରଇ ଓଷ୍ଠ ଥରହର ।

ସମୋହ୍ରକୂଳେ କି ଅଗସ୍ତି ଆସି ହୋଏ
ଦେଖିଣ ସନ୍ୟହିଂ ଯେ କଲେ ମହାଭୟେ ।
ପ୍ରଳୟ ଅନଳ ପ୍ରାୟେକ ଦିଶଇ
ସୂର୍ଯ୍ୟ ଦେବତାକି ମେଦିନୀକି ଆସଇ ।
ସଇନି ପଳାଇ ଯାଇ କହିଲେ ନୃପବର
ବଳ ଓଗାଳିଣ ଅଛଇ ଦେବ ପ୍ରଶୁଧର ।
ଶୁଣି ଦଶରଥର ଉଡ଼ଇ ସାହାସ
ଶ୍ୟରୀର କମ୍ପଇ ଖର ନିଶ୍ବାସ ।୪୦
ବିହି ସୁମରି କପାଳେ ହାଥ ମାରଇ
ବଶିଷ୍ଠ ମୁଖଚାହିଂ ଶୋକ ଯେ କରଇ ।
ଭୋ ମୁନି ଶୁଣିଲକି ବିପରୀତ ବାଣୀ
ଆଗେ ଓଗାଳିଣ ଅଛଇ ପ୍ରଶୁମଣି ।
କିମ୍ପା ଅଇଲେ ଯେ କାରଣ ଯେଥେ କିସ
ଯେଥକୁ ଉପାୟେ ମୋତେ କହ ବ୍ରହ୍ମଶିଷ ।
ରୋଷଭର ହୋଇ ଅଛଇ ପୁଣ ଆସି
ଯେ ମୋହୋର ପୁତ୍ରକୁ ନ ପୁଣ ଯାଇ ନାଶି ।
କି ବୁଧି କରିବି କହସି ବିଚାରି
ଶୁଣିଣ ବୋଲଇ ବଶିଷ୍ଠ ତପଚାରୀ ।୫୦
ପ୍ରଶୁ ଅଇଲାକ ବୀରତୂର ଶୁଣି
ଚାଲ ପ୍ରବୋଧ କରିବା ନୃପମଣି ।
ଯେବଣ ଉପସର୍ଗ ଦେଖିଲୁ ତୁ ଆଜ
ପ୍ରତକ୍ଷେ ଆସି ତୋତେ ଫଳିଲା ମହାରାଜ ।
ମୁହିଂ ଯେ ବୋଇଲି ପ୍ରଶୁ ଯେଥେ ଥାଇ
ତାହାକୁ ଯେଥେ ଭେଟ ନୋହିଲେ ଭଲହୋଇ ।
ଦଇବର କଥା କେ କରିବ ଆନ
ଚାଲ ପ୍ରବୋଧିବା ରେଣୁକା ନନ୍ଦନ ।
କଥା ହୁଅନ୍ତେଣ ମିଳିଲେ ପ୍ରର୍ଶୁଧାରୀ
କାଳଦଣ୍ଡ ପ୍ରାୟେକ ଅଛଇ କୋଠାରୀ ।୬୦
କୋପ କରିଣ କାମୋଡ଼ଇ ଅଧର
ରାଗେଣ ଦେହ କମ୍ପଇ ଥରହର ।
ଦେଖି ଦଶରଥ ଯାନରୁ ଉତୁରି
ଭୃଗୁପତି ଚରଣେ ନମସ୍କାର କରି ।

ପୁଣ ଉଠଇ ପୁଣ ପାଦେ ପଡ଼ଇ
କାର୍ପୁନ ହୋଇଣ ବେନିକର ଯୋଡ଼ଇ ।
ଭୋ ମୁନି ଦିଶିଲା ଯେ ମୋହୋର ପୁନ୍ୟ
ଯହୁଂ ଦେଖିଲି ମୁଂ ଯମଦଗ୍ନିର ନନ୍ଦନ ।
ଭୃଗୁକୁଳ ମଣ୍ଡନ ତପୀଙ୍କର ଶ୍ରେଷ୍ଠ
କ୍ଷତ୍ରିଙ୍କର ଯମ ତପେଣ ଗରିଷ୍ଠ ।୭୦
ପ୍ରାକର୍ମେଣ ସାଚା ଗରିଷ୍ଟେ ଇଶ୍ବର
ବଳେଣ ଅକଳିତ କୋପେଣ କୃପାର ।
ଦୟାୟେଣ ଧର୍ମ ସହନ୍ତେଣ ମେଦିନୀ
ଜୟ ଜୟ ପ୍ରର୍ଶୁଧର ମହିମା ତୋର ଧନି ।
ଯେତେକ ଯେ ପାପ ଥିଲା ଯେ ମୋହୋର ଅଙ୍ଗେ
ତୋତେ ଦେଖିଣ ଯେ କଲି ଗଙ୍ଗେ ।
ବ୍ରହ୍ମେଣ ବ୍ରହ୍ମ ତୁ ଯୋଗେଣ ଯୋଗେଶ୍ବର
କ୍ଷତ୍ରୀବୃତ ପଣେ ଅଟୁ ତୁ ଚକ୍ରଧର ।
ମୋହୋର ଉସବ ଯେ ପୁତ୍ରଙ୍କର ବିଭା
ଦୟାକରି ଦେଖି ଅଇଲୁ ତୁ ଅଂବା ।୮୦
ଶୁଣି ରୋଷଭରେ ହସଇ ପ୍ରଶୁପାଣି
ଯେଥକୁଟି ଅଇଲି ବୀରତୂର ଶୁଣି ।
ଯେ ମହୀମଣ୍ଡଳେ ତୁ ଅଟୁ ମହାରାଜା
ମୋହୋର ଆଗେ ଆସି ବଜାଇଲୁ ବାଜା ।
ତୋ ତହୁଂ କ୍ଷତ୍ରୀକେ ଅଛି ଆଉ ଆନ
ଅତିବଡ଼ ରାଜା ତୁ ଅଯୋଧ୍ୟା ରାଜନ ।
ଯେତେକ ରାଜା ଥିଲେ ମୃତ୍ୟୁପୁରେ
ସବୁହୁଂ ଉତ୍ତମ ତୁ ଅଟୁ ନୃପବରେ ।
ବୀରତୂର ବଜାଇ ସାଧୁଅଛ ମହୀ
ରବିତଳେ ସମ ନୋହିବେ ତୋତେ କେହି ।୯୦
ଆଜ ପରୀକ୍ଷ କରିବା ନା ତୋହୋର ଯେ ବଳ
ପ୍ରଶୁଘାୟେ ମୁଣ୍ଡ ହୋଇବ ବେନିଫାଳ ।
ତେବେ ସେ ବୋଲିବା ତୁ ହୋ ବଡ଼ାଇ ନୃପତି
ଯେହାହୁଂ ସାମାନ୍ୟ ନାହିଂ କେହି କ୍ଷତ୍ରୀ ।

ସଦାଶିବର ଧନୁ ଭାଙ୍ଗିଲା ଯେବଣହିଂ ପୁତ୍ର
ସେ ତୋହୋର କାହିଂ ବୋଲି ବୋଇଲେ ଭୃଗୁଗୋତ୍ର ।
ତାହାର ବଳେ ସେ ବଜାଉ ବୀରତୂର
କାହିଂଅଛି ପୁତ୍ର ତୋ ଦେଖିବା ନୃପବର ।
ଯେତେବୋଲି ପ୍ରଶୁ ଦଣ୍ଡେ ଯାଇ ପଶଇ
ଯେଣେ ଯିବ ତେଣେ ଦଣ୍ଡଭଗ୍ନ ଦିଶଇ ।୧୦୦
ରଥ ଗଜ ଅଶ୍ବେ ପାଇକେ ପଳାନ୍ତି
ଦୃଷ୍ଟି ପସର ଯାୟେ କେହି ନ ରହନ୍ତି ।
କେ ବୋଲଇ କୋଠାର ନ ପିଟଇ ପୁଣି
କେ ବୋଲଇ ନ ପୁଣ ପକାଇ ଶିର ହାଣି ।
କେ ବୋଲଇ ନ ପୁଣ ନୟନେ ଦହଇ ଦଣ୍ଡ
କେ ବୋଲଇ ପୁଣ ନ କାଟଇ ମୁଣ୍ଡ ।
କେ ବୋଲଇ ଆହୋ ଆଜ ନେବ ପ୍ରାଣ
ଭେଟ ପଡ଼ିଲା ଯହୁଂ ଦ୍ବୁତୀୟ ଯମରାଣ ।
ପଳାବନ୍ତି ସଇନି ପଛକୁ ନ ଚାହିଂ
ଝାଡ଼ବାଡ଼ ଓହାଡ଼େ ରହୁଛନ୍ତି ଯାଇ ।୧୦
ବଶିଷ୍ଠ ବିଶ୍ବାମିତ୍ର ଦଶରଥ ରାୟେ
ଯେଣେ ଯାୟେ ପ୍ରଶୁ ତେଣେ ସେ ଗୋଡ଼ାୟେ ।
ଶ୍ରୀରାମ ସନିଧ୍ୟେ ମିଳିଲାକ ଯାଇଂ
ପ୍ରଶୁ ଉଭାରିଲା କୋପମୁଖ ହୋଇ ।
ଦଶରଥ ରାଜା ହୋଇଲାକ ଆଗ
ଭୋ କ୍ଷତ୍ରିବର ତୁ ଛାଡ଼ ଛାଡ଼ ରାଗ ।
ଅପୁତ୍ରିକ ପୁତ୍ର ମାରିବ କେବଣ ସଧେ
ନିନ୍ଦା ପାଇବନା ତ୍ରୈଇଲୋକ୍ୟର ମଧ୍ୟେ ।
ସୂର୍ଯ୍ୟବଂଶ ତୋତେ ନୁହଇ ନା ଦୋଷୀ
କିମ୍ପାଇଂ ପୁତ୍ରକୁ ମୋର ପକାଇବୁ ନାଶି ।୨୦
ଯେହାକୁ ମାଇଲେ ଯେଠାରୁ ବଂଶ ସରଇ
ଏତେବୋଲି ରାଜା ପ୍ରଶୁପାଦେ ପଡ଼ଇ ।
ଦନ୍ତେ ତିରଣ ଧରି କରଇ ଦଇନି
ବେଳେକ ରକ୍ଷାକର ମୋତେ ବ୍ରହ୍ମମୁନି ।

ପୁଅନ୍ତ ଛାଡ଼ି ମୋତେ ପକା ମାରି
ମୋର ଦୋଷ ନାହିଁ ତୋତେ ତପଚାରୀ ।
ରାଜାର ପ୍ରବୋଧ ନ ଘେନଇ ଋଷି
ପୁଣି ଶ୍ରୀରାମ ଛାମୁରେ ମିଳେ ଆସି ।
କୋପେଣ ବୋଲଇ ତୁ ଶୁଣ ରଘୁନାଥ
ଈଶ୍ୱର ଧନୁ କେମନ୍ତେ କଲୁ ହତ ।୩୦
ଇନ୍ଦ୍ରହିଁ ତୋଳି ନ ପାରଇ ତାହା
ସାମାନ୍ୟ ବଳ କି ବହେ ତୋର ବାହା ।
ମେରୁହୁଂ ଗରୁ ସେ ବଜ୍ରହୁଂ ଆଣ୍ଡ ଅଟଇ
ଯେ ତୋର ଭୁଜ ଲାଗି ସେ ଧନୁ ତୁଟଇ ।
ଯେବଣ ଧନୁରେ ତ୍ରିପୁରା ପ୍ରାଣହାରୀ
ତାହା ହାଦେ ଭାଙ୍ଗିଲୁ ତୁ ଦୁଇଖଣ୍ଡ କରି ।
ଦଶରଥ ବୋଲନ୍ତି ତୁ ଶୁଣସି ଶ୍ରୀରାମ
ପ୍ରଶୁଧରଟି କ୍ଷତ୍ରିଙ୍କର ତମ ।
ଏହାଙ୍କ ଚରଣେ ତୁ ନମସ୍କାର କର
ଏହା କଲ୍ୟାଣେ ତୋତେ ଐଶ୍ୱର୍ଯ୍ୟ
ଅପାର ।୪୦
ଶୁଣିଲେ ଶ୍ରୀରାମ ପିତାଙ୍କର ଯେସନେକ
ବାଣୀ
ସୁକାସନୁ ଓହ୍ଲାଇ ଆସନ୍ତି ରଘୁମଣି ।
ଶ୍ରୀରାମ ସୀତ୍ୟାଙ୍କୁ ଛାଡ଼ି ତଳେ ଉଭା ହୋନ୍ତି
ତୁମେଭ ପ୍ରର୍ଶୁରାମ ବୋଲିଣ ବୋଲନ୍ତି ।
ଅପାର କାଳର ତ ପୁରାତନ ଋଷି
ଶୁଣୁଥିଲୁ ଆମ୍ଭେ ଦେଖିଲୁ ନି ଆସି ।
କେବଣ କାରଣେ ଅଇଲ ତପୋବନ୍ତ
କହସି କଥା ତୋର ଶୁଣିମାକ ତଥ୍ୟ ।
ପ୍ରଶୁରାମ ବୋଇଲେ ତୁ ଜନେକର ଘରେ
ଶିବଧନୁ ଭାଙ୍ଗିଲୁ ସୀତ୍ୟା ସ୍ୱୟମ୍ୱରେ ।୫୦
ସେ ଧନୁର ମହିମା ନ ଜାଣୁ ତୁ କିଛି
ମୋହୋର ତହୁଂ ତୁ ଶୁଣ ରଘୁବଛି ।
ବିଶ୍ୱକର୍ମା ଦୁଇ ଧନୁ ନିର୍ମାକଲା
ଯେକ ରଦ୍ର ଯେକ ବିଷ୍ଣୁକଇ ସମର୍ପିଲା ।
ଦୁଇ ଧନୁ ଦୁଇଗୁଣ ଦେଇ ଧରି
ମୋହୋର ଧନୁ ବୋଲି ବୋଇଲେ
ଦେବହରି ।

ଶଙ୍କର ବୋଇଲେ ତୋହାର ଶରାସନୁ
ଅଗୁଳିବଳ ଯେ ବହଇ ମୋର ଧନୁ ।
ବିଷ୍ଣୁ ବୋଇଲେ ତୁ ଶୁଣ ଶୂଳପାଣି
ତୋହୋର ଶାଯେକୁଂ ବଳ ଅଟଇ
ମୋହୋର କୋଦଣ୍ଡପାଣି ।୬୦
ଶୁଣି ମହେଶ୍ୱର ବୋଲଇ କୋପକରି
ଗର୍ବିକରୁ ତୁ ଯେ ନିର୍ବଳ ଧନୁ ଧରି ।
ଯେ ମୋହୋର ଶରାସନ ଅକଳିତ ବଳ
ନାରାଚ ସନ୍ଧିଲେ ଦହି ହୋଇବେ ସକଳ ।
ସଦାଶିବର ବଚନେ ହସିଲେ ମଧୁହାରୀ
ଅଗ୍ୟାଂନ ପଣେ ତୁ ଯେ କହୁ ତ୍ରିପୁରାରି ।
ଯେ ମୋହୋର ଧନୁରେ ତୀକ୍ଷବାଣ ସନ୍ଧି
ଆକର୍ଣ୍ଣ ପରିଯନ୍ତେ ପୂରାଇ ଯେବେ ବିନ୍ଧି ।
ବ୍ରହ୍ମାଣ୍ଡ ନ ରହଇ ସୁର ପୁରୀ ସହିତେ
ଶୁଣିଣ କୋପେ ଯେ ବୋଲନ୍ତି
ଶୂଳହସ୍ତେ ।୭୦
ଦୁଇକୁଳ ଯହୁ ଉଚ୍ଚବାଚ ବାଣୀ
ଦେବ୍‌ତାମାନେ ବୋଇଲେ ହୋ ପରୀକ୍ଷ
ଅଛି ପୁଣି ।
କଳି ନ କର ହୋ ତୁମ୍ଭେ ତ ଯୁଧ କର
ଜାଣିମା କାହାର ଧନୁ ଅଟଇ ବଳିୟାର ।
ସୁରଗଣମାନଙ୍କର ଶୁଣିଣ ସମାଦ
ହରିହର ବେନି ଆରମ୍ଭିଲେ ବାଦ ।
ଧନୁ ଧରିଣ ଯେ ନାରାଚ ବିନ୍ଧନ୍ତି
ଏକକୁ ଆରେକ ଅନ୍ୟୋଅନ୍ୟେ ହୋନ୍ତି ।
ଯହୁଂ ରଣଗୋଳ ବାଜିଲା ଦୁହିଁଙ୍କରି
ଥରହର ହୋଇଣ କମ୍ପିଲା ବସୁନ୍ଧରୀ ।୮୦
ସମୋଦ୍ର ଲହରୀ ହୋଇଲାକ ଥିର
ମେରୁ ଆଦିକରି ଚଳିଲା ଗିରିବର ।
ପବନ ଥମ୍ଭିଲା ନ ବହଇ ଖରେ
ଚନ୍ଦ୍ର ସୋରୂପ ଯେ ହୋଇଲା ଦିନକରେ ।
ଅରଷ୍ଟି ହୋଇଲା ଦେବେ ତୁଷ୍ଟି କଲେ
ଯେ ତୁମ୍ଭର ଯୁଦ୍ଧ ବିଶ୍ରାମ ବୋଇଲେ ।
ଯେଣେ ଆମ୍ଭର ନାହିଁ ପ୍ରୟୋଜନ
ଯେ ତୁମ୍ଭର ଯୁଧ୍ୟ ଦେଖିବାକୁ ନୋହିଲୁ
ଭାର୍ଜନ ।୯୦

ଗୁଣ ନାଦ ଘାୟେ କମ୍ପୁଅଛି ମହୀ
ପଡ଼ିବ ରାସାନ୍ତଳେ ନ ପାରିବ ସହି ।
ତୁହୋ ଶଙ୍କର ନ କର ମନେ ରୋଷ
ବାସୁଦେବର ଧନୁ ବଳେ ଗରୁ ହଂସ ।
ଯେ ସେ ଉତ୍ତମ ସେ ନୋହଇ କନିଷ୍ଟ
ଯେହୁ କନିଷ୍ଟ ସେ ନୁହଇ କେଭେଂ
ଜ୍ୟେଷ୍ଠ ।
ବିଷ୍ଣୁ ସେ ଅଶେଷ ବ୍ରହ୍ମାଣ୍ଡର ପତି
ତାହାର ଆୟୁଧ ଅଟଇ ବଳ ଅତି ।
ଜ୍ୟେଷ୍ଠ କନେଷ୍ଟ ଯେ ସବୁଠାରେ ଜାଣି
କିମ୍ପା ଅବିଚାର କର ଶୂଳପାଣି ।
ଯେହି ଶ୍ରେଷ୍ଠ ହାଦେ ଅଟଇ ଚକ୍ରପାଣି
କିମ୍ପାଇଂ ଅବିଚାର କରୁ ଶୂଳ ପାଣି ।୧୦୦
ଦେବତାମାନଙ୍କର ଯେସନ ବଚନ ପାଇ
ଦୁଇ ଦେବତାୟେ ରହିଲେ ତୋଷ ହୋଇ ।
ସେ ଧନୁ ଘେନିଣ ଦେବ ଶୂଳଧାରୀ
ତ୍ରିପୁର ଦଇତ ପ୍ରାଣଘାତ କରି ।
ଦଇତ ନିବାରିଣ ଦେବରାଜ ତହିଂ
ଅତି ଯତନେ ଧନୁ ଥୋଇଲାକ ନେଇ ।
ବିଷ୍ଣୁର ଶରାସନ ଋଚିକ ମୁନି ହାଥେ
ଥୋଇଲେ ଚକ୍ରଧର ଅତି ଯତ୍ନମତେ ।
ଋଚିକର ତନୟେ ଯମଦଅଗ୍ନି ଋଷି
ସହସ୍ର ଅର୍ଜ୍ଜୁନ ମୋ ପିତାକଇ ନାଶି ।୧୦
ସେ କୋପୁଂକରି ମୁଂ ସଂସାର ନାଶକଲି
ବାଳବୃଦ୍ଧା ଛାଡ଼ି ମୁଂ ସକଳ ମାଇଲି ।
ହଇ ହଇ ବଂଶେ ସହସ୍ରାଅର୍ଜ୍ଜୁନ
ଅଦୋଷେ ପିତାଙ୍କୁ କଲାକ ନିଧନ ।
ତେଣୁକରି କ୍ଷତ୍ରୀଙ୍କର ମୁହିଂ କାଟିଲଇଂ ଶିର
ଯେକାବେଳେ ନୁହଇଂଟି ଯେକୋଇଶ
ବାର ।
କ୍ଷତ୍ରିଙ୍କ ରକତେ ମୁଂ କରଇ ତର୍ପଣ
ତେଣେ ସେ ଶାନ୍ତି ମୋର ହୋଇଲେ
ପିତୃଗଣ ।
ଯେ ତୋହୋର ପିତା ଅଟଇ ଦଶରଥ
ସୂର୍ଯ୍ୟବଂଶ ବୋଲି ଯେହାର ନ ଛେଦିଲି
ମାଥ ।୨୦

ଦଶରଥ ରାଜା ଅପୁତ୍ରିକ ହୋଇଥିଲା
ତେଣେ ମୋହୋର ଦୟା ଯେ ବସିଲା ।
ଯେହାର ପୁତ୍ର ହୋଇ ଈଶ୍ୱର ଧନୁ ଭାଙ୍ଗି
ବୀରଦୂର ବଜାଇ ଆବର ମୋତେ ଗଂଞ୍ଜି ।
ଯେ ମୋହୋର ଧନୁ ଘେନସି ତୋହୋର
କରେ
ତୋହୋର ବଳ ଆଜ ଜାଣିମା
ଯେହିଠାରେ ।
ପଛେ ଯୁଧ୍ୟ କରିବା ଜାଣିମାନା ପରୀକ୍ଷ
ଡରିଲେ କାର୍ପୁନ୍ୟ ତୁ ହୁଅ ରଘୁବଛ ।
ଜନେକ ଝିଅ ଆଣିଲୁ ବିଭାହୋଇ
ଯେ ମହୀମଣ୍ଡଳେ ମହିମା ଦେଖାଇ ।୩୦
ସେ ଭୁଜଯୁଗଳେ କରିବୁ ଆଲିଙ୍ଗନ
ତେଣେ ସେ କଣ୍ଠକର ହୋଇଲା
ଆବରଣ ।
ମୁକୁତାମାଳ ଅଛି ହାର ହୋଇ
ତେଣୁ ସେ ଗଳାକୁ ଦିଶଇ ଶୋଭାପାଇ ।
ଆଜ ଦୁଇକଥା ରୁହାଇବାକ ଯେକ
ପରଶୁଘାଯେ ଯେବେ ନ ଛିଡ଼ଇ ବେକ ।
ତେଣେ ସେ ସୀତ୍ୟାକୁ ନେଇଣ ଭୋଗକର
ନବଯଉବନ ଆବର ରତ୍ନହାର ।
ରାମ ବୋଇଲେ ଶୁଣ ଭୃଗୁପତି
କରସି ଯେ ଅବା ତୋହେର ମିଳଇ
ଯୁଗତି ।୪୦
ଯେ ମୋହୋର ଶିର ଛେଦିବୁ କୋଠାରେ
ତୋତେ କୋପମନ ନାହିଂ ମୋର
ପ୍ରଶୁଧରେ ।
ଗୋରୁ ବ୍ରାହ୍ମଣେ ମୁଂ ନ କରଇ ରୋଷ
ତେଣୁ ସେ କୋପ ତୋତେ ନାହିଂ
ଅମରୀଷ ।
ଯାହା ବୋଲିବୁ ତାହା ପାଳିବଙ୍କ ଆଗ୍ୟାଂ
ଅଳପମାତ୍ରେ ମୁଂ ନ କରିବି ଅବଜ୍ଞା ।
ଶ୍ରୀରାମର ବଚନ ଯେସନ ଆର୍ଭ ଶୁଣି
ଧନୁ ବଢ଼ାଇ ଦେଲେ ଭୃଗୁମଣି ।
ଯେ କୋଦଣ୍ଡ ଯେବେ ଦେଇପାରୁ ଗୁଣ
ଜାଣିମା ତୋହୋର କେତେ ଅଛି
ପ୍ରାଣ ।୫୦
ଶରାସନ ଥିଲା ପ୍ରଶୁରାମର ହସ୍ତେ
ଦକ୍ଷିଣ ଭୁଜେ ତାହା ନେଲେ ରଘୁନାଥେ ।
ବାମ ଭୁଜେ ଧରି ନଦିଲେ ବାମପାଦ
ଗୁଣ ଦିଅନ୍ତେ ପ୍ରଶୁରାମ ହୋଇଲେ ତବଦ ।
ସୀତ୍ୟା ଚାହିଂଥିଲେ ସୁଖାସନେ ବସି
ପୁଣ ତ ସପତଣୀ ହୋଇଲା ମୋତେ
ଆସି ।
ମୋହୋର ପିଅର ସେ ଧନୁ ସମର୍ପିଲା
କୋଦଣ୍ଡ ଆମଞ୍ଚନ୍ତେ ମୋତେ ବିଭାକଲା ।
ଯେବେ ତ ଯେ ଋଷି ଦିଅଇ ଶରାସନ
ଚାପ ଆମଞ୍ଚିଲେ ଦେବ କନ୍ୟାଦାନ ।୬୦
ମାସେ ପାଖେ ହେ ନୋହିଲା ମୋତେ ସୁସ୍ତ
ପୁଣିତ ସପତଣୀ ବିହିଲା ବିଧାତ ।
ଶ୍ରୀରାମ ସତ୍ୟ କଲେ ଅଗ୍ନି ଛୁଇଂ
ନିଶ୍ଚଯେ ସପତଣୀ ମୋତେ ନ କରିବାର
ପାଇଂ ।
ଯେବେ ତ ଧନୁ ରାମ ଧରନ୍ତି ଆଗୁସାର
ଅସତ୍ୟ ପୁରୁଷଙ୍କର ଯେମନ୍ତ ବେଭାର ।
ଯେମନ୍ତ କଥା ସତୀ ମନେ ବିଚାରିଲେ
ବିହି ଯାହା ଲିହି ଅଛଇ ବୋଇଲେ ।
ଯେଥୁଅନନ୍ତରେ ଶ୍ରୀରାମ ଧନୁଧରି
ଦକ୍ଷିଣ କର୍ଣ୍ଣ ପରିଯନ୍ତେ ଆଣିଲେ
ଉଛୁଡ଼ି ।୭୦
ପ୍ରଶୁ ନାରାଚେ ଦେଲେକ ବଢ଼ାଇ
ତାହା ରଘୁନାଥ ଗୁଣରେ ବସାଇ ।
ହସିଣ ବୋଲନ୍ତି ପ୍ରଶୁ ବିନ୍ଧିବା କାହିଂକି
ଇହଲୋକ ପରଲୋକ ବୋଲିବ ଯହିଂକି ।
ଭୃଗୁପତି ବୋଇଲା ପରଲୋକେ ଭେଦ
ଯେ ମୋହୋର ଦୁସ୍ତର ପାପଭାର ଛେଦ ।
ବ୍ରାହ୍ମଣ ହୋଇଣ ମୁଂ କ୍ଷତ୍ରିୟ ବଧ କଲି
ଅହନ୍ତାଯେ ଅନେକ ମନିଷ୍ୟ ମାଇଲି ।
ସ୍ୱର୍ଗକୁ ଗଲେ ମୋତେ ଲାଗିବ ଅବଶ୍ୟ ପାପ
ତୁ ସେ ଶ୍ରୀରାମ ହର ମୋହୋର ତାପ ।୮୦
ପରଲୋକ ମୋ ଛେଦ ରଘୁସାଇଂ
ଯେମନ୍ତେ ସ୍ୱର୍ଗପୁରେ ନ ପଶଇ ମୁହିଂ ।
ଶୁଣିଣ ଶ୍ରୀରାମ ପେଷିଲେକ ଶର
ବେଗେ ଛେଦି ପକାଇଲେ ପ୍ରଶୁ
ପାପଭାର ।
ଉଛୁଡ଼ିବାର ଘାଯେ ଭାଙ୍ଗିଲା କୋଦଣ୍ଡ
ମଧଠାବରୁ ସେ ହୋଇଲା ବେନିଖଣ୍ଡ ।
ସୋର୍ଗେ ଦେବତାଯେ ହୋଇଲେ ଆନନ୍ଦ
ହୁଳହୁଳି ଦିଅନ୍ତି ଅପଛରୀବୃନ୍ଦ ।
ପୁଷ୍ୟ ବୃଷ୍ଟିକଲେ ଦୁହିଂଙ୍କର ଶିରେ
ଦୁନ୍ଦୁଭି ବଜାଇଲେ ବିବିଧ ପ୍ରକାରେ ।୯୦
ଯହୁଂ ଚିରଂଜୀବୀ ହୋଇଲା ପ୍ରଶୁଧର
ଶ୍ରୀରାମଙ୍କୁ ପ୍ରଶଂସା କଲାକ ଅପାର ।
ତୁହି ସେ ନାରାୟେଣ ହୋଇଅଛୁ ଜାତ
ବିଷ୍ଣୁ ନୋହିଲେ କି ଯେଡ଼େକ ସାମରଥ ।
ତାଡ଼େକୀ ମାରିବାର ଶୁଣିଲି ଯେବଣ ଦିନ
ବୋଇଲି ଅବତାର ହୋଇଲେ ଭଗବାନ ।
ଯହୁଂ ରକ୍ଷାକଲ ଯାଗ ବିଶ୍ୱାମିତ୍ର
ତହୁଂ ଜାଣିଲି ମୁଂ ଶ୍ରୀରାମ ପଦ୍ମନେତ୍ର ।
ପାଦଲାଗି ଯହୁଂ ଅହିଲା ହୋଇଲା ମୋକ୍ଷ
ବିଚାରିଲି ଶ୍ରୀରାମ ପ୍ରତକ୍ଷେ ଶ୍ରୀବଛ ।୧୦୦
ଶିବଧନୁ ଯହୁଂ କଲୁ ଆମଞ୍ଚନ
ବୋଇଲି ଅବତାର ହୋଇଲେ
ମଧୁସୋଦନ ।
ଯେବେ ଦେଖିଲି ପ୍ରତ୍ୟକ୍ଷେ ବେନିଡ଼ୋଳେ
ତୁ ସେ ପରମବ୍ରହ୍ମ ଦଶରଥ ବାଳେ ।
ନିଶ୍ଚଯେ ଜାଣିଲୁତ ବିଷ୍ଣୁ ଅବତାର
ତୋହୋରେ ସେ ଉଶ୍ୱାସ ହୋଇବ
ମେଦିନୀର ଭାର ।
ପ୍ରଶୁରାମର ମୁଖୁଂ ଯେସନେକ ଶୁଣି
ଆନନ୍ଦେ ଉତସଲ୍ୟ ରଘୁକୁଳମଣି ।
ଭୃଗୁପତିର ପାଦେ କରନ୍ତି ନମସ୍କାର
ପୁଣ ପୁଣ ପ୍ରଶଂସା କରନ୍ତି ଶତେବାର ।୧୦
ଭୋ ପ୍ରଶୁରାମ କର ମୋତେ ଦୟା
ପୂର୍ବର ତପ ଦେଖିଲି ସୁନ୍ଦର ତୋର କାୟା ।

ତୁ ସେ ବ୍ରହ୍ମବେତ୍ତା ଯମଦଗ୍ନି ସୁତ
ପୁଣ ପୁଣ ପ୍ରଶଂସା ରାମ କରନ୍ତି ବହୁତ ।
ବୈଷ୍ଣବୀ ଧନୁ ବିଷ୍ଣୁ ଦେଇଥିଲା
ଋଚିକ ମୁନିଙ୍କର ଯାହା ସମର୍ପିଲା ।
ସେ ଚାପ ପ୍ରଶୁରାମ ଶ୍ରୀରାମଙ୍କୁ ଦେଇଂ
ଦିବ୍ୟା ଅସ୍ତ୍ର ଅକ୍ଷୟେ ତ୍ରୋଣ ସମର୍ପଇ ।
ଯେହା ଘେନି ରାମ ତୁ ଯେ କର
ଦେବକାର୍ଯ୍ୟ
ଯେତେବୋଲି ବାହୁଡ଼ଇ ଯମଦଗ୍ନିର
ତନୁଜ ।୨୦
ତପସ୍ଥାନକଇଂ ଚଳିଲା ଗ୍ୟାଂନ ପାଇଂ
ଶ୍ରୀରାମର ହସ୍ତେ କ୍ଷତ୍ରୀବୃତ୍ତ ଦେଇ ।
ଯେସନେକ ଦେଖି ଦଶରଥ ହୋଏ
ଆନନ୍ଦ
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ।
ବଶିଷ୍ଠ ବିଶ୍ୱାମିତ୍ର ହୋଇଲେ ଠରାଠରି
ପ୍ରଶୁରାମ ଜାଣିଲା ପ୍ରତକ୍ଷେ ମଧୁହାରୀ ।
ଯେଥିଅନନ୍ତରେ ରାମ ସୁକାସନେ ବସି
କୋଳେ ଧଇଲେ ଯେ ସୀତା ଶୁଭ୍ରକେଶୀ ।
ଦଶରଥ ରାଜା ଗଜ ଆରୋହଣ କଲା
ବୀରତୂର ବଜାଇ ଆନନ୍ଦେ ଚଳିଗଲା ।୩୦
ସଇନିର ତେଜ କେ ପାରିବାକ କହିତ
ଯହୁଂ ଜିଣିଲା ସେ ରେଣୁକାର ସୁତ ।
ସେଦିନ ରହିଲେ ଅଗମ୍ୟ ବନେ ଯାଇଂ
ଆରଦିନେ ଗଲେ ଗଙ୍ଗା ପାରିହୋଇ ।
ସେଦିନ ଗୋମତୀ ନଦୀରେଣ ରହିଲେ
ରଜନୀ ପ୍ରଭାତୁଂ ତହୁଂ ଚଳିଗଲେ ।
ଅଯୁଧ୍ୟା ରକ୍ଷାକାରୀ ଜାବାଳୀ ହୋଇଥିଲା
ବାରତା ପାଇଣ ନଗ୍ରେ ଉଛବ ସେ କଲା ।
ଘରେ ଘରେ ସୁବର୍ଣ୍ଣ କଳସ ବସାନ୍ତି
ନେତର ଚିରାଳ ଯେ ଉଡ଼ନ୍ତି ପନ୍ତି
ପନ୍ତି ।୪୦
ଦୁଆରେ କଦଳୀ ଦୁଇ ଦୁଇ ଗଛ
ପୂର୍ଣ୍ଣକୁମ୍ଭ ଚୂତପତ୍ର ଶ୍ରୀଫଳ ଦଧିମାଛ ।
ବିଚିତ୍ର ବସନ ମଣ୍ଡିଲେ ଘରେ ଘର

ନାନା ପୁଷ୍ପମାନେ ଲମ୍ବନ୍ତି ନିରନ୍ତର ।
ଠାବେ ଠାବେ ଶୋଭା ଚାମର ଦରପଣ
ଜାଣି ପଟାନ୍ତର ରବିର କିରଣ ।
ଚିତ୍ର ବିଚିତ୍ର ଯେ ଲେଖି ଘରମାନ
ଦାଣ୍ଡ ପହଂରିଣ ସିଞ୍ଚିଲେ ଚନ୍ଦନ ।
କର୍ପୂର ନିଉଡ଼ାଇ ବିଞ୍ଚନ୍ତି ଗନ୍ଧପୁଷ୍ପ
ଖାଲ ଟିକର ସେ ସମତୁଲ ସାଦ୍ରିଶ ।୫୦
ଯେସନେକ ସମୟେ ଶୁଭିଲା ଟମକ
ହରଷ ହୋଇଲେ ଅଯୁଧ୍ୟା ସର୍ବଲୋକ ।
କେ ବୋଲଇ ନିକଟେ ଶୁଭଇ ନିଶାଣ
ସୀତ୍ୟା ଘେନି ରାମ ଆସିବେ ଯେହିକ୍ଷଣ ।
ଯେସନେକ ସମୟେ ଦିଶିଲା ଆଗିଆଣି
ରଥ ଗଜ ଅଶ୍ୱ କେ ପାରିବାକ ଗଣି ।
ଲୋମପାଦ ରାୟେ ଯେ ଆପଣେ ହସ୍ତୀ ଚଢ଼ି
ଆଗଦଣ୍ଡେ ଅଛି ସେ କରେ କୋଦଣ୍ଡ
ଧରି ।
ସରଯୂ ପାରି ହୋଇଲେ ସନ୍ୟବଳ
କଟକେ ପଶନ୍ତେ ଅତିଅ ଚହଳ ।୬୦
ନଗ୍ର ନରନାରୀ ଦେଖୁଣ ଅଛନ୍ତି
ଯେସେ ଲୋମପାଦ ବୋଲିଣ ବୋଲନ୍ତି ।
ଥୋକାଯେକ ବେଳେ ଦିଶିଲେ ଦଶରଥ
ଆରୋହଣ କରିଅଛନ୍ତି ଦିବ୍ୟରଥ ।
କରେ କାଣ୍ଡ କୋଦଣ୍ଡ ସେ ଦିବ୍ୟବେଶ
ହୋଇ
ଶେତଛତ୍ର ଧରାଇଂ ସେ ଆସଇ ନରସାଇଂ ।
ଲକ୍ଷେକ ଶେତଚାମର ତାହାଙ୍କୁ ପଡ଼ଇ
ପାଟଛତ୍ର ଘାୟେ ସୂର୍ଯ୍ୟ ଓହାଡ଼ଇ ।
ଗଜ ଅଶ୍ୱ ରଥ ପାଇକ ନିରନ୍ତର
ସମ୍ବର ହୋଇଣ ଯେ ପ୍ରବେଶ
ନୃପବର ।୭୦
ଜାବାଳୀ କଲ୍ୟାଣ କଲା ଆସି ବାଟେ
ଶ୍ରୀରାମ ଦିଶିଲେ ପଛିଆଣି ଥାଟେ ।
ଭ୍ରଥ ଲକ୍ଷ୍ମଣ ଶତ୍ରୁଘନ ଭାଇ ଚାରି
ରହୁବରେ ବସି ଆସନ୍ତି ନଗ୍ର ଫେରି ।
ଶ୍ରୀରାମର କୋଳେ ଅଛଇ ଦେବୀ ସୀତ୍ୟା

ବିଷ୍ଣୁର ପାଶେ ସେ ବିଷ୍ଣୁର ବନିତା ।
ଲକ୍ଷ୍ମଣ ପତି ପତ୍ନୀ କି ହର ଯେ ପାର୍ବତୀ
ଶତ୍ରୁଘ୍ନ ବରକନ୍ୟା ସ୍ୱରୂପେ କାମରତି ।
ଭ୍ରଥ କି ଇନ୍ଦ୍ର ସେ ଶଚୀ ତାର ନାରୀ
ସ୍ୱୟେଂ ନାରାୟେଣ ଯେ ଚତୁଧା ମୂର୍ତ୍ତି
ଧରି ।୮୦
ନଗ୍ରଲୋକେ ଦେଖି ଦେଖ ପ୍ରଶଂସା କରନ୍ତି
ଆନନ୍ଦଭରେ ବାମା ହୁଳହୁଳି ଦ୍ୟନ୍ତି ।
ଦୁବାକ୍ଷତ ଦେଇ ପୂଜନ୍ତି ବର ଚାରି
ସୀତ୍ୟାକୁ ପ୍ରଶଂସା କରନ୍ତି ନରନାରୀ ।
ବାବୁ ସୁନ୍ଦେରୀ ଯେ ଜନେକ ଦୁଲାଳୀ
ରାମଙ୍କୁ ବରି ଯେଥି ଥିଲା କାହିଂ ବାଳୀ ।
ଭାଇ ଭୟେଣୀ ଜାଣି ଦିଶନ୍ତି ବରକନ୍ୟା
ପୂର୍ବର କଥା ଯେ ଦଇବ ରଞ୍ଜନା ।
ନଗ୍ର ପରିମଳ ବାଜଣା ବାଜଇ
ନିଜ ନବରେ ପ୍ରବେଶ ହୁଅନ୍ତି ଯାଇ ।୯୦
ଦଶରଥ ରାଜାର ମହାଦେଈ ମାନ
ଶୁଭଯୋଗେ ଯାଇ ହୋଇଲେ ନିଜସ୍ଥାନ ।
ଚାରିବଧୂ ଯାଇଂ ପ୍ରବେଶ ଅନ୍ତପୁରେ
ହୁଳହୁଳି ଧ୍ୱନି ପଡ଼ଇ ନିରନ୍ତରେ ।
ଦଶରଥ ରାଜା ନବରେ ବିଜୟେ
ବିଶ୍ୱାମିତ୍ର ମୁନିଙ୍କି ବହୁତ ପୂଜାକୟେ ।
ଭୋ ମୁନି ତୋହୋରେ ମୁଂ ଯେ ହୋଇଲି
କୃତାର୍ଥ
ତୋହୋର ସେ ହେଲା ସକଳ ପୁରୁଷାର୍ଥ ।
ତୁ ସେ ବ୍ରହ୍ମରଷି ବିଦ୍ୟାନ୍ତ ଆକ୍ରେଷିଲୁ
ଜପତପ ମନ୍ତ ବିଦ୍ୟାନ୍ତ ସାଧିଲୁ । ୧୦୦
ମୋତେ ପ୍ରସନ୍ନ ହୋଇଲୁ ତପଚାରୀ
ରାମକଇ ଅନୁଗ୍ରହ କଲୁ ମନ୍ତ୍ରଧାରୀ ।
ବିଶ୍ୱାମିତ୍ର ବୋଇଲେ ଶୁଣ ଦଶରଥ
ଶ୍ରୀରାମ ପ୍ରତକ୍ଷ୍ୟେ ଅଟନ୍ତି ବିଷ୍ଣୁନାଥ ।
ଦଇତ ନିବାରଣ ଦେବ ମଧୁହାରି
ଅବତାର ହୋଇଲେ ମାନେବ ତନୁ ଧରି ।
ସୀତା ପରମ ଲକ୍ଷ୍ମୀ ଚଞ୍ଚଳା ସ୍ୱରୂପ
ରୁଦ୍ର ଅବତାର ସୁମୈତ୍ରାର ସୁତ ।

ଭରଥ ଶଙ୍ଖ ଶତୃଘନ ଚକ୍ର ଅଟଇ
ଯେ କଥା କଉଶିକ ରାଜାଙ୍କୁ ପ୍ରଘଟଇ ।୧୦
ଯେତେ ବୋଲି ମୁନି ଦଶରଥ ହସ୍ତଧରି
ହରଷମନେ କରି ଉଠିଲେ ତପଚାରୀ ।
ନିଜ ଆଶ୍ରମକୁ ଯିବଇଂ ରାୟେ ଆମ୍ଭେ
କୁଶଳ ହୋଇ ରାୟେ ବୃତି ଥାଅ ତୁମ୍ଭେ ।
ଯେତେ ବୋଲି ମୁନି ନବରୁ ବାହାର
ପାଛୋଟି ଆସଇ ଦଶରଥ ନୃପବର ।
ସରଯୂ କୂଳେ ରହଇ କଉଶିକ
ରାଜାଙ୍କୁ ବାହୁଡ଼ାଇଂ ପଠାଇ ଯାଗନିକ ।
ମୁନିର ଚରଣେ ରାଜା ନମସ୍କାର କରି
ଦଶରଥ ରାଜା ଆସଇ ବାହୁଡ଼ି ।୨୦
ନିଜ ନବରେ ରାଜା ପ୍ରବେଶ ହୋଇଲା
ଯାଇଂ
ପୁତ୍ରବଧୂ ଦେଖି ହରଷ ମନ ହୋଇଂ ।
ବିଭାର ବିଧାନ ଯେତେକ ସେ ଥିଲା
ପ୍ରାଶ୍ଚିତ କରିଣ ରାୟେ ସକଳ ପୂରୋଇଲା ।
ଦିନା ଚାରି ଅନ୍ତେ ଯେ ଭରଥକୁ ହକାରି
କୋଳେ ବସାଇଣ ବୋଲନ୍ତି ଦଣ୍ଡଧାରୀ ।
ତୋହୋର ମଉଳା ଯେ ଯୋଧାଜ୍ଜୁରୁ ଅଇଲା
ତୋତେ ନେବବୋଲି ମୋର ଆଗରେ
କହିଲା ।
ଅଜା ତୋତେ ଦେଖିବେ ବୋଲି ଶରଧା
କରିଛନ୍ତି
ଯୋଧାଜ୍ଜୁରୁ ସଙ୍ଗତେ ଚଳନ୍ତୁ ତଡ଼ତି ।୩୦

ଶୁଣି ଭରଥବୀର ହୋଇଲାକ ସଜ
ସଙ୍ଗେ ଘେନିଣ ଅଛଇ ଲକ୍ଷ୍ମଣ ଅନୁଜ ।
ଦୁଇଭାଇ ଆନନ୍ଦେ ଉତସଲ୍ୟ ହୋଇ
ପିତାମାତାଙ୍କୁ ସେ ଓଳଗ ମେଲାଇ ।
ଶ୍ରୀରାମ ଚରଣେ କରନ୍ତି ନମସ୍କାର
ବିନୟ ଭଗତି ହୁଅନ୍ତି ସୀତୟାଙ୍କ ପୟର ।
ରହୁବରେ ବସି ଅଯୁଧ୍ୟାରୁ ଗଲେ
ସାତଦିନେ ଯାଇଂ ପ୍ରବେଶ ହୋଇଲେ ।
କଇକର୍ଭ ରାଜା ସେ ବାରତା ପାଇଲା
ଭରଥ ଆସିବା ଶୁଣି ନଗ୍ର ମଣ୍ଡାଇଲା ।୪୦
ଯୋଧାଜ୍ଜୁରୁ ସହିତ ପ୍ରବେଶ ହୋଇଲେ
ଯାତି
ଦେଖିଣ ଆନନ୍ଦ ସେ ହୋଇଲା ନୃପତି ।
ଭରଥକଇ କୋଳେ ଘେନିଲେ ନୃପମଣି
ଶତୃଘନକଇ ଜାନୁରେ ବସାଇଲେ ଆଣି ।
ମୁଖରେ ଚୁମ୍ବ ଦେଇ କରଇ ପ୍ରଶଂସା
ତୁ ସେ ଭରଥ ମୋର ଜୀବନର ଆଶା ।
ଆଜ ସେ ଦୁଃଖ ବାବୁ ଗଲା ମୋର ପାର
ନୟନେ ଦେଖିଲି ଆଜ ଦୁହିତାର କୁମର ।
ରାମ ଲକ୍ଷ୍ମଣଙ୍କର ପୁଛଇ ବାରତା
କୁଶଳେ ଅଛନ୍ତି ନା ରାଜା ଦଶରଥା ।୫୦
ରାଣୀହଂସ ନୃପତି ସାମନ୍ତ ପାତ୍ର
ଯେମାନେ ସମସ୍ତେ କୁଶଳେ ଅଛନ୍ତି ନା
ଭରଥ ।

ଯେସନେକ ସମୟେ ରାଜା ଭିତରକୁ ଯାଇ
ଭରଥକୁ କୋଳକଲେ ଦେଖିଣ ତାର ଆଇ ।
ମୁଖେ ଚୁମ୍ବ ଦେଇଣ ଭୁଂଜାଇଲେ ଭାତ
ଶୁଭେ ଭରଥବୀର ରହିଲେ ବରଷ ସାତ ।
ଅଯୁଧ୍ୟା ପୁରେ ଦଶରଥ ରାୟେ
ଅନେକ ସୁସ୍ତେ ରାଜ୍ୟ ପାଳି ଥାୟେ ।
ଶ୍ରୀରାମ ସୀତ୍ୟା ଘେନିଣ ଭୋଗକରି
ଈଶ୍ୱରେ କହନ୍ତି ଗୋ ଶୁଣ ଶଙ୍କେମ୍ବରୀ ।୬୦
ଯେ ସେ ଆଦ୍ୟକାଣ୍ଡ ସାମବେଦୁଂ ଜାତ
ଯାହା ସେ ବ୍ରହ୍ମା କଲାକ ସମ୍ଭୂତ ।
ବାଲମ୍ପିକ ମହାମୁନି ପ୍ରସନ ହୋଇଲା
ତେଣୁ ସେଯେ ଗ୍ରନ୍ଥ ମୋତେ ପ୍ରସରିଲା ।
ଯେଣେ ସେ ସଂସାର ହୋଇଲା ମୁକତ
ମୁଂ ଯେହା ଶରଧା କଲି ସୁମରିତ ।
ଚର୍ମ ନୟନେ ଯହୁଂ ଦେଖିଲି ଜଗନ୍ନାଥ
ତେଣୁ ସେ ବଖାଣିଲି ଆଦ୍ୟକାଣ୍ଡ ଗ୍ରନ୍ଥ ।
ଶୁଣିମା ସୁଜ୍ଞଜନେ ନ ଧରିବା ଦୋଷ
ମୁଂ ଛାର କେତେ ଯେ ଗ୍ରନ୍ଥ କରିବି
ଉପନେସ ।୭୦
ବଳରାମ ଦାସ ମୁଂ ଜଗନ୍ନାଥ ପ୍ରସନେ
ଜଗମୋହନ ରାମାୟଣ ସୁମରିଲି
ମନେ ।୭୧

**ଶ୍ରୀ ଜଗମୋହନ ରାମାୟଣ**
**ଆଦ୍ୟକାଣ୍ଡ ସଦାଜୟେ ସମ୍ପୂର୍ଣ୍ଣ ।**

# ଅଯୋଧ୍ୟା କାଣ୍ଡ

## ଶ୍ରୀ ବିଘ୍ନେଶ୍ୱରାୟ ନମଃ ।

ବନ୍ଦଇ ଶ୍ରୀଜଗନ୍ନାଥ ନୀଳଗିରି ବାସୀ
ନୀଳ ସୁନ୍ଦର ମୁଖ ଶରଦର ଶଶୀ ।
ଅପୂର୍ବ ନୟନ ବେନି ଚନ୍ଦ୍ର ସୂର୍ଯ୍ୟ ଜାଣି
ସୁରଙ୍ଗ ଅଧର ନଉକା ଭବ ପାଣି ।
ପ୍ରଚଣ୍ଡ ହୁତାଶନ ଜାଣି ଦିଶଇ ସଟଂରେଖ
ସୁବର୍ଣ୍ଣ ତିଳେକ କପୋଳେ ଜଡ଼ିତ ।
ଆନନ୍ଦ ସମୋଦ୍ର ଲହରୀ ପ୍ରାୟେ ନାସା
ଭାବେଣ ଭଗତ ଜନ ପୂରାଇଲେ ଆଶା ।
ବଳରାମ ଦାସ ମୁଂ ସର୍ବଦା ତୋହୋର
ଜଗନ୍ନାଥ ପିଅର କମଳା ମାତା ମୋର ।୧୦
ବନ୍ଦଇ କମଳା ଦେବୀ ବିଷ୍ଣୁର ପାଟରାଣୀ
ଅନନ୍ତ କୋଟି ବ୍ରହ୍ମାଣ୍ଡର ତୁହି ଠାକୁରାଣୀ ।
କମଳଲୋଚନୀ କମଳ ଯୋଗ ଧାରେଣୀ
କମଳବଦନୀ ତୁମ୍ଭେ ସଂହାର କାରେଣୀ ।
କମଳ ଆସନୀ ପ୍ରକଟ କମଳ ଆଖି
ଦରିଦ୍ର ବିଧ୍ୱଂସନୀ ତୁ ନାରାୟଣ ସଖୀ ।
ସିନ୍ଧୁର ଦୁଲଣୀ ତୋ ନାମ ସର୍ବଭୂତା
ମେଧା ସୁମେଧା ତୁ ଜଗତ ଜନମାତା ।
ତୁ ସେ ସରସ୍ୱତୀ ତୁ ସେ ବିଘ୍ନେଶ୍ୱରୀ
ପବିତ୍ରମଏ ପୁରେ ମାଗୋ ତୁହି ସେ
ଅଧିକାରୀ ।୨୦
ତୁ ସେ ପଦ୍ମାଳୟା ପଦ୍ମିନୀ ପଦ୍ମାବତୀ
ପରଲୋକ ବନ୍ଧୁ ତୁ ପୃଥ୍ୱୀର ଦୋହିତୀ ।
ପରମ ପୁରୁଷୋତ୍ତମର ଅଟୁ ତୁ ଘରଣୀ
ପାଟ ଗଜ ବାହିନୀ ପୃଥ୍ୱୀର ଧାରେଣୀ ।
ପରମ ବ୍ରହ୍ମଂ ଜ୍ଞାନୀ ତୁହି ସିନ୍ଧୁରାଣା ପୁତ୍ରୀ
ତ୍ରୈଲୋକ୍ୟର ପାଳେଣୀ ତୁ ଚାରୁ
ଦୀର୍ଘନେତ୍ରୀ ।
ତୁ ଦେବୀ ସୁଧର୍ମା ଗୋ ମହା ଭାଗ୍ୟବନ୍ତ
ତୁ ସେ ମହାବିଦ୍ୟା ପରମ ଜ୍ଞାନ ତତ୍ତ୍ୱ ।
ତୁ ଦେବୀ ଚଞ୍ଚଳା ତୁ ଚତୁର୍ଭୁଜର ବାମା
ସର୍ବ ସୁଲକ୍ଷଣୀ ତୁ ଯେ ଜନେକର
ଜେମା ।୩୦
ସର୍ବାଙ୍ଗ ସୁନ୍ଦର ତୁ ବିଷ୍ଣୁର ହୃଦବାସୀ
ଜୟ ଜୟ ରୁକ୍ମିଣୀ ତୁ ଜୟ ଶୁଭ୍ରକେଶୀ ।
ଜଗନ୍ନାଥଙ୍କୁ ମୋହିଲୁ ମହିମା ତୋର ଧନୀ
ଜୟ ଜୟ କମଳା ମାଗୋ ଜଗତ ଜନନୀ ।
ମୁକୁଟ କୁଣ୍ଡଳ ତୋ ସର୍ବାଙ୍ଗେ ଅଳଙ୍କାର
ହୃଦରେ ଲୁଳଇ ଗଜମୋତି ହାର ।
ବାହେ ବିଦ ମୁଦି ଭୁଜେ ରତ୍ନ ବାହି
ଭୋ ଭଗବତୀ ଭାରତୀ ମୋତେ
ହୋଅ ସାହି ।
ପାଶାଙ୍କୁଶ ଧାରଣୀ ତୁ ଭୁବନେଶ୍ୱରୀ ମୂର୍ତ୍ତି
ଭଗତ ତାରେଣୀ ତୁ ଅନାଦି ଶକତି ।୪୦
ଭ୍ରଥା ସହିତେ ତୁ ନୀଳଗିରି-ବାସୀ
ଜଗତ ରକ୍ଷା ନିମନ୍ତେ ତୁ ବିଜେ
କଲୁ ଆସି ।
ଅନୁକ୍ଷଣେ କରୁଣା ସଦୟା ତୋର ଚିତ୍ତ
ଶ୍ରୀଜଗନ୍ନାଥଙ୍କର ପ୍ରିୟ ପଞ୍ଚଭୂତ ।
ମୋତେ ଅନୁଗ୍ରହ କରସି ଗୋସାମଣି
ଅନେକ ଦୁଷ୍ଟଙ୍କୁ ତୁହି ସେ ଦଳଣୀ ।
ବଳରାମ ଦାସ ମୁଂ ଶ୍ରୀହରିର ସେବକ
ଅମୃତ ଲୋଚନେ ମୋତେ
କର ଅବଲୋକ ।
ତୋହୋର ପ୍ରସନ୍ନେ ଗୋ ଭକତି ମୁକତି
ତୋହୋର ପ୍ରସନ୍ନେ ଗୋ ସକଳ
ସମ୍ପତ୍ତି ।୫୦
ତୋତେ ସେବିଲେ ଗୋ ମୋହୋର ବୁଦ୍ଧି
ପାଇ
ତୋହୋର ଦୟାଯେ ସେ ସୁର ବ୍ରହ୍ମା
ହୋଇ ।
ଯେବେ ଆଗ୍ୟାଂ ମୋତେ ଦେବୁ ଗୋ
ମହାମାୟେ
ଅଯୋଧ୍ୟା କାଣ୍ଡ ମୁଂ କରିବି ଉପାୟେ ।
ଶ୍ରୀରାମ ଲକ୍ଷଣ ସୀତ୍ୟା ବନବାସ ଯିବେ
ଦେବତାଙ୍କ ଛଳେ ସେ ଅସୁର ମାରିବେ ।
ଯାହା ସେ ବ୍ରହ୍ମା ବାଲ୍ମିକି ଆଗେ କହି
ସେ ସେ ରାମାୟଣ ଗ୍ରନ୍ଥରାଜ ହୋଇ ।
ସାମବେଦ ପୁରାଣୁ ହୋଇ ଜାତ
ବାଲ୍ମିକି ମହାମୁନି କଲେକ ସମ୍ମତ ।୬୦
ତାହା ମୁହିଂ ପଣ୍ଡିତ ଜନ ମୁଖୁ ଶୁଣି
ହୃଦଗତେ ଚିତୋଇ ମନେ ମନେ ଗୁଣି ।
ଶ୍ରୀରାମର ଚରିତ ମୁଂ ସୁମରଇ ନିତି
ଜଗନ୍ନାଥ ଚରଣେ ମୁଂ କରଇ ଭଗତି ।
ସୁଜନ ଜନକଇ କୋଟିଏ ନମସ୍କାର
ପଣ୍ଡିତ ଜନମାନେ ଦୋଷ ମୋ ନ ଧର ।
ମୂର୍ଖ ଜନମାନଙ୍କୁ କରଇ ଦୟିନୀ
ଅଳପ ଜାଣିଣ ଯେ ବହୁତ କରଇ ଧ୍ୱନି ।
ତାହାଙ୍କୁ ବିନୋଇ ବହୁତ ବୋଲଇ ମତେ
ନ ଧର ଦୋଷ ମୋର ବୋଲଇ
ଯୁଗତେ ।୭୦
ଶ୍ରୀରାମ ଚରିତ କହିବାକୁ ବାଲ୍ମିକି ଅଟଇ
ଗନ୍ଧ
ମୁହିଂ ଛାର ପ୍ରାର୍ଥିବ ମାନବ ମୋର ଦେହ ।
ଯେ ଯାହାର ଦେହରେ ଯେବଣ ଗୁଣ ଥାଇ
ଚଣ୍ଡାଳ କର୍ମେ ଯେ ଶ୍ରୀକର୍ପୂର ଖାଇ ।
ବ୍ରାହ୍ମଣ ଅଭାବେ ଚାଲଇ ମନ୍ଦ ବାଟେ
ଯାହା ସେ ବିଧାତା ବିହିଲା ଲଲାଟେ ।
ଏ ମୋର କର୍ମେ ଯେବେ ଅଛଇ ଯେମାନ

ଶ୍ରୀ ଜଗନ୍ନାଥ ସ୍ୱାମୀ ମୋତେ ହୋଇଲେ
ପରସନ୍ନ ।
ରାମାୟଣ ଗ୍ରନ୍ଥ ବଖାଣିମି ମୁହିଂ
ଶଏ କୋଟି ଚରିତ୍ର ଥୋକାଏ ଯିବି
କହି ।୮୦
ଏ ସେ ମୋହୋର କୀରତି ଯେ ଶାହାସ୍ତ୍ର
ଯୋଗେ ଥିବ
ଶ୍ରୀରାମଙ୍କର ସଙ୍ଗେ ମୋର ନାମ ଯେ
ରହିବ ।
ଏ ଯେବେ ପ୍ରାପତ ମୋତେ ଅଛଇ ପୂର୍ବ
ପୁଣ୍ୟେ
ଏହା ଛାଡ଼ି କିମ୍ପା ବରିବି ମୁହିଂ ଆନେ ।
ମିଛ ସତ ହୋଇଲେ ମୋହୋର କିସ ଯାଇ
ଯେହୁ ସେ ହୃଦେ ଅଛି ସେହୁ ସେ ଜାଣଇ ।
ମୋହୋର ସଖ୍ୟେ କି କରଇ ବଖାଣ
ଆନ ନିକି ପଦେ କରିବି ଉଚାରଣ ।
ଯାହାକୁ ଯେ ପ୍ରାପତ ଶୁଭାଶୁଭ ବେନି
ତହୁଁ ଉତପତି ହୋଇଲା ତାହା ଘେନି ।୯୦
ଶ୍ରୀରାମ ଚରିତ ମୁଁ କରିବି ଉଚାରଣ
ହେଳେଣ ବଞ୍ଚିବି ଯେ ଅକାଳ ମରଣ ।
ଜୀବନ୍ତେ ମୁକତ ମଲେ ସ୍ୱର୍ଗ ଯିବି
ବଇକୁଣ୍ଠେ ବିଷ୍ଣୁ ପାଶେ ଖଟିଥିବି ।
ଏତେ ଲାଭ ଛାଡ଼ି କରିବି କିମ୍ପା ଆନ
ଦୟା ଯେବେ ମୋତେ କଲେ ଭଗବାନ ।
ବିଷ୍ଣୁପୁରାଣ ଯାହା ସଦାଶିବ କହି
ଶୁଣିଲେ ପାର୍ବତୀ ଗୋ ପାପଭାରା ଦହି ।
ଦୁର୍ଗା ରୂପେଣ ଯେ ଅସୁର ବଳ ମାରି
ଦେବଙ୍କ ନିମନ୍ତେ ସେ ପାପକୁ ନ
ଡରି ।୧୦୦
ସେ ଦୋଷ ହରଇ ଏ ରାମାୟଣ ଶୁଣି
ଆବର ବିଶେଷଣ କହନ୍ତି ଶୂଳପାଣି ।
ଶୁଣ ଗୋ ଶାକାମ୍ଭେରୀ ଅଯୋଧ୍ୟାକାଣ୍ଡ କଥା
ଶ୍ରୀରାମ ବନବାସ ଯିବାର ବାରତା ।
ଭରଥ ଶତ୍ରୁଘନ ଗଲେ ଅଜାଘର

ସନ୍ତୋଷେ ରାଜ୍ୟ କରଇ ଦଶରଥ
ନୃପବର ।
ସୀତ୍ୟା ଘେନି ରାମ ବିଳସନ୍ତି ସୁଖେ
ଅପଛାଡି ବୋଲି ନ ପାଆନ୍ତି ଜନମୁଖେ ।
ଦିଗପାଳେ ପାଳନ୍ତି ବେଳ କାଳ ଜାଣି
ଯହୁଁ ସେ ପୁରେ ବିଜେ ଚକ୍ରପାଣି ।୧୦
ଦିନେକ ଶ୍ରୀରାମ ଲକ୍ଷ୍ମଣକୁ ଘେନି
ସଙ୍ଗେଣ ଅଛନ୍ତି ସେ ଅନେକ ସଇନି ।
ସାମନ୍ତ ପୁତ୍ରମାନେ ଅଛନ୍ତି ସଙ୍ଗତେ
ମୃଗୟା ବିନୋଦେ ଯେ ଗଲେ
ରଘୁନାଥେ ।
ସରଯୁ ପାରିହୋଇ ପଶିଲେ ବନଘୋର
ଶ୍ରୀରାମଚନ୍ଦ୍ର ଅଶ୍ୱ ଚଢ଼ିଣ ଅଗ୍ରସାର ।
ତୀର କମାୟେଣ କୋଦଣ୍ଡ କଷଣି ଘେନି
ହାଣି
ଜୀବଜନ୍ତୁ ଗୋଡ଼ାନ୍ତି ରଘୁମଣି ।
ମୃଗ ଶୂକର ଯେ ବିନ୍ଧିଲେ ବହୁତ
କାହାକଇ ପ୍ରହାର କଲେ ନେଇ
କୋନ୍ତ ।୨୦
କେବଣ ଜୀବକଇ ଖଡ଼ଗେଣ କାଟି
କେବଣ ଜନ୍ତୁର ହୃଦରେ ଶରଫୁଟି ।
ଶୂକର ସଏମ୍ଭର ଅନେକ ହତ କରି
ଗୋଡ଼ାଇ ନାରାଜ ଯେ ବିନ୍ଧନ୍ତି ଚାପଧାରୀ ।
ସୁମନ୍ତ ସୁତ ସେ ବିଦ୍ୟାଧର ବୀର
ସେହି ମାଇଲା ଯେ ଅନେକ ଶୂକର ।
ରାଉତ ମାହୁନ୍ତ ଯେ ପାଇକ ଜେନାମାନେ
ମୃଗ ମାରିବେ ବୋଲି ପଶିଲେ ଘୋର
ବନେ ।
ଯେହୁ ଯେଣେ ପାରଇ ସେହୁ ତେଣେ ଗଲା
ଲକ୍ଷଣ ରାମକଇ ଭେଟ ନ ପାଇଲା ।୩୦
ମୃଗୟା ବିନୋଦେ ଯେ ପଶିଲେ ବନ
ଘୋର
ଗଜ ଅଶ୍ୱ କେ କେଣେ ଗଲେ ରଘୁବର ।
ଅଗମ୍ୟ ବନେ ଯେ ପଶିଲେକ ଥାଟ

ବଣା ହୋଇଣ ଜଣେ ନ ପାଇଲେ ବାଟ ।
ଶ୍ରୀରାମହିଂ ଯେକାଯେ ଅଶ୍ୱେକ ଆରୋହି
ତମସା ନଦୀ ତୀରେ ମିଳିଲେ ଗୋସାଇଂ ।
ଶ୍ରମେଣ ଝାଳ ଯେ ବହଇ ଅବିକ୍ଷନ
ଫୁଟିଣ ଘୋଡ଼ାରୁ ଯେ ଉତୁରିଲେ
ରଘୁନାନ ।
ନଦୀରେ ପଶିଣ ଯେ ଶ୍ରୀମୁଖ ପଖାଳି
ଜଳପାନ କରି କୂଳରେ ଆସି ମିଳି ।୪୦
ବୃକ୍ଷରେ ଅଶ୍ୱ ଯେ ବାନ୍ଧିଣ ରଘୁବୀର
ଶୀତଳାରେ ବସି ଯେ ଘେନିଲେ ସମିର ।
ଏସନେକ ସମୟେ ଶବର ଅଧିପତି
ମୃଗୟାୟେ ଆସିଣ ଭେଟିଲା ରଘୁପତି ।
ସଙ୍ଗତେ ବଳ ତାର ଅଛଇ ଅପାର
ରାମକଇ ପଚରଇ ଗୁହ ନାମେ ଶବର ।
କିହୋ ମହାତମା କେବଣ ଦେଶୁ ଆୟେ
କେ ତୋହୋର ବାପ କେ
ତୋହୋର ମାୟେ ।
ସ୍ୱର୍ଗରୁ ଅଇଲା ପ୍ରାୟେକ ତୁ ଦିଶୁ
କାହିଂକି ଯିବ ତୁମ୍ଭେ ଯେଥେ କିମ୍ପା
ବସୁ ।୫୦
ଶ୍ରୀରାମ ବୋଇଲେ ମୁଁ ଦଶରଥ ସୁତ
ଅଯୋଧ୍ୟାରେ ଜାତ କଉଶଲ୍ୟା ମୋହୋର
ମାତ ।
ଭରଥ ଲକ୍ଷ୍ମଣ ଶତ୍ରୁଘନ ମୋହୋର ଭାଇ
ଚାରି ଭାଇଙ୍କର ଅଟଇ ତିନି ଆଇ ।
ମୁହିଂ ସେ ଶ୍ରୀରାମ ମୃଗୟା ଅଇଲି
ଗହନ ବନେ ପଶି ପଥ ଭ୍ରାନ୍ତି କଲି ।
ବଣା ହୋଇଣ ଯେ ମିଳିଲି ଆସି ଏଥ
କେଣେ ଯିବି ଅଯୋଧ୍ୟାକୁ ନ ଜାଣଇ ପଥ ।
ଶବର ବୋଇଲା ଦେବ ଶୁଣସି ଶ୍ରୀରାମ
ଗଙ୍ଗାର କୂଳେ ଯେ ମୋହୋର
ଆଶ୍ରମ ।୬୦
ସାରାବତୀ ବୋଲି ନଗ୍ର ମୋର ଅଟଇ
ଦଶଲକ୍ଷ ଶବର ଯେ ସଙ୍ଗତେ ଅଛଇ ।

ବିରାଜର ସୁତ ମୁଂ ମୋର ଗୁହ ନାମ
ମୃଗ ମାରିନ୍ତ ମୁଂ ଅଇଲି ଶ୍ରୀରାମ ।
ତୋତେ ଭେଟିଲି ଯେ ପୁଣ୍ୟ ତପ ଫଳ
ତୁହୋ ଶ୍ରୀରାମ ଯେ ଦଶରଥ ବାଳ ।
ଅଯୋଧ୍ୟାଠାକୁର ସୂର୍ଯ୍ୟବଂଶେ ଜାତ
ମୋତେ ଦୟା କରିଥିବୁଟି ରାଜା ପୁତ୍ର ।
ଶ୍ରୀରାମ ବୋଲନ୍ତି ଯେ ପଥ ମୋତେ ଦେଖା
ଆଜହୁଂ ପ୍ରାଣର ଅଟୁ ମୋର ସଖା ।୭୦
ଯେତେ ବୋଲି ରାମ ଉଠି କୋଳକରି
ଦେଖିଣ ଶବର ଯେ ବେନି କର ଯୋଡ଼ି ।
ଭୋ ରାମ ମୋତେ ଯେ ଅନୁଗ୍ରହ କଲୁ
ଏ ତୋହୋର ମୁଖେ ଯେ ମୈତ୍ର
ବୋଇଲୁ ।
ମୁଇଂ କି ଭାର୍ଜନ ବନ୍ଧୁପଣେ ତୋତେ
ଏତେ ଲାଭ ମୁହିଂ ଛାଡ଼ିବି କେମନ୍ତେ ।
ଏ ଦେହେ ବୋଲାଇବି ଶ୍ରୀରାମର ମୈତ୍ର
ପୁରୁଷାର୍ଥ କଥା ମୁଂ ପାଇବି ଜଗତ ।
ଯେବେ ତୁ ଦୟା କଲୁ ସ୍ୱାମୀ ମୋତେ
ମୁଇଂ ପୁଣି କଥାଯେ ମାଗୁଂ ଅଛି
ତୋତେ ।୮୦
ସାତଘଡ଼ି ବେଳ ହୋଇଲାକ ଆସି
କ୍ଷୁଧାୟେଣ ଶ୍ରମ ପାଇଲୁ ରଘୁଶିଷି ।
ପକ୍ୱ ଫଳ ଦେବି ଭୁଞ୍ଜିଣ ସୁସ୍ତ ହୋଅ
ନୋହିଲେଣ ଶ୍ରମ ପାଇବ ତୋର ଦେହ ।
ଏତେ ବୋଲିଣ ଯେ ଦେଲା ଜାମ୍ବୁଫଳ
ହରଷେ ଭୁଞ୍ଜନ୍ତି ତାହା ଦଶରଥ ବାଳ ।
ମଣୋହି ସାରିଣ ଯେ ଆଞ୍ଚୋବନ କରି
ହରିଡ଼ା ଫଳ ଯେ ଶବର ଅଛି ଧରି ।
ଏହା ଭୁଞ୍ଜ ବୋଲି ଶ୍ରୀରାମକୁ ଦେଲା
ମୈତ୍ରର ବୋଲେ ରାମ ତାହା ଗ୍ରାସ
କଲା ।୯୦
ଏଥିଅନନ୍ତରେ ସେ ଅଶ୍ୱକୁ ମୁଠି ଦେଇ
ଘୋଡ଼ାର ପିଠିରେ ବିଜଏ ରଘୁସାଇଂ ।
ସଙ୍ଗେଣ ଶବର ବଳ ଅପ୍ରମିତ

ଆଗେଣ ବାଟ କଢ଼ାଉଅଛି ମଇତ୍ର ।
ଥୋକାଏକ ଧୂରେ ଯାଇ ଲକ୍ଷ୍ମଣକୁ ଦେଖିଲେ
ଥାଠ ସହିତେ ଯେ ବିଦ୍ୟାଧର ମୂଳେ ।
ଦେଖିଣ ଆନନ୍ଦ ସେ ହୋଇଲେ ସକଳ
ଶବରକୁ ବୋଲନ୍ତି ଦଶରଥର ବାଳ ।
ଭୋ ମିତ୍ର ବାହୁଡ଼ି ଯାଅସି ତୋହୋର ପୁର
ସାଙ୍ଗେଣ ସଇନି ଆସି ହୋଇଲେ
ମୋହୋର ।୧୦୦
ଯାଅସି ବାହୁଡ଼ି ତୋହୋର ନିଜ ଦେଶ
ପଛେ ବେଳେକ ଅଯୋଧ୍ୟାକୁ ଆସ ।
ଶୁଣିଣ ଶବର ଯେ ବାହୁଡ଼ିଣ ଗଲା
ଗଙ୍ଗାକୂଳେ ଯାଇ ସେ ଆଶ୍ରମେ ମିଳିଲା ।
ଏଥିଅନନ୍ତରେ ଶୁଣିମା ଭଗବତୀ
ମୃଗ ଶୂକର ଘେନାଇ ରଘୁପତି ।
କୁରଙ୍ଗୀ ଖୁରାଣ୍ଡି ଶଶା ସଏମ୍ବର
ବାହୁଟିଆ କୃଷ୍ଣାଜିନ କଲେ ଭାର ଭାର ।
ସଇନି ସମସ୍ତେ ଯେ ସରଯୁ ପାରିହୋଇ
ଅଯୋଧ୍ୟା କଟକେ ଯେ କୁଶଳେ ସର୍ବେ
ହୋଇ ।୧୦
ଏକାଦଶ ଘଡ଼ି ହୋଇଲାନି ବେଳ
ବାଜଇ ବାଜା ଯେ ଅତିହ ଚହଳ ।
ଆଲମ୍ୱ ବିଲମ୍ୱ ପାଟଛତ୍ର ଗହଳ
ହାକ ଡାକ ଚହଳେ ମେଦିନୀ ଉଛଳ ।
ଦେଖିଣ ଆନନ୍ଦ ବିବୁଧ୍ୟାଦି ସୁରପୁର
ଅଯୋଧ୍ୟାର ଲୋକେ ଦେଖନ୍ତି ରଘୁବୀର ।
ନବରେ ପ୍ରବେଶ ହୋଇଲେ ରଘୁପତି
ଦଶରଥ ଚରଣେ ନମସ୍କାର କରନ୍ତି ।
ଦେଖିଣ ଶ୍ରୀରାମକୁ ବୋଲନ୍ତି ନୃପବର
ଉଛୁର ହୋଇଲା ବାବୁ ମଣୋହି ବେଗେ
କର ।୨୦
ଶୁଣିଣ ଶ୍ରୀରାମ ଭିତରକୁ ଗଲେ
ମର୍ଦ୍ଦନ ମାଜଣା ମଣୋହି ବିଧି କଲେ ।
ମୃଗ ଶୂକର ଯେ ଆଣିଲେ ଯାହା ମାରି
ଦେଖିଣ ଆନନ୍ଦ ଯେ ଦଶରଥ ଦଣ୍ଡଧାରୀ ।

ଅନୁରୂପେ ବାଣ୍ଟି ସମସ୍ତଙ୍କୁହିଂ ଦେଲା
ପୁତ୍ରଙ୍କ ମହିମା ଯେ ବଶିଷ୍ଠକୁ କହିଲା ।
ଶୁଣ ମୁନିବର ମୋର ରାମର କାହାଣୀ
ମୃଗ ଶୂକର ଆଣିଲେ ବହୁତ ହାଣି ।
ଜୀବନ୍ତା କସ୍ତୁରୀ ମତ୍ତଗଜ ସହିତେ
ଅନେକ ବେଣ୍ଟମାରି ଆଣିଲେ
ରଘୁନାଥେ ।୩୦
ଶ୍ରୀରାମର ତହିଂ ହାଦେ ସକଳ ଗୁଣ ଅଛି
ଅନେକ ପୁନ୍ୟେଣ ପାଇଲି ମୁଂ ଏ ବଛି ।
ଶ୍ରୀବନ୍ତ ସୁରବନ୍ତ କ୍ଷେମାଶୀଳ ଅଟଇ
ଧାର୍ମିକ ଯଶବନ୍ତ ପୁଣ୍ୟ ବାଟ ଜାଣଇ ।
ଜ୍ଞାନ ଗୋଚର ଯେ ଅଛଇ ତାହାର ମେଳା
ଏ ସେ ଅଟଇ ମୋତେ ତରିବାକୁ ଭେଳା ।
ବଶିଷ୍ଠେ ବୋଲନ୍ତି ହୋ ଶୁଣ ନୃପବର
ଶ୍ରୀରାମ ଅଟନ୍ତି ଜ୍ୟେଷ୍ଠ କୁମର ତୋହୋର ।
ତାହାକୁ ସାମାନ୍ୟ ପ୍ରାୟେ ତୁହି ମଣୁ
ସେ ଯେତେ ଅଟଇ ତାହା ତୁ କାହୁଂ
ଜାଣୁ ।୪୦
ବଇକୁଣ୍ଠବାସୀ ସେ ସ୍ୱୟେଂ ବିଷ୍ଣୁନାଥ
ଶଙ୍ଖ ଚକ୍ର ଗଦା ଶୋହଇ ଚତୁହାଥ ।
ଶ୍ରୀବତ୍ସ ଲକ୍ଷଣ ପୀତବସନ ପରିହରଣ
କଉସ୍ତୁଭମଣି ଯେ କଣ୍ଠେ ଆଭରଣ ।
ଗରୁଡ଼ ବାହାନ ଏ କମଳାର ପତି
ଦେବତାଙ୍କର ଛଳେ ଅବତାର ଯେଥି ।
ଅସୁର ବଳ ଯହୁଂ ହୋଇଲେ ବର୍ଦ୍ଧମାନ
ତେଣୁ ମାନେବ ତନୁ ଧଇଲେ ଭଗବାନ ।
ବିଶ୍ୱାମିତ୍ର ମୁନି କହିଲେ ଯେ ତୋତେ
ଯୋଗବଳେ ଦୃଶ୍ୟ ହୋଇଲାକ
ମୋତେ ।୫୦
ତାଡ଼େକୀ ରାକ୍ଷସୀକି ଆନ ପାରଇ କି ମାରି
ପାଦଲାଗି ମୋକ୍ଷ ଗଉତମ ନାରୀ ।
ଇନ୍ଦ୍ର ନ ପାରଇ ଯେଉଂ ଶିବଧନୁ ଟୋକି
ଛତ୍ରୀ ହୋଇଂ ସମ ନାହିଂ ମହୀସ୍ଥଳୀ ।
ବିଷ୍ଣୁ ତେଜୁଂ ବିଶ୍ୱକର୍ମା ଯାହା ଜାତ କଲା

ତୋହୋର ପୁତ୍ର ତାହା ହେଳେଣ
ଆମଞ୍ଛଳା ।
ସୀତା ରୂପବନ୍ତୀ ସ୍ୱୟଂ କମଳଣୀ
ସେ ସେ ଶ୍ରୀରାମର ଅଟଇ ଘରଣୀ ।
ପ୍ରଶୁରାମକଇ ଜିଣିଲାକ ହେଳେ
ତାହା ତ ପ୍ରତକ୍ଷେ ଦେଖିଲୁ
ମହୀପାଳେ ।୬୦
ଯେବଣ ପ୍ରଶୁକୁ ଦେବତାଯେ ଭଯେ କରି
ରବିତଳେ କୀରତି ବାଜିଲା ତାହାରି ।
ଯେକୋଇଶ ବାର ଯେ ନିକ୍ଷେତ୍ର କଲା ମହୀ
ଶହସ୍ର ଧରି ଛାମୁରେ ନ ରହିଲେ କେହି ।
ବୀର ନାମେଣ ନ ଥୋଇଲା ଯେକ କରି
ରକତ ନଦୀଯେ ବୁହାଇଲା ବସନ୍ଧରୀ ।
ପିତୃଗଣ ତୋଷିଲା ରୁଧିର ତର୍ପଣେ
ଏ ମହୀ ମଣ୍ଡଳେ ନାମ ନାହିଂ ଆନ
ଜଣେ ।
ତାହାର ଦର୍ପ ହରିଲା ତୋହୋର ପୁତ୍ର
ତେଣୁ ସେ ଜାଣିଲି ଶ୍ରୀରାମ
ପଦ୍ମନେତ୍ର ।୭୦
ଏ ବଚନ ଶୁଣିଣ ବୋଲଇ ମହୀପତି
କଥାଏ ପୁଛିବି ମୋତେ କହିବା ମହାଯତି ।
ପ୍ରଶୁରାମ କଥା ଯେ ପୁରାଣେ ବଖାଣ
ବଶିଷ୍ଟ ବୋଇଲେ ଶୁଣ ହୋ ରାଜନ ।
ଗାଧି ନୃପତିର ଦୋହିତା ସତ୍ୟବତୀ
ଋଚିକ ମହାମୁନିର ଅଟଇ ଯୁବତୀ ।
ଲକ୍ଷଣବନ୍ତ ଦେଖି ହୋଇଲେ ମୁନି ବିଭା
ତାରା ଗୁରୁ ଜାଣି ଦିଶନ୍ତି ବେନି ଶୋଭା ।
ସେ ସେ ଋଚିକ ଯେ ବ୍ରହ୍ମାଙ୍କର ବାଳ
ତପ କରଇ ସେ ଗୋମତୀ ନଦୀ
କୂଳ ।୮୦
କଶ୍ୟପ ସମାନ୍ୟେ ସେ ଅଟଇ ବ୍ରହ୍ମଚାରୀ
ବ୍ରହ୍ମା ଯାହାକଇ ଦେଖିଲେ ପ୍ରଶଂସା କରି ।
ସେ ସେ ମୁନି ତପ ଯେ କରଇ ଊର୍ଦ୍ଧରେତା
ସତ୍ୟବତୀ ତାର ଅଟଇ ବନିତା ।

ଦିନେକ ଯେ ଗାଧି ନୃପତିର ରାଣୀ
ସ୍ୱାମୀର ଆଗେ ସେ କହଇ ମୃଦୁବାଣୀ ।
ଶୁଣ ଦେବ କନାଉଜ ଦେଶ ଅଧିପତି
ମୁହିଂ ଦେଖିଯିବି ମୋହୋର ଦୁହିତୀ ।
ଏକା ଝିଅ ଗୋଟିକ ମୁଛିବି କେତେକାଳ
ଆବରତ ପେଟେ ନ ପଶିଲା ଫୁଲ
ଫଳ ।୯୦
ଦେସି ଆଜ୍ଞା ଦେଖି ଆସଇ ଯାଇଂ
ତୋହୋର ମୋହୋର ତହୁଂ ତାହାର ଆନ
ନାହିଂ ।
ରାଜା ବୋଇଲା ଯାସିରେ ଭାବାନୀ
ଦେଖ ଯାଇ ତୋର ପ୍ରାଣର ନନ୍ଦିନୀ ।
କୁଶଳେ ଅଛଇଂ ନା କ୍ଷମହୋଇ ବ୍ରତି
ଦୟା କରଇ ନା ଋଚିକ ନାମେ ମହାଯତି ।
ଯେ କଥା ଜାଣି ତୁ ଦେଖି ଆସ ଯାଇଂ
ଶୁଣିକରି ରାଣୀ ଗଲାକ ସଜ ହୋଇ ।
ଗୋମତୀ ନଦୀର ତୀରେଣ ମିଳିଲା
ଋଚିକ ମହାମୁନି ଆଶ୍ରମକୁ ଗଲା ।୧୦୦
ଦେଖିଣ ଦୁହିତା ଯେ କଲା ନମସ୍କାର
ମାତାର ମୁଖ ଚାହିଂ ହୋଇଲା ଶୋକଭର ।
ସତ୍ୟବତୀକି କୋଳ କଲାକ ଜନନୀ
ଶିରେ ଚୁମ୍ବଦେଇ ସେନେହ ଭାବ ଘେନି ।
ମାତା ଦୁହିତା ଦୁହେଂ ବସିଲେ ମୃଗଛାଲେ
ଉଭୟେ କୁଳ ବାରତା କୁଶଳ ପୁଛିଲେ ।
ମାତାର ସଙ୍ଗତେ ଅଇଲେ ଯେତେ ଜନ
ଅମୃତେ ସତ୍ୟବତୀ ଦେଲେକ ଭୋଜନ ।
ଏସନ ସମଏ ଯେ ବେଳ ଅସ୍ତ ହୋଏ
ଋଚିକ ମୁନିବର ତପ ତେଜି ଆଏ ।୧୦
ଦେଖିଲେ ଦ୍ୱାରେଣ ହାନ୍ଦୋଳାଯେ ଅଛି
ଜନଗହଳ ଦେଖି ଭାରିଯାକୁ ପୁଛି ।
ସତ୍ୟବତୀ ଆଣି ଜଳପାତ୍ର ଦେଲା
ଜନନୀ ଆସି ଅଛନ୍ତି ବୋଲିଣ ବୋଇଲା ।
ଶୁଣିଣ ମହାମୁନି ହୋଇଲେ ସନ୍ତୋଷ
ପାଦ ପଖାଳିଣ ଭିତରେ ପରବେଶ ।

ଦୋହୋରା ଆଗ୍ନିକି ପୂଜା ମୁନି କଲେ
ଦେବ ପିତୃଗଣକୁ ଅନ୍ନବଳି ଦେଲେ ।
ସତ୍ୟବତୀକି ମୁନି ବୋଇଲେକ ରାଇ
ତୋହୋର ଜନନୀକୁ ଅନ୍ନ ଦିଅ
ଯାଇଂ ।୨୦
ଶୁଣିକରି ସତ୍ୟବତୀ ବେଗେ ଚଳିଗଲା
ଜଳ ଫଳ କନ୍ଦମୂଳ ଦେଇଣ ସଞ୍ଚିଲା ।
ସତ୍ୟବତୀ ନିଜ ମାତାକୁ ଅନ୍ନ ଦେଇ
ଷଡ଼ରସ ପ୍ରକାରେ ତୋଷିଲା ତାର ଦେହୀ ।
ଯେଥୁଅନନ୍ତରେ ବଞ୍ଚିଲେ ରଜନୀ
ଝିଅ ଘରେ ପୁଣ ରହିଲେ ଦିନା ତିନି ।
ଦୁହିତାକୁ ଡିଆରଇ ବହୁତ କଥା କହି
ଭୋ ମାତା ତୋହୋର ମୋହୋର ପୁତ୍ର
ନାହିଂ ।
ଏ ମୋହୋର ବଂଶ ହେଉଅଛି ନାଶ
ତୁ ଗୋ ସୁଲକ୍ଷଣୀ କରିବୁଟି କିସ ।୩୦
ଭ୍ରଥା ତୋହୋର ଅଟନ୍ତି ମହାଯତି
ପୁତ୍ର ଜାତ ନିମନ୍ତେ କିମ୍ପା ବିଚାର ନ
କରନ୍ତି ।
କଶ୍ୟପର ତହୁଂ ଯେ ହୋଇଲେ ଅବତାର
ଏହାଙ୍କର ବାପର ଏ ଅଲ୍ୟଳ କୁମର ।
ସେ କିମ୍ପା ଅଜ୍ଞାନ ଅଟନ୍ତି ମୁନିବର
ସ୍ତିରୀଙ୍କର ରମଣେ ସେ ଅର୍ଜିବେ କୁମର ।
କିସ ଧର୍ମ କରନ୍ତି ପୁତ୍ର ଚିନ୍ତା ଛାଡ଼ି
ଗୋତ୍ର ଯେ ଅକାରଣେ ଯାଉଅଛି ବୁଡ଼ି ।
ଏ ମୋହୋର ବଂଶ ହାଦେ ଯାଉଅଛି ନାଶ
ତୋହୋର ନନ୍ଦନ ଥିଲେ ମୋହୋର ତାକୁ
ଆଶ ।୪୦
ସେ ବ୍ରହ୍ମଋଷି ତପେ ନିରିଜିତ
ଏହାଙ୍କର ଦୟାରେ ନୋହୋଇକି ପୁତ୍ର ।
ତୁ ଗୋ ସତ୍ୟବତୀ କୁଆଇଂକି କହ
ବୋଲିବୁ ମାତାକୁ ମୋ ପୁତ୍ର ଦାନ ଦିଅ ।
ତୁ ମହାତମାକୁ ଦେଲେ ଯେ ମୋର ପିତା
ବେଳେ ବଂଶରକ୍ଷା କରସି ବ୍ରହ୍ମଂବେତା ।

ଏହା ବୋଇଲେ ସେ କି ବୋଲନ୍ତି ଜାଣ
ଆଜକ ରହିବି ମୁଂ ଏଥର କାରଣ ।
ମାତା ଦୁହିତା ହୋଇଲେ ଯେସନକ କଥା
ବେଳ ଅନ୍ତେ ଅସ୍ତ ହୋଇଲା
ସୂର୍ଯ୍ୟଦେବତା ।୫୦
ତପ ତେଜିଣ ଯେ ଅଇଲେ ମୁନିମ୍ବର
ଯେ ବିଧି ବିଧାନ ସାରିଲେ ତାହାଙ୍କର ।
ଶୟନ ସ୍ଥାନେ ସେ କହିଲା ସତ୍ୟବତୀ
ଜନନୀ ମୋହୋର ଯିସ କାରଣେ
ଆସିଛନ୍ତି ।
ତାହା ମୁଁ ତୁମ୍ଭ ଆଗେ କହଇ ଯେ ଶୁଣ
କୁଳରକ୍ଷା ହୋଇବ କେବଣ କାରଣ ।
ମୋହୋର ପିଅର ସେ ଅରଜିଲା ମୋତେ
ସତ ମନେ ମୁନି ସମର୍ପିଲା ତୋତେ ।
ତୁ ବ୍ରହ୍ମଋଷି କର ପ୍ରତିକାର
ପୁତ୍ର ଦାନ ଦେଇ ମୋ ପିତାଙ୍କୁ ଉଧର ।୬୦
ମୋହୋର ତନୟେ ନାହିଂ ବ୍ରହ୍ମଋଷି
ପସନ୍ନ ମନେ ମୋତେ ପୁତ୍ର ଦାନ ଦେସି ।
ଉଭଏ କୁଳରକ୍ଷା ହେଉ ତୋର କୃତେ
ସାଧୁ ବଚନ ତୁ ଅରଜସି ଜଗତେ ।
ଭାରିଯାର ମୁଖୁ ଏସନ ବାକ୍ୟ ଶୁଣି
ଶୁଣିଣ ମହାମୁନି ମନେ ମନେ ଗୁଣି ।
ବୋଇଲେ ସତ୍ୟବତୀ ଯାହା ପ୍ରକାଶିଲୁ
ମୋତେ
ଏକାନ୍ତେ କଥା ସଖୀ କହଇ ମୁଂ ତୋତେ ।
ତୁ ଯେ ସୁନ୍ଦେରୀ ଗୋ ରୂପ ଗୁଣେ ସାର
ତୋତେ ଯେ ଶରଧା ସଖୀ ଅଟଇ
ମୋହୋର ।୭୦
ପୁତ୍ର ହୋଇଲେ ତୋହୋର ସରିବ ବୟେସ
ତେଣେ ସଖୀ ନ ପାଇବି ରତି ରସ ।
ଏ ଘେନି ବିଚାରି ପୁତ୍ର ନ କରଇଂ
ସେନେହତ
ତୋହୋର ଆଗେ ସଖୀ କହିଲି ଗୁପତ ।
ତୁ ଯେବେ ଇଚ୍ଛା କଲୁ ଗୋ ସତ୍ୟବତୀ

କାଲି ଅଗ୍ନିରେ ମୁଂ ଦେବଇ ଆହୁତି ।
ବ୍ରହ୍ମାର ସମାନେ ଉପୁଜିବ ପୁତ୍ର
ତେଣେ ଧବଳ ହୋଇବ ଭୃଗୁ ଗୋତ୍ର ।
ତୋହୋର ଜନନୀକି ଦେବଇ ଏକ ଚରୁ
ଏ ମହୀମଣ୍ଡଳେ ସେ ହୋଇବ
ମହାମେରୁ ।୮୦
କଥା ହୋଇଣ ଯେ ଶୁତିଲେ ବେନି ଜନ
ବୋଲନ୍ତି ବଶିଷ୍ଟେ ଶୁଣ ଅଯୋଧ୍ୟା ରାଜନ ।
ଏଥୁ ଅନନ୍ତରେ ଯେ ରଜନୀ ପରଭାତ
ଗଗନେ ଉଦୟେ ହୋଇଲେ ଦିନନାଥ ।
ନିତ୍ୟକର୍ମ ସାରି ଋଚିକ ମହାଋଷି
ହୋମଘରେ ପରବେଶ ହୋଇଲେକ
ଆସି ।
ସନ୍ତତି ଜାତ ନିମନ୍ତେ ହୋମ କଲା
ଭିନ୍ନେ ଭିନ୍ନେ ଦୁଇ ଚରୁନ୍ତ ନିର୍ଭା କଲା ।
ନିଜ ପତ୍ନୀଙ୍କି ମୁନି ରାଇଣ ବୋଇଲା
ଦେଖ ସଖୀ ଚରୁ ନିର୍ଭା ଯେ
ହୋଇଲା ।୯୦
ତୁ ଯାହା ଭୁଞ୍ଜିବୁ ତାହା ବେଗଳ ହୋଇଅଛି
ଆରେକ ଭାଗ ମାତାକୁ ତୋର ଦେଅରେ
ମୃଗାକ୍ଷୀ ।
ଏତେ ବୋଲି ମୁନି ତପଠାକୁ ଗଲେ
ସତ୍ୟବତୀ ଯାଇ ମାତାକୁ କହିଲେ ।
ଶୁଣସି ଜନନୀ ଗୋ ଏ ମୋହୋର ବାଣୀ
ଜୁଆଇଂ ଚରୁ ତୋର ନିର୍ଭା କଲା ପୁଣି ।
ତୋହୋର ନିମନ୍ତେ ଭିଆଇଲେ ଯେବଣ
ଚରୁ
ଯେ ତୋହୋର ପୁତ୍ର ହୋଇବ ମହାବୀରୁ ।
ଶୁଣିଣ ସନ୍ତୋଷ ହୋଇଲେ ଗାଧି ରାଜାର
ରାଣୀ
ସ୍ନାହାନ କରିବାକୁ ଗଲେ ତତକ୍ଷଣି ।୧୦୦
ଶୁଚିବନ୍ତ ହୋଇଂ ଅଇଲା ତଡ଼ତି
ମନେ ମନେ ବିଚର କରଇ ଯୁବତୀ ।
ଋଚିକ ମହାମୁନି ଯେ ଅଟଇ ଜ୍ଞାନବନ୍ତ

ଚରୁ ନିର୍ଭା କରି ଅଛଇ ଦୁଇ ମତ ।
ତାହାର ଘରଣୀକି ଯାହା ଅଛି ଦେଇ
ଦୁହିଙ୍କର ସାର ସେହି ସିନା ହୋଇ ।
ମୋହୋର ଚରୁ ଯଦ୍ୟପି ଅଟଇ ଭଲ
ସତ୍ୟବତୀ ଚରୁକୁ ନୋହିବ ସମତୁଲ ।
ଏତେ ବିଚରିଣ ଝିଅର ଚରୁ ଖାଇ
ଏସନ ସମୟେ ସତ୍ୟବତୀ ଆସି
ହୋଇ ।୧୦
ସ୍ନାହାନ ଶୁଚିବନ୍ତ ହୋଇଣ ତରୁଣୀ
ଚରୁ ଭୁଞ୍ଜିଲାକ କପଟ ନ ଜାଣି ।
ଏଥୁଅନନ୍ତରେ ଦିନ ଶେଷ ହୋଇଂ
ଋଚିକ ମୁନିବର ଆଶ୍ରମକୁ ଆସଇ ।
ଭାରିଯାକୁ ଦେଖି ପଚ୍ଛରନ୍ତି ଋଷି
ତୋହୋର ଗର୍ଭେଣ କ୍ଷେତ୍ରୀ ତେଜ ଦିଶି ।
ଚରୁ ପାଲଟ କରି ଭୁଞ୍ଜିଲୁ କିରେ ବାଳୀ
ଏ ମୋର କୁଳେ ତୁ ଲଗାଇଲୁ କାଳି ।
ସତ୍ୟବତୀ ବୋଲଇ ଯୋଡ଼ିଣ ବେନିକର
କୋପ ନ କରି କଥା ବୁଝିବା
ମୁନିମ୍ବର ।୨୦
ଦୁଇ ଚରୁ ଗଲୁ ଆମ୍ଭେ ପାତ୍ରେ ଥୋଇଂ
ମାତା ମୋହୋର ଚରୁ ଭୁଞ୍ଜିଲା ଆଗହୋଇ ।
ଆରେକ ଚରୁ ମୁଂ ପଛେ ଗ୍ରାସ କଲି
କେ ଅଟଇ କାହାର ଜାଣି ନ ପାରିଲି ।
ଋଷି ବୋଇଲେ ସେ ଦଇବର ଆଏତି
ତୋହୋର ମୋହୋର କଥା ନୋହୋଇରେ
ସ୍ୱତୀ ।
ବ୍ରାହ୍ମଣର ପୁତ୍ର ହୋଇବାକ ଛତ୍ରୀ
ଛତ୍ରୀର ପୁତ୍ର ଯେବେ ହୋଇବାକ ଯତି ।
ଏହେର୍ଣ୍ଣେକ ଯୋଗ ଯେବେ ଦେବତା
ଭିଆଇଲା
କାହାର ବୋଲେ ସେ ହୋଅଇ ଆନ
କଲା ।୩୦
ଶୁଣିଣ କମ୍ପଇ ଯେ ଗାଧି ରାଜା ରାଣୀ
ଋଚିକ ମୁନିବର ଚରଣେ ପରିଣାମି ।

ଭୋ ମୁନିବର ମୋତେ ପ୍ରତିକାର କର
ଯେମନ୍ତେ ପୁତ୍ର ମୋହୋର ହୁଅଇ
ନୃପବର ।
ତପୀ ହୋଇଲେ ଯେ ରାଜ୍ୟ ମୋର ଯିବ
କ୍ଷେତ୍ରୀବଂଶ ନାମ ଦେବ ଆଜହୁଂ ବୁଡ଼ିବ ।
କନାଭଜ ଦେଶ ହୋଇବ ହତପାଟ
ଏଥକୁ ମୁନି ମୋତେ କହ ପୁଣ୍ୟ ବାଟ ।
ଶୁଣିଣ ଯୁବତୀ ଯେ କରଇ ଦଇନି
ମୋତେ ହୋ ପ୍ରତିକାର କରହେ
ମହାମୁନି ।୪୦
ତୋହୋର ଭାରିଯା ହୋଇ ଛତ୍ରୀ ପ୍ରସବିବି
ଋଷିଆଣୀଙ୍କ ମୁଖେ ଉପହାସ୍ୟ ପାଇବି ।
ଭୃଗୁ ଗୋତ୍ର ତୋହୋର ଆଜହୁଂ ନାଶ ଯିବ
ଛତ୍ରୀ ହୋଇଲେ ପୁତ୍ର ଯୁଦ୍ଧରେ ପଡ଼ିବ ।
ଯେଡ଼େ ବୃଶାଳ କୁଳ ହୋଇବାକ ନାଶ
ଯେଥକୁ କାରଣ ତୁ କର ବ୍ରହ୍ମଶିଷ ।
ମାତା ମୋର ନ ଜାଣି ଅଜ୍ଞାନ ପଣ କଲା
ଆଗହୋଇ ଚରୁ ନ ଜାଣି ଭୁଞ୍ଜିଲା ।
ସେ ଦୋଷ କ୍ଷେମା ତୁ କରିବା ମହାଯତି
ମାଏ ଝିଏ କାକୁସ୍ତ ହୋଇଣ
ବୋଇଲନ୍ତି ।୫୦
ମୁନି ବୋଇଲେ ଆମ୍ଭେ ଜାଣିଲୁଣି ଯୋଗେ
ଲୋଭେଣ ମାତାଯେ ଚରୁ ଭୁଞ୍ଜିଲେଣି
ଯେବେ ।
ଭିନ୍ନ ଭିନ୍ନ କରି ଗଲୁ ଆମ୍ଭେ ଥୋଇ
କିମ୍ପାଇଂ ଖାଇଲେ ତୋତେ ଯେ ନ କହି ।
ସତ୍ୟବତୀ ବୋଲଇ ଶୁଣ ତପୋଧନୀ
ଯଦ୍ୟପି ସେ ମୋର ଅଟଇ ଜନନୀ ।
ଯେ ଯାହାର ଶୁଭ ସେହି ସେ ମନାସଇ
ମାତା ଦୁହିତା ଯେ ହୋଇଲେ କିସ ହୋଇ ।
ସର୍ବଜ୍ଞ ପୁରୁଷ ତୁ ନ ଜାଣୁ ଅବା କାହା
ଯେ ଯାହାର ଭଲ ତାହାକୁ ସେ ସାହା ।୬୦
ଏ ମୋହୋର ପୁତ୍ର ଯେବେ ହୋଇବ
ଅଭାର୍ଜନ
ମୋତେ ସେ ମନ୍ଦ ବୋଲି ବୋଲିବେ
ସର୍ବଜନ ।
ଏହା ବିଚାରିଣ କରସି ମୋତେ ଦୟା
ଜନନୀ ହୃଦରେ ଧଇଲା ଯହୁଂ ମାୟା ।
ତେଣୁ ସେ କଥା ହାଦେ ଉପୁଜିଲା ମନ୍ଦ
ସେ ଦୋଷ କ୍ଷେମା ମୋର କର ଭୃଗୁଚନ୍ଦ୍ର ।
ଏତେ ବୋଲି ସତ୍ୟବତୀ ଜନନୀ ସହିତେ
କାର୍ପୁନ୍ୟ ହୋଇଣ ବୋଲନ୍ତି ଅନେକ
ମତେ ।
ମୁନି ବୋଇଲେ ଦୋଷ କଲୁ ତୋର କ୍ଷେମା
ଉଠିଣ ଉଭା ତୁମ୍ଭେ ହୋଅ ଦୁଇ ବାମା ।୭୦
ତପୀର ଆଜ୍ଞାରେ ଗାଧି ରାଜା ରାଣୀ
କର ଦୁଇ ଯୋଡ଼ି ଉଭା ହୋଇଲା ତରୁଣୀ ।
ମାତାଙ୍କୁ ପଛକରି ସତ୍ୟବତୀ ଉଭା
ସୁରଭି ଆଗେ ଯେହ୍ନେ ନନ୍ଦିନୀ ଦିଶଇ
ଶୋଭା ।
ବ୍ରହ୍ମା ଆଗରେ ଥିଲା ପ୍ରାୟେକ ଦିଶନ୍ତି
ଅତି ବିନୟମତ ହୋଇ ଉଭା ହୋଇଛନ୍ତି ।
ଗାଧି ରାଜା ପତ୍ନୀକି ଚାହିଂଣ ବୋଲନ୍ତି ମୁନି
ତୁମ୍ଭେ ଅଟ ଆମ୍ଭର ଗଉରୋବ ମାନିନୀ ।
ଲୋଭେଣ କଲ ଯେ ଯେସନେକ ଚରିତ
ଅବଶ୍ୟ ତୁମ୍ଭଙ୍କୁ ପ୍ରାପତ ବୀର ପୁତ୍ର ।୮୦
ରାଜା ହୋଇଣ ସେ ବ୍ରତିବ ବହୁତ କାଳ
ପୃଥିରେ ଯେକା ସେ ହୋଇବ ମହୀପାଳ ।
ଶହସ୍ରେ ଶାହାସ୍ରେ ହୋଇବ ନିରିଜିତା
କାଳେଣ ହୋଇବ ପୁଣ ତପେଣ ଆଶ୍ରିତା ।
ଯୁଗ ଯୁଗାନ୍ତରେ ଅନେକ କାଳ ଥିବ
ବ୍ରହ୍ମଂଋଷି ଲେଖାଏ ଗଣିତା ହୋଇବ ।
ତାହାର ପୁତ୍ର ପୁଣ ପାଳିବାକ ମହୀ
ଦଶରଥ ଆଗରେ ବଶିଷ୍ଟ ମୁନି କହି ।
ଶୁଣ ନୃପବର ଅପୂର୍ବ ରସକଥା
ଶାଶୁଙ୍କୁ ଏସନ ବୋଇଲେ
ବ୍ରହ୍ମବେତା ।୯୦
ଋଷି ଚରୁ ଭୁଞ୍ଜିଲ ଯେ ଲୋଭ ମନକରି
ଅବଶ୍ୟ ପୁତ୍ର ଯେ ହୋଇବ ତପଋରୀ ।
ତୁମ୍ଭର ବିନୟକୁ ଦେଲି ମୁହିଂ ବର
ସମୟେ ରାଜାହୋଇ ସେ ପାଳିବ
ନଗ୍ରପୁର ।
ଅନ୍ତେଣ ତପକରି ହୋଇବ ମହାଋଷି
ଯୁଗେ ଯୁଗେ ଥିବ ବ୍ରହ୍ମଲୋକେ ମିଶି ।
ଏତେ ବୋଲି ମୁନି ଭାରିଯାକୁ ଚାହିଂ
ସଧୀରେ ବୋଲନ୍ତି ରେ ଶୁଣ ପ୍ରାଣ ସହୀ ।
ବ୍ରହ୍ମଋଷି ସମାନେ ହୋଅନ୍ତାନି ପୁତ୍ର
ମାଏ ତୁମ୍ଭର ନାଶ କଲେ ଦୁଇ
ଗୋତ୍ର ।୧୦୦
ତାହାଙ୍କର ତନୟେ ହୋଅନ୍ତା ମହାରାଜା
ସକଳ ନୃପତି କରନ୍ତେ ତାଙ୍କୁ ପୂଜା ।
ଯେବେ ବିପରୀତ ହୋଇଲା ଗୋ ଆସି
କେ ଆନ କରିବ ଯାହା ବିଧାତା ଅଛି କଷି ।
ଋଷିର ତନୟେ ହୋଇବ ଶହସ୍ରଧାରୀ
ଏସନେକ ବିଧାତା ଅଛଇ ନିର୍ଭାକରି ।
ମୋତେ ଉପହାସ କରିବେ ସର୍ବଜନ
ଋଚିକ ମୁନିଙ୍କର କ୍ଷତ୍ରୀୟ ନନ୍ଦନ ।
ତେଣୁ ସେ ଭାଳଇ ପଞ୍ଚୁ ମନେ ଗୁଣି
ଉପହାସ୍ୟ କଥା ମୋତେ ହୋଇଲା
ତରୁଣୀ ।୧୦
ଚରୁ ଉପାଏ ଉପୁଜିବ ଯେବଣ ପୁତ୍ର
ମୁନି ବୋଇଲେ ସେ ଉଦ୍ଧରିବ
ମୋର ଗୋତ୍ର ।
ଯତିପଣକୁ ସେ ଖଡ଼ଗେ ହତ ହଉ
ତାହାର ପୁତ୍ର ତହିଂ କ୍ଷେତ୍ରୀ ପଣ ରହୁ ।
ତପୀ ପଣେ ସେ ହେଉ ନିରିଜିତ
ଛତ୍ରୀ ପଣେ ସେ ଯେ କରିବ ନିକ୍ଷେତ୍ର ।
ପୁତ୍ର ମୋର ଜପ ତପେ ଦିନ ନଉ
ନାତିର ତହିଂ ପଛେ ଛତ୍ରୀ ପଣ ରହୁ ।
ଯହୁଂ ମୁନିମ୍ଭର ବୋଇଲେ ଏ ବାଣୀ
ଉଷତ ହୋଇଲେ ମାଏ ଝିଏ ଶୁଣି ।୨୦
ଗାଧିର ଭାବାନୀ ଗଲା ନିଜ ପୁରୀ

କାଳେ ପାକାସ୍ପରଶ ହୋଇଲା କୁମାରୀ ।
ସ୍ୱାମୀ ରମନ୍ତେ ସେ ରହିଲାକ ବୀର୍ଯ୍ୟ
ଋଚିକ ମୁନି ଯେ ଦେଲେ ଚରୁ ତେଜ ।
ଯଥାକାଳେ ଯେ ହୋଇଲା ପୁତ୍ର ଜାତ
ସେ ସେ ଋଷି ହୋ ଅଟନ୍ତି ବିଶ୍ୱାମିତ୍ର ।
ଋଷିର ଆଜ୍ଞାରେ ସମଏ ରାଜା ହୋଇ
ଚରୁ ଗୁଣ ଘେନିଣ ହୋଇଲେ ତପଦେହୀ ।
ସତ୍ୟବତୀ କୋଳେ ଯେ ପ୍ରସବିଲା ସୁତ
ଯମଦଗ୍ନି ନାମ ହୋଇଲା ବିଦିତ ।୩୦
ଋଚିକ ମୁନି ତାକୁ ଯେ ବ୍ରହ୍ମଋଷି କଲେ
ଚରୁ ତେଜ ଘେନି ଶିରଚ୍ଛେଦନ
ଯେ ହେଲେ ।
କ୍ଷତ୍ରୀ ଯେ ଅମର ନୋହନ୍ତି ଦେହ ଘେନି
ତେଣୁ ଯମଦଗ୍ନି ଶିର କମଳ ଛିନି ।
ନାତିର ତହିଁ ସେ ରହିଲା ଛତ୍ରୀବୃତ
ତପୀଗଣେ ନିର୍ଜିତ ହୋଇଲା
ଯମଦଗ୍ନି ସୁତ ।
ଶୁଣ ଦଶରଥ ପ୍ରଶୁରାମର କଥା
ଏ ବଚନ ଶୁଣି ବୋଇଲା ମହାରଥା ।
ଭୋ ବଶିଷ୍ଠ ମୁନି ତୁ ସକଳ କଥା ଜାଣୁ
ସୃଷ୍ଟି ପ୍ରଳୟ ଯେ ସକଳ ବଖାଣୁ ।୪୦
ଯମଦଗ୍ନି ଋଷି ଯେ ହୋଇଲାକ ଜନ୍ମ
ପିତାର ଆଜ୍ଞାଏ ହୋଇଲା ବ୍ରହ୍ମ କର୍ମ ।
କେବଣ ପ୍ରକାରେ ତାକୁ ସହସ୍ରାର୍ଜ୍ଜୁନ ମାରି
ତୁ ମୁନି ମୋତ ଏହା କହିବୁ ବିସ୍ତାରି ।
ବଶିଷ୍ଟେ ବୋଲନ୍ତି ଶୁଣ ଅଯୋଧ୍ୟାର ପତି
ତପୀଗଣେ ଗରୁହଂସୀ ଯମଦଗ୍ନୀ ଯତି ।
ବ୍ରହ୍ମା ପ୍ରଶଂସା କରଇ ଯାହାକୁ
ବ୍ରହ୍ମଋଷି ସମାନେ ଗଣନ୍ତି ତାହାକୁ ।
ସେ ଯମଦଗ୍ନିର ଅନ୍ୟାଏ ପଣ ଦେଖି
ଋଚିକ ସେ ସ୍ଥାନରୁ ଗଲାକ ଉପେକ୍ଷି ।୫୦
ପୁତ୍ରକୁ ବହୁତ ସେ ତିଆରିଣ କରି
ସଙ୍ଗତେ ସତ୍ୟବତୀ ଘେନିଣ ତପଚ୍ଚରୀ ।
ଅନେକ ତୀର୍ଥ ବୁଲିଣ ସେ ତପକଲା

କାଳେ ବ୍ରହ୍ମଋଷି ବ୍ରହ୍ମଲୋକ କଇ ଗଲା ।
ଭାରିଯା ସତ୍ୟବତୀ ହୋଇଲାକ ନଦୀ
କଉଶିକ ନାମେଣ ସେ ଜଗତ ପ୍ରସିଦ୍ଧି ।
ଯହୁଁ ପିତାମାତା ଗଲେ ଥାନ ତେଜି
ଯମଦ ଅଗ୍ନି ଯେ ତପେ ଜପେ ମନ ମଜି ।
ରେଣୁକା ନାମେଣ ତାହାର ଅଟଇ ନାରୀ
ଗୃହ ଧର୍ମ ରଖଇ ସେ ପବିତ୍ର
ସୁନ୍ଦରୀ ।୬୦
କାଳକେ ଚାରିପୁତ୍ର ରେଣୁକା ଗର୍ଭୁ ଜାତ
ପିତାର ଗୁଣ ଘେନି ହୋଇଲେ ନ୍ୟାୟବନ୍ତ ।
ଆରେକ ପୁତ୍ର ସେ ପ୍ରସବିଲା ନାରୀ
ପ୍ରଶୁରାମ ନାମ ଦେଲେକ ତପଚାରୀ ।
ପ୍ରତକ୍ଷେ ମୂରତି ଦେଖିଲେ ତମ୍ଭ ଦିଶଇ
ଯିସ କଥାକୁ ପ୍ରଶୁରାମ ବୋଲି
ବାଣୀ ଆସଇ ।
ତେଣୁ ପିତା ତାକୁ ପ୍ରଶୁ ବୋଲି କହି
ଋଷି ଆପଣେ ପ୍ରଶୁରାମ ବୋଲି ରାଇଂ ।
ଆବର ଚାରିଭାଇ ତପକରି ଯାନ୍ତି
ପ୍ରଶୁରାମକୁ ସେ ରାଇଣ ବୋଲନ୍ତି ।୭୦
ନିଗମ ବନ ଯେ ଗୋମତୀ ନଦୀକୂଳେ
ଧ୍ୟାଏ ଧାରଣା ହୋଇ ବସିଲେ ତପଶୀଳେ ।
ପ୍ରଶୁରାମ ତହିଁ ଅଭ୍ୟାସଇ ଯୋଗ
କ୍ଷଣକେ ତାହା ତହିଁ ପ୍ରସର ହୋଇ ରାଗ ।
କାଠିକଟା କୋଠାର ଘେନିଣ ବନେ ପଶି
ମୃଗ ଶୂକର ଯେ ମାରଇ ଆକ୍ରୋଷି ।
ତରୁଣ ସିଂଘର ସେ ଚରଣ କରେ ଧରି
ବାମ କରେ କେଶ ଯେ ଆଣଇଂ ଉଝୁଡ଼ି ।
ପିତାର ସନିଧ୍ୟକୁ ଘୋଷୋଡ଼ାଇଂ ନେଇ
ଦକ୍ଷିଣ କରେ ସେ କୋଠାର ଧରି
ଥାଇ ।୮୦
ଦେଖିଣ ଯମଦଗ୍ନି ଆଶ୍ରିଯ କରଇ ମତି
ଛାଡ଼ ଛାଡ଼ ବାବୁ ମରିବ ବନପତି ।
ପିତାର ଆଜ୍ଞାରେ ଯେ ଛାଡ଼ଇ ତାର ବାଳ
ପଳାନ୍ତି କେଶରୀ ଯେ ପ୍ରାଣର ବିକଳ ।

ପିତା ବିଚାରଇ ଭାରିଯା ପୁତ୍ର ଘେନି
ଯେ ତୋହୋର ଭଲକଥା ନୁହଇ
ଧର୍ମହାନି ।
ତୁ ବାବୁ ବନଜୀବ କିମ୍ପାଇଂଣ ନାଶୁ
ଧନୁଶସ୍ତ୍ର ଘେନିଣ ବିପ୍ରୁଏନ୍ୟେଂଣ ପଶୁ ।
ତପୀଙ୍କର କଥାନିକି ଯେସନକ ହୋଇ
ଏ ବଚନ ଶୁଣି ପ୍ରଶୁରାମ ଭାଷଇ ।୯୦
ତପହିଁ କରିବି ସାଧିବି କ୍ଷେତ୍ରୀପଣ
ଏ ଦୁଇ କଥା ମୋର ନିଅତ କାରଣ ।
କ୍ଷେତ୍ରୀ ହୋଇଣ ମୁଂ ଯେ ସାଧିବଇଂ ମହୀ
ବୀର ବୋଲି ବୋଇଲେଣ ନ ଥୋଇବି
କାହିଂ ।
ତପ କରିବଇଂ ବ୍ରହ୍ମାର ସମାନ
ତଇଲୋକ ମୋତେ ବୋଲିବେ ମହାମୁନ୍ୟ ।
ଏ ଦୁଇକଥା ମୁଂ ନ ପାରିବି ଛାଡ଼ି
ଭୋ ପିତା ମୋତେ ନ ବୋଲ ଆଗ ବଢ଼ି ।
ଶୁଣିଣ ଯମଦଗ୍ନି ହୋଇଲେକ ତୁନି
କିଛିହିଂ ନ ବୋଇଲେ ଭ୍ରାଥ ଯେ
ଜନନୀ ।୧୦୦
ଯେଥୁଅନନ୍ତରେ ପ୍ରଶୁରାମ ଋଷି
ତପେଣ ନିରିଜିତ ହୋଇଲାକ ଆସି ।
ଛତ୍ରୀପଣକରି ବନରେ ବେହଡ଼ଇ
ମୃଗ ଶୂକର ଗଜ ସିଂଘ ବଧ କରଇ ।
ପିତାର ଆଜ୍ଞାରେ ତାହା ଛାଡ଼ି ଦେଇଂ
ଯେଥୁ ଅନନ୍ତରେ କିଛୁଦିନ ଯାଇଂ ।
ଦିନେକ ଯମଦଗ୍ନି ତର୍ପଣ କରୁଛନ୍ତି
ଜଳପାତ୍ର ଘେନି ରେଣୁକା ପାଣି ତୋଳି
ଦିଅନ୍ତି ।
ଚିତ୍ରସେନ ଗନ୍ଧର୍ବ ଯେ ଆକାଶେଣ ଯାଇଂ
ଛାୟା ଦିଶନ୍ତେ ରେଣୁକା ତାହା ଚାହିଁ ।୧୦
ଯହୁଁ ସେ ସ୍ୟତୀ ଯେ ତହିଁକି ତଲେ କଲା
ଋଷିଙ୍କର କରେ ଜଳ ନ ପଡ଼ିଲା ।
ତକ୍ଷଣେ ଋଷି ଯେ ଛାଡ଼ିଲେ ତର୍ପଣ
ରେଣୁକାକୁ ଚାହାନ୍ତି ପ୍ରଜ୍ୱଳିତ କୋପେଣ ।

ତୁ ଲୋ ପାମେରୀ ହୋଇଲୁ ଦୋଋରୀ
ପରପୁରୁଷେ ଚିତ୍ତ ବଳିଲା ତୋହୋରି ।
ଛୁଇଂତ ଭାର୍ଜନ ନୋହିଲୁରେ ନାରୀ
ଯେତେ ବୋଲି ମୁନି ମହାକୋପ କରି ।
ଯେସନେକ ସମୟେ ଯେ ଜ୍ୟେଷ୍ଠପୁତ୍ର ଆସି
ତାହାକୁ ଚାହିଂଣ ଯେ ବୋଇଲେ
ବ୍ରହ୍ମରଷି ।୨୦
ଶୁଣ ତୁ ଚଣ୍ଡରାମ ଏ ମୋହୋର ବାଣୀ
ଏ ତୋହୋର ଜନନୀକି ପକାଅ ଶିର
ହାଣି ।
ଦୋଋରୀ ଚରିତ୍ର ଯେ ମଣିଲୁ ଯେହାର
କୋଠାର ଘେନିଣ ଯେ କର ତୁ ପ୍ରହାର ।
ଚଣ୍ଡରାମ ବୋଲଇ ଶୁଣସି ହୋ ପିତା
ତୁ ସେ ପିଅର ଅଟୁ ସେ ଆମ୍ଭର ମାତା ।
ତୋହୋର ବୀର୍ଯ୍ୟ ସେ ଧଇଲା ଉଦରେ
ଅନେକ କଷ୍ଟ ସେ ସହିଲା ଦୁଃଖ ଭରେ ।
ଦଶମାସ ଗର୍ଭେରେ ଥୋଇଣ ଜନ୍ମ କଲା
ଅତିକଷ୍ଟେ ମରମ ଦ୍ୱାରେ ପ୍ରସବିଲା ।୩୦
ଅନେକ କଷ୍ଟ ଯେ ପାଇଲାକ ପୁଣି
ହୃଦରୁ କ୍ଷୀର ଦେଲାକ ତରୁଣୀ ।
ସେ ଋଣ ତାହାର ଶୁଝାଇନ୍ତ ନୁଆରି
ଏବେ ସଂହାଥେ କେହେର୍ଣେ ତାହା ମାରି ।
ଏ କଥା ଉଚିତ ଯେ ନୁହଇ ଭୋ ପିତା
ପୁତ୍ର ହୋଇ କେହେର୍ଣେ ମାରିବାକ ମାତା ।
ଶୁଣିଣ ମହାରଷି ହୋଇଲେ ମଉନ
କ୍ଷେତ୍ରୀ ତମେ କୋପ ବଢ଼ଇ ଘନ ଘନ ।
ଆବର ତିନିପୁତ୍ରେ ମିଳିଲେକ ଆସି
ତାହାଙ୍କଇ ଚାହିଂ ବୋଲଇ ମହାରଷି ।୪୦
ଏ ତୋହୋର ଜନନୀ କି ପ୍ରାଣେ
କର ନାଶ
ଦୋଋରୀ ଚରିତ୍ର ମଣିଲିରେ ଶିଷ ।
ଶୁଣିକରି ଶିଷେ ସନମତ ନ କଲେ
ଧର୍ମଶାସ୍ତ୍ର ଦେଖାଇ ଅନେକ ଡିଆରିଲେ ।
ବିଶେଷେଣ ଜନନୀ ଆବର ସ୍ତିରୀ ବଧ

ଏଡ଼େ କଥାକୁ ହାଦେ କେ କରିବ ଶଧ ।
ଶୁଣିଣ ପିଅର ଯେ ତବଦ ହୋଇ ବସି
ଏସନକ ସମଏ ପ୍ରଶୁରାମ ମିଳିଲାକ ଆସି ।
ପିତାର ଚରଣେ ସେ କରଇ ନମସ୍କାର
ପୁତ୍ରକୁ ଚାହିଂଣ ଯେ ବୋଲଇ
ମୁନିବର ।୫୦
ଶୁଣରେ ପ୍ରଶୁଧର ଯେ ମୋହୋର ବାଣୀ
ଏ ତୋହୋର ଜନନୀର ପକା ଶିର ହାଣି ।
ଦୋଋରୀ ଚରିତ୍ର ମଣିଲୁଂ ଏହାର
କୋଠାର ଘେନି ବେଗେ କରସି ପ୍ରହାର ।
ଏ ତୋହୋର ଜ୍ୟେଷ୍ଠ ଯେ ଅଟନ୍ତି ଚାରିଭାଇ
ଯେ ମୋହୋର ବୋଲ ଭାଙ୍ଗିଲେ ଜନନୀର
ପାଇଂ ।
ଯେହାଙ୍କର ଶିର ଛେଦସି ପ୍ରଶୁଧର
ମୋହୋର ଆଜ୍ଞା ତୁ ବିଅର୍ଥ ନ କର ।
ଶୁଣି ପ୍ରଶୁରାମ ପିଅର ବଚନ
କ୍ରୋଧ ଅଗ୍ନି ତାହାର ବହଇ ଘନ
ଘନ ।୬୦
କୋଠାର ଘେନିଣ ମାତାର ଶିର କାଟି
ପକୁ ଫଳ ଜାଣି ଭୂମିରେ ଶିର ଲୋଟି ।
ସେହି କୋଠାର ଯେ ପେଷିଲାକ ପୁଣି
ଚାରିଭାଇଙ୍କି ସେ ପକାଇଲା ହାଣି ।
ଦେଖିଣ ସନ୍ତୋଷ ଯେ ଯମଦଅଗ୍ନି ହୋଇ
ଅମୃତ ନୟନେ ପୁତ୍ରକଇ ଚାହିଂ ।
ପ୍ରସନ୍ନ ହୋଇ ଯେ ବୋଲଇ ମୁନିବର
ଯେ ତୋହୋର ଇଚ୍ଛା ସିଦ୍ଧ କରିବି କୁମର ।
ପିତାର ପ୍ରସନ୍ନ ବଦନ ବେଳ ଜାଣି
କୋଠାର ପକାଇଣ ପ୍ରଶୁରାମ ଭଣି ।୭୦
ଭୋ ପିତା ଦୟା କଲୁ ଯେବେ ମୋତେ
ଏକ କଥାଏକ ମାଗୁଅଛି ତୋତେ ।
ଅମର ହୋଇବି ଦେସି ମୋତେ ବର
ଏହି ଦେହ ଘେନି ଭ୍ରମିବି ତିନିପୁର ।
ଯମଦଅଗ୍ନି ବୋଲନ୍ତି ଅସ୍ତୁ ହେଉ
ପବିତ୍ର ଦେହ ଗୋଟି ଯୁଗେ ଯୁଗେ ଥାଉ ।

ଆବର ବରେକ ଯେ ଦେବଇଂ ତୋତେ
ମୁହିଂ
ମାଗ ମାଗ ପୁତ୍ରରେ ଅବଶ୍ୟ ଦେଇଂ ।
ଶୁଣି ପ୍ରଶୁରାମ ଯୋଡ଼ଇ ବେନି କର
ଭୋ ପିତା ଦେବା ମୋତେ ଯେସନେକ
ବର ।୮୦
ଏ ଯେ ଜନନୀ ମୋର ମଲେ ଚାରିଭାଇ
ଏଥିର ଦୋଷ ମୋତେ ଯେମନ୍ତେ ନ
ଲାଗଇ ।
ଋଷି ବୋଇଲେ ତୁ ହୁଅସି ନିଷ୍ପାପ
ଏ ମୋହୋର ଆଜ୍ଞା ପାଳିଲୁରେ ବାପ ।
ମାଗ ଆଉ ବର ଦେବଇଂ ତୋତେ ମୁହିଂ
ପ୍ରଶୁରାମ କର ଯୋଡ଼ିଣ ବୋଲଇ ।
ଯଦ୍ୟପି ପ୍ରସନ୍ନ ହୋଇଲୁ ଭୋ ତାତ
ଯେମନ୍ତେ ଜୀଅନ୍ତି ମୋହୋର ଭ୍ରାଥ ମାତ ।
ଦୋଷ ଅନୁରୂପେ ପାଇଲେକ ଦଣ୍ଡ
ପାଞ୍ଚ ଜଣଯାକ ହୋଇଲେ ଦଶଖଣ୍ଡ ।୯୦
ଏବେ ତୁ ଦୟା ଯେବେ କଲୁ ତାତ ମୋତେ
ଦଇନି କରିଣ ମାଗୁଅଛି ତୋତେ ।
ଜନନୀ ଭାଇନ୍ତ ଜୀଆଇଂ ମୋତେ ଦେବୁ
ଆବର କଥାଏ ଭୋ ପିତା କରିବୁ ।
ସୋଦର ମାଇଲା ବୋଲି ନ ଜାଣିବେ କେହି
ମରିଥିଲୁ ବୋଲି ଭ୍ରାନ୍ତି ନ ଥିବ କାହାରି
ଦେହୀ ।
ଏହି ବର ମୋତେ ଦେବାକ ଭୋ ତାତ
ଶୁଣିଣ ପ୍ରସନ୍ନ ହୋଇଲେ ତପୋବନ୍ତ ।
ଜୀଅନ୍ତୁ ବୋଲି ଯେ ବୋଇଲେ ମହାମୁନି
ତଛଣେ ବ୍ରତିଲେ ଚାରିଭାଇ
ଜନନୀ ।୧୦୦
ଉଠି ନମସ୍କାର କରନ୍ତି ମୁନିପାଦେ
ସ୍ୱର୍ଗେ ସାଧୁ ସାଧୁ କରନ୍ତି ବିବୁଧେ ।
ଧନ୍ୟ ପ୍ରଶୁରାମ ଧନ୍ୟ ତୋର ବୁଦ୍ଧି
କଥାର ଛଟକେ ବୋଧିଲୁ ତପୋନିଧି ।
ପିତାର ଆଜ୍ଞା ପାଳିଲୁ ଯତ୍ନ କରି

ମାତା ଭାଇ ଜୀଆଇଲୁ ସୁବୁଦ୍ଧି ମନେ ଧରି ।
ଅମର ହୋଇଲୁ ଯେ ରଖିଲୁ ନିଜ ପ୍ରାଣ
ବାବୁ ପ୍ରଶୁରାମ ଭୃଗୁ କୁଳ ଉଦ୍ଧାରଣ ।
ସ୍ୱର୍ଗେ ଶୁଭିଲାକ ଏସନେକ ବାଣୀ
ଯମଦଗ୍ନି ଋଷି ସନ୍ତୋଷ ତାହା ଶୁଣି ।୧୦
ପ୍ରଶୁରାମକଇ ନେଇଂ ବସାଇଲା କୋଳେ
ଚୁମ୍ବନ ଦେଇଣ ବୋଲନ୍ତି ତପଶୀଳେ ।
ପ୍ରଶୁରାମ ତୁ କୁଳକୁ ଉଦ୍ଧାରଣ
ପ୍ରାଣର ଧାରଣ ତୁ ଜୀବନର କାରଣ ।
ତୋହୋରେ ବଂଶ ହୁଅଇ ମୋହୋର ରକ୍ଷା
ତୋତେ ସେ ଦେବିନା ବ୍ରହ୍ମଜ୍ଞାନ ଦୀକ୍ଷା ।
ଯେତେ ବୋଲି ମୁନି ପ୍ରଶୁରାମ କର୍ଣ୍ଣେ
ସାରସ୍ୱତ ମନ୍ତ୍ର କହିଲେ ଶୁଦ୍ଧ ମନେ ।
ଯେଣେ ସେ ନ ମରିବୁ ଯୁଗେ ଯୁଗେ ଥିବୁ
ଯେଣେ ସେ ଦୟା କରିବେ ବାସୁଦେବ
ପ୍ରଭୁ ।୨୦
ନାରାୟେଣ ମନ୍ତ୍ରେ ସେ ଉପଲେଶ କଲେ
ଧ୍ୟାୟେ ଧାରଣାମନ୍ତ୍ର ତାହାକଇ ଦେଲେ ।
ତପର ସଙ୍ଗତି କହିଲେ ଯିସ ଯିସ
ତେବେ ସେ ସକଳ ଦେବେ ହୋନ୍ତି ବଶ୍ୟ ।
ବିଷ୍ଣୁର ଧନୁ ଯେ ରଚିକ ତହିଂ ଥିଲା
ଯମଦଅଗ୍ନିକି ତାହା ଦେଇଣ ପିତା ଗଲା ।
ସେ ଧନୁ ପ୍ରଶୁରାମକୁ ସମର୍ପିଲେ ତାତ
ବୋଇଲେ ଯେଣେ ବାବୁ ଜିଣରେ ଜଗତ ।
ଯେ ଦୁଇ ଶହସ୍ର ଯେ ପ୍ରାପତ ହୋଉ ତୋତେ
ଅସ୍ତ୍ର ଶହସ୍ର ବିଦ୍ୟା କହିଲେ ମୁନି
ଯେତେ ।୩୦
ଯେବଣ ମନ୍ତ୍ରେ ଚଳଇ ଯେବଣ ଶର
ଯହିଂକି ପାଦ ଗତି ଯେବଣ ବେଭାର ।
ଶହସ୍ର ଶାହାସ୍ତ୍ର ବିଦ୍ୟା କହିଲେ ମୁନି ଯହୁଂ
ପ୍ରଶୁରାମ ସାନନ୍ଦ ହୋଇଲାକ ତହୁଂ ।
ଯେଥୁ ଅନନ୍ତରେ ଶୁଣ ଦିବ୍ୟରୀତି
ବିଷ୍ଣୁର ଶାୟେକ ଯେ ଘେନି ଭୃଗୁପତି ।
ଆୟେତ କରିଣ ଯେ ବିନ୍ଧିଲାକ ବାଣ

ରଚିକ ମୁନି ଦେଲା ଚରୁର କାରଣ ।
କ୍ଷତ୍ରୀ ଅଂଶହୋଇ ହୋଇଲେ ମହାବଳୀ
ବନେ ପଶିଣ ଯେ ମୃଗ ଶୂକର ଦଳି ।୪୦
ତେହେର୍ଣ୍ଣେକ କାଳେ ଗଲା ତହିଂ ଦିନ
ପ୍ରଶୁରାମ ତହୁଂ ଯେ ହୋଇଲେ ଅନୁଆନ ।
ଦେଖିଣ ଆନନ୍ଦ ଯେ ହୋଇଲେ ମହାମୁନି
ଆବର ରେଣୁକା ଗର୍ଭଧାରୀ ଜନନୀ ।
ପୁତ୍ରକୁ ପ୍ରଶଂସା କରନ୍ତି ବହୁତ
ଏଥୁଅନନ୍ତରେ ଶୁଣ ହୋ ଦଶରଥ ।
ଦିନେକ ଯମଦଅଗ୍ନି କରନ୍ତେଣ ଧାନ
ଆସିଣ ମିଳିଲା ଯେ ସହସ୍ରାର୍ଜ୍ଜୁନ ।
ଜାଣିଣ ମୁନିବର ପୂଜା ଆଦି କଲା
ଅନୁରୂପେ ରାଜାକୁ ଭୁରି ଭୋଜନ
ଦେଲା ।୫୦
ରାୟେ ପଋରିଲେ କେମନ୍ତେ ସଞ୍ଚା ଦେଲୁ
ଯେତେ ସନ୍ୟକୁ ମୋର କ୍ଷୁଧାରେ
ସମ୍ଭାଳିଲୁ ।
ସୁରଭିର ପ୍ରସାଦେ ଯତି ରାଜାକୁ କହିଲା
ଲୋଭେଣ ନୃପତି ହିଂ ସେ ଗୋମାତାକୁ
ମାଗିଲା ।
କଦାଚିତେ ସୁରଭିକି ସେ ନ ଦେଲାକ ଯତି
କୋପେଣ ଖଡ଼ଗ ସେ ମାଇଲା ମହୀପତି ।
ଯମଦଅଗ୍ନିର ଶିର କମଳ ଯେ ତୁଟି
ପବିତ୍ର ଅଙ୍ଗ ଗୋଟି ଭୂମିରେଣ ଲୋଟି ।
ପତି ଚାହିଂଣ ଯେ ବୋଲଇ ଜନନୀ
ଯେକାନ୍ତ ହୋଇଲେ ସେ ଯମଦଅଗ୍ନି
ମୁନି ।୬୦
ପିତୃ କାର୍ଯ୍ୟ ତୁମ୍ଭେ କର ପ୍ରଶୁଧର
ଛତ୍ରୀ ବୋଲାଇ ଯେ ଧଇଲ ଧନୁଶର ।
ଯେ ଚାରିପୁତ୍ର ଯେ ତପରେ ଆସକତ
ରାଜାକୁ କି ଯେ କରିବେ ମନ୍ଦକୃତ ।
ତୁ ଯେବେ ପାରିବୁ ଉଦ୍ଧର ପିତା ମାନ
ଭ୍ରଥାକୁ ଘେନି ମୁଂ ପଶିବି ହୁତାଶନ ।
ଯେତେ ବୋଲି ଦେବୀ ରେଣୁକା ମହାସ୍ୟତୀ

ଚିତା ଆରୋପଣ ଯେ କରାଇଲା ସତୀ ।
ସ୍ୱାମୀକି ଘେନିଣ ଅଗ୍ନିରେ ପ୍ରବେଶ ହୋଇ
ଜ୍ୟେଷ୍ଠପୁତ୍ର ଚଣ୍ଡରାମ ଦେଲା ମୁଖେ
ଜୁଇ ।୭୦
ଦଶକ୍ରିୟା ସାରିଣ ତପକରି ଗଲା
ଆବର ତିନିଭାଇକି ସଙ୍ଗେ ଘେନିଗଲା ।
ପ୍ରଶୁରାମକୁ ଯେ ବୋଇଲା ବାବୁ ଆସ
ଆମ୍ଭେ ରାଜାକୁ କରିବା ଅବା କିସ ।
ନୃପତିର ବାହୁବଳେ ଆମ୍ଭେ ତପକରି
ଅଜ୍ଞାନ ଚରିତ ଯେବେ କଲାକ ଦଣ୍ଡଧାରୀ ।
ମହାଋଷି ବଧ କଲା ସୁଜ୍ଞାନ ରାଜା ହୋଇ
ଯେ ପାପ କଥା ନ ଥିଲା ତାହା ତହିଂ ।
ଯେତେବେଳେ କାର୍ତ୍ତିକବୀର୍ଯ୍ୟ ମୃତ୍ୟୁ ପାଇ
ରାଜା ନୋହିବ ବୋଲି ଗଲାକ
ପଳାଇ ।୮୦
ଶୁଣି ପାତ୍ର ମନ୍ତ୍ରୀ ମିଳିଲେ ତାର ପାଶ
ଋଷିର ଆଶ୍ରମେ ସେ ହୋଇଲେ
ପରବେଶ ।
ଋଷିଙ୍କି ବୋଇଲେ ତୁମ୍ଭେ ଶୁଣ ତପଋରୀ
ହିରହର ବଂଶେଣ ହୋଇବେ ଦଣ୍ଡଧାରୀ ।
ପିତା ଯେହାର ଯେ ପାଇଲା ମରଣ
ରାଜ୍ୟ ଛାଡ଼ଇ ଏ କେବଣ କାରଣ ।
ଶୁଣି ମହାମୁନି ଅର୍ଜ୍ଜୁନକୁ ରାଇଂ
ରାଜ୍ୟରେ ରାଜା ହୁଅ ବୋଲିଣ
ଆଗ୍ୟାଂ ଦେଇ ।
କୁମର ବୋଇଲା ମୁଂ ନୁହଇ ନୃପତି
କିମ୍ପାଇ ପାଇବି ମୁଂ ଯେତେକ ଦୁର୍ଗତି ।୯୦
ରାଜା ହୋଇଲେଣ ଜନ୍ମ ଆଉ ନାହିଂ
ତେତେ ପାପ ଭାରା ମୁଂ ସହିବି କିସ ପାଇଂ ।
ଋଷି ବୋଇଲେ ବାବୁ କିମ୍ପାଇ ତୁ ଡରୁ
ରାଜାର ପୁତ୍ର ହୋଇ ରାଜ୍ୟକୁ ଭୟକରୁ ।
ତୋହୋର ନ ଗଲେ କେ ପାଳିବାକ ପୃଥ୍ୱି
ତୁ କିମ୍ପା ପଳାଇରେ ପଶୁ ଆସି ଯେଥି ।
କୁମର ବୋଇଲା ମୁଂ ରାଜ୍ୟକୁ ଭଏ କରଇ

ଅନେକ ଶତ୍ରୁ ଅଛନ୍ତି ତହିଂକି ଡରଇ ।
ଋଷି ବୋଇଲେ ଯେ ଅଛି ତୋର ବଳ
କିମ୍ପାଇ କୁମର ତୁ ହୁଅସି ବିକଳ ।୧୦୦
ମନ୍ତ୍ରୀ ଅମାତ୍ୟେ ଅଇଲେ ତୋତେ ନେଇ
ନ ଜାଣିଣ ନାସ୍ତି କରୁ ବାଳ ପୋଇ ।
ଯାସି ରାଜ୍ୟେଣ ତୁ ହୋସି ନୃପତି
ତୋହୋରେ ନ ଗଲେ କେ ପାଳିବାକୁ
ପୃଥି ।
କୁମର ବୋଇଲା ଶୁଣ ବ୍ରହ୍ମଋରୀ
କାର୍ତ୍ତିକର ଶତ୍ରୁ ଲେଖା କରିତ ନ ପାରି ।
ରଥ ଗଜ ମୋର ଅଛଇ ଅଳପ
ତେଣୁ ସେ ମନରେ ଧରଇ ବିକଳ୍ପ ।
ତୁ ଯେବେ ଦୟା କରିବୁ ମୁନି ମୋତେ
ସଙ୍ଗେଣ ସଖା ଯେବେ ହୋଇବୁ
ଅନୁବ୍ରତେ ।୧୦
ମୋହୋର ପାପ ପୁଣ୍ୟ ତୋତେ ନାଗିଥିବ
ତେବେ ସେ ଚିତ୍ତ ମୋର ନିଷ୍ଚିନ୍ତ ହୋଇବ ।
ଋଷି ବୋଇଲେ ତୁ ଶୁଣସି କୁମର
ଯେ ତୋହୋର ଇଛା ମାଗସି ହୋ ବର ।
ହୋଇବି ପ୍ରସନ୍ନ କରିବି ତୋର କାର୍ଯ୍ୟ
ଏ ରବିତଳେ ଯେ ହୋଇବୁ ମାହାବୀର୍ଯ ।
ଶୁଣି କର ଦୁଇ ଯୋଡ଼ଇ କୁମର
ହୋଇଲୁ ପ୍ରସନ୍ନ ଯେବେ ଦେସି
ମୋତେ ବର ।
ଯୁଦ୍ଧେଣ ସମାନ୍ୟ ନୋହିବ ମୋତେ କେହି
ଏକାଙ୍ଗ ଚକ୍ରବର୍ତ୍ତୀ ହୋଇବି ସାତ
ମହୀ ।୨୦
ଅନ୍ତରିକ୍ଷେ ଗମନ କରିବ ମୋର ରଥ
ଇଛା ହୋଇଲେ ହେବ ମୋର
ସହସ୍ରେକ ହାଥ ।
ଏ ବର ଦେଲେ ମୁଂ ହୋଇବି ନୃପତି
ଅସ୍ତୁ ହୋଉ ବୋଇଲେ ଦତାତ୍ରୟ ଯତି ।
ଶୁଣିଣ କୁମରମଣି ମନ୍ତ୍ରୀଗଣ ଘେନି
ପ୍ରବେଶ ହୋଇଲା ଆସି ଆପଣା ମେଦିନୀ ।
ସିଂହାସନେ ବସି ଧରାଇଲା ଛତ୍ର
ଅଭିଷେକ ହୋଇଲା ଯେ
କାର୍ତ୍ତବୀର୍ଯ୍ୟ ପୁତ୍ର ।
ପିତାକୁ ଅଗ୍ନିରେ ଦହନ କରାଇଲା
ଯେ ପିତୃକାର୍ଯ୍ୟ ତାହା ପ୍ରୋହିତ
ସାରିଲା ।୩୦
ଚତୁର୍ଦ୍ଦିଗ ରାଜାନ୍ତ ଜିଣିଲାକ ଧରି
ପୃଥିରେ ନୃପତି ନୋହିଲେ କେହି ସରି ।
ସପତ ଦ୍ୱୀପେଣ ହୋଇଲା ଏକ ରାଜା
ସମସ୍ତ ପୁରେଣ ପାଇଲା ଅଗ୍ରପୂଜା ।
ଛତ୍ରୀ ହୋଇ ରଣେ ସରି ସମ ନାହିଂ
ଦୁଷ୍ଟ ଜନନ୍ତ ସେ ଦଣ୍ଡଧାରୀ ନ ସହଇ ।
ଦତାତ୍ରୟ ଋଷିଙ୍କର ବର ପରସନେ
ପୃଥି ସାଧ୍ୟ କଲା ସହସ୍ରାର୍ଜ୍ଜୁନେ ।
ଯେ ଅବା ଦୋଷ ହାଦେ କରନ୍ତି ମନ୍ଦପ୍ରାଣୀ
ତକ୍ଷଣେ ସେ କଥା ଜାଣଇ ନୃପମଣି ।୪୦
ବିବାନ ଆରୋହିଣ ମିଳଇ ତାର ଆଗେ
ଦୋଷ ଅନରୂପେ କରଇ ପ୍ରାଣତ୍ୟାଗେ ।
ଦୁଷ୍ଟ ଜନକଇ ଲାଗିଲା ମନଭ୍ରାନ୍ତି
ସଜନ ଜନଙ୍କର ଫିଟିଲା ଦୁଗତି ।
ମଗଧ ଦେଶେଣ ଯେ ବ୍ରାହ୍ମଣ ଚନ୍ଦ୍ରାଜିତ
ଶଶୀକର ନାମେ ଅଟଇ ତାର ପୁତ୍ର ।
ରୂପେଣ ସୁନ୍ଦର ସେ ଯୁବା କାମ ଜାଣି
ଧନବନ୍ତ ପଣେ କୋବେର ସାଙ୍ଗେ ଗଣି ।
ତାହାର ନାରୀର ନାମ କାଞ୍ଚଆଭା
କେତେହେଂକ ସମୟେ ସେ
ହୋଇଲାକ ଯୁବା ।୫୦
ଶଶୁର ଚନ୍ଦ୍ରାଜିତ ପଣ୍ଡିତକୁ ରାଇ
ଶ୍ରୀଫଳ ତଣ୍ଡୁଳ ସେ ଦେଇଣ ଗଣାଇ ।
କେବଣ ଦିନେ ବନ୍ଧାପନା କହସି ବିଚାରି
ଶୁଣିଣ ଜଉତିଷ ଯେ ପାତିଲାକ ଖଡ଼ି ।
ଗ୍ରହଗଣନା ପାଇଂ କଲାକ ଯେକ କୋଷ୍ଠୀ
ରଜଚକ୍ର ବିଧାନ କୃତ୍ତିକା ନକ୍ଷତ୍ର ଗୋଟି ।
ଶୁଭାଶୁଭ କଥା ଯେ ଜାଣି ବିଚରଇ
ଶୁଭଲଗ୍ନ ଯୋଗ ବାର ବିଚାର କରଇ ।
ଚନ୍ଦ୍ରାଜିତକୁ ସେ ବୋଇଲା ଗଣକ
ଶୁଭଯୋଗ ନାରୀର ପତିର ସଙ୍ଗତେ
ତ ।୬୦
ଶୁଭଲଗ୍ନ ଲକ୍ଷଣ ହୋଇବ ସତ୍ୟବାଦୀ
ଧନ ପୁତ୍ର ପ୍ରାପତ ହୋଇବ ପରସିଧି ।
ଆବର ମାସେକ ଯେ ତିନିଦିନ ଯିବ
ଶୁକ୍ର ଗ୍ରହ ଗୋଟି ଉଦୟେ ହୋଇବ ।
ବୈଶାଖ ଶୁକଳ ତ୍ରିୟୋଦିଶୀ ତିଥି
ସେ ତିଥିରେ ହୋଇବ ବନ୍ଧାପନା ବିଧି ।
ଯେତେକ କହିଣ ଯେ ଗଲା ଜଉତିଷ
ଚନ୍ଦ୍ରାଜିତ ମନରେ ହୋଇଲା ହରଷ ।
ପୁତ୍ର ଶଶୀକର ରାଇଣ ତିଆରି
ପଣ୍ଡିତ କହିଲା ବାବୁ ଗ୍ରହକୁ ବିଚାରି ।
ଚଇତ ଗଲେଣ ସେ ହୋଇବ କାଳ ଶୁଦ୍ଧି
ବୈଶାଖରେ ହୋଇବ ବନ୍ଧାପନା ବିଧି ।
ଶୁଣିଲା ଶଶୀକର ପିତାର ଯେ ବାଣୀ
ହୋଉ ବୋଲି ବୋଇଲା ମନେ ମନେ
ଗୁଣି ।
ଯେଥୁ ଅନନ୍ତରେ ଗଲା ଦିନା ଦଶ
ଭାରିଯାକୁ ଦେଖି ଶଶୀକର ହୋଇଲା
ହରଷ ।
ଦିନେ ଦିନେ ଯହୁଂ ହୋଇଲା ଅନୁଆନ
ସୁନ୍ଦର ସୁବଳିତ ଜାନୁ ଯଉବନ ।
ଶଶୀକର ତାହାକୁ ଚାହାଇଂ ନିରୋପିଣ
ମନେ ମନେ ରତି ଇଛଇ ପୁଣ ପୁଣ ।୮୦
ଯେ ମୋହୋର ଭାରିଯା ରୂପେ ରୂପବନ୍ତୀ
ବନ୍ଧାପନା ହୋଇଥିଲେ ସୁଖେ ରମଣ
କରନ୍ତି ।
ଥନ ଯଉବନ ମର୍ଦ୍ଦନ୍ତି ମୋହୋର କରେ
ଶୃଙ୍ଗାର ଭୋଗ କରନ୍ତି ବିବିଧ ପ୍ରକାରେ ।
ସୁରଙ୍ଗ ଅଧରେ ଦିଅନ୍ତି ନା ଚୁମ୍ବନ୍ୟ
ଯେସନେକ ବିଋରୁଥାଇ ଶଶୀକର ମନ ।
ଦିନେକ ଘରେଣ ଯେ ନାହିଂ ପୁଣ କେହି

କାଞ୍ଚୁଆଭା ଯେକା ରାହୁଣ ଅଛଇ ।
ଯେସନ ସମୟେ ଅଇଲା ଶଶୀକର
ଦେଖିଲାକ ଦୁଛା ହୋଇଅଛି ଘର ।୯୦
ପିତା ମାତା ଭଗ୍ନି କାହାକୁ ହିଂ ନ ଦେଖି
ଶଶୀକର କାମଭରେ ହୋଇଲାକ ଦୁଃଖୀ ।
କାଞ୍ଚୁଆଭାକୁ ସେ ଯାଇଣ କୋଳ କଲା
ହିଆରେ ହିଆ ଲଗାଇ ମୁଖରେ ଚୁମ୍ବନ୍ୟ
ଦେଲା ।
ବୋଇଲା ସଖିରେ ରଖ ମୋର ପ୍ରାଣ
ହୃଦରେ ପୀଡ଼ିଲା ମୋର କାମଦେବର
ବାଣ ।
ତୋ ରୂପ ଦେଖିଣ ଜୀବନ ଅଥିର
ସୁରତି ଦେଇ ସଖିରେ ବାରେକ ଉଧର ।
କାଞ୍ଚୁଆଭା ବୋଇଲା ହୋଇଲକି ବାଇ
ମୁଇଂ ତୋର ଭାବିନୀ ଯେ ଅଟଇ ତୋର
ବିଭାଇ ।୧୦୦
ମୋହୋର ଯଉବନ ତୋତେ ହେଂ ସେ
ଯୋଗ୍ୟ
କାଳ ବେଳ ଜାଣିକର ତାହା ଭୋଗ୍ୟ ।
ଯେବେ ତୁ ଭୋ ନାଥ ନ କର ମୋତେ
ଇଚ୍ଛା
ଯେ ସମୟେ ନୁହଇ ସେ ସୁରତିର ବାଞ୍ଛା ।
ଅପ୍ରତିଷ୍ଠା ନାରୀକି ରମିତ ଇଚ୍ଛା କରୁ
ଅବୋଧ ଯୁବତୀ କି ବଳେ କିମ୍ପା ଧରୁ ।
ଅପ୍ରତିଷ୍ଠା ନାରୀ ମୁଂ ଛୁଇଂତ ଅଭାର୍ଜନ
ବନ୍ଧାପନା ହୋଇଲେ ରଂଜିବି ତୋର ମନ ।
ଛାଡ଼ ଛାଡ଼ ଭୋ ନାଥ ନକର ଲୋଭ ଚିତ୍ତ
ଲୋକ ଜାଣିଲେ ଯେ ମୋତେ ବୋଲିବେ
ମନ୍ଦକୃତ ।୧୦
ଶଶୀକର ବୋଲଇ ଶୁଣରେ ସୁନ୍ଦେରୀ
ଯେ ତୋ ରୂପ ଦେଖି ମୁଚ୍ଛିତ ନ ପାରି ।
ନ କର ବିରୋଧ ମୁଂ କରିବି ରମଣୀ
ତୁ ମୋହୋର ପ୍ରାଣର ଅଟୁ ସଙ୍ଗାତୁଣୀ ।
ନ କର ନିରାଶ ତୁ ଶରଦ ଚନ୍ଦ୍ର ବଦନୀ

ଏହିକ୍ଷଣି ଆସିବେ ମୋ ପିଅର ଜନନୀ ।
କାଞ୍ଚୁଆଭା ବୋଇଲା ତୁ ନ ଧର ଦୁଷ୍ଟମତି
ସୁଜନ ଜନଙ୍କର ନୋହଇ ଯେସନେକ
ଗତି ।
ଛାଡ଼ ଛାଡ଼ ସ୍ୱାମୀ ନ ଧର ମୋର ଅଙ୍ଗ
ଶୁଣିଣ ଭ୍ରଥା ଯେ କଲା ମନେ ଖଂଗ ।୨୦
ବଳେ ରମିବ ବୋଲି ଫେଡ଼ଇ ଶାଢ଼ୀ ଧରି
ଲାଜେଣ ସୁନ୍ଦେରୀ ଯେ କର ଶିରେ ମାରି ।
ଯହୁଂ ସେ ଧର୍ମ ଲଙ୍ଘଇ ଶଶୀକର
ଯୋଗେ ଜାଣିଲେ ତାହା ଅର୍ଜ୍ଜୁନ
ନୃପବର ।୩୦
ବିବାନ ଆରୋହି ସେ ମିଳିଲାକ ଆସି
ଦେଖି ବେନି ଜନେ ଭଏ ମନେ ତ୍ରାସି ।
କରେ ଖଡ଼୍ଗ ଧରି ପଚାରଇ ରାଏ
ଧର୍ମ କିମ୍ପାଇ ଲଙ୍ଘୁ ଚନ୍ଦ୍ରଜିତର ପୋଯେ ।
ବ୍ରାହ୍ମଣ ନୋହିଲେ କାଟନ୍ତି ତୋର ଶିର
ଏତେ ବୋଲି ବାହୁଡ଼ି ଗଲା ନୃପବର ।
ସାତ ଘଡ଼ିମାନେ ବୁଲଇ ସାତଦୀପ
ମନୁଷ୍ୟ ଦେଖିଲେ ଜାଣଇ ପୁନ୍ୟ ପାପ ।
ଧର୍ମେଣ ରାଜ୍ୟ ସେ ପାଳଇ ମହୀପତି
ଏତେ କାଳେ ଆସି କଲାକ ଅନୀତି ।
ଏ ଯମଦଗ୍ନି ଯେ ଅଟଇ ବ୍ରହ୍ମରଷି
ପୂର୍ବେ ଯେହାକଇ ହୋଇଲାକ ଦୋଷୀ ।
ଏହାର କର୍ମ ଯେ ଘେନିଣ ଯେ ଗଲା
ଶୋକ ସମୋଦ୍ରେ ଯେ ଆମ୍ଭକୁ ବୁଡ଼ାଇଲା ।
ଆସ ଆସ ପ୍ରଶୁରାମ ତପକରି ଯିବା
ସହସ୍ରା ଅର୍ଜ୍ଜୁନ ସୀମାନ୍ତେ ନ ଥିବା । ୪୦
ଚଣ୍ଡରାମ ମୁଖୁଂ ଏସନେକ ବାଣୀ ଶୁଣି
ଶୁଣି ପ୍ରଶୁରାମ ଯେ କୋପେ ଶିର ଝୁଣି ।
ବୋଇଲା କିମ୍ପାଇ ମୁଂ ଯିବି ତପକରି
ନ ସାଧିଲା ଯୋଗ ନୋହଇ ମୋହୋରି ।
ଧନୁ ଶସ୍ତ୍ର ଯେବେ ଧଇଲଇଂ କର
ଏହା ଧରି କିମ୍ପା ଲୁଚିବି ବନ ଘୋର ।
ରଷିକି ଅଦୋଷେ ମାଇଲା ରାଜା ହୋଇ

ଦେହରେ ଜୀବନ ଥିଲେ କେମନ୍ତେ
ସହିବଇଂ ।
ପିତାର ଛଳେ ମୁଂ ମାରିବି ନୃପବର
ନୋହିଲେ ଧନୁ ଶସ୍ତ୍ର ନ ଧରିବି କର ।୫୦
ତାହାର ରୋଧିରେ ମୁଂ ତର୍ପଣ କରିବି
ତେବେ ସେ ପିତାର ମୁଂ କଷ୍ଟ ପାଶୋରିବି ।
ତୁମ୍ଭେ ଚାରିହେଂ ଯେ ବିପ୍ରୁଣ୍ୟେ ତପକର
ମୁହିଂ ଯେ ଅବଶ୍ୟ କରିବି ସମର ।
ସହସ୍ରା ଅର୍ଜ୍ଜୁନକୁ ପାରଇଂ ଯେବେ ମାରି
ତେବେ ସେ ଜୀବନ ସାର୍ଥକ ମୋହୋରି ।
ନୋହିଲେ ଅଗ୍ନିଜାଳି ପଶିବଇଂ ମୁହିଂ
ଏକଥା ସତ ମୁଂ କହଇ ଶସ୍ତ୍ର ଛୁଇଂ ।
ଶୁଣି ଚଣ୍ଡରାମ ତିନିଭାଇ ଘେନି
ହେମଗିରି ସନିଧକୁ ଚଳିଲେ ଚାରି
ମୁନି ।୬୦
ସରସ୍ୱତୀ ନଦୀ ତୀରେଣ ବାସ କଲେ
କନ୍ଦଫଳ ଖାଇ ତପେଣ ଦିନ ନେଲେ ।
ଏଥୁଅନନ୍ତରେ ବୀର ପ୍ରଶୁରାମ
ପ୍ରବେଶ ସହସ୍ରା ଅର୍ଜ୍ଜୁନ ଭୁବନ ।
ଯେ ମୁଖେ ପଡ଼ଇ ଛେଦଇ ତାହାର ଶିର
ରଥ ଗଜ ଅଶ୍ୱ ପଡ଼ିଲେ ନିରନ୍ତର ।
ଦାଣ୍ଡ ହାଟ ଲୋକେ ଯେ ପଳାଇଣ ଗଲେ
ଥୋକାଯେକ ଲୋକ ପ୍ରଶୁରାମ ହାଥେ
ମଲେ ।
ରାଜାର ଆଗରେ କହିଲେ ଯାଇଂ ଚାର
ଭୋ ଦେବ କଟକ ତୋର ହୋଇଲା
ନାରଖାର ।୭୦
ଯମଦଗ୍ନି ରଷିର କନେଷ୍ଟ ତନଏ
ପ୍ରଶୁରାମ ବୋଲିଣ ଯାହର ନାମ ହୋଏ ।
ନଗ୍ରେ ପଶିଣ ଯେ ବହୁ ବଳ ମାରି
ଦୁତୀ ଯମ ଜାଣି ସହସ୍ର ଅଛି ଧରି ।
ରଥ ଗଜ ଅଶ୍ୱ ଅନେକ ନାଶକଲା
ବାଣ ବର୍ଷିଜାର ଅନେକ ମାଇଲା ।
ଦାଣ୍ଡରେ ବୁହାଇଲା ରକତ ଏଇ ନଈ

ବୋଇଲା ଏ ପୁରେ ନ ଥୋଇବି କାହିଂ ।
ମୋହୋର ପିତାକୁ ଯେ ମାଇଲା ଅକାରଣେ
ଆଜି ମୁଂ ଏ ପୁର ସଂହାରିବି ରଣେ ।୮୦
ଶୁଣି ନୃପବର ବୋଇଲାକ ହସି
ଧନୁ ଶହସ୍ର ଧରି ସେ କେହେର୍ଣ୍ଣେ ବୋଲାଇ
ଋଷି।
ଅଜ୍ଞାନ ମୂର୍ଖ ସେ ନ ଜାଣଇଂ କିଛି
ପ୍ରାଣଦେବାକୁ ସେ କିମ୍ପାଇଂ ଆସିଅଛି ।
ବାପର ପରାଏ ହୋଇବ ପରା ଏହି
ମୋହୋର ମହିମା ନ କହନ୍ତି ଅବା କେହି ।
କିମ୍ପାଇ ସେ ମୋର ନଗ୍ରେ ଲୋକନ୍ତ ମାଇଲା
ଯତି ବୋଲାଇଂ ସେ ଧନୁଶସ୍ତ୍ର ଧଇଲା ।
ଆଣସି ଯାଇଣ ଧରି ବେଗେ ତାହା
ପୁତ୍ରକୁ ଆଜ୍ଞା ଦେଲା ସେ ନରନାହା ।୯୦
ଶୁଣିଣ କୁମରେ ଗଲେ ବଳ ଘେନି
ଯାଇଂଣ ଭେଟିଲେ ସେ ପ୍ରଶୁରାମ ମୁନି ।
ସହସ୍ରେ ପୁରକରି ବେଢ଼ିଲେ ମୁନିକୁ
ବଜ୍ର ସମ ବାଣ ବିନ୍ଧିଲେ ତାହାକୁ ।
ନାରାଜ ନିରନ୍ତରେ ମେଘ ବୃଷ୍ଟି ଜାଣି
ପ୍ରଶୁରାମ ଉପରେ ବିନ୍ଧନ୍ତି ବେଗେ ଆଣି ।
ଭାଲ ମୂଷଳ ଶକତି ମୁଦ୍ଗର
ଗଦା କୋନ୍ତ ଛେଲ ଭୁଷଣ୍ଡି ଅସିବର ।
ଯେ ଯାହାରେ ପରିଘ ମାରନ୍ତି ନିଠାଇ
ପ୍ରଶୁରାମ ସହି ଶହସ୍ର ବିନ୍ଧଇ ।୧୦୦
ରକତ ନଦୀ ଗୋଟା କ୍ଷଣକେ ବୁହାଇଲା
ଆପଣେ ପ୍ରଶୁରାମ ବହୁତ ଶହସ୍ର କଲା ।
ଗୁରୁତର ସଂଗ୍ରାମ ବଢ଼ିଲାକ ଯହୁଂ
ଭଏ ପ୍ରଶୁରାମ ଅପସରଇ ତହୁଂ ।
ମାୟା ଯୁଦ୍ଧକୁ ସେ ବହୁତ ଭୟ କଲା
ପଣ୍ଡିତ ଗୁଣ ଘେନି ବାହୁଡ଼ିଣ ଗଲା ।
ପ୍ରଶୁ ପିଠିଆଇଲେ ଗୋଡ଼ାଇଲେ ବଳ
ମାର ମାର ଶବଦ ଶୁଭଇ ଚହଳ ।
ପଳାଇ ପ୍ରଶୁରାମ ପଶିଲା ବନ ଘୋରେ
ବାହୁଡ଼ି ଗଲେ ସହସ୍ରା ଅର୍ଜ୍ଜୁନ
କୁମରେ ।୧୦

ପିତାର ଆଗରେ କହିଲେ କାହାଣୀ
ଗଦ ଗଦ ହୋଇ ହସଇ ତାହା ଶୁଣି ।
ପୁତ୍ରକୁ ଚାହିଂଣ ବୋଲଇ ନରପତି
ଯୁଝି ଆସି କିମ୍ପା ପଳାଇଲା ଯତି ।
କୁମରେ ବୋଲନ୍ତି ସେ ଅଗ୍ୟାନ ବାପୁଡ଼ା
ଆତ୍ମାରାଗ ଘେନି ଅଇଲା ମୁଖ ମୋଡ଼ା ।
କ୍ଷେତ୍ରୀ ସେ ଭାର୍ଜ୍ଜନ କରିବାକୁ ସମର
ବ୍ରାହ୍ମଣ ନୋହିଲେ କି ସେ ଯାଆନ୍ତା ନିଜ
ପୁର ।
ପୁତ୍ରଙ୍କର ବଚନେ ତୋଷ ମହୀପତି
ଏଥୁଅନନ୍ତରେ ପ୍ରଶୁରାମ ଯତି । ୨୦
ଗୋମତୀ ନଦୀ କୂଳରେ ଯାଇ ହୋଇ
ତପ କରଇ ସେ ଧନୁଶର ଥୋଇ ।
କେତେହେଂକ ଦିନ ଗଲା ଏହି ମତେ
ପିତାବଧ ପ୍ରଶୁରାମର ପଶିଲା ହୃଦଗତେ ।
ବୋଇଲା ରାଜା ହୋଇ ଯେ ଋଷିର
ପ୍ରାଣହାରି
ତାହାକୁ କେସନେକେ ସହିଛୁ ବସନ୍ଧରୀ ।
ମୁହିଂ ଚାଣ୍ଡାଳ ଯେ ଧଇଲି ଧନୁବାଣ
ସହସ୍ରା ଅର୍ଜ୍ଜୁନର ତ ନ ଘେନିଲି ପ୍ରାଣ ।
କେମନ୍ତେ ପିତାର କଷ୍ଟ ପାଶୋରିବି
କାର୍ତ୍ତିକର ପୁତ୍ରକୁ ମୁଂ କେମନ୍ତେ
ମାରିବି ।୩୦
ନୋହିଲେଣ ଜୀବନ ରହିବ କିମ୍ପାଇ
କେବଣ କର୍ମ ମୁଂ ଅର୍ଜିଥିଲି କାହିଂ ।
ପିତା ମୋତେ ଅନେକ ଦୁଃଖେ ଜାତ କଲା
ମୋହୋର ଦେଖନ୍ତେ ତାକୁ ନୃପତି
ମାଇଲା ।୪୦
ସେ ରାଜାର ପ୍ରାଣ ହରିବି କେହ୍ନେ ମୁହିଂ
ଆଜିର ମଧ୍ୟେ ତାକୁ ଆସିବି ମୃତ୍ୟୁ ଦେଇ ।
ଏତେ ବୋଲି ଧନୁ ଶହସ୍ର ଧରି ସଜ
ବନସ୍ତରୁ ବାହାର ଯେହ୍ନେ ମୃଗରାଜ ।
ସହସ୍ରାଅର୍ଜ୍ଜୁନର କଟକେ ପାଇଲା
ଅଯୋଗେ ସଇନି ଅନେକ ମାଇଲା ।

ନୃପତିର ଆଗେ କହିଲେ ଦୂତେ ଯାଇଂ
ସେହି ପ୍ରଶୁରାମ ଅଇଲା ଗୋସାଇଂ ।
ହାଟେ ଦାଣ୍ଡେ ଲୋକ ମାଇଲା ବହୁତ
ଶୁଣିକରି କୋପ କଲାକ ନରନାଥ ।
ପୁତ୍ରନ୍ତ ରାଇଂଣ ସେ ପେଷିଲାକ ପୁଣି
ଯମଦଗ୍ନି ପୁତ୍ରକୁ ଘେନି ଆସ ହାଣି ।
ଶୁଣିଣ କୁମରେ ସଇନି ଘେନି ଗଲେ
ଶତେ ପୁର କରି ପ୍ରଶୁରାମକୁ ବେଢ଼ିଲେ ।
ମାର ମାର ଶବଦ ବୋଲିଣ କଲେ ଗୋଳ
ଭଏ କରି ପଳାଇଲା ରେଣୁକାର
ବାଳ ।୫୦
ବନ ପରବତେ ଲୁଚିଲାକ ଯାଇଂ
ରାଜାର କୁମରେ ଅଛନ୍ତି ଗୋଡ଼ାଇଂ ।
ଦେଖି ନ ପାଇଂଣ ବାହୁଡ଼ିଣ ଗଲେ
ଏ ସର୍ବକଥା ଯାଇଂ ରାଜାଙ୍କୁ କହିଲେ ।
ପୁଣି ନୃପବର ହସିଲାକ ପୁଣି
ପୁତ୍ରକୁ ଚାହିଂଣ ବୋଲଇ ନୃପମଣି ।
ଭଲା ପଳାଇଲା ଯେ ନ ପାଇଲ ଧରି
କେବଣ ଭରସାଏ ପଶଇ ମୋର ପୁରୀ ।
ଏତେ ବୋଲିଣ ଯେ ହୋଇଲ ରାଏ ତୁନି
ଏଥୁଂ ଅନନ୍ତରେ ପ୍ରଶୁରାମ ମୁନି ।୬୦
ଶୁଣି ତପ କରଇ ଗୋମତୀ ନଦୀ ତୀରେ
ସମଏକେ ତପ ତେଜଇ କୋପଭରେ ।
ପୁଣି ଯାଇଂ ସହସ୍ରା ଅର୍ଜ୍ଜୁନ କଟକେ ପଶଇ
ଅଯୋଗେ ଯାଇଣ ଅନେକ ବଳ ଧ୍ୱଂସଇ ।
ରାଜା ଦଣ୍ଡ ପେଷିଲେ ନୁଆରଇଂ ସହି
ଏମନ୍ତେ କେତେହେଂକ କାଳ ଗଲା ବହି ।
ଏକୋଇଶ ବାର ବାହୁଡ଼ିଣ ଗଲା
ବନସ୍ତ ଭିତରେ ଅନେକ ଚିନ୍ତା କଲା ।
ରାଜା ହୋଇଣ ମାଇଲା ତପୋଧନୀ
ତାହାକୁ ଧରି ପୁଣ ଅଛଇ ମେଦିନୀ ।୭୦
ମୁହିଂ ଚଣ୍ଡାଳ ଯେ ନୁଆରିଲି ମାରି
କେବଣ କାରଣେ ଥିବି ଧନୁ ଶହସ୍ର ଧରି ।
ପିତା ବଇରୀ କି କେହ୍ନେ ଦେଖିବି ନୟନେ

ଏ କଥା ନ ରୁଚଇ ମୋହୋର ପଞ୍ଚମନେ ।
କେମନ୍ତେ ଜିଣିମି ମୁଂ ସହସ୍ରା ଅର୍ଜ୍ଜୁନ
ନାରାୟଣକୁ ସୁମରଇ ଯେ ରେଣୁକା
ନନ୍ଦନ ।
ଭୋ ନାଥ ନାରାୟଣ ହେ ଭକତ ବତ୍ସଳ
ଆଜହୁଂ ବୁଡ଼ିଲା ସ୍ୱାମୀ ତପଋରୀ କୁଳ ।
ରାଜା ଯେ ଅଦୋଷେ ତପୀ କି ବଧ କଲା
ପୃଥ୍ୱିପତି ହୋଇ ଧର୍ମ ନ ଥାପିଲା ।୮୦
ତୁ ଯେ ଜଗତର ନାୟକ ମୁରାରି
ମୁହିଂ ତୋହୋରେ ଶରଣ ପଶିଲି
ଚକ୍ରଧାରୀ ।
ପିତାର ଶତ୍ରୁକୁ ମୁଂ ସଘାରିବି କେମନ୍ତେ
ଏଥକୁ କାରଣ କହିବା ସ୍ୱାମୀ ମୋତେ ।
ଏତେ ବୋଲି ପ୍ରଶୁରାମ ଧ୍ୟାଏକରି ବସି
ନାରାୟଣ ମନ୍ତ୍ର ସୁମରଇ ବ୍ରହ୍ମଋଷି ।
ପ୍ରଣମ୍ୟ କରିଣ ଲମ୍ବଇ ଶତବାର
ହୋମ ସନ୍ଧ୍ୟା ତର୍ପଣ ବିବିଧ ପରକାର ।
ଗୋମତୀ ନଦୀ କୂଳେ ପର୍ବତ ଅଗ୍ରେ ବସି
ଶତେବାର ସୁମରଣା କଲା ମହାଋଷି ।୯୦
ପ୍ରସନ୍ନ ହୋଇ ଯେ ଦେବ ଚକ୍ରଧାରୀ
ଗରୁଡ଼ ପିଠିରେ ବିଜଏ ମୁରାରି ।
ପୀତ ବସନ ଯେ କଉସ୍ତୁଭ ମଣି
କୋଡ଼ରେ ଅଛି ଯେ ସାହେର ଦୁଲଣୀ ।
କିରଟୀ କୁଣ୍ଡଳ ଶ୍ରୀବଛ ଲକ୍ଷଣ
ବିଦ ମୁଦି ବାହୁଟି ପ୍ରସନ୍ନ ବଦନ ।
ଚତୃଭୁଜେ ଶୋହେ ଶଙ୍ଖ ଚକ୍ର ଧନୁ
ଦେଖିଣ ପ୍ରଶୁରାମ ଉଠିଲା ଆସନୁ ।
ମଧୁ ରିପୁ ଚରଣ ତଳେ ପଡ଼ଇ
କୃତ ଆଂଜୋଳି ହୋଇ ବଚନ
ବୋଲଇ ।୧୦୦
ହସ ହସ ହୋଇଣ ବୋଲନ୍ତି ମୁରାରି
କିମ୍ପା ସୁମରଣା କଲୁ ତପଚାରୀ ।
ପ୍ରଶୁରାମ ବୋଲଇ ଶୁଣ ଭଗବାନ
ସହସ୍ର-ଅର୍ଜ୍ଜୁନ ନାମେଣ ରାଜନ ।
ଯମଦ ଅଗ୍ନି ଋଷିକି ପ୍ରାଣେ ବଧ କଲା
ନୃପବର ହୋଇ ଅଧର୍ମକୁ ଗଲା ।
ଅଦୋଷେଣ ବଧ କଲା ବ୍ରହ୍ମଋଷି
ଛତ୍ରୀ ବ୍ରତପଣେ ସେ ଇନ୍ଦ୍ରର ସାଦ୍ରିଶି ।
ରୂପେ କାମଦେବ ଧଉର୍ଯେଣ ମେରୁ
ସତ୍ୟେଣ ସାଗର ଦୟାୟେ କଳ୍ପତରୁ ।୧୦
ଚନ୍ଦ୍ରର ଆହ୍ଲାଦ ସୂର୍ଯ୍ୟର କିରଣ
ଅଗ୍ନିର ପ୍ରାଏ ତେଜ ଗମ୍ଭୀରେ ବରୁଣ ।
ବେଗେଣ ପବନ ରାଗେଣ ଲହରୀ
ଭୃଗୁକୁଳକଇ ତୁ ଅଟୁ ଶିରୋମଣି ।
ପବିତ୍ର ଅଂଗଗୋଟି ଯାଗ ଚରୁରୁ ଜାତ
ଅପାପୀ ହୃଦୟ ବହୁ ତୁ ତପୋବନ୍ତ ।
ପ୍ରସନ୍ନ ହୋଇଣ ଯେ ବୋଇଲେ ତାହାକୁ
ଅଇଲୁ ଆମ୍ଭେ ଯେ ତୋର ଅଭିମାନକୁ ।
ଏ ମୋହୋର ତେଜ ସମର୍ପିଲି ତୋତେ
ବର ଦେବଇଂ ସ୍ୱଧନୁ ଶହସ୍ର
ସହିତେ ।୨୦
ପିତା ବଇରୀ ତୋ ସାଧ ଏହା ଘେନି
ଛତ୍ରୀ ସମ ତୋତେ ନୋହିବ ମେଦିନୀ ।
ସପତ ଦୀପରେ ହୋଇବୁ ଏକ ବୀର
ତୋହୋର ଶରୀରେ ମୋର ସଷ୍ଟମ
ଅବତାର ।
ମାର ଦୁଷ୍ଟଜନ ନିଶଶଂଏ କରି
ଛତ୍ରୀକୁଳ ଭାରା ଯେ ନ ସହଇ ବସନ୍ଧରୀ ।
ପରଜା ନ ପାଳି ଧ୍ୱଂସିଲା ଧର୍ମ
ପ୍ରଣୀ ଛାଡ଼ିଲେ ସେ ଯେ ଯାହାର କର୍ମ ।
ବ୍ରାହ୍ମଣେ ହୋମ ନ ଦେଲେ ଅଗ୍ନି ମୁଖେ
ମୋତେ ଦିଗପାଳେ କହିଲେ
ମହାଦୁଃଖେ ।୩୦
ମୃତ୍ୟୁଲୋକେ ଯେବେ ହୋଇଲା ଅନ୍ୟାଋର
ଜନେ ନ ପାଳିଲେ ଯେ ଯାହା ଆଋର ।
ଦେବା ଦୟା ହାଦେ ଯେ କାହାରି
ହୃଦେ ନାହିଂ
ପୃଥ୍ୱିଂ ଦେବୀ ଭାରା ପାଇଲା ଗୋସାଇଂ ।
ଯେତେ ବୋଲି ମୋତେ କହିଲେ ଦେବଗଣ
ମୁଇଂ ଜନ୍ମ ହୋଇବାକୁ କଲି ବିଋରଣ ।
ଅନ୍ୟେଣ କ୍ଷତ୍ରୀ ଯେ ନୋହିବ ସଂଘାରି
ମୋହୋର ପ୍ରାକର୍ମ ସେ ପାରଇ ତାକୁ ମାରି ।
ତୋହୋର ଅଙ୍ଗେ ଥାଇ କରିବି ପୃଥ୍ୱି ରକ୍ଷା
ଅବତାର ହୋଇବାକୁ ନାହିଂ ମୋର
ଇଚ୍ଛା ।୪୦
ତୁ ପୁନ୍ୟ ପୁରୁଷ ତୋତେ ହୋଇଲି ପ୍ରସନ୍ନ
ଯେସନେକ ବୋଲି ଯେ ଶ୍ରୀବଚ୍ଛିଲାଞ୍ଛଂନ ।
ଆପଣାର କଣ୍ଠୁ ଯେ କାଢ଼ି ରତ୍ନମାଳି
ପ୍ରଶୁରାମ କଣ୍ଠେ ଲମ୍ବାଇଲେ ବନମାଳୀ ।
ବଇଷବା ଧନୁ ଯେ ଦେଲେ ନେଇ ତୋଳି
ଦିବ୍ୟ ଶସ୍ତ୍ର ବିଦ୍ୟାମାନ କହିଲେ ବନମାଳୀ ।
ସ୍ୱର୍ଗରେ ଦୁନ୍ଦୁଭି ବଜାଇଲେ ତୂର
ପୁଷ୍ପ ବୃଷ୍ଟି କଲେ ଦେବ ପ୍ରଶୁରାମ ଶିର ।
ବଇଷବା ଧନୁ ଧରିଣ ଭୃଗୁପତି
କରେଣ କୋଠାର ପ୍ରଚଣ୍ଡ ସୂର୍ଯ୍ୟ
ଜ୍ୟୋତି ।୫୦
ସହସ୍ରା ଅର୍ଜ୍ଜୁନ ତହିଂ କି ଧାଇଂ ଗଲା
ପ୍ରଥମ ଦିଗ ବିଜେ ସେଠାକୁ ଆଗ କଲା ।
ନଗ୍ରେ ପଶିଣ ଯେ ଅନେକ ଲୋକ ନାଶି
ରଥ ଗଜ ଅଶ୍ୱ ସୈନ୍ୟ ବହୁତ ବିନାଶି ।
ସାତ ଘଡ଼ି ବେଳ ସୂର୍ଯ୍ୟ ପ୍ରାଏ ଜ୍ୟୋତି
ଯେ ତାହୋର ସନ୍ୟ ମାଇଲା ବିକୋଟି ।
ଶୁଣି ନୃପବର ବୋଇଲା କୋପକରି
ଯାଅରେ ପୁତ୍ରେ ଆଣ ବେଗେ ଧରି ।୬୦
ଓପ୍ରୋଧ ଛାଡ଼ିଣ ପ୍ରାଣେ ବଧ କର
ପଳାଇ ଯିବଟି ନିର୍ବନ୍ଧିଣ ଧର ।
ବେଳେବେଳେ ଆସି କରଇ ହାଲହୋଳି
ଏ ମୋହୋର ସଇନି ଅକାରଣେ ଦଳି ।
ଶୁଣି ସଜ ହୋଇଲେ ଶତେକ ତନୟେ
ଅନେକ ବଳ ସେ ସାଙ୍ଗେଣ
ଘେନି ଆୟେ ।
ଧର ଧର ମାର ମାର ଶୁଭଇ ଶବଦ

ତରେଣ ମେଦିନୀ ହୋଇଲା ତବଦ ।
ପ୍ରର୍ଶୁରାମକଇ ବେଢ଼ିଲେ ସଇନି
ପ୍ରହାର କରନ୍ତି କରେ ଶସ୍ତ୍ରମାନ ଘେନି ।
କୁନ୍ତ ଛେଲ ଗଦା ଶକତି ମୁଦ୍ଗର
ମୂଷଳ ପ୍ରମାଣେ ଏକୁ ଏକ ଶର । ୭୦
ହାଙ୍କିଣ ରାମ ସେ କରିଣ ମାରନ୍ତି
ଶତେ କୁମର ରଥ ଘେନି ବେଢ଼ିଛନ୍ତି ।
ବଇଷ୍ଣବୀ ଧନୁ ଧରି ପ୍ରଶୁରାମ କୋପକରି
ବଳ ସଂହାରଇ କୋଠାର ପ୍ରହାରି ।
ବେଳକରେ ଲକ୍ଷେକ ଲୋକ ସଂହାରଇ
କୋପଭରେ ହୋଇ ସେ ପୁଣ
ପୁଣ ପେଷଇ ।
ରଥ ଗଜ ଅଶ୍ୱ ସଇନି ନାଶ କଲା
ରକତ ନଦୀ ଗୋଟା କ୍ଷଣକେ ବୁହାଇଲା ।
ରାଜାର କୁମରଙ୍କୁ ପ୍ରଶୁ ଘେନି କାଟି
ଶତେ ପୁତ୍ରଙ୍କର ଅଙ୍ଗ ଭୂମିରେଣ
ଲୋଟି ।୮୦
ଦେଖି ପଳାଇଲେ ସଇନି ସକଳ
ରାଜାକୁ ବୋଲନ୍ତି ଶୁଣ ମହୀପାଳ ।
ସକଳ ସଇନି ମାରିଲା ପ୍ରଶୁଧର
ରଣେ ପଡ଼ିଲେ ତୋର ଶତେକ କୁମର ।
ପୂର୍ବର ପ୍ରଶୁଧର ସେ ନୋହଇ ଗୋସାଇଂ
ତାହାର କୋପକୁ ଭାର୍ଜନ କେହି ନାହିଂ ।
ଶୁଣିଣ ସହସ୍ରାର୍ଜ୍ଜୁନ ମନେ କଲା ଖଙ୍ଗ
ଥର ଥର ହୋଇଣ କମ୍ପଇ ତାର ଅଙ୍ଗ ।
ବିମାନ ଆରୋହିଣ କରେ ଶସ୍ତ୍ର ଘେନି
ସଙ୍ଗେଣ ଅଛଇ ତାର ବହୁତ ସଇନି ।୯୦
ଢୋଲ ଟମକ ଯେ ବାଜଇ ନିରନ୍ତର
ଆଲଟ ପାଟଛତ୍ର ବିଇାମ୍ଚ ଅପାର ।
ପ୍ରର୍ଶୁରାମ ଚାହିଂ ବୋଲନ୍ତି ନୃପତି
ଶହସ୍ର ଧରି କେସନେ ଯୁଝିଆସୁ ଯତି ।
ସମରେ ନୁଆରି ପଳାଇ କିମ୍ପା ଯାଉ
ପୁଣି ବନେ ଥାଇ ଧାଡ଼ି ଦେଉଥାଉ ।
ସଇନି ସହିତେ ମୋର ପୁତ୍ରକୁ ମାରିଲୁ
ଏମନ୍ତ କୃତ ଆନେ କେମନ୍ତେ ତୁ କଲୁ ।
ଆଜ ତୋର ଜୀବନ ଯିବ ଯମଆଳ
ମୋତେ ଭେଟିଲୁ ଯେ ପୂରିଲା
ତୋର କାଳ ।୧୦୦
ଏ ବୋଲ ଶୁଣି ଧାଇଂଲା ପ୍ରଶୁରାମ ରାଗେ
ସହସ୍ରାର୍ଜ୍ଜୁନ ଯେ ମିଳିଲା ତାର ଆଗେ ।
କୋଠାର ତୋଳିଣ ମାଇଲା ରୋଷ ଭରେ
ନୃପତି ସେ ଚୋଟ ସମ୍ଭାଳିଲା କରେ ।
ପ୍ରଶୁ ବାଜିଣ ଯେ ପଡ଼ିଲା ତାର ବାହା
ଦେଖିଣ ଆଶ୍ଚର୍ଯ୍ୟ ହୋଇଲା ନରନାହା ।
ଆରବେଳେ ପୁଣ ପେଷଇ କୋଠାର
ଛେଦି ପକାଇଲା ସହସ୍ରେକ କର ।
ମୁଣ୍ଡା ବୃକ୍ଷ ଜାଣି ଦିଶିଲା ନୃପତି
ପ୍ରଶୁ ହମାଳିଣ ମାଇଲା ଭୃଗୁପତି ।୧୦
କାନ୍ଧେ ବାଜିଣ ଯେ ବେକ ଛିଡ଼ିଲା ତାହାର
ପକ୍ୱ ଫଳ ପ୍ରାଏକ ପଡ଼ିଲାକ ଶିର ।
ମୁକୁଟ କୁଣ୍ଡଳ ସହିତେ ମୁଣ୍ଡ କାଟି
ରୁଧିରମଏ ହୋଇ ଭୂମିରେଣ ଲୋଟି ।
ମଉଳି ଲୋଟନ୍ତେଣ ଶରୀର ଛାଡ଼ି ପଡ଼ି
ଧାଇଂ ପ୍ରଶୁରାମ ଉପରେ ତାର ଚଢ଼ି ।
କନ୍ଧ ଯୁଗଳେ ଚରଣ ଦୁଇ ଦେଲା
କଣ୍ଠ ରୋଧିରେ ଯେ ତର୍ପଣ ତାହାର କଲା ।
ସ୍ୱର୍ଗେ ଦେବତାଏ ପୁଷ୍ପ ବୃଷ୍ଟି କଲେ
ଅପକ୍ଷରୀମାନେ ହୁଳହୁଳି ଦେଲେ । ୨୦
ଦୁନ୍ଦୁଭି ବଜାଇଲେ ଗନ୍ଧର୍ବ ବିଦ୍ୟାଧର
ସୁସ୍ୱର ଗାୟନ କରନ୍ତି କିନ୍ନର ।
ପ୍ରଶୁରାମ ତେଜ ବିକ୍ରମ ସିଂଘ ଜାଣି
ସ୍ୱଂଏ ଅବତାର ହୋଇଲେ ଚକ୍ରପାଣି ।
ତର୍ପଣ ସାରିଣ ଉଠଇ ଧନୁ ଧରି
ଦକ୍ଷିଣ କରେ କୋଠାର ଅଛଇ ଉଭାରି ।
କୋପେ ଥରହର ଦଶଦିଗ ଚାହିଂ
ଛାମୁରେ ଜନଜନ୍ତୁ ନ ଥୋଇଲା କାହିଂ ।
ନଗ୍ରେ ପଶିଣ ମାଇଲା ସର୍ବଜନ
ପୁରୁଷ ମାତ୍ରକ ସେ କଲାକ ନିଧନ । ୩୦
ବାଳବୃଦ୍ଧ ଥୋଇ ଧ୍ୱଂସିଲା ସକଳ
କେ ଜାଣି ସେ ପୁରେ ପଶିଲା ଆସି କାଳ ।
ସେ ପୁର ତୁଚ୍ଛା କରି ବାହାର ହୋଇ ଗଲା
ସପତ ଦ୍ୱୀପକଇ ଦିଗବିଜେ କଲା ।
ଯେବଣ ପୁରକଇ ସୁମରଇ ମନେ
ତକ୍ଷଣେ ପ୍ରବେଶ ହୋଏସେ ଭୁବନେ ।
ପାତ୍ର ଅମନାତ୍ୟ ନ ଥୋଇଲା କାହିଂ
ଏମନ୍ତେଣ ସାଧ କଲାକ ସାତ ମହୀ ।
ରକତ ନଦୀ ବୁହାଇ ତର୍ପଣ ସେ କରି
ଅସ୍ଥି କୁଢ଼ କୁଢ଼ ଦିଶଇ ବସୁନ୍ଧରୀ । ୪୦
ତୁଚ୍ଛା ସୃଷ୍ଟି କରି ବାହୁଡ଼ିଣ ଆସି
ପୁନ୍ୟ ଥାନ ଦେଖିଲେ ତପ କରଇ ବସି ।
ପୁଣି ପିତା ବଧ ତାହାର ମନେ ପଶି
କାଳାନଳ କୋପେଣ ବୁଲଇ ମହୀ ତ୍ରାସି ।
ରାଗେଣ ଛତ୍ରୀଙ୍କି ମାରଇ ମହୀ ବୁଲି
ବାଳବୃଦ୍ଧା ଛାଡ଼ି ମାରଇ ନହୁଲି ।
ସହସ୍ରାଅର୍ଜ୍ଜୁନକୁ ଯେତେବେଳ ହାରି
ତେତେବାର ପୃଥ୍ୱି ନିକ୍ଷେତ୍ର ସେ କରି ।
ବ୍ରହ୍ମ ଗ୍ୟାଂନ ଗୁଣ ସାଧଇ ବସି ଯୋଗେ
ସମୟେକ ପଠାରି ଆସଇଂ ପୁଣ
ରାଗେ ।୫୦
ଏମନ୍ତେ ଏକୋଇଶ ବାର ପୃଥ୍ୱି ଦହି
ଦଶରଥ ଆଗରେ ବଶେଷ ଏହା କହି ।
ଶୁଣ ନୃପବର ପ୍ରଶୁରାମ ଚରିତ
ତାହାକଇ ହେଳେ ଜିଣିଲା ତୋର ପୁତ୍ର ।
ବିଷ୍ଣୁର ଶରାସନ ଆଣିଲା ଛଡ଼ାଇ
ତରେ ଭୃଗୁପତି ଅଇଲା ଗୋଡ଼ାଇ ।
ଶ୍ରୀରାମ ଆଗ୍ୟାଂରେ ବାହୁଡ଼ିଣ ଗଲା
ଗରବ ଛାଡ଼ିଣ ବିନତି ପଣ କଲା ।
ସେ ସେ ଶ୍ରୀରାମ ଯେ ଅଟଇ ତୋର ବଛ
ନାରାୟେଣ ଅବତାର ହୋଇଲେ
ପ୍ରତ୍ୟକ୍ଷ ।୬୦
ମୃଗବେଣ୍ଟ କରିବାକୁ କି ତାହାକୁ ଅପୂରୁବ
ସୀତା ରମଣ ସେ ଅଟଇ ବାସୁଦେବ ।

ଦଶରଥ ବୋଲଇ ବଶିଷ୍ଟେ କଥା ଶୁଣି
ତୋହୋର ଆଗରେ କହଇଂ ଭାଳେଣି ।
ଶ୍ରୀରାମ ମହିମା କହିଲ ଯେଡ଼େ କରି
ଅଯୋଧ୍ୟାରେ ତାକୁ କରିବି ଦଣ୍ଡଧାରୀ ।
ସ୍ୱଭାବେ ଜ୍ଞେଷ୍ଟ ତନୟ କୁଳକୁ ପ୍ରଦୀପ
ଏହି ସେ ଭାର୍ଜନ ହୋଇବାକ ନୃପ ।
ମୋହୋର ଥାଉଂ ଥାଉଂ କରିବି ଯୁଗରାଜା
ଅବିଷେକ ହୋଇ ପାଳିବ ଜନପ୍ରଜା ।
ବଶିଷ୍ଟେ ବୋଲନ୍ତି ଏ ବିଚାରେ ଯୋଗାଇ
ଯେବଣ ବିଚାର ତୁ ବୋଇଲୁ ନରସାଇଂ ।
ରାମ ସେ ରାଜ୍ୟ ପାଳିନ୍ତ ଭାର୍ଜନ
ଏ ବୁଦ୍ଧି ତୋତେ ଯେବେ
ହୋଇଲା ରାଜନ ।
ନକର ଅଳସ ତୁ କର ଅନୁକୂଳ
ଏ ଭଲ କଥା ଯେ ନ କରସି ଆଉ ହେଳ ।
ସୁମନ୍ତ ହିଂ ବୋଇଲା ଏସନେକ ବାଣୀ
ଭୋ ରାଜା ଶ୍ରୀରାମକୁ କର ନୃପମଣି ।
ଶ୍ରବନ୍ତ ସୁରବନ୍ତ ଧାର୍ମିକ ସତ୍ୟବାଦୀ
ସକଳ ଗୁଣେ ରାମ ଅଟଇ ଗୁଣନିଧି ।୮୦
ରଘୁବଂଶକୁ ସେ ଅଟଇ ଶିରୋମଣି
ଦଶରଥ ରାଜା ବୋଇଲା ଏହା ଶୁଣି ।
ଭୋ ମୁନି ବଶେଷ୍ଟେ ଅନୁକୂଳ ଘେନ
ରାମର ନକ୍ଷତ୍ରକୁ ଯୋଗାଇଂ ଯେଉଂଦିନ ।
ଶୁଣି ମହାରଷି ଗ୍ରହ କୋଠି ଥୋଇଂ
ବାର ରାଶିରେ ନଗ୍ରହନ୍ତ ଲଗାଇଂ ।
ଖୋଜିଣ ପାଇଲେ ସେ ନିକଟେ ଅନୁକୂଳ
ପବିତ୍ର ମାସ ଗୋଟି ବୈଶାଖ ଶୁକଳ ।
ପଞ୍ଚମୀ ତିଥିରେ ଗୁରୁବାର ହୋଇ
ଗୁରୁପୂର୍ଣ୍ଣୀ ତିଥି ଯେ ଜଉତିଷ କହି ।୯୦
ପୁଷ୍ୟା ନକ୍ଷତ୍ର ଯେ ଶୋଭନ ନାମେ ଯୋଗ
ଶ୍ରୀରାମକୁ ଅଟଇ ଚନ୍ଦ୍ରହାଦେ ଭୋଗ ।
ବଶିଷ୍ଟେ ବୋଇଲେ ଶୁଣସି ତୁ ରାଜନ
ପାରୁ ଯେବେ ଅଭିଷେକ କର ପରଦିନ ।
ନୋହିଲେ ଚଉଦ ବରଷକୁ ନ ଯୋଗାଇ

ସୋମବାର ଦିନ ଅଷ୍ଟମେରେ ଗୁରୁ ବସଇ ।
ବୃହସ୍ପତି ଯୋଗ ଯେ ଯିବାର ପଛେ ଥାଉ
ଶନିଶ୍ଚର କକଡ଼ା ସେ ବସିବାକ ତହୁଂ ।
ଏହାଙ୍କ ପଞ୍ଚମ ଦିବସେକେ ଭୋଗ ଥିବ
ଶ୍ରୀରାମ ରାଶିରେ ଯେ ରାହୁ ଗ୍ରହ
ବସିବ ।୧୦୦
ଅଠର ମାସ ଯେ କରିବାକ ଭୋଗ
ମଙ୍ଗଳକୁ ଶାନ୍ତି ମାସେ ପକ୍ଷେ ଭୋଗ ।
ସିଂହେ ଦେବ ଗୁରୁ ବସିବାକ ଯାଇ
ସେ ତେର ମାସରେ ଯେ କାଳ ଶୁଦ୍ଧ ନାହିଁ ।
ତୃତୀୟେ ବୃହସ୍ପତି ନ ଯୋଗାଇ କିଛି
ଚତୁର୍ଥେ ଅନେକ ବିଘ୍ନ ଯୋଗ ଅଛି ।
ପଞ୍ଚମେ ବୃହସ୍ପତି ହୋଇବାକ ଯହୁଂ
ଗୁରୁ ଚଣ୍ଡାଳୀ ଯୋଗ ପ୍ରବେଶ ଜାଣ ତହୁଂ ।
ଷଷ୍ଠମ ଦେବଗୁରୁ ଅଶୁଭକୁ ଆସଇ
ସପତମେ ଶୁକ୍ର ନାଶ ଯିବ ଆଠ
ମାସଇ ।୧୦
ଚର୍ତୁମାସ୍ୟା ପ୍ରବେଶ ସ୍ୱାମୀ ହୋଇବାକ ଯହୁଂ
କୁମ୍ଭେ ବୃହସତି ବସିଥିବେ ତହୁଂ ।
ତହୁଂ ଶ୍ରୀରାମକୁ ବହୁତ ଉତପାତ
ଅଷ୍ଟମେ ଯିବା ଦୋଷ କଷ୍ଟ ଯେ ବହୁତ ।
ମୀନ ରାଶିରେ ଯେବେ ବସିବେ ଗୁରୁ ଯାଇ
ଦୁଇପାଦ କକଡ଼ାରେ ଅମୃତ ଯୋଗ ପାଇ ।
ତେବେ ସେ ଶ୍ରୀରାମକୁ ଶୁଭକଥା ଦିଶଇ
ଦଶରଥ ଆଗରେ ବଶିଷ୍ଟ ମୁନି କହଇ ।
ଷଷ୍ଠମ ଘର ଯେ ଥିବାକ ଶଉରି
ଶୁକ୍ର ଏକାଦଶେ ବୁଧ ଆଦି କରି ।୨୦
ଅଷ୍ଟମରେ ରାହୁ ମଙ୍ଗଳ ଦୁହେଂ ଥିବେ
ଦୋଷ ପରିହରି ସେ ଶୁଭ ମନାସିବେ ।
ଚଉଦ ବରଷ ଗଲେ ହେବ ଅନୁକୂଳ
ଶୁଣିଣ କହନ୍ତି ଦଶରଥ ମହୀପାଳ ।
ଭୋ ମୁନି ବଶିଷ୍ଟ ଏ ଯେ ଅନିତ୍ୟ ସଂସାର
ସାର କରିଣ ଧାତା କଲାକ ଅସାର ।
କାଳ ପୂରିଲେ ଯେ ଆଷ୍ୟ ନ ରହଇ

ଯମର ଶ୍ୟାରୀରେତ ଓପ୍ରୋଧ ନ ବସଇ ।
ନଉ ସହସ୍ର ବରଷ ଭୋଗ ମୁହିଂ କଲି
ପିତା ଥାଉଂ ଥାଉଂ ଯୁବରାଜା
ହୋଇଲି ।୩୦
ପରେ ପରାଭବ ଯେ ନ ପାଇଲି କାହିଂ
ରବି ତଳେ ମୋତେ ଯେ ସରିସମ ନାହିଂ ।
ବୃଦ୍ଧକାଳେ ମୋହୋର ହୋଇ ଚାରିପୁତ୍ର
ତେଣୁ ବୃଣାଳ ମୋର ହୋଇଲା ରଘୁଗୋତ୍ର ।
ଶ୍ରୀରାମ ଜ୍ଞେଷ୍ଟ ବଳା ଧାର୍ମିକ ଶୂର ବୀର
ଯେହାକୁ ଅବଶ୍ୟ ମୁଂ କରିବି ନୃପବର ।
ରାଜ୍ୟର ଭାରାଭର ରଘୁନାଥ ବହୁ
ମୋହୋର ପିତା ଗୁଣ ଯୁଗେ ଯୁଗେ ଥାଉ ।
ଦେବି ପରଦିନ ଯେ ଶ୍ରୀରାମକୁ ପୃଥି
ଆବର ସଂଶୟ ଯେ ନାହିଂ ଯେଥି ।୪୦
ସୁମନ୍ତ ଚାହିଂଣ ବୋଇନ୍ତି ନୃପବର
ଅବିଷେକ ବିଧାନ ବହନ ତୁମ୍ଭେ କର ।
ନଗ୍ରେ ଉଚ୍ଛବ ଯେ କରନ୍ତୁ ନରନାରୀ
ଦୁନ୍ଦୁଭି ବଜାନ୍ତୁ ରାମ ହେବେ ଦଣ୍ଡଧାରୀ ।
ବନ୍ଧୁଜନମାନେ ନିମନ୍ତ୍ରଣ କରହୋ ଯୁଗତେ
ଅବିଷେକ ହୋଇବ ଯେ ପରଦିନ
ପରଭାତେ ।
ତପୀ ଯତି ରଷିମାନେ ଯେମନ୍ତ ଆସନ୍ତି
ମଧରେ ଦିନେକ ଯେ ଅଛଇ ଦୁଇ ରାତି ।
ଯାଅସି ସୁମନ୍ତ ଯେ ନକର ତୁମ୍ଭେ ହେଳ
ଯେ ବିଧି ବିଧାନ କରହୋ ଅନକୂଳ ।୫୦
ଶୁଣିଣ ସୁମନ୍ତ ଯେ ଗଲା ତତକ୍ଷଣ
ଅଯୋଧ୍ୟା ନଗରେ ଦିଆଇଲା ଘୋଷଣ ।
ଯେ ଯାହାର ଘର ଯେ ମଣ୍ଡିଲେ ନରନାରୀ
ପରଦିନ ଶ୍ରୀରାମ ଯେ ହୋଇବ ଦଣ୍ଡଧାରୀ ।
ରାଜା ଦଶରଥ ଯେ ଛାଡ଼ିବେ ରାଜ୍ୟ ଭାର
ଭୋଗ କରିଣ ଯେ ଥିବେ ଅନ୍ତପୁର ।
ଶ୍ରୀରାମ ରାଜା ହୋଇ ପାଳିବ ମେଦିନୀ
ଏହେଣ୍ଟେ ବୋଲି ଦାଣ୍ଡେ ଦାଉଂଡ଼ି କଲେ
ଧ୍ୱନି ।
ଶୁଣି ନରନାରୀ ହୋଇଲେ ଉଷତ

ଏକକୁ ଆରେକ ଯେ ପୁଚ୍ଛନ୍ତି ବାରତ ।୬୦
କେ ବୋଲଇ ରାମ ହୋଇବେ ଗୋ ରାଜା
ଏସନେକ ବୋଲି ବାଜୁଅଛି ବାଜା ।
ଯେଥୁଅନନ୍ତରେ ରଜନୀ ପରଭାତ
ନିତ୍ୟକର୍ମ ସାରି ଆସ୍ଥାନେ ଗମିତ ।
ସୁମନ୍ତକୁ ରାଇ ବୋଇଲେ ଦଣ୍ଡଧାରୀ
ଶ୍ରୀରାମକୁ ମନ୍ତ୍ରୀ ଆଣ ହୋ ହକାରି ।
ଶୁଣିଣ ମନ୍ତ୍ରୀ ଯେ ଗଲାକ ରଥଚଢ଼ି
ଯାଇଣ ପ୍ରବେଶ ହୋଇଲା ରାମପୁରୀ ।
ଚାରିଦ୍ୱାର ପରିଯନ୍ତେ ଗଲାକ ରଥେ ବସି
ପଞ୍ଚମ ଦ୍ୱାରେ ସେ ଶ୍ରୀରାମ ଛନ୍ତି ବସି ।୭୦
ରଥୁବରୁ ଉତୁରି ସୁମନ୍ତ ମହାପାତ୍ର
ଶ୍ରୀରାମଙ୍କ ସନ୍ନିଧ୍ୟକୁ ପାଦେଣ ଗମିତ ।
ରାଘେବ ପଚାରିଲେ ସୁମନ୍ତକୁ ଚାହିଁ
ତୁହି ମନ୍ତ୍ରୀବର ଅଇଲୁ କିସ ପାଇଁ ।
ନୃପତି ଯେ କାହିଁ ଅଛନ୍ତି ବିଜେକରି
କିସ ଅବା ବିଚାର କରନ୍ତି ଦଣ୍ଡଧାରୀ ।
କେ କେ ଅଛନ୍ତି ଯେ ରାଜାର ସନ୍ନିଧ୍ୟାନ
ଶୁଣିଣ ସୁମନ୍ତ ଯେ କହନ୍ତି ବଚନ ।
ସନ୍ଧ୍ୟା ଅବକାଶ ନୃପତିର ଏବେ
ବଶିଷ୍ଠ ଜାବାଳି କଶ୍ୟପ ବାମଦେବେ ।୮୦
ଏମାନେ ଅଛନ୍ତି ବ୍ରାହ୍ମଣ ବହୁତ ଘେନି
ଏସନ ସମୟେ ମୋତେ ବୋଇଲେ
ନୃପମଣି ।
ଶ୍ରୀରାମକୁ ଯାଇଁ ଆଣ ଆଜ୍ଞା ଦେଇ
ଶୁଣିଣ ତକ୍ଷଣେ ଅଇଲି ରଘୁସାଇଁ ।
ବେଗେ ସଜ ହୋଅ ଯିବା ବେଗେ ଆସ
ଶ୍ରୀରାମ ଶୁଣିଣ ହୋଅନ୍ତି ହସ ହସ ।
କାଲିର ଘୋଷଣ ବାରତା ପାଇଛନ୍ତି
ତେଣୁ ରଘୁନାଥ ଅଳପ ହସନ୍ତି ।
ନୃପତିର ଆଗ୍ୟାଂ ସୁମନ୍ତ ଯହୁଂ କହି
ତକ୍ଷଣେ ଦାଶରଥି ସଜ ହୋଇ ଯାଇ ।୯୦
ଅଶ୍ୱ ଆରୋହି ଧରାଇ ପାଟଛତ୍ର
ସଂଗରେ ଗୋଡ଼ାଇ ଅଛନ୍ତି ପାତ୍ର ସୁମନ୍ତଙ୍କର
ପୁତ୍ର ।

ସୁମନ୍ତହିଂ ରଥ ଚଢ଼ିଣ ଆଗେ ଆସି
ଦଶରଥ ନୃପତି ନବରେ ଯାଇ ପଶି ।
ସାତଦ୍ୱାର ପରିଯନ୍ତେ ଅଶ୍ୱପିଠିରେ ଗଲେ
ଅଷ୍ଟମ ଦ୍ୱାରେଣ ଅଶ୍ୱନ୍ତ ଛାଡ଼ିଦେଲେ ।
ଶ୍ରୀରାମର ଭୃତ୍ୟ ଜଣେ ସେ ଠାବେଣ ରହି
ରାଘବ ସୁମନ୍ତ ହସ୍ତ ଧରାଧରି ହୋଇ ଯାଇ ।
ଦଶଦ୍ୱାରର ଜିଣି ଦିଶିଲେ ନୃପବର
ବିଜେ କରିଛନ୍ତି ସୁବର୍ଣ୍ଣ ପିଢ଼ାର ।୧୦୦
ପୁତ୍ର ଆସନ୍ତେଣ କଲା ରାୟେ ଦୃଷ୍ଟି
ଦେଖିଣ ଶ୍ରୀରାମ ପ୍ରଳମ୍ବ କରିଉଠି ।
ଶିରେ କରଦେଇ ଭଡ଼ା ଦଶ ଗଲେ
ପୁଣି ନମସ୍କାର ରଘୁନାଥ କଲେ ।
ନୀଳଗିରି ପ୍ରାୟେକ ଦିଶଇ ଅନୁପମ
ଦଶରଥ ବୋଇଲେ ହୋ ଶୁଣିମା ଶ୍ରୀରାମ ।
ଚତୁର୍ଥ କାଳ ଯେ ହୋଇଲା ମୋର ଆସି
ରାଜ୍ୟର ଝଗଡ଼େ ବାବୁ ନୁଆରଇ ପଶି ।
ଏ ମହାଭାର ଯେ ବହିତ ଭୟେ କଲି
ଏମନ୍ତେ ସହସ୍ର ବରଷ ବହିଲି ।୧୦
ବୃଦ୍ଧ କାଳେଣ ଯେ ପାଇଲି ଚାରିପୁତ୍ର
ତୁ ରାମ ଜ୍ୟେଷ୍ଠ ଯେ କୁଳକୁ ବିଦିତ ।
ତୋହୋର ଥାଆନ୍ତେ କି ହୋଇବି ମୁହିଂ
ଦୁଃଖୀ
ସୁପୁତ୍ର ବାବୁ ଯେ ତୁ କର ମୋତେ ସୁଖୀ ।
ଏ ରାଜ୍ୟ ଭାର ଯେ ବହ ତୋର ମାଥ
ଅଭିଷେକ ହୋଅ ତୁ କାଲି ପରଭାତ ।
ପରଜାଙ୍କୁ ପାଳିବୁ ପୁତ୍ର ସମ କରି
ଶତ୍ରୁକୁ ମନେଥିବ ଭୟେ ତୁମ୍ଭରି ।
ପୁରାତନ ମହାତ୍ମାଙ୍କୁ ପଚାରିବୁ ବୁଦ୍ଧି
ଅଗ୍ନିମୁଖେ ଦେବତାନ୍ତ ତୋଷିବୁ
ଯଥାବିଧି ।୨୦
ନିତି ଗ୍ରହଶାନ୍ତି କରାଇଂଣ ଥିବୁ
ବ୍ରାହ୍ମଣ ବିଷୟେ ପ୍ରୀତି ହୋଇଣ ରହିବୁ ।
ରାଉତ ମାହୁନ୍ତ ରଥି ପଯେକାରୀ
ଏହାନ୍ତ ଥିବୁ ବାବୁ ଗଉରୋବ କରି ।

ରଣେ ପିଠିଦେଲେ ନ ମାରିବୁ ତାକୁ
ମାୟା ନ କରିବୁ ବାବୁ ସେବକ ଜନକୁ ।
ଯେ ଯାହା ନିଯୋଗେ ନିଯୋଗୀ ବରଗିବୁ
ଅନ୍ନ ବସ୍ତ୍ର ତାକୁ ଅଇଶ୍ୱର୍ଯ୍ୟ ଦେବୁ ।
ଗାରିମା ସେବକକୁ ନ ଥୋଇବୁ କତି
ଯେବଣ ଭୃତ୍ୟେ ବାବୁ ଆଗ୍ୟାଂଯେ
ଭାଂଗନ୍ତି ।୩୦
ଆଜ୍ଞା ଭାଙ୍ଗିଲେ ବାବୁ କାର୍ଯ୍ୟହିଂ ନାଶ ଯାଇ
ସେ ଭୃତ୍ୟ ଥିଲେ ଅନେକ ବିଘ୍ନ ଉପୁଜଇ ।
ହସ୍ତୀ ଘୋଡ଼ାରେ ଯାହାକୁ ଉଦିଷ୍ଟାଣ କରିଥିବୁ
ସେ ଯେବେ ତହିଂର ବିଚାର ଜାଣଇ ବାବୁ ।
ତେବେ ସେ ରାଜାର ସାହାଣ ଭଲେ ଥାଇ
କାରଣ ବାରଣ ଯେବେ ଜାଣିଣ କରଇ ।
ଗଜ ଅଶ୍ୱ ବେଜ ଯାକୁ କରିଥିବୁ ଜାଣ
ନିତି ନିତି ବେଳେ ଦେଖିଲେ ସାହାଣ ।
ତହିଂ ଅଳସ ନ କରିବୁ ବାବୁ
ହସ୍ତୀ ଘୋଡ଼ାକୁ ଉଦିଷ୍ଟାଣ ହୋଇଥିବୁ ।୪୦
ନରବେଦ ଥୋଇବୁ ଯେ ବୁଦ୍ଧିବନ୍ତ କରି
ମଉଷୋଧି ଦେବ ବ୍ୟାଧିର ଉପର କରି ।
ନିତି ସାଧନ ତୁମ୍ଭେ କରିବ ଗୁରୁ ସଙ୍ଗେ
ଧନୁ ନ ଛାଡ଼ିବ ସାଧନର ଯୋଗେ ।
ବିଶ୍ୱାସ ମାଲ ହାଥେ ମର୍ଦନ ହୋଇବୁ
ଅତି ବିଶ୍ୱାସକୁ ଶିର ମୁଣ୍ଡାଇବୁ ।
ବଂଶିକ ଗଉଡ଼ ପବିତ୍ର ଯେବେ ହୋଇ
ପାଣି ବିଶୋଇରେ କରିବୁ ମହାଭୋଇ ।
ଆପଣେ ମଣୋହିଂ କରିବୁ ବେଳ କାଳ
ଜାଣି
ବଦ୍ୟକୁ କହିବୁ ଶରୀର ପରିମାଣି ।୫୦
ଦୁଇ ବେଳ ପୁରାଣ ଶୁଣିବୁ ତୁ ବାବୁ
ବିଷ୍ଣୁ ଦେବତାଙ୍କୁ ଭଗତି ହୋଇଥିବୁ ।
ଅନ୍ତେସ୍ୱର ଲୋକଙ୍କୁ ନ କରିବୁ କୋପ
ମୁଦୁସୁଲୀକି ପଚାରି ଜାଣିମୁ ପୁନ୍ୟପାପ ।
ନିଦ୍ରାରେ ଅଳସ ନୋହିବୁ ରଘୁନାଥ
ଭଣ୍ଡାର ସମର୍ପିବୁ ଅଲୋଭୀ ଲୋକହାଥ ।

ବୃଦ୍ଧ ବ୍ରାହ୍ମଣ ଯେବେ ଇନ୍ଦି ନିଗ୍ରିହିବ
ତାହାକୁ ବରଣ ଯେ କରିବୁ ରାଘବ ।
ସ୍ତିରୀ ସଙ୍ଗେ ବହୁତ ନୋହିବ ଲମ୍ପଟ
ରୋଗ ବଢ଼ଇ ତେଣେ ଶରୀର
ହୋଏ ନଷ୍ଟ ।୬୦
ସଂଗ୍ରାମକୁ ସଜ ଯେସନେକ ମତ
ତେହେର୍ଣ୍ଣେ ହୋଇ ଆସ୍ତାନକୁ
ଯିବୁ ରଘୁନାଥ ।
ବୁଦ୍ଧିବନ୍ତ ଲୋକ ସୁନାବେତ ଘେନି
ଦ୍ୱାର ଜଗିଥିବ ଦିବସ ରଜନୀ ।
ଦୁଃଖୀ ଦରିଦ୍ରନ୍ତ ପୋଷିବୁ ଅନ୍ନ ଦେଇ
ଦୃଭିକ୍ଷ କାଳେଥିବୁ ଅନ୍ନ ଛତ୍ର ଭିଆଇ ।
ବରଷା କାଳେ ତୁହି ନାବ ଭିଆଇବୁ। ୭୦
ଅତି ଖାଲ ଠାରେ ବନ୍ଧ ବନ୍ଧାଇବୁ ।
ଖରା କାଳେ ପାଣି ପଣା ଛତ୍ର ଦେବୁ
ଗ୍ରୀଷମ କାଳେ ଛତା ପାଣ୍ଡୋଇ ଭିଆଇବୁ ।
ଭୋଜନ ଦିଆଇବୁ ଅତି ପୁଣ୍ୟ କାଳେ
ଗୋ ଦୁହନ କରାଇବୁ ଈଶ୍ୱରଙ୍କ ଆଳେ ।
ଭୃତ୍ୟ ଜନଙ୍କର ନ ଦେଖିବୁ ଦୁଃଖ
ପଛକଇ ଯେର୍ଣ୍ଣେ ପ୍ରଶଂସା କରଇ ଲୋକ ।
ଗୁରୁଜନ ଲୋକଙ୍କୁ ସେବା କରିଥିବୁ
ଶତ୍ରୁଙ୍କୁ କେବେହେଂ ପ୍ରୀତି ନ କରିବୁ ।
ରାଗୀଜନ ଘେନି ନଭାଳିବୁ କିଛି
ତାହାଙ୍କ ବୁଦ୍ଧିରେ ଅନେକ ମନ୍ଦ ଅଛି ।
ଦଣ୍ଡ ସିଂହାସନ ରଖିବୁ ବ୍ରାହ୍ମଣ
ଦାନ ବୋଇଲେଣ ଦେବୁ ଶାସନ ।୮୦
ଶୂଦ୍ର ସାମନ୍ତ ଯେ ଗଉଡ଼ ଅଧିକାରୀ
ଏକଥା ମାନ ବାବୁ ଥିବୁଟି ବିଚାରି ।
ବଣିକାର ଲୋକଙ୍କୁ ଯେ ବଣିଜେ
ନିଯୋଗିବୁ
ପରଦେଶ କଳିବାକୁ ଡଗର ପେଷିବୁ ।
ସେ ଯାହା କହଇ ଶୁଣିମୁ ତାହା ସତ
ଦଣ୍ଡ ସାମ ଭେଦ କହିବୁ ତାହାନ୍ତ ।
ଯାହାର ବୋଲେ ବାବୁ ବହୁତ ଜନ ମିଳି

ଦଳପତି ତାହାକୁ କରିବୁ ମନେ ଭାଳି ।
ରାଉତ ବରତନ ଦେବୁ ବେଗ କରି
ତେବେ ସେ ସାଂଗ୍ରାମେ ପଶନ୍ତି
ଆଗସରି ।୯୦
ମାଗନ୍ତା ଜନମାନଙ୍କୁ ନ କରିବୁ ନିରାଶ
ତେବେ ସେ କୀରତି ରହଇ ଦଶଦିଶ ।
ଏସନକ ସମୟେ ରାଜାର ପରିବାରୀ
ମନ୍ଥେଡ଼ି ବୋଲିଣ ଅଟଇ ଯେବଣ ନାରୀ ।
ସ୍ୱର୍ଗର ସୁରଭି ସେ ମଞ୍ଚେଣ ଅବତରି
ଦେବେ ଜାତ କଲେ ରାବଣକୁ ଡରି ।
ତୁ ଗୋ ସୁରଭି ଦେବଗଣର ମାତା
ଆମର କଷ୍ଟକି ତୋତେ ନହୋଇ ଚିନ୍ତା ।
ଲଙ୍କାର ରାଜା ଯେ ରାବଣ ଅସୁର
ବଳେଣ ଭୋଗ ସେ କଲାକ
ତିନିପୁର ।୧୦୦
ଦେବେ ଦାନବେ ସେ ନୋହଇ ପ୍ରାଣ ହତ
ମାନବ ରୂପେ ଯେ ହୋଇବେ ହରି ଜାତ ।
ଋକ୍ଷ ମର୍କଟ ଯେ ବଳ ଘେନି ସାହା
ସମୋଦ୍ର ବାନ୍ଧିଣ ଯେ ମାରିବେ ବିଂଶବାହା ।
ତେବେ ସେ ମେଦିନୀ ହୋଇବାକ ଥିର
ନୋହିଲେଣ ସ୍ୱର୍ଗ ଛାଡ଼ିବ ସୁନାଶିର ।
ଯେବେ ତୁ କାରଣ କରିବୁ ତୁ ମାତ
ମୃତ୍ୟୁଲୋକେଣ ହୋଇବୁ ଯାଇ ଜାତ ।
କକଇ ରାଜାର ତୁ ପରିବାରୀ ହୋଇ
ତାହାର ଦେଶରେ ଅବତାର ତୁ ହୋଇବୁ
ଯାଇ ।୧୦
କୁରୂପ ଶ୍ୱରୀର କୁବୁଜ ହୋଇଥିବୁ
କକୟାର ସଙ୍ଗରେ ଅଯୋଧାକୁ ଯିବୁ ।
ଦଶରଥ ଗଉରୋବ କରିବ ତୋତେ ଦେଖି
ରାଣୀଙ୍କ ସଙ୍ଗତେ ପଢ଼ି ଦେବ ଲେଖି ।
ଏମନ୍ତ ଅନେକ କାଳଥିବୁ ରହି
ଭଗବାନ ଅବତାର ହୋଇବେ
ତହିଂ ଯାଇ ।
କଉଶଲା ଗର୍ଭେ ନାରାୟଣ ହୋଇବେ ଜାତ
କଇକୟାର ପୁତ୍ର ହୋଇବାକ ଭ୍ରଥ ।

ଲକ୍ଷଣ ଶତ୍ରୁଘନ ସୁମିତ୍ରାର ବଚ୍ଛ
ବିଷ୍ଣୁ ସେ ଚାରି ମୂର୍ତ୍ତି ଅଟନ୍ତି ପ୍ରତକ୍ଷ ।୨୦
ଶ୍ରୀରାମ ଜେଷ୍ଟ ବୀର ଶୂର ପଣ
ବିଶ୍ୱାମିତ୍ର ମାଗି ଆସିବେ ଆପଣ ।
ଦଶରଥକୁ ମାଗି ଶ୍ରୀରାମକୁ ନେମ
ସିଧ୍ୟବନେଣ ସେ ଆରମ୍ଭିବେ ହୋମ ।
ରଘୁନାଥକୁ ଆଣି ରଖିବେ ଯେ ଯାଗ
ତେବେ ସେ ଦେବେ ଭୁଞ୍ଜିବେ ହବି ଭାଗ ।
ମୁନି ସହିତେଣ ମିଥିଳାକୁ ଯିବେ
ଜନେକର ଘରେ ପ୍ରବେଶ ହୋଇବେ ।
ଶିବର ଧନୁ ଯେ ଆମଞ୍ଜନ କରି
ସୀତାଙ୍କୁ ବିଭା ଯେ ହୋଇବେ
ମଧୁହାରୀ ।୩୦
ଅଯୋଧାଏ ଆସି କିଛି କାଳ ଥିବେ
ରାଜା ହୋଇବାକୁ ଶରଧା କରିବେ ।
ତେତେବେଳେ ଯେବେ ପାରିବୁ ବୁଧିକରି
ଶ୍ରୀରାମ ବନରେ ହୋଇବେ ବନଚ୍ଛରୀ ।
ସୀତା ଲକ୍ଷଣ ସହିତେ ରଘୁନାଥ
ଆଶ୍ରେ କରିବେ ସେ ବନ ପରବତ ।
ଚଉଦ ବରଷ ସେ ବନେ ନେମେ ଦିନ
ବାରତା ପାଇଣ ଆସିବ ଦଶାନନ ।
ଗୋଦାବରୀ କୂଳରୁ ସୀତାଙ୍କୁ ନେମ ହରି
ଏ ହେତୁ ନାରାୟଣ ବହୁତ କୋପ
କରି ।୪୦
ଶୁଣିଣ ଦେବମାତା କଲା ସନମତ
ମୃତ୍ୟୁଲୋକେ ଆସି ହୋଇଲାକ ଜାତ ।
ବାଳ କାଳେ କକଇ ରାଜାଘରେ ଥିଲା
କକୟାର ସଙ୍ଗେ ଅଯୋଧାକୁ ଗଲା ।
ସମଏକେ ଶ୍ରୀରାମ ହୋଇଲେ ଅବତାର
ଭ୍ରଥ ଲକ୍ଷଣ ଶତ୍ରୁଘନ ଚାରିବୀର ।
ଜାଣି ବିଶ୍ୟାମିତ୍ର ଶ୍ରୀରାମକୁ ଘେନିଗଲା
ତାଡ଼କୀ ରାକ୍ଷସୀ ବାଟରେ ମାଇଲା ।
ଆପଣା ଆଶ୍ରମେ କଲାକ ଇଷ୍ଟହୋମ
ଲକ୍ଷଣ ଘେନି ତା ରକ୍ଷିଲେ ଶ୍ରୀରାମ ।୫୦

ଯାଗ ସରିଲେ ସେ ମିଥିଳାକୁ ଗଲେ
ବାଟେ ଅହିଲାକୁ ଶାପ୍ୟ ମୁକତ କଲେ ।
ଜନେକର ଘରେ ଈଶ୍ୱର ଧନୁ ଥିଲା
ଶ୍ରୀରାମ ଚନ୍ଦ୍ର ତା ହେଳେ ଆମଣ୍ଡିଲା ।
ସୀତାଙ୍କୁ ବିଭା ଯେ ହୋଇଲେ ରଘୁନାଥ
ସମ୍ଭର ହୋଇ ଯାଇଥିଲା ଦଶରଥ ।
କଏକୟା କଉଶୁଲା ସୁମେତ୍ରା ସହିତେ
ଚତୁରାଙ୍ଗ ବଳ ପାତ୍ର ଅମନାତ୍ୟେ ।
ମିଥିଳା ଦେଶରେ ଥିଲା ଦିନାଚାରି
ରାମ ବିଭା ହୋଇଲେ ଜନେକ
କୁମାରୀ ।୬୦
ସୀତୟା ହୁଂ କନେଷ୍ଠ ଉର୍ମିଳା ନାମେ ବାଳୀ
ଲକ୍ଷଣଙ୍କୁ ତାହା ଦେଲେ ତପଶାଳୀ ।
କୁଶଧ୍ୱଜ ରାଜା ଜନେକ ସାନ ଭାଇ
ଭ୍ରଥ ଶତୃଘନଙ୍କୁ କଲାକ ଜୁଆଇଂ ।
ମାଲ୍ୟାଣୀ କନ୍ୟାକୁ ଭ୍ରଥକୁ ବିଭାକଲା
ଶତୃଘନ କଇ ସୁକ୍ରିତା କନ୍ୟା ଦେଲା ।
ବିଭା ହୋଇଲେ ଆସନ୍ତି ରାଛ ଖେଳି
ବହିଦେହୀ କଟକେ ରାଜ୍ୟ ଦାଣ୍ଡ ପରିମଳି ।
ପିତାର ବସାରେ ହୋଇଲେ ପରବେଶ
ବରଙ୍କର ମାତାମାନେ ଦେଖିଣ ହୋଇଲେ
ହରଷ ।୭୦
କଏକୟା କଉଶୁଲା ସୁମୈତ୍ରା ଏ ତିନି
ପୁତ୍ରବଧୂ ଦେଖି ହରଷ କାମିନୀ ।
ଏସନ ସମୟେ ଯେ ଅଇଲାକ ମନ୍ଥେଡ଼ୀ
ପଡ଼ିହାସ୍ୟ ଗାଇଲା ଗୀତ ଉଚ କରି ।
ଶୁଣିଣ ଶ୍ରୀରାମ ପାଇଲେ ମନେ ଲାଜ
ରାଗେଣ ନାତେକ ମାଇଲେ ରଘୁରାଜ ।
କୁବୁଜ ପିଠିରେ ପଡ଼ିଲା ନାତ ଯାଇ
ଡରେଣ ମନ୍ଥେଡ଼ୀ ଗଲାକ ପଳାଇ ।
ସେହିଦିନୁ ରାମକୁ କରିଥାଇ କୋପ
ଭ୍ରଥକୁ ଅନୁଆନ କହଇ ବିରୂପ ।୮୦
ଯୋଗେଣ କେତେହେଁକ କାଳ ବହିଗଲା
ଦଶରଥ ରଜା ଯେ ରାଜ୍ୟ ଦେବାକଲା ।

ତାହାର ବାରତା ଯେ ପାଇଲା ମନ୍ଥେଡ଼ୀ
ନବରୁ ବାହାର ଯେ ହୋଇଲା ନଗ୍ରଫେରି ।
ତୁଣ୍ଡରେଣ ପାନ ମୁଣ୍ଡରେ ଫୁଲ ଖୋସା
ଲୋକଙ୍କୁ ଦେଖିଲେ ଯେ ଦିଅଇ ମୃଗୀହସା ।
ଗାଲରେ ହଳଦୀ ଆଖିରେ କଜ୍ଜଳ
ନାକ ଡିଆଂଇଣ ଯେ ଚାଲଇ ଗେଲୁ
ଗେଲ ।
ଶାଢ଼ୀର ଅଞ୍ଚଳ ଯେ ଭୂମିରେ ଲୋଟଇ
ଫରହର ଉଡ଼ିଣ ଧୂଳିରେ ସାଉଂଟଇ ।୯୦
ଗେଲେ ଗେଲେ ଚାଲଇ ମାରି ବାହାନେଡ଼ା
ରଣଝଣ ବାଜଇ ଯେ ସରଳ ଦୁଇଯୋଡ଼ା ।
ଯତନେ ହାବୋଡ଼ଇ ଲୋକନ୍ତ ଯାଉ ଯାଉ
ଅସୁକାର ବାଣୀ ବୋଲଇ କହୁଂ କୁହୁଂ ।
ଗୀତ ଗାଇଣ ସେ ହୁଳହୁଳି ଦେଇ
ଘରେହେଂ ନଛାଡ଼ଇ ସବୁ ଘରେ ପଶଇ ।
ମଣ୍ଡିବା ଦେଖିଯେ ପଚ୍ଚରଇ ପୁଣି
ଲୋକେ ବୋଲନ୍ତି ରାମ ହୋଇବେ
ନୃପମଣି ।
ତୁ କି ନଜାଣୁ ଗୋ ରାଜାର ପରିବାରୀ
ମାୟାରେ ଆସୁ ଏବେ ଆମ୍ଭନ୍ତ
ପଚ୍ଚରି ।୧୦୦
ଶୁଣିଣ ମନ୍ଥେଡ଼ୀ ଯେ ନଗ୍ର ବୁଲି ଯାଇ
ଖେଳିବାର ପୁଅକୁ ଯତନେ ମାରଇ ।
ଚାଲନ୍ତା ଲୋକଙ୍କୁ ଗାଳି ଦିଅଇ ରାଇ
ମିଛହେଂ କଳିଏକ ଆରମ୍ଭ କରଇ ।
ହାଟେ ବାଟେ ଦାଣ୍ଡେ ପଡ଼ିଲା ବୋବାଳି
ଠାବେ ଠାବେ ଲୋକ ପାଡ଼ନ୍ତି ହାଳହୋଳି ।
କେ ବୋଲଇ କିମ୍ପା କରଇ ଏ ଦ୍ୱନ୍ଦ
ଏହାରେ ଅବଶ୍ୟ ଉପୁଜିବ ମନ୍ଦ ।
ଏଥିଅନନ୍ତରେ ନଗ୍ର ପରିକଳି
ବୁଲିଣ ମନ୍ଥେଡ଼ୀ ଯେ ଅଇଲା
ନଗ୍ରଫେରି ।୧୦
ନବରେ ପ୍ରବେଶ ସେ ହୋଇଲାକ ଯାଇ
ଅନ୍ତେସ୍ୱରେ ପଶିଲା ଧଡ଼ ପଡ଼ ହୋଇ ।

କଏକୟା ଆଗରେ ପଡ଼ିଲା ମୁହଂମାଡ଼ି
କି ଜାଣି ପ୍ରାଣତାର ଗଲା ଦେହୁଂ ଛାଡ଼ି ।
ପ୍ରତକ୍ଷେ ଦେଖିଲା ଯେ ଦଶରଥ ରାଣୀ
ଧାଇଂ ଯାଇଂ ମୁଖରେ ସିଞ୍ଚିଲାକ ପାଣି ।
ଟେକି ବସାଇଣ ବିଞ୍ଚଣି ବିଞ୍ଚିଲା
ସଚେତ କରାଇ ସେ ବାରତା ପୁଚ୍ଛିଲା ।
କିମ୍ପା ମନ୍ଥେଡ଼ୀଲୋ ହୋଇଲୁ ଅଗିଆନ
ଦେହରେ ରୋଗ ବ୍ୟାଧି ନାହିଂ କିଛି
ଆନ ।୨୦
ମୋହେ ପଡ଼ିଲୁ ଯେ ଗତ ପ୍ରାଣ ଜାଣି
ଏଥିର କଥା ମୋତେ କହ ସଂଗାତୁଣୀ ।
ମନ୍ଥେଡ଼ୀ ବୋଇଲା ଗୋ ଶୁଣ ପ୍ରାଣସହୀ
ବିପରୀତ କଥା ଗୋ କହଣା ନଯାଇ ।
ନଗ୍ର ବୁଲିବାକୁ ମୁଂ ଯାଇଥିଲି ଆଜ
ସବୁଙ୍କରି ଘରେ ମୁଂ ଦେଖିଲି ଶୁଭକାର୍ଯ୍ୟ ।
ନେତର ପାଟାଂଗ ସୁବର୍ଣ୍ଣର କଳସ
ଚାରୁଚିତ୍ର ଲେଖନ ଗୋ ସବୁଙ୍କରି ବାସ ।
ବିବିଧ କୁସୁମେଣ ମଣ୍ଡଣି କରିଛନ୍ତି
ମୁକୁତା ମାଳ ଘେନି ତ୍ରୋଣାନ୍ତ ଲମ୍ୱାନ୍ତି ।୩୦
ଦାଣ୍ଡରେ ବୀରତୂର ବାଜଇ ବୀରବାଜା
ପଚ୍ଚରନ୍ତେ ବୋଲନ୍ତି କାଲି ଶ୍ରୀରାମ
ହେବେ ରାଜା ।
ଏକଥା ଶୁଣି ମୁଂ ଅଇଲି ବେଗ ହୋଇ
ବୋଇଲି ସଖୀକି କହିବି ନା ଯାଇଂ ।
ମନ୍ଥେଡ଼ୀର ମୁଖୁ ଏସନ ବାଣୀ ଶୁଣି
ଶୁଣିଣ ସନ୍ତୋଷ ଯେ କଏକୟା ରାଣୀ ।
ଆପଣା କଣ୍ଠରୁ ମୁକୁତା ମାଳ ଘେନି
ମନ୍ଥେଡ଼ୀ ଗଳାରେ ଲମ୍ୱାଇଲା କାମିନୀ ।
ବୋଇଲା ଏ ତୋତେ ଅଟଇ ବଧାଇ
ସତ ହୋଇ ଯେବେ ହୋଇବାକ
ସେହି ।୪୦
ବଧାଇ ତୋତେ ଲୋ ଦେବଇ ଆହୁରି
ଧନ ବସ୍ତ୍ର ତୋତେ ଦେବଇ ଅପାର କରି ।
ଏ ତୋର ବଚନ ଅମୃତମଏ ହେଉ

ଅଯୋଧ୍ୟାରେ ରାଜା ହୋଇ
ଶ୍ରୀରାମଚନ୍ଦ୍ର ରହୁ ।
ଜେଷ୍ଠ ପୁତ୍ର ମୋର ଧରୁ ମହାଭାରା
ରାଜ୍ୟକୁ ଭାର୍ଜନ ଅଟଇ ମହାବୀରା ।
ସକଳ ଗୁଣେତ ଶ୍ରୀରାମକୁ ପୂଜା
ରାମ ରାଜା ହୋଇବାର ବିଚ୍ଛରନ୍ତି ପ୍ରଜା ।
ଏ ବଚନ ଶୁଣି ଯେ ମନ୍ଥେଡ଼ୀ ବୋଇଲା
ଏକଥା ସେ ତୋହୋର ମନକୁ
ଯୋଗାଇଲା ।୫୦
ଏହା ସେ ବୁଝିଲୁ ଚତୁର ଲୋକ ହୋଇ
ଶ୍ରୀରାମ ଯଦି ହୋଇବେ ଅଯୋଧ୍ୟାର
ସାଇଂ ।
କଉଶୁଲା ରାଣୀ ସେ ହୋଇବ ରାଜମାତା
ପାଟ ମହାଦେଇ ହୋଇବେ ହାଦେ ସୀତା ।
ତୁ ହୋଇବୁ କଉଶୁଲା ସପତଣୀ ଦାସୀ
ଅକାରଣେ ତୋତେ ଯେ ବୋଲୁଥିବେ
ଦୋଷୀ ।
ତୋହୋର ବୋହୂ ସୀତାର ହୋଇବ
ପରିଛେରୀ
ଏକଥା କିମ୍ପା ତୁ ମନରେ ନ ବିଚାରି ।
ରାମ ସେବକ ଲୋକ କରିବ ରାଜ୍ୟ ଆଏ
ରାମ ସେ ବୋଲାଇବ ଅଯୋଧ୍ୟାର
ରାଏ ।୬୦
ଧନ ଭଣ୍ଡାର ଯେ ଶ୍ରୀରାମ ଆଏତନ
ଶ୍ରୀରାମ ବଚନେ ଥିବେ ଅମନାତ୍ୟ ସନ୍ୟ ।
ଥାଟ ବଳିଆର ଯେ ଶ୍ରୀରାମର ବୋଲେ
ଝୁରି ମରିବୁ ତୁ ଏମାନ ଦେଖିଲେ ।
ଦୋଷ ଲଗାଇ ରାମ ଭ୍ରଥକୁ ଦଣ୍ଡିବ
ଖଳ ଲୋକ ବୋଲେ ଅର୍ଥ ହିଂ ଖଣ୍ଡିବ ।
ଯେ ଅବା ତୋହୋର ପୁତ୍ରର ବିଶ୍ବଆସ
ତାହାନ୍ତ ଶ୍ରୀରାମ କରିବ ପ୍ରାଣ ନାଶ ।
ସାବତ ଭାଇ ବୋଲି ମନେଣ ହିଂସା ଘେନି
ଦେଖି ନୁଆରଇ ଆରେକ ନୟନୀ ।୭୦
କଉଶୁଲା ପାଇବ ମନରେ ଯାହା ଇଛା
ତୋତେ କି ପ୍ରାପତ ହୋଇବ ମନ ବାଂଛା ।
ତୋହୋର ବୋହୂକି ହାନ୍ଦୋଳାଏ ଚଢ଼ିବ
ଭୁଢୁଙ୍ଗିଆ ପାଇକକି ପଟୁଆର ପଡ଼ିବ ।
ଶ୍ରୀରାମର ଶିରେ ଉଡ଼ିବ ପାଟଛତ୍ର
ସାମନ୍ତମାନଙ୍କ ସଙ୍ଗେ ହୋଇବ
ତୋର ପୁତ୍ର ।
କଉଶୁଲା ଯେମନ୍ତ କରଇ ତୋତେ ଦୟା
ସେ କଥାମାନ ଶୁଣି ଥିବୁଟି କକୟା ।
ଅଭିମାନ ପାଇଲେ ଝୁରିଣ ମରିବୁ
ଆମ୍ଭର ସଙ୍ଗେ ଏକ ଜଣେକ
ହୋଇଥିବୁ ।୮୦
ଋଷିଆଣୀମାନେ ନ ସହନ୍ତି କଥା
ଯେ ଯାହାର ପୁତ୍ର ସେ ତାହାର ବ୍ୟଥା ।
ସୁହାଗୀ ହୋଇଂଣ ଯେ ହୋଉଥାଉ ଟାଣି
ପାରୁ ଯେବେ ପୁତ୍ରକୁ କରାଅ ନୃପମଣି ।
ଏହି ତ ଧାର୍ମିକ ସୁନ୍ଦର ବୀରଶୂର
ଯେକା ଜଣଙ୍କର ଚାରିହେଂ କୁମର ।
ଦଶରଥ ମନକୁ କିମ୍ପା ଭ୍ରଥ ନ ଯୋଗାଇ
ଏହି ସମଏକ ପାଳଇ କିନା ମହୀ ।
ହୋଇପାରୁ ପଛେ ରାମ ହୋଉ ରାଜା
ଏ ଭ୍ରଥ ଆଗେ ଯେ ପାଇକିନା ପୂଜା ।୯୦
ତୋହୋର ମାତା ଗୁଣ କର କଏକୟା
ବୋଇଲୁ ନୃପତିର ଅନେକ ମୋତେ ଦୟା ।
ଦେଖିଲା ଶୁଣିଲା ଲୋକଙ୍କୁ ନ ଯୋଗାଇ
କେହେର୍ଣ୍ଣେ ସହିବୁଟି ଗର୍ଭଧାରୀ ଆଈ ।
କଏକୟା ମନେ ନ ପଶଇ ମନ୍ଦ
ସ୍ୱର୍ଗେ ସଭା କରାଇ ଭାଳଇ ଦେବଇନ୍ଦ୍ର ।
ବ୍ରହ୍ମା ସହିତେ ଅଛଇ ଶୂଳପାଣି
ପବନ ବରୁଣ ଅଇଲେ ବେଳଜାଣି ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଦଶଦିଗପାଳ
ଏକାଦଶ ରୁଦ୍ର ଚାରି ମେଘମାଳ । ୧୦୦
ବାରହ ଆଦିତ୍ୟ ଷୋହଳ ଚନ୍ଦ୍ରମା
ବିଦ୍ୟାଧାରୀ କିନ୍ନରୀ ଅପକ୍ଷରୀ ବାମା ।
ଅଷ୍ଟବସୁ ନବଗ୍ରହ ଯକ୍ଷ ଗନ୍ଧର୍ବ ଗ୍ରହପତି
ଯମଧର୍ମ ମରୁତ କଶ୍ୟପ ବୃହସ୍ପତି ।
ସନକାଦି ମୁନି ଦ୍ୱାଦଶ ବିଶ୍ୱଦେବା
ବିଶ୍ୱକର୍ମା ସହିତେ ବସିଲେ ଦେବସଭା ।
ବ୍ରହ୍ମା ବୋଇଲେ ଯେ ସୁରଗଣନ୍ତ ଚାହିଁ
ଶ୍ରୀରାମ ଅବତାର ହୋଇଲେ ଆମ୍ଭପାଇଂ ।
ଆମ୍ଭନ୍ତ ରଖିବେ ରାବଣକୁ ମାରି
ଆମ୍ଭେତ ସର୍ବଦା ସେବକ ତାହାରି ।୧୦
ଏବେ ଅଯୋଧ୍ୟାୟେ ହୋଇବେ କାଲିରାଜା
ଏହେର୍ଣ୍ଣକ ବୋଲି ଅଯୋଧ୍ୟାରେ ବାଜୁଅଛି
ବାଜା ।
ନୃପତି ହୋଇଲେ ରାବଣ ନ ମରିବ
ଏ ସୁରଗଣଙ୍କର ଯେ କଷ୍ଟ ନସରିବ ।
ବନବାସ ଗଲେ କାର୍ଯ୍ୟ ହୋଇବ ସିଦ୍ଧ
ସୀତା ହରିଲେ ସେ ରାବଣ ମୃତ୍ୟୁଭେଦ ।
ଚଉଦ ବରଷ ଯେବେ ଶ୍ରୀରାମ ଦୁଃଖ ପାଇ
ତେବେ ସେ ଅସୁର ସଙ୍ଗୋତ୍ର ନାଶ ଯାଇ ।
ଏବେ ଶ୍ରୀରାମ ଯେ ହୋଇବେ ନୃପବର
ରାବଣ ସଙ୍ଗେ କିମ୍ପା କରିବେ ସମର ।୨୦
କି ବୁଦ୍ଧି ଉପାଏ କରିବା ସୁରଗଣ
ଏହା ଶୁଣି ବୋଇଲେ ଶଚୀର ରମଣ ।
ଗୋ ମାତାକୁ ପେଷି ଯେ ଅଛ ଆଗ କରି
ସେ ତହିଂ ଅଛି ଯେ ମନ୍ଥେଡ଼ୀ ରୂପ ଧରି ।
ରାମ ରାଜ୍ୟ ପାଇ ଖଣ୍ଡିବାର ହେତୁ
ଆଗହୁଂ ପଠିଆଇ ଅଛି କୁଶକେତୁ ।
ସେ କିସ ଉପାଏ କଲା ତହିଂ ଥାଇ
ବିଧାତା ବୋଇଲା ତାହାର ଦୋଷ ନାହିଁ ।
ଆମ୍ଭର ପାଇଂ ସେ ବିଷ୍ଣୁ ଦ୍ରୋହ କଲା
ରାତ୍ର ଦିବସେଣ ଅହନ୍ତା ଘେନିଲା ।୩୦
ଏବେ ରାମ ରାଜା ହୋଇବା କାଲି ଶୁଣି
ଅନେକ ବେଶ ସେ ହୋଇଲା ତରୁଣୀ ।
ରାତ୍ରେ ନିଦ୍ରା ତାହାକୁ ଦିବସେ ଭୋଗ ନାହିଁ
ଉପାଏ କରିଅଛି ନ ଲାଗଇ କାହିଂ ।
ଆପଣେ ସେ ନିକି କରିବ ବାହାର
ଏ ଦେହେ ସାମାନ୍ୟକି ଭରସା ତାହାର ।

ଆମ୍ଭର କାର୍ଯ୍ୟେ ଦହୁଂଅଛି ତାର କାଏ
ସ୍ୱାମୀ ଦ୍ରୋହ କଥାକୁ ନକଲା ମନେ ଭଏ ।
କଏକୟାକୁ ଅନେକ ମତେ ତିଆରଇ
ସେ ପୁନ୍ୟସ୍ତିରୀ କଥା ନଶୁଣଇ । ୪୦
ରାମକୁ ଅବେଭାର ନ ପଶଇ ମନେ
ତେଣୁ ସଙ୍କଟ ଲାଗଇ ଆମ୍ଭ ମନେ ।
ବ୍ରହ୍ମାବୋଲ ଶୁଣି ବୋଲଇ ବରୁଣ
ତୁହି ସେ ପିତାମହ କରିବୁ କାରଣ ।
ଏବେ ଉପାଏକ ବିଚାରି ଦୂତ ପେଷ
ଯେମନ୍ତେ କାଲି ରାମ ଯାନ୍ତି ବନବାସ ।
ନୋହିଲେ ଅସୁର ଭୋଗ ହୋଇଲା
ବସୁନ୍ଧରୀ
ଏତେ ବୋଲି ଦେବତାଏ ରୋଦନ
ଉଚ୍ଚେ କରି ।
ଅନେକ ରାକ୍ଷସ ଥିଲେ ଦେବ ମହୀ
ରାବଣ ପ୍ରତିଜ୍ଞା ଦେବ ନ ବହିଲେ
କେହି ।୫୦
ଆମ୍ଭର ରାଜା ଯେ ଅଟଇ ସୁରପତି
ଏ ଯାଇ ବସଇ ତାର ଦ୍ୱାରପାଳ କତି ।
ତୁ ଦେବ ଧାତା ଯେ ଜଗତପତି ପ୍ରଭୁ
ରାତ୍ର ପହଡ଼େକ ଥାଇ ଚାରିବେଦ ପଢୁ ।
ନାରଦ ମହରଷି ବୀଣା ଯନ୍ତ୍ରବାଇ
ଗାନ୍ଧାର ଆଳାପ ଯେ ତ୍ରିପୁରାରି କରଇ ।
ଦେବଙ୍କର ଗୁରୁ ଅଟଇ ବୃହସ୍ପତି
ତିଥିବାର କହନ୍ତି ଉଭା ହୋଇଥାନ୍ତି ।
ଆବର ଭାର୍ଗ୍ଗବ ଛାମୁରେ କେ ରହି
ଏତେ ବୋଲି ଦେବେ କାନ୍ଦି କାନ୍ଦି
କହି ।୬୦
ସୁରଗଣଙ୍କର ବିକଳ ଦେଖି ପିତାମହ
କର ସମାର୍ଜ୍ଜଇ ସମଏକ ରହ ।
ବିଚାରିଣ ଖଳ ଦୁର୍ବଳ ଦୁଇ ଭାଇ
ବୋଇଲେ ଅଯୋଧ୍ୟାକୁ ଯାଅ
ବେଗ ହୋଇ ।
କଯେକୟା ହୃଦରେ ପଶିବୁ ଯାଇ ଖଳ
ଦଶରଥ ଅଙ୍ଗେ ସମ୍ଭାଇବୁ ଦୁର୍ବଳ ।
ସୁରଭି ଅଛି ଯେ ମନ୍ଥେଡ଼ୀ ରୂପ ଘେନି
ଏମନ୍ତେଣ ତୁମ୍ଭେ ହୋଇବ ଜଣ ତିନି ।
ଦେବ କାର୍ଯ୍ୟ ଅର୍ଥେ ପାପକୁ ନ ଡରିବ
ସହୋଦରେ ଭେଦ ଆଜ ନିଶ୍ଚୟେଂ
କରିବ ।୭୦
ରାମକୁ କଏକୟା ଛାଡ଼ିବ ଉପ୍ରୋଧ
ଦଶରଥ ସେ କଥାକୁ ଯିବ ପ୍ରତିବୋଧ ।
ମନ୍ଥେଡ଼ୀର ବଚନ କରିବ ଭ୍ରଥ ମାତା
ରାମ ବନେ ଯିବେ ଘେନିଣ ସଙ୍ଗେ ସୀତା ।
ଲକ୍ଷଣ ଗୋଡ଼ାଇବ ଶ୍ରୀରାମର ଯାଉଂ
ସରଯୁ ପାରି କରିବ ତୁମ୍ଭର ଥାଉଂ ଥାଉଂ ।
ଚଉଦ ବରଷ ଭ୍ରଥ ହୋଇବ ନୃପତି
ଦଶରଥ ଶ୍ରୀରାମକୁ ନକରିବ ପ୍ରୀତି ।
ଏକଥା ତୁମ୍ଭେ ଯେବେ ଆଜର ମଧ୍ୟେ କର
ତେବେ ସେ ନାଶ ଯିବ ରାବଣ
ନାମେ ବୀର ।୮୦
ଦଇତ ନିଧନେ ସେ ସୁଖେ ସ୍ୱର୍ଗେ ଥାଇ
ଅମଳାଣ ବସ୍ତ୍ର ପିନ୍ଧି ଅମିୟ ରସ ଖାଇ ।
ଯାଅସି ହେଳା ଯେ ନକର ତୁମ୍ଭେ ବେନି
ରାମ ରାଜା ହୋଇବେଟି ପାହିଲେ ରଜନୀ ।
ଯେତେକ ମାୟା ତୁମ୍ଭେ ହୃଦେ ଅଛ ଶିଖି
କେମନ୍ତେ କରିପାର ଦେଖିବାନା ଦେଖି ।
ଧାତାର ଆଜ୍ଞା ପାଇ ଖଳ ଯେ ଦୁର୍ବଳ
ଅଯୋଧ୍ୟାଏ ପ୍ରବେଶ ହୋଇଲେ ଦୁଇବଳ ।
ରାଜାର ମନ୍ଦିରେ ପଶିଲେ ମାୟା ରୂପେ
ଦଶରଥ ନୃପତିର ବସିଲେ ସମୀପେ ।୯୦
ମହୀପତି ଅଙ୍ଗେ ପଶିଲା ଦୁର୍ବଳ
ତକ୍ଷଣେ ମହାରଥା ହୋଇଲେ ବିକଳ ।
ଛନ ଛନ ମନ ଅଥିର ବଚନ
ତରଳ ନୟନ ବୁଲଇ ଘନ ଘନ ।
ଯହୁଂ ସେ ଦୁର୍ବଳ ନୃପତିକି ଆକ୍ରୋଷିଲା
ଖଳ ମହାତମା ଯେ ସେଠାରୁ ଖସିଲା ।
ଯହିଁ ସେ କଏକୟା ମନ୍ଥେଡ଼ୀ କଥା ହୋନ୍ତି
ତହିଂ ଯାଇ ଖଳ ପୁରୁଷ ମିଳନ୍ତି ।
ରାଣୀର ଶ୍ୱରୀରେ ବସିଲାକ ମାଡ଼ି
ସହଜେ ଚେତନା ଗଲା ତହୁଂ ଛାଡ଼ି ।୧୦୦
ଚିତ୍ତ ଭ୍ରାନ୍ତି କରି ଅନୁଆନ କହି
ମନ୍ଥେଡ଼ୀ ବୋଲଇ ଶୁଣ ମୋର ସହୀ ।
ସଦିଭାବ କଥା ମଣୁ ଅଣହିତ
ତୋତେହିଂ ଗୋଚର ନୁହଇ ତୋର ସୁତ ।
ପେଟ ଥାଉଣ ଗୋ କୋଳ କରୁ ପିଠି
ବାଟ ଛାଡ଼ି ଅମଡ଼ା ମାଡୁ ବିମ୍ଫଓଷ୍ଟୀ ।
ଅମୃତ ପକାଇ ବିଷ କରୁ ପାନ
ଏ ତୋହର ଦେହରେ ନ ପଶଇ
ଅଭିମାନ ।
ରାଜାମାତା ହୋଇବାର ତୋତେ ନ ଯୋଗାଇ
ସପତଣୀ ସଙ୍ଗେ ହଉସି ବନ୍ଧାଇ ।୧୦
ସାମାନ୍ୟ ଅଗ୍ୟାନଳି ବୋଲିବାକ ତୋତେ
ଏକଥା ଶୁଣିଣ ଲାଜ ମାଡ଼ଇ ମୋତେ ।
କେବଣ ବିଧାତା ତୋତେ ଜାତ କଲା
ଛଳ ଛଦ୍ମ ଯେ କିଛିହିଂ ନ ଥୋଇଲା ।
ଏସନେକ ମନ୍ଥେଡ଼ୀ ବହୁତ ଝିଗାଂସି
ସେକଥା କଏକୟା ମନରେଣ ପଶି ।
ବୋଇଲା ସଖୀ ତୁ ଯାହା ପ୍ରକାଶିଲୁ
କାର୍ଯ ଅନ୍ତେ ପୁଣି ମୋତେ ଯେ କହିଲୁ ।
ଆଗହୁଂ ଜାଣିଲେ ବୁଝନ୍ତୁ ମୋର କଥା
ଭ୍ରଥକୁ ଅଯୋଧ୍ୟାରେ କରନ୍ତି
ମହାରଥା ।୨୦
ଏବେ ନୃପବର ତପବ୍ରତ କଲା
ଶ୍ରୀରାମକୁ ରାଜ୍ୟ ଦେବଇ ବୋଇଲା ।
ମୋହୋର ମାଗିଲେ ହୋଇବ ଅଣହିତ
କିସ ବୋଲି ମୋତେ ବୋଲିବେ ଜଗତ ।
ଏବେ ବୁଦ୍ଧି କଲେ ନୋହିବାକ କାର୍ଯ୍ୟ
ଆପଣାକୁ ବଥା ଲୋକେଣ ବଡ଼ ଲାଜ ।
ଶ୍ରୀରାମ ମନରୁ ହୋଇବି ଅନ୍ତର
ଅସୁଖ ବୁଝିବ ଦଶରଥ ନୃପବର ।
କାର୍ଯ୍ୟହିଂ ନୋହିବ ହୋଇବ ଅପକ୍ଷାତି

କିମ୍ବା ପ୍ରସନ୍ନ ମୋତେ ହୋଇବ
ନୃପତି ।୩୦
ଆଗହୁଁ ମାଗିଲେ କଥାଏ ରସ ଥାନ୍ତା
ଯୋଗେ ନରପତି ଦେଲେହେଁ ଦିଅନ୍ତା ।
ଟୀକା ସାରିଲା ଏବେ ଶ୍ରୀରାମକୁ ରାଇ
କିସ ବୋଲି ତାହାକୁ ମାଗିବଇଁ ମୁହିଁ ।
ଏ ବଚନ ଶୁଣି ବୋଲଇ ମନ୍ଥେଡ଼ୀ
ଉପାଏ ବୁଦ୍ଧି ଏକ ଅଛଇଁ ମୋହରି ।
ସଏମ୍ବର ଦଇତର ସଙ୍ଗେ ଇନ୍ଦ୍ର ଯୁଝି
ସ୍ୱର୍ଗ ଛାଡ଼ିଣ ପଳାଇଲା ଭାଜି ।
ସେ ବାରତା ପାଇ ଦଶରଥ ରାଏ
ଦଇତର ସଙ୍ଗେ ଅନେକ ଯୁଦ୍ଧ କଏ ।୪୦
ତୁ ସେ ସାରଥି ହୋଇ ବାହୁଥିଲୁ ରଥ
ସଏମ୍ବର ବାଣେ ମୋହ ଗଲା ଦଶରଥ ।
ଜାଣିଣ ବାହୁଡ଼ାଇ ଆଣିଲୁ ହାଦେ ଯାନ
ନଗ୍ରେ ପଶି ଚେତନା ପାଇଲା ରାଜନ ।
ସେନେହା ଫୁଟି ଶହସ୍ର ଭେଦ ହୋଇଥିଲା
ତୋହୋର ଓଷଧେ ରାଜା ଭଲ ଯେ
ହୋଇଲା ।
ପ୍ରସନ୍ନ ହୋଇଣ ରାଜା ତୋତେ ଦେଲା ବର
ଅନୁଗ୍ରହ କରିଣ ଅଯୋଧ୍ୟା ଈଶ୍ୱର ।
ଯୁଦ୍ଧରୁ ଆଣିଲୁ ତୁ ବେଳ କାଳ ଜାଣି
ଏବେ ତୁ ଔଷଧ ଦେଲୁରେ ତରୁଣୀ ।୫୦
ନୋହିଲେଣ ପାପ ପାଇବିନା ମୁହିଁ
ଯିସ ତୋର ଇଚ୍ଛା ମାଗସିରେ ସହୀ ।
ତୁ ଯେ ନୃପତିକି ବୋଇଲୁ କଏକୟା
ଭୋ ସ୍ୱାମୀ ତୋହୋର ହୋଇଲା ଯେବେ
ଦୟା ।
ଏବେତ ଅପୂରୁବ ନୋହଇ ଆନ କିଛି
ସର୍ବସମ୍ପଦ ମୋ ତୋହୋରେଣ ଅଛି ।
ତୋହୋର ଆଗ୍ୟାଂଯେ ମୁଁ ମାଗିବି ଦୁଇବର
ଯେତେବେଳେ ଇଚ୍ଛା ହୋଇବ
ମୋହୋର ।
ସେ କାଳର କଥା ହୋଇଲା ଏବେ ଆସି
ପାଗୁ ଯେବେ ବର ମାଗ ଶୁଭ୍ରକେଶୀ ।୬୦
ରାମ ବନ ଯିବ ଭ୍ରଥ ଦଣ୍ଡଧାରୀ
ସତ୍ୟ କରାଇ ତୁ ମାଗସିରେ ନାରୀ ।
କିମ୍ବା ନୃପତି ନ କରିବ ସନମତ
ଦୁଇ ପୋଏ ତାଙ୍କ ଆତ୍ମାରୁ ସେ ଜାତ ।
ଶ୍ରୀରାମ ଭ୍ରଥତ ବେଗଳ ନୋହନ୍ତି
ଦଶରଥ ପୁତ୍ର ସିନା ହୋଇବ ନୃପତି ।
ବୋଇଲା ସଖୀରେ ମାଗିବି ଆଜ ରାତି
ଭ୍ରଥକୁ ଅଯୋଧ୍ୟାରେ କରିବି ନୃପତି ।
ମନ୍ଥେଡ଼ୀର ତହୁଁ ଏସନେକ ଶୁଣି
ତୁଷ୍ଟ ଅନୁମତ କଏକୟା ରାଣୀ । ୭୦
ରାମକୁ ବନବାସ ପେରିବଇଁ କାଲି
ଦେଖ ମୋର ପ୍ରତଗ୍ୟାଂ କଏକୟା ବୋଲି ।
ଖଳର ବଚନେ ରାଣୀ ସନମତ କଲା
ତେବେ ସେ ଦେବତାଙ୍କର ଗୋଷ୍ଠୀ
ମଉଳିଲା ।
କଏକୟା କରିଅଛି ବିଷମ ଅନର୍ଥ
ଧିକ ଯାଉ ତୋର ସକଳ ପୁରୁଷାର୍ଥ ।
ବହୁତ ପାପ ନାରୀ ଅରଜୁଣ ଅଛି
କାହାର ବୋଲେ ସେ ହୋଇବାକ ଲେଛି ।
ଅବିଭାଇ କାଳେ ସେ ପିତାଘରେ ଥିଲା
ବିବିଧ ବେଶ ହୋଇ ଆସ୍ଥାନକୁ
ଗଲା ।୮୦
ମନ୍ତ୍ରୀ ଅମନାତ୍ୟ ଘେନିଣ ନୃପତି
ସମ୍ପର୍ବ ହୋଇଣ ଯେ ସଭାରେ ବସିଛନ୍ତି ।
ଯାଇଣ ମିଳିଲା ଯେ ବୃଦ୍ଧ ତପୋବନ୍ତି
ଦୁହିତା କଏକୟା ସନିଧ୍ୟେଣ ଥାନ୍ତି ।
ପାଚଲା ଥୋଡ଼ ଯେ ଜଟାଜୁଟ ଭାର
ପହଣ୍ଡ ବଢ଼ାନ୍ତେ କମ୍ପଇ ଶ୍ୟରୀର ।
ଥରହର ଶବଦ ନ ଶୁଭଇ କର୍ଣ୍ଣ
କତିର ଲୋକଙ୍କୁଇ ତରକାୟେ ନୟନ ।
ତାହା ଦେଖି କକୟା ହସିଲା ଉଚ୍ଚ କରି
ଶୁଣିଣ କୋପେ ଯେ କଲେକ
ବ୍ରହ୍ମଚାରୀ ।୯୦
ବୋଇଲେ ବୃଦ୍ଧ ଦେଖି ହସିଲୁ ଆମ୍ଭନ୍ତ
ତୋତେ ଉପହାସ୍ୟ କରନ୍ତୁ ଜଗତ ।
ଶାପ୍ୟ ଦେଇ ଋଷି ଗଲେ ଅନ୍ତର୍ଧ୍ୟାନେ
କଏକୟା ରାଜା ବିଷାଦ ହୋଏ ମନେ ।
ଯେବଣ ସେ କର୍ମ ଅର୍ଜିଲା କଏକୟା
ସେ ଫଳ ଭୋଗ କରିବ ତାର କାୟା ।
ବେଳ କାଳ ଜାଣିଥିଲା ବାଟ ଚାହିଁ
ତପୀଙ୍କର ବଚନ କେବେହେଁ ଆନ
ନୋହି ।
ଶ୍ରୀରାମକୁ କଏକୟା ପେଷିବାକ ବନ
ତେବେ ସେ ତାହାକୁ ଉପହାସ୍ୟ କରିବେ
ସର୍ବଜନ ।୧୦୦
ଏସନେକ କର୍ମ ଯେବେ ଅରଜିଲା ରାଣୀ
କର୍ଣ୍ଣେ ସମ୍ଭାଇଲା ତାର ମନ୍ଥେଡ଼ୀର ବାଣୀ ।
ମନ୍ଥେଡ଼ୀ ବୋଲେ ସେ ସନମତ କଲା
ଆଜର ନିଶି ରାଜାଙ୍କୁ ମାଗିବି ବୋଇଲା ।
ଯେଥୁଅନନ୍ତରେ ଶ୍ରୀରାମର ମାତା
ମୁଦୁସୁଲୀଙ୍କ ମୁଖୁଁ ପାଇଲା ବାରତା ।
ଶ୍ରୀରାମ ନୃପବର ହୋଇବାକ କାଲି
ଏସନେକେ ବୋଲି ବୋଇଲା ମୁଦୁସୁଲୀ ।
ଶୁଣିଣ କଉଶୁଲା ହୋଇଲା ଆନନ୍ଦ
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ।୧୦
ବ୍ରାହ୍ମଣ ଭୋଜନ ନବଗ୍ରହ ଶ୍ୟାନ୍ତି କଲା
ବିଷ୍ଣୁ ଦେବତାଙ୍କୁ ବିବିଧ ଭୋଗ ଦେଲା ।
ଈଶ୍ୱରେ ଗୋଦୁହନ କରାଇ ପଞ୍ଚାମୃତ
ଦେବୀକିଂ ମଇଂଷି ଛାଗଳ ବଳି ଭାତ ।
ଦରିଦ୍ର ଲୋକଙ୍କୁ ଅନ୍ନ ବସ୍ତ୍ର ଦେଲା
ଭୃତ୍ୟ ଜନମାନଙ୍କୁ ଗଉରୋବ କରାଇଲା ।
ବୋଇଲା ଶ୍ରୀରାମ ହୋଇବେ ଯେବେ ରାଏ
କାଲି ତୁମ୍ଭକୁ ଦେବଇଁ ବହୁତ ଆଏ ।
ସାତ୍ୟାର ଆଗରେ କହନ୍ତି ପରିବାରୀ
ଏ ତୋହୋର ପତି କାଲି ହୋଇବେ
ଦଣ୍ଡଧାରୀ ।୨୦
ରାଜା ଦଶରଥ ବଶେଷଙ୍କୁ ଭାଳି

କାଲି ଶ୍ରୀରାମଙ୍କୁ ଦେବାକ ମହୀଆଳି ।
ପାଟ ମହାଦେଈ ହୋଇବୁ ବରଦେହୀ
ଆମ୍ଭଙ୍କୁ ଦୟା କରିଥିବୁଟି ଗୋ ଆଈ ।
ଶୁଣିଣ ପରମ ସନ୍ତୋଷ ସୀତୟାର ଚିତ୍ତ
ମନେ ମନେ ଦେବୀ ହୋଇଲା ଉଷତ ।
ଫୁଟି ନ ବୋଲଇ ଲାଜ ଭାବ ଘେନି
ଲଟୁ କହନ୍ତି ତାକୁ ସକଳ କାମେନୀ ।
ଲକ୍ଷଣର ଆନନ୍ଦ କହିଲେ ନ ସରି
ଯହୁଂ ସେ ଶ୍ରୀରାମ ହୋଇବେ
ଦଣ୍ଡଧାରୀ ।୩୦
ପାତ୍ର ଅମାନାତ୍ୟ ମିଳନ୍ତି ତାର ପାଶ
ତାହାନ୍ତ ସଉମିତ୍ରୀ କରନ୍ତି ଆଶ୍ୱାସ ।
ଶ୍ରୀରାମ ହିଂ ବିଶ୍ୱାସ ଜନକୁ ଭାଳି
ଯହୁଂ ସେ ପିତା ଦେବାକ କଲା ମହୀଆଳି ।
ଦେବତାଙ୍କୁ ପୂଜା କରାଇଲେ ଅନେକ
ଈଶ୍ୱର ଗୋଦୁହନ ମହୁ ଅଭିଷେକ ।
ବିଦ୍ୱଜନମାନଙ୍କୁ ବହୁତ ଧନ ଦେଲା
ଗ୍ରହପୁତ୍ର ମୁଖେ ଗ୍ରହ ଶ୍ୟାନ୍ତି କରାଇଲା ।
ସହସ୍ରେ ଗୋରୁରେ ସେ ଗୋଷ୍ଟେକ ଭିଆଇ
ସହସ୍ରେ ବରଷକୁ ଭାତ ବରତନ
ଦେଇ ।୪୦
ଦଶଜଣ ରଖୁଆଳ କଲାକ ପଲୋଇ
ପଘା ଦାଉଣି ଯେ ବାଆର କୀଲା ଦୁଇ ।
ଏମନ୍ତ ସହସ୍ର ଗୋଷ୍ଟ ରାମ ଭିଆଇ
ବ୍ରାହ୍ମଣ ଜଣେକେ ଗୋଷ୍ଟେ ଗୋଷ୍ଟେ ଦେଇ ।
ବୃଦ୍ଧ ବ୍ରାହ୍ମଣ ଜଣେ ଯେ ଅଇଲା ଖର କରି
ଶ୍ରୀରାମଙ୍କୁ ଆଶିଷ ଦେଲା ମନ୍ତ୍ର ପଢ଼ି ।
ରଘୁନାଥ ବୋଇଲେ ସହସ୍ରେକ ଗୋରୁ
ଘେନି ଯାଅ ବ୍ରାହ୍ମଣ ଦାରିଦ୍ର୍ୟ ତୋର ସରୁ ।
ବୃଦ୍ଧ ବ୍ରାହ୍ମଣ ତୋ ଶ୍ୟରୀର ଅଶକତ
ବସିବା ଠାବରେ ଏବେ ମିଳିବ ତୋତେ
ଭାତ ।୫୦
ଶୁଣି ଦିଜବର ଯେ ଲୁଗା ସଜ କଲା
କରେ ଲଉଡ଼ି ଧରି ଗୋଷ୍ଟକୁ ଧାଇଂଲା ।

ଲୋଭେ ବ୍ରାହ୍ମଣ ଯହୁଂ କଲା ପରାକର୍ମ
ଟହ ଟହ ହୋଇଣ ହସିଲେ ଶ୍ରୀରାମ ।
ରାଇଣ ବୋଇଲେ ତୁହୋ ଶୁଣସି ବ୍ରାହ୍ମଣ
ଗୋଷ୍ଟରେ ରଖୁଆଳ ମୋର ଅଛଇଂନି
ଦଶଜଣ ।
ସହସ୍ରେ ବରଷକୁ ଭାତ ବରତନ ଦେଇଂ
ବାପ ପୁଅ କରି ମୁଂ ଅଛଇ ଭିଆଇ ।
ତୁ କିମ୍ପା ଦୁଃଖ ହୋ ପାଇବୁ ବ୍ରାହ୍ମଣ
ଦାନ ଦେବାର ମୋର ହୋଇବ
ଅକାରଣ ।୬୦
ଶୁଣିଣ ଦିଜବର ଯେ ଗୋରୁ ଘେନିଗଲା
ଶ୍ରୀରାମଙ୍କୁ ଅନେକ କଇଲାଣ କଲା ।
ଏମନ୍ତେ ରାଘେବ ଯେ ଅନେକ ଦାନ ଦେଇ
ଦରିଦ୍ରଙ୍କ ମନ୍ଦିରେ ଯେ ସୁବର୍ଣ୍ଣ ପୂରୋଇଂ ।
ଅର୍ଣ୍ଣ ବସ୍ତ୍ର ଛତ୍ର ପାଣି ପଣା ଦାନ
ତଇଳ ଗନ୍ଧ ପୁଷ୍ପ ବିବିଧ ବିଧାନ ।
ଅପୂଜା ଦେବତାଙ୍କୁ କରାଇଲେ ପୂଜା
ବୋଇଲେ ମୁହିଂ ଯେବେ ହୋଇବି କାଲି
ରାଜା ।
ମେଢ଼ ମଣ୍ଡପ ଯେ ଦେଉଳ ତୋଳାଇବି
ଭୋଗ ରାଗ ସମ୍ପଦ ସକଳ ଭିଆଇବି ।୭୦
ଦାନେଣ ଶ୍ୟାନ୍ତି ଯେ ନୋହଇ ରାମ ମନ
ଭୃତ୍ୟ ଜନକଇ ଦେଲାକ ବହୁତ ଧନ ।
ଏସନେକ ସମୟେ ଯେ ବେଳ ଅସ୍ତଗଲା
ଶ୍ରୀରାମ ସଂଧ୍ୟା ଯେ ସୁମରଣା କଲା ।
ଅନ୍ନ ଭୋଜନ ଯେ ନ କଲେ ସେଦିନ
ଫଳମୂଳ ଭୋଜନେ ତୋଷିଲେ ରାମ
ମନ ।
ବ୍ରାହ୍ମଣଙ୍କ ସଙ୍ଗେ ଯତିଇନ୍ଦ୍ର ହୋଇ
ଉଜାଗରେ ପାଳନ୍ତି ଯେ ଯୁବତୀ ନ ଛୁଇଂ ।
ବାସୁଦେବର ନାମ କରନ୍ତି ଉଚ୍ଚାରଣ
କି ଜାଣି ସନ୍ନ୍ୟାସ ବ୍ରାହ୍ମଣ ଆଚରଣ ।୮୦
ଯେଥୁଅନନ୍ତରେ ଦଶରଥ ରାଏ
ସୁମନ୍ତ ମନ୍ତ୍ରୀକି ତତକ୍ଷଣ ହକରାଏ ।

ରାମ ଯେ ଅବିଷେକ ହୋଇବେ ପରଭାତ
ସମ୍ଭାରମାନ ତୁ କଲୁଟିକି ସମସ୍ତ ।
ପାତ୍ର ବୋଇଲା ଦେବ ଏ ନଗ୍ର ମଣ୍ଡାଇଲି
ପୁରାଣ ପ୍ରମାଣେ ସବୁ ଦ୍ରବ୍ୟ ମୁଂ ଗୁଣ୍ଡ
କଲି ।
ରାତ୍ର ପ୍ରଭାତୁ ଆଣିମି ସବୁ ସଞ୍ଚାମାନ
ଉଦେ କାଳେ ସିନା ଅଭିଷେକର ବିଧାନ ।
ଅନ୍ତେପୁରକୁ ବିଜେ କଲା ମହୀପତି
ପହଣ୍ଡ ମଣାଇ ତାକୁ ନିଅନ୍ତି ମୃଦୁସୁଲୀ
ଯୁବତୀ ।୯୦
ହୁଳହୁଳି ଶବ୍ଦ ଯେ କରନ୍ତି ସଂଝ କାଳି
ସୁବର୍ଣ୍ଣର ଦଉଡ଼ି ଯେ ଧରିଛନ୍ତି ବାଳୀ ।
କଏକୟା ପୁରେ ଯାଇ ନୃପବର ମିଳି
କାନ୍ଦୁଣ ଅଛଇ ଯେ ବିଷାଦ ମନେ ଭାଳି ।
ଭୂଥର ଜନନୀ ଯେ ଆଣ୍ଠୁରେ ମୁଣ୍ଡ ଦେଇ
ସ୍ୱାମୀକି ଦେଖିଣ ଯେ ନ ଉଠିଲା ସେହି ।
ଆଗେ ଉଭା ହୋଇଣ ସେ ପୁଛଇ ନୃପବର
କିମ୍ପା ମହାଦେଈ ମାନ ଗୋ ତୋହୋର ।
ଅକାରଣେ କିମ୍ପା କରୁ ଏତେ କୋହ
ମୋହୋର ଆଗେ ସଖୀ ସ୍ୱରୂପ କରି
କହ ।୧୦୦
କିସ ଅପରୁବ ହୋଇଲା ସଖୀ ତୋତେ
ଅଭିମାନ ଛାଡ଼ି ମାଗସିରେ ମୋତେ ।
ଶରଦ ପୌର୍ଣ୍ଣମୀ ଚନ୍ଦ୍ରମା ବଦନ
ଶ୍ୟରୀର ପଟାନ୍ତର ରସାଣିଲା ସୁବର୍ଣ୍ଣ ।
ନୟନ ନୀଳେନ୍ଦୀ କମଳ ବର୍ଣ୍ଣ ଜାଣି
ଏହା ତୁ ମଳିଣ କିମ୍ପା କରୁଗୋ ସଙ୍ଗାତୁଣୀ ।
ଆନନ୍ଦର କାଳେ କିମ୍ପା ବିଷାଦ ମନେ ଧରୁ
ଅକାରଣେ ନୟନରୁ ଅଶ୍ରୁ ଜଳ ଜାତକରୁ ।
ଆସନ ତେଜିଣ ତୁ ବସିଲୁ କିସ ପାଇଂ
କି ଅବା ଅପମାନ ପାଇଲୁସିଂ କାହିଂ ।୧୦
ଦାସୀନ୍ତ ଚାହିଂଣ ସେ ବୋଲଇ ନୃପବର
ତୁମ୍ଭେ ଜାଣଟିକି କେବଣ ବେଭାର ।
ମନ୍ଥେଡ଼ୀ ବୋଇଲା ଦେବ ଯେ ନ କହଇ
କିଛି

ଅପାର ବେଳହୁଂ ତ ବସି କାନ୍ଦୁଅଛି ।
ଶୁଣିଣ ନୃପବର ପାଇଲାକ ବ୍ୟଥା
ବସିଣ ଶ୍ରୀକରେ ଯେ ତୋଳଇ ସଖୀର ମଥା ।
ଛାଡ଼ ଛାଡ଼ ଚିନ୍ତା ଗୋ ମୋହୋର ପ୍ରାଣ ସହୀ
କିମ୍ପାଇଂ କଷ୍ଟଗୋ କରିଛୁ ତୋର ଦେହୀ ।
କିସ ମନେ ଧରୁ ମାଗୁ କିନା ମୋତେ
ତିନି ଭୁବନୁ ସଖୀ ଆଣିଦେବି ତୋତେ ।୨୦
ସତ୍ୟ ସତ୍ୟ ସଖୀ ନ କରିବି ଆନ
ମୁଖ ତୋଳି ମୋତେ କହସି ବଚନ ।
ଶୁଣିଣ କଏକୟୀ ବୋଇଲାକ ବାଣୀ
ତୋହୋର ସତ୍ୟ ମୁଂ ଅଛଇଂନି ଜାଣି ।
ସଏମ୍ବର ଦତ୍ୟର ସଂଗେ ଯୁଦ୍ଧ କଲୁ
ଇନ୍ଦ୍ରର ପାଇଂ ଯେ ପରିଘାଇଂ ଗଲୁ ।
ରଥ ବାହିବାକୁ ଯେ ଭାର୍ଜନ କେହି ନାହିଂ
ନଳର ବିଦ୍ୟା ଯେ ଥିଲା ତୋହୋର ତହିଂ ।
ପର ଆଗେ ଯେବେ ପ୍ରକାଶ ତାହା କରି
ସେଦିନୁ ଆପଣାକୁ ନୁହଇଂ ଉପଗାରୀ ।୩୦
ଏହା ଜାଣିଣ ଅମାନାତ୍ୟ ଗଣକୁ ନ କହିଲୁ
ବିଶ୍ୱାସ କରିଣ ସ୍ୱାମୀ ତାହା ମୋତେ ଦେଲୁ ।
ଏ ମନ୍ତ୍ର ବଳେ ବାହିଲି ତୋର ରଥ
ସଏମ୍ବର ସଂଗେ କଲୁ ଯେ ଅନର୍ଥ ।
ବିଷମ ରଣଗୋଳ ହୋଇଲା ଦୁହିଂକରି
ସ୍ତିରୀ ବୋଲି ମୋତେ ଦତ୍ୟହିଂ ନ ମାରି ।
ତୁ ତାହାର ସଂଗେ ଯେ ସମର ଘୋର କଲୁ
ହେଲେଣ ଅସୁର ବଳ ବଧ କଲୁ ।
ସଏମ୍ବର ଦତ୍ୟକୁ ମାଇଲୁ ତୀକ୍ଷ ଶର
ସେହ୍ନା ଫୁଟି ତାର ବସିଲା ହୃଦୟର ।୪୦
ଘାଏ ଘୁମାଇଲା ଅସୁର କୁଳପତି
ସ୍ୱର୍ଗେ ଦେବତାଏ ପ୍ରଶଂସା କରନ୍ତି ।
କ୍ଷଣକେ ଚେତନା ଯେ ପାଇଲା ସଏମ୍ବର
କୋପମୁଖ ହୋଇ ଯେ ମାଇଲା ତୀକ୍ଷଶର ।

ସେ ବାଣେ ଅଚେତନ ହୋଇଲା ତୋର ଦେହ
ଧନୁ ଶସ୍ତ୍ର ପକାଇ ଯେ ଗଲୁ ରାଏ ମୋହ ।
ଦେବ ଡାକ ଦେଲେ ସୁରପୁରେ ଥାଇ
ଭୋ ରାଣୀ ! ରଥ ତୁ ନିଅସି ବାହୁଡ଼ାଇ ।
ଏଡ଼େ ମହାରାଜା ଅଖଡ଼େ ନାଶଯିବ
ଦୁଷ୍ଟ ଦ୍ରପିଷ୍ଟ ହାତରେ ମରିବ ।୫୦
ସୁରଗଣଙ୍କର ବଚନ ପଶିଲା ମୋର କର୍ଣ୍ଣେ
ବାହୁଡ଼ାଇଂ ରଥ ମୁଂ ବାହିଲି ଗଗନେ ।
ଆଖି ପିଛୁଡ଼ାକେ ଅଯୋଧ୍ୟାଏ ଆଣି କଲି
ଔଷଧ ଦେଇ ପୁଣି ତୋତେ ଜୀଆଇଂଲି ।
ପ୍ରସନ୍ନ ହୋଇ ଆସି ଯାଚିଲୁ ଦୁଇ ବର
ସେହିଠାରେ ସତ ମୁଂ ଜାଣିଲି ତୋହୋର ।
ଏବେ ସତ୍ୟ କଲେ କିସ ମୋତେ ଦେବୁ
ତୋହୋର ଦେହେ କିମ୍ପା କଥାଏ ନ ପାଳିବୁ ।
ଶୁଣିଣ ନୃପବର ପାଇଲା ମନେ ଲାଜ
ବୋଲଇ ସଖୀ ଯାହା ମାଗିବୁ ଦେବି ଆଜ ।୬୦
ଏ ମୋହୋର ସତ୍ୟ ନୋହଇଂ ପୁଣି ଆନ
ମାଗ ମାଗ ସଖୀରେ ହୋଇଲି ପରସନ ।
ଶୁଣି କର ଦୁଇ ଯୋଡ଼ଇ କଇକୟା
ଭୋ ସ୍ୱାମୀ ଜାଣି ନ ପାରିଲି ତୋର ମାୟା ।
ଯେବଣ ଦୁଇ ବର ଅଛୁ ଦେବା କରି
ତାହା ମୋତେ ପ୍ରସନ୍ନ ହୋଇବ ଦଣ୍ଡଧାରୀ ।
ଶୁଣି ନୃପବର ପୁଣି ସତ୍ୟ କଲା
ମାଗ ଦୁଇ ବର ଦେବଇଂ ବୋଇଲା ।
ପୁଣି ପୁଣି ରାଜା କରଇ ସନମତ
ଦୁର୍ବଳ ମୋହି ଯେ ଅଛଇ ତାର ଚିତ୍ତ ।୭୦
କେ ଆନ କରିବ ସେ ଦେବତାଙ୍କର ମାୟା
ନୃପତିର ମୁଖ ଚାହିଂ ବୋଲଇ କଏକୟା ।
ମାଗୁଅଛି ରାଜା ଦେବୁ ଯିସ ଯିସ
ନପୁଣ ସତ୍ୟକୁ ଲଂଘୁ ସୂର୍ଯ୍ୟବଂଶ ।
ଦଶରଥ ବୋଇଲା ତୁ କଟାଳ କେତେ କରୁ

ଯେହେର୍ଣ୍ଣେ ଛାର କଥା ମନେ କିମ୍ପା ଧରୁ ।
ପୁରୁଷଙ୍କର ବଚନ ସେ ପାଷାଣରେ ରେହ
ସତ୍ୟ ଲଂଘିଲେ କି ଥିବ ପାପ ଦେହ ।
ମାଗ ମାଗ ସଖୀରେ ଦେବଇଂ ଅବଶ୍ୟ
ଆନ କରି ଭାର୍ଜନ ଯେ ନୋହନ୍ତି ତ୍ରିଦଶ୍ୟ ।୮୦
ଏତେ ବୋଲି ରାଏ ପୁଣି ସତ୍ୟ କଲା
ଦୃଢ଼ ବଚନ ଶୁଣି କଏକୟା ବୋଇଲା ।
ସତ୍ୟ ନିକି ଲଘୁଂ ତୁ ନୃପବର ହୋଇ
ମାଗୁଅଛି ବର ଯେ ମୋହୋର ଦୋଷ ନାହିଂ ।
ଶୁଣି ନୃପବର ଯେ କଲା ସନମତ
ମୁଖ ଚାହିଂଣ ଯେ ତୁଷ୍ଟ ଅନୁମତ ।
କଏକୟା ବୋଇଲା ତୁ ଶୁଣ ନରନାଥ
ଅଯୋଧ୍ୟାଏ ରାଜା ହୋଇବ ମୋର ଭ୍ରଥ ।
ଚଉଦ ବରଷ ଯେ ଶ୍ରୀରାମ ବନ ଯିବେ
ଅରଣ୍ୟେ ପଶିବେ ଦେଶ ନ ମାଡ଼ିବେ ।୯୦
ଏଇ ଦୁଇ ବର ତୁ ଦିଅ ରାଜା ମୋତେ
ପୂର୍ବେ ମୁଂ ଉପଗାର କରିଅଛି ତୋତେ ।
ଶୁଣିଣ ନୃପବର ହାରିଲାକ ଗ୍ୟାଂନ
ଢଳିପଡ଼ିଲାକ ଅଯୋଧ୍ୟା ରାଜନ ।
କତିରେ ଥିଲେ ଯେ ଯୁବତୀଗଣେ ମିଳି
ଖଟିକାରେ ରାଜାକୁ ଧଇଲେ ଯାଇ ତୋଳି ।
ମୁଖେ ପାଣି ସିଞ୍ଚି ବିଞ୍ଚନ୍ତି ବିଞ୍ଚଣା
କ୍ଷଣକେ ଚେତିଲା ଦଶରଥ ନୃପରଣା ।
କଏକୟାକୁ ଚାହିଂ ବୋଇଲା ତ ପୁଣି
କିମ୍ପାଇଂ ମହାଦେବୀ ଚିନ୍ତିଲୁ ଏ ବାଣୀ ।୧୦୦
ଶ୍ରୀରାମ କି ତୋହୋର ନୋହଇ ତନୟ
ତୋତେ ରଘୁନାଥ ଅନେକ ବିନୟ ।
ଜ୍ଜେଷ୍ଟ ପୁତ୍ର ଗୋଟିକି ରାଜ୍ୟଭାର ଦେବା
ଅଚିନ୍ତା ହୋଇ ଆମେ ସବୁ ସୁଖ ଭୁଂଜୁଥିବା ।

କିମ୍ପାରେ ସୁନ୍ଦରୀ ବୋଇଲୁ ଏ ବାଣୀ
ଶ୍ରୀରାମକୁ ଓପ୍ରୋଧ ଛାଡ଼ିଲୁ ତରୁଣୀ ।
ବନସ୍ତେ ରାଘେବ କରିବେ ଯାଇ କିସ
ପର୍ବତ କନ୍ଦରେ ବୁଲି ହୋଇବେ ପ୍ରାଣ
ନାଶ ।
ଶ୍ରୀରାମ ଅବା ତୋତେ କେବଣ ଦୋଷ କଲା
ଆନର ମୁଖେ ତାକୁ ଅପଖ୍ୟାତି ନ
ଶୁଭିଲା ।୧୦
ଜଗତ ଲୋକେ ତାକୁ ପ୍ରଶଂସା କରନ୍ତି
ପ୍ରାଣରୁ ଅଧିକ କରି ହୃଦରେ ଧରନ୍ତି ।
ଖଳ ବିହି ତୋର ପଶିଲାକ ମନେ
କେମନ୍ତେ ଶ୍ରୀରାମକୁ ପେଷିବଇଂ ବନେ ।
ଭ୍ରଥ ରଘୁନାଥ ବେଗଳ ନୋହନ୍ତି
ଏକ ଆତ୍ମାରୁ ସେ ହୋଇଛନ୍ତି ଉତପତି ।
କିମ୍ପା ତୁ ଭିନ୍ନ ଭିନ୍ନ କରୁରେ ମହାଦେଈ
ଶ୍ରୀରାମ ବନଗଲେ କି ମୋହୋର ପ୍ରାଣ
ଥାଇ ।
ମୋହୋର ମଲେ ତୁରେ ହୋଇବୁ ନିରିମାଖି
ବେଶ ବେସନ ତୋତେ ନ ସହିବ
ସଖୀ ।୨୦
ସୁଗନ୍ଧ କୁସୁମେ ନ ଖୋଷିବୁ କେଶ
ପରିହରଣ ନ କରିବୁ ଦିବ୍ୟ ଝିନ ବାସ ।
ଚନ୍ଦନ କସ୍ତୁରୀ ଯେ ନୋହିବୁ ସାମଳି
କ୍ରପୂର ମିଶା ପାନ ନ ଭୁଂଜିବୁରେ ବାଳୀ ।
ରତ୍ନ ଅଳଂକାର ଅଙ୍ଗେ ନ ଲାଇବୁ
ସୁପକୁ ପଦାର୍ଥମାନ ନ ଖାଇବୁ ।
କସ୍ତୁରୀର ଚିତା କପୋଳେ ନ ଘେନିମୁଂ
ନାସିକା ଅଗ୍ରେ ତୋର ବସଣି ନ ଲାଇବୁ ।
କଜ୍ଜଳ ନ ରଂଜିବୁ ନୟନ ଯୁଗଳ
ଅଳତା ନ ଘେନିବୁ ଚରଣର ତଳ ।୩୦
ଚରଣେ ନୂପୁର ଯେ ନ ଲାଇବୁ ସହୀ
ବାହୀ ବିହୁନେ ତୁଚ୍ଛା କରିବୁ ପାଣି ଦୁଇ ।
କଟିରେ ନଥିବ ଯେ ତୋହୋର ମେଖଳି
କଣ୍ଠେ ନ ଲାଇବୁ ମୁକୁତାର ମାଳି ।

ବାହେ ବାହୁଟି ଯେ ନଥିବ ବିଦମାଳି
କୁଚେ ଲେଖନ ଯେ ନୋହିବ ପତ୍ରାବଳୀ ।
ଅଳକା ବଢ଼ିଣ ଯେ ମୁଖକୁ ଗରାସିବ
ଚନ୍ଦ୍ରବଦନ ତୋର ମଳିନ ଦିଶିବ ।
ଚାଚେର ଚିକୁର କେଶ ଯେ ନୁଖେଣ ଯିବ
ଛିଡ଼ି
ଘଟୀ ବିହୁନେ ଶ୍ୟରୀରେ ମଳିଥିବ
ପଡ଼ି ।୪୦
ଦୁର୍ଭାର କଥା କିମ୍ପା କହିଲୁ ନ ବିଚ୍ଚରି
ଏ ଦୁଃଖ କେସନେକେ ସହିବୁରେ ବାଳୀ ।
ସକଳ ଯେ ରାଜ୍ୟେ ଶୁଭିବ ଯେ ବାଣୀ
ଧିକ ଦଶରଥ ଧିକ କଏକୟା ରାଣୀ ।
ଶ୍ରୀରାମକୁ ସ୍ନେହ ଭାବ କରିବେ ଜଗତ
ତୋତେ ମୋତେ ମନ୍ଦ ବୋଲିବେ ସମସ୍ତ ।
କଏକୟା ବୋଇଲା ତୁ ଅଗ୍ୟାଂନ ନୃପବର
ସଜ୍ଜନ ସଂଗେ ଯେ ବଢ଼ିଲା ନାହିଂ ତୋର ।
ବ୍ରାହ୍ମଣଙ୍କ ମୁଖେ କି ଧର୍ମଶାସ୍ତ୍ର ନ ଶୁଣୁ
ପୁରାଣ ଆଗମ କଥାନ୍ତ ନ ବଖାଣୁ ।୫୦
ସତ୍ୟ ଲଂଘିଲେଣ ଯେତେକ ପାପ ପାଇ
ତହିଂର କଥା ହାଦେ କହଣା ନ ଯାଇ ।
ସତ୍ୟ ପାଳିଲେଣ ଯେତେକ ପୁଣ୍ୟ ଗତି
ସାବଧାନ ହୋଇ ଶୁଣ ହୋ ନୃପତି ।
ସତ୍ୟ ଯୁଗେଣ ଯେ ଶିବି ନାମେ ରାଏ
ସତ୍ୟେ ଆଶ୍ରେ କରି ଧଇଲା ସେ କାୟେ ।
ସ୍ୱର୍ଗେ ବିଚାରଣ କଲେ ଦେବଗଣ
ଜାଣିବା ଶିବି ରାଜାର ସତ୍ୟବ୍ରତ ପାଳନ ।
ଏତେ ଭାଳି କରି ଇନ୍ଦ୍ର ହୁତାଶନ
ମାୟାରୂପ ଧରିକରି ହୋଇଲେ
ବିଚକ୍ଷଣ ।୬୦
ଅଗ୍ନି କାପତା ଯେ ହୋଇ ପଳାଇଲା
ଇନ୍ଦ୍ର ଶେଣା ପକ୍ଷୀ ହୋଇ ଗୋଡ଼ାଇଲା ।
ଶିବି ନୃପତି ଯେ ଅଛଇଂ ତହିଂ ବସି
ଆରତେ କାପତା ଯେ ଶରଣ ଯାଇ ପଶି ।
ଭୋ ଶିବି ରାଜା ତୁ ଅଟୁ ସତ୍ୟବାଦୀ

ଶେଣୀ ପକ୍ଷୀ ମୋତେ ଆସୁଅଛି ଖେଦି ।
ଏହିକ୍ଷଣି ମାରି ଭୁଂଜିବ ମୋର ମାଂସ
ମୋତେ ତୁ ଦୟା ହୋ କର ଶିବି ଦାସ ।
ଏସନ ସମଏ ସେ ଶେଣା ଯାଇ ବାଜି
ପବନ ପ୍ରାଏ ଯେ ଦୁଇଡ଼େଣା ଗାଜି ।୭୦
କ୍ଷୁଧାରେ ଆରତ ହୋଇ ପଡ଼ିଲାକ ଧାଇଂ
କାପତା ରାଜାର ସନ୍ନିଧ୍ୟେ ବସଇ ।
ଭୋ ରାଜା ମୋତେ ମାରିବ ଏହିକ୍ଷଣି
ଶିବି ନୃପତି ଯେ ବୋଇଲା ଏହା ଶୁଣି ।
କିମ୍ପା ଶେଣା ପକ୍ଷୀ ହୋ କରିବୁ ଜୀବ ନାଶ
ପ୍ରାଣ ବଧ ହୋଇଲେ ପାଇବୁ ବଡ଼ ଦୋଷ ।
ଏ ଜନ୍ମେ ପକ୍ଷୀଜନ୍ମ ହୋଇ ଉପୁଜିଲୁ
ଗତ କଲା ପାପ ଯେବେ ସେ ଭୁଂଜିଲୁ ।
ପୁଣି ଅର୍ଜୁଅଛୁ ଯେ ବିଷମ ଘୋର ହତ୍ୟା
ଏ ଘାନ୍ତି କେଉଂଠାବ ଦେବଟି
ବିଧାତା ।୮୦
ଶେଣା ବୋଇଲା ହୋ ଶୁଣ ତୁ ମହୀପତି
ଜୀବ ବଧ କରିବାର ମୋହୋର ନିଜ
ଗତି ।
ମାୟେଂସ ଭକ୍ଷିଣ ଯେ ତୋଷିବି ଉଦର
ଯେ ବିହି କପାଳେ ଲିହିଛି ମୋହୋର ।
ତେଣୁ ସେ ଜୀବଜନ୍ତୁ ଅପହରଇ ମୁହିଂ
ତିନିଦିନ ହୋଇଲା ଆହାର ମୋର ନାହିଂ ।
ଆଜ ଯୋଗେଂ ଦଇବ କାପତା ଭେଟାଇଲା
ଇଷ୍ଟ ଦେବତା ମୋତେ ସୁପକ୍ୱ ଆହାର
ଦେଲା ।
ତୁ କିମ୍ପା ନିଷେଧ କରୁ ନୃପବର
ଦେସି କାପତାକୁ ମୁଂ କରିବି ଆହାର ।୯୦
କ୍ଷୁଧାରେ ଜଠର ଦହଇ ହୁତାଶନ
ପ୍ରାଣ ଯିବା ପ୍ରାଏ ହୋଉଅଛି ମନ ।
ରାଜା ବୋଇଲା ଯେବେ କ୍ଷୁଧା ଲାଗୁଅଛି
ଆନ ମାଂସ ତୋତେ ଭୁଂଜାଇବା ବାଛି ।
ଏ ପ୍ରାଣୀ ଗୋଟାର ତୁ ନ ଘେନ ଜୀବନ
ଶେଣା ବୋଇଲା ତୁ ଶୁଣସି ରାଜନ ।

ଏକ ଜୀବ ମାରି ଯେବେ ଆରେକ ଜୀବ ତାରି
ଏଥେଂ କିସ ଯଶ ଅଛି ହୋ ଦଣ୍ଡଧାରୀ ।
ଶରଣ ରଖିଲୁ ଯେବେ ସତ୍ୟବନ୍ତ ପଣେ
ଏଥକୁ ପାଲଟ ସିନା ହୋଇବୁ ଆପଣେ ।୧୦୦
କାପତା ସମାନେ ସିନା ଦେହରୁ ମାଂସ ଦେବୁ
ତେବେ ସେ ରାଜନ ହୋ ସତ୍ୟ ଧର୍ମ ପାଇବୁ ।
ମୋହୋରି ହିଂ ସତ୍ୟ ମୁଂ ନ ଭୁଂଜଇ ଉଗୁଳି
ଶ୍ୟରୀର ମାଂସ କାଟି ଦେସି ମୋତେ ତୁଳି ।
ଶୁଣି ନୃପବର ଯେ ସନମତ ହୋଇଲା
ଦେବି ଦେହରୁ ମାଂସ ବୋଲି ସତ୍ୟ କଲା ।
ଖଡ଼୍‌ଗ ଘେନିଣ ସେ ଦେହରୁ ମାଂସ କାଟି
କାପତା ପ୍ରମାଣେ ଯେ କେବେହେଂ ନିଅଣ୍ଟି ।
ରାଜା ଜାଣିଲାୟେ ହୋଇଲାକ ମାୟା
କେବଣ ମହାତ୍ମାଏ ହରିବ ମୋର କାୟା ।୧୦
ସତ୍ୟ ଯେବେ କଲି ଦେବି ଦେହ ଦାନ
ଶେଣା ପକ୍ଷୀ ବୋଇଲା ଚାହିଂଣ ରାଜନ ।
ମାଂଏସ କାଟିଲେ ତ ତୁଳକୁ ନ ଅଣ୍ଟି
ଏହା ଦେଖି ରାଜା ଖଡ଼୍‌ଗ ବସାଇଲା ତଣ୍ଟି ।
ଦେଖିଣ ଇନ୍ଦ୍ର ଅଗ୍ନି ନିଜ ରୂପଧରି
ଛାଡ଼ ଛାଡ଼ ଖଣ୍ଡା ନାହିଂ ତୋତେ ସରି ।
ସତଶୀଳ ଧାର୍ମିକ ହୋ ଅଟୁ ନୃପବର
ଆବର ଜଣେ ତୋତେ ନାହିଂ ପଟାନ୍ତର ।
ଏ ତୋହୋର କୀରତି ରହିବ ଯୁଗ ଯୁଗ
ଶରଣ ରଖିଣ ଦେହ ପରେ ଦେଲୁ ଭୋଗ ।୨୦
ଆସ ଆସ ସ୍ୱର୍ଗ ହେ ଯିବା ନୃପବର
ଏତେ ବୋଲି ଇନ୍ଦ୍ର ଧଇଲା ଶିବି କର ।
ଯେତେବେଳେ ସୁରପତି ଧଇଲା ତାର ଅଂଗ
ବାହୁଡ଼ିଣ ତନୁ ତାର ଦିଶିଲା ଅନଙ୍ଗ ।

ମାତେଳି ଆକାଶୁଂ ଅଇଲା ରଥ ଘେନି
ଯାନେ ଆରୋହିଣ ଗଲେକ ଜଣ ତିନି ।
ଇନ୍ଦ୍ର ଅଗ୍ନି ସଙ୍ଗେ ଶିବି ମହୀପତି
ଦେବ ବିମାନ ସେ ଆରୋହି ଝଟତି ।
ସ୍ୱର୍ଗ ପୁର ପ୍ରବେଶ ଦେଖନ୍ତି ଅପକ୍ଷରୀ
ସାଧୁ ସାଧୁ ଶିବି ବୋଲି ଧ୍ୱନି କରି ।୩୦
ବ୍ରହ୍ମା ପୁରେ ଯାଇ ବସିଲାକ ରାଏ
ସତ୍ୟ ଜନଙ୍କର ସଂଗେ ପୂଜା ପାଏ ।
ଆପଣେ ତରିଲା ଉଧରିଲା ବଂଶ
ଇହ ପରଲୋକ ହୋଇଲେ ଗରୁ ହଂସ ।
ବ୍ରତିଅଛି ଆଜହିଂ ତାହାର ବ୍ରତ ଘେନି
ତେସନେକେ ରାଜାକୁ ଏ ବହଇ ମେଦିନୀ ।
ସତ୍ୟ ପ୍ରତିପାଳନ୍ତି ପୂନ୍ୟ ଲୋକମାନେ
ଅସତ୍ୟ ଲୋକଙ୍କର ନଯାଇ ସନ୍ନିଧ୍ୟାନେ ।
ସତ୍ୟେଣ ବଳିରାଜା ଗଲା ରସାତଳ
କଥା ଶୁହାଇଲା ବୈଲୋଚନର ବାଳ ।୪୦
ସ୍ୱର୍ଗ ସହିତେଣ ଘେନିଲା ତିନିପୁର
ଦାନେ ଖାଣ୍ଡେ ସାଚା ବିରଧୂ ତାହାର ।
ପଶ୍ଚିମ କଟକାଇ କଲାକ ନୃପମଣି
ବନ ଗିରି ଦେଶ ବହୁତ ଗଲା ଜିଣି ।
ଶତ୍ରୁମାନେ ନ ଜିଣି ଭୟେ ପଳାଇଲେ
ଥୋକାଏ ରାଜାମାନେ ଶରଣ ପଶିଲେ ।
ଶରଣ ପଶିକେ ବୋଲଇ ଝିଅ ଦେବି
କେବଣ ରାଜା ସପତାଙ୍ଗେ ହୋଇଲାକ ବନ୍ଦୀ ।
ସକଳ ପର ଦେଶ ଜିଣିଣ ନୃପବର
ପ୍ରବେଶ ହୋଇଲା ଯାଇଂ ଦକ୍ଷିଣ ସନ୍ଧୁତୀର ।୫୦
ରଥ ଗଜ ଅଶ୍ୱ ପାଦାନ୍ତି ଗହଳ
ସ୍ନାହାନ କରନ୍ତି ସନ୍ୟ ପଶିଣ ସିନ୍ଧୁଜଳ ।
ରାଜା ଅଭିଷେକ ହୋଇଲା ସିନ୍ଧୁପାଣି
ଦେବ ପିତୃ ତର୍ପଣ କଲାକ ନୃପମଣି ।

ଦାନବିଧି କରି ବହୁତ ଧନ ଦେଲା
ସୁବେଶ ହୋଇ ରତ୍ନ ପିଢ଼ାରେ ବସିଲା ।
ଏସନେକ ସମଏ ଯେ ଟଳିଲା ଆସନ
ନୃପତି ବିଚାର ଯେ କରଇ ମନେ ମନ ।
ସଂଶୟେ ଜାଗିଲା ଶୁକ୍ରଙ୍କୁ ଭାକିଲା
କିମ୍ପା ମନ୍ତ୍ରୀ ମୋହୋର ହୋ ଆସନ ଟଳିଲା ।୬୦
ଗୁରୁ ବୋଇଲେ ଯେ ଅରଷ୍ଟି ଯୋଗ ଅଛି
କପଟେ ବିଭୂତି ତୋର ଘେନିବେ ଶ୍ରୀବଚ୍ଛି ।
ବ୍ରାହ୍ମଣ ରୂପ ଧରି ପଢ଼ିବେ ଆସି ବେଦ
ସତ୍ୟ କରାଇ ଭୂମି ମାଗିବେ ତିନିପାଦ ।
ତୁ ଦେବ ନ ଜାଣି କରିବୁ ତାହା ହୋଇ
ଶଙ୍ଖେ ପାଣି ତୋଳି ଦେବୁ ନରସାଇଂ ।
ମାୟାୟେ ଶ୍ରୀହରି ଚରଣେ ଭିଆଇବେ
ଦୁଇପାଦେ ସ୍ୱର୍ଗ ମଞ୍ଚ ଲୁଚ୍ଛଇବେ ।
ଆରକ ପାଦ ଯେ ଲାଭିଗୁ ଜାତ କରି
ତୋତେ ପାତାଳକୁ ପେଷିବେ ମୁରାରି ।୭୦
ଯୋଗବଳେ ଏକଥା ହୋଇଲା ମୋତେ ଦୃଶ୍ୟ
ଚାରିଦିନେ ଏକଥାଟି କରିବେ ପୀତବାସ ।
ଦେବଙ୍କର ଛଳେ ଘେନିମେ ଭୂମି ଦାନ
ସତ୍ୟ କଲେ ତୁ ମରିବୁ ରାଜନ ।
ଶୁକ୍ରଙ୍କର ମୁଖୁଂ ଏସନେକ ବାଣୀ
ଶୁଣି କୋପ ଯେ କଲାକ ନୃପମଣି ।
ନୟନ ତରାଟି ଚାହିଂଲା ବକ୍ରକରି
ଖଡ଼୍‌ଗେ ମାରନ୍ତି ଆଜ ନୋହିଲେ ବ୍ରହ୍ମଘରୀ ।
ବାସୁଦେବ ଯେବେ ଘେନିମାକ ଦାନ
ଏଥୁ ଉପରେ କି ଭୁଂଜିବି ମୁହିଂ ପୁନ୍ୟ ।୮୦
ଭଗବାନ ପ୍ରୀତି ଅର୍ଥେଣ ଯାଗ କରି
ସହାଂଥେ ଆପଣେ ଯେବେ ଘେନିମେ ନରହରି ।
କାହିଂକି ନ ଦେବି ଏକଥା ମୋତେ କହ
ଜାଣିଲି ମୋତେ ଯେ ଅନ୍ଧତା ତୁମ୍ଭର ଦେହ ।

ଏ ବଚନ ଶୁଣିଣ ଯେ ଶୁକ୍ର ଘୁଞ୍ଚିଗଲେ
ଚାରି ପାଦଙ୍କ ତଳେ ଯାଇଂଣ ରହିଲେ ।
ଯେବେଣ ଗୁରୁଙ୍କ ପାଦ ବଳକଳେ ପୋଛି
ପ୍ରଳମ୍ଭ କରି କରି କପାଳ ଫଳିଅଛି ।
ଯାହାର ପ୍ରସାଦେ ସାଧିଲା ତିନିପୁର
ସତର ଛଳେ ତାକୁ କୋପିଲେ
ନୃପବର ।୯୦
କାଳେଣ ମାଧବ ଯେ ଘେନିଲେ ତାର ଶିରୀ
ଜାଣୁ ଜାଣୁ ବଳି ଦେଲା ସତ୍ୟ କରି ।
ଏ କଥା ପୁରାଣେ ଯେ ହୋଇଲା ବଖାଣ
ସତ ବିଡ଼ି ତାକୁ ଦୟା କଲେ ନାରାୟଣ ।
ପାତାଳ ବଳକୁଣ୍ଡେ ଥୋଇଲେ ତାକୁ ନେଇ
ଶିରେ ପାଦ ପଦ୍ମ ଚିହ୍ନ ତାକୁ ଦେଇ ।
ପୁଣି ତାହାକୁ ସ୍ୱର୍ଗେ କରିବେ ସୁରପତି
ଅମର ବର ଦେଇ ଆପଣେ ଜଗିଛନ୍ତି ।
ଆଜହିଂ ପ୍ରଭାତେ ସୁମରି ବଳିଦାତା
ସତ ପ୍ରାଣୀଙ୍କର ପରମ ଦେବତା । ୧୦୦
ସତ୍ୟେଣ ସିନ୍ଧୁ ଯେ ନ ଲଂଘଇ କୂଳ
ସତ୍ୟେଣ ମାଧବ ଯେ ହୁଅନ୍ତି ଅବତାର ।
ସତ୍ୟେଣ ଗରଳ ଭକ୍ଷିଲେ ଦେବ ହର
ସତ୍ୟପାକି ପୃଥ୍ୱୀ ଯେ ନ ପଡ଼ଇ ତଳ ।
ସତ୍ୟେଣ ଇନ୍ଦ୍ର ଯେ କରଇ ଜଳ ବୃଷ୍ଟି
ସତ୍ୟେଣ ଷଡ଼ଋତୁ ଆହ୍ଲାଦଇ ସୃଷ୍ଟି ।
ସତ୍ୟେଣ ମଉଷୋଧି କରଇ ବ୍ୟାଧିନାଶ
ସତ୍ୟେଣ ଦିନକର ଉଦୟେ ଆକାଶ ।
ସତ୍ୟେଣ ମନ୍ଦର ନୋହଇ ବର୍ଦ୍ଧମାନ
ସତ୍ୟେଣ ମେରୁ ଯେ ପୃଥିବୀ ଧାରଣ ।୧୦
ସତ୍ୟେଣ ସଂସାର ହୋଅଇ ଉତପତି
ସତ୍ୟେଣ ପୁରୁଷ ହତ୍ୟା କଲେକ ପାର୍ବତୀ ।
ସତ୍ୟେଣ ପବନ ସବୁରି ଅଙ୍ଗେ ପଶଇ
ସତ୍ୟକୁ ହୁତାଶନ ସବୁହିଂ ଭକ୍ଷଇ ।
ସତ୍ୟେଣ ହରିଚନ୍ଦନ ବିକିଲା ପୁତ୍ର ନାରୀ
ସତ୍ୟରେ ପଣ୍ଟୁ ନାଗକୁ ଗରୁଡ଼ ଶିରେ ଧରି ।
ସତ୍ୟେଣ ଜୀମୂତ ବାହନ ଦେହ ଦେଲା

ସତ୍ୟେଣ ବିଶ୍ୱାମିତ୍ର ନବ ସୃଷ୍ଟି କଲା ।
ସତ୍ୟରଖି ବାସୁକି ନବ ସୃଷ୍ଟି ବହଇ
ସତ ରଖିଲେ କଥା ଚାରିଯୁଗେ
ରହଇ ।୨୦
ତୁ ମହାରାଜା ସତ୍ୟ ଲଘିତ ମନେ
ମନେ କରୁ
ବାଇକି ବାତୁଳ ତୁ ସତକୁ ନଡ଼ରୁ ।
ସତ୍ୟହିଂ ଛାଡ଼ିବୁ କେତେଦିନ ଥିବୁ
ସତ୍ୟ ପାଳିଲେ ତୁ ସ୍ୱର୍ଗରେ ବସିବୁ ।
ସତ୍ୟ ନ ଲଂଘ ତୁ ମୋହୋର ବୋଲକର
ସତ୍ୟ ରଖିଲେ ସେ କୀରତି ଅମର ।
ଏତେ କହି ରାଣୀ ବସିଲା ଦୂର ହୋଇ
ବିସ୍ମୟ ଚିତ୍ତେ ସେ କପାଳେ କର ଦେଇ ।
ନୃପତି ସମାସ୍ୟା ତାହା ନ ଦେଲେ ଶୁଣି
ଆପଣେ ସନ୍ତାପି ହୋଇଲାକ ରାଣୀ ।୩୦
ବୋଇଲା ଏ ନଗ୍ର ମୁଂ ବାହାର ହୋଇଯିବି
ଯହିଂ ସତ ନାହିଂ ତହିଂ କିମ୍ପା ଥିବି ।
ଏମନ୍ତେଣ ନିଶି ପାହି ସୂର୍ଯ୍ୟ ଉଦୟେ
ପାତ୍ର ଅମନାତ୍ୟେ ଭିତରେ ଯାଇ ହୋଏ ।
ଖୁଣ୍ଟିଆକୁ ପଚାରି ନବରେ ପଶିଲେ
କଏକୟାର ପୁରେ ଦ୍ରଶନ ଯାଇ କଲେ ।
ତବଦ ହୋଇଂଣ ବସି ଅଛଇଂ ନରସାଇଂ
ଉତ୍ତର ସମସ୍ୟା ଯେ କାହାକୁହିଂ ନାହିଂ ।
କରଯୋଡ଼ି ସୁମନ୍ତ କହଇ ଆଗେ ମିଳି
ଶୁଣ ଦେବ ନୃପବର କ୍ଷତ୍ରିୟ
ଶୁଦ୍ଧଶାଳୀ ।୪୦
ଅନୁକୂଳ ବେଳ ଯେ ହୋଇଲା ଦଣ୍ଡଧାରୀ
ସକଳ ଯୋଗାଡ଼ ମୁଂ ଆଣିଲି ସଜ କରି ।
ଶୁଣି ନୃପବର ନ ଦେଲା ଉତ୍ତର
ପୁଣି ଚାରିବେଳ ପୁଛିଲା ମନ୍ତ୍ରୀବର ।
ଭୋ ଦେବ ଶୁଭ ଯୋଗ ଲଗ୍ନ ବେଳ ଯେହି
ଅବିଷେକ ବିଧାନ ଆଣିଲି ଭିଆଇ ।
ବିଳମ୍ବ କରନ୍ତେ ଯେ ଭାଙ୍ଗିବ ଅନକୂଳ
କିମ୍ପା ତୁନି ହୋଇ ବସିଲୁ ମହୀପାଳ ।

ଦଶରଥ କଥା ନ କହିବା ଶୁଣି
କଏକୟା ବୋଇଲା ତୁ ଶୁଣ
ନୃପମଣି ।୫୦
ସତ୍ୟ ଭଗ୍ନ ନୋହୁ ରାମ ବନବାସ ଯାଉ
ଏ ତୋହୋର କଟକେ ଭ୍ରଥ ରାଜା ହୋଉ ।
କକୟା ମୁଖୁଂ ଯେ ପ୍ରକାଶ ଏହା ଶୁଣି
ବିସ୍ମୟେ ହୋଇଲେ ଅମନାତ୍ୟ ଗଣେ ପୁଣି ।
ବଶିଷ୍ଠ ସହିତେ ଯେ ହୋଇଲେ ଅଗିଆନ
ଜାବାଳି କାଶ୍ୟପ ବାମଦେବ ସବୁଜନ ।
ବିକଳ ହୋଇଣ ଯେ ଭାଳୁଛନ୍ତି ତହିଂ
କାହାରି ଦେହେ ଜୀବନ ଆଉ ନାହିଂ ।
ବଶିଷ୍ଠେ ଜାଣିଲେ ଯେ କେବଳ
ଯୋଗ ଜାଣି
ଆବର ଜାଣିଲେ ଯେ ବାମଦେବ
ମୁନି ।୬୦
ଦେବତାଏ ଉପାଏ କଲେ ଏହୁ ଛନ୍ଦ
ଏ ରାମ ଯାଇଣ ଛେଦିବ ଦଶକନ୍ଧ ।
କର ଦୁଇ ଯୋଡ଼ି ଅମନାତ୍ୟ ଗଣେ ଭଣି
ଶୁଣିମା ମାୟେ ଗୋ ଦଶରଥ ପାଟରାଣୀ ।
ଶ୍ରୀରାମ ଯେ ଅଯୋଧ୍ୟାରେ ହୋଇବେ
ରାଜନ
କିମ୍ପା ତାକୁ ମାଏ ଗୋ ପେଷିବାକ ବନ ।
ଏଡ଼େ ଅପକ୍ରିତି ଅର୍ଜ୍ଜିବୁ କେଉଁ ଗୁଣେ
ଏ କଥା ନ ଶୁଣିଲା କକୟା ଶ୍ରବଣେ ।
ମନ୍ତ୍ରୀକି ବୋଇଲା ତୁମ୍ଭେ ନ ଜାଣ
ହୋ କିଛି
ପୂର୍ବହୁଂ ରାଜା ଏହା ସତ୍ୟ କରିଅଛି ।୭୦
ରାମ ବନ ଯିବ ଭ୍ରଥ ଦଣ୍ଡଧାରୀ
କେ ଆନେ ବୋଇଲା ଏହାକୁ
ସତ୍ୟ ତୋଳି ।
ଏବେ ତୁନି ହୋଇ ନ ବୋଲଇ କିଛି
ସତ୍ୟ ଲଂଘିବାକୁ ଅବା ମନ କରିଅଛି ।
କକୟାର ବଚନେ ବୋଇଲା ଦଶରଥ
ବଜ୍ର ପଡ଼ଇକି ନା ଏ ମୋହୋର ମାଥ ।

ତାହାର ପରା ପୁତ୍ରକୁ ମୁଂ ଛାଡ଼ିବି ଓପ୍ରୋଧ
କେମନ୍ତେ ବୋଲିବି ମୁଂ ତୁ ଯାସି ବନ
ମଧ୍ୟ ।
ତୁ ତାହାକୁ ରାଇଂ ବୋଲସିରେ ରାଣୀ
ଏତେ ବୋଲି ମଉନ ହୋଇଲା
ନୃପମଣି ।୮୦
ଖୁଣ୍ଟିଆକୁ ଚାହିଂ ବୋଲଇ କଏକୟା
ରାମକୁ ରାଇଂ ଆଣ ନ କହିବୁ ଏହା ।
ଶୁଣି ଦ୍ୱାରପାଳ ଗଲା ବେଗ ହୋଇ
ରଘୁନାଥଙ୍କୁ ଭେଟିଲା ବିସ୍ମଏ ମନ ହୋଇ ।
କରଯୋଡ଼ି କହଇ ରାଜାଙ୍କ ଆଗ୍ୟାଂ ଆସ
ଶ୍ରୀରାମ ଶୁଣିଣ ହୋଇଲେ ହସ ହସ ।
ତକ୍ଷଣେ ପାଦରେ ଯେ କରନ୍ତି ଗମନ
ସଙ୍ଗେ ଅଛନ୍ତି ଯେ ବହୁତ ବିଦୁଜନ ।
ଯାନ୍ତେଣ ଶ୍ରୀରାମକୁ ଯେ ବୋଲନ୍ତି
ଅନେକ ଲୋକ
ବୋଲନ୍ତି ଏହିକ୍ଷଣି ହୋଇବେ
ଅବିଷେକ ।୯୦
ରାଜ୍ୟରୁ ପରଜାମାନେ ଆସିଛନ୍ତି ପୁଣି
ବାଟେ ଯାଉଂ ଯାଉଂ ଯେ ଭେଟନ୍ତି
ରଘୁମଣି ।
ଭଟେ ଡାକ ଦ୍ୟନ୍ତି ହୋଅ ବେଗେ ରାଜା
ତେବେ ସେ ନିର୍ଣ୍ଣିନ୍ତେ ରହିବୁ ଜନପ୍ରଜା ।
ନଟ ଭାଟ ଜୋତିଷ ସନ୍ୟାସଗଣେ ଛନ୍ତି
ନଗ୍ର ନରନାରୀ ଦେଖିଣ ଆସନ୍ତି ।
କେ ବୋଲଇ ରାଜା ହୋଇଲେ ନିକିରାମ
କେ ବୋଲଇ ଆହୋ କ୍ଷଣକେ ବିଶ୍ରାମ ।
ଏହିକ୍ଷଣି ଅବିଷେକ ହୋଇବେ ରଘୁନାଥ
ହସ୍ତୀ ଚଢ଼ି ଆସିବେ ଦେଖିବ
ସମସ୍ତ ।୧୦୦
ଶେତ ଛତ୍ର ଉଡ଼ିବ ଶ୍ରୀରାମର ଶିରେ
ଏହିକ୍ଷଣି ନଗ୍ରେ ବୁଲିବେ ରଘୁବୀରେ ।
ଏଥୁଅନନ୍ତରେ ଯେ ଶ୍ରୀରାମଚନ୍ଦ୍ର ଗଲେ
ରାଜାର ମନ୍ଦିରେ ଯାଇଂ ପ୍ରବେଶ
ହୋଇଲେ ।

କଏକୟାପୁରେ ଯେ ଅଛଇ ଦଶରଥ
ତହିଂ ଯାଇ ଦ୍ରଶନ କଲେ ରଘୁନାଥ ।
କରପତ୍ର ଯୋଡ଼ିଣ ଆଗେ ଉଭା ହୋଇ
ଦଶରଥ ରାଜା ଯେ ସମସ୍ୟା ନ ଦେଇ ।
ସମସ୍ତ ଅମନାତ୍ୟେ ତବଦ ହୋଇଛନ୍ତି
କଏକୟାକୁ ଚାହିଂ ଶ୍ରୀରାମ ବୋଲନ୍ତି ।୧୦
ଭୋ ମାତ ନୃପତି ଯେ ମୋତେ ହକାରିଲେ
ତୁନି ହୋଇଣ ତ କିଛି ନ ବୋଇଲେ ।
ଶ୍ୟରୀରେ ରୋଗ ବ୍ୟାଧି ନାହିଂ ଆନ କିଛି
ମଉନ ହୋଇଣତ ନୃପତି ବସିଅଛି ।
ଏ ବଚନ ଶୁଣି କଏକୟା ବୋଇଲା
ତୋହୋର ପିତା ମୋତେ ଆଜ ଦୁଇବର
ଦେଲା ।
ଭ୍ରଥ ରାଜା ହୋଇ ପାଳିବାକ ଦେଶ
ଚଉଦ ବରଷ ତୁ ଯିବୁ ବନବାସ ।
ଏ ତୋ ମୁଖ ଦେଖି ନ ଦେଲା ଉତର
ଓପ୍ରୋଧେଣ ତୁନି ହୋଇଲା ନୃପବର ।୨୦
ତୁନି ହୋଇ ରାଜା ନ କହଇ କିଛି
ସତ୍ୟ ଲଂଘିବାକୁ ମନ କରିଅଛି ।
ଶୁଣି ଶ୍ରୀରାମ ଯେ ଚାହାନ୍ତି ପିତା ମୁଖ
କିମ୍ପା ତୁ ରାଜନ ହୋଉସି ବିମୁଖ ।
ଭ୍ରଥର ମୋହୋର ଯେ ଅଟଇ ଏକ ଦେହ
ଏଥକୁ ପିଅର ତୁ ନକର ସନ୍ଦେହ ।
ଯିବି ବନବାସ ଖାଇବି କନ୍ଦଫଳ
ପରିହରଣ କରିବି ଗଛର ବକଳ ।
ଭ୍ରଥ ନୃପତି ହୋଇ ପାଳୁ ଜନ ପ୍ରଜା
ଏଥକୁ କିମ୍ପା ତୁ ଭାଳୁ ହୋ ମହାରାଜା ।୩୦
ଏତେକ ବୋଲିଣ ଯେ ଶ୍ରୀରାମଚନ୍ଦ୍ର ଗଲେ
କଉଶୁଲାର ପୁରେ ଯାଇଂ ପ୍ରବେଶ
ହୋଇଲେ ।
ମାତାଙ୍କର ମୁଖ ଚାହିଂ ନମସ୍କାର କରି
ବୋଲନ୍ତି ରାଘେବ ଶୁଣଗୋ ଗର୍ଭଧାରୀ ।
ଏହିକ୍ଷଣି ପିତା ମୋତେ ରାଇଣ ଆଜ୍ଞାଦେଲେ
ଚଉଦ ବରଷ ତୁ ବନ ଯିବୁ ବୋଇଲେ ।

ଅଯୋଧ୍ୟା ନଗ୍ରରେ ଭ୍ରଥ ହୋଇବ ରାଏ
କଏକୟା ଜନନୀ କଲାକ ଉପାଏ ।
ରାଜାକୁ ସତ୍ୟ କରାଇ ମାଗିଲାକ ବର
ଶୁଣି କଉଶୁଲାର କମ୍ପିଲା ଶ୍ୟରୀର ।୪୦
ଅଚେତା ହୋଇଣ ପଡ଼ିଲାକ ଢଳି
ଦାସୀ ପରିବାରୀ ଧଇଲେକ ଟୋଳି ।
ଶ୍ରୀରାମର ମୁଖ ଚାହିଂଣ ତାର ମାତା
କପାଳେ କରମାରି ସୁମରଇ ବିଧାତା ।
କିମ୍ପାଇଂ ହୋଇଲା ଏ ବନବାସ ଯୋଗ
ଏହା ସିନା ମୋତେ ବିହି କରିଲା
ସଂଯୋଗ ।
ପିତାର ବଚନେ ରାମ ବନକୁ ଆଗମ
ବନଭୋଗ ହୋଇଲେ ମରିବ ଶ୍ରୀରାମ ।
ଶ୍ରୀରାମକୁ ବୋଲନ୍ତି ବାବୁ ବନକୁ ତୁ ନଯା
ଅଯୋଧ୍ୟା କଟକରେ ନୋହ ପଛେ
ରାଜା ।୫୦
ରାଜଯୋଗ ଛାଡ଼ି ହୁଅସି ତୁ ଉଦାସ
ମୋହୋର ବୋଲକର ନଯାଅ ବନବାସ ।
ପୂର୍ବର କଥା ବାବୁ କହଇ ମୁହିଂ ତୋତେ
ମୁନିଗଣମାନେ ଯାହା ପ୍ରକାଶିଲେ ମୋତେ ।
ଯେବେଣ କାଳେ ବ୍ରହ୍ମା ସୃଷ୍ଟି ସରଜିଲା
ଦକ୍ଷିଣ ଅଙ୍ଗୁରୁ ସେ ପୁତ୍ରେକ ଜାତ କଲା ।
ତାହାର ନାମ ଯେ ଦକ୍ଷ ପ୍ରଜାପତି
ତାହାକଇ ବିଧାତା ରାଇଲାକ କତି ।
ବୋଇଲା ଭୋ ପୁତ୍ର ସୃଷ୍ଟି ବେଗେ କର
କୀଟ ପତଙ୍ଗ ଯେ ଜଙ୍ଗମ ଅପାର ।୬୦
ଶୁଣି ଦକ୍ଷ ଯେ ହୋଇଲା ଉଷତ
ମନରୁ ଜାତକଲା ପୁରୁଷ ପାଞ୍ଚସାତ ।
ତାହାକୁ ବୋଇଲା ତୁମ୍ଭେ ସଂସାର ହାଦେ
କର
ବନ, ଗିରି, ନଦୀ, ବ୍ରହ୍ମାଣ୍ଡ, ସାଗର ।
ଯେମନ୍ତେ ସୃଷ୍ଟି ବାବୁ ହୁଅଇ ବନ୍ଧନ କର
ଥୁଅ ତହିଂ ନେଇ ଜାବ ଯେ ଯହିଂର ।
ଯେ ଯହିଂ ଜୀବ ତହିଂ ତାକୁ ଥୋଅ

ଶୁଣିଣ ଭାଳନ୍ତି ଯେ ଦକ୍ଷର ସର୍ବପୁଅ ।
କେମନ୍ତେ ସୃଷ୍ଟି ଯେ କରିବୁ ପାତନ
ଏମନ୍ତ ବୋଲି ପୋଏ ଭାଳନ୍ତି
ମନେଣ ।୭୦
ଅଦ୍‌ଭୁତେ ନାରଦ ଯେ ମିଳିଗଲେ ଆସି
ବୋଇଲେ ହୋ କିମ୍ପା ଭାଳୁଅଛ ବସି ।
ଏବେ ପୃଥ୍ୱି ବୁଲି ପଛେ ରାଜ୍ୟ କର
ଶୁଣି ପୃଥ୍ୱି ବୁଲିବାକୁ ଗଲେ ସେ କୁମର ।
ରାଜ୍ୟ ବୁଲିଣ ସେ ବଣା ହୋଇ ମଲେ
କେହି ସୃଷ୍ଟି ସର୍ଜ୍ଜନା କରି ନ ପାରିଲେ ।
ଶୁଣବାବୁ ଶ୍ରୀରାମ ତୁ ଯେ ମୋହର ବାଣୀ
ପୂର୍ବର କଥା ହାଦେ ଅଛଇ ମୁହିଂ ଶୁଣି ।
କଶ୍ୟପ ଋଷିକି ବୋଇଲେ ତାଙ୍କର ଘରଣୀ
ପୁତ୍ରେ ନୋହିଲେ ମୋର ରାଜ୍ୟକୁ
କାରେଣୀ ।୮୦
ତୁ ମୋତେ ପ୍ରାଣନାଥ ପ୍ରତିକାର କର
ଇନ୍ଦ୍ର ବଧିବା ଭଳି କରିଦେବୁ କୁମର ।
ସୁରଗଣେ ତାହାକୁ ନୋହିବେ କେହି ସରି
ସପତ ଦୀପ ବୁଲିବ ଏକା କୁମର
ମୋହୋରି ।
ଅମୃତ ପାନେଣ ତୋଷିବ ନିଜ ପ୍ରାଣ
ବଳେଣ ଅଗୋଚର ରୂପେଣ କାମରାଣ ।
ଏସନେକ କରି ମୋତେ ଦେସି ଏକ ପୁତ୍ର
ତେବେ ସେ ଉଦର ମୋର
ହୋଇବ ପବିତ୍ର ।
କଶ୍ୟପ ବୋଇଲନ୍ତି ତୁ ଶୁଣରେ ଭାବିନୀ
ହଉ ଏକ ପୁତ୍ର ଜିଣୁ ପୁର ତିନି ।୯୦
ଅକ୍ରିୟାବନ୍ତ ମାତ୍ର ନୋହିବୁରେ ନାରୀ
ତେବେ ସେ ପୁତ୍ର ଦେବତାଙ୍କୁ ଜିଣିପାରି ।
ବାବୁ ସତ୍ୟ ମନାଇଣ ଦେଲେ ଯହୁଂ ବର
ଦିତିର ଗର୍ଭେ ଯେ ରହିଲା କୁମର ।
ଇନ୍ଦ୍ର ଜାଣିଣ କଲାକ ମହାଭଏ
ମାୟା ରୂପ ଧରିଣ ସେ ଆସଇ ସୁରରାଏ ।
ଦିତିର କତିରେ ସେ ଥାଇ ଅନୁବ୍ରତ
ବିଚାରଇ ଗର୍ଭ ପୁତ୍ରକୁ କେର୍ଣେ
କରିବି ହତ ।
ଏମନ୍ତେ ସହସ୍ର ବରଷେ ଗର୍ଭବାସ
ସୁରପତି ନ ପାଇଲା ଛିଦ୍ର ଅବକାଶ ।୧୦୦
ଦିନେକ ସୁନ୍ଦେରୀ ଯେ ଅଶକତ ହୋଇ
ସୀମ ସ୍ଥାନ କତିକି ଗୋଡ଼ କରିଅଛି
ଶୋଇ ।
ଅବେଭାର ବେଳ ଯେ ଦେଖିଲା ଶଚୀନାଥ
ଗର୍ଭେଣ ପଶି ପୁତ୍ରକୁ ବଜ୍ରେ କଲା ହତ ।
ସାତଖଣ୍ଡ କରି କାଟି ପକାଇଲା
ପୁଣି ଖଣ୍ଡକ ଯେ ସାତଖଣ୍ଡ କଲା ।
ଏମନ୍ତେ ହୋଇଲା ଯେ ଅଣଚାଶ ମୃତି
ପେଟରେ ଥାଇ ପୁତ୍ରେ ଦୁଃଖେଣ ରୋଦନ୍ତି ।
ଜାଣିଣ ଦିତି ଯେ ଇନ୍ଦ୍ରକୁ ଶାପ୍ୟ ଦ୍ୟନ୍ତେ
ଡରିଣ ଛାମୁରେ ଯେ ମିଳିଲେ
ଶଚୀକାନ୍ତେ ।୨୦
କର ଦୁଇ ଯୋଡ଼ି ବୋଲଇ ଉତ୍ତର
ମୁହିଂ ତୋର ପୁତ୍ର ମାଗୋ ବଳ୍ପ ଦ୍ରୋହ
ନକର ।
ନ ଜାଣିମା ପଣେ ଏମନ୍ତ କୃତ କଲି
ପେଟରେ ପଶି ତୋର ପୁତ୍ରକୁ ମାଇଲି ।
ଦିତି ବୋଇଲା ତୁ ବାଳୁତ ବଧ କଲୁ
ହିଂସା ମନେ ଧରି ପାପ ଅରଜିଲୁ ।
ଅମୃତ ତୁ ଯେବେ ଦେଇପାରୁ ଆଣି
ତେବେ ସେ ଶାପ୍ୟ ମୁଂ ନ ଦେବି ସୁରମଣି ।
ସନମତ କରାଇ ଯେ ଗଲା ଶଚୀନାଥ
ଅମୃତ ଆଣି ସେ ଦେଲାକ ଦିତିହାଥ ।୩୦
ଗର୍ଭକଇ ସେ ଅମିୟ ଖେପିଲାକ ବାଳୀ
ଅଣଚାଶ ମୃତି ସେ ହୋଇଲେ ବୀରବଳୀ ।
ସେ ସେ ପବନ ଯେ ହୋଇଲା ଅବତାର
ଦେବତାଏ ହୋଇ କରି ଉପାଏ ମାତାର ।
ଯେ ଯାହାର ପୁତ୍ର ତାହାରି ସେ ବ୍ୟଥା
ପୁରାଣ ଆଗମେ ଯେ ବୃତିଲାକ କଥା ।
ତୁ ଯେବେ ବନକୁ ଯିବୁ ରଘୁନାଥ
ମୁହିଂ ସିନା ଏକା ହୋଇବି ଅନାସ୍ତ ।
କଏକୟା ପୁତ୍ର ଯେ ନୃପତି ପଣେ ଥିବ
ଶରଦ ପୂର୍ଣ୍ଣମୀ ଜାଣି ତାର ଆତ୍ମା
ବିଘସିବ ।୪୦
ତୁ ବାବୁ ଅରଣ୍ୟକୁ ନଯା ଦାଶରଥି
ଅନେକ ବିକଳେ କଉଶୁଲା ବୋଲନ୍ତି ।
ତୁ ମୋର ଯେକୋଇର ଅଟୁସିରେ ବଳା
ମଝି ସମୋଦ୍ରେ ମୋର ନ ବୁଡ଼ାଅ ଭେଳା ।
ଅନ୍ଧର ନଉଡ଼ି ମୁଂ ଛାଡ଼ିଲେ ମରିବି
ତୋତେ ନ ଦେଖିଲେ ଦେହ କେମନ୍ତ
ଧରିବି ।
ନ ଯା ବନବାସ ମୋହୋର ବୋଲ କର
ରାଜାର ଅଛି ଆର ତିନି କୁମର ।
ତୁ ମୋହୋର ଏକୋଇର ପୁତ୍ର ଅଟୁ ରାମ
ତୋତେ କେହ୍ନେ ମୁଇଂ ପେଷିବଇଂ
ବନ ।୫୦
ରାଜ୍ୟରେ ବାବୁ ଆମ୍ଭର ପ୍ରୟୋଜନ ନାହିଂ
ଭିକ୍ଷା ମାଗିବା ପଛେ ଆନ ରାଜ୍ୟେ ଯାଇଂ ।
ମୁହିଂ ତୋହୋର ମାତା ମୋହୋର
ବୋଲକର
ଶୁଣିଣ ଶ୍ରୀରାମ ଯେ କହନ୍ତି ଉତ୍ତର ।
ତୁମ୍ଭେ ସେ ଜନନୀ ଯେ ନ ଜାଣସି କିଛି
ପିତାର ଆଗ୍ୟାଂ ଭାଙ୍ଗିତ କି ସଖ୍ୟ ମୋର
ଅଛି ।
ପିତା ସେ ଯେ ପିଣ୍ଡ ପ୍ରାଣର ଅଧିକାରୀ
ପିତାର ଆଗ୍ୟାଂ ଆନ କରନ୍ତି କିପରି ?
ପ୍ରଶୁରାମର କଥା ନାହଂ କିଗୋ ଶୁଣି
ଯମଦଗ୍ନି ଋଷିର ଯେ ରେଣୁକା
ଘରଣୀ ।୬୦
ପାଞ୍ଚପୁତ୍ର ଘେନିଣ ଯମୁନା କୂଳେ ଥାନ୍ତି
ଜପ, ତପ, ଧ୍ୟାୟେ, ଧାରଣା କରନ୍ତି ।
ଦିନେକ ତର୍ପଣ କରନ୍ତି ଯମଦଗ୍ନି
ପାଣି ତୋଳି ଦିଅନ୍ତି ଯେ ରେଣୁକା
କାମେନୀ ।

ଚିତ୍ରସେନ ଗନ୍ଧର୍ବ ଯେ ଆକାଶରେ ଯାଇ
ପାଣିରେ ରେଣୁକା ଦେଖିଲା ତାର ଛାଇ ।
ଚିତ୍ରଭ୍ରାନ୍ତି ଯହୁଁ ହୋଇଲାକ ନାରୀ
ମୁନିଙ୍କର ପାତ୍ରେ ଯେ ନ ପଡ଼ିଲା ବାରି ।
ଯୋଗେ ଜାଣି ଋଷି ଚାହିଁ କୋପ କଲା
ଚାରିପୁତ୍ରଙ୍କୁ ସେ ରାଇଣ ଆଗ୍ୟାଂ
ଦେଲା ।୭୦
ଏ ତୁମ୍ଭର ଜନନୀରେ ଅଟଇ ଦୋଷରୀ
ଶିର କମଳ ବେଗେ ଛେଦସି ଏହାରି ।
ପୁତ୍ର ବୋଇଲେ ଏ ନୁହଇଂ ଧର୍ମପଣ
ସ୍ତିରୀଜନକୁ କି କରିବି ପ୍ରହାରଣ ।
ସେ ସେ ଜନନୀ ଅଟଇ ମହାଗୁରୁ
ଏତେ ଦୁଃସହ କର୍ମ ମନେ କିମ୍ପା ଧରୁ ।
ଶୁଣି ମହାମୁନି ପ୍ରଶୁରାମକଇ ଚାହିଁ
ଜନନୀର ଦୋଷ ସେ ପୁତ୍ରର ଆଗେ କହି ।
ଭାଇ ତୋର ବୋଲ ଯେ ନ କଲେ
ମୋହୋର
ପିତାର ଭଗତି କି ଅଛଇଂ ତୋହୋର ।୮୦
ମୋହୋର ଆଗ୍ୟାଂ ଏ ଜନନୀ ଶିରଛେଦ
ଆବର ଚାରିଭାଇଙ୍କି ଖଡ଼ଗେ କରି ବଧ ।
ପିତାର ବଚନ ଶୁଣିଣ ପ୍ରଶୁଧର
କାଟି ପକାଇଲା ଜନନୀର ଶିର ।
ପୁଣି ଚାରିଭାଇଙ୍କର କାଟିଲା ମୁଧୁନି
ଦେଖିଣ ସନ୍ତୋଷ ହୋଇଲେ ଯମଦଗ୍ନି ।
ପ୍ରଶୁଧରକୁ କୋଳେ ବସାଇ ଦେଲେ ବର
ଚାରି ଯୁଗେଣ ତୁ ହୁଅସି ଅମର ।
ଆବର ପଦାର୍ଥ ମାଗସି ବଳା ଯେତେ
ସତ୍ୟ ମନେ ପୁଣି ଦେବଇଂ ମୁଂ
ତୋତେ ।୯୦
ପ୍ରଶୁରାମ ବୋଇଲା ଜୀଅନ୍ତୁ ମୋର ଭାଇ
ଆବର ବୃତନ୍ତୁ ମୋର ଗର୍ଭଧାରୀ ଆଇ ।
ହସି ଯମଦଗ୍ନି ଅସ୍ତୁ କଲେ
ତତକ୍ଷଣେ ପାଞ୍ଚଜଣ ଉଠିଣ ବସିଲେ ।
ସ୍ୱର୍ଗେ ସାଧୁ ସାଧୁ କଲେ ଦେବଗଣ

ଧନ୍ୟ ପ୍ରଶୁରାମ ତୋ ପିତା ଭକ୍ତିପଣ ।
ପିତାର ବଚନେ ଯେ ମାଇଲା ମାତା ଭାଇ
ପୁଣି ଜୀଆଇଲା ତପ ବଳ ଦେଖାଇ ।
ଆପଣେ ତ ଥିବ ଅମର ତନୁ ଧରି
ଏସନେକ ପ୍ରଶଂସା କଲେ
ସ୍ୱର୍ଗପୁରୀ ।୧୦୦
ପିତାର ଭକ୍ତିପଣେ ଏବେହେଂ ଜୀଇଅଛି
ତେଣୁ କରି ଧାର୍ମିକ ପଣେ ତାକୁ ଲେଖି ।
ମୁହିଂ କିମ୍ପା ପିତାକୁ ହୋଇବି ଅଭଗତ
ପିତାର ଆଗ୍ୟାଂ ଯେ ପାଳିବି ନିୟତ ।
ଚଉଦ ବରଷ ଯେ ଘୋର ବନେ ଥିବି
କନ୍ଦମୂଳ ଖାଇବି ଦେଶ ନ ମାଡ଼ିବି ।
ଶ୍ରୀରାମର ମୁଖୁଂ ଏସନେକ ବାଣୀ
ଶୁଣି ତୁନି ହୋଇଲେ କଉଶଲ୍ୟା ରାଣୀ ।
ଏସନେକ ସମୟେ ସୁମୈତ୍ରା ଆସି ହୋଇ
ଦେଖିଣ ନମସ୍କାର କରନ୍ତି
ସୀତାସାଇଂ ।୧୦
ବୋଲନ୍ତି ଅମାଗୋ ମୁହିଂ ବନ ଯିବି
ଚଉଦ ବରଷ ଯେ ପୂରିଲେ ଆସିବି ।
ପିତା ଆଗ୍ୟାଂ ଦେଲେ ଏସନେକ କରି
ଏହିକ୍ଷଣି ଯିବି ଯେ ଅନକୂଳ ଧରି ।
ରାଜାଙ୍କୁ ସେବା କରିଥାଅ ତୁମ୍ଭେ ଭଲେ
କଳି ନ କରିବ ତୁମ୍ଭେ ସପତଣୀଙ୍କର
ତୁଲେ ।
ପୋଅନ୍ତ ପାଳିଣ ଆପଣେ ସୁସ୍ତେ ଥିବ
ଦାସୀଙ୍କର ତୁଲେ ଯେ ଅପ୍ରୀତି ନୋହିବ ।
ସୁମୈତ୍ରା ବୋଇଲା ଯେ ଶ୍ରୀରାମ
ବୋଲ ଶୁଣି
ବାବୁ ବିହି ଏହା ସମ୍ପାଦିଲା ଆଣି ।୨୦
ଭଲର ଗତିତ ଏଣିକି ଆଉ ନାହିଂ
ଶ୍ରୀରାମ ପରା ପୁଅ ବନକୁ ଯିବ ଯହିଂ ।
ଯେଉଂଣ ମହାପ୍ରାଣୀ କଲାକ ଏଡ଼େ କୃତ
ତାହାକୁ କିସ ବୋଲି ବୋଲିବେ ଜଗତ ।
ଯା ବାବୁ ଶ୍ରୀରାମ ଧର୍ମ ତୋତେ ରଖୁ

ବାଟେ ପନ୍ଥାଇ ଦେବୀ ଅମୃତ ଦୃଷ୍ଟି ଦେଖୁ ।
ଅପ୍ରମାଦେ ପିତାର ଆଗ୍ୟାଂ ପ୍ରତିପାଳି
ଆସି ଭୋଗ୍ୟକର ଅଯୋଧ୍ୟାର ମହୀଆଳି ।
ଏତେ ବୋଲି ସୁମିତ୍ରା ଯେ ଶୋକଭର
ହୋଇ
ନିଜ ନବରକୁ ଗଲା ସେ ଚାନ୍ଦମୁହିଂ ।୩୦
ଲକ୍ଷଣକୁ ରାଇ ବସାଇଲା କତି
କହିଲା ଶ୍ରୀରାମ ବନ ଯିବାର ଗତି ।
କଏକୟା ଉପାଏ ଦଶରଥ ବୋଲେ
ରାଘେବ ବନ ଯିବେ କେହି ନାହିଂ ତୁଲେ ।
ତୁ ତାହାର ସଙ୍ଗେ ବାବୁ ଯିବୁ ଲଇକ୍ଷଣ
ସେବା କରିଥିବୁ ରଘୁନାଥ ଚରଣ ।
ଶୁଣି ସଉମିତ୍ରୀର ନପୁରଇ କିଛି
ଯାଇଂ ମିଳିଲା ଯହିଂ ଶ୍ରୀରାମଚନ୍ଦ୍ର ଅଛି ।
ନମସ୍କାର କରିଣ କହଇ କରଯୋଡ଼ି
କିମ୍ପା ଦେବ ବନକୁ ଯିବା ଦୁଃଖ ପଡ଼ି ।୪୦
ସାବତମାତା ସିନା ବଇରି ସମାନ
ଯତନେ ରାଇଂକି ତୋତେ ବୋଇଲେ
ରାଜନ ।
ସ୍ତିରୀ ବଶ୍ୟ ହୋଇ ଯେବେ ସତ୍ୟ କଲା
ଏତେ ମାୟା କଥା ମନକୁ ତାର ଗଲା ।
ଦଶରଥ ବୋଲେ କିମ୍ପାଇଂ ବନ ଯିବା
ଏହିକ୍ଷଣି ସୁଖେ ଅବିଷେକ ହୋଇବା ।
ଯେ ଅବା ନିରୋଧ କରିବ ଆଗେ ମିଳି
ତାହାର ମାଂଏସ ଯେ କାଟିବି ବିରୋଳି ।
ଏ ଦୁଇ ବାହା କିମ୍ପା ଅଛି ମୁହିଂ ଧରି
ମୋହୋର ଜୀଉଂ ଜୀଉଂ ରାମ
ବନଚ୍ଚରୀ ।୫୦
ଏ କଥା ଶୁଣିଲେ କି ରହଇ ମୋର କାଏ
ଏହିକ୍ଷଣି ମାରିବି ଯେ ଦଶରଥ ରାଏ ।
କଏକୟାର ଶିର ପକାଇବି ହାଣି
ମନ୍ତ୍ରୀ ଅମନାତ୍ୟଙ୍କୁ କରିବି ଏକ ଖଣି ।
ଯେବେ ପରିଘାଇବେ ଭ୍ରଥ ଶତ୍ରୁଘନ
ଏ ମୋହୋର ବାଣେ ସେ
ହୋଇବେ ନିଧନ ।

ନୋହିଲେଣ ନୃପତି ଯେ ରାଜ୍ୟ ବାଣ୍ଟି ଦେଉ
ପିତା ଗୁଣ ତା'ର ଯୁଗେ ଯୁଗେ ରହୁ ।
ନଭଚେତ ଅଯୋଧା ଦହିବି ଅନଳେ
ଦଶରଥ ପ୍ରାଣ ଯେ ପେଷିବି
ଯମଆଳେ ।୬୦
ଅସତ୍ୟ ପୁରୁଷ ସେ କିସ ଆମ୍ଭର ପିତା
ସତ ଥିଲେ ବୋଲିବା ଚଣ୍ଡାଳ ଦେବତା ।
ଆଗେ ଶ୍ରୀରାମକୁ ରାଜ୍ୟ ଦେବା କଲା
ପୁଣି ବନଯାଉ ବୋଲିଣ ବୋଇଲା ।
ମାୟାରେ ଏହାକୁ ମୋହିଲା ଯୁବତୀ
ଅଗ୍ୟାଂନ ହୋଇଣ ଛାଡ଼ିଲା ନୃପତି ।
ନିସତ ପ୍ରାଣୀକି ମାଇଲେ ଦୋଷ ନାହିଁ
ବେଦ ପୁରାଣେ ଏହା ଅଛି ନିର୍ଭା ହୋଇ ।
ଲଇକ୍ଷଣ କୋପ ଜାଣିଲେ ରଘୁନାଥ
ସଧୀରେ ବୋଲନ୍ତି ଶୁଣସିରେ ଭ୍ରାଥ ।୭୦
ପିତାଙ୍କୁ କୋପ କରିବାର ନ ଯୋଗାଇ
ଏ ପିଣ୍ଡର ପିତା ଯେ ଅଟଇ ଗୁଣଗ୍ରାହୀ ।
ମିଛେ ସତେହେଁ କଲା ଯେବେ ସତ୍ୟ
ତାହାର ଆଗ୍ୟାଂ ଆମ୍ଭେ ପାଳିବା ନିଅତ ।
ତୁ ବାବୁ କୋପ ଶ୍ୟାନ୍ତି କର ତୋର ଦେହ
ନୃପତି ଚରଣେ ସେବା କରିଥାଅ ।
ଯଦ୍ୟପି ଭ୍ରଥ ଯେ ହୋଇବ ଏଥି ରାଜା
ଅହନ୍ତା ଛାଡ଼ିଣ ତୁ କରିବୁ ତାକୁ ପୂଜା ।
ଯେକା ପିଣ୍ଡରୁଟି ଚାରିହେଁ ଆମ୍ଭେ ଜାତ
ଭ୍ରଥ ଆମ୍ଭେ ବେଗଳ ନୋହୁଟିରେ
ଭ୍ରାଥ ।୮୦
ଲକ୍ଷ୍ମଣ ବୋଇଲା ତୁମ୍ଭେ ଶୁଣିମା ଶ୍ରୀରାମ
ତୁମ୍ଭେ ଯେବେ ଅରଣ୍ୟେ କରିବ ବିଶ୍ରାମ ।
ମୁହିଁ ଏଥେ ଥାଇଣ କରିବିଟି କିସ
ତୁମ୍ଭର ସଂଗେ ମୁହିଁ ଯିବି ବନବାସ ।
ତୁ ଯେବେ ହୋଇବୁ କନ୍ଦମୂଳେ ଯୋଗ୍ୟ
ଅଯୋଧାରେ ଥାଇଂ କି କରିବି ମୁହିଁ
ଭୋଗ୍ୟ ।
ଏ କଥା କିମ୍ପାଇଂ ସ୍ୱାମୀ ମନେ ତୁମ୍ଭେ ଧର
ଜନ୍ମେ ଜନ୍ମେ ମୁହିଁ ଯେ ସେବକ ତୁମ୍ଭର ।
ଶ୍ରୀରାମ ବୋଇଲେ ବାବୁ ଅରନ୍ୟେ ଦୁଃଖ
ପାଇ
ସୁକୁମାର ଶରୀର ଯେ ଅଟଇ ତୋର
ଦେହୀ ।୯୦
ଆହାର ବିହୁନେ ତୁଟିବ ବଳ ପ୍ରାଣ
ମୋହୋର ବୋଲ ଶୁଣ ନ ଯା
ତୁ ଲଇକ୍ଷଣ ।
ଶ୍ରୀରାମର ବଚନ ସଉମିତ୍ରୀ ନାସ୍ତି କଲା
ନିଶ୍ଚୟେଂ ଯିବି ବୋଲି ସତ୍ୟ ଆଚରିଲା ।
ଦୃଢ଼ ବ୍ରତ କଥା ଯେ ଜାଣିଲେ ତାହାର
ଲକ୍ଷ୍ମଣ ଭୁଜ ଧରି ଶ୍ରୀରାମ ବାହାର ।
ସୀତୟାର ପୁରେ ଯାଇ ପ୍ରବେଶ ହୋଅନ୍ତି
ଦେଖିଣ ଓଳୋଗିଲା ଜନେକ ଦୋହିତି ।
ରଘୁନାଥ ବୋଇଲେ ତୁ ବଇଦେହୀ ଶୁଣ
ପିତା ମୋତେ ବନକୁ କଲାକ
ପେଷଣ ।୧୦୦
ଚଉଦ ବରଷ ଅରନ୍ୟେ ମୁହିଁ ଥିବି
କନ୍ଦମୂଳ ଆହାରେ ଦିନ ମୁଂ ବଞ୍ଚିବି ।
ଭ୍ରଥ ରାଜା ହୋଇବ ଅଯୋଧ୍ୟା ନଗରୀ
କଏକୟା ଜନନୀ ଉପାଏ ଏହା କରି ।
ତୁ ଗୋ ସୀତୟା ଶାଶୁଙ୍କ ସେବା କରୁଥିବୁ
ଆମ୍ଭକୁ ନ ଦେଖି ମନେ ଆନ ନ ଧରିବୁ ।
କାହାରିହିଁ ସଙ୍ଗରେ ଗୋ ନ କରିବୁ କଳି
ତୋହୋର ଇଚ୍ଛାଏ ଗୋ ଥିବୁ ମହୀସୁଳୀ ।
ଆମ୍ଭକଇ ଶୁଭ ଆରଧୁଥିବୁ ନିତି
ଶୁଣି ବୋଇଲେ ଯେ ଜନେକ
ଦୋହିତି ।୧୦
କିମ୍ପାଇଂ ଶ୍ରୀରାମ ହୋଇଲ ତୁମ୍ଭେ ବାଇ
ତୋତେ ନ ଦେଖିଲେ କି ମୋହୋର ପ୍ରାଣ
ଥାଇ ।
ମୃତି ଯେକ ହୋଇଲେ ଯେ ନାମେକ
କହଇ
ଏ ତୋହୋର ଅଙ୍ଗର ଅଟଇଂ ମୁହିଁ ଛାଇ ।
ତୁ ମୋତେ ଶ୍ରୀରାମ ଯାଇ ଲୋଡ଼ୁ ଛାଡ଼ି
ଆତ୍ମା ବିସର୍ଜିବି ମୁଂ ହୁତାଶନେ ପଡ଼ି ।
ଯେବଣ ଦିନେ ସ୍ୱାମୀ ମିଥିଳାପୁରେ ଗଲୁ
ସଭାଏ ବିଦ୍ୟମାନେ ଧନୁ ଭଗ୍ନ କଲୁ ।
ସେଦିନୁ ଜୀବନ ମୋର ନେଲୁଣି ଆକ୍ରୋଷି
ଅନୁବ୍ରତେ ଥାଉ ମୋର ହୃଦୟରେ
ପଶି ।୨୦
ଏବେ ତୁ ବନସ୍ତରେ ପାଇବୁ ଯାଇଂ ଦୁଃଖ
ଏଥିଥାଇଂ ମୁହିଁ ଚାହିଁବି କାହା ମୁଖ ।
ଶ୍ରୀରାମ ବୋଇଲେ ତୁ ଶୁଣସିରେ ସହୀ
ପ୍ରବାସର କଷ୍ଟ ନୋହଇ ହାଦେ ସହି ।
ବନ ପରବତ ଲତା ନିରନ୍ତର
ଜୀବଜନ୍ତୁମାନେ ଅତି ଭୟଙ୍କର ।
ଦିନେ ଓଳିୟେକି ଯାଇଣ ଆସିବା
ଚଉଦ ବରଷ ଗୋ ଅରନ୍ୟେ ବଞ୍ଚିବା ।
ଚନ୍ଦ୍ରଶାଳା ପୁରେ ତରୁ ଚିତ୍ରପଟ ଦେଖି
ତହିଁ କେମନ୍ତେ ଜୀବନ ଗୋ ଧରିବୁ
ଶଶୀମୁଖୀ ।୩୦
ତୋହୋର ଦୁଃଖ ଦେଖି ପାଇବି ମୁହିଁ ଚିନ୍ତା
ଏକଥା ମନରେ ତୁ ନ ଧର ଦେବୀ ସୀତ୍ୟା ।
ଶାଶୁଙ୍କର ସଙ୍ଗରେ ଯେ ଅନ୍ତପୁରେ ଥିବୁ
ଚଉଦ ବରଷରେ ଆମ୍ଭେ
ଅଇଲେ ଦେଖିବୁ ।
ସୀତ୍ୟା ବୋଇଲେ ପିତା ଯେ
ସମର୍ପିଲେ ତୋତେ
ତୁ କିମ୍ପା ନିରାଶ କରୁ ସ୍ୱାମୀ ମୋତେ ।
ଜନ୍ମେ ଜନ୍ମେ ମୁହିଁ ଅଟଇ ତୋହୋର ଦାସୀ
ତୁ ଯେବେ ସ୍ୱାମୀ ହୋଇବୁ ବନବାସୀ ।
ମୁହିଁ ଏଥେ ଥାଇଂ କରିବଇଂ କିସ
ମୋତେ ହେ ସଂଗେ ତୁମ୍ଭେ ନିଅ
ରଘୁଶିଷ ।୪୦
ମୁହିଁ କିମ୍ପା ରହିବି ତୁମ୍ଭର ଛାଡ଼ିଗଲେ
ଘରେ ପଶି ଦିନ ମୁଂ ହରିବି କାହା ତୁଲେ ।
ନିଶ୍ଚୟେଂ ସ୍ତିରୀହତ୍ୟା କରିବୁ ରଘୁରାଜ

ତୋହୋର ସଂଗେ ଯେବେ ନନେମୁ
ମୋତେ ଆଜ।
ସୀତ୍ୟାର ବଚନ ଯେ ନିରାଧାର ଶୁଣି
ଶ୍ରୀକରେ ସମାର୍ଜନା କରନ୍ତି ରଘୁମଣି ।
ନୋହ ତୁ ବିମୁଖ ଆଗୋ ପ୍ରାଣ ସହି
ତୋତେ ଉପେକ୍ଷିଲେ କି ମୋହୋରେ ହୁଏ
ଯାଇଂ ।
ଜନେକ ମହାଋଷି ଯେ ଦେଲେ ଶୁଦ୍ଧ ମନେ
ନିଶ୍ଚୟେଂ ପ୍ରିୟାଗୋ ନେମଇଂ ତୋତେ
ବନେ ।୫୦
ନିଜ ପତି ବଚନେ ଯେ ସଜ ଶୁଭ୍ରକେଶୀ
ତିନିଜଣ ଏକମନ ହୋଇଣ ତହୁଂ ଆସି ।
କଉଶୁଲାପୁରେ ଯେ ପ୍ରବେଶ ହୋଇଯାଇ
ନମସ୍କାର କରିଣ ଯେ ବୋଲନ୍ତି ରଘୁସାଇଂ ।
ଯିବି ବନ ଅମା ଗୋ ଲଇକ୍ଷଣ ସୀତ୍ୟା ଘେନି
ଶୁଦ୍ଧ ଚିତ୍ତେ ଆଗ୍ୟାଂ ଗୋ ଦିଅସି ଜନନୀ ।
ଶୋକେଣ କଉଶୁଲା ଯେ ସୀତ୍ୟାଙ୍କୁ କୋଳ
କରି
ଶ୍ୟରୀର ଆଉଂଶିଣ ଅନେକ ତିଆରି ।
ତୁ ଯେ ଜାନେକୀ ଗୋ ଶ୍ରୀରାମ
ସଂଗେ ଥିବୁ
ଅପୂର୍ବ ପଦାର୍ଥ ଗୋ ଦେଖିଲେ ନ
ମାଗିବୁ ।୬୦
ସ୍ୱାମୀକି ଛାଡ଼ିଣ ଗୋ ନ ଯିବୁ ସୀତ୍ୟା କାହିଂ
ଭ୍ରଥାକୁ ସେବିଥିବୁ ତୁ ବିନୟଭାବ ହୋଇ ।
କନ୍ଦମୂଳ ଫଳ ଯିସହିଂ ପାଇବୁ
ଆଗତ ଦିନକୁ ତା ଥୋକାଏ
ଥୋଇଦେବୁ ।
ନ ପାଇଲା ଦିନ ରଖଇଟି ପ୍ରାଣ
ଏକଥା ସୀତୟା ଗୋ ତତ୍ତ୍ୱଥ କରି ଜାଣ ।
ପତିକି ବିମୁଖ ଗୋ ନ କରିବୁ ମାଏ
ଯେମନ୍ତେ ଭଲ ହୋଇଥାଏ ତାର କାଏ ।
ସେ କଥା ଜାଣିଣ ତୁ ଥିବୁ ସେବାକରି
ସେ ତୋହୋର ପ୍ରାଣର ଅଟଇ
ଅଧିକାରୀ ।୭୦

ତୁ ତାହାର ମନ ଜାଣୁରେ ଚନ୍ଦ୍ରମୁଖୀ
ଯେସନେକ ଜାଣୁ ପୁତ୍ର ଅଟଇ
ମୋର ସୁଖୀ ।
ସେକଥା ବିଚାରି ଗୋ ଥିବୁ ବଇଦେହୀ
ମନଜାଣି ସେବା କରିଥିବୁ ତୁହି ।
ତୋ ତହୁଂ ତାହାରି ବନେ କେହି ନାହିଂ
ତୁ ତାହାର ଘରଣୀ ସେ ତୋହୋର
ଅଟଇ ସାଇଂ ।
ମୁହିଂ ତ ନୋହିଲି ତା ଦୁଃଖରେ କାରେଣୀ
ମିଛରେ ହେଂ ବୋଲାଇ ଥାଇଂ
ରାଜାର ଘରେଣୀ ।
କାହିଂ ପଶିବି ମୁଂ କରିବଇଂ କିସ
ନିଶ୍ଚେ ଖାଇଣ ମରିବି ମୁଇଂ
କାଳକୂଟ ବିଷ ।୮୦
ବୃଦ୍ଧା କାଳେ ମୁହିଂ ଯେ ପୁତ୍ରେକ ପାଇଲି
ଦଇବର ଅବଳେ ମୁଂ ତାହା ହରାଇଲି ।
ବାଳୁତ କାଳେ ପୁତ୍ର କତିରେ ମୋର ଥିଲା
ଏବେ ବନ ଯିବା ବିଧାତା ଏହା କଲା ।
ଯାସି ସୀତ୍ୟା ତୁ ଗୋ ଜନେକ କୁମାରୀ
ଥାସି ବନସ୍ତେ ତୁ ସ୍ୱାମୀକି ସେବାକରି ।
ପତିଭକ୍ତ ଲେଖାଏ ହୋଅସି ଅଗ୍ରଣୀ
ଏ ତୋହୋର ନାମ ପ୍ରଭାତେ ସୁମରନ୍ତୁ
ପୁଣ୍ୟପ୍ରାଣୀ ।
ସ୍ୟତୀ ସାଧେବୀ ତୁ ଅଟୁ ମହୀସ୍ଥଳୀ
ହୁଅସି କଇଲାଣ ଗୋ ଜନେକ
ଦୁଲାଳୀ ।୯୦
ଏମନ୍ତେ କଉଶୁଲା ଯେ ଅନେକ ତିଆରିଲା
କଲ୍ୟାଣ ହୋଉ ତୋତେ ବୋଲିଣ
ବୋଇଲା ।
ଯାଅ ବାବୁ ତାକୁ ସେବା କରି ଥାସି
ଦୁଃଖକାଳେ ଏକା ସାଂଗେ ଦିନ ନେସି ।
ବାବୁ ଶ୍ରୀରାମ ଯେ କୋପ କରଇ
କ୍ଷଣେ କ୍ଷଣେ
ସେ ଦୋଷ ନ ଧରିବୁ ଶୁଣହୋ ଲଇକ୍ଷଣେ ।

ଏତେ ବୋଲି ଶ୍ରୀରାମର ମଉଳି ଗୋଟି ଧରି
ତିନିଙ୍କରି ମୁଧୁନୀ ଆଗ୍ରାହଣ କରି ।
ଶୁଭେଣ ଯାଅ ବାବୁ ପିତାର ସତ୍ୟ ରଖ
ବାହୁଡ଼ି ଆସି ବାବୁ ଆମ୍ଭର ଦୁଃଖ
ପେଖ ।୧୦୦
ଏତେବୋଲି କଉଶୁଲା ନୟନୁ ବହେ ଜଳ
ଆବର ମାତାମାନେ ଯେ ହୃଦରେ ବିକଳ ।
ମନ୍ଥେଡ଼ୀର ମନେ ଯେ ବହୁତ ହରଷ
ମୋତେ ଯେ ମାଗିଲା ସେ ଯାଉ
ବନବାସ ।
ସୁରଗଣେ ସ୍ୱର୍ଗେ ବିଚାରନ୍ତି ଥାଇ
ଆଜ୍ଞୁଂ ଚଉଦ ବରଷେ ମରିବୁ ଲଙ୍କାସାଇଂ ।
ତହୁଂ ଶ୍ରୀରାମ ଲକ୍ଷଣ ସୀତ୍ୟା ଘେନି
କଉଶୁଲାପୁରୁ ଯାନ୍ତି ଅନକୂଳ ଜାଣି ।
ଦଶରଥ ରାଜାକୁ କରନ୍ତି ଦରଶନ
ଦେଖି ନୃପବର ବିକଳ ପଞ୍ଚମନ । ୧୦
ଥମ୍ଭୀଭୂତ ହୋଇଣ ଯେ ଚାହାଇଂ ରାମମୁଖ
ଏଥର ପରେ ଆଉ ନାହିଂ ତାକୁ ଦୁଃଖ ।
ଶ୍ରୀରାମର ପଛେ ଲକ୍ଷଣଙ୍କୁ ଦେଖି
ଆବର ଦେଖିଲା ସେ ସୀତ୍ୟା ଚନ୍ଦ୍ରମୁଖୀ ।
ମନେ ବିଚାରିଲେ ଯେ ତିନିହେଂ
ବନ ଯିବେ
ଏତେ଼ ଅବିଚ୍ଛର ପୁରେ କିମ୍ପାଇଂ
ଯେ ଥିବେ ।
ରଘୁନାଥ ବୋଲନ୍ତି ଯେ କର ଦୁଇ ଯୋଡ଼ି
ଦିଅ ମୋତେ ତପୋଧନ ଅଳଙ୍କାର ଶାଢ଼ୀ ।
ଶୁଣିଣ ଦଶରଥ ତବଦ ହୋଇଅଛି
ଭଣ୍ଡାରୁ କଏକୟା ଆଣିଲା ବସ୍ତ୍ର ବାଛି ।୨୦
ଶ୍ରୀରାମକୁ ଦୁଇ ଯେ ଲକ୍ଷ୍ମଣଙ୍କଇ ଦୁଇ
ସୀତୟାକୁ ଶାଢ଼ୀ ଦେଲା ମହାଦେଈ ।
ରୁଦ୍ରାକ୍ଷ କୁଣ୍ଡଳ ତୁଳସୀ କାଠମାଳ
ଦେଖିଣ କୋପେଣ ଯେ ବୋଲଇ
ମହୀପାଳ ।
କିମ୍ପାଲୋ ପାମେରୀ ପାଷାଣ ତୋର ହିଆ

ଏତେ କାଳେ ଆଣି ସମ୍ପାଦିଲୁ ଏହା ।
ଶ୍ରୀରାମ ବନ ଯାଉ ବୋଲିଣ ବୋଇଲୁ
ସୀତ୍ୟା ଲକ୍ଷ୍ମଣକୁ କିମ୍ପା ବସ୍ତ୍ର ଦେଲୁ ।
ତପୀଙ୍କର ଅଳଙ୍କାର ଯେ ଫୁଂଇଚାନ୍ଦିଆ ମାଳ
ଏହା ତ ଦେବାର ତୋର ଯେ
ଅଟଇ ଅବେଭାର ।୩୦
ଶ୍ରୀରାମ ଯେ ଅଟଇ ତୋହର ପୁତ୍ରର ବଇରୀ
ସୀତ୍ୟା ଘେନି ଲୋଡ଼ଇ କି ଭ୍ରଥ
ରାଜ୍ୟଶିରୀ ।
ଲକ୍ଷଣ ଅଲିଅଳ ଓହୋ କୁଳର ସାନ
ରାଜା ହୋଇବାରେ ତ ଏହାର ନାହିଁ ମନ ।
ଏ ବନ ନ ଯାଆନ୍ତୁତ ନ ବୋଇଲୁ ଆଗ
ଶ୍ରୀରାମକୁ ଯେବେ ତୋହୋର ଅଛି ରାଗ ।
ତପୋଧନ ଅଳଙ୍କାର ଯେବେ
ଶ୍ରୀରାମକୁ ଦେଲୁ
ସୀତ୍ୟା ଲକ୍ଷଣକୁ ଲୋ ଗୋ ଏହା
କେମନ୍ତ କଲୁ ।
ପାପ ପୁଣ୍ୟରେ ଯେ ଗ୍ୟାଂନ
ତୋହୋର ନାହିଁ
ମୋତେ ଦହିବୁ ବୋଲି ଅଛୁ ବାଟ
ଚାହିଁ ।୪୦
ଏ ମୋହୋର ପୁତ୍ର ତୋହୋରେ ନାଶଯିବ
ଜନଜନ୍ତୁ ମୁଖେ ମୋତେ ଅପଖ୍ୟାତି
ଉପୁଜିବ ।
ଶ୍ରୀରାମକୁ ଚାହିଁ ଯେ ବୋଲଇ ନୃପବର
ତୁହୋ ରଘୁନାଥ ନ ଯା ବନ ଘୋର ।
ଏ ମୋହୋର ସତ୍ୟ କଲେ ତୋହୋର କିସ
ଯାଇ
ଯେ ଯାହାର ପାପ ପୁଣ୍ୟ ତାହାକୁ
ଲାଗଇ ।୫୦
ଶ୍ରୀରାମ ବୋଇଲେ ପିତାର ବଚନ ଶୁଣି
ଏହେଣ୍ଡେକ କଥା କିମ୍ପା କହ ନୃପମଣି ।
ସତ୍ୟ ଯେବେ ଆଚରଣ କଲୁସି ନରସାଇଂ
ପିତାର ପାପ ପୁଣ୍ୟ ଯେ ପୁତ୍ରକୁ ଲାଗଇ ।

ଋଣ ଅଥେ କାରେଣୀ ଅଟଇ ହାଦେ ପୁତ୍ର
ମୁହିଁ କିମ୍ପା ନ ପାଳିବି ତୁମ୍ଭର ସତ୍ୟବ୍ରତ ।
ଚଉଦ ବରଷ ମୁଂ ପଶିବି ବନ ଘୋର
କନ୍ଦମୂଳ ଫଳ ମୁଂ କରିବି ଆହାର ।
ଗିରି କନ୍ଦରେ ମୁଂ ଯେ ରହିବି ଅପ୍ରମାଦେ
ଯେ ତୋହୋର ଚରଣ ଯୁଗଳ ପରସାଦେ ।
ବାହୁଡ଼ି ଆସି ଯେ କରିବି ତୋତେ ସେବା
ଭୋ ତାତ କୁଶଳେ ରାଜ୍ୟ କରୁଥିବା ।
ଶୁଣି ଦଶରଥ ସୁମନ୍ତକୁ ରାଇ
ରତ୍ନ ଅଳଂକାର ଆଣ ଆଜ୍ଞା ଦେଇ ।୬୦
ବିବିଧ ଦେବାଙ୍ଗ ବିଚିତ୍ର ପାଟଶାଢ଼ୀ
ଘେନିଆସ ବୋଲି ବୋଇଲେ ଦଣ୍ଡଧାରୀ ।
ଆଗ୍ୟାଂ ପ୍ରମାଣେ ଯେ ଆଣିଲା ସୁମନ୍ତ
ନବରତ୍ନେ ଜଡ଼ିଲା ଅଳଂକାରମାନନ୍ତ ।
ନୃପତିର ବଚନେ ସୀତୟାକୁ ଦେଲା
ତତ୍କ୍ଷଣେ ଦେବୀ ତା ଆଭରଣ କଲା ।
ବାହେଣ ବାହୁଟି କରେଣ କଂକଣ
ଅଙ୍ଗୁଷ୍ଠିରେ ମୁଦି ଯେ ସୂର୍ଯ୍ୟର କିରଣ ।
ଭୁଜେଣ ତାଡ଼ ଯେ ଶିକଳି ବିଦମାଳି
କର୍ଣ୍ଣରେ କାପ ଯେ କଟିରେ ମେଖଳି ।୭୦
କଣ୍ଠେଣ ହାର ଯେ ହୃଦରେ ପଦେକ
ଶିରେଣ ମୋତି ମାଳି ବସଣି ବସଇ ନାକ ।
ଶ୍ରବଣ ଶିଖରେ ଯେ ବେଣ୍ଟୁଲା ଚାରିଗୋଟି
ଚରଣେ ନୃପୁର ଶବଦ ପରକଟି ।
ଅଙ୍ଗୁଷ୍ଠିରେ ଖଞ୍ଜିଲେ ଯେ ନବରତ୍ନ ମୁଦି
କିଜାଣି ବିଜୁଳି କିରଣ ଆଚ୍ଛାଦି ।
ସ୍ୱଭାବେ ତଇଲୋକ ମୋହଇ ସୀତ୍ୟାରୂପ
ଅଳଂକାର ପରିହରଣେ ଦିଶିଲା ସ୍ୱରୂପ ।
କେ ତାହା ପଟାନ୍ତର କରିଣ କହିବ
ଦେବ ସ୍ତରୀ ଅବା ସମାନ୍ୟ ହୋଇବ ।୮୦
କୋଟିଏ ପାର୍ବତୀ ଅବା ରୂପ ପାଇ
ସ୍ୱୟଂ ଲକ୍ଷ୍ମୀ ଅଟଇ ସେ ପଟାନ୍ତର ନାହିଁ ।
ଜାନେକୀର ରୂପ ଦେଖିଣ ଦଶରଥ
କପାଳେ ନେଇଣ ତାଡ଼ଇ ନିଜ ହସ୍ତ ।

ବାବୁ ବିଧାତାରେ ମୋତେ ଏହା କଲୁ
ମୋହୋର କୁଳବଧୂକୁ ଯେ ବନବାସ
ବିହିଲୁ ।
ସୁମନ୍ତଂକୁ ଚାହିଁ ବୋଲଇ ରାଜନ
ମାସେକକୁ ଦୁଇଶାଢ଼ୀ କରିଣ ବିଧାନ ।
ଚଉଦ ବରଷକୁ ଦେସି ଲେଖା କରି
ବାୟେଂଶ ନଳିରେଣ ସବୁ ବସ୍ତ୍ର ଭରି ।୯୦
ଦୁଇ ପୁତ୍ରେ ଅବା ପିନ୍ଧିବେ ବକଳ
ବୋହୂ ମୋର କାହିଁ ପାଇବ ଦୁକୂଳ ।
ଶୁଣିଣ ସୁମନ୍ତ ଯେ ବସ୍ତ୍ର ସମର୍ପିଲା
ଆପଣେ ଲକ୍ଷଣ ତାହା ଘେନିଣ ସାଇତିଲା ।
ଲାଉ ଲୋହିତା ଯେ ଖଣନ୍ତି ଗୋଟି ଭାର
ସବୁ ସଜ କଲା ଲକ୍ଷ୍ମଣ କୁମାର ।
ଦୁଇ ଭାଇଙ୍କର କର୍ଣ୍ଣେଣ ରୁଦ୍ରାକ୍ଷ
କଷା କଉପୁନୀ ପିନ୍ଧିଲେ ଦଶରଥ
ବେନିବଛ ।
ତୁଳସୀ କାଠମାଳ ଯେ ଗଳାରେଣ ହାର
ପଦ୍ମ ପୁଷ୍ପ କରମାଳି ଗୋଟି ବାହୁ
ମୂଳ ।୧୦୦
ବଶିଷ୍ଟଙ୍କର ବିଭୂତି କପାଳେ ଚିତା ଘେନି
ଅପୂର୍ବ ଦିଶିଲେ କି ଜାଣି ବେନି ମୁନି ।
ସୁବର୍ଣ୍ଣ ଅଳଙ୍କାର ନାହିଁ ଅଂଗେ କିଛି
କରେ ଧନୁ ଶସ୍ତ୍ର ଯେ ଧଇଲେ ରଘୁବଛି ।
ପିତାର ଚରଣେ ଯେ ନମସ୍କାର କରି
କଏକେୟାକୁ ବିନୟେ କରିଣ ତିଆରି ।
ଭୋ ନାଥ ସର୍ବଶୁଭେ ରାଜ୍ୟ ରଖିଥାଅ
ମୋତେ ନ ଦେଖିଣ ବିମୁଖ ନ ପାଅ ।
ଭ୍ରଥକୁ ଅଣାଇ ଅବିଷେକ କର
ଯେସନେକେ ଶୁଭେ ଥାଇ ନୃପବର ।୧୦
ପରଜାଏ ଦୁଃଖ ନ ପାଆନ୍ତି ଯେମନ୍ତେ
ରାଜ୍ୟ ପାଳିବ ମାଗୋ ତେସନକ ମତେ ।
ପାତ୍ର ଅମନାତ୍ୟକୁ ମନ୍ଦ ନ ବୁଝିବ
ସପତଣୀଙ୍କ ସଂଗେ କଳି ନ କରିବ ।
ଏତେ ବୋଲି ରାମ ଯାନ୍ତେ ପିଠି ଦେଇ

ଦଶରଥ ଢଳି ପଡ଼ିଲାକ ମହୀ ।
ପୁତ୍ରେ ପୁତ୍ରେ ବୋଲି ରୋଦନ ଛାଡ଼ିଲା
ଉଂଚ ଗଛ ଛେଦନ ଯେସନେ ପଡ଼ିଲା ।
ନେଉଟି ଶ୍ରୀରାମ ପିତାଙ୍କୁ ଧଇଲେ ଟେକି
ଅନ୍ତେପୁର ମଧ୍ୟେ ପଡ଼ିଲା ବୋବାଳି ।୨୦
ଦଶରଥ ବୋଇଲା ଯେ ରଘୁନାଥକୁ ଚାହିଁ
ତୋହୋର ସଙ୍ଗରେ ବାବୁ ଯିବଇଂ
ଗୋଡ଼ାଇ ।
ତୋତେ ସୁମରି ମୁଂ ମରିବି ନୋହିଲେ
ପ୍ରାଣ ହାରିବି ତୋହୋର ଯେଥୁ ଗଲେ ।
ଶ୍ରୀରାମ ବୋଇଲେ ଯେ ଯେ କଥା ନ
ଯୋଗାଇ
ଯେଡ଼େ ମହାରାଜା କି ଦେଶାନ୍ତର ଯାଇ ।
ରାଜ୍ୟ ସମ୍ଭାଳିଣ ଥିବୁ ମହୀପତି
ଲୋକେ ଶୁଣିଲେ ଯେ ବୋଲିବେ ମନ୍ଦ
ଗତି ।
ଶ୍ରୀରାମ ନିରାଶ ବଚନ ରାଏ ଶୁଣି
ସୁମନ୍ତ ମୁଖ ଚାହିଂଣ ବୋଲନ୍ତି ରାଏ
ବାଣୀ ।୩୦
ରଘୁନାଥର ସଙ୍ଗେ ଭଣ୍ଡାର ଚଳିଯାଉ
ହସ୍ତୀ ଘୋଡ଼ା କିଛି ଗୋଟାଏ ନଥାଉ ।
ଶ୍ରୀରାମର ସଂଗେ ନେଉ ସର୍ବ ଥାଟ
ଏକାଏ ଏଥେଂ ଆସି ରାଜା ହୋଉ ଭ୍ରଥ ।
ପାତ୍ର ଅମନାତ୍ୟେ ସମସ୍ତେ ତୁମ୍ଭେ ଯାଅ
ବନ ଘୋର କନ୍ଦରେ ସମସ୍ତେ ତୁମ୍ଭେ ଥାଅ ।
ଏ ବଚନ ଶୁଣି ଯେ ବୋଇଲା କଏକୟା
ଜାଣିଲି ନୃପମଣି ସବୁ ତୋର ମାୟା ।
ଏମନ୍ତ ସତ୍ୟଟି କଲୁ ମହୀପତି
ଶ୍ରୀରାମର ସଂଗେ କିମ୍ପା ଯିବେ
ଘୋଡ଼ା ହାତୀ ।୪୦
ଧନ ଭଣ୍ଡାର ଯେ ପାତ୍ର ଅମନାତ୍ୟ
ରାଜ୍ୟ ଛାଡ଼ି କିମ୍ପାଏ ଯିବେଟି ବନସ୍ତ ।
ଭ୍ରଥ ଆନେ ରାଜ୍ୟ କରିବ କାହା ଘେନି
ଏମନ୍ତ ସତ୍ୟଟି କଲୁହୋ ରାଜନି ।

ଶ୍ରୀରାମ ଏକା ଯେ ପଶିବ ବନଘୋର
ବକଳ ପରିହରଣ ଫଳମୂଳ ଆହାର ।
ଚଉଦ ବରଷ ସେ ନ ମାଡ଼ିବ ଦେଶ
ଅରନ୍ୟ ଭିତରେ ଯେ କରିଥିବ ବାସ ।
ଶୁଣିଣ ନୃପବର ହୋଇଲାକ ତୁନି
ଶ୍ରୀରାମ ଉଠିଲେ ଯେ ଧନୁ ଶସ୍ତ୍ର
ଘେନି ।୫୦
ନବରୁ ବାହାର ଯେ ହୋଇଲେ ତିନିଜଣ
ସୁମନ୍ତ ରଥ ଆଣି କଲା ତତକ୍ଷଣ ।
ରଥୁବରେ ଶ୍ରୀରାମ ଲକ୍ଷଣ ସୀତ୍ୟା ବସି
ସିଂହଦ୍ୱାରୁ ଯାନ ବାହର ହୋଇଆସି ।
ଦେଖିଣ ନଗ୍ରଲୋକେ କରନ୍ତି ବିଚ୍ଚର
ତପସନୀ ରୂପତ ଦିଶଇ ଏହାଙ୍କର ।
ରାଜ୍ୟେ ଅବିଷେକ ନୋହିଲେ ରଘୁପତି
କେବଣ ବିପୁରୀତ ଉପୁଜିଲା ଏଥି ।
ଏମନ୍ତେ ଅନ୍ତେପୁରେ ଯେ ପଡ଼ିଲା ବୋବାଳି
ଆକୁଳ ଶବଦେ ଯେ ସାହେର
ଉଛୁଳି ।୬୦
ପଛେ ଗୋଡ଼ାଇଣ ଯେ ରୋବନ୍ତି ଦଶରଥ
କଉଶୁଲା ଦେଈ ସହିତେ ସମସ୍ତ ।
ପାତ୍ର ଅମନାତ୍ୟେ ଯେ ମନ୍ତ୍ରିଗଣମାନ
ଲୋଚନୁ ଅଶ୍ରୁଜଳ ଗଳଇ ଘନ ଘନ ।
ଦେଖଣାହାରି ଲୋକ କରନ୍ତି ହାହାକାର
ରାଜା ହୋଇବା ଛାଡ଼ି ତ ବନକୁ ବାହାର ।
କେ ବୋଲଇ ଏଥି କଏକୟା ସତ୍ୟ
କରାଇଲା
ଭ୍ରଥ ରାଜା ହୋଇବ ଏ ବର ମାଗିଲା ।
ଶ୍ରୀରାମ ବନ ଯିବ ଚଉଦ ବରଷ
ରାଜା ହୋଇ ସତ୍ୟ ପାଳିଲା ସ୍ଥିରୀ
ବଶ୍ୟ ।୭୦
ଏଥିଅନନ୍ତରେ ସେ ଶୁଣିମା ଅପରୁବ
ରଥରେ ବିଜେ କରିଅଛନ୍ତି ରାଘେବ ।
ଜାନେକୀ ମୁଖ ଯେ ପୋତି ବସିଅଛି
ଶ୍ରୀରାମର ବାମପାଶେ ସୁମୈତ୍ରାର ବଛି ।

ସୁମନ୍ତ ରଥ ଯେ ବାହଇ ଧୀର ଧୀର
ନଗ୍ର ନରନାରୀ ଯେ ଦେଖନ୍ତି ରଘୁବୀର ।
ହାହା ରାମ ବୋଲି ଗୋଡ଼ାଇ କାନ୍ଦୁଛନ୍ତି
ଶ୍ରୀରାମର ବନଯାନ୍ତେ ବିଛୋଇ ଗୋଡ଼ାନ୍ତି ।
ରଥର ଚଉକତି ବେଢ଼ିଣ ସକଳ
ଶ୍ରୀରାମର ମୁଖ ଚାହିଂ ହୋଅନ୍ତି
ବିକଳ ।୮୦
ବାବୁ ରଘୁନାଥ ମଧୁର ମୂରତି
କଣୟ ମର୍କତ ଶ୍ୟାରୀର ଦିବ୍ୟଜ୍ୟୋତି ।
ଅଯୋଧ୍ୟାଏ ନୃପତି ପଣକୁ ଭାର୍ଜନ
ତୋତେ କିମ୍ପା ବିଧାତା ପେଷିଲା ଏବେ
ବନ ।
ଏହେର୍ଣ୍ଣେ ଅବିଚ୍ଚର କଲା କିମ୍ପା ବିହି
ଏହା ସେ ତୋହୋର କପାଳେ ଅଛି ଲିହି ।
ବାଳ ବୃଦ୍ଧ ଯୁବା ପୁରୁଷ ଯୁବତୀ
ଶ୍ରୀରାମର ରଥ ବେଢ଼ିଣ ରୋଦନ୍ତି ।
ହାହାକାର ଧ୍ୱନି ଗଗନେ ପୂରଇ
ରାମ ବନ ଯାନ୍ତେ ସବୁରି ଦେହ
ସଳଇ ।୯୦
ମଂଚକି ପାତାଳେ ପଶିଲାକ ଯାଇ
ପାତାଳ ମଂଚକୁ କି ଅଇଲା ପଳାଇ ।
ସୃଷ୍ଟି ସରିଲାକି ପ୍ରଳୟ କାଳ ହୋଇ
ସପତ ସମୋଦ୍ରକି ଘୋଟିଲାକ ମହୀ ।
ଶୂନ୍ୟ ଭେଦିଣ ଯେ ନବହଇ ପବନ
ବିକଳ ହୋଇଣ ଯେ ଭାଳନ୍ତି ସର୍ବଜନ ।
ରାଜାକୁ ନିନ୍ଦା ଯେ କରନ୍ତି ନରନାରୀ
କିମ୍ପାଇଂ ସତ୍ୟ ନ ଛାଡ଼ିଲା ଦଣ୍ଡଧାରୀ ।
ଶ୍ରୀରାମ ପରା ପୁତ୍ରକୁ ବନକୁ ପେଷଇ
ଏବେ ସେ କିମ୍ପା ବନକୁ ଗୋଡ଼ାଇଂ
ଆସଇ ।୧୦୦
ଧିକ ହେଉ କିନା କଏକୟା ରାଣୀ
ଏମନ୍ତ ହୋଇ ସିନା ହୋଇବେ ରାଜ୍ୟରେ
କାରେଣୀ ।
ଶ୍ରୀରାମକୁ ବନବାସ ବିହିଲାକ ଦୁଃଖ

ଏକା ହୋଇ ଅଯୋଧ୍ୟାରେ
ପାଇବାକ ସୁଖ ।
ରାଜା ନ ବୁଝିଲା ସ୍ତିରୀ ବଶ ହୋଇ
ମନ୍ତ୍ରୀଗଣଙ୍କର କି ଗ୍ୟାଂନ ଗୋଚର ନାହିଂ ।
ଶ୍ରୀରାମଙ୍କୁ ରାଜ୍ୟରୁ କରିଣ ବାହାର
ଅମନାତ୍ୟଗଣେ ଅବା ହୋଇବେ କାହାର ।
ପୋଡ଼ୁ ଏ ପୁର ଯେ ନ ଥିବା ଘର କରି
ଏଡ଼େ ଅବିଋରେ କି ଦିନ ନେଇ
ପାରି ।୧୦
ଲୋକଙ୍କର ବିକଳ ଯେ ଶୁଣି ରଘୁନାଥ
ଆପଣେ ସମାର୍ଜନା କରନ୍ତି ନିଜ ହାଥ ।
ବୋଲନ୍ତି ଶୁଣ ତୁମ୍ଭେ ଅଯୋଧ୍ୟାର ନରନାରୀ
ଏ ରାଜ୍ୟେ ଭ୍ରଥ ଯେ ହୋଇବ ଦଣ୍ଡଧାରୀ ।
ସେ ରାଜ୍ୟ ପାଳିବାର ଜାଣଇ ବିଧାନ
ସେବା କରୁଥାଅ ତାହାର ସନ୍ନିଧ୍ୟାନ ।
ପୁଣି ବିକଳ ଶୁଣି ବୋଲନ୍ତି ରଘୁନାଥ
ମୁହିଂ ପିତାର ଯେ ନ ଛାଡ଼ଇ ସତ୍ୟ ।
ଚଉଦ ବରଷ ବନେ ଥାଇ ଆସିବି ନିଅତ
ତେବେ ସେ ରଖି ହୋଇବ ପିତା
ସତ୍ୟ ।୨୦
କିମ୍ପା ଦୁଃଖ ପାଇଂ ଗୋଡ଼ାଇଣ ଆସ
ତୁମ୍ଭେ ବାହୁଡ଼ିଣ ଯାଅ ନିଜ ଦେଶ ।
ଏହା ଶୁଣି କାନ୍ଦି ବୋଇନ୍ତି ନରନାରୀ
ତୁମ୍ଭ ଦୁଇ ଭାଇଙ୍କି ଚିନ୍ତା ନାହିଂ ନା ଆମ୍ଭରି ।
ଦୁଃଖେ ଦୁଃଖ ସହି ପାରିବ ପୁରୁଷ
ସୀତ୍ୟା କେମନ୍ତେ ଯେ କରିବ ବନବାସ ।
ଶରଦ ଚନ୍ଦ୍ରମା ପ୍ରାଏ ଯେ ଯେହାର ମୁଖ
ଗିରି କନ୍ଦର ବୁଲି ପାଇବ ବଡ଼ ଦୁଃଖ ।
ସୁବର୍ଣ୍ଣ ରସାଣିଲା ପ୍ରାଏକ ଦେହ ଝରି
ଯଉବନ ଭାରେ ମଝା ପଡ଼ଇ ନ
ପୁଣ ଢଳି ।୩୦
ଗୁଣେ ଗୁଣନିଧି ଅଟୁରେ ସୁନ୍ଦେରୀ
ଗଢ଼ିଲା ବିଶ୍ୱକର୍ମା ଅତି ଯତନ କରି ।
ଏଡ଼େ ପଦାର୍ଥଙ୍କୁ ବିଧାତା ଏହା କିମ୍ପା କଲା
ଅତି ସ୍ନେହଭରେ ଜନେକ ମୁନି ଦେଲା ।
ଲୋକଙ୍କର ଏସନ ଆକୁଳ ମନ ଘେନି
ବାହୁଡ଼ ବାହୁଡ଼ ବୋଲି ବୋଲନ୍ତି ରଘୁମଣି ।
ଏହା ବୋଲି ଲୋକେ ବେଢ଼ିଲେ ପୁଣ ରଥ
ମୁଖ ଚାହିଂ ବିକଳ ଯେ କାନ୍ଦନ୍ତି ସମସ୍ତ ।
ବାଜପୋଇ ଯଜ୍ଞ କଲାର ବିପ୍ରମାନେ
ଶ୍ରୀରାମର ଗତିପଥେ ଗୋଡ଼ାନ୍ତି
ବିମାନେ ।୪୦
ଦଶରଥ ରାଜା ଥୋକାଏ ଦୂର ଗଲା
ବଶିଷ୍ଠ ତାହଙ୍କୁ ବାହୁଡ଼ାଇ ନେଲା ।
କଉଶୁଲା କଏକୟା ମୂଳେ ଯେତେ ରାଣୀ
ଗୋଡ଼ାଇ ଆସିଥିଲେ ଯେତେକ ତରୁଣୀ ।
ମୁଦୁସୁଲୀମାନେ ତାହଙ୍କୁ ଘେନିଗଲେ
ପ୍ରବୋଧନା କରି ଅନ୍ତପୁରେ ନେଲେ ।
ଦଶରଥ ରାଜା ଯେ ନ ଭୁଂଜିଲା ଅନ୍ନ
ରତ୍ନ ପଲ୍ୟଙ୍କେ ସେ ନ କଲା ଶୋୟନ ।
ଅଯୋଧ୍ୟାରୁ ରାମ ବାହାର ହୋଇଗଲେ
ତମସା ନଦୀକୂଳେ ଯାଇଣ ମିଳିଲେ ।୫୦
ନଗ୍ର ନରନାରୀ ଅଛନ୍ତି ଗୋଡ଼ାଇଂ
ରଘୁନାଥ ବୋଲନ୍ତି ସମସ୍ତଙ୍କୁ ଚାହିଂ ।
ରବି ଅସ୍ତ ହୋଇ ବୁଡ଼ିଲାକ ବେଳ
ଭୋକେ କାନ୍ଦିବେନି ତୁମର ଦୁଲାଳ ।
ରାତ୍ର କାଳେ କେର୍ଣ୍ଣେ ବାଟ ଚାଲିଯିବ
ଝାଡ଼ ବାଡ଼ ଦେଖିଲେ ଶଙ୍କା ଯେ କରିବ ।
ଲୋକେ ବୋଲନ୍ତି ଆଉ ଯିବୁ କିସ ପାଇଂ
ତୋହୋର ସଂଗେ ସଂଗେ ଯିବୁ ଯେ
ଗୋଡ଼ାଇଂ ।
ତୋତେ ଛାଡ଼ି ଘରେ ଦେଖିବୁଟି କିସ
ତୁ ଯେବେ ଅଯୋଧ୍ୟାକୁ ନ ଯିବୁ
ରଘୁଶିଷ ।୬୦
ତୋହେର ରଥ ଆଗ କରିଣ ପଛେ ଯିବୁ
ତୋହୋର ପଛେ ପଛେ ଗୋଡ଼ାଇଣ ଥିବୁ ।
ଶ୍ରୀରାମ ବୋଲ ଯହୁଂ ନ କଲେ ନରନାରୀ
ଲକ୍ଷଣଙ୍କୁ ରଘୁନାଥ ବୋଲନ୍ତି ଖର କରି ।
ତୁହୋ ସଉମିତ୍ରୀ ତିରଣ କାଟି ଆଣ
ନିଦ୍ରା ମାଡୁଅଛି ଶୋଇବା ଲକ୍ଷଣ ।
ଆଗ୍ୟାଂ ପାଇଣ ଯେ ସୁମିତ୍ରାର ସୁତ
ତିରଣ ଛେଦନ ଯେ କଲାକ ତୁରିତ ।
ଆପଣେ ବହିଆଣି ଶେଜାଇଲା ଶେଯ
ତହିଂ ବିଜୟେ ଯେ କଲେ ରଘୁରାଜ ।୭୦
ଅଯୋଧ୍ୟା ନରନାରୀ ଦେଖିଣ କାନ୍ଦନ୍ତି
ଭୋ ରାମ ତୋତେ ବିହିକଲା ଏହେର୍ଣ୍ଣେକ
ଗତି ।
ରାଜା କୁମର ହୋଇ ଏ ଦୁଃଖ ପାଇଲୁ
କୁଶ ଗୁଡ଼ାଏ ଏଥେଂ ପାଡ଼ିଣ ଶୋଇଲୁ ।
ଅଯୋଧ୍ୟାଏ କଉଶୁଲା କରଇ ରୋଦନ
ବାବୁ ମୋର ଶ୍ରୀରାମ ହୃଦର ନନ୍ଦନ ।
ହଂସୁଲି ତୂଳିରେ ତୋତେ ନିଦ ନମାଡ଼ଇ
ଆଜ ରଜନୀ ବଳା ଶୋଇବୁରେ କାହିଂ ।
ଆକାଶ ଚନ୍ଦ୍ରାତପ ହୋଇବାକ ତୋତେ
ଏହା ସୁମରିବାକୁ କଲୁସି ବାବୁ
ମୋତେ ।୮୦
ସୁପକ୍ୱ ଆହାରେ ଯେ ନୋହୁତୁ ତ୍ରିପୁତି
କିସ ଖାଇ ପିଣ୍ଡ କରିବୁ ଧିରତି ।
ଗନ୍ଧ ଚନ୍ଦନ ଯେ ଘେନୁ ଅବିଛିନ୍ନ
ଅଂଗେ ଏବେ କିସ କରିବୁ ଲେପନ ।
ଏଥେଂ ଯେ ବେଢ଼ିଣ ପଡ଼ଇ ପାଟ ଟେରା
ଚଉକତି କାମେନୀ ଜଗନ୍ତି ପହରା ।
ତହିଂ ବନଜୀବ ଜଗିବେ ପାହାରୀ
ଦଶଦିଗ ପୁତ୍ରରେ କଲୁ ମଶହେରୀ ।
ହୁଳା ଦିହୁଡ଼ି ତୋତେ ହୋଇବେ ଚନ୍ଦ୍ରତାରା
ସୀମଥାନ କରିବୁ ତୁ ବାଟର ଇଟା
ପୋଡ଼ା ।୯୦
କର୍ପୂର ତାମ୍ବୁଳ ଛାଡ଼ି ହରିଡ଼ା ଖାଇବୁ
ବନ୍ଧୁ ସୋଦର ତ ଲୋଡ଼ିଲେ ନ ପାଇବୁ ।
ଲକ୍ଷଣ ସୀତୟାହୁଂ ନ ଥିବେ ଆନ କେହି
କେମନ୍ତେଣ ଦୁଃଖ ସହିବ ବଇଦେହୀ ।
ରାଜାର ଝିଅ ସେ ରାଜାର କୁଳବଧୂ

ରାଜାର ମହାଦେଈ ସକଳ ଗୁଣେ ସାଧୁ ।
ତାହାକୁ ଦୁଃଖ ଯେ ଦେଲା କଏକଇ
ଏତେ ବୋଲି କଉଶୁଲା ଉଠିଲା ବୋବାଇ ।
ଲକ୍ଷ୍ମଣ ସୁମରି ଯେ କାନ୍ଦଇ ପୁଣ ପୁଣି
ଧନ୍ୟ ସଉମିତ୍ରୀରେ ବୀରଙ୍କର ମଣି ।୧୦୦
ଦୁଃଖର କାଳେ ଭାଇକି ସାଖା ହୋଇ ଗଲୁ
ସୋଦର ଗୁଣ ବାବୁରେ ତୁହି ସିନା କଲୁ ।
କଉଶୁଲା ରୋଦନ୍ତେ ସୁମେତ୍ରା ଶୋକ କଲା
ଅନ୍ତେସ୍ୱର ପୁରେ ଯେ ବୋବାଳି ପଡ଼ିଲା ।
ତାହାଙ୍କର ସଂଗରେ ରୋଦଇ କୟକୟା
ହୃଦରେ ପାପ ତାର ବାହାରେ ଶୋକଦୟା ।
ଲୋକାଚାରକୁ ସେ କରଇ ରୋଦନ
ଅନ୍ନ ନଭୁଂଜି ରାଜା ଯେ କଲାକ ଶୟନ ।
ଏଥୁ ଅନନ୍ତରେ ତମସା ନଦୀ ତୀରେ
ତିରଣ ପାଡ଼ିଣ ଶୁତିଲେ ରଘୁବୀରେ ।୧୦
ଥୋକାଏକ ବେଳ ଉଠିଲେ କ୍ଷୁଧା ପାଇ
ତିନି ଜଣେ ଜଳ ଆହାର କଲେ ଯାଇ ।
ବାହୁଡ଼ି ଆସିଣ ଯେ ଶୁତିଲେ ଶେଯପାଡ଼ି
ଲୋକେ ନିଦ ଗଲେ ବନ ଘୋର ମାଡ଼ି ।
ଅରନ୍ୟର ଜୀବଜନ୍ତୁ କରନ୍ତି ଶବଦ
ଶୁଣିଣ ଜାନେକୀ ଯେ ହୁଅନ୍ତି ତବଦ ।
ଶ୍ରୀରାମକୁ ପଚାରନ୍ତି ଶୁଣରେ ପ୍ରାଣନାହା
ଶବଦ ଯେ ଶୁଭଇ କିସ ବୋଲି ଏହା ।
ରାଘେବ ବୋଲନ୍ତି ସଖୀ ଏହା ତୁ ନଜାଣୁ
ବନସ୍ତ ଅଯୋଧ୍ୟା କଟେକ ପ୍ରାଏ
ମଣୁ ।୨୦
ବନ ଗହନଯେ ପର୍ବତ ପାହାଡ଼
ଅରଣ୍ୟ ଜନ୍ତୁଙ୍କର ଶବଦ ଅପାର ।
ଏହାଉଂ ଏଣିକି ଗୋ ଶୁଣିମୁଂ ଏମାନ
ସିଂହଙ୍କର ରଡ଼ି ଯେ ହାତୀଙ୍କର ଗର୍ଜନ ।
ଆମ୍ଭର ବୋଲେ ଗୋ ନ ରହିଲୁ ସଖୀ
ତୋହେରେଣ ମୁହିଂ ଯେ ହୋଇବି ବଡ଼
ଦୁଃଖୀ ।
ପଥର କଣ୍ଟା ବାଟରେ ଯେ ନ ପାରିବୁ ଯାଇ

ବ୍ୟାଘ୍ର ଭାଲୁକ ଯେ ଦେଖିବୁ ବଇଦେହୀ ।
ଦେଶ ନମାଡ଼ିବୁ ହୋଇବୁ ପରଆତ୍ମା
ବୋଲ ନକଲୁ ଯେ ଜନେକର
ଜେମା ।୩୦
ଏତେ ବୋଲି ଶ୍ରୀରାମ ବିସ୍ମଏମୁଖ ହୋଇ
ଶେଯ୍ୟା ଛାଡ଼ିଣ ସେ ଉଠିଲେ ରଘୁସାଇଂ ।
ସୁମନ୍ତ ମନ୍ତ୍ରୀକି ଯେ ହକାରିଲେ କତି
ବୋଇଲେ ଅର୍ଦ୍ଧେକ ଯେ ହୋଇଲାଣି
ରାତି ।
ଲୋକେ ନ ଜାଣନ୍ତୁ ଯିବା ତୁନି ହୋଇ
ନୋହିଲେଣ ସଭିଏଂ ଥିବେଟି ଗୋଡ଼ାଇଂ ।
ସୁମନ୍ତ ବୋଇଲା ଯେ ତୋହୋର ବିଚାର
ସେ କଥା ମୋତେ ଯେ ଯୋଗାଇ
ରଘୁବୀର ।
ଲକ୍ଷଣ ବୋଇଲା ତୁ ଆଣ ରଥ ସାଜି
ତତକ୍ଷଣେ ସୁମନ୍ତ ଯେ ସାଜିଲା
ଚାରିବାଜି ।୪୦
ଶ୍ରୀରାମ ଲକ୍ଷଣ ସୀତା ତିନି ଜଣ
ରଥେ ବସିଲେ ଯେ ମଉନ ହୋଇଣ ।
ନଦୀ ପାର ହୋଇ ଥୋକାଏ ଦୂର ଗଲେ
ଅଯୋଧ୍ୟା କଟେକକୁ ରଥ ବାହୁଡ଼ାଇ
ବାହିଲେ ।
ନିଦେ ଅଚେତନ ହୋଇଛନ୍ତି ପ୍ରାଣୀ
ଅର୍ଦ୍ଧେକ ଭୋଗ ଯାଇ ଯେ ଅଛଇ
ରଜନୀ ।
ତମସା ନଦୀରେ ପଶିଲା ଆସି ରଥ
ସୁମନ୍ତକୁ ଚାହିଂ ସେ ବୋଲଇ ରଘୁନାଥ ।
ବୋଲନ୍ତି ପାଣିର ଭିତରେ ବାହା ଯାନ
ଆନ ମାର୍ଗେ ଆମ୍ଭେ ଯିବା ହୋ
ବହନ ।୫୦
ଜାଣିଲେ ଲୋକ ଯେ ଗୋଡ଼ାଇଂ ଆସିବେ
ଘର ଦ୍ୱାର ଛାଡ଼ିଣ ଯେ ବିପୁନ୍ୟେ ପଶିବେ ।
ଶ୍ରୀରାମର ବଚନେ ଯେ ସୁମନ୍ତ ମହାପାତ୍ର
ପାଣିର ଭିତରେ ଯେ ବାହିଲାକ ରଥ ।

ଥୋକାଏ ଦୂର ଯେ ନଦୀରେ ପଶିଗଲେ
ଦକ୍ଷିଣ ମୁଖ ହୋଇ କୂଳରେ ଉଠିଲେ ।
ମାର୍ଗ ବଞ୍ଚାଇଣ ଯେ ଗଲେ ପଥ ବାହି
ସମସ୍ତ ଲୋକଥିଲେ ଯେ ତମସା
କୂଳେ ରହି ।
ରଜନୀର ଶେଷେ ଯେ ନିଦ୍ରାଭଂଗ ହୋନ୍ତି
ଶ୍ରୀରାମ ଥିବାର ଯେ ଠାବରେ
ଦେଖନ୍ତି ।୬୦
ବେଢ଼ିଣ ଦେଖନ୍ତି ଯେ ରଥ ତହିଂ ନାହିଂ
ସଞ୍ଚାମାନ ଆଛି ଯେ ଅଯୋଧ୍ୟାକୁ ଯାଇ ।
ଲୋକେ ବିଚାରନ୍ତି ବାହୁଡ଼ି ରାମ ଗଲା
ମଣାଇ ତାହାଙ୍କୁ ସମୁନ୍ତ ମନ୍ତ୍ରୀ ନେଲା ।
ଏତେ ବୋଲି ଆନନ୍ଦ ହେଲେ ସର୍ବଜନ
ବାହୁଡ଼ି ରାଜ୍ୟକୁ ଯେ କରନ୍ତି ଗମନ ।
ନଗ୍ରେ ପଶୁ ପଶୁ ଯେ ଦେଖନ୍ତି ଯାହକୁ
ଶ୍ରୀରାମର ବାରତା ଯେ ପୁଛନ୍ତି ତାହାକୁ ।
ପିତାର ଆଗ୍ୟାଂଏ ଯେ ଅଇଲେ ରଘୁନାଥ
ମୁଗ୍ଧିଛି ନ ପାରି ଅବା ନେଲା ଦଶରଥ ।୭୦
ଲୋକ ପଠିଆଇ ଆଣିଲେ ବାହୁଡ଼ାଇ
ଆମ୍ଭନ୍ତ ନ କହି ଯେ ଅଇଲେ ରଘୁସାଇଂ ।
କି କି କଲେ ଆସି ଭେଟିଲକି ତୁମ୍ଭେ
କେବଣ ଠାବେ ଯାଇ ଭେଟିବଉଂ
ଆମ୍ଭେ ।
ଯାହାକୁ ପୁଛନ୍ତି ବୋଲନ୍ତି ତୁମ୍ଭେ ବାଇ
ନବର ବୋବାଳି ତ ଆଜହିଂ ଯାଇ ନାହିଂ ।
ଦଶରଥ ରାଜା ତ ନଭୁଞ୍ଜିଲା ଅନ୍ନ
ପାତ୍ର ଅମାନାତ୍ୟଙ୍କର ବିକଳିତ ମନ ।
ମୁହିଂ ପରବାସ ଯାଇଥିଲି କାଲି
ଆସି ଶୁଣିଲି ତ ନପାରଇ ଚାଲି ।୮୦
ଉଜାଗର ହୋଇ ମୁଂ ପୁହାଇଲି ରାତି
ଏବେ ଯାଉଅଛି ଦେଖି ବୀର ରଘୁପତି ।
ତୁମ୍ଭେ ଏବେ କାହିଂକି ବାହୁଡ଼ି ଆସୁଅଛ
କାହିଂ ଛାଡ଼ି ଅଇଲ ଦଶରଥ ବଛ ।
ଧିକ ଜୀବନ ଯେ ଧିକ ତୁମ୍ଭ ବୁଦ୍ଧି

ପାଦେ ପେଲାଇଲ ପ୍ରାପତ ସୁଧାନିଧି ।
କିସ କରିବ ଏବେ ଅଯୋଧ୍ୟାକୁ ଆସି
ଏଥୁଁ ଭଲ ହୋଇ ଅଗ୍ନିରେ ଯେବେ ଝାସି ।
ତୁମ୍ଭର ଫଳେ ମୁଁ ଯେ ଶ୍ରୀରାମ ନପାଇଲି
ଅମୃତ ପକାଇ ମୁଁ ବିଷହିଁ ଖାଇଲି ।୯୦
ଏତେ ବୋଲିଣ ଯେ ଧରଣୀରେ ପଡ଼ି
ଉଂଚ ସ୍ୱରେ କାନ୍ଦି ଶିରେ କର ତାଡ଼ି ।
ତାହା ଦେଖି ଲୋକଙ୍କର ଉଡ଼ିଲା ସାହସ
ବୋଇଲେ ଶ୍ରୀରାମ ଆମ୍ଭନ୍ତ କଲେ
ଅବିଶ୍ୱାସ ।
ଛଇଲ ପଣ କରି ବାଟ ଭାଙ୍ଗି ଗଲେ
ଆମ୍ଭେ ବୋଇଲୁ ଅବା ଅଯୋଧାକୁ
ବାହୁଡ଼ିଲେ ।
ରଥର ଗୁଡ଼ିମାନ ଏଣିକି ଅଛି ପଡ଼ି
ତେଣୁ ସେ ଅଇଲୁ ହୋ ସଞ୍ଚମାନ ଲୋଡ଼ି ।
ନଦୀ ପରିଯନ୍ତେ ଦେଖିଲୁ ରଥ ପାଦ ଗତି
ପାଣିରେ ଯାନ ବାହିଗଲେ ଆନ
କତି ।୧୦୦
ନିର୍ମୋହ ହୋଇଣ ଯେ ଛାଡ଼ିଲେକ ଦୟା
କାହାକୁ କହିବୁ ଯେ କର୍ମରେ ଅଛି ଯାହା ।
ଏତେ ବୋଲି ଲୋକେ ରୋଦନ୍ତି ଉଚ୍ଚସ୍ୱରେ
ଶ୍ରୀରାମଙ୍କୁ ବାଉନନ୍ତି ବିବିଧ ପରକାରେ ।
ସୀତା ନାମ ଧରି କାନ୍ଦନ୍ତି କେବଣ ଜନ
କେହୁ ସୁମରନ୍ତି ସୁମିତ୍ରା ନନ୍ଦନ ।
କେ ବୋଲଇ ସୁମନ୍ତ ମନ୍ତ୍ରୀ ଏହା କଲା
ଏକା କରି ଶ୍ରୀରାମଙ୍କୁ ଅରଣ୍ୟକୁ ନେଲା ।
ଗୁଣ ସୁମରି ଯେ ବିକଳ ନରନାରୀ
ଶୋକଜଳ ତାହାଙ୍କର ଯେ ନୋହଇଂ
ନିବାରି ।୧୦
ସମୋଦ୍ର ଲଂଘିବାକି ଆକାଶେଣ ଯାଇ
ଜଣଙ୍କର ଶ୍ୱରୀରେ ଯେ ଧୈର୍ଯ୍ୟ ଗୁଣ ନାହିଁ ।
ଉଚ୍ଛନ୍ନ ବୋବାଳି ଯେ ଶୁଭଇ ଗହଳ
ସପ୍ତ ଦୀପ କି ଘୋଟିଲା ମହାଜଳ ।
କାନ୍ଦି କାନ୍ଦି ଲୋକେ ଅଯୋଧ୍ୟାକୁ ଯାନ୍ତି
ତୁଚ୍ଛା ନଗ୍ର ଦେଖି ଯେ ଅଧିକ ରୋଦନ୍ତି ।
ନଗ୍ର ଲୋକଙ୍କର ଯେ ଆକୁଳ ଧ୍ୱନି ଶୁଣି
ଅନ୍ତେସ୍ୱରେ ରୋଦନ୍ତି ଦଶରଥ ସର୍ବରାଣୀ ।
ପାତ୍ର ଅମନାତ୍ୟ ସକଳ ବନ୍ଧୁଗଣ
ରାମ ନାମ ସୁମରି ସେ କରନ୍ତି
ରୋଦନ ।୨୦
ବୋବାଳିର ଘାଏ ଯେ ପୂରିଲା ଆକାଶ
କୁରୁମ ଉଛୁଳିଲା କି ପୂରିଲା ଦଶଦିଶ ।
ବାଳବୃଦ୍ଧା ଯୁବା ଯେ ସକଳ ନରନାରୀ
ଚଳିତ ଶକତି ଯେ ନାହିଂଟି କାହାରି ।
ପାଣି ଶୁଖିଲେ ଯେସନେ ଲୁଳଇ ପଦ୍ମବନ
ଶ୍ରୀରାମ ବିହୁନେ ତେସନେ ଅଯୋଧ୍ୟା
ସର୍ବଜନ ।
ଚିନ୍ତାରେ ଗୁରୁତର ଭାଳୁଥାନ୍ତି ବସି
ଯହିଂ ତହିଂ ରାମକୁ ଘୋଷନ୍ତି ଅହନିଶି ।
ଏକକୁ ଆରେକ ଯେ ପୁଛଇ ବାରତା
କେ ବୋଲଇ କିସ କରିବରେ ସୀତା ।୩୦
କେ ବୋଲଇ ଲକ୍ଷଣ ସୋଦର ଗୁଣ କଲା
ଦୁଃଖ କାଳେ ଭାଇର ସଂଗେ ଗୋଡ଼ାଇଲା ।
କେ ବୋଲଇ ସୁମନ୍ତ ସଂଗେ ଅବା ଯିବ
କେ ବୋଲଇ ବାଟରେ ଛାଡ଼ିଣ ଆସିବ ।
କୋ ବୋଲଇ ରାଣୀ କରାଇଅଛି ସତ୍ୟ
ଏକା ହୋଇ ଅରନ୍ୟେ ପଶିବେ ରଘୁନାଥ ।
ସୀତା ଲକ୍ଷଣ ଯେ ସେନେହ ଭରେ ଗଲେ
ଏମନ୍ତ ବୋଲି ଲୋକେ ଅନେକ
ଶୋକ କଲେ ।
ଏଥୁଅନନ୍ତରେ ଯେ ଶୁଣିମା କାହାଣୀ
ଥୋକାଏ ଦୂରେ ଯେ ପାହିଲା ରଜନୀ ।୪୦
ଗୋମତୀ ନଦୀରେ ଯେ ହୋଇଲେ ରଘୁପତି
ରଥରୁ ଓଲ୍ୟାଇଣ ନିତ୍ୟକର୍ମ ସାରନ୍ତି ।
ଜଳପାନ ତହିଂ ଯେ ଅଶ୍ୱ ଚାରି କଲେ
ରଥ ଚଢ଼ିଣ ତୁରିତେଣ ଗଲେ ।
ଯାଇଣ ମିଳିଲେ ସରସ୍ୱତୀର ସନିଧ୍ୟାନ
ତାହା ପାରି ହୋଇଯେ ପଶିଲେ
ଘୋରବନ ।
ଗଙ୍ଗାକୂଳେ ଯାଇ ମିଳିଲେ ସେଦିନ
ସିଙ୍ଗବେଣୀପୁର ତହିଂର ସନିଧ୍ୟାନ ।
ସେ ଠାବକୁ ସେ ଯେ ଅଟଇ ନିକଟ
ଗୁହ ନାମେ ଶବର ତହିଂରେ ଗରିଷ୍ଠ ।୫୦
ସେ ବ୍ୟାଧ ଅଟଇ ଯେ ଶ୍ରୀରାମର ମଇତ୍ର
ଆସିଣ ମିଳିଲା ପାଇଣ ବାରତ ।
ସଙ୍ଗରେ ବଳ ତାର ଅଛଇ ଅପାର
ବିପରୀତ ବେଶ ଯେ ଅଟଇ ଭୟାଙ୍କର ।
କାନରେ ତଡ଼କୀ ଯେ ବନ୍ଧିଆ ପୁଞ୍ଜି ପୁଞ୍ଜି
ଲଲାଟରେ ଗୁଞ୍ଜାରା ମାଳମାନ ଖଞ୍ଜି ।
କେ ଖୋଷା ଖୋଷିଣ ବାଙ୍କେ ଜୁଡ଼ା ପାଡ଼ି
କାହାର ବେଣୀ ଯେ ଅଛଇ ମୁଣ୍ଡେ ବେଢ଼ି ।
ପିଠି କିଟିକି କା'ର ଓହଳି ଅଛି ଜଟ
ମନ୍ଦାର ଫୁଲେକେ ଶୋହେ କାର
ଚୁଟ ।୬୦
କେ କାଣି କଉଡ଼ି ଯେ ମାଳ ମାଳ କରି
ଶରଧା କରିକେ କଣ୍ଠେ ଅଛଇ ଭରି ।
କାହର ବାହେ ଯେ ଟସର ରଙ୍ଗ ସୂତା
ଅଜଗର ସର୍ପ ଚର୍ମ କାହାର ପଇତା ।
ନାକମାନଙ୍କରେ ପିତଳ ମୁଦି ଲାଇ
ଲୁହାର ହାର ଶିକୁଳି କାହାର
ଭୁଜେ ଶୋହି ।
କାହାର ଶିରରେ ଟୋପରର କଣ୍ଡା
ଭାଲୁଙ୍କ ଚର୍ମେକେ ମଣ୍ଡିଅଛି ଅଣ୍ଟା ।
କାହାର କଣ୍ଠରେ ଘଣ୍ଟି ଧ୍ୱନି କରି
କାହାର ଅଣ୍ଟାରେ ଯେ ବାଜଇ
ଘାଘୁରି ।୭୦
ଖାଙ୍କର କେଶ କାହାର ଡିମା ଡିମା ଆଖି
ଭଲ ଭଲ ଲୋକେ ଡରିବେ ତାହା ଦେଖି ।
ଏକର ନିଶ ଆରେକ ଦେହରେ ଲାଗଇ
ପିଙ୍ଗଳ ଦାଢ଼ି ଯେ ଦେଖିଲେ ମନ ଭାଗଇ ।
ନାକ ପୁଡ଼ାରୁ ବାହାର ଯେବଣ ବାଳ
ତହିଂ ଗୁନ୍ଥି ଅଛି ଗୁଞ୍ଜି ମୁଣ୍ଡମାଳ ।
ଦେହର ରୋମ ଦେଖିଲେ ଭଏ କରି

କାହାର ଭାଷା କହିଲେ ବୁଝିନ୍ତ ନୁଆରି ।
କୟେଂରା ବାଳ କେ ଜଟା କରିଅଛି
ଖଣ୍ଡି ଖଣ୍ଡି କରିକେ ପୋଡ଼ା ମାଂସ
ଭକ୍ଷି ।୮୦
ବିଭୂତି ଭୂଷଣ କାହାର ଶ୍ୱରୀର
ଗବ ତେଲେ ତାହାର କେଶ ଜର ଜର ।
କାହାର କପାଳେ ଶୋହଇ ଇଟାଗୁଣ୍ଡି
ରଂଗ ମାଟି ଘେନିକେ ହୋଇଅଛି ମଣ୍ଡି ।
ଲଟି ଗୁଡ଼ିଆଇ ଅଛି କାହାର କାଏ
ହାଥୀ ଭଙ୍ଗା ଡାଳ ଘେନିଣ ଥୋକାଏ ।
ଧାମଣା ଧନୁଶର କାହାର କୋଦଣ୍ଡ
ଗୋରୁଚର୍ମ ଗୁଣ ନାହାଲବେଲି କାଣ୍ଡ ।
କେ କରେ କୋଠାର କେ କରେ ବାଡ଼ିଧରି
ଶୁଅର ଦେଖିଣ କେ ହାକି ଗଲେ
ମାରି ।୯୦
କାହାର ହାଥରେ ଅଛି ବାଆଂଶର ନଳି
କେ କୁକୁରକୁ ଶିକଳି ଲଗାଇଣ ଧରି ।
ଅଣ୍ଟାରୁ ମୋରଡ଼ି କେ କାଢ଼ି ଚଉକଡି
ଚିଆର କାଣ୍ଡ କେ ସଳଖି ଦେଖନ୍ତି ।
କିଳିକିଳା ରଡ଼ି କରନ୍ତି ଯାଉଂ ଯାଉଂ
ଚିରା ମାରିଣକେ ସଂସରନ୍ତି ଧାଉଂ ଧାଉଂ ।
ଦଶଲକ୍ଷ ପାଦାନ୍ତି ଯେ ଘେନିଣ ଗୁହବୀର
ଦ୍ରଶନ କଲା ଆସି ଶ୍ରୀରାମ ପୟର ।
କରଦୁଇ ଯୋଡ଼ିଣ ଯେ ପଚାରଇ ପୁଣି
କେବଣ କାରଣେ ଦେବ ଅଇଲ
ରଘୁମଣି ।୧୦୦
ଶ୍ରୀରାମ ବୋଲନ୍ତି ଯେ ଶୁଣ ମୋର ସଖା
ଯେବଣ କାରଣେ ମୁଂ ଅଇଲଇଂ ଯେକା ।
ଚଉଦ ବରଷ ହାଦେ ଥିବି ମୁହିଂ ବନେ
ଭ୍ରଥ ରାଜା ହୋଇବ ଅଯୋଧା ଭୁବନେ ।
ତେଣୁ ସେ ମଇତ୍ର ମୁଇଂ ଅଇଲଇଂ ବନ
ଲଇକ୍ଷଣ ସୀତା ସହିତେ ତିନି ଜଣ ।
ସୁମନ୍ତ ବାହୁଡ଼ାଇ ନେମାକ ଏଥୁଂ ରଥ
ମୁଇଂ ଆଶ୍ରେ କରିବି ଯେ ବନ ପରବତ ।

ଶୁଣିଣ ମହାବ୍ୟଥା ପାଇଲା ଶବର
କରଯୋଡ଼ି ବୋଲଇ ଶୁଣିମା
ରଘୁବୀର ।୧୦
ପିତା ଯେବେ ତୋତେ ଛାଡ଼ିଲା ଓପ୍ରୋଧ
ସ୍ତିରୀ ବୋଲକୁ ସେ ଗଲା ପ୍ରତିବୋଧ ।
ତୋହୋର ପରା ସୁତକୁ ଯେ ବନ ପେଷଇ
ଯେ ମୋହୋର ମନକୁ ହାଦେଯେବଣ କଥା
ଦିଶଇ ।
ତୋହୋ ଆଗେ ମୁଇଂ କହଇ ରଘୁନାଥ
ଦେସି ଆଗ୍ୟାଂ ମୁହିଂ ଛେଦିବି ତା'ର ମାଥ ।
କକୟାର ଶିର ଯେ ପକାଇବି ହାଣି
ମନ୍ତ୍ରୀ ଅମାନତ୍ୟକୁ କରିବି ଏକ ଖଣି ।
ସର୍ବେହେଂ ହୋଇ କାଲି ବାହୁଡ଼ି ଆମ୍ଭେ
ଯିବା
ଶତ୍ରୁ ସଂହାରିଣ ରାଜ୍ୟ କରୁଥିବା ।୨୦
ଶ୍ରୀରାମ ବୋଇଲେ ଶୁଣ ମୋର ପ୍ରାଣ
ଧର୍ମ ଶାହାସ୍ତ୍ର ମହିମା ତୁମ୍ଭେ ଯେ ନଜାଣ ।
ପିତା ଯେ ପରମ ଗୁରୁ ପିଣ୍ଡର ଅଧିକାରୀ
ଯେହେର୍ଣ୍ଣେକ ବାଣୀ ମଇତ୍ର ମୁଖରେ ନ
ଉଚାରି ।
ଯେ ତୋହ ଆଗ୍ୟାଂ ପାଳିବଇଂ ମୁହିଂ
ଅନର୍ଥ କରିବାରେ ମୋହୋର କାର୍ଯ୍ୟ ନାହିଁ ।
ଏବେ ତୁ ଘୋଡ଼ାକୁ ଅଣାଅ ବେଗେ ଘାସ
ତିନିଦିନ ହେଲା ଅଶ୍ୱେ ପାଇଲେ ଉପାସ ।
ଶବର ବୋଇଲା ମୋଇତ୍ର ଯିବା ମୋର
ପୁର
ଉଭାଳେକ ନୋହଇ ଅଳପଟି ଦୂର ।୩୦
ଅନ୍ନ ପାଣି ସଞ୍ଚା ହୋଇବ ସମସ୍ତ
ମୋହୋର ଉଆସେ ତୁମ୍ଭେ
ରହିବ ରଘୁନାଥ ।
ଚଉଦ ବରଷତୁ ବଞ୍ଚ ଏଥେଂ ଥାଇ
ଶ୍ରୀରାମ ବୋଇଲେ ମୋର କାର୍ଯ୍ୟ ଏଥେ
ନାହିଂ ।
ପର ଘରକୁ ନଯିବୁ ପିତା ଆଗ୍ୟାଂ ଦେଲା

ଏକା ଠାବେ ନ ରହିବ ଜନନୀ ବୋଇଲା ।
ସେ ସତ୍ୟବ୍ରତ ପାଳିଲେ ସେ ମୋହୋର
ବଡ଼ପଣ
ଭୋ ମୈତ୍ର ମୋତେ ତୁ ନକର କଷଣ ।
ଅନ୍ନ ଆହାରେ ଯେ ମୋହୋର କାର୍ଯ୍ୟ ନାହିଂ
ଚଉଦ ବରଷ ଥିବି କନ୍ଦମୂଳ ଖାଇ ।୪୦
ଏବେ ତୁ ଘୋଡ଼ାକୁ ବେଗେ ଘାସ ଆଣ
ଶୁଣିଣ ଶବର ଯେ ଗଲେ ତତକ୍ଷଣ ।
ଯହୁଂ ସେ ବ୍ୟାଧ ଗଲାକ ନିଜପୁର
ରଥରୁ ଓହ୍ଲାଇଲେ ଶ୍ରୀରାମ ଲକ୍ଷଣ ।
ସୀତୟା ସହିତେ ମିଳି ତିନିଜଣ
ବୁଲିଣ ଠାବଯେ ଖୋଜିଲେ ରଘୁରାଣ ।
ପୁଇଂଚାନ୍ଦିଆ ବୃକ୍ଷ ତଳେଣ ହୋଅନ୍ତି
ଏ ଠାବରେ ରହିବା ବୋଲିଣ ବୋଲନ୍ତି ।
ଶୁଣିଣ ଲକ୍ଷଣ ଯେ ଶ୍ରୀରାମର ବାଣୀ
କୋମଳ ତିରଣ ଯେ ପାଡ଼ିଲା ତହିଂ
ଆଣି ।୫୦
ଶେଯ ଶେଯାଇଣ ଯେ ଶ୍ରୀରାମକୁ ଦେଲା
ଆପଣାକୁ ଥୋକାୟେ ଦୂର ଠାବ କଲା ।
ରଥରୁ ସୁମନ୍ତ ଯେ ଘୋଡ଼ାନ୍ତ ବେଗେ ଫେଡ଼ି
ପାଣି ଦେଇ ଅଶ୍ୱନ୍ତ ବାନ୍ଧିଲେ ଦଉଡ଼ି ।
ଆପଣା ରଥର ଉପରେ ଅଛି ବସି
ଘାସ ଘେନି ଗୁହ ଶବର ମିଳିଲାକ ଆସି ।
ଦେଖିଣ ଶ୍ରୀରାମ ଯେ ହୋଇଲେ ସନ୍ତୋଷ
ବୋଇଲେ ମଇତ୍ରହୋ ଯାସି ତୋର
ନିଜ ବାସ ।
ଶବର ବୋଇଲା ଯେ ଯୋଡ଼ିଣ ବେନିକର
ଶୁଣ ଦେବ ଶ୍ରୀରାମ ହୋ ଅଯୋଧ୍ୟା
ଈଶ୍ୱର ।୬୦
ଯାହା ସେ ବଚନ ବୋଇଲୁ ସ୍ୱାମୀ ମୋରେ
ଏକାୟେ ବିପୁନ୍ୟେ ରହିବୁ ତୁ ରଘୁବୀରେ ।
ମୋତେ କିମ୍ପା ନିଦମାଡ଼ିବ ଆଜ ଘରେ
ଜୀବନ ପୋଡୁ ମୋର ପଶିବି ସାଗରେ ।
ଅନେକ ପୁନ୍ୟବଳେ ପାଇଲି ତୋତେ ଭେଟ

ଆଜି ନିଶି ଖଟିବି ତୋହୋର ନିକଟ ।
ଶୁଣିଣ ଶ୍ରୀରାମ ଯେ ହୋଇଲେ ସନ୍ତୋଷ
ବୋଇଲେ ମଇତ୍ର ହୋ ସୁମନ୍ତ ପାଶେ
ବସ ।

ସୀତା ଲଇକ୍ଷଣ ସଂଗରେ ରଘୁପତି
ପୁଙ୍ଗଚାନ୍ଦିଆ ବୃକ୍ଷ ତଳେଣ ଅଛନ୍ତି ।୭୦
ଗଙ୍ଗାର ପାଣିଯେ ପିଇଲେ ତିନିଜଣ
ବୋଲନ୍ତି ଶ୍ରୀରାମ ଶୁଣ ତୁ ଲଇକ୍ଷଣ ।
ଆବର ଦୁଃଖ ବାବୁରେ କହଣା ନଯାଇ
ଭୋଖେ କର ବାବୁ ତଳେ ନ ପଡ଼ଇ ।
ଏତେ କଷ୍ଟକୁ ସେ ବିଧାତା ଜାତ କଲା
କଉଶୁଲ୍ୟା ରାଣୀ ମୋତେ କିମ୍ପାଇ ପ୍ରସବିଲା ।
କିସ ଉପଗାର ମୁଂ ତାହାକୁ କରିବି
ଘୋର ବିପୁନ୍ୟେ ଯେ ବୁଲିଣ ମରିବି ।
ପୁତ୍ର କଷ୍ଟ ମୋର ପାଇବ ଜନନୀ
ମୋହୋର ଭଲ ତ ନ ଦେଖିଲା ଚକ୍ଷୁ
ଘେନି ।୮୦

ମୁଂହି ତ ଅପାବନ ନ ଯୋଗାଇ କିଛି
ମୋର ତହୁଂ ଭଲ ଶାରୀ ଶୁଆ ପକ୍ଷୀ ।
ତାହାଙ୍କର ବୁଦ୍ଧିବଳେ ଶ୍ୟାମଳ ହାଥୁଂ ଗଲେ
ବ୍ୟାଧ ମାରୁ ମାରୁଣ ଉବୁରିଲେ ।
ଲକ୍ଷଣ ବୋଇଲା ଦେବ ଶୁଣିଲା
ମୋର ନାହିଂ
ଶାରୀ ଶୁଆ କଥା ମୋତେ କହିବା
ଗୋସାଇଂ ।

ଶ୍ରୀରାମ ବୋଲନ୍ତି ଶୁଣିମା ସୋଉମିତ୍ରୀ
ତୋହୋର ଆଗରେ କହଇ ନିଅତି ।
ହେମଗିରି ସନ୍ନିଧାନେ ଯେ ବସା କରିଥିଲେ
ଶ୍ୟାମଳ ପକ୍ଷୀ ତାହା ଉଡ଼ନ୍ତେ
ଦେଖିଲେ ।୯୦

ଚରଣେ ଶୁଆକୁ ଯେ ଧରିଅଛି ଚାପି
ଅଣ୍ଟେଣ ଶାରୀକି ଯେ କାମୋଡ଼ି
ଅଛି କୋପି ।

ନିଜ ମନ୍ଦିରକୁ ଯେ ଚଳଇ ଘନ ଘନ
ଏହିକ୍ଷଣି ଭକ୍ଷିବ ବୋଲି ଭାବଇ ତାର ମନ ।
ଏମନ୍ତେ ଆକାଶ ମାର୍ଗକୁ ଉଡ଼ିଯାଇ
ଶାରୀ ପକ୍ଷୀ କାନ୍ଦି ଶୁଆ ଆଗେ କହି ।
ବୋଇଲା ଶୁଆହୋ ମୋହୋର ବୋଲ କର
ଯେତେବେଳେ ପ୍ରବେଶଯେ ହୋଇବ
ଏହା ଘର ।

ଆମ୍ଭର ଜୀବନ ଯେ ହରିବ ଏହି ନେଇ
ପିଣ୍ଡ ତୋଷିବ ଯେ ଯେ ତୋତେ
ମୋତେ ଖାଇ ।୧୦୦

ଅବଶ୍ୟ ପ୍ରାଣ ତ ଯିବ ହୋ ଆମ୍ଭରି
ଉପାଏକ ଦିଶିଲା ମୋତେ ପାରିବୁ କି କରି ।
ଶୁଆ ବୋଇଲା ତୁ ବିକଳେ କିମ୍ପା ଆଞ୍ଚୁ
ଜୀବନ ବିକଳେ ନିସତେ କିମ୍ପା ପାଞ୍ଚୁ ।
ଆବର ପ୍ରାଣ କି ପାଇବା ଆମ୍ଭ ଅଛି
ଶାରୀ ବୋଇଲା ତୁ ନଜାଣୁ ତ କିଛି ।
ପ୍ରାଣ ଯିବା ଯାଏ ଉପାଏ କରିଥାଇ
ନଜାଣି କେଉଂବେଳେ କେଉଂ କଥା
ହୋଇ ।

ଯେଉଂମାନେ ନିତି ଉଦ୍ୟମ ନ କରନ୍ତି
ଅଯୋଗ୍ୟ ଲେଖାରେ ତାଙ୍କୁ ଶାସ୍ତ୍ରରେ
ଗଣନ୍ତି ।୧୦

ତୁ ଏବେ ଶୁଆହୋ ମୋହୋର ବୋଲକର
ଶ୍ୟାମଳ ଚରଣ ତୋର ଅଣ୍ଟରେ ବିଦାର ।
ଏ ମୋର ଅଣ୍ଟ ଯେ ତିରଣରୁ ହୀନ
ଏଣେ ଛାର କିଛି ନୋହେ ପ୍ରୟୋଜନ ।
ଏ ତୋହୋର ଅଣ୍ଟ ଯେ ବଜ୍ରହୁଂ
ଅଟଇ ଆଣ୍ଟ

ଏହା ଘେନି ବେଗେ ଶ୍ୟାମଳ ପାଦ କାଟ ।
ତୋତେ ଛାଡ଼ିଲେ ତୁ ଯାଅସି ଉବୁରି
ଯୋଗେ ଦୁହିଂକି ଦିଅଇ ଅବା ଛାଡ଼ି ।
କରସି ଉପାଏ ନକରସି ହେଳ
ବସାରେ ହୋଇଲେ ପୂରିବ ଆମ୍ଭର
କାଳ ।୨୦

ଶାରୀ ତହୁଂ ବୁଦ୍ଧି ପାଇଣ ଶୁକ ପକ୍ଷୀ
ଶ୍ୟାମଳ ଚରଣକୁ ଚାହାଇଂ ଆକ୍ରୋଷି ।
ରାଗ ପାଇଣ ଅଣ୍ଟ ଘଷିଲା ଦୃଢ଼ କରି
ଶ୍ୟାମଳ ଛାଡ଼ିଲା ଆଇ କି ସୁମରି ।
ଆଇକି ସୁମରନ୍ତେ ଅଣ୍ଟ ବିସ୍ତାରିଲା
କାଳବେଳ ଜାଣି ଶାରୀ ପଳାଇଲା ।
ଦୁଇ ପକ୍ଷୀ ଯହୁଂ ହୋଇଲେ ମୁକଳ
ଶାମଳ ଚଉକତି ଚାହାଂଇ ଜଳ ଜଳ ।
ନିରାଶ ହୋଇଣ ଯେ ବସାକଇ ଗଲା
ଶୁଆ କରି ଘେନି ଶାରୀ ବାହୁଡ଼ିଲା ।୩୦
ଉପାଏ କରିଣ ଯେ ତରିଲେ ଦୁଇପ୍ରାଣୀ
ତେତେ ବୁଦ୍ଧି ଲକ୍ଷଣରେ ମୁଂ ନ
ପାରିଲି ଜାଣି ।

ଅମନିଷ୍ୟ କରି ମୋତେ ବିଧାତା ଜାତ କଲା
ମୋହୋର ପାଲେଟ କି ବୃକ୍ଷେକ
ନ ଥାପିଲା ।

ଫଳନ୍ତେଣ ଭୋଗ କରନ୍ତେ ନାନା ପ୍ରାଣୀ
ଏ ଯେ ଜାନେକୀ ଦେଖହୋ
ଋଷିର ଦୁଲଣୀ ।

ତିରଣ ପାରି ଯେ ଶୋଇଅଛି ଚନ୍ଦ୍ରମୁଖୀ
ଦେହ କେମନ୍ତେରେ ଧରିବି ଏହା ଦେଖି ।
ଲକ୍ଷଣ ବୋଇଲା ସ୍ୱାମୀ ବିମୁଖ କିମ୍ପା ହୁଅ
ସୃଷ୍ଟିର ଭିତରେ ଯେ ଅଟଇ ଏହୁ
ଦେହ ।୪୦

ଦୁଃଖ ସୁଖ ଏହା କରମ ଗୁଣେ ପାଇ
ତାମସ ହୋଇଲେ ଗୋସାଇଂ କଷ୍ଟହୋଇ
ପାଇ ।

ଯେବଣ ବିଧାତା ତୋତେ ରାଜପୁତ୍ର କଲା
ସେହି ବିଧାତା ଯେବେ ବନକୁ ପେଷିଲା ।
ନକର ସନ୍ତାପ ଦେବ ନକର ବଇରାଗ
ପାପ ପୁନ୍ୟ ଦୁଇ ଯେ ଫଳନ୍ତି ଦୁଇଭାଗ ।
ଶ୍ରୀରାମ ଲକ୍ଷଣ ଯେ କଥା ହୋଅନ୍ତେ ବେନି
ସୁମନ୍ତ ଭାଳଇ ରଥେ ଶବରକୁ ଘେନି ।
ଏସନେକ ସମଏ ଅରୁଣ ପରକାଶ
ଗଗନେ ଉଦଏ ହୋଇଲେ ଛାୟାର
ବିଳାସ ।୫୦

ସୀତା ଲଇକ୍ଷଣ ଶ୍ରୀରାମ ଯେ ତିନି
ନିତ୍ୟ କର୍ମ ବିଧାନ ଯେ ସାରିଲେ ତତକ୍ଷଣି ।
ଗଙ୍ଗାୟେ ସ୍ନାହାନ କରି ଦେବ ତର୍ପଣ କଲେ
ବଟ ବଛ ଖିରେ ଯେ ଶିରେ ଜଟ କଲେ ।
ଗୋମଳ ପାଉଂଶ ଯେ ମିଶାଇ ଜଟ ବଳି
ଶ୍ରୀରାମ ଲକ୍ଷଣ ଦିଶିଲେ ଅପୂର୍ବ ତପଶାଳୀ ।
ଆଗପଛ କରି ବାନ୍ଧିଲେ ଜଟାଭାର
ତିନି ସରି କରି ଛନ୍ଦିଲେ ମଧ ଠାର ।
ସୁମନ୍ତ ଦେଖିଣ ଯେ ଅଶ୍ରୁଜଳ ଗଳଇ
ଜାନକୀ ବିକଳେ ଶିରେ କର
ତାଡ଼ଇ ।୬୦
ଗୁହ ନାମେ ଶବର ବହୁତ ବିମୁଖ
ଅଭିମାନେ ତଳକୁ ଲମ୍ବାଇ ଅଛି ମୁଖ ।
ଜଟା ବାନ୍ଧି ରାମ ଗଙ୍ଗାତୀରେ ଯାଇ
ଶବର ଲୋକେ ଯେ ନାଉରୀକି ରାଇ ।
ତକ୍ଷଣେ ନାଉରିଆ ନାବ କଲେ ଆଣି
ସୁମନ୍ତକୁ ଚାହିଁ ଯେ ବୋଲନ୍ତି ରଘୁମଣି ।
ଭୋ ମନ୍ତ୍ରୀ ଶୁଭେ ତୁ ବାହୁଡ଼ିଯାଅ ଘର
ପିତା ମାତାଙ୍କୁ ମୋର କହ ନମସ୍କାର ।
ନୃପତି ଭାଳିଣ ଭ୍ରଥକୁ ରାଜ୍ୟ ଦଉ
ନିଶ୍ଚିନ୍ତ ହୋଇଣ ଯେ ଭୋଗ
ଭୁଞ୍ଜୁଥାଉ ।୭୦
ଜନନୀମାନଙ୍କୁ ଯେ ବୁଝାଇବୁ ଯାଇ
କଳି ନକରିବେ ସପତଣୀ ହିଂସା ବହି ।
ଶତୃଘନକୁ ତୁ କହିବୁ ବିଶ୍ୱାସ
ସେବା କରୁଥିବ ଭ୍ରଥ ରାଜା ପାଶ ।
ବଶେଷକୁ ନମସ୍କାର କହିବୁ ମୋର ଯାଇ
ରାଜ୍ୟ ପାଳିବେ ସେ ଅବଧାନ ହୋଇ ।
ନଗ୍ର ଲୋକଙ୍କୁ ଯେ ବୋଲିବୁ ନଭାଳ
ଭ୍ରଥ ସେ ଅଟଇ ତୁମ୍ଭର ମହୀପାଳ ।
ଯେତେ ବୋଲି ରାମ ନାବେ ଯାଇ ବସି
ନାଉରିଆ ରାମକୁ ଦେଖି ମନେ ତ୍ରାସି ।୮୦
ବୋଲଇ କ୍ଷଣେ ତୁମ୍ଭେ ରହ ରଘୁମଣି
ଏ ନାବ ଖଣ୍ଡରେ ମୁଂ ବଞ୍ଚାଏ ଦଶପ୍ରାଣୀ ।

ତୋହୋର ଚରଣେ ଅଛଇ ଯେବଣ ରେଣୁ
କାଠ ପାଷାଣ ଯେ ଯୁବତୀ ହୋନ୍ତି ତେଣୁ ।
ପଚୁକୀମାନେ ପଥ ବହି ଯାନ୍ତି
ଏକ ଆରେକେ ସେ କୋହା କୋହି
ହୋନ୍ତି ।
ଦଶରଥ ରାଜା ଯେ ଅଯୋଧ୍ୟା ଈଶ୍ୱର
ଶ୍ରୀରାମ ନାମେ ଯେବଣ ଜେଷ୍ଠ କୁମର ।
ବିପୁଳ ବନେ ଯେ ପାଷାଣେ ପାଦ ଦେଲା
ତକ୍ଷଣେ ସେ ପାଷାଣ ଯୁବତୀ
ହୋଇଲା ।୯୦
ଚରଣ ଧୋଇଂ ଏବେ ନାବେ ଯାଇ ବସ
ଶୁଣି ରଘୁନାଥ ଯେ ହୋଅନ୍ତି ହରଷ ।
ଏହା ଶୁଣି ରାମ ନାବର ମଂଗେ ଥାଇ
ଗଙ୍ଗାଜଳ ଘେନି ବେନି ପାଦ ଧୋଇ ।
ତେବେ ସେ ନାଉରୀ ନାବରେ ବସାଇଲା
ଶ୍ରୀରାମ ଲକ୍ଷ୍ମଣ ସୀତାଙ୍କୁ ଦିବ୍ୟ ଠାବଦେଲା ।
କରେ କାତଧରି ବାହିଲାକ ନାବ
ସୁମନ୍ତକୁ ଚାହିଂଣ ଯେ ବୋଲନ୍ତି ରାଘେବ ।
ଭୋ ମନ୍ତ୍ରୀବର ତୁ କୁଶଳେ ଚଳିଯାଅ
ସର୍ବଶୁଭେ ଯାଇ ଅଯୋଧ୍ୟାରେ
ଥାଅ ।୧୦୦
ଶବରକୁ ହାଥ ଠାରି ଦ୍ୟନ୍ତି
ବାହୁଡ଼ିଣ ଯାଅ ମିତ ବୋଲିଣ ବୋଇନ୍ତି ।
ଏଥୁ ଅନନ୍ତରେ ନାଉରିଆ ନାବ ବାହି
ପବନହୁଂ ବେଗେ ସେ ଡଙ୍ଗା ଚଳିଯାଇ ।
ଶ୍ରୀରାମ ଆପଣାର ଶିରରେ ପାଣି ସିଞ୍ଚି
ଲକ୍ଷଣ ସୀତାର ଯେ ଶରୀରେ ନେଇ ବିଞ୍ଚି ।
ଗଙ୍ଗାକୁ ସ୍ତୁତି ଯେ କରନ୍ତି ରଘୁନାଥ
ଜୟ ଜୟ ସୁରେଶ୍ୱରୀ ଜଗତଜନମାତ ।
ବିଷ୍ଣୁର ଚରଣେ ଗୋ ସର୍ବଥା ସେବିଥାଉ
ମ୍ଳେଛ ଜନମାନଙ୍କୁ ତୁ ମୁକତ କରାଉ ।୧୦
ଧବଳ ବଦନୀ ହେମବନ୍ତର ନନ୍ଦନୀ
ଜଗତ ପାଳେଣୀ ଗୋ ଅଇଶ୍ୱର୍ଯ ଦାନୀ ।
ଶଙ୍କର ଯାହାକଇ ଧରିଅଛି ଶିରେ

ସପତ ସାଗର ମାଗୋ ପୂରିଲା
ତୋହୋର ନୀରେ ।
ଅପାବନ ଲୋକେ ପାବନ ତୋରେ ହୋନ୍ତି
ତୁ ଦେବୀ ଭଗତବଛଳ ଭଗବତୀ ।
କର ଅନୁରାଗ ଭଗତମୟେ ଦେବୀ
ଶୁଣି ଗଙ୍ଗା ଦେବୀ ପ୍ରସନ୍ନ ମନେ ଭାବି ।
ଶ୍ରୀଭୁଜେ ନେଇ ନାବ ତୋଳିଣ ଧରିଲା
ଅନ୍ତରିକ୍ଷେ ଗଙ୍ଗା କୂଳେ ନେଇ କଲା ।୨୦
ସୁବର୍ଣ୍ଣ ବାହିର ଯେ ଦିଶିଲା କିରଣ
ଆନନ୍ଦ ଶ୍ରୀରାମ ସୀତା ଲଇକ୍ଷଣ ।
ନାବରୁ ଓଲ୍ୟାଇ ଶୁଭେ ଚଳିଗଲେ
ନିଗମ ବନ ଯେ ଭିତରେ ପଶିଲେ ।
ଅତିଅସୁସଞ୍ଚ ଦିଶଇ ଚାରୁଶୋଭା
ଯହିଂ ନ ଲାଗଇ ଆଦିତ୍ୟର ପ୍ରଭା ।
ମଧେ ଲଇକ୍ଷଣ ପଛେ ଦେବୀ ସତୀ
ଆଗେଣ ଶ୍ରୀରାମ ଯେ ପଥ ବହିଯାନ୍ତି ।
ଅଦୃଶ୍ୟ ହୁଅନ୍ତେ ଯେ ସୁମନ୍ତ ବାହୁଡ଼ିଲା
ତୁଚ୍ଛା ରଥ ଘେନି ଅଯୋଧ୍ୟାକୁ ଗଲା ।୩୦
ଗୁହ ନାମେ ଶବର ଗଲା ନିଜ ବାସ
ଗହନ ବନେ ରଘୁନାଥ ହୋଇଲେ
ପରବେଶ ।
ଲତା ଗହନ ଯେ ଦିଶଇ ମହାଘୋର
ନିବିଡ଼ ଅନ୍ଧାର ଯେ ମହା ଭୟଙ୍କର ।
ପଦ୍ମ ପୋଖରୀଏ ଦେଖିଲେ ରାମ ଯାଇ
ନାନା ଜଳଚର ଯେ ଚରୁଛନ୍ତି ତହିଂ ।
କୂଳେଣ ବୃଷାଳ ବଟବୃକ୍ଷେ ଅଛି
ସେ ବୃକ୍ଷେ ତଳେ ଯେ ରହିଲେ ରଘୁ ବଛି ।
ଶ୍ରୀରାମ ବୋଇଲେ ସୀତାକୁ ରଖହୋ
ଲଇକ୍ଷଣ
ମୃଗ ମାରି ଆମ୍ଭେ ଆଣୁ ହୋ ବହନ ।୪୦
ଯେତେ ବୋଲି ରାମ ଧନୁରେ ଗୁଣ ଦେଲେ
ଉଭାଳେକ ଯାଇଣ ମୃଗେକ ଦେଖିଲେ ।
ନାରାଜ ପୂରାଇ ଯେ ବିନ୍ଧିଲେ ସୂତ୍ରକରି
ଶ୍ରୀରାମ ନାରାଜେ ଯେ କୁରଙ୍ଗୀ ପ୍ରାଣହାରି ।

ଦେଖିଣ ରଘୁନାଥ ଅଇଲେକ ଧାଇଂ
ବସାକୁ ଘେନିଗଲେ କାନ୍ଧରେ ପକାଇ ।
ଦେଖିଣ ଲକ୍ଷଣ ବିକଳିତ ମନ
ଅବିକ୍ଷଣେ ନୟନରୁ ବହଇ ବାରି ପୁଣ ।
ଯାହାର କାନ୍ଧରେ ତ୍ରୈଲୋକ୍ୟ ଲକ୍ଷ୍ମୀ ବସଇ
ବିହିର ବଶେ ତହିଂ ମଲା ମୃଗ
ଆସଇ ।୫୦
ଶ୍ରୀରାମ ବୋଇଲନ୍ତି ହୋ ସନ୍ତାପ କିମ୍ପା କରୁ
କାଳ ଘେନି କଥା ବିଚାର ନକରୁ ।
ଆଜ ଯେ ଯେହା ପାଇଲୁ ବଡ଼ ପୁନ୍ୟ
ସନ୍ତୋଷ ଚିତ୍ତେ ଯେ କରିବା ଭୋଜନ ।
ତିନିଦିନ ଉପବାସେ ରହିଲୁ ପାଣି ପିଇ
ବେଗେ ଏହା ରନ୍ଧନ କରସି ହୋ ନେଇ ।
ଶୁଣି ଲକ୍ଷଣ ଯେ କୁରଙ୍ଗୀ କେଜାଇଲା
ତୀକ୍ଷଣର ଘେନି ଭିନ୍ନ ଭିନ୍ନ କଲା ।
ଖଣନ୍ତି ଘେନିଣ ଯେ ଖୋଳିଲେ ଚିହୁଡ଼ି
ଲାଉ ଘେନି ସୀତା କୂପରୁ ପାଣି କାଢ଼ି ।୬୦
ଲୋହିତା ବସାଇ ସବୁ ସଜ କଲେ
ଝକମକ ପଥର ଶ୍ରୀରାମ ଠୁକିଲେ ।
ତତ୍‌କ୍ଷଣେ ଜାତ ଯେ ହୋଇଲା ହିଙ୍ଗୁଳୀ
ହାଥୀ ଭଙ୍ଗା କାଠ ଘେନି ଚୂଲୀ ଜାଳି ।
ମାଂସ ସିଝିଲେଣ ଅଇଲେ ରଘୁସାଇଂ
ଦେବ ପିତୃଅର୍ଥେ ବଳି ଦେଲେ ନେଇ ।
ପଳାଶ ପତ୍ର ସେ ପାରିଣ ଭୁଞ୍ଜିଂ ବସି
ସୀତା ନେଇ ମୃଗ ମାଂସ ପରଷି ।
ଶ୍ରୀରାମଙ୍କୁ ପରଷି ଲକ୍ଷଣଙ୍କୁ ଦେଲା
ରଘୁନାଥ ପତ୍ରେ ସ୍ୱତୀ ଆପଣେ
ଭୁଂଜିଲା ।୭୦
ଆଚୋବନ ସାରି ସନ୍ତୋଷ ତିନି ଜଣ
ଶାଳ ପତ୍ର ଯେ ଆଣିଲା ଲକ୍ଷଣ ।
ଶ୍ରୀରାମ ସୀତାଙ୍କୁ ଶେଯ ଶେଯାଇଲା
ଥୋକାଏକ ଦୂରେ ଆପଣାଙ୍କୁ ଠାବ କଲା ।
ହରିଡ଼ା ଫଳ ସେ ରାମଙ୍କୁ ଦେଲା ନେଇ
ତିନିଖଣ୍ଡ କରି ସେ କାଟିଲେ ରଘୁସାଇଂ ।

ଲକ୍ଷ୍ମଣ ସୀତାଙ୍କୁ ଯେ କିଛୁ କିଛୁ ଦେଲେ
ଶେଷ ଖଣ୍ଡିକ ସେ ଆପଣେ ଭୁଂଜିଲେ ।
ଏସନେକେ ସମୟେ ହୋଇଲା ତିମିରି
ଶେଯରେ ବିଜେ ରାମ ସୀତା କର
ଧରି ।୮୦
ଲକ୍ଷଣ ତାହାର ଶୟନ ଥାନେ ବସି
ଅଯୋଧ୍ୟାର କଥା ମାନ ଶ୍ରୀରାମ ମନେ ପଶି ।
ଲକ୍ଷଣଙ୍କୁ ବୋଲନ୍ତି ଶୁଣସିରେ ଭାଇ
କିସ କରୁଥିବେ କଉଶୁଲା ସୁମିତ୍ରାଇ ।
କଏକୟୀ ଜନନୀ ଆବର ସର୍ବ ମାତା
କେବଣ ଠାବେ ଅବକାଶ ହୋଇଥିବେ
ପିତା ।
ଭ୍ରଥ ଶତୃଘନଙ୍କୁ ଯିବନିକି ଦୂତ
ଆଜ କାହିଂ ଯାଇ ରହିବ ସୁମନ୍ତ ।
କିସ କିସ ବୋଲୁଥିବେ ଅଯୋଧ୍ୟା ନରନାରୀ
ଭ୍ରଥ ରାଜା ପଣ ପାରିବ ଟିକି କରି ।୯୦
ଶତୃଘନ ନ ପୁଣ ନ କରଇ ସେବା
ବଶିଷ୍ଟ ଜାବାଳି କଶ୍ୟପ ବାମଦେବା ।
ଏହାଙ୍କର ଥାନ୍ତେ କି ରାଜ୍ୟକୁ ଭୟ ଅଛି
ଏହା ଶୁଣି ବୋଇଲା ସୁମିତ୍ରାର ବଛି ।
ତୁ ଯେ ଶ୍ରୀରାମ ହୋ ସୁମରୁ ନିଜ ଦେଶ
ଅଗ୍ନି ଘେନି ଅଯୋଧ୍ୟା ଯାଇ କି ନା ଧ୍ୱଂସ ।
ଦଶରଥ ରାଜା ପାଉଂ ବେଗେ ମୃତ୍ୟୁ
ଆମ୍ଭର ଜନନୀମାନେ ଜଳିଯାନ୍ତୁ ।
ଭ୍ରଥ ଶତୃଘନେ ହୋଅନ୍ତୁ ପ୍ରାଣ ନାଶ
ମନ୍ତ୍ରୀଗଣମାନଙ୍କର ଛାଡୁ ଆଶବାସ ।୧୦୦
ଆମ୍ଭଙ୍କୁ ଯେବେ ସେ ପେଷିଲେ ଘୋରବନ
ତୋହୋର ତାହାଙ୍କୁ କିମ୍ପା ଓପ୍ରୋଧ
ଅବଧାନ ।
ବନେଣ ଆମ୍ଭେ ଯେ ଦରସିଝା ମାଂସ ଖାଇ
ତିରଣ ପାଡ଼ିଣ ଯେ ବୃକ୍ଷ ମୂଳେ ଶୋଇ ।
ସେ ସୁଖେ ରାଜ୍ୟ କରନ୍ତି ବଇଭୋଗ
ଆମ୍ଭଙ୍କୁ ହୋଇଲା ଯେବେ ବନବାସ
ଯୋଗ ।

ଆମ୍ଭେ ଭଲେ ଥିବା କରିବାନା ବିଚାର
ଅଯୋଧ୍ୟା ନଗ୍ରେ କିସ ପ୍ରୟୋଜନ ଆମ୍ଭର ।
ଶ୍ରୀରାମ ବୋଇଲେ ତୁ ଲକ୍ଷଣ ନ ଜାଣୁ
ଆମ୍ଭେ ତ ସବୁ ଯେ ଏକତ୍ୱ ପ୍ରାଏ ମଣୁ।୧୦
ଅଯୋଧ୍ୟା ବନବାସ ଦୁହେଂ ମୋତେ ଭଲ
କିମ୍ପା ତୁ ଲକ୍ଷଣରେ ବୋଇଲୁ ଏ ବୋଲ ।
ଯଦ୍ୟପି କଏକୟା ପେଷିଲାକ ବନ
ମୋହୋର ତ ତାହାଙ୍କୁ ନାହିଂ ଆନମନ ।
କଉଶୁଲା ସୁମିତ୍ରା କକୟା ମୋତେ ଏକା
ଭ୍ରଥ ଶତୃଘନ ତୋହୋର ତହୁଂ ଅଧିକା ।
ଶ୍ରୀରାମର ବଚନ ଶୁଣି ବୋଲଇ ଲକ୍ଷ୍ମଣ
ତୁ ଦେବ ଧାର୍ମିକ ପବିତ୍ର ସୁଲକ୍ଷଣ ।
କଏକୟା ରାଣୀ କଲେ ତୋତେ ଯାହା
ତୋହୋର ବେଳେ ସେ ମୁରୁଛି
ହୋଏ ତାହା ।୨୦
ଦେବେ ଅସୁରେ ଯେ ଅଟନ୍ତି ବେନି ଭାଇ
ଏକଇ ପିଅର ବେଗଳ ମାତା ହୋଇ ।
ଏଡ଼େ ଏଡ଼େ ଲୋକେ ଘେନିଲେ ଅହନ୍ତା
ଦଇତ ନାଶିବା ନିମନ୍ତେ କରୁଛନ୍ତି ଚିନ୍ତା ।
ତୁ ଦେବ ଶ୍ରୀରାମ ପୁରୁଷଙ୍କ ଉତ୍ତମ
କହିଲେ ନ ସରଇ ତୋହୋର ମହାତମ ।
ଏସନେକ କଥା ଯେ ହୋଅନ୍ତେ
ଭାଇ ବେନି
ଶ୍ରୀରାମ ଲୋଚନେ ଯେ ଅଳସ
ଭାବ ଘେନି ।
ନିଦ୍ରା ଆକ୍ରେଷିଲା ପହୁଡ଼ିଲେ ରଘୁମଣି
ଲକ୍ଷଣ ରହିଲା ରାମର ଶୟନ ଜାଣି ।୩୦
ଯଦ୍ୟପି ଭୂମିରେ ଅବା ପାରିଲାକ କର
ସଚେତ ହୋଇ ଧରି ଅଛଇ ଧନୁଶର ।
ଏଥୁ ଅନନ୍ତରେ ଯେ ରଜନୀ ଶେଷ ଗଲା
ମାରତଣ୍ଡ ମଣ୍ଡୋଳ ଆକାଶେ ଦିଶିଲା ।
ନିଦ୍ରାଭଙ୍ଗ ହୋଇ ଉଠିଲେ ରଘୁପତି
ଆଗହୁଂ ଉଠିଲେନି ଜନେକର ଦୋହିତୀ ।
ଶ୍ରୀରାମ ଡାକନ୍ତି ଲକ୍ଷ୍ମଣ ନାମ ଧରି

ଏଡ଼େ ନିଦ୍ରା ତୋର ପାହିଲା ତିମିରି ।
ଶେଯରୁ ଉଠି ସଉମିତ୍ରୀ ନମସ୍କାର କରି
ପୁଣ ପୁଣ ଓଳଗଇ ସୀତାର ପାଦ ଧରି । ୪୦
ଲକ୍ଷଣ ବୋଇଲା ମୁଂ ନ ଥିଲି ନିଦ୍ରାଯାଇ
କର ପାରି ଶହସ୍ର ଧରି ମୁଂ ଥିଲଇଂ ।
ଏ ଘୋର ବନସ୍ତେ କେର୍ଣ୍ଣେ ଯିବି ନିଦ
ଅଗମ୍ୟ ଭୂମି ଏଥି ବହୁତ ପରମାଦ ।
ତୁ ଦେବ ଜାନେକୀ କି ଘେନି ନିଦ ଗଲୁ
ଏ ଘୋର ବନସ୍ତେ ତୁ ଚିନ୍ତା ନ ପାଇଲୁ ।
ମୁଇଂ ଶସ୍ତ୍ର ଧରି ବଂଚିଲଇ ରାତ୍ରି
ଶୁଣିଣ ପ୍ରଶଂସା କଲେ ରଘୁପତି ।
ତୁ ମୋହୋର ଭାଇ ଅଟୁସିରେ ସାଖା
ତୋହୋର ନଇଲେ ଦୁଃଖ ପାଆନ୍ତିନା
ଏକା ।୫୦
ଏତେ ବୋଲି ରାମ ଲକ୍ଷଣ ଭୁଜଧରି
ସେ ସ୍ଥାନ ଛାଡ଼ିଣ ଗଲେ ବିଜେ କରି ।
ପଦ୍ମତୋଳାରେ ସେ ଛାଡ଼ିଲେ ନିତ୍ୟକର୍ମ
ବାଟେ ଯାଉଂ ଯାଉଂ ସୁମରନ୍ତି ଧର୍ମ ।
ବନସ୍ତ ଭିତରେ ଯେ ଯାନ୍ତି ତନି ଜଣ
ଖୋଲ କଣ୍ଟା, ବାଟ, ପର୍ବତ ପାଷାଣ ।
ପୁଚିଣ ଜାନେକୀ ବୋଲନ୍ତି ରଘୁନାଥ
କେତେ ଦୂର ଆଉ ଆମ୍ଭେ ଯିବା ପଥ ।
ନେଉଟି ଶ୍ରୀରାମ ଚାହାନ୍ତି ସୀତା ମୁଖ
ବୋଲନ୍ତି ସଖୀରେ ପାଇଲୁ ବଡ଼ ଦୁଃଖ ।୬୦
ଏତେ ବୋଲିଣ ତହୁଂ ଗଲେ ଥୋକାଏକ
ଦୂର
ବାଟରେ ଦେଖିଲେ ପଲ୍ଲୀ ଯେ ଶବର ।
ଏହାଙ୍କୁ ଦେଖିଣ ଯେ ତହିଁର ଲୋକେ ଆସି
ଏକ ଆରକେ ସେ ହୋଅନ୍ତି ପରଶଂସି ।
କେ ବୋଲଇ ଅପୂର୍ବ ଏ ଅଟନ୍ତି ତିନିଜଣ
ମନୁଷ୍ୟ ଶରୀର ତ ନଦିଶେ ବିଦ୍ୟମାନ ।
କେ ବୋଲଇ ବନସ୍ତର ଦେବତା ଏ ବେନି
ବନଦେବତୀ କି ଅଇଲେ ସଂଗେ ଘେନି ।
କେ ବୋଲଇ ସ୍ୱର୍ଗରୁ ଗନ୍ଧର୍ବ ଅପସରୀ
ମୃତ୍ୟୁ ଲୋକକୁ କି ଅଇଲେ ବିଚାରି ।୭୦
କେ ବୋଲଇ ମନରେ କର କିମ୍ପା ଭ୍ରାନ୍ତି
ଦେବ ଦେବୀମାନେ ବନସ୍ତେ ବୁଲୁଥାନ୍ତି ।
ଶବର ଯୁବତୀ ଯେ ନିକଟ ହୋଇଗଲେ
ସୀତାଙ୍କୁ ଚାହିଂଣ ଯେ ମଧୁର ଧ୍ୱନି
ବୋଇଲେ ।
ଏ ଦୁଇ ମହାତ୍ମା ତୁମର କିସ କିସ ହୋଅନ୍ତି
ସ୍ୱରୂପ କିରଣ ଗୋ କହ ମହାସ୍ୱତୀ ।
ସେ ଯହୁଂ ଏହାକୁ କହିଲେ ବାରତା
ସ୍ତିରୀ ସଂଗ ପାଇ ରହିଲେ ଦେବୀ ସୀତା ।
ପଚାରିଲେ କହନ୍ତି ପଛେ ଯେହୁ ଯାଇ
ସେ ମହାତ୍ମା ମୋହୋର ଗୋ
ଦିଅର ଅଟଇ ।୮୦
ଏହା ଶୁଣି ନାରୀ ବୋଲନ୍ତି ଗୋ ଶୁଣ
ସେ ଆନେ କିସ ଅଟନ୍ତି ଆଗ ଜଣ ।
ସେ କଥାକୁ ବାଳୀ ସମସ୍ୟା ନଦେଲେ
ଶିର ଲମ୍ବାଇଣ ଦେବୀ କଥା ନ କହିଲେ ।
ଯୁବତୀ ଜାଣିଲେ ଯେ ଅଟଇ ଏହାର ବର
ଏକକୁ ଆରେକ ଯେ ଅଟନ୍ତି ଶୋଭାକର ।
ତାହାଙ୍କର ସଙ୍ଗରେ ଭାଳଇ ବଇଦେହୀ
ଶ୍ରୀରାମ ପାଳଟି ଥୋକାଏ ଦୂରେ ଚାହିଁ ।
ଶବଦ ନପାଇ ବୋଲନ୍ତି ରଘୁନାଥ
ଜାନେକୀ କି କାହିଂ ଛାଡ଼ି ଅଇଲୁରେ
ଭ୍ରାଥ ।୯୦
ଲକ୍ଷଣ ପଛକୁ ଚାହିଂଣ ବୋଇଲା
ସ୍ତିରୀମାନଙ୍କର ସଂଗ ପାଇଂ ସେ ରହିଲା ।
ଏତେ ବୋଲି ସଉମିତ୍ରୀ ଲେଉଟି ସେ ଚାହିଁ
ସୀତ୍ୟା ସୀତ୍ୟା ବୋଲିଣ ଉଚ୍ଚେ ରାବ ଦେଇ ।
ଜାନେକୀ ବୋଇଲେ ମୁଂ ଯାଉଛି ନି ଚାଲ
ଲକ୍ଷଣ ବୋଇଲା ମାଗୋ ନୋହଇ କଥା
ଭଲ ।
ଏ ଘୋର ଅରଣ୍ୟେ କିମ୍ପା ଏକା ରହୁ
ଯାହାକୁ ନ ଚିହ୍ନୁ ଗୋ ତାହାକୁ କଥା କହୁ ।
ଶ୍ରୀରାମ ବଇଦେହୀ କି ଦେଖିଣ ଆସନ୍ତି
କିମ୍ପା ରହିଲୁ ଗୋ ବୋଲିଣ
ବୋଲନ୍ତି ।୧୦୦
ସ୍ୱାମୀ ମୁଖ ଚାହିଂ ସତୀ ଲାଜ ପାଇ
ଏଥୁଅନନ୍ତରେ ଥୋକାଏ ଦୂର ଯାଇ ।
ଶ୍ରୀରାମ ବିଚାରିଣ ଲକ୍ଷ୍ମଣକୁ ପଛକଲେ
ସୀତା ମଝିକରି ଆପଣେ ଆଗ ଗଲେ ।
ବେଳ ଅସ୍ତ ହୋଅନ୍ତେ ରହିଲେ ପ୍ରୟାଗ
ଯହିଂ ସେ ବ୍ରହ୍ମା କଲେ ଇଷ୍ଟ ଯାଗ ।
ଗଙ୍ଗା ସରସ୍ୱତୀ ଯମୁନା ତିନି ନଦୀ
ତ୍ରିବେଣୀ ସଂଗମ ଜଗତ୍ରେ ପ୍ରସିଦ୍ଧି ।
ଭାରଦ୍ୱାଦଶ ଯେ ମୁନିଙ୍କ ଆଶ୍ରମ
ତହିଂ ଯାଇ ପ୍ରବେଶ ହୋଇଲେ
ରଘୁରାମ ।୧୦
ଅଗ୍ନିରେ ଆହୁତି ଯେ ଦିଅନ୍ତି ମହାଋଷି
ଶିଷ୍ୟଗଣ ତାହାଙ୍କ ଛାମୁରେ କହନ୍ତି ଆସି ।
ଭୋ ଦେବ ଅପୂର୍ବ ସୁନ୍ଦର ବେନି ମୁନି
ଦ୍ୱାରେ ଉପଗତ ଯୁବତୀ ଏ ଘେନି ।
ଶୁଣିଣ ମହାଋଷି ଅଗ୍ନିରେ ହୋମ ସାରି
ବାହାର ହୋଇଣ ଯେ ଆସନ୍ତି ତପଚାରୀ ।
ଦେଖନ୍ତି ଶ୍ରୀରାମ ଲକ୍ଷ୍ମଣ ସୀତା ତିନି
ଆଶ୍ଚର୍ଯ୍ୟ ହୋଇଣ ଯେ ଚାହାନ୍ତି ତାଙ୍କୁ ମୁନି ।
କେହେର୍ଣ୍ଣେ ଯେ ରାଜା ନୋହିଲୁ ରଘୁନାଥ
ବନକୁ ଅଇଲୁ କେର୍ଣ୍ଣେ ଜଟାଧାରୀ
ମାଥ ।୨୦
ଶ୍ରୀରାମ ନମସ୍କାର କରିଣ କହନ୍ତି
କକୟା ଜନନୀ ମୋତେ ବନକୁ ପେଷନ୍ତି ।
ପିତାକୁ କପଟେ କରାଇଲା ସତ୍ୟ
ଭ୍ରଥ ହୋଇବ ଯେ ଅଯୋଧ୍ୟାରେ ନୃପତ୍ୟ ।
ଚଉଦ ବରଷ ଶ୍ରୀରାମ ବନ ଯିବ
ଫଳମୂଳ ଖାଇବ ଦେଶ ନ ମାଡ଼ିବ ।
ତେଣୁ ଯେ ଏଥକୁ ଅଇଲି ଭୋ ଋଷି
ପୂର୍ବର ଫଳେ ତୋତେ ଦେଖିଲଇଂ ଆସି ।
ମୋହୋର ଘରଣୀ ଯେ ଜନେକ ଦୁହିତା
ସର୍ବ ସୁଲକ୍ଷଣୀ ନାମ ଏହାର ସୀତା ।୩୦

ନଗ୍ରେ ନ ରହି ସେ ଗୋଡ଼ାଇ ଅଇଲା
ଛାଡ଼ିଗଲେ ପ୍ରାଣ ହାରିବି ବୋଇଲା ।
ଏ ମୋହୋର ଭାଇ ଯେ ସୁମିତ୍ରାର ସୁତ
ନାମ ଲଇକ୍ଷଣ ବୀର ସାମରଥ ।
ସୁଖ ଭୋଗ ତେଜି ଏ ମୋହୋ
ସଂଗେ ଥାଏ
ଯତନେ ପଠିଆଇଲେ ଯେହାର ମାଏ ।
ଏ ତୁମ୍ଭଙ୍କୁ ନମସ୍କାର କରନ୍ତି ଯେ ବେନି
ଦେଖିଣ କଲ୍ୟାଣ ଯେ କଲେ ତପୋଧନୀ ।
ପାଦ ପଖାଳିବାକୁ ଜଳପାତ୍ର ଦେଲେ
ଆସନେ ବସାଇଣ ଗୋଉରୋବ
କଲେ ।୪୦
କନ୍ଦମୂଳ ଫଳ ଯେ ପରଷିଲେ ଆଣି
ତୃଷା ବଞ୍ଚିବାକୁ ଦେଲେ ଗଙ୍ଗା ପାଣି ।
ଭୋଜନ ସାରିଣ ଯେ ଆଚୋବନ କଲେ
ମହାଋଷି ଆଣି ହରିଡ଼ା ଫଳ ଦେଲେ ।
ସନିଧେ ବସାଇଣ ପଚାରନ୍ତି ମୁନି
କେମନ୍ତେ ବଞ୍ଚିବଟି ବନେଣ ତିନିପ୍ରାଣୀ ।
ବୋଲେକ ମୋହୋର ତୁ କରିବୁ କି ରାମ
ବାହୁଡ଼ି ଯିବା କି ତୋ ଅଯୋଧ୍ୟା ନିଜ ଗ୍ରାମ ।
ମୁହିଂ ନେଇ ତୋତେ ପିତାକୁ ସମର୍ପିବି
ଅବିଷେକ ବିଧାନ କରାଇ ଆସିବି ।୫୦
ଶ୍ରୀରାମ ବୋଇଲେ ମୁନି ନ ବୋଲ
ଏ ବାଣୀ
ସତ୍ୟ ଭଗ୍ନ ହୋଇବ ନା ଦଶରଥ
ନୃପମଣି ।
ସେ ମୋହୋର ପିତା ମୁହଂ ତାର ସୁତ
ତାହା ଶୁଭ କର୍ମ କି ମୋତେ ନୁହଇ ହିତ ।
ତୁ ଯେ ଧାର୍ମିକ ମୁନି ଅଟୁ ତପଶୀଳ
ଯାହା ଯେ ବୋଇଲୁ ଏ ବଚନ ବିଫଳ ।
ଏ କଥା ଛାଡ଼ି ତୁ ଆନ କହି ମୋତେ
ଶୁଣିଣ ସନ୍ତୋଷ ହୋଇଲେ ତପୋବନ୍ତେ ।
ଶ୍ରୀରାମକୁ ପ୍ରଶଂସା କରନ୍ତି ବହୁତ
ସାଧୁ ସାଧୁ ମହିମା ତୁ ଦଶରଥର ସୁତ ।୬୦

ତୋତେ କିମ୍ବା ବିଧାତା ବନବାସେ ପେଷଇ
ଏତେ ବୋଲି ମୁନି ଯେ ଧ୍ୟାୟେଣ ବସଇ ।
ଯୋଗେଣ ଜାଣିଲେ ଏ ବଇକୁଣ୍ଠବାସୀ
ଦେବତାଙ୍କର ଛଳେ ଅବତାର
ଏଥେଂ ଆସି ।
ବନେ ବୁଲିଲେ ସେ ଅସୁର ହୋଇ ମାରି
ଜାଣିଣ ସନ୍ତୋଷ ଯେ ହୋଇଲେ
ତପଚାରୀ ।
ଶ୍ରୀରାମକୁ ବୋଇଲେ ତୁ ନ ଭାଳିବୁ ମନେ
ସୁଖେ ବଞ୍ଚ ଯାଇ ଚିତ୍ରକୂଟ ବନେ ।
ଭାରିଯାକୁ ସଂଗେ ଅଛ ତୁମେ ଘେନି
ବିଘ୍ନ ଉପୁଜଇଟି ବୋଇଲେ ମହାମୁନି ।୭୦
ଚିତ୍ରକୂଟେ ଥିବୁ ତୁ ମୁନିବେଶ ହୋଇ
ତହୁଁ ଗଲେ ଶହସ୍ର ଧରିବୁ ରଘୁସାଇଂ ।
ପଛିମ ଦିଗେ ବାପ ଦକ୍ଷ ଗଣ ଥାନ୍ତି
ସେ କଥାକୁ ମନେ କରୁଥିବୁ ଭ୍ରାନ୍ତି ।
ପୂର୍ବ ଦିଗକରେ  ଗନ୍ଧର୍ବ ଆତଯାତ
ଏହା ତଇଥ କରି ଜାଣିଥା ରଘୁନାଥ ।
ଦକ୍ଷିଣ ଦିଗେ ଯେ ଅସୁରଙ୍କର ଭୂଇଂ
ତହିଂ ଅବିକ୍ଷଣେ ଥିବୁଟି ଶହସ୍ର ବହି ।
ଦଣ୍ଡକାଅରନ୍ୟେ ସୀତାକୁ ନ ଛାଡ଼ିବୁ
ଯେଣେ ଗଲେ ଏହାକୁ ସଙ୍ଗେ
ଘେନିଯିବୁ ।୮୦
ଗୋଦାବରୀ କୂଳେ ଯେ ପଞ୍ଚବଟୀ ବନ
ତହିଂ ବିହଡ଼ନ୍ତି ରାବଣର ସନ୍ୟ ।
ମାଲ୍ୟବନ୍ତ ପର୍ବତ ଯେ ଇସ୍କିନ୍ଧା ନାମେ ପୁରୀ
ବାଳୀ ନାମେ ବାନର ତହିଂର ଅଧିକାରୀ ।
ଏକଥା ବିଚାରିଣ ଥିବୁ ତୋର ମନେ
ଅଗସ୍ତି ଅଛନ୍ତିଟି ଥୋକାଏ ଦୂରବନେ ।
ସେ ତୋତେ ଯାବତ କହନ୍ତି ସିନା ତହିଂ
ସତ୍ୟ ବନେ ଶରଭଙ୍ଗ ଋଷିଛନ୍ତି ରହି ।
ଅତ୍ରୀ ମହାଋଷି ଛନ୍ତି ଅନୁସୂୟାକୁ ଘେନି
ଋଷିକୋଇଲା ପଶ୍ଚିମେ ଥାଆନ୍ତି ସେ
ମୁନି ।୯୦

ଶବର ଶବରୁଣୀଘାଟ ବନେ ଥାନ୍ତି
ସୁସ୍ୱାଦୁ ଫଳ ବିଷ୍ଣୁକୁ ଦେଖାଇ ଭୁଂଜନ୍ତି ।
ପିମ୍ପା ସରୋବର ପାଞ୍ଚକୋଶ ଥାଉଂ
କୋବନ୍ଧ ଅଛିଟି ପହୁକୀ ଜନ ଖାଉଂ ।
ଚିତ୍ରକୂଟ ଜିଣି ନିଶାଚର ପୁରି
ସେମାନେ ବାଟରେଟି କରନ୍ତି ହୁରି ଜୁରି ।
ପଞ୍ଚବଟୀ ବନରେ ପକ୍ଷୀଚଟା ଅଛି
ଗରୁଡ଼ ମହାତ୍ମାର ଅଟଇ ସେହୁ ବଛି ।
ରାବଣର ଭଏଣୀ ସୂପଲେଖା ନାମ
ମାୟା ରୂପରେ ସେ ଯାଚଇଟି
କାମ ।୧୦୦
ଏମନ୍ତେ ଅନେକ ଯେ ତିଆରିଲେ ଋଷି
ରଘୁନାଥ ତାହା ଶୁଣୁଛନ୍ତି ବସି ।
ରାତ୍ର ଅର୍ଦ୍ଧମାନେ ହୋଇଲା ଭାଳେଣି
ନିଦ୍ରାରେ ଅଶକତ ହୋଇଲେ ରଘୁମଣି ।
ପଣନ୍ତ ପାଡ଼ିଣ ସ୍ୱତୀ ଯେ ଭୂମିରେଣ ଶୋଇ
ଏ କଥାମାନ ସେ ନ ଶୁଣିଲା କାହିଂ ।
ମୁନି ଆଗ୍ୟାଂ ଦେଲେ ଶିଷ୍ୟଗଣ ରାଇ
କୃଷ୍ଣାଜିନ ଛାଲ ରାମଙ୍କୁ ଦିଅ ନେଇ ।
ମୃଗଛାଲେ ଶୟନ କରିବେ ବଇଦେଇ
ବ୍ୟାଘ୍ରଚର୍ମ ଉଚିତ ଲକ୍ଷଣଙ୍କୁ ହୋଇ ।୧୦
ଏତେ ବୋଲି ମୁନି ଭିତରକୁ ଗଲେ
ଶିଷ୍ୟଗଣ ଆସି ଛାଲ ସମର୍ପିଲେ ।
ଲକ୍ଷଣ ଶେଯ ପାଡ଼ି ସଜ କରିଗଲେ
ସୀତା ଘେନି ରାମ ତହିଂ ପହୁଡ଼ିଲେ ।
ଆପଣେ ସଉମିତ୍ରୀ ଶୋଇଲା ଛାଲ ପାଡ଼ି
ପଥଶ୍ରାନ୍ତ ଜାଣି ନିଦ୍ରାବଡ଼ ମାଡ଼ି ।
ଏଥିଅନନ୍ତରେ ରଜନୀ ପ୍ରଭାତ
ଶେଯ୍ୟା ଛାଡ଼ିଣ ଯେ ଉଠିଲେ ରଘୁନାଥ ।
ସୀତା ସହିତେଣ ଲକ୍ଷଣ ତିନି ଜଣ
ଋଷିଙ୍କର ଚରଣେ ସେ କରନ୍ତି ମାନ୍ୟ ।୨୦
ଭୋ ମୁନି ଯିବୁ ଆମ୍ଭେ ଆଗ୍ୟାଂ ଦେସି
ଶୁଣିଣ ଆପଣେ ଯେ ଉଠିଲେ ମହାଋଷି ।
ତିନିକରି ମୁଧୁନି ଯେ ଆଘ୍ରାଣ କରି

ଯମୁନା କୂଳଯାଏ ଗଲେ କଥାନ୍ତ ତିଆରି ।
ବୋଇଲେ କାଳନ୍ଦୀ ପାରି ହୋଇଯିବ
ସାମବଟ ଅଛି ବାଟରେ ଭେଟିବ ।
ସେ ବୃକ୍ଷର ତଳେ ଯାଇ ଉଭା ହୋଅନ୍ତେ
ବାଞ୍ଛାସିଦ୍ଧ ତୋର ହୁଅଇ ଯୁଗତେ ।
ଯାଅ ଯା ବାଟ ଏଥି ଅଛଇନା ପଡ଼ି
ଏତେ ବୋଲି ମୁନି ଆସନ୍ତି ବାହୁଡ଼ି ।୩୦
ହରିହର ଆଗକୁ ଯେସନେ ତୋଷ
ହୋଅଇ ଧାତା
ତେସନ ସଂଜାତ ଦିଶଇ ବ୍ରହ୍ମବେତ୍ତା ।
ନେଉଟି ବୋଇଲେ ଶୁଣ ହୋ ଲଇକ୍ଷଣ
ଏଠାକୁ ଚିତ୍ରକୂଟ ଅଟଇ ତିନି ଯୁଣ ।
ଆଜ ବାଟରେ ରହି କାଲି ପଛେ ଯାଅ
ଅତି ରମ୍ୟଥାନ ତହିଁ ଯାଇଂ ରହ ।
ଏତେ ବୋଲି ମୁନି ମଢ଼ିଆକୁ ଗଲେ
କାଳିନ୍ଦୀ ତୀରେ ରାମ ପ୍ରବେଶ ହୋଇଲେ ।
ଦେଖିଲେ ଭୟାଙ୍କାର ଅଟଇ ମହାନଦୀ
ଯମର ବହେଣୀ ସେ ଯେ ଜଗତ
ପ୍ରସିଦ୍ଧି ।୪୦
ଶ୍ରୀରାମ ବୋଇଲେ ହୋ ନାବ ଏଥି ନାହିଁ
କେବଣ ପ୍ରକାରେ ଯିବା ପାରି ହୋଇ ।
ନାବ ନାହିଁ ଏଥି ହୋଇଲା ସଙ୍କଟ
ପଥିକୀ ଜନ ଏଥି ନବହନ୍ତି ବାଟ ।
ଏ ମହାନଦୀ ଆମ୍ଭେ କେମନ୍ତେ ଯିବା ଛିଣି
ଲକ୍ଷ୍ମଣ ବୋଇଲେ ଯେ ଶ୍ରୀରାମ
ବଚନ ଶୁଣି ।
କିମ୍ପା ଦେବେ ତୁମ୍ଭେ କରସି ବିଚାର
ଭେଳାବାନ୍ଧି ସୁଖେ ହୋଇଯିବା ପାର ।
ଏତେ ବୋଲି ସଉମିତ୍ରୀ ବିପୁନ୍ୟେଣ ପଶି
ହାଥୀ ଭଂଗା କାଠ ଘେନି ମିଳିଲାକ
ଆସି ।୫୦
ଶିଆଳୀ ଲତା ଘେନି ବାନ୍ଧିଲାକ ଭେଳା
ପାଣିରେ ପକାଇଲା ସୁମିତ୍ରାର ବଳା ।
ଶ୍ରୀରାମକୁ ବୋଇଲା ବିଜେକର ଆସି

ରଘୁନାଥ ବୋଇଲେ ଆଗେ
ବଧୂ ଶୁଭ୍ରକେଶୀ ।
ଡରେ ଥରହର ଯେ କମ୍ପଇ ଜାନେକୀ
ଶ୍ରୀରାମ ହସନ୍ତି ସ୍ୱତୀର ଭଏ ଦେଖି ।
ହସ୍ତ ଧରି ଭେଳାରେ ବସାଇଲେ ନେଇ
ପ୍ରଭୁଙ୍କୁ କୋଳକରି ଧରିଛି ଚାନ୍ଦମୁହିଁ ।୬୦
ଲକ୍ଷ୍ମଣ ଶ୍ରୀରାମ ବସିଲେ ଦୁଇ ଭାଇ
ମଧ୍ୟରେ ବସିଲା ଯେ ସୀତା ଚନ୍ଦ୍ରମୁହିଁ ।
ଧନୁଧରି ଲକ୍ଷ୍ମଣ ବାହାଇ ବେଗ ଭେଳା
ଆବର ବାହାନ୍ତି ଯେ କଉଶଲ୍ୟାର ବଳା ।
ଧୀର ଧୀର ହୋଇ ହୋଇଲେ ନଦୀପାର
ଭେଳାରୁ ଓହ୍ଲାଇଲେ ଦଶରଥ କୁମର ।
ସୀତାର ଭୁଜ ଧରିଣ ଘେନିଯାନ୍ତି
ଦକ୍ଷିଣ କୂଳେ ରାମ ନିତ୍ୟକର୍ମ ସାରନ୍ତି ।
ସ୍ନାହାନ ଶୁଚିବନ୍ତ ହୋଇଣ ଚଳିଗଲେ
ଥୋକାଏ ଦୂରେ ସାମବଟ ଯେ ଦେଖିଲେ ।
ଧନ୍ୟ ମହିମା ସେ ଅଟଇ ବୃକ୍ଷ ଗୋଟି
କୋଶେ ପରିଯନ୍ତେ ଛାୟା ଅଛି
ଘୋଟି ।୭୦
ସୁବର୍ଣ୍ଣର ପରାୟେ ଯେ ଦିଶଇ ତାର ତେଜ
ପବିତ୍ର ପତ୍ରମାନ ଜାଣି ବଇଦୁର୍ଯ୍ୟ ।
ଅଷ୍ଟ ଅଇଶ୍ୱର୍ଯ୍ୟ ମନାସିଲେ ପାଇ
ତହିଁର ତଳେ ଯାଇ ରାମଚନ୍ଦ୍ର ହୋଇ ।
ବଟକୁ ଦେଖିଣ ଯେ ପ୍ରଶଂସନ୍ତି ରାମ
ଧନ୍ୟ ଧନ୍ୟ ବୃକ୍ଷ ତୋହୋର ମହାତମ ।
ଅକ୍ଷବଟରେ ତୁ ଅଟୁରେ ମୂର୍ତ୍ତିନି
ଜଗତହିତେ ତୋତେ ଆଣିଲେ ପଦ୍ମଯୋନି ।
ତୋହୋର ତଳେ ବସି ସାଧିଲାକ ଯୋଗ
ତେଣୁ ସେ ବ୍ରହ୍ମପଦ କରଇ
ବଇଭୋଗ ।୮୦
ତୁ ମୋତେ ପ୍ରସନ ହୋଅସି ବୃକ୍ଷରାଜ
ମୁହିଁ ତୋହର ଶରଣ ପଶୁଅଛି ଆଜ ।
ଏତେ ବୋଲି ରାମ ବଟ ପୂଜା କଲେ
ଷୋଡ଼ଶ ପ୍ରକାରେ ଭଗତି ହୋଇଲେ ।

ବାଞ୍ଛାକଲେ ସେ ଯେ ବୃକ୍ଷର ତଳେ ଥାଇ
ଶ୍ରୀରାମ ବୋଲନ୍ତି ଯେ ସୀତା ମୁଖ ଚାହିଁ ।
ଭୋ ମହାସ୍ୱତୀ ଏ ଅଟଇ ସାମବୃକ୍ଷ
ବାଞ୍ଛାକଲେ ଫଳ ଫଳଇ ପ୍ରତକ୍ଷ ।
ଭାରଦ୍ୱାଦଶ ମୁନି ଯାହା ସେ କହିଲେ
ମନାସିଲା ଫଳ ଏଥି ପାଇଟି
ବୋଇଲେ ।୯୦
ଏବେ ଗୋ ଜାନେକୀ ଯେ ତୋହୋର ଇଚ୍ଛା
ବୃକ୍ଷ ତଳେ ଥାଇ କରସି ତୁ ବାଞ୍ଛା ।
ଶୁଣି ମହାସ୍ୱତୀ ବଟତଳେ ଯାଇ ମିଳି
ନମସ୍କାର କରିଣ ଯେ ମନାସଇ ବାଳୀ ।
ବୋଲଇ ତୁ ଯେବେ ଅଟୁ ବଟ ସିଦ୍ଧ
ସ୍ୱାମୀ ମୋର ରାଜା ହୋନ୍ତୁ ତ୍ରିଭୁବନ ମଧ୍ୟ ।
ବିଧବା ଗଣିତାରେ ନୋହିବଇ ମୁହିଁ
ଯୁଗେ ଯୁଗେ ଥିବି ମୁଁ ଷୋଡ଼ଶୀରୂପ ବହି ।
ଶାଶୁ ଶ୍ୱଶୁର ଯେ କ୍ଷେମେଣ ବ୍ରତୀ ଥିବେ
ଦିଅରମାନେ ମୋର ନୃପତି
ହୋଇବେ ।୧୦୦
ଅଯୋଧ୍ୟା ରାଜ୍ୟ ଆମ୍ଭର କୁଶଳେଣ ଥାଉ
ପିତା ମୋହୋର ପରମବ୍ରହ୍ମ ଭେଟ ପାଉ ।
ଏତେ ବୋଲି ସତୀ ମାଗିଲେକ ବର
ଶୁଣିଣ ଶ୍ରୀରାମ ଯେ ହସନ୍ତି କରକର ।
ଏଥୁ ଅନନ୍ତରେ ଯେ ତହୁଂ ଚଳିଗଲେ
ନୀଳବନେ ଯାଇ ପ୍ରବେଶ ହୋଇଲେ ।
ଦିବସେ ଅନ୍ଧାର ଯେ ଦିଶଇ ବିପୁନ୍ୟ
ତହିଁ ଯାଇ ଆଶ୍ରମ କଲେ ତିନିଜଣ ।
ସେହି ଯମୁନାର ନିକଟରେ ରହିଲେ
ମୃଗ ମାରିଣ ସେ ଶ୍ରୀରାମଚନ୍ଦ୍ର ଗଲେ ।୧୦
ଲକ୍ଷଣ ସୀତୟା ବନସ୍ତେ ବସିଥାନ୍ତି
କୃଷ୍ଣାଜିନ ବିନ୍ଧି ଶ୍ରୀରାମ ଆଣନ୍ତି ।
ସେ ମୃଗ ଲକ୍ଷଣ କେଳାଇଲା ନେଇ
ପାଗ ସମ୍ପାଦିଲେ ଶରଦ ଚନ୍ଦ୍ରମୁହିଁ ।
ଦେବ ପିତ୍ରେ ଦେଇ ବାହିଜ୍ୟ ବଳିଦେଲେ
ଶ୍ରୀରାମ ଲକ୍ଷଣ ତହୁଂ ଭୁଂଜିଣ ବସିଲେ ।

ସୀତା ପରଷଇ ସୁପକ୍ୱ ମାଂସ
ମଣୋହି ସାରିଣ ବେନି ଭାଇ ତୋଷ ।
ଆଞ୍ଚୋବନ ସାରି ସେ ହରିଡ଼ା ଫଳ ଖାଇ
ଶ୍ରୀରାମର ପତ୍ରେ ଯେ ବସଇ
ବଇଦେହୀ ।୨୦
ଭୋଜନ ସାରିଣ ଯେ ଉଠିଲେକ ଧାତି
ଆଞ୍ଚୋବନ ସାରି ଯେ ମିଳିଲେ ପ୍ରଭୁ କତି ।
ହରିଡ଼ା ଖଣ୍ଡିଏକ ଶ୍ରୀରାମ ଦେଲେ ନେଇ
ତାହା ଭୁଂଜିଲେ ଦେବୀ ତୋଷ
ମନ ହୋଇ ।
ଖିଆଳି ପତ୍ର ଯେ ଆଣିଲା ଲକ୍ଷଣ
ଶ୍ରୀରାମକୁ ଶେଯ ଯେ ପାଡ଼ିଲା ତତକ୍ଷଣ ।
ଥୋକାଏକ ଦୂରେ ଆପଣାକୁ ଠାବ କଲେ
ଧନୁ ଶସ୍ତ୍ର ଘେନି ଯେ ଯାମିନୀ ବଞ୍ଚିଲେ ।
ଶ୍ରୀରାମ ଜାନେକୀ ଯେ ଶୋଇଲେ
ବେନିଜନ
ପଥଶ୍ରାନ୍ତେ ନିଦ୍ରା ଘାରିଲା ବହନ ।୩୦
ଏଥୁ ଅନନ୍ତରେ ପାହିଲାକ ରାତି
ନିତ୍ୟକର୍ମ ସାରି ତହୁଂ ଚଳିଯାନ୍ତି ।
ଚିତ୍ରକୂଟ ପର୍ବତ ତହିଂକି ପାଞ୍ଚକୋଶ
ସାତ ଘଡ଼ିମାନେ ତହିଂ ହୋଇଲେ
ପରବେଶ ।
ଦେଖିଲେ ପର୍ବତ ଅତିଅ ସୁସଞ୍ଚ
ମଞ୍ଚକଇ ସ୍ୱର୍ଗ ସେ ସ୍ୱର୍ଗକଇ ମଞ୍ଚ ।
ଅତି ମହାଗରୁ ଯେ ବଇକୁଣ୍ଠ ସମ
ଦେଖିଣ ଆନନ୍ଦ ଯେ ହୋଇଲେ ଶ୍ରୀରାମ ।
ବାବୁ ଏ ପାଷାଣ ପଟାନ୍ତର ନାହିଂ
ସୁବର୍ଣ୍ଣ ଜାତ ହୋଇଅଛି ଯହିଂ ।୪୦
କେବଣ ଠାବରେ ଯେ କଂସା ଉତପତି
କାହିଂ ଲୁହା କୂଢ଼ ଝଡ଼ିଣ ପଡ଼ନ୍ତି ।
କାହିଂ ହୀରା କାହିଂ ପୋଯେଳା ଉପୁଜଇ
କେବଣ ପଥର ନୀଳବର୍ଣ୍ଣ ଦିଶଇ ।
କାହିଂ ମାଣିକ କାହିଂ ହୀରାଜାତ
କାହିଂ ପୁଷ୍ୟାରାଗ କାହିଂ ମରକତ ।

କାହିଂ କୁରୁବିନ୍ଦ କାହିଂ କାଚମାଟି
କାହିଂ ସଟିକ କାହିଂ ହରିତାଳ ଉକୁଟି ।
କାହିଂ ମଣିଶିଳ କାହିଂରେ ହିଙ୍ଗୁଳ
କାହିଂ ରଂଗ କାହିଂ ଦିଶଇ କଜ୍ଜ୍ୱଳ ।
କାହିଂରେ ହିଙ୍ଗୁଳ କାହିଂ ଟାଙ୍ଗଣା ସଂଜାତ
କେବଣ ଠାବରେ ପଞ୍ଚବର୍ଣ୍ଣ ଶିଳାଜାତ ।
କେବଣ ପଥର ଯେ ଦର୍ପଣ ସରିଖ
ଭିନ୍ନ ଭିନ୍ନ ପାଷାଣ ଦିଶଇ ରେଖ ରେଖ ।
କେବଣ ଯେ ଶିଳ କୁଙ୍କୁମର କାନ୍ତି
କେବଣ ଠାବରେ ନୀଳବନ ଜୋତି ।
କାହିଂ ଉର୍ଦ୍ଧକଇ ବଢ଼ିଥାଏ ପୃଥ୍ୱି
ପର୍ବତକଇ ଶୋଭା ଦିଶଇ ସେହିମତି ।
ପାରିଜାତେକ ପୁଷ୍ପ ଅଛନ୍ତି ପନ୍ତି ପନ୍ତି
ନାଗେଶ୍ୱର କରୁଣା ଯେ କଦମ୍ବ
ଅଛନ୍ତି ।୬୦
ପାଟେଳି ପାଳଧୁଆ ଶିମୁଳି ମନ୍ଦାର
ତରାଟ କାଞ୍ଚନ ଯେ ରଙ୍ଗଣୀ କଣେଆର ।
କାହିଂ ଛୁରିଅନା ଯେ ପୁନାଙ୍ଗ ବକୁଳ
ଚମ୍ପା କସ୍ତୁରୀ ଯେ ଓଶେକ ମାଳମାଳ ।
ଜାଇ ଯୂଈ ତୁଳସୀ ବଗହୁଲ ମଲ୍ଲୀ
ଦଏଣା ମରୁଆ ଯେ କୁନ୍ଦ କରୁବେଲି ।
ବଧୁକ ତୁଳସୀ ଯେ କେତକୀ ଅନୁପାମ
କନେକ ଦୁଦୁରା ଯେ ବାସଙ୍ଗ ଜାମ୍ବୁ ଲିମ୍ବ ।
ଅଏଂଳା ହରିଡ଼ା ଭାଲିଆ ପିଆଶାଳ
କରଞ୍ଜ କଣ୍ଟାକୁରୁଆ ବରୁଣ ତାଳ ।୭୦
ଭଇଞ୍ଚ ଡିମ୍ବିରି ଯେ ପଣସ କେନ୍ଦୁକସି
ମଞ୍ଜାରୀ ଶିରିଷା ଯେ ସୁନାରି ବେଲ ମିଶି ।
ଆମ୍ବ ଦାରାକ୍ଷ ଯେ ଖଜୁରୀ ଓଶସ୍ତ
ବଟ ଗଛମାନେ ଅଛନ୍ତି ବହୁତ ।
ଜୟନ୍ତୀ ଶ୍ରୀଫଳ କେନ୍ଦୁଟ ବରୁଣ
କଇଥ କରମଙ୍ଗା ଯେ ଶାଳ ଆମ୍ବ ବଣ ।
ପାଣି ଅୟେଂଳା ଯେ ବଡ଼ ଜାମ୍ବୁ ତରୁ
ଆଙ୍କୁଆ କୋଳି ସଂଚପି କେ କରୁ ।
ଶିଙ୍ଗଡ଼ା ବଂଇଚ ଗୁଳିତା ଲତାମାନ

ନବଙ୍ଗ ପିପ୍ପଳି ଯେ ମରିଚ ବନେ
ବନ ।୮୦
ଜାଇଫଳ ଗଛ ଅଛଇ ପନ୍ତି ପନ୍ତି
ଚନ୍ଦନ ଗଣ୍ଠିଅନା ଗୁଗୁଳ ଅଛନ୍ତି ।
କଞ୍ଚଣ କୋରୋହା ହିଞ୍ଜୋଳ ଧରୋହ
କାହିଂ ନାଗିଅଛି ଯେ କେତକୀ ସମୂହ ।
ଶୁକଳ ଉତ୍ପଳ ଅଛି କାହିଂ ଫୁଟି
କେବଣ ଠାବେ ଅଛି ଅଳାଇଚ ଉଠି ।
କାହିଂ କାକୋଳା କାହିଂ ତେଜପତ୍ର
ଯେସନେକ ବିପ୍ରନ୍ୟ ଦିଶଇ ବିଚିତ୍ର ।
ସିଂହ ଗଜ ଭଲ୍ଲୁକ ପନ୍ତି ପନ୍ତି
ମୃଗ ଶାର୍ଦ୍ଦୂଳ ଯେ ମଇଂଷି ଅଛନ୍ତି । ୯୦
ଗଣ୍ଡା ଗୟଳ ଯେ ମହାସର୍ପ ମୃଗ
ହରିଣୀ ବାହୁଟିଆ ଚରନ୍ତି ଏକ ସଙ୍ଗ ।
ବଣଗୋରୁ ମଂଜାରୀ ଖୁରାଣ୍ଟି ବଳେଆ
ଶଶା ସଏମ୍ବର କୁରଙ୍ଗୀ ଶାଳେହା ।
ନେଉଳ ଶ୍ରୀକାଳ ଯେ ଭିନ୍ନ ଭିନ୍ନ ଜାତି
ହାଥୁଣୀକି ଗୋଡ଼ାଇ କାହିଂ ଯାଉଅଛି ହାଥୀ ।
ତାହାଙ୍କରେ ପଛେ ଯେ ପଳାଶଇ ବାଘ
ଗଜଧାତୁକୁ ସେ ଏହାର ସରାଗ ।
ଏହା ଭକ୍ଷନ୍ତେ ସେ ହୋଇବ ମହାବଳ
ତେଣୁ ସେ ନଛାଡ଼ନ୍ତି ହାଥୀଙ୍କର
ମେଳ ।୧୦୦
ଶୁକଶାରୀ ରାବ ଦିଅନ୍ତି ଘନ ଘନ
କୋକିଳ ଭାଷନ୍ତି ଜାଣିଣ ମଧୁବନ ।
କଣ୍ଠା କୁମ୍ଭାଟୁଆ ଯେ ମୟର ତିତିରି
ବଗ ଶାମଳ ଯେ ଗୁଣ୍ଡୁଚି ଆଦି କରି ।
ସାରଙ୍ଗା ସାରେଆ ଉଲ୍ଲୁକ ଶାଗୁଣା
କୁକୁଟ ଚାତକ ପଙ୍କମା ବଢ଼ିଣା ।
ତେଣ୍ଟୋଇ କାପରଖାଇ ପାଣିକୁଆ
ଖରା ହଂସରାଳି କାମ ଗେଣ୍ଡାଳିଆ ।
ଚକୋଆ ଚକୋଇ ପାତିଶୁଆ ଛନ୍ତି
ନୀଳକଣ୍ଠ ଚଢ଼ଇ ଯେ ଛନ୍ତି ପନ୍ତି ପନ୍ତି ।୧୦
କଜଳପତିଆ ଯେ ଶାରୀଶୁଆ ପକ୍ଷୀ

ବାଦେଡ଼ି ଅଛନ୍ତି ଯେ ତେନ୍ତୁଳି ଗଛେ ଲାଖି ।
ତେଣ୍ଟେଇ ପାରୋଆ ଯେ କାପତା ଭରଥିଆ
ଫିମ୍ପେଡ଼ିଆ ଗୋବରା କୃଷ୍ଣ ବନ ଶୁଆ ।
କେଶର ପାଣ୍ଡିଆ ଯେ ବିହଙ୍ଗମ ଚିଲ
ସଞ୍ଚାଣ ସୋଣେହା ଶାମଳ ପଲ ପଲ ।
ମଦାଅଗ୍ନି ନଦୀ ବହଇ ଝର ଝର
ପଦ୍ମବନ ତହିଁ ଅଛଇ ଅପାର ।
କାହିଁ ଉତ୍ପଳ କାହିଁ ଶିଉଳି ଅଛି ଫୁଟି
ରଂଗ କୁମୁଦ ଯେ କେବଣ ଠାବେ
ଉଠି ।୨୦
ସିଙ୍ଗଡ଼ା ସାଲୁକଙ୍କ ରଙ୍ଗ କାହିଁ
ପର୍ବତ ଶିଖରେ ନଦୀ ଯାଉଅଛି ବହି ।
କୂଳରେ ବୃକ୍ଷ ଯେ ଦିଶନ୍ତି ପନ୍ତି ପନ୍ତି
ଜଳେ ଜଳଚର ଜନ୍ତୁ ଚଢ଼େଇ ବୁଡ଼ନ୍ତି ।
ବିବିଧ ସୁସ୍ୱାଦ ଯେ ଅଛଇ ଚାରୁଫଳ
ଦେଖିଣ ଆନନ୍ଦ ଯେ ଦଶରଥଙ୍କର ବାଳ ।
ଲକ୍ଷଣ ବୋଇଲା ଦେବ ଏ ସ୍ଥାନ
ବଡ଼ ସୁଖ
ଏଥେ ରହି ଆମ୍ଭେ ହରିବାକ ଦୁଃଖ ।
ଏତେ ବୋଲି ଗିରି ଶିଖକୁ ଯାଆନ୍ତି
ପବିତ୍ର ମଧ୍ୟ ସ୍ଥାନ ଯେ ଦେଖିଣ
ରହନ୍ତି ।୩୦
ଶାଳଗଛ ତଳେ ସୀତ୍ୟାଙ୍କୁ ବସାଇ
ହାଥୀ ଭଙ୍ଗାକାଠ ଆଣନ୍ତି ଦୁଇ ଭାଇ ।
ଖଣନ୍ତି ଘେନିଣ ଖୋଳନ୍ତି ତହିଁ ଗାତ
ଖମ୍ୱପୋତି ଶେଣୀ ବାନ୍ଧନ୍ତି ରଘୁନାଥ ।
ଗୁଅ ନଦିଣ ବାନ୍ଧିଲେ ନଇ ବତା
ପତ୍ର ଛାଏଣିରେ ଘର କଲେ ଶସ୍ତା ।
ଲକ୍ଷଣଙ୍କୁ ଭିନେ ମଢ଼ିଆଏ ତୋଳିଦେଇ
ଘରେ ପଶି ଚରଚା କରଇ ବଇଦେହୀ ।
ରାମ ବୋଇଲେ ଭୋ ଲକ୍ଷଣ ବେଗେ ଯାସି
ବେଗ କରି ମୃଗ ମାରିଣ ଆଣସି ।୪୦
ଦେବ ପିତୃ ତୋଷି କରିବା ଆହାର
ଶୁଣିଣ ଧନୁ ଘେନି ଯେ ଲକ୍ଷଣ ବାହାର ।

କେତେହେଂକ ଦୂରେ ଦେଖିଲେ କୁରଂଗ
ଏକା ଚରୁଅଛି ଆନ ନାହିଁ ସଂଗ ।
ତତକ୍ଷଣେ ନାରାଜ ପୂରାଇ ବିନ୍ଧିଲା
କନ୍ଧରୁ ଛିଡ଼ି ମୃଗ ପ୍ରାଣ ଛାଡ଼ିଗଲା ।
ଭାରକରି ଲକ୍ଷଣ ଅଇଲା ତାହା ଘେନି
ଦେଖିଣ ସନ୍ତୋଷ ଯେ ଶ୍ରୀରାମ
ସୀତ୍ୟା ବେନି ।
ଆପଣେ ରଘୁନାଥ ଯେ କେଳାଇଲେ ମୃଗ
ସୀତ୍ୟା ରନ୍ଧନ କଲେକ ନେଇ
ବେଗ ।୫୦
ମଦାଅଗ୍ନି ନଦୀରେ ସ୍ନାହାନ ରାମ କରି
ଚାରୁ ନିର୍ମଳ ଯେ ପବିତ୍ର ଶୁଦ୍ଧ ବାରି ।
ଦେବ ପତ୍ର ତ୍ରପଣ କରିଣ ଆସନ୍ତି
ପୁରଂଚାନ୍ଦିଆ ଫଳ ନିତି ପିଣ୍ଡ ଦ୍ୟନ୍ତି ।
ନଦୀ ତୀରେ ଯାଇ ପିତୃଶ୍ରାଦ୍ଧ କଲେ
ମଢ଼ିଆରେ ଆସି ବାହିଜ ବଳି ଦେଲେ ।
ଦେବ ପିତୃ ତୋଷିଣ ଭୁଞ୍ଜିଣ ବସନ୍ତି
ଦୁଇ ଭାଇକି ମାଂସ ପରଷଇ ସ୍ୟତୀ ।
ଉଦର ତୋଷିଣ ଯେ ଆଚୋବନ ସାରି
ଶ୍ରୀରାମର ପତ୍ରେ ସୀତ୍ୟା ବସିଲା
ଭୋଜନ କରି ।୬୦
ଆଚୋବନ ସାରିଣ କଷା ଫଳ ଖାଇ
ରଜନୀ ପହରକେ ଶୁତିଲେ ରଘୁସାଇଂ ।
ଲକ୍ଷଣ ଜଗଇ ହୋଇଣ ପାହାରୀ
ଶୁଣ ଗୋ ଗଉରୀ କହନ୍ତି ଶୂଳଧାରୀ ।
ରାତ୍ର ପାହିଲା ଯେ ଉଠିଲେ ରାମ ସୀତ୍ୟା
ଯେ ବିଧିବିଧାନ ଯେ କରନ୍ତି ଗୃହ ଚିନ୍ତା ।
ଏମନ୍ତେଣ ତହିଁ ଶ୍ରୀରାମ ଦିନ ହରି
ଏଥିର ଉତ୍ତାରେ ଗୋ ଶୁଣ ଶାକେମ୍ୱରୀ ।
ସୁମନ୍ତ ଯେ ବାଟରୁ ବାହୁଡ଼ିଣ ଗଲା
ରଥ ଘେନି ଯାଇ ଅଯୋଧ୍ୟା ପାଇଲା ।୭୦
ତିନିଦିନେ ପ୍ରବେଶ ହୋଇଲାକ ଯାଇ
ବାରତା ପାଇଣ ସର୍ବ ଲୋକେଛନ୍ତି ଧାଇଂ ।
ତୁଚ୍ଛା ରଥ ଦେଖି ସମସ୍ତେ ମୋହ ଗଲେ

ରାମ ନାମ ଧରି ଅନେକ ଶୋକ କଲେ ।
ବୋଇଲନ୍ତି ଆଶ ଆମ୍ଭେ କରିଥିଲୁ ତୋତେ
ସୁମନ୍ତ ଛାଡ଼ି ଅବା ଆସିବ କେମନ୍ତେ ।
ସେ ସେ ମହାମନ୍ତ୍ରୀ ଜାଣଇ ସର୍ବବୁଦ୍ଧି
ରାମଙ୍କୁ ବାହୁଡ଼ାଇ ଆଣିମ ପ୍ରବୋଧି ।
ଆହୋ ସୁମନ୍ତ ତୁ ଏମନ୍ତ ବୁଦ୍ଧି କଲୁ
ରଘୁନାଥଙ୍କୁ ଛାଡ଼ି ତୁ କିମ୍ପାଇ ଅଇଲୁ ।୮୦
କିସ ଦେଖିବୁ ବୋଲି ଆସିଅଛୁ ଧାଇଂ
ରାଘେବର ସଂଗେ କିମ୍ପା ନଗଲୁ ଗୋଡ଼ାଇ ।
ପୁତ୍ର ଭାରିଯାର ଚାହିଁବୁ ଏବେ ମୁଖ
ଶ୍ରୀରାମ ଲକ୍ଷ୍ମଣ ପାଇବେ ବନେ ଦୁଃଖ ।
ଭୃଥକୁ ସେବା ତୁ କରି ତ ଅଇଲୁ
ବେଗ ବେଗ ହୋଇ ବିପୁନ୍ୟେ ପଳାଇଲୁ ।
ଧିକ ହେଉ ତୋର ମନ୍ତ୍ରୀବର ପଣ
ଏ ଦେହ ରଖିବୁ ଯେ କେବଣ କାରଣ ।
ଲୋକଙ୍କର ନିରାଶ ବଚନ ବାକ୍ୟ ଶୁଣି
ପ୍ରବୋଧନା କରଇ ଯେ ମନ୍ତ୍ରୀ
ଚୂଡ଼ାମଣି ।୯୦
ତୁମ୍ଭେ ନ ଜାଣିଣ ଯେ ମୋତେ ମନ୍ଦ ବୋଲ
ରାମର ସତ୍ୟ ଯେ ବାରାନିଧିର ତୁଲ ।
ସେ କିମ୍ପା ସତ୍ୟ ଯେ ଲଂଘିବେ ଦାଶରଥି
ବାହୁଡ଼ି ଚଉଦ ବରଷେ ଆସିବେ ସେ ଏଥି ।
ପିତାର ସତ୍ୟ ସେ ନ ଲଂଘିବାର ବ୍ରତ
ରାଜ୍ୟ ଛାଡ଼ିଣ ସେ ଗଲାକ ବନସ୍ତ ।
ସେ କିମ୍ପା ମୋହୋର ବୋଲେ ବାହୁଡ଼ିବ
ସତ୍ୟବନ୍ତ ପୁରୁଷ ଯେ ଅଟଇ ରାଘେବ ।
ଏତେ ବୋଲି ତହୁଁ ଗଲେକ ମନ୍ତ୍ରୀବର
ପ୍ରବେଶ ହୋଇଲେ ଯାଇ ରାଜାର
ନବର ।୧୦୦
ରଥୁ ଓହ୍ଲାଇଣ ଭିତରକୁ ଯାଇ
ଦଶରଥ ନୃପତିକି ଦ୍ରଶନ କରଇ ।
ଶିରେ କର ଦେଇ କହଇ ବାରତ
ଗଂଗା କୂଳେ ଛାଡ଼ି ଅଇଲି ରଘୁନାଥ ।
ବଟ କ୍ଷୀର ଘେନି ରାମ କେଶ ଜଟାକଲେ

ସନ୍ନ୍ୟାସ ବ୍ରତ ବିଧିବିଧାନ ଘେନିଲେ ।
ମୋହୋର ଦେଖୁ ଦେଖୁ ଗଲେ
ଗଙ୍ଗା ପାରିହୋଇ
ଶୁଣିଣ ରାଏ ଢଳି ପଡ଼ିଲାକ ଭୂଇଁ ।
ସୁମନ୍ତ ତୋଳିଯାଇ ଧଇଲା ନୃପବର
ମୁଖେ ସିଞ୍ଚିଲା ଯେ ଶୀତଳ ବାରି
ନୀର ।୧୦
ରତ୍ନ ବିଞ୍ଚଣୀ ଯେ ଘେନିଣ ବିଞ୍ଚନ୍ତି
ଶ୍ୱେତ ଚାମର ଯେ ଅନେକ ଢାଳନ୍ତି ।
ଅନ୍ତେସ୍ୱରେ ରାଣୀ ଯେ କରନ୍ତି ରୋଦନ
ଥୋକାଏକ ବେଳେ ରାଜା ପାଇଲା
ଚେତନ ।
ଏସନେକ ସମୟେ ଯେ ଆଦିତ ଅସ୍ତ ଗଲା
ନୃପତି ଯାଇ ବଡ଼ ଶେଯରେ ପହୁଡ଼ିଲା ।
ପାତ୍ର ମନ୍ତ୍ରୀମାନେ ଯେ ଯାହା ଘରକୁ ଯାନ୍ତି
ବଇଶାଖ ଶୁକଳ ଯେ ଦଶମୀ ଅର୍ଦ୍ଧରାତି ।
ମୁଦୁସୁଲୀ କି ଚାହିଁ ବୋଲେ ନୃପବର
କଉଶୁଲା ମହାଦେଈ କି ମୋ କତିକି
ହକାର ।୨୦
ଶୁଣି ପରିବାରୀମାନେ ରାଣୀକି ରାଇ ନ୍ୟନ୍ତି
ଦଶରଥ ରାଜାର ଯେ ସନ୍ନିଧେ କରନ୍ତି ।
ନୃପତିକି ଦ୍ରଶନ କରିଣ କଉଶୁଲା
ଚରଣ ଚାପିବ ବୋଲି ପଲଙ୍କେ ବସିଲା ।
ରାଜା ବୋଇଲା ତୁ ଶୁଣରେ ସୁନ୍ଦେରୀ
ବୋଲୁ ଯେ ରାମ କିମ୍ପା ନୋହିଲା
ଦଣ୍ଡଧାରୀ ।
କାଳେଣ ଏତେ ଦୂରକୁ କଥା ଗଲା
ଏତେ କାଳେ ଧାତା ଏହା ମୋତେ କଲା ।
ଶୁଣ ସଖୀ ଆରେ ପୂର୍ବର କାହାଣୀ
ପ୍ରଥି ବିଭା ତୋତେ ହୋଇଲିରେ
ରାଣୀ ।୩୦
ସେଦିନ ପିତା ମୋତେ ଯେ ଯୁଗରାଜା କଲା
ରାଜ୍ୟ ଭାର ଦେଇ ନିଚିନ୍ତ ହୋଇଲା ।
ମୃଗୟା ବିନୋଦ ଯେ କରଇ ମୁଇଁ ନିତି

ସରଯୁ କୂଳେ ଦିନେ ଗଲି ନିଶାରାତି ।
କୋମଣ୍ଡଳେ ପାଣି ଯେ ପୂରାଉଅଛି ଯତି
ଏସନ ସମୟେ ବାଣ ବିନ୍ଧିଲି ମୁହିଁ ଧାତି ।
ହସ୍ତୀ ପ୍ରାୟେ ମଣି ମୁଂ ବିନ୍ଧିଲି ନାରାଜ
ବାଣ ଘାତେ ପଡ଼ିଲା ଯେ ଋଷିର ତନୁଜ ।
ପିତାମାତା ସୁମରି ଯେ ଲୋଟିଲା ଧରଣୀ
ମୁହିଁ ଧାଇଂ ଗଲି ଯେ ମନିଷ୍ୟ ଧ୍ୱନି
ଶୁଣି ।୪୦
ବ୍ରହ୍ମ ହତ୍ୟା ବୋଲିଣ କଲଇ ମୁହିଁ ଭୟେ
ମୋତେ ବୋଇଲା ସେ ଋଷିର ତନୟେ ।
ଯାଅ ତୁ ଧନୁଧର ନ କର କିଛି ଭୀତି
ବାପ ବ୍ରାହ୍ମଣ ମୋର ମାତା ଶୂଦ୍ର ଜାତି ।
ଦୁଇଜଣ ଅନ୍ଧ ସେ ନ ଦିଶଇ ପଥ
ଏବେ ତିନି ହତ୍ୟା ବସାଇଲୁ ମାଥ ।
ଏ ତୋହର କାଣ୍ଡରେ ଜଳୁଅଛି ଦେହ
ମାତା ପିତାଙ୍କୁ ମୋ ବେଗେ ଯାଇଂ କୁହ ।
ତାହା ଶୁଣିଣ ଯେ କାଢ଼ିଲଇଂ ଶର
ଦେହରୁ ପ୍ରାଣ ଛାଡ଼ିଗଲା ତାହାର ।୫୦
ଦେଖିକରି ବିକଳ ଯେ ହୋଇଲଇଂ ମୁହିଁ
ପିଅର ଜନନୀ କି କହିଲଇଂ ଯାଇ ।
ଶୁଣିଣ ଶୋକ ସେ ଯେ କଲେ ବେନି ଜନ
ମୋହୋର କାନ୍ଧ ଧରି ସେ ଯେ
କରନ୍ତି ଗମନ ।
ପୁତ୍ରକୁ ଆଉଂଶି ବହୁତ ଶୋକ କଲେ
ଅଗ୍ନି କୁଢ଼ାଅ ବୋଲି ମୋତେ
ସେ ବୋଇଲେ ।
ପୁତ୍ରକୁ ସଂସକାର କରିବା ପ୍ରାୟେ ବୁଝି
ଶୁଖିଲା କାଠ ମୁଂ ଯେ ଆଣିଲଇଂ ଭାଜି ।
ଦ୍ରୋଣ ଅଗ୍ନିରେ ଦହିଲଇଂ ଯହୁଂ
ପ୍ରଚଣ୍ଡ ହୁତାଶନ ଜଳିଲାକ ତହୁଂ ।୬୦
ପୁତ୍ର ଘେନି ବେନି ଜନେ ଅଗ୍ନିରେ ପଶିଲେ
ମରିବାର ବେଳେ ମୋତେ ଶାପ୍ୟ
ଦେଇଗଲେ ।
ବୋଇଲେ ପୁତ୍ର ନ ଦେଖି ତୁ ଯେ ମର

ଦେବଦୂତେ ତାକୁ ନେଲେ ସ୍ୱର୍ଗପୁର ।
ସେ କଥା ଗୋଟି ମୁଂ ଯେ ମନରେ
ଥାଇ ଧରି
ସେକଥା ଏତେ କାଳେ ହୋଇଲାରେ
ନାରୀ ।
ମୁଇଂ ମରିବଇ ନ ଧରଇ ଜୀବନ
ରାମ ନାମ ସୁମରଣା କଲାକ ରାଜନ ।
ମୋହେ ପଡ଼ିଲାକ ସେ ମୁହଂ ମାଡ଼ି ଶୋଇ
ପ୍ରାଣ ଦେହରୁ ତାର ଗଲାକ ବାହାର
ହୋଇ ।୭୦
ଶ୍ରୀରାମ ଗଲାର ଛଡ଼ ଦିବସ ରୟଣୀ
ଦେହ ଛାଡ଼ି ଗଲାକ ଦଶରଥ ନୃପମଣି ।
କଉଶୁଲା ନ ଜାଣଇ ଦଶରଥର ମରଣ
ରାଜାକୁ ବହୁତ କରଇ ତିଆରଣ ।
ବୋଇଲା ସ୍ୱାମୀ ନ ଜାଣିଲ ତୁମ୍ଭେ କିଛି
ଶ୍ରୀରାମ ପରାୟେ ପୁତ୍ର ମୋହୋର
କାହିଂ ଅଛି ।
ଚନ୍ଦ୍ର ସୂର୍ଯ୍ୟ ସହିତେ ତାରାଗଣମାନ
ଗ୍ରହମାନେ ଆକାଶରେ ହୋଉଥାନ୍ତି ମଳିଣ ।
ରାମ ମନକଲେ ତାରା ମଞ୍ଚକୁ ପାରଇ ଆଣି
ଏକା ନାରାଜକେ ପକାଇବ ହାଣି ।୮୦
ତେଜବୀର୍ଯ୍ୟ ପଣେ ଅଟଇ ଯେବଣ ବଛି
ତୋହୋର ବୋଲେ ସେ
ବନକୁ ଯାଉଅଛି ।
ତୁ ତାହାକୁ ଗଉରୋବ ନ କଲୁ ନୃପବର
ତିରୀ ବଶ ହୋଇଲୁ ଯେ ଅଯୋଧ୍ୟା ଠାକୁର ।
ପୃଥ୍ୱୀ ପରବତ ସମୁଦ୍ର ନଦୀମାନ
ବାଣେ ରାମ ଏକା କରିବ ଭିନ୍ନ ଭିନ୍ନ ।
ଏଡ଼େ ସାମରଥ ଯେ ଅଟଇ ରଘୁନାଥ
ଗାରିମା ପଣକରି ଯେ ନ ରହିଲା ଏଥ ।
ତୋହୋର ଆଜ୍ଞା ସେ ଶିରେ ଧରିଥାଇ
ତୁହି ଯହିଂକି ପେଷିବୁ ତହିଂକି ସେ
ଯାଇ ।୯୦
ପଣ୍ଡିତ ଜନେ ତାକୁ ପ୍ରଶଂସା କରନ୍ତି

ଗୋଷ୍ଠୀରେ ରାମକୁ ଯେ ସଜ୍ଜନ ବୋଲନ୍ତି ।
ଅନେକ କଥା ଯେ ରାଣୀ ଦେଖାଇ କହିଲା
ଦଶରଥ ତହୁଁ ସମସ୍ୟା ନ ପାଇଲା ।
ନିଦଗଲା ପ୍ରାୟେକ ସେ ବୁଝିଲାକ ବାଳୀ
ଆନପଲଙ୍କେ ଶୁତିଲା ବିସ୍ମୟେ
ମନେ ଭାଳି ।
ଏଥୁ ଅନନ୍ତରେ ଯେ ପାହିଲାକ ରାତି
ଶଙ୍ଖ ମହୁରି ଯେ ଶୁଭିଲା ଚଉକତି ।
ପଞ୍ଚମ ସ୍ୱରେଣ ଯେ ଗାୟେଣୀ ଗୀତଗାଇ
ବୀଣା ବଇଂଶୀ ଯେ ତାଳ ଯନ୍ତ୍ର
ବାଇ ।୧୦୦
ଭାଟେ କଏବାର କରନ୍ତି ସର୍ବ ମିଳି
ଚାମର ବିଞ୍ଚଣା ଧରି ଉଭା ସର୍ବ ନାରୀ ।
ପ୍ରକୃତି ସେବକ ଯେ ନିଯୋଗ ଧରିଛନ୍ତି
ପାତ୍ର ମନ୍ତ୍ରୀମାନେ ଆସିଣ ମିଳନ୍ତି ।
ରାତ୍ରି ପାହି ବେଳ ଦୁଇଘଡ଼ି ହୋଇ
ଶୋଇବା ଠାବରୁ ନ ଉଠେ ନରବଇ ।
କଉଶୁଲା ରାଣୀ ଯେ ଚାପଇ ଚରଣ
ଉଠ ଉଠ ସ୍ୱାମୀ ଅଯୋଧାର ରାଣ ।
ବେଳ ବହୁତ ଯେ ଅଇଲେ ପାତ୍ର ମନ୍ତ୍ରୀ
ପୁତ୍ରଙ୍କର ଶୋକେ କି ହୋଉଅଛୁ ଯନ୍ତି ।୧୦
ରାମ ସୁମରି ଯେ ଶୋୟନ କଲୁ ରାତ୍ର ଅର୍ଦ୍ଧେ
ଏତେବେଳ ଯାଏ ତ ପହୁଡ଼ି ଅଛୁ ନିଦେ ।
ଉଠ ଉଠ ସ୍ୱାମୀ ନକର ଅଳସ
ରାତ୍ର ଥାଉଂ ଥାଉଂ ଯେ ହୋଉ ଅବକାଶ ।
ଏବେ କିମ୍ପା ଶୋଇଲୁ ଯେ ଚିନ୍ତାଭର ହୋଇ
ଆପଣେ ଯାହାତୁ ଅର୍ଜିଲୁ ନରସାଇଂ ।
ଅଭିମାନ କଲେ ହୋଇବ ଆଉ କିସ
ଜନର ମୁଖେ ହୋଇବୁ ଉପହାସ୍ୟ ।
ଏତେ ବୋଲି ରାଣୀ ଭୁଜ ଧରି ତୋଳଇ
ପ୍ରାଣ ହୃଦେ ନାହିଂ କେବେହେଂ
ନ ଉଠଇ ।୨୦
କଉଶୁଲା ବୋଇଲା ସ୍ୱାମୀ ମୋର ମଲା
ନିଶ୍ୱାସ ବହୁ ନାହିଂ ନାକେ ହାଥ ଦେଲା ।

କଉଡ଼ି ହୋଇ ରାଣୀ ପଡ଼ିଲା ଖଟ ତଳେ
ଉଚ୍ଚ ସ୍ୱରେ ରୋଦନ ଯେ କରଇ ବିକଳେ ।
ହା ହା ସ୍ୱାମୀ ମୋର ଅଯୋଧାର ପତି
ବଇରୀ ମର୍ଦ୍ଦନ ତୁ ବୀର ଚକ୍ରବର୍ତ୍ତୀ ।
ପୁତ୍ର ନ ଦେଖିଣ ଯେ ମଲୁ ନୃପବର
ଅନାସ୍ତ କଲୁ ନାଥ ଅଯୋଧା ନଗର ।
କଉଶୁଲା ମୁଖରୁ ଏସନେକ ବାଣୀ
ଶୁଣି ମିଳିଲା ଯେ କଏକୟା ରାଣୀ ।୩୦
ସୁମିତ୍ରା ସହିତେ ଯେ ସକଳ ମହାଦେଈ
ଦଶରଥ ଶୋଇଲା ମନ୍ଦିରେ ଯାଇ ହୋଇ ।
ଦେଖିଲେ ନୃପବର ହାରିଲା ନିଜ ପ୍ରାଣ
କଏକୟା ଯାଇ କଲାକ ଉତ୍ୟାନ ।
ତୁଣ୍ଡେ ହାଥ ଦିଅନ୍ତେ ପଡ଼ିଲାନି ପାଟି
ଭ୍ରଥର ଜନନୀ ଯେ ପଡ଼ିଲା ଭୂମି ଲୋଟି ।
ସୁମିତ୍ରା ନୃପତିର ଯେ ଧରଇ ଅଙ୍ଗୁଷ୍ଠି
ନ ଫୁଟିଲା ଦେଖି ଛାଡ଼ଇ ବିୟୋଷ୍ଟି ।
ଭାଲେ କରତାଡ଼ି କରଇ ରୋଦନ
ଆବର କାନ୍ଦନ୍ତି ସର୍ବ ମହାଦେଈମାନ ।୪୦
ସାତଶ ପଞ୍ଚାଶ ଯେ ନୃପତିର ରାଣୀ
ରୋଦନ କରିଣ ଯେ ଲୋଟନ୍ତି ଧରଣୀ ।
ପଡ଼ଇ ବୋବାଳି ଯେ ପୂରଇ ଆକାଶ
କି ଜାଣି ସିନ୍ଧୁ ଘୋଟିଲା ଦଶ ଦିଶ ।
ନଗ୍ର ନରନାରୀ ବାହୁନି କାନ୍ଦନ୍ତି
ଭୋ ସ୍ୱାମୀ ଦଶରଥ ଅଯୋଧ୍ୟାର ପତି ।
ଅନେକ ସୁସ୍ଥ କରିଣ ଆମ୍ଭଙ୍କୁ ପାଳିଲୁ
ନିମୋହ କରି କିମ୍ପା ଛାଡ଼ି ପଳାଇଲୁ ।
କେ ଆମ୍ଭନ୍ତ ଚରଚା କରିବ ଯେ ଗୋସାଇଂ
ଅନ୍ନବସ୍ତ୍ର କାହାକଇ ମାଗିବୁଟି ଯାଇ ।୫୦
କେ ରାଜା ହୋଇଣ ପାଳିବାକ ପୁରୀ
କେହୁ ସମ୍ଭାଷଣ କରିବେ ନରନାରୀ ।
କେ ବୋଲଇ ରାଘେବ ହୋଇବେନି କାହିଂ
କେ ବୋଲଇ ଲୋକ ପେଷି ଆଣ
ବାହୁଡ଼ାଇ ।
କେ ବୋଲଇ ଭ୍ରଥ ଯେ ନ ଜାଣଇ କିଛି

ସାତ ବରଷ ହୋଇଲା ଯେ
ଅଜାଘରେ ଅଛି ।
କେ ବୋଲଇ କଉଶୁଲାକୁ
ହୋଇଲା ଦୁଃଖଭାର
ପୁତ୍ର ବନବାସ ପ୍ରଭୁ ଅପହାର ।
କେ ବୋଲଇ କଏକୟା ଏତେ କର୍ମ କଲା
ତାହାର ଯୋଗୁଂ ସିନା ନୃପତି ହାଦେ
ମଲା ।୬୦
କେ ବୋଲଇ ସୁମିତ୍ରା ପୁତ୍ର ତେଣେ ଗଲା
ବାପ କତିରେ ତ ଜଣେହେଂ ନ ରହିଲା ।
ଏମନ୍ତ ବୋଲାବୋଲି ପଡ଼ଇ ମୁଖ ଧ୍ୱନି
ପାତ୍ର ମନ୍ତ୍ରୀ ଘେନି ଯେ ବଶିଷ୍ଠ ମହାମୁନି ।
ବିଚାରି ବୋଲନ୍ତି ହୋ କରିବା କେମନ୍ତ
କେ ବୋଲଇ ରାମକୁ ହୋ ପମନ୍ତିବା ଦୂତ ।
ପିତାହତ ଶୁଣି ଆସିବାକ ଧାଇଁ
ବେଗେ ଦୂତ ପେଷ ଆଣ ତାହା ରାଇ ।
ବଶିଷ୍ଠେ ବୋଲନ୍ତି ଯେ ଏକଥା ନ ଯୋଗାଇ
ଚଉଦ ବରଷ ହୋ ଯଦ୍ୟପି ନ
ପୂରଇ ।୭୦
ତଥାପି ଶ୍ରୀରାମ ଯେ ନୁଆସଇ ପୁର
ସାକ୍ଷାତ ଧାର୍ମିକ ଯେ ଅଟଇ ରଘୁବୀର ।
ଭ୍ରଥ ଶତ୍ରୁଘନ ଯେ ଅଜାଘରେ ଛନ୍ତି
ଏ କଥାମାନ ଯେ କିଛି ନ ଜାଣନ୍ତି ।
ତାହାକୁ ଦୂତ ବରଗାଇ ଆଣିମା
ଯେ ବିଧି ଯୋଗାଇ ସେ କଥା କରିବା ।
ନୃପତିକି ତଇଳ କୁଣ୍ଡେ ଥୋଇଥାଅ
ଭ୍ରଥ ଅଇଲେ ହୋ ଦହନ କରାଅ ।
ବାମଦେବ ବୋଇଲେ ହୋ ଯେ
ବିଚାର ଯୋଗାଇ
ଜାବାଳି କାଶ୍ୟପ ଯେ ସନମତ
କଲେ ଦୁଇ ।୮୦
ସୁମନ୍ତ ବୋଲଇ ହୋ ଏ କଥା ବେଭାର
ଭ୍ରଥ ତହିଂକି ଯେ ପେଷିବା ବେଗେ ଚାର ।
ଶୁଣି ଲୋକନ୍ତ ଯେ ଚାହାନ୍ତି ମହାମୁନି

ଲକ୍ଷଣବନ୍ତ ଦୂତ ବାଛିଲା ଜଣ ତିନି ।
ସିଦ୍ଧଅର୍ଥ ଜୟନ୍ତ ଅଶୋକ ନାମ ଧରି
ଆସ ଆସ ବୋଲି ବୋଲନ୍ତି ତପଚାରୀ ।
ତିନିହେଁ ତିନି ଅଶ୍ୱ ଚଢ଼ିଣ ବେଗେ ଯିବ
ଭ୍ରଥ ଶତ୍ରୁଘନଙ୍କୁ ଘେନିଣ ଆସିବ ।
ଏକଥା କେବେହେଁ ନ କରିବ ପ୍ରକାଶ
ବୋଲିବ ଦୁଇ ଭାଇ ବେଗ ହୋଇ
ଆସ ।୯୦
ରାମ ଲକ୍ଷ୍ମଣ ଯେ ତୁମ୍ଭନ୍ତ ବସାଇ
କେବଣ ଚରିତ୍ର ଯେ ଭାଳିବ ନରସାଇଁ ।
ଏତେ ବୋଲି ତିନି ଅଶ୍ୱ ବାଛି ଦେଲେ
ପବନନ୍ତୁ ବେଗ ହୋଇ ଦୂତେ ଚଳିଗଲେ ।
ତାର ପେଷିଣ ଯେ ବଶିଷ୍ଠ ତପୋବନ୍ତ
ବସି ବିଚାରନ୍ତି ଯେ ସକଳ ସାମନ୍ତ ।
ସୁବର୍ଣ୍ଣ କୁଣ୍ଡେ ଯେ ନଡ଼ପ ପକାଇ
ଦଶରଥ ରାଜାକୁ ଯେ ଥୋଇଲେ
ତହିଁ ନେଇ ।
ରଖିଆ କରାଇଲେ ଯେ ଅତିଯତ୍ନ କରି
ଅନ୍ତେଶ୍ୱରକଇ ଗଲେ ତପଚାରୀ ।୧୦୦
ବୋଇଲେ ତୁମ୍ଭେ କେହି ରୋଦନ ନ କର
ଛିଦ୍ର ପାଇ ଶତ୍ରୁ ଘେନିମେଟି ପୁର ।
ଶୁଣି ମହାଦେଈ ସେ ହୋଇଲେ ମଉନ
ଦଶରଥ ମଲା ଯେ ଯେବଣହିଁ ଦିନ ।
ଭ୍ରଥ ସପନେ ଦେଖିଲା ବିପରୀତ
ପୁଷ୍ପେ ମଣ୍ଡଣି ହୋଇଛି ନା ଗାତ୍ର ।
ପ୍ରସାଦ ଅଟାଳି ସକଳ ଭଗ୍ନ ଗଲା
ଯୁବତୀଏ କାନ୍ଦଇ କେଶ ଯେ ମୁକୁଳା ।
ଅସୁରେ ପଶିଣ ଭାଂଗନ୍ତି ନଗ୍ରପୁର
ଆପଣେ ପଶିଅଛି ଜଳର ଭିତର ।୧୦
ଦକ୍ଷିଣ ପାରୁଶରେ ମୁକୁଳା କେଶ ହୋଇ
ନିଅମ କରଇ ସେ ନିଜ ଶିର ଛୁଇଂ ।
ଆବର ଦେଖିଲା ଯେ ସ୍ତିରୀ ଏକ ଜଣେ
ଅତିଦୀର୍ଘ ଦିଶଇ ଆଖିର ଦୁଇ କୋଣେ ।
ଶିରେଣ କେଶ ଯେ ନାହିଁ ତାର କିଛି
ଭର୍ଥର କଟିରେ ସେ ବସିଣ କାନ୍ଦୁଅଛି ।
ଏସନେକ ଦେଖି ବୀର ଚେତିଣ ଉଠଇ
ଅଶୁଭ କଥାମାନ ମନରେ ବିଚାରଇ ।
ଶତ୍ରୁଘନକଇ ଡୋକଇ ଭର୍ଥ ବୀର
ଧୀରେଣ ବୋଲଇ ତୁ ଶୁଣରେ
ସୋହୋଦର ।୨୦
ବିପରୀତ ସପନେକ ଦେଖିଲି ଆଜ ମୁହିଁ
ଅବଶ୍ୟ ଅରିଷ୍ଟି ହୋଇବ ଆମ୍ଭକଇ ।
ଶତ୍ରୁଘନ ବୋଲଇ ଭର୍ଥର ବୋଲ ଶୁଣି
ମୁଇଂ ସପନେକ ଦେଖିଲି ଏହିକ୍ଷଣି ।
ସ୍ତ୍ରିକାଳ ବେଢ଼ିଣ ବୋବାନ୍ତି ମୋର ପାଶ
ବିକରାଳ ବଦନ ଦିଶଇ ଦଶଦିଶ ।
କ୍ଷଣକେ ଚିଆଇଂ କ୍ଷଣେ ନିଦପାଇ
ଏମନ୍ତ ସମୟେ ମୋତେ ଡୋକିଲ
ଗୋସାଇଂ ।
କଥା ହୁଅନ୍ତେଣ ରଜନୀ ପାହିଲା
ଛାୟାପତି ଗଗନେ ଉଦୟେ
ହୋଇଲା ।୩୦
ନିତ୍ୟକର୍ମ ସାରି ଭ୍ରଥ ଶତ୍ରୁଘନ
ଗୁଆଇ ଆଣିଲେ ପଣ୍ଡିତ ବିଦୁଜନ ।
ତାଙ୍କର ଆଗରେ କହିଲେ ସମସ୍ତ
ଭର୍ଥକୁ ଚାହିଂଣ ବୋଲନ୍ତି ତପୋବନ୍ତ ।
ତୁ ଯେଉଂ ସପନ ଦେଖିଲୁ ମହାବୀର
ଭଲମନ୍ଦ ଏଥେଂ ଦୁଇ ପରକାର ।
ଅର୍ଥ ପ୍ରାପତ ହୋଇଲାକ ତୋତେ
ଶୋକେ ସମ୍ଭର୍ବ ତୋ ହୋଇବ ବହୁତେ ।
ଶତ୍ରୁଘନ ଯେବଣ ସପନ କହିଲା
କୁଳର ଶ୍ରେଷ୍ଟ ଜଣେ ଅବଶ୍ୟ
ନାଶଗଲା ।୪୦
ଶୁଣି ବିଦୁଜନେ ଯେ ବୋଇଲେକ ଚାହିଂ
ଆମ୍ଭର କଥା ଯେ ନ କହିବୁ କାହିଂ ।
ଦେହ ଅଳସଏ ନିଦ୍ରାଏ ଅଚେତନ
ପ୍ରକୃତି ସଂଗତେ ବୁଲୁଥାଏ ମନ ।
ଏଥକୁ ବିଚାର ନ କର ବେନି ଭାଇ
ଦାନ କିଛି ଦିଅ ବିପ୍ରଜନ ରାଇ ।
ଶୁଣିଣ ଭର୍ଥବୀର ଅନେକ ଦାନ ଦେଲା
ଜଉତିଷ ମୁଖରେ ଗ୍ରହଶ୍ୟାନ୍ତି କରାଇଲା ।
ଦେବୀକି ଅନ୍ନଦାନ ବୋଦାବଳି ଦ୍ୟନ୍ତି
ରୁଦ୍ରର ଆଗେ ଗୋଦୁହନ କରାନ୍ତି ।୫୦
ଏମନ୍ତ ପ୍ରକାରେ ଦେବୀକି ପ୍ରବୋଧିଲେ
ଲକ୍ଷେ ବ୍ରାହ୍ମଣକୁ ଭୋଜନ ଦାନ ଦେଲେ ।
ଏହି ପ୍ରକାରେଣ ଶତ୍ରୁଘନ ବୀର
ଦୁସହ ସପନ ନିମନ୍ତେ ଦାନ ଦେଲାକ
ଅପାର ।
ଏଥୁ ଅନନ୍ତରେ ରଜନୀ ପ୍ରଭାତ
ଶେଯ୍ୟାରୁ ଉଠିଲେ ଶତ୍ରୁଘନ ଭ୍ରଥ ।
ନିତ୍ୟ କର୍ମସାରି ଆଖଡ଼ାକୁ ଗଲେ
ବାର ବର୍ଗେଣ ଯେ ସାଧନ ତହିଂ କଲେ ।
କୁସୁମଦଣ୍ଡ ଶିଶୁଦଣ୍ଡ ଲାଭିଦଣ୍ଡ ତୋଳି
ଗୁଳୁଚି କାଠେଣ ଲାଗନ୍ତି ମହାବଳୀ ।୬୦
ଧାପ ଧାଉଡ଼ି ଯେ କରିଣ ଲାଗନ୍ତି
ଖଣ୍ଡା ସାଧନ ଯେ କରିଣ ପହୁଡ଼ନ୍ତି ।
କରଭର ଦେଇ ଟକାପଥର ତୋଳିଲେ
ମର୍ଦ୍ଦନ ହୋଇଣ ଆଖଡ଼ାରୁ ଗଲେ ।
ତୀର କମାୟେଣ ଘେନି ଭର୍ଥ ବୀର
ଶ୍ରୀପୟରେ ଚାଲଇ ହୋଇଣ ଧୀର ଧୀର ।
ରାଜା ସିଂଘଦ୍ୱାରେ ମିଳିଲାକ ଯାଇ
ଭର୍ଥ କହଇ ଶତ୍ରୁଘନକଇ ଚାହିଂ ।
ଭୋ ଭ୍ରାଥ ଅଯୋଧ୍ୟାର ବାରତା ନ ପାଇଲୁ
ସପନ ଦେଖିଲା ବେଲୁ ମନେ ଭ୍ରାନ୍ତି
କଲୁ ।୭୦
ଏସନେକ ବୋଲି ଯେ ବାମଚକ୍ଷୁ ଫୁରି
ଅଦଭୁତେ ଲୋଚନୁ ଯେ ଅଶ୍ରୁଜଳ ଗଡ଼ି ।
ଆଗେଣ ଦେଖିଲା ଯେ ତିନି ଅଶୁଆର
ଘୋଡ଼ା ଧୂଆଂଇଣ ଯେ ଆସୁଛନ୍ତି ଖର ।
ସାତଦିନ ଉପବାସ ମନିଷ ଅଶ୍ୱଙ୍କର
କ୍ଷୁଧାରେଣ ଜଳ କରନ୍ତି ଆହାର ।
ଫୁଟିଣ ଲୋକଙ୍କର ବଥାଇଲା ଅଣ୍ଡା

ଘୋଡ଼ାଙ୍କର ଦେହରେ ଅଛି ମାତ୍ର କଣ୍ଠା ।
ମୁଖରେ ଫେଣ ସେ ଯେ କଲେକ ଉଦ୍‌ଗାର
ଭର୍ଥ ବୋଇଲା ଏ ତ ଅଯୋଧାର
ଚାର ।୮୦
ଏହିକ୍ଷଣି ବାରତା ପାଇବା ଆମ୍ଭେ ତଥ୍ୟ
ଶତ୍ରୁଘର ଭୁଜ ଧରିଣ ଉଭା ଭ୍ରଥ ।
ଏସନ ସମୟେ ମିଳିଲେ ଚାର ଯାଇ
ନମସ୍କାର କଲେ ଘୋଡ଼ାରୁ ଓହ୍ଲାଇ ।
ଦୂତେ ବୋଇଲେ ତୁମ୍ଭେ ଏଇକ୍ଷଣି ଆସ
ଦଶରଥ ରାଜାର ଅଛଇ ଆଦେଶ ।
ତୁମ୍ଭରେ ଅନେକ ହୋଇବାକ କାର୍ଯ୍ୟ
ଏହିକ୍ଷଣି ଯିବା ହୋଇବାକ ସଜ ।
ଭର୍ଥ ବୋଇଲେ ତୁମ୍ଭେ ଶୁଣ ଦୂତମାନେ
ଶ୍ରୀରାମ ଲକ୍ଷ୍ମଣ ଦଶରଥ ରାଜନେ ।୯୦
ମାତାଗଣ ପାତ୍ର ମନ୍ତ୍ରୀ ଅମାତ୍ୟ
ଏମାନଙ୍କର ଶୁଭ ଅଟଇ ନା ସମସ୍ତ ।
ଚାର ବୋଇଲେ ସକଳ କଥା ଭଲ
ତୁମେ ବେଗେ ଆସ ଆମ୍ଭର ତୁଲେ ତୁଲ ।
ଶୁଣି ଭ୍ରଥ ଶତ୍ରୁଘନ ବେନି ଭାଇ
କଏକୟା ରାଜାକୁ ଜଣାଇଲେ ଯାଇ ।
ଭୋ ଦେବ ଅଯୋଧାର ଦୂତ ଅଛି ଆସି
ଯିବୁ ନିଜ ପୁରୀ ଆଜ୍ଞା ବେଗେ ଦେସି ।
ରାଜ୍ୟ ରାଷ୍ଟ୍ର କଥା ସକଳ ପଚାରଇ
ଶୁଭେଣ ବ୍ରତିଅଛନ୍ତିଟିକି ନରସାଇଂ ।୧୦୦
ଚାରଗଣେ କହନ୍ତି ଶୁଣ ନୃପବର
ଏହାନ୍ତ ଘେନି ରାଜା କରିବ ବିଚାର ।
ଶ୍ରୀରାମକୁ ରାଜ୍ୟ ଦେଇତ ତାର ମନ
ବଶିଷ୍ଠ ମନ୍ତ୍ରୀ ଆମ୍ଭନ୍ତ ପେଷିଲା ବହନ ।
ଆମ୍ଭେ ଯେବଣ ଅଶ୍ୱ ଅଇଲୁ ଆରୋହି
ତାହାଙ୍କ ଦେହରେ ଶକତି ଆଉ ନାହିଁ।
ବାହୁଡ଼ି ଯାଇନ୍ତ ସେ ନୋହନ୍ତି ସାମରଥ
ଆନ ତିନି ଅଶ୍ୱ ଦିଅ ନରନାଥ ।
ଶୁଣି ନରବର ତନୟେ ହକାରି
ଦେସି ତିନି ହୟେ ପବନ ସମକରି ।୧୦

ଶାହାଣରୁ ବାଛିଣ ଦେଲେ ତିନି ହୟେ
ଭ୍ରଥ ଶତ୍ରୁଘନକୁ ଡିଆରଇ ରାୟେ ।
ତୁମ୍ଭେ ଯିବ ବାବୁ ଅଯୋଧ୍ୟା ନିଜ ଦେଶ
ରାଜାର ଆଗରେ ମୋର କହିବ ସନ୍ଦେଶ ।
ଅନୀତି ସଂସାର ଏ ଅସ୍ଥିର ଜୀବନ
ନୃପତି ପଣକୁ ତ ଶ୍ରୀରାମ ଭାର୍ଜନ ।
ହୋଉ ଯୁଗରାଜା ଅଭିଷେକ କର
ପିତାକୁ ଜଣାଇବ ଏ ମୋହୋର ଉତ୍ତର ।
ଏତେ ବୋଲି ଧନରତ୍ନ ବହୁତ ଦେଲା
କୋଳେ ଧରି ମୁଧୁନି ଆଗ୍ରାହ୍ଣଣ କଲା ।୨୦
ନୃପତିକି ଓଳଗି ଆସନ୍ତି ବେନି ଭାଇ
ଆବର ଓଳଗିଲେ କଏକୟା ଆଈ ।
ରଥେ ବସିଣ ଚଳନ୍ତି ବେନିବୀର
ସାରଥି ବେଗେଣ ବାହିଲା ରହୁବର ।
ଅଯୋଧାର ଦୂତେ ଆଣିଲେ ଅଶ୍ୱ ଲେଛି
କୟେକୟା ରାଜା ତୁରଙ୍ଗମ ଦେଲା ବାଛି ।
ଓଶେକ ଜଇନ୍ତ ସିଧ୍ୟଅର୍ଥ ତିନି
ଘୋଡ଼ାନ୍ତ ଚଢ଼ିଣ ସେ ଭର୍ଥକୁ ଯାନ୍ତି ଘେନି ।
ରାତ୍ର ଦିବସେ ପନ୍ଥ ବହି ଯାନ୍ତି
ଅନେକ ବିପରୀତ ବାଟରେ ଦେଖନ୍ତି ।୩୦
ଦିବସେ ଗଗନେ ତାରାଗଣ ଦିଶଇ
କୁହୁଡ଼ି ଆଚ୍ଛାଦି ଅଛଇ ଚଉପାଶଇ ।
ରଥର ଧ୍ୱଜରେ ଶାଗୁଣା ଯାଇ ବସି
ଜମ୍ବୁକୀ ବାଟ ଓଗାଳଇ ଆସି ।
ସର୍ପଫେରୁ ଧରି ଆଗରେ ଓଗାଳି
ବେଗ ଯାନ୍ତି ଏହାନ୍ତ ତଲୟେ ନ କରି ।
ସାତଦିନେ ଅଯୋଧ୍ୟାରେ ପ୍ରବେଶ
ହୋଇଲେ
ସରଯୁ ପାରିହୋଇ କଟକେ ପଶିଲେ ।
ଦେଖିଲେ କଟେକ ଦିଶଇ ଅମଙ୍ଗଳ
ସାତ ପାଞ୍ଚ ଲୋକେ ହୁଅନ୍ତି ବିକଳ ।୪୦
ଡରେଣ କେହି ଚ କହି ନ ପାରନ୍ତି
ବଶିଷ୍ଠ ମୁନିକି ଭୟେ କରିଛନ୍ତି ।
ସରସ ବଦନ କାହାରି ତହିଁ ନାହିଁ

ବିସ୍ମୟେ ଚିତ୍ତେ ଭର୍ଥ ଗଲା ରଥ ବାହି ।
ହାଟ ବାଟ ନଗ୍ର ଦିଶେ ନାରଖାର
ନରନାରୀମାନେ କରନ୍ତି ବିଚାର ।
ପୁତ୍ରଙ୍କର ମୁଖ ରାଜା ନ ପାରିଲା ଚାହିଁ
ଅକାଳ ମରଣ ତାକୁ ଥେଲା କେଉଁଠାଇ ।
ଶ୍ରୀରାମକୁ ବନେ ପେଷି ନୃପତି ପ୍ରାଣହାରି
ଗୁପତ ଭାଳେଣି କରନ୍ତି ନରନାରୀ ।୫୦
ସିଂହଦ୍ୱାରେ ରଥ ମିଳିଲାକ ଯାଇ
ନବରେ ପଶିଲେ ରଥରୁ ଓହ୍ଲାଇ ।
ଦଶଦ୍ୱାର ପରିଯନ୍ତେ ପାଦେ ଚାଲିଗଲେ
କେହି କାହାକଇ ସମସ୍ୟା ନ ଦେଲେ ।
ଭ୍ରଥ ବିଚାରଇ ହୋଇଲା ବିପରୀତ
ବିଯୋଗର ଚିହ୍ନ ମୁଂ ଦେଖିଲି ବହୁତ ।
ଏତେ ବୋଲି ଯାଇ କୟେକୟାକୁ ଭେଟଇ
ଶତ୍ରୁଘନକୁ ଘେନି ତାର ଚରଣେ ଲୋଟଇ ।
କର ଦୁଇ ଯୋଡ଼ି ପଚାରଇ ବାଣୀ
କାହିଁ ବିଜେ କରିଅଛନ୍ତି ନୃପମଣି ।୬୦
କୟେକୟା ବୋଇଲା ତୁ ଶୁଣରେ କୁମର
ପିତା ତୋର କରୁଥିଲା ଅବେଭାର ।
ଶ୍ରୀରାମକୁ ଅଯୋଧାରେ ନୃପତି କରିବ
ଭାଳେଣି କଲେ ତୋତେ ବନକୁ ପେଷିବ ।
ସେ କଥା ବାରତା ପାଇଲି ବାବୁ ମୁହିଁ
ରାଜାକୁ ସତ୍ୟ କରାଇଲି ମୁହିଁ ଯାଇ ।
ମୋହୋର ପୁତ୍ର ଭ୍ରଥ ଅଯୋଧାରେ ଥାଉ
ଶ୍ରୀରାମ ଚଉଦ ବରଷ ବନ ଯାଉ ।
ଶୁଣିଣ ମହାରାୟେ ସନମତ କଲା
ସୁମନ୍ତ ଶ୍ରୀରାମକୁ ବନକୁ ଘେନିଗଲା ।୭୦
ଶ୍ରୀରାମ ସୀତ୍ୟା ଲକ୍ଷ୍ମଣ ତିନିଜଣ
ପ୍ରବେଶ ହୋଇଲେ ଯାଇ ଗହନ କାନନ ।
ଗଙ୍ଗାକୂଳେ ଧଇଲେ ତପସ୍ୱିନୀ ରୂପ
ସୁମନ୍ତ ମୁଖରୁ ଶୁଣିଲା ଏହା ନୃପ ।
ଶ୍ରୀରାମକୁ ସୁମରି ଶୋକ ବହୁତ କଲା
ପୁତ୍ର ପୁତ୍ର ବୋଲି ପ୍ରାଣହିଁ ଛାଡ଼ିଲା ।
ଏବେ ତୁ ଅଯୋଧ୍ୟାରେ ସୁଖେ ରାଜ୍ୟ କର

ନୃପତି ମୋତେ ଦେଇଗଲା ଏହୁ ବର ।
ତୋହୋର ବିଭୂତି ଦେଖି ହୋଇବି ଆନନ୍ଦ
କୁମୁଦ ବିଗସଇ ଯେହ୍ନେ ଉଦେ
ହୋଇଲେ ଚନ୍ଦ୍ର ।୮୦
ଶୁଣିଣ ଭ୍ରଥର ଉଡ଼ିଲା ସାହସ
ଦେହ କଂପିଣ ଖର ନିଶ୍ୱାସ ।
ନୟନୁ ଅଶ୍ରୁଜଳ ବହଇ ଅବିଚ୍ଛିନ୍ନ
କୋପେଣ ଜନନୀ କି ବୋଲଇ ବଚନ ।
ଧନି ତୁ ରାଜାର ଅଟୁସି ଦୁଲଣୀ
ରାଜାର ଭାରିଯା ତୋତେ କଲା
କେହୁ ଆଣି ।
ଏଡ଼େ ବଡ଼ ଯଶ ଆଣି ମୋତେ ଦେଲୁ
ଶ୍ରୀରାମକୁ ବନବାସ କଷ୍ଟ ସେ ବିହିଲୁ ।
ଶ୍ରୀରାମ ବନ ଗଲେ ମୁଂ ସେ ରାଜ୍ୟ କରଇ
ଏ ମୋହୋର ହୃଦରେ ଏହା ସେ
ବିଚ୍ଛରଇ ।୯୦
ଏଡ଼େ ଯଶ ମୋର ଅଖଡ଼େ ସାରିଲୁ
ଶ୍ରୀରାମ ଭ୍ରଥ ଦୁଇ ଭିନଭିନ କଲୁ ।
ତୋହୋର ମନ୍ଦଲୋକେ ନ ଜାଣିମେ କେହି
ମୋତେ ବୋଲିବେ ଯେ ଭ୍ରର୍ଥ ନ
ଯୋଗାଇ ।
ଓହୋ କୁଳ ନାଶ କଲୁଗୋ ଚାଣ୍ଡାଳୁଣୀ
କିମ୍ପା ଆନ ତୋତେ ସହିଛି ଧରଣୀ ।
ଏଡ଼େ ସୂର୍ଯ୍ୟବଂଶ ହେଲେ ନାଶ କଲୁ
କାହାର ତହୁଂ ତୁ ଏ ବୁଦ୍ଧି ଶିଖିଲୁ ।
ଲୋକେ ବୋଇଲେ ଯେ ମନ୍ଥେଡ଼ୀ ଏହା
କଲା
ରାତ୍ର ଦିବସେ ତୋ ମାତାଙ୍କୁ
ମତାଇଲା ।୧୦୦
ଭ୍ରର୍ଥକୁ ରାଜ୍ୟ ମାଗ ଶ୍ରୀରାମ ବନ ଯାଉ
ଏ ତୋହୋର କୀରତି ଯୁଗେ ଯୁଗେ ଥାଉ ।
ସେ କଥା ଗ୍ରାହିତ କଲା ତୋ ଜନନୀ
ସତ୍ୟ କରାଇ ରାଜାଙ୍କୁ ମାଗିଲା ବର ବେନି ।
ଚଉଦ ବରଷ ଶ୍ରୀରାମ ବନ ଯିବ
ଭ୍ରଥ ଅଯୋଧ୍ୟାରେ ନୃପତି ହୋଇବ ।
ତେଣୁ ସେ ଶ୍ରୀରାମ ବନବାସ କଲା
ପୁତ୍ରକୁ ସୁମରିଣ ଦଶରଥ ମଲା ।
ମନ୍ଥେଡ଼ୀର କଲା ଏସନେକ କୃତ
ଶୁଣିଣ ଭ୍ରଥ ବୀର ଉଠିଲା ତୁରିତ । ୧୦
ଦେଖିଣ ଜନନୀ ଭୟେ ପଳାଇଲା
ଆଣ୍ଟ କପାଟ ସେ କିଳିଣ ପଶିଲା ।
ଭ୍ରଥ ବୋଇଲା ଶତ୍ରୁଘନକୁ ରାଇ
ମନ୍ଥେଡ଼ୀକି ବେଗେ ଘେନିଆସ ଯାଇ ।
ଏଡ଼େ ଅବିଚାର ଏହି ପୁରେ କଲା
କ୍ଷୀରର ଭିତରେ ନୀର ମିଶାଇଲା ।
ଶୁଣିଣ ଶତ୍ରୁଘନ ଆଣିଲା କେଶ ଧରି
ଭ୍ରଥରେ ଛାମୁରେ କଲାକ ବେଗ କରି ।
ଘୋଷରାଇ ହୋଇ ସେ ନୁଆସଇ ଡରେ
ଭ୍ରଥ ବୋଇଲେ ସେ ଅତି କୋପ
ଭରେ ।୨୦
ଖଡ଼ଗ ଘେନିଣ କାଟ ଏହାର ଶିର
କ୍ଷଣହେ ନ ଥୁଅ ପ୍ରାଣେ ବେଗେ ମାର ।
ଏହାର ମୁଖ ଚାହିଂଲେ ପାପ ଲାଗଇ
ମାର ମାର ବୋଲିଣ ଭ୍ରଥ ଉଚ୍ଚେ ଡାକ
ଦିଅଇ ।
କିଲୋ ପାମେରୀ ଏ ବୁଦ୍ଧି କାହୁଂ ଦେଲୁ
ପାଣି ପିଟିଣ ଲୋ ଦୁଇ ଭାଗ କଲୁ ।
ମାର ହୋ ଶତ୍ରୁଘନ ନଥୋଅ ଏହାକୁ କ୍ଷଣେ
ସ୍ୱର୍ଗେ ଥାଇ ବିଚ୍ଛର କରନ୍ତି ଦେବଗଣେ ।
ଆମ୍ଭ ପାଇଂ ମନ୍ଥେଡ଼ୀ ଯେ ଯାଉଅଛି ହତ
ସରସ୍ୱତୀକି ରାଇ ଯେ ବୋଇଲେ
ବିଧାତ ।୩୦
ତୁମ୍ଭେ ଯାଇ ଶତ୍ରୁଘନ ମନେ ପଶ
ଯେସନେ କେ ମନ୍ଥେଡ଼ୀ ନ ଯାଇ
ପ୍ରାଣ ନାଶ ।
ଶୁଣିଣ ସରସ୍ୱତୀ ତକ୍ଷଣେ ଚଳିଗଲେ
ଶତ୍ରୁଘନ ହୃଦରେ ଯାଇଣ ବସିଲେ ।
ଭ୍ରଥ ଡାକଇ ବେଗେ ଏହାର ଶିରଛେଦ
ପ୍ରାଣେ ଥେଲେ ବହୁତ ପଡ଼ିବ ପ୍ରମାଦ ।
ଏହି ସେ ନିଲକ୍ଷଣୀ କଲା
ସୋହୋଦ୍ରେ ଭେଦ
ଖଡ଼ଗ ଘେନିଣ ଛେଦ ଏହାର କନ୍ଧ ।
ଶତ୍ରୁଘନ ବୋଇଲେ ଏ ଅଟଇ ସ୍ତିରୀ ଜନ୍ମ
ଏହାଙ୍କୁ ମାରନ୍ତେ ଅଟଇ ଅଧର୍ମ ।୪୦
ମାଡ଼ ମାରିଣ ଏହାର ସାଧିବାକ ଅଂଗ
ପକ୍ଷେ ଦଶେ ଗଲେ ପାଉ ମୃତ୍ୟୁ ସଂଗ ।
ମୋହୋର ମାଡ଼ ମାଇଲେ ମରିବ ଅବଶ୍ୟ
ପଛେ ମଲେ ଆମ୍ଭଙ୍କୁ ନ ଲାଗିବ ଦୋଷ ।
ଏତେ ବୋଲି ଶତ୍ରୁଘନ ମନ୍ଥେଡ଼ୀ ବାଳଧରି
ବେଳ ଚାରି ତୋଳି ପକାଇଲେ କଚାଡ଼ି ।
ମାରି ଘୋଷରାଇ ଅନେକ ଦୁଃଖ ଦେଲା
ଉତ୍ୟାନ କରି ମୁଖେ ମାଟି ପୂରାଇଲା ।
ବାବଲ ଶର ଘେନି କାଟିଲା ତାର ବାଳ
ନାଣ୍ଡି ମୁଣ୍ଡ କରି ଥୋଇଲା ସାତ ଚୂଳ ।୫୦
ଛାଡ଼ି ଦିଅନ୍ତେ ସେ ଗଲାକ ପଳାଇ
କୈକେୟୀ ପଛରେ ଲୁଚିଲାକ ଯାଇ ।
ତହୁଂ ଭ୍ରଥ ଶତ୍ରୁଘନ ବେନି ଗଲେ
କଉଶୁଲାର ପୁରେ ଯାଇ ପ୍ରବେଶ
ହୋଇଲେ ।
ଶ୍ରୀରାମର ମାତା ବସିଣ କାନ୍ଦୁଅଛି
ନୟନୁ ଅଶ୍ରୁଜଳ ନ ପାରଇ ପୋଛି ।
ଭ୍ରଥ ଶତ୍ରୁଘନ ପଡ଼ନ୍ତି ପାଦତଳେ
ହାଥ ଧରି ରୋଦନ କରନ୍ତି ବିକଳେ ।
କଉଶୁଲା ବୋଇଲେ କିମ୍ପାଇ ବାବୁ କାନ୍ଦ
ଏମନ୍ତ ସମୟେ ତୁମ୍ଭର ଆନନ୍ଦ ।୬୦
ମାତା ତୋହୋର ତୋତେ ରାଜାପଣ ଦେଲା
ଦୁଇ ଭାଇ ବିଳସ ବୋଲିଣ ବୋଇଲା ।
ଅକଣ୍ଟେକ ରାଜ୍ୟ ହୋଇଲା ତୁମ୍ଭର
ସେ ଦୁଇ ଭାଇ ତ ପଶିଲେ ବନ ଘୋର ।
ମଲାର ପ୍ରାଣୀ ସଙ୍ଗେ ତାହା ଲେଛି
ପିଉଳାଇଲା ଫଳ ପ୍ରାଏ ଶ୍ରୀରାମକୁ ଲେଖି ।
ବନବାସ କଲେ ଜଣେ ନୋହିଲେ ଗଣିତା

ଭାଗ୍ୟ ଅରଜିଲା ତୋର କଏକୟା ମାତା ।
ଏକଛତ୍ର ରାଜା ହୋଇବ ତାର ପୁତ୍ର
ଆଜ୍ ସେ ଉଦର ତାର ହୋଇବ
ପବିତ୍ର ।୭୦
ଭ୍ରଥ ବୋଲୁଅଛି ଯେ କଉଶ୍ଳୁଲା ପାଦଧରି
ଭୋ ମାତ ଦୋଷ ଏଥି ନାହିଁ
ଯେ ମୋହରି ।
ମନେ ଗ୍ୟାଂନେ ଯେବେ ଜାଣଇ ମୁହିଂ ଏହା
ରାମ ବନ ଯିବ ମୁ ହୋଇବି
ଅଯୋଧାରେ ନାହା ।
ପୁତ୍ର ନଥିଲା ଲୋକ ଯେବଣ ଗତି ପାଇ
ଶ୍ରୀରାମକୁ ମୋହୋର ଯେବେ ହୃଦରେ
ପାପ ଥାଇ ।
ସେ ଗତି ମୋତେ ଯେ ହୋଇବ ପରାପତ
ଯେ ଅବା ହରଇ ପରର ଆଏବିଭ ।
ସେହୁ ଲୋକ ଅବା ଯେବଣ ଗତି ପାଇ
ଶ୍ରୀରାମକୁ ମାୟା ଯେବେ ମୋହୋର
ଅଛଇ ।୮୦
ତାହାଙ୍କର ଗତି ପ୍ରାପତ ମୋତେ ହୋଉ
ଚନ୍ଦ୍ର ସୂର୍ଯ୍ୟ ସତ ହୋଇଲେ ଆନ ନୋହୁ ।
ଅକାରଣେ ପ୍ରାଣୀକି ଦଣ୍ଡନ୍ତି ଯେବଣ ଜନ
ଯେକ ସୂର୍ଯ୍ୟେ ବେନି ବେଳ ଯେ କରନ୍ତି
ଭୋଜନ ।
ପରବେଣ ଛଅର ଯେ ହୋଅନ୍ତି ଗର୍ବ ପଣେ
ଯେବଣ କ୍ଷତ୍ରୀ ଅବା ପିଠି ଦ୍ୟନ୍ତି ରଣେ ।
ଗଉରୋବ ସ୍ତିରୀ ଯେ ବଳେଣ ହରନ୍ତି
ରବିବାରେ ଯେ ମୀନ ଆହାର କରନ୍ତି ।
ରାତ୍ରେଣ ବେଳ କଇଥ ଯେହୁ ଖାଇ
ପଥର ବୃକ୍ଷ ଛେଦନ୍ତି ଯେବଣ ପାପ
ପାଇ ।୯୦
ଅମାସ୍ୟା ସଙ୍କରାନ୍ତି ଏକାଦଶୀ ଦିନ
ତଇଳ ଘେନି ଯେ କରନ୍ତି ସ୍ନାହାନ ।
ସେ ପାପ ପାଇବି ଶ୍ରୀରାମକୁ ମାୟା ଥିଲେ
ଛମାସ ହୋ ସନ୍ନ୍ୟାସ ଯେକଠ୍ୟବେ
ରହିଲେ ।

କୃଷି ଭାଙ୍ଗି ବୃତ୍ତି ବିକି ଜୀଅନ୍ତି
ଯେବଣ ପ୍ରାଣୀ
ଅତିଥେ ଅନ୍ନ ଦାନ ଦିଅନ୍ତି ଜାଦେ ।
ଆପଣାର ଥିଲେ ଯେ କୁଟୁମ୍ବକୁ ନ ପୋଷନ୍ତି
ପରର ସୀମା ଯେ ବଳେଣ ଆକ୍ରଷନ୍ତି ।
ଗୁଣ ଛାଡ଼ିଣ ଯେ କରଇ ଅବିଗୁଣ
ଦେବତା ନ ଦେଖି ଭୁଂଜଇ ଯେବଣ
ଜନ ।୧୦୦
ପାଲଟା ବସ୍ତ୍ର ଯେ ଝାଡ଼ିଣ ପିନ୍ଧନ୍ତି
ଛାମୁ କତିକି ଯେ କେଶ ବାନ୍ଧିଥାନ୍ତି ।
ପାଦ ନ ପଖାଳି ଯେ କରନ୍ତି ଆହାର
ପରକଇ ହିଂସା ଅଛଇ ଯାହାର ।
ଶତ୍ରୁ ଜନଙ୍କୁ ଯେ ହୁଅନ୍ତି ବିଶ୍ୱଆସ
ନଦେଖି ପ୍ରାଣୀକି ଯେ ଦିଅନ୍ତି ଅପଯଶ ।
ଲୋକଙ୍କୁ ନିନ୍ଦଇ ଯେ ମୂର୍ଖ ବଡ଼ପଣେ
ଆପଣା ମହିମା ଯେ କହନ୍ତି ଆପଣେ ।
ସଭାରେ ବନ୍ଧୁପଣ ହୋଅନ୍ତି ଯେବଣ ନର
ନିଅମ କରି ଯେ ହୋଅନ୍ତି ଆଗୁସାର ।୧୦
ପାଣିରେ ବସ୍ତ୍ର ଅବା ଫେଡ଼ନ୍ତି ଯେହୁ
ମଥା ନ ପୋଛନ୍ତି ମହା ପାପୀ ସେହୁ ।
ଅନ୍ୟ ଜାତି ତୁଲେ ଯେହୁ ସେ ରମନ୍ତି
ପରର ଫଳ ଯେହୁ ଲୁଝଇ ଭୁଂଜନ୍ତି ।
ଯେ ଯାହାର ନିତ୍ୟ କର୍ମ ଧର୍ମ ଛାଡ଼ି
ବ୍ରାହ୍ମଣ ହୋଇ ଯେବେ କରେ ଧରଇ
ବାଡ଼ି ।
କ୍ଷତ୍ରୀ ହୋଇ ଯେବେ କ୍ଷତ୍ରୀ ବୃତ୍ତକୁ ଆଳସି
ଶୂଦ୍ର ହୋଇ ଯେବେ ବ୍ରାହ୍ମଣକୁ ଦୂଷି ।
ବଶ୍ୟ ନ ଜାଣଇ ବଣିଜର ରୀତି
ପତିକି ପତ୍ନୀ ଯେବେ ନୋହଇ
ଭଗତି ।୨୦
ପିତାକୁ ପୁତ୍ର ଯେବେ ନ କରଇ ଭଏ
ରାଜ୍ୟ ପାଳଣ ଯେବେ ନ କରଇ ରାଏ ।
ପାଷାଣ୍ଡ ଲୋକଙ୍କର ଯେ ବଦନ ଚାହାନ୍ତି
କାର୍ଯ୍ୟର ବିଧାନେ ଯେବେ ଦେବତା
ନିନ୍ଦନ୍ତି ।

ଗୁରୁଜନମାନଙ୍କୁ ଅବା କରଇ ଯେ ନିନ୍ଦା
ଦେବତାଙ୍କର ଆଏ ଯେହୁ ଦିଅଇ ବନ୍ଧା ।
ବ୍ରାହ୍ମଣ ହୋଇ ଯେବେ ବିକି ଗୋରସ
ଚରଣ ବଢ଼ାଇ ଦିଅନ୍ତି ଯେବଣ ପୁରୁଷ ।
ଗୋରୁ ହଜିଲେ ଯେ ନ ଲୋଡ଼ଇ ତିନିଦିନ
ବିଷ୍ଣୁରେ ଭଗତି ନୋହନ୍ତି ଯେବଣ
ଜନ ।୩୦
ଦକ୍ଷିଣକୁ ମୁଖକରି ଯେହୁଟି ଭୁଂଜଇ
ସାଧୁ ଲୋକନ୍ତ ଯେ ଅଦୋଷେ ଗଞ୍ଜଇ ।
ଯେଉଂ ପ୍ରାଣୀ ଦୁର୍ଭିକ୍ଷେ ନ ବିକନ୍ତି ଧନ
ନୃପତିକି ଯେହୁ ଅବା ବୋଲଇ ସାନ ।
ଆପଣାହୁଂ ବଡ଼ ଯୁବତୀ ସଂଗେ ରତି
ପର ଦୁଃଖ ଦେଖି ଯେହୁ ହରଷ ହୁଅନ୍ତି ।
ଶ୍ରାଦ୍ଧଘର କରି ଯେ ବନ୍ଧୁ କୁଟୁମ୍ବ ନ ଭୁଂଜାଇ
କନ୍ୟା ମାସରେ ଯେ ପିତୃଲୋକଙ୍କୁ ବଞ୍ଚାଇ ।
ମୈତ୍ରକୁ ପ୍ରୀତି ନୁହନ୍ତି ଯେବଣ ଜନ
ଚାରି ଜାତିରେ ଯେ ମଦିରା ଭୋଜନ ।୪୦
ଦେବତା ବ୍ରାହ୍ମଣ ଯେ ନିର୍ବାଣ ଶୁଦ୍ଧ ସୁନା
ଯେ ଅବା ହାରନ୍ତିଟି ପଞ୍ଚବିଂଶ ଚିନା ।
ବ୍ରାହ୍ମଣକୁ ବଧ କରନ୍ତି ଯେବଣ ପ୍ରାଣୀ
ନିଜ ଜନନୀ ସଂଗେ ଯାହାର ରମଣୀ ।
ଏସନେକ କଳା ଲୋକ ସଂଗତେ ଯେହୁ
ଥାଇ
ସେ ସର୍ବ ପାପ ମୁଂ ପାଇବି ଗୋସାଇଂ ।
ଶ୍ରୀରାମକୁ ମୋହୋର ଅଛି ଯେବେ ମାୟା
ଏସନେକ ପାପ ଲଭିବ ମୋର କାୟା ।
ତୁ ଗୋ ଭୋ ମାତ କର ମୋତେ ଦୟା
ଏ ସର୍ବ ଚରିତ ଗୋ କଲାକ
କଏକୟା ।୫୦
ଏତେ ବୋଲି ଉଚ୍ଚେ କରଇ ରୋଦନ
ନୟନୁ ଅଶ୍ରୁକଣ ଗଳଇ କ୍ଷଣ କ୍ଷଣ ।
ଏସନେକ ସମୟେ ମିଳିଲେ ମନ୍ତ୍ରୀଗଣ
ଭ୍ରଥକୁ ବହୁତ କହନ୍ତି ତିଆରିଣ ।
ତୁ କିମ୍ପା କାନ୍ଦୁଛୁ କକୟାର ସୁତ

ଯେହେର୍ଣ୍ଣେକ ଶୋକ ଅଟଇ ମନ୍ଦକୃତ ।
ରାଜା ଦଶରଥ ଯେ ଅକାରଣେ ମଲା
ନଗ୍ର ନରନାରୀ ବହୁତ ଶୋକ କଲା ।
ତୁ ହୋ ରୋଦନ କିମ୍ପାଇ କରୁ ବୀର
ଧଇର୍ଯ ହୋଇ ତୁ ହୋ ମତି ଥିର
କର ।୬୦
ଲୋକେ ବୋଲିବେ ନା ବଶିଷ୍ଠଙ୍କ ଥାନ୍ତେ
ଖଳ ବଳ ରାଜ୍ୟ ହୋଇଲା ବିପରୀତେ ।
କଯେକୟାର ଦୋଷେ ତୋତେ ହେଂ
ଅପକ୍ରୀତି
ସବୁଦୋଷ କଲା ମନ୍ଥେଡ଼ୀ ଦୁଷ୍ଟମତି ।
ବିଶ୍ୱାସ ହୋଇଣ ତୋ ମାତାକୁ ଶିଖାଇଲା
ତାହାର ପ୍ରସାଦେ କଥା ଏତେ ଦୂର ଗଲା ।
କଉଶୁଲା ସୁମଇତ୍ରା ନୁଅ ନ ରହଇ
ଏତେ ବୋଲି ଭ୍ରଥକୁ ବଶିଷ୍ଠ କହଇ ।
ଏମାନଙ୍କୁ ଶାନ୍ତି କରାଅ ମହାବୀର
ଧଇର୍ଯଂ ହୋଇଣ ତୁ ପିତୃକାର୍ଯ୍ୟ କର ।୭୦
ନଗ୍ର ଲୋକମାନଙ୍କୁ ପ୍ରବୋଧ କର ଯାଇ
ଆଶ୍ୱାସନା କର ତୁ ଭୃତ୍ୟ ଜନଙ୍କଇ ।
ବଶିଷ୍ଠର ବଚନେ ଯେ ହୋଇଲା ଭ୍ରଥ ଦମ୍ଭ
ଶୋକ ସମ୍ଭାଳିଣ ହୋଇଲା ଆରମ୍ଭ ।
ରବି ଅସ୍ତ ହୁଅନ୍ତେ ପ୍ରବେଶ ତିମିରି
ସେହିମନ୍ତେ ରହିଲା ଉପବାସ କରି ।
ରଜନୀ ପ୍ରଭାତେଣ ଆସ୍ଥାନେଣ ବସି
ପାତ୍ର ମନ୍ତ୍ରୀ ଗଣମାନେ ହୋଇଲେକ ଆସି ।
ପରିଘର ସେବକ ନିଯୋଗୀ ଜନମାନେ
ରାଉତ ମାହୁନ୍ତ ପାଦାତି ଗହନେ ।୮୦
ରଥୀ ମହାରଥୀ ବିଶୋଇ ବେଗାରୀ
ଲେଙ୍କା ନମହତା ଖୁଣ୍ଟିଆ ପଡ଼ିହାରୀ ।
ପଟୋଆର ପଡ଼ି ଅଛନ୍ତି ଚଉକତି
ନିଶବଦ ହୋଇ ସମସ୍ତେ ଦେଖନ୍ତି ।
ସୁବର୍ଣ୍ଣର କୁଣ୍ଡେ ତଇଳ ପୂରାଇ
ଦଶରଥ ରାଜାକୁ ଥିଲେ ତହିଂ ଥୋଇ ।
କାଢ଼ି ଆଣି ତାହା ସଭା ମଧ୍ୟେ କଲେ
ନାନା ତୀର୍ଥ ଜଳେ ସ୍ନାହାନ କରାଇଲେ ।
ଚନ୍ଦନ କର୍ପୂର କସ୍ତୁରୀ ତହିଂ ଗୋଳି
ଅଂଗୁଳିକ ବହଳେ ନୃପତି ଅଂଗେ
ବୋଳି ।୯୦
ନାନା କୁସୁମେଣ ଶିରେ ଗଭା ରଞ୍ଚି
ନବରତ୍ନ କୁଣ୍ଡଳ ଶର୍ବଣେ ନେଇ ଖଞ୍ଜି ।
କଣ୍ଠେଣ ମୁକୁତା ମାଣିକର ମାଳ
ହୀରା ନୀଳା ପଦେକ ଶୋହେ ବକ୍ଷସ୍ଥଳ ।
ଭୁଜେଣ ତାଡ଼ ବାହେଣ ବାହୁଟି
କଟିରେ କଟିମେଖଳା ମୁଦ୍ରିକା ଅଙ୍ଗୁଷ୍ଠି ।
ପୟରେ ନେପୁର ରବିର କିରଣ
ଲଲାଟ ପାଟିରେ କସ୍ତୁରୀ ବିଲୋପନ ।
ନବରତ୍ନ ଜଡ଼ିତ ପଚନୀ ପିନ୍ଧାଇ
ସୁବର୍ଣ୍ଣର ବିବାନେ ବସାଇଲେ
ନେଇ ।୧୦୦
ବ୍ରାହ୍ମଣ ଚାରିଜଣ ଅଛନ୍ତି କାନ୍ଧକରି
ସହସ୍ରେ ପାଟଛତ୍ର ଉପରେ ଓହାଡ଼ି ।
ଢୋଲ ଦମା ଟମକ ବାଜଇ ନିଶାଣ
ଶଙ୍ଖ ମହୁରୀ ଶବଦ ଗରୁ ଟାଣ ।
ଆଗେଣ ନୃତ୍ୟ କରନ୍ତି ନଟନାରୀ
ମର୍ଦ୍ଦଳ ବାଉଂଶୀ ତାଳ କରେ ଧରି ।
ଉଦଣ୍ଡ ଆଲମ୍ୱ ବିଲମ୍ୱ ପନ୍ତି ପନ୍ତି
ପଏ ପଏ ଯାନ୍ତେ କୁସୁମ ବିଞ୍ଚନ୍ତି ।
ଆଗ ପଛେ ପଟୋଆର ଗଜ ଅଶ୍ୱ
ଲୋକ ଗହଳ ବେଢ଼ିଣ ଚଉପାଶ ।୧୦
ଦକ୍ଷିଣ ଶମଶାନେ ଶବ କଲେ ନେଇ
ଚନ୍ଦନ କାଠର ମଣ୍ଡୋପେକ ରଞ୍ଚିଲେକ
ତହିଂ ।
ଅଗର ଚନ୍ଦନ ବହଳେ ତହିଂ ଦେଇ
ବିବିଧ ବସ୍ତ୍ରେଣ ଶେଯ ଶେଯାଇ ।
କୁସୁମ ମାଳ ମାଳ ମଣ୍ଡିଲେ ନିରନ୍ତର
ସୁବର୍ଣ୍ଣର କଳସ ଚିରାଳ ଫର ହର ।
ଅଗ୍ନି ନଗାଇଣ ରାଜାକୁ ବସାଇଲେ
ନଗ୍ର ନରନାରୀ ହାହାକାର କଲେ ।
ଦୋହୋରା ଘରୁ ଆଣିଲେ ହୁତାଶନ
ବେଦ ବାକ୍ୟକରି ଭ୍ରର୍ଥ ଦେଲା
ଅଗ୍ନିଦାନ ।୨୦
ବଶିଷ୍ଠ ପୁରୋହିତ ସର୍ବ କାର୍ଯ୍ୟ କଲେ
ଭ୍ରର୍ଥକୁ ମାତ୍ର ସଂଗରେ ଘେନି ଗଲେ ।
ମୁଖ ଜୋଇ ଦେଇ ସରଯୁ ନଦୀରେ ପଶି
ସ୍ନାହାନ ସାରିଲେ ଦାନ ଦେଇ ଆସି ।
କ୍ରିୟା ଘେନିଲେକ କଏକୟାର ସୁତ
ଶୀତଳ ପଦାର୍ଥ ଅକ୍ଷତ ଦେଲାକ ବହୁତ ।
ପଣା ପଇଡ଼ ତାଳସଜ ଆଖୁ
ଖୁରୁଡ଼ୁ ନଡ଼ିଆ ଖୁଖୁଡ଼ୁ ରସ ଖୁଖୁ ।
ତଇଳ କୁସୁମ ଚନ୍ଦନ ଅନ୍ନ ଦାନ
ଯାଚିଣ ଲୋକଙ୍କୁ ଦିଅନ୍ତି ଅବିକ୍ଷନ ।୩୦
ଦହନ ସାରିଣ ଅସ୍ଥି ଶୀତଳାଇ
ସ୍ନାହାନ କରନ୍ତି ତୀର୍ଥ ଜଳେ ଯାଇଂ ।
ମାହାଦେଇମାନେ ଭାଙ୍ଗିଲେ ବାହାର ବାହି
ଶୁକଳ ବସ୍ତ୍ର ପିନ୍ଧି ବିଧବା ବେଶ ହୋଇ ।
ନବ ଦିବସ ଗଲାକ ପୁଣ ଯହୁଂ
ନଦୀକୂଳେ ଛଅର ହୋଇଲେକ ତହୁଂ ।
ଏକାଦଶ ଦିନ ବହୁତ ଦାନ ଦେଲେ
ଗୋତ୍ର ଲୋକେ ଘୃତ ପାଳଣ ସେ କଲେ ।
ଦଶଲକ୍ଷ ବ୍ରାହ୍ମଣ ଭୋଜନ ଭ୍ରର୍ଥ ଦେଲେ
ଦଶ ଲକ୍ଷ ଶୁଦ୍ଧ ସୁବର୍ଣ୍ଣ ବିଲୋହିଲେ ।୪୦
ଲକ୍ଷେକ ଗୋରୁ ବଇତ୍ରୋଣୀ ବିଧି ଦେଲେ
ସହସ୍ରେକ ସଂଖ୍ୟାଏ ଧେନୁ ସମର୍ପିଲେ ।
କୋଟିଯେକ ଗୋରୁ ସମବନ୍ଧା କରି
ଗୋଦାନ ନିମନ୍ତେ ଦେଲା ଦକ୍ଷିଣା
ସମ କରି ।
ତିଳ କାଞ୍ଚନ ଅନ୍ନ ବସ୍ତ୍ର ଦାନ
ପାଣି ପଣା ଛତ୍ର କଠାଉ ବିଧାନ ।
ପାଣ୍ଡୋଇ ଦୀପ ଦାନ ପଥଦାନ ଦେଇ
ଶେଯ୍ୟା ଦାନ ମିଶି ଦଶଦାନ ହୋଇ ।
ମାଗନ୍ତା ଲୋକଙ୍କୁ ଅନ୍ନ ଦାନ ଦେଲେ
ପିତାର ନିମନ୍ତେ ସେ ଭଣ୍ଡାର
ବିଧଂସିଲେ ।୫୦

ବାର ଦିବସେ ହେଲା ଅନ୍ନ ଦାନ
ଛଡ଼ ରସ ପ୍ରକାରେ ଲୋକେ
କରନ୍ତି ଭୋଜନ ।
ତେର ଦିବସ ମନ୍ତ୍ରୀଗଣେ ଭାଳି
ବଶିଷ୍ଠ ସହିତେ ଭ୍ରର୍ଥ ଆଗେ ମିଳି ।
ବୋଲନ୍ତି ଶୁଣ ତୁ କଏକୟୀ ସୁତ
ରାଜ୍ୟେ ଅବିଷେକ ହୁଅ ତୁ ତୁରିତ ।
ପିତା ତୋହୋର ବୋଲିଣ ଯାଇଅଛି
ସିଂଘାସନେ ବସ ତୁ ଦଶରଥର ବଛି ।
ନ ପୁଣ ରାଜ୍ୟ ବାବୁ ନୋହଇ ପ୍ରାପତ
ପିତାର ଶତ୍ରୁ ତୋର ଅଛଇ ବହୁତ ।୬୦
ଦେଶ ପ୍ରଜା ପାତ୍ର କୁଟୁମ୍ବ ଭଣ୍ଡାର
ସଇନି ସୋହୋଦ୍ର ଏ ଷଡ଼ ପ୍ରକାର ।
ଏହା ଯେବେ ଅଙ୍ଗ କରିଣ ସମ୍ଭାଳି
ତେବେ ସେ ପ୍ରାପତ ହୋଇବ ମହୀଆଳି ।
ନୃପତି ନିଧନ ଶ୍ରୀରାମ ବନବାସ
ରାଜ୍ୟ ଲୋକେ ତୋତେ କରିଛନ୍ତି ଆଶ ।
ସିଂହାସନେ ବସି ତୁ ହୁଅସି ଅବିଷେକ
ଯେ ଯାହାରେ ନିଚିନ୍ତ ହୁଅନ୍ତୁ ସର୍ବଲୋକ ।
ଶେତ ଛତ୍ରକୁ ସେବା କରସି ମହାବୀର
ବାହୁବଳେ ନିଜ ରାଜ୍ୟ ରକ୍ଷାକର ।୭୦
ଭ୍ରଥ ବୋଲା ମନ୍ତ୍ରୀଗଣଙ୍କ ବୋଲ ଶୁଣି
ଶ୍ରୀରାମ ମୋହୋର ପଚୁଂପ୍ରାଣ ଗୋସାଇଂ ।
ଏ ରାଜ୍ୟେ ମୋହୋର ଅଛଇ କିସ ବିସେ
ଚନ୍ଦ୍ର ଦେବତା କି ସୂର୍ଯ୍ୟ ପ୍ରାଏ ଦିଶେ ।
ରାଜା ହୋଇତ ମୁଂ ନୋହଇ ଭାର୍ଜନ
ଶ୍ରୀରାମ ସେ ଅଟନ୍ତି ଅଯୋଧ୍ୟା ରାଜନ ।
ଯେଡ଼େ ଭାରା କିପାଇଂ ମୁଂ
ଲୋଭେଣ ବହିବି
ଜନ ମୁଖେ ନିଚଏ ଉପହାସ୍ୟ ପାଇବି ।
ଉଚ୍ଚ ବୃକ୍ଷ ଉପରେ ଯେହ୍ନେ ଫଳ ଫଳିଥାଇ
ବାଙ୍ଗର ମନିଷ୍ୟ ତହିଁକି ହାଥ ଯେ
ବଢ଼ାଇ ।୮୦
ବଳ ପାଇଲେ ସେ ଆଣିମନା ଫଳ
ତେମନ୍ତ ହୋଇବି ମୁଂ ହୋଇଲେ
ମହୀପାଳ ।
ଦୋହରା ଘରେ ଯେସନେ ଶ୍ୱାନ ପଶଇ
ମୁହିଂ ରାଜା ହୋଇଲେ ତେମନ୍ତ ଦିଶଇ ।
ଗଧକଇ ଯେହ୍ନେ ବାନ୍ଧି ପାଟ ସୂତା
ହଂସ ପଲ ମଧ୍ୟେ କି ବକଇ ବକତା ।
ରାମହିଂ ସେ ରାଜା ରାଜ୍ୟକୁ ଶୋଭାପାଇ
ମୁହିଂ ରାଜା ହୋଇଲେ କି ଯଶ ଉପୁଜଇ ।
ଶ୍ରୀରାମକୁ ଆଣିମି ପାଦ ତଳେ ପଡ଼ି
ମୋହୋର ବୋଲେ ସ୍ୱାମୀ ଆସିବେ
ବାହୁଡ଼ି ।୯୦
ପିତାକୁ ନ ପାଇବି ଏହି ସେ ହୋଇବ
ଚାଲ ବାହୁଡ଼ାଇ ଆଣିମା ରାଘେବ ।
ଯେତେ ବୋଲି ସୁମନ୍ତକୁ ବୋଇଲାକ ଚାହିଁ
ସଜ କର ସନ୍ୟ କାଲି ଯିବି ମୁହିଂ ।
ବଶିଷ୍ଟେ ବୋଇଲେ ବାବୁ ଶୁଣସିରେ ଭ୍ରର୍ଥ
କେବେ ହେଂ ନ ନେଉଟଇଟି ରଘୁନାଥ ।
ପିତାର ସତ୍ୟ ସେ ନ ଲଙ୍ଘନ୍ତି ଶ୍ରୀରାମ
ଚଉଦ ବରଷ ବନେ କରିବେ ବିଶ୍ରାମ ।
ତୁ ଯେବେ ରାଜାହୋଇ ସମ୍ଭାଳସି ପୃଥ୍ୱି
ଅନେକ ଶତୃ ଦଶରଥ ଅରଜି ଅଛି ।୧୦୦
ଛିଦ୍ର ପାଇଣ ରିପୁ କଳିବେ କଟକେ
ଦୁଃଖୀ ହୋଇବେ ଅଯୋଧ୍ୟାର ଲୋକେ ।
ଭ୍ରର୍ଥ ବୋଇଲେ ବଶିଷ୍ଟଙ୍କ ବଚନେ
ଭୋ ମୁନି ତୁମ୍ଭେ ଯେହା ବିଚ୍ଛର
କିମ୍ବା ମନେ ।
ମୋହୋର ବୋଲ କରି ଆସିବେ ରଘୁନାଥ
ଯିବା କଥା ମୋର ଅଟଇ ଯଥାର୍ଥ ।
ତୁମ୍ଭେ ମୋତେ ଆନ ନ ତିଆର ମୁନି
ଶ୍ରୀରାମଙ୍କୁ ନ ଦେଖିଲେ ମୋ ଜୀବନ
ନୋହେ ଧନୀ ।
ଶ୍ରୀରାମ ସେ ରାଜା ଅଟନ୍ତି ଏ ପୁରୀ
ମୁଇଂ କିମ୍ବା ଏଥି ହେବି ଦଣ୍ଡଧାରୀ ।୧୦
ବଶିଷ୍ଟେ ବୋଇଲେ ଯେ ତୋହୋର ଇଚ୍ଛା
ଆମ୍ଭର ସନମତ ହୋ ଦଶରଥ ବଛା ।
ଶ୍ରୀରାମ ସେ ଦେଖିବୁ କେବଣ ନ ଯୋଗାଇ
ଏମନ୍ତ ଶୁଣି ସୁମନ୍ତ ବୋଲଇ ।
ତୁମ୍ଭେ ମହାଋଷି ବିଚ୍ଛର କିମ୍ବା ଆନ
ଭ୍ରର୍ଥ କହିଲା ଯେବଣ ବିଧାନ ।
ସବୁରି ବିଚ୍ଛରକୁ ଏମନ୍ତ ଯୋଗାଇ
ନୋହିଲେ ଶ୍ରୀରାମକୁ ଦେଖିବାଟିକି ଯାଇ ।
ଶୁଣିଣ ବଶିଷ୍ଟେ ହୋଇଲେ ହରଷ
ସୁମନ୍ତକୁ ଚାହିଁ ବୋଇଲେ ରଘୁ ଶିଷ ।୨୦
ରଥ ଗଜ ଅଶ୍ୱ ପାଦାନ୍ତି ସଜ କର
କାଲି କଟକାଇ ଦୁଇଘଡ଼ି ଭିତର ।
ଜ୍ୟେଷ୍ଠ ଶୁକଳ ଯେ ନବମୀ ସୋମବାର
ଦୁଜା ନକ୍ଷତ୍ର ଭ୍ରର୍ଥକୁ ସମ୍ପଦ ତାର ।
ପଛିମ ଦିଗକୁ ଶୁଭ ଲଗ୍ନ ବଳି
ଦେଢ଼ଘଡ଼ିମାନେ ଏଠାରୁ ଯିବାଚଳି ।
ଏତେ ବୋଲିଣ ସେ ନିଜ ପୁର ଯାଇ
ନଗ୍ରେ ସୁମନ୍ତ ଯେ ଘୋଷଣ ଦିଆଇ ।
ଭ୍ରର୍ଥ କଟକାଇ କରିବେ ପ୍ରଭାତେ
ଶ୍ରୀରାମକୁ ବାହୁଡ଼ାଇ ଆଣିମା ନିମନ୍ତେ ।୩୦
ରାଜାର ନିଯୋଗୀ ଅଟଇ ଯେତେ ଲୋକ
ଚତୁରଂଗ ବଳ ସାମନ୍ତ ସେବକ ।
ସଜହୋଇ କାଲି ସିଂଘଦ୍ୱାରେ ଥିବ
ଆଜ୍ଞା ଭ୍ରଷ୍ଟ କଲେ ପ୍ରାଣେ ନାଶଯିବ ।
ଏସନେକ ବୋଲି ମନ୍ତ୍ରୀ ଘୋଷଣ ଦିଅଇ
ବାଟ ପରଜାନ୍ତ ସେ କହିଣ ପଠିଆଇ ।
ଭ୍ରର୍ଥ କଟକାଇ ଯେ କରିଣ ତେଣେ ଯିବେ
ଯେ ଯେଣେ ସମ୍ପଦ ଘୋଷଣ କରୁଥିବେ ।
ବାଟରେ ଉପଗତ କରିଣ ଥିବେ ଆଣି
ଦୁଇ କତି ବସାଇଥିବ ବାସ ପାଣି ।୪୦
ଅନ୍ନ ବେଞ୍ଜନ ପିଠା ପଣା ବିଧି
ଏମାନ ସମସ୍ତ କରିଥିବେ ସିଧି ।
ଦୁଧ ଦହି ପଣା ପଇଡ଼ ପଣସ
ଆମ୍ବ ତାଳସଜ ଥିବ ଦୁଇପାଶ ।
ଫୁଟି କାକୁଡ଼ି ସିଙ୍ଗଡ଼ା କଇଥ

ଡାଳିମ୍ବ ଶାକର ଦୋରନ୍ଧା ନବାତ ।
ହାଥୀ ଘୋଡ଼ାଙ୍କର ଯେ ବିରି ଘାସ ଥିବ
ଉଭାଳକେ ଦୁଇ କୂପ ଖୋଳାଇବ ।
କୋଶକେ ପୋଖରୀ ଏ ଚଉଳାଗି ଗଛ
ଠାବେ ଠାବେ ବାଢ଼ି ଥିବ ଦହି ମାଛ ।୫୦
ଯୋଜନେକେ ମଣ୍ଡୋପ କରିଥିବ ଶାଳ
ଆଠକୋଶେ ଥିବ ଏକଇ ଦେଉଳ ।
ଭୋଗ ରାଗ ସମ୍ପଦ ହୋଉଥିବ ଅପାର
ତହିଁ ସେ ସାରିବ ରାଜା ଦେବାର୍ଚ୍ଚନ
ବେଭାର ।
ଉଭାଳେକ ଯାଉ ଉଆସେକ କରିଥିବ
ଖାଲ ଖୋଲେ ବାଟେ ବନ୍ଧ ବନ୍ଧାଇବ ।
ତିନି ଶତ ହାଥୀ ଆଡ଼େ ଯିବେ ଗଳି
ଦାଣ୍ଡ ଛଡ଼ାଇବ ପକାଇବ ବାଲି ।
ରାତ୍ରକର ମଧ୍ୟେ କରିବ ଭିଆଣ
ଏତେ ବୋଲି ମନ୍ତ୍ରୀ ଦେଲା
ଫରମାଣ ।୬୦
ଲେଙ୍କା ନମହତା ଆଡ଼େତିଆ ଗଲେ
ଦେଶେ ଦେଶେ ପଶି ଆଜ୍ଞା ଲଗାଇଲେ ।
ଶୁଣି ପରଜା ଲୋକେ ସେ ଆନନ୍ଦ ହୁଅନ୍ତି
ରାଜ କାର୍ଯ୍ୟ ଅର୍ଥେ ଲୋକ ସେ ପେଷନ୍ତି ।
ଯେତେ ଆଜ୍ଞା ଦେଲ ସେ ସୁମନ୍ତ ମନ୍ତ୍ରୀବର
ସମସ୍ତ ସମ୍ପାଦିଲେ ରାତ୍ରକ ଭିତର ।
ଏଥୁ ଅନନ୍ତରେ ଯେ ଅଯୋଧାର ଲୋକେ
ରଜନୀ ଉଜାଗର ସମସ୍ତେ ଉତ୍ସୁକେ ।
ସୁମନ୍ତ ମନ୍ତ୍ରୀ ରାତ୍ର ହୁଂ ଅଇଲା
ସଜହୋଇ ଆସି ଟମକ ଦିଆଇଲା । ୭୦
ବାଜଇ ଢୋଲ ଟମକ ବୀରତୂର
ଶଙ୍ଖ ମହୁରି ଭେରୀ ସପତ ସ୍ୱର ।
ରାମତାଳି ତାଳ କଂସାଳ ମର୍ଦ୍ଦଳ
ଘଣ୍ଟି ଘାଘୁଡ଼ି ତୂରୀ କାହାଳୀ ଗହଳ ।
ଦମା ଗିଡ଼ିଗିଡ଼ି ବିଜିଘୋଷ ବାଜେ
କି ଜାଣି ଆଷାଢ଼ ମେଘ ଗାଜେ ।
ରଥ ଗଜ ଅଶ୍ୱ ପାଦାତି ସଜ ହୋନ୍ତି

ରାଜା ସିଂହଦ୍ୱାରେ ଯାଇଣ ମିଳନ୍ତି ।
ନିତ୍ୟକର୍ମ ସାରି ଭ୍ରର୍ଥ ଶତ୍ରୁଘନ
ଶ୍ରୀରାମଙ୍କୁ ଦେଖିବାକୁ ଉଛୁକ ତାର
ମନ ।୮୦
ବଶିଷ୍ଠ ବାମଦେବ ଜାବାଳି କଶ୍ୟପ
ଏମାନେ ମିଳିଲେ ଆସି ଭ୍ରର୍ଥର ସମୀପ ।
ମାତାମାନେ ବୋଇଲେ ଆମ୍ଭେ ସର୍ବ ଯିବୁ
ଶ୍ରୀରାମ ଲକ୍ଷଣ ସୀତାକୁ ଦେଖିବୁ ।
ଶ୍ରୀରାମଙ୍କୁ ଦେଖିବୁ ଯେ ଶ୍ରୀରାମ ପାଶେଥିବୁ
ଶ୍ରୀରାମ ଯେଣେ ଯିବ ଆମ୍ଭେ ତେଣେ
ଯିବୁ ।
ନଗ୍ର ନରନାରୀ ହୋଇଲେ ସର୍ବ ସଜ
ବୋଲେ ଅଯୋଧ୍ୟାରେ ନାହିଁ ଆମ୍ଭର
କାର୍ଯ୍ୟ ।
ବାଳବୃଦ୍ଧା ଛାଡ଼ି ସମସ୍ତେ ସଜ ହୋନ୍ତି
ଭ୍ରର୍ଥ ଶତ୍ରୁଘନ ରଥ ଆରୋହନ୍ତି । ୯୦
ମନ୍ତ୍ରୀଗଣମାନେ ଗଜ ପିଠିରେ ବସି
କେ ଗଜ ପିଠିରେ କେ ରଥ ଚଢ଼ି ଆସି ।
କେ ଦୋଳି ପଲଙ୍କ କେ ଆରୋହି ବିମାନ
ହାନ୍ଦୋଳାରେ ବସିଲେ ଦଶରଥ
ରାଣୀମାନ ।
ଧାଈ ମୁଦୁସୁଲୀ ଝଡ଼ା ପରିବାରୀ
ଲୋକ ଆସିବାର ସଂଖ୍ୟା କରିତ ନ ପାରି ।
ଅଯୋଧ୍ୟାର ରକ୍ଷାପାଳ ନ ଥୋଇଲେ କାହିଁ
ତୁଚ୍ଛା କରିଗଲେ ସକଳ ଦେଶମହୀ ।
ଭ୍ରର୍ଥ ଶତ୍ରୁଘନ ଚଳିଲେ ଭାଇ ବେନି
ସୁକୃତା ଉର୍ମିଳା ମାଳେଣୀ ତିନି
ଭଗ୍ନୀ ।୧୦୦
ହାନ୍ଦୋଳାରେ ବସି ଶାଶୁଙ୍କ ସାଙ୍ଗେ ଗଲେ
ଯହୁଁ ସେ ଭ୍ରର୍ଥର ବଚନ ପାଇଲେ ।
ଶ୍ରୀରାମଙ୍କୁ ଦେଖିବେ ବୋଲି ତାଙ୍କ ମାତା
ଆନନ୍ଦେଣ ଉଷତ ଛାଡ଼ିଣ ସର୍ବଚିନ୍ତା ।
ଭ୍ରର୍ଥର ଚଳନ୍ତେ ନଟବୃନ୍ଦ ଚଳି
ହାଟୁଆ ବାଟୁଆ ତେଲି ଯେ ତାୟୋଳି ।

ମାଳି କୁମ୍ଭାର ଯେ ଚଳନ୍ତି ଘୋଡ଼ା ଘାସ
ବଣିଜାର ଲୋକେ ଅନେକ ତହିଁ ଆସି ।
ଥାଠ ଚଳନ୍ତେ କମ୍ପଇ ମେଦିନୀ
ଆଗେଣ ବାଜଇ ଲକ୍ଷେକ ଶଙ୍ଖ ଧ୍ୱନି ।୧୦
ଆଲମ୍ବ ବିଲମ୍ବ ଉଦଣ୍ଡ ପାଟ ଛତ୍ର
ଝିନ ଚିରାଳ ଉଡ଼ଇ ବୀର ନେତ ।
ବାଦ୍ୟର ଘାଏ କୁରୁମ ଚମକି
ଦଶ ଦିଶ ରାଏ ଭୟ କଲେ ଶଙ୍କି ।
ଭ୍ରର୍ଥର ସନିଧ୍ୟେ ଯେ ପଣ୍ଡିତ ଜନେଛନ୍ତି
ନାନା କଉତୁକେ କଥାନ୍ତ ବୁଝାନ୍ତି ।
ବାଟେଣ ଲାଗି ଅଛଇ ଠାବେ ଠାବେ
ଯେ ଯାହା ଇଚ୍ଛଇ ସମସ୍ତ ପାଇବେ ।
ପଥେ ଯାନ୍ତେ ପରଜାଏ ଦେଖି ତ ଆସନ୍ତି
ନୂଆ ରାଜା ବୋଲି ଯେ ଆନନ୍ଦ
ହୁଅନ୍ତି ।୨୦
ସେଦିନ ଗୋମତୀ କୂଳେଣ ରହିଲେ
ରାତ୍ର ପଭ୍ରାତେଣ ତହୁଂ ଚଳିଗଲେ ।
ଗଙ୍ଗା କୂଳେ ଯାଇ ହୋଇଲେ ପ୍ରବେଶ
ବୀରତୂର ଘାଏ କମ୍ପଇ ଦଶଦିଶ ।
ଶ୍ରୀରାମର ମଇତ୍ର ଗୁହ ନାମେ ଶବର
ଭାଗ୍ୟରଥୀ କୂଳେ ଅଟଇ ତାର ଘର ।
ଦଶ ଶସ୍ତ୍ର ବଳ ଘେନି ଓଗାଳିଲା ଆସି
ସନ୍ୟ ସମୋଦ୍ରକୁ ସେ ପଶିଲେକ ଝାସି ।
ଧନୁରେ ଗୁଣ ଦେଇ କାଣ୍ଡନ୍ତ ବିନ୍ଧିଲେ
ଯିବାର ବାଟ ସେ ଆବୋରି
ନିରୋଧିଲେ ।୩୦
କିଳିକିଳା ଦେଇଣ ଡାକନ୍ତି ଅବିଚ୍ଛନ୍ନ
ମାର ମାର ବୋଲିଣ ବୋଲନ୍ତି ବଚନ ।
ଭ୍ରର୍ଥର ଆଗେ ଚାର କହିଲାକ ଯାଇ
ଶବର ଆସି ଓଗାଳି ଅଛଇ ଗୋସାଇଁ ।
ଆଗିଆଣି ବାଟେ ସେ କଣ୍ଡାକଣ୍ଡି କଲେ
ଏ ବଚନ ଶୁଣି ଭ୍ରର୍ଥବୀର ବୋଲେ ।
କିଂପା ଯୁଝିଲ ସେ ପଉରି ଆସ ଯାଇ
କି ଅବା ବାଟ ପାରଇ ଯେଥେ ଥାଇ ।

କଥା ଜାଣି ସେ କରିବା ନା ଦ୍ୱନ୍ଦ
କି କାରଣେ ବାଟ ଓଗାଳି ଅଛି କନ୍ଧ ।୪୦
ଏତେ ବୋଲି ଭ୍ରର୍ଥ ରଥ ବାହିଗଲା
ଗୁହ ନାମେ ଶବର ଆଗରେ କହିଲା ।
ଭ୍ରର୍ଥ ବୋଇଲା ତୁ ଶୁଣସି ଶବର
ବାଟ ଓଗାଳି କିମ୍ପା କରୁଅଛୁ ଅବେଭାର ।
ଶ୍ରୀରାମ ଭାଇ ମୁଂ ନାମ ମୋର ଭ୍ରର୍ଥ
ଦଶରଥର ସୁତ ମୁଂ ଅଯୋଧ୍ୟାର ନାଥ ।
ମାତା ମୋର କଏକୟା ହିଂସା ମନ କଲା
ପିତାଙ୍କୁ କପଟେ ସତ୍ୟ କରାଇଲା ।
ଭ୍ରର୍ଥ ରାଜା ହୋଇ ଅଯୋଧ୍ୟାରେ ଥାଉ
ଶ୍ରୀରାମ ଚଉଦ ବରଷ ବନ ଯାଉ । ୫୦
ତହୁଂ ସେ ଶ୍ରୀରାମ ସୀତା ଲଇକ୍ଷଣ
ବନକଇ ଗମନ କଲେ ତିନି ଜଣ ।
ରାମ ବନଯାନ୍ତେ ପିତା ପ୍ରାଣ ହତ
ଅଜା ଘରେ ଆମ୍ଭେ ଥିଲୁ ବେନି ଭ୍ରାଥ ।
ବାରତା ପାଇଣ ସେ ଅଇଲୁ ଖର କରି
ଦେଖିଲୁ ନାରଖାର ଯେ ହୋଇଣ
ଅଛି ପୁରୀ ।
ପିତାର ଶବ ଅଗ୍ନିରେ ଦାହ କଲୁ
ଦ୍ୱାଦଶ ଦିବସେ ଶୁଧ୍ୟ ସେ ହୋଇଲୁ ।
ମନ୍ତ୍ରୀଗଣ ବୋଇଲେ ତୁ ରାଜା ହୁଅସି
ସେ କଥା ମୋହୋର ମନରେ ନ
ପଶି ।୬୦
ଶ୍ରୀରାମ ସେ ରାଜା ମୁଇ ତାର ଭୃତ୍ୟ
ଜ୍ୟେଷ୍ଟ ଭାଇ ପ୍ରତକ୍ଷେ ଅଟଇ ଯେ ତାତ ।
ଶ୍ରୀରାମଙ୍କୁ ନ ଦେଖିଲେ ପ୍ରାଣ ମୋର ନାହିଂ
ହା ହା ଭାଇ ତୋତେ ପାଇବଇ କାହିଂ ।
ଯେତେ ବୋଲି ଭ୍ରର୍ଥ ଧରଣୀରେ ପଡ଼ି
ଉଚ୍ଚ ସ୍ୱରେ କାନ୍ଦଇ ଶିରେ କର ତାଡ଼ି ।
ଶତୃଘନ ସୁମନ୍ତ ଧଇଲେ କୋଳକରି
ଗୁହ ନାମେ ଶବର କହଇ କରଯୋଡ଼ି ।
ଭୋ ସ୍ୱାମୀ ଭ୍ରର୍ଥ ନ ଧର ମୋର ଦୋଷ
ମୁଇ ସେ ଶ୍ରୀରାମର ମଇତ୍ର ବିଶ୍ୱାସ ।୭୦

ସୁମନ୍ତ ଜାଣି ନା ସକଳ ବୃତ୍ତାନ୍ତ
ରାତ୍ରକ ଏଥେ ରହି ବଞ୍ଚିଲେ ସୀତ୍ୟାକାନ୍ତ ।
ଏଇ ପୁଇ ଚାନ୍ଦିଆ ବୃକ୍ଷ ମୂଳେ ଥିଲେ
ତିରଣ ପାଡ଼ି ଶେଜ ଶେଜାଇ ଶୋଇଲେ ।
ଲଇକ୍ଷଣ ଧନୁ ଶସ୍ତ୍ର ଧରିଣ ଜଗି ବସି
ମୁହି ଅନିଦ୍ରା ହୋଇଲି ସେହି ନିଶି ।
ଏହି ବଟକ୍ଷୀରେ ଶ୍ରୀରାମ ଜଟା କଲେ
ନାବ ଚଢ଼ି ଗଙ୍ଗା ପାରି ହୋଇଗଲେ ।
ପ୍ରୟାଗଠାକୁ ବୋଲି ମୁହି କହିଦେଲି ବାଟ
ବାରତା ପାଇଲି ସେ ଅଛନ୍ତି ଚିତ୍ରକୂଟ ।୮୦
ଶୁଣିକରି ଭ୍ରର୍ଥ ରୋବଇ ତ ପୁଣି ପୁଣି
ଶ୍ରୀରାମର ଯେ ଦୁଃଖ ପାଇବା କଥା ଶୁଣି ।
ରଥରୁ ଓହ୍ଲାଇ ଶବର ଭୁଜ ଧରି
ଶ୍ରୀରାମର ଥିଲା ଠାବ ଲୋଡ଼ଇ ଅନୁସରି ।
ପୁଇ ଚାନ୍ଦିଆରେ ଠାରେ ତିରଣ ଶେଯ ଦେଖି
ଭ୍ରଥ ଥନ ଥନ କରଇ ବେନି ଆଖି ।
ବୋଲଇ ଏହା ମୋର ଜନନୀର ଫଳେ
ଶ୍ରୀରାମ ସେ ଦୁଃଖ ପାଇଲେ ଏତେ କାଳେ ।
ବଟବୃକ୍ଷ ଦେଖିଣ ଶବର ପୁଛି କାନ୍ଦି
ଏଥିର କ୍ଷୀରେ ମୋର ଭାଇ ଜଟା
ବାନ୍ଧି ।୯୦
ଏତେ ବୋଲି ଭ୍ରଥ ଶତୃଘନ ବେନି
ଆପଣେ ଜଟା କଲେ ବରକ୍ଷୀର ଘେନି ।
ବୋଇଲେ ଶ୍ରୀରାମ ଯେବେ ତପସେନୀ
ବ୍ରତ
ଆମ୍ଭେ କିମ୍ପା ନୋହିବୁ ତାହାଙ୍କ ସଜାତ ।
ଦେଖିଣ ଥାଠ ଲୋକେ କରନ୍ତି ହାହାକାର
ସୁନ୍ଦର କେଶ କିମ୍ପା କଲେ ନାରଖାର ।
କେ ବୋଲେ ଭାଇ ଭଗତି ଭାବ ଘେନି
ସୋଦରିମା ପଣେ ସେ ହୋଇଲେ
ତପସେନୀ ।
ଗଂଗା କୂଳରେ ରହିଲେ ସେଦିନ
ଶବର ଆଣିଦେଲା ଯୋଗାଣ
ସଞ୍ଚାମାନ ।୧୦୦

ରଜନୀ ପ୍ରଭାତେ ନିତ୍ୟକର୍ମ ସାରି
ଗୁହ ନାମେ ଶବରକୁ ଭ୍ରଥ କୋଳକରି ।
ଦେହ ସାଦ୍ରିଶେ ତାକୁ ଅଳଙ୍କାର ଦେଲେ
ମୁଣ୍ଡରେ ନେଇ ତାକୁ ପାଟେକ ବାନ୍ଧିଲେ ।
କୋଳକରି ବୋଇଲେ ତୁ ଶ୍ରୀରାମର ସଖା
ମୋତେ ଦୟାକରି ଭାଇ କି ମୋର ଦେଖା ।
ଆଗ ଦଣ୍ଡେ ତୋର ବଳ ଘେନି ଯିବୁ
ଶ୍ରୀରାମଙ୍କୁ ଭେଟିବା ଯାଏ ମୋର
ସାଙ୍ଗେ ଥିବୁ ।
ଶୁଣିଣ ଶବର କଲାକ ଶରଧା
ଅଙ୍ଗ ବଳ ତାର ଦଶଲକ୍ଷ ଯୋଦ୍ଧା । ୧୦
ଆଜ୍ଞା ଦେଇ ସେ ନାବକ୍ତ ଅଣାଇଲା
ଭ୍ରଥର ସନ୍ୟ ଦଣ୍ଡପାରି ହୋଇଗଲା ।
ଏକା ନାବକେ ସହସ୍ରେ ଲୋକ ଯାଇ
ଡଙ୍ଗାର ଗହଳେ ନ ଦିଶଇ ନଈ ।
ଭ୍ରଥ ଶତୃଘନ ଚଢ଼ଇ ନାବରେ ବିଜେ କରି
ମନ୍ତ୍ରୀଗଣ ସହିତେ ସୁମନ୍ତ ଆଦି କରି ।
ଦର୍ପଣ ଚାମର ସେ ମଣ୍ଡିଲା ଅଛି ତହିଂ
ଚିରାଳ ଉଡ଼ନ୍ତି ସେ ଫରହର ହୋଇ ।
ଚିତ୍ର ବିଚିତ୍ର ସେ ସୁବନ୍ୟ ନିର୍ମାଣ
ଗଜଦନ୍ତ ପାଗଡ଼ ଅଛଇ ପାଶେଣ ।୨୦
ଘଣ୍ଟି ଘାଘୁଡ଼ି ରୁଣଝୁଣ ବାଜେ
କି ଜାଣି ପଟାନ୍ତର ସୁରଯାନ ସାଜେ ।
ଯଉମାଳା ମଙ୍ଗ ଅଢ଼ା ମୁଣ୍ଡି କମ
ଆଗର ମଂଗରେ ମଗରମୁହିଂ କମ ।
କତିରେ ହିଂଗୁଳା ବଉଳା କାଚମାଳି
ଫୁଲ ମଣ୍ଡିଅଛି କେରି କେରି କରି ।
ପଛ ମଂଗ ବଢ଼ି ଗଗନକୁ ଗଲା
ଭଲା ମହାରଣା ନିର୍ମାଣ ତାହା କଲା ।
ଚାଙ୍ଗୁ ବନ୍ଧା ଫେର କାଙ୍ଗୁଲା ତହିଂ ଅଛି
ଯୁଧ କାଳ ଶସ୍ତ୍ର ଭଲା ତହିଂ ସଞ୍ଚି । ୩୦
ଉପରେ ଚିରାଳ ଉଡ଼ଇ ଫିରି ଫିରି
ତହିଂ ଥାଇ ମଙ୍ଗୁଆଳ ସୁକାସନ ଚଢ଼ି ।
ଶତେକ ଆହୁଲା ପଡ଼ଇ ଚଉପାଶ

ନାବ ଚଳିଯାନ୍ତେ ଶୁଭଇ ନିରିଘୋଷ ।
ନାବ ବାହିଣ କେ ଭେଳା ବାନ୍ଧି ଯାଇ
ଯେ ଯେଣେ ପାରଇ ସେ ତେଣେ
ପାରିହୋଇ ।
ଗୁହ ନାମେ ଶବର ଆଗେ ଚଳିଗଲା
ଦକ୍ଷିଣ କୂଳେ ଯାଇ ଭ୍ରର୍ଥ ବିଜେ କଲା ।
ନାବରୁ ଓହ୍ଲାଇ ରଥେ ବିଜେ କରି
ପବନ ହୁଁ ବେଗେ ଉଡ଼ନ୍ତି ଅଶ୍ୱ ଚାରି ।୪୦
ସାତ ଘଡ଼ିମାନେ ସବୁ ପାରି ହୋଇ
ଅଗମ୍ୟ ବନରେ ପଶିଲେକ ଯାଇ ।
ଗୁହ ନାମେ ଶବର କଢ଼ାଇଅଛି ବାଟ
ଶବର ସାଂଗରେ ଗୋଡ଼ାନ୍ତି ସବୁ ଥାଟ ।
ବେଳ ଘଡ଼ିଏ ଥାଉ ପ୍ରୟାଗରେ ହୋନ୍ତି
ଶୁଣି ଭାରଦ୍ୱାଦଶେ ପାଛୋଟି ଘେନି ଯାନ୍ତି ।
ଭ୍ରତ ଶତୃଘନ ରଥରୁ ଓହ୍ଲାଇ
ମୁନିର ଚରଣେ ସେ ଓଳଗନ୍ତି ଯାଇ ।
ଦେଖିଣ କଲ୍ୟାଣ କରନ୍ତି ତପଶୀଳ
ରାଜ୍ୟ ରାଷ୍ଟ୍ରକଥା ପୁଛନ୍ତି ସକଳ । ୫୦
ବଶିଷ୍ଠ ବାମଦେବ ଜାବାଳି କଶ୍ୟପ
ଦେଖାଦେଖି ହୋଇଲେ ସକଳ ଯାଗନିକ ।
ଭ୍ରଥକୁ ଚାହିଂଣ ସେ ବୋଇଲ ମାହାମୁନି
ତୁ କିମ୍ପା ଅଇଲୁ ହୋ ସମରାଜ୍ୟ ଘେନି ।
ଶ୍ରୀରାମ ବନବାସ ଯୋଗ ଯେବେ କଲା
ପିତା ତୋର ତୋତେ ରାଜ୍ୟ ସମର୍ପିଲା ।
ଅଯୋଧ୍ୟା ଛାଡ଼ିଣ ତୁ କିମ୍ପା ଅଇଲୁ ଏଥ
କର ଯୋଡ଼ିଣ ସେ କହଇ ବୀର ଭ୍ରର୍ଥ ।
ଶୁଣ ମହାମୁନି ମୁଂ ଯେମନ୍ତେ ଅଇଲି
ଏମାନ ନ ଜାଣଇ ମୁଂ ଅଜାଘରେ
ଥିଲି ।୬୦
ଶ୍ରୀରାମ ଅଇଲା ଛଡ଼ ଦିବସ ରାତି
ପ୍ରାଣ ହାରିଲାକ ଦଶରଥ ନୃପତି ।
ଦୂତ ଗଲେଣ ମୁଂ ଅଇଲଇ ବେଗେ
ଏସନ ବିଧାନ କହିଲେ ମୋର ଆଗେ ।
ମାତା ଚଣ୍ଡାଳୁଣୀ ମନ୍ଥେଡ଼ୀ ବୋଲ କଲା

ଶ୍ରୀରାମର ବନବାସ ଦୁଖ ସେ ବିହିଲା ।
ମୁଇଂ କିମ୍ପା ହୋଇବି ରାଜା ଶ୍ରୀରାମର ଥାଉ
ଶ୍ରୀରାମର ତହିଂକି ଅଛଇ ଏବେ ଯାଉ ।
ପାଦତଳେ ପଡ଼ି ଆଣିମି ବାହୁଡ଼ାଇ
ବାରତା ଜାଣଟିକି ଅଛନ୍ତି ମୁନି କାହିଂ ।୭୦
ମୁନି ବୋଇଲେ ରାମ ଏଥକୁ ଅଇଲେ
ଫଳ ମୂଳ ଦେଲି ରାତ୍ରେକ ରହିଲେ ।
ଆମ୍ଭେ ଦେଖାଇ ଦେଲୁ ତାକୁ ବାଟ
ଆଜ ସରିକି ରାମ ଅଛନ୍ତି ଚିତ୍ରକୂଟ ।
ତୁ ଏବେ ମୋର ବଚନ ଭ୍ରଥ ଶୁଣ
ତୋହୋର ଥାଠକୁ ଦେବଇ ଯୋଗାଣ ।
ଯେ ଯାହାର ବାଞ୍ଛା ପୂରାଇବି ଏହିକ୍ଷଣି
ଭ୍ରର୍ଥ ବୋଇଲା ମୁନିଙ୍କ ବାଣୀ ଶୁଣି ।
ଅପ୍ରମିତ ଥାଠ ଲୋକ ମୋ ବହୁତ
ତୋତେ କିମ୍ପା ଘଞ୍ଚାଣ କରିବି
ତପୋବନ୍ତ ।୮୦
ମୁନି ବୋଇଲେ ତୁ ନ ଜାଣୁସି କିଛି
ତପବଳେ ଆମ୍ଭର ଅନେକ ବୁଦ୍ଧିଅଛି ।
ଏତେ ବୋଲି ମୁନି ମଢ଼ିଆରେ ପଶି
ଦୋହୋରା ଅଗ୍ନି ସନିଧ୍ୟରେ ବସି ।
ଦାକ୍ଷିଣି ମନ୍ତ୍ର ଜପି ଘେନିଲାକ ଜଳ
ତକ୍ଷଣେ ନିର୍ମାଣ ହୋଇଲା ସକଳ ।
ଭ୍ରଥକୁ ନବର ପାତ୍ରକୁ ଉଆସ
ଆବର ଲୋକକୁ ଅନରୂପେ ବାସ ।
ରାଜାର ନବର ମଣ୍ଡିଲା ଯତ୍ନକରି
ବସ୍ତ୍ର ଚାମର କୁସୁମ ଅଛି ପୂରି । ୯୦
ସୁବର୍ଣ୍ଣର କଳସ ନେତର ଚିରାଳ
ତ୍ରୋଣା ଲମ୍ୱାଇଲା ମୁକୁତାର ମାଳ ।
ଦ୍ୱାରେଣ ପିତୁଳି ସୁବର୍ଣ୍ଣ ଲେଖନ
କେବଣ ହିଂ ପୁର ଅରୁଣର ବର୍ଣ୍ଣ ।
କାହିଂ ହିଙ୍ଗୁଳା କାହିଂ ସ୍ଫଟିକ ନିର୍ମାଣ
କେବଣ ଘର ଗୋଟା ମର୍କତ ରସାଣ ।
ଦେଖିଣ ଭ୍ରର୍ଥ ବୀର ହୋଇଲା ହରଷ
ଧନ୍ୟ ଧନ୍ୟ ମହିମା ତୋର ଭାରଦ୍ୱାଦଶ ।

ଯେତେ ବୋଲି ଯାଇ ଜଗତୀରେ ଉଠି
ଦେଖିଲା ମଣ୍ଡୋପ ଅଷ୍ଟରତ୍ନ କାଠି । ୧୦୦
ଗଜଦନ୍ତ ଖଟ ଦୋଳି ଅଛଇ ଉକୁଟିଲା
ଶୁଦ୍ଧ ସୁବର୍ଣ୍ଣର ଚିତ୍ର ପିତୁଳିଏ ରଖିଲା ।
ଉପରେ ଶେଜାଇଲା ଅଛି ଦିବ୍ୟ ଶେଜ
ଦେଖିଣ ଭ୍ରଥବୀର ହୋଇଲା ଆଶ୍ଚିଯ ।
ଚାନ୍ଦୁଆର କିରଣ ସେ ଚନ୍ଦ୍ର ପଟାନ୍ତର
ପାଶେଣ ମଣ୍ଡିଅଛି ଶେତ ଯେ ଚାମର ।
ଭ୍ରର୍ଥ ବୋଇଲା ଏ ଦେବତାଙ୍କର ଆସନ
ଶ୍ରୀରାମ ସେ ଯେଥେ ବସିବାକୁ ଭାର୍ଜନ ।
ନମସ୍କାର କରିଣ ବାହୁଡ଼ିଣ ଗଲା
ଆର ପଲଙ୍କ ଅଛି ତହିଂଣ ବସିଲା । ୧୦
ଶତୃଘନକୁ ନବର ପରି ଘର
ତହିଂ ରହିଲା ସୁମିତ୍ରା କୁମର ।
ମାୟା ଲୋକେ ଆସି ବଶିଷ୍ଠକୁ ରାନ୍ତି
ଜାବାଳି ବାମଦେବ କଶ୍ୟପକୁ ନେନ୍ତି ।
ସୁମନ୍ତ ସହିତେ ମନ୍ତ୍ରୀଗଣ ନେଲେ
ଯେ ଯାହା ଅନରୂପେ ନେଇ ଠାବ ଦେଲେ ।
ତେଲ ନଦୀ ଏକ ବହିଲାକ ତହିଂ
ଘିଅ ନଦୀ ଏକ ବହିଲା ଥଳ କୂଳ ନାହିଂ ।
ଥୋକାଯେକ ଦୂରେ ବହେ ନଦୀସୁର
ପର୍ବତ ସମାନେ ମାଏଂସ କୁଢ଼ କୁଢ଼ ।୨୦
ଅଏଳାପିଠୁଆଏଣୀ ଗିରିବର ସମ
ସୁଗନ୍ଧ ଚନ୍ଦ୍ରସମ ଅତି ଅନୁପାମ ।
ପୁଷ୍ପ କୁଢ଼ କୁଢ଼ ତାମ୍ୱୋଳ ଲେଖା ନାହିଂ
ମାୟା ଲୋକମାନେ ଯାଚି ଦେଅନ୍ତି ତହିଂ ।
ଜଣକୁ ଏକ ଜଣେ କରିଣ ଯୁବାନାରୀ
ମୂଳ ପାଗ ନଡ଼ପ ଦେଇଣ ସ୍ନାହାନ କରି ।
କାହାକୁ ମାଜଣା କରନ୍ତି ଛଡ଼ ବାଳୀ
କାହାକୁ ପାଞ୍ଚ ସ୍ତିରୀ ମନର ହିଆଳି ।
ଦିବ୍ୟ ବସନ ସେ ପିନ୍ଧାଇଲେ ନେଇ
ଚନ୍ଦ୍ରସମ ଲେପି କେହୁ ଛିଡ଼ାହୋଇ ।୩୦
ରତ୍ନ ଖଟ ନାନା ଅଳଙ୍କାର ଦେଲେ
ମାୟା ବ୍ରାହ୍ମଣେ ନେଇ ଅନ୍ନ ପରଷିଲେ ।

ବସିଲା ଘୃତ ଆମ୍ବ ଅଦା ଲୁଣ
ଆମିଷ ନିରାମିଷ ଅନେକ ତିଉଣ ।
ହିଙ୍ଗୁ ଜିରା ମରିଚ ନଟୀକାଳ ଛେନା
ଘୃତ ଯୋଗେ ରନ୍ଧନ କଲେକ ରଞ୍ଜନା ।
ମାୟା ଏ ଆମିଷ ଯେ ଘୋଳ ବଡ଼ା ପ୍ରତି
ପଣା ପଇଡ଼ ସେ ବେଳ ଜାଣି ଦେନ୍ତି ।
କ୍ଷୀରି ଖିରିସା ଯେ ପରଷନ୍ତି ଆଣି
ଶଙ୍ଖୋଳିଣ ଆଣି ଦେଅନ୍ତି ଖିରିସା
ପାଣି ।୪୦
ନାଡ଼ି ମନୋହର ଆରିସା ସରପୁଳି
ପାପୁଡ଼ି ଛେନା କାକରା ହସଂପୁଳି ।
ନାନ ବର୍ଣ୍ଣେ ବ୍ୟଞ୍ଜନ ହଟପୁଳି ବଡ଼ା
ଛେନାଗଜା ମୁଗ ମିଶି ଯେ ପଗରା ।
ନଡ଼ିଆ ବଡ଼ା ସରସତୀଆ ମଣ୍ଡା ପୁଳି
ଅପମାଲୁ ଟାକୁଆ ଯେ ଅଣକ୍ଷୀରି କୋଳି ।
ସର ପାପୁଡ଼ି ସୂଚୀପତର ଛେନା ନାଡ଼ି
ଦୁଧ କୁମ୍ଭ ଖୁଡୁଲ ତଦନ୍ତ କେ କରି ।
ପଣସୁଆ ମଣ୍ଡା ନହୁଣିଆ ଗଇଣ୍ଡା
ଫେଣା ଉଞ୍ଚ ମଣ୍ଡା ବିବିଧ ବନେ
ପିଠା ।୫୦
ପରଷନ୍ତି ଲୋକେ ଭକ୍ଷନ୍ତି ତୋଷହୋଇ
ଗଂଗବାଣ ପଣା ପୁଣିହି ଦେନ୍ତି ନେଇ ।
କାହାକୁ କରଡ଼ିଆ ଦୁଇଗୋଟା ଦିଅନ୍ତି
କାହାର ଆଗରେ କୁମ୍ଭ ପଣା ବସାବନ୍ତି ।
ସାରେଆ ଖଣ୍ଡ ସାକର ବସାଇ
ଖଣ୍ଡ ଖଜା ଗଜା ତିଳ ମୁଂଆ ରାଇ ।
ମୁଗ ମଧୁରୁଚି ଦୁଗ୍‌ଧ ଲହୁଣି ମାନ
ଛେନା ତାଗରା ଗୋଟିକା ଅନୁପାମ ।
ଶାକର ଅଧାମ ବହଳ ଦୁଧ ଦେନ୍ତି
ପୁଣି ଆଣି ବସାଦହି ପରଷନ୍ତି । ୬୦
ଅମୃତ ପାନି କଦଳୀ ପାଉଂଶିଆ
ବନ୍ତଳ ଅବିଳାସ ମୁନୁଗା କାଠିଆ ।
ଆରିଆ ମଏଂସା ଚମ୍ପା କଏଲ ଦିଅନ୍ତି
ନାହିଁ ନାହିଁ ବୋଇଲେ ପେଲି ପରଷନ୍ତି ।

କନକ ପିଙ୍ଗଳ ବଡ଼ ବଡ଼ ଗୋଟି
ପଇଡ଼ ଭଙ୍ଗା ଗୁଆ କଷା ଗୁଆ ପାଲଟି ।
ପୁଣି ନୀଳବାଣ ଗଙ୍ଗାବାଣ ଦିଅନ୍ତି
ଦୁଧ ବାଣ ପୌର୍ଣ୍ଣବାସ ପିଇ ଲୋକେ ଯାନ୍ତି ।
ତାଳସଙ୍କ କେଶୁର ପଣସ ଜାଇଫଳ
ଖୁଖୁଡ଼ା ଖୁରୁତୁ ନଡ଼ିଆ ନଟିଆଳ । ୭୦
ଆମ୍ବ ଖଜୁରୀ ଦାରାକ୍ଷ ବରକୋଳି
କେନ୍ଦୁ କଇଥ ଅଏଂଳା ପଦ୍ମମାଳି ।
କାନ୍ତାରି ଖୁସିଆରି ପିଙ୍ଗୁଳି ଆଖୁଦଣ୍ଡି
ଗିପୁ ନାରାଏଣ ବଙ୍ଗଳ ଶ୍ରୀଖଣ୍ଡି ।
ଯେ ଯାହା ଇଚ୍ଛନ୍ତି ସମସ୍ତ ତହିଁ ପାଇ
ଲୋଭୀ ମହାଲୋଭୀ ତହିଁରେ ଭଲ ଖାଇ ।
ଅପୂର୍ବ ପଦାର୍ଥନ୍ତ ଭିଆଇଲା ମୁନିମ୍ବର
ସଙ୍କେପି କହିବାକୁ ସଖ୍ୟ ଯେ କାହାର ।
ଅନୁବ୍ରତେ ନୃତ୍ୟ କରନ୍ତି ବିଳାସେଣୀ
ମର୍ଦ୍ଦଳ କଂସାଳ ବାଜଇ ଅଏଂଳା
ବେଣୀ ।୮୦
ଅପୂର୍ବ ଜଳ ବାସ କରନ୍ତି ଆଚୋଂବନ
ତଇଳ ବାସ ଗୁଆ କର୍ପୂର ମିଶାପାନ ।
ଗନ୍ଧ ଚନ୍ଦନ ଶରୀରେ ଶାମଳି
ପାଞ୍ଚ ସାତ ହୋଇ ଯାନ୍ତି ପରିମଳି ।
ହାଥୀଙ୍କର ମାହୁନ୍ତ ଘୋଡ଼ାକର ବାରୁଆଳ
ଭାରସୁରା ଖାଇ ହୋଇଲେ ମତୁଆଳ ।
ହାଥୀର ମାହୁନ୍ତ ଘୋଡ଼ାର ପିଠିରେ ବସି
ଘୋଡ଼ାଙ୍କର ବାରୁଆଳ ହସ୍ତୀ ଚଢ଼ିଆସି ।
ଆନନ୍ଦ ହୋଇଣ ସେ ଡାକନ୍ତି ରସ ପାଇଂ
ଅଯୋଧ୍ୟା ନଗ୍ରକୁ ଆମ୍ଭର ଯାଇ ନାହିଁ ।୯୦
ଶ୍ରୀରାମ ତହିଁ ଯାଇ କରିବୁ ଆମ୍ଭେ କିସ
ଏଠି ଥିଲେ ଆଉ କେ ଲୋଡ଼ୁ ଘର ବାସ ।
କେ ବୋଲେ ଆମ୍ଭେ ଋଷିଙ୍କ ସଙ୍ଗେ ଥିବୁ
ଭ୍ରଥ କଉଂ ରାଜା ତାହାଙ୍କ ସଙ୍ଗେ ଯିବୁ ।
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ
ବଶିଷ୍ଠ ଆଦି କରି ଉତ୍ତମ ପୁରୁଷ ।
ଶତୃଘନ ସହିତେ ସ୍ନାହାନ ଯାଇ କଲେ

ଷଡ଼ରସ ପ୍ରକାରେ ସମସ୍ତ ଭୁଂଜାଇଲେ ।
ଆଞ୍ଚୋବନ ସାରି କର୍ପୂର ତମ୍ବୋଳ ଖାନ୍ତି
ଖଟ ଦୋଳି ବାଙ୍କିଆରେ ଯାଇଣ
ବସନ୍ତି ।୧୦୦
ଯେସନ ସମଏ ଅଇଲେ ଅପକ୍ଷରୀ
ବିବିଧ ପରିବନ୍ଧେ ଗାନ୍ଧାର ଉଚ୍ଚାରି ।
ରଜନୀ ସମୟେ ନାଗିଲାକ ବତୀ
ହୁଳା ଦିଉଡ଼ି ଜଳନ୍ତି ପନ୍ତି ପନ୍ତି ।
ସବୁଙ୍କରି ଛାମୁରେ ହୋଇଲା ନାଟଗୀତ
ଚାମର ଢାଳନ୍ତି ଯୁବତୀ ବହୁତ ।
କେହୁ ବିଞ୍ଚନ୍ତି କେହୁ ଦର୍ପଣ ଦେଖାନ୍ତି
କେବଣହିଂ ନାରୀ ତାମ୍ବୁଳ ଭୁଞ୍ଜାନ୍ତି ।
ଚନ୍ଦନ ଘଷନ୍ତି କେ ଚାପନ୍ତି ଚରଣ
କେଶ ସଂଯୋଇଣ କେ ଦିଅନ୍ତି
ତତକ୍ଷଣ।୧୦
ପାଟ ମଶହେରି ସୂଚୀକମ ଟେରା
ସବୁରି ଗଳାରେ ମୁକୁତା ମଣିହାରା ।
ରାତ୍ର ଅର୍ଦ୍ଧମାନେ ଘାରିଲାକ ନିଦ
ଥାଟ ଲୋକେ ଶୁତିଲେ ହୋଇଣ ନିଶବଦ ।
ରାତ୍ର ପାହିଲେଣ ଦେଖିଲେ କେହି ନାହିଁ
ସଭିଏ ଅଛନ୍ତି ଭୂମିରେଣ ଶୋଇ ।
ଘରଦ୍ୱାର ସେ କେବଣ କଡିଗଲା
ଫୁଲ ଚନ୍ଦନ ସବୁ ଉବୁହିଂଣ ଗଲା ।
ଯେ ଯେଉଂମାନେ ଚରବୁଣ ଥେଲେ
ଜଣେ ହେଂ ନାହିଁ ତହିଁ କେଣେ କେଣେ
ଗଲେ।୨୦
ଦୁଧ ଦହି ଘିଅ ନଡ଼ପ ତହିଁ ଥେଲା
ଏଡ଼େ କଥାମାନ କେଣେ କେଣେ ଗଲା ।
ନାଚିବାର ଲୋକେ ଜଣେ ହେଂ ନ ଦିଶନ୍ତି
ରାତ୍ର ପାହିଲେଣ ସବିହେଂ ଉଠିଣ ବସନ୍ତି ।
ଭୁଞ୍ଜି ଶୋଇଲା ପ୍ରାୟେ ଦେହକୁ ନ ଲାଗଇ
ଫୁଲ ଚନ୍ଦନ ଗନ୍ଧ ଦେହକୁ ନ ଆମୋଦଇ ।
ଏକକୁ ଆରେକ ଚାହିଂଣ ପୁଚ୍ଛାପୁଚ୍ଛି
କାଲିର ବିଧାନ ତ ନାହିଁ ଏଥେ କିଛି ।

କେ ବୋଲଇ ସପନ କେ ବୋଲଇ ସତ
କେ ବୋଲଇ ଉପାୟେ କଲେ
ତପୋବନ୍ତ ।୩୦
ଭରଥର ସମୀପେ ମିଳିଲେ ଆସି ଋଷି
ତ୍ରିପୁଟି ହୋଇଲୁକି ବୋଇଲେକ ହସି ।
ଭରଥ ଶତ୍ରୁଘନ କଲେ ନମସ୍କାର
ଧନ୍ୟ ତପସ୍ୟା ତୋହୋର ମୁନିବର ।
ଏତେ ଥାଟକୁ ଅପୂର୍ବ ଯୋଗାଣ ଦେଲୁ
ନିମିଷକର ମଧ୍ୟେ ସମସ୍ତ ସଂପାଦିଲୁ ।
ଦିଅ ମୋତେ ଆଜ୍ଞା ମୁଂ ଶ୍ରୀରାମକୁ ଦେଖିବି
ନେଉଟାଣି ବେଳେ ପୁଣି ଏବାଟେ
ହୋଇଯିବି ।
ଏ ମୋର ଜନନୀ ଅଟଇ କଏକୟା
କୁଳ ପାଂଶୁ ପ୍ରତିମା ଦେହ ଯାକ ମାୟା ।୪୦
ଏହାର ପ୍ରସାଦେ ଶ୍ରୀରାମ ବାନବାସ
ଯେହାର ହେତୁ ମୋର ତାତ ଗଲା ନାଶ ।
ମୁନି ବୋଇଲେ ତୁ ତ ବୋଲନି କିଛି
ଯାହା ସେ ବିଧାତା ନିର୍ଭା କରିଅଛି ।
ଏହାକୁ ବୋଇଲେ ହୋଇବ ଆଉ କିସ
ଏମନ୍ତ ଯେ ପୂର୍ବର ଅଛଇ ଭବିଷ ।
ତୁହିତ ସାକ୍ଷାତ ଅଟ ସତ୍ୟବାଦୀ
ସାବତ ହିଂସା ନପଶେ ତୋର ବୁଦ୍ଧି ।
ସର୍ଗ ପ୍ରାପତ ନୋହେ ତୋତେ ଦୂର
ଧନି ଧନି ମହିମା ତୁ ଅଟ ଭରଥ ବୀର ।୫୦
ଶ୍ରୀରାମ ଚିତ୍ରକୂଟ ପର୍ବତେ ଛନ୍ତି ରହି
କେତେହେଁକ ଦୂରେ ଦେଖିବୁ ତାକୁ
ଯାଇ ।
ଏତେ ବୋଲି ମୁନି କଲ୍ୟାଣମାନ କଲେ
ଏହି ବାଟେ ଯାଅ ବୋଲି ହସ୍ତ
ଦେଖାଇଲେ ।
ଭରଥ ଶତ୍ରୁଘନ ରଥ ଆରୋହିଲେ
ପଶ୍ଚିମ ମୁଖହୋଇ ତହୁଁ ଚଳିଗଲେ ।
ହସ୍ତୀ ଚଢ଼ି ଯମୁନା ପାରି ହୋଇ ଯାନ୍ତି
ଭରଥ ଶତ୍ରୁଘନ ଆବର ପାତ୍ର ମନ୍ତ୍ରୀ ।

ଭେଳା ବାନ୍ଧି ଥାଟ ସେକୂଳକୁ ଗଲେ
ପଏରି ଜାଣିମା ନୋକେ ପଏରିଣ
ଗଲେ ।୬୦
ଗୁହ ନାମେ ଶବର କଲା ଏକ ବୁଦ୍ଧି
ଦୁଇ କୂଳେ କିଳା ପୋତି ଦଉଡ଼ିଏ ବାନ୍ଧି ।
ତାହା ଧରି ଅନେକ ଲୋକ ହୁନ୍ତି ପାର
ଶବରକୁ ପ୍ରଶଂସା କରନ୍ତି ଭରଥ ବୀର ।
ଏଥୁ ଅନନ୍ତରେ ନିତ୍ୟକର୍ମ ସାରି
ଭରଥ ଶତ୍ରୁଘନ ରଥରେ ବିଜେ କରି ।
ଘୋର ଗହନ ବନେ ପଥ ବହି ଯାନ୍ତି
ବୋଲନ୍ତି ସଦାଶିବ ଶୁଣ ଗୋ ପାର୍ବତୀ ।
ଚିତ୍ରକୂଟ ପର୍ବତେ ଶ୍ରୀରାମ ଛନ୍ତି ରହି
ବିବିଦ ବିନୋଦ କରୁଥାନ୍ତି ତହିଁ ।୭୦
ସେ ଚାରୁ ବିପୁଣ୍ୟ ନନ୍ଦନ ବନ ଜାଣି
ପୁଷ୍ପଙ୍କର ନାମ କେ ପାରିବ ଗଣି ।
ମଲ୍ଲୀ ମାଳତୀ ମନ୍ଦାର ବଗହୁଲ
କେତକୀ କଦମ୍ବ ଚମ୍ପା ଜାଇ ଫୁଲ ।
ନାଗେଶ୍ୱର ଯାଇ ଜୁଇ ଛୁରିଅନା
ପାଟଳୀ ପୁନାଂଗ କଲାକ ରଞ୍ଜନା ।
ସେବତୀ କାମୋଦ ଅଏଂଳା ଲତା ଲତା
କଞ୍ଚେଣ କଣେଅର ତରାଟ କତି କତା ।
କୁନ୍ଦ କାମୋଦ ଉତ୍ତମ କଞ୍ଚଣ
କଦମ୍ବ କମଳ ହିଞ୍ଜଳର ବଣ ।୮୦
ମରୁଆ ଧାତୁକୀ କୁରୁବେଲି ଓଶେକ
ଦୟଣା ବୀରଭଦ୍ର ତୁଳସୀ ବନ୍ଧୁକ ।
ବରେହା ଦାଢ଼ ନୀଳ ବାହୁ ଭୃଙ୍ଗରାଜ
ଦେଖିଣ ଆନନ୍ଦ ହୋଇଲେ ରଘୁରାଜ ।
ଟାଙ୍ଗଆ କୁଟଜ ପୁଷ୍ପର କୋରୁଆ
ନଣ୍ଡାବଗୁଲି ଯେ ଗଂଗଶିଉଳିଆ ।
ଫୁଲେଣ ପର୍ବତ ହୋଇଛନ୍ତି ଗଛୁ
ଫଳ ମହିମା କେ ତଦନ୍ତ କରି ପାରୁ ।
ଟଭା ଜେଉଟ କେନ୍ଦୁ କଇଥ ଆମ୍ବ
ପଣସ ନଟୀକାଳ କରମଙ୍ଗା ଡାଳିମ୍ବ ।୯୦
ନାରଙ୍ଗ ଲେମ୍ବାଉ ଜମ୍ବିଳ କରୁଣା

ଏକର ଫଳ ଆରେକକୁ ଜିଣା ।
ଅଏଂଳା ବରକୋଳି ମୁନୁଗା ବହିଞ୍ଚ
ଆଳୁଆ କୋଚିଲା ବହୁତ ଗଛ ବୃଛ ।
କ୍ଷୀରକୋଳି ବେଲ ବାହେଡ଼ା କଷାଫଳ
ସୁନାରି ବଦରି ଫଣ ଫଣା ମହୁଲ ।
ତାଳ ଖଜୁରି ଯେ କଦଳୀର ବନ
ଏଣେ ସେ ଶ୍ରୀରାମ ସୀତ୍ୟାର ହରେ ମନ ।
ଲିମ୍ବ କୋରିଆ ଗମ୍ଭାରୀ ଶାଳ ଆମ୍ବ
କିସିମିସି ମଞ୍ଜାରୀ ଫିରିକି ଆରମ୍ଭ ।୧୦୦
କାକେଶା ଶିମ୍ବଳି ସୁନାରି ପାଳଧୁଆ
ସଜନା ମୁନାଙ୍ଗ ଅଗସ୍ତି ତେଣ୍ଟୁଆ ।
ସଲପ କେଶର ଭାଲିଆ ଧଳଗଛ
କରବା ତେନ୍ତୁଳି ପିମ୍ପିଳି ଗଛ ଗଛ ।
ଜଟ ବଡ଼ଗଚ ଉଶଥ ମାଳ ମାଳ
ବଡ଼ କୋଚିଲା ସେ ଆବର ପିଆଶାଳ ।
ଚନ୍ଦନ ଗଛ ନାରଙ୍ଗ ବହୁଳ ଟଭା
ଏଣୁକରି ବିପୁଣ୍ୟ ଦିଶଇ ମହାଶୋଭା ।
ଚନ୍ଦନ କୁଡ଼ କୁଡ଼ ଅଗର ଗଛ ଗଛ
ଜାଇଫଳ ମୂଳ ଗଣ୍ଠିଅନା ବଚ ।୧୦
ହଳଦୀ ସାବିତ୍ରୀ କୁଆଣି କଳାଜୀରା
ମହୁରା ସଉପ ଧନିଆ ବେଶରା ।
ଯବ ବଡ଼ ଜୀରା ଜଟାବାଇଂଶି
ଶାଳପନୀ କୃଷ୍ଣପନୀ ଗୋଖରା ଅତସୀ ।
ଡାଉରଂଗ ବୃଧ ତରକ ପିମ୍ପିଳି ଲତା
ଲବଙ୍ଗଲତା ଲତାକେ କରୁ ଗଣିତା ।
ଶିଞ୍ଚୁ ତିନିକନା କୁଆରୀ ସେ ମୋଟି
ମସ୍ତା ଗୁଞ୍ଜୁରା ଆଉ ଲତା ଅଛି ଫୁଟି ।
ରକତଚିତାମୂଳ ବେଲ ବରୁଣ
ସାରୁବଣ ଭିତରେ ଯେ ମଣାଏ
ଗଣଗଣ ।୨୦
ମଦାଅଗ୍ନି ନଦୀ ବହଇ ଝରଝର
ପଦ୍ମ କୋମଦ ଶିଉଳି ବିସ୍ତାର ।
ଉତ୍ପଳ ଶାଲୁକ କଟରଙ୍ଗା ଲତା
ଲବଙ୍ଗଲତା ତହିଂକେ କରୁ ଗଣିତା ।

କମଳ ଲତା କମଳ ଫଳ ଅଛି
ନଦୀର ଭିତରେ ହିଞ୍ଜାଳ ଗଛି ଗଛି ।
ହଂସ କାରଣ୍ଡ ବକ ଜଳପିମ୍ପି
କତି କତି ଚରନ୍ତି ଡାହୁକ ମଝାମଝି ।
ପାକାମ୍ବର ଗଛେ ଶାରୀ ଶୁଆ ଭାଷେ
କଣ୍ଠା ତିତିରି ମୟର ରାଜହଂସେ । ୩୦
ବଗ କୁଆ କୋଇଲି ଚକୁଆ ସରସ
ଝାଙ୍କ ଝାଙ୍କ ହୋଇ ବୁଲନ୍ତି ଦିଶ ଦିଶ ।
ଅଏଂଳା ନେଳି ବସନ୍ତ ଶାରଙ୍ଗୀ ଗରୁଡ଼
ବଡ଼ ଚଢ଼ଇ ଚିଲ ଗର୍ଜନ୍ତି ମହାଗାଢ଼ ।
କୋକିଳ ଝିଂକାରୀ ଯେ ଭାରଥିଆ ପକ୍ଷୀ
ବାଦେରୀ ଚିମୁଣି ଯେ ଗଛରେ ଉକୁଚି ।
ଘରଚଟା ବାଇଆ କରନ୍ତି ମୁଖରୋଳ
କେଶରପାଣିଆ ହସଂରାଳି ମେଳ ।
ଗେଣ୍ଡାଳିଆ ବଢ଼ିଆ କାଙ୍କ ସେ ପିଚୋରା
ଶଙ୍ଖିଆ ବଣି ଯେ ଚରନ୍ତି ଯୋରା
ଯୋରା ।୪୦
ପାଣିକୁଆ କାପରଖାଇ କାମ
ଏହାଙ୍କର ଚରନ୍ତେ ଦିଶଇ ଅନୁପାମ ।
ହରଡ଼ କଣ୍ଠାଦଳ ପିମ୍ପିଉଡ଼େ ଉଚେ
କ୍ରୀଡ଼ା ରଙ୍ଗେ ପାଣିରେ ବିହରନ୍ତି ସଞ୍ଚେ ।
ଗଂଗାର ବୁଡ଼ାଇ ବୁଡ଼ନ୍ତି ସେ ପାଣି
କେ ଏହା ସଞ୍ଚପି କହିବ ପରିମାଣି ।
ମୃଗ ଶୂକର ଶଶା ବଣ ଗୋରୁ
ଶାଳେହା ଯୁଆଦ କେ ତଦନ୍ତ କରିପାରୁ ।
ସିଂହ ଶାର୍ଦ୍ଦୋଳ ଗୟଳ ବାଘ ଘୋଡ଼ା
ଭାଲୁକ ଶୟମ୍ବର ଚରନ୍ତି ଯୋଡ଼ା
ଯୋଡ଼ା ।୫୦
ମଞ୍ଜାରୀ ନକୁଳ ମୂଷିକା କସ୍ତୁରୀ
ବାହୁଟିଆ କୃଷ୍ଣଞ୍ଜନ ଏକ ସାଂଗେ ଚରି ।
ଖୁରଙ୍ଗ ଖୁରାଣ୍ଡି ଚରନ୍ତି ଯୂଥ ଯୂଥ
ଦେଖିଣ ପ୍ରଶଂସା କରନ୍ତି ରଘୁନାଥ ।
ଲକ୍ଷଣଙ୍କୁ ବସାରେ ବସାଇ ଦାଶରଥି
ସୀତ୍ୟା ସଂଗେ ଘେନି ବନରେ ବିହରନ୍ତି ।

ପରିମଳ ଥାନେ ବସନ୍ତି ଯାଇ ବେନି
ସୀତ୍ୟାର କେଶ ରାମ ଖୋଷନ୍ତି ପୁଷ୍ପ ଘେନି ।
କାହିଂ କମଳ ପତ୍ର ପାରିଣ ଶୁଅନ୍ତି
କାହିଂ ସୀତ୍ୟା ଜଂଘେ ସୀମନ୍ତାନ
ଦ୍ୟନ୍ତି ।୬୦
କାହିଂ ପାଷାଣରେ ଘୋରନ୍ତି ଚନ୍ଦନ
ସୀତ୍ୟା ଅଂଗେ ଶ୍ରୀରାମ କରନ୍ତି ଲେପନ ।
କୃଷ୍ଣ ଅଗ୍ର ଗୋଳି କରନ୍ତି କାହିଂ କଳା
କଳା ଦିଅନ୍ତେ ସୀତ୍ୟାର ସୁନ୍ଦର ଦିଶେ
ଡୋଳା ।
ସେଠାରୁ ଉଠି ପୁଣ ଥୋକେ ଦୂର ଯାନ୍ତି
ନାଗେଶ୍ୱର ଗଛ ତଳରେ ବସନ୍ତି ।
ଶ୍ରୀକରେ ଶ୍ରୀରାମ ମୃଗମଦ ଗୋଳି
ଜାନେକୀର କୁଚେ ଲେଖନ୍ତି ପତ୍ରାବଳୀ ।
ତହୁଂ ହାତ ଧରାଧରି ହୋଇ ଯାନ୍ତି
ହୋଡ଼ ଥୋଇଣ ଶ୍ରୀରାମ ଲୁଚାଦ୍ୟନ୍ତି । ୭୦
ଗୁଲୁଚି ଲତା ତଳେ ପଶିଗଲେ ଯାଇ
ଡେମ୍ବିରି ବୃକ୍ଷ ପରେ ଉଠିଲେ ରଘୁସାଇଂ ।
ସୀତ୍ୟା ଦେଖି ହସି ନାକେ ହାଥ ଦେଲେ
ଦେଖିଲି ଦେଖିଲି ବୋଲିଣ ବୋଇଲେ ।
ଦେଖିଲେ ରଘୁନାଥ ଅଇଲେ ଓହ୍ଲାଇ
ବେଗୁନିଆ ମୁଣ୍ଡା ଓହାଡ଼େ ହ୍ୱନ୍ତି ଯାଇ ।
ଲବଙ୍ଗଲତାର ଭିତରେ ପଶିଲେ
ଶିମ୍ବଳୀ ଗଛ ଓହାଡ଼େ ରହିଲେ ।
ବାସଙ୍ଗ ବୁଦାର ତଳରେ ଯାଇ ବସି
ତହିଂ ଯାଇ ଠାବ କଲେ ଶୁଭ୍ରକେଶୀ ।୮୦
ଦୁହେଂ ହସିଲେ ଯେ କରତାଳ ମାରି
ଶ୍ରୀରାମଙ୍କୁ ଆସି ସୀତ୍ୟା କୋଳକରି ।
ତହୁଂ ଥୋକାଏ ଦୂର ଚଳିଯାନ୍ତି
ଫୁଲ ତୋଳିଣ ମରାମରି ହ୍ୱନ୍ତି ।
ପାରେୟା ଯୂଥ ଚରନ୍ତେଣ ଦେଖି
ଧରିବେ ବୋଲିଣ ଧାଇଂଲେ ଶଶୀମୁଖୀ ।
ସୀତ୍ୟାର ଧାମନ୍ତେ ସେ ଉଡ଼ି ପଳାଇଲେ
ଏତେକ ଧରି ନ ପାରିଲ ଶ୍ରୀରାମ
ବୋଇଲେ ।

ଧରି ନ ପାରିଲ ଚଢ଼ଇ ଛାର ଗୋଟି
ହସିଣ ରାମଙ୍କୁ ବୋଇଲେ ବିମ୍ୱୋଷ୍ଠି ।୯୦
ଉଡ଼ି ନଗଲେ ଧରନ୍ତି ନା ମୁହିଂ
ଏ ବଚନ ଶୁଣି ହସନ୍ତି ରଘୁସାଇଂ ।
କେତକୀ ବନେ ଯାଇ ହୋଇଲେ
ପରବେଶ
ଦେଖିଲେକ ଫୁଟି ଅଛଇ ଦିବ୍ୟ ପୁଷ୍ପ ।
ସୀତ୍ୟାର କେଶରେ ଖୋଷନ୍ତି ତାହା ନେଇ
ମୁଖ ଅବଲୋକନ କରନ୍ତି ସୁଖ ପାଇଂ ।
କାହିଂ ଚନ୍ଦନ ଘୋରି ଦେବୀ ସ୍ୟତୀ
ଶ୍ରୀରାମର ଅଂଗେ ଲେପନ୍ତି ପ୍ରିୟବନ୍ତୀ ।
କଳାଦେହ ଯହୁଂ ସୁନ୍ଦର ଦିଶିଲା
ରଘୁନାଥର ମୁଖେ ଜାନେକୀ
ଚୁମ୍ବଦେଲା ।୧୦୦
ସ୍ୱାମୀଙ୍କି ଚାହିଂଣ ବୋଇଲେ ଦେବୀ ସ୍ୟତୀ
ଜଳର ଭିତରେ ତୁମ୍ଭେ ପଶସି ରଘୁପତି ।
ମନ୍ଦାଅଗ୍ନି ଜଳେ ମୁଂ କରିବି ସ୍ନାହାନ
ଶୁଣି ନଦୀ ଭିତରେ ପଶିଲେ ରଘୁରାଣ ।
ସୀତ୍ୟା ନାହିଣ ସେ ହୋଇଲେ ବାହାର
ଶ୍ରୀରାମ ହିଂ ଅଇଲେ ପଛେଣ ତାହାଙ୍କର ।
କୂଳେ ନାଗେଶ୍ୱର ଫୁଲ ଫୁଟିଅଛି
ଶରଧାରେ ଡାଳେ ଭାଙ୍ଗିଲେ ମୃଗାଛି ।
ଛାଡ଼ ଗୋଟି ଫୁଲ ଅଛଇ ତହିଂ ଲାଗି
ଦାଶରଥି ତାହା ସୀତ୍ୟାକଇ ମାଗି । ୧୦
ଜାନେକୀ ବୋଇଲେ କିମ୍ପା ତୁମ୍ଭଙ୍କୁ ଦେବି
ଏ ପୁଷ୍ପ ଡାଳି ମୁଂ ଘେନିଣ ଖେଳୁଥିବି ।
ତୁମ୍ଭର ଶରଧା ଥେଲେଣ ଆନ ଡାଳେ ଆଣ
ପ୍ରିୟାର ବଚନେ ଗଲେକ ରାମରାଣ ।
ନାଗେଶ୍ୱର ଗଛକୁ ବଢ଼ାଇଲେ ହାଥ
ଫୁଟିଲା ଡାଳେକ ଆଣିଲେ ରଘୁନାଥ ।
ପାଞ୍ଚଗୋଟି ପୁଷ୍ପ ନାଗିଣ ତହିଂ ଅଛି
ସୀତ୍ୟାର ଅଂଗେ ତାହା ପିଟିଲେ ରଘୁବଂସି ।
ଜାନେକୀ ଶ୍ରୀରାମଙ୍କୁ ମାଇଲେ ଫୁଲ ଡାଳି
ପ୍ରେମରସ ଘେନି କରନ୍ତି ବନ କେଳି ।୨୦

ଧରାଧରି ହୋଇଣ ଖଣ୍ଡିଏ ଧୂର ଗଲେ
ଧାତୁଶିଳା ଉପରେ ଯାଇଣ ବସିଲେ ।
ଶ୍ରୀରାମ ଆଗରେ ବସିଲେ ଯାଇ ସତୀ
ମନ୍ଦାଅଗ୍ନି ଜଳରେ ଶରୀର ଅଛି ତିନ୍ତି ।
ଓଦା ନାଗକେଶ ଗେରୁ ଉକୁଟିଲା
ଅଙ୍ଗୁଷ୍ଠି ଘେନିଣ ତା ଶ୍ରୀରାମ କାଟିଲା ।
ବହିଦେଇ କପାଳେ ଚିତା ଦେଲା ନେଇ
ଈଶ୍ୱର ଶିରରେ କି ଚନ୍ଦ୍ରମା ଅଛି ଉଇଂ ।
ଏସନେକ ସମୟେ ବହିଲା ପବନ
ବୃକ୍ଷରୁ ପୁଷ୍ପମାନେ ଝଡ଼ନ୍ତି ଅବିଚ୍ଛିନ୍ନ ।୩୦
ଶ୍ରୀରାମ ସୀତ୍ୟା ଉପରେ ଫୁଲ ପଡ଼ଇ
ଦେଖି ମହିସ୍ତଳୀ କରଦୁଇ ଯୋଡ଼ଇ ।
ଭୋ ସ୍ୱାମୀ ପୁଷ୍ପ ପଡ଼ିଲେ କିମ୍ପା ଆସି
ଶୁଣିଣ ଶ୍ରୀରାମ ବୋଇଲେକ ହସି ।
ଭୋ ସଖି ତୋହୋର ମୋହୋର
କେଳି କରୁ
ଆନନ୍ଦେ ପୁଷ୍ପ ଆଞ୍ଜୋଳି ଦେଉଛନ୍ତି ତରୁ ।
ଏସନେକ ବୋଲିଣ ତହୁଂ ଉଠିଗଲେ
ସୀତ୍ୟାକୁ ଆଗକରି ପଛେ ରାମ ଗଲେ ।
ଗହନ ବିପୁଣ୍ୟେ ଗଲେ ପନ୍ଥ ବହି
ମର୍କଟ ଯୂଥେକ ଆଗେ ଛନ୍ତି ରହି । ୪୦
ତାହା ଦେଖି ସତୀ ବାହୁଡ଼ି ପଳାଇଲା
ରଘୁନାଥ ବଂଶକୁ ସେ ଯାଇଣ
କୋଳକଲା ।
ଗେରୁ ଟୋପା ଗୋଟି ଯେ କପାଳରେ ଥିଲା
ଶ୍ରୀରାମ ହୃଦୟରେ ସେ ଯାଇଣ ନାଗିଲା ।
ପ୍ରଭାତେ ସୂର୍ଯ୍ୟ ଯେହ୍ନେ ଗଗନରେ ଦିଶି
ତାହା ଦେଖି ଶ୍ରୀରାମ ସୀତ୍ୟା ବେନି ହସି ।
ଥୋକାଏକ ଦୂର ତହୁଂ ଚଳିଗଲେ
ଫୁଟିଲା କେତକୀ ବହୁତ ଦେଖିଲେ ।
ଶରଧାରେ ସୀତ୍ୟା ଆଣିଲେ ତାହା ତୋଳି
ଶ୍ରୀରାମଙ୍କୁ ବୋଇଲେ ଜନେକ ଦୁଲାଳୀ ।
ଏହି ଛୁରିଅନା ତଳେ ସ୍ୱାମୀ ବସ
କେତକୀ ପୁଷ୍ପେ ଖୋସଇ ତୁମ୍ଭ କେଶ ।

ଶୁଣି ରଘୁନାଥ ବସିଲେକ ଯାଇ
ଜାନେକୀର ଆଗେ ଦେଲେ କେଶ
ଫେଇ ।
ଶ୍ରୀରାମର ଶିରେ ସୀତ୍ୟା ଖୋପାଏ ଖୋଷିଲା
ଶ୍ରୀମୁଖ ଚାହିଁ ବୋଇଲା ସୁନ୍ଦର ଦିଶିଲା ।
ହାତ ଧରାଧରି ହୋଇ ତହୁଂ ଚଳିଯାନ୍ତି
ଇଚ୍ଛା ସୁଖେ ସେ ବନେ ବିହରନ୍ତି ।
ବିବିଧ ରଂଗ ବିନୋଦ କରନ୍ତି ବେନିଜନ
ମୁଂ ତାହା କହିବାକୁ ନୁହଇ ଭାର୍ଜନ ।୬୦
ହାଥ ଧରାଧରି ହୋଇଣ ବେନି କୂଳ
ଦିବସ ଦୁଇ ଘଡ଼ି ହୋଇଲାନି ବେଳ ।
ଆଶ୍ରମେ ପ୍ରବେଶ ହୋଇଲେକ ଯାଇ
ମୃଗ ରାନ୍ଧି ଲଇକ୍ଷଣ ଅଛି ବାଟ ଚାହିଁ ।
ଶ୍ରୀରାମ ଚରଣେ କଲେ ନମସ୍କାର
ସୀତ୍ୟା ଚରଣେ ନମନ୍ତି ଆଉ ବାର ।
ଲକ୍ଷଣକୁ ଚାହିଁ ବୋଇଲେ ରଘୁନାଥ
ଭିଆଇଅଛୁ ବାବୁ କେବଣ ପଦାର୍ଥ ।
ବୋଲଇ ସଉମିତ୍ରୀ ଆଣିଲି ମୃଗମାରି
ରନ୍ଧନ କଲଇଂ ତା ଅତି ଯତ୍ନ କରି । ୭୦
ଠାବ ପତ୍ର ପାଣି ଅଛି ସର୍ବ ସଞ୍ଚି
ତୁମ୍ଭର ଆସିବାକୁ ବାଟ ଚାହିଁଅଛି ।
ଶୁଣିଣ ସାନନ୍ଦ ହୋଇଲେ ରଘୁବୀର
ପବିତ୍ର ଜଳ ଘେନି ପଖାଳିଲେ ଶ୍ରୀପୟର ।
ସୀତ୍ୟା ଚରଣ ଧୋଇଣ ଘରେ ପଶି
ଲକ୍ଷ୍ମଣ ମୁଖ ଚାହିଁଣ ଅଳପ ହୋଇ ହସି ।
ମଣୋହି କରିଣ ବସିଲେ ଭାଇ ବେନି
ଆପଣେ ପରଷନ୍ତି ଜନେକ ନନ୍ଦିନୀ ।
ଭୋଜନ ସାରି ଆଞ୍ଚୋବନ କଲେ
ଶାଳ ବୃକ୍ଷ ତଳେ ଯାଇଣ ବସିଲେ ।୮୦
ଶ୍ରୀରାମଙ୍କ ଉଚିଷ୍ଟ ପତ୍ରେଣ ସୀତ୍ୟା ବସି
ମୃଗ ମାଂସ ଆଣି ଲକ୍ଷ୍ମଣ ପରଷି ।
ଭୁଞ୍ଜିଣ ତୃପତି ହୋଇଲେ ତିନି ଜନ
ଏଥୁ ଅନନ୍ତରେ ବିଚିତ୍ର କଥା ଶୁଣ ।
ଏକଦିନେ ମାଂସ ଯାହା ଉଗୁଳିଣ ଥାଇ

ଆର ଦିନକୁ ତାହା ସୀତ୍ୟା ପୁଣି ଶୁଖାଇ ।
ଆପଣେ ଜଗିଣ ବସିଥାଇ ତାହା
ଦିନେକ ଆସିଣ ମିଳିଲା ଦୁଷ୍ଟ କୁଆ ।
ଶିମୁଳି ବୃକ୍ଷ ଉପରେ ବସିଥିଲା
ମାଂସ ଲୁବୁଧେ ଧାଇଂଣ ପଡ଼ିଲା । ୯୦
ନେଇ ନ ପାରି ସେ ଗଲାକ ବାହୁଡ଼ି
ଯହୁଂରେ ମହିସ୍ତଳୀ ଦେଲାକ ଘଉଡ଼ି ।
ମନ୍ଦାର ବୃକ୍ଷରେ ସେ ବସିଲାକ ଯାଇ
ମାଂସ ଲୁବଧେ ଆସଇ ପୁଣ ଧାଇଂ ।
ଏମନ୍ତେ ବେଳ ଚାରି ଧାଇଂଲାକ କାକ
ମୁରୁଚି ନପାରି ସେ ହୋଇଲା ପାଖ ପାଖ ।
ସୀତ୍ୟା ଦୃଢ଼କରି ଅଛଇ ତାହା ରଖି
ଶ୍ରୀରାମ ହସନ୍ତି ଘଉଡ଼ି ଦିଅନ୍ତି ତାହା ଦେଖି ।
ସେ ଲୋଭୀ କାକ କେବେ ହେଂ ନ ଯାଇ
ମନ ଯାଇ ଅଛି ତାହାର ମାଂସ
ଠାଇଂ ।୧୦୦
ଆଶାଶୀ ହୋଇଣ ସେ ନିକଟକୁ ଗଲା
ଦେଖି ସୀତ୍ୟା ତାକୁ ପୁଣି ଘଉଡ଼ିଲା ।
ବୋଇଲା ଦଇବ ଦଣ୍ଡ ପଡୁ କାକ ତୋତେ
କୀରତି ବେଳେ କିମ୍ପା ଝଗଡ଼ା କରୁ
ମୋତେ ।
ଅନେକ ଦୁଃଖରେ ସ୍ୱାମୀ ମୋର ବନ ଯାନ୍ତି
ମୃଗ ହରିଣ ମାରିଣ ଆଣନ୍ତି ।
ଯେତେକ ଅଣ୍ଟଇ ମୁଂ ତେତେକ ରାନ୍ଧଇ
ଶିଆଳି ପତ୍ରେ ଆଉ ଗୁଡ଼ାକ ବାନ୍ଧି ଥାଇ ।
ଆଜର କାଲିକି ଶୁଖାଇ ଆମ୍ଭେ ଥାଉ
ନ ପାଇଲା ଦିନ ଆମ୍ଭେ ଏହି
ମାଂସ ଖାଉ ।୧୦
ତୁ ଏହା ନେମାକୁ କରିଅଛୁ ମନ
ଅକାଳ କାଣ୍ଡେ ତୋର ଭାଂଗୁରେ ନୟନ ।
ଏତେ ବୋଲି ପୁଣ ଉଡ଼ାଇଣ ଦେଲା
ଦୁଷ୍ଟ କାକ ମନେ ମହାକୋପ କଲା ।
ଜନେକୀ ଉପରକୁ ପଡ଼ିଲାକ ଧାଇଂ
ସୀତ୍ୟାର ଓଷ୍ଠ କାମୋଡ଼ିଲା ଯାଇଂ ।

ଦୁଇ ଡେଣା ଧରି ପିଟିଲା ରୋଷକରି
ନାହୁଡ଼ ନାଗି କୁଚ ହୋଇଲା ବିଦାରି ।
ରଖ ରଖ ବୋଲି ଶ୍ରୀରାମଙ୍କୁ ଡାକି
କୁଆ ପଳାଇଲା ନିକଟେ ଲୋକ
ଦେଖି ।୨୦
ମନ୍ଦାର ବୃକ୍ଷରେ ବସିଲା ପୁଣ ଯାଇ
ସୀତ୍ୟାଙ୍କୁ କୋଳକରି ଧଇଲେ ରଘୁସାଇଂ ।
ରୁଧିର ଜରଜର ଗଳଇ ଥନ ତଟ
ଆବର ଦେଖିଲେ ଛିଡ଼ିଅଛି ଓଷ୍ଠ ।
କୋପେ ବଇରାଗ ଯେ ହୋଇଣ ରଘୁବୀର
ଗୁଗୁଚିଆ ଗୋଟିଏ ଯେ ଧଇଲେ ଧନୁଶର ।
କଉଶିକ ମନ୍ତ୍ରେ ପଢ଼ି ଧନୁଗୋଟି
ବୋଇଲେ କୁଆଙ୍କର ବେଗେ ଚକ୍ଷୁ ପକା
କାଟି ।
ମନ୍ଦାର ବୃକ୍ଷରେ ଯେ କାକ ବସିଥିଲା
ବାଣ ବିନ୍ଧିବାର ସେ ଦେଖିଣ
ପଳାଇଲା ।୩୦
ଶ୍ରୀରାମ ନାରାଜ ପବନୁ ବେଗେ ଯାଇ
କାହିଂକି କୁଆ ଆଜ ଯିବୁରେ ପଳାଇ ।
ସେହିଠାରେ ଧରି ଖୋଲିଲା ତାର ଆଖି
ସୀତ୍ୟା ଶ୍ରୀରାମ ସନ୍ତୋଷ ତାହା ଦେଖି ।
ତାହାକୁ ଦଣ୍ଡି ବାଣ ବୁଲଇ ଜଗତ
କୁଆମାନଙ୍କ ଚକ୍ଷୁ ସର୍ବ କଲା ହତ ।
ଜଣଙ୍କର ଦୋଷେ ସମସ୍ତେ ନାଶ ଗଲେ
ଚିତ୍ରକୂଟ ପର୍ବତେ ସେ ଆସିଣ ପଡ଼ିଲେ ।
ଅନ୍ଧ ହୋଇଣ ପଡ଼ିଲେ ଭୂମିତଳେ
ଶ୍ରୀରାମଙ୍କୁ ସୀତ୍ୟା କହିଲେ ବିକଳେ ।୪୦
ଭୋ ରଘୁନାଥ ଅବା ଜଣେ ଦୋଷକଲା
ସବୁ କୁଆଙ୍କର ଚକ୍ଷୁ ନାଶ ଗଲା ।
ଏମାନେ ନିରେଖ ମରିବେ ଏହିକ୍ଷଣି
କରସି ଦୟା ତୁମ୍ଭେ ରଘୁକୁଳ ମଣି ।
ଶ୍ରୀରାମ ବୋଇଲେ ଏ ତୋତେ ଦ୍ରୋହ
କଲେ
ତହିଂର ପ୍ରସାଦେ ସବିହେଂ ନାଶ ଗଲେ ।

ଶୁଣି ମହୀସୁଲୀ ଶ୍ରୀରାମ ପାଦେ ପଡ଼ି
କାର୍ପୁଣ ହୋଇଣ ବେନି କର ଯୋଡ଼ି ।
ଭୋ ରଘୁନାଥ କୁଆଙ୍କୁ ଦୟାକର
ଲୋଚନ ଆଜ୍ଞା ହୋଉ ଜୀଅନ୍ତୁ
ପାମର ।୫୦
ଭୋଖେ ମଲେ ନାଥ ଆମ୍ଭର ପାପ ହୋଇ
ଶାଖା ସୋଦର ଏହାଙ୍କର ନାହିଂ ଆନ
କେହି ।
ସୀତ୍ୟାର ବଚନ ଶୁଣି ଶ୍ରୀରାମ ବୋଇଲେ
ଭୋ ସୀତ୍ୟା ତୋର ଯେବେ ଦୟା
ହୋଇଲେ ।
ଆଖି ଯେ ଯେହାଙ୍କର ଦେଖିଲା ମାଏଂସ
ରାଖେସ ପ୍ରକୃତି ବଢ଼ାଇଲା ଆଶ ।
ତେଣୁ ସେ ଆଖି ପକାଇଲି ଖୋଳି
ଯେବେ ଅନୁଗ୍ରହ କଲୁ ମହୀସୁଲୀ ।
ପାଆନ୍ତୁ ଲୋଚନ ଚାହାନ୍ତୁ ବକ୍ରକରି
ଯେତେକାଳ ଯିବ ଥେବ ହେତୁକରି ।୬୦
ଯେ ଅବା ଏହାଙ୍କର ଅଂଶେ ଜାତ ହ୍ଵନ୍ତି
ସେହୁ ଟେରା ହୋଉ ଶ୍ରୀରାମ ବୋଲନ୍ତି ।
ତେବେ ସେ କୀରତି ଯୁଗେ ଯୁଗେ ଥେବ
ଦୋରେହା ହୋଇବ ଯେ ପ୍ରାଭବ ପାଇବ ।
ଦେଖନ୍ତୁ ନୟନ ଚାହାଂନ୍ତୁ ବକ୍ର ହୋଇ
ଏସନେକ ଆଜ୍ଞା ଦେଲେ ରଘୁସାଇଂ ।
ତକ୍ଷଣେ କୁଆଙ୍କୁ ପ୍ରାପତ ହୋଇଲା ଆଖି
ଉଠିଣ ପଳାଇଲେ ନିକଟେ ଲୋକ ଦେଖି ।
ସୀତ୍ୟା ଶ୍ରୀରାମ ହୋଇଲେ ହରଷ
ଏଥୁ କାହାଣୀ ଯେ ଶୁଣିମା ଦିବ୍ୟ ରସ ।୭୦
ଭୃର୍ଥ ଯେ ଶ୍ରୀରାମଙ୍କୁ ଅଯୋଧ୍ୟାରୁ ଆଣି ଗଲା
ଭାରଦ୍ଵାଦଶ ଋଷିଙ୍କ ଆଶ୍ରମେ ରହିଲା ।
ରଜନୀ ପ୍ରଭାତେ ଥାଟ ତହୁଂ ଚଳି
ଯମୁନା ପାରହୋଇ ନୀଳ ବନେ ମିଳି ।
ଗୁହ ନାମେ ଶବର କଢ଼ାଇଅଛି ବାଟ
ଚିତ୍ରକୂଟ ପର୍ବତେ ହୋଇଲେ ଯାଇ ଥାଠ ।
ଲୋକଙ୍କର ଗହଳ ବୀରଦୂର ଘାଏ

ବନ ଜୀବଜନ୍ତୁ ମହା ଭୟେ ପାୟେ ।
ଆଶ୍ରମ ଛାଡ଼ି ପଳାଇଣ ଯାନ୍ତି
ଏକକୁ ଆରେକ ଭୟେଣ ଶଙ୍କନ୍ତି ।୮୦
ମୃଗ ଶାର୍ଦ୍ଦୋଳ ଗଣ୍ଡା ମଇଂଷି
ଗଜ ସିଂହ ପଳାନ୍ତି ହୋଇଣ ମିଶାମିଶି ।
ଶଶା ଶୂକର ଯୁଆଦ ଶ୍ରୀକାଳ
ଏମାନେ ତରସ୍ତେ ଛାଡ଼ିଲେ ନିଜ ଆଳ ।
ଛୁଆ ଡିମ୍ବ ଛାଡ଼ି ଚଢ଼ଇ ଉଡ଼ିଲେ
ଝାଙ୍କ ଝାଙ୍କ ହେଇ ଉପରେ ରାବ ଦେଲେ ।
ଲକ୍ଷଣ ପଋରନ୍ତି ଶ୍ରୀରାମଙ୍କୁ ଚାହିଂ
ବୀରତୂର ଶବଦ ଶୁଭଇ ଗୋସାଇଂ ।
ବନ ଜନ୍ତୁମାନେ ପଳାଇଣ ଯାନ୍ତି
ନାନା ପକ୍ଷୀମାନେ ବୋବାଉ ଅଛନ୍ତି ।୯୦
ବନସ୍ତ କମ୍ପଇ ଶୁଭଇ ଘୋର ନାଦ
ତ୍ରୈଲୋକର ସ୍ଵାମୀ ଶୁଭୁଅଛି ବାଦ୍ୟ ।
ଶ୍ରୀରାମ ବୋଇଲେ ଅବା କେବଣ ନୃପତି
ମୃଗୟା ବିନୋଦେ ଅବା ବନେ ବିହରନ୍ତି ।
ବୃକ୍ଷରେ ଉଠିଣ ତୁ ଦେଖସି ଲଇକ୍ଷଣ
ସାଧ ବାରତା ପାଇବା ଏଇକ୍ଷଣ ।
ଶୁଣି ଶାଳ ବୃକ୍ଷେ ଉଠିଲେ ସଉମିତ୍ରୀ
ଶିଖ ଡାଳେ ବସି ଚାହାଂଇ ଚଉକତି ।
ପୂର୍ବଭାଗେ ସନ୍ୟ ଦିଶିଲା ଅପାର
ରଥ ଗଜ ଅଶ୍ଵ ପାଦାନ୍ତି ଗହଳ ।୧୦୦
ଉଦଣ୍ଡ ଆଲମ୍ବ ବିଲମ୍ବ ବୀରନେତ
ଉଲାଖ ପାଟଛତ୍ର ବିରାଜ ବହୁତ ।
କଣେଅର ଛତ୍ର ଦିଶିଲାକ ଯହୁଂ
ତରତରେ ବୃକ୍ଷରୁ ଓହ୍ଲାଇଲା ତହୁଂ ।
ଶ୍ରୀରାମଙ୍କୁ ବୋଇଲେ ଶୁଣିମା ରଘୁନାଥ
ବେଗେ ଧନୁଶର ଧର ସ୍ଵାମୀ ହସ୍ତ ।
ଭ୍ରଥ ଶତ୍ରୁଘନ ଦୁହେଂ ଆସୁଛନ୍ତି
ପ୍ରାଣେ ସେ ଆମ୍ଭଙ୍କୁ ମାରିବେ ଏ ଘାନ୍ତି ।
କଏକୟା ବୁଦ୍ଧିରୁ ନୁହଇ ଆନ ଜାଣ
ଯେତେବେଳେ ଭ୍ରଥ ହୋଇଲା ରାଜନ ।
ବିଚାର କଲା ସେ ମନ୍ତ୍ରୀଗଣ ଘେନି

ରାମ ଥେଲେ ମୋହୋର ନୋହଇ
ମେଦିନୀ ।
ତାହାକୁ ଯେବେ ମୁଂ ପାରଇ ପ୍ରାଣେ ମାରି
ତେବେ ସେ ଭୋଗ କରିବି ବସୁନ୍ଧରୀ ।
ରାଜାହିଂ ଏକଥାକୁ ସନମତ କଲା
ଶ୍ରୀରାମ ଲକ୍ଷଣକୁ ମାର ହୋ ବୋଇଲା ।
ତେଣୁ ସେ ଦଣ୍ଡ ସାଜି ଆସୁଛନ୍ତି
ଶାମଳ ବକ କେ ବୁଝିବା ଏ ଘାନ୍ତି ।
ମଦାଅଗ୍ନି ନଦୀ ରୁଧିରେ ବୁହାଇବି
ଗ୍ରିଧ ଜମ୍ବୁକକୁ ମାଂସ ଭୁଞ୍ଜାଇବି । ୨୦
ଖଣ୍ଡ ଖଣ୍ଡ କରି କାଟିବି ରଥମାନ
ଗଜ ହୟ ମାନ କରିବି ଭିନ୍ନ ଭିନ୍ନ ।
ଭ୍ରର୍ଥ ଶତୃଘନର ଛେଦିବଇଂ ଶିର
ଦଶରଥ ଥେଲେ ଆଜ ଯିବ ଯମପୁର ।
ବଶିଷ୍ଟ କଶ୍ୟପ ଜାବାଳୀ ବାମଦେବ
ଚିତ୍ରକୂଟେ ଏହାଙ୍କର ପଡ଼ିବାକ ଶବ ।
ସୁମନ୍ତ ଜୀବନ ଆଜ ନ ଥୋଇବି କ୍ଷଣେ
ଧର୍ମ ଅଧର୍ମ ଶୁଣନ୍ତୁ ଦେବ ଗଣେ ।
ବନକୁ ପଠିଆଇ ଆସୁଛନ୍ତି ମାରି
ଆଜ ସେ ଜାଣିମା ପ୍ରତିଜ୍ଞା ତାହାଙ୍କରି ।୩୦
ଏତେ ଦୁଃଖେ ଆମ୍ଭେ ବଞ୍ଚୁଅଛୁ ଦିନ
ଏଥକୁ ଅହନ୍ତା ବହିଲେ ଯେବଣ ଜନ ।
ରାଜ୍ୟ ଯାଉକି ପ୍ରାଣ ଦେଇ ଯାଉ
ଏ ମୋହୋର କଥା ଯୁଗେ ଯୁଗେ ଥାଉ ।
ଏତେ ବୋଲି ବୀର ଧନୁରେ ଗୁଣ ଦେଇ
ଅକ୍ଷୟେ ତ୍ରୋଣ କନ୍ଧେ ଭିଡ଼ିଣ ଆଗ
ହୋଇ ।
ଶ୍ରୀରାମ ବୋଇଲେ ଶୁଣ ସୁମେତ୍ରାର ସୁତ
ଅଯୋଧ୍ୟାର ବୋଲି କେହ୍ନେ ଜାଣିଲୁରେ
ଭ୍ରଥ ।
ଲଇକ୍ଷଣ ବୋଇଲା ଦେବ ପିତାର ରଥ
ଅଛି
ଉପରେ ବିରାଜଇ କଣ୍ଡେଯୁର ପକ୍ଷୀ ।୪୦
ତେଣୁ ସେ ପ୍ରତେ ଗଲଇ ରଘୁବୀର

ନକର ଅଳସ ଦେବ ଧନୁଶର ଧର ।
ପର୍ବତେ ଦଣ୍ଡ ଉଠିଲେନି ଆସି
ହେଳା କରି କିମ୍ପା ଅଛ ତୁମ୍ଭେ ବସି ।
ଶ୍ରୀରାମ ବୋଇଲେ ରେ ଲକ୍ଷଣ ଏବେ ରହ
ଭ୍ରଥର ମୋହୋର ଅଟଇ ଏକ ଦେହ ।
ସେ କିମ୍ପା ମୋତେ ଆସିବାକ ମାରି
ଏମନ୍ତ କଥା କିମ୍ପା କହିଲୁ ନ ବିଚାରି ।
ଆମ୍ଭର ମନକୁ ଏମନ୍ତ ଅଇଲା
ଭ୍ରଥ ଅଯୋଧ୍ୟାରେ ନୃପତି ନୋହିଲା ।୫୦
ପିତାର ଆଜ୍ଞା ସେ ନକଲା ଗ୍ରହିତ
ମୋତେ ନେମ ବୋଲି ଆସୁଅଛି ଭ୍ରଥ ।
ଏହାଭଂ ଆନ ନୁହଇଟି କିଛି
ତୋହୋର କିମ୍ପା ଭ୍ରଥକୁ ଏତେ ରାଗ
ଅଛି ।
ବନକୁ ଆସିବାକୁ ପାଇଲୁ ଯେବେ ଦୁଖ
ରାଜ୍ୟକୁ ପଠିଆଇବା ଭୁଞ୍ଜି ଯାଇ ସୁଖ ।
ଭ୍ରଥ ପଛେ ମୋତେ ସେବା କରିଥାଉ
ତୋହୋର ସଂଗରେ ଶତୃଘନ ଯାଉ ।
ଶୁଣି ଲକ୍ଷଣ ଶ୍ରୀରାମ ପାଦେ ପଡ଼ି
ଭୋ ଦେବ କିମ୍ପାଇ ଯିବ ଇଂ
ବାହୁଡ଼ି ।୬୦
ଏ ତୋହୋର ଚରଣେ ସେବା କରିଥେବି
ତୁମ୍ଭର ଗଲେ ସେ ଅଯୋଧ୍ୟାକୁ ଯିବି ।
କିଂପା ମୋତେ ଓପ୍ରୋଧ ଛାଡ଼ିଲ ରଘୁନାଥ
ଏତେ ବୋଲି ଲକ୍ଷ୍ମଣ ଯୋଡ଼ଇ
ବେନିହସ୍ତ ।
ଶ୍ରୀରାମ ଶ୍ରୀକରେ ତୋଳନ୍ତି ପୁଣ ପୁଣି
ସଉମିତ୍ରୀକି ଚାହିଂଣ ବୋଲନ୍ତି ରଘୁମଣି ।
ତୁହୋ ଲଇକ୍ଷଣ ବୋଇଲୁ ଅନୀତି
ରଷିସିଂହ ଦେଲେ ଯେବଣ ଆହୂତି ।
ଏକଇ ପଦାର୍ଥ ସେ କଲେ ଭିନ୍ନ ଭିନ୍ନ
ଚାରି ମୂର୍ତ୍ତି ଆମ୍ଭେ ଦଶରଥର ନନ୍ଦନ ।୭୦
ଆନ ଘେନିଣ ସେ ପଦାର୍ଥ ହୋଏ ଜାତ
ଶ୍ରୀରାମ ଲକ୍ଷ୍ମଣ ଶତୃଘନ ଭ୍ରଥ ।

ଆପଣା ଦେହ ତୁ ତୋହୋର କିମ୍ପା
କୋପକରି
ତୁ ବୋଇଲୁ ଭ୍ରଥ ମୋତେ ଆସିଅଛି ମାରି ।
ଏକ ପିଣ୍ଡରୁ ଆମ୍ଭେ ଚତୁର୍ଦ୍ଧା ଶରୀର
ତୁହୋ ଲଇକ୍ଷଣେ କହିଲୁ ଅବେଭାର ।
ଲକ୍ଷଣ ବୋଇଲେ ତୁମ୍ଭେ ଅପାପୀ ତନୁ ବହ
ତେରୁ ସେ ଭୋ ନାଥ ଏମନ୍ତ କଥା କହ ।
ପରର ଦୁଃଖ ତୁ ନ ଦେଖୁ ରଘୁବୀର
ଯାବତ ଜନକୁ ଏକ ଦୃଷ୍ଟି ତୋର ।୮୦
ଆପଣାର ପ୍ରାୟେ ସବୁ ଜୀବ ମଣୁ
ଭୋ ରଘୁନାଥ ମୋତେ ହରାଇଲୁ ତେଣୁ ।
ଲକ୍ଷଣ ଶ୍ରୀରାମ କଥା ହନ୍ତେ ବସି
ପର୍ବତ ଉପରେ ଥାଠ ମିଳିଲେକ ଆସି ।
ସନ୍ୟ ଗୁହାଇଣ ଭ୍ରଥ ଶତୃଘନ
ସଂଗେଣ ଘେନିଲେ ମନ୍ତ୍ରୀଗଣ ମାନ ।
ବଶିଷ୍ଟକୁ ଆଗ କରି ପର୍ବତେ ଉଠନ୍ତି
ମାତୃଗଣମାଙ୍କୁ ତଳରେ ଗୁହାନ୍ତି ।
ଅନୁକ୍ରମେ ଗିରି ଉପରେ ଯାନ୍ତି ବଢ଼ି
ଥୋକାୟେକ ଦୂରେ ଦିଶିଲା ରାମ
ମଢ଼ି ।୯୦
ଦେଖି ଭ୍ରଥ ମନେ ହୋଇଲା ବିକଳ
ବଶିଷ୍ଟକୁ ବୋଇଲେ କଏକୟାର ବାଳ ।
ତୁମ୍ଭେ ମହାମୁନି ଜାଣ ସକଳ ବୃତ୍ତାନ୍ତ
ମୋହୋର ଦୋଷ ତ ଜାଣ ତପୋବନ୍ତ ।
ରଷି ବୋଇଲେ ତୁ ଭୟେ କିମ୍ପା କରୁ
ଚାରି ଦେହ ତୁମ୍ଭେ ଅଟ ଏକ ଚରୁ ।
ଶୀରାମର ମାୟା କି ଅଛି ତୋତେ ମନେ
ତୁ କିମ୍ପା ଏସନ ବିଋରୁ ରଘୁନାନେ ।
ଏଥୁଅନନ୍ତରେ ପଥ ବହି ଯାନ୍ତି
ଚିତ୍ରକୂଟ ଶିଖରେ ଯାଇଣ ମିଳନ୍ତି । ୧୦୦
ଶ୍ରୀରାମ ଲକ୍ଷଣ ଅଛନ୍ତି ଦ୍ୱାରେ ବସି
ମଢ଼ିଆ ଭିତରେ ସୀତ୍ୟା ଅଛି ବସି ।
ଏସନ ସମୟେ ଭ୍ରଥ ଶତୃଘନ
ବଶିଷ୍ଟ ସହିତେ ମନ୍ତ୍ରୀଗଣ ମାନନ ।

ଶ୍ରୀରାମ ସନ୍ନିଧେ ମିଳିଲେ ସର୍ବେ ଯାଇ
ଦେଖିଣ ଉଠିଲେ ଯେ ରଘୁକୁଳ ସାଇଂ ।
ବଶିଷ୍ଠଙ୍କ ଚରଣେ କଲେ ନମସ୍କାର
ବାମଦେବଙ୍କ ପାଦେ ଓଳଗନ୍ତି ରଘୁବୀର ।
ଲକ୍ଷ୍ମଣ ହିଂ ଏମାନଙ୍କୁ କଲେ ପରିଣାମ
ସୁମନ୍ତ ଭୁଜ ଧରି ଉଭା ଶ୍ରୀରାମ ।୧୦
ଲାଜ ଭୟ କରି ଭ୍ରତ ଶତ୍ରୁଘନ
ଆତ୍ମା ସଂକୁଚ ପାଇ ପାଞ୍ଚନ୍ତି ମନେ ମନ ।
ଶ୍ରୀରାଙ୍କ ଚରଣେ କରନ୍ତି ନମସ୍କାର
ଶିରେ କର ଦେଇ ଉଭା ଶତ୍ରୁଘନ ବୀର ।
ଭ୍ରତ ନ ଛାଡ଼ିଇ ରଘୁନାଥର ପାଦ
ଦେଖି ରଘୁନାଥ ହୋଇଲେ ବିଷାଦ ।
ବଶିଷ୍ଠଙ୍କୁ ଚାହିଂ ବୋଲନ୍ତି ସୀତାପତି
କିମ୍ପା ଭ୍ରତକୁ ତୁମ୍ଭେ ନ ତିଆର ଯତି ।
ରାଜ୍ୟ ଛାଡ଼ି କିମ୍ପା ଭ୍ରତ ଏଥକୁ ଅଇଲା
ଦଶରଥ ରାଜା ଅବା କେବଣ ଆଜ୍ଞା
ଦେଲା ।୨୦
ସଇନି ସହିତେ ଯେ ଅଇଲେ ମନ୍ତ୍ରୀଗଣ
ବଶିଷ୍ଠ ବୋଇଲେ ତୁମ୍ଭେ ଶ୍ରୀରାମଚନ୍ଦ୍ର ଶୁଣ ।
ଭ୍ରତ ଘେନି ତୁମ୍ଭେ ଚାରିଭାଇ ବସ
ଯେବଣ କଥାରେ ଅଇଲୁ ସେ କଥାରେ
ପଶ ।
ବଶିଷ୍ଠଙ୍କର ବଚନ ଶୁଣିଣ ରଘୁନାଥ
ଭ୍ରତକୁ ତୋଳନ୍ତି ଧରିଣ ତାର ହାଥ ।
ପର୍ଣ୍ଣକୁଟୀ ଦ୍ୱାରେ ଦେଖିଲେ ସର୍ବେ ଯାଇ
ଭ୍ରତ ଶତ୍ରୁଘନ ଅଛନ୍ତି ଉଭାହୋଇ ।
କଯେକୟା ସୁତ ଚରଣେ ଓଳଗିଲା
ଶତ୍ରୁଘନ ଲକ୍ଷ୍ମଣଙ୍କୁ ନମସ୍କାର କଲା ।୩୦
ବଶିଷ୍ଠ ସହିତେ ବସିଲେ ମନ୍ତ୍ରୀଗଣ
ଶ୍ରୀରାମ ବୋଇଲେ ତୁମ୍ଭେ ସର୍ବଜନେ ଶୁଣ ।
ଭ୍ରତ ବନକୁ ଅଇଲା କିସ ପାଇଂ
ରାଜ୍ୟ ପାଳିବ ଏ ଅଯୋଧ୍ୟାରେ ଥାଇ ।
ପିତାକୁ ମାତାକୁ ଏ ସେବା କରିଥେବ
ଭୁଜ ବଳ ଘେନି ରାଜା ରାଜ୍ୟ ରଖିବ ।

ଏହାର ଅଇଲାର ଲାଗିଲା ମୋତେ ଚିଂତା
କେବଣ ପ୍ରକାରେ ରଖିବ ରାଜ୍ୟର
ବେବସ୍ଥା ।
ଶୁଣିଣ ବୋଲନ୍ତି ଯେ ବଶିଷ୍ଠ ମହାଋଷି
ଯେବଣ କାରଣେ ଅଇଲୁ ଶୁଣସି ।୪୦
ତୁମ୍ଭେ ଯେ ବନବାସୀ ହୋଇଲ କେଉଂ
ଭଲେ
ଅଯୋଧ୍ୟାର ଲୋକେ ବହୁତ ଶୋକ
କଲେ ।
ତମସା ନଦୀରୁ ଯେ ଅଇଲୁ ଲୁଚ୍ଛ ଦେଇ
ତୁମ୍ଭନ୍ତ ନ ଦେଖି ଆକୁଳ ସର୍ବ ହୋଇ ।
କେବଳ ଅଯୋଧ୍ୟାରେ ଦିନାକେତେ ଥିଲେ
ତୋ ମୁଖ ଦେଖିବେ ବୋଲି ଏଥକୁ
ଅଇଲେ ।
ଗଂଗା କୂଳେ ତୋତେ ସୁମନ୍ତ ଛାଡ଼ିଗଲା
ରାଜ୍ୟରେ କହିଲା ଯାଇ ଶ୍ରୀରାମ ନଇଲା ।
ତୁମ୍ଭେ ଏଣେ ଅଇଲ ଭ୍ରତ ହିଂ ନ ଥେଲା
ଏସନ ସମୟେ ଯେ ପିତା ତୁମ୍ଭର
ମଲା ।୫୦
ଅମନାତ୍ୟ ଗଣ ଆମ୍ଭେ ବସି ବିଚାରିଲୁ
ତଇଳେ ପୂରାଇ ଶବ ଥୋଇ ଥେଲୁ ।
ଚାର ପେଷିଣ ଯେ ଅଣାଇଲୁ ଭ୍ରତ
ଆସିଣ ଶୁଣିଲା ଯେସନେକ ଅନର୍ଥ ।
ମନ୍ଥେଡ଼ୀ କି ଦଣ୍ଡି ମାତାକୁ କୋପକଲା
ଅମନାତ୍ୟ ଗଣକୁ ବହୁତ ବିବକ୍ଷିଲା ।
ବହୁତ ଶୋକ ଯେ କଲା ତୁମ୍ଭ ପାଇଂ
ମୃତ୍ୟୁ ଶବ ପିତାର ଦେଖିଲା ପୁଣ ଯାଇ ।
ଗୁଣ ସୁମରିଣ ଭୂମିରେ ପଡ଼ି ରୋଦି
ମୋହୋର ତିଆରିବାରେ ହୋଇଲା
ପ୍ରବୋଧି ।୬୦
ପିତାକୁ ଅଗ୍ନିରେ କଲାକ ସଂସ୍କାର
ବିବିଧ ମତେ ଦାନ ଦେଲାକ ଅପାର ।
ଅଯୋଧ୍ୟାରେ ଅବିଷେକ କେବେହେଂ
ନୋହିଲା

ତୋତେ ନେମ ବୋଲି ଏଥକୁ ଅଇଲା ।
ମାତାଗଣ ସହିତେ ନଗ୍ର ନଗନାରୀ
ତୋତେ ଦେଖିବେ ବୋଲି ଅଇଲେ
ଚାପଧାରୀ ।
ପିତାର ମରଣ ଶୁଣିଣ ଶ୍ରୀରାମ
ଶରୀର ସହିତେ ତାଙ୍କର ହୋଇଲା ଝାମ ।
ଜ୍ଞାନ ଧ୍ୱଂସହୋଇ ଯେ ପଡ଼ିଲେକ ଢଳି
ଧାଇଂ ଯାଇ ସୁମନ୍ତ ଧଇଲାକ ତୋଳି ।୭୦
ଯମଘରୁ ଅଇଲା ପ୍ରାୟେକ ଦିଶଇ
ଶ୍ରୀରାମ ବୋଇଲେ ମୋ ଶର୍ବଣେ କି
ପଶଇ ।
ବିପରୀତ ଶବଦ ଶୁଭୁଅଛି ମୋତେ
କି ଅବା ରାଉଣ ଅଛନ୍ତି ଯମଦୂତେ ।
ଯମ କି ମୋତେ ଯିବାକୁ ଆଜ୍ଞା ଦେଲା
ଏ କଥା ମୋତେ ଭଲ ଯୋଗାଇଲା ।
ଭୋ ଜନ୍ତୁପତି ଏହା ମୋତେ କର
ବାପ ଯେବେ ମୋର ଗଲା ତୋର ପୁର ।
ମୁଇଂ ଥାଇ ଏଥି କରିବଇଂ କିସ
ମୋତେ ମରଣ ଦେସି ସୂର୍ଯ୍ୟଶିଷ ।୮୦
ଏତେ ବୋଲି ରାମ ଅନେକ ଶୋକ କଲେ
ପୁଣ ପୁଣ ଅନେକ ସଂତାପ ପାଇଲେ ।
ଭୋ ତାତ ଦଶରଥ ନୃପତି ଶିରୋମଣି
ବୀରବର ପଣେ ତୋତେ ତ୍ରଇଲୋକେ
ଗଣି ।
ଦେବତାକୁ ଦୁର୍ଲ୍ଲଭ କରିପାରୁ ରଣ
ଚତୁଦିଗେ ବଳିଆର ଅଟଇ ତୋର ବାଣ ।
ଶୟମ୍ବର ଦତ୍ୟ ତୁଲେ ଯୁଦ୍ଧ୍ୟ କଲୁ
ଶନିଚର ଗ୍ରହକୁ କୂଟେଣ ଜିଣିଲୁ ।
ନବ ଚାରି ସହସ୍ର ବରଷ ହୋଇଲୁ ରାଜା
ସକଳ ନୃପତି କଲେ ପାଦପୂଜା ।୯୦
ଶତେ ଅଶ୍ୱମେଧ ଯାଗ୍ୟ ହେଲେ କଲୁ
ନବ ସସ୍ର ବରଷ ଆଷ୍ୟ ତୁ ପାଇଲୁ ।
ଧନୁ ଧରନ୍ତେ ତୋତେ ନାଇଂ ସରିସମ
ତୋହୋର ପ୍ରାଣ କେହ୍ନେ ହରିଲାକ ଯମ ।

ଶବଦଭେଦୀ ବାଣ ତୋର ଜଗତେ ବିଖ୍ୟାତ
ଅକାଳ ମୃତ୍ୟୁ କିମ୍ପା ପାଇଲୁ ଭୋ ତାତ ।
ପୁତ୍ରକୁ ନ ଦେଖି ଯେ ମଲୁ ମହୀପତି
କିମ୍ପା ଜନ୍ତୁଅଇରି କଲାକ ଅଗତି ।
ଦଶ ସହସ୍ର ବରଷ ଯେ ଯେବଣ ଲୋକ
ଜୀଅଇଂ
ଆୟୁଷ ନ ପୁରୁ ସେ କେମନ୍ତ
ମରଇ ।୧୦୦
ବେଦ ପୁରାଣେ ଅଟଇ ଏସନ ମତ
ଏବେ କିମ୍ପା ଆସି ହୋଇଲା ବିପରୀତ ।
ଶ୍ରୀରାମ ରୋଦନ୍ତେ ସୀତ୍ୟା ଶୋକ କଲେ
ଲକ୍ଷଣ ବହୁତ ବିଳାପି ହୋଇଲେ ।
ଭ୍ରଥ ଶତ୍ରୁଘନ କାନ୍ଦନ୍ତି ଭୂମି ଲୋଟି
ବହଇ ଅଶ୍ରୁଜଳ ଦିଗ ବିଗ ଫୁଟି ।
ଶ୍ରୀରାମର ଶୋକ କହିତ ନ ପାରି
ବଶିଷ୍ଟ ବହୁତ କହନ୍ତି ଡିଆରି ।
ତୁ କିମ୍ପା ରଘୁନାଥ ହୋଅସି ଆରତ
ପୁଣି କି ନେଉଟିବେ ଦେଖିବୁ ତୋର
ତାତ ।୧୦
ସଂସାର ମାୟା ଯେ ଦର୍ପଣର ଛାୟା
ଯେତେକ ଦେଖୁଥାଇ ସବୁ ତାର ମାୟା ।
ଧନ ଯଉବନ ପୁତ୍ର ଦାରା ଆବର
ଏ ପୁଣ କେହି ଯେ ନୋହନ୍ତି କାହାର ।
ବିଧାତାର ଉପାୟେ ନ ଜାଣନ୍ତି କେହି
ମୋହୋର ବୋଲିଣ ବୋଲଇ ଏ ଦେହୀ ।
ମାୟା ସଂସାର ଯେ ଅଟଇ ଅନୀତି
ଯାହା ସେ ଉପାୟେ କଲା ପ୍ରଜାପତି ।
ଅତି ଦୁଃଖେ ମାତା ପୁତ୍ରକୁ ଉପୁଜାନ୍ତି
ଅନେକ ଯତ୍ନକରି ପ୍ରତି ପାଳୁ ଥାନ୍ତି ।୨୦
ପ୍ରାଣୁ ଅଧିକ କରି ପାଳନ୍ତି ନିଜ ସୁତ
ଶେଷେ ତାହାଙ୍କର ଅଟଇ ପଞ୍ଚଭୂତ ।
ପୁତ୍ର ହିଂ ମାତାକୁ ପ୍ରିୟ କରିଥାଇ
କଦାଚିତେ ମନେ ଆନ ନ ଧରଇ ।
ଯେତେବେଳେ ତାକୁ ପ୍ରାପତ ଯୁବତୀ

ପିଅର ଜନନୀ କି ନ କରଇ କତି ।
ତାହାଙ୍କର କଥାକୁ ବୁଝଇ ଉପହାସ୍ୟ
ନିଜ ଜନନୀ କି ସେ ନ ପାଇ ମୁହାଂସ ।
ପତ୍ନୀ ଏହାକୁ ମଣଇ ପ୍ରାଣ ସମ
ଦେହ ସମର୍ପଇ ପୂରାବଇ କାମ ।୩୦
ମାତା ପିତା ଛାଡ଼ି ସେ ପତ୍ନୀକି ଭଗତି
କ୍ଷଣେ ବଲ୍ଲଭୀର ନ ଛାଡ଼ଇ କତି ।
ବେଳେ ବେଳେ ପ୍ରୀତି ବଢ଼ାଇ ଅପାର
ବାରିତ ନୁହଇ ଏକଇ ଶରୀର ।
କାଳେ ସେ ହୁଅଇ ପୁତ୍ରବନ୍ତୀ
ଦିନେ ଦିନେ ଛାଡ଼ଇ ସେ ବଲ୍ଲଭର ପ୍ରୀତି ।
ନବ ଯଉବନ ସ୍ୱାମୀକି ଦେଖାଇ ଥେଲା
କ୍ଷୀର ନିମନ୍ତେ ତାର ପୁତ୍ରକୁ ସମର୍ପିଲା ।
ନାନା ପ୍ରେମ ସେ ପୁତ୍ରକୁ ଘେନି କରଇ
ପୁତ୍ରକୁ କୋଳେ ଘେନି ଦିନ ସେ
ହରଇ ।୪୦
ସ୍ୱାମୀ କି ପିଠି ଦେଇ ପୁତ୍ରକୁ ଘେନି ଶୋଇ
ପୁତ୍ର ସେ ତାହାର ପ୍ରାଣବନ୍ଧୁ ହୋଇ ।
ସେ ପୁତ୍ରକୁ କାଳେ ଯୁବତୀ ପ୍ରାପତ
ତେଣୁ ସେ ଆର୍ଦ୍ଧିନା କରଇ ନିଜ ତାତ ।
ନୂଆ ପଦାର୍ଥକୁ ସବିହେଂ ପ୍ରିୟ କରି
ପୁରାତନ ଶକ୍ତି ଦେଖିଲେ ଅପହରି ।
ସ୍ୱଭାବେ ପିତା ତୋର ବୃଦ୍ଧା ବୟସ
ଏଥିକି ଶୋକ କଲେ କାରଣ ହେବ କିସ ।
ମାତାଗଣ ଆସି ଅଛନ୍ତି ତାହାଙ୍କୁ ଯାଇ ଦେଖ
ସାଷ୍ଟାମ ହୋଇଣ ନିଜ ରାଜ୍ୟ ରଖ ।୫୦
ନଗ୍ର ନରନାରୀ ଅଇଲେ ତୋତେ ଦେଖି
ଅଯୋଧ୍ୟା ଛାଡ଼ିଣ ଅଇଲେ ଏଥିକି ।
ଶୁଣିଣ ଶ୍ରୀରାମ ଛାଡ଼ିଲେ ସନ୍ତାପ
ଅଞ୍ଚଳେ ପୋଛିଲେ ନୟନର ଆପ ।
ବୋଇଲେ କେତେଦିନ ଆଜକୁ ପିତା ମଲା
କେ ଅବା ତାହାକୁ ମୁଖଅଗ୍ନି ଦେଲା ।
କିସ କିସ ଦାନ କେବଣ କୃତ୍ୟ କଲ
କିସ କିସ ବିଚାରି ଏଥକୁ ଅଇଲ ।

ଭ୍ରଥ ଶତ୍ରୁଘନ ବାନ୍ଧିଲେ କିମ୍ପା ଜଟ
ବଲ୍କଲ ପରିଧାପନ କପୋଳେ ପାଂଶୁ
ଭେଟ ।୬୦
କନ୍ଦମୂଳେ ଫଳେ ସେ ଦିନ ଅପହରି
ମନ୍ତ୍ରୀମାନେ ଏହା କଲ କି ବିଚାରି ।
ପିତା ଆଜ୍ଞାରେ ସେ ପାଳିବ ମେଦିନୀ
କେବଣ କାରଣେ ସେ ହୋଇଲେ
ତପସେନୀ ।
ରାଜ୍ୟ ରଖିବ ଯେ ନିଜ ଭୁଜ ବଳେ
ଅଇରି ଖଟାଇବ ନିଜ ପାଦତଳେ ।
ପରଜା ପାଳିବ ପୁତ୍ର ସମ କରି
ତାହା ଛାଡ଼ି କିମ୍ପା ବିପୁନ୍ୟେ ବିହରି ।
ତୁମ୍ଭେ କିମ୍ପା ନ ଡିଆର ମନ୍ତ୍ରୀଗଣ ମାନ
ଏହି ନ ଜାଣି କି ହୋଇଅଛି ଅଜ୍ଞାନ ।୭୦
ଏତେ ବୋଲି ଶ୍ରୀରାମ ଭ୍ରଥକୁ ଡିଆରନ୍ତି
ତୁ କିମ୍ପା ଏଥକୁ ଅଇଲୁ ବୋଲନ୍ତି ।
ନିଜ ରାଜ୍ୟ ରଖିଲେ ସେ ସବୁ ଧର୍ମ ପାଇ
ଏବେ ତୁ ବେଗେ ବାହୁଡ଼ି ଯାଅ ଭାଇ ।
ଧର୍ମ କରିବୁ ଶୁଣିମୁ ଗୁହାରି
ଅନ୍ତେସ୍ୱର କଥା ତୁ ବୁଝିବୁ ତଥ୍ୟ କରି ।
ମନ୍ତ୍ରଗଣଙ୍କୁ ତୁ କରିବୁ ପୀରତି
ଅଗ୍ନିମୁଖରେ କରାଇବୁ ଆହୁତି ।
ପୁରାତନ ଲୋକଙ୍କର ବୁଦ୍ଧିରେ କାର୍ଯ୍ୟ ହ୍ୱନ୍ତି
ଦେବତା ଅର୍ଚ୍ଚନା ତୁ ନିତି ।୮୦
ଅନ୍ନ ପାଣିଛତ୍ର ବହୁତ ତୁ ଦେବୁ
ଧର୍ମଶାଳେ ପଶି କଥା ବିଚାରିବୁ ।
ବିଶୋଇମାନଙ୍କୁ ପୋଷିବୁ ବିଶେ ଦେଇ
ଅଗାଦ ଜଳରାଜ୍ୟରେ ନାବ ଦେବୁ
ଭିଆଇ ।
ନ ବରଷିଲେ ଧାନ କୃଷି ନ ମରେ
ଯେମନ୍ତେ
ତେସନ ଉପାୟ କରିବୁ କଯେକୟାର
ସୁତେ ।
ବୋଲ କଲା ସେବକଙ୍କୁ କତିରେ
ଥୋଇଥେବୁ

ପରହିତ କାରଣେ ସମସ୍ତ ଭିଆଇବୁ ।
ଖାଲ ଖୋଲ ବାଟେ ବନ୍ଧ ବନ୍ଧାଇବ
ପଣ୍ଡିତ ଜନମାନଙ୍କୁ କରିବ
ଗଉରୋବ ।୯୦
ମୁଁ କିସ କହିବି ରାଜ୍ୟର ଯିସ ରୀତି
ସବୁ କହିବେ ତୋତେ ବଶିଷ୍ଠ ଯତି ।
ସେ ତୋତେ ସକଳ ଚରିତ୍ର ବୁଝାଇବେ
ପୃଥ୍ୱୀ ପାଳିବାର ବିଧାନ କହିବେ ।
ଏହା ଶୁଣି ଭ୍ରଥ ତବଦ ହୋଇଅଛି
ବଶିଷ୍ଠକୁ ଚାହିଁଣ ଶ୍ରୀରାମଚନ୍ଦ୍ର ପୁଛି ।
ଭୋ ମୁନି ସ୍ନାହାନ କରିବଇଁ ଏବେ
ପିତାର ମରଣ ଶୁଣିଲଇଁ ଯେବେ ।
ଆସ ମହାମୁନି ମଦାଅଗ୍ନି ଯିବା
ସ୍ନାହାନ ତର୍ପଣ ବିଧାନ କରିବା । ୧୦୦
ବଶିଷ୍ଠ ବୋଲିଲେ ଏ ମିଳଇ ଯୁଗତି
ଉଠ ଉଠ ବେଗେ ଯାଅ ରଘୁପତି ।
ବତିଶ ଦିବସ ଆଜକୁ ରାଜା ମଲା
ଭ୍ରଥ ପିତୃକାର୍ଯ୍ୟ ପ୍ରୟାଗେ ସାରିଲା ।
ଯଦ୍ୟପି ସେ ଦେଲା ତୋତେ ତାର ଆଶ
ତୁ ଯେ ଜ୍ୟେଷ୍ଠପୁତ୍ର ଜାନକୀବିଳାସ ।
ସ୍ନାହାନ କରିବା ବୋଲିଣ ଉଠିଯାନ୍ତି
ମଦାଅଗ୍ନି ନଦୀ କୂଳେଣ ମିଳନ୍ତି ।
ଶ୍ରୀରାମ ସୀତ୍ୟା ଲକ୍ଷ୍ମଣ ତିନିଜଣ
ଜଳ ଭିତରେ ପଶି କରନ୍ତି ସ୍ନାହାନ ।୧୦
ଗୋତ୍ର ଉଚାରିଣ ବଶିଷ୍ଠ ତପୋଧନୀ
କୁଶ ଯବତିଳ ଶଂଖେ ପାଣି ଘେନି ।
ଶ୍ରୀରାମର ହସ୍ତେ ବଢ଼ାଇଣ ଦ୍ୟନ୍ତି
ଦେଶ କାଳ ବାକ୍ୟ ନାମ ଗୋତ୍ର ଉଚାରନ୍ତି ।
ତର୍ପଣ ସାରିଣ କୂଳେ ଆସି ହୋଇ
ଶୁଖିଲା ବସନ ପିନ୍ଧି ଶ୍ରୀରାମ ବସଇ ।
ତିଳ ପିଣ୍ଡ ଯେ ପୁଇ ଚାନ୍ଦିଆ ଫଳ
ଗୋଳି ପିଣ୍ଡଦେଲେ କଉଶୁଲାର ବାଳ ।
ଲକ୍ଷଣ ଭ୍ରଥ ସେ ବଢ଼ାଇଣ ଦ୍ୟନ୍ତି
ପିଣ୍ଡ ତୋଳିଣ ସୀତ୍ୟା ଜଳେଣ
ପକାନ୍ତି ।୨୦

ଯହୁଁ ସେ ଶ୍ରୀରାମ ଛତୁ ପିଣ୍ଡ ଦେଲେ
ଦଶରଥ ରାଜା ତା ପ୍ରତ୍ୟକ୍ଷ ପାଇଲେ ।
ଦେବଙ୍କର ସନିଧେ ବସିଲେ ସେ ଯାଇ
ଗଉରୋବ କରିଲା ଶଚୀଦେବୀର ସାଇଂ ।
ସ୍ନାହାନ କରି ରାମ ପର୍ବତକୁ ଗଲେ
ମଢ଼ିଆ ଦୁଆରେ ଯାଇଣ ମିଳିଲେ ।
ବଶିଷ୍ଠ ବୋଇଲେ ଶ୍ରୀରାମଚନ୍ଦ୍ର ଶୁଣ
ଆସିଣ ଅଛନ୍ତି ତୁମ୍ଭର ମାତୃଗଣ ।
ରାଜ୍ୟ ସହିତେ ସକଳ ନରନାରୀ
ଚିତ୍ରକୂଟ ତଳେ ଅଛନ୍ତି ପଟୋଆରି ।୩୦
ଆଜ୍ଞା ଦିଅ ସେ ଏଥକୁ ଆସନ୍ତୁ
ଏ ତୋହର କମଳ ଶ୍ରୀମୁଖ ଦେଖନ୍ତୁ ।
ଶ୍ରୀରାମ ଆଜ୍ଞା ଦେଲେ ଘେନିଆସ ଯାଇ
ଶୁଣିଣ ସୁମନ୍ତ ବେଗେ ଗଲା ଧାଇଁ ।
କଉଶୁଲାଦି ମୁଖ୍ୟ କରି ବୋଇଲେ ତୁମ୍ଭେ
ଆସ
ଦଶରଥ ରାଜାର ଯେତେ ରାଣୀ ହଂସ ।
ନଗ୍ର ନରନାରୀ ସହିତେ ଯେତେ ଜନ
ରାଉତ ମାହୁନ୍ତ ଯେ ପଏକାର ମାନ ।
ହାଟ ବାଟ ଲୋକେ ବାଣ ବଣିଜାର
ସମସ୍ତେ ଉଠ ଏ ପର୍ବତ ଉପର ।୪୦
ଶ୍ରୀରାମ ଆଜ୍ଞାଦେଲେ ଦେଖିବେ ତୁମ୍ଭନ୍ତ
ଅନେକ ତିଆରିଲେ ବଶିଷ୍ଠ ତପୋବନ୍ତ ।
ଶାନ୍ତି ହୋଇଣ ଆସନ୍ତୁ ଶ୍ରୀରାମ ବୋଇଲେ
ଶୁଣିଣ ଆନନ୍ଦ ସୁମିତ୍ରା କଉଶୁଲେ ।
ଆବର ଯେତେକ ଦଶରଥ ରାଣୀ
ସୀତ୍ୟାହୁଁ ସାନ ଯେ ଏ ତିନି ଭଉଣୀ ।
ମୁଦୁସୁଲୀ ଝଡ଼ା ଦାସୀଗଣ ମାନ
ଏକକୁ ଆରେକ ହରଷ ସର୍ବଜନ ।
ଏକ ପଛ କରି ଆରେକ ଉଠିଯାନ୍ତି
ମଦାଅଗ୍ନି ନଦୀ କୂଳରେ ମିଳନ୍ତି । ୫୦
ଶ୍ରୀରାମ ଯେ ସ୍ନାହାନ କରିଣ ପିଣ୍ଡ ଦେଲା
ସେ ପଞ୍ଚାମାନ ଯେ ଦେଖିଲେ କଉଶୁଲା ।
ଆତଯାତ ହୋଇ ଯେ ପଡ଼ିଅଛି ପାଦ

ଦେଖି ସର୍ବଜନ ହୋଇଲେ ବିଷାଦ ।
କଉଶୁଲା ନୟନୁ ଯେ ବହଇ ଅଶ୍ରୁଜଳ
ଶିରେ କର ତାଡ଼ି ଯେ ହୋଇଲା ବିକଳ ।
ବାବୁ ଦଶରଥ ଏହା ସେ ଅରଜିଲୁ
ଶ୍ରୀରାମର ହାତେ ତିଳ ପିଣ୍ଡ ପାଇଲୁ ।
ମହାରାଜା ହୋଇ ଏଥକୁ ହୋଇଲୁ ଯୋଗ୍ୟ
ଛତୁ ପିଣ୍ଡ ଏବେ କଲୁ ବଇଭୋଗ୍ୟ ।୬୦
ଏହା ସେ ଶ୍ରୀରାମ ସଂପାଦି ତୋତେ ଦେଲା
ତିଳପିଣ୍ଡ ପୁଇ ଚାନ୍ଦିଆ ଭୁଞ୍ଜାଇଲା ।
ଏତେକ ବିଚାରି ତହୁଁ ଚଳିଗଲେ
ଶ୍ରୀରାମର ସନ୍ନିଧେ ଯାଇଣ ମିଳିଲେ ।
ମାତାଗଣ ଦେଖି ଉଠିଲେ ରଘୁପତି
ଲୋଚନ ଥନଥନ କରିଣ ଅଛନ୍ତି ।
କଉଶୁଲା ଚରଣେ ମୁଧୁନି ଗୋଟି ଦେଇ
ଶ୍ରୀରାମ ନମନ୍ତି ବିନୟ ଭାବ ହୋଇ ।
ଉଠି ଯାଇ କୟେକୟାର ପୟରେ
ନମସ୍କାର କରି ଉଠିଲେ ରଘୁବୀରେ ।୭୦
କଉଶୁଲାଙ୍କ ଚରଣେ ନମନ୍ତି ବଇଦେହୀ
କଏକୟା ସୁମିତ୍ରାକୁ ଓଳଗିଲେ ଯାଇ ।
ଯେ ଯାହାର ମତେ ମାନିତ ବିଧି କଲେ
କନେଷ୍ଠ ତିନି ଭଗ୍ନୀ ସୀତ୍ୟାକୁ ଓଳଗିଲେ ।
ନଗ୍ର ନରନାରୀ ଆନନ୍ଦେ ରୋଦନ୍ତି
ହାଟ ବାଟ ଲୋକେ ବିକଳେ କାନ୍ଦନ୍ତି ।
ଗୁଣ ସୁମରିଣ ବାହୁନନ୍ତି ଲୋକେ
କେହୁ ହାହାକାର କରନ୍ତି ଗରୁ ଶୋକେ ।
କେ ବୋଲଇ ଶ୍ରୀରାମ ଏ ଦୁଃଖ ପାଇଲୁ
ଏ କୁଡ଼ିଆକୁ ସେ ଭାର୍ଜନ ହୋଇଲୁ ।୮୦
ଏ ବକଳମାନ ସେ ପରିଧାପନ କରୁ
କନ୍ଦମୂଳ ଖାଇ ବିପୁନ୍ୟେ ବିହରୁ ।
କଉଶୁଲାର ଶୋକ କହିଲେ ନ ସରି
ଅନେକ ବିଳାପ କଲା ଶ୍ରୀରାମକୁ
କୋଳେଧରି ।
ଭୋ ପୁତ୍ର ରଘୁନାଥ ମୋହୋର ପ୍ରାଣସଖା
ଏ ଘୋର ଅରଣ୍ୟେ ତୁ ଦିନ ବଞ୍ଚୁ ଏକା ।

ଖଟ ପଲଙ୍କ ଛାଡ଼ି ତିରଣ ପାରି ଶୋଉ
ଶାଳୀ ଅନ୍ନ ପରଶିଲେ ବିମୁଖ ତୁ ହୋଉ ।
ଛଡ଼ ରସ ପ୍ରକାରେ ତିଉଣ ନ ଭୁଞ୍ଜୁ
ସ୍ୱାଦୁ ହୋଇଲାନି ବୋଲି ମୋତେ
ଗଞ୍ଜୁ ।୯୦
ଖିରି ଖିରିସା ପିଠାନ୍ତ ନ ଖାଉ
ଛେନା ଗୋଟିକା ତୁ ଚୋବାଇ ପକାଉ ।
ଅମୃତ ପାନି କଦଳୀ ନ ଯୋଗାଇ
ସୁପକୁ ଅନ୍ନ ଉଦରେ ନ ରୁଚଇ ।
ରାଜା ଉପଭୋଗ ଯେତେକ ପଦାର୍ଥ
ତାହା ମିଳିଲେ ସେ ଦେହ ତୋର ସୁସ୍ଥ ।
ଏ ଯେ ଲକ୍ଷଣ ଅତି ସୁକୁମାର
ତୋହର କଷ୍ଟ ତାକୁ ହୋଇଲା ଅପାର ।
ଏତେ ବୋଲି ସୁମିତ୍ରା କୋଳେ ଧରି
ଅତି କ୍ରୋଧରେ ରୋଦିଲେ ଉଚ୍ଚ
କରି ।୧୦୦
ସୀତ୍ୟା କୋଳେ ଧରି କାନ୍ଦଇ ସୁମିତ୍ରା
ବିଧାତା ଆମ୍ଭକୁ ଏହା କଲା ଅହନ୍ତା ।
ଏତେ ବୋଲି ରୋଦନନ କଲେ ସର୍ବନାରୀ
ଦଶରଥ ରାଜାର ଯେତେକ ମନୋହାରୀ ।
ପର୍ବତ ଶିଖରେ ପଡ଼ଇ ବୋବାଳି
ପୃଥ୍ୱୀ ପୂରିଲା ସୋମଦ୍ର ଉଛୁଳି ।
ବଶିଷ୍ଠ ଜାବାଳି ବାମଦେବ ମୁନି
କଶ୍ୟପ ସୁମନ୍ତ ଅମନାତ୍ୟ ଗଣ ଘେନି ।
ବିବିଧ କଥା କହି ପ୍ରବୋଧ କରନ୍ତି
ବଶିଷ୍ଠଙ୍କର ବଚନେ କଲେ
ଶୋକଶାନ୍ତି ।୧୦
ମଥା ପୋତିଣ ସେ ଭ୍ରଥ ବସିଅଛି
କି ଜାଣି ଶୋକ ସମୁଦ୍ରେ ପଶିଅଛି ।
ଯହୁଁ ସେ ସମସ୍ତେ ହୋଇଲେ ମଉନବ୍ରତ
ଦୁଇ କର ଯୋଡ଼ି ଉଭା ହୋଏ ଭ୍ରଥ ।
ଶ୍ରୀରାମଙ୍କ ମୁଖ ଚାହିଁ ବୋଲେ ବାଣୀ
ମୋହୋର କଥାଏ ଶୁଣିମା ରଘୁମଣି ।
ଶୋକ ଛାଡ଼ି ଏବେ ରଥେ ଯାଇ ବସ
ରକ୍ଷାକର ଏବେ ତୋର ଅଯୋଧ୍ୟା ନାମେ
ଦେଶ ।
ଅପାର ଦିନ ହୋଇଲା ଛାଡ଼ିଣ ଅଇଲୁ
ନିଜ ରାଜ୍ୟ ଲୋକକୁ ଅପାର ଦୁଃଖ
ଦେଲୁ ।୨୦
ତୁହିଂ ସେ ଅଟୁ ନାଥ ଅଯୋଧ୍ୟା ରାଜନ
ତୋହର ବିନୁ କେ ହୋଇବ ଭାର୍ଜନ ।
କୁକୁରକୁ କାହିଂ ଯଜ୍ଞ ଚରୁ ଯାଚୁ
ନିଲକ୍ଷଣ ଲୋକକୁ ପାଟ ବାନ୍ଧି ସଞ୍ଚୁ ।
ତୁମ୍ଭେ ସେ ରାଜା ଆନକୁ ନ ଶୋହଇ
ତୋହୋର ନଥେଲେ ଶତ୍ରୁ ଘେନିବନା
ମହୀ ।
ଚନ୍ଦ୍ରପ୍ରାୟେ ଛତ୍ର ଆନକୁ କିମ୍ପା ଦେବୁ
ଶ୍ୱେତ ଚାମର କିମ୍ପା ଆନକୁ ସମର୍ପିବୁ ।
ଆନ କି ତହିଂକି ହୋଇବ ଭାର୍ଜନ
ତୁହି ସେ ଅଟୁ ନାଥ ଅଯୋଧ୍ୟା ରାଜନ ।୩୦
ବନସ୍ତେ ପଶିବୁ ଆମ୍ଭେ ଭାଇ ବେନି
ରାଜ୍ୟ ରଖିବୁ ତୁମ୍ଭନ୍ତ ସାଂଗେ ଘେନି ।
ତୋହର ଅଇଲା ଦିନୁ ଅଯୋଧ୍ୟା ନର ନାରୀ
ନୟନରୁ ନୁଅ ନ ରହଇ କାହାରି ।
ନଗ୍ରଯାକ ତୋତେ ଅଇଲେ ଗୋଡ଼ାଇ
ଅଯୋଧ୍ୟାକୁ ବୋଲି ନେମେ ବାହୁଡ଼ାଇ ।
ସବୁଙ୍କରି ମନେ ଏକଥା ସେ ଅଛି
ତୁମ୍ଭେ ଏବେ ଏହା ନଙ୍କର ରଘୁବଚ୍ଛି ।
ପ୍ରତେ କରି ମନେ ଆନନ୍ଦ ଉପୁଜା
ଚଉଦିଗେ ଶୁଭୁ ଶ୍ରୀରାମଚନ୍ଦ୍ର ରାଜା ।୪୦
ଶ୍ରୀରାମ ବୋଇଲେ ଭ୍ରଥର ବୋଲ ଶୁଣି
କିମ୍ପା ଭାଇ କହିଲୁ ଏସନେକ ବାଣୀ ।
ପିତା ତୋତେ ରାଜ୍ୟ ସତ୍ୟ କରିଦେଲା
ଚଉଦ ବରଷ ମୋତେ ବନକୁ ପେଶିଲା ।
ତୁ ସେ ରାଜା ହୋଇ ପାଳିବୁ ନା ମହୀ
ମୋତେ କିମ୍ପା ସେ କଥା ଆସୁଅଛୁ କହି ।
ସତ୍ୟ ଭଗ୍ନ ହୋଇବି ଅଯୋଧ୍ୟାକୁ ଗଲେ
ନିନ୍ଦା ପାଇବି ନା ପିତାର ଆଜ୍ଞା ଭ୍ରଷ୍ଟ କଲେ ।
ତୁ ହୋ ଭ୍ରଥ ମୋତେ ନ ବୋଲନି
ଆଉ ।୫୦
ଦଶରଥ କୀରତି ଯୁଗେ ଯୁଗେ ଥାଉ ।
ଶୁଣି ଭ୍ରଥ ବୀର ଯୋଡ଼ଇ ବେନି କର
ଭୋ ସ୍ୱାମୀ ମାତାର ମୋର ଦୋଷ ନ ଧର ।
ଶ୍ରୀରାମ ବୋଇଲେ ତୁ ନ ଜାଣୁରେ ଭାଇ
କଉଶଲ୍ୟା କଏକୟା ମୋହୋର ନିଜ
ଆଇ ।
ସୁମିତ୍ରା ଏ ତିନିହେଂ ଅଟନ୍ତି ଏକ ଦେହ
ମୋତେ କିମ୍ପା ତାଙ୍କର ନୋହିବ ସେନେହ ।
ଚାରି ଦେହ ଅଟଇ ଏକଇ ପଦାର୍ଥ
ତୋହର ମୋହର ବେଗଳ ପ୍ରାଣ
ନୋହେରେ ଭ୍ରାଥ ।
ଦଇବ ଯେବେ ଏକଥା ଭିଆଇଲା
କାହାର ବୋଲେ ସେ ହୋଇବ ଆନ
କଲା ।୬୦
ବଶିଷ୍ଟେ ବୋଲନ୍ତି ଶ୍ରୀରାମଚନ୍ଦ୍ର ଶୁଣ
ଅଯୋଧ୍ୟା ରାଜ୍ୟ ତ ନିଚେ ହୋଇବ
ରଣଭଣ ।
ତୁମ୍ଭେ ବନବାସୀ ଭ୍ରଥ ନୋହିବ ରାଜା
ନିଚୟେ ନିରେଖ ହୋଇବେ ଜନପ୍ରଜା ।
ତୁ କିମ୍ପା ରାଜ୍ୟ ଛାଡ଼ିତ ବିରୁରୁ
ଏହେର୍ଣ୍ଣେ ଛାର କଥା ମନରେ କିମ୍ପା ଧରୁ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମହାମୁନି
ଅରଣ୍ୟକୁ ଅଇଲି ମୁଂ ପିତାର ବୋଲ
ଘେନି ।
ଚଉଦ ବରଷ ମୁଂ ବନ ଘୋରେ ଥେବି
ବ୍ରତ ପୂରିଲେ ସେ ଅଯୋଧ୍ୟାକୁ ଯିବି ।୭୦
ଶୁଣିଣ ବୋଇଲେ ଋଷି ଆଗ ସରି
ପାକଲା ଛୋର ଗୋଟି ଥରହର କରି ।
ରାଜ୍ୟ ଛାଡ଼ିଣ ତୁ କିମ୍ପା ଯିବୁ ବନ
ଏ ତୁମ୍ଭର ପୌରୋଷ ନୁହଇ ରଘୁରାଣ ।
ଦଶରଥ ରାଜାକୁ କାଳ ଆକ୍ରୋଶିଲା
ସ୍ତିରୀ ବଶ୍ୟହୋଇ ତୋତେ ବନକୁ
ପେଶିଲା ।

ତୁମ୍ଭେ କିମ୍ବା ତାହା ପାଳ ରଘୁନାଥ
ଯିବା ଅଯୋଧ୍ୟାକୁ ଚଢ଼ ବେଗେ ରଥ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ତପୋବନ୍ତ
ନିନ୍ଦାବଚନ କି କେ ବୋଲିବା
ତୁମ୍ଭନ୍ତ ।୮୦
ସତ୍ୟପୁରୁଷଙ୍କର ନୋହଇ ଯେସନେକ
ବାଣୀ
ଧର୍ମ ସେ ତାହାଙ୍କର ଅଟଇ କାରେଣୀ ।
ସତ୍ୟ ନ ଛାଡ଼ିବ କରିବ ପ୍ରାକର୍ମ
ପ୍ରାଣୀମାନଙ୍କୁ ନ କହିବ ମର୍ମ ।
ସର୍ବଦା ଶୀତଳ ବଚନ ଭାଷିବ
ଗୁରୁ ଗଉରୋବ ଲୋକଙ୍କୁ ନ ହସିବ ।
ଦେବତା ଅତିଥି କରିବାକ ପୂଜା
ଆବର ଭଗତି ହୋଇବା ଦେବ ରାଜା ।
ତାହାଙ୍କୁ ସେବା ସେ ସଜ୍ଜନଙ୍କର ଗତି
ଏ ମାର୍ଗେ ଗଲେ ସେ ସର୍ଗରେ
ବସନ୍ତି ।୯୦
ମୁଇଂ ଏ କଥା ଛାଡ଼ିବି କିସ ପାଇଂ
ସତ୍ୟ ପୂରାଇଲେ ସେ ଅଯୋଧ୍ୟାକୁ ଯାଇ ।
ଶୁଣିଣ ସମସ୍ତେ ହୋଇଲେ ତରସ୍ତ
ଅନେକ କହିଲେ ଯେ ବଶିଷ୍ଠ ତପୋବନ୍ତ ।
ଶାସ୍ତ୍ର ଦେଖାଇ ଯେ କହିଲେ ବାମଦେବ
କେବେହେଂ ଶ୍ରୀରାମ ନୋହିଲା ମୃଦୁ ଭାବ ।
ଶ୍ରୀରାମ ବୋଇଲେ ମୁଂ କେବେହେଂ ନ
ଯାଇ
ଚଉଦ ବରଷ ବଞ୍ଚିବି ବନେ ଥାଇ ।
ସୁମନ୍ତ ବହୁତ କହିଲା ଯତ୍ନକରି
ଅନେକ ତିଆରିଲେ ଅଯୋଧ୍ୟା
ନରନାରୀ ।୧୦୦
ବଶିଷ୍ଠ ଜାବାଳି କଶ୍ୟପ ବାମଦେବ
ଏହାଙ୍କର ବୋଲ ନ କଲେ ରାଘବ ।
ରଘୁନାଥର ନିରାଶ ଶୁଣିଲେ ଉତ୍ତର
କୁଶ ଶଯ୍ୟାକରି ଶୋଇଲା ଭ୍ରଥ ବୀର ।
ଶ୍ରୀରାମ ନଗଲେ ମୁଂ ବାହୁଡ଼ି ନ ଯାଇ

ଏମନ୍ତ ବୋଲିଣ ସେ କୁଶ ପାଡ଼ି ଶୋଇ ।
ଏମନ୍ତ ସମୟେ ଶରଭଙ୍ଗଙ୍କର ଶିଷ
ଚିତ୍ରକୂଟ ପର୍ବତେ ହୋଇଲେ ପ୍ରବେଶ ।
ଗୁରୁ ପେଷିଲେ ମୋତେ କୁଶ ପାଦୁକା
ଦେଇ
ଏହା ନେଇଣ ତୁ ଦେବୁ ରଘୁସାଇଂ ।୧୦
ଚିତ୍ରକୂଟେ ଅଛନ୍ତି ବୋଲିଣ ଶୁଣିଲି
ତେଣୁ ସେ ଆତ୍ମାକୁ ଆନନ୍ଦ ମଣିଲି ।
ତୁହି ଯାଇଣ ବେଗେ ରଘୁନାଥଙ୍କୁ କହ
ଏ କୁଶ କଠାଉ ସନ୍ଦେଶ କରିଣ ଦିଅ ।
ବୋଲିବ ବାବାଏ ବାଟ ଚାହୁଂଛନ୍ତି
ସେହି ବାଟେ ତୁମ୍ଭେ ଯିବ ସୀତ୍ୟାପତି ।
ଏତେ ବୋଲି ଋଷି ଶିଷକୁ ପେଷିଲା
ଚିତ୍ରକୂଟ ପର୍ବତେ ପ୍ରବେଶ ହୋଇଲା ।
ବଶିଷ୍ଠ ବାମଦେବଙ୍କୁ ନମସ୍କାର କରି
ଯିବା ବୋଲି ବାମଦେବଙ୍କ ଚରଣ ତଳେ
ପଡ଼ି ।୨୦
ଶ୍ରୀରାମ ଛାମୁରେ ହୋଇଲା ପରବେଶ
ଦେଖି ରଘୁନାଥ ହୋଇଲେ ହରଷ ।
ଲକ୍ଷ୍ମଣ ଶତ୍ରୁଘ୍ନ ସୁମନ୍ତ ସହିତେ
ମୁନିଙ୍କି ପୂଜା କରନ୍ତି ତୁଷ୍ଟି ମତେ ।
ଶ୍ରୀରାମଙ୍କୁ ଚାହିଂ ଉତ୍ତଙ୍ଗ ବୋଇଲା
ଆଜ ସେ ଜୀବନ ମୋର ସୁଫଳ
ହୋଇଲା ।
ପ୍ରତକ୍ଷେ ନାରାୟଣ ମାନେବ ଅବତାର
ଶଙ୍ଖ ଚକ୍ର ଆୟୁଧ କଉସ୍ତୁଭ ମଣିହାର ।
ସେ ପ୍ରଭୁଙ୍କୁ ଚର୍ମ ଲୋଚନେ ଦେଖିଲି
ଅନେକ ଜନ୍ମର ପାପ ଉପେକ୍ଷିଲି ।୩୦
ମୋତେ ପେଶିଲେ କୁଶ ପାଦୁକା ଦେଇ
ଆମ୍ଭ ମଢ଼ିଆ ବାଟେ ଯିବ ରଘୁସାଇଂ ।
ଚିତ୍ରକୂଟେ ଥେବାର ବାରତା ପାଇଲେ
ଇନ୍ଦ୍ର କହିବାରେ ସେ ତଉଥ ଜାଣିଲେ ।
ଏତେ ବୋଲି ମୁନିଙ୍କ କଠାଉ ଦୁଇ ଦେଇ
ନିଜ ମଢ଼ିଆକୁ ଗଲା ପଛୁ ବାହି ।

ଭ୍ରଥ ସାଷ୍ଟାମ ହୋଇ ଭୂମିରେ ଶୋଇଅଛି
ଦେଖି ଦେବତାଙ୍କର ନ ପୂରଇ କିଛି ।
ବ୍ରହ୍ମା ସହିତେଣ କରିଣ ବିଚାରଣ
ଇନ୍ଦ୍ର ମୁଖ୍ୟ ହୋଇ ସକଳ ଦେବଗଣ ।୪୦
ଭ୍ରଥ ବୋଇଲେ ଶ୍ରୀରାମ ବାହୁଡ଼ି ଯେବେ
ଯିବ
ନିଚୟେ କଥା ଆମ୍ଭର ଆଜହୁଂ ସରିବ ।
ରାବଣ ଆଉ ମରିବ କେମନ୍ତେ
ସର୍ଗେ ସୁଖ ଆମ୍ଭେ ପାଇବା କେମନ୍ତେ ।
ଏତେ ବୋଲି ଦେବେ ଉଚ୍ଚେ ରାବ ଦେଇ
ତୁ ହୋ ଭ୍ରଥ ବୀର ହୋଇଲୁ କି ବାଇ ।
ଶ୍ରୀରାମ ଧାର୍ମିକ ନ ଇଂଘନ୍ତି ସତ୍ୟ
ତୁ କିମ୍ବା ତାହାକୁ ବିଘ୍ନର ନିୟତ ।
ବାହୁଡ଼ି ଯାଅ ତୁ ଅଯୋଧ୍ୟା ମହୀପାଳ
ଏ କଥାକୁ ମନରେ ଆନ ନ ବିଚାର ।୫୦
ଶ୍ରୀରାମ ବାହୁଡ଼ିଲେ ସଂସାର ନାଶ ଯିବ
ବସୁନ୍ଧରୀ ଦେବୀ ରାସାତଳେ ପଡ଼ିବ ।
ତୁ ହୋ ଭ୍ରଥ ଶାପ୍ୟ ପାଇବୁ ଅବଶ୍ୟ
ନିଚୟେ ଅଯୋଧ୍ୟା ରାଜ୍ୟ ଯିବ ନାଶ ।
ଏସନେକ ବୋଲି ଯହୁଂ ଡାକିଲେ ଦେବସୁର
ଭ୍ରଥ ଶୁଣିଲା ସର୍ଗର ଉତ୍ତର ।
ବଶିଷ୍ଠେ ବୋଇଲେ ଭ୍ରଥ ବେଗେ ଉଠ
ଅଯୋଧ୍ୟାକୁ ଯିବା ସଜ କର ଥାଟ ।
ଶୁଣି ଭ୍ରତ ବୀର ଉଠିଲାକ ଚେତି
ବଶିଷ୍ଠେ ଶ୍ରୀରାମଙ୍କୁ ବହୁତେ ତିଆରନ୍ତି ।୬୦
ତୁ ଏବେ ଶ୍ରୀରାମ ନ ଯିବୁ ନିଜ ପୁର
ଚଉଦ ବରଷ ପଶିବୁ ବନ ଘୋର ।
ତହିଂର ଉତ୍ତାରେ ଯିବୁ ଟିକି ସତ୍ୟ
ହୋଉ ଯିବି ବୋଲି ବୋଇଲେ ରଘୁନାଥ ।
ଚଉଦ ବରଷ ପୂରିଲେ ଆମ୍ଭେ ଯିବୁ
ତେବେ ସେ ଅଯୋଧ୍ୟାରେ ନୃପତି
ହୋଇବୁ ।
ଶୁଣିଣ କର ଯୋଡ଼ଇ କୟେକୟୀ ଶିଷି
ଭୋ ଶ୍ରୀରାମ ତୋର ପାଦୁକା ଦୁଇ ଦେସି ।

ଏହା ସିଂହାସନେ ଥେବଇଂ ଆମ୍ଭେ ଥୋଇ
ଦଣ୍ଡ ଛତ୍ର ଚାମର ଏହାକୁ ଧରାଇ । ୭୦
ବଶିଷ୍ଠେ ବୋଇଲେ ତୁମ୍ଭେ ଶୁଣିମା ରଘୁନାଥ
ଯାହା ସେ ବୋଇଲା ଭ୍ରଥ ଅଟଇ ଯଥାର୍ଥ ।
ତୋହର ବୁଦ୍ଧିବଳେ ଭ୍ରଥ ରାଜ୍ୟ ପାଳୁ
ଏତେକେ ଭାଇ ତୋହର ମନରେ ନଧରୁ ।
ଏହୁ ତୁମ୍ଭର ଅଟଇ ସାନଭାଇ
ମନ୍ଦକଲା ସିନା ତୁମ୍ଭର କଏକୟୀ ଆଇ ।
ଶୁଣିଣ ଶ୍ରୀରାମ କଠାଉ ଦୁଇ ଦେଲେ
ଏହା ସେ ଘେନି ରାଜ୍ୟ କରସି ବୋଇଲେ ।
ଶ୍ରୀରାମ ପାଦୁକା ଭ୍ରଥ ଶିରେ ଘେନି
ରଘୁନାଥକୁ ଅନେକ କରଇ ଦଇନି । ୮୦
ଭୋ ଶ୍ରୀରାମ ଆଜହୁଂ ଗଣୁଥେବୁ ଦିନ
ଚଉଦ ବରଷ ଯେବେ ହୋଇବ ସମ୍ପୂର୍ଣ୍ଣ ।
ସେଦିନ ଅଯୋଧାରେ ମିଳିବୁ ରଘୁସାଇଂ
ଦିବସେ ଅଗ୍ଗଳି ହୋଇଲେ ଆମ୍ଭର
ଜୀଇନାହିଂ ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ମନ୍ତ୍ରୀଗଣ
ବଶିଷ୍ଠ ବାମଦେବ ଅମନାତ୍ୟେ ଗଣ ଶୁଣ ।
ଯେମନ୍ତେ ରାଜ୍ୟ ମୋର ନ କଳଇ ବଇରୀ
ତୁମ୍ଭେ ମନ୍ତ୍ରୀଗଣେ ଥିବ ଏମନ୍ତ କରି ।
ଜନନୀମାନେ କେହି କଳି ନ କରିବ
ଭ୍ରଥର ଆଜ୍ଞା ପ୍ରମାଣେ ସେ ଥେବ । ୯୦
ରାଜ୍ୟର ପରଜା ଭଣ୍ଡାର ଦୁଃଖୀଜନ
ଏହାନ୍ତ ପାଳିଲେଟି ବୋଲିବେ ରାଜନ ।
ତୁ ହୋ ଶତ୍ରୁଘନ ରାଜାର ବୋଲେ ଥେବୁ
ମୋହୋର ଆଜ୍ଞାରେ ରେଖେ ନ ଡେଇଂବୁ ।
ନଗ୍ର ଲୋକଙ୍କୁ ଚାହିଂଣ ଆଜ୍ଞା ଦେଲେ
ଭ୍ରଥ ସଂଗେ ବାହୁଡ଼ଇ ଯାଅସି ବୋଇଲେ ।
ପିତାର ସତ୍ୟ ମୁଂ ପୂରିଲେଣ ଯିବି
ତେବେ ସେ ଅଯୋଧାରେ ନୃପତି
ହୋଇବି ।
ଶୁଣି ସର୍ବଜନେ ହୋଇଲେ ସନ୍ତୋଷ
ବାଜଇ ଦମା ଦାଉଡ଼ି ବିଜିଘୋଷ ।୧୦୦
ଟମକ ନିଶାଣ ଶଙ୍ଖ କମ ଭେରୀ
ଘଣ୍ଟି ଘାଗୁଡ଼ି ମର୍ଦ୍ଦଳ କାହାଳ ମହୁରୀ ।
ଶ୍ରୀରାମ ପାଦୁକାକୁ ରଥେ ନେଇ ଥୋଇ
ଛତ୍ର ଚାମର ଆଲଟ ଧରାଇ ।
ଶ୍ରୀରାମକୁ ନମସ୍କାର କରିଣ ବାହୁଡ଼ନ୍ତି
ଯେ ଯାହାର ମାନ୍ୟ ବିଧିମାନନ୍ତ କରନ୍ତି ।
ସାତ୍ୟା ଭଗ୍ନୀମାନଙ୍କୁ ବହୁତ ତିଆରିଲା
ଶୋକେ କୋଳକରି ମୁଖେ ଚୁମ୍ବନ ଦେଲା ।
ମାତାକୁ ନମସ୍କାର କରନ୍ତି ସୀତ୍ୟାକାନ୍ତ
ଜାବାଳି କାଶ୍ୟପ ବଶିଷ୍ଠ ତପୋବନ୍ତ । ୧୦
ବାମଦେବ ସହିତେ ସକଳ ଯତିମାନ
ଏହାଙ୍କୁ ଓଳଗନ୍ତି ଦଶରଥ ନାନ ।
ସାତ୍ୟା ଶାଶୁମାନନ୍ତ କରଇ ବିନୟେ
ଲାଇକ୍ଷଣ ଭ୍ରଥ ଚରଣେ ବିନୟ ହୋଏ ।
ଶତୃଘନ ଶ୍ରୀରାମଙ୍କୁ ଓଳଗଇ ଯାଇ
ଲକ୍ଷ୍ମଣର ପାଦେ ପ୍ରଣାମ ପୁଣ ହୋଇ ।
ସୁମନ୍ତଙ୍କୁ ଶ୍ରୀରାମ ବହୁତ ତିଆରିଲେ
ଭ୍ରଥ କଇଲାଣ କରିଣ ବୋଇଲେ ।
ଯାଅ ବାବୁ ରାଜ୍ୟ ଶୁଭେ ଯାଇ ରଖ
ଶୁଣିଣ ହରଷ କଲେ ଭ୍ରଥ ମୁଖ । ୨୦
ଶିରେ ହସ୍ତ ଦେଇଗଲା ତହୁଂ ଚଳି
ଗୁହ ନାମେ ଶବର ଶ୍ରୀରାମ ପାଦେ ପଡ଼ି ।
ତାହାକୁ ରଘୁନାଥ ପ୍ରବୋଧି କହିଲେ
ଭ୍ରଥର ସଂଗେ ମୈତ୍ରୀ ହୁଅସି ବୋଇଲେ ।
ଏଥୁଅନନ୍ତରେ ଚଳିଗଲେ ଥାଠ
ଅଗମ୍ୟେ ବିପୁନ୍ୟେ ଚଳିଗଲେ ବାଟ ।
ଯେ ଯାହାର ବାହନ ଆରୋହିଣ ଗଲେ
ପାଞ୍ଚଦିନେ ଯାଇ ଅଯୋଧାରେ ହୋଇଲେ ।
ନନ୍ଦୀଗ୍ରାମେ ଯାଇ ପ୍ରବେଶ ହୋଇଲେ
କଟେକ କରିଣ ଭ୍ରଥ ତହିଂ ଯାଇ
ରହିଲେ ।୩୦
ଚଉଦ ବରଷ ଏଥେ କଟେକ କରିଥିବୁ
ଶ୍ରୀରାମ ଅଇଲେ ସେ ଅଯୋଧାକୁ ଯିବୁ ।
ଏତେ ବୋଲି ଭ୍ରଥ ସତ୍ୟକରି ରହି
ପାର୍ବତୀ ଆଗରେ ଶିବ ଏହା କହି ।
ଶୁଣ ଭାବାନୀ ଗୋ ଭ୍ରଥର ଚରିତ
ଶ୍ରୀରାମ କଠାଉକୁ ଧରାଇ ଦଣ୍ଡଛତ୍ର ।
ବଶିଷ୍ଠ ମନ୍ତ୍ରୀକି ରାଜ୍ୟ ସମର୍ପିଲା
ଆପଣେ ମୁନିବେଶ ହୋଇଣ
ଦିନ ନେଲା ।
ଅଯୋଧା କାଣ୍ଡ ଏ ସାମ ବେଦୁ ଜାତ
ଯାହା ବଖାଣିଲେ ବାଲମିକ
ତପୋବନ୍ତ ।୪୦
ନୀଳଗିରି ଜଗନ୍ନାଥ ଆଜ୍ଞା ଶିରେ ଧରି
ଶ୍ରୀ ରାମାୟଣ ଗ୍ରନ୍ଥ କହିଲି ବିସ୍ତାରି ।
ବଳରାମ ଦାସ ଶ୍ରୀହରି ଚରଣ
ଶ୍ରୀ ଜଗନ୍ନାଥଙ୍କୁ ଶତେ ସହସ୍ର ପ୍ରଣାମ । ୪୪

**ଇତିଶ୍ରୀ ଅଯୋଧ୍ୟାକାଣ୍ଡ ସମାପ୍ତ**

# ଆରଣ୍ୟକ କାଣ୍ଡ

ବନ୍ଦଇ ଜଗନ୍ନାଥ ଅଗ୍ରଜ ହଳଧାରୀ ।
ରୋହେଣୀ ନନ୍ଦନ ପ୍ରଳୟ ଅନ୍ତକାରୀ ॥
ରେବତୀରମଣ କାଳନ୍ଦୀ ଜଳ ଭେଦ ।
ନୀଳ ବସ୍ତ୍ର ପରିହରଣ କରେଣ ଆଉଧ ॥
ତାଳଧ୍ୱଜ ଆରୋହଣ ଯେକଇ କୁଣ୍ଡଳ ।
ଶ୍ରୀମୁଖ ଶୋଭାବନ ଚନ୍ଦ୍ରମା ମଣ୍ଡଳ ॥
ଶୁଧ୍ୟ ସ୍ଫଟିକ ପ୍ରାୟେକ ତନୁ ବର୍ଣ୍ଣ ।
ଶଙ୍ଖ ଆକାର କୁଣ୍ଡଳ ବେନି କର୍ଣ୍ଣ ॥
ଶିରେଣ ସପତ ଅହିର ମୁକୁଟ ।
ମୁକୁତା କଦମ୍ବ ହାର ଶୋହେ କଣ୍ଠତଟ ॥୧୦
ଶୁଧ ସ୍ଫଟିକ ପ୍ରାୟେକ ନବରତ୍ନ
ଯୋଗକରି ।
ହୃଦରେ ପଦେକ ଭିନେ ଭିନେ ପରି ॥
କଟିରେ କଟି ମେଖଳା ବାମେ ଯମଦାଢ଼ ।
ଚରଣେ ନେପୁର ଶବଦ ଅତି ଗାଢ଼ ॥
ଭୁଜେ ବୀରନେତ ବାହୁଟି କଙ୍କଣ ।
ବିଦ ମୁଦି ବଳୟ ଶରୀରେ ଆଭରଣ ॥
ଚନ୍ଦ୍ର ସୂର୍ଯ୍ୟ ଜିଣି ହଳ ମୂଷଳ ଦିଶି ।
ଶ୍ୱେତପଦ୍ମ ଜାଣି ବଦନ ବିଘସି ॥
ଅମୃତ ଅଧର ବିଜୁଳି ତେଜ ଜାଣି ।
ଲୋଚନ ଯୁଗଳ କି ଲୋହିତ ନଳଣୀ ॥୨୦
ମଧରେ କଳାଡ଼ୋଳା କି ଅବା ମଧୁକର ।
ସୁସଞ୍ଚ ନାସିକା ଘଟିତ ଦିବ୍ୟସାର ॥
କନ୍ଦର୍ପ ପାଳେଣ କାମପାଳ ନାମ ।
ଅତି ବଳ ପ୍ରାକର୍ମେ ବୋଲାଉ ବଳରାମ ॥
ନୀଳ ବସ୍ତ୍ର ପରିହରଣ ନାମ ନୀଳାମ୍ବର ।
ଜୟ ଜୟ ରାମ ତୁ ଜଗତ ଈଶ୍ୱର ॥
ତପେଣ ନିର୍ଜିତ ଯୋଗେଣ ଅଟୁ ଜିତା ।
ସଂକର୍ଷଣ ନାମ ତୋତେ ଦେଲାକ ବିଧାତା ॥
ଜଗତ ଭାରାଭର ବହଇ ଯେବଣ ଅହି ।
ସେ ତୋହର ଶ୍ରବଣେ କୁଣ୍ଡଳେକ
ହୋଇ ॥୩୦
ଆରେକ କର୍ଣ୍ଣେ ଦେବ ନ ବହୁତୁ ହାର ।
ଯେକ କୁଣ୍ଡଳୀ ନାମ ଅଟଇ ତୋହର ॥
ସର୍ବାଙ୍ଗେ ଚନ୍ଦନ ଗଉଛୁଣି ନେତ ।
ନାନା ବର୍ଣ୍ଣେ କୁସୁମ ଭୂଷଣ ବହୁତ ॥
ଜୟ ତୁ ବଳଭଦ୍ର ଦେବଙ୍କର ଷଣ୍ଢ ।
ତୋହର ଭୁଜ ଆଶ୍ରେକେ ବ୍ରତନ୍ତି ବ୍ରହ୍ମାଣ୍ଡ ॥
ଦେବଙ୍କର ଆଗେ ନାରଦ ମହାମୁନି ।
ତୋହୋର ମହିମା କହଇ ଶୁଣଇ
ପଦ୍ମଯୋନି ॥
ଦେବ ଯକ୍ଷ ବିଦ୍ୟାଧର ବ୍ରହ୍ମଋଷି ।
ଯେ ତୋହୋର ମହିମା ଅନୁଛଣେ
ଭାଷି ॥୪୦
ଶୁକ ମୁନି ତହୁଂ ବାସୁକି ରାଜା ଶୁଣଇ ।
ତେଣୁ ସେ ପୃଥି ତିଳ ପ୍ରାୟେ ମଣଇ ॥
ସଦାଶିବ କହନ୍ତି ପାର୍ବତୀ ଅଗ୍ରତ ।
ତେଣୁ ସେ ଗିରିଜା ହରଇ ଦୋଷକୃତ ॥
ଗୋପପୁରେ ଗୋପ କୁମାରଙ୍କ ସଙ୍ଗେ ।
ବୃଦାବନ ବିପୁନ୍ୟେ ବିହଡ଼ନ୍ତେ ରଙ୍ଗେ ॥
ପ୍ରଳମ୍ବାକୁ ମାଇଲୁ ହରିଙ୍କ ସାହା ଘେନି ।
ସ୍ୱର୍ଗେ ପ୍ରଶଂସା ତୋତେ କରନ୍ତି ସୁରମୁନି ॥
ରଙ୍ଗସଭା ତଳେ ମୁଷ୍ଟିକ ବଧ କଲୁ ।
କଂସର କନେଷ୍ଟ ଭାଇ ସୁନାସାକୁ
ମାଇଲୁ ॥୫୦
ଜରାସନ୍ଧ ସଂଗେ ସମର ମହାଘୋର ।
ହଳ ମୂଷଳ ଘେନି ନାଶିଲୁ ତାର ବଳ ॥
ଦେବଙ୍କର ବାଣୀ ଶୁଣି ରଖିଲୁ ତାର ପ୍ରାଣ ।
ଅଠର ବେଳ ହାରିଲୁ ଜାରାସନ୍ଧ ରାଣ ॥
ହସ୍ତିନା ତାଡ଼ି ଦେବ ଧଇଲୁ ବାମ ହସ୍ତେ ।
ଅନ୍ତରାଳେ ବୁଲାଇଲୁ କୁରାଳଚକ୍ର ମତେ ॥
ଦନ୍ତବକ୍ରକୁ ମାଇଲୁ କରତଳେ ସଞ୍ଚି ।
ପଶାକାଠି ଘେନି ମୁଣ୍ଡ ତାର ଛେଚି ॥
କାଦମ୍ବେରୀ ପାନେ ଅରୁଣ ବର୍ଣ୍ଣ ଆଖି ।
ସୁତ ପୁରାଣିକ ଯହୁଂ ନ ଉଠିଲା ତୋତେ
ଦେଖି ॥୬୦
ଚାପୋଡ଼େ ମାରିଣ ଛେଦିଲୁ ତାର ଶିର ।
ତେଣୁ ତୀର୍ଥବାସୀ ହୋଇଲୁ ବଳେବର ॥
ଅନେଣ ପ୍ରଭାସ ତୀର୍ଥେ ଗୋପ୍ୟ ହୋଇ ।
ଯେବେ ନୀଳାଦ୍ରିରେ ବିଜେ କରିଛ
ଗୋସାଇଁ ॥
ଦାସ ଜନ ହିତେ ଶ୍ୟରୀର ପ୍ରକାଶି ।
ଶ୍ରୀଜଗନ୍ନାଥ ଦକ୍ଷିଣ ପାରୁଶେ ଅଛୁ ବସି ॥
ସେ ସେ ଜଗନ୍ନାଥ ପ୍ରମବ୍ରହ୍ମ ସ୍ୱାମୀ ।
ଯୋଗୀଜନ ଦୁର୍ଲ୍ଲଭ ସର୍ବଭୂତେ ଅନ୍ତର୍ଯାମୀ ॥
ସର୍ବଜନ ନିସ୍ତାରଣ କମଳାବିଳାସ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ
ଦାସ ॥୭୦
ଶୁଣିମା ସୁଜ୍ଞଜନେ ଶ୍ରୀରାମର କଥା ।
ବାଲମ୍ବିକ ଆଗେ ଯାହା କହିଲେ ଚଉମଥା ॥
ସାମବେଦୁଂ ସମ୍ଭୂତ ଶ୍ରୀରାମର ବାଣୀ ।
ପାର୍ବତୀ ଦେବୀ ଶ୍ରୋତା ବକତା ଶୂଳପାଣି ॥
ଭୋ ନାଥ ! ଭ୍ରଥ ଯେ ବାହୁଡ଼ିଣ ଗଲା ।
ତହୁଂ ପୁଣ ଶ୍ରୀରାମ କେବଣ କୃତ କଲା ॥
ଯେହା ମୋତେ ସଞ୍ଚପି କହିବା ତ୍ରିପୁରାରି ।
ଶୁଣିତ ଶରଧା ବଳିଲା ମୋହୋରି ॥
ବୋଲନ୍ତି ସଦାଶିବ ଶୁଣରେ ଭବାନୀ ।
ଭ୍ରଥ ବାହୁଡ଼ିଲା ପାଦୁକା ଦୁଇ ଘେନି ॥୮୦
ପ୍ରଥମ ଦିବସ ଯମୁନା କୂଳେ ରହି ।
ରାତ୍ର ପାହିଲେଣ ପନ୍ଥ ବହି ଯାଇ ॥
ପ୍ରୟାଗ ଜିଣିଣ ଅଗମ୍ୟ ବନେ ମିଳନ୍ତି ।
ଆରେକ ଦିବସେ ଯେ ଗଙ୍ଗା ପାରିହୋନ୍ତି ॥
ଗୁହ ନାମେ ଶବରକୁ ଶାଢ଼ୀ
ସୁନାବଳା ଦେଇ ।

ନିଜ ଦେଶ ସୀମାଏଗଲେ ତାକୁ ଥୋଇ ॥
ନନ୍ଦୀ ଗ୍ରାମେ ଯାଇ ହୋଇଲେ ପ୍ରବେଶ ।
ସେଠାକୁ ଅଯୋଧ୍ୟା ଅଟଇ ତିନିକୋଶ ॥
ଭରଥ ବୋଇଲା ଯେ ବଶିଷ୍ଟଙ୍କୁ ଚାହିଁ ।
ଅଯୋଧ୍ୟା ରାଜ୍ୟକୁ ତ ମୋହର
ଯାଇନାହିଁ ॥୯୦
ଚଉଦ ବରଷ ମୁଁ ଏଥେଣ ରହିଥିବି ।
ଶ୍ରୀରାମ ଅଇଲେ ସେ ଅଯୋଧ୍ୟାକୁ ଯିବି ॥
ତୁମ୍ଭେ ମହରଷି ରାଜ୍ୟ ଚିନ୍ତା କର ।
ରାଘେବ ପାଦୁକାକୁ ଦଣ୍ଡଛତ୍ର ଧର ॥
ଯେତେବୋଲି କଠାଉ ସିଂଘାସନେ ଥୋଇ ।
ଭରଥ ରହିଲା ଯେ ଉଦାସୀ ମତ ହୋଇ ॥
ଆଗ୍ୟାଂ ଦେଇ ନବର ନିର୍ବାଣ କରାଇଲା ।
ଶତ୍ରୁଘନଙ୍କଇ ରାଜ୍ୟ ଚିନ୍ତା ଦେଲା ॥
ବଶିଷ୍ଟ ଯାବତ କରନ୍ତି ଭିଆଣ ।
ସୁମନ୍ତ ଭାଣଇ ଯେ ରାଜ୍ୟ ଆଚରଣ ॥୧୦୦
ବାମଦେବ ଜାବାଳି କଶ୍ୟପ ପୋୟେ ଥାନ୍ତି ।
ଶତ୍ରୁକୁ ତ୍ରାସ ଦେଖାଇ ପରଜା ପାଳନ୍ତି ॥
ମାତୃଗଣ ନିଚିନ୍ତ ହୋଇଣ ରହିଲେ ।
ଦୁତୀ ଅଯୋଧ୍ୟା ଯେ ନନ୍ଦୀଗ୍ରାମ କଲେ ॥
ଯେଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ ।
ଶ୍ରୀରାମ ରହିଲେ ଯେ, ଚିତ୍ରକୂଟ ଗିରି ॥
ମନ୍ଦାଗ୍ନି ନଦୀରେ କରନ୍ତି ରାମ ସ୍ନାନ ।
ସୀତା ଘେନି ରାମ ବନେ ବିହଡ଼ନ୍ତି ଜାଣ ॥
ନିତି ମୃଗ ମାରି ଆହାର କରନ୍ତି ।
ଦୁଃଖ ପାସୋରିଣ ଦିବସ ହରନ୍ତି ॥
ଯେକ ଦିନେ ରାମ ବନ ବୁଲିଗଲେ ।
ତପୀଙ୍କର ତପ କରନ୍ତେ ଦେଖିଲେ ॥
ଶ୍ରୀରାମକୁ ଦେଖି ତପୀୟେ ଭୟେ କଲେ ।
ଯେ ଯାହାର ଚିତ୍ତେ ଆରତ ହୋଇଲେ ॥
ଯେକକୁ ଆରେକ ଠରାଠରି ହୋନ୍ତି ।
ଯେହାର ଥିଲେ ସେ ଅସୁରେ ଆସନ୍ତି ॥
ବନଜୀବମାନଙ୍କୁ ଯେ ଶସ୍ତ୍ର ଧରିଣ
ଆକ୍ରଷନ୍ତି ।

ଏତେ ବୋଲି ଋଷି ମନେକଲେ ଭ୍ରାନ୍ତି ॥
ଏହାର ଥିଲେ ଯେଥେ ହୋଇବାକ ଦ୍ୱନ୍ଦ୍ୱ ।
ନିତଏ ଅସୁରେ ଆସି କରିବେ
ପରମାଦ ॥୨୦
କି ବୁଦ୍ଧି କରିବା ହୋ ଯିବା କଉଂକତି ।
ଏ ବୋଲ ଶୁଣିଣ ଯେ ବୋଇଲେ ରଘୁପତି ॥
କିମ୍ପା ମହତମା ହୋ ବିକଳ ତୁମ୍ଭେ ହୋଅ ।
କେବଣ କାରଣେ ହୋ ଉପତାପ ପାଅ ॥
ତପୀୟେ ବୋଇଲେ ଆମ୍ଭେ ତୋତେ ଭୟେ
କଲୁ ।
ତେଣୁ ମହାଶଙ୍କା ମନରେ ଧଇଲୁ ॥
ଧନୁଶସ୍ତ୍ର ଧରିଣ ବନରେ ବିହରୁ ।
ମୃଗ ଶୂକର ଧରିଣ ବଧ କରୁ ॥
ସନ୍ଥଜନଙ୍କର ନୋହଇ ଯେ ଗତି ।
ଦୁଷ୍ଟ ସେ ବହନ୍ତି ଯେସନେକ ପ୍ରକୃତି ॥୩୦
ଶ୍ରୀରାମ ବୋଇଲେ ହୋ କିମ୍ପା ମୋତେ
ନିନ୍ଦ ।
ମୁଁ ଅବା ଯେଥେ ତୁମ୍ଭଙ୍କୁ କଲି କେଉଂ
ଦ୍ୱନ୍ଦ୍ୱ ॥
କେବଣ କାରଣେ ତୁମ୍ଭେ ହୋଇଲ ଚକିତ ।
କିସ ଦୁଷ୍ଟପଣ ମୋର ଦେଖିଲ ତପୋବନ୍ତ ॥
ଆମ୍ଭେ ତିନିଜଣ ତୁମ୍ଭର ପାଶେ ଥାଉ ।
କନ୍ଦମୂଳ ଖାଇ ଦୁଃଖେ ଦିନ ନେଉ ॥
ଯେକ ଆତ୍ମା ଆମ୍ଭେ ନୋହୁ ଭିନ ଭିନ ।
ଦଶରଥ ସୁତ ଆମ୍ଭେ ଅଟୁ ତପୀଜନ ॥
ମୁନି ବୋଇଲେ ଯେଥେ ଅସୁରଙ୍କର
ଭୟେ ।
ଯେଣେ ସେ ଆମ୍ଭର ଶଙ୍କା ମନ
ହୋୟେ ॥୪୦
ତୁହୋ ପୁନ୍ୟଦେହୀ ଏ ପର୍ବତେ ନ ଥା ।
ଅପାରୁ ଅପାର ଯେ ଅଟଇ ଯେଥର କଥା ॥
ଅସୁରମାନଙ୍କର ଅଟଇ ଯେ ଭୂଇଂ ।
ଅକାରଣେ ନାଶ ଯିବୁ କିମ୍ପା ଯେଥେ ରହି ॥
ଯେହା ଶୁଣିଣ ବୋଇଲେ ଦେବ ରଘୁନାଥ ।

ଧନୁ ଶସ୍ତ୍ର କିମ୍ପା ଧରିଅଛି ହାଥ ॥
ଯେକା ନାରାଜକେ ସହସ୍ରେ ଅସୁର ।
ଛେଦି ନ ପାରିଲେ ମୁଁ ନୋହଇ ରଘୁବୀର ॥
ମୋହୋର ସୁଖେ ପଡ଼ିକି ଅସୁରେ
ଜୀଇଂବେ ।
ଲେଉଟି ଯାଇକି ନିଜ ମନ୍ଦିର
ଦେଖିବେ ॥୫୦
ଯେହେର୍ଣେକ ପ୍ରାୟେ ତୁମ୍ଭେ ଦେଖିଲ କି
ମୁନି ।
କିପାଇଂ ଛାଡ଼ିବ ଟି ନଦୀ ମନ୍ଦାକିନୀ ॥
ନିର୍ଭୟେ ହୋଇଣ ତୁମ୍ଭେ ଥାଅ ଯେଥେ
ରହି ।
ଯେତେବୋଲି ରାମ୍ ତହୁଂ ଗଲେ
ପଲ୍ଲବହିଂ ॥
ନିଜ ମଢ଼ିଆରେ ହୋଇଲେ ପ୍ରବେଶ ।
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ ॥
ଯହୁଂ ସେ ରଘୁନାଥ ପ୍ରତଗ୍ୟାଂ କରିଗଲା ।
ତେବେ ତପୀମାନଙ୍କର ଭୟ ନ ସରିଲା ॥
ସମସ୍ତେହେଂ ଗୁଣ୍ଠ ହୋଇଣ ଭାଳନ୍ତି ।
ରାକ୍ଷସେ ଆମ୍ଭନ୍ତ କି ଜୀଆଇଂବେ ଯେ
ଘାନ୍ତି ॥
ବୋଲିବେ ଆମ୍ଭନ୍ତ ମରାଇବାର ନିମନ୍ତେ ।
ଧନୁଧରା ଲୋକ ଆଣି ଥୋଇଲେକ
ଯେଥେ ॥
ଯେ ଦୋଷ ଘେନି ରାକ୍ଷସେ ଘେନିମେ
ଆମ୍ଭପ୍ରାଣ ।
ଯେ କଥା ନିଅତ ଟି ତଇଥ କରି ଜାଣ ॥
ଚାଲ ଆମ୍ଭେ ଚିତ୍ରକୂଟ ଛାଡ଼ିକରି ଯିବା ।
ଆରେକ ଅରନ୍ୟେ ଯାଇଣ ରହିବା ॥
ଯେସନ ବିଚାରି ତହୁଂ ତପୀମାନେ ଗଲେ ।
ଘୋର ବିପୁନ୍ୟେଣ ଯାଇଣ ରହିଲେ ॥
ତୁଚ୍ଛା ମଢ଼ିଆ ଆସି ଦେଖିଲେ ରଘୁପତି ।
ବୋଇଲେ ମୁନିମାନେ ନାହାନ୍ତି ତ ଯେଥି ॥
କେବଣ କାରଣେ ସେ ଗଲେ ଅବା
କାହିଂ ।

ଯେଥି ଆଉ ଆମ୍ଭେ ଥିବା କିମ୍ପା ରହି ॥
ଉଦ୍‌ବେଗ ହୋଇଲା ଶ୍ରୀରାମର ଚିତ୍ତ ।
ନିଜ ଆଶ୍ରମକୁ ଚଳିଲେ ତୁରିତ ॥
ଲକ୍ଷଣ ଆଗରେ କହିଲେ ତାହା ଯାଇ ।
ମୁନିମାନେ ଯେଥୁଂ ଗଲେ ହୋ ପଳାଇ ॥
ତୁଚ୍ଛା ମଢ଼ିଆନ୍ତ ଆମ୍ଭେ ଦେଖିଲୁ ଯେହିକ୍ଷୁଣି ।
ଆମ୍ଭେ ଯେଥୁଂ ବେଗେ ଯିବାରେ ଲକ୍ଷଣି ॥
ସୀତାଙ୍କୁ ଚାହିଂଣ ବୋଲନ୍ତି ଦାଶରଥି ।
ବନବାସ କଥା ଯେବେ ବୁଝ ଗୋ ମହାସତୀ ॥
ପ୍ରର୍ବତ ଛାଡ଼ିଣ ସମସ୍ତେ ପଳାଇଲେ ।
ଅସୁରେ ମାରିବେ ବୋଲି ମହାଭଏ କଲେ ॥
ମୋହୋର ତିଆରନ୍ତେ ନ ରିହଲେ କେହି ।
କେବଣ ବୁଦ୍ଧି ଯେବେ କରିବା ବଇଦେହୀ ॥
ବୋଇଲେ ବୋଲ ତୁ ଗୋ ନ କଲୁ ଶଶୀମୁଖି ।
ତୁହି ସିନା ଯେବେ ହୋଇବୁ ନିରିମାଖୀ ॥
ଏତେ ବୋଲି ରାମ ଉପରକୁ ଚାହିଂ ।
ଏହା ଆଣି ମୋତେ ଶିରେ କଲୁ ବିହି ॥
କାହିଂ ଯାଇ ଯେବେ ରହିବଇଂ ଯେବା ।୬୦
ମୁନିମାନେ ବୋଇଲେ ଅସୁରଙ୍କ ଶଙ୍କା ॥
ଧର୍ମ ସୁମରିଣ ରହିଲେ ରଘୁପତି ।
କରେ ଧନୁ ଶସ୍ତ୍ର ପ୍ରଚଣ୍ଡ ଉଗ୍ର ମୂର୍ତ୍ତି ॥
ସୀତା ସହିତେ ଯେ ଲକ୍ଷଣ ତିନି ଜଣ ।
ତକ୍ଷଣେ ଛାଡ଼ିଲେ ଚିତ୍ରକୂଟ ବଣ ॥
ଘୋର ଅରନ୍ୟେଣ ପନ୍ଥ ବହି ଯାନ୍ତି ।
ବନଜୀବମାନଙ୍କୁ ବାଟରେ ଦେଖନ୍ତି ॥
ବ୍ୟାଘ୍ର ସଂଯେମ୍ବର ମୃଗ ଯୂଥ ଯୂଥ ।
ସୀତାର ଭୁଜ ଧରି ଦେଖାନ୍ତି ରଘୁନାଥ ॥
ଭୋ ମଇଥିଳୀ ଗୋ ଅରନ୍ୟ ଜୀବ ଚାହାଂ ।୭୦
ଅଯୋଧାରେ ଚିତ୍ରକାର ଲେଖିଅଛି ଯାହା ॥
ତାହା ଦେଖିଣ ଯେ କରୁଥାଉ ଭୀତି ।
ଯେବେ ପ୍ରତକ୍ଷେ ଯେ ଦେଖିଲୁ ମହାସ୍ୟତୀ ॥
ଦେଖ ଗୋ ମୟୂର ଅଛନ୍ତି ଯେ ଚରୁ ।
ଆବର ଦେଖ ଗୋ ଅନେକ ବନ ଗୋରୁ ॥
ଚାମରୀ ଯୂଥ ଯୂଥ ପର୍ବତେ ଉଠିଛନ୍ତି ।
ଗିରି ଶିଖେ ଦେଖ ସିଂହ ବିହରନ୍ତି ॥
ଗଧଙ୍କର ସଙ୍ଗତରେ ଅଛନ୍ତି ଗୟଳ ।
ବରେହା ପଲ ଦେଖ ଜାଣି ମେଘମାଳ ॥୮୦
ଶଶାଙ୍କର ସଂଗେ ଖୁରାଣ୍ଟି ଛନ୍ତି ପଶି ।
ଶଳେହା ସଂଗେ ଯୁଆଦ ଛନ୍ତି ମିଶି ॥
ଖୁରାଣ୍ଟି ବୋଲିଣ ଗୋ ଯେବଣ ଜୀବ ଗୋଟି ।
ଲେଦି କରିବାରେ ମଳ ଦ୍ୱାର ଫାଟି ॥
ଗହନ ବନରେ ସେ ବିକଳେ ବୋବାଇ ।
ଯେତେବୋଲି ରାମ ପନ୍ଥ ବହିଯାଇ ॥
ଅତ୍ରି ମହରଷି ଅଶ୍ରମେ ମିଳନ୍ତି ।
ରଘୁନାଥଙ୍କୁ ଦେଖି ମୁନି ଆନନ୍ଦ ହୋଅନ୍ତି ॥
ନମସ୍କାର କରନ୍ତି ମୁନିଙ୍କ ଚରଣେ ।
ଶ୍ରୀରାମ ଲକ୍ଷଣ ସୀତା ତିନି ଜଣେ ॥୯୦
କଇଲାଣ କରି ମୁନି ଭିତରକୁ ନେଲେ ।
ନିଜ ମଡିଆରେ ବସାଇ ଗଉରୋବ କଲେ ॥
ଆଜ ସେ ସୁଫଳ ହୋଇଲା ମୋର ଦିନ ।
ପ୍ରତକ୍ଷେ ଦେଖିଲି ଶଙ୍ଖଚକ୍ର ଚିହ୍ନ ॥
ଯେତେ ବୋଲି ମୁନି ଫଳମୂଳ ଦେଇ ।
କ୍ଷୁଧାର୍ଥୀ ହୋଇଣ ଅଛନ୍ତି ରଘୁସାଇଂ ॥
ଭୁଞ୍ଜିଣ ଶ୍ରୀରାମ ହୋଇଲେ ସନ୍ତୋଷ ।
ତିନି ଜଣେ ଫଳମୂଳ କଲେ ତହିଂ ଗ୍ରାସ ॥
ଆଚୋଂବନ ସାରି ବସିଲେ ରଘୁସାଇଂ ।
ଶ୍ରୀରାମ ମୁଖ ଚାହିଂ ମୁନି ପଚ୍ଛରଇ ॥୧୦୦
ଭୋ ରାମ କିପାଇଂ ଅଇଲ ତୁମ୍ଭେ ବନ ।
ଅଯୋଧାକୁ ରାଜା ପଣେ ତୁହି ସେ ଭାର୍ଜନ ॥
ଦଶରଥ ରାଜା ମୂର୍ଚ୍ଛିଲା କେମନ୍ତେ ।
ତିନି ରାଣୀ ଆବର ମନ୍ତ୍ରୀ ଅମନାତ୍ୟେ ॥
ବଶିଷ୍ଠ ଋଷି ଥାନ୍ତେ କିମ୍ପା ଯେହା କଲେ ।
ଯେ ବଚନ ଶୁଣି ଶ୍ରୀରାମ ବୋଇଲେ ॥
ଭୋ ମୁନିବର ଯାହା ପଚାରିଲୁ ମୋତେ ।
ଯେକ ମନେ ଶୁଣ କହଇ ମୁହିଂ ତୋତେ ॥
ପିତା ଦଶରଥ ମୋତେ ରାଜ୍ୟ ଦେବା କଲା ।
ଅଭିଷେକ ବିଧି କିଛୁ ଭିଆଇଲା ॥୧୦
ରାତ୍ର ପହିଲେଣ ବାନ୍ଧନ୍ତେ ମାଥେ ପାଟ ।
ମଣ୍ଡଣି କରାଇଲେ ନଗ୍ରପୁର ରାସ୍ତ ॥
କଯେକୟା ରାଣୀ ତା ବାରତା ପାଇଲା ।
ଦଶରଥ ନୃପତି କି ସତ୍ୟ କରାଇଲା ॥
ଭ୍ରଥ ରାଜା ହୋଇ ପାଳିବାକ ଦେଶ ।
ଶ୍ରୀରାମ ବନ ଯାଉ ଚଉଦ ବରଷ ॥
ତେଣୁକରି ସୀତା ଲକ୍ଷଣ ସଂଗେ ଘେନି ।
ଅରନ୍ୟବାସୀ ଯେବେ ହୋଇଲୁ ଭୋମୁନି ॥
ମୋହୋର ଆସନ୍ତେ ପିତା ତେଣେ ମଲା ।
ଭ୍ରଥ ଅଯୋଧ୍ୟାରେ ନୃପତି ନୋହିଲା ॥୨୦
ଚିତ୍ରକୂଟେ ଭ୍ରଥ ଦେଖିଲାକ ମୋତେ ।
ବାହୁଡ଼ାଇ ନେମାକୁ ଲୋଡ଼ିଲା ଅନେକ ମତେ ॥
ପିତା ସତ୍ୟ ପାଳି ନ ଗଲଇ ମୁହିଂ ।
ଭ୍ରଥକୁ ପ୍ରବୋଧିଲି ପାଦୁକା ଦୁଇ ଦେଇ ॥
ତାହା ଘେନିଣ ସେ ବାହୁଡ଼ିଣ ଗଲା ।
ଦଣ୍ଡ ଛତ୍ର ଚାମର ତାକୁ ଧରାଇଲା ॥
ସିଂହାସନେ ବସାଇ ତାହାକୁ କଲେ ପୂଜା ।
ପାଦୁକା ଦୁଇ ହୋଇଛି ଅଯୋଧାରେ ରାଜା ॥
ଶୁଣିଣ ଅତ୍ରି ମୁନି ବିସ୍ମୟେ ମୁଖ ହୋଇ ।
ଶ୍ରୀରାମକୁ ବହୁତ ପ୍ରଶଂସା କରଇ ॥୩୦
ଧନ୍ୟ ରଘୁନାଥ ଧନ୍ୟତୋର ପୁଣ୍ୟ ।
ପିତା ସତ୍ୟ ପାଳି ତେଜିଲୁ ରାଜାପଣ ॥
ଯେ ମହୀମଣ୍ଡଳେ ତୋତେ ନାହିଂ ସମସରି ।
ତୁ ସେ ଶ୍ରୀରାମ ଶଙ୍ଖଚକ୍ରଧାରୀ ॥
ନୃପତିପଣକି ତୋତେ ଅପୂରୁବ ।
ଜୟ ଜୟ ଶ୍ରୀରାମ ତୁ ଦେବଙ୍କର ଦେବ ॥
ଯେତେବୋଲି ମୁନି ବସିଲେ ଯୋଗ ଧ୍ୟାନେ ।

ଜାଣିଲେ ବନବାସ ଦେବତାଙ୍କର ଗୁଣେ ॥
ମନେ ମନେ ଆନନ୍ଦ ହୋଇଲେ ମହରଷି ।
ଶ୍ରୀରାମଙ୍କୁ କଥା ନ କହିଲେ ଭରସି ॥୪୦
ବୋଇଲେ ଶ୍ରୀରାମ ହୋ ନ କରୁ ତୁ ଚିନ୍ତା ।
ଜଗତ ସଂସାରକୁ ତୁହି ସେ କରତା ॥
ଦଇତେ ପ୍ରବଳ କଲେକ ଅନୀତି ।
ତେଣୁ ସେ ବନବାସୀ ହୋଇଲୁ ରଘୁପତି ॥
ଅତ୍ରୀ ମହରଷିଙ୍କ ଭାରିଯା ଅନୁଛାୟା ।
ତାହାଙ୍କୁ ନମସ୍କାର କଲେକ ସୀତୟା ॥
କଲ୍ୟାଣ ବାଞ୍ଛା ତାକୁ କଲେ ଯତି ନାରୀ ।
ଭିତରକୁ ନେଲେ ସୀତା ଭୁଜ ଧରି ॥
ମୃଗ ଛାଲ ପାଡ଼ି ବସିଲେ ବେନିଜନ ।
କୁଶଳ ପୁଛାପୁଛି ବିବିଧ ବିଧାନ ॥୫୦
ଅନୁଛାୟା ବୋଇଲେ ସୀତ୍ୟାର ମୁଖ
ଚାହିଁ ।
ମହାସ୍ୟତୀ ଲକ୍ଷଣ ଗୋ ଅଛି ତୋର ଠହିଁ ॥
ବିଧବା ନୋହିବୁ ଗୋ ଯେ ଗୁଣ ଗୋଟି
ଅଛି ।
ଶ୍ରୀବନ୍ତ ସୁଜାଣ ଗୋ ଅଟୁ କମଳାଛି ॥
କଥାଯେ ପୁଛିବି ଗୋ କହିବୁ ଯେବେ
ସତ ।
ମୁହିଁ ପୂର୍ବେ ପାଇଅଛଇ ବାରତ ॥
ଜନ୍ମ ଲଭିଲୁ ତୁ କେବଣ ପ୍ରକାରେ ।
ସ୍ୱରୂପ କହିବୁ ଗୋ ମୋହର ଆଗରେ ॥
ଅନେକ କାଳହୁଂ ମୁଂ ଅଛଇ ଆଶ କରି ।
ତୋହାର କହିଲେ ଗୋ ସଂପ୍ରତେ ଯିବି
ନାରୀ ॥୬୦
ଶୁଣି ବଇଦେହୀ ଯୋଡ଼ିଲେ ବେନି କର ।
ଶୁଣିମା ସାବଧାନେ ଜନମ ମୋହୋର ॥
ବଡ଼ ବଡ଼ ଲୋକ ଯେ କହନ୍ତେ ଶୁଣିଛି ।
ପୂର୍ବର ଆଭାସ ଦେଖିଣ ଜାଣିଛି ॥
ପିତା ମୋହର ଯେ ଅନେକ ତପ କଲା ।
ପୁତ୍ର ନାହିଁ ବୋଲି ସନ୍ତାପି ହୋଉଥିଲା ॥
ଅମନାତ୍ୟଗଣ କଲେକ ବିଚ୍ଚରଣ ।

ଯେବେ ଯାଗ କରିବା ସନ୍ତତି କାରଣ ॥
ନ କର ଶୋଚନା ତୁ ମିଥିଲା ନୃପତି ।
ଯାଗର ବିଧାନ ସଞ୍ଚା କରସି ତଡ଼ତି ॥୭୦
ଶୁଣିଣ ପିଅର ମୋ ସମସ୍ତ ସଞ୍ଚା କଲା ।
ଯାଗର ଭୂମି ସ୍ଥାନ ଲଙ୍ଗଳେ ଚଷିଲା ॥
ଯେସନେକ ସମୟେ ମେନକା ଅପଛରୀ ।
ସ୍ୱର୍ଗକୁ ଯାଉଅଛି ଶାପ୍ୟ ପାରି କରି ॥
ମୁକତ ହୋଇ କରି ବିମାନ ଆରୋହି ।
ଗଗନ ମାର୍ଗ ମୁଖେ ଗମଇ ଚାନ୍ଦମୁହିଁ ॥
ଦଶଦିଗେ ତେଜ ବିକାଶେ ତାହାର ।
ଦେଖିଣ ଶକୁନ୍ୟ ଜାଣିଲେ ପିଅର ॥
ମନେ ବିଚାରିଲେ ଯେସନ ଦୋହିତା ।
ନିଚୟେ ପ୍ରାପତ କରସି ବିଧାତା ॥୮୦
ପିତା ହୃତ କଥା ଜାଣିଲା ଅପଛରୀ ।
ଆକାଶେ ଥାଇଣ ଡାକିଲା ଉଚ୍ଚକରି ॥
ତୁ ହୋ ଜନେକ ଯାହା ବିଚ୍ଚରିଲୁ ମନେ ।
ମୋତେ ଦୋହିତା କରି ଲୋଡ଼ିଲୁ ଯତନେ ॥
ମୃତୁଲୋକରେ ମୁଂ ଥିଲି ଅବତରି ।
ସର୍ଗକୁ ଯାଉଅଛି ଶାପ୍ୟ ପାରିକରି ॥
ନୋହିଲେଣ ଜନମ ହୋଅନ୍ତି ତୋର
କୋଳେ ।
ଯେ ମୋହୋର ବଚନ ଶୁଣସି ମହୀପାଳେ ॥
ମୋହୋର ତହୁଂ ଶତେ ଗୁଣେ ଉଗୁଳି ।
ଯେହିକ୍ଷୁଣି ତୋତେ ପ୍ରାପତ ହୋଇବ
ବାଳୀ ॥୯୦
ଯେସନେକ ସମୟେ ଯାଗଭୂମି ଚଷୁ ।
ତଳର ମାଟି ଉପରକୁ ଆସୁ ॥
ଫାଳର ମୁନେ ମୁଂ ଅଇଲି ଉକୁଟି ।
ତେଣୁକରି ନାମ ବୋଲାଇ ସୀତା ଗୋଟି ॥
ଦେଖିଣ ପିତା ମୋର ଘରକୁ ଘେନିଗଲା ।
ନଗ୍ର ଉଛବ କରି ପୁର ମଣ୍ଡାଇଲା ॥
ମାତାଙ୍କୁ ସମର୍ପିଲା ଅତି ଯତ୍ନ କରି ।
ମୋତେ ପାଇ ପିତା ଯାଗହିଂ ନ କରି ॥
ମୋହୋର କନେଷ୍ଟ ଉର୍ମିଳା ଜାତ ହୋଇ ।

ପୁଣି ଜନମିଲେ ମୋହୋର ବେନି
ଭାଇ ॥୧୦୦
ପୁରାତନ ମୁଖୁଂ ଶୁଣିଅଛି ଯେହା ।
ଯେବେ ଶ୍ରୀରାମଚନ୍ଦ୍ର ହୋଇଲେ ମୋତେ
ବେହା ॥
ରାଜାର ଦୋହିତା ମୁଂ ରାଜାର ଭୁଆସୁଣୀ ।
ରାମ ରାଜା ହୋଇଲେ ମୁଂ ହୋଅନ୍ତି
ପାଟରାଣୀ ॥
ସେ କଥାମାନ ଯେବେ କଉଂ କତି ଗଲା ।
ବିଧାତା ଆଣି ମୋତେ ବନବାସୀ କଲା ॥
ଅନୁଛାୟା ବୋଇଲେ ତୁମ୍ଭେ ହୋଅସି
ସୁଲକ୍ଷଣୀ ।
ଦିଗପାଳ ସମାନେ ଅଟଇ ତୋର ସ୍ୱାମୀ ॥
ରାଜାପଣ କି ଅବା ତାଙ୍କୁ ଅପୂରୁବ ।
ବନକୁ ଅଇଲା ସେ ଅସୁର ମାରିବ ॥୧୦
ତୁ ଯେବେ ଚିନ୍ତା ଗୋ ନ କର ପଦ୍ମମୁଖୀ ।
ଦେହ ବହିଥିଲେ ହୁଅଇ ଦୁଃଖୀସୁଖୀ ॥
ଯେବଣ ସ୍ୱାମୀର ତୁ ଧରିଅଛୁ ହାଥ ।
ଜଗତ ସଂସାରକୁ ଅଟଇ ସେ ନାଥ ॥
ତୁ ସେ ଚଞ୍ଚଳା ଗୋ କ୍ଷୀରୋଦ୍ର କୁମାରୀ ।
ଲକ୍ଷଣ ଦିଅର ତୋ ପ୍ରତକ୍ଷେ ହଳଧାରୀ ॥
ଭ୍ରଥ ଅଟଇ ସୂର୍ଯ୍ୟ ଚନ୍ଦ୍ରମା ଶତୃଘନ ।
ଦଶରଥ ରାଜା କଶ୍ୟପ ସମାନ ॥
କଉଶୁଲା କଇକୟା ସୁମଇତ୍ରା ତିନି ରାଣୀ ।
ଅଦିତିହୁଂ ସେହୁ ଯେ ଅଛନ୍ତି ଦେହ
ଘେନି ॥୨୦
ଦେବେ ବିଚ୍ଚରିଲେ ସ୍ୱର୍ଗପୁରେ ଥାଇ ।
ସଂଯେ ନାରାୟଣ ଅଟନ୍ତି ତୋର ସାଇଂ ॥
ତୁ କିମ୍ପା ସୀତା ଗୋ ଦୁଃଖ ମନେ ଧରୁ ।
ତୋହୋର ସୁଦୟାଯେ ବ୍ରହ୍ମାପଣ କରୁ ॥
ତୁ ଯେ କମଳା ଗୋ କମଳ ଆସନୀ ।
କଳିକାଳ ଧଂସନି ଗୋ କଷ୍ଟ ନିବାରିଣୀ ॥
ତୋହୋର ସୁଦୟାକୁ ଇନ୍ଦ୍ର କରଇ ଆଶ ।
ତୁ ବୋଇଲୁ ବିହି ମୋତେ ଦେଲା
ବନବାସ ॥

ଯେତେ ବୋଲି ଅନୁଛାୟା ଭିତରକୁ ଗଲେ ।
ଅମଳାଣ ବସ୍ତ୍ର ସୀତାକୁ ଆଣି ଦେଲେ ॥୩୦
ଷୋଡ଼ଶ ପ୍ରକାରେ ପୂଜାବିଧି କରି ।
ବହୁତ ପ୍ରଶଂସା ସେ କଲା ପୁରସରି ॥
ବୋଇଲେ ଯେ ବସ୍ତ୍ର ଗୋ ସୁରଙ୍ଗଣୀ ପାଟ ।
ଅମଳାଣ ବୋଲି ନାମ ଉଦ୍‌ଘଟ ॥
ସମୁଦ୍ରମନ୍ଥନୁ ଯେ ବସ୍ତ୍ର ଉପୁଜିଲା ।
ବ୍ରହ୍ମାଙ୍କୁ ଦେଇ ଯେହା ଶଙ୍କର ପୂଜିଲା ॥
କାଳେଣ ବିଧାତା ଯେ କଲେ ଇଷ୍ଟ ଯାଗ ।
ପୃଥିର ଶ୍ରେଷ୍ଠ ତୀର୍ଥ ଅଟଇ ପ୍ରଆଗ ॥
ସେ ଯାଗେ ଆଶ୍ଚର୍ଯ୍ୟ ହୋଇଲେ ମୋର ସାଇଂ ।
ବରଣ କଲା ବିହି ଭ୍ରଥାକୁ ମୋର ଦେଇ ॥
ସେ ଯାଗ ସମାପତ କରିଣ ତପଚାରୀ ।
ଅତି ଯତନେ ମୋତେ ଦେଲେ ଯେହୁ ଶାଢ଼ୀ ॥
ମୁଂ ଯେହା ନ ପିନ୍ଧିଣ ଥୋଇଣ ଅଛଇ ।
ପାର୍ବତୀ ବିଭାକୁ ଗଲି ଉପରାଣ ଦେଇ ॥୪୦
ହର ଗଉରୀଙ୍କି କଲଇଂ ଯାଇ ପୂଜା ।
ବସ୍ତ୍ର ଦେଖି ମାଗିଲେ ହେମବନ୍ତ ଆତ୍ମଜା ॥
ଶଙ୍କର ବୋଇଲେ ଗୋ ଯେକଥା ନୋହେ କିଛି ।
ଯେ ବସ୍ତ୍ର ପୂର୍ବେ ମୁଂ ବ୍ରହ୍ମାକୁ ଦେଇଅଛି ॥
ପିତାମହ ଅତ୍ରୀ ମୁନିଙ୍କି ଯେହା ଦେଲେ ।
ଯେବଣ ଦିନେ ଯାଗେ ଆଶ୍ଚର୍ଯ୍ୟ ହୋଇଥିଲେ ॥୫୦
ଯେ ଆମ୍ଭର ଦାନ ଦେଲାର ଅଟଇ ବାସ ।
ଯେଥକୁ ହେମବନ୍ତୀ ଗୋ ନ କର ତୁ ଆଶ ॥
ଶୁଣିଣ ଅମ୍ବିକା ହୋଇଲେ ତ୍ରିପୁତି ।
ସେ ବସ୍ତ୍ର ମହିମା ଶୁଣ ଗୋ ଦେବୀ ସତୀ ॥
ସେହି ଦିନୁ ଶାଢ଼ୀ ବାହାର ନ କରଇ ।
ତୋହର ଆସିବାକୁ ଥିଲି ବାଟ ଚାହିଁ ॥
ମୁନିମାନେ ଋଣ୍ଡ ହୋଅନ୍ତି ଯେବଣ ଦିନ ।
ଶାହାସ୍ର ଯୋଗେ କହନ୍ତି ତୋହର ଆଗମ ॥

ସେ କଥା ଶୁଣିଣ ବସ୍ତ୍ର ଅଛି ଥୋଇ ।
କୃତାର୍ଥ ହୋଇଲି ଯେ ବସ୍ତ୍ର ତୋତେ ଦେଇ ॥୬୦
ମୋତେ ସଦୟା ଗୋ କରିଥିବୁ ସୀତା ।
ସର୍ବଦେବ ମାତା ତୁ ଦେବୀ ସର୍ବଭୂତା ॥
ଯେ ବସ୍ତ୍ର ଗୋଟି ତୁ ଯତ୍ନ କରି ଥୋଇଥିବୁ ।
ଯେ ବସ୍ତ୍ରକୁ ଅବଜ୍ଞା କେବେହେଁ ନକରିବୁ ॥
ସର୍ବଦା ନୂଆ ଯେ ପୁରୁଣା ନୋହଇ ।
ପିନ୍ଧିଥିଲେ ତନି ଜଗତ ମୋହଇ ॥
ଶତେ ବରଷରେ ନ ଲାଗଇ ମଳି ।
ଇଚ୍ଛା ହୋଇଲେ ପ୍ରଚଣ୍ଡ ଅଗ୍ନିରେ ପଖାଳି ॥
ବାଳ ଆଦିତ୍ୟ ଜାଣି ସୁନ୍ଦର ଦିଶଇ ।
ବସ୍ତ୍ର କରେ ଧରି ସୀତା ଦେବୀ ହସଇ ॥୭୦
ଅନୁଛାୟାକୁ ସୀତା ନମସ୍କାର କରି ।
ପୁଣ ପଚାରଇ ଜନେକ କୁମାରୀ ॥
ଭୋ ମାଏ ଯାହା କହିଲ ଯେ ଅଟଇ ସତ ।
ମୁଁ କେହ୍ନେ ଘେନିମିଯେ ବ୍ରାହ୍ମଣଙ୍କ ବିତ୍ତ ॥
ଶ୍ରୀରାମ କୋପ କରିବେ ମୋତେ ପୁଣି ।
ଯେ ବଚନ ଶୁଣି ବୋଇଲେ ଋଷିଆଣୀ ॥
ତୁ ସେ ଜାନେକୀ ଗୋ ଜନେକ ଦୋହିତା ।
ଆମ୍ଭେ ଋଷିଆଣୀ ଗୋ ତୋହର ଅଟୁ ମାତା ॥୮୦
ଜନନୀର ଆୟେକି ଝିଅକୁ ଅଗ୍ରାହିତ ।
ଯେ କଥାକୁ ଭ୍ରାନ୍ତି ଗୋ ନ କରସି ମାତ ॥
ଯେତେବୋଲି ଅନୁଛାୟା ସୀତୟା ଭୁଜ ଧରି ।
ଶ୍ରୀରାମ ଛାମୁରେ ସେ ସୀତାକୁ ଆଣିକରି ॥
ରାଘେବ ଦ୍ରୁହସିତେ ଜାନେକୀକି ପୁଛି ।
ଯେ ବସ୍ତ୍ର କାହିଂ ଗୋ ପାଇଲୁ ମୃଗାକ୍ଷି ॥
ସୀତା ବୋଇଲେ ମୋତେ ଅନୁଛାୟା ଦେଲେ ।
ଶୁଣିଣ ରଘୁନାଥ ସନ୍ତୋଷ ହୋଇଲେ ॥
ସେଦିନ ବିଶ୍ରାମ କରିଣ ତହୁଂ ଗଲେ ।
ଦଣ୍ଡେକା ଅରଣ୍ୟେ ଯାଇ ପ୍ରବେଶ ହୋଇଲେ ॥

ତହିଂ ତପସ୍ୟା କରନ୍ତି ଅନେକ ମୁନିଗଣ ।
ଦେଖିଣ ଆନନ୍ଦ ହୋଇଲେ ତିନି ଜଣ ॥୯୦
ଦେଖି ରଘୁନାଥ କଲେ ନମସ୍କାର ।
କଲ୍ୟାଣ କରିଣ ବୋଇଲେ ମୁନିବର ॥
ତୁ ହୋ ଶ୍ରୀରାମ ସୀତୟା ଦେବୀକାନ୍ତ ।
ତୋତେ ଦେଖି ଆମ୍ଭର ସୁଫଳ ଜୀବିତ ॥
ଯେତେ ବୋଲିଣ ଯେ ଉଠିଲେ ସର୍ବମୁନି ।
ଅର୍ଘ ଯୋଗାଡ଼ ଯେ ପୂଜାବିଧି ଘେନି ॥
ଶ୍ରୀରାମ ମୁଖ ଦେଖି ସମସ୍ତେ ବଶ୍ୟ ହୋନ୍ତି ।
କାମଭରେ ପୁଣ ବୃକ୍ଷରେ ଆଉଜନ୍ତି ॥
ଧନ୍ୟ ଧନ୍ୟ ସୀତା ଗୋ ଧନ୍ୟତୋର ତପ ।
ଯେ ତୋତେ ପତିପଣେ ଅଟଇ ଅନରୂପ ॥୧୦୦
ଯେହାକଇ ଘେନି ତୁ କର ବଇଭୋଗ ।
କେବଣ ପୁନ୍ୟେ ମା ଗୋ ହୋଇଲୁ ଯେଡ଼େ ଯୋଗ ॥
ଆମ୍ଭେ ଯେବେ ଯୁବତୀ ରୂପ ହୋଇଥାନ୍ତୁ ।
ଯେ ରଘୁନାଥଙ୍କୁ ରମଣୀ ରସ ଦ୍ୟନ୍ତୁ ॥
ଯେତେ ବୋଲି ଦେହ କ୍ଷଣକେ ଥିର କଲେ ।
ଶ୍ରୀରାମ ଶିରେ ଅର୍ଘ୍ୟ ପୁଷ୍ପ ଦେଲେ ॥
ଗଉରୋବ କରି ରୁହାଇଲେ ସେ ଦିନ ।
କନ୍ଦ ଫଳ ମୂଳେ ତୋଷିଲେ ତାଙ୍କ ମନ ॥
ସେ ଦିନ ରାମଚନ୍ଦ୍ର ରହିଲେ ସୁଖ ପାଇଂ ।
ରଜନୀ ପ୍ରଭାତେ ତହୁଂ ଗଲେ ପନ୍ଥ ବହି ॥୧୦
ଆଗେଣ ଶ୍ରୀରାମ ପଛେଣ ଲକ୍ଷଣ ।
ମଧ୍ୟରେ ସୀତ୍ୟା ଯେ ଗମନ୍ତି ତିନିଜଣ ॥
ଅରନ୍ୟ ଭିତରେ ସେ ପନ୍ଥ ବହିଯାନ୍ତି ।
ଶ୍ରୀରାମ ଲକ୍ଷଣ ଧନୁ ଶସ୍ତ୍ର ଧରିଛନ୍ତି ॥
ଯାନ୍ତେଣ ଦେଖିଲେ ଯେ ବୀରାଉଧ ବୀର ।
କଳାମେଘ ପ୍ରାୟେ ଶରୀର ତାହାର ॥
ସିଂଘର ମଝା ପ୍ରାୟେ ପଟାନ୍ତର ଦିଶି ।
ଅଣ୍ଟା ଆରମ୍ଭ ଜାଣି ପର୍ବତ ସାଦୃଶି ॥

ବିକଟ ବଦନ ତାର ଅତି ଭୟଙ୍କାର ।
ରକତ ଲୋଚନ ଯେ କଜ୍ଜଳ ଅଧର ॥୨୦
ପିଙ୍ଗଳ ବର୍ଣ୍ଣ କେଶ ବିକଟ ଦଶନ ।
ଗିରି ଗୁହା ପ୍ରାୟେ ଦିଶଇ ବେନି କର୍ଣ୍ଣ ॥
ମାଠ ନାସିକା ବିସ୍ତାର ପୁଡ଼ା ଦୁଇ ।
ପ୍ରଚଣ୍ଡ ପବନ ଜାଣି ନିଶ୍ୱାସ ବହଇ ॥
ବାଟେ ଉଭା ହୋଇ ଶୂଳ କରେ ଧରି ।
ସୀତାକୁ ଦେଖିଣ ଧାଇଁଲା ଖର କରି ॥
କୋଳ କରି ବେଗେ ଘେନି ଯାଉଅଛି ।
ଦେଖିଣ କୋପ କଲେ ସୁମିତ୍ରାର ବଛି ॥
ଧନୁରେ ଯୋଚିଣ ବିନ୍ଧିଲେକ ବାଣ ।
ଦଇତର ଅଙ୍ଗେ ବାଜିଲା ତତକ୍ଷଣ ॥୩୦
ସେ ନାରାଜ ଅସୁର ସହିଲା ପିଠିଦେଇ ।
ଲକ୍ଷଣକୁ ଶୂଳେ ପିଟିଲା ନିଠାଇ ॥
ଦେଖିଣ ଶ୍ରୀରାମ ବାବଲ ପେଷିଲେ ।
ଅଙ୍ଗେ ନ ବାଜୁ ଯେ ଶୂଳ ନିବାରିଲେ ॥
ଶୂଳ ଛେଦି ରାମ ତୀକ୍ଷ ଶର ଧରି ।
ଦଇତ ଉପରକୁ ବିନ୍ଧିଲେ କୋପ କରି ॥
ସୀତୟା ଛାଡ଼ିଣ ପଡ଼ିଲା ଦଇତ ।
ଦଣ୍ଡକେ ଚେତି ପୁଣ ଉଠିଲା ତୁରିତ ॥
ଶ୍ରୀରାମକୁ ଚାହିଁ ବୋଲଇ ବଚନ ।
ମୋହୋର କଥା ଯେବେ ଶୁଣ ରଘୁନାନ ॥୪୦
ପୂର୍ବେ ଶ୍ରୀରାମ ମୁହିଁ ସେ ଗନ୍ଧର୍ବ ।
ସୁଖ ଭୋଗ ପାଇ ଲଭିଲି ମତ୍ତ ଗର୍ବ ॥
କୁବେରକୁ ଚାହିଁ ଉପହାସ୍ୟ କଲି ।
ଚକ୍ଷୁ ତୋର ଦୃବଳ ବୋଲିଣ ବୋଇଲି ॥
ଶୁଣି ନିଧିପତି ଶାପ୍ୟ ମୋତେ ଦେଲା ।
ତୁହି ବିରୂପ ହୋଅସି ବୋଇଲା ॥
ଭୟେ ପାଇଣ ମୁଁ କଲଇ ଭଗତି ।
ପୁଣି ପ୍ରସନ୍ନ ମୋତେ ହୋଇଲେ ନିଧିପତି ॥
ବୋଇଲା ଯେବେ ତୁରେ ବିରୂପ ହୋଇଥିବୁ ।
ଶ୍ରୀରାମର ବାଣେ ମୁକତ ହୋଇବୁ ॥୫୦

ରାବଣ ବଧିବା ନିମନ୍ତେ ବିଷ୍ଣୁନାଥ ।
ମାନବ ଶରୀର ଧନୁ ଶସ୍ତ୍ର ହାଥ ॥
ଶ୍ରୀରାମ ନାମେ ଯେ ଦଶରଥ ବଳା ।
ସୀତା ନାମେ ଘରଣୀ ଜନେକ ଅବଳା ॥
କନେଷ୍ଟ ଲକ୍ଷଣ ସହିତେ ତିନିଜଣ ।
ତୋତେ ଦେଖିବେ ଯାଇ ଦଣ୍ଡକା ଅରନ୍ୟ ॥
ତୁହି ତାଙ୍କୁ ଦେଖି ଚିନ୍ତିବାକ ଦ୍ରୋହ ।
ତେବେ ସେ ଶ୍ରୀରାମ କରିବେ ତୋତେ କୋହ ॥
ନାରାଜେ ମାଇଲେ ତୁ ହୋଇବୁ ମୁକତ ।
ଯେସନେକ ବୋଇଲେ ବିଶର୍ବାର ସୁତ ॥୬୦
ସେ କଥା ଜାଣିଣ ମୁଁ ଏଥେ ଅଛି ରହି ।
ତୁମ୍ଭର ଆସିବାକୁ ଥିଲି ବାଟ ଚାହିଁ ॥
ଭୋ ଶ୍ରୀରାମ ତୋତେ ଭେଟିଲି ଏତେ କାଳେ ।
ମୁକତ ହୋଇଲି ମୁଁ ଯିବି ସର୍ଗଆଳେ ॥
ତୁ ଯେବେ ଯେ ବନ ଛାଡ଼ ରଘୁପତି ।
ଦଇତେ ଅନୁବ୍ରତେ ଥାଆନ୍ତିଟି ଯେଥି ॥
ଶରଭଙ୍ଗ ଆଶ୍ରମକୁ ଚଳି ବେଗେ ଯାସି ।
ତୋତେ ବାଟ ଚାହୁଁଅଛନ୍ତି ମହରଷି ॥
ଯେତେବୋଲି ବୀରାଉଧ ସର୍ଗକଇ ଗଲା ।
ଶ୍ରୀରାମ ଦର୍ଶନେ ସେ ମୁକତ ହୋଇଲା ॥
ଯହୁଁ ସେ ବୀରାଉଧ ଗଲା ସର୍ଗପୁରୀ ।
ଶ୍ରୀରାମହିଁ ଗଲେ ସେ ବନୁ ଅପହରି ॥
ଶରଭଙ୍ଗ ଆଶ୍ରମକୁ ପନ୍ଥ ବହିଯାନ୍ତି ।
ଯାଉଁ ଯାଉଁ ବାଟେ ଇନ୍ଦ୍ରକୁ ଦେଖନ୍ତି ॥
ଧୂରୁ ଦେଖି ବାସେବ ସମାଦି ନ ପାରି ।
ଯହୁଁ ସେ ଶ୍ରୀରାମ ଗଲେ ଖର କରି ॥
ଇନ୍ଦ୍ର ବିଚ୍ଚରଇ ଯେ ସେ ବିଷ୍ଣୁନାଥ ।
ରାକ୍ଷସ ବଳ ଯେ କରିବେ ନିପାତ ॥
ଯେହାରେ ସେ ଦେବେ ବସିବେ ସର୍ଗେ ସୁଖେ ।
ମୁନିମାନେ ଆହୁତି ଦେବେ ଅଗ୍ନି ମୁଖେ ॥୮୦

ଆମ୍ଭର ହିତେ ରାମ ଯେତେକ ଦୁଃଖପାଇ ।
ଶବର ପ୍ରାୟେ ହୋଇ ବନସ୍ତେ ବୁଲଇ ॥
ଯେଥୁ ଅନନ୍ତରେ ଦେବ ଶ୍ରୀରାମ ।
ପ୍ରବେଶ ହୋଇଲେ ଯାଇ ଶରଭଙ୍ଗ ଆଶ୍ରମ ॥
ଦେଖିଣ ମୁନିବର ପୂଜା ବିଧିକଲେ ।
ଆଶ୍ରମେ ବସାଇ କଥାନ୍ତ ପଚ୍ଚରିଲେ ॥
ଭୋ ରାମ ପବିତ୍ର ହୋଇଲି ତୋତେ ଦେଖି ।
ବ୍ରହ୍ମଲୋକେ ଯିବିଯେ ଦେହ ଉପେଖି ॥
ଶଚୀପତି ମୋତେ ନେମାକୁ ଆସିଥିଲେ ।
ମୋହର ନ ଗଲାକୁ ବାହୁଡ଼ିଣ ଗଲେ ॥୯୦
ତୋତେ ମୁଁ ଦେଖିବି ବୋଲି ରଘୁସାଇଁ ।
ବ୍ରହ୍ମଲୋକେ ନ ଯାଇ ଅଛି ବାଟ ଚାହିଁ ॥
ତୁ ସେ ପ୍ରମବ୍ରହ୍ମ ମୁଁ ତୋତେ ଜାଣଇ ।
ରାତ୍ର ଦିବା ତୋହୋର ଚରିତ ବଖାଣଇ ॥
ଏବେ ନିସ୍ତରିଲି ଯିବି ସ୍ୱର୍ଗପୁର ।
ଏତେବୋଲି ଶରଭଙ୍ଗ ଛାଡ଼ିଲେ ଶରୀର ॥
ବିବାନ ଆରୋହି ସ୍ୱର୍ଗପୁର ଗଲେ ।
ତାହା ଦେଖି ଶ୍ରୀରାମ ଆନନ୍ଦ ହୋଇଲେ ॥
ବୋଇଲେ ମହରଷି ଗଲେ ମୋକ୍ଷ ହୋଇ ।
ତପ କରୁଥିଲେ ଅନେକ ଦୁଃଖ ପାଇଁ ॥୧୦୦
ଆମ୍ଭେ ଦେଖିଲୁ ଆମ୍ଭର ବଡ଼ ପୁଣ୍ୟ ।
ଏତେବୋଲି ତହୁଁ ଗଲେ ତିନିଜଣ ॥
ଅଗମ୍ୟ ବନରେ ପନ୍ଥ ବହିଯାନ୍ତି ।
ଅପୂର୍ବ ବୃକ୍ଷମାନ ଦେଖି ନିରୋପନ୍ତି ॥
ଆମ୍ବ ପଣସ କେନ୍ଦୁ ଗୁଆ ତାଳ ।
ପଳାଶ କୋରୁଆ ଅଛନ୍ତି ମାଳ ମାଳ ॥
ଟଭାଜମ୍ବିଲ କରୁଣା କଦମ୍ବ ।
ଲେମ୍ବୁଉ କରମଙ୍ଗା ନାରଙ୍ଗ ସାନ ଆମ୍ବ ॥
ହରିଡ଼ା କୋଚିଲା ବର ଯେ ଅଶ୍ୱସ୍ତ ।
ବରକୋଳି ତେନ୍ତୁଳି କରଞ୍ଜ କଇଥ ॥୧୦
ଅୟେଂଲା ଗିଲ ପାଳଧୁଆ ଲିମ୍ବ ।

ଦାରାକ୍ଷ ବଣସାରୁ ଉପାଦିଆ ଆମ୍ବ ॥
କଟୁକୀ କଣେଅର ମନ୍ଦାର ତରାଟ ।
ପାଟେଳି ମହୁଲ ଆବର କେତ୍କଟ ॥
ବୀରଭଦ୍ର ବାହାଡ଼ା ବିବିଧ ଫୁଲମାନ ।
ଦେଖିଣ ଶ୍ରୀରାମ ହୋଇଲେ ମଉନ ॥
ବନଜନ୍ତୁମାନେ ଦେଖିଲେ ଅପାର ।
ଗହନ ବିପୁନ୍ୟ ଦିଶଇ ଅନ୍ଧକାର ॥
ଶ୍ରୀରାମ ଲକ୍ଷଣ ସୀତା ତିନିଜଣ ।
ଯାଇଣ ଦେଖିଲେ ମୁନି ସୁଦ୍ରିସେନ ॥ ୨୦
ଦେଖିଣ ମହାମୁନି ରାମକୁ ପୂଜା କଲେ ।
ଗଉରୋବ କରି କନ୍ଦମୂଳ ଫଳଦେଲେ ॥
ଶ୍ରୀରାମ ଆଶ୍ରମ କରିଣ ତହିଁ ରହି ।
ଏଥୁଂ କେତେହେଂକ ଦିନ ଗଲା ବହି ॥
ମୁନିମାନେ ଯେତେ ଅରନ୍ୟରେ ଥିଲେ ।
ଶ୍ରୀରାମକୁ ଦେଖିବେ ବୋଲିଣ ଅଇଲେ ॥
ତପୀଗଣକଇ ଦେଖିଣ ରଘୁପତି ।
ପ୍ରଳମ୍ଭ କରିଣ ବସିଲେ ଯାଇ କତି ॥
ମୁନି ବୋଲନ୍ତି ତୁମ୍ଭେ ଶୁଣିମା ଶ୍ରୀରାମ ।
ତୋତେ ପଟାନ୍ତର ନୋହଇ
କୋଟିକାମ ॥୩୦
ସାକ୍ଷାତ କ୍ଷତ୍ରୀ ତୁ ଅଟୁ ସୂର୍ଯ୍ୟବଂଶୀ ।
ଆମ୍ଭର ଭାଗ୍ୟେ ତୁମ୍ଭେ ମିଳିଲ ଯେଥେ
ଆସି ॥
ଅସୁରଙ୍କ ଉପଦର୍ପ ନ ପାରିଲୁ ସହି ।
ତେଣୁ ଭାଳି ଅଇଲୁ ଯେ ତୋହୋର ତହିଁ ॥
ତୁ ହୋ ନୃପବର ଆମ୍ଭଙ୍କୁ ଯେବେ ରଖ ।
ତୋହୋର ପ୍ରସାଦେ ପାଉ ଆମ୍ଭେ ସୁଖ ॥
ଶୁଣିଣ ଶ୍ରୀରାମ ପତଗ୍ୟାଂ ଗାଢ଼ କଲେ ।
ନାରାଜେ ଅସୁରନ୍ତ ମାରିବି ବୋଇଲେ ॥
ତୁମ୍ଭେ ମୁନିମାନେ ନ କର ମନେ ଚିନ୍ତା ।
ଅସୁରଙ୍କ ଭୟେରୁ ମୁହିଂ ସେ
ଉଦ୍ଧରନ୍ତା ॥୪୦
ଶୁଣିଣ ଯତିମାନେ ହୋଇଲେ ସନ୍ତୋଷ ।
ଆନନ୍ଦେ ଗଲେ ଯେ ଯାହାର ବାସ ॥

ଯହୁଂ ସେ ଶ୍ରୀରାମ ଅସୁରଙ୍କୁ ଖେଦ କଲେ ।
ରାଘେବଙ୍କୁ ଚାହିଁ ସୀତୟା ଡିଆରିଲେ ॥
କିଂପାଇ ବନେ ତୁମ୍ଭେ ବୁଲ ଶସ୍ତ୍ର ଧରି ।
ଧର୍ମ ସେ ସାଖା ନା ଅଟଇ ଆମ୍ଭରି ॥
ଆମ୍ଭ ସୁଖେ ଆମ୍ଭେ ବିପୁନ୍ୟରେ ଥିବା ।
ପରପାଇଂ କିମ୍ପା ଦ୍ୱନ୍ଦ୍ୱ ଅରଜିବା ॥
ଅସୁର ଗରିଷ୍ଟ ଯୁଝନ୍ତି ଇନ୍ଦ୍ର ସଂଗେ ।
ତୁମ୍ଭେ ତାଙ୍କୁ ସମାନ ନୋହ ରଣ
ରଙ୍ଗେ ॥୫୦
ଦଇନି କରଇ ନାଥ ଦୁର୍ବୁଦ୍ଧି ନ ଧର ।
ଦୁଷ୍ଟ ଦୁରାତମା ଅଟନ୍ତି ନିଶାଚର ॥
ଆମ୍ଭେ ତିନି ଜଣ ସାଖା ଆମ୍ଭର ନାହିଁ ।
ଅକାରଣେ ଦ୍ୱନ୍ଦ୍ୱ ଅର୍ଜିବା କିସ ପାଇଂ ॥
ଅଯୋଧ୍ୟା ନଗ୍ର ଛାଡ଼ି ବନବାସ କଲ ।
ଇଷ୍ଟ ବନ୍ଧୁ ବୋଲି ମୁଖ ନ ଚାହିଂଲ ॥
କନ୍ଦମୂଳ ଫଳ କରୁଥାଇଂ ଗ୍ରାସ ।
ପ୍ରର୍ବତ ନିର୍ଝର ପାଣିକି ଆମ୍ଭ ଆଶ ॥
ନେତ ପାଟ ଛାଡ଼ି ବୃକ୍ଷର ବକଳ ପିନ୍ଧି ।
ବିଭୂତି ବିଲୋପନ ଶିରେ ଜଟା ବାନ୍ଧି ॥୬୦
ଯେତେ଼ ଦୁଃଖେ ଦିନ କରୁଥାଇଂ ପାର ।
ପରକୁ ଅହନ୍ତା ନୋହଇ ବେଭାର ॥
ଅସୁରଙ୍କରେ ଆମ୍ଭର କିସ କାର୍ଯ୍ୟ ଅଛି ।
ରଥ ଗଜ ଅଶ୍ୱ ନାହିଂ ଆମ୍ଭର କିଛି ॥
କିସ ଘେନି ଆମ୍ଭେ କରିବା ସମର ।
ମାୟାରୂପୀ ଦଇତେ ଅଟନ୍ତି କାମଚର ॥
ରାକ୍ଷସେ ଆମ୍ଭର ନେଉଛନ୍ତି କିସ ।
କି ଅବା ହରିଲେ ଯୁବତୀ ଧନ ଦେଶ ॥
ତେବେ ସେ ଦ୍ୱନ୍ଦ୍ୱ କରିବା ଉଚିତ ।
ଯେ କଥା ଆମ୍ଭର ନୋହଇ ଯୁଗତ ॥୭୦
ସୀତାର ବଚନ ଶୁଣିଣ ରଘୁନାଥ ।
ଭୂମିରୁ ଧନୁ ତୋଳିଲେ ନିଜ ହସ୍ତ ॥
ନିଶେ ହସ୍ତ ଭରି କହନ୍ତି ତୋଡ଼ କରି ।
ସନ୍ଥ ପ୍ରତିପାଳି ଦୁଷ୍ଟ ଜନ ମାରି ॥
ଛତ୍ରୀଙ୍କର ଧର୍ମ ଅଟଇ ନିଅତ ।

ତୁ ମୋହୋରେ ନି ତିଆରେ ଜନେକ
ଦୋହିତ ॥
ବ୍ରହ୍ମାର ଭୁଜରୁ ଗୋ ଛତ୍ରୀ ଜାତ କଲା ।
ବାହା ଦ୍ରର୍ପେ ପୃଥି ସାଧସି ବୋଇଲା ॥
ତେଣେ ଗୋ ସୀତୟା ଆମ୍ଭକୁ ଧର୍ମ ଆସଇ ।
ପୁରାତନ କଥା ଶ୍ରୀରାମ ବଖାଣଇ ॥୮୦
ଶୁଣ ମହାସ୍ୟତୀ ଛତ୍ରୀଙ୍କର ଗୁଣ ।
ରଣଯାଗ୍ୟ କରିବାର ଅଟଇ ନିଜ ପଣ ॥
ଦାନ ଦେବାକ ସାଧିବାକ ପୃଥି ।
ରାଜାପଣ ଯେ ଅଟଇ ଯୁଗତି ॥
ମୁନିଙ୍କର ଆଗେ ପ୍ରତଗ୍ୟାଂ କଲି ଯାହା ।
ନିଚୟେ ଭୋ ସୀତ୍ୟା ପାଳିବଇଂ ତାହା ॥
ଅସୁରଙ୍କର ରୁଧିରେ ମେଦନୀ ତୋଷିବି ।
ତେବେ ସେ ଜୀବନେ ସୀତା ବୀରଧୁ
ବୋଲାଇବି ॥
ଯେ ମୋହୋର ବଚନ ନ ଭାଙ୍ଗରେ ସହୀ ।
ଦତ୍ୟକୁ ମାରି ମୁଂ ଉଧରିବି ମହୀ ॥୯୦
ମହତ କୁଳେ ଜାତ ଅଟୁ ମହୀସୁତୀ ।
ଯେ ମୋହୋର ମହିମା ନ ଜାଣୁ କିରେ
ବାଳୀ ॥
ପୁରାଣର କଥା ନାହୁଂ କି ଗୋ ଶୁଣି ।
ତୋହୋ ଆଗେ କହଇ ସ୍ୱରୂପ ସିଦ୍ଧ ବାଣୀ ॥
ଅସୁରନ୍ତ ମାରିବି ବୋଲି ଅଛି ମୁଂ
ଅବତରି ।
କେମନ୍ତେ ଧନୁଶର କରେ ଅଛି ଧରି ॥
ଯେ ମୋର କରେ ଯେବେ କୋଦଣ୍ଡ କାଣ୍ଡ
ଥାଇ ।
ତିନି ପୁରେ ମୋତେ ସମ ସରିନାହିଁ ॥
ଆପଣା କାର୍ଯ୍ୟ ଛାଡ଼ି ଯେ କରଇ
ପରକାର୍ଯ୍ୟ ।
ପର ଉପାଗାରୀଙ୍କି ପ୍ରଶଂସା କରି
ଆଗ ॥୧୦୦
ତାହାକଇ ମହତ ବୋଲିଣ ବୋଲନ୍ତି ।
ସେ ପରଉପଗାରୀ ସର୍ଗରେ ବସନ୍ତି ॥

ଭୋ ଚନ୍ଦ୍ରବଦନି ଗୋ ସୁଦୀର୍ଘ ନୟେନି ।
ଯେ ମୋହୋର ସତ୍ୟ ନ ଭାଙ୍ଗ କାମେନୀ ॥
ଅସୁର ବଳ ମୁହିଂ କରିବଇଂ ଶେଷ ।
ତେବେ ସେ ସୁସ୍ଥମନ ହୋଇବେ ତ୍ରିଦଶ ॥
ତୁ ମୋହୋର ମହିମା ନ ଜାଣୁ କି ସଖି ।
ବିଶ୍ୱାମିତ୍ର ଯାଗ ଗଲଇଂ ମୁହିଂ ରଖି ॥
ଅଗମ୍ୟ ବନେ ମୁଂ ତାଡ଼େକୀ ବଧ କଲି ।
ସଦାଶିବ ଧନୁ ହେଳେଣ ଆମାଣ୍ଟିଲି ॥୧୦
ତୋତେ ବିଭା ହୋଇ ଆସିବାର ବେଳେ ।
ତୁହି ତ ପ୍ରତଗ୍ୟାଂ ଦେଖିଲୁ ବେନି ଡୋଳେ ॥
ଭୃଗୁ କୁଳେ ଜାତ ବୀର ପ୍ରଶୁରାମ ।
ଛତ୍ରୀ କୁଳକୁହିଂ ସେ ଅଟଇ ଦୁତୀ ଯମ ॥
ପୃଥି ଦହନ ଯେ କରଇ ତାର ଶର ।
ଛତ୍ରୀଙ୍କି ସାଧ୍ୟ କଲା ଯେକୋଇଶ ବାର ॥
ତପେଣ ସିଦ୍ଧ ସେ ତେଜେଣ ଗାରିମା ।
ଖଡ଼ଗର ପ୍ରସାଦେ ଜିଣିଲା ପର ସୀମା ॥
ଛତ୍ରୀପଣେ ତାକୁ ନାହିଂ ସମ ସରି ।
ରେଣୁକା ମାସି ମା ଗର୍ଭରୁ ଅବତରି ॥୨୦
ଯମଦଗ୍ନି ତହୁଂ ହୋଇଲାକ ଜାତ ।
ତପୀକୁଳେ ଉତ୍ତମ ଶାହାସ୍ରେ ନିର୍ଜିତ ॥
ସପ୍ତଦୀପା ପୃଥି ବ୍ରାହ୍ମଣେ ଦାନ ଦେଲା ।
ଭୃଗୁ କୁଳେ ଭୃଗୁ ପତି ବୋଲାଇଲା ॥
ନାରାୟଣ ମନ୍ତ୍ରେ ସେ ବିଷ୍ଣୁକୁ କଲା ବଶ୍ୟ ।
ସାକ୍ଷାତେ ପ୍ରସନ୍ନ ତାକୁ ହୋଇଲେ
ପୀତବାସ ॥
ଯେହି ଦେହେ ଭଗବାନ ବୋଲାଇଲା ।
ସଂଯେ ବିଷ୍ଣୁ ବୋଲି ପୁରାଣେ କୁହାଇଲା ॥
ପ୍ରଶୁରାମ ଅବତାର ଚିନ୍ତନ୍ତି ମୁନିମାନେ ।
ବଇଷ୍ଣବୀ ଧନୁ ସେ କରଇ
ଆମଣ୍ଠନେ ॥୩୦
ସହସ୍ରାର୍ଜୁନ ନାମେ ଯେକଇ ନୃପତି ।
ସହସ୍ରେକ ଭୁଜ ତାର ତଇଲୋକେ ବିଛାତି ॥
ସହସ୍ରେକ ତନୟେ ତାର ସବିହେଂ
ଶସ୍ତ୍ରଧାରୀ ।
ପ୍ରଶୁରାମର ହାଥେ ସେ ହୋଇଲେ ସଂହାରି ॥
ଈଶ୍ୱର ଦେଖି ଯାହାକୁ କୋଠାର ସମର୍ପିଲା ।
ନାରାୟେଣ ଯାହାର ହୃଦରେ ବିଜେ କଲା ॥
ଧନୁର ଛାଟେଣି ଲାଗିବାର ଘାୟେ ।
ଫଳିବାର ସଞ୍ଚା ଦିଶୁଅଛି ବାହେ ॥
ପାଷାଣ ଥମ୍ଭ ଜାଣି ତାହାର ବେନି ହାଥ ।
ଶର ନ ସନ୍ଧୁ ଯେ ଡରନ୍ତି ଜଗତ ॥୪୦
କ୍ଷତ୍ରୀୟଙ୍କୁ ଜିଣିଣ ସେ କୀର୍ତ୍ତି ଗୁହାଇଲା ।
ବୀରଙ୍କର ଉପରେ ସେ ବୀରଧି
ବୋଲାଇଲା ॥
ସେ ପ୍ରଶୁରାମକୁ ଦେଖିଲି ବାଟେ ଆସୁ ।
ଦୂରହୁଂ ପିତା ମୋର ଡରିଲାକ ତ୍ରାସୁ ॥
ବଶିଷ୍ଠ ବିଶ୍ୱାମିତ୍ର ଦେଖିଲ ଭୟେ କଲେ ।
ଛିନଛତ୍ର ହୋଇଣ ସଇନି ପଳାଇଲେ ॥
ତୁହି ଗୋ ସୁନ୍ଦେରୀ ହାନ୍ଦୋଳାରେ ଥାଇ ।
ଡରେଣ କମ୍ପୁଥିଲୁ ଥରହର ହୋଇ ॥
ବୀରତୂର ଶୁଣିଣ ପ୍ରଶୁ କୋପ କଲା ।
ପର୍ବତର ସିଂଘକି ତଳକୁ ଖସିଲା ॥ ୫୦
ତେହେନ୍ତୁ ହୋଇ ମିଳିଲା ମୋର ଆଗେ ।
ଆହାର ନ ପାଇ ଯେହ୍ନେ ଗର୍ଜଇ
ମଉନାଗେ ॥
ଧନୁ-ଧର ବୋଲି ବଢ଼ାଇଣ ଦେଲା ।
ଏ ତୋହୋର ବଳ ଜାଣିମା ବୋଇଲା ॥
ପ୍ରଶୁରାମ ଚାପ ଧଇଲି ଭୁଜବଳେ ।
ଗୁଣ ଚଢ଼ାଇଣ ଓଟାରିଲି ହେଳେ ॥
ଦୁଇଖଣ୍ଡ ହୋଇଣ ଭାଙ୍ଗିଲା ଶରାସନ ।
ଆଶ୍ରିଯ ହୋଇଲା ଦେଖି ରେଣୁକାନନ୍ଦନ ॥
ପ୍ରସନ୍ନ ହୋଇସେ ଆରେକ ଧନୁ ଦେଲା ।
ଅଛଏ ତ୍ରୋଣ ଦିବ୍ୟ ଅସ୍ତ୍ର ସମର୍ପିଲା ॥୬୦
ବଡ଼ପଣ ଛାଡ଼ି ସେ ମୋତେ ଗୋଡ଼ାଇଲା ।
ତୁହି ତ ଜାଣୁ ସଖି ଯିସ ଯିସ ବୋଇଲା ॥
ଯେ ମୋହୋର ପ୍ରତଗ୍ୟାଂ ନ ଭାଙ୍ଗରେ
ସତୀ ।
ନିଚଏ ଅସୁର ମାରିବି ବିକୋଟି ॥
ଏତେବୋଲି ରାମ ସୀତାଙ୍କୁ ତିଆରି ।
ଘରୁ ବାହାର ହୋଇଲେ ଧନୁଶସ୍ତ୍ର ଧରି ॥
ଅସୁର ମାରିବେ ବୋଲି ବନକଇ ଗଲେ ।
ଯାଉ ଯାଉ ବାଟେ ପୁଷ୍କରିଣୀ ଦେଖିଲେ ॥
ଦୀର୍ଘ ଚାରି କ୍ରୁଶ ପ୍ରତି ଏକ କ୍ରୁଶ ।
ସ୍ୱସ୍ତିକର ମଣ୍ଡୋପ ଅଛଇ
ଚାରିକୋଣ ॥୭୦
ମୁଗୁନି ପାବଚ୍ଛ ଅଛଇ ଚଉକତି ।
ଦଳ ପଙ୍କ ବିବର୍ଜିତ ମଧ୍ୟରେ ଜଗତୀ ॥
ସେ ସରୋବର ତୀରେ ଶ୍ରୀରାମ ହେଲେ
ଉଭା ।
ସିନ୍ଧୁକୂଳେ ଯେହ୍ନେ ନୀଳଗିରି ଶୋଭା ॥
ପୋଖରୀ ଭିତରେ ନୃତ୍ୟ ଗୀତ ହୋଇ ।
କେ ଯେହା କରଇ ମନୁଷ୍ୟ ନ ଦିଶଇ ॥
ଯେତେବୋଲି ରାମ ତହୁଂ ଚଳିଗଲେ ।
ନିଜ ଆଶ୍ରମେ ଯାଇ ପ୍ରବେଶ ହୋଇଲେ ॥
ମୁନିମାନଙ୍କୁ ରାମ ପଚାରିଲେ ଯାଇ ।
ଅପୂର୍ବ କଥାଯେକ ଦେଖିଲଇଂ ମୁହିଂ ॥୮୦
ବନସ୍ତ ଭିତରେ ଯେକ ତଡ଼ାଗେକ ଅଛି ।
କ୍ରିଡ଼ା କରୁଛନ୍ତି ବିବିଧ ବର୍ଣ୍ଣେ ପକ୍ଷୀ ॥
ପାଣିର ଭିତରେ ଶୁଭଇ ଶବଦ ।
ତାଳ ଯନ୍ତ୍ର ବଂଇଶୀ ମର୍ଦ୍ଦଳ ବୀଣା ବାଦ୍ୟ ॥
ନୃତ୍ୟ ରଙ୍ଗ ରସେ ତାଳ ମାନ ହାକ ।
ଶ୍ରୁତିକି ଶୁଭିଲା ନ ଦିଶନ୍ତି ଲୋକ ॥
ମୁନି ବୋଲନ୍ତି ବାବୁ ଶୁଣ ହୋ ଶ୍ରୀରାମ ।
ମନ୍ଦକର୍ଣ୍ଣ ବୋଲି ଯେକଇ ଋଷି ନାମ ॥
ଅନେକ ଯୁଗଯାଏ ବସିଣ ତପ କଲା ।
ଇନ୍ଦ୍ର ଦେବତାର ଆସନ ଟଳିଲା ॥୯୦
ଭଏଣ ଶଚୀପତି କଲାକ ବଡ଼ ଚିନ୍ତା ।
ଇନ୍ଦ୍ରପଦ ନ ପୁଣ ଘେନଇ ତପୋବନ୍ତା ॥
ଯେତେ ବିଚାରିଣ କନ୍ୟାନ୍ତ ହକାରି ।
ପାଞ୍ଚ ଯୁବତୀଙ୍କି ରାଇଲା ନାମ ଧରି ॥
ମନ୍ଦକର୍ଣ୍ଣ ଋଷି ଯେ ତପେ ଛନ୍ତି ବସି ।
ତହିଂ ଯାଇ ପ୍ରବେଶ ହୋଅ ଗୋ
ଶୁଭ୍ରକେଶୀ ॥

ନୃତ୍ୟରଙ୍ଗ କରିଣ ତପୀର ମନ ହର ।
ଯେମନ୍ତେ ପାର ତାର ତପ ଭଗ୍ନ କର ॥
ଆଗ୍ୟାଂ ପାଇ ସୁନ୍ଦରୀ ଗଲେ ଖର କରି ।
ଯମୁନା ସୁକେଶୀ ନୀଳା କମଳା
ଗଉରୀ ॥୧୦୦
ପାଞ୍ଚ ଯୁବତୀ ଯାଇ ମୁନିଙ୍କ ପାଶେ ହୋନ୍ତି ।
ଯେ ଯାହାର ମତେ ଆଳାପ କରନ୍ତି ॥
ଗୀତ ଗାଇଣ ଯେ ଖଟିଲେ ନୃତ୍ୟ ରସେ ।
ମୁନି ମନ ହରିଲେ ଯେକଇ ନିମିଷେ ॥
ଯତି ପଚାରଇ କାହାର ତୁମ୍ଭେ ନାରୀ ।
ଜାଣି ପଟାନ୍ତର ସ୍ୱର୍ଗର ଅପଛରୀ ॥
ପ୍ରଳମ୍ଭ କରିଣ ସୁନ୍ଦରୀ ଗଣେ କହି ।
କୋପ ନ କରିବା ତୁମ୍ଭେ ଶୁଣିମା
ତପଦେହୀ ॥
ଯେ ତୋହୋର ମହିମା ସ୍ୱର୍ଗରେ ବିଚ୍ଛାଡି ।
ତୋଷେଣ ଆମ୍ଭଙ୍କୁ ପେଷିଲେ ସୁରପତି ॥୧୦
ବୋଇଲେ ମୁନିକି ଯାଇ ସେବା କରିଥିବ ।
ନୃତ୍ୟରଙ୍ଗ ରସେ ମୁନିକି ଖଟିବ ॥
ତେଣୁ ସ୍ୱର୍ଗ ତେଜି ଅଇଲୁ ମୁନି ଆମ୍ଭେ ।
ଖଟିଥିବୁ ଦୟା କରିଥିବ ତୁମ୍ଭେ ॥
ଶୁଣି ମନ୍ଦକର୍ଣ୍ଣ ସନ୍ତୋଷ ହୋଇଲା ।
ସେ ଜଳ ଭିତରେ ପୁରେକ ଭିଆଇଲା ॥
ଯୁବତୀ ଘେନି ସେ ବିହରେ ସୁଖ ପାଇ ।
ପଥିକୀ ଜନ ଗଲେ ପଥର ପକାଇ ॥
ଇନ୍ଦ୍ରର ଆଗ୍ୟାଂରେ ସେ ମେଘ ବରଷନ୍ତି ।
ଆନଲୋକ ତେଣେ ପଥ ନ ବହନ୍ତି ॥୨୦
ସେ ଜଳ ଅଭକ୍ଷ ହୋଇଲାକ ଯେଣେ ।
ପଥଶ୍ରାନ୍ତି ତେଣେ ନ ବହନ୍ତି ଜଣେ ॥
ତୁ ରାମ ପ୍ରତକ୍ଷେ ଅଟୁ ଦେବ ହରି ।
ତୋତେ ଦେଖି ମେଘ ଗଲେ ଅପସରି ॥
ଶୁଣି ରଘୁନାଥର ଫିଟିଲା ସନ୍ଦେଶ ।
ମୁନିମାନେ ଗଲେ ଯେ ଯାହାର ବାସ ॥
ତହିଁ ରଘୁନାଥ ମାସେକ ରହିଲେ ।
ତହୁଂ ସେ ଦଣ୍ଡକାଅରଣ୍ୟକୁ ଗଲେ ॥

ପୁନ୍ୟଥାନ ଦେଖି ରହନ୍ତି ଦିନ ସାତ ।
କାହିଂ ଦୁଇଦିନ ରହନ୍ତି ରଘୁନାଥ ॥୩୦
କାହିଂ ଦିନା ଦଶ ରହିଣ ଯାଆନ୍ତି ।
ଦିନେ ଊଣା କାହିଂ ମାସେକ ରହନ୍ତି ॥
କାହିଂ ପଞ୍ଚାଶ ଦିନ ରହି ଯାନ୍ତି ପନ୍ଥ ବହି ।
କାହିଂ ଦିନା ସତର ରହନ୍ତି ରଘୁସାଇଂ ॥
କାହିଂ ଦିନା ତିନି କାହିଂ ଦିନା ଚାରି ।
କେବଣ ଠାବରୁ ଗଲେ ସ୍ନାନ ଭୋଜନ
ସାରି ॥
ଋଷିକୋଇଲା ନଦୀ ପୁନ୍ୟଭଦ୍ରା କୂଳ ।
ପୁଲକୀ କୂଳେ ଯାଇ ରହିଲେ ରଘୁବୀର ॥
ଦେଖିଲେ ଗୟା ତୀର୍ଥ ପୁନ୍ୟଥାନ ଅଟଇ ।
ତହିଂ ପିଣ୍ଡ ଦେଲେ ସ୍ୱର୍ଗକୁ ବାଟ
ଫିଟଇ ॥୪୦
ଗୟାସୁର ଦତ୍ୟକୁ ମାଇଲେ ଗଦାଧର ।
ମାଡ଼ିଣ ବସିଲେ ତାହାର ଉପର ॥
ପାଞ୍ଚ ଯୋଜନ ଯେ ତାହାର ମଉଳି ।
ଉଭାଳେକ ଜିଭ ମୁଖରୁ ଉଛୁଳି ॥
ଶଏ ଆଠ ଯୂଣ ଅଟଇ ଶରୀର ।
ପାଦ ପଡ଼ିଅଛି ଗୋଦାବରୀ କୂଳ ॥
ବିରଜା କ୍ଷେତ୍ରେ ଯେ ପଡ଼ିଅଛି ଲାଭି ।
ତହିଂକି ଶୁଭଇ ସ୍ୱର୍ଗର ଦୁନ୍ଦେଭି ॥
ପୁଲକୀ ନଦୀ ଯେ ଦକ୍ଷିଣ ବାହାନି ।
ଗଦାଧର ବିଜେ ସକଳ ତୀର୍ଥ ଘେନି ॥୫୦
ପ୍ରେତଶିଳା ବୋଲି ତୀର୍ଥେକ ତହିଂଅଛି ।
ଗୟା ବ୍ରାହ୍ମଣକୁ ରଘୁନାଥ ପୁଛି ॥
ଉତ୍ତର ଭାଗେଣ ଯେ କୋଶେକ ଅନ୍ତରେ ।
କେବଣ ତୀର୍ଥ ସେହୁ କହ ଦିଜବରେ ॥
ବ୍ରାହ୍ମଣେ ବୋଇଲେ ତହିଂ ପ୍ରେତ ଅଧିପତି ।
ତାହାକୁ ପୂଜିଲେ ପିତୃତୋଷ ହୋନ୍ତି ॥
ଛତୁ ଉଡ଼ାଇଣ ବାଲି ପିଣ୍ଡ ଦେଇ ।
ଅମୃତ ପାନ କରି ପିତୃଲୋକେ ସ୍ୱର୍ଗରେ
ବସଇ ॥
ତହିଂ ଉତ୍ତର ଦିଗରେ ଅଛଇ ବ୍ରହ୍ମଯୋନି ।

ବ୍ରହ୍ମା ଜାତ ହେଲା ଚତୁଃଶିର ଘେନି ॥୬୦
ବିଷ୍ଣୁଙ୍କ ନାଭିରୁ ପଦ୍ମେକ ଫୁଟିଲା ।
ଧାତା ବୋଲି ତହୁଂ ଫଳେକ ଉପୁଜିଲା ॥
ସେ ଫଳର ନାମଟି ଅଟଇ ଦଇବ ।
ତାହାରେଣ ଜଗତ ଭିଆଣ ହୋଇବ ॥
ଯେବେଣ ଫୁଲରୁ ଧାତା ହୋଇଲାକ ଜାତ ।
ସେ ଫୁଲ ଗୋଟି ଯେ ଫୁଟିଅଛି ଯେଥ ॥
ତେଣୁ ସେ ବ୍ରହ୍ମଯୋନି ବୋଲିଣ ନାମ
ଧରି ।
ତହିଂ ସ୍ନାହାନ କଲେ ଯିବ ସ୍ୱର୍ଗ ପୁରୀ ॥
ଯେ ପୁଲକୀ ନଦୀ ଯେ ଅମୃତମୟେ ଜଳ ।
ଦେବତାଗଣେ ଯେଥି ଅଛନ୍ତି ସକଳ ॥୭୦
ତହିଂ ଉତ୍ତର କୂଳର ମହିମା ଅକଳିତ ।
ଷୋଳ କୋଟି ଦେବତା ଚରଣେ ନମିତ ॥
ବିଷ୍ଣୁର ପାଦରେ ଯେବେଣ ପିଣ୍ଡ ଦେଇ ।
ଏକ ଉତ୍ତର ଶତେ ପୁରୁଷ ସ୍ୱର୍ଗରେ ବସଇ ॥
ସମୀପତ୍ର ପ୍ରମାଣେ ଛତୁ ଗୋଳି ଦେବ ।
ବ୍ରହ୍ମଲୋକରେ ଚଉଦ ମନୁଏ ବସିବ ॥
ଯେ ସେ ନାରାୟଣର ଦକ୍ଷିଣ ପାଦ ଅଟଇ ।
ଏହାର ପାଗୁଣେ ଅକ୍ଷଏ ବଟ ଅଛଇ ॥
ଯେଥେ ତୁ ପିଣ୍ଡଦାନ ଦିଅସି ସୀତାପତି ।
ପିତୃଲୋକେ ତୁମ୍ଭର ହୁଅନ୍ତୁ ସ୍ୱର୍ଗଗତି ॥୮୦
ଶୁଣିଣ ଶ୍ରୀରାମ ଲକ୍ଷଣ ବେନି ଭାଇ ।
ନଦୀରେ ସ୍ନାହାନ କରି କୂଳରେ ଉଭା
ହୋଇ ॥
ପାକାସ୍ପର୍ଶ ଯେ ହୋଇଛନ୍ତି ସ୍ୟତୀ ।
ନଦୀ ନ ଛୁଇଂଲେ ଜନେକ ଦୋହିତି ॥
ଦକ୍ଷିଣ କୂଳରେଣ ବସିଣ ବଇଦେହୀ ।
କରେ ବାଲି କାଢ଼ି ପୋଖରୀଯେ ଭିଆଇ ॥
ବୋଇଲେ ଶ୍ରୀରାମଚନ୍ଦ୍ର ଆଜ ଦେବେ
ପିଣ୍ଡ ।
ଦଶରଥ ରାଜା ବସିବେ ସ୍ୱର୍ଗ ଖଣ୍ଡ ॥
ଯେସନେକ ପ୍ରକାରେ ସିନା କରିବେ
ପିତୃକାର୍ଯ୍ୟେ ।

ମନେ ମନେ ଦେବୀ କରନ୍ତି ଲାଜ
ଲାଜ ॥୯୦
ଗୋତ୍ର ଉଚ୍ଚାରିଣ ଜନେକ ଦୋହିତା ।
ଦେଶ କାଳ ବାକ୍ୟ ଉଚ୍ଚାରନ୍ତି ସୀତ୍ୟା ॥
ଦଶରଥ ନୃପତିର ଧଇଲେକ ନାମ ।
ବାଲି ପିଣ୍ଡ ଦେଇ କଲେକ ପ୍ରଣମ ॥
ପ୍ରତକ୍ଷେଣ ଆସି ମିଳିଲେ ଦଶରଥ ।
ବାଲି ପିଣ୍ଡ ଦିଅନ୍ତେ ପାତିଲେକ ହାଥ ॥
ଯହୁଂ ବାଲି ପିଣ୍ଡ ତୋଷ ମନେ ଦେଲେ ।
ତାହା ଦଶରଥ ଅମୃତ ପାନ କଲେ ॥
ତତକ୍ଷଣେ ସ୍ୱର୍ଗେ ବସିଲେକ ଯାଇ ।
ଗଉରୋବ କଲେ ଶଚୀଦେବୀ
ସାଇଂ ॥୧୦୦
ଯେଥୁ ଅନନ୍ତରେ ଶ୍ରୀରାମ ଲକ୍ଷଣ ।
ସ୍ନାହାନ ତର୍ପଣ ସାରିଲେ ତତକ୍ଷଣ ॥
ଗଦାଧର ଦେବତାକୁ କୋଠାର ପିଣ୍ଡ
ଦେଲେ ।
ସ୍ୱର୍ଗେ ଦେବତାୟେ ବଚନ ବୋଇଲେ ॥
ଭୋ ରାମଚନ୍ଦ୍ର ଶ୍ରାଦ୍ଧ କରୁଛୁ କିସ ପାଇଂ ।
ଦଶରଥ ରାଜା ସ୍ୱର୍ଗେ ବସିଲାନି ଯାଇ ॥
ସୀତ୍ୟା ମହାସ୍ୟତୀ ବାଲି ପିଣ୍ଡ ଦେଲା ।
ଶ୍ରୀରାମ ପିଅର ତୋ ଅମୃତ ପାନ କଲା ॥
ତୋହୋର ପିଣ୍ଡ ଦ୍ୟନ୍ତେ ହୋଇବ
ଅକାରଣ ।
ଶୁଣିଣ ବିସ୍ମୟେ ହୋଇଲେ ରାମରାଣ ॥୧୦
ସୀତ୍ୟାକୁ ପଚାରିଲେ ସେହୁ କହେ ନାହିଂ ।
ପୁଲକୀ ନଦୀକି ପୁଛିଲେ ରଘୁସାଇଂ ॥
ତୁ ଗୋ ସରିତ କହସି ତଥ୍ୟ ବାଣୀ ।
ବାଲିପିଣ୍ଡ ଦେଲା କି ଜନେକ ଦୁଲଣୀ ॥
ସୀତ୍ୟାର ଓପ୍ରୋଧେଣ ସେହି ନାସ୍ତି କଲା ।
କୋପେଣ ଶ୍ରୀରାମ ତାହାକୁ ଶାପ୍ୟ ଦେଲା ॥
ତୁହୋ ପୁଲକୀ ନଦୀ କହିଲୁ ମୋତେ
ମିଛ ।
ନ ବହିବ ଜଳ ତୁ ନୋହିବୁ ଶଉଚ ॥

ତୀର୍ଥବାସୀମାନେ ଆସିବେ ତୀର୍ଥ କରି ।
ଜଳ ନ ପାଇଣ ତୋ ହୃଦୟ ବିଦାରି ॥୨୦
ଶୁଣିଣ ମାହାନଦୀ ବିକଳ ହୋଇଲା ।
ସୀତ୍ୟା ମୁଖ ଚାହିଂ ବଚନ ବୋଇଲା ॥
ଭୋ ମହାସ୍ୟତୀ ଗୋ କର ପ୍ରତିକାର ।
ଆଦୋଷେ ଶାପ୍ୟ ମୋତେ ଦେଲେ
ରଘୁବୀର ॥
ସୀତ୍ୟା ବୋଇଲେ ଗୋ ଶୁଣସି ପୁଲକୀ ।
ବରଷାରେ ବହିବୁ ଦୁଇକୂଳ ଲାଗି ॥
ଶୀତ ଖରା କାଳେ ଗୁପତେ ପାଣି ଥିବ ।
ବାଲି ଖୋଳନ୍ତେଣ ବାହାର ହୋଇବ ॥
ଶ୍ରୀରାମର ବଚନ ନୋହଇ ଯେ ଆନ ।
ଗୁପତେଣ ପାଣିଥିବ ଅବିଛନ୍ନ ॥୩୦
ଖେଡ଼ ଖେଳୁ ଖେଳୁ ମୁଂ ଯେ ବାଲିପିଣ୍ଡ
ଦେଲି ।
କଥା କଉତୁକେ ଶ୍ରାଦ୍ଧକୃତ କଲି ॥
ତୀର୍ଥବାସୀମାନେ ଆସିବେ ତୀର୍ଥ କରି ।
ଯେହି ରୂପେ ଶ୍ରାଦ୍ଧ କରିବେ ବାଲିପିଣ୍ଡ ଧରି ॥
ଗୋତ୍ର ଉଚ୍ଚାରିଣ କରିବେ ଯେହୁ ଶ୍ରାଦ୍ଧ ।
ଅବଶ୍ୟ ପିତୃଲୋକେ ବସିବେ ସ୍ୱର୍ଗ ମଧ୍ୟ ॥
ଯେ ମୋହୋର ବଚନ ନୋହଇ ବିଫଳ ।
କହୁଅଛି ସତ୍ୟ ତୁମ୍ଭେ ଶୁଣ ଦିଗପାଳ ॥
ଶୁଣି ଦିଗପାଳ ସାଧୁ ସାଧୁ କଲେ ।
ଅସ୍ତୁ ଅସ୍ତୁ ବୋଲି କୁସୁମ ବରଷିଲେ ॥୪୦
ଦେଖିଣ ଶ୍ରୀରାମ ହୋଇଲେ ଚକିତ ।
ଧନି ଧନି ସୀତୟା ଗୋ ଜନେକ ଦୋହିତ ॥
ଯେ ତୋହୋର ବଚନକୁ ଦେବେ
ସାବଧାନ ।
ଆଜହୁଂ ହୋଇଲୁ ତୁ ସତୀଙ୍କ ମୁକ୍ଷପାନ ॥
ଗୟାତୀର୍ଥରେ ରାମ ନ କଲେକ ଶ୍ରାଦ୍ଧ ।
ସୁରଗଣେ ଯହୁଂ କଲେକ ବିରୋଧ ॥
ତହିଂ ପଚୁଂରାତ୍ର ରହିଲେ ରଘୁପତି ।
ଜାନେକୀ ହୋଇଣ ଯେ ଥିଲେ ରଜବତୀ ॥
ଶୁଦ୍ଧ୍ୟ ସ୍ନାହାନ ଯେ ପୁଲକୀରେ କଲେ ।୫୦

ସେ ଦିନ ଶ୍ରୀରାମ କୋଠାର ପିଣ୍ଡ ଦେଲେ ॥
ସୀତୟାକୁ ନେଇ ଗଦାଧରକୁ
ଦେଖାଇଲେ ।
ତହୁଂ ତିନିଜଣ ପଥ ବହିଗଲେ ॥
ତୀର୍ଥ ସ୍ନାନ କରି ବାହୁଡ଼ିଣ ଯାନ୍ତି ।
ବ୍ରାହ୍ମଣେ ଉଗାଳିଣ ଦକ୍ଷିଣା ମାଗନ୍ତି ॥
ଶ୍ରୀରାମ ବୋଇଲେ ହୋ ଆମ୍ଭେ ତପସ୍ୱରୀ ।
ଧନ ଘେନି କି ଆମ୍ଭେ ଆସିଛୁ ତୀର୍ଥକରି ॥
ବନେ ବୁଲୁ ବୁଲୁ ଭେଟିଲୁ ଆସି ଯୋଗେ ।
କିସ ନେବ ବୋଲି ଉଗାଳିଅଛ ଆଗେ ॥
ବ୍ରାହ୍ମଣେ ବୋଇଲେ ତୁ ରାଜାର କୁମର ।
ତୋତେ କି ଅପୂର୍ବ ଅଟଇ ଭଣ୍ଡାର ॥୬୦
ତୋହୋ ଦେଇ ଲୋଡ଼ିଲେ ସକଳ ଯେଥେ
ଅଛି ।
ନିସତ ପ୍ରକୃତି ତୁ ନ ଧର ରଘୁବଛି ॥
ମିଛେହେଂ ବୋଲୁଅଛୁ ନାହିଂ ମୋର ଧନ ।
ନିରାଶ ବଚନ ଆମ୍ଭଙ୍କୁ ନବୋଲ ଶ୍ରୀରାମ ॥
ଯେ ତୋହୋର ଭାରିଯାର ଅଳଙ୍କାରମାନ ।
କାହିଂ ନେଇ ଯେବେ ଥୋଇବୁ ଯେ ଧନ ॥
ଗୟାରେ ପିଣ୍ଡ ଦେଲୁ ପିତୃ ସ୍ୱର୍ଗେ ଗଲେ ।
ଆପଣେ ତୁ ଶୁଣିଲୁ ଦେବେ ଯାହା
ବୋଇଲେ ॥
ହରଷ ହୋଇଣ ଦକ୍ଷିଣା ଯେବେ ଦେବୁ ।
ଯେ ରତ୍ନମାନ ଆଉ କାହିଂକି
ଥୋଇଥିବୁ ॥୭୦
ଶ୍ରୀରାମ ବୋଇଲେ ସେ ଯୁବତୀଙ୍କ ବିତ୍ତ ।
ଅବେଭାର କଥା କିମ୍ପା କହିଲ ତପୋବନ୍ତ ॥
ଯେତେ ବୋଲି ଶ୍ରୀରାମ ବାଟ ଭାଙ୍ଗି
ଗଲେ ।
ତୀର୍ଥ ବ୍ରାହ୍ମଣେ ଯେ ପଛରେ ଗୋଡ଼ାଇଲେ ॥
ଲାଉ ଲୋହିତା ଖଣନ୍ତି ଉଛୁଡ଼ନ୍ତି ।୮୦
କଷା ବସ୍ତ୍ରମାନ ବଳେଣ ଘେନିଯାନ୍ତି ॥
ବ୍ରାହ୍ମଣଙ୍କୁ କୋପ ନ କରନ୍ତି ରଘୁନାଥ ।
ବେଗ ବେଗ ହୋଇ ଚାଲିଛନ୍ତି ପନ୍ଥୁ ॥

ବିଦୁଜନମାନେ ଗୋଡ଼ାଇ ଅଛନ୍ତି ।
ହସ୍ତରୁ କର୍ଣ୍ଣରୁ ଅଳଙ୍କାର ଉଛୁଡ଼ନ୍ତି ॥୮୦
ପଣତ ଧରିଣ ଉଛୁଡ଼ନ୍ତି ଜଣ ଚାରି ।
ବିକଳେ ମହାସ୍ୟତୀ ଉଞ୍ଚେ ରାବ କରି ॥
ଶ୍ରୀରାମ ବୋଇଲେ ହୋ ବ୍ରାହ୍ମଣେ ନିଦୟା ।
ସୀତ୍ୟାଙ୍କୁ କଷ୍ଟ ଦ୍ୟନ୍ତି ନ କରନ୍ତି ଦୟା ॥
ଯୁବତୀଙ୍କ ଆୟେକୁ ଯେ କରୁଛନ୍ତି ଆଶ ।
ଗୋଡ଼ାଇ ଅଇଲେନି ପଞ୍ଚବିଂଶ କୋଶ ॥
ସୀତ୍ୟାର ଅଞ୍ଚଳ ଧରନ୍ତି ବିଦୁଜନେ ।
ଆମ୍ଭଙ୍କୁ କିଛୁ ବିତ୍ତ ଦିଅ ତୋଷ ମନେ ॥
ଶ୍ରୀରାମ ବୋଲନ୍ତି ସ୍ୟତୀ ପାଇବନି ବ୍ୟଥା ।
ଭୋଦେବ ଦ୍ୱିଜମାନେ ନ ଯୋଗାଇଟି
ଯେକଥା ॥୯୦
ପୁରୁଷ ଥାଉଂ ଆମ୍ଭେ ସ୍ତିରୀଙ୍କି କିମ୍ପା ଧର ।
ପଣ୍ଡିତ ଜନ ହୋଇ ଅବେଭାର କର ॥
ଶ୍ରୀରାମ ବଚନ ବ୍ରାହ୍ମଣେ ନ ଶୁଣିଲେ ।
ପଣତ ଧରିଣ ସୀତ୍ୟାଙ୍କୁ ଓଟାରିଲେ ॥
ଶ୍ରୀରାମଙ୍କୁ କୋଳ କଲେ ଦେବୀ ସୀତ୍ୟା ।
ଦେଖି ଦାଶରଥି ପାଇଲେ ବଡ଼ ଚିନ୍ତା ॥
ଲକ୍ଷଣଙ୍କୁ ବୋଇଲେ ବ୍ରାହ୍ମଣେ ଅଗ୍ୟାନ ।
ଯେହିକ୍ଷଣି ଗୋଳ କରିବେ ବିଦୁଜନ ॥
ସୀତାର ପଣତ ଅଛନ୍ତି କରେ ଧରି ।
ମଧ୍ୟରୁ କାଟ ବସ୍ତ୍ର ଦୁଇ ଖଣ୍ଡ କରି ॥୧୦୦
ଶୁଣିଣ ଲକ୍ଷଣ ଖଡ଼ଗ କରେ ଧରି ।
ସୀତୟାର ପଣନ୍ତ ପକାଇଲେ ଚିରି ॥
ବ୍ରାହ୍ମଣଙ୍କ ହସ୍ତରେ ରହିଲା ବସ୍ତ୍ର ଅଧ ।
କୋପେଣ ଲକ୍ଷଣ ଧଇଲା ଆଉଧ ॥
ସୀତ୍ୟାଙ୍କୁ ଶ୍ରୀରାମ ବେଗେ ଘେନି ଗଲେ ।
ପୁଣିହିଂ ବ୍ରାହ୍ମଣେ ପଛେ ଗୋଡ଼ାଇଲେ ॥
ଲକ୍ଷଣ ଧାଇଂଲା ଧନୁ ଶସ୍ତ୍ର ଧରି ।
ତେଣେ ସେ ବ୍ରାହ୍ମଣେ ରହିଲେ ଭୟେ
କରି ॥
ଭଲା ପଳାଇଲେ ବୋଲିଣ ଡାକ ଦ୍ୟନ୍ତି ।
ଘେନି ଯାଉ ତୁମ୍ଭର ଭାରିଯା ରୂପବନ୍ତୀ ॥୧୦

ଯେ ଚାରୁ ସୁନ୍ଦେରୀ ତୁମ୍ଭେ ଜଟାଧାରୀ ।
ଚୋରାଇ କାହୁଂ ତୁମ୍ଭେ ଆଣିଲ ପରନାରୀ ॥
ଦେଶ କଟକରେ ରହି ନ ପାରିଲ ।
ଥାନ ଭ୍ରଷ୍ଟ ହୋଇ ବନକୁ ଅଇଲ ॥
ଯେକଇ ଯୁବତୀକି ଦୁଇ ଗୋଟା ବର ।
ଲାଞ୍ଜ ସଙ୍କୁଚ କି ନାହିଂ ହେ ତୁମ୍ଭର ॥
ବିଭୂତି ବିଲୋପନ କଷା ବସ୍ତ୍ର ପିନ୍ଧି ।
ଧନୁ ଶସ୍ତ୍ର ଧରି ଶିରେ ଜଟା ବାନ୍ଧି ॥
ନିଶ୍ଚେରେ ଚୋର ତୁମ୍ଭେ ଅଟ ହାଦେ
ବେନି ।
ଭଲା ପଳାଇଲରେ ଭାରିଯାକୁ ଘେନି ॥୨୦
ତୁମ୍ଭଙ୍କୁ ସଂଘାରି ନିଅନ୍ତୁ ତୁମ୍ଭ ନାରୀ ।
ଶୁଣିଣ ଶ୍ରୀରାମ ବୋଇଲେ କୋପ କରି ॥
ବ୍ରାହ୍ମଣ ବୋଲିଣ ରେ ମିଛେହେଂ
ବୋଲାଅ ।
ନୋହିଲେ କି ଯେତେବେଳ ଯାଏ ଥାଅ ॥
ଯେ ଗୟା ତୀର୍ଥ ଯେ ସବୁଙ୍କୁ ହିଁ ହୋଉ ।
ତୁମ୍ଭର ଜଞ୍ଜାଳ କାହାକୁଇ ନୋହୁ ॥
ଯେତେକାଳ ମୁହିଂ ଦେହ ବହିଥିବି ।
ଯେ ପୁଲକୀ ନଦୀକି କେବେହେଂ
ନୁଆସିବି ॥
ଯେତେ ବୋଲି ରାମ ଧନୁହୁଳ ଘେନି ।
କୋପେ ତିନି ଗାର କାଟିଲେ
ମେଦିନୀ ॥୩୦
ବ୍ରାହ୍ମଣଙ୍କୁ ବୋଇଲେ ତୁମ୍ଭେ ଯେତେ
ଅରଜିବ ।
ବାସି ଦିନକୁ ତୁମ୍ଭର କଡ଼ାଯେ ନଥିବ ॥
ଯେଡ଼େ ମହାତୀର୍ଥକୁ ତୁମ୍ଭେ ନାଶ କଲ ।
ମୋତେ ପଞ୍ଚବିଂଶ କୋଶ ଗୋଡ଼ାଇଲ ॥
ଯେତେବୋଲି ରାମ ପିଠିଦେଇ ଯାନ୍ତି ।
ସେହିଠାରୁ ବ୍ରାହ୍ମଣେ ନେଉଟି ଆସନ୍ତି ॥
ଧନୁ ଘେନି ରାମ କାଟିଲେ ଯଉଁ ଗାର ।
ପୁନପୁନା ନାମ ହୋଇଲା ତାହାର ॥
ତହୁଂ ଯେ ଶ୍ରୀରାମ ସୀତ୍ୟା ଲଇକ୍ଷଣ ।

କାଶୀପୁରେ ପ୍ରବେଶ ହୋଇଲ
ତତକ୍ଷଣ ॥୪୦
ଗଙ୍ଗାସ୍ନାନ କରି ସଂଧ୍ୟା ସୁମରନ୍ତି ।
ଦିନ ମଧ୍ୟେ ମଣିକର୍ଣ୍ଣିକାୟେ ତ୍ରପଣ କରନ୍ତି ॥
ଯବ ତିଳ ଛତୁ ଘେନିଣ ଶ୍ରାଦ୍ଧ କଲେ ।
ବିଶ୍ୱନାଥଦେବଙ୍କୁ ଦ୍ରଶନ ଯାଇ କଲେ ॥
ତୀର୍ଥର ବ୍ରାହ୍ମଣେ ଭେଟିଲେକ ଆସି ।
ତାହାଙ୍କୁ ରଘୁନାଥ ବଚନ ପ୍ରକାଶି ॥
ନାଉ ଲୋହିତାଉଂ ଆମ୍ଭର କିଛୁନାହିଂ ।
ଦେଶାନ୍ତରୀ ଧନ ପାଇବୁ ଆମ୍ଭେ କାହିଂ ॥
ବ୍ରାହ୍ମଣ ବୋଇଲେ ଧନ ଆମ୍ଭେ ନେମୁ ।
ତୀର୍ଥର ଦକ୍ଷିଣା ନିଟୟେ ଘେନିମୁ ॥୫୦
ଶ୍ରୀରାମ ବୋଇଲେ ହୋ ଏଡ଼େ ଏଡ଼େ
ଲୋକେ ।
ସମସ୍ତେ ହେଂ ତୁମ୍ଭେ ଅଟ ଅବିବେକେ ॥
ନାଉ ଲୋହିତାରେ କାର୍ଯ୍ୟ ତୁମ୍ଭର କିସ ।
ଆମ୍ଭେ ପରବାସୀ ବୁଲୁ ଦେଶ ଦେଶ ॥
କନ୍ଦମୂଳ ଖାଇ ନିର୍ଝର ପାଣି ପିଉ ।
ତୁମ୍ଭଙ୍କୁ ଲାଉ ଲୋହିତା ଦେବୁ କାହୁଂ ॥
ନାସ୍ତି କଲେ ପୁଣ ଦିଗୁଣେ ଉଛୁଛନ୍ତି ।
କୋପେଣ ଶ୍ରୀରାମ ତାହାଙ୍କୁ ଶାପ୍ୟ ଦ୍ୟନ୍ତି ॥
ଯେବେ ଲକ୍ଷେ ଗୁଣ ଥିବ ତୁମ୍ଭର ଧନ ।
ତଥାପି ଦୁଃଖି ତୁମ୍ଭେ ହୋଇବ
ବିଦୁଜନ ॥୬୦
କଡ଼ାକର ପାଇଁ ବୁଲିବ ଦେହି ଦେହି ।
ଅବଣିଜାର ହୋଇ ନ ଥିବ ଜଣେ କେହି ॥
ବାଳ ବୃଧା ଯୁବା ସବୁରି ବଣିଜ ।
ଧନ ପାଇଲେଣ ବିକିବ ତନୁଜ ॥
ଯେତେବୋଲି ତହୁଂ ଗଲେ ରଘୁମଣି ।
ଶୁଭେଣ ପାରି ହୋଇ ଗଲେ ଗଙ୍ଗା ପାଣି ॥
ପଛରେ ଲକ୍ଷଣ ମଧରେ ଦେବୀ ସୀତ୍ୟା ।
ନର୍ମଦା କୂଳରେ ମିଳିଲେ ଜଗୁଜିତା ॥
ଜଳ ମନ୍ତୁରିଣ ସ୍ନାହାନ ତହିଂ କଲେ ।
ଦୁଇ ଦିନ ରହି ତହୁଂ ଚଳିଗଲେ ॥୭୦

ପୁନ୍ୟଭଦ୍ରା ବୋଲି ନଦୀୟେକ ଅଛି ।
ତହିଂରେ କୂଳେ ଯାଇ ମିଳିଲେ ରଘୁବଛି ॥
ସ୍ନାହାନ ସାରିଣ ତହୁଂ ଗଲେ ପନ୍ଥ ବହି ।
ଭାସ୍କର ତୀର୍ଥେଣ ମିଳିଲେ ରଘୁସାଇଂ ॥
ଚନ୍ଦ୍ରଭାଗା ନଦୀରେ ସ୍ନାହାନ ଯାଇ କଲେ ।
ଦକ୍ଷିଣ ମୁଖ ହୋଇ ତହୁଂ ଚଳିଗଲେ ॥
ଶ୍ରୀରାମର ହୃଦେ ରୁଦ୍ରାକ୍ଷ ମାଳ ଥିଲା ।
ସୂତା ଛିଡ଼ି ତହୁଂ ଗୋଟିୟେ ପଡ଼ିଲା ॥
ଲକ୍ଷଣ ରାଘେବଙ୍କୁ କହିଲେକ ତାହା ।
ଶୁଣିଣ ହସିଲେ ଜାନେକୀର ନାହା ॥ ୮୦
ବୋଇଲେ ଯେଥେ ଯେବେ ପଡ଼ିଲା
ରୁଦ୍ରାକ୍ଷ ।
ଯେହିଠାରେ ଯେହୁ ହୋଇଥାଉ ବୃକ୍ଷ ॥
ଯେହାର ବୀଜ ଯେଥେ ଯୁଗେ ଯୁଗେ
ଥାଉ ।
ଶ୍ରୀରାମ ରୁଦ୍ରାକ୍ଷ ବୋଲି ଜଗତେ ବୋଲାଉ ॥
ତହୁଂ ଦାଶରଥି ଥୋକାଏ ଦୂର ଗଲେ ।
ଚନ୍ଦ୍ରଭାଗା ସଙ୍ଗମ ସମୁଦ୍ର ଦେଖିଲେ ॥
କୋଣାଖୀ ଚଣ୍ଡୀ ବୋଲି ଅଛି ୟେକ
ଦେବୀ ।
ତାହାକୁ ଶ୍ରୀରାମ ଭଗତି ଭାବେ ସେବି ॥
ଉତ୍ତର ମୁଖ କରି ତାହାକୁ ବସାଇଲେ ।
ଶ୍ରୀରାମ ଚଣ୍ଡୀ ବୋଲି ତାହାର ନାମ
ଦେଲେ ॥୯୦
ଶ୍ରୀରାମ ଲକ୍ଷଣ ସୀତା ତିନିଜଣ ।
ତିନିହେଂ ପୂଜିଲେ ବିଶ୍ୱନାଥ ବାଣ ॥
ଉତ୍ତର ମୁଖ ହୋଇ ତହୁଂ ଚଳିଗଲେ ।
ପ୍ରାଚୀ ପୁନ୍ୟନଦୀ ବହନ୍ତେ ଦେଖିଲେ ॥
ସେ ତହିଂ ସ୍ନାହାନ କଲେ ରଘୁରାଟ ।
ତେଣୁ କରି ନାମ ହୋଇଲା ରାମ ଘାଟ ॥
ଲକ୍ଷଣକୁ ବୋଇଲେ ରୁଦ୍ରଦେବ ଆଣ ।
ଯେଠାରେ ପୂଜିବା ବିଶ୍ୱନାଥ ବାଣ ॥
ଶୁଣିଣ ଲକ୍ଷଣର ନ ପୁରଇ କିଛି ।
ଦେଖିଲେ ଆଗରେ ସେ ବେଲ
ପଡ଼ିଅଛି ॥୧୦୦

ଶିବ ଶକ୍ତି କରି ବସାଇଲେ ତାହା ।
ଧୂପ ଦୀପ ଦେଇ ପୂଜିଲେ ରଘୁନାହା ॥
ତହୁଂ ଥୋକାୟେ ଦୂର ପନ୍ଥ ବହିଯାନ୍ତି ।
ଶରଧାୟେ କାଣ୍ଡ ଘେନି ଦେବୀୟେ
ଲେଖନ୍ତି ॥
ଲକ୍ଷଣ ଚଣ୍ଡୀ ବୋଲି ତାହାର ନାମ
ଦେଲେ ।
ଷୋଡ଼ଶ ପ୍ରକାରେ ପୂଜା ବିଧି କଲେ ॥
ତହିଂ ରାତ୍ରେକ ରହି ରାମ ଗଲେ ।
ଚିତ୍ରଉତ୍ପଳାରେ ପ୍ରବେଶ ହୋଇଲେ ॥
ଦେଖିଲେ ବିଶ୍ୱନାଥ ଅଛନ୍ତି ବିଜେ କରି ।
ଦକ୍ଷିଣ ବାରାଣାସୀ ଅଟଇ ସେହୁ ପୁରୀ ॥୧୦
ସ୍ନାହାନ ବିଧି ସାରି ବାଲୁକା ପୂଜା କଲେ ।
ବାଲୁକେଶ୍ୱର ବୋଲି ତାହାର ନାମ
ଦେଲେ ॥
ତହିଂ ଅହୋରାତ୍ର ରହି ରାମ ଗଲେ ।
ବିନ୍ଦୁ ସାଗରେଣ ସ୍ନାହାନ ରାମ କଲେ ॥
ମଠ କରି ମାସେ ରହିଲେ ତିନି ଜଣ ।
ସୀତା ମଠ ବୋଲି ଦେଲେ ତହିଂ ନାମ ॥
ତହୁଂ ତିନି ଜଣ ସଜ ହୋଇଗଲେ ।
ଦକ୍ଷିଣ ମୁଖ ହୋଇ ଗମନ କରି ଗଲେ ॥
କେତେହେଂକ ଦୂରେ ଦେଖିଲେ
ନୀଳଗିରି ।
ସ୍ୱଦେହେ ବିଜେ କରିଅଛନ୍ତି ଦେବ
ହରି ॥୨୦
ଦକ୍ଷିଣ ମଉଦଧିରେ ସ୍ନାହାନ ରାମ କଲେ ।
ଦାରୁ ବ୍ରହ୍ମରୂପେ ଯାଇଣ ଦେଖିଲେ ॥
ନୀଳଗିରି ସୁନ୍ଦର ଅନନ୍ତ ମୂରତି ।
ତ୍ରିବିଧ ସ୍ୱରୂପ ଯେ ଦେଖିଲେ ସୀତାପତି ॥
ଶ୍ରୀ ଜଗନ୍ନାଥ ଆଗେ ଶ୍ରୀରାମ ଉଭା ହୋଇ ।
ଲକ୍ଷଣ ବଳଭଦ୍ର ଛାମୁରେଣ ରହି ॥
ସୀତା ସୁଭଦ୍ରା ଯେ ହୋଇଲେ ଭେଟ
ବେନି ।
ତିନି ଦେବତା ଜାତ ମାନବ ଦେହ ଘେନି ॥

ଶ୍ରୀରାମ ବିଚାରନ୍ତି ମୁହିଂ ସେ ଜଗନ୍ନାଥ ।
ସୀତା ସୁଭଦ୍ରା ଯେ ଅଟଇ ଯଥାର୍ଥ ॥୩୦
ଲକ୍ଷଣ ବଳଭଦ୍ର ୟେକଇ ଦେହହୋନ୍ତି ।
ଏସନ ବିଚାରି ତହୁଂ ଚଳିଯାନ୍ତି ॥
ଦକ୍ଷିଣ ମୁଖ ହୋଇ ଥୋକାୟେ ଦୂର
ଗଲେ ।
ପାଷାଣ ନ ପାଇଲାକୁ ଲାଉକ ପୂଜାକଲେ ॥
ତହୁଂ ଋଷିକୋଇଲା କୂଳରେ ମିଳିଲେ ।
ଅମୃତାକ୍ଷ ବୋଲି ଲିଙ୍ଗେକ ପୂଜିଲେ ॥୪୦
କୁଳାଇଚଣ୍ଡୀ ବୋଲି ଅଛି ୟେକ ଦେବୀ ।
ପର୍ବତ ଉପରେଣ ଶ୍ରୀରାମଚନ୍ଦ୍ର ସେବି ॥
ଆପଣାର ନାମ ଦେଇଣ ତହୁଂ ଗଲେ ।
ଟୋଲେକଶ୍ୱର ବୋଲି ଲିଙ୍ଗେକ ପୂଜିଲେ ॥
ପଶ୍ଚିମ ମୁଖ ହୋଇ ଯାନ୍ତି ପନ୍ଥ ବହି ।
ରାତ୍ରେକ ରହିଲେ ନଦୀ କୂଳେ ଯାଇ ॥
ପ୍ରଭାତେ ସ୍ନାହାନ ସାରିଣ ତିନିଜଣ ।
ଯେ ବିଧି ବିଧାନ ସାରିଲେ ତତକ୍ଷଣ ॥
ଲକ୍ଷଣକୁ ଶ୍ରୀରାମ ବୋଇଲେକ ଚାହିଂ ।
ରଦ୍ର ଦେବତାୟେ ଆଣସି ଭିଆଇ ॥
ଶ୍ରୀରାମ ଆଜ୍ଞାୟେ ଗଲେ ସଉମିତ୍ରୀ ।
ତୁମ୍ବା ଲାଉକ ଗୋଟିଏ ଲିଙ୍ଗ କରି ପୋତି ॥
ଶ୍ରୀରାମ ପୂଜିଲେ ତା ଜୀବନ୍ୟାସ କରି ।
ଲିଙ୍ଗର ମୃଧୁନି ଦଖିଣ କରେ ଧରି ॥ ୫୦
ପ୍ରତକ୍ଷେଣ ବିଜେ କଲେ ଶୂଳପାଣି ।
ଶ୍ରୀରାମ ମୁଦ୍ରିକାରୁ ଲାଗି ରହିଲାକ ମଣି ॥
ତୁମ୍ବେଶ୍ୱର ବୋଲି ହୋଇଲା ଦେବତା ।
ମୁଦି ନ ଦେଖି ଶ୍ରୀରାମକୁ ପଚାରିଲେ ସୀତା ॥
ହୀରାର ନାୟେକ ଯେ ମୁଦ୍ରିକାରେ ଥିଲା ।
ଶ୍ରୀରାମ ବୋଇଲେ ଲିଙ୍ଗରେ ରହିଲା ॥
ତହୁଂ ପଶ୍ଚିମ ମୂର୍ତ୍ତି ହୋଇ ଚଳିଯାନ୍ତି ।
ଘୋର ବିପୁନ୍ୟେ କନ୍ଦରେ ମିଳନ୍ତି ॥
ରୁଦ୍ର ପୂଜନ୍ତି କାହିଂ ଆରାଧନ୍ତି ଚଣ୍ଡୀ ।
କେବଣ ତୀର୍ଥେ ସ୍ନାହାନ କରିଣ
ପାପଖଣ୍ଡି ॥୬୦

କେବଣ ବିପ୍ରନ୍ୟେ ରହନ୍ତି ଦିନା ତିନି ।
ସୁଖେ ବିହଡ଼ନ୍ତି ରାମ ସୀତ୍ୟା ଘେନି ॥
କାହିଂ ପାଞ୍ଚଦିନ କାହିଂ ପଖେ ଥାନ୍ତି ।
ଯେସନେକ ଅରଣ୍ୟେ ଭିତରେ ବିହରନ୍ତି ॥
ଦଣ୍ଡକାରଣ୍ୟ ଚଉରାଶୀ ଯୋଜନ ।
ଋଷିର ଦୋହିତାକୁ ହରିଲା ରାଜନ ॥
କୋପେ ମହାମୁନି ପୁର ଭସ୍ମ କଲା ।
ଜଣେକର ଦୋଷେଣ ଅନେକ ଲୋକ ମଲା ॥
ସେହି ଦିନୁ ବନସ୍ତ ହୋଇଲା ତାର ସୀମା ।
ବୃକ୍ଷ ଜନଜନ୍ତୁ ରଖିଲାକ ବ୍ରହ୍ମା ॥ ୭୦
ତାହାକୁ ବୋଲି ସେ ଦଣ୍ଡକାଅରନ୍ୟ ।
ଦଣ୍ଡକା ରାଜାର ଯେ ଚଉରାଶୀ ଯୋଜନ ॥
ସେ ବନେ ସୁଖେ ବିହରନ୍ତି ସୀତ୍ୟାପତି ।
ପୁଣି ଭେଟିଲେ ସେ ସୁତୀକ୍ଷଣ ଯତି ॥
ଶ୍ରୀରାମ ଲକ୍ଷଣ ସୀତ୍ୟା ତିନିଜଣ ।
ନମସ୍କାର କଲେ ମୁନିଙ୍କ ଚରଣ ॥
ଦେଖିଣ କଲ୍ୟାଣ କଲେ ବ୍ରହ୍ମଚାରୀ ।
ସମସ୍ତ କୁଶଳ ରାମକୁ ପଚାରି ॥
ଯତିଙ୍କର ଆଗେ ରାମ କହିଲେ ବୃତ୍ତାନ୍ତ ।
ମାସେକ ତହିଂ ଯେ ରହିଲେ ସୀତ୍ୟାକାନ୍ତ ॥୮୦
ସୀତ୍ୟା ଘେନି ରାମ ବନେ ବିହଡ଼ନ୍ତି ।
ହରିଣ ମୃଗ ମାରି ଆହାର କରନ୍ତି ॥
ସୁତୀକ୍ଷଣ ଯତିଙ୍କି କହିଣ ସୀତ୍ୟାପତି ।
ସେ ଥାନ ତେଜିଣ ଗଲେ ଅରନ୍ୟେକ କତି ॥
ଅଗମ୍ୟ ବନସ୍ତରେ ବହିଯାନ୍ତି ପନ୍ଥ ।
ଦେଖିଲେ ବନଜନ୍ତୁ ଚରନ୍ତି ଯୂଥ ଯୂଥ ॥୯୦
ଚାମେରୀ ମୃଗେକ ଲାଞ୍ଜ ଗୋଟି ତୋଳି ।
ଡାଳି ତରୁ ତରୁ ଦେଖିଲେ ମଇଥିଲୀ ॥
ଶ୍ରୀରାମକୁ ବୋଇଲେ ଶୁଣ ପ୍ରାଣନାଥ ।
ଯେ ଯେ ଦିଶୁଅଛି ସୟେମର ଯୂଥ ॥
ତାହାଙ୍କର ପଛେ ଯେ ଚରଇ ମୃଗ ଗୋଟି ।
କୃଷ୍ଣ ବର୍ଣ୍ଣ ଲାଞ୍ଜ ଭୂମିରେଣ ଲୋଟି ॥

ତହିଂକି ଭୋ ନାଥ ବଳିଲା ମୋର ଆଶା ।
ଚଉଂରୀ କରିଣ ମୁଂ ଖୋସିବଇଂ ଖୋଷା ॥
ଶୁଣିଣ ଶ୍ରୀରାମ ଧନୁରେ ଗୁଣ ଦ୍ୟନ୍ତି ।
ତୀକ୍ଷ ନାରାଚ୍ଚେକ ଯୋଚିଣ ବୋଲନ୍ତି ॥
ମୃଗ ମାରିଣ ଲାଞ୍ଜ ଘେନି ଆସ ଯାଇ ।
ଟିଆରିଣ ବାଣ ବିନ୍ଧିଲେ ରଘୁସାଇଂ ॥
ସୀତ୍ୟା ବୋଲୁଛନ୍ତି ଶ୍ରୀରାମ ମୁଖ ଚାହିଂ ।
ଅକାରଣେ ଜୀବ ନମାର ଗୋସାଇଂ ॥୧୦୦
ଲାଞ୍ଜରେ ସେ କାର୍ଯ୍ୟ ମାଂସରେ କାର୍ଯ୍ୟ ନାହିଂ ।
ସୀତ୍ୟା ବୋଲ ଶୁଣି ହସିଲେ ରଘୁସାଇଂ ॥
ହୋଇ ହୋଇ ବୋଲି ବୋଇଲେ ରଘୁବଂଛି ।
କ୍ଷୁଧା ବେଳେ ମାଇଲେ ଦୋଷ ନାହିଂ କିଛି ॥
ଅକାରଣେ ଜୀବ ମାରି ନ ଯୋଗାଇ ।
ଯାହା ସେ ବୋଇଲ ସତ ଅଟଇ ବଇଦେହୀ ॥
ଆରେକ କାଣ୍ଡ ହସ୍ତେ ଧଇଲେ ରଘୁସୁତ ।
ବୋଇଲେ ମୃଗ ଲାଞ୍ଜ କାଟି ଆଣସି ତୁରିତ ॥
ଅକାରଣେ ମାଇଲେ ପାଇବାନା ଦୋଷ ।
ନାରାଚ ଚଳିଗଲା ଘେନିଣ ସନ୍ଦେଶ ॥୧୦
ପବନହୁଂ ବେଗେ ନାରାଚ ଚଳିଗଲା ।
ଯାନ୍ତେଣ ଆର ଶରକୁ ବାଟରେ ଭେଟିଲା ॥
ତୁ ହୋ ଜୀବ ବଧ ନ କର ନାରାଚ ।
ଖୋଷା ଖୋସିବେ ସୀତ୍ୟା ଚାମରେ ସିନା କାର୍ଯ୍ୟ ॥
ତୁ ଯେବେ ବାହୁଡ଼ିଣ ଯାଅ ରାମ ପାଶ ।
ଲାଞ୍ଜ କାଟି ନେବି ମୁଂ ସ୍ୱାମୀର ଆଦେଶ ॥
ଯେତେବୋଲି ନାରାଚ ମୃଗ ଲାଞ୍ଜ ଘେନି ।
ଶ୍ରୀରାମର ଛାମୁରେ ଦେଲାକ ନେଇ ପୁଣି ॥
ସୀତ୍ୟାକୁ ଚାମର ନେଇ ରଘୁନାଥ ଦେଲେ ।
ସ୍ୱର୍ଗେ ସାଧୁ ସାଧୁ ସୁରଗଣେ କଲେ ॥୨୦
ଧନ୍ୟ ଶ୍ରୀରାମ ତୁ ଅଟୁ ଧନୁର୍ଦ୍ଧର ।
ଧନୁକୀ ଚୂଡ଼ାମଣି ବାନା ଯେ ତୋହୋର ॥

ଯାହା ସେ କଲୁ ଆଜ ଦେବଙ୍କୁ ଦୁର୍ଲଭ ।
ତୋ ତହୁଂ ଆନ କେ କରିବ ରାଘେବ ॥
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ ।
ଅଗସ୍ତିଙ୍କ ଆଶ୍ରମେ ରାମ ହୋଇଲେ ପ୍ରବେଶ ॥
ନମସ୍କାର କରିଣ ବସିଲେ ରଘୁପତି ।
କୁଶଳ ବାରତା ପଚାରନ୍ତି ଯତି ॥
ଗଉରୋବ କରି ସେ ଦିନ ରୁହାଇଲେ ।
କନ୍ଦମୂଳ ଫଳ ଭୁଞ୍ଜିବାକୁ ଦେଲେ ॥୩୦
ବୋଇଲେ ପାପ କ୍ଷୟେ ହୋଇଲା ମୋହୋର ।
ତୋତେ ଦେଖିଲି ଦଶରଥ କୁମର ॥
ଅନେକ କାଳହୁଂ ତୋତେ ଅଛି ବାଟ ଚାହିଂ ।
ଯେ ବାଟେ ଅବଶ୍ୟ ଆସିବେ ରଘୁସାଇଂ ॥
ନିତି ଚିନ୍ତା କରଇ ତୋହୋର ଆଗମନ ।
ଆଜ ଦିନ ମୋର ହୋଇଲାକ ଧନ୍ୟ ॥
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣିମା ମୁନିବର ।
ମୋହୋରେ କିସ ଅଛି ମହିମା ତୋହୋର ॥
ସମୁଦ୍ର ଶୋଷିବା ମନ୍ଦର ପ୍ରସ୍ତାବ ।
ତାଡ଼େକା ପାଇଲାକ ଯେବଣ ପରାଭବ ॥୪୦
ଆତାପି ବାତାପି ଅସୁର ହତ ବେନି ।
ତହୁଂ ଦଖିଣକୁ ଅଇଲୁ ଭୋ ମୁନି ॥
ଏସନକ କଥା ମୁଂ ଯେ ଥିଲି ଭଲେ ଶୁଣି ।
ଯେବେ ପ୍ରତକ୍ଷେ ତ ଦେଖିଲୁ ମୁନିମଣି ॥
ଆଜ ଜୀବନ ମୋହୋର ଅଟଇ ସୁଫଳ ।
ଦୁତୀ ବ୍ରହ୍ମାକୁ ମୁଂ ଦେଖିଲି ବେନିଡ଼ୋଳ ॥
ଅନ୍ୟାଅନ୍ୟି ହୋଇ ପ୍ରଶଂସା କରନ୍ତି ।
ଶ୍ରୀରାମକୁ ଅଗସ୍ତି ଧନୁଶର ଦ୍ୟନ୍ତି ॥
ଭୋ ରଘୁନାଥ ଶୁଣସି ମୋହୋର ବାଣୀ ।
ପୂର୍ବେଣ ଏ ଧନୁ ବହିଲେ ଚକ୍ରପାଣି ॥୫୦
ଯେ ଧନୁ ଅସ୍ତ୍ର ଯେ ଯୁଗତେ ତୋହୋର ।

ତୁ ସେ ନାରାୟେଣ ମାନବେ ଅବତାର ॥
ଦତ୍ୟ ବଳ ତୁମ୍ଭେ ବିନାଶ ଯେହା ଘେନି ।
ଯେ ଧନୁ ଶସ୍ତ୍ର ଘେନି ଜିଣ ପୁର ତିନି ॥
ଯାହା କହିଲଇଂ ଅଟଇ ସବୁ ସତ ।
ଯେତେ ବୋଲି ଶସ୍ତ୍ର ଦେଲେ ତପୋବନ୍ତ ॥
ଶ୍ରୀରାମ ତୋଷେଣ ଘେନିଲେ ଧନୁର୍ବାଣ ।
ବରଷେକ ତହିଂ ରହିଲେ ରଘୁରାଣ ॥
ମୁନିଙ୍କି ପଚାରନ୍ତି ଦଶରଥ ବଛ ।
କେବଣ ଥାନରେ ରହିବି ଜ୍ଞାନଦଛ ॥ ୬୦
ସୁସ୍ୱାଦୁ ଜଳ ପାଇବଇଂ କାହିଂ ।
ଫଳ ମୂଳ ବୃକ୍ଷ ତହିଂ ଥିବ ରହିଂ ତହିଂ ॥
ଯେସନେକ ରମ୍ୟ ଥାନ ବିଚାରି ମୋତେ କହ ।
ତହିଂ ରହି ମୁଂ ଯେ ସୁସ୍ତ କରଇ ଦେହ ॥
ବହୁତ ଅରନ୍ୟ ମୁଂ ଅଇଲଇଂ ବୁଲି ।
ଜନେକଦୋହିତା ଯେବେ ନ ପାରଇ ଚାଲି ॥
କଷା ପିତା ଫଳ ଯେବେ ଖାଇଲୁ ବହୁତ ।
ଅଯୋଧା ସୁମରିଲେ ଲକ୍ଷଣ ଶୋକ ଚିତ୍ତ ॥
ତେଣେ ସେ ସୁଥାନ ଇଚ୍ଛା କରଇ ଋଷି ।
ପ୍ରସନ୍ନ ହୋଇଣ ମୋତେ ଠାବ କହି ଦେସି ॥୭୦
ମୁନି ବୋଇଲେ ତୁମ୍ଭେ ଶୁଣ ରଘୁନାନ ।
ପଞ୍ଚୁବଟୀ ବନ ଅଟଇ ରମ୍ୟ ସ୍ଥାନ ॥
ସେ ଭଲ ଥାନ ରାମ ବସା କର ତହିଂ ।
ସୀତ୍ୟାକୁ ଘେନି ତହିଂ ବିହର ରଘୁ ସାଇଂ ॥
ମୁନିଙ୍କର ଆଗ୍ୟାଂ ପାଇଣ ରଘୁନାନ ।
ଯିବେ ବୋଲି ସଜ ହୋଇଲେ ତିନିଜଣ ॥
ଭାର ସଜ କରିଣ ଲକ୍ଷଣ ଆଗ ହୋଇ ।
ତାହାର ପଛରେ ଜନେକ ତନଇ ॥
ଶ୍ରୀରାମ ଅଗସ୍ତିଙ୍କି ନମସ୍କାର କରି ।
ଲକ୍ଷଣ ଗତ ପନ୍ଥ ଗଲେ ଅନୁସରି ॥୮୦
ଯାନ୍ତେଣ ଦେଖିଲେ ମାରୁଚି ଦଇତ ।
ବାହୁଟିଆ ରୂପ ଧରି ଓଗାଳିଲା ପନ୍ଥ ॥
ସଙ୍ଗତେଣ ଦୁଇ ଅସୁର ଅଛି ଘେନି ।
ବାଟ ଜଗିଅଛି ବାହୁଟିଆ ତିନି ॥
ମାରୁଚି ବୋଇଲା ଶୁଣସି ରାକ୍ଷସ ।
ଯେ ମୋହର ମାତାକୁ କଲା ପ୍ରାଣ ନାଶ ॥
ଯେତେ ବୋଲି ବାଟ ଜଗିଲା ନିର୍ବନ୍ଧି ।
ଜାଣି ରଘୁନାଥ ତିନିବାଣ ସନ୍ଧି ॥
ମାରୁଚି ମନରେ କଲା ମହାଭୀତି ।
ଜାଣିଅଛି ରାମର ମହିମା ପ୍ରକୃତି ॥୯୦
ଧନୁରେ ନାରାଜ ଯୋଚନ୍ତେ ପଳାଇଲା ।
ପର୍ବତ ନଦୀ ଜଳ ଜିଣି କରିଗଲା ॥
ସମୋଦ୍ର ଭିତରେ ଲୁଚିଲାକ ଯାଇ ।
ଦାଶରଥି ବାଣକୁ ମହାଭୟେ ପାଇ ॥
ଆଉ ଦୁଇ ଅସୁରଙ୍କୁ ନ କହିଣ ଗଲା ।
ନିଜ ପ୍ରାଣ ଘେନି ବେଗେ ପଳାଇଲା ॥
ଶ୍ରୀରାମ ନାରାଜ ବିନ୍ଧିଲେକ ଟାଣି ।
ବେନି ଅସୁରଙ୍କୁ ପକାଇଲେ ହାଣି ॥
ନିଜ ତନୁ ଧରି ରାକ୍ଷସ ବେନି ମଲେ ।
ତହୁଂ ଶ୍ରୀରାମ ଯେ ପନ୍ଥ ବହିଗଲେ ॥୧୦୦
ପଞ୍ଚୁବଟୀ ବନେ ହୋଇଲେ ପ୍ରବେଶ ।
ଶ୍ରୀ ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ଦେଖ ହୋ ଲକ୍ଷଣ ବିପୁନ୍ୟ ଚଉକତି ।
ଫଳ ଭରେ ବୃକ୍ଷ ଭୂମିରେ ଲୋଟନ୍ତି ॥
ନାନା କୁସୁମେ ଦିଶଇ ଶୋଭାବନ ।
ଗୋଦାବରୀ ଜଳ ବହଇ ଘନ ଘନ ॥
ଶାଳ ବୃକ୍ଷ ଉପରେ ଅଛି ଜଟାଇଶ ।
ସମ୍ପାତିର ଭାଇ ସେ ଗରୁଡ଼ର ଶିଷ ॥
ପକ୍ଷୀ ବୋଇଲା ତୁ ଶୁଣ ରଘୁମଣି ।
ଦଶରଥ ପୁତ୍ର ତୁ ଅଛଇ ମୁହିଂ ଜାଣି ॥୧୦
ଅନେକ ଋଷିମାନେ ତୀର୍ଥ କରିଆସନ୍ତି ।
ଭଲେ ସେ ଋଷିମାନେ ଗ୍ୟାନ ବଖାଣନ୍ତି ॥
ବୋଲନ୍ତି ଶ୍ରୀରାମ ସୀତ୍ୟା ଲଇକ୍ଷଣ ।
ଅବଶ୍ୟ ଯେଥକୁ ଆସିବେ ତିନିଜଣ ॥
ମୁଇଂ ତାହା ଜାଣି ଅଛଇ ତତ୍ତ୍ୱ କରି ।
ତୁ ମୋହୋର ପୁତୁରା ଶୁଣ ହୋ ଚାପଧାରୀ ॥
ଦଶରଥ ମଇତ୍ର ମୁଂ ଅଟଇ ତୋର ତାତ ।
ଗରୁଡ଼ର ପୁତ୍ର ମୁଂ ସମ୍ପାତି ମୋର ଭ୍ରାଥ ॥
ଯେହୁ ଭଲ ସ୍ଥାନ ଯେଥେ ତୁ ରହସି ।
ତୋତେ ରଖିତ ମୁଂ ଅଟଇ ଦଣ୍ଡୁଆସି ॥୨୦
ତୁ ଯେବେ ବନକୁ ଯିବୁ ରଘୁନାଥ ।
ଯେ ତୋର ଘରଣୀକି ମୁଂ ରଖିତେ ସାମରଥ ॥
ଶୁଣିଣ ଶ୍ରୀରାମ ସାନନ୍ଦ ହୋଇଲେ ।
ପକ୍ଷୀକି ପ୍ରଶଂସି ସେ ବହୁତ ବୋଇଲେ ॥
ଭୋ ମହାତମା ତୁ ଗରୁଡ଼ର ସୁତ ।
ଆବର ବିଶେଷେ ମୋ ପିତାର ଅଟୁ ମିତ୍ର ॥
ବାପର ସମାନ୍ୟ ତୁ ହୋଇଲୁ ମୋହର ।
ସାଧୁ କଥାମାନ ଶୁଣିଲି ତୋହୋର ॥
ଅଗସ୍ତି ବୋଇଲେ ଯେ ପୁନ୍ୟ ଥାନ ଅଟଇ ।
ତେଣୁ ସେ ମୋହୋର ମନକୁ ଖଟଇ ॥୩୦
ତୁ ମୋର ଦଶରଥ ସମାନ୍ୟେ ପିଅର ।
ତୋହୋର ଆଶ୍ରେକେ ମୁଂ ରହିବି ପକ୍ଷୀବର ॥
ଯେତେବୋଲି ରାମ ଲକ୍ଷଣ ବେନି ଭାଇ ।
ହରିଡ଼ା ବୃକ୍ଷ ମୂଳେ ସୀତ୍ୟାକୁ ବସାଇ ॥
ହାଥୀ ଭଙ୍ଗା କାଠ ଘେନିଣ ଘର ତୋଳି ।
ପଳାଶ ପତ୍ରେ ଛାଇଲେ ଘରର ପୀଢ଼ା ଓଳି ॥
ଲକ୍ଷଣକୁ ଭିନେ ମଢ଼ିଆଯେ ରଞ୍ଚି ।
ଯେବଣ କାଳେ ଧାତା ଯାହା ଅଛି ସଞ୍ଚି ॥
ଘର ତୋଳି ସାରି ଲିପା ପୋଛା କଲେ ।
ଯେକା ହୋଇ ରାମ ମୃଗ ମାରି ଗଲେ ॥୪୦
ସୀତୟା ଲକ୍ଷଣ ଅଛନ୍ତି ବେନି ଜନ ।
ହରିଣୀ ଘେନି ଅଇଲେ ରଘୁକୁଳ ନାନ ॥
ଲକ୍ଷଣ ହାଥରେ ଦେଲେ ତାହା ନେଇ ।
ଫୁଟିଣ ମଢ଼ିଆରେ ବସିଲେ ରଘୁସାଇଂ ॥
ଲକ୍ଷଣ ତତକ୍ଷଣେ ମୃଗ କେଲାଇଲେ ।
ସୀତ୍ୟାର ସନ୍ନିଧ୍ୟେ ନେଇ ସକଳ ସମର୍ପିଲେ ॥
ଖଣନ୍ତି ଘେନିଣ ଖୋଲିଲେକ ଚୁଲି ।
ଲକ୍ଷଣକୁ ସୀତ୍ୟା ପାଣି ଆଣ ବୋଲି ॥

ଲାଉ ଘେନି ଲକ୍ଷଣ ପାଣି ଆଣି ଗଲେ ।
ଶୁଖିଲା କାଠ ଭାଙ୍ଗି ଶ୍ରୀରାମ ଆଣି
ଦେଲେ ॥୫୦
ଝକମକ ପଥରେ ଶିମୂଳି ତୂଳା ଦେଇ ।
କାଣ୍ଡଫାଳ ଦେଇ ଠୁକିଲେ ରଘୁସାଇଁ ॥
ତତକ୍ଷଣେ ହୁତାଶନ ହୋଇଲାକ ଜାତ ।
ତାହା ଘେନି ଚୁଲି ଜାଳିଲେ ଜନେକ
ଦୋହିତ ॥
ଲକ୍ଷଣ ପାଣି ଘେନି ମଢ଼ିଆରେ ହୋଇ ।
ଦୁଃଖ ପାଇଲୁ ବୋଲି ବୋଇଲେ
ବଇଦେହୀ ॥
ଶ୍ରୀରାମ ହସିଲେ ଚାହିଁ ସୀତା ମୁଖ ।
କିପାଇଁ ସୁନ୍ଦେରୀ ଗୋ ହୋଇଲୁ ବିମୁଖ ॥
ଅପୂର୍ବ ପଦାର୍ଥ ଖାଇଲା ଯେ ତୁଣ୍ଡ ।
ଯେବେ କନ୍ଦମୂଳେ ତୋଷିଲାଇଁ
ପିଣ୍ଡ ॥୬୦
ଘୋର ଅରଣ୍ୟେ ଘର କରି ରହିଲାଇଁ ।
ଯେଥକୁ ବିଚାର ଗୋ କରୁ କାହିଁ ପାଇଁ ॥
ଯେଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ମୃଗ ମାଂସ ରନ୍ଧନ କଲେ ମାହାସ୍ୟତୀ ॥
ଶ୍ରୀରାମ ଲକ୍ଷଣ ସ୍ନାହାନ କରିଗଲେ ।
ପୁନ୍ୟ ଜଳେ ଯାଇ ସ୍ନାହାନ ସାରିଲେ ॥
ମଢ଼ିଆରେ ଯାଇ ପ୍ରବେଶ ହୋଇଲେ ।
ଜନେକନନ୍ଦିନୀ ସ୍ନାହାନ କରିଗଲେ ॥
ସ୍ନାହାନ ସାରିଣ ଅଇଲେ ଶୁଭ୍ରକେଶୀ ।
ପାଦ ପଖାଳିଣ ଭିତରକୁ ପଶି ॥୭୦
ଶ୍ରୀରାମ ଲକ୍ଷଣ ପାଣି ଘେନି ବସି ।
ସମ୍ପୂର୍ଣ୍ଣ ସାତ ଘଡ଼ି ବେଳ ହୋଇଲାନି ଆସି ॥
ଶାଳପତ୍ର ଦନା ଲକ୍ଷଣ ସିଂଇଥିଲା ।
ଶ୍ରୀରାମ ମୋଣୋହି ଠାବରେ ନେଇ
ଦେଲା ॥
ମୃଗ ଛାଲ ମାଡ଼ି ବସିଲେ ରଘୁନାଥ ।
ପାଣି ତୋଳିଦେଲେ ସୁମଇତ୍ରାର ସୁତ ॥
କରେ ଜଳ ଘେନି ପତ୍ରେ ଜଳ ସିଞ୍ଚୁ ।
ବିଷ୍ଣୁ ବିଷ୍ଣୁ ବୋଲି ଭୂମିରେ ଆମଞ୍ଚୁ ॥
ଲକ୍ଷଣ ଥୋକାୟେ ଦୂରେ ଭୁଞ୍ଜି ବସି ।
ଜନେକର ଝିଅ ମାୟେଂସ ପରଶି ॥୮୦
ଅଭ୍ୟାଗତ ବୋଲି ଦନାଏ ପୂରାଇ ।
ଜଟାଇଶ ଅଗ୍ରତେ ଦେଲେ ତାହା ନେଇ ॥
ପୁଣି ପାଦ ପଖାଳି ଭିତରକୁ ଗଲେ ।
କନ୍ଦମୂଳ ଫଳ ଯିସ ଅବା ଥିଲେ ॥
ଶ୍ରୀରାମ ଲକ୍ଷଣକୁ ଦେଲେ ତାହା ନେଇ ।
ଦେଖି ପିତୃ ଅର୍ଚ୍ଚନା କଲେ ରଘୁସାଇଁ ॥
ଜଳ ଚଳୁ ଗ୍ରାସ କରିଣ ଭୁଞ୍ଜନ୍ତି ।
କନ୍ଦମୂଳ ଫଳେ ଆତ୍ମାକୁ ତୋଷନ୍ତି ॥
ଉଦର ତୋଷିଣ ଉଠିଲେ ବେନିଭାଇ ।
ପାଣି ତୋଳି ଦିଅଇ ଜନେକ ତନଇ ॥୯୦
ଆଚୋଂବନ ସାରି ଶ୍ରୀମୁଖ ପୋଛନ୍ତି ।
କଷାଫଳ ଖାଇ ବାହାରେ ବସନ୍ତି ॥
ଶ୍ରୀରାମଙ୍କ ପତ୍ରେ ସୀତ୍ୟା ଭୁଞ୍ଜିବସି ।
କନ୍ଦ ଫଳ ମାଂସ ଲକ୍ଷଣ ପରଶି ॥
ଓଦର ତୋଷିଣ ଉଠିଲେକ ସତୀ ।
ଉଚ୍ଛିଷ୍ଟ ପକାଇ ଆଚୋଂବନ କଲେ ଧାତି ॥
କଷାଫଳ ଖଣ୍ଡିଏ ଶ୍ରୀରାମ ଯାଚିଦେଲେ ।
ଅଯୋଧ୍ୟାର କଥା ବସିଣ ଭାଳିଲେ ॥
ଦଶ ବରଷ ହୋଇଲା ଆମ୍ଭର ଅଇଲା ।
ବାରତା ନପାଇଲୁ କେହୁ କିସ
କଲା ॥୧୦୦
ଲକ୍ଷଣ ବୋଇଲା ଦେବ ସେକଥା
ପାଶୋର ।
ବନସ୍ତେ ଥିବାର ଏକଥା ବିଚାର ॥
ଯେସନେକ ମେରୁ ଓହାଡ଼େ ଆଦିତ୍ୟ ।
ସନ୍ଧ୍ୟା ସୁମରିଲେ ଦଶରଥ ସୁତ ॥
ଯହୁଂ ସେ ପହଡ଼େକ ହୋଇଲାକ ରାତି ।
ମୃଗଛାଲେ ଶେଯ ପାତିଲେ ମହାସ୍ୟତୀ ॥
ଅମଳାଣ ବସ୍ତ୍ର ଶେଯାଇଲେ ତହିଁ ନେଇ ।
ଶେଯ୍ୟାରେ ପହୁଡ଼ିଲେ ରଘୁକୁଳ ସାଇଁ ॥
ସୀତ୍ୟା ଶ୍ରୀରାମର ଚାପଇ ଚରଣ ।
ଧନୁ ଶସ୍ତ୍ର ଘେନି ଜଗଇ ଲକ୍ଷଣ ॥୧୦
ବିବିଧ ବିନୋଦେଣ ବଂଚିଲେ ରଜନୀ ।
ପ୍ରଭାତେ ନଦୀକି ଗଲେ ଜଣ ତିନି ॥
ନିତ୍ୟକର୍ମ ସାରିଣ ବାହୁଡ଼ି ଆସନ୍ତି ।
ପଞ୍ଚବଟୀ ବନେ ସୁଖେ ବିଳସନ୍ତି ॥୨୦
ମୃଗ ମାରନ୍ତି ଆଣନ୍ତି ଫଳମୂଳ ।
ସୁଖେ ଦିନ ହରନ୍ତି ଦଶରଥ ବାଳ ॥
ଗୋଦାବରୀ କୂଳେ ସୀତ୍ୟାକୁ ରାମ ଘେନି ।
ଗ୍ରୀଷମ ଜଳକ୍ରୀଡ଼ା କରନ୍ତି ତହିଁ ବେନି ॥
ଶରଦ ରଜନୀରେ ପର୍ବତେ ଉଠନ୍ତି ।
ବନ ଘୋର କନ୍ଦର ସୁଖେ ବିଳସନ୍ତି ॥
ଯେମନ୍ତେଣ ତିନିବରଷ ତହିଁ ଗଲା ।
ସୀତୟା ଘେନି ରାମ ବହୁତ କ୍ରୀଡ଼ା କଲା ॥
ଯେମନ୍ତ ସମୟେ ତହିଁ ରାକ୍ଷସୀୟେ ଆସି ।
ସ୍ନାହାନ କଲା ସେ ଗୋଦାବରୀରେ ପଶି ॥
ମନିଷ୍ୟ ଚରଣ ସଞ୍ଚାକୁ ଦେଖିଲା ।
ଖୋଜ ଗୋଡ଼ାଇଣ ବନସ୍ତକୁ ଗଲା ॥
ଦେଖିଲାକ ରାମ ଲକ୍ଷଣ ସୀତ୍ୟା ତିନି ।
ନାହିଁ ପଟାନ୍ତର ଭୁବନ ମେଦନୀ ॥
ଅସୁରୀ ବିଚାରଇ ଅପୂର୍ବ ପଦାର୍ଥ ।
ଯେହାଙ୍କୁ ଖାଇଲେ ମୋ ଶରୀର ହେବ
ସୁସ୍ଥ ॥ ୩୦
ଯେ ଦୁଇ ପୁରୁଷଙ୍କୁ କରିବି ଆହାର ।
ଯେ କନ୍ୟାକୁ ନେଇ ଦେବଇଂ ଦଶଶିର ॥
ଯେତେ ବିଚାରିଣ ସୁନ୍ଦେରୀ ଅଇଲା ।
କି ଜାଣି ଅପୂର୍ବ ତିନିପୁର ମୋହିଲା ॥
ଶ୍ରୀରାମ ଛାମୁରେ ମିଳିଲାକ ଆସି ।
ଆଖି ଢାଳିଣ ସେ କହଇ କଥା ହସି ॥
କେବଣ ଦେଶରୁ ତୁମ୍ଭେ ଯେଥକୁ ଅଇଲ ।
ଯେ ମୋର ବିପିନେ କିମ୍ପାଇ ରହିଲ ॥
ଅସୁରଙ୍କୁ ଭୟେ ନାହିଁକି ତୁମ୍ଭର ।
ଶିରେ ଜଟା ବାନ୍ଧି ଧନୁ ଶର ଧର ॥୪୦
କେ ତୁମ୍ଭର ମାତା କେ ତୁମ୍ଭର ପିତା ।
ଯେ ଯୁବତୀ ଅଟଇ କାହାର ବନିତା ॥

ଶ୍ରୀରାମ ବୋଇଲେ ଅଯୋଧ୍ୟା ମୋର
ଦେଶ ।
ଦଶରଥ ରାଜା ଅଟଇ ସୂର୍ଯ୍ୟ ବଂଶ ॥
ତିନିରାଣୀରୁ ଯେ ଚାରିପୁତ୍ର ଜାତ ।
କଉଶୁଲା ରାଣୀ ଅଟଇ ମୋର ମାତ ॥
ମୁହିଂ ସେ ଶ୍ରୀରାମ ସୀତୟା ମୋର ନାରୀ ।
ଜନେକ ଋଷିର ଯେ ଅଟଇ କୁମାରୀ ॥
ଲକ୍ଷଣ ନାମେଣ ଯେ ମୋହର ସାନ ଭାଇ ।
ଦଶରଥ ଯୁବତୀ ସୁମିତ୍ରା ଯେହାର
ଆଇ ॥୫୦
ଶତୃଘନ ନାମେଣ ଯେହାର କନେଷ୍ଟ ।
ଭ୍ରଥ ସଙ୍ଗତେ ସେ ଅଛଇ ନଗ୍ର ରାଷ୍ଟ୍ର ॥
ଭ୍ରଥର ଜନନୀ ଅଟଇ କୟେକୟା ।
ଦାସୀର ବୋଲେ ମୋତେ ଚିନ୍ତିଲାକ
ମାୟା ॥
କପଟେ ନୃପତିକି ସତ୍ୟ କରାଇଲା ।
ପୂର୍ବର କଥା ଥିଲା ତେଣେ ହରାଇଲା ॥
ବୋଇଲା ଶ୍ରୀରାମ ବନବାସ ଯାଉ ।
ଭ୍ରଥ ନୃପତି ଯେ ଅଯୋଧ୍ୟାରେ ହୋଉ ॥
ତେବେ ସେ ମୋହୋର ରହିବ କୀରତି ।
ତୁମ୍ଭର ତହିଂ ସତ୍ୟ ରହିବ ନୃପତି ॥୬୦
ସତ୍ୟ କରାଇଣ ମାଗିଲା ଯେ ବର ।
ତେଣୁ କରି ମୁହିଂ ପଶିଲି ବନଘୋର ॥
ଯେ ବଚନ ଶୁଣି ବୋଇଲା ସୂପଲେଖି ।
ଭୋ ରାମ ଅଇଲଂଇ ତୋତେ ମୁହିଂ
ଦେଖି ॥
ଯୁବା ସୁନ୍ଦର ଯେ ପୁରୁଷ ତୁ ଅଟୁ ।
ଯେ ମୋହୋର ପଞ୍ଚୁମନକୁ ତୁ ଖଟୁ ॥
ସୀତ୍ୟା ଛାଡ଼ିଣ ତୁ ମୋତେ ଭୋଗ୍ୟ କର ।
ତୋତେ ଶରଧା ଯେ ବଳିଲା ମୋହୋର ॥
ସୀତୟାର ରୂପ ନୋହୋଇ ମୋତେ ସରି ।
ଯେ କଥା ହୃଦରେ ବିଚାର ଦୃଢ଼ କରି ॥୭୦
ମୁହିଂ ସେ ସୂପଲେଖି ସୁନ୍ଦେରୀ ଯୁବତୀ ।
ଦିବ୍ୟରୂପ ମୋର ଦେଖ ରଘୁପତି ॥

ରୂପେଣ ମଦନକୁ ପାରଇ ମୁହିଂ ଜିଣି ।
ଯେ ମୋହୋର ଗୁଣ ତୁ ଶୁଣ ରଘୁମଣି ॥
ସମ୍ପୂର୍ଣ୍ଣ ଚନ୍ଦ୍ରମା ପ୍ରାୟେ ମୋହୋର ବଦନ ।
ହେଲେ ବଶ୍ୟ କରିପାରଇ ମଦନ ॥
ଦୀର୍ଘନୟନ ମୋ ଚାହିଂବା ଛଟକ ।
ଦେଖିଲେ ମଞ୍ଚକୁ ଆସିବେ ସ୍ୱର୍ଗଲୋକ ॥
ନବ ଯଉବନ ମୋର ଅମୃତ କୁମ୍ଭ ଜାଣି ।
ମୁହିଂ ସେ ଅଟଇ ସର୍ବରୂପ ଖଣି ॥ ୮୦
ଯେ ମୋହୋର ରୂପକୁ ତୁହି ସେ ଅନରୂପ ।
ସୁନ୍ଦର ରୂପେ ଜିଣିପାରଇ କନ୍ଦର୍ପ ॥
ରତି ଶାହାସ୍ତ୍ରେ ମୁଂ ନିର୍ଜିତ ରଘୁବୀର ।
ଆସ ଆସ ଶ୍ରୀରାମ ରମଣ ମୋତେ କର ॥
ଯେସନେକ ବୋଲି ତୋଳିଲାକ କର ।
କାଖ ଆଉଂସିଣ ଦେଖାଇଲା ଉର ॥
ନାକ ଡିଆଂଇଣ ଚାହିଂଲା ବକ୍ରକରି ।
ଅଳପ ହସଇ ଅଧର କରେ ଧରି ॥
ଖୋସିଲାର ଖୋଷା ପୁଣ ପୁଣ ଫେଡ଼ି ।
ଯଉବନ ଉପରୁ ଖସାଇଲା ଶାଢ଼ୀ ॥୯୦
ମଦନ ଚେରେଷ୍ଟା ବହୁତ ଦେଖାଇଲା ।
କେବେହେଂ ଶ୍ରୀରାମର ଶରଧା ନ ବଳିଲା ॥
ଶ୍ରରାମ ଅସନମତେ ଅସୁରୀ ଚକିତ ।
ମାୟାରେ ରୋଦନ ସେ କଲାକ ବହୁତ ॥
ଥୋକାୟେକ ବେଳେ ବୋଇଲାକ ପୁଣି ।
ମୋହୋର ବୋଲ ଯେବେ କର ରଘୁମଣି ॥
ରତି ସାଂଗ୍ରାମ ତୁ ମୋହୋର ସଙ୍ଗେ କର ।
ଯେ ତୋହୋର କରେ ମୋହାର କୁଚ ଧର ॥
ଅଧରେ ଚୁମ୍ବନ ଦେସି ମୋର ଆସି ।
କୁଚ ମର୍ଦ୍ଦନ ମୋର କର ରଘୁଶିଷି ॥୧୦୦
ଦନ୍ତଛତ କର ମୋହୋର ଗଣ୍ଡସ୍ଥଳ ।
ଭୁଜେ ଭୁଜ ଭିଡ଼ି କର ମୋତେ କୋଳ ॥
ଯହୁଂ ସୂପଲେଖି କହିଲା ଯେମାନ ।
କେବେହେଂ ନ ବଳଇ ଶ୍ରୀରାମର ମନ ॥
ବୋଲନ୍ତି ଶ୍ରୀରାମ ଶୁଣରେ ଯୁବତୀ ।
ସୀତ୍ୟାହୁଂ ଆନେ ମୋର ନ ବଳଇ ମତି ॥

ବିଭାର କାଳେ ମୋତେ ନିଅମ କରାଇଛି ।
ତେଣୁ କରି ମୁହିଂ ପର ରମଣୀଯେ ଲେଛି ॥
ଯେକ ପତ୍ନୀବତୀ ଅଛଇ ମୋହୋର ।
ପାରୁ ଯେବେ ଯାଇ ଲକ୍ଷଣକୁ ବର ॥୧୦
ଯୁବତୀ ନାହିଂ ବେଗେ ତୁ ତହିଂକି ଯା ଯା ।
ସେ ଅବା ତୋତେ ଗୋ କରିବ ଭାରିଯା ॥
ଶୁଣିଣ ଅସୁରୀ ଗଲା ତହୁଂ ଚଳି ।
ପର୍ବତୁଂ ଓହ୍ଲାଇଲା ବିଶର୍ବା ଦୁଲାଳୀ ॥
ଲକ୍ଷଣ ମଢ଼ିଆରେ ଅଛଇ ଯେ ବସି ।
ସୂପଲେଖି ଯାଇ କହିଲାକ ହସି ॥
ଧନ୍ୟ ରୂପବନ୍ତ ଧନ୍ୟ ତୋର ଗୁଣ ।
ଜାଣି ପଟାନ୍ତର ମଦନ ପଞ୍ଚୁବାଣ ॥
ଯୁବା ବୟେସ ତୁ ଅଟୁ ଧନୁର୍ଧର ।
ଚାଟୁ କହି ଚିତ୍ତ ହରିବି ତୋହର ॥୨୦
ତୁ ମୋତେ ରମଣୀ କର ସ୍ୱାମୀ ଆସ ।
ଦାସୀ ପଣେ ତୋତେ ଖଟିଥିବି ପାଶ ॥
ମୋହର ରୂପକୁ ତୁ ଅନରୂପେ ପତି ।
ତୋହ ବିନୁ ଆନେ ନ ବଳଇ ମତି ॥
ଲକ୍ଷଣ ବୋଇଲେ ମୁଂ ଶ୍ରୀରାମର ଦାସ ।
ଦାସର ଭାରିଯା ହୋଇଲେ କିସ ପଉରୋଷ ॥
ତୋହୋର ପରା ଲୋକ ହୋଇବୁ କିମ୍ପା
ଦାସୀ ।
ଆପଣେ ଆପଣେ ତୁ ବିଚାର କରସି ॥
ଏ ତୋହର ରୂପକୁ ମୁଇଂ ନୋହଇ ସରି ।
ଶ୍ରୀରାମଚନ୍ଦ୍ର ସ୍ୱାମୀ ଅଟନ୍ତି ମୋହରି ॥୩୦
ତାହାଙ୍କର ତହିଂକି ତୁ ଲେଉଟିଣ ଯାସି ।
ତୋତେ ରମଣୀ ସେ କରିବେ ଶୁଭ୍ରକେଶୀ ॥
ଶୁଣି ସୂପଲେଖି ଲେଉଟାଣି ଗଲା ।
ଶ୍ରୀରାମ ସନ୍ନିଧେ ଯାଇ ପ୍ରବେଶ ହୋଇଲା ॥
ବୋଇଲା ଲକ୍ଷଣ ନ ବରିଲେ ମୋତେ ।
ବାହୁଡ଼ି ଆସିଣ ମୁଂ କହିଲଇ ତୋତେ ॥
ଯେ ମୋହର ବୟେସ ଷୋହଳ ସମ୍ପୂର୍ଣ୍ଣ ।
ସୁରତି ରସ ଦେଇ ତୋଷ କର ମନ ॥
ଏ ନବ ଯଉବନ ଧରଣ ନ ଯାଇ ।

ବିରହ ଜ୍ୱରେଣ ମୁଁ ହୋଇଲଇଁ ବାଇ ॥୪୦
ତୁ ହୋ ଶ୍ରୀରାମ ମୋତେ ସାମାନ୍ୟ ପ୍ରାୟେ ମଣୁ ।
ମୁହିଁ ଯେହୁ ଅଟଇ ତାହା ତୁ ନ ଜାଣୁ ॥
ଲଙ୍କାର ରାଜା ଯେ ଅଟଇ ରାବଣ ।
ତାହାର କନେଷ୍ଠ କୁମ୍ଭକର୍ଣ୍ଣ ବିଭୀଷେଣ ॥
ମୋହର ଦେଖନ୍ତେ ସେ ହୋଇବେ ତୋର ବନ୍ଧୁ ।
କେବଣ କାରଣେ ତୁ ଯେଡ଼େ ଯଶ ନିନ୍ଦୁ ॥
ଅଥବା ରାମ ତୋତେ ନୋହଇ ଏ ଗୁଣ ।
ରାବଣ ଭୟେଣୀ ମୁଁ ସାବଧାନେ ଶୁଣ ॥
ସେ ମୋହର ଭାଇ ଅଟଇ ମହାବୀର ।
ନିଜ ଭୁଜ ବଳେ ସାଧିଲା ତିନିପୁର ॥୫୦
ତାହାର ସିଂହଦ୍ୱାର ରକ୍ଷପାଳ କତି ।
ଚାଟୁ ବଚନ କହଇ ବସିଣ ସୁରପତି ॥
ଦେବଗଣେ ଯାହାକୁ ଅଛନ୍ତି ସେବାକରି ।
ସ୍ୱର୍ଗକୁ ସମାନ୍ୟ ଯେ ଅଟଇ ଲଙ୍କପୁରୀ ॥
ମୃତ୍ୟୁପୁରେ ତୋତେ କରାଇବି ରାଜା ।
ସକଳ ନୃପତି ତୋତେ କରିବେ ପାଦ ପୂଜା ॥
ଯେଡ଼େ ବିଭୂତି ଗୋଟି କରିବୁ ବଇଭୋଗ ।
ଯେତେ ସୁଖକୁ ବିହି ଦେଉଅଛି ଯୋଗ ॥
ଅନେକ ଗଉରବ ପାଇବୁ ରଘୁସାଇଁ ।
ଖର ଧୂଷଣ ବୋଲି ଅଛନ୍ତି ବେନି ଭାଇ ॥୬୦
ସଇନ ସହିତେ ବନସ୍ତେ ଅଛନ୍ତି ।
କଥା ଶୁଣିଣ ତୋତେ ହୋଇବାକ ପ୍ରୀତି ॥
ଯେ ମୋହୋର କୁଳେ ତୁ ପଶିବୁ ରଘୁନାଥ ।
ମୋହର ସ୍ୱାମୀ ହୋଇଲେ ଅନେକ ପୃଷାର୍ଥ ॥
ଉଠ କୋଳ କର କଟିକି ମୋର ଆସ ।
ତୋତେ ଦେଖି ମୋର ବଳିଲା ମୁଁହାସ ॥
ଶ୍ରୀରାମ ବୋଇଲେ ଗୋ କନ୍ୟା ବେଗେ ଶୁଣ ।
ଯେ ସୀତ୍ୟାର ତହିଁ ଯେ ଅଛି ଯେତେ ଗୁଣ ॥

ମୋହୋନି ମନ୍ତ୍ରେ ଯେ ମୋତେ ଅଛି ମୋହି ।
ଯେହା ମୁଁ କେବେହେଁ ଛାଡ଼ି ନ ପାରଇ ॥୭୦
ଯେ ମୋହୋର ପ୍ରାଣ ଯେହାକୁ ମୋର ବଶ୍ୟ ।
ଯେତେ ବୋଲି ରାମ ହୁଅନ୍ତି ହସ ହସ ॥
ରାଜାର ଝିଅ ଯେ ହୋଇଲା ଯେଡ଼େ ଦୁଃଖୀ ।
ବନସ୍ତକୁ ଗୋଡ଼ାଇ ଅଇଲା ଚନ୍ଦ୍ରମୁଖୀ ॥
ଦିନ ହରଇ ଦୁଃଖେ ମୋହୋର ସଙ୍ଗେ ଥାଇ ।
ଯେହାକୁ ମୁଁ ଦଣ୍ଡେ ମୁରୁଛି ନ ପାରଇ ॥
ପ୍ରାଣ ପରିତ ହୋଇ ଅଛଇ ମୋର ସଖୀ ।
କଦାଣ୍ଡିତେ ଯେହାକୁ ମୁଁ ନ ପାରଇ ମୃଛି ॥
ତୁ ମୋତେ ସୂପଲେଖି ଗୋ ନ ବୋଲନି ଆଉ ।
ହସ୍ତ ଧରି ପ୍ରବୋଧନା କରନ୍ତି ରାମରାହୁ ॥୮୦
ରାମ ଅସନମତ ରାକ୍ଷସୀ ଜାଣିଲା ।
କାର୍ଯ୍ୟ ନ ପାଇ ତୁଛା ଯେ ଗଞ୍ଜି ହୋଇ ମଲା ॥
ମନେ ବିଚାରିଲା ନୋହିଲା କିଛି କାର୍ଯ୍ୟ ।
ଯେ ସୀତ୍ୟା ଛଡ଼ାଇଲା ମୋହର ସର୍ବ ଲାଜ ॥
ଯେତେ ବୋଲି ନିଜ ରୂପ ଧଇଲା ରାକ୍ଷସଣୀ ।
ପ୍ରତଗ୍ୟାଂ କରିଣ ବୋଇଲା ଶିର ଝୁଣି ॥
ଯେହାକୁ ଖାଇଲେ ତୋହର ଗର୍ବ ସରଇ ।
ଯେତେ ବୋଲି ସୀତୟା ଉପରକୁ ପଡ଼ଇ ॥
ଦେଖିଣ ଶ୍ରୀରାମ ହୋଇଲେ ଆଶ୍ଚିଯ ମତି ।
ଲକ୍ଷଣକୁ ରାମ ରାଇଲେ ତଡ଼ତି ॥୯୦
ସୁମୈତ୍ରାନନ୍ଦନ ମିଳିଲାକ ଆସି ।
ଶ୍ରୀରାମ ବୋଇଲେ ହୋ ଯେ ଦୁଷ୍ଟ ରାକ୍ଷସୀ ॥
ସୀତୟାକୁ ଡରାଉଣ ଅଛି ବାବୁ ଚାହାଂ ।

କୁରାଳ ଚକ୍ର ପ୍ରାୟେ ବୁଲାଇ ବେନି ବାହା ॥
ନାସିକା ଶ୍ରବଣ ଛେଦସି ଯେହାର ।
ଶୁଣିଣ ଲକ୍ଷଣ ଯେ ଧଇଲା ଧନୁଶର ॥
ବାଳ ଧରିଣ ଯେ ଅସୁରୀକି ପାଡ଼ି ।
ଭୟେ ଅସୁରୀ ଯେ ଦିଅଇ ସିଂହରଡ଼ି ॥
ନାସା ଶ୍ରବଣ ଯେ ଛେଦିଲେ ଲକ୍ଷଣ ।
ଦିଶିଲା ରାକ୍ଷସିଣୀ ଅତି ଅପଛନ ॥୧୦୦
ରୁଧିର ଝର ଝର ଶରୀର ସହିତେ ।
ବିରୂପ ଦେଖିଣ ଯେ ହସନ୍ତି ରଘୁନାଥେ ॥
ଲକ୍ଷଣକୁ ବୋଇଲେ ଛାଡ଼ ଏହୁ ଯାଉ ।
ଦୋଷକୁ ପ୍ରଭାବ ପାଇଲାନି ଯେହୁ ॥
ପ୍ରାଣେ ମାରନ୍ତୁ ଆଜ ଯୁବତୀ ନୋହିଲେ ।
ଧର୍ମ ହାନି ହୋଇବ ନା ସ୍ତିରୀ ବଧ କଲେ ॥
ଶ୍ରୀରାମ ବଚନେ ଲକ୍ଷଣ ଅସୁରୀକି ଛାଡ଼ଇ ।
ପଳାନ୍ତେ ସୂପଲେଖି ବାଟେ ରୁଧିର ପଡ଼ଇ ॥
ଉଚ୍ଚ ସ୍ୱରେ ରୋଦନ କରି ତହୁଁ ଚଳିଗଲା ।
ଖର ଧୂଷଣ ଆଗେ ଯାଇଣ କହିଲା ॥୧୦
ଦେଖିଣ ଚକିତ ହୋଇଲେ ବେନି ଭାଇ ।
ପୁଛନ୍ତି ସୂପଲେଖି ଯେମନ୍ତ କାହିଁପାଇଁ ॥
ଅକାଳ ମୃତ୍ୟୁ ଗୋ ହୋଇଲା କାହାର ।
ନିକଟେ କେଉଂ ପ୍ରାଣୀ ଯିବ ଯମପୁର ॥
କାହାର ରୋଧିରକୁ ମେଦନୀ କଲା ଆଶ ।
କେହୁ କଲା ତାର ଯେଡ଼େକ ସାହାସ ॥
ସୂପଲେଖି କାନ୍ଦଇ ଭୂମିରେଣ ପଡ଼ି ।
ଭୂମିରେ ପଡ଼ିଣ ଶିରେ କର ତାଡ଼ି ॥
ବୋଲଇ ଅଯୋଧ୍ୟାରେ ଦଶରଥ ରାୟେ ।
ରାମ ଲକ୍ଷଣ ବୋଲି ତାହାର ତନୟେ ॥୨୦
ତାହାଙ୍କର ଭାରିଯା ସୀତ୍ୟା ନାମେ ବାଳୀ ।
ରୂପେ ପଟାନ୍ତର ନାହିଁ ମହୀଆଳି ॥
ପଞ୍ଚୁବଟୀ ବନେ ତାହାକୁ ଦେଖିଲି ।
ମାୟେଂସ ଖାଇବି ବୋଲି ଶରଧାୟେ କଲି ॥
ମାୟା କଲି ମୁହିଁ ତାହାଙ୍କର ପାଶ ।
ମୋହୋର ନାସା ଶ୍ରବଣ କଲେ ସେହୁ ନାଶ ॥

ତୁମ୍ଭେ ଯେବେ ମାନ ଉଧରିବ ଆଜ ।
ତେବେ ସେ ରହିବ ଅସୁର କୁଳ ଲାଜ ॥
ଯତି ଦୁଇଜଣ ଅଟନ୍ତି ଜଟାଧାରୀ ।
ସ୍ତିରୀ ବୋଲି ମୋତେ ପ୍ରାଣରେ
ନମାରି ॥୩୦
ତୁମ୍ଭ କୁଳେ ଜନ୍ମି ମୁଁ ହୋଇଲି ମାନହୀନ ।
ବେଗେ ଆସ ଭାଇ ଉଧର ମୋର ମାନ ॥
ଶୁଣି ବଳ ଘେନି ଖର ଆଗ ହୋଇ ।
ଢୋଲ ଦମା ଟମକ ନିଶାଣ ବଜାଇ ॥
ଧୂଷଣ ତିଶିରା ଯେ ସହିତେଣ ବୀର ।
ଏକକୁ ଏକ ପ୍ରତଗ୍ୟା କରନ୍ତି ଅପାର ॥
ଯେ ଯାହା ଶସ୍ତ୍ରମାନ ଧରିଣ ଆସନ୍ତି ।
ଚଉଦ ସେନାପତି ଆଗ ହୋଇଯାନ୍ତି ॥
ପ୍ରତଗ୍ୟା କରିଣ ଆସନ୍ତି ଆଗ ବଢ଼ି ।
ମାର ମାର ଶବଦ ଦିଅନ୍ତି ଉଚ୍ଚ କରି ॥୪୦
କେ ବୋଲଇ ତାର ପୂରିଲାକ କାଳ ।
କେବଣ ପ୍ରାଣୀ ଆଜ ଯିବ ଯମଆଳ ॥
କାହାର ରୋଧିର ପିଇବ ମେଦନୀ ।
କାହାକୁ ଯମଦୂତେ ଯିବେ ବାନ୍ଧିଘେନି ॥
କେବଣ ବାପୁଡ଼ା ଯେଢ଼େକ ଅଗିଆନ ।
ଦେଖୁ ଦେଖୁ ପଶିଲା ଜଳନ୍ତା ହୁତାଶନ ॥
ମଉଗଜ ଛାମୁରେ ପାଡ଼ିଲାକ ହିଆ ।
କାଳ ସର୍ପ ମୁଖରେ ହଳାଇଲା ବାହା ॥
ସୋମୁଦ୍ର ତରିବାକୁ ଭରସା କାହାର ।
ସଂହାଥେ ଗରଳ କଲାକ ଆହାର ॥୫୦
ସୂପଲେଖି ନାସା ଶ୍ରବଣ ଛେଦିଲା ।
ଶ୍ରୀକାଳ ହୋଇ କେହ୍ନେ ସିଂଘକୁ ଖେପିଲା ॥
ଆଜ ସେ ମହିମା ଦେଖିବା ତାହାର ।
ଯେତେ ବୋଲି ଅସୁରେ ହୋଇଲେ
ବାହାର ॥
ଧାପ ଧଉଡ଼ି ଯେ ଚିରାମାନ ମାରି ।
ଯେକୁ ଆରେକ ଯେ ଯାଆନ୍ତି ଆଗସରି ॥
ବନପର୍ବତ ଯେ କମ୍ପିଲା ପାଦଭରେ ।
ବାସୁକୀ ଦେବତା ଶିର ନଟେକଇ ଡରେ ॥

ବନ ଜୀବମାନେ ପଳାନ୍ତି ଭୟେ କରି ।
ପାଦ ଲାଗି ପାଷାଣ ହୋଉଅଛି ଚୂରି ॥୬୦
ସୂପଲେଖି କଢ଼ାଇ ନେଉଅଛି ବାଟ ।
ପଛେ ଚଳିଯାନ୍ତି ଅସୁର ବଳ ଥାଠ ॥
ଶ୍ରୀରାମକୁ ଲକ୍ଷଣ କହିଲାକ ଯାଇ ।
ତୂଣ୍ଡ ରାବ ଶବଦ ଶୁଭୁଛି ଗୋସାଇଂ ॥
ପାଦଭରେ କମ୍ପମାନ ହେଉଛି ବସୁମତୀ ।
କେବଣ କାରଣଯେ ବୁଝ ରଘୁପତି ॥
ଶୁଣିଣ ଶ୍ରୀରାମ ଧଇଲେ ଧନୁଶର ।
ମଢ଼ିଆରୁ ବାହାର ହୋଇଲେ ରଘୁବୀର ॥
ଦେଖିଲେ ବନ ପୂରି ଆସଇ ସଇନି ।
କି ଜାଣି ସାହେର ଯେ ଘୋଟିଲେ
ମେଦନୀ ॥୭୦
ଦେଖିଣ ଦାଶରଥି ହୋଇଲେ ଆଶ୍ରିଯ ।
ଦୁଇ ତ୍ରୋଣକୁ ଭିଡ଼ିଲେ ରଘୁରାଜ ॥
ବୈଷ୍ଣବୀ ଧନୁରେ ଚଢ଼ାଇଲେ ଗୁଣ ।
ଲକ୍ଷଣକୁ ଚାହିଂ ବୋଇଲେ ବାବୁ ଶୁଣ ॥
ସୀତ୍ୟାକୁ ରଖିଥାଅ ଅତି ଯତ୍ନ କରି ।
ଯେହି ପର୍ବତର କନ୍ଦରେଣ ଭରି ॥
ଶୁଣିଣ ଲକ୍ଷଣ ଧନୁରେ ଦେଲେ ଗୁଣ ।
କନ୍ଧରେ ଭିଡ଼ିଲେ ଅଛୟେ ବେନି ତ୍ରୋଣ ॥
ସନ୍ୟ ପ୍ରବଳ ଯେ ଦେଖିଣ ଜାନେକୀ ।
ପଞ୍ଚଭୂତ ଆତ୍ମାରେ ଭୟେ କଲା ଦେଖି ॥
ଶ୍ରୀରାମକୁ ବୋଇଲେ ଶୁଣ ହେ ପ୍ରାଣନାଥ ।
ଧନୁ ଶସ୍ତ୍ର ସ୍ୱାମୀ ନଧର ତୋର ହାଥ ॥
ମୋହୋର ଶପଥ ତୁ ନ କରସି ଯୁଧ ।
ତୋହୋର ନାରାଚେ କି ଅସୁର ହୋୟେ
ବଧ ॥
ତୁମ୍ଭେ କେହ୍ନେ ଜାଣିମ ଯୁଝିବାର ଗତି ।
ଯେ ସେ ଦାନେବ ଦେବଙ୍କୁ ନ ଡରନ୍ତି ॥
ଆସ ଆସ ସ୍ୱାମୀ ବିପୁନ୍ୟେ ଲୁଚିବା ।
ଯେ ବିପୁନ୍ୟ ଛାଡ଼ି ପଛେ ଆନ ବନ ଯିବା ॥
ଅକାରଣେ ସ୍ୱାମୀ ନକର ଦେହ ନାଶ ।
ଅସକ୍ଷ କଥାକୁ ନକର ସାହାସ ॥୯୦

ବିଷମ ଗୋଳକୁ ନୋହ ଯେ ଭାର୍ଜନ ।
ପ୍ରାଣ ଥିଲେ ଅଯୋଧ୍ୟାରେ ହୋଇବ
ରାଜନ ॥
ମୂଢ଼ ଆଶକୁ ତୁ ସଂପ୍ରତେ ନକର ।
ଅନମିତ କଥାକୁ ତୁ ଭରସା ନକର ॥
ତୋତେ ମାରି ଅସୁରେ ମାରିବେ ଲକ୍ଷଣ ।
ମୋହୋର ନାସା ଶ୍ରବଣ କରିବେ ଛେଦନ ॥
ହୋଇବି ନିରିମାଖି ଯିବି ଆର କାହିଂ ।
ମୋହୋର ବୋଲକର ବାହୁଡ଼ ଗୋସାଇଂ ॥
ଶ୍ରୀରାମ ବୋଇଲେ ନଭାଳ ଗୋ ସୀତ୍ୟା ।
ମୋହର ବୀରଧୁ ଯେ ଅଟଇ
ଜଗଜିତା ॥୧୦୦
ଯେତେ ଅସୁର ଯେ ବାହିଣ ଆସିଛନ୍ତି ।
ମୋର ସମର କରନ୍ତେ ଗୋଟିୟେ ନ
ବର୍ତ୍ତନ୍ତି ॥
ବୈଷ୍ଣବୀ ଧନୁ ଯେ ବିଷ୍ଣୁର ଆୟୁଧ ।
ଯେହିକ୍ଷଣି ଅସୁରେ ହୋଇବେ ପ୍ରାଣେ ବଧ ॥
ଯେଥକୁ ବିଚାର ଗୋ ନକର ପ୍ରାଣସହି ।
ଯେ ପର୍ବତ କନ୍ଦରେ ତୁ ଦଣ୍ଡେ ଆସି ରହି ॥
ତହୁଂ ଲକ୍ଷଣ ସୀତାକୁ ଘେନିଗଲେ ।
ଗିରି କନ୍ଦର ଭିତରେ ଲୁଚ୍ଚଦେଲେ ॥
ଆପଣେ ଲକ୍ଷଣ ଧନୁ କରେ ଧରି ।
ମଢ଼ିଆ ଦୁଆରେ ରହିଲେ ସୀତାକୁ
ଆବୋରି ॥୧୦
ଆପଣେ ଶ୍ରୀରାମ ବୃକ୍ଷରେ ଉଠିଲେ ।
ଅସୁର ବଳ ଦେଖିଣ ବୁଡ଼ା ଦେଲେ ॥
ଦାନବ ବଳ ଆସି ହୋଇଲେ ପ୍ରବେଶ ।
ଶବର କଳଇ ଯେହ୍ନେ ମୃଗର ଆଦୃଶ ॥
କାଣ୍ଡ କୋଦଣ୍ଡ ଧରିଣ ରାମ କରେ ।
ହସି ଆଗୁସାର ହୋଇଲେ ସମରେ ॥
ତ୍ରିପୁର ସନ୍ୟେ ଯେହ୍ନେ ସଦାଶିବ ପଶଇ ।
ତେସନ ଆକୃତି ରାମ ଅସୁରଙ୍କୁ ଦିଶଇ ॥
ଚଉଦ ସେନାପତି ଆଗ ହୋଇଥିଲେ ।
ଧନୁରେ ଯୋଚି ବୀରେ ନାରାଜ
ପେଷିଲେ ॥୨୦

ଶ୍ରୀରାମ ଶରୀରେ ଶସ୍ତ୍ର ପଡ଼ିଲାକ ଯାଇ ।
ତହିଁ ରାଘେବର ଶୋଚନା କିଛି ନାହିଁ ॥
ସେ ବାଣ ସହି ରାମ ଚଉଦ ବାଣ ମାରି ।
ଗୁଣେ ନାରାଜ ବିନ୍ଧିଲେ ରୋଷ କରି ॥
ଅସୁରଙ୍କ ଶରୀରେ ବସିଲା ଯାଇ କାଣ୍ଡ ।
ଚଉଦ ବୀରେ ହୋଇଲେ ଅଠାଇଶ ଖଣ୍ଡ ॥
ପ୍ରାଣ ଛାଡ଼ିଣ ଲୋଟନ୍ତି ଧରଣୀ ।
ଦେଖି ପଳାଇଲେ ରାକ୍ଷସ ରାକ୍ଷସିଣୀ ॥
ଖରର ଅଗ୍ରତେ କହିଲେ ଚାର ଯାଇ ।
ଚଉଦ ବୀରେ ତୋର ପଡ଼ିଲେ
ଗୋସାଇଁ ॥ ୩୦
ଯେକା ବାଣକେ ଯତି ଚଉଦ ଜଣ ମାରି ।
ସେନାପତିମାନଙ୍କୁ ପକାଇଲା ସଂଘାରି ॥
ଶୁଣିଣ ଖର ବୀର ହୋଇଲା ଚକିତ ।
ମନୁଷ୍ୟ ହୋଇ କାହିଁ ମାଇଲା ଦଇତ ॥
ଯେ କଥା ଅଗୋଚର ଶୁଣିଲାତ ନାହିଁ ।
ଯେତେ ବୋଲି ବେଗେ ଅଇଲାକ ଧାଇଁ ॥
ସଙ୍ଗତେ ତାହାର ଯେ ଚଉଦ ସସ୍ର ବଳ ।
ସ୍ୱର୍ଗେ ଥାଇଣ ଦେଖନ୍ତି ଦିଗପାଳ ॥
ଯାନ୍ତେଣ ଅରଷ୍ଟି ଦେଖିଲା ଅପାର ।
କୋପଭରେ ଦଇତ ନ ଜାଣେ ତମଭର ॥
ଶ୍ରୀରାମ ଲକ୍ଷଣକୁ ସମାଦୁଣ ଥିଲେ ।
ସନ୍ୟ ଘେନି ଆସି ଦଇତ ମିଳିଲେ ॥
କାଳ ପର୍ବତ ପ୍ରାୟେ ଦିଶନ୍ତି ମେଘ ମୂର୍ତ୍ତି ।
ଅନ୍ତରୀକ୍ଷେ ଥାଇ ଦେବତାୟେ ଦେଖନ୍ତି ॥
ଧାଇଁଣ ଅସୁରେ ବେଢ଼ିଲେ ରଘୁନାଥ ।
କଳାମେଘେ ଯେହ୍ନେ ଦିଶଇ ଆଦିତ୍ୟ ॥
ଶ୍ରୀରାମକୁ ଚାହିଁ ବିଚ୍ଚରଇ ଖର ।
ନିଶ୍ଚୟେ ମରଣ ହୋଇଲା ଯେହାର ॥
ସନ୍ୟକୁ ବୋଇଲାରେ ମୋର ବୋଲ କର ।
ଶ୍ରୀରାମକୁ ମାରରେ ଯେ ଯାହାର ଶର ॥
ଖର ବଚନେ ଅସୁରେ ରୋଷ ଭରି ।
ଗଦା ମୁଦ୍ଗର ଶକତି ନେଇ ମାରି ॥
କେହୁ ଗଦା ଘେନିଣ ପିଟିଲାକ ନେଇ ।
କେହୁ ନେଇ ଶକତି ମାଇଲା ନିଠାଇ ॥
କେହୁ ଭାଲ କେହୁ ପେଷୁଛନ୍ତି କୋନ୍ତ ।
ଶ୍ରାବଣର ଧାରାପ୍ରାୟେ ପଡ଼ଇ ନାରାଜନ୍ତ ॥
ଦେଖି ଦାଶରଥି ବାବଲ ଶର ପେଷି ।
ସକଳ ଅସୁରଙ୍କର ଶସ୍ତ୍ରମାନ ନାଶି ॥
ପୁଣି ତୀକ୍ଷ ଶର ପେଷିଲେ ଦାଶରଥି ।
ଦେଖିଣ ଦତ୍ୟଗଣେ ପଳାଇଲେ ଭୀତି ॥
ଦୂଷଣ ବୋଇଲା ସନ୍ୟଙ୍କୁ ଅନାଇ ।
ପଳାଇ ଯାଇ ତୁମ୍ଭେ ପଶିବରେ କାହିଁ ॥
ସାଂଗ୍ରାମ ଛାଡ଼ିରେ ପଳାଅ ନିସତେ ।
ଶାସ୍ତ୍ର ଶୁଣିଲା ନାହିଁ ମୂର୍ଖରେ ସମସ୍ତେ ॥
ଆୟେ କାୟେ ଦେଲେ ଯାହା ସେ ନପାଇ ।
ଏ ରଣଭୂମିରେ ପଡ଼ିଲେ ସ୍ୱର୍ଗ ଯାଇ ॥
ଏଥକୁ କିମ୍ପାଇଂ ନିସତେ ଅପସର ।
ଶୁଣିଣ ଧାଇଂଲେ ସକଳ ଅସୁର ॥
ପବନର ଘାତେ ଯେହ୍ନେ ବୃକ୍ଷେ
ଲୋଉଟନ୍ତି ।
ଶ୍ରୀରାମ ନାରାଜେ ଅସୁରେ ତେସନ
ହୋଅନ୍ତି ॥
ଦଇତ ଯୁଧ୍ୟେ ଯେହ୍ନେ ଇନ୍ଦ୍ର ପଶିଥାଇ ।
ସେହିମତି ଶ୍ରୀରାମ ଯୁଧ୍ୟରେ ଝାସଇ ॥
ଦେଖିଣ ଧାଇଂଲା ଦୂଷଣ ଦଇତ ।
ମାର ମାର ଶବଦ ଶୁଭଇ ବହୁତ ॥୪୦
ଶ୍ରୀରାମ ଛାମୁରେ ଯାଇ ହୋଇଲେକ
ଭେଟ ।
ଅଇରାବତ ଯେହ୍ନେ ମେରୁର ନିକଟ ॥
ଧନୁରେ ପୂରୋଇ ଯେ ବିନ୍ଧିଲାକ ବାଣ ।
ପ୍ରତିତୁଲ କରି ଛେଦିଲେ ରଘୁରାଣ ॥
ତୀଛ ଶର ଘେନି କାଟିଲେ ଅଶ୍ୱ ଚାରି ।
ଆବର ବାଣ ମାରି ସାରଥି ସଂହାରି ॥
ବିରଥୀ ହୋଇଣ ଦୂଷଣ ପରିଘ ଘେନି
ଧାଇଂ ।
ଧୂରୁହୁଂ ଦେଖିଲେ ତାହା ରଘୁକୁଳ ସାଇଂ ॥
ନାରାଜ ଘେନି ତାର ଛେଦିଲେ ବେନି
ବାହା ।
ପ୍ରାଣ ଛାଡ଼ି ଭୂମିରେ ପଡ଼ିଲା ଦତ୍ୟ
ନାହା ॥୫୦
ପୁଣ ଶ୍ରୀରାମ ଯେ ତିନି ବାଣ ମାରି ।
ଚଉଦ ସସ୍ରବଳ ହେଲେଣ ସଂହାରି ॥
ତାହା ଦେଖି ତିଶିରା ଧାଇଂଲା କୋପ କରି ।
ଖରକୁ ରାଇଣ ବୋଲଇ ଚିଆରି ॥
ଶାଳ ବୃକ୍ଷ ଘେନି ଆପଣେ ଯୁଝିଲା ।
ମାୟା ରଣ ତାର ଶ୍ରୀରାମ ଜାଣିଲା ॥
ସେ କଥାକୁ ଭୟେ ନ କଲେ ଦାଶରଥି ।
ତକ୍ଷଣେ ଅସୁରକୁ ଛେଦିଲେ ସୀତାପତି ॥
ବାବଲ ଘେନିଣ କାଟିଲେ ତାର ଶିର ।
ପ୍ରାଣ ଛାଡ଼ି ଭୂମିରେ ପଡ଼ିଲା ଦତ୍ୟବୀର ॥୬୦
କି ଜାଣି ଭୂମିରେ ଶୋଇଣ ନିଦ୍ରା ଗଲା ।
ତାହା ଦେଖି ଖର ବେଗେଣ ଯୁଝିଲା ॥
ସିଂଘ ଗଜ ପ୍ରାୟେ ଦିଶନ୍ତି ବେନି ବୀର ।
ଅସଂଖ୍ୟ ଅଗୋଚର କରନ୍ତି ସମର ॥
ଅସୁର ଶର ଘାତେ ଲୁଚିଲା ଗଗନ ।
ଘୋର ସାଂଗ୍ରାମେ ଯେ କରନ୍ତି ବେନି ଜନ ॥
ବାଣ ବିନ୍ଧନ୍ତେଣ ଅଦୃଶ ରାମ ହସ୍ତ ।
ଧନୁ ମାତ୍ର ଦିଶଇ ବିଜୁଳି ସଂଜାତ ॥
ଅସୁର ସଇନି ଯେତେକ ତହିଂ ଥିଲେ ।
ହେଲେ ରାଘେବ ତା ପ୍ରାଣେହେଂ
ମାଇଲେ ॥୭୦
ଖର ଦଇତର ଅଶ୍ୱ ଯେ ସାରଥି ।
ଯେକା ବାଣକେ ତା ଛେଦିଲେ ଦାଶରଥି ॥
ବିରଥୀ ହୋଇଣ ଗଦା ଘେନି ଧାଇଂ ।
ତୀକ୍ଷ ଶରେ ତାହା ଶ୍ରୀରାମ ଛେଦଇ ॥
ହତ ଆଉଧ ଯେ ହୋଇଲାକ ଖର ।
ବିଧାୟେ ମାଇଲା ନେଇ ଶ୍ରୀରାମ ଉପର ॥
ଅଙ୍ଗ ଢାଳି ରାମ ତାହା ଫେରାଇଲେ ।
ପରିଘେ ଶ୍ରୀରାମ ଦତ୍ୟକୁ ମାଇଲେ ॥
ଦଇତ ହୃଦୟରେ ପଡ଼ିଲା ଯାଇ ଶର ।
ନିଚେଷ୍ଟ ହୋଇଣ ସେ ପଡ଼ିଲା ଅସୁର ॥୮୦
ସ୍ୱର୍ଗେ ଦେବତାୟେ ଜୟେ ଜୟେ କଲେ ।

ଶ୍ରୀରାମର ଶିରେ କୁସୁମ ବରଷିଲେ ॥
ଯହୁଁ ସେ ଦଇତେ ହୋଇଲେ ସର୍ବ ହତ ।
ସନ୍ତୋଷ ଚିତ୍ତେଣ ରହିଲେ ରଘୁନାଥ ॥
ଖର ଧୂଷଣ ତିଶିରା ଚଉଦ ସସ୍ର ବଳ ।
ବନଭୂମି ମାଡ଼ି ପଡ଼ିଲେ ସକଳ ॥
ରକତ ନଦୀ ତହିଁ ବହିଲା ଚଉକତି ।
ଗ୍ରୀଧ ଜମ୍ବୁକ ଯେ ଭୁଞ୍ଜିଣ ସୁସ୍ତ ହୋନ୍ତି ॥
ଦଇତ ବଳ ଯହୁଁ ପକାଇଲେ ହାଣି ।
ଶ୍ରୀରାମର ବଳ ପ୍ରଳୟ ଅଗ୍ନି ଜାଣି ॥ ୯୦
ଦଇତ ପଡ଼ିବା ଦେଖି ଲକ୍ଷଣ ମହାବୀର ।
ପର୍ବତ କନ୍ଦରୁ ସୀତାକୁ କଲେକ ବାହାର ॥
ଶ୍ରୀରାମ ସନିଧ୍ୟେ ସମର୍ପିଲେ ନେଇ ।
ହସନ୍ତି ଶ୍ରୀରାମ ଜାନେକୀ ମୁଖ ଚାହିଁ ॥
ଅସୁରଙ୍କୁ ଡରୁଥିଲୁ ଚନ୍ଦ୍ରମୁଖୀ ।
ତ୍ରିପୁତି ହୋଇଲୁଟିକି ଯେସନ କୃତ ଦେଖି ॥
ବନେ ଲୁଚିବା ବୋଲି ମୋତେ ବୋଲୁଥିଲୁ ।
ମୋହୋର ପ୍ରତଗ୍ୟାଂ ଯେବେ ପ୍ରତକ୍ଷେ ଦେଖିଲୁ ॥
ଯେବଣ ବିଦ୍ୟା ମୋତେ ବିଶ୍ୱାମିତ୍ର ଦେଲା ।
ପର୍ଶୁରାମ ବୈଷ୍ଣବାଧନୁ ସମର୍ପିଲା ॥୧୦୦
ତେଣୁକରି ମୋତେ ନାହିଁ ନା ସମସରି ।
ପୃଥି ଉଧରିବି ଦଇତ ବଳ ମାରି ॥
ସୀତ୍ୟା ବୋଇଲେ ତୁମ୍ଭେ ସଂଯେ ବାସୁଦେବ ।
କେବଣ କଥା ଅବା ତୋତେ ଅସମ୍ଭବ ॥
ମୁଇଂ ନ ଜାଣି ବୋଇଲଇ ଯାହା ।
ସେ ଦୋଷ କ୍ଷେମା ମୋର କର ପ୍ରାଣନାହା ॥
ଯେତେ କହି ସୀତ୍ୟା ଯୋଡ଼ଇ ବେନି କର ।
ହସିଣ କଥା କହନ୍ତି ରଘୁକୁଳ ବୀର ॥
ହସ୍ତ ଧରାଧରି ହୋଇଣ ତହୁଁ ଯାନ୍ତି ।
ପଞ୍ଚବଟୀ ବନେ ଯାଇଣ ମିଳନ୍ତି ॥୧୦
ସ୍ନାହାନ ଭୋଜନ ସାରିଲେ ଯିସ ରୀତି ।
ଯେଥୁ ଅନନ୍ତରେ ଶୁଣଗୋ ପାର୍ବତୀ ॥

ଅସୁରନ୍ତ ମାରି ରାମ ମେଦନୀ ସ୍ଥିର କଲେ ।
ମୁନିଗଣଙ୍କୁ ସେ ନିର୍ଭୟ କରାଇଲେ ॥
ଦେବତାମାନେ ଯେ ହୋଇଲେ ଆଶାୟି ।
ଦଣ୍ଡକା ଅରଣ୍ୟେ କିଛି ଅସୁରଭୟେ ନାହିଁ ॥
ଖର ଧୂଷଣ ତିଶିରା ପଡ଼ିବାର ଦେଖି ।
ଲଙ୍କାଗଡ଼କୁ ବୋଲି ଗଲାକ ସୂପଲେଖି ॥
ରାବଣର ମନ୍ଦିରେ ହୋଇଲା ପ୍ରବେଶ ।
ଦେଖିଲା ରାବଣେଶ୍ୱର ହୋଇଛି ନିଅବକାଶ ॥୨୦
ମନ୍ଦଦୋରୀ ସହିତେ ସକଳ ରାଣୀ ଛନ୍ତି ।
ଅପଛରୀମାନେ ବେଢ଼ିଣ ନାଚନ୍ତି ॥
କାମକ୍ରୀଡ଼ା ରସେ ଆନନ୍ଦ ଲଙ୍କସାଇଂ ।
ତାରାଗଣ ମଧ୍ୟେ କି ଚନ୍ଦ୍ରମା ଅଛି ଉଇଂ ॥
ନାନା କୁସୁମେ କି ଆମୋଦଇ ଭ୍ରମର ।
ରତି ଘେନି ଯେହ୍ନେ ବିହରଇ ପଞ୍ଚଶର ॥
ଅପଛରୀ କିନ୍ନରୀ ବିଦ୍ୟାଧରୀ ସଙ୍ଗେ ।
ଇନ୍ଦ୍ର ବିନୋଦ କି କରଇ କାମ ରଙ୍ଗେ ॥
ଶୁଧ୍ୟ ସୁବନ୍ୟକି ନବରତ୍ନେ ଜଡ଼ି ।
ବିଶକର୍ମା ଯାହା ଯତନେ ଅଛି ଗଢ଼ି ॥୩୦
ସେହୁ ଅଳଙ୍କାର ଆଭରଣ ଲଙ୍କପତି ।
ଆରୋହଣ କରିଅଛି ସୁବର୍ଣ୍ଣ ଜଗତୀ ॥
ବିବିଧ ବ୍ୟସନ ଆଭରଣ ନାନା ପୁଷ୍ପ ।
ମଣ୍ଡଣି ହୋଇଅଛି ଜଗତୀ ଚଉପାର୍ଶ ॥
ମଧରେ ପଲଙ୍କ ଚନ୍ଦନ କାଠ ଖୁରା ।
ସୁବର୍ଣ୍ଣର ପିତୁଳି ମର୍କତର ଝରା ॥
ଦେବାଙ୍ଗ ବସନେ ଶେଯାଇଅଛି ତୂଳୀ ।
ଉପରେ ସିଞ୍ଚିଅଛି କର୍ପୂରର ଧୂଳି ॥
ଚଉକତି ଟେରା ସିନ୍ଧୁଆ ପାଟ ଶାଢ଼ୀ ।
ସୂଚୀକମ ଚାନ୍ଦୁଆ ପତନୀ ମଶହେରି ॥୪୦
ସୁବର୍ଣ୍ଣର ଲେଖନ ଚିତ୍ରପ୍ରତିମା ପନ୍ତି ପନ୍ତି ।
ଅଗ୍ରଧୂପ ଘେନି କେବଣ ନାରୀ ଛନ୍ତି ॥
ଛୁରୀ ଖଣ୍ଡା ଧରିଛି କେବଣ ମୃଗାକ୍ଷି ।
କେ ରତ୍ନ ଅଳଙ୍କାର ଦ୍ରଶାଉଣ ଅଛି ॥
କେ ହାଥେ ଧରିଅଛି କୁଆଦ ଭ୍ରମଣୀ ।

କେ ଠିଆ ହୋଇଅଛି ଘେନି ପନୀର ପାଣି ॥
କେ ଲଙ୍କପତିର ଚାପଇ ଚରଣ ।
କେବଣ ନାରୀ ଉଭା ବାଙ୍କିଆ ଧରିଣ ॥
ମନ୍ଦଦୋରୀ ତାମ୍ବୋଳ ଭୁଞ୍ଜାଉଅଛି ନେଇ ।
ପୁଷ୍ପ୍ୟଧନୁ କରେ ଧରିଛି ଲଙ୍କସାଇଂ ॥୫୦
ଦକ୍ଷିଣେ ମଦନ ବାଣ ଦୂତୀ କାମ ଜାଣି ।
ପଲଙ୍କେ ବିଜେ କରିଅଛି ଅସୁର କୁଳମଣି ॥
ଯେସନେକ ସମୟେ ମିଳିଲା ସୂପଲେଖି ।
ରାବଣ ଚକିତ ହୋଇଲା ତାହା ଦେଖି ॥
ନାସିକା ଶ୍ରବଣ ଛେଦନ ତାହାର ।
ତିନିଧାର ହୋଇ ବାହାର ରୋଧିର ॥
ସର୍ବାଙ୍ଗେ ରକତ ଦିଶଇ ବିରୂପ ।
ଦେଖିଣ ବିସ୍ମୟେ ହୋଇଲା ଲଙ୍କନୃପ ॥
ମନ୍ଦଦୋରୀ ସହିତେ ସକଳ ଯୁବତୀ ।
ସୂପଲେଖିକି ଦେଖି ଆଶ୍ରିଯ ହୋଅନ୍ତି ॥୬୦
କାମକ୍ରୀଡ଼ା ରଙ୍ଗ ଛାଡ଼ିଲା ନୃପତି ।
ଭଗ୍ନୀକି ପୁଛଇ କହ ଗୋ ତତ୍ପତି ॥
କେବଣ ଚରିତ୍ର ଗୋ କେହୁ ଯେହା କଲା ।
ଶୁଣି ସୂପଲେଖି ଭୂମିରେ ପଡ଼ିଲା ॥
ଭାଇ ଭାଇ ବୋଲି କରଇ ରୋଦନ ।
ଉରେ କର ତାଡ଼ି ନ ଟେକଇ ବଦନ ॥
ମନ୍ଦଦୋରୀ ଯାଇ ଧଇଲାକ ତୋଳି ।
ଅନେକ ଯୁବତୀ ଅଛନ୍ତି ପାଶେ ମିଳି ॥
ରାବଣ ବୋଇଲା ତୁ କାନ୍ଦୁ କାହିଁ ପାଇଂ ।
ଯେ ଶାସ୍ତି ସୂପଲେଖି ପାଇଲୁ ଗୋ କାହିଁ ॥୭୦
ସମ୍ପ୍ରୋଦ୍ର କେ ଅଗ୍ନି ଘେନି ପୋଡ଼ି ଦେଲା ।
ପଥର ପକାଇ କେ ମୃଧୁନି ପାତିଲା ॥
କାଳସର୍ପ ମୁଖେ କେ ଅଙ୍ଗୁଳି ଲାଇଲା ।
ମଉଗଜ ଛାମୁରେ କେ ହିଆ ପତାଇଲା ॥
ବିଷ ଖାଇ ହରିବ କେ ଯେତେକ ସାହାସ ।
ଯମକୁ ନଡ଼ରଇ କେବଣ ମନୁଷ୍ୟ ॥
ଯେ ମହୀମଣ୍ଡଳେ ମୁହିଁ ସେ ବଳୀଆର ।
ଛପନଗଣ୍ଡା ଯୁଗକୁ ପାଇଲି ଅଧିକାର ॥

ଚଉଦ କୋଟି ବରଷ ଧାତା ମୋତେ ଦେଲା ।
ତିନି ଭୁବନେ ମୋତେ ନୃପତିପଣ କଲା ॥୮୦
ରଣଗୋଳ କରି ଜିଣିଲି ସୁରଗଣ ।
ତ୍ରୈଲୋକେ ବିଖ୍ୟାତ ମୋହୋର ବୀରପଣ ॥
ସୁର ନର କିନ୍ନର ଦକ୍ଷ ନାଗଗଣ ।
ଧନ ବସ୍ତ୍ର ସଂପଦ ରାଣୀହଂସ ଜାଣ ॥
ମୋତେ ସମସ୍ତେହେଂ ଅଛନ୍ତି ସେବା କରି ।
ନୋହିଲେଣ ଦେହ ନ ଥାଇ କାହାରି ॥
ଚଉଦ ଭୁବନେ ମୋର ମହିମା ପ୍ରକାଶ ।
ପଚାଶ କୋଟି ଯୋଜନେ ଲାଗିଲା ମୋର ତ୍ରାସ ॥
କେବଣ ବାପୁଡ଼ା ଯେ ବ୍ରହ୍ମାଣ୍ଡୁ ବାହାର ।
ମୋହୋର ମହିମା କି ଶୁଣିଲା ନାହିଂ ତାର ॥୯୦
ତୁ ମୋର ଭଗ୍ନୀ ତୋର ନାସିକା କାଟଇ ।
ଭୟେ ନକଲାକି ଯାଇତ ଯମରାଷ୍ଟ୍ରଇ ॥
ବେଗେ ମୋହୋର ଆଗେ କହଗୋ ସୂପଲେଖି ।
ଆତ୍ମା ମୋହୋର ବିକଳ ତୋହୋର କଷ୍ଟ ଦେଖି ॥
ରାଗେ ଥରହର ଦିଶଇ ବଦନ ।
କରଯୋଡ଼ି ସୂପଲେଖି କହଇ ବଚନ ॥
ଶୁଣ ଭାଇ ରାବଣ ଲଙ୍କାର ଈଶ୍ୱର ।
ଗୋଦାବରୀ ନଦୀ ଉତ୍ତରର ତୀର ॥
ପଞ୍ଚୁବଟୀ ତୀରେ ଅଛନ୍ତି ବସାକରି ।
ଶିରରେ ଜଟାବାନ୍ଧି କରେ ଧନୁଶସ୍ତ୍ର ଧରି ॥୧୦୦
ଦୁଇ ପୁରୁଷ ସେ ଯେକଇ ଯୁବତୀ ।
ହରି ହର ସଙ୍ଗେ କି ସିନ୍ଧୁର ଦୋହିତୀ ॥
ସେହୁ ତିନିଜଣଙ୍କୁ ନାହିଂ ପଟାନ୍ତର ।
ଅଯୋଧା ଦେଶେ ଦଶରଥର କୁମର ॥
ଜ୍ୟେଷ୍ଠ ଶ୍ରୀରାମ ଯେ ଦୀର୍ଘ ତାର ବାହା ।
ବୃଷାଳ ବକ୍ଷ ଆନେ ତୁଳାଇବା କାହା ॥
କୃଷ୍ଣାଜିନ ଛାଲ ଗଛର ବକଳ ।
ବିଭୂତି ବିଲୋପନ କକ୍ଷା ଯେ ଦୂକୁଳ ॥
କନ୍ଦର୍ପହୁଂ ଉଗୁଳି ଅଟଇ ତାର ଗୁଣ ।
ସୁନ୍ଦର ଦେହ ଗୋଟି ମର୍କତ ରସାଣ ॥୧୦
ଯୁବା ବୟେସ ବିକ୍ରମ ସିଂଘ ମୂର୍ତ୍ତି ।
ଚାଲିବାର ଛଟକ ମତ୍ତଗଜ ଗତି ॥
ବୃଷାଳ ବକସ୍ଥଳ ବିସ୍ତାର କେଶ ଭାର ।
ସୀତା ନାମେ ରମଣୀ ଅଟଇ ତାହାର ॥
ରୂପ ଯଉବନ ଷୋହଳ ସମ୍ପୂର୍ଣ୍ଣ ।
କି ଜାଣି ମୁଖ ତାର ଶରଦ ଶଶୀ ଚିହ୍ନ ॥
ପ୍ରତକ୍ଷେ ଲକ୍ଷ୍ମୀ ସେ ବିଷ୍ଣୁର ମନୋହାରୀ ।
ମନୁଷ୍ୟ ରୂପ ଧରି ମଞ୍ଚେଣ ଅବତରି ॥
ଲକ୍ଷଣ ନାମେଣ ସାନୁଜ ତାହାର ।
ଯେ ତିନି ଭୁବନରେ ନାହିଂ ପଟାନ୍ତର ॥୨୦
ଦୁତୀ ଇନ୍ଦ୍ରକି ସେ ହୋଇଅଛି ଜାତ ।
ଜିଣନ୍ତା ନାହିଂ ତାକୁ ଭୁବନ ଜଗତ ॥
ଶ୍ରୀରାମ ହସ୍ତେ ଧନୁ ଶସ୍ତ୍ର ଥିଲେ ।
ଜିଣି ନ ପାରନ୍ତି ସୁର ଇନ୍ଦ୍ର ହେଲେ ॥
ଚଉଦ ସସ୍ର ବଳ ସେନାପତି ମାନ ।
ଖର ଧୂଷଣ ତିଶିରା ତୋହୋର ଯେ ସାନ ॥
ତିନି ନାରାଜେ ସେ ଯେତେ଼କ କର୍ମ କଲା ।
ଅଗୋଚର କର୍ମ ଦେଖିଲି ଯାହା କଲା ॥
ଲକ୍ଷଣ ନ ଯୁଝିଲା ସୀତ୍ୟାକୁ ଜଗିଥିଲା ।
ଶ୍ରୀରାମ ଯେକାୟେ ଯେତେ଼ କର୍ମ କଲା ॥
ଯେତେ ବାରତା ତୁମ୍ଭେ କିଛିହିଂ ନ ଜାଣ ।
ବେଳକ ଘେନି ମୁଂ ଅଇଲି ନିଜ ପ୍ରାଣ ॥
ଭୋ ଲଙ୍କପତି ନ କର ତୁମ୍ଭେ ହେଳା ।
ନିଶ୍ଚୟେ ଶ୍ରୀରାମ ମାରିବେ ଦତ୍ୟ ବଳା ॥
ଯେ ତୋହୋର କଟେକ ଘେନିମ ମନ କଲେ ।
ତୋତେ ମାରିପାରଇ ସେ ଯୁଧ୍ୟରେ ପଶିଲେ ॥
ଯେବେ ଭାଇମାନେ ହରାଇଲେ ପ୍ରାଣ ।
ତୁମ୍ଭେ ଭାଇ ଯେବେ ଭଲ କରି ଜାଣ ॥
ତୁମ୍ଭେ ତିନିଭାଇ ମୁହିଂ ଯେକଇ ବହେଣୀ ।
କେହି ବେଗଳ ଆମ୍ଭେ ନୋହି ନା ଚାରି ପ୍ରାଣୀ ॥୪୦
ବିଶର୍ବା ଋଷି ଯେ ଆମ୍ଭକୁ ଜାତ କଲା ।
ଚାରି ଦେହ ଆମ୍ଭର ଅଟଇ ଯେକଲା ॥
ଯେ ମୋହୋର ମାନ ଉଧର ଲଙ୍କପତି ।
ଯେ କଷ୍ଟ ଦେଖିବାର ନୁହଇ ଯୁଗତି ॥
ସେ ଯେବେ ତୋ ତହୁଂ ହୋଇବ ବଳୀଆର ।
ତେବେ ସିନା ତୁହି ସେବିବୁ ଦଶଶିର ॥୫୦
ଇନ୍ଦ୍ରାଦି ଦେବତା ତୋତେ ସେବା କରିଥାନ୍ତି ।
ମାନେବ ଦୁଇଜଣଙ୍କୁ କରୁ କିଂପା ଭୀତି ॥
କେ ତୋତେ ସଂଗ୍ରାମେ ହୋଇବାକ ସରି ।
ପାରିଲେ କାରଣ କର ଦଶଶିରି ॥
ତୋହୋର ମହିମା କହିଲେ ନ ସରି ।
ସଂଏ ମହାବୀର ଅଟୁ ଦଶଗିରି ॥
କାପୁରୁଷ ପ୍ରାୟେକ ତୁ ନୋହୁ ମୋର ଭାଇ ।
ସନ୍ତୋଷେ ଗ୍ରୀଧ ପକ୍ଷୀ ଆହାର ପାଇଲେ ଖାଇ ॥
କଡ଼ାକର କାର୍ଯ ନ ପାରଇ କରି ।
ତୁହି ତେସନେକ ନୋହୁ ନା ଦଣ୍ଡଧାରୀ ॥
ଅଭିମାନ ଘେନି କରଇ କାରଣ ।
ସ୍ୱର୍ଗପୁରେ ଯାଇ ବସଇ ସେ ଜଣ ॥
ଯେମନ୍ତ ବୋଲିଣ ସେହୁ ଶୁଣିଲା ହାଦେ ଅଛି ।
ଅଯୋଗ୍ୟ ପୁରୁଷଟି ନ ଯୋଗାଇ କିଛି ॥୬୦
ଅଭାର୍ଜନ ଲୋକ ସେ ପରାଭବ ପାଇ ।
କିଂପା ସହିବୁଟି ରଜଗୁଣ ବହି ॥
ସୀତ୍ୟା ବୋଲି ତାର ଅଛଇ ଯେବଣ ନାରୀ ।
ତ୍ରୈଲୋକେ ପଟାନ୍ତର ନାହିଂ ନା ସମସରି ॥
ସେ ସୁନ୍ଦେରୀ ସଙ୍ଗେ ଯେହୁ କରିବ ରମଣୀ ।

ତାହାର ଜୀବନ ସଂସାର ମଧ୍ୟେ ଗଣି ॥
ଇନ୍ଦ୍ରପଦ ତାହାକୁ ନୋହେ ସମସରି ।
ସେ କନ୍ୟା କଟିରେ ବସିଲେ ଦିନ ହରି ॥
ଯେ ତାହାର ଅଧର କରଇ ଚୁମ୍ବନ୍ୟ ।
ତାହାର ସେ ଅଟଇ ସୁଫଳ ଜୀବନ ॥୭୦
ତାହାର ଅଧରୁ ଅମୃତ ଗଳୁଅଛି ।
ଯେ ତାହା ପିଇବ ମରଣ ନ ଗଛି ॥
ସଂସାର ମଧେ ଜୀବନ ତାର ଧନ୍ୟ ।
ସେ ସୁନ୍ଦେରୀ ଯାର ହରିବାକ ମନ ॥
ସାଧୁ ସମାନ୍ୟ ସେ ପୁରୁଷଙ୍କୁ ଗଣି ।
ସେ ସ୍ତିରୀ ସଙ୍ଗେ ଯେହୁ କରିବ ରମଣୀ ॥
ଏ ଯେ ମନ୍ଦଦୋରୀ ଅଟଇ ରୂପବନ୍ତୀ ।
ଦେବତାଯେ ଯେହାକୁ ପ୍ରଶଂସା କରନ୍ତି ॥
ଯେହୁ ପୁଣ ସୀତ୍ୟାର ରୂପକୁ ନୋହେ ସରି ।
ରାମକୁ ମାରି ତାକୁ ଆଣ ଦଶଗିରି ॥୮୦
ଯେ କଥାକୁ ଭାଇ ନ କରସି ହେଳ ।
ଜଗତେ କଥା ତୋର ରହୁ ମହୀପାଳ ॥
ସେ ତୋର ଭାରିଯା ହୋଇଣ ଏହୁ ପୁରେ ଥାଉ ।
ଯେ ଲଙ୍କାଗଡ଼ରେ ସେ ପଉରୋଷ ପାଉ ॥
ଯଶ ବିସ୍ତାର ତୁ କରସି ଲଙ୍କସାଇଂ ।
ଶ୍ରବଣ ଦତ୍ତ କରି ଶୁଣ ମୁଂ ଯାହା କହଇ ॥
ଆୟେ କାୟେ ଦେଲେ ଯାହା ସେ ନ ପାଇ ।
ସେ ରତ୍ନ ପ୍ରାପତ ତୋତେ ହୋଇବରେ ଭାଇ ॥
ସୂପଲେଖି ବଚନ ଶୁଣିଣ ଲଙ୍କପତି ।
ସୀତ୍ୟା ଆଣିବାକୁ ବଳାଇଲା ମତି ॥୯୦
ଶ୍ରୀରାମର ବଳ ଯହୁଂ ଶୁଣିଲା ଅପ୍ରମିତ ।
ଭୟେଣ ଶଙ୍କାକଲା ତାର ଚିତ୍ତ ॥
ଉପାୟେ ବିଚାରଇ ଆଣିମ ଚୋରି କରି ।
ରୂପର ଗୁଣ ସୁମରି ମଦନ ଶର ଘାରି ॥
ଲାବନ୍ୟ ସାଗରେ ବୁଡ଼ିଲା ଲଙ୍କସାଇଂ ।
ସୀତ୍ୟା ଆଣିମାକୁ ଉଦବେଗ ହୋଇ ॥

ଆପଣେ ଆପଣେ ଭାଳଇ ଦଶଶିର ।
ସୂପଲେଖି କହିଲା ଶ୍ରୀରାମ ବଡ଼ ବୀର ॥
ସୀତ୍ୟା ସୁନ୍ଦେରୀକି ଜଗତେ ସରିନାହିଂ ।
କେବଣ ପ୍ରକାରେ ଆଣିମି ତାକୁ ଯାଇ ॥୧୦୦
ଶ୍ରୀରାମକୁ ଶଙ୍କା କରଇ ସେ ମନେ ।
ତାହାର ଘରଣୀକି ଆଣିମି କେସନେ ॥
ବଳେ ନ ପାରିଲେ କରିବି କପଟ ।
ଅନେକ ମନ୍ତେ ମୁଂ ଜାଣଇ ମାୟା କୂଟ ॥
ଯେମନ୍ତ ପାରଇ ଆଣିଲେ ସରଇ ।
ଯେତେ ବୋଲି ରାବଣ ମନେ ବିଚାରଇ ॥
ଯିବାକୁ ଉଦବେଗ ବଳାଇଲା ଚିତ୍ତ ।
ରତ୍ନ ପଲଙ୍କରୁ ଉଠିଲା ତୁରିତ ॥
ପୁଷ୍ୟଧନୁ ଥୋଇ ସଜ ଲଙ୍କସାଇଂ ।
ମନ୍ଦଦୋରୀ ରାଣୀ ଅଛି ଉଭା ହୋଇ ॥୧୦
ରାବଣ ଯାନ୍ତେ ସେ ଆଗେ ଉଗାଳିଲା ।
କର ଦୁଇ ଯୋଡ଼ି ରାଣୀ ପଚାରିଲା ॥
କାହିଂକି ଗମନ କରୁଛୁ ବିଂଶବାହା ।
ମୋହୋର ଆଗେ ସ୍ୱାମୀ କହୁ କିନା ତାହା ॥
ରାବଣ ବୋଇଲା ଶୁଣସି ଭାବାନି ।
ଦଣ୍ଡକାରନ୍ୟେ ଛନ୍ତି ରାମ ଲକ୍ଷଣ ବେନି ॥
ଜାତି ମନୁଷ୍ୟ ସେ ଅଟନ୍ତି ବେନି ଭାଇ ।
ସୀତ୍ୟା ବୋଲି ତାର ଘରଣୀ ଅଛଇ ॥
ରୂପେଣ ତାହାକୁ ନାହିଂ ସମ ସରି ।
ମୁହିଂ ତାହାକଇ ଆଣିମଇ ହରି ॥୨୦
ତୋତେ ନ କହିଲେ କରିବୁ ନା ରାଗ ।
ତେଣୁ କରି ସଖି କହିଲି ତୋର ଆଗ ॥
ଦିଅସି ଆଗ୍ୟାଂ ମୋତେ ଯେହିକ୍ଷଣି ଯିବି ।
ଶ୍ରୀରାମ ନ ଦେଖିବ ସୀତ୍ୟାକୁ ଆଣିମି ॥
ମନ୍ଦଦୋରୀ ବୋଇଲା ଯେ ନୋହୋଇ ଭଲ ପଣ ।
ତିନିପୁରେ ବିଖ୍ୟାତ ଅଟୁ ତୁ ରାବଣ ॥
ତିନିକୋଟି ପଚାଶ ଲକ୍ଷ ତୋର ନାରୀ ।
ଚଉଦ ଭୁବନୁ ଆଣିଲୁ ବାଛି କରି ॥

ଯେହା ତୁ ରମଣ କର ଲଙ୍କପତି ।
ଅପଛରୀ କିନ୍ନରୀ ଖଟିଥାନ୍ତି ନିତି ॥ ୩୦
ରତ୍ନମୟେ ପୁର ଭଣ୍ଡାର ବହୁତ ।
ଦେବତାୟେ ଖଟିଥାନ୍ତି ଅନୁବ୍ରତ ॥
ଶ୍ରୀଖଣ୍ଡି ଚନ୍ଦନ ପାରିଜାତେକ ଫୁଲ ।
ତାହା ଭୋଗ୍ୟ କରିବାକୁ ଇନ୍ଦ୍ର ନୋହେ ତୁଲ ॥
ଯେଡ଼େକ ପଣ ଛାଡ଼ି ଅଧର୍ମକୁ ଯାଉ ।
ପରସ୍ତିରୀ କିମ୍ପା ହରିବୁ ଲଙ୍କରାହୁ ॥
ଦେଶାନ୍ତରୀ ଯୁବତୀ ବିଶେଷେଣ ହୀନ ।
ସେ କହ୍ନେ ଜାଣିମଟି ସୁରତି ବିଧାନ ॥
ବିଭୂତି ବିଲୋପନ କଷା ବସ୍ତ୍ର ପିନ୍ଧି ।
ଗଳାରେ ରୁଦ୍ରାକ୍ଷ ଶିରେ ଜଟା ବାନ୍ଧି ॥ ୪୦
କନ୍ଦମୂଳ ଖାଇ ଦୁଃଖେ ଦିନ ନ୍ୟନ୍ତି ।
ସେ କେହ୍ନେ ଜାଣିମଟି ରମଣ ରସ ଗତି ॥
ତୁ ସେ ଦିଗପାଳ ନୃପତି ଶିରୋମଣି ।
ଦେଭାର କଥାକୁ ତୁ କି ନଜାଣୁ ବିଂଶପାଣି ॥
ସରିସମ ଲୋକ ସଙ୍ଗେ ପ୍ରୀତି କରି ।
ନେଚକୁ ନ ଯିବା ଉଚ୍ଚକୁ ଥିବ ଡରି ॥
ସୂପଲେଖି କହିଲା ସୀତାର ରୂପ ଗୁଣ ।
ରାମ ଲକ୍ଷଣଙ୍କର ବୀର ଶୂର ପଣ ॥
ରାଜାର ପୁତ୍ର ସେ ବନେ ବିହରନ୍ତି ।
ଧର୍ମ ଆଶ୍ରେ କରି ତପସ୍ୟା କରନ୍ତି ॥ ୫୦
ତାହାକୁ ହିଂସା ତୁ ନ କର ଭୋ ନାଥ ।
ଯେତେ ବୋଲି ଦେବୀ ଶିରେ ଦେଲେ ହାଥ ॥
ରାବଣ ବୋଇଲା ତୁ ନ ଜାଣୁରେ ସହୀ ।
ମଦନ ଅନଳେ ମୋର ପୋଡୁଅଛି ଦେହୀ ॥
ତୁ ଯେ ବୋଇଲୁ ମୋର ଅନେକ ଅଛି ନାରୀ ।
ଯେ ସର୍ବଦା ରମଣୀ ଅଟନ୍ତି ମୋହୋରି ॥
ପୁରୁଷ ଭ୍ରମର ଗୋ ଲକ୍ଷେ ଫୁଲ ଚୁମ୍ବଇ ।
ନୂଆ ପୁଷ୍ୟ ପାଇଲେ ତାହା କି ନ ରସଇ ?
ତୁ ମୋତେ ସଖି ! ରେ ନ ତିଆର କିଛି ।
ସୀତ୍ୟା ଆଣିମାକୁ ମୋ ମନ ହଉଅଛି ॥୬୦

ରାଣୀକି ପ୍ରବୋଧନା କରିଣ ଦଶମାଥ ।
ଯାଇ ବିଜେ କଲା ରତ୍ନମୟେ ରଥ ॥
ଯୋଚିଲା ଅଛି ହୟେ ବାହାଇ ସାରଥି ।
ମନ୍ତ୍ର ବଳେ ଯାନ ଚଳଇ ଊର୍ଦ୍ଧ୍ୱଗତି ॥
ଉତ୍ତର ଅଭିମୁଖେ ହୋଇଣ ରାୟେ ଗଲା ।
ସମୁଦ୍ର କୂଳେ ମାରୁଚିକି ଦେଖିଲା ॥
ଆକାଶରୁ ରହୁବର ପୃଥିରେ କଲା ଆଣି ।
ମାରୁଚି କି ଚାହିଁ ବୋଲଇ ବିଂଶପାଣି ॥
ତୁ ହୋ ତାଡ଼େକୀ ନନ୍ଦନ ମାହାବୀର ।
ମୁଇଂ ସେ ଲଙ୍କାରେ ନୃପତି ଦଶଶିର ॥୭୦
ତ୍ରୈଲୋକ ସାଧିଲି ନିଜ ଭୁଜ ବଳେ ।
ଦେବତାନ୍ତ ଆଣି ଖଟାଇଲି ପାଦ ତଳେ ॥
ସ୍ୱର୍ଗର ସୁନ୍ଦେରୀ ଘେନିଣ ଭୋଗ୍ୟ କଲି ।
ନିଲକ୍ଷଣ ଲୋକକୁ କର୍ମେଣ ହାରିଲି ॥
ତେଣୁକରି ବଥା ପାଇଲି ବହୁତ ।
ଯେତେ କଷ୍ଟରେ ଅଇଲି ବାହିଣ ମୋର ରଥ ॥
ଚିନ୍ତାର କାଳେ ଭେଟିଲି ଆସି ତୋତେ ।
ତୁ କିମ୍ପା ଯେକାନ୍ତେ ବସିଅଛୁ ଯେଥେ ॥
ମାରୁଚି ବୋଇଲା କଷ୍ଟ ମୋର ଭାଇ ।
ରାତ୍ର ଦିବସରେ କହଣା ନ ଯାଇ ॥ ୮୦
ମାତା ମୋ ତାଡ଼େକୀ ଯହୁଁ ବିଧବା ହୋଇଲା ।
ଅନେକ ଯତନେ ସେ ମୋତେ ସମ୍ଭାଳିଲା ॥
କାଳେ ରଘୁନାଥ ଦଶରଥ ସୁତ ।
ମୋର ଜନନୀକି କଲା ପ୍ରାଣେ ହତ ॥
ଅଗ୍ନିଶର ପେଶି ସୁବାହୁକୁ ଦହି ।
ଭୟେ ପାଇଣ ମୁଂ ବୃଷଭ ରୂପ ହୋଇ ॥
ତେଣେ ସେ ହାବୋଡ଼ା ଶସ୍ତ୍ରେକ ମୋତେ ମାରି ।
ଯେତେକ ଦୂରେ ଆସି ପଡ଼ିଲି ଦଶଗିରି ॥
ଦଶ ବରଷ ଯାୟେ ମୂର୍ଚ୍ଛା ଯାଇଥିଲି ।
ପୂର୍ବର ପୁନ୍ୟବଳେ ଜୀବନ ପାଇଲି ॥ ୯୦
ତେଣୁ ଯେଥି ମୁଂ ଯେ ଲୁଚି ବସିଥାଇ ।
ଶ୍ରୀରାମ ନାରାଜକୁ ମାହାଭୟେ ପାଇ ॥
ଦିନେକ ଶଙ୍ଖାସୁର ଦତ୍ୟର ଦୁଇ ନାତି ।
ସମୋଦ୍ର ବାହାର ହୋଇ ମିଳିଲେ ମୋର ଜତି ॥
କୁଳ ଗୋତ୍ର ପଚାରି ହୋଇଲୁ ପୀରତି ।
ତାହାର ଆଗରେ ମୁଂ କହିଲି ସର୍ବ ରୀତି ॥
ଶୁଣିଣ ପ୍ରତଗ୍ୟାଂ କଲେକ ବେନି ଭାଇ ।
ଅରନ୍ୟେ ଭ୍ରମିବାକୁ ଘେନି ମୋତେ ଯାଇ ॥
ଯାନ୍ତେଣ ଶ୍ରୀରାମକୁ ଭେଟିଲେକ ବାଟେ ।
ଆସୁଛନ୍ତି ପଦ୍ମଲାଭ ପର୍ବତ ନିକଟେ ॥୧୦୦
ତାର ସଙ୍ଗେ ଭାଇ ଅଛଇ ଲକ୍ଷଣ ।
ଭାରିଯା ସହିତେଣ ଭେଟିଲୁ ତିନିଜଣ ॥
ମୁଇଂ ତାକୁ ଦୂରୁ ଦେଖିଣ ଚିହ୍ନିଲି ।
ସେ ଦୁଇ ଦତ୍ୟର ଆଗରେ ପ୍ରକାଶିଲି ॥
ଯେ ସେ ଶ୍ରୀରାମ ମୋ ମାତାକୁ ମାଇଲା ।
ପୁଣି ଆଣି ଦଇବ ତ ଯେହାକୁ ଭେଟାଇଲା ॥
କି ବୁଧି କରିବା ଯିବା ଆର କାହିଁ ।
ତୁମ୍ଭର ବୋଲେ କିମ୍ପା ଅଇଲଇଂ ଧାଇଂ ॥
ଯେହିକ୍ଷଣି ମୋତେ କରିବେ ପ୍ରାଣନାଶ ।
ଶୁଣି କୋପ କଲେ ସେ ବେନି ରାକ୍ଷସ ॥୧୦
ତୁ ହୋ ମାରୁଚି ନୁହସି ତରସ୍ତ ।
ଯେହିକ୍ଷଣି ଶତ୍ରୁ କରିବୁ ତୋର ନାଶ ॥
ଯେତେବୋଲି ତିନିହେଂ ହୋଇଲୁ ମୃଗ ରୂପ ।
ପଛୁ ଉଗାଳିଲୁ କରି ମହାକୋପ ॥
ଶ୍ରୀରାମ ଦୂରୁହୁଂ ଦେଖିଣ ତାହା ଜାଣି ।
ତିନି କାଣ୍ଡ ଦୂରୁହୁଂ ପେଷିଲେ ରଘୁମଣି ॥
ମୁହିଂ ବିଚାରିଲି ଯେ ଯେବେଣ କାଳେ ସାନ ।
କାକ ପକ୍ଷୀ ଧନୁ ବହଇ ରଘୁନାନ ॥
ନାହାଲବେଲି କାଣ୍ଡ ବିନ୍ଧିବାର ବେଳେ ।
ବିଶ୍ୱାମିତ୍ର ଯାଗ ରଖିଲା ସେ ବେଳେ ॥୨୦
ମୋହୋର ଜନନୀକି ଯମପୁର ନେଲା ।
ସୁବାହୁକୁ ଅଗ୍ନିଶରେଣ ଦହିଲା ॥
ଆବର ଯେତେକ ଅସୁର ବଳ ଥିଲେ ।
ମାନବାଅସ୍ତ୍ର ପେଷି ଦଇତ ନାଶିଲେ ॥
କାଳେହେଂ ମୁହିଂ ଯେ ହୋଇଲି ଗୋରୁ ରୂପ ।
ତେଣୁ ସେ ଶ୍ରୀରାମ ନ କଲେ ମୋତେ କୋପ ॥
ପବନା ଶରେଣ ଉଡ଼ାଇ ମୋତେ ଦେଲେ ।
ଦୁଇ ଶତ ଯୋଜନେ ଆଣି ପକାଇଲେ ॥
ବାର ବରଷ ବେଳେ ଯେଡ଼େ କର୍ମ କରି ।
ଯେବେ ଯୁବା ବୟେସେ ଧନୁଶସ୍ତ୍ର ଧରି ॥୩୦
ମଧ୍ୟାହ୍ନ ଆଦିତ୍ୟ ପ୍ରାୟେ ତାର ତେଜ ।
ନିଷ୍ଟୟେ ଆମ୍ଭକୁ ଯେ କରିବ ଦହିଯ ॥
ଯେତେକ ବିଚାରି ମୁଂ ମହାଭୟେ କଲି ।
ସଙ୍ଗର ଲୋକଙ୍କୁ ନ କହି ପଳାଇଲି ॥
ତେଣୁ ସମୋଦ୍ର କୂଳରେ ଲୁଛିଥାଇ ।
ଶ୍ରୀରାମର ଡରେ ବାହାର ନୋହଇ ॥
ଶୁଣିଣ ରାବଣ ବୋଇଲାକ ହସି ।
ମୁହିଂ ତହିଂ ପାଇ ଅଛଇନି ଆସି ॥
ଶ୍ରୀରାମ ଲକ୍ଷଣ ବୋଲିଣ ଦୁଇ ଯତି ।
ପଞ୍ଚୁବଟୀ ବନେ ରହିଣ ଅଛନ୍ତି ॥ ୪୦
ଖର ଧୂଷଣ ତିଶିରା ତିନି ବୀର ।
ଆବର ଚଉଦ ସହସ୍ର ଅସୁର ॥
ଚଉଦ ସେନାପତି ସହିତେ ନାଶ ଗଲେ ।
ଶ୍ରୀରାମର ଶରେ ମୋହୋର ସନ୍ୟ ମଲେ ॥
ସୂପଲେଖି ନାସା ଶ୍ରବଣ କଲେ ହତ ।
ତେଣୁ ଅପମାନ ପାଇଲି ବହୁତ ॥
ଶ୍ରୀରାମ ଭାରିଯାକୁ ଆଣିମଇ ହରି ।
ତହିଂକି ଯାଉଅଛି ଅତି ଖର କରି ॥
ଯେତେ ଅପମାନ ମୁଂ ନ ପାରଇ ସହି ।
ତେଣୁ ହୋ ମହାତମା ଅଇଲି ତୋତେ କହି ॥୫୦
ତୁ ମୋତେ ନ ଜାଣୁ ମୁଂ ଅଟଇ ତୋର ଅଜ୍ଞା ।

ତୋହୋର ବାପ ମୋର ସୋହୋଦ୍ର
ଭଣଜା ॥
ସୂପଲେଖି ସଂଗତେ ସଂଘାତ ତୋର ଆଇ ।
ଆରେକ ଲେଖାରେ ତୁ ଅଟୁ ମୋର ଭାଇ ॥
ସୁକେଶୀ ଦଇତ ଯେ ତାଡ଼େକୀର ପିତା ।
କୁବେର ଜନନୀର ଅଟଇ ଖୁଡୁତା ॥
ଭାରଦ୍ୱାଦଶ ମୁନିଙ୍କର ନାରୀ ।
ଯମୁନା ନଦୀକି ଗଲେ ସ୍ନାନ କରି ॥
ସୁକେଶୀର ଜେଷ୍ଟ ଭାଇ ମଧୁଦତ୍ୟି ।
ତାହାର ଭାରିଯା ଅଟଇ ଲୀଳାବତୀ ॥ ୬୦
ସେହୁ କାଳନ୍ଦୀରେ ନିଅମ ଯେ କଲେ ।
ଦୁଇ କୁଳ ଭେଟ ହୋଇଲେ ନଦୀ କୂଳେ ॥
କୁଳଗୋତ୍ର ପୁଛି ପୀରତି ବଢ଼ାଇଲେ ।
ଫଳ ପୁଷ୍ପ୍ୟ ଦେଇ ସଂଗାତ ହୋଇଲେ ॥
ଯେକ ପ୍ରାଣ ହୋଇ ଥାଆନ୍ତି ବେନି ସଖି ।
ଭାରଦ୍ୱାଦଶ ମୁନି ସନ୍ତୋଷ ତାହା ଦେଖି ॥
ମଧୁଦତ୍ୟ ଆଗେ କହିଲେ ନୀଳାବତୀ ।
ସୁକେଶାକୁ ରାଇ ବୋଇଲେ ଦକ୍ଷ ପତି ॥
ଭାରଦ୍ୱାଦଶ ମୁନି ରମଣୀର ତୁଲେ ।
ପ୍ରୀତି ହୋଇଲେ ସଙ୍ଗେ ସ୍ନାହାନର
ବେଳେ ॥୭୦
ଏ ଦୁର୍ଲ୍ଲଭ କଥା ହୋଇଲାରେ ଭାଇ ।
ତୋହୋର କରମେ ସନ୍ତତି ତ ନାହିଁ ॥
ତାହାର କରମେ ଯେବେ ସନ୍ତତି ଜାତ
ହୋଇ ।
କେ ତାହା ଅନାସ୍ଥା ଗୋ କରିବ ପ୍ରାଣସହୀ ॥
ତୁହି ମୁନିକି ଗୋ ବନ୍ଧୁପଣେ ପାଳ ।
ତାହାର ଦୟା କଲେ ହୋଇବ ତୋର
ବାଳ ॥
ଶୁଣିଣ ସୁକେଶୀ ମୁନିକି ସେବା କଲା ।
ତାଡ଼େକୀ ନାମେଣ ଦୋହିତାୟେ
ହୋଇଲା ॥
ଭାରଦ୍ୱାଦଶଙ୍କର ଅଟଇ ଝିଆରି ।
ସେ ମୁନି ଅଜା ଯେ ଅଟଇ ତୋହୋରି ॥୮୦

କୁବେର ତାହାର ଝିଆଣିଆ ନାତି ।
ସେ ମୋହୋର ଜ୍ୟେଷ୍ଠ ଭାଇ ଅଟଇ
ନିଧିପତି ॥
ସୁକେଶା ଦଇତର ବଂଶେଣ ତୁ ଜାତ ।
ତେଣୁ ସେ ଆମ୍ଭର ଅଟୁ ସାନ ଭ୍ରାଥ ॥
ଆବର ଲେଖିଲେ ଅନେକ ବନ୍ଧୁପକ୍ଷ ।
ଯେ ମୋହୋର ତହୁଂ ସାବଧାନେ ଶୁଣ ॥
ତୋହୋର ପିଅର ଯେ ମୟେ ଦତ୍ୟର
ଶଳା ।
ମନ୍ଦଦୋରୀର ସେ ଅଟଇ ମଉଳା ॥
ତେଣୁ ସେ ଶାଳେକ ପଣ ହୋଇବୁ
ଆମ୍ଭର ।
ଇନ୍ଦ୍ରଜିତ ଭଣଜା ହୋଇବ ତୁମ୍ଭର ॥ ୯୦
ଗଲେ ଅଇଲେ ସେ ବନ୍ଧୁପଣ ଥାଇ ।
ନ ଗଲେ ନଇଲେ ନିକଟ ଦୂର ହୋଇ ॥
ତୋର ଜନନୀକି ଯେବେ ଶ୍ରୀରାମ
ମାଇଲା ।
ଆମ୍ଭେ ତ ନାହୁଂ ତାହା ବାରତା ପାଇଲା ॥
ବନ୍ଧୁ ବୋଲି ତୁମ୍ଭେ ଆମ୍ଭକୁ ନ ଜାଣ ।
ବନ୍ଧୁ ନ ଥିବା ଲୋକ ଆଖି ଥାଇ କାଣ ॥
ତେଣୁ ସେ ସମୋଦ୍ର କୂଳରେ ବସିଥାଅ ।
ଯେହିଠାରେ ଲଙ୍କାଗଡ଼ ତହିଂକି ନ ଯାଅ ॥
ଜନନୀ ମରଣ ଯେବେ କହିଥାନ୍ତୁ ଯାଇ ।
ଯେତେଦିନ ଶ୍ରୀରାମକି ଥାଆନ୍ତା ପ୍ରାଣ
ପାଇ ॥୧୦୦
ବନ୍ଧୁ ବୋଲି ତୁମ୍ଭେ ଆମ୍ଭକୁ ନ ଜାଣ ।
ଯେବେ କହିଲେ ଯେ ହୋଇବ ଅକାରଣ ॥
ସେ କଥା ସୁମରିଲେ ହୋଇବ ଯେବେ
କିସ ।
ଉପାୟେ କରିବା ଯେଣେ ଶତ୍ରୁ ହୋଏ
ନାଶ ॥
ତୋହୋର ଜନନୀକି ପ୍ରାଣେ ବଧ କଲା ।
ମୋହୋର ତିନିଭାଇଙ୍କି ହେଳେ
ସଂହାରିଲା ॥

ସୂପଲେଖି ନାସା ଶର୍ବଣ ସେ କାଟି ।
ଭୟେ ନ କରି ଯେବେ ରହିଚି ପଂଚୁବଟୀ ॥
ମନୁଷ୍ୟ ହୋଇ ତାର ଯେତ୍ତେକ ସାହାସ ।
ତୁ ଯେବେ ମାରୁଚି ହୋ ମୋହୋର ସଙ୍ଗେ
ଆସ ॥୧୦
କନେକ ମୃଗ ରୂପ ହୋଇଣ ତୁ ଯିବୁ ।
ରାମ ଲକ୍ଷଣକୁ ଲୋଭ ଦେଖାଇବୁ ॥
ସୀତ୍ୟା ଛାଡ଼ି ଯେବେ ଯାଆନ୍ତି ଭାଇ
ବେନି ।
ଅରନ୍ୟେ ପଶିବୁ ରାମ ଲକ୍ଷଣକୁ ଘେନି ॥
ଆଶ୍ରମ ଛାଡ଼ି ଯେବେ ଥୋକାୟେ ଧୂର
ଯିବେ ।
ନେଉଟି ଆସିଣ କି ସୀତ୍ୟାକୁ ଦେଖିବେ ॥
ନିମିଷକ ଭିତରେ ଆଣିମଇ ହରି ।
ତେଣେ ପଳାଇବୁ ତୁ ମାୟା ରୂପ ଧରି ॥
ସୀତ୍ୟା ଆଣିଲେ ତାର ବଡ଼ପଣ ସରଇ ।
ଝୁରି ଝୁରି ରାମ ବନସ୍ତେ ମରଇ ॥୨୦
ନ କର ହେଳା ତୁ ଯିବା ବେଗେ ଆସ ।
ଶ୍ରୀବନ୍ତ ପୁରୁଷର ମୂଳ ସେ ସାହାସ ॥
ରାମ ଲକ୍ଷଣକୁ ପାରିବା ଯେବେ ମାରି ।
ଓହୋ କୁଳ ଶତ୍ରୁ ଆସିବା ସଂଘାରି ॥
ନୋହିଲେଣ ଘରଣୀ ଆଣିମା ଚୋରାଇ ।
ଝୁରି ଝୁରି ମରଇ ସିନା ଭାରିଯା ନ ପାଇ ॥
ଯେଉଂକ୍ଷଣି ରାମ ଛାଡ଼ିବ ସୀତୟା ।
ଝୁରି ଝୁରି ବନେ ହରାଇବ କାୟା ॥
ଯେତେକ ଶିକ୍ଷା କଥା କହିଲା ଦଇତ ।
ମାରୁଚିର ମନେ ନ ପଶଇ କଦାଚିତ ॥୩୦
ରାବଣ ବୋଲ ଶୁଣି ମାରୁଚି ଅସୁର ।
କ୍ଷଣେ ତୁନିହୋଇ ବୋଲଇ ଉତ୍ତର ॥
ତୁ ହୋ ଦଶଗ୍ରୀବ ବୋଇଲୁସି ଯାହା ।
ଯେ ରାମ ଅଟଇ ଯେ ତ୍ରୈଲୋକ୍ୟର ନାହା ॥
ଅଗାଦ ସମୋଦ୍ର ଅଟଇ ତାର ବଳ ।
ତହିଂ ପଶିଣ ତୁ ଖୋଜି ଲୋଡୁ ଥଳ ॥
ତୁ ତାହା ଆଣିମାକୁ କରୁଅଛୁ ବୁଧି ।

ଶ୍ରୀରାମର ମହିମା ଅଗାଦ ପୟୋଧି ॥
ଥଳ ନ ପାଇଣ ମରିବୁଟି ବୁଡ଼ି ।
ଯେଡ଼େକ ସମ୍ପଦ ରାଜାପଣ ଛାଡ଼ି ॥ ୪୦
ଶ୍ରୀରାମ ପ୍ରତଗ୍ୟାଂ ତୋର ଶୁଣିଲାକି ନାହିଁ ।
ଯେବଣ ଚରିତ୍ର ସେ କଲେ ଯହିଁତହିଁ ॥
ବାରବରଷ ପୁଅ ଯାଗ ରଖି ଗଲା ।
ବନେଣ ଅସୁର ଅନେକ ନାଶ କଲା ॥
ପିତାକୁ ସେବିଲା ବୀର ଶୂର ପଣେ ।
ତାଡ଼େକୀ କି ବଧ୍ୟ କଲେ ଯେକା ବାଣେ ॥
ସୁବାହୁକୁ ଘେନି ମୁଂ ଉଗାଳିଲି ଯାଇ ।
ହାବୋଡ଼ା ଶରେ ମୋତେ ଦେଲାକ ଉଡ଼ାଇ ॥
ଅସାଷମ ହୋଇ ଯେ ପଡ଼ିଲି ସିନ୍ଧୁତୀରେ ।
ସୁବାହୁକୁ ଦହନ କଲା ଅଗ୍ନଶରେ ॥୫୦
ଗଉତମ ନାରୀ ଅହିଲା ସୁନ୍ଦେରୀ ।
ଶାପେଣ ଥିଲା ସେ ପାଷାଣ ରୂପ ଧରି ॥
ରାମ ପାଦ ଲାଗି ମୁକତ ହୋଇଲା ।
ଗତୁଂ ଶତେ ଗୁଣେ ରୂପ ପ୍ରକାଶିଲା ॥
ଇନ୍ଦ୍ର ତୋଳି ନ ପାରଇ ଯେବଣ ଶରାସନ ।
ହେଳେ ଆମଣ୍ଡିଲେ ତାହା ଦଶରଥ ନନ୍ଦନ ॥
ବାଳୁତ କାଳେ ତାର ଯେସନେକ ରୀତି ।
ଯେବେ ଯୁବା ବୟେସ ହୋଇଛି ରଘୁପତି ॥
ଈଶ୍ୱର ସାରିକ୍ଷେ ମହିମା ତାହାର ।
ଅଙ୍ଗେଣ ନିଭାଇ ଅଛଇ ମୋହୋର ॥୬୦
ମୁହିଁ ତାର ବଳ ବୀର୍ଯ୍ୟ ଭଲେଣ ଜାଣଇ ।
ତେଣୁ ସେ ତୋହୋର ଆଗେର ବଖାଣଇ ॥
କାଳାନଳ ତେଜ ଅଛି ତାର ତହିଁ ।
ମୃତୁଲୋକେ ତାକୁ ସରିସମ ନାହିଁ ॥
ଯେବଣ କାଳେ ମୁହିଁ ତପ କରୁଥିଲି ।
ବନେ ଯାଉ ଯାଉ ତାହାକୁ ଭେଟିଲି ॥
ଆସୁଥିଲେ ପଦ୍ମଲାଭ ପର୍ବତ ନିକଟରୁ ।
ଚଳିବାର ଛଟକ ଅଟଇ ମହାମେରୁ ॥
ତୁ ଯେବେ ମରିବାକୁ ଧରଣା ନ ବସ ।
ରାମକୁ ଚାଳିଲେ ମୃତୁ ପାଇବୁ ଆବଶ୍ୟ ॥୭୦

କାଳ ସର୍ପ ଜାଣି ଅଟଇ ରଘୁନାଥ ।
ତାହାର ମୁଖେ ଅଙ୍ଗୁଳି ନ ଲାଅ ଦଶମାଥ ॥
ଅଗାଦେଣ ପଡ଼ି ଲୋଡେଣ ନ ମର ।
ସ୍ୱଭାବେ ପରସ୍ତିରୀ ହରିବା ଅବେଭାର ॥
ବ୍ରହ୍ମାର କୋଳେ ତୁ ହୋଇଅଛୁ ଜାତ ।
ଯେ କଥା ଭଲ ପଣ ନୁହଇ ଯୁଗତ ॥
ବିଶେଷଣ ରାଜା ତୁ ଅଟୁ ଦଶଗିରି ।
ରାଜା ହୋଇ କେହ୍ନେ ହରିବୁ ପରସ୍ତିରୀ ॥
ନୃପତିମାନେ ତୋତେ ବୋଲିବେ ମନ୍ଦକୃତ ।
ବ୍ରାହ୍ମଣେହେଂ ଦେବା ନ ଘେନିମା ଉଚିତ ॥୮୦
ରାଜାକୁ ଯେ କଥା କେବେହେଂ ନ ଯୋଗାଇ ।
ତୁ କିମ୍ପା ଯେ କଥାକୁ ଲୋଡୁଅଛୁ ଯାଇଂ ॥
ଗ୍ୟାନ ନ ହରାଅ ତୁ ମୋହୋର ବୋଲ କର ।
ଯେ ମହୀମଣ୍ଡଳେ ତୋତେ ବୋଲନ୍ତି ବଳୀୟାର ॥
ସ୍ୱର୍ଗମର୍ତ୍ତ ପାତାଳ ଜିଣିଲୁ ତୁ ବଳେ ।
ଦେବତାଙ୍କୁ ଖଟାଇଲୁ ନିଜ ପାଦତଳେ ॥
ଯେଡ଼େ ସମ୍ପଦ କିମ୍ପା ନାଶ କରି ଲୋଡୁ ।
ସୀତା ଆଣିମାକୁ ମନେ କିମ୍ପା ପାଡୁ ॥
ସେ ମହାସ୍ୟତୀ କି ଛୁଇଂଲେ ମରିବୁ ।
ବିଷ ଖାଇ ଦେହ କେମନ୍ତେ ଧରିବୁ ॥୯୦
ଜନେକ ଦୋହିତା ଅଟଇ ତୀକ୍ଷ ଭାଲ ।
ବୁକୁରେ ଫୁଟିଲେ ତୁ ମରିବୁ ଲଙ୍କ ମଲ୍ଲ ॥
ଶୁଣି ରାବଣେଶ୍ୱର ବୋଇଲା ଶିର ଝୁଣି ।
ତୃତୁକାର ବୋଲି ବୋଇଲୁ ମୋତେ ପୁଣି ॥
ଯେହିକ୍ଷଣି ତୋର ଘେନିମି ପରାଣ ।
ଯେତେ ବୋଲି କୋପକଲାକ ରାବଣ ॥
ଡରେଣ ମାରୁଚି ଯୋଡ଼ଇ ବେନି କର ।
ଯାହା ବୋଲିବୁ ତାହା କରିବି ଲଙ୍କେଶ୍ୱର ॥
ହୋଇବି କନେକ ମୃଗ ଯିବି ରାମ ପାଶ ।

ଏତେ ବୋଲିଣ ସେ ହୋଇଲା ଦିବ୍ୟବେଶ ॥୧୦୦
ସୁବର୍ଣ୍ଣ ଦେହ ରୂପାର ଫୁଟି ଫୁଟି ।
ମର୍କତ ମଣିର ସିଂଗ ଦୁଇ ଗୋଟି ॥
ଦନ୍ତମୁକୁତା ମାଣିକ୍ୟର ଜିଭ ।
ନୟନ ଯୁଗଳ କି ନୀଳ ରତ୍ନ ଭାବ ॥
ହୀରାର ଶ୍ରବଣ ସ୍ଫଟିକ ଖୁରା ଚାରି ।
ଲାଞ୍ଜ ଗୋଟି ଅଟଇ ସୁବର୍ଣ୍ଣ ଚଂଉଂରୀ ॥
ରାବଣ କଟିରେ ବସିଲା ମାରୁଚି ।
ଗଗନେ ରହୁବର ବାହିଲାକ ସଂଚି ॥
ପଂଚୁବଟୀ ବନ ନିକଟେ ମିଳିଲେ ।
ଶକୁନ୍ୟ ବିଚାରି କଥାନ୍ତ ବୁଝିଲେ ॥୧୦
ରାବଣ ବୋଇଲା ମାରୁଚିକି ଚାହିଁ ।
ଶ୍ରୀରାମ ସନ୍ନିଧ୍ୟେ ଚରୁଥିବୁ ଯାଇଂ ॥
ଲୋଡେ ରଘୁନାଥ ଗୋଡ଼ାଇବେ ମାରି ।
ଅରନ୍ୟେ ପଶିବୁ ତୁ ମାୟାରୂପ ଧରି ॥
ଧୂର ହୋଇଯାଇ ଲକ୍ଷଣ ସୁମରିବୁ ।
ବେନି ଭାଇକି ତୁ କଢ଼ାଇ ଘେନିଯିବୁ ॥
ସମୟେ ଜାଣି ମୁଂ ତପସ୍ୱୀ ରୂପ ଧରି ।
ଭିକ୍ଷା ଦିଅନ୍ତେଣ ଆଣିମି ତାକୁ ହରି ॥
ମାରୁଚି ବୋଇଲା ଯେ ତୋହୋର ବଚନ ।
ସେ ମୋତେ ଅଲଘିତ ଅଟଇ ଦଶାନନ ॥୨୦
ଶ୍ରୀରାମକୁ ନିଚୟେ ଭଣ୍ଡିବଇଂ ମୁହିଂ ।
ମୁହିଂ ଆଜ ମରିବି ତୋହୋର ଜୀଇଂ ନାହିଁ ॥
ଯେତେ ବୋଲି ରଥରୁ ଡେଇଂଣ ପଡ଼ିଲା ।
ଭୟେ ମନ କରି ଧୀରେ ଧୀରେ ଗଲା ॥
ଗହନ ବନରେ ପଶିଲା ଦଶଶିରି ।
ପଂଚୁବଟୀ ବନେ ମୃଗ ଗୋଟି ଚରି ॥
ନବରତ୍ନେ ଜଡ଼ିତ ଦିଶଇ ଅନୁପାମ ।
ଦେଖିଣ ଜାନେକୀ ରାଇଲେ ଶ୍ରୀରାମ ॥
ଭୋ ରାମ ଦେଖ ଯେ ଅପୂର୍ବ ଜୀବ ଗୋଟି ।
ଶୁଦ୍ଧ ସୁବର୍ଣ୍ଣରେ ଶରୀର ଅଛି ଘୋଟି ॥ ୩୦

ଯେତେ ଦୂର ବନ ବୁଲିଣ ଅଇଲୁ ।
ଏସନେକ ମୃଗ କାହିଂ ନ ଦେଖିଲୁ ॥
ଏହାକୁ ମାରିଣ ଆଣ ରଘୁନାଥ ।
ଛାଲ ଗୋଟି କାଢ଼ି ଦିଅସି ମୋର ହାଥ ॥
ମୁହିଂ ତାହା ଯତନ କରି ଥୋଇଥିବି ।
ଅନେକ ସାନନ୍ଦ ବସିଣ ପାଇବି ॥
ଯେ ମୋହୋର ଶରଧା ନ ଭାଙ୍ଗ
ରଘୁସାଇଂ ।
ଚିତ ପ୍ରବୋଧ ମୋର କୁରଙ୍ଗୀ ଗୋଟି
ଦେଇ ॥
ହସିଣ ଶ୍ରୀରାମ ସୀତାକୁ ଚାହାନ୍ତି ।
ସଧୀରେ ସଧୀରେ ବଚନ ବୋଲନ୍ତି ॥୪୦
ଯେବେ ତୁ ଶରଧା କଲୁ ମହାସ୍ୟତୀ ।
ଯେହିକ୍ଷଣି ମୃଗ ହୋଇବ ତୋର କତି ॥
ତଇଲୋକ ସମ୍ପଦ ଯାହାରେ ହୋଇ ଦେଇ ।
ଜନେକ କୁରଙ୍ଗୀକି ଅପୂର୍ବ ଏହା ହୋଇ ॥
ଯେତେ ବୋଲି ରାମ ଧଇଲେ ଧନୁଶର ।
ଲକ୍ଷଣକୁ ଚାହିଂ ବୋଲନ୍ତି ରଘୁବୀର ॥
ଆମ୍ଭେ ମୃଗ ମାରି ହୋ ଆଣୁ ସଉମିତ୍ରୀ ।
ତୁ ରକ୍ଷା କରିଥାଅ ଜନେକ ଦୋହିତୀ ॥
ଘୋର ବିପୁନ୍ୟେ ଯେ ଡରଇ ମହାସ୍ୟତୀ ।
ଜନେକ ମୃଗକୁ ଯେ ବଳାଇଲା ମତି ॥୫୦
ଆମ୍ଭେ ଧାଡିକାରେ ମାରି ଆଣୁ ଯାଇଂ ।
ଶ୍ରୀରାମ ମୁଖୁଂ ଶୁଣି ସୀତୟା ବୋଲଇ ॥
ଅନେକ ମୃଗତ ବନସ୍ତେ ଦେଖିଲି ।
ଯେ ଜୀବ ସତ ନୋହଇ ବୋଲିଣ ମଣିଲି ॥
ବିଚାରି ଜାଣିଲି ଯେ ସତ ଯେ ନୋହଇ ।
ଯେତେକାଳେ ଯେହା ନ ଦେଖିଲି କାହିଂ ॥
ଯେହା ବିପୁରୀତ ଜାଣିଲଇଂ ମୁହିଂ ।
ବିନୟ ହୋଇ ସୀତ୍ୟା ଶ୍ରୀରାମଙ୍କୁ କହି ॥
ନମାର ମୃଗ ତେଣେ ନାହିଂ ମୋର କାର୍ଯ ।
ସୀତ୍ୟା ବୋଲ ଶୁଣି ବୋଲନ୍ତି
ରଘୁରାଜ ॥୬୦
ଡରିଲୁ କି ସୀତ୍ୟା ଗୋ ଜନେକ ମୃଗ
ଦେଖି ।
ତେଣୁ କରି ମୋତେ ତିଆରୁ ଶଶୀମୁଖୀ ॥
ମୁହିଂ ଯେ ବୋଇଲି ତୋତେ କୁରଙ୍ଗୀ
ଦେବି ଆଣି ।
ବିଅର୍ଥ ହୋଇବ କି ଯେ ମୋହୋର ବାଣୀ ॥
ମୋହୋର ବାଣୀ ସଖି ନୁହଇ ନା ମିଛ ।
ମୃଗ ମାରି ଦେବି ଦେଖିବୁ ପ୍ରତକ୍ଷ ॥
ମାୟା ହୋଇଲେ ଗୋ ମୋହୋର କିସ
ହୋଇ ।
ମାୟାକୁ ମାୟା ମୁଂ ଜାଣଇ ବଇଦେହୀ ॥
ଯେ ମୋହୋର କରେ ଯେବେ ଧନୁଶସ୍ତ୍ର
ଥିବ ।
ଇନ୍ଦ୍ର ହୋଇଲେ କି ମୋତେ ସେ
ଜିଣିମ ॥୭୦
ଯେତେ ବୋଲି ଧନୁରେ ନାରାଜ ବସାଇ ।
ଲକ୍ଷଣ ତିଆରି ବାହାର ରଘୁସାଇଂ ॥
ଶ୍ରୀରାମ ବିଜେ କରିବା ଦେଖିଲାକ ମୃଗ ।
ଡରେ ପଳାଇଲା ସେ ହୋଇଣ ବେଗ
ବେଗ ॥
ଥୋକାଯେକ ଦୂରେ ଅଦୃଶ୍ୟ ହୋଇଲା ।
ନ ଦେଖି ଶ୍ରୀରାମ କୋପେଣ ଧାଇଂଲା ॥
ପୁଣି କେତେହେଂକ ଦୂରେ ମୃଗ ଯେ
ଦିଶଇ ।
ଦେଖି ରଘୁନାଥ ଖର ହୋଇ ଯାଇ ॥
କିଛୁ ଦୂରେ ଯାଇ କୁରଙ୍ଗୀ ନ ଦୃଶି ।
ଅଦୃଶ୍ୟେ ନାରାଜେକ ରାମଚନ୍ଦ୍ର ପେଷି ॥୮୦
ନିର୍ଘାତ ଶବଦ କରିଣ ଶସ୍ତ୍ର ଗଲା ।
ମାରୁଚିର ଶିର ତକ୍ଷଣେ ଛିଣ୍ଡାଇଲା ॥
କନ୍ଧ ଛିଡ଼ି ଯହୁଂ ପଡ଼ିଲାକ ମୃଗ ।
ନିଜ ରୂପ ଧରିଣ ମାରୁଚି ଗଲା ସ୍ୱର୍ଗ ॥
ତ୍ରାହି ଲକ୍ଷଣ ବୋଲି ଶବଦେକ ଦେଲା ।
ରାମ ବାଣ ଘାତେ ମୋକ୍ଷ ହୋଇଗଲା ॥
ଲକ୍ଷଣ ବୋଲିଣ ସେ ଡାକିଲାକ ଯହୁଂ ।
ଶ୍ରୀରାମ ବିସ୍ମୟେ ଭାଳିଲାକ ତହୁଂ ॥
ଯେତେ ଆଶ୍ରିଯ ଶୁଣିଲା ପୁଣ ନାହିଂ ।
ଲକ୍ଷଣ ବୋଇଲା ମୃଗ କେବଣ ଗୁଣ
ପାଇଂ ॥୯୦
ଅବଶ୍ୟ ବିପତ୍ତି ହୋଇବାକ ଆଜ ।
ଯେତେ ବିଚାରିଣ ବିସ୍ମୟ ରଘୁରାଜ ॥
ଯେସନେକ ସମୟେ ଶୁଣ ବିପରୀତ ।
ତ୍ରାହି ବୋଲି ମୃଗ ରାଇଲା କିମର୍ଥ ॥
ସୀତାର ଶ୍ରବଣେ ଶୁଭିଲାକ ବାଣୀ ।
ଲକ୍ଷଣ ତତ୍ତ୍ୱ କରି ସେକଥା ହିଂ ଜାଣି ॥
ମନେ ବିଚାରିଲା ହୋଇଲା ପରମାଦ ।
ଯେତେକ ଭାଳିଣ ମନରେ ବିଷାଦ ॥
ସୀତ୍ୟା ବୋଲଇ ଯେ ଲକ୍ଷଣ ମୁଖ ଚାହିଂ ।
ରାମର ସନିଧକୁ ଯାସି ବେଗ
ହୋଇ ॥୧୦୦
ବନେ ପରମାଦ ପଡ଼ିଲା ଜାଣଇଂ ।
ତ୍ରାହି ଲକ୍ଷଣ ବୋଲି ଶବଦ ଶୁଭଇ ॥
ତୁ ହୋ ଯାସି ବେଗେ ଧନୁ ଶସ୍ତ୍ର ଧରି ।
ଶ୍ରୀରାମକୁ ଆଣ ସମ୍ଭାଳଣା କରି ॥
କିମ୍ପା ମୁଂ ଦଇତୁଣୀ ମୃଗକୁ ଶଧ କଲି ।
କଥାର ଛଟକେ ତ ସ୍ୱାମୀକି ହରାଇଲି ॥
ଯାଆ ବାବୁ ବେଗେ ଶ୍ରୀରାମଙ୍କୁ ଘେନିଆସ ।
ତେବେ ସିନା ମୋର ପଶିବ ସାହାସ ॥
ସୀତ୍ୟା ବୋଲ ଶୁଣି ବୋଲଇ ସଉମିତ୍ରୀ ।
ଯେମନ୍ତ କଥା କିମ୍ପା କହୁ ଗୋ
ଦୀର୍ଘନେତ୍ରୀ ॥୧୦
ତ୍ରୈଲୋକ୍ୟେ ରାମଙ୍କୁ ଜିଣନ୍ତା କେହି ନାହିଂ ।
ତୁ ଯେହା ମନରେ ଗୋ କିମ୍ପା ଧରୁ
ବଇଦେହୀ ॥
ମୋହୋର ବୋଲ ସ୍ୟତୀ ଶୁଣ ହେତୁ କରି ।
ଇନ୍ଦ୍ରହିଂ ସମରେ ରାମଙ୍କୁ ନୋହେ ସରି ॥
ସମୋଦ୍ର ସମାନ୍ୟେ ଅଟଇ ଯାର ବଳ ।
ତହିଂ ବୁଡ଼ିଣ କେ ପାଇବ ଥଳକୂଳ ॥
ଲକ୍ଷଣ ବୋଲ ଶୁଣି ସୀତ୍ୟା କୋପ କରି ।
କପାଳ କଣ୍ଟି ବୋଲଇ ଜନେକ କୁମାରୀ ॥
ମୁହିଂ ହୋ ଲକ୍ଷଣ ଜାଣିଲି ତୋର ମନ ।

ଯେବଣ କାରଣେ ତୁ ଆସିଅଛୁ ବନ ॥୨୦
ଭ୍ରଥର ତୋହୋର ଅଟଇ ଯେକ କଥା ।
ଶ୍ରୀରାମକୁ ତୋର ମନେ ନାହିଁ ବ୍ୟଥା ॥
କପଟେ ଆସିଅଛୁ ଭାଳେଣି ଭିତରେ ।
କଯେକଯା ଭ୍ରଥ ଶତୃଘନର ବିଚାରେ ॥
ରାମଙ୍କୁ ମାରିଣ ମୋତେ ଘେନିଯିବୁ ।
ସିଂଘର ଭାରିଯା ନେଇ ଶ୍ରୀକାଳକୁ ଦେବୁ ॥
ଯେ ତୋହୋର ମନ ଜାଣିଲିରେ ମୁହିଁ ।
କପଟେଣ ଗୋଡ଼ାଇ ଆସିଅଛୁ ତୁହି ॥
ଯେ ପାପ ମନ କିମ୍ପା ଧରୁ ସଉମିତ୍ରୀ ।
ତୋତେ କିମ୍ପା ଆଉ ସହିବ ଧରିତ୍ରୀ ॥୩୦
ରାମର ନିଧନେ କି ମୁହିଁ ଧରିବଇଁ ପ୍ରାଣ ।
ଯେହେର୍ଣ୍ଣେ କଥା କିମ୍ପା ଧଇଲୁ ଲଇକ୍ଷଣ ॥
ମୋତେ ଘେନି ଘର କରିବାକ ଭ୍ରଥ ।
ଭାଳେଣି ହୋଇଅଛି ତୁମ୍ଭର ଯେମନ୍ତ ॥
ମୁହିଁ ମନେ ମନେ ବିଚାରୁଥାଇ ଯେହା ।
ଶ୍ରୀରାମକୁ ବନ ଯେ ପେଷିଲା ନରନାହା ॥
ଲକ୍ଷଣ କିମ୍ପାଇ ଯେ ଗୋଡ଼ାଇ ଅଇଲା ।
ଏଡ଼େ ଦୁଃଖ କେବଣ କାରଣେ ସହିଲା ॥
ଯେବେ ଜାଣିଲି ତୋର ମାୟାର ଯେ ପ୍ରକୃତି ।
ଯେତେ ଛଦ୍ରମେ ତୁ ଆସିଛୁ ସଉମିତ୍ରୀ ॥୪୦
ଯେକ ଚରୁରୁ ତୁମ୍ଭେ ଜନମ ଚାରିପୁତ୍ର ।
ଯେକ ପିତାରୁ ତୁମ୍ଭେ ହୋଇଲ ଯେ ଜାତ ॥
ମାତା ଗୁଣ ଘେନି ଅହନ୍ତା ବହିଲ ।
ଜ୍ୟେଷ୍ଠ ଭାଇକି ଯେ ମନ୍ଦ ଚିନ୍ତା କଲ ॥
ପ୍ରତକ୍ଷେ ଶୁଣିଲି ରାମ ଡାକିଲାକ ତୋତେ ।
ଯେତେବାଗେ ପୁଣ ନଯାଉ କେବଣହିଁ ମତେ ॥
ପାପକଥା କିମ୍ପା ଧଇଲୁ ଲକ୍ଷଣ ।
ରାମଙ୍କୁ ନ ଦେଖିଲେ ମରିବି ଯେହିକ୍ଷଣ ॥
ଚନ୍ଦ୍ରର କଳଙ୍କ କି ପୋଛିଲେଣ ଯାଇ ।
ଦିବସ କାଳେ ଯେହ୍ନେ ନ ଲୁଚଇ ଛାଇ ॥୫୦
ସମୋଦ୍ର ପଙ୍କ କେ ପକାଇବ କାଢ଼ି ।
ସୀତ୍ୟା ଜୀଅଇଁ କି ଶ୍ରୀରାମକୁ ଛାଡ଼ି ॥
ଯଦ୍ୟପି ପଶ୍ଚିମେ ଉଇଁବେ ଆଦିତ୍ୟ ।
ତଥାପି ମୋହୋର ହୋ ନ ଚଳିବ ଚିତ୍ତ ॥
ତୁ ହାଦେ ବିଚାର କରସି ହୋ ଯେହା ।
ଶ୍ରୀରାମ ମୋହୋର ପଂଚୁପ୍ରାଣ ନାହା ॥
ସୀତ୍ୟା ବୋଲ ଶୁଣି ବୋଲଇ ସଉମିତ୍ରୀ ।
ଯେ କଥା କିମ୍ପା ମନେ ଧରୁ ଦୀର୍ଘନେତ୍ରୀ ॥
ଶ୍ରୀରାମକୁ ଜିଣନ୍ତା ନାହିଁ ରବିତଳେ ।
ସାଂଗ୍ରାମେ ହାରିବେ ଯାକୁ ଦଶ ଦିଗପାଳେ ॥୬୦
ସେ କିମ୍ପା ନିସତ ହୋଇଣ ଡାକ ଦେବ ।
ତ୍ରୈଲୋକେ ଅଜୟ ଅଟଇ ରାଘେବ ॥
ଶୁଣିଣ ଜାନେକୀ ବୋଇଲେ କୋପଭରେ ।
ତୁ ମୋତେ ହରିବାକୁ ଆସିଛୁ ବିଚାରେ ॥
ତୁ ଚାଣ୍ଡାଳରେ କିଞ୍ଚିତ ଜନ ଅଟୁ ।
ହିଆରେ ପାପ ଲାଇ ଶ୍ରୀରାମକୁ ଖଟୁ ॥
ମୁହିଁ ପତିଭଗତା ସ୍ୱାମୀର ହିତକାରୀ ।
ଶ୍ରୀରାମହୁଁ ଚିତ୍ତ ଆନେ ନ ବଳଇ ମୋହୋରି ॥
ବିଭାକାଳେ ଅଗ୍ନି ଛୁଇଁ ନିଅମ କଲି ।
ସ୍ୱାମୀର ଅଭାବେ ଦେହ ନ ଧରିବି ବୋଇଲି ॥୭୦
ଅଗ୍ନିରେ ପଶିବି ମୁଁ ଶ୍ରୀରାମ ବିହୁନେ ।
ଆନ ପୁରୁଷକୁ ମୁଁ ନ ଦେଖଇ ନୟନେ ॥
ସ୍ୱାମୀକି ମୋହୋର ବିପତି ପଡ଼ିଲା ।
ତ୍ରାହି ଲକ୍ଷଣ ବୋଲି ଶବଦ ଶୁଭିଲା ॥
ପ୍ରତକ୍ଷେ ଶୁଣିଲି ତୋହୋର ଯାଇ ନାହିଁ ।
ଯେମନ୍ତ ଦୁରାତ୍ମା ତୁ ହୋଇଲୁ କିସ ପାଇଁ ॥
ଅନେକ ଝିଙ୍ଘାସ ଯହୁଁ ବୋଇଲେ ମହାସ୍ୟତୀ ।
ଲକ୍ଷଣ ତହିଁକି କଲେ କୋପମୁର୍ତ୍ତି ॥
ତୁମ୍ଭେ ମାଇପେ ସ୍ୱଭାବେ ଚଂଚଳ ।
ବେଭାର କଥା ବୁଝ ତୁମେ ଖଳ ॥୮୦
ଯେତେ ବୋଲି ଲକ୍ଷଣ ଚନ୍ଦ୍ର ସୂର୍ଯ୍ୟନ୍ତ ଚାହିଁ ।
ଦେବ ଗନ୍ଧର୍ବକୁ ସାଖୀ କରି କହି ॥
ଅଗ୍ନିପବନ ମେଦନୀ ଜଳ ଥଳ ।
ଇନ୍ଦ୍ରାଦି ଦେବତା ଦଶ ଦିଗପାଳ ॥
ତୁମ୍ଭେ ଦେବତାଯେ ଦିବ୍ୟ ଗ୍ୟାନେ ଶୁଣ ।
ମୃଗ ମାରିବାକୁ ଗଲେ ରଘୁନାନ ॥
ମୋତେ ବୋଇଲେ ତୁ ସୀତ୍ୟାକୁ ରଖିଥାସି ।
ରାଘେବ ଆଗ୍ୟାଂରେ ମୁଁ ଯେଥେ ଅଛି ବସି ॥
ବିପ୍ରୁନ୍ୟେ ଶୁଭିଲା ଲକ୍ଷଣ ତ୍ରାହି ବାଣୀ ।
ଯେ ବଚନ ଆମ୍ଭେ ବେନି ଜନେ ଶୁଣି ॥୯୦
ଯଦ୍ୟପି ଶୁଣିଲି ମୋହୋ ପ୍ରତେ ନାହିଁ ।
ସୀତ୍ୟା ବୋଇଲେ ତୁ ଯାସି ବେଗ ହୋଇ ॥
ନାସ୍ତି ବୋଲନ୍ତେଣ ବୋଇଲେ ମୋତେ ମର୍ମ ।
ସାଖ୍ୟ ହୋଅ ଅଷ୍ଟ ଲୋକପାଳ ଧର୍ମ ॥
ଯେଥୁ ମୋର ଗଲେ ହୋଇବ ଯେତେ ମନ୍ଦ ।
ସେ ଦୋଷ ମୋତେ ନ ଲାଗୁ ଶୁଣ ଇନ୍ଦ୍ର ଚନ୍ଦ୍ର ॥
ଯେତେ ବୋଲି ଲକ୍ଷଣ ସୀତ୍ୟା ମୁଖ ଚାହିଁ ।
ଶାପ୍ୟ ଦେଲା ସଉମିତ୍ରୀ କୋପଭର ହୋଇ ॥
ବୋଇଲା ଗୋ ସୀତ୍ୟା ଦୁଷ୍ଟ ବୁଧି କଲୁ ।
ଶ୍ରୀରାମହୁଁ ମୋତେ ବେଗଳ ମଣିଲୁ ॥୧୦୦
ଆବର ଅନେକ ବୋଇଲୁ ଦୋଷ ବାଣୀ ।
ପରେ ଦୂଷିତ ହୁଅ ତୁ ଜନେକ ଦୁଲଣୀ ॥
ଯେତେ ବୋଲି ଧନୁ ଶସ୍ତ୍ର ଘେନି ଗଲା ।
ଶ୍ରୀରାମର ଗତ ପନ୍ଥ ଅନୁସରି ବିପ୍ରୁନ୍ୟେ ପଶିଲା ॥
ଯହୁଁ ସେ ଲକ୍ଷଣ ଗଲା ପିଠିଦେଇ ।

ବନସ୍ତରେ ଲୁଚିଥିଲା ଲଙ୍କ ସାଇଂ ॥
ମନେ ବିଚାରଇ କରିବି କିସ ବୁଧି ।
ଯେକା ହୋଇଅଛି ଯୁବତୀ ରତ୍ନନିଧି ॥
ମାରୁଚି ଉପାୟେ ତ ଦୁହିଂକି ଘେନିଗଲା ।
ତାଡ଼େକୀ ପୁଅ ମୋତେ ଅନେକ ଗୁଣ କଲା ॥୧୦
ଯେସନେକ ବେଳେ ଯେବେ ହରି ପାରଇ ସ୍ୟତୀ ।
ତେବେ ସେ ରବିତଳେ ରହଇ ମୋର କୀର୍ତ୍ତି ॥
ଶ୍ରୀରାମ ଅଇଲେ ନୋହଇ ସୀତ୍ୟା ନେଇ ।
ଯେସନେକ ବେଳେ ଦଣ୍ଡେ ନ ପାରଇ ରହି ॥
କେମନ୍ତେଣ ଯିବି ଜାନେକୀର କତି ।
ମୋତେ ଦେଖି ବାଳୀ କରଇ କିକି ଭୀତି ॥
ସାକ୍ଷାଦ ସାଧେବୀ ଜନେକ କୁମାରୀ ।
ଅସୁର ରୂପ ଦେଖି ନ ପୁଣ ଭୟେ କରି ॥
ଯେସନ ବିଚାରି ରଥୁଂ ଅବତରି ।
ରାକ୍ଷସ ରୂପ ଲେଛି ତପସୀ ରୂପ ଧରି ॥୨୦
ଦୁଇ କର ଦୁଇ ଚରଣ ଯେକଇ ଯେ ମୁଖ ।
କି ଜାଣି ତପୀ ପଣ ଦିଶଇ ସୁରେଖ ॥
ଶିରେଣ ଜଟା ଯେ ନାଗବନ୍ଧ ଫେରି ।
କର୍ଣ୍ଣରେ ତମ୍ୟାର କୁଣ୍ଡଳ ବେନି ଭରି ॥
କଣ୍ଠରେ ଲାଇଲା ରୁଦ୍ରାକ୍ଷର ମାଳ ।
ସ୍ୟଷ୍ଟିକର ହାର ଲୁଳଇ ବାହୁମୂଳ ॥
କଷା ବସ୍ତ୍ର ପିନ୍ଧି ଦୋସଡ଼ା ମୃଗ ଛାଲ ।
ଗୋମଳ ପାଉଂଶ ଚିତା କରିଅଛି ଭାଲ ॥
ବେଦ କରାଣ୍ଡି ପୋଥି କାଖ ମୂଳେ ଅଛି ।
କରେ କୁଶବଟୁ ବିଶର୍ବାର ବଛି ॥ ୩୦
ଧୀର ଧୀର ହୋଇ ଶଙ୍କା ମନ ଧରି ।
ଚତୃବେଦ ଅଧ୍ୟାନ କନଡ଼ା ରାଗେ କରି ॥
ଓଂକାର ନାଦ କରି ଗାଇତ୍ରୀ ପଢ଼ଇ ।
ଛଦ୍ମ ତପୁସୀ ସେ ଦ୍ୱାରେ ଉଭା ହୋଇ ॥
ସୀତ୍ୟା ଶୁଣିଲେକ ସୁସ୍ୱର ବେଦ ଧ୍ୱନି ।
ବିଚାରଇ କେଣୁ ଅଇଲେ ଏ ମୁନି ॥
ଶ୍ରୀରାମ ନାହାନ୍ତି କେ କରିବ ପାଦପୂଜା ।
ଯେତେ ବିଚାରିଣ ଜନେକ ତନୁଜା ॥
ସମାସ୍ୟା ନ ଦେଇଣ ଭିତରକୁ ଉଠିଗଲେ ।
ପୁରୁଷ ନିକଟେ ଦେଖିଣ ଭୟେ କଲେ ॥୪୦
ଦୋହୋରା ଅଗ୍ନି କତିରେ ଯାଇ ଦେବୀ ବସି ।
ମଢ଼ିଆ ଭିତରେ ରାବଣେଶ୍ୱର ପଶି ॥
କି ଯେ ଘରେ ମନିଷ୍ୟ କେହି ନାହିଂ ।
ଯେତେ ବୋଲି ଦୁଆରେ ବସିଲା ଲଙ୍କ ସାଇଂ ॥
ରାବଣକୁ ଦେଖି ଭୟେ ଉଠିଲେ ମହାସ୍ୟତୀ ।
ହେଠ ମାଥ ହୋଇ ଜନେକ ଦୋହିତୀ ॥
ଦଶଶିର ବୋଲଇ ଶୁଣସିରେ ବାଳୀ ।
ରୂପେ ସମ ତୋତେ ନାହିଂ ମହୀଆଳୀ ॥
ଶରଦ ଚନ୍ଦ୍ରମାରୁ ଅଗୁଳି ତୋର ମୁଖ ।
କିମ୍ପାଇ ଯେକସରେ ବିପୁନ୍ୟେ ପାଉ ଦୁଃଖ ॥୫୦
କାହାର ଦୋହିତା ତୁ କାହାର ରମଣୀ ।
କିମ୍ପା ଯେଥକୁ ଅଇଲୁ ରୂପ ଖଣି ॥
କେବଣ କୁଳେ ଜାତ କେବଣ ଦେଶେ ଘର ।
କେତେ ବଏସ ଅଟଇ ତୋହୋର ॥
କିଂପାଇ ବନସ୍ତେ ପଶିଲୁ ତୁ ଅବା ।
ବନଜନ୍ତୁମାନଙ୍କୁ ତୋର ନାହିଂ ନା ତରିଯା ॥
ବନସ୍ତରେ ଅଗମ୍ୟ ଅଟଇ ଯେହୁ ପନ୍ଥ ।
ଦେବାସୁର ମୁନି ନୁହନ୍ତି ସାମରଥ ॥
ଅସୁରଙ୍କ ଭୂମି ଜନଗମ୍ୟ ନାହିଂ ।
କେମନ୍ତେ ଅଛୁ ଯେଥେ ଦିବ୍ୟ ବେଶ ହୋଇ ॥୬୦
ମୋହୋର ଦେଖନ୍ତେ ଅଛନ୍ତି ଯେତେ ନାରୀ ।
ଅପସରୀ କିନ୍ନରୀ ଦକ୍ଷ ବିଦ୍ୟାଧରୀ ॥
ତୋତେ ସମସରି ନୁହନ୍ତି ଜଣେ କେହି ।
ଶୁଧ୍ୟ ସୁବର୍ଣ୍ଣ ଜାଣି ଦିଶଇ ତୋର ଦେହୀ ॥
ରାବଣ ବଚନ ଶୁଣି ସୀତ୍ୟା ଡରି ।
ଧୀର କରି କହଇ ଜନେକ କୁମାରୀ ॥
ମିଥିଳା ଦେଶର ମୁଂ ଜନେକ ଦୋହିତା ।
ପୃଥିରୁ ଜନମିଲି ନାମ ମୋର ସୀତ୍ୟା ॥
ଅଯୋଧ୍ୟା ନୃପତି ଦଶରଥ ରାୟେ ।
ରାମ ନାମେ ତାର ଜେଷ୍ଠ ଯେ ତନୟେ ॥୭୦
ଭ୍ରଥ ଲକ୍ଷ୍ମଣ ଶତୃଘନ ସାନ ।
ତିନିମାତାରୁ ଜାତ ଯେ ଚାରି ନନ୍ଦନ ॥
ଶ୍ରୀରାମ ଜନନୀ କଉଶଲ୍ୟା ରାଣୀ ।
କୟେକୟା ମାତା ଭ୍ରଥର ଜନନୀ ॥
ସୁମିତ୍ରାନନ୍ଦନ ଲକ୍ଷଣ ଶତୃଘନ ।
ଋଷିସିଂଘ ଚରୁରୁ ହୋଇଲେ ଉତପନ ॥
ଶ୍ରୀରାମକୁ ବିଶ୍ୱାମିତ୍ର ମାଗି ଘେନିଗଲେ ।
ବାର ବରଷ ବେଳେ ରାମ ତାଡ଼େକୀ ବଧ କଲେ ॥
ଅସୁର ବଳ ନାଶି ରଖିଲେକ ଯାଗ ।
ଦେବତାୟେ ସ୍ୱର୍ଗରେ ଭୁଞ୍ଜିଲେ ହବିର୍ଭାଗ ॥୮୦
ବିପୁଳ ବନେ ଗଉତମ ନାରୀ ।
ଶାପ୍ୟରେ ଥିଲା ସେ ପାଷାଣ ରୂପ ଧରି ॥
ଶ୍ରୀରାମ ପାଦ ଲାଗି ନିଜ ଦେହ ପାଇ ।
ତହୁଂ ରଘୁନାଥ ମିଥିଳାକୁ ଯାଇ ॥
ରୁଦ୍ରଧନୁ ମୋର ପିଅର ଥୋଇଥିଲା ।
ହେଳେ ରଘୁନାଥ ତାହା ଆମଞ୍ଜିଲା ॥
ମୋତେ ବିଭା ହୋଇ ଅଯୋଧ୍ୟା ଅଇଲେ ।
ବାଟେ ପ୍ରଶୁରାମ ଦର୍ପ ହତ କଲେ ॥
ନିଜ ପୁରେ ଥାନ୍ତେ କେତେହେଂକ କାଳ ।
ମନେ ବିଚାରିଲା ଦଶରଥ ମହୀପାଳ ॥୯୦
ଶ୍ରୀରାମକୁ ରାଜା କରିତ ବୁଧି କଲା ।
ଅଭିଷେକ ଯୋଗାଡ଼ ସମସ୍ତ ଭିଆଇଲା ॥

ରାତ୍ର ପାହିଲେଣ ରାଜା ହୋଅନ୍ତେ ମୋର
ନାହା ।
କଯେକୟା ଜନନୀ ଜାଣିଲାକ ତାହା ॥
ରାତ୍ରେଣ ରାଜାଙ୍କୁ ସତ୍ୟ କରାଇଲା ।
ଭ୍ରଥ ରାଜା ହୋଉ ବୋଲିଣ ବୋଇଲା ॥
ଶ୍ରୀରାମ ଚଉଦ ବରଷ ବନ ଯାଉ ।
ତେଣୁ ସେ ଅରନ୍ୟେ ପଶିଲେ ମୋର ପ୍ରହୁ ॥
ସାଙ୍ଗେଣ ସାନୁଜ ଲକ୍ଷଣ ଅଇଲା ।
ମୋତେ ଘେନି ରାମ ବନବାସ
କଲା ॥୧୦୦
ଆସିବା ବେଳକୁ ଅଠର ବରଷ ।
ଆଜ ସରିକି ରାମ ବୟସ ଏକତ୍ରିଶ ॥
ଦଶବରଷନି ବନବାସ କଲୁ ।
ତିନି ବରଷନି ଯେଥରେ ରହିଲୁ ॥
ଆମ୍ଭର ଅଇଲେଣ ଦଶରଥ ମଲେ ।
ବାହୁଡ଼ାଇ ନେମାକୁ ଭ୍ରଥ ଆସିଥିଲେ ॥
ଚିତ୍ରକୂଟ ପର୍ବତେ ଭେଟିଲେକ ଆସି ।
ଅନେକ ବଚନ ବୋଇଲେ ବିଶେଷି ॥
କେବେହେଂ ଶ୍ରୀରାମ ବାହୁଡ଼ି ନ ଗଲେ ।
ଭ୍ରଥ ହାଥେ ରାମ ପାଦୁକା
ଦୁଇଦେଲେ ॥୧୦
ତାହା ଘେନି ଅଯୋଧାରେ ରାଜ୍ୟ କରଇ
ଭ୍ରଥ ।
ଏ ବଚନ ଶୁଣି ବୋଇଲା ଦଶମାଥ ॥
ତୋହୋର ପତି ଯେବେ କାହିଂ ଯାଇଅଛି ।
ଏ ବଚନ ଶୁଣି ବୋଇଲେ ମୃଗାକ୍ଷୀ ॥
ଅପୂର୍ବ କନେକ ମୃଗ କାହୁଂ ଯେ ଅଇଲା ।
ତାହାକୁ ଦେଖି ମୋର ଶରଧା ବଳିଲା ॥
ତେଣୁ ଶ୍ରୀରାମ ଗଲେ ମୃଗ ମାରି ।
ବିପରୀତ ବାଣୀ ଅଦଭୁତେ ଫୁରି ॥
ତାହା ଶୁଣି ପୁଣି ଲକ୍ଷଣ ହିଁ ଗଲା ।
ମୁହିଂ ମଢ଼ିଆରେ ଅଛଇ ଯେକଲା ॥୨୦
ତୁ ଯେବେ ଭୋ ମୁନି ହୋଇଲୁ ଉପଗତ ।
କ୍ଷଣକେ ପଠାରି ତୁ ଥାଅ ଭଗବନ୍ତ ॥

ଶ୍ରୀରାମ ଅଇଲେ କରିବେ ତୋତେ ପୂଜା ।
ଦଣ୍ଡେ ରହ ମୁନି ବାହୁଡ଼ି ତୁ ନ ଯା ॥
ଲକ୍ଷଣ ସହିତେ ଆସିବେ ବେନି ଭାଇ ।
ଆରାଧନା କରିବେ ତୋତେ ମାହାସୁଖ
ପାଇ ॥
ଯିସ ଯିସ କଥା କହନ୍ତି ଦେବୀ ସ୍ୟତୀ ।
ସେ କଥା କିଛି ନ ଶୁଣଇ ଲଙ୍କପତି ॥
ମନେ ବିଚାରଇ କେମନ୍ତେ ନେମି ଯେହା ।
ନ ପୁଣ ଆସିଣ ମିଳଇ ଯେହାର
ନାହା ॥୩୦
ଛନ ଛନ ମନ ବିକୃତ ତାର ଚିତ୍ତ ।
ଦେଖିଣ ପଚାରଇ ଜନେକ ଦୋହିତ ॥
ଭୋ ମୁନି ମୋତେ ଯେ ପୁଛିଲୁ ତୋର
କୁଳ ।
ସୂର୍ଯ୍ୟବଂଶ ଭୁଆସୁଣି ମୁଂ କହିଲି ସକଳ ॥
କେବଣ କାରଣେ ଅଇଲୁ ଭୋ ଯତି ।
କେବଣ ଦେଶେ ଘର କେବଣ ତୋର
ଜାତି ॥
କହ ମୋହୋର ଆଗେ ପ୍ରତେ ଯେଣେ
ଆସଇ ।
ସୀତ୍ୟା ବଚନ ଶୁଣି ମାୟାମୁନି ଭାଷଇ ॥
ଶୁଣସି ଜାନେକୀ ମୋହୋର ମହିମା ।
ପିତା ଅଜା ମୋହୋର ଅଟଇ
ବେଦବ୍ରହ୍ମା ॥୪୦
ମୁହିଂ ସେ ରାବଣ ଲଙ୍କାର ନୃପତି ।
ତିନିଭୁବନେ ମୁହିଂ ଅଟଇ ଚକ୍ରବ୍ରତୀ ॥
ବିଶର୍ବା ଋଷି ଗୋ ଅଟଇ ମୋର ପିତା ।
ନଉକେଶୀ ରାକ୍ଷସୀ ଗର୍ଭଧାରୀ ମାତା ॥
କୋବେର ମୋହୋର ଅଟଇ ଜ୍ୟେଷ୍ଟଭାଇ ।
କୁମ୍ଭକର୍ଣ୍ଣ ଭାବିଷେଣ ମୋହୋର ସାନ ଦୁଇ ॥
ଛପନ ଗଣ୍ଡା ଯୁଗ କରିବି ପୃଥି ଭୋଗ ।
ବ୍ରହ୍ମାବର ପରସାଦେ ହୋଇଲି ଯେସନେକ
ଯୋଗ ॥
ଆଜକୁ ମୋର ବୟେସ ଶୁଣ ଗୋ
ମହାସ୍ୟତୀ ।

ଷାଠିଏ କୋଟି ଯେ ତିରିଶି ଅଇବ୍ରତି ॥୫୦
ଯେତେକ ବୟେସ ମୁଂ ଅଛଇ ଦେହ
ଘେନି ।
ଭୁଜବଳେ ସାଧିଲି ତ୍ରୈଲୋକ୍ୟମେଦିନୀ ॥
ମୋର ତହୁଂ ବଳବନ୍ତ ନାହିଂ କେହି ଆନ ।
ମୁଇଂ ସେ ସୁନ୍ଦେରୀ ଗୋ ଅଟଇ ଦଶାନନ ॥
ତେଣୁ ସେ ବଷ୍ୟାବୃତି ସକଳ ନଗ୍ରପୁର ।
ସପତଦୀପା ପୃଥି ସପତ ସାଗର ॥
ମୁହିଂ ଆକ୍ରଷିଣ ହରିଲି ସକଳ ବିତ୍ତ ।
ମୋହୋର ନାମେ ହେଲ ଘେନଇ ଜଗତ ॥
ତୋହୋ ଯେଥି ଥିବା ପାଇଲି ବାରତା ।
ତହିଂକି ଯେଥିକି ଗୋ ଅଇଲି ଭୋ
ସୀତ୍ୟା ॥୬୦
ତୁ ମୋହୋର ଭାରିଯା ହୋଇବୁ
ବଇଦେହୀ ।
ମୋତେ ଘେନି ଭୋଗ୍ୟ କରସିରେ ମହୀ ॥
ତୋହୋର ସାଦ୍ରିସେ ତୋତେ ଅଳଙ୍କାର
ଦେବି ।
ବିବିଧ ଭୋଗ ତୋତେ ଯୋଗାଇଣ ଥିବି ॥
ମନ୍ଦଦୋରୀ ସହିତେ ମୋର ଯେତେ ରାଣୀ
ଅଛି ।
ସବିହେଂ ସେବା ତୋତେ କରିବେ
ମୃଗାକ୍ଷୀ ॥
ଯେ ମୋହୋର ବଚନ ନ କରସି ଆନ ।
ମୋତେ ପୀଡ଼ା ସଖି କରଇ ମଦନ ॥
ଯେ ତୋହୋର ଦେହ ମୋହୋର ଦେହେ
ଲାଗୁ ।
ବିରହ ତାପ ମୋର ତୋହୋରେଣ
ଭାଂଗୁ ॥୭୦
ଶ୍ରୀରାମ ପତି ପଣେ ନ ଯୋଗାଇ ତୋତେ ।
ଅଳପ ଆଷ୍ୟ ତାର ଅଟଇ ଯୁଗତେ ॥
ମୁଇଂ ସେ ତଇଲୋକେ ନୃପତି ଅଟଇ ।
ଯେ ତୋହୋ ରୂପକୁ ବଳଭ ପଣେ ଖଟଇ ॥
ଶୁଣିଣ ଜାନେକୀର କମ୍ପଇ ଶ୍ୟରୀର ।

କି ଜାଣି ବଜ୍ର ଯେ ପଡ଼ିଲା ତାର ଶିର ॥
କପାଳ କଣ୍ଟି ଦେବୀ ବୋଲଇ ବଚନ ।
ଅନୀତି କଥା କିକେ କହୁ ଦଶାନନ ॥
ଶ୍ରୀରାମଚନ୍ଦ୍ର ତୋତେ ମଣନ୍ତି କୀଟପୋକ ।
ଶ୍ରୀରାମ କୋପିଲେ ନରହେ ତୈଲୋକ୍ୟ ॥୮୦
ସିଂଘର ଘରଣୀକି ଶ୍ରୀକାଳ ପାରଇ କି ହରି ।
ଯେହା କିମ୍ପା ମନେ ବିଚାର ନକରୁ ଦଶଶିରି ॥
ତୁ ସେ ସଂସାରେ ବଡ଼ କ୍ଷତ୍ରୀ ଅଟୁ ।
ସବୁକୁ ଜିଣିପାରୁ ଶ୍ରୀରାମଙ୍କୁ ନ ଅଣ୍ଟୁ ॥
ଯେଡ଼େକ ଗାରିମା ଅଟଇ ତୋହୋର ।
ଶଚୀକି ହରିପାରୁକି ଦେଖନ୍ତେ ବଜ୍ରଧର ॥
ଅଗ୍ନିର ଶିଖା ଧରି ପାରୁକି ନିଜ କରେ ।
ଉମାକୁ ହରିପାରୁକି ଦେଖନ୍ତେ ଶୂଳଧରେ ॥
ଶ୍ରୀରାମ ଥାନ୍ତେ ନ ପାରୁ ମୋତେ ହରି ।
କାଳ ଗରଳ ଖାଇ ପାରିବୁ କି ତରି ॥ ୯୦
ଶ୍ରୀରାମର ତେଜ କାଳାନଳ ଜାଣି ।
ତହିଁ ପଶି କେହ୍ନେ ତରିବୁ ବିଂଶପାଣି ॥
ରଘୁନାଥ ବଳ ଅଗାଦ ସିନ୍ଧୁଜଳ ।
ପଶିଲେ ବୁଡ଼ି ନ ପାଇବୁ ଥଳକୂଳ ॥
ରାଘେବ ପ୍ରଚଣ୍ଡ ପବନ ପ୍ରଖର ।
ଧୂଳି ପ୍ରାୟେ ଉଡ଼ି ପଡ଼ିବୁ ଦଶଶିର ॥
ଭଲେ ପଳା ଯେଥେ ଦଣ୍ଡେହେଁ ନ ରହ ।
ଲକ୍ଷଣର ଶରେ ଛିଡ଼ିବ ତୋର ଦେହ ॥
ଶ୍ରୀରାମ ଦୟାଳୁ ନିରେଖ ନ ମାରଇ ।
ଲକ୍ଷଣ ଛତ୍ରୀବର ଓପ୍ରୋଧ ନ କରଇ ॥୧୦୦
ପ୍ରାଣ ଘେନି ଯେଥୁଂ ଯାସି ଲଙ୍କ ସାଇଂ ।
ଶ୍ରୀରାମ ଅଇଲେ ତୋର ପ୍ରାଣ ପାଇନାହିଁ ॥
ଦେବ ଦାନେବ ଦକ୍ଷ ବିଦ୍ୟାଧର ।
ପଚାଶ ଉଡ଼ଗ ରାକ୍ଷସ କିନ୍ନର ॥
ଯେହାଙ୍କର ସଙ୍ଗେ ସମର କଲେ ଜିଣୁ ।
ମନିଷ୍ୟ ରୂପେ ରାମ ଜନମିଲେ ତେଣୁ ॥

ରାଘେବ ସଙ୍ଗେ ନୁହସି ଖଡ଼ିଆଳି ।
ଦଶଦିଗକୁ ହୋଇବ ଦଶ ମୁଣ୍ଡବଳି ॥
ସଗୋତ୍ର ସହିତେ ଯମପୁର ଯିବୁ ।
ଆଉ କ୍ଷଣେ ମାତ୍ର ଯେଥେ ଯେବେ ଥିବୁ ॥୧୦
ଶୁଣି ରାବଣେଶ୍ୱର କୋପେ ବୋଲଇ ବାଣୀ ।
ମୋହୋର ମହିମା ନାହୁଂ କି ଗୋ ଶୁଣି ॥
କପିଳାସ କନ୍ଦର ଟୋଳିଲି ବାମ କରେ ।
ତେତିଶ କୋଟି ଦେବ ଜିଣିଲି ଭୁଜବଳେ ॥
ପାତାଳେ ନାରାୟଣକୁ ଦେଖିଲଇ ଯାଇ ।
ତିନିପୁରେ ମୋତେ ସମସରି ନାହିଁ ॥
ଏ ରାମ ଉପର ବଂଶେ ଅରନ୍ୟ ବୋଲି ରାଜ୍ୟ ହୋଏ ।
ମୋହୋର ସଙ୍ଗରେ ସମର ଘୋର କଏ ॥
ଚାପୋଡ଼େ ମାରି ତାର ମୁଣ୍ଡ ଛିଣ୍ଡାଇଲି ।
ସ୍ୱର୍ଗର ସମ୍ପଦ ଲଙ୍କାଏ ଠୁଳ କଲି ॥ ୨୦
ଏ ରାମ ନିବଳ ବୋଲି ବନକୁ ଅଇଲା ।
ବଳୀଆର ପଣେ ଭ୍ରଥ ନୃପତି ହୋଇଲା ॥
ମନ୍ତ୍ରୀ ଅମନାତ୍ୟେ ନ ଗଛିଲେ ଯେହା ।
ଅଧମ ବୋଲି ଗୋ ତୋହୋର ନିଜ ନାହା ॥
ପଶୁ ଜୀବ ପ୍ରାୟେ ବନସ୍ତେ ବୁଲଇ ।
ତୋହୋର ପରା ନାରୀକି ଶ୍ରୀରାମ ରମ୍ୟଇ ॥
ମୁହଂ ସେ ବୀରମର୍ଦ୍ଦନ ଲଙ୍କନାଥ ।
ଆସ ଆସ ସୁନ୍ଦେରୀ ଗୋ ଧର ମୋର ହାଥ ॥
ତୋହୋର କର ଛୁଇଂଲେ ପାଇବି ପରମ ସୁଖ ।
ଶୁଣିଣ ଜାନେକୀ କଲେ କୋପମୁଖ ॥ ୩୦
ବୋଇଲେ ଚାଣ୍ଡାଳରେ କାହିଂକି ଅଇଲୁ ।
ପୁରୁଷ ଯେଥେ ନାହାନ୍ତି ତୁ କିମ୍ପା ରହିଲୁ ॥
ତୁତୁକାର ବାଣୀ ବୋଇଲୁ ବହୁତ ।
ଛଦ୍ମ ତପୁସୀ ଆରେ ମରିବୁ ନିଅତ ॥
ଶ୍ରୀରାମ ସିଂଘ ତୁ ଅଟୁ ମଉହସ୍ତୀ ।

ନାରାଜ ମୁନେ ତୋତେ ବିଦାରିବେ ଦାଶରଥି ॥
ପ୍ରାଣଘେନି ପଳାରେ ମରିବୁ ଯେହିକ୍ଷଣି ।
ଦେଖିଲେ ମୁଣ୍ଡ ତୋର କାଟିବେ ଲକ୍ଷଣି ॥
ଦେବାସୁରନ୍ତ ଜିଣି ପାରନ୍ତି ବେନି ଭାଇ ।
ତୁ କିମ୍ପା ଧରଣା ବସିଛୁ ପ୍ରାଣ ଦେଇ ॥ ୪୦
ଖର ଧୂଷଣ ତ୍ରିଶିରା ଆସିଥିଲେ ।
ଚଉଦ ସସ୍ରବଳ ଶ୍ରୀରାମ ହାଥେ ମଲେ ॥
ଲକ୍ଷଣ ନାମେଣ ଯେ ତାହାର ସାନ ଭ୍ରାଥ ।
ସୂପଲେଖି ନାସା ଶ୍ରବଣ କଲା ହତ ॥
ଯେଡ଼େ ମୂଢ଼ ତୁରେ ନ ଜାଣୁ ଯେମାନନ୍ତ ।
ଯେଡ଼େ ଭରସା କରିଅଛୁ କେବଣହିଁ ମତ ॥
ଯାସି ଚାଣ୍ଡାଳରେ ମୁଖ ତୋ ନ ଚାହିଁ ।
ଅନେକ ଭ୍ରଛନା ବୋଇଲେ ବଇଦେହୀ ॥
ଶୁଣି ରାବଣେଶ୍ୱର ବୋଇଲା କୋପ କରି ।
ବୋଇଲା ରାମ କେହ୍ନେ ପାରଇ ରକ୍ଷାକରି ॥୫୦
ବାମଭୁଜେ ସୀତାର ଡାହାଣ ଭୁଜ ଧରି ।
ବିକଳେ ସୀତୟା ଉଚ୍ଚେଂ ରୋଦନ କରି ॥
ଶ୍ରୀରାମକୁ ଭୟେ କରିଣ ଦଶମାଥ ।
ଗଗନ ମାର୍ଗେଣ ବାହିଲାକ ରଥ ॥
କଳାମେଘେ ଯେସନେ ଦିଶଇ ବିଜୁଳି ।
ରାବଣ କୋଳେ ତେହ୍ନେ ଦିଶଇ ମହୀସୁଳୀ ॥
ଯହୁଂ ସେ ରାବଣ ହରିଲାକ ସୀତ୍ୟା ।
ସ୍ୱର୍ଗେ କୃତ କୃତ ହୋଇଲେ ଦେବତା ॥
ଅପଛରୀ କିନ୍ନରୀ ବିଦ୍ୟାଧରୀ ସମସ୍ତ ।
ଗନ୍ଧର୍ବଗଣଙ୍କର ହରଷ ବହୁତ ॥୬୦
କେ ବୋଲଇ ଛାୟା କେ ବୋଲଇ ମାୟା ।
କେ ବୋଲଇ ନିଷ୍ଟେ ଅଟଇ ସୀତୟା ॥
ବ୍ରହ୍ମା ନାରଦକୁ ପେଷିଲେକ ରାଇ ।
ତଇଥ ବାରତା ତୁ ବୁଝିଆସ ଯାଇ ॥
ସେ ଆମ୍ଭର ମାତା ଜଗତ ଠାକୁରାଣୀ ।
ଅଶେଷ କୋଟି ବ୍ରହ୍ମାଣ୍ଡକୁ ଅଟଇ କାରେଣୀ ॥
ଅସୁରଙ୍କ ଭୟେ ନ ପାରୁ ସ୍ୱର୍ଗେ ରହି ।

ତେଣୁ ସେ ନାରାୟେଣ ମାନବେ ଉପୁଜନ୍ତ ॥
ଯେ ସୀତ୍ୟା ପ୍ରମଲକ୍ଷ୍ମୀ ଜଗତଜନନୀ ।
କର ତୁ ଉପାୟେ ମରୁ ବିଂଶପାଣି ॥ ୭୦
ବ୍ରହ୍ମାର ବଚନେ ନାରଦ ମହରଷି ।
ପଞ୍ଚୁବଟୀ ବନେ ମିଳିଗଲେ ଆସି ॥
କଥା ଜାଣିଣ ସେ ବାହୁଡ଼ିଣ ଗଲେ ।
ବିଧାତାର ଆଗେ ବାରତା କହିଲେ ॥
ଶୁଣିଣ ସୁରଗଣେ ସନ୍ତୋଷ ହୋଇଲେ ।
ସଭା ମଣ୍ଡାଇଣ ନୃତ୍ୟ ଗୀତ କଲେ ॥
ବୃହସ୍ୟତି କହିଲେ ଜଉତିଷା ପାଞ୍ଜି ଚାହିଂ ।
ଏଗାରମାସ ପଖକେ ମରିବ ଲଙ୍କସାଇଂ ॥
ଆଷାଢ଼ ଅମାବଇ ଅଟଇ ଆଜ ଦିନ ।
ସତର କୋଡ଼ିଯେ ଦିନେ ଅସୁର ବଳ ଲୀନ ॥୮୦
ଆବର ପାଞ୍ଚଦିନେ ରାବଣ ନାଶ ଯିବ ।
ଲଙ୍କା ଗଡ଼େ ରାଜା ଭୀବିଷେଣ ହୋଇବ ॥
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ଅକ୍ଷୟେ କୁମାର ।
ଯେହାକୁ ରଘୁନାଥ ପେଷିବେ ଯମପୁର ॥
ଭୟେ ଭୀତି ତୁମ୍ଭେ ଛାଡ଼ ସୁରଗଣ ।
ଅନୀତି ଆଶ୍ରେ ଯହୁଂ କଲାକ ରାବଣ ॥
କେ ଆନ କରିବ ନନ୍ଦିକେଶର ଶାପ୍ୟ ।
ରମ୍ଭା ଯୁବତୀର ପ୍ରଜ୍ୱଳିତ କୋପ ॥
ପୂର୍ବେ ବେଦମତୀ ଯାହା ସେ ବୋଇଲା ।
ତିନିଙ୍କରି କଥା ଯେକ ତ ହୋଇଲା ॥୯୦
ଶୁଣିଣ ଇନ୍ଦ୍ରର ବିଘସଇ ବଦନ ।
କରେ ବଜ୍ର ଘେନି ଝମକାଇ ମଘବାନ ॥
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ସୀତ୍ୟାଙ୍କୁ ଘେନିଗଲା ଲଙ୍କପତି ॥
ଉଚ୍ଚସ୍ୱରେ ରୋଦନ କରଇ ରାମରାଣୀ ।
ବସନ୍ତ କାଳେ ଯେହ୍ନେ ଅଣ୍ଡିର କୋକିଳ ବାଣୀ ॥
ବନ ପର୍ବତେ ଯେତେ ଜୀବଜନ୍ତୁ ଦେଖନ୍ତି ।
ବିକଳ ହୋଇ ସୀତ୍ୟା ତାହାକୁ ବୋଲନ୍ତି ॥
ମୋହୋର ନାମ ସୀତ୍ୟା ମୁଂ ଜନେକ ଦୁଲଣୀ ।
ଅଯୋଧ୍ୟାର ରାଜା ଶ୍ରୀରାମର ପାଟରାଣୀ ॥୧୦୦
ସ୍ୱାମୀ ଦିଅର ମୋର ଗଲେ ମୃଗ ମାରି ।
ଯେକା ଦେଖି ରାବଣ ମୋତେ ନେଉଅଛି ହରି ॥
ଶ୍ରୀରାମକୁ ତୁମ୍ଭେ କହିବଟି ଯେହା ।
ଲଙ୍କାଗଡ଼କୁ ମୋତେ ନେଉଅଛି ବିଂଶବାହା ॥
ଯେତେବୋଲି ଜାନେକୀ କରଇ ରୋଦନ ।
ନୟନୁ ଅଶ୍ରୁଜଳ ବହଇ ଘନ ଘନ ॥
ପକ୍ଷୀଜଟା ଶୁଣିଲା ଜାନେକୀ ବିକଳ ।
ଧାଇଂ ଆସି ରଥ ଉଗାଳିଲା ମହାମଲ ॥
ବୋଇଲା ରାବଣରେ ହୀନ ବୁଧି କଲୁ ।
ରଘୁନାଥ ଘରଣୀକି ଚୋରାଇ ଆଣିଲୁ ॥୧୦
ବିଷ ଖାଇ ତରିବୁ ଯେଡ଼େକ ସାହସ ।
ନିଚୟେ ଆଜ ତୁରେ ହୋଇବୁ ପ୍ରାଣନାଶ ॥
ଯେତେ ବୋଲି ଅଣ୍ଟେ ବୃକ୍ଷେକ ଉପାଡ଼ିଲା ।
ରହୁବର ଉପରେ ନେଇଣ ପିଟିଲା ॥
ଚକ ଭାଙ୍ଗି ରଥ ପଡ଼ିଲା ଭୂମି ତଳେ ।
କୋପ କରି ଧନୁ ଧଇଲା ଲଙ୍କପାଳେ ॥
ତୀକ୍ଷ ନାରାଚ୍ଛେକ ପେଷିଲାକ ଟାଣି ।
ଘାଆ ପାଇ ମୋହେ ପଡ଼ିଲା ପକ୍ଷୀମଣି ॥
ତହୁଂ ରାବଣେଶ୍ୱର ରଥ ବାହିଗଲା ।
ଛଣେକେ ପକ୍ଷୀବର ଚେତନା ପାଇଲା ॥୨୦
ରଥ ଦେଖି ପୁଣ ଧାଇଂଲାକ ରାଗେ ।
ଯାଇଣ ଉଗାଳିଲା ରାବଣେଶ୍ୱର ଆଗେ ॥
ଆକାଶେଣ ଶିର ମଞ୍ଚେଣ ପାଦଦେଲା ।
ଦୁଇ ଡେଣା ଘେନି ବାଟ ନିରୋଧିଲା ॥
ଲାହୁଡ଼ ଘାତ କରିଣ ରଥ ଭଗ୍ନ କଲା ।
କଳସ ଚିରାଳ ଛିନାଇ ପକାଇଲା ॥
ଲହକରେ ରାବଣର ବିଦାରିଲା ଦେହ ।
ରୋଧିର ଜରଜର ବିଶର୍ବାର ପୁଅ ॥
ପୁଣି ପକ୍ଷୀଜଟା ଲାତେକ ମାଇଲା ।
ସୁବର୍ଣ୍ଣମୟେ ରଥ ଭାଙ୍ଗି ପକାଇଲା ॥୩୦
ଭୂମିଗତ ହୋଇଲା ବିଶର୍ବାର ସୁତ ।
କୋଳେ ଘେନିଅଛି ଜନେକ ଦୋହିତ ॥
ଡେଣା ଘେନି ପକ୍ଷୀ ରାବଣକୁ ପିଟି ।
ଥଣ୍ଡ ଘେନିଣ ବିଦାରିଲା ମୁଣ୍ଡ ଗୋଟି ॥
ଶିରର ମକୁଟ ଝିଙ୍କିଣ ରାଗେ ଝୁଣି ।
ଅତିହିଂ ଅସମ୍ଭାଳ ହୋଇଲା ବିଂଶପାଣି ॥
ସୀତ୍ୟାକୁ ଛାଡ଼ିଣ ବୀର ଖଡ଼ଗ କରେ ଧରଇ ।
ଜଟାଇଶ ଉପରେ ପହୁଡ଼ିଲା ନେଇ ॥
ଯେବଣ ଦଶଗ୍ରୀବକୁ ଦେବତାୟେ ଡରି ।
ପକ୍ଷୀଜଟା ଝୁଣଇ ମୁକୁଟ ଥଣ୍ଟେ ଧରି ॥
ରାବଣେଶ୍ୱର କୋପେ ତୀକ୍ଷ ଶର ଧରି ।
ପକ୍ଷୀଜଟା ଡେଣା କାଟିଲା ରୋଷ ଭରି ॥
ପୁଣି ଅସିବର ପେଷିଲାକ ଧାତି ।
ପକ୍ଷୀର ଡେଣା ସେ କାଟିଲା ବିକୋତି ॥
ରକତ ଉଦ୍‌ଗାରି ପଡ଼ିଲା ଜଟାଇଶ ।
ଚକ୍ଷୁ ବୁଲାଇଲା ଚକ୍ରର ସାଦୃଶ ॥
ପକ୍ଷୀଜଟା ଯହୁଂ ପଡ଼ଇ ବୁକୁ ମାଡ଼ି ।
ଆଗଭର ହୋଇ ଗରୁଡ଼ ସୁତ ପଡ଼ି ॥
ରାବଣ ସୀତ୍ୟାକୁ ଛାଡ଼ି ଯାଇଥିଲା ।
ରଣଗୋଳ ବେଳେ ଜାନେକୀ ପଳାଇଲା ॥୪୦
ଯେବଣ କତି ରାମ ଗଲେ ମୃଗ ମାରି ।
ତେଣିକି ଯାଉଅଛି ଜନେକ କୁମାରୀ ॥
ରୋଦନ କରିଣ ଦେବୀ ବିକଳେ ପଳାଇ ।
ସେ ଶବଦ ଶୁଣି ଧାଇଂଲା ଲଙ୍କସାଇଂ ॥
ପାଦ ଗତି ଚିହ୍ନି ସୀତ୍ୟାକୁ ଠାବ କଲା ।
ବାମଭୁଜ ଯାଇ ଧରିଣ ଆଣିଲା ॥
ହାଥ ଧରି ରାବଣ କୋପେଣ ଶିର ଝୁଣି ।
ଲୁଚିଲା ଠାବରୁ ବାହାର କରିଆଣି ॥
କାଲହୁରି ଗୋରୁକୁ ଯେହ୍ନେ ଧରି ନିଅଇ ବାଘ ।

ତେହ୍ନେ ପଟାନ୍ତର ଜାନେକୀ ହୋଇବ ॥୬୦
ଯାହାର ଶ୍ୟରୀରକୁ ନ ନାଗଇ ସୂର୍ଯ୍ୟ
ତେଜ ।
ଆବର ନ ନାଗଇ ପବନ ଆଖାଇଯ ॥
ସେ ସୀତ୍ୟା ଦଇବ କୃତେ ଦୁଃଖ ପାଇ ।
ତଇଲୋକ ଠାକୁରାଣୀ ଜଗଜ୍ଜନ ଆଇ ॥
କର୍ମର ଅବଳେ ତାକୁ ରାବଣ ଗଞ୍ଜଇ ।
କଞ୍ଚାମାଟି ଯେହ୍ନେ କୁମ୍ଭାର ପିଞ୍ଜଇ ॥
ଦୋଷକଲା ଯୁବତୀକି ଯେହ୍ନେ ଆଣଇ ସ୍ୱାମୀ
ଧରି ।
ସୀତ୍ୟାକୁ ରାବଣ ଆଣଇ ତେହ୍ନେ କରି ॥
ପୁଷ୍ପେକ ବିମାନ ସୁମରଣା କଲା ।
ତକ୍ଷଣେ ରହୁବର ଆଗରେ ମିଳିଲା ॥୭୦
ଜାନେକୀକି କୋଳେ ଧରିଣ ବସଇ ।
ଯାଅ ବୋଲି ରଥକୁ ମନେ ସୁମରଇ ॥
ଗଗନ ମାର୍ଗେ ନେଇ ଡୋଳିଲାକ ରଥ ।
ଘନ ଘନ ବିବାନ ବାହାଇ ଦଶମାଥ ॥
ସୀତ୍ୟା ଶୋକ କରଇ ରାବଣ କୋଳେ
ଥାଇ ।
ରତ୍ନ ଆଭରଣ କାଢ଼ିଲେ ବଇଦେହୀ ॥
ବେଶ ବେସନମାନ ଛାଡ଼ିଲେ ଚନ୍ଦ୍ରମୁହିଂ ।
ଯେକାନ୍ତେ ଶ୍ରୀରାମ ନାମେଣ ରୁବଇ ॥
ଶ୍ରୀରାମ ବିହୁନେ ସକଳ ଉପେଖି ।
ବିକଳେ ରୁବଇ ଯେହ୍ନେ ନିରିମାଖି ॥୮୦
ଭୂମିରେଣ ଆସି ପଡ଼ଇ ଆୟେମାନ ।
କି ଜାଣି ତାରାଗଣେ ଖସିବାର ଗଗନ ॥
ଚରଣୁ ନେପୁର କାଢ଼ିଲେ ବିୟୋଷୀ ।
ଗଳାରୁ ହାର କାଢ଼ିଲେ ରତ୍ନ ଯେ ଅଙ୍ଗୁଷ୍ଟି ॥
ସୀତୟାର ଆୟେମାନ ପଡ଼ିଲା ନବ ସୃଷ୍ଟି ।
ଆନନ୍ଦେ ମେଘକି କରଇ ରତ୍ନବୃଷ୍ଟି ॥
ଉପରାଣ ଶାଢ଼ୀ କାଢ଼ିଲାକ ସୀତ୍ୟା ।
ଯାହା ସେ ଦେଇଥିଲା ମୁନିଙ୍କ ବନିତା ॥
ସେ ଅମକାଣ ବସ୍ତ୍ରେ ବାହି ଦୁଇ ବାନ୍ଧି ।
ଶ୍ରୀରାମ ଲକ୍ଷଣ ସୁମରି ଦେବୀ କାନ୍ଦି ॥୯୦

ରଷିମୁଖ ପର୍ବତ ଉପରେ ରଥ ଚଳଇ ।
ଦେଖିଣ ଜାନେକୀ ମନେଣ ଭାଳଇ ॥
ସେ ଗିରିରେ ଥାନ୍ତି ପଞ୍ଚ ମର୍କଟ ବସି ।
ତାହାଙ୍କୁ ଦେଖି ଆୟେ ତେଜିଲା
ଶୁଭ୍ରକେଶୀ ॥
ଲଙ୍କପତି ତାହା ଜାଣି ନ ପାରିଲା ।
ବେଗେ ବେଗେ ରଥ ବାହିଣ ଚଳିଗଲା ॥
ଶୟେ ଜୁଣ ସମୁଦ୍ର ହେଳେ ଗଲା ପାରି
ହୋଇ ।
ସୀତ୍ୟାଙ୍କୁ ଘେନିଣ ଲଙ୍କାରେ ହୋଅଇ ॥
ଦେଖିଣ ଅସୁରୀମାନେ ହୋଇଲେ ଚକିତ ।
କାହୁଂ ଆଣିଲା ଯେ ବାଳୀ ରୂପବନ୍ତ ॥୧୦୦
ଯେକକୁ ଆରେକ କହନ୍ତି ଲୋକେ ଯାଇ ।
ଅପୂର୍ବ ସ୍ତିରୀୟେ କାହୁଂ ଆଣିଛି ଲଙ୍କସାଇଂ ॥
ଶୁଣି ଲୋକମାନେ ଦେଖିଣ ଆସନ୍ତି ।
ଚଉଷଠି ଦାଣ୍ଡେ ପୂରିଣ ଦେଖନ୍ତି ॥
କଂଧି ବିକଂଧିରେ ଯେତେ ଲୋକ ଥିଲେ ।
ସୀତୟାକୁ ଦେଖିବାକୁ ସମସ୍ତେ ଅଇଲେ ॥
ଦେଖିଲେ ରଥରେ ଅଛି ଦେବୀ ସ୍ୟତୀ ।
କୋଳ କରି ବସିଅଛଇ ଲଙ୍କପତି ॥
ସିଂହର ବଧୂ ଯେହ୍ନେ ଶ୍ରୀକାଳ ହରିଆଣଇ ।
ଲଙ୍କାର ଦାଣ୍ଡେ ରାବଣ ତେହ୍ନେ
ଚଳଇ ॥୧୦
ଦେଖଣାହାରୀମାନେ ଦେଖୁଛନ୍ତି ବେଢ଼ି ।
ଅନେକ ଯତନେ ଏହା ବିଧାତା ଅଛି ଗଢ଼ି ॥
ସକଳ ରୂପ ଗୁଣ ଯେକ ଠାବ କଲା ।
ସକଳ ଚିନ୍ତା ଛାଡ଼ି ଯେହାକୁ ଗଢ଼ିଲା ॥
କେବଣ ରାଜାର ଯେ ଅଟଇ ନନ୍ଦନୀ ।
କାହୁଂ ଲଙ୍କପତି ଅଇଲାକ ଯେହାକୁ
ଘେନି ॥
ମନ୍ଦଦୋରୀ ସହିତେ ଯେତେ ରାଣୀମାନ ।
ଯେହାର ରୂପକୁ କେହି ନୋହନ୍ତି ଭାର୍ଜନ ॥
ଜାଣିବାର ଲୋକେ ବୋଇଲେ ମନ୍ଦ କଲା ।
କାହାର ଯୁବତୀ ଯେ ଚୋରାଇ
ଆଣିଲା ॥୨୦

କେ ବୋଲଇ ମନ୍ଦ କଲା ଦଶଶିରି ।
ନ ପୁଣ ଯେହା ଯୋଗ୍ଯ ସରଇ ସବୁ ଶିରୀ ॥
କେ ବୋଲଇ ଆଣିଲେ କେ କରିବ କିସ ।
ଦେବତାୟେ ଡରନ୍ତି ଯେ ଅଟଇ ମନିଷ୍ୟ ॥
କେ ବୋଲଇ ତୁମ୍ଭେ ନ ଜାଣ ହୋ କିଛି ।
ମୁହିଂ ଯେହା ଅଳପ ବାରତା ପାଇଅଛି ॥
ରଘୁବଂଶେ ଜାତ ଦଶରଥ ବଳା ।
ସୀତୟା ବୋଲିଣ ତାହାର ଅବଳା ॥
ପିତାର ସତ୍ୟରେ ସେ ବନକୁ ଅଇଲେ ।
ପଞ୍ଚୁବଟୀ ବନେ ବାସ କରିଥିଲେ ॥ ୩୦
ସୂପଲେଖି ତାହାକୁ କପଟେ ଗଲା ଖାଇ ।
ତାହା ଜାଣିଲେ ରାମ ଲକ୍ଷଣ ବେନିଭାଇ ॥
ନାସା ଶର୍ବଣ ଛେଦିଲେ ତାହାର ।
ତିଶିରା ସହିତେଣ ଚଉଦ ସସ୍ର ବୀର ॥
ଶ୍ରୀରାମର ବାଣେ ପଡ଼ିଲେ ସକଳ ।
ଯହୁଂ ନିର୍ଣ୍ଣେ ହୋଇଲେ ଅସୁରଙ୍କର ବଳ ॥
ସୂପଲେଖି ଭାଇକି କହିଲା ବାରତା ।
ଶୁଣି କୋପକଲା ଇନ୍ଦ୍ରଜିତ ପିତା ॥
ଯେବେ ତାଙ୍କ ନାରୀ ହରିଲା କେବଣ ହିଂ
ମତେ ।
ଶ୍ରୀରାମକୁ ଜିଣନ୍ତା ନାହିଂ ନା ଜଗତେ ॥୪୦
ତାକୁ ଜିଣି ପାରିଲେ ସକଳ କାର୍ଯ ସିଧ ।
ନୋହିଲେ ଅବଶ୍ୟ ପଡ଼ିବ ପରମାଦ ॥
ପୂର୍ବେ ଶୁଣିଲାଅଛି ବିପରୀତ ବାଣୀ ।
ସୀତ୍ୟାକୁ ହରିଲେ ମରିବ ବିଂଶପାଣି ॥
ସେ କାଳ ଅବା ଆସି ହୋଇଲାକ ଯେବେ ।
ଯାହା ସେ ଭିଆଣ କରିଛି ଦଇବେ ॥
ଯେତେ ବିଚାରି ଲୋକେ କୁହାକୋହି
ହୋଅନ୍ତି ।
ତହୁଂ ରଥ ବାହିଗଲା ଲଙ୍କପତି ॥
ଓଶେକ ବିପୁନ୍ୟେ ଯାଇଣ ହୋଇଲା
ପରବେଶ ।
ତହିଂର ମଧ୍ୟେ ଅଛି ସୁବର୍ଣ୍ଣଦିବ୍ୟବାସ ॥୫୦
ଶ୍ରୀରାମର ଘରଣୀକି ତହିଂରେ ନେଇ
ଥୋଇ ।

ଦୁଃଖେଣ ବସିଲେ ସୀତ୍ୟା ଜାଣିଣ ଚକୋଇ ॥
କପାଳେ କର ଦେଇ କାନ୍ଦଇ ସୁନ୍ଦେରୀ ।
ରାବଣ ରାଇଲାକ ସହସ୍ରେ ଅସୁରୀ ॥
ବୋଇଲା ସୀତ୍ୟାକୁ ତିଆର ଅନେକ ମତେ ।
ଆତ୍ମାଘାତେ ବାଳୀ ନ ମରଇ ଯେମନ୍ତେ ॥
ତେହ୍ନେ କରି ତୁମ୍ଭେ ଲୋ ରଖ୍ୟା କରିଥାଅ ।
ଯେମନ୍ତେ ମୋତେ ଭଜଇ ତେମନ୍ତ ଭିଆଅ ॥
ଯେତେ ବୋଲି ରାଜନ ନବରକୁ ଗଲା ।
ଆଠ ସହସ୍ର ଅସୁର ରାଇଣ ଆଗ୍ୟାଂ ଦେଲା ॥୬୦
ବୋଇଲା ଦଣ୍ଡକା ଅରଣ୍ୟକୁ ଯିବ ।
ଶ୍ରୀରାମ ଲକ୍ଷଣକୁ ମାରିଣ ଆସିବ ॥
ଯେସନକ ବୋଲି ଦିଅଇ ଆଦେଶ ।
ଯେମନ୍ତ ପାର ରାମକୁ କର ହୋ ବିନାଶ ॥
ସନ୍ୟ ବରଗିଣ ଅଚିନ୍ତା ହୋଇଲା ।
ସେ କନ୍ୟାମାନନ୍ତ ରାଇଣ ବୋଇଲା ॥
ଭଲେଣ ସୀତ୍ୟାକୁ ରଖିଣ ତୁମ୍ଭେ ଥିବ ।
ଯେ ମୋହୋର ଆଗ୍ୟାଂ ଅବଗ୍ୟାଂ ନ କରିବ ॥
ଯେଥୁ ଅନନ୍ତରେ ହୋଇଲା ରଜନୀ ।
ଇନ୍ଦ୍ରକୁ ରାଇଣ ବୋଲଇ ପଦ୍ମଯୋନି ॥୭୦
ସୀତ୍ୟା ଓଶେକ ବନେ ଥୋଇଲା ଲଙ୍କମଣି ।
ଆମ୍ଭର ହିତେ ଦୁଃଖ ପାଇଲେ ଗୋସାମଣି ॥
ନ ପୁଣ ମାହାସ୍ୟତୀ କରଇ ମନେ ତ୍ରାସ ।
ତୁ ଯାଇ ବାସେବ ହୋ ତିଆରିଣ ଆସ ॥
ବିଧାତା ବଚନ ଶୁଣି ସୁରସାଇଂ ।
ଲଙ୍କାରେ ପ୍ରବେଶ ହୋଇଲେକ ଯାଇ ॥
ଜାଣିଲେ ଅସୁରୀଙ୍କର ଘୋର ନିଦ୍ରାକାଳ ।
ଜାନେକୀ ଆଗରେ ମିଳିଲେ ଆଖଣ୍ଡଳ ॥
ଭୋ ସୀତ୍ୟା ସାଧେବୀ ଗୋ ଶ୍ରୀରାମ ଘରଣୀ ।
ମୁହିଂ ସେ ଇନ୍ଦ୍ର ଗୋ ଅଟଇ ବଜ୍ର ପାଣି ॥୮୦

ଯେ ଯେ ଅମୃତ ଅଛଇ ମୋର କର ।
ଭୋ ଦେବୀ ଯେହା ତୁମ୍ଭେ କରସି ଆହାର ॥
ଭୋଖ ଶୋଷ ଦୁଃଖ ନ ଲାଗିବ ତୋତେ ।
ବ୍ରହ୍ମା ପଠିଆଇ ଦେଇଅଛି ମୋତେ ॥
ଶ୍ରୀରାମ ଲକ୍ଷଣ ରାବଣକୁ ମାରି ।
ତୋତେ ଘେନିଯିବେ ଗୋ ଜନେକ କୁମାରୀ ॥
ଭୋ ସୀତ୍ୟା ମିଛ ଗୋ ନ କର ମୋର ବାଣୀ ।
ହରଷ ବିସ୍ମଏ ହୋଇଲେ ସୀତ୍ୟା ଶୁଣି ॥
ବୋଇଲେ ତୁ ଯେବେ ଅଟୁ ବଜ୍ରଧର ।
ଦେଖିବା ନିଜ ରୂପ ଦେଖାନି ତୋହୋର ॥୯୦
ଶୁଣିଣ ବାସେବ ଅନ୍ତରୀକ୍ଷେ ଉଭା ହୋଇ ।
ଅଚଳ ନୟନ ପିଛଡ଼ା ନ ହଲଇ ॥
ଦେଖିଣ ଜାନେକୀ ପ୍ରତେ ତାହା ଗଲା ।
ସନ୍ତୋଷେ ଅମୃତ ନିଜ କରେ ଧଇଲା ॥
ଶ୍ରୀରାମ ସୁମରି ଭୁଞ୍ଜିଲାକ ତାହା ।
କର ଦୁଇ ଯୋଡ଼ି ବୋଲଇ ସୁର ନାହା ॥
ତୁ ଗୋ ମାହାସ୍ୟତୀ ବିମନ ନ ଧର ।
ଯେ ସର୍ବ କଥା ଗୋ ଭିଆଣ ଆମ୍ଭର ॥
ରାବଣର ଭୟେ ସ୍ୱର୍ଗେ ନ ପାରିଲୁ ରହି ।
ତେଣୁ ସେ ତୁମ୍ଭେ ଜାତ ଯେତେ ଦୁଃଖ ସହି ॥୧୦୦
ଶ୍ରୀରାମ ବିଷ୍ଣୁ ତୁ ସଂଯେ କମଳଣୀ ।
ଲକ୍ଷଣ ଦିଅର ତୋ ପ୍ରତକ୍ଷେ ଶୂଳପାଣି ॥
ତିନିଦେବ ଜାତ ମାନବ ଦେହ ଘେନି ।
ତୁମ୍ଭେ ଆମ୍ଭ ମାତା ଗୋ ଜନେକ ନନ୍ଦନୀ ॥
ତୁ ଦେବମାତା ଗୋ ନାମ ସର୍ବଭୂତା ।
ସଂଯେ ପ୍ରମଲକ୍ଷ୍ମୀ ଜନେକ ଦୋହିତା ॥
ଜଗତ ସଂସାର ତୁମ୍ଭେ ବେଳେବେଳେ ରଖ ।
ଦେବତାଙ୍କ ନିମନ୍ତେ ସହିବ ଦୁଃଖ ସୁଖ ॥
ନୋହିଲେ ପୃଥିବୀ ପଡ଼ିବ ରାସାତଳେ ।

ଆମ୍ଭେ କାହିଂଥିବୁ ଦଶଦିଗପାଳେ ॥ ୧୦
ଆଦି ଅବତାର ହୋଇଲେ ତୋର ନାଥ ।
କନେକ ରୋହୀମାଛର ସଂଯାତ ॥
ସମୋଦ୍ରେ ପଶିଣ ଶଙ୍ଖାସୁର ମାରି ।
ତେଣେ ସେ ଚାରିବେଦ ହୋଇଲା ଉଧରି ॥
କୂର୍ମ ରୂପେଣ ଧଇଲେ ଧରଣୀ ।
ତେଣେ ସେ ବିଚାର ହୋଇଲା ଚାରିଖାନି ॥
ହିରଣାକ୍ଷ ଦଇତ ମେଦନୀ ହରି-ନ୍ୟନ୍ତେ ।
ବରେହା ଶ୍ୟରୀର ହୋଇଲେ ଅଚ୍ୟୁତେ ॥
ବାମ ହାଥ ଘେନି ଛେଦିଲେ ତାର ମୁଣ୍ଡ ।
ତେଡ଼େ ମାହାବୀର ହୋଇଲା ଶତେ ଖଣ୍ଡ ॥୨୦
ଦନ୍ତେଣ ପୃଥିବୀ ଧଇଲେକ ତୋଳି ।
ତେଣେ ସେ ରକ୍ଷା ହାଦେ ହୋଇଲା ମହୀଆଳି ॥
ନୃସିଂହ ଅବତାର ହୋଇଲେ ତୋର ପତି ।
ହିରଣ ବିଦାରଣ କଲେ କୋପ ମୂତି ॥
ବାବନ ରୂପ ଧରି ଚାପିଲେକ ବଳୀ ।
ତେଡ଼େ ମାହାବୀର ପାତାଳେ ଗଲା ଗଳି ॥
ଛତ୍ରୀଙ୍କି ସାଧିଲେ ପ୍ରଶୁରାମ ରୂପଧରି ।
ରାବଣ ପାଇଂ ଯେବେ ଅଛି ଅବତରି ॥
ତେଣେ ସେ ଦୁଃଖ ପାଇଲେ ଆମ୍ଭ ହିତେ ।
ନକର ଶୋଚନା ତୁ ଜନେକ ଦୋହିତେ ॥୩୦
ଅନେକ ତିଆରିଣ ଗଲେ ଶଚୀପତି ।
ଶୁଣିଣ ସନ୍ତୋଷ ହୋଇଲା ମାହାସ୍ୟତୀ ॥
ଯେତେ କହି ଇନ୍ଦ୍ର ସ୍ୱର୍ଗକଇଗଲା ।
ନିଶି ପାହି ସୂର୍ଯ୍ୟ ଉଦୟେ ହୋଇଲା ॥
ନିତ୍ୟ କର୍ମ ବିଧି ସାରିଣ ଲଙ୍କପତି ।
ସୀତ୍ୟାର ସନିଧକୁ ଅଇଲାକ ଧାଡି ॥
ଅନେକ ଉପହାର ରତ୍ନ ଯେ ପଦାର୍ଥେ ।
ଜାନେକୀ ଛାମୁରେ ନେଇ ଦେଲା ଦଶମାଥ ॥
ଶ୍ରବଣକଇ ତଡ଼କୀ କଣ୍ଠକଇ ହାର ।

ବାହାକୁ ବାହୁଟି ରତ୍ନ ଚୁଡ଼ି ସାର ॥ ୪୦
ବିଦମୁଦି କଙ୍କଣ ନେପୂର ରତ୍ନମୟେ ।
ଦେବାଙ୍ଗ ବସନ ଘେନି ଭଣ୍ଡା ଲଙ୍କରାୟେ ॥
ଅନେକ କାର୍ପୁଣ୍ୟ ହୋଇଣ ଦଶଶିର ।
ଜାନେକୀର ଛାମୁରେ କହଇ ଉତର ॥
ଭୋ ଶଶିମୁଖି ଗୋ ପ୍ରସନ୍ନ ମୋତେ
ହୋଅସି ।
ଶରଦଚନ୍ଦ୍ର ବଦନେ ବଚନ କହସି ॥
ମୁହିଂ ତୋର ରୂପକୁ ମଜ୍ଜିଲିରେ ବାଳୀ ।
ତୁ ମୋତେ ଅନୁଗ୍ରହ କରସି ସୁନ୍ଦେରୀ ॥
ମୁହିଂ ଲଙ୍କପତି ତେଇଲୋକର ସାଇଂ ।
ଯେ ତିନି ଭୁବନେ ମୋତେ ସରିସମ
ନାହିଂ ॥୫୦
ତୁ ମୋହୋର ଭାରିଯା ହୋଇ ବିବିଧ ଭୋଗ୍ୟ
କର ।
ଅକାରଣେ ଶ୍ରୀରାମକୁ ଝୁରିଣ ନ ମର ॥
ଯେ ତୋହୋର ଦୁଃଖ ଦେଖିଲଇ ମୁହିଂ ।
ଦିନ ନେଉଥିଲୁ ଚିରଣ ପାଡ଼ି ଶୋଇ ॥
ବନଜନ୍ତୁ ମେଳେ କନ୍ଦମୂଳ ଖାଉ ।
ତପ‌ସୀଙ୍କ ସଙ୍ଗେ ବନ ବୁଲୁଥାଉ ॥
ଯେବେ ବିପୁଳ ଭୋଗ ହୋଇଲା ପରାପତ ।
ହେତେ କାଳେ ସୁଖ ଆଣି ଦେଲାକ
ବିଧାତ ॥
ବିଷାଦ ଛାଡ଼ିଣ ତୁ ମୋହୋର ମୁଖ ଚାହଁ ।
ମୁହିଂ ସେ ସୁନ୍ଦେରୀରେ ଅଟଇ
ବିଂଶବାହା ॥୬୦
ଯେ ମୋହୋର ବଚନ ଶୁଣସିରେ ସହି ।
ଶୟେ ଜୁଣ ଲଙ୍କା ସ୍ୱର୍ଗସମ ନାହିଂ ॥
ମେଢ଼ ମଣ୍ଡୋପ ଜଗତୀ ଅଟାଳି ।
ସୁବର୍ଣ୍ଣର ପିଠୁଳି ଅଛନ୍ତି ଅଙ୍ଗଢ଼ାଳି ॥
ବିବିଧ ଘରମାନେ ଶୋଭାବନ ଥାନ୍ତି ।
ଯେ ମୋହୋର ମହୀ ସମସ୍ତେ ଭୁଞ୍ଜନ୍ତି ॥
ନଦୀ ସରୋବର କୂପ ବାମ୍ପି ତଢ଼ା ।
ଯେ ମୋହୋର ଦର୍ବକେ କରିବ ଶଙ୍ଖୋଳା ॥

ତୈଲୋକ୍ୟ ସମ୍ପଦ ଅଛି ମୋ କଟକେ ।
ମୋତେ ସେବା କରିଥାନ୍ତି
ଦେବଲୋକେ ॥୭୦
ମୋହୋର ଦ୍ୱାରପାଳ କତିରେ ଇନ୍ଦ୍ର
ବସଇ ।
ବ୍ରହ୍ମା ମୋତେ ନିତି ଆଶିଷ ଦିଅଇ ॥
ଯେଢ଼େ ନୃପତି ମୁଂ ତୋତେ ଆଶକଲି ।
ଯେ ତୋହୋର ଲାବନ୍ୟ ସମୋଦ୍ରେ ବୁଡ଼ିଲି ॥
ଆଉ ଶ୍ରୀରାମକୁ ପାଇବୁ ତୁ କାହିଂ ।
ମଉନ ହୋଇଣ ତୁ ବସିଲୁ କିମ୍ପାଇ ॥
ଯେଢ଼େକ ନିଦୟା ଚିତ୍ତ ଗୋ ତୋହୋର ।
ପଞ୍ଚଶରେ କାମ ଦହଇ ମୋହୋର ॥
ଯେତେ ବୋଲି ରାବଣ ଅସୁରୀଙ୍କି ଚାହିଂ ।
ଗୁପତ କଥାମାନ କହଇ ତାଙ୍କୁ ରାଇ ॥ ୮୦
ବୋଇଲା ମୋତେ ଯେମନ୍ତେ ବଶ୍ୟ
ହୋଇ ।
ଶ୍ରୀରାମ ଲକ୍ଷଣଙ୍କୁ ଯେମନ୍ତେ ନ ନୋଡ଼ଇ ॥
ତେମନ୍ତ କରିଣ କହିବ ମଣାଇ ।
ଯେତେ ବୋଲି ଚଳିଗଲା ଲଙ୍କସାଇଂ ॥
ରାବଣ ଆଜ୍ଞାରେ ଅସୁରୀମାନେ ଗଲେ ।
ଅନେକ ଚାଟୁ କଥା ସୀତ୍ୟାକୁ କହିଲେ ॥
ଜାନେକୀ ତହିଂକି ନ ଦେଲେ ଉତର ।
ପୋଡ଼ିଲା ତମ୍ପା ଜାଣି ବଦନ ତାହାଙ୍କର ॥
ଦିବସ ଚନ୍ଦ୍ରମା ପ୍ରାୟେକ ମୁଖ ଦିଶଇ ।
ରାମ ଲକ୍ଷଣ ନାମ ଅବିକ୍ଷଣେ
ଘୋଷଇ ॥୯୦
ଯେଥୁଅନନ୍ତରେ ଶୁଣ ଗୋ ପାର୍ବତୀ ।
ମାୟା ମୃଗ ମାରି ଯେ ଗଲେ ରଘୁପତି ॥
ମନେ ମନେ ବିଚାର କରନ୍ତି ରଘୁସାଇଂ ।
ଲକ୍ଷଣ ବୋଲି ମୃଗ ଡାକିଲା କିସ ପାଇଂ ॥
ନିଚୟେ ସୀତ୍ୟାକୁ ହରାଇବି ଆଜ ।
ବେଗ ବେଗ ହୋଇ ଆସନ୍ତି ରଘୁରାଜ ॥
ବାଟେ ବିପୁରୀତ ବହୁତ ଦେଖିଲେ ।
ଦକ୍ଷିଣ ପାରୁଶରେ ଶ୍ରୀକାକ ରାବ ଦେଲେ ॥

ଶିରର ଉପରେ ଉଡୁଅଛି କାକ ।
ଆଗରେ ଦେଖିଲେ ଅଛଇ
କାଳସର୍ପ ॥୧୦୦
ଧୂମ୍ର ଆକାଶ ଦିଶଇ ଚଉପାଶ ।
ପବନ ନ ବହଇ ବିପୁନ୍ୟ ବିରସ ॥
ଶ୍ରୀରାମକର ମୁଖ ବିରସ ହୋଇଅଛି ।
ଆଗରେ ଦେଖିଲେ ସୁମୈତ୍ରାର ବଛି ॥
ଦେଖିଣ ଶ୍ରୀରାମ ହୋଇଲେ ସ୍ତମ୍ଭୀଭୂତ ।
କି ଜାଣି ବଜ୍ର ପଡ଼ିବା ସଂଯାତ ॥
ଲକ୍ଷଣ ଆସିଣ କଲା ନମସ୍କାର ।
କୋପେଣ ତାହାକୁ ବୋଇଲେ ରଘୁବୀର ॥
ସୀତ୍ୟା ଛାଡ଼ି ଦୁରେ ଅଇଲୁ କିସ ପାଇଂ ।
ଆଉ ଜାନେକୀକି ପାଇବି ମୁଂ କାହିଂ ॥୧୦
ଲକ୍ଷଣ ବୋଇଲା ଯୋଡ଼ି ବେନିକର ।
ଭୋ ସ୍ୱାମୀ ଆପଣ କୋପ ତୁ ନ କର ॥
ସୀତ୍ୟାର ବୋଲେ ସେ ଅଇଲଇଂ ମୁହିଂ ।
ତ୍ରାହି ଲକ୍ଷଣ ବୋଲି ଶବଦ ଶୁଣିଲଇଂ ॥
ମୁହିଂ ତାହା ପ୍ରତେ ନ କଲି କଦାଚିତେ ।
କୋପ କଲା ମୋତେ ଜନେକ ଦୋହିତେ ॥
ବୋଇଲା ଶ୍ରୀରାମଙ୍କୁ ପଡ଼ିଲା ବିପତ୍ତି ।
ତୁ କିମ୍ପା ନ ଯାଇ ବସିଅଛୁ କତି ॥
ମୁହିଂ ବୋଇଲି ତୁ ନ ଜାଣୁ ଗୋ ସୀତ୍ୟା ।
ଶ୍ରୀରାମକୁ କେହି ନାହିଂ ଯେ ଜିଣନ୍ତା ॥୨୦
ତଇଲୋକେ ଅଜୟେ ଅଟଇ ତୋର
ସାଇଂ ।
ତାକୁ ଜିଣିମ କେ ଧନୁ ଶସ୍ତ୍ର ବହି ॥
ଶୁଣିଣ ଜାନେକୀ ମୋତେ କୋପ କଲା ।
ମରମ କଥାମାନ ବହୁତ କହିଲା ॥
ବୋଇଲା ଭ୍ରଥ ତୋତେ ଅଛି ପଠିଆଇ ।
ଶ୍ରୀରାମକୁ ମାରି ମୋତେ ନେମା ପାଇଂ ॥
ଆବର ବୋଇଲା ଅନେକ ମନ୍ଦବାଣୀ ।
ଭୟେ କଲି ମୁହିଂ ତାହାର କଥା ଶୁଣି ॥
ତେଣୁ ସେ ଅଇଲି ମୁହିଂ ଧନୁ ଶସ୍ତ୍ରଧରି ।
ଦଶଦିଗପାଳଙ୍କୁ ସାକ୍ଷୀ ହାଦେ କରି ॥ ୩୦

ଯେ ମୋରେ ଦୋଷ ନାହିଁ ରଘୁପତି ।
ଅନେକ ଝିଗାଂସ ବୋଇଲେ ମୋତେ ସ୍ୟତୀ ॥
ଶୁଣିଣ ଶ୍ରୀରାମ ଉପରକୁ ଚାହିଁ ।
ଲକ୍ଷଣର କାନ୍ଧେ ମୃଗଭାର ଦେଇ ॥
ବିସ୍ମୟେ ଚିତ୍ତରେ ଆସନ୍ତି ଖରହୋଇ ।
ପଚ୍ଚଂବଟୀ ବନେ ମିଳିଲେକ ଯାଇ ॥
ଧୂରୁହୁଂ ଦେଖିଲେ ଦିଶଇ ପର୍ଣ୍ଣକୁଟୀ ।
ଅଶୋଭା ଦିଶୁଅଛି ପତର ଘର ଗୋଟି ॥
ମଢ଼ିଆ ଦୁଆରେ ମିଳିଲେ ରଘୁସାଇଂ ।
ସୀତ୍ୟା ସୀତ୍ୟା ବୋଲି ଉଚେ ଡାକଦେଇ ॥୪୦
ଲକ୍ଷଣକୁ ବୋଇଲେ ମୁଂ ଯାହା ସେ ବୋଇଲି ।
ଏ ଘୋର ଅରନ୍ୟରେ ଘରଣୀ ହରାଇଲି ॥
ଦେଖିଲେ ପର୍ଣ୍ଣକୁଟୀ ହୋଇଅଛି ତୁଚ୍ଛା ।
ସୀତା ନ ଦେଖି ରାମ ପଡ଼ିଲେ ମୂର୍ଚ୍ଛା ॥
ଲକ୍ଷଣ ତୋଳି ଧଇଲେକ ଯାଇ ।
ଛଣେକେ ଚେତନା ପାଇଲେ ରଘୁସାଇଂ ॥
ଲକ୍ଷଣକୁ ଚାହିଁ ବୋଲନ୍ତି ବଚନ ।
କେ ମୋହୋର ହରି ନେଲାକ ଜୀବନ ॥
ଦେହ ଥୋଇଣ କେ ପ୍ରାଣ ଘେନିଗଲା ।
କେବଣ ଦଇବ ଏହା ମୋତେ କଲା ॥୫୦
ମଢ଼ିଆରୁ ବାହାର ହୋଇଲେ ରଘୁନାଥ ।
ଧରଣୀରେ ଲୋଟନ୍ତି ମଥାରେ ଦେଇ ହାଥ ॥
କାନ୍ଦିଣ ବୋଲନ୍ତି ମୋ ସୀତ୍ୟା ଗଲା କାହିଁ ।
ଲକ୍ଷଣ ମଢ଼ିଆ ଦେଖନ୍ତି ତହିଁ ନାହିଁ ॥
ବୋଲନ୍ତି ଜାନେକୀ ଗୋ କେଣିକି ତୁ ଗଲୁ ।
ଶିରୀହତ ଦେଖି ମୋତେ ଉପେଖିଲୁ ॥
ମଧିଆନ ବେଳ ହୋଇଲାକ ଆସି ।
ଭୋଜନ ଚରଚା ତ ନ କଲୁ ଶୁଭ୍ରକେଶୀ ॥
ଗୋଦାବରୀରୁ ତ ନୁଆଣିଲୁ ପାଣି ।
ଫଳ ପୁଷ୍ୟ ଅବା ଯାଇଅଛୁ ଆଣି । ୬୦

ଯେତେ ବୋଲି ରାମ ଉଠି ଉଭା ହୋଇ ।
ବନ ପର୍ବତକୁ ଦେଖିଣ ପୁଛଇ ॥
ତୁମ୍ଭେ ଦେଖିଲ କି ହୋ ସୀତ୍ୟା କେଣେ ଗଲା ।
କେ ମୋହୋର ଘରଣୀକି ଚୋରାଇଣ ନେଲା ॥
ଘର ସୁମରି କିଗୋ ଗଲୁ ବଇଦେହୀ ।
କି ଅବା ଲୁଚି କେଣେ ଅଛୁ ମୋର ତହିଁ ॥
ଶ୍ରୀରାମ ରୋଦନ୍ତେ ଲକ୍ଷଣ ତିଆରି ।
ନୋହସି ବିକଳ ତୁ କୋଦଣ୍ଡ ଚାପଧାରୀ ॥
ଦୁହେଂ ଲୋଡ଼ିବା ତୁ ଦେହ ଥିରକର ।
ରାଜାପଣ ଛାଡ଼ି ତ ପଶିଲୁ ବନଘୋର ॥୭୦
ଏହାଉଂ ଏଣିକି ଭୁଞ୍ଜିବାନା କର୍ମ ।
କେବଳ ମାତ୍ର ସାଖୀ ହୋଇଅଛି ଧର୍ମ ॥
ଆରତ ହୋଇଲେ ହୋଇବ କିସ କାର୍ଯ୍ୟ ।
ଚାଲ ଚଉକତି ଲୋଡ଼ିବା ଦେବରାଜ ॥
ଲୁଚିଅଛି ଅବା ଜନେକ ଦୋହିତା ।
ପଶିଅଛି ବନ କନ୍ଦର ଗିରିଲତା ॥
ତୁ ଯେ ବୋଇଲୁ କେ ଚୋରାଇ ଘେନିଗଲା ।
ଯେ କଥା ଭୋ ସ୍ୱାମୀ ମୋ ମନକୁ ନ ଗଲା ॥
ଅଗ୍ନିର ଶିଖା କେ ଧରିଣ ପାରିବ ।
ପର୍ବତ ପକାଇ କେ ମୁଧୁନି ପାତିବ ॥ ୮୦
ସେ ମାହାସ୍ୟତୀର କେ ଧରିବ ସନିଧାନ ।
ଅସୁର ଗନ୍ଧର୍ବ ଜୀବଜନ୍ତୁମାନ ॥
ଲକ୍ଷଣ ବୋଲ ଶୁଣି ଶ୍ରୀରାମ ଧଇର୍ଯ ।
ସଉମିତ୍ରୀକି ଚାହିଁ ବୋଲନ୍ତି ଦେବରାଜ ॥
ତୁ ହୋ ଲକ୍ଷଣ ବୋଇଲୁ ସୀତ୍ୟା ଅଛି ।
ଆଉ କାହିଁ ମୁହିଁ ପାଇବି ମୃଗାଛି ॥
ଦ୍ୱାରେ ଦେଖ ଭାଇ ରଥ ପାଦ ଗତି ।
କେ ମୋହୋର ଘେନିଗଲା ପ୍ରିୟବତୀ ॥
ଯେତେ ବୋଲି ରାମ ଶିରରେ କର ତାଡ଼ି ।
ଅଜ୍ଞାନ ହୋଇଣ ଯେଣେତେଣେ ପଡ଼ି ॥୯୦
ପୁଣି ଉଠିଣ ଲୋଡ଼ନ୍ତି ଯେଣେତେଣେ ।

ଭାଇ ଭୁଜ ଧରି ରଘୁକୁଳରାଣେ ॥
ସୀତା ସୀତ୍ୟା ବୋଲି ଉଚେଂ ରାବ ଦ୍ୟନ୍ତି ।
କିନ୍ତୁ ଦୂରେ ଯାଇ ଜଟାଇଶକୁ ଦେଖନ୍ତି ॥
ଶ୍ରୀରାମ ତାହାକୁ ମାରି ତ କଲେ ମନ ।
ଚେତନା ପା ପକ୍ଷୀ ବୋଲଇ ବଚନ ॥
ମୋତେ କିମ୍ପା ମାରୁ ରଘୁକୁଳପତି ।
ରାବଣ ତୋହୋର ହରିନେଲା ସ୍ୟତୀ ॥
ବାଟେ ଓଗାଳି ମୁଂ ଅନେକ ଯୁଧ କଲି ।
ଡେଣା ଘେନିଣ ତାର ରଥ ମୁଂ ଭାଙ୍ଗିଲି ॥୧୦୦
ଦେଖ ଖଣ୍ଡ ଖଣ୍ଡ ହୋଇ ରଥ ପଡ଼ିଅଛି ।
କୋପ କଲା ମୋତେ ବିଶର୍ବାର ବଛି ॥
ଖଣ୍ଡା ଘେନି ମୋର ଛେଦିଲାକ ଡେଣା ।
ଆବର ଚରଣ କାଟିଲା ରାବଣା ॥
ମୋତେ ମାରିବା ବେଳେ ପଳାଇଲେ ସ୍ୟତୀ ।
ତହୁଂ ଧରି ଘେନି ଅଇଲା ଲଙ୍କପତି ॥
ମାୟା ବିବାନେକ ମିଳିଲା ତାର ପାଶ ।
ତହିଁ ଆରୋହିଲା ବିଶର୍ବାର ବଛ ॥
ସୀତ୍ୟାଙ୍କୁ କୋଡ଼େ ଘେନି ଲଙ୍କସାଇଂ ।
ଦଖିଣ ଦିଗକୁ ଗଲା ରଥ ବାହି ॥ ୧୦
ମଧିଆନ କାଳେ ଗଗନ ପନ୍ଥେ ଗଲା ।
ଭୋ ରଘୁନାଥ ମୋତେ ଯେତେ ଦୁଖଦେଲା ॥
ମଲା ପ୍ରାଣୀ ମୁହିଁ ଛଣେ ଅଛି ରହି ।
ଯିବାବେଳେ ସୀତ୍ୟା ଗଲେ ମୋତେ କହି ॥
ଶ୍ରୀରାମକୁ ଦେଖିବାଯାଯେ ପ୍ରାଣଥାଉ ।
ଯେ ତୋହୋର ମୁଖୁଂ ରାମ ସିଧ ବାରତା ପାଉ ॥
ତେଣୁ ସେ ପ୍ରାଣ ହାଦେ ଅଛଇ ମୋର ରହି ।
ତୁମ୍ଭଙ୍କୁ ଦେଖିଣ ଯେବେ ନିସ୍ତରିଲି ମୁହିଁ ॥
ରାବଣଙ୍କୁ ମାରି ସୀତ୍ୟା ଘେନିଆସ ।
ଲଙ୍କାଗଡ଼କୁ ବୋଲି ଚଳ ରଘୁଶିଷ ॥ ୨୦
ଶ୍ରୀରାମ ବୋଇଲେ ଶୁଣ ଖଗପତି ।

ରାବଣ ବୋଲିଣ ସେ ଅଟଇ କେବଣ
ଜାତି ॥
କେ ତାହାର ମାତା କେ ତାହାର ପିଅର ।
କେବଣ ଦେଶରେ ଅଟଇ ତାର ଘର ॥
ପକ୍ଷୀ ବୋଇଲା ସେ ବିଶର୍ବାର ବଛ ।
ନଭକେଶୀ ରାକ୍ଷସଣୀ ଗର୍ଭରୁ ସମ୍ଭୂତ ॥
ବ୍ରହ୍ମାର ବରେ ସେ ସାଧିଲା ତିନିପୁର ।
ଜ୍ୟେଷ୍ଠଭାଇ ତାର ଅଟଇ କୁବେର ॥
ସମୋଦ୍ର ଭିତରେ ଲଙ୍କାଗଡ଼ କରି ।
ବିପୁଳ ଭୋଗ ସେ କରଇ ଦଶଗିରି ॥ ୩୦
ଯେବେ ତୋର ଘରଣୀକି ନେଲାକ
ଚୋରାଇ ।
ପାରୁ ଯେବେ କାରଣ କର ରଘୁସାଇଂ ॥
ଯେତେ ବୋଲି ପକ୍ଷୀ ଛାଡ଼ିଲା ଜୀବନ ।
ଦେଖିଣ ବିକଳ ହୋଇଲେ ରଘୁନାନ ॥
ଶ୍ରୀରାମ ବୋଲନ୍ତି ଶୁଣ ହୋ ଲକ୍ଷଣ ।
ପରଉପଗାରୀ ପକ୍ଷୀ ଅଟଇ ବିଚକ୍ଷଣ ॥
ଆମ୍ଭ ନିମନ୍ତେ ଯେ ପ୍ରାଣ ହରାଇଲା ।
ସୀତାଯାର ବାରତା ସକଳ କହିଲା ॥
ଯେ ପକ୍ଷୀ ପୁନ୍ୟବନ୍ତ ଗରୁଡ଼ ତନୟେ ।
ଦଶରଥ ରାଜାର ମିତ୍ର ପୁଣ ହୋୟେ ॥୪୦
ଯେହାକୁ ଅଗ୍ନିଦାହା କରିବା ଆମ୍ଭେ ଯେଥ ।
ଶୁଖିଲା କାଠ ଘେନି ଆଣସିରେ ଭ୍ରାଥ ॥
ଶୁଣିଣ ସଉମିତ୍ରୀ ଶ୍ରୀରାମର ବାଣୀ ।
ହାଥୀ ଭଙ୍ଗା ଦାରୁ ସମ୍ପାଦିଲା ଆଣି ॥
ତ୍ରୋଣ୍ଟଂ ଅଗ୍ନିବାଣ ବିନ୍ଧିଲେ ଦାଶରଥି ।
ପ୍ରଜ୍ୱଳିତ ହୁତାଶନ ଉଠିଲାକ ଧାତି ॥
ପକ୍ଷୀଙ୍କଟାକୁ ଯେ ଧଇଲେ ବେନିଭାଇ ।
ସସଂକାର କଲେ ଅଗ୍ନିରେ ପକାଇ ॥
ଗୋଦାବରୀ କୂଳେ ପକାଇଲେ ଅସ୍ଥି ।
ସ୍ନାହାନ ତର୍ପଣ ସାରିଲେ ରଘୁପତି ॥ ୫୦
ଶ୍ରୀରାମ ପରସାଦେ ପକ୍ଷୀ ସ୍ୱର୍ଗ ଗଲା ।
ଦେବତାଙ୍କ ସଙ୍ଗତେ ଯାଇଣ ବସିଲା ॥
ତହୁଂଣ ଶ୍ରୀରାମ ଲକ୍ଷଣ ବେନିଭାଇ ।
ସୀତ୍ୟା ସୀତ୍ୟା ବୋଲି ଉଚ୍ଚେଂ ରାବ ଦେଇ ॥

ବେଳ ଅସ୍ତ ହୋଅନ୍ତେ ମଢ଼ିଆକୁ ଗଲେ ।
ବସି ଦୁଇଭାଇ ନିଶି ପୁହାଇଲେ ॥
ଶ୍ରୀରାମ ବିକଳ ସୀତ୍ୟାକୁ ସୁମରି ।
କେବଣ କତି ଗଲୁ ସ୍ୟତୀ ନିରେଖ ମୋତେ
କରି ॥
କ୍ଷଣେ ନ ଦେଖିଲେ ନୋହୁ ଯେ ତ୍ରିପୁତି ।
ଯେବେ କେହ୍ନେ ମୂର୍ଚ୍ଛି ପଳାଇଲୁ
ସ୍ୟତୀ ॥୬୦
ଆବର କାହିଂ ଗୋ ତୋର ମୋର ମେଳ ।
ଯେ ଜନ୍ମ ସଖିରେ ହୋଇଲା ନିଷ୍ଫଳ ॥
କାହାର କୋଳେ ଆଜ ଶୋଇବୁ
ମହାସ୍ୟତୀ ।
କାହାର ସଙ୍ଗେ ବିନୋଦ କରିବୁ ଆଜ ରାତି ॥
କେ ତୋହୋର ମନ ଜାଣିଣ ପାଳିବ ।
କେ ତୋତେ ସଖି ଅନ୍ନ ଆହାର
ଯୋଗାଇବ ॥
କାହାକୁ ବିଶ୍ୱାସ କରିବୁରେ ସହି ।
ଅପୂର୍ବ ପଦାର୍ଥ ମାଗିବୁ କାହାକଇ ॥
ନିକଳଙ୍କ ଚନ୍ଦ୍ରମା ପ୍ରାୟେକ ତୋର ମୁଖ ।
ଆଉ କାହିଂ ମୋତେ ପ୍ରାପତ ଅଛି
ସୁଖ ॥୭୦
ଆହା ଜାନେକୀ ଗୋ ଜନେକ ଦୋହିତା ।
ମୋତେ ଛାଡ଼ି କେଣେ ଗଲୁସି ଗୋ ସୀତ୍ୟା ॥
ଲତାଙ୍କର ମଧ୍ୟେ କି ଅଛୁ ଲୁଚା ଦେଇ ।
ଯେତେ ବୋଲି ରାମ ଉଠିଣ ଗଲେ ଧାଇଂ ॥
ଲକ୍ଷଣ ଗୋଡ଼ାଇଅଛି ପଛକତି ।
ବାଳୁତ ପ୍ରାୟେ ହୋଇ ଚାହାନ୍ତି ଚଉକତି ॥
ଯେଣେତେଣେ ବୁଲି ନ ଦେଖିଲେ କାହିଂ ।
ମଢ଼ିଆ ଦୁଆରେ ମିଳିଲେ ରଘୁସାଇଂ ॥
ପତ୍ର ଘରକୁ ଚାହିଂ ବୋଲନ୍ତି ରଘୁନାଥ ।
ତୋତେ ଆଶ୍ରେ କରି ମୁଂ ହୋଇଲି
ଅନାସ୍ତ ॥୮୦
ଭୋ ପଞ୍ଚବଟୀ ଯେ ସେ ମୋତେ କଲୁ ।
ପତ୍ନୀ ଭ୍ରଷ୍ଟ କଷ୍ଟ ମୋତେ ସେ ବିହିଲୁ ॥
ମହତ ବୋଲିଣ ମୁଂ ଅଇଲି ତୋର ପାଶ ।

ଭାରିଯା ହରାଇଣ ହୋଇଲି ନିରାଶ ॥
ଦେଶ ନ ଜାଣଇଂ କେଣିକି ଯେବେ ଯିବି ।
ପ୍ରାଣବଲ୍ଲଭୀ କି ଯେବେ କାହିଂ ମୁଂ
ଦେଖିବି ॥
ଆହୋ ବୃକ୍ଷମାନେ ସମସ୍ତେ ହେଂ ଅଛ ।
ନିରାଶ ହୋଇଲି ମୁଂ ଦଶରଥ ବଛ ॥
ତୁମ୍ଭ ସନ୍ନିଧେ ଥାଇ ହରାଇଲି ଘରଣୀ ।
ଜାଣି ପଟାନ୍ତର ଯୁଥଭଗ୍ନ ହରଣୀ ॥ ୯୦
ରଖି ନ ପାରିଲ ମହତ ଲୋକ ହୋଇ ।
ଅନାସ୍ତ ହୋଇଣ ଯାଉଅଛି ମୁହିଂ ॥
ଭୋ ପର୍ବତମାନେ ସମସ୍ତେ ହେଂ ଅଛ ।
ମୁଂ ତୁମ୍ଭରେ ଶରଣ ଦଶରଥ ବଛ ॥
ଭାରିଯା ଘେନି ମୁଂ ରହିଲି ତୁମ୍ଭ କତି ।
କେ ମୋହୋର ହରି ନେଲାକ ଯୁବତୀ ॥
କାହିଂକି ଯିବି ହୋ ପାଇବି ଆଉ କାହିଂ ।
କେବଣ ଦିଗେ ତାକୁ ଦେଖିବଇଂ ଯାଇ ॥
ତୁମ୍ଭେ ଲତାମାନେ ମହାଶୋଭା ଦିଶ ।
ଜାଣି ପଟାନ୍ତର ଘରର ସାଦୃଶ ॥ ୧୦୦
ତୁମ୍ଭେ କି ଲୁଚାଇ ଅଛ ମୋହୋ ନାରୀ ।
ଜାଣି ପଟାନ୍ତର ସର୍ଗର ସୁନ୍ଦେରୀ ॥
ତାହାର ପରା ଭାରିଯାକୁ ପାଇବି ମୁହିଂ
କାହିଂ ।
ତାର ବିନୁ ମୋର ଆନଗତି ନାହିଂ ॥
ଦେହ ଥୋଇଣ କେ ପ୍ରାଣ ଘେନିଗଲା ।
ନିରେଖ ପ୍ରାଣୀର କେ ହୃଦୟ ଘେନିଲା ॥
ବନ୍ଧୁଲି କୁସୁମ ପ୍ରାୟେ ସଖିର ଯେ ଓଷ୍ଠ ।
ଯେତେବେଳେ ମୋତେ ଦେଲା ଯେତେ
କଷ୍ଟ ॥
ଅଣ୍ଡିର କୋକିଳ ପ୍ରାୟେ ସଖିର ଯେ
ବାଣୀ ।
ମୁନିମାନେ ଧ୍ୟାନ ଟଳିବେ ତାହା ଶୁଣି ॥୧୦
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେକ ଦେହ କାନ୍ତି ।
ଦେବାସୁର ଗନ୍ଧର୍ବ ଦେଖିଲେ ମୋହ ଯାନ୍ତି ॥
ମଉଗଜଗବନୀ ତୁ ଗଲୁ କେବଣ କତି ।
କେ ତୋର ମନ ରଞ୍ଜିବରେ ସ୍ୟତୀ ॥

ଶ୍ରୀରାମ ନୟନରୁ ଅଶ୍ରୁଜଳ ଗଳି ।
ଲକ୍ଷଣ ଭୁଜ ଧରି ଗଲେ ତହୁଁ ଚଳି ॥
ପଥୁକୀ ଜନନ୍ତ ଦେଖିଲେ ପଚାରନ୍ତି ।
ଝାଡ଼ ବାଡ଼ ଲତା କନ୍ଦରେ ଲୋଟନ୍ତି ॥
ଦକ୍ଷିଣ ମୁଖ ହୋଇ ତିନିକୋଶ ଗଲେ ।
ଅତି ଭୟାଙ୍କାର ଗନ୍ଧର୍ବ ଦେଖିଲେ ॥୨୦
ଉଦରେ ଆଖି ଯେ ଅଛଇ ତାର ଯେକ ।
ବିକଟାଳ ବଦନ ଦିଶଇ ତାର ନାକ ॥
ଜଙ୍ଘ ବିହୁନେଣ ଯୋଜନେ ବାହା ଲମ୍ବ ।
ପାଦ ନ ଥିବାରେ ନୁହଇ ଆରମ୍ଭ ॥
ଚଳି ନୁଆରଇ ଯେକ ଠାବେ ଥାଇ ।
ହସ୍ତ ବଢ଼ାଇଣ ଜୀବଜନ୍ତୁ ଖାଇ ॥
ଶ୍ରୀରାମ ଲକ୍ଷଣଙ୍କୁ ଧଇଲା ଅସୁର ।
ଆକ୍ରେଷି କଲା ନେଇ ବଦନ କତିର ॥
ଡରେ ଶ୍ରୀରାମର ଶୁଖିଅଛି ତୁଣ୍ଡ ।
ପର୍ବତ ସମାନରେ ଦତ୍ୟର ଭୁଜ ଦଣ୍ଡ ॥୩୦
ଦୃଢ଼କରି ନେଇ ମୁଖରେ ଭରଇ ।
କ୍ଷଣକେ ରହି ପୁଣ ମନରେ ବିଚାରଇ ॥
ପଚାରଇ ତୁମ୍ଭେ କେବଣ ଦେଶୁଂ ଆୟେ ।
କିସ ନାମ ତୁମ୍ଭର କେବଣ ବାପମାୟେ ॥
କିମ୍ପା ବନେ ବୁଲ ଧନୁ ଶସ୍ତ୍ର ଧରି ।
ଆଜ ତୁମ୍ଭ ପ୍ରାଣ ଯିବ ଯମପୁରୀ ॥
ଶ୍ରୀରାମ ବୋଲନ୍ତି ସେ ଅଯୋଧ୍ୟା ମୋର ଦେଶ ।
ଶ୍ରୀରାମ ଲକ୍ଷଣ ଆମ୍ଭେ ଦଶରଥ ଶିଷ ॥
ପିତାର ଆଜ୍ଞାରେ ବନବାସ କଲୁ ।
ପଞ୍ଚବଟୀ ବନେ ଘରଣୀ ହରାଇଲୁ ॥୪୦
ତାହାକୁ ବନେ ମୁଂ ଲୋଡ଼ଇ ବିକଳେ ।
ଯେବେ ପଡ଼ିଲି ଆସି ତୋହୋର ଆଗରେ ॥
ମୁହିଂ ନିରେଖ ନ କର ମୋତେ ଗ୍ରାସ ।
ଅଶ୍ରାହୀ ଲୋକକୁ ନ ରଖିଲେ ବଡ଼ ଦୋଷ ॥
ଯଦ୍ୟପି ମୋତେ ତୁ ନ ଛାଡ଼ିବୁ ବୀର ।
ଯେ ମୋର ସାନୁଜଙ୍କୁ ବେଳେ ରକ୍ଷାକର ॥
ସାବତ ଜନନୀର ଅଟଇ ହାଦେ ସୁତ ।
ନିଜ ପୁରେ ଯାଇ କରିବ ବାରତ ॥

ଶୁଣି ଅସୁର ଧଇଲା ଦୃଢ଼ କରି ।
ଶ୍ରୀରାମକୁ ବୁଧି କିଛି ହିଂ ନ ଫୁରି ॥୫୦
ଲକ୍ଷଣ ବୋଇଲେ ଶ୍ରୀରାମକୁ ଚାହିଂ ।
ଯେବେ଼ ଅସାଷମ ହୋଇଲୁ କିମ୍ପାଇ ॥
ଦେସି ଦେବ ଆଜ୍ଞା ଦତ୍ୟକୁ କରଇ ନାଶ ।
ଶୁଣି ରଘୁନାଥ ହୋଇଲେ ହରଷ ॥
ବୋଇଲେ ଭାଇରେ ପାରିବୁଟିକି ମାରି ।
ନ ପୁଣ ଦତ୍ୟ ତୁଣ୍ଡରେ ଦେଉଅଛି ଭରି ॥
ଶ୍ରୀରାମଙ୍କ ଆଜ୍ଞା ପାଇଣ ଲକ୍ଷଣ ।
ଖାପରୁ ଖଣ୍ଡା ଯେ କାଢ଼ିଲେ ତତକ୍ଷଣ ॥
ଦତ୍ୟର ବେନି ଭୁଜ ପକାଇଲେ କାଟି ।
ସର୍ଗରେ ଦେବତାୟେ କଲେ ପୁଷ୍ପବୃଷ୍ଟି ॥୬୦
ଗନ୍ଧର୍ବ ବୋଇଲା ଯେ ଶ୍ରୀରାମକୁ ଚାହିଂ ।
ପୂର୍ବର କଥାୟେକ ଶୁଣ ରଘୁସାଇଂ ॥
ସୁରପତି ପତ୍ନୀକି ଭୟେ କରାଇଲି ।
ଶ୍ୟରୀର ବିକାଶିଣ ନୟନ ଦେଖାଇଲି ॥
ସେହି ମୋତେ କୋପ କରିଣ ଶାପ୍ୟ ଦେଲା ।
ଦଇତ ଶ୍ୟରୀର ତୁ ହୋଅସି ବୋଇଲା ॥
ତହୁଂ ମୁଂ ପଳାଇ ଅଇଲି ବଡ଼ ଡରେ ।
ଆସି ପଶିଲି ଇନ୍ଦ୍ରର ଛାମୁରେ ॥
ବାସେବ କୋପେ ମୋତେ ବିଧାୟେ ମାଇଲା ।
ପାଦଜଙ୍ଘ ମୋର ପେଟରେ ପଶିଲା ॥ ୭୦
ଶିର ପଶିଲା ଯାଇ ଉଦର ଭିତରେ ।
ଯୋଗେଣ ପ୍ରାଣ ନ ଛାଡ଼ିଲା ଶରୀରେ ॥
ଯୋଜନେ ଯୋଜନେ ବେନି ବାହା କଲା ।
ପୁଣି ପ୍ରସନ ହୋଇଣ ଆଜ୍ଞା ଦେଲା ॥
ବୋଇଲା ଶ୍ରୀରାମ କାଟିବେ ତୋର ହାଥ ।
ତେଣେ ତୁ କୋବନ୍ଧ ହୋଇବୁ ମୁକତ ॥
ସେ କଥା ପ୍ରାପତ ହୋଇଲା ମୋତେ ଆସି ।
ବାଟ ଚାହୁଁଥାଇ ତୋତେ ଦିବା ନିଶି ॥
ଯେବେ ଭୋ ନାଥ ମୋକ୍ଷ ହୋଇଲି ତୋହୋରେ ।

ଅଗ୍ନିବାଣ ମୋତେ ପେଷ ରଘୁବୀରେ ॥୮୦
ଶୁଣିଣ ରଘୁନାଥ ହୋଇଲେ ସନ୍ତୋଷ ।
ଅଗ୍ନି ଜାଳନ୍ତେ ଅସୁର ଗଲା ସ୍ୱର୍ଗବାସ ॥
ପାର୍ଥିବ ଦେହଛାଡ଼ି ନିଜ ରୂପ ହୋଇ ।
ଶ୍ରୀରାମକୁ ସମାଦି ଅନ୍ତରୀକ୍ଷେ ଯାଇ ॥
ତୁ ହୋ ଦାଶରଥି ଶୁଣ ମୋର ବାଣୀ ।
ଋଷିମୁଖ ପର୍ବତକୁ ଯାଅଯା ଯେହିକ୍ଷଣି ॥
ଚାରି ମନ୍ତ୍ରୀ ଘେନି ଅଛି ସୁଗ୍ରୀବର ।
ସେ କପିରାଜା କାର୍ଯ୍ୟ କରିବ ତୋହୋର ॥
ତାହାର ସଙ୍ଗେ ତୁ ମଇତ୍ର ହୋଇବୁ ।
ତାହାର ବୁଧିବଳେ ସୀତ୍ୟାକୁ ପାଇବୁ ॥୯୦
ପିମ୍ପା ସରୋବର ଦେଖିବଟି ବାଟେ ।
ଶବରଣୀ ଅଛି ତହିଂର ନିକଟେ ॥
ଋଷିଙ୍କ ପରିବାରୀ ସେ ପାପ ପୁଣ୍ୟ ଜାଣଇ ।
ପୁରାଣ ଆଗମ କଥାନ୍ତ ବଖାଣଇ ॥
ତୋତେ କହିବ ସେ ସକଳ ବୃତାନ୍ତ ।
ଯେଥେ ନ ରହ ତୁ ଚଳ ସୀତ୍ୟାକାନ୍ତ ॥
ଯେତେ ବୋଲି କୋବନ୍ଧ ବିବାନେ ସ୍ୱର୍ଗ ଗଲା ।
ଶ୍ରୀରାମ ପ୍ରସନେ ମୁକତ ହୋଇଲା ॥
ଗନ୍ଧର୍ବର ବାଣୀ ଶୁଣି ରଘୁନାଥ ।
ତହୁଂ ଚଳିଗଲେ ଥୋକାୟେକ ପନ୍ଥ ॥୧୦୦
ଲକ୍ଷଣକୁ ଚାହିଂ ବୋଇଲେ ରଘୁମଣି ।
ତୃଷା କଲା ମୋତେ ବେଗେ ଦିଅ ପାଣି ॥
ଶୁଣିଣ ସଉମିତ୍ରୀ ଚାହାଂଇ ଚଉକତି ।
ନିକଟେଣ ଜଳ ନ ଦେଖିଲା ସଉମିତ୍ରୀ ॥
ବାବଲ ଶର ଘେନି ପର୍ବତ କାଟି ଦେଲା ।
ପାତାଳ ଭେଦି ଗଙ୍ଗା ବାହାର ହୋଇଲା ॥
ତହିଂ ଶ୍ରୀରାମ ଯେ ସାରିଲେ ନିତ୍ୟ କର୍ମ ।
ଜଳପାନ କଲେ କଉଶୁଲ୍ୟା ନନ୍ଦନ ॥
ଲକ୍ଷଣ ହ୍ରଦ ବୋଲି ତହିଂର ନାମ ଦେଲେ ।
ଅଧକୋଶ ଯାଇ ପର୍ବତେ ରହିଲେ ॥ ୧୦
ସୀତା ସୁମରିଣ ପୁହାଇଲେ ନିଶି ।
ରଜନୀ ପ୍ରଭାତେ ତହୁଂ ଗଲେ ରଘୁଋଷି ॥

ତୁଙ୍ଗଭଦ୍ରା ନଦୀରେ ନିତ୍ୟକର୍ମ ସାରି ।
ବିରୁପାକ୍ଷ ଲିଙ୍ଗକୁ ପୂଜିଲେ ଚାପଧାରୀ ॥
ଯୋଜନେ ପରିଯନ୍ତେ ଦକ୍ଷିଣ ମୁଖେଗଲେ ।
ଶବର ଶବରଣୀକି ଯାଇଣ ଦେଖିଲେ ॥
ଯାହା ସେ କୋବନ୍ଧ କହିଲା ରୂପ ଗୁଣ ।
ଦେଖିଣ ପ୍ରତେ ଗଲେ ରଘୁକୁଳ ରାଣ ॥
ଶବରଣୀ ମୁଖ ଚାହିଁ ଶ୍ରୀରାମ ପୁଛିଲେ ।
ଆପଣା କୁଳ ଗୋତ୍ର ନାମ ସେ କହିଲେ ॥୨୦
ବୋଇଲେ ଅଯୋଧ୍ୟା ଦଶରଥ ସୁତ ।
କଉଶୁଲା ନାମେ ଅଟଇ ମୋର ମାତ ॥
ସାନୁଜ ଲକ୍ଷଣ ସୁମଇତ୍ରା ତନୟେ ।
ପିତାର ଆଜ୍ଞାୟେ ମୁଂ ବନବାସ କୟେ ॥
ଭାରିଯା ହରାଇଲି ଗୋଦାବରୀ କୂଳେ ।
ତାହାଙ୍କର ଦୁଖେ ଲୋଡ଼ଇ ବିକଳେ ॥
ଶୁଣି ଶବରଣୀ ଅନେକ ପୂଜା କଲା ।
ରାମ ଲକ୍ଷଣକୁ ନିଜ ମଢ଼ିଆକୁ ନେଲା ॥
କମୋଣ୍ଡଳ ଜଳ ଘେନି ଚରଣ ପଖାଳି ।
କୃଷ୍ଣାଜିନ ଛାଲ ପାଡ଼ି ତପଶାଳୀ ॥ ୩୦
ଶବରୀ ବୋଇଲା ହୋ ଶୁଣିମା ରଘୁନାଥ ।
ସଚିଂଅଛି ମୁହିଂ ସୁପକୁ ପଦାର୍ଥ ॥
ତୋହୋରି ଆସିବାକୁ ଅଛଇ ବାଟ ଚାହିଂ ।
ଇନ୍ଦ୍ର ଦେବତା ମୋତେ ଦେଲେ ପଠିଆଇ ॥
ତେଣୁ ସେ ଫଳମୂଳ ଯିସ ଅଛି ସଂଚିଂ ।
ତୁ ତାହା ମୋଣୋହି କର ରଘୁବଚ୍ଛି ॥
ଶୁଣି ସନ୍ତୋଷ ହୋଇଲେ ରଘୁଶିଷ ।
ଆଣ ଆଣ ଶବରୀ ଗୋ ଭିଆଇଛ ଯିସ ॥
ଶ୍ରୀରାମର ଆଜ୍ଞା ପାଇଣ ଶବରୀ ।
ଆଣିଲା ଫଳ ଯାହା ଅଛି ଯତ୍ନ କରି ॥୪୦
ଶିଆଳୀ ପତ୍ରେ ସେ ଅଛି ଆମ୍ବ ଥୋଇ ।
ଶ୍ରୀରାମଙ୍କ ଆଗରେ ତାହା ସମର୍ପିଲା ନେଇ ॥
ସୁପକୁ ଆମ୍ବରେ ଦନ୍ତଘାତ ଅଛି ।
ଦେଖି ରଘୁନାଥ ଶବରୀକି ପୁଛି ॥
ଦନ୍ତ ମୁଦ୍ରାମାନନ୍ତ ଅଛଇ ତହିଂ ଲାଗିଂ ।
ଭଲା ସଚିଂଅଛି ଆସିବା ଆମ୍ବ ଜାଣି ॥

ଆଣ ଆଣ ଶବରୀ ଆମ୍ବ ମୋତେ ଦେସି ।
ତୋହୋରେ ହୋଉ ମୋର ଉଦର ଯେ ପୋଷି ।
ଶୁଣିଣ ଶବରୀ ପରଷଇ ଆଣି ।
ଆନନ୍ଦେ ମୋଣୋହି କରନ୍ତି ରଘୁମଣି ॥୫୦
ଭୁଞ୍ଜିଣ ସନ୍ତୋଷ କୋଦଣ୍ଡ ଚାପଧାରୀ ।
ପୁଣିହିଁ ଆମ୍ବେକ ଦେଲା ଆଣି ଶବରଣୀ ॥
କରେ ଧରି ରାମ ତଳେ ପକାଇଲେ ।
ଦନ୍ତ ମୁଦ୍ରା ନାହିଂ ବୋଲିଣ ବୋଇଲେ ॥
ଭଗତମଛଳ ଦାସ ଜନହିତକାରୀ ।
ଅପାର ମହିମା କେ କହୁ ଅନ୍ତ କରି ॥
ଏ ଆମ୍ବ ଶବରୀ ଯେମନ୍ତ ଭିଆଇଲା ।
ଶ୍ରୀରାମ ଆସିବେ ବୋଲିବାରତା ପାଇଥିଲା ॥
ଚୂତବନେ ପଶି ସାଉଂଟଇ ଫଳ ।
ଦନ୍ତେ ଚାପି ଜାଣଇ ସୁଆଦ ଆମ୍ବିଳ ॥୬୦
ମନ୍ଦ ପକାଇଣ ଭଲ ସାଇତଇ ।
ଯେମନ୍ତରେ ଆମ୍ବ ଆଣିଲାକ ବହି ॥
ଅଗ୍ୟାନ ଲୋକ ସିନା ଅଟଇ ଶବରଣୀ ।
ପୁଳାୟେ ଖାଇ ସେ ଭଲ ମନ୍ଦ ଜାଣି ॥
ସ୍ୱାଦ ଫଳମାନ ସବୁ ଠୁଳ କଲା ।
ସୁନ୍ଦରୀ ଫଳ ଗୋଟି ନ ଚାଖି ଆଣିଲା ॥
ହୃଦ ପଦ୍ମମଧେ କଲାକ ବିଚାର ।
ଯେଫଳ ରଘୁନାଥ କରିବେ ଆହାର ॥
ଯେମନ୍ତ ବୋଲି ଯାହା ମନରେ ବାଞ୍ଛା କଲା ।
ପରମପୁରୁଷ ତାହା ଭଲେ ନ ଭୁଞ୍ଜିଲା ॥୭୦
ଯେତେ ଗୋଟିରେ ସେ ଥିଲା ଦନ୍ତଘାତ ।
ଭାବରେ ମୋଣୋହି ତା କଲେ ରଘୁନାଥ ॥
ସୁନ୍ଦରୀ ଆମ୍ବ ବୋଲି ପଛେ ଯାହା ଦେଲା ।
ଅମୁଦ୍ରା ବୋଲି ଶ୍ରୀରାମ ତଳେ ପକାଇଲା ॥
ଶବରଣୀ କହଇ ବେନି କର ଯୋଡ଼ି ।
ଭୋ ରାମ ତାହା ଯେ ଆଣିଲି ଦୁଖ ପଡ଼ି ॥
ଭଲ ଆମ୍ବ ଗୋଟି ପକାଇଲ କିସ ପାଇଁ ।
ଶବରୀକି ବୋଲତି ରଘୁକୁଳ ସାଇଂ ॥
ଭଲ ବୋଲିଣ ଗୋ କେମନ୍ତେ ଜାଣିଲୁ ।

ସେ ଯେବେ ଭଲ ତାହା ଦେଖିତ ନୁଆଣିଲୁ ॥୮୦
ଅମୁଦ୍ରା ପଦାର୍ଥ ମୁଂ ଭୁଞ୍ଜି ନୁଆରଇ ।
ଭୁଞ୍ଜିଲେ ଅବଶ୍ୟ ଗୋ ବିରୋଧ ପଡ଼ଇ ॥
ଯେତେ ଗୋଟାରେ ତୋ ଦନ୍ତମୁଦ୍ରା ଥିଲା ।
ସେ ମୋତେ ଶବରୀ ଗୋ ଭଲେ ଯୋଗାଇଲା ॥
ଅମୁଦ୍ରା ପଦାର୍ଥ ମୁଂ ନ କରଇ ଗ୍ରାସ ।
ଯେତେବୋଲି ଆସନୁ ଉଠିଲେ ରଘୁଶିଷ ॥
ଲକ୍ଷଣ ଯେ ସୁଖେ ଆମ୍ବ ଗ୍ରାସ କଲା ।
ରାମକୁ ଆଚୋବନ ଶବରୀ କରାଇଲା ॥
ମୃଗଛାଲେ ବସାଇ ଚାପଇ ଚରଣ ।
ବୋଲଇ ଦୟା ମୋତେ କଲେ ରାମଚରଣ ॥୯୦
ତୁମ୍ଭେ ପ୍ରମବ୍ରହ୍ମ ଶଙ୍ଖ ଚକ୍ରଧାରୀ ।
ଅବତାର ହୋଇଅଛୁ ରାବଣକୁ ମାରି ॥
ମୁନିମାନେ ମୋତେ ଯାହା ଛନ୍ତି କହି ।
ତୋ ପାଦ ସେବି ମୁଂ ମୁକତି ଗତି ପାଇବଇଂ ॥
ଶ୍ରୀରାମ ବୋଇଲେ ସେ ମୁନିମାନେ କାହିଂଛନ୍ତି ।
ଶବରଣୀ କହଇ ଶୁଣ ରଘୁପତି ॥
ତପର ଫଳେ ସେ ସ୍ୱର୍ଗକଇ ଗଲେ ।
ଯିବାର ବେଳେ ମୋତେ କହି ହାଦେ ଗଲେ ॥
ବୋଇଲେ ନାରାୟେଣ ମାନବ ରୂପ ହୋଇ ।
ଯେ ବନେ ବୁଲିବେଟି ଭାରିଯା ହରାଇ ॥୧୦୦
ନାମ ଶ୍ରୀରାମ ଦଶରଥ ସୁତ ।
ତୁ ତାହାର ଚରଣେ କରିବୁ ଭଗତ ॥
ତା ପାଦେ ସେବିଲେ ହୋଇବୁଟି ସିଧ୍ୟ ।
ଯାଇଣ ବସିବୁଟି ଦେବତାଙ୍କ ମଧ ॥
ସେ କଥା ଜାଣିଣ ପଠାରୁଥିଲି ମୁହିଂ ।
ଯେତେ କାଳେ ଦ୍ରଶନ ପାଇଲି ରଘୁସାଇଂ ॥

ଦେଖ ମୁନିଙ୍କର ପୂର୍ବର ବେଭାର ।
ସ୍ୱାହା ପ୍ରୋକ୍ଷଣି ଯେ ଅଛଇ ରଘୁବୀର ॥
କୁଶ ଯବ ତିଳ ହୋମ ଖାତ ଅଛି ।
କୃଷ୍ଣାଜିନ ଛାଲ ଦେଖ ରଘୁବଛି ॥ ୧୦
ଅତିଥି ଅଇଲେ ମାରନ୍ତି ଜୀବମାନ ।
ସେ ଚର୍ମ ଦେଖ ତୁ ରଘୁକୁଳ ନାନ ॥
ମୁହିଂ ଯେହା ଯତନ କରି ଥୋଇଅଛି ।
ମୋକ୍ଷ ହୋଇଲି ଆଜ ତୋହୋର ମୁଖ
ଦେଖି ॥
ତୁ ହୋ ରଘୁନାଥ ଶୁଣ ମୋର ବାଣୀ ।
ଋଷି ମୁଖ ପର୍ବତକୁ ଚଳ ରଘୁମଣି ॥
ଚାରିମନ୍ତ୍ରୀ ଘେନି ତହିଂ ଅଛି ସୁଗ୍ରୀବର ।
ତାହାର ସଙ୍ଗତେ ଯାଇ ପ୍ରୀତି ତୁମ୍ଭେ କର ॥
ସୀତ୍ୟା ପାଇବୁ ତୁ ତାହାର ପରସନେ ।
ଯେହି ପଥେ ଚଳି ଯାସି ରଘୁନାନେ ॥୨୦
ଯେତେ ବୋଲି ଦିବ୍ୟ ସ୍ୱରୂପେକ ଧରି ।
ଶ୍ରୀରାମ ଦେଖନ୍ତେ ଗଲାକ ଶବରୀ ॥
ସୁରପୁରେ ପ୍ରବେଶ ହୋଇଲାକ ଯାଇ ।
ଅନେକ ଗଉରୋବ କଲାକ ଶଚିସାଇଂ ॥
ତହୁଂଣ ଶ୍ରୀରାମ ଲକ୍ଷଣ ବେନିଯାନ୍ତି ।
ପିମ୍ପା ସରୋବର କୂଳରେ ମିଳନ୍ତି ॥
ବାବୁ ପୁଷ୍କରିଣୀ ଅମୃତମୟେ ଜଳ ।
ଯେତେ ତେତେ କଳଣା ନାହିଂ ଥଳକୂଳ ॥
ଶଉଚ ନିର୍ମଳ ଜଳ ପଙ୍କ ନାସ୍ତି ।
ନାନା ବର୍ଣ୍ଣେ ପଦ୍ମ ଫୁଟିଣ ଅଛନ୍ତି ॥୩୦
ରକତ କୁମୁଦ ଫୁଲ ପନ୍ତି ପନ୍ତି ।
ପଲ୍ଲବି ବୃକ୍ଷମାନେ ପତ୍ର ଝଡ଼ା ଦ୍ୟନ୍ତି ॥
ମର୍କତ ପାବଛ ବାନ୍ଧିଲା ଚଉପାଶ ।
କୂଳରେ ଅଛଇ ବିବିଧ ବର୍ଣ୍ଣେ ପୁଷ୍ୟ ॥
ଚମ୍ପା ବକୁଳ କେତକୀ ଦୟଣା ।
ଜାତି ନାଗେଶ୍ୱର କଦମ୍ବ କରୁଣା ॥
ପୁନାଙ୍ଗ ଛୁରିଅନା ଓଶେକ ମନ୍ଦାର ।
ପୁଷ୍ୟାନ୍ତ ଚୁମ୍ବନ୍ତି ଅନେକ ମଧୁକର ॥
କୋକିଳ ଚଢ଼ଇ ଶୁକ ପିକ ଶାରୀ ।
ମୟୂର ଡାହୁକ କଣ୍ଠା ଯେ ତିତିରି ॥ ୪୦

ସର୍ବଦା ସେ ବନେ ବହଇ ବସନ୍ତ ।
ଶ୍ରୀରାମକୁ ଘାରିଲା ବିରହ ଜ୍ୱର ଚିନ୍ତ ॥
ସୀତ୍ୟା ସୁମରି ଅନେକ ଶୋକ କଲେ ।
ବସିଲା ଠାବରୁ ସେ ଢଳିଣ ପଡ଼ିଲେ ॥
ଲକ୍ଷଣ ତୋଳିଣ ଧଇଲାକ ଯାଇ ।
କପାଳେ କରଦେଇ କାନ୍ଦନ୍ତି ରଘୁସାଇଂ ॥
ଭୋ ଜନେକନନ୍ଦନୀ ଛାଡ଼ି କେଣେ ଗଲୁ ।
ଦୁଃଖ ଦେଖି ଅବା ଘର ସୁମରିଲୁ ॥
ଯେ ମୋର ବିମୁଖ ଗୋ ମନେ ତୋର
ନାହିଂ ।
ଭୋଗ ଇଚ୍ଛା କରିଗଲୁ କି ପ୍ରାଣସହୀ ॥ ୫୦
ଶ୍ରୀରାମ ରୋଦନ୍ତେ ଲକ୍ଷଣ ତିଆରି ।
ତୁ କିମ୍ପା ବାତୁଳ ହୋଉ ଚକ୍ରଧାରୀ ॥
ରାଜାର ପୁତ୍ର ହୋଇ ବନବାସ କଲୁ ।
କର୍ମର ଅବଳେ ସିନା ଭାରିଯା ହରାଇଲୁ ॥
କେ ବୋଲଇ ଲଙ୍କାର ରାବଣ ଘେନିଗଲା ।
ପକ୍ଷୀଟଟା କୁବନ୍ଧ ଶବରୀ କହିଲା ॥
ଯେ କଥା ବିଚାରିଣ କରିବା ନା କାର୍ଯ୍ୟ ।
ଯେବେ କିଂପା ଆରତ ହୋଉ ଦେବରାଜ ॥
ଶ୍ରୀରାମ ବୋଲନ୍ତି ଶୁଣସିରେ ଭାଇ ।
ଯେହିକ୍ଷଣି ସୀତ୍ୟାକି ମନରୁ ମୋର
ଯାଇ ॥୬୦
ପ୍ରିଅବତୀ ନାରୀ ମୋର କଟିରେଣ ଥିଲା ।
ଆଶା ଛେଦନ କରି ମୋର କେହୁ
ଘେନିଗଲା ॥
କାହିଂ ପାଇବି ମୁଁ ପ୍ରାଣର ରମଣୀ ।
ଯେତେ ବୋଲି ଉଠି ଲୋଡ଼ନ୍ତି ରଘୁମଣି ॥
ଲତାଙ୍କ ଭିତରକୁ ନିରୋପି ଚାହାନ୍ତି ।
ଘୋର ଗିରିକନ୍ଦରେ ପଥ ବହିଯାନ୍ତି ॥
ଋଷିଙ୍କର ମଢ଼ିଆ ଦେଖିଲେ ଅପାର ।
ଲକ୍ଷଣକୁ ଚାହିଂ ବୋଲନ୍ତି ରଘୁବୀର ॥
କେବଣ କେବଣ ମୁନି ଅଛନ୍ତି ଯେଥେ
ଦେଖ ।
ଶୁଣିଣ ବେଗେ ଗଲା ଶ୍ରୀରାମର ସାଖ୍ୟ ॥୭୦
ତୁଚ୍ଛା ହୋଇଅଛି ପୁନ୍ୟକୁଟୀ ମାନ ।

ଶ୍ରୀରାମ ଆଗେ ଆସି କହଇ ଲକ୍ଷଣ ॥
ତହୁଂ ଗମନ କରିଯାନ୍ତି ରଘୁଶିଷ ।
ପଛେ ଗୋଡ଼ାଇଛନ୍ତି ସୁମିତ୍ରାର ବଂଶ ॥
ଯେସନେକ ସମୟେ ଋଷିମୁଖ ପର୍ବତେ ।
ଚାରିମନ୍ତ୍ରୀ ଘେନି ଅଛନ୍ତି ସୂର୍ଯ୍ୟସୁତେ ॥
ରାମ ଲକ୍ଷଣକୁ ଦେଖିଲେ ସୁଗ୍ରୀବର ।
ମନ୍ତ୍ରୀମାନଙ୍କୁ ଘେନି କରଇ ବିଚାର ॥
ଦେଖ ଧନୁଶର ଘେନିଣ ଦୁଇ ଯତି ।
ବାଳୀର ଲୋକ ପ୍ରାୟେ ଆସିଣ ଅଛନ୍ତି ॥୮୦
ମଧ୍ୟାନ ଆଦିତ୍ୟ ପ୍ରାୟେ ତେଜ ମୟେ ।
ନୋହନ୍ତି ଯତି ବୋଲି ମନରେ କଲା
ଭୟେ ॥
ଚନ୍ଦ୍ରସୂର୍ଯ୍ୟ କି ଯେ ଅଟନ୍ତି ହରିହର ।
ତରୁଣ ସିଂଘ ଜାଣି ବିକ୍ରମ ଯେହାଙ୍କର ॥
ମନ୍ତ୍ରୀକି ଘେନି ସେ ପଳାଇ ମନକଲା ।
ବାଳୀର ଲୋକ ବୋଲି ବହୁତ ଡରିଲା ॥
ଶୁଣ ଗୋ ଶାକେୟରୀ କହନ୍ତି ଶୂଳପାଣି ।
ଆରନ୍ୟେକ କାଣ୍ଡ ଯେ ଅମୃତ ରସବାଣୀ ॥
ସାମବେଦୁଂ ଜାତ ବାଲମ୍ମିକ ଯାହା କଲା ।
ଜଗତର ହିତେ ଗ୍ରନ୍ଥ ବଖାଣିଲା ॥ ୯୦
ମୁହିଂ ତାହା ପାର୍ବତୀ ଗୋ କହଇ ତୋର
ହିତେ ।
ଶ୍ରୀରାମର ନାମ ସୁମରଣ କରିବା ନିମନ୍ତେ ॥
ଶୁଣି ଭଗବତୀ ହୋଇଲେ ହରଷ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ବନ୍ଦଇ ଶରଣମଙ୍ଗଳ ଦୁର୍ଗା ଦେବୀ ।
ସୁରନର କିନ୍ନର ଗୋ ତୋହୋର ପାଦେ
ସେବି ॥
ଅସୁର ସଂହାରିଣୀ ଗୋ ଜଗତଜନ ମାତା ।
ଅଶ୍ରାହୀ ଜନକୁ ମାଗୋ ସୁଖଭୋଗ ଦ୍ୟନ୍ତା ॥
ଭୁବନେଶ୍ୱରୀ ନାମ ଗୋ ଶିବର ଘରଣୀ ।
କାତ୍ୟାୟନୀ ଚଣ୍ଡୀ ଘଣ୍ଟା ସୁଭଦ୍ରା ଶାକାମ୍ଭେରୀ
ଯୋଗ୍ନୀ ॥୧୦୦
ନାରାୟେଣୀ ଭଦ୍ରାକାଳୀ ସାବିତ୍ରୀ ଗୌରୀ ।
ଜୟ ଜୟ ପାର୍ବତୀ ଗୋ ଶଙ୍କର
ମନୋହାରୀ ॥

ବ୍ରହ୍ମାୟେଣୀ ଭଗବତୀ ଭବାନୀ
କାଳରାତ୍ରୀ ।
ଭଇରୋବୀ ବିକଟା ଅମ୍ବିକା ନାମ ଗୋ
ଗାୟେତ୍ରୀ ॥
କାତ୍ୟାୟନୀ ନମୋ ଶିବାୟେନି
ବିଂଝ ଗିରିବାସେନୀ ।
ମହିଷାସୁର ନାଶେନୀ ଶୁମ୍ଭ ବିନାଶନୀ ॥
ତୁ ସେ ମାହାମାୟା ପ୍ରକୃତି ସ୍ୱରୂପା ।
ଅଯୋନି ସମ୍ଭୂତା ତୁଗୋ ଅନ୍ନପୂର୍ଣ୍ଣା ବିରୂପା ॥
ସଂସାରଧାରେଣୀ ଗୋ ତ୍ରିପୁର ସୁନ୍ଦେରୀ ।
ନାନାବିଧିମତେ ମାଗୋ ତୋତେ
ସେବାକରି ॥୧୦
ତାହାକଇ ମାଗୋ ସମ୍ପତି ଭୋଗ ଦେଇ ।
ଅନ୍ତେଣ ବିଷ୍ଣୁର ଭୁବନେଣ ଥୋଇ ॥
ତୁ ଗୋ କାଳରାତ୍ରୀ ଗୋ କରସି ଦୟା
ମୋତେ ।
ମୁହିଂ ପ୍ରାର୍ଥନା ମାଗୋ କରୁଅଛି ତୋତେ ॥
ଆଶ୍ରିତ ଜନକୁ ମାଗୋ ବହୁତ ଦୟାକରି ।
ଦୁର୍ଗାନାମ ତୋର ଦୃଗତି ନିସ୍ତାରି ॥
ମୁହିଂ ତୋତେ ବୋଲଇ ଗୋ ଶିବର
ଘରଣୀ ।
କର ଅନୁଗ୍ରହ ଦଇତ ସଂହାରିଣୀ ॥
ଶ୍ରୀରାମ ଚରିତ କହିତ ମୋର ମନ ।
ଭୋ ଭଇରୋବୀ ମୋତେ ହୁଅସି
ପରସନ ॥୨୦
ସୀତ୍ୟା ହରାଇ ରାମ ଲକ୍ଷଣ ବେନିଭାଇ ।
ବନ ପର୍ବତ କନ୍ଦର ଲୋଡ଼ିଯାଇ ॥
ପିମ୍ପା ସରୋବର କୂଳରେ ମିଳନ୍ତି ।
ଲକ୍ଷଣର ଆଗେ ଶ୍ରୀରାମ ଭାଳନ୍ତି ॥
ଭୋ ସଉମିତ୍ରୀ ଯେ ଭଲ ସରୋବର ।
ଯେଥେ ଅନେକ ଅଛନ୍ତି ଜଳଚର ॥
ପଦ୍ମ କୁମୋଦ ଯେ ଉତ୍ପଳ ଶିଉଳି ।
ଜନମନୁଷ୍ୟ ନାହିଂ କେ ନେମ ଯେହା
ତୋଳି ॥
ଯେହି ଜୀବମାନେ ଘେନନ୍ତି ପୁଷ୍ୟ ବାସ ।
ଆନକୁ ଯେ ଗନ୍ଧ ନୋହଇ ପ୍ରବେଶ ॥୩୦
କୁସୁମ ଲୁବ୍ଧ ଅଟଇ ଜାନେକୀ ।
ସେହୁ ଅବା ଯେଥି ଲୁଚିଥାଇ ନିକି ॥
ପଛୀମାନଙ୍କୁ ସେ ପଚାରିବା ଯାଇ ।
ଲକ୍ଷଣ ବୋଇଲେ ଯେ ନୋହଇ
ଗୋସାଇଂ ॥
ପାଣିର ଭିତରେ କି ମନୁଷ୍ୟ ଥିବ ବସି ।
ଯେ କଥା କେମନ୍ତେ କହିଲ ବିଶେଷି ॥
ପଛିଚଟା ବୋଇଲା ରାବଣ ଘେନିଗଲା ।
ଗନ୍ଧର୍ବ ମୁଖୁଂ ଶୁଣିଲୁ ତାହି ତ କହିଲା ॥
ଶବରଣୀ ଯାହା କହିଲା ବାରତା ।
ଏକ ତ ହୋଇଲା ତିନିଙ୍କରି କଥା ॥ ୪୦
ବାଳୁତ ହୋଇ କିମ୍ପା ଯେଣେତେଣେ
ଲୋଡୁ ।
ଅଜ୍ଞାନ ହୋଇ କିମ୍ପା ଯେଣେତେଣେ ଗଡୁ ॥
ରାବଣ ବୋଲିଣ ଲଙ୍କାର ଆଧିପତି ।
ସେ ଯେ ଚୋରାଇଣ ନେଇଅଛି ସ୍ୟତୀ ॥
ତିନିଜଣ ତହୁଂ ପାଇଲି ବାରତା ।
ଲଙ୍କାର ରାବଣ ଯେ ଘେନିଗଲା ସୀତ୍ୟା ॥
ଯଦ୍ୟପି ଯେ କଥା ଜାଣିଲୁ ତତ୍ତ୍ୱକରି ।
ତଥାପି ଲୋକଙ୍କୁ ଦେଖିଲେ ପଚାରି ॥
ଯେ ଜୀବମାନେ ଯେ ସରୋବରେ ଥାନ୍ତି ।
ସୁଖେଣ ଚରନ୍ତି କାହିଂ ନ ଯାଆନ୍ତି ॥ ୫୦
ଅବଶ୍ୟ ବାରତା ଅଛନ୍ତି ଯେ ଜାଣି ।
କେଣେ ଗଲା ସଖି ମୋର ଜାତି କମଳଣୀ ॥
ମଦନେ ଭେବଳ ହୋଇ ବଚନ ପ୍ରକାଶି ।
ପାଖ ପାଖ ହୋଇ ଯାନ୍ତି ରଘୁଶିଷି ॥
ଶୁଣ ହୋ ପଛୀ ଜନ୍ତୁ ଜଳଚରମାନେ ।
ମୁହିଂ ସେ ଶ୍ରୀରାମ ଦଶରଥନାନେ ॥
ସାବତ ଜନନୀ ମୋତେ କଲା ହିଂସା ।
ତେଣୁ ବନେ ପଶିଲି ପିନ୍ଧିଲି ବସ୍ତ୍ର କଷା ॥
ଭାଇ ଲକ୍ଷଣ ଭାରିଯା ମୋର ସ୍ୟତୀ ।
ପଞ୍ଚୁବଟୀ ବନେ ମୋତେ ପଡ଼ିଲା
ବିପତି ॥୬୦
ମାୟା ମୃଗକଇ ଗଲାଇଂ ମୁଂ ମାରି ।
କେ ମୋର ଘରଣୀକି ନେଲା ଚୋରିକରି ॥
ତେଣୁ ମୁଇଂବିକଳେ ପଚାରଇ ତୁମ୍ଭନ୍ତ ।
ଜାଣିଥିଲେ କହ ଛାଡୁ ମନ ଭ୍ରାନ୍ତି ଚିତ ॥
ପଛୀ ନ ଶୁଣିଲେ ଶ୍ରୀରାମର ବାଣୀ ।
ପୁଣ ପୁଣ ପୁଚ୍ଛା କଲେକ ରଘୁମଣି ॥
ଅତିହିଂ ପଚାରନ୍ତେ ଚକ୍ରବାକ ଖଗଂ ।
ଘରଣୀ ସଙ୍ଗେ କରଇ ରତିରଙ୍ଗ ॥
କ୍ରୀଡ଼ା ଭାଜନ୍ତେଣ ବିମୁଖ ପାଇଲା ।
ଅଜ୍ଞାନ ପଛୀ ସେ ଯେ ଶ୍ରୀରାମକୁ କୋପ
କଲା ॥୭୦
ବୋଇଲା ତୁ କିମ୍ପା ଦୁଖ ଦେଉ ଆସି ।
ଯତି ହୋଇ ମରୁ କାମ ରସେ ପଶି ॥
ଦେଶ ଛାଡ଼ିଣ ତୁ କଲୁ ବନବାସ ।
ଆବର ଯୁବତୀକି କରୁଛୁ ମୁହାଂସ ॥
କନ୍ଦମୂଳ ଖାଇ ବକଳ ପରିହରଣ ।
ଯେତେମନ୍ତେ ଥାଇ ତୁ ଚିନ୍ତୁଛୁ ରମଣ ॥
ଆମ୍ଭେ ଗୃହବାସୀ ଗିରସ୍ତ ପଣକରି ।
ନାନା ସୁଖଭୋଗେ ଦିନ କାଳ ହରି ॥
ଆମ୍ଭେ ସେ ରମଣୀ କରୁଛୁ ଶରଧା ।
ତୋ ଅଙ୍ଗ କିମ୍ପାଇ କରଇ କାମ ବାଧା ॥୮୦
ଯତି ହୋଇଣ ତୁ ଧନୁ ଶସ୍ତ୍ର ଧରି ।
ଆବର ଯୁବତୀ ରୂପ ଅନୁସରି ॥
ଅହନ୍ତା କରିଣ ପରର ପ୍ରୀତିଭାଙ୍ଗୁ ।
ପରରତି ଦେଖିଣ ମନ ତୋର ରଙ୍ଗୁ ॥
ଶାହାସ୍ତ୍ର ପୁରାଣ ନାହୁଂ କି ତୁ ଶୁଣି ।
ଅସନ୍ଧି କଥା ଦେଖିଲେ ଧର୍ମ ହୋୟେ ହାନି ॥
ଅଜ୍ଞାନ ଯୁବତୀଙ୍କର ନ ଦେଖିବ
ଯୋନିଚକ୍ର ।
ନିରେଖି ଦେଖିଲେ ପ୍ରାପତ ହୋୟେ ନର୍କ ॥
ପଶୁଜନମାନଙ୍କର କ୍ରୀଡ଼ା ଯେବେ ଦେଖି ।
ଦେଖିଲେ ନିଚୟେ ଧର୍ମକୁ ଦେବ
ଆଖି ॥୯୦
ଯୁବା ସ୍ତିରୀ ଯେବେ ଉଲଗ୍ନ ହୋଇଥିବ ।
ଯତ୍ନେ ହେଂ ତାହାକୁ ପୁରୁଷ ନ ଦେଖିବ ॥
ଶୃଙ୍ଗାର ବେଳ ନୋହିଲେ ସ୍ତନ ନ
ଦେଖିବ ।

ଦେଖିଲେ ନିଚୟେ ଯେ ସ୍ୱର୍ଗ ଉପେଖିବ ॥
କୁଅ ଖେଳିବାର ଦେଖିତ ନ ଯୋଗାଇ ।
ଦୂର୍ଜନ ଲୋକଙ୍କ ସଙ୍ଗତେ ସଙ୍ଗ କେବେ
ହେଂ ନୋହି ॥
ପ୍ରାଣୀକି ଦଣ୍ଡତେଣ ଦେଖି ତ ନ ଯୋଗାଇ ।
ଦେଖିଲେ ଷଡ଼ଅଂଶ ପାପ ଘେନିଯାଇ ॥
ଯେବଣ ଲୋକ ଅବା ଧର୍ମକଇ ଦୋଷୀ ।
ତାହାକୁ ଦେଖିଲେ ସକଳ ଧର୍ମ
ନାଶି ॥୧୦୦
ଯେକ ତହିଂ ଯେବେ ଭୋକ୍ତା ପଣେଯାଇ ।
ଶତ ଜନ୍ମ ପରିଯନ୍ତେ ନର୍କ ଭୋଗ କରଇ ॥
ଶାସ୍ତ୍ର ବାଖାଣନ୍ତେ ଭାଙ୍ଗନ୍ତି ଯେବଣ ଜନ ।
ଶତ ଜନ୍ମ ପରିଯନ୍ତେ ତାକୁ ନାହିଂ
ପୁନ୍ୟର୍ଜନ୍ମ ॥
ଅଯୋଗେ ଭାଙ୍ଗିଲେ ଧର୍ମକୁ ସ୍ଥାପିବା ।
ତେବେ ସେ ବାସୁଦେବ ଘେନଇ ତାର
ସେବା ॥
ତୁ ହୋ ଜଟାଧାରୀ ଅଟୁ ଅଗିଆନ ।
ପଶୁ କ୍ରୀଡ଼ା ଭାଙ୍ଗୁ ନ ଜାଣୁ ପାପ ପୁନ୍ୟ ॥
କେ ତୋର ଭାରିଯାର ଜାଣଇ ବାରତା ।
ଲୋକେ ଉପହାସ ଅଟଇ ଯେ କଥା ॥୧୦
ମନୁଷ୍ୟଙ୍କ ବେଭାର ମନୁଷ୍ୟଙ୍କୁ ପୁଛି ।
ପଛୀଙ୍କର ବାରତା ଜାଣନ୍ତି ସେ ପଛୀ ॥
ତୁ ଯେଡ଼େ ବାତୁଳ ଆମ୍ଭଙ୍କୁ ପଚାରୁ ।
ଆପଣାର କଥା ଆପଣେ ନ ବିଚାରୁ ॥
ଶୁଣିଣ ଶ୍ରୀରାମ ପାଇଲେ ସଙ୍କୁଚ ।
ଲକ୍ଷଣ ସେ କଥାକୁ ପାଇଲେ ପ୍ରପଞ୍ଚ ॥
ବୋଇଲେ ପଛୀ ଆରେ ଚାଣ୍ଡାଳ ଜନ୍ତୁ
ଛାର ।
ତୁ ସିନା ଯେକା ଜାଣୁ ପୋରାଣ ବିଚାର ॥
ପୋକ ଜିଆଂ ଖାଇ ବୋଲାଉ ଗେରସ୍ତି ।
ଚକୋଇ ଗୋଟାୟେ ତୋହୋର
ଯୁବତୀ ॥୨୦
ତାହାର ସଙ୍ଗେ ତୁ ରମଣ ଯେ ହୋଉ ।
ଆଜ୍ଞୁଂ ସେ ଭାରିଯା ପ୍ରାପତ ତୋତେ
ନୋହୁ ॥

ତୀକ୍ଷଣର ପେଷି ଘେନନ୍ତି ତୋର ପ୍ରାଣ ।
ହୀନ ଜନ୍ତୁ ବଧିବାର ଅଟଇ ଅକାରଣ ॥
ଯେ ତୋତେ ମୃତୁଯୋଗ ହୋଇଲାନି
ଯେବେ ।
ନିଜ ଭାରିଯା ପ୍ରାପତ ନହୋଇଲା ଯେବେ ॥
ଯେତେ ବୋଲି ତହୁଂ ଚଳନ୍ତି ଭାଇ ବେନି ।
ଚକୁଆ ଆତଙ୍ଗ ଚକୋଇକି ଘେନି ॥
ପାୟେ ପଡ଼ି ଶୋଇଲା ଆଗରେ ଓଗାଳି ।
ଦନ୍ତେ ତିରଣ ଘେନି ବୋଲଇ ବିକଳି ॥୩୦
ବୋଲଇ ଭୋ ନାଥ ରକ୍ଷା ମୋତେ କର ।
ଦୁସହ ଶାପରୁ ମୋତେ ବାରେକ ଉଧର ॥
ଦେହର ସୁଖ ତ ଆଜହୁଂ ମୋର ଗଲା ।
ସନ୍ତତି ନୋହିଲେ ତ ବଂଶହିଂ ବୁଡ଼ିଲା ॥
ଆବର ଜୀଇଂଣ ମୁଂ କରିବଇଂ କିସ ।
ପାରିଲେ ରକ୍ଷା ମୋତେ କର ରଘୁଶିଷ ॥
ଶୁଣିଣ ଶ୍ରୀରାମ ବୋଲନ୍ତି ଉତ୍ତର ।
ଲକ୍ଷଣର ଶାପ୍ୟ ଅଟଇ ଗଗୁତର ॥
ଯାହା ବୋଇଲା ନୁହଇ ସେ ଆନ ।
କାର୍ପୁନ୍ୟ ନିମନ୍ତେ ତୋତେ ଦେବା କିଛୁ
ଦାନ ॥୪୦
ଯାହା ସେ ବୋଇଲୁ ହୋ ପଛୀ ମୁଖପଣେ ।
ପ୍ରିୟାର ପ୍ରୀତି ତୋତେ ନୋହିବାନି ତେଣେ ॥
ଯେବେ ତୁ ନିକୋଶି ହୋଇଲୁ ଯେବେ
ଆସି ।
ତେବେ ସେ ହୃଦରେ ଦୟା ମୋର ବସି ॥
ଲକ୍ଷଣ ଆଜ୍ଞାରେ ନିଶାରେ ପ୍ରୀତି ଭାଙ୍ଗୁ ।
ଦିବସେ ରମଣୀ ତୋହୋର ମନ ଲାଗୁ ॥
ସୂର୍ଯ୍ୟର ଉଦୟେ କରିବୁ ରତି ରସ ।
ରାତ୍ରେ ଛୁଇଂଲେ ପାଇବୁ ବଡ଼ ଦୋଷ ॥
ଯେତେ ଦିନ ପୃଥିରେ ରାମ ନାମ ଥାଇ ।
ଯେ ତୋହୋରା କଲା କର୍ମ ମେଣ୍ଟଣ ନ
ଯାଇ ॥୫୦
ଯେତେ ବୋଲି ରାମ ପନ୍ଥୁ ଗଲେ ଚଳି ।
ଚକ୍ରବାକ ପଛୀ ଘରଣୀ ସଙ୍ଗେ ଭାଳି ॥
ଚକୋଇ ବୋଇଲା ତୁ କଲୁ ମନ୍ଦ କୃତ ।

ଆକାଶେ ଗଲା ଯେ ଜନେକ ଦୋହିତ ॥
ଅଣ୍ଡିର କୋକିଳ ଜାଣି ରୋଦନ କରଇ ।
ସେ ବାରତା ତୋତେ ସିନା ଶ୍ରୀରାମ
ପଚାରଇ ॥
ତୁ ତାହା ଶ୍ରବଣ କରିଣ ନ କହିଲୁ ।
ଏବେ ରାମ କୋପନ୍ତେ ଏକା ତ ହୋଇଲୁ ॥
ଯେସନେକ ସମୟେ ଘୋଟିଲାକ ବ୍ୟାଧ ।
ଦୂରୁଂ ବଢ଼ାଇଲା ଅଠାର ଆୟୁଧ ॥ ୬୦
ଜାଉଂଳି ଅଠା ନାଗି ପଡ଼ିଲେ ଦୁଇଗୋଟି ।
ଧାଇଂଆସି ଚଢ଼ୟା ଧଇଲା ସାଉଂଟି ॥
ଅଠା ଛଡ଼ାଇଣ ଘରକୁ ଘେନିଗଲା ।
କାଠ ପେଡ଼ା ଭିତରେ ମୁଦିଣ ଥୋଇଲା ॥
ବୋଇଲା ରଜନୀ ପ୍ରଭାତେ ବିକିବି ।
ବିକା ନ ଗଲେଣ ପୋଡ଼ିଣ ଖାଇବି ॥
ଯେସନେକ ବୋଲିଣ ଥୋଇଲା ଯତ୍ନକରି ।
ଆଦିତ୍ୟ ଅସ୍ତଗଲା ହୋଇଲା ତିମିରି ॥
ଚକୋଆ ଚକୋଇ କରନ୍ତି ବିଚାର ।
ନିଚୟେ ପ୍ରାଣ କାଲି ଯିବାକ ଆମ୍ଭର ॥୭୦
କାହିଂ ବନ୍ଧନ ପଡ଼ିଲୁ ଆସି ବେନି ।
କେବଣ ମହାତମା ଯିବ ଆମ୍ଭଙ୍କୁ ଘେନି ॥
ଭୋ ଧର୍ମ ଦେବତା ତୁ କରସି ବିଚାର ।
ଏ ମହା କଷଣୁ ବାରେକ ଉଧର ॥
କେବଣ ବିଯୋଗ ପଡ଼ିଲା ଆଜ ଦିନ ।
ଅଦୋଷେ ଶାପ୍ୟ ଦେଲେ ରଘୁକୁଳନାନ ॥
ଯେବେ ବ୍ୟାଧ ହାଥେ ବନ୍ଧନ ହୋଇଲୁ ।
ଯେ ଜନ୍ମେ ଜୀବ ଆଶା ନିଚୟେ ଛାଡ଼ିଲୁ ॥
ଚକୋଇ ମନରେ ପଶିଲା ଧର୍ମବାଣୀ ।
ଭ୍ରଥାକୁ ତାହିଂଣ ବୋଇଲାକ ପୁଣି ॥୮୦
ଶ୍ରୀରାମ ଆମ୍ଭଙ୍କୁ ଶାପ୍ୟ ଦେଇଗଲା ।
ନିଶାରେ ଯେକଠାବ ନୋହିବ ବୋଇଲା ॥
ଆମ୍ଭ ଇଚ୍ଛାୟେ ଯଦି ହୁଅନ୍ତାଇ ଗୁଣ୍ଡ ।
ତେବେ ସେ ପ୍ରାଣ ଯାନ୍ତା ଫାଟି ପିଣ୍ଡ ॥
ବ୍ୟାଧ ସେ ଆମ୍ଭଙ୍କୁ ଥୋଇଲାକ ଯେଥ ।
ଶ୍ରୀରାମର ବୋଲ ତ ହୋଇଲା ବିଅର୍ଥ ॥
ଭୋ ରାମ କେର୍ଣ୍ଣେ ତୁ ତ୍ରିଭୁବନ ସାଇଂ ।

ବ୍ରହ୍ମାୟେଣୀ ଭଗବତୀ ଭବାନୀ
କାଳରାତ୍ରୀ ।
ଭଇରୋବୀ ବିକଟା ଅମ୍ବିକା ନାମ ଗୋ
ଗାୟେତ୍ରୀ ॥
କାତ୍ୟାୟନୀ ନମୋ ଶିବାୟେନି
ବିଂଝ ଗିରିବାସେନୀ ।
ମହିଷାସୁର ନାଶେନୀ ଶୁମ୍ଭ ବିନାଶନୀ ॥
ତୁ ସେ ମାହାମାୟା ପ୍ରକୃତି ସ୍ୱରୂପା ।
ଅଯୋନି ସମ୍ଭୂତା ତୁଗୋ ଅନ୍ନପୂର୍ଣ୍ଣା ବିରୂପା ॥
ସଂସାରଧାରେଣୀ ଗୋ ତ୍ରିପୁର ସୁନ୍ଦେରୀ ।
ନାନାବିଧିମତେ ମାଗୋ ତୋତେ
ସେବାକରି ॥୧୦
ତାହାକଇ ମାଗୋ ସମ୍ପତି ଭୋଗ ଦେଇ ।
ଅନ୍ତେଣ ବିଷ୍ଣୁର ଭୁବନେଣ ଥୋଇ ॥
ତୁ ଗୋ କାଳରାତ୍ରୀ ଗୋ କରସି ଦୟା
ମୋତେ ।
ମୁହିଂ ପ୍ରାର୍ଥନା ମାଗୋ କରୁଅଛି ତୋତେ ॥
ଆଶ୍ରିତ ଜନକୁ ମାଗୋ ବହୁତ ଦୟାକରି ।
ଦୁର୍ଗାନାମ ତୋର ଦୃଗତି ନିସ୍ତାରି ॥
ମୁହିଂ ତୋତେ ବୋଲଇ ଗୋ ଶିବର
ଘରେଣୀ ।
କର ଅନୁଗ୍ରହ ଦଇତ ସଂହାରିଣୀ ॥
ଶ୍ରୀରାମ ଚରିତ କହିତ ମୋର ମନ ।
ଭୋ ଭଇରୋବୀ ମୋତେ ହୁଅସି
ପରସନ ॥୨୦
ସୀତ୍ୟା ହରାଇ ରାମ ଲକ୍ଷଣ ବେନିଭାଇ ।
ବନ ପର୍ବତ କନ୍ଦର ଲୋଡ଼ିଯାଇ ॥
ପିମ୍ପା ସରୋବର କୂଳରେ ମିଳନ୍ତି ।
ଲକ୍ଷଣର ଆଗେ ଶ୍ରୀରାମ ଭାଳନ୍ତି ॥
ଭୋ ସଉମିତ୍ରୀ ଯେ ଭଲ ସରୋବର ।
ଯେଥେ ଅନେକ ଅଛନ୍ତି ଜଳଚର ॥
ପଦ୍ମ କୁମୋଦ ଯେ ଉତ୍ପଳ ଶିଉଳି ।
ଜନମନୁଷ୍ୟ ନାହିଂ କେ ନେମ ଯେହା
ତୋଳି ॥
ଯେହି ଜୀବମାନେ ଘେନନ୍ତି ପୁଷ୍ପ୍ୟ ବାସ ।
ଆନକୁ ଯେ ଗନ୍ଧ ନୋହଇ ପ୍ରବେଶ ॥୩୦
କୁସୁମ ଲୁବୁଧ ଅଟଇ ଜାନେକୀ ।
ସେହୁ ଅବା ଯେଥି ଲୁଚିଥାଇ ନିକି ॥
ପଛୀମାନଙ୍କୁ ସେ ପଚାରିବା ଯାଇ ।
ଲକ୍ଷଣ ବୋଇଲେ ଯେ ନୋହଇ
ଗୋସାଇଂ ॥
ପାଣିର ଭିତରେ କି ମନୁଷ୍ୟ ଥିବ ବସି ।
ଯେ କଥା କେମନ୍ତେ କହିଲ ବିଶେଷି ॥
ପଛିଚଟା ବୋଇଲା ରାବଣ ଘେନିଗଲା ।
ଗନ୍ଧର୍ବ ମୁଖୁଂ ଶୁଣିଲୁ ତାହି ତ କହିଲା ॥
ଶବରଣୀ ଯାହା କହିଲା ବାରତା ।
ଏକ ତ ହୋଇଲା ତିନିଙ୍କରି କଥା ॥ ୪୦
ବାଳୁତ ହୋଇ କିମ୍ପା ଯେଣେତେଣେ
ଲୋଡୁ ।
ଅଜ୍ଞାନ ହୋଇ କିମ୍ପା ଯେଣେତେଣେ ଗଡୁ ॥
ରାବଣ ବୋଲିଣ ଲଙ୍କାର ଆଧିପତି ।
ସେ ଯେ ଚୋରାଇଣ ନେଇଅଛି ସ୍ୟତୀ ॥
ତିନିଜଣ ତହୁଂ ପାଇଲି ବାରତା ।
ଲଙ୍କାର ରାବଣ ଯେ ଘେନିଗଲା ସୀତ୍ୟା ॥
ଯଦ୍ୟପି ଯେ କଥା ଜାଣିଲୁ ତତ୍ତ୍ୱକରି ।
ତଥାପି ଲୋକଙ୍କୁ ଦେଖିଲେ ପଚାରି ॥
ଯେ ଜୀବମାନେ ଯେ ସରୋବରେ ଥାନ୍ତି ।
ସୁଖେଣ ଚରନ୍ତି କାହିଂ ନ ଯାଆନ୍ତି ॥ ୫୦
ଅବଶ୍ୟ ବାରତା ଅଛନ୍ତି ଯେ ଜାଣି ।
କେଣେ ଗଲା ସଖି ମୋର ଜାତି କମଳଣୀ ॥
ମଦନେ ଭେବଳ ହୋଇ ବଚନ ପ୍ରକାଶି ।
ପାଖ ପାଖ ହୋଇ ଯାନ୍ତି ରଘୁଶିଷି ॥
ଶୁଣ ହୋ ପଛୀ ଜନ୍ତୁ ଜଳଚରମାନେ ।
ମୁହିଂ ସେ ଶ୍ରୀରାମ ଦଶରଥନାନେ ॥
ସାବତ ଜନନୀ ମୋତେ କଲା ହିଂସା ।
ତେଣୁ ବନେ ପଶିଲି ପିନ୍ଧିଲି ବସ୍ତ୍ର କଷା ॥
ଭାଇ ଲକ୍ଷଣ ଭାରିଯା ମୋର ସ୍ୟତୀ ।
ପଞ୍ଚୁବଟୀ ବନେ ମୋତେ ପଡ଼ିଲା
ବିପତି ॥୬୦
ମାୟା ମୃଗକଇ ଗଲାଇଂ ମୁଂ ମାରି ।
କେ ମୋର ଘରଣୀକି ନେଲା ଚୋରିକରି ॥
ତେଣୁ ମୁଇଂବିକଳେ ପଚାରଇ ତୁମ୍ଭନ୍ତ ।
ଜାଣିଥିଲେ କହ ଛାଡୁ ମନ ଭ୍ରାନ୍ତି ଚିତ ॥
ପଛୀ ନ ଶୁଣିଲେ ଶ୍ରୀରାମର ବାଣୀ ।
ପୁଣ ପୁଣ ପୁଛା କଲେକ ରଘୁମଣି ॥
ଅତିହିଂ ପଚାରନ୍ତେ ଚକ୍ରବାକ ଖଗଂ ।
ଘରଣୀ ସଙ୍ଗେ କରଇ ରତିରଙ୍ଗ ॥
କ୍ରୀଡ଼ା ଭାଙ୍ଗନ୍ତେଣ ବିମୁଖ ପାଇଲା ।
ଅଜ୍ଞାନ ପଛୀ ସେ ଯେ ଶ୍ରୀରାମକୁ କୋପ
କଲା ॥୭୦
ବୋଇଲା ତୁ କିମ୍ପା ଦୁଖ ଦେଉ ଆସି ।
ଯତି ହୋଇ ମରୁ କାମ ରସେ ପଶି ॥
ଦେଶ ଛାଡ଼ିଣ ତୁ କଲୁ ବନବାସ ।
ଆବର ଯୁବତୀକି କରୁଛୁ ମୁହାଂସ ॥
କନ୍ଦମୂଳ ଖାଇ ବକଳ ପରିହରଣ ।
ଯେତେମନ୍ତେ ଥାଇ ତୁ ଚିନ୍ତୁଛୁ ରମଣ ॥
ଆମ୍ଭେ ଗୃହବାସୀ ଗିରସ୍ତ ପଣକରି ।
ନାନା ସୁଖଭୋଗେ ଦିନ କାଳ ହରି ॥
ଆମ୍ଭେ ସେ ରମଣୀ କରୁଛୁ ଶରଧା ।
ତୋ ଅଙ୍ଗ କିମ୍ପାଇ କରଇ କାମ ବାଧା ॥୮୦
ଯତି ହୋଇଣ ତୁ ଧନୁ ଶସ୍ତ୍ର ଧରି ।
ଆବର ଯୁବତୀ ରୂପ ଅନୁସରି ॥
ଅହନ୍ତା କରିଣ ପରର ପ୍ରୀତିଭାଙ୍ଗୁ ।
ପରରତି ଦେଖିଣ ମନ ତୋର ରଙ୍ଗୁଂ ॥
ଶାହାସ୍ତ୍ର ପୁରାଣ ନାହୁଂ କି ତୁ ଶୁଣି ।
ଅସନ୍ଧି କଥା ଦେଖିଲେ ଧର୍ମ ହୋୟେ ହାନି ॥
ଅଜ୍ଞାନ ଯୁବତୀଙ୍କର ନ ଦେଖିବ
ଯୋନିଚକ୍ର ।
ନିରେଖି ଦେଖିଲେ ପ୍ରାପତ ହୋୟେ ନର୍କ ॥
ପଶୁଜନମାନଙ୍କର କ୍ରୀଡ଼ା ଯେବେ ଦେଖି ।
ଦେଖିଲେ ନିଚୟେ ଧର୍ମକୁ ଦେବ
ଆଖି ॥୯୦
ଯୁବା ସ୍ତିରୀ ଯେବେ ଉଲଗ୍ନ ହୋଇଥିବ ।
ଯତ୍ନେ ହେଂ ତାହାକୁ ପୁରୁଷ ନ ଦେଖିବ ॥
ଶୃଙ୍ଗାର ବେଳ ନୋହିଲେ ସ୍ତନ ନ
ଦେଖିବ ।

ଦେଖିଲେ ନିଚୟେ ଯେ ସ୍ୱର୍ଗ ଉପେଖିବ ॥
ଜୁଅ ଖେଳିବାର ଦେଖିତ ନ ଯୋଗାଇ ।
ଦୃଜନ ଲୋକଙ୍କ ସଙ୍ଗତେ ସଙ୍ଗ କେବେ
ହେଂ ନୋହି ॥
ପ୍ରାଣୀକି ଦଣ୍ଡତେଣ ଦେଖି ତ ନ ଯୋଗାଇ ।
ଦେଖିଲେ ଷଡ଼ଅଂଶ ପାପ ଘେନିଯାଇ ॥
ଯେବଣ ଲୋକ ଅବା ଧର୍ମକଇ ଦୋଷୀ ।
ତାହାକୁ ଦେଖିଲେ ସକଳ ଧର୍ମ
ନାଶି ॥୧୦୦
ଯେକ ତହିଂ ଯେବେ ଭୋକ୍ତା ପଣେଯାଇ ।
ଶତ ଜନ୍ମ ପରିଯନ୍ତେ ନର୍କ ଭୋଗ କରଇ ॥
ଶାସ୍ତ୍ର ବାଖାଣନ୍ତେ ଭାଙ୍ଗନ୍ତି ଯେବଣ ଜନ ।
ଶତ ଜନ୍ମ ପରିଯନ୍ତେ ତାକୁ ନାହିଂ
ପୁନ୍ୟର୍ଜନ୍ମ ॥
ଅଯୋଗେ ଭାଙ୍ଗିଲେ ଧର୍ମକୁ ସ୍ଥାପିବା ।
ତେବେ ସେ ବାସୁଦେବ ଘେନଇ ତାର
ସେବା ॥
ତୁ ହୋ ଜଟାଧାରୀ ଅଟୁ ଅଗିଆନ ।
ପଶୁ କ୍ରୀଡ଼ା ଭାଙ୍ଗୁ ନ ଜାଣୁ ପାପ ପୁନ୍ୟ ॥
କେ ତୋର ଭାରିଯାର ଜାଣଇ ବାରତା ।
ଲୋକେ ଉପହାସ ଅଟଇ ଯେ କଥା ॥୧୦
ମନୁଷ୍ୟଙ୍କ ବେଭାର ମନୁଷ୍ୟଙ୍କୁ ପୁଛି ।
ପକ୍ଷୀଙ୍କର ବାରତା ଜାଣନ୍ତି ସେ ପକ୍ଷୀ ॥
ତୁ ଯେଡ଼େ ବାତୁଳ ଆମ୍ଭଙ୍କୁ ପଚାରୁ ।
ଆପଣାର କଥା ଆପଣେ ନ ବିଚାରୁ ॥
ଶୁଣିଣ ଶ୍ରୀରାମ ପାଇଲେ ସଙ୍କୁଚ ।
ଲକ୍ଷଣ ସେ କଥାକୁ ପାଇଲେ ପ୍ରପଞ୍ଚ ॥
ବୋଇଲେ ପକ୍ଷୀ ଆରେ ଚାଣ୍ଡାଳ ଜନ୍ତୁ
ଛାର ।
ତୁ ସିନା ଯେକା ଜାଣୁ ପୋରାଣ ବିଚାର ॥
ପୋକ ଜିଆଂ ଖାଇ ବୋଲାଉ ଗେରସ୍ତି ।
ଚକୋଇ ଗୋଟାୟେ ତୋହୋର
ଯୁବତୀ ॥୨୦
ତାହାର ସଙ୍ଗେ ତୁ ରମଣ ଯେ ହୋଉ ।
ଆଜ୍ଞୁଂ ସେ ଭାରିଯା ପ୍ରାପତ ତୋତେ
ନୋହୁ ॥

ତାକ୍ଷଣର ପେଷି ଘେନନ୍ତି ତୋର ପ୍ରାଣ ।
ହୀନ ଜନ୍ତୁ ବଧିବାର ଅଟଇ ଅକାରଣ ॥
ଯେ ତୋତେ ମୃତୁଯୋଗ ହୋଇଲାନି
ଯେବେ ।
ନିଜ ଭାରିଯା ପ୍ରାପତ ନହୋଇଲା ଯେବେ ॥
ଯେତେ ବୋଲି ତହୁଂ ଚଳନ୍ତି ଭାଇ ବେନି ।
ଚକୁଆ ଆତଙ୍ଗ ଚକୋଇକି ଘେନି ॥
ପାୟେ ପଡ଼ି ଶୋଇଲା ଆଗରେ ଓଗାଳି ।
ଦନ୍ତେ ତିରଣ ଘେନି ବୋଲଇ ବିକଳି ॥୩୦
ବୋଲଇ ଭୋ ନାଥ ରକ୍ଷା ମୋତେ କର ।
ଦୁସହ ଶାପରୁ ମୋତେ ବାରେକ ଉଧର ॥
ଦେହର ସୁଖ ତ ଆଜହୁଂ ମୋର ଗଲା ।
ସନ୍ତତି ନୋହିଲେ ତ ବଂଶହିଂ ବୁଡ଼ିଲା ॥
ଆବର ଜୀଇଂଣ ମୁଂ କରିବଇଂ କିସ ।
ପାରିଲେ ରକ୍ଷା ମୋତେ କର ରଘୁଶିଷ ॥
ଶୁଣିଣ ଶ୍ରୀରାମ ବୋଲନ୍ତି ଉତ୍ତର ।
ଲକ୍ଷଣର ଶାପ୍ୟ ଅଟଇ ଗଗୁତର ॥
ଯାହା ବୋଇଲା ନୁହଇ ସେ ଆନ ।
କାର୍ପୁନ୍ୟ ନିମନ୍ତେ ତୋତେ ଦେବା କିଛୁ
ଦାନ ॥୪୦
ଯାହା ସେ ବୋଇଲୁ ହୋ ପକ୍ଷୀ ମୁଖପଣେ ।
ପ୍ରିୟାର ପ୍ରୀତି ତୋତେ ନୋହିବାନି ତେଣେ ॥
ଯେବେ ତୁ ନିକୋଶି ହୋଇଲୁ ଯେବେ
ଆସି ।
ତେବେ ସେ ହୃଦରେ ଦୟା ମୋର ବସି ॥
ଲକ୍ଷଣ ଆଜ୍ଞାରେ ନିଶାରେ ପ୍ରୀତି ଭାଙ୍ଗୁ ।
ଦିବସେ ରମଣୀ ତୋହୋର ମନ ଲାଗୁ ॥
ସୂର୍ଯ୍ୟର ଉଦୟେ କରିବୁ ରତି ରସ ।
ରାତ୍ରେ ଛୁଇଂଲେ ପାଇବୁ ବଡ଼ ଦୋଷ ॥
ଯେତେ ଦିନ ପୃଥିରେ ରାମ ନାମ ଥାଇ ।
ଯେ ତୋହୋରା କଇା କର୍ମ ମେଣ୍ଟଣ ନ
ଯାଇ ॥୫୦
ଯେତେ ବୋଲି ରାମ ପନ୍ଥ ଗଲେ ଚଳି ।
ଚକ୍ରବାକ ପକ୍ଷୀ ଘରଣୀ ସଙ୍ଗେ ଭାଳି ॥
ଚକୋଇ ବୋଇଲା ତୁ କଲୁ ମନ୍ଦ କୃତ ।

ଆକାଶେ ଗଲା ଯେ ଜନେକ ଦୋହିତ ॥
ଅଣ୍ଡିର କୋକିଳ ଜାଣି ରୋଦନ କରଇ ।
ସେ ବାରତା ତୋତେ ସିନା ଶ୍ରୀରାମ
ପଚାରଇ ॥
ତୁ ତାହା ଶ୍ରବଣ କରିଣ ନ କହିଲୁ ।
ଏବେ ରାମ କୋପନ୍ତେ ଏକା ତ ହୋଇଲୁ ॥
ଯେସନେକ ସମୟେ ଘୋଟିଲାକ ବ୍ୟାଧ ।
ଦୃଗୁଂ ବଢ଼ାଇଲା ଅଠାର ଆୟୁଧ ॥ ୬୦
ଜାଉଂଳି ଅଠା ନାଗି ପଡ଼ିଲେ ଦୁଇଗୋଟି ।
ଧାଇଂଆସି ଚଢ଼ୟା ଧଇଲା ସାଉଂଟି ॥
ଅଠା ଛଡ଼ାଇଣ ଘରକୁ ଘେନିଗଲା ।
କାଠ ପେଡ଼ା ଭିତରେ ମୁଦିଣ ଥୋଇଲା ॥
ବୋଇଲା ରଜନୀ ପ୍ରଭାତେ ବିକିବି ।
ବିକା ନ ଗଲେଣ ପୋଡ଼ିଣ ଖାଇବି ॥
ଯେସନେକ ବୋଲିଣ ଥୋଇଲା ଯତ୍ନକରି ।
ଆଦିତ୍ୟ ଅସ୍ତଗଲା ହୋଇଲା ତିମିରି ॥
ଚକୋଆ ଚକୋଇ କରନ୍ତି ବିଚାର ।
ନିଚୟେ ପ୍ରାଣ କାଲି ଯିବାକ ଆମ୍ଭର ॥୭୦
କାହିଂ ବନ୍ଧନ ପଡ଼ିଲୁ ଆସି ବେନି ।
କେବଣ ମହାତମା ଯିବ ଆମ୍ଭଙ୍କୁ ଘେନି ॥
ଭୋ ଧର୍ମ ଦେବତା ତୁ କରସି ବିଚାର ।
ଏ ମହା କଷଣୁ ବାରେକ ଉଧର ॥
କେବଣ ବିଯୋଗ ପଡ଼ିଲା ଆଜ ଦିନ ।
ଅଦୋଷେ ଶାପ୍ୟ ଦେଲେ ରଘୁକୁଳନାନ ॥
ଯେବେ ବ୍ୟାଧ ହାଥେ ବନ୍ଧନ ହୋଇଲୁ ।
ଯେ ଜନ୍ମେ ଜୀବ ଆଶା ନିଚୟେ ଛାଡ଼ିଲୁ ॥
ଚକୋଇ ମନରେ ପଶିଲା ଧର୍ମବାଣୀ ।
ଭ୍ରଥାକୁ ଚାହିଂଣ ବୋଇଲାକ ପୁଣି ॥୮୦
ଶ୍ରୀରାମ ଆମ୍ଭଙ୍କୁ ଶାପ୍ୟ ଦେଇଗଲା ।
ନିଶାରେ ଯେକଠାବ ନୋହିବ ବୋଇଲା ॥
ଆମ୍ଭ ଇଚ୍ଛାୟେ ଯଦି ହୁଅନ୍ତାଇ ଭ୍ରଣ୍ଡ ।
ତେବେ ସେ ପ୍ରାଣ ଯାନ୍ତା ଫାଟି ପିଣ୍ଡ ॥
ବ୍ୟାଧ ସେ ଆମ୍ଭଙ୍କୁ ଥୋଇଲାକ ଯେଥ ।
ଶ୍ରୀରାମର ବୋଲ ତ ହୋଇଲା ବିଅର୍ଥ ॥
ଭୋ ରାମ କେର୍ଣ୍ଣେ ତୁ ତ୍ରିଭୁବନ ସାଇଂ ।

ଆମ୍ଭଙ୍କୁ ଶାପ୍ୟ ଦେଇ ଗଲ ଯେ ଗୋସାଇଁ ॥
ଯେବେ ସେ ତୁମ୍ଭର ବୋଲ ହୋଉଅଛ
ମିଛ ।
ପାରିଲେ କାରଣ ତୁ କର ରଘୁବଂଛ ॥୯୦
ଶ୍ରୀରାମଙ୍କୁ ଚିନ୍ତା କଲାକ ଯେ ପଛୀ ।
ଫାଟିଲା କାଠ ପେଡ଼ା ବେନିଜନେ ଦେଖି ॥
ରଘୁନାଥ ସୁମରି ହୋଇଲେ ବାହାର ।
ପଳାଇ ପଶିଲେ ଯାଇ ପିମ୍ପା ସରୋବର ॥
ଶ୍ରୀରାମ ଆଜ୍ଞାରେ କାଠପେଡ଼ା ଫାଟିଗଲା ।
ଦାସ ଜନଙ୍କର ମନଭ୍ରାନ୍ତି ଫିଟିଲା ॥
ଯେ ସେ ଶ୍ରୀରାମ ପରମ ବ୍ରହ୍ମ ହରି ।
ଜଗତର ହିତେ ମାନବ ରୂପ ଧରି ॥
ଶ୍ରୀରାମ ଚରଣେ ନିତ୍ୟେ ମୋର ଆଶ ।
ବଳରାମ ଦାସ ମୁଁ ଶ୍ରୀରାମର ଦାସ ॥୧୦୦
ବନ୍ଦଇ ଶ୍ରୀରାମ କଉଶୁଲ୍ୟା ସୁତ ।
ରୁଦ୍ର ଧନୁ ଆୟେତ କଲୁ ରଘୁନାଥ ॥
ପ୍ରଶୁରାମ ଦର୍ପ ହରିଲୁ ବାଳ କାଳେ ।
ସୁବାହୁକୁ ଦହିଲୁ ନାରାଜ ଅନଳେ ॥
ବିଶ୍ୱାମିତ୍ର ମୁନିର ଯାଗ ଯେ ରଖିଲୁ ।
ଗଉତମ ପତ୍ନୀକି ନିଜ ତନୁ ଦେଲୁ ॥
ଖର ଧୂଷଣ ତିଶିରା ଚଉଦ ସହସ୍ର ବଳ ।
ନାରାଜର ତେଜେ ଦହିଲୁ ସକଳ ॥
ମାହା କୁବନ୍ଧର ଛେଦିଲୁ ବେନିବାହା ।
ଜୟ ଜୟ ଜଗନ୍ନାଥ ଜାନେକୀର
ନାହା ॥୧୦
ଦୂବାଦଳ ଶ୍ୟାମଳ ଶରୀର ପରକାଶ ।
ବୃକ୍ଷର ବକଳ କୃଷ୍ଣାଜିନ କକ୍ଷାବାସ ॥
ଶିରରେ ଜଟା ବିଚିତ୍ର ବାନ୍ଧେଣୀ ।
କାନ୍ଧେଣ ତ୍ରୋଣ ଭାର ଶରାସନ ପାଣି ॥
ଯୁବା ସିଂଘ ଜାଣି ଚାଲିବାର ଗତି ।
ଜଗତମୋହନ ମଧୁର ମୂରତି ॥
ସଂଯେ ନାରାୟଣ ମଂଚେ ଅବତରି ।
ନୋହିଲେ ଅସୁରବଳ ନୁହଇ ସଂହାରି ॥
ତେଣୁ ସେ ବିପୁନ୍ୟେ ବୁଲଇ ରଘୁନାଥ ।
ବନଲତା କନ୍ଦର ଅଗମ୍ୟ ପରବତ ॥ ୨୦
ପିମ୍ପା ସରୋବର କୂଳରେ ମିଳନ୍ତି ।
ପଶ୍ଚିମ ପ୍ରଦେଶେ ପଥ ବହିଯାନ୍ତି ॥
ଲକ୍ଷଣ ବୋଇଲା ଶୁଣିମା ଶ୍ରୀରାମ ।
ଭୋଖେ ଚରଣ ମୋର ହୋଉଅଛି ଭ୍ରମ ॥
ଅନ୍ନ ଖାଇଲେ ସେ ଥିର ହୋଯେ କାୟେ ।
ନୋହିଲେ ଯିବାକୁ ନାହିଁ ମୋ ଉପାୟେ ॥
ସୀତ୍ୟା ହଜିଲା ଦିନୁ ଆହାର ଆମ୍ଭର ନାହିଁ ।
ଶବରୀ ଦେଲା ଆମ୍ବ ବେଳେକ ଅଛୁ ଖାଇ ॥
ଶ୍ରୀରାମ ବୋଇଲେ ଶୁଣ ସଉମିତ୍ରୀ ।
ଅନ୍ନମୟେ ପିଣ୍ଡ ଅଟଇ ଧରତୀ ॥୩୦
ପୂର୍ବେ ଯେବେ ଆମ୍ଭେ ବ୍ରାହ୍ମଣେ ଦାନ
ଦେଲୁ ।
ତେବେ ସେ ଭାଇ ଆରେ ଅନ୍ନହିଁ ପାଆନ୍ତୁ ॥
ପୟେକେ ନିଧି ପୟେକେ ପ୍ରମାଦ ହିଁ
ଥାଇ ।
ଯେ ଯାହା ଅର୍ଜଇ ସେ ତାହା ଭୁଞ୍ଜଇ ॥
ଆମ୍ଭେ ଭାବିଲେରେ ପାଇବା କାହିଁ ଭ୍ରାଥ ।
ଯେତେ ବୋଲି ବିସ୍ମୟେ ହୋଇଲେ
ରଘୁନାଥ ॥
ଥୋକାୟେକ ଦୂରେ ଗୋଗୋଷ୍ଟେକ
ଦେଖି ।
ଛାଇର ଶୀତଳାରେ ବସିଲେ ରଘୁବଛି ॥
ଲକ୍ଷଣକୁ ବୋଇଲେ ଶୁଣସିରେ ଭାଇ ।
ଗୋଷ୍ଟରୁ ଦୁଧ ତୋତେ ଦେବାକ
ମଗାଇ ॥୪୦
ଯେତେ ବିଚାରିଣ ଗଲେ ଭାଇ ବେନି ।
ମାଗି ନ ପାରନ୍ତି ଲଜ୍ଜା ଭାବ ଘେନି ॥
ଲକ୍ଷଣ ବୋଇଲା ସବୁ ଗୋପାଳନ୍ତ ମାରି ।
ଅଡ଼ାଇ ଘେନି ଯିବା ଗୋରୁ ସବୁଙ୍କରି ॥
ମୁଇଁ ସେ ରଖିବି କରିବି ଦୋହନ ।
ସୁଖେଣ କ୍ଷୀର କରିବା ଆମ୍ଭେ ପାନ ॥
ବନେ ଥିବାଯାକ ଦୁଖ ନ ପାଇବା ।
ଅଯୋଧ୍ୟାକୁ ଗଲେ ବ୍ରାହ୍ମଣେ ଦାନ ଦେବା ॥
ଶ୍ରୀରାମ ବୋଇଲେ ହୋ ଯେଣେ କାର୍ଯ୍ୟ
ନାହିଁ ।
ଯେତେ ଗୋରୁ ଆମ୍ଭେ ସମ୍ଭାଳିବା
କାହିଁ ॥୫୦
ପର ଆୟେ ହରିବାର ମୁଁ ନ ଶୁଣଇ କର୍ଣ୍ଣେ ।
ଅଦୋଷୀ ଲୋକଙ୍କୁ କିମ୍ପା ମାରିବା
ଅକାରଣେ ॥
ପୂର୍ବର ଅରଜନ ଭୁଞ୍ଜୁଥାଇ ଯେବେ ।
ଯେ ଜନ୍ମର ପାପ ଆଗତକୁ ଥିବେ ॥
ଯେଡ଼େ ବଡ଼ ପଣେ ନାହିଁ ମୋର କାର୍ଯ୍ୟ ।
ସୀତ୍ୟାକୁ ହରିନେଲା ବିଶ୍ରବା ତନୁଜ ॥
ତାହାକୁତ କିଛି ନ ପାରିଲି କରି ।
ଅଦୋଷୀ ଲୋକଙ୍କୁ କିମ୍ପା ଅକାରଣେ ମାରି ॥
କ୍ଷୁଧା ନିମନ୍ତେ ମାଗିବାକ ଦୁଧ ।
ଦୟା ଯେବେ ପଶିବ ତାହାଙ୍କର ହୃଦ ॥୬୦
ଦେଲେଣ ଆହାର କରି ଏଥୁଁ ଯିବା ।
ନ ଦେଲେ ସନ୍ତୋଷ ଚିତ୍ତେ ବାହୁଡ଼ିବା ॥
ଯେତେ ବୋଲି ରାମ ମୁଦି ଗୋଟି କାଢ଼ି ।
ଗୋପାଳଙ୍କୁ ଜଣେ ଜଣେ ଡାକନ୍ତି ଗୋଷ୍ଟେ
ବେଢ଼ି ॥
ଆହେ ବ୍ରଜସୁତେ ଶୁଣ ଆମ୍ଭ ବାଣୀ ।
ଯେ ମୁଦ୍ରିକା ଅଟଇ ଅମୂଲ୍ୟ ରତ୍ନମଣି ॥
ଯେହା ଘେନି ଆମ୍ଭଙ୍କୁ କିଛୁ ଦୁଧ ଦିଅ ।
କ୍ଷୁଧା କରିଅଛି ତୋଷ କରୁ ଦେହ ॥
ଗୋପାଳେ ନ ଶୁଣନ୍ତି ଶ୍ରୀରାମର ରାଇଁ ।
ଲକ୍ଷଣ ତହିଁକି ଅଛି ରାଗ ପାଇ ॥୭୦
ଦୟାସାଗର ରାମ କୋପ ନ କରଇ ।
ପୁଣିହିଁ ଗଉଡ଼ଙ୍କୁ ବେଢ଼ି ପଚାରଇ ॥
ଯେ ମୁଦି ଘେନିଣ ହୋ ଆମ୍ଭଙ୍କୁ ଦିଅ କ୍ଷୀର ।
ତୁମ୍ଭର ପରସାଦେ ବେନି ଭାଇ ହୋଉଂଥିର ॥
ଶୁଣିଣ ଉପାହାସ୍ୟ କରନ୍ତି ଗୋପାଳେ ।
କେ ଜାଣଇ ମଣି କେବଣ ଗଛେ ଫଳେ ॥
ଆମ୍ଭେ କିମ୍ପା ତୋତେ ମାଗଣା ଦୁଧଦେବୁ ।
ଯେହା ବିକି ଆମ୍ଭେ କୁଟୁମ୍ବ ପୋଷିବୁ ॥
ଶୁଣି ସଉମିତ୍ରୀ କୋପ ମୁଖ କଲା ।
ଗାଇ ତୁମ୍ଭର ରୁଧିର ଦୁହାନ୍ତୁ ବୋଇଲା ॥୮୦
ତତକ୍ଷଣେ ସୁରଭି ଦୁହାଇଲେ ରୁଧିର ।

ଦୁହିଂଲାର ଦୁଧ ଶ୍ରୋଣିତ ଭାର ଭାର ॥
ଦେଖିଣ ଗୋପାଳେ ହୋଇଲେ ଚକିତ ।
ଗାଈଙ୍କ ଚିଗରୁ କିମ୍ପା ବାହାର ରକତ ॥
କେ ବୋଲଇ ଯେବେ କରିବା କିସ ବୁଧି ।
ଯେତେ ବୋଲି ସବିହେଂ ଗଲେକ
ପ୍ରବୋଧି ॥
ଶ୍ରୀରାମ ଲକ୍ଷଣଙ୍କ ଚରଣେ ପଡ଼ନ୍ତି ।
ଅତି ବିନୋଇ ହୋଇ ସଦୟା ମାଗନ୍ତି ॥
ଆମ୍ଭେ ଗଉଡ଼ ଜାତି ବନସ୍ତରେ ଥାଉ ।
ଭଲ ମନ୍ଦ କଥା ଜାଣିମୁଂ ଆମ୍ଭେ
କାହୁଂ ॥୯୦
କେ କେଡ଼େ ଲୋକ ନ ଜାଣୁ ଆମ୍ଭେ
ତାହା ।
ବେଳେ ରକ୍ଷାକର କୋଦଣ୍ଡ ଚାପନାହା ॥
ଶୁଣିଣ ଶ୍ରୀରାମ ହୋଇଲେ ସନ୍ତୋଷ ।
ବୋଇଲେ ହେ କ୍ଷେମା କଲୁ ତୁମ୍ଭର କଲା
ଦୋଷ ॥
ସୁସ୍ୱାଦୁ କ୍ଷୀର ଦୁହାନ୍ତୁ ତୁମ୍ଭର ହାଦେ ଗାଈ ।
କ୍ଷୁଧାରେ ପୀଡ଼ା ପାଇଲା ଆମ୍ଭ ଭାଇ ॥
ତେଣୁ ସେ କୋପ କଲାକ ତୁମ୍ଭନ୍ତ ।
ଏବେ ଯେବେ ବିନୋଇ ହୋଇଲ
ଆମ୍ଭନ୍ତ ॥
ଦୁହାନ୍ତୁ ଦୁଧ ଯେ ହୋଅ ତୁମ୍ଭେ ସୁଖୀ ।
ଦୟା କଲଇଂ ତୁମ୍ଭର କଷ୍ଟ ଦେଖି ॥୧୦୦
କ୍ଷୁଧାର୍ଥ ହୋଇଣ ଯେ ମାଗିବାକ ଦୁଧ ।
ତାହାକୁ ଗୁଆଳେ ହୋ ନ କରିବ ବିରୋଧ ॥
ଭାଗ୍ୟ ଥିଲେଣ ହୋ ପରକଇ ଦେଇ ।
ଅଭାଗ୍ୟବନ୍ତ ପ୍ରାଣୀ ମାଗିବାରେ ଯାଇ ॥
ତୁମ୍ଭେ ଗୋପାଳେ ହୋ ଅଟ ଭାଗ୍ୟବନ୍ତ ।
ଦୁର୍ଭିକ୍ଷେ ଅନ୍ନକଷ୍ଟ ନ ବାଧିବ ତୁମ୍ଭନ୍ତ ॥
ସାମାନ୍ୟ ମହିମା କି ବୋଲିବା ତୁମ୍ଭର ।
ମାଗୁ ଯେ ଅଛୁ ଆମ୍ଭେ ଅକର୍ମ ଆମ୍ଭର ॥
ଶୁଣିଣ ଗୋପାଳେ ହୋଇଲେ ତୋଷ ମତି ।
ନିର୍ଦ୍ଦୋଷୀ ପାଞ୍ଚଗାଈ ଆଣିଲେ
ରାମକତି ॥୧୦

ଶାଳପତ୍ର ଆଣି ସିଂହିଲେ ଦୁଇ ଦନା ।
ଦୁଧ ଦେଇ ଶ୍ରୀରାମଙ୍କୁ କରନ୍ତି ପ୍ରବୋଧନା ॥
ଭୋ ରାଘେବ ଆମ୍ଭଙ୍କୁ ଦୟା କରିଥିବ ।
ଯାହା ବୋଇଲୁ ସେ ଦୋଷ ନ ଧରିବ ॥
ଯେ ତୋହୋର ମୁଦ୍ରିକା ନିଅସି ତୁମ୍ଭର ।
ଶୁଣିଣ ତୋଷ ହୋଇଲେ ରଘୁବୀର ॥
ପିମ୍ପା ସରୋବରେ ପଖାଳିଲେ ମୁଖ ।
ଦୁଧ ଖାଇ ବେନିଭାଇ ହୋଇଲେ
ମାହାସୁଖ ॥
ଦକ୍ଷିଣ ଅଭିମୁଖେ ଯାନ୍ତି ପଥ ବହି ।
ଗୋପାଳେକ ଗୋଡ଼ାଇଲା କାର୍ପୂନ୍ୟମତ
ହୋଇ ॥୨୦
କର ଦୁଇ ଯୋଡ଼ି ଶ୍ରୀରାମ ଆଗେ କହି ।
ଶୁଣି ଦେବ ରଘୁନାଥ ତ୍ରୈଲୋକ
ଗୋସାଇଂ ॥୩୦
କହିଲେଣ ଦୋଷ ହୋଇବ ଅପାର ।
ନ କହିଲେ ସ୍ୱାମୀ ନାହିଂ ପ୍ରତିକାର ॥
ଶ୍ରୀରାମ ବୋଇଲେ ହୋ ନ କରସି ଭୟେ ।
ଦୁଧ ଦେଇଣ ଯେ ତୋଷିଲ ମୋର କାୟେ ॥
ପିଅର ସମାନ୍ୟେ ତୁହୋ ଅଟୁସି ବରଜ ।
ମାଗସି ବର ତୋର ଯେଣେ ଅଛି କାର୍ଯ୍ୟ ॥
ଗୋପାଳ ବୋଇଲା ସ୍ୱାମୀ ମୋହୋର ପୁତ୍ର
ନାହିଂ ।
ତେଣୁକରି ତୁମ୍ଭନ୍ତ କହିଲି ଗୋସାଇଂ ॥୩୦
କର ଅନୁଗ୍ରହ ସନ୍ତତି ମୋତେ ଦେବା ।
ଯଦି ରଘୁନାଥ ଘେନିଲୁ ମୋର ସେବା ॥
ଗଉଡ଼ ବଚନେ ବୋଲନ୍ତି ସୀତ୍ୟା ପତି ।
ଯେ ଜନ୍ମେ ତୋହୋର ନୋହିବ ସନ୍ତତି ॥
ଦୁଧ ଦେଇ ଆମ୍ଭର ତୋଷିଲୁ ଶରୀର ।
ସ୍ୱର୍ଗେ ବସିଣ ତୁ ଅମୃତ ପାନ କର ॥
କାଳ ଅନ୍ତେ ହୁଅ ରବିତଳେ ଜାତ ।
ଆମ୍ଭେ ବେନିଭାଇ ହୋଇବୁ ଧର୍ମସୁତ ॥
ନୋହିଲେକି ତୁମ୍ଭର ରଣ ଶୁଝି ପାରି ।
ଦେହ ଥିବା ଯାଯେ ତୋତେ ପୁଣ୍ୟ
କରି ॥୪୦

ଯେଥିର କାରେଣୀ ତୁମ୍ଭେ ହୁଅସି
ଗୋପାଳ ।
ଯେବେ ଆମ୍ଭେ ତୁମ୍ଭର ହୋଇବୁ ଧର୍ମବାଳ ॥
ବାହୁଡ଼ି ଗୋପାଳ ତୁ ନିଜ ଗୋଷ୍ଠକଇ
ଯାସି ।
ସ୍ୱର୍ଗେ ଦେବତାଙ୍କ ସଙ୍ଗତେ ବସସି ॥
ମୁଂ ଯେ ଶ୍ରୀରାମ ଅଯୋଧ୍ୟାର ରାୟେ ।
ମୋହୋର ଘରଣୀ ହରିନେଲା ଲଙ୍କରାୟେ ॥
ତେଣୁ ବିପୁନ୍ୟେ ମୁଂ ବୁଲୁଅଛି ଦୁଃଖେ ।
ଦୁଧ ମାଗିଲଇଂ ଲକ୍ଷଣର ଭୋଖେ ॥
ତୁ ଯେ ଦୁଧ ଦେଇ ତୋଷିଲୁ ଆମ୍ଭ ପ୍ରାଣ ।
ଧର୍ମର ନନ୍ଦନ ଆମ୍ଭେ ହୋଇଲୁ ତୋର
ଜାଣ ॥୫୦
ଯେବେ ଦେବ କାର୍ଯ୍ୟ ସାରିଣ ସ୍ୱର୍ଗ ଯିବୁ ।
ଅବଶ୍ୟ ତୋର ଆମ୍ଭେ ତନୟ ହୋଇବୁ ॥
ରାବଣକୁ ମାରି ବାହୁଡ଼ଇ ଯେବେ ।
ଅଯୋଧ୍ୟାକୁ ବେଢ଼ାୟେ ଅବଶ୍ୟ ଯିବୁ
ତେବେ ॥
ଯେତେ ବୋଲି ରାମ ଗୋପାଳଙ୍କୁ
ବାହୁଡ଼ାଇ ।
କଦମ୍ବ ବୃକ୍ଷେକ ଦେଖିଲେକ ଯାଇଂ ॥
ଦୀର୍ଘ ତରୁବର ଅଛଇ ଫୁଲ ଫୁଟି ।
ପଡ଼ିବାର ଫୁଲ ଶ୍ରୀରାମ ସାଉଂଟି ॥
କରେ ଧରି ତାହା ପ୍ରଶଂସା କରନ୍ତି ।
ସୁବର୍ଣ୍ଣ ଗୁଣାରେ କି ଖଞ୍ଜିଲା ଅଛି
ମୋତି ॥୬୦
ବାବୁ ପୁଷ୍ପ ଯେ ଯେ ଅଟଇ ପରିମଳ ।
ଯେହାର ଗନ୍ଧବାସ ଘେନଇ ଭ୍ରସଳ ॥
ଯେତେ ବୋଲି କୁସୁମ ବେଣ୍ଟ ଛିଣ୍ଡାଇ
ପକାଇଲେ ।
କେଉଂଠାରୁ ଛିଣ୍ଡିଲା ଜାଣି ନ ପାରିଲେ ॥
କେଶର ନିରୋପିଣ ଦେଖନ୍ତି ପୁଣ ପୁଣି ।
ଠାବକୁ ନ ଜାଣିଲେ ରଘୁକୁଳମଣି ॥
ଲକ୍ଷଣକୁ ଚାହିଂ ବୋଲନ୍ତିରେ ଭାଇ ।
କଦମ୍ବ ପୁଷ୍ପ ପ୍ରାୟେ ହୋଇଲା ବଇଦେହୀ ॥

ଯେଥିର ବେଣ୍ଟ ମୁଁ ଛିଡ଼ାଇ ପକାଇଲି ।
କେଉଁଠାରୁ ଛିଡ଼ିଲା ଜାଣି ନ ପାରିଲି ॥୭୦
ସୀତା ଅନୁବ୍ରତେ କତିରେ ମୋର ଥିଲା ।
ଖୋଜି ନ ପାରିଲି କେବଣ କତିଗଲା ॥
ବାବୁ ଜାନେକୀ ଗୋ ଶରଦଚନ୍ଦ୍ର ମୁଖୀ ।
ନୀଳଉତ୍ପଳ ପ୍ରାୟେ ଦିଶଇ ବେନି ଆଖି ॥
ଡାଳିମ୍ବ କୁସୁମ ପ୍ରାୟେ ଅଧର ସାଦୃଶା ।
ତିଳ କୁସୁମ ପ୍ରାୟେ ଦିଶଇ ତାର ନାସା ॥
ଯେସନେକ ବିହି କଲା ସମତୁଲ ।
ଯେକ ଠାବରେ କି ଥୋଇଲା ସର୍ବ ଫୁଲ ॥
ସେ ଫୁଲକୁ ଚୁମ୍ବିବାକୁ ମୁହିଂ ସେ ଭ୍ରମର ।
ଯେବେ କାହିଂକି ସେ ଗଲୁ ଅପହାର ॥୮୦
ବିରହେ ଆକୁଳ ହୋଇଲେ ରାମ ରାଣ ।
କରେ ଧରିଛନ୍ତି କୋଦଣ୍ଡ ତୀକ୍ଷବାଣ ॥
ଲକ୍ଷଣକୁ ରାଇ ବୋଇଲେ ରଘୁପତି ।
ଯେହିକ୍ଷଣି ଆଣିଦେବୁ ମୋର ସ୍ୟତୀ ॥
ତୋହୋର ଯୋଗୁଂ ସିନା ହଜିଲା ମୋର ପ୍ରିଆ ।
ତୁ ସିନା ଅଟୁରେ ସ୍ୱାମୀର ଦୋରେହା ॥
ଆଣ ବେଗେ ମୋର ପ୍ରାଣର ବଇଦେହୀ ।
ନୋହିଲେଣ ଆଜ ନ ବ୍ରତିବୁ ତୁହି ॥
ଲକ୍ଷଣ କହଇ ବେନିକର ଯୋଡ଼ି ।
ଯେହିକ୍ଷଣି ସୀତ୍ୟାକୁ ଆଣିମି ଦେବ ଲୋଡ଼ି ॥୯୦

ଯେତେ ବୋଲି ସଉମିତ୍ରୀ ଗଲେ ପିଠିଦେଇ ।
ଚେତନା ପାଇଲେ ଯେ ରଘୁକୁଳ ସାଇଂ ॥
ଉଠିଣ ଡାକନ୍ତି ଲକ୍ଷଣ ନାମ ଧରି ।
କେଣେ ଗଲୁ ଭାଇରେ ନିରେଖ ମୋତେ କରି ॥
ଶୁଣିଣ ସଉମିତ୍ରୀ ଅଇଲାକ ବେଗେ ।
କରପତ୍ର ଯୋଡ଼ି ଉଭା ଶ୍ରୀରାମର ଆଗେ ॥
ରାଘେବ ପଚାରନ୍ତି ଥିଲୁ ବାବୁ କାହିଂ ।
ଲକ୍ଷଣ ବୋଇଲେ ଶୁଣିମା ଗୋସାଇଂ ॥
ପଚୁଂବଟୀ ବନେ ହରାଇଲୁ ସୀତ୍ୟା
ପଛୀଚଟା କହିଲା ସିଧ୍ୟ ଯେ ବାରତା ॥୧୦୦
ଲଙ୍କାର ନୃପତି ସୀତ୍ୟାକୁ ଘେନିଗଲା ।
କବନ୍ଧ ଶବରୀ ଯେ ଯେ କଥା କହିଲା ॥
ତୁ ତ ସ୍ୱାମୀ ଯେବେ ପାଶୋରିଲୁ ତାହା ।
ମୋତେ କୋପ କଲୁ ରଘୁକୁଳ ନାହା ॥
ବୋଲୁ ସେ ସୀତ୍ୟାକୁ ଆଣ ବେଗେଯାଇ ।
ନୋହିଲେ ତୋହୋର ପ୍ରାଣ ପାଇନାହିଂ ॥
ଅତିହିଂ କଷ୍ଟୋର ଶୁଣିଲି ତୁମ୍ଭର ।
ତେଣୁ ସେ ସୀତ୍ୟାକୁ ଲୋଡ଼ଇ ବନଘୋର ॥
ଶ୍ରୀରାମ ବୋଲନ୍ତି ମୁଂ ପାଇବି ସୀତ୍ୟା କାହିଂ ।
ଯେ ମୋର ମନ ମୋତେ ଗୋଚର ନୁହଇ ॥୧୦

ଛଳ ନ କରିବୁ ବାବୁ ଶୁଣରେ ସଉମିତ୍ରୀ ।
ଅନେକମତେ ମୋତେ ଲାଗିଲା ବିଧାତି ॥
ଖଳ କଦୁରୀ ମୋତେ କରଇ ଭେଦ ।
ନ ପୁଣ ଦୁଇଭାଇ ହୋଇଚି ବିଛେଦ ॥
ଯେ କଥା ଜାଣି ତୁରେ ଥାଅ ସଉମିତ୍ରୀ ।
କାହିଂ ପାଇବି ମୁଂ ଜନେକ ଦୋହିତି ॥
କେ ନେଲା କାହାକୁ ପଚାରିବି ଯାଇ ।
କେହି ନ ଦେଖିଲା ସଖି ଗଲା କାହିଂ ॥
ଯେ ଯେ ଦିଶୁଅଛି ଋଷିଙ୍କ ମଢ଼ିଆ ।
ଯେଥି ଅବା ଲୁଚିଅଛି ମୋ ସୀତୟା ॥୨୦
ଲକ୍ଷଣକୁ ବୋଇଲେ ଥିଲେ ଘେନିଆସ ।
ସୀତ୍ୟା ଦେଇ ମୋର ପଚୁଂ ପ୍ରାଣ ତୋଷ ॥
ଶ୍ରୀରାମଙ୍କ ଆଜ୍ଞାରେ ଲକ୍ଷଣ ଚଳିଗଲା ।
ଋଷିଙ୍କର ମଢ଼ିଆମାନନ୍ତ ଦେଖିଲା ॥
ନ ପାଇ କହିଲା ଶ୍ରୀରାମ ଛାମୁର ।
ଶୁଣି ରଘୁନାଥ ଚିନ୍ତା ଗରୁତର ॥
ଆରନ୍ୟେକ କାଣ୍ଡ ଯେ ଅମୃତ ରସବାଣୀ ।
ପାର୍ବତୀଙ୍କ ଆଗେ କହନ୍ତି ଶୂଳପାଣି ॥
ବଳରାମ ଦାସ ମୁଂ ଶ୍ରୀଜଗନ୍ନାଥ ପ୍ରସନ୍ନେ ।
ଶ୍ରୀରାମ ଚରିତ୍ର କହିଲି ବିଦ୍ୟମାନେ ॥୩୦
ଅଭୟ ଚରଣ ତଳେ ନିତ୍ୟେ ମୋର ଆଶ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥୩୨

॥ ଇତିଶ୍ରୀ ଆରଣ୍ୟକ କାଣ୍ଡ ସମ୍ପୂର୍ଣ୍ଣ ॥

# କିଷ୍କିନ୍ଧା କାଣ୍ଡ

ନମଇଂ ହୁତାଶନ ସାହେର ବିଳାସ ।
ସର୍ବଜୀବ ଜଠରେ ତୁ କରିଅଛୁ ବାସ ॥
ଦେବଙ୍କର ମୁଖ୍ୟ ତୁ ନାଥ ଜୀବଙ୍କର
ଜୀବନ ।
ଯେ ତୋହର ଆଶ୍ରେକେ ଯେ ଅଛଇ
ପବନ ॥
ସଂସାର ଭକ୍ଷଣି ତୁ କରୁ ଭସ୍ମ ରାଶି ।
ବେଦ ପୁରାଣେ ଯେ ତୋର ମହିମା ପ୍ରକାଶି ॥
ରକତ କୁମୁଦ ପ୍ରାୟେ ଶରୀର ଦ୍ରିବ୍ୟ ତେଜ ।
ନୟନ ଯୁଗଳ କି ପ୍ରଭାତର ସୂର୍ଯ୍ୟ ॥
ପିଙ୍ଗଳ କେଶ ତୋର ସୁବର୍ଣ୍ଣ କାନ୍ତି ଜିଣି ।
ଶିରରେ କିରଟୀ ବିବିଧ ରତ୍ନମଣି ॥ ୧୦
ଲଲାଟେ କସ୍ତୁରୀ ଯେ ଚନ୍ଦନ ତିଳେକ ।
ତିଳ କୁସୁମ ନାସିକା ବିକରାଳ କେଶଯାକ ॥
ବଧୁଲି କୁସୁମ ଜାଣି ଅଧର ସଂଜାତ ।
ଶାମଳ ଚନ୍ଦନ କି ସର୍ବାଙ୍ଗେ ରକତ ॥
ରଙ୍ଗବସ୍ତ୍ର ପରିହରଣ ମନ୍ଦାର ପୁଷ୍ପମାଳା ।
ଯେକମୁଖୀ ରଦ୍ରାକ୍ଷ ଶୋହଇ ତୋର ଗଳା ॥
ବାମକରେ ଅଗ୍ନି ଡାହାଣ କରେ ଜପାମାଳି ।
କଳାମେଘେ ଯେସନେକ ଝଟକ ବିଜୁଳି ॥
ପ୍ରସନ ବଦନ ନାଥ ସୁନ୍ଦର ମୂରତି ।
ଜୟତୁ ବଶ୍ୟାନର ତୋତେ ସୁମରେ
ସୁରପତି ॥୨୦
ଦଧିଚି ଗୋତ୍ର ଯେ ଘୃତ କଲ୍ଲୋଳ ପ୍ରବର ।
ଅଷ୍ଟାଦଶ ଭୁବନେ କର୍କଶ ତୋ ଶରୀର ॥
ଦେବାସୁର ପୂଜନ୍ତି ତୋତେ ଧନବସ୍ତ୍ର
ବିଦ୍ୟମାନେ ।
ଆଶ୍ରୟ ବୋଲିଣ ତୋତେ ଯେ ପୂଜନ୍ତି
ସର୍ବଜନେ ॥
ଯଜ୍ଞ ପୁରୁଷ ତୁ ବ୍ରହ୍ମଗ୍ୟାନେ ଗ୍ୟାନୀ ।
ପ୍ରଳୟ ମଧ୍ୟେଣ ବଡ଼ବାନଳ ଘେନି ॥

ସ୍ୱାହାର ବଲ୍ଲଭ ତୁ ଯେ ହିରଣ୍ୟ ବପୁସାର ।
ଯାହାର କଣ୍ଠତଟେ ଯେ ଚତୁବେଦ ହାର ॥
ଇନ୍ଦ୍ରି ଅଭ୍ୟାନ୍ତରେ ଅଗ୍ନି ସେ ଦେବତା ।
ତତ୍ତ୍ୱଗ୍ୟାନୀ ପୁରୁଷ ତୁ ବ୍ରହ୍ମଗ୍ୟାନେ
ଜ୍ଞାତା ॥୩୦
ବେଦ ମନ୍ତ୍ରେଣ ଯେ ବ୍ରହ୍ମା ତୋତେ ସମର୍ପନ୍ତି
ଘୃତ ।
ସର୍ବଦେବେ ସନ୍ତୋଷ କରନ୍ତି ପଞ୍ଚଭୂତ ॥
ବଳବନ୍ତ ବୁଧିବନ୍ତ ଶୂରବନ୍ତ ହୋନ୍ତି ।
ଯେବଣ ନରେ ତୋତେ ନିତ୍ୟେ ସେ
ପୂଜନ୍ତି ॥
ତେଣୁ ସେ ଦେବତାୟେ କରନ୍ତି ସଂସାର
ପାଳଣ ।
ତୁ ଦେବ ସର୍ବଦେବଙ୍କର ଆଧିଷ୍ଠାଣ ॥
ଋଷିଶୃଙ୍ଗ ମୁନି ଯେ ତୋତେ ସେବା କଲା ।
ପୂର୍ଣ୍ଣାହୁତି କାଳେ ଶ୍ରୀମୁଖକୁ ଦେଖିଲା ॥
ତେଣୁ ସେ ଦଶରଥ ପାଇଲା ଚାରିଗୋଟି
କୁମର ।
ଯହୁଂ ସେ ଅନୁଗ୍ରହ କଲୁସି ହୃଦେ
ତୋହର ॥୪୦
ଗଦାବର ମୁଦ୍‌ଗର ଯେ ଶକତି ଚଉକର ।
ଉର୍ଧ କେଶ ବିକଟ ଦଶନ ଭୟାଙ୍କର ॥
ସର୍ବ ପାପ ହରିଣ ତୁ ଯେ ବିପ୍ରଜନ ଗୁରୁ ।
ମହା ବିଶ୍ୱମୂର୍ତ୍ତି ଦେବ ଧଉର୍ଯେଣ ମେରୁ ॥
ମୁହିଂ ବଳରାମ ଯେ ଶ୍ରୀହରିର ଦାସ ।
ତୁ ମୋତେ ଆଗ୍ୟାଂ କର ସ୍ୱାହାର ବିଳାସ ॥
ଯେ ମୋର ଅଙ୍ଗେଣ ଅଛଇ ପାପ ଘୋର ।
ତାହା ତୁ ଦହନ ଯେବେ କର ବୈଶ୍ୱାନର ॥
ତେଣୁ ସେ ମନ ମୋର ହେଉଛି ବିଳାସ ।
ଶ୍ରୀ ରାମାୟଣ ଗ୍ରନ୍ଥ ମୁଂ ଯେ କରିବି
ପ୍ରକାଶ ॥୫୦

ଆଶ୍ରେ ନ ଥିଲେ କି ହୋୟେ ଗ୍ରନ୍ଥ ଭଣି ।
ତେଣୁ ତୁମ୍ଭଙ୍କୁ ପ୍ରାର୍ଥନା ମୁଂ କରଇ ମୂର୍ଖପ୍ରାଣୀ ॥
ଆବର କଥାୟେ ତୁ ପ୍ରସନ୍ନ ମୋତେ ହୁଅ ।
ଯେ ତୋର ତେଜରେ ଯେ ମିଳାଉ ମୋର
ଦେହ ॥
ନୀଳଗିରି ଜଗନ୍ନାଥଙ୍କର ମୁହିଂ ଅଟେ ଦାସ ।
ତୁ ମୋତେ ଦୟାକର ହେ ସ୍ୱାହାର ବିଳାସ ॥
ତ୍ରୈଲୋକ୍ୟ ସଂସାରରେ ତୁହି ସେ
ବଳମାନ ।
ଜୟ ଜୟ ଅଗ୍ନି ତୋର ମେଷ ଯେ ବାହାନ ॥
ଯାବତ ପଦାର୍ଥ ନାଥ ତୋରେ ଶୁଦ୍ଧ ହୋଇ ।
ଯେ ତୋହୋର ବିନୁ ଜୀବ ଆହାର ପାରେ
କି ଖାଇ ॥୬୦
ଯହୁଂ ସେ ଅନୁବ୍ରତେ ଥାଉ ବିଷ୍ଣୁଙ୍କର ପାଶ ।
ସୁଦର୍ଶନ ଚକ୍ରରେ ତୋହୋର ନିଜ ବାସ ॥
ତେଣୁକରି ତୋତେ ଯେ ଯେ ମୋର
ଭରସା ।
ତୁ ସେ ବୈଶ୍ୱାନର ମୋର ପୂରୋଇବୁ
ଆଶା ॥
ଦକ୍ଷିଣ କୋଣଙ୍କେ ଯେ ଯେ ତୋର ନିଜ
ପୁରୀ ।
ଜ୍ୟୋତିମୟେ ପୁର ତୋର ସକଳ ଗୁଣେ
ଶିରୀ ॥
କାଳକଇ କାଳ ତୁ ଯେ ଧର୍ମକଇ ଧର୍ମ ।
ଦେବଙ୍କର ଧର୍ମ ଦେବତୁ ବ୍ରହ୍ମାଙ୍କର ବ୍ରହ୍ମ ॥
ବଳରାମ ଦାସ ମୁଂ ଯେ ପ୍ରାର୍ଥନା କରଇ
ତୋତେ ।
ନିଜ ତନୁ ଧରି ଦେବ ହେ ଦୟାକର
ମୋତେ ॥୭୦
ବନ୍ଦଇ ଯେ ବାଲ୍ମିକି ବିଧାତା ତନୁଜ ।
ଭବ ଜଳୁଂ ଉଧାରଣ ତୁହି ସେ ଧଉର୍ଯ୍ୟ ॥

ଯାହା ସେ ପ୍ରକାଶ କଲ ରାମାୟଣ ଗ୍ରନ୍ଥ ।
ମୋତେ ସଦୟେ କର ତୁମ୍ଭେ ହେ
ତପୋବନ୍ତ ॥
ପାର୍ବତୀ ପଚାରନ୍ତି ଈଶ୍ୱର ମୁଖ ଚାହିଁ ।
ଶ୍ରୀରାମ ଚରିତ୍ର ମୋତେ ଯେ କହିବା
ଗୋସାଇଁ ॥
ସୀତ୍ୟା ହରାଇଣ ଯେ ବୁଲନ୍ତି ବେନି ଭାଇ ।
ଗୋଗୋଷ୍ଠ ଛାଡ଼ିଗଲେ ଗୋପାଳକୁ
ବରଦେଇ ॥
ସୁଗ୍ରୀବରକଇ ରାମ ପାଇଲେ ଟିକି ଭେଟ ।
କେତେଦିନେ ଶ୍ରୀରାମର ସରିଲା
ବନକଷ୍ଟ ॥୮୦
କେତେଦିନେ ପୁଣି ସେ ପାଇଲେ
ବଇଦେହୀ ।
ଯେତେ ବିପରୀତ ବିହି ବିହିଲା କିପାଇଁ ॥
ଶୁଣିଣ ମନକୁ ମୋର ଯେ ପାଇଲା ବଡ଼
ଶଙ୍କା ।
କେତେଦିନେ ଶ୍ରୀରାମ ଯେ ବିଧଂସିଲେ
ଲଙ୍କା ॥
ଯେହା ମୋତେ ସଂଚପି ଯେ କହିବା
ଶୂଳପାଣି ।
ପବିତ୍ର ହୋଇବି ମୁଂ ଯେ ରାମାୟଣ ଶୁଣି ॥
ଯେତେ ବୋଲିଣ ଯେ ରୁଦ୍ର ପାଦେ ପଡ଼ି ।
ପୁଣି ଉଭା ହୋଇଲେ ସେ ବେନିକର
ଯୋଡ଼ି ॥
କହନ୍ତି ଶଙ୍କର ଯେ ଉମା ବୋଲ ଶୁଣି ।
ଆସ ଆସ ସଖି ଗୋ ନୟନ ହରଣୀ ॥୯୦
କହିବି ଶ୍ରୀରାମ କଥା ଶୁଣି ହୋଇବୁ
ସନ୍ତୋଷ ।
ଯେ ମୋହୋର ଜାନୁ ଉପରେଣ ଆସି ବସ ॥
ଯେତେ ବୋଲି ପାର୍ବତୀଙ୍କି ବସାଇଲେ
କୋଳେ ।
ରୁଦ୍ର ରାମାୟଣ ଯେ କହନ୍ତି ଯୋଗବଳେ ॥
ଶୁଣସି ଶଶିମୁଖୀ ଗୋ ଶ୍ରୀରାମ ମହିମା ।
ବାଲ୍ମିକ ଅଗ୍ରତେ ଯାହା ବଖାଣିଲେ ବ୍ରହ୍ମା ॥
ମୁଂ ତୋତେ ତାହା ଗୋ କହଇ ସଂଘାତୁଣି ।
ହୁଅସି ପବିତ୍ର ତୁ ଯେ ଶ୍ରୀ ରାମାୟଣ ଶୁଣି ॥
କିଷ୍କିନ୍ଧ୍ୟା କାଣ୍ଡ ଯେହୁ ପବିତ୍ର ଆଖ୍ୟାନ ।
ସୀତ୍ୟାଙ୍କୁ ହରାଇଣ ଯେ ବୁଲନ୍ତି
ଶ୍ରୀରାମ ॥୧୦୦
ପିମ୍ପା ସରୋବରେ ଯେ ମିଳନ୍ତେ ରାମ
ଯାଇ ।
ସୁଗ୍ରୀବର ଦେଖିଲା ତାଙ୍କୁ ଯେ ପର୍ବତରେ
ଥାଇ ॥
ସଙ୍ଗେଣ ଅଛନ୍ତି ତାର ଯେ ମନ୍ତ୍ରୀ ଜଣ
ଚାରି ।
ତାହାଙ୍କୁ ଡାକିଣ ସେ ଯେ ବଚନ ପଚାରି ॥
ଯେ ସରୋବର କୂଳେ ମୁଂ ଯେ ଦେଖିଲି
ବେନିଜନ ।
ଅତିଥି ରୂପ ଧରି କରେ ଧନୁର୍ବାଣ ॥
ଅପୂର୍ବ ରୂପଧାରୀ ଯେ ଦିଶଇ ଯେହାଙ୍କର ।
ବାଳୀ ନୃପତିର ଅବା ଅଟନ୍ତି ଯେହୁ ଚାର ॥
ଯେହାଙ୍କୁ କପଟେ ଅବା ପେଷିଣ ରହିଲା ।
ଋଷିମୁଖ ପର୍ବତକୁ ଡରେଣ ନଇଲା ॥୧୦
ଯେବେକି ଅଇଲେ ଯେ ତପ୍ପସୀ ରୂପ ଧରି ।
ଯେହିକ୍ଷଣି ପ୍ରାଣେ ସେ ଯିବେ ମୋତେ
ମାରି ॥
ଇନ୍ଦ୍ର ସୂର୍ଯ୍ୟ ପ୍ରାୟେକ ଦିଶନ୍ତି ସେ ବେନି ।
ଯମଦୂତେ ଅଇଲେ କି କାଳଦଣ୍ଡ ଘେନି ॥
କି ଅବା ହରିହର ଅଟନ୍ତି ଦୁଇ ଦେବ ।
କି ଅବା ଅଟନ୍ତି ଯେ ଅନଳ ବାସବ ॥
ଯେ ଯେବେ ପ୍ରହାର କରିବେ ମୋତେ
ବାଣ ।
ଇଙ୍ଗିତ ମାତ୍ରକେ ଯେ ହରିବେ ମୋର ପ୍ରାଣ ॥
ଯେତେ ବୋଲି ସୁଗ୍ରୀବର ମନ୍ତ୍ରୀକି ନକହି ।
ପଳାଇଣ ଗଲା ସେ ଯେ ମହାଭୟ
ପାଇ ॥୨୦
ରାଜାର ପଳାନ୍ତେ ଯେ ଗୋଡ଼ାନ୍ତି ମନ୍ତ୍ରୀ
ଚାରି ।
ପର୍ବତମାନେ ଡେଇଂଗଲେ ଖର କରି ॥
ଋଷିମୁଖ ପର୍ବତେ ସେ ହୋଇଲେକ ଯାଇ ।
ଗୁପତେ ଲୁଚିଲେ ଯାଇ କନ୍ଦରେ ଭୟ
ପାଇ ॥
ଥରହର ଦେହ ଯେ ଖର ବହଇ ନିଶ୍ୱାସ ।
ବାଳୀର ପ୍ରାୟେ ତାକୁ ଯେ ଦିଶିଲା ଦଶଦିଶ ॥
ବୋଇଲା ଆଉ ଯେଥେ ମୁଂ ନ ପାରଇ
ରହି ।
ବାଳୀକି ଜିଣିମାକୁ କ୍ଷେତ୍ରୀୟ ସମ ନାହିଁ ॥
ଏଥୁ ପଳାଇଣ ମୁଂ ଯେ ଲୁଚିବି
ଅନ୍ୟଠାରେ ।
ଚତୁର୍ଦିଗ ମୋତେ ଯେ ଦିଶଇ
ଅନ୍ଧକାରେ ॥୩୦
ମୋତେ ନେମାକୁ କି ଆସଇ ଜନ୍ତୁପତି ।
ମଙ୍ଗଂଷି ପକ୍ଷୀ ରାବ ଯେ ଶୁଭଇ ମୋର
ଶ୍ରୁତି ॥
କେ ମୋତେ ରକ୍ଷାକରିବ ସେ ପ୍ରାଣଦାନ
ଦେଇ ।
କାହାକଇ ଶରଣ ମୁଂ ଯେ ପଶିବଇଂ ଯାଇ ॥
ବାଳୀର ପ୍ରତାପ ଯେ ସଂସାରେ ବିଦିତ ।
ତିନିପୁରେ ସମର୍ଥ ଯେ ଅଛଇ ଜିଣିତ ॥
ସପନ ଯେ ଦେଖିଲି ମୁହିଁ ଆଜ ।
ସାବଧାନେ ଶୁଣ ତୁମ୍ଭେ ସୁଷେଣ ଋକ୍ଷରାଜ ॥
ଉଛ ପର୍ବତ ଶିଖରେ ଅଛଇ ମୁହିଁ ବସି ।
ଛାମୁରେ ବେନିଜନେ ମିଳିଲେ ମୋର
ଆସି ॥୪୦
ସୁବର୍ଣ୍ଣ ସ୍ଥାଳିରେ ଶାଳିଅନ୍ନ ନେଇ ।
ଦୁଧ ଶର୍କରା ଯେ କର୍ପୂର ମିଶାଇ ॥
ପରଷଇ ମୋତେ ଯେ ତାରା ସୁନ୍ଦରୀ ।
ଚନ୍ଦନ ଲିପଇ ଦେହେ ଶରଧା ଭାବ କରି ॥
ଶୁକ୍ଳ କୁସୁମ ଗଭା ଯେ ସୁସଞ୍ଚ କରି ବାନ୍ଧି ।
ସୁବର୍ଣ୍ଣ କଣ୍ଠିମାଳ ଗଳାରେ ଅଛି ପିନ୍ଧି ॥
ଶୁକ୍ଳ ବସ୍ତ୍ର ଯେକ ଯେ ପରିହରଣ କରି ।
ଦୋସଡ଼ା ଦେଇଅଛଇ ଅପୂର୍ବ ପାଛୋଡ଼ି ॥

ଶ୍ୱେତ ହସ୍ତୀ କନ୍ଧରେଣ ବସାଇଣ ନେଇ ।
କିଷ୍କିନ୍ଧ୍ୟାକୁ ନେଲେ ମୋତେ ସମ୍ଭର୍ବ କରାଇ ॥୬୦
ଶ୍ୱେତଛତ୍ର ଧରାଇଣ ଦାଉଣ୍ଡି ବଜାବନ୍ତି ।
ପୂର୍ବ ମୁଖେ ବସାଇ ଅବିଷେକ କରନ୍ତି ॥
ଯେସନ ସମୟେ ମୁଂ ଯେ ଉଠିକରି ଚାହିଂ ।
କେଶ ବାସ ଦୃଢ଼ବନ୍ଧ ରାତ୍ର ବେନି ଘଡ଼ି ଅଛଇ ॥
ତେତେବେଳରୁ ମୁଂ ଯେ ଭାବଇ ମନେ ମନେ ।
କେଣୁସି ଦିନେ ମୁଂ ନ ଦେଖଇ ଯେସନ ସପନ ॥
ଶୁଣି ଜମ୍ୱେବ ବୋଇଲେ ହୋଇବ ଶୁଭକାର୍ଯ୍ୟ ।
ଅଳପ ଦିନେ ତୋତେ ପ୍ରାପତ ଅଇଶ୍ୱର୍ଯ୍ୟ ॥
ହନୁମତ ବୋଇଲା ତୁ ଯେ ମିଛେହେଁ କିମ୍ପା କାନ୍ଦୁ ।
ଆପଣେ ନ ଜାଣିଣ ନିଜ କର୍ମ ନିନ୍ଦୁ ॥୭୦
କିସ ଦେଖି ସେ ଠାବରୁ ଅଇଲୁ ପଳାଇ ।
ଯେଡ଼େ ଅସମ୍ଭାଳେ ଅଇଲୁ କେବଣ ଗୁଣେ ତୁହି ॥
ବାଟ ଶ୍ରାନ୍ତି ଲୋକେ ଯେ ଆସୁ ଯାଉଥାନ୍ତି ।
ଅରନ୍ୟ ବାଟ ବୋଲି ଧନୁ ଶସ୍ତ୍ର ଧରନ୍ତି ॥
ଯୋଗୀ ସନ୍ନ୍ୟାସୀମାନଙ୍କୁ ଦେଖିଲେ ଭୟକରୁ ।
ଯେଡ଼େ ଅଧଇର୍ଯ ଲୋକ ତୁ ଯେ ମନରେ ନ ବିଚାରୁ ॥
ଆବର କେମନ୍ତେଟି ବଞ୍ଚିବା ଦିନକାଳ ।
ତୁ ଯେବେ ହୋଇବୁଟି ଯେମନ୍ତ ଭୟାଳ ॥
ସେ କିମ୍ପାଇଂ ହୋଇବେଟି ବାଳୀର ଯେ ଦୂତ ।
ଅବିକ୍ଷଣେ ଭୟ ଥିବାର ଯେ ନୁହଇ ଯୁଗତ ॥୮୦

ସରୋବର କୂଳରେ ସେ ବସିଣ ଅଛନ୍ତି ।
ଦେଖିବା ମାତ୍ରକେ ତୁ କିପାଇଂ କଲୁ ଭ୍ରାନ୍ତି ॥
କେଣେ ଗଲେ ବେନିଜନ ଜାଣିଲୁ ତଥ୍ୟକରି ।
ପର୍ବତ ଛାଡ଼ିଣ ତୁ ଯେ ପଳାଇଲୁ ଭାଇ ॥
ସେ ଦୁଇଜଣ ଆମ୍ଭେ ଅଟୁ ପାଞ୍ଚ ଲୋକ ।
କିସ କରନ୍ତାଇ ସେ ଆମ୍ଭ ବେଢ଼ନ୍ତାଇ ଯେକ ଯେକ ॥
ବାଳୀକି ସେ ଯେ ଯେକା କରଇ ମୁହିଂ ଭୟେ ।
ଅନ୍ୟଭଳି ଲୋକକି ମୋହୋର ଆଗେ ରହେ ॥
ରହି ଯେବେ ଦେଖନ୍ତୁ ବୁଝନ୍ତୁ ମୋ ମହିମା ।
ଆରବେଳେ କିପାଂଇ ସେ ଲଘନ୍ତେ ଆମ୍ଭର ସୀମା ॥୯୦
ଯେ ବେଳକ ମୋର ବୋଲ ହାଦେ ତୁହିକର ।
ଯେ ବିମ୍ବର ଭିତରୁ ତୁ ହୁଅସି ବାହାର ॥
ଯେ ଯାହାରେ ଆମ୍ଭେ ଯେ ସଜ ହୋଇଥିବା ।
ଅଇଲେ ନିଶ୍ଚୟେ ଆମ୍ଭେ ଯେ ସଂଗ୍ରାମ କରିବା ॥
ପଥୁକୀ ହୋଇଲେ ସେ ଯେ ବୁଝିବା ତଥ୍ୟକରି ।
କାହୁଂ ଅଇଲେ ସେ ଯେ ଧନୁଶସ୍ତ୍ରଧାରୀ ॥
ଭୟେ କରି ଯେଥେ ଆମ୍ଭେ କେତେକାଳ ଥିବା ।
ଯେ ମୋହୋର ବୋଲକର ସମସ୍ତେ ଚାଲଯିବା ॥
ଶୁଣିଣ ସୁଗ୍ରୀବ ରାୟେ ପାଇଲା ଭରସା ।
ଘଡ଼ଘଡ଼ି କଲେ ଯେହ୍ନେ ଚାତକ କରେ ଆଶା ॥୧୦୦
ବୋଲଇ ସୁଗ୍ରୀବର ତୁ ଶୁଣିମା ହନୁମାନ ।
ତାହାଙ୍କୁ ରଣେ ଆମ୍ଭେ ଯେ ନୋହିବା ସମାନ ॥

ତୁ ଯେବେ ହନୁମନ୍ତ ଯେ ମୋହୋର ବୋଲକର ।
ଏ ରୂପ ଛାଡ଼ିଣ ଯେ ଅନ୍ୟ ରୂପ ଧର ॥
ଗୁପତେ ମନ ତାଙ୍କର ବୁଝିଆସ ଯାଇ ଯାଇ ।
ତେବେ ସେ ଗିରିବରରେ ପାରିବା ଆମ୍ଭେ ରହି ॥
କାହୁଂ ଅଇଲେ ସେ ଯେ କାହିଂକି ପୁଣ ଯିବେ ।
କି ଅବା ଯେହି ବନେ ରହିଣ ବୁଲୁଥିବେ ॥
କାହାର ତନୟ ସେ ଯେ ନାମ ତାଙ୍କର କିସ ।
କେବଣ ଦେଶରେ ଯେ ଅଟଇ ନିଜବାସ ॥୧୦
ଯାଅ ତୁ ଅନୁମନ୍ତ ହୋ ବୁଝିଆସ ଯାଇ ।
ନୋହିଲେ ଯେ ପର୍ବତେ ମୁଂ ଯେ ନ ପାରଇ ରହି ॥
ଶୁଣିଣ ହନୁମନ୍ତ ଯେ ଉଠିଲା ତଡ଼ତି ।
ସୁଗ୍ରୀବରକୁ ଚାହିଂଣ ବୋଲଇ ମାରୁତି ॥
ମୋହୋର ଆସିବାଯାଏ ମାତୁଳ ତୁ ଯେହିଠାରେ ଥିବୁ ।
ମୋହୋର ଶପତ ତୋତେ କେଣେ ହେଁ ନଯିବୁ ॥
ଯେବଣ ସ୍ୱପନ ମୁଂ ଯେ ଦେଖିଲି ଆଜ ନିଶି ।
ସେ ଭଲ କଥା ବୋଲି ମନକୁ ମୋର ଆସି ॥
ସେ ସ୍ୱପନ ଭଲ ବୋଲି ଶୁଣିଲା ମୋର ଅଛି ।
ତହିଂର ଫଳ ତୋତେ ଦେବେଟି ଶ୍ରୀବଚ୍ଛି ॥୨୦
ଯେତେ ବୋଲି ହନୁମନ୍ତ ଯେ ପବନ ବେଳ ଖୋଜି ।
କନ୍ଦରୁ ବାହାର ସେ ଯେ ସଙ୍ଗଜନ ତେଜି ॥

ଥୋକାଏକ ଦୂରେ ସେ ଯେ ବ୍ରାହ୍ମଣ ରୂପ ଧରି ।
ଜାଣି ପଚାରର ସେ ଯେ ଜନ୍ମରୁ ଭିଖାରି ॥
ଆସନ୍ତେଣ ଦୂରହୁଁ ଯେ ଦେଖିଲେ ରଘୁନାଥ ।
ଜାମ୍ବୁ ଗଛ ତଳରେ ବସିଅଛନ୍ତି ବେନି ଭ୍ରାଥ ॥
ଜାନେକୀର କଥା ଯେ ଭାଳନ୍ତି ତହିଁ ବସି ।
ଯେସନ ସମୟେ ଯେ ହନୁମନ୍ତ ମିଳିଲାକ ଆସି ॥
ନିକଟ ହୋଇଣ ସେ ଯେ ପୁଛଇ ବାରତ ।
କେବଣ ଦେଶରୁ ତୁମ୍ଭେ କରିଛ ଆଗତ ॥୩୦
କେ ତୁମ୍ଭର ପିତା ଯେ କେ ତୁମ୍ଭର ମାତା ।
କେ ତୁମ୍ଭର ଅଟନ୍ତି କୁଳର ଇଷ୍ଟ ଦେବତା ॥
କିସ କିସ ନାମ ହେ କହ ତୁମ୍ଭେ ବେନି ।
କେବଣ କାରଣେ ଅଛ ଧନୁଶର ଘେନି ॥
କେଶ ବାସ ଜଟା ବିଭୂତି କେଉଂ ସଧେ ।
ପଇତା ବହ ତୁମ୍ଭେ କେବଣ ହିଂ ବେଦେ ॥
ତୁମ୍ଭେ ଯେ ଦୁଇ କେ ହୁଅ କିସ କିସ ।
ଯେଥକୁ ଆସିଅଛ ଯେ କାହାର ଆଦେଶ ॥
ଯେ ଘୋର ଅରଣ୍ୟକୁ ନ ଆସନ୍ତି ଅନ୍ୟ ।
ଦେବତା ପ୍ରାୟେକ ତୁମ୍ଭେ ଦିଶୁଛ ବେନି ଜନ ॥
ସରୂପ ବଚନ ଯେ କହ ମୋହର ଆଗ ।
ଗୁପତ କଥା ଥିଲେ କରସି ପରିତ୍ୟାଗ ॥
ଶୁଣିଣ ରଘୁନାଥ ଯେ ଲକ୍ଷଣ ମୁଖ ଚାହିଁ ।
ଯାହା ପଚାରନ୍ତି ବିପ୍ର କହସିରେ ଭାଇ ॥
ଶ୍ରୀରାମର ଆଗ୍ୟାଂରେ ଯେ କହନ୍ତି ସୁମିତ୍ରାର ଶିଷ ।
ହନୁମନ୍ତ ମୁଖ ଚାହିଁ କହନ୍ତି ସନ୍ଦେଶ ॥
ଶୁଣ ହୋ ବ୍ରାହ୍ମଣ ତୁ ଯେ ପଚାରିଲୁ ଯାହା ।
ଦଶରଥ ନୃପତି ଯେ ଅଯୋଧ୍ୟାର ନାହା ॥
ସୂର୍ଯ୍ୟବଂଶୀ ରାଜା ଯେ ରଘୁକୁଳେ ଜାତ ।

ଅଜ ନୃପତିଙ୍କର ଅଟନ୍ତି ସେହୁ ସୁତ ॥
ତିନି ଭୁବନେ ସେ ପ୍ରତାପ୍ପା ମହାରାଜା ।
ଚାରି ସମୋଦ୍ର ସେ କରଇ ତାକୁ ପୂଜା ॥
ଶବଦ ଭେଦୀ ରାଜା ସେ ବିନ୍ଧଇ ଯଉଂବାଣ ।
ସୁର ନର ରାକ୍ଷସଙ୍କର ଘେନଇ ସେହୁ ପ୍ରାଣ ॥
ଶନିଚର ଗ୍ରହକୁ ସେ ଜିଣିଲା ବୁଧିବଳେ ।
ସମାନ ଯେଣୁ ତାକୁ ନାହିଁ ରବିତଳେ ॥
ନଉଶସ୍ର ବରଷକୁ ପାଇଲେ ଆୟୁଷ ।
ଅକଣ୍ଟେକ ରାଜ୍ୟ ଭୋଗ ସେ କରଇ ନରେଶ ॥
ମନ୍ତ୍ରୀବର ସୁମନ୍ତ ବଶିଷ୍ଟ ମୁନି ଘେନି ।
ଭୁଜବଳେ ସାଧିଲେ ସେ ଯେ ସକଳ ମେଦନୀ ॥
ସାତଶ ପଞ୍ଚାଶ ରାଜାର ମହାଦେଇମାନ ।
ତହିଂର ମଧ୍ୟେ ଯେ ତିନି ରାଣୀ ମୁଖ୍ୟପାନ ॥
ଜେଷ୍ଟ କଉଶଲ୍ୟା ସୁମେତ୍ରା କକୟା କନେଷ୍ଟ ।
ତିନି ଯୁବତୀ ଯେ ରାଜାର ଆଦି ପାଟ ॥
ବୃଦ୍ଧକାଳେ ରାଜନ ଯେ ପୁତ୍ର ଶଧ କଲା ।
ଋଷିଶୃଙ୍ଗ ମୁନିବର ଯଜ୍ଞେ ଚରୁଦେଲା ॥
ତିନି ରାଣୀଠାରୁ ଆମ୍ଭେ ଚାରି ପୁତ୍ର ଜାତ ।
କଉଶଲ୍ୟା ଗର୍ଭରୁ ଯେ ଶ୍ରୀରାମ ସମ୍ଭୂତ ॥
କଯେକୟା ଗର୍ଭରୂପେ ଭ୍ରଥ ଉତପନ ।
ସୁମେତ୍ରାଙ୍କ ତହୁଁ ଜାତ ଲକ୍ଷ୍ମଣ ଶତୃଘନ ॥
ଚାରିପୁତ୍ର ପାଇ ରାଜା ମନରେ ଆନନ୍ଦ ।
ମୁଖ ବିକାଶଇ ଯେ ପୂର୍ଣ୍ଣମୀର ଚାନ୍ଦ ॥
ସାତ ବରଷେ ଶ୍ରୀରାମକୁ ବ୍ରତ କରାଇଲେ ।
ଶସ୍ତ୍ର ଶାହାସ୍ତ୍ର ଦୁଇ ବିଦ୍ୟା ଶିଖାଇଲେ ॥
ବାର ବରଷ ଯହୁଁ ହୋଇଲେକ ପୋୟେ ।
ବିଶ୍ୱାମିତ୍ର ମୁନି ଯଜ୍ଞ ରଖିତେ ମାଗିନିୟେ ॥
ଶ୍ରୀରାମକୁ ମୁନି ମାଗିକରି ନିଅନ୍ତେ ।
ମୁହିଂ ଗୋଡ଼ାଇଲି ଯେ ଶ୍ରୀରାମ ସଙ୍ଗତେ ॥
ଅଯୋଧ୍ୟାରୁ ପାରି ହୋଇଗଲୁ ତିନି ଜଣ ।

ପ୍ରବେଶ ହୋଇଲୁ ଯାଇ ଅଗମ୍ୟ ବନେଣ ॥
ବାଟରେ ଉଗାଳିଲା ଯେ ତାଡ଼କୀ ରାକ୍ଷସୀ ।
ନାରାଚ ପେଷି ରାମତାକୁ ପକାଇଲେ ନାଶି ॥
ଦେଖିଣ ବିଶ୍ୱାମିତ୍ର ଯେ ହୋଇଲେ ହରଷ ।
ପ୍ରସନ୍ନେ ନାନା ଶସ୍ତ୍ର ଦେଲେ ଗାଧି ରାଜା ଶିଷ୍ୟ ॥
ଆନନ୍ଦେ ତାଙ୍କୁ ନିଜ ମନ୍ଦିରକୁ ନେଲେ ।
ଋଷି ବିପ୍ର ଡକାଇଣ ଯଜ୍ଞ ଅରମ୍ଭିଲେ ॥
ଅନେକ ମୁନିମାନେ ଯେ ମିଳିଲେକ ଆସି ।
ଅଗ୍ନିହୋମ ଦେଇ ଯେ ସର୍ବଦେବ ତୋଷି ॥
ସୁବାହୁ ଅଇଲା ଯେ ଅନେକ ଦତ୍ୟ ଘେନି ।
ପଥ ନିରୋଧନ୍ତେ ମାଇଲୁ ଭାଇ ବେନି ॥
ଯଜ୍ଞ ସମାପତ କରିଣ ଗାଧିଶିଷ ।
ଶ୍ରୀରାମକୁ ଘେନିଗଲେ ମିଥିଳା ନାମେ ଦେଶ ॥
ଯାନ୍ତେ ସିଦ୍ଧବନେ ଅହିଲାକୁ ମୁକ୍ତ କଲେ ।
ଜନେକ ଘରେ ରୁଦ୍ରଧନୁକୁ ଭାଙ୍ଗିଲେ ॥
ସୀତ୍ୟା ବିଭା ହୋଇ ଆସନ୍ତେ ନିଜ ଦେଶ ।
ବାଟରେ ଉଗାଳିଲେ ରେଣୁକାର ଶିଷ ॥
ତାହାକଇ ରଣେ ଜିଣିଲେ ରଘୁସାଇଂ ।
ଅଯୋଧ୍ୟା କଟକେ ମିଳିଲେ ସେ ଯାଇ ॥
ଶ୍ରୀରାମର ବୀରପଣ ଚତୁର୍ଦ୍ଦିଗ ସ୍ଫୁରି ।
ଦେଖିଣ ଦଶରଥ ମନରେ ବିଚାରି ॥
ଶ୍ରୀରାମକୁ ରାଜାପଣ ଅଯୋଧ୍ୟାରେ ଦେବି ।
ବୃଦ୍ଧ ବୟସରେ ମୁଂ ଯେ ନିଷ୍ଟନ୍ତେଣ ଥିବି ॥
ଯେମନ୍ତ ବୋଲିଣ ଯହୁଁ ରାଜା ବିଚାରିଲା ।
ପାତ୍ର ମନ୍ତ୍ରୀ ଡକାଇଣ ସନମତ କଲା ॥
କଯେକୟାର ଦାସୀ ଯେ ରାତ୍ରରେ ବୁଲୁଥିଲା ।
ଲୋକେ କଥା ହୁଅନ୍ତେ ସେ କର୍ଣ୍ଣରେ ଶୁଣିଲା ॥
ଘରକୁ ଆସିଲା ସେ ଯେ ବିରସ ମନ ହୋଇ ।
ମଉନେ ବସିଲା ସେ ଯେ କଥାହିଂ ନକହି ॥

ଯେମନ୍ତ ସମୟେ ଯେ କୟେକୟା ଆସି ।
ବୋଇଲେ କିପାଂଇ ତୁ ଗୋ ମଉନେ ଅଛୁବସି ॥
ସେ ବୋଇଲା ଶ୍ରୀରାମ ଯେ ହୋଇବେ କାଲିରାଜା ।
ଯେମନ୍ତ ବୋଲନ୍ତି ନଗ୍ରର ଜନ ପ୍ରଜା ॥
ଯେ ତୋହୋର ପୁତ୍ର ଯେ ଅଟଇ ଧନୁଧର ।
ପାରୁ ଯେବେ ଯେତେବେଳେ କହସି ନୃପବର ॥
ସାବତ ପୁତ୍ର ତୋର ନୃପତି ହୋଇବ ।
ଭରଥ ପରାୟେ ପୁତ୍ର ଯେ ଦାସ ହୋଇଥିବ ॥
ବିପରୀତ କୂଟବାଣୀ ଯେ ମନକୁ ତାର ଗଲା ।
କପଟେ ନୃପତି କି ସତ୍ୟ କରାଇଲା ॥
ଶ୍ରୀରାମ ବନ ଯିବେ ଚଉଦ ବରଷ ।
ଭ୍ରଥ ରାଜା ହୋଇ ଯେ ପାଳିବାକ ଦେଶ ॥୨୦
ତେଣୁ ସେ ବନବାସ ଅଇଲୁ ଭାଇବେନି ।
ସଙ୍ଗତରେ ଅଇଲେ ଜନେକ ନନ୍ଦିନୀ ॥
ପଞ୍ଚୁବଟୀ ବନେଣ ହରାଇଲୁ ସୀତ୍ୟା ।
କେହୁ ହରି ଘେନିଗଲା ଯେ ଜନେକ ଦୋହିତା ॥୩୦
ତାହାକୁ ଖୋଜିବାରେ ବନସ୍ତରେ ବୁଲୁ ।
ବାଟବଣା ହୋଇଣ ସେ ଯେଠାରେ ମିଳିଲୁ ॥
କେତେ ଦୂରେ ଭେଟିଲୁ ଯେ ଗରୁଡ଼ର ସୁତ ।
ସେ ଆମ୍ଭଙ୍କୁ କହିଲା ସକଳ ବୃତ୍ତାନ୍ତ ॥
ରାବଣ ନାମେଣ ଲଙ୍କାର ଅଧିପତି ।
ସେ ହରି ଘେନିଗଲା ଜନେକ ଦୋହିତୀ ॥
ଦେଖିଣ ପକ୍ଷୀଜଟା ଉଗାଳିଲା ଆଗେ ।
ଖଡ଼ଗେ ଡେଣା ତାର କାଟିଲାକ ବେଗେ ॥
ବାରତା କହିବା ଯାୟେ ଥିଲା ତାର ପ୍ରାଣ ।
ଡେଣା ଗୋଟି ଛିଡ଼ିଥିଲା ଖଡ଼ଗ ଘାତେଣ ॥

ତାହାର ମୁଖୁଂ ମାତ୍ର ଯେତେକ ଶୁଣିଲୁ ।
ତଥ୍ୟକରି ଆମ୍ଭେ ଯେ ସେ କଥା ଜାଣିଲୁ ॥
କୋବନ୍ଧକୁ ମାରନ୍ତେ ସେ ରାମକୁ କହିଲା ।
ଲଙ୍କାର ରାବଣ ଯେ ସୀତ୍ୟାକୁ ହରିନେଲା ॥
ଶବରୀ ମୁଖୁଂ ଯେ ପାଇଲୁଂ ବାରତା ।
ସେ ବୋଇଲା ଲଙ୍କପତି ହରିନେଲା ସୀତ୍ୟା ॥୪୦
କେ ବୋଲଇ ଦକ୍ଷିଣେ ଯେ କେ ବୋଲଇ ଉତ୍ତରେ ।
କେ ବୋଲଇ ଘର ତାର ସମୋଦ୍ର ଭିତରେ ॥
ଗୃହକୁ ଯିବୁ ଆମ୍ଭେ କାହାକୁ ପୁଣ ଘେନି ।
ତେଣୁ ଦୁଃଖୀ ହୋଇ ବୁଲୁଛୁ ଭାଇ ବେନି ॥
ଯେ ଯେ ଶ୍ରୀରାମ ଯେ ରଘୁ କୁଳନାଥ ।
ମୁହିଂ ଲକ୍ଷଣ ଯେ ଶ୍ରୀରାମ ସାନଭ୍ରାଥ ॥
ଶୁଣସି ବ୍ରାହ୍ମଣ ହୋ ପଚାରିଲ ଯାହା ।
ଯେ ରାମ ଅଟନ୍ତି ଯେ ଅଯୋଧ୍ୟାର ନାହା ॥
ତୁମ୍ଭେ କାହୁଂ ଅଇଲ ହେ ଭିକ୍ଷାସୀ ଦ୍ୱିଜବର ।
ରାଜ୍ୟରେ ଥିଲେ ଦୁଃଖ ଫେଡ଼ନ୍ତୁ ତୋହର ॥୫୦
ଅନେକ ଧନ ରତ୍ନ ଆଣନ୍ତେ ଯେ ବହି ।
ଦାରିଦ୍ର୍ୟ ଧ୍ୱଂସନ କରନ୍ତେ ଯେ ସୀତୟା ଦେବୀ ସାଇଂ ॥
ଦୁଃଖର କାଳେ ସେ ଯେ ହୋଇଲୁ ଦେଖାଦେଖି ।
ଅଯୋଧ୍ୟାରେ ଥିଲେ ଦେନ୍ତେ ଧନବସ୍ତ୍ର ଲେଖି ॥
ତୁମ୍ଭେ ଯେବେ କାହିଂକି ଯିବ ଦ୍ୱିଜବର ।
ଆଜ ରଜନୀ ରହିବା ହେଉ ଆମ୍ଭ ସଙ୍ଗତର ॥
ରାତ୍ର ପାହିଲେ କାଲିଯାଅ ନିଜ ଦେଶ ।
କାହାର ତନୟ ତୁମ୍ଭେ ନାମ ତୁମ୍ଭର କିସ ॥
କେବଣ ବେଦ ଶାଖା କହ ବିପ୍ରବର ।
କେବଣ ବେଦ ଯଜ୍ଞ ଅଭ୍ୟାସ ତୁମ୍ଭର ॥୬୦
ଲକ୍ଷଣ ବଚନେ ଯେ ବୋଲଇ ହନୁମାନ ।

ପୂର୍ବର କଥାମାନ ଯେ ପ୍ରସରିଲା ଗ୍ୟାନ ॥
ଯାହା ପୂର୍ବେ ବ୍ରହ୍ମା ମୋତେ ଯେ ଗୁପତେ ଥିଲେ କହି ।
ବିଷ୍ଣୁ ଅବତାର ଯେ ହୋଇବେ ଆମ୍ଭ ପାଇଂ ॥
ଅଯୋଧ୍ୟାର ନୃପତି ଯେ ଦଶରଥ କୋଳେ ଜାତ ।
ମାନବ ଶ୍ୟରୀରେ ଯେ ଧନୁଶସ୍ତ୍ର ଧରି ହସ୍ତ ॥
ସୀତୟା ଲକ୍ଷଣ ଘେନି ବନବାସ ଯିବେ ।
ଗୋଦାବରୀ କୂଳେ ଯାଇ ଘରଣୀ ହରାଇବେ ॥
ଯେମନ୍ତେ ଶ୍ରୀରାମ ଯେ ବୁଲୁଥିବେ ବନେ ବନେ ।
ସୁଗ୍ରୀବର ଥିବ ଯେ ଶ୍ରୀରାମ ଯିବେ ଯେଣେ ॥୭୦
ରଘୁନାଥକୁ ଦେଖିଣ ପଳାଇବେ ଭୟ କରି ।
ବାଳୀର ଦୂତ ବୋଲିଣ ମନରେ ଶଙ୍କା ଧରି ॥
ଋଷିମୁଖ ପର୍ବତରେ ଲୁଚିବେ ସେ ଯାଇ ।
ଜାଣି ଆସ ବୋଲିଣ ପେଷିବେ ତୋତେ ସେହି ॥
ତୁ ଯାଇ ଶ୍ରୀରାମକୁ ଭେଟିବୁ ଯେତେବେଳେ ।
ପ୍ରସନ୍ନ ହୋଇବେ ତୋତେ ରଘୁବାଳେ ॥
ଯେବେ ତୁ ସମୟେ ଯେ ଗୋପ୍ୟ ହୋଇଥାଅ ।
ଋଷିଙ୍କ ମଢ଼ିଆ ଭାଙ୍ଗିବା ଫଳ ପାଅ ॥
ଗର୍ବ ବହିଣ ଯେ ନମାନିଲୁ କିଛି ।
ଯେ ତୋର ପରାକର୍ମ ଥିଲେ ଋଷିଙ୍କ କାହିଂ ଭଲ ଅଛି ॥୮୦
ସମୟେକ ଶାନ୍ତି ହୋଇଣ ଦିନ ନିଅ ।
ଶ୍ରୀରାମର ଦ୍ରଶନରେ ଅନେକ ବଳ ପାଅ ॥
ଦେବଙ୍କର କାର୍ଯ୍ୟେଣ ଅସୁର ବଳ ମାରି ।
ତ୍ରେତୟା ଯୁଗେ ଆଉ ନ ଥିବେ ତୋତେ ସରି ॥

ରାମାୟଣ ଯୁଦ୍ଧେ ତୁ ଯେ ହୋଇବୁ
ମହାବଳୀ ।
ତୋହର ଭୟରେ ଲଙ୍କାରେ ପଡ଼ିବ
ହାଲହୋଳି ॥
ଆବର କଥାଯେ ତୁ ଯେ ଥିବୁ ହେତୁ କରି ।
ଇନ୍ଦ୍ର ଦେଲା କୁଣ୍ଡଳ ଯେ କର୍ଣ୍ଣରେ ଅଛୁ
ଭରି ॥
ପବନ ଦେଇଅଛି ଯେବଣ ମୁକୁଟ ।
ଯେ ମୋର ମାଳା ଯେ ଅଛଇ
କଣ୍ଠତଟ ॥୯୦
ଦେବ ଗନ୍ଧର୍ବ ଯେ ଦକ୍ଷ ବିଦ୍ୟାଧର ।
କାହାରି ନୟନକୁ ସେ ଯେ ନୋହିବ
ଗୋଚର ॥
ଦେବଦାନବ ଯେ ନୋହିବ କାହାକୁ ଦୃଶ୍ୟ ।
ଯେକାମାତ୍ର ଦେଖିଣ ଚିହ୍ନିବେ ପୀତବାସ ॥
କଉଶଲ୍ୟା ସୁତ ବିନୁ ଅନ୍ୟକୁ ଦୃଶ୍ୟ ନାହିଁ ।
ସେ ସେ ଚିହ୍ନିବେ ପୁଣ ତୋହର ମୁଖ
ଚାହିଁ ॥
ଯେ କଥା ଜାଣି ତୁ ଥିବୁ କପିବୀର ।
ସେ ଦିନୁ ଖଟିବୁ ତୁ ଯେ ଶ୍ରୀରାମ ପୟର ॥
ଶ୍ରୀରାମ ଶ୍ରୀଚରଣେ ସେବା କରିଥିବୁ ତୁହି ।
ତେବେ ସେ କୀର୍ତ୍ତି ତୋର ଯୁଗେ ଯୁଗେ
ରହି ॥୧୦୦
ଶ୍ରୀରାମର ଦ୍ରଶନେ ତୁ ଯେ ପାଇବୁ
ବହୁଫଳ ।
ଶ୍ରୀରାମର ଆଜ୍ଞାରେ ତୁ ମାରିବୁ ଦୈତ୍ୟବଳ ॥
ଯେତେ ବୋଲି ସର୍ବଦେବତାକୁ ଘେନି ।
ବରଦେଇ ସ୍ୱର୍ଗକୁ ଯେ ଗଲେକ
ପଦ୍ମଯୋନି ॥
ସେହିଦିନୁ ମୋହୋର ଯେ ତୁଟିଅଛି ବଳ ।
ଯେସନେକ ଆଜ୍ଞାଂ ମୋତେ ଦେଇଛି
ଲୋକପାଳ ॥
କୁଳ ଗୋତ୍ର ନାମ ପଚାରିଲ ଦେଶ ।
ଲକ୍ଷଣ କହିଲେ ମୋତେ ସକଳ ସନ୍ଦେଶ ॥

ଯେବେ ସେ ହେତୁ କଲି ବ୍ରହ୍ମାର ବଚନ ।
ନିଷ୍ଚୟେ ଅଟନ୍ତି ଯେ କମଳ
ଲୋଚନ ॥୧୦
ନୋହିଲେ ଅନ୍ୟକି ଯେମନ୍ତ ରୂପ ଦିଶି ।
ନିଷ୍ଚୟେ ଅଟନ୍ତି ଯେ ବଇକୁଣ୍ଠବାସୀ ॥
ଯାହା ସେ ବିଧାତା ଯେ ଅଛଇ ମୋତେ
କହି ।
ଯେ ସେ ରଘୁନାଥ ଯେ ଅଟନ୍ତି ମୋର
ସାଇଂ ॥
ଯେହାକୁ କେମନ୍ତେଟି କରିବି ମୁହିଂ ମାୟା ।
ଯେହାରେ ଯେବେ ମୁଂ ଯେ ଧରିବି ନିଜ
କାୟା ॥
କିରଟୀ କୁଣ୍ଡଳ ଯେ ଚିହ୍ନିଲେ ପ୍ରତେ ଯିବି ।
ଆଜହୁଂ ଯେହାକୁ ମୁଂ ସେବା କରିଥିବି ॥
ଯେତେ ବିଚାରିଣ ସେ ଯେ ପବନର ସୁତ ।
ଲକ୍ଷଣର ମୁଖ ଚାହିଂ କହଇ ବାରତ ॥୨୦
ଯାହା ସେ ସଉମିତ୍ରୀ ପଚାରିଲ ମୋତେ ।
ସାବଧାନେ ଶୁଣ ତୁ ଯେ କହଇ ମୁହିଂ
ତୋତେ ॥
କିଷ୍କିନ୍ଧ୍ୟା କଟକେ ଯେ ବାଳୀ ନୃପବର ।
ସୁଗ୍ରୀବର ବୋଲିଣ ଯେ ସାନୁଜ ତାହାର ॥
କପିକୁଳରେ ସେ ଯେ ଅଟଇ ଆଧିପତି ।
ଜମ୍ବୁଦ୍ୱୀପରେ ଯେତେ ବାନର ଅଛନ୍ତି ॥
ବାଳୀ ରାଜାର ସେ ଅଟଇ ସଞ୍ଚଳା ।
ସାନଭାଇ ସୁଗ୍ରୀକି ରାଜ୍ୟଂ ବାହାର
କରିଦେଲା ॥
ସଂସାରେ ସେ ବାଳୀ ଡରେ ନ ପାରିଲା
ରହି ।
ଯେ ଋଷିମୁଖ ପର୍ବତରେ ଲୁଚିଣ ଦିନ
ନେଇ ॥୩୦
ଚାରିମନ୍ତ୍ରୀକି ରାଜ୍ୟରୁ ବାହାର କରିଦେଲା ।
ମୁହିଂ ସୋଦର ଭଣଜା ମୋତେ ନ ରଖିଲା ॥
ରୋମା ନାମେ କନ୍ୟା ଯେ ସୁଗ୍ରୀବର
ଯୁବତୀ ।

ତାହାକୁ ବଳେଣ ହରିଲା ମୂଢ଼ମତି ॥
ଭ୍ରାଥର ବହୂ ବୋଲିଣ ଯେ ଲଜ୍ଜା ହିଂ
ନକଲା ।
ତାହାକୁ ଘେନି ବଳେ ରମଣୀ ଭୋଗ କଲା ॥
ଆମ୍ଭେ ଅନ୍ୟାଚାର ତାର ଦେଖିଲୁ ହାଦେ
ଯହୁଂ ।
ସେ ପୁର ଛାଡ଼ିଣ ଯେ ଅଇଲଇଂ ତହୁଂ ॥
ସୁଷେଣ ଜାମ୍ବେବ ଯେ ଗନ୍ଧମାରଦନ ।
ସୁଗ୍ରୀବର ସଙ୍ଗେ ଯେ ଅଇଲୁ
ପାଞ୍ଚଜଣ ॥୪୦
ବନବାସ କଲୁ ଆମ୍ଭେ ବନଜନ୍ତୁ ମେଳେ ।
ତୁମ୍ଭଙ୍କୁ ଦର୍ଶନ ଆମ୍ଭେ କଲୁ ଯେତେକାଳେ ॥
ଯେହି ପର୍ବତ ଶିଖରେ ଯେ ଆମ୍ଭେ
ବସିଥିଲୁ ।
ତୁମ୍ଭଙ୍କୁ ଦେଖିଣ ଯେ ଡରେ ପଳାଇଲୁ ॥
ଋଷିମୁଖ ପର୍ବତେ ଯେ ଲୁଚିଲୁ ଆମ୍ଭେ
ଯାଇ ।
ଡରେ ବାଳୀ ନ ଯାଇ ଅଛଇ ଶାପ୍ୟ ପାଇ ॥
ଯେକେ ସୁଗ୍ରୀବର ମୋତେ ଦେଲା
ପଠିଆଇ ।
ତୁମ୍ଭର କୁଳ ଗୋତ୍ର ବୁଝିବାର ପାଇଂ ॥
ସେ ମୋର ମଉଳା ଯେ ବିଶେଷେ ମାନିତ ।
ତାହାଙ୍କର ଆଗ୍ୟାଂ ମୋତେ ଅଟଇ
ଅଲଙ୍ଘିତ ॥୫୦
ଚିହ୍ନିବାକୁ ଭୋ ନାଥ ମୁଂ ଅଇଲି ତୁମ୍ଭ
ପାଶ ।
ନୁହଇ ବ୍ରାହ୍ମଣ ମୁଂ ଯେ ନୁହଇ ମନୁଷ୍ୟ ॥
ପିତା ମୋର କେଶରୀ ଯେ ବାନର
ଆଧିପତି ।
ପମଯଂନୀ ନାମେ ଯେ ତାହାର ଯୁବତୀ ॥
ସେ ମୋହର ଜନନୀ ଯେ ମୁଂ ତାହାର
ସୁତ ।
ଯେ ମୋହୋର ନାମ ଯେ ଅଟଇ ହନୁମତ ॥
ତୁମ୍ଭଙ୍କୁ ଦେଖିଲି ମୁଂ ଯେ ପୂର୍ବ ତପ
ଫଳେ ।

ଖଟିଣ ଥିବି ଯେବେ ଶ୍ରୀଚରଣ ତଳେ ॥
ଲକ୍ଷ୍ମଣ ବୋଇଲେ ତୁ ନୋହୁ ଯେବେ ମନୁଷ୍ୟ ।
ଦେଖିବାନା ତୋହୋର ଧର ନିଜ ରୂପ ॥୬୦
ଶୁଣିଣ ହନୁମତ ଯେ ବ୍ରାହ୍ମଣ ରୂପ ଲେଛି ।
ମର୍କଟ ରୂପ ଧରିଣ ଉଭା ହୋଇଅଛି ॥
ସ୍ୱରୂପ ଦେଖିଣ ରାମ ହୋଇଲେକ ତୋଷ ।
ଦେବତା ପ୍ରାୟେକ ଦିଶେ ପବନର ଶିଷ ॥
ଶ୍ରୀରାମକୁ ଦିଶିଲା ଯେ ମକୁଟ କୁଣ୍ଡଳ ।
କଣ୍ଠ ତଟେ ଲମ୍ବଇ ଯେ ନବ ରତ୍ନମାଳ ॥
ଦେଖିଣ ବିଚାରନ୍ତି ଯେ କଉଶଲ୍ୟାଙ୍କର ସୁତ ।
ଯେ କଥା ଅଟଇ ଯେ ବଡ଼ଇ ବିପରୀତ ॥
ପ୍ରତକ୍ଷେ ବ୍ରାହ୍ମଣ ସ୍ୱରୂପ ଧରିଥିଲା ।
ସେ ରୂପ ଛାଡ଼ି ଯେବେ ବାନର ହୋଇଲା ॥୭୦
ଯାହା ଆମ୍ଭଙ୍କୁ କହିଲେ ଯେ କୋବନ୍ଧ ଶବରୁଣୀ ।
ସେ ପାଞ୍ଚଜଣରୁ ସେ ଅଟଇ ଜଣେ ପୁଣି ॥
ମର୍କଟ ଶରୀର ଯେ ଦେବଙ୍କ ଆୟେ ଅଛି ।
ନିଶ୍ଚୟେ ବଡ଼ଲୋକକୁ ଯେ ଆଶ୍ରୟେ କରିଅଛି ॥
ତୁ ଯେ ହନୁମତ କପି ତନୁ ବହି ।
ମର୍କଟ କୁଣ୍ଡଳ ହାର ପାଇଲୁ ତୁ କାହିଂ ॥
କେ ତୋତେ ଯେ ରତ୍ନ ଦେଲା କାହୁଂ ତୁ ପାଇଲୁ ।
କି ଅବା ତୁ ଧନ ଦେଇଣ କିଣିଲୁ ॥
କହ ହୋ ହନୁମତ ପ୍ରତେ ଯେଣେ ଆସଇ ।
ତୋହୋର ଚରିତ୍ର ମୋତେ ମାୟା ପ୍ରାୟେ ଲାଗଇ ॥୮୦
କରପତ୍ର ଯୋଡ଼ିଣ ଯେ କହଇ ହନୁମତ ।
ଯେ ମୋର ବଚନ ତୁମ୍ଭେ ଶୁଣିମା ରଘୁନାଥ ॥
ଶୁଣିମା ଶ୍ରୀରାମ ଯେ ଦଶରଥ ଶିଷ ।
ପବନ ବୀର୍ଯ୍ୟେ ପମଯଂନୀ ହୋଇଲା ଗର୍ଭବାସ ॥
ଅନେକ କାଳ ମୁଂ ଯେ ମାତାର ଗର୍ଭେ ଥିଲି ।
ପବନ ଉପାୟେ ମୁଂଯେ ଜନମ ହୋଇଲି ॥
ମାତାକୁ ବୋଇଲି ଗୋ ଆହାର ମୋତେ ଦିଅ ।
ଜନନୀ ବୋଇଲା ବାବୁରେ ସୁରଙ୍ଗ ଫଳ ଖାଅ ॥
ଦେଖିଲି ଆକାଶେ ଆଦିତ୍ୟ ଉଇଂଅଛି ।
ସୁପକ୍ୱ ଫଳ ବୋଲି ଯାଇ ଧଇଲି ଖେପି ॥୯୦
ଆଦିତ୍ୟ ଦେବତାକୁ ମୁଂ ଯେ ବାନ୍ଧିଲି ଦୃଢ଼ କରି ।
ଆରତେ ଆଦିତ୍ୟ ଯେ ଇନ୍ଦ୍ରକୁ ସୁମରି ॥
ମୋତେ ବଜ୍ରଶର ସେ ଯେ ମାଇଲା କୋପଭରେ ।
ଗ୍ୟାନ ହାରି ପଡ଼ିଲି ମୁଂ ଯେ ରଥର ଉପରେ ॥
ଦେଖିଣ ପିତା ମୋର ବିକଳ ହୋଇଲେ ।
ଜଗତଜନଙ୍କର ନିଶ୍ୱାସ ନିରୋଧିଲେ ॥
ଦେଖିଣ ପିତାମହ ଧଇଲେକ ତୋଳି ।
ଅମୃତ ଦେଇ ବଞ୍ଚାଇଲେ ବ୍ରହ୍ମାଦିସୁର ମିଳି ॥
ସମସ୍ତ ଦେବତାଙ୍କୁ ବୋଇଲେ କୁଶଧର ।
ଯେହାରେ ଦେବ କାର୍ଯ୍ୟ ହୋଇବ ଅପାର ॥୧୦୦
ସମସ୍ତେ ଯେହାକୁ ଯେ ସୁକଲ୍ୟାଣ କର ।
ଯେ ମୋହୋର ଯେ ହୋଇବ ଅମର ॥
ଯେତେ ବୋଲିଣ ବିଧାତା ଯେ ରତ୍ନମାଳା ଫେଇ ।
ମୋହୋର କଣ୍ଠେଣ ଯେ ଲମ୍ବାଇଲେ ନେଇ ॥
ଇନ୍ଦ୍ରଦେବତା ଶିରେ ମୋର ମୁକୁଟ ଖଞ୍ଜିଲେ ।
ପିତା ପବନ ମୋତେ ଯେ କୁଣ୍ଡଳ ଦୁଇ ଦେଲେ ॥
ଆବର ତେତିଶ କୋଟି ଯେ ଦେବଗଣ ।
ସମସ୍ତେ ଅଛନ୍ତି ଯେ ଯେ ମୋର ସଙ୍ଗେଣ ॥
ତେଣୁ ସେ ପରାକର୍ମ ଅନେକ ମୋର ହୋଇ ।
ଦୁଷ୍ଟପଣ କଲି ମୁଂ ଯେ କହଣା ନ ଯାଇ ॥୧୦
ବନେ ଋଷି ବିପ୍ରଙ୍କୁ ମୁଂ ବହୁତ ଦୁଃଖ ଦେଲି ।
ମଢ଼ିଆ ଭାଙ୍ଗିଣ ମୁଂ ଗଡୁ ପିଢ଼ା ଫିଙ୍ଗିଦେଲି ॥
ଶାପ ନ ଦିଅନ୍ତି ସେ ବାଳୀର ଓପ୍ରୋଧେ ।
ବ୍ରହ୍ମାଙ୍କୁ ଗୁହାରି କଲେ ମୋହୋର ଅପ୍ରାଧେ ॥
ବ୍ରହ୍ମା ଯେ ଆସିଣ ମୋର ଭାଙ୍ଗିଲେ ପରାକର୍ମ ।
ବୋଇଲେ ସମୟେ ତୁ ଯେ ହୋଇଥିବୁ ନିପ୍ରାଣ ॥
ଯେବେଣ ଦିନେ ତୋତେ ଶ୍ରୀରାମ ଭେଟିବେ ।
ଗତୁଂ ଶରତ ଶତେ ଗୁଣେ ଯେ ପ୍ରାକର୍ମ ବଢ଼ିବ ॥
ମୁଂ ଯେ ବୋଇଲି ତାଙ୍କୁ କରପତ୍ର ଯୋଡ଼ି ।
କାହିଂ ପାଇବି ମୁଂ ଯେ ଶ୍ରୀରାମକୁ ଲୋଡ଼ି ॥୨୦
ବ୍ରହ୍ମାଯେ ବୋଇଲେ ତୁ ଯେ ସୁଗ୍ରୀ ସଙ୍ଗେ ସଙ୍ଗେ ଥିବୁ ।
ପିମ୍ପା ସରୋବରେ ତୁ ଯେ ଶ୍ରୀରାମକୁ ଭେଟିବୁ ॥
ଭାରିଯା ହରାଇଣ ଯେ ବୁଲୁଥିବେ ବେନିଭାଇ ।
ସେଠାରେ ଭେଟିବୁ ତୁ ଯେ ଗୁପ୍ତ ରୂପ ହୋଇ ॥
ମକୁଟ କୁଣ୍ଡଳ ଯେ କଣ୍ଠେ ଅଛଇ ହାର ।
ଅନ୍ୟକୁ ଦୃଶ ନୋହିବ ବୋଇଲେ କୁଶଧର ॥

ଯାହାକୁ ରତ୍ନମାନ ହୋଇବଟି ଦୃଶ ।
ସେହିଟି ଶ୍ରୀରାମ ଅଟନ୍ତି ପୀତବାସ ॥
ସେହିଦିନରୁ ତୋର ଯେ ପ୍ରାକର୍ମ ବଢ଼ିବ ।
ମନର ଦୁର୍ଗତି ତୋର ଯେ ସମସ୍ତ ପାର ଯିବ ॥୩୦
ଶ୍ରୀରାମଙ୍କ ଶ୍ରୀଚରଣେ ହୋଇବୁ ଭଗତି ।
ସେ ପ୍ରଭୁ ଅଟନ୍ତି ଯେ ଜଗତର ଆଧିପତି ॥
ତାହା ଚେତୋଇ ମୁଂ ଯେ ଅଛଇ ହେତୁ କରି ।
ଯେବେ ପ୍ରତକ୍ଷେ ଯେ ଦେଖିଲି ଶ୍ରୀହରି ॥
ଯେ ମୋହୋର ରତ୍ନ ଯେ ଅନ୍ୟକୁ ନୋହେ ଦୃଶ୍ୟ ।
ତୁ ଦେବ ଚିହ୍ନିଲୁ ଯେ ଅଟୁ ପୀତବାସ ॥
ତୋତେ ଦେଖିଲି ମୋର ଯେ ପ୍ରାକର୍ମ ବଢ଼ିଲା ।
ବ୍ରହ୍ମାର ବଚନେ ମୋର ଯେ ଦୁଗତି ଛାଡ଼ିଗଲା ॥
ମୁହିଂ ତୋତେ ଶରଣ ଯେ ପଶିଲଇଂ ସ୍ୱାମୀ ।
ଜଗତ ଜୀବନ ତୁ ଯେ ଅଟୁ ଅନ୍ତର୍ଯାମୀ ॥୪୦
ଯେତେ ବୋଲି ଶ୍ରୀରାମର ଶ୍ରୀଚରଣ ଧରି ।
ସାଷ୍ଟାଙ୍ଗେ ପଡ଼ିଲା ସେ କାର୍ପୁଣ୍ୟେ ହୋଇକରି ॥
ଉଠିଣ ଶ୍ରୀକରେ ତୋଳି ଧଇଲେ ଶ୍ରୀରାମ ।
ଶରୀର ଆଉଂଶିଣ ବୋଲନ୍ତି ବଚନ ॥
ତୁହୋ ହନୁମତ ଯେ ପ୍ରତକ୍ଷେ ଦେବତା ।
ଯେ ମୋହୋର ଦୁଃଖ ଦେଖି ସଜିଛି ବିଧାତା ॥
ଧନ୍ୟ ଧନ୍ୟ ଆଜ ଦିନ ହୋଇଲା ମୋହର ।
ତୋହୋରେ ଅନେକ କାର୍ଯ୍ୟ ମୁଂ ଯେ କରିବି ଦେବଙ୍କର ॥
ଯେତେବେଳେ ଶ୍ରୀରାମ ଛୁଇଂଲେ ତାର ଦେହୀ ।
ଦୃତୀୟ ପବନ ଯେ ପ୍ରାୟେକ ଦିଶଇ ॥୫୦
ବେଳୁଂ ବେଳ ପ୍ରତଗ୍ୟାଂ ହୋଅଇଂ ଅତି ଗାଢ଼ ।
କିସ ମାତ୍ର ରାବଣ କିସ ଲଙ୍କାଗଡ଼ ॥
ଯେ ତୋହୋର ଆଗ୍ୟାଂରେ ଦେବ କ୍ଷଣକେ ଉଡ଼ିଯିବି ।
ରାବଣକୁ ବଧି ତୋର ସୀତ୍ୟାକୁ ଆଣିଦେବି ॥
ପୁଣ ପୁଣ ହନୁମତର ପୁଲକେ ଶ୍ୟରୀର ।
ବିଷ୍ଣୁତେଜ ପାଇ ପତଗ୍ୟାଂ କରଇ ଅପାର ॥
ଲକ୍ଷ୍ମଣକୁ ନମସ୍କାର କରଇ ପବନ କୁମାର ।
ଶ୍ରୀରାମ ଚରଣେ ଯେ ନମଇ ଶତେବାର ॥
ଶ୍ରୀରାମ ବୋଲନ୍ତି ଲକ୍ଷ୍ମଣ ମୁଖ ଚାହିଂ ।
ଯେହାରେ ପ୍ରାପତ ମୋତେ ହୋଇବ ବଇଦେହୀ ॥୬୦
ଶ୍ରୀରାମ ଆଗ୍ୟାଂଦେଲେ ଶୁଣ ତୁ ହନୁମାନ ।
ସୁଗ୍ରୀବରକଇ ଘେନି ଆସ ଯା ବହନ ॥
ମୋତେ ଭେଟିଲେ ତାର ଦୁଃଖ ଯିବ ପାର ।
ନିଶ୍ଚୟେ ଶତ୍ରୁ ମୁଂ ଯେ ସାଧିଦେବି ତାର ॥
ଉଠିଣ ହନୁମତ ଯେ ଚରଣେ ଓଳଗିଲା ।
ଚକ୍ଷୁର ମଟକେ ସେ ଯେ ପର୍ବତ ଲଙ୍ଘିଗଲା ॥
ଋଷିମୁଖ ପର୍ବତେ ସେ ଯେ ମିଳିଲାକ ଯାଇ ।
ବିମ୍ବର ଦ୍ୱାରେଣ ଥାଇ ଉଚେ ସେ ଡାକଇ ॥
ଆହୋ ସୁଗ୍ରୀବର ଆସ ବେଗ ହୋଇ ।
ସୁଦୟା କଲେ ତୋତେ କମଳାଦେବୀ ସାଇଂ ॥୭୦
ଯେତେ କଷ୍ଟମାନ ତୋର ଆଜଠାରୁ ଗଲା ।
ସ୍ୱୟେଂ ନାରାୟଣ ଯେ ସଦୟା ତୋତେ କଲା ॥
ଆସ ଆସ ମାତୁଳ ହୋ ନ କର ତୁ ହେଳ ।
ଆଜ ପ୍ରାପତ ତୋତେ ହୋଇଲା ଧର୍ମବଳ ॥
ଶୁଣିଣ ସୁଗ୍ରୀବର ଯେ ପରମ ସାନନ୍ଦ ।
ମୁଖ ବିକାଶଇ ଯେ ଶରଦ ପୂର୍ଣ୍ଣଚନ୍ଦ୍ର ॥
ବିମ୍ବରୁ ବାହାର ଯେ ହୋଇଲା କପିରାଜ ।
ହନୁମତକୁ ପଚାରଇ ଆଦିତ୍ୟ ତନୁଜ ॥
କେବଣ ଅଇଶ୍ବର୍ଯ୍ୟ ଦେବୁ କହ ବାବୁ କଥା ।
କେବଣ ପ୍ରକାରେ ତୁ ଯେ ହରିବୁ ମୋର ବ୍ୟଥା ॥୮୦
ଜୀମୁତ ପ୍ରାୟେକ ଶୁଭଇ ତୋର ବାଣୀ ।
ଚାତେକ ପାଇଲାକି ଆକାଶର ପାଣି ॥
ତେସନ ସଂଜାତ ମୁଂ ହୋଇଲିରେ ବାବୁ ।
ତୁ ମୋତେ କେମନ୍ତ ପ୍ରକାରେ ଅଇଶ୍ବର୍ଯ୍ୟ ଦେବୁ ॥
ହନୁମତ ବୋଇଲା ତୁ ଶୁଣ କପିରାୟେ ।
ସରୋବର ତୀରେ ଯଉଂ ଦୁଇ ଯତି ହୋୟେ ॥
ସେ ସେ ରଘୁନାଥ ଯେ ଦଶରଥ ସୁତ ।
ଶ୍ରୀରାମ ଲକ୍ଷଣ ସେ ଅଟନ୍ତି ବେନି ଭ୍ରାଥ ॥
ସାବତ ଜନତୀ ଯେ କଲେ ତାଙ୍କୁ ହିଂସା ।
ତେଣୁଟି ଶ୍ରୀରାମ ଯେ ବନସ୍ତେ କଲେ ବସା ॥୯୦
ସୀତ୍ୟା ମହାସ୍ୟତୀ ଯେ ଜନେକ ଦୋହିତା ।
ସେ ସୁନ୍ଦରୀ ଅଟନ୍ତି ଶ୍ରୀରାମ ବନିତା ॥
ଭାଇ ଭାରିଯା ଘେନିଣ ବନବାସ କଲେ ।
ପିତାର ସତ୍ୟ ପାଳି ଦୁଃଖକୁ ନ ଡରିଲେ ॥
ପଞ୍ଚୁବଟୀ ବନେ ସେ ଯେ ବସା ଥିଲେ କରି ।
ଲଙ୍କାର ରାବଣ ଯେ ସୀତ୍ୟାକୁ ନେଲା ହରି ॥
ପଖୀଚଟା ବୋଲିଣ ସେ ଯେ ଗରୁଡ଼ର ସୁତ ।
ଶ୍ରୀରାମକୁ କହିଲା ସେ ସୀତ୍ୟାର ବାରତ ॥
ତେଣୁ ସେ ଆତଙ୍ଗେ ଯେ ଲୋଡ଼ନ୍ତି ବେନି ଭାଇ ।
ଦୁଃଖେଣ ବୁଲୁଛନ୍ତି ସେ ଯେ ସୀତ୍ୟାକୁ ହରାଇ ॥୧୦୦
ଲକ୍ଷଣ ବୋଲିଣ ଯେ ଶ୍ରୀରାମ ସାନଭାଇ ।
ବହୁତ ତିଆରି ସେ କଥାନ୍ତ ଦେଖାଇ ॥
ରଘୁନାଥ ମନ ସେ ଯେ ହରିବା ନିମନ୍ତେ ।
ଯେଥକୁ କଢ଼ାଇ ସେ ଯେ ଆଣିଲେ ଯୁଗତେ ॥

ଯେ ତୋହୋର ଭାଗ୍ୟେ ରାମ ଯେଥକୁ
ଅଇଲେ ।
ମୋହୋର କହନ୍ତେ ସେ ଯେ ଶରଧା
ପାଇଲେ ॥
ବୋଇଲେ ସୁଗ୍ରୀବି ତୁ ଯେ ଘେନି ଆସ
ଯାଇ ।
ତାହାର ଆଗ୍ୟାଂରେ ମୁଂ ଯେ ଅଇଲଇଂ
ଧାଇଂ ॥
ତୁ ଯେବେ ହେଳା ନ କର କପିରାୟେ ।
ଚାଲ ସମସ୍ତେ ଯିବା ହୋ ତାହାଙ୍କର
ପାୟେ ॥୧୦
ସେ ସେ ନାରାୟଣ ଯେ ପରମ ପୁରୁଷ ।
ତାହାଙ୍କର ଆଶ୍ରକେ ଯେ ଅଛଇଂ ତ୍ରିଦଶ ॥
ସେ ପ୍ରଭୁ ମାନବ ରୂପେଣ ଅବତରି ।
ଶଙ୍ଖ ଚକ୍ର ଗଦା ଛାଡ଼ି ଧନୁଶସ୍ତ୍ର ଧରି ॥
ମୋତେ ଦେଖିଣ ସେ ଯେ ବହୁତ
ପ୍ରଶଂସିଲେ ।
ସୁଗ୍ରୀବରକୁ ଘେନି ଆସଯା ବୋଇଲେ ॥
ଶୁଣିଣ ବାନରେଶ୍ୱର ହୋଇଲା ହରଷ ।
ତୁ ବାବୁ ମୋହୋର ଯେ ଅଟୁ ବଡ଼ାଇ
ବିଶ୍ୱାସ ॥
ଯେବେ ଦେଖିଲୁ ଯେ ଶ୍ରୀରାମ ପରମବ୍ରହ୍ମ ।
ତୋହୋରେ ହେବ ବାବୁ ମୋହୋର ସର୍ବ
କର୍ମ ॥୨୦
ଦୟା କରିଣ ସେ ଯେ କହିଲେ ଯଦ୍ୟପି ।
ବାଳୀର ଭୟ ମୋତେ ନ ଛାଡ଼ଇ ତଥାପି ॥
ମୁହିଂ ଯିବାକୁ ବାବୁ କରଇ ବଡ଼ ଭୟେ ।
ତିନିଭୁବନେ ବାଳୀବୀର ଅଟଇ ଅଜୟେ ॥
ତାହାର ପ୍ରତଗ୍ୟାଂ ତ ପ୍ରତକ୍ଷେ ତୁହି ଜାଣୁ ।
ମୁହିଂ ଯିବାକୁ ଭୟେ କରଇ ଯେ ତେଣୁ ॥
ତୁ ଯେବେ ଶ୍ରୀରାମକୁ ଘେନି ଆସ ଯାଇ ।
ଯେବେ ଦୟା କଲେ ମୋତେ ରଘୁକୁଳ
ସାଇଂ ॥
ତୁ ବାବୁ ଯାଇଣ ଯେ ବୁଝାଇ ତାଙ୍କୁ କହ ।
ଯେମନ୍ତେ ଆସନ୍ତିଟିକି ଦଶରଥଙ୍କର
ପୁଅ ॥୩୦
ଅନେକ ପ୍ରକାରେ ତାଙ୍କୁ କହିବୁ ବୁଝାଇ ।
ସେ ବେନି ଭାଇଙ୍କି ତୁ ଘେନି ଆସ ଯାଇ ॥
ସେ ଶ୍ରୀରାମଙ୍କୁ ଆମ୍ଭେ କରିଥିବା ସେବା ।
ତାହାଙ୍କର ଆଗ୍ୟାଂରେ ଆମ୍ଭେ ଯେ ସୀତ୍ୟାଙ୍କୁ
ଖୋଜିଦେବା ॥
ଆମ୍ଭଠାରେ ଅଛି ସୀତ୍ୟାଙ୍କର ବସ୍ତ୍ର
ଅଳଙ୍କାର ।
ସେ ଦ୍ରବ୍ୟମାନ ଆମ୍ଭେ ଯେ ଦେବା
ତାହାଙ୍କର ॥
ଆମ୍ଭେ ତ ଜାଣୁ ଯେ ସୀତ୍ୟାଙ୍କୁ ହରିନେଲା ।
ଗଗନ ମାର୍ଗେ ରଥ ନେଇଣ ପଳାଇଲା ॥
ସେ ରଥେ ଯୁବତୀୟେ କରଇ ରୋଦନ ।
ରାମ ଲକ୍ଷଣ ଯେ ସୁମରଇ ଅନୁକ୍ଷଣ ॥ ୪୦
ଆମ୍ଭଙ୍କୁ ଦେଖି ସେ ବସ୍ତ୍ର ଅଳଙ୍କାର
ପକାଇଲେ ।
ଶ୍ରୀରାମଙ୍କୁ ଦେଖିଲେ ଯେହା ଦେବଟି
ବୋଇଲେ ॥
ସେ ବସ୍ତ୍ର ଅଳଙ୍କାର ମୁଂ ଯେ ସାଇତିଣ
ଅଛି ।
ଯେବେ ହେତୁ କଲି ମୁହିଂ ପବନର ବଛି ॥
ଆମ୍ଭ ସଙ୍ଗେ ଶ୍ରୀରାମର ଭେଟ ଯେବେ
ହୋଇଥାନ୍ତା ।
ରାବଣ ଛାରକି ସୀତ୍ୟାକୁ ଦେଖୁ ଦେଖୁ
ନିଅନ୍ତା ॥
ଯାଅ ବାବୁ ଶ୍ରୀରାମକୁ କଢ଼ାଇ ଘେନି ଆସ ।
ଅଇଲେଣ ଦେବା ତାଙ୍କର ଅଳଙ୍କାର ବାସ ॥
ସ୍ୟତୀଙ୍କର ବାରତା ଯେ କହିବା ତାହାଙ୍କୁ ।
କଢ଼ାଇଣ ଘେନିଯିବା ଲଙ୍କା ଭୁବନକୁ ॥୫୦
ପୂର୍ବେ ପିତା ମୋର କହିଅଛି ସୂର୍ଯ୍ୟ ।
ଅବଶ୍ୟ ଯେଥକୁ ଯେ ଆସିବେ ଦେବରାଜ ॥
ତାହାଙ୍କୁ ଭେଟିଲେ ଦୁର୍ଗତି ପାର ଯିବ ।
ଯେବେ ପ୍ରତକ୍ଷେ ବିଜୟେ କଲେକ
ରାମଦେବ ॥
ମୋହୋର ଯାଇତ ବାବୁ ନୋହଇ
କଦାଚିତେ ।
ବାଳୀକି ଭୟ ମୁଂ ଯେ କରଇ ଅନୁବ୍ରତେ ॥
ଶୁଣିଣ ହନୁମତ ବାହୁଡ଼ିଲା ତତକ୍ଷଣି ।
ଯାଇଣ ଭେଟିଲା ଯହିଂ ଅଛନ୍ତି ଶ୍ରୀରାମ
ନୃପମଣି ॥
ଯେତେକ ଦୂରରୁ ସେ ଦିଶିଲେ ରଘୁନାଥ ।
ପାୟେ ପଡ଼ି ଶୋଇଲା ସେ ବୀର
ହନୁମତ ॥୨୦
ପୁଣ ପୁଣ ନମସ୍କାର କରିଣ ଉଠଇ ।
ଉଭାହୋଇ କର ଦୁଇ ଯୋଡ଼ିଣ ସେ
ନିକଟକୁ ଯାଇ ॥
ପ୍ରଦକ୍ଷିଣ କରି ପୁଣ କରଇ ନମସ୍କାର ।
ଲକ୍ଷ୍ମଣ ପଦ୍ମପାଦେ ଓଳଗଇ ବୀର ॥
ଶ୍ରୀରାମ ଛାମୁରେ ଯେ କହଇ ବାରତ ।
ଶୁଣସି ସାବଧାନେ ତୁ ଅଯୋଧ୍ୟାର ନାଥ ॥
ସୁଗ୍ରୀବର ଛାମୁରେ ଯେ କହିଲି ବାରତା ।
ଶୁଣିଣ କପିରାଜ ଯେ ଛାଡ଼ିଲା ମନବ୍ୟଥା ॥
ବାଳୀର ଭୟେ ସେ ଆସିତ ନ ପାରିଲା ।
ମୋହୋର ଆଗରେ ସେ ଯେ ତିଆରି
କହିଲା ॥୭୦
ତୁ ଯାଇ ଯେବେ ବାବୁ ଶ୍ରୀରାମଙ୍କୁ ଆଣ ।
ବାଳୀର ଭୟେ ଯେ କମ୍ପଇ ମୋର ପ୍ରାଣ ॥
ତାହାର ଭୟେ ସେ ନ ପାରଇ ଯାଇଂ ।
ଶ୍ରୀରାମକୁ ଆଣ ଯାଇ ବିନୟ ମୋର କହି ॥
ତାହାର ବୋଲେ ଦେବ ଅଇଲି ଅତି
ବେଗେ ।
ତହିଂର ବାରତା କହିଲି ତୋର ଅଗେ ॥
ତୁ ଦେବ ଭଗତ ବଛଳ ମୁରାରି ।
ଅପାର ମହିମା ଦାସଜନଙ୍କ ହିତକାରୀ ॥
ଉଠ ଉଠ ଭୋ ସ୍ୱାମୀ ଯିବା ତହିଂଯାୟେ ।
ଶୁଣିଣ ଶ୍ରୀରାମ ହରଷ ମନ ହୋୟେ ॥୮୦
ଲକ୍ଷ୍ମଣର ଭୁଜ ସେ ଧରିଣ ଉଠନ୍ତି ।
ହନୁମତକୁ ଚାହିଂଣ ଶ୍ରୀରାମ ଆଗ୍ୟାଂ ଦେନ୍ତି ॥

କେବଣ ମାର୍ଗେ ଯିବା କଢ଼ାଅ ବାବୁ ବାଟ ।
ଶୁଣିଣ ଆଗ ହୋଇଲା ପବନର ଚାଟ ॥
ଅଗମ୍ୟ ବନେଣ ପଥ ବହିଯାନ୍ତି ।
ଋଷିମୁଖ ପର୍ବତରେ ଯାଇଣ ଉଠନ୍ତି ॥
ବାବୁ ସେ ପର୍ବତକୁ ନାହିଁ ପଟାନ୍ତର ।
ଶିଖରୁ ଝର ଫୁଟି ବହଇ ଝର ଝର ॥
ଚନ୍ଦନ ଅଗର ଯେ ପୁଷ୍ପଙ୍କର ବାସ ।
ମଳୟ ପବନ ଯେ ବହଇ ଚଉପାଶ ॥୯୦
ଲବଙ୍ଗ ମରିଚ ଜାଇ ଫଳ ଆଦି ଛନ୍ତି ।
ଆତ ପଣସ ଗୁଆନଡ଼ିଆ ପନ୍ତି ପନ୍ତି ॥
ଜୀବଜନ୍ତୁମାନ କେ ପାରିବାକ ଗଣି ।
ମଉଭରେ ଶୁକ ଶାରୀ ଭାଷନ୍ତି ଶୁଦ୍ଧବାଣୀ ॥
କାବେରୀ ନଦୀ ଯେ ବହଇ ଝର ଝର ।
ବହୁ ତରୁ ଛନ୍ତି ଯେ ପକ୍ଷୀ ଜଳଚର ॥
ସେ ବନେ ବସନ୍ତ ଯେ ସର୍ବଦା ବହୁଥାଇ ।
ମନେ ଯାହା ବାଞ୍ଛା କରି ସର୍ବଦା ତାହା ପାଇ ॥
ନାନା ମଉଷଧି ଅଛି ଯେ ତଦନ୍ତ ନ ଜାଣି ।
ପୂର୍ବେ ଋଷିଗଣେ ଯେ ସମ୍ପାଦି ଛନ୍ତି ଆଣି ॥୧୦୦
ଅଷ୍ଟଧାତୁ ଉପୁଜଇ ଧନ୍ୟ ସେହୁ ଗିରି ।
ହୀରା ଲୀଳା ମାଣିକ୍ୟ ଯେ ସୁବର୍ଣ୍ଣ ଆଦିକରି ॥
ଅପୂର୍ବ ବୃକ୍ଷମାନ ଯେ ଅନେକ ତହିଁ ଅଛି ।
ସପୁରୀ ସଙ୍ଗତେଣ ସେ ଦାରାକ୍ଷ ପନ୍ତି ପନ୍ତି ॥
ବକୁଳ ପୁଷ୍ପ ଫଳ ଦିଶନ୍ତି ଗୋଟା ଗୋଟା ।
କି ଅବା ଅଟଇ ସେ କାମଦେବର କେଳିତୋଟା ॥
ଶୁକ ଶାରୀମାନେ ଯେ ଉଡ଼ନ୍ତି ଯୂଥ ଯୂଥ ।
କେବଣ ଠାବରେ ଅଛନ୍ତି ପାରୁଆ ବହୁତ ॥
ଶେତ ନେଉଳ କାହିଁ ଯେ ଖେଦା ଖେଦା ହୋଇ ।
ଭୂମି ଖୋଳିଣ କେହୁ ଆହାର ଭକ୍ଷଇ ॥୧୦
ଉଈ ଟାଙ୍କୁମାନ କାହିଁ ଭକ୍ଷଇ ଭାଲୁକ ।
କେବଣ ଠାବରେ ଯେ ଅଛନ୍ତି କଣ୍ଟା ଝାଙ୍କ ଝାଙ୍କ ॥
କାହି ଅଜଗରେ ପିଅନ୍ତି ପବନ ।
କାହିଁ ହସ୍ତୀମାନେ ଯେ କରନ୍ତି ଗରଜନ ॥
ମାତଙ୍ଗ ଫଳମାନେ ପଡ଼ି ଭୂମିରେ ଗଡ଼ନ୍ତି ।
ଶୁଖିଲା ପତ୍ର ପଡ଼ି ପବନେ ଉଡ଼ନ୍ତି ॥
ଜେଉଟ ଗଛେ ବସି ଶାରୀ ଶୁଆ ଡାକେ ।
ବଟବୃକ୍ଷ ଉପରେ ଯେ ବସିଛନ୍ତି ବକେ ॥
ପୁଷ୍ପଲତା ତଳେ ପକ୍ଷୀ କରିଛନ୍ତି ବସା ।
କେତକୀ ମୁଣ୍ଡା ତଳେ ଶୋଇଛନ୍ତି ଶଶା ॥୨୦
କାଠକଟା ଚଢ଼ାଇ ଯେ ହାଣନ୍ତି ଚଢ଼ି ବୃକ୍ଷେ ।
ପଳାବନ୍ତି ଜମ୍ବୁକେ ହୋଇ କାଛେ କାଛେ ॥
ପର୍ବତ ଉପରେ ମୟୂରେ ଡାକ ଦେନ୍ତି ।
ଚୂତ ବନେ ପଶିଣ ଯେ କୋକିଳ ଡାକନ୍ତି ॥
ସିଙ୍ଗର ଖୋଳମାନ କାହିଁ ଅଛି ପଡ଼ି ।
ଡାଳିମ୍ବ ଫଳ ପାଚି ଭୂମିରେ ଅଛି ପଡ଼ି ॥
ବନ ଦେଖି ରଘୁନାଥ ପ୍ରଶଂସନ୍ତି ବହୁତ ।
ସାଧୁ ମହିମା ଯେ ଅପୂର୍ବ ବନସ୍ତ ॥
ହନୁମତ କହଇ ଯେ ଶୁଣିମା ଶ୍ରୀରାମ ।
ପୂର୍ବେ ଯେହୁ ବନ ହେ ଦୁର୍ଭାସାଙ୍କ ଆଶ୍ରମ ॥୩୦
ମୁନିଙ୍କର ଶ୍ରେଷ୍ଠ ଯେ ଅଟନ୍ତି ଦୁର୍ଭାସା ।
ଅନେକ କାଳ ଯେଥେ କରିଥିଲେ ବସା ॥
ନାନା ବୃକ୍ଷ ରୋପିଣ ଯେ ଆପଣା ନାମ ଦେଲେ ।
ତେଣୁ ସେ ଯେ ପର୍ବତ ଋଷିମୁଖ ବୋଲାଇଲେ ॥
ଆଦ୍ୟରେ ଯେ ପର୍ବତର ତପଶାଳୀ ନାମ ।
ତପୀମାନଙ୍କର ଅଟଇ ବିଶ୍ରାମ ॥
ଯେଥୁ ଅନନ୍ତରେ ତହିଁ ପଥ ବହିଯାନ୍ତି ।
ସୁଗ୍ରୀବର ନିକଟେ ଯାଇ ପ୍ରବେଶ ହୁଅନ୍ତି ॥
ହନୁମତକୁ ପଠାଇ ସେ ଆଦିତ୍ୟର ସୁତ ।
ବିମ୍ବର ଭିତରେ ସେ ହୋଇଲା ଉପଗତ ॥୪୦
ଶ୍ରୀରାମ ବିମ୍ବର ଦ୍ୱାରେଣ ଯାଇ ମିଳି ।
ମୁନିଗଣ ଦେଖିଣ ଯେ ଗୁପତ ବାଣୀ ଭାଳି ॥
ଯେମନ୍ତ ସମୟେ ହନୁ ମିଳିଲାକ ଯାଇ ।
କିମ୍ପା କପିରାଜ ତୁମ୍ଭେ କନ୍ଦରେ ଅଛ ରହି ॥
ଆବର ଭୟେଭୀତି ଯେ ଅଛଇ କାହାକୁ ।
ବ୍ରହ୍ମାଦି ଶଙ୍କର ଯେ ପୂଜନ୍ତି ଯାହାକୁ ॥
ଯୋଗୀଜନମାନେ ଯାହାର ଚରଣ ତଳେ ପଡ଼ି ।
ସେ ପ୍ରଭୁ ଆସିଛନ୍ତି ଯେ କଷ୍ଟ ତୋର ଫେଡ଼ି ॥
ଯେବଣ ସ୍ୱପନ ଯେ ଦେଖିଲୁ ଆଜ ନିଶି ।
ସେ ତହିଁର ଫଳ ତୋତେ ପ୍ରାପତ ହୋୟେ ଆସି ॥୫୦
ବାହାର ତୁ ବିମ୍ବରୁ ଯେ ଲୁଚିଛୁ କାହିଁ ପାଇଁ ।
ଅମୃତ ଭୁଞ୍ଜିବାକୁ ଯେ ଶୁଚିବନ୍ତ କାହିଁ ॥
ଶୁଣିଣ ସୁଗ୍ରୀବର ପରମ ସାନନ୍ଦ ଚିତ୍ତ ।
ମନ୍ତ୍ରୀଗଣ ବୋଇଲେ ହୋ ଅଇଲେ ରଘୁନାଥ ॥
ଯେସନ ବୋଲିଣ ସେ ଦିବ୍ୟ ବେଶ ହୋଇ ।
ଶ୍ରୀରାମ ଛାମୁରେ ସେ ମିଳିଲେ ସର୍ବେ ଯାଇ ॥
ଦୂରହୁଁ ଦେଖିଣ ସେ ଶିରରେ ହସ୍ତ ଦେଲେ ।
କରପତ୍ର ଯୋଡ଼ିଣ ସେ ନିସ୍ତରିଲୁ ବୋଇଲେ ॥
ତାରାକ୍ଷ ଜମ୍ବେବ ଗନ୍ଧ ମାରଦନ ।
ହନୁମତ ସୁଷେଣ ଘେନିଣ ଅଟନ୍ତି ପାଞ୍ଚଜଣ ॥୬୦
ସେମାନେ ଶ୍ରୀରାମର ଚରଣେ ନମିଲେ ।
ଶିରେ ହସ୍ତ ଦେଇଣ ବିନୟ ହୋଇଲେ ॥
ପଳାଶପତ୍ର ଆଣି ହନୁମତ ଦେଲା ।

ଯେଥେ ଭୋ ଶ୍ରୀରାମ ବସ ହୋ ବୋଇଲା ॥
ଆସନ ପାଇଣ ଯେ ବସିଲେ ରଘୁନାଥ ।
ଚନ୍ଦନ ଡାଳେକ ପୁଣି ଆଣି ହନୁମତ ॥
ଯେଥେ ସଉମିତ୍ରୀ ତୁମ୍ଭେ ବସ ହୋ
ବୋଇଲା ।
ଦେଖିଣ ସଉମିତ୍ରୀ ହରଷ ହୋଇଲା ॥
ଆସନ ପାଇଣ ଯେ ଶ୍ରୀରାମଚନ୍ଦ୍ର ବସି ।
ପାଞ୍ଚମନ୍ତ୍ରୀ ଘେନିଣ ସୁଗ୍ରୀ ନମିଲାକ
ଆସି ॥୭୦
ଆନନ୍ଦେ ଉତଶଲ୍ୟ ହୋଇଣ ସୁଗ୍ରୀବର ।
ଶ୍ରୀରାମ ମୁଖ ଚାହିଂଣ ବୋଲଇ ଉତ୍ତର ॥
କେବଣ କାରଣେ ଯେଥକୁ ଅଇଲ
ରଘୁନାଥ ।
ଅଯୋଧାରେ ନୃପତି ତୁମ୍ଭେ ଦଶରଥଙ୍କର
ସୁତ ॥
ଯେ ତୁମ୍ଭର କୀରତି ଯେ ଜଗତେ ବିଦିତ ।
ପାଦ ନାଗି ଗୁରୁମାତ ମୋର ପାଷାଣୁ ମୁକତ ॥
କଷ୍ଟ କି ମୋହୋର ନାଥ ଦେଖିବା
ନିମନ୍ତେ ।
ଯେଡ଼େ ଘୋର ଅରଣ୍ୟକୁ ଅଇଲୁ କି
ନିମନ୍ତେ ॥
ଶ୍ରୀରାମ କହନ୍ତି ଯେ ସୁଗ୍ରୀବର ବାଣୀ ଶୁଣି ।
ଯାହା ପଚାରିଲୁ ତୁ ଶୁଣ କପିକୁଳମଣି ॥୮୦
ପିତା ଦଶରଥ ମୋର ଅପୁତ୍ରକ
ହୋଇଥିଲା ।
ରଷ୍ୟଶୃଙ୍ଗ ମୁନି ଯେ ସନ୍ତତି ଚରୁ ଦେଲା ॥
ତେଣୁ ସେ ଚାରିପୁତ୍ର ହୋଇଲୁ ଆମ୍ଭେ
ଜାତ ।
କଉଶଲ୍ୟା କକୟା ସୁମେତ୍ରା ତିନିମାତ ॥
ଜ୍ୟେଷ୍ଠ ଶ୍ରୀରାମ ମୁଂ ଯେ କନେଷ୍ଟ ଭ୍ରଥ
ହୋଇ ।
ଲକ୍ଷଣ ଶତୃଘନ ଯେ ସୁମେତ୍ରା ତନଇ ॥
ତିନି ଜନନୀରୁ ଯେ ହୋଇଲୁ ଚାରିଭ୍ରାଥ ।
ବିଧାତା ବିଧାରିଣ କଲାକ ଯେଡ଼େ କୃତ ॥

ମିଥିଳା କଟକରେ ଜନେକ ନୃପତି ।
ସୀତ୍ୟା ନାମେ ତାହାଙ୍କର ଯେକଇ
ଦୋହିତୀ ॥୯୦
ରଦ୍ରଧନୁ ଥୋଇଣ ସେ ସତ୍ୟ କରିଥଲେ ।
ମୁହିଂ ଧନୁ ତୋଳିଲଇଂ ଦୋହିତା ମୋତେ
ଦେଲେ ॥
ଉର୍ମିଳା ନାମେଣ ତାଙ୍କର କନେଷ୍ଟ
ଦୋହିତା ।
ଲକ୍ଷ୍ମଣକୁ ବିଭା ଦେଲା ତପୋବନ୍ତା ॥
କୁଶଧ୍ୱଜ ନାମେ ଯେ ତାହାଙ୍କ ସାନଭାଇ ।
ଭ୍ରଥ ଶତୃଘନକୁ ଦେଲେ ଦୁଇଗୋଟି
ତନଇ ॥
ବିଭା ହୋଇ ଆମ୍ଭେ ଆସନ୍ତେ ନିଜ ଦେଶ ।
ବାଟରେ ଓଗାଳିଲେ ଯମଦଗ୍ନି ଶିଷ ॥
ତାହାକୁ ପ୍ରବୋଧିଣ ଯେ ଅଯୋଧା ଅଇଲୁ ।
କିଛିଦିନ ଆସି ଆମ୍ଭେ ଅଯୋଧାରେ
ଭୋଗକଲୁ ॥୧୦୦
ପିତା ଦଶରଥ ମୋର ବଶିଷ୍ଟ ଘେନି ଭାଳି ।
ମୋତେ ରାଜା କରିବା ବୋଲିଣ ମହୀଆଳି ॥
ସାବତ ଜନନୀ ଯେ ଅଟନ୍ତି କଯେକୟା ।
ଦଇବ ଯୋଗେ ସେ ଯେ ଚିନ୍ତିଲେ ମୋତେ
ମାୟା ॥
ସତ୍ୟ କରାଇଲେ ସେ ଯେ ପିତାଙ୍କର
ଆଗେ ।
ଚଉଦ ବରଷ ରାମ ଯିବ ବନମାର୍ଗେ ॥
ଭରଥ ରାଜା ହୋଇଣ ପାଳିବାକ ଦେଶ ।
ଶୁଣିଣ ଦଶରଥ ଯେ ପାଇଲେ ମନେ ପ୍ରାସ ॥
ପିତା ସତ୍ୟ ପାଳିଣ ମୁଂ ଅଇଲି ବନବାସୀ ।
ସ୍ନେହଭରେ ଗୋଡ଼ାଇ ଲକ୍ଷ୍ମଣ ସୀତ୍ୟା
ଆସି ॥୧୦
ମୋତେ ନ ଦେଖିଣ ପିତା ଦଶରଥ ମଲେ ।
ଭ୍ରଥ ହିଂ ଅଯୋଧାରେ ଆଉ ନୃପତି
ନୋହିଲେ ॥
ଦଶବରଷ ଆମ୍ଭେ ଯେ ବୁଲିଲୁ ନାନା
ବନେ ।

ଅଗସ୍ତି ମୁନି ମୋତେ କହିଲେ ପ୍ରସନେ ॥
ଭଲ ସ୍ଥାନ ଅଟଇ ରହ ଯା ଗୋଦାବରୀ
କୂଳ ।
ଦଣ୍ଡକାଅରଣ୍ୟ ଯେ ପଞ୍ଚୁବଟୀ ବୃକ୍ଷ ତଳ ॥
ତେଣୁ ମୁଂ ସେଠାରେ ଯେ ବସା କରିଥିଲି ।
ଅପୂର୍ବ ସୁବର୍ଣ୍ଣର ମୃଗେକ ଦେଖିଲି ॥
ସୀତୟା ମାଗନ୍ତେ ମୁଂ ଗଲି ତାକୁ ମାରି ।
ମାୟାରେ ରାବଣ ଯେଣେ ସୀତ୍ୟାକୁ ନେଲା
ହରି ॥୨୦
ତେଣୁ ଦୁଃଖୀ ହୋଇଣ ବୁଲଇ ବନସ୍ତରେ ।
ସୀତୟା ଲୋଡ଼ନ୍ତେ ମୁଂ ଯେ ମିଳିଲି
ଯେଠାରେ ॥
ହନୁମନ୍ତ କହିଲା ଯେ ତୁମ୍ଭର କଷ୍ଟ କଥା ।
ଶୁଣିଣ ଆତ୍ମାକୁ ମୋର ଲାଗିଲା ବଡ଼ ବ୍ୟଥା ॥
ଜେଷ୍ଟ ଭାଇ ତୁମ୍ଭର ଯେ ଭାରିଯାକୁ
ନେଲା ।
ଆବର ସେ ରାଜ୍ୟରେ ତୋତେ ନ ରଖିଲା ॥
ତେଣୁ ସେ ସୁଗ୍ରୀବର ହେ ଯେଠାକୁ
ଅଇଲି ।
ଦୁଃଖୀ ଦୁଃଖୀ ଦେଖାଦେଖି ହୋଇବି
ବୋଇଲି ॥
ମୋହୋର ସମାନେ ତୁମ୍ଭେ ହୋ ଅଟ
ମହାକଷ୍ଟୀ ।
ଯୋଗେଣ ବିଧାତା ଆଣିକଲା ଯେକ
ଗୋଷ୍ଠୀ ॥୩୦
ତୁ ତ ରାଜକୁମାର ହୋ ଆଦିତ୍ୟର ସୁତ ।
ମୁହିଂ ସୂର୍ଯ୍ୟବଂଶେ ରାଜା ଦଶରଥ ପୁତ୍ର ॥
ତୁମ୍ଭେ କିଷ୍କିନ୍ଧ୍ୟାର ଠାକୁର ମୁଂ ଅଯୋଧାର
ପତି ।
ଜ୍ୟେଷ୍ଟ ଭାଇ ତୁମ୍ଭର ଯେ ହରିଲା ବିଭୂତି ॥
ମୋତେ କୋପ କଲେଯେ ସାବତ
ଜନନୀ ।
ବନବାସ କଲି ମୁଂ ଯେ ଭାରିଯା ଭାଇ
ଘେନି ॥

ତୁମ୍ଭେ ବନେ ଅଛ ଯେ ଘେନିଣ ମନ୍ତ୍ରୀଗଣ ।
ମୋହୋର ସଙ୍ଗେ ଭାଇ ଯେକଇ ଲକ୍ଷ୍ମଣ ॥
ତୁମ୍ଭର ଭାରିଯାକୁ ଯେ ଜ୍ୟେଷ୍ଠଭାଇ ହରି ।
ମୋହୋର ଘରଣୀକି ରାବଣ ନେଲାକ ଚୋରିକରି ॥୪୦
ଯେକା କର୍ମ ସୁଗ୍ରୀ ହୋଇଲା ଦୁହିଂକରି ।
କର୍ମବଳେ ମଯେତ୍ର ତୁ ସେ ହୋଇଲ ମୋହରି ॥
ନିଷ୍ଚଯେ ମୁହିଂ ଯେବେ କ୍ଷେତ୍ରୀ କୁଳେ ଜାତ ।
ତୁମ୍ଭର ଶତ୍ରୁ ସାଧିଣ ଦେବଇଂ ହୋ ମୈତ୍ର ॥
ଯେତେ ବୋଲି ଶ୍ରୀରାମ ଯେ କୋଦଣ୍ଡ ତଳେ ଥୋଇ ।
କର ପ୍ରସାରିଣ କୋଳ କରିତେ ଉଭାହୋଇ ॥
ଦେଖିଣ ସୁଗ୍ରୀବର ଯେ କମ୍ପଇଂ ଥରହର ।
ମୋ ଛାର ଭାର୍ଜନ କି ଛୁଇଂତେ ତୋ ଶରୀର ॥
ଲକ୍ଷ୍ମଣ ଜମ୍ଭେବ ବୋଇଲେ ଉଠ ହୋ ସୁଗ୍ରୀବର ।
ଶ୍ରୀରାମ ଆଗ୍ୟାଂ ତୁମ୍ଭେ ଯେ ବିଅର୍ଥ ନକର ॥୫୦
ତୁହି ସୂର୍ଯ୍ୟଙ୍କର ପୁତ୍ର ଅଯୋନିରେ ଜାତ ।
ତେଣୁଟି ଦୟା ତୋତେ କଲେକ ରଘୁନାଥ ॥
ଶୁଣିଣ ସୁଗ୍ରୀବର ସଲଜ୍ଜିତ ହୋଇ ।
ଶ୍ରୀରାମଙ୍କୁ କୋଳ କଲା ପରମ ସୁଖ ପାଇ ॥
ଶ୍ରୀରାମ ଆଗ୍ୟାଂ ଦେଲେ ଆଙ୍କୁଂ ମୋର ମୈତ୍ର ।
ଲକ୍ଷ୍ମଣ ଜମ୍ଭେବ ହନୁ ଶୁଣିମା ସମସ୍ତ ॥
ଯେତେ ଦିନ ଯାଯେ ମୋର ଥିବଟି ଜୀବନ ।
ତୁମ୍ଭର ଆମ୍ଭରଟି ନୋହିବ ଅନ୍ୟ ମନ ॥
ଶୁଣ ବାବୁ ଲକ୍ଷଣ ଯେ ମୋହର ବଚନ ।
ତ୍ରୋଣୁ ବାଣ କାଢ଼ିଣ କରସି ହୁତାଶନ ॥୬୦
ଅଗ୍ନି ଜାଳିଣ କରିବା ଯେ ବିଧି ବିଧାନ ।
ହୁତାଶନ ଜାଳ ଆମ୍ଭେ କରିବା ନିୟମ ॥
ଶୁଣିଣ ଲକ୍ଷଣ ଯେ ଅଗ୍ନିଶର କାଢ଼ି ।
ଅନଳ ଜାଳିଲେ ସେ ବୈଶ୍ୟାନର ମନ୍ତ ପଢ଼ି ॥
ହନୁମତ ଆଣିଲା ଯେ ବୃକ୍ଷରୁ ଫଳ ତୋଳି ।
ପୁଷ୍ପ ବୃଷ୍ଟି କରନ୍ତି ଜମ୍ଭେବ ଦୁହିଂଙ୍କ ମଉଳି ॥
ସୁଷେଣ ମନ୍ତ୍ରୀ ଯେ ପଢ଼ନ୍ତି ମଙ୍ଗଳ ।
ତାରାକ୍ଷ ଆଣିଲେ ଯାଇଣ ଚୂତ ଡାଳ ॥
ଗନ୍ଧମାର୍ଦ୍ଦନ ଘୋରି ଆଣିଲେ ଚନ୍ଦନ ।
ସୁଗ୍ରୀ ଶ୍ରୀରାମ ଅଙ୍ଗେ କରନ୍ତି ଲେପନ ॥୭୦
ହୁତାଶନକୁ ଚାହିଂଣ ବୋଲନ୍ତି ଶ୍ରୀରାମ ସୁଗ୍ରୀବର ।
ତୁମ୍ଭେ ସାକ୍ଷୀ ହୋଇଥିବ ହେ ବୈଶ୍ୟାନର ॥
ଆଜହୁଂ ଯେତେ ଦିନ ଥିବ ଆମ୍ଭ ଦେହ ।
ଯେକୁ ଆରେକ ଯେ ନ ଛାଡ଼ିବୁ ସ୍ନେହ ॥
ତିଳ ପ୍ରମାଣେ ଯେବେ ଥିବ ମାୟା ।
ତଥାପି ଯେ ଦୁଇ ଲୋକେ ନ ଧରିବୁ କାୟା ॥
ଯେକର କାର୍ଯ୍ୟ ଯେବେ ଆରେକ କରିବୁଂ ।
ଲେଉଟିଣ ଆମ୍ଭେ ଅଗ୍ନି ଜାଳିଣ ମରିବୁ ॥
ଯେତେ ବୋଲି ବେନିଜନେ ସମ୍ଭାଷଣ ଛାଡ଼ି ।
ଯେକ ଆସନ ହୋଇ ବସିଲେ ପୁଣ ମାଡ଼ି ॥୮୦
ସ୍ୱର୍ଗରେ ଦେବଗଣେ ଦେଖିଣ ହରଷ ।
ଜୟ ଜୟ ଧ୍ୱନି କରି ବରଷିଲେ ପୁଷ୍ପ ॥
ବ୍ରହ୍ମା ସହିତେଣ ଯେ କରନ୍ତି ବିଚାର ।
ଯେବେ ସେ କଷ୍ଟ ହୋ ସରିଲା ଦେବଙ୍କର ॥
ଆନନ୍ଦେ ସୁରପୁରେ ନୃତ୍ୟ ଗୀତ କରି ।
ରମ୍ଭା ଆଦିକରି ଯେତେକ ଅପକ୍ଷରୀ ॥
ଶ୍ରୀରାମ ସୁଗ୍ରୀବର ହୋଇଲେ ଯହୁଂ ମୈତ୍ର ।୯୦
ଦେଖିଣ ଦେବଗଣ ଯେ ହରଷ କଲେ ଚିତ୍ତ ॥
ଯେଥୁଅନନ୍ତରେ ଶୁଣିମା ହେମବନ୍ତର ଦୋହିତା ।
ରାଘେବ ବାନରେଶ୍ୱର ହୋଇଲେ ଯହୁଂ ମୈତ୍ର ॥
ହନୁମନ୍ତ ବୋଇଲା ଯେ ଶ୍ରୀରାମ ମୁଖ ଚାହିଂ ।
ଯେ ଯେ ସୁଗ୍ରୀବର କିଷ୍କିନ୍ଧ୍ୟାର ସାଇଂ ॥
ଯେ ତୋର ଚରଣେ ଶରଣ ସୁଗ୍ରୀବର ନୃପତି ।
ପାଇବ ନିଜ ରାଜ୍ୟ ଯେ ବଢ଼ିବ ବିଭୂତି ॥
ଯେହାର ଭାଗ୍ୟକୁ ଧାତା ଯେ ନିକଟ କଲା ଆଣି ।
ତେଣୁ ସେ ଯେଥକୁ ଯେ ଅଇଲେ ଚାପପାଣି ॥
ଲକ୍ଷଣ ବୋଇଲେ ଯେ ହନୁମତର ବୋଲେ ।
ଯେ ଶ୍ରୀରାମର ଯେବେ କେହି ନାହିଂ ତୁଲେ ॥
ରଥ ଗଜ ଅଶ୍ୱ ଯେ ପାଦାନ୍ତି ବଳ ଛାଡ଼ି ।
ବନେ ବୁଲୁଛନ୍ତି ଯେ ଦେଶ ଗ୍ରାମ ଛାଡ଼ି ॥୧୦୦
ଯେହାକୁ କେହି ତୁମ୍ଭେ ଯେ ନ ମଣିମ ସାନ ।
ଯେ ସେ ରଘୁନାଥ ଯେ ଦେବଙ୍କ ମୁକ୍ଷପାନ ॥
ରଘୁବଂଶ ତିଳେକ ଯେ ଅଯୋଧ୍ୟାର ନାଥ ।
ଅନେକ କାର୍ଯ୍ୟ ପୁଣ ହୋଇବ ଯେହାଙ୍କର ହସ୍ତ ॥
ଉତ୍ତମ ଯଶ ରାମଙ୍କୁ ସଂସାରେ ଶୁଭିଲା ।
ସତ୍ୟଶୀଳ ବୋଲିଣ ଯେ ଧାତାହିଂ ବୋଇଲା ॥
ସୀତ୍ୟା ଘେନି ଅଯୋଧ୍ୟାରେ ଭୋଗ କଲେ ଅନେକ ।
ଦଇବ ଯୋଗେ ଦୁଃଖ ପାଇଲେ ଶ୍ରୀରଘୁନାଯେକ ॥

ଦେବେ ଯାହାକୁଟି ସ୍ୱାମୀ ବୋଲି କହି ।
କର୍ମର ଅବଳେ ଯେବେ ସୁଗ୍ରୀକି
ଚାଟୁଆଇ ॥୧୦
ବାଳୀର ସାନ ଯେ ବୋଲଇ ଯେହା ଶୁଣି ।
ଭୋ ଲକ୍ଷଣ ଯେହା ମୁଂ ଯେ ପୂର୍ବେ ଅଛି
ଜାଣି ॥
ଯେ ରାମ ତ୍ରୈଲୋକ୍ୟର ଅଟନ୍ତି ଅଧିକାରୀ ।
ଅବତାର ହୋଇଛନ୍ତି ଅସୁରବଳ ମାରି ॥
ଯଉଂଦିନେ ବାଳୀ ଯେ ଘଉଡ଼ି ମୋତେ
ଦେଲା ।
ଭାରିଯା ଆଦି ମୋର ସମ୍ପତ୍ତି ଘେନିଲା ॥
ନିରାଶେ ଉପବାସେ ମୁହିଂ ଶୋଇଥିଲି ।
ଜୀଇଂଥାଇ ଆଉ କିସ କରିବି ବୋଇଲି ॥
ବାଳୀକି ଜିଣିତ ମୁଂ ନୁହଇ ଭାର୍ଜନ ।
ବିଚାର କଲି ନିଶ୍ଚେ ତେଜିବି
ଜୀବନ ॥୨୦
ସୂର୍ଯ୍ୟ ଦେବତା ଆସି ମୋତେ ପ୍ରସନେ
କହିଲେ ।
କିଷ୍କିନ୍ଧ୍ୟାରେ ନିଶ୍ଚେ ରାଜା ହୋଇବୁ
ବୋଇଲେ ॥
ଯେବେ ପୁତ୍ର ତୁରେ ନ ଧର ଦୁଃଖ ମନ ।
ଗୁପତେଣ ରହିଥାଅ ରଷିମୁଖ ବନ ॥
ଶ୍ରୀରାମ ନିଶ୍ଚୟେ ବାବୁ ଯେଥକୁ ଆସିବେ ।
ବାଳୀକି ମାରିଣ ତୋତେ ରାଜ୍ୟ ଭାର
ଦେବେ ॥
ସେହିଦିନୁ ଯେ ବନେ ମୁଂ ନିଶ୍ଚିନ୍ତେ ରହିଲି ।
ଯେତେ କାଳେ ଶ୍ରୀରାମକୁ ଭେଟ ମୁଂ
ପାଇଲି ॥
ଦୁଃଖୀଜନବନ୍ଧୁ ଯେ ଅଟନ୍ତି ମୁରାରି ।
ଯେହାକୁ ଦୁଃଖ ବିହି ଯେ ବିହିଲା କେହ୍ନେ
କରି ॥୩୦
ଚାଣ୍ଡାଳ ରାବଣ ସେ ଭରସା ଯେଡ଼େ
କଲା ।
କାଳସର୍ପ ମୁଖେ ନେଇ ଅଙ୍ଗୁଳି ଭରିଲା ॥

ଯେବଣ ଦିନେ ରାବଣ ସୀତ୍ୟାକୁ ନେଲା
ହରି ।
ଆକାଶ ମାର୍ଗେ ରଥ ଯେ ବାହାଇ ଦଶଶିର ॥
ଦକ୍ଷିଣ ଦିଗକଇ ବାହାଇ ଘନ ଘନ ।
ଯେକ ଯୁବତୀ ତହିଂ ବସି କରଇ ରୋଦନ ॥
ଶ୍ରୀରାମ ଲକ୍ଷଣଙ୍କୁ ଯେ ସୁମରଇ ବାଳୀ ।
ଶୁଣିଣ ବନଜୀବେ ହୋଇଲେ ବିକଳି ॥
ବିଜୁଳି ତେଜ ଜାଣି ରୂପ ବିରାଜଇ ତାଙ୍କର ।
କଳାମେଘୁଂ ଚନ୍ଦ୍ରକି ସେ ହୋଇଲା
ବାହାର ॥୪୦
ରାବଣର ରଥେ ଶୋଭା ଦିଶଇ
ମହାସ୍ୟତୀ ।
ଶବଦ ଶୁଣିଣ ମୁଂ ଚାହିଂଲି ଉର୍ଧଗତି ॥
ଆମ୍ଭଙ୍କୁ ଦେଖିଣ ବାଳୀ ଅନେକ
ଶୋକକଲା ।
ଶ୍ରୀରାମ ଘରଣୀ ମୁଂ ବୋଲିଣ ଡାକ ଦେଲା ॥
ମୋତେ ଘେନି ବନବାସ କଲେ ମୋର
ପ୍ରଭୁ ।
ଦଶରଥ ରାଜାର ମୁଂ ଅଟଇ କୁଳବଧୂ ॥
ତିନିବରଷ ଆମ୍ଭେ ବଞ୍ଚିଲୁ ପଞ୍ଚୁବଟୀ ।
ଅପୂର୍ବ ଦେଖିଲି ମୁଂ ସୁବର୍ଣ୍ଣ ମୃଗଗୋଟି ॥
ତାହାକୁ ସ୍ୱାମୀ ମୋର ଯାଇଛନ୍ତି ମାରି ।
ଯେକା ଦେଖି ରାବଣ ମୋତେ ନେଉଅଛି
ହରି ॥୫୦
ଯେତେ ବୋଲି ଶ୍ୟରୀରୁ ସେ ଅଳଙ୍କାର
କାଢ଼ି ।
ଆବର କାଢ଼ିଲେ ଶ୍ୟରିରୁ ଅମଳାଣ ଶାଢ଼ୀ ॥
ସେ ବସ୍ତ୍ରେ ବାନ୍ଧିଣ ଅଳଙ୍କାର ମାନ ।
ତଳକୁ ପକାଇଲେ ସେ ସୁମରି ଶ୍ରୀରାମ ॥
ସେ ବସ୍ତ୍ର ଅଳଙ୍କାର ଅଛଇ ମୁହିଂ ଥୋଇ ।
ତୁମ୍ଭର କହିବାରେ ଯେବେ ଜାଣିଲି
ଗୋସାଇଂ ॥୬୦
ଯେତେ କହି ସୁଗ୍ରୀବର ବିମ୍ବରେ ପଶିଲା ।
ବସ୍ତ୍ର ଅଳଙ୍କାର ଘେନି ବାହାର ହୋଇଲା ॥

ଶ୍ରୀରାମ ଛାମୁରେ ସେ ଦେଲା ତାହା ନେଇ ।
ଉଠିଣ କରେ ତାହା ଘେନିଲେ ଶ୍ରୀରାମ
ଗୋସାଇଂ ॥
ହିୟାରେ ଲଗାଇଣ ଶ୍ରୀରାମ ଶୋକ କଲେ ।
କମଳଦଳନୟନୁ ଅଶ୍ରୁଜଳ ପକାଇଲେ ॥
ହା ହା ସୀତୟା ବୋଲିଣ ଉଚ୍ଚେଣ ଡାକ
ଦେନ୍ତି ।
ଭୂମିରେ ପଡ଼ିଣ ସେ ବିକଳ ରଘୁପତି ॥
ସୁଗ୍ରୀବର ଧାଇଂଣ ଧଇଲାକ କୋଳେ ।
କେଣେ ଗଲୁ ସୀତ୍ୟା ବୋଲି ରୋଦନ୍ତି
ବିକଳେ ॥
ନିରାଶ କରି କିମ୍ପା ଛାଡ଼ିଗଲୁ ମୋତେ ।
ଆର କାହିଂ ଭେଟ ମୁଂ ପାଇବଇଂ
ତୋତେ ॥
ଅରଣ୍ୟ ମାଳତୀ ପ୍ରାୟେକ ହୋଇଲୁ ।
ଦୁଃଖର କାଳେକି ମୋତେ ଛାଡ଼ିଣ
ପଳାଇଲୁ ॥୭୦
ବସ୍ତ୍ର ଅଳଙ୍କାର କିମ୍ପାଇଂ ପକାଇଣ ଗଲୁ ।
ତେଣେ ସେ ସଖି ହାଦେ ନିରାଶ ମୋତେ
କଲୁ ॥
ମନ ମୁଚ୍ଛିଣ ଥିଲି ମୁଂ ଯେ ନ ପାଇଣ ଚିହ୍ନ ।
ଯେବେ ଯେହା ଦେଖିଲି ନିଶ୍ଚେ ହାରିବି
ଜୀବନ ॥
ମଲା ଗଲା ବୋଲିଣ ମୁଂ ଯେ ଥିଲଇଂ ମନ
ମୂର୍ଛି ।
ଯେବେ ଜାଣିଲି ନିଶ୍ଚୟେ ମୋର ସଖୀ
ଜୀଇଂଅଛି ॥
ଅତୁଶୀ କୁସୁମରୁ ସୁକୁମାର ଯେ ତୋହୋର
ଅଙ୍ଗ ।
ରୂପ ଦେଖିଣ ତୋର ଢଳିବେ ଅନଙ୍ଗ ॥
ରସାଣ ସୁବର୍ଣ୍ଣ ପ୍ରାୟେ ତୋହୋର ଦେହ
କାନ୍ତି ।
ନୀଳ ଉତ୍ପଳ ନୟନ ଦଶନ କ୍ଷୁଦ୍ର
ମୋତି ॥୮୦

ସର୍ବ ସୁଲକ୍ଷଣୀ ତୋତେ ମୁଁ ବାଉନିବି କିସ ।
କୃଷ୍ଣ ଚାମର ଜାଣି କୁଟିଳ ତୋର କେଶ ॥
ମତ୍ତଗଜ ଗମନୀ କୋକିଳ ତୋର ବାଣୀ ।
ଯେକା କରି କେଣେ ଛାଡ଼ିଗଲୁ ସଂଘାତୁଣୀ ॥
ଯେ ଜନ୍ମେ ତୋତେ କାହିଁ ପାଇବଇଂ ଭେଟ ।
ବାବୁ ବିଧାତା ହୋ ବିହିଲୁ ଯେତ୍ତେ କଷ୍ଟ ॥
ବସ୍ତ୍ର ଫେଡ଼ିଣ ରାମ ଦେଖନ୍ତି ଆୟେମାନ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିକି ହୋଇଲେ ଯେକ ସ୍ଥାନ ॥
ନବରତ୍ନମାନେ ନବ ଗ୍ରହଙ୍କର ଜ୍ୟୋତି ।
ଶ୍ରୀକରେ ଘେନିଣ ତାହା ଶ୍ରୀରାମ ବାହୁନନ୍ତି ॥୯୦
ସାତ ବାରମାନଙ୍କୁ ସାତ ଆଭରଣ ।
ଦିନକର ଆଭରଣ ନେଲେ ଯେ ଗୟାର ବ୍ରାହ୍ମଣ ॥
କାପ ତଡ଼କୀ ଯେ ସୀମନ୍ତି ମୋତିମାଳି ।
ରତ୍ନ ଓଡ଼ିଆଣି ସେ ଯେ କଟିରେ ମେଖଳି ॥
ତାଡ଼ ସରଳ ଯେ ବାହୁର କଙ୍କଣ ।
ନୂପୁର ମୁଦ୍ରିକା ଯେ ମଣିରାଜ ଆଭରଣ ॥
ଶିକଳି ବିଦମାଳି ଯେ ଯାଉଂଳି ସୁନା ସୂତା ।
ନୀଳ ମାଣିକ୍ୟ ଯେ ବ୍ରତୁଳ ମୁକୁତା ॥
ଗୋଡ଼ର ଝୁଣ୍ଟିଆ ଯେ ହସ୍ତର ରତ୍ନମୁଦି ।
ଦେଖିଣ ଶ୍ରୀରାମ ଅଙ୍ଗେଣ ଅନଙ୍ଗ ମର୍ମେ ମର୍ମେ ଭେଦି ॥୧୦୦
ସ୍ଥାନମାନ ଶୋଭା ହୃଦୟରେ ବିଚାରନ୍ତି ।
ପଦାର୍ଥମାନ ଫେଡ଼ିଣ ସେ ପୁଣ ପୁଣ ଦେଖନ୍ତି ॥
ମନ ଚକ୍ଷୁ ଧ୍ୟାନ କରିଣ ସୀତୟା ରୂପ ଚିନ୍ତି ।
ମନେ ମନେ ଗୁଣିଣ ଯେ ବିକଳ ହୁଅନ୍ତି ॥
ଭୋ ସଖି ଜାନେକୀ ଗୋ ଜନେକ ଦୋହିତା ।
ସର୍ବଗୁଣେ ସୁଲକ୍ଷଣୀ ଗୋ ନାମ ତୋର ସୀତ୍ୟା ॥
ଯେ ରତ୍ନ ଅଳଙ୍କାର ତୋତେ ସେ ଶୋହୋଇ ।

ଅନ୍ୟ ଛାର ଭାର୍ଯନ ଗୋ ଯେଥକୁ ନୁହଇ ॥
କିମ୍ବା ଆଭରଣ ଯେ ପକାଇଗଲୁ ସଖି ।
ଅଲଗା ଦିଶୁଥିବ ମୋର ଶରଦ ଚନ୍ଦ୍ରମୁଖୀ ॥୧୦
କେବଣ ଭୁବନେ ତୁ ପଶିଲୁ ସଖୀ ଯାଇ ।
ଯେତେବେଳେ ବସିଥିବୁ କାହାର ସଙ୍ଗେ ତୁହି ॥
କେ ତୋହୋର ମନ ଘେନି ଚାଟୁ କହୁଥିବ ।
କୋପ କଲେ କେହୁ ତୋର ହସିଣ ଦିନ ନେବ ॥
କାହାର ସଙ୍ଗେ ତୁ ଗୋ କରୁଥିବୁ ଖେଳ ।
କେ ତୋର ଶୁଣୁଥିବ ଅମୃତ ସମ ବୋଲ ॥
କିମ୍ବାଇ ସଖି ଗୋ ଛାଡ଼ିଣ ଗଲୁ ମୋତେ ।
ମୁହିଁ ତ କିଛି ଦୋଷ କରିନାହିଁ ତୋତେ ॥
ଜନେକ ମହାମୁନି ଯେ ଦେଲେ ଶୁଦ୍ଧ ମନେ ।
ତେଣୁ ସେ ସ୍ନେହଭରେ ଆଣିଲି ତୋତେ ବନେ ॥୨୦
ଯେବେ ହରାଇଲି କନେକ ମୃଗ ପାଇଂ ।
ଆବର ସଖି ତୋତେ ମୁଁ ପାଇବଇଂ କାହିଁ ॥
ଗୁଣ ବାଉନିଣ କନ୍ଦନ୍ତି ରଘୁନାଥ ।
ବୁକୁରେ କୋଡ଼ନ୍ତି ଆପଣା ବେନିହସ୍ତ ॥
ଲକ୍ଷଣ ଧରିଛନ୍ତି କୋଳାଗ୍ରତ କରି ।
ହନୁମତ ଅଛଇ ଯେ ଚରଣ ଦୁଇ ଧରି ॥
ସୁଗ୍ରୀବର ତିଆରଇ ଦେବ ନୁହ ତୁ ବିକଳ ।
ମାୟାର ପାତନା ଯେ ସଂସାର ଭବଜଳ ॥
ଦଇବର ଛନ୍ଦ ଯେ ବିଧାତା ଯେହା କଲା ।
ଦର୍ପଣ ଛାୟାମତ ଦେଖାଇ ହରିଲା ॥୩୦
ସୃଷ୍ଟିକି ସରଜଇସେ ସ୍ୱପ୍ନର ସଂଯାତ ।
ଯେ ଦେହ ହାଡ଼ ଚର୍ମ ମାଂସ ଯେ ରକତ ॥
ପୃଥ୍ୱି ଆପ ତେଜ ବାୟୁ ଯେ ଆକାଶ ।
କାଳେଣ ଯାନ୍ତି ଯେ ଯେ ଯାହାର ବାସ ॥
ଦୁଃଖ ସୁଖ ଦୁଇ ଯେ ଭରିଣ ଦେହ କଲା ।

ପ୍ରାଣ ଧରି ଯେଥେ କେହି ତ ନୋହିଲା ॥
ଲୋଭ ମୋହ କାମ କ୍ରୋଧ ଆବର ଛନ୍ଦ ବନ୍ଧ ।
ନୋହଇଟି ସତ୍ୟ ଯେ ମାୟାରେ ମିଛ ଛନ୍ଦ ॥
କେ କାହାର ଭାରିଯା କେ କାହାର ପତି ।
କେ କାହାର ତନୟେ କେ କାହାର ଦୋହିତୀ ॥୪୦
କେ କାହାର ପିତା କେ କାହାର ମାତ ।
କେ କାହାର ବାନ୍ଧବ କେ କାହାର ସାଥ ॥
ଆପଣାର ବିନୁ ଯେଥେ ଅନ୍ୟ ନାହିଁ କେହି ।
ଇଷ୍ଟ ବନ୍ଧୁ କୁଟୁମ୍ବ ଯେ ଯାହାର ସେହି ॥
ଯେତେ କାଳ ପୁରୁଷର ବୟସ ବଳ ଥାଇ ।
ସମସ୍ତେ ବୋଲନ୍ତି ମୋହର ଭାଇ ଭାଇ ॥
ଧନ ନ ଥିଲେ ସେ ଲେଛନ୍ତି ପୁତ୍ର ନାରୀ ।
ନିନ୍ଦା ବାକ୍ୟ କହନ୍ତି ସେ ମନରେ କ୍ରୋଧ କରି ॥
ଅର୍ଜିଲାର ସମ୍ପଦ ଘେନିଯାନ୍ତି ବଳେ ।
ବୋଲନ୍ତି କିମ୍ବା ଯେ ନ ମରି ଜୀଇଂଛି ବୃଦ୍ଧକାଳେ ॥୫୦
ଭୋ ରାମ ଯେ ସଂସାରେ ନୋହନ୍ତି କେହି ଯେ କାହାରି ।
ମୋହୋର କର୍ମେ ହୋଇଲି ଭାଇର ଭଗାରି ॥
କିମ୍ବାଇଂ କାନ୍ଦୁ ନାଥ ଗ୍ୟାନବନ୍ତ ହୋଇ ।
ତୋତେ ତିଆରିତ କି ଭାର୍ଯନ ହେବି ମୁହିଁ ॥
ଶୋକ ଚିନ୍ତା ଦୁଇ କଲେ ବୁଦ୍ଧି ନାଶ ହୋୟେ ।
ସାହାସ ଉଦିଯୋଗ ସକଳ କର୍ମ ଜୟେ ॥
ଯେ ମୋହୋର ଦୁଃଖ ଦେବ କହିଲେ ନ ସରଇ ।
ଜୀବନ ମାତ୍ର ଅଛି ଆବର କିଛି ନାହିଁ ॥
ତୁମ୍ଭେ ସିନା ଛାଡ଼ିଲ ପ୍ରଭୁ ଅଳପ ସମୟେ ।
ମୋତେ ବିଧାତା ପୁରୁଷ ଯେ କାଳକ କଷ୍ଟ ଦିୟେ ॥୬୦

ସୋଦର ଭାଇ ମୋର ରାଜ୍ୟରୁ ପାର
କଲା ।
ଧର୍ମ ନ ବିଚାରି ଦେଖ ଭାରିଯା ମୋର
ନେଲା ॥
ଯେକା ବସ୍ତ୍ରେ ପିନ୍ଧି ମୁଂ ପଳାଇ ଅଇଲି ।
ବନଜନ୍ତୁ ମେଳେ କନ୍ଦମୂଳ ମୁଂ ଖାଇଲି ॥
ପାଣି ପିଇଣ ସେ ରଖି ଅଛି ପ୍ରାଣ ।
ମନ୍ତ୍ରୀ ଚାରିରୁ ମୋର ଶାଖା ନାହିଁ ଅନ୍ୟ ॥
କାଳ ଆଦରି ମୁଂ ଅଛଇ ଦୁଃଖ ସହି ।
ଭାବିଲେ ମରନ୍ତିନି ଆୟୁଷ ଥାଉ ମୁହିଂ ॥
ଅଭିମାନ ନ ସହି କରନ୍ତି ଯେବେ ଯୁଦ୍ଧ ।
ବାଳୀର ହସ୍ତେ ମୁଂ ଯେ ହୁଅନ୍ତି ପ୍ରାଣେ
ବଧ ॥୭୦
ଯେବେ ତୁ ରଘୁନାଥ ଚିନ୍ତା କରୁ ମନେ ।
ଯେସନେକ ସୀତ୍ୟା ତୁ ପାଇବୁ କେସନେ ॥
ସମୟେ ବିଚାରିଣ କରିବା ସିନା କାର୍ଯ୍ୟ ।
ଯେବେ ତୁ ରଘୁନାଥ ହୁଅସି ଧଉର୍ଯ୍ୟ ॥
ମନ୍ତ୍ରୀ ଯୂଥପତିଙ୍କି ଘେନିଣ ବିଚାରିବା ।
ଯେମନ୍ତେ ଶତ୍ରୁ ସାଧ୍ୟ ହେବ ତେମନ୍ତ
କରିବା ॥
ତେବେ ସେ ସୀତ୍ୟା ହୋଇବ ପ୍ରାପତ ।
ଯେବେ ଧଉର୍ଯ୍ୟ ଦେବ ହୋଇବା
ରଘୁନାଥ ॥
ସାମାନ୍ୟ ନୋହଇ ସେ ଲଙ୍କାର ରାବଣ ।
ସମସ୍ତ ଦେବଗଣେ ଖଟନ୍ତି ତା ଚରଣ ॥୮୦
ଆବର ବିଶେଷେଣ ସମୋଦ୍ର ମଧ୍ୟେ ଲଙ୍କା ।
ଦେବ ଦାନେବଙ୍କୁ ସେ ନ କରଇ ଶଙ୍କା ॥
ତାହାକୁ ନିଷ୍ଟେ ଦେବ ମାରିବା ବୁଦ୍ଧିବଳେ ।
ସ୍ୱୟେଂ ନାରାୟଣ ତୁମ୍ଭେ ଦଶରଥ ବାଳେ ॥
ଶୁଣିଣ ଶ୍ରୀରାମ ସୁଗ୍ରୀବର ବାଣୀ ।
ଶୋକ ସମ୍ଭାଳିଣ ବସିଲେ ରଘୁମଣି ॥
ବସ୍ତ୍ର ଅଳଙ୍କାର ଲକ୍ଷଣ ସାଇତିଲେ ।
ସୁଗ୍ରୀବରକୁ ଚାହିଁ ଶ୍ରୀରାମ ବୋଇଲେ ॥
ଭୋ ମିତ୍ର ଯେଣେ ତୋର ଅଛଇ ବଇରି ।
ତାହାକୁ ମାରିଣ ଆଗେ ପେଷିବି
ଯମପୁରୀ ॥୯୦
ତୁ ଅବା ମୈତ୍ର ହୋ ତହିଂକି ଛଳ କରୁ ।
ସୋଦର ମାଇଲେ ନିକି ଅବିଗୁଣ ଧରୁ ॥
ଯେଣେ ପ୍ରତେ ଯିବୁ କରସି ନିଅମ ।
ତୁ ମୋହୋର ମିତ୍ର ଯେ ପ୍ରାଣର ଅଟୁ ସମ ॥
ଯେ ତୋହୋର ମାନ ମିତ୍ର ଉଧରିବି ଆଜ ।
କୋଦଣ୍ଡ ଛୁଇଂଣ ତୋତେ ବୋଲଇ
କପିରାଜ ॥
ଶୁଣିଣ ସୁଗ୍ରୀବର ହୋଇଲା ଉଷତ ।
ନାରାଜ ତୋଳିଣ ଦେଲା ଶ୍ରୀରାମର ହସ୍ତ ॥
ଯେକା ନାରାଜେକେ ଯେବେ ପ୍ରାଣେ
ବାଳୀକି ମାରିପାରି ।
ଯେ ଶୋକ ସମୋଦ୍ରୁ ନାଥ ଉଧରି ମୋତେ
ଧରି ॥୧୦୦
ଚରଣ ଧରି ପୁଣ କଲାକ ନମସ୍କାର ।
ଉଭା ହୋଇ ପୁଣ ପୁଣ ଯୋଡ଼ଇ
ବେନିକର ॥
ଯେବଣ ବଚନ ଦେବ ହେ କହିଲ
ରଘୁମଣି ।
ଆତ୍ମା ପ୍ରବୋଧ ହୋଇଲା ମୋର ଯେବଚନ
ଶୁଣି ॥
ବୋଇଲୁ ଯେ ବାଳୀକି କରିବି ପ୍ରାଣନାଶ ।
ଜଗତେ ଅଜୟେ ଯେ ବାସବର ଶିଷ ॥
ବଳବନ୍ତ ପଣେ ଯେ ତାକୁ ନାହିଁ ସମସରି ।
ରୂପ ଗୁଣେ ପଟାନ୍ତର ଯେ ତ୍ରିପୁର ଅଇରି ॥
ତାହାର ମହିମା ଦେବ ଶୁଣିମା ଯେକମନେ ।
ବିଚାରି କାର୍ଯ୍ୟ ଦେବ କରିବା
ରଘୁନାନେ ॥୧୦
ବାଳୀର ମହିମା ଦେବ ଅଟଇ ଅସକ୍ଷ ।
ନାହିଁ ପଟାନ୍ତର ତାକୁ ସଂସାର ତ୍ରୈଲୋକ୍ୟ ॥
ନିତ୍ୟେ ସେ ନିତ୍ୟ କର୍ମ ସାରଇ ପ୍ରଭାତେ ।
ପୂର୍ବର ସମୋଦ୍ରକୁ ସେ ଚଳଇ ତୁରିତେ ॥
ସ୍ନାହାନ ସାରି ତହିଂ କରଇ ତର୍ପଣ ।
ପଶ୍ଚିମ ସମୋଦ୍ରକୁ ସେ ଚଳଇ କପିରାଣ ॥
ତହିଂ ସ୍ନାନ ସାରିଣ ପିତୃଙ୍କୁ ପାଣି ଦେଇ ।
ଲେଉଟି କିଷ୍କିନ୍ଧ୍ୟାରେ ପ୍ରବେଶ ହୁଅଇ ॥
ସୂର୍ଯ୍ୟ ଉଦେମାନେ ଯେତେକ କର୍ମ
କରଇ ।
ବେଗୁଆର ପଣେ ତାକୁ ପବନ
ନୁଆରଇ ॥୨୦
ଅତି ବଡ଼ ପଥର ଉପରକୁ ଫିଙ୍ଗିଦେଇ ।
ତଳେ ପଡ଼ନ୍ତେଣ ମସ୍ତକ ପାତଇ ॥
ଖଣ୍ଡ ଖଣ୍ଡ ହୋଇ ଯେବେ ଭାଜଇ ପଥର ।
ସନ୍ତୋଷେ ଘରେ ଆସି ମିଳଇ କପିବୀର ॥
ଦୁନ୍ଦଭି ବୋଲିଣ ପୂର୍ବେ ଦଇତ୍ୟ ଯେକ
ଥିଲା ।
ଜଗତେ ବଳୀୟାର ଅନୀତି କର୍ମ କଲା ॥
ତାହାକୁ ସରିସମ ଅନ୍ୟ କେହି ନାହିଁ ।
ପର୍ବତ ସମାନେଣ ଅଟଇ ତାର ଦେହୀ ॥
ସେ ଦତ୍ୟକୁ ବାଳୀ ହେଲେଣ ନାଶ କଲା ।
ତିନିପୁର ଲୋକଙ୍କୁ ଅଭୟେ
ବରଦେଲା ॥୩୦
ଯେ ଯେ ପଶ୍ଚିମ ଭାଗେ ଦିଶଇ ଗିରିବର ।
ଅନ୍ୟ ପର୍ବତରୁ ଯେ ଦିଶଇ ଶୋଭାକାର ॥
ତୃଣ ବୃକ୍ଷ ଲାଗିଣ ଯେ ଶୁକଳ ଦିଶଇ ।
ନ ଜାଣିଲା ଲୋକେ ଯେହା ପର୍ବତ
ଆଭାସଇ ॥
ଭୋ ରଘୁନାଥ ସେ ଯେ ଦୁନ୍ଦୁଭିର ହାଡ଼ ।
ବିଚାର କରନା ଦିଶଇ କେଡ଼େ ଗାଢ଼ ॥
ତାହାକୁ ବାଳୀ ମାରିଣ ଯଶ କଲା ମହୀ ।
ତିନି ଯୁଣ ପରିଯନ୍ତେ ଆଣିଲା ବୀର ବହି ॥
ଯେଡ଼େ ବଳବନ୍ତ ଅଟଇ ବାଳୀବୀର ।
ଯେହା ତୁ ତୋଳି କି ପାରିବୁ
ରଘୁବୀର ॥୪୦
ଯଦ୍ୟପି ରଜା ପାଇବ ବାରତା ।
କୋପ କରିବ ସେ ଅଙ୍ଗଦର ପିତା ॥
ଯେ ପର୍ବତରେ ଯେତେ ବସିଅଛୁ ଜନ ।

ନିମିଷ ମାତ୍ରକେ କରିପାରଇ ଦହନ ॥
ଲୁଚିଣ ଏତେଦିନ ରହିଛି ରଘୁନାଥ ।
ଉପଦର୍ପ କଲେ ସେ ନଥିଅନ୍ତା ଯେଥ ॥
ଶୁଣିଣ କୋପ କଲେ ଶ୍ରୀରାମର ଭ୍ରାଥ ।
ବାଳୀ ଛାରର ମହିମା କହୁତୁ ବହୁତ ॥
ଶୁଣି ନାହୁଁ କି ଶ୍ରୀରାମର ଯେବଣ କୀରତି ।
ଦେଖିଣ ନ ଜାଣୁ ତୁ ପରମ ବ୍ରହ୍ମ ମୂର୍ତ୍ତି ॥୫୦
କିମ୍ପାଇ କମ୍ପୁଅଛୁ ତୁ ଥରହର ହୋଇ ।
ବାଳୀ ନିଲକ୍ଷଣକୁ ଡରୁ କିସ ପାଇଁ ॥
ଭୋ ରାମକୁ ସରିସମ ନୁହନ୍ତି ତ୍ରିଦଶ ।
ଦେବ ଦାନବ ଯେ କିନ୍ନର ପୁରୁଷ ॥
ପିଶାଚ ଉରଙ୍ଗ ଯେ ନୋହନ୍ତି କେହି ସରି ।
ମନୁଷ୍ୟ ଶରୀର କି ଦେଖିଲୁ ଯେହାଙ୍କରି ॥
ବ୍ରହ୍ମାଦି ଶଙ୍କର ପ୍ରାୟେ ମଣୁ ରାୟେ ଯେହା ।
ଚକ୍ଷୁ ବୁଜି ଧ୍ୟାନ କରି ଚାହାଁସି କପିନାହା ॥
କେମନ୍ତେ ତେଜ ଯେହାଙ୍କର ଦିଶୁଅଛି ଦେହୀ ।
ତୁ ତାହା ନିରୋପନି ସାବଧାନ ହୋଇ ॥୬୦
ଯାହାର ନାରାଚ୍ଚେ କମ୍ପଇ ତିନିପୁର ।
ଯେଣେ ପରତେ ଯିବୁ ପରୀକ୍ଷା ତାହା ଯେବେ କର ॥
କଥା ନ ବୁଝିଣ କିପାଂଇ ବଣା ହୋଉ ।
ତୁ ଯାହା ବୋଲିବୁ ଯେ କରିବେ ରାମଗଚ୍ଛୁ ॥
ଶୁଣିଣ ସୁଗ୍ରୀବର ବୋଲଇ ବଚନ ।
ଯାହା ତୁ ବୋଇଲୁ ହୋ ସୁମେତ୍ରା ନନ୍ଦନ ॥
ଯେ ଯେ ଦିଶୁଅଛି ସାତ ଶାଳ ଗଛି ।
ଯେକକୁ ଆରେକ ଯେ ବକ୍ରେଣ ବସିଛନ୍ତି ॥
ତିନି ଗଛ ବାଳୀ ରଜା ଫୁଟାଇ ନାରାଚ୍ଚେ ।
ଗଛେହେଁ ଭେଦି ନ ପାରନ୍ତି ସୁରରାଜେ ॥୭୦
ଅବିଶ୍ୱାସ ଗଛ ଯେ ବଜ୍ରହୁଁ ନିରାଟ ।
ଦୂରୁଁ ଦେଖି ବୀରଙ୍କର ଭାଜଇ ସବୁଆଣ୍ଟ ॥
ଯୁଗ ଯୁଗାନ୍ତରେ ଯେ ଅଛଇ ବୃକ୍ଷ ରହି ।
ଦିବାକର ପୂର୍ବେ ମୋତେ ଯାଇଛନ୍ତି କହି ॥
ଯେବଣ ଦିନେ ମୋତେ ଖେଦି ଦେଲାକ ବାଳୀ ଭୂପତି ।
ପ୍ରସନ୍ନ ହୋଇ ମୋତେ କହିଲେ ଛାୟାପତି ॥
ଶୋକେଣ ଋଷିମୁଖ ପର୍ବତେ ଶୋଇଥିଲି ।
ମରିବି ବୋଲିଣ ମୁଂ ଯେ ନିରାଶେ କାଷ୍ଟା କଲି ॥
ତୁ ହୋ ସୁଗ୍ରୀବର ନମର ଆତ୍ମା ଘାତେ ।
କିଷ୍କିନ୍ଧ୍ୟାରେ ରାଜାପଣ ଅଛିନି ଯୁଗତେ ॥୮୦
ଯେ କଥା ପୁତ୍ର ତୁ ଥିବୁଟି ହେତୁକରି ।
ଯେବଣ ଦିନେ ଯେ ତୋତେ ପ୍ରାପତ ରାଜଶିରୀ ॥
ବାଳୀର ମୃତ୍ୟୁଭେଦ ତୁ ଜାଣିଥାଅ ବାଳ ।
ଯେବଣ ବୀରହାଦେ ଛେଦିବ ସପ୍ତଶାଳ ॥
ବିଧାତା ଭିଆଣ ଆଗହୁଁ ଅଛଇ ।
ସପ୍ତ ଶାଳ ବୃକ୍ଷ ସେ ନିକଟେ ଅଛି ଥୋଇ ॥
ସପତ ଦିଗକଇ ଆଧିଷ୍ଠାଣ ସପ୍ତତରୁ ।
ଯେହାକଇ ସାମାନ୍ୟ ପୁଣ ନୁହଇ ନା ମେରୁ ॥
ଯେ ଯେହା ଛେଦଇ ସେ ଜିଣଇ ସାତ ଦ୍ୱୀପ ।
ତାହାକଇ ସମାନ୍ୟ ନୋହଇ ସୁରନୃପ ॥୯୦
ବାଳୀର ଜୀବଆତ୍ମା ଯେ ପରମ ଆତ୍ମାବେନି ।
ଯେ ବୃକ୍ଷେ ହୋଇଲେ ଯେ ପଞ୍ଚଭୂତ ଆତ୍ମଘେନି ॥
ଯେମନ୍ତେ ଶାଳବୃକ୍ଷ ସାତ ଆତ୍ମା ହୋଇ ।
ବିଧାତାର ଭିଆଣ ଯେ ଅଛଇ ଭିଆଇ ॥
ପ୍ରାଣୀ ଯେକ ମଲେ ତରୁ ଯେକ ପୋଡ଼ି ।
ସୃଷ୍ଟିର କରତା ଧାତା ଅଛଇ ଯେହା ଗଢ଼ି ॥
ବାଳୀର ପ୍ରାଣ ଜୀବନକୁ ଦୁଇ ଭାଗ କଲା ।
ଥୋକାଯେ ବଳ୍କ ଅଙ୍ଗ ଥୋକାଯେ ବୃକ୍ଷ କଲା ॥
ଯେ ତରୁବାଳୀ ଯେବେ ହୁଅନ୍ତେ ଯେକ ଦେହୀ ।
ପୃଥିରେ ସମ ତାକୁ ନୁହନ୍ତେ ନା କେହି ॥୧୦୦
ତେଣୁ ସେ ବିଧାତା କରିଛି ଭିନ ଭିନ ।
ଯେ ସାତ ଶାଳ ଗଛ ଯେ ବାଳୀର ଜୀବନ ॥
ଆପଣେ ନାରାଚ୍ଚେ ଫୁଟନ୍ତା ଯେବେ ଯେହା ।
ଯୋଗୀନ୍ଦ୍ର ସଙ୍ଗେଣ ଯାଇ ବସନ୍ତା କପିନାହା ॥
ଦୁର୍ବାସା ଋଷି ତାକୁ ପୂର୍ବେଣ କହିଲେ ।
ଯେ ବୃକ୍ଷ ତୋହୋର ଜୀବନଟି ବୋଇଲେ ॥
ଯେହା ତୁ ନାରାଚ୍ଚେ ଫୁଟାଇ ଯେବେ ପାରୁ ।
ନିଜ ଆତ୍ମା ସାଧିଲେ ହୋଇବୁ ମହାମେରୁ ॥
ପରମ ଯୋଗୀ ଲୋକେ ଯେ ହୋଇବୁ ଗଣିତା ।
ସଂସାରେ ସମ ତୋତେ ନୋହିବେ ବଳବନ୍ତା ॥୧୦
ନୋହିଲେ ହେତୁ କରିଥିବୁଟି ନୃପବର ।
ଯେ ତରୁ ଛେଦିବ ସେ ବଇରି ତୋହୋର ॥
ତାହାର ନାରାଚ୍ଚେ ତୁ ହରାଇବୁ ପ୍ରାଣ ।
ଯେ କଥା ହେତୁ କରି ଥିବୁଟି ରାଜନ ॥
ତେଣୁ ସେ ନାରାଚ୍ଚେ ଯେ ବିନ୍ଧଇ ନୃପସାଇଁ ।
ତିନି ଗଛ ଫୁଟାଇ ଆବର ଚାରିଗଛ ନ ପାରଇ ॥
ଯହୁଁ ପ୍ରାପତ ତାକୁ ନାହିଂ ଯୋଗବଳ ।
ତେଣୁ ସେ ଛେଦିବାକୁ ମାଗଇ କିଷ୍କିନ୍ଧ୍ୟା ଭୂପାଳ ॥
ଯେ କଥା ସୂର୍ଯ୍ୟେ ମୋତେ ଯେକାନ୍ତେ ଗଲେ କହି ।
ତାହା ଶୁଣିଣ ସେ ଅଛଇ ଦୁଃଖ ସହି ॥୨୦
ସେ ସାତଗଛ ଯେ ଛେଦିତେ ପାରୁ ରାମ ।
ତେବେ ସେ ସଂପ୍ରତେ କରିବି ମୋର ମନ ॥
ନିଶ୍ଚୟେ ବାଳୀକି କରିବୁ ପ୍ରାଣେ ନାଶ ।

ଯେ ଶକୁନ୍ୟ ଦେଖିଲେ ମୁଁ କରିବି ବିଶ୍ୱାସ ॥
ଭୋ ଲକ୍ଷଣ ତୁମ୍ଭେ ଯେତେକ ମାତ୍ର କର ।
ପରୀକ୍ଷ ଦେଖାଇଣ ମୋତେ ଭଧରିଣ ଧର ॥
ସୁଗ୍ରୀବର ମୁଖରୁ ଯେସନ ବାଣୀ ଶୁଣି ।
ହସିଣ ବୋଇଲେ କୋଦଣ୍ଡ ଚାପପାଣି ॥
ଭୋ ମୈତ୍ର ତୁମ୍ଭେ ଯେ ଅଟ ବେନି ଭାଇ ।
କିପାଂଇ କଳି କଲ କେବଣ ଗୁଣ
ପାଇଂ ॥୩୦
ପିଅର ଜନନୀ ତ ତୁମ୍ଭର ଯେକ ହୋଇ ।
କିପାଂଇ ବଇରି ତୁମ୍ଭଙ୍କୁ କଲାକ କପିସାଇଂ ॥
ସୁଗ୍ରୀବର ବୋଲଇ ଦେବ ଶୁଣିମା
ରଘୁବୀର ।
ଯେବଣ ପ୍ରକାରେ ଦ୍ୱନ୍ଦ୍ୱ ହୋଇଲା ଆମ୍ଭର ॥
ସେ କଥା କହିବି ଶୁଣିମା ତତ୍ତ୍ୱକରି ।
ଯେକ ମନେ ଶୁଣିମା ହେ କୋଦଣ୍ଡ
ଚାପଧାରୀ ॥
ପୂର୍ବେ ବ୍ରହ୍ମା ପୁଣି କଲେକ ବହୁପାପ ।
ଦଣ୍ଡକା ଅରନ୍ୟେ ବସି କଲେକ ଘୋର
ତପ ॥
ସଙ୍ଗରେ ସାହାପକ୍ଷ ତାଙ୍କର କେହି ନାହିଂ ।
ଘୋର ତପସ୍ୟା ଯେ କରନ୍ତି ବ୍ରହ୍ମା
ତହିଂ ॥୪୦
ଋକ୍ଷପତି ତାହା ସେ ବାରତା ପାଇଲା ।
ତହିଂ ଯାଇ ବ୍ରହ୍ମାଙ୍କୁ ସେ ଅନେକ
ସେବାକଲା ॥
ନାମ ଦକ୍ଷ ରାଜା ସେ ବାନର ଆକୃତି ।
ବନ ଜନ୍ତୁମାନଙ୍କର ଅଟଇ ଆଧିପତି ॥
କଶ୍ୟପ ଋଷିଙ୍କର ଅଙ୍ଗେଣ ଅବତାର ।
ମାତା ଗୁଣ ଘେନିଣ ସେ ହୋଇଲା ବାନର ॥
ଶ୍ରୀରାମ ଆଗ୍ୟାଂ ଦେଲେ ସେ କାହାର
ତନୟେ ।
କେମନ୍ତ ପ୍ରକାରେ ସେ ଅରନ୍ୟେ ରାଜା
ହୋୟେ ॥
ବୋଲଇ ସୁଗ୍ରୀବର ଶୁଣିମା ରଘୁପତି ।
ପୂର୍ବେ ମୋତେ ଗୁରୁପିତା ଗୌତମେ
କହିଛନ୍ତି ॥୫୦
ଦେବଗଣ ସଭାରେ ବସିଣ ସୁରପତି ।
ତାଣ୍ଡବ ନୃତ୍ୟ ରସେ ଅପକ୍ଷରୀ ଖଟନ୍ତି ॥
ମଦନିକା ନାମେଣ ସେ ଯେକଇ
ଅପକ୍ଷରୀ ।
ଇନ୍ଦ୍ରର ସଭାରେ ସେ ଯେ ନୃତ୍ୟ ଗୀତ
କରି ॥
ସମସ୍ତ ଦେବଗଣେ ସାବଧାନେ ବସି ।
ସଂସାର ମିଥ୍ୟା ବୋଲି ସେ ବିଦ୍ୟାଧରୀ
ହସି ॥
ସେ କଥା ବାସବ ଯେ ଜାଣିନପାରିଲା ।
ସୁନ୍ଦରୀ ହସିବାରେ ବଇରାଗ ପାଇଲା ॥
ସୁପ୍ରସ୍ତାବେ କିମ୍ପାଇ ଲୋ ହସିଲୁ ଯୁବତୀ ।
କୋପେଣ୍ୟ ଶାପ୍ୟ ତାକୁ ଦେଲେ
ସୁରପତି ॥୬୦
କିପାଂଇ ହସିଲୁ ସେ କେବଣ ଗୁଣ ପାଇ ।
ମୁଖ ପୋଡିଲୁ ତୁ ଯେ ମର୍କଟ ପ୍ରାୟେ
ହୋଇ ॥
ଯେ ଦେବସଭା ଆମ୍ଭର ଯେ ଦେବ
ସିଂଘାସନ ।
ତୁ ଯେଥେ ଉଠିବାକୁ ନୋହୁଲୋ ଭାର୍ଯନ ॥
ପୂର୍ବେ ବାନରୀ ହୋଇ ତୁ ଏକାୟରେ ଥିଲୁ ।
ପାପନାଶିନୀ ନାମେ ଜଳରେ ବୁଡ଼ିଲୁ ॥
ସେ ପୁଣ୍ୟଫଳେ ଧାତା ପବିତ୍ର ତୋତେ
କଲା ।
ରୂପ ଗୁଣ ସୁମରି ବିଦ୍ୟାଧରୀ ଜନ୍ମ ଦେଲା ॥
ଗତ ଜନ୍ମ ପ୍ରକୃତି ତୁ ବଞ୍ଚାଇ ନ ପାରିଲୁ ।
ଦନ୍ତ ଦେଖାଇଣ ଯେ ଅପ୍ରସ୍ତାବେ
ହସିଲୁ ॥୭୦
ମଉଗର୍ବରେ ତୁ ଯେ କାହାକୁ ନ ଚିହ୍ନିଲୁ ।
ଯେ ଦେବସଭାକୁ ତୁ ଇତର ମଣିଲୁ ॥
ଯାଅ ତୁ ଲୋ ନିଜ ଶରୀର ତୋର ଧର ।
ବାନରୀ ରୂପ ଧରିଣ ଥାଅ ମର୍ତ୍ତ୍ୟପୁର ॥
ମାନସରୋବର ନିକଟେ ତୁହି ଥିବୁ ।
ଅପ୍ରସ୍ତାବେ ହସିବାର ଫଳ ତୁ ପାଇବୁ ॥
ଶୁଣିଣ ସୁନ୍ଦରୀ ଯେ ଯୋଡ଼ଇ ବେନିକର ।
ନିଶ୍ଚୟେ ଦୋଷ ଯେବେ ହୋଇଲା
ମୋହୋର ॥
ଶାପ ଦେଖି ଦେବା ପଡ଼ିଲା ଦୁର୍ଗତି ।
ତୁରିତେ ଅନୁଗ୍ରହ ମୋତେ କରିବା
ସୁରପତି ॥୮୦
ଇନ୍ଦ୍ର ବୋଇଲେ ତୁ ସମୟେକ ଥାଅ ।
ମୋକ୍ଷ ହେବାକାଳେ ତୁ କଶ୍ୟପ ବୀର୍ଯ୍ୟ
ପାଅ ॥
ଜଳ ସଙ୍ଗତରେ ତୁ ଋଷିର ବୀର୍ଯ୍ୟ ପିଇବୁ ।
ଗର୍ଭବାସ ହୋଇ ତୁ ଋକ୍ଷ ପୁତ୍ରେକ
ଜନ୍ମାଇବୁ ॥
ଶାପ୍ୟ ପାର କରିଣ ଆସିବୁ ସ୍ୱର୍ଗସ୍ଥାନ ।
ତେଣେ ସେ ପାରଯିବ ସକଳ ପାପମାନ ॥
ତତକ୍ଷଣେ ଅପକ୍ଷରୀ ହୋଇଲା ବାନରୀ ।
ଅନେକ ଦିନ ଥିଲା ମର୍ତ୍ତ୍ୟରେ
ଅବତରି ॥୯୦
ଋଷି ବୀର୍ଯ୍ୟ ପିଇଲା ସେ ଜଳ ସଙ୍ଗେ
କରି ।
କୂଳେ ଆସି ହୁଅନ୍ତେଣ ପୁତ୍ରେକ ଅବତରି ॥
ପୁତ୍ର ଜାତ କରିଣ ଅପକ୍ଷରୀ ସ୍ୱର୍ଗକଇ
ଗଲା ।
ପୂର୍ବର ବିଧାନେ ଇନ୍ଦ୍ର ଗଉରୋବ କଲା ॥
ଯେବଣ ନନ୍ଦନ ସେ ଗଲାକ ଉପୁଜାଇ ।
କଶ୍ୟପ ରେତୁ ଜାତ ସାମାନ୍ୟ କେହି
ନାହିଂ ॥
ସୂର୍ଯ୍ୟ କିରଣ ନାଗିପୁତ୍ର ହେଲା ବଳବନ୍ତ ।
ରୂପ ଗୁଣେ ସୁନ୍ଦର ସେ ପ୍ରତକ୍ଷେ ରମାକାନ୍ତ ॥
ଶବର ଶବରଣୀ ଦେଖିଲେ ତାହା ଯାଇ ।
ଉଛଟ ହୋଇଲେ ସେ ଯେ ପୁତ୍ରକଇ ପାଇ ॥
ଅପୁତ୍ରକ ହୋଇ ଥିଲେ ବେନିଜନ ।
ତନୟପାଇଣ ସେ ହରଷ କଲେ
ମନ ॥୧୦୦

ଅତି ଯତ୍ନ କରିଣ ସେ ପାଳିଲେ ପୁତ୍ରକଇ ।
ତେଜ ପ୍ରକାଶିଲା ସେ ଶବର ଘରେ ଥାଇ ॥
ମାତା ଗୁଣେ ମୁଖ ତାର ବାନର ଆକାର ।
ଶରୀର ଦିଶଇ ତାର ଅତ୍ୟନ୍ତ ସୁନ୍ଦର ॥
ଚମ୍ପା ପୁଷ୍ପ ପ୍ରାୟେ ଶରୀର ବିରାଜଇ ।
ଦିନୁଦିନ ପୁତ୍ର ବର୍ଦ୍ଧିତ ହୁଅଇ ॥
ଦେଖିଣ ବ୍ରହ୍ମା ତାକୁ ଅଭିଷେକ କଲେ ।
ଋକ୍ଷ ନୃପତି ବୋଲିଣ ଶାଢ଼ୀ ତାକୁ ଦେଲେ ॥
ତେଣୁ ସେ ବନସ୍ତରେ ହୋଇଲା ସେହୁ ରାଜା ।
ବନସ୍ତର ଜୀବମାନେ କଲେକ ତାକୁ ପୂଜା ॥୧୦
କେତେହେଂକ କାଳେ ସେ ଜଗତର ପିତା ।
ପାର୍ବତୀ ବନକଇ ସେ ଯେ ଗଲେକ ବିଧାତା ॥
ଯେକାନ୍ତ ହୋଇ ସେ ତପସ୍ୟା କରନ୍ତେ ।
ବାରତା ପାଇଂ ତହିଂକି ଗଲାକ ଋକ୍ଷନାଥେ ॥
ଜଳ ପୁଷ୍ପ ଆଣଇ ସେହୁ ଯାଇ ନିତି ।
ସେବା କରିଥାଇ ସେ ବିଧାତାର କତି ॥
ଦିନେକ ବ୍ରହ୍ମା ତାକୁ ରାଇଣ ତିଆରିଲେ ।
ପଶ୍ଚିମ ଦିଗକୁ ତୁ ନ ଯିବୁ ବୋଇଲେ ॥
ଉତ୍ତର ଦକ୍ଷିଣ ତୁ ଯେ ପୂର୍ବକଇ ଯାଅ ।
ଭୋ ଋକ୍ଷ ରାଜାତୁ ମୋହୋର ବୋଲେ ଥାଅ ॥୨୦
ଯେଥୁ ଅନନ୍ତରେ ତହିଂ କେତେକ ଦିନ ଯାଇ ।
ବିଧାତାକୁ ସେବା କରି ଋକ୍ଷ ରାଜା ଥାଇ ॥
ଫଳପୁଷ୍ପ ବନୁ ସେ ଆଣଇ ବହୁତ ।
ବ୍ରହ୍ମାଙ୍କର ପାଶେ ସେ ଥାଇ ଅନୁବ୍ରତ ॥
ଦିନେକ ଋକ୍ଷରାଜା ବିଚାରଇ ମନେ ।
ବିଧାତା ବୋଇଲେ ଯେ ନଯିବୁ ପଶ୍ଚିମ ଦେଶବନେ ॥
କେବଣ ଚରିତ୍ରଟି ଅଛି ଅବା ତହିଂ ।
ଗୁପତେ ଯାଇଣ ମୁଂ ତାହା ଦେଖିବଇଂ ॥
ଯେତେ ବିଚାରି ରାଜା ପଶ୍ଚିମ ଦିଗେ ଗଲା ।
ପାର୍ବତୀ ବନେ ଯାଇ ପ୍ରବେଶ ହୋଇଲା ॥୩୦
ତକ୍ଷଣେ ନୃପତି ହୋଇଲା ସ୍ତିରୀ ବେଶ ।
ଯୋନି ଯଉବନ ତାର ଦିଶିଲା ଭବିଷ ॥
ଲଜ୍ଜା ପାଇ ବୋଇଲା ମୁଂ କିପାଇଂ ଅଇଲି ।
ବିଧାତାର ବୋଲ ଭାଙ୍ଗିଂ ଯେ ଫଳ ପାଇଲି ॥
କାହିଂକି ଯିବି ଯେବେ କରିବଇଂ କିସ ।
କର୍ମରେ ଅର୍ଜିଲି ମୁହିଂ ଯେ ଯେବଣ ଭବିଷ ॥
ବିଷ ଖାଇ ମରିବି ଯିବି କିସ ପାଇଂ ।
କାହାର ଆଗେ ଯେରୂପ ଦେଖାଇବି ଯାଇ ॥
ପୂର୍ବେ ମୁହିଂ କାହାକୁ ଯେ କେବଣ ଦୋଷ କଲି ।
ତହିଂର ପାପେ ମୁଂ ଯେ ଫଳ ପାଇଲି ॥୪୦
କେ ପୁଣ ରକ୍ଷା ମୋତେ କରିବଟି ଯେବେ ।
ସେ ମୋର ଗୁରୁ ତାଙ୍କବୋଲ ଭାଙ୍ଗିଂଲଇ ଯେବେ ॥
କେମନ୍ତେ ଜାଣିବେ ଧାତା ଯେ ମୋର ଅବସ୍ଥା ।
କେ ଯାଇ ତାହାଙ୍କୁଟି କହିବ ବାରତା ॥
ଲୋଚନୁଂ ଅଶ୍ରୁଜଳ ବହଇ ଅବିକ୍ଷଣ ।
କର୍ମକୁ ଆଦରି ସେ ଯେ କରଇ ରୋଦନ ॥
କେବଣ ବିଧାନ ଯେହା କେ ଅବା ରଞ୍ଜିଲା ।
ପୁରୁଷ ସ୍ତିରୀ ହୋଇ ବୋଲିତ କାହିଂ ନଶୁଣିଲା ॥
ଯେତେ ଭାଳି ଲଜ୍ଜାରେ ସେ ବସିଲା ଯୁବତୀ ।
ବିଷାଦ ମନହୋଇ ଭୂମିକି ଅନାଇ ନୃପତି ॥୫୦
ଯେସନ ସମୟେ ଯେ ବାସବ ଛାୟାପତି ।
ବ୍ରହ୍ମାକୁ ଦର୍ଶନ ସେ କରିଆସନ୍ତି ଶୂନ୍ୟଗତି ॥
ଅତି ଉତ୍ସୁକେ ସେ ଯେ ଗଗନେ ଗମନ୍ତି ।
ଯେ ଯାହା ବିମାନ ସେ ଆରୋହି ଅଛନ୍ତି ॥
ଶୂନ୍ୟରେ ଯାଉଂ ଯାଉଂ ତଳକୁ ଦୃଷ୍ଟିଦେଲେ ।
ଋକ୍ଷ ରାଜା ରୂପ ଦେଖି କାମରେ ବଶ ହେଲେ ॥
ପୁରୁଷ ସ୍ତିରୀ ଅଙ୍ଗ ଅପୂର୍ବ ସ୍ୱରୂପ ।
କିବା ସେ କନ୍ଦର୍ପର କଳିକାଳ ରୂପ ॥
ସୁବର୍ଣ୍ଣର କୁମ୍ଭ ପ୍ରାୟେ ବେନି କୁଚ ଦିଶି ।
ମାନନୀ ହୋଇଣ ଅଛଇ ବାଳୀ ବସି ॥୬୦
ଦେଖି ତାହାକୁ ଇନ୍ଦ୍ର ଆଦିତ୍ୟ ମୋହ ଯାନ୍ତି ।
କନ୍ୟା ରୂପ ଦେଖିଣ ସେ କାମେ ବଶ ହୋନ୍ତି ॥
ପାର୍ବତୀଙ୍କ ଶାପ୍ୟେ ସେ ବନକୁ ନ ପଶିଲେ ।
କାତର ହୋଇଣ ସେ ବୀର୍ଯ୍ୟକୁ ଛାଡ଼ିଲେ ॥
ଉଛୁଳି ବୀର୍ଯ୍ୟ ଯାଇ ପଡ଼ିଲା ବାଳୀ ଅଙ୍ଗେ ।
ଦୁହିଙ୍କରି ବୀର୍ଯ୍ୟ ପଡ଼ିଲା ଯେକ ଯୋଗେ ॥
ଇନ୍ଦ୍ରର ବୀର୍ଯ୍ୟ ସୁନ୍ଦରୀ ବାଳରେ ଯାଇ ପଡ଼ି ।
ଶରୀରେ ଲାଗିଲା ସୂର୍ଯ୍ୟର ବୀର୍ଯ୍ୟଝଡ଼ି ॥
ଦୁହେଂ ଧାତୁ ରସ ଛାଡ଼ିଣ ତହୁଂ ଗଲେ ।
ଲୋକାଲୋକି ପର୍ବତେ ସେ ବ୍ରହ୍ମାଙ୍କୁ ଭେଟିଲେ ॥୭୦
ଲୋକନାଥ ବୋଲି ତହିଂ ବ୍ରହ୍ମ ଯେକ ଅଛନ୍ତି ।
ଧାୟେ ଧାରଣେ ବ୍ରହ୍ମା ତାଙ୍କୁ ପୂଜାବିଧି କରନ୍ତି ॥
ମାରକଣ୍ଡେଶ୍ୱର ତହିଂ ରୁଦ୍ରକୁ ପୂଜନ୍ତି ।
ଯେ ମହାକଷ୍ଟରୁ ଉଧରି ଧର ହେ ବୋଲନ୍ତି ॥
ଶିବ ଅକାରଣେ ଛେଦିଲେ ମୋର ଶିର ।
ତହିଂର କାରଣ ମୋତେ କରିବା ହରିହର ॥
ଶଙ୍କରକୁ ଲାଗିଲା ବ୍ରହ୍ମହତ୍ୟା ଦୋଷ ।
ମୋତେ ଜଗତେ ଯେ କରିବେ ଉପହାସ ॥
ବୋଲିବେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ।

ଯେକଇ ଆତ୍ମା ସେ ସତ୍ତ୍ୱ ରଜ ତମ
ଘେନି ॥୮୦
ସେ ଦୋଷ ଅପକୀର୍ତ୍ତି ନଲାଗୁ ଶିବ ଅଙ୍ଗେ ।
ତେଣୁ ସେ ହରିହର ସ୍ଥାପି ପୂଜୁଛୁ ଆତଙ୍ଗେ ॥
ଯେସନ ସମୟେ ଯାଇ ମିଳିଲେ ସୂର୍ଯ୍ୟ
ଇନ୍ଦ୍ର ।
ଦେଖିଣ ପିତାମହ ପରମ ସାନନ୍ଦ ॥
ବ୍ରହ୍ମାକଇ ନମସ୍କାର କରନ୍ତି ଇନ୍ଦ୍ର ସୂର୍ଯ୍ୟ ।
କଲ୍ୟାଣ କଲେକ ତାଙ୍କୁ ବିପ୍ରଙ୍କର ରାଜ ॥
ତିନି ଦେବତା ବସି ହୋଇଲେ ପୁଛାପୁଛି ।
କେବଣ ଦିଗରେ କେବଣ ଦେବତା
ପାଳୁଛନ୍ତି ॥
କେତେହେଂକ ଦିନରେ ତାଙ୍କର ସରିଲା
ଭାଳୁଣି ।୯୦
ଆଗ୍ୟାଂ ପାଇ ବାହୁଡ଼ିଲେ ସୂର୍ଯ୍ୟ ଇନ୍ଦ୍ର ବେନି ॥
ପାର୍ବତୀ ବନେ ଆସି ଦେଖିଲେ ଯୁବତୀ ।
ଦୁଇ ପୁତ୍ର ଜନ୍ମିଣ ଯେ ପଡ଼ିଛି ଦୁଇ କତି ॥
ଦେବତାଙ୍କର ଭିଆଣୟେ ସଂସାର ପାତନା ।
ମେଣ୍ଟଣ ନଯାଇ ସେ ଯେ ବିହିର ଘଟଣା ॥
ଆଶ୍ଚିଯ ଦେଖିଣ ସେ ବାହୁଡ଼ିଲେ ବେନି ।
ଦୂରହୁଂ ଦେଖିଣ ସେ ଯେ ହସିଲେ
କୁଶପାଣି ॥
କିପାଇଂ ଲେଉଟିଲ କି କାରଣ ମତେ ।
କରଯୋଡ଼ି କହନ୍ତି ଯେ ବାସବ ଆଦିତ୍ୟେ ॥
ଭୋ ପିତାମହ ତୁମ୍ଭେ ଶୁଣିମା ଆମ୍ଭ ବାଣୀ ।
ବାଟରେ ଆସନ୍ତେ ଆମ୍ଭେ ଦେଖିଲୁ ଯେକଇ
ତରୁଣୀ ॥୧୦୦
ହେଠ ମାଥ ହୋଇଣ ଅଛଇ ବାଳୀ ବସି ।
ତୁମ୍ଭର ଛାମୁରେ ଆମ୍ଭେ ଯେ ନକହିଲୁ
ଭରସି ॥
ଯେବେ ବାହୁଡ଼ିଣ ଆମ୍ଭେ ଯାନ୍ତେଣ
ସେହି ବାଟେ ।
ଦେଖିଲୁ ତରୁଣୀୟେ ପୁଷ୍କରିଣୀ ତଟେ ॥
ଦୁଇଗୋଟି ପୁତ୍ର ଯେ ଜନମ ହୋଇଅଛି ।

ତେଣୁ ସେ ବାହୁଡ଼ି ଅଇଲୁ ଅପୂର୍ବ ତୋତେ
ପୁଛି ॥
ଜନ ମନୁଷ୍ୟ ସେ ପର୍ବତ ତଳେ ନାହିଂ ।
କେବଣ ପ୍ରକାରେ ସେ ଜନ୍ମିଲେ ପୁତ୍ରଦୁଇ ॥
ଶୁଣିଣ ବିଧାତା ଯେ ଯୋଗବଳେ ଜାଣି ।
ହସିଣ ବୋଇଲେ ସେ ଯେ ନୁହଇ
ତରୁଣୀ ॥୧୦
ରକ୍ଷ ନୃପତି ଯେ ପାର୍ବତୀ ବନେ ଗଲା ।
ସେ ବନେ ପଶନ୍ତେ ଯୁବତୀ ହୋଇଲା ॥
ମୁହିଂ ତିଆରିଲି ତାକୁ ଅତି ଯତ୍ନକରି ।
ବୋଲ ମେଣ୍ଟିଣ କଷ୍ଟ ପାଇଲା ଦଣ୍ଡଧାରୀ ॥
ମୋତେ ସେବା କରିଣ ସେ ପାରୁଶେ ମୋର
ଥିଲା ।
ସ୍ତିରୀ ବେଶ ହୋଇଣ ସେ ଲଜ୍ଜାରେ ନ
ଅଇଲା ॥
ପୁତ୍ର ଜାତ ବୋଲିଣ ତୁମ୍ଭେ ବୋଇଲ ।
ସେ କଥା ସତ୍ୟ ତୁମ୍ଭେ ଯାହା ସେ କହିଲ ॥
ତୁମ୍ଭେ ସେ କନ୍ୟା ଦେଖି ବଳାଇଲ ମତି ।
ତୁମ୍ଭର ବୀର୍ଯ୍ୟେ ପୁତ୍ରେ ହୋଇଲେ
ଉତପତି ॥୨୦
ଦେବତାଙ୍କର ବୀର୍ଯ୍ୟ ଅକ୍ଷୟ ସବୁ କାଳେ ।
ଅଯୋନିରେ ସମ୍ଭୂତ ଯେ ହୋଇଲେ
ଦୁଲାଳେ ॥
ସୂର୍ଯ୍ୟ ଇନ୍ଦ୍ର ବୋଇଲେ ଯେସନ ବାଣୀ
ଶୁଣି ।
ତୁମ୍ଭ ଛାମୁରେ ମିଛ କେ କହିବ କୁଶପାଣି ॥
ଅତ୍ୟନ୍ତ ସୁନ୍ଦର ପୁଅ ମର୍କଟର ମୁଖ ।
ମନୁଷ୍ୟ ଶରୀର ସେ ଯେ କନ୍ଦର୍ପ ପ୍ରାୟେକ ॥
ପୁତ୍ରଙ୍କର ତେଜରେ ସେ ବନ ଶୋଭା
ପାଇ ।
ଦେଖିଣ ଆଶ୍ଚିଯ ଯେ ହୋଇଲୁ ଆମ୍ଭେ ଦୁଇ ॥
ଆସ ଯେବେ ପିତାମହ ପୁତ୍ର ଦେଖିଯିବା ।
କେମନ୍ତେ ଜୀଅନ୍ତି ପୁତ୍ର ସେକଥା
କରିବା ॥୩୦

ଶୁଣି ପିତାମହ ଦୁଇ ଦେବଙ୍କୁ ସଙ୍ଗେ
ଘେନି ।
ପ୍ରବେଶ ହୋଇଲେ ସେ ଯାଇଣ ଜଣ
ତିନି ॥
ଭୟ କରିଣ ସେ ବନରେ ନ ପଶିଲେ ।
ଶୂନ୍ୟେ ଥାଇଣ ରକ୍ଷ ରାଜାକୁ ସମ୍ଭାଦିଲେ ॥
ବ୍ରହ୍ମାୟେ ବୋଇଲେ ହେ ଶୁଣ ରକ୍ଷରାଜ ।
ମୋହୋର ବୋଲ ମେଣ୍ଟି ପାଇଲୁ
ମନ୍ଦକାର୍ଯ୍ୟ ॥
ଯେ ପୁତ୍ର ଦୁଇ ଘେନିଣ ତୁହି ଆସ ।
ଆମ୍ଭେ ତ ସେ ବନରେ ନୋହିବୁ ପ୍ରବେଶ ॥
ଶୁଣିଣ ରିକ୍ଷ ରାଜା ଦୁଇ ପୁତ୍ର ଘେନି ।
ଲୋକାଲୋକି ପର୍ବତେ ଯାଇ ଭେଟିଲେ
ପଦ୍ମଯୋନି ॥୪୦
ତିନି ଦେବତାଙ୍କୁ ସେ ଦେଖିଣ ରକ୍ଷସାଇଂ ।
ପାୟେ ପଡ଼ି ଶୋଇଲା ସେ ବିନୟ ଭାବ
ହୋଇ ॥
ଭୋ ସ୍ୱାମୀ ପିତାମହ କର ଯେଥୁ ପାର ।
ଯେ ମହାସଙ୍କଟୁ ଉଧରିଣ ଧର ॥
ଯେ ତୋହୋର ଆଗ୍ୟାଂ ଭାଙ୍ଗିଂଣ ଯେଥକୁ
ଅଇଲି ।
ତେଣୁ କରି ଭୋନାଥ ଯେ କଷ୍ଟ ପାଇଲି ॥
ବ୍ରହ୍ମାୟେ ବୋଇଲେ ସେ ଯେ ଯୁବତୀକି
ଚାହିଂ ।
ଯେ ଦୁଇ ତନୟକୁ ଗୋ ପାଇଲୁ ତୁ କାହିଂ ॥
ରିକ୍ଷପତି କହଇ ଯୋଡ଼ିଣ ବେନିକର ।
ଶୁଣ ଦେବ ବିଧାତା ହୋ ତ୍ରୈଲୋକ୍ୟ
ଈଶ୍ୱର ॥୫୦
ସେ ବନେ ପଶିଣ ମୁଂ ହୋଇଲି ଯୁବତୀ ।
ଲଜ୍ଜାରେ ବସିଣ ମୁଂ ଥିଲଇଂ ମଥାପୋତି ॥
ଇନ୍ଦ୍ର ସୂର୍ଯ୍ୟ ଦୁହେଂ ଆସନ୍ତେ ଗଗନେ ।
ବୀର୍ଯ୍ୟ ଛାଡ଼ିଲେ ମୋତେ ଦେଖିଣ
ତୋଷମନେ ॥
ଇନ୍ଦ୍ରଙ୍କର ବୀର୍ଯ୍ୟ ଆସି ବାଳରେ ମୋର
ପଡ଼ି ।

ଆଦିତ୍ୟ ଦେବତା ବୀର୍ଯ୍ୟ ପିଠିରେଣ ପଡ଼ି ॥
ତକ୍ଷଣେ ଦୁଇପୁତ୍ର ହୋଇଲେକ ଜାତ ।
ଶୁଣି ତୋଷ ହୋଇଲେ ଜଗତର ତାତ ॥
ଇନ୍ଦ୍ର ଆଦିତ୍ୟଙ୍କ ମୁଖକୁ ଚାହିଁ ହସି ।
ସଂକୋଚେ ଦୁଇ ଦେବ ଯେ ମୁଖ ପୋତି ବସି ॥୬୦
ବିଧାତା ବୋଇଲେ ସେ ଋକ୍ଷପତିଙ୍କି ଚାହିଁ ।
ଦେବତାଙ୍କର ବୀର୍ଯ୍ୟ ରାୟେ ଅକ୍ଷୟେ ଅଟଇ ॥
ଚିଆରିଲା ବୋଲି ମୋର ନମାନିଣ ଗଲୁ ।
ତହିଁର ଫଳେ ଯେବେ ଯୁବତୀ ହୋଇଲୁ ॥
ମୋତେ ସେବା ତୁ ହୋ କରିଛୁ ଅପାର ।
ତେଣୁକରି ଶାପ୍ୟ ଶକ୍ତି ଖଣ୍ଡିବି ତୋହୋର ॥
ଯେତେ ବୋଲି ବିଧାତା ଯେ ମସ୍ତକେ ଦେଲେ କର ।
ତତକ୍ଷଣେ ହୋଇଲା ସେ ପୁରୁଷ ଶରୀର ॥
ଇନ୍ଦ୍ର ଆଦିତ୍ୟଙ୍କୁ ବିଧାତା ବୋଇଲେ ।
ଯେ ଦୁଇପୁତ୍ର ତୁମ୍ଭ ବୀର୍ଯ୍ୟରେ ଜନ୍ମିଲେ ॥୭୦
ମର୍କଟ ରୂପ ଯେହାଙ୍କର ମାତା ଗୁଣ ଘେନି ।
ସଂସାରେ ବିଖ୍ୟାତ ଯେ ହୋଇବେ ପୁତ୍ରବେନି ॥
ଇନ୍ଦ୍ରଙ୍କର ବୀର୍ଯ୍ୟ ପଡ଼ିଲାକ ବାଳେ ।
ବାଳୀନାମ ଯେହାର ଯେ ଜ୍ୟେଷ୍ଠଦୁଲାଳେ ॥
ଗ୍ରୀବାରେ ପଡ଼ିଲା ସୂର୍ଯ୍ୟଙ୍କର ବୀର୍ଯ୍ୟଯାଇ ।
ସୁଗ୍ରୀବର ନାମ ଯେହାର ଯେ କନେଷ୍ଠ ତନଇ ॥
କିଷ୍କିନ୍ଧ୍ୟା ନଗ୍ରେ ଯେ ହୋଇବେ ଅଧିପତି ।
ବୀର ପଣେ ପୁତ୍ର ହୋଇବେ ବିଖ୍ୟାତି ॥
ଖଡ଼ଗ ନାମେଣ ତହିଁ ଅଛଇ କପିରାୟେ ।
ଅନେକ ତପସ୍ୟା କଲା ନୋହିଲା ତାହାର ତନୟେ ॥୮୦
ପୂର୍ବେ ତାହାକୁ ଯେ ଅଛଇ ମୁହିଁ କହି ।
ଯେ ଦୁଇ ପୁତ୍ରକୁ ସେ ସମ୍ଭାଳିବ ନେଇ ॥
ଯେହୁସ୍ତିରୀ ହୁଅନ୍ତେ ପଶନ୍ତେ ଯେବେ ବନେ ।
ତୋତେ ନୁଚାଇ ସେ ବୀର୍ଯ୍ୟ ଛାଡ଼ିଲେକ ଶୂନ୍ୟେ ॥
ଶୁଣ ସାବଧାନେ ସେ ବନର ଶାପ୍ୟ ଗତି ।
ପୂର୍ବେ କ୍ରୀଡ଼ାକଲେ ହର ତହିଁ ଘେନିଣ ପାର୍ବତୀ ॥
କାମ ଭରେ ଈଶ୍ୱରେ ତହିଁ ରମଣ କଲେ ।
ଶୃଙ୍ଗାର ସୁଖ ପାଇଁ କ୍ଷଣହେଂ ନଛାଡ଼ିଲେ ॥
ତୃଷ୍ଣା ନପୂରଇ ରତିରେ ଚିରକାଳ ।
ଯାନୁ ଯଉବନ ଯେ ବସ୍ତ୍ର ହିଂ ଅସମ୍ଭାଳ ॥୯୦
ଲଜ୍ଜାରେ ପାର୍ବତୀ ବୋଇଲେ ଈଶ୍ୱରଙ୍କୁ ଚାହିଁ ।
ଆଜଠାରୁ ଏ ବନସ୍ତେ ନ ପଶିବେ କେହି ॥
ଯଦ୍ୟପି ମଉଗର୍ବେ ପଶିବେ ପୁରୁଷ ।
ତତକ୍ଷଣେ ପୁରୁଷେ ହୋଇବେ ସ୍ତିରୀ ବେଶ ॥
ଆଜୁଂ ଯେ ବନସ୍ତରେ ଶାପ୍ୟ ମୋର ରହୁ ।
ମୋହୋର ନାମ ଯେ ବନସ୍ତ ବୋଲାଉ ॥
ତେଣୁ ସେ ଯେ ବନସ୍ତକୁ ନପଶନ୍ତି କେହି ।
ଇନ୍ଦ୍ର ସୂର୍ଯ୍ୟ ଋକ୍ଷ ରାଜାଙ୍କୁ ବ୍ରହ୍ମାୟେ ଯେହା କହି ॥
ସମୟେକ ଶରଧା ସାରିଣ ପୁଣ ଗଲେ ।
ନିଜ କପିଳାସ କନ୍ଦରେ ରହିଲେ ॥ ୧୦୦
ସେ କାଳର ଶାପ୍ୟ ଅଛଇ ଯେଥେ ରହି ।
ପାର୍ବତୀଙ୍କ ଶାପ୍ୟ ଭାଙ୍ଗିଂବ ଅନ୍ୟ କେହି ॥
ତେଣୁ ସେ ଋକ୍ଷରାଜ ଯୁବତୀ ହୋଇଲୁ ।
ଯେ ମୋହୋର ଦର୍ଶନେ ମୁକତି ପାଇଲୁ ॥
ଯେବେ ତୁ ସେ ବନ ନଯିବୁଟି ବାବୁ ।
ଯେ ମୋହୋର ବଚନ ପ୍ରତିପାଳି ଥିବୁ ॥
ଯେ ଦୁଇପୁତ୍ରକୁ ଘେନିଣ ତୁ ଯାଅ ।
ଦଣ୍ଡକା ଅରଣ୍ୟ ମଧରେ ନେଇ ଥୁଅ ॥
ଗଉତମ ମୁନି ଅଛନ୍ତି ଗୋଦାବରୀ ତୀରେ ।
ଗୁପତେ ଥୋଇଣ ଆସ ମଢ଼ିଆ ସନ୍ନିଧରେ ॥୧୦
ଇନ୍ଦ୍ର ଆଦିତ୍ୟଙ୍କୁ ଚାହିଂଣ ବୋଇଲେ ।
ଯେ ଦୁଇପୁତ୍ର ତୁମ୍ଭର ଆଶ୍ୱାସନା କରିବ ବୋଇଲେ ॥
ଯେହାଙ୍କରେ ଦେବ କାର୍ଯ୍ୟ ହୋଇବ ଅପାର ।
କିଷ୍କିନ୍ଧ୍ୟା କଟକେ ହୋଇବେ ନୃପବର ॥
ଯେ ଦୁଇପୁତ୍ରଙ୍କୁ ତୁମ୍ଭେ ପ୍ରତିପାଳି ଥିବ ।
ଆପାଦ ପଡ଼ିଲେ ଆପାଦ ଖଣ୍ଡିବ ॥
ବ୍ରହ୍ମାଙ୍କର ଆଗ୍ୟାଂରେ ପୁଣ ବାସବ ଆଦିତ୍ୟ ।
ଶରୀର ଆଶ୍ୱସନାକଲେ ତାଙ୍କର ବହୁତ ॥
ତହୁଂ ସେ ଜାତ ଆମ୍ଭେ ହୋଇଲୁ ଭାଇ ବେନି ।
ଶୁଣିମା ସାବଧାନେ କୋଦଣ୍ଡଚାପପାଣି ॥୨୦
ଇନ୍ଦ୍ର ଆଦିତ୍ୟ ଦୁଇ ସ୍ୱର୍ଗକଇ ଗଲେ ।
ବ୍ରହ୍ମା ପୁଣ ଯାଇ ତପସ୍ୟାରେ ବସିଲେ ॥
ଋକ୍ଷ ରାଜା ବ୍ରହ୍ମାଙ୍କର ଆଜ୍ଞା ଶିରେ ଘେନି ।
ଦଣ୍ଡକା ଅରଣ୍ୟକୁ ଗଲେ ସେ ଦୁଇ ପୁତ୍ରଙ୍କୁ ଘେନି ॥
ଗଉତମ ମୁନି ମଢ଼ିଆ ସନିଧ୍ୟାନେ ।
କୋମଳ ପତ୍ର ପାଡ଼ିଣ ଶୁଆଇଲେ ନନ୍ଦନେ ॥
ନିଶାରେ ଛାଡ଼ିଣ ସେ ଗଲାକ ଋକ୍ଷ ରାଜା ।
ବ୍ରହ୍ମାର ସନିଧ୍ୟାନେ ସେ କଲାକ ପୂଜା ॥
ପ୍ରଭାତୁ ଅହିଲା ଯେ ଗଲେକ ସ୍ନାନ କରି ।
ରୋଦନ କରୁଥିଲୁ ଭୂମିରେ ଦୁହେଂ ପଡ଼ି ॥୩୦
ଦେଖିଣ ଅହିଲ୍ୟା ଆଶ୍ଚିର୍ଯ ହୋଇଲେ ।
ବାହୁଡ଼ି ଋଷିଙ୍କର ଆଗରେ କହିଲେ ॥
ଅପୂର୍ବ କଥାଯେ ଦେବ ଶୁଣିମା ଗୋସାଇଂ ।
ବନସ୍ତେ ପଡ଼ିଣଛନ୍ତି କାହାର ପୁତ୍ର ଦୁଇ ॥
ମନୁଷ୍ୟ ଶରୀର ସେ ମର୍କଟ ପ୍ରାଏ ମୁଖ ।
ଆସ ଆସ ଭୋ ମୁନି ହେ ପୁଅଙ୍କୁ ତୁମ୍ଭେ ଦେଖ ॥
ଶୁଣିଣ ମହାମୁନି ଯେ ଅହିଲା ଭୁଜ ଧରି ।

ଧୀରେ ଧୀରେ ଗମନ କରନ୍ତି ତପଚାରୀ ॥
କେତେହେଂକ ଦୂରେ ସେ ଦେଖିଲେ
ପୁତ୍ରବେନି ।
ପତ୍ରପାଡ଼ି ଶୁଆଇଣ ଗଲା ସେ
ମେଦନୀ ॥୪୦
ମୁଖ ମାତ୍ର ମର୍କଟ ମନୁଷ୍ୟ ଶରୀର ।
କି ଅବା କନ୍ଦର୍ପ ହୋଇଲେ ଅବତାର ॥
ଅପୂର୍ବ ଚରିତ୍ର ଯେ ଶୁଣିଲାକ ନାହିଂ ।
କେ ଜାତ କରିଣ ଗଲାକ ଏଥେ ଥୋଇ ॥
ଏତେ ବିଚାରି ମୁନି ଧ୍ୟାନରେ ଯାଇ ବସି ।
ଯୋଗବଳେ ଜାଣିଣ ମନେ ମନେ ହସି ॥
ଇନ୍ଦ୍ର ସୂର୍ଯ୍ୟ ପିତା ସେ ଋକ୍ଷ ରାଜା ମାତା ।
ଉପାୟ କରି ଏହାଙ୍କୁ ସଞ୍ଜିଲା ବିଧାତା ॥
ନନ୍ଦିକେଶର ଶାପ ଦେଇଛି ପୂର୍ବେଣ ।
ଋକ୍ଷ ମର୍କଟ ହସ୍ତେ ମରିବ ରାବଣ ॥ ୫୦
ଏଣୁ ସେ ଦେବ ଅଂଶେ ହୋଇଲେ ଏହୁ
ଜାତ ।
ବିଧାତାର ଆଗ୍ୟାଂରେ ସେ ଥୋଇଣ ଗଲା
ଯେଥ ॥
ଖଡ଼ଦ କପିରାଏ ସମ୍ଭାଳିବ ଏହା ନେଇ ।
କିଷ୍କିନ୍ଧ୍ୟା କଟକେ ଯେ ହୋଇବେ
ନରସାଇଂ ॥
ଅହିଲାକୁ ଚାହିଂଣ ସେ ବୋଲନ୍ତି ମହାଯତି ।
ପବିତ୍ର ପୁରୁଷ ଯେ ଅଯୋନି ସମ୍ଭୂତ
ହୋଇଛନ୍ତି ॥
ଘେନିବା ପୁତ୍ର ଦୁଇ କରିବା ପ୍ରତିପାଳ ।
ମହା ବଳବନ୍ତ ଯେ ହୋଇବେ ଦୁଲାଳ ॥
ଶୁଣିଣ ହରଷେ ଯେ ବ୍ରହ୍ମାଙ୍କର ଦୁଲଣୀ ।
ଦୁଇ ଗୋଟି ପୁତ୍ରଙ୍କୁ କୋଳେ ଧଇଲେ
ତରୁଣୀ ॥୬୦
ବାଳେକ ପୁତ୍ର ଦୁଇ ପାଉଛନ୍ତି ବନେ କଷ୍ଟ ।
ଧର୍ମପୁତ୍ର କରିଣ ଯେ ପାଳିବା ତପିଷ୍ଟ ॥
ମୁନି ବୋଇଲେ ଗୋ ଯେ ତୁମ୍ଭର ଇଚ୍ଛା ।
ଦୁଇ କୁମାରେ ଯେ ହୋଇବେ ତୋହର
ଧର୍ମବଚ୍ଛା ॥

ମୁନିଙ୍କର ଆଜ୍ଞା ପାଇଣ ଅହିଲା ସୁନ୍ଦରୀ ।
ମଢ଼ିଆକୁ ଆଣିଣ ସେ ପାଳିଲେ ଯତ୍ନକରି ॥
ତିନି ବରଷର ଆମ୍ଭେ ହୋଇଲୁ ବାଳେକ ।
ଦିଶିଲୁ ବେନିପୁତ୍ର ବାସେବ ଆଦିତ୍ୟ
ପ୍ରାଏକ ॥
ଏସନ ସମଏ ସେ କିଷ୍କିନ୍ଧ୍ୟାର ରାଏ ।
ମୃଗୟା ବିନୋଦେଣ ବନସ୍ତକୁ ଆଏ ॥ ୭୦
ସଙ୍ଗେ ଋକ୍ଷ କପି ଅଛନ୍ତି ଅନେକ ।
ଅତି ସମ୍ଭର୍ବରେ ଚଳିଲେ କିଷ୍କିନ୍ଧ୍ୟା
ନାୟେକ ॥
ଯାନ୍ତେଣ ଗଉତମୀ କୂଳେଣ ମିଳନ୍ତି ।
ଗଉତମ ଋଷିଙ୍କର ଆଶ୍ରମେ ଯାଇ ହୋନ୍ତି ॥
ଗଜ ପିଠିରୁ ଓହ୍ଲାଇ ଖଡ଼ଦ କପିରାଜା ।
ଗଉତମ ମୁନିଙ୍କ ପାଦେ କଲେ ପୂଜା ॥
ବିନୟି ହୋଇଣ ସେ ଯେ ଯୋଡ଼ଇ
ବେନିକର ।
ପ୍ରତକ୍ଷେ ଦେଖିଲି ପରମବ୍ରହ୍ମ ମୁନିବର ॥
କୃଷ୍ଣାଜିନ ଛାଲେକ ଆସନ ନେଇଦେଲେ ।
ଆସନେ ବସାଇଣ ସକଳ ପୁଛିଲେ ॥ ୮୦
ଜଳ ଫଳ କୁଶଳେ ମିଳଇଟିକି ନିତି ।
ସମସ୍ତ କଥା ତାର ହୋଇଛି ନା ତ୍ରିପୁତି ॥
ସାଧୁ ମହିମା ତୋର ବ୍ରହ୍ମାର ତନୟେ ।
ତୋତେ ଦେଖିଣ ମୁଂ କଲଇ ପାପକ୍ଷୟେ ॥
ଋଷି ବୋଇଲେ ହେ ନୃପତି ଶେଖର ।
ଯେ ତୋହୋର ବାହୁବଳେ ତପସ୍ୟା ଆମ୍ଭର ॥
ତୁ ମହାରାଜା ବନସ୍ତେ ଆଦିପତି ।
ତୋହୋରେ ଦୁଷ୍ଟଜୀବେ ପ୍ରବଳ ହୁଅନ୍ତି ॥
ଶାହାସ୍ରେ ଅଛୁଟିକି କହ ତୁମ୍ଭେ ରାୟେ ।
ସମସ୍ତ କପିମାନେ ଖଟନ୍ତିଟିକି ପାୟେ ॥୯୦
ପରଜା ପାଳୁଟିକି ପୁତ୍ର ସମ କରି ।
ଜଳ ବରଷଇଟିକି କୁଶଳେ ବଜ୍ରଧାରୀ ॥
ରାଣୀ ପରିବାରୀ ଯେ ମହାଦେଈ
କ୍ଷେମୋମାନ ।
କୁଶଳେ ଅଛନ୍ତିନା ପାତ୍ରମନ୍ତ୍ରୀଗଣ ॥

ଧନ ଧାନ୍ୟ ସଞ୍ଚ ଅଛୁନା ନୃପତି ।
ଭଣ୍ଡାର ସଞ୍ଚଥିଲେ କୁଶଳେ ଥାଇ କ୍ଷିତି ॥
ଶୁଣିଣ ହରଷ ଯେ ଖଡଡ଼ କପିରାଜା ।
ମୁନିଙ୍କର ଚରଣେ ସେ କଲାକ ଦିବ୍ୟପୂଜା ॥
ସମସ୍ତ କୁଶଳ ମୁନି ତୁମ୍ଭର ପ୍ରସାଦେ ।
ରାଜ୍ୟେ ସୁଖ ସମ୍ପଦ ମୋର ଅଛଇ
ଅପ୍ରମାଦେ ॥୧୦୦
କର୍ମ ହୀନେ ମୋର ଯେକା ନୋହିଲା
ସନ୍ତତି ।
ପୁତ୍ର ବୋଲିଣ ଯାହା ବୋଇଲ ହେ ଯତି ॥
ଅନେକ ତପସ୍ୟା କରି ଦୋହିତାୟେ
ପାଇଲି ।
କେଶରୀ କପିକି ତାହା ବିଭା କରିଦେଲି ॥
ପମଞ୍ଜନୀ ନାମ ଯେ ଅଟଇ ତାହାର ।
ଦେବସ୍ତିରୀ ସମାନେ ଅଟଇ ସୁନ୍ଦର ॥
ସେହି ଦୋହିତା ଗୋଟି ହୋଇଲା ମୋର
ଜାତ ।
ପୁତ୍ର ଜାତ ଆଉ ନୋହିଲା ତପୋବନ୍ତ ॥
ତୁ ଯେ ସୁଦୟା କରି ସମସ୍ତ ପଚାରି ।
ପୁତ୍ରଦାନ ମୋତେ ଦିଅସି ତପଚାରୀ ॥୧୦
ଦିଅସି ପୁତ୍ରଦାନ କପିକୁଳ ରହୁ ।
ଯେ ତୋର କୀର୍ତ୍ତି ମୁନି ହେ ଯୁଗେ ଯୁଗେ
ଥାଉ ॥
ଯେସନେକ ସମୟେ ଯେ ବାଳୀ ସୁଗ୍ରୀ
ଆସି ।
ପିତାକୁ ଓଳଗିଣ ନିକଟରେ ବସି ॥
ଦେଖିଣ ଖଡ଼ଦ ରାଜା ଯେ ବୋଲଇ
କରଯୋଡ଼ି ।
କହ ମହାମୁନି ହେ ଯେ ପୁତ୍ର ନାମ ଫେଡ଼ି ॥
ଯେ ବାଳ ତନୟ ଯେ ମର୍କଟର ମୁଖ ।
ସୁବର୍ଣ୍ଣ ପ୍ରତିମା କି ବିଧାତା କଲାକ
ରୂପରେଖ ॥
ମୁନି ବୋଇଲେ ତୁ ଶୁଣସି ନୃପବର ।
ଯେ ବେନି ଅଟନ୍ତି ଇନ୍ଦ୍ର ଆଦିତ୍ୟଙ୍କ
କୁମର ॥୨୦

ଋକ୍ଷ ରାଜା ପାର୍ବତୀ ବନେ ପଶି ହୋଇଲା ସୁନ୍ଦରୀ ।
ଦେଖି ଇନ୍ଦ୍ର ଆଦିତ୍ୟ ଯେ ମଦନେ ତନୁଘାରି ॥
ରେତ ଖଳିତ ହୋଇ ପଡ଼ିଲା ଯହୁଁତଳେ ।
ବେନିପୁତ୍ର ଜାତ ହୋଇଲେ ତତକାଳେ ॥
ଋକ୍ଷ ରାଜାକୁ ଦେଖି ବିଧାତା ଦୟାକଲେ ।
ଯୁବତୀ ରୂପ ଛାଡ଼ି ପୁରୁଷ ଅଙ୍ଗକଲେ ॥
ଗତୁଂ ଶତେଗୁଣେ ହୋଇଲା ସୁନ୍ଦର ।
ପୁଣିହିଂ ସେବା କଲା ବିଧାତା ପୟର ॥
ଯେ ଦୁଇ ପୁତ୍ରକୁ ସେ ଦଣ୍ଡକା ଅରଣ୍ୟରେ ଥୋଇ ।
ଯେ ମୋର ମଢ଼ିଆ ସନ୍ନିଧରେ ଶୁଅଇ ॥୩୦
ଇନ୍ଦ୍ର ଆଦିତ୍ୟ ପୁତ୍ରଙ୍କ ଦୟାକଲେ ।
ବାଳୀ ସୁଗ୍ରୀ ବୋଲିଣ ଦୁହିଂଙ୍କ ନାମଦେଲେ ॥
ଧର୍ମପୁତ୍ର କରି ଯେହାକୁ ପାଳିଲୁ ବାଳକାଳୁ ।
କ୍ଷଣେହେଂ ଅହିଲ୍ୟାୟେ ନଛାଡ଼ନ୍ତି କୋଳୁ ॥
ମାତା ଗୁଣ ଘେନିଣ ଯେ ବାନର ବଦନ ।
ଶ୍ରୀବନ୍ତ ସୁନ୍ଦର ଯେ ଅଟନ୍ତି ବେନିନନ୍ଦନ ॥
ଅଯୋନି ସମ୍ଭୂତ ଯେ ଅଟନ୍ତି ପୁତ୍ର ଦୁଇ ।
ତେଣୁ ସେ ଅଭିନବ କରି ପାଳିଅଛି ମୁହିଂ ॥
ଯେବେ ତୁ ମହାରାଜା ମୋହୋର ବୋଲକର ।
ଯେ ପୁତ୍ରକୁ ନିଅ ତୁ କିଷ୍କିନ୍ଧ୍ୟା ନୃପବର ॥୪୦
ଯେ ତୋର ବଂଶେଣ ଯେହୁ ରାଜା ହେଉ ।
ଯେ ବିଶ୍ୱ ସଂସାରେ ପୁଣ ଗୋତ୍ର ହତ ନୋହୁ ॥
ଯେ ପୁତ୍ରେ ତୋହୋର ହୋଇବେ ନୃପତି ।
କଲୁ ସଦୟେ ତୋର ଦେଖିଣ ଭଗତି ॥
ବଳେ ସମାନ ଯେହାକୁ ନାହିଂନା ସଂସାରେ ।
ପାଦତଳେ ଖଟିବେ ସେ ସକଳ ବାନରେ ॥
ଯେତେ ବୋଲି ମୁନିବର ପୁତ୍ରଙ୍କ ହସ୍ତଧରି ।
ଖଡ଼ଦ କପିଙ୍କି ଦେଲେ ସମର୍ପଣ କରି ॥୫୦
ଆନନ୍ଦେ ଦୁଇ ପୁତ୍ରଙ୍କୁ କୋଳରେ ରାୟେଧରି ।
ନାନା ମଣିରତ୍ନେ ଆଭରଣ କରି ॥
ଅହିଲ୍ୟାୟେ ଦେଖିଲେ ପୁତ୍ର ଖଡ଼ଦ ରାଜାକୋଳେ ।
ଥନ ଥନ କଲେକ ଲୋତେକ ବେନିଡ଼ୋଳେ ॥
ମୁନି ବୋଇଲେ ଗୋ କିପାଇଂ ସଖୀ ଆଉ ଭାଳି ।
ଅନେକ ଦୁଃଖରେ ତୁ ଯେ ଥିଲୁ ପ୍ରତିପାଳି ॥
ଯେବେ ପୁତ୍ରମାନେ ତୋର ହୋଇବେ ନୃପତି ।
ସଂସାରେ ପ୍ରଶଂସା ଗୋ ପାଇବୁ ମହାସତୀ ॥
ଆଦ୍ୟରୁ ସେ ପୁଣ ଯେ କହିଛି ମୁହିଂ ତୋତେ ।
ଯେ ପୁତ୍ର ଜାତକଲେ ଇନ୍ଦ୍ର ଯେ ଆଦିତ୍ୟେ ॥
ଋକ୍ଷ ରାଜା ଥୋଇଗଲା ଗୌତମୀ ନଦୀକୂଳେ ।
ତୁ ତାହାଙ୍କୁ ପାଳିଲୁ ଯେ ପୁତ୍ର ବୋଲି ଭୋଳେ ॥୬୦
ଯେ ପୁତ୍ରେ ହୋଇବେ ଯେ କିଷ୍କିନ୍ଧ୍ୟା ଦଣ୍ଡଧାରୀ ।
ଅହିଲ୍ୟାଙ୍କର ପୁତ୍ର ବୋଲି ଜଗତେ ଯଶ ସ୍ଫୁରି ॥
ଜଗତର ପିତା ମୋତେ ଯାଇଛନ୍ତି କହି ।
ସମୟେ ପାଳିଣ ତୁ ଥାଅ ତପସାଇଂ ॥
ଯହିଂକି ଧାତା ଯେହା ଅଛନ୍ତି ନିର୍ମାଣି ।
ତାହା ପଛେ ତୁମ୍ଭଙ୍କୁ ଗୋ କହିବା ସଂଘାତୁଣୀ ॥
ଯେବେଣ ଶ୍ରୀରାମ ତୋତେ ତାରିଲେ ଶାପରୁ ।
ତାହାଙ୍କରି କାର୍ଯ୍ୟ ଯେ ଯେ କରିବେ ମହାବୀରୁ ॥
ପୂର୍ବେ ଯେ ଖଡ଼ଦ ରାଜା ଘୋର ତପ କଲା ।
ସେ ପୁଣ୍ୟଫଳେ ସଖିରେ ଯେ ପୁତ୍ର ପାଇଲା ॥୭୦
ନୋହସି ବିକଳ ଗୋ ଶରଦ ଚନ୍ଦ୍ରମୁଖୀ ।
ହରଷେ ଆଗ୍ୟାଂଦେଲେ ନିଅ ଏ ପୁତ୍ର ଦୁହିଂକି ॥
ଶୁଣିଣ ଅହିଲ୍ୟାୟେ ଯେ ହୋଇଲେ ତୃପୁତି ।
ଗଜ ପିଠିରେ ବସାଇ ତାକୁ ନେଲାକ ନୃପତି ॥
ନିଜ ନବରେ ସେ ପ୍ରବେଶ ହେଲାକ ଯାଇ ।
ଉଛବ କରାଇଲା ସେ ଭଣ୍ଡାର ଜୁର ଦେଇ ॥
ନୀଳବତୀ ନାମେଣ ଯେ ତାହାର ପାଟରାଣୀ ।
ସେ ଦୁଇ ପୁତ୍ରକୁ ଯେ ସମର୍ପିଲା ଆଣି ॥
ବୋଇଲା ସଖିଆରେ ଶୁଣସି ବିମ୍ୱୋଷ୍ଠୀ ।
ଗଉତମ ମୁନି ସଙ୍ଗେ ହୋଇଲି ଯେକ ଗୋଷ୍ଠୀ ॥୮୦
ପୁତ୍ର ନାହିଂ ବୋଲିଣ କହିଲି ମୁହିଂ ଯହୁଂ ।
ସେ ମୁନି ପ୍ରସନ ଯେ ହୋଇଲେକ ତହୁଂ ॥
ଯେ ଦୁଇ ପୁତ୍ରକୁ ସେ ପ୍ରତିପାଳିଥିଲେ ।
ସଦୟା କରି ମୋତେ ସମର୍ପଣ ଦେଲେ ॥
ଇନ୍ଦ୍ର ଆଦିତ୍ୟ ଦୁହିଙ୍କରି ବୀର୍ଯ୍ୟରେ ଉତପତି ।
ଯେହାକୁ ନେଇଣ କର କିଷ୍କିନ୍ଧ୍ୟା ଅଧିପତି ॥
ଶୁଣିଣ ରାଣୀ ଅତି ହରଷ ହୋଇଲା ।
କୋଳେ ଧରି ପୁତ୍ରକୁ ସେ ସଂଗ୍ରହଣ କଲା ॥
ଉଛକ ମନ ହୋଇ ଅନେକ ଦାନ ଦେଲା ।
ପ୍ରାଣରୁ ଅଧିକ କରି ପୁତ୍ରକୁ ପାଳିଲା ॥ ୯୦
ଯେଥୁ ଅନନ୍ତରେ ଶୁଣ ଶ୍ରୀରାମଚନ୍ଦ୍ର ରାୟେ ।
ବଢ଼ନ୍ତେ ସାତ ବରଷ ହୋଇଲେକ ପୋୟେ ॥
ସମସ୍ତ ଶାସ୍ତ୍ର ବିଦ୍ୟା ସକଳ ଶିଖାଇଲା ।

ଦିନୁ ଦିନ ବାଳୀର ତେଜ ବିକାଶିଲା ॥
ବିଭା କରାଇଲା ତାକୁ କୁଳ ଗୋତ୍ର ଜାଣି ।
ତାରା ନାମେ ସୁନ୍ଦରୀ ଯେ ବାଳୀର ରମଣୀ ॥
ରୋମା ନାମେ ସୁନ୍ଦରୀ ଯେ ମୋହୋର ଯୁବତୀ ।
ଯାହା ପଚାରିଲ ତୁମ୍ଭେ ଶୁଣିମା ରଘୁପତି ॥
କେତେହେଂକ ଦିନେ ସେ ଯେ ଖଡ଼ଦ କପିରାୟେ ।
ସେ ପୁନ୍ୟ ପୁରୁଷ ଯେ ସ୍ୱର୍ଗରେ ସମ୍ଭାୟେ ॥୧୦୦
ପିତାର ଅନ୍ତରେ ଯେ ଅମାତ୍ୟ ଗଣେ ଭାଳି ।
ଅବିଷେକ କଲେ ଜ୍ୟେଷ୍ଠ ବୋଲି ବାଳୀ ॥
ତାରା ସୁନ୍ଦରୀ ଯେ ହୋଇଲା ପାଟରାଣୀ ।
ବାଳୀ ମହୀପତି ଯେ ରାଜ୍ୟରେ କାରେଣୀ ॥
ମୁହିଂ ଯୁବରାଜା ପଣେ ରାଜ୍ୟ ପାଳିଲଇଂ ।
ବାଳୀର ଆଗ୍ୟାଂରେ ମୁଂ ଯେ ମନ୍ତ୍ରୀପଣେ ଥାଇ ॥
ଯେଥୁ ଅନନ୍ତରେ କେତେହେଂକ ଦିନ ବହିଗଲା ।
ମାୟାଭି ବୋଲିଣ ଯେ ଦଇତ୍ୟ ଅଇଲା ॥
ଜଗତେ ମହାବଳୀ ସମାନ୍ୟ ନାହିଂ କେହି ।
ଯହିଂ ତହିଂ ସଂଗ୍ରାମ କରଇ ପରିଘାଇ ॥୧୦
ସମସ୍ତେ ହାରିଣ ତାକୁ ଶରଣ ପଶିଲେ ।
ଥୋକାୟେ ଯୁଦ୍ଧ କରିଣ ପ୍ରାଣ ହରାଇଲେ ॥
ସମୋଦ୍ରକୁ ବୋଇଲା ଆସ ହୋ ଯୁଝିବା ।
କେଡ଼େକ ତୋ ପରାକ୍ରମ ଆସସି ବୁଝିବା ॥
ନୋହିଲେ ଶୋଷିବିଟି ସପତ ସାହେର ।
ସଂଗ୍ରାମ କର ଆସି ଯେ ମୋର ସଙ୍ଗତର ॥
ମାୟାଭିକି ବୋଇଲା ସେ ବରୁଣ ରାଜନ ।
ବହୁତ କାକୁସ୍ଥ ହୋଇ ବୋଇଲା ବଚନ ॥
ମୁହିଂ ନିର୍ବଳ ଆତ୍ମା ମେରୁକୁ ଆଶ୍ରେ କରଇ ।
ତୋହୋର ସଙ୍ଗତେ ମୁଂ ଯୁଦ୍ଧ କରିତେ ନପାରଇ ॥୨୦

ଜଗତର ଧାରଣା ସେ ଅଟଇ ସୁରଗିରି ।
ସେ ଅବା ସଂଗ୍ରାମେ ଯେ ହୋଇବ ତୋତେ ସରି ॥
କରସି ଦୟା ରାୟେ ନକରିବା କୋପ ।
ଜଳବିମ୍ବୁ ପରାକ୍ରମ ଯେ ମୋର ଅଳପ ॥
ସମୋଦ୍ର କହିଲା ଯେ ଯେ ରୂପେ କାକୁସ୍ଥ ହୋଇ ।
ମନ ସନ୍ତୋଷ କରାଇଲା ସେ ଧନରତ୍ନ ଦେଇ ॥
ତହୁଂ ପୁଣ ଦଇତ୍ୟ ବାହୁଡ଼ିଣ ଗଲା ।
ମେରୁ ମେଖଳକୁ ସେ ଦୂରୁଂ ଡାକ ଦେଲା ॥
ବିକ୍ରମ ଗଡ଼ିୟେ ସେ ଛାଡ଼ିଲା ନିଠିଆଇ ।
ରେ ରେ କାର ଧ୍ୱନି କରି ପ୍ରବେଶ ହୋୟେ ଯାଇ ॥୩୦
ବାହୁ ଦୁଇ ଉଭାରିଣ ସେ ଡାକଇ ପୁଣ ପୁଣି ।
ଦଶନ କାମୋଡ଼ିଣ ସେ ରୋଷେ ଶିରଝୁଣି ॥
କୋପେ ଡାକ ଦିଅଇ ଶୁଣସିରେ ମେରୁ ।
ଜଗତେ ତୋତେ ବୋଲନ୍ତି ବଳୀଆରୁ ॥
କରସି ସଂଗ୍ରାମ ହୋ ମୋହୋର ସଙ୍ଗେ ମିଳି ।
ନୋହିଲେ ଆଜ ତୋତେ ପକାଇବି ଟାଳି ॥
ବିଧା ମାରିଣ ତୋତେ କରିବଇ ଚୂନା ।
ନୋହିଲେ ମୋର ସଙ୍ଗେ ସଂଗ୍ରାମ କର କିନା ॥
ଶୁଣିଣ ଗିରିରାଜା କମ୍ପଇ ଥରହର ।
ମାୟାଭି ଦଇତକୁ ସେ କହଇ ଉତ୍ତର ॥୪୦
ମୁହିଂ ମହାଭାରା ବହିଅଛି ଶିରେ ।
ଦେଖ ଦେବଗଣେ ସମସ୍ତେ ଅମରେ ॥
ଆବର ସପତ ସାଗର ପୃଥ୍ୱି ନବମହୀ ।
ଜୀବଜନ୍ତୁ ସମସ୍ତ ଆଦି ଯେତେ ହୋଇ ॥
କେମନ୍ତେ ସଂଗ୍ରାମ ମୁ କରିବି ତୋର ତୁଲେ ।
ବାହୁଡ଼ି ମହାବୀର ଯାଅ ତୁ ମୋର ବୋଲେ ॥
ତୋହୋର ସଙ୍ଗେ ସମର କରିତେ ଅନ୍ୟ ନାହିଂ ଭଳି ।

ଯେକାମାତ୍ର ଅଛଇ କିଷ୍କିନ୍ଧ୍ୟାରେ ବାଳୀ ॥
ଜଗତେ ପ୍ରତାପୀ ସେ ଅଟଇ ମହାବୀର ।
ତାହାର ସଙ୍ଗେ ଯାଇ ସଂଗ୍ରାମ ତୁ କର ॥୫୦
ଶୁଣିଣ ମାୟାଭି ସେ ହୋଇଲା ହରଷ ।
ଗଡ଼ିୟେ ଛାଡ଼ିଲା କମ୍ପିଲା ଦଶଦିଶ ॥
କିଷ୍କିନ୍ଧ୍ୟା ନଗ୍ରକୁ ଧାଇଂଲା ଖରକରି ।
ନିମିଷକ ମାତ୍ରେ ଭେଟିଲା ସେହୁଗିରି ॥
ରଜନୀ ସମୟେ ଯାଇ କଟକେ ପଶିଲା ।
ମେଢ଼ ମଣ୍ଡୋପ ଦେଉଳ ସମସ୍ତ ନାଶକଲା ॥
ଜଗତୀ ଅଟାଳି ଭାଙ୍ଗିଂଲା ସମସ୍ତ ।
ବାଟଘାଟ ଓଗାଳି ସେ ମାଇଲା ଦଇତ୍ୟ ॥
ଉଚ୍ଚେ ଡାକ ଦିଅଇରେ ବାହାର ହୁଅ ବାଳୀ ।
ମୁଥ ମାରି ଶରୀର ତୋର ଯେ କରିବଇଂ ଧୂଳି ॥୬୦
ଲୋକେ ପଳାଇଣ କହିଲେ ବାଳୀ ଆଗେ ।
ଶୁଣିଣ ମହାବୀର ବାହାର ହେଲା ରାଗେ ॥
ମହାବଳବନ୍ତ ସେ ଅଟଇ ବୀର ବାଳୀ ।
ଧାଡିକାରେ ସଜ ହୋଇ ଦତ୍ୟ ଆଗେ ମିଳି ॥
କୋପେ ବିଧାୟେ ମାଇଲା ବକ୍ଷ ସ୍ଥଳେ ।
ବୃଷଭ ଗୋଟାୟେ ଦତ୍ୟ ହୋଇଲା ବିକଳେ ॥
ପବନହୁଂ ବେଗେ ସେ ପଳାଇଣ ଗଲା ।
ପାତାଳ ବିମ୍ୱରେ ସେ ଗୁପତେ ଲୁଚିଲା ॥
ଗୋରୁ ବଧ ବୋଲି ବୀର ବାହୁଡ଼ିଣ ଆସି ।
ଆପଣା ମନ୍ଦିରେ ସେ ବୀର ଯାଇ ପଶି ॥୭୦
ମାୟାଭି ଦତ୍ୟ ଯହୁଂ ଗଲାକ ପଳାଇ ।
ବାଳୀର ବୀରପଣ କହିଲା ସମସ୍ତ ଦତ୍ୟନ୍ତ ବୁଝାଇ ॥
ବନ୍ଧୁବର୍ଗ ଲୋକ ସମସ୍ତ ରୁଣ୍ଡ କଲା ।
ଯେକ ଯେକ କରିଣ ସେ ସମସ୍ତ କହିଲା ॥
ବୋଇଲା ମୃତ୍ୟୁପୁରେ କିଷ୍କିନ୍ଧ୍ୟା ନାମେ ପୁରୀ ।
ବାଳୀ ନାମେ ବାନରେକ ତହିଂରେ ଦଣ୍ଡଧାରୀ ॥
ମେରୁ କହନ୍ତେ ମୁଂ ସଂଗ୍ରାମ କରି ଗଲି ।

ମେଢ଼ ମଣ୍ଡୋପ ତାର ଦେଉଳ ଭାଙ୍ଗିଲି ॥
କୋପେଣ ବାଳୀ ରାଜା ଅଇଲା ଅତି
ବେଗେ ।
ପର୍ବତ ସମାନ୍ୟେ ମିଳିଲା ମୋର
ଆଗେ ॥୮୦
ବିଧାୟେ ମାଇଲା ମୋର ବକ ସ୍ଥଳେ
ଆଣି ।
ଅଗ୍ୟାନ ହୋଇଲି ମୁଂ ବଜ୍ରଘାତ ଜାଣି ॥
ବୃଷଭ ରୂପ ଧରି ଅଇଲି ପଳାଇ ।
ରହିଲେ ପ୍ରାଣ ମୋର ଘେନନ୍ତା କପିସାଇଂ ॥
କି ବୁଦ୍ଧି କରିବାଟି କହସି ଉପାୟେ ।
କେମନ୍ତେ ଜିଣିମାଟି କିଷ୍କିନ୍ଧ୍ୟାର ରାୟେ ॥
ଶୁଣିଣ ପ୍ରତଜ୍ଞା କରି ଉଠିଲା ସାନ ଭାଇ ।
ଦୁନ୍ଦଭି ନାମେ ବୀର ବୋଲଇ ପରିଘାଇ ॥
ଛାର ବାନର ସେ କିଷ୍କିନ୍ଧ୍ୟାର ସାଇଂ ।
ଆଗ୍ୟାଂ ଦେଲେ ଯେହିକ୍ଷଣି ମାରବି ତାକୁ
ଯାଇ ॥୯୦
ନ କର ରାୟେ ଚିନ୍ତା ଯେଥେ ଥାଅ ବସି ।
ଯେହିକ୍ଷଣି ବାନରକୁ ଆସିବଇଂ ନାଶି ॥
ପ୍ରତଗ୍ୟାଂ କରିଣ ବେଗେ ଗଲା ଚଳି ।
ଧାଡିକାରେ ଆସିଣ ସେ କିଷ୍କିନ୍ଧ୍ୟାରେ ମିଳି ॥
ରଜନୀ ପ୍ରଭାତେ ସେ ପୁରେ ପଶିଲାକ
ଯାଇ ।
ସିଂଘଦ୍ୱାରେ ଡାକଇ ସେ ବାହାନାଦ ଦେଇ ॥
ଆରେ ଆରେ ବାନର ନିଲକ୍ଷଣ ବାଳୀ ।
ଆଜ ସେ ଜୀବନ ତୋର ଯିବ ଯମପୁରୀ ॥
ମୋହୋର ଜ୍ୟେଷ୍ଠ ଭାଇକୁ ମୁଥେକ
ମାଇଲୁ ।
ତେଣୁ ସେ ଯେତେକାଳେ ମରଣ
ଲୋଡ଼ିଲୁ ॥୧୦୦
ମୁହିଂ ତାହାର ଅନୁଜ ଦୁନ୍ଦଭି ନାମ ବହଇ ।
ବଳବନ୍ତ ହୋଇ ଦଣ୍ଡେ ନ ରହଇ ॥
ପାରିଲେ ସଂଗ୍ରାମ ତୁ କର ମୋ ସଙ୍ଗରେ ।
ନ ପାରିଲେ ଶରଣ ତୁ ପଶ ମୋ ପୟରେ ॥

ଯେତେ ବୋଲି ଉଚ୍ଚେ ବୀର ରଡ଼ିଯେକ
ଦେଲା ।
ଅନ୍ତଃପୁରେ ଥାଇ ତାହା ବାଳୀ ଶୁଣିଲା ॥
ଶୁଣିଣ ଶଯ୍ୟାରୁ ସେ ଉଠିଲା ତଡ଼ତି ।
ବିକ୍ରମ ସିଂଘ ପ୍ରାୟେ ମିଳିଲା ତାର କତି ॥
ଠାଣ ଦେଇ ଉଭାରି ରହିଲେ ବେନି ବୀର ।
ବାହୁଯୁଦ୍ଧ କରନ୍ତେଣ କମ୍ପିଲା ତିନିପୁର ॥୧୦
ହିୟାକୁ ହିୟା ମାରିଣ ଠେଲାଠେଲି ହୋନ୍ତି ।
ମୁଣ୍ଡକୁ ମୁଣ୍ଡ ମାରିଣ ରୋଧିର ବୁହାବନ୍ତି ॥
ବିଧା ମାରିବାର ଘାତେ କମ୍ପଇ ବସୁମତୀ ।
ପାଦ ଲାଗି କାଷ୍ଟ ପାଷାଣ ଚୂରି ହୋନ୍ତି ॥
ନଖରେ କେ କାହାର ଛିନ୍ନାଇଲେ ତଣ୍ଡି ।
ରୋଷଭରେ ରଟମଟ ଚାପନ୍ତି ଦନ୍ତପାଟି ॥
ପେଟକଇ ମାରନ୍ତି ବଜ୍ରସମ ନାତ ।
କିଜାଣି ପର୍ବତରେ ପଡ଼ଇ ବଜ୍ରଘାତ ॥
ନଗ୍ରର ଲୋକ ଆମ୍ଭେ ଦେଖିଲୁ ରୁଣ୍ଡ
ହୋଇ ।
ଦୁହିଂଙ୍କରି ପାଦ ଘାତେ କମ୍ପିଲାକ
ମହୀ ॥୨୦
ହନୁମନ୍ତ ଜମ୍ୱେବ ସୁଷେଣ ସହିତେ ।
ଅଙ୍ଗଦ ବୀର ଆଦି ପାତ୍ର ମନ୍ତ୍ରୀ ଯେତେ ॥
ଗୋଟାୟେ ସନ୍ନିଧ୍ୟକୁ ନ ପାରିଲୁ ଯାଇ ।
ବେଢ଼ିଣ ମାରିବୁ ବୋଲି ଗଲୁ ଆମ୍ଭେ ଧାଇଂ ॥
ଦୁଇ ମତ୍ତ ବ୍ୟାଘ୍ରେ କି କରନ୍ତି ଖଡ଼ିଆଳି ।
କି ଅବା ବେନି ଷଣ୍ଢେ ହୋଇଲେ
ବାଗୁଆଳି ॥
ଶନିଶ୍ଚର ମଙ୍ଗଳ କି କରନ୍ତି ସମର ।
କି ଅବା ଚଉଦନ୍ତ କରନ୍ତି କରୀବର ॥
ଦୁନ୍ଦଭି ଦଇତ୍ୟ ପଶିଲା ମୁଣ୍ଡିଆଇ ।
ବାଳୀର କଟିଭାଗ ଭିଡ଼ିଲାକ ଯାଇ ॥୩୦
ପାଦେ ପାଦ ଛନ୍ଦିଣ ପକାଇଲା ଟାଳି ।
ଦଇତର ପିଠିରେ ବସିଲା ବୀର ବାଳୀ ॥
କୋପେଣ କପିବୀର କାଖରେ ହସ୍ତ ଦେଇ ।
ଉପରକୁ ଟୋଳିଲା ଭୂମିରୁ ଛଡ଼ାଇ ॥

କୋପେ କପି ରାୟେ ଝଙ୍କାଳି ଫିଙ୍ଗି
ଦେଲା ।
ଗଡ଼ିଣ ପଡ଼ିଯାଇ ଅଣାଇ ପଡ଼ିଲା ॥
ମୁଥ ଉଞ୍ଚାଇ ଆସି ପୁଣ ହୋଇଲା ଉଭା ।
ମେରୁ ମନ୍ଦର ପ୍ରାୟେ ଦିଶନ୍ତି ଦୁହେଂ ଶୋଭା ॥
ଧାଇଂଣ ବାଳୀକି ଯେ ମାଇଲା ମୁଥ ଘାତ ।
କପିରାଜ ହୃଦରେ ବାଜିଲା ତୁରିତ ॥ ୪୦
ଇନ୍ଦ୍ରର ବରେଣ ବାଳୀ ଅଟଇ ବଜ୍ର ଅଙ୍ଗ ।
ତେଡ଼େ ପାଦଘାତରେ ନୋହିଲା କିଛି ଭଙ୍ଗ ॥
ଅଗ୍ନି ଉଠିଲା ଯେ ସଞ୍ଚାଳ ଅଗ୍ନି ଜାଣି ।
ରାଗେଣ ଧାଇଂଲା କପିକୁଳମଣି ॥
ଦେଖିଣ ଦୁନ୍ଦଭି ସେ ଭୟେ ପଳାଇଲା ।
ମାୟାରେ ମଇଂଷି ଯେ ଗୋଟାୟେକ
ହେଲା ॥
ବେଗେଣ ବାଳୀ ତାର ଧରିଲା ଚରଣ ।
ବଜ୍ରଗତି କରିଣ ବୁଲାଇଲା କପିରାଣ ॥
ଯେ ହସ୍ତ ସେ ହସ୍ତ କରି ବୁଲାଇ ପୁଣ
ପୁଣି ।
ଦୁହିଂଙ୍କରି ଗର୍ଜନ ପ୍ରଳୟ ସିନ୍ଧୁ ଜାଣି ॥୫୦
ଉର୍ଦ୍ଧେ ଅସୁର ଗଲା ପ୍ରାଣ ଛାଡ଼ି ।
ମୁଖ ନାସିକା ବାଟେ ରୋଧିର ତାର ପଡ଼ି ॥
ମହାଗିରି ସମାନେଣ ଅଟଇ ଦଇତ ।
ଝର ଝର ମେଦନୀରେ ବହିଲା ରକତ ॥
ମାତଙ୍ଗ ମୁନି ଯେ ଦୁର୍ଭାସାଙ୍କ ଶିଷ୍ୟ ।
ଯେ ଋଷିମୁଖ ପର୍ବତେ ସେ କରିଥିଲେ
ବାସ ॥
ଯେହି ପର୍ବତ ସନ୍ନିଧରେ ହୋଇଲା ସମର ।
ଶ୍ରାବଣ ବରଷା ପ୍ରାୟେ ବହିଲା ରୋଧିର ॥
ଦେଖି ମହାମୁନି ମନରେ କୋପ କଲେ ।
ଦୋଷ ନ ବିଚାରି ସେ ବାଳୀକି ଶାପ
ଦେଲେ ॥
ବୋଇଲେ ମୋ ଅଙ୍ଗେ ରୋଧିର ପକାଇଲୁ ।
ପବିତ୍ର ଆସନ ମୋର ଅପ୍ରତିଷ୍ଠା କଲୁ ॥
ଆରବେଳେ ତୁ ଯେ ପର୍ବତକୁ ଅଇଲେ ।

ହୃଦୟ ଫାଟି ମରିବୁ ବୋଲିଣ
ଶାପ୍ୟଦେଲେ ॥
ଋଷିଙ୍କର କୋପ ବାଳୀ ବାରତା ପାଇଲା ।
ଦୁନ୍ଦଭିକି ମାରି ବାଳୀ ପର୍ବତେ ପକାଇଲା ॥
ପର୍ବତକୁ ନ ଅଇଲା ସେ ଶାପ୍ୟକୁ ଭୟେ
କରି ।
ଜାଣିଣ ବାଳୀ ଛାମୁରେ ଯାଇ ମିଳିଲେ
ବ୍ରହ୍ମଚାରୀ ॥
ବୋଇଲେ ଅସୁରକୁ ମାଇଲୁ ଯେ ନଖ
କୁନ୍ତେ ।
ଆସନଯାକ ମୋର ପୂରାଇଲୁ
ରକତେ ॥୭୦
ଯେଡ଼େକ ଗର୍ବରେ ବହିଲୁ କିସ ପାଇଂ ।
ଦୁର୍ବାସା ଅଛନ୍ତି ବୋଲି ତୋର ଭୟେ ଭୀତି
ନାହିଂ ॥
କରପତ୍ର ଯୋଡ଼ିଣ ଯେକହଇ ବାଳୀବୀର ।
ଭୋ ମହାମୁନି ତୁମ୍ଭେ ବିଚାରି କୋପ କର ॥
ମାୟାଭି ଦଇତର ଯେ ଅଟଇ ସାନ ଭ୍ରାଥ ।
ଦୁନ୍ଦଭି ବୋଲିଣ ସେ ଅଟଇ ମହାଦତ୍ୟ ॥
କ୍ରୁଶେକ ପ୍ରମାଣେ ସେ ଅଟଇ ଦୀର୍ଘ ପ୍ରତି ।
ପାଞ୍ଚ ପାଞ୍ଚ କ୍ରୁଶର ସେ ବାହୁର ଆକୃତି ॥
ଋଷି ବିପ୍ର ଧେନୁ ବଛା ଧରିଣ ବଳେ ଖାଇ ।
ତିନିପୁରେ ସମାନ ଯେ ଯେହାକୁ କେହି
ନାହିଂ ॥୮୦
ଅନେକ ସମର ମୁଂ ଯେହାର ସଙ୍ଗେ କଲି ।
କେହୁଣିସି ପ୍ରକାରେ ମୁଂ ମାରିତ ନ ପାରିଲି ॥
ପାଦ ଦୁଇ ଧରିଣ ମୁଂ ବୁଲାଇଲି ତୋଳି ।
ମୁଖ ବାଟେ ରୋଧିର ଯେ ପଡ଼ିଲା ଉଛୁଳି ॥
ତୁ ମୁନି ନ ବିଚାରି ଶାପ୍ୟ ମୋତେ ଦେଲୁ ।
ପର୍ବତକୁ ଅଇଲେ ତୁ ମରିବୁ ବୋଇଲୁ ॥
ମୁନି ବୋଇଲେ ତୁଯେ ଭଲ ହାଦେ କଲୁ ।
ଦୁଷ୍ଟ ଦାନବକୁ ତୁ ହେଳେଣ ସଂଘାରିଲୁ ॥
ରୋଧିର ପକାଇଲୁ ଯେ ଯେ ମୋର ତପ
ସ୍ଥାନେ ।
ପାପ ପାଇଲୁ ତୁ ପୂର୍ବର ପାପ ଗ୍ୟାନେ ॥୯୦
ଆଜହୁଂ ନୃପତି ତୁ ହେତୁ କରିଥିବୁ ।
ଋଷିମୁଖ ପର୍ବତକୁ କେବେହେଂ ନ ଆସିବୁ ॥
ଅଇଲେ ପ୍ରାଣ ତ ହାରିବୁ ନିଅତ ।
ଯେତେ କହି ଅନ୍ତର୍ଧାନେ ଗଲେକ
ତପୋବନ୍ତ ॥
ଶୁଣିଣ କପିରାଜ ଅଇଲା ବାହୁଡ଼ି ।
ଦୁନ୍ଦୁଭିର ଶବ ଆଣି କନ୍ଧେ ପାଡ଼ି ॥
ଗିରିବର ନିକଟେ ପକାଇ ତାହା ଗଲା ।
ଯଶ ସେ ରଘୁନାଥ ହେ ପର୍ବତ ହୋଇଲା ॥
ଯେଡ଼େ ବଡ଼ ଦତ୍ୟକୁ ଆଣିଲାଟି ବାଳୀ ।
ଭୋ ରଘୁନାଥ ଯେହା ପାରିବୁଟିକି
ତୋଳି ॥୧୦୦
ଶ୍ରୀରାମ ପଚାରନ୍ତି ଶୁଣିମା ଭୋ ମୈତ୍ର ।
ବାଳୀ ଯେ ମାଇଲା ଦୁନ୍ଦଭି ଦଇତ୍ୟ ॥
ତାହାର ଜ୍ୟେଷ୍ଟ ଭାଇ କଲାକ ପୁଣ କିସ ।
ଯେହା ସଞ୍ଚପି ମୋତେ କହିବା ସୂର୍ଯ୍ୟଶିଷ ॥
ସୁଗ୍ରୀବର ବୋଇଲା ଦେବ ଯେଥୁ
ଅନନ୍ତରେ ।
ମାୟାଭି ଥିଲା ଯେ ପାତାଳ ବିମ୍ବରେ ॥
ଦୁନ୍ଦଭି ମଲାର ସେ ବାରତା ପାଇଲା ।
କିଷ୍କିନ୍ଧ୍ୟା ନଗ୍ରକୁ ସେ କୋପେଣ ଧାଡ଼ି
ଦେଲା ॥
ଭାଇ ଛଳେ ସେ ଭାଜିଂଲା କଟେକ ।
ତାହା ଦେଖି ପଳାଇଲେ ନଗ୍ରରୁ
ସର୍ବଲୋକ ॥୧୦
ବାଳୀ ଅଗ୍ରତେ ପୁଣ କହିଲେ ଲୋକେ
ଯାଇ ।
ପୁଣିହିଂ ଅସୁରେକ ଅଇଲା ଗୋସାଇଂ ॥
ମେଢ଼ ମଣ୍ଡୋପ ଦେବ ଭାଜିଂଲା ସମସ୍ତ ।
ଶୁଣିଣ କୋପ କଲା ଯେ ବାସବର ସୁତ ॥
ନଗ୍ରରୁ ବାହାର ସେ ହୋଇଲାକ ଧାତି ।
ଦେଖିଣ ମାୟାଭି କଲାକ ମହାଭୀତି ॥
କାଳ ଦେବତା ଯେହ୍ନେ ଜନ୍ତୁକୁ ଆକର୍ଷଇ ।
ମାୟାଭିକି ବାଳୀ ତେସନ ଦିଶଇ ॥
ବୃଷଭ ରୂପ ଧରି ପୁଣିହିଂ ଧାଇଂଲା ।
ଭୋଖିଲା ବ୍ୟାଘ୍ର ଜାଣି ବାଳୀ
ଗୋଡ଼ାଇଲା ॥୨୦
ବେନି ବୀରେ ହୋଇଲେ ପାତାଳେ
ପ୍ରବେଶ ।
ରଜନୀ ପାହି ପୁଣ ହୋଇଲା ଦିବସ ॥
ମୁହିଂ ହାଦେ ବାଳୀ ସଙ୍ଗତେ ଯାଇଥିଲି ।
ମନ୍ତ୍ରୀ ଅମନାତ୍ୟଙ୍କୁ ଘେନି ଦ୍ୱାରେଣ
ରହିଥିଲି ॥
ବାଳୀ ମାୟାଭି ଦୁହେଂ ପାତାଳେ ଯୁଦ୍ଧ
କଲେ ।
ବରଷେ ପର୍ଯ୍ୟନ୍ତେ ସଂଗ୍ରାମ ଆବୋରିଲେ ॥
ଦୁହେଂ ନ ହାରନ୍ତି ସମର ନ ଛାଡ଼ନ୍ତି ।
ରାତ୍ର ଦିବସରେ ବାହୁ ଯୁଦ୍ଧ କରନ୍ତି ॥
କେତେହେଂକ ଦିନେ ବାଳୀ ମାୟାଭିକି
ମାଇଲା ।
ପ୍ରାଣ ଛାଡ଼ିବା ବେଳେ ରଡ଼ିଯେ
ଛାଡ଼ିଲା ॥୩୦
ବିମ୍ବର ଦ୍ୱାର ଫୁଟି ବାହାର ରକତ ।
ଦେଖିଣ ଭୟ ଆମ୍ଭେ ପାଇଲୁ ସମସ୍ତ ॥
ବୋଇଲୁ ବାଳୀ ବୀର ନିଶ୍ଚୟେ ଗଲାମାର ।
ଆବର ଆମ୍ଭଙ୍କୁ କି ରଖିବ ଅସୁର ॥
ଭାଇ ଛଳେ ଆମ୍ଭଙ୍କୁ ଯେ ଅସୁର ମାରିବ ।
କିଷ୍କିନ୍ଧ୍ୟା କଟକ ପୁଣ ଚୂର କରିନେବ ॥
ଜମ୍ବେବ ସୁଷେଣ ତାରାକ୍ଷ ହନୁମାନ ।
ପାଞ୍ଚ ମନ୍ତ୍ରୀ ମୂଳେ ଯେ ଗନ୍ଧମାରଦନ ॥
ସବୁରି ମନକୁ ସେ ଯୋଗାଇଲା କଥା ।
ବାଳୀର ମରିବାର ପାଇଲୁ ବାରତା ॥୪୦
ବୋଇଲୁ ଯେହି ବାଟେ ଅସୁର ଆସିବ ।
ଆମ୍ଭମାନଙ୍କୁ ସେ ନିଶ୍ଚୟେ ନାଶିବ ॥
ସମସ୍ତେ ବସି ଆମ୍ଭେ କଲୁ ଯେ ବିଚାର ।
ଅଚଳ ପଥରେ ପୋତିଲୁ ସେହି ଦ୍ୱାର ॥
ନଗ୍ରରୁ ବାହାର ହେଲୁ ଆମ୍ଭେ ବିରସ ମନ
ହୋଇ ।

ବିଚାର କଲୁ ଆମ୍ଭେ ସବୁ ମନ୍ତ୍ରୀଗଣେ ଥାଇ ॥
କିଷ୍କିନ୍ଧ୍ୟା ଠାକୁର ଯେ ବାଳୀ ନୃପବର ।
ତାହାକୁ ମାଇଲା ଯେ ମାୟାଭି ଅସୁର ॥
ହଟପାଟ ହୋଇ ରାଜ୍ୟେ କେମନ୍ତେ ରହିବା ।
ରାଜାପଣେ ଆମ୍ଭେ ସର୍ବେ ସୁଗ୍ରୀବକି ସ୍ଥାପିବା ॥୫୦
ଅଙ୍ଗଦ କୁମାର ତ ଅଟଇ ବାଳୁତ ।
ଅନେକ ଭାବେ ସେ ବଢ଼ିଣ ନଜାଣଇ ତତ୍ତ୍ୱ ॥
ଯେସନ ବିଚାରିଲେ ମନ୍ତ୍ରୀଗଣମାନ ।
ବାଳୀର ପ୍ରେତ କାର୍ଯ୍ୟ ସାରିଲେ ବହନ ॥
ସେହି ଦିନରେ ମୋତେ ସ୍ନାହାନ କରାଇଲେ ।
ଭଣ୍ଡାର ଫେଡ଼ି ଆଣି ଦଣ୍ଡଛତ୍ର ଧରାଇଲେ ॥
ରୋମା କନ୍ୟାକୁ ଆଣିଲେ ସୁବେଶ କରି ।
ରାଜ ସିଂଘାସନେ ମୋତେ ବସାଇଲେ ବରି ॥
ସୁବର୍ଣ୍ଣ କୁମ୍ଭେଣ ତୀର୍ଥଜଳ ଭରି ।
ବିପ୍ରଗଣମାନଙ୍କୁ ଡକାଇ ପୂଜା ବିଧି ସାରି ॥୬୦
ଅନେକ ଧନରତ୍ନ ବ୍ରାହ୍ମଣଙ୍କୁ ଦେଲେ ।
ସିଂଘାସନେ ବସାଇ ମୋତେ ଅବିଷେକ କଲେ ॥
ବାଜଇ ବିଜିଘୋଷ ସେ ମହୁରୀ ବୀରତୂର ।
ଅମନାତ୍ୟେ ଧରିଛନ୍ତି ଛତ୍ର ଯେ ଚାମର ॥
ନଗ୍ର ଲୋକେ ମିଳିଣ ମଙ୍ଗଳ କରୁଛନ୍ତି ।
ସମସ୍ତ ଋଷିଗଣେ ବେଦ ଅଭ୍ୟାସନ୍ତି ॥
ଯେମନ୍ତ ସମୟେ ଦେବ ଶୁଣିମା ଶ୍ରୀରାମ ।
ବାଳୀ ମାୟାଭିକି ମାଇଲା ସଂଗ୍ରାମେଣ ॥
ପାତାଳେ ମାୟାଭି ପଶିଣ ପ୍ରାଣଦେଲା ।
ଶ୍ରମ ଉପବାସେ ବାଳୀ ମୋହ ଯାଇଥିଲା ॥୭୦
ଚେତି ଉଠିଣ ସେ ହୋଇଲା ବାହାର ।
ଦେଖିଲା ପୋତା ହୋଇଅଛି ବିମ୍ବର ଦ୍ୱାର ॥
କୋପେ ମୁଥେ ମାରି ସେ ଦ୍ୱାର ଦେଲା ଫେଡ଼ି ।
ନିଶ୍ୱାସ ମାତ୍ରକେ ସେ କିଷ୍କିନ୍ଧ୍ୟାରେ ଦେଲା ଧାଡ଼ି ॥
ମଙ୍ଗଳ ଦେଖି ଗାଢ଼େ ଦେଲାକ ସିଂଘ ରଡ଼ି ।
ଦେଖିଣ ଅମନାତ୍ୟ ଗଣେ ପଳାଇଲେ ଛାଡ଼ି ॥
ମୁହିଂ ସିଂଘାସନେ ଥିଲି ରାଣୀ କୋଳେ ଧରି ।
ବାଳୀର ମୂର୍ତ୍ତି ଦେଖି ରହିଲି ଅପସରି ॥
ଆସ୍ଥାନକୁ ଦେଖିଣ ସେ ଚାହିଂଲା ତରାଟି ।
ନିଷ୍ଠୁର ବଚନ କହି ଚାପିଲା ଦନ୍ତ ପାଟି ॥୮୦
ପାତ୍ର ଅମନାତ୍ୟକୁ ସେ ବୋଇଲାକ ଚାହିଂ ।
ବିପରୀତ କଲରେ କେବଣ ଗୁଣ ପାଇ ॥
ମୁଂ ତୁମ୍ଭଙ୍କୁ କି ନୋହିଲି ହିତକାରୀ ।
ପ୍ରତିପାଳୁଥିଲି ପୁତ୍ର ସମ କରି ॥
ଯେ ମୋହୋର ପ୍ରତାପେ ତୁମ୍ଭର ନାହିଂ ଚିନ୍ତା ।
କେବଣ ଗୁଣ ଧରି କଲରେ ଅହନ୍ତା ॥
ରାଜ୍ୟର ଶତ୍ରୁକୁ ମୁଂ ଯାଇଥିଲି ମାରି ।
ଅନେକ ସମର କରି ତାକୁ ଅଇଲି ସଂଘାରି ॥
ବରଷେ ପର୍ଯ୍ୟନ୍ତେ କଲଇ ସମର ମହାଘୋର ।
ପଥରେ ପୋତି କିମ୍ପା ଅଇଲ ବିମ୍ବର ଦ୍ୱାର ॥୯୦
ସମସ୍ତଙ୍କ ବିଚାରେ ଯେ ଯେ କଥା ଯୋଗାଇଲା ।
ଯେ ମୋହର ମରଣ କି ଥିଲାକ ମନାସିଲା ॥
ଯେ ଯେ ସୁଗ୍ରୀବର ମୋହୋର ସାନ ଭାଇ ।
ଯୁଗ ରାଜାପଣେ ଭୋଗ କରୁଥିଲା ମହୀ ॥
ଯେତେ଼ ସମ୍ପଦ ଛାଡ଼ି ସ୍ୱାମୀ ଦୋରେହା ହୋଇଲା ।
ଲଜ୍ଜା ଭୟ ଛାଡ଼ିଣ ରାଜାପଣରେ ବସିଲା ॥
ଜ୍ୟେଷ୍ଠ ଭାଇ ମୁଂ ଯେ ସ୍ୱଭାବେ ନୃପତି ।
ଜ୍ୟେଷ୍ଠ ପୁତ୍ର ମୋହୋର ଅଙ୍ଗଦ ବୀରଅଛି ॥
ତାହାକୁ ରାଜାପଣ କିମ୍ପା ନଦେଲ ବିଚାରି ।
ନିଶ୍ଚୟେ ମୋହୋର ତୁମ୍ଭେ ହୋଇଲ ବଇରି ॥୧୦୦
ସୁର ନର ଅସୁର କରନ୍ତି ମୋତେ ଭୟେ ।
ମୁହିଂ ମହାବଳୀ ଅଟଇ ଜଗତେ ଅଜୟେ ॥
ପୃଥ୍ୱୀର ରାଜାଗଣେ ଦେଖିଲେ ମୋତେ ଭୟେ କରି ।
କିଷ୍କିନ୍ଧ୍ୟାର ଲୋକେ ତୁମ୍ଭେ ନ ଜାଣ ତଥ୍ୟକରି ॥
ଦଣ୍ଡେହେଂ ଓପ୍ରୋଧରେ ନକଲ ମନ୍ତ୍ରୀଗଣ ।
ଯେବେ ସୁଗ୍ରୀବରର ଯେ ଜାଣିଲି ଭଲ ପଣ ॥
ଯେତେ ବୋଲି ମୋର ସେ ଧଇଲାକ ବାଳ ।
କଚାଡ଼ି ପକାଇଲା ସେ ଜଗତୀର ତଳ ॥
ଧବଳ ଛତ୍ର ହନୁମତ ଧରିଥିଲା ।
ଯେହାକୁ କୋପେ ସେ ଗଳଥାୟେ ମାଇଲା ॥୧୦
ଯେ ଯେ ତାରାକ୍ଷ ମନ୍ତ୍ରୀ ଚାମର ବିଞ୍ଚୁଥିଲା ।
ଯେହାକୁ ହାଣିମି ବୋଲି କୋପେଣ ଧାଇଂଲା ॥
ସୁଷେଣ ମନ୍ତ୍ରୀ ଧରିଥିଲା ଦଣ୍ଡ ।
ତାହାକୁ ଅନେକ ବୋଇଲା ବିଖଣ୍ଡ ॥
ଗନ୍ଧମାର୍ଦ୍ଦନକଇ ବିଧାୟେ ମାଇଲା ।
ଖଡ଼ଗ ଧରି ପୁଣ ହାଣିତେ ଧାଇଂଥିଲା ॥
ଜମ୍ୱେବକୁ ବୋଇଲା ତୁ ପୁରାତନ ହୋଇ ।
ବୁଦ୍ଧି ନାଶ ଗଲାନି ନଜାଣୁ ଯେବେ କହି ॥
ଜଗତୀର ତଳେ ଥିଲି ପଡ଼ି ମୁହିଂ ।
ଲଜ୍ଜାରେ ମୁଖ ମାଡ଼ିଥିଲଇଂ ମୁହିଂ ଶୋଇ ॥୨୦
ପୁଣିହିଂ ଧାଇଂ ଯାଇଂ ଧଇଲା ମୋର କେଶ ।

ଶିର ଛେଦୁଥିଲା କରିଣ ମହାରୋଷ ॥
ଜମେୟବ ଡିଆରିଲେ ଶାହାସ୍ତ୍ର ମତ କହି ।
ସୋହୋଦ୍ର ବଧ କଲେ ଅନେକ ପାପ
ପାଇ ॥
ଥାଉ ଯେ ଜୀବନ୍ତେ ରାଜ୍ୟରୁ ପାରକର ।
ଯେତେ ବୋଲି ଜମେୟବ ଧଇଲେ ତାର
କର ॥
କଟକରୁ ପାରିକରି ଘଉଡ଼ି ମୋତେ
ଦେଲା ।
ଜମେୟବ ବୋଲେଣ ସେ ମୋ ପ୍ରାଣ ରହିଲା ॥
ତାରାକ୍ଷ ସୁଷେଣ ଜମେୟବ ହନୁମାନ ।
ଗର୍ନ୍ଧମାର୍ଦ୍ଦନ ସହିତେ ପାଞ୍ଚଜଣ ॥ ୩୦
ପାଞ୍ଚମନ୍ତ୍ରୀ ଘେନିଣ ମୁଂ ଅଇଲି ପଳାଇ ।
ବାଳୀର ଶତ୍ରୁକୁ ଆଉ ପୃଥିରେ ଠାବ ନାହିଁ ॥
ନିର୍ଭୟ ହୋଇଣ ଆମ୍ଭେ ଯେଥେ ଥିଲୁ
ରହି ।
ନଆସଇ ବାଳୀ ବୀର ଶାପ୍ୟକୁ ଭୟେ
ପାଇ ॥
ମୋହୋର ଭାରିଯାକୁ ବଳେଣ ଘେନି
ଗଲା ।
ଶତ୍ରୁର ଭାରିଯା ବୋଲି ରମଣୀ ଭୋଗକଲା ॥
ଭ୍ରାଥ ବଧୂ ଘେନିଣ ସେ କରଇ ରମଣୀ ।
ଡରେ ରାଜ୍ୟଲୋକେ ନକହିଲେ ବାଣୀ ॥
ମୋତେ ମାରିବାକୁ ସେ ପେଷିଥିଲା ଦୂତ ।
ପର୍ବତରୁ ଉଡୁରିଥିଲେ କରିଯାନ୍ତା ହତ ॥୪୦
ତେଣୁ ସେ ଭୟେଣ ଯେଥେ କରିଥାଇ
ବାସ ।
ଆଦିତ୍ୟଙ୍କ ବଚନକୁ କରିଅଛି ଆଶ ॥
ଅନେକ କଷ୍ଟେ ଦେବ ଅଛଇ ମୁହିଂ ରହି ।
କନ୍ଦମୂଳ ଖାଇଣ ନିର୍ଝଣ ପାଣି ପିଇ ॥
ଯେତେ କାଳେ ଦୁଃଖ ଦେବ ମୋର
ଗଲାପାର ।
ତୋହୋରେ ଶରଣ ଯହୁଂ ପଶିଲି
ରଘୁବୀର ॥

ଯେକା ବସ୍ତ୍ରକରେ ଦେବ ଅଇଲି ପଳାଇ ।
ମନ୍ତ୍ରୀ ଚାରି ମୋର ଯେ ସାଖା କେହି ନାହିଁ ॥
ତୋତେ ଦେଖି ଦେବ ହୋ ନିସ୍ତରିଲି ଆଜ ।
ଭୋ ରଘୁନାଥ ଯେବେ ଯେ ଫେଡ଼ିବା ମୋର
ଲାଜ ॥୫୦
ଯେ ଯେ ଦିଶୁଅଛି ଦୁନ୍ଦଭିର ହାଡ଼ ।
ପର୍ବତ ସମାନରୁ ଅଟଇ ମହାଗାଢ଼ ॥
ଯେହା ଯେବେ ଭୋ ରାମ ଫିଙ୍ଗି
ଦେଇପାରୁ ।
ତେବେ ସେ ବାଳୀର ମରଣ ପ୍ରତେ ଆମ୍ଭେ
କରୁ ॥
ଶୁଣିଣ ଶ୍ରୀରାମ ଉଠିଲେ ତଡ଼ତି ।
ସୁଗ୍ରୀବରକୁ ଚାହିଂଣ ବୋଇଲେ ରଘୁପତି ॥
ଆସ ଆସ ମୈତ୍ରତୁ ଫେଡ଼ିବି ସଂଶୟେ ।
ଯେମନ୍ତେ ସଂପ୍ରତେ ତୁ କରିବୁ କପିରାୟେ ॥
ଶୁଣିଣ ସୁଗ୍ରୀବର ହନୁମତ ହସ୍ତଧରି ।
ସୁଷେଣ ଜମେୟବ ତାରାକ୍ଷ ଆଗସରି ॥ ୬୦
ଗନ୍ଧମାର୍ଦ୍ଦନ ଲକ୍ଷଣ ସହିତେ ।
ଋଷିମୁଖ ପର୍ବତରୁ ସେ ଉତୁରି ତୁରିତେ ॥
ସୁଗ୍ରୀବର ଆଗ ହୋଇ କଢ଼ାଇ ଅଛି ବାଟ ।
ଦୁନ୍ଦଭିର ହାଡ଼ ପାଶେ ହୋଇଲେ ନିକଟ ॥
ଅଙ୍ଗୁଷ୍ଠି ଦେଖାଇଣ କହଇ କପିରାୟେ ।
ଯେଟି ଦୁନ୍ଦଭିର ହାଡ଼ ଦେଖିବା ରଘୁରାୟେ ॥
ଯେ ହାଡ଼ ପାଦେ ଯେବେ ଫିଙ୍ଗିଦେଇ
ପାର ।
ତେବେ ସେ ବାଳୀରାଜା ମରିବ ନିକର ॥
ଶ୍ରୀରାମ ଆଜ୍ଞା ଦେଲେ ଅଟଇ ଟିକି ମୈତ୍ର ।
ଯେଣେ ପ୍ରତେ ଯିବଟିକି ସୂର୍ଯ୍ୟଙ୍କର
ପୁତ୍ର ॥୭୦
ସୁଗ୍ରୀବର କହଇ ଶୁଣିମା ରଘୁବୀର ।
ବାଳୀର ମୃତ୍ୟୁଭେଦ ଯେ ଅଟଇ ନିକର ॥
ଚରଣବଳେ ଯେବେ ଯୋଜନେ
ଫିଙ୍ଗି ଦେଇପାରୁ ।
ତେବେ ସେ ସଂଶୟ ଫିଟିବ ରାମରାହୁ ॥

ଶୁଣିଣ ରଘୁନାଥ ହୋଇଲେ ଉଷତ ।
ଅଳପ ହସିଣ ଚାହିଂଲେ ହନୁମତ ॥
ଗନ୍ଧମାର୍ଦ୍ଦନ ଯେ ତାରାକ୍ଷକୁ ଚାହିଂ ।
ଯେ କଥା ସଂପ୍ରତେ ତୁମ୍ଭେ ଜାଣନା ସର୍ବହିଂ ॥
କି ହୋ ସୁଷେଣ ମନ୍ତ୍ରୀ ଚୂଡ଼ାମଣି ।
ଯାହା ସେ ମୈତ୍ର ମୋର ବୋଇଲେ
ଯେହିକ୍ଷଣି ॥୮୦
ହାଡ଼ ଫିଙ୍ଗିଲେଣ ନା ମରିବ କପିରାୟେ
ବାଳୀ ।
କରିବ କି ସଂପ୍ରତେ କହ ଯେବେ ଭାଳି ॥
ଶୁଣିଣ ସମସ୍ତେ ଯୋଡ଼ିଲେ ବେନିକର ।
ହୋଇଦେବ ଶକୁନ୍ୟେ ଅଟଇ ଆମ୍ଭର ॥
ଶ୍ରୀରାମ ଚାହିଂଲେ ଲକ୍ଷଣ ବଦନ ।
ଶିରେ କର ଦେଲେକ ସୁମେତ୍ରାନନ୍ଦନ ॥
ଭୋ ଦେବ ସୁଗ୍ରୀବର ଯେଣେ ପ୍ରତେ
ଯାଇ ।
ସେ କଥା କରିବା ହେ ସୀତୟାର ସାଇଂ ॥
ମୈତ୍ରଙ୍କର କାର୍ଯ୍ୟ ଦେବ ବେଗେଣ କର ।
ଯେଣେ ସେ ପ୍ରତେ ଯାନ୍ତି ମୈତ୍ର
ତୁମ୍ଭର ॥୯୦
ଶୁଣିଣ ଶ୍ରୀରାମ ଚାହିଂଲେ ହାଡ଼କୁ ।
ଯେକ ଖଣ୍ଡ ହୋଇପଡ଼ିଛି ପେଟପିଠି ବୁକୁ ॥
ବିଚାରି ବୋଇଲେ ବାଳୀ ଅଟଇମହାବଳୀ ।
ଯେଡ଼େ ବଡ଼ ଦଇତ୍ୟକୁ ମାରି ଆଣିଲା
କନ୍ଧେ ତୋଳି ॥
ଯେଡ଼େ ପରାକ୍ରମ ବହି ଅଳପେ
ନାଶଗଲା ।
ସୋଦର ଭାଇ ସଙ୍ଗେ ବାଦ ଲଗାଇଲା ॥
ଭ୍ରାଥବଧୂ ହରିଲା ହୋଇଲା ଅଗ୍ୟାନ ।
ଅଳପେ ନାଶଯିବ ଯେଡ଼େକ ରାଜନ ॥
ଯେତେ ବୋଲି ବାମପାଦ ଲଗାଇଲେ
ନେଇ ।
ହାଡ଼ର ସନ୍ଧିରେ ବୁଢ଼ା ଅଙ୍ଗୁଷ୍ଠି
ଲଗାଇ ॥୧୦୦

ଇଙ୍ଗିତ ମାତ୍ରକେ ତାହା ଫିଙ୍ଗିଦେଲେ ।
ଶୁଖିଲା ପତ୍ର କି ସେ ଗଗନେ ଉଡ଼ାଇଲେ ॥
ପକ୍ଷୀପ୍ରାୟେ ହୋଇ କି ପର୍ବତେ ଉଡ଼ିଯାନ୍ତି ।
ଶୂନ୍ୟରେ ଗମିଲାକି ଐରାବତ ହସ୍ତୀ ॥
ତେସନ ପ୍ରାୟେ ହୋଇ ହାଡ଼ ଉଡ଼ିଗଲା ।
ଶତେକ ଯୋଜନେ ଯାଇ ଦୁନ୍ଦଭି ଅସ୍ଥି
ପଡ଼ିଲା ॥
ଦେଖିଣ ସନ୍ତୋଷ ହୋଇଲା ସୁଗ୍ରୀବର ।
ବୋଇଲା ମୈତ୍ରମୋର ଅଟନ୍ତି ବଳୀୟାର ॥
ଧାଡିକାରେ ପୁଣି ଯେ ଅପ୍ରତେ ମନକଲା ।
ତେଡ଼େ ବଡ଼ ଶଂକୁନ୍ୟକୁ ପରତେ ନଗଲା ॥
ମନରେ ବିଚାରିଲା କପିକୁଳ ପତି ।
ସହସ୍ରେ ବରଷ ଯେଥେ ପଡ଼ିଥିଲା ଅସ୍ଥି ॥
ବାଳୀ ଯେବଣ କାଳେ ଯେହା ଆଣିଲା
ବହି ।
ହାଡ଼ ଚର୍ମ ରକ୍ତ ମାଂସ ସବୁଥିଲା ତହିଁ ॥
ଯେଥୁ ଶତେଗୁଣେ ସେ ଗରୁ ହୋଇଥିଲା ।
ସେବେଳେ ବାଳୀ ଯେହା ହେଳେଣ
ଘେନିଲା ॥
ଯେବେ ଉଶ୍ୱାସ ପୁଣି ହୋଇଲାକ ଶୁଖି ।
ଭୋ ମୈତ୍ର ପରତେ ମୁଂ ନଯାଇ ତହିଁକି ॥
ନକରଇ ପ୍ରତେ ଦେବ ରଘୁକୁଳ ସାଇଂ ।
ଯେ ଯେ ସାତ ଶାଳ ଗଛ ଦିଶୁଛି
ଗୋସାଇଂ ॥୨୦
ଯେହା ଭେଦିଲେ ସେ ମରିବ କପିରାୟେ ।
ନୋହିଲେ ସଂପ୍ରତେ ନଯାଇ ମୋରକାୟେ ॥
ବାଳୀର ବଳ ଦେବ ଅଟଇ ଅଗାଦ ।
ବଳେଣ ତାହାକୁ କି ହୋ କରିପାରୁ ବଧ ॥
ଯେ ସାତ ଗଛ ବାଣେ ଫୁଟାଇ ଯେହୁ ସତ ।
ନିଶ୍ଚୟେ ବାଳୀରାୟେ ହୋଇବ ପ୍ରାଣେ
ହତ ॥
ସୁଗ୍ରୀବର ତହୁଁ ରାମ ଯେସନ ବାଣୀ ଶୁଣି ।
ନିଶରେ ହସ୍ତଦେଇଣ ହସନ୍ତି ରଘୁମଣି ॥
ଯେବେ ତୁ ସମ୍ପ୍ରତେ ମନ ନଗଲୁ
ପ୍ରାଣମିତ ।

ଆଜ ଯାହା ବୋଲିବୁ କରିବି ମୁହିଂ
ସତ୍ୟ ॥୩୦
ଯେତେ ବୋଲି ଶ୍ରୀରାମ ଆଗ ହୋଇ
ଯାନ୍ତି ।
ସପତ ଶାଳବୃକ୍ଷ ମୂଳରେ ମିଳନ୍ତି ॥
ସୁଗ୍ରୀବରକୁ ଚାହିଂ ରାମ ବୋଲନ୍ତି ପୁଣ
ପୁଣି ।
ଯେହା ଛେଦିଲେ ସମ୍ପ୍ରତେ ଯିବକି ମୈତ୍ର
ପୁଣି ॥
ହୋଇ ଦେବ ବୋଲିଣ ସୁଗ୍ରୀ ଯୋଡ଼ଇ
ବେନିକର ।
ଶୁଣିଣ କୋଦଣ୍ଡ ଶ୍ରୀରାମ ଧଇଲେ
ବାମକର ॥
ଦକ୍ଷିଣ କରର ମୃଧୁନି ଅଙ୍ଗୁଷ୍ଠି ।
ତହିଂ ଖଇଂଲେ ଶ୍ରୀରାମ କଷଣି ଦୃଢ଼ଗଣ୍ଠି ॥
ତ୍ରୋଣରୁ କାଢ଼ିଲେ ସେ ତୀକ୍ଷ ନାରାଜେକ ।
ଗୁଣେ ବସାଇଣ ସେ ବୋଲନ୍ତି ରଘୁକୁଳ
ନାୟକ ॥୪୦
ଯେ ଯେ ସପ୍ତଶାଳ ଗଛ ବକ୍ରେଣ
ଅଛିବସି ।
ତାହାକୁ ଛେଦିଣ ମୋର ତ୍ରୋଣରେ ପଶ
ଆସି ॥
ମୈତ୍ରଙ୍କର ମନରୁ ମୋର ଶଙ୍କୁନ୍ୟ ହେଉ
ସିଦ୍ଧି ।
ଯାଅସି ବାଣ ହୋ ସପ୍ତଶାଳ ଆସ ଛେଦି ॥
ଯେତେ ବୋଲି ବାଣ ଆକର୍ଣ୍ଣ ପରିଯନ୍ତେ
ଓଟାରିଲେ ।
ଚକ୍ଷୁର ମଟକେ ସେ କୋପେଣ
ଛାଡ଼ିଦେଲେ ॥
ବଜ୍ରହୁଂ ଅତି ଗାଢ଼େ ନାରାଜ ଗଲା ଚଳି ।
ସପ୍ତଶାଳ ଫୁଟିଣ ସେ ପର୍ବତେ ଗଲା ଗଳି ॥
ପାତାଳ ଗଙ୍ଗାରେ ବାଣ ହୋଇଲା ପ୍ରବେଶ ।
ଯେସନେକେ ସରୋବରେ ବୁଡ଼ଇ
ରାଜହଂସ ॥୫୦

ଜଳରେ ବୁଡ଼ିଣ କି ଘେନଇ ଆହାର ।
ତେସନେକେ ତ୍ରୋଣରେ ପଶିଲା ଯାଇ
ଶର ॥
ବାଣ ପେଷନ୍ତେ ରାମ ବିଷ୍ଣୁତେଜ ଦିଶି ।
ନୟନ ବୁଜିଲା ସୁଗ୍ରୀ ମନରେ ମହାତ୍ରାସି ॥
ନିଶ୍ଚୟେ ବିଷ୍ଣୁବୋଲି ସେ ବିଚାରିଲା
ମନେ ।
ଶ୍ରୀରାମର ତେଜ ଯେ ଦିଶିଲା ତେସନେ ॥
ଲକ୍ଷଣକୁ ବୋଇଲେ ଶୁଣ ହେ ସଉମିତ୍ରୀ ।
ଯେ ରାମକୁ ସମାନ୍ୟ ସଂସାରେ ନାହିଁ କ୍ଷତ୍ରୀ ॥
ସହସ୍ରେକ ବାଳୀ ଯେବେ ଯେକ ଗୁଣ୍ଡ
ହୋଇ ।
ଏମନ୍ତେ ଥିବେ ସେ ଯେକଠାବେ
ରହି ॥୬୦
ଯେକଗୁଣ୍ଡ ହୋଇ ଯେବେ କରିବେ ଆସି
ଯୁଦ୍ଧ ।
ଶ୍ରୀରାମର ବାଣେ ସେ ହୋଇବେ ପ୍ରାଣେ
ବଧ ॥
ଯେକା ବାଳୀ ଛାର ସିନା କିଷ୍କିନ୍ଧ୍ୟାର ପତି ।
ନିଶ୍ଚୟେ ଆଜ ତାର ସରିବ ବିଭୂତି ॥
ସ୍ୱୟେଂ ନାରାୟଣ ଯେ ମନୁଷ୍ୟ ରୂପ ଧରି ।
ନିଶ୍ଚୟେ ଜନ୍ମିଛନ୍ତି ଦୁଷ୍ଟଗଣ ମାରି ॥
ଯେତେ ବୋଲିଣ ଶ୍ରୀରାମ ଚରଣେ ଯାଇ
ପଡ଼ି ।
ଉଠି ଉଭା ହୋଇଲା ସେ କର ଦୁଇଯୋଡ଼ି ॥
ଭୋ ରଘୁନାଥ ଦୋଷ ନଘେନ ମୋହୋର ।
ମୁହିଂ ଶରଣ ନାଥ ପଶିଲା ଶ୍ରୀପୟର ॥୭୦
ଅଗ୍ୟାନ ପଣେ ଯେତେ ମାଗିଲି ପରୀକ୍ଷ ।
ସେ ଦୋଷ କ୍ଷମା ମୋର କରିବା ରଘୁବଛ ॥
ଶ୍ରୀରାମ ବୋଲନ୍ତି ତୁମ୍ଭେ ମୋହୋର
ପ୍ରାଣସରି ।
ନିଶ୍ଚୟେ ଆଜ ତୁମ୍ଭର ସାଧିବ ବଇରି ॥
ଯେବେ ସଂପ୍ରତେ ତୁମ୍ଭେ ପାଇଲଟିକି
ପ୍ରାଣସାଖା ।

ଚାଲ କାହିଁଅଛି ତୁମ୍ଭର ଶତ୍ରୁ ମୋତେ
ଦେଖା ॥
ଆଜର ମଧ୍ୟେ ତୋତେ ଦେବଇ ସମ୍ପଦ ।
ଅନେକ କାଳରୁ ଅରଜିଅଛି ବାଦ ॥
ବାଳୀ ଯେ ତୁମ୍ଭର ଭାରିଯାକୁ ନେଲା ।
ତାହାର ଘରଣୀ ଆଜୁଂ ତୁମ୍ଭର
ହୋଇଲା ॥୮୦
ଯେତେବୋଲି ଶ୍ରୀରାମ ହୋଇଲେ
ଆଗୁସାର ।
ସୁଗ୍ରୀବର ସହିତେଣ ଗୋଡ଼ାନ୍ତି ପାଞ୍ଚବୀର ॥
ସହୋଦର ଲକ୍ଷଣ ସଙ୍ଗତେ ଅଛଇ ।
ସାତଜଣ ଚଳିଲେ ଆଗପଛ ହୋଇ ॥
ସୁଗ୍ରୀବର ଆଗରେ କଢ଼ାଇଅଛି ବାଟ ।
ଲକ୍ଷଣ ପଛରେ ଅଛି ପବନର ଚାଟ ॥
ତାରାକ୍ଷ ସୁଷେଣ ଗନ୍ଧମାରଦନ ।
ଦକ୍ଷିଣ ମୁଖ ହୋଇ ଚଳନ୍ତି ଘନ ଘନ ॥
ବନସ୍ତର ଭିତରେ ସେ ଶୁଭିଲା ପ୍ରବଳ ।
ଯନ୍ତ୍ର ବୀଣା ବଇଂଶୀ ନୃତ୍ୟଗୀତ ତାଳ ॥୯୦
ଶ୍ରୀରାମ ପଚାରନ୍ତି ମିତ୍ର ତୁମ୍ଭେ ଶୁଣ ।
ନୃତ୍ୟଗୀତ ଶବଦ ଶୁଭଇ କି କାରଣ ॥
ଯେ ଘୋର ଅରନ୍ୟେ ତ ଦେଶ ଗ୍ରାମ
ନାହିଁ ।
ଯେମନ୍ତ ଗୀତ ତାଳ ଶୁଭଇ ପୁଣ କାହିଁ ॥
ଶୁଣିଣ କପିରାୟେ ରହିଣ କହେ କଥା ।
ଯେଥର ଚରିତ୍ର ଦେବ ଅପୂର୍ବ ବାରତା ॥
ଶ୍ରୀରାମକୁ ବୋଲଇ ଦେବ ଚାଲ ପଥ ବହି ।
ବାଟ ନସରିବ ଶୁଣିଲେ କଥା ରହି ॥
ଯାଉଂ ଯାଉଂ ସେକଥା ଯେ କହଇ
ସୂର୍ଯ୍ୟଶିଷ ।
ଯେବଣ ଚରିତ୍ର ଯେ ଶୁଣିମା
ସନ୍ଦେଶ ॥୧୦୦
କହିଣ ସୁଗ୍ରୀବର ଚଳଇ ଅତିଖର ।
ଶ୍ରୀରାମକୁ ବୋଲଇ ଦେବ ଶୁଣିମା
ରଘୁବୀର ॥

ମନ୍ଦକର୍ଣ୍ଣ ଋଷି ଯେ ଅଛନ୍ତି ଯେଥେ ରହି ।
ତପସ୍ୟାବଳେ ତାକୁ ସମାନ ନାହିଁ କେହି ॥
ଦେଖି ଇନ୍ଦ୍ରରାୟେ ଯେ ତପସ୍ୟାକୁ ଭୟେ
କରି ।
ଭୋଗ ଦେଇଛନ୍ତି ତାକୁ ସ୍ୱର୍ଗର ଅପକ୍ଷରୀ ॥
ମୁନିର ମନ ସେ ମୋହନ୍ତି ନୃତ୍ୟ ରଙ୍ଗେ ।
ସେ ଧ୍ୱନି ଶୁଭୁଅଛି ଅରନ୍ୟ ବନମାର୍ଗେ ॥
ଯେମନ୍ତ କହନ୍ତେ ପୁଣ ଯାନ୍ତି ସେ
ପଥବହି ।
ଋଷିଙ୍କର ମହିମା ଶ୍ରୀରାମ ଆଗେ କହି ॥୧୦
ଶୁଣିଣ ହରଷ ହୋଇଲେ ରଘୁବଛ ।
ଯହୁଂ ସୁଗ୍ରୀବର ରାଜା ହୋଇଲେ ସପକ୍ଷ ॥
ଦେଖିଣ ଆଦିତ୍ୟ ଆନନ୍ଦ ହୋଇଲେ ।
କିଷ୍କିନ୍ଧ୍ୟାରେ ପୁତ୍ର ମୋର ରାଜା ହୋଇବ
ବୋଇଲେ ॥୨୦
ଯେତେ ବୋଲି ଗଳାରୁ ସୁବର୍ଣ୍ଣ ପଦ୍ମମାଳ
କାଢ଼ି ।
ନିଜ ତେଜ ଅଗୁଦେଇ ଅନ୍ତରୀକ୍ଷେ ଛାଡ଼ି ॥
ସେ ମାଳା ଆସି ସୁଗ୍ରୀ କଣ୍ଠରେ ପ୍ରବେଶ ।
ରତ୍ନ ଜଡ଼ିଅଛି ସୁବର୍ଣ୍ଣ ଶତେ ପୁଷ ॥
ଦେଖିଣ ଶ୍ରୀରାମ ସନ୍ତୋଷ ହୋଇଲେ ।
ମୈତ୍ରଙ୍କର କାର୍ଯ୍ୟ ମୋର ହୋଇବ
ବୋଇଲେ ॥
ଶୁଣି ସୁଗ୍ରୀବର ଶ୍ରୀରାମ ଚରଣେ କଲେ
ନମସ୍କାର ।
ସମସ୍ତ କାର୍ଯ୍ୟ ମୋର ତୋହର ଶ୍ରୀପୟର ॥
ଯେମନ୍ତେ କିଷ୍କିନ୍ଧ୍ୟାରେ ପ୍ରବେଶ
ହୋଇଲେ ।
ସୁଗ୍ରୀକି ଆଡ଼େକରିଣ ଉହାଡ଼େ ରହିଲେ ॥
ଶ୍ରୀରାମ ବୋଇଲେ ମିତ୍ର ଆଗ ହୋଇ ଯାଅ ।
ବାଳୀ ନାମ ଧରି ସିଂଘଦ୍ୱାରେ ଡାକ ଦିଅ ॥
ଯଦ୍ୟପି ବାଳୀ ଆଜ ବାହାର ହୋଇବ ।
ପ୍ରାଣ ଘେନିକି ଆଜ ଘରକଇ ନ ଯିବ ॥
ଯେହି ଲିମ୍ବ ଗଛ ଉହାଡ଼େ ଆମ୍ଭେ ଥିବୁ ।

ବାଳୀବୀର ଅଇଲେଣ ନାରାଜ
ବିନ୍ଧିବୁ ॥୩୦
ସୁଷେଣ ହନୁମତ ଗନ୍ଧମାରଦନ ।
ତାରାକ୍ଷ ଜମ୍ୱେବ ଅଛନ୍ତି ପାଞ୍ଚଜଣ ॥
ଯେହାଙ୍କର ଉହାଡ଼େ ଯେ ରହିଲେ
ରଘୁସାଇଂ ।
ତୀକ୍ଷ ନାରାଜେକ ସେ ଗୁଣରେ ବସାଇ ॥
ଯହୁଂ ସେ ପାଞ୍ଚେଣି ପାଞ୍ଚିଲେ ରାମରାହୁ ।
ସୁଗ୍ରୀବର ଉଛାହା ହୋଇ ଉଭାରି
ବେନିବାହୁ ॥
ଶ୍ରୀରାମ ଲକ୍ଷଣକୁ ଉହାଡ଼େ ଜଗାଇ ।
ସିଂଘ ଦ୍ୱାରେ ପ୍ରବେଶ ହୋଇଲାକ ଯାଇ ॥
ସିଂଘ ନାଦ କରିଣ ଉଚ୍ଚେଣ ଡାକଦେଲା ।
କି ଜାଣି ପର୍ବତେ ବଜ୍ରଘାତ କି ପଡ଼ିଲା ॥୪୦
ନଗ୍ରର ନରନାରୀ ଦେଖିଣ ଚକିତ ।
କେ ବୋଲଇ ଯେବେ ତ ହୋଇଲା
ବିପରୀତ ॥
କେ ବୋଲଇ ସୁଗ୍ରୀବର ମାଗୁଅଛି ଯୁଦ୍ଧ ।
କେ ବୋଲଇ ତୁମ୍ଭେ ହୋ କେମନ୍ତ
କରିବୁଁ ॥
ସହସ୍ରେ ବରଷ ହେଲା ଭାଜିଂ ପଳାଇଲା ।
ଋଷିମୁଖ ପର୍ବତେ ଲୁଚିଣ ଦିନ ନେଲା ॥
ସହସ୍ର ଗୁଣେ ବାଳୀକି ଯେ ନୋହେ
ସମସରି ।
ଯେବେ କେମନ୍ତେ ଯେ ଅଇଲା ଯୁଦ୍ଧକରି ॥
ନିଶ୍ଚେ କାହାକୁ ଯେ ସାହାପକ୍ଷ ପାଇଲା ।
ସିଂଘ ପାଶକୁ ଯେ ମତ୍ତଗଜ ଅଇଲା ॥୫୦
କେ ବୋଲଇ ଯାହାକୁ ଯେତେବେଳେ
ଭୋଗାଭୋଗ ।
ଦଇବ କଢ଼ାଇ ଆଣଇ କରିଣ ସଂଯୋଗ ॥
ଆଉ କ୍ଷଣକେ ଜାଣିମା ଭଲ ମନ୍ଦ ଦୁଇ
ମତ ।
ଯେତେବୋଲି ଦେଖିବାକୁ ଅଇଲେ ସମସ୍ତ ॥
ଦ୍ୱିତୀୟ ଆଦିତ୍ୟ ପ୍ରାୟେ ଦିଶଇ ସୁଗ୍ରୀବର ।

ଉଚ୍ଚେ ଡାକଇ ବାଳୀ ହୋ ଯୁଦ୍ଧକୁ ହୁଅ ଆଗୁସାର ॥
ଶ୍ରୀରାମଙ୍କ ବଳ ସେ ପାଇଣ ଉଗ୍ରମୂର୍ତ୍ତି ।
ବିଶେଷେ ନିକଟ ତାକୁ ଯେ ପ୍ରାପତ ବିଭୂତି ॥
ବାହୁ ଦୁଇ ଉଭାରିଣ ସୁଗ୍ରୀବର ଡାକ ଯହୁଁ ଦେଲା ।
କେହି ନଶୁଣନ୍ତେ ଦ୍ୱାର ଜିଣି ଭିତରେ ପଶିଲା ॥୬୦
ଦେଖିଣ ଦ୍ୱାରପାଳେ ଭୟେଣ ପଳାଇଲେ ।
ବାଳୀ ନୃପତିର ଛାମୁରେ ଯାଇଣ ଜଣାଇଲେ ॥
ଶୁଣ ଦେବ କିଷ୍କିନ୍ଧ୍ୟାର ଠାକୁର ଆଦିପତି ।
ସାନୁଜ ସୁଗ୍ରୀବର ଆସି କରୁଛି ଅନୀତି ॥
ମାଇ ବେଶ ହୋଇଣ ସେ ନବରେ ପ୍ରବେଶ ।
ବାହୁରେ ବୀରନେତ ବାନ୍ଧିଛି ସୂର୍ଯ୍ୟ ଶିଷ୍ୟ ॥
ଗଳାରେ ଅଛଇ ତାର ସୁବର୍ଣ୍ଣ ପଦ୍ମମାଳେ ।
କି ଜାଣି ଦିଶୁଅଛି ସେ ପ୍ରଚଣ୍ଡ ଅନଳେ ॥
ସିଂଘଦ୍ୱାର ମୁହଁକୁ ସେ ଆସୁଅଛି ପଶି ।
ଡରେ ଆମ୍ଭେମାନେ ଦେବ ପଳାଇଲୁ ତ୍ରାସି ॥୭୦
ପୁଣି ସିଂଘ ରଡ଼ି ସେ ଦେଉଛି ଘନ ଘନ ।
ଯେହିକ୍ଷଣି ରାଜ୍ୟରେ ସେ କରିବ ଉଚ୍ଛନ ॥
ଯେମନ୍ତ ସମୟେ ଆସି ନିକଟ ସୁଗ୍ରୀବର ।
କିମ୍ପା ହୋ ବାଳୀରାଜା ପଶିଲୁ ଅନ୍ତଃପୁର ॥
ଅନେକ କାଳ ତୁ ଯେ କିଷ୍କିନ୍ଧ୍ୟାରେ ଭୋଗ କଲୁ ।
ଆଜ ନିଶ୍ଚୟ ତୁ ସଂପୁଟେ ନାଶ ଗଲୁ ॥
ନିସତ ହୋଇଲେ କି ତୁ ଜୀବନ ପାଇବୁ ।
ତାରା କନ୍ୟାକୁ ତୋର ଅନ୍ୟକୁ ଦିଆଇବୁ ॥
ନଇଲେ ଯେହିକ୍ଷଣି ଆଣିବି ଯାଇ ଧରି ।
ସମସ୍ତେ ଦେଖୁଥିବେ ପକାଇବି ମାରି ॥୮୦
ଯେତେବୋଲି ରଡ଼ି ଛାଡ଼ଇ ଘନ ଘନ ।
ଶୁଣିଣ କୋପକଲା ବାସବ ନନ୍ଦନ ॥

ଦେଖିଣ ବୋଇଲା ଯେ ଅପୂର୍ବ ହୋଇଲା ।
ସୁଗ୍ରୀ ଛାର ମୋର ସଙ୍ଗେ ଯୁଝିତେ ଅଇଲା ॥
ଯାହାକୁ ଯତ୍ନେ ମୁଂ ଯେ ଲୋଡ଼ଇ ପରିଘାଇ ।
ଦଇବ ଆଣିଲା ଦେଖ ଗଳରେ ଫାଶୀଦେଇ ॥
ଯେତେ ବୋଲି ନବରୁ ହୋଇଲା ବାହାର ।
ଦେଖିଲା ସୁଗ୍ରୀ ଉଭା ହୋଇଛି ସିଂଘଦ୍ୱାର ॥
ଅତିବେଗେ କୋପ ଭରେ ମୁଥେକ ମାଇଲା ।
ଜୀବନେ ନ ମାରଇ ପଳା ଯା ବୋଇଲା ॥୯୦
ଯେକା ପ୍ରହାରକେ ସୁଗ୍ରୀ ଅଇଲା ଅପସରି ।
ପ୍ରାଣ ଘେନି ପଳାଇଲା ସୁଗ୍ରୀ କାହାକୁ ନ ବିଚାରି ॥
ବଜ୍ରଘାତ ଯେହ୍ନେ ପର୍ବତ ଶିଖରେ ପଡ଼ଇ ।
ବାଳୀର ଗୁରୁଦା ତେସନ ଶୁଭଇ ॥
ବିଷମ ଘାତ ପାଇ ସୁଗ୍ରୀ ପଛକୁ ନ ଚାହିଁଲା ।
ଋଷିମୁଖ ପର୍ବତକୁ ବୋଲିଣ ପଳାଇଲା ॥
ସୁଗ୍ରୀକି ମାରି ବାଳୀ ଗଲାକ ଅତିବେଗେ ।
ବିଜୁଳି ଝଟକ ଜାଣି ଦିଶଇ ନୀଳମେଘେ ॥
ଶ୍ରୀରାମ ଯେ ଲିମ୍ବବୃକ୍ଷ ମୂଳେ ଉହାଡ଼େ ଥିଲେ ରହି ।
ତୀକ୍ଷ ନାରାଚେକ ଗୁଣରେ ବସାଇ ॥୧୦୦
ଦେଖିଲେ ବାଳୀବୀର ବାହୁଡ଼ିଣ ଗଲା ।
ବିଶେଷେ ବାଧା ପାଇ ସୁଗ୍ରୀବର ପଳାଇଲା ॥
ଋଷିମୁଖ ପର୍ବତକୁ ଗଲାକ ପଳାଇ ।
ଶ୍ରୀରାମ ଲକ୍ଷଣ କାହାକୁ ନ କହି ॥
କନ୍ଦ ଭିତରେ ସେ ରହିଲା ଗୁପତେ ।
ଅଭିମାନେ ମୁଖ ମାଡ଼ି ରହିଲା ରବିସୁତେ ॥
ଶ୍ରୀରାମ ଲକ୍ଷଣ ଆଶ୍ରିଯ ତାହା ଚାହିଁ ।
ଧନ୍ୟରେ ବାଳୀବୀର ପବନୁ ବେଗେ ତୁହି ॥
ସୁଷେଣ ଗନ୍ଧମାର୍ଦ୍ଦନ ଯେ ହନୁମତ ।

ଇମ୍ଭେବ ଲକ୍ଷଣ ଘେନିଣ ଗଲେକ ରଘୁନାଥ ॥୧୦
ଯାଉଂ ଯାଉଂ ଶ୍ରୀରାମ ହନୁମନ୍ତକୁ କହନ୍ତି ।
ବାଳୀ ସୁଗ୍ରୀବର ବେନି ଯେକହି ଦିଶନ୍ତି ॥
ବାରି ନପାରିଲୁ ଆମ୍ଭେ ଏକଇ ସ୍ୱରୂପ ।
ଧନ୍ୟ ସେ ବାଳୀରାୟେ ରୂପେଣ କନ୍ଦର୍ପ ॥
ବିଜୁଳି ତେଜ ପ୍ରାୟେ ଅଇଲା ତଡ଼ତି ।
ଦେଖି ନପାରିଲୁ ତାର ଆସିବାର ଗତି ॥
ଯେକ ବିଧାୟେକ ମାଇଲା ବାଳୀ ଆସି ।
ବିଜୁଳି ଝଟକ ଜାଣି ଭିତରେ ଗଲା ପଶି ॥
ତେତେକ ମାତ୍ର ସହିପାରିଲେ ନାହିଁ ପୁଣି ।
କି ରୂପେ ବାଳୀ ସଙ୍ଗେ ଯୁଝିବେ କପିମଣି ॥୨୦
ଆମ୍ଭକୁ ନ କହିଣ ସେ ଗଲେକ ପଳାଇ ।
ଜାଣିଲି ତେବେ ମୈତ୍ରର କିଛି ବଳ ନାହିଁ ॥
ହନୁମତ ବୋଇଲା ଦେବ ଶୁଣିମା ରଘୁମଣି ।
ଦେବସଭାରେ କ୍ଷେତ୍ରୀପଣେ ତାହାକୁ ଆଗେ ଗଣି ॥
ନିରନ୍ତରେ ପ୍ରଶଂସା କରନ୍ତି ଦେବଗଣ ।
ଯୁଦ୍ଧେ ହାରିଣ ଗଲା ବାଳୀକି ରାବଣ ॥
ମୃତ୍ୟୁଲୋକେ ବାଳୀକି ନାହିଁ ସମସରି ।
ଯଉଂ ମୂର୍ତ୍ତିକୁ ଦେଖିଣ ସେ ରାଜାଗଣେ ଡରି ॥
ଯଉଂ ମୂର୍ତ୍ତି ହୋଇଣ ଯେ ଅଇଲା ବାଳୀରାୟେ ।
ତାହାର ଛାମୁରେ କି ସୁଗ୍ରୀବର ସମ ହୋୟେ ॥୩୦
ସହସ୍ରେ ବରଷ ସେ ବନସ୍ତେ ଦିନ ନେଲା ।
ତୋହୋର ଭରସାରେ ବାରେକ ରାଇଲା ॥
ବାଟ ଶ୍ରାନ୍ତି ଲୋକଙ୍କୁ ଦେଖିଲେ କରୁଥାଇ ଭୟେ ।
ରାଜାପଦକୁ ଶରଧା ନକରେ ସୁଗ୍ରୀରାୟେ ॥

ଭୟେଣ ଅନ୍ନ ଶାସ୍ତି ଦୁଃଖେଣ ଚିନ୍ତାର୍ଥି ।
ସେ କିସ ବାଳୀ ସଙ୍ଗେ ଯୁଝିବ ରଘୁପତି ॥
ପ୍ରଜ୍ୱଳିତ ହୁତାଶନ ଅଟଇ ରାୟେ ବାଳୀ ।
ସୁଗ୍ରୀବର ପତଙ୍ଗ ଯେ ଅଟଇ ତୃଣ ଝଳି ॥
ଶୁଖିଲା ତୃଣ ପ୍ରାୟେ ଅଟଇ ସୂର୍ଯ୍ୟ ସୁତ ।
ବାଳୀର ତେଜ ଯେ ଅଟଇ ବ୍ରହ୍ମଦୂତ ॥୪୦
ଆଜ ଛାଡ଼ିଦେଲାକୁ ସେ ସୁଗ୍ରୀ ଗଲା ଜୀଇଂ ।
ଆଉ ପ୍ରହାରକେ ମରନ୍ତା ସନ୍ଦେହ ତାର ନାହିଁ ॥
ଯେ ତୋହୋର ଶୂରପଣ ଦେଖିବାରେ ଅଇଲା ।
ବିଧାୟେ ଖାଇ ଯେଥୁ ପଳାଇଣ ଗଲା ॥
ତୁ ସ୍ୱାମୀ ଜଗତରେ ଯେ ଅଟୁ ଅଜୟେ ।
ସୁଗ୍ରୀକି ବୁଝିଲୁ କି ତୋହୋର ପରାୟେ ॥
ସେ ବଡ଼ ନିର୍ବଳ ଯେ ଅଟଇ ରଘୁପତି ।
ସହି ନ ପାରିଲା ବାଳୀର କୋପମୂର୍ତ୍ତି ॥
ଯେସନେକ କଥା ହୋଇ ମିଳିଲେକ ଯାଇ ।
କିପାଇଂ ଶୋଇଲା ମିତ୍ର ହେ ନିର୍ମାଖି ପ୍ରାୟେ ହୋଇ ॥୫୦
ଚିହ୍ନି ନପାରିଲି ମିତ୍ର ଦୁହେଂ ଯେକା ସ୍ୱରୂପ ଦିଶ ।
ଅକାରଣେ କାହାକୁ ମୁଂ ଯେ କରନ୍ତି ପ୍ରାଣେ ନାଶ ॥
ବାଳୀକି ପୂର୍ବେ ମୋର ଦେଖିଲା ନ ଥିଲା ।
ଦୁହିଂଙ୍କି ଏକତ୍ୱ କରିଣ ବିଧାତା ନିର୍ମାଣିଲା ॥
ବାରି ନ ପାରି ମୁଂ ଯେ ନାରାଜ ନ ବିନ୍ଧିଲି ।
ତୀକ୍ଷ ନାରାଜେକ ଯେ ଗୁଣରେ ଯୋଚିଥିଲି ॥
ଯେବେ ଭୋ ମୈତ୍ର ହୋ ଚାଲ ଯିବା ।
ବିମୁଖ ନୋହିଣ ଯେ ବିସ୍ମୟେ ନୋହିବା ॥
ତେଣୁ ବାଣ ମୁଂ ଯେ ନ ପାରିଲି ପ୍ରହାରି ।
ନିଷ୍ଟୟେ ସତ୍ୟ ମିତ୍ର ହେ ସଂଶୟ ନକରି ॥୬୦
ପୂର୍ବେ କଉଂ ପାପ କରି କଷ୍ଟ ପାଉଅଛି ।
ରାଜାର ପୁତ୍ର ହୋଇ ଦୁଃଖରେ ମରୁଅଛି ॥
ନ ଚିହ୍ନିଣ ମୈତ୍ରଯୋ ପାପକୁ ଭୟେ କଲି ।
ତେଣୁ ସେ ଭୋ ମୈତ୍ର ମୁଂ ନାରାଜ ନ ବିନ୍ଧିଲି ॥
ଉଠ ଉଠ ଭୋ ମୈତ୍ର ତୁମ୍ଭେ ବିସ୍ମୟେ ଚିତ୍ତନକର ।
ଯେ ଘାନ୍ତି ବଇରି ତୁମ୍ଭର ସାଧିଦେବି ନିକର ॥
ସୁଗ୍ରୀବର ବୋଇଲା ଦେବ ମୁଂ ଉଠିତ ନପାରଇ ।
ସେ ମହାବୀରର ପ୍ରହାରକୁ ମୁଂ ଡରଇ ॥
ଯେକା ବିଧାକେ ଯେ ଭାଜିଂଲା ସବୁ ଦର୍ପ ।
ମୁହିଂ ତାକୁ ମଣଇ ସେ ଅଟଇ କାଳସର୍ପ ॥୭୦
ଶିଶୁ ମୃଗକୁ ଯେହ୍ନେ ତରୁଣ ସିଂହ ଝାମ୍ପଇ ।
ବକ ପକ୍ଷୀକି ଯେହ୍ନେ ଶାମଳ ଧରଇ ॥
ପର୍ବତେ ବଜ୍ର ଯେହ୍ନେ ପଡ଼ଇ ଦୃଢ଼ ହୋଇ ।
ତେସନ ମତ କରିମୋତେ ମାଇଲାକ ସେହି ॥
ଯେକା ବିଧାକେ ସେ ଭାଜିଂଲା ମୋର ଗର୍ବ ।
ଆଉ କି ବାଳୀର ସଙ୍ଗେ ଯୁଝିତେ ଅଛି ଦର୍ପ ॥
ତୁ ସ୍ୱାମୀ ଭରସା ଆଉ ନ ଦିଅ ଭୋ ମୈତ୍ର ।
ପୁଣ ପୁଣ ବିନୟି ଯେ ବୋଲଇ ତୁମ୍ଭନ୍ତ ॥
ବିଧାର ଘାୟେଣ ଯେ ଭାଜିଲା ମୋର ବୁକୁ ।
ଦେହରେ ଶଉର୍ଯ୍ୟ ଆଉ ନାହିଂ ଉଠିବାକୁ ॥୮୦
ନିଶ୍ୱାସ ନ ବହଇ ଦେଉଛି ବୁକୁ ଯନ୍ତି ।
ଆଣୁ ପିଠି ଯେକ ବଥା ଶୁଣିମା ରଘୁପତି ॥
ନିଷ୍ଟୟେ ପ୍ରାଣ ମୈତ୍ର ହେ ଛାଡ଼ିବି ନିଜ ଦେହ ।
ଯେତେ ବୋଲି ସୁଗ୍ରୀବର କାନ୍ଦଇ କହକହ ॥
ଶ୍ରୀରାମ ବୋଇଲେ ମୈତ୍ର ଆମ୍ଭର ବୋଲକର ।
କିଷ୍କିନ୍ଧ୍ୟା ଯିବା ଚାଲ ହୁଅ ଆଗୁସାର ॥
ଯେହିକ୍ଷଣି ତୋହୋର ମୁଂ ସାଧିବି ବଇରି ।
ଯେ ମୋହୋର ଭୁଜବଳେ ଭୁଞ୍ଜିବୁ ସୁଖଶିରୀ ॥
ନିସତ ହୋଇଲେ ଦୋଷ ନଦେବ ପୁଣ ମୋତେ ।
କର୍ମ ମୋର ଅବଳ ମୁଂ କି ବୋଲିବି ତୋତେ ॥୯୦
ବାଳୀ ମହାବୀର ଯେ ଜଗତେ ବିଖ୍ୟାତି ।
ମୁହିଂ ତାହାକୁ ଭାର୍ଯନ କି ହୋଇବି ରଘୁପତି ॥
ସହସ୍ରେ ବରଷ ତ ଅଇଲି ମନ ମୁର୍ଚ୍ଛି ।
ଆଉ କି କିଷ୍କିନ୍ଧ୍ୟାକୁ ଶରଧ ମୋର ଅଛି ॥
ଯେ ତୋର ଆଗ୍ୟାଂରେ ସେ ଗଲଇଂ ବେଳେ ମୁହିଂ ।
ଆଉ ବେଳେ ଯିବାକୁ ମୋ ଦେହରେ ବଳ ନାହିଂ ॥
ଜୀବ ଥିବାଯାକ ମୁଂ ନକରଇ ସେକଥା ।
ପ୍ରାଣ ପିଣ୍ଡରେ ଥିବାଯାକ ଯେ ଅଙ୍ଗରୁ ନଛାଡ଼ିବ ବ୍ୟଥା ॥
ଶୁଣିଣ ଶ୍ରୀରାମ ଯେ ଛୁଇଂଲେ ସୁଗ୍ରୀବରର ଅଙ୍ଗ ।
ଅଙ୍ଗ ବ୍ୟଥା ଛାଡ଼ିଣ ସେ ହୋଇଲା ଅନଙ୍ଗ ॥୧୦୦
ବିଷ୍ଣୁ ତେଜ ଲାଗିଣ ସେ ହୋଇଲା ଭରସା ।
ବୀର୍ଯ୍ୟ ବଳ ହୋଇଣ ସେ ଯୁଦ୍ଧକୁ କଲା ଭରସା ॥
ଶୋଇଲା ଠାବରୁ ସେ ଉଠିଲା ମୂର୍ତ୍ତିବନ୍ତ କରି ।
ଶ୍ରୀରାମକୁ ଓଳଗିଲା ଚରଣ ଦୁଇ ଧରି ॥
ଭୋ ରଘୁନାଥ ତୁମ୍ଭେ ବେଗ ହୋଇ ଆସ ।
ବାଳୀ ନୃପତିକି କରିବା ପ୍ରାଣେ ନାଶ ॥

ମୈତ୍ର ବଚନେ ଉଠିଲେ ରଘୁପତି ।
ପୁଣି ହିଂ ସାତ ଜଣେ ଆଗପଛ ହୋଇଯାନ୍ତି ॥
ମାଲ ବେଶ କାଛେଣି ହୋଇଲା ସୁଗ୍ରୀବର ।
ବାହାରେ ବୀରନେତ ଉଡ଼ଇ ଫରହର ॥୨୦
ଶିରରେ ଚୂଟ ବାନ୍ଧି ଦେହରେ ରଙ୍ଗମାଟି ।
କାଛେଣି ପିନ୍ଧିବା ଲୁଗା ଭୂମିରେ ଲାଞ୍ଜ ଲୋଟି ॥
ଆଦିତ୍ୟ ଦେଲା ମାଳା କଣ୍ଠରେ ଲମ୍ବାଇଣ ।
ଦୁତୀ ସୂର୍ଯ ପ୍ରାୟେକ ଦିଶଇ କପିରାଣ ॥
ବେଗ ବେଗ ଧାମଇ ବିକ୍ରମି ପୁଣ ପୁଣି ।
ଶୂନ୍ୟେ ମୁଥ ଉଞ୍ଚାଇ ଧରଇ ଠାଣିମାଣି ॥
ଦେଖିଣ ଲକ୍ଷଣ ତା ମନରେ ବିଚାରି ।
ବେଙ୍କେକ ଲଜ୍ଜା ପାଇ ଅଇଲୁ ବାହୁଡ଼ି ॥
ଯେ ବେଙ୍କ ବାହୁଡ଼ି ନଯିବୁ ନ ମାଇଲେ ରଘୁସାଇଂ ।
ଯେବେ ନମାଇଲେ ଥୋଇବେ ପୁଣ ମୁହଂ କାହିଂ ॥୩୦
ଦୁହିଂକରି ଯେକବର୍ଣ୍ଣ ଯେକଇ ବୟେସ ।
ଭ୍ରାନ୍ତି କରିଣ ସେ ନକଲେ ତାକୁ ନାଶ ॥
ଯେବେ ଚିହ୍ନିବାକୁ ପୁଣ ଥିବା ଉପାୟେ କରି ।
ଯିସ ତିସ ପଦାର୍ଥେକ ଥିବା କଣ୍ଠରେଣ ଭରି ॥
ଯେସନେକ ବିଚାରି ସେ ଶ୍ରୀରାମର ଭାଇ ।
ବଣମଲ୍ଲୀ ଫୁଲ କୋଇଲି ସୂତାରେ ଗୁନ୍ଥଇ ॥
ଆବର ଆଣିଲେ ଯେ ନାଗେଶ୍ୱର ଫୁଲ ।
ଦୁଇ ବର୍ଣ୍ଣେ ଫୁଲ ଆଣି କଲେକ ସମତୁଲ ॥
ସୁଗ୍ରୀବର କଣ୍ଠରେ ତାହା ଲମ୍ବାଇଲେ ନେଇ ।
ବୋଇଲେ ଭୋ ଭ୍ରାଥ ତୋତେ ଚିହ୍ନିବାର ପାଇଂ ॥୪୦
ଦେଖିଣ ଶ୍ରୀରାମ ଯେ ହୋଇଲେ ହରଷ ।
ଯେବେ ହୋ କାର୍ଯ୍ୟ ସେ ପାଇବା ସୂର୍ଯ୍ୟଶିଷ୍ୟ ॥
ଲକ୍ଷଣ ପ୍ରସନ ହୋଇ ମାଳା ଦେଲେ ନେଇ ।
ଆଜହୁଂ ପବିତ୍ର ମୈତ୍ର ହେଲା ତୁମ୍ଭ ଦେହୀ ॥
ସର୍ବଗୁଣେ ସୁଲକ୍ଷଣ ଅଟଇ ମୋର ଭାଇ ।
ତୁମ୍ଭେ ହେ ସୂର୍ଯ୍ୟପୁତ୍ର ଅଟହୋ ପୁଣ୍ୟଦେହୀ ॥
ଯେ ପୁଷ୍ପମାଳା ତୁମ୍ଭେ ଥିବ କଣ୍ଠେ ଭରି ।
ଯେହା ଚିହ୍ନିଣ ମୁଂ ଅବଶ୍ୟ ବାଣମାରି ॥
ଯେଥୁ ଅନନ୍ତରେ ଦୁର୍ଗେ ଗୋ ମହାରସ ଶୁଣ ।
ଋଷିମୁଖ ପର୍ବତକୁ କିଷ୍କିନ୍ଧ୍ୟା ତିନି କ୍ରୁଶ ॥୫୦
ସକାଳ ବେଳେ ଆସି ବାହୁଡ଼ିଣ ଯାଇଥିଲେ ।
ପୁଣିହିଂ ସେହିଦିନେ କୋପେଣ ଧାଇଂଲେ ॥
ତେର ଘଡ଼ି ଦିନ କର ହୋଇଅଛି ବେଳ ।
କିଷ୍କିନ୍ଧ୍ୟାରେ ପ୍ରବେଶ ଯାଇ ହୋଇଲେ ରଘୁବାଳ ॥
ବାଳୀ ନୃପତି ଯେ ମଣୋହି ବିଧି ସାରି ।
ଅତି ଆନନ୍ଦେ ଯେ ଇନ୍ଦ୍ରାଧି ଭୋଗ କରି ॥
ତାମ୍ବୁଲ ଭୁଞ୍ଜିଣ ସେ ଚତୁସମ ଘେନି ।
ଶିରେଣ ପୁଷ୍ପଗଭା ପିନ୍ଧିଣ ପଟନି ॥
ଦିବ୍ୟ ଆଭରଣ ଅଳଙ୍କାର ହୋଇ ।
ତାରା ପାଦ ମଞ୍ଚାକଇ ପଲଙ୍କେ ଅଛି ଶୋଇ ॥୬୦
ଯେସନ ସମୟେ ଶ୍ରୀରାମ ଲକ୍ଷଣ ।
ସୁଗ୍ରୀବର ହନୁମତ ତାରାକ୍ଷ ସୁଷେଣ ॥
ଗନ୍ଧମାରଦନ ଜୟେବ ଜଣ ଆଠ ।
କିଷ୍କିନ୍ଧ୍ୟା କଟକେ ଯାଇ ହୋଇଲେ ଉପଗତ ॥
ଦେଖନ୍ତି ନଗ୍ର ଯେ ଅତିଅ ସୁସଞ୍ଚ ।
ମଞ୍ଚକଇ ସ୍ୱର୍ଗ ଯେ ସ୍ୱର୍ଗଙ୍କର ମଞ୍ଚ ॥
ଚାରିକତି ସମୋଦ୍ର ମଧ୍ୟରେ ଅଛି ଗିରି ।
ବିଶ୍ୱକର୍ମା ଗଢ଼ିଲା ତାହା ଅତିଅ ଯତ୍ନ କରି ॥
ଦେଉଳ ମଣ୍ଡୋପ ଯେ ଅଟ୍ଟାଳି ଜଗତୀ ।
ମେଢ଼ ଅଟ୍ଟାଳିକାମାନ ପାଷାଣେ ନିର୍ମାଣିଛି ॥୭୦
ଚାଙ୍ଗୁ ବନ୍ଧାଫେରମାନ କାଙ୍ଗୁରା ଭିଆଇ ।
ତିନିଲକ୍ଷ କାଙ୍ଗୁଲା ଯେ ଭିଆଇ ଅଛର ॥
ଠାବେ ଠାବେ ଛିଟିକିଣି ଅଛଇ ନିରନ୍ତର ।
ଚିହ୍ନ ଚିରାଳ ମାଣିକ୍ୟ ସବୁଙ୍କରି ଘର ॥
ତିନିପୁରେ ଅପୂର୍ବ ଦେଖି ସେହିପୁର ।
ପରମଲକ୍ଷ୍ମୀ ପରିପୂର୍ଣ୍ଣ ସବୁଙ୍କରି ଘର ॥
ଦେଖିଣ ଶ୍ରୀରାମ ଯେ ପ୍ରଶଂସା ତହିଁକରି ।
ଆଦି କଟେକ ଯେ ଅଟଇ ଦେବଶିରୀ ॥
ଧନ୍ୟ କିଷ୍କିନ୍ଧ୍ୟା ଯେ ବାଳୀର କଟେକ ।
ଦେବ ଅଙ୍ଗେ ଜାତ ଯେ ଯେଥିର ସର୍ବଲୋକ ॥୮୦
ଯେ ପୁରେ ସୁଗ୍ରୀବର ଯେ ହୋଇବାକ ରାୟେ ।
ବାଳୀ ନୃପତି ଯେ ହୋଇବ ଆଜ କ୍ଷୟେ ॥
ଯେତେ ବିଚାରି ରାମ ସୁଗ୍ରୀବରକୁ ଚାହିଂ ।
ସିଂଘ ଦ୍ୱାରକୁ ମିତ ଯାଅସି ଶୀଘ୍ର ହୋଇ ॥
ଆମ୍ଭେ ଲିମ୍ବଗଛ ଓହାଡ଼େ ଜଗିଥିବୁ ।
ନବରୁ ଅଇଲେ ବାଳୀ ନାରାଜ ବିନ୍ଧିବୁ ॥
ଓହାଡ଼ କରିଣ ତୁମ୍ଭେ ଥାଆସି ମନ୍ତ୍ରୀ ଚାରି ।
ମୋତେ ଦେଖିଲେ ନିକି ନଆସଇ ଭୟେ କରି ॥
ଭୋ ସୂର୍ଯ୍ୟ ନନ୍ଦନ ଯେ କଥାଯେ ମୋର ଶୁଣ ।
ଅବଶ୍ୟ ବାଳୀକି ମୁଂ ଯେ ବିନ୍ଧିବଇ ବାଣ ॥୯୦
ବାଳୀକି ଦେଖିବାଯାଯେ ନ ପଳାଅ ଡରି ।
କ୍ଷେତ୍ରୀର ପୁଅ ହୋଇକି ସଂଗ୍ରାମକୁ ଭୟେ କରି ॥
ଯେକା ପଶରେ ମାତ୍ର ବାଳୀର ସଙ୍ଗେ ଯୁଝ ।
ଯେ ମୋର ଗାରିମା ଯେ ପ୍ରତକ୍ଷେ ତୁମ୍ଭେ ବୁଝ ॥
ଯେକା କାଣ୍ଡକେ ଯେ ମାରିବି ତୋର ଭାଇ ।
ବ୍ରହ୍ମା ଇନ୍ଦ୍ର ହୋଇଲେ ରଖନ୍ତା କେହି ନାହିଂ ॥

ଯେସନେକ ବୋଲି ରାମ ସୁଗ୍ରୀକି ପେଷନ୍ତି ।
ଲକ୍ଷ୍ମଣକୁ ଘେନିଣ ସେ ଆପଣେ ରହିଛନ୍ତି ॥
ରାମକୁ ପିଠିକରି ରହିଲେ ମନ୍ତ୍ରୀ ଚାରି ।
ସିଂଘଦ୍ୱାରେ ସୁଗ୍ରୀ ଯାଇ ସିଂଘନାଦ କରି ॥୧୦୦
ଆରେ ଆରେ ବାଳୀ ବୋଲିଣ ସୁଗ୍ରୀବର ଡାକଦେଲା ।
ବାହାସ୍ଫୋଟ ମାରିଣ ଯେ ରଡ଼ିୟେ ଛାଡ଼ିଲା ॥
ହୁଙ୍କାର ଧ୍ୱନି କରି ଭିତରକୁ ଗଲେ ।
ନଗ୍ର ନରନାରୀ ଯେ ଦେଖିତେ ଅଇଲେ ॥
କେ ବୋଲଇ ସୁଗ୍ରୀ ଯେ ଭାଜିଂ ପଳାଇଲା ।
କେବଣ କାରଣେ ପୁଣି ଆଜିହିଂ ଅଇଲା ॥
କେ ବୋଲଇ ଯେହାର ମରିବା ହୋଇଲା ନିକଟ ।
ଜୀବନ ହାରିବା ପାଇଁ ହେଉଛି ପଛପଟ ॥
କେ ବୋଲଇ ଯେ କାହାର ଅଛଇ ବଳ ପାଇ ।
ନୋହିଲେ କିପାଇଂ ଯେ ଆସିଅଛି ଧାଇଂ ॥୧୦
ସହସ୍ରେ ବରଷ ହେଲା ଭାଜିଂ ଯେଥୁ ଗଲା ।
କନ୍ଦମୂଳ ଖାଇଣ ଯେ କନ୍ଦରେ ଲୁଚିଲା ॥
ଯେବେ ଯେକା ଦିନକରେ ଦୁଇବେଳ ଆସି ।
ହାକ ମାରୁଅଛି ଯେ ସିଂଘଦ୍ୱାରେ ପଶି ॥
ଦେଖ ମୂର୍ତ୍ତି ଯେହାର ତ ଦିଶୁଅଛି ଆନ ।
ସୁବର୍ଣ୍ଣ ପଦ୍ମମାଳାୟେ ଗଳାରେ ଆଭରଣ ॥
ଆବର ପୁଷ୍ପମାଳାୟେ ଗଳାରେ ଅଛଇ ।
ଯୁଦ୍ଧ କରିବ ବୋଲିଣ ଆଣ୍ଟେଣ ଡାକଇ ॥
ମୁହିଂ କଥାୟେକ ଯେହାର କରଇ ଅନୁମାନ ।
ପୂର୍ବର କଥା ଆସି ହୋଇଲା ବିଧାନ ॥୨୦
ବଡ଼ ଲୋକକୁ ଅବଶ୍ୟ ଆଶ୍ରେ କଲା ସେହି ।

କିଷ୍କିନ୍ଧ୍ୟା କଟକେ ହୋଇବ ନରସାଇଂ ॥
ଯେତେ ବୋଲିଣ ଲୋକେ କୁହାକୁହି ହୁଅନ୍ତି ।
ମେଢ଼ ମଣ୍ଡୋପରେ କେହୁ ଚନ୍ଦ୍ରିଣ ଦେଖନ୍ତି ॥
ଯେକ ଦୃଷ୍ଟି କରିଣ ଯେ ଅଛନ୍ତି ସମସ୍ତ ।
ଶୁଣିସି ଗଉରା ଗୋ ବୋଲନ୍ତି ବିଶ୍ୱନାଥ ॥
ଯେସତନେକ ସମୟେ ସୁଗ୍ରୀ ପାଡ଼ଇ ସିଂଘରଡ଼ି ।
ମେରୁ ପର୍ବତ କି ସେ ପଡୁଅଛି ଝଡ଼ି ॥
ଅନ୍ତଃପୁରେ ଥାଇଣ ଶୁଣିଲା ତା ବାଳୀ ।
ଘୃତ ସଂଯୋଗେ ଯେହ୍ନେ ଅଗ୍ନି ପ୍ରଜ୍ୱଳି ॥୩୦
ତାରାକୁ ଘେନିଣ ସେ ନିଶ୍ଚିନ୍ତେ ରହିଥିଲା ।
ଧଡ଼ପଡ଼ି ହୋଇଣ ଉଠିଣ ବସିଲା ॥
କୋପେଣ ନୟନ ବୁଲାଇ ଘନ ଘନ ।
ରୋଷେଣ ଖରତର ବହଇ ପବନ ॥
ବସ୍ତ୍ର ଅସମ୍ଭାଳ ସେ ଯେ ତଳକୁ ଯାନ୍ତେ ଉଠି ।
ଆଗରେ ଉଗାଳିଲେ ତାରା ଯେ ବିମ୍ବୋଷ୍ଠୀ ॥
କିମ୍ପାଇ ନାଥ ତୁମ୍ଭେ ମୂର୍ଖପଣ କର ।
କଥାର ସନ୍ଧି କିମ୍ପା ମନରେ ନ ବିଚାର ॥
ସହସ୍ରେ ବରଷ ଯେ ପଳାଇ ସୁଗ୍ରୀବର ।
ଆଜ ଦୁଇବେଳ ଅଇଲା ଯେକା ଦିନକର ॥୪୦
ଇନ୍ଦ୍ରଦେବତା ଯେବେ ଯୁଝିବ ତୋର ତୁଲେ ।
ପ୍ରାଣ ଘେନି ପାରିକି ତୁ କୋପେ ହାଦେ କଲେ ॥
ସେ କଥା ଭଲେଣ ତ ଜାଣଇ ସୁଗ୍ରୀବର ।
ତୋତେ ହାକ ମାରଇ ଯେ ପଶିଣ ସିଂଘଦ୍ୱାର ॥
ବେଳେକ ହାରିଣ ଯାଇ ପୁଣିହିଂ ଅଇଲା ।
ବଡ଼ଲୋକର ନିଶ୍ଚୟେ ଯେ ଭରସା ପାଇଲା ॥
ଚାର ମୁଖେ ବାରତା ମୁଂ ଶୁଣିଅଛି ଯାହା ।

ସାବଧାନ ହୋଇ ତୁମ୍ଭେ ଶୁଣିମା କପିନାହା ॥
ଶ୍ରୀରାମ ବୋଲିଣ ଯେ ଅଯୋଧ୍ୟାର ନାଥ ।
ତାହାଙ୍କର ସଙ୍ଗେ ସୁଗ୍ରୀ ଯେ ହୋଇଛନ୍ତି ମିତ୍ର ॥୫୦
ସମରେ ସରି ତାଙ୍କୁ ନୁହନ୍ତି ଶୂଳହସ୍ତ ।
ତାହାଙ୍କର ବଳେ ସୁଗ୍ରୀ ହେଉଛି ଯେମନ୍ତ ॥
ସେ ରାମ ପ୍ରତଗ୍ୟାଂ କଲେ ଶସ୍ତ୍ରଛୁଇଂ ।
ତୋତେ ମାରି ସେ ସୁଗ୍ରୀକି ରାଜ୍ୟ ଦେବାପାଇଁ ॥
ଚାର ମୁଖୁଂ ଯେସନ ଯେ ଶୁଣିଲି ବାରତା ।
ମିଥ୍ୟା ସେ ନୋହଇ ଦେବ ଯେ ମୋହୋର କଥା ॥
ଯାହା ମୁଂ ସ୍ୱପନ ଯେ ଦେଖିଲଇଂ ଆଜ ।
ସେ କଥା ଶୁଣ ଦେବ ହେ କପିକୁଳ ରାଜ ॥
ଦଇତ୍ୟେ ପଶିଣ ଆସି ଭାଜିଂଲେ ଆମ୍ଭ ପୁରୀ ।
ନଗ୍ର ନରନାରୀଙ୍କି ସେ କଲେକ ହୁରିଜୁରି ॥୬୦
ସ୍ୱପନ ଦେଖିଣ ଦେବ ହେ ଉଠିଣ ବସିଲି ।
ରାତ୍ର ପାହିବାରୁ ଆଉ ନିଦ୍ରାହିଂ ନଗଲି ॥
ଯେକ ବିଧବାୟେ ରୋଦଇ ମୋର ସଙ୍ଗେ ।
ତେତେବେଳହୁଂ ମୁଂ ଯେ ଭାଳଇ ମନ ଭଙ୍ଗେ ॥
ଚିତ୍ତ ବ୍ୟାକୁଳ ମୋର ଯେ ହେଉଅଛି ଆର ।
ମୁଖହିଂ ଅଶୋଭା ଯେ ଦିଶୁଅଛି ତୁମ୍ଭର ॥
ଆଜ ଯୁଦ୍ଧକୁ ଗଲେଣ ଯେ ନୋହିବାକ ଜୟେ ।
ମୋତେ କୋପ ଦେବ ଯେ ନକର କପିରାୟେ ॥
ଚାର ଡରେ ନକହଇ ତୁମ୍ଭର ଆଗରେ ।
ତୁମ୍ଭେ ବୋଲ ମୋତେ ସମ କେ ଅଛି ସଂସାରରେ ॥
ଗଲେଣ ଆଜ ଦେବ ହରାଇବୁ ପ୍ରାଣ ।

ବିଧବା ଅବସ୍ଥା ମୋତେ ନଦିଅ କପିରାଣ ॥
ଦୁଃଖୀ ହୋଇଣ ମୁଂ ବଞ୍ଚିବି କେତେ ଦିନ ।
ତାମ୍ବୁଳ ବିହୁନେ ଶୋଭା ନ ଦିଶିବ ବଦନ ॥
କଜ୍ଜ୍ୱଳ ନ ଘେନିଲେ ନୟନ ନଶୋହେ ।
କୁସୁମ ବିହୁନେ କବେରୀ ଶୋଭା ନୋହେ ॥
ଚତୁଃସମ ନ ଘେନିଲେ ଶୋଭା ନୋହେ ଅଙ୍ଗ ।
ଆଭରଣ ନୋହିବି ମୁଂ ବସନ ଦେବାଙ୍ଗ ॥
ଅଳତା ରଙ୍ଗ ଯେ ନଥିବ ପାଦତଳି ।
କୁଚରେ ଲେଖନ ନୋହିବ ପତ୍ରାବଳି ॥
ନୂପୁର ବିହୁନେ କି ଶୋହିବ ଚରଣ ।
ବାହେ ବାହୁଟି ନ ଥିବ କଙ୍କଣ ॥
ନାସିକା ନ ଶୋହିବ ବସୁଣୀ ବିହୁନେ ।
ଯେତେକ ଦୁଃଖ ମୁଂ ସହିବି କେସନେ ॥
ଯେବେ ମୁଂ ବୋଲାଉଅଛି ତାରା ମହାଦେଈ ।
ପରେ ଲୋକେ ବୋଲିବେ ରାଣ୍ଡୀ ଗୋଟି ଯେହି ॥
ଶୁକ୍ଳ ବସ୍ତ୍ର ପିନ୍ଧିଲେ ମୁଂ ଅଶୋଭା ଦିଶିବି ।
କାହାର କୋଳେ ବସି ମୁଂ ପ୍ରେମବାଣୀ ଭାଷିବି ॥
ଯେ ମୋହୋର ଶପତ ହେ ନ ଯାଅ ନାଥ ଯୁଝି ।
ଗଲେ ଚିତ୍ରଗୁପ୍ତେ ପୋଛିବେ ତୋର ପାଞ୍ଜୀ ॥
ସୁଗ୍ରୀବର ତୋହୋର ଅଟଇ ସାନଭ୍ରାଥ ।
ତାହାକୁ ଯୁବରାଜା କରସି ପ୍ରାଣନାଥ ॥
ରାଜ୍ୟର ଭାରାଭାର ତାହାର ମୂଳେ ଦେଇ ।
ସୁଖେ ଭୋଗକର ଅନ୍ତଃପୁରେ ଥାଇ ॥
ତାରାର ବଚନେ ବୋଲଇ ବାଳି ରାୟେ ।
ଶ୍ରୀରାମ ବୋଲିଣ ସଖି କାହାର ତନୟେ ॥
ସେ କିଂପାଇ ମୋତେଟି କରିବ ପ୍ରାଣ ନାଶ ।
ମୋହୋର ତାହାକୁଟି କଲା ନାହିଁ ଦୋଷ ॥
ସେ ଯେବେ ମାରିବେ ମୋତେ ସୁଗ୍ରୀବର ଛଳେ ।
ଇନ୍ଦ୍ର ସମାନେ ମୁଂ ଯାଇ ବସିବି ସ୍ୱର୍ଗଆଳେ ॥
ତାହାର ଜନ୍ମକଥା ଶୁଣିଅଛି ମୁହିଂ ।
ଦୁର୍ଭାସା ଋଷି ମୋତେ ପୂର୍ବେ ଛନ୍ତି କହି ॥
ରାବଣ ଆଦି ଯେତେ ଅଛନ୍ତି ଦତ୍ୟବଳ ।
ମାନବ ରୂପେଣ ବିଷ୍ଣୁ ମାରିବେ ସକଳ ॥
ତୁ ସଖି ନ ଜାଣୁ ଯେ ମୋହୋର ବୀର୍ଯବଳ ।
ମୋତେ ସମାନ ଗୋ ନୋହନ୍ତି ଦିଗପାଳ ॥
ଘଡ଼ିକେ ଚାରି ସମୋଦ୍ରେ ମୁଂ ସ୍ନାହାନ କରଇ ।
ସୁର ନର ଗନ୍ଧର୍ବ କାହାକୁ ନ ଡରଇ ॥
ତୁ ଯେ ବୋଇଲୁରେ ସଖି ସୁଗ୍ରୀଙ୍କି ଆଶ୍ୱାସ ।
ରାଜାଗଣେ ଶୁଣିଲେ ମୋତେ ବୋଲିବେଟି କିସ ॥
ବୋଲିବେ ଭାଇକି ଯେ ଘଉଡ଼ି ଦେଇଥିଲା ।
ଶ୍ରୀରାମକୁ ଡରିଣ ଯେ ଶରଣ ପଶିଲା ॥
ମୁହିଂ ସୁଗ୍ରୀବର ବୋଲ ନ ପାରିବି ଶୁଣି ।
ତାରାକୁ ଆଡ଼େ କରିଣ ବାହାର କପିମଣି ॥
ସୁଗ୍ରୀକି ଦେଖିଣ ବାଳି ଯେ କୋପେଣ ଧାଇଂଲା ।
ବଜ୍ରମୁଷ୍ଟି କରିଣ ଯେ ବିଧାୟେ ମାଇଲା ॥
ସୁଗ୍ରୀବର ବକ୍ଷସ୍ଥଳେ ବାଜିଲା ଯାଇ ବିଧା ।
ସ୍ୱର୍ଗେ ଶୂନ୍ୟମାର୍ଗେ ଥାଇ ଦେଖନ୍ତି ବିବୁଧା ॥
ବିଧାକୁ ନ ମାନି ସେ ପଶିଲା ଝସାଇ ।
ଶାଳବୃକ୍ଷେ ଉପାଡ଼ିଣ ସେ ଧାଇଂଲା ରୋଷ ବହି ॥
ବାଳିର ଉପରେ ପିଟିଲା ନେଇ ତାହା ।
ଚିତ୍ରଗତି କରିଣ ଛଡ଼ାଇ କପିନାହା ॥
ବୋଇଲା ସରିଲା ଆଜୁଁ ତୋର ସୁଗ୍ରୀବର ନାମ ।
ନିଶ୍ଚୟେ ପେଷିବି ତୋତେ ଜନ୍ତୁପତି ଗ୍ରାମ ॥
ଯେତେ ବୋଲିଣ ଦୁହେଂ ଧରାଧରି ହୋନ୍ତି ।
ଶିରରେ କୋଡ଼ାକୋଡ଼ି ହିଆରେ ଯନ୍ତାଯନ୍ତି ॥
ଯେକ ଦେହ ହୋଇଣ ସେ ହୋଇଲେ ଭିଡ଼ାଭିଡ଼ି ।
ଚିତ୍ରଗତି କରିଣ ସେ ଯାନ୍ତି ଗଡ଼ାଗଡ଼ି ॥
ଯେକୁ ଆରେକ ସେ ବିନ୍ଧାଣ ଘେନନ୍ତି ।
ନଖ ଦନ୍ତ ଘାତେଣ ଶରୀର ବିଦାରନ୍ତି ॥
ଫୁ ଫୁ କାର ଶବଦ ନିଶ୍ୱାସ ଖର ବାଜେ ।
କାଷ୍ଠ ପାଷାଣ ଧୂଳି ପୁର ଦ୍ୱାର ଭାଙ୍ଗେ ॥
ନଗର ନରନାରୀ ଅମନାତ୍ୟ ଗଣ ।
ସମସ୍ତେ ଦେଖନ୍ତି ଆରତ ହୋଇଣ ॥
ସ୍ୱର୍ଗେ ଦେବଗଣେ କରନ୍ତି ଭାଳେଣି ।
ବାଳି ରାୟେ ବଧ ହୋଇବ ଯେହିକ୍ଷଣି ॥
ବାଳି ସୁଗ୍ରୀଙ୍କର ଯୁଦ୍ଧ କହିଲେ ନ ସରଇ ।
ଏକ ମୁଥ ମାରିଣ ଆରେକକୁ ଟାଳଇ ॥
ଯେକକୁ ଆରେକ ସେ ଯେ ବିନ୍ଧାଣ ପୁଣ ପୁଣି ।
ସୁଗ୍ରୀକି ତଳେ ମାଡ଼ି ବସିଲା ବୀରମଣି ॥
ଦେଖିଣ ଶ୍ରୀରାମ ଯେ ମନେ ବିଚାରନ୍ତି ।
ଯେହି ସେ ଉପରେ ମାଡ଼ି ବସିଛି ବାଳି କ୍ଷେତ୍ରୀ ॥
ନ ପୁଣ ମୁଥେ ନିକି ମାରଇ ଯେହୁ ଟାଳି ।
ଯେକା ମୁଥକେ ମୈତ୍ର ମୋର ହୋଇଯିବେ ଧୂଳି ॥
ଆଗହୁଂ ନାରାଜ ଯେ ଥିଲେନି ପୂରୋଇ ।
ବାଳିର ଉପରକୁ ବିନ୍ଧିଲେ ରୋଷ ବହି ॥
ଗର୍ଜିଣ ବାଳି ହୃଦେ ପଡ଼ିଲା ନାରାଜ ।
ପିଠିଆଡ଼କୁ ଫୁଟି ରହିଲା ଅତି ତେଜ ॥
ସୁଗ୍ରୀକି ଛାଡ଼ିଣ ବୀର ପଡ଼ିଲାକ ଢଳି ।
ଅଙ୍ଗଦକୁ ରଜାପଣ ନ ଦେଲି ବୋଲି ଭାଳି ॥୫୦
ବୋଇଲା ସ୍ୱହସ୍ତେ ମୁଂ ଅରଜିଲି ରାଜ୍ୟ ।
ତୋତେ ଦେଇତ ମୁଂରେ ନ ପାରିଲି ତନୁଜ ॥
ଅନ୍ୟକୁ ହୋଇଲା ମୋର ଯେତେକ ସଂପଦ ।

ଯେତେ ବୋଲି ଭୂମିରେ ପଡ଼ିଲା କପିରାଜ ॥
ଯହୁଁ ସେ ବାଳୀରାୟେ ଢଳିଣ ପଡ଼ିଲା ।
ଉଠିଣ ସୁଗ୍ରୀବର ରାମକୁ ଡାକିଲା ॥
ଶ୍ରୀରାମ ଲକ୍ଷଣ ଅଇଲେ ତାହା ଶୁଣି ।
ଦେଖିଲେ ଭୂମିରେ ପଡ଼ିଛି କପିମଣି ॥
ସୁଷେଣ ତାରାକ୍ଷ ଗନ୍ଧମାରଦନ ।
ହନୁମତ ଜମ୍ୱେବ ବେଢ଼ିଲେ
ସାତଜଣ ॥୬୦
ଚେତନା ପାଇଣ ବାଳୀ ବୀର ଉଠି ବସି ।
ସମ୍ଭାଳି ନ ପାରି ପୁଣ ପଡ଼ିଲା ଲହସି ॥
ଶ୍ରୀରାମକୁ ଚାହିଂଣ ବୋଇଲା କପିପତି ।
କେବଣ ଦେଶରୁ ତୁ ଅଇଲୁ ହୋ ଯତି ॥
ଶବର ପ୍ରାୟେ ହୋଇ ଲୁଚି ବସିଥିଲୁ ।
ଅକାରଣେ କିମ୍ପା ମୋତେ ନାରାଚ ବିନ୍ଧିଲୁ ॥
କିସ ନାମ ଗୋଟି ଅଟଇ ପୁଣ ତୋର ।
ଅଦୋଷେ ହତ୍ୟା କିମ୍ପା ଘେନିଲୁ ମୋହୋର ॥
କେ ତୋହୋର ଜନନୀ ଅଟୁ କିସ ଜାତି ।
ବନବାସ କଲୁ ତୁହି କେବଣହିଂ ଗତି ॥୭୦
କିମ୍ପାଇଂ ଧନୁର୍ବାଣ ଧରିଅଛୁ କର ।
କଷା ବସ୍ତ୍ର ପିନ୍ଧିଣ ଜଟାଭାର ଶିର ॥
କିଷ୍କିନ୍ଧ୍ୟା ନଗ୍ରକୁ ତୁ କିମ୍ପାଇ ଅଇଲୁ ।
କାହାର ବୋଲେ ମୋତେ ତୁ ନାରାଚ
ବିନ୍ଧିଲୁ ॥
ରକ୍ତ ମାଂସେ ଯେବେ ତୋହୋର ପୀରତି ।
ମର୍କଟ ମାଂସ ତ ଅଭକ୍ଷ ଅଟନ୍ତି ॥
ଶ୍ରୀରାମ ବୋଇଲେ ମୁଁ ସୂର୍ଯ୍ୟବଂଶେ ଜାତ ।
ଅଯୋଧ୍ୟା ନୃପତି ଦଶରଥଙ୍କର ସୁତ ॥
କଉଶଲ୍ୟା କୟେକୟା ସୁମେତ୍ରା ତିନି ରାଣୀ ।
ସନ୍ତତି ଅର୍ଥେ ଯଜ୍ଞ କଲେକ ନୃପମଣି ॥୮୦
ଋଷ୍ୟଶୃଙ୍ଗ ମୁନିଙ୍କର ମନ୍ତ୍ରବଳୁ କରି ।
ଚାରିପୁତ୍ର ପାଇଲେ ଦଶରଥ ଦଣ୍ଡଧାରୀ ॥
ଜ୍ୟେଷ୍ଠ ପୁତ୍ର ମୁହିଂ ଶ୍ରୀରାମ ମୋର ନାମ ।
କଉଶଲ୍ୟାଙ୍କ ଗର୍ଭୁ ସମ୍ଭୂତ ଅନୁପାମ ॥
କକୟାର ତନୁଜ ଭରଥ ଅଟଇ ।
ସୁମିତ୍ରାଙ୍କର ସୁତ ଲକ୍ଷଣ ଶତ୍ରୁଘନ ଦୁଇ ॥
ଜନକ ମହାମୁନି ମିଥିଳା ନୃପବର ।
ସୀତୟା ନାମେଣ ଦୋହିତା ତାହାଙ୍କର ॥
ଶିବ ଶରାସନ ଥୋଇଣ ସତ୍ୟ କରିଥିଲେ ।
ଯେ ତାହା ତୋଳିବ ତାକୁ ଦେବଇଂ
ବୋଇଲେ ॥୯୦
ରାବଣ ଆଦି କରି ନ ପାରିଲେ ତୋଳି ।
ମୁହିଂ ଧନୁ ତୋଳନ୍ତେ ମୋତେ ବିଭାଦେଲେ
ବାଳୀ ॥
ଆବର ତିନିଭାଇଙ୍କି ତିନିଝିଅ ଦେଲେ ।
ପ୍ରସନ ହୋଇ ମୁନି କଲ୍ୟାଣ ମୋତେ
କଲେ ॥
ଅଯୋଧ୍ୟା ନଗ୍ରେ ମୁଂ ହୁଅନ୍ତେ ପରବେଶ ।
ଦେଖିଣ ପିତା ମୋର ହୋଇଲେ ହରଷ ॥
ବିଚାରିଲେ ଶ୍ରୀରାମକୁ ରାଜାପଣ ଦେବି ।
ବୃଦ୍ଧ ହୋଇଲି ମୁଂ ଅନ୍ତଃପୁରେ ଥିବି ॥
ସାବତ ଜନନୀ ମୋର ଅଟଇ କୟେକୟା ।
ତାହାଙ୍କର ମନେ ମୋତେ ଧଇଲେକ
ମାୟା ॥୧୦୦
ନୃପତିକି କପଟେ ସତ୍ୟ କରାଇଲେ ।
ଶ୍ରୀରାମ ବନବାସ ଯାଉ ଯେ ବୋଇଲେ ॥
ଚଉଦ ବରଷ ବନେ ବୁଲିବ ବନବାସ ।
ଭରଥ ରାଜା ହୋଇ ପାଳୁ ଗ୍ରାମ ଦେଶ ॥
ତେଣୁ ସେ ଭାଇ ଭାରିଯାକୁ ସଙ୍ଗତରେ
ଘେନି ।
ଅରନ୍ୟେ ବୁଲୁଥିଲି ପିତାଙ୍କ ଆଗ୍ୟାଂ ମାନି ॥
ନାନା ଅରଣ୍ୟରେ ବୁଲିଲୁ ନାନା ଦେଶ ।
ଗୋଦାବରୀ ତୀରେଣ କଲଇଂ ଆସି ବାସ ॥
ସହସ୍ରେ ଅଣୀ ଦିନ ସୁଖେଣ ଦିନ ନେଲୁ ।
କର୍ମର ଅବଳେ ପୁଣ ଘରଣୀ
ହରାଇଲୁ ॥୧୦
ରାବଣ ନାମେଣ ଲଙ୍କାର ନୃପତି ।
ସେ ବଳେ ହରିନେଲା ମୋହୋର ଯୁବତୀ ॥
ମୁହିଂ ଯାଇଥିଲି ମାୟାମୃଗ ମାରି ।
ଯେକା ଦେଖି ନେଲା କପଟେ ଚୋରି
କରି ॥
ଗରୁଡ଼ର ତନୟ ପକ୍ଷୀଚଟା ବୀର ।
ତାହାର ଡେଣାଗୋଡ଼ କାଟିଲା ଦଶଶିର ॥
ସେ ମୋତେ କହିଲା ରାବଣ ହରିନେଲା ।
ସୀତୟା ନିମନ୍ତେ ପ୍ରାଣ ହରାଇଲା ॥
ତେଣୁ ସେ ଅରନ୍ୟେ ମୁଂ ବୁଲୁଛି ଆରତେ ।
ସୁଗ୍ରୀକି ଭେଟିଲି ମୁଂ ଋଷିମୁଖ
ପର୍ବତେ ॥୨୦
ତାହାର କଷ୍ଟ ଶୁଣି ସୁଦୟା ମୁହିଂ କଲି ।
ଦୁହେଂ କଷ୍ଟି ବୋଲି ମୈତ୍ରୟ ବନ୍ଧାଇଲି ॥
ତାହାର ଭାରିଯାକୁ ବଳେ ତୁ ନେଲୁ ହରି ।
ମୋହୋର ଘରଣୀକି ରାବଣ ନେଲାକ
ଚୋରିକରି ॥
ତେଣୁ ସେ ତାହାକୁ ହାଦେ ମୁଂ ଯେ ଦୟା
କଲି ।
ମୈଇତ୍ର ପାଇଂ ହାଦେ ତୋତେ ନାରାଚ
ମାଇଲି ॥
ଶ୍ରୀରାମ ବଚନ ଶୁଣି ବୋଇଲ ତାରାପତି ।
କେହ୍ନେ ଯେ ରଘୁବଂଶକୁ ଧାର୍ମିକ
ବୋଲନ୍ତି ॥
ତୁମ୍ଭର ଉପର ବଂଶେ ହରିଚନ୍ଦନ ରାଜା
ଥିଲା ।
ଯେ ମହୀମଣ୍ଡଳେ ସେ ଅଶ୍ୱମେଧ ଯାଗ
କଲା ॥୩୦
ଆପଣେ ବିକି ହୋଇ ବ୍ରାହ୍ମଣେ ଧନ
ଦେଲେ ।
ଚାରିଯୁଗକୁ ସେ କଥା ଗୁହ୍ମାଇଲେ ॥
ସେହି କୁଳେ ପୂର୍ବେ ବିଭକ୍ଷ ନୃପତି ।
ଦେବଙ୍କର ବଚନେ ସେ ପାଳଇ ରାଜ୍ୟ
ପୃଥ୍ୱ ॥
ସେ ବିଭକ୍ଷ ରାଜନ ଅତ୍ୟନ୍ତ ଧାର୍ମିକ ।
ତାହାକଇ ପ୍ରଶଂସା କରନ୍ତି ସର୍ବଲୋକ ॥
ମାନଧାତା ରାଜା ସପତ ଦ୍ୱିପେ ରାୟେ ।

ସ୍ୱରୂପ ସୁରପତି ସାବଧାନେ ଜୀୟେ ॥
ରଘୁ ନୃପତିର ମହିମା ଅପାର ।
ଅଶ୍ୱମେଧ ଯାଗ ସେ କଲାକ
ଶତେବାର ॥୪୦
ପୃଥିବୀ ଧବଳିଲା ମହିମା ଅପାର ।
ତେଣୁ ସେ ରଘୁବଂଶ ବୋଲାଇଲା ତୁମ୍ଭର ॥
ଅଜ ନାମେ ନୃପତି ଇନ୍ଦ୍ରକୁ ଜିଣିଲା ।
ସଦୟା କରିଣ ପୁଣ ସ୍ୱର୍ଗରେ ସ୍ଥାପିଲା ॥
ଭଗୀରଥ ବିଷ୍ଣୁପାଦୁଂ ଆଣିଲା ଗଙ୍ଗାଜଳ ।
ସପ୍ତସାଗର ପୂରୋଇ ଉଧରିଲା କୁଳ ॥
ସଗର ନୃପତି ସାଗର ଭିଆଇଲା ।
ଷାଠିଯେ ସହସ୍ରେ ପୁତ୍ର କପିଳ କୋପେ
ମଲା ॥
ସେହୁ ଭଗୀରଥ ଗଙ୍ଗାକୁ ଆଣିଲେ ।
ପିତୃଗଣକୁ ଆଣି ସ୍ୱର୍ଗରେ ବସାଇଲେ ॥୫୦
ଅତି ବିତପନ ଯେ ଅନେକ ରାଜା ଥିଲେ ।
ନାନା ଧର୍ମ କରିଣ ସେ ସଂସାର ପାଳିଲେ ॥
ଅଜ ନୃପତି ଯେ ଜଗତେ ଅଜୟେ ।
ତାହାର ଗଡ଼ପତି ଧନପତି ରାୟେ ॥
ସେହି ବଂଶେ ତୋହୋର ପିତା ଦଶରଥ ।
ଶନିଶ୍ଚର ଦେବତାକୁ ଜିଣିଲା ବଳବନ୍ତ ॥
ଇନ୍ଦ୍ରକୁ ସାହା ହୋଇ ସ୍ୱର୍ଗରେ ଯୁଦ୍ଧ କଲା ।
ନଉସସ୍ର ବରଷକୁ ପରମ ଆୟୁଷ ପାଇଲା ॥
ସୂର୍ଯ୍ୟବଂଶ ମହିମା ମୁଂ କହିବଇଂ କେତେ ।
ଯେତେ କୀର୍ତ୍ତି କରିଣ ସେ ଅଛନ୍ତି
ଜଗତେ ॥୬୦
ସେ କୁଳରେ ଜନ୍ମ ହୋଇ ତୁ ଯେଡ଼େକ
ଅଗ୍ୟାନ ।
ରାଜାପଣ ଛାଡ଼ିଣ ତୁ ବୁଲୁଛୁ ବନେ ବନ ॥
ଅଧର୍ମୀ ଦେଖିଣ ପିତା ବନକୁ ପେଶିଲା ।
ନୋହିଲେ କିମ୍ପାଇଂ ସାନ ଭାଇ ନୃପତି
ହୋଇଲା ॥
ଅମନାତ୍ୟ ଗଣେ ଯେ ତାକୁ କଲେ ପୂଜା ।
ଭରଥ ହୋଇଅଛି ଅଯୋଧ୍ୟାରେ ରାଜା ॥

ମାତା ପିତା ବିଚାରିଣ ନ କଲେ ତୋତେ
କତି ।
ପରାଜୟେ ନ ସହିଲେ ଯେ ତୋର ଦୁଷ୍ଟ
ମତି ॥
ଅଗ୍ୟାନ ପୁରୁଷ ତୁ କିଛିହିଂ ନ ଜାଣୁ ।
ବନ ଜୀବ ସଙ୍ଗରେ ବସିଲୁ ଆସି
ତେଣୁ ॥୭୦
କ୍ଷେତ୍ରୀପଣ ଧର୍ମେ ଯେବେ ମାରନ୍ତୁ ମୋତେ
ରଣେ ।
ଶୂରବନ୍ତ ପଣ ମୋର ଦେଖନ୍ତେ
ଦେବଗଣେ ॥
ମୋତେ ଯେ ମାଇଲୁ ହୋ କେବଳ ଗୁଣ
ପାଇ ।
ଜାଣିଲି ଶରୀରେ ତୋର କ୍ଷତ୍ରିୟ ଧର୍ମ ନାହିଂ ॥
କିରାତ ପରାୟେ ହୋଇ ବନରେ
ଲୁଚିଥିଲୁ ।
ଯୁଦ୍ଧ କରୁଥିଲି ମୋତେ ନାରାଜ ମାଇଲୁ ॥
ଛାଲ ମାଂସ ହାଡ଼େ କିଛିହିଂ କାର୍ଯ୍ୟ ନାହିଂ ।
କିମ୍ପାଇଂ ବାଣ ମୋତେ ମାଇଲୁ ରଘୁସାଇଂ ॥
ଗଜ ବ୍ୟାଘ୍ର ଭଲ୍ଲୁକ ମର୍କଟ କୁମ୍ଭୀର ।
ଯେହୁ ପାଞ୍ଚଜନ୍ତୁ ଯେ ଅଭକ୍ଷ ରଘୁବୀର ॥୮୦
ଗଣ୍ଡା ଗୋଧିକା ଶଶା ଝିଙ୍କ ଖାଇ ।
ମୋତେ ତୁ ବଧିଲୁ ଯେ ଅଭକ୍ଷ ଅଟଇ ॥
ଶ୍ରୀରାମ ବୋଇଲେ ହୋ ସୁଗ୍ରୀ ମୋର
ମୈତ୍ର ।
ତୋତେ ମାଇଲି ମୁଂ ଯେ ତାହାଙ୍କର ମତ ॥
ତୁ ତାଙ୍କର ଜ୍ୟେଷ୍ଠ ଭାଇ ଅଟୁ ହୋ ବୀର
ବାଳୀ ।
ଅଗ୍ୟାନ ଲୋକକୁ ନ ସହଇ ମହୀଆଳି ॥
ପିତା ତୁମ୍ଭର ଯେହାକୁ ଯୁବରାଜା କଲା ।
ବାପର ବୋଲ ତୋତେ ଗ୍ରାହ୍ୟ ଯେ
ନୋଇଲା ॥
ରାଜ୍ୟରୁ ଯେହାକୁ ତୁ ବାହାର କରିଦେଲୁ ।
ଭାରିଯାକୁ ତାର ବଳେଣ ହରିଲୁ ॥ ୯୦

ତେଣୁ ସେ ନାରାଜ ତୋତେ କଲୁଚି
ପ୍ରହାର ।
ଯହୁ ତୁ ଅନ୍ୟାୟେ ହୋ କଲୁ କପିବୀର ॥
ବୋଇଲୁ ଯେ ସାନ ଭାଇ ହୋଇଲା
ନୃପତି ।
ତୁମ୍ଭେ ଅରଣ୍ୟରେ ବୁଲୁଅଛ ଯେଥି ॥
ପିତା ଆଗ୍ୟାଂ ପାଳିଣ ସେ ଅଇଲି ବନସ୍ତ ।
କଠାଉକୁ ମୋହୋର ଧରାଇ ଦଣ୍ଡଛତ୍ର ॥
ମୋହୋର ଅଭାବେ ଯେ ଅଯୋଧ୍ୟାରେ ନ
ରହି ।
ନନ୍ଦିଗ୍ରାମେ ଅଛଇ ଉଦାସୀନ ହୋଇ ॥
ଅଭେଦ ଆତ୍ମା ଆମ୍ଭେ ଅଟୁ ଚାରିଭାଇ ।
ଯେକା ପିତାଠାରୁ ଅଛୁ ଜାତ ହେଇ ॥୧୦୦
ଦୁଷ୍ଟଜନମାନଙ୍କୁ ଦେଖିଲେ ଆମ୍ଭେ ମାରୁ ।
ଅନ୍ୟାୟେ ଲୋକମାନଙ୍କୁ ଆମ୍ଭେ ଉପ୍ରୋଧ
ନକରୁ ॥
ଆମ୍ଭେ ପୃଥିବୀରେ ରାଜା ଅଟୁ ହେ
ସୂର୍ଯ୍ୟବଂଶ ।
ପାପୀ ବୋଲି ବାଳୀ ହୋ କଲଇ ତୋତେ
ନାଶ ॥
ବିଶେଷେ ଶାଖାମୃଗ ଅଟୁ ହୋ ତୁହି ରାୟେ ।
ମୃଗୟା ବିନୋଦେ ଆମ୍ଭେ ମୃଗୟାକୁ ଆୟେ ॥
କଉତୁକେ ଆମ୍ଭେ ଜୀବ ଜନ୍ତୁ ନାଶିଲୁ ।
ମୃଗୟା ବିନୋଦେ ତୋତେ ନାରାଜ
ପେଶିଲୁ ॥
ସ୍ୱଭାବେ ସୁଗ୍ରୀବର ଅଟଇ ମୋର ମୈତ୍ର ।
ତାହାଙ୍କର ଜୟ କଥା ଅଟଇ ମୋତେ
ହିତ ॥୧୦
ରାବଣ ଯେ ମୋହୋର ସୀତ୍ୟାକୁ
ହରିନେଲା ।
ତାହା ଶୁଣି ମୈତ୍ର ମୋର ଅନେକ
ଡିଆଗିଲା ॥
ଲଙ୍କାଗଡ଼ ପୋଡ଼ିଣ ମାରିବି ଦଶଶିରି ।
ନିଶ୍ଚୟେ ଆଣିଦେବି ଜନେକକୁମାରୀ ॥

ଯେ କଥା ଆମ୍ଭର ନିଷ୍ଠା ବୁଝସି ହୋ ବାଳୀ ।
ମୈତ୍ର ମୋହୋର ଅଟନ୍ତି ଶୁଦ୍ଧଶାଳୀ ॥
ଯେବଣ ଦିନେ ରାବଣ ସୀତ୍ୟାକୁ
ହରିନେଲା ।
ଆକାଶ ମାର୍ଗେ ରଥ ବାହି ନେଉଥିଲା ॥
ଶୋକେଣ ଜାନକୀ ଅଳଙ୍କାର କାଢ଼ି ।
ତାହା ସବୁ ବାନ୍ଧିଲେ ଉପରାଣ ଶାଢ଼ୀ ॥୨୦
ସୁଗ୍ରୀବରକୁ ଦେଖିଣ ତଳକୁ ପକାଇଲା ।
ସେ ଆୟମାନ ମୋର ମୈତ୍ର ସମ୍ଭାଳିଣ
ଥିଲା ॥
ମୋତେ ଦେଖିଣ ଆସି ସମସ୍ତ ଦ୍ରବ୍ୟ
ଦେଲେ ।
ରାବଣ ନେଲା ବୋଲି ବାରତା କହିଲେ ॥
ନ ଦେଖି ଯେଡ଼େ ଭାବ ପାଇଲି ତାଙ୍କ
ତହିଁ ।
ତେଣୁ ସେ ମାଇଲି ତୋତେ ମୈତ୍ରଙ୍କର
ପାଇଁ ॥
ବାଳୀ ବୋଇଲା ଶ୍ରୀରାମ ଅଟୁ ତୁ ଅଗ୍ୟାନ ।
ଅନର୍ଗଳ ତୋଡ଼ର ସେ ବାନ୍ଧଇ ଦଶାନନ ॥
ସୁଗ୍ରୀବର ବଳେ କି ହୋଅଇ ତାକୁ ମାରି ।
ଯାହାର ମୁଖ ଦେଖିଲେ ଦେବତାଯେ
ଡରି ॥୩୦
ଯେ ମୋର ବିନୁ ତାକୁ ଜିଣନ୍ତା ନାହିଁ
ଅନ୍ୟ ।
ମୋତେ ଯେବେ ସନମାନ କରନ୍ତୁ ଭୋ
ରାମ ॥
ରାବଣକୁ ମାରି ସୀତ୍ୟାକୁ ଆଣି ଦେନ୍ତି ।
ତୋହୋର ବୋଲେ ସୁଗ୍ରୀକି ଗଉରୋବ
କରନ୍ତି ॥
ତୋତେ ଆଶ୍ରେ କରି ମୁଁ ପାଆନ୍ତି କାରଣ ।
ତେଣୁ ସେ ସେ ବୋଇଲି ରାମ ଅଟୁତୁ
ଅଗ୍ୟାନ ॥
ଶ୍ରୀରାମ ବୋଇଲେ ତୁ ଭ୍ରାଥ ବଧୂ ହରୁ ।
ରାଜା ହୋଇଣ ତୁ ଅଗ୍ୟାନ ବୁଦ୍ଧି କରୁ ॥

ସେ ପାପ ହେତୁରୁ ତୋତେ ବିନ୍ଧିଲୁ ଆମ୍ଭେ
ବାଣ ।
ନର୍କଗତିରୁ ଯେବେ ତରିଲୁ କପିରାଣ ॥୪୦
ବାଳୀ ବୋଇଲା ଆମ୍ଭେ ଅଟୁ ପଶୁଜାତି ।
ଆମ୍ଭକୁ କି ସେ ଦୋଷ ନାଗିବ ରଘୁପତି ॥
ଅଗ୍ୟାନ ଜୀବ ଆମ୍ଭେ ଅରନ୍ୟେ ବୁଲୁଥାଉ ।
ଫଳ ମୂଳ ଖାଇଣ ଆମ୍ଭେ ନିର୍ଝର ପାଣି
ପିଉ ॥
ଗ୍ୟାନ ଗୋଚରେ ଆମ୍ଭର କିଛି ନାହିଁ ମେଳ ।
ସେ ଦୋଷ ଆମ୍ଭଙ୍କୁ ନ ଲାଗେ ରଘୁବାଳ ॥
ଶ୍ରୀରାମ ବୋଇଲେ ତୁ ନୃପତି ପଣ କରୁ ।
ଜଗତେ ତୋତେ ବୋଲନ୍ତି ହନ୍ତକାରୁ ॥
ଅଷ୍ଟ ଲୋକପାଳ ଧର୍ମ ପୃଥିବୀରେ
ଯେକମୂର୍ତ୍ତି ।
ବିଷ୍ଣୁ ଅଂଶ ନ ଥିଲେ କି ହୋଅଇ
ନୃପତି ॥୫୦
ଚାରି ସମୋଦ୍ରେ ତୁ ନିତ୍ୟେହିଁ ସ୍ନାନ କରୁ ।
ଶାହାସ୍ତ୍ର ପୁରାଣ ତୁ ଆଗମ ବିଚାରୁ ॥
ତୋତେ ଯେ ପାପପୂନ୍ୟ ଲାଗଇ ଅବଶ୍ୟ ।
ତୁ ବାଳୀରାୟେ ହୋ ଶ୍ରୀବନ୍ତ ପୁରୁଷ ॥
ଇନ୍ଦ୍ରର ବୀର୍ଯ୍ୟେ ତୁ ହୋଇଛୁ ଅବତାର ।
କିଂଚିତ ପାପେ ହେଲୁ ପୁଣ ବାନର ଶରୀର ॥
ଶ୍ରୀରାମ ମୁଖରୁ ସେ ଯେସନ ବାଣୀ ଶୁଣି ।
ସନ୍ତୋଷ ହୋଇଲା ସେ କପିକୁଳମଣି ॥
ବୋଲଇ ଶ୍ରୀରାମ ହୋ ଧନ୍ୟ ତୋର ପିତା ।
ଧନ୍ୟ ଧନ୍ୟ ସାଧବୀ ତୋର ଗର୍ଭଧାରୀ
ମାତା ॥୬୦
ମୋତେ ମାରିବାକୁ ହୋଇଲା ତୋର ବଳ ।
ଧନ୍ୟ ଯେ ମେଦନୀ ଜୀବନ ସୁଫଳ ॥
ତୋହୋର ପ୍ରାୟେ ପତି ପାଇଲାକୁ ଯହୁଁ ।
ପୃଥିକି ପ୍ରଶଂସା ମୁଁ କରୁଅଛି ତହୁଁ ॥
ଦେବତାୟେ ସମାନ୍ୟ ନୁହନ୍ତି ରାମ
ତୋତେ ।
ଯେ ତୋର ନାରାଚ ଯହୁ ଭେଦିଲା ମୋର
ଗାତ୍ରେ ॥

ଯେ ମୋହୋର ଶରୀରେ ବଜ୍ର ନ କାଟଇ ।
ଯେ ତୋର କିଞ୍ଚିତ ବାଣେ ଶରୀର ଫୁଟଇ ॥
ତୁ ଯେ ପ୍ରତକ୍ଷେ ଅଟୁ ଦେବ ନାରାୟଣ ।
ଦେବ ମାନବେ କାହିଁ ଯେଡ଼େକ
ବଡ଼ପଣ ॥୭୦
ଯେହା ଶୁଣି ଶ୍ରୀରାମ ଧନୁଶର ଥୋଇ ।
ବାଳୀକି କାର୍ପୁଣ୍ୟ ହୋଇ ବିନୟ ବାଣୀ
କହି ॥
ସୁଗ୍ରୀବର ଭାଇ ତୁ ଅଟୁ ମମ ଜ୍ୟେଷ୍ଠ ।
ଯେ ମୋହୋର ଦୋଷ ନ ଧର କପିଶ୍ରେଷ୍ଠ ॥
ଯେଡ଼େ ଧାର୍ମିକ ବୋଲିଣ ନ ଜାଣଇ
ତୋତେ ।
ଯେବେ ଅପ୍ରାଧ ଗୋଟା କ୍ଷମା କର ମୋତେ ॥
ନାରାଚ କାଢ଼ି ତୋତେ ଦେବଇଁ ମଉଷଧି ।
ସୀତୟା ଆଣମାକୁ କରସି ଯେବେ ବୁଦ୍ଧି ॥
ବାଳୀ ବୋଇଲା ମୁଂ ନ କରଇ ଯେହା ।
ତୁ ରାମ ପ୍ରତକ୍ଷେ ଅଟୁ ଚଉବାହା ॥ ୮୦
ଦେବଙ୍କର ଛଳେ ତୁ ଜନ୍ମିଲୁ ବ୍ରହ୍ମରାଶି ।
ଅବତାର ହୋଇଅଛୁ ଦୁଷ୍ଟଗଣ ନାଶି ॥
ମୋହୋର ଭାଗ୍ୟେଣ ଦେଖିଲି ରାମ
ତୋତେ ।
ସ୍ୱହସ୍ତେ ବାଣ ପେଷି ବଧ କଲୁ ମୋତେ ॥
ଯେ ତୋହୋର ହସ୍ତେ ମୁଂ ହୋଇଲି ପ୍ରାଣ
ନାଶ ।
ପ୍ରତକ୍ଷେ ବସିବି ଯାଇ ଅକ୍ଷୟେ ସ୍ୱର୍ଗ ବାସ ॥
ବ୍ରହ୍ମାଦି ଶଙ୍କର ଧ୍ୟାନ କରୁଛନ୍ତି ତୋତେ ।
ପୁଣ୍ୟର ଫଳେ ଶ୍ରୀରାମ ହୋଇ ଦେଖିଲଇ
ତୋତେ ।
ନିଶ୍ଚୟେ ମରିବି କରିବି ସ୍ୱର୍ଗେ ବାସ ।
ଯେ ମୋହୋର କଥା ଶୁଣ ରଘୁକୁଳ
ଶିଷ ॥୯୦
ଯେ ଯେ ସୁଗ୍ରୀବର ସାନୁଜ ମୋହୋର ।
ଯେହାକୁ ସମାନ ନାହିଁ ଦେବାସୁର ॥
ସୁଗ୍ରୀକି ରାଜା କରି ସନ୍ୟ ଠୁଳ କର ।

ଜମେବକୁ ବିଚାରିଣ ଦଇତ ବଳ ମାର ॥
ଯେ ଯେ ଅଙ୍ଗଦ ମୋହୋର ଜ୍ୟେଷ୍ଠ ସୁତ ।
ଯେହାକୁ ଦୟା କରି ଥିବୁଟି ରଘୁନାଥ ॥
ବଳେ ବଳବନ୍ତ ଭଣଜା ହନୁମନ୍ତ ।
ଅସୁର ବଳ ସବୁ କରିବେ ଧୂମାନ୍ତ ॥
ରବି ତଳେ ଯେହାକୁ ନାହିଁ ନା ସମସରି ।
ସମସ୍ତ ନିର୍ଭୀକର ଯେହାକୁ ଆଗ
କରି ॥୧୦୦
ସୁଷେଣ ମନ୍ତ୍ରୀ ଯେଥେ ଜାଣଇ ଭବିଷ ।
ଯେହାର ମନ୍ତ୍ରବଳେ ସମସ୍ତ ବ୍ୟାଧି ନାଶ ॥
ଅପୂର୍ବ ମନ୍ତ୍ର ପୋଥି ଅଛଇ ଯେହାର କର ।
ପ୍ରସନେ ଦେଇଣ ତାକୁ ଅଛଇ କୁଶଧର ॥
ମୁହିଁ ସ୍ୱର୍ଗ ଯିବି ନ ରହଇ କ୍ଷଣେ ।
ବିମାନ ଘେନି ଡାକୁଅଛନ୍ତି ସୁରଗଣେ ॥
ଯେତେକ ବୋଲିଣ ଇନ୍ଦ୍ର ଦେଲାର
ରତ୍ନମାଳ ।
ଆପଣା କଣ୍ଠରୁ ତାହା କାଢ଼ିଲା ଶକ୍ରବାଳ ॥
ସୁଗ୍ରୀବର କଣ୍ଠେ ତାହା ଲମ୍ବାଇଲା ନେଇ ।
ଆଜହୁଂ ହୋଇଲୁ ତୁ କିଷ୍କିନ୍ଧ୍ୟାରେ
ସାଇଂ ॥୧୦
ଆଜୁହୁଂ ଶ୍ରୀରାମକୁ ତୁ ସେବା କରିଥିବୁ ।
ରାବଣ ମାରିଣ ତୁ ସୀତୟାକୁ ଆଣିଦେବୁ ॥
ଯେତେବେଳେ ବାଳୀ କାଢ଼ିଲା ରତ୍ନମାଳ ।
ତକ୍ଷଣେ ଆସି ତାକୁ ଆକର୍ଷିଲା କାଳ ॥
ଶ୍ରୀରାମକୁ ବୋଇଲା ଦେବ ନାରାଚ ବେଗେ
କାଢ଼ ।
ଜାଣି ପଟାନ୍ତର ହୃଦରେ ଯମଦାଢ଼ ॥
କୋଟିଯେ ସୂର୍ଯ୍ୟର ତେଜ ସହିତେ ପାରଇ ।
ଯେ ତୋର କିଣ୍ଟିତ ବାଣେ ହରାଇଲି
ଦେହୀ ॥
ଶୁଣିଣ ଶ୍ରୀରାମ କାଢ଼ିଲେ ତୀକ୍ଷ୍ଣ ଶର ।
ବିକଟାଳ ଦିଶଇ ବୁକୁର ବିମ୍ବର ॥୨୦
ଝର ଝର ହୋଇଣ ବାହାର ରକତ ।
ନାରାଚ ମୁନେ ଲାଗି ଅଇଲା ହୃଦୟର ଅନ୍ତ ॥

ବ୍ୟଥା ପାଇଣ ସେ ହୋଇଲା ବିକଳ ।
ବାମହସ୍ତେ ଆଉଂସଇ ଆପଣା ବକସ୍ଥଳ ॥
ମୁହଁ କଳା ପଡ଼ିଣ ଆଖି ବୁଲାଇଲା ।
ରକତ ଉଦ୍‌ଗାରିଣ ସେ ଅସାଷ୍ଟମ ହୋଇଲା ॥
ଦେଖିଣ ଶ୍ରୀରାମ ବିକଳ ହୋଇଲେ ।
ନଗ୍ର ନରନାରୀମାନେ ହାହାକାର କଲେ ॥
ଯହୁଂ ସେ ମୁଖଗୋଳ ଶୁଭିଲା ବାହାରେ ।
ବାଳୀରାଜା ମଲା ଯେ ସୁଗ୍ରୀବ
ସଂଗ୍ରାମରେ ॥୩୦
ଅନ୍ତଃପୁରେ ବାରତା ପାଇଲା ତାରା ସ୍ୟତୀ ।
ଡଗରେ ଦେଖି ଯାଇ ଜଣାଇଲେ ଧାତି ॥
ରୋଦନ କରିଣ ଉଚ୍ଛେ ଆସଇ ସେ ଧାଇଂ ।
ମନ୍ତ୍ରୀଗଣମାନେ ପଛେ ଅଛନ୍ତି ଗୋଡ଼ାଇ ॥
ଅଙ୍ଗଦ ଆଦି କରି ସାତପୁତ୍ରକୁ ଘେନି ।
ଉରେ କର ତାଡ଼ିଣ ସେ କାନ୍ଦଇ କାମେନୀ ॥
ମନ୍ତ୍ରୀଗଣେ ବୋଇଲେ ଶୁଣସି ଗୋ ମାୟେ ।
ସାବଧାନ ହୋଇଣ ଶୁଣିମା କଥାୟେ ॥
ଦିଅସି ଆଗ୍ୟାଂ ଆମ୍ଭେ କରିବୁ ସମର ।
ଯେହିକ୍ଷଣି ଯୁଦ୍ଧେ ମାରିବୁ ସୁଗ୍ରୀବର । ୪୦
ହନୁମନ୍ତ ସୁଷେଣ ସେ ଗନ୍ଧମାରଦନ ।
ତାରାକ୍ଷ ମନ୍ତ୍ରୀ ଆଦି ପାଞ୍ଚ ଜଣ ॥
ରାମ ଲକ୍ଷଣ ଯେ ଅଛନ୍ତି ଦୁଇ ଯତି ।
ତାହାଙ୍କର ନାରାଚରେ ପଡ଼ିଲେ ତୋର ପତି ॥
ତାହାଙ୍କ ସହିତେ ଆମ୍ଭେ କରିବୁ ପ୍ରାଣେ
ନାଶ ।
ଯେ ତୋହୋର ମୁଖୁଂ ଯେବେ ପାଇବୁ
ସମ୍ଭାଷ ॥
ଅଙ୍ଗଦ ବୋଇଲା ତୁମ୍ଭେ ଶୁଣିମା
ମନ୍ତ୍ରୀମାନେ ।
ଯାହା ସେ କହିଲ ଯେହୁ ନୋହଇ
ବିଧାନେ ॥
ବାଳୀର କନେଷ୍ଟ ସୁଗ୍ରୀବ ମୋର ପିତା ।
ଶ୍ରୀରାମ ପ୍ରତକ୍ଷେ ଶ୍ରୀବିଷ୍ଣୁ ଦେବତା ॥ ୫୦
ଅନ୍ୟ ଛାରକି ବାଳୀକି ପାରେ ବଧି ।

ଗଉତମ ମୁନି ମୋତେ କହିଛନ୍ତି ପ୍ରବୋଧି ॥
ଯେବଣ କାଳେ ମୁଂ ମୃଗୟା ଯାଇଥିଲି ।
ଗୋଦାବରୀ କୂଳେ ଗଉତମକୁ ଭେଟିଲି ॥
ନମସ୍କାର କରି ମୁଂ କହିଲି କୁଳ ଗୋତ୍ର ।
କିଷ୍କିନ୍ଧ୍ୟା ରାଜାର ମୁଂ ଅଟଇ ଜ୍ୟେଷ୍ଠ ସୁତ ॥
ଶୁଣିଣ ଗଉତମ ମୁନି କଲ୍ୟାଣ ମୋତେ
କଲେ ।
ଅହିଲ୍ୟାୟେ ଦେଖି ମୋତେ ଆନନ୍ଦ
ହୋଇଲେ ॥
କୋଳେ ଧରିଣ ମୋତେ ଦେଲେକ କ୍ଷୀର
ଅନ୍ନ ।
ବହୁତ ତିଆରିଲେ ମୋତେ ଗଉତମ
ମହାମୁନ୍ୟ ॥୬୦
ତହିଂ କଥାମାନ ମୁଂ ଅଛଇ ପୂର୍ବେ ଶୁଣି ।
ଶ୍ରୀରାମ ଅବତାର ହୋଇବେ ଚକ୍ରପାଣି ॥
ସୀତୟା ହରାଇ ବୁଲନ୍ତେ ବନେ ବନ ।
ସୁଗ୍ରୀବର ଛଳେ ବାଳୀ କରିବେ ନିଧନ ॥
ରାବଣକୁ ମାରିଣ ସେ ଆଣିବେ ଘରଣୀ ।
ପୂର୍ବହୁଂ ଯେକଥାମାନ ଅଛଇ ମୁହିଂ ଶୁଣି ॥
ତୁମ୍ଭେ କିମ୍ପା ଯେକଥା କହୁଛ ଅବିଚାର ।
ଯେ ରାଜ୍ୟେ ସୁଗ୍ରୀବର ହୋଇବ ନୃପବର ॥
ଶ୍ରୀରାମ ଥାନ୍ତେ ପୁଣ ସଂଗ୍ରାମ ଯାଇ କଲେ ।
ଗୋଟିୟେକି ପ୍ରାଣ ପାଇବ ତୁମ୍ଭେ
ଭଲେ ॥୭୦
ଚାଲ ଆମ୍ଭେ ସମସ୍ତେ ପୁଣ ଯିବା ।
ଶ୍ରୀରାମ ଶ୍ରୀଚରଣେ ଶରଣ ପଶିବା ॥
ଯେସନେକ ବୋଲିଣ ସମସ୍ତଙ୍କୁ ତିଆରି ।
ନଗ୍ରରୁ ବାହାର ସେ ହୋଇଲା ଶୋକ କରି ॥
ଶ୍ରୀରାମ ଶ୍ରୀଚରଣେ ରହି ଶରଣ ଫୁକାରିଲା ।
ସମସ୍ତଙ୍କୁ ଘେନି ସୁଗ୍ରୀ ଉହାଡ଼େଣ ରହିଲା ॥
ବାଳୀକି ଦେଖିଣ ସେ ରୋଦନ କଲା
ତାରା ।
ଛିଡ଼ାଇ ପକାଇଲା ମୁକୁତାର ହାରା ॥
କେଶ ଅସମ୍ଭାଳ ବିଗଳିତ ବାସ ।

ଉଚ୍ଚେଣ କାନ୍ଦନ୍ତେ ସେ ପୂରଇ ଆକାଶ ॥୯୦
ହା ହା ସ୍ୱାମୀ ବୋଲି ଯାଇ ସନିଧ୍ୟେ ବସଇ ।
ପ୍ରୀତି ଗୁଣ ଘେନିଣ ସେ ଶରୀର ଆଉଂସଇ ॥
ଭୋ ସ୍ୱାମୀ ! ତୁମ୍ଭେ ଜଗତେ ଅଜୟେ ।
ତୁମ୍ଭର ପ୍ରାଣ କେହ୍ନେ ହରିଲା ଜନ୍ତୁରାୟେ ?
ବିଧବା ଅବସ୍ଥା ମୁଂ କେମନ୍ତେ ସହିବି ।
ସାଧବୀ ସ୍ତିରୀଙ୍କ ମୁଖ କେମନ୍ତେ ଚାହିଂବି ॥
ଅନାଥ କରିଣ ନାଥ ଗଲୁ ମୋତେ ଛାଡ଼ି ।
ରତ୍ନପଲଙ୍କ ଛାଡ଼ିଣ ତୁ ଭୂମିରେ ଅଛୁ ପଡ଼ି ॥
ତିଆରିଲା ବୋଲ ମୋର ନ କଲୁ ଗୋସାଇଂ ।
ଗର୍ବିତାପଣ କରିଣ ଅଇଲୁ ବେଗେ ଧାଇଂ ॥୯୦
ଅଖଡ଼କେ ପ୍ରାଣନାଥ ହରାଇଲୁ ଯେଥେ ଆସି ।
ଅବିକ୍ଷଣେ ରୋଦନ ମୁଂ କରୁଥିବି ବସି ॥
ପୁତ୍ରକୁ ଅନାଥ ତୁ କଲୁସି ଗୋସାଇଂ ।
କେବଣ ସମୋଦ୍ରେ ଯେବେ ପଶିବି ମୁଂ ଯାଇ ॥
ଦିଗପାଳ ସମାନେ ତୁ ଅଟୁ ପ୍ରାଣନାଥ ।
ପର୍ବତ ପକାଇ ପୁଣ ପାତୁ ତୁ ମସ୍ତକ ॥
ଅତି ବଳବନ୍ତେ ତୁ ବାଳୀ ନାମ ବହୁ ।
ଯେ ସମ୍ପଦ କାହାକୁ ଦେଇଗଲୁ ପ୍ରଭୁ ॥
ଚାରି ସମୋଦ୍ରେ ତୁ କ୍ଷଣକେ ସ୍ନାନ କରୁ ।
ଦେବ ଦାନବେ ଯେ କାହାକୁ ନ ଡରୁ ॥୧୦୦
ପୃଥିରେ କ୍ଷେତ୍ରୀପଣେ ଆଗେ ଲେଖା କରି ।
ଯେବେ କିମ୍ପାଇଂ ହାରିଲୁ ଦଣ୍ଡଧାରୀ ॥
ବିନା ଯୁଦ୍ଧେ ରାମ ବାଣେ ହରାଇଲୁ ପ୍ରାଣ ।
ଅଖଡ଼ରେ ନାଶ ତୁ ଗଲୁ କପିକୁଳ ରାଣ ॥
ସୋଦର ଭାଇର ସଙ୍ଗେ ହୋଇଲୁ ବଇରି ।
ଯେବେ ଭୋଗ କରିବେ କିଷ୍କିନ୍ଧ୍ୟା ନଗରୀ ॥
ଶୁଣି ବାଳୀ ବୋଲଇ ଶୁଣଗୋ ମହାଦେଈ ।
କିମ୍ପାଇଂ ରୋଦନ ତୁ କରୁସିରେ ସହୀ ॥
ସଂସାରର ମାୟା ଯେ ଅଟଇ ଅଚିର ।
ଅବଶ୍ୟ ପ୍ରାଣୀ ଯେଥେ ଛାଡ଼ନ୍ତି ଶରୀର ॥୧୦
ମେରୁ ଗିରି କନ୍ଦର ନିର୍ଝର କପିଳାସ ।
ଯେ ସଂସାରଯାକ ପୁଣ ହୋଇବ ସବୁ ନାଶ ॥
ସମୋଦ୍ର ହିଂ ଶୁଖିବ ଗୋ ପୋଡ଼ିବ ବିପିନ ।
ଯେ ଜଗତ କାଳେ ହୋଇବାକ ଶୂନ୍ୟ ॥
ଯେତେ କାଳ ଯାୟେ ଧାତା ଭୋଗ ଦେଇଥାଇ ।
ଐଶ୍ୱର୍ଯ୍ୟ କରିଣ ନାନା ସୁଖ ଭୋଗ ପାଇ ॥
ଯେବେ ଶ୍ରୀରାମ ମୋତେ ଅଦୋଷେ ମାଇଲେ ।
ଯେ ତାଙ୍କର ନାରାଜେ ମୋତେ ସ୍ୱର୍ଗରେ ଠାବ ଦେଲେ ॥
ମୋକ୍ଷ ହୋଇଲି ମୁଂ ଯେହାଙ୍କ ଦର୍ଶନେ ।
ବୈକୁଣ୍ଠେ ବସିବି ମୁଂ ଶ୍ରୀରାମ ପ୍ରସନେ ॥୨୦
ଯେବେ ଯେହାଙ୍କୁ ତୁମ୍ଭେ ଥାସି ସେବାକରି ।
ଅନ୍ତେଣ ବସିବ ଯାଇ ଅକ୍ଷୟେ ସ୍ୱର୍ଗପୁରୀ ॥
ପ୍ରତକ୍ଷେ ଅଟନ୍ତି ଯେ ଦେବନାରାୟଣ ।
ଶଙ୍ଖଚକ୍ରଧାରୀ ଯେ କମଳାରମଣ ॥
ଯେତେ ବୋଲି ବାଳୀ ରାୟେ ପ୍ରାଣ ବିସର୍ଜିଲା ।
ଶ୍ରୀରାମ ଶ୍ରୀମୁଖ ଚାହିଂ ସ୍ୱର୍ଗକଇ ଗଲା ॥
ଯା ନାମ ସୁମରି ନରେ ମୁକତି ହୋନ୍ତି ଅନ୍ତକାଳେ ।
ପ୍ରତକ୍ଷେ ଦେଖୁଥିଲା ସେ ଶ୍ରୀରାମଙ୍କୁ ତୋଳେ ॥
ପୁଷ୍ପ୍ୟ ବିମାନେ ବସାଇ ଦେବଗଣେ ନେଲେ ।
ସୁର ସଭାରେ ବସାଇ ବିବିଧ ଭୋଗ ଦେଲେ ॥୩୦
ବୋଲନ୍ତି ସଦାଶିବ ଶୁଣ ଗୋ ଶାକାମ୍ଭେରୀ ।
ବାଳୀର ଭାଗ୍ୟ କେ କହିବ ଅନ୍ତ କରି ॥
ଯେଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଭଣି ।
ଅଶେଷ ଗ୍ୟାନବନ୍ତ ବାଳୀ ନୃପମଣି ॥
ତାରା ରୋଦନ କରଇ ଉଚ୍ଚସ୍ୱରେ ।
ଧୂଳି ସାଉଂଷ୍ଟିଣ ସେ ଲୋଟଇ ଭୂମିରେ ॥
ହା ହା ସ୍ୱାମୀ ବୋଲିଣ ବୁକୁରେ ଭୁଜ କୋଡ଼ି ।
କ୍ଷଣକେ ଉଠଇ ପୁଣ ଭୂମିରେଣ ଗଡ଼ି ॥
ବୋଇଲା ଭୋନାଥ ହେ ନିରେଖ ମୋତେ କଲ ।
ଅନାଥ କରିଣ କେଣେ ଛାଡ଼ିଗଲ ॥ ୪୦
ବିଧବା ଗଣିତାରେ ହୋଇଲଇଂ ମୁହିଂ ।
ମୁନିମାନେ ମୋତେ ଯାଇଛନ୍ତି କହି ॥
ଯେବଣ କାଳେ ମୁଂ ପିତାଘରେ ଥିଲି ।
ତପୀଙ୍କର ମୁଖୁଂ ମୁଂ ଯେସନ ଶୁଣିଲି ॥
ସୁଲକ୍ଷଣୀ ବୋଲି ମୋତେ ବୋଲନ୍ତି ସର୍ବଯତି ।
ଯେବେ ଆସି ହରାଇଲି ମୋହୋର ନିଜ ପତି ॥
ଶ୍ରୀରାମ ମୁଖ ଚାହିଂ ବୋଲଇ ତାରା ମହାଦେଈ ।
ବିଧବା ଅବସ୍ଥା ମୋତେ ହୋ ଦେଲୁ ରଘୁସାଇଂ ॥
ସୀତ୍ୟାକୁ ହରାଇ ତୁ ହେଉଛୁ ଆରତ ।
ଅଦୋଷେ ସ୍ୱାମୀକି ମୋର କଲୁ ପ୍ରାଣେ ହତ ॥୫୦
ସେ ଜନେକ ଦୋହିତା ଭୋଗ୍ୟ ତୋତେ ନୋହୁ ।
ମୁହିଂ ଯେବେ ମହାସ୍ୟତୀ ବଚନ ମୋର ରହୁ ॥
ଶୁଣିଣ ଶ୍ରୀରାମ ତବଦ ହୋଇଲେ ।
ତାରାକୁ ବହୁତ ପ୍ରବୋଧି କହିଲେ ॥
ତୁ ଗୋ ମହାସ୍ୟତୀ କର ମୋତେ ଦୟା ।
ସୀତୟା ବିହୁନେ ବିଅର୍ଥ ମୋର କାୟା ॥

ରାମ ସୀତା ବେନି ଯେକ ପ୍ରାଣ ଅଟଇ ।
ସୀତୟା ବିହୁନେ ମୋର ଅନ୍ୟରେ କାର୍ଯ୍ୟ
ନାହିଁ ॥
ତୁ ମୋତେ ଅନୁଗ୍ରହ କରସି ସୁଲକ୍ଷଣୀ ।
ପ୍ରାପତ ହେଉ ମୋତେ ଜନେକ
ଦୁଲଣି ॥୬୦
ଶୁଣିଣ ପ୍ରସନ ହୋଇଲେ ସ୍ୟତୀ ତାରା ।
ତୁ ସ୍ୱାମୀ ସଂହାରିବୁ ପୃଥିର ଦୁଷ୍ଟ ଭାରା ॥
ମୁହିଁ ପାମେରୀ ବୋଇଲି ନ ଜାଣି ।
ସେ ଦୋଷ କ୍ଷମା ମୋର କରସି ରଘୁମଣି ॥
ସେ ସେ ଜାନେକୀ ଚଞ୍ଚଳା ସ୍ୱରୂପ ।
ତୁ ପ୍ରଭୁ ପରମବ୍ରହ୍ମ ଅନାଦି ବିଶ୍ୱରୂପ ॥
ଯେ ମୋହୋର ଶାପେକି କମଳା ତୋତେ
ଲେଛଇ ।
ଲକ୍ଷ୍ମୀନାରାୟଣ ତୁମେ ଅଭେଦ ଅଟ ଦୁଇ ॥
ହୋଇଲଇଂ ସନ୍ତୋଷ ମୁଂ କଲଇ ତୋତେ
ଦୟା ।
ସର୍ବଦା ଭୋଗ ତୋତେ ନୋହିବ
ସୀତୟା ॥୭୦
ଅବଶ୍ୟ ସୀତୟାକୁ ତୁ ଲେଛିବୁ ରଘୁନାଥ ।
ଯେ ମୋହୋର ବୋଲ ତେବେ ହୋଇବାକ
ସତ୍ୟ ॥
ଅଳପ ଦିନ ରାମ ବିଚ୍ଛେଦ ପାଇବୁ ।
ମୁହିଁ ତୋର ଦାସୀ ଯେବେ ଭକ୍ତି ପାଳିଥିବୁ ॥
ଯେତେ ବୋଲି ତାରା ଚରଣେ ଲୋଟଇ ।
ଉଠ ଉଠ ବୋଇଲେ ତାଙ୍କୁ ରଘୁକୁଳ
ସାଇଂ ॥
ଯାଅ ତୁ ସାଧେବୀ ଗୋ ମୋହୋର ବୋଲ
କର ।
ବଚନେ ଭକ୍ତି ମୁଂ ଘେନିଲି ତୁମ୍ଭର ॥
ତାରା ବୋଇଲା ଦେବ ଶୁଣିମା ରଘୁବୀର ।
ଅନୀତି ବଚନେକ ଶୁଣିଲି ତୋହୋର ॥୮୦
ସାଧେବୀ ବୋଲିଣ ତୁ ବୋଇଲୁ କିମ୍ପାଇ
ମୋତେ ।
ମୁଂ ପୁଣି ସାଧେବୀ ହୋଇବି କେମନ୍ତେ ॥
ନିଜ ପତିକି ମୋର କଲୁ ପ୍ରାଣେ ନାଶ ।
ମୋତେ କିମ୍ପା ସାଧେବୀ ତୁ ବୋଇଲୁ
ରଘୁଶିଷ୍ୟ ॥
ଆଗ୍ୟାଂ ଦିଅ ଭୋ ରାମ ମୁଂ ସ୍ୱାମୀ କାର୍ଯ୍ୟ
କରିବି ।
ଯେ ପୁତ୍ରଙ୍କ କଥା ମୁଂ ତୁମ୍ଭଙ୍କୁ ସମର୍ପିବି ॥
ଶ୍ରୀରାମ ବୋଇଲେ ଦେବୀ ଶୁଣ
ମହାସ୍ୟତୀ ।
ସୁଗ୍ରୀବକି ଯେବେ ତୁ ଗୋ କର ପ୍ରାଣପତି ॥
ତୁ ପାଟେ ବସିଣ ଗୋ ଅବିଷେକ
ହୋଇବୁ ।
ଯେ ମୋହୋର ବଚନ ପ୍ରତିପାଳି ଥିବୁ ॥୯୦
ଯେବଣ ଦିନେ ସୁଗ୍ରୀ ହୋଇଲେ ମୋର
ମୈତ୍ରୀ ।
ମୁଂ ବୋଇଲି ଦେବଇ ବାଳୀର ଯୁବତୀ
ଅର୍ଥବିଭ ॥
ଯେଣୁ ସେ ମୁଖରୁ ହୋଇଲା ଯେ ବାଣୀ ।
ମୋହୋର ସତ୍ୟ ଗୋ ରଖିବୁ ଯୁବତୀ
ଶିରୋମଣି ॥
ତାରା ବୋଇଲା ଦେବ ଅଟଇ ଅବେଭାର ।
ଦୂଷିତ ବୋଲିବେ ମୋତେ ଜଗତ
ସଂସାର ॥
ଧାର୍ମିକ ହୋଇ ଦେବ ହେ ଯେମନ୍ତ କଥା
କହୁ ।
ସ୍ତିରୀୟେ ସଂସାରେ ମୋତେ କି ବୋଲିବେ
ପ୍ରଭୁ ॥
ବାଳୀ ପ୍ରାୟେ ସ୍ୱାମୀ ମୋର ମୃତ୍ୟୁ ଗତି
ପାୟେ ।
ଆଉ ମୁଂ ଜୀଇଂବି ପ୍ରଭୁ କେତେକାଳ
ଯାୟେ ॥୧୦୦
ଶ୍ରୀରାମ ବୋଇଲେ ତୁ ଗୋ ଯୁଗେ ଯୁଗେ
ଥିବୁ ।
ମହାସ୍ୟତୀ ଗଣିତାରେ ଗଣିତା ହୋଇବୁ ॥
ଅନ୍ତେଣ ସ୍ୱର୍ଗଯେ ତୋତେ ହୋଇବ
ପ୍ରାପତ ।
ଯେ ତୋହୋର ନାମ ସୁମରିବେ ପ୍ରଭାତ ॥
ତୁ ପୁଣ୍ୟସ୍ତିରୀ ଗୋ ମୋହୋର ବୋଲକର ।
ଯେ କଥାକୁ ସାଧେବୀ ଗୋ ନକର ବିଚାର ॥
ଶୁଣିଣ ସନ୍ତୋଷ ହୋଇଲା ଚାନ୍ଦମୁହିଁ ।
ଶ୍ରୀରାମ ମୁଖରୁ ପ୍ରିୟବାଣୀ ପାଇ ॥
ଯହୁଁ ସେ ତାରା ଦେଇ ହୋଇଲେ ତ୍ରିପୁତି ।
ଅଙ୍ଗଦକୁ ଚାହିଂଣ ବୋଇଲେ
ରଘୁପତି ॥୧୦
ଯେ ତୋହୋର ପିୟର ଅଟେ ରାୟେ
ବାଳୀ ।
ଅନେକ ଦିନ ଭୋଗ କଲା ମହୀଆଳି ॥
କାଳ ବେଳ ଜାଣି ସ୍ୱର୍ଗକଇ ଗଲା ।
ନଜାଣିଲା ଲୋକ ସେ ବୋଲନ୍ତି
ବାଳୀମଲା ॥
କ୍ଷେତ୍ରୀବର ବଳବନ୍ତ ପଡ଼ିଲା ସେହୁ ରଣେ ।
ସ୍ୱର୍ଗରେ ସୁଖ ଭୋଗ ତାକୁ ଦେଲେ
ଦେବଗଣେ ॥
ସେ ମହାଧାର୍ମିକ ଅଟଇ ବାଳୀବୀର ।
କ୍ରୋଧ ସଂହରି ତାକୁ ସଂସ୍କାର ବେଗେ
କର ॥
ଶୁଣିଣ ଅଙ୍ଗଦ ଶିରରେ ହସ୍ତଦେଇ ।
ଶ୍ରୀରାମ ଶ୍ରୀଚରଣେ ହୋଇଲା
ବିନୋଇ ॥୨୦
ସୁଗ୍ରୀବର ଜମ୍ୱେବ ସୁଷେଣ ସହିତେ ।
ଇଷ୍ଟକୁଟୁମ୍ବ ଆବର ଅମନାତ୍ୟେ ॥
ହନୁମନ୍ତ ପନଶ ସହିତେ ନଳ ନୀଳ ।
ଗନ୍ଧମାର୍ଦ୍ଦନ କେଶରୀ ପନଶୀଳ ॥
ବିମାନ ମୁଣ୍ଡାଇ ବାଳୀକି ବସାଇଲେ ।
ଦକ୍ଷିଣ ଶ୍ମଶାନକୁ ସମ୍ବର୍ବ କରିନେଲେ ॥
ଢୋଲ ଦମା ଟମକ ନିଶାଣ ମର୍ଦ୍ଦଳ ।
ଘଣ୍ଟରାବ ତାଳ ଝଞ୍ଜାଳ କଂସାଳ ॥
ଶଙ୍ଖ ମହୁରି ଯନ୍ତ୍ରବୀଣା ବାଜେ ।

ଛତ୍ର ଚିରାଳ ଆଲମ୍ବ ଧ୍ୱଜା ସାଜେ ॥ ୩୦
ଦିବ୍ୟ ବିଳାସୁଣୀୟେ କରନ୍ତି ନୃତ୍ୟ ଗୀତ ।
ଅଗ୍ନିରେ ଦହନ ନେଇ କଲେକ ବାସବର
ସୁତ ॥
ଚନ୍ଦନ ଅଗର କର୍ପୂର ଗୁଣ୍ଡି ସିଞ୍ଚି ।
ନେତ ପାଟ ପତନୀ ସିନ୍ଧୁଆ ସର୍ବରଞ୍ଜି ॥
ମୁଖାଗ୍ନି ଦେଲାକ ଅଙ୍ଗଦକୁମାର ।
ଯାଇଣ ମିଳିଲା ପୁଣ ଶ୍ରୀରାମ ଛାମୁର ॥
ଦେଖିଣ ଶ୍ରୀରାମ ସୁଗ୍ରୀବକି ବୋଲନ୍ତି ।
ଭୋ ମିତ ହୋ ତୁମ୍ଭେ କିଷ୍କିନ୍ଧ୍ୟାର ପତି ॥
ତାରା ମହାଦେଈ ବିବିଧ ବେଶ ହେଉ ।
ଯେ ତୋହୋର କୋଳେ ବସିଣ ଅଭିଷେକ
ପାଉ ॥୪୦
ଶୁଣିଣ ମନ୍ତ୍ରୀଗଣେ ଭିଆଇଲେ ସମ୍ଭାର ।
ଅବିଷେକ କଲେକ ସେ ଆଦିତ୍ୟ କୁମର ॥
ତାରା ମହାଦେଈ ବସିଲା ସୁଗ୍ରୀବର
କୋଳେ ।
ବୀର ଛତ୍ର ଧଇଲା କେଶରୀ ଦୁଲାଳେ ॥
ନଳ ନୀଳ ବେନି ଧରନ୍ତି ଚାମର ।
ବିଞ୍ଚଣି ବିଞ୍ଚଇ ତାରାକ୍ଷ ମହାବୀର ॥
ଛୁରୀ ଖଣ୍ଡା ଧରିଛନ୍ତି ଗନ୍ଧମାଦନ ।
ଜମ୍ବେବ କରନ୍ତି ମଙ୍ଗଳ ଗାୟନ ॥
ବିପ୍ରଗଣେ ମିଳିଣ ଆଶୀର୍ବାଦ କରନ୍ତି ।
ଆନନ୍ଦେ ଯୁବତୀୟେ ହୁଳହୁଳି
ଦିଅନ୍ତି ॥୫୦
ଆପଣେ ପାଟେକ ଘେନିଣ ରଘୁସାଇଂ ।
ସୁଗ୍ରୀବର ମସ୍ତକେ ବାନ୍ଧିଲେକ ନେଇ ॥
ସାନନ୍ଦେ ଦେବତାୟେ କଲେକ ପୁଷ୍ପ ବୃଷ୍ଟି ।
ଅତ୍ୟନ୍ତ ଶୋଭାବନ ପାଇଲାକ ସୃଷ୍ଟି ॥
ଅଙ୍ଗଦକୁ ଯୁବରାଜା ପଣେ ଶାଢ଼ୀ ଦେଲେ ।
ଶାସ୍ତ୍ରବଳ ଦେଖାଇଣ ଅନେକ ତିଆରିଲେ ॥
ରୋମାକୁ ଅଣାଇଲେ ଗଉରୋବ କରି ।
ଆନନ୍ଦେ ସମର୍ପିଲେ ତାରାର ଭୁଜ ଧରି ॥
ସୁଗ୍ରୀବରକଇ ସମର୍ପିଲେ ନେଇ ।

ଭୋ କପିରାଜା ତୋର ପାଟରାଣୀ
ଯେହି ॥୬୦
ଯେହାର ତଳିପାଟେ ରୋମା କନ୍ୟା ଥାଉ ।
ଯେହାକୁ ବିକାର ତୁମ୍ଭେ ନ ଧରିବ ଆଉ ॥
ବଳାତ୍କାର କଥାରେ ସ୍ତିରୀଙ୍କ ଦୋଷ ନାହିଁ ।
ଶାହାସ୍ତ୍ର ପୁରାଣେ ଲିହିଛନ୍ତି ବିହି ॥
ତାରାକୁ ପ୍ରଶଂସା କରନ୍ତି ରାମ ରାୟେ ।
ସାଧୁ ସୁନ୍ଦରୀ ଗୋ ତୋହୋର ବାପମାୟେ ॥
ଧନ୍ୟ ଧନ୍ୟ ସୁନ୍ଦେରୀ ତୁ କାହାର ଦୋହିତା ।
ତୋତେ ପୁଣ ସମାନ ଗୋ ଅଟଇ ମୋର
ସୀତ୍ୟା ॥
ଆଣି ଯେବେ ପାରିବି ମୁଂ ଜନେକ
ଦୋହିତୀ ।
ଅଇଲେ ଦେଖିବୁ ତୁ ଯେ ଚାରୁ
ପଦ୍ମନେତ୍ରୀ ॥୭୦
ଶୁଣିଣ ତାରା ଦେଈଯେ ଶିରରେ
କରଦେଲା ।
ସର୍ବଦା ଯେହି ଦୟା ଥିବଟି ବୋଇଲା ॥
ଯେଥୁଅନନ୍ତରେ ରାଜବିଧି ସାରି ।
ଯେକାନ୍ତ କରିଣ ସେ ସୁଗ୍ରୀବକି ତିଆରି ॥
ପରଜା ପାଳିବ ତୁମ୍ଭେ ପୁତ୍ର ସମ କରି ।
ଅମାତ୍ୟ ମନ୍ତ୍ରୀକି ତୁମ୍ଭେ ଥିବ ଦୟାକରି ॥
ଯେ ଯେ ଅଙ୍ଗଦ ହୋ ବାଳୀର ତନୟେ ।
ଯେହାକୁ କଲଇ ମୁଂ କିଷ୍କିନ୍ଧ୍ୟା ଯୁବରାୟେ ॥
ଯେହାକଇ ମନେ ତୁମ୍ଭେ ନଧରିବ ଅନ୍ୟ ।
ଯେହୁ ଯେ ବାଳୀରାଜାର ଜ୍ୟେଷ୍ଠ
ନନ୍ଦନ ॥୮୦
ତୁମ୍ଭର ଅନ୍ତେଣ ଯେ ହୋଇବ ଦଣ୍ଡଧାରୀ ।
ଯେ କଥା ମନେ ତୁମ୍ଭେ ଥିବଟି ହେତୁକରି ॥
ଯେ ଯେ ଭଣଜା ତୋର ଅଟଇ ହନୁମାନ ।
ବନେ ଦୁଃଖ ପାଇଲା ଯେ ତୁମ୍ଭର ସମାନ ॥
ଜମ୍ବେବ ସୁଷେଣ ଗନ୍ଧମାଦନ ।
ସୁଖ ଭୋଗ ଦେବ ଯେହାକୁ ଆପଣା
ସମାନ ॥

ସେନା ସେନାପତି ଅମନାତ୍ୟ ଯେତେ ।
ସମସ୍ତଙ୍କୁ ଦୟା ତୁମ୍ଭେ କରିଥିବଟି ଚିତ୍ତେ ॥
ରଥ ଗଜ ଅଶ୍ୱ ସକଳ ଶୁଭେ ଥିବେ ।
ଆମ୍ଭେ ବନସ୍ତକୁ ଯାଉଅଛୁ ଯେବେ ॥ ୯୦
ବୈଶାଖ ଜ୍ୟେଷ୍ଠ ଦୁଇମାସ ଯିବ ।
ଯେଥୁ ଅନନ୍ତରେ ପୁଣ ଚତୁର୍ମାସ୍ୟା ହେବ ॥
ପ୍ରଥମ ଆଶ୍ୱିନ୍ୟେ ତୁମ୍ଭେ ସୈନ୍ୟ ଠୁଳ କରି ।
ଆସିଣ ଭେଟିବ ତୁମ୍ଭେ ଯାଇଣ ଦଣ୍ଡଧାରୀ ॥
ଥାଟ ସଜ କରିଣ ବେଗ ହୋଇଯିବୁ ।
ରାବଣକୁ ମାରିଣ ସୀତ୍ୟାକୁ ଆଣିଦେବୁ ॥
ଶୁଣିଣ ସୁଗ୍ରୀବର କହଇ କରଯୋଡ଼ି ।
ଚାରିମାସ ପାହିଲେଣ ଆଣିବି ସୀତ୍ୟା ଲୋଡ଼ି ॥
ଯେବେ ତୁମ୍ଭେ କିଷ୍କିନ୍ଧ୍ୟାରେ ରହିବା
ରଘୁପତି ।
ଯେ ତୋର ଚରଣେ ଦେବ ହୋଇଥିବି
ଭକ୍ତି ॥୧୦୦
ଭୋ ଦେବ ରହିଣ ତୁମ୍ଭେ କରସି ସୁସ୍ଥା ।
ମୁହିଂ ନଜାଣଇ ଆଗ୍ୟାଂ ହୋଇଲା ଯଉଂ
କଥା ॥
କାର୍ତ୍ତିକ ପାହିଲେ ମୁଂ ଯିବଇଂ ସନ୍ୟ ଆଣି ।
କିଷ୍କିନ୍ଧ୍ୟାରେ ରାଜା ତୁମ୍ଭେ ହୁଅ ଭାଇବେନି ॥
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣସି ହୋ
ମୈତ୍ର ।
ଯାହା ସେ କହିଲ ତୁମ୍ଭେ ନୋହଇ ଉଚିତ ॥
ଆମ୍ଭେ କେମନ୍ତେ ପୁଣ ରାଜ୍ୟରେ ରହିବୁ ।
ପିତାଙ୍କର ଆଗ୍ୟାଂରେ ଯେ ବନସ୍ତେ ବୁଲିବୁ ॥
ଆସିବାର ବେଳେ ପୁଣି କହିଲେ
କୟେକୟା ।
ଯେ ତୋହୋର ମନରେ କୁରୁନିକି
ମାୟା ॥୧୦
ଯେଥୁ ବନବାସ ବୋଲିଣ ତୁହି ଯିବୁ ।
ଯହିଂ ତହିଂ ନଗ୍ରେ ରହି ବନବାସ କାଟିବୁ ॥
ଯେ କଥା କଲେ ତୋର ପିତା ନର୍କ ଯିବ ।
ଜଗତେ ରାମ ତୋତେ ଅପକୀର୍ତ୍ତି ହୋଇବ ॥

ଯେ କଥା ସତ୍ୟ ବୋଲି କହିଲେ ଜନନୀ ।
ତାହା ସେ ମେଣ୍ଟିଣ ମୁଂ ରହିବି କେହ୍ନେ
ପୁଣି ॥
ତୁମ୍ଭେ ମୈତ୍ର ମୋତେ ନବୋଲ କିଛି
ଅନ୍ୟ ।
ନିଶ୍ଚୟେ ପଶିବି ମୁଂ ଗହନ କାନନ ॥
କନ୍ଦମୂଳ ଫଳ ଖାଇଣ ଦିନ ନେବି ।
ନିର୍ଝର ପାଣି ପିଇଣ ବକଳ ପିନ୍ଧିବି ॥୨୦
ଚଉଦ ବରଷ ପୂରିଲେ ଘରକଇ ଯିବି ।
ଯେକଥା ନିଶ୍ଚୟେ ମୁଂ ଅବଶ୍ୟ କରିବି ॥
ନଗ୍ରରେ ନ ରହିବି ନ ଖାଇବି ଅନ୍ନ ।
ଯେସନ ସତ୍ୟ କରି କହିଛନ୍ତି ରାଜନ ॥
ତେଣୁ ସେ ମାଲ୍ୟବନ୍ତ ଶିଖରେ ରହିବି ।
ଚତୁର୍ମାସ୍ୟା ପାହିଲେଣ ଲଙ୍କାକୁ ଧାଡ଼ି
ଦେବି ॥
ପ୍ରଥମ ଆଶିନ୍ୟେ ତୁମ୍ଭେ ଯିବଟି କପିପତି ।
ତେବେ ସେ ପ୍ରାପତ ମୋତେ ହୋଇବ
ମହାସ୍ୟତୀ ॥
ଯେତେ ବୋଲି ଶ୍ରୀରାମ ଅଙ୍ଗଦକୁ
ଚାଇଲେ ।
ଜମ୍ୱେବ ସୁଷେଣ ତାରାକ୍ଷକୁ କହିଲେ ॥୩୦
ନଳ ନୀଳ ଗନ୍ଧମାର୍ଦ୍ଦନକୁ ଚିଆରି ।
ସମସ୍ତେ ଥିବ ତୁମ୍ଭେ ସୁଗ୍ରୀକି ସେବା କରି ॥
ତାରାକ୍ଷକୁ ଚାହିଂଣ ବୋଲନ୍ତି ଶ୍ରୀରାମ ।
ଋଷିମୁଖ ପର୍ବତେ ମୁଂ କରିବି ବିଶ୍ରାମ ॥
କାଲି ପ୍ରଭାତେ ମୁଂ ଯେ ମାଲ୍ୟବନ୍ତକୁ ଯିବି ।
ସେ ପର୍ବତେ ଥାଇ ମୁଂ ଚତୁର୍ମାସ୍ୟା ବଞ୍ଚିବି ॥
ତୁମ୍ଭେମାନେ ସମସ୍ତେ ରାଜାକୁ କହୁଥିବ ।
ଆମ୍ଭର ଚର୍ଚ୍ଚା ତୁମ୍ଭେ କ୍ଷଣେହେଂ ନ ଛାଡ଼ିବ ॥
ଶୁଣିଣ ସମସ୍ତେହେଂ ଶିରରେ ହସ୍ତଦେଲେ ।
ତୁମ୍ଭର ସଙ୍ଖୁଳା ପ୍ରଭୁ ଅଟୁ ଆମ୍ଭେ
ବୋଇଲେ ॥୪୦
ଯେସନ ସମୟେ ଯେ ହୋଇଲାକ ରାତି ।
ଲିମ୍ୱ ବୃକ୍ଷ ମୂଳରେ ରହିଲେ ରଘୁପତି ॥

କନ୍ଦମୂଳ ଆହାର ସୁଗ୍ରୀବର ଆଣିଦେଲେ ।
ବେନିଭାଇ ମଣୋହି କରି ନିଶାରେ
ରହିଲେ ॥
ଚାରିପାଶେ ଲୋକ ଘେନି ରହିଲା
ସୁଗ୍ରୀବର ।
ପ୍ରଭାତେ ଉଠିଣ ତାକୁ କହିଲେ ରଘୁବୀର ॥
ଭୋ ମୈତ୍ର ଆମ୍ଭେ ଯାଉଛୁ ବୋଇଲେ ।
କିଷ୍କିନ୍ଧ୍ୟା ଭୋଗସି ତୁମ୍ଭେ ଭଲେ ॥
ପ୍ରଭାତୁ ଉଠିଣ ସେ ତହୁଂ ଚଳିଗଲେ ।
ମାଲ୍ୟବନ୍ତ ଗିରି ଶିଖରେ ରହିଲେ ॥ ୫୦
ସୁଗ୍ରୀକି ଗହଳେ ସେ ନ ଦେଲେ
ଗୋଡ଼ାଇ ।
ଆଗ୍ୟାଂ ପାଇ ସୁଗ୍ରୀବ ରହିଲା ତୋଷ ହୋଇ ॥
ଜ୍ୟେଷ୍ଠ ଶୁକଳ ପଞ୍ଚମୀର ଦିନ ।
ମାଲ୍ୟବନ୍ତ ପର୍ବତେ ଯାଇ ପ୍ରବେଶ
ରଘୁନାନ ॥
ଲକ୍ଷଣକୁ ବୋଇଲେ ମଢ଼ିଆ ସଜ କର ।
ଶୁଣିଣ ସଉମିତ୍ରୀ ସମ୍ପାଦିଲେ ଘର ॥
ହାଥୀ ଭଙ୍ଗା କାଷ୍ଠ ଆଣିଲେ ବହନ ।
ବହିଣ ଆଣିଲେ ସେ ଶ୍ରୀରାମର ସାନ ॥
ତେନ୍ତୁଳି ବୃକ୍ଷମୂଳେ ମଢ଼ିଆ ଗୋଟି କଲେ ।
ପଲାଶ ପତ୍ର ଘେନିଣ ସେ ଘର
ଛାଇଲେ ॥୬୦
ଯେଥୁ ଅନନ୍ତରେ ଗୋ ଶୁଣିମା ହେମବନ୍ତୀ ।
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁପତି ॥
ଗ୍ରୀଷମ ଋତୁ ଶେଷ ହୋଇଲା ଦିନୁ ଦିନ ।
ପ୍ରଥମ ଆଷାଢ଼େ ହୋଇଲା ବରଷଣ ॥
ଘଡ଼ଘଡ଼ି କରିଣ ମାରଇ ବିଜୁଳି ।
ସଦା କାଳେ ଉଦୟେ ଆଦ୍ରାବଳି ॥
ହାଥୀ ମୁଣ୍ଡା ମେଘମାନେ ଗର୍ଜନ୍ତି ।
ନିର୍ଘାତ ଶବଦେଣ ପର୍ବତେ ଚମକନ୍ତି ॥
ଶୀତଳ ପବନ ବହଇ ଚଉକତି ।
ପୂର୍ବ ଦିଗରୁ ମେଘେ ପଶ୍ଚିମକୁ ଚଳନ୍ତି ॥୭୦
ଦକ୍ଷିଣ ଦିଗର ମେଘେ ପାଣି ଘେନି ଚଳି ।

ଉତ୍ତର ଦିଗରେ ନେଇ ବରଷନ୍ତି ତୋଳି ॥
ଇନ୍ଦ୍ରଧନୁ ପୁଣ ଉଦୟେ ଘନ ଘନ ।
ଅସ୍ତକାଳେ ଆଦିତ୍ୟ ଦିଶନ୍ତି ରଙ୍ଗବର୍ଣ୍ଣ ॥
ଦିବସେ ମଣ୍ଡଳ ଯେ ରାତ୍ରେଣ କୁହୁକ ।
ପ୍ରଚଣ୍ଡ ପବନ ବହଇ ଝାଙ୍କ ଝାଙ୍କ ॥
କ୍ଷଣକେ ଗୁଳଗୁଳି କ୍ଷଣକେ ଶୀତ କରଇ ।
କ୍ଷଣକେ ଆକାଶରେ ସୂର୍ଯ୍ୟହିଂ ନ ଦିଶଇ ॥
ନିଘୋଡ଼ ଜଳଧାରେ ଦିଗହିଂ ନ ଦିଶେ ।
କ୍ଷଣେ ଖରା କରେ କ୍ଷଣକେ ବରଷେ ॥୮୦
ରାତ୍ରେ କୁଙ୍କୁମ ବର୍ଣ୍ଣ ଆଚ୍ଛାଦଇ ତାରା ।
ଦିକି ଦିକି ହୋଇଣ ସେ ଦିବସରେ ଖରା ॥
ଚନ୍ଦ୍ରମା ମଣ୍ଡଳ ସେ ଦୂର ହୋଇ ଦିଶେ ।
ଭିତରେ ବାହାରେ ନକ୍ଷତ୍ର ପ୍ରକାଶେ ॥
ନିର୍ମଳ ଗଗନ କ୍ଷଣକେ ନୀର ନେଇ ।
ପୁଣିହିଂ କ୍ଷଣେକେ ଗର୍ଜଣ ଆସଇ ॥
ଦିବସେ ଗରଜିଣ କରଇ ଗମଗମ ।
ଭୂମି କମ୍ପିଣ ହୋଅଇ ଦମଦମ ॥
ଆଷାଢ଼ ପ୍ରବେଶ ହୋଇଲାକ ଯହୁଂ ।
ଝିମିଝିମି କରିଣ ବରଷଇ ତହୁଂ ॥ ୯୦
ବିଜୁଳି ଦେଖାଇଣ ମାରଇ ଘଡ଼ ଘଡ଼ି ।
କି ଜାଣି ପର୍ବତ ଶୃଙ୍ଗକି ପଡୁଅଛି ଝଡ଼ି ॥
ନାନା ପକ୍ଷୀଜନ୍ତୁ ଭିଆଇଲେ ବସା ।
ଯହୁଂ ସେ ପ୍ରବେଶ ହୋଇଲା ବରଷା ॥
ବୃକ୍ଷେ ପଲ୍ଲବିଲେ କଅଁଳିଲେ ଲତା ।
ମୟୂର ପକ୍ଷୀମାନେ ମଦନେ ଉନମତା ॥
ମୃଗେ ଭୟ ଛାଡ଼ି ଚରନ୍ତି ଯେଣେ ତେଣେ ।
କୋକିଳ ଝିଙ୍କାରି ପଶିଲେ ଗହନ
କାନନେ ॥
କଦମ୍ୱ ପୁଷ୍ପମାନ ଫୁଟନ୍ତି ଘନ ଘନ ।
ଜମ୍ୱୁଫଳ ପାଚିଣ ପଡ଼ନ୍ତି ଭୂମିରେଣ ॥୧୦୦
ପାତାଳ ଗଙ୍ଗା ନାମେ ଉଲ୍ଲୋଳେ ବହେ
ନଦୀ ।
କୁକୁଟ ଚକ୍ରବାକେ ଉନ୍ମତ୍ତେ ଖେଦାଖେଦି ॥
ଖରହଂସ ବକ କାକ କରନ୍ତି ଜଳେ
କେଳି ।

ଜଳପିମ୍ପି କଣ୍ଠା ଡାହୁକ ହଂସରାଳି ॥
ଶ୍ରୀରାମ ରହିଲେ ସେ ପର୍ବତ ଶିଖରେ ।
ଘୋର ବୃଷ୍ଟି କରିଣ ସେ ବରଷେ
ଜଳଧାରେ ॥
ଅଖଣ୍ଡିତ ଧାରା ସେ ନ ଦିଶଇ ଦିଶ ।
ବନ ପଲବିଲା ଆଷାଢ଼ ପ୍ରବେଶ ॥
ନଦୀମାନେ ବଢ଼ିଲେ ପୂରିଲେ ପୁଷ୍କରିଣୀ ।
ପର୍ବତ ଉପରୁ ଝରେ ବହି ପଡ଼ଇ ପାଣି ॥୧୦
ସୂର୍ଯ୍ୟଙ୍କର ତେଜ ନ ଦିଶେ ଗଗନେ ।
ବୃକ୍ଷେ କମ୍ପମାନ ଯେ ପ୍ରଚଣ୍ଡ ପବନେ ॥
ମାଲ୍ୟବନ୍ତ ପର୍ବତେ ଶ୍ରୀରାମ ରହିଛନ୍ତି ।
ମୃଗ ହରିଣ ମାରି ରନ୍ଧନ କରି ଖାନ୍ତି ॥
ସୀତୟା ଯେ ଛାଡ଼ିଗଲେ ଅମଳାଣ ଶାଢ଼ୀ ।
ଶୀତ ବରଷା ବଞ୍ଚଇ ଶ୍ରୀରାମ ତାହା ଓଢ଼ି ॥
ଶୀତକୁ ଉଷୁମ ସେ ଯେ ଖରାକୁ ଶୀତଳ ।
ବିଧାତା ଭିଆଣଟି ଯହିଁକୁ ଯେତେବେଳ ॥
ସେ ବସ୍ତ୍ର ଆଭରଣ ହୋଇଥାନ୍ତି ନିତ୍ୟେ ।
ସୀତ୍ୟାଙ୍କ ନାମ ଗୋଟି ନଛାଡ଼ନ୍ତି
ଅନୁବ୍ରତେ ॥୨୦
ଭୋ ସଖି ଜାନେକୀ ଗୋ କଉଂକତି ଗଲୁ ।
ଯେ ଘୋର ବରଷାରେ କଷ୍ଟ ମୋତେ
ଦେଲୁ ॥
ମୁହିଂ ସଖି ଗୋ ରହିଲି ତୋତେ ଛାଡ଼ି ।
ଯେ ମୋର ଉପରେ ଗୋ ପଡୁ ଘଡ଼ଘଡ଼ି ॥
ଦଶଦିଗ ଅନ୍ଧାର ଯେ ବରଷାର କାଳ ।
ତୋହୋର ବିଚ୍ଛେଦେ କେହ୍ନେ ବଞ୍ଚିବି
ଦିନକାଳ ॥
ଶୀତକୁ ଉଷୁମ ଗୋ ଅଟଇ ଯେ ତୋହୋର
କାୟେ ।
ଗ୍ରୀଷମ ଋତୁରେ ଗୋ ହୁଅଇ ହିମମୟେ ॥
ବରଷାରେ ଉଷୁମ ଶୀତଳ ଦୁଇ ମତ ।
ସାଧୁ ସାଧୁ ସୁଲକ୍ଷଣୀ ଗୋ ଜନେକ
ଦୋହିତ ॥୩୦
ପବିତ୍ର ଅଙ୍ଗ ଗୋଟି ତୋହୋର ପାଇବଇଂ
କାହିଂ ।

ସତେକି ମୋତେ ଗୋ ମୂର୍ଚ୍ଛିଲୁ ଚାନ୍ଦମୁହିଂ ॥
ପର ପୁରୁଷେ ନାହିଂ ଯେ ତୋହୋର ମତି ।
ଯେବେ ମୋତେ କେମନ୍ତେ ଗୋ ମୂର୍ଚ୍ଛିଲୁ
ମହାସ୍ୟତୀ ॥
ଯେ ମୋହୋର ଅଙ୍ଗରେ ଗୋ ପ୍ରାଣ
ରହିଥାନ୍ତେ ।
ଦେଖୁ ଦେଖୁ ଅନ୍ୟର ଗୋ ହୋଇବୁ
କେମନ୍ତେ ॥
ଅତି ସୁକୁମାର ଅଟଇ ତୋର ଦେହ ।
ଅତ୍ୟନ୍ତ ସୁସଞ୍ଚ ଅଟଇ ବାଳରେହ ॥
ଅଳ୍ପ ହସିଣ କହୁଥାଉ ବାଣୀ ।
ସେ ମୋତେ ଅମୃତ ପୀୟୁଷ ସମଜାଣି ॥୪୦
ଗଜକୁମ୍ଭ ବର୍ତ୍ତୁଳ ସୁବାଟୁଳ କୁଚ ।
କଠିଣ ବର୍ତ୍ତୁଳ ବୃଷାଳ ସୁସଞ୍ଚ ॥
କାହାକଇ ପ୍ରାପତ କଲୁ ତାହା ନେଇ ।
ସତ୍ୟ ଉଚ୍ଚାରିଥିଲୁ ଦୀପଅଗ୍ନି ଛୁଇଂ ॥
କାହାର ସଙ୍ଗେ ଯେବେ କରୁଥିବୁ ପ୍ରେମ ।
ମୋ ତହୁଂ ସୁନ୍ଦର ସମର୍ଥ କେହୁ କ୍ଷମ ॥
ଯେ ମୋହୋର ଭାରିଯାକୁ ନେଇଛି
ଚୋରାଇ ।
ସେ ଆଉ ଜୀଇଂବକି କାଳ କୂଟ ଖାଇ ॥
କାହିଂକି ପଳାଇ ଦୂରେ ପଶିବୁ ଅସୁର ।
ତିନିପୁରେ ଭ୍ରମଣଟି କରଇ ଯେ ମୋହୋର
ଶର ॥୫୦
ଯଦି ଅବା ପଳାଇ ପଶିବୁ ଯେଣେ ତେଣେ ।
ନିଶ୍ଚୟେ ଖୋଜିଣ ତୋତେ ମାରିବେ ଯେ
ମୋହୋର ବାଣେ ॥
ବ୍ରହ୍ମାଦି ଈଶ୍ୱର ଯଦି କରିବେ ତୋତେ ରକ୍ଷା ।
ଅବଶ୍ୟ ସଂହାରିବି ପୂରୋଇବି ଇଚ୍ଛା ॥
ଯେ ମର୍ତ୍ତ୍ୟ ମଣ୍ଡଳେ କେ ମୋ ତହୁଂ
ବଳୀୟାର ।
ଜାଣିମା ଜାଣିମାନା ମହିମା ତାହାର ॥
ଯେତେ ବୋଲି ଶ୍ରୀରାମ ନିଶରେ ହସ୍ତ
ଦେଇ ।

ପ୍ରତଗ୍ୟାଂ କରନ୍ତି ସେ କୋଦଣ୍ଡକୁ ଚାହିଂ ॥
ଯେ ଧନୁର୍ବାଣ ଯେବେ ମୋହୋର ହସ୍ତେ
ଥିବ ।
କେ ଅବା ମୋହୋରଟି ଛାମୁରେ
ରହିବ ॥୬୦
ଯେସନ ସମୟେ ମାଇଲା ଘଡ଼ଘଡ଼ି ।
ବିସ୍ମୟେ ହୋଇଣ ଶ୍ରୀରାମ ଉରେ କର ତାଡ଼ି ॥
ହା ହା ସୀତ୍ୟା ବୋଲି କରନ୍ତି ରୋଦନ ।
ଲୋଚନୁ ଅଶ୍ରୁଜଳ ପଡ଼ଇ ଘନ ଘନ ॥
ଉଠିଣ କହଇ ଶ୍ରୀରାମର ଭ୍ରାଥ ।
ଭୋରାମ କିପାଇଂ ତୁମ୍ଭେ ହେଉଛ
ବିମୋହିତ ॥
ଧାତା ଯେବେ ଆମ୍ଭଙ୍କୁ ଯେତେ଼ କଷ୍ଟ
ଦେଲା ।
କାହାର ବେଳେ ତାହା ମେଣ୍ଟଣ ନୋହିଲା ॥
ଯେତେବେଳେ ଆମ୍ଭକୁ ସୁକର୍ମ ପ୍ରାପତ ।
ସୁଖ ସମ୍ପଦ ଆସି ହୋଅଇ ଅଦ୍ଭୁତ ॥ ୭୦
ଯେବେ ଭାଳିଲେ ଦେବ ଆତ୍ମାକଇ ହାନି ।
ତୋ ତହୁଂ ଭୋ ରାମ କେ ଅଛଇ ସୁଗ୍ୟାନୀ ॥
ଯେବେ ସମୟେ ଜାଣି ସମ୍ଭାଳସି ଶୋକ ।
ତୋହୋର ଭାଳନ୍ତେ କମ୍ପଇ ତୈଲୋକ୍ୟ ॥
ସାମାନ୍ୟ ପୁରୁଷ କି ତୁ ଅଟୁ ଦାଶରଥି ।
ତୋହୋର ଶୋକ କଲେଣ ନାଶ ଯିବଟି
ବସୁମତୀ ॥
ସେ କିସ ରାବଣ କେତେକ ତାରବଳ ।
ଯାହାକଇ ତୁଷ୍ଟି କରଇ ଦିଗପାଳ ॥
ବ୍ରହ୍ମାଣ୍ଡ ଠାକୁର ତୁମ୍ଭେ ଶଙ୍ଖ ଚକ୍ରଧାରୀ ।
ପରମ ଲକ୍ଷ୍ମୀ ଅଟନ୍ତି ଜନେକ କୁମାରୀ ॥୮୦
ତାହାକୁ ହରିତେ କେ ଅଟଇ ଭାର୍ଜନ ।
ଲୋଭେ ସେ ଚୋରାଇଣ ନେଇଛି
ଦଶାନନ ॥
ତେଣୁ ସେ ତାହାର ହରିବ ବିଭୂତି ।
ଯେ ସର୍ବ ଭିଆଣ କରିଛି ପ୍ରଜାପତି ॥
ଅତିହିଂ ଉତ୍ପାତ ଯହୁଂ ହୋଇଲା ରାବଣ ।

ଯେ ତୋହୋର ହସ୍ତେ ମରାଇବାକୁ କରିଛି
ଭିଆଣ ॥
ଯେବେ ତୁହୋ ଶ୍ରୀରାମ ନୁହସି ବିମୁଖ ।
ଚତୃମାସ୍ୟା ପାହିଲେଣ ପ୍ରତଗ୍ୟାଂ ମୋର
ଦେଖ ॥
ରାବଣ ସଂଗୋତ୍ର ମୁଂ ମାରିବି ବିଂଶହସ୍ତ ।
ତୋତେ ମୁଂ ଆଣିଦେବି ଜନେକ
ଦୋହିତ ॥୯୦
ଯେ ଅବା ପରିଘାଇ କରିବ ସମର ।
ଯଦ୍ୟପି ବ୍ରହ୍ମା ଈଶ୍ୱର ଆସିବେ ବଜ୍ରଧର ॥
ସେହି ପୁଣ ରଖି ନପାରିବେ ତାହା ।
ତୋହୋର ଆଗ୍ୟା ଯଦି ହୋଇବ
ରଘୁନାହା ॥
ଯେକା ନାରାଜକେ ଜଗତ ଦହିପାରଇ ।
ଯେ ତୋହୋର ପ୍ରସାଦେ ମୁଂ ଯେ ଅନ୍ୟକୁ
ନ ଡରଇ ॥
ଭୋ ଦେବ ଶ୍ରୀରାମ ତୁ ନଭାଳ କିଛି
ମନେ ।
ଆଜହୁଂ ଲେଖୁଥିବୁ ବିଶାଶତେ ଦିନେ ॥
ଥାଟ ସାଜି ଆମ୍ଭେ ଲଙ୍କାକଇ ଯିବା ।
ସବୁ ଧ୍ୱଂସ କରିଣ ଆମ୍ଭେ ରାବଣକୁ
ମାରିବା ॥୧୦୦
ଜାନେକୀ କି ଘେନି ତୁମ୍ଭେ ହୋଇବ
ଅବିଷେକ ।
ତେବେ ସେ ଆନନ୍ଦ ହୋଇବେ
ସର୍ବଲୋକ ॥
ଶୁଣିଣ ଶ୍ରୀରାମ ହୋଇଲେ ଆନନ୍ଦ ।
ଶ୍ରୀମୁଖ ବିକାଶିଲା ଶରଦ ପୂର୍ଣ୍ଣମୀର ଚାନ୍ଦ ॥
ଉଠିଣ ଲକ୍ଷଣକୁ କଲେକ ରାମ କୋଳ ।
ତୁହି ସେ ଭାଇଆରେ କ୍ଷତ୍ରୀୟ ଅନର୍ଗଳ ॥
ତୋହୋର ବାହାକୁ ମୁଂ ସର୍ବଦା କରଇ
ଆଶ ।
ତୋତେ ଘେନି ମୁଂ ଅରନ୍ୟେ କଲିବାସ ॥
ସଖା ସହୋଦର ମୋର ତୋ ତହୁଂ
ଅନ୍ୟନାହିଂ ।

ତୋହୋର ପ୍ରାୟେ ଭାଇ ମୁଂ ପାଇବଇଂ
କାହିଂ ॥୧୦
ତୁ ସେ ରାବଣକୁ ମାରି ସୀତ୍ୟାକୁ ଦେବୁ
ମୋତେ ।
ମୁହିଂ ଆଶ୍ରେ ବାବୁରେ କରିଅଛି ତୋତେ ॥
ଯେ ମୋହୋର ଅଭିମାନ ତୋତେ କି
ନୋହେ ଲାଜ ।
ଯେମନ୍ତେ ପାର ବାବୁରେ କରସି
ଦେବକାର୍ଯ୍ୟ ॥
ଲକ୍ଷଣକୁ ଶ୍ରୀରାମ ବୋଇଲେ ଯେ ମାନ ।
ଶୁଣସି ପାର୍ବତୀ ଗୋ ହୋଇଣ ସାବଧାନ ॥
ଯେସନେକ ବାଣୀ ଈଶ୍ୱର ତହୁଂ ଶୁଣି ।
ନିଶ୍ଚୟେ ହୋଇଲେ ହେମବନ୍ତ ଦୁଲଣି ॥
ପୁଣି ପୁଚ୍ଛାକରନ୍ତି ଶଙ୍କର ମୁଖଚାହିଂ ।
ସେ ରଘୁନାଥ ତ୍ରୈଲୋକ୍ୟର ସାଇଂ ॥୨୦
ସେ କିପାଇଂ ଆପଣା ମହିମା ନ ଜାଣଇ ।
ନିର୍ମାଖି ପ୍ରାୟେ ହୋଇ ଲକ୍ଷଣକୁ କହଇ ॥
ଯାହାର ନାରାଜେଣ କମ୍ପଇ ତିନିପୁର ।
ରାବଣ ଛାର ଦତ୍ୟ କେତକ ମାତର ॥
ଯେହା କିପାଇଂ ଶ୍ରୀରାମ ନ ଜାଣନ୍ତି ନିନା ।
ଭୋ ନାଥ ଯେହା ମୋତେ ବିଚ୍ଚରି
କହକିନା ॥
ଈଶ୍ୱରେ ବୋଲନ୍ତି ତୁମ୍ଭେ ଶୁଣ ଗୋ
ପାର୍ବତୀ ।
ଯାହା ପଚ୍ଚରିଲ ତୁମ୍ଭେ ଶୁଣ ତହିଂର ରୀତି ॥
ଯାହା ତୁମ୍ଭର ଆଗେ ଗୋ କହଇ
ସଂଘାତୁଣୀ ।
ପୂର୍ବର କଥା ଯେ ପୁରାତନ ବାଣୀ ॥୩୦
ମରୁତ ବୋଲିଣ ପୂର୍ବେ ଯେକଇ ନୃପମଣି ।
ଦାନେ ଖାଣ୍ଡେ ସାଚା ବୀରପଣେ ଆଗେ
ଗଣି ॥
ତିନିପୁରେ କୀରତି ତାର ଅଟଇ ବିଖ୍ୟାତି ।
ଯଜ୍ଞ କରନ୍ତେ ତାର ଯେ ନୋହିଲା ସନ୍ତତି ॥
ଶୟେକ ଅଶ୍ୱମେଧ ଯଜ୍ଞ ରାଜା କଲା ।

ମୂଷଳ ପ୍ରମାଣ କରି ଅଗ୍ନିରେ ଘୃତ ଦେଲା ॥
କାଳେ ତାହାକଇ ଦୋହିତାୟେ ହୋଇଲା
ପ୍ରାପତ ।
ସ୍ୱୟେଂ ଅବତାର ସେ ଯେ ସିନ୍ଧୁର ଦୋହିତ ॥
ରୂପ ଗୁଣେ ସୁନ୍ଦେରୀ କି ନାହିଂ ପଟାନ୍ତର ।
ଯୁବା ବୟସ ଆସି ହୋଇଲା ତାହାର ॥୪୦
ତାହାର ସମାନେଣ ସଂସାରେ ନାହିଂ ବର ।
କାହାକୁ ପ୍ରଦାନ ମୁଂ କରିବି ଦୋହିତା
ମୋହୋର ॥
ଯେସନ ସମୟେ ନାରଦ ମହରଷି ।
ମରୁତ ରାଜାର ସେ ସନିଧେ ମିଳେ ଆସି ॥
ଦେଖି ଷଡ଼ ଅର୍ଘ୍ୟ ପୂଜା କଲାକ ନୃପତି ।
ଆସନ ଦେଇଣ ବସାଇଲା କତି ॥
ଯେସନ ସମଏ ପର୍ବତ ମୁନି ଆଏ ।
ଦେଖିଣ ମରୁତ ତାକୁ ପୂଜା ବିଧିଏ ॥
ଗଉରୋବ କରିଣ ସେ ବସାଇଲେ ନେଇ ।
ଆପଣେ କରଯୋଡ଼ି କହଇ ବିନୋଇ ॥୫୦
ଭୋ ମହାରଷି ମୁଂ ପବିତ୍ର ହୋଇଲି ।
ତୁମ୍ଭ ଦୁଇ ମୁନିଙ୍କ ଚରଣ ଦର୍ଶନ ପାଇଲି ॥
ଯେତେ କହି ନୃପତି ଅନ୍ତର ହୋଇ ବସି ।
ଯେସନ ସମୟେ ଦୋହିତା ଲୀଳାବତୀ
ଆସି ॥
ମୁନିଙ୍କି ଓଳଗିଣ ପିତାର କୋଳେ ବସି ।
ଶିଷ୍ୟ ଭାବ ମତିରେ ସେ ମୁନିଙ୍କି ଦେଖି
ହସି ॥
ରୂପ ବେଶ ଦେଖିଣ ସେ ଦୁଇମୁନି ଭୋଳ ।
ଦୁହେଂ ବଚନ ସେ ବୋଇଲେ
ଯେକାବେଳ ॥
ତୁ ଆମ୍ଭର ବଚନ ଶୁଣସି ମହୀପତି ।
ଅବିଭାଇ କରି କିମ୍ପା ଥୋଇଛ ଯୁବତୀ ॥୬୦
ସତ୍ୟ ମନେ ଯେ କନ୍ୟା ଆମ୍ଭକୁ ପାରିବୁ କି
ଦେଇ ।
ଶୁଣିଣ ମରୁତ ରାଜା ଚକିତ ଭାବ ହୋଇ ॥
ନାସ୍ତି ବୋଇଲେ ତ ଦେବେ ଅଭିଶାପ ।

ଯେମନ୍ତ ବିଚାରିଣ ଭୟେ କଲା ନୃପ ॥
ଅବଶ୍ୟ ମୁଁ ତୁମ୍ଭଙ୍କୁ ଦେବଇ ଦୋହିତା ।
ତୁମ୍ଭର ବଚନ କି କରିବି ଅନ୍ୟଥା ॥
ତୁମ୍ଭେ ଦୁଇ ମୁନି ଅଟ ହେ ଗରିଷ୍ଠ ।
ନ ଜାଣଇ ଦୁହିଁଙ୍କଇ ଉତ୍ତମ କେ କନେଷ୍ଠ ॥
ଦୁହେଁ ଯେକାବେଳେ ମାଗିଲ କନ୍ୟା ମୋତେ ।
ମୋହୋର ଅପ୍ରାଧ ତୁମ୍ଭେ ବିଚାର ତପୋବନେ ॥୭୦
ତୁମ୍ଭର ବଚନକୁ ଅବଶ୍ୟ କନ୍ୟା ଦେବି ।
କାଲି ପ୍ରଭାତେ ମୁଁ ସଭା ମଣ୍ଡାଇବି ॥
ସାତ ଘଡ଼ିମାନେ ତୁମ୍ଭେ ଦୁଇ ମୁନି ଆସିବ ।
ଯାହାକୁ ବରିବ କନ୍ୟା ଅବଶ୍ୟ ସେହୁ ନେବ ॥
ଯେ ମୋହୋର ସତ୍ୟ ନୁହଇ ପୁଣ ଆନ ।
ତୁମ୍ଭେ ଦୁହେଁ ମୋର ଦେବତା ସମାନ ॥
ଯେମନ୍ତ ବଚନ କହିଲେ ରାଜା ଯହୁଁ ।
ଶୁଣିଣ ଦୁଇ ମୁନି ହରଷ ହୋଇଲେକ ତହୁଁ ॥
ଯେ ଯାହାର ଆଶ୍ରମକୁ ଅନ୍ତରୀକ୍ଷେ ଗଲେ ।
ଆର ଦିନେ ନୃପତି ସ୍ୱୟମ୍ବର ଭିଆଇଲେ ॥୮୦
ନାନା ଅଳଙ୍କାରେ କନ୍ୟାକୁ ସୁବେଶ କରାଇଲେ ।
ନଗ୍ର ମଣ୍ଡାଇଣ ମଣ୍ଡଣି ପୁର କଲେ ॥
ଇଷ୍ଟ କୁଟୁମ୍ବ ଡକାଇଣ ବିପ୍ରଗଣ ବରି ।
ବାଜିଲା ଶଙ୍ଖ ଭେରୀ ମୃଦଙ୍ଗ ମହୁରୀ ॥
ନଗ୍ରେଣ ଉଛବ ମଙ୍ଗଳ ଭିଆଇଲେ ।
ବୈକୁଣ୍ଠେ ଥାଇ ଶ୍ରୀହରି ବାରତା ପାଇଲେ ॥
ବିଚାରନ୍ତି ମରୁତ ଦୋହିତା ଲୀଳାବତୀ ।
ଲୀଳାୟେ ଅବତାର ସେ ସିନ୍ଧୁର ଦୋହିତୀ ॥
ପ୍ରତକ୍ଷେ କମଳା ସେ ମରୁତ କୁମାରୀ ।
ଯେ ମୋହୋର ପାଟରାଣୀ ଅଛଇ ଅବତରି ॥୯୦
ତାହାକୁ ବିଭା ହୋଇ ଲୋଡ଼ନ୍ତି ତପଚାରୀ ।
ମୋହୋର କନ୍ୟା ସେହୁ ନେବେ ବିଭାକରି ॥
ରୂପ ଗୁଣ ଦେଖି ସେ ମୁରୁଛି ନପାରିଲେ ।
ତପୋବନ୍ତ ହୋଇଣ ସେ ଯେ ଅବେଭାର କଲେ ॥
ଆଜ ମୁଁ ଭଣ୍ଡିବଇ ନାରଦ ପର୍ବତ ।
ବୁଝିବି ତାହାଙ୍କର ଜପୀ ତପୀ ପଦ ॥
ଯେତେ ବୋଲି ଦେବ ସ୍ୱୟେଂବର ଜାଣି ।
ମରୁତ କଟକେ ପ୍ରବେଶ ଚକ୍ରପାଣି ॥
ଆସ୍ଥାନ କରିଣ ରାୟେ ଅଛଇ ଯେ ବସି ।
ନାରଦ ପର୍ବତ ମିଳିଲେ ଦୁହେଁ ଆସି ॥୧୦୦
ମୁନିକି ଦେଖିଣ ରାୟେ ପୂଜାବିଧି କଲା ।
ସୁବର୍ଣ୍ଣର ଆସନେ ନେଇ ବସାଇଲା ॥
ଦୋହିତାକୁ ସୁବେଶ ସେ କରିଣ ଅଣାଇ ।
ଅମନାତ୍ୟଗଣକୁ ସେ ଚାହିଁଣ ବୋଲଇ ॥
ଯେ ଦୁଇ ମୁନି ମୋର ପୁରକୁ ଆସିଥିଲେ ।
ଲୀଳାବତୀକି ଦେଖିଣ ଦୁଇମୁନି ମାଗିଲେ ॥
ମୁହିଁ ବୋଇଲି ତୁମ୍ଭେ ଅଟ ହେ ମହରଷି ।
ଜଣେ ତୁମ୍ଭେ ବିଭା ହୁଅ ଶୁଭ୍ରକେଶୀ ॥
ଯାହାକୁ କନ୍ୟା ଦେବି ହରଷ ହୋଇବ ।
ନ ପାଇଲା ମୁନି ମୋତେ କୋପେ ଶାପ୍ୟ ଦେବ ॥୧୦
ଭୟେଣ ବୋଇଲି ତୁମ୍ଭେ ଦୁଇ ମୁନି ଆସ ।
ଯାହାକୁ ବରିବ କନ୍ୟା ନେବ ସେ ଅବଶ୍ୟ ॥
କୋପ ନ କରିବଟି ନ ପାଇଲା ଲୋକ ।
ତୁମ୍ଭେ ସାକ୍ଷ୍ୟ ହୋଇଥାଅ ରାଜ୍ୟର ସର୍ବଲୋକ ॥
ଶୁଣିଣ ସମସ୍ତେ ହରଷ ହୋଇଲେ ।
ଯେ ତୁମ୍ଭର ଆଗ୍ୟାଂ କେହୁ ମେଣ୍ଟିବ ବୋଇଲେ ॥
ଯାହାକୁ ବରିବଟି ତୋହୋର ଦୋହିତ ।
ସେହୁ ବିଭା ହୋଇବ ଯେ ଆମ୍ଭର ସତ୍ୟ ॥
ଯେସନେକ ସମୟେ ସାତଘଡ଼ିବେଳ ।
ଜଉତିଷ କହିଲା ଦେବ ହେଲା ଅନୁକୂଳ ॥୨୦
ନୃପତି କନ୍ୟା ହସ୍ତ ଧରିଣ ବେଗେ ଆୟେ ।
କୋମଳ କରିଣ କହନ୍ତି ଶୁଣସି ଗୋ ମାୟେ ॥
ତୁ ମୋହୋର ଦୋହିତା ଗୋ ଅଟୁ ଲୀଳାବତୀ ।
ତୋହୋର କର୍ମେ ବର ଦେଖ ମିଳିଲାକ ଯତି ॥
ଅନେକ ଯଗ୍ୟଂକରି ପାଇଲଇଂ ତୋତେ ।
ସଂସାରେ ରାଜାଗଣେ ଅଛନ୍ତି ନା ଯେତେ ॥
ତୋହୋର ସମାନ୍ୟେ ବର ମୁଁ ଖୋଜି ନପାଇଲି ।
ଯେତେ କାଳଯାୟେ ତୋତେ ପ୍ରତିପାଳିଥିଲି ॥
ଯେ ଦୁଇ ଋଷି ମାଗୋ ଅଟନ୍ତି ଗରିଷ୍ଠ ।
ଯେହାକୁ ପ୍ରଶଂସା ଗୋ କରଇ ସୁରଶ୍ରେଷ୍ଠ ॥୩୦
ଯେ ତୋତେ ବିଭା ଗୋ ହୋଇତ ଆସିଛନ୍ତି ।
ଯେ ତୋତେ ରୁଚଇ ଗୋ ବରସି ରୂପବନ୍ତୀ ॥
ଯେ ମୋହୋର ସତ୍ୟ ଗୋ ନୁହଇ ପୁଣ ଅନ୍ୟ ।
ଶୁଣିଣ ସୁନ୍ଦେରୀ ବିକଳିତ ମନ ॥
ମନରେ ବିଚାରଇ ଯୁବତୀ ଶିରୋମଣି ।
ରାଜକୁମାରୀ ହୋଇ କେହ୍ନେ ବରିବି ଯତି ପୁଣି ॥
ଭୋ ନାରାୟଣ ମୋତେ କର ଯେଥୁ ପାର ।
ନଜାଣି ପିତା ମୋର କଲାକ ଅବେଭାର ॥
ବାଳୁତ କାଳୁ ସ୍ୱାମୀ ତୋତେ କଲି ଆଶ ।
ମନେ ମନେ ଧ୍ୟାନ ତୋତେ କଲଇଂ ପୀତବାସ ॥୪୦
କଣ୍ବ ମହାମୁନି ମୋତେ ଅଛନ୍ତି ପୂର୍ବେ କହି ।

ନିଶ୍ଚୟେ ନାରାୟଣ ହୋଇବେ ତୋର ସାଇଂ ॥
ମନ୍ତ୍ର ଗୋଟିଯେକ ମୋତେ ଦେଲେକ ପ୍ରସନେ ।
ନିରନ୍ତରେ ଜପ ତୁ କରିବୁ ମନଧ୍ୟାନେ ॥
ତାହାଙ୍କର ଆଗ୍ୟାଂରେ ମୁଁ ଜପଇ ଅନୁବ୍ରତେ ।
ଯେବେ ଆସିଣ ହୋଇଲା ବିପରୀତେ ॥
ମୁନିଙ୍କର ମନ୍ତ୍ର ତ ମିଥ୍ୟାକୁ ଯାଉଅଛି ।
ଯେଥୁ ତୁମ୍ଭେ ପାରିକର ହୋ ଶ୍ରୀବଛି ॥
ଯେ ଦୁଇ ତପିଷ୍ଟଙ୍କୁ ଯେ ନ ବରଇ ମୁହିଂ ।
ଭୋ ନାରାୟଣ ଯେବେ କରିବା ମୋତେ ତ୍ରାହି ॥୫୦
କଷ୍ଟୋର କରି ଜପଇ ମନ ଧାନଇ ।
ଆତଙ୍କେ ସୁମରଇ ମୋତେ ରଖ ହେ ଭାବଗ୍ରାହୀ ॥
କରେ ରତ୍ନମାଳା ଧରିଣ ସତୀ ଅଛି ।
ବୈକୁଣ୍ଠେ ଥାଇ ତାହା ଜାଣିଲେ ଶ୍ରୀବଛି ॥
ଗରୁଡ଼େ ବିଜୟେ ଯାଇ କଲେକ ଚକ୍ରଧର ।
କିରଟୀ କୁଣ୍ଡଳ କର୍ଣ୍ଣେ ହୃଦରେ ରତ୍ନହାର ॥
ସର୍ବାଙ୍ଗେ ଚନ୍ଦନ ଯେ କଟିରେ ପୀତବାସ ।
ବିଦ ମୁଦି ବାହୁଟି ଯେ ହୋଇଣ ଦିବ୍ୟ ବେଶ ॥
ତାଡ଼ ତୋଡ଼ର ଯେ କଟିରେ ମେଖଳ ।
ଶ୍ରୀବଛ ଲକ୍ଷଣ ଯେ ହୃଦରେ ରତ୍ନମାଳ ॥୬୦
ଗରୁଡ଼ ପିଠିରୁ ଉତୁରି ନାରାୟଣ ।
କୋଟିୟେ କନ୍ଦର୍ପ ଗଞ୍ଜଇ ରୂପେଣ ॥
ନାରଦ ପର୍ବତ ଅଛନ୍ତି ଦୁହେଁ ବସି ।
ଦୁହିଂଙ୍କରି ମଧରେଣ ବିଜୟେ ବ୍ରହ୍ମରାଶି ॥
ଭୋଳେଣ ଦୁଇ ମୁନି ଆଶୀର୍ବାଦ କଲେ ।
କନ୍ୟାର ରୂପକୁ ସେ ଅନାଇଣ ଥିଲେ ॥
ଯେସନ ସମୟେ ମିଳିଲା ଲୀଳାବତୀ ।
ବିଷ୍ଣୁର ରୂପ ଦେଖିଣ ହରଷ କଲେ ମତି ॥
ପୂର୍ବେ କଣ୍ଣ ମୁନି ସ୍ୱରୂପ କହିଥିଲେ ।
ଯେ ସେ ନାରାୟଣ ବୋଲି ଚଞ୍ଚଳା ଚିହ୍ନିଲେ ॥୭୦
ଲକ୍ଷେକ ଶଙ୍ଖ ପୂରଇ ଘନ ଘନ ।
ଦେଖିତେ ଆସିଛନ୍ତି ନଗ୍ରର ସର୍ବଜନ ॥
ବ୍ରାହ୍ମଣେ ଚାରିବେଦ ଆଧାନ କରନ୍ତି ।
ଯୁବତୀଗଣେ ମିଳି ହୁଳହୁଳି ଦ୍ୟନ୍ତି ॥
ଯେସନ ସମୟେ ମିଳିଲା ଲୀଳାବତୀ ବାଳୀ ।
କରେଣ ଘେନିଥିଲା ଦିବ୍ୟ ରତ୍ନମାଳି ॥
ଶ୍ରୀହରି ଗଳାରେ ସେ ଲମ୍ୱାଇଲେ ନେଇ ।
କନ୍ୟାର କର ଧରି ବିଜେ କମଳାଦେବୀ ସାଇଂ ॥
ଗରୁଡ଼ ପିଠିରେ ନେଇ ତାକୁ ବସାଇଲେ ।
ପାଞ୍ଚଜନ୍ୟ ଶଙ୍ଖ ହରି ହରଷେ ବଜାଇଲେ ॥୮୦
ଗଗନ ମାର୍ଗେ ସେ ଗଲେକ ପଥବହି ।
ବୈକୁଣ୍ଠ ପୁରେଣ ପ୍ରବେଶ ହେଲେ ଯାଇ ॥
ଧାତାକୁ ସୁମରିଲେ ପ୍ରଭୁ ବନମାଳୀ ।
ତତକ୍ଷଣେ ଜଗତପିତା ସନ୍ନିଧେଣ ମିଳି ॥
ନିଜେ ବରକନ୍ୟାକୁ ସେ ବିଭା କରାଇଲେ ।
ଆଶିଷ୍ୟ ଦେଇଣ ଧାତା ନିଜପୁର ଗଲେ ॥
ଯେଥୁ ଅନନ୍ତରେ ଶୁଣ ଗୋ ଗଉରୀ ।
ଯହୁଁ ସେ ଲୀଳାବତୀକି ନେଲେକ ଶ୍ରୀହରି ॥
ପର୍ବତ ନାରଦ ପାଇଲେ ବହୁ ଲାଜ ।
ମରୁତକୁ ବୋଇଲେ ହୋ ଶୁଣିମା ମହାରାଜ ॥୯୦
ଯେଡ଼େ ଅଗ୍ୟାନ ବୁଦ୍ଧି ତୁହି କିମ୍ପା କଲୁ ।
ଆମ୍ଭକୁ କନ୍ୟା ଦେବୁ ବୋଲି ସତ୍ୟ କରିଥିଲୁ ॥
ପ୍ରତେ ଉପୁଜାଇ କିମ୍ପା ବିଚାରିଲୁ ମନ୍ଦ ।
ଗୁପତେ ଲୁଚାଇଣ ଆଣିଲୁ ଗୋବିନ୍ଦ ॥
କନ୍ୟାକୁ ଶ୍ରୀହରିଙ୍କି ଚିହ୍ନାଇଣ ଦେଲୁ ।
ମିଛେହେଁ ସୟେମ୍ୱର ବୋଲିଣ ଭିଆଇଲୁ ॥
କନ୍ୟା ଘେନିଣ ଯେବେ ଗଲେ ନାରାୟଣ ।
ଆମ୍ଭେ ଦୁଇ ମୁନି ଶ୍ରର୍ମ ପାଇଲୁ ଅକାରଣ ॥
ଯେଡ଼େ ମାୟା କରିଣ ଯେ ଭଣ୍ଡିଲୁ ଆମ୍ଭଙ୍କୁ ।
ଘେନସି ଶାପ୍ୟ ଆମ୍ଭେ ଯେ ଦେଉଛୁ ତୁମ୍ଭଙ୍କୁ ॥୧୦୦
ଯେତେ ଯାଗ ଧର୍ମ ଜପ ତପସ୍ୟା ତୁ କଲୁ ।
ଆମ୍ଭଙ୍କୁ ଭଣ୍ଡିବାରେ ନିଷ୍ଫଳ ପାଇଲୁ ॥
ହୋଇଲୁ ଅଗ୍ୟାନ ହୋ ନଜାଣୁ ତୁ କିଛି ।
ଆମ୍ଭଙ୍କୁ ଯେଡ଼େ ଯେବେ ମାୟା ତୋର ଅଛି ॥
ଯେସନ ଶାପ୍ୟ ଦେଇ ଗଲେକ ତପଚାରୀ ।
ରକତ କୁମୁଦ ପ୍ରାୟେ ବେନି ଚକ୍ଷୁ କରି ॥
ତକ୍ଷଣେ ନୃର୍ପତିକି ଆକର୍ଷିଲା ପାପ ।
ମରୁତ ନୃର୍ପତି ଯେ ପାଇଲା ଅଭିଶାପ ॥
ପଳାଇଲା ମରୁତ ପାପକୁ ଭୟକରି ।
ପ୍ରବେଶ ହୋଇଲା ଯାଇ ବଇକୁଣ୍ଠ ପୁରୀ ॥୧୦
ପଛେଣ ଗୋଡ଼ାଇ ତାକୁ ଅଛି ଯେ ଅଗ୍ୟାନ ।
ମରୁତ ନୃପତି ଡରେଣ ଛନଛନ ॥
ଶ୍ରୀହରି ଚରଣେ ଯାଇ ପଶିଲା ଶରଣ ।
ଶିରେ କରଦେଇ ବୋଲେ ରଖ ନାରାୟଣ ॥
ନାରଦ ପର୍ବତ ମୋତେ କନ୍ୟା ମାଗିଗଲେ ।
ସୟେମ୍ୱରେ କନ୍ୟା ବରିଲେ ଦେବୁଟି ବୋଇଲେ ॥
ଦୋହିତାକୁ ସୁବେଶ କରିଣ ଘେନିଗଲି ।
କୁସୁମ ମାଳାୟେ ମୁଁ ଯେ ତାହାର ହସ୍ତେ ଦେଲି ॥
ବିଚାରେ ବୋଇଲି ମୁଁ ଶୁଣ ଗୋ ଲୀଳାବତୀ ।
ବିଧାତା ଭିଆଇଲା ତୋତେ ବ୍ରାହ୍ମଣ ତପୀପତି ॥୨୦

ଯେ ଦୁଇ ତପୀ ମାଗୋ ଅଟନ୍ତି
ଯୋଗେଶ୍ୱର ।
ଯାହାକୁ ଇଚ୍ଛା ଯେବେ ଜଣେକ ତୁହିବର ॥
ଯେସନ ସମୟେ ତୁମ୍ଭେ ଗୁପତେ ପ୍ରବେଶ ।
ଦେଖିଣ ଲୀଳାବତୀ ହୋଇଲା ହରଷ ॥
ତୁମ୍ଭକୁ ଦେଖିଣ କନ୍ୟା ତାହାଙ୍କୁ ନ ବରିଲା ।
ରତ୍ନମାଳା ନେଇ ତୁମ୍ଭ କଣ୍ଠେ ଲମ୍ବାଇଲା ॥
ତୁମ୍ଭେ ଆଣିଲ କନ୍ୟା ଗରୁଡ଼ ପିଠିରେ
ବସାଇ ।
ମୋତେ କୋପ କଲେ ଦୁହେଁ କନ୍ୟାକୁ
ନ ପାଇ ॥
ବୋଇଲେ ଶ୍ରୀହରି ତୁ ଗୁପତେ ଆଣିଥିଲୁ ।
ଆମ୍ଭକୁ ଦେଖାଇ ତୁ ବିଷ୍ଣୁଙ୍କୁ ଝିଅ ଦେଲୁ ॥
ଆଜ ତୁ ଅଗ୍ୟାନ ହୋ ହୋଅ ନୃପବର ।
ନ ଜାଣିଣ ଅଧର୍ମ ତୁ ପାଇଲୁ ପାମର ॥
ଯେତେ ବୋଲିଣ ମୁନି ଗଲେକ ନିଜ
ସ୍ଥାନ ।
ତତକ୍ଷଣେ ମୋତେ ଗୋଡ଼ାଉଛି ଅଗ୍ୟାନ ॥
ଯେବେ ରକ୍ଷାକର ମୋତେ କମଳାର
ସାଇଂ ।
ତୋହୋର ଶ୍ରୀଚରଣେ ଶରଣ ପଶିଲଇଂ ॥
ଆପଣେ ଜାଣ ସ୍ୱାମୀ ମୋହୋର କିବା
ଦୋଷ ।
ଯେ ଘୋର ପାପରୁ ତ୍ରାହି କରହେ
ପୀତବାସ ॥
ଯେସନେକ କହୁ କହୁ ଅଗ୍ୟାନ ଆସି ମିଳି ।
ଦେଖିଣ ତାହାକୁ ବୋଇଲେ
ବନମାଳୀ ॥୪୦
ତୁ ହୋ ମହାତମା ଯେ ମୋହୋର
ବୋଲକର ।
ଅପାପୀ ଅଟଇ ଯେ ମରୁତ ନୃପବର ॥
ଦୁଇ ମୁନି ନଜାଣି ଯେହାକୁ ଶାପ ଦେଲେ ।
ଆମ୍ଭେ କନ୍ୟା ଆଣନ୍ତେ ଅହନ୍ତା ବହିଲେ ॥
ସେ ସେ ମହାଲକ୍ଷ୍ମୀ ଆମ୍ଭର ପ୍ରିୟବତୀ ।
ଲୀଳା କରିଯାଇ ନାମ ବହିଲା ଲୀଳାବତୀ ॥

ଯେ ଯେ ମରୁତ ରାଜା ବହୁତ ଯାଗ କଲା ।
ଶରଧାୟେ ଚଞ୍ଚଳା ଯେ ଦେଖିବାକୁ ଗଲା ॥
ମରୁତ ରାଜାର ମାୟାରେ ହୋଇଲା
ଦୋହିତୀ ।
କେମନ୍ତେ ତାହାକୁ ବିଭା ହୋଇବେକ
ଯତି ॥୫୦
ପିତାର ଉପ୍ରୋଧ ଯେବେ କରନ୍ତେ
ମହାଦେଈ ।
ବ୍ରହ୍ମା ରୁଦ୍ର ହୋଇଲେ କି ଥାଆନ୍ତେ ପ୍ରାଣ
ପାଇ ॥
ତାହା ଜାଣିଣ ଆମ୍ଭେ ଗଲୁ ଅତି ଖରେ ।
ବସାଇ ଆଣିଲି ମୁଂ ଗରୁଡ଼ ପିଠିରେ ॥
ମାୟା ପ୍ରାୟେ ମଣି ମୁନି ଅଗ୍ୟାନେ ଦେଲେ
ଶାପ ।
ମରୁତ ନୃପତିର ଯେଥେ ଆଉ ନାହିଁ ପାପ ॥
ସେ ବେନି ଜନେ ଗରିଷ୍ଠ ତପଚାରୀ ।
ତାହାଙ୍କର ବୋଲ କି ଆନ କରିପାରି ॥
ତୁ ହୋ ଅଗ୍ୟାନ ମୋହୋର ଅଙ୍ଗେ ଥାଅ ।
ଥୋକାୟେକ କାଳ ଭୋଗ କରି
ଯାଅ ॥୬୦
ମରୁତକୁ ଅକାରେଣ କରିବୁ କିମ୍ପା ନାଶ ।
ସେ ନଜାଣଇ ମୁଂ ଆଣିଲି ମୋର ଦୋଷ ॥
ଶୁଣିଣ ପାପ ପୁରୁଷ କମ୍ପଇଂ ଥରହର ।
ଶ୍ରୀଅଙ୍ଗ ଛୁଇଂତେ କି ଭାର୍ଜନ ମୁହିଁଛାର ॥
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଅଟୁ ତୁ
ଅଧିକାରୀ ।
ମୁହିଁ ପାମର କି ଛୁଇଂତେ ତୋତେ ସରି ॥
ଯିବି ବାହୁଡ଼ି ମୁଂ ଯେ ତୋର ଆଗ୍ୟାଂ ପାଇ ।
ଆଉ କି ସଂସାରେ ମାନିବେ ତାହାକଇଁ ॥
ତୁହି ବାହୁଡ଼ିଲେ କୋପ କରିବେ
ତପସାଇଂ ।
ଯେକଥା ଅଗ୍ୟାଂନ ହୋ ମୋତେ ନ
ଯୋଗାଇ ॥୭୦
ଯଦି ତୁ ଓପ୍ରୋଧ ମୋତେ କଲୁ ହୋ
ଅଗ୍ୟାଂନ ।

ରବିତଳେ ଜାତ ହୋଇବି ମୁଂ ଦଶରଥ
ନନ୍ଦନ ॥
ମନୁଷ୍ୟ ରୂପ ଧରିବି ମୁଂ ଶଙ୍ଖ ଚକ୍ର ଛାଡ଼ି ।
କୋଦଣ୍ଡ କାଣ୍ଡ ଧରିଣ ଅରଣ୍ୟେ ଦୁଃଖ
ପଡ଼ି ॥
ଦେବଙ୍କର ଛଳେ ମୁଂ ମାରିବି ଦଶଶିର ।
ସେ ବେଳେ ମୋହୋର ଅଙ୍ଗେ ଭୋଗ
ତୁହିକର ॥
ବିଷ୍ଣୁ ରୂପକୁ ତୁହି କଲୁ ଯେବେ ଦୟା ।
ରାମ ଅବତାରେ ତୁ ଭୋଗକର ମୋର
କାୟା ॥
ଶୁଣିଣ ତୋଷ ହୋଇଲା ଅଗ୍ୟାନ ।
ବାହୁଡ଼ିଣ ଗଲା ସେ ଆପଣା ଭୁବନ ॥୮୦
ମରୁତ ନୃପତିକି ବୋଇଲେ ଭଗବାନ ।
ଯେ ମୋର ଶରୀରେ କରିବି ତୋତେ
ଲୀନ ॥
ଯେବେ ତୁ ସମୟେକ ମୃତ୍ୟୁପୁରେ ଥାସି ।
ଜପ ତପ କରିଣ ଅନେକ ଦାନ ଦେସି ॥
ଅନ୍ତେ ପୁଣ ତୋତେ ବୈକୁଣ୍ଠ ପ୍ରାପ୍ତ ହେଉ ।
ଯେ ତୋର ଯଜ୍ଞ ଧର୍ମ ସୁଫଳ ଯେ ହେଉ ॥
ଶ୍ରୀହରି ଆଗ୍ୟାଂ ପାଇଣ ମରୁତ ନୃପବର ।
ପ୍ରବେଶ ହୋଇଲା ଯାଇ ଆପଣା ମନ୍ଦିର ॥
ଲୀଳାବତୀ କନ୍ୟାକୁ ସେ ଆଣିଲେ ଶ୍ରୀହରି ।
ବ୍ରହ୍ମାୟେ ଯାଇଣ ତାଙ୍କ ବିଭାବିଧି
ସାରି ॥୯୦
ତାହାକୁ ଘେନିଣ ସ୍ୱାମୀ ଅନେକ ଭୋଗ
କଲେ ।
ତେଣୁ ସେ ଲୀଳାରମଣ ବୋଲାଇଲେ ॥
କାଳେ ଅବତାର ସ୍ୱାମୀ ଦଶରଥ ଘରେ ।
ଅଗ୍ୟାନ ଆଚ୍ଛାଦିଲା ଶ୍ରୀରାମ ଶ୍ରୀ ଅଙ୍ଗରେ ॥
ତେଣୁଟି ଶ୍ରୀରାମ ନ ଜାଣନ୍ତି କିଛି ।
ନୋହିଲେ ଶ୍ରୀରାମର କୋପକୁ ଭାର୍ଜନ କେ
ଅଛି ॥
ଶୁଣ ଭଗବତୀ ଗୋ ଅପୂର୍ବ ରସ କୃତ୍ୟ ।
ସ୍ୱୟେଂ ପ୍ରମବ୍ରହ୍ମ ଅଟନ୍ତି ରଘୁନାଥ ॥

ପୂର୍ବର କଥାମାନ ଜାଣି ନ ପାରିଲେ ।
ତେତେ ବଡ଼ ଠାକୁର ମୁନିକି ଭଯେ
କଲେ ॥୧୦୦
ତେଣୁ ସେ ଲକ୍ଷଣର ଧରନ୍ତି ଦୁଇକର ।
ବହୁତ ଚାଟୁକଥା କହନ୍ତି ରଘୁବୀର ॥
ତୁ ବାବୁ ଲକ୍ଷଣରେ ନ ଛାଡ଼ିବୁ ମୋତେ ।
ପୁଣ ପୁଣ ବୋଲି କହୁଅଛି ତୋତେ ॥
ଆସିବାର ବେଳେ ତୋତେ ସମର୍ପିଲା
ଜନନୀ ।
ବନବାସ ଯିବାକୁ ହୋଇଲେ ଜଣ ତିନି ॥
ତୁରେ ବାବୁ ଲକ୍ଷଣ ଯେମନ୍ତ କରିବୁ ।
ରଘୁନାଥଙ୍କୁ ତୁ କ୍ଷଣେ ନ ଛାଡ଼ିବୁ ॥
ବୃକ୍ଷର ଛାଇ ଯେମନ୍ତ ଅଲଗା ନୁହଇ ।
ତୁହି ସେହିମତି ଥିବୁଟି ଗୋଡ଼ାଇ ॥ ୧୦
ଯେସନେକ ଆଗ୍ୟାଂ ଯେ ଦେଇଛି
ଜନନୀ ।
ସମ୍ପୂର୍ଣ୍ଣ ତେର ବରଷରେ ଯେତେ କଷ୍ଟ
ପାଇଲି ॥
ଫଳ କନ୍ଦ ଦେଇ ଯେ ମୋତେ ସେବା
କଲୁ ।
କର୍ମ ଅବଳେ ଯେତେ କଷ୍ଟରେ ପାଇଲୁ ॥
ରାଗେ ଦ୍ରୋହ ନ କରି ଭାଇ ଆସ ।
ଯେବେ ବିଧାତା ମୋତେ ଛିନାଇଂଲା
ଆଶ ॥
ଭୋ ବିଧାତା ପୁରୁଷ ତୁ କଲୁ ଯେତେ
କୃତ୍ୟ ।
ଯେ ମୋହର କର୍ମରେ ତୁ ଲେଖିଥିଲୁ
ଯେମନ୍ତ ॥
ରାଜ ଭୋଗ ଛଡ଼ାଇ ବିପୁନ୍ୟେ ବାସ ଦେଲୁ ।
ସମ୍ପୂର୍ଣ୍ଣ ତେର ବରଷେ ସୀତ୍ୟାକୁ
ଛଡ଼ାଇଲୁ ॥୨୦
ଦୁଃଖି ହୋଇ ଦୁଇ ଭାଇ ଅଛୁ ଘୋରବନେ ।
ଅଯୋଧ୍ୟାକୁ ସୀତ୍ୟା ଛାଡ଼ିଯିବଙ୍କ କେସନେ ॥
ତୁ ମୋହୋର ଶାଖା ଅଟୁରେ ସଉମିତ୍ରୀ ।
ଆମ୍ଭକୁ ବାଦେ ବାବୁରେ ନାଗିଛି ପ୍ରଜାପତି ॥

ନପୁଣ ଦୋଷବାଛି ଛାଡ଼ିଣ ମୋତେ ଯାଉ ।
ଯେ ମୋହୋର ମନ ମୋତେ ଗୋଚର
ନାହିଂ ଆଉ ॥
ଲକ୍ଷଣ ବୋଇଲେ ତୁମ୍ଭେ ଶୁଣିମା
ରଘୁସାଇଂ ।
ତୋହୋର ପ୍ରସାଦେ ମୋତେ ସମାନ କେହି
ନାହିଂ ॥
ସ୍ୱର୍ଗପୁର ମର୍ତ୍ତ୍ୟକୁ ପାରଇ ମୁହିଂ ଆଣି ।
ଅଗ୍ନିଶରେ ଶୋଷିଣ ପାରଇ ସିନ୍ଧୁ ପାଣି ॥୩୦
ହାବୋଡ଼ା କାଣ୍ଡେ ମେରୁ କରିବି ମୁହିଂ ଚୂର ।
ତୀକ୍ଷ ଶରେ ମେଦିନୀ କରିବି ଧାର ଧାର ॥
ଛାର ନିଲକ୍ଷଣ ଲଙ୍କାଗଡ଼ ସାଇଂ ।
ତାହାର କଥାକୁ ତୁମ୍ଭେ ନ ଭାଳ ରଘୁସାଇଂ ॥
କଥା ଜାଣିମାଯାଯେ ସେ ତୁନି ହୋଇଅଛି ।
ତୁମ୍ଭେ ଯେବେ ନ ଭାଳ ହେ ରଘୁକୁଳବଛି ॥
ସୁଗ୍ରୀ ତୋହୋର ଆଗେ ପ୍ରତଗ୍ୟାଂ ଯାହା
କଲା ।
ରାବଣ ମାରିଣ ସୀତ୍ୟାକୁ ଆଣିବି ବୋଇଲା ॥
ତୁ ତାହାର ଶତ୍ରୁକୁ କଲୁ ଦେବ ହତ ।
ତ୍ରୈଲୋକ୍ୟେ ଶୁଣିଲେ ବୋଲିବେ ତୋତେ
ମହତ୍ ॥୪୦
ଅନେକ କଷ୍ଟ ସେ ପାଉଥିଲା ଋଷିମୁଖେ ।
କିଷ୍କିନ୍ଧ୍ୟା କଟକ ଯେବେ ଭୋଗକଲା
ସୁଖେ ॥
ତାହାର ବଡ଼ପଣ ଜାଣିମା ଗୋସାଇଂ ।
ଦିନ ପାହିବାଯାଯେ ଅଛି ମୁଂ ବାଟ ଚାହିଂ ॥
ନୋହିଲେ କରିବି ମୁଂ ଯେବଣ ବୃତାନ୍ତ ।
ପ୍ରତକ୍ଷେ ଦେଖିବୁନା ଜାନକୀର କାନ୍ତ ॥
ଶୁଣିଣ ସନ୍ତୋଷ ହୋଇଲେ ରଘୁମଣି ।
ଲକ୍ଷଣକୁ କୋଳକରି ଧରନ୍ତି ପୁଣପୁଣି ॥
ଶିରେ ଚୁମ୍ବ ଦେଇ ସେ ଆଶ୍ୱାସନ୍ତି କାୟେ ।
ତୁ ସିନା ଅଟୁ ବାବୁରେ ଅରଣ୍ୟେ
ବାପମାୟେ ॥୫୦
ତୋତେ ଆଶ୍ରେ କରି ଅଛଇ ଦେହ ରଖି ।
ତୁହି ସିନା ଅଟୁ ମୋର ନିର୍ମାଖିର ସାଖି ॥

ରାବଣ ନିଲକ୍ଷଣ କେତେକ ମାତର ।
ସବୁଙ୍କରି ଜୀବ ଅଛି ତୋହୋର ହସ୍ତର ॥
ଦିନ ପାହିଲେଣ କରିବା ଆମ୍ଭେ କାର୍ଯ୍ୟ ।
ତୁ ଦେବ ଆରତ ନୁହସି ରଘୁରାଜ ॥
ଯେଥୁ ଅନନ୍ତରେ ରବି ଅସ୍ତଗଲା ।
ସକଳ ସଂସାର ତିମିର ଆଛାଦିଲା ॥
କନ୍ଦମୂଳ ଖାଇଣ ବଞ୍ଚିଲେ ବେନିଜନ ।
ନିଦ୍ରାରେ ରଘୁନାଥ ଦେଖିଲେ ସ୍ୱପନ ॥୬୦
ଅଯୋଧ୍ୟା ନଗ୍ରେ ସେ ଅଛନ୍ତି ବିଜେକରି ।
ରତ୍ନ ପଲଙ୍କରେ ସୀତ୍ୟାକୁ କୋଳେ ଧରି ॥
ନାନା ଚାଟୁକଥା କୁହାକୋହି ହୋନ୍ତି ।
ହିୟାରେ ହିୟା ଭିଡ଼ି ମୁଖେ ଚୁମ୍ବ ଦେନ୍ତି ॥
ଶ୍ରୀରାମର ଦକ୍ଷିଣ ଭୁଜ ମୁଧୁନା ଅଙ୍ଗୁଷ୍ଠି ।
ଗାଢ଼ ଆଲିଙ୍ଗନେ ଛିଡ଼ିଲା ସୀତ୍ୟାର ମାଳ
ଗୋଟି ॥
ଗୋଟି ଗୋଟି ହୋଇଣ ସବୁ ପଡ଼ିଲାକ
ଫିଟି ।
ଦେଖିଣ ହସିଲେ ଡାଳିମ୍ବ ପୁଷ୍ପ ଓଷ୍ଠୀ ॥
ଶ୍ରୀରାମକୁ ବୋଇଲେ ମୋର ଛିନାଇଲ
ହାର ।
ଗୁନ୍ଥିଣ ଦିଅ ବେଗେ ରଘୁକୁଳ ବୀର ॥୭୦
ଶୁଣିଣ ଶ୍ରୀରାମ ଶେଯ୍ୟାରେ ଆଉଂଶି ।
ମାଳା ଆଉଂଶନ୍ତେ ଚେତନା ଅଙ୍ଗେ ପଶି ॥
ଯହୁଂ ଜାନେକୀର ନ ପାଇଲେ ଚିହ୍ନ ।
ବିଚାରି ବୋଇଲେ ଯେ ଅଟଇ ସ୍ୱପନ ॥
ନୋହଇ ଅଯୋଧାୟେ ନୋହଇ ଆମ୍ଭ
ଘର ।
ଯେ ସେ ମାଲ୍ୟବନ୍ତ ପର୍ବତ ଶିଖର ॥
କାହିଂ ସୀତ୍ୟାର ମୁଂ ଗୁନ୍ଥିବି ମୋତି ମାଳି ।
ରାବଣ ମୋହୋର ମୁଖେ ଲଗାଇଲା କାଳି ॥
ଆବର ସଖୀକି ମୋର ପାଇବଇଂ କାହିଂ ।
ଯେ ଜନ୍ମେ ଦେଖିବି ବୋଲି ପରତେ ମୋର
ନାହିଂ ॥୮୦
ପିଣ୍ଡ ଥୋଇଣ କେ ମୋର ପ୍ରାଣ ଘେନି
ଗଲା ।

କେ ମୋହୋର ଆତ୍ମା ଛିନାଇ ପକାଇଲା ॥
ବାବୁ ଦଇବରେ ଯେହା ସେ ମୋତେ
କଲା ।
ଯେକା ଭାରିଯାକୁ ମୋର ବିଛେଦ
କରାଇଲା ॥
ଯେତ୍ହେ ନିରପକ୍ଷ ତୁ ହୋଇଲୁ କିସ ପାଇଂ ।
ମୋହୋର ତୋତେ ଅପ୍ରାଧ କଲା ନାହିଂ ॥
ଯେବେ ତ ଆଶା ମୋର ଧରିତ ନ ପାରଇ ।
ଅନାସ୍ତ ପ୍ରାଣୀ ମୁହିଂ ସାଖା ମୋର ନାହିଂ ॥
ପିତା ବନ୍ଧୁ ମୋର ଛାଡ଼ିଲେ ଓପ୍ରୋଧ ।
ଲକ୍ଷଣ ଶାଖା ମୋର ଅଛଇ ବନ
ମଧ ॥୯୦
ଲକ୍ଷଣ ବୋଇଲେ ଦେବ ନୁହସି ବିକଳ ।
ସୀତୟା ପାଇବା ଆମ୍ଭେ ସୁକର୍ମର ବେଳ ॥
ଧଉର୍ଯ୍ୟ ହୋଇଲେଟି ପାଇବାନା କାର୍ଯ୍ୟ ।
ଆପଣା କଥା ଦେବ ପରମୁଖେ ଲାଜ ॥
ଶ୍ରୀରାମ ବୋଇଲେ ତୁ ନ ଜାଣୁରେ ଭାଇ ।
ସୀତ୍ୟା ନାମ ଗୋଟିକି ମନରୁ ମୋର ଯାଇ ॥
ସେ ମୋହୋରି ଜୀବ ମୁଂ ତାହାର ପ୍ରାଣ ।
ପାଣିରେ ପିଟିଲେ ଯେହ୍ନେ ନୁହଇ
ଭିନାଭିନ ॥
ଜାନେକୀ ଶ୍ରୀରାମ ଅଟନ୍ତି ଯେକ କାୟେ ।
ତୁ ଯେହା ମଣୁକି ହୋ ବେଗଳ
ପରାୟେ ॥୧୦୦
ସୀତ୍ୟା ନ ପାଇଲେ କି ଥିବ ମୋର
ଦେହ ।
ତୁ ହୋ ଲକ୍ଷଣ ଯେ ସୁଗ୍ରୀକି ଯାଇ କହ ॥
ଯେତେ ବୋଲି ଶ୍ରୀରାମ ଯେ ମଢ଼ିଆରୁ
ବାହାର ।
ସଙ୍ଗେଣ ସଉମିତ୍ରୀ ଅଛନ୍ତି ତାଙ୍କର ॥
ମଢ଼ିଆ ଦୁଆରେ ଉଭା ହୋଇଲେକ ଯାଇ ।
ଚାହିଂଲେ ପହରେକ ରଜନୀ ଅଛି ହୋଇ ॥
ଦକ୍ଷିଣ ଦିଗରେ ଉଇଂଛି ଯେକ ତାରା ।
ଧୂମବର୍ଣ୍ଣ ସ୍ୱରୂପ ଯେ ଲାଙ୍ଗେକ ଫଂରହଂରା ॥
ଶ୍ରୀରାମ ବୋଇଲେ ବାବୁ ଲକ୍ଷଣ ଯେହା
ଚାହାଂ ।
ଧୂମକେତୁ ବୋଲି ବାବୁ ବୋଲୁଥାନ୍ତି
ଯାହା ॥୧୦
ଯେବଣ ଦିଗେ ବାବୁ ଉଭା ହୋଇଥାଇ ।
ସେ ଦିଗର ରାଜା ବାବୁ ରାବଣ ମରଇ ॥
ଯେମନ୍ତ ସମୟେ ଯେ ଆସିଲା ବରଷିଣ ।
ତେନ୍ତୁଳି ବୃକ୍ଷ ତଳେ ଉଭା ବେନି ଜନ ॥
ଝିମିଝିମି କରିଣ ଯେ ଗୋଟା ଗୋଟା କଲା ।
ତକ୍ଷଣେ ପୁଣ ଯେ ବରଷା ଗୁହାଇଲା ॥
ଆକାଶକୁ ଚାହିଂଣ ବୋଲନ୍ତି ସୀତ୍ୟାସାଇଂ ।
ଭୋ ମେଘମାନେ ତୁମ୍ଭର ମୋତେ ଦୟା
ନାହିଂ ॥
ମୁହିଂ ପରବାସୀ ନିରେଖ ଦେଶାନ୍ତରୀ ।
ମହାଘୋର ଅରଣ୍ୟେ ମୁଂ ଅଛଇ
ବସାକରି ॥୧୦
ତୁମ୍ଭେ ଯେ ଯେ ଦିଗରୁ ସେ ଦିଗକୁ ଯାଅ ।
ସ୍ୱର୍ଗ ମର୍ତ୍ତ୍ୟ ଦୁଇପୁରେ ଭ୍ରମଣ କରୁଥାଅ ॥
ତୁମ୍ଭଙ୍କୁ ଅଦୃଶ୍ୟ ତ ନାହିଂ ମର୍ତ୍ତ୍ୟପୁରେ ।
ପର ଉପଗାରୀ ତୁମ୍ଭେ ଅଟ ହେ ସଂସାରେ ॥
ମୋହୋର ଭାରିଯାର ନାମ ଅଟେ ସୀତ୍ୟା ।
ଜାଣିଥିଲେ କହ କିନା ତହିଂର ତଥ୍ୟ ବାର୍ତ୍ତା ॥
ଚମ୍ପା ପୁଷ୍ପ ପ୍ରାୟେ ଦିଶଇ ରୂପ ତାର ।
ମଝା ଗୋଟି ସରୁ ତାର ହୃଦୟ ବିସ୍ତାର ॥
ପୂର୍ଣ୍ଣମୀର ଚନ୍ଦ୍ରପ୍ରାୟେ ଶ୍ରୀମୁଖ ମଣ୍ଡଳ ।
ନୀଳ ଉତ୍ପଳ ନୟନ ଅଧର ବିମ୍ବ
ଫଳ ॥୨୦
କୃଷ୍ଣ ଚାମର ପ୍ରାୟେ କୁଟିଳ ଚାରୁ କେଶ ।
ପଦ୍ମ ପୁଷ୍ପ ପ୍ରାୟେକ ମୁଖର ସୁବାସ ॥
ନାସା ତିଳ କୁସୁମ ଦଶନ ମୁକୁତା ।
ବନ୍ଧୁଲି ପୁଷ୍ପ ଜାଣି ଅଧର ଦିଶେ ରତା ॥
ସର୍ବାଙ୍ଗ ସୁନ୍ଦେରୀ ସେ ମୁଂ ବାଉନିବି କିସ ।
ଜାଣିଥିଲେ ମେଘମାଳ କହିବ ସନ୍ଦେଶ ॥
ବିଦୁଲତା ପ୍ରାୟେକ ଦିଶଇ ଦେହକାନ୍ତି ।
ଅନ୍ୟ ସ୍ତିରୀ ଦେଖିଲେ ତା ତାକୁ କରନ୍ତି
ଭ୍ରାନ୍ତି ॥
ଅଣ୍ଡିର କୋକିଳ ପ୍ରାୟେ ଶୁଭଇ ତାର
ବାଣୀ ।
ପ୍ରିୟାର ବଚନେ ମୋର ତେସନେକ
ଜାଣି ॥୩୦
ଅଳକା ବନ୍ଧିଣ ତାହାର ମୁଖକୁ ପଡ଼ିଅଛି ।
ଅନ୍ୟ ଅବିଗୁଣ ପୁଣ ନାହିଂ କିଛି ॥
ଯେବେ ହେଂ ଦେଖିଲେ ତୁମ୍ଭେ ସନ୍ଦେଶ
କହିବ ।
ଲେଉଟି ବାରତା ମୋତେ ଦେଖିଲେ
ଆଣିଦେବ ॥
ମୁହିଂ ତୁମ୍ଭଙ୍କୁ କହଇ ମେଘମାନ ।
ଶ୍ରୀରାମ ନାମେଣ ମୁଂଯେ ଦଶରଥ ନାନ ॥
ସାବତ ଜନନୀ ମୋତେ ବନସ୍ତକୁ ପେଷି ।
ତେଣୁ ସେ ହରାଇଲି ସୀତୟା ଶୁଭ୍ରକେଶୀ ॥
ଶ୍ରୀରାମ ମୁଖରୁ ଯେସନ ବାଣୀ ଶୁଣି ।
ବଟବୃକ୍ଷ ଶିଖେ ଥାଇଣ ବକ ପକ୍ଷୀ
ଭଣି ॥୪୦
କିମ୍ପାଇଂ ମହାତ୍ମା ତୁ ହେଉଛୁ ଆରତ ।
କହସି କେବଣ ହୋ ହୋଇଲା ବିପରୀତ ॥
ମୂର୍ଖ ଜନ ପ୍ରାୟେ ହୋଇ ଅକାରଣେ କାନ୍ଦୁ ।
ସେ ତୋତେ ସମ୍ବାଦ କହିବେ ପୁଣ କାହୁଂ ॥
ଆମ୍ଭେ ସେ ଧର୍ମବକ ବୃକ୍ଷ ଶିଖେ ଥାଉ ।
ଯେ ଆମ୍ଭଙ୍କୁ ପଚାରଇ ଜାଣିଥିଲେ କହୁ ॥
ଶ୍ରୀରାମ ବୋଇଲେ ତୁ ଶୁଣସି ପକ୍ଷୀବର ।
ଅଯୋଧ୍ୟା କଟକେ ସେ ଅଟଇ ଆମ୍ଭ ଘର ॥
କର୍ମ ବିପାକେ ମୁଂ କଲଇ ବନବାସ ।
ପଞ୍ଚୁବଟୀ ବନେ ମୋର ଛିଡ଼ିଲା
ମୁହାଂସ ॥୫୦
ଘରଣୀକି କେହୁ ମୋର ଚୋରାଇଣ
ନେଲା ।
ସେହିଦିନୁ ମନ ମୋର ଅଥିର ହୋଇଲା ॥
ତେଣୁକରି ଯାହାକୁ ଦେଖଇ ପଚାରଇ ।
ଅତି ଦୁଃଖୀ ହୋଇଣ ମୁଂ ଅରଣ୍ୟେ ବଞ୍ଚଇ ॥
ଯେ ଯେ ଲକ୍ଷଣ ମୋହୋର ସାନଭାଇ ।
ଯେହାର ବିନୁ ମୋର ଅନ୍ୟ ଶାଖା ନାହିଂ ॥
ତୁ ଯେ ପକ୍ଷୀବର ସମାସ୍ୟା ଦେଲୁ ମୋତେ ।
ଯେ ମୋହୋର କଷ୍ଟଯାକ କହିଲଇଂ
ତୋତେ ॥

ତୁ ଯେ ପକ୍ଷୀବର ଉଚ୍ଚ ତରୁଶିଖେ ଥାଉ ।
ଅନେକ ଦୂରରୁ ତୁ ବାରତାମାନ ପାଉ ॥୬୦
ସୀତୟାର ବାରତା ତୁ ଜାଣୁ କି ହୋ ବକ ।
ଜାଣିଥିଲେଣ କହ ଛାଡୁ ମନୁ ଶୋକ ॥
ବକ ବୋଇଲା ଦେବ ଶୁଣିମା ମୋର ବାଣୀ ।
ସେ ସୀତ୍ୟାଙ୍କ ବାରତା ମୁଂ ଅଛଇ ଯେ ଜାଣି ॥
ପରଦିନ ସନ୍ଧ୍ୟା ସମୟର କାଳେ ।
ଲଙ୍କାର ରାବଣ ଯେ ସୀତ୍ୟାକୁ ହରିନେଲା ବଳେ ॥
ଗଗନ ମାର୍ଗେ ରଥ ବାହି ଘେନିଗଲା ।
ଦକ୍ଷିଣକୁ ମୁଖ କରି ଶୂନ୍ୟରେ ରଥ ନେଲା ॥
ଶ୍ରୀରାମ ଲକ୍ଷଣ ବୋଲି ଉଚ୍ଚେ କାନ୍ଦଇ ସୁନ୍ଦେରୀ ।
ମୋହୋର ଅଙ୍ଗେ ପଡ଼ିଲା ତାହାର ଅଶ୍ରୁବାରି ॥୭୦
ତେଣୁ ମୋହୋର ଦେହ ଯେ ଦିଶିଲା ଉଜ୍ଜ୍ୱଳ ।
ଯେ ମୋହୋର ବଂଶରେ ମୁଂ ଯେ ଦିଶିଲି ଧବଳ ॥
ସେ ନାରୀ ବୋଲୁଥିଲା ଦଶଦିଗ ଚାହିଂ ।
ଅଯୋଧ୍ୟାର ନୃପତି ଅଟନ୍ତି ମୋର ସାଇଂ ॥
ମୃଗ ମାରିତେ ଗଲେ ଶ୍ରୀରାମ ଲକ୍ଷଣ ।
ମାୟା କରି ବଳେ ମୋତେ ନେଉଛି ରାବଣ ॥
ଦେଖିଲେ କହିବଟି ବୃକ୍ଷର ପକ୍ଷୀମାନେ ।
ଲଙ୍କାଗଡ଼କୁ ମୋତେ ନେଉଛି ଦଶାନନେ ॥
ଯେମନ୍ତ ବୋଲିଣ ସେ ଯେ ବୋଇଲେ ଉତ୍ତର ।
ଦେଖିଲେ କହିବ ତୁମ୍ଭେ ତାକୁ ପକ୍ଷୀବର ॥୮୦
ଯେଣୁ ସେ ଡାକ ଦେଲେ ଥାଇଣ ବିମାନେ ।
ମୁହିଂ ସେ କଥା ଜାଣିଲି ଅନୁମାନେ ॥
ଅତ୍ୟନ୍ତ ସୁନ୍ଦରୀ ସେ ସୀତୟା ନାମେ ବାଳୀ ।
ଅନ୍ୟ ପଟାନ୍ତର ତାକୁ ନାହିଂନା ମହୀଆଳି ॥
ମୁହିଂ ସେ ବାରତା ଯେ ହିଆରେ ଅଛି ଧରି ।
ତୁମ୍ଭଙ୍କୁ କହିତେ ମୁଂ ଅଛଇ ବିଚାରି ॥
ତୋତେ ଦେଖିଲି ଦେବ ଯେ କହିଲି ବାରତା ।
ମହା ଗରୁ ହୋଇଥିଲା ସେ ସୀତୟାର କଥା ॥
ଯେବେ ଭୋ ଶ୍ରୀରାମ ତୁମ୍ଭେ ବିକଳିତ ନୁହ ।
ଯେକ ମୁଖ ହୋଇ ତୁମ୍ଭେ ଲଙ୍କାକୁ ଚଳିଯାଅ ॥୯୦
ଦେଖିଲାବେଳୁ ବିକଳ ହେଉଅଛି ମୋ ଦେହ ।
ଯେବେ ତୋତେ ବାରତା କହିଲି ଫିଟିଲା ସନ୍ଦେହ ॥
ବନ ଦୃଗା ପ୍ରାୟେକ ଘରଣୀ ତୋର ଗଲା ।
ଯେହାସେ ବିଧାତା ତୋର କର୍ମରେ ଲିହିଲା ॥
ଶୁଣିଣ ଶ୍ରୀରାମ ଯେ ପକ୍ଷୀବର ବାଣୀ ।
ପୁଣ ପୁଣ ପୁଚ୍ଛା ଯେ କରନ୍ତି ରଘୁମଣି ॥
ଭୋ ପକ୍ଷୀବର ତୁ ଅଟୁ ଉପକାରୀ ।
ସତେ କି ଦେଖିବି ମୁଂ ଜନେକ କୁମାରୀ ॥
ମାଗସି ବର ତୋତେ ହୋଇଲି ପ୍ରସନ ।
ବକ ବୋଇଲା ଦେବ ଶୁଣସି ରଘୁନାନ ॥୧୦୦
ମୁହିଂ ପକ୍ଷୀ ଜନ୍ତୁ ଯେ ଆହାର ଲୁବୁଧି ।
ଅନ୍ୟ ଉପଭୋଗେ ନାହିଂ ମୋର ସିଦ୍ଧି ॥
ତୁ ଯେବେ ଶ୍ରୀରାମ ହୋଇଲୁ ପ୍ରସନ ।
ବସିଲା ଠାବରେ ମୋତେ ମିଳିବ ଭୋଜନ ॥
ଯେ ଯେ ଘୋର ବରଷା ଅଟଇ ଚତୁର୍ମାସ୍ୟା ।
ଚରିଯିବାକୁ ମୋର ନ ବଳଇ ମନିସା ॥
ବସିଲା ଠାବରେ ଯେବେ ଆହାର ପାଇବଇଂ ।
ତେବେ ସେ ବଚନ ସିଦ୍ଧି ତୋର ହୋଇବ ଗୋସାଇଂ ॥
ଶ୍ରୀରାମ ବୋଇଲେ ତୋର ମନିସା ସିଦ୍ଧି ହେଉ ।
ଚତୁର୍ମାସ୍ୟାରେ ତୋର ଘରଣୀ ଆହାର ଆଣି ଦେଉ ॥୧୦
ତୁ ମହାସୁଖେ ବୃକ୍ଷ ଶିଖରେ ବସିଥିବୁ ।
ଚତୁର୍ମାସ୍ୟା ପାହିବା ଯାଏ ତୁ କାହିଁକି ନ ଯିବୁ ।
ବକ ବୋଇଲା ଦେବ ହୋଇଲା ମୋତେ କଷ୍ଟ ।
କେମନ୍ତେ ଭୁଂଜିବି ମୁଂ ଘରଣୀ ଉଚ୍ଛିଷ୍ଟ ॥
ଲୋକେଣ ଉପହାସ ଆବର ଧର୍ମହାନି ।
ନର୍କ ଗତି ପାଇବିନା ଗଲେଣ ସଂଯୀବନୀ ॥
ଶ୍ରୀରାମ ବୋଇଲେ ତୁ ନ ଜାଣୁ ଖଗପତି ।
ଯେହୁ ସେ ଯାହାର ଅଟଇ ଯୁବତୀ ॥
ସେ ସେ ଯେକ ପ୍ରାଣ ଅର୍ଦ୍ଧାଙ୍ଗ ଭାବେନୀ ।
ଜାତ ମୃତ୍ୟାଂଶ ଯୋଗ ଯେ କରଇ ପଦ୍ମଯୋନି ॥୨୦
ସ୍ତିରୀ ପୁରୁଷଟି ଅଟନ୍ତି ଯେକ କାୟା ।
ଲୋକେ ନ ଜାଣନ୍ତି ସବୁ ବିଧାତାର ମାୟା ॥
ଯେବଣ ସ୍ତିରୀ ଜାଣ ସ୍ୱାମୀରେ ଭଗତି ।
ସ୍ୟତୀ ସାଧେବୀ ସେ ତାକୁ ସ୍ୱର୍ଗରେ ପୂଜା ପ୍ରାପ୍ତି ॥
ମୋହୋର ବଚନ ନୁହଇ ପୁଣ ଆନ ।
ଚାରିମାସ ବରଷା ତୁ ବସିଥିବୁ ଶୁଷ୍କ ସ୍ଥାନ ॥
ଘରଣୀ ଆହାର ତୋତେ ଆଣି ଦେଉଥିବ ।
ଅଲଗେ ଭୁଂଜିବୁ ତୁ ଯେ ଅଣ୍ଟ ନ ଲାଗିବ ॥
ଉଛିଷ୍ଟ ଦୋଷ ବୋଲିଣ ଯେ ବୋଇଲୁ ପକ୍ଷୀବର ।
ସେ ଦୋଷ ନ ଲାଗିବ ତୋହୋର ଅଙ୍ଗର ॥୩୦
କାର୍ତ୍ତିକ ମାସରେ ଯେ ଶୁକ୍ଳପକ୍ଷ ଦଶମୀ ।
ପୂର୍ଣ୍ଣମୀ ପରିଯନ୍ତେ ଯେ ପାଞ୍ଚଦିନ ପୁଣି ॥
ଯେହୁ ପାଞ୍ଚଦିନ ଯେ ଭୁଂଜିବ ଆମିଷ ।
ସେ ଜନ ପାଇବ ଯେ ଯେଥିର ଯେତେ ଦୋଷ ॥

ଜନ୍ମଜନ୍ମାନ୍ତରେ ଯେ ଆମିଷ ଗନ୍ଧାଇବ
ତୁଣ୍ଡ ।
ନାନା ରୋଗ ଆଶ୍ରେ ଯେ କରିବ ତାର
ପିଣ୍ଡ ॥
ଆଜହୁଁ ଯେ ପାଞ୍ଚଦିନ ଯେ ବକପଞ୍ଚମୀ
ହେଉ ।
ଯେ ତୋହୋର କୀରତି ଯୁଗେ ଯୁଗେ ଥାଉ ॥
ଯେ ପାଞ୍ଚଦିନ ଯେହୁ ଛାଡ଼ିବ ଆମିଷ ।
ଚତୁର୍ମାସ୍ୟା ଫଳ ସେହୁ ପାଇବ
ଅବଶ୍ୟ ॥୪୦
ଶୁଣିଣ ସନ୍ତୋଷ ହୋଇଲା ପକ୍ଷୀବର ।
ଘରଣୀ ଶୁଣିଲା ତାର ଶ୍ରୀରାମ ଉତ୍ତର ॥
ତେଣୁ ସେ ସଂପ୍ରତେ ଗଲେ ବେନି ଜନେ ।
ରାମବଗୀ ବୋଲିଣ ଯେ ବୋଲନ୍ତି
ବିଦ୍ୟମାନ ॥
ଯେଥୁ ଅନନ୍ତରେ ହୋଇଲା ପ୍ରଭାତ ।
ଗଗନେ ଉଦୟେ ହୋଇଲେ ଆଦିତ୍ୟ ॥
ମେଘ ଉହାଡ଼ିଣ ଛାଇଲାକ ଖରା ।
ଘୋରବୃଷ୍ଟି କରିଣ ଦିଶଇ ଅନ୍ଧାରରାତ୍ର ପରା ॥
ଘୋର ଗର୍ଜନ କରି ମାରଇ ବିଜୁଳି ।
ଶୀତଳ ପବନ ଧୀରେ ଧୀରେ ଚଳି ॥୫୦
ଅଖଣ୍ଡିତ ଜଳଧାରା ଶ୍ରାବଣ ମାସେ କଲା ।
ନଦୀ ପୁଷ୍କରିଣୀମାନ ଯେକତ୍ର ହୋଇଲା ॥
ପୁଷ୍ପ ଗୋଟି ଗୋଟି ଯେ ଥୋଇଣ ଗଣୁଥାନ୍ତି
ଦିନ ।
ଦୁଇମାସ ବରଷା ଆସି ହୋଇଲା ସମ୍ପୂର୍ଣ୍ଣ ॥
ଯେମନ୍ତେ ଚାରିମାସ ବରଷା ଋତୁ ଗଲା ।
ଆଶିନ୍ୟ ଭାଦ୍ରବ ମାସ ଆସି ପ୍ରବେଶ
ହୋଇଲା ॥
ନିର୍ମଳ ଥିର ଜଳେ କୁମୁଦ ଫୁଟିଲା ।
ଅଯେଂଲା ବଉଳିଲା କରମଙ୍ଗା ପାଚିଲା ॥
ପତ୍ର ପଲ୍ଲବିଣ ଫୁଟଇ ମୁନିଗା ।
କାଶ କୁସୁମ ଫୁଟି ଫୁଟଇ ବାଲୁଙ୍ଗା ॥ ୬୦
ପାଚିଲା ନାରଙ୍ଗ ଆବର କରୁଣା ।
ନିର୍ମଳ ଆକାଶେ କି ଚନ୍ଦ୍ରମା ଉପମା ॥

ଶରଦ ଋତୁ ବାବୁ ପ୍ରବେଶିଲା ଆସି ।
ଲକ୍ଷଣ ମୁଖ ଚାହିଁ ଶ୍ରୀରାମଚନ୍ଦ୍ରେ ଭାଷି ॥
ଭାଦ୍ର ମାସ ବାବୁ ପନ୍ଦର ଦିନ ଗଲା ।
ସୂର୍ଯ୍ୟର କିରଣ ଦେଖ ତୀକ୍ଷଣ ବସିଲା ॥
ଅତିହିଁ ନିର୍ମଳ ଦେଖ ପବନ ବହଇ ।
କି ଜାଣି ସୂର୍ଯ୍ୟ ଦେଖ ସଂସାର ଦହଇ ॥
ଅକାରଣେ ଜୀମୂତ ପୂରଇ ଘନ ଘନ ।
ନବରଷି ଗର୍ଜିଣ ଦିଶଇ ଛନ ଛନ ॥୭୦
ରଜନୀରେ ଶୀତଳ ଦିବସେ ମହାତେଜ ।
ବୃକ୍ଷେ ଲୁଚି ଯାଉଛନ୍ତି ଲକ୍ଷଣ ଆହୋ
ଦେଖ ॥
କହୁଁ କହୁଁ ଶରଦ ଅନ୍ତର ହେଉଅଛି
ଆସି ।
ଅଚିନ୍ତ ହୋଇଲା ସୁଗ୍ରୀ କିଷ୍କିନ୍ଧ୍ୟାରେ ପଶି ॥
କେବଣ କାଳେ ମୋତେ ଦେବ ସୀତ୍ୟା
ଆଣି ।
ବରଷା ଗୁହାଇଲା ସରିଲାକ ପାଣି ॥
ଥାଠ ସଜ କରିଣ ସେ ଆସିବ କେତେ
ଦିନେ ।
ଲଙ୍କା ଛାଡ଼ି ନ ପୁଣ ପଳାଇ ରାବଣେ ॥
ସୀତ୍ୟାକୁ ନ ପୁଣ ପ୍ରାପତ ହୋଯେ ମୃତ୍ୟୁ ।
ମୋହୋର ମଲେଣ ଯେ ସରଇ ସର୍ବ
ତତ୍ତ୍ୱ ॥୮୦
ନ ପୁଣ ଲକ୍ଷଣରେ ହେଉ ପ୍ରାଣନାଶ ।
ସୁଗ୍ରୀବର ଯାଇନିକି ଯମପୁର ପାଶ ॥
ଆତ୍ମାଘାତେ ନ ପୁଣ ମରଇ ରାବଣ ।
ସୀତ୍ୟା ଚୋରି କରିବାର ତ ହୋଇବ
ଅକାରଣ ॥
ସୀତ୍ୟା କୋପେ ନ ପୁଣ ଦହଇ
ଲଙ୍କାପୁରୀ ।
ତେଣୁ ନିକି ତ୍ରାସେଣ ପଳାଇ ଦଶଶିରି ॥
ଯେତେ କଥା ମୋହୋର ଯେ ନିଷ୍ଫଳରେ
ଯିବ ।
ଯେବେ ଯେ ଡରେଣ ଯାଇ ସ୍ୱର୍ଗରେ
ବସିବ ॥

ଇନ୍ଦ୍ରପାଶେ ଥିଲେ ଯାଇ ଆଣିମି ଧରି ।
କେ ମୋହୋର ଶତୃକୁଟି ପାରିବ
ରକ୍ଷାକରି ॥୯୦
ରାବଣ ତୁଳେ ମୋହୋର ପଡ଼ିବ ଯେବେ
ଭେଟ ।
ତେବେ ସେ ଜାଣିମାନା ଉତ୍ତମ କନେଷ୍ଟ ॥
ନ ପୁଣ ଯେଥି ମୁଂ ଯେ ମରଇରେ ଭାଇ ।
ତହିଁକି ସେ ମନେ ମନେ ଭାଳୁଅଛି ମୁହିଁ ॥
ଲକ୍ଷଣ ବୋଇଲେ ଦେବ ସୁଗ୍ରୀର କିସ
ଦୋଷ ।
ତୁମ୍ଭେ ବୋଇଲ ସରୁ ବରଷା ଚାରିମାସ ॥
ତେଣୁ ସେ ଉଶ୍ୱାସ ଯେ ପାଇଲା କପିରାଜା ।
ପାରୁଶେ ସେବାକଲା ବାଳୀର ଭାରିଯା ॥
ବିଚାରିଲା ଦିନ ପାହିଲେ ସିନା ଯିବା ।
ଆଜହୁଁ କାହିଂପାଇଂ ଆରତ
ହୋଇବା ॥୧୦୦
ଆଶ୍ୱିନ କାର୍ତ୍ତିକ ଯେ ଭାଦ୍ରବ ଅଛି ପକ୍ଷେ ।
ଅଢ଼ାଇ ମାସ ଅଛି ସୁଗ୍ରୀବର ଲେଖେ ॥
ଶୁଣିଲେ ଶ୍ରୀରାମ ଯେ ଲକ୍ଷଣର ବାଣୀ ।
ହୋଇ ହୋଇ ବୋଇଲେ ଯେ
ରଘୁକୁଳମଣି ॥
ଶୁଣସି ପାର୍ବତୀ ଗୋ ବୋଲନ୍ତି ଶଙ୍କର ।
ସୀତ୍ୟାକୁ ହରାଇଣ ଯେ ଆକୁଳ ରଘୁବୀର ॥
ମାଲ୍ୟବନ୍ତ ପର୍ବତେ ବଞ୍ଚନ୍ତି ଚତୁର୍ମାସ୍ୟା ।
ସୁଗ୍ରୀବର ବଚନକୁ ଟେକିଛନ୍ତି ଆଶା ॥
ହନୁମତକୁ ଜମ୍ଭେବ ଆସିଥିଲେ କହି ।
ତୁମ୍ଭେ ସୁଗ୍ରୀବରକୁ ଦେବଟି
ଚେତୋଇ ॥୧୦
ସନ୍ୟ ଠୁଳ କରି ମାଲ୍ୟବନ୍ତକଇ ଯିବ ।
ଶ୍ରୀରାମକୁ ଘେନିଣ ଯେ ଲଙ୍କାକୁ
ଧାଡ଼ିଦେବ ॥
ସେ କଥା ଚେତୋଇଲା ପବନର ସୁତ ।
ସୁଗ୍ରୀବର ନିକଟକୁ ସେ ଗଲାକ ତୁରିତ ॥
ବୋଇଲା ମାତୁଳ ହୋ ଶୁଣ ମୋର ବାଣୀ ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ରଘୁମଣି ॥

ଯେବଣ ରାମ ତୋତେ କିଷ୍କିନ୍ଧ୍ୟା ଭୋଗ
ଦେଲା ।
ତାହାର କଥାରେ ତୁ ଯେ କିମ୍ପାଇଂ କରୁ
ହେଳା ॥
ବରଷା ଦୁଇମାସ ଭୋଗ କରି ଗଲା ।
ଶରଦ ଋତୁ ଆସି ନିକଟ ହୋଇଲା ॥ ୨୦
ତୁ ଯେ ବୋଲିଅଛୁ ଆଣି ଦେବୁ ସୀତ୍ୟା ।
ଶ୍ରୀରାମ ମାଇଲେ ଯେ ବାଳୀ ବଳବନ୍ତା ॥
ଶୀଘ୍ରେଣ ରାମ କାର୍ଯ୍ୟେ ହୁଅତୁ ତତ୍ପର ।
ଅନକୂଳ କରିଣ ତୁ ସନ୍ୟ ଠୁଳ କର ॥
ଶ୍ରୀରାମ କାର୍ଯ୍ୟକୁ ନ କର ଅଳସ ।
ତାହାର ଅନଗ୍ରହେ ପ୍ରାପତ ସର୍ବ ଯଶ ॥
ଇନ୍ଦ୍ର ସାହା ହୋଇଲେ ଯେବଣ ବାଳୀ
ଅଜୟେ ।
ସେ ଯଶ ଦେଲେ ତୋତେ ଶ୍ରୀରାମଚନ୍ଦ୍ର
ରାୟେ ॥
ତୁ ସ୍ୱାମୀ ସୁପୁରୁଷ ଅଟୁସି କପିରାୟେ ।
ଶ୍ରୀରାମର କାର୍ଯ୍ୟ ତୁ କରସି ଉପାୟେ ॥ ୩୦
ଶୁଣିଣ ସୁଗ୍ରୀବର ହୋଇଲା ହରଷ ।
ନୀଳ ସେନାପତିକି ହକାରିଲା ପାଶ ॥
ତାମ୍ବୁଳ ଦେଇଣ ତାକୁ ବୋଇଲା ତୁ ଶୁଣ ।
ଯେ ଭୂଅ ଖଣ୍ଡ ମେଦନୀ ଯେ ଦଶସହସ୍ର
ଯୁଣ ॥
ଦେଶ ବିଦେଶ ପର୍ବତ ବନ ଘୋର ।
ଯେତେ ରିକ୍ଷ କପି ଛନ୍ତି ଯେ ପୃଥି ଭିତର ॥
ସବୁଙ୍କୁ ହକାରିଣ ତୁ ଆଣ ଦୂତ ପେଷି ।
ଆଜ୍ଞୁ ଆଠଦିନେ ତୁ କହିବୁ ମୋତେ ଆସି ॥
ସୀତ୍ୟାଙ୍କର ସନ୍ଦେଶ ଯେ ଯାହାର ତହିଂ
ଥିବ ।
ଶ୍ରୀରାମର ତହିଂ ସେ ପଉରୋଷ
ପାଇବ ॥୪୦
ଯେଥୁ ଅନନ୍ତରେ ପୁଣ ଅଙ୍ଗଦକୁ ରାଇ ।
ଶ୍ରୀରାମର କାର୍ଯ୍ୟ ବାବୁ ନିକଟ ଆସିହୋଇ ॥
ଦୂତ ବରଗିଲେ କେ କରିବେ ଅଳସ ।
ଆପଣେ ଯାଇଣ ତୁ ସନ୍ୟ ଘେନି ଆସ ॥

ସାଧ୍ୟ ଲୋକକୁ ସେ ତୁ ଶାଢ଼ୀ ଦେଇ ଆଣ ।
ଅସାଧ୍ୟ ଲୋକକୁ ସେ ସଂଗ୍ରାମ କରି ଜିଣ ॥
ପୃଥିରେ ଅଛନ୍ତି ଯେତେ ରିକ୍ଷ ବାନର ।
ସମସ୍ତଙ୍କୁ ଆଣିବୁ ତୁ ପକ୍ଷେକ ଭିତର ॥
ଭାଦ୍ରବ ଶୁକଳ ଯେ ଚଉଠି ଆଜ ଦିନ ।
ଯେହିକ୍ଷଣି ବାବୁ ତୁ କର ବେଗେ
ଗମନ ॥୫୦
ସମସ୍ତ ତୁ ଆଣିବୁ ବାନର ରକ୍ଷ ବଳ ।
ଶୁଣିଣ ସଜ ହୋଇଲା ସେ ବାଳୀର
ଦୁଲାଳ ॥
ରାଜାର ଆଗ୍ୟାଂରେ ସେ ଶିରେ ଶାଢ଼ୀ ଧରି ।
ଶ୍ରୀରାମ କାର୍ଯ୍ୟେଣ ସେ ଗଲାକ ଖର କରି ॥
ସଙ୍ଗରେ ବାନର ବଳ ଅଛନ୍ତି ବହୁତ ।
ଆପଣେ ଆରୋହିଲେ ସୁବର୍ଣ୍ଣମୟେ ରଥ ॥
ପାଟଛତ୍ର ଆଲମ୍ବ ବିଳମ୍ବ ନିରନ୍ତର ।
ଢୋଲ ଦମା ଟମକ ଯେ ବାଜଇ ଅପାର ॥
ମେଦନୀ ବୁଲିଣ ସେ ବାନର ରକ୍ଷ ସାଧି ।
ଯେ ଯେମନ୍ତେ ଆସଇ ସେ ତେମନ୍ତ କଲା
ବୁଦ୍ଧି ॥୬୦
ଯେଥୁ ଅନନ୍ତରେ ଯେ ସୁଗ୍ରୀବର ରାୟେ ।
ଅଙ୍ଗଦକୁ ପେଷିଣ ନିଶ୍ଚିନ୍ତ ହୋଇ ରହେ ॥
ସୁଖ ପାଇଣ ସେ ପାଶୋରିଲା ଯହୁଂ ।
ଶ୍ରୀରାମ ଲକ୍ଷଣଙ୍କୁ ପଚାରିଲେ ତହୁଂ ॥
ଆଗ୍ୟାଂ ଦେଲେ ବାବୁରେ ଶୁଣ ତୁ ଲକ୍ଷଣ ।
ସୁଗ୍ରୀବର ବାନର ଅଟଇ ନିଲକ୍ଷଣ ॥
ନିଶ୍ଚିନ୍ତ ହୋଇ ଦେଖ ପାଶୋରିଲା ମୋତେ ।
ହୀନ ଜନ୍ତୁ ମର୍କଟ ସେ ଅଟଇ ଯୁଗତେ ॥
ଯେବଣ ସମ୍ପଦ ମୁଂ ଯେ ତାହାକଇ ଦେଲି ।
ବାଳୀ ପ୍ରାୟେ ଶତୃକୁ ମାରି ଅକଣ୍ଟେକ
କଲି ॥୭୦
ସେ ଗୁଣ ନ ଘେନିଲା ସୁଖ ଭୋଗ ପାଇ ।
ଆମ୍ଭର କଥା ହାଦେ ତାହାର ମନେ ନାହିଂ ॥
ବଇରି ହତ ଗଲା ସରିଲା ତାର ଚିନ୍ତା ।
ଚାରିମାସ ହେଲା ମୋତେ ନ ଦେଲା
ବାର୍ତ୍ତା ॥

ତୁ ହୋ ଲକ୍ଷଣ ଆଣସି ତାକୁ ଯାଇ ।
ହକରା ନ ଗଲେଣ ନ ଆସେ କପିସାଇଂ ॥
ଲକ୍ଷଣ ବୋଇଲେ ଦେବ ଏ ଆମ୍ଭର
ଦୋଷ ।
ଅକାରଣେ ବାଳୀକି କଲୁ ପ୍ରାଣେ ନାଶ ॥
ଭୟ ଛାଡ଼ିଲା ସେ କପିକୁଳ ରାୟେ ।
ନିଶ୍ଚିନ୍ତେ କିଷ୍କିନ୍ଧ୍ୟାରେ ସେ ସୁଖଭୋଗ
କୟେ ॥୮୦
ଯେହାକୁ ମାରି ଯେବେ ବାଳୀକି ରାଜ୍ୟ
ଦେନ୍ତୁ ।
ସେହି ନିକଟରେ ସୀତ୍ୟାକୁ ପାଇଥାନ୍ତୁ ॥
ବାଳୀ ସେ ବଳୀଆର ବୋଲନ୍ତି ଜଗତେ ।
ଲଙ୍କାର ରାବଣ ଅଟଇ ତାର ମୈତ୍ରେ ॥
ପ୍ରୀତି ପକ୍ଷକରି ପାରନ୍ତା ସେଅବା ଆଣି ।
ନୋହିଲେ ସଂଗ୍ରାମେ ତାକୁ ଜିଣନ୍ତା
କପିମଣି ॥
ତୁ ଦେବ ସୁଗ୍ରୀବର ଚାଟୁକୁ ବଶ ଗଲୁ ।
ଲାଭ ହାନି ଦୁଇ କଥା ବିଚାର ନ କଲୁ ॥
ବାଳୀର ଠାବକୁ ଆଗ ପେଷନ୍ତୁ ଯେବେ
ଦୂତ ।
ସେ ଯାହା ବୋଲନ୍ତା ତାହା ଶୁଣନ୍ତୁ
ବାରତ ॥୯୦
ବିନୋଇ ହୋଇଲେ ତାକୁ ନ ମାରନ୍ତୁ
ପ୍ରାଣେ ।
ବଢ଼ିମା କହିଲେ ପଛେ ଛେଦନ୍ତୁ ତୀକ୍ଷ
ବାଣେ ॥
ନୋହିଲେ ଦୁହିଂକି ଯେ କରିଦେନ୍ତୁ ଶମ ।
ନିଶ୍ଚିନ୍ତେ କାର୍ଯ୍ୟ ଆମ୍ଭର ହୁଅନ୍ତା ଶ୍ରୀରାମ ॥
ଯେବେ ବାଳୀ ମାରିଣ ରୁହାଇଲୁ ଯେକ ।
ନିଶ୍ଚିନ୍ତେ ଭୋଗ ସେ କଲା କିଷ୍କିନ୍ଧ୍ୟା
କଟେକ ॥
ଆମ୍ଭର କଥା କାହିଂ ଚିତୋଇ ଅଛି ମନେ ।
ଶୁଣିଣ ବୋଇଲେ ଶ୍ରୀରଘୁନନ୍ଦନେ ॥
ତୁହୋ ଲକ୍ଷଣ ଯେ ବୋଇଲୁ ଯେମନ୍ତ ।
ମୁହିଂ ଯାହା କଲି ଦେଖିଲେ ଜଗତ ॥୧୦୦

ଅଣାଶ୍ରିତ ଦୁଃଖୀ ଦେଖି ଦୟା ତାକୁ କଲି ।
ତେଡ଼େ ବଡ଼ ଶତ୍ରୁକୁ ମୁଁ ସଂହାରି ପକାଇଲି ॥
ସେ ଯେବେ ମୋହୋର ପାଇଂ ନୋହିବଟି
ହିତ ।
ଶୁଣିଲେ ଭଲନିକି ବୋଲିବେ ଜଗତ ॥
ଧର୍ମନିକି ସହିବ ସହିବ ନିକି ମହୀ ।
ବାଳୀପ୍ରାୟେ ହୋଇବନା ନ ବୁଝିଲେ
ସେହି ॥
ତୁମ୍ଭେ ଯେ ଲକ୍ଷଣ ହୋ କିଷ୍କିନ୍ଧ୍ୟାକୁ ଯିବୁ ।
ଯେ ମୋହୋର ଆଗ୍ୟାଂ ଯାଇ ସୁଗ୍ରୀକି
କହିବୁ ॥
ବୋଇଲେ ପ୍ରାଣେ ଯେବେ ଅଛଇ ତୋର
କାର୍ଯ୍ୟ ।
ଥାଟ ସଜ କରି ତୁ ବାହାର ହୁଅ ଆଜ ॥୧୦
ଯଦି ଅବା ଅଳସ ତୁ କରିବୁ କପି ରାଣ ।
ବାଳୀର ସଙ୍ଗକୁ ତୁ ଯିବୁଟି ଯେହିକ୍ଷଣ ॥
ଯେତେ ବୋଲି ଶ୍ରୀରାମ ଲକ୍ଷଣର ହସ୍ତେ ।
ବାଳୀ ବଧ କାଣ୍ଡକୁ ତୋଳିଦେଲେକ
ରଘୁନାଥେ ॥
କାଣ୍ଡ ଦେଇ ଲକ୍ଷଣକୁ ବୋଇଲେ
ରଘୁନାନ ।
ଯେ କାଣ୍ଡ ନେଇ ଦେଖାଇବୁ ସୁଗ୍ରୀବର
ରାଜନ ॥
ଯଦ୍ୟପି ଦେହରେ ଆଳସ୍ୟ ଧରିଥିବ ।
ଯେହି କାଣ୍ଡ ଦେଖିଲେଣ ସେ କ୍ଷଣେ ନ
ରହିବ ॥
ଯାଅସି ବାବୁରେ ହୁଅସି କଲ୍ୟାଣ ।
ଚାରିଦିନ ଭିତରେ ଯାଇ ସୁଗ୍ରୀବରକୁ
ଆଣ ॥୨୦
ମୂର୍ଖପଣ କରି ଯେବେ କରିବ ତୋତେ
ଧାପ ।
ତୁ ତାହାକୁ କୋପ ଆଉ ନ କରିବୁ ବାପ ॥
ଅନେକ କାଳରୁ ସେ ହୋଇଅଛି ଦୁଃଖୀ ।
ଚାରିମାସ ହୋଇଲା ସେ ହୋଇଅଛି ସୁଖୀ ॥
ଭୋଗ କରୁଅଛି ସେ ଅଇଶ୍ୱର୍ଯ୍ୟ ପଣେ ।
ଆମ୍ଭ କଥାମାନ ସେ ପାଶୋରିଅଛି ଯେଣେ ॥
ତୋତେ ଦେଖିଲେ ସିନା ହୋଇବ ସେ
ବଶ ।
କୋପ ନ କରିଣ ବାବୁ ଆଶ୍ୱାସି ଘେନି
ଆସ ॥
ସେ ମୋହୋର ମୈତ୍ର ତୋହୋର ଜ୍ୟେଷ୍ଠ
ଭାଇ ।
ତୁକାର ନ ବୋଲିଣ ଘେନି ଆସ
ଯାଇ ॥୩୦
ଅତି ଧାର୍ମିକ ସେ ତାରା ନାମେ ସତୀ ।
ତୋତେ ଦେଖି ସୁଗ୍ରୀବରକୁ ସେ ପେଷିବ
ତଡ଼ତି ॥
ଜମ୍ୱେବ ହନୁମତ ତାରାକ୍ଷ ସୁଷେଣ ।
ଅତିଅ ଧାର୍ମିକ ସେ ଅଟନ୍ତି ଚାରି ଜଣ ॥
ଯେହାଙ୍କୁ ବସାଇଣ ଯେ କହିବୁ ବାରତା ।
ବୋଇଲୁ ତୁହି ଆପଣେ ଆଣିଦେବି ସୀତ୍ୟା ॥
କାର୍ଯ୍ୟ ପାଇବା ଯାୟେ ସମସ୍ତ କହୁଥିଲ ।
ଯେବେ ତ ଶ୍ରୀରାମକୁ ଢାଳେହେଂ
ପାଶୋରିଲ ॥
ଯେହା ବୋଇଲେ ସେ ସଂକୋଚ
ପାଇବେ ।
ଯେ ତୋହୋର ସଂଗତେ ବାବୁ ତୁରିତେ
ଆସିବେ ॥୪୦
ଯାଅ ବାବୁ ଲକ୍ଷଣରେ ବିଳମ୍ୱ ନ କର ।
ତୋହୋର ଗଲେଣ ମୁଂ ହୋଇବି
ଯେକସର ॥
ଯେତେବେଳେ ଆସିଣ ଯେ ହୋଇବୁ
ମୋର କଟି ।
ତେତେବେଳଯାୟେ ବିସ୍ମୟେ ମୋର ମତି ॥
ତୋତେ ଦେଖିଲେ ସେ କରିବି ଆହାର ।
ଯେ ମୋହୋର ସତ୍ୟ ନିଶ୍ଚେ ଅଟଇ
ସୋଦର ॥
ଯାଅ ବାବୁ ଶୁଭେଣ ସୁଗ୍ରୀକି ଘେନି ଆସ ।
ତାହାର ବାହୁବଳେ ଆମ୍ଭକୁ ହୋଇ ଯଶ ॥
ଶୁଣିଣ ଲକ୍ଷଣ ଉଠିଲେ ତଡ଼ତି ।
ତ୍ରୋଣ ଦୁଇ କନ୍ଧରେ ଭିଡ଼ିଲେ
ସଉମିତ୍ରୀ ॥୫୦
ବାମକରେ ଧନୁ ଦକ୍ଷିଣ କରେ ଖଣ୍ଡା ଧରି ।
ଶ୍ରୀରାମକୁ ଓଳଗିଲେ ପ୍ରଦକ୍ଷିଣ କରି ॥
ମାନ.ଭର ହୋଇଣ ଉଠିଲେ ରଘୁନାଥ ।
ଶ୍ରୀକର ଦେଲେ ନେଇ ଲକ୍ଷଣର ମାଥ ॥
ମୁଧୁନି ଆଘ୍ରାଣ କରି ବୋଲନ୍ତି ରଘୁପତି ।
ପଥେ ସାହା ତୋତେ ହୁଅନ୍ତୁ ହେମବନ୍ତୀ ॥
ଅପ୍ରମାଦେ ଯାଇଣ କିଷ୍କିନ୍ଧ୍ୟାରେ ହୁଅ ।
ଯେ ମୋହୋର ବେଦନା ଯାଇ ସୁଗ୍ରୀବରେ
କହ ॥
ଯେତେ ବୋଲିଣ ଆଖି ଥନ ଥନ କଲେ ।
ମୁଖ ଶୁଖାଇବା ଦେଖି ଲକ୍ଷଣ କହିଲେ ॥୬୦
ଲକ୍ଷଣ ବୋଇଲେ ଦେବ ଶୁଣସି
ସୀତ୍ୟାକାନ୍ତ ।
ନ ପୁଣ ମନରେ ତୁ ଭାଲୁ ରଘୁନାଥ ॥
ଅଗ୍ୟାନ ହୋଇ ନ ପୁଣ ଯେଣେ ତେଣେ
ଯାଉ ।
ମୋହୋର ଥାଉ ଥାଉ ବ୍ୟାକୁଳ ମନ ହେଉ ॥
ବାହୁଡ଼ି ଆସି ପୁଣ ନ ଦେଖଇ ତୋତେ ।
ସଂପ୍ରତେ କରାଉ ଦେବ କହିଥାଅ ମୋତେ ॥
ଶ୍ରୀରାମ ବୋଇଲେ ତୁ ଶୁଣସିରେ ଭାଇ ।
ତୋତେ ଛାଡ଼ିଣ କି ମୋହୋର ହୋୟେ
ଯାଇ ॥
ଯେ ଘୋର ଅରଣ୍ୟେ ମୁଂ ନ ଜାଣଇ
ଦେଶ ।
କାହିଂ ପଶିବିଟି ମୁଂ କେ କରିବ
ବିଶ୍ୱାସ ॥୭୦
ତୋତେ ଛାଡ଼ିଣକି ରହିବ ମୋର ପ୍ରାଣ ।
ଯେ କଥା ମାୟା ପ୍ରାୟେ ମଣୁକି ଲକ୍ଷଣ ॥
ଶୁଣିଣ ଲକ୍ଷଣ ଗଳାକ ପିଠି ଦେଇ ।
ପଛେଣ ଗୋଡ଼ାଇ ଅଛନ୍ତି ରଘୁସାଇଂ ॥
ଲକ୍ଷଣ ବୋଇଲେ ଦେବ ବାହୁଡ଼ ତୁରିତେ ।
ସଚେତ ହୋଇ ବସିଥାଅସି ପର୍ବତେ ॥
ଭାଦ୍ରବ ପୂର୍ଣ୍ଣମୀ ଅଟଇ ଆଜ ତିଥି ।

ଲେଉଟି ଦ୍ୱିତୀୟାରେ ପ୍ରବେଶ ମୁହିଁ ଯେଥି ॥
ଯେତେ ବୋଲି ଲକ୍ଷଣ ଚରଣେ ପଡ଼ଇ ।
ବାହୁଡ଼ି ଯାଅ ବୋଲିଣ କର ଦୁଇ ଯୋଡ଼ଇ ॥୮୦
ଶୁଣିଣ ଶ୍ରୀରାମ ଅଇଲେ ବାହୁଡ଼ି ।
ହୃଦୟରେ ଅଶ୍ରୁଜଳ ପଡୁଅଛି ଝଡ଼ି ॥
ଲକ୍ଷଣ ଯିବା ପଥେ ନୟନ ଅଛି ପଡ଼ି ।
ଶୋକେଣ ରଘୁନାଥ ଆସନ୍ତି ବାହୁଡ଼ି ॥
ଲକ୍ଷଣ ହିଂ କିଛିଦୂରେ ସମ୍ବାଦ କରନ୍ତି ।
ଭୋ ରଘୁନାଥ ତୁମ୍ଭେ ଥାଅସି ମନ ମୁଛି ॥
ଶ୍ରୀରାମ ଆଗ୍ୟାଂ ଦେଲେ ବେଗେ ଯାଇ ଆସ ।
ତୋହୋର ଆସିବାଯାଏ ଅନ୍ଧାର ଦଶଦିଶ ॥
ତୋତେ ଦେଖିଣ ମୁଂ ମୁଛିଥିଲି ସୀତ୍ୟା ।
ଯେବେ ବିଚ୍ଛେଦ ମୋତେ କରୁଛି ବିଧାତା ॥୯୦
ଦେହ ଶୂନ୍ୟ ହୋଇଣ ମୁଂ ରହିଲିରେ ଭାଇ ।
ଭୋନାଥ ଯେକଥାଟି ପ୍ରମାଣ ଅଟଇ ॥
ମୋହୋର ଆସିବାଯାଏ ପ୍ରାଣ ଅଙ୍ଗେ ରଖ ।
ସୁଗ୍ରୀକି ଆଣିମି ନିଶ୍ଚେ ପ୍ରତଗ୍ୟାଂ ମୋର ଦେଖ ॥
ସୁଗ୍ରୀବର ନ ଅଇଲେ କାଟିବି ତାର ମୁଣ୍ଡ ।
ଅଙ୍ଗଦକୁ ଦେବଇଂ କିଷ୍କିନ୍ଧ୍ୟା ରାଜ୍ୟ ଖଣ୍ଡ ॥
ହନୁମତକୁ ପେଷିଣ ମୁଂ ଆଣିବି ସର୍ବ ଥାଠ ।
ହେଳେଣ ବିନାଶିବି ରାବଣ ପାପିଷ୍ଟ ॥
ଦଶଶିର ଛେଦିଣ ମୁହିଂ ଆଣିବଇ ସୀତ୍ୟା ।
କିମ୍ବାଇଂ ଅଗ୍ନିରେ ତୁ ପଶିବୁ ଜଗୁଜିତା ॥୧୦୦
ଦେହ ଥିଲେ ଦେବ ସକଳ ଭୋଗ ଅଛି ।
ପ୍ରାଣ ଗଲେ ଆଉ ଦେବ ନ ଯୋଗାଇ କିଛି ॥
ମାନ ଉଦ୍ଧରି ପାରି ଦେବ ଦେହରେ ପ୍ରାଣ ଥିଲେ ।
ସମସ୍ତ ଅକାରଣ ପ୍ରାଣଟି ହରାଇଲେ ॥
ଭୋ ନାଥ ଦୁଷ୍ଟ ବୁଦ୍ଧି ନ ଧରିବ ମନେ ।
ମୁହିଂ ବାହୁଡ଼ି ଆସିବି ନିଶ୍ଚୟେ ତିନିଦିନେ ॥
ଯେତେ କହି ଲକ୍ଷଣ ପଥ ବହିଗଲେ ।
ଶ୍ରୀରାମ ମଢ଼ିଆକୁ ବାହୁଡ଼ିଣ ଅଇଲେ ॥
ଯେକସର ହୋଇଣ ସେ ଭାଳୁଛନ୍ତି ବସି ।
ଅଗସ୍ତ୍ୟ ମୁନିବର ମିଳିଲେ ତହିଂ ଆସି ॥୧୦
ଦେଖିଣ ଶ୍ରୀରାମ ଉଠିଲେ ଆସନୁ ।
ନମସ୍କାର କଲେ ତାଙ୍କୁ ତଳେ ଥୋଇ ଧନୁ ॥
କୃଷ୍ଣାଜିନ ଛାଲେ ନେଇ ବସାଇଲେ ତହିଂ ।
କୁଶଳ ପୁଚ୍ଛାପୁଚ୍ଛି ହୋଇଲେ ବେନି ତହିଂ ॥
ଶ୍ରୀରାମକୁ ଦେଖିଣ ସେ ବୋଲନ୍ତି ତପୋବନ୍ତ ।
ଅତିଅ ଦୁର୍ବଳ ତ ହୋଇଲୁ ସୀତ୍ୟାକାନ୍ତ ॥
ସର୍ବାଙ୍ଗ କଳା ଲୋମ ଦିଶିଲା କଯେଂର ।
ଶୋଭା ପାଉନାହିଂ ତୋର କୋଦଣ୍ଡ ଧନୁଶର ॥
ଖିନ୍ ହୋଇଲା ତନୁ ଦିଶିଲା ଅବସ୍ଥା ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣିମା ବ୍ରହ୍ମବେତା ॥୨୦
ମୁହିଂ ରାଜକୁମାର ନାନା ସୁଖେ ଥିଲି ।
ଦେଶ ଛାଡ଼ି ଯେବେ ଅରଣ୍ୟକୁ ଅଇଲି ॥
ଦଶରଥ ପ୍ରାୟେକ ପିଅର ମୋର ମଲା ।
ପ୍ରିୟବତୀ ଭାରିଯାକୁ ରାବଣ ହରିନେଲା ॥
କେବଣ ପୁନ୍ୟରେ ଅଛଇ ପ୍ରାଣ ରହି ।
ଦେହ କଥାକୁ ଯେବେ ସଂଶୟ କର ନାହିଂ ॥
ଯେ ମୋର ଉପର ବଂଶେ ସଗର ରାଜା ଥିଲେ ।
ସପତ ସମୋଦ୍ରଯାକ ସେ ରାଜା ଭିଆଇଲେ ॥
ଆପଣା ନାମ ଦେଇ ପ୍ରତିଷ୍ଠା କରାଇଲେ ।
ଯୁଗେ ଯୁଗେ ସଂସାରରେ କୀରତି ରଖିଲେ ॥୩୦
ତହୁଂ ଚାରି ପୁରୁଷେ ଭଗୀରଥ ଜାତ ।
ତାହାଙ୍କର ମହିମା ଜଗତେ ବିଦିତ ॥
ବିଷ୍ଣୁର ଚରଣୁ ସେ ଆଣିଲେ ସୁରେଶ୍ୱରୀ ।
ତେଣୁ ସେ ସପତ ସମୋଦ୍ର ପବିତ୍ର ଜଳ ପୂରି ॥
ଯେ ମହୀମଣ୍ଡଳେ ସେ ପବିତ୍ର କରାଇଲା ।
ଭାଗୀରଥି ଗଙ୍ଗା ବୋଲି ନାମେକ ବହିଲା ॥
ହରିଚନ୍ଦନ ସେ ନହୁଷ ନୃପତି ।
ଅଜ ଦଶରଥ ଆଦି ଅନେକ ମହୀପତି ॥
ଯେହାଙ୍କ କୀରତି ମୁନି ପୁରାଣେ କହିଲା ।
ଆଜଯାଏ କୀର୍ତ୍ତି ତାଙ୍କର ସଂସାରେ ରହିଲା ॥୪୦
ସେହୁ ରଘୁବଂଶେ ମୁହିଂ ହୋଇଲଇଂ ଜନ୍ମ ।
ମୋହୋର ଭାଗ୍ୟରେ ମୁଂ ଅର୍ଜିଲି ଯେଡ଼େ କର୍ମ ॥
ଯେକା ଭାରିଯାକୁ ମୁଂ ନ ପାରିଲି ରଖି ।
ମୋହୋର ତହୁଂ ମୁନି ନାହିଂନା ନିର୍ମାଖି ॥
ଯେତେ କହି ଶ୍ରୀରାମ କରନ୍ତି ରୋଦନ ।
ନୟନୁ ଅଶ୍ରୁଜଳ ବହଇ ଘନ ଘନ ॥
ମୁନି ବୋଇଲେ ଶ୍ରୀରାମ ନୁହସି ତୁହି ବାଇ ।
ସନ୍ଥ ଜନଙ୍କର ଗତି ଯେମନ୍ତ ନୋହଇ ॥
ସଂସାର ମାୟା ଯେହୁ ଅନିତ୍ୟ ସକଳ ।
ଧନ ଯଉବନ ଯେହୁ ସମସ୍ତ ବିଫଳ ॥୫୦
ମେଘର ପ୍ରାୟେ ଯେହୁ ହୁଅଇ ଆତଯାତ ।
ଖଳ ଲୋକଙ୍କର ପୀରତି ଯେମନ୍ତ ॥
ନୂଆ ପଦାର୍ଥ ହିଂ ଥୋଇଲେ ପୁରୁଣା ।
ସଦା ସର୍ବଦା ଯେ ନୁହଇ ପୁରୁଣା ॥
ଯୁବତୀମାନଙ୍କର ଯଉବନ ଅଳପେ ଯେହ୍ନେ ଯାଇ ।
ଇତର ଜନନିକି ଧନ ଥୋଇଥାଇ ॥
ଯେହାନ୍ତ ଘେନିଣ ସେ ସଂସାର ରଞ୍ଜିଲା ।
ଯେଡ଼େ ମାୟା କଥା ଗୋଟା ସମ୍ପ୍ରତେ କରାଇଲା ॥
ତୁ କିମ୍ବା ରଘୁନାଥ ହେଉଛୁ ବିକଳ ।
ଯାହା ପୂର୍ବେ ଅର୍ଜିଅଛୁ ଭୁଂଜିବୁ ସେ ଫଳ ॥୬୦
ତୁ ବୋଇଲୁ ରାମରାଜ୍ୟରୁ ଅଇଲି ।
ବନଜନ୍ତୁ ପ୍ରାୟେ ହୋଇ ଅରଣ୍ୟେ ବାସକଲି ॥

ଦଶରଥ ପ୍ରାୟେକ ପିତା ମୋର ମଲା ।
ସୀତୟା ପ୍ରାୟେକ ଘରଣୀ ହଜିଲା ॥
ଯେ କଥା ରାମ ତୋର ଅଟଇ ଯୁଗତ ।
ପୁଣିହିଂ ସମ୍ପଦ ତୋତେ ହୋଇବ ପ୍ରାପତ ॥
ରାଜ୍ୟ ହିଂ ପାଇବୁ ପାଇବୁ ତୋର ସୀତ୍ୟା ।
ଯେକା ମାତ୍ର ନ ପାଇବୁ ଦଶରଥ ପିତା ॥
ତୋହୋର ମନ କଲେ ତାହାକୁ ଦେଖିବୁ ।
ଯେ କଷ୍ଟ ସହି ତୁ ଅସୁର ନାଶିବୁ ॥୭୦
ଦେବତାକୁ ଦଳିଲା ସେ ବିଶର୍ବା ତନୟେ ।
ତେଣୁ ସେ ସୁରଗଣେ ତୋତେ ଜାତ କୟେ ॥
ଅନ୍ୟ ହସ୍ତେ ଯହୁଂ ରାବଣ ନ ମରି ।
ପ୍ରତକ୍ଷେ ଅଟୁ ତୁହି ଦେବ ଚକ୍ରଧାରୀ ॥
ତେଣୁ ସେ ଦେବେ ତୋତେ ବନବାସ ବିହିଲେ ।
ଶ୍ରୀରାମ ଅଗ୍ରତେ ଯେହା ଅଗସ୍ତି କହିଲେ ॥
ଯେସନେକ ସମୟେ ପ୍ରବେଶ ମାରକଣ୍ଡ ।
କରେ ଘେନିଛନ୍ତି ବାୟେଂଶର ତ୍ରିଦଣ୍ଡ ॥
ଯେକସରେ ଭ୍ରମନ୍ତି ସେ ପରମହଂସ ଦୀକ୍ଷା ।
ସଙ୍ଗେ ଗୋଡ଼ାଇ ଅଛନ୍ତି ସେ କାମେଧେନୁ ବଛା ॥୮୦
କଷାକଉପୁନୀ ରୁଦ୍ରାକ୍ଷ କମଣ୍ଡଳ ।
ଯାଉଂଳି ପିଙ୍ଗଳ ଜଟା ଅଛଇ ବୃଷାଳ ॥
ଯେସନେକ ରୂପ ଧରି ପ୍ରବେଶ ତପଚାରୀ ।
କପାଳେ ବିଭୂତି କାଖରେ ଅଧାରି ॥
ଦେଖିଣ ଶ୍ରୀରାମ ନମସ୍କାର କଲେ ।
ଆସନ ନେଇ ତାହାଙ୍କୁ ବସିବାକୁ ଦେଲେ ॥
ମାରକଣ୍ଡେ ବୋଇଲେ ଯେ ଅଗସ୍ତିଙ୍କି ଚାହିଂ ।
ଯେହି ଶ୍ରୀରାମ ପରା ସୀତ୍ୟାଦେବୀ ସାଇଂ ॥
ଭାଇ ଲକ୍ଷଣ ଯେୟାର କେବଣ କତି ଗଲା ।
ଯେହାର ଘରଣୀକି ପରା ରାବଣ ହରିନେଲା ॥୯୦
ଦଶରଥ ରାଜା ପରା ପିଅର ଯେହାର ।
ଅଯୋଧ୍ୟା କଟକରେ ଅଟଇ ଯେହାର ଘର ॥
ଯେହାକୁ ବିଶ୍ୱାମିତ୍ର ପରା ନେଲେ ଆସି ।
ଅଗମ୍ୟ ବନେ ପରା ତାଡ଼େକୀ ବିନାଶି ॥
ଯଜ୍ଞ ରଖିଣ ପରା ଯେ ଅହିଲାକୁ ତାରି ।
ଶିବଧନୁ ଭାଜିଂ ବିଭାହେଲେ ଜନେକ କୁମାରୀ ॥
ପ୍ରଶୁରାମକୁ ଜିଣିଲା ପରା ଯେହୁ ରଘୁଶିଷି ।
ପିତା ଆଗ୍ୟାଂ ପାଳିଣ ବନକୁ ଅଛି ଆସି ॥
ଯେହା ଶୁଣି କହନ୍ତି ଅଗସ୍ତି ମୁନିବର ।
ଯେହିଟି ଶ୍ରୀରାମ ବିଷ୍ଣୁ ହୋଇଛି ଅବତାର ॥୧୦୦
କର୍ମର ଅବଳେ ଯେ ବହୁତ କଷ୍ଟ ପାୟେ ।
ପୂର୍ବର ଲେଖନ ମେଣ୍ଟଣ ନ ଯାୟେ ॥
ରାଘେବ ମୁଖ ଚାହିଂଣ ବୋଲନ୍ତି ଅଗସ୍ତି ।
ଯେହିଟି ଶ୍ରୀରାମ ହେ ମାରକଣ୍ଡ ଯତି ॥
ପ୍ରଳୟ କାଳେ ଯେହାକୁ ଦେଖିଣ ନାରାୟଣ ।
ଗର୍ଭେ ଠାବ ଦେଲେ ନେଇ କମଳାରମଣ ॥
ପୁଣ ମୁଖ ବିସ୍ତାର କରିଣ ବାହାର କରିଦ୍ୟନ୍ତି ।
ସଂସାର ରଚ୍ଚନାୟେ ଅନେକ ଦେଖନ୍ତି ॥
ଯେ ମୁନି ପ୍ରତକ୍ଷରେ ଅଟନ୍ତି ଦେବ ହରି ।
ତୁହି ଦେଖିଲୁ କଷ୍ଟ ଗଲାକ ତୋହୋରି ॥୧୦
ଶୁଣିଣ ପୁଣ ପୁଣ ଓଳଗନ୍ତି ରଘୁମଣି ।
ଧନ୍ୟ ହୋଇଲି ଆଜ ମୁଂ ଦେଖିଲି ମୁନିମଣି ॥
ଭୋ ମାରକଣ୍ଡ ମୁଂ ଦେଖି ନାହିଂ ତୋତେ ।
ଯେ ମୋହୋର କଷ୍ଟ ଦେଖି ଦୟା କଲୁ ଚିତ୍ତେ ॥
ଅନ୍ୟ ଲୋକ ହୋଇଲେଣ ମରନ୍ତାନ୍ୟ ଝୁରି ।
ପୂର୍ବର ଭାଗ୍ୟେଣ ମୁଂ ଅଛଇ ପ୍ରାଣ ଧରି ॥
ବନବାସ ଅଇଲାରେ ପିତା ମୋର ମଲା ।
ମୋହୋର ଘରଣୀକି ରାବଣ ହରିନେଲା ॥
ଯେହେର୍ଣେକ ଦୁଃଖରେ ମୁଂ ଅଛଇ ରହି ।
ସୁଗ୍ରୀବର ଅଛି ମୋତେ ପ୍ରତିଆଶା ଦେଇ ॥୨୦
ସେହି ମହାଦୁଃଖୀ ହୋଇ ଋଷିମୁଖେ ଥିଲା ।
ମାତଙ୍ଗ ବନେ ମୋତେ ସେ ଯାନ୍ତେଣ ଭେଟିଲା ॥
ତାହାଙ୍କର ସଙ୍ଗତେ ମୁଂ ମୈତ୍ରେୟ ହୋଇଲି ।
ବାଳୀ ନୃର୍ପତିକି ମୁଂ ନାରାଜ ମାଇଲି ॥
କିଷ୍କିନ୍ଧ୍ୟା କଟକେ ମୁଂ ମିତ୍ରକୁ କଲି ରାଜା ।
ସେ ବୋଇଲେ ଆଣିଦେବି ତୁମ୍ଭର ଭାରିଯା ॥
ଚାରିମାସ ପାହିବାକୁ କଷ୍ଟ କରିଗଲେ ।
ରାଜଭୋଗ ପାଇଣ ସେ ନିଷ୍ଚିନ୍ତ ହୋଇଲେ ॥
ବିଳମ୍ବ ଦେଖିଣ ପେଷିଲଇଂ ଲକ୍ଷଣ ।
ଭୋ ମୁନିବର ସେହୁ ଗଲାକ ଯେହିକ୍ଷଣ ॥୩୦
କେତେଦିନେ ମୁଂ ଯେଥରୁ ହୋଇବଇଂ ପାର ।
ଯେ ଦେହ ବହିବାର ଅଟଇ ଅସାର ॥
ଯେତେକ କହିଣ ରାମ କ୍ରୋଧଭର ହୋନ୍ତି ।
ଅଗସ୍ତି ମାରକଣ୍ଡ ବହୁତ ତିଆରନ୍ତି ॥
ତୁ ରାମ ମନେ ଚିନ୍ତା ନ କରନି ଆଉ ।
ଆସନ୍ତା ଯେହି ଦିନେ ହୋଇବୁ ଅଯୋଧ୍ୟାରେ ମହାବାହୁ ॥
ଆମ୍ଭର ବଚନ ଅଟଇ ଯେବେ ସତ ।
ଯେତେ କହି ଦୁଇ ମୁନି ଉଠିଲେ ତୁରିତ ॥
ବାଟରେ ମାରକଣ୍ଡ ଅଗସ୍ତିକି ପୁଚ୍ଛି ।
ବୋଲୁ ଯେ ଭୋ ମୁନି ବିଷ୍ଣୁ ଜନମ ହୋଇଅଛି ॥୪୦
ଯେହାର ଦୁଃଖ ଦେଖ କହିଲେ ନ ସରଇ ।
ବିଷ୍ଣୁର କଳା ତ ଯେହାର ଅଙ୍ଗରେ କିଛି ନାହିଂ ॥
ଯେବେତ ଦେଖିଲି ଯେହାର ଅନେକ ଅବସ୍ଥା ।
ଧନୁଶର ବହଇ ପିଙ୍ଗଳ ବର୍ଣ୍ଣ ଜଟା ॥
ଦେହରେ ଲକ୍ଷଣ ତ ଯେହାର କିଛି ନାହିଂ ।
କେହ୍ନେ ବୋଇଲୁ ତୁହି ଯେ କମଳାର ସାଇଂ ॥

ମାରକଣ୍ଡେୟ ବଚନେ ବୋଲନ୍ତି ଅଗସ୍ତି ।
ଯେହି ଶ୍ରୀରାମଟି କମଳାର ପତି ।
ଯହୁଁ ସେ ଦେବତାଙ୍କୁ ରାବଣ ଦୁଃଖ ଦେଲା ।
ବିଷ୍ଣୁର ଆଗରେ ବ୍ରହ୍ମା ଗୁହାରି ଯାଇ କଲା ॥୫୦
ଶୁଣିଣ ଶ୍ରୀହରି ପ୍ରତଗ୍ୟାଂ ବହୁତ କରି ।
ଆମ୍ଭ ମାନ ଉଦ୍ଧରିବା ଦେବ ରାବଣଙ୍କୁ ମାରି ॥
ଶୁଣିଣ ନାରାୟଣ ବୋଇଲେ ବଚନ ।
ଯାଅ ଦେବତାଯେ ଯେବେ ତୁମ୍ଭର ନିଜ ସ୍ଥାନ ॥
ଅବଶ୍ୟ ତୁମ୍ଭର ମୁଁ ଯେ ଫେଡ଼ିବଇଁ କଷ୍ଟ ।
ନାରାଜେ ବଧିବଇଁ ଅସୁର ଦର୍ପିଷ୍ଟ ॥
ନ ଧରିବି ଶଙ୍ଖ ଚକ୍ର ନୋହିବି ଚକ୍ରକର ।
ନ ଚଢ଼ିବି ଗରୁଡ଼ ମୁଁ ବିନତା କୁମର ॥
ନୋହିବି ଦେବତା ମୁଁ ଯେ ନୋହିବଇଁ ଅସୁର ।
ନ ଥିବ ଗଜବର ପାଦାନ୍ତି ଅଶ୍ୱବର ॥୬୦
ଯେକାଳେ ଧୁମାନ୍ତିବି ଶତ୍ରୁ ତୁମ୍ଭର ଯେ ଘାନ୍ତି ।
ଯେତେ କହି ବୋଧ କଲେ ବ୍ରହ୍ମାକୁ ଶିରୀପତି ॥
ଯେତେ ବୋଲି ଶ୍ରୀରାମ ପ୍ରତଗ୍ୟାଂନ୍ତ କରି ।
ଦଶରଥ ଘରେ ଯାଇ ପୃଥିରେ ଅବତରି ॥
ରାବଣ ମାରିବା ଅର୍ଥେ ବନକୁ ଯେହୁ ଆୟେ ।
ତୁ ନିକି ବୁଝୁ ଯେହାକୁ ମାନବ ପରାୟେ ॥
ଯେ ସେ ପରମବ୍ରହ୍ମ ଭଗତ ବଛଳ ।
କଉସ୍ତୁଭମଣି ହାର ଲମ୍ବଇ ବକ୍ଷସ୍ଥଳ ॥
ଆଜହୁଁ ଦୁଇଶ ବୟାଳିଶ ଦିନ ଗଲେ ।
ରାମକୁ ଦେଖିତେ ମୁନି ଆସିବୁ ମୋର ତୁଲେ ॥୭୦
ରାବଣକୁ ମାରିଣ ଆଣିବେ ଯେବେ ସୀତ୍ୟା ।
ଅଯୋଧାରେ ପ୍ରବେଶ ହୋଇବେ ଜଗଜିତା ॥
ଇନ୍ଦ୍ରାଧି ଦିଗପାଳେ ମୂର୍ତ୍ତିବନ୍ତ ହୋଇ ।
ବ୍ରହ୍ମାଦି ଶଙ୍କର ସହିତେ ଥିବେ ରହି ॥
ସେ ଦିନେ ଦେଖିଲେ ଫିଟିବ ତୋର ଭ୍ରାନ୍ତି ।
ଯେତେ କହି ମୁନି ନିଜ ସ୍ଥାନ ଯାନ୍ତି ॥
ଶୁଣସି ପାର୍ବତୀ ଗୋ ବୋଲନ୍ତି ଶୂଳ ପାଣି ।
କଷ୍କିନ୍ଧ୍ୟାକାଣ୍ଡ ଯେ ଅମୃତ ରସ ବାଣୀ ॥
ସାମବେଦୁଂ ସମ୍ଭୂତ ଯେ ବାଲମିକ ମୁନି କଲେ ।
ବ୍ରହ୍ମାଯେ ପ୍ରସନ୍ନ ହୋଇ ସେ ମୋତେ ଶୁଣାଇଲେ ॥୮୦
ତେଣୁ ସେ ସଂସାର ଜନେ ହୋଇଲେ ମୁକତ ।
ଯାହା ସେ ବୋଲି ପୁଣ ମନ୍ତ୍ର ସାରସ୍ୱତ ॥
ଯେଣୁ ସେ ମହାପାପ ତୋର ହୋଇବାକ ବହି ।
ମୁହିଂ ତୋହୋର ଆଗେ କହିବିରେ ସହି ॥
ଶୁଣିଣ କୃତାର୍ଥ ହୁଅ ଶାକାମ୍ଭେରୀ ।
ସକଳ ପାପ ଅଙ୍ଗୁ ହୋଇବ ଅପହାରି ॥
ଶ୍ରୀରାମଚନ୍ଦ୍ରଙ୍କ ଦୁଃଖ କାଳର ଯେହି କଥା ।
ଶୁଣନ୍ତା ପଢ଼ନ୍ତାରେ ଫିଟଇ ମନବ୍ୟଥା ॥
ଯେଥୁ ଅନନ୍ତରେ ଶୁଣ ଗୋ ସଂଘାତୁଣୀ ।
ଲକ୍ଷଣ ଗଲେକ କିଷ୍କିନ୍ଧ୍ୟାକୁ ପୁଣି ॥ ୯୦
ବେଳ ଅସ୍ତ ସମୟେ ଯାଇ ହୋଇଲେ ପ୍ରବେଶ ।
ମାଲ୍ୟବନ୍ତ ପର୍ବତକିଷ୍କିନ୍ଧ୍ୟା ଯେ ଚଉଦବିଂଶ କୋଶ ॥
କୋପଭରେ ହୋଇଯାଇ ପ୍ରବେଶ ହୋଇଲା ।
ନୟନର ତେଜେ ଲୋକଙ୍କୁ ତ୍ରାସିଲା ॥
ଦେଖିଣ ନଗ୍ର ଲୋକେ କରନ୍ତି ବିଚାର ।
ଦ୍ୱତୀୟ ଆଦିତ୍ୟକି ମେଦନୀରେ ଅବତାର ॥
କି ଅବା କାମଦେବ ଭ୍ରମିତ ଅଇଲା ।
କି ଅବା ଶଙ୍କରଟି ଯେ ରୂପ ଧଇଲା ॥
କେ ବୋଲଇ ଯେହୁ ଯେ ପ୍ରଶୁରାମ ବୀର ।୧୦୦
କ୍ଷେତ୍ରୀୟ ମାଇଲା ଯେ ଯେକୋଇଶ ବାର ॥
କେ ବୋଲଇ ତୁମ୍ଭେ ହୋ ନ ଚିହ୍ନଲ କେହି ।
ଶ୍ରୀରାମର ଅନୁଜଟି ଲକ୍ଷଣ ବୀର ଯେହି ॥
ଯାହର ଯେକ କାଣ୍ଡେ ବାଲୀ ବୀର ମଲା ।
ସୁଗ୍ରୀବରକୁ ସୁଖ ସମ୍ପଦ ଯେହୁ ଦେଲା ॥
ସେ ରାମର ଭାଇଟି ଅଟଇ ଲକ୍ଷଣ ।
ନୋହିଲେ କି ଅନ୍ୟ ଦିଶଇ ବିଚକ୍ଷଣ ॥
ମାଲ୍ୟବନ୍ତ ପର୍ବତେ ଅଛନ୍ତି ରାମ ରହି ।
ଲକ୍ଷଣ ଆସିଛନ୍ତି ସନ୍ୟ ନେବା ପାଇଁ ॥
ଉତ୍ତର ଦେଖିଣଟି ପେଷିଲେ ରଘୁନାଥ ।
ବାଳୀ ବଧ କାଣ୍ଡ ଦେଖ ଅଛଇ ପୁଣ ହସ୍ତ ॥୧୦
ଯେ କାଣ୍ଡ ମାରିନିକି ସୁଗ୍ରୀକି କରନ୍ତି ନାଶ ।
ଯେତେ ବିଚାରିଣ ଲୋକେ ପାଇଲେ ମନେ ତ୍ରାସ ॥
ବନଜୀବ ମଧେ ଯେହ୍ନେ କେଶରୀ ଶୋଭାବନ ।
କିଷ୍କିନ୍ଧ୍ୟାରେ ଲକ୍ଷଣ ଦିଶଇ ତେସନ ॥
ରାଜାର ସିଂଘଦ୍ୱାରେ ମିଳିଲେକ ଯାଇ ।
ଦ୍ୱାରପାଳକୁ ସେ ବୋଇଲେକ ତାହିଂ ॥
ବେଗ କରିଣରେ ସୁଗ୍ରୀକି କହ ଯାଇ ।
ଲକ୍ଷଣ କୁମାର ଆସି ଦ୍ୱାରେ ଅଛଇ ॥
ଶୁଣିଣ ଦ୍ୱାରପାଳ ଗଲାକ ଭିତର ।
ଯାଇଣ ଜଣାଇଲା ସେ ରାଜାର ଛାମୁର ॥୨୦
ରାଜା ପଚାରଇ ସେ କେବଣ ହିଂ କଥା ।
କିମ୍ପାଇ ଆମ୍ଭାକୁ ତୁରେ ପାଅ ଯେତେ ବ୍ୟଥା ॥
କରପତ୍ର ଯୋଡ଼ିଣ ସେ କହଇ ପଡ଼ିହାରୀ ।
ଶୁଣ ଦେବ ଠାକୁର ହେ କିଷ୍କିନ୍ଧ୍ୟା ଦଣ୍ଡଧାରୀ ॥
ଦ୍ୱାରେ ଧନୁ ଧରିଣ ପୁରୁଷେ ମିଳେ ଆସି ।
ଖଡ଼ଗ ଧରିଣ ସେ ବୋଇଲା କହସି ॥
ବୋଇଲା ସୁଗ୍ରୀକି ତୋରରେ କହ ବେଗେ ଯାଇ ।
ଲକ୍ଷଣ ଆସିଣ ଦ୍ୱାରେ ଅଛନ୍ତି ଉଭାହୋଇ ॥

ତାହାର ବଚନକୁ ଦେବ କଲୁ ଭୟେ ।
କେବଣ ମହାତମା ସେ ବିଚାର କର
ରାୟେ ॥୩୦
ଶୁଣିଣ ସୁଗ୍ରୀବର କୋପ କଲା ଧାତି ।
ଦୂତକୁ ବୋଇଲାରେ କାହିଂର ସେହୁ
କ୍ଷେତ୍ରୀ ॥
ରତ୍ନଖଟ ଦୋଳିରେ ସୁଗ୍ରୀବର ଶୋଇଥିଲା ।
ନିଦ୍ରାର ଅଳସେ ସେ ଚେତୋଇ ନ
ପାରିଲା ॥
ବୋଇଲା ସେ କାହିଂରଟି କେ ଜାଣଇ
ଲକ୍ଷଣ ।
କିମ୍ପାଇଂ କୋପ କରଇ ମୋ ରାଜ୍ୟେ
ଅକାରଣ ॥
କାହିଂର ଲକ୍ଷଣ ସେ ପଚାରିଆସ ଯାଇ ।
ମୁହିଂ ମହାବୀର ଅଟଇ ବାଳୀର ସାନଭାଇ ॥
ଶ୍ରୀରାମ ଲକ୍ଷଣ ହୁଂ ନ ଜାଣଇ ଅନ୍ୟ ।
ସେ ସେ ଠାକୁର ମୋର ଅଟନ୍ତି
ପଞ୍ଚପ୍ରାଣ ॥୪୦
ଜମ୍ବେବ ହନୁମନ୍ତ ସମସ୍ତେ ବସିଥିଲେ ।
ଦ୍ୱାରପାଳକୁ କେହି ସମସ୍ୟା ନ ଦେଲେ ॥
ସୁଗ୍ରୀବର ବୋଇଲାର ପଚାରି ଆସ ଯାଇ ।
କିସ କୁଳ ଗୋତ୍ର ଘର ତାର କାହିଂ ॥
ରାଜାର ଆଗ୍ୟାଂରେ ସେ ଗଲାକ ପଡ଼ିହାରୀ ।
ସିଂଘଦ୍ୱାରେ ଯାଇଣ ସେ ଲକ୍ଷଣକୁ ପଚାରି ॥
ଭୋ ମହାତମା ତୁ ଯେ କେବଣ ଦେଶୁ
ଆୟେ ।
କାହିଂ ଘର ଦ୍ୱାର କେହୁଟି ବାପ ମାୟେ ॥
କେବଣ ଲକ୍ଷଣଟି ଅଇଲୁ କିସ ପାଇଂ ।
ରାଜା ଆଗ୍ୟାଂ ହେଲାରେ ମୁଂ ତୁମ୍ଭକୁ
ପଚାରଇ ॥୫୦
ଶୁଣିଣ ଲକ୍ଷ୍ମଣ କଲାକ ଗରୁ ଖଙ୍ଗ ।
ଲାଙ୍ଗୁଡ଼େ ମାଡ଼ନ୍ତେ ଯେହ୍ନେ ଗର୍ଜ୍ଜଇ ପନଙ୍ଗ ॥
ଘନ ଘନ କୋପେ ବୀର ଛାଡ଼ଇ ନିଶ୍ୱାସ ।
ଅଳପ ହସିଣ ଚାହାଇଂ ଦଶଦିଶ ॥
ଦ୍ୱାରପାଳକୁ ବୋଇଲେ ରେ ଅଗ୍ୟାଂନ ତୁହି
ଶୁଣ ।

ଶ୍ରୀରାମ କନେଷ୍ଟ ମୁଂ ଅଟଇ ଲକ୍ଷଣ ॥
ଯାହାର ନାରାଚ୍ଚେଣ ବାଳୀବୀର ମଲା ।
ଯାହାର ପାଦେଣ ସୁଗ୍ରୀ ଶରଣ ପଶିଲା ॥
ଯାହାରେଣ କିଷ୍କିନ୍ଧ୍ୟାୟେ ପାଇଲା ସୁଖ
ଶିଗୀ ।
ଯାହାରେଣ ତାରା ସଙ୍ଗେ ସୁଖେଣ
ବିହରି ॥୬୦
ସେହି ରାମର ଅନୁଜଟି ଅଟଇ ମୁହିଂ ।
ଗର୍ବପଣେ ନ ଚିହ୍ନିଲାରେ ସୁଖ ଭୋଗ ପାଇ ॥
ଶୁଣିଣ ଦ୍ୱାରପାଳ ବାହୁଡ଼ିଲା ଧାତି ।
ସୁଗ୍ରୀବର ଛାମୁରେ ମିଳିଲା ତଡ଼ତି ॥
କରପତ୍ର ଯୋଡ଼ିଣ ବୋଇଲା ଭୋ ଦେବ
କପିରାଜ ।
ସେହି ଲକ୍ଷଣ ଦେବ ଶ୍ରୀରାମ ଅନୁଜ ॥
ଯାହାର ନାରାଚେ ବାଳୀ ଯମପୁର ଯାଏ ।
ଯାହାର ପ୍ରସାଦେ ତୁ କିଷ୍କିନ୍ଧ୍ୟାର ରାୟେ ॥
ସେ ରାମର ଭାଇ ଲକ୍ଷଣ ଆସିଅଛି ।
ମାଲ୍ୟବ୍ୟନ୍ତ ପର୍ବତେ ଥାଇ ପେଷିଲେ
ରଘୁବଛି ॥୭୦
ଶୁଣିଣ ସ୍ତମ୍ଭୀଭୂତ ହୋଇଲା ସୁଗ୍ରୀବର ।
କେମନ୍ତେ ଚାହିଂବି ମୁଖ ଲକ୍ଷଣ କୁମାର ॥
ଯେତେ ବୋଲି ସମସ୍ତେ ହୋଇଲେ
ଚମତ୍କାର ।
ବାହାରେ ଥାଇ କୋପଭର ଲକ୍ଷଣକୁମର ॥
ବିଳମ୍ବ ଦେଖିଣ ବୀର କୋପେଣ ପ୍ରଚଣ୍ଡ ।
ଗୁଣରେ ବସାଇଲେ ନେଇ ବାଳୀବଧ
କାଣ୍ଡ ॥
ବୋଇଲେ ନାରାଚ ହୋ ବେଗେଣ
ଚଳିଯିବୁ ।
ଯହିଂ ସୁଗ୍ରୀ ବସିଥିବ ସେ ଥମ୍ଭେ ଫୁଟିବୁ ॥
ଶବଦ କରିବୁ ତୁ ଶତେକ ଘଡ଼ଘଡ଼ି ।
ପ୍ରାଣରେ ନ ମାରିବୁ ସ୍ତମ୍ଭରେ ଥିବୁ ପଡ଼ି ॥୮୦
ଯେତେ ବୋଲି କୋପେ ବିନ୍ଧିଲାକ ବୀର ।
ଗର୍ଜିଣ ବାଣ ଯାଇ ପଶିଲା ଅନ୍ତଃପୁର ॥
ରାଜାର ଆସ୍ଥାନେ ଦ୍ରୋଣା ଖମ୍ଭ ଉପରେ ।

ପଡ଼ିଲା ବାଣ ଯାଇ ଶବଦ ଗୁରୁତରେ ॥
ହତଗ୍ୟାଂନ ହୋଇଣ ପଡ଼ିଲେ ସମସ୍ତେ ।
ଜମ୍ବେବ ନଳ ନୀଳ ହନୁମନ୍ତ ସହିତେ ॥
ଶବଦ ତ୍ରାସ ପାଇ ପଡ଼ିଲେ ସର୍ବେ ଲୋଟି ।
ଖଟ ଛାଡ଼ି ସୁଗ୍ରୀବର ଭୂମିରେ ଅଛି ପଡ଼ି ॥
ମଲାର ପ୍ରାଣୀ ପ୍ରାୟେ ହତ ଗ୍ୟାଂନ ହୋଇ ।
ଶବଦ ଶୁଣି ପୁରୁ ଅଙ୍ଗନେ ସର୍ବେ
ଧାଇଂ ॥୯୦
ମୃଦୁସୁନ୍ଦରୀମାନେ ଅନ୍ତରେ ଦେଖୁଥିଲେ ।
ଧାଇଂ ଯାଇ ତାରା ଛାମୁରେ ଜଣାଇଲେ ॥
ନୃପତି ସହିତେଣ ଗୋ ଅମନାତ୍ୟଗଣ ।
ବଜ୍ରଘାତ ପାଇଣ ଗୋ ସମସ୍ତେ ହତ ପ୍ରାଣ ॥
ବାଳୀ ନୃପତି ଯେ ଇନ୍ଦ୍ରର କୁମର ।
ତାହାକୁ କପଟେ ମରାଇଲା ସୁଗ୍ରୀବର ॥
ତେଣୁକରି ଇନ୍ଦ୍ରରାୟେ କୋପେଣ ଧାଇଂଲା ।
ପାତ୍ରମନ୍ତ୍ରୀ ଆଦି କରି ବଜ୍ରେଣ ସଂଘାରିଲା ॥
ଶୁଣିଣ ମହାଦେଈ ଧାଇଂଲା ତଡ଼ତି ।
ସମସ୍ତ ପାତ୍ରମନ୍ତ୍ରୀ ମୋହେ ପଡ଼ିଛନ୍ତି ॥୧୦୦
ଯେକାମାତ୍ର ହନୁମନ୍ତ ସୁଗ୍ରୀକି କୋଳ କରି ।
ସଚେତ କରାଇଲା ମୁଖରେ ପାଣି ମାରି ॥
ଜମ୍ବେବ ନଳ ଆଦି ସୁଷେଣ ତାରାକ୍ଷ ।
ଚେତନା ପାଇ ଉଠି ବସିଲେ ସମସ୍ତ ॥
ବଜ୍ରଘାତ କାହିଂଟି ପଡ଼ିଲା ବୋଇଲେ ।
ଦ୍ରୋଣା ଖମ୍ଭେ ନାରାଚ ଫୁଟିଛି ଦେଖିଲେ ॥
ବୋଇଲେ ଆସ୍ତନ୍ତ ଲକ୍ଷଣ କୋପ କଲେ ।
ବାଳୀ ବଧ କାଣ୍ଡ ଦେଖ ପ୍ରତକ୍ଷେ ମାଇଲେ ॥
ମୋହ ତେଜି ସୁଗ୍ରୀବର ମନ୍ତ୍ରୀଙ୍କ ମୁଖ
ଚାହିଂ ।
ଯେସନ ସମୟେ ଯାଇ ମିଳିଲେ
ମହାଦେଈ ॥୧୦
ସୁଗ୍ରୀବର ରାଜାକୁ ସେ ନମସ୍କାର କରି ।
ବାରତା ପଚାରଇ ଚରଣ ଦୁଇ ଧରି ॥
କିମ୍ପାଇଂ ଭୋ ନାଥଟି ହୋଇଲ ଅଗ୍ୟାନ ।
ମୋହେ ପଡ଼ିଲେ କିମ୍ପାଟି ଅମନାତ୍ୟଗଣ ॥

ସୁଗ୍ରୀବର ବୋଇଲା ଗୋ ଶୁଣିମା ମହାଦେଈ ।
ବାଳୀକି ମାଇଲେଟି ଯେବଣ ରଘୁସାଇଁ ॥
କିଷ୍କିନ୍ଧ୍ୟା ଭୋଗ ମୋତେ ଯେବଣ ରାମ ଦେଲା ।
ସେ ରାମ ମାଲ୍ୟବନ୍ତ ପର୍ବତେ ରହିଲା ॥
ମୋତେ ବୋଇଲେ ତୁ ବରଷାକାଳ ସରି ।
ଥାଟ ଘେନିଣ ଯିବୁ ତୁ ମାଲ୍ୟବନ୍ତ ଗିରି ॥୨୦
ତେବେ ସେ ଲଙ୍କାକୁ ମୁଁ କରିବଇଁ କଟକାଇ ।
ସୀତ୍ୟା ଆଣିଦେଲେ ସେ ମୋହୋର ପ୍ରାଣ ପାଇ ॥
ଯେମନ୍ତ ବୋଲିଣ ମୋତେ କଷ୍ଟ କରିଥିଲେ ।
ଉଛୁର ଦେଖିଣ ଲକ୍ଷଣଙ୍କୁ ବେଗେ ପଶିଲେ ॥
ଶୁଣିଣ ଲକ୍ଷଣ ଅଇଲେ ଅତି ଖରେ ।
ଉଭା ହୋଇଅଛନ୍ତି ସେ ନବର ସିଂଘଦ୍ୱାରେ ॥
ପଡ଼ିହାରୀ ଗୋଚରରେ ସେ ବାରତା କହିଲେ ।
ଲକ୍ଷଣ ଆସିଅଛି ଜଣାଅ ବୋଇଲେ ॥
ବାରତା ପାଇଣ ମୁଁ ବୋଇଲି କେବଣ ଲକ୍ଷଣ ।
କେବଣ ଦେଶୁଁ ଆୟେ କି ଅବା ବିଚକ୍ଷଣ ॥୩୦
ପାପ ମନ ମୋହୋର ଚେତୋଇ ନ ପାରିଲା ।
ଯେହା ଶୁଣି ଲକ୍ଷଣ ମୋତେ କୋପ କଲା ॥
ଓପ୍ରୋଧ ନ କରି ସେ ମାଇଲେ ଅତି ବେଗେ ।
ବାଳୀବଧ କାଣ୍ଡ ଦେଖ ବିନ୍ଧିଲେକ ରାଗେ ॥
ବଜ୍ର ସମାନେଣ ପଡ଼ିଲା ଆସି ବାଣ ।
କେବଳ ଦୟା କରିଣ ନ ଘେନିଲେ ପ୍ରାଣ ॥
ଏଥକୁ ଉପାୟେ ଗୋ କହିବା ରାଣୀ ମୋତେ ।
କି ବୋଲି ବୋଲିବେ ରଘୁକୁଳ ନାଥେ ॥
ଆଉ କିସ କରିବି ମୁଁ ସଂସାରେ ଜୀଇଂଥାଇ ।
ରଘୁନାଥଙ୍କ ଠାରେ ମୁଁ ଦ୍ରୋହ ଅର୍ଜିଲଇଁ ॥୪୦
ନିଷ୍ଟୟେ ରାଜ୍ୟ ଛାଡ଼ି ମୁଁ କିଚିବି ବନବାସ ।
ଯେ ସୁଖ ସମ୍ପଦରେ ନାହିଁ ମୋର ଆଶ ॥
ଯେବଣ ସ୍ୱାମୀ ମୋତେ ସୁଖ ସମ୍ପଦ ଦେଲା ।
ପାମର ମନ ଯେ ତାହାଙ୍କୁ ନ ଚିହ୍ନିଲା ॥
ବନ ଜନ୍ତୁ ପ୍ରାୟେ ହୋଇ ଅରଣ୍ୟେ ବୁଲୁଥିଲି ।
ସେ ସ୍ୱାମୀ ସୁଦୟାରେ ଯେ ସୁଖ ପାଇଲି ॥
ଯେବେ ବୋଇଲି ମୁଁ କେବଣ ଲକ୍ଷଣ ।
ମୋହୋ ଛାର ମର୍କଟ ଗୋ ପାମର ନିଲକ୍ଷଣ ॥
ଯେହା ଶୁଣିଣ ସିନା ଧନୁରେ ଗୁଣ ସନ୍ଧି ।
ବାଳୀବଧ କାଣ୍ଡ କୋପେଣ ମୋତେ ବିନ୍ଧି ॥୫୦
ପ୍ରାଣ ନ ଘେନିଲେ ସେ ତାହାଙ୍କ ବଡ଼ ପଣ ।
ଯେ ବଚନ ଶୁଣିଣ ବୋଲନ୍ତି ମନ୍ତ୍ରୀଗଣ ॥
ଭୋ ଦେବ ସୁଗ୍ରୀବର ନ କର କିଛି ଭୟେ ।
କ୍ଷଣକ ହୋଇଲା ଲକ୍ଷଣ ଆସି ଦ୍ୱାରେ ରହେ ॥
ଅନେକ ଲୋକର ନାମ ଯେ ଲକ୍ଷଣ ଅଟଇ ।
ପଚାରିବା ମାତ୍ରକେ କି ଅପ୍ରାଧ ହୁଅଇ ॥
ନିଷ୍ଟୟେ ଜାଣିଣ ଯେବେ ନ କରିବା ମାନ୍ୟ ।
ତେବେ ସେ ଅପ୍ରାଧ ଆମ୍ଭର ବାଛିବେ ସର୍ବଜନ ॥
ସେ ପ୍ରଭୁ ସଂସାରରେ ଅଟନ୍ତି ବଡ଼ ଲୋକ ।
ସେ ଯେବେ ନ ବୁଝିଣ ହୋଇବେ ଅବିବେକ ॥୬୦
ତାହାଙ୍କୁ ପ୍ରବୋଧିବାକୁ ଅନ୍ୟ କେହି ନାହିଁ ।
ଆପଣେ ଉଠିଣ ତାକୁ ବିନୟ ହୁଅ ଯାଇ ॥
ସୁଗ୍ରୀବର ବୋଇଲା ମୋତେ ଲଜ୍ଜା ଯେ ମାଡ଼ଇ ।
ଲକ୍ଷଣର କୋପକୁ ମୁଁ ବହୁତ ଡରଇ ॥
ତୁମ୍ଭେ ମନ୍ତ୍ରୀଗଣେ ଯାଇ କରହେ ଦଇନି ।
ବୋଲ କାଲି ପ୍ରଭାତେଣ ଆସିବେ ସଇନି ॥
ଅଙ୍ଗଦକୁମାର ଯେ ଯାଇଛି ଥାଟ ଆଣି ।
କୋପ ଶାନ୍ତିକର ଦେବ ରଘୁକୁଳମଣି ॥
ଯେ ବଚନ ଶୁଣିଣ ବୋଲନ୍ତି ମନ୍ତ୍ରୀଗଣ ।
ଭୋ ନୃପ ଆମ୍ଭେ ଗଲେ ଘେନିମ ସେ ପ୍ରାଣ ॥ ୭୦
ଦେଖିଣ ବୋଲିବ ରେ ପାମର କପିହୀନ ।
ତୁମ୍ଭେ ଯେ ଥିଲରେ ରାଜାର ସନ୍ନିଧାନ ॥
ଶ୍ରୀରାମ ଯିବାବେଳେ ଯାଇଛନ୍ତି କହି ।
ନ ଜାଣକି ମାଲ୍ୟବନ୍ତେ ଶ୍ରୀରାମ ଅଛନ୍ତି ରହି ॥
ଚାରିମାସ ହୋଇଲା ଜଣେ ନ ପେଷିଲା ।
ଯେବେ ଲକ୍ଷଣ ନାମ ଶୁଣି ନ ଚେତିଲା ॥
ସୁଗ୍ରୀ ନ ଚେତିଲା ରେ ଅଇଶ୍ୱର୍ଯ୍ୟ ପଣେ ।
ତୁମ୍ଭେ ନ ଜାଣିଲରେ କେବଣ ବଡ଼ପଣେ ॥
ସେ ଯେହା ବୋଇଲେଟି କି କହିବୁ ଆମ୍ଭେ ।
ଭୋ କପିରାଣ ଅନ୍ୟ ଲୋକ ପେଷ ତୁମ୍ଭେ ॥୮୦
ଶୁଣିଣ କପିରାୟେ ବିସ୍ମୟେ ହୋଇଲା ।
ନିଷ୍ଟୟେ ମରଣ ମୋର ନିକଟ ହୋଇଲା ॥
କର ଯୋଡ଼ି ବୋଲଇ ସେ ତାରା ମହାସ୍ୟତୀ ।
ଭୟେ କଲ ଯେବେ ତୁମ୍ଭେ ନୃପତି ପାତ୍ରମନ୍ତ୍ରୀ ॥
ମୁହିଁ ଯାଇ ପ୍ରବୋଧି କହିବି ଲକ୍ଷଣ ।
ମୋତେ ଦୟା କରନ୍ତି ସେ ସୀତୟା ରମଣ ॥
ତାହାଙ୍କର କନେଷ୍ଟ କି କରିବେ ମୋତେ କୋପ ।

ଅଚିନ୍ତ ହୋଇଥାଅ ମୁଂ ଯିବଇଂ ଭୋ ନୃପ ॥
ୟେତେକ କହି ତାରା ଭିତରକୁ ଗଲା ।
ନବରତ୍ନ ଆଭରଣ ଶରୀର ହୋଇଲା ॥୯୦
ଦେବାଙ୍ଗ ବସନେକ ସେ ପିନ୍ଧିଲାକ ବାଳୀ ।
ସୁରଙ୍ଗିଣୀ ପାଟେକ ସେ ଉପୁରାଣ ଦେଇ ॥
ସୁବର୍ଣ୍ଣ ଥାଳିରେ ଦୁର୍ବାକ୍ଷତ ଭରି ।
ସଙ୍ଗରେ ଅଛନ୍ତି ଅନେକ ପରିବାରୀ ॥
ସିଂଘଦ୍ୱାରେ ଯାଇଣ ସେ ଦେଖିଲେ ଲଇକ୍ଷଣ ।
ପ୍ରଣାମ କରିଣ ସେ ଶୋଇଲେ ତତକ୍ଷଣ ॥
ଉଠ ଉଠ ବୋଇଲେ ସେ ଲକ୍ଷଣ ବୀରମଣି ।
ତୁମ୍ଭେ ସେ ଅଇଲେ ସୁଗ୍ରୀବର ଅଛନ୍ତି କାହିଁ ପୁଣି ॥
ଉଠି ଉଭା ହୋଇଣ ସେ ଘେନିଲା ଅର୍ଘ୍ୟସ୍ଥାଳି ।
ପଞ୍ଚରତ୍ନ ଘେନିଣ ସେ ପୂଜାକଲା ବାଳୀ ॥୧୦୦
ମନେ ମନେ ବିଚାର ସେ କରଇ ବୀରମଣି ।
ସୀତ୍ୟାକୁ ପଟାନ୍ତର ଅଟଇ ଯେ ତରୁଣୀ ॥
ହାଥୁଣୀ କି ଘେନିଲେ ଯେହ୍ନେ ମତ୍ତଗଜ ତୋଷ ।
ତାର ବିନୟ ଦେଖି ବୀର ଛାଡ଼ିଲେ ସର୍ବରୋଷ ॥
ବିଚାରିଲେ ସୁଗ୍ରୀବର ଡରେଣ ନ ଆଇଲା ।
ତାରାକୁ ପଠିଆଇ କୋପ ଶାନ୍ତି କଲା ॥
ତାରାହିଂ ଜାଣିଲେ ଲକ୍ଷଣ ବୋଧ ଗଲେ ।
କର ଦୁଇ ଯୋଡ଼ିଣ ପ୍ରବୋଧି ବୋଇଲେ ॥
ଭୋ ସ୍ୱାମୀ ଦାସବତ୍ସଳ ଦାଶରଥି ।
କିମ୍ପାଇଂ ନ ଯାଇ ରହିଲୁ ପୁଣ ଯେଥି ॥୧୦
କିଷ୍କିନ୍ଧ୍ୟା କଟେକ ଦେବ ତୋହୋର ସଞ୍ଚୁଲା ।
ନବରେ ପଶିବାକୁ କେ ତୋତେ ନ ଦେଲା ॥
ତୁ ସ୍ୱାମୀ ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ।
ଆମ୍ଭେ ପଶୁ ଜନ୍ତୁ ଦେବ ବନର ବାନର ॥
ତାହା ନ ବିଚାରି ଦେବ କୋପ କଲୁ ଯହୁଁ ।
ଆମ୍ଭର ଅପ୍ରାଧ ଦେବ କ୍ଷମାକର ପ୍ରଭୁ ॥
ତୁମ୍ଭେ ଯେ ମହତ କ୍ଷମାକର ଦୋଷ ।
ତୁମ୍ଭର କଲା କୃତ୍ୟେ ସେ ନ ଭାଙ୍ଗ ରଘୁଶିଷ ॥
ଲକ୍ଷଣ ବୋଇଲେ ତୁ ଶୁଣରେ ସୁନ୍ଦେରୀ ।
ଜାଣୁ ନା ଶ୍ରୀରାମ ଗଲେ କେବଣ କୃତ କରି ॥୨୦
ଯେହି ସୁଗ୍ରୀବର ବନରେ ବୁଲୁଥିଲା ।
କ୍ଷଣକେ ଶ୍ରୀରାମ ତାକୁ କଷ୍ଟ ଛଡ଼ାଇଲା ॥
ସେ ରାମ ଅଛନ୍ତି ଯେବେ ମାଲ୍ୟବନ୍ତେ ରହି ।
ସନ୍ୟ ଘେନି ସୁଗ୍ରୀବ ଯିବ ବୋଲିଣ ବାଟ ଚାହିଁ ॥
ନ ଗଲା ବୋଲିଣ ସେ ପେଷିଲେ ରାମ ମୋତେ ।
ପ୍ରଭୁଙ୍କର ଆଗ୍ୟାଂରେ ସେ ଅଇଲି ତୁରିତେ ॥
ଦ୍ୱାରପାଳ ଆଗରେ ମୁଂ ବାରତା କହିଲି ।
ଲକ୍ଷଣ ଆସିଅଛି ବୋଲିଣ ଜଣାଅ ବୋଇଲି ॥
ଶୁଣିଣ ହାସ ଯେ କଲାକ କପିରାଜ ।
କେବଣ ଲକ୍ଷଣ ବୋଲିଣ କଲାକ ପହିଟ ॥୩୦
ମନ୍ତ୍ରୀ ଅମନାତ୍ୟେ ଯେ ହୋଇଲେ ଅଗ୍ୟାଂନ ।
ବସିଣ ଅଛନ୍ତି ଯେ ରାଜାର ସନିଧ୍ୟାନ ॥
ବାହୁଡ଼ି ଦୂତ ଆସି ବାରତା କହିଲା ମୋତେ ।
ବୋଇଲା ନୃପତି ଆମ୍ଭର ହୋ ନ ଜାଣନ୍ତି ତୋତେ ॥
କାହିଂର ଲକ୍ଷଣ ସେ କାହିଂ ତାର ଘର ।
ତାହା ଶୁଣିଣ କୋପ ହୋଇଲା ମୋହୋର ॥
ବୋଇଲି ଅଟଇ ମୁଂ ଶ୍ରୀରାମର ଭାଇ ।
ଯାହାର ବାଣେ ବାଳୀ ଯମପୁର ଯାଇ ॥
ଯାହାରେ ସୁଗ୍ରୀ ତୁମ୍ଭର ପଶିଲା ଶରଣ ।
ମୁହିଂ ଭାଇ ତାଙ୍କର ଅଟଇ ଲକ୍ଷଣ ॥ ୪୦
ତାହା ଶୁଣି ନଇଲାରେ ମହାକୋପ କଲି ।
ସୁଗ୍ରୀବର ପ୍ରାଣ ମୁହିଂ ଘେନିତ ମନକଲି ॥
ଆସିବାର ବେଳେ ମୋତେ ଶ୍ରୀରାମ ଆଗ୍ୟାଂ ଦେଲେ ।
ସୁଗ୍ରୀକୁ ନ ଦଣ୍ଡିବୁ ତୁ ଯେତେ ଦୋଷ କଲେ ॥
ତେଣୁ ସେ ତାହାର ଦୋଷ ନ ଘେନିଲି ମୁହିଂ ।
ବାଣେକ ବିନ୍ଧିଣ ତ୍ରାସ ଦେଲଇଂ ଦେଖାଇ ॥
ନୋହିଲେ ସୁଗ୍ରୀବରର ମୁଂ ଘେନନ୍ତି ଆଜ ପ୍ରାଣ ।
ଅଙ୍ଗଦକୁ ରାଜା କରିଣ ନିଅନ୍ତି ସର୍ବ ସନ୍ୟ ॥
ଶୁଣିଣ ତାରାସ୍ୟତୀ ଶିରେ ଦେଲା କର ।
ଯେ ମୋହୋର ଭକ୍ତି ଘେନିଣ ସୁଗ୍ରୀକି ଦୟାକର ॥୫୦
ଥାଟ ଆଣିମାକୁ ଅଙ୍ଗଦ ଯାଇଅଛି ।
ପନ୍ଦର ଦିନକୁ ସେ କଣ୍ଠ କରିଅଛି ॥
ଭାଦ୍ରବ ଶୁକଳ ଚଉଠି ଦିନେ ଗଲା ।
ଆଜକୁ ପୂର୍ଣ୍ଣମୀ ଦଶ ଦିବସ ହୋଇଲା ॥
ବାରତା ପାଇଲୁ ଅଛନ୍ତି ଚିତ୍ରକୂଟ ।
କାଲି ପହରକମାନେ ମିଳିବେ ଆସି ଥାଟ ॥
ସୁଗ୍ରୀବର ଯେ କଥାରେ ହେଳା କରିନାହିଁ ।
ଏବେ ତୁ କୋପ ନ କର ଗୋସାଇଂ ॥
ତୁ ଯେ କୁକୁରକୁ ଯଜ୍ଞ ଚରୁ ଦେଲୁ ।
ଖଳ ଲୋକଙ୍କର ସଙ୍ଗେ ପୀରତି ହୋଇଲୁ ॥୬୦
ମୂର୍ଖ ଜନକଇ ଶୁଣାଇଲୁ ଶାସ୍ତ୍ର ।
ଚାଣ୍ଡାଳ ପତିତକୁ କଲୁ ହୋ ପବିତ୍ର ॥
ତୁ ସ୍ୱାମୀ ଆମ୍ଭକୁ ଦୟା ଅବା କଲୁ ।
ଆମ୍ଭେ ଯେ ଯାହାର ପ୍ରକୃତି ନ ଛାଡ଼ିଲୁ ॥

କୋପ କଲେ କାର୍ଯ୍ୟ ହେବ ଅକାରଣ ।
ପ୍ରଭୁ ଲୋକଙ୍କର ଦେବ ସହିବାର ପରମାଣ ॥
ସହି ନ ପାରି କୋପ କରି ଭୃତ୍ୟକୁ
ଦଣ୍ଡିଲେ ।
ହତ୍ୟା ଦୋଷ ପାଇବୁ ପ୍ରଭୁ ଅଦୋଷେ
ମାଇଲେ ॥
ଶୁଣିଣ ସଉମିତ୍ରୀ ହୋଇଲେ ପ୍ରସନ ।
ତାରାକୁ କହିଲେ ମଧୁର ବଚନ ॥ ୭୦
ଧନ୍ୟ ଧନ୍ୟ ସୁନ୍ଦେରୀ ଗୋ ଧନ୍ୟ ତୋର
ପିତା ।
ଧନ୍ୟ ତୋର ଶରୀର ଯେ ଗର୍ଭଧାରୀ ମାତା ॥
ଧନ୍ୟ ରୂପବନ୍ତୀ ଗୋ ଧନ୍ୟ ତୁ ହଂସଗାମୀ ।
ଧନ୍ୟ ସେ ସୁଗ୍ରୀବର ଯେ ହୋଇଲା ତୋ
ସ୍ୱାମୀ ॥
ଧନ୍ୟ ହୋଇଲଇଂ ମୁଂ ଦେଖିଲଇଂ
ତୋତେ ।
ତୁ ଯେ ବିନୟ ବାଣୀ କହିଲୁ ସ୍ୟତୀ
ମୋତେ ॥
ଉପେକ୍ଷା କଲି ମୁଂ ସୁଗ୍ରୀବର ଦୋଷ ।
ଯାଅ ସୁନ୍ଦେରୀ ଯେବେ ସମସ୍ତଙ୍କୁ
ଘେନିଆସ ॥
ଶୁଣିଣ ମହାଦେଈ ଯେ ଭିତରକୁ ଗଲା ।
ସୁଗ୍ରୀବର ଆଗରେ ସେ ସମସ୍ତ
କହିଲା ॥୮୦
ବୋଇଲା ମୁହିଂ ଯାଇ ସ୍ୱାମୀକି ତୋଷ କଲି ।
ଆଗ୍ୟାଂ ଦେଲେ ସୁଗ୍ରୀବରକୁ ଘେନି ଆସ
ବୋଲି ॥
ଦୋଷ କ୍ଷମା କଲେ ସେ ମୋହୋର ମୁଖ
ଦେଖି ।
ସବୁନ୍ତି ଦୟା କଲେ କୋପନ୍ତ ଉପେଖି ॥
ଉଠ ଉଠ ସମସ୍ତେ ହେଂ ଦର୍ଶନ ଯାଇ କର ।
ଶୁଣିଣ ସନ୍ତୋଷ ହୋଇଲା କପିବର ॥
ହନୁମନ୍ତ ସୁଷେଣ ଜମ୍ୱେବ ନଳ ନୀଳ ।
ଗନ୍ଧମାର୍ଦ୍ଦନ ତାରାକ୍ଷ ଶତବଳ ॥
ତାରାକ୍ଷକୁ ଆଗ କରିଣ ସମସ୍ତେହେଂ ଯାନ୍ତି ।
ଭୟ ଲଜ୍ଜା ମିଶାଇଣ ଟେକିଣ ଚାହାନ୍ତି ॥୯୦
ସିଂହଦ୍ୱାରୁ ଯହୁଂ ହୋଇଲେ ବାହାର ।
ଦୂରରୁ ଦେଖିଲେ ସେ ଲକ୍ଷଣକୁମର ॥
ନିଉଛାଳି ବାସ ପକାଇ ଶୁତିଲେ ।
ପୁଣି ହିଂ ଉଠିଣ ସେ ଥୋକାୟେ ଦୂର
ଗଲେ ॥
ଶ୍ଳୋକ : ନ ମେ ଜନ୍ମ ବିଦେଶେ ଚ, ନ
ମେ ଜନ୍ମ ଦରିଦ୍ରଷ୍ଟ,
ନ ମେ ଜନ୍ମଞ୍ଚ ମୂର୍ଖଞ୍ଚ ସ୍ତ୍ରୀ ଜନ୍ମ ନ ମେ
ପ୍ରଭୋ
ନିକଟେ ସୁଗ୍ରୀବର ପଞ୍ଚରତ୍ନ ଥୋଇ ।
ଲକ୍ଷଣ ପାଦ ଧରିଣ ଥୋକାୟେ ଦୂରୁ
ଶୋଇଂ ॥
ଲକ୍ଷଣ ବୋଇଲେ ଯେ ଅଟଇ
ଅବେଭାର ।
ଶ୍ରୀରାମ ମିତ୍ର ତୁମ୍ଭେ ଅଟହେ ବାନର ॥
ତୁ ଅଟୁ ଜ୍ୟେଷ୍ଠ ଭାଇ ମୁଂ ଅଟଇ ସାନ ।
ଉଠ ଉଠ ଭାଇ ଯେ ଯେ ନୁହଇ
ବିଧାନ ॥୧୦୦
ସୁଗ୍ରୀ ବୋଇଲା ଦେବ ଅଟଇ ବେଭାର ।
ମୁହିଂ ତୁମ୍ଭର ଭୃତ୍ୟର ଯେ ଅଟେ ପରିଚାର ॥
ଶ୍ରୀରାମର ଭୃତ୍ୟ ପଣେ ଅଟଇ ସୁରପତି ।
ସେହି ସେ ମୋ ମନ ଯେ ଅଟଇ ଯୁଗତି ॥
ମୁହିଂ ବାନର ଯେ ବନସ୍ତରେ ଥାଇ ।
ପଶୁ ଜନ୍ତୁ ମନରେ ଫଳ ମୂଳ ଖାଇ ॥
ମୁହିଂ ଛାର କାହିଂ ଶ୍ରୀରାମର ମୈତ୍ର ।
ତୁମ୍ଭେ ବୋଲିବା ଦେବ ଅଟହେ ମହତ ॥
ଆପଣେ ଶ୍ରୀହସ୍ତେ ଲକ୍ଷଣ ସୁଗ୍ରୀବରକୁ
ତୋଳି ।
ପାରୁଶେ ବସାଇ ବୋଇଲେ ତୁମ୍ଭେ ଅଟ
ହୋ ଶୁଦ୍ଧଶାଳୀ ॥୧୦
ସୂର୍ଯ୍ୟଙ୍କର ବୀର୍ଯ୍ୟେ ଜାତ ରୁକ୍ଷ ରାଜା ମାତ ।
ବ୍ରହ୍ମାଙ୍କର ଭିଆଣ ତୁମ୍ଭେ ଅଯୋନି ସମ୍ଭୂତ ॥
ତୁମ୍ଭଙ୍କୁ ସମାନ କି ପଟାନ୍ତର ଅଛି ।
ଶ୍ରୀରାମ ପ୍ରସନେ ସ୍ୱର୍ଗ ଭୋଗ ତୋତେ
ପ୍ରାପ୍ତି ॥
ଉଠିଣ ସୁଗ୍ରୀବର ଶିରେ କର ଦେଇ ।
ହନୁମତ ଜମ୍ୱେବ ଦ୍ରଶନ କଲେ ଯାଇ ॥
ନଗ୍ର ନରନାରୀ ଦ୍ରଶନ ଯାଇ କଲେ ।
ପାତ୍ରମନ୍ତ୍ରୀ ସମସ୍ତେ ପାୟେ ଯାଇ ପଡ଼ିଲେ ॥
ଲକ୍ଷଣ ବୋଇଲେ ଦେବ ଶୁଣିମା ସୁଗ୍ରୀବର ।
ଯେ କଥା କିମ୍ପାଟି ନ ଥିଲା ତୁମ୍ଭରି
ମନର ॥୨୦
ଶ୍ରୀରାମ ତୁମ୍ଭଙ୍କୁ କି ଅବା ନ କଲେ ।
ଯେ ନଗ୍ର ନରନାରୀ ସମସ୍ତେ ଦେଖୁଥିଲେ ॥
ଯାହା କହୁଥିଲ ଯେବେ ଜାଣିଲଇ ତାହା ।
ଯେହି ମତି ପରା ଶ୍ରୀରାମକୁ ହୋଇବ ତୁମ୍ଭେ
ସାହା ॥
ସୀତ୍ୟାକୁ ଆଣିଦେବି ବୋଲି ଶ୍ରୀରାମକୁ
ବୋଇଲ ।
ରାଜଭୋଗ ପାଇଣ ସେକଥା ପାଶୋରିଲ ॥
ମନ୍ତ୍ରୀଗଣମାନ ଅଛନ୍ତି ତୋର କତି ।
ଯେମାନେ କିମ୍ପାଇଂ ତୋତେ ବିଚାର ନ
କରନ୍ତି ॥
ବରଷା ସରିଲା ଆସି ଶରଦ ଋତୁ ହୋୟେ ।
କେଉଂ କାଳେ କଟକାଇ କରିବୁ
କପିରାୟେ ॥୩୦
ଶ୍ରୀରାମର ଦୁଃଖ କି ନୋହଇ ତୋତେ
ବ୍ୟଥା ।
କିମ୍ପାଇଂ ଭୋନାଥ ତୁମ୍ଭେ କଲ ହେଳ
କଥା ।
ନିଶ୍ଚିନ୍ତ ହୋଇଣ ତ ପଶିଲୁ ଆସି ଯେଥି ।
ତୋତେ ଆଶା ଟେକିଣ ଅଛନ୍ତି ଦାଶରଥି ॥
ସୁଗ୍ରୀବ ବୋଇଲା ଦେବ ଆଜହୁଂ
ଦଶଦିନ ।
ଅଙ୍ଗଦ ଯାଇଅଛନ୍ତି ଆଣିବାକୁ ସନ୍ୟ ॥
ବାରତା ପାଇଲୁ ହେମବନ୍ତେ ଥିଲା ।
ଅନେକ ସନ୍ୟ ଶାଖା ଘେନିଣ ଅଇଲା ॥
ଚିତ୍ରକୂଟ ପର୍ବତେ ଅଛନ୍ତି ସନ୍ୟ ରହି ।
ଦୂତ ପଠିଆଇ ମୋତେ ବାରତା ଅଛି
ଦେଇ ॥୪୦

କାଲି ଆସି ପ୍ରବେଶ ହୋଇବେ ସର୍ବ ସନ୍ୟ ।
ମୋତେ ଆଉ କୋପ ନ କର
ସୁମିତ୍ରାନନ୍ଦନ ॥
ଜମ୍ୱେବ ହନୁମତ ସମେସ୍ତ ଯେହା କହି ।
ଶୁଣିଣ ସଉମିତ୍ରୀ ପରମ ତୋଷ ହୋଇ ॥
ତାରା ବୋଇଲା ଦେବ ହେ ନଗରକୁ ଆସ ।
କିଷ୍କିନ୍ଧ୍ୟା କଟକ କି ତୁମ୍ଭର ନୁହଇ ବାସ ॥
ଲକ୍ଷଣ ବୋଇଲେ ମୁଂ ଘରକୁ ନ ଯିବଇ ।
ଚଉଦ ବରଷ ଆମ୍ଭେ ବଞ୍ଚିବୁ ବୃକ୍ଷ ଛାଇ ॥
ଦଶରଥ ନିର୍ବନ୍ଧ କଲେକ ଯେସନେକ ।
ତେଣୁ ସେ ଶ୍ରୀରାମ ରାଜ୍ୟରେ ନୋହିଲେ
ଅବିଷେକ ॥୫୦
ଚଉଦ ବରଷ ପୂରିଲେ ଆମ୍ଭେ ଅଯୋଧ୍ୟାକୁ
ଯିବୁ ।
ନଗ୍ରେଣ ପଶି ଆମ୍ଭେ ସୁଖ ଭୋଗ କରିବୁ ॥
ମୁଂ କେହ୍ନେ ନଗ୍ରର ଭିତରେ ପଶିବଇଂ ।
ବୃକ୍ଷର ତଳେ ବସିଛନ୍ତି ଶ୍ରୀରାମ ଗୋସାଇଂ ॥
ଏତେ ବୋଲି ଲକ୍ଷଣ ସେଠାରୁ
ଚଳିଗଲେ ।
ଲିମ୍ବ ବୃକ୍ଷ ମୂଳରେ ସେ ଯାଇଣ ରହିଲେ ॥
ସୁଗ୍ରୀବର ଆଣିଣ କନ୍ଦମୂଳ ଦେଲା ।
ଲକ୍ଷଣ କୁମର ତାହା ଭୋଜନ ନ କଲା ॥
ବୋଇଲା ଶ୍ରୀରାମକୁ ମୁଂ ଦେଖିବି
ଯେତେବେଳେ ।
ଫଳମୂଳ ଆହାର ମୁଂ କରିବି
ତେତେବେଳେ ॥୬୦
ଆସିବାର ବେଳେ ରାମ ଅଛନ୍ତି ଆଗ୍ୟାଂ
ଦେଇ ।
ତୋତେ ନଦେଖିବା ଯାଏ ବାବୁରେ
ଆହାର ମୋର ନାହିଂ ॥
ତୁହି ଅଇଲେ ସେ କରିବି ଫଳ ଗ୍ରାସ ।
ବେଗ କରିଣ ବାବୁରେ ସୁଗ୍ରୀକି ଘେନିଆସ ॥
ଯେସନେକ ବୋଲି ଆଗ୍ୟାଂ ଦେଲେ
ଦାଶରଥି ।
ମୁହିଂ କେହ୍ନେ ଆହାର କରିବି ଭାଇ ଯେଥି ॥

ସ୍ୱାମୀ ମୋହୋର ଉପବାସେ ତିନିଦିନ
ଥିବେ ।
ମୋହୋର ଜୀବନ କେହ୍ନେ ଆହାର
ଖାଇବେ ॥
ନୋହଇ ଉଚିତ ଭାଇ ଯେସନେକ କଥା ।
ଶୁଣିଣ କପିରାୟେ ପାଇଲା ବଡ଼
ବ୍ୟଥା ॥୭୦
ହନୁମନ୍ତ ଜମ୍ୱେବ ସୁଷେଣ ସହିତେ ।
ଆବର ଥିଲେ ଯେତେ ପାତ୍ର ଅମନାତ୍ୟେ ॥
ଲକ୍ଷଣକୁ ବେଢ଼ିଣ ସେ ରହିଲେ ସକଳ ।
ରଜନୀ ବଞ୍ଚିଲେ ସେ କଥାର କୁତୂହୋଳ ॥
ସଉମିତ୍ରୀ ବୋଇଲେ ସେ ବନସ୍ତ କଥା
ମାନ ।
ଶୁଣିଣ ଦୁଃଖ ମନ ହେଲା ସୁଗ୍ରୀବ ରାଜନ ॥
ବୋଇଲା ସ୍ୱାମୀ ମୋର ଯେତେ କଷ୍ଟେ
ଛନ୍ତି ।
ମୋତେ ଦେଖିନିକି କୋପଭର ହୋନ୍ତି ॥
ଚାଣ୍ଡାଳ ରାବଣ ନିଶ୍ଚେ ଅବଶ୍ୟ ମରିବ ।
ଦଇବର ଭିଆଣ କି ଅଧର୍ମ ପାର ଯିବ ॥
ଯେସନ ସମୟେଣ ପାହିଲା ରଜନୀ ।
ଆଦିତ୍ୟ ଉଦୟେ ସେ ଅରୁଣ ସାହା ଘେନି ॥
ଯେ ଯାହାରେ ନିତ୍ୟକର୍ମ ସାରିଲେ
ତତକ୍ଷଣ ।
ହନୁମତକଇ ଚାହିଂ ବୋଇଲେ ଲଇକ୍ଷଣ ॥
ତୁ ହୋ ମାରୁତି ଯେବେ ମୋହୋର ବୋଲ
କର ।
ସୁଗ୍ରୀବରକଇ କାଲି ବିନ୍ଧିଲି ଯଉଂ ଶର ॥
ସେ କାଣ୍ଡ ଗୋଟି ତୁ ଘେନି ଆସ ଯାଇ ।
ଶୁଣିଣ ହନୁମତ ତୋଷମନ ହୋଇ ॥
ରାଜାର ଶ୍ରୀନବର ଭିତରେ ପଶିଲା ।
ସୂର୍ଯ୍ୟର କିରଣ ଜାଣି ନାରଜ ଦିଶିଲା ॥୯୦
ଆସ୍ତାନ ନବର ତ୍ରୋଣା ଖମ୍ବ କାଠେ ।
ଫୁଟିଅଛି ନାରାଜ ଦୁଃସହ ଗରୁ ଆଣ୍ଟେ ॥
ଉଦୟ ଗିରିରେ ଯେହ୍ନେ ଦିବାକର ଦିଶଇ ।
ନାରାଜ ଦେଖି ହନୁମତ ବହୁତ ପ୍ରଶଂସଇ ॥

ଧନ୍ୟ ଧନ୍ୟ ଲକ୍ଷଣ ଧନ୍ୟ ତୋହୋର ହସ୍ତ ।
ନୋହିଲେକି ବାଳୀ ରାୟେ ହୋଇଲା ପ୍ରାଣେ
ହତ ॥
ନମସ୍କାର କରିଣ ଯୋଡ଼ଇ ବେନି ହସ୍ତ ।
ଅସ୍ତ୍ରକଇ ତୁଷ୍ଟି କରଇ ହନୁମତ ॥
ଧନ୍ୟ ତୁ ନାରାଜ ହୋ ଶ୍ରୀରାମ କରେ
ଥାଇ ।
ତୁହି ସେ ବାଳୀର ଉଦରୁ ରୋଧିର
ପିଇ ॥୧୦୦
ତୁହି ସେ ମେଦନୀ କରିପାରୁ ଖଣ୍ଡ ଖଣ୍ଡ ।
ଯେ ତୋର ତେଜ ଦିଶଇ ଯେହ୍ନେ
ମାରତଣ୍ଡ ॥
ଯାହାର ପ୍ରାଣ ତୁ ହରିବୁ ମାହାଶର ।
ସେ ପ୍ରାଣୀ ବସିବ ନିଶ୍ଚେ ବଇକୁଣ୍ଠ ପୁର ॥
ଭୋ ଶ୍ରୀରାମ ବାଣ ତୁ ଅଟୁ ମୋହୋର
ଗୋସାଇଂ ।
ଲକ୍ଷଣ ପେଷିଲେ ମୋତେ ତୋତେ ନବା
ପାଇଂ ॥
ମୁହିଂ ଯେ ନେବାକୁ ତୋତେ ନୁହଇ
ଭାର୍ଜନ ।
ଯେ ମୋହୋର ହସ୍ତରେ ଆସି ବସିବ
ବହନ ॥
ଯେତେ କହି ବେନି ହସ୍ତ ପ୍ରସାରେ
ହନୁମତ ।
ଆପଣେ ଶର ବାହାରି ସ୍ତମ୍ଭୁ ହସ୍ତରେ
ସ୍ଥିତ ॥୧୦
ଦେଖିଣ ଚମତ୍କାର ହୋଇଲା ପାବେନି ।
ସଉମିତ୍ରୀ ସନ୍ନିଧ୍ୟକୁ ଗଲା କାଣ୍ଡ ଘେନି ॥
ଅସ୍ତ୍ର ଦେଖି ସଉମିତ୍ରୀ ସଂହରିଲେ ତ୍ରୋଣେ ।
ଯେସନ ସମୟେ ଆସି ମିଳିଲେ
ତାରଗଣେ ॥
ସୁଗ୍ରୀବରକଇ ସେ କଲେକ ନମସ୍କାର ।
କର ଦୁଇ ଯୋଡ଼ିଣ ସେ ଅଙ୍ଗଦର ତାର ॥
କହନ୍ତି ଶୁଣ ଦେବ କିଷ୍କିନ୍ଧ୍ୟା ଆଧିପତି ।
ଯେବଣ କାରଣେ ସେ ଅଇଲୁ ତଡ଼ତି ॥

ଅଙ୍ଗଦ ଗଲେକ ସନ୍ୟ ଥାଟ ଆଣି ।
ଚିତ୍ରକୂଟେ ରହିଲେ ସେ ଆଜର
ରୟଣୀ ॥୨୦
ପ୍ରଭାତୁ ସର୍ବସନ୍ୟ ଅଇଲେ ଚଳାଇ ।
ଆମ୍ଭଙ୍କୁ ଅଗ୍ୟାଂ ଦେଲେ ସେ ରାଜାର
ଛାମୁରେ କହ ଯାଇ ॥
ସେନା ସେନାପତିମାନେ ମଲ ମହାମଲ ।
ଅକଳନା ସନ୍ୟ ବାନର ମହାବଳ ॥
ବୀର ମହାବୀର କେ କରୁ ଗଣିତା ।
ସମସ୍ତେହେଂ ମହାବୀର ସଂଗ୍ରାମେ
ଜଗଜିତା ॥
କୃଷ୍ଣାବେଣୀ ନଦୀ ଠାରୁ ନାଗିଅଛି ଥାଟ ।
ଗହଳର ଘାୟେ ଆସିତେ ନାହିଂ ବାଟ ॥
ଯେହିକ୍ଷଣି ନଗ୍ରେ ଆସି ହୋଇବେ ଅଙ୍ଗଦ ।
ଯେସନେକ କହୁ କହୁ ଶୁଭିଲା ନିଶାଣ
ଶବଦ ॥୩୦
ଶୁଣିଣ ସୁଗ୍ରୀବର ଆନନ୍ଦ ହୋଇଲା ।
ଦୂତକୁ ବଧାଇ ଶାଢ଼ୀ ପ୍ରସାଦ ସେ ଦେଲା ॥
ନଳ ନୀଳ ସୁଷେଣ ତାରାକ୍ଷକୁ ହକାରି ।
ହନୁମତକୁ ଚାହିଂଣ ସେ ବୋଲଇ
ଦଣ୍ଡଧାରୀ ॥
ତୁମ୍ଭେ ଯାଇ ଅଙ୍ଗଦକୁ ସେ ପାଛୋଟି
ଘେନିଆସ ।
ଶୁଣିଣ ସମସ୍ତେ ହୋଇଲେ ହରଷ ॥
କେ ରଥ ଗଜ ଅଶ୍ୱ ବିମାନମାନ ଚଢ଼ି ।
କେ ଧାପ ଦେଇଣ ଦିଅନ୍ତି କିଳିକିଳା ରଡ଼ି ॥
ଉଦଣ୍ଡ ପାଟଛତ୍ର ଯେ ବିଳମ୍ବ ଅପାର ।
ଢୋଲ ଦମା ଟମକ ନିଶାଣ ନିରନ୍ତର ॥୪୦
କିଷ୍କିନ୍ଧ୍ୟା କଟକେ ଯେତେକେ ସଇନି ।
ସମସ୍ତେହେଂ ଗଲେ ସେ ରାଜାଙ୍କ ଆଗ୍ୟାଂ
ଘେନି ॥
ଯାନ୍ତେ କୋଶେମାନେ ଭେଟିଲେ ଅଙ୍ଗଦ ।
ଆରୋହି ଅଛନ୍ତି ଯେ ସୁବର୍ଣ୍ଣମୟେ ରଥ ॥
ନେତର ଚିରାଳ ଉଡ଼ଇ ଫରହର ।
ରତ୍ନମୟେ କଳସ ଶୁକ୍ଳ ଯେ ଚାମର ॥

ପୁଷ୍ପଗନ୍ଧ ଚନ୍ଦନ ଚନ୍ଦ୍ରସମ ଶୋଭା ।
ପୁଷ୍ପଧନୁ ଧରିଣ ସେ ଅଙ୍ଗଦ ବୀର ଉଭା ॥
ଯେତେକ ସନ୍ୟ ବଳ କିଷ୍କିନ୍ଧ୍ୟାରେ ଥିଲେ ।
ତାହାଙ୍କୁ ଦେଖି ଅଙ୍ଗଦ ଯଥାମାନ୍ୟ
କଲେ ॥୫୦
ଲକ୍ଷଣ ଅଇଲା କଥା କହିଲେ ହନୁମାନ ।
ଶୁଣିଣ ହରଷ ବାଳୀର ନନ୍ଦନ ॥
ସନ୍ୟ ଗରୁତର ଆସନ୍ତି ପଥ ବହି ।
ଗହଳେ ପଶିବାକୁ ଭାର୍ଜନ କେହି ନୋହି ॥
ଅଙ୍ଗଦକୁ ବେଢ଼ିଛନ୍ତି ଯୂଥପତିମାନ ।
ଅତିହିଂ ଶୋଭାବନ ବାଳୀର ନନ୍ଦନ ॥
ନବରତ୍ନ ମୁକୁଟ ଖଞ୍ଜିଣ ଦିବ୍ୟ ହାର ।
ଦେବାଙ୍ଗ ବସନ ଉଡ଼ଇ ଫରହର ॥
ପୟରେ ନେପୁର ପୁଷ୍ପଧନୁ ପାଣି ।
ରତି ଦେବୀବଲ୍ଲଭ ଦୁତୀୟ କାମ ଜାଣି ॥
ଶିରର ଉପରେ ଉଲ୍ଲୋଳ ନେତ ଶୋହେ
ଛତା ।
ଯୁଗ ରାଜାପଣେ କିଷ୍କିନ୍ଧ୍ୟାରେ କରତା ॥
ସନ୍ୟ ଗହଳରେ ସେ ଯେ ଉଡୁଅଛି ଧୂଳି ।
ତେଣୁ କରି ଗଗନେ ଅଦୃଶ୍ୟ ଅଂଶୁମାଳି ॥
ଶଙ୍ଖ ଭେରୀ ମୃଦଙ୍ଗ ବାଜଇ କାହାଳୀ ।
ହସ୍ତୀଙ୍କର ଘଣ୍ଟା ଟଣ ଟଣ ଅଶ୍ୱଙ୍କର
ଉଂଖାଳି ॥
ଢୋଲ ଦମା ଟମକ ନିଶାଣ ବାଦ୍ୟମାନ ।
ଗାଢ଼ ପରିବନ୍ଧ ଯେ ଗାବନ୍ତି ଗୁଣୀଜନ ॥
ସନ୍ୟର ଗହଳେ ଯେ ଗୋଳ ନିରନ୍ତର ।
ପୃଥ୍ୱି ଦଲଦଲ ଯେ ସନ୍ୟର ପାଦଭର ॥
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଆସି ହୋନ୍ତି ।
ନଗ୍ର ନରନାରୀମାନେ ଦେଖିତ ଆସନ୍ତି ॥
ଆଲମ୍ବ ବିଲମ୍ବ ଚାମର ପନ୍ତି ପନ୍ତି ।
ଛତ୍ର ଚିରାଳମାନ ଉଡ଼ନ୍ତେ ଶୋଭା ପାନ୍ତି ॥
ଯୂଥପତିମାନେ ଆସନ୍ତି ଆଗ ହୋଇ ।
ଯେ ଯାହାର ସନ୍ୟମାନ ସଙ୍ଗତରେ ଲାଇ ॥
କେବଣ କପିରାୟ ନଗ୍ରରେ ପଶନ୍ତି ।
ଦେଉଳ ମଣ୍ଡୋପରେ ଉଠିଣ ଦେଖନ୍ତି ॥

କେ ଉଡ଼ା ମାରିଣ ଯାନ୍ତି ଆଗ ହୋଇ ।
କାହାରି ଛାମୁରେ ରହନ୍ତା କେହି ନାହିଂ ॥୮୦
କେ ରଙ୍ଗ ବର୍ଣ୍ଣ କେ କଳା ବର୍ଣ୍ଣ ଦେହୀ ।
କାହାର ସନ୍ୟ ଗୋଟା ଶୁକ୍ଳ ବର୍ଣ୍ଣ ଦିଶଇ ॥
କେହୁ ଧାପ ଦିଅନ୍ତି ଲାଙ୍ଗୁଡ଼ ଫୁଲାଇ ।
କିଷ୍କିନ୍ଧ୍ୟା ଦାଣ୍ଡରେ ସେ ଯାନ୍ତି ପଥ ବହି ॥
ଦୂରହୁଂ ଅଙ୍ଗଦ ରଥରୁ ଉତୁରିଲା ।
ସିଂଘଦ୍ୱାରେ ସୁଗ୍ରୀବର ଲକ୍ଷଣକୁ ଦେଖିଲା ॥
ଲକ୍ଷଣ ପାଦେ ଆଗେ ଓଳଗି ଶୁତିଲା ।
ପାଦ ଗତି ହୋଇଣ ସେ ଥୋକାୟେ ଦୂର
ଗଲା ॥
ଦେଖିଣ କପିରାୟେ ଧଇଲେ କୋଳର ।
ଉଠିଣ ସୁଗ୍ରୀ ପାଦେ କଲାକ ନମସ୍କାର ॥୯୦
ଧନ୍ୟ ମହିମା ତୋର ବାଳୀରାୟେ ସୁତ ।
ଲକ୍ଷଣ ପ୍ରଶଂସା କରଇ ବହୁତ ॥
ଅନ୍ୟକି ଯେଡ଼େ ସନ୍ୟ ପାରିବାକ ଆଣି ।
ଅନେକ ଦୟା ତୋତେ କରିବେ ରଘୁମଣି ॥
ସୁଗ୍ରୀବ ଅଙ୍ଗଦକୁ କୋଳରେ ବସାଇଲା ।
ଆଶ୍ୱାସନା କରିଣ ମୁଖରେ ଚୁମ୍ବ ଦେଲା ॥
ବୋଇଲା ତୁ ମୋହୋର ଅଟୁରେ
କୁଳଦୀପ ।
ମୋହୋର ଅନନ୍ତରେ ତୁ କିଷ୍କିନ୍ଧ୍ୟାରେ ନୃପ ॥
ତୋହୋରେ ଲଙ୍କାଗଡ଼ ହୋଇବ ଧ୍ୱମାନ୍ତ ।
ତୋହୋରେ ଦୟା ମୋତେ କରିବେ
ସୀତ୍ୟାକାନ୍ତ ॥୧୦୦
ତୋହୋରେ ବାବୁ ସେ ସନ୍ୟ ଆସଇ ।
ଯେତେ ବୋଲି ଲକ୍ଷଣ ସୁଗ୍ରୀବର ଅଙ୍ଗଦକୁ
ପ୍ରଶଂସା କରଇ ॥
ଯେଥୁ ଅନନ୍ତରେ ବୋଇଲେ ଲଇକ୍ଷଣ ।
ଭୋ କପିରାୟେ ଆମ୍ଭେ ପ୍ରସ୍ଥାନ କରିବା
ଯେହିକ୍ଷଣ ॥
ଶ୍ରୀରାମ ଯେକାନ୍ତେ ଯେ ଅଛନ୍ତି ଦୁଃଖ
ପାଇ ।
ଥାଟ ଅଇଲାର ବାରତା ଦେବା ନେଇ ॥
ଅଙ୍ଗଦ ବୀର ପଛେ ଥାଠ ଘେନି ଯାଉ ।

ଯେହାର ସଙ୍ଗତେ ହନୁମତ ରହିଥାଉ ॥
ନଳ ନୀଳ ସୁଷେଣ ଜମ୍ବେବ ତାରାକ୍ଷ ।
ଯେହାନ୍ତ ଘେନି ଭାଇ ଆସନ୍ତୁ ପଶ୍ଚାନ୍ତ ॥୧୦
ଶୁଣିଣ ସୁଗ୍ରୀବର ହରଷ ହୋଇଲା ।
ଯେହିକ୍ଷଣି ଆମ୍ଭେ ଚାଲ ଯିବାଟି ବୋଇଲା ॥
ଅଙ୍ଗଦକୁ ଡିଆରିଣ ଆପଣେ ହୋଯେ
ସଜ ।
ଦମା ଦାଉଣ୍ଡି ବାଜଇ ପଖାଉଜ ॥
ଅଶିନ୍ୟ ଶୁକଳ ପ୍ରତିପଦା ଦିନ ।
ଦ୍ୱିଜା ନକ୍ଷତ୍ର ଅଟଇ ବିଦ୍ୟମାନ ॥
ସୋମବାର ସିଦ୍ଧ ଯୋଗ ତତୁଲ୍ୟ କରଣ ।
ଯେଗାର ଘଡ଼ିମାନେ ଶୁକ୍ରଙ୍କ ବେଳ ପୁଣ ॥
ସୁଷେଣ ମନ୍ତ୍ରୀ ବେଳ ବିଚାରି କହିଲା ।
ସେ ଲଗ୍ନ ଜମ୍ବେବର ମନକୁ ଅଇଲା ॥୨୦
ଦିବ୍ୟ ବେଶ ହୋଇଣ ନୃପତି ବାହାର ।
ତାରାକୁ ସମର୍ପିଲା କିଷ୍କିନ୍ଧ୍ୟା ରାଜ୍ୟ ଭାର ॥
ସମସ୍ତ ସମର୍ପି ସୁଗ୍ରୀ ହୋଇଲା ଉଦାସୀ ।
ନାରାୟଣ ସୁମରିଣ ବାହାର ହୋଇଆସି ॥
ଆଗେ ସୁବର୍ଣ୍ଣ କୁମ୍ଭ ଦଧିମାଛ ଥାପି ।
ରାଜହଂସ ଉଭାରିଣ କଦଳୀ ଗଛ ଅଛି ॥
ଶ୍ୱେତ ପାରିଆ ଆଗେ ଉଡ଼ାଇ ଦିଜବର ।
ଯୁବା ନାରୀ ହୁଳହୁଳି ଦିଅନ୍ତି ଅପାର ॥
ଗୋରଚନା ଚିତା ମଙ୍ଗଳ ଆଳତୀ ।
ଘେନିଣ ବାହାର ହୋଇଲେ କପିପତି ॥୩୦
ସୁବର୍ଣ୍ଣ ବିମାନେ ଲକ୍ଷଣ ସୁଗ୍ରୀ ବିଜେ
କଲେ ।
ଶ୍ରୀରାମ ସୁମରି ସେ ବାହାର ହୋଇଗଲେ ॥
ତାରା ମହାଦେଈ ଶିରେ ଦେଲାକ ଦୁର୍ବାକ୍ଷତ ।
ଆଗେଣ କପିବଳ ଅଛନ୍ତି ବହୁତ ॥
ତାରା ସହିତେଣ ବାହୁଡ଼ାଇ ବୀରଛତ୍ର ।
ବୋଇଲା ଗହନ ବନେ ଚଳିଯିବା ପଥ ॥
ରାଜ୍ୟକୁ ବାହୁଡ଼ିଲା ତାରା ମହାସ୍ୟତୀ ।
ଲକ୍ଷଣ ସୁଗ୍ରୀବର ପଥ ବହିଯାନ୍ତି ॥
ସେଦିନ ଋଷିମୁଖ ପର୍ବତେ ରହିଲେ ।
ନାନା କଥା କହିଣ ସେ ରଜନୀ
ବଞ୍ଚିଲେ ॥୪୦

ପ୍ରବେଶ ହୋଇଲେ ଆସି ଜମ୍ବେବ ନଳ
ନୀଳ ।
ତାରାକ୍ଷ ସହିତେ ଯେ ଆବର ପନଶୀଳ ॥
ବିବିଧ କଥା କହି ରୟଣୀ ବଞ୍ଚିଲେ ।
ଶୁଣସି ଗଉରୀ ଗୋ ଶଙ୍କର କହିଲେ ॥
ଶ୍ରୀରାମ ଯେ ମାଲ୍ୟବନ୍ତେ ପର୍ବତେ ଥିଲେ
ରହି ।
ବାଟ ଚାହୁଁଛନ୍ତି ସେ ରଘୁକୁଳ ସାଇଂ ॥
ଲକ୍ଷଣ ଗତିପଥ ନିରେଖି ପୁଣ ପୁଣି ।
ଯେକସର ହୋଇଛନ୍ତି ରଘୁକୁଳ ମଣି ॥
କନ୍ଦମୂଳ ନ ଖାନ୍ତି ନ ମାଡ଼ଇ ନିଦ ।
ସୀତ୍ୟା ଲକ୍ଷଣ ବେନି ହୋଇଛନ୍ତି
ବିଚ୍ଛେଦ ॥୫୦
ପର୍ଣ୍ଣକୁଟୀରରେ ନ ରହନ୍ତି କ୍ଷଣେ ।
ବଇରାଗ୍ୟ ପାଇଣ ବୁଲନ୍ତି ଯେଣେ ତେଣେ ॥
ବାତୁଳ ସ୍ୱଭାବେ ପର୍ବତମାନଙ୍କୁ ପୁଛନ୍ତି ।
ତୁ ହୋ ଗିରିରାଜା ସୀତ୍ୟାକୁ ଦେଖିଛକି
ବୋଲିଣ ପଚାରନ୍ତି ॥
ରୂପେଣ ଅତ୍ୟନ୍ତ ସୁନ୍ଦର ଯୁବା ସେ
ବୟେସ ।
ଶରୀର ଦିଶଇ ତାର ସୁବର୍ଣ୍ଣ ସାଦୃଶ ॥
ନୟନ ଯୁଗଳ କି ନଳିନୀ ବଧୂକ ପୁଷ୍ପ
ଓଷ୍ଠୀ ।
କହନ୍ତେ କୋକିଳ ଅମୃତ ହୋୟେ ବୃଷ୍ଟି ॥
ଚାଲିବାରେ ମଉଗଜର ହୁଅଇ ଛଟକ ।
ସଖୀର ଗୁଣ ମୁଂ କହିବଇଂ କେତେକ ॥୬୦
ଶୁଣି ଗିରିବରମାନେ ନ ଦେଲେ ଉତ୍ତର ।
ଦେଖିଣ ଶ୍ରୀରାମର କ୍ରୋଧ ଗରୁତର ॥
ବୋଇଲେ ଚାଣ୍ଡାଳରେ ପୃଥ୍ୱିକି ଅଟ ଭାରା ।
ତୁମ୍ଭକୁ ବହିଣ କଷ୍ଟି ହୋଇଲେ ବସୁନ୍ଧରା ॥
ତାହା ଜାଣି ପୂର୍ବେ କୋପ କଲେକ
ସସ୍ତ୍ରଯୋନି ।
ସବୁରି ପାଦ ପାଣି ଛେଦିଲେ ବଜ୍ରପାଣି ॥
ତେଣୁ ସେ ଠାବେ ଠାବେ ହୋଇଣ
ରହିଲ ।

ଚଳି ନ ପାରିଣ ରେ ଅଚଳ ବୋଲାଇଲ ॥
ଯେବେ ପଚାରିଲେ ନ କହ ବାରତା ।
ସର୍ବଗୁଣେ ସୁଲକ୍ଷଣ ନାମ ତାର
ସୀତ୍ୟା ॥୭୦
ଜନେକ ମହାମୁନି ମୋତେ ସତ୍ୟ ମନେ
ଦେଲେ ।
ସେ ପ୍ରାଣବଲ୍ଲଭୀ ମୋ କେଉଁଣ କତିଗଲେ ॥
ଯେସନେକ ବୋଲି ରାମ କାରୁଣ୍ୟେ
କରନ୍ତେ ।
କୁକ୍କୁଟ ପକ୍ଷୀ ଆସି ମିଳିଲା ତୁରିତେ ॥
କିମ୍ପା ହୋ ମହାତମା ତୁ ହେଉଛୁ ବିକଳ ।
ଯେକସରେ ବୁଲୁଅଛୁ ବରଷାର କାଳ ॥
ସଖା ସହୋଦର କି ତୋର କେହି ନାହିଂ ।
ଦେବତା ସମାନେ ଅଟଇ ତୋର ଦେହୀ ॥
ଶ୍ରୀରାମ ବୋଇଲେ ତୁ ଶୁଣ ପକ୍ଷୀବର ।
ଦେଖିଲି ଧର୍ମଆତ୍ମା ଅଟଇ ତୁମ୍ଭର ॥ ୮୦
ମୋହୋର ଦୁଃଖେ ମୁଂ ଯେ ବୁଲୁଛି ଦୁଃଖୀ
ହୋଇ ।
କଥାୟେ ପଚାରନ୍ତା ନୋହିଲେ ଅନ୍ୟ
କେହି ॥
ମୁହିଂ ସେ ମହାଦୁଃଖୀ ଅଟଇ ଦେଶଶୂନ୍ୟ ।
ପୂର୍ବଜନ୍ମେ ମୁଂ ଯେ ନ କଲି ଦାନ ପୁନ୍ୟ ॥
ଭାଇ ଭାରିଯା ମୁଂ ସଂଗତେ ଘେନିଣ
ଅଇଲି ।
ପଞ୍ଚବଟୀ ବନେ ଘରଣୀ ହରାଇଲି ॥
ତେଣୁ ସେ ଯେକସରେ ବୁଲଇ ବନେ
ବନ ।
ତୁ ମୋତେ ପଚାରିଲୁ ଅଟୁ ଧନ୍ୟ ଧନ୍ୟ ॥
ପକ୍ଷୀ ବୋଇଲା ମୁଂ ଜାଣଇ ସନ୍ଦେଶ ।
ସୀତୟାକୁ ରାବଣ ଯେ ନେଲା
ଲଙ୍କଦେଶ ॥୯୦
ଆକାଶ ମାର୍ଗେ ରଥ ବାହି ନେଉଥିଲା ।
ମୁହିଂ ଦେଖୁ ଦେଖୁ ଗଗନ ମାର୍ଗେ ଗଲା ॥
ସୁନ୍ଦରୀୟେ ରୋଦନ କରଇ ଉଚ୍ଚସ୍ୱରେ ।
ବୋଲଇ ଘର ମୋର ଅଯୋଧ୍ୟା ନଗ୍ରରେ ॥

ସୂର୍ଯ୍ୟବଂଶେ ଦଶରଥ ରାଜାର କୁଳବଧୂ ।
ଶ୍ରୀରାମ ନୃପତି ଯେ ଅଟନ୍ତି ମୋର ପ୍ରଭୁ ॥
ସ୍ୱାମୀ ଦିଅର ମୋର ଗଲେକ ମୃଗ ମାରି ।
କପଟେ ରାବଣ ମୋତେ ନେଉଅଛି ହରି ॥
ଦେଖିଲେ କହିବଟି ବୃକ୍ଷର ପକ୍ଷୀମାନେ ।
ଲଙ୍କାଗଡ଼କୁ ମୋତେ ନେଉଛି ଦଶାନନେ ॥୧୦୦
ଯେ କଥା ତଥ୍ୟ ଦେବ ଦେଖିଲଇ ମୁହିଂ ।
ଯେବେ ଆଉ ବନସ୍ତରେ ନ ବୁଲ ଗୋସାଇଁ ॥
ରାବଣକୁ ମାରିବାକୁ ଉପାୟେ ଯେବେ କର ।
ଅରଣ୍ୟେ ଆଉ ତୁମ୍ଭେ କାହାକୁ ନ ପଚାର ॥
ଶୁଣିଣ ଶ୍ରୀରାମ ଆନନ୍ଦ ହୋଇଲେ ।
ସାଧୁ ସାଧୁ ପକ୍ଷୀ ତୁ ହୋ ବୋଲିଣ ପ୍ରଶଂସିଲେ ॥
ତୁ ହୋ ପକ୍ଷୀବର ଅଟୁ ଉପଗାରୀ ।
ସଖୀର ବାରତା ତୁ ଥିଲୁ ହୃଦେ ଧରି ॥
ଧନ୍ୟ ତୁ ପକ୍ଷୀ ବର ଦେବଇଁ ତୋତେ ମୁହିଂ ।
ଯେତେ ଦିନ ସଂସାରେ ରବିଚନ୍ଦ୍ର ଥାଇ ॥୧୦
ଶିରରେ ମୁକୁଟେକ ଥିବ ଯେ ସପ୍ତଶାଖା ।
ଜାଣିଣ ପଟାନ୍ତର ଅରୁଣ ଲେଖା ॥
ଯେବେ ତୋତେ ପ୍ରାଣେ ମାରିବାକ ନରେ ।
ସେହି ପ୍ରାଣୀ ଦୋରେହାଟି ହୋଇବ ମୋହୋର ॥
ଯେ ରବିତଳେ ଯେତେକ ପକ୍ଷୀ ଅଛି ।
ମୁକୁଟ ଶିରେ ନ ବହିବେ ଅନ୍ୟ ପକ୍ଷୀ ॥
ତୁ ହୋ ପକ୍ଷୀବର ମୋତେ ଉପଗାର କଲୁ ।
ସୀତାର ସନ୍ଦେଶ ଯେଣୁ ଚିତ୍ତରେ ଧରିଥିଲୁ ॥
ଯେଣୁ ସେ ତୋତେ ମୁଁ କଲଇଁ ଅନୁଗ୍ରହ ।
ଯାଅସି ପକ୍ଷୀବର ଦେଶ ଗ୍ରାମରେ ତୁମେ ରହ ॥୨୦

ଯେ ପର୍ବତମାନେ ମୋତେ କଥା ନ କହିଲେ ।
ଯହୁ ସେ ଶିଖରେ ବୃକ୍ଷ ଲତାନ୍ତ ବହିଲେ ॥
ତେଣୁ ସେ ଗର୍ବ ବହି ନ କହନ୍ତି ବାରତ ।
ଯେଣୁକରି କୋପ ମୋର ହୋଇଲା ବହୁତ ॥
ଏ ତରୁ ପାଷାଣୁ ଯେ ପଡ଼ନ୍ତୁ ତଳେ ଖସି ।
ଲତା ବୃକ୍ଷ ପାଷାଣ ନ ଥିବ ହିଂ କିଛି ॥
ଯେସନ ଶାପ୍ୟ ଦେଇ ଚଳିଲେ ରଘୁସାଇଂ ।
ତହୁଁ ସେ ଶ୍ରୀରାମ ଗଲେକ ପଥ ବହି ॥
ପର୍ବତ ଲତା ବୃକ୍ଷେ ପଡ଼ିଲେ ଖସି ମହୀ ।
ଲତା ବୃକ୍ଷ ତୃଣ ନ ରହିଲେ କେହି ॥୩୦
ତେତେ଼ ବଡ଼ ଗିରି ଗୋଟା ଅଲଗା ଦିଶିଲା ।
ବୃକ୍ଷ ଲତା ତୃଣ ସବୁ ଖସିଣ ପଡ଼ିଲା ॥
ଦେଖି ଆଶ୍ରିଯ ସେ ହୋଇଲା କୁକୁଟ ।
ମସ୍ତକ ଆଉଂସିଲା ଅଛଇ ମୁକୁଟ ॥
ମନେ ବିଚାରିଲା ଯେ କେବଣ ଦେବତା ।
ପ୍ରତକ୍ଷେ ଫଳିଲାକ ବୋଇଲେ ଯଉଂ କଥା ॥
ମୁହିଂ ଚାଣ୍ଡାଳ କିମ୍ପା ପାପ ବୁଧି କଲି ।
ଯେତେ଼ ବଡ଼ ପ୍ରଭୁକୁ ମୁଂ କିଛି ନ ମାଗିଲି ॥
ଅମର ହୁଅନ୍ତି ମୁଂ ତାଙ୍କର ପ୍ରସନେ ।
ଯେତେ ବୋଲି ପକ୍ଷୀ ଧାଇଂଲା ଆଗମନେ ॥୪୦
ଲୋଭ ମନ ଧରିଣ ସେ ଆସନ୍ତେ ଗୋଡ଼ାଇ ।
ପଠାର ଭୋ ଦେବ ବୋଲି ଉଚ୍ଚେଣ ଡାକ ଦେଇ ॥
ଶ୍ରୀରାମ ନ ରହିଲେ ବେଗେ ଗଲେ ଚଳି ।
ବାହୁଡ଼ି କୁକୁଟ ତାର ବସାରେ ଯାଇ ମିଳି ॥
ମାଲ୍ୟବନ୍ତ ଗିରିରେ ରହିଲେ ରାମ ଯାଇ ।
ପର୍ଣ୍ଣକୁଟୀ ଦ୍ୱାରେ ବିଜୟେ ରଘୁସାଇଂ ॥
ପୁଣି ଉଠିଣ ଗିରି ଶିଖରକୁ ଯାଇ ।
ଉଚ୍ଚ ଠାବେ ଥାଇଣ ଚାରିଦିଗକୁ ଅନାଇ ॥
ଦକ୍ଷିଣ ଦିଗରେ ଦିଶଇ ଘୋର ବନ ।
ଶ୍ରୀରାମ ବିଚାର କରନ୍ତି ମନେ ମନ ॥ ୫୦

ଯେ ଦକ୍ଷିଣ ଦିଗରେଟି ରାବଣର ଘର ।
ଯେହି ଦିଗେ ସଖୀ ସିନା ଅଛଇ ମୋହୋର ॥
କେତେହେଂକ ଦିନେ ସେ ପାଇବି ମୋର ସହୀ ।
ଅସମୟ କାଳେ ମୋତେ ସାଖୀ ନୋହିଲେକ କେହି ॥
ସୁଗ୍ରୀବର ରାଜା ମୋତେ ଆଶା ଦେଇଥିଲା ।
ଯେତେ ଦିନଯାଯେ ଦେଖ ସେହି ନ ଅଇଲା ॥୬୦
ଲକ୍ଷଣ ଗଲାକ ଯେ ହୋଇଲା ତିନିଦିନ ।
ବାରତା ନ ପାଇଲୁ କେବଣ ବିଧାନ ॥
ଯେତେ ବୋଲି ଶ୍ରୀରାମ ପଶ୍ଚିମକୁ ଚାହିଂ ।
ସୁଗ୍ରୀବର କଟକ ସେ ଯେଣେ ଅଟଇ ॥
ଆସୁଥିଲେ ସନ୍ୟ ଘେନି ଉଡୁଥାନ୍ତା ଧୂଳି ।
ମନରେ ବିଚାରିଣ ହୁଅନ୍ତି ବିକଳି
ଯେତେ ବୋଲି ପର୍ବତୁ ସେ ଓହ୍ଲାଇ ଆସନ୍ତି ।
ପୁଣ ଯାଇ ପର୍ଣ୍ଣକୁଟୀ ଭିତରେ ବସନ୍ତି ॥
ଯେଥୁ ଅନନ୍ତରେ ଗୋ ଶୁଣିମା ରସ ବାଣୀ ।
ଲକ୍ଷଣ ଗଲା ଯେ ସୁଗ୍ରୀବରକୁ ଆଣି ॥
ଶୁଣିଣ ସୁଗ୍ରୀବର ଯେ ଅଇଲା ତଡ଼ତି ।
ଋଷିମୁଖ ପର୍ବତରେ ରହିଲା ସେ ରାତି ॥
ରଜନୀ ପ୍ରଭାତେଣ ତହୁଁ ଚଳିଗଲେ ।
ମାଲ୍ୟବନ୍ତ ଗିରିର ତଳରେ ମିଳିଲେ ॥୭୦
ବିଷ୍ଟି କାଳ ବେଳା ଉଭାରୁ କ୍ଷଣମାତ୍ରେ ରହି ।
ସାତଘଡ଼ି ଅନକୂଳ ଜମେୈବ ଛନ୍ତି କହି ॥
କୃତିକା ନକ୍ଷତ୍ର ଅଟଇ ସେଦିନ ।
ବୁଧଙ୍କର ବେଳାରେ ଯାଇ କରିବା ଦର୍ଶନ ॥
ଯେସନ ବିଚାରନ୍ତେ ହୋଇଲାକ ବେଳ ।
ବିମାନୁ ଓହ୍ଲାଇଲେ ସୁମିତ୍ରା ଦୁଲାଳ ॥
ସୁଗ୍ରୀବର ଜମେୈବ ସୁଷେଣ ନଳ ନୀଳ ।
ପାଦଗାମୀ ହୋଇଣ ସେ ଗମନ୍ତି ସକଳ ॥
ମାଲ୍ୟବନ୍ତ ପର୍ବତେ ସେ ହୋଇଲେକ ଯାଇ ।
ଦେଖିଲେ ବସିଛନ୍ତି ରଘୁକୁଳ ସାଇଂ ॥୮୦

କରେ କାଣ୍ଡ କୋଦଣ୍ଡ ବିସ୍ମୟେ ମନ ମୂର୍ଛି ।
ଯେସନ ସମୟେ ଆସି ମିଳିଲେ କପିପତି ॥
ଲକ୍ଷଣ ଜମ୍ବେବ ନଳ ନୀଳ ସହିତେ ।
ପାୟେ ପଡ଼ି ଶୋଇ ଉଠିଲେ ସମସ୍ତେ ॥
ଦେଖିଣ ଶ୍ରୀରାମ ହୋଇଲେ ଆନନ୍ଦ ।
ଦରିଦ୍ରକୁ ନିଧିକି ହୋଇଲା ପ୍ରାପତ ॥
ଅପୁତ୍ରକ ପୁତ୍ର ପାୟେ ଅନ୍ଧ ପାଏ ଆଖି ।
ବନ୍ଧୁ ସୋଦରେ ପାଇଲେ ନିରିମାଖି ॥
ଅସହାୟ ଲୋକକୁ ଧର୍ମ ଯେହ୍ନେ ସାହା ।
ତେହ୍ନେ ପଟାନ୍ତର ହୋଇଲେ ରଘୁନାହା ॥୯୦
ବସିବା ଠାବରୁ ସେ ଉଠିଣ ବସନ୍ତି ।
ଆକାଶ ଜଳକୁ ଯେହ୍ନେ ଚାତକ ତୋଷ ମତି ॥
କନ୍ୟା ମାସେ ପିତୃଗଣେ ପାଇଲେ ଯେହ୍ନେ ପିଣ୍ଡ ।
ପଦ୍ମ ଫୁଟିଲେ ଯେହ୍ନେ ତୋଷ ମାରତଣ୍ଡ ॥
ନିକଟେ ଆସିଣ ମିଳିଲେ ସୁଗ୍ରୀବର ।
ଶ୍ରୀରାମ ପାଦ ଧରି କରନ୍ତି ନମସ୍କାର ॥
ଲକ୍ଷଣ ଜମ୍ବେବ ଯେ ସୁଷେଣ ନଳ ନୀଳ ।
ସମସ୍ତେ ନମିଲେ ଯାଇ ଶ୍ରୀରାମ ପାଦତଳ ॥
ଶ୍ରୀରାମ ସୁଗ୍ରୀକି ଯେ ତୋଳନ୍ତି ବାମକରେ ।
ଦକ୍ଷିଣ କରକ ଦେଲେ ଲକ୍ଷଣ ଉପରେ ॥୧୦୦
ଉଠ ଉଠ ବୋଲିଣ ବୋଲନ୍ତି ରଘୁପତି ।
ଶ୍ରୀରାମ ଆଜ୍ଞାରେ ଯେ ଉଠିଲେ ସଉମିତ୍ରୀ ॥
ଜମ୍ବେବ ନଳ ନୀଳ ସୁଷେଣ ଉଠିଲେ ।
ଚରଣର ଧୂଳି ନେଇ ଶିରରେ ବୋଳିଲେ ॥
ଜଣେ ଜଣେ ସବୁନ୍ତି କୁଶଳ ପୁଛନ୍ତି ।
ଦୟା ଆଦର ଚିତ୍ତେ ସୁଗ୍ରୀବରକୁ ଚାହାନ୍ତି ॥
ଶ୍ରୀରାମଙ୍କ ପଦ୍ମପାଦ ଧରିଣ ସୁଗ୍ରୀବର ।
ବୋଇଲା ଦୋଷ ଦେବ ହୋଇଲା ମୋହୋର ॥
ଯେତେ ଦିନ ଯାୟେ ମୁଂ ନଇଲି ସ୍ୱାମୀ ପାଶ ।
ସୁଖ ଭୋଗ ପାଇଣ ମୁଂ ହୋଇଲି ହରଷ ॥୧୦
ଚାଣ୍ଡାଳ ଆତ୍ମା ମୋର ନ ଚିହ୍ନିଲା ତୋତେ ।
ତୁ ସ୍ୱାମୀ ଅଇଶ୍ୱର୍ଯ୍ୟ ଯେ ପ୍ରାପତ କଲୁ ମୋତେ ॥
ମୁହିଂ ପଶୁ ଜନ୍ତୁ ଅଟଇ ପାମର ।
ସେ ଦୋଷ କ୍ଷମାକର କୋଦଣ୍ଡ ଚାପଧର ॥
ଯାହା ତୁ ରଘୁନାଥ ଆଜ୍ଞାଂ ଦେଲୁ ମୋତେ ।
ଯେ ମୋହୋର ଶକ୍ୟେଣ ଖଟିଥିବି ତୋତେ ॥
ଯେ ତୋହୋର କର ଧରି ଦେଖାଇବୁ ଯାହା ।
ଭୋ ରଘୁନନ୍ଦନ ମୁଂ କରିବଇଂ ତାହା ॥
ତୁ ମୋହୋର ଠାକୁର ମୁଂ ତୋହୋର ଦାସ ।
ଦାସର ଅପ୍ରାଧ ନ ଧର ପୀତବାସ ॥୨୦
ସୁଗ୍ରୀବର ବଚନେ ଶ୍ରୀରାମ ତୋଷମତି ।
ଦୁଇ ଭୁଜେ ମୈତ୍ରକୁ କୋଳ ସେ କରନ୍ତି ॥
ସନ୍ନିଧେ ବସାଇଣ ପୁଚ୍ଛନ୍ତି ବାରତ ।
ଶୁଭେ ଅଛନ୍ତି ନା ବନ୍ଧୁ ବାନ୍ଧେବ ସମସ୍ତ ॥
ଦେଶ ଘୋଷ ଭଣ୍ଡାର ଅଶ୍ୱ ଗଜ ପାଦାନ୍ତି ।
ନଗ୍ର ନରନାରୀମାନେ କୁଶଳେ ଅଛନ୍ତି ॥
ତାରା ମହାଦେଈ ଖଟଇଟିକି ପାଶ ।
ରୋମା ସୁନ୍ଦରୀକି କରୁନା ବିଶ୍ୱାସ ॥
ଅଙ୍ଗଦକୁ ବିଶ୍ୱାସ ଅଛୁଟିକି କରି ।
ହନୁମତ ନଇଲାଟି କେବଣ ଗୁଣ ଧରି ॥୩୦
ସୁଗ୍ରୀବର ବୋଇଲା ଦେବ ଅଙ୍ଗଦ ହନୁମତ ।
ଥାଟ ଆଣି ଆସିବାକୁ ମୁଂ ରଖିଲଇ ତାହାନ୍ତ ॥
ଭୋ ଦେବ ସେହିମାନେ ଯେ ଆସିବେ ଯେହିକ୍ଷଣି ।
ଶ୍ରୀରାମ ଛାମୁରେ କହନ୍ତି ଲକ୍ଷଣ ବୀରମଣି ॥
ଭୋ ଦେବ ସୁଗ୍ରୀବର ଅଟଇ ଧାର୍ମିକ ।
ନୋହିଲେକି କିଷ୍କିନ୍ଧ୍ୟାରେ ହୋଇଲେ ନାୟେକ ॥
ଅଙ୍ଗଦକୁ ପଠିଆଇ ଅଣାଇଲେ ଥାଟ ।
ଗିରି ଘୋର ଅରଣ୍ୟରେ ପଶିତେ ନାହିଂ ବାଟ ॥
ଅଗଣିତା ସନ୍ୟ ଦେବ ଗଣନ୍ତା ନ ଯାଇ ।
ଶୁଣିଣ ଶ୍ରୀରାମ ଜମ୍ବେବ ମୁଖ ଚାହିଂ ॥
ନଳ ନୀଳ ସୁଷେଣ ଶିରରେ ହସ୍ତ ଦେଲେ ।
ଲକ୍ଷଣ କହିଲେ ଯାହା ପ୍ରମାଣ ବୋଇଲେ ॥
ଯେସନ ସମୟେ ଯେ ଉଡ଼ିଲାକ ଧୂଳି ।
କିଳିକିଳା ଶବଦେଣ ଗଗନ ଉଚ୍ଛୁଳି ॥
ଶ୍ରୀରାମ ପଚାରନ୍ତି ସୁଗ୍ରୀବରକୁ ଚାହିଂ ।୪୦
ଯେସନ ଶବଦଟି ଶୁଭଇ ମିତ୍ର କାହିଂ ॥
ଧୂଳି ଉଡୁଅଛି ଯେ କେବଣ ଆକାର ।
ତାରାକ୍ଷ ବୋଇଲା ଦେବ ଶୁଣିମା ରଘୁବୀର ॥
ଅଙ୍ଗଦ ହନୁମତ ଆସୁଛନ୍ତି ଥାଟ ।
ତେଣୁ ସେ ଧୂଳି ଉଡ଼େ ଚାଲିବାର ବାଟ ॥୫୦
କଥା ହୁଅନ୍ତେ ଆସି ହୋଇଲେକ ସନ୍ୟି ।
ଅଙ୍ଗଦ ହନୁମତ ବିଚାରିଲେ ବେନି ॥
ଥାଟ ରୁହାଇଣ ଆମ୍ଭେ ଆଗ ହୋଇ ଯିବା ।
ସନ୍ୟ ଅଇଲାର ବାରତା କହିବା ॥
ଆଜ୍ଞାଂ ହୋଇଲେଣ ନେମା ପଛେ ବଳ ।
ଯେତେ ବୋଲି ଘେନିଲେ ବିଭିନ୍ନ ସୁସ୍ୱାଦୁ ଫଳ ॥
ଧର୍ମ ସୁମରି ପର୍ବତେ ଉଠିଲେ ।
ଶ୍ରୀରାମ ଶ୍ରୀଚରଣେ ଦର୍ଶନ ଯାଇ କଲେ ॥
ସୁସ୍ୱାଦୁ ଫଳମାନ ଲକ୍ଷଣ ହସ୍ତେ ଦେଇ ।
ଶ୍ରୀରାମ ଶ୍ରୀଚରଣେ ଓଳଗିଲେ ଯାଇ ॥୬୦
ଉଠି ଉଭା ହୋଇଣ ଶିରରେ କର ଦେନ୍ତି ।
ଦେଖିଣ ଶ୍ରୀରାମ ବାରତା ପଚାରନ୍ତି ॥
ଅଇଲାର ଥାଟମାନ ରୁହାଇଅଛ କାହିଂ ।
ଅଙ୍ଗଦ ବୋଇଲା ଦେବ ଶୁଣିମା ରଘୁସାଇଂ ॥
ପର୍ବତ ତଳେ ଦେବ ସଇନ୍ୟ ରୁହାଇଲି ।
ତୁମ୍ଭର ଛାମୁକୁ ଦେବ କହିତେ ଅଇଲି ॥
ଯେତେବେଳେ ଆଜ୍ଞାଂ ଦେବ ହୋଇବ ରଘୁମଣି ।

ଶ୍ରୀଚରଣେ ଦର୍ଶନ ଯେ କରିବେ ସଇନି ॥
ଶୁଣିଣ ଶ୍ରୀରାମ ହୋଇଲେ ପ୍ରସନ ।
ଅଙ୍ଗଦକୁ ବୋଇଲେ ହୋ ଜୀବ ତୋର ଧନ୍ୟ ॥୭୦
ସୁଗ୍ରୀବ ବୋଇଲା ଦେବ ଉଛୁର ଆଜ ବେଳ ।
ସ୍ନାହାନ କରି ତୁମ୍ଭେ ଭୁଂଜସି ଫଳମୂଳ ॥
କିଷ୍କିନ୍ଧ୍ୟାକୁ ଗଲେ ଯେ ତୁମ୍ଭର ସାନଭାଇ ।
ତୁମ୍ଭକୁ ଛାଡ଼ିଗଲା ଦିନୁ ଆହାର ତାଙ୍କ ନାହିଂ ॥
ଅନେକ କାର୍ପୁନ୍ୟ ମୁଂ ହୋଇଣ ବୋଇଲି ।
ମଧୁବନୁ ନାନା ସୁପକ୍ୱ ଫଳନ୍ତ ଅଣାଇଲି ॥
ବୋଇଲେ ଶ୍ରୀରାମଙ୍କୁ ନ ଦେଖିଲେ ମୁହିଂ ।
କେବେହେଂ ଆହାର ମୋର ଖାଇ ନ ଯୋଗାଇ ॥
ଯେତେ ବୋଲିଣ ଦେବ ସେ କଲେକ ଉପବାସ ।
ଆଜକୁ ଆହାର ନାହିଂ ତିନି ଯେ ଦିବସ ॥୮୦
ତୁମ୍ଭେ ତ ଉପବାସେ ରହିଲ ତିନିଦିନ ।
ସାଧୁ ମହିମା ତୁମ୍ଭର ଅଟଇ ଯେ ଧନ୍ୟ ॥
ମୋହୋର ଜ୍ୟେଷ୍ଠ ଭାଇ ଥିଲା ବାଳୀବୀର ।
ପ୍ରାଣ ଘେନିମାକୁ ମୋର ପାଞ୍ଚଇ ନିରନ୍ତର ॥
ହୀରାଖଣିରୁ ସିନା ହୀରା ହୋଯେ ଜାତ ।
କାଚ କି ମାଣିକ୍ୟ ସଙ୍ଗେ ହୋଇବ ରଘୁନାଥ ॥
ତୁମ୍ଭେ ପୁଣ୍ୟ ପୁରୁଷ ଆମ୍ଭେ ହୀନ ଜାତି କପି ।
ତୋହୋର ସଙ୍ଗେ ହୋଇଅଛି ମୈତ୍ରୀ ॥
ଧନ୍ୟ ଧନ୍ୟ ତୁମ୍ଭେ ପବିତ୍ର ଭାଇ ବେନି ।
ଯେତେ କହି କପିବୀର ନମଇ ପୁଣ ପୁଣି ॥୯୦
ହସିଣ ଶ୍ରୀରାମ କହନ୍ତି ଉତ୍ତର ।
ଭ୍ରାଥ ହୋଇଣ ବାଳୀ କଲାକ ଅନ୍ୟାୟର ॥
ତୁ ଯାହା ମୈତ୍ର ହୋ କହିଲୁ ସତ୍ୟ କଥା ।
ଯେ ଯାହାର ସୋଦର ସେ ତାହାକୁ ବ୍ୟଥା ॥
ଦୁହିଂଙ୍କର ଯେକ ପିତା ମାତା ସିନା ଭିନ ।
ଯେକା ଚରୁରୁ ଜାତ ଯେ ଚାରି ନନ୍ଦନ ॥
ବେଦ ଅନୁରୂପେ ହୋଇବ ସିନା ଭାବ ।
ତୁ କିମ୍ପା ଭୋ ମୈତ୍ର ନ ବୁଝୁ ହାନି ଲାଭ ॥
ଯେତେ କହି ଶ୍ରୀରାମ ଗଲେକ ତହୁଂ ଚଳି ।
ପାତାଳ ଗଙ୍ଗାରେ ଯାଇ ଶ୍ରୀଅଙ୍ଗ ପଖାଳି ॥୧୦୦
ସ୍ନାହାନ ତର୍ପଣ ସାରିଲେ ବେନି ଭାଇ ।
ମଢ଼ିଆରେ ପ୍ରବେଶ ହୋଇଲେକ ଯାଇ ॥
ପୂର୍ଣ୍ଣ କୁଟୀ ଭିତରେଣ ଲକ୍ଷଣ ଠାବ କଲେ ।
ମୃଗ ଛାଲ ଗୋଟିଯେ ନେଇ ଆସନ ବିଛାଇଲେ ॥
ପାଦ ପଖାଳିତେ ଦେଲେକ ଜଳ ଆଣି ।
ଶ୍ରୀପୟର ପଖାଳିଣ ବସିଲେ ରଘୁମଣି ॥
ଭୁଞ୍ଜିବା ଠାବରେ ସେ ଶ୍ରୀରାମ ଯାଇ ବସି ।
ବିଷ୍ଣୁ ସୁମରିଣ ପାଣି ସିଞ୍ଚିଲେ ରଘୁଋଷି ॥
ଶାଳ ପତ୍ର ସିଇଂଣ ଠାବରେ ଦେଲେ ଆଣି ।
ଫଳ ମୂଳ ପରଷିଲେ ଲକ୍ଷଣ ଗୁଣମଣି ॥୧୦
ମଣୋହି ସାରି ଯେ ସନ୍ତୋଷ ରାମରାଜ ।
ଆଚୋବନ ସାରିଲେ ଦଶରଥ ଆତ୍ମଜ ॥
ସଉମିତ୍ରୀ ସ୍ନାହାନ କରିଣ ଅଇଲେ ।
ଫଳମୂଳ ଆଣିଣ ଆପଣେ ଭୁଞ୍ଜିଲେ ॥
ଉଚ୍ଛିଷ୍ଟ ପକାଇଣ ସାରିଲେ ଆଚୋବନ ।
ଶ୍ରୀରାମର ସନିଧ୍ୟେକୁ ସେ ଗଲେକ ବହନ ॥
ସୁଗ୍ରୀବର ଜମ୍ୱେବ ଅଙ୍ଗଦ ହନୁମାନ ।
ନଳ ନୀଳ ସୁଷେଣ ଗନ୍ଧମାରଦନ ॥
ଏମାନେ ଫଳମୂଳ ଭୁଞ୍ଜିଣ ଅଇଲେ ।
ଶ୍ରୀରାମ ଛାମୁରେ ଆସି ଦର୍ଶନ ବେଗେ କଲେ ॥୨୦
କରପତ୍ର ଯୋଡ଼ିଣ କହଇ କପିରାଜା ।
ଶୁଣିମା ରଘୁନାଥ ଯେ ଲକ୍ଷଣ ଅଗ୍ରଜା ॥
ସେନାପତିମାନେ ଅଇଲେ ସନ୍ୟ ଘେନି ।
ବୋଲନ୍ତି ଦେଖିବୁ ରାମ ଲକ୍ଷଣ ଭାଇବେନି ॥
ବହୁତ ଶ୍ରଦ୍ଧା ସେ କରିଣ ଅଛନ୍ତି ।
ଆଗ୍ୟାଂ ହୋଇଲେ ତାଙ୍କୁ ଆଣିବୁ ରଘୁପତି ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଆସନ୍ତୁ ସନ୍ୟ ବୋଲି ଶ୍ରୀରାମ ଆଗ୍ୟାଂ ଦେଲେ ॥
ସୁଗ୍ରୀବର ଭୁଜ ଧରିଣ ରଘୁବୀର ।
ବିଜେ କଲେ ମାଲ୍ୟବନ୍ତ ପର୍ବତ ଶିଖର ॥୩୦
ମର୍କତ ଶିଳା ଉପରେ ଅଛନ୍ତି ରାମବସି ।
ବାମକରେ କୋଦଣ୍ଡ ବିଜୁଳି ଜୋତି ପ୍ରକାଶି ॥
ବାଳୀ ଅନ୍ତେକ ନାରାଜ ଶ୍ରୀରାମ କରେ ଧରି ।
ବୀର ଆସନେ ବସିଲେ ପୂର୍ବ ମୁଖ କରି ॥
କନେକ ମୃଗ ଛାଲେ ଅଛନ୍ତି ରାମ ବସି ।
ନୀଳଗିରି ଶିଖରେ କି ଜଗନ୍ନାଥେ ଶୋଭାଦିଶି ॥
ଆଗରେ ଉଭା ହୋଇ ଅଛନ୍ତି ଲକ୍ଷଣ ସୁଗ୍ରୀବର ।
ହନୁମନ୍ତ ସୁଷେଣ ଯୋଡ଼ିଣ ବେନି କର ॥
ଶ୍ରୀରାମ ଆଗ୍ୟାଂ ଦେଲେ ଜମ୍ୱେବ ସୁଷେଣକୁ ଚାହିଂ ।
ଥାଟ ଅଣାଅ ତୁମ୍ଭେ ଆପଣେ ବେଗେ ଯାଇ ॥୪୦
ଅଙ୍ଗଦ କୁମରକୁ ରାଇଣ ଦେଲେ ଦୀକ୍ଷା ।
ରକ୍ଷ କପି ବଳେ ବାବୁ ହୁଅତୁ ପରୀକ୍ଷା ॥
ଥାଟେ ସେନାପତି ବାବୁ ତୋ ତହୁଂ ଅନ୍ୟ ନାହିଂ ।
ତୋହୋର ସଙ୍ଗତେ ସନ୍ୟ ଥିବେଟି ଗୋଡ଼ାଇ ॥
ସୁଗ୍ରୀବର ପୁତୁରା ତୁ ବାଳୀର ତନୁଜା ।
କିଷ୍କିନ୍ଧ୍ୟା କଟକେ ତୁ ଅଟୁ ଯୁଗରାଜା ॥
ଲଙ୍କାକୁ ଆଗିଆଣି ଯେ ତୁ ଅଟୁ ମହାବୀର ।
ଶୁଣିଣ ଅଙ୍ଗଦ ଯୋଡ଼ଇ ବେନିକର ॥
ଭୋଦେବ ଶ୍ରୀରାମ ତୁ ତ୍ରୈଲୋକ୍ୟେ ଆଧିପତି ।

ଯେ ତୋହୋର ଚରଣେ ମୁଂ ଅଟଇ
ବଶ୍ୟାବୃତ୍ତି ॥୫୦
ଯହିଂକି ଆଗ୍ୟାଂ ଦେବୁ ତହିଂକି ମୁଂ ଯିବି ।
ଯେ ତୋହୋର ଶ୍ରୀଚରଣେ ସେବା
କରିଥିବି ॥
ତୁ କିମ୍ପା ଚିନ୍ତା କରୁ ଦେବ ଜଗଜିତା ।
ରାବଣ ମାରି ମୁଂ ଆଣିଦେବି ସୀତ୍ୟା ॥
ପୂର୍ବେଣ ପିତା ମୋର ଧରିଣ ଆଣିଥିଲେ ।
ପୌଲସ୍ତି ମୁନି ଆସିଣ ତାକୁ ମାଗିନେଲେ ॥
ଯେ ତୋହୋର ଆଗ୍ୟାଂରେ ମୁଂ ତାକୁ ଇତର
ମଣଇ ।
ଶୁଣିଣ ସାନନ୍ଦ ଶ୍ରୀରାମ ଗୋସାଇଂ ॥
ଯେଥୁ ଅନନ୍ତରେ ଦୁର୍ଗେ ଶୁଣିମା ଦିବ୍ୟରସ ।
ସୁଗ୍ରୀବରକୁ ଆଗ୍ୟାଂଦେଲେ ରଘୁଶିଷ୍ୟ ॥୬୦
ଭୋ ମୈତ୍ର ଥାଠ କଢ଼ାଇ ବେଗେ ଆଣ ।
ଦେଖିବା ରିକ୍ଷ କପି କେତେ ବଳ ପ୍ରାଣ ॥
ଶୁଣିଣ କପିରାୟେ ହନୁମତକୁ ରାଇ ।
ଅଙ୍ଗଦ ସଙ୍ଗତେ ତୁମ୍ଭେ ରହ ହୋ
ବେନିଭାଇ ॥
ସେନାପତିମାନଙ୍କୁ ଆଣି କରାଅ ଦର୍ଶନ ।
ଜମ୍ୱେବ ଜଣାନ୍ତି ସବୁ ଯେ ଯାହାର ନାମ ॥
ସୁଷେଣ ମନ୍ତ୍ରୀ ସବୁ ପାଞ୍ଜିରେ ଲିହିବେ ।
ଯାହାର ଯେତେକ ସନ୍ୟ ଆମ୍ଭକୁ
ଜଣାଇବେ ॥
ପର୍ବତର ତଳେ ରହିଣ ଥିବେ ବଳ ।
ଦ୍ୱାର ଜଗିଣ ଥିବେ ନଳ ନୀଳ ॥ ୭୦
ଯେକାବେଳକେ ସନ୍ୟ ମାଡ଼ି ନ ପଡ଼ିବେ ।
ଗୋଟିଯେ ଗୋଟିଯେ ହୋଇ ଦର୍ଶନ
କରିବେ ॥
ଯେତେକ ସନ୍ୟ ଘେନିଣ ଆସିଛନ୍ତି ଯେହୁ ।
ନାମ ମାନ ସୁଷେଣ ଶ୍ରୀରାମ ଆଗେ କହୁ ॥
ମୁହିଂ ଅବଧାନ କରାଉଥିବି ସମସ୍ତ ।
ତେବେ ସେ ଜାଣିବେ ଯେ ସୀତୟାର
କାନ୍ତ ॥
ଯେସନ ଭାଳିଣ ସୁଗ୍ରୀ କଲାକ ରାଜନୀତି ।

ଗନ୍ଧମାର୍ଦ୍ଦନକୁ କହିଲା ତାରାପତି ॥
ତୁମ୍ଭେ ଯାଇ ସନ୍ୟକୁ ହକରାଇ ଆଣ ।
ଗୋଳ ନ କରିବେଟି ରାଜାର
ଆଗ୍ୟାଂରେଣ ॥୮୦
ମାଡ଼ି ନ ପଡ଼ିବେ ନ ଆସିବେ ଧାଇଂ ।
ନୀଳ ସେନାପତିକି ଦ୍ୱାରେଣ ରଖାଇ ॥
ରାଜାର ଆଗ୍ୟାଂରେ ଗନ୍ଧ ମାରଦନ ।
ଶ୍ରୀରାମ ଛାମୁର ସେ ଚଳିଲେ ବହନ ॥
ନଳ ନୀଳ ସହିତେଣ ଅଛନ୍ତି ବେନିବୀର ।
ତାହାକୁ କହିଲେ ଯାଇ ରାଜାର ଉତ୍ତର ॥
ଶୁଣିଣ ଦୁଇ ବୀରେ ଦ୍ୱାରେଣ ରହିଲେ ।
ଆପଣେ ଯାଇଣ ସେ ସନ୍ୟକୁ ଡାକ
ଦେଲେ ॥
ସୁଗ୍ରୀବର ଆଗ୍ୟାଂ ହୋ ଆସସି ବୋଇଲେ ।
ଶ୍ରୀରାମ ଶ୍ରୀଚରଣେ ଦର୍ଶନ କର
ଭଲେ ॥୯୦
ହୁରି ଜୁରି ନୋହିବଟି ମାଡ଼ି ନ ପଡ଼ିବ ।
ଜଣେ ଜଣେ ହୋଇଣ ସେ ଦ୍ରଶନ କରିବ ॥
ଯେ ଯାହାର ବଳକୁ ସେ ଥିବ ସଜକରି ।
ମୋହୋର ଡାକିଲେ ସେ ଆସିବ ରକ୍ଷ ହରି ॥
ପୂର୍ବର କଥାମାନ ଛାଡ଼ି ମେଲ କପି ।
ଶ୍ରୀରାମ ଅଟନ୍ତି ଯେ ଅତିଅ ପ୍ରତାପୀ ॥
ଯାହାର ଯେକା କାଣ୍ଡକେ ବାଳୀବୀର
ମଲା ।
ଯାହାରେ ସୁଗ୍ରୀବର ଶ୍ୱେତଛତ୍ର ଧରାଇଲା ॥
ଶ୍ରୀରାମକୁ ଦ୍ରଶନ କରିବେ ଆଜ ସନ୍ୟ ।
ଯାହାକୁ ପ୍ରଶଂସିବେ ଜୀବନ ତାର
ଧନ୍ୟ ॥୧୦୦
ଶୁଣିଣ ଶଉରୀ ଯେ ଗଲାକ ଆଗସରି ।
ଗନ୍ଧମାର୍ଦ୍ଦନ ତାର ଅଛଇ କର ଧରି ॥
ଧୀରହୋଇ ଚାଲଇ ସେ ମନରେ ଶଙ୍କା
ଧରି ।
ସର୍ପକି ମଣ୍ଡୁକୀର ଅଛଇ ଗଳାଧରି ॥
ବେନିବୀରେ ଯାଇଣ ଦ୍ୱାରେ ସେ ମିଳିଲେ ।
ନଳ ନୀଳକୁ କହିଣ ଭିତରେ ପଶିଲେ ॥

ସଙ୍ଗରେ ସଇନି ଅଛଇ ବହୁତ ।
ଦେଖିଣ ବୋଇଲେ ସେ ଅଙ୍ଗଦ ହନୁମତ ॥
ଶ୍ରୀରାମ ଛାମୁରେ ସେ କଲେକ ତାକୁ
ନେଇ ।
ଓଳଗିଲେ ଶଉରୀ ଯେ ପନସ ତଳେ
ଥୋଇ ॥୧୦
ସୁଗ୍ରୀବର କହନ୍ତେଣ ଶୁତିଲେ ଗଡ଼ଘାଲି ।
ହସିଣ ଶ୍ରୀରାମ ତାକୁ ଉଠ ଉଠ ବୋଲି ॥
ସୁଷେଣ ଜମ୍ୱେବ ବୋଇଲେ ଦେବ ଶୁଣ ।
ଯେହାର ଘର ଯେଠାକୁ ଅଟଇ ସହସ୍ର
ଯୁଣ ॥
ତାରାବତୀ ପର୍ବତରେ ଥାଇ ଯେ ଶଉରୀ
ସେନାପତି ।
ତୋହୋର ଆଗ୍ୟାଂରେଣ ପ୍ରବେଶ ହୋୟେ
ଯେଥି ॥
ଜମ୍ୱେବ ବୋଇଲେ ଦେବ ଶୁଣିମା
ରଘୁନାଥ ।
ବାନର ସଇନ୍ୟ ଯେହାର କୋଟିଯେ
ଅହିବ୍ରୁତ ॥
ଶରୀର ଧୂମ୍ରବର୍ଣ୍ଣ ରକତ ବର୍ଣ୍ଣ ଆଖି ।
କାଳ ଦେବତା ଯେହାକୁ ଭୟେ କରେ
ଦେଖି ॥୨୦
ମତ୍ତଗଜ ପ୍ରାକର୍ମ ଯେ ବହନ୍ତି ଜଣେ ଜଣ ।
ଶୁଉରୀ ସେନାପତିର ଶତେ ସିଂଘର
ପରାକର୍ମ ॥
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେଣ ଲିହି ।
ଜମ୍ୱେବ ସୁଷେଣ ସମସ୍ତ ଦେଲେ କହି ॥
ଶୁଣିଣ ରାମ ଯେ ହୋଇଲେ ହରଷ ।
ପ୍ରସାଦ ଦେଲେ ତାକୁ ଅମଳାଣ ପୁଷ୍ପ ॥
ଶଉରୀ ମଥାରେ ଯେ ପଡ଼ିଲା ପୁଷ୍ପ ଯାଇ ।
ତେଡ଼େ ବଡ଼ ମହାବୀର ପଡ଼ିଲା ଘୁମାଇ ॥
ଅଙ୍ଗଦ ହନୁମତ ଧଇଲେ ତାକୁ ଟୋକି ।
କିମ୍ପା ହୋ ଭୂମିଗତ ହୋଇଲୁ
ମହାବଳୀ ॥୩୦
ଶଉରୀ ବୋଇଲା ଶ୍ରୀରାମ ମୁଖ ଚାହିଂ ।

ଅମଳାଣ ପୁଷ୍ପରେ ମୋତେ ଗଂଜିଲୁ
ଗୋସାଇଁ ॥
ବଜ୍ର ପଡ଼ିଲା ପ୍ରାୟେକ ମୁଂ ମଣିଲଇଂ ଗରୁ ।
ଜଗତ ଲୋକେ ତୁ ଅଟୁ ହନ୍ତକାରୁ ॥
ତୋହୋର କାଣ୍ଡରେ କିମ୍ପା ନ ମରିବ
ବାଳୀ ।
ମୋହୋର ପ୍ରାୟେ ବୀର ପୁଷ୍ପ ଲାଗି ଡଳି ॥
ଭୋ ରଘୁନନ୍ଦନ ମୁଂ ସମାନ୍ୟ ନୁହଇ ।
ତୋହୋର ପ୍ରସାଦେ ମୁଂ କାହାକୁ ନ ଗଣଇ ॥
ମେରୁରେ ଉଠି ମୁଂ ପଡ଼ଇ ସିନ୍ଧୁଜଳେ ।
ଯେକ ବୁଡ଼ୁଣାକେ ଆସି ହୁଅଇ
ଯେଣିକୂଳେ ॥୪୦
ମହାମତ୍ତ ହସ୍ତୀର ମୁଂ ଯେ ଧରଇ ଚରଣ ।
ବୁଲାଇ ଫିଙ୍ଗିଦେଲେ ପଡ଼େ ଦଶ ଯୁଣ ॥
ବାହା କଣ୍ଡୁକଲେ ମୁଂ ଯେ ବିପିନେ
ପଶଇ ।
ଯୁଣେକ ପର୍ଯ୍ୟନ୍ତେ ପୁଣ ବୃକ୍ଷନ୍ତ ଭାଙ୍ଗଇ ॥
ନଦୀ ଭିତରେ ପଶି କୁମ୍ଭୀର ଆଣଇ ଧରି ।
ରୋଷେ ଭୂମିରେ ଆଣି ପିଟଇ କୋପ କରି ॥
ମତ୍ତ ବ୍ୟାଘ୍ରମାନଙ୍କୁ ମୁଂ ଧରିଣ କଚାଡ଼ଇ ।
ଅନ୍ୟ ଜନ୍ତୁମାନଙ୍କୁ ମୁଂ ଯେ କାହାକୁ ନ
ଗଣଇ ॥
ବାଳୀକି ସେ ମୋହୋର ମନରେ ଶଙ୍କା
ଥିଲା ।
ତୋହୋର ପ୍ରସାଦେ ସେ ଭୟ ମୋର
ଗଲା ॥୫୦
ଭୋ ରଘୁନନ୍ଦନ ଦାସ ମଚ୍ଛଳ ଦାଶରଥି ।
ତୋତେ ଦେଖି ଦୃପତି ଯେ ହୋଇଲା ମୋର
ମତି ॥
ଅପାର ମହିମା ତୋର ପୀରତି ଜନେହିତ ।
କେବଣ ତପେ ସୁଗ୍ରୀ ହୋଇଲା ତୋର
ମୈତ୍ର ॥
ଅନେକ କାଳର ଦୁଃଖ ଖଣ୍ଡିଲା
ଅବହେଳେ ।
କିଷ୍କିନ୍ଧ୍ୟାରେ ରାଜା ହୋଇଲା ତୋହୋର
ପୁଣ୍ୟବଳେ ॥

ଶ୍ରୀରାମ ବୋଲିଣ ମୁଂ ଯେ ଶ୍ରବଣେ
ଶୁଣୁଥିଲି ।
ପୂର୍ବର ତପ ଫଳେ ଦ୍ରଶନ ପାଇଲି ॥
ଯେବେ ତୋହୋର କାର୍ଯ୍ୟ କରିବି
ଗୋସାଇଂ ।
ଦିଅସି ଆଗ୍ୟା ତୋର ଶତ୍ରୁ ଅଛି କାହିଁ ॥୬୦
ଶୁଣିଣ ଶ୍ରୀରାମ ଯେ ହୋଇଲେ ହରଷ ।
ପୁଣିହିଂ ପ୍ରସାଦ ତାକୁ ଦେଲେ ଶ୍ୱେତ ପୁଷ୍ପ ॥
ଭୟ କରିଣ ଶିର ନ ପାଡ଼ିଲା ଡରେ ।
ଭୂମିରେ ପଡ଼ନ୍ତେ ହସିଲେ ରଘୁବୀରେ ॥
ଆସ ଆସ ଶଉରୀ ହୋ କିମ୍ପାଇ ଭୟେ
କରୁ ।
ମିତ୍ରଙ୍କ ସମାନେ ତୁ ଅଟୁ ଉପଗାରୁ ॥
ଉଶ୍ୱାସି ପୁଷ୍ପ ରାମ ସଞ୍ଚିଲେ ତାର ଶିରେ ।
ମହାବଳ ପାଇ ରୋମ ଉଶ୍ୱାସେ
ତୋଷଭରେ ॥
ମନରେ ବିଚାରଇ ଯେ ପ୍ରତକ୍ଷେ
ନାରାୟଣ ।
ଯେହାଙ୍କୁ ସେବାକଲେ ପାଇବା
କାରଣ ॥୭୦
ରାଘେବ ବୋଇଲେ ସୁଗ୍ରୀବ ମୈତ୍ର ଶୁଣ ।
ଯେ ଯେ ଦକ୍ଷିଣରେ ଦିଶଇ ବେଲାବନ ॥
ଅଇଲାର ସନ୍ୟ ସବୁ ରହନ୍ତୁ ତହିଂ ଯାଇ ।
ସୁଗ୍ରୀବର ବୋଇଲେ ଯେ କଥା ମିଳଇ
ଗୋସାଇଂ ॥
ହନୁମତ ଅଙ୍ଗଦ ଶଉରୀକୁ ନେଲେ ।
ଆଉସବୁ ସନ୍ୟକୁ ଯାଅ ହୋ ବୋଇଲେ ॥
ଯେଥୁ ଅନନ୍ତରେ ପୁଣ ତାରା ପିତା ଆୟେ ।
ଶ୍ରୀରାମ ଶ୍ରୀଚରଣେ ଦ୍ରଶନ ଆସି କୟେ ॥
ତାହାର ସଙ୍ଗତରେ ଅଇଲା ରୋମାପିତା ।
ପାୟେ ପଡ଼ି ଶୁଅନ୍ତେ ପୁଣ ପୁଛନ୍ତି
ଜଗଜିତା ॥୮୦
କେବଣ ଦେଶରୁ ଯେ ଅଇଲେ ବେନି
ଜନ ।
କର ଯୋଡ଼ି କହଇ ସୁଗ୍ରୀବ ରାଜନ ॥

ଶୁଣ ଦେବ ଶ୍ରୀରାମ ଯେ ମୋହୋର
ଶଶୁର ।
ରୋମାଙ୍କର ପିୟର ଯେ ଯେ ଥାଆନ୍ତି
କାଶୀପୁର ॥
ରମଣ ନାମ ଯେହାଙ୍କର ଅଟଇ ଚାପଧାରୀ ।
ସହସ୍ର କାଠି କପି ଅଟଇ ଯେହାଙ୍କରି ॥
ଚମ୍ପା ପୁଷ୍ପ ପ୍ରାୟେ ଦିଶଇ ଦେହ କାନ୍ତି ।
ବାରାଣସି ପୁରେ ଯେ ସର୍ବଦା ରହିଥାନ୍ତି ॥
ଯେହୁ ରମଣଟି ମୋହୋର ଅଟେ ପ୍ରାଣ ।
ଯେହାଙ୍କୁ ଗଉରୋବ କରସି ରାମରାଣ ॥୯୦
ଦାରାକ୍ଷ ଫଳ ତୋତେ ଦେଇଅଛି ଦେଖା ।
ଦୁଃଖର କାଳେ ମୋତେ ହୋଇଥିଲା ସାଖା ॥
ଶୁଣିଣ ଶ୍ରୀରାମ ତାକୁ ଗଉରୋବ କଲେ ।
ବେଲାବନେ ତୁମ୍ଭେ ଯାଇ ରହସି
ବୋଇଲେ ॥
ତାରାର ପିଅର କଳାକ ଦ୍ରଶନ ।
ଦେଖା ଆଣିଅଛି ଅଗର ଚନ୍ଦନ ॥
ଶ୍ରୀରାମ ପଚାରନ୍ତେ ଅଙ୍ଗଦ କହିଲା ।
ମୋହୋର ଅଜା ଯେହୁ ବୋଲିଣ
ବୋଇଲା ॥
ଚିତ୍ରକୂଟ ପର୍ବତେ ସର୍ବଦା ଯେହୁ ଥାଇ ।
ଅହିବ୍ରତେକ ସନ୍ୟ ଯେହାର ଅଟଇ ॥୧୦୦
ସୁବର୍ଣ୍ଣ ପ୍ରାୟେକ ଦେହ ଦିଶଇ ସୁନ୍ଦର ।
ସିଂଘେକର ପରାକର୍ମ ବହନ୍ତି ଯେହୁ ବୀର ॥
ଦିଅସି ଆଗ୍ୟା ବସା ହୋଇଣ ଯେ ରହୁ ।
ଯାଅ ବୋଲି ପ୍ରସାଦ ତାକୁ ଦେଲେ ରାମ
ରାହୁ ॥
ସୁଗ୍ରୀ ଅଙ୍ଗଦ ଯହୁଂ ଯେକଥା କହିଲେ ।
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେ ଲିହିଲେ ॥
ଯେଥୁଅନନ୍ତରେ ଅଇଲା କେଶରୀ ।
ପାଚଲା ପଣସ ତାଳ ଅଛଇ କରେ ଧରି ॥
ଶ୍ରୀରାମ ଶ୍ରୀଚରଣେ ସେ କଲା ନମସ୍କାର ।
ହନୁମତ କହିଲେ ଯେ ଯୋଡ଼ିଣ
ବେନିକର ॥୧୦

ଭୋଦେବ କେଶରୀ ଯେ ସୁଗ୍ରୀବର
ଭିଣୋଇ ।
ମୋହୋର ପିଅର ଯେ କଣାର୍ଅର୍କ ତୀର୍ଥେ
ଥାଇ ॥
ଅହିବ୍ରତେ ସନ୍ୟ ଯେହାର ସଙ୍ଗରେ
ଅଇଲା ।
ଯେତେକ ପରାକର୍ମ ଯେହାର କହିତ
ନୋହିଲା ॥
ଭାସ୍କର ତୀର୍ଥେ ଯେ ସୂର୍ଯ୍ୟଙ୍କ ସେବା
କରଇ ।
ଶୁଣିଣ ଶ୍ରୀରାମ ଯେ କତିକି ତାକୁ ରାଇ ॥
ଆସ ଆସ କେଶରୀ ତୁ ହନୁମତର ପିତା ।
ରାବଣ ଚୋରାଇ ନେଲାକ ମୋର ସୀତ୍ୟା ॥
ତେଣୁ ସେ ଆରମ୍ଭ କରୁଅଛି ମୁହିଂ ।
ତୁ ମୋତେ ତ୍ରିପୁତି କର ସୀତ୍ୟା ଦେଇ ॥୨୦
ଶିରେ କର ଦେଇଣ କେଶରୀ ବୋଇଲା ।
ଯେ ତୋହୋର ଶତ୍ରୁ ଜାଣ ଆଜହୁଂ ସେ
ଗଲା ॥
କାହିଂଅଛି ମୋତେ ଆଗ୍ୟାଂ ଦିଅ
ଦେବରାଜ ।
ଅଭିମାନ ସମୋଦ୍ରୁ ମୁଂ ଉଧରିବି ଆଜ ॥
ଶୁଣିଣ ଶ୍ରୀରାମ ହୋଇଲେ ପରମ ଶାନ୍ତି ।
ବେଲାବନେ ବସା ଯାଇ କର ହୋ
ବୋଲନ୍ତି ॥
ଶ୍ରୀରାମ ଆଗ୍ୟାଂରେ କେଶରୀ ଚଳିଗଲା ।
ଗବାକ୍ଷ ସେନାପତି ଦ୍ରଶନ ଆସି କଲା ॥
ଅଙ୍ଗଦ ହନୁମତ ଗୋଚରେ ଗନ୍ଧମାରଦନ ।
ସମର୍ପି ଆଣିତେ ସେ ଗଲା ଅନ୍ୟ
ସନ୍ୟ ॥୩୦
ଶ୍ରୀରାମ ଛାମୁରେଣ କଲେ ତାକୁ ନେଇ ।
ଗଡ଼ଘାଲି ଶୁତିଲା ସେ ପୁନାଙ୍ଗ ପୁଷ୍ପ ଥୋଇ ॥
ସୁଗ୍ରୀବର ବୋଇଲା ଯେ ଗବାକ୍ଷ
ସେନାପତି ।
ଗୟା ସୀମାରେ ଯେ ଅଟଇ ଆଧିପତି ॥
ଶୁଣିଣ ଶ୍ରୀରାମ ଯେ ପ୍ରଶଂସା ତାକୁ କଲେ ।
ଯେହାର କେତେ ବଳ ଅଛଇ ବୋଇଲେ ॥
ଜମ୍ୱେବ ବୋଲନ୍ତି ଯେ ଯୋଡ଼ି ବେନିକର ।
ପାଞ୍ଚ କୋଟି ଯେହାର ଗୋ ଲାଙ୍ଗୁଡ଼ା ବୀର ॥
ଶାର୍ଦ୍ଦୋଳଙ୍କ ସମାନ ଯେ ବଳ ବହନ୍ତି
ଯେକେ ଯେକେ ।
ଯେହାଙ୍କୁ ଭୟ ଦେବ କରନ୍ତି
ସର୍ବଲୋକେ ॥୪୦
ସହସ୍ରେ ବ୍ୟାଘ୍ରର ବହଇ ଯେହୁବଳ ।
ଶୁଣିଣ ତରାକ୍ଷ ଲିହିଲେ ପାଞ୍ଜିରେଣ ॥
ଶ୍ରୀରାମ ବୋଇଲେ ତୁ ସେ ବେଲାବନେ
ଥାଅ ।
ସମସ୍ତ ଯୂଥପତି ସଙ୍ଗତେଣ ରହ ॥
ସୁଗ୍ରୀବର ବୋଇଲେ ଯେବେ ଅନ୍ୟ କହ ।
ବେଗେଣ ଆସ ତୁ ସେ ମୋହୋର ଆଗ୍ୟାଂ
ବହ ॥
ଆଗ୍ୟାଂ ପାଇଲା ଯହୁଂ ଗଲାକ ଗବାକ୍ଷ ।
ଭାଲୁକ ବଳ ଘେନି ଅଇଲା ଧୂମାକ୍ଷ ॥
ପେଣ୍ଡାଯେ ଖଜୁରୀ ଆଣି ରାମକୁ
ଦେଖାକଲା ।
ପାଯେ ପଡ଼ି ଶୋଅନ୍ତେଣ ସୁଷେଣ
ଜଣାଇଲା ॥୫୦
ଭୋଦେବ ରଘୁନାଥ ଯେ ବହୁତ ଦୂରହୁଂ
ଆଗତ ।
ଯେହାର ଘର ଦେବ ଧବଳି ପର୍ବତ ॥
ଦୁଇ କୋଟି ଭାଲୁକ ବଳ ଘେନିଣ
ଅଇଲା ।
ଶୁଣିଣ ତାରାକ୍ଷ ମନ୍ତ୍ରୀ ପାଞ୍ଜିରେ ଲିହିଲା ॥
ଜମ୍ୱେବ ବୋଇଲେ ଯେ ଅଟଇ ବଡ଼
ବୀର ।
ପ୍ରାଣ ବହଇ ଯେ ସହସ୍ର କପିଙ୍କର ॥
ଯେକ ଯେକ ରକ୍ଷଙ୍କର ବଳ ଅପ୍ରମାଣ ।
ଶୁଣିଣ ଆଗ୍ୟାଂ ଦେଲେ ରଘୁକୁଳ ରାଣ ॥
ଯାଅ ତୁ ଧୂମାକ୍ଷ ହୋ ବେଲାବନେ ରହ ।
ସୁଗ୍ରୀବ ବୋଇଲେ ଯେବେ ଅନ୍ୟ ଆଗେ
କହ ॥୬୦
ଯେଥୁ ଅନନ୍ତରେ ଦଧିମୁଖ ବୀର ।
ଦ୍ରଶନ ଆସିକଲା ଶ୍ରୀରାମ ଶ୍ରୀପୟର ॥
ମହୁ ଫେଣାଯେକ ଦେଖା ଆଣି ଦେଲା ।
ଶ୍ରୀରାମକୁ ଚାହିଂଣ ସୁଗ୍ରୀବ ବୋଇଲା ॥
ଯେହାର ତ ଅପୂର୍ବ ଦିଶଇ ବଦନ ।
ଜାଣି ପଟାନ୍ତର ଶରଦ ପୂର୍ଣ୍ଣମୀ ଜହ୍ନ ॥
କେବଣ ଦେଶରୁ ଯେ ଅଇଲା ଭୋ ମୈତ୍ର ।
ଶୁଣିଣ କପିରାଯେ ଯୋଡ଼ଇ ବେନିହସ୍ତ ॥
ଯେ ଯେ ଦଧିମୁଖ ଦେବଗିରିରେ ଥିଲା ।
ସହସ୍ର କାଠି ବଳ ଘେନିଣ ଅଇଲା ॥୭୦
ଶତେକ ଷଣ୍ଢର ବଳ ବହଇ କପିବୀର ।
ରବିତଳେ ଗଣିତାଯେ ଅଟଇ ମହାବୀର ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ଆଗ୍ୟାଂ ଦେଲେ ବେଲାବନେ କର ଯାଇ
ବାସ ॥
ତାରାକ୍ଷ ମନ୍ତ୍ରୀ ତାହା ପାଞ୍ଜିରେ ଲିହିଲେ ।
ପ୍ରସାଦ ପାଇ ଦଧିମୁଖ ବେଲାବନେ ଗଲେ ॥
ସମସ୍ତେ ରହିଲେ ଯାଇ ବେଲା ବନସ୍ତର ।
ନୀଳ ଦର୍ଶନ କଲା ଯେଥୁ ଅନନ୍ତର ॥
ଦେଖିଣ ପଚାରନ୍ତି ଦେବ ରଘୁବୀର ।
କେତେକ ସନ୍ୟ ତୁ ଆଣିଛୁ ସଙ୍ଗତର ॥୮୦
କହସି ନୀଳ ତୁ ହୋ ମୋହୋର ଆଗରେ ।
ପାଞ୍ଜିରେ ତାରାକ୍ଷ ଲିହ ତୁ ସତ୍ୱରେ ॥
କର ଯୋଡ଼ି ବୋଲଇ ଦେବ ଦଶ କୋଟି
ବଳ ।
ସମସ୍ତେ ଅଟନ୍ତି କ୍ଷେତ୍ରୀୟ ଅନର୍ଗଳ ॥
ଗବାକ୍ଷ ନାମେଣ ସେ ମୋହୋର ସାନ
ଭାଇ ।
ନୀଳଗିରି ସୀମାନ୍ତରେ ଥିଲା ସେହୁ ରହି ॥
ଶ୍ରୀରାମ ବୋଇଲେ ତୁ ସେ ବେଲାବନେ
ରହ ।
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେଣ ଲିହ ॥
ଡାଳିମ୍ବ ଫୁଲ ମାଳେ ଗୁନ୍ଥିଣ ଧରିଥିଲା ।
ଲକ୍ଷଣ ହସ୍ତେ ଦେଇ ରାମକୁ
ଭେଟିଲା ॥୯୦

ଯେଥୁ ଅନନ୍ତରେ ଦୃବିନ୍ଦ ମହାବୀର ।
ଦାମୋଦର ନଦୀ ତୀରରେ ଅଟଇ ଯେହାର
ଘର ॥
ସର୍ବଦା ଥାଇ ଦେବ ଯେହୁ ସେହୁ ପୁରୀ ।
ସ୍ବଂୟେ ନାରାୟଣ ତହିଁ ଅଛନ୍ତି ବିଜେ
କରି ॥
ଲକ୍ଷେ କୋଟି ବଳ ଯେହୁ ଘେନିଣ
ଅଇଲା ।
ଶୁଣିଣ ତାରାକ୍ଷ ପାଞ୍ଜିରେ ଲିହିଲା ॥
ଶ୍ରୀରାମ ଆଗ୍ୟାଂ ଦେଲେ ବସା ହୁଅ ଯାଇ ।
ତକ୍ଷଣେ ଦୃବିନ୍ଦ ଗଲାକ ଆଗ୍ୟାଂ ପାଇ ॥
ମହାନ୍ଦ୍ର ସେନାପତି ଦ୍ରଶନ ଆସି କରି ।
ପାଚିଲା ତାଳିମ୍ବ ସେ ଦନାୟେ ଅଛି
ଧରି ॥୧୦୦
ସୁଗ୍ରୀବର ବୋଇଲେ ଯେ ମହାନ୍ଦ୍ର
ମହାବୀର ।
ମଗଧ ଦେଶେଣ ଅଟଇ ଯେହାର ଘର ॥
ସହସ୍ରେ କୋଟି ବଳ ଆଣିଲାକ ଯେହି ।
ଶୁଣିଣ ତାରାକ୍ଷ ତାହା ପାଞ୍ଜିରେ ଲିହଇ ॥
ଶ୍ରୀରାମ ବୋଇଲେ ତୁ ରହସି
ବେଲାବନେ ।
ଗଲାକ ମହାନ୍ଦ୍ର ପରମ ତୋଷ ମନେ ॥
ପାଞ୍ଚକୋଟି ବଳ ଘେନି ଅଇଲା ଗବୟେ ।
ଜମ୍ବୁଫଳ ଘେନିଣ ଦ୍ରଶନ ଆସି କୟେ ॥
ଅଙ୍ଗଦ ହନୁମତ ଜଣାଇଲେ ଯାଇ ।
ଗବୟେ ସେନାପତି ଯେ ଅଟଇ
ଗୋସାଇଂ ॥୧୦
ଗୋମତୀ ନଦୀକୂଳେ ଅଟଇ ଯେହା ଘର ।
ସହସ୍ରେ ମଉଗଜ ପ୍ରାକର୍ମ ବହଇ କପିବର ॥
ଶ୍ରୀରାମ ବୋଇଲେ ବସା ତୁମ୍ଭେ ହୁଅ ।
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେଣ ଲିହ ॥
ଯେଥୁ ଅନନ୍ତରେ ଜମ୍ୱେବର ଭାଇ ।
ଦଶ କୋଟି ଭାଲୁକ ସେ ଘେନିଣ
ଦେଖାଦେଇ ॥

ରିକ୍ଷ ରାୟେ ଉଠିଣ ସେ ଯୋଡ଼ିଲେ
ବେନିକର ।
ଯେ ମୋହୋର କନେଷ୍ଠ ଅଟଇ ରଘୁବୀର ॥
ଜମ୍ବୁନଦୀ କୂଳେଣ ଅଟଇ ଯେହାର ପୁରୀ ।
ଯହିଁ ବିଜୟେ କରିଣ ଅଛନ୍ତି
ଶାକାମ୍ବରୀ ॥୨୦
ହିଙ୍ଗୁଳା ନାମ ଗୋଟି ପ୍ରସିଦ୍ଧ ତାହାଙ୍କର ।
ପଞ୍ଚାଶତ ଯୋଜନ ଅଟଇ ସେହୁ ଦୂର ॥
ଯେହାର ନାମ ଗୋଟି ଅଟଇ
ଜୋତିର୍ମୟେ ।
ଗଙ୍ଗାଜଳ ଘେନିଣ ସେ ତୋର ଛାମୁକୁ
ଆୟେ ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ଭାଗୀରଥି ଜଳ ଆଣି ଶିରେ ସିଞ୍ଚିଲେ
ରଘୁଶିକ୍ଷ୍ୟ ॥
ବେଲାବନେ ରହ ଯା ବୋଲିଣ ଆଗ୍ୟାଂ
ଦେଲେ ।
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେ ଲିହିଲେ ॥
ଶ୍ୱେତ ରମଣ ନାମେ ବାନର ଅଇଲା ।
ଶ୍ୱେତ ଗଙ୍ଗାକୂଳେ ଯେ ସର୍ବଦା
ରହିଲା ॥୩୦
ଶୟେ କୋଟି ଯେହାର ଅଟଇ ଅଙ୍ଗବଳ ।
ଯେହାର ସନ୍ୟ ଦେବ ହେ ଅଟଇ ଗହଳ ॥
ଶ୍ୱେତ ଅପରାଜିତା ଫୁଲ ଘେନିଣ
ଆସିଅଛି ।
ଶିରେ ଘେନି ସଂଗ୍ରାମ କଲେ ଜୟେ ହୋଇ
ରଘୁବଛି ॥
ଶୁଣିଣ ଶ୍ରୀରାମ ତାକୁ ସନ୍ତୋଷ ହୋଇଲେ ।
ହସ୍ତରେ ଘେନିଣ ପୁଷ୍ପ ଜଟାରେ ମଣ୍ଡିଲେ ॥
ବୋଇଲେ ବେଲାବନେ ରହ ତୁହି ଯାଇ ।
ତାରାକ୍ଷ ମନ୍ତ୍ରୀ ପାଞ୍ଜିରେଣ ଲିହିଲେ
ଖବଦାଇ ॥
ପବନ ନାମେ ଯେ ଗନ୍ଧମାର୍ଦ୍ଦନର ସାନ ।
ନଳ ଶ୍ୱେତ ପୁଷ୍ପ ଘେନି କଲାକ
ଦ୍ରଶନ ॥୪୦

ଦେଖିଣ ଶ୍ରୀରାମ ତାକୁ ହରଷ ହୋଇଲେ ।
ଯେତ ଅପୂର୍ବ କାହିଁ ପାଇଲ ବୋଇଲେ ॥
ଗନ୍ଧମାର୍ଦ୍ଦନ ବୋଇଲେ ଯେ ମୋହୋର
ସାନ ଭାଇ ।
ଗନ୍ଧର୍ବ ନଦୀକୂଳେ ସର୍ବଦା ଯେହୁଥାଇ ॥
ସାତ କୋଟି ବାନର ଘେନିଣ ଆସିଅଛି ।
ବେଲାବନେ ରହ ବୋଲି ବୋଇଲେ
ରଘୁବଛି ॥
ଯେଗାର କୋଟି ଭାଲୁକ ଘେନି ଦୁର୍ମୁଖ
ଅଇଲା ।
କୃଷ୍ଣାଜିନ ଛାଲ ଦେଇ ଦ୍ରଶନ ସେହୁ କଲା ॥
ସୁଷେଣ କହିଲେ ଯେ ଦୁର୍ମୁଖ ମହାବୀର ।
ଦ୍ରାବିଡ଼ ଦେଶରେ ଅଟଇ ଯେହାର
ଘର ॥୫୦
ଦଶ ହସ୍ତୀର ଅଟଇ ଯେହାର ପରାକ୍ରମ ।
ବେଲାବନେ ରହ ବୋଲି ବୋଇଲେ
ଶ୍ରୀରାମ ॥
ବିରୂପାକ୍ଷ ଅଇଲା ଘେନି ପାଞ୍ଚକୋଟି ବଳ ।
ଗଣ୍ଡୁକୀ ନଦୀକୂଳେ ଯେ କରିଅଛି ଆଳ ॥
ଶାଳଗ୍ରାମ ଶିଳା ଆଣି ଛାମୁରେ ଥୋଇଲା ।
ଶ୍ରୀରାମ ମୁଖକୁ ଚାହିଁ ଓଳଗି ଶୁତିଲା ॥
ଉଚ୍ଛେଣ ବୋଇଲା ରଘୁକୁଳ ସାଇଂ ।
ତାରାକ୍ଷ କହିଲେ ଯେ ମୋହୋର ସାନ
ଭାଇ ॥
ଗଣ୍ଡୁକୀ ନଦୀକୂଳେ ଅଟଇ ଯେହାର ଘର ।
ଅଙ୍ଗଦ ଆଗ୍ୟାଂରେ ଅଇଲା ଯେହୁ
ବୀର ॥୬୦
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ବେଲାବନେ ରହ ଯୂଥପତିଙ୍କର ପାଶ ॥
ସହସ୍ରେ କୋଟି ବଳ ଘେନି ହନୁମତ
ଅଇଲା ।
କରପତ୍ର ଯୋଡ଼ି ଶ୍ରୀରାମ ଛାମୁରେ କହିଲା ॥
ଯେ ମୋହୋର ଅଙ୍ଗବଳ ଥିଲେ ପିତାଙ୍କର
ସଙ୍ଗେ ।
ଆଗ୍ୟାଂ ଦେଲେ ରହ ଯାଇ ବେଲାବନ
ଲାଗେ ॥

ଶହେ କୋଟି ବଳ ଘେନି ଅଇଲା
ରୈବତ ।
କୁଶ ମଦାଙ୍ଗ ତଳେ ଥୋଇ କଲାକ
ଦଣ୍ଡବତ ॥
ସୁଷେଣ କହଇ ଯୋଡ଼ିଣ ବେନିକର ।
ଯେ ଯେ ରଇବତ କନେଷ୍ଟ
ମୋହୋର ॥୭୦
ରଇବତ ପର୍ବତେ ସର୍ବଦା ଯେହୁ ଥାଇ ।
ଶୁଣିଣ ଦାଶରଥି ପରମ ତୋଷ ହୋଇ ॥
ଗଉରେବ କରିଣ ବୋଇଲେ ବେଲାବନେ
ରହ ।
ତାରାକ୍ଷ ମନ୍ତ୍ରୀ ଯେହା ପାଞ୍ଜିରେଣ ଲିହ ॥
ଦଶପଦ୍ମ କପି ଘେନି ଚନ୍ଦନ ଅଇଲା ।
ଖଡ଼ଗ ପତ୍ର ଘେନି ଦ୍ରଶନ ଆସିକଲା ॥
ସୁଗ୍ରୀ ବୋଇଲେ ଦେବ ଶୁଣିମା ରଘୁପତି ।
ଚମ୍ପାବତୀ ନଗ୍ରର ଯେ ଚନ୍ଦନ ସେନାପତି ॥
ଚାରିଶତ ମଉହସ୍ତୀର ଅଟଇ ଯେହାର
ବଳ ।
ଶ୍ରୀରାମ ଆଗ୍ୟାଂ ଦେଲେ ବେଲାବନେ
ରହ ॥୮୦
ଶତେ ମେବନ୍ଧ କପି ଘେନି ଶତବାଳି
ଆୟେ ।
ଶ୍ୱେତ ଚାମର ଶତେକ ଘେନି ଦ୍ରଶନ ଆସି
କୟେ ॥
ଜମ୍ୱେବ ବୋଇଲେ ଯେ ଧାର୍ମିକ
କପିବର ।
ଶତେସିଂଘ ପର୍ବତରେ ଅଟଇ ଯେହାର
ଘର ॥
ସହସ୍ରେ ହସ୍ତୀର ଯେ ପ୍ରାକର୍ମ ବହଇ ।
ବେଲାବନେ ରହ ବୋଲି ଶ୍ରୀରାମ ଆଗ୍ୟାଂ
ଦେଇ ॥
କୋଟିୟେ ସନ୍ୟ ଘେନି କାଳିଞ୍ଜନ ବୀର ।
ଦ୍ରଶନ କଲା ଆସି ଶ୍ରୀରାମ ପୟର ॥
ସୁଗ୍ରୀବର ବୋଇଲା ଯେ କାଉଂରୀ ଦେଶେ
ଥିଲା ।

କେଶରୀ ଲକ୍ଷେ ଘେନି ଦ୍ରଶନ
ଆସିକଲା ॥୯୦
ଅଙ୍ଗବଳ ସହସ୍ରେକ ଅଛଇ ଯେହାର ।
ବେଲାବନେ ରହ ବୋଲି ବୋଇଲେ
ରଘୁବୀର ॥
ସାତ ପରାର୍ଦ୍ଧ ଘେନି ପନଶୀଳ ଆୟେ ।
ଚାଳିଶ ସାଗର ସନ୍ୟ ଘେନି ସରସେତୁ
ଦ୍ରଶନ କୟେ ॥
ସାତ କୋଟି ଭାଲୁକ ସମସ୍ତେ ଶ୍ୱେତବର୍ଣ୍ଣ ।
କୁମୁଦ ନାମେଣ ରିକ୍ଷ କଲାକ
ଦ୍ରଶନ ॥୧୦୦
ମେବଛେକ କପି ହିଙ୍ଗୁଳ ବର୍ଣ୍ଣଦିଶି ।
କଞ୍ଚନ ସେନାପତି ଦ୍ରଶନ କଲା ଆସି ॥
ଶୟେ ମେବନ୍ଧ କପି ନିଶାନ୍ତ କଳାବର୍ଣ୍ଣ ।
ତୁରଙ୍ଗ ବୀର ଆସି କଲାକ ଦ୍ରଶନ ॥
ତିମଙ୍ଗଳ ନାମେ କପି ତାହାର ଉଭାରେ ।
ଶୟେ ଖର୍ବ କପି ତାହାର ସଙ୍ଗରେ ॥
ଅଠାର ଖର୍ବ କପି ଘେନି ଅଇଲା ବିଶ୍ୱାବସୁ ।
ସର୍ବ କପିଙ୍କର ବର୍ଣ୍ଣ ଦିଶଇ ପାଉଂଶୁ ॥
କିଳିକିଳା ଶବଦ ଶୁଭଇ ମହାଘୋର ।
ସମୋଦ୍ର ଲହରୀକି ସପତ ସାଗର ॥
କେହି କରେ ଧରି ଅଛଇ ତରୁଡ଼ାଳ ।
କେହୁ କଉତୁକେ ବୋଲନ୍ତି ମାରିବି ସମ୍ଭାଳ ॥
କେହୁ ଧୂଳି ଘଷି ପାଡ଼ଇ ସିଂଘ ରଡ଼ି ।
ଯେକର ଉପରେକେ ଆରେକ ପଡ଼େ
ମାଡ଼ି ॥୧୧୦
ଶ୍ରୀରାମକୁ ବୋଇଲେ ତୋର ଶତ୍ରୁକୁ
ଦେଖା ।
କିପାଂଇ ସନ୍ୟବଳ କରୁଅଛୁ ଲେଖା ॥
ବାଣାରାଶି ପରିଯନ୍ତେ ଥାଟ ଅଛି ପୂରି ।
ଦକ୍ଷିଣ ସିନ୍ଧୁକୂଳରୁ ପୂର୍ବଦିଗ ଆଦିକରି ॥
ହେମବନ୍ତ ପର୍ବତେ ଯେତେକ କପିଅଛି ।
ଯେବେ ସେ ସନ୍ୟସବୁ ସଜ ହେଉଅଛି ॥
ନର୍ମଦା କୂଳରେ ରହି ଅଛନ୍ତି ସନ୍ୟମାନେ ।
ସେ ଆସି ପ୍ରବେଶ ହୋଇଲେ ଆଠଦିନେ ॥

ସନ୍ୟର ଗହଳେ ସେ ନ ପାଇଲେ ବାଟ ।
ଚାଲି ନପାରି ସେ ରହିଛନ୍ତି ଥାଟ ॥୧୨୦
ସୁଗ୍ରୀବର ବୋଇଲେ ଦେବ ଆଜର
ଗଣିତା ।
ଲେଖାର କଥା ମୁଂ କହିଲି ଜଗଜିତା ॥
ଏହିମତି ସନ୍ୟ ଦେବ ଆସିବେ ଅପାର ।
କିମ୍ପା ତୁ ବିଗ୍ଭର ହୋ ନକର ରଘୁବୀର ॥
ବେଳ ଅସ୍ତ ଦେବ ହେଉଅଛି ଆସି ।
ସନ୍ଧ୍ୟା ସୁମର ଦେବ କଉଶୁଲ୍ୟାର ଶିଷି ॥
ସୁଗ୍ରୀବର ବଚନେ ଶ୍ରୀରାମ ତୋଷ ହୋନ୍ତି ।
ସନ୍ୟର ଠୁଳ ରାମ ତାରାକ୍ଷକୁ ପଚାରନ୍ତି ॥
ଆସିବାର ସନ୍ୟଟି ହୋଇଲା ଆଜ
କେତେ ।
କହସି ସୁଷେଣ ହୋ ପାଞ୍ଜିରେ ଅଛି
ଯେତେ ॥୩୦
ଶୁଣିଣ ତାରାକ୍ଷ ମିଶାଇଲା ବଳ ।
ମେଣ୍ଟା ପାଞ୍ଜିବିଡ଼ା ସେ ଧଇଲା କରସ୍ଥଳ ॥
ପ୍ରବେଶ ଗଣିତା ପାଞ୍ଜି ଦେଖିଣ କହିଲା ।
ଶୁଣିମା ଶ୍ରୀରାମ ହେ ସନ୍ୟ ଯେତେକ
ହୋଇଲା ॥
ତିରିଶି ସେନାପତି ହୋଇଲେ ପ୍ରବେଶ ।
ସଂୟେ ଗଣିତା ଦେବ ଶୁଣିମା ରଘୁଶିଷ ॥
ଦଧିମୁଖା ବାନର ଦଶପଦ୍ମ ଲିହି ।
ସତୁରୀ ଖର୍ବ ଦେବ କାଳିମୁଖ ହୋଇ ॥
ଗୋଲାଞ୍ଜା ତିନି କୋଟି ଅଇଲେ ସଇନି ।
ଷାଠିୟେ କୋଟି ଭାଲୁକ ପ୍ରବେଶ
ରଘୁମଣି ॥୪୦
ଧୂମ୍ରବର୍ଣ୍ଣ ବାନର ଶତେ ଖର୍ବ ଆସି ।
ଆଠ ଲକ୍ଷ ପଦ୍ମ ଅଇଲେ ତରୁଶିଷି ॥
ସର୍ବେ ଶ୍ୱେତବର୍ଣ୍ଣ କୋଟିୟେ କପି ଆୟେ ।
ମେବନ୍ଧ ପଦ୍ମ ଆୟେ ଚମ୍ପା ପୁଷ୍ପ ପ୍ରାୟେ ॥
ସିନ୍ଦୂର ବର୍ଣ୍ଣ କପି ସହସ୍ରେ ପଦ୍ମ ଆସି ।
ଶୁକଳ ବର୍ଣ୍ଣ ଭାଲୁକ ଅଇଲେ କୋଟି ରାଶି ॥
ଯେହିମତି ସନ୍ୟ ଆସିବେ ଅପାର ।
କିମ୍ପା ତୁ ବିଚାର କରୁଛ ରଘୁବୀର ॥

ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ସୁଗ୍ରୀବରକୁ କଲେ ବହୁତ ପଉରୋଷ ॥୫୦
ଭୋ ମୈତ୍ର ମହିମା କି ଅଟଇ ତୋହୋର ।
ଭଲା ସାଧ କଲଟି ଯେତେକ ବାନର ॥
ଅବୋଧ ରକ୍ଷ କପି କେମନ୍ତେ କଲୁ ବଶ ।
ଶୁଣିଣ ସୁଗ୍ରୀବର ହୋଇଲେ ହରଷ ॥
ଶିରେ କର ଦେଇଣ ସେ ପଛ ଘୁଞ୍ଚିଗଲା ।
ପାୟେ ପଡ଼ି ଶୋଇଣ ଶ୍ରୀରାମକୁ ବୋଇଲା ॥
ବୋଇଲା ବାଳୀ ସେ କରିଛି ଯେହା ସାଧ ।
ତାହାକୁ ବଳେଣ କଲୁ ପ୍ରାଣେ ବଧ ॥
ତାହାକୁ ମାରିଣ ବହିଲୁ ତାର ଶିରୀ ।
ତୋହୋର ପ୍ରତାପ ଦେବ ଚତୁର୍ଦ୍ଦିଗ ସ୍ଫୁରି ॥୬୦
ବାଳୀରାୟେ ସବୁନ୍ତି କରେ ଦଣ୍ଡମଣ୍ଡ ।
ରିକ୍ଷ ବାନରେ ଯେତେ ଅଛନ୍ତି ଭ୍ରଥ ଖଣ୍ଡ ॥
ତେଣୁ ସେ ସମୟେ ଅଛନ୍ତି ଭୟେ କରି ।
ମୋତେ କିମ୍ପା ପ୍ରଶଂସା କରୁ ଚାପଧାରୀ ॥
ଯେସନ ସମସ୍ତେ ଆସି ଦ୍ରଶନ କଲା ନଳ ।
ସହସ୍ରେ କୋଟି ସଙ୍ଗେ ଅଛଇ ସନ୍ୟବଳ ॥
ଶ୍ରୀରାମ ବୋଇଲେ ଆଜ ଯେତେକହିଂ ହେଉ ।
ଅଇଲାର ସନ୍ୟ ପଛେ କାଲି ଦେଖାଯାଉ ॥
ଭଦ୍ରସେନ ଦ୍ରଶନ କଲା ପୁଣି ।
ସଙ୍ଗତେ ସନ୍ୟ ଅଛି ତୃତୀୟ କ୍ଷେଉଣି ॥୭୦
ସୁଗ୍ରୀବର ବୁଝାଇ କହିଲା କଥାନ୍ତ ।
ଶୁଣିଣ ସନ୍ତୋଷ ଜାନକୀର କାନ୍ତ ॥
ସନ୍ଧ୍ୟା ସୁମରିତ ଉଠିଲେ ଦାଶରଥି ।
ଯେଥୁ ଅନନ୍ତରେ ପୁଣ ଆଚ୍ଛାଦିଲା ରାତି ॥
ପର୍ଣ୍ଣକୁଟୀ ଭିତରେ ଆସନ ରାମକଲେ ।
ସେନା ସେନାପତି ସବୁ ଜଗିଣ ଶୋଇଲେ ॥
ରଜନୀ ପ୍ରଭାତେ ସାରିଲେ ନିତ୍ୟ କର୍ମ ।
ପୁଣିହିଂ ସନ୍ୟଗଣିତା ଘେନିଲେ ଶ୍ରୀରାମ ॥
ଆଶ୍ୱିନ ଶୁକ୍ଳ ଦୃତୀୟାର ଦିନ ।
ପ୍ରଥମେ ସନ୍ୟ ଆସି କଲେକ ଦ୍ରଶନ ॥୮୦
କନ୍ୟା ଶୁକଳ ନବମୀର ଯାୟେ ।
ଅପ୍ରମିତ ବଳ ଯେତେକ ଦିନ ଆୟେ ॥
ତେଇଶି ଦିନେ ସେ ସରିଲା ଗଣିତା ।
ଅସଂଖ୍ୟ ସଇନ ଅଇଲେ ଅପ୍ରମିତା ॥
ଭୂଇଂ ନ ଦିଶଇ ଲତା ବନଗିରି ।
କିଅବା ସୃଷ୍ଟିଯାକ ହୋଇଅଛି ପୂରି ॥
ବୃନ୍ଦ ସେନାପତି ଦ୍ରଶନ ଆସି କଲା ।
ଦୁଇଲକ୍ଷ କପି ସେ ଘେନିଣ ଅଇଲା ॥
ବକୁଳ ଫୁଲ ଥୋଇ ସେ ଶ୍ରୀରାମ ପାଦେ ପଡ଼ଇ ।
ଉଠି ଉଭା ହୋଇଣ ସେ କର ଦୁଇ ଯୋଡ଼ଇ ॥୯୦
ସୁଗ୍ରୀବର ବୋଇଲେ ଯେ ବୃନ୍ଦ ସେନାପତି ।
ମହୀନ୍ଦ୍ର ପର୍ବତୁ ଯେ ଅଇଲେ ଦେବଯେଥି ॥
ଶୁଣୀଣ ଶ୍ରୀରାମ ହୋଇଲେ ହରଷ ।
କଦର୍ଣ୍ଣ ସେନାପତି ଦ୍ୱାରେଣ ପ୍ରବେଶ ॥
ଅଙ୍ଗଦ ଛାମୁରେ ସେ କହଇ କର ଯୋଡ଼ି ।
ଆଗ୍ୟାଂ ଦେଲେ ସନ୍ୟ ଦେବ ଦ୍ରଶନ ଆସିକରି ॥
ଦୁଇ ମାସର ସନ୍ୟ ସେ କଦର୍ଣ୍ଣ ସଙ୍ଗତରେ ।
ମୃଗନାଭି କସ୍ତୁରୀ ସେ ଧରିଅଛି କରେ ॥
ଶ୍ରୀରାମ ଛାମୁରେ ସେ ଦ୍ରଶନ ଆସି ଦେଲା ।
ପାୟେ ପଡ଼ି ଶୋଇଣ ବିନୋଇ ହୋଇଲା ॥୧୦୦
ଜମ୍ୱେବ ବୋଇଲେ ଯେ କଦର୍ଣ୍ଣ ମହାବୀର ।
ବୈମତ ପର୍ବତେ ଅଟଇ ଯେହାର ଘର ॥
ତୋହୋର ଆଗ୍ୟାଂରେ ସେ ଅଇଲା ଦେବ ଯେଥ ।
ସମର ଭୂଇଂକି ଯେ ବଡ଼ାଇ ସାମର୍ଥ ॥
ଶୁଣିଣ ଶ୍ରୀରାମ ତାକୁ ଗଉରୋବ କଲେ ।
ବସା ହୋଇଣ ଯାଇ ରହସି ବୋଇଲେ ॥
ରାଘେବ ଆଗ୍ୟାଂରେ ସେ ଚଳିଗଲେ ବଳ ।
ଆଶ୍ରମ କଲେ ଯାଇ ବେଳା ବନସ୍ତର ॥
ମଦନ ନାମେ ପୁଣ କପିଯେକ ଆୟେ ।
ଶ୍ରୀରାମ ଚରଣେ ସେ ଯାଇ ବିନୟ କୟେ ॥୧୦
ମଧୁ ଦନାୟେକ ଦେଖାଆଣି ଦେଲା ।
ଶ୍ରୀରାମ ଛାମୁରେ ନେଇ ଜମ୍ୱେକ ଚିହ୍ନାଇଲା ॥
ଯେ ସେ ମଦନ ଅଟଇ ମହାବୀର ।
ମଦନ ଗିରି ଶିଖରେ ଅଟଇ ଯେହାର ଘର ॥
ସାତ ଶଙ୍ଖ କପି ଅଟଇ ଗଣିତା ।
ଭଇରବୀ ନଦୀ କୂଳେ ଯେ ରହଇ ବଳବନ୍ତା ॥
ଶୁଣିଣ ଶ୍ରୀରାମ ସନ୍ତୋଷ ମନ ହୋଇ ।
ବୋଇଲେ ବେଳାବନେ ବସାକର ଯାଇ ॥
ଶୁଣିଣ କପିବୀର ହରଷେଣ ଗଲା ।
ମେଘ ଘଡ଼ଘଡ଼ି ଜାଣି ମୁଖ ଧ୍ୱନି କଲା ॥୨୦
ସନ୍ୟର ଗହଳେ ପୂରିଲା ମେଦନୀ ।
ପ୍ରଶଂସା କରନ୍ତି ଧନ୍ୟ ଶ୍ରୀରାମ ଭାଇବେନି ॥
ମାଲ୍ୟବନ୍ତ ପର୍ବତେ ଯେଗାର ଯୁଣ ମାଡ଼ି ।
ଯେଥେ ସନ୍ୟ ରହିଅଛି ଦେହକୁ ଦେହ ଭିଡ଼ି ॥
ଚନ୍ଦ୍ରଗିରି ସୀମାଠାରୁ ଗୁଞ୍ଜରାଷ୍ଟ୍ର ଯାୟେ ।
ଘୋଟିଲେ ରିକ୍ଷକପି ଲଗାଲଗି କାୟେ ॥
ଗୋଦାବରୀ ନଦୀ କୃଷ୍ଣାବେଣୀ ନଦୀ କୂଳ ।
ଯେଥେହେଂ ପୂରିଲେ ରିକ୍ଷ କପିବଳ ॥
ପଞ୍ଚଧାରା ପର୍ବତରୁ ଯମଗିରି ଯାଏ ।
ବରୁଣାବନ୍ତ ଘେନିଣ ଯେକଖଣ୍ଡ ହୋଏ ॥୩୦
ଯେକାମ୍ବରି ବନ କପିଳାସ ଆଦିକରି ।
ବିରୋଜା ମଣ୍ଡଳେ ଅଛନ୍ତି ସନ୍ୟ ପୂରି ॥
ବଣା ହୋଇଣ ଯାଇ ରହିଲେ ସର୍ବଥାଟ ।
ବଣାଇ ବୋଲି ହୋଇଲା ସେହୁ ରାଷ୍ଟ୍ର ॥
ବାଟ ନ ପାଇଣ ଅମଡ଼ା ମାଡ଼ିଗଲେ ।
ଅମଡ଼ା ମାଡ଼ିବାରୁ ବାମଡ଼ା ନାମ ଦେଲେ ॥
ସେ ଦେଶର ନାମଟି ହୋଇଲା ବାମଡ଼ା ।

ଯହୁଁ ସେ ସନ୍ୟମାନେ ରହିଲେ ଅମଡ଼ା ॥
କୃଷ୍ଣାବେଣୀ ନଦୀକୂଳ ହରଗଙ୍ଗା ନଈ ।
ସନ୍ୟ ପୂରିଅଛି ଛଡ଼ାଛଡ଼ି ନାହିଁ ॥ ୪୦
ରଣ କରିବେ ବୋଲି ସେଠାରେ କଲେ ବିଚାର ।
ରଣପୁର ନାମ ବୋଲି ହୋଇଲା ତାହାର ॥
ପାଣ୍ଡବ ବିପିନେ ଦେବଗିରି ଭେଟେ ।
ସମୋଦ୍ର କୂଳ ମାଡ଼ି ପୂରିଅଛି ଥାଟେ ॥
କାହିଁ ରଙ୍ଗବର୍ଣ୍ଣ କାହିଁ ପାଉଁଶ ରାଶି ।
କେବଣ ଠାରେ ଶୁକ୍ଳ ବର୍ଣ୍ଣ ଦିଶି ॥
କାହିଁ ସିନ୍ଦୂର ବର୍ଣ୍ଣ କାହିଁଟି ହରିତାଳେ ।
ଭୂମିରେ ଶୋଇଣ କି ଅଛନ୍ତି ମେଘମାଳେ ॥
କାହିଁଟି କଳାବର୍ଣ୍ଣ କାହିଁଟି ଧୂମବର୍ଣ୍ଣ ।
କାହିଁଟି ରୂପାବର୍ଣ୍ଣ କାହିଁଟି ସୁନାବର୍ଣ୍ଣ ॥୫୦
କାହିଁଟି ଶୁଦ୍ଧ ସୁବର୍ଣ୍ଣ କାହିଁଟି କାଚ ଆଭା ।
ରିକ୍ଷ କପି ପୂରନ୍ତେଣ ମେଦନୀ ଅତି ଶୋଭା ॥
ମାଲ୍ୟବନ୍ତ ଶିଖେଣ ଥାଇ ରଘୁନାଥ ।
ଦେଖନ୍ତି ସନ୍ୟ ପୂରିଅଛନ୍ତି ଜଗତ ॥
ଗଣିତା ଅଗଣିତା ସଂକ୍ଷେପି ନପାରି ।
ଅତିଅ ଗହଳ ସନ୍ୟ ପୃଥିରେ ପୂରି ॥
ସୁଗ୍ରୀବର ବୋଇଲା ଦେବ ଶୁଣିମା ରଘୁପତି ।
ସମସ୍ତ ସନ୍ୟ ଆସି ମିଳିଲେ ତୋର କତି ॥
ଯେ ତୋହୋର ଇଛା ଦେବ ତାହା ଯେବେ କର ।
କପି ରାଜା ବଚନେଣ ବୋଇଲେ ରଘୁବୀର ॥୬୦
ଯାହା ସେ ବୋଇଲ ମିତ୍ର ଅଟଇ ଯେ ସତ୍ୟ ।
ଚାରି ଦିଗକଇ ପେଷିବା ଆଗେ ଦୂତ ॥
କେବଣ ଦିଗରେ ଅଛି ରାବଣର ଘର ।
ଲଙ୍କା ନାମେଣ ଅଛଇ ଅନେକ ନବର ॥
ରାବଣ ନାମେ ଯେ ଅନେକ ରଜା ଅଛି ।
କେବଣ ରାବଣ ମୋର ନେଇଛି ମୃଗାକ୍ଷି ॥

ଅଛଇ ଅବା ନାହିଁ ସେ ଜନେକ ଦୋହିତା ।
ଅନେକ ସ୍ତିରୀମାନଙ୍କର ନାମ ଅଟଇ ଯେ ସୀତ୍ୟା ॥
ରାବଣ ପୁରେ ସେ ଅଛଇ କେମନ୍ତେ ।
କି ଅବା ବଳେ ତାହାକୁ ହରିଲା ଦଇତ୍ୟେ ॥୭୦
ହାନି ଲାଭ କଥା ବୁଝିବା ଆଗତ ।
ସାଧ୍ୟକଥା ବୁଝିବା ପେଷିଣ ଆଗ ଦୂତ ॥
ଯଦ୍ୟପି ସୀତ୍ୟାକୁ ରାବଣ ହରିଥିବ ।
ଥାଟ ଘେନିଯାଇ ଆଉ କିସଟି କରିବ ॥
ଦୂଷିତ ଯୁବତୀକି ନ ଆଣଇ ମୁଁହି ।
ତେଣୁ ସେ ବୋଇଲି ମୈତ୍ର ଦୂତ ପେଷିବାର ପାଇଁ ॥
କି ଅବା ସୀତ୍ୟା ମୋର ଆତ୍ମାଘାତେ ମଲା ।
ଯହୁଁ ସେ ରାବଣ ତାକୁ ଅନେକ ଦୁଃଖ ଦେଲା ॥
ଯେମନ୍ତ ହୋଇଲେଣ ଅନ୍ୟାଶେ କିମ୍ପା ଯିବା ।
ହାନିଲାଭ ବୁଝିଣ କାର୍ଯ୍ୟେଟି କରିବା ॥୮୦
ଅପ୍ରମାଦେ ଜାନକୀ ଯେବେ ପ୍ରାଣେ ଥିବ ।
ଅସୁର ସଙ୍ଗେ ନୋହିଥିବ ପ୍ରିୟ ଭାବ ॥
ଦୂତକୁ ଦେଖିଲେ ଯେବେ ହୋଇବ ବିକଳ ।
ଅବିକ୍ଷଣେ ନୟନୁ ବହୁଥିବ ଅଶ୍ରୁଜଳ ॥
କାର୍ପୁନ୍ୟ ହୋଇ ବୋଲିବ ସ୍ୱାମୀ ନିଅ ତୁ ମୋତେ ।
ଯେସନ ବୋଲି ଯେବେ କହିବେ ଆସି ଦୂତେ ॥
ତତକ୍ଷଣେ ଥାଟ ଆଣି ଯିବା ଆମ୍ଭେ ବାହି ।
ମାରିବା ରାବଣକୁ ରଖନ୍ତା କେହି ନାହିଁ ॥
ଯେବେ ତୁମ୍ଭେ ମୈତ୍ର ହୋ ଦୂତ ବେଗେ ପେଷ ।
ମାସକେ ବାହୁଡ଼ାଇ ପାଇବା ସନ୍ଦେଶ ॥ ୯୦
ଶୁଣିଣ ସୁଗ୍ରୀବର ପରମ ତୋଷ ହୋଇ ।

ବୋଇଲା ଯେ କଥା ଦେବ ବିଚାରେ ଖଟଇ ॥
ଦୂତର ଲକ୍ଷଣ ଲୋକ ସନ୍ୟରୁ ବାଛିଲା ।
ସୁରବନ୍ତ ବୁଦ୍ଧିବନ୍ତ କଥାନ୍ତ ବୁଝିଲା ॥
ବୃନ୍ଦ ନାମେ ସେନାପତି ଅଟଇ ମହାବୀର ।
ଦେବ ଅଂଶେ ଜାତ ହୋଇଛି ସେ କୁମର ॥
ତାହାକୁ ରାଇଣ ସେ ବୋଇଲା ସୁଗ୍ରୀବର ।
ତୁମ୍ଭେ ଆପଣେ ଯାଇ ଶ୍ରୀରାମ କାର୍ଯ୍ୟକର ॥
ଦଧିମୁଖ ଦ୍ୱିବିନ୍ଦ ପନସ ଶରସେତୁ ।
ତୁମ୍ଭେ ପାଞ୍ଚଜଣେ ଅଟ ବଇରି ଧୂମକେତୁ ॥୧୦୦
ପୂର୍ବ ଦିଗକଇ ତୁମ୍ଭେ ଯେହିକ୍ଷଣି ଯିବ ।
ଶ୍ରୀରାମର ଘରଣୀ ସୀତ୍ୟାକୁ ଖୋଜିବ ॥
ନାମ ଗୁଣ ସ୍ୱରୂପ କହିଲେ ରଘୁପତି ।
ସଂଯେ କମଳଣୀ ଅଟନ୍ତି ସୀତ୍ୟାସତୀ ॥
ଗୁପତ ପ୍ରଘଟ ସ୍ଥାନ ଖୋଜିବ ନିରନ୍ତର ।
ମାସକେ ଛାମୁରେ ହୋଇବ ମୋହୋର ॥
ଦିନେହେଁ ଉଗୁଳିଲେ କେବେହେଁ ନ ରହିବ ।
ରାତ୍ର ଦିବସ ହୋଇଣ ପଥ ବହିଯିବ ॥
ସୀତ୍ୟାର ସନ୍ଦେଶ ଯେ ଖୋଜିଣ ଆଣିଦେବ ।
ଅନେକ ସଦିଭାବେ କରିବେ ରାଘବ ॥୧୦
ଶ୍ରୀରାମ ଆଗ୍ୟାଂ ଦେଲେ ଶୁଣ ହୋ ବୃନ୍ଦବୀର ।
କରେ ଘେନି ଥାଅ ମୋର ମନ୍ମଥ ଶର ॥
ସୀତ୍ୟାକୁ ଦେଖିଲେ ଆଗେ ପୁଛିବି ବାରତା ।
ଯଦ୍ୟପି ପ୍ରତେ ତୋତେ ନଯିବେ ଦେବୀ ସୀତ୍ୟା ॥
ପୂର୍ବେ ଯେ ଜାନକୀର ଦେଖିଲା ତୁମ୍ଭର ନାହିଁ ।
ଯେ କାଣ୍ଡ ଗୋଟିଏ ତାକୁ ଚିହ୍ନାଇବୁ ନେଇ ॥
ତେବେ ସେ ସଂପ୍ରତେ ତୋତେ କରିବେ ମହସ୍ୟତୀ ।
ଶୁଣିଣ ବୃନ୍ଦବୀର ଚଳିଲାକ ଧାତି ॥

ଯେଥୁଅନନ୍ତରେ ପୁଣ ସୁଗ୍ରୀବର ରାଯେ ।
କଞ୍ଚନ ସେନାପତିକି ସେ ଛାମୁକୁ
ହକରାଯେ ॥୨୦
ମହୀନ୍ଦ୍ର କାଳିଞ୍ଜନ କୁମୁଦ ଜଣଗରି ।
ପଶ୍ଚିମ ଦିଗକୁ ତୁମ୍ଭେ ଚଳ ହେ ବେଗ କରି ॥
ଶ୍ରୀରାମ ଘରଣୀ ସୀତ୍ୟାକୁ ଖୋଜିବ ।
ଲେଉଟି ବାରତା ତୁମ୍ଭେ ମାସକେ
ଆଣିଦେବ ॥
ଶିରରେ କରଦେଇ କଞ୍ଚନ ମହାବୀର ।
ପଶ୍ଚିମ ଦିଗକୁ ସେ ଚଳିଲା ଖରତର ॥
ପୁଣି ସୁଗ୍ରୀବର ମନେ ମନେ ଭାଳି ।
ଗୁପତ କରି ସେ ରାଇଲେ ଶତବାଳି ॥
ମଙ୍ଗଳ ରିଷଭ ଗବୟେ ଗବାକ୍ଷ ।
ଶଉରୀ ସେନାପତି ଆବର ଧୂମାକ୍ଷ ॥ ୩୦
ତୁମ୍ଭେ ସାତ ବୀରେ ଉତ୍ତର ଦିଗେ ଯିବ ।
ଶ୍ରୀରାମର ଘରଣୀ ସୀତ୍ୟାକୁ ଖୋଜିବ ॥
ମାସକେ ବାରତାଟି ଦେବ ମୋତେ ଆଣି ।
ନୋହିଲେ ଦଣ୍ଡିବେଟି କୋଦଣ୍ଡ କାଣ୍ଡପାଣି ॥
ସନ୍ଦେଶ କହିଲେଣ କରିବେ ସଦିଭାବ ।
ଆସ୍ତି ନାସ୍ତି ଦୁଇକଥା ମାସକେ ଆଣିଦେବ ॥
ଶତବାଳୀକି ସୁଗ୍ରୀବ ନେଲେ ରାମ ପାଶ ।
ଗୁପତ କରି ତାକୁ କହିଲେ ସନ୍ଦେଶ ॥
ଗରୁଡ଼ ଧ୍ୱଜ କାଣ୍ଡ ତାହାର ହସ୍ତେ ଦେଲେ ।
ସୀତ୍ୟାକୁ ଦେଖିଲେ ଯେହା ଚିହ୍ନାଇବୁ
ବୋଇଲେ ॥୪୦
ପୂର୍ବରେ ସୀତ୍ୟାର ତୁମ୍ଭରେ ଦେଖିବାର
ନାହିଁ ।
ଯେ ମୋହୋର ବାଣମାନ ଚିହ୍ନନ୍ତି
ବଇଦେହୀ ॥
ତେବେ ସେ ସଂପ୍ରତେ ତୋତେ କରିବାକ
ବାଳୀ ।
ଶୁଣିଣ ମହାବୀର ନାରାଜ ଘେନି ଚଳି ॥
ଏଥୁ ଅନନ୍ତରେ ପୁଣ ରାଜା ସୁଗ୍ରୀବର ।
ପାଶକୁ ହକାରିଲେ ଅଙ୍ଗଦ କୁମର ॥

ଜମ୍ୱେବ ହନୁମତ ଗନ୍ଧମାରଦନ ।
ନଳ ନୀଳ ତାରାକ୍ଷ ସୁଷେଣ ଅଷ୍ଟଜଣ ॥
ତାହାକୁ ବୋଇଲେ ସେ ଗଉରୋବ
କରି ।୫୦
ଦକ୍ଷିଣ ଦିଗକୁ ତୁମ୍ଭେ ଯିବ ଖର କରି ॥
ଶ୍ରୀରାମର ଘରଣୀ ସୀତ୍ୟାକୁ ଖୋଜିବ ।
ବାହୁଡ଼ି ମାସକେ ଆଣି ବାରତା ଦେବ ॥
ତେବେ ସେ କାର୍ଯ୍ୟ ଜାଣ ହୋଇବାକ
ସିଦ୍ଧ ।
ତୁମ୍ଭର ଅଇଲେ ସିନା କରିବା ଯାଇ ଯୁଦ୍ଧ ॥
ମାସକୁ ଉଗୁଳି ଯେବେ ଦିନେକ ହୋଇବ ।
ଅବଶ୍ୟ ତାହାକୁ ଦଣ୍ଡିବେ ରାଘବ ॥
ଶ୍ରୀରାମ ଜାଣିଲେ ଯେ ପାରିବେ କାର୍ଯ୍ୟ
କରି ।
ଦକ୍ଷିଣ ଦିଗରେ ସିନା ରାବଣର ପୁରୀ ॥
ଯେକାନ୍ତ କରି ରାମ ହନୁମତକୁ ରାଇଲେ ।
ମୋହୋର କାର୍ଯ୍ୟ ବାବୁ ତୁ ସିନା କରିବୁ
ବୋଇଲେ ॥୬୦
ସୀତ୍ୟା ନିଶ୍ଚେ ବାବୁ ତୁହି ସେ ଭେଟିବୁ ।
ଏ ମୋହୋର ଅବସ୍ଥା ବାବୁ ତାହାକୁ
କହିବୁ ॥
ଭ୍ରାନ୍ତି କରିଣ ଅବା ଅନ୍ୟକୁ କହୁ କଥା ।
ସେ ସେ ଜାନେକୀ ବାବୁ ଲମ୍ୱାଇ ଥାଇ
ମଥା ॥
ନିଷ୍କଳଙ୍କ ଚନ୍ଦ୍ରମା ପ୍ରାଯେ ଶ୍ରୀମୁଖ
ବିକାଶଇ ।
ଅଧର ବଧୁଲି କୁସୁମ ସାଦୃଶ ଦିଶଇ ॥
କୁରଙ୍ଗୀ ନୟନ ତାର ଦଶନ ମୁକୁତା ।
କର ପାଦ ତଳିତାର ସୁରଙ୍ଗ ଅଳତା ॥
ଭୂଲତା ନୟନ ତାର କୁଟିଳ ଚାରୁକେଶ ।
କୁସୁମ ବିହୁନେ ସେ କରୁଥାଇ ବାସ ॥୭୦
ଅଣ୍ଡିର କୋକିଳ କି ବସନ୍ତ ମାସ ଜାଣି ।
ତେସନେକ ସୁସ୍ୱର ସୀତ୍ୟାର ମୃଦୁବାଣୀ ॥
ମଝୀ ଗୋଟି କ୍ଷୀଣ ବିସ୍ତାର ବକସ୍ଥଳ ।

କରିକୁମ୍ଭ ଜାଣିଣ କୁଚ ଯେ ଯୁଗଳ ॥
ସୁବର୍ଣ୍ଣର କାନ୍ତି ମଉଗଜର ଗତି ।
ଆଗକୁ ଉଭାର ଯେ ପଛକୁ ଶୋଭାବନ୍ତି ॥
ଉଲଟ କଦଳୀ ଜାଣିଣ ଜାନୁ ଦୁଇ ।
ବୃଷାଳ କଟି ତଟ ଡମ୍ୱରୁ ସାଦୃଶଇ ॥
ପ୍ରସନ୍ନ ବଦନ ଅଳ୍ପ ହସ ହସ ।
ଶ୍ରବଣ ଦୁଇ ଶୋଭା କାମଦେବ ଫାଶ ॥୮୦
ପଦ୍ମନାଳ ବଳିତା ମୃଣାଳ ବାହୁ ଦୁଇ ।
ଶରୀର ରୋମାବଳି ପୁଞ୍ଜି ପୁଞ୍ଜି ହୋଇ ॥
କେତେକ ଗୁଣ ଅବା କହିବଇଁ ମୁହିଁ ।
ଯେହାଉଁ ଅଧିକ ଦିଶଇ ସୀତ୍ୟାର ଦେହୀ ॥
ରାବଣ ପ୍ରୀତି ଯେବେ କରିଥିବ ସୀତ୍ୟା ।
ତେବେ ହନୁମତ ହୋ ନକହିବୁ ବାରତା ॥
ରାତ୍ର ଦିବସ ଆଗେ ବୁଲିବୁ ଗୁପତେ ।
ଆଗହୁଁ ପ୍ରଘଟ ତୁ ନୋହିବୁ ହନୁମତେ ॥
ନିର୍ଦ୍ଦୋଷ ଦେଖିଲେ ତୁ କହିବୁ ସନ୍ଦେଶ ।
ଛିଦ୍ର ଥିଲେ କେବେହେଁ ନୋହିବୁ
ବିଶ୍ୱାସ ॥୯୦
ଆବର କଥାଯେ କହଇ ତୋତେ ମୁହିଁ ।
ଗୁପତ କଥାଯେ ବାବୁ ଥିବୁ ହେତୁଆଇ ॥
ପୂର୍ବେ ଯେ କେବେ ତୋତେ ନ ଚିହ୍ନଇ
ସତୀ ।
ତୋ ରୂପ ଦେଖିଲେ ତୋତେ ନିକି ବୋଲିବ
ଲଙ୍କପତି ॥
ତୁ ଯେହା ଚିତୋଇଥିବୁ ବାୟୁଶିଷ ।
ଚିତ୍ରକୂଟ ଗିରିରେ ଆମ୍ଭେ କରିଥିଲୁ ବାସ ॥
ମନ୍ଦାଅଗ୍ନି ନଦୀରେ ଜଳକ୍ରୀଡ଼ା କଲୁ ।
ଲକ୍ଷଣକୁ ବସାରେ ଜଗାଇ ଆମ୍ଭେ ଗଲୁ ॥
ନାଗେଶ୍ୱର ଫୁଲ ଘେନି ହୋଇଲୁ
ମରାମରି ।
ନାନା କଉତୁକ କଥା ଯେକାନ୍ତେ ଆମ୍ଭେ
କରି ॥୧୦୦
ନଦୀରେ ପଶି ସ୍ନାନ କଲେକ ଚାନ୍ଦମୁହିଁ ।
ବାହାର ହୋଇଲେ ସେ ଓଦାବସ୍ତ୍ର ହୋଇ ॥

ଧାତୁଶିଳା ପଥରେ ସେ ଯାଇଣ ବସିଲେ ।
ଓଦା ବସ୍ତ୍ର ଲାଗନ୍ତେ ସେ ଗେରୁ ଉକୁଟିଲେ ॥
ସେ ଗେରୁ ଘେନିଣ ଦେଲଇଂ ମୁହିଂ ଚିତା ।
ଆପଣେ କପାଳେ ଘେନିଲେ ଦେବୀ ସୀତ୍ୟା ॥
ଲଲାଟେ ଲାଗିଣ ସେ ଦିଶିଲା ସୁନ୍ଦର ।
ଅରୁଣ ଉଇଁଲାକି ଚନ୍ଦ୍ରମା ଉପର ॥
ତହୁଂ ଦୁହେଂ ହସ୍ତ ଧରାଧରି ହୋଇଗଲୁ ।
ଯାନ୍ତେ ପୁଣ କପି ପଲେକ ଦେଖିଲୁ ॥୧୦
ଡରେ ପଳାଇଣ ସ୍ୟତୀ ମୋତେ କୋଳକଲା ।
କପାଳର ଚିତା ମୋର ହୃଦରେ ଲାଗିଲା ॥
ପୁଛିଲେଣ ନାସ୍ତିକରି ହସିଲେ ସୁନ୍ଦରୀ ।
ଦେଖୁଥିବ ଯେ ଚିତ୍ର ବୋଲି ମାଇଲେ କରତାଳି ॥
ଯେକାନ୍ତ କଥା ଯେହୁ ନ ଜାଣନ୍ତି ଅନ୍ୟ ।
ପଚାରିଲେ ସୀତ୍ୟାକୁ କହିବୁ ହନୁମାନ ॥
ଆହୁରି କଥାଯେ କହିବୁ ବିଶ୍ୱାସ ।
ଚିତ୍ରକୂଟ ପର୍ବତେ ଶୁଖାଇଥିଲେ ମୃଗମାଂସ ॥
କାକ ଚାଣ୍ଡାଳ ତହିଂକି ଝାମ୍ପ ଦେଲା ।
ନହ ଘେନିଣ ସୀତ୍ୟାର ହୃଦୟ ବିଦାରିଲା ॥୨୦
ପୁଣ ଘଉଡ଼ନ୍ତେଣ କାମୋଡ଼ିଲା ଓଷ୍ଠଦୁଇ ।
ରୋଦନ କଲେ ସଖୀ ଧରିଣ ପାଦ ଦୁଇ ॥
କାକକୁ ଦଣ୍ଡିଲି ମୁଂ ସୀତୟାର ପାଇଂ ।
ପୁଣିହିଂ ଦୟା କଲି କହନ୍ତେ ବଇଦେହୀ ॥
ଯେକଥା ହନୁ ହୋ ନଜାଣନ୍ତି କେହି ।
କହିଲେ ସଂପ୍ରତେ ତୋତେ କରିବେ ଚାନ୍ଦମୁହିଂ ॥
ଯେତେ ବୋଲି ଶ୍ରୀରାମ ଅଙ୍ଗୁଷ୍ଠିର ମୁଦ୍ରିକା କାଢ଼ିକରି ।
ହନୁମତର ହସ୍ତେ ଦେଲେକ ଚାପଧାରୀ ॥
ବୋଇଲେ ସୀତ୍ୟାକୁ ଯେ ମୋର ମୁଦି ଦେବୁ ।
ତାହାର ତହୁଂ କିଛି ସନ୍ଦେଶ ଆଣିବୁ ॥୩୦
ମୋହୋର ନାମ ଯେ ମୁଦିରେ ଅଛି ଲିହି ।
ଦେଖିଲେ ସଂପ୍ରତେ ତୋତେ କରିବେ ବଇଦେହୀ ॥
ଯାଅ ତୁ ଶୁଭ ଯୋଗେ କାର୍ଯ୍ୟ ମୋର କର ।
ମୁଦି ଗୋଟି ଘେନିଣ ସେ ଲଗାଇଲା ଶିର ॥
ମାସକର ମଧରେ ବାବୁ ବାରତା ଦେବୁ ଆଣି ।
ଅଙ୍ଗଦକୁ ଚାହିଂଣ ବୋଲନ୍ତି ରଘୁମଣି ॥
ତୁ ରାଜକୁମର ତ ଜାଣୁ ସର୍ବ କଥା ।
ଯେମନ୍ତେ ପାର ବାବୁ ଫେଡ଼ସି ମୋର ବ୍ୟଥା ॥
ଜମ୍ୱେବକୁ ରାଇଣ ଶ୍ରୀରାମ ଆଗ୍ୟାଂ ଦେଲେ ।
ତୁମ୍ଭେ ଥିଲାଠାରେ କାର୍ଯ୍ୟ ହୋଇବ ସୁଫଳେ ॥୪୦
ଯାଅ ଶୁଭ ଯୋଗେ ବାବୁ କାର୍ଯ୍ୟ ସିଦ୍ଧିକର ।
ଶୁଣିଣ ସମସ୍ତ ଦୂତେ ମସ୍ତକେ ଦେଲେ କର ॥
ଚାରି ଦିଗର ଦୂତ ଶ୍ରୀରାମ ପାଦେ ଶୋଇ ।
ଯେ ଯାହାର ଯୂଥପତି ଗଲେକ ପଥ ବହି ॥
ଆଶିନ୍ୟ ଶୁକଳ ଦଶମୀର ଦିନ ।
ଶୁକ୍ରଙ୍କର ବେଳାରେ କଲେକ ପ୍ରସ୍ଥାନ ॥
ଆପଣେ ଶ୍ରୀରାମ ଯୁଦ୍ଧ ଆରମ୍ଭିଲେ ।
ସେ ଦିନର ନାମଟି ଅପରାଜିତା ଦେଲେ ॥
ଚାରି ଦିଗକୁ ଶ୍ରୀରାମଙ୍କ ତ୍ରୋଣରୁ ବାଣ ଗଲା ।
ଅନେକ ଦତ୍ୟ ମେଲେ ରାବଣ ବୀର ମଲା ॥୫୦
ତେଣୁ ସେ ଅପରାଜିତା ଅଟଇ ଅନକୂଳ ।
ଖଡ଼୍ଗ ପ୍ରସାରି ରାମ ମାଇଲେ ଶତ୍ରୁବଳ ॥
ପାର୍ବତୀଙ୍କ ଅଗ୍ରତେ ଯେହା ଶଙ୍କରେ କହନ୍ତି ।
ଶୁଣିଣ ଶିବା ଯେ ହରଷ କଲେ ମତି ॥
ଚାରି ଦିଗକୁ ଦୂତ ପେଷି ଶ୍ରୀରାମଚନ୍ଦ୍ରେ ।
ସନ୍ୟର ଗଣିତା ଘେନିଲେ ଗିରି ମଧେ ॥
ଯେ ଯାହାର ଦିଗକୁ ଗଲେ ଦୂତମାନେ ।
ଲୋଡ଼ନ୍ତି ଦେଶ ବିଦେଶ ଗହନ ବିପିନେ ॥
ସଚରାଚର ପୃଥ୍ୱି ବୁଲିଣ ଲୋଡ଼ନ୍ତି ।
ଗୁପତ ପ୍ରଘଟ ସେ ଲୋକଙ୍କୁ ପଚାରନ୍ତି ॥୬୦
ରାଜାଙ୍କର ନବର ପାତ୍ରଙ୍କର ମେଢ଼ ।
ନଗ୍ରପୁର ପାଟଣା ବୁଲନ୍ତି ଅତି ଗାଢ଼ ॥
ଶ୍ରୀରାମର ଘରଣୀକି କାହିଂ ନ ଦେଖିଲେ ।
ଉତ୍ତର ଦିଗ ଦୂତେ ବାହୁଡ଼ି ଅଇଲେ ॥
ମାସକ ପୂର୍ଣ୍ଣ ହୋନ୍ତେ ମାଲ୍ୟବନ୍ତେ ହୋନ୍ତି ।
ଶ୍ରୀରାମ ଶ୍ରୀଚରଣେ ଓଳଗି ଶୁଅନ୍ତି ॥
ଶୁଣ ଦେବ ଠାକୁର ଅଯୋଧ୍ୟା ଶିରୋମଣି ।
ଖୋଜିବାକୁ ଗଲୁ ଆମ୍ଭେ ଜନେକ ଦୁଲଣୀ ॥
ଗ୍ରାମପୁର ପାଟଣା ଯେ ସମୟ ଲୋଡ଼ିଲୁ ।
କାଉଂରୀ କାମକ୍ଷା ଗୟା ଲଙ୍ଘିଗଲୁ ॥ ୭୦
ଭୋଟ ଦେଶ ଲୋଡ଼ିଲୁ ବନ ଘୋର ।
ଯାଇ ଉଠିଲୁ ହେମଗିରି ଉପର ॥
ସୁବର୍ଣ୍ଣ ପର୍ବତ ସେ ଅଟଇ ହେମଗିରି ।
ତହିଂ ବିଜେ କରିଅଛନ୍ତି ତ୍ରିପୁରାରି ॥
ସେ ଦେବ ପ୍ରସନ ହୋଇଣ ବୋଇଲେ ।
ଯେ ଦିଗରେ ଜାନେକୀ ତୁମ୍ଭର ନାହିଂରେ ବୋଇଲେ ॥
ଯେ ଦେବ ଆଶ୍ରମ ଯେଥେ ମନୁଷ୍ୟ ଗମ୍ୟ ନାହିଂ ।
ନଜାଣି ଯେଥକୁ ତୁମ୍ଭେ ଅଇଲ କିପାଇଂ ॥
ଯେ ସେ ଦେବଗିରି ଦେବଙ୍କ ଆଶ୍ରମ ।
ଶ୍ରୀରାମର ଦୂତ ନୋହିଲେ ହରାନ୍ତ ଜୀବନ ॥୮୦
ଯାଅସି ବାହୁଡ଼ରେ ନ ରହ ଯେଥିକ୍ଷଣେ ।
ଜାଣିଲେ କୋପ ତୁମ୍ଭକୁ କରିବେ ଦେବଗଣେ ॥
ରଦ୍ରଙ୍କ ବଚନେ ଆମ୍ଭେ ପର୍ବତୁ ଓହ୍ଲାଇଲୁ ।
ଅପୂର୍ବ କଥାଯେ ଦେବ ସେ ଗିରିରେ ଦେଖିଲୁ ॥
ଜମ୍ବୁଗଛେକ ଅଛଇ ଦେଖିଲୁ ଅତି ଉଚ୍ଚ ।
ଡାଳ ପତ୍ର ଅତି ବୃକ୍ଷାଳ ସୁସଞ୍ଚ ॥
ମହାଗଜ ସମାନେ ଜମ୍ବୁଫଳ ଫଳି ।

ଜନ ଗମ୍ୟ ନାହିଁ କେ ନେବାକଇ ତୋଳି ॥
ଆପଣାର ସୁଖେ ସେ ପାଚିଣ ଫଳ ଝଡ଼ି ।
ବୃକ୍ଷର ତଳେଣ ସେ ଅଛଇ ଫଳ ପଡ଼ି ॥୯୦
ସୁସ୍ୱାଦୁ ଆମୋଦ ଯେ ଅମୃତ ସମ ବାସ ।
ଫୁଟିଣ ଧାତୁ ଯେ ଝରଇ ମହାରସ ॥
ସେହି ବୃକ୍ଷ ମୂଳରୁ ଯେ ବହଇ ଯେକ ଧାର ।
ଜମ୍ବୁନଦ ନାମେଣ ଅତିହିଁ ଗଭୀର ॥
ହେମବର୍ଣ୍ଣ ନଦୀ ଆସୁଅଛି ବହି ।
ସବୁ ଫଳଙ୍କର ରସ ଯେକ ଠୁଳ ହୋଇ ॥
ତହିଁର ଫଳ ଦେବ ଅଟଇ ସୁବର୍ଣ୍ଣ ।
କି ଅବା ଜ୍ୟୋତି ସେହୁ ଅରୁଣର ବର୍ଣ୍ଣ ॥
ବିଚାରିଲୁ ଯେଥୁଁ ଆମ୍ଭେ ଥୋକାଯେ ହେମ ନେବା ।
ଶ୍ରୀରାମ ଅଗ୍ରତେ ନେଇ ଦେଖାଇବା ॥୧୦୦
ଯେତେ ବିଚାରିଣ ଆଣିତେ ମନ କଲୁ ।
ଜଳରେ ପଶି ଯେ ହସ୍ତ ବଢ଼ାଇଲୁ ॥
ସର୍ପେକ ବାହାର ହୋଇଲା ଅତି ବେଗେ ।
ଫଣା ଉଭାରଇ ଗର୍ଜଇ ଅତି ରାଗେ ॥
ଆମ୍ଭକୁ ବୋଇଲାରେ ପାମର କପି ଛାର ।
ଯେ ଦେବ ପଦାର୍ଥକୁରେ ଲୋଭ କିମ୍ପା କର ॥
ଯେ ସୁବର୍ଣ୍ଣ ଛୁଇଂଲେରେ ଅନ୍ୟଜନ ମରି ।
ଶ୍ରୀରାମର ଦୂତ ବୋଲି ଗଲ ଯେଥୁ ତରି ॥
ତୁମ୍ଭ ଛାର ବଳରେ କିରେ ନେଇତ ପାର କପି ।
ମର୍ତ୍ତ୍ୟର ଲୋକ ତୁମ୍ଭେରେ ଅଟ ମହାପାପୀ ॥୧୦
କେ ତୁମ୍ଭଙ୍କୁ ଦେବଆସନକୁ ଅଣାଇଲା ।
ଯେତେକ କହି ପନଙ୍ଗ ଧ୍ୟାନେଣ ଜାଣିଲା ॥
ହସିଣ ବୋଇଲାରେ ତୁମ୍ଭେ ଶ୍ରୀରାମର ଦୂତ ।
ତେଣୁ ସେ ଉପେକ୍ଷାରେ କଲଇ ତୁମ୍ଭନ୍ତ ॥
ଯାଅ ଯା ବାହୁଡ଼ରେ ସୀତୟା ଯେଣେ ନାହିଁ ।
ଶୁଣିଣ ପର୍ବତୁ ଆମ୍ଭେ ଅଇଲୁ ଓହ୍ଲାଇ ॥

କାହିଁ ନ ଦେଖିଲୁ ଦେବ ତୁମ୍ଭର ଘରଣୀ ।
ଦୂତଙ୍କର ବଚନେ ବିସ୍ମୟେ ରଘୁମଣି ॥
ଯେସନ ସମୟେ ପଶ୍ଚିମର ଚାର ।
ଦ୍ରଶନ କଲେକ ଯାଇ ଶ୍ରୀରାମ ଛାମୁର ॥୨୦
ଶିରେ ହସ୍ତ ଦେଇଣ କହନ୍ତି ବାରତା ।
ଭୋ ରଘୁନନ୍ଦନ ସେ ଦିଗେ ନାହିଁ ସୀତ୍ୟା ॥
ଯମୁନା ନଦୀ କୂଳେ ଆମ୍ଭେ ପଥ ବହିଗଲୁ ।
ବଦ୍ରିକା ଆଶ୍ରମରେ ଯାଇଣ ରହିଲୁ ॥
ତହୁଁ ଯାଇ ଆମ୍ଭେ ପଶିଲୁ ଘୋର ବନେ ।
ହିଙ୍ଗୁଳା ଦେବୀଙ୍କୁ ଆମ୍ଭେ ଦେଖିଲୁ ନିଜ ସ୍ଥାନେ ॥
ଜନ ମନୁଷ୍ୟ ତହିଁ ଅତିଅନ୍ତ ଜାତ ।
ଭୂମିର ଭିତରୁ ଅନଳ ହୁଅଇ ସମ୍ଭୂତ ॥
ତହୁଁ ପଶ୍ଚିମ ସିନ୍ଧୁକୂଳେ ହୋଇଲୁ ଆମ୍ଭେ ଯାଇ ।
ଜନ ମନୁଷ୍ୟଙ୍କର ଯେ ତହିଁକି ଗମ୍ୟ ନାହିଁ ॥୩୦
ଯତି ଗୋଟାଯେକ ଯେକା ସିନ୍ଧୁକୂଳେ ଅଛି ।
ଦେଖିଣ ତାହାଙ୍କୁ ଆମ୍ଭେ ବିନୟ ଭାବେ ପୁଛି ॥
ସେ ବୋଇଲା ଯେ ଦିଗରେ ନାହିଁ ବଇଦେହୀ ।
ସ୍ୱଂଯେ କମଳା ସେ ଜନେକ ତନୟୀ ॥
ରାବଣ ତାହାଙ୍କୁ ସେ ନେଇଛି ଚୋରାଇ ।
ଲଙ୍କାଗଡ଼େ ଅଶୋକ ବନେ ଅଛି ଥୋଇ ॥
ରାମ ଅବତାରେ ବିଷ୍ଣୁ ତ୍ରେତୟା ଯୁଗରେ ।
ରାବଣ ବଧ ଅର୍ଥେ ଜନମ ଅଯୋଧ୍ୟାରେ ॥
ଏଥୁ ଉଭାରେ ପୁଣ ଦ୍ୱାପର ଯୁଗ ହୋଇବ ।
କୃଷ୍ଣ ଅବତାର ପୁଣ ଶ୍ରୀରାମ ଜନମିବ ॥୪୦
ଭାରାଭର ଉଶ୍ୱାସ କରିବେ ଯେଥେ ଥାଇ ।
ଏ ପୁର ନାମ ହାଦେ ଦ୍ୱାରକା ଅଟଇ ॥
ମୁହିଁ ସେ ମହାବୃଦ୍ଧ ଗୟାର ଆଧିପତି ।
ଯେ ପୁର ଜଗାଇ ମୋତେ ଅଛନ୍ତି ଶ୍ରୀପତି ॥

ଯାଅ ଯା ବାହୁଡ଼ରେ ସୀତୟା ଯେଣେ ନାହିଁ ।
ଏଦେବ ଆଶ୍ରମରେ ଜନ ମନୁଷ୍ୟ କାହିଁ ॥
ଶୁଣିଣ ସେହିଠାରୁ ଅଇଲୁ ଭୋ ନାଥ ।
ଶୁଣିଣ ବିସ୍ମୟେ ହୋଇଲେ ରଘୁନାଥ ॥
ଏଥୁ ଉଭାରେ ଗୋ ଶୁଣ ମହାଦେଈ ।
ପୂର୍ବ ଦିଗର ଦୂତେ ଆସିଣ ପୁଣ ହୋଇ ॥୫୦
ପାୟେ ପଡ଼ି ଶୋଇଣ ମସ୍ତକେ ହସ୍ତ ଦେଲେ ।
ଉଠ ଉଠ ବୋଲିଣ ଶ୍ରୀରାମ ଆଗ୍ୟାଂ ଦେଲେ ॥
ବେନି କର ଯୋଡ଼ିଣ ସେ କହନ୍ତି ଉତ୍ତର ।
ଶୁଣିମା ସାବଧାନେ ଅଯୋଧ୍ୟା ଈଶ୍ୱର ॥
ପୂର୍ବ ଦିଗକୁ ଆମ୍ଭେ ଯାଇଥିଲୁ ।
ଦେଶେ ବିଦେଶେ ଦେବ ଅନେକ ବୁଲିଲୁ ॥
ପଞ୍ଚଧାରା ପର୍ବତ ପଦ୍ମନାଭ ଗିରି ।
ସମସ୍ତ ବୁଲିଲୁ ଅରଣ୍ୟ ଆଦି କରି ॥
କପିଳାସ କନ୍ଦର କାମ ଦହନ ନଈ ।
ନର୍ମଦା ନାମେ ସହର ପାପନାଶିନୀ ॥୬୦
କେଦାରେଶ୍ୱର ଦେବ ପାତାଳେଶ୍ୱର ବାଣ ।
ସାକ୍ଷାତେ ଦେଖିଲୁ ଆମ୍ଭେ ଦେବ ନାରାୟଣ ॥
ତୁରିତେ ହରିହର ଦୁହିଁଙ୍କି ଦ୍ରଶନ କଲୁ ।
ଗୋମୁଖ କେଶବଙ୍କୁ ସେଠାରେ ଦେଖିଲୁ ॥
ପ୍ରାଚୀ ନଦୀ ସ୍ନାନ କରି ତୁରିତେ ଆମ୍ଭେ ଗଲୁ ।
ଭାସ୍କର ତୀର୍ଥେ ଦେବ ଦୁଇଦିନ ରହିଲୁ ॥
ନୀଳଗିରି ଶିଖରେ ମିଳିଲୁ ତହୁଁ ଯାଇ ।
ବଳରାମ ସୋହୋଦ୍ରା ଦ୍ରଶନେ ପାପ ଦହି ॥
ତହୁଁ କଳପ ଶିଖରେ ଯାଇ ଉଠି ।
ପୂର୍ବ ଦିଗକୁ ଆମ୍ଭେ ଦେଲୁ ଦୃଷ୍ଟି ॥୭୦
କୁଙ୍କୁମ ବର୍ଣ୍ଣ ଆଚ୍ଛାଦିଲା ଦିଗମାନ ।
କିଛିହିଁ ନ ଦିଶିଲା ଦିଶିଲା ମହାଶୂନ୍ୟ ॥
ସମୋଦ୍ର ଭିତରେଣ ପଶିଲୁ ପୁଣ ତେଇଁ ।
ଲହରୀ ମାରିଣ କୂଳକୁ ଆଣିଲା ପେଲାଇ ॥
ସେହିଠାରୁ ବାହୁଡ଼ିଣ ଅଇଲୁ ନ ପାଇଲୁ ସୀତ୍ୟା ।

ରାବଣ ନେଲା ବୋଲି ପାଇଲୁ ବାରତା ॥
ଶୁଣିଣ ଆଶ୍ରିଯ ହୋଇଲେ ଦାଶରଥି ।
ବୋଇଲେ ଦକ୍ଷିଣ ଦିଗେ ଅଛନ୍ତି ମହାସ୍ୟତୀ ॥
ସୁଗ୍ରୀବରକୁ ଚାହିଂଣ ବୋଇଲେ ରଘୁବୀର ।
କିପାଇଂ ନ ଅଇଲେ ମୈତ୍ର ଦକ୍ଷିଣ ଦିଗର
ଚାର ॥୮୦
ମୋହୋର ମନେ ମୈତ୍ର ଆସଇ ଯେମନ୍ତ ।
ନିଶ୍ଚୟେ କାର୍ଯ୍ୟ ମୋର କରିବ ହନୁମନ୍ତ ॥
ଦକ୍ଷିଣ ଦିଗରେ ସିନା ରାବଣର ଘର ।
ସାଗର ମଧରେ ଅଟଇ ଲଙ୍କାପୁର ॥
ଶବରଣୀ ପକ୍ଷୀଜଟା କହିଛନ୍ତି ମୋତେ ।
ସୀତ୍ୟାକୁ ହରିନେଲା ରାବଣ ଦଇତ୍ୟେ ॥
ସେ ଅଷ୍ଟସେନାୟେ ଗରିଷ୍ଠ ଅଟନ୍ତି ।
ଏଥି ମଧ୍ୟେ ଅଛନ୍ତି ଜମ୍ୱେବ ମହାମତି ॥
ପୂର୍ବର କଥା ଯେ ଅଛଇ ମୁହିଂ ଶୁଣି ।
ଦୂତ ବିଳମ୍ୱେଣ କାର୍ଯ୍ୟ ସାଧ ଜାଣି ॥ ୯୦
ଅବଶ୍ୟ କାର୍ଯ୍ୟ ମୋର ହୋଇବ ନିଅତ ।
ମୋହୋର ମନରେ ଯେ ମିଳଇ ଭୋ
ମୈତ୍ର ॥
ସୁଗ୍ରୀବ ବୋଇଲେ ତୁମ୍ଭେ ସର୍ବଜ୍ଞ
ଶିରୋମଣି ।
ଯେ ଯାହା କହିବ ତାହା ଆଗତ ତୁ ଜାଣି ॥
କେବଳ ଆମ୍ଭ ମନ ଜାଣିବାକୁ ପଚାରୁ ।
ଅର୍ଥପଦ ଜାଣିଣ ଆପଣେ ବିଚାରୁ ॥
ଯେଥୁ ଅନନ୍ତରେ ଦୁର୍ଗେ ଦକ୍ଷିଣ ଦିଗ
ଦୂତେ ।
ପଶିଲେ ଘୋରବନେ ଗହନ ବନସ୍ତେ ॥
ଅବିକ୍ଷଣେ ସୀତୟାକୁ ସେ ଖୋଜନ୍ତି ଯହିଂ
ତହିଂ ।
ଭୋଜନ ଶୟନକୁ ମନରେ ଭ୍ରାନ୍ତି
ନାହିଂ ॥୧୦୦
ମରହଟ ମଲ୍ଲାର କାଞ୍ଚି କନାଉଜ ।
କର୍ଣ୍ଣାଟ କଟକ ଗୁଞ୍ଜରା ନାନା ରାଜ୍ୟ ॥
ନଗ୍ର ପାଟଣା ନଦୀ ଗ୍ରାମ ସୀମା ।

କାହିଂ ଖୋଜି ନ ପାଇଲେ ଶ୍ରୀରାମର
ବାମା ॥
ବନ ପର୍ବତେଣ ବୁଲିଣ ଦେଖନ୍ତି ।
ଝାଡ଼ବାଡ଼ ସୀମା ଆଦି ସମସ୍ତ ଖୋଜନ୍ତି ॥
ଯାନ୍ତେଣ ଦେଖିଲେ ସେ ଯେକଇ ଅସୁର ।
ବିକଟ ବଦନ ଅତି ଭୟାଙ୍କର ॥
ଯେହାଙ୍କୁ ଦେଖିଣ ସେ ଧାଇଂଲା
କୋପଭରେ ।
କ୍ଷୁଧାର୍ତ୍ତ ହୋଇସେ ଖାଇତ ବିଚାରି
ମନରେ ॥୧୦
ଜାଣି ହନୁମତ ଧଇଲା ତାର ବାଳ ।
ବିଧାୟେ ମାଇଲା କୋପେ ବାଳୀର ଦୁଲାଳ ॥
ଜମ୍ୱେବ ଘୋଷରାଇ ଥୋକାୟେ ଦୂର
ନେଲା ।
ତାରାକ୍ଷ ନଳ ନୀଳ କହୁଣି ମାଇଲା ॥
ଗନ୍ଧମାରଦନ ସୁଷେଣ ଜନ ବେନି ।
ଦତ୍ୟର ବୁକୁ ବିଦାରିଲେ ଦଶ ନହ ଘେନି ॥
ଅନ୍ତ ଫୁଟାଇଣ କଲେକ ବାହାର ।
ପ୍ରାଣ ଛାଡ଼ି ପଡ଼ିଲା ସେ ଅସୁର ନିଶାଚର ॥
ଉଷୁମ ତୀର୍ଥ ବୋଲି ତହିଂ ଯାଇ ହୋଇ ।
ସ୍ନାନ କରି ତହୁଂ ସେ ଗମନ
କରିଯାଇ ॥୨୦
ଦକ୍ଷିଣ ଦିଗରେ ନନ୍ଦିକେଶରର ପିଠି ।
ବିଂଝଗିରି ଶିଖର ପର୍ବତରେ ଯାଇ ଉଠି ॥
ବୁଲିଣ ଯେଣେ ତେଣେ ଲୋଡ଼ନ୍ତି
ଚଉକତି ।
କାହିଂ ଭେଟ ନ ପାଇଲେ ଜନେକ
ଦୋହିତୀ ॥
ପର୍ବତୁ ଓହ୍ଲାଇଲେ ସେ ବିସ୍ମୟେ ମନ
ହୋଇ ।
ବିୟରେକ ଦେଖିଲେ ପାତାଳକୁ ଅଛି
ଯାଇ ॥
ଅଷ୍ଟ ସେନାୟେ ତହିଂ ବିଚାର କରନ୍ତି ।
ଜମ୍ୱେବ ମୁଖକୁ ଚାହିଂଣ ଅଙ୍ଗଦ ବୋଲନ୍ତି ॥

ବୁଝ ହୋ ମନ୍ତ୍ରୀ ଯେହୁ କେବଣ ଆକାର ।
ଜନ ଆତଯାତ ପ୍ରାୟେ ଦିଶଇ ବିୟର ॥୩୦
ରିକ୍ଷପତି ବୋଇଲେ ଅବା ଥାଇ ଯେଥେ
ସୀତ୍ୟା ।
ଗୁପତେ ଲୁଚାଇ ଥାଇ ନିକି ରାବଣ
ଦଇତା ॥
ଅଙ୍ଗଦ ବୋଇଲା ହୋ ସମସ୍ତେ ଶୁଣ
ଯେବେ ।
ଯେସନ ବିୟରେକ ଭେଟିଲାଇଂ ଯେବେ ॥
ଚାଲ ହୋ ପଶିବା କିଛି ନ ବିଚାର ।
ଯେତେ ବୋଲି ଜମ୍ୱେବ ହୋଇଲେ
ଆଗୁସାର ॥
ସାତ ସେନାପତି ତାହାର ସଙ୍ଗେ ଗଲେ ।
ଆଗପଛ ହୋଇଣ ସେ ଭିତରେ ପଶିଲେ ॥
ଦୁଃସହ ଅନ୍ଧକାର ନ ଦିଶଇ ପଥ ।
ଯେକ ଆରକେ ଧରାଧରି ହୋଇଛନ୍ତି
ହସ୍ତ ॥୪୦
ବାହୁଡ଼ି ଆସିବାକୁ ପଛକୁ ଚାହିଂଲେ ।
କେବଣହିଂ କତି ଆଉ ଜାଣିତ ନ ପାରିଲେ ॥
ସାହାସି ପଶିଲେ ସେ ଧରାଧରି ହୋଇ ।
ଯୋଜନେ ପରିଯନ୍ତେ ସେ ଗଲେ ପଥ
ବହି ॥
ତହିଂ ଯାଇ ଦେଖିଲେ ସେ ସୁବର୍ଣ୍ଣ
ଯେକଘର ।
ଅଷ୍ଟରତନ ଜଡ଼ି ସେ ହୋଇଛି ନବର ॥
ମର୍କତର କଳସ ନେତର ଚିରାଳ ।
ପୋୟେଳାର ଖମ୍ଭ ଦିଶଇ ମାଳ ମାଳ ॥
ଚିତ୍ର ପିତୁଳିମାନ ବସଇ ପନ୍ତି ପନ୍ତି ।
ଦେଖିଣ ଅଷ୍ଟ ସେନାୟେ ମନରେ
ବିଚାରନ୍ତି ॥୫୦
କେବଣ ଦେବତାର ଅଟଇ ଯେହୁ ପୁରୀ ।
କି ଅବା ଉପାୟେ ଯେହା କରିଛି ଦଶଗିରି ॥
ଯେଥେ ଜାନେକୀ ଆମ୍ଭେ ଦେଖିବା
ନିଅତ ।

ଯେତେ ବିଚାରି ତହୁଁ ଚଳିଗଲେ ଦୂତ ॥
ଥୋକାୟେକ ଦୂର ଯାଇ ଦେଖିଲେ ପୁଷ୍କରଣୀ ।
ଚାରି ପାଖେ ନୀଳାର ପାବଛ ବସାଇଛି ପୁଣି ॥
ମଧରେ ଦୀପଦଣ୍ଡି ନବରତ୍ନ ମୟେ ।
ହଂସ ହଂସିନୀମାନେ ନାନା କେଳି କୟେ ॥
ଅମୃତ ସୁସ୍ୱାଦୁ ଅଟଇ ତହିଂର ପାଣି ।
ଦଳ ପଙ୍କ ବୋଲି ତହିଂ କିଛିହିଂ ନାହିଂ ॥୬୦
ପଦ୍ମ ଉତ୍ପଳ ତହିଂ ଅନେକ ଛନ୍ତି ଫୁଟି ।
ବିନୋଦ କରୁଛନ୍ତି ତହିଂ ନାନାବର୍ଣ୍ଣେ ପକ୍ଷୀ ॥
ପୁଷ୍କରଣୀ କୂଳରେ ଅଛଇ ଉପବନ ।
ଶୁକ ଶାରୀ ମୟୂର ଭାଷନ୍ତି ଘନ ଘନ ॥
ଚୂତ ଚମ୍ପେକ ଚନ୍ଦନ ଅଗର ।
ଜାଇ ଜୁଇ ମାଧବୀ ମନ୍ଦାର କନିଅର ॥
ପନସ କଦଳୀ ତାଳ କଇଥ ଦାରାକ୍ଷ ।
ମରିଚ ଲବଙ୍ଗ ପିପ୍ପଳି ବେଲଗଛ ॥
ଜାତି ଫଳ ସହିତେଣ ଡାଳିମ୍ବ ଖଜୁରୀ ।
ବିବିଧ କୁସୁମେଣ ଶୋଭା ବନ ପୁରୀ ॥୭୦
ଅପୂର୍ବ ତୋଟା ଦେଖି ଆନନ୍ଦ ଅଷ୍ଟ ଜାଣ ।
ପୁର ଦେଖି ଆନନ୍ଦ ହୋଇଲେ ମନେଣ ॥
ବୃକ୍ଷଙ୍କ ମୂଳରେ ସୁବର୍ଣ୍ଣ ଚଉରା ।
ଚନ୍ଦନ ଗୋଳିଣ ଦେନ୍ତି ପନୀର ପାଣି ଛଡ଼ା ॥
କର୍ପୂର ଖଡକରି ଦିଅନ୍ତି ତହିଂ ଧୂଳି ।
ମୃଗ ଶୂକରମାନେ କରନ୍ତି ତହିଂ ନାନା କେଳି ॥
ତୋଟାର ମଧେ ରତ୍ନ ମଣ୍ଡୋପେକ ଅଛି ।
ତହିଂ ବସିଅଛି ଯେକଇ ମୃଗାକ୍ଷି ॥
ରୂପେଣ ସୁନ୍ଦର ସେ ବୟସେ ନବଯୁବା ।
ନାନା ମଣି ଭୂଷଣେ ଦିଶଇ ଅତି ଶୋଭା ॥୮୦
ଜଗତମୋହିନୀ ସେ ଅଟଇ ତରୁଣୀ ।
ଶରଦ ଚନ୍ଦ୍ରବଦନୀ ସେ ନୟନ ହରଣୀ ॥
ତପୀ ଗୁଣେ ତାହାକୁ ନାହିଂ ପଟାନ୍ତର ।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ଦିଶଇ କଳେବର ॥
ତପୀ ବେଶେ କଷା ବାସ ପିନ୍ଧଇ ସେ ନାରୀ ।
କପାଳେ ତିଳେକ ତାର ହସ୍ତରେ ଜପାମାଳି ॥
ତାହାର ସନ୍ନିଧ୍ୟେ ଯାଇ ମିଳିଲେ ଅଷ୍ଟବୀର ।
ପୁଚ୍ଛନ୍ତି ଯେପୁର ଗୋଟା ଅଟଇ କାହାର ॥
ତୁମ୍ଭ ବିନେ ଯେଥେ ନ ଦେଖିଲୁ ଅନ୍ୟ ।
ବାବୁ ମହିମା ଯେ ଅଟଇ ତୁମ୍ଭର ଧନ୍ୟ ॥୯୦
ସୁନ୍ଦରୀ ବୋଇଲା ହେ ଶୁଣ ରିକ୍ଷ କପି ।
ଯେ ପୁଣ୍ୟ ସ୍ଥାନ ଯେ ନ ଦେଖନ୍ତି ପାପୀ ॥
ମୟେ ଦଇତକୁ ଯେହା ବିଶ୍ୱକର୍ମା ଦେଲା ।
ଅନେକ ଯତନେ ଯେ ପୁର ନିର୍ମାଇଲା ॥
ସେ ଦଇତ ଭାରିଯା ରୋମା ନାମେ ନାରୀ ।
ସେ ହାଦେ ସଖୀ ସିନା ଅଟଇ ମୋହୋରି ॥
ଯେ ପୁର ହାଦେ ମୁଂ ସର୍ବଦା ରଖିଥାଇ ।
ପୂର୍ବେ ସଖୀ ମୋତେ ଅଛି ସତ୍ୟ ଯେ କରାଇ ॥
ମେରୁର ଝିଅ ମୁଂ ନାମ ମୋ ଗିରିଜା ।
ନୀଳ ଲୋହିତର ମୁଂ ଅଟଇ ଭାରିଯା ॥୧୦୦
ଯେକାନ୍ତେ ତପସ୍ୟା ମୁଂ କରୁଅଛି ଯେଥି ।
ତୁମ୍ଭେମାନେ ଅଇଲ ଅଟ ହୋ ଅତିଥି ॥
ସେ ଯେ ମୋହୋର ତୋଟା ପୁରକୁ ତୁମ୍ଭେ ଯାଅ ।
ନାନା ପକ୍ୱ ଫଳ ଖାଇଣ ସୁସ୍ଥ କର ଦେହ ॥
ସେ ସରୋବରେ ପିଅ ସୁସ୍ୱାଦୁ ଜଳ ।
ଆୟୁଷ ବର୍ଦ୍ଧିତ ହେଉ ଶରୀର ହେଉ ପ୍ରବଳ ॥
ଆରୋଗ୍ୟ ଅକ୍ଷୟ ହୋଇବ ଶରୀର ।
କେବଣ ଦେଶୁଁ ତୁମ୍ଭେ ଅଇଲ କପିବୀର ॥
ଶୁଣିଣ ଅଙ୍ଗଦ କହଇ ଉତ୍ତର ।
ଶ୍ରୀରାମ ନାମେଣ ଦଶରଥଙ୍କର କୁମର ॥୧୧୦
ସୂର୍ଯ୍ୟବଂଶୀ ରାଜା ଅଯୋଧ୍ୟାର ରାୟେ ।
କଉଶଲ୍ୟା ନାମେ ତାଙ୍କର ଗର୍ଭଧାରୀ ମାୟେ ॥
ଶ୍ରୀରାମ ତାହାଙ୍କର ଗର୍ଭରୁ ଅବତାର ।
କକୟା ଗର୍ଭରୁ ଜାତ ଭରଥ ମହାବୀର ॥
ଲକ୍ଷଣ ଶତୃଘନ ସୁମିତ୍ରା ତହୁଁ ଜାତ ।
ଯେସନେ ଚାରି ପୁତ୍ର ପାଇଲେ ଦଶରଥ ॥୨୦
ଜନେକ ମହରଷି ମିଥିଳାର ରାୟେ ।
ତାହାଙ୍କର ଦୋହିତା ଶ୍ରୀରାମ ବିଭା କୟେ ॥
ଅଯୋଧ୍ୟା କଟକେ ଥାନ୍ତେ ରଘୁନାଥ ।
ମନ୍ତ୍ରୀଗଣ ଘେନିଣ ଭାଳିଲେ ଦଶରଥ ॥
ଶ୍ରୀରାମକୁ ରାଜା କରିବଇ ମୁହିଂ ।
ନିଶ୍ଚିନ୍ତ ହୋଇବି ମୁଂ ଅନ୍ତଃପୁରେ ଥାଇ ॥
ଯେମନ୍ତ ଭାଳୁଣି ଶୁଣିଲେ କୟେକୟା ।
ଦଶରଥ ଆଗରେ ସେ କହିଲେ କୂଟମାୟା ॥
ସତ୍ୟ କରାଇ ସେ ରାମକୁ ବନ ପେଷି ।
ଭାଇ ଭାରିଯାକୁ ଘେନି ସେ ଅରଣ୍ୟକୁ ଆସି ॥
ଚଉଦ ବରଷାଯାୟେ ଅରଣ୍ୟରେ ଥିବେ ।
କନ୍ଦମୂଳ ଖାଇଣ ସେ ବକଳ ପିନ୍ଧିବେ ॥
ଭରଥ ରାଜା ହୋଇଣ ପାଳିବାକ ମହୀ ।
ଦଶରଥକୁ କୟେକୟା ଯେମନ୍ତ ମଣାଇ ॥୩୦
ତେଣୁ ସେ ଶ୍ରୀରାମ ହୋଇଲେ ବନଚାରୀ ।
ଗୋଦାବରୀ କୂଳେ ରାବଣ ସୀତ୍ୟାକୁ ନେଲା ହରି ॥
ବିଛେଦେ ଋଷିମୁଖ ପର୍ବତକୁ ଗଲେ ।
ସୁଗ୍ରୀବର ସଙ୍ଗେ ରାମ ମୈତ୍ରୟ ହୋଇଲେ ॥
ସପତ ଶାଳ ଛେଦି ଦୂନ୍ଦଭି ଅସ୍ଥି ତୋଳି ।
ମୈତ୍ର ଛଳେ ରାମ ମାଇଲେ ବୀର ବାଳୀ ॥
କିଷ୍କିନ୍ଧ୍ୟା କଟକେ ଗୋ ସୁଗ୍ରୀବି ରଜା କଲେ ।
ମାଲ୍ୟବନ୍ତ ପର୍ବତେ ସେ ଚତୃମାସ୍ୟା ବଞ୍ଚିଲେ ॥

ପିତା ସତ୍ୟ ପାଳିଣ ସେ ନ ରହିଲେ ନଗ୍ରେ ।
କନ୍ଦମୂଳ ଖାଇଣ ସେ ଭ୍ରମଇ ବନ ମାର୍ଗେ ॥୪୦
ଥାଠ ଘେନିଣ ଗୋ ଅଇଲା ସୁଗ୍ରୀବର ।
ଆଶ୍ୱିନ୍ୟ ଶୁକଳ ଦଶମୀ ଦିନର ॥
ଅସଂଖ୍ୟ ରିକ୍ଷ ବାନର ସନ୍ୟବଳ ଘେନି ।
ଚାରି ଦିଗକୁ ଦୂତ ପେଷିଲେ ରଘୁମଣି ॥
ବୋଇଲେ ସୀତ୍ୟାର ଆଗେ ବୁଝିବା ଭଲ ମନ୍ଦ ।
ଜାନେକୀ ଭଲେ ଥିଲେ ଛେଦିବା ଦଶକନ୍ଧ ॥
ଦକ୍ଷିଣ ଦିଗକୁ ଆମ୍ଭେ ଅଇଲୁ ଆଠବୀର ।
କାହିଂ ନ ପାଇଣ ଆମ୍ଭେ ପଶିଲୁ ବିମ୍ବର ॥
ମାସକୁ କଣ୍ଟକରି ଅଛନ୍ତି ସୁଗ୍ରୀବର ।
ଉଛୁର ହୋଇଲେ ବୋଲିଛନ୍ତି ଛେଦିବିଟି ଶିର ॥୫୦
ଯେସନେକ କଷ୍ଟ ଦେଇ ପେଷିଛନ୍ତି ଆମ୍ଭନ୍ତ ।
ଯେ ପୁରେ ପଶି ଯେକା ଭେଟିଲୁ ତୁମ୍ଭନ୍ତ ॥
ସୀତୟା ପ୍ରାୟେ ତୁମ୍ଭଙ୍କୁ ମଣିଲୁ ଗୋ ମାୟେ ।
ଆମ୍ଭକୁ କହ ଯେଥୁ ତରିବା ଉପାୟେ ॥
ପାର ହୋଇଯିବାକୁ ଗୋ ନ ପାଇଲୁ ବାଟ ।
ଯେବେ ପଡ଼ିଲା ଆମ୍ଭଙ୍କୁ ଦୁସହ ସଂକଟ ॥
ଭୋ କନ୍ୟା ତୋ ତହୁଂ ନାହିଂ ଯେଥେ ଅନ୍ୟ ।
ବେଳକ ଆମ୍ଭମାନଙ୍କୁ ଦିଅ ଜୀବ ଦାନ ॥
ଶ୍ରୀରାମର କାର୍ଯ୍ୟରେ ଆମ୍ଭେ ହୋଇଛୁ ତତ୍ପର ।
ବିଳମ୍ବ ହୋଇଲେ ସୁଗ୍ରୀ ଛେଦିବ ଆମ୍ଭ ଶିର ॥୬୦
ଶୁଣିଣ ସୁନ୍ଦରୀ ତାଙ୍କୁ ହୋଇଲେ ପ୍ରସନ୍ନ ।
ଯେଥକୁ ଆସନ୍ତା ହେ ନାହିଂ ଅନ୍ୟ ଜନ ॥
ଯେ ଅବା ନ ଜାଣିଣ ପଶନ୍ତି ବଣା ହୋଇ ।
ଅବଶ୍ୟ ସେ ପ୍ରାଣୀ ଯେ ଜୀବନ ହରାଇ ॥
ଶ୍ରୀରାମର ଦୂତ ବୋଲି ଜୀବନ ପାଇଲ ।
ଅପୂର୍ବ ଚରିତ୍ର ମୋତେ ଗ୍ରନ୍ଥ ଶୁଣାଇଲ ॥
ପ୍ରତକ୍ଷେ ବିଷ୍ଣୁ ସେ ମାନବ ତନୁ ଧରି ।
ସ୍ୱଂୟେ କମଳଣୀ ସେ ଜନେକ କୁମାରୀ ॥
ଦେବଙ୍କର ଉପାୟେ ସେ ନେଇଛି ରାବଣ ।
ସଗୋତ୍ର ସହିତେ ତାକୁ ମାରିବେ ରାମଗଣ ॥୭୦
ଯାଅ ଯେବେ ସୁସ୍ଥ ହୋଇଣ ଫଳମୂଳ ଖାଇ ।
ଯେତେ ବୋଲି ତୋଟା ଜଳ ଦେଲାକ ଦେଖାଇ ॥
ଶୁଣିଣ ଆଠ ବୀରେ ଗଲେକ ଖର ହୋଇ ।
ଯେ ଯାହାରେ ସତ୍ୱର ହୋଇଣ ଚଳିଯାଇ ॥
ତୋଟାରେ ପଶିଣ ସେ ଫଳନ୍ତ ଖାଇଲେ ।
ଶ୍ରମ ଉପବାସେ ସେ ଜଳନ୍ତ ପିଇଲେ ॥
ଲୋଭେ ଯାଇଣ ସେ ପଡ଼ିଲେ ମଉଭୋଳେ ।
କେତେ ଦିନ ବହିଗଲା ନଜାଣିଲେ ହେଳେ ॥
କନ୍ୟାହିଂ ଜପ ତୁଷ୍ଟି କରନ୍ତେ ପାଶୋରିଲା ।
ଚାରି ମାସ ପରିଯନ୍ତେ ଦିନ ବହିଗଲା ॥୮୦
ଯେମନ୍ତେ ଯେକ ଦିନେ କନ୍ୟା ବୁଲିଗଲା ।
ଦୂତଙ୍କୁ ଦେଖିଣ ସେ ଚେତା କରାଇଲା ॥
ବୋଇଲା ଅଷ୍ଟବୀରେ ନୟନ ବୁଜି ଯାଅ ।
ଯେ ମୋହୋର ତପବଳେ ବିମ୍ବର ଦ୍ୱାର ପାଅ ॥
ଶୁଣି ଅଷ୍ଟବୀରେ ଆଖି ବୁଜି ଗଲେ ।
ପ୍ରତକ୍ଷେ ବିମ୍ବର ଦ୍ୱାରେଣ ମିଳିଲେ ॥
ସାହେର କୂଳରେ ଅଛି ବିଂଝଗିରି ପର୍ବତ ।
ତହିଂ ଯାଇ ମିଳିଲେ ସେ ଶ୍ରୀରାମର ଦୂତ ॥
ଦେଖିଲେ ବସନ୍ତ ଋତୁ ଆଚ୍ଛାଦିଣ ଅଛି ।
ଯେକକୁ ଆରେକ ସେ ହୋଇଲେ ପୁଚ୍ଛାପୁଚ୍ଛି ॥୯୦
ଚୂତ ବଉଳିଲା ଭାଷିଲା କୋକିଳ ।
ଦକ୍ଷିଣା ପବନ ଦେଖ ବହଇ ଶୀତଳ ॥
ପାଣି ଶୁଖିଲାନି ମେଘମାନେ ନାହି ।
ଉନମତ ଜୀବଜନ୍ତୁ ଉଲସି ଉଠଇ ଭୂଇଂ ॥
ଶରଦ ଋତୁରେ ରାଜା ପେଷିଲା ଆମ୍ଭନ୍ତ ।
ଯେବେ ପ୍ରବେଶ ଆସି ହୋଇଲା ବସନ୍ତ ॥
ଅଙ୍ଗଦ ଲେଖିଲା ଉବୁଳିଲାକ ଦିନ ।
ପାଞ୍ଚ ମାସ ଆସି ହୋଇଲା ସମ୍ପୂର୍ଣ୍ଣ ॥
ତାରାର ନନ୍ଦନ ଶୁଖାଇଲା ମୁଖ ।
କି ଜାଣି ତାହାକୁ ପଡ଼ିଲା ମହାଦୁଃଖ ॥୧୦୦
ଆଖି ଥନ ଥନ କରିଣ ବୋଇଲା ।
ଯେ ଘାନ୍ତି ମରଣ ମୋର ନିଶ୍ଚୟେ ହୋଇଲା ॥
ମାସକେ ବାରତା ଆଣିମ ବୋଲି ପେଷି ।
ଦିନେ ଅଧିକ ହୋଇଲେ ପକାଇବ ନାଶି ॥
ତହିଂକି ଯେବେ ଆସି ବସନ୍ତ ମାସ ହୋୟେ ।
ସୁଗ୍ରୀ ମୋହୋର ପ୍ରାଣ ଘେନିମ ନିଷ୍ଟୟେ ॥
ତୁମ୍ଭେ ବାହୁଡ଼ିଣ କହ ଯେବେ ଯାଇ ।
ମୁହିଂ ମରିବିଯେ ସଂଶୟ ଯେଥେ ନାହିଂ ॥
ବିଳମ୍ବ ହୋଇଲେ ଦଣ୍ଡିବେ ସୀତ୍ୟାସାଇଂ ।
ଯେତେଦିନ ଯାୟେରେ ପଶିଥିଲ କାହିଂ ॥୧୧୦
ଆପଣା ସମ କରି ପେଷିଥିଲେ ମୋତେ ।
ତାହାଙ୍କର ମୁଖ ମୁଂ ଚାହିଂବି କେମନ୍ତେ ॥
ମୋତେ ଦେଖିଲେ ସେ ନିଷ୍ଟୟେ ନ ଜୀଆଇଂ ।
ମୁହିଂ ଯେଥେ ମରିବି ମହୁରା ବିଷ ଖାଇ ॥
ମୋହୋର ମଲା ବୋଲି କହିବ ଯାଇ ।
ସୀତ୍ୟା ନ ପାଇଲେ କେବେହେଂ ଯାଇ ନାହିଂ ॥
ତାରାକ୍ଷ ବୋଇଲା ତୁ ଶୁଣ ମାହାବୀର ।
ସମସ୍ତେ ପଶିବା ଯାଇ ପାତାଳ ବିମ୍ବର ॥
ସେହି ସ୍ୱାଦୁ ଜଳ ଖାଇଣ ମରିବା ।
ଅଲୋଡ଼ା ଆତ୍ମାଛାର କିପାଇଂ ଧରିଥିବା ॥୧୨୦

ସୁଗ୍ରୀବର ଛାମୁକୁ ଆମ୍ଭେ କେମନ୍ତେ ଯିବା ଆଉ ।
କି ବୋଲି ବୋଲିବେଟି ରଘୁକୁଳ ପ୍ରଭୁ ॥
ଯେଥେ ତୁ ମରିବୁ କିମ୍ବା କିଷ୍କିନ୍ଧ୍ୟାର ରାଜା ।
ସୁଗ୍ରୀବର ଅନନ୍ତରେ ପାଇବୁ ତୁହି ପୂଜା ॥
ତୁ ଯେବେ ରହିବୁ ପୁଣ କେମନ୍ତେ ଯେ ଯେକା ।
ଆମ୍ଭମାନଙ୍କର ମନେ ଲାଗିଲା ବଡ଼ ଶଙ୍କା ॥
ବରଷା ନ ସରୁ ଗଲାକ ଲକ୍ଷଣ ।
ସୁଗ୍ରୀବର ଥାଠ ଘେନି ଆସୁ ଏହିକ୍ଷଣି ॥
ଆମ୍ଭୋଂ ପ୍ରମାଣେ ସନ୍ୟ ମାଲ୍ୟବନ୍ତେ ମିଳି ।
ଆଶିନ୍ୟ ମାସେ ସନ୍ୟ ଗଣିତା କଲେ ଭାଳି ॥
ସୀତ୍ୟାର କଥାରେ ସେ ଆରତ ହୋଇଛନ୍ତି ।
ପାଞ୍ଚ ମାସ ହୋଇଲା ଯେବେ କିସ ବା ବିଉରନ୍ତି ॥
ବାଛିଣ ଆମ୍ଭକୁ ପେଷିଲେ ଆଠ ଜଣ ।
ବାନର ମୁଖ୍ୟପାନ ଅଙ୍ଗଦ ହନୁମାନ ॥
ଆମ୍ଭର ବାହାକୁ ସେ ଆଶା କରିଥିବେ ।
ଅବଶ୍ୟ ସୀତୟାର ଯେ ବାରତା ଆଣି ଦେବେ ॥
ଯଦ୍ୟପି ସୀତ୍ୟାର ଆମ୍ଭେ ବାରତା ନ ଦେବା ।
ଯେ ମୁଖମାନ ନେଇ କାହାକୁ ଦେଖାଇବା ॥
ଯେ ବଚନ ଶୁଣିଣ ବୋଲେ ହନୁମତ ।
ତାରାକ୍ଷ ଯଉଂ କଥା କହିଲେ ଉଚିତ ॥୪୦
ସୁଗ୍ରୀବର ନୃପତି ଅଟଇ ବଡ଼ ରାଗୀ ।
ସୋଦର ମରାଇଲା ସେ ଧର୍ମ ପରିତ୍ୟାଗୀ ॥
ଅଙ୍ଗଦକୁ ଛାଡ଼ିଯେବେ ଆମ୍ଭେମାନେ ଯିବା ।
ଲକ୍ଷଣର କୋପେକି ଜୀବନ ପାଇବା ॥
ବୋଲିବେ ସୁଗ୍ରୀବର କପଟେ ପେଷିଥିଲା ।
ବାଳୀର ପୁତ୍ରକୁ ସେ ଜବନେ ମରାଇଲା ॥
ତୁମ୍ଭେହେଂ ଯେହାରେ କପଟେ କଲ ନାଶ ।
କାହିଂ ଲୁଚିଥିଲରେ ନ ଆଣିଲ ସନ୍ଦେଶ ॥
ଯେତେବୋଲି ଲକ୍ଷଣ ଯେ ଛେଦିବ ଆମ୍ଭ ଶିର ।
ରକ୍ଷା କରିନପାରିବ ନୃପତି ସୁଗ୍ରୀବର ॥ ୫୦
ଯେ କଥାମାନ ଆମ୍ଭ ମନକୁ ନ ଆସଇ ।
ଯେ ମୋହୋର ବୁଦ୍ଧି ତୁମ୍ଭେ ଶୁଣସିରେ ଭାଇ ॥
ଆମ୍ଭେ ପଛେ ବିମ୍ବରେ ପଶି କିନା ମରୁ ।
ଲକ୍ଷଣର କୋପକୁ ଯେ ମହାଭୟେ କରୁ ॥
ତୁହୋ ଅଙ୍ଗଦ ଯାଅ ସୁଗ୍ରୀବର ପାଶ ।
କହିବୁ ତୁ ନ ପାଇଲୁ ଆମ୍ଭେ ସୀତ୍ୟାର ସନ୍ଦେଶ ॥
ବୁଲି ବୁଲି ସେମାନେ ମଲେ ସାତବୀର ।
ମୁହିଂ ମାତ୍ର ଅଇଲି ଭାଗ୍ୟେଣ ମୋହୋର ॥
ଯେହା ବୋଇଲେ ସେ ନ ବୋଲିବେ କିଛି ।
ମଲା ପ୍ରାଣୀ ଆମ୍ଭେ ସିନା ଜୀଆଇଲା ମୃଗାକ୍ଷି ॥୬୦
ସେ କନ୍ୟା ଆମ୍ଭକୁ ଯେବେ କରନ୍ତା ହେଳା ।
ସେହିଠାରେ ଆମ୍ଭର ବୃତ୍ତାନ୍ତଟି ଭେଳା ॥
ବାଳୀ ସୁଗ୍ରୀର ଅଟୁ ତୁ ଜ୍ୟେଷ୍ଠ ଯେ ନନ୍ଦନ ।
ଦୁଇକୁଳ ରକ୍ଷା କରିତେ ଅଟୁ ତୁ ଭାର୍ଜନ ॥
ଶ୍ରୀରାମଚନ୍ଦ୍ର ତୋତେ ଯୁଗରାଜା କଲେ ।
ସୁଗ୍ରୀ ଅନନ୍ତରେ ତୋତେ ନୃପତି ବୋଇଲେ ॥
ସୋଦର ବଧିବାକୁ ଦୁଷ୍ଟସେ ଅଟଇ ।
କୁଳକୁ କଳଙ୍କ ଅପଖ୍ୟାତି ପାଇ ॥
ତୋତେ ହେଂ ସୁଗ୍ରୀବର କିଛିହିଂ ନ ବୋଲିବ ।
ଯାଅତୁ ବାବୁ ଆମ୍ଭଙ୍କୁ ପଛେ ସଙ୍ଖୋଳିବ ॥୭୦
ଅଙ୍ଗଦ ବୋଇଲା ହନୁର କଥା ଶୁଣି ।
ସୁଗ୍ରୀବର କଥା କିହୋ ତୁମ୍ଭେ ନାହଂ ଜାଣି ॥
ରାଜ୍ୟର ହିତେ ବାଳୀ ମାୟାଭିକି ମାରିଗଲା ।
ଚାଣ୍ଡାଳ ଦତ୍ୟ ସେ ପାତାଳେ ପଶିଲା ॥
କୋପେଣ ବାଳୀ ବୀର ଗଲାକ ଗୋଡ଼ାଇ ।
ବରଷେ ଯୁଝିଲା ସେ ପାତାଳ ପୁରେ ଥାଇ ॥
ବିମ୍ବର ଦ୍ୱାର ପୋତି ଅଇଲା ସୁଗ୍ରୀବର ।
ମୋତେ କିମ୍ବା ନୃପତି ନ କଲା ରାଜ୍ୟର ॥
ବିଉରନି ଯେ କଥା ହେ କେମନ୍ତ ଅଟଇ ।
ନ ବିଉରି ସୁଗ୍ରୀକି ରାଜ୍ୟରୁ ଖେଦି ଦେଇ ॥୮୦
ଏସେ ପିତାକୁ ମୋର କପଟେ ମରାଇଲା ।
ରାଜ୍ୟର ସମ୍ପଦମାନ ସମସ୍ତ ଭୋଗ କଲା ॥
ଜ୍ୟେଷ୍ଠ ଭାଇର ଭାରିଯା ତାରା ଯେ ସୁନ୍ଦରୀ ।
ବିଚାରେ ତ ଗୁରୁପତ୍ନୀ ଅଟଇ ତାହାରି ॥
ତାହାକୁ ରମଣ କଲାକ ଦୁଷ୍ଟବୁଦ୍ଧି ।
ଆମ୍ଭେ ପାଞ୍ଚ ପୁଅ ଅଛୁ ତାହାର ମହାଯୋଧି ॥
ଯେତେକ ନିପ୍ରୋହି ସେ ଅଟଇ କପିରାୟେ ।
କାର୍ଯ୍ୟ ନ କରିଣ ଯେ ଛାମୁକୁ ତାର ଯାୟେ ॥
ସୀତ୍ୟାର ସନ୍ଦେଶ ନ ଘେନି ଯେବେ ଯିବ ।
ଆମ୍ଭକୁ ଦେଖିଲେ ସେ ଦଣ୍ଡେ ନ ଥୋଇବ ॥୯୦
ଶିର ଛେଦିଣ ସେ କରିବ ପ୍ରାଣ ନାଶ ।
ଯେତେ ଦୂରକୁ ମୋତେ ଲାଗୁଅଛି ତ୍ରାସ ॥
ତୁମ୍ଭେ ସାତ ବୀର କହ ବେଗେ ଯାଇ ।
ମୁହିଂ ନିଶ୍ଚେ ମରିବି ସୀତୟା ନ ପାଇ ॥
ଯେତେ କହି ଅଙ୍ଗଦ ଶୁତିଲା କୁଶ ପାଡ଼ି ।
ସାତ ସେନାପତି ତାକୁ କାନ୍ଦୁଛନ୍ତି ବେଢ଼ି ॥
ଭୋ କୁମରମଣି ତୁ ବାଳୀର ତନୟେ ।
କିଷ୍କିନ୍ଧ୍ୟା କଟକେ ତୁ ଅଟୁ ଯୁଗରାୟେ ॥
ତୋତେ ଛାଡ଼ିଣ ଆମ୍ଭେ କିସ ପାଇଁ ଯିବୁ ।
ତୋହୋର ପାଇଁ ଆମ୍ଭେ ଜୀବନ ହରାଇବୁ ॥୧୦୦
ଯେତେ ବିଚାରିଣ ସେ ସାତ ସେନାପତି ।
କୁଶ ପାଡ଼ିଣ ସେ ଅଙ୍ଗଦକୁ ବେଢ଼ିଛନ୍ତି ॥
ଫଳ ମୂଳ ଆହାର ସେ କିଛିହିଂ ନ ଖାଇଲେ ।
ଅଙ୍ଗଦକୁ ବେଢ଼ିଣ ସେ ସମସ୍ତ ବସିଲେ ॥

ଯେଥିଅନନ୍ତରେ ତୁମ୍ଭେ ଶୁଣ ଗୋ ହେମବନ୍ତୀ ।
ଶ୍ରୀରାମ ଚରିତ ସେ କୁହା କୁହି ହୋନ୍ତି ॥
ଦିନ ବଞ୍ଚିବା ପାଇଁ ସେ କହନ୍ତି ରାମ କଥା ।
ଦଶରଥ ଅପୁତ୍ରକ ହୋଇଣ କଲେ ଚିନ୍ତା ॥
ସୁମନ୍ତ କହିଲେ ସନତ କୁମାରଙ୍କ ବାଣୀ ।
ଶ୍ରୀରାମ ଶାହାସ୍ର ସେ ବଶିଷ୍ଠଙ୍କ ମୁଖୁଂ ଶୁଣି ॥୧୦
ଲୋମପାଦ ରାଜାର ଦେଶ ଅପାଳକ ।
ଘୋର ବନେ ତପସ୍ୟା କରଇ ବିଭାଣ୍ଡେକ ॥
ମୃଗୁଣୀ ଗର୍ଭରୁ ଜାତ ହୋଇଲେ ଋଷ୍ୟଶୃଙ୍ଗ ।
ଇମ୍ଭେବ କହନ୍ତି ସବୁ ଅଙ୍ଗଦର ଆଗ ॥
ବେଶ୍ୟାକୁ ପଠିଆଇ କପଟେ ଅଣାଇବା ।
ଦଶରଥ ଦୋହିତା ଶାଯେନ୍ତା କନ୍ୟାକୁ ବିଭାଦେବା ॥
ଯଜ୍ଞ କରି ଚରୁ ଜାତ କଲେକ ଋଷିଶୃଙ୍ଗ ।
ପ୍ରସନେ ସମର୍ପିଲେ ଦଶରଥ ଆଗ ॥
ପାଇଣ ଆନନ୍ଦ ହୋଇଲା ଦଣ୍ଡଧାରୀ ।
ସାତଶ ପଞ୍ଚାଶ ରାଣୀମାନନ୍ତ ହକାରି ॥୨୦
ବ୍ରତ ଆଚରି ଗୋ ତୁମ୍ଭେ ଅଛ କେତେ ଜଣ ।
ଯେତେକ ଚରୁ ତୁମ୍ଭେ ତୋଷ ମନେ ଘେନ ॥
ଶୁଣିଣ କଉଶଲ୍ୟା ସୁମେତ୍ରା କଯେକୟା ଆଗ ହୋଇ ।
ଚରୁ ଆଣି ଭୁଞ୍ଜନ୍ତେଣ ଚାରିପୁତ୍ର ପାଇ ॥
ତେଣୁ ଦଶରଥର ଫିଟିଲା ପୁତ୍ର କଷ୍ଟ ।
ଦିନୁ ଦିନୁ ପୁତ୍ରମାନେ ହୋଇଲେ ବଳିଷ୍ଠ ॥
ବ୍ରତ କରାଇ ରାଜା ଶାହାସ୍ର ଶିଖାଇଲେ ।
ଯଜ୍ଞ ରଖିବାକୁ ବିଶ୍ୱାମିତ୍ର ମାଗିନେଲେ ॥
ଶ୍ରୀରାମ ଲକ୍ଷଣ ଗଲେ ଦୁଇ ଭାଇ ।
ଅଗମ୍ୟ ବନେ ପଶି ତାଡ଼େକୀ ମରାଇ ॥୩୦
ଅହିଲା ସୁନ୍ଦେରୀ ପାଷାଣ ହୋଇଥିଲା ।
ଶ୍ରୀରାମ ପାଦ ଲାଗି ମୁକତ ହୋଇଲା ॥

ସିଦ୍ଧବନେ ଯାଇ ହୋଇଲେ ପରବେଶ ।
ଯଜ୍ଞ ଆରମ୍ଭିଲା ଗାଧିରାଜା ଶିଷ୍ୟ ॥
ସୁବାହୁ ଦଇତ ଅଇଲା ସନ୍ୟ ଘେନି ।
ତାହାକୁ ମାଇଲେ ଶ୍ରୀରାମ ଲକ୍ଷଣ ଭାଇବେନି ॥
ଶୁଣବାକୁ ଅଙ୍ଗଦ ହୋ ବୋଇଲେ ଜମ୍ଭେବ ।
ଜନେକ ଘରେ ଥିଲା ସଦାଶିବ ଚାପ ॥
ଲକ୍ଷେ ରାଜା ବରି ମୁନି ଯାଗ କରୁଥିଲା ।
ଯେ ଧନୁ ଉଭାରିବ କନ୍ୟାଦେବଇ ବୋଇଲା ॥୪୦
ଶୁଣି ବିଶ୍ୱାମିତ୍ର ଶ୍ରୀରାମକୁ ଘେନିଗଲେ ।
ଲକ୍ଷେ ରାଜା ଅଭିମୁଖେ ଶିବଧନୁ ଭାଙ୍ଗିଲେ ॥
ଦେଖିଣ ଜନେକର ଫିଟିଲା ମନଭ୍ରାନ୍ତି ।
ଶ୍ରୀରାମକୁ ବରିଲା ସୀତୟା ରୂପବନ୍ତୀ ॥
ଦଶରଥ ରାଜାଙ୍କୁ ଅଯୋଧାଉଂ ଅଣାଇଲେ ।
ଚାରି ପୁତ୍ରଙ୍କୁ ସେ ଚାରି ଝିଅ ଦେଲେ ॥
ବାହୁଡ଼ି ଦଶରଥ ଅଯୋଧାପୁର ଯାନ୍ତେ ।
ପ୍ରଶୁରାମ ବୀର ଓଗାଳିଲା ପଥେ ॥
ଦେଖିଣ ଦଶରଥ କରପତ୍ର ଯୋଡ଼ି ।
ବିନୟ ବାଣୀ କହିଣ ପ୍ରଶୁରାମ ପାଦେ ପଡ଼ି ॥୫୦
କାହାରି ବିନୟ ସେ ନମାନି ପ୍ରଶୁରାମ ।
ପ୍ରତଗ୍ୟାମାନ କହିଣ ଭେଟିଲା ଶ୍ରୀରାମ ॥
ବୋଇଲା ଧନୁ ଯେବେ ଗୁଣ ଦେଇ ପାରୁ ।
ତେବେ ସେ ଜାଣିମା ସଂସାରେ ହନ୍ତକାରୁ ॥
ଶୁଣିଣ ଶ୍ରୀରାମ କର ପ୍ରସାରିଲେ ।
ଗୁଣ ଦେଇ ଧନୁ ତାର ଭାଙ୍ଗି ପକାଇଲେ ॥
ଦେଖିଣ ପ୍ରଶୁରାମର ମନରୁ ଭ୍ରାନ୍ତି ଗଲା ।
ଅକ୍ଷୟେ ବେନିତ୍ରୋଣ ଶ୍ରୀରାମକୁ ଦେଲା ॥
ତହୁଂ ପୁଣ ଗଜ ଅଶ୍ୱ ଅଯୋଧାରେ ପ୍ରବେଶ ।
ଶୁଣିଣ ସାତ ବୀରେ ମନରେ ହରଷ ॥୬୦

ବୋଲନ୍ତି ଜମ୍ଭେବ ତୁ ଶୁଣ ବାଳୀ ସୁତ ।
ଶ୍ରୀରାମର ଶୂରପଣ ଜଗତେ ବିଖ୍ୟାତ ॥
ଦଶରଥ ଶ୍ରୀରାମକୁ ଯେ ରାଜ୍ୟ ଦେଲା ।
ସାବତ ଜନନୀ କଯେକୟା ବାରତା ପାଇଲା ॥
କପଟେ ନୃପତିକି ସତ୍ୟ କରାଇଲା ।
ଭରଥ ରାଜା ହେଉ ଶ୍ରୀରାମ ବନଯାଉ ବୋଇଲା ॥
ଚଉଦ ବରଷକୁ କରାଇଲା କଷ୍ଟ ।
ଦେଶ ଗ୍ରାମ ନ ମାଡ଼ିବ ଶିରେ ବାନ୍ଧି ଜଟ ॥
ଅନ୍ନ ନ ଭୁଞ୍ଜିଣ ସେ କନ୍ଦମୂଳ ଖାଇ ।
ବୃକ୍ଷର ବକଳ ପିନ୍ଧି ବଞ୍ଚିବ ବୃକ୍ଷର ଛାଇ ॥୭୦
ତେଣୁ ସେ ଶ୍ରୀରାମ କଲେକ ବନବାସ ।
ସୂପଲେଖି ନାସା ଶ୍ରବଣ କଲେ ନାଶ ॥
ଦଣ୍ଡକାଅରଣ୍ୟେ ଖର ଦୂଷଣ ତ୍ରିଶିରା ଆଦି ଯେତେ ଥିଲେ ।
ସୂପଲେଖି କହନ୍ତେ ସେ ବେଗେଣ ଧାଇଂଲେ ॥
ଚଉଦ ସସ୍ରବଳ ବେଢ଼ିଲେ ଶ୍ରୀରାମକୁ ।
ନିମିଷକେ ଶ୍ରୀରାମ ନାଶିଲେ ତାହାଙ୍କୁ ॥
କୋପେଣ ସୂପଲେଖି ଲଙ୍କାକଇ ଗଲା ।
ଭାଇର ଆଗରେ ଯାଇ ବାରତା କହିଲା ॥
ଶୁଣିଣ ରାବଣ ଅଇଲା ବେଗେ ଧାଇଂ ।
ମାରୁଚି ଦୈତ୍ୟେକୁ ମାୟା ମୃଗ ଦେଖାଇ ॥୮୦
ଦେଖିଣ ବେନିଭାଇ ମାରୁଚିକି ଗୋଡ଼ାଇଲେ ।
ପର୍ଣ୍ଣକୁଟୀ ଭିତରେ ଯେକାନ୍ତେ ସତୀ ଥିଲେ ॥
ତେଣୁ ସେ ମାୟା ରୂପ ଧରିଣ ହରିନେଲା ।
ଦେଖିଣ ପକ୍ଷୀଜଟା ଆଗରେ ଓଗାଳିଲା ॥
ରଥ ଧ୍ୱଜ ସହିତରେ ଗିଳିଲା ଉଗାଳି ।
ଗରୁଡ଼ର ସୁତ ଅଟଇ ମହାବଳୀ ॥
କୋପେଣ ରାବଣ ଖଡ଼୍ଗ କରେ ଧରି ।
ଦୁଇ ଗୋଡ଼ ଦୁଇ ଡେଣା କାଟିଲା ରୋଷ ଭରି ॥

ସୀତୟାକୁ ହରିଣ ସେ ନେଲା ଦଶଗିରି ।
ବିମାନେ ବସାଇଣ ସେ ପଶିଲା
ଲଙ୍କପୁରୀ ॥୯୦
ମାୟା ମୃଗ ମାରିଣ ଶ୍ରୀରାମ ବାହୁଡ଼ିଲେ ।
ପର୍ଣ୍ଣକୁଟୀ ଭିତରେ ସେ ସୀତୟାକୁ ନ
ଦେଖିଲେ ॥
ବିକଳେ ଶ୍ରୀରାମ ସେ ଅରଣ୍ୟେ ବୁଲନ୍ତେ ।
ଅନୁକ୍ଷଣେ ଲକ୍ଷଣ ଅଛଇ ସଙ୍ଗତେ ॥
କୋବନ୍ଧକୁ ଭେଟିବା ଯେ ଶବରଣୀର
ସେବା ।
ଦଶନ କ୍ଷତ ଦେଇଣ ଆମ୍ବ ଅଣାଇବା ॥
ପମ୍ପା ସରୋବରେ ଗଉଡୁଣୀକି ଦୁଧ
ମାଗିବା ।
ମଣିବନ୍ଧା ଦେଇଣ ଦୁଧ ଖାଇବା ॥
ଗଉଡ଼ ଗୋଡ଼ାଇଣ ମାଗିଲା ଯଉଂବର ।
ଜମ୍ବେବ କହନ୍ତି ତାହା ଅଙ୍ଗଦ
ଆଗର ॥୧୦୦
ହନୁମତ ଦ୍ରଶନ ସୁଗ୍ରୀବର ସଙ୍ଗେ ମୈତ୍ର ।
ସପତ ଶାଳ ଛେଦନ କଲେକ ରଘୁନାଥ ॥
ଦୁନ୍ଦଭି ଅସ୍ଥି ରାମ ଫିଙ୍ଗିଦେଲେ କେଣେ ।
ବଳବନ୍ତ ବାଳୀକି ବଧିଲେ ଯେକାବାଣେ ॥
ସୁଗ୍ରୀବରକୁ ରାଜାପଣ ଅଙ୍ଗଦକୁ ଯୁବରାଜା ।
ତାରାକୁ ପ୍ରବୋଧିଣ ଶ୍ରୀରାମ କଲେ ପୂଜା ॥
ମାଲ୍ୟବନ୍ତେ ରହିବା ଯେ ଶ୍ରୀରାମ ଯିବା ।
ପୃଥିବୀଯାକ ଥାଠ ଯେ ପୂରିଣ ରହିବା ॥
ସନ୍ୟର ଗଣିତା ଯେ ଦୂତ ବରଗଣ ।
ସନ୍ଦେଶ ନ ପାଇଣ ଆମ୍ଭର ମରଣ ॥ ୧୦
ଦିନ ହରିବା ନିମନ୍ତେ ସେ କୁହାକୁହି
ହୋନ୍ତି ।
ଶ୍ରୀରାମ ସୀତ୍ୟା କାହିଁ ଦେଖିବା ବୋଲନ୍ତି ॥
ଜମ୍ବେବ ବୋଇଲେ ତୁ ଶୁଣ ହୋ ଅଙ୍ଗଦ ।
ପ୍ରତକ୍ଷେ ନାରାୟଣ ଅଟନ୍ତି ରାମଚନ୍ଦ୍ର ॥
ତାହାଙ୍କର କାର୍ଯ୍ୟେ ଆସି ଆମ୍ଭର ମୃତ୍ୟୁ
କାହିଁ ।

ଅବଶ୍ୟ ସନ୍ଦେଶ ଆମ୍ଭେ ପାଇବା
ବଇଦେହୀ ॥
ଯେମନ୍ତେଣ କଥାମାନ ହୁଅନ୍ତେଣ
ତହିଁ ।୨୦
ସମ୍ପାତି ଶୁଣିଲା ତାହା ଥୋକାୟେ ଦୂରେ
ଥାଇ ॥
ଗରୁଡ଼ର ତନୟ ପକ୍ଷ ଭ୍ରଷ୍ଟ ହୋଇ ।
ଆଦିତ୍ୟର ତେଜ ଲାଗି ଡେଣା ତାର ନାହିଁ ॥
ଉଡ଼ିନପାରି ସେ ସମୋଦ୍ର କୂଳେ ଅଛି ।
କପିଙ୍କର କଥା ସେ ଶୁଣିଲାକ ପକ୍ଷୀ ॥
ମନରେ ବିଚାର ସେ କରଇ ପକ୍ଷୀବର ।
ଆଜ ମୁଂ ଯେହାକଇ କରିବି ଆହାର ॥
ଜୀବଜନ୍ତୁ କିଛି ଆଜି ମୋତେ ଆହାର
ନମିଳି ।
ଯେହାଙ୍କୁ ଖାଇଲେ ପ୍ରାଣ ସୁସ୍ଥହେବ ଭଲି ॥
ଯେହାନ୍ତ ଖାଇଲେ ମୁଂ ପାଇବି ମହାସୁଖ ।
ଅପାର କାଳର ମୋର ଗଲାକ ଶୋଷ
ଭୋକ ॥
ଯେତେ ବୋଲି ପର୍ବତୁ ସେ ପଡ଼ିଲାକ ଗଡ଼ି ।
ଅଣ୍ଡ ବିସ୍ତାରିଣ ଚାରି ଦିଗକୁ ଚାହାଇଂ
ଉଦବଡ଼ି ॥୩୦
ସମ୍ପାତିର ବିଚାର ସେ ଶୁଣିଲେ ଅଙ୍ଗଦ ।
ବୋଇଲା ନିଶ୍ଚୟେ ଆଜ ପଡ଼ିଲା ପରମାଦ ॥
ଆମ୍ଭର ବିନୁ ଯେଥେ ଅନ୍ୟ କେହି ନାହିଁ ।
କାହାକୁ ଖାଇବ ବୋଲିୟେ ପକ୍ଷୀ ଆସୁଅଛି
ଧାଇଁ ॥
ନିଶ୍ଚୟେ ଯେ ଆମ୍ଭଙ୍କୁ କରିବ ପ୍ରାଣନାଶ ।
ଅଣ୍ଡ ବିସ୍ତାରିଣ ଯେ ପୂରୋଇଲା ଆକାଶ ॥
ଶ୍ରୀରାମର କାର୍ଯ୍ୟ ତ କରିନପାରିଲୁ ।
ଅକାରଣେ ଆମ୍ଭେ ଯେଥେ ପ୍ରାଣ ହରାଇଲୁ ॥
କ୍ଷେତ୍ରୀଙ୍କର ଧର୍ମ ଯେ ସଂଗ୍ରାମ କରିବ ।
ନୋହିଲେ ତୀର୍ଥକରି ପ୍ରାଣ ବିସର୍ଜିବ ॥୪୦
ଅଣଉଚିତ ମୃତ୍ୟୁ ହୋଇଲା ଆମ୍ଭନ୍ତ ।
ପଳାଇ ଯାଇତ ଯେଥେ କେଣେ ନାହିଁ
ପଥ ॥

ଧନ୍ୟ ଜଟାୟୁଶ ହୋ ତୁ ଅଟୁ ପୁଣ୍ୟବନ୍ତ ।
ଶ୍ରୀରାମର କାର୍ଯ୍ୟେଣ ସଂଗ୍ରାମେ ଗଲୁହତ ॥
ଶୁଣିଣ ସଂପାତି ହରଷ ହୋଇଲା ।
କେବଣ ଜଟାୟୁଶ ଶ୍ରୀରାମ କାର୍ଯ୍ୟେ ମଲା ॥
କେ ପୁଣ କାହୁଂ ଆସି ସଂଗ୍ରାମଟି କଲା ।
କାହିଁ ଥାଇ ଜଟାୟୁଶ କିପାଇଂ ଯୁଦ୍ଧ କଲା ॥
କହ କପିବୀର ଧଉର୍ଯ୍ୟ ମନ ହୋଇ ।
ଜଟାୟୁଶ ବୋଲିଣ ମୋହୋର ସାନ
ଭାଇ ॥୫୦
ମୁଂ ତାହାର ଜ୍ୟେଷ୍ଠ ଭ୍ରାଥ ଗହନ ବନେ
ଥାଇ ।
ପକ୍ଷୀ ବିହୁନେ ମୁଂ ଯେ ଉଡ଼ିତ ନ ପାରଇ ॥
ଜଗତେ ଅଜୟେ ସେ ଅଟେ ପକ୍ଷୀବର ।
କେବଣ ବାପୁଡ଼ା ସେ ଛେଦିଲା ତାର ଶିର ॥
ସମ୍ପାତି ବୋଇଲା ତୁମ୍ଭେ ସ୍ଥିର ହୋଇ ରହ ।
ଭାଇର ଦୁଃଖ କଥା ମୋହୋର ଆଗେ
କହ ॥
ଶୁଣିଣ ଅଷ୍ଟ ସେନା ଯେ ଉଠିଣ ବସି ।
ସମ୍ପାତି ଶ୍ରୀରାମକୁ ବହୁତ ପ୍ରଶଂସି ॥
ରାଘେବ କାର୍ଯ୍ୟେଣ ମଲା ମୋର ଭାଇ ।
କହ ବାବୁ ସନ୍ଦେଶ କତିକି ତୁମ୍ଭ
ନେଇ ॥୬୦
ଦୂତେ ବୋଇଲେ ତୁମ୍ଭେ ଆମ୍ଭକୁ ଦୟାକର ।
ଶ୍ରୀରାମ ଚରିତ୍ର ଶୁଣାଇ ସର୍ବ ପାପ ହର ॥
ସମ୍ପାତି ବୋଇଲା ମୁଂ ଦେଖିବି ତାଙ୍କୁ
କାହିଁ ।
ତୁମ୍ଭେ ତାହାଙ୍କର ଦୂତ ଅଟ ହେ ଗୋସାଇଂ ॥
ଚଳି ନ ପାରଇ ପକ୍ଷୀ ମୋର ହତ ।
ତେଣୁ ସେ ବାବୁରେ ମୁଂ ଅଟଇ ଅଶକତ ॥
ତୁମ୍ଭର ନିକଟକୁ ମୋତେ ଘେନିଯାଅ ।
ଶ୍ରୀରାମ ସୀତ୍ୟାଙ୍କର ବାରତା ଶୁଣାଅ ॥
ମୁହିଂ ଜାଣଇ ସୀତ୍ୟା ଅରଣ୍ୟ ଉଠାଇ ।
ରାବଣ ହରିନେଇ ଥୋଇଅଛି ଯହିଂ ॥୭୦
ଦୂତେ ବୋଇଲେ ତୁମ୍ଭେ ଆମ୍ଭକୁ ଦୟାକର ।

ଆମ୍ଭର କହନ୍ତେ ତୁମ୍ଭକୁ ଦୟା କରିବେ
ରଘୁବୀର ॥
ଯେମନ୍ତେ ଜଟାୟୁର ହୋଇଲା ପ୍ରାଣନାଶ ।
ଯେକମନେ ଶୁଣ ତୁ ହୋ ଗରୁଡ଼ର ଶିଷ୍ୟ ॥
ଖଡ଼ଦ କପି ବୋଲି କିଷ୍କିନ୍ଧ୍ୟାର ରାୟେ ।
ବାଳୀ ସୁଗ୍ରୀ ବୋଲିଣ ଯେ ତାହାର
ତନୟେ ॥
ସେ ବାଳୀର ତନୟ ଯେ ଅଙ୍ଗଦ ଅଟେ
ମୁହିଂ ।
ପିତା ପ୍ରତିପାଳନ୍ତି କିଷ୍କିନ୍ଧ୍ୟାରେ ଥାଇ ॥
ସାନୁଜ ସୁଗ୍ରୀକି ସେ ରାଜ୍ୟରୁ ଘଉଡ଼ିଲା ।
ଯେକାଙ୍କ ମହାବଳୀ ଜଗତେ
ବୋଲାଇଲା ॥୮୦
ଯେମନ୍ତ ସମୟେ ଦଶରଥ ସୁତ ।
ଶ୍ରୀରାମ ନାମେ କୋଦଣ୍ଡ ଚାପ ହସ୍ତ ॥
ପିତାର ସତ୍ୟ ପାଳି ବନବାସ କଲେ ।
ଦଣ୍ଡକା ଅରନ୍ୟେ ଭାରିଯା ହରାଇଲେ ॥
ଲଙ୍କାର ରାବଣ ସୀତାକୁ ନେଲା ହରି ।
ଶ୍ରୀରାମ ନଥିବାରେ ତପସୀ ବେଶଧରି ॥
ଦେଖିଣ ଜଟାୟୁଶ ଓଗାଳିଲା ବଳେ ।
ଖଡ଼ଗ ଧରି ଧାଇଂଲା ବିଶର୍ବାର ବାଳେ ॥
ତୋହୋର ଭାଇ ତାହା ତୁଲେ ବହୁତ
ଯୁଦ୍ଧକଲା ।
ରଥ ଧ୍ୱଜ ପାତାଙ୍ଗ ସମସ୍ତ ଭାଜିଲା ॥୯୦
କୋପେ ଡେଣା ପାଦ ତାର ପକାଇଲା
କାଟି ।
ତୋହୋର ଭ୍ରାଥ ପଡ଼ିଲା ମହୀଲୋଟି ॥
ତେବେ ସେ ରାବଣ ସୀତ୍ୟାକୁ ଘେନିଗଲା ।
କେବଳ ମାତ୍ର ତାର ଶରୀରେ ଜୀବଥିଲା ॥
ରାବଣ ନେଲାବେଳେ ବୋଇଲେ
ବଇଦେହୀ ।
ପ୍ରାଣତ୍ୟାଗ ହୁଅ ପକ୍ଷୀ ରାମକୁ ବାର୍ତ୍ତା କହି ॥
ଖଡ଼ଗ ପାତେ ଦେହ ହୋଇଲା ଖଣ୍ଡ ଖଣ୍ଡ ।
ରାମକୁ ବାରତା କହି ଛାଡ଼ିଲା ପକ୍ଷୀ ପିଣ୍ଡ ॥
ବିମାନ ଆରୋହି ସେ ସ୍ୱର୍ଗକଇ ଗଲା ।

ଦୟାରେ ରଘୁନାଥ ଅଗ୍ନିରେ ଦାହ
କଲା ॥୧୦୦
ଅସ୍ଥି ନେଇ ପକ୍ଷୀର ପୁଣ୍ୟଜଳେ
ପକାଇଲେ ।
ଦଶରଥ ମୈତ୍ର ବୋଲି ପକ୍ଷୀକି ଉଦ୍ଧାରିଲେ ॥
ତେଣୁ ସେ ବୋଇଲୁ ହୋ ଧନ୍ୟ ଜଟାୟୁଶ ।
ରାମ କାର୍ଯ୍ୟେ ମରିଣ ପାଇଲୁ ସ୍ୱର୍ଗେ ବାସ ॥
ଆମ୍ଭେ ମରୁଅଛୁ ତେଡ଼େ ପ୍ରଭୁକୁ ଆଶ୍ରେ
କରି ।
ନିରାଶେ ଶୋଇଲୁ ଦେଖ କୁଶ ଶେଯ୍ୟା
କରି ॥
ସମ୍ପାତି ବୋଇଲା ଯେବେ ଶ୍ରୀରାମ ଅଛନ୍ତି
କାହିଂ ।
ପବିତ୍ର କର ମୋତେ ଚରିତ୍ର ତାଙ୍କର କହି ॥
ଅଙ୍ଗଦ ବୋଇଲା ହୋ ଶୁଣ ତୁ ପକ୍ଷୀରାଜ ।
ବିଷ୍ଣୁର ବାହାନ ତୁ ଗରୁଡ଼ ଆତ୍ମଜ ॥ ୧୦
ଯେକମନେ ଶୁଣ ତୁମ୍ଭେ ଶ୍ରୀରାମର ବାଣୀ ।
ପାଇବୁ କାରଣ ତୁ ଆମ୍ଭର ମୁଖୁ ଶୁଣି ॥
ମାୟା ମୃଗ ମାରିତ ବେନି ଭାଇ ଗଲେ ।
କେତେହେଂକ ଦୂରେ ଖେଦି ମୃଗକୁ
ମାଇଲେ ॥
ମଢ଼ିଆ ଦୁଆରେ ସେ ପ୍ରବେଶ ହେଲେ
ଯାଇ ।
ଅନେକ ଶୋକକଲେ ନଦେଖି
ବଇଦେହୀ ॥
ଦକ୍ଷିଣ ମୁଖହୋଇ ଆସନ୍ତେ ବେନିଭାଇ ।
ଜ୍ଞାନଦକ୍ଷ ଶବରକୁ ଭେଟିଲେ ରଘୁସାଇଂ ॥
ତାହାକୁ ମୁଖ୍ୟ କରି ସେଠାବରୁ ଗଲେ ।
ପମ୍ପା ସରୋବରେ ଗୋପାଳନ୍ତ
ଦେଖିଲେ ॥୨୦
ତିନି ଦିନ ଉପାସ ସେ ଲକ୍ଷଣ ସାନଭାଇ ।
ଦୁଧ ମାଗି ଭକ୍ଷିଲେ ସେ ମଣି ବନ୍ଧା ଦେଇ ॥
ନ ଘେନି ଗୋପାଳେ ସେ ରାମକୁ
ଦୁଧଦେଲେ ।
ପଉରି ଶ୍ରୀରାମକୁ ଭଗତି ହୋଇଲେ ॥

ତାହାକୁ ବର ଦେଇ ଚଳନ୍ତେ ରଘୁନାଥ ।
ବାଟରେ ଭେଟିଲେ ସେ ବୀର ହନୁମନ୍ତ ॥
ସୁଗ୍ରୀବର ସଙ୍ଗରେ ସେ ଭେଟ କଲେ
ନେଇ ।
ଦୁଃଖ ଦେଖି ମୈତ୍ରୟ ହୋଇଲେ
ରଘୁସାଇଂ ॥
ସୁଗ୍ରୀବର ନିମନ୍ତେ ମୋ ପିତାକୁ ମାଇଲେ ।
କିଷ୍କିନ୍ଧ୍ୟା କଟକେ ସୁଗ୍ରୀକି ରାଜା
କଲେ ॥୩୦
ଦୂତପେଷି ଚାରିଦିଗୁଂ ସନ୍ୟ ଠୁଳ କରି ।
ବିଜେ କରିଛନ୍ତି ରାମ ମାଲ୍ୟବନ୍ତ ଗିରି ॥
ଚାରିଦିଗକୁ ରାମ ପେଷିଲେ ଆଗେ ଦୂତ ।
ବାରତା ବୁଝି ତଥ୍ୟ ଧାଡ଼ିଦେବେ ରଘୁନାଥ ॥
ଆମ୍ଭେ ଆଠବୀର ଦକ୍ଷିଣକୁ ଅଇଲୁ ।
ଚାରି ମାସ ବଣା ହୋଇ ବିମ୍ବରେ ପଶିଥିଲୁ ॥
ନିରନ୍ତରେ ବୁଲୁଅଛୁ କ୍ଷଣେହେଂ ନରହୁ ।
କେବଣ ଠାରେ ବାରତା ନପାଉ ॥
ଦେଶବିଦେଶ ବୁଲିଲୁ ବନଘୋର ।
ପର୍ବତ କନ୍ଦର ନଦୀ ସରୋବର ॥ ୪୦
କାହିଂ ନ ଦେଖିଲୁ ଆମ୍ଭେ ଶ୍ରୀରାମ ଘରଣୀ ।
ପାତାଳ ବିମ୍ବରେ ପଶିଲୁ ନଜାଣି ॥
ଧର୍ମବଳେଣ ତହୁଂ ହୋଇଲୁ ପାର ।
କି ବୁଦ୍ଧି କରିବୁ ସେ କହ ପକ୍ଷୀବର ॥
ଆସିବାବେଳେ ସୁଗ୍ରୀ ଅଛଇ ଆଗ୍ୟାଂ
ଦେଇ ।
ମାସକେ ଆସି ମୋତେ ବାରତା ଦେବ
କହି ॥
ତିରିଶି ଦିନରୁ ଯେବେ ଦିନେକ ଉଗୁଳିବ ।
ନିଷ୍ଟେ ହେଂ ତୁମ୍ଭେ ପ୍ରାଣ ନ ପାଇବ ॥
ତହିଂକି ତ ପାଞ୍ଚମାସ ହୋଇଲାକ ଆସି ।
ଆଶ୍ୱିନ ଦଶମୀ ଦିନ ସୁଗ୍ରୀବର ରାଏ
ପେଷି ॥୫୦
ଏବେ ବସନ୍ତ ଆସି ହୋଇଲା ପରବେଶ ।
ଫାଲଗୁନ ମାସର ଆସି ଦଶ ଯେ ଦିବସ ॥
ବୁଦ୍ଧି ନ ଦିଶଇ ହେ ଆମ୍ଭେ କରିବୁ କାହା ।

ଦଣ୍ଡିବେ ନିଶ୍ଚୟେ ଅଯୋଧ୍ୟାର ନାହା ॥
ତେଣୁ ସେ ପକ୍ଷୀ ହୋ ଯାଇତ ଡରଇ ।
ସୁଗ୍ରୀବର କୋପକୁ ଅନେକ ଭୟ କରଇ ॥
ଅଙ୍ଗଦର ବଚନେ ବୋଲଇ ସମ୍ପାତି ।
ମୁହିଂ ଜାଣଇ ଯହିଂ ଅଛନ୍ତି ମହାସ୍ୟତୀ ॥
ଯେବେ ମୋତେ ସମୋଦ୍ର ମଧକୁ ଘେନି
ଯାଅ ।
ସେ ତୀର୍ଥରାଜରେ ମୋତେ ସ୍ନାହାନ
କରାଅ ॥୬୦
ଭାଇ ମୋର ମଲା ବୋଲି ଶୁଣିଲି ମୁଂ
ଆଜ ।
ସ୍ନାହାନ କଲେ ଶୁଦ୍ଧ ହୋଇବି ତୀର୍ଥରାଜ ॥
ଶୁଚିବନ୍ତ ହୋଇଣ ମୁଂ କହିବି ବାରତା ।
ପରମଲକ୍ଷ୍ମୀ ସେ ଅଟନ୍ତି ଦେବୀ ସୀତା ॥
ଯହୁଂ ରାବଣ ତାକୁ ବଳେ ନେଲା ହରି ।
ଶ୍ରୀଅଙ୍ଗ ଛୁଇଂତେ କି ଭାର୍ଜନ ଦଶଗିରି ॥
ଯେବଣ ଠାବରେ ସେ ଅଛନ୍ତି ବିଜେକରି ।
ଦେଖାଇବି ତୁମ୍ଭଙ୍କୁ ପିଠିରେ ବହିକରି ॥
ଶୁଣିଣ ଅଷ୍ଟବୀରେ ହରଷ ହୋଇଲେ ।
ହସ୍ତ ପୈଠ ଦେଇ ତାକୁ ସମୋଦ୍ରକୁ
ନେଲେ ॥୭୦
ସ୍ନାହାନେ ଶୁଚିବନ୍ତ ସେ ହୋଇଲା
ପକ୍ଷୀବର ।
ଶ୍ରୀରାମଙ୍କୁ ଚିନ୍ତାକରି ସେ ହୋଇଲା ବାହାର ॥
ଦଣ୍ଡେ ଉଭା ହୋଇଣ ସେ ଦେହକଲା
ସୁସ୍ଥ ।
ବୋଇଲା ତୁମ୍ଭେମାନେ ଶୁଣ ହୋ ସମସ୍ତ ॥
ମୁହିଂ ସମ୍ପାତି ଯେ ଜଟାୟୁଶ ସାନ ।
ଦୁହେଂ ଗରୁଡ଼ର ଆମ୍ଭେ ଅଟୁ ହୋ ନନ୍ଦନ ॥
ଖଳ ଲୋକଙ୍କର ଆମ୍ଭେ ବଚନ ଶୁଣିଲୁ ।
ସୋହୋଦ୍ରେ ଦୁଇଭାଇ ବିବାଦ ଆଚରିଲୁ ॥
ଜଟାୟୁଶ ବୋଇଲା ମୁଂ ହୋଇବି
ପକ୍ଷୀରାଜା ।
ସକଳ ପକ୍ଷୀଗଣେ କରିବେ ମୋତେ
ପୂଜା ॥୮୦

ମୁଂ ବୋଇଲି ଜଟାୟୁଶ ମୋହୋର
ବୋଲକର ।
ମୁହିଂ ଖଗପତି ସେ ହୋଇବଇଂ ସଂସାର ॥
ତୁ କିମ୍ପାଇ ଲୋଭ କରି ପରର ବୋଲ
ଶୁଣୁ ।
ହିତ ଅହିତ କଥା ତୁହିତ ନଜାଣୁ ॥
ଜଟାୟୁଶ ବୋଇଲା ତୁ କିସ ଜ୍ୟେଷ୍ଠଭାଇ ।
ମୁହିଂ କେବଣ ଗୁଣେ କନିଷ୍ଠ ଅଟଇ ॥
ସମର କରିବା ଦୁହେଂ ମଧପାତ୍ରେ ଥୋଇ ।
ହାରିଲେ ରାଜ୍ୟ ଛାଡ଼ି ଯିବା ଯୋଗୀ ହୋଇ ॥
ଯେଣୁ ନ ବିଚାରି ଆମ୍ଭେ ଆରମ୍ଭିଲୁ ଯୁଦ୍ଧ ।
ବନ୍ଧୁ ଲୋକମାନେ ମିଳି କଲେକ
ବିରୋଧ ॥୯୦
କାହିଂପାଇଂ ଯୁଦ୍ଧ କରିବ ଦୁଇ ଭାଇ ।
ଯେକଥା ତୁମ୍ଭର ଯୁଗତ ନୁହଂଇ ॥
ଯେକପିତା ଯେକମାତା ଗର୍ଭରୁ ତୁମ୍ଭେ
ଜାତ ।
ଯେକଥା ତୁମ୍ଭର ନୁହଇ ଉଚିତ ॥
ଯେକର ସମ୍ପତ୍ତିକି ଆରକକୁ ନୁହଂଇ ଶିରୀ ।
କେବଣ କାରଣେ ତୁମ୍ଭେ ମରିବ ଯୁଦ୍ଧ କରି ॥
ଜଟାୟୁଶ ବୋଇଲା ହେ ନଜାଣ ତୁମ୍ଭେ
କିଛି ।
ଯେକଥାରେ ମୋତେ ଅନେକ ନିନ୍ଦା ଅଛି ॥
ମରିବାରୁ ବଡ଼ ଅଟଇ ଜାଣ ଲାଜ ।
ଜଗତରେ ଶୁଭିବନା ମୁହିଂ
ପକ୍ଷୀରାଜ ॥୧୦୦
ନୋହିଲେ ଶାନ୍ତି ନୁହଇ ମୋର ମନ ।
ଆବର କଥାଏ ଶୁଣ ତୁମ୍ଭେ ବନ୍ଧୁ ଜନ ॥
ଯେ ତୁମ୍ଭର ବୋଲେ ଆମ୍ଭେ ଯୁଦ୍ଧ
ନକରିବୁ ।
ସୂର୍ଯ୍ୟଦେବତାଙ୍କର ସନ୍ନିଧିକୁ ଆମ୍ଭେ ଯିବୁ ॥
ଯେ ଯାଇ ଆଗରେଣ ଛୁଇଂବ ସୂର୍ଯ୍ୟଯାନ ।
ତେଣୁ ସେ ହୋଇବଟି ପକ୍ଷୀଙ୍କ ରାଜନ ॥
ଶୁଣିଣ ଚକିତ ହୋଇଲେ ବନ୍ଧୁଲୋକେ ।

ହେଉଯା ବୋଲିଣ ବୋଇଲେ ତହିଂ
ଥୋକେ ॥
ଶୁଣିଣ ସନମତି କଲଇ ମୁହିଂ ତେବେ ।
ସବୁକଇ ବିଚାରକୁ ଯୋଗାଇଲା
ଯେବେ ॥୧୦
ଜଟାୟୁଶ ହାକ ଦେଇ ଆଗେଣ ଉଡ଼ିଗଲା ।
ଦେଖୁ ଦେଖୁ ଅନେକ ଦୂରେ ଅଦୃଶ୍ୟ
ହୋଇଲା ॥
ତାହା ଦେଖିଣ ମୁଂ ପଛେ ତା ଉଡ଼ିଗଲି ।
ପଞ୍ଚାଶ ଯୋଜନେ ମୁଂ ଯାଇଣ ତାକୁ ଲାଗ
କଲି ॥
ନିଶ୍ୱାସକେ ସହସ୍ର ଯୋଜନ ମୁହିଂ ଗଲି ।
ତାହାର ସଙ୍ଗତେ ମୁଂ ଯାଇଣ ମିଶିଲି ॥
କେହୁ ଆଗ କେହୁପଛ ହୋଇଣ ଧାପ
ଦେଲୁ ।
ଯେସନେ ଅଛି ସହସ୍ର ଯୋଜନ ଗମିଲୁ ॥
ଦିନକର କିରଣ ତ୍ରାସ ଲାଗିଲାକ ମୋତେ ।
ଝସାଇ ପଶିତ ଇଚ୍ଛା କଲୁ ସୂର୍ଯ୍ୟ
ରଥେ ॥୨୦
ପକ୍ଷୀମାନ ପୋଡ଼ି ଉଠିଲା ଅନଳ ।
ଦେଖିଲି ଜଟାୟୁଶ ପଡ଼ିଲା ଯାଇ ତଳ ॥
ଆରତେ ଡାକିଲା ମୋତେ ରଖ ରଖ ଭାଇ ।
ଜୀବନ ରଖିଲେ ତୋର ଥିବଇ ଦାସ
ହୋଇ ॥
କାର୍ପୁଣ୍ୟ ଧ୍ୱନି ଶୁଣିଣ ଧାଇଂଲି କୋପଭରେ ।
ପକ୍ଷୀଜଟାକୁ ଆଣିଣ ବସାଇଲି ପିଠିରେ ॥
ମୋହର ପିଠି ପୋଡ଼ିଲା ସେ ସୂର୍ଯ୍ୟର ତେଜ
ଲାଗି ।
ମଉଗର୍ବ ଭାଜିଲା ସେ ସୋଦରେ
ବାଦଲାଗି ॥
ଛନ୍ଦାଛନ୍ଦି ହୋଇଣ ପଡ଼ିଲୁ ବେନିଭାଇ ।
ଦଣ୍ଡକାରଣ୍ୟେ ପଡ଼ିଲା ସେହି ଯାଇ ॥ ୩୦
ମୁହଂ ହରାଇ ମୁଂ ପଡ଼ିଲି ଯେଥେ ଆସି ।
ସୁତଦାରା ସକୁଟୁମ୍ବ ରମ୍ୟେକ ଦୀପ ବାସୀ ॥

ସହି ନ ପାରି ମୁଂ ମରନ୍ତି ଆତ୍ମାଘାତେ ।
ନିଶାକର ମୁନି କହିଲେ ଆସି ମୋତେ ॥
ନମର ମହାତମା ହୋ ମୋହର
ବୋଲକର ।
ଅବଶ୍ୟ କଷ୍ଟରୁ ତୁ ହୋଇବୁଟି ପାର ॥
ଆମ୍ଭେ ଯାଇ ତୋର ପୁତ୍ରକୁ କହିବୁ ।
ଯେହି ପର୍ବତ ଶିଖରେ ତୁ ନିଶ୍ଚୟେ
ରହିଥିବୁ ॥
ସେ ତୋତେ ନିତ୍ୟେ ଆଣି ଦେଉଥିବ
ଆହାର ।
ତାହା ଖାଇଣ ତୁ ଶରୀର ରକ୍ଷା କର ॥ ୪୦
ରାମ ଅବତାର ହୋଇବେ ଚକ୍ରଧର ।
ରାବଣ ବଧ ଅର୍ଥେ ମାନବଶରୀର ॥
ପିତା ସତ୍ୟ ପାଳି ସେ ବୁଲନ୍ତେ ବନର ।
ସୀତ୍ୟାକୁ ଚୋରାଇଣ ନେବ ଦଶଶିର ॥
ତାହାକୁ ଖୋଜିତେ ରାମ ଦୂତ ବରଗିବେ ।
ଅନେକ ଦୂର ବୁଲିଣ ସେ ଏଠାରେ
ରହିବେ ॥
ତୁ ତାହାଙ୍କୁ ଦେଖିଣ କହିବୁ ବାରତା ।
ଲଙ୍କାର ରାବଣ ଚୋରାଇ ନେଲା ସୀତା ॥
ତାହାଙ୍କୁ ଛୁଇଂଲେ ସେ ତୋର ପାପ ସମସ୍ତ
ଯିବ ।
ପୋଡ଼ିଲାର ପକ୍ଷୀ ତୋର କ୍ଷଣକେ
କଉଂଳିବ ॥୫୦
ନିଶ୍ଚିନ୍ତେ ବସିଥାଅ ଯେ ପର୍ବତ ଶିଖର ।
ଆକୁଂ ଲକ୍ଷେ ସସ୍ରେ ବରଷେ ଜାତ
ହୋଇବେ ଚକ୍ରଧର ॥
ପୂର୍ଣ୍ଣ ଆହାର ନ ପାଇ ମୁଂ ଫଳମୂଳ ଖାଇ ।
ତେଣୁ ସେ ଭାଇ ମୁହିଂ ଯେବେ ପର୍ବତେ
ବସିଥାଇ ॥
ତୁମ୍ଭେ ଅଷ୍ଟବୀରେ ମୋତେ କୋଦଣ୍ଡ
ଚାପଧାରୀ ।
ସେ ମୁନିଙ୍କ କଥା ମୁଂ ଅଛଇ ହେତୁ କରି ॥
ମୋହର ପୁତ୍ର ସୁପାଗୁଣ ହେମବନ୍ତରୁ
ଆସିଥିଲା ।
ଯେବଣ ଦିନେ ରାବଣ ସୀତାକୁ
ହରିନେଲା ॥
ମୋହର ପାଇଂ ସେ ଆହାର ଆଣୁଥିଲା
ବହି ।
ରାବଣ ହରି ନିଅନ୍ତେ ଦେଖିଲା
ବଇଦେହୀ ॥୬୦
ମୋହୋର ଆଗରେ ସେ କହନ୍ତେ
ବାରତା ।
ମୁହିଂ ଦେଖିଲାଇଂ ରାବଣ ରଥେ ସୀତା ॥
ଶିର ଟେକିଣ ସେ ଦେଖିଲଇ ଅନାଇ ।
ଅଶୋକ ବନିକାରେ ଥୋଇଲା ସୀତା
ନେଇ ॥
ଦେଖିଣ ମନରେ ମୁଂ ହୋଇଲି ବିକଳ ।
ପକ୍ଷୀ ଥିଲେଣ ମୁହିଂ କରନ୍ତି ରଣଗୋଳ ॥
ବିଧାତା ପୁରୁଷ ଯେବେ ଡେଣା ଦେଇଥାନ୍ତା ।
ରାବଣ ଛାର କି ସେ ପ୍ରାଣ ଘେନି ଯାନ୍ତା ॥
ଦଶଶିର ଛେଦିଣ ମୁଂ ସୀତାକୁ ଆଣନ୍ତି ।
ଶ୍ରୀରାମ ଶ୍ରୀଚରଣେ ନେଇଣ ସମର୍ପନ୍ତି ॥୭୦
ରଥର ପାତାଙ୍ଗ ଏକା ଦିଶୁଥିଲା ମୋତେ ।
ସୁବର୍ଣ୍ଣ କଳସ ସୀତୟା ସହିତେ ॥
ତାହା ଦେଖି ତ ମୋର ସମର କରିତ ମନ ।
ପକ୍ଷୀ ନଥିବାରେ ପୁଣ ନିସତ ଜୀବନ ॥
ସନ୍ଧ୍ୟା ସମୟେ ସେ ବିମାନ ବାହିନେଲା ।
ଚୋର ପ୍ରାୟେ ହୋଇ ସେ ପଳାଇ ପଶିଲା ॥
ଶଏ ଯୁଣ ସମୋଦ୍ର ସେ ପାରି ହୋଇ
କୂଳେ ।
ଗଡ଼ କରି ରହିଅଛି ଲଙ୍କର ଭୂପାଳେ ॥
ଅଶୋକ ବନରେ ସେ ଥୋଇଛି ଲୁଚାଇ ।
ସହସ୍ରେ ଅସୁରୀଙ୍କି ଅଛଇ ଜଗାଇ ॥ ୮୦
କେ ତୁମ୍ଭେ ସହସ୍ରେ ଯୋଜନ ଡେଇଂଯାଇ
ପାର ।
ତେବେ ସେ କାର୍ଯ୍ୟ ସିଦ୍ଧ ହୋଇବ ତୁମ୍ଭର ॥
ଯେସନ କହି ସମ୍ପାତି ବିନୟ ହୋଇଲା ।
ଅଷ୍ଟ ସେନାପତିଙ୍କର ଚରଣେ ଓଳଗିଲା ॥
ବୋଇଲା ପ୍ରତ୍ୟକ୍ଷେ ତୁମ୍ଭେ ମୋତେ ରାମ
ସରି ।
ଦୁସହ ଶାପରୁ କଲ ଏବେ ପାରି ॥
ଶୁଣିଣ ଅଷ୍ଟବୀରେ ଶ୍ରୀରାମ ଚିନ୍ତା କଲେ ।
ସମ୍ପାତିକି ସମସ୍ତେ ଆଶ୍ୱାସି ବୋଇଲେ ॥
ତତକ୍ଷଣେ ପୋଡ଼ିଲାର ପକ୍ଷୀ କଉଂଳିଲା ।
ଦେଖିଣ ସମ୍ପାତି ଆନନ୍ଦ ହୋଇଲା ॥ ୯୦
ଅଙ୍ଗଦ ସହିତେ ଯେତେକ ସେନାପତି
ଥିଲେ ।
ଗରୁଡ଼ର ତନୟ ଚରଣେ ଓଳଗିଲେ ॥
କୃତାଞ୍ଜଳି ହୋଇଣ ସେ ସମସ୍ତେ
ବୋଲନ୍ତି ।
ଆମ୍ଭଙ୍କୁ ଦୟା ତୁମ୍ଭେ କରସି ଖଗପତି ॥
ଲଂଘିଣ କେମନ୍ତେ ଯେ ଆମ୍ଭେ ଉଡ଼ିଯିବୁ
ଲଙ୍କା ।
ଯେକଥା ଶୁଣିଣ ଯେ ଆମ୍ଭଙ୍କୁ ଲାଗୁଅଛି
ଶଙ୍କା ॥
ତୁମ୍ଭେ ସମ୍ପାତି ଆମ୍ଭଙ୍କୁ ବୁଦ୍ଧିବାଟ କହ ।
ପକ୍ଷୀ ବୋଇଲା ଆସୁ ଏ ମୋହର ପୁଅ ॥
ଯେତେ ବୋଲିଣ ସେ ଯେ ଧ୍ୟାନ କରି
ବସି ।
ଜାଣିଣ ସୁପାଗୁଣ ଯେ ହେମବନ୍ତରୁ
ଆସି ॥୧୦୦
ପକ୍ଷୀବର ପବନରେ କମ୍ପଇ ଜଗତ ।
ଜାଣିଣ ପଟାନ୍ତର ସେ ଦ୍ୱିତୀୟ ବଇନେତ୍ର ॥
ପିତାର ଚରଣେ କଲାକ ନମସ୍କାର ।
ଆଗେ ଉଭା ହୋଇଣ ସେ ଯୋଡ଼ଇ
ବେନିକର ॥
ସମ୍ପାତି ବୋଇଲା ବାବୁ ଶୁଣରେ ସୁପାଗୁଣ ।
ଯେ କପିମାନେ ଅଟନ୍ତି ଶ୍ରୀରାମ ଦାସ ॥
ସୀତାକୁ ହରିଲେ ଲାଙ୍କାର ରାବଣ ।
ସେ କଥା ବୁଝିବା ପାଇଂ ପେଷିଲେ ସୁଗ୍ରୀବ
ରାଜନ ॥
ବଣା ହୋଇଣ ଯେ ବିମ୍ବରେ ପଶିଥିଲେ ।
ପାଞ୍ଚମାସ ହୋଇଲା ଖୋଜି ନ
ପାଇଲେ ॥୧୦
ମୋତେ ଦୟା କଲେ ଯେ ଅଷ୍ଟବୀରେ
ଦେଖି ।

ଯେହାଙ୍କ ପ୍ରସାଦେଣ ମୋର କଉଂଳିଲା
ପକ୍ଷୀ ॥
ବଡ଼ ଧାର୍ମିକ ଅଟନ୍ତି ମହାବୀର ।
ଶ୍ରୀରାମ କାର୍ଯ୍ୟେ ହୋଇ ଅଛନ୍ତି ଆଗୁସାର ॥
ତୁ ବାବୁ ଯେବେ ମୋହର ବୋଲକର ।
ଯେମାନଙ୍କୁ ବସାଅ ତୋହର ପିଠିର ॥
ଲଙ୍କାଗଡ଼ ଦେଖାଅ ଶ୍ରୀରାମର ଚାର ।
ଶୁଣିଣ ସୁପାଗୁଣର ଭଲୁସଇ ଶରୀର ॥
ଆସସି କପିବର ପିଠିରେ ମୋର ବସ ।
ଦେଖସି ଲଙ୍କାଗଡ଼ ସୁବର୍ଣ୍ଣମୟ ଦେଶ ॥୨୦
ସୀତୟା ସହିତେଣ ଦେଖସି ମଧୁବନ ।
ରାବଣର ଉଆସ ପାତ୍ରଙ୍କର ସଦନ ॥
ଗଡ଼ର ପାଚେରୀ ଦେଉଳ ଅଟ୍ଟାଳି ।
ଭିନ୍ନ ଭିନ୍ନ ଦିଶୁଅଛି ଦୈତ୍ୟଙ୍କର ପୁରୀ ॥
ଅଙ୍ଗଦ ବୋଇଲା ହୋ ଯେକଥା ନ
ଯୋଗାଇ ।
ତୋହର ପିଠିରେ ବସିଲେ ଆମ୍ଭଙ୍କୁ ଯଶ
ନାହିଁ ॥
ସୁଗ୍ରୀବର ବୋଲିବ ବୋଲାଅ ମହାବୀର ।
ଅନ୍ତରୀକ୍ଷେ ଦେଖିଲ ବସି ପକ୍ଷୀର ପିଠିର ॥
ଯେକଥାରେ ଆମ୍ଭଙ୍କୁ ପଉରୋଷ ନ
ଆସଇ ।
ତୁ ଯେବେ ଚଳିଯାଅ ହେ
ନିଜପୁରକଇ ॥୩୦
ଆମ୍ଭେ ଯେଠାରେ ଥାଇଣ ବୁଦ୍ଧିବଳ
କରିବୁ ।
ସମୁଦ୍ର ଡେଇଂଯାଇ ସୀତାକୁ ଖୋଜିବୁ ॥
ଶୁଣିଣ ସୁପାଗୁଣ ହୋଇଲା ହରଷ ।
ପିତାପୁତ୍ର ଚଳିଗଲେ ଯେ ଯାହାର ବାସ ॥
ହେମବନ୍ତ ପର୍ବତେ ମିଳିଲେକ ଯାଇ ।
ହରଷ ହୋଇଲେ ସେ ପୁତ୍ରଦାରା ଚାହିଁ ॥
ଯେଥୁ ଅନନ୍ତରେ ଶୁଣ ଗୋ ହେମବନ୍ତୀ ।
ଅଷ୍ଟସେନାୟେ ସାହେର କୂଳେ ଛନ୍ତି ॥
ଶ୍ରୀରାମ ମାଲ୍ୟବନ୍ତେ ସୁଗ୍ରୀବ ସଙ୍ଗେ ଘେନି ।
ରାବଣର କଥାମାନ କରନ୍ତି ଭାଳେଣି ॥ ୪୦
ଦୂତ ଆସିବାକୁ ସେ ଅଛନ୍ତି ବାଟ ଚାହିଁ ।
ପାର୍ବତୀଙ୍କ ଅଗ୍ରତେ ଶଙ୍କର ଯେହା କହି ॥
ବଳରାମ ଦାସ ଶ୍ରୀହରିଙ୍କ ଦାସ ।
କର ଅନଗ୍ରହ ସ୍ୱାମୀ ହେ ନଲାଗୁ ଯମ
ତ୍ରାସ ॥
ସାମ ବେଦୁ ଜାତ ଯେ ଯେ ସୁଧାରସ
ବାଣୀ ।
ବଳରାମ ଦାସ ଯେହା ଗ୍ରନ୍ଥ କରି ଭଣି ॥
ହେ ସୁଜ୍ଞଜନମାନେ ନ ଧର ମୋର ଦୋଷ ।
ଶ୍ରୀରଘୁନାଥଙ୍କ ଚରିତ୍ର ମୁଂ କଲଇ ପ୍ରକାଶ ॥
ଶ୍ରୀନୀଳଗିରି ଜଗନ୍ନାଥ ଦୟାମୋତେ
କଲେ ।
ଯେ ଗ୍ରନ୍ଥ କର ବୋଲି ଶ୍ରୀମୁଖେ
ଆଜ୍ଞାଦେଲେ ॥୫୦
ତେଣୁ ସେ ମନମୋର ଯେ ହୋଇଲା
ହରଷ ।
ରାମାୟଣ ଗ୍ରନ୍ଥ ମୁଂ କଲଇଂ ପ୍ରକାଶ ॥
ଯେହୁ କିଷ୍କିନ୍ଧ୍ୟା କାଣ୍ଡ ହୋଇଲାକ ଶେଷ ।
ଶ୍ରୀ ଜଗନ୍ନାଥ ଶରଣ ମୁଂ ବଳରାମ
ଦାସ ॥୫୪

**ଶ୍ରୀ ଜଗମୋହନ ରାମାୟଣ**
**କିଷ୍କିନ୍ଧ୍ୟା କାଣ୍ଡ ସମ୍ପୂର୍ଣ୍ଣ**

# ସୁନ୍ଦରା କାଣ୍ଡ

ବନ୍ଦଇ ନାରାୟଣ ବାନ୍ଧବ ତ୍ରିପୁରାରି ।
ତ୍ରିଶୂଳ ଡମ୍ବରୁ ବେନି କରେ ଧରି ॥
ବିଭୂତି ବିଲୋପନ ଜୟ ତୁ ବିଶ୍ୱନାଥ ।
ଚନ୍ଦ୍ରଶେଖର ସ୍ୱାମୀ ତୁ ଗିରିଜାର କାନ୍ତ ॥
ପବିତ୍ର ଶ୍ୟରୀର ଶୁଦ୍ଧ ସଟିକର ଆଭା ।
ଫଣିମଣି କୁଣ୍ଡଳ ଦିଶଇ ମାହା ଶୋଭା ॥
ପଶୁଚର୍ମ ପରିହରଣ ରୁଦ୍ରାକ୍ଷମାଳ ହାର ।
ଜଟାଜୁଟ ମୁକୁଟ ବ୍ୟାଳ ବଳୟା ଅଳଙ୍କାର ॥
ଚନ୍ଦ୍ର ସୂର୍ଯ୍ୟ ବହନି ତ୍ରୟ ତ୍ରିଲୋଚନ ।
ଜୟ ଜୟକାପାଳୀ ଦୃଗତି ବିମୋଚନ ॥୧୦
ୟେକାଦଶ ରୁଦ୍ରର ତୁହି ଦେବ ମୁଖ୍ୟ ।
ଶଙ୍କର ସଦାଶିବ ଈଶ୍ୱର ବିରୁପାକ୍ଷ ॥
ଅନୀଳ ଲୋହିତ ପରମ ତତ୍ତ୍ୱ ଜ୍ଞାନୀ ।
ଯେ ତୋହୋର ରୂପକୁ ଚିନ୍ତନ୍ତି ସୁର ମୁନି ॥
ତୁ ଦେବ ଅନାଦି ଅଯୋନି ସମ୍ଭୂତ ।
ବ୍ରହ୍ମାଙ୍କର ଭୂଲତା ମଧ୍ୟରୁ ହୋଇଲୁ ଜାତ ॥
ସୃଷ୍ଟି କର ବୋଲି ବୋଇଲାକ ଧାତା
ତୋତେ ।
ତେଣୁ ସେ ରୁଦ୍ରମୟେ ହୋଇଲା ଜଗତେ ॥
ଚଉଦ କୋଟି ଶିବଗଣ ପୂରିଲେ ମେଦିନୀ ।
ଦେଖିଣ ତୃସ୍ତି ତୋତେ କଲାକ
ପଦ୍ମଯୋନି ॥୨୦
ତୁ ହୋ ସଦାଶିବ ନ କର ସଂସାର ।
ରୁଦ୍ରଙ୍କ ତେଜେ ପୃଥ୍ୱି ହୋଇଲା ନାରଖାର ॥
ତେଣୁକରି ଶ୍ୟାନ୍ତି ମୂର୍ତ୍ତି ହୋଇଲୁ ଶୂଳପାଣି ।
ମଇତ୍ର ମୁନି ଯେହା ଦେବଙ୍କ ଆଗେ ଭଣି ॥
ତୁ ଦେବ ପଂଚୁବଦନ ଶଙ୍କର ।
ଖଟ୍ୱାଙ୍ଗ ଡମ୍ବରୁ ତ୍ରିଶୂଳ ମୁଦ୍ଗର ॥
କଣ୍ଠେ ମୁଣ୍ଡମାଳା ଫାଶୀ ଯେ ଆଙ୍କୁଶ ।
ପର୍ଶୁ କମାୟେଣ ଧାରଣ ଜୟ ତୁ
ବ୍ୟୋମକେଶ ॥

କପିଳାସବାସୀ ତୁ ପାର୍ବତୀ ରମଣ ।
ଜୟ ଜୟ ସଦାଶିବ ନନ୍ଦୀ ଆରୋହଣ ॥୩୦
ଦେବଙ୍କର ଦେବ ତୁ ମହାଦେବ ଯେଣେ ।
ଯାବତ ଜନ୍ତୁଙ୍କର ତ୍ରିଗୁଣ ବହୁ ଯେଣେ ॥
ସର୍ବଦା ଶିବ ତୁ ଅମଙ୍ଗଳ ନୋହୁ ।
ସର୍ବଗ୍ୟଂ ପୁରୁଷ ତୁ ଶାନ୍ତି ମାହାବାହୁ ॥
ତୁ ସେ ମାହାଦେବ ଯୋଗେଶ ଈଶ୍ୱର ।
ଶକତି ଭୂଷଣ ବାଳଶଶିଧର ॥
ତୁ ଦେବ ଈଶାଣ ସକଳ କାଳ ଜାଣୁ ।
କାଳ ଲିଙ୍ଗ ବୋଲି ବୋଲନ୍ତି ତୋତେ
ତେଣୁ ॥
ଅନ୍ଧେକ ବିନାଶି ତ୍ରିପୁରା ବଧ୍ୟ କଲୁ ।
ପିନାକୀ ପାଶୁପତ ସାଂଗ୍ରାମେ ଧଇଲୁ ॥୪୦
କନ୍ଦର୍ପ ଦହିଲୁ ନାଥ ବଡ଼ିମା ପଣ ଘେନି ।
କାମଦହନ ବାନା ତୋତେ ବୋଲନ୍ତି
ପଦ୍ମଯୋନି ॥
ତୋତେ ଆଶ୍ରେ କଲା ବାସୁକି ନାମେ ଅହି ।
ତିଳମନ୍ଦା ପ୍ରମାଣେ ସଚରାଚର ବହି ॥
ତୁ ଦେବ ହରି ହର ଏକଇ ମୂରତି ।
ପଶୁଙ୍କର ନାୟେକ ତୋହୋର ନାମ
ପଶୁପତି ॥
କର ଅନୁଗ୍ରହ ମୋତେ ପାର୍ବତୀର ସାଇଂ ।
ରକ୍ଷ କପି ଛନ୍ତି ଯେ ସାହେର କୂଳେ ଯାଇଂ ॥
ବନ୍ଦଇ ବାଲମ୍ମିକ ମୁନିର ଚରଣେ ।
ଯାହାର ମୁଖରୁ ରାମାୟେଣ ହୋଇଲା
ଉଚ୍ଚାରଣେ ॥୫୦
ସଂସାର ତିମିରିକି ତୁହି ସେ ପ୍ରଦୀପ ।
ବ୍ରହ୍ମାକୁ ସମାନ୍ୟ ଅଟୁ ଅନୁରୂପ ॥
ତୋହୋରେ ମେଳଛାଦି ମୁକତ ହୋଇଲେ ।
ତିନି ତଇଲୋକ ତୋହୋରେ ପାର ଗଲେ ॥
ତୁ ଯେବେ ନ କହନ୍ତୁ ରାମାୟେଣ କାହାଣୀ ।

ସଂସାର ବୃତ୍ତାନ୍ତାନି ମହାର୍ଣ୍ଣବ ପାଣି ॥
ତୁ ସେ ମହାରଷି ସଂସାର ହିତ ଜାଣୁ ।
ଶ୍ରୀରାମ ଚରିତ ମୁଖରେ ବଖାଣୁ ॥
ଧନ୍ୟ ବଦନ ତୋର ମହିମା ଅଗୋଚର ।
ତୋହୋର କଣ୍ଠେ ବିଜେ କଲେ ଚକ୍ରଧର ॥
ତୋହୋର ହୃଦରେ ଶ୍ରୀହରି ଆସନ ।
ଭୋ ମୁନି ମୋତେ ହୋଇବାକୁ ପ୍ରସନ୍ନ ॥
ଶ୍ରୀରାମ ଚରିତ ତୋତେ ବ୍ରହ୍ମ ଯେ କହିଲା ।
ତେଣୁ ସେ ତୋହୋର ମୁଖୁଂ ଉଚ୍ଚାରଣ
ହୋଇଲା ॥
ସେ କଥା ପୁରାଣ ପୁସ୍ତକେ ଲେଖନ ।
ବଖାଣ କରୁଛନ୍ତି ସୁଗ୍ୟାନୀ ବିଦ୍ଦୁଜନ ॥
ତାହା ଶୁଣିଣ ମୁଂ ଶରଧା ପାଇଲି ।
ଥୋକାୟେକ ପଦ ମୁଂ ହୃଦରେ
ଚିନ୍ତୋଇଲି ॥
ଆତ୍ମାର ହିତେ ମୁଂ ଘୋଷଇ ପୁଣ ପୁଣି ।
ତୁ ମୋତେ ପ୍ରସନ୍ନ ହୋଅସି ମୁନି ମଣି ॥୭୦
ସାତକାଣ୍ଡ ରାମାୟେଣ କହିତ ମୋର ମନ ।
ନୀଳଗିରି ଜଗନ୍ନାଥ ମୋତେ ହୋଇବା
ପରସନ ॥
ତେଣୁକରି ମୁଂ ଯେ ଛାଡ଼ିଲି ସର୍ବକାର୍ଯ୍ୟ ।
ଶ୍ରୀରାମର ଲୀଳା ମୁଂ ଯେ କରିବି ଗ୍ରାହିଯ ॥
ଲୋକେ ଉପହାସ କରନ୍ତି ବୋଲି ଡରଇଂ ।
ମୂର୍ଖ ଜନମାନଙ୍କୁ ବହୁତ ଭୟେ କରଇ ॥
ପଣ୍ଡିତ ଜନମାନେ ମୋର ନ ଘେନିମା
ଦୋଷ ।
ଅଳପ ଜାଣିମା ଲୋକେ କରନ୍ତି ମନେ
ରୋଷ ॥
ତେଣୁ ସେ ଆତ୍ମାକୁ ସଙ୍କୋଚ ଭାବ
କରଇଂ ।
ସୂଚୀମୂନ ଘେନି ମୁଂ ପର୍ବତ ଟାଳଇ ॥୮୦

ନୀଳଗିରି ବିଜୟେ ପ୍ରଭୁ ଜଗନ୍ନାଥ ।
ତାହାଙ୍କର ଶରଣ ମୁଂ ଅଟଇ ଯଥାର୍ଥ ॥
ତେଣୁ ସେ ଭରସା କରଇ ଗ୍ରନ୍ଥ ଭଣି ।
ହୃଦେ ଭଜେ ମୋହୋର ସେ ଶଙ୍ଖଚକ୍ର
ପାଣି ॥
ସେ ପ୍ରଭୁ ପ୍ରସନ୍ନେ ମୁଂ କହିବି ରାମକଥା ।
ଶୁଣିଲେ ଛାଡ଼ିବ ମୋର ଭବଭୟ ବ୍ୟଥା ॥
ଜଗମୋହନ ରାମାୟଣ ଏ ଅଟଇ ପୁଣ୍ୟ
ନାମ ।
ତତ୍ତ୍ୱ କରି ଭାବିଲେ ବସନ୍ତି ବିଷ୍ଣୁଗ୍ରାମ ॥
ସାମବେଦ୍ଦୁଂ ସାର ଯେ ପୁରାଣ ସମ୍ଭୂତ ।
ଯାହାକଇ ମୁନିଜନେ ଭାବନ୍ତି
ଅନୁବ୍ରତ ॥୯୦
ପାର୍ବତୀ ଅଗ୍ରତେ କହନ୍ତି ହର ନିତି ।
ଶୁଣିଣ ସନ୍ତୋଷ ହେମବନ୍ତର ଦୋହିତୀ ॥
ସଦାଶିବ ଚରଣେ ନମନ୍ତି ପୁଣ ପୁଣି ।
କହିବା ଭୋ ନାଥ ମୋତେ ଅମୃତ ରସ
ବାଣୀ ॥
ଶ୍ରୀରାମର ଦୂତେ ଯେ ଅଛନ୍ତି ସିନ୍ଧୁକୂଳେ ।
ଜମ୍ବେବ ହନୁମନ୍ତ ଯେ ବାଳୀର ଦୁଲାଳେ ॥
ସମ୍ପାତିର ଠହୁଂ ସେ ପାଇଲେ ବାରତା ।
ଲଙ୍କାଗଡ଼ ଭିତରେ ସେ ଅଛଇ ଦେବୀ
ସୀତା ॥
ତହୁଂ ଉତାରେ ସେ କଲେ କେବଣ କୃତ୍ୟ ।
ଏହା ସଞ୍ଚପି ମୋତେ କହିବା
ପଞ୍ଚମାଥ ॥୧୦୦
ସମୋଦ୍ର ଲଙ୍ଘିଣ ପାରିଲେ ଟିକି ଯାଇ ।
କେବଣ ପ୍ରକାରେ ଖୋଜିଲେ ବଇଦେହୀ ॥
କେମନ୍ତେ ଶ୍ରୀରଘୁନାଥ ବାରତା ପାଇଲେ ।
କେବଣ ପ୍ରକାରେ ସେ ଲଙ୍କାଗଡ଼ ଗଲେ ॥
ଯେହା ସଂଚପି ମୋତେ କହିବା ଭୋ ନାଥ ।
ଯେତେ ବୋଲି ଦେବୀ ଯୋଡ଼ିଲେ
ବେନିହସ୍ତ ॥
ସଦାଶିବ ବୋଲନ୍ତି ଶୁଣସି ଗୋ ସହି ।

ସିନ୍ଧୁକୂଳେ ଦୂତେ ଅଛନ୍ତି ସର୍ବେ ରହି ॥
ଯେକ ଗୁଣ୍ଡ ହୋଇ ବସିଣ ଭାଳନ୍ତି ।
ଅଙ୍ଗଦର ମୁଖ ଚାହିଂ ଜମ୍ବେବ
ବୋଲନ୍ତି ॥୧୦
ସମୋଦ୍ର ଡେଇଂଣକେ ଲଙ୍କକଇ ଯିବ ।
ଶ୍ରୀରାମ ଠାକୁରଙ୍କର କାର୍ଯ୍ୟ କେ କରିପାରିବ ॥
କାହାକୁ ଯେଡ଼େ ଯଶ ହୋଇବ ପରାପତ ।
ରବିତଳେ ମହିମା କାହାର ହୋଇବ
ବିଖ୍ୟାତ ॥
କେହୁ ପାରିବ ହୋ ହୋଅ ଆଗୁସାର ।
ଯେହା ଶୁଣି ବୋଇଲା ବାଳୀର କୁମର ॥
ଭୋ ମନ୍ତ୍ରୀବର ତୁମ୍ଭେ କହିଲ ଯାହା ସତ ।
ଦଶାନନ କଟକ ଦୁର୍ଗମ ବହୁତ ॥
ସାହେର ଭିତରେ ଅଟଇ ଲଙ୍କପୁରୀ ।
ଜଳେ ଥଳେ ପବନେ କଳିତ ନ
ପାରି ॥୨୦
ଶଏ କ୍ରୁଶ ସମୁଦ୍ର ଘର ଗ୍ରାମ ନାହିଂ ।
ଦିଗ ନ ଦିଶଇ ଯିବା କେମନ୍ତ ହୋଇ ॥
ଦେବେଣ ଦୁର୍ଲ୍ଲଭ ମନିଷ୍ୟେ ଅଗୋଚର ।
ଦୁର୍ଗମ ସ୍ଥାନରେ ଯେ ରହିଛି ନିଶାଚର ॥
କେବଣ ଉପାୟେ ଖୋଜିବାକ ସୀତ୍ୟା ।
ଶ୍ରୀରାମଚନ୍ଦ୍ରଙ୍କୁ କେମନ୍ତେ ଦେବାକ
ବାରତା ॥
ତେବେ ସେ ଯଶ ଯେ ରହିବ ତିନିପୁର ।
ଯେମନ୍ତେ କାର୍ଯ୍ୟ ହୋଇବ ସେ କଥାନ୍ତ
ବିଚାର ॥
ଅଙ୍ଗଦର ବଚନେ କହିଲା ତାରାକ୍ଷ ।
ତୁ କିମ୍ପା ବିମୁଖ ହୋଉଛୁ ହୋ ବାଳୀବଛ ॥
ପଚାଶ ଯୋଜନ ଉପରକୁ ଉଡ଼ିଯାଇ
ପାରଇ ।
ବାହୁଡ଼ି ଆସିବାକୁ ଭରସା ନୁଆରଇ ॥
ଗନ୍ଧମାର୍ଦ୍ଦନ ବୋଇଲା ତାହା ଶୁଣି ।
ମୁହିଂ ଜିଣି ପାରଇ ସତୁରି କ୍ରୁଶ ପାଣି ॥
ଆସି ନୁଆରଇ ଏହୁ ସିନା ଗରୁ ।

ନୀଳ ବୋଇଲା ମୁଂ ଅଟଇ ହନ୍ତକାରୁ ॥
ଅଶୀ କ୍ରୁଶ ଯବି ମୁଂ ନୁଆରଇ ଆସି ।
କି ଜାଣି ସମୋଦ୍ର ମୋତେ ଦିଶଇ କାଳ
ଫାଶୀ ॥
ଅଙ୍ଗଦ ବୋଇଲା ହୋ ଯିବାକୁ କିମ୍ପା ଭାଳୁ ।
ନଉ କ୍ରୁଶ ସିନ୍ଧୁ ଅବା ତରିବା ମହାଜଳ ॥
ବାହୁଡ଼ି ନଇଲେ ହୋଇବ ଆଉ କିସ ।
ଯେବେ ନ ଯିବା ହୋ ରାବଣର ଦେଶ ॥
ନଳ ବୋଇଲା ମୁଂ ପାଣିକି ନୁଆରଇ ।
ଥଳେ ଶଏ କ୍ରୁଣ ବିକ୍ରମି ଯାଇ ପାରଇ ॥
ହସିଲା ସୁଷେଣ ସବୁରି କଥା ଶୁଣି ।
ବୋଇଲା କିସ ଯେ ଦୁର୍ଗମ ଜଳ ପାଣି ॥
ଦିଗ ନ ଜାଣଇ ଯିବାକୁ କିସ ଚିନ୍ତା ।
ରକ୍ଷ ରାୟେ ଜମ୍ବେବ କହନ୍ତି ସିଦ୍ଧାନ୍ତା ॥
ସେମାନେ କହିଲେ ହୋଇବ ଆର କିସ ।
ଯେବଣ କାଳେ ଥିଲା ମୋର ପ୍ରଥମ
ବଏସ ॥୫୦
ଯେକା ଦିବସକେ ବୁଲୁଥିଲି ମହୀ ।
ଯେବେ ସେକଥା ମୋତେ ଲାଜ ମାଡ଼ଇ
କହି ॥
ଆନ ଉପାୟେ ଯେ ବିଘର ହୋ ଯିସ ।
ଶୁଣିକରି ବୋଇଲା ପବନର ଶିଷ ॥
ତୁମ୍ଭେ ସମସ୍ତେ ହେଂ ମୋହର ଅଛ ବନ୍ଧୁ
ଭାଇ ।
ମୁହିଂ ଲୋଡୁଅଛି ଲଙ୍କାକଇ ଯାଇ ॥
ପ୍ରସନ୍ନ ହୋଇଣ କର ମୋତେ ଦୟା ।
ମୁହିଂ ଖୋଜି ଆସିବି ଜନେକ ତନୟା ॥
ଜମ୍ବେବ ବୋଇଲା ମୁଂ ଜାଣଇନା ବାବୁ ।
ଶ୍ରୀରାମର କାର୍ଯ୍ୟ ତୁହି ସେ କରିବୁ ॥୬୦
ତୋ ତହୁଂ ଭାର୍ଜନ ନୋହିବାକ ଆନ ।
ତୁହି ସେ ମହାବୀର ହୋ ପବନର ନାନ ॥
ତୁହି ସେ ଆଗେ ସିନା ଭେଟି ରଘୁନାଥ ।
ତୋହୋରେ ସୁଗ୍ରୀ ସେ ପାଇଲା ରାଜ୍ୟ ଅର୍ଥ ॥
ଏବେ ସେ ଶ୍ରୀରାମକୁ ସୀତୟା
ଖୋଜି ଦେବୁ ।

ଚାରି ଯୁଗକୁ ଯେ କୀରତି ରୁହାଇବୁ ॥
ଅଙ୍ଗଦ ସୁଷେଣ ତାରାକ୍ଷ ନଳ ନୀଳ ।
ଗନ୍ଧମାରଦନ ଜମ୍ବେବ ସକଳ ॥
ହନୁମନ୍ତକୁ ବହୁତ ପ୍ରବୋଧନା କରନ୍ତି ।
ଶ୍ରୀରଘୁନାଥର କାର୍ଯ୍ୟ କର ହୋ ବୋଲନ୍ତି ॥୭୦
ବାବୁ ହନୁମନ୍ତ ଧନ୍ୟ ତୋର ପିତା ।
ଧନ୍ୟ ସେ ସାଧବୀ ତୋହୋର ଗର୍ଭଧାରୀ ମାତା ॥
ଧନ୍ୟ ଧନ୍ୟ ଯେ ବଂଶେ ହୋଇଲୁ ତୁହି ଜାତ ।
କପିକୁଳ କମଳ ବାବୁ ତୁ ଶରଦ ଆଦିତ୍ୟ ॥
ଯହୁଂ ସେ ସମସ୍ତେ କଲେ ତାକୁ ତୁଷ୍ଟି ।
ଶୁଣିଣ ସନ୍ତୋଷ ହୋଇଲା ମାରୁତି ॥
ଯିବାକଇ ବୀର କଲାକ ସନମତ ।
ଜମ୍ବେବ ତିଆରିଲେ ତରକ କଥା ଯାବତ ॥
ବାବୁ ତୁ ଯେବେରେ ଲଙ୍କାକଇ ଯିବୁ ।
ଖୁପ ରୂପ ଧରିଣ ତୁ ନିଶାରେ ବୁଲିବୁ ॥୮୦
ଦିବସେ ତୋଟାରେ ଯେ ରହିବୁ ଗୁପତେ ।
ରାତ୍ରେ ନବରେ ବୁଲିବୁ ଅବିରତେ ॥
ଗୁପତ ପ୍ରଘଟ ବିଷମ ସନ୍ଧିମାନ ।
ହାଟ ବାଟ ମଣ୍ଡୋପ ଦେବତାଆଳମାନ ॥
ନଦୀ ସରୋବର କୂପ ବାମ୍ଫି ତୋଳା ।
ସମସ୍ତ ଥାନ ଖୋଜିବୁ ପବନର ବଳା ॥
କନ୍ଦି ବିକନ୍ଦି ଖୋଜିବୁ ନିରନ୍ତର ।
ବଖରାଏ ନ ଛାଡ଼ିବୁ ପଶିବୁ ଘରେ ଘର ॥
ରାଜାଙ୍କର ନବର ପାତ୍ରଙ୍କର ଉଆସ ।
ଏକସର ଦୋସର କଟକ ଚଉପାଶ ॥୯୦
ଆସିବାର ବେଳେ ତ ଶ୍ରୀରାମ ଛନ୍ତି କହି ।
ମୁଦି ସନ୍ତକ ଦେଇଛନ୍ତି ତୋହୋ ତହିଁ ॥
ସୀତ୍ୟାଙ୍କୁ ଭେଟିଲେ ସନ୍ଦେଶ କହିବୁ ।
ବାହୁଡ଼ା ବାରତା ପକ୍ଷକେ ଆଣିଦେବୁ ॥
ହନୁମନ୍ତ ନମଇଂ ଜମ୍ବେବ ଚରଣେ ।
ଅଙ୍ଗଦକୁ କୋଳ କରଇ ପ୍ରିୟ ପଣେ ॥

ଯେ ଯାହାର ଚିତ୍ତେ ଭଗତି ଭାବ ଘେନି ।
ଯିବି ବୋଲି ଲୋଡ଼ି ଉଠିଲା ପାବେନି ॥
ଶ୍ରୀରାମ ସୁମରି ଆକାଶକୁ ଉଡ଼ିଗଲା ।
ତିରିଶି ଯୋଜନ କରି କାୟା ବଢ଼ାଇଲା ॥୧୦୦
ଚାଳିଶି ଯୋଜନ ହୋଇଲାକ ମୋଟ ।
ବିକ୍ରମ ରୂପ ଧଇଲା ପବନର ଚାଟ ॥
ପଚାଶ ଯୋଜନ ଉପରକୁ ଉଡ଼ିଗଲା ।
ଲଙ୍କାଗଡ଼ ଲୋକଙ୍କୁ ଅଲଗେ ଦିଶିଲା ॥
ନେତର ପଣତ ଉଡ଼ଇ ଫରହର ।
ମଣିମୟ କୁଣ୍ଡଳ ରତ୍ନ ଅଳଙ୍କାର ॥
ଦୁତୀ ସୂର୍ଯ୍ୟ ଯେହ୍ନେ କିରଣ ପ୍ରକାଶଇ ।
ଲଙ୍କାର ଅସୁର ଯେ ଭୟେ କଲେ ଚାହିଁ ॥
କେହୁ ବୋଲନ୍ତି ହୋ ଉତ୍ତର ଆକାଶେ ।
ଧୂମକେତୁ ଉଇଂଲା ପ୍ରାଏକ ତ ଦିଶେ ॥୧୦
ଲାଞ୍ଜ ଫରହର ବିକଟ ମୂରତି ।
ଲଙ୍କାକୁ ଆସିବା ପ୍ରାୟେ ଦିଶଇ ତାର ଗତି ॥
ଏସନକ ବିଚାରି ଭାଳନ୍ତି ଦନୁଜ ।
ଏଥୁ ଅନନ୍ତରେ ପବନ ଆତ୍ମଜ ॥
ଲଙ୍କାକଇ ବୀର ବିକ୍ରମେ ଖେପିଗଲା ।
ବନପର୍ବତ କମ୍ପି ସିନ୍ଧୁ ଉଚ୍ଛୁଳିଲା ॥
ଯିବାର ବେଳେ ବୃକ୍ଷେ ସାଙ୍ଗରେ ଗୋଡ଼ାଇଲା ।
ସଚରାଚର ପୃଥ୍ୱୀ ଥରହର ହୋଇଲା ॥
କେତେହେଂକ ଦୂରେ ରହିଲେ ବୃକ୍ଷମାନେ ।
କୋଶେ ଦୁଇକୋଶେ ପଡ଼ିଲେ ଗଗନେ ॥୨୦
ବନ୍ଧୁ କୁଟୁମ୍ବକୁ ଯେସର୍ଣେ ପାଛୋଟିଣ ଆସି ।
ହନୁମନ୍ତ ଯାନ୍ତେ ବୃକ୍ଷେ ତେସନକ ଦିଶି ॥
ତଳେ ମହାଜଳ ଉପରେ ଗଗନ ।
ଶୂନ୍ୟେ ଉଡ଼ିଯାଇ ପବନ ନନ୍ଦନ ॥
ଗୋଡ଼ଇବା ତରୁମାନେ ପଡ଼ିଲେ ସିନ୍ଧୁ ମଧ୍ୟେ ।

ଦଶଦିଗ କମ୍ପିଲା ହନୁମନ୍ତ ବାହାନାଦେ ॥
ବରୁଣ ଜାଣିଲା ଏ ଶ୍ରୀରାମର ଦୂତ ।
ପବନ ତନୟେ ଏହା ନାମ ହନୁମନ୍ତ ॥
ସୀତ୍ୟାଠାବ କରିବାକୁ ଯାଉଅଛି ଯେହୁ ।
ଫଳମୂଳ ଦେବା ଘଡ଼ିଏ ଏଥି ରହୁ ॥ ୩୦
ଶ୍ରୀରାମ ଉପରବଂଶେ ଭଗୀରଥ ରାୟେ ।
ଗଙ୍ଗାପାଣି ସାତସମୋଦ୍ର ପୂରାୟେ ॥
ତେଣୁ ସେ ଉଲ୍ଲୋଳ ହୋଇଲା ମହାଜଳ ।
ସାଧୁ ସୂର୍ଯ୍ୟବଂଶେ ଯେତେ ମହୀପାଳ ॥
ସଗର କୀରତି ଅଟଇ ସାଗର ।
ଶ୍ରୀରାମ ଦୂତକୁ କରିବି ଉପଗାର ॥
ଏତେ ବିଚାରି ସେ ଜଳର ଆଦିପତି ।
ମଣିନାଗ ପର୍ବତକୁ ସେ ହକାରିଲା କତି ॥
ତୁ ହୋ ଗିରିବର ଶୁଣସି ବଚନ ।
ଆକାଶେ ଯାଉଅଛି ପବନ ନନ୍ଦନ ॥ ୪୦
ଶ୍ରୀରାମ ଘରଣୀ ସେ ଜନକ ଦୋହିତା ।
ରାବଣ ଯେ ହରି ନେଇଅଛି ସୀତ୍ୟା ॥
ତାହାକୁ ଖୋଜିବାକୁ ପେଷିଲେ ରାମଦୂତ ।
ସମୁଦ୍ର ଲଂଘିଣ ଶୂନ୍ୟେ ଯାଉଅଛି ହନୁମନ୍ତ ॥
ତୁ ହୋ ମଣିନାଗ ରୁହାଇବୁ ତାକୁ ଯାଇ ।
ଫଳମୂଳ ଦେବୁ ତାକୁ ପୀରତି କଥା କହି ॥
ଶ୍ରୀରାମର ଦୂତକୁ ଗଉରୋବ କର ।
ଜଳପତି ଆଜ୍ଞାରେ ଗଲା ମହୀଧର ॥
କାୟା ବିସ୍ତାରି ସେ ଊର୍ଦ୍ଧ୍ୱକୁ ଉଡ଼ିଗଲା ।
ଶତେଯୋଜନ ସେ କାୟା ବଢ଼ାଇଲା ॥୫୦
ସାହେର ଭିତରେ ସେ ଦିଶିଲା ମାହାକୁଦ ।
ଦେଖିଣ ହନୁମନ୍ତ ଯେ ହୋଇଲା ବିଷାଦ ॥
ମନେମନେ ବିଚାର କରଇ ମାରୁତି ।
ସାହେର ଭିତରେ ଗିରିଯେ ଉତ୍ପତ୍ତି ॥
ବନଲତା ଭରିଅଛି ଫୁଲଫଳ ।
ଗିରକ୍ରୋଟ କନ୍ଦର ବିବିଧ ବର୍ଣ୍ଣେ ଶିଳ ॥
କେବଣ ଆକାର କେବଣ ହିଂ ମତ ।
ଯେସନକ ଭାଳୁଣ ରାଇଲା ପରବତ ॥
ତୁ ହୋ ହନୁମନ୍ତ ପବନର ପୁଅ ।

ମୋହର ଶିଖରେ କ୍ଷଣକେ ଆସି ରହ । ୬୦
ଫଳମୂଳ ଖାଇ ଯାଅ ସୁସ୍ଥ ହୋଇ ।
ବରୁଣ ପେଷିଲା ମୋତେ ତୋହର ହିତ
ପାଇଁ ॥
ଶ୍ରୀରାମର ଦୂତ ତୁ ଲଙ୍କାକଇ ଯାଉ ।
ମୁଂ ଯେ ମଣିନାଗ ଗିରିଙ୍କର ରାହୁ ॥
ତୋହୋର ପିଅରେ ମୋହର ଉପଗାରୀ ।
ଯେବଣ କାଳେ ଇନ୍ଦ୍ର ପର୍ବତକୁ ବଜ୍ରମାରି ॥
ପବନକୁ ଆଶ୍ରେ କଲଇ ମୁହିଂ ଯାଇ ।
ଶଚୀପତି ବଜ୍ରକୁ ମୁଂ ମାହାଭୟେ ପାଇ ॥
ସେ ଋଣ ପାଶୋରି କି ପାରିବି ଦେହଥିଲେ ।
ପ୍ରତେ ଗଲା ହନୁମନ୍ତ ମଣିନାଗ
ବୋଲେ ॥୭୦
ତାରା ପ୍ରାୟେ ହୋଇ ହନୁ ଗଗନୁ ଖସିଲା ।
ଗିରିବର ଉପରେ ଯାଇଣ ବସିଲା ॥
ଶତେକ ଯୋଜନ ଯେବଣ ମହୀଧର ।
ବୃକ୍ଷବନ ଲତା ଅଛଇ ଅପାର ॥
ହନୁମନ୍ତ ଭାରା ସହି ନ ପାରିଲା ।
ତେତେ୍ଢ ମାହାଗିରି ତଳକୁ ବୁଡ଼ିଗଲା ॥
ମନୁଷ୍ୟ ଶରୀର ଧରିଣ ମଣିନାଗ ।
ମାରୁତିକି ତୁଷ୍ଟି ଯେ କରଇ ଅତି ବେଗ ॥
ତୁ ସେ ପବନର ତନୟ ମହାବଳୀ ।
ପକ୍ଷୀ ନ ଥେଲେ କି ଗଗନେ ଯିବ
ଉଡ଼ି ॥୮୦
ତୋହୋରେ ସେ ହୋଏନା ଦୁର୍ଲ୍ଲଭ କର୍ମ
କରି ।
ଯତନେ ଏଥକୁ ବୋଲି ଅଛୁ ଅବତରି ॥
ଶ୍ରୀରାମ କାର୍ଯ୍ୟ ଯେ ତୋହୋରେ ହୋଇବ ।
ବିଘରି ନିର୍ଦ୍ଧା ତୋତେ କରିଛି ଦଇବ ॥
ପବନ ମାହାତ୍ମାରକ୍ଷା ମୋତେ କଲା ।
ବରୁଣ ଗୋଚରେ ଆଣିଣ ସମର୍ପିଲା ॥
ଜଳପତି ମନ୍ଦିରେ ମୁଂ ନିଚିନ୍ତେ ରହିଲି ।
ତେଡ଼େ ମହାଭୟେ ପବନେ ନ ପାଇଲି ॥
ଶୁଣିଣ ତ୍ରିପୁତି ଯେ ପବନ କୁମର ।
ଫଳମୂଳ ଆଣି ଦେଲାକ ମହୀଧର ॥ ୯୦
ଭୁଞ୍ଜିଣ ସନ୍ତୋଷ ସେ ହୋଇଲା ହନୁମନ୍ତ ।
ମଣିନାଗ ବୋଇଲା ଶୁଣ ପବନର ସୁତ ॥
ତୁ ଯେ ହନୁମନ୍ତ ଲଙ୍କାକଇ ଯିବୁ ।
ଶ୍ରୀରାମ ଘରଣୀ ସୀତ୍ୟାକୁ ଖୋଜିବୁ ॥
ଆସୁରେ ମାୟାବୀ ଅଟନ୍ତି କାମରୂପୀ ।
ସତ ଦେଖାଇ ତୋତେ ଭଣ୍ଡିବେଟିକି କପି ॥
ଜାଣି ଶୁଣି ବାବୁ କରିବୁଟିକି କାର୍ଯ୍ୟ ।
ଯାଅ ତୋର ବିଘ୍ନ ଖଣ୍ଡନ୍ତୁ ବିଘ୍ନରାଜ ॥
ଶୁଣି ହନୁମନ୍ତ ବିକ୍ରମିଣ ଗଲା ।
ପକ୍ଷୀ ପ୍ରାୟେ ହୋଇ ଗଗନେ
ବିକ୍ରମିଲା ॥୧୦୦
ସ୍ୱର୍ଗେ ଦେବତାୟେ କରନ୍ତି ବିଚାର ।
ଶ୍ରୀରାମର ଦୂତ ଯେଯେ ପବନକୁମର ॥
ଲଙ୍କାକୁ ଯାଉଅଛି ହନୁମନ୍ତ ବୀର ।
ତହିଂ ଠାବ ଯେହୁ କରିବ ନିରାଧାର ॥
ଜାଣିବା କେତେମାନ ବୁଦ୍ଧି ଯେ ଯେହାରି ।
ଯେ ଯେବେ ପାରିବ ଶ୍ରୀରାମର କାର୍ଯ୍ୟକରି ॥
ବ୍ରହ୍ମା ସହିତେଣ ଇନ୍ଦ୍ରାଦି ଦେବମାନେ ।
ନାଗମାତାକୁ ରାଇଲେ ସନ୍ନିଧାନେ ॥
ତୁ ଯାଇ ହନୁମନ୍ତକୁ ଉଗାଳିବୁ ବାଟ ।
ଯେତେ ଜାଣିଅଛୁ କୁମନ୍ତ କପଟ ॥ ୧୦
ତହୁଂ ଉତୁରିଲେ ବୋଲିବା କାର୍ଯ୍ୟ ସିଧି ।
ଯେମନ୍ତେ ପାର ଯାଇ କରଯା ବିରୋଧୀ ॥
ଶୁଣିଣ ନାଗମାତା ହୋଇଲାକ ତୁନି ।
ଆଗେ ଓଗାଳିଲା ଆସନ୍ତେ ପାବେନି ॥
ବିକଟ ବଦନ ମୁଖ ବିକରାଳ ।
ଭୟଙ୍କର ମୂରତି ଯେ ମୁକଳ କରି ବାଳ ॥
ବାହୁ ବୁଲାଇ ଯେ ଆକ୍ରୋଶିଲା ଆସି ।
କାହିଂକି ଯାଉଅଛୁ ବୋଲି ଯେ ବୋଇଲାକ
ହସି ॥
ଆଜ ସେ ପଡ଼ିଲୁ ମୋହୋର ପନ୍ଥାଳି ।
ଆତ୍ମା ପ୍ରବୋଧିବି ଆଜ ତୋତେ ଗିଳି ॥୨୦
ଦେଖି ହନୁମନ୍ତ ହୋଇଲା ତରସ୍ତ ।
ତିରିଶି ଯୋଜନ କାୟା ପବନର ସୁତ ॥
ନାଗମାତା ଚାଳିଶି ଯୋଜନ ଦେହ କଲା ।
ଦେଖି ହନୁମନ୍ତ କାୟା ବଢ଼ାଇଲା ॥
ଦୁଇଶତ ଯୋଜନ ହୋଇଲା ମାରୁତି ।
ନାଗର ଜନନୀ ଯେ ପାଇଲା ମନେ ଭ୍ରାନ୍ତି ॥
ତିନିଶତ ଯୋଜନ ହୋଇଲାକ ଦେବୀ ।
ପ୍ରତିଗ୍ୟା କରି ବୋଇଲା ମୁହିଂ ତୋତେ
ଗିଳିବି ॥
ବାହୁ ବୁଲାଇ ଯେ ଧରିତ ମନ କଲା ।
ଜାଣିଣ ପାବେନି ଯେ ଶ୍ରୀରାମ
ସୁମରିଲା ॥୩୦
ଚାରିଶତ ଯୋଜନ ଯେ କାୟା ଗଲା ତାର
ବଢ଼ି ।
ନାଗର ଜନନୀ ଗଲା ବାଟ ଛାଡ଼ି ॥
ଦେବତାଙ୍କ ଆଗେ କହିଲାକ ଯାଇଂ ।
ବାବୁ ସେ ମହାବୀର ତାକୁ କେହି ସରି
ନାହିଂ ॥
ନିଷ୍ଚୟେ ତୁମ୍ଭର ଯେ ହୋଇବ
ଦେବକାର୍ଯ୍ୟ ।
ଯେବଣ ଚରିତ୍ର ଆଜ ଦେଖିଲି ଦେବରାଜ ॥
ତେଣୁ ସେ ପ୍ରତେ ମୁଇଂ କଲଇ ନିଅତ ।
କେବଣ ଦେବତା ଏ ଅଟଇ ହନୁମନ୍ତ ॥
ଶୁଣିଣ ସୁରଗଣ ଆନନ୍ଦ ହୋଇଲେ ।
ମାରୁତିର ଶିରେ କୁସୁମ ବରଷିଲେ ॥ ୪୦
ମଳୟ ପବନ ଯେ ଧୀରେ ଧୀରେ ବହି ।
ତହୁଂ ହନୁମନ୍ତ ବିକ୍ରମିଣ ଯାଇ ॥
ସାହେର ଭିତରେ ସେ ଅନ୍ତରୀଛେ ଚଳଇ ।
ଦେଖିଣ ରାହୁମାତା ଆଗେ ଉଗାଳଇ ॥
ସହସ୍ରେ ଯୋଜନ ସେ ହୋଇଲା ତଡ଼ତି ।
ଦେଖିଣ ଖୁପରୂପ ଧଇଲା ମାରୁତି ॥
ମନେ ବିଚାରଇ ସଙ୍କଟ ବହୁତ ।
ବିଶ୍ରାମି ଠାବ ମୋତେ ନାହିଂ ଜଳପଥ ॥
କେବଣ ଉପାୟେ ମୁଂ ଯିବି ଏଥୁଂ ତରି ।
ଦଶଦିଗ ନିରୋଧି ଅଛଇ ଆବୋରି ॥ ୫୦

ହନୁମନ୍ତ ବିଚାରନ୍ତେ ଧଇଲା ରାକ୍ଷସୀ ।
ରାହୁ ଯେସନେକ ଚନ୍ଦ୍ରକୁ ଗରାସି ॥
ମୁଖ ବିସ୍ତାରିଣ ଭିତରକୁ ଭକ୍ଷଇ ।
ସିଂହିକା ଗର୍ଭେ ହନୁ ପଡ଼ି ଯାଇ ॥
ମନେ ବିଚାରଇ ଗଲି ମୁହିଂ ନାଶ ।
ପାମରୀ ଦଇତୁଣୀ କଲା ମୋତେ ଗ୍ରାସ ॥
ଶ୍ରୀରାମର କାର୍ଯ୍ୟ ତ ନ ପାରିଲି କରି ।
ଏତେ ବୋଲି ବୀର ବୁକୁ ତା ବିଦାରି ॥
ଅନ୍ତନାଡ଼ି ଛିଣ୍ଡାଇ ପକାଇଲା ଯହୁଂ ।
ମଲି ମଲି ବୋଲି ବିକଳ ହୋଇଲା
ତହୁଂ ॥୬୦
ରଖ ରଖ ବୋଲି ପେଟ ଆଉଂଷଇ ।
ହିଆ ବିଦାରିଣ ହନୁ ବାହାର ହୋଇ ଆସଇ ॥
ପ୍ରାଣ ଛାଡ଼ିଣ ସେ ପଡ଼ିଲା ଦଇତୁଣୀ ।
ହାନ୍ଦୋଳି ହୋଇଲା ସେ ମହାର୍ନବ ପାଣି ॥
ତହୁଂ ହନୁମନ୍ତ ବିକ୍ରମ ରୂପ ଧରି ।
ଗଗନେ ଗମଇ ସେ ଲୀଳାଗତି କରି ॥
ଶତେକ ଯୋଜନ ସେ ହେଳେଣ
ଲଙ୍ଘିଗଲା ।
ଲଙ୍କା ଗଡ଼ ଉତ୍ତର ଭାଗେଣ ପଡ଼ିଲା ॥
ଯେବଣ ଠାବେ ବୀର ବିଶୋଇଲା ଯାଇ ।
ଭାରା ପାଇ ପାତାଳକୁ ନସିଗଲା
ଭୂଇଂ ॥୭୦
ତହିଂ ମାହାବୀର ସାଞ୍ଚୋଇଣ ଉଠି ।
ଉଗ୍ର ତେଜ ଛାଡ଼ି ହୋଇଲା କପି ଗୋଟି ॥
ଆଗେ ଦେଖିଲାକ ସୁବଳୟା ପର୍ବତ ।
ତହିଂ ଯାଇ ବିଶ୍ରାମ କଲାକ ହନୁମନ୍ତ ॥
ଗିରିବରେ ବସି ଲଙ୍କାକୁ ଚାହିଂଲା ।
ସାଧୁ ସାଧୁନଗ୍ର ବୋଲିଣ ବୋଇଲା ॥
ଶତେପୁର ହୋଇ ବସିଅଛି ଦେଶ ।
ବଳୟ ପ୍ରକାରେ ସିନ୍ଧୁ ବେଢ଼ିଛି ଚଉପାଶ ॥
ନଦୀଙ୍କର ସଙ୍ଗମେ ବକ୍ରଭାବ ଦିଶଇ ।
ମୁଖରାବ ଶବଦ କି ଜାଣି ମେଘ
ଘୋଷଇ ॥୮୦

ଅତି ଉଚ୍ଚ ପାଚେରୀ ଶୁଦ୍ଧ ସୁବର୍ଣ୍ଣ ମୟେ ।
ପକ୍ଷୀଙ୍କର ବଳେ ଉଡ଼ିଯାଇ ନୋହେ ॥
ଦ୍ୱାରେଣ ଅର୍ଗଳି ପାଶେଣ ବନ୍ଧାଫେର ।
ଚାଙ୍ଗୁ କାଙ୍ଗୁଲା ଯେ ଅଛି ଅପାର ॥
ଠାବେ ଠାବେ ବକ୍ର ଚୋରୀଦ୍ୱାରମାନ ।
ବସି ଯୁଝିବାକୁ ମଣ୍ଡୋପ ସ୍ଥାନମାନ ॥
ବାଘମୁହିଂ ଅଧଡ଼ି ବନ୍ଧାଇ ନିଶୁଣି ।
ସଜ କରି ପାତିଅଛି ଛିଟିକିଣି ॥
ଠଣା ପଡ଼ିହାରୀ ପାଇକ ଜଗିଛନ୍ତି ।
ସଚେତ ନିମନ୍ତେ ଉକାସି ବୋବି ଦିଅନ୍ତି ॥
କଟେକ ସୁବର୍ଣ୍ଣ ଦିଶଇ ମାହାଶିରୀ ।
ଦ୍ୱିତୀସୂର୍ଯ୍ୟ ଜାଣି ଶୋଭା ଲଙ୍କପୁରୀ ॥
ଘରେ ଘରେ ସୁବର୍ଣ୍ଣ ନବରତ୍ନ କମ ।
ମନ୍ଦିରେ ଲେପିଛନ୍ତି ଘେନିଣ ଚନ୍ଦୃସମ ॥
ଅଗରୁ ଚନ୍ଦୃଗନ୍ଧ ଦେଇଛନ୍ତି ଚିତା ।
କର୍ପୂରଗୁଣ୍ଡି ମୁରୁଜ ଲିହିକ୍ଷନ୍ତି ବନିତା ॥
ଦ୍ୱାରେଣ ଅଛନ୍ତି ଯେ କଦଳୀ ବୃକ୍ଷମାନ ।
ମର୍କତ କଳସ ପାତାଙ୍ଗ ନେତ ଚିହ୍ନ ॥
ଦର୍ପଣ ଚାମର କୁସୁମେ ମଣ୍ଡିଛନ୍ତି ।
ବହୁତ ପ୍ରାସାଦେ ମେଘନାଦ
ଜଗତୀ ॥୧୦୦
ପୁଷ୍ପ ବନିକାୟେ ଦିଶନ୍ତି ଶୋଭାବନ ।
କୋକିଳ ପଛୀଯେ ଭାଷନ୍ତି ଘନ ଘନ ॥
ଦେବତାଙ୍କ ନୃତ୍ୟଗୀତ ନୃପତି ଆଗେ ଶୁଭି ।
କିଜାଣି ପଟାନ୍ତର ସ୍ୱର୍ଗର ଦୁନ୍ଦୁଭି ॥
ପାତ୍ରଙ୍କର ନବର ରାଜାଙ୍କର ଉଆସ ।
ଆବର ବିଶେଷେ ସାଧୁଙ୍କର ଘର ବାସ ॥
ବାହାରକୁ ସୁନ୍ଦର ଦିଶଇ ଶୋଭାବନ ।
ଦେଖି ପ୍ରଶଂସା କଲାକ ହନୁମାନ ॥
ସାଧୁ ସାଧୁ ଦେଶ ଯେ ସାଧୁ ଦଶଗିରି ।
ଏ ପୁରେ ବିଜୟେ ସର୍ବଦା ଲକ୍ଷ୍ମୀଶିରୀ ॥୧୦
ନାହିଂ ପଟାନ୍ତର ତୈଲୋକେ ଆନ ।
ବାବୁ ମହିମା ତୋର ଅଟଇ ଦଶାନନ ॥
ଏତେ ସମ୍ପଦ ଭୋଗ କରିବା ଛାଡ଼ିଲୁ ।

ମାହାରାଜା ହୋଇ ତୁ ଅଧର୍ମକୁ ଗଲୁ ॥
ତୈଲୋକେ ଅଜୟେ ପାଇଅଛୁ ବର ।
ଶ୍ରୀରାମର ଘରଣୀକି ଆଣିଲୁ ଦଶଶିର ॥
ତେଣୁ ସେ ଏପୁର ତୋତେ ପ୍ରାପତ
ନୋହିବ ।
ଏହାର ପରପୁର ଅଗ୍ନିରେ ଦହିବ ॥
ଅକାରଣେ ମୃତ୍ୟୁ ପାଇବେ ଏଥିର ପ୍ରାଣୀ ।
ହୀନ ବୁଦ୍ଧି କଲୁରେ ଅସୁର କୁଳମଣି ॥୨୦
ଏସନକ ଭାଳୁ ଯେ ଆଦିତ୍ୟ ଅସ୍ତଗଲା ।
ଜଗତସଂସାର ତିମିରି ଆଚ୍ଛାଦିଲା ॥
ସନ୍ଧ୍ୟା ସମୟେଣ ଶୁଭଇ ଶଙ୍ଖ ଧ୍ୱନି ।
ଦଇତେ ହୋମ କରିଣ ପୂଜନ୍ତି ହୁତ ଅଗ୍ନି ॥
ରାଜାର ସିଂହଦ୍ୱାରେ ବୀରତୂର ବାଜେ ।
ଜାଣି ପଟାନ୍ତର ଶବଦ ମେଘ ଗାଜେ ॥
ଦୀପ ଦିଉଡ଼ି ଯେ ଲାଗିଲା ନିରନ୍ତର ।
ଠଣାନ୍ତ ଆବୋରି ଯେ ରହିଲେ ପୟେକାର ॥
ଯେତେକ ଲୋକ ଗଡୁ ବାହାର
ହୋଇଥିଲେ ।
ରଜନୀ ସମୟେ ସେହୁ ଗଡ଼ରେ
ପଶିଲେ ॥୩୦
ଗୋରୁ ଅଜା ମେଷ ମଇଂଷି ପନ୍ତି ପନ୍ତି ।
ମାହାଘୋର ଶବଦ ଶୁଭଇ ଚଉକତି ॥
ପବନ ତନୟେ ଯେ କରଇ ବିଚ୍ଚର ।
ଏମନ୍ତ ସମୟେ ମୁଂ ପଶିବି ଲଙ୍କପୁର ॥
ବିଳମ୍ବ କଲେ ତ କବାଟ ପାଡ଼ିବେ ।
ହାଟ ବାଟ ଦାଣ୍ଡେ ଠଣା ଜଗିଥିବେ ॥
ଦଇତେ ଦେଖିଲେ ଯେ ହୋଇବ
ପରଘଟ ।
କାର୍ଯ୍ୟ ନୋହୁ କଥା ହୋଇବାକ ନଷ୍ଟ ॥
ଏବେ ମୁଂ ଗୁପତେ ପଶିବି ଲଙ୍କପୁରୀ ।
ମନେମନେ ଆନନ୍ଦ ଶ୍ରୀରାମ ସୁମରି ॥ ୪୦
ଏତେ ବିଚ୍ଚରିଣ ପବନକୁମର ।
ଉଗ୍ରତେଜ ଛାଡ଼ି ହୋଇଲା କିଙ୍କର ॥
ଶ୍ରୀରାମ ସୁମରି ପର୍ବତୁ ଓହ୍ଲାଇଲା ।

ସାମାନ୍ୟ ରୂପ ଧରି ତଳକୁ ଖସିଲା ॥
ଉତ୍ତରଗଡ଼ ଦ୍ୱାରେଣ ବୀରବର ପଶିଲା ।
ଯିବାର ଛଟକେ ଲୋକକୁ ନଦିଶିଲା ॥
ଦ୍ୱାର ପଢ଼ିହାରୀ ପାଇକକୁ ରାଇ ।
କିସ ପଶିଲାରେ ଦେଖିଲୁଟି ତୁହି ॥
ପାଇକ ବୋଇଲା ମୁଂ ତ ତଳଯେ ନ
କଳି ।
ମର୍କଟ ପ୍ରାୟେକ ଗୋଟାଏ ଦେଖିଲି ॥୫୦
ପଢ଼ିଆରୀ ବୋଇଲା ମୁଂ ଏମନ୍ତ ମଣଇ ।
ବାନର କି ଶ୍ରୀକାଳ ତଇଥ ନଜାଣଇ ॥
କି ଅବା କୁକୁର ବାହାର ଗଡ଼େ ଥିଲା ।
ବେଳକାଳ ଜାଣି ଭିତରେ ପଶିଲା ॥
କିବା ମଞ୍ଜାରୀ ଶାଳେହା କି ବ୍ୟାଘ୍ର ।
ଶୁଣିଲେ ନୃପତି ପାଇବେ ବଇରାଗ ॥
ଏତେବେଳ ଯାଏ ତ କବାଟ ପାଡ଼ି
ନଥାଅ ।
ଯେ କଥାରେ କେ ଅବା କେବଣ ଯଶ
ପାଅ ॥
ଏତେ ବୋଲି କବାଟ ପାଡ଼ିଲା ପଢ଼ିଆରୀ ।
କିଳିଣି କିଳିଲା ଯେ ଅତି ଯତ୍ନ କରି ॥୬୦
ଖମ୍ବ ପୋତିଣ ଯୋଡ଼ି ପୁଗୁଡ଼ା ଦେଲା ।
ପଥର ଆଉଜାଇ ଅର୍ଗଳି ପାଡ଼ିଲା ॥
ଦ୍ୱାର ନିରୋଧିଣ ନିଶ୍ଚିନ୍ତ ହୋଇବସି ।
ଏଥୁ ଅନନ୍ତରେ ପବନର ଶିଷି ॥
ମନେ ବିଚାରଇ ଅସୁରେ ନ ଜାଣନ୍ତି ନିନ୍ଦା ।
ଗଣ୍ଠିଲି ବାହାର କରି ବାନ୍ଧିଛନ୍ତି ସୁନା ॥
ଢୋଲ ସିହିଳରେ ମୂଷାକୁ ପୂରାଇ ।
ପେଟ ମନ୍ତୁରାଇଲରେ ଡାହାଣୀ ହାଥେ
ନେଇ ॥
ସନ୍ନିପାତ ମଳୁକୁରେ ପାଣି ପିଆଇଲ ।
ଏମନ୍ତ କରିରେ କାର୍ଯ୍ୟ ଭିଆଇଲ ॥ ୭୦
ଏସନ ବୋଲି ବୀର ଭିତରକୁ ଯାଇ ।
ଏକ ଅସୁରୀଯେ ଆସନ୍ତେ ଦେଖଇ ॥
ହନୁମନ୍ତକୁ ଚାହିଁ ବୋଲଇ ରାକ୍ଷସୀ ।

ମାଙ୍କଡ଼ ଗୋଟାଏ ତ ଯେପୁରେ ଆସି ପଶି ॥
ରାତ୍ରକାଳେ କାହିଁକି ଯାଉରେ ବାନର ।
ଶୁଣିଣ କୋପକଲା ପବନକୁମର ॥
ନିର୍ଘାତ କରି ତାକୁ ବିଧାଏ ମାଇଲା ।
ଦୁଷ୍ଟ ଦଇତୁଣୀ ପଡ଼ିଣ ମୂର୍ଚ୍ଛାଗଲା ॥
ସଚେତ ହୋଇଣ ବସିଲାକ ପୁଣି ।
ମାରୁତିକି ଚାହିଁ ବୋଇଲା ଦଇତୁଣୀ ॥୮୦
ନିଶ୍ଚୟେ ଲଙ୍କାଗଡ଼ ଆଜହୁଂ ନାଶ ଗଲା ।
ବାନର ହୋଇ ମୋତେ ପରାଭବ କଲା ॥
ମୁଇଂ ସେ ଲଙ୍କେଶ୍ୱରୀ ଲଙ୍କର ଦେବତୀ ।
ପୂର୍ବେ ମୋତେ କହିଅଛନ୍ତି ବେଦପତି ॥
ଯେବଣହିଂ ଦିନରେ ବାନର ତୋତେ
ମାରି ।
ସେହିଦିନୁ ସରିବ ରାବଣର ଶିରୀ ॥
ସେ କଥା ପ୍ରତ୍ୟକ୍ଷେ ଫଳିଲାକ ଆଜ ।
ତୁ ହୋ କପି ଯେବେ ସୀତ୍ୟାକୁ ବେଗେ
ଖୋଜ ॥
ଯେବଣ ଦିନେ ରାବଣ ସୀତ୍ୟାକୁ
ଆଣିଥିଲା ।
ସେକଥା ମୋହର ଅଛଇନା ଜାଣିଲା ॥୯୦
ଦଶଗ୍ରୀବ ଆକ୍ଷ୍ୟ ହୋଇଲାନି ଛୟେ ।
ଜାଣି ପିତାମହ କଲାକ ଉପାୟେ ॥
ଯେତେ ବୋଲି ଦେବୀ ଅସୁରୀ ରୂପ
ଲେଛି ।
ପ୍ରତକ୍ଷେଣ ବିଜେ କଲେ ଦେବୀ କମଳାକ୍ଷୀ ॥
ସେ ବାରତା ପାଇଣ ହନୁମନ୍ତ ତୋଷ ।
ବିକ୍ରମ ହୋଇ ଡେଇଂଗଲା ପବନର ଶିଷ ॥
ନଗ୍ରେ ପଶିଣ ଯେ ଜାନେକୀକିଂ ଖୋଜଇ ।
କନ୍ଦି ବିକନ୍ଦିରେ ମନସରି ହେଜଇ ॥
ମନିଷ୍ୟକୁ ଦେଖିଲେ ମଞ୍ଜାରୀ ରୂପ ଧରଇ ।
ମଞ୍ଜାରୀକି ଦେଖିଲେ କୁକୁର ପ୍ରାଏ
ହୋଇ ॥୧୦୦
ଶ୍ୱାନ କଇଂ ଶ୍ରୀକାଳ ବ୍ୟାଘ୍ରକଇ ହସ୍ତୀ ।
ଗଜଯୂଥକଇ ଦିଶଇ ବନପତି ॥

ଅସୁରକୁ ମନୁଷ୍ୟ ଚୋରକୁ ଦଣ୍ଡୁଆସି ।
ସାଧୁତ ଜନଙ୍କୁ ଶ୍ରୀକାଳ ପରାଏକ ଦିଶି ॥
ଘରେହେଂ ନ ଛାଡ଼ଇ ନୋଡ଼ଇ ପୁରେ
ପୁରେ ।
ନିଚେଷ୍ଟ ହୋଇଣ ଶୋଇଅଛନ୍ତି ଅସୁରେ ॥
ସୁବର୍ଣ୍ଣର କଟକ ନବରତ୍ନମୟେ ।
ରାତ୍ର ଦିଶୁଅଛି ଦିବସ ପରାୟେ ॥
ଏକସର ଦୋସର ବାଣ ବଣିଜାର ।
ପଶଇ ହନୁମନ୍ତ ସବୁଙ୍କରି ଘର ॥ ୧୦
ଖୁଣ୍ଟିଆ ପଢ଼ିହାରୀ ଲେଙ୍କା ଲମ୍ବହତା ।
ପାଇକ ରାଉତ ଯୋଦ୍ଧାଙ୍କର ଆସ୍ଥା ॥
ପାତ୍ର ସାମନ୍ତ ଅମନାତ୍ୟଙ୍କର ଘର ।
ଗୁପତେ ଖୋଜଇ ପବନକୁମର ॥
ପ୍ରାସାଦ ଅଟାଳୀ ମଣ୍ଡୋପ ଜଗତୀ ।
ବେଶ୍ୟାଙ୍କର ମନ୍ଦିର ଲୋଡ଼ଇ ଚଉକତି ॥
ନଦୀ ସରୋବର ପୋଖରୀ ହ୍ରଦ ତଳା ।
ଠାବେହେଂ ନ ଛାଡ଼ଇ ପବନର ବଳା ॥
ତୋଟାଙ୍କର ଭିତରେ ପଶିଣ ଖୋଜଇ
ଯାଇ ।
ଶ୍ରୀରାମର ଘରଣୀକି କାହିଁ ନ ଦେଖଇ ॥୨୦
କୁମ୍ଭକର୍ଣ୍ଣର ନବର ବିଭୀଷଣର ପୁର ।
ବିକୁମ୍ଭର ବାସ ଇନ୍ଦ୍ରଜିତର ମନ୍ଦିର ॥
କୁମ୍ଭର ନବର ଧୁମାକ୍ଷର ଉଆସ ।
ମୋହୋଦରର ଆସ୍ତାନ ମାହାପାରୁଶର
ବାସ ॥
ଶୁକ ସାରଣ ଶାର୍ଦ୍ଦୋଳର ଘର ।
ମହୀରାବଣ ଘର ଅକ୍ଷୟର ମନ୍ଦିର ॥
ଲୋଡ଼ି ହନୁମନ୍ତ ନ ପାଇଲା ସ୍ୟତୀ ।
ରାଜାର ମନ୍ଦିରକୁ ଚଳିଲା ମାରୁତି ॥
ମୂଷାରୂପ ଧରି ଭିତରକୁ ଗଲା ।
ମରଣକୁ ନ ଡରି ଅଗ୍ନିରେ ଝାସ
ଦେଲା ॥୩୦
ଦେଖିଲା ମନ୍ଦିର ଅତି ଶୋଭାବନ ।
କେବଣହିଂ ଘର ହେଙ୍ଗୁଳର ବର୍ଣ୍ଣ ॥

କେବଣହିଂ ଘର ଗୋଟା ସୁବର୍ଣ୍ଣେ ନିର୍ଭା କଲା ।
କେବଣହିଂ ମନ୍ଦିର କାଚ ଢାଳ ଦେଲା ॥
କେବଣହିଂ ଘର ମର୍କତେ ଅଛି ମଣ୍ଡି ।
ଶୁଦ୍ଧ ସ୍ଫଟିକରେ କେବଣ ପୁର ଅଛି ଗଢ଼ି ॥
ଦେଖିଣ ପ୍ରଶଂସା ଯେ କରଇ ମାରୁତି ।
ସାଧୁ ସାଧୁ ମହିମାରେ ତୋହର ଲଙ୍କପତି ॥
ଚନ୍ଦନ କୁଡ଼ କୁଡ଼ କାହିଂ ଅଗର ଅପ୍ରମାଣ ।
କେବଣ ଠାବେ ଅଛି ବହୁତ କାଞ୍ଚନ ॥୪୦
କାହିଂ ରୂପା କାହିଂ ତମ୍ବା ଛାଇ ଅଛି ।
କାହିଂ ଗନ୍ଧ ପେଡ଼ା ଅଛଇ ଉକୁଟି ॥
କାହିଂ ନବରତ୍ନେ ଖଞ୍ଜିଲା ଆୟେମାନ ।
କେବଣ ଠାବେ ଅଛି ବିଚିତ୍ର ବସନ ॥
କାହିଂ ନେତ ପାଟ ପଟନୀ ପେଡ଼ା ପେଡ଼ା ।
କାହିଂ ଶ୍ରୀକର୍ପୂର ପନୀର ପୁଡ଼ା ପୁଡ଼ା ॥
ତଇଳ ସମ୍ପାଦିଣ କାହିଂ କାଚର ଭାଣ୍ଡେ ଥୋଇ ।
କାହିଂ କସ୍ତୁରୀ ଅଛଇ କୁଡ଼କୁଡ଼ ହୋଇ ॥
କାହିଂ ଯୁଆଦ ଆମୋଦଇ ଗନ୍ଧପେଡ଼ି ।
କେବଣ ପୁର ଗୋଟା ଯତନେ ଅଛି ଗଢ଼ି ॥୫୦
କାହିଂ ଭୂମି ଶେଯ କାହିଂ ଖଟ ଦୋଳି ।
କାହିଂରେ ପଲଙ୍କ ପାଡ଼ିଲା ଅଛି ତୂଳୀ ॥
କାହିଂ ମଶହେରୀ କାହିଂ ରଙ୍ଗ ଟେରା ।
କାହିଂ ଚାନ୍ଦୁଆ କାହିଂ ଜଗତୀ ଫରହରା ॥
କାହିଂ ଶ୍ୱେତଚାମର ଦର୍ପଣ ପନ୍ତିପନ୍ତି ।
କେବଣ ଘରଗୋଟା କୁଙ୍କୁମେ ମଣ୍ଡିଛନ୍ତି ॥
କାହିଂ ହଡ଼ପ ସୁବର୍ଣ୍ଣ କାଠି ମାନ ।
କେବଣହିଂ ପୁର ଚିତ୍ର କସ୍ତୁରୀ ଲେଖନ ॥
କାହିଂ ଅଗ୍ରଧୂପ ଯୁଆଇଲା ଅଛି ।
କେବଣ ପୁର ଅଷ୍ଟରତ୍ନେ ଅଛି ରଞ୍ଚି ॥ ୬୦
ଦୀପ ଦିଉଡ଼ି ଯେ ନିରନ୍ତରେ ଜଳି ।
ଠାବେ ଠାବେ ଠଣା ଜଗିଛନ୍ତି ବାଳୀ ॥
ଦେଖି ହନୁମନ୍ତ ପରମ ସନ୍ତୋଷ ହୋଇ ।
ଧନ୍ୟ ଧନ୍ୟ ରାବଣ ବୋଲିଣ ବୋଲଇ ॥
ତୋହ ପରା ରାଜା ଅନୀତି କିମ୍ପା ଗଲୁ ।
ଶ୍ରୀରାମ ଘରଣୀ ସୀତ୍ୟାକୁ ଚୋରି କଲୁ ॥
ତେଣୁ ସେ ଏଡ଼େ ସମ୍ପଦ ଯିବ ନାଶ ।
ସ୍ୱାମୀ ଦୋରେହା ହୋଇଲୁ ବିଶ୍ରବାର ଶିଷ ॥
ଯେତେ ବୋଲି ହନୁ ବେଗେ ଚଳିଗଲା ।
ଅନ୍ତେସ୍ୱର ଭିତରେ ଯାଇଣ ପଶିଲା ॥୭୦
ଦେଖଇ ଯୁବତୀ ଅଛନ୍ତି ସର୍ବେ ଶୋଇ ।
ଅଲେଖ ତିଲେଖ ବିବିଧ ବେଶ ହୋଇ ॥
ଦାସୀ ପରିବାରୀ ଖଟିଛନ୍ତି ପାଶ ।
ଜଣେ ଜଣେ ନିରୋପଇ ଶ୍ରୀରାମର ଦାସ ॥
ଶଙ୍କୁନ୍ୟ ନ ପାଇଣ ତହୁଂ ବାହୁଡ଼ିଲା ।
ପୁଣିହିଂ ନବର ବେଢ଼ିଣ ଖୋଜିଲା ॥
ବାହାରେ ଉକାସି ପଢ଼ଇ ନିରନ୍ତର ।
ନବର ବେଢ଼ିଣ ବଜାଉଛନ୍ତି ତୂର ॥
ଭିତରେ ହନୁମନ୍ତ ଲୋଡ଼ଇ ପୁଣପୁଣି ।
ଶିଳୋକ ଲିହିଲା ଯେ ଅଛଇ ବିଂଶପାଣି ॥୮୦
ଧବଳଘର ପୁରେ ଗେରୁର ବଳିତା ।
ଆପଣେ ଲିହିଅଛି ନ ହରିବି ସୀତ୍ୟା ॥
ବିଷ୍ଣୁର ଘରଣୀ ଜନକକୁମାରୀ ।
ତାହାକୁ ହରି ଆଣିଲେ ଶ୍ରୀରାମ ମୋତେ ମାରି ॥
ଯଦ୍ୟପି ରଘୁନାଥ ମାରିବାକ ମୋତେ ।
ତଥାପି ସୀତ୍ୟାକୁ ନ ଦିଅଇ କଦାଚିତେ ॥
ଯେସନକ ବୋଲି ଶିଳୋକ ଲିହିଅଛି ।
ଦେଖିଣ ପଢ଼ଇ ପବନର ବଛି ॥
ସୁବର୍ଣ୍ଣର କାନ୍ଥେ କସ୍ତୁରୀ ଲେଖନ ।
ଆପଣେ ଲିହିଣ ଅଛଇ ଦଶାନନ ॥ ୯୦
ମଧୁସୂଦନ ଯେ ଅଟନ୍ତି ଶ୍ରୀରାମ ।
ଯେ ତାହାର ଘରଣୀକି ଚୋରାଇ ଆଣିମ ॥
ନିଶ୍ଚୟେ ମୃତ୍ୟୁ ପାଇବ ସେହୁ ପ୍ରାଣୀ ।
ଏକଥା ମୁଂ ଅଛି ତଥ୍ୟ କରି ଜାଣି ॥
ଶ୍ରୀରାମର ହସ୍ତେ ମରିବା ନିମନ୍ତେ ।
ତେଣୁ କରି ନ ଦିଅଇ ଜନକ ଦୁହିତେ ॥
ପଢ଼ି ହନୁମନ୍ତ ହସଇ ପୁଣପୁଣ ।
କାଚପୁରେ ଅଛି ଖଡ଼ିରେ ଲେଖନ ॥
ଶ୍ରୀରାମ ସଙ୍ଗେ ମୁହିଂ କରିବାକ ଯୁଦ୍ଧ ।
ଜିଣି ନ ପାରିବେ ମୋତେ ସୁରାସୁର ସିଦ୍ଧ ॥୧୦୦
ଯେ ତାହାର ଭାରିଯାକୁ ଆଣିମ ଚୋରାଇ ।
ନିଶ୍ଚୟେ ତାହାର ଜୀବନ ପାଇ ନାହିଂ ॥୧୦
ଏକଥା ଜାଣିଣ ଶରଧା ମୁହିଂ କଲି ।
ଜନେକର ନନ୍ଦନୀକି ଚୋରାଇ ଆଣିଲି ॥
ରଣ ଗୋଳ କରି ମାରିବେ ରଘୁନାଥ ।
ତେବେ ସେ ପାଇବି ମୁଂ ସାକ୍ଷାତ ସ୍ୱର୍ଗପନ୍ଥ ॥
ସକଳ ପୁରେ ଅଛି ଏସନେକ ଲେଖନ ।
ଆପଣେ ଲିହି ଯେ ଅଛଇ ଦଶାନନ ॥
ହନୁମନ୍ତ ତାହା ପଢ଼ିଣ ଆଶ୍ଚିଯ ହୋଇ ।
କେଣ୍ଣେ ଯେ ରାବଣର କିଛିହିଂ ଜ୍ଞାନ ନାହିଂ ॥
ଶ୍ରୀରାମ ବିଷ୍ଣୁ ବୋଲି ଜାଣିଲା ଲଙ୍କପତି ।
ଜାଣିକରି ହରି ଆଣିଲା ମହାସ୍ୟତୀ ॥
ଯେବେ ସେ ଭ୍ରାନ୍ତି ଫିଟିଲା ମୋହରି ।
ଦଶରଥ ତନୟେ ଅଟନ୍ତି ଚକ୍ରଧାରୀ ॥
ଏତେ ବୋଲି ତହୁଂ ଗଲାକ ମାରୁତି ।
ତୋଟା ପୁର ମଧ୍ୟେ ଲୋଡ଼ଇ ମହାସ୍ୟତୀ ॥
ଜାମ୍ବୁ ଜମ୍ବିଳ କଦଳୀ ନଡିକାଳ ।
ବେଲ ଅଏଂଳା ସୁନ୍ଦର ଗହଳ ॥
ପାଟେଳି ବଧୁକ ଶିମୁଳି ପାଳଧୁଆ ।
ତରାଟ ବକୁଳ ଲଣ୍ଡାବଗୁଲି କିଆ ॥ ୨୦
ବିବିଧ କୁସୁମ ଅଛି ତହିଂ ଫୁଟି ।
ମଧୁର ଲୁବୁଧେ ଭ୍ରମର ଏକଗୋଷ୍ଠୀ ॥
କୋକିଳ ଚଢ଼ାଇ ଯେ ଭାଷନ୍ତି ଘନଘନ ।
କି ଜାଣି ଇନ୍ଦ୍ରର ନନ୍ଦନ ବିପୁଣ୍ୟ ॥
ସୁବର୍ଣ୍ଣର ଚଉରା କର୍ପୂରର ଧୂଳି ।
ପନୀର ପାଣି ସେ ବୃକ୍ଷଙ୍କର ମୂଳେ ଢାଳି ॥
ଫୁଟନ୍ତି ଫଳନ୍ତି ପାଚନ୍ତି ଝଡ଼ନ୍ତି ।
ନାଗେଶର ଓଶୋକ ଡାଳିମ୍ବ ପନ୍ତିପନ୍ତି ॥

କେନ୍ଦୁ ପଣସ ଅୟେଂଳା ଆମ୍ବଗଛ ।
ତାଳ ପେଣ୍ଡି ଖଜୁରୀ ସଳପ ଦାରାକ୍ଷ ॥ ୩୦
ବୀରଭଦ୍ର ଅନୁପାମ ମନ୍ଦାର ତୁଳସୀ ।
ପୁନାଗ ଦୟେଣା କେତକୀ ଜଟାମାସୀ ॥
ନାଗେଶ୍ୱର ମଲ୍ଲୀ ଛୁରୀଅନା ଜାଈ ।
ଚମ୍ପେକ କୁରୁବେଲୀ କରୁଣା ଅଛଇ ॥
ବିବିଧ କୁସୁମମାନ ଅଛନ୍ତି ସେହୁ ବନ ।
ତହିଁ ଯାଇ ପ୍ରବେଶ ହୋଇଲା ହନୁମାନ ॥
ତୋଟାର ଭିତରେ ଅଛଇ ଦିବ୍ୟପୁର ।
ତିନି କୋଶ ଦୀର୍ଘ ଦୁଇକୋଶ ଓସାର ॥
ମାଣିକ୍ୟର ଖମ୍ବ ନୀଳାର ଗୁଅମାନ ।
ମର୍କତର ପୀଢ଼ ପୋୟୋଲା ଚାଳମାନ ॥୪୦
ପୁଷ୍ୟରାଗ ଶେଣୀ କୁବିନ୍ଦର ଚଉରା ।
ଗୁଞ୍ଜି ଚିତ୍ରପାଟି ବ୍ରହ୍ମଜାତି ହୀରା ॥
ନୀଳାର ଦ୍ରୋଣ ଯେ ଗଣ୍ଠିଅନା ବତା ।
ଗଣ୍ଠିକରି ବାନ୍ଧିଅଛି ପାଟସୂତା ॥
ସୁବର୍ଣ୍ଣର ଝିଙ୍କର ମୁକୁତାର ଚୂନ ।
ବାରଗୋଟି କଳସ ଅନୁଆନ ବର୍ଣ୍ଣ ॥
ନେତର ଚିରାଳ କାହିଁ ପାଟର ପାଟାଙ୍ଗ ।
ରଙ୍ଗ ଝିନପତନୀ ଉଡ଼ନ୍ତି ଏକ ଲାଗ ॥
ଚନ୍ଦ୍ରକିରଣ ଜାଣି ଚାନ୍ଦୁଆ ବିରାଜି ।
ନବରତ୍ନେ ଖଞ୍ଜିଅଛି ତାହା ସାଜି ॥ ୫୦
ମଧରେ ଚନ୍ଦନ କାଠର ପଲଙ୍କ ।
ଜାଣି ପଟାନ୍ତର ଶରଦ ଶଶାଙ୍କ ॥
ମାଣିକ୍ୟର ଖୁରା ମର୍କତର ପିଠୁଳୀ ।
ହାତୀଦାନ୍ତର ପଗଡ଼ ମୁକୁତା ମାଳିମାଳି ॥
ନୀଳାମଣି ଝରା ବଉଳାକାଠି ହୀରା ।
କି ଜାଣି ଗଗନେ ଉଦୟେ ଲକ୍ଷେ ତାରା ॥
ଶୁକଳପାଛୋଡ଼ି ଉପରେ ଶେଯାଇଲା ।
ବିବିଧ ପୁଷ୍ୟ ସିଞ୍ଚି ତହିଁ କର୍ପୂର ବିଞ୍ଚିଲା ॥
ତହିଁ ରାବଣେଶ୍ୱର ବୀର ବେଶ ହୋଇ ।
ମନ୍ଦୋଦରୀକି କୋଳେ ଘେନି ଅଛି
ଶୋଇ ॥୬୦
ଅନେକ ଯୁବତୀ ପାଶେ ଖଟିଛନ୍ତି ।
କେହୁ ଛୁରୀ ଖଣ୍ଡା କେହୁ ଆଲଟ ବିଞ୍ଚନ୍ତି ॥
କେହୁ ଶ୍ୱେତଚାମର ଢାଳନ୍ତି ବିଳାସୁଣୀ ।
ଦିଉଡ଼ି ଧରି ଉଭା କେବଣ ତରୁଣୀ ॥
କେ ପୁଷ୍ୟ ବିଞ୍ଚଣୀ କେ ଧରନ୍ତି ଧୂପକାଠି ।
ପାଦୁକାଧରି ଉଭା କେବଣ ବିମ୍ବୋଷ୍ଠୀ ॥
କେହୁ ହଡ଼ପ ଘେନିଣ ସଜ କରଇ ପାନ ।
ପରିଘ ଘେନିଣ ଉଭା କେବଣ ସ୍ତିରୀଜନ ॥
କେହୁ ବାସ ପାଣି ଝରିରେ ଘେନିଛନ୍ତି ।
କେହୁ ଦୀପମାନଙ୍କରେ ଅଭଙ୍ଗ ପାଡ଼ନ୍ତି ॥୭୦
କସ୍ତୁରୀ କଣେଅର କଞ୍ଚଣ କଇଥ ।
ବେଲ ଧାତ୍ରୀ ଅଗସ୍ତି ଯେ ମାଧବୀ ବନସ୍ତ ॥
ପାଟଳୀ ମଧୁକ ଶିମୁଳି ଯେ ପାଳଧୁଆ ।
ତରାଟ କୁରୁବେଲି ଯେ ରଙ୍ଗଣୀ କୁରୁଆ ॥
ନାନାରତ୍ନେ ଚାମର ଉଡ଼ନ୍ତି ଚଉପାଶ ।
ନେତପାଟ ପାଟାଙ୍ଗ ଦେବାଙ୍ଗ ଦିବ୍ୟବାସ ॥
କେହୁ ଦର୍ପଣ କେହୁ କୁସୁମ ଗୁନ୍ଥନ୍ତି ।
ଯେସନକେ ନାରୀଯେ ସେବା କରୁଛନ୍ତି ॥
କେ ଯନ୍ତ୍ର ବଜାଇ ଗାବନ୍ତି ସୁସର ।
କେହୁ ବାଉଁସୀ ବଜାନ୍ତି ଧୀର ଧୀର ॥୮୦
କେହୁ ମଢ଼ିଆଳ ଗନ୍ତା ଭାଙ୍ଗି ଥୋଇ ।
କେହୁ ଅବା ଆଜ୍ଞା ଶୁଣିତ ଆଗେ ଉଭା
ହୋଇ ॥
କେହୁ ଆଳାପ କରି ଗୀତ ଗାଇ ।
କେହୁ ଗୁଣ୍ଡ କେରୀ ରାଗେଣ ବୀଣା ବାଇ ॥
କେହୁ ଶାରୀ ଶୁଆନ୍ତ ପଢ଼ାନ୍ତି ଶାସ୍ତ୍ରମାନ ।
କେବଣ ନାରୀ ନିଦେ ଅଚେତନ ॥
କେ ଟେରା ବାଡ଼ ପାଡ଼ିଣ ଶୋଇଛନ୍ତି ମାଡ଼ି ।
କେହୁ ପାନପିକ ପକାଉଛନ୍ତି କାଢ଼ି ॥
କେ ପାଦ ମଟାଳି ଫୁଟାନ୍ତି ଅଙ୍ଗୁଷ୍ଠି ।
କେ ପଛ ଘୁଞ୍ଚି ଆସଇ ନ ଦେଖାଇ
ପିଠି ॥୯୦
ତିନିକୋଟି ପଞ୍ଚାଶଲକ୍ଷ ଅଛନ୍ତି ଯୁବତୀ ।
ଯେ ଯାହା ଅନୁରୂପେ ସେବା କରୁଛନ୍ତି ॥
ହନୁମନ୍ତ ପ୍ରବେଶ ହୋଇଲା ତହିଁ ଯାଇ ।
ଭିତରକୁ ପଶିଲା ଖୁପ ରୂପ ହୋଇ ॥
ଖମ୍ବର ଉପରେ ବସିଲା ମାରୁତି ।
ଦେଖିଲା ପଲଙ୍କେ ଶୋଇଅଛଇ ଲଙ୍କପତି ॥
ମନ୍ଦୋଦରୀ ରାଣୀ ରାଜାର କୋଳେ ଅଛି ।
ବିଷାଦ ହୋଇଲା ହନୁମନ୍ତ ଦେଖି ॥
ମନେ ବିଚାରଇ ଏ ଅଟଇ ବଇଦେହୀ ।
ଜନେକର ନନ୍ଦିନୀ ଶ୍ରୀରାମ ନାରୀ
ଏହି ॥୧୦୦
ଶ୍ରୀରାମଙ୍କୁ ଯାଇଂ ମୁଂ କହିବି ବାରତା ।
ରାବଣକୁ ଦେହ ଦେଲା ତୋହର ସୀତ୍ୟା ॥
ଚାଣ୍ଡାଳ ଯୁବତୀ ଏ ଅଟଇ ଅଗିଆନ ।
ଶ୍ରୀରାମର ଆଶ ଛାଡ଼ିଲା ଯେହାର ମନ ॥
ରାବଣ ତୁଲେ ଯହୁଂ ଏଡ଼େକ ପୀରତି ।
ପୋତୁ ଯେ କେମନ୍ତେ ବୋଲାଇ
ମହାସ୍ୟତୀ ॥
ଜଗତ ମୁଖେ ଯାହାକଇ ବୋଲନ୍ତି
କମଳିଣୀ ।
ଏଡ଼େଯଶ ଛାଡ଼ି ହୋଇଲା ଦୋଷଗୁଣୀ ॥
ମାରିବି ରାବଣ ସୀତ୍ୟା ବେନିଜନ ।
ଯେତେ ବୋଲି ଭ୍ରମର ହୋଇଲା
ହନୁମାନ ॥୧୦
ମନ୍ଦୋଦରୀ ନିକଟକୁ ଗଲା ବୀର ଯହୁଂ ।
ମଦିରା ବାସଗନ୍ଧ ଗନ୍ଧାଇଲା ତହୁଂ ॥
ଯେହୁ ସୀତ୍ୟା ନୋହଇ ବୋଲିଣ
ବାହୁଡ଼ିଲା ।
ହୃଦରେ ବଚାରିଣ ଭ୍ରାନ୍ତି ସେ ଛାଡ଼ିଲା ॥
ଓରାର ଉପରେ ସେ ବସିଲାକ ଯାଇ ।
ଭାଳଇ ହନୁମନ୍ତ ବିସ୍ମୟେ ମୁଖ ହୋଇ ॥
କାହିଁ ଲୁଚାଇଲା ଶ୍ରୀରାମର ନାରୀ ।
ଅନେକ ପ୍ରକାରେ ଲୋଡ଼ିଲି ଯତ୍ନ କରି ॥
କେମନ୍ତେ ଭେଟିବଇଂ ସୀତ୍ୟା ଅଛି କାହିଁ ।
କି ଅବା ଜାନେକୀ ମଲା ବିଷ ଖାଇ ॥୨୦
କି ଅବା ରାବଣକୁ ନ ଦେଲାକ ଅଙ୍ଗ ।
ତେଣୁ କରି ଅସୁର ମନେ କଲା ଖଙ୍ଗ ॥

ଓପ୍ରୋଧ ଛାଡ଼ି ଅବା ପକାଇଲା ମାରି ।
ନୋହିଲେ ଦେଖନ୍ତିନା ଜନକକୁମାରୀ ॥
କି ଅବା ରାବଣ ହରି ଆଣିବାବେଳେ
ସୀତ୍ୟା ।
ଗାଢ଼େଣ କୋଳ କରନ୍ତେ ମଲା
ଜନକଦୁହିତା ॥
କି ଅବା ଜାନେକୀ ପଡ଼ିଲା ସିନ୍ଧୁଜଳେ ।
ଯେତେ ବୋଲି ଭାଳଇ ପବନ ଦୁଲାଳେ ॥
ସୀତ୍ୟା ନ ଦେଖିଣ ଯେବେ ବାହୁଡ଼ିଣ
ଯିବି ।
ଦୂତଙ୍କର ଆଗେ କି ବୋଲି କହିବି ॥ ୩୦
ଶୁଣିଣ ପ୍ରାଣ ହରିବେ ବୀରସାତ ।
ବାରତା ନ ପାଇଣ ମରିବେ ଶ୍ରୀରାମ
ନିଅତ ॥
ଶ୍ରୀରାମ ନିଧନେ ତ ଲକ୍ଷ୍ମଣ ନାଶ ଯିବ ।
ଆବର ସୁଗ୍ରୀବର କି ପ୍ରାଣ ଧରିଥିବ ॥
ଅଯୋଧ୍ୟା ଇସିକିନ୍ଧା ଦୁଇ ନାଶ ଗଲା ।
ଚାଣ୍ଡାଳ ରାବଣ କିମ୍ପା ଏମନ୍ତ ବୁଦ୍ଧି କଲା ॥
ଏତେ ବୋଲି ପୁରୁ ଯେ ହୋଇଲା
ବାହାର ।
ପୁଣ ନଗ୍ରେ ବୁଲଇ ପବନକୁମାର ॥
ହାତୀଶାଳ ଘୋଡ଼ାଶାଳ ଓଟଶାଳମାନ ।
ଗୁପତେ ପ୍ରଘଟେ ଯେ ବୁଲଇ ଥାନେ
ଥାନ ॥୪୦
ନଗ୍ର ବାହାରେଣ ଦେଖିଲା ଯେକ ତୋଟା ।
ମନେମନେ ବିଚ୍ଛର କରଇ ପବନର
ବେଟା ॥
ଓଶେକ ବିପୁନ୍ୟ ଏଥେ ଦେଖିବଇଁ ଯାଇ ।
ଏଥି ନ ଥିଲେ ସୀତ୍ୟା ନିଶ୍ଚେ କାହିଁ
ନାହିଁ ॥
ସୀତ୍ୟାକୁ ନ ଦେଖି ମୁଁ ନ ଯିବଇଁ ବାହୁଡ଼ି ।
ପ୍ରାଣ ହାରିବି ମୁଁ ସମୋଦ୍ରେଣ ପଡ଼ି ॥
ଭୋ ଓଶେକ ବନ ବୋଲଇ ମୁହିଁ
ତୋତେ ।
ସୀତ୍ୟା ଦେଖାଇ ଶୋକ ଖଣ୍ଡସି ତୁରିତେ ॥
ତୁ ଯେ ଓଶୋକ ଶୋକ ମୋତେ ନୋହୁ ।
କେମନ୍ତେ ଦେଖିବି ମୁଁ ଦଶରଥର
ବହୂ ॥୫୦
ଏତେ ଭାଳି ବୀର ତହୁଁ ଚଳିଗଲା ।
ଓଶୋକ ବିପୁନ୍ୟେ ସେ ପ୍ରବେଶ ହୋଇଲା ॥
ଦେଖିଲା ବନସ୍ତ ଯେ ଅତିୟ ଚାରୁ ଶୋଭା ।
ଧୀର ପବନ ବହଇ ନାହିଁ ସୂର୍ଯ୍ୟ ପ୍ରଭା ॥
ଫଳନ୍ତି ଫୁଟନ୍ତି ପାଚନ୍ତି ତରୁମାନ ।
ସର୍ବଦା ବସନ୍ତ ବହଇ ସେହୁ ସ୍ଥାନ ॥
ଶୁକ ପିକ ଶାରୀ କ୍ରୀଡ଼ାରେ ଉନ୍ମତ ।
ବାବୁ ସେ ବନସ୍ତ ନନ୍ଦନ ସଂଜାତ ॥
ତୋଟାର ଭିତରେ ପୋଖରୀଏ ଅଛି ।
କ୍ରୀଡ଼ା କରୁଛନ୍ତି ବିବିଧ ବନେପକ୍ଷୀ ॥ ୬୦
ପଦ୍ମ କୁମୁଦ ଯେ ଫୁଟନ୍ତି ନିରନ୍ତର ।
ମର୍କତର ପାବଚ୍ଛ ବାନ୍ଧିଲା ଚଉକତିର ॥
ମଧ୍ୟେ ସୁବର୍ଣ୍ଣର ଅଛଇ ଦୀପଦଣ୍ଡି ।
ଆଦିହୁଁ ଗଢ଼ିଛି ତାହା ନବରତ୍ନେ ମଣ୍ଡି ॥
ଶଉଚ ନିର୍ମଳ ସେ ପବିତ୍ର ଜଳ ପାଣି ।
ଦଳ ପଙ୍କ ବୋଲି ତହିଁ କିଛିହିଁ ନ ଜାଣି ॥
ହଂସ ଚକ୍ରବାକ ଡାହୁକ ହଂସରାଜି ।
ପଦ୍ମ ମକରନ୍ଦେ ଭ୍ରମର କରେ କେଳି ॥
ପୁଷ୍କରିଣୀ ଦେଖି ପ୍ରଶଂସା କରଇ ମାରୁତି ।
ଧନ୍ୟ ଧନ୍ୟ ମହିମା ତୋର ପୌଲସ୍ତିର
ନାତି ॥୭୦
ସକଳ ଭୁବନେଣ ଯେତେକ ସାର ଆୟେ ।
ଏ ତୋହୋର କଟକେ ଅଛଇ ଲଙ୍କରାୟେ ॥
ଏତେ ବୋଲି ତହୁଁ ଭିତରକୁ ଗଲା ।
ଏକ ନଦୀୟେକ ବହନ୍ତେ ଦେଖିଲା ॥
ଥୋକାୟେକ ଦୂରୁ ଗଲା ତହୁଁ ଚଳି ।
ଦେଖିଲାକ ତହିଁ ବସି ଅଛଇ ମହୀସ୍ଥଳୀ ॥
ସୁବର୍ଣ୍ଣର ମଣ୍ଡୋପ ନବରତ୍ନ ମୟେ ।
ସହସ୍ରେକ ଅସୁରୀ ବେଢ଼ି ବସିଥାଏ ॥
ମଧରେ ଜାନେକୀ ସମ୍ପୂର୍ଣ୍ଣ ଚନ୍ଦ୍ର ଜାଣି ।
ଦେଖି ବିଚ୍ଛରଇ କପି କୁଳମଣି ॥ ୮୦
ଯେ ସେ ବଇଦେହୀ ଶ୍ରୀରାମର ନାରୀ ।
ସ୍ୱୟେଂ କମଳିଣୀ ଅଛି ଅବତରି ॥
ଯେତେରୂପ ଗୁଣ ମୋତେ କହିଥିଲେ
ରାମ ।
ତହୁଁ ଶତେଗୁଣ ଅଟଇ ଅନୁପାମ ॥
ତୈଲୋକ୍ୟମୋହିନୀ ଯେ ଜନେକର
ଦୋହିତା ।
ଅନେକ ଯତନେ ଯେହାକୁ ଜାତକଲା
ଧାତା ॥
ମୁହିଁ ଚାଣ୍ଡାଳ ଯେ କିଛି ହିଂ ନ ଜାଣଇ ।
ଅସୁରୀକି ଦେଖି ଜାନକୀ ପ୍ରାୟେ ମଣଇ ॥
ନୋହିଲେକି ବିହି ମୋତେ ପଶୁଜନ୍ମ
କଲା ।
ଏ ମୋହୋର ଜୀବନ ମଲେହେଂ ହୋନ୍ତା
ଭଲା ॥୯୦
ଯେବେଣ ତୁଣ୍ଡରେ ମୁଁ ସୀତ୍ୟାକୁ ନିନ୍ଦା କଲି ।
ରାବଣ କୋଳେ ଅଛି ବୋଲିଣ ବୋଇଲି ॥
ସେ ତୁଣ୍ଡରେ ମୋହର ପଶଇ କିମ୍ପା ଯୋଇ ।
ଏଥିର ଫଳେଟି ମହାପାପୀ ହୋଇ ॥
ସୁବର୍ଣ୍ଣର କୃପକୁ ଯେ ପଢ଼ିହାସ୍ୟ କଲି ।
ଅମୃତରସେ ନେଇ ମଦିରା ମିଶାଇଲି ॥
ପାଟସୂତା ସଙ୍ଗେ ମିଶାଇଲି ପଟ ।
ଦେବତା ବ୍ରାହ୍ମଣକୁ ସମାନ୍ୟ କଲି ନଟ ॥
ଗୁଞ୍ଜ ମାଣିକ ଯେ ମଣିଲି ଯେକା ସିନା ।
ରୂପା ସଙ୍ଗେ ସୀସା ମିଶାଇଲି ନିନା ॥୧୦୦
ଲବଣ କର୍ପୂର କଲଇ ଯେକ ସମ ।
ବ୍ରହ୍ମଜାତି ହୀରା ସଟିକ ସଙ୍ଗେ କମ ॥
କାଚମାଣିକ ଯେ କଲଇ ଏକରାଶି ।
ଗରଗଡ଼ ସାଙ୍ଗେ ମୁକୁତା ମିଶାମିଶି ॥
ଜଳପତରୁକୁ ଖଜୁରୀ କଲି ସମ ।
ପଇଡ଼ ଗଛକୁ ଦେଲି ସଉପ ଉପାମ ॥
କଦଳୀ ଅରଖ ଫଳ ସମ କଲି ।
କୋଚିଲାଫଳ ଯେ କେନ୍ଦୁବୋଲି ଖାଇଲି ॥

ତେଜି ଅଶ୍ୱସଙ୍ଗେ ଗଧକୁ କଲି ତୁଳ ।
ସେବତୀ ପୁଷ୍ପ ସଙ୍ଗେ ଗୁଚ୍ଛିଲି
ଲାଉଫୁଲ ॥୧୦
କିଆଫୁଲ ଖାଇ ପଣ୍ଡୁସ ପାଶୋରିଲି ।
କୁଳସ୍ତିରୀ ଛାଡ଼ି ବେଶ୍ୟାଘର ଗଲି ॥
କୂପର ପାଣିରେ ମିଶାଇଲି ପଙ୍କ ଜଳ ।
ଆମ୍ବ ଲେଞ୍ଛି ଖାଇଲି ମାହାକାଳ ଫଳ ॥
ପାନ ପାଲଟାଇ ଆଳୁପତ୍ର ଆଣଇ ।
ଗୋରୁଙ୍କର ତୁଳେ ଘୁଷୁରୀ ଗଣଇ ॥
କାଶୀପୁର ତେଜି ମେଳକ୍ଷ ଦେଶ ଗଲି ।
ସୀତ୍ୟାଙ୍କୁ ମନ୍ଦୋଦରୀ ସଙ୍ଗେ ତୁଳ କଲି ॥
ପୋଡୁ ମୋହର ଜୀବନ ପୋଡୁ ମୋହର
ତୁଣ୍ଡ ।
ରାଗେଣ ଗାଲେ ହନୁ କ୍ଷିନାଇ ଖଣ୍ଡ
ଖଣ୍ଡ ॥୨୦
ସେ ମହାସ୍ୟତୀ ଶ୍ରୀରାମର ରାଣୀ ।
ଅନନ୍ତ କୋଟି ଭଣ୍ଡାରର ଅଟଇ ଠାକୁରାଣୀ ॥
ପବିତ୍ର ନିର୍ମଳ ଯେ ଶୁଦ୍ଧ ଏହାର କାୟେ ।
ନୋହିଲେ କି ଶ୍ରୀରାମ ପରାୟେ ପତି
ପାୟେ ॥
ଏସନକ ଭାଳି ପବନ କୁମାର ।
ମାୟାରୂପ ଧରି ହୋଇଲା ଭ୍ରମର ॥
ସୀତ୍ୟାର ସନ୍ନିଧ୍ୟକୁ ବୋଲି ଉଡ଼ିଗଲା ।
ନନ୍ଦାବ୍ରତେକ ଓରା ଉପରେ ବସିଲା ॥
ଗୁପତ ପ୍ରଘଟେ ଯେ ଖୋଜଇ ପୁଣପୁଣି ।
ଏମନ୍ତ ସମୟେ ଯେ ଅଇଲା
ବିଂଶପାଣି ॥୩୦
ଜହ୍ନ ବୁଡ଼ି ନିଶି ହୋଇଲା ପାହାନ୍ତି ।
ଘଡ଼ି ତିନି ଅଛି ବହୁତ ନାହିଁ ରାତି ॥
ସେଦିନ ଚଇତ ଶୁକଳ ଅଷ୍ଟମୀ ।
ମାହାସିନ୍ଧୁ ଜିଣି ହନୁ ଅଇଲା ବିକ୍ରମି ॥
ରାତ୍ରେଣ ବୁଲିଣ ସୀତ୍ୟାଙ୍କୁ ଠାବ କଲା ।
ବାରତା ରାବଣଙ୍କୁ ଲଙ୍କ ଦେବତୀ କହିଲା ॥
ନିଜ ମନ୍ଦିରେ ଯେ ଶୋଇଥିଲା ଲଙ୍କପତି ।
ସପନେ କହିଲା ତାକୁ ଲଙ୍କର ଦେବତୀ ॥
ଶ୍ରୀରାମର ଦୂତ ବାନର ରୂପ ଧରି ।
ପ୍ରବେଶ ହୋଇଲା ଯେ ତୋହର
ଲଙ୍କପୁରୀ ॥୪୦
ଶୁଣିଣ ରାବଣେଶ୍ୱର ଉଠିଲା ତଡ଼ତି ।
ପଲଙ୍କେ ବସିଲା ଯେ ବିସ୍ମୟ ମଣି ମତି ॥
ପୁଣି ବିଚାରଇ ଏ ଅଟଇ ସପନ ।
ଜାନେକୀର ତହିଁ ଥାଇ ମୋର ମନ ॥
ତେଣୁ ସେ ନିଦ୍ରାରେ ପ୍ରକୃତି ବକିଲା ।
ଯେତେ ବୋଲି ରାବଣ ପୁଣିହିଁ ଶୋଇଲା ॥
ନିଦ୍ରା ନ ମାଡ଼ଇ ଛନ ଛନ ମନ ।
ଭାଳଇ କିମ୍ପା ମୁଁ ଦେଖିଲ ସପନ ॥
ଦଶମାସ ହୋଇଲା ଆଣିଲି ସୀତ୍ୟା ହରି ।
ତାହାକୁ ତ ଭୋଗ୍ୟ ନ ପାରିଲି କରି ॥ ୫୦
ସଂସାର ମାୟା ଏ ଜୀବନ ଅସାର ।
ଏତେ ବୋଲି ବିମାନ ଆରୋହିଲା
ଦଶଶିର ॥
ମନ୍ଦୋଦରୀ ରାଣୀକି ବୋଇଲାକ ରାଇ ।
ନଗ୍ର ଭ୍ରମିଣ ଆମ୍ଭେ କରିଆସୁ ଯାଇ ॥
ଏତେ ବୋଲି ଓଶୋକ ବିପୁନ୍ୟକୁ ଗଲା ।
ଯହିଁ ଅଛି ଜାନେକୀ ସନ୍ନିଧେ ମିଳିଲା ॥
ବିବାନୁ ଓହ୍ଲାଇଣ ଗଲା ତାର କତି ।
ଦେଖିଣ ଶିର ଯେ ନୁଆଁଇଲା ସ୍ୟତୀ ॥
ହନୁମନ୍ତ ଅଛଇ ଭ୍ରମର ରୂପ ଧରି ।
ମନେ ବିଚାରଇ ଯେ ଅଟଇ
ଦଶଶିରୀ ॥୬୦
ସୀତ୍ୟାଙ୍କର ଭାବ ଅଭାବ କଥା ମାନ ।
ଯେହିକ୍ଷଣି ଜାଣିବି ଯାବତ ବିଧାନ ॥
ଏତେ ବୋଲି ହନୁ ଅଛଇ ଗୁପତେ ।
ରାବଣ ବୋଇଲା ଶୁଣରେ ଜନକ
ଦୋହିତେ ॥
ଅନେକ ଆଶେ ଆଣିଲି ତୋତେ ମୁଇଁ ।
ତୁ କିମ୍ପାଇଁ ମୋତେ ନ ଦେଉ ଅଙ୍ଗ ଛୁଇଁ ॥
ସପତ ଦୀପେ ମୁଁ ଅଟଇ ରାଜ୍ୟେଶ୍ୱର ।
ତୋହର ମନକୁ ମୁଁ ନ ଯୋଗାଇଲି ବର ॥
କିମ୍ପାଇଁ ନିରାଶ କରୁ ଗୋ ସଖୀ ମୋତେ ।
କାମଦେବ ପୀଡ଼ା କି ନ କରଇ
ତୋତେ ॥୭୦
ଏବେ ତୁ ସୁନ୍ଦରୀରେ ମୋତେ ଭୋଗ୍ୟ
କର ।
ମୋହର ସପତ ମନେ କିଛିହିଁ ନ ବିଚାର ॥
ମୁଇଁ ତୋତେ ଭାବେ ଭଜିଲି ଗୋ ସଖି ।
ଯେ ତୋହର ସୁନ୍ଦର ଯୁବା ରୂପ ଦେଖି ॥
ସୁରଙ୍ଗ ଅଧରେ ମୋତେ ଚୁମ୍ବନ ଦେସି ।
ବାହୁ ମୃଣାଳେ ଘେନି ଗାଢ଼େଣ ଭିଡ଼ସି ॥
ମୁଇଁ ତୋତେ ସୁନ୍ଦରୀରେ ହୋଇଲଇଁ
ବଶ୍ୟ ।
ହସି କଥା କହ କତିକି ମୋର ଆଶ ॥
ଯେତେ ରାଣୀହଂସ ଅଛନ୍ତି ମୋହର ।
ସେ ହାଦେ ଆଜ୍ଞା ଗୋ ନ ଲଂଘିବେ
ତୋହର ॥୮୦
ମନ୍ଦୋଦରୀ ରାଣୀ ତୋତେ ସେବା
କରୁଥିବ ।
ତୁ ଯାହା ବୋଲିବୁ ସେ କଥା କରିବ ॥
ଏ ଲଙ୍କା କଟକରେ ଯେତେକ
ନରନାରୀ ।
ସଭିଏଂ ହୋଇବେ ସେ ସେବକ ତୋହରି ॥
ଆସ ଆସ ସଖି ସୁରତି ମୋତେ ଦେସି ।
ଶୁଣିଣ ଜାନେକୀ ଯେ ପଛ ଗୁଞ୍ଜୁ ବସି ॥
ବୋଇଲେ ଚାଣ୍ଡାଳରେ ଅଟୁସି ପାପିଷ୍ଟ ।
ଯେତେ କଥା କହୁ ସବୁ ତୋର ନଷ୍ଟ ॥
ପରର ଯୁବତୀ ହରିବୁ କିସ ପାଇଂ ।
କି ତୋହର ଧର୍ମଶାସ୍ତ୍ର ଶୁଣିଲାକ ନାହିଁ ॥୯୦
ରଷିର ପୁତ୍ର ହୋଇ ତୁ ଅସୁର ହୋଇଲୁ ।
ପୂର୍ବର ଭାଗ୍ୟ ଥିଲା ତୁ ଏତେ ଭୋଗ୍ୟକଲୁ ॥
ଏ କର୍ମଭୂମିରେ ବାବୁ ଯେତେ ପାପ ଅର୍ଜି ।
ଶତେ କୋଟି କଳ୍ପେ ତାହା ସେ
ଭୋଗ୍ୟଭୁଞ୍ଜି ॥

ମାହାରାଜା ହୋଇ ତୁ ନ ଜାଣୁ ଏମାନ ।
ଶୁଣିଣ କୋପକଲା ରାଜା ଦଶାନନ ॥
କରେ ଖଡ଼ଗ ଧରି ଉଠିଲାକ ଧାତି ।
ବୋଇଲା ତୁ ମୋହର ଶତ୍ରୁର ଯୁବତୀ ॥
ଶିର ଛେଦିଣ ତୋହର କରିବି ପ୍ରାଣନାଶ ।
ନାଗୁ ପଛେ ମୋତେ ସ୍ତିରୀହତ୍ୟା ଦୋଷ ॥
ଏସନକ ବୋଲି ଯେ ଆସଇ କୋପକରି ।
ତ୍ରିଜଟା ଗୁହାଇଲା ଚରଣ ଦୁଇ ଧରି ॥
ଭୋ ଦେବ ରାବଣ ବୀର ଚକ୍ରବର୍ତ୍ତୀ ।
ସ୍ୱର୍ଗମଞ୍ଚ ପାତାଳେ ତୁ ଅଟୁ ଅଧିପତି ॥
ସ୍ତିରୀ ନିଲକ୍ଷଣ ପ୍ରାଣବୁଦ୍ଧି ହୀନ ।
ଏହାକୁ କୋପ କିମ୍ପା କରୁ ଦଶାନନ ॥
ତୋହର ମାଇଲେ ଏହାକୁ କେ କରିବାକ ରକ୍ଷା ।
ମୋହର ବୋଲ କର ନକର ଭୋକ ଇଚ୍ଛା ॥
ଏବେ ତୁ ବାହୁଡ଼ି ଯାସି ନିଜପୁର ।
ଶୁଣିଣ କୋପେ ଯେ ବୋଲଇ ଦଶଶିର ॥୧୦
ଶ୍ରୀରାମ ଲକ୍ଷଣ ଦେଖାଉ ମୋତେ ଆଣି ।
ନୋହିଲେଣ ମୁଣ୍ଡ ପକାଇବି ହାଣି ॥
ଦୁଇମାସ ଯାଏ ଆକୁ କଷ୍ଟ କରିଥିବୁ ।
ଦେଖାଇ ନ ପାରିଲେ ମୋହର ଘରଣୀ ହୋଇବୁ ॥
ଏତେ ବୋଲି ଉଭା ହୋଇଲା ଦଶଶିରି ।
ସହସ୍ରେ ଅସୁରୀଙ୍କି ରାଇଣ ଟିଆରି ॥
ତ୍ରିଜଟାକୁ ସମସ୍ୟା ଗୁପତେଣ କହି ।
ଯେମନ୍ତେଣେ ଜାନେକୀ ମୋତେ ବଶ୍ୟ ହୋଇ ॥
ତେର୍ଣ୍ଣେ କରି ମୋତେ ଭିଆଇ ଦେବ ତାହା ।
ମୁଇଂ ଆଣିଦେବୀ ମାଗିବ ଯାହା ଯାହା ॥୨୦
ତୁମ୍ଭେ ମୋର ବିଶ୍ୱାସ ଅଟ ପରମହିତ ।
ଯେମନ୍ତେ ଜାନେକୀର ବଳଇ ମୋତେ ଚିତ୍ତ ॥

ଉପାୟ କଥାମାନ ଦେଖାଇ କହିବ ।
ଯେ ଲଙ୍କାଗଡ଼େ ସେ ଠକୁରାଣୀ ହୋଇବ ॥
ଧନଭଣ୍ଡାର ସେ ବିଳସିବ ସୁଖେ ।
ଭଲଦିନ କଥା ନେଉଅଛି ଦୁଃଖେ ॥
ଏହା ଯେବେ ମୋତେ ଭିଆଇ ଦେଇପାର ।
ଭଣ୍ଡାରୁ ତୁମ୍ଭଙ୍କୁ ଧନ ଦେବଇଂ ଅପାର ॥
ଯେତେ ଡିଆରିଣ ଆସଇ ଲଙ୍କପତି ।
ନିଜପୁରେ ପ୍ରବେଶ ହୋଇଲା ଘଡ଼ିଏ ଅଛି ରାତି ॥୩୦
ଦେବତାଙ୍କ ଆଳେ ଯେ ଶୁଭଇ ଶଙ୍ଖଧ୍ୱନି ।
ସୁସରେ ଗୀତ ଯେ ଗାବନ୍ତି ନଗରକାମିନୀ ॥
ନଗ୍ର ଲୋକମାନେ ହୋଇଲେ ଉଚ୍ଚାଟ ।
ଯେ ଯାହାର ଦ୍ୱାର ସେ ଫେଡ଼ିଲେ କବାଟ ॥
କୁଳବଧୂମାନେ ସେ ଶେଯ୍ୟାରୁ ଉଠନ୍ତି ।
ଗୃହ କର୍ମ ବିଧାନ ସମସ୍ତ ସାରନ୍ତି ॥
ଏସନକ ସମୟେ ବ୍ରହ୍ମା ବୃହସ୍ପତି ।
ନାରଦ ବାସେବ ଯାଇ ଲଙ୍କାରେ ମିଳନ୍ତି ॥
ସିଂଘଦ୍ୱାରେ ଯାଇ ହୋଇଲେ ପ୍ରବେଶ ।
ବ୍ରହ୍ମା ଚାରି ବେଦ କରଇ ଅଭ୍ୟାସ ॥ ୪୦
ଦ୍ୱାରପାଳ ବୋଇଲା ବିଧାତାକୁ ଚାହିଁ ।
ସମୟ ନ ଜାଣି ଦେବ ପଢୁଛୁ କାହିଁ ପାଇଂ ॥
ତୁନି ହୋଇଣ ଯେବେ ବସିଣ ତୁହିଁ ଥାଅ ।
ବାହାର ଅବକାଶେ ପଛେ ଛାମୁରେ ଜଣାଅ ॥
ସପତାଙ୍ଗ ପାଞ୍ଜି କହନ୍ତି ଦେବଗୁରୁ ।
ତାହାକୁ ବୋଇଲା ତୁ କିମ୍ପାଇଂ ଏହା ପଢୁ ॥
କିମ୍ପା ହୋ ନାରଦ ତୁ ବୀଣା ଧରିଥାଉ ।
ମୋହର ବଚନେ ତୁ ବଳ କ୍ଷିତ ନ ପାଉ ॥
ଟିମ୍ବୁରକୁ ବାଅ ଅଳପ ଅଳପ କରି ।
ସଧୀରେ ସଧୀରେ କରସି ତାଳ ଧରି ॥୫୦
ଇନ୍ଦ୍ରସଭା ପ୍ରାୟେ ନ ମଣସି ଯେହା ।
ଏ ବଚନ ଶୁଣି ବୋଲଇ ଅଷ୍ଟବାହା ॥
କିମ୍ପା ହୋ ଦ୍ୱାରପାଳ ବୋଇଲୁ ଏ ବାଣୀ ।
କି ତୋତେ ଆଜ୍ଞା ଦେଇଅଛଇ ବିଂଶପାଣି ॥

ନଇଲେ କୋପ କରିଣ ଯେହା କହ ।
ଯହୁଂ ସେ ଦନୁଜ ତେଣୁ ଗର୍ବ ବହ ॥
ଦ୍ୱାରପାଳ ବୋଇଲା ଶୁଣ ବେଦପତି ।
ରାବଣ ଯେ ହରିଆଣି ଅଛଇ ମାହାସ୍ୟତୀ ॥
ବଶ ନୋହିଲା ସେ ଅଟଇ ତୀକ୍ଷଭାଳ ।
ତେଣୁ କରି ବଥା ପାଇଲା ଲଙ୍କମଲ ॥୬୦
ହୃଦେଣ ଫୁଟି ସେ ବଥା କରୁଅଛି ।
ତେଣୁ ସେ ଅସୁସ୍ଥ ହୋଇଲା ବିଶ୍ରବାର ବଛି ॥
ଓଶେକ ବିପୁନ୍ୟକୁ ଆଜ ଯାଇଥିଲା ।
ନିରାଶ ବଚନ ତହୁଂ ପାଇଣ ଅଇଲା ॥
କେବେହେଂ ଜାନେକୀ ନୋହିଲା ତାକୁ ବଶ୍ୟ ।
ତେଣୁ ଲଙ୍କରାଏ ମନରେ ବିରସ ॥
ଦ୍ୱାରପାଳ ମୁଖୁଂ ଏସନେକ ବାକ୍ୟ ବାଣୀ ।
ଶୁଣିଣ ସନ୍ତୋଷ ଯେ ହୋଇଲା କୁଶପାଣି ॥
ତୁନି ହୋଇଣ ସେ ବସିଲେ ସିଂଘଦ୍ୱାରେ ।
ଶୁଣିମା କାହାଣୀ ହୋ ଏଥୁ ଅନନ୍ତରେ ॥୭୦
ଓଶେକ ବିପୁନ୍ୟେ ଯେ ଅଛନ୍ତି ଦେବୀସ୍ୟତୀ ।
କୋପକରି ବାହୁଡ଼ି ଅଇଲା ଲଙ୍କପତି ॥
ଆସିବାର ବେଳେ ଯେ ଅସୁରୀନ୍ତ ରାଇ ।
ବହୁତ ଟିଆରିଲା ଯେ ମନ୍ଦୋଦରୀ ସାଇଂ ॥
ବୋଇଲା ସୀତ୍ୟାର ଯେହ୍ନେଁ ବଳଇ ମୋହରେ ମତି ।
ତେର୍ଣ୍ଣେ କରି କାର୍ଯ୍ୟ ନିର୍ଭା କରହ ତଡ଼ତି ॥
ଏତେ ବୋଲିଣ ରବଣ ଅନ୍ତଃପୁର ଗଲା ।
ଏକଥାମାନ ସବୁ ହନୁମନ୍ତ ଶୁଣୁଥିଲା ॥
ଓରାର ଉପରେ ଭ୍ରମର ରୂପ ଧରି ।
ବସିଅଛି ମାରୁତି ଶ୍ୟରୀର ଗୋପ୍ୟ କରି ॥୮୦
ରାବଣ ଗଲା ଯେ ରାକ୍ଷସୀମାନେ ଆସି ।
ତ୍ରିଜଟା ସହିତେ ସୀତ୍ୟାକୁ ଜଗି ବସି ॥
ବୋଲନ୍ତି ଜାନେକୀ ଆମ୍ଭର ବୋଲ ଶୁଣ ।

ତ୍ରିଲୋକେ ପ୍ରତାପୀ ଯେ ଅଟଇ ରାବଣ ॥
ଦେବେ ବଶ୍ୟାବୃତ୍ତି ଅଟନ୍ତି ଯାହାର ପୟର ।
ଦଶବଦନ ବିଂଶଭୁଜ ଅଟଇ ତାହାର ॥
ସୁବର୍ଣ୍ଣମଏ ଲଙ୍କା ସମୋଦ୍ର ଚଉକତି ।
ତିନିକୋଟି ପଞ୍ଚାଶ ଲକ୍ଷ ଯାହାର ଯୁବତୀ ॥
ପାଟ ମହାଦେଈ ଅଟଇ ମନ୍ଦୋଦରୀ ।
ଅକଣ୍ଟେକ ରାଜ୍ୟ ଲଙ୍କାଗଡ଼େ କରି ॥୯୦
ଅଇଶ୍ଵର୍ଯ୍ୟ ପଣେ ବଳିଲା ତୋତେ ଶ୍ରଧା ।
ପଞ୍ଚମ ସ୍ଵରେ ତାକୁ କାମ କଲା ବାଧା ॥
ତେଣୁ ସେ ତୋତେ ଗୋ ଲୋଡ଼ଇ ରତିକରି ।
ତୋ ତହୁଂ ବଡ଼ ନାହାନ୍ତି କି ନାରୀ ॥
ପୁରୁଷ ଭ୍ରମର ଚୁମ୍ବଇ ଲକ୍ଷେ ଫୁଲ ।
ତେଣୁ ସେ ତୋତେ ମନକଲା ଲଙ୍କମଲ ॥
ତୁ କିମ୍ପାଇ ସୁନ୍ଦରୀରେ ନିରାଶ ତାକୁ କରି ।
ପୁଣ୍ୟସ୍ତିରୀ ହୋଇ ତୁ କଥା ନ ବିଚାରି ॥
ବନେ ବୁଲୁଥିଲୁ ଯତି ଭ୍ରଥା ପାଇ ।
ଗିରି ଘୋର କନ୍ଦରେ ଫଳମୂଳ ଖାଇ ॥୧୦୦
ଦଇବ ଆସି ତୋତେ କଲାକ ଏତେ ଦୂର ।
ଯେବେ ସୁଖ ଭୋଗ ଯେ କରିବୁ ଲଙ୍କପୁର ॥
ଏହା ଛାଡ଼ି କିମ୍ପା ବିଷାଦ ହୋଉଥାଉ ।
କି କି ଶଧ କରୁ ତାହା କିମ୍ପାଇ ନ କହୁ ॥
ଯିସ ଅବା ବାଞ୍ଛା କରୁ ଚାନ୍ଦମୁହିଂ ।
ତାହା ଆଣି ତୋତେ ଦେବ ଲଙ୍କସାଇଂ ॥
ଚଉଦ ଭୁବନରେ ଯିସ ଅପୂରୁବ ।
ତାହା ଉପଭୋଗ କରଇ ଲଙ୍କଦେବ ॥
କେବଣହିଂ ପରକାରେ ବଳିଲା ତୋତେ ମତି ।
ତୁ କିମ୍ପାଇଂ ସୁନ୍ଦେରୀରେ ତାକୁ କରୁ ନାସ୍ତି ॥୧୦
ଯେତେ କାଳେ ବିଧାତା ଆଣି ଦେଲା ସୁଖ ।
କିମ୍ପା ସୁନ୍ଦରୀ ହୋ ହୋଉ ତୁ ବିମୁଖ ॥
ରାଜପତ୍ନୀ ହୋଇବୁ ରାବଣ ଦେହ ଛୁଇଂ ।

ଗ୍ୟାନ ଗୋଚରେ ଗୋ ମେଳା ତୋହର ନାହିଂ ॥
ଅମୃତ ପକାଇ ବିଷ କରୁ ପାନ ।
ବୁଝିବାର କଥା ତୋର ନୁହଂଇ ଏମାନ ॥
ବୋଲୁ ସେ ଶ୍ରୀରାମ ଅଟନ୍ତି ମୋହର ପତି ।
ତାହା ବିନୁ ଆନେ ମୋର ନ ବଳଇ ମତି ॥
ସେ ସେ ମନିଷ୍ୟ ଅଟଇ ତପଶ୍ଚରୀ ।
ତୁ ଗୋ ସୁଲକ୍ଷଣୀ ସୁନ୍ଦରୀ ଯୁବାନାରୀ ॥୨୦
ରୂପ ଅନୁରୂପେ ପାଇଲୁ ଏବେ ବର ।
ରାଜାଧି ରାଜ୍ୟେଶ୍ଵର ଅଟଇ ବିଂଶକର ॥
ସୁଗନ୍ଧ ପୁଷ୍ୟ ଚନ୍ଦନ ଗନ୍ଧ ବାସ ।
ନାନା ଅଳଙ୍କାରେ ଯେ ହୋଇଣ ସୁବେଶ ॥
ଲଙ୍କପତିର ତୁଲେ ବଢ଼ାଅ ପୀରତି ।
ଚାରିଯୁଗକଇ ଯେ ରହିଥାଉ କୀରତି ॥
ଆମ୍ଭେ ତୋର ପରିଜନ ହୋଇଣ ଖଟିଥିବୁ ।
ଯହିଂକି ପେଷିବୁ ତୁ ସେ କାର୍ଯ୍ୟ କରିବୁ ॥
ଅସୁରୀଙ୍କ ବଚନେ ବୋଲନ୍ତି ରାମରାଣୀ ।
ବିଧାତା ଯେବେ ମୋତେ କଲା ଯେହା ଆଣି ॥୩୦
ତୁମ୍ଭ ବୋଲକୁ ଛଳ କଲେ ହୋଇବାକ କିସ ।
ଯେଣ୍ଣେ କର୍ମେ ମୋର ଅଛଇ ଭବିଷ୍ୟ ॥
ଯତିର ଭାରିଯା ମୁଂ ପତିଭକ୍ତା ସ୍ୟତୀ ।
ରାଜା ହୋଇଣ ତୁମ୍ଭେ କଲହ ଅନୀତି ॥
କପଟେ ଚୋରାଇ ଆଣିଲ ପରନାରୀ ।
ଏବେ ଲୋଡ଼ୁଅଛ ସୁରତି ଭୋଗ୍ୟ କରି ॥
ଯଦ୍ୟପି ପୃଥ୍ଵୀ ପଡ଼ିବ ରାସାନ୍ତଳେ ।
ମଧୁର ହୋଇବ ଯେବେ ଲବଣ ସିନ୍ଧୁ ଜଳେ ॥
ଆଦିତ ଦେବତା ପଛିମେ ଉଇଂମ ।
ପବନ ଦେବତା ଯେବେ ଥୟୀଭୂତ ହୋଇବ ॥୪୦
ପର୍ବତ ଶିଖରେ ଯେବେ ଫୁଟିବ ପଦ୍ମଫୁଲ ।
ସର୍ବଦା ନଦୀ ଯେବେ ବହିବ ସମତୁଲ ॥

ପାଣିର ପଙ୍କ ଯେ ଚନ୍ଦ୍ରମା ନିକଳଙ୍କ ।
ଜନ୍ତୁ ମରିବାକୁ ଯେବେ ହୋଇବନିଶଙ୍କ ॥
ଯେସନକ ହୋଇଲେ ନ ଟଳଇ ମୋହର ମନ ।
ମୋତେ ପତିପଣେ ଶ୍ରୀରାମ ହିଂ ସେ ଭାର୍ଜନ ॥
ମୁଇଂ ତାର ନାରୀ ଜନ୍ମେ ଜନ୍ମେ ଅଟଇ ।
ସର୍ବଦା ଦିନେ ମୁଂ ସ୍ଵାମୀନ୍ତ ଚରଣେ ଖଟଇ ॥
ଶୁଣିଣ ରାକ୍ଷସୁଣୀ ପାଇଲେ ବଡରାଗ ।
ବିକଟ ମୂରତି ଯେ ଧଇଲେ ସୀତ୍ୟା ଆଗ ॥୫୦
ନୟନ ତରାଟି ବାଙ୍କ କରି ଚାହିଂ ।
ଜିଭ କାଢ଼ିଣ ଯେ ଲୋଡ଼ନ୍ତି ତାକୁ ଖାଇ ॥
କେଶ ମୁକୁଳା କରି ଯେ ପାଡ଼ନ୍ତି ସିଂଘରଡ଼ି ।
ଯେକର ଉପରେ ଆରକ ଯାଇ ପଡ଼ି ॥
କେ ବୋଲଇ ସୀତ୍ୟାକୁ ମାରିବା ଏହିମତେ ।
କେ ବୋଲଇ ମାରିବି ସ୍ଵାମୀର ନିମନ୍ତେ ॥
ବୋଲଇ ବିଧାତାର ନ ଯୋଗାଇ କିଛି ।
ଯେହାକୁ କିମ୍ପାଇ ଯେଥକୁ ଆଣିଅଛି ॥
ବନସ୍ତେ ବୁଲିବ ସେ ଖାଇବ କନ୍ଦମୂଳ ।
ପରିହରଣ କରିବ ଯେ ବୃକ୍ଷର ବକଳ ॥୬୦
ଦେଶାନ୍ତରୀ ଲୋକର ଘରଣୀ ହୋଇଥିବ ।
ରାଜ୍ୟ ଭୋଗ୍ୟ ଯେ କିଅବା କରିବ ॥
କେ ବୋଲଇ ପାମେରୀ ନ ଜାଣଇ ଏ ଭାବ ।
ଯେବଣ ଲଙ୍କାଗଡ଼ ଦେବଙ୍କୁ ଦୁର୍ଲଭ ॥
ତହିଂର ଠାକୁରାଣୀ କି ଇତର ଲୋକ ହୋଇ ।
ଏଡ଼େ ସମ୍ପଦ ଏହାକୁ ଦେଲା କେବଣ ବିହି ॥
କେ ବୋଲଇ ଏହାକୁ ପକାଇବା ମାରି ।
ପୋଡୁ ଯେସଲ ଯାଉ ସବୁଙ୍କରି ॥
ଏହାରେଣ ସହସ୍ରେ ଲୋକ ବନ୍ଦୀ ହୋଇଲୁ ।

ରାଜାକୁ ସେବା କେହି କରି ନ ପାରିଲୁ ॥୭୦
କେହି ବୋଲଇ ମୋହର ବୋଲରେଣ
ଆସ ।
ସର୍ବିଂଏ ହୋଇଣ ଗୋ ଚୋବାଇବା ମାଂସ ॥
କେ ବୋଲଇ ଆଗୋଲି ନ ଧର ମୋତେ
ଛାଡ଼ ।
ତୁଳା ପ୍ରାୟେ ଚୋବାଇବି ଏହାର ହାଡ଼ ॥
କେହୁ ବୋଲଇ ଏହୁ ଅଟଇ ନିରିମାଖୀ ।
ନିର୍ଭରେ ଯେହାର ମୁଂ ଉପାଡ଼ିବି ଆଖି ॥
କେ ବୋଲଇ ପ୍ରାଣ ଘେନିମି ଯେହାର ।
କେ ବୋଲଇ ଆଗୋ ବେଗ କରି ମାର ॥
କେହୁ ରଡ଼ି ଦେଇ ଆକ୍ରୁଷନ୍ତି ଯାଇ ।
ତ୍ରିଜଟା ବୋଇଲା ଅସୁରୀଙ୍କି ଚାହିଂ ॥୮୦
କିମ୍ପା ଲୋ ଡରାଇ ଏହାକୁ ପ୍ରାଣ ଘେନ ।
ଯେ ମହାସ୍ୟତୀକି ଲୋ ନ ଧର ଅବିଗୁଣ ॥
ଆଜର ରଜନୀ ମୁଂ ସପନେ ଦେଖିଲି ।
ତେତେବେଳେ ସୀତ୍ୟାକୁ ମୁଂ କୋପ
ଉପେକ୍ଷିଲି ॥
ଶ୍ରୀରାମ ନାମେ ଯେ ଅଟଇ ଏହାର ବର ।
ସାଙ୍ଗେଣ ଲକ୍ଷଣ ଅଟଇ ସହୋଦର ॥
ରକ୍ଷ ମରକଟ ବଳ ଘେନି ଆୟେ ।
ସମୋଦ୍ର ପାରିହୋଇ ପଶିଲେ ଲଙ୍କାୟେ ॥
ରାବଣକୁ ମାରି ଘେନିଗଲେ ସୀତା ।
ଏ ନଗ୍ରେ ନୃପତି ହୋଇଲା ମୋହର
ପିତା ॥୯୦
ଯେସନ ସପନ ସଂଶୟେ ଏଥି ନାହିଂ ।
ଶକ୍ତୁନ୍ୟ ବିଚାରି ଜାଣିଲଇଂ ମୁଇଂ ॥
ତୁମ୍ଭେ ଯେବେ ଲୋ ସୀତାରେ ଶରଣ
ପଶ ।
ନୋହିଲେଣ ଗଞ୍ଜି ହୋଇବ ଅବଶ୍ୟ ॥
ଏସେ ମାହାସ୍ୟତୀ ଶ୍ରୀରାମର ରାଣୀ ।
ଅନନ୍ତକୋଟି ବ୍ରହ୍ମାଣ୍ଡର ଅଟଇ କାରେଣୀ ॥
ଅସୁରବଳ ଯହୁଂ ହୋଇଲେ ବର୍ଦ୍ଧମାନ ।
ତେଣୁ କରି ମାନେବ ରୂପ ଧଇଲେ
ଭଗବାନ ॥

ନିଶ୍ଚୟେ ରାବଣକୁ ନିଧନ କରିବେ ।
ସୁରଗଣମାନଙ୍କର ମାନ ଉଦ୍ଧରିବେ ॥ ୧୦୦
ଆମ୍ଭେ ଏହାକୁ ତ ସେବା କରୁଥିବା ।
ଆପଦକାଳେଣ ଦୁସ୍ତରୁ ତରିବା ॥
ତ୍ରିଜଟା ମୁଖରୁ ଏମନ୍ତ ବାକ୍ୟ ଶୁଣି ।
ଶୁଣିଣ ସନ୍ତୋଷ ହୋଇଲେ ରାକ୍ଷସୁଣୀ ॥
ସୀତୟାର ବାମନୟନ ଘନଘନ ଫୁରି ।
କାୟା ସଲିଳାକ ଜନେକ କୁମାରୀ ॥
ଦେବୀ ବିଚାରିଲେ ହୋଇଲା କାର୍ଯ୍ୟସିଦ୍ଧ ।
ନିଚୟେ ରାବଣ ହୋଇବ ପ୍ରାଣେବଧ ॥
ତ୍ରିଜଟାହିଂ ଯାହା ଦେଖିଲା ସପନେ ।
ମୁହିଂ ଦେଖିଲି ଗୋ ଏସନ ବିଧାନେ ॥୧୦
ଶ୍ରୀରାମ ଲକ୍ଷ୍ମଣ ଯେ ବାନର ଗୁଛ ଘେନି ।
ଲଙ୍କାରେ ପ୍ରବେଶ ହୋଇଲେ ଭାଇ ବେନି ॥
ରାବଣକୁ ମାରି ମୋତେ ଘେନିଗଲେ ।
ଏ କଟକେ ରାଜା ବିଭୀଷେଣ କଲେ ॥
ଏସନେକ ସପନ ଦେଖିଲା ମୋ ଆଜ ।
ତ୍ରିଜଟାହିଂ ଦେଖିଲା ହୋଇଲା ଶୁଭକାର୍ଯ୍ୟ ॥
ବାମନୟନ ମୋର ଘନଘନ ଫୁରି ।
ଏସନେକ ସପନେ ଯେ ଶୁଭ ପାଆନ୍ତି
ନାରୀ ॥
ଏସନେକ ଭାଳନ୍ତେ ରଜନୀ ଶେଷ
ହୋଇ ।
ଆଦିତ ଦେବତା ପୂର୍ବଭାଗରେ ଉଇଂ ॥୨୦
ହନୁ ବିଚାରଇ ଏବେ କରିବି ବୁଧି କିସ ।
କେବଣ ପ୍ରକାରେ ମୁଂ ନେମଇ ସନ୍ଦେଶ ॥
ଲୋକେ ଅଛନ୍ତି ଯେ ବାରତା କେମନ୍ତେ
ଦେବି ।
ଯେକାକରି ସୀତୟାକୁ କେମନ୍ତେ ଦେଖିବି ॥
ଯେସନେକ ଭାଳି ଯେ ବିସ୍ମୟେ ତୁନି
ହୋଇ ।
ଉରାର ଉପରେ ଯେ ଅଛି ବୀର ଶୋଇ ॥
ଯେଥୁ ଅନନ୍ତରେ ଯେ ଶୁଣିମା ଦିବ୍ୟରସ ।
ହର୍ନିଶି ପାହି ହୋଇଲା ଦିବସ ॥

ସୀତୟା ବୋଇଲେ ଗୋ ତୁ ଶୁଣସି
ତ୍ରିଜଟା ।
ଯେତେବେଳ ଯାଏ ହୋଇଲୁ ଲୁଗା
ଅପାଲଟା ॥୩୦
ଶଉଚ ହୋଇବା ନଦୀକି ଯିବା ଚାଲ ।
ଶୁଣି ସଜ ହୋଇଲେ ରାକ୍ଷସୁଣୀ ପଲ ॥
ହନୁମନ୍ତ ମନ ହୋଇଲା ଉଷତ ।
ଯେହିକ୍ଷଣି ସୀତାକୁ କହିବି ବାରତ ॥
ନଦୀର କୂଳେ ତ ଦେଖିବି ଏକା କରି ।
ଯେତେ ଭାଳି ବୀର ଯେ ଗଲାକ ଆଗ
ସରି ॥
ଭ୍ରମରେକ ହୋଇଣ ଗଗନେ ଉଡ଼ିଗଲା ।
ବୃଦ୍ଧ ଗଣ୍ଡୁକୀ ତୀରେଣ ଯାଇଣ ମିଳିଲା ॥
ଶିଶୁପା ବୃକ୍ଷର ଶିଖରେ ଯାଇଣ ବସି ।
ସୀତାର ଯିବାକୁ ସେ କରିଅଛି ଦୃଷ୍ଟି ॥୪୦
ଛନଛନ ମନ ତାର ଖର ନିଶୁଆସ ।
ବାଟ ଚାହୁଂଅଛି ଯେ ପବନର ଶିଷ ॥
ସହସ୍ରେ ଅସୁରୀ ମଧରେ ଦେବୀସୀତ୍ୟା ।
ନଦୀକୂଳକୁ ଆସଇ ଜନେକ ଦୁହିତା ॥
ତାରାଗଣ ମଧ୍ୟେ ଚନ୍ଦ୍ରମା ଯେହ୍ନେ ଦିଶି ।
ବନଜୀବ ମଧେକି ସିଂହ ବଧୂ ଆସି ॥
ଦେଖି ହନୁମନ୍ତ ମନରେ ବିଚାରି ।
ଏ ସେ ଜାନକୀ ଶ୍ରୀରାମ ମନୋହାରୀ ॥
ଦେହ ଭାଜି ଅଛି ନାହିଂ ଯେ ଆହାର ।
ଓଶେକ ବନ ମଇଧୁଂ ହୋଇଲା
ବାହାର ॥୫୦
ଅତିହିଂ ଶୋକେଣ ମଳିନ ନୟନ ବେନି ।
ଶିର ନୁଆଂଇଣ ଚାଲଇ ମାନିନୀ ॥
ଅମଳାଣ ବାସ ପିନ୍ଧିଣ ବାଳୀ ଅକ୍ଷି ।
ନେତ୍ରରୁ ଅଶ୍ରୁଜଳ ଘନଘନ ପୋଛି ॥
ଶ୍ୟରୀରେ ବଳ କି ଜୀବ ଏହାର ନାହିଂ ।
ଅବିଚ୍ଛିନ୍ନେ ମନ ଅଛି ଶ୍ରୀରାମର ତହିଂ ॥
ଅଳକା ବେଢ଼ିଅଛି ଖୋଷା ଅସମ୍ଭାଳ ।
ବେଣୀ ପାଡ଼ିଅଛି ଥୋକାଏକ ବାଳ ॥

ତାମ୍ବୋଳ ବିହୁନେ ସିଠୁଆ ଦିଶଇ ଓଷ୍ଠ ।
ତୈଲୋକନାୟେକାଣୀ ପାଉଅଛି କଷ୍ଟ ॥୬୦
କୁଚେ ପତ୍ରାବଳୀ ଲେଖନ ଏହାର ନାହିଂ ।
ଅଳତା ବିହୁନେ ପାଦ ଅଶୋଭା ଦିଶଇ ॥
ବାହେଣ ବାହୁଟି କଣ୍ଠେ ନାହିଂ ହାର ।
ଆଭରଣ ବିହୁନେ ଦେହ ଅଶୋଭା ଏହାର ॥
ପର୍ବତୁ ନଦୀ ଯେହ୍ନେ ଆସୁଥାଇ ବାହି ।
ତେସନେକ ଜାନେକୀ ଆସଇ ଥିର ହୋଇ ॥
ଖୁଅ ନ ଥିଲେଣ ଦେଉଳ ଯେର୍ଣ୍ଣେ ଦିଶି ।
ତେସନେକ ପଟାନ୍ତର ଦିଶଇ ଶୁଭ୍ରକେଶୀ ॥
ବାବୁ ବିଧାତାରେ ଯେହାକୁ ଏହା କଲୁ ।
ଜଗତଜନନୀକି ଏଡ଼େ କଷ୍ଟ ଦେଲୁ ॥୭୦
ମଦୁଆର ହାତେ ଯେ ଦେଲୁ ବେଦପୋଥି ।
ଦୃଣେ ବୁଡ଼ାଇଣ ଥୋଇଲୁ ଗଜମୋତି ॥
ତମ୍ୱା ଖୋରିରେ ଭରିଲୁ ନେଇ ଦୁଧ ।
ମାଣିକ ପକାଇଲୁ ହୁତାଶନ ମଧ ॥
ପଙ୍କେ ପାଟସୂତା ଲୁଚାଇଲୁ ନେଇ ।
ସୀତୟାକୁ ଅଛୁ ସେ ରାକ୍ଷସ ଘରେ ଥୋଇ ॥
କେର୍ଣ୍ଣେ ସେ ସର୍ବଜ୍ଞ ଅଟୁ ହୋ ବିଧାତା ।
କି ଦୋଷ କଲା ତୋତେ ଜନେକ ଦୁହିତା ॥
ଏସନେକ ବିଚ୍ଚର କରଇ ମାରୁତି ।
ଅସୁରୀଙ୍କ ସଙ୍ଗତେ ଆସଇ ଦେବୀ ସ୍ୟତୀ ॥୮୦
ଯେବଣହିଂ ବୃକ୍ଷେ ହନୁମନ୍ତ ବସିଅଛି ।
ସେ ତରୁତଳେ ଯାଇ ମିଳିଲା ମୃଗାକ୍ଷି ॥
ଯେ ଯାହାରେ ରାକ୍ଷସୀମାନେ ଗଲେ ।
ନିତ୍ୟକର୍ମ ବିଧି ସାରିତ ମନକଲେ ॥
ଶୁଶୁପା ବୃକ୍ଷତଳେ ଜାନେକୀ ଉଭାହୋଇ ।
ଦୁଃଖେଣ ମନେମନ ଭାଳଇ ବଇଦେହୀ ॥
ପୋଡୁ ମୋହର ଜୀବନ ମରିବା ବଡ଼ ସୁଖ ।
କେତେହେଂ ବିଧାତା ଦେଉ ମୋତେ ଦୁଃଖ ॥
ଶ୍ରୀରାମର ବିଚ୍ଛେଦ ଆଜକୁ ଦଶମାସ ।
କାହାରି ମୁଖେ ସ୍ୱାମୀର ନ ପାଇଲି ସନ୍ଦେଶ ॥୯୦

ଏସନେକ ବୋଲନ୍ତେ ହନୁମାନ୍ତ ବିଚାରି ।
ଏହି ଯେ ନିଚୟେ ଜନେକ କୁମାରୀ ॥
ଯେବଣ ଦିନେ ସୀତାକୁ ଆଣିଲା ରାବଣ ।
ମୁହିଂ ଯେ ଥିଲି ଋଷିମୁଖ ପର୍ବତେଣ ॥
ରୋଦନ କରି ଯେ ଆସନ୍ତେ ଦେବୀ ସ୍ୟତୀ ।
ରଘୁବଂଶେ ଶ୍ରୀରାମ ଅଟନ୍ତି ମୋର ପତି ॥
ଯେ ଶବଦ ଶୁଣି ଉର୍ଦ୍ଧ୍ୱକୁ ଦୃଷ୍ଟି ଦେଲି ।
ରାବଣର କୋଳେ ମୁଂ ସୀତାକୁ ଦେଖିଲି ॥
ଏହି ସେ ଜାନେକୀ ଶ୍ରୀରାମଚନ୍ଦ୍ର ବାମା ।
ଆନ ପଟାନ୍ତର ନାହିନା ଉପମା ॥୧୦୦
ଏ ସେ ପରମଲକ୍ଷ୍ମୀ ସିନ୍ଧୁର ଦୋହିତୀ ।
ଏ ଅଟେ ଜନକର ଘରେ ଉତପତ୍ତି ॥
ପତିର ବିଚ୍ଛେଦେ ଏ ସ୍ୟତୀର ବ୍ରତପାଳି ।
ଦୁଃଖେଣ ଦିନ ସେ ବଞ୍ଚଇ ମହାସ୍ଥଳୀ ॥
ଶ୍ରୀରାମ ମୋହର ଆଗେ କହିଲେ ଯିସ ଯିସ ।
ତହୁଂ ଶତେଗୁଣେ ଅଟଇ ବିଶେଷ ॥
ଧନ୍ୟ ଯେ ଜାନେକୀ ଯେ ଧନ୍ୟ ଯେହାର ନେତ୍ର ।
ଧନ୍ୟ ଯେହାର ନାସିକା ଧନ୍ୟ କରପତ୍ର ॥
ଧନ୍ୟ ଶ୍ରବଣ ଯେ ଅଧର ଦନ୍ତଧନୀ ।
ଧନ୍ୟ କବେରୀ ଯେ ଜିଣି ସେ ମେଦିନୀ ॥୧୦
ଧନ୍ୟ ବକ୍ଷସ୍ଥଳ ଧନ୍ୟ ଯଉବନ ।
ଧନ୍ୟ ମଝା ଯେହାର ଧନ୍ୟ ନିତ୍ତମ୍ୱନ ॥
ଧନ୍ୟ ଚରଣ ତୋହର ଅଙ୍ଗୁଷ୍ଟି ତୋର ଧନ୍ୟ ।
ଧନ୍ୟ ଶଶୁରେ ଯେ ଧନ୍ୟ ଜନେକ ମହାମୁନ୍ୟ ॥
ଧନ୍ୟ ଜନନୀ ଯେ ଧଇଲା ଉଦରେ ।
ଧନ୍ୟ ଧନ୍ୟ ବଢ଼ିଲୁ ତୁ ଯେ ଯାହାପୁରେ ॥
ଧନ୍ୟ ଶ୍ରୀରାମଚନ୍ଦ୍ର ଯେ ଧନ୍ୟ ଦଶରଥ ।
ଧନ୍ୟ କଉଶଲ୍ୟା ଯେ ଗର୍ଭଧାରୀ ମାତ ॥

ଧନ୍ୟ ଅଯୋଧ୍ୟାର ଧନ୍ୟ ନରନାରୀ ।
ଧନ୍ୟ ଶ୍ରୀରାମକୁ ସୀତା ବିଭା କରି ॥୨୦
ଧନ୍ୟ ସୁଗ୍ରୀବର ଇଷ୍କିନ୍ଧ୍ୟା କଟେକ ।
ଧନ୍ୟ ଶ୍ରୀରାମକୁ ଦେଖନ୍ତି ଯେତେ ଲୋକ ॥
ଧନ୍ୟ ମୋହର ପୁଣ୍ୟ ଧନ୍ୟ ମୋହର ଜନନୀ ।
ଧନ୍ୟ ମୋହର ପିତା କେଶରୀ ପବନ ହିଂ ଧନୀ ॥
ଧନ୍ୟ ଦେଶ ଲୋକ ହେ ଧନ୍ୟ ତୁମ୍ଭର ସାଇଂ ।
ଧନ୍ୟ ଲଙ୍କପତିରେ ତୁ ତପ କଲୁ କାହିଂ ॥
ରଘୁନାଥର ବାଣେ ହୋଇବୁ ପ୍ରାଣ ନାଶ ।
ସ୍ୱର୍ଗେ ବସିବୁ ଯାଇ ଅକ୍ଷୟେ ସ୍ୱର୍ଗବାସ ॥
ଯେହ୍ନେକ ବୋଲି ହନୁ ଭାଳଇ ପୁଣ ପୁଣି ।
ରାକ୍ଷସୁଣୀମାନେ ଆସିବେ ଏହିକ୍ଷଣି ॥୩୦
ଏକାନ୍ତ ବେଳେ ଯେ ସମାଦ କରିବି ।
ସଙ୍କେତ ଘେନି ଏଥୁଂ ବେଗ ହୋଇ ଯିବି ॥
ଯେତେ ବୋଲି ଛାଡ଼ିଲା ଭ୍ରମର ଶରୀର ।
ଅତିହିଂ ସାନ ସେଯେ ହୋଇଲାକ ବାନର ॥
ଡାଳେଣ ବସି ସେ ଯେ ପତ୍ରେ ନୁଚାଦେଲା ।
ମନେମନେ ପୁଣି ବିଚାରି ବୋଇଲା ॥
ବୋଇଲା ପୂର୍ବେ ମୋତେ ଦେଖିଲା ସ୍ୟତୀର ନାହିଂ ।
ଶାପ୍ୟ ମୋତେ ଦିଅଇ କି କୋପମୁଖ ହୋଇ ॥
ମାୟା ପ୍ରାୟେ ପୁଣ ବୁଝଇ ମୋହର କଥା ।
ଏହା ସୁମରି ତ ଲାଗିଲା ମନେ ବ୍ୟଥା ॥୪୦
କେମନ୍ତେ ବାରତା ନେଇ ଦେବଇଂ ରଘୁପତି ।
ଯେ ମୋହୋ ନ କହିଲେ ନ ଜାଣିମ ସ୍ୟତୀ ॥
ଝାଡ଼ ବାଡ଼ ଆଡ଼ ହୋଇ ଶୁଣିଲା ବୋଲିବି ।
ସମାସ୍ୟା ପାଇଲେଣ ଓହ୍ଲାଇଣ ଯିବି ॥

ଏତେ ବୋଲୁ ହନୁ ଯେଣେତେଣ ଚାହିଁ ।
ବୋଇଲେ ଏକାହୋଇ ଅଛଇଂ
ବଇଦେହୀ ॥
ଭୟେ ମନକରି ଭାଳଇ ପୁଣ ପୁଣି ।
ଅଳପ ଅଳପ ହସଇ ଲଜ୍ୟାଭାବ ଘେନି ॥
ନିର୍ଭୟ ହୋଇ ଯେ କହଇ ଧୀର କରି ।
ଅଯୋଧ୍ୟା ରାଜ୍ୟେଣ ଦଶରଥ
ଦଣ୍ଡଧାରୀ ॥୫୦
ଶ୍ରୀରାମ ଲକ୍ଷ୍ମଣ ଅଟନ୍ତି ତାର ପୁତ୍ର ।
ବନସ୍ତକୁ ପେଷିଲେ କୟେକୟୀ ମାତ ॥
ଜନେକର ଝିଅ ଶ୍ରୀରାମର ନାରୀ ।
ତାହାକୁ ଘେନି ରାମ ହୋଇଲେ ବନଚାରୀ ॥
ପଞ୍ଚବଟୀ ବନେ ରହିଲେ ଆସି ଯହୁଂ ।
ରାବଣ ଚୋରାଇ ଯେ ଆଣିଲାକ ତହୁଂ ॥
ଖୋଜିଣ ଶ୍ରୀରାମ ଯେ ନ ପାଇଲେ ନାରୀ ।
ବୃକ୍ଷ ଜୀବ ବନ ଦେଖିଲେ ପଚାରି ॥
ଯାନ୍ତେଣ ଦେଖିଲେ ଋଷିମୁଖ ପର୍ବତ ।
ସୁଗ୍ରୀବର ସାଙ୍ଗେ ରାମ ହୋଇଲେ
ମଇତ୍ର ॥୬୦
ମଇତ୍ର ଛଳେ ରାମ ବାଳୀକି ବଧ କଲେ ।
ଇସ୍କିନ୍ଧା କଟକ ସୁଗ୍ରୀବରକୁ ଦେଲେ ॥
ଥାଟ ଘେନି ମାଲ୍ୟବନ୍ତ ପର୍ବତେ ଛନ୍ତି ରହି ।
ଚାରିଦିଗକଇ ଦୂତ ବରଗାଇ ॥
ଦକ୍ଷିଣ ଦିଗକୁ ଯେ ଅଇଲୁ ଜଣ ଆଠ ।
କହିଲେ ନ ସରଇ ଆମ୍ଭର ଯେ କଷ୍ଟ ॥
ଅଶିଣ ଶୁକଳ ଯେ ଦଶମୀରେ ଅଇଲୁ ।
ପାଞ୍ଚମାସ ଯାୟେ ବଣା ହୋଇଥିଲୁ ॥
ମାୟା ପୁରେ ଯାଇଂ ପାତାଳ ବିମ୍ବରେ ।
ଧର୍ମେଣ ପ୍ରାଣ ପାଇ ହୋଇଲୁ
ବାହାରେ ॥୭୦
ମରିବୁ ବୋଲି କୁଶ ଶେଯ୍ୟାରେ ଶୋଇଲୁ ।
ସମ୍ପାତିର ତହିଂ ବାରତା ପାଇଲୁ ॥
ଆଉ ସାତଜଣ ଅଛନ୍ତି ସିନ୍ଧୁକୂଳେ ।
ମୁହିଂ ଲଙ୍କାକଇ ଅଇଲି ପୁଣ୍ୟେବଳେ ॥

ଶ୍ରୀରାମ ଘରଣୀ ଖୋଜିଲି ଏଥି ସୀତା ।
ଓଶେକ ବନେ ଅଛି ଜନେକ ଦୋହିତା ॥
ଚାରିଦିଗକଇ ଯାଇ ଖୋଜୁଛନ୍ତି ଦୂତେ ।
ଦେଶ ବିଦେଶ ଯେ ବନ ପରବତେ ॥
ମୁହିଂ ତାହା ଲଙ୍କା ଗଡ଼ରେ ଠାବ କଲି ।
ପୂର୍ବର ବଳେ ସେ ଯେ ଭେଟ ମୁଂ
ପାଇଲି ॥୮୦
ଯେ ମୋହର କର୍ମ ସୁଫଳ ହୋଇଲା ।
ଯେ ଦେହେ ଶ୍ରୀରାମଙ୍କୁ ଉପଗାର କଲା ॥
ଯେବେଣ ରୂପ ମୋତେ କହିଲେ ସ୍ୱାମୀ
ରାଇ ।
ସେ ଗୁଣ ଶଙ୍କୁନ୍ୟ ଅଛି ସୀତା ତହିଂ ॥
ନିଚୟେ ଜାନେକୀ ଯେ ଜନେକ
କୁମାରୀ ।
ନୋହିଲେ କି ଯେତେ ଲକ୍ଷଣ ଏଡ଼େନାରୀ ॥
ଯହୁଂ ସେ ହନୁମନ୍ତ ଯେ ବୋଲ
ବୋଇଲା ।
ଶୁଣି ସୀତା ହରଷ ବିସ୍ମୟ ହୋଇଲା ॥
ଚାରିଦିଗକଇ ଚାହାନ୍ତି ଉର୍ଦ୍ଧ୍ୱଗତି ।
ମନେ ମନେ ବିଚାର କରଇ
ମାହାସ୍ୱତୀ ॥୯୦
କେ ମୋତେ ରାମ ନାମ ଅମୃତ ସିଞ୍ଚିଲା ।
ଯେତେ ବୋଲି ଦେବୀ ବୃକ୍ଷକୁ ଦୃଷ୍ଟି ଦେଲା ॥
କର ଦୁଇ ଯୋଡ଼ିଣ ଯେ ବୋଲଇ ପୁଣ
ପୁଣି ।
କେ ମୋତେ ଶୁଣାଇଲା ଶ୍ରୀରାମର ବାଣୀ ॥
କେବେଣ ମାହାତ୍ମା କଲୁ ମୋତେ ଦୟା ।
ତୁନି ହୋଇଲୁ ତ କେବଣ ହିଂ ମାୟା ॥
କାହାର ବୋଲେଣ ମଲା ପ୍ରାଣୀତ
ଜୀଆଂଇ ।
କେ ମୋହର ଆଗେ ଶ୍ରୀରାମ ବୋଲିତ
କହଇ ॥
କେ ତୁମ୍ଭେ ଦୟା ହୋ କର କିନା ମୋତେ ।
ଛାମୁରେ ମିଳି କହ ଦେଖାଇ କିନା
ତୋତେ ॥୧୦୦

ଯାହା ସେ ସପନେ ଦେଖିଲି ମୁହିଂ ଆଜ ।
ସେ କଥା ମୋତେ ଯେ ହୋଇଲା
ଶୁଭକାର୍ଯ୍ୟ ॥
ଯେବେଣକୁ ମୁଂ ଚିନ୍ତଇ ଅହର୍ନିଶି ।
ସେ କଥା ପ୍ରାପତ ହୋଇଲା ଅବା ଆସି ॥
ଯେ ମୋହର ପାପ କେବେ କ୍ଷୟ ଯିବ ।
ସମୋଦ୍ର ଜିଣି କେ ଯେ ବାରତା ଆଣିଦେବ ॥
ଯେ ମୋହର ଜ୍ଞାନେ ତ ପାପ କଲାନାହିଂ ।
ବାଳୁତକାଳୁ ତପ ଧର୍ମେ ଥାଇ ॥
ଶ୍ରୀରାମ ସେ ଅଟନ୍ତି ମୋହର ନିଜ ପତି ।
ତାଙ୍କ ବିନୁ ଆନେ ନ ବଳଇ ମୋର
ମତି ॥୧୦
ଏସତ ହୋଇଲେ ପାଇବି ବାରତା ।
ଯେତେ ବୋଲି ବିସ୍ମୟେ ହୋଇଲା ଦେବୀ
ସୀତା ॥
ହନୁ ବୋଲଇ ନ ପୁଣ କରଇ ମୋତେ
କୋପ ।
ଯେତେ ବୋଲି ହୋଇଲା ସାମାନ୍ୟ ସ୍ୱରୂପ ॥
ବାନର ପ୍ରାୟେ ହୋଇ ବୃକ୍ଷରୁଂ ଖସିଲା ।
ଆକାଶୁଂ ପକୁଂ ଫଳ ପଡ଼ିବା ପ୍ରାୟେକ
ଦିଶିଲା ॥
ଜାନେକୀର ଛାମୁରେ ମିଳିଲା ମାରୁତି ।
ପଚାରଇ କେ ତୁମ୍ଭେ କାହାର ଯୁବତୀ ॥
କିମ୍ବା ଯେତେ ଦୁଃଖ ସହି ଗୋ ଏଥେଅଛ ।
ଦୟା ନ କରଇ କି ବିଶ୍ୱବାର ବଛ ॥୨୦
କି ଅବା ରାବଣକୁ ନୁହ ତୁମ୍ଭେ ପ୍ରୀତି ।
ତେଣୁ କରି କୋପ କଲା ଲଙ୍କପତି ॥
ଯେ ତୋହର ଶରୀର ଯେ ଅତିହିଂ
କୋମଳ ।
କିମ୍ବା ଗୋ ସୁନ୍ଦେରୀ ଚିତ୍ତ ସମାକୁଳ ॥
ସୁବର୍ଣ୍ଣର ବର୍ଣ୍ଣ ପ୍ରାୟେ ତନୁ ଦିଶଇ ।
ଶରଦ ସମ୍ପୂର୍ଣ୍ଣ ଚନ୍ଦ୍ରମୁଖ ବିକାଶଇ ॥
ବଧୁକ ଓଷ୍ଠ ତୋହର ନୟନ ହରଣୀ ।
ଅଥବା ଲକ୍ଷ୍ମୀ ତୁମ୍ଭେ ହରିର ଘରଣୀ ॥

ଶିବର ବାମା ଅଟୁକି ଗଉରୀ ।
ଇନ୍ଦ୍ରର ଶଚୀ ତୋତେ ନୁହଇ
ପଟାନ୍ତରି ॥୩୦
ଚନ୍ଦ୍ରର ରୋହିଣୀକି ଆଦିତ୍ୟର ଛାୟା ।
କି ଅବା ଶାପ୍ୟେ ତୁ ଧଇଲୁ ତନୁ ମାୟା ॥
ଆନ କି ଭାର୍ଜନ ଯେତେ ଦୁଃଖ ସହି
ପାରଇ ।
ମାନେବ ସ୍ତିରୀ ଯେହା ଦେଖିନୁଆରଇ ॥
ସ୍ୱର୍ଗର ଯୁବତୀକି ନିନ୍ଦିଲୁ ନିନା ନାରୀ ।
ତିନିପୁରେ ତୋତେ ଯେ ନାହିଁ ପଟାନ୍ତରି ॥
ପ୍ରଳୟ କରିଣ ମୁଁ ଗୋ କହୁଅଛି ତୋତେ ।
କେ ତୁମ୍ଭେ ସୁନ୍ଦରୀ ଗୋ କହ ମାତ
ମୋତେ ॥
ଶୁଣି ବଇଦେହୀ ଯେ ହେଠ ମାଥ କରି ।
ଧୀରେ ଧୀରେ କହଇ ଯେ ହୃଦରେ
ଶୋକଭରି ॥୪୦
ଜନେକର ଝିଅ ମୁଁ ନାମ ମୋର ସୀତା ।
ଦଶରଥ ବଧୂ ମୁଁ ଶ୍ରୀରାମ ବନିତା ॥
ପିତାର ବୋଲେ ସ୍ୱାମୀ ବନକୁ ଅଇଲେ ।
ମୋତେ ଲକ୍ଷ୍ମଣଙ୍କୁ ଯେ ଜଗାଇଣ ଗଲେ ॥
ତହୁଁ ରାବଣେଶ୍ୱର ଆଣିଲା ମୋତେ ହରି ।
ମାୟା କୁମନ୍ତ ସେ ତପୁସୀ ରୂପ ଧରି ॥
ସୁବର୍ଣ୍ଣର ମୃଗେକ ଉପାୟେ କରି ଭିଆଇଲା ।
ଲୋଭେଣ ଶ୍ରୀରାମ ଯେ କୁରଙ୍ଗୀ ମାରିଗଲା ॥
ଲକ୍ଷ୍ମଣ ବୋଲିଣ ମାୟା ରାବେକ ଶୁଭଇ ।
କହୁ କହୁ ଦେବୀ ଯେ କଷ୍ଟ ସୁମରି
ରୋଦଇ ॥୫୦
ଲକ୍ଷ୍ମଣ ସହିତେ ଯେ ଗଲେ ମୋର ନାହା ।
ଯେକା ଦେଖି ମୋତେ ଯେ ଆଣିଲା
ବିଂଶବାହା ॥
ତେଣୁ କରି ମୁହିଁ ଦୁଃଖୀ ହୋଇ ଅଛି ।
ବ୍ୟାଧ ବନ୍ଧନ ଯେହ୍ନେ କରିଥାଇ ପଛୀ ॥
ଆଜିର ରଜନୀ ରାବଣ ଆସିଥିଲା ।
ଦୁଇମାସକୁ ଯେ କଣ୍ଟ ଦେଇ ଗଲା ॥

ବୋଇଲା ରାମକୁ ଦେଖାଇବୁ ଆଣି ।
ନୋହିଲେ ମୋହର ହୋଇବୁ ଘରଣୀ ॥
ତ୍ରିଜଟା ନଥିଲେ ଆଜହିଁ ଯାନ୍ତା ମାରି ।
ବେଳେକ ରଖିଲା ମାହାତ୍ମାଣୀ
ବୋଲକରି ॥୬୦
ମଲାର ପ୍ରାଣୀ ପ୍ରାୟେ ହୋଇଣ ମୁଁ ଅଛି ।
ତୁ ମୋତେ ଜୀଆଂଇଲୁ ଅମୃତ ପାଣିସିଞ୍ଚି ॥
କେବଣ ଦେଶରୁ ତୁ ଅଇଲୁ କପିବୀର ।
ଅପୂର୍ବ ମୂରତି ମୁଁ ଦେଖିଲି ତୋହର ॥
କର୍ଣ୍ଣରେ କୁଣ୍ଡଳ ଶିରରେ ମକୁଟ ।
ପଞ୍ଚ ରତ୍ନମାଳା ଶୋହଇ ତୋର କଣ୍ଠ ॥
ଯେକଥା ଦେବେଯେ ମାନୁଷ୍ୟେ
ଅଗୋଚର ।
କହସି କପି ତୁ ଯେ କାହାର କୁମର ॥
ହନୁମନ୍ତ ବୋଲଇ ମୁଁ କେଶରୀର ସୁତ ।
ପମାଞ୍ଜନୀ ନାମେ ଅଟଇ ମୋହର
ମାତ ॥୭୦
ସୁଗ୍ରୀବର ସେବକ ମୁଁ ନେଖାରେ ଭଣଜା ।
ବିଶ୍ୱାସ ଠାବକୁ ଯେ ପେଷନ୍ତି ମୋତେ
ରାଜା ॥
ଇସ୍କିନ୍ଧା ନଗ୍ର ଯେ ବୋଲିଣ ଯେକ ପୁର ।
ଖଡ଼ଦ କପି ବୋଲି ତହିଁର ନୃପବର ॥
ଯାହାର ନନ୍ଦିନୀ ଅଟଇ ମୋହର ଜନନୀ ।
ବାଳୀ ସୁଗ୍ରୀବର ଯେ ଅଟନ୍ତି ଭାଇବେନି ॥
ଜ୍ୟେଷ୍ଠ ବାଳୀ ବୀର କନେଷ୍ଠା ସୁଗ୍ରୀବର ।
ଇନ୍ଦ୍ର ଆଦିତ୍ୟଙ୍କର ଅଂଶେ ଅବତାର ॥
ରୂପେଣ ସୁନ୍ଦର ଯେ ଧାର୍ମିକ ପଣ ଦେଖି ।
ଖଡ଼ଦ ନୃପବର ରାଜ୍ୟଭାର ଉପେକ୍ଷି ॥୮୦
ଜ୍ୟେଷ୍ଠ ପୁତ୍ର ବାଳୀକି ଅବିଷେକ କଲା ।
ସୁଗ୍ରୀକି ଯୁଗରାଜାପଣେ ଛାଡ଼ି ଦେଲା ॥
ଯଥାକାଳେ ତାକୁ ସ୍ୱର୍ଗ ପରାପତ ।
ବାଳୀ ନୃପତି ଯେ ତ୍ରୈଲୋକ୍ୟେ ବିଖ୍ୟାତ ॥
ଏସନେକ ଅନେକ ବରଷ ପରିଯନ୍ତେ ।
ଅକଣ୍ଟେକ ରାଜ୍ୟ ସେ ରାୟେ କରୁଥାନ୍ତେ ॥

ଦୁନ୍ଦୁଭି ନାମେ ଯେ ଦଇତେକ ଆସି ।
ଇସ୍କିନ୍ଧ୍ୟା କଟେକ ସେ ହେଲେଣ ବିନାଶି ॥
ଜାଣିଣ ବାଳୀବୀର ଯୁଝିଲା ତାର ସଙ୍ଗେ ।
ପ୍ରଚଣ୍ଡ ଦଇତ ମିଳିଲା ତାର ଆଗେ ॥୯୦
ବାଳୀକି ଦେଖିଣ ସେ ଭୟେ ପଳାଇଲା ।
ପାତାଳ ବିମ୍ବରେ ସେ ଯାଇଣ ପଶିଲା ॥
ତାହାର ସଙ୍ଗରେ ପଶିଲା ନୃପବର ।
ପାତାଳେ ବରଷେକ କଲେକ ସମର ॥
ଯେବଣ ଦିନେ ମାୟାଭି ହୋଇଲା
ପ୍ରାଣେନାଶ ।
ରଡ଼ିଯେକ ଛାଡ଼ିଲା ପୂରିଲା ଦଶଦିଶ ॥
ବିମ୍ବର ଦ୍ୱାରେଣ ଯେ ରୋଧିର ବାହାର ।
ସୁଗ୍ରୀବର ସହିତେ ଆମ୍ଭେ ଡରିଲୁ ଅପାର ॥
ବିଚାର କଲୁ ହୋ ନିଚୟେ ବାଳୀ ମଲା ।
ଇସ୍କିନ୍ଧା କଟେକ ହୋ ଏବେ
ନାଶଗଲା ॥୧୦୦
ଯେତେ ଭାଳି ରାଜା ହୋଇଲା ସୁଗ୍ରୀବର ।
ଏସନ ସମୟେ ଆସି ମିଳିଲା ବାଳୀବୀର ॥
କୋପେଣ ବଦନ କଲାକ ବିକରାଳ ।
ଧାଇଂ ସୁଗ୍ରୀବରର ଧଇଲାକ ବାଳ ॥
ଖଡ଼ଗ ଘେନିଣ ହାଣିତ ମନ କଲା ।
ଜମ୍ୱେବର ବୋଲେ ସେ ବେଳେକ
ଛାଡ଼ିଦେଲା ॥
ସୁଗ୍ରୀବର ଭାରିଜା ଯେ ରୋମା ନାମେ
ବାଳୀ ।
ଅବିଷେକ କାଳରେ ସେ କୋଳରେ ଥିଲା
ଧରି ॥
ତାହାକୁ ରମଣ ଯେ କଲା ବାଳୀ ବଳେ ।
ସୁଗ୍ରୀବର ପଳାଇଲା ପ୍ରାଣର ବିକଳେ ॥
ଋଷିମୁଖ ପର୍ବତେ ନୁଚିଲାକ ଯାଇ ।
ବାଳୀ ନ ଗଲା ଯେ ପୂର୍ବେ ଅଛି ଶାପ୍ୟପାଇ ॥
ସାନ ବେଳୁ ସୁଗ୍ରୀବର ମୋହର ଯେ ପ୍ରୀତି ।
ତେଣେ ନ ଗଲି ମୁଁ ଯେ ବାଳୀରାଜା କତି ॥
ଯେମନ୍ତେଣ ସହସ୍ରେ ବରଷ ବନେଥିଲୁ ।

ପିମ୍ପା ସରୋବରରେ ଶ୍ରୀରାମଙ୍କୁ ଦେଖିଲୁ ॥
ବାଳୀର ଚାର ବୋଲି କଲୁ ମାହାଭୟେ ।
ଜାଣିଣ ପେଷିଲେ ମୋତେ ଯେ ସୁଗ୍ରୀବର
ରାୟେ ॥
ଋଷିମୁଖ ପର୍ବତେ ଥିଲୁ ଆମ୍ଭେ ଲୁଚି ।
ସୁଷେଣ ତାରାକ୍ଷ ଗନ୍ଧମାର୍ଦ୍ଦନ ସଙ୍ଗେ
ଅଛି ॥୨୦
ରାମ ଲକ୍ଷ୍ମଣଙ୍କୁ ମୁଂ କହିଲି କଥାମାନ ।
ଶୁଣିଣ ଶରଧା କଲେ ଦଶରଥ ନନ୍ଦନ ॥
ମୋହର ସଙ୍ଗତେ ରାମ ସୁଗ୍ରୀବଙ୍କି
ଦେଖିଗଲେ ।
କପିରାଜ ସଙ୍ଗେ ରାମ ମଇତ୍ର ହୋଇଲେ ॥
ଯେବଣ ଦିନେ ରାବଣ ଆଣିଲା ତୋତେ
ହରି ।
ଆକାଶେଣ ରଥଯେ ବାହାଇ ଦଶିଶିରି ॥
ଆମ୍ଭେ ପାଞ୍ଚଜଣ ଯେ ଋଷିମୁଖେ ଥିଲୁ ।
ତୋହର ରୋଦନ ଶୁଣି ଅନାଇଣ ଦେଲୁ ॥
ଉପୁରାଣ ଶାଢ଼ୀରେ ନବରତ୍ନ ଚୁଡ଼ି ।
ତାହା ଯେ ପକାଇଲୁ ଜନେକ
କୁମାରୀ ॥୩୦
ସେ ବସ୍ତ୍ର ଅଳଙ୍କାର ସୁଗ୍ରୀବର ଥୋଇଥିଲା ।
ଶ୍ରୀରାମଙ୍କୁ ଦେଖିଣ ଛାମୁରେ ସମର୍ପିଲା ॥
ତେଣୁ ସେ ରଘୁନାଥ କଲେ ତାଙ୍କୁ ପ୍ରୀତି ।
ମଇତ୍ର ଛଳେ ରାମ ବାଳୀକି ନିପାତି ॥
ଇଷ୍କିନ୍ଧ୍ୟା ରାଜ୍ୟରେ ରାମ ସୁଗ୍ରୀବିକି ରାଜା
କଲେ ।
ଦୁନ୍ଦୁଭିର ହାଡ଼ ରାମ ଚରଣେ ପିଙ୍ଗିଦେଲେ ॥
ସପତ ଶାଳ ତରୁ ରାମ ବାଣକେ ଛେଦନ
କରି ।
ମାଲ୍ୟବନ୍ତ ପର୍ବତେଣ ଚତୁର୍ମାସ୍ୟା ସାରି ॥
ଋକ୍ଷବଳ ଘେନି ସୁଗ୍ରୀବର ରାୟେ ।
ଚାରିଦିଗକୁ ଯେ ଦୂତ ବରଗାୟେ ॥୪୦
ଅଙ୍ଗଦ ନାମେଣ ଯେ ବାଳୀର ଦୁଲାଳ ।
ତାହାର ସଙ୍ଗତେ ଆମ୍ଭେ ଅଇଲୁ ସାତବୀର ॥

ବନଗିରି ପର୍ବତ ବୁଲିଲୁ ସମସ୍ତ ।
ସିନ୍ଧୁକୂଳେ ସମ୍ପାତି କହିଲା ବାରତ ॥
ଶୁଣିଣ ସାନନ୍ଦ ହୋଇଲୁ ଅଷ୍ଟସେନା ।
ଜମ୍ୱେବ ବୋଇଲେ ତୁ ଶୁଣ ହନୁମାନା ॥
ଆମ୍ଭେ ସାତହେଂ ଯେ ପର୍ବତେଣ ଥିବୁ ।
ତୁ ଯାଇ ଲଙ୍କାରେ ସୀତାକୁ ଖୋଜିବୁ ॥
ତାହାଙ୍କର ଆଜ୍ଞାରେ ମୁଂ ଅଇଲି ସିନ୍ଧୁ
ଡେଇଂ ।
ସନ୍ଦେଶ ପାଇବା ଯାୟେ ରହିଅଛି
ମୁହିଂ ॥୫୦
ତୋତେ ନ ଦେଖିଣ ମୁଂ ବାହୁଡ଼ିଣ ଯାନ୍ତି ।
ତାହାଙ୍କ ଆଗରେ ମୁଂ ନେଉଟି କହନ୍ତି ॥
ନାହିଂ ସୀତା ବୋଲି ବୋଇଲେ ମରନ୍ତେ ।
ଯେଡ଼େ ପ୍ରପଞ୍ଚ ଯେ କଲାକ ଦଇତେ ॥
ଏବେ ମାଏ ତୁମ୍ଭେ ଗୋ ନ କରସି ଶୋକ ।
ହେଲେଣ ଜିଣିମୁ ମାଗୋ ଆମ୍ଭେ
ତଇଲୋକ୍ୟ ॥
ତୋହର ସ୍ୱାମୀ ଯେ ଅଟଇ ରଘୁନାଥ ।
ଅବଶ୍ୟ ବିଜୟ କରିବେ ରାମ ଏଥ ॥
ରାବଣକୁ ମାରି ଗୋ ତୋତେ ଘେନି
ଯିବେ ।
ଯେ ନଙ୍କାଗଡ଼ ଗୋ ଅବିଘ୍ନରେ
ବିଧଂସିବେ ॥୬୦
ହନୁମନ୍ତ କଥା ଶୁଣିଣ ମାହାସତୀ ।
ମନେ ମନେ ବିଚାରଇ ଜନେକ ଦୋହିତୀ ॥
ଯେ ଅବା ରାବଣ ଯେ ଇନ୍ଦ୍ରଜିତ ପିତା ।
ମାୟା ହୋଇ ଅବା କହଇ ବାରତା ॥
ରାକ୍ଷାସ ଚାଣ୍ଡାଳ ଯେ ଅଟଇ କାମରୂପୀ ।
ରାମ ସେ ମାନୁଷ୍ୟ ଆଣିଲେ କାହିଂ କପି ॥
ମାୟା ଅମାୟା ମୁଂ ଜାଣିବି କେମନ୍ତେ ।
ପ୍ରତେ ଯିବି ଯେହାକୁ କେବଣହିଂ ମତେ ॥
ଏସନେକ ବିଚାରି କହିଲେ ମାହାସ୍ୱତୀ ।
କିସ ଶଙ୍କୁନ୍ୟ ତୋତେ ନା କହିଲେ
ରଘୁପତି ॥୭୦

ତୁ ଯେବେ ତାହାଙ୍କର ଯେଡ଼େକ ବିଶ୍ୱାସ ।
ଶୁଣି ଅଛୁଟିକି ଗୁପତ ସନ୍ଦେଶ ॥
ଶୁଣି ହନୁମନ୍ତ ହୋଇଲା ତ୍ରିପୁତି ।
ଅଣ୍ଟିରୁ କାଢ଼ି ମୁଦି ଦେଲାକ ମାରୁତି ॥
ଦେଖିଣ ଜାନେକୀ ଯେ ଶିରରେ
ତାହାଧରି ।
ଭ୍ରାନ୍ତି ଛାଡ଼ିଲା ସେ ଜନେକ କୁମାରୀ ॥
ଶ୍ରୀରାମ ନାମ ଯେ ଅକ୍ଷର ତିନି ଗୋଟି ।
ତାହା ଦେଖି ବଇଦେହୀର ପଞ୍ଚପ୍ରାଣ ଫୁଟି ॥
ମୁଦ୍ରିକା ବାହୁନି କାନ୍ଦଇ ମହୀସୁଳୀ ।
ତୁ ମୁଦି ଥାଉ ସଦା ଶ୍ରୀରାମ ଅଙ୍ଗୁଳି ॥୮୦
ଧନ୍ୟ ଧନ୍ୟ ସୁବର୍ଣ୍ଣ ମହିମା ତୋର ଧନୀ ।
ଅଯୋଧ୍ୟାରୁ ରାଘେବ ଅଇଲେ ତୋତେ
ଘେନି ॥
ସମସ୍ତ ଆଭରଣ ଲୋଚ୍ଛି ପକାଇଲେ ।
ନିକାଞ୍ଚନ ହୁଅନ୍ତି ବୋଲି ତୋତେ ପ୍ରିୟ
କଲେ ॥
ଋଷି କୋଇଲା ତଟେ ପୂଜିଲେ ଯେବଣ
ଲିଙ୍ଗ ।
ହୀରାର ନାୟକ ରହିଲା ତହିଂ ସଙ୍ଗ ॥
ଘେନିଲା ମାଣିକ୍ୟ କୁବିନ୍ଦର ମୋତି ।
ନବରତ୍ନ ନବଗ୍ରହଙ୍କର ଜ୍ୟୋତି ॥
ସ୍ୱାମୀର ଅଙ୍ଗୁଷ୍ଠିରେ ଦିଶୁଥାଉ ଶୋଭା ।
କି ଜାଣି ଉଦୟେ ସୂର୍ଯ୍ୟେ ଅଗ୍ନିଙ୍କ ପ୍ରଭା ॥୯୦
ଗନ୍ଧ ଚନ୍ଦନ ଚତୁସମ ଲେପନ୍ତି ରାମ
ମୋତେ ।
ଏଡ଼େ ପ୍ରିୟ ସ୍ନେହ ମୁଦି ତୁ ନ କାଢ଼ନ୍ତି
ତୋତେ ॥
ତୁ ମୋହର ଅଷ୍ଟାଙ୍ଗ ଶରୀରେ ବୁଲିଯାଉ ।
ଖେଦ ନ,ବହି ସ୍ୱାମୀର ଅଙ୍ଗେ ଥାଉ ॥
ପଶା ଶକଟା ଜୁଅ ଖେଳିବାର ବେଳେ ।
କରତାଳ ରାମ ମାରନ୍ତି ମୋର କରେ ॥
ତୁ ମୁଦି ସକଳ କଥାକୁ ଅଟୁ ସାକ୍ଷୀ ।
ମୁହିଂ ଏବେ ହାଦେ ହୋଇଲି ନିରିମାଖୀ ॥

ଦୁଷ୍ଟ ରାବଣ ଯେ ଆଣିଲା ମୋତେ ହରି ।
ସ୍ୱାମୀ ଯାଇଥିଲେ ମାୟାମୃଗ ମାରି ॥ ୧୦୦
ଲକ୍ଷଣହିଁ ମାୟାରାବେକ ଶୁଣିଗଲା ।
ପାପିଷ୍ଠ ଚାଣ୍ଡାଳ ମୋତେ ବହୁତ କଷ୍ଟଦେଲା ॥
ମୁହିଁ ଏବେ ରାକ୍ଷସ ଘରେ ଅଛି ବନ୍ଦୀ ।
ତୁ କିମ୍ପା ସ୍ୱାମୀକି ଛାଡ଼ିଲୁ ଭୋ ମୁଦି ॥
ଏକା ହୋଇ ଅଛନ୍ତି ଯେ ମୋହର ପ୍ରାଣନାଥ ।
ଅଲଗା ଦିଶୁଥିବ ମୋ ବଲ୍ଲଭର ହାତ ॥
ଦଶମାସ ହୋଇଲା ବିହି କଲା ଭିନ୍ନ ଭିନ୍ନ ।
କାହା ତୁଲେ ସ୍ୱାମୀ ବଞ୍ଚୁଛନ୍ତି ଦିନ ॥
ରାତ୍ର ଦିବସରେ ଥାନ୍ତି ମୋର ପାଶ ।
ମୃଛି ନ ପାରି ମୋତେ ଆଣିଲେ ବନବାସ ॥୧୦
ଏବେ କିସ କରିବେ ଦଇତକୁ ମୋତେ ଦେଇ ।
ସାତଯୋଜନେତ ମେଳା ଆର ନାହିଁ ?
ଏତେ ବୋଲି ମୁଦି ହିଆରେଣ ନନ୍ଦି ।
ନୟନୁ ଅଶ୍ରୁଜଳ କି ପର୍ବତୁ ବହେ ନଦୀ ॥
ହନୁମନ୍ତ ବୋଇଲା ତୁ କିମ୍ପାଇ ଶୋକ କରୁ ।
ପୁଣ୍ୟସ୍ତିରୀ ହୋଇଣ ଗୋ କଥା ନ ବିଚାରୁ ॥
ତୁ ଯେବେ ଏତେ କଷ୍ଟ ନ ପାଇବୁ ସତୀ ।
କେମନ୍ତେ ମରିବ ଆନେ ରାବଣ ଦ୍ରପିଷ୍ଟି ॥
ଦେବତାନ୍ତ ଭୃତ୍ୟ କଲା ଭୁଜବଳେ ।
ଇନ୍ଦ୍ରକୁ ଖଟାଇଲା ନିଜ ପାଦତଳେ ॥୨୦
ଚଉଦଭୁବନର ଯେତେକ ସାର ଆୟେ ।
ଲଙ୍କପୁରେ ଆଣି କଲାକ ଇଙ୍ଗରାୟେ ॥
ଏତେ ସମ୍ପଦ ହୋଇଲେ କିସ ଯାଇ ।
ମୋହର ବୋଲକର ନ ରୋଦଗୋ ଆଇ ॥
ସ୍ୱାମୀ ତୋହର ଦୁଃଖେ ଅଛନ୍ତି ସିନ୍ଧୁପାରି ।
ବାରତା ଘେନି ମୁଂ ଯିବି ବେଗ କରି ॥
ଦିଅସି ସନ୍ଦେଶ ଗୋ ବିଳମ୍ବ ନ କର ।
ସୀତୟା ବିଚାରିଲେ ହୃଦୟ ଭିତର ॥
ଦଇତେ କାମରୂପୀ ସ୍ୱାମୀକୁ ମୋର ମାରି ।
ମୁଦି ଆଣିଲା ଅବାୟେ ଅଟଇ ଦଶଶିରି ॥୩୦
ବାନର ନିଲକ୍ଷଣ କାହିଁ ଏତେ ବଳ ।
ପକ୍ଷୀ ନାହିଁ ଉଡ଼ି ଅଇଲା ସିନ୍ଧୁଜଳ ॥
କେମନ୍ତେ ସମ୍ପ୍ରତେ ମୁଂ କରିବଇଂ ଏହା ।
ନିଷ୍ଚୟେ କପି ନୁହଇ ଅଟଇ ବିଂଶବାହା ॥
ମାୟା କଥାମାନ ଶୁଣିଲି ଏହାର ।
ମୁଦି ସନ୍ତେକ ମାତ୍ର ପାଇଲି ନିକର ॥
ଯେ ଯେ ମରକଟ ଅଟନ୍ତି ପଶୁଜାତି ।
ନିର୍ଝର ପାଣି ପିଇ ଫଳମୂଳ ଖାନ୍ତି ॥
ମୁକୁଟ କୁଣ୍ଡଳ ପାଇଲାକ କାହିଁ ।
ନବରତ୍ନ ମାଳା ଯେ କଣ୍ଠରେ ଅଛିନାଇ ॥୪୦
ଯେ ସେ ବାନର ଯେ ଶ୍ରୀରାମର ନାହିଁ ଧନ ।
ଏଣୁକରି ପ୍ରତେ ଯେ ନଗଲା ମୋହମନ ॥
ଯେତେ ବୋଲି ଦେବୀ ଯେ ହନୁମନ୍ତଙ୍କୁ ଚାହିଁ ।
ବୋଇଲେ ପୂର୍ବେ ତୋତେ ଦେଖିଲା ମୋରନାହିଁ ॥
କେମନ୍ତେ ସମ୍ପ୍ରତେ କରିବି ମୋତେ କହ ।
ଏକଥା ଅଟଇନା ବିଷମ ସନ୍ଦେହ ॥
ଗୁପତ କଥା ରାମ କି କି ଛନ୍ତି କହି ।
ତାହା କହିଲେ ସେ ପ୍ରତେଯିବି ମୁହିଁ ॥
ହନୁମନ୍ତ ବୋଲଇ ଗୋ ତୁମ୍ଭେ ନଧର ଆନ ।୫୦
ସୁଗ୍ରୀବର ଭଣଜା ମୁଂ ପମାଞ୍ଜନୀର ନନ୍ଦନ ॥
ସୀତା ବୋଇଲେ କେ ଜାଣଇ ସୁଗ୍ରୀବର ।
କେ ଜାଣଇ କେଶରୀ କାହାର କୁମର ॥
କେ ଜାଣଇ ଜମ୍ୱେବ କେ ଜାଣଇ ଅଙ୍ଗଦ ।
ଏ କଥାମାନ ମୋତେ ହୁଅଇ ଅସମ୍ଭବ ॥
ଜାଣିଥିଲେ କହ ଯେଣେ ପ୍ରତେ ଆସଇ ।
ନୋହିଲେଣ ତୋତେ କରିବି ଭସ୍ମରାଇ ॥
ଶୁଣିଣ ମାରୁତି କମ୍ପଇ ଥରହର ।
ମସ୍ତକ ଉପରେ ନେଇ ଯୋଡ଼ଇ ବେନିକର ॥
ଭୋ ମାତ ମୋତେ ଗୋ ନକର ମନେ କୋହ ।
ମୁହିଁ ସେ ହନୁମନ୍ତ କେଶରୀର ପୁଅ ॥୬୦
ବହୁତ ବିଶ୍ୱଆସ କହନ୍ତି ରାମ ମୋତେ ।
ଯାହା ଯେ ବୋଲିଛନ୍ତି କହଇ ଜାଣ ତୋତେ ॥
ଚିତ୍ରକୂଟ ପର୍ବତେ ବରଷେ ଥିଲ ରହି ।
ଯିସ ଯିସ କଥାମାନ ଉପୁଜିଲା ତହିଁ ॥
ତାହା ଶ୍ରୀରାମ ମୋତେ ଏକାନ୍ତେ କହିଲେ ।
ପ୍ରତେ ନଗଲେ ଏହା କହିବୁଟି ବୋଇଲେ ॥
ଯେବଣ ଦିନେ ତୁମ୍ଭେ ବନେ କ୍ରୀଡ଼ା କଲ ।
ଲକ୍ଷ୍ମଣଙ୍କୁ ବସାରେ ବସାଇଣ ଗଲ ॥
ମନ୍ଦାଅଗ୍ନି ନଦୀରେ ପଶିଲ ତୁମ୍ଭେ ଯାଇ ।
ତହୁଂ ବାହାର ହୋଇଲ ଓଦାବସ୍ତ୍ର ହୋଇ ॥୭୦
ଧାତୁ ଶିଳା ଉପରେ ବସିଲ ରାମସୀତା ।
ଗେରୁ ଘୋରି ରାମ ଦେଲେ ତୋତେ ଚିତା ॥
ତହୁଂ ନାଗେଶ୍ୱର ଡାଳିଏ ଘେନିଗଲ ।
ତୁ ଯେ ବଇଦେହୀ ଦେଖିଲୁ କପି ପଲ ॥
ଭୟେ ଶ୍ରୀରାମଙ୍କୁ କୋଳ କଲୁ ଯାଇ ।
ତୋହର ଚିତା ନାଗିଲା ଶ୍ରୀମର ତହିଁ ॥
ହୃଦରେ ତିଳେକ ଅରୁଣ ତେଜ ଦିଶି ।
ତାହା ଦେଖି ତୁମ୍ଭେ ବେନିଜନେ ହସି ॥
ଯେ କଥା କେହି ଯେ ନ ଜାଣନ୍ତି ଆନ ।
ଗୁପତେ କହିଲେ ମୋତେ କଉଶଲ୍ୟାର ନାନ ॥୮୦
ଆବର କହି ଯେ ଶୁଣସି ଗୋ ସନ୍ଦେଶ ।
ଚିତ୍ରକୂଟ ପର୍ବତେ ଶୁଖାଇଲ ମୃଗ ମାଂସ ॥
କାକ ଚାଣ୍ଡାଳ ତହିଁଙ୍କି ଝାମ୍ପ ଦେଲା ।
ନଖ ଘେନିଣ ତୋର ହୃଦୟ ବିଦାରିଲା ॥

ଯେ ଦୁଇକଥା ଅଟଇ ଗୁପତ ।
ଯତନେ କହିଲେ ମୋତେ କଉଶୁଲାର
ସୁତ ॥
ବୋଇଲେ ସୀତା ଯେ ଚିହ୍ନିଲା ନାହିଁ
ତୋତେ ।
ଏହା କହିଲେ ସେ କରିବ ସମ୍ପ୍ରତେ ॥
ଶୁଣି ମାହାସ୍ୱତୀର ସଂଶୟ ଫିଟିଗଲା ।
ଆଦିତ ଦେବତା ଯେର୍ଣ୍ଣେ ଉଦଯେ ତିମିରି
ତୁଟିଲା ॥୯୦
ପରମ ଦୋଷ ଯେ ହୋଇଲେ ଚାନ୍ଦମୁହିଁ ।
ତୋ ତହୁଁ ରାମର ଯେ ଆନଲୋକ ନାହିଁ ॥
ଯେଡ଼େ ଗୁପତ କଥା କହିଲେ ଯହୁଁ
ତୋତେ ।
ଏବେ ସେ ଭ୍ରାନ୍ତି ଫିଟିଲାକ ମୋତେ ॥
ତୁ ଯେବେ ହନୁମାନ ରାମର ବିଶୁଆସ ।
ସାଧକଥା ମୋହର ଆଗରେ ପରକାଶ ॥
ରଘୁନାଥର ଦୟା ଅଛିଟିକି ମୋତେ ।
ନେମାକୁ ଶରଧା କରନ୍ତି ଅବା କେତେ ॥
ସମୁଦ୍ର ଲଂଘିଣ ପାରିବେଟିକି ଆସି ।
କେତେକ ସଇନି ଅଛି କହନି
ନିବେଶି ॥୧୦୦
ରାବଣ ରାକ୍ଷସକୁ ପାରିବେଟିକି ମାରି ।
ଦେବେଣ ଦୁର୍ଲ୍ଲଭ ଅଟଇ ଲଙ୍କପୁରୀ ॥
ହନୁମନ୍ତ ବୋଲଇ ଶୁଣ ମୋର ମାତ ।
ରକ୍ଷ ବାନର ଯେ ବଳ ଅପ୍ରମିତ ॥
ଯେତେ ତେତେ ବୋଲିକେ କହିବ
ନାମଧରି ।
ଅକଳିତ ବଳ ଗୋ କଳିତ ନପାରି ॥
ବୀର ମାହାବୀର ଗୋ ଅଛନ୍ତି ବହୁତ ।
ସେନ୍ନା ସେନାପତି ଗୋ କେ କରିବ ଅନ୍ତ ॥
ଶ୍ରୀରାମର ପ୍ରାଣ ଅଛଇ ତୁମ୍ଭର ତହିଁ ।
ଆକାଶର ପାଣିକି ଚାତକ ପରି ହୋଇ ॥୧୦
ଯେକା କାଣ୍ଡକେ ଯହୁଁ ମଲାହାଦେ ବାଳୀ ।
ରାବଣ ନିଲକ୍ଷଣକୁ କିସ ସେହୁ ଭାଳି ॥

ଲଙ୍କାଗଡ଼ ଧ୍ୱଂସି ଅବଶ୍ୟ ନେମେ ତୋତେ ।
ବହୁତ କୋପ କରି ବୋଇଲେ ରାମ
ମୋତେ ॥
ରାବଣ ଯେମନ୍ତେ ଲୁଚଇ ଅଛି ଥୋଇ ।
ତାହାର ମନେ ମନେ ବଡ଼ପଣ ହୋଇ ॥
ତୁ ଯେବେ ଆସିଣ ପିଠିରେ ମୋର ବସ ।
ମାୟା ବୁଦ୍ଧିମାନ ହେଉ ତାର ନାଶ ॥
ଶ୍ରୀରାମର ସନିଧେ ତୋତେ ସମର୍ପଇ ।
ଲଜ୍ଜା ପାଉ କିନା ସେ ମନ୍ଦୋଦରୀ
ସାଇଂ ॥୨୦
ଜାନେକୀ ବୋଇଲା ହନୁର ବୋଲ ଶୁଣି ।
ଯେବଣ କଥା ତୁ କହିଲୁ କପିମଣି ॥
ମୋହ ଗଲେ ଏଥୁ ରାବଣ ଜୀଇଂବ ।
ସ୍ୱାମୀର ଆଜ୍ଞା ତ ବିଅର୍ଥ ହୋଇବ ॥
ସେହି ଚୋରାଇଲା ତୁମ୍ଭେ ଚୋରାଇବ ।
ଏ କଥାରେ କିସ ପୌରୋଷ ପାଇବ ॥
ସ୍ୱାମୀ ଦୋରୋହାକୁ ପ୍ରାଣେ ଯେବେ ମାରି ।
ତେବେ ସେ ଜଗତେ କୀରତି ବିସ୍ତାରି ॥
ଆବର କଥା ଏକ ଶୁଣି ହନୁମାନ ।
ବିଶେଷେ ଆପଣେ ତ ଦିଶୁଅଛୁ ସାନ ॥୩୦
ଜଣଙ୍କୁ ଜଣଙ୍କ କେମନ୍ତେ ବହିନେବୁ ।
ଶହେ ଜୁଣ ସମୁଦ୍ର ପାରି ହୋଇ ଯିବୁ ॥
ତୋହର ଲୋଭ କଥା ଅଟଇ ମାରୁତି ।
ଶିଶୁ ମର୍କଟ ତୁ ଯେ ଅଟୁପଶୁ ଜାତି ॥
ଶୁଣି ହନୁମନ୍ତ କାୟା ବିସ୍ତାରିଲା ।
ଲକ୍ଷେକ ଯୋଜନ ଯେ ତକ୍ଷଣେ ବଢ଼ିଗଲା ॥
ଯେହି ଅନରୂପେ ହୋଇଲା ବୀର ମୋଟ ।
ଧ୍ରୁବଚକ୍ରେ ଯାଇ ଲାଗିଲା ମୁକୁଟ ॥
ଦେଖିଣ ଜାନେକୀ ଯେ ହସଇ
ମନେମନ ।
ବୋଇଲେ ନଜାଣି କି ପେଷିଲେ
ରଘୁନାନ ॥୪୦
ଯଦ୍ୟପି ହନୁମନ୍ତ ଯେଡ଼େ ତୁ ହୋଇଲୁ ।
ମୋତେ ବହିନେବୁ ବୋଲିଣ କହିଲୁ ॥

ଶତେ ଜୁଣ ସିନ୍ଧୁ ତରିବୁ କେମନ୍ତେ ।
ଅସୁର ଗୋଡ଼ାଇ ଯେ ମାରିବେଟି ତୋତେ ॥
ତାହାଙ୍କର ତୁଲେ କରିବୁ ଯେବେ ଯୁଦ୍ଧ ।
ଖସି ପଡ଼ିବି ନା ମୁଂ ସମୁଦ୍ରର ମଧ ॥
ମୋହର ମଲେ କିସ କରିବୁ ତୁ ଯାଇ ।
ଆବର ବିଶେଷେ ମୁଂ ପରପୁରୁଷ ନ
ଛୁଅଇଂ ॥
ତୁ ଅବା ବୋଲୁ ବଳେ ହରି ଆଣିଲା
ରାବଣ ।
ବଳ ଦୁର୍ବଳକୁ ମୁଂ କରିବି କେଉଂ
ଟାଣ ॥୫୦
ମୋହର ଇଚ୍ଛାଯେ କି ଧଇଲି ତାହାର ହସ୍ତ ।
ଅକାରଣେ ଦୃଧଂସ ମୋତେ କଲାକ
ଦଶମାଥ ॥
ପ୍ରାଣର ଯୁବତୀ ଆମ୍ଭେ ଅଟୁ ଯେ ଅବଳା ।
ମାୟାରେ ମୋତେ ଯେ ଆଣିଲା ବିଶ୍ରବାର
ବଳା ॥
ଶାପ୍ୟ ନଦେଲି ମୁଂ ଯେ ପାପକୁ ଭୟେ
କରି ।
ପୁରୁଷ ହତ୍ୟା କଲେ ନାଶଯାନ୍ତି ନାରୀ ॥
ତୁ ଆହୋ ପାବେନୀ ଯେ ନୁଆରି ମୋତେ
ନେଇ ।
ମୋହୋର ଗଲେ କି ଶତ୍ରୁହତ ହୋଇ ॥
ଆବର କଥା ଯେକ କହଇ ମୁହିଁ ତୋତେ ।
ସିନ୍ଧୁ ଜିଣି ରାମ ଯେ ଆସିବେ
କେମନ୍ତେ ॥୬୦
ଅସଂଖ୍ୟ ଯେବେ ତୁମ୍ଭେ ରକ୍ଷ କପିବଳ ।
କେବଣ ଉପାୟେ ଯେ ତରିବ ସିନ୍ଧୁଜଳ ॥
ତୁ ଯେବେ ଯେ କଥା ନିସନ୍ଧି କରି କହ ।
ଶୁଣିଣ ବୋଇଲା ଯେ ପବନର ପୁଅ ॥
ତୁ ମୋତେ ଯାହା ଗୋ ପୁଚ୍ଛିଲୁ ବହିଦେହୀ ।
ମୋତେ ଗୋ ଭୋ ମାତ ସରି କେହି
ନାହିଁ ॥
ମେରୁ ସମ କରିଣ ଯେ କାୟା ବଢ଼ାଇବି ।

ଶ୍ରୀରାମ ଲକ୍ଷ୍ମଣଙ୍କୁ କନ୍ଧେ ବସାଇବି ॥
ଧନୁସସ୍ତ୍ର ଘେନି ଆସିବେ ଭାଇ ବେନି ।
ରକ୍ଷ କପିଥିବେ ଯେ ଶଙ୍କଶିଳ ଘେନି ॥୭୦
ଯେମନ୍ତେ ସମସ୍ତେ ହୋଇବେ ସିନ୍ଧୁପାରି ।
ଭୋ ଜନେକ ଦୁଲଣୀ ଆନ ନ ବିଚରି ॥
ଯେବଣ ଯେବଣ ବୀରେ ଗୋ ଅଛନ୍ତି
ରାମସଙ୍ଗେ ।
ସାହେର ଲଂଘିବେ ସେ ଗୋ ପବନହୁଂ
ବେଗେ ॥
ଶୁଣିଣ ବଇଦେହୀ ସନ୍ତୋଷ ହୋଇଲେ ।
ଯା ଯା ଶ୍ରୀରାମଙ୍କୁ କହ ଯା ବୋଇଲେ ॥
ଯେମନ୍ତେ ପାରନ୍ତୁ ଆସନ୍ତୁ ବେଗ ହୋଇ ।
ଦୁଇମାସକୁ କଷ୍ଟ କରିଛି ଲଙ୍କସାଇଂ ॥
ଶ୍ରୀରାମ ନଇଲେ ଘେନିମ ମୋହୋର
ପ୍ରାଣ ।
ବୁଝାଇ ହନୁମନ୍ତ ସ୍ୱାମୀଙ୍କି ମୋହୋର
ଆଣ ॥୮୦
ଶୁଣିଣ ମାରୁତି ଯେ ଯୋଡ଼ଇ ବେନିକର ।
ଦିଅସି ସନ୍ଦେଶ ଗୋ ବିଳମ୍ବ ନକର ॥
ଯାହା କହିଲେ ଶ୍ରୀରାମ ପ୍ରତେ ଯିବ ।
ଦେଖିଲା ଯେ ସୀତ୍ୟା ବୋଲିଣ ବୋଲିବ ॥
ତାହା ସେ ମୋତେ ଗୋ କହସି କମଳଣୀ ।
ଜନେକର ନନ୍ଦନୀ ସନ୍ତୋଷ ଯେହା ଶୁଣି ॥
ଯାହା ବୋଇଲୁ ସତ ଅଟଇ ହନୁମନ୍ତ ।
ମୁହିଂ ତୋହର ଆଗେ କହଇ ଯଥାର୍ଥ ॥
ଯେବଣ ଦିନେ ରାମ ହୋଇଲେ ମୋତେ
ବିହା ।
ମହୁ ଶେଯ୍ୟାରେ ଶୋୟନ କଲେ ମୋର
ନାହା ॥୯୦
କୁଚ୍ଚଦୀପ ଛୁଇଂ ରାମ ନିୟମ କଲେ ।
ତୋ ତହୁଂ ଆନନାରୀ ବିଭା ନୋହିବି
ବୋଇଲେ ॥
ମୁହିଂ ସତ୍ୟ କଲି ଅଗ୍ନି ଦେବ ଛୁଇଂ ।
ଶ୍ରୀରାମ ବିନୁ ମୋର ଆନ ପତି ନାହିଂ ॥

ଯେହ୍ନୁ ବେନି କଥା ସେ ଯେ ନ ଜାଣଇ
ଆନ ।
କହିଲେଣ ପ୍ରତେ ଯେ ଯିବେ ରଘୁନାନ ॥
ଯେତେ ବୋଲି ଦେବୀ ମଥାରୁ ମଥାମଣି ।
ହନୁମନ୍ତ ହସ୍ତରେ ଯେ ସମର୍ପିଲେ ଆଣି ॥
ଶ୍ରୀରାମର ମୁଦ୍ରିକା ସାଇତିଲେକ ସ୍ୱତୀ ।
ଆଙ୍ଗୁଷ୍ଠିରେ ଆପଣ ନାଇଲେ ପ୍ରିୟବତୀ ॥
ହନୁମନ୍ତକୁ ବୋଇଲେ ଯାଅ ବେଗ ହୋଇ ।
ବାରତା କହି ଘେନି ଆସ ବେଗ ହୋଇ ॥
ମଣିଘେନି ମାରୁତି ସୀତ୍ୟାକୁ ଓଳଗି ।
ଭୋ ମାତ ଯାଉଂଅଛି ବୋଲିଣ ଆଜ୍ଞା ମାଗି ॥
ସୀତ୍ୟା ବୋଇଲେ ତୋତେ ହେଉ
କଇଲ୍ୟାଣ ।
ଦୁଇମାସ ଭିତରେ ସ୍ୱାମୀଙ୍କି ମୋର ଆଣ ॥
ନୋହିଲେଣ ରାବଣ ମୋତେ ପକାଇବ
ମାରି ।
ପଛରେ ରଘୁନାଥ ଆସିବେ କିସ କରି ॥
ଶୁଣି ହନୁମନ୍ତ ବୋଇଲା ନ ଭାଳ ।
ନିକଟ ହୋଇଲାଣି ତୁମ୍ଭର ପୁଣ୍ୟେ କାଳ ॥୧୦
ମୋହୋର ଯେଥୁ ଗଲାର ଗଣୁଥିବ ଦିନ ।
ମାସକେ ଏଥି ବିଜେ କରିବେ ରଘୁନାନ ॥
ରାବଣକୁ ମାରି ତୋତେ ଘେନିଯିବେ ।
ରକ୍ଷ ବାନର ଗୋ ଗଡ଼ ବିଳସିବେ ॥
ଯେସନେକ ବୋଲି ନମସ୍କାର କରି ।
ସୀତ୍ୟାର ମଣି ଗୋଟି ଅଞ୍ଚାରେଣ ଭରି ॥
ଯାଉଂଅଛି ବୋଲି ସେ ଆଜ୍ଞା ମାଗିଲା ।
ଖଣ୍ଡେ ଦୂରେ ଆସି ମନରେ ବିଚାରିଲା ॥
ଶୟେ କୁଶ ଜିଣି ଯେ ଅଇଲଇଂ ଯେଥ ।
ତୁନି ହୋଇ ଯିବାର ଯେ ଅଟଇ
ବିଅର୍ଥ ॥୨୦
ଯେହାଙ୍କର ସଙ୍ଗତେ ପ୍ରୀତି ଆମର ନାହିଂ ।
ଏଡ଼େ ଦୋରେହାକୁ ସହିବା କିସ ପାଇଂ ॥
ଯୁଦ୍ଧ ସିନା ମୂଳ ଯେହାଙ୍କର ସଙ୍ଗେ ।
ଥୋକାଯେକ ଅସୁରକୁ ମାରିବି ନାନାରଙ୍ଗେ ।

ଆଙ୍କୁଂ ସୀଉକାର କରଇ କିନା ଦ୍ୱନ୍ଦ ।
ମରନ୍ତୁ କିନା ଯେ ଦଇତ୍ୟେ ମହାମନ୍ଦ ॥
ଶ୍ରୀରାମ ଘରଣୀକି ଆଣିଲା ଚୋରାଇ ।
ଲଙ୍କାଗଡ଼ ପୋଡ଼ିଯାଇ କିନା ମୁହିଂ ॥
ଅଭୟ ହୋଇଣ ଯେ ଅଛନ୍ତି ଅସୁର ।
ଆଙ୍କୁଂ ଉଚାଟ ଯେ ପାଆନ୍ତୁ ନିଶାଚର ॥୩୦
ଏତେ ବୋଲିଣ ଯେ ଓଶେକ ବନ ଗଲା ।
ଫଳିଲା ଫୁଟିଲା ବୃକ୍ଷନ୍ତ ଉପାଡ଼ିଲା ॥
ମଡ଼ ମଡ଼ ଶବଦ ଶୁଭଇ ଚଉପାଶ ।
କି ଜାଣି ବହିଲା ପ୍ରଳୟ ବତାସ ॥
ଜାମ୍ବୁ ଜମ୍ବିଲ ଯେ ନାରଙ୍ଗ ନଟିକାଳ ।
ନାରଖାର କଲା ଯେ ପବନର ବାଳ ॥
କେବଣ ତରୁବର ପାଦଲାଗି ଭାଜି ।
କାହା ଭାଙ୍ଗିଣ ଉପାଡ଼ଇ ଗଳ ଗାଜି ॥
କେବଣ ବୃକ୍ଷ ଉପରେ ବୃକ୍ଷନ୍ତ ନେଇ ପିଟି ।
କେବଣହିଂ ବୃକ୍ଷ ଶିଖରେ ଯାଇଂ ଉଠି ॥୪୦
ସୁଆଦ ଫଳ ଯେବଣ ତରୁବର ।
ଉପାଡ଼ି କରିଣ ଝାଡ଼ଇ ତୁଣ୍ଡର ॥
ପଦ୍ମ ବନ ଯେହ୍ନେ ମଉନାଗ ଖୋଳି ।
ତେସନକ ସଂଯାତ ହନୁମନ୍ତ ମହାବଳୀ ॥
ଶୁଖିଲା କାଠ ଯେହ୍ନେ ଦହଇ ହୁତାଶନ ।
ଓଶେକ ବନ ଯେ ଭାଙ୍ଗଇ ହନୁମାନ ॥
କେତେହେଂକ ଦୂରେ ମଧୁବନ ତୋଟା ।
ତହିଂ ଯାଇ ପଶିଲା ପବନର ବେଟା ॥
ଓପ୍ରୋଧ ଛାଡ଼ିଣ ବନସ୍ତ କଲା ଚୂର ।
ଫଳଫୁଲମାନ ସବୁ କଲା ଢୁର ॥ ୫୦
ନିର୍ଘାତ ଶବଦ ଶୁଭଇ ଘନଘନ ।
ତୋଟା ବିଧ୍ୱଂସଇ ପବନର ନାନ ॥
ବୃକ୍ଷନ୍ତ ନାଶିଣ ତହୁଂ ହୋଇଲା ବାହାର ।
ଦେଖିଲାକ ବିଚିତ୍ର କମ ତହିଂର ଦୁଆର ॥
ସୁବର୍ଣ୍ଣର ତ୍ରୋଣା ଦୁଇ ଖମ୍ବ ଅଛି ।
ତହିଂ ବସିଲା ଯାଇ ପବନର ବଛି ॥
ଗେଲ କରି ପଛୀ ପ୍ରାୟେ ହୋଇ ଉଡ଼ି ।
ବିବିଧ ତରୁବର ମାନ ପକାଇଲା ଉପାଡ଼ି ॥

ବୃକ୍ଷ ଉପାଡ଼ନ୍ତେ ତୋଟାଳେ ତାହା ଜାଣି ।
ସବିହେଂ ରୁଣ୍ଡ ହୋଇ କରନ୍ତି
ଭାଳେଣି ॥୬୦
କେ ବୋଲଇ କେବଣ ହୋଇଲା
ବିପ୍ପରୀତ ।
କିମ୍ବା ବୃକ୍ଷମାନେ ଭାଙ୍ଗିଲେ ଅଦଭୁତ ॥
ଯେବଣ ତୋଟା ନନ୍ଦନ ବନ ସମ ।
ଆନ ପଟାନ୍ତର ନାହିଁ ନା ଉପାମ ॥
ଆମ୍ବ ପଣ୍ଡସ ଯେ କଦଳୀ ନଟିକାଳ ।
କରୁଣା କରମଙ୍ଗା ଜମ୍ବିଳ ଗୁଆ ତାଳ ॥
ଲେମ୍ବାଉ ନାରଙ୍ଗ ଅୟେଂଳା ବରକୋଳି ।
ଦାରାକ୍ଷ ପେଣ୍ଡି ଖଜୁରୀ ଏକ ତୂଳୀ ॥
ଫଳଭରେ ଶାଖାଯେ ଲୋଟନ୍ତି ଧରଣୀ ।
ଅନେକ ଯତନେ ରୋପିଲା ଅଛି
ଆଣି ॥୭୦
ଚମ୍ପା ନାଗେଶ୍ବର ପୁନାଙ୍ଗ ମାଳତୀ ।
ଛୁରୀଅନା କେତକୀ ଦୟେଣା ଜାତି ଜୁତି ॥
ମଲ୍ଲୀ ବଗହୁଲ ତୁଳସୀ ଉତପଳ ।
ମରୁଆ ବୀରଭଦ୍ର ତରାଟ ବକୁଳ ॥
ବକୁଳ କଞ୍ଚଣ କଣିଅର ମୁଚୁକୁନ୍ଦ ।
ମଧୁକ ପାଟୋଳି ମନ୍ଦାର ସୁଗନ୍ଧ ॥
ଇନ୍ଦ୍ରର ଭୁବନୁ ବ୍ରହ୍ମାର ପୁରୁ ଆଣି ।
ଅନେକ ଯତନେ ତୋଟା ରଞ୍ଜିଲା
ବିଂଶପାଣି ॥
ବୃକ୍ଷର ମୂଳେ ସୁବର୍ଣ୍ଣର ବେଦୀ ।
ତହିଁ ସେ ଶ୍ରୀ କପୂର ଖତ କରୁ ମେଦି ॥୮୦
ପନୀର ପାଣି ଯେ ବୁହାଉଥାନ୍ତି ନିତି ।
ଆଠଦିନେ ଦେଖି ଆସଇ ଲଙ୍କପତି ॥
ଶୁଣିଲେ କିସ ବୋଲିବେକ ରାୟେ ।
କେବଣ ଚରିତ ଯେ କେବଣ ଉପାୟେ ॥
ପବନ ନ ବହିଲା ଅକାରଣେ ଭାଜି ।
ଶୁଣି ହନୁମନ୍ତ ଉଠିଲା ଗଳଗାଜି ॥
ଘଡ଼ ଘଡ଼ି ପ୍ରାୟେ ଶୁଭିଲା ଶବଦ ।
ଶୁଣିଣ ତୋଟାଳେ ହୋଇଲେ ତବଦ ॥

ବିକ୍ରମିଣ ବୃକ୍ଷ ଉପାଡ଼ଇ ପୁଣ ପୁଣି ।
ଫଳିଲାର ବୃକ୍ଷ ଯେ ତୁଣ୍ଡରେ ଝାଡ଼ଇ
ଆଣି ॥୯୦
ଦେଖିଣ ତୋଟାଳେ ତରସ୍ତ ହୋଇଲେ ।
ଏସେ ଭାଙ୍ଗୁଅଛି ବୋଲିଣ ବୋଇଲେ ॥
ଚାଲ ରାଜା ଆଗେ ଜଣାଇମା ଯାଇଂ ।
ଏହିକ୍ଷଣି କପି ପଡ଼ିବଟି ଧାଇଂ ॥
ପ୍ରାଣ ଘେନି ଏଥୁଂ ଯିବା ଚାଲ ବେଗେ ।
କାହୁଂ ଅଇଲା ଯେ ପାଇଣ ବଇରାଗେ ॥
ଯେସନେକ ସମୟେ ରାକ୍ଷାସୁଣୀମାନେ
ଆସି ।
ଦେଖିଲେ ଦ୍ରୋଣାଖମ୍ଭ ଉପରେ ଅଛି ବସି ॥
ଭୟେମାନ ପାଇଣ ବାହୁଡ଼ିଣ ତହୁଂଗଲେ ।
ସୀତ୍ୟାର ଆଗରେ ଯାଇଣ କହିଲେ ॥୧୦୦
ଭୋଦେବ ଜାନେକୀ ଗୋ ଶୁଣିଲୁକି
ହାଦେ ।
ମଧୁବନ ଭିତରେ ଗୋ ହୋଇଲା
ପରମାଦେ ॥
ଯେବଣ ବାନର ତୋତେ କଥା କହୁଥିଲା ।
ଓଶେକ ବିପୁନ୍ୟ ସେ ହେଲେଣ ନାଶ
କଲା ॥
ତେତେଡ଼େ ବଡ଼ ତୋଟା ଭାଙ୍ଗି କଲା ପଦା ।
ଯହିଂ ସେ ବସନ୍ତ ବହଇ ସର୍ବଦା ॥
ଅନେକ ଯତନେ ରାବଣ ତାହା କଲା ।
ଫଳିଲା ଫୁଟିଲା ବୃକ୍ଷ ସ୍ଵର୍ଗରୁ ଆଣିଲା ॥
ଯେବଣ ଦିନେ ଏଥି ବିଜେ କରଇ
ରାୟେ ।
ଆମ୍ଭେମାନେ ଶାଢ଼ୀ ପ୍ରସାଦ ବହୁତ
ପାୟେ ॥୧୦
ଅନେକ କ୍ରୀଡ଼ା ଏଥି କରଇ ନୃପମଣି ।
ମନ୍ଦୋଦରୀ ସହିତେ ରାଣୀମାନଙ୍କୁ ଘେନି ॥
ବସନ୍ତ ମାସେ ରାଜା ଘରକୁ ନ ଯାଇ ।
ଗ୍ରୀଷମ ସମୟେ ସର୍ବଦା ଏଥି ଥାଇ ॥
ପୁତ୍ର ଇନ୍ଦ୍ରଜିତ ପ୍ରାୟେ ତୋଟା ଦେଖଇ ।

ସହସ୍ର ତୋଟାଳ ମଧୁବନରେ ରଖାଇ ॥
କାହୁଂୟେ ପୋଡ଼ା ଅଇଲା ବାନର ।
କି କି କହୁଥିଲା ଯେ ତୋହର ଆଗର ॥
ଯେଥୁ ଯାଇଂ ତୋଟା ଭାଙ୍ଗିଲା ନିପାତି ।
ଆମ୍ଭର ମରିବାର ଗୋ ହୋଇଲା ଯେ
ଘାନ୍ତି ॥୨୦
ରାବଣ ଜାଣିଲେ ଗୋ ମରିବୁ ଆଜ ତୁହି ।
ଅକାରଣେ ମୃତ୍ୟୁ ପାଇବୁ ବଇଦେହୀ ॥
ସୀତୟା ବୋଇଲେ ସେ କାହିଂର ବାନର ।
ମୁହିଂ କେହ୍ନେ ଜାଣିମି ସେ କାହାର କୁମର ॥
ଶିଶୁପା ବୃକ୍ଷରେ ସେ ଦୋଳି ଖେଳୁଥିଲା ।
ମୋତେ ଦେଖିଣ ସେ ଖତାଇ ହୋଇଲା ॥
ଶ୍ରୀରାମ ଲକ୍ଷଣ୍ଣ ଆନ ମୋହର ନାହିଁ ।
କପି ସେବକ ଯେ ପାଇବୁ ଆମ୍ଭେ କାହିଂ ॥
ତୁମ୍ଭ ଦେଶେ ଅଛି ତୁମ୍ଭରି ବାନର ।
ଅକାରଣେ ଦୋଷ ଗୋ ଦେଇଣ ମୋତେ
ମାର ॥୩୦
ପୋଡୁ ତୁମ୍ଭର ଲଙ୍କା ବିଚାର ଯେଥି ନାହିଁ ।
ମୁହିଂ ବନ୍ଦୀ ମନିଷ କପି ମୋହର କାହିଂ ॥
ଚାଣ୍ଡାଳ ରାବଣ ଯେ ପୁତ୍ର ମୁଣ୍ଡ ଖାଉ ।
ହୀନ ଲୋକ ହାତେ ପରାଭବ ପାଉ ॥
ପରର ଯୁବତୀଙ୍କି ଆଣିଲା ଚୋରାଇ ।
ଦଇତ ଦୁରାତ୍ମା ଦୟା ତାହାର ନାହିଂ ॥
ତୁମ୍ଭେମାନେ ଯେ ଅଟ ଅଗିଆନ ।
ମୋତେ କିମ୍ବା ମାୟେ ଗୋ କହସି ଯେ
ମାନ ॥
ନିରେଖ ଦେଶାନ୍ତରୀ ସାହା ମୋହରି
ନାହିଂ ।
ବାନର ଇଷ୍ଟବନ୍ଧୁ ପାଇବୁ ଆର କାହିଂ ॥୪୦
ଶୟେ କୁଣ ସମୋଦ୍ର ଲଂଘିଣ ଆସିବ ।
ଯେତେ ଦୁର୍ଜ୍ଜୟ ଗଡ଼ରେ କେମନ୍ତେ ପଶିବ ॥
ଏକଥା ସମ୍ପ୍ରତେ କହଗୋ କେମନ୍ତେ ।
ଶୁଣିଣ ରାକ୍ଷେସଣୀ ହୋଇଲେ
କୋପଚିତ୍ତେ ॥

ସେ କଥାମାନ ଗୋ କହ ଆମ୍ଭଆଗେ ।
ଦୁଇଘଡ଼ି ଯାଏ ଭାଳୁଥିଲୁ ତାହା ସଙ୍ଗେ ॥
ଆଜ ଜାଣିମା ରାବଣ ଆଗେ କହୁଂ ।
ଯେତେ ବୋଲି ରାକ୍ଷେସଣୀମାନେ ଗଲେ ତହୁଂ ॥
ତୋଟାଳ ସହିତେ ମିଳିଲେ ନବର ।
ଆସ୍ଥାନ କରି ବସି ଅଛଇ ଦଶଶିର ॥ ୫୦
ପ୍ରକତର ଜଗତୀ ସୁବର୍ଣ୍ଣର କମ ।
ନବରତ୍ନ ପିତୁଳା ଦିଶଇ ଅନୁପାମ ॥
ସ୍ଫଷ୍ଟିକର ପାବଛ ଖମ୍ବ କାଚ ଢାଳ ।
ନିର୍ମଳ ରୂପାର ଉପରେ ଖଣ୍ଡଶାଳ ॥
ମାଣିକର ଚଉରା କୁବିନ୍ଦର ଗୁଞ୍ଜ ।
ନୀଳା ଚିତିପାଟି କାଣ୍ଡ ବଇଡୂର୍ଯ୍ୟ ॥
ଗଣ୍ଠିଅନା ବତା ରଙ୍ଗ ପାଟ ନଈ ।
ତେଜପତ୍ର ଛାୟେଣୀ ସୁବର୍ଣ୍ଣ କଳସ ଦୁଇ ॥
ନେତର ଚିରାଳ ମୁକୁତା ମଣିମାନ ।
ପୟରେ ନୂପୁର ତୋଡ଼ର ବିତପନ ॥୬୦
ଶିରରେ ଶ୍ୱେତଛତ୍ର ଉଡ଼ଇ ଫରଫର ।
ପାଶରେ ଢାଳଇ ଯେ ସହସ୍ରେ ଚାମର ॥
ବିଭୀଷେଣ ଇନ୍ଦ୍ରଜିତ ଯେ ପ୍ରଶସ୍ତ ।
ଅକ୍ଷୟେ ମୋହୋଦର ଶୁକ ସାରଣ ଦୁଇପାତ୍ର ॥
ଯମଘଣ୍ଟ କାଳଘଣ୍ଟ ଅତିକାୟେ ଅଜୟେ ।
କୁରାସୁର ନନ୍ଦାସୁର ମାହାକାୟେ ଅମୟେ ॥
ବୀରଘଣ୍ଟ ସହିତେ ମହୀରାବଣ ଜମ୍ୱୋମାଳୀ ।
ମୁଖା ଦୁରମୁଖା ରଣସିଂଘା ବାଳି ॥
ବିଦ୍ୟୁମାଳି ଭଦ୍ରାସୁର ମୋଟ ମାହାନାଦ ।୭୦
ଶାରଦୋଳ ସିନ୍ଧୁ ପ୍ରକାଶ ମାହାମେଦ ॥
ଶମ୍ଭୁ ନିଶମ୍ଭୁ ମୂଳେଣ ପାତ୍ରମାନ ।
ଅଠରଗଣ୍ଡା ଯେ ଅଟଇ ନନ୍ଦନ ॥
ତେର ଶତ ନାତି ସମସ୍ତେ ଅଛନ୍ତି ।
ପଞ୍ଚାଶ କୋଟି ଯେ ମକୁଟ ବନ୍ଧାୟେ ଥାନ୍ତି ॥
ରାଉତ ମାହୁନ୍ତ ରଥୀ ଅଗଣିତା ।
ପୟେକାର ପାଇକ କେ କରିବ ଗଣିତା ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ସହିତେ ଦେବଗଣ ।
ସଭା କରି ବସିଅଛଇ ରାବଣ ॥
ସ୍ୱର୍ଗ ଅପଛରୀ କରୁଛନ୍ତି ନୃତ୍ୟ ।
ତେତିଶ କୋଟି ଦେବେ ଅଛନ୍ତି ବହୁତ ॥୮୦
ଚିୟରୁ ନୃତ୍ୟ ଯେ କରଇ ଗାୟେଣୀ ।
ଦୁର୍ଭାସା ନାଟକୁ ଅବଧାନ ବିଂଶପାଣି ॥
ଗନ୍ଧର୍ବ କିନ୍ନର ଦକ୍ଷ ବିଦ୍ୟାଧର ।
ଦେବତାଙ୍କର ସଇନି ଅଛନ୍ତି ଅପାର ॥
କାହିଂ ଅଶ୍ୱ ଖେଳ କାହିଂ ମାଲଯୁଦ୍ଧ ।
କାହିଂ ପଟୋଆରି ଅଛନ୍ତି ମଉଗଜ ॥
ସେନାମାନେ ଅଛନ୍ତି ନିଶବଦ ହୋଇ ।
ବ୍ରହ୍ମାକଇ ଚାହିଂ ବୋଲଇ ଲଙ୍କସାଇଂ ॥
ଭୋ ପିତାମହ କଥାୟେ କହସି ।
ତାଣ୍ଡେବନୃତ୍ୟ ବୋଲି କେବଣ ଭରହରସି ॥୯୦
ଦିଅସି ଆଜ୍ଞା ନାଚନ୍ତୁ ଅପଛରୀ ।
ଶୁଣିଣ ହସିଯେ ବୋଇଲେ କୁଶଧାରୀ ॥
କେ ତାଣ୍ଡବ ନୃତ୍ୟ କରିତ ଭାରଜନ ।
ଯେକା ମାତ୍ର ତାହା ଜାଣନ୍ତି ତ୍ରିଲୋଚନ ॥
ଆନ କି ଭାରଜନ ତାଣ୍ଡବ ନୃତ୍ୟ କରି ।
ଶୁଣିଣ ରୁଦ୍ରଙ୍କୁ ଯେ ବୋଇଲା ଦଶଗିରି ॥
ଭୋ ଦେବ ତ୍ରିପୁର ଦହନ ପଞ୍ଚମୁଖ ।
କରହ ନୃତ୍ୟ ସ୍ୱାମୀ ଆମ୍ଭେ ଦେଖି ହେଉ ମୋକ୍ଷ ॥
ରୁଦ୍ର ବୋଇଲେ ସେ ଅପୂର୍ବ ନୃତ୍ୟରଙ୍ଗ ।
ତାଳ ଧରିବାକୁ ଯେ ନାହାନ୍ତି ଶ୍ରୀରଙ୍ଗ ॥୧୦୦
ବ୍ରହ୍ମା ମରଦଳ କଂସାଳ ଇନ୍ଦ୍ର ବାଇ ।
ପବନ ଦେବତା ଫୁଙ୍ଗା କାହାଳୀ ଯମ ବଜାଇ ॥
ନାରଦ ଯନ୍ତ୍ର ବରୁଣ ବଜାଇ ବଇଂଶୀ ।
ବିଷ୍ଣୁ ତାଳ ଧରି ଗୀତ ରସେ ପଶି ॥
ତେବେ ସେ ନୃତ୍ୟ ଦେଖିବାକୁ ସୁଖ ପାଇ ।
ନୋହିଲେଣ ତାନମାନ କେବେହେଂ ନରସଇ ॥
ରାବଣ ବୋଇଲା ଯେକା ବିଷ୍ଣୁ ନାହିଂ ଯେଥେ ।
ମରଦଳ ଧରିବାକୁ ତ ଅଛନ୍ତି ଚଉମାଥେ ॥
ଯମ ବରୁଣ ବାସେବ ଯେ ପବନ ।
ନାରଦ ସହିତେ ଯେ ଅଛନ୍ତି ତ୍ରିଲୋଚନ ॥୧୦
ହରି ପାଲଟକୁ ମୁଂ ଧରଇ କିନା ତାଳ ।
ଯେତେ ବୋଲି ଉଠିଲା ବିଶ୍ରବାର ବାଳ ॥
ତକ୍ଷଣେ ବିଧାତା ମର୍ଦ୍ଦଳ ଯାଇ ଧରି ।
ଯନ୍ତ୍ର ବଜାଇ ନାରଦ ଗାନ୍ଧାର ଉଚାରି ॥
ପବନ ଫୁଗାଂ ଯେ ବଜାଇ ଧୀର ଧୀର ।
କଂସାଳ ଧରି ଯେ ଝମକାଇ ବଜ୍ରଧର ॥
ବରୁଣ ବଇଂଶୀ ସୁସରେ କରେ ଧ୍ୱନି ।
ନୃତ୍ୟରଙ୍ଗ ଦେଖିବାକୁ ଆନନ୍ଦ ସୁରମୁନି ॥
ଗହ ଗହ ଶବଦ ଟବଦ ସର୍ବଜନ ।
ବିଭୀଷେଣ ବିଚାର କରଇ ମନେ ମନ ॥୨୦
କିମ୍ପା ଯେ ବିପରୀତ କରୁଅଛି ରାୟେ ।
ଅରଷ୍ଟି ମଣୁଅଛି ସମ୍ପଦ ପରାୟେ ॥
ଯେସନ ସମୟେ ଧାତା ବାଇଲେ ମର୍ଦ୍ଦଳ ।
ପୃଥ୍ୱୀ ହଲିଲା ହୋଇଲା ଟଳମଳ ॥
ରୁଦ୍ରଦେବ ନୃତ୍ୟେ ପଶିଲେକ ଯାଇଂ ।
ଚରଣେ ଘାଘୁଡ଼ି ଯେ ବାନ୍ଧିଲା ଉମାସାଇଂ ॥
ମର୍ଦ୍ଦଳେ ହସ୍ତଦେଇ ଗୁଣିଲେକ ଗୀତ ।
ଘସଡ଼ି ଦେଇଣ ଯେ ମାଇଲେ ପାଦଘାତ ॥
ବଦନ ମାଡ଼ିଣ ଯେ ପଡ଼ିଲା ଲଙ୍କପତି ।
ଅନ୍ତରାଳ ହୋଇଣ ବୁଲିଲାକ ବସୁମତୀ ॥୩୦
ରାବଣ ବୋଇଲା ନ କର ଦେବ ନୃତ୍ୟ ।
ଆତ୍ମା ବିକଳ ମୋହର ସମାକୁଳ ଚିତ୍ତ ॥
ମୁହିଂ କି ଭାର୍ଜନ ତାଣ୍ଡବ ନୃତ୍ୟ ଚାହିଂ ।

ବସ ବସ ସ୍ୱାମୀ ବିହିତ ନୁହଇଂ ॥
ହର ବୋଇଲେ କାହିଁ ନାଟ ରସେ ଭୋଳା ।
ଘାଗୁଡ଼ି ହୋ ବାନ୍ଧିଅଛି ବିଶ୍ରବାର ବଳା ॥
ନୃତ୍ୟ ରଙ୍ଗ ଦେଖିବାକୁ ଶରଧା ଯେବେ କଲୁ ।
କିମ୍ପା ଆନେ ନାସ୍ତି ବୋଲିଣ ବୋଇଲୁ ॥
ରାବଣ ବୋଇଲା ମୁଂ ନିହାଇ ଆର ଚାହିଁ ।
କୁରାଳଚକ୍ର ପ୍ରାୟେ ବୁଲିଲା ମୋତେ ମହୀ ॥୪୦
କାଲିର ଅପଥି ଅନିଦ୍ରା ହୋଇଥିଲି ।
ଆୟିଳୀ ପିତ୍ତ ଦୋଷ ଶରଧା ନ କଲି ॥
ଆନଦିନେ ପଛେ କରାଇବା ନୃତ୍ୟ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ଶୂଳହସ୍ତ ॥
ବ୍ରହ୍ମା ମର୍ଦ୍ଦଳ ଛାଡ଼ିଣ ଯାଇ ବସି ।
ବରୁଣ ବାସେବ ଯେ ହୋଇଲେ ହସାହସି ॥
ଯମ ପବନ ଯେ ନାରଦ କୋବେର ।
ନବଗ୍ରହ ଅଷ୍ଟବସୁ ଦେବ ସାତବୀର ॥
ସପ୍ତ ସାହେର ନବ ପୃଥ୍ୱୀ ଅଛନ୍ତି ।
ଚାରିମେଘ ଏକାଦଶ ରୁଦ୍ର ହୋ ବସନ୍ତି ॥୫୦
ଅଣଚ୍ଛଶ ପବନ ପଞ୍ଚହୁତାସନ ।
ସନକ ସନାତନ ବ୍ରହ୍ମ ଋଷିମାନ ॥
ଅଷ୍ଟ ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀ ।
ନାନା ପରିବନ୍ଧେ ନୃତ୍ୟରଙ୍ଗ କରି ॥
ସଭାର ଗହଳେ ପ୍ରଳୟ ସିନ୍ଧୁ ଜାଣି ।
ବିରସ ହୋଇଣ ବସିଛି ବିଂଶପାଣି ॥
ପଟୁଆର ଭିତରେ ପଶନ୍ତା କେହି ନାହିଁ ।
ଦ୍ୱାରେ ତୋଟାଳେ ରୋଦନ କଲେ ଯାଇଂ ॥
ସହସ୍ରେ ରାକ୍ଷସୀ ଭିତରେ ପଶିଲେ ।
ଓଶେକ ବନ ଭାଗିଲା ବୋଲିଣ ଜଣାଇଲେ ॥୬୦
ଅସୁରୀ ବୋଲନ୍ତି ତୁମ୍ଭେ ଶୁଣ ଲଙ୍କପତି ।
ଯେତେକାଳେ ଭୋଦେବ ହୋଇଲା ଅନୀତି ॥
ଓଶେକ ବିପୁନ୍ୟ ଯେ ମଧୁବନ ତୋଟା ।
ତାହା ଯେ ଭାଙ୍ଗିଲା ଏକଇ କପି ଗୋଟା ॥
ସୀତ୍ୟାର ସଙ୍ଗତେ ଯେକାୟେ ଭାଲୁ ଥିଲା ।
ଯେଡ଼େକ ବିପୁନ୍ୟ ତୋ ହେଲେଣ ନାଶ କଲା ॥
ଜାନେକୀ ରହିବା ଠାବ ଯେକା ଛାଡ଼ି ।
ଆବର ବୃକ୍ଷମାନ ପକାଇଲା ଉପାଡ଼ି ॥
ଆମ୍ବ ଜମ୍ବିଲ କଦଳୀ ନଟିକାଳ ।
ରଣଭଣ ହୋଇଲା ତୋ ବୃକ୍ଷଙ୍କର ଫଳ ॥୭୦
ଶୁଣିଣ ତବଦ ହୋଇଲେ ସଭାଜନେ ।
ନୃତ୍ୟ ରୁହାଇଣ ଯେ ପୁଛଇ ସାବଧାନେ ॥
କେବଣ କଥା ଲୋ ଆଗ ହୋଇ କହ ।
ଯେହା ଶୁଣି ବିକଳ ହୋଇଲା ମୋର ଦେହ ॥
ଶୁଣିଣ ପଡ଼ିହାରୀ ଅସୁରୀନ୍ତ ଆଗକଲେ ।
ନିର୍ଭୟେ ହୋଇ କଥା କହସି ବୋଇଲେ ॥
ସଭା ନିଶବଦ ହୋଇଣ ଅଛନ୍ତି ।
କର ଦୁଇ ଯୋଡ଼ି ରାକ୍ଷସୀ କହନ୍ତି ॥
ଶୁଣ ଦେବ ରାବଣ ତଇଲୋକ ଶିରୋମଣି ।
ଅଇରି ଦର୍ପଗଞ୍ଜନ ତୁ ଅଟୁ ବିଂଶପାଣି ॥୮୦
ଚଉଦ ଭୁବନରେ କୀରତି ପ୍ରକାଶ ।
ମୁଖ ଦେଖି କମ୍ପନ୍ତି ଦେବତା ତ୍ରିଦଶ ॥
ରାଜ୍ୟେ ରାଜ୍ୟେଶ୍ୱର ଅଟୁ ଦଶାନନ ।
ସ୍ୱର୍ଗକଇ ମାନ ଏ ଲଙ୍କା ଭୁବନ ॥
ଦ୍ୱାରପାଳମାନେ ଦୂରୁହୁଂ ଭୟେ କରି ।
ଯମଦଣ୍ଡ ନ ନାଗଇ ଯେବଣ ହିଂ ପୁରୀ ॥
ଯେବେ ଅରଷ୍ଟି ଶୁଣ ହେ ରାଜନ ।
ମାଙ୍କଡ଼େକ ଆସି ତୋ ଭାଙ୍ଗିଲା ମଧୁବନ ॥
ଓଶେକ ବିପୁନ୍ୟ ହେଲେଣ ନାଶ କଲା ।
ଫଳିଲା ଫୁଟିଲା ବୃକ୍ଷନ୍ତ ଉପାଡ଼ିଲା ॥୯୦
କାହୁଂ ଅଇଲା ଦେବ ନ ଜାଣୁ ଏହା କିଛି ।
ତୋଟାଦ୍ୱାରେ ଡ୍ରୋଣାଖମ୍ଭେ ବସିଅଛି ॥
ସୀତ୍ୟାର ସଙ୍ଗତେ ଘଡ଼ିୟେ ଭାଲୁଥିଲା ।
ଜାନେକୀ କିକି ତାକୁ ମଣାଇ କହିଲା ॥
ତେଣୁ ସେ ବାନର କଲା ଯେଡ଼େକୃତ ।
ଯେତେକାଳେ ଯେଥେ ଆସି ହୋଇଲା ବିପରୀତ ॥
ସବୁ ଭାଙ୍ଗିଲାକ ସୀତ୍ୟାଠାବ ଛାଡ଼ି ।
ତୋଟାଳକୁ ଦେଖିଲେ ଦେଲା ସିଂଘରଡ଼ି ॥
ଭୟେ ପଳାଇଣ ସେ ସିଂଘଦ୍ୱାରେ ଛନ୍ତି ।
ଏକଥାକୁ ଅବଧାନ ହୁଅ ଲଙ୍କପତି ॥ ୧୦୦
ଶୁଣି ଦଶାନନ ହୋଇଲା ବିସ୍ମୟେ ।
ବ୍ରହ୍ମାକଇ ରାଇ ବୋଇଲା ଲଙ୍କରାୟେ ॥
ଏ କେବଣ ଚରିତ୍ର ଏ କେବଣ ବିଚାର ।
କେବଣ ଦେଶୁ ଅଇଲା ବାନର ॥
ପଚାରି ଜାଣିମା ସେ କାହାର ଅଟଇ କପି ।
ଶୁଣିଣ ରାବଣେଶ୍ୱର ବୋଇଲାକ କୋପି ॥
ଛାର ନିଲକ୍ଷଣ ପାପିଷ୍ଟ ବାନର ।
ଯେଡ଼େ ବନମୋର କଲା ନାରଖାର ॥
ତାହାକୁ ଆଣିବା କେର୍ଣ୍ଣେ ଗଉରୋବ କରି ।
ଯେର୍ଣ୍ଣେ ସେ ବିଚାର କରଇ କୁଶଧାରୀ ॥୧୦
ଏତେ ବୋଲିଣ ଯେ କିଙ୍କରଗଣ ରାଇ ।
ଆଜ୍ଞା ଦେଲାକ ସେ ମନ୍ଦୋଦରୀ ସାଇଂ ॥
ମଧୁବନ ତୋଟାକୁ ତୁମ୍ଭେ ଯିବ ଏହିକ୍ଷଣି ।
ଯେ ବୃକ୍ଷ ଭାଙ୍ଗିଲା ତାକୁ ଧରିବେଗେ ଆଣି ॥
ପ୍ରାଣେ ନ ମାରି ଜୀବନ୍ତା କରି ଧର ।
ପଚାରିବା କାହାର ସେ ଅଟଇ ବାନର ॥
କୁଳ ଗୋତ୍ର ଥିଲେ ମାରିବା ତାହାନ୍ତି ।
ଆଜ୍ଞା ପାଇ ଯେ କିଙ୍କରଗଣ ଯାନ୍ତି ॥
କରେ ଧନୁବାଣ ଦୁଆଡ଼ି ତୀକ୍ଷଭାଲ ।
ଯେକକୁ ଆରେକ ବୋଲନ୍ତି ଚାଲ ଚାଲ ॥୨୦
ଯେହାକୁ ପଠିଆଇ ଲଙ୍କାର ଅଧିପତି ।
ନୃତ୍ୟକୁ ଅବଧାନ ବୀରବର ଚକ୍ରବର୍ତ୍ତୀ ॥
ଯେଥୁ ଅନନ୍ତରେ କିଙ୍କରଗଣ ଗଲେ ।
ମଧୁବନ ତୋଟା ସନ୍ନିଧେ ମିଳିଲେ ॥

ଅଶୀସହସ୍ର ବଳ ଯେ ଅଛନ୍ତି ଅପାର ।
ରାତ୍ରେଣ ସେହୁ ଯେ ବୁଲନ୍ତି ଲଙ୍କପୁର ॥
ସ୍ୱାମୀର ଆଜ୍ଞା ପାଇ ଓଶେକ ବନେ ମିଳି ।
ଧୂରୁ ତାହାନ୍ତ ଦେଖି ହନୁମନ୍ତ ଭାଳି ॥
ତୋଟା ଭଗ୍ନ ବାରତା ଯେ ପାଇଲା ରାବଣ ।
ତେଣୁ ସେ ଧାଇଂଣ ଆସନ୍ତି
ଦୈତ୍ୟଗଣ ॥୩୦
ଆଜ ଯେହାଙ୍କୁ ମୁଂ ପକାଇବି ମାରି ।
ନୋହିଲେ କି କୋପ କରିବ ଦଶଗିରି ॥
ଯେତେକ ପେଷୁଥିବ ସଭିଏଂ ମରିବେ ।
ଏହାଙ୍କର ବେଳେ ମୋତେ କିସ ଯେ
କରିବେ ॥
ଏସନେକ ଭାଳୁ ଯେ କିଙ୍କରଗଣ ଯାଇଂ ।
ଦେଖି ହନୁମନ୍ତ ବିକ୍ରମିଣ ଚାହିଂ ॥
ଦ୍ରୋଣା ଖମ୍ବେ ବସି ମୋଡ଼ଇ ବେନି ନିଶ ।
ଅସୁରଙ୍କୁ ଦେଖିଣ ହୁଅଇ ହସ ହସ ॥
ଧୂରୁ ପଚ୍ଚରଇ ରେ ରାବଣ ତୁମ୍ଭର କାହିଂ ।
ଆମ୍ଭର ଅଇଲାକି ନ ଜାଣି ଲଙ୍କାସାଇଂ ॥୪୦
ଏତେ ସମ୍ପଦରେ ହୋଇଲା ଏଡ଼େ ଗର୍ବ ।
ଯେ ସୁଖ ଗୋଟା ତାକୁ ହୋଇଲା ଅପୂରୁବ ॥
କିଙ୍କର ବୋଲନ୍ତିରେ ନିଲକ୍ଷଣ କପି ।
ଯେ ପୁଣ୍ୟପୁରେ ପଶିଲୁ ମହାପାପୀ ॥
ମଧୁବନ ତୋଟାରେ କିମ୍ପାଇଂ ନାଶ କଲୁ ।
ଆପଣେ ଆପଣେରେ ମରଣ ଲୋଡ଼ିଲୁ ॥
କି ତୋତେ କେବଣ ବିଧାତା ବାଇ କଲା ।
କାଳ ମୃତ୍ୟୁ ତୋତେରେ କଢ଼ାଇ ଆଣିଲା ॥
ମନେ ଗ୍ୟାନେ କି ତୋର ବିଚାର ହାଦେ
ନାହିଂ ।
ତିନିପୁରେ ପ୍ରତାପୀ ଅଟଇ ଲଙ୍କସାଇଂ ॥୫୦
କିମ୍ପାଇରେ ଚାଣ୍ଡାଳ ହୀନବୁଦ୍ଧି କଲୁ ।
ସଂହାତେ ବିଷରେ କେମନ୍ତେ ଖାଇଲୁ ॥
ପର୍ବତ ପକାଇ ପାତିଲୁ କି ମୁଣ୍ଡ ।
ତପତ ଲୁହା ଲାଇ ଭୁଂଞ୍ଜୁଅଛୁ ତୁଣ୍ଡ ॥
ଜଳନ୍ତା ଅଗ୍ନିରେ ଗମିଲୁ କେମନ୍ତେ ।
ସମୁଦ୍ର ପଅଂରିବୁ କେବଣହିଂ ମତେ ॥
କାଳସର୍ପ ମୁଖରେ ନାଇଲୁରେ ହସ୍ତ ।
ମଧୁବନ ଭାଙ୍ଗିଲୁରେ କେବଣହିଂ ମତ ॥
ହନୁମନ୍ତ ବୋଇଲାରେ ନିଲଜଇ ତୁମ୍ଭେ ।
ଆପଣେ ଆପଣେରେ ହଉଥାଅ
ଆମ୍ଭେ ॥୬୦
ଶ୍ରୀରାମର ଘରଣୀକି ଚୋରାଇ ଆଣିଲ ।
ଜଗତର ମୁଖରେ କି ଲଜ୍ୟା ନ ପାଇଲ ॥
ତଇଲୋକ ନାଏକାଣୀକିରେ କରିଅଛ
ବନ୍ଦୀ ।
ଆଉ କାହିଂ ତୁମ୍ଭର ଆମ୍ଭର କଥା ସନ୍ଧି ॥
ଏ ଲଙ୍କା କଟକ କରିବୁ ନାରଖାର ।
ଦୁଷ୍ଟ ଦଇତେ ତୁମ୍ଭେରେ ମରିବ ଅପାର ॥
ଶ୍ରୀରାମ ଲକ୍ଷଣରେ ବାନର ରକ୍ଷମେଳେ ।
ରାବଣର ଶିରରେ ଛେଦିବେ ରଣ ଗୋଳେ ॥
ଯେବେ ତୁମ୍ଭେ ଯେତେକ ଆସିଅଛ ଏଥ ।
ଏହିକ୍ଷଣି ତୁମ୍ଭେରେ ଯିବ ଯମପଥ ॥ ୭୦
ଶୁଣିଣ କିଙ୍କରଗଣେ ବଇରାଗ ପାଇ ।
ଛେଲ କୋନ୍ତ ନାରାଜ ପହୁଡ଼ିଲେ ନେଇ ॥
କେ ସାବେଳୀ କେ ମାରନ୍ତି ମୁଦୁଗର ।
ବୃଷ୍ଟିପ୍ରାୟେ କରିକେ ବିନ୍ଧୁଛନ୍ତି ଶର ॥
ଗୋଡ଼ ଲମ୍ବାଇ ଯେ ହନୁମନ୍ତ ବସିଥିଲା ।
ଯୁଦ୍ଧ ଦେଖିଣ ସେ ପେଟମାଡ଼ି ଶୋଇଲା ॥
ନିଦ ଗଲା ପ୍ରାୟେ ବୁଜିଲା ବେନିଆଖି ।
କିଙ୍କରଗଣେ ଆଶ୍ରିଯ ହେଲେ ତାହା ଦେଖି ॥
କେ ବୋଲଇ ବାନର ତ୍ରାସ ପାଇ ମଲା ।
କେ ବୋଲଇ ଆରତେ ମାଡ଼ିଣ
ପଡ଼ିଲା ॥୮୦
କେ ବୋଲଇ ପଳାଇଯିବ ଏହିକ୍ଷଣି ।
କେ ବୋଲେ ଗଲେକି ଜୀଆଇଂବ
ବିଂଶପାଣି ॥
କେ ବୋଲଇ ଯିବାକୁ ଏ କରିଅଛି ବୁଦ୍ଧି ।
କେ ବୋଲଇ ଜଗିଥାଅରେ ଯେ ଯାହାରେ
ସନ୍ଧି ॥
ଏତେ ବୋଲି ଆସି ସହସ୍ର କିଙ୍କର ।
ହନୁମନ୍ତ ଧରିବାକୁ ହୁଅନ୍ତି ଆଗୁସାର ॥
ଶତେ ପୁର କରି ଦ୍ରୋଣାଖମ୍ବ ବେଢ଼ି ।
ସହସ୍ରେକ ଲୋକଙ୍କରେ ଧରିଛନ୍ତି ଦଉଡ଼ି ॥
ବାନ୍ଧିନେମେ ବୋଲି ଉପରକୁ ଗଲେ ।
ଏକକୁ ଆରେକ ଧର ଧର
ବୋଇଲେ ॥୯୦
ଯହୁଂ ସେ ନିକଟ ହୋଇଲେ ଅସୁର ।
ଆଖି ମଳିଣ ଯେ ଉଠିଲା ହନୁବୀର ॥
ନିକଟ ଲୋକଙ୍କୁ ଯେ ବାଳ ଧରି ପାରି ।
ସେହିକ୍ଷଣି ଖମ୍ବ ଉପରେ କଚାଡ଼ି ॥
ସହସ୍ରେ ଅସୁର ଯେ ଉପରେ ଉଠିଥିଲେ ।
ଭୟ ପାଇଣ ସେ ତଳେ ପଡ଼ି ମଲେ ॥
ହନୁମନ୍ତ ତହୁଂ ଗଲାକ ଓହ୍ଲାଇ ।
କିଙ୍କରଗଣ ମଧ୍ୟେ ପଶିଲାକ ଯାଇ ॥
କାହାକୁ ବିଧାଯେ କାହାକୁ ଚାପୋଡ଼େ
ମାରି ।
କାହାକୁ ଫୋପଡ଼ାଇଲାକ ମନେ ତମ
କରି ॥୧୦୦
ଲାଞ୍ଜ ବଢ଼ାଇ କାହାକୁ ପିଟଇ ନେଇ ।
କାହାକୁ ଡେଙ୍ଗଂଯାଇଂ ମୁଣ୍ଡେ ଗୋଡ଼ ଦେଇ ॥
କାହାକଇ ମାରଇ ନେଇଣ ବାହାଦଣ୍ଡ ।
ପାଦେ ମରିଦିଣ କାହାକୁ କରଇ ମସି ଗୁଣ୍ଡ ॥
ଶ୍ରୀକାଳ ପଲେ ଯେଉଁର୍ଦ୍ଦେ ପଳାସଇ ବ୍ୟାଘ୍ର ।
ତେସନେକ ହନୁମନ୍ତ ଦିଶଇ ରଣରଙ୍ଗ ॥
କାହାକୁ ଚାପୋଡ଼େ ମାରି ମୁଣ୍ଡଛିନି ।
କାହାକୁ ଧୂଳି କରି ଘଷଇ ମେଦିନୀ ॥
କାହାକୁ ଖୁନ୍ଦାଏ କାହାକୁ ବିଧାଯେ ।
ଯାହାକୁ ମାରଇ ସେ ମରଇ
ସେହିଠାୟେ ॥୧୦
ରକତେ ଜରଜର ପବନର ନାନ ।
ଅଶୀସହସ୍ର କିଙ୍କର ହୋଇଲେ ନିଧନ ॥
ତୋଟାଦ୍ୱାରେ ମଡ଼ା ଯେ ପଡ଼ିଲେ ବହୁତ ।
ନଦୀ ପ୍ରାୟେ ହୋଇ ଯେ ବହିଲା ରକତ ॥

ଅସୁର ବଳ ନିପାତି କପିବୀର ।
ବାହୁଡ଼ି ବସିଲା ଯେ ତ୍ରୋଣା ଖମ୍ବ ଉପର ॥
ଦେଖିଲା ପଳାଇଲେ ସହସ୍ରେକ ଅସୁରୀ ।
ତାହାଙ୍କର ସହିତେ ତୋଟାଳ ଆଦି କରି ॥
ହାଟୁଆ ବାଟୁଆ ଯେତେକ ଆସିଥିଲେ ।
ମାହାମାରୁ ଦେଖିଣ ସେ ପଳାଇ
ଅଇଲେ ॥୨୦
ରାଜା ସିଂଘଦ୍ୱାରେ ପାରିଲେ ବୋବାଳି ।
ଭିତରକୁ ଗଲେ ସହସ୍ରେକ ବାଳୀ ॥
ଆସ୍ଥାନେ ବିଜିୟେ କରିଛି ଲଙ୍କସାଇଂ ।
ଅପସରୀଙ୍କ ନୃତ୍ୟକୁ ଅବଧାନ ହୋଇ ॥
ୟେସନେକ ସମୟେ କହିଲେ ଅସୁରୀ ।
ଶୁଣ ଦେବରାବଣ ଲଙ୍କାର ଦଣ୍ଡଧାରୀ ॥
ମଧୁବନ ଭାଙ୍ଗିଲା ଯେବଣ ବାନର ।
ତହିଂକି ପେଷିଲ ଯେ ଅଶୀସହସ୍ର କିଙ୍କର ॥
ସେ ତୋହର ଆଜ୍ଞାରେ ବହୁତ ଯୁଦ୍ଧ
କଲେ ।
ଅଶୀସସ୍ର କିଙ୍କର ତୋ ବାନର ହାତେ
ମଲେ ॥୩୦
ଗୋଟିଏ ଉବୁରି ତୋର ଦେବ ନଇଲେ
କେହି ।
କି ଜାଣି ମରକଟ କୃତାନ୍ତେକ ଦେହୀ ॥
ଏକଥାକୁ ଅବଧାନ କରସି ଗୋସାଇଂ ।
ଶୁଣିଣ ବିଷାଦ ହୋଇଲା ଲଙ୍କସାଇଂ ॥
ଛନଛନ ମନ ଖର ନିଶୁଆସ ।
କୋପେ ଥରହର ବିଶ୍ରବାର ଶିଷ ॥
ଅଶୀସସ୍ର ଶଳା ଯେ ଅଛନ୍ତି ପଟୁଆରି ।
ତାହାକଇଂ ରାଇ ବୋଲଇ ଦଶଗିରି ॥
ଏହିକ୍ଷଣି ଯାଇ ବାନର ଘେନିଆସ ।
ନୋହିଲେ ତୁମ୍ଭନ୍ତ ମୁଂ ନାଶିବି ଅବଶ୍ୟ ॥୪୦
ସେ ମୋହର ଶତ୍ରୁ ଭାଙ୍ଗିଲା ମଧୁବନ ।
ଆବର ନାଶିଲା କିଙ୍କରଗଣ ସୈନ୍ୟ ॥
ବେଗେ ଯାଇ ଧରିଆଣ ବାବୁ ତାହା ।
ଏସନେକ ଆଜ୍ଞା ଦେଲା ବିଂଶବାହା ॥

ଶୁଣିଣ ଶାଳକଗଣ ବେଗେ ଯାନ୍ତି ।
କେ ଛେଲ ଚକ୍ର କେ ନାରାଚ ଘେନନ୍ତି ॥
ପରିଘ ମୁଦ୍ଗର ଶକତି ଶାବେଳୀ ।
ସୈନ୍ୟ ଚଳନ୍ତେଣ ପଡ଼ଇ ହାଲୋହୋଳି ॥
ନଗ୍ର ନରନାରୀ ବୋଲନ୍ତି ଗୋଡ଼ାଇ ।
ଆଗ ହୋଇ ବାବୁରେ ନ ପଡ଼ିବଟି
ଧାଇଂ ॥୫୦
ମାୟା ବାନର ସେ ପ୍ରତ୍ୟକ୍ଷେଣ ଯମ ।
ଅନେକ କପଟ ସେ ଜାଣଇ ସଂଗ୍ରାମ ॥
କଷ୍ଟୋର ମାରେଣି ଯେ ଶୁଣିଲୁ ତାହାର ।
ସଂଗ୍ରାମ ଭୂମିକି ବାବୁରେ ନଯିବ ଆଗୁସାର ॥
ଯେମନ୍ତେଣ ପାରୁଛ ଉପାୟ କରି ଧର ।
ବିଷମ ଦ୍ୱନ୍ଦ୍ୱକୁ ବାବୁରେ ଶରଧା ନ କର ॥
ଶୁଣିଣ ହସନ୍ତି ଯେ ଶାଳକଗଣମାନେ ।
ବୋଲନ୍ତି ତୁମ୍ଭେ କିମ୍ପା ବୋଲ ଏ ବଚନେ ॥
ବାନର ନିଲକ୍ଷଣ ଅଟଇ ପଶୁଜାତି ।
ଏଥକୁ ଅଇଲା ନିକଟ ତାର ମୃତି ॥ ୬୦
କିଙ୍କରଗଣେ ଯେ ହେଳାଯୁଦ୍ଧ କଲେ ।
ନ ଜାଣିମା ପଣେ ଜୀବନ ହରାଇଲେ ॥
ଏହିକ୍ଷଣି ଆମ୍ଭେ ଆଣିମୁଂ ତାହା ଧରି ।
ବାନରକୁ ଆଣିମୁଂ ଗଳବନ୍ଧୀ କରି ॥
ଏଥୁଅନନ୍ତରେ ଶୁଣିମା ଦିବ୍ୟରସ ।
ମଧୁବନେ ବୀରେ ହୋଇଲେ ପରବେଶ ॥
ହନୁମନ୍ତ ଶୋଇଛି ତ୍ରୋଣାଖମ୍ଭେ ରହି ।
ଡରଭୟେ ତାହାର କାହାକୁ ହିଁ ନାହିଂ ॥
ଯହୁଂ ସେ ଶାଳକଗଣ ନିକଟ ହୋଇଲେ ।
ଆରେ ଆରେ କପି ବୋଲିଣ
ଡାକଦେଲେ ॥୭୦
ଶତେପୁର କରି ବେଢ଼ିଲେ ତ୍ରୋଣା ଖମ୍ବ ।
ଆଗେ ମିଳିଣ ଡାକନ୍ତି ଆରମ୍ଭ ॥
ଧନୁଗୁଣେ ବସାଇ ବିନ୍ଧନ୍ତି ତୀକ୍ଷଶର ।
କେହୁ ଶକତି ଯେ ମାରନ୍ତି ମୁଗୁଦର ॥
କେ କୋନ୍ତ ଫିଙ୍ଗନ୍ତି କେ ଚକ୍ର ଘେନିହାଣି ।
ଦେଖି ବିସ୍ମରଇ କପିକୁଳମଣି ॥

ରାବଣ ଯେ କୋପେ ଏହାନ୍ତ ପେଷିଲା ।
ସେବାକଲା ଲୋକଙ୍କୁ କ୍ଷଣକେ ନାଶକଲା ॥
ସେମାନେ ଆଜକି ପାଇବେ ଆଉ ପ୍ରାଣ ।
ମାରିବି ଅସୁରନ୍ତ ଯେ କରିବି ରଣଭଣ ॥୮୦
ୟେତେ ବୋଲି ବୀର ତଳକୁ ଖସିପଡ଼ି ।
ଏସନେକ ସମୟେ ଯେସନେ ବନପୋଡ଼ି ॥
ଅଦଭୁତେ ଅଗ୍ନି ହୋଇଲାକ ଜାତ ।
ଚାରିଦିଗେ ଦେଖାଗଲା ନାନାଦି ଉତ୍ପାତ ॥
ଧାଇଂ ଯାଇ ହନୁମନ୍ତ ବୃକ୍ଷେକ ଉପାଡ଼ି ।
ନିଶାଚରଗଣଙ୍କ ଉପରେ ପହୁଡ଼ି ॥
ପୁଣି ରଡ଼ିଏକ ଛାଡ଼ି ଗଗନେ ପଶି ।
ବିଜୁଳି ଝଟକିଲା ପରାୟେକ ଦିଶି ॥
କାହାର ବେକ ଧରି ଉପରକୁ ଫିଙ୍ଗଇ ।
ବିଧାଏ ମାରି କାହାର ବୁକୁ ଯେ
ଭାଙ୍ଗଇ ॥୯୦
ପାଦେଣ ମରଦି କାହାକୁ କରଇ ଧୂଳି ।
କାହାକୁ ଉପରକୁ କାହାକୁ ପକାଇ ପେଲି ॥
ଉଚ୍ଚେଣ ବୋଇଲାରେ ଅସୁରେ ଆଜ ମଲ ।
ଶ୍ରୀରାମଚନ୍ଦ୍ରଙ୍କରେ ଦୋରେହା ହୋଇଲ ॥
କାଲି ରଘୁନାଥ ଲଙ୍କାକୁ ଆସିବେ ।
ରାବଣ ସଂଗୋତ୍ର ସହିତେ ନାଶିବେ ॥
ଲକ୍ଷଣର ଘାୟେରେ ମରିବ ଦନୁଜ ।
ବହୁତ ସଂହାରିବେ ସୁଗ୍ରୀବର ରାଜ ॥
ଅଙ୍ଗଦର ହାତେ ରାକ୍ଷସ ନାଶଯିବେ ।
ସୁଷେଣ ନଳ ନୀଳରେ ବହୁତ
ମାରିବେ ॥୧୦୦
ଜମ୍ଭେବ ତାରାକ୍ଷ କରିବେ ଅନର୍ଥ ।
ଗନ୍ଧମାର୍ଦ୍ଦନ ଘାୟେ ଯିବେ ଯମପନ୍ଥ ॥
ଗବଏ ଗବାକ୍ଷ ଦଧିମୁଖ ବୀର ।
କାଳିମୁଖ ପନସ କେଶରୀ ବାନର ॥
ଧୂର୍ମାକ୍ଷ ବଳୀମୁଖ ଶରସେତୁ କୁନ୍ଦ ।
କଞ୍ଚନ ସୁନାସ କୁମଦ ମହାନ୍ଦ୍ର ॥
ଏମାନେ ଅଇଲେରେ ଭାଙ୍ଗିବେ
ଲଙ୍କାପୁରୀ ।

ଋକ୍ଷ କପିବୀର ଯେ କରିବେ ହୁରି କୁରି ॥
ଅଠର ଲକ୍ଷ ପଦ୍ମ ଅଛନ୍ତି ବାନର ।
ଶତେକୋଟି ଯେ ଗୋନାଙ୍ଗୁଡ଼ା ବୀର ॥୧୦
ବିଶାଶୟେ ମରଭୁତ କାଳିମୁଖା କପି ।
ଦଧିମୁଖା ବାରଲକ୍ଷ ଯେ ନୁହଇଂ ସଂଙ୍ଖପି ॥
ଶ୍ୱେତଭାଲୁଙ୍କ ତ ନୀଳନୟନ ଜାଣି ।
ଋକ୍ଷ କପି ସଇନି କେ ପାରିବ ଗଣି ॥
ଶ୍ରୀରାମ ଲକ୍ଷଣ ହରିବେ ତୁମ୍ଭର ଶିରୀ ।
କି ଆଜ କିନା ଥୋକାୟେକ ଯିବଇଂ କିନା
ମାରି ॥
ଯେତେ ବୋଲି ହନୁ ଉଠିଲାକ ରଡ଼ି ଦେଇ ।
ବୃକ୍ଷ ଘେନି ଅସୁରଙ୍କ ଉପରେ ପହୁଡ଼ଇ ॥
ଶ୍ରୀରାମ ଅଇଲେ କରିବେ ଯେଥି ରୋଳ ।
ଏ ଲଙ୍କାଗଡ଼େ ଯେ ହୋଇବ
ମହାଗୋଳ ॥୨୦
ଯହୁଂ ରାମଲକ୍ଷଣ ସୁମରଇ ହନୁମନ୍ତ ।
ଦଇତେ ବିଚାରନ୍ତି ହୋ ଏକଥା କେମନ୍ତ ॥
ରାଜାର ଆଗେ ଚାଲ ଜଣାଇବା ଯାଇ ।
ଏତେ ବୋଲି ଦଇତେ ଦେଲେ ପଠିଆଇ ॥
ସେ ଯାଇ କହିଲେ ରାବଣ ଆଗର ।
ମଧୁବନ ଭାଙ୍ଗିଲା ଦେବ ଯେବଣ ବାନର ॥
ତାହାନ୍ତ ଧରିନ୍ତ ପେଷିଲୁ ଆମ୍ଭନ୍ତ ।
ତାହାର ଶୁଣିଲୁ ଦେବ ଅପୂର୍ବ ସିଦ୍ଧାନ୍ତ ॥
ସଂଗ୍ରାମ କରଇ ଦେବ ଭୟଭ୍ରାନ୍ତି ଛାଡ଼ି ।
ମାହାମାହା ତରୁ ସେ ହେଲେଣ
ନିବାରି ॥୩୦
ପକ୍ଷୀପ୍ରାୟେ ହୋଇ ସେ ଉଡ଼ଇ ଗଗନେ ।
କାହାକୁ ହିଂ ଶଙ୍କା ନାହିଂ ତାର ମନେ ॥
ବୋଲଇ ରଘୁନାଥ ଏଥକୁ ଆସିବେ ।
ରାବଣ ସଂଗୋତ୍ର ସହିତେ ନାଶିବେ ॥
ସୁଗ୍ରୀବର ରାଜାଇ ଆସିବେ ଅବଶ୍ୟ ।
ତାହାର ଅଇଲେଣ ଲଙ୍କା ଯିବ ନାଶ ॥
ଅଙ୍ଗଦ ଜମ୍ଭେବ ସୁଷେଣ ନଳନୀଳ ।
ତାହାଙ୍କର ଅଇଲେ ହତ ହୋଇବେ
ଦୈତ୍ୟବଳ ॥

ଋକ୍ଷ ବାନରେ ଆସିବେ ସଇନି ।
ସବୁରି ହାତରେ ଥିବେ ଶାଳଶିଳା
ଘେନି ॥୪୦
ଏସନେକ ବୋଲି କରଇ ରଣଗୋଳ ।
ଭୋଦେବ ବୀରେ ସେ ଅତି ଅର୍ଗଳ ॥
ଶୁଣିଣ ରାବଣ ଯେ ବ୍ରହ୍ମାଙ୍କ ମୁଖ ଚାହିଂ ।
ଭୋ ପିତାମହ ଏହା ଜାଣିଥାଅ ତୁହି ॥
ସୀତ୍ୟାର ଉପାୟେ ଅଟଇ ଏ କୃତ୍ୟ ।
ଏଡ଼େ ନଗ୍ର ମୋହୋର କଲାକ ବିପରୀତ ॥
ମର୍କଟ ଗୋଟାଏକ ଗଚ୍ଛାଇ ଅଛି ଆଣି ।
ହାନି ଅପଚୟେ ଥାଅସି ତୁହି ଜାଣି ॥
ଏତେ ବୋଲି ରାଇଲା ପ୍ରଶସ୍ତ ସେନାପତି ।
ଜମ୍ଭୋମାଳି ହକରାଇଲା କତି ॥ ୫୦
ତୁମ୍ଭେ ଦୁଇଜଣେ ଯିବ ଏହିକ୍ଷଣି ।
ମୋହୋର କତିରେ କପିକି ଦେବ ଆଣି ॥
ପ୍ରାଣେ ନ ମାରିବ ଜୀବନ୍ତା ଧରି ଆସ ।
ଏସନେକ ବୋଲି ରାୟେ ଦେଲାକ
ସନ୍ଦେଶ ॥
ଶୁଣିଣ ଜାମ୍ଭୋମାଳୀ ପ୍ରଶସ୍ତ ସେନାପତି
ବେନି ।
ସଙ୍ଗ ହୋଇଲେ ବେନି ଅନୁକୂଳ ଘେନି ॥
ଆପଣେ ରହୁବର ଆରୋହି ଦୁଇରଥୀ ।
ଦଶସହସ୍ର ଅଶ୍ୱ ଆଉ ଚାଳିଶି ସହସ୍ର ହସ୍ତୀ ॥
ପୟେକାର ପାୟେକ ଅଟନ୍ତି ଅଗଣିତା ।
ଆଲମ୍ୱ ବିଲମ୍ୱ ଉଦଣ୍ଡ ପାଟଛତା ॥ ୬୦
ମଧୁବନ ନିକଟେ ମିଳିଲେ ବଳ ଯାଇ ।
ଦେଖିଣ ହନୁମନ୍ତ ଗଲାକ ପଳାଇ ॥
ତ୍ରୋଣା ଖମ୍ୱ ଉପରେ ଯାଇ ବୀର ବସି ।
ବାହା ମରଦିଣ ଦେହ ହୁଅଇ ଘଷାଘଷି ॥
ହାଇ ଘନ ଘନ ମାରଇ ମାରୁତି ।
ମିଟିମିଟି କରି ଚାହଂଇ ଚଉକତି ॥
ଜମ୍ଭୋମାଳି ପ୍ରଶସ୍ତ ମିଳିଲେ ବେନିବୀରେ ।
ବୋଇଲେ କଡ଼ାଇ ଆଣହୋ ବାନରେ ॥
ଶୁଣିଣ ସଇନି ଯେ ଧାଇଂଲେ ଆଗଭରି ।

ଏକକୁ ଆରକେ ଯେ ଯାଆନ୍ତି
ଆଗସରି ॥୭୦
ଶତେପୁର କରି ବେଢ଼ିଲେ ତାହାକୁ ।
ତୀକ୍ଷ ଶର ନାରାଜ ବିନ୍ଧନ୍ତି ଯେ ଯାହାକୁ ॥
ଖଣନ୍ତା ଶାବେଳୀ ତୀକ୍ଷ ଶର ଭାଲ ।
ଏକକୁ ଏକଶର ପାଶୁପତ ଅସର ॥
ବାଜନ୍ତେଣ ହୁନମନ୍ତ ଶରୀରେଣ ନ ଫୁଟି ।
କି ଜାଣି ଦେହ ତାର ବଜ୍ର ଅଙ୍ଗ ଗୋଟି ॥
ସହସ୍ର ନିରନ୍ତରେ ବରଷଣ ପାଣି ।
ଘଡ଼ଘଡ଼ି ଶବଦକି ଡାକୁଅଛି ବାଣୀ ॥
ଫରହର କି ଦର୍ପଣ ଝଲକିବା ।
ଜାଣି ପଟାନ୍ତର କି ବିଜୁଳି ମାରିବା ॥ ୮୦
ପାଟଛତ୍ର ଆଲମ୍ୱ ଓହାଡ଼ଇ ମେଘ ।
ଛାଗଳ ପଲେ ଯେହ୍ନେ ଖେଦି ଖେଳଇ
ବ୍ୟାଘ୍ର ॥
ପଦ୍ମ ବନିକାୟେ ହସ୍ତୀ ଯେହ୍ନେ ଧାଇଂ ।
ମାଇଗୋରୁ ଗୋଷ୍ଠରେ ଯେର୍ଣ୍ଣେ ବୃଷଭ
ସରିହୋଇ ॥
ହନୁ ବିଚାରଇ ଏ ଅଟଇ ଦୁଇରଥୀ ।
ମରିବେ ବୋଲି ପ୍ରବେଶ ହୋଇଲେ ଆସି
ଯେଥି ॥
ଅତି କୋପେ ରାବଣ ଯେ ଏହାକୁ
ପେଷିଲା ।
ସେବାକଲା ଲୋକଙ୍କୁ କ୍ଷଣକେ ନାଶିଲା ॥
ଏ ଦୁଇବୀରେ ଯେ ଅଇଲେ ପରିଘାଇ ।
ରାବଣ ବୋଲିଅଛି ବାନ୍ଧିନେବା ପାଇଁ ॥୯୦
ତେଣେ ସେ ବିଚାର କରନ୍ତି କପଟ ।
ଯେତେ ବୋଲି ଉଡ଼ିଲା ଯେ ପବନର
ଚାଟ ॥
ବିନ୍ଧିଲା କାଣ୍ଡମାନ ଧରି ଆଗହୁଂ ଯାଇ ।
କେବଣ ଶସ୍ତ୍ର ଚୋବାଇ ପକାଇ ॥
କାହାର ଖଣ୍ଡା ଯେ ଘେନଇ ଉଚ୍ଛୁଡ଼ି ।
ତାହା ଘେନି ବୀର ବହୁତ ଲୋକ ମାରି ॥
ହସ୍ତୀଙ୍କ ଉପରେ ବୀର ଉଠଇ
ଧାଡିକାରେ ।

ଯୋଦ୍ଧାଙ୍କୁ ସଂହାରଇ ପବନକୁମାରେ ॥
ଅଶ୍ୱଙ୍କର ଉପରେ ପଡ଼ଇ ଯାଇ ମାଡ଼ି ।
ଡରେଣ ପଳାନ୍ତି ରାଉତେ ଅଶ୍ୱ ଛାଡ଼ି ॥୧୦୦
ଲାଞ୍ଜ ବଢ଼ାଇଣ ପାଦାନ୍ତିକି ପିଟଇ ।
ତୀକ୍ଷ ଖଡ଼ଗରେ କାହାର ମୁଣ୍ଡ କାଟଇ ॥
ହସ୍ତୀଙ୍କ ଉପରେ ଯେ କଚାଡ଼ଇ ହସ୍ତୀ ।
ଏକ ଘୋଡ଼ା ଉପରେ ଯେ ଆରେକ ଘୋଡ଼ା ଲଥି ॥
ରାଉତଙ୍କ ବାଳଧରି ଫିଙ୍ଗି ଦେଇ ।
କାହାକଇ ଧରି ଯେ ଭୁଜ ଉପାଡ଼ଇ ॥
ରଣଗୋଳ କରି ଯେ ମାଇଲେ ସଇନି ।
ଶୁଖିଲା ବନ ଯେହ୍ନେ ଦହଇ ବହନି ॥
ଦେଖି ଜମ୍ୱୋମାଳି ପ୍ରଶସ୍ତ ବେନି ବୀର ।
ରହୁବର ଟେକିଲେ ନେଇ ହନୁମନ୍ତର ଉପର ॥୧୦
ନାରାଚ ବରଷିଲେ ତୁଷାର ବୃଷ୍ଟି ଜାଣି ।
ଧାଇଂଣ ହନୁମନ୍ତ ପାଲଟିଲା ଆଣି ॥
ଜମ୍ୱୋମାଳି ରଥେ ଉଠିଲାକ ଯାଇ ।
ସାରଥି ବାଳଧରି ଯେ ପକାଇଲା ଭୂଇଂ ॥
ବେକ ମୋଡ଼ିଣ ଯେ ତାକୁ ଫିଙ୍ଗି ଦେଲା ।
ପ୍ରଶସ୍ତ ସେନାପତିର ସାରଥି ପଡ଼ିମଲା ॥
ଦୁଇବୀରଙ୍କର ସାରଥି ଯହୁଂ ମଲେ ।
କୋପେଣ ଦଇତ ଯେ ଅନେକ ଶସ୍ତ୍ର କଲେ ॥
ରଥୁଂ ହନୁମନ୍ତ ଯେ ଘୋଡ଼ାଫେଇ ଦେଲା ।
ତ୍ରୋଣା ଖମ୍ୱ ଉପରେ ଯାଇଣ ଉଠିଲା ॥୨୦
କାୟା ବଢ଼ାଇଣ ପଡ଼ିଲାକ ମାଡ଼ି ।
ପ୍ରଶସ୍ତ ପଳାଇଲା ରହୁବର ଛାଡ଼ି ॥
କ୍ଷଣେ ରହିଥିଲେ ହରାନ୍ତାନି ପ୍ରାଣ ।
ଭଲା ତରକିଲା ସେ ଅଟଇ ସୁଜାଣ ॥
ହନୁ ଦେହ ଲାଗି ରଥ ତାର ଭାଙ୍ଗି ।
ତହୁଂଣ ଉଠିଲା ବୀର ଗଳଗାଜି ॥
ସାମାନ୍ୟ ରୂପ ଧରି ତହୁଂ ଉଡ଼ିଗଲା ।
ଜମ୍ୱୋମାଳିର କାନ୍ଧରେ ଯାଇଣ ବସିଲା ॥
ମକୁଟ ଧରିଣ ଝିଙ୍କିଲା ଦୁଇବେଳ ।
ହାଥ ବଢ଼ାଇଲା ପଡ଼ିଲା କରବାଳ ॥ ୩୦
ତାହାର ପରିଘ ଘେନି ତାହାକୁଇଂ ମାରି ।
ମୁଣ୍ଡ ଫାଟିଣ ଦଇତ ଗଲା ତଳେ ପଡ଼ି ॥
ବୁକୁରେ ବସି ତାର ଛିଣ୍ଡାଇଲା ତଣ୍ଡି ।
ସେହି ମଡ଼ାକୁ ଘେନିଣ ରଥେ ପିଟି ॥
ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଲା ରହୁବର ।
ଦେଖି ପଳାଇଲେକ ସକଳ ନିଶାଚର ॥
ରଣଭଣ ହୋଇ ପ୍ରଶସ୍ତ ବୀର ଗଲା ।
ଲଙ୍କପତି ଛାମୁରେ ଯାଇଣ କହିଲା ॥
ଶୁଣ ଦେବ ବୀରବର ଷଡ଼ଚକ୍ରବର୍ତ୍ତୀ ।
ତିନି ତୈଲୋକ୍ୟେ ଅଟୁ ଅଧିପତି ॥ ୪୦
ଅପୂର୍ବ ବାନର ସେ ଭାଙ୍ଗିଲା ମଧୁବନ ।
ଆବର ହତକଲା ଅନେକ ସଇନ୍ୟ ॥
ଶୁଖିଲା କାଠ ଯେହ୍ନେ ଦହଇ ବହନି ।
କେବଣ ଦେବତା ସେ ଅଟଇ କପିଯୋନି ॥
ମୋହର ରହୁବରେ ପଡ଼ିଲା ଆସି ମାଡ଼ି ।
ଭୟେ ପଳାଇଲି ଶହସ୍ରମାନ ଛାଡ଼ି ॥
ଦେହ ନାଗି ରଥ ହୋଇଲା ଶତେ ଚୂର ।
ପକ୍ଷୀପ୍ରାୟେ ହୋଇ ସେ ଉଡ଼ଇ ବାନର ॥
ଜମ୍ୱୋମାଳିକି ସେ ପରିଘ ଘେନି ମାରି ।
ତେତେ଼ ମାହାବୀର ହୋଇଲା ସଂଘାରି ॥୫୦
ଯେତେ ସଇନି ଛାମୁରୁ ତୋର ଗଲେ ।
ବାନର ହାତେ ସମସ୍ତେହେଂ ମଲେ ॥
ଶୁଣିଣ ରାବଣ ହୋଇଲା ଚକିତ ।
ଆଜ୍ଞା ଦେଲା ଏବେ ରହୁ ନୃତ୍ୟ ଗୀତ ॥
ଶୁଣିଣ ଅପଛରୀ ବିଦ୍ୟାଧରୀମାନେ ।
ଛାଡ଼ିଲେ ଭରହରସ ବସିଲେ ଆସନେ ॥
ତବଦ ହୋଇଣ ଅଛନ୍ତି ପଟୁଆରି ।
ପାଞ୍ଚ ସେନାପତିଙ୍କି ରାଇଣ ବୋଲଇ ଦଣ୍ଡଧାରୀ ॥
ପ୍ରଭାସ ଭାସକର୍ଣ୍ଣ ବିରୂପାକ୍ଷ ସାକ୍ଷ ।
ଶାର୍ଦ୍ଦୋଳ ମୂଳେ ତୁମେ ଅଟ ଜଣ ପାଞ୍ଚ ॥୬୦
ଯେହିକ୍ଷଣି ଯାଇଂ ଆଣିମ ତାକୁ ଧରି ।
ଜୀବନ୍ତେ ଧରି ଆଣ ପ୍ରାଣେ ତାହା ନମାରି ॥
ଓପ୍ରୋଧ ନ କରିଣ ନିର୍ବନ୍ଧେଣ ଯୁଝ ।
ଜମ୍ୱୋମାଳିକି ମାଇଲା ସାମାନ୍ୟ ନ ବୁଝ ॥
ତାହାକୁ ଆଣିଲେ ମୁଂ କରିବି ଭୋଜନ ।
ଆଜ୍ଞା ପାଇଣ ସେ ସଜ ପାଞ୍ଚଜଣ ॥
ତେଜା ପାଞ୍ଚ ଅଶ୍ୱ ଚଢ଼ିଣ ଅଇଲେ ।
ଅନେକ ସନ୍ୟ ତାଙ୍କର ସଙ୍ଗରେ ଗୋଡ଼ାଇଲେ ॥
ଢୋଲ ଦମା ଟମକ ବାଜଇ ଅପାର ।
ସଜହୋଇ ଗଲେ ଯେ ପାଞ୍ଚ ଅଶ୍ୱଆର ॥୭୦
ମଧୁବନ ନିକଟେ ମିଳିଗଲେ ଯାଇଂ ।
ହନୁମନ୍ତ ଅଛି ତ୍ରୋଣାଖମ୍ୱେ ଶୋଇ ॥
ଥାଠ ଘୁଞ୍ଚାଇଣ ସେନାପତି ଆଗ ହୋଅନ୍ତି ।
ଆରେ ଆରେ କପି ବୋଲିଣ ଡାକ ଦିଅନ୍ତି ॥
ମାର ମାର ଶବଦ ଶୁଭଇ ଚଉପାଶ ।
ତୁନି ହୋଇ ଅଛଇ ଶ୍ରୀରାମର ଦାସ ॥
ମନେ ବିଚାରଇ ଅସୁରେ ଅଗିଆନ ।
ଏହିକ୍ଷଣି ସବିହେଂ ହରାଇବେ ପ୍ରାଣ ॥
ଏତେ ବିଚାରିଣ ତଳକୁ ଡେଇଂ ପଡ଼ି ।
ଥୋକାୟେକ ସଇନି ଯେ ମାଇଲା କଚାଡ଼ି ॥୮୦
କାହାକୁ ଗୋଇଠାଏ କାହାକୁ ମାରେ ବିଧା ।
କାଣ୍ଡ ଖଣ୍ଡା ନାହିଂ ଦୁଇହାଥ ଶୋଧା ॥
କାହାକୁ ଛାପୋଡ଼େ ମାରିଣ ମୁଣ୍ଡ କ୍ଷିନି ।
କାହାକୁ ଧୂଳି କରି ଘଷଇ ମେଦିନୀ ॥
ଏକର ଉପରେ ଆରକ ନେଇ ପିଟି ।
ବହୁତ ଅସୁରେ ସଂଗ୍ରାମରେ ଲୋଟି ॥
ଦେଖି ପାଞ୍ଚ ସେହ୍ନା ବେଢ଼ିଗଲେ ଯାଇ ।
କୋନ୍ତ ଶାବେଲୀ ଯେ ମାରନ୍ତି ତୁହାଇ ॥
ଯେକ ହାଥେ ଖୁନ୍ଦାଏ ଗୁରୁଜ ଘେନି ପିଟି ।
କେ ଖଣ୍ଡାଏ ହାଣନ୍ତେ ସୂତାଏ ନ କଟି ॥୯୦
ମଧରେ ହନୁମନ୍ତ ଭୋକିଲାର ବ୍ୟାଘ୍ର ।

ପାଞ୍ଚ ସେନାପତି ଅଛନ୍ତି ତାର ଆଗ ॥
ପ୍ରଭାସର ଘୋଡ଼ା ସେ ଯେ ଘେନିଣ
ପାବେନି ।
ଭାସକର୍ଣ୍ଣ ଉପରେ ପିଟିଲା ତାହା ଘେନି ॥
ବିରୁପାକ୍ଷ ଦେଖି ଧାଇଂଲାକ ଖରେ ।
କୋନ୍ତ ପହୁଡ଼ିଲା ସେ ଯେ ମାରୁତି ଉପରେ ॥
ଉପୁଡ଼ିଣ ଶହସ୍ର ପଡ଼ିଲାକ ଭୂଇଂ ।
ତକ୍ଷଣେ କପିବୀର ଧଇଲାକ ଯାଇଂ ॥
ସେହି କୁନ୍ତ ଘେନି ଯେ ବିରୁପାକ୍ଷକୁ ମାରି ।
ହୃଦରେ ଫୁଟିଣ ଯେ ରୁଧିର
ଉଦ୍ଗାରି ॥୧୦୦
ଶାର୍ଦ୍ଦୋଳ ରଥ ଉପରେ ଯେ ଶାର୍ଦ୍ଦୋଳକୁ
କଉଡ଼ି ।
ପାଞ୍ଚ ସେନାପତି ଯେ ସମର ଭୂମିରେ ପଡ଼ି ॥
ସିଂହରଡ଼ି ଦେଇ ହନୁମନ୍ତ ଗଲା ।
ତ୍ରୋଣାଖମ୍ଭ ଉପରେ ଯାଇଣ ବସିଲା ॥
ତୋଟାର ଦ୍ୱାରେ ବହିଲା ରକତ ନଈ ।
ଯାଇଣ ଡଗରାଏ ରାବଣ ଆଗେ କହି ॥
ଶୁଣ ଦେବ ଦଶଗ୍ରୀବ ମନ୍ଦୋଦରୀ ନାହା ।
କପିଧରି ଆଣିମାକୁ ପେଶିଲୁ ତୁ ଯାହା ॥
ସେ ପାଞ୍ଚ ସେନାପତି ସଂଗ୍ରାମେ ନାଶ
ଗଲେ ।
ରଥଗଜ ପାଦାନ୍ତି ଅଶ୍ୱମାନେ ମଲେ ॥୧୦
ମାୟା ସେ ବାନର ନୁହଇ ନିଅତ ।
ଜାଣିଣ ତେଜ ତାର ପ୍ରଜ୍ୱଳିତ ହୁତ ॥
ଶୁଣିଣ ରାବଣ ପାଇଲା ବହୁତ ଚିନ୍ତା ।
କିମ୍ପା ମର୍କଟ ମୋତେ କଲାକ ଅହନ୍ତା ॥
କାହୁଂ ଅଇଲା ସେ କାହାର ତନୟେ ।
ଅକଣ୍ଟେକ ରାଜ୍ୟ ମୋର ଉପଦର୍ପ କୟେ ॥
ଯେତେ ବୋଲି ରାୟେ ଦକ୍ଷିଣକୁ ଚାହିଂ ।
ଯାଅ ବୋଲି ଅକ୍ଷୟେ ପୁତ୍ରକୁ ଆଜ୍ଞା ଦେଇ ॥
ଯେହିକ୍ଷଣି କପିକି ଘେନିଆସ ଧରି ।
ଜୀବନ୍ତା ଆଣିମଟି ପ୍ରାଣେଣ ନ ମାରି ॥୨୦
ଶୁଣିଣ କୁମର ସେ ହୋଇଲା ବାହାର ।
ସାରଥି ସାଜି ଆଣିଲା ରହୁବର ॥
ଲକ୍ଷେକ ପାଦାନ୍ତି ସହସ୍ରେକ ହସ୍ତୀ ।
ଅହିବ୍ରତେ ରାଉତ ଯେ ଦୁଇଶତ ରଥୀ ॥
ବିବିଧ ଛନ୍ଦେଣ ବାଜଇ ବୀରତୂର ।
ରଡ଼ିର ଘାୟେ କମ୍ପୁଅଛି ତିନିପୁର ॥
ପ୍ରବଳ ଅସୁରେ ଯେ ଅତି ଅର୍ଗଳ ।
ଅପ୍ରମିତ ମାୟା ସେ ଯେ ଅତି ଅଗୋଚର ॥
ଚିହ୍ନ ଚିରାଳ ଯେ ଉଦଣ୍ଡ ବୀର ନେତ ।
ଉଲାଗ ପାଟଛତ୍ର ଯେ ଦୁନ୍ଦୁଭି ବହୁତ ॥୩୦
ସୁବର୍ଣ୍ଣର ରଥେ ଯେ ଅକ୍ଷୟେ ବିଜେ କଲା ।
ଦୂତୀ କାମଦେବ ଜାଣିଣ ଦିଶିଲା ॥
ଶିରରେ ମକୁଟ ଯେ କର୍ଣ୍ଣରେ କୁଣ୍ଡଳ ।
କଣ୍ଠେଣ ହାର ଯେ ବିବିଧ ମଣିମାଳ ॥
ବାହେଣ ବାହୁଟି ତାଡ଼ ଶିକୁଳି କଙ୍କଣ ।
ମାହାଶୋଭା ପାଇଲା ନବରତ୍ନ ଆଭରଣ ॥
ବିଦ ମୁଦି ବିବିଧ ଅଳଙ୍କାର ଭରି ।
କଟିରେ କଟିମେଖଳା ପ୍ରଚଣ୍ଡ ତେଜ ପୂରି ॥
ଚରଣେ ତୋଡ଼ର ଯେ ନେପୁର
ବୀରବାନା ।
ଶ୍ୱରୀରେ ଆଭରଣ ରଙ୍ଗପାଟ ସୁନା ॥୪୦
ନବରତ୍ନ ମାଣିକ୍ୟ ଦର୍ପଣ ଝଲକନ୍ତି ।
କରେଣ କମାୟେଣ ଧରିଣ ଉଗ୍ରମୂର୍ତି ॥
ଚାଲ ବୋଲି ଯେ ଆଜ୍ଞା ଯହୁଂ ଦେଲା ।
ହୟଗଜ ପାଇକ ଆଗସରି ଗଲା ॥
ନଗ୍ର ନରନାରୀ ଯେ ପାଞ୍ଚସାତ ହୋଇ ।
ବୋଲନ୍ତି ବିପତ୍ତି ଯେ ହୋଇଲା କିସପାଇଂ ॥
କାହୁଂ ଅଇଲା ସେ ଚାଣ୍ଡାଳ ବାନର ।
ମଧୁବନ ତୋଟା କଲା ନାରଖାର ॥
ଜମ୍ବୋମାଳିକି ଯେ ପ୍ରାଣେ ବଧ କଲା ।
ତାହା ଶୁଣି ଆମ୍ଭର ଜୀବନ ଉଡ଼ିଗଲା ॥୫୦
ଏବେ ପାଞ୍ଚ ସେନାୟେ ହୋଇଲେ
ବିନାଶ ।
ଯେତେକାଳେ କ୍ଷୋଭ ପାଇଲା ଲଙ୍କଦେଶ ॥
କେହୁ ବୋଲଇ ଆହେ ନୋହିବ କିମ୍ପା
ମନ୍ଦ ।
ସୀତ୍ୟାକୁ ହରି ସେ ଯେ ଆଣିଲା ଦଶକନ୍ଧ ॥
ଶ୍ରୀରାମ ନଥିଲା ଯେ ଆଣିଲା ଚୋରାଇ ।
ଆପଣେ ଅନର୍ଥ ଯେ ଅର୍ଜ୍ଜିଲା ଲଙ୍କସାଇଂ ॥
ତିନିକୋଟି ପଞ୍ଚାଶ ଲକ୍ଷ ଯାହାର ନାରୀ ।
ସେ କିମ୍ପା ଯାଉଅଛି ପରସ୍ତିରୀ ହରି ॥
ରାଜା ନ ବୁଝିଲେ ଯେ ପରଜା ଦୁଃଖ
ପାଇ ।
ଉତ୍ତମ ଶାସ୍ତି ଯେହା ଯେ ପାଇଲା
ଲଙ୍କସାଇଂ ॥୬୦
ଯେତେଦିନ ସୀତାଯେ ଏ ଲଙ୍କପୁରେ ଥିବ ।
ଦ୍ୱନ୍ଦ କଳି ବୋବାଳି ଯେ ବହୁତ ହୋଇବ ॥
ବାନର ଭରସା କି ଯେଡ଼େ କର୍ମ କରି ।
ଜମ୍ବୋମାଳି ପରା ବୀରକୁ ପ୍ରାଣେ ମାରି ॥
ଯେକା ଜଣକରେ ସେ ଯେ ଯେତେ
ଯୁଦ୍ଧକଲା ।
ଅଶୀସହସ୍ର କିଙ୍କରଗଣ ନାଶ କଲା ॥
ପାଞ୍ଚ ସେନାପତି ଯେ ଏକୁ ଏକ ବୀର ।
ଶାଳେକ ଗଣଇ ଯେ ହୋଇଲେ ରଣେ
ଚୂର ॥
ଯେବେ କେତେହେଂ ଯେ ପଡ଼ିବେ
ଲେଖାନାହିଂ ।
ଅକାରଣେ ଏହାକୁ ମରାଇ କିସପାଇଂ ॥
ଏସନେକ ବୋଲି ସେ ଭାଳନ୍ତି ପୁରଜନ ।
ଅକ୍ଷୟେ ପ୍ରବେଶ ହୋଇଲା ମଧୁବନ ॥
ସନ୍ୟକୁ ବୋଇଲାରେ ତ୍ରୋଣାଖମ୍ଭ ବେଢ଼ ।
ଗୁରୁଜ ଘେନିଣରେ ବାନରକୁ ପହୁଡ଼ ॥
ଶୁଣି ଅସୁରେ ଯେ ହୋଇଲେ ଆଗୁସାର ।
ଏକକୁ ଆରେକ ଯେ ଡାକନ୍ତି ମାର ମାର ॥
ହସ୍ତୀ ଘୋଡ଼ା ରଥୀ ଯେ ବେଢ଼ିଲେ
ପାଦାନ୍ତି ।
ଯେ ଯାହାର ଶସ୍ତ୍ର ଯେ ଘେନିଣ ମାରନ୍ତି ॥
ଅକ୍ଷୟେ ବୋଲଇ କପି ଯେଣେ ପଳାଇବ ।
ତାହାର ପାଳଟେ ସେ ଅବଶ୍ୟ
ହୋଇବ ॥୮୦

ଆପଣେ ରଥେ ଚଢ଼ି କମାୟେଣ ଧରି ।
ବିନ୍ଧଇ ନାରାଜ ଯେ ହୁଙ୍କାର ଧ୍ୱନି କରି ॥
ତ୍ରୋଣା ଖମ୍ୱେ ଥାଇ ବିଚାରଇ ମାରୁତି ।
ଧନ୍ୟ ସୁନ୍ଦର ଏଯେ ଦ୍ୱତୀଅ ଲଙ୍କପତି ॥
ରାବଣ ମୁଖ ପରାୟେତ ଏହାର ।
ଥାଠେ ସେନାପତି ଏଯେ ରାଜାର କୁମର ॥
ବହୁତ ସମର ଏଯେ କରିବ ଆଜ ମିଳି ।
ପ୍ରତିଜ୍ଞା କରି ଆସିଅଛି ନାନା ଭାଳି ॥
ଏଥକୁ ଘୁଞ୍ଚିଲେ ଯେ ନୁହଇ ବଡ଼ପଣ ।
ୟେତେ ବୋଲି ଗଗନେ ଗଲା
ବିକ୍ରମିଣ ॥୯୦
ଅଶ୍ୱଙ୍କ ଉପରେ କଚାଡ଼େ ମଏମତ ।
ମାହା ପ୍ରଚଣ୍ଡ ମୂର୍ତ୍ତି ସେ ପବନର ସୁତ ॥
କାହାକୁ ଫିଙ୍ଗଇ ଯେ କାହାକୁ ନାତେ ମାରି ।
କାହାକୁ ଖଣ୍ଡେଦୂରୁ ନିଅଇ ଉଛୁଡ଼ି ॥
କାହାକୁ ନାତେ ମାରି କରଇ ମସି ଗୁଣ୍ଡା ।
କାହାକୁ ହାଣଇ ନେଇ ତାହାଙ୍କର ଖଣ୍ଡା ॥
ରକତନଦୀ ସେ କ୍ଷଣିକେ ବୁହାଇଲା ।
କେବଣ ଦଇତକୁ ବିଦାରି ପକାଇଲା ॥
କାହାର ଅନ୍ତ ନେଇ ଗଳାରେ ଲମ୍ୱାଇଲା ।
କାହାର ରୁଧିରେ ଯେ ଲୋଟାଗାଳି
ଶୋଇଲା ॥୧୦୦
ଦୁଇ ହାତେ ଦୁଇ ସେ ମଡ଼ା ଘେନି ବୀର ।
ଆକାଶମାର୍ଗେ ନେଇ ଯେ ନଗାଇଲା ଶିର ॥
ଫରହର ନିଶୁଆସେ ବାୟେ ନେତ ଉଡ଼ି ।
ବିକଟ ନୟନେ ଦିଅଇ ସିଂଘରଡ଼ି ॥
ଲାଙ୍ଗେ ହସ୍ତୀଏ ଯେ ଅଛଇ ବୀରଧରି ।
ଦୁଇପାଦେ ଦୁଇଅଶ୍ୱ ନଖରେ ବୀର ଭରି ॥
ଚକ୍ରଗତି କରି ଯେ ବୁଲାଇ ଅନ୍ତରାଳ ।
ଦେଖିଣ କମ୍ପିଲା ଯେ ଦଶଗ୍ରୀବର ବାଳ ॥
ଆରେ ଆରେ କପି ରହଥିର ହୋଇ ।
ରାବଣର ତନୟେରେ ଅକ୍ଷୟେ ବୀର
ମୁହିଂ ॥୧୦
ମଧୁବନ ଭାଙ୍ଗିଲୁରେ କେବଣହିଂ ମତ ।
ଆଜ ମୁହିଂ ତୋତେରେ କରିବି ଯେମନ୍ତ ॥
ୟେତେ ବୋଲି ନେଇ ଯେ ମାଇଲାକ
ମୁଷ୍ଟି ।
ହନୁ ବଞ୍ଚାଇଲା ଯେ କରିଣ ଚିତ୍ରଗତି ॥
ଖ୍ୟପରୂପ ଧରି ସେ ଯେ ରଥରେ ବସିଲା ।
ପୁଣି ତଳକୁ ସେ ବାହୁଡ଼ି ପଳାଇଲା ॥
ରଥ ନେଉଟାଇ ଯେ ପକାଇଲାକ ଟୋଳି ।
ରାବଣର ତନୟ ଯେ ଭୂମିରେ ଯାଇ ମିଳି ॥
ମାହା ମୁଦ୍ଗରେ ଯେ ଧରିଅଛି କରେ ।
ବାମକରେ ଅଛି ଯେ ତୀକ୍ଷ ଅସିବରେ ॥୨୦
ହନୁମନ୍ତ ଉପରେ ଯେ ପିଟିଲା ନେଇ
ଖଣ୍ଡା ।
ଧରିଣ ମାରୁତି କଲାକ ମସିଗୁଣ୍ଡା ॥
ମୁଦ୍ଗର ହସ୍ତରୁ ଯେ ଘେନିଲା ଉଛୁଡ଼ି ।
ଭାଙ୍ଗି ପକାଇଲା ବୀର ଦୁଇଖଣ୍ଡ କରି ॥
ସିଂହ ଶାର୍ଦ୍ଦୋଳ ସେ ଯେ ଏସନେକ
ଯୁଝନ୍ତି ।
କି ଅବା ଚଉଦନ୍ତ ଦୁଇ ମତ୍ତହସ୍ତୀ ॥
ଅକ୍ଷୟେ ହନୁମନ୍ତ ଦିଶନ୍ତି ତେସନ ।
ବ୍ରହ୍ମାର ନାତି ସେ ଯେ ପବନର ନନ୍ଦନ ॥
ଗୋଇଠାଏ ମାରି ସେ ଭାଙ୍ଗିଲା ତୁଚ୍ଛା ରଥ ।
ଚକ ଦୁଇଗୋଟା ଯେ ଧଇଲା
ଦୁଇହସ୍ତ ॥୩୦
ବୁଲାଇ ସଇନିରେ ଧାଇଂ କୋପକରି ।
ସୁଦର୍ଶନଚକ୍ର ଯେସ୍ନେ ଧଇଲେ ମୁରାରି ॥
ଆତଯାତ ହୁଅନ୍ତେ ସଇନି ନାଶଗଲା ।
ଚକ୍ରେକ ଧରି ପୁଣ ବୁଲାଇ ମାଇଲା ॥
ଅକ୍ଷୟେ କୁମର ଉପରେ ଯାଇ ବାଜି ।
ହୃଦରେ ବଥା ସେ ଯେ ପାଇଲା ଗଳଗାଜି ॥
କୋଳ କରି ଯାଇ ହନୁମନ୍ତକୁ ଧଇଲା ।
ଶିଶୁ ହୋଇ ମାରୁତି ଗଳି ପଳାଇଲା ॥
ଆପଣେ ଉଭା ସେ ଯେ ହୋଇଲା
ଆସିପୁଣି ।
ବାହାଦୁଇ ଟୋଳି ଯେ କହଇ ଶିର
ଝୁଣି ॥୪୦
ଅକ୍ଷୟେ କୁମର ଯେ ମାଇଲା ନେଇ ମୁଷ୍ଟି ।
ହନୁମନ୍ତ ଦେହେ ବାଜି ଅଗ୍ନିଜଳି ଉଠି ॥
କ୍ଷଣେ ଘୁମାଇଲା ଯେ ପବନର ନାନ ।
ପୁଣି ଦେହେ ଆସି ଯେ ପଶିଲାକ ଜ୍ଞାନ ॥
ଅକ୍ଷୟେର ଦୁଇହାତ ଦୁଇହସ୍ତେ ଧରି ।
ମୁଣ୍ଡେଣ ମୁଣ୍ଡେ ଯେ ମାଇଲା କୋପକରି ॥
ହିଆକୁ ହିଆ ଦେଇ ପେଲା ପେଲି ହୋନ୍ତି ।
ଦୁଇ ବ୍ୟାଘ୍ର ଯେସ୍ନେ ସମର କରନ୍ତି ॥
କ୍ଷଣେ କ୍ଷଣେ ଯୁଦ୍ଧ କି ଗଜେ ଚଉଦନ୍ତ ।
ମଧ୍ୟସ୍ଥ ହୋଇ ଲୋକେ ଦେଖନ୍ତି
ସମସ୍ତ ॥୫୦
ହନୁମନ୍ତ ଅକ୍ଷୟେ କରନ୍ତି ବେନି ରଣ ।
ଜାଣନ୍ତି ମାଲଗତି ବିଚିତ୍ର ବିନ୍ଧାଣ ॥
ଧରାଧରି ହୋଇ ଯେ ଭୂମିରେ ପଡ଼ନ୍ତି ।
ୟେକା ଦିହ ଜାଣି ଗଡ଼ାଗଡ଼ି ଯାଉଛନ୍ତି ॥
ବେନି ଅହି ଯେସ୍ନେ କରନ୍ତି ସମର ।
ଦେହ ନାଗି କାଠ ପାଷାଣ ହୋଏ ଚୂର ॥
ମାହାମେଘ ଜାଣି ଗର୍ଜନ କରନ୍ତି ।
ଫୁ ଫୁକାର ଧ୍ୱନି ନିଶ୍ୱାସ ଛାଡ଼ନ୍ତି ॥
ଶ୍ୱରୀରୁ ଶ୍ରମଝାଳ ଗଳଇ ଖଳ ଖଳ ।
ଦୁହେଂ ଓଛ ନୁହନ୍ତି ଅଟନ୍ତି ଅଟାର୍ଗଳ ॥୬୦
ଦନ୍ତ ନିକୁଟିଣ ହୁଅନ୍ତି ମରାମରି ।
ନଖ ଦନ୍ତ ଘେନିଣ ଶ୍ୱରୀର ବିଦାରି ॥
ଦୁଇଙ୍କରି ଶ୍ୱରୀର ଶ୍ରୋଣିତ ରଙ୍ଗମୟେ ।
ଏକକୁ ଆରେକ ଛାଡ଼ି ଉଭା ହୋଏ ॥
ଅପସରି ଯାଇ ରହନ୍ତି ଠାଣି କରି ।
ବିଧାନ୍ତ ଉଚାଇଣ ଅଛନ୍ତି ମନ ସରି ॥
ହାଥକୁ ହାଥ ଦେଇ ରାବଣର ସୁତ ।
ହନୁ ହୃଦେ ନେଇ ମାଇଲା ପାଦଘାତ ॥
କୋପେଣ ମାରୁତି ଚରଣ ଧଇଲା ।
ଚକ୍ର ପ୍ରାୟେ କରି ଧରିଣ ବୁଲାଇଲା ॥ ୭୦
ଭଙ୍ଗା ରଥ ଉପରେ କଚାଡ଼ିଲା ନେଇଂ ।
ପଡ଼ିଲା ରାକ୍ଷସ ହତଗ୍ୟାନ ହୋଇଂ ॥
ତାହା ଛାଡ଼ି ହନୁ ଥାଠକୁ ଧାଇଂଲା ।

ରଥ ଗଜ ଅଶ୍ୱ ପାଦାନ୍ତି ହତ କଲା ॥
ତାହାଙ୍କର ଶସ୍ତ୍ର ଧରିଣ ତାଙ୍କୁ ମାରି ।
ତୀକ୍ଷ ଖଡ଼ଗେକ ଅଛଇ କରେ ଧରି ॥
ଯେସନେକ ସମୟେ ରାବଣର ସୁତ ।
ମୋହ ଛାଡ଼ି ବୀର ଉଠିଲା ତୁରିତ ॥
ଭାଙ୍ଗିଲାର ରଥରୁ ଚକେକ ଘେନି ଧାଇଁ ।
ହନୁମନ୍ତ ଉପରେ ମାଇଲାକ ନେଇ ॥ ୮୦
ଅଙ୍ଗ ଢାଳି ତାହା ବଞ୍ଚାଇଲା ମାରୁତି ।
ଅଛଏର ସନ୍ନିଧାକୁ ଗଲାକ ଶୀଘ୍ର ଗତି ॥
ଖଡ଼ଗ ଧରି ଯେ ପକାଇଲାକ ତୋଳି ।
ରାବଣ ତନଏ ପଳାଇଲା ଗଳି ॥
ଗୋଡ଼ାଇ ମାରୁତି ଧଇଲାକ ବସ୍ତ୍ର ।
କୋପେ ଆରବେଳ ପେଷିଲା ଅସିପତ୍ର ॥
ଶିର ଛିଡ଼ିଣ ଯେ ଭୂମିରେଣ ପଡ଼ି ।
ଦେଖି ହନୁମନ୍ତ ଦେଲା ସିଂଘ ରଡ଼ି ॥
ବୁକୁ ବିଦାରିଣ କାଢ଼ିଲା ତାହାର ଅନ୍ତ ।
ପଇତା କରି ଗଳେ ନମ୍ବାଇଲା
ହନୁମନ୍ତ ॥୯୦
ଛେଦିଲା ଶିର ଧଇଲା ଆଣି ହସ୍ତେ ।
ଦକ୍ଷିଣେ ଦିଗେ ଅଛି ତକ୍ଷ ଅସିପତ୍ରେ ॥
ସେହି ମଡ଼ା ମାଡ଼ି ବସିଲାକ ଯହୁଁ ।
ନଇରତ ଦେବତା ପ୍ରାଏ ଦିଶିଲାକ ତହୁଁ ॥
ଦେଖିଣ ସଇନି ପଳାଇଲେ ଭୟେ କରି ।
ହନୁମନ୍ତ ଅଛଇ ଭଇରୋବ ରୂପ ଧରି ॥
ଉଗ୍ରମୂର୍ତ୍ତି ଛାଡ଼ି ଯେ ପୁଣି ଶାନ୍ତି ହୋଇ ।
ଦଇତର ଶିର ଖଣ୍ଡେକ ତଳେ ଥୋଇ ॥
ତ୍ରୋଣା ଖମ୍ଭ ଉପରେ ହନୁମନ୍ତ ବସି ।
ରକତ ଛଡ଼ାଇଣ ହୁଅଇ ଘଷାଘଷି ॥ ୧୦୦
ନିଶ ମୋଡ଼ିଣ ଆଉଂଷଇ ଗାଲ ।
ବାହା ମରଦିଣ ଚାହାଇଂ ଫଳ ଫଳ ॥
ରାବଣ ଆଗରେ କହିଲା ଚାର ଯାଇଂ ।
ଅକ୍ଷୟେକୁମାର ରଣେ ପଡ଼ିଲା ଗୋସାଇଂ ॥
ବାନର ସଙ୍ଗେ ଦେବ ଅନେକ ଯୁଧ୍ୟ
କଲା ।

କର୍ମର ଅବଳେ ଦେବ ଜିଣି ନ ପାରିଲା ॥
ନୁହଇ କପି ସେ ମାୟାରୂପ ଧରି ।
କେବଣ ଦେବତା ସେ ମେଦନୀ ଅବତରୀ ॥
ଏକେଣ ଅନେକ ସଇନି ନାଶ କଲା ।
ରୁଧିର ନଦୀ ଯେ କ୍ଷଣକେ ବୁହାଇଲା ॥୧୦
ଶୁଣି ଲଙ୍କପତିର ଶୁଖିଲାକ ମୁଖ ।
ଏତେକାଳେ ଯହୁଁ ପାଇଲା ପୁତ୍ର ଦୁଃଖ ॥
କ୍ଷଣେକ ତବଦ ହୋଇଣ ବସିଥିଲା ।
ନୟନ ଯୁଗଳୁ ଅଶ୍ରୁଜଳ ପକାଇଲା ॥
ବ୍ରହ୍ମାକଇ ଚାହିଁ ବୋଲଇ ରାବଣ ।
ଭୋ ପିତାମହ ମୋହୋର ଜୀବନ
ଅକାରଣ ॥
ଚଉଦ ଗଣ୍ଡା ଯୁଗକୁ ଆୟୁଷ ମୋହୋର ।
ସୁଖେଣ ଭୋଗ୍ୟ କରଇ ତିନିପୁର ॥
କ୍ଷତ୍ରୀ ହୋଇ ମୋତେ ସରିସମ
ନାହିଁ ।୨୦
କେବଣ ଉପଦର୍ପ କରି ଅବା ନାହିଁ ॥
ଅକଣ୍ଟେକ ରାଜ୍ୟ ଯେ ଅଜୟେ ଗଡ଼
ଲଙ୍କା ।
ଯେତେଦିନ ମୋର ନ ଥିଲା ମନେ ଶଙ୍କା ॥
ଅକଳିତ କୁଳ ମୋର ପଦ୍ମବନ ଜାଣି ।
ଦଇବ ଯେ କର୍ମ କଲା ମୋତେ ଆଣି ॥
ବାନର ନିଲକ୍ଷଣ ଏଡ଼େକ ସାହାସ ।
ଜଳନ୍ତ ଅଗ୍ନିରେ ପଶିଦେଲା ଝାସ ॥
ଅଛଏ କୁମାର ପରାଏ ପୁତ୍ରକୁ ନାଶଗଲା ।
ପାଞ୍ଚ ସେନାପତି ଯେ ଜମ୍ବୋମାଳି ମଲା ॥
କିଙ୍କରଗଣେ ମୋର ପଡ଼ିଲେ ବହୁତ ।
ଭାରିଯାଙ୍କ ଭାଇମାନେ ହୋଇଲେ
ନିପାତ ॥୩୦
ଗଜ ଅଶ୍ୱ ପାଦାନ୍ତି ଅନେକ ନାଶ କଲା ।
ଯେକା ବାନରେକେ ଏତେ କର୍ମ କଲା ॥
କାହୁଁ ଅଇଲା ସେ ଜାଣିମା କେମନ୍ତେ ।
କେ ଆଣି ଧରିଦେବ ତାହାକୁ ହିଁ ମୋତେ ॥
ରାଜାଙ୍କର ମୁଖେ ପାଇଲି ଉପହାସ୍ୟ ।

ଯେକା ବାନରେକେ ମୋତେ କଲାକ
ଧିଙ୍ଗାସ ॥
ସୋହୋଡ଼ ସୁନ୍ଦର ପୁଅ କନ୍ଦର୍ପ ସମାନ୍ୟ ।
ଛାର ବାନର ହାଥେ ହରାଇଲା ଜୀବନ ॥
ରୂପେ ପଟାନ୍ତର ନାହିଁ ତିନିପୁରୀ ।
ଶତ୍ରୁର ମନ୍ଦିରେ ନିତି ପଡ଼ଇ ହୁରି ॥୪୦
କ୍ଷୟେ ନୋହିବ ବୋଲି ଅକ୍ଷୟେ ନାମ
ଦେଲି ।
ଏବେ ପୁତ୍ରକୁ ତ ଅଖଡ଼େ ମରାଇଲି ॥
ବୀରଦର୍ପ ଗଞ୍ଜନରେ କ୍ଷତ୍ରୀ ଉରଶଲ ।
ଏ ଲଙ୍କା ଭୁବନରେ ତୁ ଅଟୁ ମାହାମଲ ॥
ସୁର ନର କିନ୍ନର ଯକ୍ଷ ସାଧ୍ୟ କଲୁ ।
ଛାର ନିଲକ୍ଷଣ ସେ ବାନର ହାଥେ ମଲୁ ॥
ହା ହା ପୁତ୍ର ମୋର ରେ କୁଳର ଶିରୋମଣି ।
ଅଇରି ବଳ କମ୍ପଇ ତୋର ନାମ ଶୁଣି ॥
ଯେବେ ଯେକା କରି ଗଲୁ ମୋତେ ଛାଡ଼ି ।
ମୁହିଁ ଯେ ମରୁଅଛି ଶୋକଜଳେ
ବୁଡ଼ି ॥୫୦
ଯେ ଦୁଃଖ ଅକ୍ଷୟେ ରେ ନ ଦେଖୁ କି
ବାପ ।
ଆଜୁଂ ସରିଲା ସେ ଯେ ମୋହୋର ସବୁ
ଧାପ ॥
ଅନ୍ତେଶ୍ୱର ଭିତରେ ପଡ଼ଇ ବୋବାଳି ।
ଲଙ୍କାଗଡ଼ ଯାକେ ହୋଇଲା ହାଲହୋଳି ॥
କେ ବୋଲଇ ଆହୋ ଅଛୟେ ବୀର ମଲା ।
ବାନର ନିଲକ୍ଷଣ ଯେଡ଼େ କର୍ମ କଲା ॥
କେ ବୋଲଇ ଏ ପୁର ଆଜୁଂ ଗଲା ନାଶ ।
କେ ବୋଲଇ ଏକା ରାବଣର ଦୋଷ ॥
କେ ବୋଲଇ ସୀତାକୁ ଆଣିଲା ଚୋରାଇଂ ।
ସେହିଦିନୁ ଶିରୀ ଛାଡ଼ିଲା ଲଙ୍କସାଇଂ ॥୬୦
କେ ବୋଲଇ ଏଡ଼େ ସୁଖେଣ ନ ଗଲା ।
ପର ଯୁବତୀକି ଚୋରାଇଂ ଆଣିଲା ॥
ତେଣୁ ସେ ବିପରୀତ ହୋଇଲାକ ଯେବେ ।
ଯାହା ନିର୍ଭା କରିଅଛଇ ଦଇବେ ॥

ଅନ୍ତେପୁର ଭିତରେ ରୋଦନ ଏବେ ଶୁଣ ।
ଆହୁଟ କୋଟି ଯେ ଅଛନ୍ତି ନାରୀଗଣ ॥
ପୁତ୍ରକୁ ସୁମରି ରୋଦନ କରନ୍ତି ।
ଅକ୍ଷୟର ଘରଣୀ ଉଛେ ବୋବି ଦ୍ୟନ୍ତି ॥
ଆହା ସ୍ୱାମୀ ବୋଲି ନୋଟନ୍ତି ଧରଣୀ ।
ବାରତା ପାଇଂ ଯେ ବିକଳ ଲଙ୍କମଣି ॥୭୦
ପରିବାରୀମାନନ୍ତ ବୋଇଲାକ ରାଇ ।
ବହୁମାନନ୍ତ ତୁନି କରାଅ ତୁମ୍ଭେ ଯାଇ ॥
ନ କରନ୍ତୁ ଶୋକ ବିମୁଖ ନୁହନ୍ତୁ ।
ଆଉ ଘଡ଼ିଏ ଯାଏ ତୁନି ହୋଇଥାନ୍ତୁ ॥
ଏତେ ବୋଲିଣ ଯେ ଇନ୍ଦ୍ରଜିତକଇ ଚାହିଂ ।
ଆଗ୍ୟାଂ ଦେଲାକ ସେ ମନ୍ଦୋଦରୀ ସାଇଂ ॥
ତୁ ହୋ ମେଘନାଦ ଯିବୁ ଏହିକ୍ଷଣି ।
ବାନରକୁ ବାନ୍ଧି ମୋ ଛାମୁରେ ଦେବୁ ଆଣି ॥
ଅକ୍ଷୟର କଷ୍ଟ ପାଶୋରିବି ତାହାକୁ ମାରି ।
ବିଳମ୍ୱ ନ କରିଣ ଆଣ ତାକୁ ଧରି ॥ ୮୦
ଶୁଣିଣ ମେଘନାଦ ଶିରେ କର ଦେଲା ।
ଲଙ୍କପତି ପାଦତଳେ ପ୍ରଳମ୍ୱିତ ହେଲା ॥
ଦଶ ସହସ୍ର ରଥୀ କୋଟିଏ ପାଦାନ୍ତି ।
ଦୁଇ ସହସ୍ର ଅଶ୍ୱଆର ତିନି ସହସ୍ର ଗଜ ଛନ୍ତି ॥
ସୁବର୍ଣ୍ଣର ରଥ ବିଚିତ୍ର କମମାନ ।
ନୀଳାର ଘଟଣ ଯେ କଳସ ବିତପନ ॥
ଶ୍ୱେତ ଚାମର ଯେ ଦର୍ପଣ ପନ୍ତିପନ୍ତି ।
ନାନାବର୍ଣ୍ଣେ କୁସୁମ ମାଳ ଲମ୍ୱିଣ ଅଛନ୍ତି ॥
ସେ ରଥେ ଇନ୍ଦ୍ରଜିତ ବସିଲାକ ଯାଇ ।
ନେତର ଉଦଣ୍ଡ ଯେ ପାଟଛତ୍ର ଧରାଇଂ ॥୯୦
ବାମେଣ କୋଦଣ୍ଡ ଯେ ଦକ୍ଷିଣେ ତୀକ୍ଷଶର ।
ଦିବ୍ୟବେଶ ହୋଇ ଯେ ରାବଣ କୁମର ॥
ଶିରରେ ମୁକୁଟ ଯେ ଶୋହଇ ବିତପନ ।
କର୍ଣ୍ଣରେ କୁଣ୍ଡଳ କଣ୍ଠେ ବିବିଧ ହାରମାନ ॥
ହୃଦରେ ଲମ୍ୱଇ ପଦେକ କଣ୍ଠିମାଳ ।
ନାନାରତ୍ନ ଆଭରଣ ସେ ରାବଣ ଦୁଲାଳ ॥
ବାହେଣ ବାହୁଟି ଶିକୁଳି କଙ୍କଣ ।
ବିଦମୁଦି କଟଟି ସରଳ ଆଭରଣ ॥
ପୟରେ ନେପୁର ଅନର୍ଗଳ ତୋଡ଼ର ।
ବିଚିତ୍ର ବସନ ସେ ଯେ ମଣ୍ଡିଣ ଶ୍ୟରୀର ॥୧୦୦
ଚନ୍ଦନ ଗନ୍ଧ ସେ ଯେ କର୍ପୂର କସ୍ତୁରୀ ।
ବିବିଧ କୁସୁମେ ସେ କେଶ ସାଜୋଂଇ କରି ॥
ଆସ୍ୱନ୍ତ ସାରଥି ଯେ ରଥେ ଆଣି ଥୋଇ ।
ଶତେକ ହୟବର ରହୁବରେ ଯୋଚଇ ॥
ବାଜଇ ଟମକ ନିଶାଣ ବୀରତୂର ।
କମ କାହାଳ ଯନ୍ତ୍ର ସପ୍ତସ୍ୱର ॥
ଭାଟ କୟେବାର କରନ୍ତି ଆଗେ ମିଳି ।
ଶୁଦ୍ଧ ଯୁବତୀମାନେ ଦିଅନ୍ତି ହୁଳହୁଳି ॥
ଶତେକ ମହୁରୀ ଯେ ଫୁରଇ ଘନ ଘନ ।
ମଙ୍ଗଳ ପଢ଼ନ୍ତି ସୁଗ୍ୟଂ ବିଦୁଜ୍ଜନ ॥ ୧୦
ଚାଲ ଚାଳ ବୋଲି ଯେ ବୋଲଇ ଆଗିଆଣି ।
ଚଳିଲେକ ଥାଠ ପ୍ରଳୟ ସିନ୍ଧୁ ଜାଣି ॥
ମୁଖ ରାବ ଶବଦେ କୁରୁମ ଚମକି ।
ଦେବାସୁର ନର ଯେ କିନ୍ନର ଦକ୍ଷ ଶଙ୍କି ॥
ଇନ୍ଦ୍ରଜିତର ଯାଉଂ ଯେ ବାସେବ ବିଚାରି ।
ଯେହା ମଲେ ସେ ସୁସ୍ଥ ସର୍ଗ ପୁରୀ ॥
ପ୍ରମାଦେଣ ହନୁ ଯେବେ କରଇ ନାଶ ।
ତେବେଣ ସୁସ୍ଥ ସେ ଥିବେ ତ୍ରିଦଶ ॥
ଭୋ ବିହି ବିଧାତା ଆଜ ଇନ୍ଦ୍ରଜିତ ମରୁ ।
ଆମ୍ଭର ବିବିଧ ଦୁଃଖକଷ୍ଟ ସରୁ ॥ ୨୦
ଏସନେକ ବୋଲି ଭାଳନ୍ତି ଶକ୍ରରାୟେ ।
ଏଥୁ ଅନନ୍ତରେ ଶୁଣ ହୋ କଥାୟେ ॥
ସନ୍ୟ ସଜ କରି ଗଲା ମେଘନାଦ ।
ଲଙ୍କା ନଗ୍ର ନାରୀ ମନରେ ବିଷାଦ ॥
ଗଲାର ଲୋକଙ୍କୁ ଗୋଡ଼ାଇ ତିଆରନ୍ତି ।
ଆଗୁସାର ବାବୁରେ ନୋହିବ ବୋଲନ୍ତି ॥
ସେ କପିବୀର ଯେ ଓପ୍ରୋଧ ନ କରଇ ।
କଷ୍ଟୋର ମାରେଣୀ ସେ ବିକୋତି ମାରଇ ॥
ଅଗ୍ୟାନ ପିଣ୍ଡ ତାର ଦୟା ଧର୍ମ ନାହିଂ ।
ଅସୁରଙ୍କର ଅନ୍ତ ଗଳାରେ ଲମ୍ୱାଇଂ ॥ ୩୦
ଯତନେ ଗୁଧ୍ରର ଅଙ୍ଗେଣ ସାମଳି ।
ମଡ଼ାନ୍ତ ଘେନିଣ କରଇ ରଙ୍ଗକେଳି ॥
ପାଞ୍ଚ ସେନାପତି ଯେ ଜମ୍ୱୋମାଳି ମଲା ।
ଅକ୍ଷୟେ ପରାକ ବୀର କ୍ଷଏ ଗଲା ॥
ଅନେକ ସଇନ୍ୟ ଯେବେ ହୋଇଲେ ନିପାତ ।
କି ଜାଣି ବାନର ଅଟଇ ଯମଦୂତ ॥
ସାହାସ କରି ବାବୁରେ ଆଗକୁ ନ ଯିବ ।
ଦୁଇ ଚାରି ଗୁଣ୍ଡ ହୋଇଣ ଯୁଝିବ ॥
ମେଳିଆ ହୋଇଣ ନ ପଡ଼ିବଟି ଧାଇଂ ।
ଗର୍ବ କଲେଣ ଯେ ପ୍ରାଣ ପାଇନାହିଂ ॥୪୦
ଏସନେକ ବୋଲି ତିଆରନ୍ତି ଥୋକେ ।
ସାଂଗ୍ରାମକୁ ରାକ୍ଷସେ ଧାମନ୍ତି ଉଛୁକେ ॥
କିଳିକିଳା ରାବ ଦେଇଣ ଧାପ ଦ୍ୟନ୍ତି ।
ଏକକୁ ଆରେକ ସେ ଆଗସରି ଯାନ୍ତି ॥
ମଧୁବନ ନିକଟେ ମିଳିଲେ ଯାଇ ବଳ ।
ଦେଖି ବିଋରଇ ପବନର ବାଳ ॥
ଅସଂଖ୍ୟ ସଇନି ତ ଆସୁଛନ୍ତି ମାଡ଼ି ।
ପ୍ରଳୟ କାଳରେ ଯେହ୍ନେ ସାଗର କରଇ ବଢ଼ି ॥
କେତେକ ଥାଠ ପୁଣି ଅଛଇ ସମ୍ଭାଳି ।
ଯେଣୁ ସେ ସାଧ୍ୟ ସେ କଲା ମହୀଆଳି ॥୫୦
ତ୍ରିଭୁବନେ ତ୍ରାସ ଲାଗଇ ଏହାରି ।
ସାଧୁ ରାବଣରେ ଜୀବ ତୋହୋରି ॥
ଏତେ ବୋଲି ବୀର ମଧୁବନେ ପଶି ।
ପଳାଶ ବୃକ୍ଷରେ ଉଠିଲା ବୀର ଆସି ॥
ସାମାନ୍ୟ ଶ୍ୟରୀର କରିଣ ଲୁଚା ଦେଲା ।
ପତ୍ର ଗୋଟିକର ଓହାଢ଼େଣ ବସିଲା ॥
ଏଥୁ ଅନନ୍ତରେ ଇନ୍ଦ୍ରଜିତ ବୀର ।
ପ୍ରବେଶ ହୋଇଲା ଯାଇ ମଧୁବନ ଦ୍ୱାର ॥

ସଇନି ଗହନେ ପଶିଲେ ଝସାଇଂ ।
କେ ବୋଲେ ବାନର ଗଲା ପୁଣ
କାହିଂ ॥୬୦
କେ ବୋଲେ ଲୁଚିଅଛି କେଉଂ କତି ।
କେ ବୋଲଇ ପଳାଇଗଲା ପ୍ରାଣ ଭୀତି ॥
କେ ବୋଲଇ ଏଥି ଏହିକ୍ଷଣି ଥିଲା ।
ଥାଠ ଦେଖିଣ କେଣେ ପଳାଇଲା ॥
କେ ବୋଲେ ତ୍ରୋଣା ଖମ୍ୱେ ତାର ଠଣା ।
କେ ବୋଲଇ କେଣେ ହୋଇଅଛି ବଣା ॥
କେ ବୋଲଇ ଦେଖ ଲୁଚିଅଛି କାହିଂ ।
କେ ବୋଲଇ ଆଉ ତ ଦିଶିବାକୁ ନାହିଂ ॥
କେ ବୋଲଇ ଆହୋ ବୃକ୍ଷେ ଉଠି ଦେଖ ।
କେ ବୋଲଇ ଗହଳ ଅଟଇ ଏହାର
ଶିଖ ॥୭୦
କେ ବୋଲଇ ଡାଳେ ଡାଳେ ପତ୍ରେ ପତ୍ରେ
ଲୋଡ଼ ।
କେ ବୋଲଇ ଆହୋ ଧାଇଂଣ ନପଡ଼ ॥
ମାୟା ବାନର ସେ ଗୁପତେଣ ଥାଇ ।
ପକ୍ଷୀ ପ୍ରାୟେ ହୋଇ ସେ ଗଗନେ ଉଡ଼ଇ ॥
ପର୍ବତର ସମାନେ ସେ ବଢ଼ାଇ ଶ୍ୟରୀର ।
ଦଇତଙ୍କର ପ୍ରାଣ ସେ ହରଇ କପିବୀର ॥
ସାଂଗ୍ରାମେ ନିଶଙ୍କ ସେ ଅତାର୍ଗଳ ବୀର ।
ତାହାର ତହିଂକିଂ ହୋ ଭରସା ନକର ॥
ସଭିଏଂ ଗୁଣ୍ଡ ହୋଇ ଲୋଡ଼ ଚଉକତି ।
ଚାଣ୍ଡାଳ କପି ସେ ଅଟଇ ପଶୁଜାତି ॥୮୦
ଧଇଲେ ନ ରହଇ ମାଇଲେ ନ ମରଇ ।
ତାହାର ମାଇଲେ ସେ ଓପ୍ରୋଧ ନ କରଇ ॥
ଏସନେକ ସମୟେ ଇନ୍ଦ୍ରଜିତ ବୀର ।
ତୋଟାଦ୍ୱାରେ ନେଇ କଲା ରହୁବର ॥
ବୋଇଲା ବାନର ଅଛି ଅବା କାହିଂ ।
ଧରି ଘେନିଆସ ଲୁଚିଅଛି ଯହିଂ ॥
ଶୁଣିଣ ବଳ ଯେ ପଶିଲେ ମଧୁବନ ।
ଖୋଜନ୍ତି ନିଗମ ଗୁପତ ସ୍ଥାନ ମାନ ॥
ଗଛେ ଗଛେ ଡାଳେ ଡାଳେ ପତ୍ରେ ପତ୍ରେ
ଖୋଜି ।୯୦
ଲତାଙ୍କର ଭିତରେ ମନ ସରି ହେଜି ॥
ଦେଖି ନ ପାଇଲେ କେଉଣିସି କତି ।
ଇନ୍ଦ୍ରଜିତର ଆଗରେ ଯାଇଣ କହନ୍ତି ॥
ଶୁଣ ଦେବ ଅସୁର କୁଳ ଶିରୋମଣି ।
ସ୍ୱର୍ଗରେ ପଶି ସେ ଜିଣିଲୁ ବଜ୍ରପାଣି ॥
ତୋହୋର ଧାଡ଼ିକି କି ଭାର୍ଜନ ସୁରେଶ୍ୱର ।
କେଣେ ପଳାଇଣ ଗଲାକ ବାନର ॥
ଗଛେ ଗଛେ ପତ୍ରେ ପତ୍ରେ ଖୋଜିଲୁ ଯେ
ବେଢ଼ି ।
ମଧୁବନ ତୋଟାରେ ନ ପାଇଲୁ ଲୋଡ଼ି ॥
ଭୟେଣ ପଳାଇ ଦେବ ଗଲା କେଉଂ
କତି ।
ଗରୁତର ସଇନ୍ୟକୁ କଲା ଦେବ
ଭୀତି ॥୧୦୦
ଶୁଣି ମେଘନାଦ ଅଶ୍ୱରୁ ଅବତରି ।
ଅକମ୍ପନ ଧୂମ୍ରାକ୍ଷ ଦୁହିଂଙ୍କର ଭୁଜ ଧରି ॥
ତୋଟାର ଭିତରେ ପଶିଲାକ ଯାଇଂ ।
ସନ୍ୟଙ୍କୁ ଆଗ୍ୟାଂ ସେ ଦେଲାକ ଶବଦାଇ ॥
ଯେ ଆଣି ବାନର ଦେବ ମୋର ଆଗ ।
ଏ ଲଙ୍କାପୁରେ ସେ କରିବ ବଇଭୋଗ ॥
ଅନେକ ସମ୍ପଦ ଦେବଇଂ ତାହାରେ ।
ପ୍ରସାଦ ପାଇବ ସେ ରାବଣ ଆଗରେ ॥
ଶୁଣିଣ ବଳ ସେ ଯେ ଲୋଡ଼ନ୍ତି ବନେ
ପଶି ।
ତରୁଲତା ଓହାଡ଼େ ଲୋଡ଼ନ୍ତି ଝାସି
ଝାସି ॥୧୦
ଝାଡ଼ ବାଡ଼ ପାଚେରୀ ଅଥାନ ଥାନମାନ ।
ଖୋଜନ୍ତି ଅସୁରେ ପବନର ନାନ ॥
ଅଶ୍ୱେକ ଆରୋହି ଆପଣେ ଇନ୍ଦ୍ରଜିତ ।
କରେ ଧରିଅଛି ନବ ନିଶିକୋନ୍ତ ॥
ତରକସ ବାନ୍ଧି କରେ ସଂଘଣି କମାୟେଣ ।
ସହସ୍ରେ ଅଶୁଆର ସଙ୍ଗେ ଆସନ୍ତି ଭ୍ରମିଣ ॥
ବୃକ୍ଷକୁ ଅନାଇଣ ବୁଲନ୍ତି ବନସ୍ତ ।
ଦେଖିଲେ ତରୁଏ ଭାଜିଅଛନ୍ତି ବହୁତ ॥
ତାହା ଦେଖି ବୀର କୋପ ପାଇକରି ।
କେ ଆଣି କପିକି ସମର୍ପିବ ଧରି ॥ ୨୦
କାହିଂକି ଗଲା ସେ କେଣେ ଅଛି ପଶି ।
ଯେହେର୍ଣ୍ଣେକ ବୋଲି ବନ ଭ୍ରମି ଆସି ॥
ତୋଟାର ଭିତରୁ ହୋଇଲା ବାହାର ।
ରୋଷଭରେ ତନୁ କମ୍ପଇ ତାହାର ॥
ରକତର ନଦୀ ମଡ଼ା ଅପ୍ରମିତ ।
ଅଛୟେକୁମାରକୁ ଦେଖିଲା ଇନ୍ଦ୍ରଜିତ ॥
ମୁଖ ଚାହିଂଣ ସେ ଅନେକ ଶୋକ କଲା ।
ଆବର ଜାମ୍ୱୋମାଳିକି ଦେଖିଲା ॥
ଭାସକର୍ଣ୍ଣ ବିରୁପାକ୍ଷ ସାରାକ୍ଷ ପାଞ୍ଚ ବୀର ।
ଗଣେ ପଡ଼ିଣ ସେ ଦିଶନ୍ତି ନାରଖାର ॥ ୩୦
ବନ୍ଧୁଜନମାନଙ୍କୁ ବୋଇଲା ମେଘନାଦ ।
ଶମଶାନେ ନେଇ ଏହାଙ୍କୁ କରାଅ ଦଗଧ ॥
ଏ ପାଞ୍ଚବୀରେ ସେ ଅଟନ୍ତି ଗରିଷ୍ଠ ।
ବିଶେଷେ ଜମ୍ୱୋମାଳି ନୃପତିର ଇଷ୍ଟ ॥
ଅଛଏ କୁମାର ତ ମୋହୋର ସାନଭାଇ ।
ଅଗ୍ନି ସଂସ୍କାର ଯେ କରାଅ ଯେହାଙ୍କୁ ନେଇ ॥
ଯେଡ଼େ ଯେଡ଼େ ବୀରେ ତରକି
ନୁଆରିଲେ ।
ଛାର ନିଲକ୍ଷଣ ବାନର ହାଥେ ମଲେ ॥
କେସନେକ କପି କେମନ୍ତେ ଦେଖିବା ।
ତେବେ ସେ ସୋଦରଙ୍କ କଷ୍ଟ
ପାଶୋରିବା ॥୪୦
ଯେତେ ବୋଲି ପୁଣି ମଧୁବନେ ପଶଇ ।
ଆପଣେ ବୀର ସେ ବନ ଭ୍ରମି ଆସଇ ॥
ଯେବଣ ତରୁବରେ ବସିଛି ମାରୁତି ।
ତହିଂ ତଳେ ମିଳିଲା ବିଶ୍ରବାର ନାତି ॥
ସନ୍ୟଙ୍କୁ ହକରାଇ ବୋଲଇ ବେଗେ
ଲୋଡ଼ ।
ଲତାବୃକ୍ଷମାନ ବେଗେଣ ଉପାଡ଼ ॥
ପତ୍ରେ ପତ୍ରେ ଲୋଡ଼ି ଦିଅ ଆଣି ଧରି ।
ଭାଇର କଷ୍ଟ ପାଶୋରିବି ତାହାକୁ ମାରି ॥
ସଇନ୍ୟ ବୋଲନ୍ତି ଦେବ କପି ଯେଥି
ନାହିଂ ।

ନ ଥିଲା ଲୋକକୁ ପାଇବା ଆର
କାହିଁ ॥୫୦
ଶୁଣି ମେଘନାଦ ଯୋଦ୍ଧାଙ୍କୁ ଆଗ୍ୟାଂ ଦେଲା ।
ହସ୍ତୀ ଘେନି ବୃକ୍ଷ ଭଙ୍ଗାଅ ବୋଇଲା ॥
ତକ୍ଷଣେ ମାହୁନ୍ତେ ହସ୍ତୀ ଲଗାଇଂ ଦେଲେ ।
ଆଙ୍କୁଶ ଆଶ୍ୱାସି ଆରଣ ଲଗାଇଲେ ॥
ପଛ ପାଗଡ଼ କେ ବୋଲଇ ଧର ଧର ।
ଲୋହଟେ ପିଟିରଣ କେ ଚାଲଇ ଧୀର
ଧୀର ॥
ରୋଷେଣ ମାତାଙ୍କ ଥୋର ହସ୍ତେ ତୋଳି ।
ଦନ୍ତ ଲଗାଇଣ ତରୁବର ଟାଳି ॥
କେବଣହିଂ ବୃକ୍ଷ ଉପାଡ଼ନ୍ତି ବଳେ ।
ତାହା ଆଉଜାଇ ପକାନ୍ତି ଭୂମିରେ ॥ ୬୦
କାହା ମାଡ଼ିଣ କରନ୍ତି ମସି ଗୁଣ୍ଡ ।
କେବଣ ତରୁବର କରନ୍ତି ଖଣ୍ଡ ଖଣ୍ଡ ॥
ହନୁମତ ଉଗୁଳି ଯେତେ ବୃକ୍ଷ ଥିଲା ।
ସବୁ ମେଘନାଦ ଭଙ୍ଗାଇ ପକାଇଲା ॥
ତୋଟା ବେଢ଼ିଣ ରହିଅଛି ଥାଠ ।
ମାଛି ଗଳି ଯିବାକୁ ନାହିଂ ତହିଂ ବାଟ ॥
ଭାଙ୍ଗିଲାର ବୃକ୍ଷ ଆଡ଼ କରି ପକାଇ ।
ହନୁମନ୍ତକୁ ଲୋକେ ଲୋଡ଼ନ୍ତି କୋପାଇଂ ॥
ଦେଖି ନ ପାଇଲେ କେଉଣିସି କତି ।
ମେଘନାଦର ଆଗରେ ଯାଇଣ କହନ୍ତି ॥୭୦
କାହିଂ ନ ଦେଖିଲୁ କପି କେଣେ ଗଲା ।
କି ଅବା ବୃକ୍ଷ ମାଡ଼ିଣ ପଡ଼ିଲା ॥
ମରିଥିଲେଣ ଯେ ପାଆନ୍ତୁ ନା ଶବ ।
କେ ବୋଲଇ ଆହୋ ପଳାଇଣ ଥିବ ॥
ଅଳପ ଥାଠ ଦେଖି ସମର କରୁଥିଲା ।
ଦିଗ ଦହନ ଚିରାଣ ଦେଖିଣ ଭୟେ କଲା ॥
ନାହିଂ ଦେବ ଏଥି ବାହୁଡ଼ିଣ ଯିବା ।
ଦଶକନ୍ଧ ରାଜା ଛାମୁରେ ଜଣାଇବା ॥
ଶୁଣି ଇନ୍ଦ୍ରଜିତ ତବଦ ବିସ୍ମଏ ।
କି ବୋଲି ବୋଲିବେ ମୋତେ ରାବଣେଶ୍ୱର
ରାୟେ ॥୮୦

ଏସନକ ସମଏ ହନୁମନ୍ତ ବୀର ।
ଲୁଚିଣ ଥିଲା ସେ ପଲାଶ ବୃକ୍ଷର ॥
ଆଢ଼ୋ ଆଢ଼ୋ ବୋଲି ଶବଦେକ ଦେଲା ।
ପକ୍ଷୀ ପ୍ରାୟେ ହୋଇ ଗଗନେ ଉଡ଼ିଲା ॥
ଜାଇ ଫଳ ଗଛର ଶିଖରେ ଯାଇ ବସି ।
ଭଏଣ ଅସୁରେ ପଳାଇଲେ ତ୍ରାସି ॥
ତାହା ଶୁଣି ଇନ୍ଦ୍ରଜିତ ହୋଇଲା ଚକିତ ।
ପଚାରଇ ଯେ କଥା ହୋ ଅଟଇ କେମନ୍ତ ॥
ଲୋକେ କହିଲେ ଅଟଇ ଦେବ ସେହି ।
ଯାହାରେ ଅଛଏ ବୀର କ୍ଷଏ ଯାଇ ॥ ୯୦
ଅନେକ ମାୟା ଦେବ ଅଟଇ ଏହାର ।
କେବଣ ବୃକ୍ଷେ ଥିଲା ଓହାଡ଼ ହୋଇ ବୀର ॥
ପଲାଶ ବିପୁନ୍ୟ ବୃକ୍ଷରୁ ଉଡ଼ିଗଲା ।
ଏହି ତରୁବର ଉପରେ ବସିଥିଲା ॥
ଭଲା ଉପରକୁ ନ ପଡ଼ିଲା ମାଡ଼ି ।
ଆଢ଼ୋ ଆଢ଼ୋ ବୋଲିଣ ଗଲା ତହୁଁ ଉଡ଼ି ॥
ଜାଇଫଳ ଗଛରେ ବସିଲାକ ଯାଇଂ ।
ଶୁଣି ମେଘନାଦ ଅଶ୍ୱକୁ ଧୁଆଇଂ ॥
ଶୃପ ନାରାଚ୍ଛେକ କମାୟଣେ ଯୋଚି ।
ପୂରାଇଣ ବୀର ବିନ୍ଧିଲା ଆମଞ୍ଚି ॥ ୧୦୦
ଜାଇଫଳ ବୃକ୍ଷେ ଯେତେକ ଡାଳ ଥିଲା ।
ଇନ୍ଦ୍ରଜିତ ଶରେ ସବୁ ଛିଡ଼ିଗଲା ॥
ମୁଣ୍ଡା ବୃକ୍ଷ ଉପରେ ବସିଲାକ ମାରୁତି ।
ପ୍ରଚଣ୍ଡ ଅନଳ ଜାଣିଣ ତାର ଜୋତି ॥
ଦୁଇ ଆଡ଼କୁ ସେ ଲମ୍ବାଇ ଗୋଡ଼ ଦୁଇ ।
ଜାଇ ଫଳ କଷି ଯେ ଗୋଟିଏ ଭୁଂଜଇ ॥
ଦୁଇଖଣ୍ଡି କରି ଦନ୍ତେ ତାହା ଛିନି ।
ଖଣ୍ଡେକ ଚୋବାଇ ଖଣ୍ଡିଏ ଦନ୍ତେ ଘେନି ॥
ପୁଣି ଆର ଖଣ୍ଡି ତୁଣ୍ଡରେ ନେଇଂ ଭରି ।
ଥାଠକୁ ଚାହିଂଣ ଅଖି ନଟା ମାରି ॥ ୧୦
ଗଛର ବକଳ ନଖରେ ଉକୁଟି ।
ଲିତାୟେ ଲିତାୟେ କରି ତାହା ଝିଣ୍ଟି ॥
ବୁକୁ ଆଉଂଶଇ କାଶଇ ପୁଣ ପୁଣି ।
ଘୋ ଘୋ ଗରଜଇ ଶିର ଗୋଟି ଝୁଣି ॥

ବାହା ମରଦିଣ ନିଶେ ହାଥ ଦେଇ ।
ଆକ୍ଷି ମଳିଣ ଇନ୍ଦ୍ରଜିତକୁ ଚାହିଂ ॥
ହସି ବୋଲଇ ରେ ନାମ ତୋର କିସ ।
କେବଣ ରାକ୍ଷସ ଅଟୁ ତୁ ରେ ଶିଷ ॥
ଅଗିଆନ ରାକ୍ଷସରେ କିଛିହିଂ ନ ଜାଣ ।
ଆକ୍ଷି ଥାଉଂ ଥାଉଂରେ ହୋଉଂଥାଅ
କାଣ ॥୨୦
ସଇନି ଅଇଲେ ରେ ଅଛନ୍ତି ସେ କାହିଂ ।
ତୁ ହୋ ମହାତମା ଅଇଲୁ କିସ ପାଇଂ ॥
ଯେତେକ କାଳର ଯଶ ତୁମ୍ଭର ଥିଲା ।
ଆଜ ଦିନ ସରିକି ସବୁ ତୁମ୍ଭର ଗଲା ॥
ଶ୍ରୀରାମ ଘରଣୀକି ଆଣିଲ ଚୋରାଇ ।
ଗ୍ୟାନ ଗୋଚରରେ ମେଳା ତୁମ୍ଭର ନାହିଂ ॥
ରାଜା ହୋଇଣ ହରିଲ ପରନାରୀ ।
ବିଶେଷେ ରଘୁନାଥ ଅଟନ୍ତି ତପଚାରୀ ॥
ପିତାର ସତ୍ୟେ ରାମ ବନବାସ କଲା ।
କିମ୍ପାଇଂ ରାବଣ ତାର ଘରଣୀ ଆଣିଲା ॥୩୦
ଖୋଜି ଅଇଲାର ଲୋକକୁ ଏବେ ମାର ।
ଏ ତୁମ୍ଭର ଅଟଇରେ କେବଣ ବିଚାର ॥
ମେଘନାଦ ବୋଇଲା ହନୁମନ୍ତର ବଚନେ ।
ତୁ କିମ୍ପା ପ୍ରବେଶ ହୋଇଲୁ ମଧୁବନେ ॥
ଯେବଣ ଲଙ୍କାଗଡ଼କୁ ଦେବେ ଭଏ କରି ।
ତୁ ଆସି ଅକାରଣେ କରୁ ହୁରିକୁରି ॥
ମୁହିଂ ସେ ଇନ୍ଦ୍ରଜିତ ରାବଣର କୁମର ।
ଆଜ ତୋତେ ମୁହିଂ ପେଷିବି ଯମପୁର ॥
ଯେତେ ବୋଲି ବୀର କୋନ୍ତେକ ମାଇଲା ।
ଯାଇ ମାରୁତିର ପାଖରେ ପାଇଲା ॥ ୪୦
ଉପୁଡ଼ି ପଡ଼ିଲା ସେ ନବ ନିଶୀକୋନ୍ତ ।
ଟହ ଟହ ହୋଇ ହସିଲା ହନୁମନ୍ତ ॥
ବୋଇଲା ଆମ୍ଭକୁ ରେ ଏଣେ କି ଯାଇ
ଭାଇ ।
ଯେ ତୋହୋର ନାରାଚେ ଆମ୍ଭର କିସ
ହୋଇଂ ॥
ଗୁରୁମୁଖେ ଯେତେ ଶହସ୍ର ଅଛ ପାଇଂ ।

ତାହା ବିନ୍ଧି ଏବେ ସାବଧାନ ହୋଇଂ ॥
ଶୁଣି ଇନ୍ଦ୍ରଜିତ ମନେ ମନେ ଖଙ୍ଗ ।
ତକ୍ଷଣେ ସୁମରିଲା ସହସ୍ର ପନଙ୍ଗ ॥
ଧନୁରେ ବାଣ ଯୋଚି ବିନ୍ଧିଲାକ ମନ୍ତ୍ରି ।
ହନୁମନ୍ତ ଶରୀରକୁ ବୋଲି ବାଣ ଯୋଚି ॥୫୦
ଚଳିଲାକ ବାଣ ପବନ ଗତି ଜାଣି ।
ଦେଖି ପଳାଇଲା କପିକୁଳ ମଣି ॥
ଆକାଶ ମାର୍ଗେ ସେହୁ ଉଠିଲା ଉଗୁଇଂ ।
ଶୀଘ୍ରେଣ ଅସ୍ତ୍ର ଧଇଲା ତାକୁ ଯାଇ ॥
ହନୁମନ୍ତକୁ ଯେ ତରଡ଼ ଲାଗିଲା ।
ଦୁଇଭୁଜ ପଛ କରିଣ ବାନ୍ଧିଲା ॥
ଚରଣ ଯୁଗଳ ବାନ୍ଧିଲା ନିରୋଧି ।
ଭୂମିରେ ପଡ଼ିଲା କପିକୁଳ ନିଧି ॥
ଲଙ୍କା ଭୁବନ ଯେ କମ୍ପିଲା ଦଳଦଳ ।
ମନରେ ବିଚାରଇ କପିକୁଳ ମଲ ॥ ୬୦
ଶ୍ରୀରାମର କାର୍ଯ୍ୟ ତ ନ ପାରିଲି କରି ।
ମାୟା ଯୁଦ୍ଧେ ମୋତେ ତ ଇନ୍ଦ୍ରଜିତ ଧରି ॥
ଖୁର୍ପ ରୂପ ଧରି ପଳାଇଣ ଯିବି ।
ଭୋ ବିହି ବିଧାତା ଯେବେ କେମନ୍ତ କରିବି ॥
ଯେସନ ବିଚାରି ଶିଶୁରୂପ ଧରି ।
ଜାଣିଣ ଅସ୍ତ୍ର ତାହା ନିର୍ବନ୍ଧିଣ ଧରି ॥
ଅନେକ ପ୍ରକାରେ ଯାଇତେ ମନ କଲା ।
କେବେହେଂ ଫାଶରୁ ଉବୁରି ନ ପାରିଲା ॥
ଅସ୍ତ୍ର ଛିନାଇବାକୁ ବୁଧି ଏକ ରଚ୍ଛି ।
ନିବିଡ଼ ବାନ୍ଧେଣି ନିରୋଧି ବାନ୍ଧିଅଛି ॥ ୭୦
ଗଳି ନ ପାରଇ ପବନର ବାଳ ।
ଦେଖିଣ ଆନନ୍ଦ ରାବଣ ଦୁଲାଳ ॥
ସଇନିକି ବୋଇଲା ନିବନ୍ଧିଣ ଧର ।
ଏ ମହାପାପୀକି ହୋ ଓପ୍ରୋଧ ନ କର ॥
ଶୁଣିଣ ଅସୁରେ ବେଢ଼ିଲେ ମାରୁତି ।
ଅଲିଖ ରଜ୍ଜୁ ଘେନି ବାନ୍ଧିଲେ ବିକୋଟି ॥
କର ଚରଣ ଗଳା ଆଣ୍ଠୁ ହିଆ ।
କେ ବୋଲେ ଏ ମୋଡ଼ା ରାଜାର ଦୋରେହା ॥
କାହାର ତନୟେ ଏ କାହାର ସେବକ ।
କେବଣ ଦେଶର ଅଟଇ ଏ ଲୋକ ॥ ୮୦
କେ ବୋଲଇ ପାମର ମରଇ କିନା ଏହି ।
ଏହାର ଜୀବନ୍ତେଣ କିସ କାର୍ଯ୍ୟ ହୋଇ ॥
ଇନ୍ଦ୍ରଜିତ ବୋଇଲା ନକର ଏହାକୁ କିଛି ।
ଯେହାରେ ଆମ୍ଭର ଯେ ଅନେକ ଯଶ ଅଛି ॥
ରାଜା ଆଗ୍ୟାଂ ଦେଇଛି ଜୀଆଇଂ ନେମା ପାଇଂ ।୯୦
ନୋହିଲେଣ ପ୍ରାଣେ ମାରନ୍ତି ନିନା ମୁହିଂ ॥
ଏତେ ବୋଲି ବୀର ସିଂହନାଦ ପୂରି ।
ବୋଲଇ ଏହାକୁ ରେ ଧର ଯତ୍ନ କରି ॥
ବଳୀଆର ମର୍କଟ ପଳାଇ ପୁଣ ଯାଇ ।
ଗଲେ ଏହାକଇ ଲୋଡ଼ିଲେ ନ ପାଇଂ ॥
ପୁଣି ବୋଲଇ ଏ କାହିଂକି ଅବା ଯିବ ।
ନାଗଫାଶ ବନ୍ଧନ ଯେ କେମନ୍ତେ ଫେଡ଼ିବ ॥
ଇନ୍ଦ୍ର ଦେବତାକୁ ଆଣିଲଇଂ ବାନ୍ଧି ।
ସକଳ ସୁରଗଣ ଶସ୍ତ୍ରେ କଲି ବନ୍ଦୀ ॥
କପି ନିଲକ୍ଷଣକୁ ନ କରି ଯେ ଶର ।
ଯହୁଂ ଗର୍ବ କଥା କହିଲା ବାନର ॥
ତେଣୁ ସେ କୋପେ ମୁହିଂ ସେ ବାନ୍ଧିଲି ବିକୋଟି ।
ଆଗ୍ୟାଂ ଦେଲେ ଏବେ ଏ ଦେଖୁ ଲଙ୍କପତି ॥
ଅଣ୍ଟାରେ ଦଉଡ଼ି ଲଗାଇ ଏହାକୁ ଧର ।
ସହସ୍ରେ ଅସୁର ହୁଅ ଆଗୁସାର ॥ ୧୦୦
ଗଳାର ଫାଶୀକି ସହସ୍ରେ ଦନୁଯ ।
ଦୁଇ ସହସ୍ର ଦନୁଯ ଧଇଲେ ଦୁଇ ଭୁଜ ॥
ଚରଣ ରଜ୍ଜୁକୁ ସହସ୍ରେ ଅସୁର ।
ଚୂଳ ଦଉଡ଼ିକି ସହସ୍ରେକ ଧର ॥
ମେଘନାଦର ବଚନେ ଅସୁର ବଳ ଗଲେ ।
ସତୁରି ସହସ୍ର ନୋକ ହନୁକୁ ଧଇଲେ ॥
ଡୋଟାରୁ ବାହାର କରି ଘେନିଯାନ୍ତି ।
ହୁରି କରିଣ କିଳିକିଳା ରାବ ଦ୍ୟନ୍ତି ॥
ହୁଳହୁଳି ଦେଇ ଯେ କେହୁ ବୋବି ପାରେ ।
କେ ଚିରା ମାରିଣ ଯେ ଧାଇଂଯାନ୍ତି ଗାଢ଼େ ॥୧୦
ଆପଣେ ଇନ୍ଦ୍ରଜିତ ରହୁବରେ ବସି ।
ବନ୍ଦୀ ଆଗ କରି ପଛ ହୋଇଂ ଆସି ॥
ରଥ ଗଜ ଅଶ୍ୱ ପାଦାନ୍ତି ବହୁତ ।
ଉଦଣ୍ଡ ଉଲାଗ ବିମଳ ପାଟଛତ୍ର ॥
ଚିରାଳ ଆଲମ୍ବ ଯେ ପାତାଙ୍ଗ ନିରନ୍ତର ।
ବିବିଧ ଛନ୍ଦେଣ ବାଜଇ ବୀରତୂର ॥
ସଇନି ଆନନ୍ଦ ଯେ ରଣେ ଜୟେ କରି ।
ଲଙ୍କାରେ ହରଷ ସକଳ ନରନାରୀ ॥
ଶରଧା କରିଣ ଦେଖିଣ ଆସନ୍ତି ।
ଗଉରବ ସ୍ତିରୀ ଯେ ମାନନ୍ତି ନ ମାନନ୍ତି ॥୨୦
ଯୁବା ଯୁବତୀମାନେ ଯାଆନ୍ତି ଖର କରି ।
ବୃଦ୍ଧାୟେ ଆସନ୍ତି ଯେ ଦେଖିତ ମନସରି ॥
ନଗ୍ରେ ହାଲହୋଳି ହାଟେ ଦାଣ୍ଡେ ପୂରି ।
ଏକକୁ ଆରେକ ପଚାରି କଲେ ହୁରି ॥
କେ ବୋଲଇ ଆସ ହୋ ବାନର ଦେଖିଯିବା ।
ଅପୂର୍ବ କପି କେର୍ଣ୍ଣେ ଦିଶଇ ଦେଖିବା ॥
ଦୁଇ ଚାରି ପାଞ୍ଚେ ସାତେ ଆଠେ ଦଶେ ।
ଧାମନ୍ତି ଲୋକେ ଯେ ଘରୁ ସନ୍ତୋଷେ ॥
ଥାଠର ଭିତରେ ଯେ ଦେଖନ୍ତି ହନୁମନ୍ତ ।
ଧରି ଅଛନ୍ତି ସାତ ସହସ୍ର ବଳବନ୍ତ ॥ ୩୦
ସାତ ଦଉଡ଼ି ଯେ ଆବର ନାଗଫାଶ ।
ଧୀରେ ଧୀରେ ଚାଲଇ ପବନର ଶିଷ ॥
ଲଙ୍କାର ଲୋକଙ୍କୁ ଦେଖିଣ ଲଜ୍ଜା କରି ।
ମୁଖ ପୋତିଣ ଯେ ବିଧାତା ସୁମରି ॥
ଅସୁରେ ବୋଲନ୍ତିରେ ପାମର ଦୁଷ୍ଟ କପି ।
କିମ୍ପା ଆସି ପ୍ରବେଶ ହୋଇଲୁରେ ପାପୀ ॥
କେ ବୋଲଇ ନିଲଜରେ ଲଜ୍ଜା ତୋତେ ନାହିଂ ।

ମୋହୋର ଭାଇକିରେ ମାଇଲୁ କିସ
ପାଇଁ ॥
କୋ ବୋଲଇ ମୋହୋର ତନୟେ
ମାଇଲା ।
କେ ବୋଲଇ ମୋହୋର ଦାଦୀକି
ସଂଘାରିଲା ॥୪୦
କେ ବୋଲଇ ମୋହୋର ପଡ଼ିଲା ଦୁଇ
ଶଳା ।
କେ ବୋଲଇ ମାଇଲା ମୋହୋର ମଉଳା ॥
କେ ବୋଲଇ ମିତକୁ ମାଇଲା ମୋହୋର ।
କେ ବୋଲଇ ନାଶ ଗଲା ମୋହୋର
ଦିଅର ॥
କେ ବୋଲଇ ମୋହୋର ନଣନ୍ଦେଇ ମଲା ।
ଯୁବାକାଳେ ନଣନ୍ଦ ମୋ ବିଧବା ହୋଇଲା ॥
କେ ବୋଲଇ ମୋହୋର ଶଶୁରେ ହେ
ମଲେ ।
ଏଡ଼େ ବିପୁଳ ଘର କେଣେ ଛାଡ଼ିଗଲେ ॥
କେ ବୋଲଇ ମୋହୋର ପଡ଼ିଲେ ଗିରସ୍ତ ।
ପାଞ୍ଚପୁଅ ଘେନି ମୁଂ ହୋଇଲି ଅନାସ୍ତ ॥୫୦
କେ ବୋଲଇ ମୋହୋର ଖୁଡୁତାଶୁର
ମଲେ ।
ଖୁଡ଼ୀଶାଶୁ ଗୋଟିକୁ ବିଧବା କଷ୍ଟ ଦେଲେ ॥
କେ ବୋଲଇ ମଲେ ମୋହୋର
ଜେଷ୍ଟଶୁର ।
କେ ବୋଲଇ ମଲେ ମୋହୋର ପିଅର ॥
କେ ବୋଲଇ ଘରକୁ କୁଣିଆ ଆସିଥିଲା ।
ଯୁଧ୍ୟ ଦେଖି ଯାଇଂ ସେହି ହାଦେ ମଲା ॥
କେ ବୋଲଇ ମଲା ମୋର ସପତଣୀ
ଭାଇ ।
କେ ବୋଲଇ ମଲା ମୋହୋର ଜୁଆଇଂ ॥
କେ ବୋଲଇ ମୋହୋର ଭିଣୋଇ ହାଦେ
ମଲା ।
କେ ବୋଲଇ ଅଛୟେ କୁମର କ୍ଷୟେ ଗଲା ॥
କେ ବୋଲଇ ମଲେ ପାଞ୍ଚ ସେନାପତି ।

କେ ବୋଲଇ ମଲେ ଅନେକ ଘୋଡ଼ା
ହାଥୀ ॥
କେ ବୋଲଇ ରଥିନ୍ତ କରଢ଼ଇ ତୋଳି ।
କେ ବୋଲଇ ବାନର ଅଟଇ ମାହାବଳୀ ॥
କେ ବୋଲଇ ରାଜାର ଶାଳେକଗଣ
ମଲେ ।
କେ ବୋଲଇ କିଙ୍କରଗଣ କ୍ଷୟେ
ଗଲେ ॥୬୦
କେ ବୋଲଇ ଏହାକୁ ରଖି କାହିଂ ପାଇଂ ।
କେ ବୋଲଇ ଏହାକୁ ମାରସି ଗୋସାଇଂ ॥
କେ ବୋଲଇ ଥାଇ କରିବ ଏ କିସ ।
ଏହାରେ ଅନର୍ଥ ହୋଇଲା ଯେଡ଼େ
ଦେଶ ॥୭୦
କେ ବୋଲଇ ଯେତେବେଳକୁ ଯେ
ଆସିଅଛି ।
ବାନ୍ଧି ଆଣିଲା ଏବେ ରାବଣର ବଛି ॥
କେ ବୋଲଇ ମରୁ ଜୀଉ କିଏ ଆଉ ।
ମଲା ଲୋକମାନେ ଆସିବେ କି ଆଉ ॥
ତୁମ୍ଭ ଆମ୍ଭ ବୋଇଲେ ହୋଇବାକ କିସ ।
ରାଜା ସେ ବିଚାରି ବିହିଲାକ ଦୋଷ ॥
ଯେସନେକ ବୋଲି ବୋଲାବୋଲି ହୋନ୍ତି ।
ଶୁଣ ଗୋ ଶାକମ୍ଭରୀ ଶଙ୍କର କହନ୍ତି ॥
ଯହୁଂ ସେ ହନୁମନ୍ତ ବାନ୍ଧି ଘେନି ଗଲେ ।
ସହସ୍ରେ ଅସୁରୀ ଯାଇ ସୀତାଙ୍କୁ
କହିଲେ ॥୮୦
ଶୁଣସି ଜାନକୀ ଗୋ ଆମ୍ଭର ସିଦ୍ଧ ବାଣୀ ।
ଯେବଣ ବାନର ସଙ୍ଗେ ଭାଳୁଥିଲୁ ପୁଣି ॥
ସେ ଯେ ମଧୁବନେ ଉପଦର୍ପ କଲା ।
ଜାଣିଣ ରାବଣ ସଇନ୍ୟ ବରଗିଲା ॥
ଅଶୀ ସହସ୍ର ବଳ ମାଇଲାକ କପି ।
ଶାଳେକ ଗଣ ରଜା ପେଷିଲାକ କୋପି ॥
ସେହି ବାନରକୁ ଯୁଧ୍ୟେ ହାରିଗଲେ ।
ଶୁଣି ଜମ୍ୱୋମାଳି ପ୍ରଶସ୍ତ ଅଇଲେ ॥
ବାନର ହାଥେଣ ଯେ ଜମ୍ୱୋମାଳି ମଲା ।

ଧର୍ମେଣ ପ୍ରଶସ୍ତ ପଳାଇ ଅଇଲା ॥ ୯୦
ନୃପତିର ଆଗେ ଜଣାଇଲା ଯାଇ ।
ଅଛୟେ କୁମାରକୁ ରାଜା ଦେଲେକ
ପଠିଆଇଂ ॥
ବହୁତ ସଇନି ସେ ଘେନାଇ ଅଇଲେ ।
ମର୍କଟର ତୂଲେ ବହୁତ ଯୁଧ୍ୟ କଲେ ॥
କେବେହେଂ ତାହାକୁ ନ ପାରିଲା ଜିଣି ।
ରାଜାର ସୁତକୁ କପି ପକାଇଲା ହାଣି ॥
ତାହା ଶୁଣି ରାଜା ବିସ୍ମୟେ ହୋଇଲା ।
ଇନ୍ଦ୍ରଜିତ କୁମରକୁ ରାଇ ଆଗ୍ୟାଂ ଦେଲା ॥
ସେ ସେ ମେଘନାଦ କ୍ଷତ୍ରୀଉରଶଲ ।
ତିନିଭୁବନକୁ ଅଟଇ ମାହାମଲ ॥ ୧୦୦
ସେ ଆସି କପିକି କପଟେ ଧରିନେଲା ।
ନାଗଫାଶେ ବାନ୍ଧି ଅନେକ କଷ୍ଟ ଦେଲା ॥
ରାବଣ ଛାମୁକୁ ଏବେ ନେଲା ଧରି ।
ବିବିଧ ଛନ୍ଦେଣ ବନ୍ଧନ ତାକୁ କରି ॥
ଶୁଣିଣ ଜାନେକୀ ହୋଇଲେ ବିଷାଦ ।
ବୋଲନ୍ତି ନ ପୁଣ ପଡ଼ଇ ପରମାଦ ॥
ହନୁମନ୍ତ ପୁଣ ହୋଅଇ ପ୍ରାଣନାଶ ।
ଯେତେ ବୋଲି ଦେବୀ ଚାହାନ୍ତି ଦଶଦିଶ ॥
ଓଶେକ ବୃକ୍ଷକୁ ଚାହିଂ ବୋଲନ୍ତି
ଚାନ୍ଦମୁହିଂ ।
ତୁମ୍ଭଙ୍କୁ ଆଶ୍ରେ କରଇ ହାଦେ ମୁହିଂ ॥୧୦
ତୁ ଯେବେ ଓଶେକ ଶୋକ ମୋତେ
ନୋହୁ ।
ଯେ ଉପଗାର ତୁମ୍ଭର ଜନ୍ମେ ଜନ୍ମେ ରହୁ ॥
ଯେତେ ବୋଲି ଦେବୀ ଉଠିଲେ ତଡ଼ତି ।
ଓଶେକ କଢ଼ିକରେ ଘେନିଲେ ମାହାସ୍ୟତୀ ॥
ଅଷ୍ଟଗୋଟି ଜଳ ସଙ୍ଗରେ ପିଇଲେ ।
ଯେ ମୋହାର ଶୋକ ନୋହୁ ଯେ
ବୋଇଲେ ॥
ଚଇତ ଶୁକଳ ଅଷ୍ଟମୀ ଆଜର ଦିନ ।
ଓଶେକ ଅଷ୍ଟ କଢ଼ି ପିଇବେ ଯେବଣ ଜନ ॥
ଶୋକ ଖଣ୍ଡିତ ଯେ ହୋଇବ ତାହାଙ୍କରି ।

ଯାହାର ମନେ ଯିସ ମନେ ଧରି ॥ ୨୦
ଯୁଗେ ଯୁଗେ କଥା ପୁରାଣରେ ରହୁ ।
ଆଜର ଦିନେ ମୋତେ ଶୋକ ଜାତ
ନୋହୁ ॥
ଅକଳଙ୍କେ ହନୁମନ୍ତ ହୋଉ ଯେ ବାହାର ।
ଭୋ ଓଶେକ ବନ ମୋତେ ପ୍ରତିକାର
କର ॥
ଏତେ ବୋଲି ଦେବୀ ଯେ ମନେ ବାଞ୍ଛା
କଲା ।
ମାରୁତିର ଶରୀରେ ଗ୍ୟାନ ପ୍ରସରିଲା ॥
ଅପ୍ରମିତ ବଳ ହୋଇଲା ତାହାର ।
ଅଗ୍ୟାନ ପ୍ରକୃତି ଗଲା ଅପହାର ॥
ମନେ ବିଚାରିଲା ଏ କିସ ସଙ୍କଟ ।
ଏହିକ୍ଷଣି ମୁଂ ଯେ ପୋଡ଼ିବି ଲଙ୍କରାଷ୍ଟ୍ର ॥୩୦
ଶ୍ରୀରାମର ପ୍ରସାଦେ ସୁଖେ ଏଥୁଂ ଯିବି ।
ରାବଣ ଛାମୁରେ କଥାନ୍ତ ବୁଝାଇବି ॥
ଯେତେ ବୋଲି ବୀର କଲାକ ମାୟା ଛନ୍ଦ ।
ଖର ନିଶ୍ୱାସ ଚାଲଇ ମନ୍ଦ ମନ୍ଦ ॥
ଲୋକେ ଘୋଷଡ଼ାଇ ଘୋଷଡ଼ାଇ ଆଣନ୍ତି
ଉଛୁଡ଼ି ।
ଲୋଟଗାଳଇ ହନୁ ମଝି ଦାଣ୍ଡରେ ପଡ଼ି ॥
ମଲି ମଲି ବୋଲି ଉଚେଂ ଦିଅଇ ରାବ ।
କେ ବୋଲଇ କିମ୍ପା ହୋ ଉଛୁଣି ମରିବ ॥
ରାଜାର ଛାମୁ ଯାଏ ପ୍ରାଣ ଘେନିଥାଉ ।
ତହିଂ ଉତ୍ତାରେ ପୁଣ ଯିସ ତିସ ହୋଉ ॥୪୦
ଧୀର ଧୀର କରିଣ ଧରି ଯେହାକୁ ଚାଲ ।
ଯେବଣ ନାଗଫାଶ ଯମଦଣ୍ଡର ତୁଲ ॥
ତାହା ଘେନିଣ ମୁଂ ବାନ୍ଧିଛି ଯତ୍ନ କରି ।
ସଭାବେ ହୋଇଲାଣି ମଲା ଲୋକ ସରି ॥
ଏତେ ବୋଲି ତହୁଂ ଚଳିଗଲା ବାଳ ।
ରାଜାର ସିଂଘଦ୍ୱାରେ ମିଳିଲେ ସକଳ ॥
ଇନ୍ଦ୍ରଜିତ ବୀର ରଥୁଂ ଓହ୍ଲାଇଲା ।
ବନ୍ଦୀ ଘେନାଇଣ ଭିତରକୁ ଗଲା ॥
ପିତାର ଛାମୁରେ କଲା ଦରଶନ ।
ପାଯେ ପଡ଼ି ଶୋଇଂ ଉଠିଲା ବହନ ॥୫୦
କର ଦୁଇ ଯୋଡ଼ି ନିକଟକୁ ଗଲା ।
ବାନର ବାନ୍ଧି ଦେବ ଆଣିଲି ବୋଇଲା ॥
ଶୁଣିଣ ରାବଣ ଯେ ହୋଇଲା ସନ୍ତୋଷ ।
ଆଗ୍ୟାଂ ଦେଲା ତାକୁ ଛାମୁକୁ ଘେନିଆସ ॥
ନୃପତିର ବଚନେ ହନୁମନ୍ତକୁ ଘେନିଗଲେ ।
ଜଗତୀର ତଳେ ନେଇଣ ତାକୁ କଲେ ॥
ସାତ ଦଉଡ଼ି ଯେ ଆବର ନାଗଫାଶ ।
ଦେଖିଣ ରାବଣ ଯେ ହୋଇଲା ହରଷ ॥
ପଟୁଆର ଭିତରେ ହନୁମନ୍ତ ବସି ।
ଇନ୍ଦ୍ର ମୁଖ ଚାହିଂ ପିତାମହ ଭାଷି ॥ ୬୦
ବାସବ ପଚାରିଲା ଯେ କେବଣ ଚରିତ ।
କି ବୁଦ୍ଧି ଭିଆଇଅଛୁ ଜଗତର ତାତ ॥
କେହ୍ନେ ସେ ନର ବାନରେ ଲଙ୍କା ହତ ।
ଏଥିତ ବନ୍ଦୀ ପଡ଼ିଲା ହନୁମନ୍ତ ॥
କେବଣ ପ୍ରକାରେ ଯେହାକୁ ଦେବୁ
ମୁକୁଳାଇ ।
ଏଥିର ସନ୍ଦେଶ ମୋତେ କହସି ଗୋସାଇଂ ॥
ଧାତା ବୋଇଲା ଯେ ପୂର୍ବର ପରାକୃତ ।
ଯାହା ସେ ଅରଜିଅଛି ହନୁମନ୍ତ ॥
ତାହା ତୋହୋ ଆଗେ କହଇ ସୁରପତି ।
ରାବଣ ଶୁଣିଲେ କରିବ କୋପମୂର୍ତ୍ତି ॥୭୦
ଇନ୍ଦ୍ର ବୋଇଲା ସେ ହନୁକୁ ଅବଧାନ ।
ଏ କଥାକୁ ତଲଏ ନାହିଂ ଦଶାନନ ॥
କହ ପିତାମହ ଯେଣେ ସମ୍ଭବେ ଆସଇ ।
ଦେବରାଜା ବଚନେ ଚତୁରାନ ଭାଷଇ ॥
ଶୁଣ ତୁ ବାସେବ ହନୁମନ୍ତର ଆଦି ଜନ୍ମ ।
ଯେଣେ ସେ ପାବେନି ଏହେର୍ଣ୍ଣେକ କର୍ମ ॥
ତୋତେ କହଇ ତାହା ଆଦି ଅନ୍ତ କରି ।
ପମଞ୍ଜନି ନାମେ ଏକଇ ବାନରୀ ॥
ଇଷ୍କିନ୍ଧ୍ୟାର ରାଜା ଖଡ଼ଦ ନୃପତି ।
ସେ ସେ ପମଞ୍ଜନୀ ତାହାର ଦୋହିତୀ ॥୮୦
କେଶରୀ କପିକି ବିଭା ତାହାକଇ ଦେଲା ।
କାଳେ ପମଞ୍ଜନୀ ଯୁବା ସେ ହୋଇଲା ॥
ହେମବନ୍ତ ପର୍ବତେ କେଶରୀ ଥିଲା ରହି ।
ବାର ବରଷ ସେ ବଞ୍ଚିଲାକ ତହିଂ ॥
ଭାର୍ଯ୍ୟାକୁ ଘେନି ସେ ଅନେକ ଭୋଗ
କଲା ।
ସେ ଦିବ୍ୟ ବିଳାସୁଣୀ ଜଗତ ମୋହିଲା ॥
ସୁରନରେ ଯେହାକୁ ଦେଖିଲା ବଶ୍ୟ
ହୋନ୍ତି ।
ବାବୁ ସେ ପଦ୍ମନୀ ସୁନ୍ଦରୀ ଅଟଇ ଜାତି ॥
ରଜବତୀ ହୋଇଣ ଥିଲା ଯେ ପ୍ରମଦା ।
ସ୍ନାହାନ କରିବାକୁ ଗଲା ସେ ନର୍ମଦା ॥୯୦
ମେଳଛ ଲେଛିଣ ଯେ ସୁଗନ୍ଧ ଅପହରି ।
ଅଙ୍ଗ ଶାମଳଇ ବସ୍ତ୍ରନ୍ତ ଉତାରି ॥
ସୁଗନ୍ଧ ଘେନିଣ କେଶ ବାଳୀ ଧୋଇଂ ।
ନିର୍ମଳ ଜଳରେ ସ୍ନାହାନ କଲା ଯାଇଂ ॥
ନଦୀରୁ ବାହାର ହୋଇ ଆସଇ ସୁନ୍ଦରୀ ।
କୂଳରେ ଆସି ଉଭା ହୋଇଲା ମନୋହାରୀ ॥
ସରୁ ଝିନ ବାସରେ ପୋଛଇ ଶ୍ୟରୀର ।
ଉଛିଣ ପିନ୍ଧିଲା ବାଳୀ ପବିତ୍ର ଶାଢ଼ୀବର ॥
କେଶ ଶୁଖାଇଣ କାବେରୀ ତାହାର ଖୋଷି ।
ଗଣ୍ଡିଅନା ଚନ୍ଦନ ମିଶାଇଣ ଘଷି ॥ ୧୦୦
ନୟନେ କଜ୍ଜ୍ୱଳ ପୟରେ ଅଳତା ।
ତାମ୍ବୁଳ ଭୁଂଜିଣ ଅଧର କଲା ରତା ॥
ବିବିଧ ଅଳଙ୍କାର ହୋଇଲା ମଣ୍ଡଣ ।
ଦଶଦିଗ ଚାହିଂ ଓଲଗଇ ସୁଗ୍ୟଂଜନ ॥
ଯେସନକ ସମୟେ ପବନ ତାହାଇ ଦେଖି ।
ସାଧୁ ସାଧୁ ତୁ ଅଟୁ ଶରଦ ଚନ୍ଦ୍ରମୁଖୀ ॥
ନାହିଂ ନାହିଂ ତୋତେ ତିଭୁବନେ ସରି ।
ଅପଛରୀ କିନ୍ନରୀ ଦକ୍ଷ ବିଦ୍ୟାଧରୀ ॥
ବାନରୀ ହୋଇଣ ଯେସନ ତୋର ରୂପ ।
ଧନି ଧନି ସାଧବୀ ରେ ଚଂଚଳା
ସରୂପ ॥୧୦
ଯେତେ ବୋଲି ଆସି ଭୂମିରେ ଅବତରି ।
ଅଙ୍ଗନାର ଅଞ୍ଚଳ ପବନ ଯାଇ ଧରି ॥
ମୁଖ ଲଗାଇଣ ବୋଲଇ ସଖି ରଖ ।

ମୋହୋର ତନୁ ସଖି ବିକଳିତ ଦେଖ ॥
ମଦନ ଶରେ ମୁଂ ହୋଇଲାଇଂ ବାଇ ।
ତୋହୋର ରୂପ ଦେଖି ଚିତ୍ତ ଧାରଣା ନ
ଯାଇ ॥
ମୁହିଂ ପବନଦେବତା ଜାଣଚିରେ ବାଳୀ ।
ମୋହୋରେ ସେ ଜଗତ ହୋୟେ
ପ୍ରତିପାଳି ॥
ମୁଇଂ ତୋତେ ରମଣ କରିବିରେ ସୁନ୍ଦେରୀ ।
ପୁତ୍ରେକ ଉପୁଜିବ ମମ ପ୍ରାଣ ସରି ॥୨୦
ନକର ନିରାଶ ସମର୍ପସି ଅଙ୍ଗ ।
ଗାଢ଼େଣ ପୀଡ଼ା ମୋତେ କଲାକ ଅନଙ୍ଗ ॥
ଗଗନ ମାର୍ଗେ ମୁଂ ଚଳି ଯାଉଥିଲି ।
ତୋହୋର ରୂପ ଦେଖି ଏଥକୁ ଅଇଲି ॥
ତୁ ମୋତେ ନିରାଶ ନ କର ସୁନ୍ଦରୀ ।
ଏତେ ବୋଲି ମରୁତ କନ୍ୟାର ଭୁଜ ଧରି ॥
ମଳୟ ବହିଣ ଆମୋଦନ କଲା ।
ବିବିଧ ପ୍ରକାରେଣ ନାରୀକି ମୋହିଲା ॥
ଖଡ଼ଦ ନନ୍ଦନୀ କଲା ସନମତ ।
କନ୍ଦର୍ପ ମୋହିଲା ତାହାର ପଞ୍ଚୁଭୂତ ॥ ୩୦
ତୃଷ୍ଟ ଅନୁମତ ହୋଇଲାକ ଯହୁଂ ।
ସୁଖେଣ ପବନ ରମଣ କଲା ତହୁଂ ॥
ନାଭିକମଳେ ପଡ଼ିଲା ଯାଇ ବାର୍ଯ ।
ବିନ୍ଦୁ ଆକ୍ରେଷିଣ ଧଇଲା ସରୋଜ ॥
କାଳେ ପୁତ୍ରେକ ହୋଇଲା ଅବତାର ।
ଜନମ ହୋଇଣ କହିଲା ଉତ୍ତର ॥
ପୁତ୍ର ବୋଇଲା ଶୁଣସି ଗୋ ମାତ ।
ମୋହୋର ଶ୍ୟରୀର ଖୁଧାରେ ଆରତ ॥
ଦିଅସି ଆଧାର ମୁଂ କରିବଇଂ ଗ୍ରାସ ।
ଶୁଣିଣ ପମାଞ୍ଜନୀ ମନରେ ପାଇଲା
ତ୍ରାସ ॥୪୦
ପଞ୍ଚୁଭୂତ ଆତ୍ମାରେ ଭାଳିଣ ବିଚାରି ।
ଏ ସୁତ ପବନ ରେତରୁ ଅବତରି ॥
ତେଣୁ ସେ ବଳମାନ ତନୟେ ହୋଇଲା ।
ଖଡ଼ଦ ନନ୍ଦନୀ ଦଶଦିଗକୁ ଚାହିଂଲା ॥

ଦେଖିଲା ପୂର୍ବଦିଗେ ଆଦିତ୍ୟ ଉଇଂଅଛି ।
ରକତ ବର୍ଣ୍ଣ ପ୍ରାୟେ ଦିଶଇ କାଶ୍ୟପର ବଛି ॥
ପକୁଂ ବିମ୍ବଫଳ ଆକାର ତାହାର ।
ହୃଦେଣ ପମାଞ୍ଜନୀ କଲାକ ବିଚାର ॥
ଯେ ପୁତ ଅରଷି ଅଟଇ ଉତ୍ପାତ ।
ଆଧାର ନ ପାଇଲେ କରିବ ମୋତେ
ହତ ॥୫୦
ଆଦିତ ଦେବତାଙ୍କୁ ଦେବଇଂ ଦେଖାଇଂ ।
ବଳବନ୍ତ ହୋଇଲେ ଧରୁ ତାକୁ ଯାଇଂ ॥
ଏତେ ବୋଲି ଜନନୀ ପୁତ୍ରକୁ ଚାହିଂଲା ।
ରଙ୍ଗ ଫଳ ବାବୁ ଭକ୍ଷସି ବୋଇଲା ॥
ଶୁଣି ହନୁମନ୍ତ ବିକ୍ରମିଣ ଗଲା ।
ଲକ୍ଷେକ ଯୋଜନ ଉପରକୁ ଉଡ଼ିଗଲା ॥
ସୂର୍ଯମଣ୍ଡଳ ରଥକୁ ଉଠିଲାକ ଯାଇ ।
ଦେଖିଲାକ ସେ ତ କିଛିହିଂ ଫଳ ନୋହି ॥
ମଧେ ସୂର୍ଯ୍ୟଦେବତା କମଳ ବେନି କର ।
ସ୍ୟମନ୍ତ ମଣିରେ ସୁନ୍ଦର ଦିଶଇ ଉର ॥୬୦
ଚରଣେ ନେପୁର ଦିଶଇ ଜ୍ୟୋତିର୍ମୟେ ।
ଆଗେଣ ଅରୁଣ ବିନତା ତନୟେ ॥
ଉଚିଶ୍ରର୍ବା ମୂଳେ ସପ୍ତ ଅଶ୍ୱ ଯୋଚି ।
ବାଗ ଦଉଡ଼ି କରେ ଅରୁଣ ସାରଥି ॥
ବ୍ରହ୍ମଋଷିମାନେ ତହିଂଛନ୍ତି ବସି ।
ଅପଛରୀ କିନ୍ନରୀ ରୂପେଣ ଗରୁହଂସୀ ॥
ଗନ୍ଧର୍ବୀକିନ୍ନରୀ ବିଦ୍ୟାଧରୀ ସହିତେ ।
ଯେବଣ ଦିନେ ଯେବଣ ବସନ୍ତି ସୂର୍ଯରଥେ ॥
ଶୋଭା ଗରୁତର ଛାୟାଦେବୀର ପତି ।
ଯେହେର୍ଣ୍ଣେ ବେଭାର ଦେଖିଲା
ମାରୁତି ॥୭୦
ନିରୋପି ଚାହିଂଲା ସେ ନୁହଇ କିଛି ଫଳ ।
ଖୁଧାରେ କୋପଭର ପବନ ଦୁଲାଳ ॥
ସୂର୍ଯକୁ ବୋଇଲା ତୁ ଆହାର ଦେସି
ମୋତେ ।
ନୋହିଲେଣ ସାଂଗ୍ରାମେ ଜିଣିମି ଆଜ
ତୋତେ ॥

ଆଦିତ ବୋଇଲା ତୁ ପାମର କପି ଛାର ।
ମୋତେ ଆସି ତୁହି ମାଗୁସି ଆହାର ॥
ମୁହିଂ ସେ ବିଧାତା ସପତ ଦ୍ୱୀପପତି ।
ଷାଠିଏ ଦଣ୍ଡରେ ପୃଥ୍ୱି ବୁଲଇ ଊର୍ଦ୍ଧଗତି ॥
ମୋହୋର ଉଦଏ ହୁଅନ୍ତେ ସପତ ଦ୍ୱୀପ
ସୁଖୀ ।
ଚଉଦ ବ୍ରହ୍ମାଣ୍ଡ ଲୋକେ ଆନନ୍ଦ ମୋତେ
ଦେଖି ॥
ମୁହିଂ ସେ କରତା ସପତ ଦ୍ୱୀପରେ
ଅଧିକାରୀ ।
ମୋହୋର ତେଜରେ ହୋଇଲା ଯାମିନୀ
ବିଦାରି ॥
ତୁ ହୀନ କପି ନିଲକ୍ଷଣ ନ ଜାଣୁ ।
ଇତର ଜନ ପ୍ରାୟେକ ମେତେ ମଣୁ ॥
ଶୁଣି ହନୁମନ୍ତ ବଇରାଗ ପାଇଂ ।
ଆଦିତ ଉପରକୁ ପଡ଼ିଲାକ ଧାଇଂ ॥
ବୋଇଲା ତୁ ଯେବେ ଜଗତ ଈଶ୍ୱର ।
ଖୁଧାରେ ଆରତ ମୋହୋର ଶ୍ୟରୀର ॥
ଦିଅସି ଆହାର ମୁଂ ସୁସ୍ଥ କରଇ ପିଣ୍ଡ ।
ନୋହିଲେଣ ତୋତେ ନ ଛାଡ଼ଇଂ
ମାରତଣ୍ଡ ॥୯୦
ଏତେ ବୋଲିଣ ଲାଙ୍ଗୁଡ଼ ବେଢ଼ାଇଲା ।
ଆଦିତ ଦେବତାକୁ ବାନ୍ଧି ପକାଇଲା ॥
ନିବିଡ଼ ବାନ୍ଧେଣି ବାନ୍ଧିଲା ଯତ୍ନ କରି ।
ବିକଳେ ଦିନକର ଇନ୍ଦ୍ରକୁ ସୁମରି ॥
ତାହା ଜାଣି ତୁ ଯେ ଗଲୁ ଶଚୀସାଇଂ ।
ବଜ୍ରେକ ପିଟିଲୁ ଯେ ହନୁମନ୍ତକୁ ନେଇଂ ॥
ଆଦିତ ଦେବତାକୁ ମୁକୁଳାଇ ଦେଲୁ ।
ଏବେ କିମ୍ପା ଶକ୍ର ସେ କଥା ପାସୋରିଲୁ ॥
ତୋହୋର ବଜ୍ରଘାତେ ହନୁମନ୍ତ ମଲା ।
ଜାଣିଣ ପବନ ଦେବତା ଶୋକ
କଲା ॥୧୦୦
ସକଳ ଜନଙ୍କର ଆତ୍ମା ନିରୋଧଇ ।
ସଂସାରଯାକ ଯେ ହୋଇଲାକ ଦହିଂ ॥

ସକଳ ଦେବତାମାନେ ମନେଣ ବିଚାରି ।
ପବନ ନିରୋଧନ୍ତେ ସକଳ ଯିବେ ମରି ॥
ଯେବେ ଚାଲ ସବିହେଂ ହନୁଠାକୁ ଯିବା ।
ତାହାକୁ ଜୀଆଇଂ ପବନକୁ ତୋଷିବା ॥
ତେଣୁ ସେ ସକଳ ଦେବତାଙ୍କ ତେଜ
ଦେଇଂ ।
ପମଞ୍ଜନୀ ପୁତ୍ରକୁ ଦେଲେ ସେ ଜୀଆଇଂ ॥
ଅଦୋଷେ ଆଦିତକୁ କଲା ସେ ବନ୍ଧନ ।
ଏବେ ବାନ୍ଧିଲା ତାକୁ ରାବଣ ନନ୍ଦନ ॥୧୦
କଲା କର୍ମ ଗତି ପାଇ ଅବଶ୍ୟ ।
ଏହା ପୂର୍ବର ଅଛଇ ଭବିଷ ॥
ଏବେ ହନୁମନ୍ତ ବନ୍ଦୀ ପଡ଼ିଥିବ ।
ଲଙ୍କାଗଡ଼ ଆନେ କେମନ୍ତେ ପୋଡ଼ିବ ॥
ଶ୍ରୀରାମ ଅଇଲେ ହୋଇବ ରଣଗୋଳ ।
ସେ କାଳକୁ ଥିବ କିମ୍ପା ଏତେକ ଅକଳ ॥
ଏବେ ଏହିକ୍ଷଣି ଫିଟିବ ମାରୁତି ।
ଅପୂର୍ବ କଥା ଆଜ ଦେଖ ସୁରପତି ॥
ନଗ୍ର ଦହିଣ ସମୁଦ୍ର ଡେଇଂଯିବ ।
ସୀତ୍ୟାର ବାରତା ନେଇଂ ଶ୍ରୀରାମକୁ
ଦେବ ॥୨୦
ତୁ ହୋ ସୁରପତି ନ କର କିଛି ଚିନ୍ତା ।
ତଳଯେ କରି ଶୁଣ କହଇ ହନୁମନ୍ତା ॥
ଏତେ ବୋଲି ଧାତା ବାସେବ ବେନି
ଜନ ।
ଦେଖନ୍ତି ଜଗତୀର ତଳେ ହନୁମାନ ॥
ରାବଣ ପଚାରଇ ଥିଲାକ ଯେ କାହିଂ ।
ଇନ୍ଦ୍ରଜିତ ବୋଇଲା ଶୁଣିମା ଲଙ୍କସାଇଂ ॥
ଓଶେକ ବନ ଯେ କଲା ନାରଖାର ।
ମଧୁବନ ବୃକ୍ଷ ଭାଙ୍ଗିଲା ଅପାର ॥
ତୋଟାର ଦ୍ୱାରେ ଦ୍ରୋଣା ଖମ୍ଭେ ବସିଥାଇଂ ।
ଯେ ତୋହୋର ସନ୍ୟ ମାଇଲା
ଗୋସାଇଂ ॥୩୦
ଅପ୍ରମିତ ବଳ ହେଲେ ନାଶ କଲା ।
ଯେ ଚଣ୍ଡାଳ ହାଥେ ଅଛଯେ କ୍ଷଏ ଗଲା ॥

ଶୁଣିଣ ରାବଣ ପାଇଲାକ ବଥା ।
ହନୁମନ୍ତକୁ ଚାହିଂ ଅଛଇ ଦଶମଥା ॥
କି ରେ ମର୍କଟ ଅଇଲୁ ତୁ କାହୁଂ ।
ଆମ୍ଭେ ସେ ରାକ୍ଷସ ନର ବାନର ଖାଉଂ ॥
ଯେଥକୁ ଭୟେ ତୁ ନକଲୁ କେମନ୍ତେ ।
ସମୁଦ୍ର ଲଘିଲୁ ତୁ କେବଣହିଂ ମତେ ॥
ଯେତେ ଦୃଗମରେ ପଶିଲୁ କିପାଇଂ ।
କି ତୋହୋର କପି ପ୍ରାଣକୁ ଭଏ
ନାହିଂ ॥୪୦
କେ ତୋହୋର ମାତା କେ ତୋହୋର
ପିତା ।
କେ ତୋହୋର ଅଟଇ ରେ ଇଷ୍ଟ ଦେବତା ॥
ଓଶେକ ବିପୁନ୍ୟ ଭାଙ୍ଗିଲୁ କି ପାଇଂ ।
ମଧୁବନ ତୋଟା ମୋହୋର ଭାଙ୍ଗିଲୁରେ
ବାଇ ॥
କିଙ୍କର ଗଣ ମୋର କିମ୍ପାଇଂ ନାଶ କଲୁ ।
ଶାଳେକ ଗଣ ମୋର କିମ୍ପାଇଂ ମାଇଲୁ ॥
ପାଞ୍ଚ ସେନାପତି ଜମ୍ବୋମାଳି ହତ ।
ଆବର ମାଇଲୁ ମୋର ଅଛଯେ ନାମେ
ସୁତ ॥
ଅଠାର ଗଣ୍ଡା କୁମାରେ ଅଟଇ ସେ ସାନ ।
ବୀରପଣେ ତନଯେ ଜଗତେ
ବିଦ୍ୟମାନ ॥୫୦
ଅଲିଅଳ କୁମର ମୋର ମାଇଲୁ କିମ୍ପାଇଂ ।
ଗ୍ୟାଂନ ଗୋଚର ମେଳା କି ତୋହୋର
ନାହିଂ ॥
ଯେତେ ଦୁଷ୍ଟପଣ କଲୁ ତୁ ନ ଜାଣି ।
ଯେବେ ସେ କେ ରଖିବ କହସି ତଥ୍ୟ
ବାଣୀ ॥
ଦଶଗ୍ରୀବ ବଚନେ ହନୁମନ୍ତ ଭଣି ।
କିମ୍ପା ତୁ ଅସିଧ୍ୟାନ୍ତ ବୋଇଲୁ ବିଂଶପାଣି ॥
ଅସୁର ଜାତି ତୁ ଅଟୁସି ରେ ରାବଣ ।
ଏଥକୁ ଅଇଲି ମୁଂ ଯେବଣ କାରଣ ॥
ସୁଗ୍ରୀବର ରାଜା ଇଷ୍କିନ୍ଧ୍ୟାର ପତି ।

ତାହା ଭଗ୍ନୀ ଅଞ୍ଜନା କେଶରୀ ଯୁବତୀ ॥୬୦
ସେ ମୋହୋର ମାତୁଳ ଅଟଇ ଲଙ୍କପତି ।
ବେନି କୁଳ ବିଶୁଧ୍ୟ ନିକଳଙ୍କ ଜାତି ॥
ମୁହିଂ ହନୁମନ୍ତ ଶ୍ରୀରାମର ଦୂତ ।
ସୀତ୍ୟା ଖୋଜିବାକୁ ପେଷିଲେ ରଘୁନାଥ ॥
ପଞ୍ଚବଟୀ ବନେ ତୁ କଲୁ ଯେବଣ କଥା ।
ତଇଲୋକର ଜନନୀ ଜନେକ ଦୋହିତା ॥
ମାୟା କୁରଙ୍ଗୀ ଯେ ଗଲେ ରାମ ମାରି ।
ତୁ ଯେ ଜାନେକୀକି ଆଣିଲୁ ଚୋରିକରି ॥
ବାହୁଡ଼ି ଆସି ରାମ ନ ଦେଖିଲେ ସୀତ୍ୟା ।
ପକ୍ଷୀଟଟା କହିଲା ସିଧ୍ୟ ଯେ ବାରତା ॥୭୦
ତହୁଂଣ ରାମ ଲକ୍ଷଣ ବେନି ବୀର ।
ରଷିମୁଖ ପର୍ବତେ ଭେଟିଲେ ସୁଗ୍ରୀବର ॥
ଏକା ନାରାଜେକେ ବାଳୀକି ବଧ୍ୟ କଲେ ।
ରୋମାପତି ସାଙ୍ଗେ ରାମ ମଇତ୍ର
ହୋଇଲେ ॥
ରିଛ ମର୍କଟ ବହୁତ ବଳ ଘେନି ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ଭାଇ ବେନି ॥
ସୀତ୍ୟା ଖୋଜିବାକୁ ପେଷିଲେ ରାମ ଦୂତ ।
ଦକ୍ଷିଣକୁ ଅଇଲି ମୁଂ ସାହେର ଜଳପଥ ॥
ଏ ତୋହୋର ଲଙ୍କା ନିଶାରେ ବୁଲିଲି ।
ଓଶେକ ବିପୁନ୍ୟେ ମୁଂ ସୀତାଙ୍କୁ
ଠାବକଲି ॥୮୦
ମଧୁବନ ତୋଟା ଭାଙ୍ଗିଲଇଂ ହେଳେ ।
ଅସୁର ସଇନ ନାଶ କଲି ଭୁଜବଳେ ॥
ଅଛଯ ନାମେଣ ତୋର ପୁତ୍ର ବଳବନ୍ତ ।
ବୁକୁ ବିଦାରିଣ କାଢ଼ିଲି ତାର ଅନ୍ତ ॥
ପାଞ୍ଚ ସେନାପତି ମୂଳେ ଜମ୍ବୋମାଳି ।
ଏତେ ବଳ ତୋହୋର ମୁଂ ପକାଇଲି ଦଳି ॥
ଏବେ ଯେବେ ଲଙ୍କା ମୁଂ କରଇ ଧୂମାନ୍ତ ।
ତେବେ ସେ ନାମ ମୁଂ ବହଇ ହନୁମନ୍ତ ॥
ଆଜର ମଧେ ମୁଂ ଏଥୁ ବାରତା
ଘେନିଯିବି ।
ଶ୍ରୀରାମର ଛାମୁରେ ମୁଂ ବାରତା କହିବି ॥

ତେବେ ସେ ରଘୁନାଥ ଆସିବେ ସଜ
ହୋଇଂ ।
ନିଚୟେ ଆଷ୍ୟ ତୋରରେ ପୂରିଲା
ଲଙ୍କସାଇଂ ॥
ଶୁଣିଣ ରାବଣ କୋପେଣ ଗରୁତର ।
ଅଧର କମ୍ପାଇଣ କହଇ ଉତ୍ତର ॥
ନିରେଖ ବାନରରେ ଗର୍ବ କଥା କହୁଂ ।
ମାନେବ ତପୁସୀ ଅଟଇ ତୋର ପ୍ରହୁ ॥
ସାମାନ୍ୟ ଭରସା କି ଅଟଇ ତୋହରି ।
ରିଛ ବାନରରେ ମୋତେ ହୁଅଇ କି ମାରି ॥
ସମୋଦ୍ର ଲଙ୍ଘିଣ ଆସିବ କେମନ୍ତେ ।
ଯୁଧ୍ୟ କରିବ ସେ କେବଣ ହିଂ
ମତେ ॥୧୦୦
ମୁହିଂ ସେ ଅଟଇ ରାଜାଧି ରାଜେଶ୍ୱର ।
ତୁମ୍ଭେ ନିଲକ୍ଷଣ ଅରଣ୍ୟ ବାନର ॥
ପର୍ବତ କନ୍ଦର ଉପରେ ବୁଲୁଥାଅ ।
ମନୁଷ୍ୟ ଦେଖିଲେଣ ପଳାଇଣ ଯାଅ ॥
ନଖ, ମୁଖ, ନାସିକାରେ ଦୁଇ, ଏକ ଠାର ।
ପାପ ଜୀବଗୁଡ଼ା ଅଟ ନାରଖାର ॥
ତୋତେ ନ ବୋଇଲେ ବୋଲିବା ଆର
କିସ ।
ତହିଂକି ଛଳ ପାଇଣ ବୋଇଲୁ ଯିସ ଯିସ ॥
କାହିଂର ଶ୍ରୀରାମ କାହାର ତନୟେ ।
କେବଣ କୁଳେ ଜାତ କେବଣ ଦେଶୁ
ଆୟେ ॥୧୦
ପାପ ଜୀବଗୁଡ଼ା ଦେଖିବା ନ ଯୋଗାଇ ।
ସ୍ୱର୍ଗକୁ ଦେଖିଲେ ଏଥିରି ଦୋଷ ଯାଇ ॥
ପୁଣି ହନୁମନ୍ତ ବୋଇଲାକ ହସି ।
ଆପଣେ ଆପଣେ ହୋଇ ଗରୁ-ହଂସୀ ॥
କାହୁଂ ଜାଣିମୁଂ ତୁ ଶ୍ରୀରାମ କାହାର କୁମର ।
ଯେଣେ ସେ ମଲେ ଖର ଧୂଷଣ ତୋହର ॥
ତିଶିରା ସେନାପତି ଯାହା ହାଥେ ମଲେ ।
ସୂପଲେଖି ନାସା ଶର୍ବଣ ଛେଦିଲେ ॥
ସେ ଶ୍ରୀରାମକୁ ଜାଣିମୁଂ ତୁ କାହୁଂ ।

ସୀତୟାକୁ ଚୋରାଇ ଆଣିଲୁ ତ ଯହୁଂ ॥୨୦
ସେହି ବନେ ମୁଣ୍ଡ ଥାଆନ୍ତାନା ପଡ଼ି ।
ମୃଗେକ ଦେଖାଇଲୁ ନବରତ୍ନେ ଜଡ଼ି ॥
ଶରଧା ନିମନ୍ତେ ଗଲେ ମୃଗମାରି ।
ଅମାୟା ନିମନ୍ତେ ଲକ୍ଷଣ ଆଦି କରି ॥
ତେଣୁ ସେ ପୀରତି ବଢ଼ିଲା ତୋହୋର ।
ଏବେ ପଚାରିଲୁ ସେ କାହିଂର ରଘୁବୀର ॥
ମୋତେ ପୁଛିବାର ଅଟଇ କଥା ସତ ।
ମୁହିଂ ସେ ହନୁମନ୍ତ ପବନର ସୁତ ॥
ମୋହୋର ହାଥେ ମଲା ତୋହର ଅଛଏ
ନାମେ ପୁତ୍ର ।
ଜୟୋମାଳି ମୂଳେ ଅସୁରନ୍ତ କଲି
ହତ ॥୩୦
ମୋତେ ସାମାନ୍ୟ ପ୍ରାୟେକ ତୁ ମଣୁ ।
ଏ ମୋହୋର ମହିମା ତୁ କିଛିହିଂ ନଜାଣୁ ॥
ଯେ ଭୁଜଦଣ୍ଡ ଘେନି ମୁଂ ମାରିବି ଯାହାକୁ ।
ତତକ୍ଷଣେ ଯମଦଣ୍ଡ ବାନ୍ଧିନେମେ ତାହାକୁ ॥
ଚିତ୍ରକୂଟ ପର୍ବତ ବିଧାକେ ଚୂରିକରି
ପାରଇ ।
ଏମନ୍ତ ମଣୁକି ସେ ମେରୁ ଧୂଳି କରି
ପାରଇ ॥
ତାହାଇ ସହିତେ କରଇ ମସିଗୁଣ୍ଡ ।
ଏହିକ୍ଷଣି ତୋହାର ଛେଦିବି ଦଶମୁଣ୍ଡ ॥
ସୀତୟାକୁ ନେଇ ଶ୍ରୀରାମଙ୍କୁ ଦେବି ।
ମନ କଲେ ଏହା ଏହିକ୍ଷଣି କରିବି ॥ ୪୦
ଶୁଣିଣ ରାବଣ ହସିଣ ବୋଇଲା ।
ଯାହା ସେ ବୋଇଲୁ କପି ଭଲଇ ହୋଇଲା ॥
ଶ୍ରୀରାମ ଆବର କିମ୍ପାଇଂ ଆସିବେ ଦୁଃଖ
ପାଇଂ ।
ତୁ ଯେବେ ଯୁଧ୍ୟରେ ପାରିବୁ ଏଥେ ଥାଇଂ ॥
ଏ ବୋଲ ଶୁଣିଣ ବୋଲଇ ମାରୁତି ।
ଯାହା ସେ ବୋଇଲୁ ଅଛଇଂ ତହିଂର ଗତି ॥
ବାଳୀକି ମାରିଣ ସୁଗ୍ରୀବରକୁ ରାଜ୍ୟ
ଦେଲେ ।

ମାଲ୍ୟବନ୍ତ ପର୍ବତେ ଆସିଣ ରହିଲେ ॥
ସଂଗରେ ଅଛନ୍ତି ରିଛ ବାନର ବହୁତ ।
ପୃଥ୍ୱୀ ନ ଦିଶଇ ବଳ ଅପ୍ରମିତ ॥ ୫୦
ଅଙ୍ଗଦ, ନଳ, ନୀଳ, ଗନ୍ଧମାରଦନ ।
ସୁଷେଣ, ତାରାକ୍ଷ, ମହୀନ୍ଦ୍ର ଚନ୍ଦନ ॥
ଜୟେବ ଶାର୍ଦ୍ଦୋଳ ଶଉରୀ ସେନାପତି ।
ଏକକୁ ଆରେକ ପ୍ରତଜ୍ଞା କରନ୍ତି ॥
କେ ବୋଲଇ ଲଙ୍କା ଆଣିମି ଉପାଡ଼ି ।
କେ ବୋଲଇ ଗଡ଼ ବସିମା ଯାଇ ମାଡ଼ି ॥
କେ ବୋଲଇ ସମୋଦ୍ର ହେଲେଣ
ଶୋଷିବା ।
କେ ବୋଲଇ ଅସୁର ବଳ ବିନାଶିବା ॥
ବାଳୀର ତନୟେ ତହିଂ ବୋଲଇ ଅଙ୍ଗଦ ।
କିମ୍ପା ରଘୁନାଥ କରିବୁ ତୁହି ଦ୍ୱନ୍ଦ ॥୬୦
ରାବଣ ଦଶମୁଣ୍ଡ ଆଣିମା ଛିନାଇ ।
ଶୁଣି ପ୍ରତିଉତ୍ତର ଦେଲେ ରଘୁସାଇଂ ॥
ଦକ୍ଷିଣ କରସ୍ଥଳ ଭୂମିରେଣ ମାରି ।
ବୋଇଲେ ମୁହିଂ ସେ ମାରିବି ଦଶଶିରି ॥
ମୋହୋର ଘରଣୀକି ନେଲା ସେ
ଚୋରାଇ ।
ମୁହିଂ ତାହାକଇ ନାଶି ବିବିଧ କଷ୍ଟଦେଇ ॥
ଏସନ ପ୍ରତଗ୍ୟାଂ ଦେଇଣ ଅଛନ୍ତି ଦାଶରଥି ।
ତେଣୁକରି ତୋତେ ମୁହିଂ ସହିଲି ଏ ଘାନ୍ତି ॥
ନୋହିଲେଣ ଜଗତୀରେ ଥାଆନ୍ତୁ କାହିଂ
ବସି ।
ଏ ବୋଲ ଶୁଣି ରାବେଣେଶ୍ୱର ଭାଷି ॥୭୦
ବାଇରେ ବାତୁଳ ପାମର କପିଗୁଡ଼ା ।
ଧର୍ମ ନ ଶିଖୁରେ କହୁ ମୂର୍ଖ ମୂଢ଼ା ॥
ଏତେ ଯେବେ ପ୍ରାକର୍ମ ଅଛଇ ତୋହର ।
ବାଳୁତ କୁମର ବାନ୍ଧି ଆଣିଲା ମୋହୋର ॥
ଏହା ଶୁଣି ବୋଲଇ ହନୁମନ୍ତ ବୀର ।
ରାମକୁ ସାମାନ୍ୟ ପ୍ରାୟେ ମଣରେ ପାମର ॥
ଅଇରାବ୍ରତ ହାସ୍ତୀକି ଗଜ ସଂଗେ ଲେଖୁଂ ।
ଉଚିଶ୍ରବା ଅଶ୍ୱକୁ ହୟ ସଂଗେ ଯୋଖୁଂ ॥

ରମ୍ଭା ଯୁବତୀକି ତିରି ସଂଗେ ସରିଛୁ ।
ମେରୁ ନେଇ ପର୍ବତ ସଂଗେ ଯୋଚୁ ॥୮୦
ମୁହିଂ ହନୁମନ୍ତ କପି ବୋଲି ମୋତେ ।
ଆବର କଥାଏ କହଇଂ ମୁହିଂ ତୋତେ ॥
ତୁ ଯେ ବୋଇଲୁ ଆଣିଲି ତୋତେ ଧରି ।
ପୂର୍ବର ଶାପ୍ୟ ଯେ ଅଛଇ ମୋହରି ॥
ଯେବଣ କାଳରେ ହୋଇଲି ମୁଂ ଜାତ ।
ଆଦିତକୁ ଦେଖାଇଦେଲା ମୋର ମାତ ॥
ଆହାର ପ୍ରାୟେ ମଣି ଆକାଶକୁ ଗଲି ।
ସୂର୍ଯ୍ୟ ଦେବତାକୁ ନାଞ୍ଚଣ ବାନ୍ଧିଲି ॥
ବିକଳେ ଦିନକର ସୁମରିଲା ସୁରପତି ।
ଜାଣି ଶକ୍ରରାଏ ଗଲାକ ତଡ଼ତି ॥ ୯୦
କୋପଭରେ ହୋଇ ବଜ୍ରେକ ମାଇଲା ।
ଏ ମୋହୋର ହୃଦରେ ବଜ୍ର ହିଂ ପଡ଼ିଲା ॥
ଜ୍ଞାନଭ୍ରଷ୍ଟ ହୋଇ ପଡ଼ିଲି ଭୂମିତଳେ ।
ପିତା ପବନ ମୋତେ ଧଇଲା ବିକଳେ ॥
ସର୍ବଜନଙ୍କର ଆତ୍ମା ନିରୋଧିଲା ।
ସକଳ ଜନଙ୍କର ସାହାସ ଉଡ଼ିଲା ॥
ଏହା ଦେଖି ମିଳି ସକଳ ସୁରଗଣ ।
କିସ ଉପାୟେ କରିବା ବିଚ୍ଛରଣ ॥
ପବନ ଓପ୍ରୋଧେଣ ଦେବ ପିତାମହ ।
ବଜ୍ରଜଇ ନାଶି ବଜ୍ର କଲେ ମୋରୋ ଦେହ ॥୧୦୦
ଯହୁଂ ମୋହର ଅଙ୍ଗେ ବାଜିଲା କୁଳିଶ ।
ହନୁମନ୍ତ ନାମ ମୋତେ ଦେଲେକ ତ୍ରିଦଶ ॥
ବେଳେକ ତାହାର ଉପାୟେ ଜାଇଂଲି ।
ଯାବତ ବଳ ମୁଂ ଏକାୟେ ପାଇଲି ॥
ଦେବେ ମକୁଟ କୁଣ୍ଡଳ ହାର ଦେଲେ ।
କପିଇନ୍ଦ୍ର ବୋଲି ମୋତେ ଅଭିଷେକ କଲେ ॥
ଶୁଣ ହୋ ଲଙ୍କେଶ୍ୱର ପଚାରିଲୁ ଯାହା ।
ଅଦୋଷେ ବାନ୍ଧିଲି ମୁଂ ଛାୟାପତିର ନାହା ॥
ତେଣୁ ସେ ବନ୍ଧନେ ପଡ଼ିଲଇଂ ଏଥି ।
ପ୍ରାକର୍ମେ ଯାହା ନିହିଛି ବିଧାତି ॥ ୧୦

ଶଏ କୋଟି କଳପେ ନୋହଇ ସେ କ୍ଷୟେ ।
ସୃଷ୍ଟି କରତା ଯାହା କରିଛି ଉପାୟେ ॥
କେହୁ ଆନ କରିବ ଦଇବର ବାଣୀ ।
ଶ୍ରୀରାମ ପ୍ରତକ୍ଷେ ହୋ ଅଟନ୍ତି ଚକ୍ରପାଣି ॥
ତାହାକୁ ବିଧାତା ମାନେବ ଜାତ କଲା ।
ସୁଖ ଭୋଗ ଛଡ଼ାଇ ବହୁତ ଦୁଃଖଦେଲା ॥
ତଇଲୋକ ଶିରୀ ଜନେକକ ଦୋହିତୀ ।
ସେ ତୋହୋର କଟକେ ବନ୍ଦୀ ପଡ଼ିଛନ୍ତି ॥
ବିହିର ବଶ୍ୟକୁ କେହୁ ଆର ଯିବ ।
ଏମନ୍ତ କଥା କିମ୍ପା କହୁ ଦଶଗ୍ରୀବ ॥ ୨୦
ତୋତେ ଏ ବିଧାତା ଅନେକ ସୁଖ ଦେଲା ।
ଶ୍ରୀରାମର ହସ୍ତେ ମୃତ୍ୟୁ ନେଇ କଲା ॥
କାହାର ବେଳେ ସେ ହୋଇବାକ ଆନ ।
ଶୁଣିଣ କୋପକଲାକ ଦଶାନନ ॥
ହୀନ ପଶୁଜନ୍ତୁରେ ଗର୍ବ କଥା କହୁଂ ।
କେଉଂ ନିଲକ୍ଷଣ ତୁ ଏଡ଼େ ଗର୍ବ ବହୁଂ ॥
ଏହିକ୍ଷଣି ତୋତେ କରିବି ପ୍ରାଣନାଶ ।
କେଉଂକତି ଯିବୁ ଏଡ଼େକ ସାହସ ॥
ହନୁମନ୍ତ ବୋଇଲା ଭାର୍ଜନ ଅଛି କାହିଂ ।
ସାମାନ୍ୟ ପ୍ରାୟେ କି ବୁଝ ଲଙ୍କସାଇଂ ॥ ୩୦
ଯେତେ ଲୋକ ଅଛ ଜଗତୀରେ ବସି ।
ଏହିକ୍ଷଣି ସବୁ ପକାଇବି ବିନାଶି ॥
ତୋହୋର ପ୍ରାୟେ କରି କୋଟିଏ ରାବଣ ।
ଲିଖ ପ୍ରାୟେ କରି ମାରିବି ଏହିକ୍ଷଣ ॥
ସ୍ୱାମୀର ଆଗ୍ୟାଂ ନାହିଂ କରିବା କିମ୍ପା ଦ୍ୱନ୍ଦ ।
ଯେ ବଚନ ଶୁଣି ବୋଲଇ ଦଶକନ୍ଧ ॥
ବଡ଼ଲୋକଙ୍କ ସଙ୍ଗରେ ବସିଲା ତୋହୋର ନାହିଂ ।
ସଂସାର ଗତି କଥା ନ କହୁ କିସ ପାଇଂ ॥
ତୋତେ ଛାର ମାରନ୍ତେ ହୋଇବାକ କିସ ।
ଅଛୟେ କୁମାରକୁ ଯହୁଂ କଲୁ ମୋହୋର ନାଶ ॥୪୦
ତେଣୁ ସେ ପ୍ରାଣ ତୋର ଘେନିମି ନିଅତ ।

ଯେତେ ବୋଲି ରାୟେ ରାଇଲା ପ୍ରଶସ୍ତ ॥
ଯେ କପିର ଶିରଛେଦ ବୋଲି ଆଗ୍ୟାଂ ଦେଲା ।
କର ଯୋଡ଼ିଣ ବିଭୀଷେଣ ଜଣାଇଲା ॥
ଭୋ ଦେବ ଲଙ୍କେଶ୍ୱର ଠାକୁର ଶିରୋମଣି ।
ଦୂତକୁ ବଧ୍ୟ ଦେବ ନ କରି ନୃପମଣି ॥
ନ ଜାଣି ଏ କପି ଭାଙ୍ଗିଲା ମଧୁବନ ।
ଯେ ଦୋଷ ଅପ୍ରାଧକୁ ପାଇଲା ବନ୍ଧନ ॥
ଛାଡ଼ିଦିଅ ଏବେ ପ୍ରାଣ ଘେନି ଯାଉ ।
ମାଇଲେ କିସ ଯେ ହୋଇବାକୁ ଆଉ ॥୫୦
ଜଗତର ମୁଖେ ବୋଲିବେ ମନ୍ଦବାଣୀ ।
ପରସ୍ତିରୀ ହରଣ କଲାକ ବିଂଶପାଣି ॥
ଖୋଜି ଅଇଲା ଲୋକକୁ ନାଶ କଲା ।
ଏଡ଼େ ବଡ଼ ରାଜା ହୋଇ ଅଧର୍ମକୁ ଗଲା ॥
ସକଳ ଜନଙ୍କର ମୁଖେ ପାଇବୁ ଏସନକ ବୋଲ ।
ଛାଡ଼ ଛାଡ଼ ରାୟେ ନୁହଇ ଏ ଭଲ ॥
ବିଭୀଷେଣ ବଚନେ ବୋଲଇ ଲଙ୍କପତି ।
କଟାସି ଚାହିଂଲା କରିଣ କୋପମୂର୍ତ୍ତି ॥
ତୁ ରେ ସାନୁଜ ନ ଜାଣୁ ଛେଦ ଭଦ ।
ଏ କପିର ପ୍ରସାଦେ ମୁଂ ପାଇଲି ବହୁତ ଖେଦ ॥୬୦
ପାଞ୍ଚ ସେନାପତି ଜମ୍ୱୋମାଳି ମଲା ।
ଦୁଲଣା ପୁଅ ମୋର ଅଛୟେ କ୍ଷୟେ ଗଲା ॥
ଏହାକୁ ଛାଡ଼ିଦିଅ ବୋଇଲୁ କେମନ୍ତେ ।
ଯେ କପି ଯେଥୁ ଗଲେ ଆମ୍ଭେ ନ ଥାଇ ଯେ ସୁସ୍ଥେ ॥
ସମୋଦ୍ର ଭିତରେ ଅଟଇ ମୋହୋର ପୁର ।
ଧୂରୁ ଦେଖି ମୋତେ କମ୍ପନ୍ତି ସୁର ନର ॥
ଯେ ଯେଥକୁ ପ୍ରକାରେଣ ଆସି ।
ନିଶାରେ ବୁଲିଲା ଘରେ ଘରେ ପଶି ॥
ମଧୁବନ ଭାଙ୍ଗି ସୀତାକୁ ଠାବ କଲା ।
ଅଛୟେ ମୂଳେ ଅନେକ ସଇନି ନାଶ କଲା ॥୭୦

ଯେବେ ଯେ କପି ଯେବେ ଜୀଇଂ ଯିବ ।
ଶତ୍ରୁର ଆଗେ ଯାଇଂ ବାରତା କହିବ ॥
ଛିଦ୍ର ପାଇଂଣ ଯେ ଆସିବ ରାମ ବାହି ।
ମନ୍ତ୍ରୀ ହୋଇଂଣରେ ତୋହୋର କିଛି ବୁଦ୍ଧି ନାହିଁ ॥
ଶୁଣିଣ ମଉନ ହୋଇଲା ବିଭୀଷେଣ ।
ପ୍ରଶସ୍ତକୁ ରାଇ ବୋଇଲା ରାବଣ ॥
ଖଡ଼ଗ ଘେନିଣ ଛେଦ ଏହାର ଶିର ।
ଆଗ୍ୟାଂ ପାଇଂଣ ସେ ଗଲା ଦତ୍ୟ ବୀର ॥
ସାତ ଦଉଡ଼ି ଟଣାଇ ଧରାଇଲା ।
ରାବଣକୁ ଚାହିଁ ମେଘନାଦ ବୋଇଲା ॥୮୦
ନାଗ ଫାଶ ଘେନି ଅଛଇ ଏହାକଇ ବାନ୍ଧି ।
କର ଚରଣ ଯେ କଣ୍ଟଇ ନିରୋଧି ॥
ମଲା ପ୍ରାଣୀରେ କିମ୍ପା ଅସ୍ତ୍ର ଲାଗିଥିବ ।
ଫେଡ଼ି ଦେବାକୁ ଆଗ୍ୟାଂ ଦିଅସି ଦଶଗ୍ରୀବ ॥
ଶୁଣିଣ ରାବଣ ଯେ ହୋଇଲା ତ୍ରିପୁତି ।
ବୋଇଲା ଏକଥା ଅଟଇ ଯୁଗତି ॥
ଏ ନାଗଫାଶ ଯେ ଅଟଇ ପବିତ୍ର ଶର ।
ଫେଡ଼ ଫେଡ଼ ବାବୁରେ ମରୁ ଏ ବାନର ॥
ଶୁଣି ମେଘନାଦ ଅସ୍ତ୍ର ସଙ୍ଘରିଲା ।
ହନୁମନ୍ତ ଶ୍ୟରୀରକୁ ଉଶ୍ୱାସ ନାଗିଲା ॥ ୯୦
ଅଲଖି ଦଉଡ଼ି ଯେ ନାଗିଅଛି ସାତ ।
ଧରିଅଛନ୍ତି ତାହା ଅସୁର ବଳବନ୍ତ ॥
ରାବଣ ପଚାରଇ ଜଗତୀରେ ଥାଇ ।
କିଂପା ହୋ ପ୍ରଶସ୍ତ ତୁନି ହୋଇଲୁ ଯାଇଂ ॥
ମାର ଖଡ଼ଗ ଯେ ଛିଡୁ ଏହାର ଶିର ।
ରଖନ୍ତୁ ଏହାକୁ ରାମ ଲକ୍ଷ୍ମଣ ବେନିବୀର ॥
ପାମର ଆତ୍ମା ଏହାର କ୍ଷଣେହେଂ ନ ଥୁଅ ।
ଆଶ୍ୱାସି କହିଲେ ଅଣହିତ ହୁଅ ॥
ଦଶାନନର ଆଗ୍ୟାଂରେ ପ୍ରଶସ୍ତ ଯେ ବୀର ।
ଖଡ଼ଗ ଉଚାଇଂଣ କହଇ ଉତ୍ତର ॥୧୦୦
କେ ତୋହୋର ଇଷ୍ଟ ଦେବତା କହି କହ ।
ସୁମରଣା କର ରଖନ୍ତୁ ଆସି ଦେହ ॥
ଏ ଜନ୍ମ ଶୁଝି ଯାଉଅଛି ପ୍ରାଣ ।

ବନଜନ୍ତୁମାନେ ତୁମ୍ଭେ ଅଟ ହୋ ଅଜାଣ ॥
ଶୁଣି ହନୁମନ୍ତ ବୋଲଇ ଯେ ହସି ।
ମୋହୋର ଇଷ୍ଟଦେବତା ଅଯୋଧ୍ୟା ପୁରବାସୀ ॥
ରଘୁବଂଶେ ଜାତ ଦଶରଥ ତନଏ ।
ଜାନେକୀର ବଲ୍ଲଭ ଶ୍ରୀରାମଚନ୍ଦ୍ର ରାଏ ॥
ମୋହୋର ପ୍ରାଣର ଅଟନ୍ତି ଅଧିକାରୀ ।
ତୁମ୍ଭର ବଳେ କି ମୋତେ ହୁଅଇ ମାରି ॥୧୦
ବାଇ ମୂର୍ଖ ତୁମ୍ଭେ କିଛିହିଂ ନ ଜାଣ ।
ଆଖି ଥାଉଂ ଥାଉଂ ହୋଉଅଛ କାଣ ॥
ପ୍ରତକ୍ଷେ ଦେଖିଲ ତ ଅଛୟେ ବୀର ମଲା ।
ଜମ୍ବୋମାଳି ସହିତେ ସଇନି ନାଶ ଗଲା ॥
ଓଶେକ ବିପୁନ୍ୟ ଭାଗିଂଲଇଂ ହେଲେ ।
ସମୁଦ୍ର ଲଙ୍ଘିଣ ମୁଂ ଅଇଲି ଧର୍ମବଳେ ॥
ପୂର୍ବର କର୍ମଦୋଷେ ପଡ଼ିଲି ବନ୍ଧନ ।
ଏହା ସତ ପ୍ରାଏ ମଣ ଦୃଷ୍ଟ ଜନ ॥
ହାଣିମ ବୋଲି ମୋତେ ଆସିଅଛ ଧାଇଂ ।
ଜାଣିଲି ତୁମ୍ଭରରେ କିଛିହିଂ ଗ୍ୟାନ ନାହିଁ ॥୨୦
ଯେହାଶୁଣି କୋପେ ପ୍ରଶସ୍ତ ସେନାପତି ।
ପ୍ରଚଣ୍ଡ ଖଡ଼ଗ ମାଇଲାକ ଧାତି ॥
ହନୁମନ୍ତ ଶ୍ୟରୀରେ ପଡ଼ିଲା ଯାଇ ଧାର ।
ବଜ୍ରସମ ତନୁ ଅଟଇ ତାହାର ॥
ତେତେ ତୀକ୍ଷ ଶସ୍ତ୍ର ଲିତାୟେ ନ କାଟିଲା ।
ଦାଢ଼ ମୋଡ଼ି ହୋଇ ଧଜ ଲେଉଟିଲା ॥
ପରଞ୍ଜ ଛିଡ଼ିଣ ପଡ଼ିଲା ଖଣ୍ଡାତଳେ ।
ଦେଖିଣ ଚମତକାର ପାଇଲେ ସକଳେ ॥
କେ ବୋଲଇ ଏ ମୋଡ଼ା ଜାଣଇ ଅକାଟ ।
ବନସ୍ତ ଜନ୍ତୁଙ୍କ ଅନେକ କପଟ ॥ ୩୦
ମୁଣ୍ଡ ନ ଛିଡ଼ିଲେ ନ ମରଇ କପି ।
ଶୁଣି ଲଙ୍କପତି ବୋଇଲାକ କୋପି ॥
ମାରରେ ଗୁରୁଜ ଓପ୍ରୋଧ ନକର ।
ମରୁ ଏ ଦୃଷ୍ଟ ଚାଣ୍ଡାଳ ବାନର ॥

ପ୍ରଶସ୍ତ ବୀର ଯେ ଖଡ଼ଗ ପକାଇ ।
ଗୁରୁଜ ଘେନିଣ ପିଟିଲା ନିଠାଇଂ ॥
ଯତନେ ମାରୁତି ପାତଇ ନେଇ ମୁଣ୍ଡ ।
ଉପୁଡ଼ିଣ ଶହସ୍ର ହୋଇଲା ବେନି ଖଣ୍ଡ ॥
ଦେଖିଣ ରାବଣର ନ ଫୁରଇ କିଛି ।
ଅବହେଳ ହୋଇଣ ହନୁମନ୍ତକୁ ଚାହୁଂଅଛି ॥୪୦
ଇନ୍ଦ୍ରଜିତ ବୋଇଲା ସନ୍ୟକଇ ଚାହିଁ ।
ନବରୁ ବାହାର କରି ମାର ଏହାକୁ ନେଇଂ ॥
ଯେମନ୍ତେ ମରଇ ତେମନ୍ତ କରି ମାର ।
ବିବିଧ ପ୍ରକାରେ ଯେହା ମାରିତ ମନକର ॥
ତୁହୋ ପ୍ରଶସ୍ତ ଘେନାଇ ଏହାକୁ ଯାସି ।
ଯେମନ୍ତେ ମରଇ ତେମନ୍ତ କରସି ॥
ପ୍ରାଣେ ମାରି ଏହାକୁ ଦିଆଅ ନେଇ ଶୂଳ ।
ଦକ୍ଷିଣ ସିନ୍ଧୁର ଉତ୍ତରର କୂଳ ॥
କ୍ଷଣେହେଂ ନ ଥୁଅ ଘେନିଣ ବେଗେ ଯାଅ ।
ନଗ୍ର ବାହାରେ ନେଇ ହଣାଇ ପକାଅ ॥୫୦
ଶୁଣିଲା ପ୍ରଶସ୍ତ ଇନ୍ଦ୍ରଜିତର ବାଣୀ ।
କରେ କୋଦଣ୍ଡ ଘେନି କୋପେ ଶିର ଝୁଣି ॥
ଲୋକନ୍ତ ବୋଇଲା ବାହାରକୁ ନିଅ ।
ଶୁଣି ଆଗୁସାର ପବନର ପୁଅ ॥
ନଗର ଭିତରୁ ବାହାର କରିନେଲେ ।
ହାଟୁଆ ଦାଣ୍ଡଲୋକେ ଦେଖିବାକୁ ଅଇଲେ ॥
ଅଶ୍ୱେକ ଚଢ଼ିଣ ପ୍ରଶସ୍ତ ସେନାପତି ।
ଆପଣେ ଆଗ ପଛ କରାଇଲା ମାରୁତି ॥
ନଗ୍ରଲୋକନ୍ତ ବୋଇଲାକ ରାଇଂ ।
ଯେ ଯାହାର ଶସ୍ତ୍ର ଘେନି ଆସ ଯାଇଂ ॥୬୦
ଯେମନ୍ତେ ପାର ଏ କପିକି ବେଗେ ମାର ।
ଯେ ଦୃଷ୍ଟ ଦୁରାତ୍ମାକୁ ଓପ୍ରୋଧ ନକର ॥
ଶୁଣିଣ ନଗ୍ରଲୋକେ ହରଷ ହୋଇଲେ ।
କେହୁ ଗୁରୁଜ କେହୁ ଶକତି ମାଇଲେ ॥
କେହୁ ଭୁଷଣ୍ଡି ଘେନିଣ ପିଟନ୍ତି ।
କେହୁ ମୁଦ୍‌ଗର ଘେନିଣ ପହୁଡ଼ନ୍ତି ॥
କେ କୋନ୍ତ ଛେଲ ଯେ ପରିଘ ଘେନିମାରି ।

ଭାଲ ଘେନିଣ ସେ ଲୋଡ଼ନ୍ତି ସଂଘାରି ॥
ବିଧା ଗୁରୁଦା କେ ମାରନ୍ତି ନେଇ ନାତ ।
କେହୁମାରନ୍ତି ନେଇଂ ତୀକ୍ଷ ଖଡ଼ଗ
ଘାତ ॥୭୦
ସପତପୁର ଲଙ୍କ ବେଢ଼ାଇ ବୁଲାନ୍ତି ।
କୋନ୍ଦି ବିକୋନ୍ଦିରେ ବୁଲାଇ ଦେଖାନ୍ତି ॥
ମାଇପେ ପିଟନ୍ତି ଘେନିଣ ପାହୁରାଣି ।
ପାଉଂଶ ପକାବନ୍ତି କେବଣ ତରୁଣୀ ॥
କେହୁ ନେଇ ପାଣି ପକାଇ ଗାଳି ଦ୍ୟନ୍ତି ।
କେବଣ ଯୁବତୀ ନେଇ ଖୁନ୍ଦାଏ ମାରନ୍ତି ॥
କେହୁ ଫୋପଡ଼ାଇ ମାରନ୍ତି ଗୋଇଠା ।
କେ ପଥର ଫିଙ୍ଗନ୍ତି କେ ମାରୁଛନ୍ତି ଇଟା ॥
କେହୁ ବୋଲଇ ଆରେ ମାଇଲୁ ମୋର
ଭାଇ ।
କେ ବୋଲଇ ମୋହୋର ମାଇଲୁ
ଜୁଆଇଂ ॥୮୦
କେ ବୋଲଇ ମୋହୋର ଖୁଡୁତାକୁ
ମାଇଲୁ ।
କେ ବୋଲଇ ମୋହୋର ବାପକୁ ନାଶ
କଲୁ ॥
କେ ବୋବି ପାରିଣ ଦିଅନ୍ତି ହୁଳହୁଳି ।
କିଳିକିଳା ନାଦେ ପଡ଼ଇ ହାଲହୋଳି ॥
ମାୟାରେ ହନୁମନ୍ତ ହରାଇଲା ଗ୍ୟାନ ।
ଖର ନିଶ୍ୱଆସ ଛାଡ଼ଇ ଘନ ଘନ ॥
ନୟନ ବୁଲାଇଂ ପଡ଼ିଲାକ ଶୋଇଂ ।
ମଲାର ପ୍ରାଣୀ ଯେସନ ମତ ହୋଇ ॥
ପ୍ରଶସ୍ତ ଦେଖିଣ ବିଚାରଇ ମନେ ।
ନିଶ୍ଚଏ ପ୍ରାଣ ଯେ ହାରିଲା ଏସନେ ॥୯୦
କେ ବୋଲଇ କପି ଅନେକ ଦୁଃଖ ଦେଲା ।
କେ ବୋଲଇ ମୋହୋର ସଂଗୋତ୍ର
ସଂହାରିଲା ॥
କେ ବୋଲଇ ତୁମ୍ଭେ ତ ନଜାଣ କଥା
କିଛି ।
ମାୟାର କପିଏ ଆଲିଜ ପଡ଼ିଅଛି ॥

କେ ବୋଲଇ ଏଡ଼େ ମାଡ଼ରେ ଜୀଇଂବ
କେମନ୍ତେ ।
କେ ବୋଲଇ ଦେଖ ବାନର ମଲାନି
ନିୟତେ ॥
ଠାବରୁ ନ ଉଠଇ ଘୋଷରାଇ ନେନ୍ତି ।
ପୁଣ୍ୟ ଆତ୍ମାମାନେ ଧର୍ମ ସୁମରନ୍ତି ॥
କାହୁଂ ଏ କପି ବୀର ଅଇଲା ନଜାଣି ।
ମରିବାକୁ ବିଧାତା ଏଥକୁ ଥିଲା
ଆଣି ॥୧୦୦
ଯାହାର ବୋଲେ ଆସି ଏ ପୁରେ ପଶିଲା ।
ମୂର୍ଖପଣ କରିଣ ଆପଣେ ନାଶ ଗଲା ॥
ଯୋଗ କାଳ ହେଲା ଭୋଗକୁ ଗଲା ଛାଡ଼ି ।
କେହୁ ନେଇ ମଡ଼ା ଉପରେ ପିଟୁଛନ୍ତି ବାଡ଼ି ॥
କେ ଚିଲା ମାରିଣ ଅଲଗେ ତେଇଂଯାନ୍ତି ।
କେବଣ ବାପୁଡ଼ା ପୁଣିଆସି କହୁଣି ମାରନ୍ତି ॥
କେ ବୋଲଇ ହୋ ମଲା ଲୋକକୁ କିଂପା
ମାରି ।
ପାପ ପୁଣ୍ୟ ଦୁଇକଥାକୁ ମନରେ ନ ବିଚାରି ॥
କେ ବୋଲଇ ଯେହାକୁ ମୋହୋର ଦୟା
ନାହିଁଚିତ୍ତ ।
ମରଇ କିନା ଏ ଦୁଷ୍ଟ କପି ପାପିଷ୍ଟ ॥୧୦
ଏଡ଼େକ ରାଜ୍ୟ ଆମ୍ଭର ନାରଖାର କଲା ।
ଅକ୍ଷୟେ ପୁଅ ରାଜା କୁମାରକୁ ମାଇଲା ॥
ମଲା ଯେ ଜମ୍ବୋମାଳି ଆବର ପାଞ୍ଚ
ସେନାପତି ।
ମଧୁବନ ପ୍ରାଏ ତୋଟା ପକାଇଲା ମତ୍ରି ॥
ଆଗହୁଂ ରାବଣ ଯେବେ ପେଷନ୍ତା
ଇନ୍ଦ୍ରଜିତ ।
କିମ୍ପା ସେ ବାନର ହୋ କରନ୍ତା ଏଡ଼େ କୃତ ॥
କେ ବୋଲଇ ଯାହାର ଯେତେକ ଭୋଗ
ଥିଲା ।
କାଳବେଳ ଜାଣିଣ ସେ ବାଟ ବହିଗଲା ॥
ଏହାକୁ ଏବେ ଆଉ ମାଇଲେ ହେବ
କିସ ।

ଏହାର କର୍ମେ ଏବେ ହୋଇଲା ଏହୁ
ନାଶ ॥୨୦
ମଲା ଲୋକକୁ ହୋ ମାଇଲେ ପାପ ପାଇ ।
କେ ବୋଲଇ ଯେହାନ୍ତ ମାଇଲେ
ଧର୍ମନାହିଁ ॥
ପ୍ରଶସ୍ତ ବୋଇଲା ଏହାକୁ ସିଂଘଦ୍ୱାରକୁ
ଘେନ ।
ଯାଇ ଜଣାଇବା ନୃପତି ଦଶାନନ ॥
ଲୋକେ ବୋଲନ୍ତି ମଲାଣି ଗୋସାଇଂ ।
ଚାଲିଯିବାକୁ ସଖ୍ୟ ଏହାର ନାହିଁ ॥
ପ୍ରଶସ୍ତ ବୋଇଲାରେ ଘୋଷରାଇଂ ନିଅ ।
ଶୁଣିଣ ଅସୁରେ ହସନ୍ତି ଟହ ଟହ ॥
ଦଉଡ଼ି ଧରିଣ ଘୋଷଡ଼ାଇଂ ନିଅନ୍ତି ।
ବଢ଼ି ନଈରେ ଯେହ୍ନେ ଭାସଇ
ମଉହସ୍ତୀ ॥୩୦
ସିଂଘଦ୍ୱାରେ ହନୁମନ୍ତକୁ ନେଇଂ କଲେ ।
ପ୍ରଶସ୍ତ ସେନାପତି ରହ ରହ ବୋଇଲେ ॥
ଅଶ୍ୱରୁ ଉତୁରି ଭିତରେ ଯାଇ ପଶି ।
ଦେଖିଲା ରାବଣ ଜଗତୀରେ ଅଛି ବସି ॥
ପାୟେ ପଡ଼ି ଶୋଇ ଯେ ଉଠଇ ତଡ଼ତି ।
ଶିରେ କରଦେଇଂ ଗଲାକ ପଛକତି ॥
ରାବଣ ପଚାରଇ କପିକି କିସ କଲୁ ।
ପାମର ଆତ୍ମାକୁ କି ଦଣ୍ଡ ବିହିଲୁ ॥
ପ୍ରଶସ୍ତ ବୋଇଲା କଟକ ବୁଲାଇଲି ।
ବିବିଧ ପ୍ରକାରେ ମାଡ଼ ମରାଇଲି ॥ ୪୦
ଥୋକାୟେ ଦୂରଯାୟେ ସାଷ୍ଟାମ
ହୋଇଥିଲା ।
ଅତିହିଂ ମାରନ୍ତେ ପ୍ରାଣ ବିସର୍ଜିଲା ॥
ଚାଲି ନ ପାରିଲା ଆଣିଲି ଉଛୁଡ଼ି ।
ସିଂଘଦ୍ୱାର ଠାରେ ଅଛଇ ଦେବପଡ଼ି ॥
ଦାନ୍ତ ନିକୁଟିଣ ପ୍ରାଣ ହରାଇଲା ।
ମରିବାର ବେଳେ ଆଖି ବୁଲାଇଲା ॥
ଛଟପଟ ହୋଇଲା ପ୍ରାଣ ଛାଡ଼ି ଯାଉଂ ।
ବୁକୁ କୋଡ଼ି ହୋଇଲା ପ୍ରାଣ ଥାଉ ଥାଉଂ ॥

ମରିବ ବୋଲି ସେ ଏଥକୁ ଅଇଲା ।
ଯେତେ ଆମ୍ଭର ସେ ସଇନି ନାଶ
କଲା ॥୫୦
ଅଛୟେ କୁମାର ପଡ଼ିଲା ଯାଇ ରଣେ ।
ଜମ୍ୱୋମାଳିକି ସେ ମାଇଲା ଅକାରଣେ ॥
ପାଞ୍ଚ ସେନାପତି ପଡ଼ିଲେ ସମରେ ।
ଏତେ ଉପଦର୍ପ କଲାକ ଅପାରେ ॥
ଆଗହୁଂ ଯେବେ ପେଷନ୍ତୁ ଇନ୍ଦ୍ରଜିତ ।
କିଂପା ସେ ଅନର୍ଥ କରନ୍ତା ଯେଡ଼େ କୃତ୍ୟ ॥
ଖଣ୍ଡା ନ କାଟଇ ଗୁରୁଜ ଘେନି ମାରି ।
ନିର୍ଘାତ ମାରେଣି ମାରନ୍ତେ ପ୍ରାଣ ହାରି ॥
ମୃତ୍ୟୁପିଣ୍ଡ ପଡ଼ିଅଛଇ ସିଂଘଦ୍ୱାରେ ।
କିସ କରିବା ଆଗ୍ୟାଂ ଦିଅ ନୃପବରେ ॥୬୦
ରାବଣ ବୋଇଲା ଛାମୁକୁ ଘେନି ଆସ ।
ଦେଖିବା ବାନର ମରଣ ଭବିଷ ॥
କେମନ୍ତେ ପ୍ରାଣ ସେ ଯେ ହାରିଲା ତେଡ଼େ
ଦୁଷ୍ଟ ।
କଥାୟେ ନ ଛାଡ଼ି ଯେ କହୁଥିଲା ରିଷ୍ଟ ॥
ଜାଣିମାନା ହାଦେ କେମନ୍ତେ ହୋଇମଲା ।
ରାଜା ଆଗ୍ୟାଂ ପାଇ ପ୍ରଶସ୍ତ ବୀର ଗଲା ॥
ଧୂରୁ ଡାକିଲାରେ କପିକି ଘେନି ଆସ ।
ଶରଧା କରିଅଛି ଦେଖିବ ଦଶାଇଶ ॥
ଶୁଣିଣ ଲୋକେ ସେ ଘୋଷରାଇ ନ୍ୟନ୍ତି ।
ବଢ଼ି ନଈରେ ଯେହ୍ନେ ଉପୁଚିଆଇ
ହସ୍ତୀ ॥୭୦
ଜଗତୀରେ ଥାଇ ତାହା ଦେଖଇ ରାବଣ ।
ଦେଖ ଦେଖ କପିର ମରିବା ବଡ଼ପଣ ॥
ଭାଣ୍ଡପଣ କଥଣ ଯେତେ କହୁଂ ଥିଲା ।
ଯେବେ ସେମାନ ଯେ କେଉଂକତି ଗଲା ॥
ଆସ୍ତାନର ତଳେ କଲେ ନେଇ ବନ୍ଦୀ ।
ଦେଖିଣ ରାକ୍ଷସ ବଳ ପରମ ସାନନ୍ଦ ॥
ସଇନି ଦୂର କରିଦିଅନ୍ତି ପଡ଼ିହାରୀ ।
କୋଶେକ ଓସାରେ ଅଛନ୍ତି ପଟୁଆର ପଡ଼ି ॥
ମଧ୍ୟେ କଲେ ନେଇଂ ପବନର ସୁତ ।

ଉପଗତ ଲୋକେ ଦେଖନ୍ତି ସମସ୍ତ ॥୮୦
ନିଚେଷ୍ଟ ହୋଇଂ ହନୁମନ୍ତ ପଡ଼ିଥିଲା ।
ଜଗତୀର ତଳେ ସେ ଉଠିଣ ବସିଲା ॥
ହାଇ ମାରିଣ ଶରୀର କୁଣ୍ଡିଆଇଂ ।
ରାବଣେଶ୍ୱରକୁ ଦୃଷ୍ଟି କରିଣ ଚାହିଂ ॥
ଆଖିଲଟା ମାରି ମରଦଇ ନିଶ ।
ଆସ୍ତାନକୁ ଚାହିଂ ହୁଅଇ ହସ ହସ ॥
ଦେଖିଣ ରାବଣ ହୋଇଲା ଚକିତ ।
ଚମତକାର ହୋଇ ଚାହାଂଇ ପ୍ରଶସ୍ତ ॥
ଇନ୍ଦ୍ରଜିତ ବୋଇଲା କେବଣ ଉପାୟେ ।
ମରିବା ମର୍କଟ ଜୀବନ କେହ୍ନେଁ
ପାୟେ ॥୯୦
ଏ ଅପୂର୍ବ କଥାନ୍ତ ଶୁଣିଲାତ ନାହିଂ ।
ପୁତ୍ର ବୋଲ ଶୁଣି ହସଇ ଲଙ୍କସାଇଂ ॥
ତୁ ହୋ ଇନ୍ଦ୍ରଜିତ ନ ଜାଣୁ ଏଥିର ରୀତି ।
ନନ୍ଦୀର ଶାପ୍ୟକୁ ମୋହୋର ଅଛି ଭୀତି ॥
ଯେବଣ ଦିନେ ମୁଂ ଦିଗବିଜେ କଲି ।
ପୁଷ୍ପେକ ରଥ ଚଢ଼ି ତିନିପୁର ବୁଲିଲି ॥
କପିଳାସ କନ୍ଦରେ ପଶିଲି ଝସାଇଂ ।
ବିବାନ ନ ଚଳଇ ପୂର୍ବର ହେତୁ ପାଇଂ ॥
ରଦ୍ରଗଣେ ଆସି ନିରୋଧିଲେ ପଥ ।
ବୋଇଲେ ଏ ପର୍ବତେ ବିଜୟେ
ଶୂଳହସ୍ତ ॥୧୦୦
ଯାଅସି ବାହୁଡ଼ି ଦଶାନନ ବୀର ।
ସଦାଶିବ ନାଥକୁ ଘଷାଳ ନକର ॥
ତାହାଙ୍କର ବଚନ ନକଲି ହାଦେ ମୁହିଂ ।
ବିବାନୁ ଓହ୍ଲାଇଲି କୋପମୁଖ ହୋଇଂ ॥
କରେଣ ଖଡ଼ଗ ଘେନି ମୁଂ ଭିତରକୁ ଗଲି ।
ସିଂଘଦ୍ୱାରେ ଯାଇଂ ନନ୍ଦୀକି ଦେଖିଲି ॥
ସେ ମୋତେ ବୋଇଲେ ଭିତରେ ନପଶ ।
ପାର୍ବତୀ ସହିତେ ଯେଥି ବିଜୟେ ଦିଗବାସ ॥
ଯେ ବଚନ ଶୁଣି କୋପ ତାହକୁ କଲି ।
ଶିର ଛେଦିବି ବୋଲି ଖଡ଼ଗ ଉଞ୍ଚାଇଲି ॥୧୦
ବୋଇଲି ପାମରରେ କରିବି ପ୍ରାଣନାଶ ।

ବୋଇଲେ ରଖୁ ଆସି ଉମାର ବିଳାସ ॥
ଶୁଣି ନନ୍ଦୀ କିଶୋର ମୋତେ ଶାପ୍ୟ
ଦେଲା ।
ବାନର ହାଥେ ପ୍ରାଭବ ପାଅସି ବୋଇଲା ॥
ଯେ କଥାକୁ ମୁଇଂ ଅଛଇ ଭୟେ କରି ।
ଆବର ସନ୍ଦେଶକୁ ହୃଦରେ ବିଚାରି ॥
ପ୍ରଥମ ବୟେସେ ମୁଂ ଅଯୋଧ୍ୟାକୁ ଗଲି ।
ଶ୍ରୀରାମ ଉପର ବଂଶେ ଯୁଦ୍ଧ କଲି ॥
ଅରଣ୍ୟେକ ନାମେଣ ସେ ଯେକଇ ନୃପତି ।
ଯୁଦ୍ଧେ ଜିଣି ତାହାର ହରିଲି ବିଭୂତି ॥୨୦
ମରିବାର ବେଳେ ସେ ବୋଇଲା
ନୃପବର ।
ମୋହୋର କୁଳେ ଜନ୍ମହୋଇ ଛେଦୁ
ତୋହୋର ଶିର ॥
ନର ବୋଲି ବାବୁ କଲୁ ଉପହାସ୍ୟ ।
ମାନେବର ହାଥେ ତୁ ହୁଅସି ବିନାଶ ॥
ଯେ ବୋଲ ଶୁଣି ମୁଂ ଚାପୋଡ଼େ ମାଇଲି ।
ମୁକୁଟ କୁଣ୍ଡଳ ସହିତେ ଛିନାଇଲି ॥
ସେ କଥା ହୃଦରେ ବିଚାରଇଂ ନିତି ।
ସେ ବଂଶେ ଶ୍ରୀରାମ ହୋଇଲେ ଉତପତି ॥
ନ ଜାଣିମା ପଣେ ଆଣିଲି ସୀତ୍ୟା ହରି ।
ଅକାରଣେ ତାହାକଇ ଶତ୍ରୁପଣ କରି ॥ ୩୦
ଯେ ହନୁମନ୍ତ ତାହାର ଦୂତ ଅଟଇ ।
ରଘୁନାଥ ଚରଣେ ସୁଗ୍ରୀବର ଖଟଇ ॥
ବାଳୀ ବଳୀଆର ଜଗତେ ବିଦିତ ।
ଅମର ରୁଦ୍ର ବିଷ୍ଣୁ କାହାକୁ ନାହିଂ ଭୀତ ॥
ଦଶରଥ ତନୟେ ତାହାକୁ ହେଳେ ନାଶ
କଲା ।
ସେକଥା ଜାଣି ମୋର ମନରୁ ଭ୍ରାନ୍ତିଗଲା ॥
ନରବାନର ମୋହୋର ବଇରି ।
ଯେହାନ୍ତ ବାବୁରେ ଓପ୍ରୋଧ ନକରି ॥
ଯେମନ୍ତ ମରଇ ତେମନ୍ତ କରି ମାର ।
ସେ କଥାକୁ ବାବୁରେ ଆନ ନବିଚାର ॥୪୦
ପିତା ପୁତ୍ରଙ୍କର ଗୁପତ ଭାଳେଣି ।

ଅସ୍ଥାନର ଲୋକେ ନ ପାରିଲେ ଜାଣି ॥
ଯେଥୁଅନନ୍ତରେ ଦଶାନନ ରାୟେ ।
କୋପମୁଖ କରି ମାରୁତିକି ଚାହେଂ ॥
ପ୍ରଶସ୍ତକୁ ବୋଇଲା ହେଳା ତୁ ନକର ।
ଯେମନ୍ତ ପାର କପିକି ତେମନ୍ତ କରି ମାର ॥
ଯେହାର ଜୀଇଂଥିଲେ ହୋଇବ ବହୁତ ମନ୍ଦ ।
ପ୍ରଶସ୍ତ ବୋଇଲା ଶୁଣ ତୁ ଦଶକନ୍ଧ ॥
ଖଡ଼ଗ ନ କାଟଇ କାଣ୍ଡ ନ ଫୁଟଇ ।
କି ଜାଣି ମର୍କଟର ବଜ୍ର ତନୁ ଅଟଇ ॥୫୦
ଅନେକ ପ୍ରକାରେ ମାଡ଼ ମରାଇଲି ।
ଛେଲ କୋନ୍ତ ନାରାଜେ ହଣାଇଲି ॥
ମଲା ପ୍ରାଏ ଯେହ୍ନେ ଆଲିଜିଆ ପଡ଼ିଥିଲା ।
ଯେଥକୁ ଆଣିଲେ ପୁଣ ଉଠିଣ ବସିଲା ॥
କେବେହେଂ ନ ମରଇ କରିବା କିସ ବୁଦ୍ଧି ।
ବାନ୍ଧିଣ ପକାଇବା ଲବଣ ମଉଦଧି ॥
ତେମନ୍ତେ ମୃତ୍ୟୁ ନୋହିଲା ତାହାକୁ ।
ଗୁପତେ ଆଶ୍ରେ ଯେ କରିଛି କାହାକୁ ॥
ଯେ ବଚନ ଶୁଣି ବୋଲଇ ହନୁମନ୍ତ ।
କି କି ବିଚାରୁ ତୁ ମନ୍ଦୋଦରୀ କାନ୍ତ ॥୬୦
ବିବିଧ ପ୍ରକାରେ ମାଡ଼ ମରାଇଲୁ ।
ଯେତେ ଦଣ୍ଡେଣ ପୁଣି ସନ୍ତୋଷ ନୋହିଲୁ ॥
ପ୍ରାଣ ଘେନି ମୋହୋର କି ସୁଖ ପାଇବୁ ।
କେବଣ ଭୋଗ୍ୟ ମୋହୋର ଛଡ଼ାଇ ଘେନିବୁ ॥
ମୁହିଂ ସେ ବାନର ଅଟଇ ପଶୁଜାତି ।
ଶ୍ରୀରାମ ମୋତେ ଯେ ଦେଖିକଲେ ପ୍ରୀତି ॥
ଭାରିଯା ତାହାର ତୁ ଆଣିଲୁ ଚୋରାଇଂ ।
ବିରହେ ଭେଟନ୍ତ ସେ ଜାନକୀର ସାଇଂ ॥
ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଲେ ।
ବାଳୀ ନୃପତିକି ପ୍ରାଣେ ବଧ କଲେ ॥୭୦
ରିକ୍ଷ ମରକଟ ସଇନି ସଙ୍ଗେ ଘେନି ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ଭାଇ ବେନି ॥

ଚାରିଦିଗକୁ ଯେ ପେଷିଲେ ରାମଦୂତ ।
ଦକ୍ଷିଣକୁ ଅଙ୍ଗଦର ସଙ୍ଗେ ଜଣ ସାତ ॥
ସେମାନେ ରହିଲେ ସମୁଦ୍ର କୂଳେ ଯାଇ ।
ମୁହିଂ ଅଇଲି ସୀତ୍ୟା ଖୋଜିବାର ପାଇଂ ॥
ଶଏ କ୍ରୁଣ ସମୁଦ୍ର ତରିଲଇଂ ହେଳେ ।
ବନ୍ଧନ ପଡ଼ିଲି ମୁଂ କର୍ମର ଅବଳେ ॥
ହାଣିଲ ମାଇଲ ବିନ୍ଧିଲ ନାରାଜ ।
ପ୍ରାଣ ଘେନିବ ବୋଲି ବିଚାରୁଅଛ ଆଜ ॥୮୦
ନିଶ୍ଚଏଂ ଯେବେ ମୋତେ କରିବ ପ୍ରାଣ ହତ ।
ଶୁଣ ମୃତ୍ୟୁଭେଦ କହଇ ତୁରିତ ॥
ଯେବଣ କାଳେ ବିଧାତା ବର ଦେଲା ।
ସବୁ ଦେବତାଙ୍କ ପ୍ରାଣ ଏକ କଲା ॥
ମୋହୋର ପିଣ୍ଡରେ ଭଳିଲା ସବୁନେଇ ।
ବଜ୍ରହୁଂ ଆଣ୍ଟ କଲା ଶ୍ୟରୀର ମୋର ଛୁଇଂ ॥
ହନୁମନ୍ତ ନାମ ବ୍ରହ୍ମା ମୋତେ ଦେଲା ।
ସେହିଦିନରୁ ମୋହୋର ପ୍ରାକର୍ମ ବଢ଼ିଲା ॥
ବଳେ ଉତକର୍ମ ହୋଇଲି ମୁଂ ଯହୁଂ ।
ଋଷିଙ୍କର ମଢ଼ିଆ ଭାଙ୍ଗିଲଇଂ ତହୁଂ ॥୯୦
ଜାଣି ଋଷିଗଣ ଶାପ୍ୟ ମୋତେ ଦେଲେ ।
ପ୍ରଚଣ୍ଡ ଅଗ୍ନିରେ ଦହିଜ ହୁଅସି ବୋଇଲେ ॥
ଆନ ପ୍ରକାରେଣ ମୃତ୍ୟୁ ତୋତେ ନାହିଂ ।
ଲାଙ୍ଗେଣ ବସ୍ତ୍ର ବେଢ଼ାଅ ମୋତେ ନେଇଂ ॥
ଅଭଗଂ ଦେଇଣ ଜାଳିବ ଅନଳ ।
ତେବେ ସେ ମରିବ ଅଛଇ କର୍ମଫଳ ॥
ଲାଙ୍ଗୁଡ଼ ବ୍ୟାଧି ଅଛି ମୋର ତହିଂ ।
ଲୁଗା ଲଗାଇଲେ ସେ ବଢ଼ଇ ବଡ଼ ହୋଇ ॥
ତହିଂକି ତୁ ଯେବେ ଭିଆଇପାରୁ ବାସ ।
ତେବେ ସେ ଏ ଦେହ ହୋଇବ ମୋର ନାଶ ॥୧୦୦
ସାତ ଦଉଡ଼ି ଗୋଟା ବାନ୍ଧିଅଛୁ ଭିଡ଼ି ।
ହଲିଚଲି ନ ପାରଇଂ ଆଣନ୍ତି ଉଛୁଡ଼ି ॥
ଆନ ହୋଇଲେ ନ ଥାନ୍ତାନି ପ୍ରାଣ ।

ଯେ ଦୁଃଖରେ ଜୀଇଂଥିବାର ଅଟଇ ଅକାରଣ ॥
ଯେତେ ବୋଲି ହନୁ ଉଭାନ ହୋଇ ଶୋଇଂ ।
ଆଖି ନେଉଟାଇଂ ବୋଲଇ ଆଇଂ ଆଇଂ ॥
ଆସ୍ଥାନକୁ ଚାହିଂ ବୋଲଇ ବେଗେ ମାର ।
ଶୁଣିଣ ଖଦ ଖଦ ହସଇ ଦଶଶିର ॥
ପ୍ରଶସ୍ତ ସେନାପତିକି ଚାହିଂଣ ବୋଇଲା ।
ମୃତ୍ୟୁଭେଦ କପି ଯାହା ସେ କହିଲା ॥୧୦
ଯେଣେ ସେ କପି ମୃତ୍ୟୁ ହୋଇବ ନିଅତ ।
ମିଛ ନ କହନ୍ତି ଶ୍ରୀରାମର ଦୂତ ॥
ଅଣାଅ ବସ୍ତ୍ର ହୋ ବେଢ଼ାଅ ବେଗେ ନେଇ ।
ତଇଳ ପାଡ଼ି ଅଗ୍ନି ଦିଅତୁ ଲଗାଇ ॥
ଆଗ୍ୟାଂ ପାଇଣ ଭଣ୍ଡାର ଅଧିକାରୀ ।
ଦୁଇ ସହସ୍ର ପାଟ ଅଣାଇଲା ଶାଢ଼ୀ ॥
ଦେଖିଣ ଆଗ୍ୟାଂ ସେ ଦେଲେ ପ୍ରତାପୀ ଲଙ୍କେଶ୍ୱର ।
ଯାହା ବୋଇଲା କପି ତାହା ବେଗେକର ॥
ଜଗତୀରୁ ଓହ୍ଲାଇ ପ୍ରଶସ୍ତ ବୀର ଗଲା ।
ହନୁମନ୍ତକୁ ଚାହିଂ ବଚନ ବୋଇଲା ॥ ୨୦
ଦିଅସି ଲାଙ୍ଗ ତୋହୋର ବେଗ କାଢ଼ି ।
ବିବିଧ ବସ୍ତ୍ରେଣ ଯେ ଆଣିଲା ଅଛି ଶାଢ଼ୀ ॥
ଯେ ବସ୍ତ୍ରମାନ ସକଳ ଭୋଗ୍ୟ କର ।
ଦିଅସି ଲାଙ୍ଗ ବେଢ଼ାଇଂ ଆନ ନ ବିଚର ॥
ଶୁଣି ହନୁମନ୍ତ କପୋଳେ ଦେଇ ହସ୍ତ ।
କାନ୍ଦି ବିଚାରଇ ରଖ ହୋ ବିଧାତ ॥
ଯେ କର୍ମ ଯେବେ ମୁଂ ଅର୍ଜିଅଛି ପୂର୍ବେ ।
ଋଷିଙ୍କର ମଢ଼ିଆ ଭାଙ୍ଗିଲି ମଉଗର୍ବେ ॥
ତହିଂର ଶାପ୍ୟଫଳ ହୋଇଲାକ ଆସି ।
କିମ୍ପା କହିଲି ହୋ ବୋଲଇ ନିବେଶି ॥୩୦
ପୁଣି ବିଚାରଇ ଯେ ଦେହ ପଛେ ଯାଉ ।
ଯେତେଡ଼େ ବଡ଼ ଦୁଃଖେ ଦେହ ମୋ ନଥାଉ ॥
ବେକ ମୁଣ୍ଡ କାଢ଼ି ନୁଆଁଇ କିଛି ।

ପାହୁରାଣୀର ଘାୟେ ଦେହ ବଥାଉଂଣ ଅଛି ॥
ମୂଷଳର ଘାୟେ ଦେହ ହୋଇଲାନି ଚୂନା ।
ପୋଡ଼ି ନଦେଲେ ମୁଂ ଯୁଗତେ ମଲି ସିନା ॥
ପ୍ରଶସ୍ତ ବୋଇଲା ତୁ ନୁହସି ବିମୁଖ ।
ଲାଞ୍ଜ ବଢ଼ାଇଂଣ ଦଅ ପବନର ସୁତ ॥
ଶୁଣି ହନୁମନ୍ତ ଉଠିଣ ବସିଲା ।
ଆଜ ସେ ମରିବି ବୋଲିଣ କହିଲା ॥ ୪୦
ପଛ କତିକି ଲାଞ୍ଜ ଦେଲା ମେଲି ।
ଉପରକୁ ଚାହିଂ ଦଇବ ଦଇବ ବୋଲି ॥
ଶୁଣି ଦଇତ୍ୟବଳ ହୋଇଲେ ହରଷ ।
ମାରୁତିର ଲାଞ୍ଜେ ବେଢ଼ାଇଲେ ବାସ ॥
ସହସ୍ରେକ ପାଟ ଗୁଡ଼ିଆନ୍ତି ଶାଢ଼ୀ ।
ଉଗୁଳିଣ ଲାଞ୍ଜ ଦିଶିଲା ହାଥ ଚାରି ॥
ରାବଣ ବୋଇଲାରେ ଆହୁରି ବସ୍ତ୍ର ଆଣ ।
ଶୁଣିକରି ଲୁଗା ଆଣନ୍ତି ଦତ୍ୟଗଣ ॥
ଶତେ ଖଣ୍ଡ ଯେ ଅଣାଇଲା ସରୁ ଶାଢ଼ୀ ।
ଯହୁଂ ଉଗୁଳି ଲାଞ୍ଜ ଦିଶିଲା ହାଥ ଚାରି ॥୫୦
ତହିଂକି ଭଳି କରି ଭିଆଇଲେ ବାସ ।
ଦେଖି ହନୁମନ୍ତ ହୋଇଲା ହସ ହସ ॥
ବୋଇଲା କି ରାଢ଼ରେ ଅଟୁସି ରାବଣ ।
ଜାଣିଲି ତୋହୋରରେ ଅଦାତ୍ରୀକ ପଣ ॥
ଜଗତ ସଂସାରେ ଦୂତ ଅଟଇ ଅବଧ୍ୟ ।
ଅବଧ୍ୟ ବଧିବାକୁ ତୁ କରିଅଛୁ ସଧ ॥
ମୁହିଂ ଯେବେ ଶତ୍ରୁଅଟଇ ତୋହୋର ।
ଯେ ସେ ମୃତ୍ୟୁ ଅଛଇ ମୋହୋର ॥
ଯେଣେ ସେ ମରିବି ସେ କଥା କହିଲି ।
ପ୍ରାଣ ଯିବାବେଳେ ନିସତ ନୋହିଲି ॥୬୦
ତୁ କିଂପା ଲୁଗାକୁ କରିଅଛୁ ସୋଗ ।
ମୋହୋର ଯେଠାରୁ ସରିଯିବଇଂ ଭୋଗ ॥
ଗଲା ଦର୍ବ୍ୟନ୍ତ ପାଇବ ତୁମ୍ଭେ ପୁଣି ।
ମୋତେ ପୁଣ କେ ଜୀଆଇଂ ଦେବ ଆଣି ॥
ଯେ କଥା ନ ବିଚାରୁ ଆୟେକୁ ଲୋଭ
କରୁ ।
ପ୍ରାଣେ ମରିବି ମୁଂ ଯେମନ୍ତ ନ ବିଚାରୁ ॥

ଶୁଣି ଲଙ୍କପତି ଦେଲାକ ଆଦେଶ ।
ଅଣାଅରେ ଯେତେକ ଅଛଇ ମୋହୋର
ବାସ ॥
ଆଗ୍ୟା ପାଇଂଣ ଭଣ୍ଡାର ଅଧିକାରୀ ।
ସହସ୍ରେକ ଖଦି ଅଣାଇଲେ ଶାଢ଼ୀ ॥ ୭୦
ଲାଞ୍ଜେଣ ବେଢ଼ାଇଲେ ଅତି ଯତ୍ନ ମତେ ।
ଉଗୁଳି ଲାଞ୍ଜ ପୁଣି ଦିଶିଲା ଚାରି ହାଥେ ॥
ପୁଣ ବସ୍ତ୍ର ଯାଇଂ ଆଣନ୍ତି ଦଇତ ।
ବିଚିତ୍ର ପାଟନ୍ତ ନେତନ୍ତ ଯୁଗତ ॥
ପୁଚ୍ଛ ଗୁଡ଼ିଆନ୍ତେ ନ ଅଣ୍ଟଇ ଆଉ ।
କୋପେ ଆଗ୍ୟାଂ ଦେଲା ଯେ ନୃପତି
ବିଂଶବାହୁ ॥
ଯେତେ ବଇତମ ତଡ଼ପ ମୋହୋର ଅଛି ।
ଚାଙ୍ଗଡ଼ା ଘରୁ ତାକୁ ଅଣାଅ ତୁ ବାଛି ॥
ମୁଦୁସୁଲୀମାନେ ଅନ୍ତେଶ୍ଵରେ ଯାନ୍ତୁ ।
ତହୁଂ ପୁରାତନ ବସସ୍ତ୍ର ହିଂ ଆଣନ୍ତୁ ॥ ୮୦
ନଗ୍ର ଦଣ୍ଡୁଆଶୀ କି ରାଇଣ ଆଗ୍ୟାଂ ଦ୍ୟନ୍ତି ।
କୋଟି ଯେ ବସ୍ତ୍ର ତୁ ଦିଅସି ବୋଲନ୍ତି ॥
ଶୁଣିଣ ଦୋସାଧୁ ଗଲାକ ତଡ଼ବଡ଼ି ।
ହାଟବାଟ ଦାଣ୍ଡେ ଲୁଗାନ୍ତ ଉହୁଡ଼ି ॥
ଘରେ ଘରେ ପଶି ବସ୍ତ୍ରମାନ ନେଲେ ।
ଆପଣାର ଦେଶ ଆପଣେ କୂରକଲେ ॥
ନଗ୍ରେ ହାଲହୋଳି କଲେ ହୁରିଜୁରି ।
ଘରେ ଘରେ ଲୋକ ପାରନ୍ତି ବୋବାଳି ॥
କେ ବୋଲଇ ଯେହା ଦେଖିଲାତ ନାହିଂ ।
ଯେ ପାପ ବିଯୋଗ ଥିଲା ପୁଣ କାହିଂ ॥୯୦
ଲୁଗା ବେଢ଼ାଇଲେ କି ଶତ୍ରୁ ହୋଯେ ହତ ।
ଗ୍ୟାଂନ ହାରିଲାନି ବିଶ୍ରବାର ସୁତ ॥
ହାଣିଲ ମାଇଲ ନୋହିଲା କିଛି ତାହାର ।
ତାହାକୁ ବଧିବାକୁ ଅବଧାନ ଲଙ୍କେଶ୍ଵର ॥
ଯେକ ବୋଲଇ ବିମୁଖ କିଂପା ହୁଅ ।
ରାଜାର ଆଗ୍ୟାଂୟେ ବସ୍ତ୍ର କାଢ଼ି ଦିଅ ॥
ଯେଉଂକାଳେ ଯାହା କରିବାନା ତାହା ।
ଯେତେ କାଳେ ବିଧାତା କଲା ଯେବେ
ଏହା ॥

ଯେତେ ବୋଲି ଲୋକେ ହୋଅନ୍ତି ବିକଳ ।
ସପତପୁର ଲଙ୍କା ହୋଇଲା
ହାଲହୋଳ ॥୧୦୦
ଥେଣ୍ଡ ହୁରିଆୟେ ରାଜାର ଲୋକ ହୋନ୍ତି ।
ପର ଆପଣା କିଛି ନ ଜାଣନ୍ତି ॥
ଯେ ମୁଖେ ପଡ଼ନ୍ତି ସେ ସୁଖେ କରନ୍ତି କୂର ।
ନଗ୍ରେ ଉଚାଟଣ କରନ୍ତି ଅପାର ॥
ସେ ବସ୍ତ୍ରମାନ ସବୁ ନବରକୁ ଘେନିଗଲେ ।
କେ ନେଇଂ ଖିଆନିମନ୍ତେ ବନ୍ଧା ଦେଲେ ॥
ଯେକେ ଆରେକେ କରନ୍ତି ତାତସରା ।
କାପଡ଼ିୟେ ଘେନି ପଳାନ୍ତି ପଶରା ॥
ଦୁଇ ଚାରି ଥେଣ୍ଡ ତାହା ଉଛୁଡ଼ନ୍ତି ।
କେ ଯେକ ନେଇଂ ଥୋକାୟେ
ଦିଅନ୍ତି ॥୧୦
ଦୁଇ ଘଡ଼ିଯାୟେ ହୋଇଲା ତହିଂ ଦମ ।
ରହୁ ରହୁ ବୋଲି ଡେଙ୍ଗୁରା ଦେଲା ଡମ ॥
ସମସ୍ତ ବସନ ଯେକ ଠାବ କରି ।
ଭାର ବୋଝେ ବୁହାଇଂ ନେଲେ ଲୋକେ
ଧରି ॥
ରାବଣର ଛାମୁରେ କଲେ ନେଇଂ ତାହା ।
ଦେଖିଣ ସନ୍ତୋଷ ହୋଇଲା ବିଂଶବାହା ॥
ଝଡ଼ା ମୁଦୁସୁଲୀ ଧାଇ ପରିବାରୀ ।
ଅନ୍ତେଶ୍ଵର ଭିତରୁ ଆଣିଲେ ବହୁତ ଶାଢ଼ୀ ॥
ଚାଙ୍ଗଡ଼ା ମଇକାପ ବଇତମ ତଡ଼ପ ମାନ ।
ଗଣାଇଣ ଦେଲା ନେଇଂ ରାଜାର
ସନିଧାନ ॥୨୦
ଭଣ୍ଡାର ଅଧିକାରୀ ଭଣ୍ଡାରୁ ଲୁଗା ଆଣି ।
ଦେଖିଣ ଉଷତ ହୋଇଲା ବିଂଶପାଣି ॥
ହନୁମନ୍ତ ଲାଞ୍ଜ ଅଛଇ ବଢ଼ାଇଂ ।
ଦଇତେ ଗୁଡ଼ିଆନ୍ତି ମାହାସୁଖ ପାଇଂ ॥
ଯେତେକ ବସ୍ତ୍ର ରୁଣ୍ଡ ଆଣିକଲେ ।
ସବୁ ଶାଢ଼ୀ ତାର ପୁଚ୍ଛେ ଗୁଡ଼ାଇଲେ ॥
ଚାରି ହାଥକୁ ଯେ ନ ଅଣ୍ଟିଲା ଶାଢ଼ୀ ।
ଦେଖିଣ ଲଜ୍ଜା ସେ ପାଇଲା ଦଶଧାରୀ ॥

ହନୁମନ୍ତ ମାଡ଼ି ବସିଅଛି ତାହା ।
ମାୟା ବୋଲିଣ ନ ଜାଣଇଂ
ବିଂଶବାହା ॥୩୦
ବିମୁଖ ହୋଇଣ ପ୍ରଶସ୍ତ ସେନାପତି ।
ନ ଅଣ୍ଟିଲାମାନଙ୍କରେ ବସ୍ତ୍ର ଗୁଡ଼ିଆନ୍ତି ॥
ହନୁମନ୍ତ ବୋଇଲା ଯେତିକିହିଂ ହୋଉ ।
ଭଲା ରାବଣରେ ନୃପତି ବୋଲାଉଂ ॥
ନାଗୁଂଡ଼ ଖଣ୍ଡକୁ ଭୁଜାଂଇ ନ ପାରିଲୁ ବାସ ।
ରାମ ସଙ୍ଗେ ଯୁଝିବାକୁ କରିଛୁ ମୁହାଂସ ॥
ମୋତେ ସେ ସଂଘାରିବୁ ଯେହା ସେ
ହୋଇବ ।
ବାବୁ ମରଣ ମୋତେ ବିହିଛି ଦଇବ ॥
ନଡ଼ପ ଅଣାଅ ପକାଅ ବେଗେ ଆଣି ।
ମୁହିଂ ସେ ନିରେଖ ଅଟଇ ହୋଇ
ପ୍ରାଣୀ ॥୪୦
ଜୀଇଂଥିବାରୁ ପ୍ରିୟୋଜନ କିସ ।
ବେଗ କରି ମୋତେ କର ପ୍ରାଣନାଶ ॥
ରାବଣ ବୋଇଲା ଦୋସାଧୁକୁ ରାଇଂ ।
ନଡ଼ପ ଅଣାଅ ବେଗେ ତୁମ୍ଭେ ଯାଇଂ ॥
ଶୁଣିଣ ଦୋସାଧୁ ଖର ହୋଇଂଗଲା ।
ତେଲିଙ୍କର ଘରୁ ଅଭଙ୍ଗ ଅଣାଇଲା ॥
ଖୋଜନ୍ତା ଖୋଜଇଂ ବହନ୍ତା ବହି ନେଇଂ ।
କେ ନେଇଂ ଦଶଗିରି ଛାମୁରେଣ ଦେଇଂ ॥
ଲାଙ୍ଗେଣ ଅଭଙ୍ଗ ପାରନ୍ତି ଲୋକେ
ନେଇଂ ।
କେ ବୋଲଇ ମରିବ ଆଜ ପରାଦିନ
ଯେହି ॥୫୦
ଚଇତ ଶୁକଳ ଅଷ୍ଟମୀ ଦିବସ ।
ଶ୍ରୀରାମର ଦୂତ ହୋଇବ ପ୍ରାଣ ନାଶ ॥
ତଡ଼ପ ନ ଅଣ୍ଟିଲାକୁ ହନୁମନ୍ତ ଭାଳି ।
ରାବଣକୁ ଚାହିଂ ବହୁତ ଦେଲାଗାଳି ॥
ତୁ ହୋ ଦଶାନନ କି ଫାଙ୍କ କଥା କହୁ ।
ଦଇତ ଦୁରାତ୍ମା ତେଣୁ ସେ ଗର୍ବ ବହୁ ॥
ଲାଞ୍ଜ ମାତ୍ରକୁ ତୁ ଲାଇଂ ନ ପାରିଲୁ ବାସ ।
ଅଭଙ୍ଗ ନିଲକ୍ଷଣକୁ କରିଛୁ ମୁହାଂସ ॥
ଯେ ଯେ ମାହାରାଜା ହୋଇଂ ଅଟୁ ନେଚ
ଦୃଷ୍ଟି ।
ଯାହାର ବୋଲେ କୁବେର କରଇ
ରତ୍ନବୃଷ୍ଟି ॥୬୦
ତୁ କିଂପା ନଡ଼ପକୁ କରିଅଛୁ ସୋଗ ।
ମୋତେ ତ ଦେଉଅଛୁ ଦୁଃସହ ପରାଭବ ॥
ଶୁଣିଣ ଦଶାନନ ହସିଣ ବୋଇଲା ।
ଯେତେବେଳେ କପି ସତହିଂ କହିଲା ॥
ଭଣ୍ଡାରୁ ଅଣାଅ ମୋହୋର ମୂଳ ପାଗମାନ ।
ଯେତେକ ତଇଳ ଅଛି ମଉଷୋଧି ବିଧାନ ॥
ମାହା ସୁଗନ୍ଧି ସହିତେ ଅଣାଅ ମୋହୋବାଛି ।
ଯେତେକ ନାରାୟେଣୀ ତଇଳ ମୋହୋର
ଅଛି ॥
ତଇଳ ନ ଅଣ୍ଟିଲେ ଘିଅ ଘେନି ଆସ ।
ଯେମନ୍ତେ ଚିନ୍ତଇ ନାଗୁଂଡ଼ର ବାସ ॥୭୦
ଆଗ୍ୟାଂ ପାଇଣ ଭଣ୍ଡାର ଅଧିକାରୀ ।
ଅଣାଇଲା ଟିକଣ ଭାର ବୋଝ କରି ॥
ଦେଖିଣ ଦଶଗ୍ରୀବ ବୋଇଲାକ ପାଡ଼ ।
ଅଗ୍ନି ଜାଳି ଦେଲେ ମରୁ ଯେହୁ ରାଡ଼ ॥
ଶୁଣିଣ ନଡ଼ପ ଘେନିଗଲେ ।
ମାରୁତିର ପୁଚ୍ଛେ ନେଇଂ ଅଭଙ୍ଗ ପାଡ଼ିଲେ ॥
ପ୍ରଶସ୍ତ ବୋଲଇ ଦେବ ଶୁଣ ଲଙ୍କେଶ୍ୱର ।
ତଇଳେ ଲାଙ୍ଗୁଡ଼ ହୋଇଲା ଜରଜର ॥
ଯେବେ କିସ କରିବା ଆଗ୍ୟାଂ ଦିଅ ରାୟେ ।
ମାରୁତି ବୋଇଲା ହୋ କିସ ପୁଛୁ
ତାୟେ ॥୮୦
ଅଣାଅ ହୁତାଶନ ବେଗେ ଦିଅ ଜାଳି ।
ମୋହୋର ମରନ୍ତେ ସରୁ ତୁମ୍ଭର ଶଳୀ ॥
ଶୁଣିଣ ଦଶଗ୍ରୀବ ହସିଣ ହୋଇଲା ।
ଅଗ୍ନି ଆଣି ବେଗେ ନଗାଅ ବୋଇଲା ॥
ତକ୍ଷଣେ ଆଣିଲେ ଜଳନ୍ତା ହୁତାଶନ ।
ଯେସନେକ ସମୟେ ସଭାରୁ ଉଠିଲା
ପବନ ॥
ମର୍କଟ ଚାହିଂ ଯେତେ଼କ କର୍ମ କରି ।
କିଂପା ହୋ ଦଶାନନ ଯେମନ୍ତ ଅଛୁ କରି ॥
ରାବଣକୁ ଚାହିଂ ବୋଲଇ ମରୁତ ।
ଶୁଣ ଦଶଗ୍ରୀବ ବିଶ୍ରବାର ସୁତ ॥ ୯୦
ଯେ କପି ହନୁମନ୍ତ ଅଟଇ ମୋହୋର
ବଳା ।
ବାଳୀ ସୁଗ୍ରୀ ଯେହର ପ୍ରିୟ ଯେ ମଉଳା ॥
କେଶରୀ ତନୟେ ପମାଞ୍ଜନୀ ଗର୍ଭୁଂ ଜାତ ।
ଯେ ମୋହୋର ବୀର୍ଯ୍ୟୁଂ ହୋଇଲା ସମ୍ଭୂତ ॥
ବାଳୀ ନୃପତି ମଇତ୍ର ଅଟଇ ତୋହୋର ।
ଲେଖାୟେ ମଉଳା ତୁ ହୋଇବୁ ଯେହାର ॥
ବିଶେଷେ ମୋହୋର ଆତ୍ମାରୁ ଉତପତି ।
ଯେ କଥା ସହିବାର ହୋ ଅଟଇ ଯୁଗତି ॥
ବାନ୍ଧି ଆଣିଲ ତ ମାଡ଼ ମରାଇଲ ।
ବିବିଧ ପ୍ରକାରେ ଅପରାଧ ବହିଲ ॥ ୧୦୦
ଯେବେ ତୁ ଦୁଃଖ ନ ଦେଅନି ଆଉ ।
ମୋହୋର ବୋଲ କର ବେଳେକ
ଜୀଇଂଥାଉ ॥
ପୁତ୍ର କଷ୍ଟ ମୋତେ ନ ଦିଅ ଲଙ୍କସାଇଂ ।
ଅନେକ ପ୍ରକାରେ ତାକୁ ମୁଂ ଅଛଇ
ଜୀଆଇଂ ॥
ଯେବେ ଯେହାର ଦୋଷ ବେଳେକ
ମୋତେ ଦେବୁ ।
ଯେ ମୋହୋର ଭଗତି ଘେନିଣ ଛାଡ଼ିବୁ ॥
ପବନର ବଚନ ଶୁଣି ବୋଲଇ ବିଂଶକର ।
ଦଣ୍ଡ ସମାର୍ଜଇ ରହ ରହ ସମୀର ॥
ବାନେରୀ ଦେଖି ତୁ ମଦନେ ବଶ୍ୟ ଗଲୁ ।
ବଳବନ୍ତ ପଣେ ରମଣୀ ତାହାକୁ
କଲୁ ॥୧୦୦
ତେଣୁ ସେ ତୋହୋର ଜାତ ଯେ କୁମର ।
ତେଣୁ କରି ମରୁତ ତୁ ସେନେଧକାର ॥
ଅଛୟେ ମୋହୋର ଅଟଇ କେମନ୍ତ ସୁତ ।
ତାହାକୁ ମାଇଲା ତୋ ତନୟେ ହନୁମନ୍ତ ॥
ମୟେ ଦଇତର ଦୋହିତା ମନ୍ଦୋଦରୀ ।

ସେ ମୋହୋର ଅଟଇ ହୋ ବଂଶେକ
ଅଧିକାରୀ ॥
ତାହାର ଗର୍ଭୁ ଜାତ ହୋଇଲା ପଞ୍ଚପୁତ୍ର ।
ଜ୍ୟେଷ୍ଠ ତନୟେ ଅଟଇ ଇନ୍ଦ୍ରଜିତ ॥
କୁମ୍ଭ ନିକୁମ୍ଭ ଦେବଦତ୍ତ ସାନ ।
ଅଛୟେ ନାମେ କୁମର କନେଷ୍ଟ
ନନ୍ଦନ ॥୨୦
ତାହାକୁ ମାଇଲା ଯେ ପାମର କପି ଛାର ।
ହାନି ଅପଚୟେ କିମ୍ପାଇଂ ନ ବିଚ୍ଛର ॥
ଇନ୍ଦ୍ରଜିତ ବୋଇଲା ତୁ ନ ଜାଣୁ ପବନ ।
ସୋଦର ଛଳେ ଦହୁଛି ମୋହୋର
ପଞ୍ଚମନ ॥
ଲେଖା ଲେଖି ସିନା ଅଟଇ ତୋର ସୁତ ।
ଯେଥକୁ ଚିନ୍ତା କିମ୍ପା କରୁଛ ମରୁତ ॥
ମୁଇଂ କେମନ୍ତେ ମୁରୁଛିବି ତେମନ୍ତ ପରା
ଭାଇ ।
ତୁହି ପରିଘାଉଂ ଅଛୁ ପର ପୁଅ ପାଇଂ ॥
ତୁମେ ଦେବତାୟେ କେଉଂକାଳେ ଭଲ ।
ଯେ କଥାଇ ଉପାୟେ ତୁମ୍ଭେ ସିନା
କଲ ॥୩୦
ନୋହିଲେ ମର୍କଟ କାହିଂ ଯେଡ଼େ କର୍ମ
କରି ।
ଶ୍ରୀରାମ ମାନେବ ଆମ୍ଭଙ୍କୁ କାହିଂ ସରି ॥
ଯେ ସବୁ ଭିଆଣ ତୁମ୍ଭର ସିନା କଲା ।
ତୁମ୍ଭରେ ସିନା ଆନେ ଭାଇ ମୋର ମଲା ॥
ଲାଜ ସଙ୍କୋଚ ଦୁଇ ତୁମ୍ଭର ନାହିଂ ।
ତୁ ପରିଘାଉଂଅଛୁ ପର ପୁଅ ପାଇଂ ॥
ତୁ ହୋ ପ୍ରଶସ୍ତ କିମ୍ପାଇଂ କରୁ ହେଜ ।
ବେଗ କରି ନେଇ ଅନଳ ଯେ ଜାଳ ॥
ତୁହି ବଥାଇତ ପରାୟେ ହୋଇଂ ରହି ।
ଯେହା ସଙ୍ଗେକି ମିଶାମିଶି ତୁହି ହୋଇ ॥୪୦
ଶୁଣି ପ୍ରଶସ୍ତ ଅଗ୍ନି ଘେନିଗଲା ।
ହନୁମନ୍ତ ନାଙ୍ଗେ ଅଗ୍ନି ଲଗାଇଲା ॥
ତଇଳ ବସ୍ତ୍ର ଘେନି ଅଗ୍ନି ଯହୁଂ ନାଗିଲା ।

ପ୍ରଳୟ କାଳର ହୁତାଶନ ଶିଖା ଜାଣି
ଜଳିଲା ॥
ବ୍ରହ୍ମା, ରୁଦ୍ର, ଇନ୍ଦ୍ର ସକଳ ଦେବେ ଛନ୍ତି ।
ହନୁମନ୍ତ ପୋଡ଼ନ୍ତେ ବିକଳ ହୁଅନ୍ତି ॥
କେହୁ ହାହାକାର କରନ୍ତି ଧର୍ମଲୋକେ ।
କାହାର ନୟନୁ ଅଶ୍ରୁଜଳ ବହୁଅଛି
ଶୋକେ ॥
କେହୁ ଆନନ୍ଦ ହୋଇଂଣ ନୃତ କରି ।
କେବଣ ବାପୁଡ଼ା ବଜାନ୍ତି ଗାଲ ତୂରୀ ॥୫୦
ଗୀତ ବାଦ୍ୟ ବୀଣା ବଜାନ୍ତି ସୁସ୍ୱର ।
ଲଙ୍କାର ଅରଷ୍ଟି ଯାଉ ବହୁତ ଦୂର ॥
ପାମର କପିକି ହୋ ପଡ଼ିଲା ପରମାଦ ।
ଆପଣେ ଆପଣେ କହିଲା ମୃତୁଭେଦ ॥
ମରିବାର ବେଳେ ଶୁଣୁ ବାଦ୍ୟମାନ ।
ବଜାଅ ଦୁନ୍ଦୁଭି ବୋଇଲା ଦଶାନନ ॥
ଶୁଣିଣ ଦତ୍ୟେ ଯେ ବଜାଇଲେ ତୂର ।
ହନୁମନ୍ତ ବୁକୁ କୋଡ଼ଇ ଦୂର ଦୂର ॥
ମଲି ମଲି ବୋଲି ଯେ ଛାଟପଟ ହୋଇ ।
ପ୍ରଚଣ୍ଡ ହୋଇଣ ଯେ ଜଳିଲାକ
ଜୋର ॥୬୦
ଦଉଡ଼ି ଧରିଣ ଯେତେକ ଲୋକ ଥିଲେ ।
ଅଗ୍ନିର ତାପନେ ସେ ଦୂର ହୋଇଗଲେ ॥
ମେଲା ହୋଇଲା ସେ ପବନ କୁମର ।
ମନେ ମନେ ଗୁପତେ ସେ କରଇ ବିଚ୍ଛର ॥
ଯେଥିର ଚରିତ ସକଳ ଜାଣିଲି ।
ବୁଦ୍ଧି ବିଧାନ ପ୍ରତଗ୍ୟାଂ ଠାବ କଲି ॥
ଯେବେ ଯେଥିପାଇଂ କରିବଇଂ କିସ ।
ଶ୍ରୀରାମଙ୍କୁ ନେଇଂ ଦେବଇଂ ସନ୍ଦେଶ ॥
ଅଗ୍ନି ଘେନି ଆଜ ଧ୍ୱଂସିବି ଲଙ୍କପୁରୀ ।
ମାହାରାଜ୍ୟଯାକେ କରିବି ହୁରିକୁରି ॥ ୭୦
ଯେତେ ବୋଲି ବୀର ସାମାନ୍ୟ ରୂପ
ହୋଇଂ ।
ଗଳାରୁ ଫାଶୀ ଯେ କାଢ଼ିଲା ହୁଗୁଳାଇ ॥
କର ଚରଣରୁ କାଢ଼ିଲା ଧାତିକାର ।

ରାବଣକୁ ଚାହିଂ ହସଇ କପିବୀର ॥
କି ହୋ ଦଶଗ୍ରୀବ ଯେସନ କୃତ କଲୁ ।
ଶ୍ରୀରାମର ଦୂତକୁ ମାରିତ ବିଚାରିଲୁ ॥
ଜଗତେ ବୋଲନ୍ତି ଚାର ଅଟଇ ଅବଧ୍ୟ ।
ଅବଧ୍ୟ ବଧିବାକୁ ମନେକଲୁ ସଧ ॥
ଧର୍ମପଣ ଛାଡ଼ି ଅଧର୍ମକୁ ଗଲୁ ।
ଶ୍ରୀରାମ ଘରଣୀକି ଚୋରାଇଂ ଆଣିଲୁ ॥୮୦
ଖୋଜି ଅଇଲାର ଲୋକକୁ ଯେବେ ମାରୁ ।
ପାପ ପୁଣ୍ୟ ଦୁଇ ବିଚାର ନକରୁ ॥
ଯେମନ୍ତ ବୁଦ୍ଧିମାନ ଶିଖିଲୁ କିମ୍ପାଇଂ ।
ଶରୀରେ ତୋହୋର କି ଧର୍ମ ବିଜେ
କରିନାହିଂ ॥
କେମନ୍ତେ ତୁ ରେ ତରକ କଥାମାନ ଜାଣୁ ।
ସକଳ କଲାର କୃତ୍ୟ ଅଟୁ ସର୍ବ ମଣୁ ॥
ମାୟା ସମୋଦ୍ର ତୁ ଅଟୁସି ରାବଣ ।
ନାନା ବୁଧିମାନ ହୋଇଲା ଅକାରଣ ॥
ଯେବେ ଯେହିକ୍ଷଣି ଯେ ପୋଡ଼ିବି
ଲଙ୍କପୁର ।
ଯେହା ନ ଜାଣୁ ଯେ ବିଶ୍ରବା କୁମର ॥୯୦
ଯେତେ ବୋଲି କପି ବିକର୍ମି କ୍ଷେପି ଗଲା ।
ଜଗତୀ ପିଢ଼ା ଉପରେ ଯାଇଂଣ ବସିଲା ॥
ଲାଙ୍ଗୁରୁ ଅଗ୍ନି ଲାଗିଲା ପୋଡ଼ିଲାକ ଚାଳ ।
ଦଇତ ଦୁରାତ୍ମା ଚାହାଂଇ ଜଳଜଳ ॥
ଜଗତୀରୁ ହନୁମନ୍ତ ମେଢ଼କୁ ଡେଇଂଗଲା ।
କାଚ ଢାଳ ପୁରେ ଅଗ୍ନି ଲଗାଇଲା ॥
ରାବଣ ଶୟନ ମନ୍ଦିରେ ଯାଇଂ ବସି ।
ତହିଂ ହୁତାଶନ ପ୍ରଜ୍ୱଳିତ ଦିଶି ॥
ନାଟପା ମନ୍ଦିରେ ଯେ ବସିଲା ପୁଣ ଯାଇଂ ।
ତହୁଂ ଉଠିଲା ନିଆଂ ବିକରାଳ
ହୋଇଂ ॥୧୦୦
ଯହୁଂ ହୁତାଶନ ଲାଗିଲା ଚଉକତି ।
କର ଯୋଡ଼ି କହଇ ପ୍ରଶସ୍ତ ସେନାପତି ॥
ଭୋ ଦେବ ଲଙ୍କେଶ୍ୱର ଅସୁର କୁଳ ସାଇଂ ।
ମର୍କଟ ମାୟାକୁ ପ୍ରତେ ଗଲୁସି ଗୋସାଇଂ ॥

ଦେଖ ଘରମାନ ପୋଡ଼ଇ ଅବିଚ୍ଛିନ୍ନ ।
ପ୍ରଳୟ ଅଗ୍ନି ଲାଗି ଦହଇ ହୁତାଶନ ॥
ଯେତେ କୁମାର୍ଗ ବୁଧି କପି କଲା ।
ତାହା ମରିବା ଛାଡ଼ି ଯେହା ସେ ଭିଆଇଲା ॥
ଶୁଣି ଲଙ୍କପତି ଆସ୍ଥାନରୁ ଉଠି ।
ଅସୁରୀ ଅସୁର ଦକ୍ଷ କିନ୍ନର ଯେକ
ଗୋଷ୍ଠୀ ॥୧୦
ଜଗତୀ ଉପରୁ ଅଇଲା ଓହ୍ଲାଇ ।
ଦେବଦଇର କରେଣ କର ଦେଇଂ ॥
ବାହାରକୁ ଆସି ଊର୍ଦ୍ଧ୍ୱକୁ ଦେଲା ଦୃଷ୍ଟି ।
ଦେଖିଲା ଧୂମମୟେ ଅନ୍ତରୀକ୍ଷ ସୃଷ୍ଟି ॥
ଅଗ୍ନିକି ଚାହିଂଣ କୋପେ ଆଗ୍ୟାଂ ଦେଲା ।
କି ସେ ବଶ୍ୟାନର ବୋଲିଣ ବୋଇଲା ॥
ତୁ ରେ ପୁରୀ ମୋର କରୁଅଛୁ ଦାହ ।
ମୁହିଂ ସେ ରାବଣେଶ୍ୱର ମୁଖକୁ ମୋର
ଚାହଂ ॥
ଶୁଣିଲା ବଶ୍ୟାନର ଦଶଗ୍ରୀବର ବାଣୀ ।
ତତକ୍ଷଣେ ନିବିଲା ମୁଦୁଗର ପାଣି ॥ ୨୦
ହନୁମନ୍ତ ଦେଖିଲା ନିବିଲା ହୁତାଶନ ।
ଯହୁଂ ଆଗ୍ୟାଂ ଦେଲା ବିଶ୍ରବା ନନ୍ଦନ ॥
ମନେ ମନେ ବିଚ୍ଚର ସେ କରଇ ମାରୁତି ।
ଦଶଗ୍ରୀବର ଯେ ଦେବେ ବଶ୍ୟାବୃତ୍ତି ॥
ଆଗ୍ୟାଂ ପ୍ରମାଣେ ନିବିଲା ବହ୍ନି ।
ଯେବେ ଯେ ମୁଂ ଲଙ୍କା ପୋଡ଼ିବି କାହା
ଘେନି ॥
ଯେତେ ବୋଲି ବୀର ଶ୍ରୀରାମ ସୁମରି ।
ଆପଣାର ଲାଙ୍ଗୁଡ଼ ଦକ୍ଷିଣ କରେ ଧରି ॥
ନିଜ କପାଳେ ଘଷିଲା ତାହା ନେଇଂ ।
ଉଠିଲା ହୁତାଶନ ପ୍ରଜ୍ଜଳିତ ହୋଇଂ ॥ ୩୦
ଯେବଣ କାଳେ ତାକୁ ଦେବେ ବର
ଦେଲେ ।
ଅଗ୍ନି ନେଇଂ ତାର କପାଳେ ଥୋଇଥିଲେ ॥
ନୟନେ ଚନ୍ଦ୍ର ସୂର୍ଯ୍ୟ ନାସାରେ ମରୁତ ।
କର୍ଣ୍ଣେଣ ଗଙ୍ଗା ଯମୁନା ସରିତ ॥

ଶିରେ ପିତାମହ କେଶେ ଭଗବତୀ ।
ଜିହ୍ୱେ ପୁରନ୍ଦର କର୍ଣ୍ଣେ ସରସ୍ୱତୀ ॥
ହୃଦେ ନାରାୟେଣ ବାହା ଦୁଇ ଯମ ।
ଉଦରେ ବସୁମତୀ ନାଭିରେ ବସଇ ଧର୍ମ ॥
ଲାଙ୍ଗୁରେ ବାସୁକୀ କଟିରେ ସଦାଶିବ ।
ଚରଣେ ବରୁଣ ଦେବତା ବସିବ ॥୪୦
କୁବେର ଅଙ୍ଗୁଷ୍ଠି ବିଶ୍ୱଦେବା ନଖ ।
ଅପୂର୍ବ ଅଟନ୍ତି ଦଶନ ମହାତୀକ୍ଷ ॥
ତେତିଶ କୋଟି ଯେ ଦେବତାଗଣମାନ ।
ଯେତେ ପ୍ରକାରେ ସେ ପବନନନ୍ଦନ ॥
ସେ କଥା ହନୁମନ୍ତ ଭଲେଣ ଜାଣଇ ।
ଲଲାଟେ ଲାଙ୍ଗୁ ଘଷି ବ୍ରହ୍ମ ଅଗ୍ନି ଆଣଇଂ ॥
ସେ ଅଗ୍ନି ଘେନିଣ ପୋଡ଼ିଲା ଲଙ୍କପୁର ।
ଦେଖିଣ ରହ ରହ ବୋଇଲା ଦଶଶିର ॥
ରାଜାର ଆଗ୍ୟାଂରେ ସେ ନିଉନ ନୋହିଲା ।
ଅଣଚାଶ ମୂର୍ତ୍ତି ଧରି ପବନ ବହିଲା ॥୫୦
ଲାଗିଲାକ ଅଗ୍ନି ବିକରାଳ ହୋଇଂ ।
ଦଶାନନ ବୋଇଇଂ ଯେ ପବନକୁ ଚାହିଂ ॥
ତୁ ହୋ ପବନ ଅଦିତିର ସୁତ ।
ଯେ ସର୍ବ ଦେବତା ଯେ ତୋହୋର ସାବତ ॥
ହିଂସା କରି ତୋତେ କାଟିଲା ବାସବ ।
ଅମୃତ ପ୍ରସାଦେ ପାଇଲୁ ତୁ ଜୀବ ॥
ଏକଥା ନ ଜାଣି ତୁ ଦେବଙ୍କ ସାଙ୍ଗେ ଯାଉ ।
ମୁହିଂ ତୋହୋର ଗୋତ୍ର ଅଭାବ ମୋତେ
ହୋଉ ॥
ଯେ ତୋହୋର ତନୟେ ହନୁମନ୍ତ ଅଟଇଂ ।
ମାନେବ ତପସୀ ଶ୍ରୀରାମକୁ ଖଟଇଂ ॥ ୬୦
ଯେ ଲଙ୍କାପୁରେ ଆସି ଯେତେ କୃତ କଲା ।
ମଧୁବନ ଭାଙ୍ଗି ମୋ ଅଛୟେ ମାଇଲା ॥
ଯେବେ ମାୟା କରି ଦେଖ ଦହୁଅଛି ପୁରୀ ।
ଅପ୍ରିୟ ହୋଇଲୁ ମୋତେ ତୁହି ଆଜି କରି ॥
ଲଙ୍କା ପୋଡ଼ିବା କାଳେ ବହୁ ଅଣଚାଶ ।
ଯେତେ କାଳେ ମୋତେ ତୁ ହୋଇଲୁ
ଅବିଶ୍ୱାସ ॥

ମରୁତ ବୋଇଲା ତୁ ଶୁଣ ଲଙ୍କସାଇଂ ।
ମୁହିଂ ବହୁଅଛି ତୋହୋର ହିତ ପାଇଂ ॥
ନିବାଇଂ ବିଚାର କରଇ ମନେମନ ।
ଶାନ୍ତି ନୁହଇ ସେ ପ୍ରଚଣ୍ଡ ହୁତାଶନ ॥ ୭୦
ଶୁଣି ଦଶକନ୍ଧ ହୋଇଲା ହରଷ ।
ଉଚେଂଣ ବୋଇଲା ତୋ ପୁତ୍ରକୁ
ଘେନିଆସ ॥
ନ ଜାଣିମା ପଣେ ଯେତେକ ମନ୍ଦ କଲା ।
ତୋହୋର ଦେଖନ୍ତେ ସକଳ ପାର ଗଲା ॥
ଇନ୍ଦ୍ରଜିତ ସଙ୍ଗେ ତାକୁ କରାଇବି ମଇତ୍ର ।
ସୁଖ ଭୋଗ ସମ୍ପଦ ଦେବଇଂ ବହୁତ ॥
ଯେ ତୋହୋର ପୁତ୍ର ସେ ମୋହୋର
ତନୟେ ।
ଅଯୋଧ୍ୟା କଟକେ କରିବି ତାକୁ ରାୟେ ॥
ଆଣ ପବନ ହନୁମନ୍ତକୁ ହକାରି ।
ମୋହୋର ବୋଇଲା ବୋଲି ହନୁମନ୍ତ ହସ୍ତ
ଧରି ॥୮୦
ଇନ୍ଦ୍ରଜିତ ଶପଥ ତାହାକଇ ନ କରିବି କିଛି ।
ପବନ ବୋଇଲା ଶୁଣ ବିଶର୍ବାର ବଛି ॥
ନୁହଇ ଶାନ୍ତି ସେ ନ କରଇ ମୋହୋର
ବୋଲ ।
ଆଗହୁଂ ତାହାକୁ ସେ ଓପ୍ରୋଧ ନ କଲ ॥
ହସ୍ତରୁ ଫିଟିଲେ ପାଇବା ଆର କାହିଂ ।
ଯେହା ଶୁଣି ବୋଇଲା ସେ ମନ୍ଦୋଦରୀ
ସାଇଂ ॥
ନଇଲେଣ ନ ଆସୁ ଗଲେ ସେହୁ ଯାଉ ।
ଯେ ଲଙ୍କାଗଡ଼ ମୋର ଯେମନ୍ତେ ରକ୍ଷା
ହୋଉ ॥
ଭୋ ମରୁତ ମୋତେ କରସି ପ୍ରତିକାର ।
ହୁତାଶନ ନିବିବାକୁ ଉପାୟେ ସର୍ବେ
କର ॥୯୦
ଶୁଣି ପବନ ବହଇ ଖର ହୋଇ ।
ହନୁମନ୍ତକୁ ସାଖା ହୋଇଲାକ ଯାଇଂ ॥
ଅଗ୍ନି ଘେନିଣ ବହିଲା ଅଣଚାଶ ।

ମେଢ଼ ମୋଣ୍ଡପ ଜଗତୀ ହୋଇଲା ବିନାଶ ॥
ଦଶଯୋଜନ ଯେ ଲଙ୍କାର ଆକୃତି ।
ତକ୍ଷଣେ ଧୂମାନ୍ତ ତାହା କରଇ ମାରୁତି ॥
ଆସ୍ଥାନ ନବର ନୃତ୍ୟ ରଙ୍ଗଶାଳ ।
ଦେବାର୍ଚ୍ଚନ ନବର ଦୋହୋରା ଯେ ଆଳ ॥
ରାଣୀହଂସ ପୁର ତୋଟାପୁର ଜଗତୀ ।
ତିନିପୁର ମେଢ଼ ପୋଡ଼ଇ ଚଉକତି ॥ ୧୦୦
ଘୋଡ଼ାଶାଳ ଯେ ଭଣ୍ଡାରଘର ମାନ ।
ପ୍ରଳୟ କାଳ ଜାଣି ଦହଇ ହୁତାଶନ ॥
ଯହିଂ ହନୁମନ୍ତ ବସଇ ପୁଣ ଯାଇଂ ।
ସେ ପୁର ପୋଡ଼ଇ ସନ୍ଦେହ ତହିଂ ନାହିଂ ॥
ନଗ୍ର ପୋଡ଼ିଣ ଯେ ଊର୍ଦ୍ଧକୁ ଉଠିଗଲା ।
ଶତେ ଯୋଜନ କରି ଲାଙ୍ଗ ବଢ଼ାଇଲା ॥
ଲଙ୍କାର ଆକୃତି କି ପାଇଲାକ ପୁଚ୍ଛ ।
ଶୂନ୍ୟେ ରହିଅଛି ଯେ ପବନର ବଛ ॥
କୁମ୍ଭକର୍ଣ୍ଣର ନବର ଇନ୍ଦ୍ରଜିତର ପୁର ।
କୁମ୍ଭ ନିକୁମ୍ଭ ବିଭୀଷେଣର ଘର ॥୧୦
ଧୂମାକ୍ଷ କାକାକ୍ଷ ବିରୂପାକ୍ଷର ବାସ ।
ମହୋଦର ପୁର ପ୍ରଶସ୍ତର ଉଆସ ॥
ଅକଂପନ ତ୍ରିଶିରା ଖର ଧୂଷଣର ପୁର ।
ଅଗ୍ନି ଲାଗିଣ ଯେ ଜଳଇ ଦୁରଦୁର ॥
ସପ୍ତପୁର ଲଙ୍କ ସହସ୍ରେକ ହାଟ ।
ଶତେ ରାଜ ଦାଣ୍ଡ ଦୁଇ ସହସ୍ର ବାଟ ॥
କୋନ୍ଦି ବିକୋନ୍ଦି ତଦନ୍ତ ନ ଜାଣି ।
ଘରେହେଂ ନ ଛାଡ଼ଇ କପିକୁଳମଣି ॥
ସବୁରି ଘରେ ଯେ ଲାଙ୍ଗ ବେଢ଼ାଇଲା ।
ପବନ ସାହା ପାଇଂ ସମସ୍ତ ଦହିଲା ॥ ୨୦
ନଗ୍ର ନରନାରୀ ବିକଳେ ବୋବି ଦ୍ୟନ୍ତି ।
କେହୁ ଆୟେଦାୟେ ଘେନିଣ ପଳାନ୍ତି ॥
କେହୁ ହସ୍ତେ ଲୁଗା ପୁତ୍ରନ୍ତ ହସ୍ତେ ଧରି ।
ପୋଖୋରୀ କୂଳକୁ ପଳାନ୍ତି ଖର କରି ॥
କେ ବୋଲଇ ବାବୁ କେ ବୋଲଇ କକା ।
କେ ଦୋଲଇ ଆଗେ ପୋଢୁ ବିଭ ପକା ॥
କେ ବୋଲଇ ଦାଦୀ କେ ବୋଲଇ ନନା ।
କୋ ବୋଲଇ ମୋତେ ଧରିନେଉ କିନା ॥
କେ ବୋଲଇ ପକାଅ କେ ବୋଲଇ ଆସ ।
କେବଣ ବାପୁଡ଼ା ଚାହାଇଂ ଦଶଦିଶ ॥୩୦
କେ ଆସି ନ ପାରି ଘରେ ପଶି ମଲା ।
କାହାର ତାଟକା ହୋଇଣ ପ୍ରାଣ ଗଲା ॥
କେହୁ ବତାଗୁଳି ହୋଇଂଣ ପ୍ରାଣ ଦେଲା ।
କେହୁ ବାଟ ନ ପାଇଂଣ କୋନ୍ଦିରେ ପଡ଼ି ମଲା ॥
କେ ବୋଲଇ ବାବୁ ପୁଅ ମୋର କାହିଂ ।
କେ ବୋଲଇ କେଣେ ଗଲାମୋ ଗୋସାଇଂ ॥
କେ ବୋଲଇ ମୋହୋର ଜନନୀ ନଇଲା ।
କେ ବୋଲଇ ମୋହୋର ଭାଇ କେଣେ ଗଲା ॥
କେ ବୋଲଇ ଆଉ ଜୀଇଂଅଛି କାହିଂ ।
କେ ବୋଲଇ କେଣିକି ଯିବା ହୋ ପଳାଇଂ ॥୪୦
କେ ବୋଲଇଂ ଲଙ୍କା ବେଢ଼ିଛି ହୁତାଶନ ।
କେ ବାହାର ହୋଇନ୍ତ ଅଛଇ ଭାର୍ଜନ ॥
କେ ବୋଲଇ ଆଜ ମରିବା ନିଅତ ।
କେ ବୋଲଇ ଯେର୍ଣ୍ଣେ ପୂର୍ବର ଅଛଇ ପରାକୃତ ॥
ଯେହେର୍ଣ୍ଣେକ ଯେବେ ପୂର୍ବେ ଅଛଇ ଭବିଷ ।
ଯେଥକୁ ଭାଳିଲେ କାରଣ ହୋଇବାକ କିସ ॥
ଲଙ୍କା ପୋଡ଼ିବା କାଳେ ଆମ୍ଭେହେଂ ମରିବା ।
ଯେତେ ଯୋଗ ପାପ ଅଛି କି ବୁଦ୍ଧି କରିବା ॥
କେ ବୋଲଇଂ ଯେକା ବାନରେକ ଯେହା କରି ।
ଶ୍ରୀରାମ ଅଇଲେକି ରହିବ ଯେହୁ ପୁରୀ ॥୫୦
ଚାରିକତି ସମୋଦ୍ର କେଣେ ପଳାଇବା ।
ରାବଣର ପ୍ରସାଦେ ସମସ୍ତେ ମରିବା ॥
ଯେତେ କାଳ ପରିଯନ୍ତେ ନିଶ୍ଚିନ୍ତ ହୋଇଥିଲୁ ।
ଯେକାବେଳେକେ ତ ଜୀବନ ହରାଇଲୁଂ ॥
କେ ବୋଲଇ ହୁତାଶନ ସବୁହିଂ ନାଶିଲା ।
ପବନ ବହିବାରେ ଦୁଗୁଣ ଭାଜିଲା ॥
କେ ବୋଲଇ ଅଗ୍ନି ପ୍ରଚଣ୍ଡ ବିକରାଳ ।
ଧୂର୍ମର ଘାୟେଂ ନ ଦିଶଇ ଆକାଶ ମଣ୍ଡଳ ॥
କେ ବୋଲଇ ହନୁ ଥାଇଟି ଆକାଶେ ।
ଲାଙ୍ଗ ବେଢ଼ାଇଣ ଥାଇଂ ସେ ଚଉପାଶେ ॥୬୦
କି ଜାଣି ଅନଳ ଗର୍ଜଇ ଘଡ଼ଘଡ଼ି ।
ଯେଡ଼େ ନଗ୍ର ଗୋଟା ଯାଉଅଛି ପୋଡ଼ି ॥
ପୂର୍ବେ ବିଶ୍ୱକର୍ମା ଭିଆଇଲା ଯେହା ।
ସୁକେଶା ମହାତ୍ମା ଅଟନ୍ତାଇ ଯେହାର ନାହା ॥
ଯେବେ ରାବଣର କାଳେ ନାଶ ଗଲା ।
ସୁବର୍ଣ୍ଣମୟେ ଦେଶ ଅଙ୍ଗାର ହୋଇଲା ॥
ଯେସନେକ ବିମୁଖ ହୁଅନ୍ତି ନରନାରୀ ।
ଆକୁଳେ ରୋବନ୍ତି ବିଧାତା ସୁମରି ॥
ଦ୍ରବ୍ୟ ନାଶ ଯାଇଂ ବୁକୁରେ କୋଡ଼ି ହନ୍ତି ।
ମୁର୍ଛି ନ ପାରିଣ କେ ଥୋକାୟେ ଦୂର ଯାନ୍ତି ॥୭୦
ତାତି ସହି ନ ପାରି ଆସନ୍ତି ବାହୁଡ଼ି ।
କେହୁ ଭୂମିରେ କଷଡ଼ି ହୋଇ ପଡ଼ି ॥
କାହାର ପଣନ୍ତେ ଲାଗିଲାକ ଜୋଇଂ ।
ମଲି ମଲି ବୋଲି କେ ବିକଳେ ରାବ ଦେଇଂ ॥
କେଉଁ ବାପୁଡ଼ାର ପୋଡ଼ିଲାକ ପିଠି ।
ପୋଖରୀ କୂଳକୁ ପଳାନ୍ତି ପଡ଼ି ଉଠି ॥
କଅଂଳା ପୁଅ କେ ଆଣି ନ ପାରିଲେ ।
ସେନେହ ଭାବ ଘେନି ମାୟେ ପୋୟେ ମଲେ ॥
କେ ବୋଲଇ ମୋର ଜୀଇଂଥିଲେ ସବୁ ।

କେ ବୋଲଇ ମୋତେ ସମ୍ଭାଳି ନିଅ
ବାବୁ ॥୮୦
କେ ବୋଲଇ ଆଗେ ନାଗିଲାନି ଅନଳ ।
କେଣେ ଯିବା ବୋଲି ହୁଅନ୍ତି ଚହଳ ॥
ଅନେକ ଯୁବତୀ ପୁରୁଷ ହେଂ ମଲେ ।
ଗୋରୁ ବ୍ରାହ୍ମଣ ବହୁତ ନାଶ ଗଲେ ॥
ଦେବତାଙ୍କ ଆଳ ହୋଇଲା ପାଉଂଶ ରାଶି ।
ଥେଣ୍ଡ ଗଣ୍ଡିଆ ଯେ କୂର କଲେ ପଶି ॥
ନ ପୋଡ଼ିବା ଘରମାନ ଭାଙ୍ଗିଣ ପକାନ୍ତି ।
ଯିସ ଦ୍ରବ୍ୟ ଥାଇ ସବୁ ଘେନିଯାନ୍ତି ॥
ଯାହାରର ଯାହାକୁ ଅହନ୍ତା ଭାବ ଥିଲା ।
ବେଳ କାଳ ଜାଣି ସେ ମନ୍ଦ ହିଂ
ଚିନ୍ତିଲା ॥୯୦
ସୁବର୍ଣ୍ଣର ଘର ନବରତ୍ନେ କମ ।
ସୁବାସିଲା ଅଛି କସ୍ତୁରୀ ଚତୁଃସମ ॥
ସେ ଘରମାନ ଯେ ହୁଅନ୍ତି ସର୍ବ ଦହି ।
ଗିରସ୍ତଙ୍କ ବିକଳ କାହାର ବେଳେ ସହିଂ ॥
ପସରାଇତାମାନେ ପସରା ଦେଇଥିଲେ ।
ଘରପୋଡ଼ି ଦେଖି ଆଗତେ ଧାଇଂଲେ ॥
ତାହାଙ୍କର ଯାତେ ନାଗିଲାନି ବାସ ।
ଦୁଇ କତିକି ସେ ହୋଇଲେ ନିରାଶ ॥
କେ ବିତ୍ତର ପାଇଂ ଅଗ୍ନିରେ ଝାସ ଦେଲା ।
କାହାର ହସ୍ତରୁ କେ ନେଡ଼ାୟେ
ମାରିନେଲା ॥୧୦୦
ବାପ ପୁଅକୁ ଘେନି ପଳାଇ ଯାଉଂ ଯାଉଂ ।
ଆଗରେ ନିଆଂ ଅଛି ଯିବ ଆର କାହୁଂ ॥
ପୋଡୁଣ ଅଛି ଯେ, ହସ୍ତୀ ଘୋଡ଼ାଶାଳ ।
ଫିଟିଣ ବିକଳେ ଯେ ବୁଲନ୍ତି ମାଳ ମାଳ ॥
ଓଟ ଗଧ ମଇଂଷି ମଞ୍ଜାରୀ ବହୁତ ।
ପକ୍ଷୀ ଜନ୍ତୁମାନେ ହୋଇଲେ ଅନେକ ହତ ॥
ପାଚେରୀ ଡେଇଂନ୍ତ ନ ପାରିଲେ ଯାଇଂ ।
ଦ୍ୱାର ବାଟେ ସେ ପଶନ୍ତି ଆହାର ଖାଇଂ ॥
ଅଯାଗେଣ ଅଗ୍ନି ନାଗିଲା ଚଉକତି ।
ପଳାଇ ନ ପାଇଣ ହୋଇଲେ ନିପାତି ॥୧୦

ଚନ୍ଦନ ଅଗର ଯେ ପୋଡ଼ନ୍ତି ଅପାର ।
ଯୁଆଦ ଶାଳେଆ ମଇଂଷି ଶୟେମ୍ବର ॥
ମୃଗ ବାହୁଟିଆ ଶ୍ରୀକାଳ ହରିଣ ।
ଅଜା ମେଷ ଶାରୀ ଶୁଆ ରଣଭଣ ॥
ପୁଷ୍ୟ ତୋଟାମାନେ ସର୍ବେ ଗଲେ ଜଳି ।
ଆମ୍ବର ସୁସ୍ୱାଦ ଯେତେକ ଥିଲେ ଫଳି ॥
ସେହି ସହିତେ ହୋଇଲେ ଭସ୍ମରାଶି ।
ମାନିନ୍ତି ଗଉରୋବ ଏକ ସ୍ଥାନେ ବସି ॥
ଗ୍ୟାଂନ ହରାଇଲେ ଲଙ୍କାର ନରନାରୀ ।
କୋଳାହଳ ନାଦ ତିନିଭୁବନେ ପୂରି ॥୨୦
ଧୂମର ଘାୟେଂ ନ ଦିଶଇ ବାଟ ।
ଅମଙ୍ଗଳ ହୋଇଲା ତେଡ଼େ ମାହାରାଷ୍ଟ୍ର ॥
ରାବଣର ବୁଧି ସରିଲା ସକଳ ।
ବାହାରକୁ ଆରମ୍ଭ ଭିତରକୁ ବିକଳ ॥
ବ୍ରହ୍ମାଙ୍କୁ ବୋଇଲା ତୁ ଯେହା ଜାଣିଥାସି
କୁଶପାଣି ।
ଯେକା ଯେହା କଲାଟି ଜନେକ ଦୁଲଣୀ ॥
ଦୟା କରିଣ ଉପଗାର କରିଥିଲି ।
ସ୍ତିରୀ ଲିଙ୍ଗବଧ୍ୟ ନ କରିବି ବୋଇଲି ॥
ଯେବେ ସେ ଆସି ମୋତେ କଲା ରଣଭଣ ।
ବୁଝିବାନା ବାନର କୁମନ୍ତ୍ର ମାୟାପଣ ॥୩୦
ଗାଆଁ ପୋଡ଼ିଲେ କି ମୋତେ ହୁଅଇ ଜିଣି ।
କିମ୍ବା ଯେ ମୋଡ଼ା ନ ବିଚାରି ମଣି ॥
ଯେବେ ସେ ବୁଝିବାନା ଯେହାଙ୍କର ଆଣ୍ଡ
ପଣ ।
ମୋହୋର ଛାମୁରେ ମିଳି ଯେବେ କରିବ
ରଣ ॥
କାଲି ଶ୍ରୀରାମକୁ ଆଣିମଇଂ ଧରି ।
ସୀତୟା ଛାମୁରେ ପକାଇବି ମାରି ॥
ବାଳୀର ଶତ୍ରୁ ଯେ ମୋହୋର ବଇରି ।
ଯେତେ ବୋଲି ଶିର ଝୁଣଇ ଦଶଶିରି ॥
ଇନ୍ଦ୍ରକୁ ବୋଇଲା ତୁ ଶୁଣ ଶଚୀସାଇଂ ।
ଚାରିମେଘ ଘେନି ତୁ ବୃଷ୍ଟ କର ଯାଇଂ ॥୪୦
ଯେମନ୍ତ ନିବଇଂ ପ୍ରଚଣ୍ଡ ଅନଳ ।

ପବନ ଦେବତା ତୋତେ ହୋଇଥିବ ବଳ ॥
ଯେମନ୍ତେ ରକ୍ଷା ଯେ କର ଲଙ୍କା ଭୂଇଂ ।
ବିଳମ୍ବ ନ କର ଦେଖ ଘର ପୋଡ଼ିଯାଇଂ ॥
ଶୁଣି ସ୍ୱର୍ଗପତି ଚାରିମେଘନ୍ତ ଘେନି ।
ଆକାଶ ମଣ୍ଡଳକୁ ଗଲା ସସ୍ରଯୋନି ॥
ଶୂନ୍ୟେଣ ରହି ଯେ ମେଘନ୍ତି ଆଗ୍ୟାଂ
ଦେଲା ।
ବରଷି ଶୀତଳ ଲଙ୍କ କରସି ବୋଇଲା ॥
ଶୁଣିଣ ମେଘେ ଯେ କରନ୍ତି ଗରଜନ ।
ଘୋର ଜଳ ବୃଷ୍ଟି କରନ୍ତି ଅବିଛନ୍ନ ॥୫୦
ବ୍ରହ୍ମା ବୋଇଲା ଶୁଣ ଲଙ୍କେଶ୍ୱର ।
ଯେହିକ୍ଷଣି ତୋର ଦୁସ୍ତର ଯିବ ପାର ॥
ସେ କପି ସଙ୍ଗେ ନ କର ବିଗ୍ରହ ।
ମୋହୋର ବୋଲ କର ସମୟେ ଜାଣି
ରହ ॥
ପୁଷ୍ପେକ ବିବାନେ ବସସି ତୁଯାଇଂ ।
ସେ ଦେବଯାନ ତହିଂ ଅଗ୍ନି ଭୟେ ନାହିଂ ॥
ସୁରଗଣ ଘେନି ମୁଂ ଯିବି ସ୍ୱର୍ଗପୁର ।
ନ ପୁଣ ଉପଦର୍ପ କରଇ ବାନର ॥
ସେ କଥା ଜାଣି ଯେ ଅଟଇ ନିଅତ ।
ଯଦ୍ୟପି ବାଟେ ଆମ୍ଭେ ଭେଟିବୁ
ହନୁମନ୍ତ ॥୬୦
ପ୍ରବୋଧ କରି ତାକୁ ବାହୁଡ଼ାଇଂ ଦେବୁ ।
ଅଗ୍ନିଭୟେ ଆମ୍ଭେ ନିଚୟେ ଗୁହାଇବୁ ॥
ଲଙ୍କା ପୋଡ଼ିବାକୁ ଚିନ୍ତା ତୁ ନ କର ।
କାଲି ବିଶ୍ୱକର୍ମା ଗଢ଼ିବ ଯେ ପୁର ॥
ଗଢ଼ୁ ଶତେ ଗୁଣେ ହୋଇବ ଅଗୁଳି ।
ଶୁଣି ସନ୍ତୋଷ ଯେ ଦଶଗ୍ରୀବ ମଉଳି ॥
ବିଧାତାକୁ ବୋଇଲା ତୁ ଯାଆସି ବେଗ
ହୋଇଂ ।
କପିକି ପ୍ରବୋଧି ପଠିଆଅ ବାହୁଡ଼ାଇଂ ॥
ମୋହୋର କଟେକ ହୋଇଲା ନାରଖାର ।
ଭୋ କୁଶକେତୁ ମୋତେ ପ୍ରତିକାର
କର ॥୭୦

ଯେଥୁ ଅନନ୍ତରେ ସୁରଗଣଙ୍କୁ ଘେନି ।
ଅନ୍ତରୀକ୍ଷ ମାର୍ଗେ ରହିଲା ପଦ୍ମଯୋନି ॥
ବାଟେ ହନୁମନ୍ତକୁ ରାଇଂଣ ବୋଇଲା ।
ନ ପୋଡ଼ନି ପୁର ବୋଲିଣ ବୋଇଲା ॥
ଯେତେକ କୃତ୍ୟ ଆଜ କଲୁସି ମାରୁତି ।
ଦେଖିଣ ସନ୍ତୋଷ ହୋଇଲି ତ୍ରିପୁତି ॥
ଯେବେ ଉପରକୁ ଯଶ ତୋତେ ନାହିଂ ।
ଉତ୍ତର ମୁଖେ ବୀର ଯାଅ ଶ୍ରୀଘ୍ର ହୋଇଂ ॥
ଲଲାଟୁ ଅଗ୍ନି ଯାହାକଲୁ ତୁହି ଜାତ ।
ଗର୍ଭେ ସଂଘର ହୋ ପବନର ସୁତ ॥ ୮୦
ଆମ୍ଭେ ସେ ଦେବତାଯେ ଆମ୍ଭର ବୋଲ
କର ।
ଯାଅସି ବାହୁଡ଼ି ତୁ ପବନ କୁମାର ॥
ଶ୍ରୀରାମ ଛାମୁରେ ସନ୍ଦେଶ କହ ଯାଇଂ ।
ତେବେଟି ଆସିବେ ରଘୁକୁଳ ସାଇଂ ॥
ରାମର ଅଇଲେ ଅସୁରେ ନାଶ ଯାନ୍ତି ।
ନୋହିଲେ ତ୍ରିଦଶ ଦେବେ କଷ୍ଟ ପାନ୍ତି ॥
ଶୁଣି ହନୁମନ୍ତ ଯୋଡ଼ଇ ବେନି କର ।
ତୁମ୍ଭେ ଦେବତାଯେ ମୋତେ ଦେବ ଯେକ
ବର ॥
ବୋଇଲ ଯେ ଲଙ୍କା ନ ପୋଡ଼ ନିଅତ ।
ନ ପୁଣି ଜାନେକୀ କି ମାରଇ ଦଇତ ॥୯୦
ଶ୍ରୀରାମ ଆସିବା ଯାଏ ରକ୍ଷା କରିଥିବ ।
ଅଗିଆନ ବାପୁଡ଼ା ସେ ଅଟଇ ଦଶଗ୍ରୀବ ॥
ରଘୁନାଥ ଯୁବତୀକି ପକାଇ ନ ପୁଣ ମାରି ।
ହନୁମନ୍ତ ବଚନେ ହସଇ କୁଶଧାରୀ ॥
ତୁ କିଂପା ମାରୁତି ହୋ କହୁ ଯେସନ ବାଣୀ ।
ଜନେକର ଦୋହିତା ଯେ ସଂଯେ
କମଳଣୀ ॥
ଜଳଧି ନନ୍ଦନୀ ଯେ ପୃଥିରୁ ଅବତରି ।
ପ୍ରଜଳିତ ଅଗ୍ନିରୁ ବାହାର ହୋଇକରି ॥
ସେ ସେ ସକଳ ଦେବଙ୍କର ଜନନୀ ।
ଲୀଳା ଅବତାରେ ମାନେବ ତନୁ
ଘେନି ॥୧୦୦

ରାବଣ ନିଲକ୍ଷଣକି ତାହାକୁ ହୋଯେ ମାରି ।
ପୂର୍ବର ଶାପ୍ୟେ ଆଣିଲା ନିନା ଧରି ॥
ଯେଥକୁ ଭ୍ରାନ୍ତି ତୁ ନ କର ମାରୁତି ।
ବେଗ ଯାଇ ବାରତା କହ ରଘୁପତି ॥
ଛଡ଼ମାସ ହୋଇଲା ଅଇଲ ତୁମ୍ଭେ ଦୂତ ।
ବାରତା ନ ପାଇଣ ବିକଳ ରଘୁନାଥ ॥
କ୍ଷଣେ ନ ରହ ତୁ ଯେହିକ୍ଷଣି ଯାସି ।
ଯେତେ ବୋଲି ଅନ୍ତରୀକ୍ଷେ ଗଲେ
ସ୍ୱର୍ଗବାସୀ ॥
ଯେଥୁ ଅନନ୍ତରେ ଶୁଣିମା ରସବାଣୀ ।
ଲଙ୍କା ଦହନ ଦେଖି ଭାଳଇ
ବିଂଶପାଣି ॥୧୦
ପୁତ୍ର ଇନ୍ଦ୍ରଜିତ ବିଭୀଷେଣ କଇ ଚାହିଂ ।
ଆଗ୍ୟାଂ ଦେଲାକରେ ମନ୍ଦୋଦରୀ ସାଇଂ ॥
ସକଳ ସଇନି ଘେନିଣ ତୁମ୍ଭେ ଯିବ ।
ଯେମନ୍ତେ ପାର ସେ ଅଗ୍ନି ନିବାଇବ ॥
ଶୁଣି ମେଘନାଦ ପ୍ରଶସ୍ତ ବିଭୀଷେଣ ।
ସାଙ୍ଗେଣ ବହୁତ ଘେନିଣ ଦତ୍ୟଗଣ ॥
କୁମ୍ଭକର୍ଣ୍ଣର ମନ୍ଦିର ଯେ ବିଭୀଷେଣ ଉଆସ ।
ଇନ୍ଦ୍ରଜିତର ନବର ନିକୁମ୍ଭର ବାସ ॥
ଆବରହିଂ ଯେତେ ଗରିଷ୍ଟ ଲୋକମାନ ।
ବନ୍ଧୁ ବାନ୍ଧେବ ଯେ ସାଧୁ ସରଜନ ॥୨୦
ଯେ ଯାହାରେ ଲୋକେ ଯେ ନିବାନ୍ତି
ଅନଳ ।
ବାମ୍ପି କୂପରୁ ବହିନ୍ୟନ୍ତି ଜଳ ॥
ଆପଣେ ଲଙ୍କେଶ୍ୱର ପୁଷ୍ପେକ ବିବାନେ ।
ସାଙ୍ଗେ ମନ୍ଦୋଦରୀ ସହିତେ ରାଣୀଗଣେ ॥
ବିଷାଦ ହୋଇଂଣ ଅଛନ୍ତି ତହିଂ ବସି ।
ଯେଥୁ ଅନନ୍ତରେ ଯେ ପବନର ଶିଷି ॥
ଦେବତାଙ୍କର ବଚନ ଯେ ଶୁଣିଲାକ ଯହୁଂ ।
ଶୂନ୍ୟେ ଥାଇଂ ଲଙ୍କାକୁ ଦୃଷ୍ଟି ଦେଲା ତହୁଂ ॥
ଦେଖିଲା ପୁର ଯହୁଂ ହୋଇଲା ଭସ୍ମ ରାଶି ।
ଇନ୍ଦ୍ର ଶୀତଳ ନିଙ୍କେ କଲାକ ବରଷି ॥୩୦
ପୋଡ଼ିବାରୁ ଉବୁରା ଯେତେକ ଦ୍ରବ୍ୟ ଥିଲା ।

ବରଷିବାର ଘାଏଂ ସେ ସୋହୋତିରେ
ଗଲା ॥
ମେଢ଼ ମଣ୍ଡୋପ ପବନେ ଗଲେ ଭାଙ୍ଗି ।
ଅନେକ ରାକ୍ଷସ ମଲେ ଅଗ୍ନିରେ ନିମନ୍ତି ॥
ହନୁ ବିଚାରଇ ଯେ ସେ ଲଙ୍କପୁର ।
ଦୂର୍ଗୁଂ ଦେଖି କମ୍ପନ୍ତି ଦେବତାସୁର ନର ॥
ସମୋଦ୍ର ଭିତରେ ଅଚ୍ଛଯେ ଗଡ଼ ଅଟଇଂ ।
ଭଯେଣ ଯେହାକୁ ଦେବଇନ୍ଦ୍ର ଖଟଇ ॥
ଶ୍ରୀରାମର ପ୍ରାସାଦେ ମୁ ଯେକାଯେ ଭସ୍ମ
କଲି ।
ବ୍ରହ୍ମାର ବୋଲେ ଯେବେ ପ୍ରବୋଧ
ପାଇଲି ॥୪୦
ଯିବି ବାହୁଡ଼ି କହିବି ଶ୍ରୀରାମର ପାଶ ।
ଆଜକୁ ଅଇଲାର ହୋଇଲା ଛଡ଼ମାସ ॥
ଯେତେବୋଲି ବୀର ଲାଙ୍ଗୁଡ଼ କରେ ଧରି ।
ବ୍ରହ୍ମାର ବୋଲେ ନିଜ କପାଳେ ସଂଘରି ॥
ଜଠରେ ମାହା ଅଗ୍ନି ସଂଘରିଲା ନେଇଂ ।
ପୁଛ କାଢ଼ି ଦେଖିଲା ଅଗ୍ନିର ଭଯେ ନାହିଂ ॥
ଯେତେକ ବସ୍ତ୍ର ଲାଙ୍ଗେ ବେଢ଼ାଇଂଣ
ଥିଲା ।
ସବୁ ପୁଛରୁ ହନୁ ଛିନାଇ ପକାଇଲା ॥
ସାମାନ୍ୟ ସ୍ୱରୂପ ଧରି ଆକାଶରୁ ଖସି ।
ଯହିଂ ସେ ଅଛଇ ସୀତୟା
ଶୁଭ୍ରକେଶୀ ॥୫୦
ତହିଂ ସେ ହନୁମନ୍ତ ମିଳିଲାକ ଯାଇଂ ।
ଦେଖିଲା ଓଶେକ ବନ ଅଗ୍ନିର ଭଯେ
ନାହିଂ ॥
ସହସ୍ରେ ଅସୁରୀ ମଧ୍ୟେଣ ଦେବୀ ସ୍ୟତୀ ।
ତହିଂ ଯାଇ ପ୍ରବେଶ ହୋଇଲା ମାରୁତି ॥
ଦେଖିଣ ରାକ୍ଷାସୁଣୀ ମନେ କଲେ ତ୍ରାସ ।
ପୁଣତ ଲଙ୍କା ପୋଡ଼ା ଯେଥରେ ପରବେଶ ॥
ସୀତୟାରେ ଶରଣ ପଶିଲେ ଦଇତୁଣୀ ।
ଦେଖି ହସିଲାକ କପିକୁଳମଣି ॥
ଜାନେକୀ ଚରଣେ କଲା ନମସ୍କାର ।

ମନେ ମନେ ଭଷତ ପବନ କୁମର ॥ ୬୦
କରପତ୍ର ଯୋଡ଼ିଣ ବୋଲଇ ବୀରମଣି ।
ଶୁଣସି ଜାନେକୀ ଗୋ ଜଗତ ଠାକୁରାଣୀ ॥
ଯେ ତୋହୋର ସନ୍ନିଧ୍ୟେରୁ ଯେତେବେଳେ ଗଲି ।
କ୍ଷୁଧାରେ ମଧୁବନ ଭିତରେ ପଶିଲି ॥
ସ୍ୱାଦ ପକ୍ୱ ଫଳ ଅଛଇ ବହୁତ ।
ଭୁଂଜନ୍ତେ ସନ୍ତୋଷ ଯେ ହୋଇଲା ମୋହର ଚିତ୍ତ ॥
ରାବଣ ଜାଣି ମୋତେ ଧରାଇଂ ଘେନିଗଲା ।
ବିବିଧ ପ୍ରକାରେ ମୋତେ ମାଡ଼ ମରାଇଲା ॥
କାହାର ବୋଲ ସେ ନ କଲା ଦଇତ ।
ବିଭୀଷେଣ ତିଆରିଣ କହିଲା ବହୁତ ॥୭୦
ପ୍ରଶସ୍ତର ହାଥେ ମୋତେ ହଣାଉଣ ଥିଲା ।
ପୋଡ଼ି ମରିବି ବୋଲି ଅଗ୍ନି ଜାଳିଦେଲା ॥
ପ୍ରାଣର ବିକଳେ ମୁଂ ଡରେ ପଳାଇଲି ।
ଜଗତୀ ଟାଳେ ଯାଇଂଣ ବସିଲି ॥
ତହିଂ ପରଖର ଜଳିଲା ଅନଳ ।
ପୋଡ଼ିଗଲା ତାର ହସ୍ତୀ ଘୋଡ଼ା ଶାଳ ॥
ଆସ୍ଥାନ ନବର ସହିତେ ଜଳିଗଲା ।
ଅନ୍ତେଃପୁର ଯାକ ଅନଳେ ଧଅଂସ ହେଲା ॥
ପାତ୍ର ସାମନ୍ତ ଉଆସ ଗଲା ଜଳି ।
ଶତେ ଯୋଜନ ଲଙ୍କା ହୋଇଲା ହାଇହୋଳି ॥୮୦
ତୋହୋର ପ୍ରସାଦେ ମୁଂ ଅଇଲି ଭଲେ ଭଲ ।
ବହୁତ ଦୁଃଖ ମୋତେ ଦେଲା ଲଙ୍କମଲ ॥
ଯେବେ ଭୋ ମାତ ଗୋ ଯାଉଂଅଛି ମୁହିଂ ।
ଶ୍ରୀରାମଙ୍କୁ ଯେମାନ କହିବଇଂ ଯାଇଂ ॥
ଦିଅସି ଆଗ୍ୟାଂ ଗୋ କ୍ଷଣେହେଂ ନ ରହଇଂ ।
ବହୁତ ତିଆରି କହିଲେ ଦେବୀ ଯେ ମଣାଇଂ ॥
ଦେବତାଙ୍କର ବଚନ କହିବି ରାମର ପାଶ ।
ରାବଣ ମରିବାର ଅଛଇ ଦୁଇମାସ ॥
ସୀତୟାର ମନ ଯେ ହୋଇଲା ଆନନ୍ଦ ।
ଅରୁଣ ପ୍ରକାଶେ ଯେହ୍ନେ ବିକାଶଇ ଅରବିନ୍ଦ ॥୯୦
ଜାଣି ହନୁମନ୍ତ ଶିରେ କର ଦେଲା ।
ରାକ୍ଷସୁଣୀମାନନ୍ତ ଚାହିଂଣ ବୋଇଲା ॥
ସୀତୟାରେ ଶରଣ ନ ପଶନ୍ତ ଯଦି ଆଜ ।
କୋପ ଅଗ୍ନିରେ କରନ୍ତି ଦହିଯ ॥
ଯେବେ ମୋହୋର ବଚନେଣ ଥିବ ।
ଯେ ମାହାସ୍ୟତୀକି ଲୋ ଘଂଚାଳ ନ କରିବ ॥
ଅସୁକାର ବାଣୀ ଲୋ ନ ବୋଲିବ କିଛି ।
ଯେବେ ତୁମ୍ଭର ଜୀବନକୁ ଭୟେ ଅଛି ॥
ତ୍ରିଜଟାକୁ ବୋଇଲା ତୁ ବିଭୀଷେଣର ଦୋହିତା ।
ମୋତେ ସମ୍ଭାଳିଣ କହିଲା ତୋର ପିତା ॥୧୦୦
ଯେକଥା ଶ୍ରୀରାମର ଛାମୁରେ ଜଣାଇବି ।
ନିଶ୍ଚୟେ ଲଙ୍କାରେ ନୃପତି କରାଇବି ॥
ଯେମନ୍ତେ ପାର ଗୋ ସୀତ୍ୟାକୁ ରଖିଥାଉ ।
ମାସକର ମଧ୍ୟେ ଭେଟାଇବି ରାମ ରାଉ ॥
ଯେତେ ବୋଲି ହନୁ ସୀତୟା ପାଦେ ପଡ଼ି ।
ପୁଣି ଉଭା ହୋଇଲା ଯେ ଦୁଇକର ଯୋଡ଼ି ॥
ଜାନେକୀ ବୋଇଲା ତୁ ଶୁଣ ହନୁମନ୍ତ ।
କହିଲେ ନ ସରଇ ମୋର ଚିନ୍ତା ଯେ ଦୁଃଖିତ ॥
ଧର୍ମେ ଅଇଲୁ ବାବୁ ବେଗ ହୋଇଂ ଯାଅ ।
ଯେ ପାପପୁରେ ବାବୁ ଦଣ୍ଡେହେଂ ନ ଥାଅ ॥୧୦
ତୋହୋର ମରିଥିଲେ ବାବୁ ମରନ୍ତି ମୁହିଂ ଆଜ ।
ବାରତା ନ ପାଇଲେ ମରନ୍ତେ ରଘୁରାଜ ॥
ରାମର ମଲେ କି ଲକ୍ଷଣ ବରତି ।
ସୂର୍ଯ୍ୟ ବଂଶେ କଳଙ୍କ ଲଗାନ୍ତୁ ମାରୁତି ॥
ଯଶ କଲୁ ଯେବେ ଯାଅ ଶୀଘ୍ର ହୋଇ ।
ଦୟା କରନ୍ତୁ ତୋତେ ପାର୍ବତୀର ସାଇଂ ॥
ବିଘ୍ନେଶ୍ୱର ଖଣ୍ଡନ୍ତୁ ତୋହୋର ବିଘ୍ନମାନ ।
ଯାଆନ୍ତେ ସାହା ତୋତେ ହୁଅନ୍ତୁ ଭଗବାନ ॥
ପଥେ ଦୁର୍ଗାଦେବୀ କରନ୍ତୁ ତୋତେ ଦୟା ।
ଲକ୍ଷ୍ମୀ ନରସିଂହ ରଖନ୍ତୁ ତୋର କାୟା ॥୨୦
ଯେମନ୍ତେ ପାର ବାବୁ ଶ୍ରୀରାମକୁ ଘେନି ଆସ ।
ରାବଣ କଷ୍ଟ କରିଅଛଇ ଦୁଇ ମାସ ॥
ବୋଇଲା ଶ୍ରୀରାମ ଲକ୍ଷଣ ଦେଖାଇବୁ ।
ନୋହିଲେ ତୁ ମୋହୋର ଘରଣୀ ହୋଇବୁ ॥
ଯେସନେକ କଷ୍ଟ ମୋତେ ଦେଇଂ ଗଲା ।
ତେବେଲୁଂ ମୋର ଜୀବନ ଉଡ଼ିଗଲା ॥
ପାରିଲେ କାରଣ କରନ୍ତୁ ରାମ ଆସି ।
ନୋହିଲେ ରଘୁବଂଶ ହୋଇଲାକ ଧ୍ୱଂସି ॥
ଯେତେବେଳେ ରାବଣ କଟାଳିବ ମୋତେ ।
ନିଶ୍ଚୟେଂ ପ୍ରାଣ ଯେ ହାରିବି ତୁରିତେ ॥୩୦
ଯେ କଥା ସତଟି ଜାଣିଥା ହନୁମନ୍ତ ।
ବେଗ କରି ହନୁ ଆଣ ମୋହୋର କାନ୍ତ ॥
ଦଇତ ଘରୁ ବନ୍ଦୀରୁ ଯେ ମୋତେ ନ୍ୟନ୍ତୁ ।
ଦୋଷ ବିଚାରି ମୋତେ ଛାମୁରେ ଦଣ୍ଡ ଦ୍ୟନ୍ତୁ ॥
ଯେ କଥା ସବୁ ଯାଇଂ ଛାମୁରେ ଜଣାଅ ।
ଦୋଷ ଅଦୋଷ ମୋ ବିଚାରି ଦଣ୍ଡ ଦିଅ ॥
ମଣି ଗୋଟି ଯତ୍ନ କରି ଅଛୁଟିକି ଥୋଇଂ ।
ଦେଖୁଣି କାଳେ ମୋତେ ଶଶୁରେ ଛନ୍ତି ଦେଇଂ ॥
ତାହା କହିଲେଣ ଶ୍ରୀରାମ ପ୍ରତେ ଯିବ ।
ଗୁପତ କହିବୁ ଶ୍ରୀରାମ ସଂପ୍ରତେ କରିବ ॥୪୦
ହନୁ ବୋଇଲା ଜାନେକୀର ବଚନ ଶୁଣି ।
ନେତର ପଣନ୍ତେ ମୁଂ ବାନ୍ଧିଅଛି ମଣି ॥

ଫେଡ଼ି ଦେଖାଇଲା ସତୀ ପ୍ରତେ ଗଲା ।
ବାହୁଡ଼ି ମାରୁତି ଯେ ଅଣ୍ଟାରେ ସାଇତିଲା ॥
ସୀତାୟର ଚରଣେ କରଇ ନମସ୍କାର ।
ଯିବି ବୋଲଇ ପବନ କୁମାର ॥
କାୟା ବଢ଼ାଇଲା ବିଶାଶଏ କୋଶ ।
ଆଢ଼େଣ ଶରୀର ସେ କଲା ଦଶ କୋଶ ॥
ପଚିଶ ଯୋଜନ ସେ ଉପରକୁ ଉଡ଼ିଗଲା ।
ଉତ୍ତର ଦିଗକଇ ମୁତି ବୀର କଲା ॥ ୫୦
ବନଗିରି ପୃଥ୍ୱୀ କମ୍ପଇ ଦଶଦିଶ ।
ଆକାଶେ ସୁରଗଣେ ହୋଇଲେ ହରଷ ॥
ହନୁମନ୍ତ ଶିରେ କଲେ କୁସୁମ ବୃଷ୍ଟି ।
ବେଦପଢ଼ି ଆଶିଷ ଦେଲେ ପରମେଷ୍ଟୀ ॥
ଏଥୁ ଅନନ୍ତରେ ପବନ ତନୟେ ।
ସୁବଳୟା ପର୍ବତ ଶିଖରେ ଆସି ରହେ ॥
ସାମାନ୍ୟ ରୂପ ଧରି ବସିଲାକ ଯାଇଂ ।
ବଚାରଇ ଲଙ୍କାକୁ ଅଇରି ଏ ଭୂଇଂ ॥
ଏଥି ବସିଥିଲେ ଯେ ଲଙ୍କାଯାକ ଦିଶଇ ।
ଏଣେ ସେ ନୃପତିର ସମ୍ପଦ ତୁଟଇଂ ॥୬୦
ଯେବଣ ଦିନେ ରାମ ହୋଇବେ ସିନ୍ଧୁପାରି ।
ମୁହିଂ ବୋଲିବି ଦେବ ଶୁଣ ଚାପଧାରି ॥
ଏହୁ ଗିରିବର ଅଟଇ ମାହାସନ୍ଧି ।
ମଞ୍ଚକଇ ସ୍ୱର୍ଗ ସ୍ୱର୍ଗକଇ ମଞ୍ଚ ॥
ଏଥିରହି ଆମ୍ଭେ କରିବା ସମର ।
ତେବେ ସେ ଧ୍ୱଂସ ଯେ ହୋଇବ
ଲଙ୍କପୁର ॥
ଏସନେକ ବୋଲି ଅବଶ୍ୟ ଜଣାଇବି ।
ରଘୁବଂଶ ନାଥକୁ ପର୍ବତେ ରୁହାଇବି ॥
ଏବେ ରଜନୀ ବଞ୍ଚିବଇ ଏଥ ।
ପ୍ରଭାତେ ଯିବି ମୁଂ ଦୁସହ ଜଳ ପନ୍ଥ ॥୭୪
ନିଶାର କାଳେ ଯେ ନ ଜାଣିମି ଦିଗବାସ ।
ଏତେ ବୋଲି ରହିଲା ଯେ ଶ୍ରୀରାମର ଦାସ ॥
ବିବିଧ ସୁସ୍ୱାଦ ପକ୍ୱଂ ଫଳ ଖାଇ ।
ଗିରିବର ବୁଲି ମହାସୁଖ ପାଇଂ ॥
ଦେବ ନଦୀ ନାମେ ବହଇ ସରିତ ।
ଯେଉଂଦିନ ଲଙ୍କାରେ ଶୁଭ ଦେଲା ବିଧାତ ॥
ସକଳ ଦେବତାଏ ସ୍ନାହାନ ତହିଂ କଲେ ।
ଏଣୁ ସେ ଦେବ ନଦୀ ବୋଲି ନାମ
ଦେଲେ ॥
ପର୍ବତ ଜଳ ସେ ଯେ ଦେଖିଣ ମାରୁତି ।
ଏଥୁଅନନ୍ତରେ ପ୍ରହରେକ ରାତି ॥୮୦
ଘଡ଼ିଏ ବେଳ ଥାଉଂ ଲଙ୍କାରୁ ଅଇଲା
ପାବେନି ।
ସୁବଳୟା ପର୍ବତେ ରହିଲା ଦଣ୍ଡ ତିନି ॥
ପର୍ବତ ବୁଲିଣ ଫଳ ମୂଳ ଖାଇ ।
ଯେସନେକ ସମୟେ ନିଶି ପହରେକ
ହୋଇଂ ॥
ଇନ୍ଦ୍ର ବୃଷ୍ଟିରେ ଯେ ଲଙ୍କା ପୋଡ଼ି ରହି ।
ଉଗ୍ର ତେଜ ଛାଡ଼ି ପବନ ଧୀରେ ବହି ॥
ଚନ୍ଦ୍ର ଉଦେ ହୁଅନ୍ତେ ସୁନ୍ଦର ଆକାଶ ।
ଲଙ୍କାରେ ଗହଳ ଯେ ଶୁଭଇ ଚଉପାଶ ॥
ଅସସ୍ଥା ହୋଇଂ ଯେ ଥିଲେ ସର୍ବଜନ ।
ଦେଖିଲେ ମନ୍ଦିର ଯେ ଦହିଲା
ହୁତାଶନ ॥୯୦
ସଞ୍ଚିଲା ଦ୍ରବ୍ୟମାନ ଗଲେ ସର୍ବନାଶ ।
ବିକଳ ହୁଅନ୍ତି ଦେଖି ଯେ ଯାହାର ବାସ ॥
ଯେସନେକ ସମୟେ ସ୍ୱର୍ଗରେ ଦେବଗଣ ।
ବ୍ରାହ୍ମା ମୁଖ୍ୟ କରି କଲେ ବେହରଣ ॥
ରାବଣର ଲଙ୍କା ଯେ ଦହିଲା ମାରୁତି ।
ବିଷାଦ ହୋଇଅଛି ଅସୁର କୁଳପତି ॥
ଶ୍ରୀରାମ ଅଇଲେ ସେ ହୋଇବ ବିନାଶ ।
ଏବେ ବୁଦ୍ଧି ଆମ୍ଭେ କରିବାନା କିସ ॥
ବ୍ରହ୍ମା ବୋଇଲେକ ବିଶ୍ୱକର୍ମାକୁ ରାଇଂ ।
ରାତ୍ରକେ ଲଙ୍କାଗଡ଼ ଦିଅସି ଭିଆଇଂ ॥୧୦୦
ଗଡ଼ୁଂ ଶତେ ଗୁଣେ ଅଗୁଳି ହୋଇବ ।
ପୂର୍ବରୁ ସଞ୍ଚମାନ ସମସ୍ତ ରହିଥିବ ॥
ଚଉଷଠି ଦିନେ ରାବଣ ସେ ଯିବ ।
ଯେ ପୁରେ ନୃପତି ବିଭୀଷେଣ ହୋଇବ ॥
ସେ ସେ ଭୋଗ୍ୟ କରିବ ବିଚିତ୍ରପୁରେ
ଥାଇଂ ।
ଯେ ପୁରେ ଦଶଗ୍ରୀବର ପ୍ରିୟୋଜନ ନାହିଂ ॥
ନକର ଚିନ୍ତା ତୁମ୍ଭେ ନ ରହ ଦେବଗଣ ।
ଯେ ପୁର ଭିଆଇଲା ଅଛି ବହୁତ କାରଣ ॥
ବିଷ୍ଣୁର ସେବକ ଯେଥି ରାଜ୍ୟ କରିବ ।
ତୁମ୍ଭଙ୍କୁ ସର୍ବଦା ସେ ଅଟଇ ସଦଭାବ ॥୧୦
ତୁ ହୋ ବିଶ୍ୱକର୍ମା ଯିବୁ ଏହିକ୍ଷଣି ।
ରାବଣକୁ ଅକ୍ଷତ ଦେବୁ ନେଇଂ ମଣି ॥
ଚନ୍ଦ୍ରକାନ୍ତି ରତ୍ନ ଏ ସାଗରୁ ଉତପତି ।
ଏହାଙ୍କର ତେଜକୁ ସାମାନ୍ୟ ବୃହସ୍ପତି ॥
ଶରୀରକୁ ଶୀତଳ ଯେ ଶୀତାଂଶୁ ପରାୟେ ।
ଯେ ମଣି ଦେବୁ ନେଇଂ ଦଶଗ୍ରୀବ ରାୟେ ॥
ବୋଲିବୁ ତୋହୋର ଯେ ପୁତ୍ର ହୋଇଲା
ନାଶ ।
ଆବର ବିଶେଷେଣ ଲଙ୍କା ଗଲା ଧ୍ୱଂସ ॥
ଦେବେ ପ୍ରବୋଧିଲେ ମଣି ରତ୍ନ ଦେଇଂ ।
ଯେ ତୋହୋର ଚିନ୍ତା ଛାଡ଼ ଲଙ୍କସାଇଂ ॥୨୦
ଯେସନେକ ବୋଲି କହିବୁ ତାର ପାଶ ।
ରାତ୍ରକେ ନିର୍ମା ତୁ କରିଦେବୁ ସର୍ବବାସ ॥
ଏସନେକ ବୋଲି ଧାତା ନିଜ ପୁର ଗଲା ।
ଲଙ୍କାଗଡ଼କୁ ବିଶ୍ୱକର୍ମା ଯେ ଅଇଲା ॥
ରାତ୍ର ପାଞ୍ଚ ଘଡ଼ିରେ ଭେଟିଲା ଲଙ୍କପତି ।
ଦେଖିଲା ବିସ୍ମୟେ ଯେ ହୋଇଛି ତାର ମତି ॥
ପୁଷ୍ପେକ ବିବାନେ ମାହାଦେଇନ୍ତ ଘେନି ।
ଦିହୁଡ଼ି ଧରିଛନ୍ତି ଲକ୍ଷେକ କାମେନୀ ॥
ଲକ୍ଷେକ ଯୁବତୀ ଯେ ଢାଳନ୍ତି ଚାମର ।
ଲକ୍ଷେକ ଗଣିକା ଯେ ଖଟନ୍ତି ପୟର ॥୩୦
ଲକ୍ଷେକ ନାରୀ ସେ ଯେ ରତ୍ନ ସାଇତନ୍ତି ।
ବସ୍ତ୍ରମାନ ଗଣନ୍ତି ଲକ୍ଷେକ ଯୁବତୀ ॥
ପୋଡ଼ିବାରୁ ଉବୁରି ଯେତେ ଦ୍ରବ୍ୟ ଥିଲା ।
ସବୁ ଦଶଗ୍ରୀବ ବୁହାଇ ଆଣିଲା ॥
ପୁଷ୍ପେକ ରଥରେ ଯେ ଥୋଇଲା ତା ଆଣି ।
ପାଞ୍ଚି ପ୍ରମାଣେ ଧନ ଯୁବତୀମାନେ ଗଣି ॥
ଦଣ୍ଡ ସିଂହାସନ ଚାମର ଶ୍ୱେତଛତ୍ର ।
ଦେବାର୍ଚ୍ଚନ ଦେବଙ୍କ ଅମଳାଣ ବସ୍ତ୍ର ॥

ସ୍ୱାହା ପ୍ରୋକ୍ଷଣୀ ସେ ଯେ ପୋଥିମାନ ।
ଯବ ତିଳ ଘୃତ ସମିଧ ବିଧାନ ॥ ୪୦
ଅଶୀ ସହସ୍ର ନାରଜ କୋଦଣ୍ଡ କମାୟଣ ।
ଖଣ୍ଡା ଛୁରି ଛେଲ ବିବିଧ ଭିଆଣ ॥
ଅବଧାନ ହୋଇଂ ମନ୍ଦୋଦରୀ ସାଇଂ ।
ଯୁବତୀଙ୍କି ବୋଲି ସବୁ ଆଣିଲା ବୁହାଇଂ ॥
ପଦାର୍ଥ ଦେଖି ରାଜା ପ୍ରଶଂସି ବହୁତ ।
ଯେଡ଼େ ମାୟା ମୋହୋର ହୋଇଲାକ ହତ ॥
ଯେକା ହନୁମନ୍ତକେ କଲାକ ନାରଖାର ।
ଭଲ ଭଲ ଯଶ ସେ ଯେ ଲୋକ ଅପାର ॥
ପୁଣି ବିଚାରଇ ଯେ ଯାଉ ଗଲା ବିର ।
ମୋହୋର ଥିଲେ କାଲି ଅରଜିବି ବହୁତ ॥୫୦
ଅଛୟେକୁମାରକୁ ପାଇବଇଂ କାହିଂ ।
ମନ୍ଦୋଦରୀ ବୋଇଲା ଶୋକଭର ହୋଇଂ ॥
ଭୋ ଲଙ୍କରାୟେ ନ ପାଡ଼ ସେ କଥା ।
ଦେ ନ ରହଇ ଚିରୋଇଲେ ଗର୍ଭ କଥା ॥
କନିଷ୍ଠ ତନୟେ ମୋର ଅଛୟେ ଅଟଇ ।
ବାନର ନିଲକ୍ଷଣ ଶିର ତା କାଟଇ ॥
ତୁ ରେ ଅପକୀର୍ତ୍ତି ଅରଜିଲୁ ଆପଣେ ।
ମୁହିଂ ଆଉ ଭାଳିବି କେବଣ କାରଣେ ॥
ରାବଣ ବୋଇଲା ଶୁଣସିରେ ସହି ।
ଯାହା କର୍ମେ ମୋର ଲିହିଅଛି ବିହି ॥ ୬୦
ବାନର ହାଥେ ଯେବେ ଅଛି ମୃତୁଭେଦ ।
ତହିଂକି ମହାଦେଈ ନ କର ମନେ ଖେଦ ॥
ଯେସନ ସମୟେ ଆସି ମିଳିଲା ବିଶ୍ୱକର୍ମା ।
ମଣି ଅକ୍ଷତ ଦେଇଂ ପମନ୍ତିଲା ବ୍ରହ୍ମା ॥
ଦେଖି ଲଙ୍କେଶ୍ୱର ଉଠିଲା ତଡ଼ତି ।
କୋଳ କରି ନେଇଂ ସେ ବସାଇଲା କତି ॥
ବୋଇଲା ବିଶ୍ୱକର୍ମା ଦେଖ ମୋର ଦୁଃଖ ।
ଦଣ୍ଡକେ ସରିଲା ମୋର ଛପନ ଗଣ୍ଡା ସୁଖ ॥
ଏକା କପିକେ ସାରିଲା ମୋହୋର ଶିରୀ ।
ସୁବର୍ନ୍ନମୟେ ଲଙ୍କା ଭସ୍ମ କଲା ମୋହରି ॥୭୦

ସଞ୍ଚିଲା ଦ୍ରବ୍ୟମାନ ଗଲା ସବୁ ନାଶ ।
ପଡ଼ିଲା ଅଛୟେ ମୋ କୁଳ ଗରୁହଂସ ॥
କି ବୁଧି କରିବି ମୁଂ ଯିବି କେବଣ କତି ।
ବିଶ୍ୱକର୍ମା ବୋଇଲା ତୁ ଶୁଣ ଲଙ୍କପତି ॥
ଅଛୟେକୁମାରକୁ ପାଇବୁ ଆଉ କାହିଂ ।
କେବଣହିଂ ଯୁଗତେ ମଲାର ଆସି ନାହିଂ ॥
ନଗ୍ର ପୋଡ଼ିବାକୁ ନ ଭାଳ ତୁ ରାୟେ ।
ଯେହିକ୍ଷଣି କଟେକ ତୋ କରିବି ଉପାୟେ ॥
ରତ୍ନମୟେ ପୁର ଅଟଇ ଲଙ୍କପୁରୀ ।
ତହୁଂ ଶତେ ଗୁଣେ ହୋଇବ ବହୁତ ଶିରୀ ॥୮୦
ରାତ୍ର ପାହିଲେ ସେ ଯେ ଦେଖ ତୁ କାଲି ଦେଶ ।
ଅପୂର୍ବ ହୋଇଂଥିବ ସବୁଙ୍କରି ବାସ ॥
ଯେତେବୋଲି ଚନ୍ଦ୍ରକାନ୍ତି ମଣି ସମର୍ପିଲା ।
ଦେବତାଙ୍କର ସମାଦ ସମସ୍ତ କହିଲା ॥
ବୋଇଲା ସୁରଗଣେ ଅକ୍ଷତ ଦେଲେ ତୋତେ ।
ଅତି ବେଗ କରି ସମର୍ପିଲେ ମୋତେ ॥
ଅଗ୍ନିଦାହ କଲା ଯେ ତୋହୋର ପୁର ।
ଆବର ନାଶିଲା ଅକ୍ଷୟେ କୁମାର ॥
ପ୍ରବୋଧି କହିଲେ ଯେ ମଣିରତ୍ନ ଦେଇଂ ।
ତୁ ଯେବେ ଚିନ୍ତା ନ କର ଲଙ୍କସାଇଂ ॥୯୦
ସଂସାର ରଚଂନା ଯେ ବେଭାର ସମସ୍ତ ।
ଯେମନ୍ତକେ ରାତ୍ର ଦିବସ ଗତାଗତ ॥
ଦୁଃଖ ସୁଖ ଯେହୁ ପୂର୍ବର ଅରଜିଲା ।
ଯେ ଯାହାର କର୍ମ ସେହି ସେ ଭୁଞ୍ଜିଲା ॥
ଅଠାର ଗଣ୍ଡା ତୋର ଅଟଇ ତନୟେ ।
ତେର ଶତ ନାତି ତୋର ଚରଣେ ବିନୟେ ॥
ସାହା ସହୋଦର ଅଛଇ ବହୁତ ।
କିମ୍ପା ନୃପମଣି ବିଷାଦ କରି ଚିତ୍ତ ॥
ଯେ ମଣିର ନାମ ଅଟଇ ଚନ୍ଦ୍ରକାନ୍ତି ।
କଣ୍ଠେ ଭରିଥିଲେ ଦୁରିତେ ନାଶ ଯାନ୍ତି ॥୧୦୦

ମୋହ ବାଧା ନ ଲାଗଇ ନ ବସଇ ଚିତ୍ତ ।
ଶୁଣିଣ ସନ୍ତୋଷ ଯେ ମନ୍ଦୋଦରୀ କାନ୍ତ ॥
ପାଟସୂତା ବଳି ଗୁନ୍ଥିଲାକ ମଣି ।
ଆପଣେ ନିଜ କଣ୍ଠେ ଲମ୍ୱାଇଲା ବିଂଶପାଣି ॥
ତକ୍ଷଣେ ଅଛୟେ ମରିବା ପାଶୋରିଲା ।
ଚିନ୍ତାମାନ ତାର ସବୁ ଛାଡ଼ିଗଲା ॥
ପ୍ରାକର୍ମ ବଢ଼ିଲା ପ୍ରତଗ୍ୟାଂ ବହୁତ ।
ଗଲା କଥାମାନ ପାଶୋରିଲା ଦତ୍ୟ ॥
ବିଧାତା ଉପାୟେ କରିଣ ଭିଆଇଲା ।
ଅକ୍ଷତ ବୋଲି ଅମୋହ ମଣି ଦେଲା ॥୧୦
ଲଙ୍କା ପୋଡ଼ିବାକୁ ବିକଳ ଦଶଗିରି ।
ଆବର ବିଶେଷେ ଅଛୟେ ବୀର ମରି ॥
ପାଞ୍ଚ ସେନାପତି ଜମ୍ୱୋମାଳି ହତ ।
ହସ୍ତୀ ଘୋଡ଼ା ସଇନି ପଡ଼ିଲେ ବହୁତ ॥
ଚିତ୍ତେଣ ରାବଣ ମରିତ ମନ କଲା ।
ବିଘରଇ ଦେଶ ଭାଜିଲେ ହୁଅନ୍ତା ଭଲା ॥
ନୋହିଲେଣ ଶ୍ରୀରାମକୁ ସମର୍ପିବି ସୀତ୍ୟା ।
ଯେହା ଶୁଣି ବୁଦ୍ଧି କଲାକ ବିଧାତା ॥
ଆତ୍ମାଘାତେକେ ଯେବେ ରାବଣ ହୋଇବ ନାଶ ।
ଶ୍ରୀରାମ କେମନ୍ତେ ପାଇବେ ପୌରୁଷ ॥୨୦
ଲଙ୍କାରୁ ମୋଡ଼ା ଯେବେ ଯିବାକ ପଳାଇଂ ।
ସେ ଜୀଇଂଥିଲେ ତ ଆମକୁ ଭଲ ନାହିଂ ॥
ସୀତା ସମର୍ପିଲେ ତ ଦୁଗୁଣ ସମ୍ପଦ ।
ଅବହେଳେ ରାକ୍ଷସ ଘେନିବ ଇନ୍ଦ୍ରପଦ ॥
ଯେବେ ବୁଦ୍ଧି ଯେକ କରିବଇଂ ମୁହିଂ ।
ଅମୋହ ମଣି ସେ ଯେ ଦେବାକ ପଠିଆଇଂ ॥
ଅକ୍ଷତ ଦେଇଣ ଯେ କରିବା ପଉରୋଷ ।
ଯେ ରତ୍ନ କଣ୍ଠେ ଥିଲେ ନୋହିବ ମୁହାଂସ ॥
ଧନସମ୍ପଦ ଯେ ନାଶିଲେ ପୁତ୍ର ଭାଇ ।
ତଥାପି ହୃଦରେ ଚିନ୍ତା ନ ଲାଗଇ ॥୩୦
ତପୀମାନଙ୍କୁ ସେ ଯୋଗାଇ ଯେ ମଣି ।
ଯେବେ ମାସ ଦୁଇ ନାଉ ବିଂଶପାଣି ॥

ସଂଗୋତ୍ର ନାଶିଲେ ନ କରିବ ଖେଦ ।
ତେବେ ସେ ଦଇତ ହୋଇବ ଶିରଛେଦ ॥
ପ୍ରୀତିଲୋକଙ୍କୁ ମଣିବ ଅଣହିତ ।
କୁଇଚ୍ଛା କଥା ଧରିଥିବ ଚିତ୍ତ ॥
ଯେତେ ବଚାରିଣ ବ୍ରହ୍ମା ସୁରଗଣ ।
ମଣି ସମର୍ପିଲେ ଅଛତ କାରଣ ॥
ବିଶ୍ୱକର୍ମା ଆଣି ରାବଣ କରେ ଦେଲା ।
ଲଙ୍କପତି ତାହା କଣ୍ଠେଣ ଲାଇଲା ॥୪୦
ତକ୍ଷଣେ ମୋହ ଯେ ତେଜିଲା ଲଙ୍କପତି ।
ବୋଇଲା ତଇଲୋକେ ମୁଂ ଅଟଇ ନୃପତି ॥
ପୋଡୁ ଲଙ୍କା ପଛେ ନାହିଁ ମୋହୋର ଚିନ୍ତା ।
କାଲି ଧରି ଆଣିମି ବାନର ହନୁମନ୍ତା ॥
ଶ୍ରୀରାମ ଲକ୍ଷଣକୁ ପକାଇବି ମାରି ।
ସୁଖେ ଭୋଗ କରିବି ମୁଂ ଜନେକ କୁମାରୀ ॥
ଚଉଦ ଭୁବନେ ଯେତେକ ଅଛି ବିତ୍ତ ।
କାଲି ଆଣି ଯେଥି କରିବି ସମସ୍ତ ॥
ଅଛୟେକୁମାରକୁ ଭାଳିଲେ ହୋଇବ କିସ ।
ଯେବେହେଂ ଅଛନ୍ତି ମୋର ଯେକସ୍ତରି
ଶିଷ ॥୫୦
ଛପନଗଣ୍ଡା ଯୁଗକୁ ପାଇଂଅଛି ବର ।
ବିଚାରିଲେ ଜୀବନ ଅଛଇ ଅପାର ॥
ଚଉଦ ଗଣ୍ଡା ସର୍ବେ ଯାଇଅଛି ଦିନ ।
ଆବର ତିନିଭାଗ ଅଛଇ ଜୀବନ ॥
ଲେଖିଲେ ଅଧ ବୟେସ ନିହାଇଯାଇ ।
ତିନିକୋଟି ପଚାଶଲକ୍ଷ ମୋହୋର
ମାହାଦେଈ ॥
ଆବର ତନୟେ ତ ହୋଇବ ଅନେକ ।
ଅଛୟେକୁମାରକୁ କିମ୍ପାଇଂ ମୋର ଶୋକ ॥
ବିଶ୍ୱକର୍ମାକୁ ଚାହିଂ ରାବଣ ବୋଇଲା ।
ତୋହୋର ଅଇଲାତ ଭଲହିଂ
ହୋଇଲା ॥୬୦
ଯେବେ ତୁ ରାତକ ଭିତରେ ପୁର ଭିଆ ।
ଯେବେ ତୋର ମୋତେ ଅଛି ଶଉଚ ହିଆ ॥
ଯେବେ ଯାଅ ଯା ତୁ ଇନ୍ଦ୍ରଜିତର ପାଶ ।
ବାହାରେ ହୋଇଂଣ ଅଛଇ ଅବକାଶ ॥
ଶୁଣି ବିଶ୍ୱକର୍ମା ଗଲାକ ତଡ଼ତି ।
ଦେଖିଲା ବସିଅଛି ବିଶ୍ରବାର ନାତି ॥
ବିଭୀଷେଣ ଶୁକ ସାରଣ ପ୍ରଶସ୍ତ ।
ପାତ୍ର ମନ୍ତ୍ରୀ ବେଢ଼ିଅଛନ୍ତି ସମସ୍ତ ॥
ଆଗେ ଜଳୁଅଛି ଦଶ ସହସ୍ର ହୁଳା ।
ପୋଡ଼ିଲାର ଦ୍ରବ୍ୟମାନ କରନ୍ତି
ସଜ୍ଞୋଳା ॥୭୦
ଯେସନେକ ସମୟେ ବିଶ୍ୱକର୍ମା ମିଳି ।
ଧୂରୁଂ ଦେଖି ତାହା ଇନ୍ଦ୍ରଜିତ ଭାଳି ॥
ଭଲଇ ହୋଇଲା ଅଇଲା ବିଶ୍ୱକର୍ମା ।
ଜାଣି ପଠିଆଇଂ ଅଛନ୍ତି ଦେବବ୍ରହ୍ମା ॥
ଯେତେ ବୋଲିଣ ଆସ୍ଥାନୁ ଉଠିଗଲା ।
କୋଡ଼ିୟେ ପହଣ୍ଡ ପାଛୋଟି ଆସି ନେଲା ॥
କୋଳ କରିଣ ବସାଇଲା ନେଇଂ ।
କହଇ କଥାମାନ ଶୋକଭର ହୋଇଂ ॥
ଶୁଣ ହୋ ବିଶ୍ୱକର୍ମା ଭାଇ ମୋର ମଲା ।
ଅକଣ୍ଟେକ ରାଜ୍ୟ ଲଙ୍କା କ୍ଷୟେ ଗଲା ॥୮୦
ସେନା ସେନାପତି ପଡ଼ିଲେ ଅପାର ।
ଯେକା ବାନରେ କେ କଲା ନାରଖାର ॥
ଇନ୍ଦ୍ରଜିତର ବଚନେ ବୋଲଇ ବିଶ୍ୱକର୍ମା ।
ଯେବେ ହାଦେ ମୋତେ ପମନ୍ତିଲେ ବ୍ରହ୍ମା ॥
ରାତକ ଭିତରେ ମୁଂ ଗଢ଼ିବି ଲଙ୍କପୁରୀ ।
ଗତୁ ଶତେ ଗୁଣେ ହୋଇବ ବହୁତ ଶିରୀ ॥
ଚନ୍ଦ୍ରକାନ୍ତି ମଣି ଦେବତାୟେ ଦେଲେ ।
ରାବଣଙ୍କୁ ଅଛତ ଯେହା କରସି ବୋଇଲେ ॥
ସେହୁ ରତ୍ନ ଆଣି ପିତାକୁ ତୋହୋର
ଦେଲି ।
ଦୃଷ୍ଟାନ୍ତର କଥା କହିଣ ପ୍ରବୋଧିଲି ॥ ୯୦
ଅଛୟେ ଲୋଡ଼ିଲେ ପାଇବ ଆର କାହିଂ ।
ଯେ ଲଙ୍କାଗଡ଼ ମୁଂ ଯେ ଦେବଇଂ ଭିଆଇ ॥
ଯେ କଥା ଶୁଣିଣ ଯେ ହରଷ ଲଙ୍କପତି ।
ମୋତେ ବୋଇଲା ଯାଅ ଇନ୍ଦ୍ରଜିତର କତି ॥
ତେଣୁ ଅଇଲି ତୋହୋର ସନ୍ନିଧ୍ୟାନ ।
ଦିଅସି ଆଗ୍ୟାଂ ମୁଂ ରଞ୍ଚିବି ପୁରମାନ ॥
ଆଜ ସେହୁ ଦ୍ରବ୍ୟନ୍ତ ଚିନ୍ତା ତୁ ନ କର ।
ରାତ୍ର ପାହିଲେ ତୁ ଦେଖିବୁ ମାହାବୀର ॥
ଯେବେ ଯେଝାମତେ ଆଶ୍ରମକୁ ଯାଅ ।
ନ ଜାଣିଲା ପ୍ରାୟେକ ହୋଇଂଣ
ଶୋଇଥାଅ ॥୧୦୦
ଦୋସାଧୁ ନ ବୁଲିବ ନ ଜଗିବ ପାହାରୀ ।
ମୁଖ ରାବ ଶବଦ ନ ଶୁଭିବ କାହାରି ॥
ଶୁଣି ଇନ୍ଦ୍ରଜିତ ହୋଇଲା ହରଷ ।
ଘୋଷଣ ଦିଆଇଲା କଟେକ ଚଉପାଶ ॥
ଯେ ଯାହାର ମନ୍ଦିରେ ଥିବ ସର୍ବ ଶୋଇ ।
ତୁଣ୍ଡ ନ ଶୁଭିବ ନିଶବଦ ହୋଇଂ ॥
ଆଗ୍ୟାଂ ମେଣ୍ଟି ଯେହୁ ହୋଇବ ବାହାର ।
ନିଚୟେ କାଳ ହାଦେ ପୂରିବ ତାହାର ॥
ଯେସନେକ ବୋଲି ଦାଉଡ଼ି ବାଜିଗଲା ।
ତେଡ଼େ ମହାନଗ୍ର ତବଦ ହୋଇଲା ॥୧୦
ଇନ୍ଦ୍ରଜିତ ପାତ୍ର ଅମନାତ୍ୟ ମନ୍ତ୍ରୀଗଣ ।
ଆସ୍ଥାନ ଭାଙ୍ଗିଣ ଗଲେ ତତକ୍ଷଣ ॥
ଯେ ଯାହାର ନବରେ ହୋଇଲେ
ପରବେଶ ।
ଯେଥୁଅନନ୍ତରେ ଯେ ଶୁଣିମା ଦ୍ରିବ୍ୟ ରସ ॥
ନିଶବଦ ହୋଇଲେ ଲଙ୍କାର ନରନାରୀ ।
ନିଶି ଅର୍ଦ୍ଧେ ନିଦ୍ରାବନ୍ତୀ ଦଇତେ ଘାରି ॥
ଯାମିନୀ ଆକ୍ରେଶିଲା ନ ଦିଶିଲା ପନ୍ଥ ।
ବିଶ୍ୱକର୍ମା ପୁର ରଞ୍ଚିଲା ସମସ୍ତ ॥
ପୂର୍ବେ ଯେ ଯାହାର ଯିସ ଯିସ ଥିଲା ।
ସେହି ପ୍ରକାରେ ଯେ କଟେକ
ଭିଆଇଲା ॥୨୦
ସୁବର୍ଣ୍ଣର ଘର ନବରତ୍ନ କମ ।
ନାଗିଲା ଅଛଇ କସ୍ତୁରୀ ଚନ୍ଦ୍ରୁଃସମ ॥
ସୁବର୍ଣ୍ଣର କଳସ ମୁକୁତା ମଣି ଝରା ।
ଚିହ୍ନ ଚିରାଳ ଉଡ଼ନ୍ତି ଫରହରା ॥
ଦର୍ପଣ ଚାମର ବିବିଧ ପୁଷ୍ପ୍ୟ ବାସ ।
ମଣ୍ଡନ୍ତେ ସୁନ୍ଦର କଟେକ ଚଉପାଶ ॥

ମେଢ଼ ମେଘନାଦ ଅଟାଳି ଜଗତୀ ।
ଦେଉଳ ମଣ୍ଡପ ଦିଶନ୍ତି ପନ୍ତି ପନ୍ତି ॥
କୂପ ବାଙ୍ଖି ତଳା ହ୍ରଦ ପୁଷ୍କରିଣୀ ।
ହସ୍ତୀ ଘୋଡ଼ାଶାଳ କେ ପାରିବ ଗଣି ॥୩୦
ରାଜାଙ୍କର ନବର ପାତ୍ରଙ୍କର ଉଆସ ।
ଯେକସର ଲୋକଙ୍କର ଅନରୂପେ ବାସ ॥
ତୋଟା ଉପବନ ଧନ ରତ୍ନମାନ ।
ଗୃହ କର୍ମ ବିଧାନ ଅଛଇ ସର୍ବସ୍ଥାନ ॥
ସଞ୍ଜ ବିଶ୍ୱକର୍ମା ଅନ୍ତରୀକ୍ଷେ ଗଲା ।
ଯେସନ ସମୟେ ରଜନୀ ପାହିଲା ॥
ନିଦ୍ରା ତେଜିଣ ଉଠିଲେ ସର୍ବଜନ ।
ଦେଖିଣ ଆନନ୍ଦେ ବିଗସଇ ମନ ॥
ସ୍ୱର୍ଗ ମଞ୍ଚ ସେ ଯେ ଦିଶଇ ପଟାନ୍ତର ।
ଗତୁଂ ଶତେ ଗୁଣେ ଅପୂର୍ବ ସୁନ୍ଦର ॥୪୦
ପୋଡ଼ିଲାର ସଞ୍ଚମାନ ନ ଦିଶଇ କିଛି ।
କୁଢ଼ କୁଢ଼ ହୋଇ ରତ୍ନ ପୂରିଅଛି ॥
ରାବଣଙ୍କୁ ପ୍ରଶଂସା କରନ୍ତି ନରନାରୀ ।
ଧନି ଧନି ମହିମା ହୋ ନୃପତି ତୋହୋରି ॥
ରାତ୍ରକ ଭିତରେ ହୋଇଲା ସର୍ବ ସଞ୍ଚା ।
ତୋହୋର ଜୀବନ ଅଟଇ ନା ସାଚା ॥
ସାଧୁ ସାଧୁ ରାବଣ ହୋ କେବଣ ତପ କଲୁ ।
ଦେବେ କରନ୍ତି ତୁ ଯେବଣ ଆଗ୍ୟାଂ ଦେଲୁ ॥
ଶୟେ କ୍ଷୁଣ ଲଙ୍କା ଅଗ୍ନିରେ ଧ୍ୱଂସ ଗଲା ।
ରାତ୍ରକ ଭିତରେ ପୁଣ ବିଶ୍ୱକର୍ମା କଲା ॥୫୦
ଯେସନେକ ବୋଲି ହରଷ ଲୋକେ ହୋନ୍ତି ।
ଯେଥୁ ଅନନ୍ତରେ ଶୁଣିମା ହେମବନ୍ତୀ ॥
ସୁବଳୟା ପର୍ବତେ ହନୁ ଥିଲା ରହି ।
ପୂର୍ବକଇ ଚାହିଂଲା ଅରୁଣ ଅଇଲା ଉଇଂ ॥
ଚଇତ ଶୁକ୍ଳ ନବମୀ ସେ ଦିନ ।
ସାରିଲା ମାରୁତି ତପ କର୍ମମାନ ॥
ଦେବ ନଦୀରେ ପଶି ସ୍ନାହାନ ବୀର କଲା ।
ପିତୃଗଣକଇ ଜଳଦାନ ଦେଲା ॥
କୂଳେ ଉଭା ହୋଇଂ ଦଶଦିଗକଇ ଚାହିଂ ।
ସୂର୍ଯ୍ୟ ଦେବତାକୁ ଗଡ଼ଘାଲି ଶୋଇଂ ॥୬୦
ଯିବ ବୋଲି ବୀର ହୋଇଲାକ ସଜ ।
ଉତ୍ତର ମୃତି କଲା ପବନ ଆତ୍ମଜ ॥
ଶ୍ରୀରାମକୁ ସୁମରି କାୟା ବାଢ଼ାଇଲା ।
ଦୀର୍ଘ ତିରିଶ ଯୋଜନ ଲମ୍ବ ହୋଇଗଲା ॥
ପ୍ରତି ଦଶ ଯୋଜନ ହୋଇଲା କଳେବର ।
ନେତର ପଣନ୍ତ ଉଡ଼ଇ ଫରହର ॥
ଦୁଇ ଶତ କୋଶ ଉଠିଲା ଉଗୁଂଇ ।
ଲଙ୍କାର ଅସୁରେ ଭୟେକଲେ ଚାହିଂ ॥
କେ ବୋଲଇ ଦେଖ ଦେଖ ହନୁମନ୍ତ ।
ଯେ ଲଙ୍କାଗଡ଼ଯାକ କଲାକ ଧୂମାନ୍ତ ॥୭୦
ସୁବଳୟା ପର୍ବତେ ରହିଲା ଆଜ ରାତି ।
ଦେଖ ଦେଖ ଆହୋ ଯିବାର ତେ ଘାନ୍ତି ॥
ଆକାଶ ମାର୍ଗେଣ ଯେ ଯାଉଂଅଛି ଉଡ଼ି ।
କେ ଅବା ଜୀଇଂବ ଯେହାର ମୁଖେ ପଡ଼ି ॥
କେ ବୋଲଇ ଆହୋ ନ ଅନାଅ ସେ ଯାଉ ।
ଶୁଣିଲେ ପାଲଟି ଧାଇଂମଟି ଆଉ ॥
ଯେକର କହନ୍ତେ ଜାଣିଲେ ଆରେକ ।
ଉର୍ଧକଇ ଚାହିଂଲେ ଲଙ୍କାର ସର୍ବଲୋକ ॥
ରାବଣ ଇନ୍ଦ୍ରଜିତ ସହିତେ ଚାହାନ୍ତି ।
ତାଳପତ୍ର ଚକିକି ଯେସନେ ଦୃଷ୍ଟି ଦ୍ୟନ୍ତି ॥୮୦
ରାଣୀ ରାଣୀ ହଂସ ଦେଖନ୍ତି ସମସ୍ତ ।
ଘନ ଘନ ଉଡ଼ି ଯାଉଂଛି ପବନର ସୁତ ॥
ରାବଣ ବୋଇଲା କେ ଆଣିମ ତାହାଇ ଧରି ।
ଯେ କଷ୍ଟ ପାସୋରିବି କପିକି ବଧ କରି ॥
ବିଭୀଷେଣ ବୋଇଲା ହୋ ନୋହଇ ତହିଂର କାଳ ।
ପରେ ବୁଦ୍ଧି କରିବ ହୋ ବିଶର୍ବାର ବାଳ ॥
ଲଙ୍କା ପୋଡ଼ିଲା ଅଛୟେ ବୀର ମଲା ।
ପାଞ୍ଚ ସେନାପତି ଜମ୍ବୋମାଳି ବଧ ଗଲା ॥
ଗଜ ଅଶ୍ୱ ଯୂଥ ପଡ଼ିଲେ ବହୁତ ।
ନାରଖାର ହୋଇଲା ସକଳ ଆୟେ ବିଭ ॥୯୦
ବାନର ଯୋଗ୍ୟତା କି ହୋଅଇ ଏହା କରି ।
କିମ୍ବା ତୁ ବିଚାର ନ କରୁ ଦଶଗିରି ॥
ସେ କପିକି ଧରିବାର ବୁଧି ଛାଡ଼ ।
ଶାଖାମୃଗମାନେ ପଶୁଜନ୍ତୁ ରାଢ଼ ॥
ସଦିଭାବ ସମାନ୍ୟେ ନ କହନ୍ତି ସେ କଥା ।
ଶୁଣି ପ୍ରବୋଧ ସେ ହୋଇଲା ଦଶମଥା ॥
ଯେଥୁଅନ୍ତରେ ବୀରବର ହନୁ ।
ଗଗନେ ଗମଇଂ କି ଦୁତୀୟ ଯେ ଭାନୁ ॥
ଦେବେ କୁସୁମ ବିଞ୍ଚନ୍ତି ସ୍ୱର୍ଗେ ଥାଇଂ ।
କିନ୍ନରୀ ପ୍ରବୋଧନ୍ତି ପଞ୍ଚମ ସ୍ୱରେ ଗାଇଂ ॥୧୦୦
ମଳୟ ପବନ ବହଇ ଧୀର ଧୀର ।
ଲୀଳା ଗତି କରି ଚଳଇ ମାହାବୀର ॥
ପ୍ରଭାତ ସମୟେ ଲଙ୍କାରୁ ବୀର ଗଲା ।
ସାତ ଘଡ଼ିମାନେ ଶଏ କ୍ଷୁଣ ସମୁଦ୍ର ତରିଲା ॥
ଅଙ୍ଗଦ ଜମ୍ୱେବ ସୁଷେଣ ନଳ ନୀଳ ।
ଗନ୍ଧମାରଦନ ତାରାକ୍ଷ ସକଳ ॥
ଦକ୍ଷିଣ ସମୁଦ୍ର ମହୋଦଧି ତୀର ।
ବସି ରାମ ନାମ ସୁମରନ୍ତି ସାତ ବୀର ॥
ଯେସନ ସମୟେ ଗଗନୁ ଖସିଲା ମାରୁତି ।
ଦୁତୀ ସୂର୍ଯ୍ୟ ଜାଣି ବିରାଜଇ ଜୋତି ॥୧୦
ପୃଥ୍ୱି କମ୍ପିଲା ଉଚ୍ଛୁଳିଲା ସାତ ସିନ୍ଧୁ ।
ପ୍ରଳୟ ପବନକଇ ଶବଦ ଅଛି ନିନ୍ଦୁ ॥
ବନଗିରି କମ୍ପଇ ଉଲ୍କାପାତ ଜାଣି ।
ସାତ ସେନାପତି କରନ୍ତି ଭାଳେଣି ॥
କେବଣ ଆକାର କେବଣ ବିପ୍ରରୀତ ।
କିଅବା ସଂସାର ହୋଇବ ଆଜ ହତ ॥
କି ଅବା ରସାନ୍ତଳେ ପଡ଼ିବ ବସୁନ୍ଧରା ।
କି ଅବା ବାସୁକୀ ଛାଡ଼ିବ ମହୀଭାରା ॥
କି ଅବା ଶ୍ରୀରାମ ଲଙ୍କାକଇ ଗଲେ ।
ରାବଣ ସହିତେ ଅସୁରେ ଆଜ ମଲେ ॥୨୦
କି ଅବା ହନୁମନ୍ତକୁ ଧଇଲେ ନିଶାଚର ।

ଭୋ ମନ୍ତ୍ରୀ ଜମ୍ୱେବ ତୁ ଯେହା ସେ ବିଚାର ॥
ସୁଷେଣ ବୋଇଲା ମୁଂ ଦେଖିଲି ସପନ ।
ବନ୍ଦୀ ପଡ଼ିଲା ତହିଂ ପବନ ନନ୍ଦନ ॥
ନଳ ବୋଇଲା ଶଙ୍କୁନ୍ୟ ମୋହୋର ଅଛି ।
ଯେହିକ୍ଷଣି ଆସିବ ହୋ ପବନର ବଛି ॥
ଗନ୍ଧମାରଦନ ଉପରକୁ ଚାହିଂ ।
ବୋଲଇ ଦେଖ ଦେଖ ହନୁମନ୍ତଟି ଯେହି ॥
ଜମ୍ୱେବ ବୋଇଲା ହୋଇଲା କାର୍ଯ ସିଦ୍ଧ ।
ଦଇତଙ୍କର ସଙ୍ଗତେ ମାରୁତି କଲା ଯୁଧ୍ୟ ॥୩୦
ନୀଳ ବୋଇଲା ହନୁ ପୋଡ଼ିଲାଟି ଲଙ୍କା ।
ଛାର ନିଲକ୍ଷଣକୁ ମନେ ନ କଲାଟି ଶଙ୍କା ॥
ଅଙ୍ଗଦ ବୋଇଲା ଯେ ସୀତୟା ଠାବ କଲା ।
ନୋହିଲେଣ କେମନ୍ତେ ଯେତେ ବେଗି ଅଇଲା ॥
ତାରାକ୍ଷ ବୋଇଲା ଯେ ହୋଇଥିଲା ବଣା ।
ନଗ୍ର ନଗ୍ରାନ୍ତରେ ଯେହାକୁ ଜଗିଥିଲେ ଠଣା ॥
ତେବେ ସେ ରଜନୀ ମଧରେ ଠାବ କଲା ।
ଦୁଇ ରାତ୍ରେ ଦୁଇ ଦିବସେ ବାହୁଡ଼ିଲା ॥
ଯେସନେକ ସମୟେ ହନୁମନ୍ତ ବୀର ।
ଆକାଶୁ ଖସିଣ ପଡ଼ଇ ଧୀର ଧୀର ॥୪୦
ଶୂନ୍ୟ ପୁରୁଷ ଯେହ୍ନେ ଚ୍ୟୁତ ହୋଇଂ ଆସେ ।
ଆକାଶୁଂ ପକୁଂ ଫଳ ପଡ଼ିବା ପ୍ରାୟେ ବୀର ଦିଶେ ॥
ବିଝଂଗିରି ପର୍ବତେ ବିଶୋଇଂଲା ଯାଇଂ ।
ପାତାଳକୁ ନଶିଗଲା ତେଡ଼େ ବଡ଼ ଭୂଇଂ ॥
ତେଡ଼େ ମାହାଗିରି ଗୁପତ ହୋଇଲା ।
ସାତବୀରଙ୍କର ସନିଧ୍ୟେ ମିଳିଲା ॥
ଦେଖିଣ ନଳ ନୀଳ ଉଠିଲେ ସୁଷେଣ ।
ତାରାକ୍ଷ ଜମ୍ୱେବ ଅଙ୍ଗଦ କପିରାଣ ॥
କୁଶଳ ବାରତା ପଚାରନ୍ତି ବେଢ଼ି ।
ରିକ୍ଷପତି ପାଦେ ହନୁମନ୍ତ ପଡ଼ି ॥ ୫୦
ସୁଷେଣ ଚରଣେ କରଇ ନମସ୍କାର ।
ତାରାକ୍ଷର ପାଦେ ଓଳୋଗଇ ବୀର ॥
ନଳ ନୀଳକଇ କରନ୍ତି ଆଶିଷ ।
ଗନ୍ଧମାର୍ଦ୍ଦନକଇ କୋଳ ଯେ ସମ୍ଭାଷ ॥
ଅଙ୍ଗଦର ଛାମୁରେ ମିଳିଲାକ ମାରୁତି ।
ଧାଇଂ କୋଳ କଲା ଖଡ଼ଦ କପିର ନାତି ॥
ସୀତା ଦେଖିଲୁକି ବୋଲିଣ ପଚାରି ।
କେ ବୋଲଇ କେସନେକ ରାବଣର ପୁରୀ ॥
କେ ବୋଲଇ ରାବଣ ଦେଖିଲାଟିକି ତୋତେ ।
କେ ବୋଲଇ ସମୁଦ୍ର ଲଙ୍ଘିଲୁ କେମନ୍ତେ ॥୬୦
କେ ବୋଲଇ ଅପଚୟେ ନ ପାଇଲୁ ନିନା ।
କେ ବୋଲଇ ଆହୋ କ୍ଷଣେକ ରହୁ କିନା ॥
ବସି ବିଶୋଇଂ କହଇଂ କିନା ସୁସ୍ଥେ ।
କେ ବୋଲଇ ଯେହା ଧରୁ କିନା ଚିତ୍ତ ॥
ଯେବେଣ କାର୍ଯକୁ ଅଇଲା ଆମ୍ଭେ ଅଛି ।
ବହୁତ ବେଳ କିମ୍ପା ପାରିବା ତାହା ମୃଛି ॥
ଅଙ୍ଗଦ ବୋଇଲା ତୁ ହନୁମନ୍ତ ବସ ।
ପାଇଲୁଟିକି ବାବୁ ସୀତାର ସନ୍ଦେଶ ॥
ଯେସନେକ ବୋଲିଣ ଯେ ଉଠିଲେ ସାତଜଣ ।
ମାରୁତି ବୋଇଲା ତୁମ୍ଭେ ଯେକମନେ ଶୁଣ ॥୭୦
ଯେବେଣ ଦିବସେ ମୁଂ ଯେଥୁ ଗଲି ଚଳି ।
ମଣିନାଗ ର୍ପବତକୁ ପଥରେ ଭେଟିଲି ॥
ସମୁଦ୍ର ଭିତରେ ମନୁଷ୍ୟ ରୂପ ଧରି ।
ମୋତେ ଗୁହାଇଲା ଗଉରୋବ କରି ॥
ଫଳ ମୂଳ ଦେଇ ଅନେକ ତିଆରିଲା ।
ଶୁଭେଣ ଯାଅ ବୋଲି ଅନକୂଳ ଦେଲା ॥
ତହୁଂଣ ଗବନ ମୁଂ କଲି ଉର୍ଧଗତି ।
ଆଗେ ଉଗାଳିଲା ମୋତେ ନାଗ ଯେ ଦେବତୀ ॥
ତିନି ଶତ ଯୋଜନ ଶ୍ୟରୀର ତାହାର ।
ଦେଖି ଶଙ୍କା ହୋଇଲା ମୋହୋର ଶ୍ୟରୀର ॥୮୦
ଷୋଳ ଶତ କୋଶ କାୟା ବଢ଼ାଇଲି ।
ନାଗମାତାର ତହୁଂ ଉତୁରିଣ ଗଲି ॥
ଯାନ୍ତେଣ ବାଟରେ ଭେଟିଲି ଦଇତୁଣୀ ।
ସହସ୍ରେ ଯୋଜନ ହୋଇଲା ତରୁଣୀ ॥
ବଳେ ଧରି ମୋତେ କଲାକ ଆହାର ।
ପେଟେ ଥାଇ ଅନ୍ତ ଛିନାଇଲି ତାହାର ॥
ବୁକୁ ବିଦାରିଲି ଦଶ ନହ ଘେନି ।
ପ୍ରାଣ ଛାଡ଼ିଲା ସେ ରାହୁର ଜନନୀ ॥
ଦେବେ ବରଷିଲେ କୁସୁମ ମୋର ଶିରେ ।
ଦୁନ୍ଦୁଭି ଶବଦ ଶୁଭିଲା ସ୍ୱର୍ଗପୁରେ ॥ ୯୦
ସାତ ସିନ୍ଧୁଜଳ ହେଳେ ତରିଗଲି ।
ଲଙ୍କାପୁରେ ଯାଇଂ ପ୍ରବେଶ ହୋଇଲି ॥
ସୁବଳୟା ନାମେଣ ଅଛଇ ଯେକ ଗିରି ।
ତହିଂକି ଅଲଗେ ଦିଶଇ ଲଙ୍କପୁରୀ ॥
ସେ ସ୍ଥାନେ ଯାଇଂ କଲାଇଂ ମୁଂ ବସା ।
ରବି ଅସ୍ତଗଲା ଆଚ୍ଛାଦିଲା ନିଶା ॥
ଗୋଧୂଳି ବେଳେ ମୁଂ ପଶିଲି ଲଙ୍କପୁରୀ ।
ଦେଖି ଜାଣିଲା ମୋତେ ଯେକଇଂ ଅସୁରୀ ॥
ବୋଇଲା ବାନରରେ କାହିଂକି ତୁ ଯାଉ ।
ତୁନି ତୁନି ହୋଇଂ ବିପଦ୍ଧେ ପଳାଉଂ ॥୧୦୦
ଯେହା ଶୁଣି ମୁଂ ଯେ ପାଇଲଇଂ ଭୟେ ।
ବିକ୍ରମ ରୂପ ଧରି ମୁଂ ମାଇଲି ବିଧାୟେ ॥
ବାଜିଣ ରାକ୍ଷସୁଣୀ ପଡ଼ିଣ ମୋହ ଗଲା ।
ପୁଣି ସଚେତ ହୋଇଂ ବଚନ ବୋଇଲା ॥
ଯାଅ ହୋ ବାନର ହୋଇଲା କାର୍ଯ ସିଦ୍ଧ୍ୟ ।
ଜାଣିଲି ବାନର ହୋ ରାବଣ ହୋଇବ ବଧ୍ୟ ॥
ଯେବେଣ ଦିନେ ବ୍ରହ୍ମା ଯେଥକୁ ଆସିଥିଲା ।
ଲଙ୍କ ଦେବତୀ ବୋଲି ମୋତେ ଥାପିଗଲା ॥
ଆବର କଥାଯେକ କହିଲା ଗୁପତେ ।

ଯେବେ ପ୍ରକଟ ମାରିବ ନିନା
ତୋତେ ॥୧୦
ସେହିଦିନୁ ଜାଣିମୁ ଲଙ୍କାରୁ ଗଲା ଶିରୀ ।
ଦୁଇମାସେ ମରଣ ପାଇବ ଦଶଗିରି ॥
ସେ କଥା ସନିଧ୍ୟ ତ ହୋଇଲା ଆସି
ଯେବେ ।
ତୋହୋର ହାଥେ ପ୍ରାଭବ ପାଇଲଇଂ
ଯେବେ ॥
ଯେବେ ସୁଖେଣ ତୁ ସୀତାକୁ ଠାବ କର ।
ଯେତେ ବୋଲି ଆରୋହି ଗଲା ନିଜ ପୁର ॥
ତାହାର ସମ୍ମୁଖୁ ପାଇଲି ବାରତା ।
ନଗ୍ର ଭିତରେଣ ପଶି ଖୋଜିଲଇଂ ସୀତା ॥
ଘରେ ଘରେ ପୁରେ ପୁରେ ନ ଦେଖିଲି
କାହିଂ ।
ରାବଣ ମନ୍ଦିର ପଶିଲଇଂ ଯାଇଂ ॥ ୨୦
ସ୍ୱର୍ଗର ସମାନେ ଅଟଇ ସେ ପୁର ।
ତିନି ଯୋଜନ ଦୀର୍ଘ ଦେଖିଲି ଯେକ ଘର ॥
ଦୁଇ କୋଶ ଓସାର ନବରତ୍ନମୟେ ।
ତହିଂ ପହୁଡ଼ିଣ ଅଛଇ ଲଙ୍କରାୟେ ॥
ମନ୍ଦୋଦରୀ ରାଣୀ କୋଡ଼ରେ ତାର ଅଛି ।
ଆବର ଅନେକ ଅଛନ୍ତି ମୃଗାକ୍ଷି ॥
ତହିଂ ନ ଦେଖିଣ ଓଶେକ ବନ ଗଲି ।
ସୁବନ୍ୟ ଜଗତୀରେ ସୀତାକୁ ଦେଖିଲି ॥
ସହସ୍ରେ ରାକ୍ଷସୀ ଅଛନ୍ତି ତାହାକୁ ରଖି ।
ମଧ୍ୟରେ ବସିଅଛି ଶରଦଚନ୍ଦ୍ରମୁଖୀ ॥ ୩୦
ଅବିଛନ୍ନେ ନୟନୁଂ ବହଇ ଅଶ୍ରୁଜଳ ।
ଲୁଖେଣ କବେରୀ ତାର ଦିଶଇ ଆଉଳ ॥
ବେଶ ବିହୁନେ ଯେ ଅଳଙ୍କାର ନାହିଂ ।
ତଇଲୋକର ନାୟେକାଣୀ ଅଛି ଦୁଃଖ
ପାଇଂ ॥
ବ୍ରହ୍ମା ଇନ୍ଦ୍ର ଶଂକର ସେବନ୍ତି ଯାହାକୁ ।
ବେଢ଼ିଣ ରାକ୍ଷସୁଣୀ ଡରାନ୍ତି ତାହାକୁ ॥
ଭ୍ରମର ରୂପ ଧରି ମୁଂ ଉରାରେ ବସିଥିଲି ।
ସର୍ବ ସିଧ୍ୟାନ୍ତ ମୁଂ ଗୁପତେ ଶୁଣିଲି ॥

ଯେସନ ସମୟେ ଅଇଲା ଲଙ୍କପତି ।
ଦେଖି ପଛ ଘୁଞ୍ଚିଗଲା ମହାସ୍ୟତୀ ॥ ୩୦
ଚାଟୁ କଥା ବହୁତ ରାବଣ କହିଲା ।
ଜାନେକୀର ତହିଂ ସେ ସମାସ୍ୟା ନ
ପାଇଲା ॥
କୋପେଣ ଖଡ଼ଗ ଘେନି ହାଣିତ ମନ କରି ।
ତ୍ରିଜଟା ନାମେଣ ତହିଂ ଯେକଇ ଅସୁରୀ ॥
ସେ ଯାଇଂ ପ୍ରବୋଧନା କଲାକ ବହୁତ ।
ତେବେ ସେ ତମ ଯେ ଛାଡ଼ିଲା ଦଇତ ॥
ବୋଇଲା ଦୁଇମାସେ ରାମକୁ ଭେଟାଇବୁ
ଆଣି ।
ନୋହିଲେ ଖଡ଼ଗେ ମୁଣ୍ଡ ପକାଇବି ହାଣି ॥
ଯେସନେକ ବୋଲି ଦଶଗିରି ଗଲା ।
ଏଥୁ ଅନନ୍ତରେ ରଜନୀ ପାହିଲା ॥
ନିତ୍ୟକର୍ମ ସାରିବାକୁ ଚଳିଲାକ ସତୀ ।
ସାଙ୍ଗେଣ ଅସୁରୀ ସହସ୍ରେକ ଯୁବତୀ ॥
ବୃଦ୍ଧ ଗଣ୍ଡୁକୀ ବୋଲି ଅଛି ଏକ ନଦୀ ।
ପାତାଳ ପରିଯନ୍ତେ ଗଣ୍ଡ ଅଛି ଭେଦି ॥
ଶିଶୁପା ବୃକ୍ଷେକ କୂଳରେ ଶୋଭାବନ ।
ଆବର ଅଛନ୍ତି ଅନେକ ତରୁମାନ ॥୪୦
ସେ ବୃକ୍ଷ ତଳେ ଅଛନ୍ତି ଦେବୀ ସୀତ୍ୟା ।
ରାମ ନାମ ସୁମରଇ ଜନେକ ଦୋହିତା ॥
ସହସ୍ରେ ଅସୁରୀ ଯେ ଯାହାରେ ଯାନ୍ତି ।
ନିତ୍ୟ କର୍ମ ବେଭାର ଯାବତ ସାରନ୍ତି ॥୬୦
ଯେସନ ସମୟେ ମୁଂ ଭ୍ରମର ରୂପ ଧରି ।
ବୃକ୍ଷ ଶିଖରେ ବସିଲି ମୁଂ ଶ୍ୟରୀର ଗୋପ୍ୟ
କରି ॥
ଏକା ବଇଦେହୀ ଅଛଇ ତହିଂ ତଳେ ।
ସମାସ୍ୟା କଲି ମୁଂ ଯେସନକ ବେଳେ ॥
ଶାପ୍ୟ ଦିଅଇ ବୋଲି ଭୟେ କରୁଥିଲି ।
ଶ୍ରୀରାମ ଚରିତ ମୁଂ ସକଳ କହିଲି ॥
ଶୁଣି ମହାସ୍ୟତୀ ହୋଇଲା ହରଷ ।
ବୋଇଲା କେ ମୋହୋର ପୂରାଇଲା ଆଶ ॥
ଛାମୁରେ ମିଳିକରି କହ କିନା କଥା ।

କ୍ଷୟେ ଯାଉ ମୋହୋର ଦେହରୁ ସର୍ବ
ବ୍ୟଥା ॥୭୦
ଯେ ବାଣୀ ଯହୁଂ ବୋଇଲା ବଇଦେହୀ ।
କପି ରୂପେ ଧରି ଛାମୁରେ ତାର ହୋଇ ॥
ଆଦି ଅନ୍ତ କରି କହିଲି ସମସ୍ତ ।
ବୋଇଲି ରଘୁନାଥ ଦଶରଥର ସୁତ ॥
ସାବତ ଜନନୀ ପେଷିଲାକ ବନ ।
ଲକ୍ଷଣ ସୀତ୍ୟା ସହିତେ ତିନିଜଣ ॥
ଚଉଦ ବରଷକୁ ବନବାସ କଲେ ।
ଗୋଦାବରୀ କୂଳେ ଘରଣୀ ହରାଇଲେ ॥
ଋଷିମୁଖ ପର୍ବତେ ସୁଗ୍ରୀବର ଥିଲା ।
ଶ୍ରୀରାମର ସଙ୍ଗେ ସେ ମଇତ୍ର
ହୋଇଲା ॥୮୦
ମଇତ୍ର ଛଳେ ରାମ ବାଳୀକି ବଧ କଲେ ।
ଇଷ୍କିନ୍ଧ୍ୟା କଟକ ସୁଗ୍ରୀବରକୁ ଦେଲେ ॥
ଯେବଣ କାଳେ ରାବଣ ଆଣିଲା ତୋତେ
ହରି ।
ତୁ ଯେ ପକାଇଂଣ ଅଇଲୁ ଚୂଡ଼ି ଶାଢ଼ୀ ॥
ସେ ଆୟେ ସୁଗ୍ରୀବର ସାଇତି ଥୋଇଥିଲା ।
ରଘୁନାଥର ସନିଧ୍ୟେଂ ନେଇଣ ସମର୍ପିଲା ॥
ଆବର ପଛୀଚଟା କହିଲା ବାରତା ।
ଲଙ୍କାର ରାବଣ ନେଲା ତୋର ସୀତ୍ୟା ॥
କୋବନ୍ଧର ମୁଖରୁ ଶୁଣିଲେକ ବାଣି ।
ପୁଣିହିଂ କହିଲା ଶବର ଶବରଣୀ ॥ ୯୦
ତେଣୁ ଶ୍ରୀରାମ ବାନର ରିକ୍ଷ ଘେନି ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ଭାଇ ବେନି ॥
ଚାରିଦିଗକଇ ପେଷିଛନ୍ତି ଚାର ।
ଦକ୍ଷିଣକୁ ଅଇଲା ବାଳୀର କୁମର ॥
ତାହା ସଙ୍ଗତେ ଆମ୍ଭେ ଆଇଲୁ ଜଣ ସାତ ।
ଯେ ମୋହୋର ନାମ ଅଟଇ ହନୁମନ୍ତ ॥
ସେମାନେ ସାହେର କୂଳେ ଛନ୍ତି ରହି ।
ତୋତେ ଖୋଜିବାକୁ ଅଇଲି ଗୋ ମୁହିଂ ॥
ଶୁଣିଣ ସାଧେବୀ ଅନେକ ଶୋକ କଲା ।
ଅପ୍ରତେ ପ୍ରାୟେକ ମୋ କଥାନ୍ତ
ମଣିଲା ॥୧୦୦

ମୁଦି ଦେଖିଣ ସେ ଗଲାକ ସଦିଭାବ ।
ବୋଇଲା ଶୁଭେଣ ଅଛନ୍ତିଟିକି ଲକ୍ଷ୍ମଣ
ରାମଦେବ ॥
ସୁଗ୍ରୀବର ସହିତେ ତୁମ୍ଭଙ୍କୁ ପଚାରିଲା ।
ପୁଣିହିଁ ମଉନ ହୋଇଂ ମନେ ବିଚାରିଲା ॥
ରାବଣ ପ୍ରାୟେକ ମଣିଥିଲା ସତୀ ମୋତେ ।
ବୋଇଲା ମାହାତ୍ମା ହୋ ନ ଚିହ୍ନଇ ତୋତେ ॥
ଗୁପତ ସନ୍ଦେଶ କି ଅଛନ୍ତି କହି ।
ତାହା କହିଲେ ସେ ପ୍ରତେ ଯିବି ମୁହିଂ ॥
ନୋହିଲେଣ ତୋତେ କରିବି ଭସ୍ମରାଶି ।
ନିଚୟେଂ ରାବଣ ତୁ ଅଟୁ ଦତ୍ୟରାଶି ॥୧୦
ଯେ ବୋଲ ବୋଇଲା ଯେ ଭୟେମନ
କରି ।
ଶ୍ରୀରାମର ଗୁପତ କଥାନ୍ତ କହିଲି ॥
ତେବେ ସେ ପ୍ରତେ ଗଲେ ଜନେକ
ଦୁଲଣୀ ।
ମଥାରୁ କାଢ଼ି ମୋତେ ଦେଲା ମଥାମଣି ॥
ବୋଇଲା ଶ୍ରୀରାମକୁ ବେଗେ ଘେନିଆସ ।
ରାବଣ କଷ୍ଟ କରିଅଛି ଦୁଇ ମାସ ॥
ନୋହିଲେଣ ମୋତେ ଦେଖିବେ ଆର
କାହିଂ ।
ନିଶ୍ଚୟେଂ ପ୍ରାଣ ହରାଇବି ବିଷ ଖାଇଂ ॥
ଯେସନେକ ବୋଲିଣ ବୋଇଲାକ ଯହୁଂ ।
ମଣି ଘେନିଣ ମୁଂ ଅଇଲଇଂ ତହୁଂ ॥ ୨୦
କ୍ଷୁଧାରେ ମଧୁବନେ ଭୁଞ୍ଜିଲଇଂ ଫଳ ।
ଜାଣିଣ ତୋଟାଳେ ପାଡ଼ିଲେ ଆସି ଗୋଳ ॥
ଛାମୁରେ ରାବଣର କହିଲେ ବେଗେ
ଯାଇଂ ।
ବାନର ମଧୁବନ ଭାଙ୍ଗିଲା ଗୋସାଇଂ ॥
ଶୁଣିଣ ରାବଣ ପେଷିଲାକ ବଳ ।
ମୋହୋର ହାଥେ ପ୍ରାଣ ଛାଡ଼ିଲେ ସକଳ ॥
ଜାଣି ଲଙ୍କପତି ପୁଣି ବଳ ପେଷଇ ।
ଶାଳେକ ଗଣ ତାର ପୃଥ୍ୱି ପୂରି ଆସଇ ॥
ସେହି ଅପଚୟେ ପାଇଲେ ମୋର କରେ ।
ଜମ୍ବୋମାଳି ପ୍ରଶସ୍ତ ଅଇଲେ
କୋପଭରେ ॥୩୦
ରଥ ଗଜ ଅଶ୍ୱ ଆଣିଲେ ବହୁତ ।
ଯେତେକ ସଇନି ତାର ମାଇଲି ଅଗଣିତ ॥
ସାଂଗ୍ରାମ କରନ୍ତେ ଜମ୍ବୋମାଳି ମଲା ।
ପ୍ରଶସ୍ତ ସେନାପତି ପଳାଇଂଣ ଗଲା ॥
କୋପେ ଅଇଲେ ତହୁଂ ପାଞ୍ଚ ଅଶୁଆର ।
କାଳ ଦେବତାକି ପୃଥ୍ୱିରେ ଅବତାର ॥
ପାଚଂ ରୂପ ଧରି ଅଇଲାକ ଯମ ।
ଦେଖିଣ ବୁକୁ ମୋହୋର ହୋଇଲା
ଦମଦମ ॥
ତାହାଙ୍କର ସଙ୍ଗତେ କଲଇଂ ରଣଗୋଳ ।
ଯୁଦ୍ଧେ ପଡ଼ିଲେ ସେ ପାଞ୍ଚ ଅଗ୍ରର୍ଗଳ ॥୪୦
ଜାଣିଣ ରାବଣ ବହୁତ କୋପ କଲା ।
ଅଛୟେ ନାମେଣ ତା ପୁତ୍ରକୁ ପେଷିଲା ॥
ବହୁତ ସନ୍ୟ ଘେନି ଆସି କଲା ଯୁଦ୍ଧ ।
ମୁହିଂ ତାହାକଇଂ ଖଡ଼ଗେ କଲି ବଧ ॥
ମେଘନାଦ ନାମେ ରାବଣ ଜ୍ୟେଷ୍ଟ ସୁତ ।
ଇନ୍ଦ୍ରକୁ ଜିଣିଣ ନାମ ହୋଇଲା ଇନ୍ଦ୍ରଜିତ ॥
ସେ ମୋତେ ଅହିଶର ପାଶରେ ବନ୍ଦୀ
କଲା ।
ପିତାର ଛାମୁକୁ ତାର ଧରାଇଂ ଘେନି ଗଲା ॥
ଦେଖିଲି ଆସ୍ତାନେ ବିଜୟେ ଲଙ୍କପତି ।
ସମସ୍ତ ଦେବତାୟେ ଅଛନ୍ତି ତାର କତି ॥୫୦
ଦଶଗ୍ରୀବର କନେଷ୍ଟ ଅଟଇ ବିଭୀଷେଣ ।
ସେ ମୋତେ ବହୁତ କଲାକ ସମ୍ଭାଳଣ ॥
ତାହାର ବଚନ ନ କଲା ଦଇତ ।
ପ୍ରତଗ୍ୟାଂମାନ ସେ କହିଲା ବହୁତ ॥
ମୁଇଂ ତାହାକଇ ନିରାଶ ବଚନ କଲି ।
ଯେହିକ୍ଷଣି ମାରିବି ବୋଲିଣ ବୋଇଲି ॥
ପୁଣି ପ୍ରଶସ୍ତକୁ ବୋଇଲାକ ରାଇଂ ।
ମାର ସେ କପିକି ଥିବାର ଯଶ ନାହିଂ ॥
ଆଗ୍ୟାଂ ପ୍ରମାଣେ ପ୍ରଶସ୍ତ ସେନାପତି ।
ଖଡ଼ଗ ଘେନିଣ ମୋତେ ହାଣିଲା
ତଡ଼ତି ॥୬୦
ଖଣ୍ଡା ନ କାଟିଲାକୁ ଗୁରୁଜ ଘେନି ପିଟି ।
ଗୁରୁଜ ନ କାଟିଲାକୁ କଲା କୋନ୍ତ ବୃଷ୍ଟି ॥
ଛେଲ, ଚକ୍ର, ନାରାଜ ମାଇଲା ଅପାର ।
ନଗ୍ର ବୁଲାଇଲା ମୋତେ ଚୋରର ପ୍ରକାର ॥
ହାଟ ବାଟ ଦାଣ୍ଡେ ମାଇଲା ବହୁତ ।
ଓପ୍ରୋଧ ନ କଲେ ସେ ଦୁଷ୍ଟ ଯେ ଦଇତ ॥
ପୁଣି ରାବଣର ଛାମୁକୁ ଘେନି ଗଲେ ।
ସବୁ ଅସୁରେ ବସିଣ ବଚାରିଲେ ॥
କେବେହେଂ ନ ମଲା ଏ ପାମର
ମରକଟ ।
ମୁହିଂ ବୋଇଲି ମୋହୋର ଅଛି ମୃତ୍ୟୁ
ବାଟ ॥୭୦
ଲାଞ୍ଜେଣ ବସ୍ତ୍ର ବେଢ଼ାଇଂ ଅଉଙ୍ଗ ପାଡ଼ିବ ।
ପ୍ରଜ୍ୱଳିତ ହୁତାଶନ ଜାଳି ତହିଂ ଦେବ ॥
ପୂର୍ବର ଶାପ୍ୟେ ମୁଂ ମରିବି ନିୟତ ।
ଶୁଣିଣ ପ୍ରତେ ଗଲେ ସକଳ ଦଇତ ॥
ଲାଞ୍ଜେଣ ବସ୍ତ୍ର ବେଢ଼ାଇଲେ ଆଣି ।
ନଢ଼ପ ପାଡ଼ିଲେ ସେ ସତ ପ୍ରାୟେ ମଣି ॥
ଅଗ୍ନି ନଗାଇଣ ଫାଶି ଫେଡ଼ି ଦେଲେ ।
ମଲା ମଲା ବୋଲି ଶବଦେକ କଲେ ॥
ନାଗଫାଶ ଫେଇଲେ ମୁଂ ଉଶ୍ୱାସ ପାଇଲି ।
ଆବର ଦଉଡ଼ିମାନ ସବୁ ଉଗୁଡ଼ାଇଂ
ଦେଲି ॥୮୦
ଜଗତୀ ପିଢ଼ା ଉପରେ ବସିଲି ଯାଇଂ ମାଡ଼ି ।
ତେତେ ସଞ୍ଚ ଘର କ୍ଷଣକେ ଗଲା ପୋଡ଼ି ॥
ନିରାଶ ହୋଇଣ ଚାହିଂଲା ଦଶଗ୍ରୀବ ।
ବୋଇଲା ଏ କପି କଥା ଅଟଇ ଅସମ୍ଭବ ॥
ଜାଣିଣ ରାବଣ ଅଗ୍ନିକି କୋପକଲା ।
କ୍ଷଣକ ଭିତରେ ହୁତାଶନ ମଉଳିଲା ॥
ମୁହିଂ ବିଚାରିଲି ଦେବେ ଏହାର ବଶ ।
ଆନ ଉପାୟେ କରିବି ମୁହିଂ କିସ ॥
ଏତେ ବୋଲି କପାଳେ ଘଷିଲି ମୁହିଂ
ଲାଂଜ ।
ବ୍ରହ୍ମ ଅଗ୍ନି ବାହାର ପ୍ରଜ୍ୱଳିତ ତେଜ ॥୯୦

ତେଣେ ମୁହିଂ ଦହନ କଲି ଲଙ୍କପୁରୀ ।
ନିରାଶ ହୋଇଣ ଚାହଇଂ ଦଶଗିରି ॥
ଶଏ କ୍ରୁଶ ଲଙ୍କା ପ୍ରହରେକ ଧ୍ୱଂସ କଲି ।
ନିଶାରେ ସୁବଳୟା ପର୍ବତେ ବଂଚିଲି ॥
ପ୍ରଭାତ ସମୟେ ଅଇଲି ମୁହିଂ ଆଜ ।
ଯେତେମାନ ପାରଇ କଲଇଂ ତେଡ଼େ କାର୍ଯ ॥
ଶୁଣିଣ ସାନନ୍ଦ ହୋଇଲେ ସାତବୀର ।
ବହୁତ ପ୍ରଶଂସିଲା ବାଳୀର କୁମର ॥
ଧନ୍ୟ ହନୁମନ୍ତ ଧନ୍ୟ ତୋହୋର ପିତା ।
ତୋହୋରେ ସେ ଖୋଜି ହୋଇଲା ଜନେକ ଦୋହିତା ॥୧୦୦
ଧନ୍ୟ ଦେଶେ ତୁ ହୋଇଲୁ ଉତପତ୍ତି ।
ସାଧୁ ମହିମା ତୁ ଅରଜିଲୁ ମାରୁତି ॥
ଶଏ କ୍ରୁଶ ସମୋଦ୍ର ଶୁନ୍ୟେଣ ଲଘିଗଲୁ ।
ଇଚ୍ଛା ସମ୍ରୋଦ୍ରୁ ବାବୁ ଆମ୍ଭଙ୍କୁ ଉଦ୍ଧରିଲୁ ॥
ଶ୍ରୀରାମର କାର୍ଯ ତୁ ଏକା କଲୁ ଭାଇ ।
ମାଗସି ବର ତୁ ଦେବଇଂ ବଧାଇ ॥
ଶୁଣି ହନୁମନ୍ତ ହସିଣ ବୋଇଲା ।
ବଧାଇ ଦେବୁ ଯେବେ ତୋର କି କାର୍ଯ ହୋଇଲା ॥
ରାବଣକୁ ଯେବେ ପ୍ରାଣେ କରନ୍ତି ହତ ।
କି ଆବା ଆଣିଲି ମୁଂ ଜନେକର ଦୋହିତ ॥୧୦
କେବଣ ପରକାରେ ମାଗିବି ପରସାଦ ।
ଏକ କଥା ଯେବେ କହସି ହୋ ଅଙ୍ଗଦ ॥
ଲଙ୍କାକଇ ଗଲି ଅନେକ ଦୁଃଖ ପାଇଂ ।
ଗଡ଼ ପୋଡ଼ିବାରେ ପ୍ରାଶ ପାଇଲଇଂ ॥
ପୁଣି ହିଂ ନେଉଟି ଅଇଲି ଶଏ କ୍ରୁଶ ।
ଅସୁରଙ୍କ ସଂଗତେ କଲି ବହୁତ ରଣ ॥
ସେହି ମୋତେ ଅପଚୟେ କଲେକ ଅପାର ।
ଆନ ହୋଇଲେ କି ଜୀବନ ଘେନି ଆସନ୍ତା ତାହାର ॥

ବହୁତ ଶର୍ମ ମୁଂ ପାଇଲଇଂ ଏବେ ।
ଭୋ ଅଙ୍ଗଦ କୁମର ସୁଦୟା କଲୁ ଯେବେ ॥୨୦
ସମୋଦ୍ର ଲୁଣି ପାଣି ସ୍ୱାଦ ଏଥି ନାହିଂ ।
କଥାଏ ମାଗିବି ଦେବୁ ତୋଷ ହୋଇଂ ॥
ଇଷିକିନ୍ଧା କଟେକ ରାଜାର ମଧୁବନ ।
ସୁସ୍ୱାଦ ଫଳ ତହିଂ କରିବା ଭୋଜନ ॥
ଉପାସେଣ ମୁଖ ଶୁଖାଇଣ ଗଲେ ।
ଶ୍ରୀରାମ ବୋଲିବେ ଏ କାହିଂ ପଶିଥିଲେ ॥
ପ୍ରସନ୍ନ ନୁହଇଂ ବଦନ ଏହାଙ୍କରି ।
କାର୍ଯ ମୋହୋର ନ ପାରିଲେ କରି ॥
ଭୁଞ୍ଜି ଖାଇଂ ଯେବେ ସନ୍ତୋଷ ହୋଇଯିବା ।
ବାଟେ ଯାଉଂଣ ପ୍ରଶଂସା ପାଇବା ॥୩୦
ନୃପତି ଦେଖିଲେ ବୋଲିବେ କାର୍ଯ କଲେ ।
ସନ୍ତୋଷ ହୋଇଂଣ ଛାମୁକୁ ଅଇଲେ ॥
ଅନେକ ଗଉରୋବ ଆଗହୁଂ ପାଇବା ।
ଯେବେ ମଧୁବନେ ଫଳନ୍ତି ଖାଇବା ॥
ଯେବେ ଅଙ୍ଗଦ ମୁଂ ତୋହୋର ସେବକ ।
ଦିଅସି ଆଗ୍ୟାଂ ମୁଂ ହରିବଇଂ ଭୋଖ ॥
ହସିଣ ବାଳୀର ନନ୍ଦନ ବୋଇଲା ।
ଯାହା ସେ କହଇଂ ଭାଇ ଭଲହିଂ ହୋଇଲା ॥
ଚାଲ ସଭିଏଂ ଖାଇବା ସ୍ୱାଦ ଫଳ ।
କେ ସହିପାରିବ ହୋ ପେଟର ବିକଳ ॥୪୦
ଛ'ମାସ ହୋଇଲା ଆହାର ସୁସ୍ଥ ନାହିଂ ।
ଆଜ ପିଣ୍ଡ ତୋଷିବା ହୋ ଫଳ ମୂଳ ଖାଇଂ ॥
ଏତେ ବୋଲିଣ ଉଠିଲେ ଆଠଜଣ ।
ଏକକ ଆରେକ ଧାମନ୍ତି କଢ଼ାଇଣ ॥
କେ ଆଗେ କେ ପଛେ କେ ଛାମୁରେଣ ଧାସି ।
ଯାଉଂ ବେଗେ ବୀରେ ଗର୍ଜନ କରି ଆସି ॥
ଇଷିକିନ୍ଧା ନବରେ ହୋଇଲେ ନିକଟ ।
ଦୁଇ ଘଡ଼ିରେ ଗଲେ ଏଗାର କ୍ରୁଶ ବାଟ ॥

ତୋଟାର ପାଚେରୀ ଭାଙ୍ଗିଲେ ଦୁଷ୍ଟ ପଣ ।
ତେଇଂ ପଶିଲେ ସେ ସୁସ୍ୱାଦ ଫଳବନ ॥୫୦
ଧନ୍ୟ ସେ ବିପୁଣ୍ୟ ସଦାଇ ବସନ୍ତ ।
ସେ ବନେ ପଶନ୍ତେ ହରଇ କ୍ଷୁଧା ତୃଷାନ୍ତ ॥
କୁଶ ନଦୀ ବୋଲି ବହଇ ଏକଧାର ।
ପୂର୍ବେଣ କୁଶକେତୁ ଚିରିଲେ କୁଶଧର ॥
ସେ ବନେ ଖଡ଼ଦ ନୃପତି ବାସକଲା ।
ବିବିଧ ସୁସ୍ୱାଦ ବୃକ୍ଷନ୍ତ ରୁପିଲା ॥
ମଧୁ ଗଂଗା ବୋଲି ପୁଷ୍କରଣୀଏ ଅଛି ।
ତେଣୁ ସେ ମଧୁର ଫଳନ୍ତି ତହିଂ ଗଛି ॥
ସ୍ଫଟିକର ପାବଛ ବାନ୍ଧିଲା ଚଉକତି ।
ମଧେ ଦ୍ୱୀପ ମ୍ରକତର ଜଗତୀ ॥ ୬୦
ମଧୁମାସେ ରାଜା ମଧୁବନକୁ ଆସଇ ।
ବସନ୍ତ ଋତୁରେ ତହିଂ ଭୋଗ ବିଳସଇ ॥
ବିବିଧ କୁସୁମ ଅଛନ୍ତି ସେ ବନେ ।
ଭ୍ରମର କୋଳାହଳ ମଧୁ ରସ ପାନେ ॥
ଚଂପା, ବକୁଳ, ନାଗେଶ୍ୱର ଜାତି ।
କରୁଣା ବଗହୁଲ ପୁଲାଙ୍ଗ ମାଳତୀ ॥
ମଲ୍ଲୀ ଛୁରୀଅନା, ରଙ୍ଗଣୀ, କେତକୀ ।
ମରୁଆ, ମାଧବୀ, କଞ୍ଚଣ, ଧାତୁକି ॥
ଟରାଟ, କଣିଆର, ପାଟୋଳି, ପାଳଧୁଆ ।
ତୁଳସୀ, ଦୟଣା ନଣ୍ଡା ଯେ କୋରୁଆ ॥୭୦
ବିବିଧ କୁସୁମେ ଶୋଭିତ ତରୁଶିଖ ।
ଜାମ୍ବୁ ଜମ୍ବିଲ ଅଛନ୍ତି ଅନେକ ॥
ଆମ୍ବ, ପଣସ କେନ୍ଦୁ, ଗୁଆ, ତାଳ ।
ଦାରାକ୍ଷ, ନବଙ୍ଗ, ମରିଚ, ଜାଇଫଳ ॥
ନାରଙ୍ଗ, କଦଳୀ, କରବା, କରମଙ୍ଗା ।
କଇଥ, ଟଭା, ବେଲ ଯେ ମନୋଙ୍ଗା ॥
ଫଳ ଭରେ ତରୁ ଭୂମିରେ ଲୋଟନ୍ତି ।
ଦେଖି ଅଷ୍ଟ ସେନା ହରଷ ହୁଅନ୍ତି ॥
ଯେ ଯାହାର ଇଛାଏଂ ଭୁଞ୍ଜନ୍ତି ସ୍ୱାଦଫଳ ।
ତୋଳନ୍ତି ପୁଷ୍ପ ଯେ ଭାଙ୍ଗନ୍ତି ତରୁଡ଼ାଳ ॥୮୦
ଏକେ ଆରକେ ଧରାଧରି ହୋଇଂ ।

ଆନନ୍ଦେଣ ନୃତ୍ୟ କରନ୍ତି ଫଳ ଖାଇଂ ॥
ପୁଷ୍ପ୍ୟନ୍ତ ତୋଳି ମାଳେ ମାଳେ ଲମ୍ବାଇଲେ ।
ଥୋକାଏକ ଶିରେ ମିଶାଇ ଗଭା କଲେ ॥
ସବୁରି ହାଥେ ଫଳିଲା ଡାଳେ ଡାଳେ ।
ମଧୁ ପାନେ ମତ୍ତ ହୋଇ ବୁଲନ୍ତି ସକଳେ ॥
କେବଣ ବୃକ୍ଷେ ପଡ଼ନ୍ତି ଯାଇ ମାଡ଼ି ।
କେବଣ ତରୁବର ପକାନ୍ତି ଉପାଡ଼ି ॥
କେବଣ ତରୁବର ଓରାଇଂଣ ଡାଳ ।
କଷି କେଣ୍ଡୁଡ଼ି ଯେ ତୋଳନ୍ତି ସର୍ବଫଳ ॥୯୦
ଅଗିଆନ ହୋଇଂ ଯାଆନ୍ତି ଏଣେ ତେଣେ ।
ସଭିଏଂ ଗୋଡ଼ାବନ୍ତି ଜଣେ ଯାଇ ଯେଣେ ॥
ଗୋଇଠା ମାରିଣ ଭାଙ୍ଗନ୍ତି ତରୁଡ଼ାଳ ।
ଫଳ, ଫୁଲମାନ କରନ୍ତି ସବୁ କୁର ॥
ଯହୁଂ ସେ ଉପଦର୍ପ କରନ୍ତି ମଧୁବନେ ।
ଧାଇଂ ଆସି ଦେଖିଲେ ରକ୍ଷା ଲୋକମାନେ ॥
ଦଧି ମୁଖା କପି ସୁଗ୍ରୀବର ଶାଖା ।
ଦଶ ସହସ୍ର କପି ଘେନି ତୋଟା ରଖଇ ଏକା ॥
ଆପଣେ ଆସି ସେ ଦେଖିଲା ତୋଟା ହତ ।
କୋପେଣ ବୋଇଲା ସେ କେବଣ ହିଂ କୃତ ॥୧୦୦
ରାଜାର ଭଣ୍ଡାର ପାଚେରୀ ଡେଇଂ ପଶି ।
ଏଡ଼େକ ବିପୁଣ୍ୟ ହେଲେଣ କଲ ନାଶି ॥
ଏ ତୁମ୍ଭର ବିଚାରକୁ କେମନ୍ତ ଯୋଗାଇଲା ।
ଅନେକ ଯତନେ ଏହା ନୃପତି ଭିଆଇଲା ॥
ଅଙ୍ଗଦକୁ ଘେନି ପଶିଲା ଆସି ବଳେ ।
ବୃକ୍ଷନ୍ତ ଭାଙ୍ଗିଲ ମଧୁପାନ ଭୋଳେ ॥
ଏବେ ତୁମ୍ଭନ୍ତ ଘେନି ମୁହିଂ ଯିବି ।
ରାଜାର ଛାମୁରେ ନେଇ ସମାଦ କରିବି ॥
ଏହା ଶୁଣି କୋପେ ଧାଇଂଲାକ ନୀଳ ।
କରେ ଧରିଅଛି ଅତି ବଡ଼ ଶିଳ ॥୧୦
ଦଧିମୁଖା ଉପରକୁ ମାରି ତାହା ଦେଲା ।
ଧର୍ମେଣ ସେ ମାହାତ୍ମା ଆଡ଼େ ହୋଇଣ ଗଲା ॥

ପଥର ନ ବାଜିଲାକୁ କୋପ କଲା ନୀଳ ।
ତଡ଼ ବେଗେ ଯାଇଂ ଧଇଲା ତାର ବାଳ ॥
ତୋଟାରୁ ବାହାର କରିଣ ଛାଡ଼ିଗଲା ।
ଏଥେ ଥିଲେ ପ୍ରାଣ ଘେନିମି ବୋଇଲା ॥
କହ ତୋହୋର ବାବୁ ସୁଗ୍ରୀବରକୁ ଯାଇଂ ।
ତୋତେ ମାରିବାକୁରେ କିଛି ହିଂ ଭୟେ ନାହିଂ ॥
ଶୁଣିଣ ଦଧିମୁଖା ସଇନି ସଂଗେ ଘେନି ।
ରାଗେଣ ରକତ ଦିଶଇ ନୟନ ବେନି ॥୨୦
ମାଲ୍ୟବନ୍ତ ପର୍ବତକୁ ଖର ହୋଇଂ ଗଲା ।
ରାତ୍ର ପ୍ରହରକମାନେ ପ୍ରବେଶ ହୋଇଲା ॥
ସେଦିନ ରାଜାକୁ ନ କଲା ଦରଶନ ।
ଗିରିବର ତଳେ ରହିଛି ସଇନମାନ ॥
ତାହାଙ୍କର ସଙ୍ଗତେ ବଂଚିଲା ତିମିରି ।
ରଜନୀ ପ୍ରଭାତେ ଯାଇଂ ନିତ୍ୟ କର୍ମ ସାରି ॥
ସୁଗ୍ରୀବର ନବରେ ପଶିଲାକ ଯାଇଂ ।
ସଂଧ୍ୟା ସୁମରଇଂ ଇଷ୍ଟିନ୍ଦାର ସାଇଂ ॥
ଏସନେକ ସମୟେ ଦରଶନ ଯାଇଂ କଲା ।
ପାୟେଂ ପଡ଼ି ଶୋଇ ମଥାରେ ହସ୍ତ ଦେଲା ॥୩୦
ଉଠି ଭଡ଼ା ଦଶ ଗଲା ପଛ ହୋଇ ।
ହସ୍ତ ଯୋଡ଼ିଣ କଥା କହଇ ବିନୋୟି ॥
ଶୁଣ ଦେବ ଇଷ୍ଟିନ୍ଦା ଠାକୁର ସୁଗ୍ରୀବର ।
ଦକ୍ଷିଣ ଦିଶକଇଂ ଯେ ଯାଇଥିଲେ ଚାର ॥
ଅଙ୍ଗଦ ସହିତେ ଅଇଲେ ଅଷ୍ଟସେନା ।
ମଧୁବନ ଭାଙ୍ଗି ସବୁ କଲେ ଚୂନା ॥
ପୁଷ୍ପ୍ୟନ୍ତ ତୋଳିଣ ଖାଇଲେ ସ୍ୱାଦଫଳ ।
ମଧୁପାନ କରି ହୋଇଲେ ମତ୍ତ ଭୋଳ ॥
ଫଳିଲା ଫୁଟିଲା ବୃକ୍ଷନ୍ତ ନାଶ କଲେ ।
ରୁହାଇଲି ବୋଲି ମୋତେ ମାରୁଥିଲେ ॥୪୦
ବୋଇଲା ରାଜାକୁ ତୋ କହସିରେ ଯାଇଂ ।
ତାହାଙ୍କର ଶରୀରେ ଓପ୍ରୋଧ ଦେବ ନାହିଂ ॥
ନୀଳ ସେନାପତି ମୋତେ ପଥରେ ମାଇଲା ।

ପଥର ନ ବାଜିଲାକୁ ବାଳ ଧରି ନେଲା ॥
ତୋଟାରୁ ବାହାର କରିଗଲା ମୋତେ ଛାଡ଼ି ।
ବୋଇଲା ଏଥି ଥିଲେ ଖାଇବୁଟି ବାଡ଼ି ॥
ତହୁଂ ଅଭିମାନ ପାଇଂଣ ଅଇଲି ।
ତୁ ଯେ ସ୍ୱାମୀ ତୋର ଆଗରେ କହିଲି ॥
ତୁ ଯେବେ ଆଗ୍ୟାଂ ହୋ ଦେଇଛୁ ରୋମାପତି ।
ଏହା କରିବାର ତାହାର ମିକଇକି ଯୁଗତି ॥୫୦
ନୋହିଲେ ତୋଟା ମୁଂ ରଖିବି କେମନ୍ତେ ।
ଏକଥା ସତ ମିଛ ବୁଝ କପିନାଥେ ॥
ତାହାଙ୍କ ରୁହାଇଣ ଆଣ ତୋର ପାଶ ।
ବିଚ୍ଚର କର ଏଥି ଅଟଇ କାହାର ଦୋଷ ॥
ଶୁଣିଣ ସୁଗ୍ରୀବର ସନ୍ତୋଷ ହୋଇଲା ।
ଶ୍ରୀରାମର କାର୍ଯ କଲେ ବୋଲିଣ ବୋଇଲା ॥
ଦଧିମୁଖାକୁ ରାଇଂ କଲା ପୁରୁଷାର୍ଥ ।
ଧନ ବସ୍ତ୍ର ଯେ ଦେଲାକ ବହୁତ ॥
ବୋଇଲା ସତ ଟିକି ଦେଖିଲୁ ବୃତମାନ ।
ଦଧିମୁଖା ବୋଇଲା ସାଧ ହୋ ରାଜନ ॥୬୦
ଶୁଣି ସୁଗ୍ରୀବର ତକ୍ଷଣେ ଗନ୍ଧା ପିନ୍ଧି ।
ମକୁଟ ଅଳଙ୍କାର ଶିରରେ ପାଗ ବାନ୍ଧି ॥
ଚନ୍ଦ୍ରମଣ୍ଡଳ ଜାଣି କୁଣ୍ଡଳ ବେନି କର୍ଣ୍ଣ ।
ବିଦ, ମୁଦି, ବାହୁଟି ନବରତ୍ନ ମାନ ॥
ସଙ୍ଗେଣ ଅମନାତ୍ୟ ଅଛନ୍ତି ଅପାର ।
ସୁବର୍ଣ୍ଣ ବୃଷ୍ଟି କରିଣ ବାହାର ସୁଗ୍ରୀବର ॥
ଆଗେଣ ବୀରତୂର ବାଜଇ ବାଜଣା ।
ଆନନ୍ଦେଣ ଚଳଇ କପିକୁଳ ରଣା ॥
ଶ୍ରୀରାମ ସନ୍ନିଧେ ମିଳିଲାକ ଯାଇ ।
ଦେଖିଲା ବସିଅଛନ୍ତି ରଘୁକୁଳ ସାଇଂ ॥୭୦
ଆଗେଣ ଲକ୍ଷଣ ଯୋଡ଼ଇ ବେନିକର ।
ଥୋକାଏକ ଦୂରେ ଅଛି ତାରାର ପିୟର ॥
ଉତ୍ତର ପାରୁଶେ ଉଭା ଶତବାଳୀ ।
ଶଉରୀ ସେନାପତିକି ରାମ ଘେନି ଭାଳି ॥
ଡାଳିମ୍ବ ଧୂମାକ୍ଷ ଏ ଲକ୍ଷଣ ପାଶେ ଛନ୍ତି ।

ମହିନ୍ଦ୍ର, ଚନ୍ଦନ, କୁମୁଦ ହିଁ ଅଛନ୍ତି ॥
ନିତ୍ୟକର୍ମ ସାରିଣ ଦେବ ଦାଶରଥି ।
ଆଗେଣ ପଡ଼ିଅଛି କୋଦଣ୍ଡ ଭାରଥୀ ॥
ମର୍କତ ଶିଳା ଉପରେ ରାମ କରିଛନ୍ତି
ବିଜେ ।
ସଜନର ଗହଳ ଜାଣିଣ ମେଘ ଗାଜେ ॥୮୦
ଛାମୁରେ ରିକ୍ଷ ବାନର ପଟୁଆର ।
ଏକକୁ ଆରେକ ପ୍ରତଗ୍ୟାଂ ମହାବୀର ॥
କେ ବୋଲଇ ଦୂତ ଛ' ମାସ ହେଲା
ଗଲେ ।
ବାରତା ନ ପାଇଲୁ କେବଣ କୃତ କଲେ ॥
କେ ବୋଲଇ ଅବା ମଲେ ବଣା ହୋଇଂ ।
କେ ବୋଲଇ ଅବା ରହୁଛନ୍ତି କାହିଁ ॥
କେ ବୋଲଇ ଅବା ଲୁଚିଣ ଅଛନ୍ତି ।
ଖୋଜି ନ ପାରିଣ ଆସି ନ ପାରନ୍ତି ॥
ତୁଳ ସରି ଲୋକେ ଅଇଲେ ନ ଜାଣି ।
କି ଅବା ଲାଜେଣ ସେ ମଲେ
ସିନ୍ଧୁପାଣି ॥୯୦
ଲୋକଙ୍କର ଭାଲୁ ଶ୍ରୀରାମ ଯେମନ୍ତ ବିଚାରି ।
ସେନା ସେନାପତିମାନଙ୍କୁ ସବୁ ଶ୍ରୀରାମ
ହକାରି ॥
କେ କେଣେ ବାରତା ହୋ ପାଇଲ ଯେ
କାହିଁ ।
ଛ' ମାସ ଯେ ହେଲା ଦୂତେ ଛନ୍ତି ଯାଇଂ ॥
ମାସକେ ଶଙ୍ଖଳି କହିବୁ ବାରତ ।
ଥିଲା ନ ଥିଲା ଜାଣିମା କେମନ୍ତ ॥
ସବୁଙ୍କରି ମୃତ୍ୟୁ କି ହୋଇଲା
ଯେକାବେଳେ ।
ଜଣେହେଂ ସମାଦ ନ ଦେଲେ ଯେତେ
ଗଲେ ॥
କି ବୁଦ୍ଧି କରିବା ହୋ ଜାଣିମା କେମନ୍ତେ ।
କେବଣହିଂ ଦିଗେ ଗଲେ ମୋର
ଦୂତେ ॥୧୦୦
ଯେସନ ସମୟେ ସୁଗ୍ରୀବର ରାୟେ ।

ଶ୍ରୀରାମଙ୍କୁ ଦେଖି ପାୟେ ପଡ଼ି ଶୋୟେ ॥
ତତକ୍ଷଣେ ଉଠି ଶିରେ କର ଦେଲା ।
ଭଡ଼ା ଦଶ ଯାଇଂ ଓଳଗି ଶୁତିଲା ॥
ପୁଣି ଉଭା ହୋଇଂ ଯୋଡ଼ଇ ବେନି କର ।
ନିକଟେ ଉଭା ହୋଇଂଣ ବୋଲଇ ଶୁଣ
ରଘୁବୀର ॥
ସ୍ୱାମୀ ଅଙ୍ଗଦ ମୂଳେ ଯେ ଅଷ୍ଟ ସେନା
ଗଲେ ।
ସେ ଯାଇଂ ତୋହୋର ଘରଣୀକି ଠାବ
କଲେ ॥
ହନୁମନ୍ତ କାର୍ଯ୍ୟ କଲାକ ଗୋସାଇଂ ।
ଯେହିକ୍ଷଣି ଦୂତ ଅଇଲା ମୋହୋର
ଧାଇଂ ॥୧୦
ଇଷିକିନ୍ଧ୍ୟା କତେକ ତୋଟା ମଧୁବନ ।
ତହିଂ ଆସି କଲେ ଫଳମୂଳ ଭୋଜନ ॥
ବୃକ୍ଷନ୍ତ ଭାଙ୍ଗି ରକ୍ଷାଲୋକନ୍ତ ମାଇଲେ ।
ଯାଇ ସୁଗ୍ରୀବରକୁ କହସିରେ ବୋଇଲେ ॥
ସ୍ୱାମୀ ଯେକଥା ଶୁଣି ବିଚାରିଲି ମନେ ।
ନୋହିଲେ କେମନ୍ତେ ପଶିଲେ ମଧୁବନେ ॥
ଯେଣେ ସେ ସମ୍ପ୍ରତେ କଲଇଂ ଦେବ
ମୁଇଂ ।
ଶଙ୍କୁନ୍ୟ ବିଚାରିଣ ତୋତେ କହିଲଇଂ ॥
ଶୁଣିଣ ଶ୍ରୀରାମ ହୋଇଲେ ସନ୍ତୋଷ ।
ସୁଗ୍ରୀକି ବୋଇଲେ ମଇତ୍ର କତିକି
ମୋହୋର ଆସ ॥୨୦
ଯେବେ ମଧୁବନ ଭାଙ୍ଗିଲେଟିକି ସତ ।
ସୀତ୍ୟାର ସନ୍ଦେଶ ମୁଂ ପାଇଲି ଯଥାର୍ଥ ॥
ଯେତେ ବୋଲି ରାମ ସୁଗ୍ରୀକି ପ୍ରଶଂସି ।
ହୋଇଲା କାର୍ଯ୍ୟ ବୋଲି କୋଳ କଲେ ଆସି ॥
ଯେସନେକ ସମୟେ ବାଜିଲାକ ଗୋଳ ।
କି ଜାଣି ମେଦନୀ ଘୋଟିଲା ମହାଜଳ ॥
ହନୁମନ୍ତକୁ ଆଗ କରିଣ ଅଷ୍ଟ ସେନ୍ୟା ।
ଆସେନ୍ତେଣ ବନ ପର୍ବତ ହୋୟେ ଚୂନା ॥
ସଇନ ଆନନ୍ଦେ ହୁଅନ୍ତି ତାହା ଦେଖି ।

କେ ବୋଲଇ ଦେଖିଲେ ହୋ ଶ୍ରୀରାମର
ସଖୀ ॥୩୦
ଆସ ଆସ ଆହୋ ବାରତା ଶୁଣିମା ।
କିସ କିସ କହନ୍ତି କଥାନ୍ତ ମଣିମା ॥
ଯେତେ ବୋଲି ରକ୍ଷ ମର୍କଟ ସଇନି ।
ଧାମନ୍ତେଣ ଛାଇ ହୋଇଲା ମେଦନୀ ॥
ଧୂଳି ଉଡ଼ନ୍ତେଣ ନ ଦିଶଇ ଗଗନ ।
କିଳିକିଳା ଶବଦ ଶୁଭଇ ଘନଘନ ॥
ପର୍ବତ ଉପରେ ଯେ ଉଠି ଆସଇବଳ ।
ବନ ଜୀବମାନେ ଚକିତ ସକଳ ॥
ଶ୍ରୀରାମ ବୋଇଲେ ମଇତ୍ର ହୋ ଯେବେ
ଶୁଣ ।
ଯେ ଗୋଳ ଶୁଭୁଅଛି କେବଣ କାରଣ ॥୪୦
କିମ୍ବାଇଂ ସଇନ ମୋର ଆସୁଛନ୍ତି ଧାଇଂ ।
ସୁଗ୍ରୀବର ବୋଲଇ ଶୁଣିମା ରଘୁସାଇଂ ॥
ଦକ୍ଷିଣର ଦୂତେ ମଧୁବନେ ଥିଲେ ।
ମୁହିଂ ଯେମନ୍ତ ଜାଣଇଂ ସେ ଅବା ଅଇଲେ ॥
ଆନନ୍ଦେଣ ସନ୍ୟ ଗୋଡ଼ାଇଂ ଆସନ୍ତି ।
ଶୁଣିଣ ଶ୍ରୀରାମ ହୋଇଲା ପରମ ଶ୍ୟାନ୍ତି ॥
ଯେଥୁ ଅନନ୍ତରେ ଅଷ୍ଟ ସେନାପତି ।
ଆସିଣ ମିଳିଲେ ଶ୍ରୀରାମର କତି ॥
ଦୂତେ ଅପସରି ଶୋଇଲେ ଗଡ଼ଘାଲି ।
ଫୁରୁଣା ଦେଖି ରାମ ଉଠ ଉଠ ବୋଲି ॥୫୦
ଆଗ୍ୟାଂ ପାଇଣ ଉଠିଲେ ଆଠବୀର ।
ଶିରେ କର ଦେଇ ଉଠିଲେ ଧୀର ଧୀର ॥
ସବୁଙ୍କରି ମୁଖ ଫୁଟନ୍ତା ପଦ୍ମପ୍ରାୟେ ।
ଆସଆସ ବୋଲି ବୋଲନ୍ତି ରାମ ରାୟେ ॥
ନିକଟେଣ ଆସି କରନ୍ତି ନମସ୍କାର ।
ହସ୍ତ ଧରି ତାହାନ୍ତ ବସାନ୍ତି ରଘୁବୀର ॥
ହନୁମନ୍ତକୁ ଚାହିଂ ବୋଲନ୍ତି ଜଗଜିତା ।
ତୁ ହୋ ଠାବକରି ଅଇଲୁ ମୋହୋର ସୀତା ॥
ବେଗେଣ କହ ବାବୁ ଗୁପତ ନ କର ।
ଶୁଣିଣ ବୋଇଲା ପବନ କୁମର ॥୬୦
ଦେଖିଲି ଭୋ ଦେବ ଜନେକ ଦୋହିତା ।

ଗାଟଣରେ କଟକେ ଅଛି ତୋହୋର ସୀତା ॥
ତୋତେ ଦେଖିବ ବୋଲି ଧରିଅଛି ପ୍ରାଣ ।
ଶୁଣିଣ ସନ୍ତୋଷ ହୋଇଲେ ରଘୁନନ୍ଦଣ ॥
ଅପୁତ୍ରକ ଜନକୁ ପୁତ୍ର ପରାପତ ।
ଅନ୍ଧ ଚକ୍ଷୁଦାନ ପାଇଲେ ଯେସନେକ ମତ ॥
ନିଧନ ଲୋକ କି ପାଇଲେକ ଧନ ।
ସୀତାର ବାରତା ପାଇଂ ଶ୍ରୀରାମ ତେସନ ॥
ଆନନ୍ଦେ ନୟନୁଂ ବହଇ ଅଶ୍ରୁଜଳ ।
ହରଷେ ଗଦଗଦ ଦଶରଥର ବାଳ ॥୭୦
ଭୋ ହନୁମନ୍ତ ମୋହୋର ହତିକାରୀ ।
ଯେବଣ ଦିନୁ ଗଲା ଜନେକ କୁମାରୀ ॥
ତାହାର ବିରହ ଅନଳେ ମୁହିଂ ପଡ଼ିଥିଲି ।
ସୀତାର ବଚନ ମୁଂ ତୁମ୍ଭ ଠହୁଂ ଶୁଣିଲି ॥
ହନୁମନ୍ତ ହଂ ତୁ ଅନେକ ଗୁଣ କଲୁ ।
ଶୟେ କୁଣ ସମୋଦ୍ର ତୁ କେମନ୍ତେ ତରିଗଲୁ ॥
ହନୁମନ୍ତ ବୋଲଇ ତୁ ଶୁଣ ରଘୁନାଥ ।
କିସ ଦୃଗମ ଯେ ଅଟଇ ଜଳପଥ ॥
ଯାହାର ନାମେ ମୁନି ଭବଜଳୁଂ ତରି ।
ତାହାର ମୁଦ୍ରିକା ମୁଂ ଅଣ୍ଟିରେ ଥିଲି ଭରି ॥୮୦
ଲକ୍ଷ୍ମୀର କାର୍ଯ୍ୟ ନାରାୟେଣ ଆଗ୍ୟାଂ ପାଇ ।
ଅବହେଳେ ଲବଣ ସମୁଦ୍ର ଗଲି ଡେଇଂ ॥
ସୀତାକୁ ଦେଖିଲି ଅଶୋକ ବନେ ଅଛି ।
ଅବିଛିନ୍ନେ ନୟନୁ ଅଶ୍ରୁଜଳ ପୋଛି ॥
ଶ୍ରୀରାମ ବୋଇଲେ ଶୁଣ ଆହୋ ପାବେନି ।
କେମନ୍ତେ ଦେହ ଧରିଅଛି ମୋହୋର ଭାବେନୀ ॥
ଧଇର୍ଯ୍ୟ ହୋଇଣ ପୁଣ ପଛକରି କହ ।
ସୀତାର ବାରତା କହି ରଖ ମୋର ଦେହ ॥
ଆଶ୍ରିତ ଜନ ଯେ ମୋହୋର ନାହିଂ କିଛି ।
କରଯୋଡ଼ି କହଇ ପବନର ବଛି ॥ ୯୦
ଶୁଣ ଦେବ ରଘୁନାଥ ଅଯୋଧ୍ୟାର ନାଥ ।
ଅଙ୍ଗଦର ସାଙ୍ଗେ ଆମ୍ଭେ ଗଲୁ ଜଣ ସାତ ॥

କହିଲେ ନ ସରଇ ତହିଂର ବିଧାନ ।
ଶୁକ୍ରଙ୍କର ବେଳେ କଲଇଂ ପରସ୍ଥାନ ॥
ଘୋର ଗିରି କନ୍ଦର ବହୁତ ବୁଲିଗଲୁ ।
ଯେକ ଅସୁରେକ ଆସନ୍ତେ ଦେଖିଲୁ ॥
ତାହାକୁ ହେଳେଣ କଲୁ ପ୍ରାଣ ନାଶ ।
ତହୁଂ ଚଳିଗଲୁ ଚଉଦ ହାଦେ କୋଶ ॥
ଉତ୍ତମ ତୀର୍ଥ ଦେଖିଣ ସ୍ନାହାନ ତହିଂ କଲୁ ।
ଗିରି ପର୍ବତେ ଯାଇଂଣ ଚଢ଼ିଲୁ ॥ ୧୦୦
ଦେଖିଲୁ ପାତାଳକୁ ଅଛଇ ବିମ୍ବର ।
ତହିଂ ବିଭରେ ଯେ କଲୁ ଆଠବୀର ॥
ଦୁଲଭ ଠାବେ ଯେ ଥିବନା ଜାନେକୀ ।
ଲୁଚାଇଂ ରାବଣ ଥୋଇଥାଇଂ ନିକି ॥
ଚାଲ ପଶିବା ହୋ ଦେଖିବା ବେଗେ ଯାଇଂ ।
ଏତେ ବୋଲି ବିମ୍ବରେ ପଶିଲୁ ଯେ ଯାଇଂ ॥
ବାଟ ନ ଦିଶଇ ଘୋର ଅନ୍ଧାରେଣ ଗଲୁ ।
ଦିବ୍ୟ ଭୁବନେକ ତହିଂ ଯେ ଦେଖିଲୁ ॥
ଜନ ମନିଷ୍ୟ ନାହିଂ ତହିଂ କିଛି ।
ସୁବର୍ଣ୍ଣର ମଣ୍ଡୋପେ ଯୁବତୀୟେ ବସିଅଛି ॥୧୦
ତାହାକୁ ପଚାରିଲୁ କେବଣ ଏ ପୁରୀ ।
ଶ୍ରୀରାମର ଦୂତ ଆମ୍ଭେ ଅଇଲୁ ସୀତା ଲୋଡ଼ି ॥
ସେ କନ୍ୟା ବୋଇଲା ମୁହିଂ ମେରୁର ଦୋହିତା ।
ଲଙ୍କାର ରାବଣ ନେଇଂଅଛି ସୀତା ॥
ଯେଥକଇଂ ଅଇଲେ ନ ପାଇ ଆନ ପ୍ରାଣ ।
ଶ୍ରୀରାମର ଦୂତ ଅଟ ଆଠ ଜଣ ॥
ଚକ୍ଷୁ ବୁଜି ତୁମ୍ଭେ ଯାଅ ଯା ବାହାର ହୋଇଂ ।
କହିଲି ସଂପ୍ରତେ ମୋହୋର ଦୋଷ ନାହିଂ ॥
ତାହା କଥା ପାଇଂ ବୁଜିଲୁ ଆମ୍ଭେ ଆକ୍ଷି ।
ତକ୍ଷଣେ ଅଇଲୁ ସେ ଭୁବନ ଉପେକ୍ଷି ॥୨୦
ସିନ୍ଧୁତଟେ ଆସି ହୋଇଲୁ ପରବେଶ ।
ଦେଖିଲୁ ସମୁଦ୍ର ନହଡ଼ି ଦଶଦିଶ ॥

ଦିନ ଲେଖା କରି ମରିବାକୁ ମନ କଲୁ ।
ଉପବାସେ କୁଶ ଶେଯ୍ୟାରେ ଶୋଇଲୁ ॥
ସମ୍ପାତିର ନାମେ ଗରୁଡ଼ର ସୁତ ।
ଜଟାଇଷ ମାହାତ୍ମା ତାହାର ସାନ ଭ୍ରାଥ ॥
ପକ୍ଷୀ ପୋଡ଼ିଣ ସେ ପଡ଼ି ତହିଂ ଥିଲା ।
ଆମ୍ଭଙ୍କୁ ଦେଖିଣ ସେ ଖାଇଂ ମନ କଲା ॥
ଶ୍ରୀରାମର ଦୂତ ବୋଲି ଜାଣିଲାକ ଯହୁଂ ।
ପୋଡ଼ିଲାର ପକ୍ଷୀ କଅଂଳିଲାକ ତହୁଂ ॥ ୩୦
ସଦୟେ କରିଣ ପୁଛିଲା ବାରତା ।
ବୋଇଲା ରାବଣ ସେ ଲଙ୍କାକୁ ନେଲା ସୀତା ॥
ହରି ନିଅନ୍ତେଣ ଦେଖିଲଇଂ ତାହା ।
ଆକାଶରେ ରଥ ବାହାଇ ବିଂଶବାହା ॥
ଧ୍ୱଜ ଚିରାଳ ସେ ଦିଶୁଥିଲା ମୋତେ ।
ପକ୍ଷୀ ପୋଡ଼ିଅଛି ମୁଂ ଯିବଇଂ କେମନ୍ତେ ॥
ଯେତେବୋଲି ତାର ପୁତ୍ରକୁ ସୁମରି ।
ହେମବନ୍ତେ ଥାଇଂ ସେ ଅଇଲା ଖର କରି ॥
ପିଠିରେ ବସାଇଂ ସେ ଲଙ୍କା ଦେଖାଇଲା ।
ପୁତ୍ରକୁ ଘେନି ସେ ଆଶ୍ରମକୁ ଗଲା ॥ ୪୦
ତହିଂ ବିଚାର ସେ କଲୁ ଆମ୍ଭେ ବସି ।
ସମୁଦ୍ର ଲଙ୍ଘି କେହୁ ଯିବାକ ଭରସି ॥
ମୁହିଂ ବୋଇଲି ମୁଂ ଲଙ୍କାକଇ ଯିବି ।
ଶ୍ରୀରାମର ଘରଣୀ ସୀତାକୁ ଖୋଜିବି ॥
ଯେତେବୋଲି ତୋର ମୁଦିର ପ୍ରସାଦେ ।
ତହିଂକି ଗମନ ମୁଂ କଲଇଂ ଅପ୍ରମାଦେ ॥
ମଣିନାଗ ପର୍ବତ ସାଗର ମଧ୍ୟେ ଥିଲା ।
ତୋହୋର ଦୂତ ବୋଲି ଗଉରୋବ କଲା ॥
ତହୁଂ ଯାନ୍ତେ ଦେଖିଲି ନାଗମାତା ।
ଗୁପତେଣ ତାକୁ ପେଷିଛନ୍ତି ଦେବତା ॥୫୦
ସେ ମୋତେ ଉଗାଳିଣ ବଢ଼ାଇଲା କାୟେ ।
ମୁହିଂ ତାହାକୁ ଉଗୁଳି ବଢ଼ି କ୍ଷୁଣ କ୍ଷଏ ॥
ଜାଣିଣ ଯୁବତୀ ତହୁଂ ବାହୁଡ଼ିଣ ଗଲା ।
ରାହୁର ଜନନୀ ଆସି ବାଟ ଉଗାଳିଲା ॥
ସହସ୍ରେ ଯୋଜନ ହୋଇଲା ଭୟାଙ୍କର ।

ମୋତେ ଗିଳିଲା ସେ ଫଳ କରିଣ ଆଧାର ॥
ପେଟରେ ଥାଇ ବିଦାରିଲି ବୁକୁ ।
ଅନ୍ତ ନାଡ଼ ଛିଡ଼ାଇ ଆଣିଲି ବାହାରକୁ ॥
ପ୍ରାଣ ଛାଡ଼ିଣ ସେ ପଡ଼ିଲା ଦଇତୁଣୀ ।
ହାନ୍ଦୋଳି ହୋଇଲା ତେଡ଼େ ଲବଣର
ପାଣି ॥୬୦
ଦେବେ କୁସୁମ ବରଷିଲେ ମୋର ଶିରେ ।
ମଳୟ ପବନ ବହଇ ଧୀରେ ଧୀରେ ॥
ତହୁଁଣ ରାଘେବ ମୁଂ ଗଲି ଅବହେଳେ ।
ଶଯେ କ୍ରୁଣ ସମୁଦ୍ର ମୁଂ ତରିଲି ତୋର
ବଳେ ॥
ସୁବଳୟା ଗିରି ନାମେ ଅଛଇ ପର୍ବତ ।
ତହିଂ ଯାଇ ବିଶ୍ରାମ କଲି ରଘୁନାଥ ॥
ନିଶି ଭାଗେଣ ସେ ପଶିଲି ଲଙ୍କପୁରୀ ।
ମୋତେ ଦେଖିଲା ଯେ ଏକଇ ଅସୁରୀ ॥
ବୋଇଲା ବାନରରେ କାହିଂକି ତୁ ଯାଉ ।
ଯେ ସେ ରାବଣେଶ୍ୱର ଅସୁରଙ୍କର
ରାହୁ ॥୭୦
ଯେ ଲଙ୍କାଗଡ଼କୁ ଦେବତାଏ ଭଏ କରି ।
ତୁ କିମ୍ପା ଭିତରେ ପଶିଲୁ ଲଙ୍କପୁରୀ ॥
ତାର ବଚନକୁ କୋପ ମୁହିଂ କଲି ।
ନିର୍ଘାତ ଶବଦେଣ ବିଧାୟେ ମାଇଲି ॥
ପଡ଼ି ଦଇତୁଣୀ ଗ୍ୟାଂନ ହରାଇଲା ।
କ୍ଷଣକେ ଚେତନା ମଣି ସମାସ୍ୟା କହିଲା ॥
ବୋଇଲା ଲଙ୍କାଗଡ଼ ଆଜୁଂ ହୋଇଲା
ଧ୍ୱଂସ ।
ନିଚୟେ ଧ୍ୱଂସ ଯିବ ରାବଣର ବଂଶ ॥
ପୂର୍ବେ ବ୍ରହ୍ମା ମୋତେ ଯାହା ଗଲା କହି ।
ଏବେ କପି ହାଥେ ପ୍ରଭାବ ପାଇଲଇଂ ॥୮୦
ଯାଆସି ମର୍କଟ ହୋ ସୀତୟା ବେଗେ
ଖୋଜ ।
ଯଶ ଶିରୀ ଆଜୁଂ ତୁଟିଲା ଅସୁର ରାଜ ॥
ଏତେ ବୋଲି ରାକ୍ଷସୀ ଗଲା ଅନ୍ତର୍ଦ୍ଧାନେ ।
ତହୁଂ ମୁହିଂ ପଶିଲି ଅସୁର ଘରମାନେ ॥

ଘରେହେଂ ନ ଛାଡ଼ିଲି ଲୋଡ଼ିଲି ସବୁହିଂ ।
ରାବଣ ମନ୍ଦିର ସହିତେ ସୀତା ନାହିଂ ॥
ନିଚୟେଂ ନ ପାଇ ମରିବାକୁ କଲି ମନ ।
ପୂର୍ବ ଭାଗେ ଦେଖିଲି ଅଛଇଂ ବିପୁନ୍ୟ ॥
ତୋ ନାମ ସୁମରି ତହୁଂ ଚଳିଗଲି ।
ସୁବନ୍ୟ ଜଗତୀରେ ସୀତାକୁ ଦେଖିଲି ॥୯୦
ସହସ୍ରେ ଅସୁରୀ ଅଛନ୍ତି ତାହାକୁ ରଖି ।
ମଧ୍ୟରେ ବସିଅଛି ସମ୍ପୂର୍ଣ୍ଣ ଚନ୍ଦ୍ରମୁଖୀ ॥
ଭୋ ରାମ ସୀତାକୁ ତୋର ସରିସମ ନାହିଂ ।
ସତୀଙ୍କର ଶିରୋମଣି ଅଟଇ ଗୋସାଇଂ ॥
ପରଘରେ ସେ ତ ଯେକା ହୋଇଥିବ ।
ଆହାର ବିହୁନେ କେ ନିଦ୍ରାହିଂ ବଞ୍ଚିବ ॥
ଶିରେ ଜଟାଯେ ବୃକ୍ଷ ତଳେ ବସା ।
ହେଠମାଥ ହୋଇଂ ତୋତେ କରଇ ଆଶା ॥
ସ୍ଫଟିକର ଜପାମାଳି ଗୋଟିଏ ଘେନିଥାଇ ।
ଜପ ଯାକ ତୋହୋର ନାମ
ସୁମରଇ ॥୧୦୦
କପାଳେ ବାମହସ୍ତ ଅବନୀକି ଦୃଷ୍ଟି ।
ଦୁଃଖେଣ ଜଗତେ ସେ ଅଛଇ ବିମ୍ୟଓଷ୍ଟୀ ॥
ରାକ୍ଷାସୁଣୀମାନେ ତାକୁ ଡରାଉଥାନ୍ତି
ଅନୁବ୍ରତେ ।
ଆପଣେ ରାବଣ ତିଆରିଲା ଅନେକ ମତେ ॥
ଭ୍ରମର ରୂପ ଧରି ମୁଂ ଉରାରେ ବସିଥିଲି ।
କଥାମାନ ତହିଂ ସମସ୍ତ ଶୁଣିଲି ॥
ରାବଣକୁ ସୀତା ସମସ୍ୟା ନ ଦେଲା ।
ଧୂରୁ ଦେଖିଣ ପଛ କରିଣ ବସିଲା ॥
କୋପେ ଦଶାନନ ଖଡ଼ଗ ଘେନି କରି ।
ବୋଇଲା ଜାନେକୀକି ପକାଇବି ମାରି ॥୧୦
ତ୍ରିଜଟା ନାମେଣ ବିଭୀଷେଣର ଝିଅ ।
ସେ ସମାଦିଲା ସମୟେକ ରହ ॥
ତେବେ ସେ କୋପ ଛାଡ଼ିଲା ଲଙ୍କପତି ।
ବୋଇଲା ଦୁଇମାସେ ଦେଖାଇବୁ ତୋହୋର
ପତି ॥
ନୋହିଲେଣ ଶିର ପକାଇବି ହାଣି ।

ଯେହାକହି ତହୁଂ ଗଲା ବିଂଶପାଣି ॥
ସେ ସେ ଜାନେକୀ ତୋ ଅଟଇ
ମହାସ୍ୟତୀ ।
ତୁହି ତାହାର ସ୍ୱାମୀ ଅଟୁ ତାର ପତି ॥
ତୋତେ ସୁମରିଣ ହୋଇଅଛି ଦୁଃଖୀ ।
ଯେ କଥା ଉଚିତ ମୁଂ ଦେଖିଲି
ଦୁଇଆଖି ॥୨୦
ଯେତେବେଳେ ରାବଣ କୁମାର୍ଗ କହିଲା ।
କୋପମୁଖ ହୋଇ ଜାନେକୀ ବୋଇଲା ॥
ଯେ ତୋହୋର ଲଙ୍କା ପୋଡ଼ିଯାଉ ଆଜ ।
ସେ କଥା ସତ ଯେ ହୋଇଲା ରଘୁରାଜ ॥
ଅଛଯେ ବୋଲିଣ ଦଶଗ୍ରୀବର ସୁତ ।
ରଣେ ପଡ଼ିଲା ସଙ୍ଗେ ଘେନିଣ ବହୁତ
ଦଇତ ॥
ଯେବଣ ଦିନ ରାବଣ ସୀତାକୁ ଏଥୁ
ନେଲା ।
ପୁରେଣ ତାହାର କାଳ ପ୍ରବେଶ ହୋଇଲା ॥
ନଗ୍ର ଲୋକଙ୍କର ବୋଲ ମୁଂ ଶୁଣିଲି ।
ଗୁପତ ପ୍ରଘଟ ମୁଂ କଥାନ୍ତ ମଣିଲି ॥ ୩୦
ତପତ ତମ୍ୟା ପ୍ରତିମା ତୋହୋର ସତୀ ।
ଛୁଇଂମାକୁ ଭାର୍ଜନ ନୁହଇଂ ଲଙ୍କପତି ॥
ନିକଟକୁ ଯିବାକୁ ବହୁତ ଭଏ କରଇ ।
ଧୂରୁ ରହିଣ ସେ ସମାସ୍ୟା ବୁଝଇ ॥
ସୂଚୀ ଯେସନେ ପର୍ବତେ ନ କରଇ ଭେଦ ।
ସୀତ୍ୟା ନ ଶୁଣଇ ଦଶଗ୍ରୀବର ପଦ ॥
ଯେସନେକ ସତୀ ସେ ଅଟଇ ବଇଦେହୀ ।
ତାହାକୁ ପତିପଣେ ଅଟୁ ସ୍ୱାମୀ ତୁହି ॥
ସେ ତୋହୋର ନାରୀ ଅଟଇ ରଘୁନାଥ ।
ଯେ ଦୁଃଖ ସହିବାର ଅଟଇ ଯଥାର୍ଥ ॥ ୪୦
ବିଧାତା ସେ ଯେସନେକେ ଚରିତ
ଭିଆଇଲା ।
କାହାର ବୋଲେ ସେ ଆନ ହୋୟେ କଲା ॥
ତୁ ଯେବେ ଭୋ ସ୍ୱାମୀ ଶୋଚନା ନ କର ।
ଅଳପେ ସମୟେ ସଖୀକି ଦେଖିବୁ
ତୋହୋର ॥

ପାଉଂଶ ଭିତରେ ଯେହ୍ନେ ଗୁପତେ ଅଗ୍ନି ଥାଇ ।
ପବନ ଆହାରୀ ହୋଇ ଅଛଇ ତୋର ସହୀ ॥
ନିଦ୍ରା ତେଜିଣ ଅତି ଦୁଃଖେ ଅଛି ।
ଅଜାଗେ ଯାଇଂଣ ମୁଂ ଦେଖିଲି ମୃଗାକ୍ଷି ॥
ଶୁଣି ଶ୍ରୀରାମ କଷ୍ଟ ଯେ ସୁମରି ।
ଆହା ଜାନେକୀ ମୋହୋର ପ୍ରାଣ ସରି ॥୫୦
ମୋହୋର ହାଥ ଧରି ହୋଇଲୁ ତୁ ଦୁଃଖୀ ।
ଏତେ ଅନୁଭବ ସହିଲୁ ଚନ୍ଦ୍ରମୁଖୀ ॥
ଧିକ ମୋହୋର ଜୀବନ ଧିକ ମୋହୋର କୁଳ ।
ଧିକ ମୋହୋର ପୁରୁଷାର୍ଥ ଧିକ ମୋହୋର ବଳ ॥
ଜନେକର ଝିଅ ଅଯୋନି ସମ୍ଭୂତ ।
ଯେଥକୁ କଷଣ ନୁହଇଂ ବିହିତ ॥
ଧିକ ବିଧାତା ତୁ ଯେ କଷ୍ଟ ବିହିଲୁ ।
ହାନି ଲାଭକୁ ଯା ବିଚାର ନ କଲୁ ॥
ମୁହିଂ ଯେବେ ନୃପତିର ଅଟଇ ତନୟେ ।
ଋଷି ବ୍ରାହ୍ମଣେ ମୋର ବହୁତ ବିନୟେ ॥୬୦
ବଳବନ୍ତ ପଣେଣ ମୋତେ ଆଗେ ଲେଖି ।
ପଣ୍ଡିତେ ପୂଜା କରନ୍ତି ଧାର୍ମିକ ପଣ ଦେଖି ॥
କାର୍ଯ୍ୟର କାରଣେ ଆସନ୍ତି ରାଜାଗଣ ।
ଚାଟୁ କହନ୍ତି ମୋତେ ବିବିଧ ପ୍ରକାରେଣ ॥
ମୁହିଂ ଯେବେ ନିରେଖ ବିଧାତା ମୋତେ ଯେହା କଲା ।
ଯୁବାକାଳେ ମୋତେ ଭାରିଯା କଷ୍ଟ ଦେଲା ॥
କାହିଂ ଅବିଷେକ କାହିଂ ବନବାସ ।
ଅରଣ୍ୟେ ଶୁଣିଲି ପିତାର ପ୍ରାଣନାଶ ॥
ଦୁଃଖର ଉପରେ ଦୁଃଖ ବିହି ମୋତେ କଲା ।
ତହୁଂ ପୁଣ ସୀତୟା ବିଚ୍ଛେଦ ହୋଇଲା ॥୭୦
ଯେ ମୋହୋର ନିଲଜ ଜୀବନ ରହିଅଛି ।
ସତ ମୋତେ କହରେ ପବନର ବଛି ॥
କାଇଂଅଛିଟିକିରେ ଜନେକର ଝିଅ ।
ଓପ୍ରୋଧ ନ କରି ତୁ ନିଚୟେ କରି କହ ॥
ମୋତେ ଛାଡ଼ିଣ କି ଅଛଇ ପ୍ରାଣ ଧରି ।
ପ୍ରତେ ନ କଲି ଯେ ହୃଦରେ ମୋହୋରି ॥
ରୂପରେ ସଖି ମୋର ଶଚୀ ଜିଣି ପାରଇ ।
ତନୁ କୋମଳ କି ଶିରୀଷ ଫୁଲ ଜିଣଇ ॥
ଆଜକୁ ତେର ବରଷ ଦୁଇମାସ ।
ମୋହୋର ସଙ୍ଗେ ସଖି କଲା ବନବାସ ॥୮୦
ଭୂମିରେଣ ଶୋଇଂ ପାଇଲା ବହୁତ ଦୁଃଖ ।
ଦିନେହେଂ ମନେ ତାର ନ କଲା ବିମୁଖ ॥
ଏମନ୍ତ ଲୋକକୁ କି ବିଧାତା ଏହା କଲା ।
ପବିତ୍ର ଅଙ୍ଗ ଗୋଟିକି ବିଧାତା ଦୁଃଖ ଦେଲା ॥
ଶରଦ ସମ୍ପୂର୍ଣ୍ଣ ଚନ୍ଦ୍ରମା ଯେହ୍ନେ ଶୋହେ ।
ସଖୀର ମୁଖମଣ୍ଡଳ ଜଗତଜନ ମୋହେ ॥
ନୀଳନ୍ଦି ଦଳ ଲୋଚନ ଯୁଗଳ ।
ଚାଚର ଚିକୋର ସୁଗନ୍ଧ ପରିମଳ ॥
କନ୍ଦର୍ପ ଫାଶୀ ପ୍ରାୟେ ବେନି କର୍ଣ୍ଣ ।
ଅଧର ରଙ୍ଗ ଯେ ଡାଳିମ୍ବ ପୁଷ୍ପମାନ ॥୯୦
ଦନ୍ତ ଗଜମୋତି ସିନ୍ଦୂରେଣ ମଣ୍ଡି ।
ତିଳ ଫୁଲ ଜାଣି ଦିଶଇ ନାକଦଣ୍ଡି ॥
କଥା କହନ୍ତେଣ ଅମିଅ ବରଷି ।
ପଛକୁ ସୁନ୍ଦର ଆଗକୁ ଶୋଭା ଦିଶି ॥
ମଝା ସଂକୀର୍ଣ୍ଣ ସୁନ୍ଦର ବକ୍ଷସ୍ଥଳ ।
ଉଛ ସଞ୍ଚ କଠିଣ ଉରଜ ଯୁଗଳ ॥
ପଦ୍ମନାଳ ଜାଣି ଶୋଭିତ ବାହୁ ବେନି ।
ନିତମ୍ବ ବୃଷାଳ ଜାତି ଯେ ପଦ୍ମିନୀ ॥
ଉଲଟ କଦଳୀ ଜାଣିଣ ଜଘନ ।
ଚରଣ ରଙ୍ଗକଇ ଅଳତା ନିଉନ ॥ ୧୦୦
ଶୁଦ୍ଧ ସୁବର୍ଣ୍ଣ ତନୁବର୍ଣ୍ଣ ଆଭା ।
ମୁଇଂ ପ୍ରତିମା ସେ ଅଟଇ ମୋର ପ୍ରଭା ॥
ସ୍ୱର୍ଗର ସୁନ୍ଦରୀ ତାକୁ ନୁହଇ ସମସରି ।
କେବଣ ଶାପ୍ୟରେ ମର୍ତ୍ତେ ଅବତରି ॥
ବିଷ୍ଣୁର ଲକ୍ଷ୍ମୀକି ବାସେବର ଶଚୀ ।
ଏ ମୋହୋର ମନକୁ ଏସନ କଥା ରୁଚି ॥
ଭୋ ହନୁମନ୍ତ ମୋହୋର କାର୍ଯ୍ୟ କଲୁ ।
ସମୁଦ୍ର ତରି ଲଙ୍କାଗଡ଼କଇ ଗଲୁ ॥
ମରିବାକୁ ଭୟେ ନୋହିଲା ତୋହୋର ।
ଧନ୍ୟ ତୋ ଜନନୀ ଧନ୍ୟ ତୋ ପିଅର ॥୧୦
ଧନ୍ୟ ସୁଗ୍ରୀବର ଧନ୍ୟ ଇଷ୍କିନ୍ଧ୍ୟାର ପତି ।
ତୋହୋର ପ୍ରସାଦେ ଖୋଜିଲା ମୋହୋର ଦୋହିତୀ ॥
ଅସୁର ଘରେ ଯେ ଅଛି ଦୁଃଖ ସହି ।
ନିରେଖଜନର ଯୁବତୀ ପ୍ରାୟେ ହୋଇଂ ॥
ଯେବେଣ କାଳେ ସଖୀ ମୋହୋର ସଙ୍ଗେ ଥିଲା ।
ତେର ବରଷ ଦୁଇମାସ ବିପୁନ୍ୟେ ବିହରିଲା ॥
ମାଙ୍କଡ଼ ପୁଅଙ୍କୁ ତାଳେ ଦେଖିଲେ ଭୟେ କରି ।
ବାହୁଡ଼ିଣ ଆସିଣ ମୋତେ କୋଳ କରି ॥
ଯେବେ କେମନ୍ତେ ଅସୁର ଘରେ ଅଛି ।
କାହାର ମନ ଯେବେ ହରଇ ମୃଗାକ୍ଷି ॥୨୦
ହନୁକୁ ବୋଇଲେ କି ଆଣିଲୁ ସନ୍ଦେଶ ।
ତାହା ଦେଖାଇ ମୋର ମନ କର ତୋଷ ॥
ଶ୍ରୀରାମ ବଚନେ ବୋଇଲା ମାରୁତି ।
ଶୁଣ ଦେବ ଅଯୋଧ୍ୟାଠାକୁର ରଘୁପତି ॥
ଓଶେକ ବିପୁନ୍ୟେ ମୁଂ ସୀତ୍ୟାକୁ ଠାବକଲି ।
ଅସୁରୀଙ୍କ ଥିଲାରେ ମୁଂ ସମାସ୍ୟା ନ ଦେଲି ॥
କୋପଭର ହୋଇ ଯେ ଗଲା ଲଙ୍କପତି ।
ଯେଥୁଅନନ୍ତରେ ପାହିଲାକ ରାତି ॥
ସେହି ବିପୁନ୍ୟେଣ ନଦୀୟେକ ଅଛି ।
ନିତ୍ୟକର୍ମ ସାରିବାକୁ ଗଲା କମଳାକ୍ଷୀ ॥୩୦
ଶିଂଶପା ବୃକ୍ଷତଳେ ରହିଲାକ ଯାଇଂ ।
ମୁଇଂ ଯାଇ ଦର୍ଶନ କଲି ଦେବୀ ତହିଂ ॥
ଯାବତ କଥାମାନ ମଣାଇ କହିଲି ।
ପ୍ରତେ ନ ଗଲେ ଶ୍ରୀରାମ ମୁଦି ଗୋଟି ଦେଲି ॥
ଚିତ୍ରକୂଟ କଥା କହିଥିଲ ଯାହା ଯାହା ।
ବିଶ୍ୱଆସ କରିଣ କହିଲଇଂ ତାହା ॥

ତେବେ ସେ ପ୍ରତେ ଗଲା ଚାନ୍ଦମୁହୀଂ ।
ମୁଦି ଗୋଟି ସାଇତିଲେ ଶୋକଭର ହୋଇଂ ॥
ମୁଇଂ ବୋଇଲି ମୁଂ ଭେଟିଲି ଯେ ତୋତେ ।
ତୁ ମାହାସ୍ୟତୀ ଗୋ ନ ଜାଣୁ ପୂର୍ବେ ମୋତେ ॥୪୦
ସୁଗ୍ରୀବର ଭଣଜା ମୁଂ ଶ୍ରୀରାମର ଦାସ ।
ରଘୁନାଥ ମୋତେ କହନ୍ତି ବିଶ୍ୱାସ ॥
ତେଣୁ ସେ ସାହେର ମୁଂ ଲଙ୍ଘିଣ ଅଇଲି ।
ଯେଡ଼େ ଦୁର୍ଜୟ ଗଡ଼େ ତୋତେ ଠାବ କଲି ॥
ଯେବେ ବାହୁଡ଼ି ମୁଂ ଯିବି ଏହିକ୍ଷଣି ।
ବାହୁଡ଼ା ସନ୍ଦେଶ ମୋତେ ଦିଅ ରାମରାଣୀ ॥
ଶୁଣି ମହୀସୁଳୀ ସନ୍ତୋଷ ହୋଇଲା ।
ବିଭାକାଳ କଥାମାନନ୍ତ କହିଲା ॥
ମହୁଶେଯେ ଶୟନ କଲ ବେନି ଜନ ।
ସେ କଥାକୁ ସାକ୍ଷୀ ଅଟଇ ହୁତାଶନ ॥୫୦
ତାହାର ଆନ ନୋହିବ ଜୀବନ୍ତେ ।
ତୁ ବିଭା ନୋହିବୁ ଶରୀରେ ପ୍ରାଣ ଥାନ୍ତେ ॥
ଏସନେକ ସନ୍ଦେଶ କଥାମାନନ୍ତ କହିଲା ।
ପ୍ରତେ କରିବାର ନିମନ୍ତେ ମଥାର ମଣି ଦେଲା ॥
ବୋଇଲା ଶଶୁରେ ମୋ ଦେଖୁଣିର କାଳେ ।
ଏ ରତ୍ନ ଗୋଟି ଆଣି ଲଗାଇଲେ କପାଳେ ॥
ଏତେ ବୋଲି ମୋତେ ସମର୍ପିଲେ ମଣି ।
ଆବର କଥାନ୍ତ କହିଲା ତରୁଣୀ ॥
ବୋଇଲା ଦୁଇମାସେ ରାମ ନୁଆସିବେ ଯଦି ।
ରାବଣ ମୋହୋର ଶିର ପକାଇବ ଛେଦି ॥୬୦
ଯାଅ ବାବୁ ଯେବେ ଶ୍ରୀରାମକୁ ଘେନିଆସ ।
ଶୁଣିଣ ଦାଶରଥି ହୋଇଲେ ସନ୍ତୋଷ ॥
ଯେଥୁ ଅନନ୍ତରେ ପବନର ତନୟେ ।
ଅଞ୍ଚିରୁ ମଣି କାଢ଼ି ଶ୍ରୀରାମକୁ ଦିୟେ ॥
ଉଠିଣ ରଘୁନାଥ ଘେନିଲେ ତଡ଼ତି ।
ବୁକୁରେଣ ଲଗାଇଂ ବସିଲେ ସୀତ୍ୟାପତି ॥
ବିଷ୍ଣୁର କୌସ୍ତୁଭ ପ୍ରାୟେ ମଣି ଦିଶି ।
ଦେଖିଣ ଶ୍ରୀରାମ ବହୁତ ପ୍ରଶଂସି ॥
ବିଧାତାକୁ ସୁମରି କପାଳେ କର ମାରି ।
ବୋଲନ୍ତି ଏ ମଣି ଜାନେକୀର ସରି ॥୭୦
ସମ୍ପୂର୍ଣ୍ଣ ଚନ୍ଦ୍ରମା ଯେ ଶୁକ୍ର ବିରାଜଇ ।
ସଖୀର ମୁଖକୁ ତୁ ତେସନ ସାଜଇ ॥
ହନୁମନ୍ତକୁ ଚାହିଁ ବୋଲନ୍ତି ରଘୁନାଥ ।
ଯେବେ ବଡ଼ କଷ୍ଟ ମୋତେ ହୋଇଲା ପବନର ସୁତ ॥
ବାରତା ନ ପାଇଣ ଥିଲି ମୁଂ ପ୍ରାଣ ମୂଛି ।
ଯେବେ ଜାଣିଲି ସଖି ମୋହୋର ଯେ ଅଛି ॥
ଦଇତର ଘରେ ଅନେକ କଷଣ ସହି ।
ଏହା ସେ ଅରଜିଲା ମୋତେ ବିଭା ହୋଇଂ ॥
ସ୍ତିରୀଙ୍କର ତିନି ଦଶା ବୋଲିଣ ବୋଲନ୍ତି ।
ଯେ ଯାହାରବେଳେ ନାରୀ ଭୋଗ ସେ କରନ୍ତି ॥୮୦
ବାପର ଘରେ ସୁସ୍ଥ ପାଇଲାକ ସୀତା ।
ଗୃହସ୍ଥ ଘରେ ପୁଣ ଦେଲାକ ବିଧାତା ॥
ମୋହୋର କାଳେ ସେ ଅସୁର ଘରେ ବନ୍ଦୀ ।
ଯେତେ ବୋଲିଣ ଯେ ଶ୍ରୀରାମଚନ୍ଦ୍ର କାନ୍ଦି ॥
ଧିକ ମୋହୋର ପୁରୁଷାର୍ଥ ଧିକ ମୋହୋର ଜୀବନ ।
ଶିରେ କର ଦେଇଂ ରୋବନ୍ତି ରଘୁନାନ ॥
ରାମ କାନ୍ଦନ୍ତେ କାନ୍ଦନ୍ତି ସମସ୍ତ ।
କେ ବୋଲଇ ବିହି କଲାକ ବିପରୀତ ॥
ଯୁବାକାଳେ ବିଛେଦ ସୀତା ପରା ନାରୀ ।
ଯେତେ ବୋଲି ଲୋକେ ହାହାକାର କରି ॥୯୦
ହନୁକୁ କୋଳ କରି ବୋଲନ୍ତି ରଘୁନାଥ ।
ସୀତୟା କହିଲା ମୋତେ ଯଥାଅର୍ଥ ॥
ତାହାରି କଥାକୁ କହୁଥିବୁ ତୁହି ।
ଆନ ବିଗ୍ଭରେଣ ପ୍ରିୟୋଜନ ନାହିଁ ॥
ଶ୍ରୀରାମର ବଚନେ କହଇ ହନୁମନ୍ତ ।
ଶୁଣ ଦେବ ରାଘେବ ବଇଦେହୀର କାନ୍ତ ॥
ଯେବଣ ରାତ୍ରେଣ ମୁଂ ଭେଟିଲଇଂ ସୀତା ।
ଏସନେକ ସମୟେ ଅଇଲା ଇନ୍ଦ୍ରଜିତର ପିତା ॥
ଭ୍ରମର ରୂପ ଧରି ମୁଂ ଉରାରେ ବସିଥିଲି ।
ଯିସ ଯିସ କଥା କହିଲା ରାବଣ ମୁଂ ସମସ୍ତ ଶୁଣିଲି ॥୧୦୦
ଯହୁଂ ଜାନେକୀ ତାକୁ ନ ଦେଲା ଉତ୍ତର ।
ଲଙ୍କପତି କୋପ କଲାକ ଗରୁତର ॥
ଦୁଇମାସକୁ ସେ କଣ୍ଟ କରିଗଲା ।
ରାମକୁ ନଦେଖାଇଲେ ତୋତେ ଖାଇବି ବୋଇଲା ॥
ଯେ କଥା ଜାନେକୀ କହିଲା ମୋ ଆଗେ ।
ବୋଇଲା ସ୍ୱାମୀକି ମୋ ଘେନିଆସ ବେଗେ ॥
ଶୁଣିଣ ଶ୍ରୀରାମ ସୁଗ୍ରୀବରକୁ ଚାହିଁ ।
ଭୋ ମଇତ୍ର ଯେସନେକ ବୋଇଲା ବଇଦେହୀ ॥
ଭାରିଯା କତିରେ ଥିଲେ ନ ଲାଗଇ ଦୁଃଖ ।
ସୀତୟା ଦେଇ ମଇତ୍ର ପ୍ରାଣ ମୋର ରଖ ॥୧୧୦
ଯେ ଜାନେକୀର ଗୁଣ କହିଲେ ନ ସରଇ ।
ହାର କାଢ଼ିଣ ସେ କୋଳ ମୋତେ କରଇ ॥
କାୟାର ମଧ୍ୟେ ଥିବ କିଂପା ଆୟେ ।
ଯେ ରତ୍ନ ଥିବାରେ ବେଗଳ ହୋଇବ କାୟେ ॥
ଯେତେ ବୋଲିଣ ଯେ କତିରେ ମୋର ଥିଲା ।
ଏବେ ନଦୀ ସାଗର ଜିଣିକରି ଗଲା ॥
ଯେତେବୋଲି ରାମ କୋଦଣ୍ଡ ତଳେ ଥୋଇଂ ।
ହୃଦରେ ଚିନ୍ତା କଲେ ବିସ୍ମୟ ମୁଖ ହୋଇ ॥

ହନୁମନ୍ତ ଜାଣିଲା ଶ୍ରୀରାମର ମନ ।
ବୋଇଲା ଅଭରସା କଲେ ରଘୁନାନ ॥୨୦
ଯେତେ ବୋଲିଣ ଯେ ଯୋଡ଼ଇ ବେନି
ହସ୍ତ ।
କିମ୍ବା ତୁ କୋଦଣ୍ଡ ଥୋଇଲୁ ରଘୁନାଥ ॥
ପଞ୍ଚାଶ କୋଟି ଯୋଜନ ଅଟଇ ବସନ୍ଧରା ।
ସପତ ସମୁଦ୍ର ଅଛଇ ଏଥି ପୂରି ॥
ତିନିଲୋକ ହୋଇ ଚଉଦ ଭୁବନ ।
ଲକ୍ଷେ ପଞ୍ଚାଶ ସହସ୍ର ସୃଷ୍ଟିମାନ ॥
ଯେ ବ୍ରହ୍ମାଣ୍ଡ ତୋହୋର ଅଟଇ ବିଶ୍ବଗର୍ଭ ।
ଏଥି ବାହାରେ କି ସ୍ରିଜିଅଛି ଆନ ଠାବ ॥
କିଂପା ଧନୁ ଛାଡ଼ି ବିସ୍ମୟ ମୁଖ ହୋଉ ।
କିସ ବିଚାରିଅଛୁ ମୋତେ କିଂପା ନ
କହୁ ॥୩୦
ରାବଣକୁ ମାରିବି କି ଲଙ୍କା ଉପାଡ଼ିବି ।
ସମୁଦ୍ର ପାଣି କି ପିଇ ଶୁଖାଇବି ॥
କିଂଈ ମନ୍ଦର ଗିରିକି ତୋଳିବି କପିଳାସ ।
ଯେହା ଉପାଡ଼ିକି ଦେବି ତୋର ପାଶ ॥
କି ଅବା ସ୍ୱର୍ଗପୁର ପାତାଳକୁ ନେବି ।
ପାତାଳ ଭୁବନ କି ମଈକୁ ଆଣିମି ॥
ପିଠିରେ ବସାଇ ନେବି କି ରକ୍ଷ କପିବଳ ।
ତୋହୋର ପ୍ରସାଦେ ତରିବି ସିନ୍ଧୁଜଳ ॥
ନୁହସି ଅଗ୍ୟାନ ଦେବ ନୁହସି ବିସ୍ମୟେ ।
ଶୁଣି ଶ୍ରୀରାମ ଯେ ସନ୍ତୋଷ ମନ
ହୋୟେ ॥୪୦
ହନୁମନ୍ତକୁ ଚାହିଂଣ ଶ୍ରୀରାମ ବୋଲନ୍ତି ।
ଲଙ୍କାଗଡ଼କୁ ତୁ ହୋ ଗଲୁସି ମାରୁତି ॥
ଦେଖିଲୁଟିକି ଅସୁରଙ୍କର କେମନ୍ତ ବିଚାର ।
କି ଧର୍ମ କରନ୍ତି ସେ କେମନ୍ତ ଆଚାର ॥
ହନୁ ବୋଇଲା ଦେବ ଦଇତେ ବଡ଼ ତପୀ ।
ଦିନକରେ ପାରନ୍ତି ସେ ଚାରିବେଦ ଜପି ॥
ଦୋହୋରା ଅଗ୍ନି ଅଛି ସବୁଙ୍କରି ଘରେ ।
ଘୃତ ତିଳ ଦେଇଂ ପୂଜନ୍ତି ଅସୁରେ ॥
ଶୁଣି ରଘୁନାଥ ହୋଇଲେ ତବଦ ।
ବୋଇଲେ ସେ ପୁରେ କେର୍ଣେ କରିବି
ବିବାଦ ॥୫୦
ବେଦ ପଢ଼ନ୍ତି ଅଗ୍ନିରେ ଦିଅନ୍ତି ହୋମ ।
ପାପ ପାଇବି ନା ତାଙ୍କୁ କଲେ ତମ ॥
ହନୁ ବୋଇଲା ଦେବ ଯଦ୍ୟପି ପଢ଼ନ୍ତି
ବେଦ ।
ହବି ସମର୍ପନ୍ତି ହୁତାଶନର ମଧ୍ୟ ॥
ଦେବା ଦିଆଇବା କାହାରି ଅଙ୍ଗେ ପୁଣ
ନାହିଂ ।
ଆବର କଥାୟେ ଯେ ଶୁଣିମା ଗୋସାଇଂ ॥
ସ୍ନାହାନ ନ କରନ୍ତି ନ ପାଳଟନ୍ତି ବାସ ।
ନୁହଂନ୍ତି ଶୁଚିବନ୍ତ କରନ୍ତି ବହୁତ ରୋଷ ॥
ମାଗନ୍ତା ଜନକଇ ନିରାଶ କରନ୍ତି ।
ସର୍ବଦା ମେଳଛ ଶରୀରେ ଧରିଥାନ୍ତି ॥୬୦
ଶୁଣିଣ ଶ୍ରୀରାମ ଆନନ୍ଦ ହୋଇଲେ ।
ଏବେ ଯେ ମର୍ମ ପାଇଲି ବୋଇଲେ ॥
ନ କରନ୍ତି ଦୟା ନୁହନ୍ତି ଶୁଚିବନ୍ତ ।
ବେଦ ପଢ଼ିଲେ ମାରିବି ତାହାନ୍ତ ॥
ଯେତେବୋଲି ରାମ ସୁଗ୍ରୀବରକୁ ଚାହିଂ ।
ଭୋ ମଇତ୍ର ପ୍ରାପତ କରାଅ ବଇଦେଈ ॥
ତୋହୋର ପ୍ରସାଦେ ପାଇଲି ବାରତା ।
କୁଶଳେ ବର୍ତ୍ତିଅଛି ଯେ ମୋହୋର ସୀତା ॥
ଯେତେ ଦିନ ସମ୍ବାଦ ଶୁଣି ନ ଥିଲି ।
ମଲା ହଜିଲାର ପ୍ରାୟେ ମଣିଥିଲି ॥ ୭୦
ଯେବେ ହନୁମନ୍ତ ମୁଖେ ଶୁଣିଲି ଯେସନ ।
ଥିର ନୋହଇ ମିତ୍ର ମୋହୋର ପଂଚମନ ॥
ଜାନେକୀ ଦେଖିବାଯାୟେ ଉଦବେଗ
ଚିତ୍ତ ।
ତାହାକଇ ଧ୍ୟାୟେ ମୁଂ କରଇ ଅନୁବ୍ରତ ॥
ଭୋ ସୁଗ୍ରୀବର ମୋତେ କରସି ପ୍ରତିକାର ।
ସମୁଦ୍ର ତରିବାକୁ ବୁଦ୍ଧି ଭୋ ବିଚ୍ଚର ॥
ଗଡ଼ କରିଯାଇଂ ରହିବା ଆମ୍ଭେ କାହିଂ ।
ଯୁଧ୍ୟ ସେ ପ୍ରିଓଜନ ଆନ ମୋହୋର ନାହିଂ ॥
କାହିଂ ରହିବା ଏଥେ ବିଚ୍ଚରିଣ ଯିବା ।
ସାଂଗ୍ରାମ ନୋହିଲେ କାର୍ଯ କରି ନ
ପାରିବା ॥୮୦
ରାଘବର ବଚନେ ବୋଲନ୍ତି ସୁଗ୍ରୀବର ।
ତୋହୋର ତହିଂ ସିନା ସକଳ ବିଚାର ॥
ତୋହୋର ଆଗ୍ୟାଂ ପ୍ରମାଣେ ଆମ୍ଭେ ଥିବୁଂ ।
ତୁ ଯହିଂକି ପେଷିବୁ ତହିଂକି ଆମ୍ଭେ ଯିବୁ ॥
ରାମ ବୋଇଲେ ଶୁଣ ଇଷ୍କିନ୍ଧ୍ୟାର ସାଇଂ ।
ସେନାପତିମାନଙ୍କୁ ଆଗ୍ୟାଂ ଦିଅ ରାଇଂ ॥
ରଘୁନାଥର ବଚନେ ସୁଗ୍ରୀବର ରାୟେ ।
ଜମେବନ୍ତୁ ରାଇଂ ସକଳ କଥା କହେ ॥
ଭୋ ରକ୍ଷରାଜ ତୁ ମନ୍ତ୍ରୀ ଶିରୋମଣି ।
ସୁବୁଧି ବୋଲି ତୋତେ ତିନିପୁରେ
ଜାଣି ॥୯୦
ଯେବେ ଶ୍ରୀରାମ ବୋଇଲେ ମୋତେ
ଯାହା ।
ବିଚ୍ଚରିଣ ଛାମୁରେ ଜଣାଅ ରକ୍ଷ ନାହା ॥
ମନ୍ତ୍ରୀ ବୋଇଲା ଶୁଣ କପି ରାଜ ।
ଗଡ଼ କରି ରହିବାରେ ଆମ୍ଭର କିସ କାର୍ଯ ॥
ଧର୍ମ ଆଶ୍ରେ କରି ଜିଣିମା ଦତ୍ୟ ବଳ ।
ଉତ୍ତରା ଫାଲଗୁନୀ ଯେ ଭଲ ଅନୁକୂଳ ॥
ଶୁଣିଲେ ଦାଶରଥି ରକ୍ଷପତିର ବାଣୀ ।
ଖଡ଼ି କାଢ଼ି କୁଣ୍ଡଳୀ କାଟିଲେ ରଘୁମଣି ॥
ମଣ୍ଡଳୀର ଭିତରେ ଆପଣା ନାମ ଲିହିଂ ।
ଶୂନ୍ୟ ଗୋଟି ଗୋଟି ବେଢ଼ାଇଣ
ଦେଇଂ ॥୧୦୦
ଗୋଟିଏ ଛଡ଼ା କରି କାଟିଲେକ ଗାର ।
ମନେ ମନେ ସ୍ୱାମୀ କରନ୍ତି ବିଚ୍ଚର ॥
ଯେ ଶକୁନ୍ୟ ଯେବେ ହୋଇବାକ ଭଲ ।
ଜାଣିମା ଅନକୂଳ ହୋଇବାକ ଅମୂଲ୍ୟ ॥
ଲେଖନ୍ତେଣ ଗାର ପଡ଼ିଲାକ ଯାଇଂ ।
ଦେଖିଣ ଆନନ୍ଦ ହୋଇଲେ ରଘୁସାଇଂ ॥
ବିଚ୍ଚରିଲେ ସୀତା ପ୍ରାପତ ହୋଇବ ।
ଏ ମୋହୋର ନାରାଚ୍ଚେ ନାଶଯିବ
ଦଶଗ୍ରୀବ ॥

ଯେତେବୋଲି ରାମ ସୀତୟା ରୂପ ଚିନ୍ତି ।
ଶ୍ୱେତ ମଙ୍ଗଳ ଆରମ୍ଭ ଧ୍ୟାୟରେ
ଚିନ୍ତନ୍ତି ॥୧୦
ମୁଖ ଦଧି ଭାଣ୍ଡ ଯେ ନୟନ ଦୁଇ ମାଛ ।
ଚୂତ ପତ୍ର କେଶ ଅଟଇ ପ୍ରତକ୍ଷ ॥
ନାସା ନଟିକାଳ ତଣ୍ଡୁଳ ଦନ୍ତମାନ ।
କୁଚ ଦୁଇ ପୂର୍ଣ୍ଣକୁମ୍ଭର ବିଧାନ ॥
କର ଚରଣ କଦଳୀ ଗଛ ଚାରି ।
ରାଜହଂସ ପକ୍ଷୀ ଚାଲି ସମସରି ॥
କର୍ଣ୍ଣର ତଡ଼କୀ ପାରୁଆ ଦୁଇ ଶ୍ୱେତ ।
ପିନ୍ଧିଲାର ବାସ ଅଟଇ ନାଲି ନେତ ॥
ଶ୍ୟରୀର କାନ୍ତି ମଙ୍ଗଳ ଦୀପ ଜଳେ ।
ଅଳକା ପଟାନ୍ତର ଦ୍ରୋଣା ମାଳେ
ମାଳେ ॥୨୦
ମଙ୍ଗଳା ଅଷ୍ଟକ ଅଟଇ ତାର ବାଣୀ ।
ଉଠିଲେ ରାମ ଶୁଭ ଅନକୂଳ ଜାଣି ॥
କରେ ଧନୁ ଶସ୍ତ୍ର ଧରି ଦୁଇ ଭାଇ ।
ସୀତୟା ରୂପ ଚିନ୍ତି ଚରଣ ବଢ଼ାଇ ॥
ତିନି ପହଣ୍ଡ ରାମ ଯହୁଁ ଗଲେ ।
ସୁଗ୍ରୀବର ସହିତେ ସଇନି ଉଠିଲେ ॥
ସ୍ୱର୍ଗେ ଥାଇଂ ଦେବେ କରନ୍ତି ପୁଷ୍ପ୍ୟ ବୃଷ୍ଟି ।
ବେଦ ଅଧ୍ୟାନ କରନ୍ତି ପରମେଷ୍ଟୀ ॥
ବୃହଷ୍ୟତି ପଢ଼ନ୍ତି ମଙ୍ଗଳ ପାଠମାନ ।
ଗାନ୍ଧାରେ ତିମ୍ବୁର କରନ୍ତି ଗାୟନ ॥୩୦
ଅପଛରୀମାନେ କରନ୍ତି ନୃତ୍ୟରସ ।
ଗନ୍ଧର୍ବେ ଦୁନ୍ଦଭି ବଜାନ୍ତି ହରଷ ॥
ନାରଦ ମହରଷି ବଜାବଇ ଯନ୍ତ୍ର ।
ଇନ୍ଦ୍ର ସୁମରଇ ମୃତ୍ୟୁଞ୍ଜୟେ ମନ୍ତ୍ର ॥
ମଳୟ ପବନ ବହଇ ଧୀର ଧୀର ।
ଯେକାଦଶ ପୁରେ ନବଗ୍ରହ ଥିର ॥
ଚଣ୍ଡୀପାଠ ସୁମରଣା କରନ୍ତି ପାର୍ବତୀ ।
ସୁବୁଧି ପ୍ରକାଶିଲେ ଦେବୀ ସରସ୍ୱତୀ ॥
ବିଘ୍ନରାଜ ହରିଲେ ଯେତେ ବିଘ୍ନମାନ ।
ଶୂନ୍ୟେ ଥାଇଂ ଗଙ୍ଗା କରାଇ ସ୍ନାହାନ ॥୪୦

ଅନ୍ତରୀକ୍ଷେ ବାସୁକି ନାଗ ଛାଇକରି ଅଛି ।
ଗ୍ରୀଷମେ ଶୀତଳ ସେ ପାଇଲେ ରଘୁବଛି ॥
ଚାଲି ଯିବାକଇ କରନ୍ତି ସ୍ୱାମୀ ମନ ।
କର ଯୋଡ଼ି ବୋଲନ୍ତି ସୁଗ୍ରୀବର ରାଜନ ॥
ଭୋ ଦେବ ଅକଳଣା ଅଟଇ ତୋହୋର
ସନ୍ଧି ।
ଚାଲି କେମନ୍ତେ ଯିବ ଭାଇ ବେନି ॥
ଅପରଚେ ଲୋକେ ଚିହ୍ନି ନ ପାରିବେ ।
ନ ଜାଣି ଗହଳେ ମାଡ଼ି ପକାଇବେ ॥
ହନୁମନ୍ତ ଉପରେ ବସସି ଗୋସାଇଂ ।
ଅଙ୍ଗଦର କାନ୍ଧେ ଲକ୍ଷଣ ବସୁ ଯାଇଂ ।୫୦
ଆମ୍ଭେମାନେ ତୋହୋର ସେବକ ତୁ ଆମ୍ଭର
ସ୍ୱାମୀ ।
ଶ୍ରୀପୟରେ ନ ଚଳ ଯେ ଶାଳଶିଳଭୂମି ॥
ମନେ କି ଅନ୍ତର ଧରୁ ନାଥ ମୋତେ ।
ମୁଇଂ ଆଶ୍ରେ ଦେବ କରିଅଛି ତୋତେ ॥
ଅନେକ ପ୍ରକାରେ ଦେବ ସେବା କରିଥିବି ।
ଯିସ ଆଗ୍ୟାଂ ଦେବୁ ପ୍ରଭୁ ସେ କଥା କରିବି ॥
ଯେବେ ବହନ ହନୁମନ୍ତର କାନ୍ଧେ ବସ ।
କେମନ୍ତେ ଅଟୁ ଆମ୍ଭେମାନେ ତୋହୋର
ଦାସ ॥
ତୁ ସ୍ୱାମୀ ଏଥକୁ ଆନ ନ ବିଚାର ।
ଜନ୍ମେ ଜନ୍ମେ ଆମ୍ଭେ ତୋହୋ
ପରିଚ୍ଚର ॥୬୦
ସିନ୍ଧୁ ତୀରେ ଯାଇଂ ପାଇବୁ ଏହିକ୍ଷଣି ।
ଶୁଣି ସନ୍ତୋଷ ରଘୁକୁଳ ମଣି ॥
ହନୁମନ୍ତ କାନ୍ଧେ ବିଜେ କଲେ ଯାଇଂ ।
ଗରୁଡ଼ ପିଠିରେ ଯେହ୍ନେ କମଳାର ସାଇଂ ॥
ଲକ୍ଷଣକୁ ବହିଲା ବାଳୀର ତନୟେ ।
ଦେଖି ରକ୍ଷ କପି ସିଂଘନାଦ କୟେ ॥
ଆନନ୍ଦେଣ ଡେଇଂ ନାଚନ୍ତି ଗେଲେ
ଗେଲେ ।
କେହୁ ତରତରେ ବୋଲନ୍ତି ଚାଲେ ଚାଲେ ॥
କେହୁ ରଡ଼ି ଦେଇଂ ଧାମନ୍ତି ଆଗସରି ।

କେହୁ ତରୁ ଡାଳେ ଡାଳେ କରେ ଛନ୍ତି
ଧରି ॥୭୦
କେହୁ ହୁଳହୁଳି ପାଡ଼ନ୍ତି ଯାଉଂ ଯାଉଂ ।
କେ ଗଛଡ଼ାଳ ଭାଙ୍ଗନ୍ତି ଧାଉଂ ଧାଉଂ ॥
ଉଡ଼ା ମାରିଣ କେ ଡେଇଂଯାନ୍ତି ଡାଳ ।
କେହୁ ବୋଲନ୍ତି ହୋଇଲାକ ଗୋଳ ॥
କେ ବୋଲଇ ପଛ ଲୋକକ୍ଷଣେ ରହ ।
କେ ବୋଲଇ ଝାଳେ କର୍ଦ୍ଦନ ମୋର
ଦେହ ॥
ଯେସନେକ ଥାଠ ଚଳଇ ଧୀର ଧୀର ।
ମଧ୍ୟେଣ ରାମ ଲକ୍ଷଣ ବେନି ବୀର ॥
ଅଙ୍ଗଦ ହନୁମନ୍ତର କାନ୍ଧେ ଛନ୍ତି ବସି ।
ତାରାଗଣ ମଧରେ କି ଶରଦର ଶଶୀ ॥୮୦
ବନ ପରବତ ଲଙ୍ଘିଣ ଚଳିଗଲେ ।
ଦକ୍ଷିଣ ସମୁଦ୍ର କୂଳରେ ମିଳିଲେ ॥
କରେ କାଣ୍ଡ କୋଦଣ୍ଡ ଅଛନ୍ତି ରାମ ଧରି ।
ସିନ୍ଧୁ ଦେଖି ହନୁମନ୍ତ କାନ୍ଧରୁ ଉତୁରି ॥
ଅଙ୍ଗଦର କାନ୍ଧୁ ଲକ୍ଷଣ ଓହ୍ଲାଇଲା ।
ରାମଙ୍କୁ ନମସ୍କାର କରିଣ ଉଠିଲା ॥
ଗହଳ କପି ଶବଦ ଶୁଭିଲା ସିନ୍ଧୁକୂଳେ ।
ଘନ ଘନ ଲହରୀ ମାରଇ ସିନ୍ଧୁଜଳେ ॥
ଦିନ ନ ଦିଶଇ ଲୁଣିଆର ପାଣି ।
ଦେଖିଣ ତ୍ରାସ ପାଇଲେ ରଘୁମଣି ॥୯୦
ମନେ ବଚାରନ୍ତି ଲଙ୍କା ଏଥର ମଧ୍ୟେ ।
ଧୂରୁ ଦେଖି ଯାହାଙ୍କର କମ୍ପନ୍ତି ସୁରସିଧ୍ୟେ ॥
ରକ୍ଷ କପି ଘେନି କେମନ୍ତେ ମୁଇଂ ଯିବି ।
ଜନ ମୁଖେ ନିଚୟେ ଶଙ୍କୁଚ ପାଇବି ॥
ଯେତେ ଭାଳି ଯାଇ ସିନ୍ଧୁକୂଳେ ହୁଅନ୍ତି ।
ଦୁଇ ଭାଇ ଗଡ଼ଘାଲିଣ ଶୁଅନ୍ତି ॥
ଭୋ ତୀର୍ଥରାଜା କର ମୋତେ ଦୟା ।
ଘରଣୀ ବିହୁନେ ବିକଳ ମୋର କାୟା ॥
ଅସଙ୍ଗତ କାଳେ ଆସି ଆଶ୍ରେ କଲି
ତୋତେ ।
ଦୁଃସହ କଷଣୁ ଉଧରି ଧର ମୋତେ ॥୧୦୦

ଯେତେ ବୋଲି ରାମ ଉଠିଲେ ବାହୁଡ଼ି ।
ସଇନି ରହିଲେ ସମୁଦ୍ର ପନ୍ତା ମାଡ଼ି ॥
ସେନାପତିମାନଙ୍କୁ ଗଉରୋବ କଲେ ।
ଶୁଣ ପାର୍ବତୀ ଗୋ ସଦାଶିବ କହିଲେ ॥
ତହୁଂ ଦାଶରଥି ରହିଲେ ସିନ୍ଧୁକୂଳେ ।
ଚାର ଜଣାଇଲା ଦଶାନନ ଛାମୁରେ ॥
ଶୁଣ ଦେବ ଲଙ୍କାର ଠାକୁର ଦତ୍ୟପତି ।
ରାମ ଲକ୍ଷଣ ନାମେଣ ବେନି ଯତି ॥
ସିନ୍ଧୁ ଉଭର କୂଳେ ଆସି ଆଜ ହୋଏ ।
ରକ୍ଷ ମର୍କଟ ସଇନ୍ୟ କଳଣା ନ ଯାଏ ॥୧୦
ଶୁଣି ରାବଣେଶ୍ୱର ହସିଣ ବୋଇଲା ।
କିସ କିସ କଥା ଆସି ଏ କହିଲା ॥
ମହୋଦର ଚାରଙ୍କୁ ବୋଇଲା ଆଗ ହୁଅସି ।
କି ବାରତା ଆଣିଅଛୁ ଉଚେଂଣ କହସି ॥
ଯେତେ ବୋଲି ଚାର ହାମ୍ପୋଳିଲା ପିଠି ।
ବାହା ଧରିଣ ଆଗକୁ ଦେଲା ଛାଟି ॥
ବିଭୀଷେଣ ବୋଇଲା ତାକୁ ନକର ତରସ୍ତ ।
ସାଷ୍ଟମ ହୋଇଂ କହୁ କେବଣ ଚରିତ ॥
ଚାର ବୋଇଲା ଦେବ ଶୁଣିମା ଲଙ୍କସାଇଂ ।
ଜମ୍ବୋଦୀପକୁ ଆଜ ଯାଇଥିଲି ମୁଇଂ ॥୨୦
ଭ୍ରଥଖଣ୍ଡରେ ଯେ ଅଯୋଧ୍ୟା କଟେକ ।
ତହିଂର ନୃପତି ଯେ ସୂର୍ଯବଂଶର ଲୋକ ॥
ଦଶରଥ ନାମେଣ ଅଟଇ ତହିଂର ରାୟେ ।
ତାହାର ତହୁଂ ଜାତ ଚାରି ଯେ ତନୟେ ॥
ଜ୍ୟେଷ୍ଠ ଶ୍ରୀରାମ ଯେ କନେଷ୍ଟ ଶତ୍ରୁଘନ ।
ଭ୍ରଥ ଲକ୍ଷଣ ଅଟନ୍ତି ଶୁଦ୍ଧ ଜନ ॥
ମିଥିଳା ନୃପତି ଯେ ଜନେକ ଦୋହିତା ।
ସେ କନ୍ୟାର ନାମ ଅଟଇ ଦେବୀ ସୀତ୍ୟା ॥
ତାହାକୁ ଶ୍ରୀରାମ ହୋଇଲେକ ବିଭା ।
ଲକ୍ଷ୍ମୀ ନାରାୟେଣ ଦିଶନ୍ତି ବେନି ଶୋଭା ॥୩୦
ଏଥୁ ଅନନ୍ତରେ ଦଶରଥ ରାୟେ ।
ମନ୍ତ୍ରୀଗଣ ଘେନି ଭାଳିଲା ସଭାୟେ ॥
ଶ୍ରୀରାମକୁ ରାଜ୍ୟ ଦେବାକୁ ତାହାର ବୁଧି ।
କୟେକୟା ରାଣୀ ତାହା ଆସିଣ ବିରୋଧି ॥
ସତ୍ୟ କରାଇଣ ରାଜାକୁ ବର ମାଗଇ ।
ବୋଇଲା ଶ୍ରୀରାମ ଯାଉ ବନଭାଗଇଂ ॥
ଭ୍ରଥ ମୋହୋର ହୋଉ ଅଯୋଧ୍ୟାରେ ରାୟେ ।
ରାମ ବନ ଯାଉ ଚଉଦ ବରଷ ଯାୟେ ॥
ତହୁଂ ସେ ଲକ୍ଷଣ ସୀତୟା ସାଙ୍ଗେ ଘେନି ।
ଅରନ୍ୟେଣ ବାସକଲେ ଜଣ ତିନି ॥୪୦
ଗୋଦାବରୀ କୂଳେ ଘରଣୀ ହରାଇଲେ ।
ଋଷିମୁଖ ପର୍ବତେ ସୁଗ୍ରୀବରକୁ ଭେଟିଲେ ॥
ଦୁଃଖ କୁହାକୋହି ହୁଅନ୍ତେ ବେନିଜନ ।
ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଲେ ରଘୁନାନ ॥
ମଇତ୍ର ଛଳେ ରାମ ବାଳୀକି ବଧ୍ୟ କଲେ ।
ଦୁନ୍ଦେଭିର ହାଡ଼ ଚରଣେ ଫିଙ୍ଗିଦେଲେ ॥
ଇଷ୍କିନ୍ଧ୍ୟା କଟକେ ସୁଗ୍ରୀକି ରାଜା କଲେ ।
ସପତ ଶାଳ ତରୁ ବାଣକେ ଛେଦିଲେ ॥
ମାଲ୍ୟବନ୍ତେ ଚତୁର୍ମାସ୍ୟା ସାରି ଜଟାଧାରୀ ।
ଲକ୍ଷଣକୁ ପମନ୍ତିଲେ ସୁଗ୍ରୀବରକୁ ହକାରି ॥୫୦
ଶରଦ ଋତୁ ଅନ୍ତେ ଅଇଲା ସୁଗ୍ରୀବର ।
ସଙ୍ଗେ ସନ୍ୟ ତାର ରକ୍ଷ ଯେ ବାନର ॥
ତହିଂ ଥାଇ ଚାରି ଦିଗକୁ ଦୂତ ପେଷି ।
ଦକ୍ଷିଣକୁ ପବନତନୟେ ହନୁ ଆସି ॥
ସାହେର ଲଙ୍ଘିଣ ପଶିଲା ତୋର ପୁରୀ ।
ଓଣେକ ବନେ ଖୋଜିଲା ଜନେକ କୁମାରୀ ॥
ଯେଥୁଯାଇଂ ଶ୍ରୀରାମକୁ ବାରତା କହିଲା ।
ଶୁଣିଣ ଜଟାଧାରୀ ସନ୍ତୋଷ ହୋଇଲା ॥
ଭାଲୁକ ମ୍ରକଟ ବଳ ସଙ୍ଗେ ଘେନି ।
ସିନ୍ଧୁକୂଳେ ଆସି ରହିଲେ ଭାଇ ବେନି ॥୬୦
ଲଙ୍କାକୁ କଟକାଇ କରିବେ ବୋଲିଣ ଶୁଣିଲି ।
ଆସିବା ନୁଆସିବା ତଇଥ ନ ମଣିଲି ॥
ବନଗିରି ପୂରିଣ ଅଛଇ ତାର ବଳ ।
କେବଣ ଉପାୟେ ତରିବେ ମାହାଜଳ ॥
ତହିଂ ବିଧାନ ମୁଂ ନ ଜାଣଇ ଗୋସାଇଂ ।
ଥାଠ ଦେଖିଣ ମୁଂ ତୋତେ କହିଲଇଂ ॥
ଏତେ କହିଂ ଚାର ପଛ ଘୁଞ୍ଚିଗଲା ।
ପୁଣିହିଂ ରାବଣ ଦୂତକୁ ପଚାରିଲା ॥
ସତ କି ବାଳୀକି ମାଇଲା ତପସୀ ।
ଯେ କଥା ନୁହଇଂ ବୋଲି ଦଶମାଥ ହସି ॥୭୦
ଝାଡ଼ର ଜୀବେ କାହିଂ ମନୁଷ୍ୟରେ ବଶ୍ୟ ।
ଯେ କଥା ଛାର ମିଛ କହିଲୁରେ ମୋର ପାଶ ॥
ସମୁଦ୍ର କୂଳକୁ ଆସିବା କଥା ଭଣ୍ଡ ।
ନଗ୍ର ବାହାର କରି କାଟ ଯେହାର ମୁଣ୍ଡ ॥
ଯେସନେକ କଥା ଶୁଣି ବିଭୀଷେଣ ବୀର ।
ଆଗ ହୋଇଣ ସେ ଯୋଡ଼ଇ ବେନି କର ॥
ଭୋ ଦେବ ରାବଣ ଲଙ୍କା ଅଧିପତି ।
ତିନି ଭୁବନେ ତୁ ଅଟୁ ଚକ୍ରବର୍ତ୍ତୀ ॥
ଦୂତକୁ କିମ୍ପା ଅନୁବ୍ରତେ କୋପ କରୁ ।
ସୁଗ୍ୟାନୀ ରାଜା ହୋଇଂ କଥାନ୍ତ ନ ବିଚାରୁ ॥୮୦
ଦେଖିଲା ବୋଲିଣ କହିଲାନା ଆସି ।
ଆପଣା ସେବକକୁ ପାରୁନା ଭଲା ନାଶି ॥
ଦଶରଥ ତନୟେ ଯେ ଶ୍ରୀରାମଚନ୍ଦ୍ର ଅଟଇଂ ।
ବଳ ପ୍ରାକର୍ମେ ତାକୁ ରଦ୍ର ନ ଅଣ୍ଟଇ ॥
ଆପଣେ ଜାଣୁ ମୁଂ କହିବଇଂ କିସ ।
ଯେବଣ ଦିନେ ରାମକୁ ବାରହ ବରଷ ॥
ଅଗମ୍ୟ ବିପୁନ୍ୟେଣ ତାଡ଼କୀ ଦଇତୁଣୀ ।
ଯେକା ବାଣକେ ତାକୁ ପକାଇଲା ହାଣି ॥
ବିଶ୍ୱାମିତ୍ର ଯଗ୍ୟଂ ହେଳେଣ ରଖିଲା ।
ତହିଂ ଯେ ଅନେକ ଅସୁର ସଂଘାରିଲା ॥୯୦
ବିପୁଳ ବନେ ଯେ ଗଉତମ ନାରୀ ।

ଶାପ୍ୟେଣ ଥିଲା ସେ ପାଷାଣ ରୂପ ଧରି ॥
ରାମ ପାଦ ଲାଗନ୍ତେ ପାଇଲା ନିଜ କାୟେ ।
ଗତୁଂ ଶତେ ଗୁଣ ଅଧିକ ରୂପ ହୋୟେ ॥
ମିଥିଲା ନଗ୍ରେ ଜନେକର ଘରେ ।
ତୁହି ଥିଲୁ ନାହିଂକି ଧନୁ ସୟେମ୍ବରେ ॥
ଅକଳଣ ଧନୁ ରାମ ହେଳେ ଆମଞ୍ଚିଲା ।
ଅବହେଳେ ସୀତାକୁ ବିଭା ହୋଇଗଲା ॥
ପ୍ରଶୁରାମ ଦର୍ପ କ୍ଷଣକେ ଉପେଖି ।
ଅରନ୍ୟକୁ ଅଇଲା ସେ ରାଜ୍ୟ ଯେ
ଉପେଖି ॥୧୦୦
ପିତାର ସତ୍ୟ ରଖିବା ନିମନ୍ତେ ।
ବନବାସ କଲା ସେ ଭାରିଯା ସହିତେ ॥
ତାହାର ଘରଣୀ କି ଆଣିଲୁ ଚୋରାଇଂ ।
ପରସ୍ତିରୀ ହରଣ କଲୁ ଲଙ୍କା ସାଇଂ ॥
ରାଜାମାନେ ତୋତେ କହିବେନା କିସ ।
ଯେ କଥା ବିଚ୍ଚର ତୁ ନକଲୁ ଦଶାଇଶ ॥
ଅଧର୍ମେ ପ୍ରବେଶ ହୋଇଲୁ ଗୋସାଇଂ ।
କହିଲା ଲୋକଙ୍କୁ ଦଣ୍ଡୁ କିସ ପାଇଂ ॥
ଋକ୍ଷ ବାନର ରାମର କାହିଂ ମେଳା ।
ଏହା ନ ଜାଣୁ ତୁ ବିଶର୍ବାର ବଳା ॥୧୦
ଦେଖି ଯେ ଆସଇ କହିଲେ ତାହିଂ ମାରୁ ।
ତିଆରିଲା ଲୋକଙ୍କ ବୋଲକୁ ନ କରୁ ॥
ରାମ ଯେବେ ବାନରଙ୍କ ସାହା ଯେ ନ
ପାନ୍ତା ।
ହନୁମନ୍ତ କିମ୍ପା ଏଥକୁ ଆସନ୍ତା ॥
ବାଳୀ ମରିବାର ନିଚୟେ କଥା ଅଟଇଂ ।
ରଘୁନାଥ ଚରଣେ ସୁଗ୍ରୀବର ଖଟଇ ॥
ପରୀଛ ନିମନ୍ତେ ବିନ୍ଧିଲେ ସାତ ତାଳ ।
ଯେଥେ ନ କହିଲା କି ପବନର ବାଳ ॥
ଦୁନ୍ଦଭିର ହାଡ଼ ଚରଣେ ଦେଲା ଫିଙ୍ଗି ।
ମାରୁଚୀ ମରାଇଲୁ କରିଣ କୁରଙ୍ଗୀ ॥ ୨୦
ଯତିର ଭାରିଯା ସତୀ ଦ୍ରୋହ କଲୁ ।
ମାହାର୍ଜା ହୋଇ ଅକର୍ମକୁ ଗଲୁ ॥
ବେଦ ପୁରାଣ ଆପଣେ ପାଠ ଜାଣୁଂ ।
ଧର୍ମ ଶାସ୍ତ୍ରମାନ ନାନା କଥାନ୍ତ ବଖାଣୁଂ ॥
ପରକୁ ବୁଧି ଦେଉ ତିଆରୁ ଅନେକ ।
ଏବେ ତୁ ଆପଣେ ଛାଡ଼ିଲୁ ବିବେକ ॥
ଯେକା କପିକେ ପୋଡ଼ିଲା ଲଙ୍କପୁରୀ ।
ଅଛୟେ ମୂଳେ ଅନେକ ଦତ୍ୟ ମାରି ॥
ନନ୍ଦୀର ଶାପ୍ୟକୁ ନ କଲୁ ତୁ ଭୟେ ।
ଶୁଣିଣ କୋପେଣ ବୋଇଲା
ଲଙ୍କରାୟେ ॥୩୦
ବାଇ କି ବାତୁଳ ହୋଇଲୁରେ ଭାଇ ।
ରାମ କି ମନିଷ୍ୟ ଗୋଟାଏ ଗୋଟାଏ ଖାଇ ॥
ଆମ୍ଭେ ସେ ରାକ୍ଷସ ସର୍ବ ଜୀବ ଭକ୍ଷି ।
ଦେବାସୁରନରକୁ କି ମୋହୋର ଭୟେ
ଅଛି ॥
ତୁ ଯେବେ ଡରିଲୁ ଶରଣ ପଶ ଯାଇଂ ।
କେବେହେଂ ସୀତାକୁ ଛାଡ଼ିଲା ମୋହୋର
ନାହିଂ ॥
ଶୁନ୍ଧ୍ୟ ସୁବନ୍ୟ ପ୍ରାୟେ ଦୁଇ ଜଙ୍ଘ ଦିଶଇ ।
ଶତଦଳ କମଳ ବଦନ ବିଘସଇ ॥
ପୁରୁଷ ହୋଇଂ ମୁଂ କେମନ୍ତେ ମୁରୁଛିବି ।
ଅପୂର୍ବ ପଦାର୍ଥକୁ ମୁଂ କେମନ୍ତେ
ଛାଡ଼ିଦେବି ॥୪୦
ତାହାର ତହିଂ ଅନେକ ଗୁଣ ଅଛି ।
ଅଗମ୍ୟ ବନସ୍ତକୁ କଢ଼ାଇ ଆଣିଅଛି ॥
ସେହି ପୁଣି କୁଳବଧୂ ନ କଳାକ ଲାଜ ।
ଘର ବାସ ଛାଡ଼ି ତାର ରମଣୀରେ କାର୍ଯ ॥
କର୍ମେଣ ପ୍ରାପତ ଆସି ହୋଇଲାକ
ମୋତେ ।
ମୁହିଂ ତାହାର ସଙ୍ଗତେ ରସିବି ଅନୁବ୍ରତେ ॥
କିମ୍ପାଇଂ ଶ୍ରୀରାମକୁ ଦେବଇଂ ବାହୁଡ଼ାଇଂ ।
ସାଂଗ୍ରାମ କରି ପଛେ ନୋଉ ସେ ଛଡ଼ାଇଂ ॥
ଯେ ବଚନ ଶୁଣି ବୋଲଇ ବିଭୀଷେଣ ।
ଅଗ୍ୟାଂନ ପରାୟେ କହୁତୁ ଆପଣ ॥୫୦
ସୀତୟା ପତିବ୍ରତା ଅଟଇ ମାହାସ୍ୟତୀ ।
ସନମତ ନ କଲେ କି ଯିବୁ ତାର କତି ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ନୁହଂନ୍ତି ଭାର୍ଜନ ।
ମନ୍ଦ ପ୍ରାଣୀ ଅଟୁ ତୁ ଅସୁର ରାଜନ ॥
ତୁଣ୍ଡର ଏ କଥା ବସାଇଂ ନ ପାରି ।
ପ୍ରତକ୍ଷେ ଲକ୍ଷ୍ମୀ ଏ ଜନେକ କୁମାରୀ ॥
ଶ୍ରୀରାମହୁଂ ଆନେ ସେ ନ ବଳଇ ମତି ।
ଶୁଣି କୋପକଲା ମନ୍ଦୋଦରୀ ପତି ॥
ବୋଇଲା ସୀତାକୁ ମୁଂ ନ ପାରଇ ଛାଡ଼ି ।
ତୁ ହୋ ବିଭୀଷେଣ ନ କହ ଆଗ
ବଢ଼ି ॥୬୦
ରାମକୁ ମାରି ସୀତାକୁ କରିବଇଂ ଭୋଗ ।
ମୋତେ ପ୍ରାପତ ଅଛି ଏହେର୍ଣ୍ଣେକ ଯୋଗ ॥
କି ଅବା ଶ୍ରୀରାମ ମୋହୋର ଶିର ଛେଦୁ ।
ତେତେବେଳେ ପଛେ ନେଉ ତାର ବଧୂ ॥
ଏଇ କଥା ତ ଅଟଇ ଦୃଢ଼ ବ୍ରତ ।
ଯାହା କହୁଅଛି ଏ କଥା ମୋର ସତ ॥
ଆନ ନ କରଇ ନ ଛାଡ଼ଇ ସୀତା ।
ଯହୁଂ ଦଶଗ୍ରୀବ କହିଲା ଏମନ୍ତ କଥା ॥
ଶୁଣିଣ ଦଇତମାନେ ପ୍ରତଗ୍ୟାଂ କରନ୍ତି ।
ଯେକ ଆରେକ ଯେ ଗର୍ଜି ଉଭା
ହୋନ୍ତି ॥୭୦
ବୋଲନ୍ତି ଭୋ ରାୟେ ଶୁଣ ଦଶଶିରି ।
ମୋହୋର ନ ସାଧିଲା ନାହିଂ କାହିଂ ପୁରୀ ॥
ଚଉଦ ଭୁବନରେ ଇନ୍ଦ୍ରାଦି ଆଧିପତି ।
ସେ ତୋହୋର ଚରଣେ ଖଟଇ ବଶ୍ୟାବୃତ୍ତି ॥
ତୁ କାହାକୁ ଭୟେ ନକର ଲଙ୍କସାଇଂ ।
କେ ତୋହୋର ହାଥେ ପ୍ରାଭବ ପାଇନାହିଂ ॥
ଯେବେ ତୁ ଥାଇଣ ଆଗ୍ୟାଂ ଦିଅସି
ନୃପମଣି ।
ରାମ ଲକ୍ଷଣଙ୍କୁ ମାରିବୁ ଏହିକ୍ଷଣି ॥
ସୁଗ୍ରୀବର ଅଙ୍ଗଦ ମାରିବୁ ନଳନୀଳ ।
ହେଳେ ନାଶିବୁ ଋକ୍ଷ କପିବଳ ॥ ୮୦
ଶୁଣି ବିଭୀଷେଣ ବୋଲଇ ବଚନ ।
ବଡ଼ ବଡ଼ ପ୍ରତାପୀ ତୁମ୍ଭେ ଅଟ ମନେମନ ॥
ରାମକୁ ଜିଣିମାକୁ ସାମର୍ଥ ହୋଉଅଛ ।

ଯେ କଥାଇ ସିନା ଅଟଇ ବଡ଼ ମିଛ ॥
ଯେକା କାଣ୍ଡକେ କିମ୍ପା ନାଶ ଗଲା ବାଳୀ ।
ତାହାର ସଙ୍ଗେ ଯେବେ କରିବ ଏବେ କଳି ॥
ହନୁମନ୍ତ ଅଇଲା ତାହାର ସଙ୍ଗେ କେହି ନାହିଂ ।
ଅଛୟେ ହତ କଲା ଲଙ୍କା ଗଲା ଦହି ॥
ତାହାକୁହିଂ ତ କିଛି କରି ନ ପାରିଲ ।
ଭୋ ରାୟେ ଏହାଙ୍କର ନ କର ତୁମ୍ଭେ ବୋଲ ॥୯୦
ସଗୋତ୍ର ସହିତେ ସଭିଏଂ ନାଶ ଯିବ ।
ଏ ମୋହୋର ବଚନ ଯେବେ ନ କରିବ ॥
ସମ୍ପଦ ଯଶ ଜୀବନେ କାର୍ଯ ଥିଲେ ।
ସବୁ ପଛ ଯିବ ସୀତୟା ସମର୍ପିଲେ ॥
ନୋହିଲେ ହତ ହୋଇ ଦତ୍ୟବଳ ।
କାଲି ପାରି ହୋଇ ଆସିବେ ମାହାଜଳ ॥
ଅକଣ୍ଟେକ ପୁରେ କରିବେ ଅନିର୍ଯାପ ଗୋଳ ।
ପୁତ୍ର ନାତିବନ୍ଧୁ ମରିବେ ସକଳ ॥
ଯେ ବଚନ ଶୁଣି ରାବଣ କୋପ କଲା ।
ନାସିକା ଡିଆଂଇ ବିଂଶ ଲୋଚନେ ଚାହିଂଲା ॥୧୦୦
ବୋଇଲା ପାପିଷ୍ଟରେ ଅଟୁ ବିଭୀଷେଣ ।
ଯେତେ କଥା କହୁ ସବୁ ଅକାରଣ ॥
ଗ୍ୟାଂନ୍ତି ଯେବେ ଗ୍ୟାଂନ୍ତିକି କହଇ ଅଭରସା ।
ମୋତେ ତେସନେକ ଶୁଭିଲା ତୋର ଭାଷା ॥
ରାମର ବଳ ବୀର୍ଯ୍ୟ କହୁତୁ ବଡ଼ କରି ।
ମୋତେ ଡରାଉଅଛୁ ଅବିଗୁଣ ଧରି ॥
ମାନେବ ଦୁଇଜଣ ରକ୍ଷ କପି ସାହା ।
ତାହାଙ୍କର ଆରମ୍ଭକୁ କି ଡରଇ ବିଂଶବାହା ॥
ସେହି ରଘୁନାଥରେ ଶରଣ ଯାଇଂ ପଶ ।
ଏଥେ ଥିଲେ ତୋତେରେ କରିବି ପ୍ରାଣନାଶ ॥୧୦
ଏତେ ବୋଲି ଆସନୁ ଉଠିଲା ଲଙ୍କପତି ।
କରେଣ ଖଡ଼ଗ ପ୍ରଚଣ୍ଡ ମୂରତି ॥
ମାରିବ ବୋଲି ସେ ଧାଇଂଲାକ ରାଗେ ।
ପୁତ୍ର ଇନ୍ଦ୍ରଜିତ ଆସି ଉଗାଳିଲା ଆଗେ ॥
ଭୋ ଦେବ ଲଙ୍କାର ଠାକୁର ବିଂଶପାଣି ।
ତିନି ତଇଲୋକ ଠାକୁର ଶିରୋମଣି ॥
ସେ ତୋହୋର ସୋଦର ଅଟଇ କନେଷ୍ଟ ।
ତାହାକୁ କିମ୍ପା ସ୍ୱାମୀ କରୁ ଯେତେ ରୁଷ୍ଟ ॥
ରାବଣ ବୋଇଲା ସେ ମୋହୋର ବଇରି ।
ନିଚୟେ ତାହାରେ ସରିବ ମୋହୋର ଶିରୀ ॥୨୦
ଯେ ପୁରେ ଥିଲେ ତାହାକୁ କରିବି ଯେ ନାଶ ।
ଏତେ ବୋଲି ନାତେକ ମାଇଲା ଦଶାଇଶ ॥
ବୋଇଲା ଲଙ୍କାରୁ ଏହିକ୍ଷଣି ଯାସି ।
ଶ୍ରୀରାମ ଚରଣେ ଶରଣ ପଶସି ॥
ଏତେ ବୋଲି ପୁଣି ମାରିତ ମନ କରଇ ।
ଆଗେ ଉଗାଳିଣ ଇନ୍ଦ୍ରଜିତ ଧରଇଂ ॥
ରାବଣ ବୋଇଲାରେ ନ ଧର ମୋତେ ଛାଡ଼ ।
ସେ ମୋହ୍ନା ପାପିଷ୍ଟ ଅଟଇ ବଡ଼ ରାଢ଼ ॥
ଯେବଣ କଥାକୁ କରଇ ମୁହିଂ ସଧ ।
ଯେହା ଜାଣିଲେ ସେ କରଇ ବିରୋଧ ॥୩୦
ଯେବେ ସେ ହନୁମନ୍ତ ପୋଡ଼ିଲା ଲଙ୍କପୁରୀ ।
ସେ ବୁଧି ହାଦେ ଅଟଇ ଏହାରି ॥
ସୀତା ଖୋଜିଣ ବାରତା ଘେନି ଗଲା ।
ଏହା ବୋଲେ ତପସୀ କଟକାଇ କଲା ॥
ଆଦ୍ୟହୁଂ ଏ ମୋହୋର ମନ୍ଦରେ ସେ ଥାଇଂ ।
ଏ ମୋହୋର ନିଉନେ ପରମ ସୁଖ ପାଇଂ ॥
ଏବେହେଂ ଶ୍ରୀରାମର ତେଜ ପ୍ରକାଶଇଂ ।
ସନମାନ ପାଇ ଯେ ମୋ ଦର୍ପ ହରଇ ॥
ଯାଉ ସେ ନ ଥାଉ ଲଙ୍କା ସୀମାନ୍ତରେ ।
ରାଜା ହୋଉ ସେ ଯେ ମୋହୋର ଅନ୍ତରେ ॥୪୦
ଯଦି ତାହାକୁ ମୁଂ ଦେଖିଲେ ନ ମାରଇ ।
ବିଶର୍ବା ଋଷିର ଚରଣେ ହାରଇଂ ॥
ଯେ ତୋହୋର ଶପତ ନଉକେଷାର ରାଣ ।
ଏଥେ ଥିଲେ ବିଭୀଷେଣର ଘେନିମି ପରାଣ ॥
ଏତେ ବୋଲି ମହୀରାବଣକୁ ଚାହିଂ ।
କୋପେ ଆଗ୍ୟାଂ ଦେଲା ସେ ମନ୍ଦୋଦରୀର ସାଇଂ ॥
ମୋହୋର ରାଣ ତୋତେ ଯାଆସିରେ ମହିମା ।
ବିଭୀଷେଣକୁ ଛଡ଼ାଇଂ ଆସ ମୋହୋର ସୀମା ॥
ତେବେ ମୁଣୋହି ମୁଂ କରିବଇଂ ଆଜ ।
ତାହାରେ ନାଶ ସେ ହୋଇଲା ବହୁତ କାର୍ଯ ॥୫୦
ତୋହୋର ଆସିବା ଯାଏ ଏଥି ଥିବି ।
ବାରତା ପାଇଲେ ଭିତରକୁ ଯିବି ॥
ଶୁଣି ମହୀରାବଣ ଗଲାକ ତଡ଼ତି ।
ବିଭୀଷେଣ ଥିଲା ଯେ ମେଢ଼ର ପଛକତି ॥
ହସ୍ତ ଧରି ତାକୁ ବୋଇଲା ବେଗେ ଆସ ।
ରାଜା ଆଗ୍ୟାଂ ଦେଲା ଛଡ଼ାଇବି ଦେଶ ॥
ଶୁଣି ବିଭୀଷେଣ ଶୂନ୍ୟେ ବିକ୍ରମିଲା ।
ଶତେ ଯୋଜନ କରି କାୟା ବଢ଼ାଇଲା ॥
ଆକାଶରେ ଥାଇଂ ଉତ୍ତର ଦିଗକଇଂ ଚାହିଂ ।
ରକ୍ଷ ବାନର ଯେ ପୃଥି ହୋଇଅଛି ଛାଇ ॥୬୦
ବୋଇଲା ରାବଣ ଯେ ମୋତେ କୋପ କଲା ।
ଏ କଥାଇ ମୋତେ ଭଲ ଯୋଗାଇଲା ॥
ଶ୍ରୀରାମରେ ଶରଣ ପଶିବଇଂ ଯେବେ ।
ନାରାୟେଣ ଦୟା ହୋଇବେ ମୋତେ ତେବେ ॥
ଆଉ କିମ୍ପାଇଂ ଯିବଇ ବାହୁଡ଼ି ।
ପ୍ରାଣ ରଖିବଇଂ ଶ୍ରୀରାମ ପାଦେ ପଡ଼ି ॥

ପୂର୍ବର ପାପେ ମୁଁ ହୋଇଲି ଅସୁର ଯୋନି ।
ସେ କର୍ମ ଫେଡ଼ିବି ମୁଁ ରଘୁନାଥଙ୍କୁ ଚିହ୍ନି ॥
ଦେଖିବି କେସନେକ ଅଟନ୍ତି ମୁରାରି ।
ସୁରଗଣଙ୍କର ଛଳେ ମାନେବ ରୂପ ଧରି ॥୭୦
ଯେ ଜନ୍ମ ସୁଫଳ କରିବି ରାମଙ୍କଇ ଚାହିଁ ।
ନଥିବି ଏ ପୁରେ ଯିବି ବେଗ ହୋଇଂ ॥
ଏତେ ବିଚାରି ସେ ଆକାଶ ମାର୍ଗେ ଚଳଇ ।
ଯହିଁ ଅଛି ରଘୁନାଥ ତହିଁ ଯାଇ ମିଳଇ ॥
କଳାମେଘ ଯେହ୍ନେ ଗଗନେଣ ଉଦେ ।
ତେସନ ସଂଯୋଗ ଦିଶଇ ଶୂନ୍ୟ ମଧେ ॥
ଯେସନକ ସମୟେ ସୁଗ୍ରୀବର ରାୟେ ।
ସନ୍ଧ୍ୟା ସୁମରିବାକୁ ସିନ୍ଧୁକୂଳ ଆୟେ ॥
ସାଙ୍ଗରେ ଋକ୍ଷ ମର୍କଟ ବହୁତ ବଳ ।
ମଧ୍ୟାହ୍ନ ସନ୍ଧ୍ୟା ସେ କରଇ ମହୀପାଳ ॥୮୦
ବିଭୀଷେଣ ସେ ଅନ୍ତରୀକ୍ଷେ ଛନ୍ତି ଚାହିଁ ।
ବାନରେ ବିଚାରନ୍ତି ଉପରକୁ ଅନାଇ ॥
ମେଘଖଣ୍ଡ ପ୍ରାଏ ଏ କିସ ଦିଶୁଅଛି ।
ଯେକ ଆରକେ ହୁଅନ୍ତି ପୁଛାପୁଛି ॥
କେ ବୋଲଇ ମେଘ କେ ବୋଲଇ ଅସୁର ।
କେ ବୋଲଇ ଏ କେବଣ ପ୍ରକାର ॥
ନିରେଖି ଚାହିଁଲେ ଅଟଇ ଦଇତ ।
ବାନରେ ପ୍ରାକର୍ମ କରନ୍ତି ତେଇନ୍ତ ॥
କେ ବୋଲଇ ଚାଲ ହୋ ଆଣିମାକ ଧରି ।
କେ ବୋଲଇ ସମୁଦ୍ରେ ପକାଇବା ମାରି ॥୯୦
ରକ୍ଷ କପିଙ୍କର ଏସନେକ କଥା ଶୁଣି ।
ଅନ୍ତରୀକ୍ଷେ ଥାଇଂଣ ବିଭୀଷେଣ ଭଣି ॥
ବୋଇଲା ରାବଣର ଅଟଇଂ ମୁହିଂ ଭାଇ ।
ଏ ମୋହୋର ନାମ ବୀଭୀଷେଣ ହୋଇ ॥
ଯହୁଂ ସେ ଅନୀତି କଲାକ ଦଶଶିରି ।
ତେଣୁ ତାହାର କନ୍ଧୁ ସିରିଲାକ ଶିରୀ ॥
ତିଆରିଲେ ବୋଇ ସେ ନ କଲା ଦଶଶିରି ।
ଆଣ ଧରି କୋପେ ଗୋଡ଼ାଇଲା ମାରି ॥୯୦
ବୋଇଲା ଦୋରେହାରେ ନ ଥାଅ ମୋର ପାଶ ।
ନିଶ୍ଚୟେ ଅଟୁ ମୋଡ଼ାରେ ଶ୍ରୀରାମର ଦାସ ॥୧୦୦
ଇନ୍ଦ୍ରଜିତ ନ ଥିଲେ ଘେନନ୍ତା ମୋର ପ୍ରାଣ ।
ଧର୍ମେ ପଳାଇ ଅଇଲି କୋପ ଅପ୍ରମାଣ ॥
ପୁତ୍ର ଦାରା ଧନ ଛାଡ଼ିଣ ଅଇଲି ।
ରଘୁନାଥ ଚରଣେ ଶରଣ ପଶିଲି ॥
ଶୁଣି ରକ୍ଷ ବାନର ହୋଇଲେ ସନ୍ତୋଷ ।
ସୁଗ୍ରୀବର ବୋଇଲା କତିକି ମୋର ଆସ ॥
ଯେବେ ଦାଶରଥିରେ ପଶିବୁ ଶରଣ ।
ବଂଚି ପାରିବୁ ତୁ ଅକାଳ ମରଣ ॥
ନ କର ତୁ ଭୟେ ଆସ ବେଗ ହୋଇଂ ।
ରାମଙ୍କୁ ଦ୍ରଶନ କରାଇବି ତୋତେ ନେଇଂ ॥୧୦
ଶୁଣି ବିଭୀଷେଣ ଖସିଲା ଗଗନୁ ।
କିରଣ ବିରାଜଇ ଶରଦର ଭାନୁ ॥
କପିରାଜ ଛାମୁରେ ମିଳିଲା ତହୁଁ ଯାଇଂ ।
ଦେଖି କୋଳ କଲା ଇକ୍ଷିନ୍ଧ୍ୟାର ସାଇଂ ॥
ଗଉରୋବ କରି କତିରେ ବସାଇଲା ।
କାହୁଂଣ ଅଇଲୁ ବୋଲିଣ ପୁଛା କଲା ॥
ଖର ନିଶ୍ୱଆସ ତୋର ଗରୁତ ଖଳ ।
ବିସ୍ମୟେ ମୁଖ ତୋର କେଶ ବାସ ଅସମ୍ଭାଳ ॥
କେ ତୁମ୍ଭର ପିଅର କେ ତୁମ୍ଭର ମାୟେ ।
କେବଣ ଦେଶୁ ତୁମ୍ଭେ ଗମନ କରି ଆୟେ ॥୨୦
ବିଭୀଷେଣ ବୋଇଲା ମୁଂ ବିଶର୍ବାର ସୁତ ।
ନଉକେଷା ରାକ୍ଷସୀର ଗର୍ଭରୁ ସମ୍ଭୂତ ॥
ଦଶଗ୍ରୀବ ଅଟଇ ମୋହୋର ଜ୍ୟେଷ୍ଠ ଭାଇ ।
ମଝିଆ କୁମ୍ଭକର୍ଣ୍ଣ କନେଷ୍ଠ ଅଟଇ ମୁଇଂ ॥
ଲଙ୍କାରେ ନୃପତି ହୋଇଲା ରାବଣ ।
ଚଉଦ ଭୁବନେ ହୋଇଲା ବଡ଼ ପଣ ॥
କୁବେରକୁ ଜିଣି ଆଣିଲା ବିବାନ ।
ତେଣୁ ତିନିପୁରେ କଲାକ ଗମନ ॥
ସ୍ୱର୍ଗପୁରେ ପଶି ଦେବତାନ୍ତ ଦଳି ।
ପାତାଳ ପୁରେ ପଶି ଭେଟିଲାକ ବଳି ॥୩୦
ତହିଁ ଅନେକ ଯେ ଜିଣିଲା ନାଗଗଣ ।
ଜଗତ ପିତାମହ ବର ପ୍ରସାଦେଣ ॥
କପିଳାସ କନ୍ଦରେ ପଶିଲାକ ଧସାଇଂ ।
ଦେଖି ଦୟା କଲେ ପାର୍ବତୀର ସାଇଂ ॥
ତଇଲୋକେ ଜିଣନ୍ତା ହୋଇଲା ଦର୍ପିଷ୍ଟ ।
ଗର୍ବ ବହି ଯହୁଂ ଯାଗ୍ୟଂ କଲା ନଷ୍ଟ ॥
ଶ୍ରୀରାମ ଘରଣୀ ସୀତାକୁ ନେଲା ହରି ।
ତିଆରିଲେ ବୋଲ ନ କଲା ମୋହୋରି ॥
ଖଡ଼ଗ ଧରି କୋପେ ଗୋଡ଼ାଇଲା ମାରି ।
ଇନ୍ଦ୍ରଜିତ ନ ଥିଲେ ପକାନ୍ତା ସଂଘାରି ॥୪୦
ବୋଇଲା ଶ୍ରୀରାମର ସେବକ ତୁ ଅଟୁ ।
ହୃଦରେ ମାୟା ଧରି ମିଛେହେଁ ମୋତେ ଖଟୁ ॥
ଯେ ନଗ୍ରେ ଥିଲେ ଘେନିମି ତୋହୋର ପ୍ରାଣ ।
ଖଡ଼ଗରେ ମାଂସ କାଟି କରିବି ଭିନ ଭିନ ॥
ଶ୍ରୀରାମରେ ଶରଣ ପଶିବୁ ତୁ ଯାଇଂ ।
ଦଣ୍ଡେହେଂ ଥିଲେ ତୋର ପ୍ରାଣ ପାଇନାହିଁ ॥
ଯେସନେକ ବୋଲି ମୋତେ କୋପ କଲା ।
ଲୋକ ଦେଇଂ ନଗ୍ରୁ ବାହାର କରିଦେଲା ॥
ତେବେ ସେ ଛାଡ଼ିଲି ମୁଂ ଲଙ୍କାର ମୁହାଂସ ।
ରଘୁନାଥ ବଂଶର ପାଦକୁ କଲି ଆଶ ॥୫୦
ଶ୍ରୀରାମର ଶରଣ ପଶିଲି ନିଚୟେ ।
ଶ୍ରୀରାମ ଅଟଇ ତ୍ରିଭୁବନ ରାୟେ ॥
ବଇକୁଣ୍ଠବାସୀ ଯେ ସ୍ୱୟେଂ ବ୍ରହ୍ମରାଶି ।
ଦେବତାଙ୍କର ଛଳେ ସେ ଅବତାର ଯେଥେ ଆସି ॥
ଶଙ୍ଖ ଚକ୍ର ଆୟୁଧ ଗରୁଡ଼ ବାହାନ ।
ଏ ସେ ଭଗତ ବଛଳ ଭଗବାନ ॥
ଧନ୍ୟ ସୁଗ୍ରୀବର ଧନ୍ୟ ତୋହୋର ତପ ।
ପ୍ରତକ୍ଷେ ଦେଖିଲୁ ତୁ ପରମ ବିଷ୍ଣୁ ରୂପ ॥

ପୂର୍ବ ଜନ୍ମରେ କେବଣ ତୀର୍ଥେ ତପ କଲୁ ।
ସେ କାରଣେ ଶ୍ରୀରାମର ମଇତ୍ର
ହୋଇଲୁ ॥୬୦
ଭୋ ବାନରେଶ୍ୱର ଇଷ୍କିନ୍ଧ୍ୟାର ସାଇଂ ।
ରଘୁନାଥଙ୍କୁ ମୋତେ ଦ୍ରଶନ କରାଅ ନେଇ ॥
ତୋହୋରେ ଦେଖଇଂ ମୁଂ କମଳା ବିଳାସ ।
ଅନେକ କାଳହୁଂ ମୁଂ କରିଅଛି ଆଶ ॥
ଶୁଣି ସୁଗ୍ରୀବର ଉଠିଲା ତଡ଼ତି ।
ବିଭୀଷେଣ କରେ ଧରିଣ ଉଠନ୍ତି ॥
ପଛେଣ ଗୋଡ଼ାନ୍ତି ରକ୍ଷ କପିବଳ ।
ସିଙ୍ଘଦ୍ୱାରେ ଯାଇଂହୋଇଲେ ମହୀପାଳ ॥
ଶଉରୀ ସେନାପତି ଅଛି ତହିଂ ବସି ।
ରାଜାଙ୍କୁ ଦେଖିଣ ସେ ପାଛୋଟି ନେଲା
ଆସି ॥୭୦
ସୁଗ୍ରୀବର ବୋଇଲା ଶୁଣ ଯେ ଶଉରୀ ।
ଲଙ୍କାର ନୃପତି ଯେ ଆମ୍ଭର ବଇରି ॥
ତାହାର କନେଷ୍ଟ ନାମ ବିଭୀଷେଣ ।
ବୋଇଲା ଦାଶରଥିର ପଶିବି ଶରଣ ॥
ମୁଇଂ ଯେବେ ଶ୍ରୀରାମଙ୍କୁ ଜଣାଇବି ଯାଇଂ ।
ରହିଥିବୁ ଯେହାଙ୍କୁ କତିରେ ବସାଇଂ ॥
ଆଗ୍ୟାଂ ହୋଇଲେଣ ଦେଖାଇବା ଏହିକ୍ଷଣି ।
ଯେତେବୋଲି ଭିତରକୁ ଗଲା ନୃପମଣି ॥
ମୁଣୋହି ସାରି ରାମ କରନ୍ତି ଆଚୋବନ ।
ପାଣି ତୋଳି ଦିଅଇ ସୁମେତ୍ରାନନ୍ଦନ ॥୮୦
ଜମ୍ୱେବ ହନୁମନ୍ତ ଅଙ୍ଗଦ ନଳ ନୀଳ ।
ଆଗରେ ପଟୁଆର ଅଛନ୍ତି ସକଳ ॥
ସୁଗ୍ରୀବର ଯାଇଂ କଲା ଦରଶନ ।
ପାୟେ ପଡ଼ି ଶୋଇ ଉଠିଲା ବହନ ॥
ଶିରେ କରଦେଇଂ ନିକଟକୁ ଗଲା ।
ହସ ହସ ହୋଇଂ ଛାମୁରେ ଜଣାଇଲା ॥
ଭୋ ନାଥ ରଘୁନାଥ ତଇଲୋକର ସାଇଂ ।
ଅପୂର୍ବ କଥାଏ ଶୁଣିମା ଗୋସାଇଂ ॥
ରାବଣର ଭାଇ ଯେ କନେଷ୍ଟ ବିଭୀଷେଣ ।
ସେ ଆସିଅଛି ହୋ ପଶିବ ଶରଣ ॥୯୦

ସାହେର କୂଳେ ମୁଂ ଯେ ସନ୍ଧ୍ୟା କରୁଥିଲି ।
ଆକାଶ ମାର୍ଗରେ ଯେ ଅଇଲା ଦେଖିଲି ॥
ମେଘଖଣ୍ଡ ପ୍ରାୟେ ସେ ଆକାଶେଣ ଥାଇଂ ।
ରକ୍ଷ କପିବଳ ମାରିତ ଲୋଡ଼ିଲେ
ଗୋସାଇଂ ॥
ଶୂନ୍ୟରେ ଥାଇଂ ସେ ବୋଲଇ ବଚନ ।
ମୁହିଂ ସେ ବିଭୀଷେଣ ରାବଣର ସାନ ॥
ଶ୍ରୀରାମରେ ଶରଣ ପଶିବାରେ ଅଇଲି ।
ଆଜ୍ଞୁଂ ରଘୁନାଥର ସେବକ ହୋଇଲି ॥
ଏକଥା ଶୁଣିଣ ମୁଂ ରାଇଲି ତାହାନ୍ତ ପାଶ ।
ଗଉରୋବ କରି ବୋଇଲି କତିକି ମୋହୋର
ଆସ ।୧୦୦।
ତୁମ୍ଭଙ୍କୁ ଶ୍ରୀରାମଙ୍କୁ ଦେଖାଇବି ନେଇଂ ।
ଶୁଣିଣ ଗଗନୁ ଯେ ଅଇଲା ଓହ୍ଲାଇଂ ॥
ଦେଖି ଜାଣିଲି ତାର ସକଳ ଚରିତ ।
କେବଣ ପାତକେ ସେ ହୋଇଲା ଦଇତ ॥
ଧର୍ମେ ସେ ମହାତ୍ମା ଅଇଲା ଗୋସାଇଂ ।
ସୁଗ୍ରୀବର ବଚନେ ବୋଇଲେ ରଘୁସାଇଂ ॥
ଶରଣ ଲୋକଙ୍କୁ କରଇଂ ମୁଂ ଦୟା ।
ସେ ମୋତେ ପଛେ କରଇ କିନା ମାୟା ॥
କି ଅବା ସଇନ୍ୟ ଆସଇ କିନା ଖୋଜି ।
ଦିନାକେତେ ଥାଇ ଯିବ ଅବା ବୁଝି ॥୧୦
ଜମ୍ୱେବ ଅଙ୍ଗଦ ହନୁମନ୍ତଙ୍କୁ ଚାହିଂ ।
ନଳ ନୀଳ ଗନ୍ଧମାର୍ଦ୍ଦନଙ୍କୁ ରାଇ ॥
ତାରାକ୍ଷ ସୁଷେଣ ଯେ ଅଛ ସର୍ବ ସନ୍ୟ ।
ଏକଥା କେମନ୍ତ ହୋ ବଚାର ତୁମ୍ଭେ ମନ ॥
ଶତୃର ଭାଇ ଶରଣ ଆସି ପଶଇ ।
ତୁମ୍ଭମାନଙ୍କୁ କେମନ୍ତ ପ୍ରାଏ ଦିଶଇ ॥
ଜମ୍ୱେବ ବୋଇଲେ ତୁମ୍ଭେ ଆମ୍ଭନ୍ତ ନ
ପଚ୍ଚର ।
ହନୁମନ୍ତ ଜାଣଇଂନା ଲଙ୍କାର ବିଚାର ॥
ଲଙ୍କାପୁରକଇ ଯାଇଥିଲା ଏହି ।
କେମନ୍ତ କେମନ୍ତ କଥା ଉପୁଜିଲା ତହିଂ ॥
ଏହାଙ୍କୁ ପୁଛିଣ କରିବାନା କାର୍ଯ ।

ଶୁଣି ହନୁମନ୍ତଙ୍କୁ ଚାହିଂଲେ ରଘୁରାଜ ॥
କରଯୋଡ଼ି କହଇ ପବନର ସୁତ ।
ଶୁଣ ଦେବ ଅଯୋଧ୍ୟା ଠାକୁର ରଘୁନାଥ ॥
ଯେବେଣ ଦିନ ମୁଂ ଲଙ୍କାକଇ ଗଲି ।
ଓଶେକ ବିପୁନ୍ୟେ ମୁଂ ସୀତାକୁ ଠାବକଲି ॥
ଜାଣିଣ ରାବଣ ମୋତେ ଧରାଇ ଘେନି
ଗଲା ।
ନାଗଫାଶେ ବାନ୍ଧି ଅନେକ ମରାଇଲା ॥
ଶିର ଛେଦିବାକୁ ଆଗ୍ୟାଂ ଦେଲା କୋପେ ।
ବିଭୀଷେଣ ଥିଲ୍ଲା ରାବଣ ସମୀପେ ॥୩୦
ମୋହୋର ପାଇଂ ସେ କହିଲା ବହୁତ ।
ତେଣୁ ସେ ଭୋଦେବ ମୁଂ ପାଇଲି
ଜୀବତ ॥
ଆବର କଥାଏ ଶୁଣସି ଗୋସାଇଂ ।
ସୀତୟାଙ୍କୁ ରାବଣ ଯେ ଅଛଇ ଜଗାଇ ॥
ସହସ୍ରେ ଅସୁରେ ଅଛନ୍ତି ଅନୁବ୍ରତେ ।
ଜାନେକୀକି ଅନେକ କହନ୍ତି ବିପରୀତେ ॥
ତ୍ରିଜଟା ନାମେଣ ସେ ଅଟଇ ରାକ୍ଷସୁଣୀ ।
ସେ ହୋ ଭୋ ଦେବ ବିଭୀଷେଣର ଦୁଲଣୀ ॥
ସେ ମାତ୍ର ସୀତାଙ୍କୁ କରଇ ଗଉରୋବ ।
ଜାନେକୀ ତାହାଙ୍କୁ ଯାଇ ସଦଭାବ ॥ ୪୦
ପ୍ରତକ୍ଷେ ଯାହା ଦେଖିଲି ଶୁଣିଲି ।
ବିଭୀଷେଣଙ୍କୁ ମୁ ଅସୁର ପ୍ରାୟେ ନ ମଣିଲି ॥
ଲଙ୍କାର ନରନାରୀ ବୋଲନ୍ତି ସମସ୍ତ ।
ସାଧୁ ଅଟଇ ଦଶଗ୍ରୀବର କନେଷ୍ଟ ॥
ଧର୍ମ ଗୁଣ ଅଚାର ବିବେକ ମରଜିତା ।
ଦାନେ ଖାଣ୍ଡେ ସୁରବନ୍ତ ସତ୍ୟେଣ ଶକତା ॥
ଏହାର ବୁଧିରେ ରାବଣ ସାଧିଲା ତିନି
ପୁରୀ ।
ଏହାର ଥିଲେ ମନ୍ଦ ନ କରଇ ଦଶଗିରି ॥
ଭୋ ଦେବ ରାମ ଶରଣ ସମ୍ଭାଳ ।
ଆଶ କରି ଅଇଲା ଯେବେ ବିଶର୍ବାର
ବାଳ ॥୫୦
ଏହାର ଏଥି ଥିଲେ ଅନେକ ଯଶ ଅଛି ।

ବିଚାରିଣ କାର୍ଯ୍ୟକର ରଘୁବଚ୍ଛି ॥
ଶୁଣିଣ ଶ୍ରୀରାମ ଲକ୍ଷ୍ମଣକୁ ଚାହିଁ ।
ସୁଗ୍ରୀବର ଜମ୍ୱେବକୁ ଘେନିଆସ ଯାଇଂ ॥
ମାୟା ଅମାୟା ଯେ ବିଚାରି ଘେନିଆସ ।
ଭିତର ବାହାର କଥାନ୍ତ ବୁଝି ପଶ ॥
ମାୟା ଥିଲେଣ ଅଇଲା ଯେବେ ଆସୁ ।
ପ୍ରାଭବ ପାଇ ସିନା ଯେ ଯାହାର ଦୋଷୁ ॥
ମୋହୋର କି ତାହାକୁ ଅଛି ଏବେ ଡର ।
କେ ସମ ଅଛି ମୋତେ ତ୍ରୈଲୋକ
ଭିତର ॥୬୦
ପିତାର ସତ୍ୟକୁ ସେ ବନବାସ କଲି ।
କର୍ମର ବିଫଳେ ସେ ଭାରିଯା ହରାଇଲି ॥
ନୋହିଲେଣ ଜଗତ ପାରଇନା ସାଧି ।
ମୋତେ କିସ କରିବ ତାହାର ବୁଧି ॥
ଯାଅ ସୁଗ୍ରୀବର ଲକ୍ଷଣକୁ ଘେନି ।
ଅଙ୍ଗଦ ନଳ ନୀଳ ଜମ୍ୱେବ ପାବେନି ॥
ତାରାକ୍ଷ ଗବୟେ କୁମୁଦ କଟଂଣ ।
ଡାଳିମ୍ୱ ଦୁନ୍ଦେଭି କେଶରୀ ସୁଷେଣ ॥
ଗବାକ୍ଷ ମହୀନ୍ଦ୍ର ଚନ୍ଦନ ସୁନାସ ।
ମରୁତ ଶତବାଳି ଯାଅ ତାର ପାଶ ॥୭୦
କଥା ବୁଝି ଆସି କରାଅ ଦରଶନ ।
ଶ୍ରୀରାମର ଆଗ୍ୟାଂୟେ ଗଲେ ସର୍ବଜନ ॥
ଶଉରୀ ସେନାପତି ଲକ୍ଷଣିହଂ ଦେଖି ।
ଧୂଋ ଉଠିଲା ସେ ଆସନ ଉପେଖି ॥
କର ଦୁଇ ଯୋଡ଼ିଣ କରଇ ନମସ୍କାର ।
ସଧୀରେ ପଚ୍ଛରଇ ବିଶର୍ବାର କୁମର ॥
ଭୋ ମାହାତ୍ମାୟେ କି ଶ୍ରୀରାମ ଆସଇ ।
ଶଉରି ସେନାପତି ତୁନି କରି ଭାଷଇ ॥
ଯେ ସେ ଲକ୍ଷଣ ଶ୍ରୀରାମର ସାନ ଭାଇ ।
ସୁମୈତ୍ରା ନାମେଣ ସେ ଅଟଇ ଏହାର
ଆଇ ॥୮୦
କଉଶୁଲା ତନୟେ ଶ୍ରୀରାମଚନ୍ଦ୍ର ରାୟେ ।
ସୀତା ଘେନି ତିନିହେଂ ବନବାସ ଆୟେ ॥
ଶୁଣି ବିଭୀଷେଣ ଉଠିଲା ତଡ଼ତି ।

ଦେଖିଲା ଲକ୍ଷଣ ଅଟଇ ସୂର୍ଯ୍ୟଜ୍ୟୋତି ॥
କରେ କୋଦଣ୍ଡ ବିକ୍ରମ ସିଂହ ଠାଣି ।
ଶ୍ୟରୀର ବିକାଶଇ ଚମ୍ପା ପୁଷ୍ପ୍ୟ ଜାଣି ॥
କୋଟିୟେ କନ୍ଦର୍ପ ସମାନ ରୂପ ଦିଶି ।
ସିଙ୍ଘଦ୍ୱାରେ ବୀର ବିଜେ କରି ଆସି ॥
ସୁଗ୍ରୀବର ଜଣାଇଲା ଯେ ସେ ବିଭୀଷେଣ ।
ୟେହାର ଜ୍ୟେଷ୍ଟ ଅଟଇ ରାବଣ ॥ ୯୦
ଯହୁଂ ଦଶଗ୍ରୀବ ଅନୀତି ଆଚରି ।
ଚିଆରିଲେ ୟେହାକୁ ସେ ଲୋଉଥିଲା ମାରି ॥
ୟେ ଭଲ ଲୋକ ଧର୍ମେଣ ୟେ ଥାଇଂ ।
ୟେ ଅସଦ୍ ମାର୍ଗ ଲୋକ କି ଏହାକୁ
ଯୋଗାଇ ॥
ତେଣୁ ସେ ଲେଛି ଅଇଲା ଲଙ୍କପୁର ।
ବୋଇଲା ଶରଣ ମୁଂ ପଶିବି ଶ୍ରୀରାମର ॥
ଏବେ ଏହାକୁ ତୁ କରସି ସଦୟେ ।
ବିଭୀଷେଣକୁ ଚାହିଂ ବୋଲଇ କପିରାୟେ ॥
ଭୋ ମାହାତ୍ମା ଏ ଶ୍ରୀରାମର ସାନଭାଇ ।
ନାମ ଲଇକ୍ଷଣ ସମାନ ନାହିଁ କେହି ॥୧୦୦
ଏହାର ଛାମୁରେ ତୁ ପ୍ରତେ ଉପୁଜାଅ ।
ଶୁଧ୍ୟ ଚିତ୍ତ ହୋଇ ଦରଶନ ପାଅ ॥
ଶୁଣିଣ ବିଭୀଷେଣ ଲକ୍ଷେଣ ପାଦଧରି ।
ସାଷ୍ଟାଙ୍ଗେଣ ପ୍ରଣମିତ ଶତେ ବାର କରି ॥
ଉଠ ଉଠ ବୋଲିଣ ବୋଲନ୍ତି ସଉମିତ୍ରୀ ।
କିଂପା ତୁମ୍ଭକୁ ଏ ବୁଦ୍ଧି ଦେଲାକ ବିଧାତି ॥
ଶ୍ରୀରାମର ଘରଣୀକି ହରିଲ କିଂପାଇ ।
ବିଭୀଷେଣ ବୋଇଲା ଦେବ ମୋହର ଦୋଷ
ନାହିଂ ॥
ରାବଣ ଜ୍ୟେଷ୍ଟ ଭାଇ ରାଜାପଣ କରଇ ।
ଯେଣେ ନାଶ ଯିବ ସେକଥା
ବିଚାରଇ ॥୧୦
ଚିଆରିଲେ ମୋତେ ମାରିତ ମନ କଲା ।
ଇନ୍ଦ୍ରଜିତ ନାମେ ତାର ପୁତ୍ର ରୁହାଇଲା ॥
ବୋଇଲା ଶ୍ରୀରାମରେ ପଶିବୁ ଶରଣ ।
ନୋହିଲେ ପ୍ରାପତଟି ହୋଇବ ମରଣ ॥

ସେ ବଚନ ଯହୁଂ ପାଇଲି ତାହାର ତହିଂ ।
ପୁତ୍ର ଦାରା ଛାଡ଼ି ଅଇଲି ଗୋସାଇଂ ॥
ରକ୍ଷାକର ମୋତେ ଆନେ ନାହିଂ ଗତି ।
ମୁହିଂ ତୁମ୍ଭ ଚରଣେ ଖଟଇ ବଶ୍ୟାବୃତ୍ତି ॥
ଶୁଣି ଲକ୍ଷ୍ମଣ ଯେ ବୋଇଲା ବିଭୀଷେଣ ।
ଭୋ ବିଭୀଷେଣ ଲକ୍ଷେଣ ଆଗ୍ୟାଂ
ପାଇଣ ॥୨୦
ଶିରେ କର ଦେଇ ସୁମରଇ ଦାଶରଥି ।
ଲକ୍ଷଣ ବୋଇଲା ହୋ ସନ୍ଦେଶ ଏଥି ଅଛି ॥
ଶତ୍ରୁର ଭାଇତୁ ତୋତେ ପ୍ରତେ ଯିବା
କେମନ୍ତେ ।
କେ ଜାଣଇଂ କିସ ଅଛି ତୋହୋର
ହୃଦଗତେ ॥
ଶଙ୍କୁନ୍ୟ କରି ଏବେ ପ୍ରତେ ଉପୁଜାଅ ।
ତେବେ ସେ ଶ୍ରୀରାମଙ୍କୁ ଦରଶନ ପାଅ ॥
ଓପ୍ରୋଧ ପଚ୍ଛ କରି କହିଲୁ ଆମ୍ଭେ ତୋତେ ।
ଦଶାନନର ଭାଇ ତୁ ଅଟୁନା ଯୁଗତେ ॥
ଆମ୍ଭେ ସଂହରିଲେ ସଇନ୍ୟ ଆମ୍ଭର ଅଛି ।
ଏମାନେ କାଳେ କରିବେନା ବାଛି ॥୩୦
ବିଭୀଷେଣ ବୋଇଲା ଶୁଣନ୍ତୁ ଲକ୍ଷେଣ ।
ଯାହା ବୋଲିବୁ ତାହା କରିବି ଏହିକ୍ଷଣ ॥
ମାଷ୍ଟ ବୁଡ଼ା ସର୍ପ ଘଟ କରାଇବୁ ଯିସ ।
କି ଅବା ଜଳନ୍ତା ଅଗ୍ନିରେ ଦେବି ଝାସ ॥
ପାଷାଣ ପକାଇଂ ପାଡିବଇଂ ଶିର ।
ନୋହିଲେ ପଶିବିକି ସାହେର ଭିତର ॥
ମାୟା ଅମାୟା ଜାଣସି ମୋହୋରି ।
ଦୋଷ ଥିଲେ ପକା ଖଡ଼ଗରେ ମାରି ॥
ଲକ୍ଷେଣ ବୋଇଲେ ମୁଂ ନ ଜାଣଇ ଆନ ।
ଏହି ସମୋଦ୍ରେ ପଶି କରିବୁ ସ୍ନାହାନ ॥୪୦
ଦଶ ଦିଗକୁ ଚାହିଂ ବୋଲିବୁ ତୁ ଯାହା ।
ମୁହିଂ ପ୍ରତେ ହାଦେ କରିବଇଂ ତାହା ॥
ଶୁଣି ବିଭୀଷେଣ ସନମତ କଲା ।
ତୀର୍ଥ ଜଳରେ ସେ ସ୍ନାହାନ କରିତ ଗଲା ॥
ହନୁ, ଜମ୍ୱେବ ଯେ ସୁଷେଣ ନଳ ନୀଳ ।

ରିଛ କପି ଗୋଡ଼ାଇ ଅଛଇ ସକଳ ॥
ସ୍ନାହାନ କରି କୂଳେ ଆସି ହୋଇ ।
ଦଶ ଦିଗକଇ ଚାହିଁଣ ଉଚ୍ଚେଁଣ ବୋଲଇ ॥
ଭୋ ବିହି, ଅନଳ, ଚନ୍ଦ୍ର ମହା ପବନ ।
ତୁମ୍ଭେ ତ ଜାଣ ମୋହୋର ପଂଚୁପ୍ରାଣ ॥୫୦
ଶ୍ରୀରାମକୁ ସେବା କରିତ ନିକି ଇଛା ।
ଏହାଉଂ ଆନେ ମୁଂ ନ ଧରଇଂ ଆନ ବାଞ୍ଚା ॥
ଯଦି କପଟ ଅଛି ମୋହୋର ବକସ୍ଥଳ ।
କଳି ଯୁଗେ ରାଜା ମୁଂ ହୋଇବି ରବି ତଳ ॥
ଏତେ ବୋଲିଣ ଯାଇଂ ପୁଣି ସ୍ନାହାନ କରି ।
କୂଳେ ଆସି ହୋଇ ଶ୍ରୀରାମକୁ ସୁମରି ॥
ଜଳ ଥଳକୁ ଚାହିଁ ପୁଣି ହିଂ ବୋଇଲା ।
ମୋହୋର ଭାଇ ନଗ୍ର ବାହାର କରିଦେଲା ॥
ତେଣୁ ମୁଂ ଅଭିମାନ ପାଇଂଣ ଅଇଲି ।
ଶ୍ରୀରାମର ପାଦତଳେ ଶରଣ ପଶିଲି ॥୬୦
ଏକଥା କପଟ ନୁହଇ କଦାଚିତେ ।
ରାଘେବ ମୋହୋର ଅଟଇ ପଞ୍ଚୁ ଭୂତେ ॥
ଶ୍ରୀରାମକୁ ମାୟା ଯେବେ ଅଛି ମୋହୋର ହୃଦେ ।
ବ୍ରାହ୍ମଣ ହୋଇଂ ଜନ୍ମ ହୋଇବି ମୁଂ କଳିଯୁଗ ମଧ୍ୟେ ॥
ପୁଣି ହିଂ ସମୋଦ୍ରେ ସ୍ନାହାନ ଯାଇଂ କଲା ।
ତଟେ ଉଭା ହୋଇ ଦଶଦିଗକଇ ଚାହିଁଲା ॥
ବୋଇଲା ରଘୁନାଥକୁ ଅଛି ଯେବେ ମାୟା ।
କଳିଯୁଗେ ବହୁତ ପୁତ୍ର ହୋଉ ମୋର କାୟା ॥
ଏତେ ବୋଲିଣ ଯେ ଆସଇ ବିଭୀଷେଣ ।
ରିଛ ବାନର ଗୋଡ଼ାନ୍ତି ହସିଣ ॥୭୦
ଏକ ବୋଲଇ ଭଲା ନିୟମ ଏହୁ କଲା ।
କଳିଯୁଗେ ନୃପତି ପଣ ମନାସିଲା ॥
ବ୍ରାହ୍ମଣ ହୋଇଂନ୍ତ ହୋଇଲା ଏହାର ମନ ।
ବହୁତ କୁଟୁମ୍ବ ଘେନି ହୋଇବ ଉତପନ ॥
ଗୃହ କର୍ମେ ଥିବ କାହିଂକି ନ ଯିବ ।
କୁଟୁମ୍ବ ଆସି ସବୁ ସଂବାଦ ହାଦେ ଦେବ ॥
ବ୍ରାହ୍ମଣ ହୋଇଲେ ଜଗତେ ପାଇବ ପୂଜା ।
ସୁଖ ଭୋଗ ନିମନ୍ତେ ହୋଇଂ ଲୋଡ଼ଇ ରାଜା ॥
ଭଲା ଉଦାସ ଏ ଦଶାନନର ଭାଇ ।
ନିୟମ କରାଇଲେ ଏହା ମନାସଇ ॥୮୦
ଅସୁରଙ୍କର ମାୟା ତ ଜାଣିତ ନ ପାରି ।
କପଟେ ଆସିଅଛି କିସ କରି ॥
ଏସନେକ ଭାଳି ବିଉରନ୍ତି ଲୋକେ ।
ସତକି ଅବା ବୋଲି ବୋଲନ୍ତି ତହିଂ ଥୋକେ ॥
ଏଥୁ ଅନନ୍ତରେ ବିଭୀଷେଣ ବୀର ।
ଯାଇଣ ମିଳିଲା ବୀର ଲକ୍ଷେଣ ପାଶର ॥
ଶିରରେ କର ଦେଇଣ ନିୟମ କରଇ ।
କଳି ଯୁଗରେ ନୃପତି ପଣ ମନାସଇ ॥
ଆବର ବୋଇଲା ମୁହିଂ ବ୍ରାହ୍ମଣ ହେବଇଂ ।
ପୁଣି ବୋଲଇ ବହୁତ କୁଟୁମ୍ବ ଅବତରଇ ॥୯୦
ଯଦି ଶ୍ରୀରାମକୁ ଅଛି ମୋହୋର ମାୟା ।
ଏହୁ ତିନି ମୂରି ଧରୁ ମୋହୋର କାୟା ॥
ଶୁଣି ଲକ୍ଷେଣ ଯେ ସମାର୍ଜ୍ଜଇ କରେ ।
ଏହିଠାରେ କ୍ଷଣେ ଥାଅ ବିଭୀଷେଣ ବୀରେ ॥
ଶ୍ରୀରାମକୁ ପଚାରି ଆସିବାନା ଯାଇଂ ।
ତେବେ ସେ ଦ୍ରଶନ କରାଇ ପାରୁ ନେଇଂ ॥
ସୁଗ୍ରୀବର ସହିତେ ଗୁହାଇଂ ସମସ୍ତ ।
ଭିତରକୁ ଗଲା ଶ୍ରୀରାମର ଭ୍ରାଥ ॥
ରଘୁନାଥକୁ ଦେଖି ପାୟେ ପଡ଼ି ଶୋଇଂ ।
ତକ୍ଷଣେ ଉଠିଲା ଶିରେ କର ଦେଇ ॥୧୦୦
ଭୋ ଦେବ ତଇଲୋକ୍ୟ ଠାକୁର ସୀତ୍ୟାପତି ।
ଶରଣକୁ ଆସିଅଛି ଯେ ପୌଲସ୍ତିର ନାତି ॥
ତାହାର ତହିଂକି ପେଷିଲୁ ତୁ ମୋତେ ।
ମାୟା ଅମାୟା ଜାଣିମାଂ ନିମନ୍ତେ ॥
ସମୋଦ୍ରେ ପଶି ସେ କଲାକ ନିୟମ ।
ବୋଇଲା ମୋହୋର ସ୍ୱାମୀ ଅଟନ୍ତି ଶ୍ରୀରାମ ॥
ଏହା ମାୟା ହୋଇଲେ ପାଇବଇଂ ଶାସ୍ତି ।
କଳିଯୁଗର ମଧ୍ୟେ ହୋଇବି ନୃପତି ॥
ଆବର ନିୟମ କଲା ବୀରମଣି ।
ବୋଇଲା ମୋହୋର ସ୍ୱାମୀ ଅଟନ୍ତି ରଘୁମଣି ॥୧୦
ଯଦ୍ୟପି ଯେ କଥା ଅଟଇ କପଟ ।
କଳିଯୁଗେ ହେବି ବ୍ରାହ୍ମଣ ଯେ ସୁର ଶ୍ରେଷ୍ଟ ॥
ଏତେ ବୋଲି ପୁଣି ନିୟମ ଯାଇ କଲା ।
ଚନ୍ଦ୍ର ସୂର୍ଯ୍ୟଙ୍କୁ ଚାହିଂଣ ବୋଇଲା ॥
ରାମ ସେ ମୋହୋର ପଞ୍ଚୁପ୍ରାଣ ପତି ।
ତା ବିନୁ ଆନେ ନ ବଳଇ ମୋର ମତି ॥
ଏକଥା ଅନ୍ୟଥା ନୋହିବ ମୋହୋର ।
ମାୟା ଥିଲେ କଳିଯୁଗେ ବହୁତ କୁଟୁମ୍ବର ॥
ଏସନେକ ବୋଲି ନିୟମ ତହିଂ କଲା ।
ସେ ଦେବ ତୋହୋର ମନକୁ କିସ ଗଲା ॥୨୦
ଶ୍ରୀରାମ ବୋଇଲେ ତାକୁ ବେଗେ ଆଣ ଯାଇ ।
ଜାଣିଲି ହୃଦରେ ମାୟା ତାହାର ନାହିଂ ॥
ଯେବଣ ନିୟମ ସେ କଲାକ ଅଗୋଚର ।
ବୋଇଲା କଳିଯୁଗେ ହୋଇବି ନୃପବର ॥
ଏକଥାକୁ ସେ ନାହିଂ ସମସରି ।
ପରଜା ଯେତେ ଅପକର୍ମ କରି ॥
ତହିଂର କାରେଣି ଅଟଇ ମହାପାକ ।
ଆବର କଥାଏ ଶୁଣ ସଉମିତ୍ରା ବାଳ ॥
ଯେବଣ ନୃପତି ପରଜାକୁ ନ ପାଳି ।
ଶତ୍ରୁର ତୁଳେ ଯେବେ ନୁହଇ ଖଡ଼ିଆଳି ॥୩୦
ସନ୍ତୋଷ ହୋଇ ଯେବେ ନିଜପୁରେ ଥାଇ ।
ମଉ ଗର୍ବ ହୋଇଣ ସେ ପ୍ରାଣ ଆଚରଇ ॥
ସେ ରାଜା କଳପେ ପରିଯନ୍ତେ ନର୍କବାସୀ ।
ଆନ ସଂସାରେ ସେ ଜନମ ହୋଏ ଆସି ॥
ବ୍ରାହ୍ମଣ ରୂପ ଯାହା ଧରିବି ବୋଲିଣ ବୋଇଲା ।

ଏହାଶୁଣି ଆତ୍ମା ମୋର ବିକଳ ହୋଇଲା ॥
କଳିଯୁଗେ ବିପ୍ରେ ନ କରିବେ ଜପ ତପ ।
ଦାନ ଘେନିଣ ଯେ ପାଇବେ ଅନେକ ପାପ ॥
ସଂଧ୍ୟା ନ କରିବେ ସେ ବେଳ କାଳ ଜାଣି ।
ଅନ୍ତରଜାତି ସଂଗେ କରିବେ ରମଣୀ ॥୪୦
ଅଗ୍ନି ନ ପୂଜିବେ ସେ ନ ପଢ଼ିବେ ବେଦ ।
ଅହନ୍ତା ଘେନିଣ ପାଇବେ ମନେ ଖେଦ ॥
ସେ ଦ୍ୱିଜ ଚଉଦ ମନୁରେ ନର୍କେ ଥିବେ ।
ଆନ ସୃଷ୍ଟିରେ ସେ ଜନମ ପାଇବେ ॥
ବହୁତ ପୁତ୍ର ବୋଲି ସେ ଯେ କଲାକ ନିୟମ ।
ଏକଥା ଲକ୍ଷଣରେ ଅଟଇ ବଡ଼ କର୍ମ ॥
କଳିଯୁଗେ କୁଟୁମ୍ବୀ ଲୋକ ବଡ଼ ପାପୀ ।
ଅନୁକ୍ଷଣେ ଶ୍ୱରୀରେ ମାୟା ଥାଇ ବ୍ୟାପି ॥
ପୁତ୍ରେ ଅନ୍ୟାୟେ କରନ୍ତି ଯହିଂ ତହିଂ ।
ତେଣୁ ସେ ବାପୁଡ଼ା ହୋଉ ଥାଇଂ ଦହି ॥୫୦
ବଢଂଶ ଚଉଂରାଣଇଂ ଗଣ୍ଡା ଯୁଗ ଯାଏଂ ।
ତେସନେକ ବାପୁଡ଼ା ନର୍କେ ପଡ଼ିଥାଏ ॥
ଯେବେ ସେ ନିୟମ କଲା ବିଭୀଷେଣ ।
ଏକଥା ଭାଇରେ ବଡ଼ାଇ କଷ୍ଟ ଶୁଣ ॥
ଆଉ ପାପମାନ ଦାନରେ କ୍ଷୟେ ଯାଇ ।
ଏ ତିନି କର୍ମ ହୋ ଅବଶ୍ୟ ଭୋଗ୍ୟ ପାଇ ॥
ଯାଅସି ଲକ୍ଷେଣ ହୋ ବିଭୀଷେଣକୁ ଆଣ ।
ଧାର୍ମିକ ବୋଲିଣ ଆଙ୍କୁଂ ତାହାକୁ ଜାଣ ॥
ଆବର କଥାଏ କହଇ ଭାଇ ତୋତେ ।
ସୁଗ୍ରୀବ ବିଭୀଷେଣକୁ ନ ଯାଇ ପରତେ ॥୬୦
ସୋଦୋର ଭାଇକି ଛାଡ଼ିଲେ ଯହୁଂ ଭାବ ।
ତାହାକୁ ବିଶ୍ୱାସ ଯିବାର କିସ ଲାଭ ॥
କାର୍ଯ୍ୟ ନିମନ୍ତେଣ ଉଶ୍ୱାସିଣ ଥିବ ।
ଚନ୍ଦନ ଶୀତଳ କରିଣ କଥାନ୍ତ କହିବ ॥
ହୃଦେ ବିଚାରିବ କହୁରାର ମତେ ।
ତେବେ ସେ ଧୂର୍ତ୍ତ ବୋଲନ୍ତି ଜଗତେ ॥

ଏବେ ସେ ବିଭୀଷେଣକୁ ଘେନି ଆସ ଯାଇ ।
ଜାଣିଲି ତାହର ହୃଦରେ କିଛି ହିଂ କପଟ ନାହିଂ ॥
ଶୁଣିଣ ସଉମିତ୍ରୀ ତଡ଼ବେଗେ ଗଲା ।
ସିଂହଦ୍ୱାର ବାହାରେ ଯାଇଣ ହୋଇଲା ॥୭୦
ସୁଗ୍ରୀବରକୁ ବୋଇଲା ବିଭୀଷେଣ ଆସୁ ।
ଶ୍ରୀରାମ ଚରଣେ ଶରଣ ଯାଇ ପଶୁ ॥
ପୂର୍ବର ପାପମାନ ହୋଉ ତାର କ୍ଷୟେ ।
ସନ୍ତୋଷେ ଆଜ୍ଞା ଦେଲେ ଶ୍ରୀରାମଚନ୍ଦ୍ର ରାୟେ ॥
ଶୁଣି ସୁଗ୍ରୀବର ବିଭୀଷେଣ ହାଥ ଧରି ।
ଆସ ବୋଲି ନବର ଭିତରେଣ ଭରି ॥
ସେନା ସେନାପତି ଯେ ଆଗ ହୋଇ ଗଲେ ।
ରଘୁନାଥକୁ ଘେନି ପଟୁଆରି ରହିଲେ ॥
କନେକ ମୃଗ ଛାଲେ ବସିଛନ୍ତି ରାମ ।
କିଜାଣି ଏକ ମୂର୍ତ୍ତି ଦିଶଇ କୋଟି କାମ ॥୮୦
ସର୍ବାଙ୍ଗେ ଧୋତି ଯେ ଜଟା ପରିଧାପନ ।
ଦକ୍ଷିଣ କରେ ନାରାଜ ତୀର କମାୟେଣ ॥
କଣ୍ଠେଣ ତୁଳସୀ ସ୍ଫଟିକ ପଦ୍ମମାଳ ।
ସୀତାର ମଣି ଗୋଟି ଶୋହଇ ବକସ୍ଥଳ ॥
ଅମଳାଣ ବସ୍ତ୍ର ଶରୀରେ ଉପରାଣ ।
ସର୍ବାଙ୍ଗେ ଚନ୍ଦନ କୁଙ୍କୁମ ଲେପନ ରାମରାଣ ॥
ବୀର ବେଶ ହୋଇଣ ବସିଛନ୍ତି ରଘୁବଂଶୀ ।
ଏସନେକ ସମୟେ ବିଭୀଷେଣ ଆସି ॥
ସୁଗ୍ରୀବର ବୋଇଲା ବେଗେ ପାୟେ ପଡ଼ି ଶୁଅ ।
ଏ ସେ ରଘୁନାଥ ଦଶରଥର ପୁଅ ॥୯୦
ଦେଖି ବିଭୀଷେଣ ଗଡ଼ଘାଲି ଶୋଇ ।
ପୁଣି ଉଭା ହୋଇଲା ଶିରେ କର ଦେଇଂ ॥
ଶତେ ବାର ବୀର ଯହୁଂ ପ୍ରଳମ୍ୟଇଂ କଲା ।
ଆସ ଆସ ବିଭୀଷେଣ ଶ୍ରୀରାମ ଆଜ୍ଞାଦେଲା ॥

ନିକଟକୁ ଯାଇଂ ନୁଆରଇ ଭରସି ।
ବିଷ୍ଣୁର ନିଜ ତେଜ ବିଭୀଷେଣକୁ ଦିଶି ॥
ଶଙ୍ଖ, ଚକ୍ର, ଗଦା, ସାରଙ୍ଗ ଚର୍ତୁକର ।
ଶ୍ରୀବତ୍ସ ଲକ୍ଷଣ କଉସ୍ତୁଭ ମଣିହାର ॥
ପୀତ ବସନ ଯେ ଗରୁଡ଼ ବାହନ ।
ଶିରରେ କିରଟୀ କୁଣ୍ଡଳ ଶୋଭାବନ ॥୧୦୦
ପଦ୍ମ ଦଳ ଲୋଚନ ଦ୍ରହାସ କମଳ ମୁଖ ।
ଦେଖି ବିଭୀଷେଣର ପଳାଇଲା ଦୁଃଖ ॥
ହୃଦରେ ବିଚାରିଲା ଏ ସେ ବ୍ରହ୍ମରାଶି ।
ଦେବତାଙ୍କର ଛଳେ ଅବତାର ଏଥେ ଆସି ॥
ରାବଣ ନ ବିଚାରି ଅନ୍ୟାୟେ ପଣ କଲା ।
ନିଶ୍ଚୟେ ସଗୋତ୍ର ସହିତେ ନାଶଗଲା ॥
ଏତେ ବୋଲି ପୁଣି ପାୟେ ପଡ଼ି ଶୋଇ ।
ଉଠି ଉଭା ହୋଇଲା ଶିରେ କର ଦେଇ ॥
ଶ୍ରୀରାମ ପଚାରନ୍ତି ତୁ ସେ ବିଭୀଷେଣ ।
ଜ୍ୟେଷ୍ଠ ଭାଇ ତୋର ଅଛି ନା ଶୁଭେଣ ॥୧୦
ରାଣୀ ମହାଦେଇ ଜେନା ଜେମାମାନେ ।
ଦେଶ, ଘୋଷ, ପାତ୍ର ଅମନାତ୍ୟ ମନ୍ତ୍ରୀମାନେ ॥
ରଥ ଗଜ ଅଶ୍ୱ ପାଦାନ୍ତି ସେବକ ।
ଶୁଭେଣ ଛନ୍ତି ନା ଲଙ୍କାଗଡ଼ର ଲୋକ ॥
ବିଭୀଷେଣ ବୋଇଲା ଶୁଣନ୍ତୁ ଶ୍ରୀରାମ ରାୟେ ।
ଶତ୍ରୁର ଶୁଭକଥା ପଚାରୁ ଅଛ ମୋୟେ ॥
ଦାରା ବଇରି ସେ ଅଟଇ ତୋହୋରି ।
ତୁମ୍ଭ ତହୁଂ ଏହା ଶୁଣି ଚକିତ ମୋହୋରି ॥
ତୁ ସେ ମହାତ୍ମା ଅଟୁ ଜ୍ଞାନୀଶୀଳ ।
ତୋତେ ଦ୍ରୋହ କଲା ରାବଣ ଚାଣ୍ଡାଳ ॥୨୦
ଯେବଣ ଦିନୁଂ ତୋହୋର ହରିଲାକ ସୀତା ।
ସେଦିନୁ ମନ୍ଦ ତାକୁ ଚିନ୍ତିଲା ବିଧାତା ॥

ଲଂକା ନଗ୍ର ହିଂ ଗଲାନିନା ନାଶ ।
ହନୁମନ୍ତ ଅଗ୍ନିରେ ସବୁ କଲା ଧ୍ୱଂସ ॥
ଅଶୀ ସସ୍ର କିଙ୍କର ଗଣ ନାଶ କରି ।
ଜମ୍ବୁମାଳିକି ସେ ଯେ ପେଷିଲା ଯମପୁରୀ ॥
ପାଞ୍ଚ ସେନାପତି ଶଳେକଗଣ ସଂଗେ ।
ଏହାନ୍ତ ମାରିଣ ଗଲା ରଣରଂଗେ ॥
ଅଛଏ ନାମେଣ ତାହାର ସାନ ବଛ ।
ତାହାର ସଂଗେ ସଇନ୍ୟ ପଡ଼ିଲେ
ଆଠଲକ୍ଷ ॥୩୦
ରଥ, ଗଜ, ଅଶ୍ୱ, ପାଇକ କେ ଗଣି ।
କୋପେ ଦଶଗ୍ରୀବ ପେଷଇ ପୁଣ ପୁଣି ॥
ମଧୁବନ ତୋଟା ହୋଇଲା ନାରଖାର ।
ଏକା ବିଧ୍ୱଂସିଲା ପବନ କୁମର ॥
ଶୁଣି ଲଙ୍କପତି ଇନ୍ଦ୍ରଜିତକଇଂ ପେଷି ।
ଅନେକ ସମ୍ପରେ ସମର କଲା ଆସି ॥
ମାୟା ଯୁଦ୍ଧ କରି ତାକୁ ଧରି ଘେନିଗଲା ।
ନାଗଫାଶେ ବାନ୍ଧି ଅନେକ ମରାଇଲା ॥
ଏ ହନୁମନ୍ତର ମହିମା ଦେଖିଲି ଦେବ
ତହିଂ ।
ପଦେ ହେଂ ନ ଛାଡ଼ିଲା ବାନ୍ଧଣାରେ
ଥାଇଂ ॥୪୦
ଅନଳ ଘେନିଣ ପୋଡ଼ିଲା ଲଙ୍କପୁରୀ ।
ବିମାନେ ନ ଉଠିଲେ ମରନ୍ତା ଦଶଗିରି ॥
ଶଏ ଜୁଣ ଲଂକା ଦହିଲାକ ହେଳେ ।
କ୍ଷତ୍ରୀ ସମ ନାହିଂ ଏହାକୁ ରବିତଳେ ॥
ବିଭୀଷେଣ ମୁଖରୁ ଏସନ ରାମ ଶୁଣି ।
ସାଧୁ ସାଧୁ ସର୍ବେ ବୋଲନ୍ତି ଏହାଶୁଣି ॥
ରାମ ବୋଇଲେ ତୁ ଶୁଣ ବିଭୀଷେଣ ।
ତୋହୋର ଜ୍ୟେଷ୍ଠ ଭାଇ ଅଟଇ ରାବଣ ॥
ଆବର କୁମ୍ଭକର୍ଣ୍ଣ ପୁତ୍ର ଇନ୍ଦ୍ରଜିତ ।
ଏହାଙ୍କ ବଳବୀର୍ଯ୍ୟ ଅଟଇ କେମନ୍ତ ॥୫୦
କେତେକ ସଇନି କେତେକ ଘୋଡ଼ା
ହାଥୀ ।
କେତେକ ଅସୁର ଯେ ଉତ୍ତମ ମହାରଥୀ ॥

ଏହା ସଞ୍ଚପି ଯେ କହ ମୋହୋ ଆଗେ ।
ବିଚାରି ବୁଝିବା କେବଣ ତାହାର ବାଗେ ॥
ବିଭୀଷେଣ ବୋଇଲା ଶୁଣସି ରଘୁସାଇଂ ।
ପାଦାନ୍ତି ସଇନି ତାର କଳନା ନ ଯାଇ ॥
ପଂଚାଶ କୋଟି ମକୁଟ ଯୋଦ୍ଧାମାନ ।
ଜଣ ଜଣକେ ସେ ରାବଣ ସମାନ ॥
ଆବର ରଥ କେ ତଦନ୍ତ କରିପାରି ।
ସାଂଗ୍ରାମେ ସମସ୍ତେ ଅଟନ୍ତି ହନ୍ତକାରୀ ॥୬୦
ଦଶ ପଦ୍ମ ଅଶ୍ୱ ତା ଅଟନ୍ତି ନିରଜିତା ।
ସୂର୍ଯ୍ୟ ପୁର ଜିଣି ପାରନ୍ତି ମାହାଦନ୍ତା ॥
ବାଣୁଆ, ପାଇକ ଗଣିତ ନୁଆରି ।
ଅସଂଖ୍ୟ ସଇନି ସଂଭାଳଇ ଦଶଗିରି ॥
ସଂପଦର ମହିମା ଅଟଇ ଅଗୋଚର ।
ଦ୍ୱାରପାଳ କତିରେ ବସଇ ଚକ୍ରଧର ॥
ବୃହସ୍ପତି ତୁସ୍ତି କରଇ ଉଭାହୋଇ ।
ନାରଦ ମହରଷି ବୀଣା ଯେ ବଜାଇ ॥
ରାତି ଥାଉଂ ବ୍ରହ୍ମା ପଢ଼ଇ ଆସି ବେଦ ।
ଜନ୍ତୁପତି ଯମ ଅଟଇ ତାର ବୈଦ୍ୟ ॥୭୦
ପବନ ଚାମର ବିଂଚଇ ବିଂଚଣି ।
ବରୁଣ ସିଞ୍ଚଇଂ ଘେନିଣ ବାସ ପାଣି ॥
କୁବେର ସାଇତଇ ଭଣ୍ଡାର ଆୟେମାନ ।
ବସ୍ତ୍ର ପଖାଳଣ କରଇ ହୁତାଶନ ॥
ଶଙ୍କର ଜ୍ଞାନ କହନ୍ତି ନିତି ଯାଇଂ ।
ନିଧିମାନ ଚରଚା କରନ୍ତି ତହିଂ ଥାଇ ॥
ଚାରିମେଘେ ଉଗରା ସୂର୍ଯ୍ୟ ଦଣ୍ଡୁଆଣୀ ।
ମୁଣୋହି ରାନ୍ଧଣା କରଇ ଦେବ ଶଶୀ ॥
ଅଷ୍ଟ ଅପଛରୀ ନୃତ୍ୟଗୀତ କଏ ।
ଗନ୍ଧର୍ବ, କିନ୍ନର ପଟୁଆରୀ ଥାଏ ॥୮୦
ବାରହ ବିଶ୍ୱଦେବା ନବଗ୍ରହ ମାନ ।
ଅଷ୍ଟବସୁ ଏକାଦଶ ରୁଦ୍ର ଖଟନ୍ତି ପାଖେଣ ॥
କେ ଛତ୍ର କେ ଚାମର ବିଞ୍ଚଇ ବିଂଚଣି ।
ଅସଂଖ୍ୟ ସଂପଦ ଭୋଗ କରଇ ବିଂଶପାଣି ॥
କୁମ୍ଭକର୍ଣ୍ଣକୁ ବଳେ ସମ କେହି ନାହିଂ ।
ପର୍ବତ ସମାନେ ଦିଶଇ ତାର ଦେହୀ ॥

ମେଘନାଦ ନାମେଣ ଅଟଇ ଜ୍ୟେଷ୍ଠ ସୁତ ।
ଇନ୍ଦ୍ରକୁ ଜିଣିଣ ନାମ ବହଇ ଇନ୍ଦ୍ରଜିତ ॥
ନିକୁମ୍ଭିଲା ବଟ ତଳେଣ ଯଜ୍ଞ କରି ।୯୦
ଦେଶଦେବଙ୍କୁ ସେ ଜିଣିଲା ଧରି କରି ॥
ଅନେକ ମାୟା ସେ ଜାଣଇ ମେଘନାଦ ।
କର୍ମେଣ ମଂତ୍ର ତାର ହୋଇଲାକ ସିଦ୍ଧ ॥
ଦିଗପାଳମାନେ ଖଟନ୍ତି ସନ୍ନିଧ୍ୟାନେ ।
ଅଗୋଚର ମହିମା ତାର ପରସନେ ॥
କୁମ୍ଭ ନିକୁମ୍ଭ ମକରାକ୍ଷସ କାକାକ୍ଷ ।
ଧୂମ୍ରାକ୍ଷ ବିରୂପାକ୍ଷ ସାରାକ୍ଷ ॥
ମହୀରାବଣ ମହାପାରୁଶ କୁରାଶୁର ।
କାଳ ଘଣ୍ଟ ଅମୟେ ଜ୍ୟୋତି ମହାବୀର ॥
ସାଗର ଲୋହିତାକ୍ଷ ପ୍ରଶସ୍ତ ସେନାପତି ।
ମହୋଦର ମୋଟ ମହାମୋଟ
ପ୍ରଭୃତି ॥୧୦୦
ଦେବନ୍ଦତ୍ତ ମହୀଦତ୍ତ ମୁଖ ପ୍ରଭାଭା ।
ଅଲୋପି ଘୋଟକର୍ଣ୍ଣ ଦୁର୍ମୁଖା ପ୍ରଭଜା ॥
ଶାର୍ଦ୍ଦୋଳ ମେଘ ମରୁତ କରଣ ।
ଉଲକ ପ୍ରଶସ୍ତ ଶୁକ ଯେ ଶାରଣ ॥
ଅଛନ୍ତି ମହାବୀରେ ଯେ କହିଲେ ନ ସରି ।
ଶୁଣି ରଘୁନାଥ ନିଶରେ ହାଥ ଭରି ॥
ବୋଇଲେ ବାଣ ମୋର ଅଟଇ ଅଗ୍ନିରାଶି ।
ରାବଣ ସପ୍ତଅଙ୍ଗ ପଡ଼ିବ ଯେଥି ଆସି ॥
ସଂଗୋତ୍ର ସହିତେ ବନ୍ଧୁବର୍ଗ ଘେନି ।
ରଥ ଗଜ ଅଶ୍ୱ ଯେତେକ ସଇନି ॥୧୦
ଏହାନ୍ତ ଅବଶ୍ୟ ମାରିବି ନାରାଜେଣ ।
ଅସୁର କରି ମୁଂ ନ ଥୋଇବି ଏକଜଣ ॥
ଆବର କଥାଯେ ଶୁଣ ବିଭୀଷେଣ ।
ଆଜୁ ତୋତେ ଦେଲି ଲଙ୍କାରେ ରାଜାପଣ ॥
ଯେ ମୋହୋର ସତ୍ୟ ଭାଇଙ୍କର ସପତ ।
ନିଚୟେ କରିବି ତୋତେ ଅସୁରଙ୍କର ନାଥ ॥
ନ କଲେ ପଞ୍ଚ ପାତକେ କରତା
ହୋଅଇଂ ।
ଯେଚେ ବୋଲି ଶ୍ରୀରାମ ଧନୁଶର ଛୁଇଂ ॥

ଶୁଣିଣ ସମସ୍ତେ ହୋଇଲେ ସନ୍ତୋଷ ।
ସାଧୁ ସାଧୁ ବୋଲି ଶୁଭିଲାକ ଘୋଷ ॥୨୦
ସୁଗ୍ରୀବର ଜମ୍ୱେବ ଅଙ୍ଗଦ ନଳ ନୀଳ ।
ଗନ୍ଧମାରଦନ ଆବର ସକଳ ॥
ରାମଙ୍କୁ ପ୍ରଶଂସା କରନ୍ତି ସମସ୍ତ ।
ଧନି ଧନି ତୁ ଦଶରଥ ସୁତ ॥
ଶତ୍ରୁର ଭାଇକି ଶରଣ ସମ୍ଭାଳୁ ।
ଦ୍ରଶନ ମାତ୍ରକେ ଲଙ୍କାଗଡ଼ ଦେଲୁ ॥
ଅଭୟେ ଅଜଏ ପାଇଲାକ ବର ।
ସାମାନ୍ୟ ପୁଣ୍ୟକି ବୋଲିବା ଏହାର ॥
ଲଙ୍କାୟେ ଯେ ଥିଲେ ହୁଅନ୍ତା ପ୍ରାଣନାଶ ।
ଭଲା ତରକିଲା ଯେ ବିଶର୍ବାର ଶିଷ ॥୩୦
କର ଦୁଇ ଯୋଡ଼ି ବୋଲଇ ସୁଗ୍ରୀବର ।
ଶୁଣ ଦେବ ଶ୍ରୀରାମ ତ୍ରୈଲୋକ୍ୟ ଈଶ୍ୱର ॥
ବିଭୀଷେଣ ଶରଣ ପଶିଲା ତୋହୋ
ପାଦେ ।
ଲଙ୍କାଗଡ଼େ ରାଜା ହୋଇଲା ଅପ୍ରମାଦେ ॥
ଏ ବାରତା ଯେବେ ପାଇବ ଦଶଗିରି ।
ସେ ପୁଣି ଶରଣ ପଶଇ ଆସି କାଲି ॥
ତାହାକୁ କେବଣ ଥାନେ କରିବୁ ନୃପବର ।
ବିଭୀଷେଣକୁ ଯେବେ ଲଙ୍କା ଦେଲୁ ଯେ
ରଘୁବୀର ॥
ଶୁଣିଣ ଶ୍ରୀରାମ ହସିଣ ବୋଇଲେ ।
ଅଯୋଧା ନଗ୍ର ଦେବି ରାବଣ
ଅଇଲେ ॥୪୦
ମୁହିଁ ପଛେ ବିପ୍ରୁନ୍ୟେ ରହିବି ଆନ ପୁର ।
ଏ ମୋହୋର ସତ୍ୟ ଶୁଣିମା ସୁଗ୍ରୀବର ॥
ଶୁଣିଣ ଜମ୍ୱେବ ବୋଇଲେ ସାଧୁ ସାଧୁ ।
ତୁ ଦେବ ବାହାର ଅଟୁ ତ୍ରିଭୁବନ ମଧ୍ୟଂ ॥
ତୋତେ ପଟାନ୍ତର ଆନ ଲୋକେ ନାହିଁ ।
ତୁ ସେ ନାରାୟେଣ କମଳାର ସାଇଂ ॥
ଏସନେକ ବୋଲି ବୋଇଲା ବିଭୀଷେଣ ।
ଭୋ ଦେବ ଦାଶରଥି ତୈଲୋକ୍ୟ କାରଣ ॥
ମୋତେ ନୃପତି କର କି ନ କର ।
ମୁଇଂ ତୋର ଶରଣ ଅଟଇ କିଙ୍କର ॥୫୦
ଅନେକ ପ୍ରକାରେ ତୋତେ ସେବା
କରୁଥିବି ।
ତୋତେ ଭଗତିକି ଗରବ ନ କରିବି ॥
ଯେମନ୍ତେ ସୀତାକୁ ଆଣିମୁ ସୀତାପତି ।
ସେ କଥାକୁ ବିଚାର କରଇ ମୋର ମତି ॥
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ହୋଇବେ ଯେମନ୍ତେ
ବଧ୍ୟ ।
ସେ ବୁଦ୍ଧି କରିବାକୁ ଅଟଇ ମୋହୋର
ସାଧ୍ୟ ॥
ସତ୍ୟ ସତ୍ୟ ଦେବ ନୋହଇ ମୋହୋର
ଆନ ।
ଶୁଣିଣ ଆନନ୍ଦ ହୋଇଲେ ରଘୁନାନ ॥
ଆସନୁ ଉଠିଣ ବିଭୀଷେଣକୁ କୋଳ
କଲେ ।
ଦେଖି ଦେବତାୟେ ଆନନ୍ଦ
ହୋଇଲେ ॥୬୦
ବ୍ରହ୍ମା ସହିତେଣ ସକଳ ଦେବଗଣ ।
ଶ୍ୱେତ ପୁଷ୍ପ ବୃଷ୍ଟି କଲେ ତତକ୍ଷଣ ॥
ବିବିଧ ଛନ୍ଦେଣ ବଜାଇ ଦୁନ୍ଦୁଭି ।
ଅପଛରୀ ନାଚନ୍ତି ହୋଇଣ ମଉଗର୍ବୀ ॥
ବ୍ରହ୍ମା ବୋଇଲେ ତୁ ଶୁଣ ବଜ୍ରଧର ।
ଏବେ ସେ ରାବଣ ହୋଇବ ସଂଘାର ॥
ବିଭୀଷେଣ ଭେଦମାନ କହିବ ନିଅତ ।
ତେବେ ସେ ନାଶ ଯିବ ଇନ୍ଦ୍ରଜିତ ॥
ସୁମିତ୍ରା ନନ୍ଦନ ଲକ୍ଷଣ ମହାବୀର ।
ପାଶୁପତ ସମାନ୍ୟେ ଅଟଇ ତାହାର
ଶର ॥୭୦
ତେଣେ ସେ ଦତ୍ୟବଳ ହୋଇବେ ନିଧନ ।
ନିଚୟେ ଇନ୍ଦ୍ରଜିତର ସରିଲା ଜୀବନ ॥
ଅଳପ ଦିନ ତୁମ୍ଭେ ପଠାରିଣ ଥାଅ ।
କାର୍ଯ୍ୟର ନିକଟେ ବୈରାଗ ନୁହ ॥
ଶୁଣିଣ ଶକ୍ରରାୟେ ହୋଇଲେ ସନ୍ତୋଷ ।
ଏଥୁ ଅନନ୍ତରେ ଶୁଣିମା ଦିବ୍ୟରସ ॥
ଯହୁଂ ଶ୍ରୀରାମ ବିଭୀଷେଣକୁ କୋଳ
କଲେ ।
ଲଙ୍କାଗଡ଼େ ରାଜା କରିବି ବୋଇଲେ ॥
ଲକ୍ଷେକ ଲକ୍ଷଣ ଘେନିଣ କମଳିନୀ ।
ବିଭୀଷେଣ କନ୍ଧରେ ବିଜେ କଲେ
ତତକ୍ଷଣି ॥୮୦
ଅସୁର ରୂପ ତେଜିଲା ତାର କାୟେ ।
ଲକ୍ଷଣକୁ ଚାହିଂଣ ବୋଲନ୍ତି ରାମ ରାୟେ ॥
ତୀର୍ଥରାଜ ଜଳ ଆଣି ଦିଅରେ ଭାଇ ।
ଏହିକ୍ଷଣି ଅଭିଷେକ କରିବି ଏହାକଇ ॥
ଏ ମୋହୋର ବଚନ ନୁହଇ ଆନ ଜାଣ ।
ହୋଉ ବିଭୀଷେଣ ଲଙ୍କାରେ ରାଜନ ॥
ଶୁଣି ସଉମିତ୍ରୀ ହନୁମନ୍ତକୁ ରାଇଂ ।
ସମୋଦ୍ର ପାଣି ଆଣ ବୋଲିଣ ଆଗ୍ୟାଂ
ଦେଇଂ ॥
ତକ୍ଷଣେ ମାରୁତି ଆଣିଲା ତୀର୍ଥଜଳ ।
ବିଭୀଷେଣ ଶିରେ ଢାଳନ୍ତି ରଘୁବାଳ ॥୯୦
ରକ୍ଷ ବାନରେ ରାମକୁ ତୁଷ୍ଟି କଲେ ।
ସାଧୁ ସାଧୁ ରଘୁବୀର ବୋଲିଣ ବୋଇଲେ ॥
ଭୋ ଦେବ ବିଭୀଷେଣକୁ କଲୁ ଯେବେ
ରାଏ ।
ରାବଣ ମରିବାର ହୋଇଲା ନିଚଏ ॥
ସୀତୟାକୁ ଆଣିମୁ ଉଦ୍ଧରିବୁ ମାନ ।
ଏମନ୍ତ କରିବୁ ନା ଦଶରଥ ନାନ ॥
ଏତେକ ବୋଲି କପି ଜୟେ ଜୟେ କଲେ ।
ଲକ୍ଷଣର ମୁଖ ରାଘେବ ଚାହିଂଲେ ॥
ଜାଣିଲା ସଉମିତ୍ରୀ ଶ୍ରୀରାମର ମନ ।
ଯମଦାଢ଼ରୁ ଫେଡ଼ିଦେଲାକ ବସନ ॥ ୧୦୦
ଶ୍ରୀକରେ ଘେନିଲେ ଦଶରଥଙ୍କର ଚାଟ ।
ବିଭୀଷେଣ ମଥାରେ ବାନ୍ଧିଲେ ନେଇଂ
ପାଟ ॥
ବୋଇଲେ ଲଙ୍କାରେ ହୋଇଲୁ ନୃପତି ।
ଯେତେକାଳ ମୋର ରହିଥିବ କୀର୍ତ୍ତି ॥
ଯାବତ ସମୟେ ଥିବ ଚନ୍ଦ୍ର ସୂର୍ଯ୍ୟ ।

ତେତେକାଳ ଯାକ ଲଙ୍କାୟେ ତୁ ହୋଇଥିବୁ
ରାଜ ॥
ପୃଥିବୀ ଥିବାଯାଏ ଦେହ ଧରିଥିବୁ ।
ମୋହୋର ଆଗ୍ୟାଂୟେ ମୃତୁ ନ ପାଇବୁ ॥
ଏସନେକ ବୋଲି ରାମ ଆଗ୍ୟାଂ ଦେଲେ
ଯହୁଂ ।
ସ୍ୱର୍ଗେ ସୁରଗଣେ ପଚାରନ୍ତି ତହୁଂ ॥୧୦
ଶିର କମଳ ଦେଇଂ ମନାଇଲା ଲଙ୍କାପତି ।
ଅନେକ ଦୁଃଖେ ପାଇଲା ଯେବଣ ବିଭୂତି ॥
ସେ ସମ୍ପଦ ବିଭୀଷେଣ ପାଇଲା ଏହିକ୍ଷଣି ।
ଦ୍ରଶନ ମାତ୍ରକେ ତାକୁ ଦେଲେ ରଘୁମଣି ॥
ଆବର ନ ମରିବୁ ବୋଲିଣ ବୋଇଲେ ।
ଏ ବର ରାବଣହୁଂ ଅଧିକ ବୋଲିଣ
ବୋଇଲେ ॥
ବାବୁ ଶ୍ରୀରାମ ଭଗତମଛଳ ।
ପୀରତି ବନ୍ଧୁ କରୁଣାସାଗର ॥
ଶରଣପଞ୍ଜର ଭାବଜନେ ଗ୍ରାହା ।
ଆରତ ଭଞ୍ଜନ ସ୍ୱାମୀ ଦୁଖୀ ଜନେ
ନାହା ॥୨୦
ଅମାୟା ଅପାପୀ ଅଖିଳ ଅଚୁତ ।
ନମୋ ନାରାୟେଣ ଜଗତର ତତ୍ତ୍ୱ ॥
ଏହେନେକ ବୋଲି ଦେବେ ତୁଷ୍ଟି କଲେ ।
ଅପଛରୀମାନେ ହୁଳହୁଳି ଦେଲେ ॥
ଗନ୍ଧର୍ବ ବିଦ୍ୟାଧରୀ କିନ୍ନରୀ ଆନନ୍ଦ ।
ଦକ୍ଷ ନାଗ ଲୋକେ ତପୀଗଣ ବୃନ୍ଦ ॥
ସାଧୁ ସାଧୁ କଲେ ନବଗ୍ରହମାନ ।
ଅଷ୍ଟବସ୍ତ୍ର ଏକାଦଶ ରୁଦ୍ର ହୁତାଶନ ॥
ଅଣଚାଶ ପବନ ଷୋଳହ ଚନ୍ଦ୍ରମା ।
ବାର ଆଦିତ୍ୟ ସହିତେ ଦେବ ବ୍ରହ୍ମା ॥୩୦
ସନକାଦି ଲୋକେ ସର୍ବ ମିଳି ।
ଏକ ଦୃଷ୍ଟିକରି ଚାହାନ୍ତି ମହୀଆଳି ॥
ଦେଖନ୍ତି ସିନ୍ଧୁକୂଳେ କରୁଣାସାଗର ।
ପୃଥି ପୂରିଅଛି ଋକ୍ଷ ଯେ ବାନର ॥
ରୁଦ୍ର ବରୁଣ କୁବେର ନଇରତ ।

ସାଧୁ ସାଧୁ ରାମ ବୋଲନ୍ତି ସମସ୍ତ ॥
ସ୍ୟତୀ ପତି ଭଗତା ଯୋଗୀ ଜଙ୍ଗମ ରାୟେ ।
ରଘୁନାଥକୁ ଚାହିଂ କରନ୍ତି ବିନୟେ ॥
ଭୋ ଦେବ ନାରାୟଣ କମଳାବିଳାସ ।
ଆମ୍ଭେ ସର୍ବଦା ଅଟୁ ତୁମ୍ଭର ଦାସ ॥ ୪୦
ରାବଣର ଡରେ ନ ପାରୁ ସର୍ଗେ ରହି ।
ପାରୁ ଯେବେ ନାଥ ଉଧର ତୋର ମହୀ ॥
ଏସନେକ ବୋଲି ଦେବ ତୁଷ୍ଟି କଲେ ।
ଶୁଣସି ଗୋ ମହାମାୟେ ସଦାଶିବ
ବୋଇଲେ ॥
ୟେଥୁଅନନ୍ତରେ ଶୁଣ ଦିବ୍ୟ ରୀତି ।
ବିଭୀଷେଣକୁ ଅବିଷେକ କରନ୍ତି ରଘୁପତି ॥
ସୁଗ୍ରୀବରକୁ ଚାହିଂ ବୋଲନ୍ତି ମୈତ୍ର ଶୁଣ ।
କେମନ୍ତେ ଯିବା ସାହେର ତରିଣ ॥
ଅପ୍ରମିତ ବଳ ଅଟଇ ମୋହୋର ।
ଅଗମ୍ୟ ମାହାଜଳ ଲବଣ ସାଗର ॥୫୦
କେମନ୍ତ ବିଚାର ହୋ ଯୂଥପତିମାନେ ।
ସିନ୍ଧୁ ପାରି ହୋଇବା କେବଣ ବିଧାନେ ॥
ସୁଗ୍ରୀବର କହଇ ଯୋଡ଼ିଣ ବେନି କର ।
ମୋହୋର କଥାୟେକ ଶୁଣିମା ରଘୁବୀର ॥
ବରୁଣ ସେ ଅଟଇ ଜଳେ ଆଧିପତି ।
ପ୍ରଥମେ ଆମ୍ଭେ କରିବା ତାହାଠାରେ ପ୍ରୀତି ॥
ସେ ଆମ୍ଭକୁ ବାଟ ଦେବାକ ଦେଖାଇ ।
କେବଣ ଦିଗରେ ସ୍ଥଳ ଦେବ ଜଳସାଇଂ ॥
ଯଦ୍ୟପି ଆମ୍ଭଙ୍କୁ ନୋହିବାକ ବିଶ୍ୱାସ ।
ତେବେ କୋପ କରିବା ରଘୁଶିଷ ॥ ୬୦
ୟେସନେକ ବୋଲି ବୋଲନ୍ତି ଯୂଥପତି ।
କିପାଇଂ ବରୁଣକୁ କରିବା ଆମ୍ଭେ ପ୍ରୀତି ॥
ଏସନେକ ବୋଲିଣ ରଡ଼ି ଦିଅନ୍ତି ଘନ
ଘନ ।
ପ୍ରଳୟ ମେଘକି କରଇ ଗରଜନ ॥
କେହୁ ବୋଲଇ ଏ ହୋ କିସ ଦୃନୟ
ପାଣି ।
ଯେ ମାହାସନ୍ୟକୁ ଯେ ହୋଇବ ଆଣ୍ଠୁ ଆଣି ॥

ପଶିଣ ଯିବା ଆମ୍ଭେ ଖୋଜିଣ ଥଳ ବାଟ ।
ଘଡ଼ିକର ମଧ୍ୟେ ପାରିହୋଇବା ସର୍ବଥାଟ ॥
କେ ବୋଲଇ କିଂପା ପଶିବା ସାଗରେ ।
ଡେଇଂ ଯିବା ଆମ୍ଭେ ଉପରେ
ଉପରେ ॥୭୦
କେ ବୋଲଇ ତୁମ୍ଭେ ନ ଜାଣ ହୋ କିଛି ।
ଅନେକ ଲୋକ ଏଥି ଦୃବଳ ହୋଇଅଛି ॥
ସେ କେମନ୍ତେ ଶୂନ୍ୟେ ଲଙ୍ଘିବେ
ମାହାଜଳ ।
ସବିହେଂ ସାମରଥ ଜଣେ ପାରିବା କି ବଳ ॥
କେ ବୋଲଇ ଆହୋ ପଅଂରିଣ ଯିବା ।
କେ ବୋଲଇ କିଂପା ଜଳରେ ପଶିବା ॥
କେ ବୋଲଇ ଆହୋ ବାନ୍ଧିବାକ ଭେଳା ।
କେ ବୋଲଇ ସମୋଦ୍ର ଅଟଇ କାହାର
ଖୋଳା ॥
କେ ବୋଲଇ ଆହୋ ଗଢ଼ାଇବା ନାବ ।
ତହିଂ ବସି ବଳ ପାରି ହୋଇଯିବ ॥ ୮୦
କେ ବୋଲଇ ଆସ ସବିହେଂ ପିଇବା ।
ଦିନକର ଭିତରେ ପାଣି ଶୁଖାଇବା ॥
କେ ବୋଲଇ ଏବେ ମୋହୋର ବୋଲ
କର ।
ସବିହେଂ ହୋଇଂ ଆମ୍ଭେ ଶୁଖାଇବା
ସାଗର ॥
ଧନ ରତ୍ନ ୟେଥେ ପାଇବା ବହୁତ ।
ଆସିବାକୁ ଯେ ହୋଇବ ସୁସ୍ଥ ପଥ ॥
ଋକ୍ଷ କପିଙ୍କର ଏସନେକ ବାଣୀ ଶୁଣି ।
ମନେ ମନେ ହସନ୍ତି ରଘୁକୁଳ ମଣି ॥
ସେନା ସେନାପତିମାନଙ୍କୁ ଚାହିଂଣ
ବୋଲନ୍ତି ।
ଋକ୍ଷ କପିବଳ କି କି ବିଚାରନ୍ତି ॥ ୯୦
କେମନ୍ତେ ତରିବା ୟେଡ଼େ ମାହାଜଳ ।
ଯିବାକୁଇଂ ବାଟ ନାହିଂ ଏଥି ଥଳ ॥
ଜମ୍ୱେବ ବୋଇଲେ ଶୁଣ ରାମରାଉ ।
ରାଜଦାଣ୍ଡରେ ଦେବ ବଣା କିପାଂ ହୋଉ ॥

କିପାଇଂ ଆଗ୍ୟା ତୋର ଭାଙ୍ଗିବ ଜଳପତି ।
ତୁ ଦେବ ତାହାକୁଇ କର ଏବେ ପ୍ରୀତି ॥
ସୁଗ୍ରୀ ଜମ୍ପେବ ବୋଇଲେ ଏହା ଯହୁଂ ।
ବରୁଣକୁ ତୁସ୍ତି କଲେ ରାମ ତହୁଂ ॥
ଧନୁ ଶହସ୍ର ଥୋଇଂ ହୋଇଂ କୁଶହସ୍ତ ।
ପୂର୍ବ ମୂର୍ତ୍ତି ହୋଇଂ ବସିଲେ ରଘୁନାଥ ॥୧୦୦
ମାହାଜଳକୁଇ ଚାହିଂଣ ବୋଲନ୍ତି ।
ଜୟ ତୁ ବରୁଣ ଗଙ୍ଗାଦେବୀର ପତି ॥
ମଗର ବାହାନ କରେ ମୋହଫାଶୀ ।
କଣ୍ଠେ ବିରାଜଇ ମାଳ ଯେ ତୁଳସୀ ॥
ଦକ୍ଷିଣେ ମୁଦୁଗର ଶ୍ୟରୀର ହେମକାନ୍ତି ।
ବିଦ ମୁଦି ବଳୟା ବାହୁଟି ବିରାଜନ୍ତି ॥
କିରିଟୀ କୁଣ୍ଡଳ ପ୍ରସନ୍ନ ବଦନ ।
କଟି ଘଣ୍ଟି ଶରୀର ସୁରଙ୍ଗ ବସନ ॥
ତୋହୋର ଆଶ୍ରେକେ ଜଗ ଜନ୍ତୁ ଅଛି ।
ଜୟ ଜୟ ଯୋଗେଶ୍ୱର କାଶ୍ୟପର ବଛି ॥୧୦
ସାତ ସମୋଦ୍ରକୁ ଅଟୁ ଆଧିପତି ।
ତୁ ଦେବ ଶ୍ୟରୀରେ ଭରିଲୁ ବୃତିହେତି ॥
ସର୍ବ ଦେବତାଙ୍କୁ ମୋହି ମୋହଦେଇ ।
ତୁ ହୋ ତଇଲୋକ ଅଛସି ଭିଆଇଂ ॥
ତୋହୋର ବିହୁନେ ଜୀବେ ଜୀବନ ନ ପାଆନ୍ତି ।
ତୋହୋର ନଥିଲେ କି ରହି ଧରତୀ ॥
ତୋହୋର ପରସାଦେ ଜନେ ହୁଅନ୍ତି ଶୁଦ୍ଧ ।
ତୁହି ସେ ପବିତ୍ର ଦେଖିତେ ଲୋକର ମଧ ॥
ଜଗତ ସରୋଚର ଅଛି ଦେହ ଧରି ।
ତୋହୋର ସେ ସକଳ ଜନେ ହୋନ୍ତି ତରି ॥୨୦
ତୁହି ସେ ସପ୍ତସିନ୍ଧୁ ମୃତି ଭିନ୍ନ ଭିନ୍ନ ।
ଲବଣ ଇକ୍ଷୁ ସୁରା ଘୃତ ଦଧି ଅର୍ନ୍ନ ॥
ତୁ କ୍ଷୀର ମଧୁଜଳ ଏକୁ ଏକ ବଡ଼ା ।
ଦ୍ୱୀପକଇ ସାଗର ଅଟଇ ଦୁଇ ବଡ଼ା ॥
ଲକ୍ଷ୍ମୀ ଧନ ସ୍ତିରୀ କଉସ୍ତୁଭ ମଣି ।
ଅଛି ପାରିଜାତେକ ଯେ ଅମୃତ ବାରୁଣୀ ॥
ଉଚ୍ଚିଶ୍ରବା ଅଶ୍ୱ ହୋ ଅଇରାବ୍ରତ ହସ୍ତୀ ।
ଅଷ୍ଟନିଧି ପଦାର୍ଥ ନାନା ବିଧି ପ୍ରତି ॥
ଦେବଙ୍କୁ ପ୍ରସନ୍ନ ହୋଇ ଦେବ ଦେଲୁ ଏହା ।
ସର୍ବଦା କାଳେ ଦେବ ସୁରଗଣକୁ ସାହା ॥୩୦
ଯେ ଅବା ଶରଣ ପଶନ୍ତି ତୋହୋର ତହିଂ ।
ତ୍ରୈଲୋକରେ ତାହାକୁ ଯେ ସରିସମ ନାହିଂ ॥
ବିଭା ବ୍ରତ ସୀମାନ୍ତ ଉଛବ ଆନନ୍ଦେ ।
ଆଗେ ବିଦୁଜନେ ତୋହୋର ପାଦେ ବନ୍ଦେ ॥
ତୁ ଯେ ଦେବଙ୍କର ଅଟୁ ଦେବରାଜା ।
ଗଙ୍ଗା ଯମୁନା ତୋହୋର ପ୍ରିୟବତୀ ଭାରିଯା ॥
ତୁ ସେ ନାରାୟେଣର ଅଟୁ ସାହା ସିନ୍ଧୁ ।
ସଂସାର ଧାରଣ ତୁ ପର ଲୋକ ବନ୍ଧୁ ॥
ଲକ୍ଷ୍ମୀର ପିଅର ତୁ ବିଷ୍ଣୁର ଈଶ୍ୱର ।
ଭୋ ବରୁଣ ଦେବତା ମୋତେ ଅନୁଗ୍ରହ କର ॥୪୦
ଲଙ୍କାର ରାବଣ ଘରଣୀ ମୋର ନେଲା ।
ଯୁବା କାଳେ ମୋତେ ଯେତେ କଷ୍ଟଦେଲା ॥
ମୁହିଂ ତାହାର ତୁଲେ କରିବି ସମର ।
ତୁ ଯେବେ ପ୍ରସନ୍ନ ହୋଇବୁ ଜଳଧର ॥
ରକ୍ଷ ବାନର ଯେ ଗହଳ ମୋର ଥାଠ ।
କେଉଂ କତି ଯିବି ମୁଂ ନ ଜାଣଇ ବାଟ ॥
ଅଗମ୍ୟ ସିନ୍ଧୁ ଏ ଯେ ନ ଦିଶଇ କୂଳ ।
ତୁ ମୋତେ ପ୍ରସନ୍ନ ହୁଅସି ମାହାଜଳ ॥
ଏତେବୋଲି ରାମ ବରୁଣକୁ ତୁସ୍ତିକଲେ ।
ଏଥୁ ଅନନ୍ତରେ ସନ୍ଧ୍ୟା ସୁମରିଲେ ॥୫୦
ମେରୁ ଓହାଡ଼ ଯେ ହୋଇଲେ ରବି ଆସି ।
ସୁଗ୍ରୀବରକୁ ବୋଇଲେ ଦଶରଥ ଶିଷି ॥
ବିଭୀଷେଣ ମଇତ୍ର ତୋହୋର ତୁଲେ ଥିବ ।
ଏହାକୁ ମଇତ୍ର ହୋ କରିବ ସଦିଭାବ ॥
ଏସନେକ ବୋଲି ବିଜୟେ କରିଗଲେ ।
ରହିବାର ଲୋକେ ବାହାରେ ରହିଲେ ॥
ତହୁଂ ଜମ୍ପେବ ଯେ ଅଙ୍ଗଦ ନଳ ନୀଳ ।
ରାତ୍ର କାଳେ ନବର ଏ ବୁଲନ୍ତି ସକଳ ॥
ରକ୍ଷ ବାନର ସଇନି ସଙ୍ଗେ ଘେନି ।
ଯେ ମୁଖେ ପଡ଼ନ୍ତି ଛାଡ଼ି ଦିଅନ୍ତି ଚିହ୍ନି ॥୬୦
ଠାବେ ଠାବେଣ ବସିଲେ ଚଉକତି ।
ସଜଳସ ଗୁଣ୍ଡି ଜାଳନ୍ତି ତହିଂ ବତୀ ॥
ଶ୍ରୀଅଙ୍ଗ ପହରା ଯେ ବୁଲଇ ଦ୍ୱର ବାଇ ।
କେ କେଟା ଗଲା ବୋଲି ଅକାରଣେ ରାଇଂ ॥
ସିଂଘ ଦ୍ୱାର ଜଗଇ ଶଉରୀ ସେନାପତି ।
ଲକ୍ଷଣ ବସିଥାଇ ଶ୍ରୀରାମର କତି ॥
ମୃଗ ଛାଲ ଉପରେ ଅମଳାଣ ବାସ ।
ତହିଂ ପହୁଡ଼ିଲେ ସୀତାର ବିଳାସ ॥
ସଇନି ନିଚିନ୍ତରେ ଶୋଇଲେ ଯେଝା ମତି ।
ଏଥୁଅନନ୍ତରେ ରାତ୍ର ଅର୍ଦ୍ଧ ଗତି ॥ ୭୦
ଏଗାର ଘଡ଼ିରେ ଯେ ଚନ୍ଦ୍ର ଅସ୍ତ ଗଲା ।
ପୂର୍ବ ଭାଗେଣ ଅରୁଣ ପ୍ରକାଶିଲା ॥
ଯହୁଂ ପ୍ରକାଶଇ କାଶ୍ୟପ ସନ୍ତତି ।
ସଧୀର ସଧୀର ହୋଇ ବହଇ ମରୁତି ॥
କାକ ପକ୍ଷୀ ଡାକନ୍ତି ଭଲୁକ ଲୁଚାଦେଲା ।
ଶ୍ରୀକାଳ ଶାର୍ଦ୍ଦୋଳ ସାଗ୍ରାଂମ ଛାଡ଼ିଲା ॥
ଟସକରେ ଧାର୍ମିକ କୁକୁଟଟ ରଡ଼ି ଦ୍ୟନ୍ତି ।
ଚକ୍ରବକେ ପକ୍ଷୀ ବିଷାଦ ଛାଡ଼ନ୍ତି ॥
ତାରାୟେ ମଉଳିଲେ ବିରହିଣୀ ଦୁଃଖୀ ।
ଭ୍ରାନ୍ତି ଛାଡ଼ିଲା ତେଣ୍ଟୁଆ ନାମେ ପକ୍ଷୀ ॥୮୦
କୁଳବଧୂ ନିଦରୁ ହୋଇଲେ ଆଭରଣ ।
ସ୍ନାହାନ କରିତେ ଚଳିଲେ ସୁବ୍ରାହ୍ମଣ ॥
ଶ୍ରୀରାମ ନିଦ୍ରା ଭାଙ୍ଗିଲା ତତକାଳ ।
ନିତ୍ୟକର୍ମ ସାରିତେ ଯେ ବିଜୟେ ସିନ୍ଧୁକୂଳ ॥
ସ୍ନାହାନ ସାରିଣ ସନ୍ଧ୍ୟା ସୁମରନ୍ତି ।
ସେନାପତିମାନେ ଆସି ଦ୍ରଶନ କରନ୍ତି ॥

ସୁଗ୍ରୀ ବିଭୀଷେଣ ଓଳଗନ୍ତି ଯାଇଁ ।
ଏହାଙ୍କୁ ଚାହିଁଣ ବୋଲନ୍ତି ରଘୁସାଇଁ ॥
କି ବୁଧି କରିବା ହୋ ସିନ୍ଧୁ କେହ୍ନେ ତରି ।
ଲୋକ ଦେଖି ଦୁଗୁଣ ମାରଇ ଲହରୀ ॥୯୦
ବରୁଣ ପ୍ରସନ ନୋହିଲାକ ମୋତେ ।
ଲଙ୍କ ଗଡ଼କଇ ମୁଁ ଯିବଇଁ କେମନ୍ତେ ॥
ଏତେ ବୋଲି ରାମ ମନେଣ ବିଚାରି ।
ସାହେର କୂଳରେ କୁଶ ଶେଯ୍ୟା କରି ॥
ଉତ୍ତରକୁ ଶିର କରିଣ ଶୋଇଲେ ଦାଶରଥି ।
ବୋଇଲେ ଯେ ଦେହ ପଛେ ଯାଉ ମୋହୋର ଏଥି ॥
ବରୁଣ ପ୍ରସନ୍ନ ହୋଇଲେ ଉଠିଯିବି ।
ନୋହିଲେ ସିନ୍ଧୁକୂଳରେ ଶୋଇଥିବି ॥
ଏତେବୋଲିଣ ରାମ ଯେ କଲେ ଦୃଢ଼ ବ୍ରତ ।
ରିଛ କପିବଳ ଭାଳନ୍ତି ସମସ୍ତ ॥୧୦୦
ସେନାପତିମାନେ କତିରେ ବେଢ଼ିଛନ୍ତି ।
ସୁଗ୍ରୀ ବିଭୀଷେଣ ଏ ବେନି ଅଛନ୍ତି ॥
ଏଥିଅନ୍ତରେ ଶୁଣ ରସବାଣୀ ।
ପାର୍ବତୀ ଆଗେ ଯେ କହନ୍ତି ଶୂଳପାଣି ॥
ଶୁଣ ଶାକାମ୍ଭେରୀ ଗୋ ଶ୍ରୀରାମର ଚରିତ ।
ଅପୂର୍ବ ପଦାର୍ଥ ଯେ ଚିଉକଇ ପବିତ୍ର ॥
ଶ୍ରୋତା ବକତା ଲୋକେ ତରିବେ ବେନି ଜନ ।
ଅନ୍ତେ ମୁକତି ସେ କରନ୍ତି ନାରାଏଣ ॥
ମହାନାଟେକୟେ ବିଚିତ୍ର କାବ୍ୟ ରସ ।
ଶୁଣିଲେ ପ୍ରାଣୀମାନଙ୍କର ନାଶଇ କଳୁଷ ॥୧୦
ସେ କଥା ତୋହୋର ଆଗେ କହଇରେ ସହି ।
ଯେତେକ ପାତକ ତୋର ସବୁ ହୋଉ ଦହି ॥
ଶୁଣ ଶଶୀମୁଖୀରେ ଅପୂର୍ବ ବିଧାନ ।
ଲଙ୍କାର ରାଜନ ଯେ ଅଟଇ ଦଶାନନ ॥
ଶ୍ରୀରାମର ଘରଣୀ ଚୋରାଇଣ ନେଲା ।

ବିଭୀଷେଣ ଅନେକ ପ୍ରକାରେ ଚିଆରିଲା ॥
ବୋଲି ନ କରିଣ ଗୋଡ଼ାଇଲା ମାରି ।
ଇନ୍ଦ୍ରଜିତ ନ ଥିଲେ ପକାନ୍ତା ସଂଘାରି ॥
ମହୀରାବଣକୁ ବୋଇଲାକ ରାଇଁ ।
ବିଭୀଷେଣକୁ ଦେଶ ଛଡ଼ାଇ ଆସ ଯାଇଁ ॥୨୦
ଆଗ୍ୟାଂ ପ୍ରମାଣେ ମହୀରାବଣ ଗଲା ।
ମେଢ଼ ପଛକତି ବିଭୀଷେଣକୁ ଦେଖିଲା ॥
ହାଥ ଧରିଣ ବୋଇଲା ଯିବା ଆସ ।
ନୃପତି ଆଗ୍ୟାଂ ଦେଇଛି ଛଡ଼ାଇବି ଦେଶ ॥
ଶୁଣି ଅନ୍ତରୀକ୍ଷ ମାର୍ଗେ ଚଳିଗଲା ।
ଦେଖୁଁ ଦେଖୁଁ ଆକାଶ ମାର୍ଗେଣ ପଶିଲା ॥
ଶୁଣିଣ ଦଶାନନ ହୋଇଲା ବିସ୍ମୟେ ।
ଇନ୍ଦ୍ରଜିତ ଫଳେ ମୁଁ ନମାଇଲି ତାୟେ ॥
ଶ୍ରୀରାମର ତହିଁ ପଶିବ ଶରଣ ।
ଏ ମୋହୋର ନିଚୟେ ହୋଇଲା ମରଣ ॥୩୦
ଶତ୍ରୁର ଆଗେ କହିବ ଛେଦ କଥା ।
ଚାରକୁ ହକରାଇ ବୋଲଇ ଦଶମଥା ॥
ତୁ ହୋ ଦେଶାଉର ଏହିକ୍ଷଣି ଯିବୁ ।
କିସ କଲା ବିଭୀଷେଣ ବାରତା ଆଣିଦେବୁ ॥
ଶୁଣିଣ ଡଗରା ଗଲାକ ତତକ୍ଷଣିଂ ।
ହେଳେ ତରିଗଲା ଲୁଣିଆର ପାଣିଂ ॥
ଶ୍ରୀରାମର ବଳେ ପଶିଲାକ ଯାଇଁ ।
ସାମାନ୍ୟ ମର୍କଟ ଗୋଟିଏକ ହୋଇଁ ॥
ଯାବତ କଥାମାନ ଶୁଣି ବାହୁଡ଼ିଲା ।
ଦିନକର ଭିତରେ ବାରତା ଆଣିଦେଲା ॥୮୦
ନିଶିରେ ବେହାର କରିଛି ଲଙ୍କପତି ।
ଶ୍ରୀରାମ ଆସିବା କଥା ବିଚରନ୍ତି ॥
ସହସ୍ରେକ ଦୀପ ଦୁଇ ଲକ୍ଷ ହୁଳା ।
ନିରନ୍ତରେ ଦିହୁଡ଼ି ତାରାଗଣ ମେଳା ॥
ଲକ୍ଷେକ ଚାମର ପଡ଼ଇ ଚଉପାଶ ।
ପଟୁଆରୀ ପଡ଼ି ଯେ ଅଛନ୍ତି ଚଉକୋଶ ॥

ହାଥୀ ଘୋଡ଼ା ରାଉତ ଦେଖଇ ଲଙ୍କପତି ।
ରାଉତେ ମାହୁନ୍ତେ ପ୍ରତଗ୍ୟାଂ କରନ୍ତି ॥
ରାତ୍ର ତିନି ଘଡ଼ିମାନେ ପ୍ରବେଶ ଯାଇଁ ଦୂତ ।
ପାୟେ ପଡ଼ି ଶୋଇ କହଇ ବାରତ ॥୫୦
ଶୁଣ ଦେବ ଠାକୁର ଲଙ୍କାର ଶିରୋମଣି ।
ବିଭୀଷେଣ ଶରଣ ଚରିତ ଅଇଲି ଶୁଣି ॥
ଶ୍ରୀରାମର ଦଣ୍ଡେ ପଶିଲାକ ଯାଇଁ ।
ସୁଗ୍ରୀବର ରାୟେ ଗଲାକ ଘେନାଇଁ ॥
ଲକ୍ଷଣ ଜମ୍ୱେବ ଅଙ୍ଗଦ ନଳ ନୀଳ ।
ପାଛୋଟି ଅଇଲେ ଅନେକ ସନ୍ୟବଳ ॥
ଶ୍ରୀରାମ ନ ଜାଣିଲେ ନିଅମ କରାଇଲେ ।
ଅନେକ ସମ୍ଭରେ ଛାମୁକୁ ଘେନିଗଲେ ॥
ଦେଖିଣ ଶ୍ରୀରାମ ପଉରୋଷ କଲା ।
ଲଙ୍କାଗଡ଼ରେ ରାଜା ହୋଇଲୁ ବୋଇଲା ॥୬୦
ଶତେବାର ବିଭୀଷେଣ ନମଇ ପୁଣ ପୁଣି ।
ତପୁସୀର ମୁଖୁଁ ଏ ବଚନ ଶୁଣି ॥
ବିଭୀଷେଣ ବୋଇଲେ ତୁ ଶୁଣ ରାମରାୟେ ।
ମୁହିଁ ତୋତେ ଶରଣ ପଶିଲି ନିଚୟେ ॥
ଚିଆରିଲା ବୋଲ ରାବଣ ନ କଲା ।
କରେ ଶସ୍ତ୍ର ଧରି ମାରିତ ଗୋଡ଼ାଇଲା ॥
ନିର୍ମୋହ ହୋଇଂଣ ମୁଁ ଛାଡ଼ିଲି ଲଙ୍କପୁରୀ ।
ତୁହି ସେ ମୋତେ ରକ୍ଷାକର ଦଣ୍ଡଧାରୀ ॥
ରାବଣ ଇନ୍ଦ୍ରଜିତ ହୋଇବେ ଯେଣେ ହତ ।
ତହିଁର ବିଧାନ ଜାଣଇ ସମସ୍ତ ॥୭୦
ତୁ ଦେବ ମନେଣ ଆନ ନ ବିଚାର ।
ଏ ମୋହୋର ବୋଲ ଘେନିଣ କାର୍ଯ୍ୟକର ॥
ସକଳ ଅସୁରଙ୍କୁ କରିବି ନିପାତ ।
ଜାନେକୀ ଘେନିଣ ଆସିବୁ ରଘୁନାଥ ॥
ଏ ବଚନ ଶୁଣିଣ ବୋଲନ୍ତି ଦଣ୍ଡଧାରୀ ।
ବିଭୀଷେଣକୁ ଉଠି ପ୍ରୀତି କରି ॥
ତୀର୍ଥ ଜଳ ଘେନି ଅବିଷେକ କଲା ।
ଆବର ମଥାରେ ପାଟେକ ବେଢ଼ାଇଲା ॥

ପୃଥ୍ୱୀ ଯେତେକାଳ ଥିବ ଲଙ୍କାରେ ନୃପତି ।
ଏସନେକ ବୋଲି ବୋଇଲାକ ଯତି ॥୮୦
ସଇନି ପ୍ରତେ ନ ଯାନ୍ତି କେବେହେଁ ।
ଶ୍ରୀରାମର ମାୟା ନ ବସଇ ଦେହେ ॥
ସମୁଦ୍ର ତରିବାକୁ କରନ୍ତି ବିଚାର ।
ଦେବଙ୍କୁ ଦୁଲଭ ମାନେବେ ଅଗୋଚର ॥
ବରୁଣଙ୍କୁ ତୁଷ୍ଟି କଲାକ ଜଟାଧାରୀ ।
କୁଶ ପାଡ଼ି ଶୋଇଲା ନିରାହାର କରି ॥
ଏସନେକ ଚରିତ ଅଇଲି ଦେବ ଶୁଣି ।
ଶୁଣି ଆକାଶକୁ ଚାହିଁଲା ବିଂଶପାଣି ॥
ମନେ ବିଚାରିଣ ବୋଇଲାକ ଶୁଣି ।
ଶୁଣିଲକି ଅମନାତ୍ୟ ଡଗରର ବାଣୀ ॥ ୯୦
ବିଭୀଷେଣ ମୋହୋର ସଗୋତ୍ର ମରାଇବ ।
ଛେଦ ଭେଦ କଥା ଶ୍ରୀରାମକୁ କହିବ ॥
ମୁହିଁ ତାହାର ମର୍ମ ଜାଣଇ ତତ୍ତ୍ୱ କରି ।
ଇନ୍ଦ୍ରଜିତ ନ ଥିଲେ ପକାନ୍ତି ଆଜ ମାରି ॥
ଆଗହୁଁ ଚଳଇ ସେ ମୋହୋର ଅଣହିତେ ।
କୂଟ କଥାମାନ ଧରିଥାଇ ଚିତ୍ତେ ॥
ରାଇଜ ଭଣ୍ଡାରମାନ ତାହାର ଆୟେତ ।
ସୋଦର ବୋଲି ମୁହିଁ ସମର୍ପଇ ତାହାନ୍ତ ॥
ରାଣୀ ମାହାଦେଈ ତାହାର ବୋଲେ ଥାନ୍ତି ।
ହାଥୀ ଘୋଡ଼ା ପାଇକ ସେ ଯେଣେ ଯିବ ଯାନ୍ତି ॥୧୦୦
କେବଣ ବୁଦ୍ଧିରେ ଆସିବେ ସମୁଦ୍ର ପାରି ହୋଇଂ ।
ବଇରୀ ତହିଁ ଶରଣ ପଶିଲାକ ଯାଇଂ ॥
ଯେ ମୋହୋର ମର୍ମ ଜାଣଇ ବୁଧି ବଳ ।
ଶ୍ରୀରାମ ଆଗେ ସେ କହିବ ସକଳ ॥
ଯେତେବୋଲି ଶୁକ ଶାରଣକୁ ରାଇଂ ।
ଗୁପତ କଥାମାନ ତୁନିକରି କହି ॥
ତୁମ୍ଭେ ଯେହିକ୍ଷଣି ଯିବ ତେଣି କୂଳ ।
ଦେଖି ଆସିବ ହୋ ରିଛ କପିବଳ ॥
କିସ କିସ ବିଚ୍ଛର ହୋ କରନ୍ତି ତହିଁ ଥାଇଂ ।
କେବଣ ବୁଧିରେ ଆସିବେ ସମୁଦ୍ର ପାରିହୋଇ ॥୧୦
ସେ କଥା ଜାଣି ତୁମ୍ଭେ ଆସିବ ତଡ଼ତି ।
ଯତନେ ଯିବ ତୁମ୍ଭେ ବିଭୀଷେଣ କତି ॥
ବୋଲିବ ଶରଣ କିମ୍ପା ପଶିଲ ଶତ୍ରୁର ତହିଁ ।
ତୋତେ ନେଇଂତ ପେଷିଲା ଲଙ୍କସାଇଂ ॥
ଅନେକ ଚିଆରିଣ ଘେନାଇଂ ତାକୁ ଆସ ।
ଆବର ଯିବ ତୁମ୍ଭେ ସୁଗ୍ରୀବରର ପାଶ ॥
ବୋଲିବ ରାବଣ ବାଳୀ ମଇତ୍ର ବେନି ।
ତୁ କିମ୍ପା ଆସିଅଛୁ ସଇନ୍ୟ ସାହା ଘେନି ॥
ଯାଅ ତୁ ବାହୁଡ଼ି ଦଶଗ୍ରୀବ ବୋଲେ ।
ଶ୍ରୀରାମ ଲକ୍ଷଣ ଯୁଝନ୍ତୁ ଆମ୍ଭ ତୁଲେ ॥ ୨୦
ସୁଗ୍ରୀକି ବାହୁଡ଼ାଇ ଦିଅ ଏହା କହିଁ ।
ବିଭୀଷେଣକଇ ବେଗେ ଘେନି ଆସ ଯାଇଂ ॥
ଆଗ୍ୟାଂ ପାଇ ଶୁକ ଶାରଣ ମନ୍ତ୍ରୀ ବେନି ।
ନବରୁ ବାହାର ଅନକୂଳ ଘେନି ॥
ଅନ୍ତରୀକ୍ଷେ ନିଶାୟେ ଗଗନେ ଚଳିଗଲେ ।
ଉଭର କୂଳେ ଯାଇ ପ୍ରବେଶ ହୋଇଲେ ॥
ଦେଖିଲେ ବନଗିରି ପୂରିଛନ୍ତି ବଳ ।
ସମୁଦ୍ର ଭିତରେକି ଆରେକ ସିନ୍ଧୁଜଳ ॥
କୁଶ ଶେଯ୍ୟାରେ ଶୋଇଛନ୍ତି ରଘୁନାନ ।
ଲକ୍ଷଣ ଜଗଇ ଯେ ତାହାର ସନ୍ନିଧାନ ॥୩୦
ଯୂଥପତି ମାନେ କେତେହେଂକ ଦୂରେ ଛନ୍ତି ।
ଅନ୍ତରୀକ୍ଷେ ଯାଇ ଶୁକ ଶାରଣ ଦେଖନ୍ତି ॥
ବିଭୀଷେଣ ସନ୍ନିଧ୍ୟକୁ ଦୁଇ ମନ୍ତ୍ରୀ ଗଲେ ।
ଧୂରୁ ଦେଖିଣ ଶିରେ କର ଦେଲେ ॥
ଶୂନ୍ୟେ ଯାଇଣ ଡାକନ୍ତି ବିଭୀଷେଣ ।
ଆମ୍ଭେ ଦୁହେଁ ଅଟୁ ଶୁକ ଯେ ଶାରଣ ॥
ରାବଣେଶ୍ୱର ଆମ୍ଭଙ୍କୁ ପେଷିଲାକ ରାଇଂ ।
ବୋଇଲା ଭାଇକି ମୋ ଘେନି ଆସ ଯାଇଂ ॥
ଶତୃର ତହିଁ କିମ୍ପା ଶରଣ ପଶଇ ।
ଯେ କଥା ଉଚିତ ମନକୁ ନୁଆସଇ ॥୪୦
ସକୁଟୁମ୍ବ ମରାଇଂ କି କାର୍ଯେଣ ଥିବୁ ।
ଏ ମହାମଣ୍ଡଳେ ଏହା ସେ ଅରଜିବୁ ॥
ଆସ ଆସ ବିଭୀଷେଣ ଆମ୍ଭର ବୋଲ କର ।
ସୋଦର ଭାଇ ତୋର ଅଟଇ ଦଶଶିର ॥
ତାହାର ବଚନକୁ ଛଳ କିମ୍ପା କରୁ ।
ମନ୍ତ୍ରୀବର ହୋଇଂ କଥା ନ ବିଚାରୁ ॥
ଶୁଣିଣ ବିଭୀଷେଣ ଉର୍ଦ୍ଧକଇ ଚାହିଁ ।
ବୋଇଲା ବେଗ ହୋଇ ପଳାଅ ହୋ ବାଇ ॥
ଅଗ୍ନି ଘେନି ସମୋଦ୍ର ପୋଡ଼ିତ ବିଚ୍ଛର ।
ଆକାଶର ଚନ୍ଦ୍ରକୁ ବଢ଼ାଇ ଲୋଡ଼ କର ॥୫୦
ପବନକୁ ଫାଶି ପକାଇ ଧରି ଲୋଡ଼ ।
ଟେଳା ମାରି ପର୍ବତ କରି ଲୋଡ଼ ଚୂର ॥
କ୍ଷୀରରେ ଖାର ମିଶାଅ କାହିଁପାଇଂ ।
ତୁମ୍ଭର ବଳେ କି ମୁଂ ଲଙ୍କାକଇ ଯାଇଂ ॥
ଯେବେ ଶ୍ରୀରାମ ରାବଣକୁ ମାରି ।
ଅସୁରଗଣ ସହିତେ ହୋଇବେ ସଂଘାରି ॥
ସୀତା ଘେନି ରାମ ଅଯୋଧ୍ୟାକୁ ଯିବେ ।
ରକ୍ଷ ବାନରେ ତୁମ୍ଭ ଲଙ୍କା ବିଧଂସିବେ ॥
ତେତେକ ମୁଂ ଯେବେ କରିଣ ପାରଇଂ ।
ସେ କଥା ଅନୁବ୍ରତେ ମୁହିଁ ମନେ ବିଚାରଇ ॥୬୦
ସେ କିସ ସୋଦର ଅଟଇ ମୋହରି ।
ଚିଆରିଲେ ମୋତେ ଗୋଡ଼ାଇଲା ମାରି ॥
ଶ୍ରୀରାମ ପ୍ରସାଦେ ମୁଂ ପାଇଲି ଜୀବନ ।
ଯେହି କଥା ଯାଇଂ କହସି ଦଶାନନ ॥
ଶୁଣି ଶୁକ ଶାରଣେ ତେଣ୍ଟୁଆ ରୂପ ଧରି ।
ଆକାଶ ମାର୍ଗେଣ ଉଡ଼ିଲେ ଉଚଂ କରି ॥
ସୁଗ୍ରୀକି ସମାଦ ଦେଇନ୍ତ କରନ୍ତି ମନ ।
ଖୋଜି ନ ପାରନ୍ତି ଅକଳଣା ସନ୍ୟ ॥
କେ କେତି ବୋଲି ଡାକନ୍ତି ଉଞ୍ଚେ ଥାଇଂ ।
ସୁଗ୍ରୀବର ଆଗେ କହିଲେ ଲୋକେ ଯାଇଂ ॥୭୦
ଭୋ ଦେବ ଇଷ୍କିନ୍ଧ୍ୟା ଠାକୁର ଆଧିପତି ।

ଚଢ଼ାଇ ଦୁଇ ଗୋଟା ଆକାଶେ ତାକ ଦ୍ୟନ୍ତି ॥
ବିଚାରିଣ ବୁଝ ଏ କେବଣହିଂ ଅର୍ଥ ।
ଶୁଣି ଉର୍ଦ୍ଧକଇ ଚାହିଂଲେ କପିନାଥ ॥
ପକ୍ଷୀକି ବୋଇଲେ ତୁମ୍ଭେ କାହାରରେ ଅଟ ।
କେବଣ ଦେଶେ ଘର କାହାକଇ ଖଟ ॥
ଶୁକ ଶାରଣେ ବୋଇଲେ ଉର୍ଦ୍ଧେ ଥାଇଂ ।
ଆମ୍ଭେ ଲୋଡ଼ୁଅଛୁ ଇକ୍ଷିନ୍ଧ୍ୟାର ସାଇଂ ॥
ତାହାକୁ ଦେଖିଲେ କହିବୁ ବାରତା ।
ଶୁଣିଣ ବୋଇଲା ସେ ରୋମାର ଭରତା ॥୮୦
ଆମ୍ଭେ ସୁଗ୍ରୀବର ଖଡ଼ଦର ତନୟେ ।
ଶ୍ରୀରାମ ମୈତ୍ର କପିକୁଳ ରାୟେ ॥
କିସ ସମାଦ କିସ ସନ୍ଦେଶ ସେ ଅଛି ।
ନିର୍ଭୟେ ହୋଇଣ ତୁମ୍ଭେ କହରେ ବେନି ପଛି ॥
ଶୁକ ଶାରଣ ବୋଲନ୍ତି ଉର୍ଦ୍ଧେ ଥାଇ ।
ଶୁଣ ସୁଗ୍ରୀବର ହୋଇ ଇକ୍ଷିନ୍ଧ୍ୟାର ସାଇଂ ॥
ଲଙ୍କାର ନୃପତି ଅଟଇ ରାବଣ ।
ତାହାର ମନ୍ତ୍ରୀ ଆମ୍ଭେ ଅଟୁ ଶୁକ ଯେ ଶାରଣ ॥
ତୁମ୍ଭର ତହିଂକି ଆମ୍ଭଙ୍କୁ ପେଷିଲେ ଦଶଗିରି ।
ବୋଇଲେ ବାଳୀ ନୃପତି ମୈତ୍ର ଅଟଇ ମୋହରି ॥୯୦
ତାହାରି ସାନୁଜ ମୋହୋର କନେଷ୍ଟ ।
ସେ କିମ୍ପା ବିଚରେ ନ କଲା ଭଲ ଘାଠ ॥
ସୀତାକୁ ଆଣିଲେ ତାହାର କିସ ଯାଇ ।
ସେ କିମ୍ପା ବଳ ଘେନି ନ ଜାଣି ଆସଇ ॥
ଏସନେକ ବୋଲି ପେଷିଲା ଆମ୍ଭନ୍ତ ।
ଏବେ ତୁ ବାହୁଡ଼ି ଯାଅ ଯା ରୋମାକାନ୍ତ ॥
ରାମ ରାବଣ ଯୁଧ୍ୟ କରନ୍ତୁ ସେ ବେନି ।
ତୁ ସୁଗ୍ରୀ ବାହୁଡ଼ି ଯାଅ ତୋହୋର ସନ୍ୟ ଘେନି ॥
ରାବଣର ତୋହୋର ପ୍ରୀତି ଥାଉ ରହିଂ ।
ଶୁଣିଣ ବୋଇଲେ ଇକ୍ଷିନ୍ଧ୍ୟାର ସାଇଂ ॥୧୦୦

ତୁମ୍ଭେ ମନ୍ତ୍ରୀମାନେ କହିଲ ଯାହା ଯାହା ।
କେମନ୍ତ ଭାଇ ମୋର ଅଟଇ ବିଂଶବାହା ॥
ରାମର ବାଦୀ ସେ ଯେ ମୋହର ବାଦୀ ।
ବାଳୀ ମୋହୋର ବାଦୀ ରାମ ତାହାକୁ ସାଧି ॥
ମୁହିଂ ଶ୍ରୀରାମର ଶତୃକୁ ସଂଘାରିବି ।
ଅସୁରନ୍ତ ମାରି ଲଙ୍କା ବିଧଂସିବି ॥
ରାବଣ ଆଗେ ଯାଇଂ ଯେହିମତେ କହ ।
ପ୍ରାଣ ନ ରହିବଟି କ୍ଷଣେହେଂ ନ ରହ ॥
ଅଙ୍ଗଦ ବୋଇଲା ଯେ କାହିଂ ଆସିଛନ୍ତି ।
କେଶରୀ ବୋଇଲା ଏ ଲଙ୍କାର ବେନି ମନ୍ତ୍ରୀ ॥୧୦
ଶୁଣି ତାରା ସୁତ ଉର୍ଦ୍ଧ୍ୱକୁ ଗଲା ଡେଇଂ ।
ବଜ୍ର ସମ ବିଧାୟେ ପହୁଡ଼ିଲା ନେଇ ॥
ବାଜନ୍ତେ ମରି ପଡ଼ନ୍ତେ ବେନିଜନେ ।
ଧୂରୁ ପଳାଇଲେ ପ୍ରାଣ ବିସର୍ଜନେ ॥
ଅଙ୍ଗଦର ଛଳେ ବାନର ରଛବଳ ।
ବାହୁଡ଼ି ଆସି ସେ ମିଳିଲେ ସିନ୍ଧୁକୂଳ ॥
ଶୁକ ଶାରେଣ ସେ ଲଙ୍କାରେ ପ୍ରବେଶ ।
ଦ୍ରଶନ କଲେ ଯାଇ ନୃପତି ଦଶାଇଶ ॥
ପାୟେ ପଡ଼ି ଶୋଇ ସେ ମଥାରେ ହାଥ ଦେଲେ ।
ଲୋକ କଡ଼ାଇଣ କଥାନ୍ତ କହିଲେ ॥୨୦
ଶୁଣିଲା ରାବଣ ଯେ ବାଳୀବୀରର ମରଣ ।
ହୃଦ ପଦ୍ମ ମଧ୍ୟେ କଲା ବିଚରଣ ॥
ନିଷ୍ଟୟେ ନାରାୟେଣ ଅଟନ୍ତି ରଘୁନାଥ ।
ବାଳୀକି ମାରିବାକୁ କି ଆନ ସାମରଥ ॥
ବନଜୀବମାନେ ହୋଇଲେ ତାକୁ ସାହା ।
ପ୍ରତକ୍ଷେ ଦାଶରଥି ଅଟଇ ଚଉବାହା ॥
ସିନ୍ଧୁ ତରିବେ ସେ କେବଣ ପ୍ରକାରେ ।
ଅସୁରନ୍ତ ଯୁଝିବେ ସେ ଭାଲୁଙ୍କ ବାନରେ ॥
ମନୁଷ୍ୟ ହୋଇଣ ଏଡ଼େକ ସାହାସ ।
ଏତେ ବୋଲି ଭିତରକୁ ଗଲା ଦଶାଇଶ ॥୩୦

ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରୀତି ।
କୁଶ ପାଡ଼ି ଶୋଇ ଯେ ଅଛନ୍ତି ଦାଶରଥି ॥
ତିନିଦିନ ହୋଇଲା ନ ପାଇଲେ ସନ୍ଦେଶ ।
କୋପ କରି ଉଠି ବସିଲେ ରଘୁଶିଷ ॥
ସୁଗ୍ରୀବରକୁ ଚାହିଂଣ ଶ୍ରୀରାମ ପଚାରି ।
କି କରିବା ମିତ ବୋଲନ୍ତି ଚାପଧାରୀ ॥
ଅନେକ ତୁଷ୍ଟି କରି ଶୋଇଲୁ ଉପବାସେ ।
ତିନିଦିନ ହୋଇଲା ବରୁଣ ନଇଲା ମୋର ପାଶେ ॥
ଏବେ କି ବୁଦ୍ଧି କରିବି ମିତ୍ର କହ ।
କୋପେଣ ଶ୍ରୀରାମର କମ୍ପୁଅଛି ଦେହ ॥୪୦
ସୁଗ୍ରୀବର ବୋଇଲା ଦୃଷ୍ଟୟେ ନୃପତି ।
ସଜୁଜନଙ୍କର ନୁହଇ ଏ ଗତି ॥
ଏବେ ସ୍ୱାମୀ ତୁ ଯେ ଜିଣିଲୁ ଜଗତ ।
ତୋହୋର ନିଜ କର୍ମ ଭୁଂଜସି ରଘୁନାଥ ॥
ଦୁଷ୍ଟଲୋକ କଇଂ ତ୍ରାସିଲେ ସେ କାର୍ଯ ।
ତେବେ ସେ ସ୍ୱଭାବ ଛାଡ଼ନ୍ତି ରଘୁରାଜ ॥
ତମ୍ଭାର କଳଙ୍କ ଯେହ୍ନେ ଆମ୍ଳିଳରେ ହୋଏ କ୍ଷଏ ।
ମନ୍ଦ ଚିତ୍ତ ଛାଡ଼ନ୍ତି କରାଇଲେ ଭୟେ ॥
ସଜୁଜନଙ୍କଇ ନ କରିବ ମାୟା ।
ମାୟା କହିଲେ ତ କମ୍ପଇ ତାହାର କାୟା ॥୫୦
ଖଳ ଲୋକ ସ୍ୱାମୀ କହିଲେ ହୁଅନ୍ତି ଟାଣି ।
ଭଏ ଦେଖାଇଂ କହନ୍ତି ଥିର ବାଣୀ ॥
ମାୟାଜଳର ନୃପତି ଅଟଇ ବରୁଣ ।
ଆପଣେ ଦେଖାଉଂଅଛି ଆପଣେ ମନ୍ଦପଣ ॥
ତୀର୍ଥ ରାଜା ହୋଇ ଅଭକ୍ଷ ହୋଇଲା ।
ଆତ୍ମା ନ ଚିନ୍ତିଣ ତୋତେ ଗର୍ବକଲା ॥
ଭୋ ନାଥ ରଘୁନାଥ କରସି ତୋହୋର କାର୍ଯ ।
ସୁଗ୍ରୀବର ବୋଲ ଶୁଣି ଉଠିଲେ ରଘୁରାଜ ॥
ବୈଷ୍ଣବୀ ଧନୁରେ ଚଢ଼ାଇଲେ ଗୁଣ ।
କୋପମୁଖ ହୋଇଂ ଯେ ଚାହିଂଲେ ବେନି ତ୍ରୋଣ ॥୬୦

ଅଗ୍ନିଶର କାଢ଼ି ପଢ଼ିଲେ ଧନୁବେଦ ।
ତତକ୍ଷଣେ କୋଦଣ୍ଡ ଧଇଲେ ରଘୁନାଥ ॥
ଶୁଣ ସିନ୍ଧୁରାଜ ମୋତେ ବାଟ ଦେସି ।
ନୋହିଲେ ଯେହିକ୍ଷଣି ହୋଇବୁ ନାଶି ॥
ଖଣ୍ଡ ଖଣ୍ଡ କରି ପ୍ରାଣେ ବିନାଶିବି ।
ତୀର୍ଥରାଜାପଣ କ୍ଷଣକେ ଛଡ଼ାଇବି ॥
ଏ ମୋହୋର ଶର ଅଟଇ କାଳାନଳ ।
ଅନାଇବା ମାତ୍ରକେ ନାଶଯିବେ ସର୍ବବଳ ॥
ମଗର ସୁସ୍ୱମ୍ଭର ବିକଳ ହୋଇବେ ।
ଜଳ ଜନ୍ତୁମାନେ ମରଣ ପାଇବେ ॥ ୭୦
ସୀତ୍ୟାକୁ ନ ପାଇଣ ମୁହିଂ ବଇରାଗ ।
ରାବଣ ନ ମରୁ ମରିବୁ ତୁ ଆଗ ॥
ଦୁଖୀ ହୋଇଣ ମୁଂ ଅଛଇଂ ଜଳପତି ।
ଯେହିକ୍ଷଣି ତୋହୋର ସରିବ ବିଭୂତି ॥
ଦୁଷ୍ଟ ଗୋରୁ ସଙ୍ଗେ ଯେହ୍ନେ ସନ୍ଥ ଗୋରୁ ଥାଇ ।
କୁସଙ୍ଗ ଦୋଷେ ସେ କୃଷି ଖାଇ ଯାଇ ॥
ରକ୍ଷାଲୋକ ଦେଖି ପଳାଇଲା ଦୁଷ୍ଟ ।
ସୁଜନ ଗଳାରେ ବାନ୍ଧଇ କାଠଘଣ୍ଟ ॥
ତେହ୍ନେ ପରାଏ ହୋଇ ଆଗେ ନାଶଯିବୁ ।
ଯଦି ତୁ ଆଜ ମୋତେ ବାଟ ନ ଛାଡ଼ିବୁ ॥୮୦
ସୀତୟାର ଅର୍ଥେ ମୋର ମନ ଉପତାପ ।
ତୋହୋର ଉପରେ ପଡୁ ମୋର ଧାପ ॥
ବଳ ଯେବେ ଅଛି ସହ ମୋହୋର ବାଣ ।
ଆଜ ପରୀଛ କରିବା ତୋହୋର ପ୍ରାଣ ॥
ପ୍ରାଣପ୍ରିୟା ମୋର ଲଙ୍କାରେ ବନ୍ଦୀ ଥାଇ ।
ବାଟ ଉଗାଳି ନ ଦେଉ ମୋତେ ଯାଇଂ ॥
ପୃଥ୍ୱିକି ଶଇ ତୁ ଅଟୁ ଜଳପତି ।
ସବୁ ଦୁଷ୍ଟମାନେ ତୋହୋର ତହିଂ ଥିତି ॥
ଶଙ୍ଖାସୁର ଥିଲା ବେଦ ପୋଥି ହରିନେଲା ।
ଏତେ ମନ୍ଦମାନ ସବୁ ତୋହୋର କଲା ॥୯୦
ତୁ ଯେବେ ନ ଥାନ୍ତୁ ପ୍ରଳୟ କିମ୍ପା ହୋନ୍ତା ।
ବିଧାତା ମାହାତ୍ମା ସୁଖୀ ହୋଇଥାନ୍ତା ॥

ସଚରାଚର ଜଗତ ତୁ ନିକି କରୁ ନାଶ ।
ସୃଷ୍ଟି ସ୍ରିଜିବାରେ ବ୍ରହ୍ମା ପାଇ ପ୍ରାସ ॥
ନୋହିଲେ କେମନ୍ତେ ତୋତେ ଶୋଷିଲା ଅଗସ୍ତି ।
କାଳନାଗ ଜନ୍ତୁ ଜନ ସମ୍ଭାଳିଲୁ ଏଥି ॥
ଏବେ ରାବଣକୁ ତୁ ଗର୍ବେ ଅଛୁ ଭରି ।
ବାଟ ଉଗାଳି ମୋତେ ଅଛୁ ଆଗସରି ॥
ଏହିକ୍ଷଣି ତୋହୋର ଘେନିମି ପରାଣ ।
ଏତେ ବୋଲି ଗୁଣ ଟଙ୍କାରିଲେ ରାମରାଣ ॥୧୦୦
ମନ୍ତ ପଢ଼ି ଗୁଣ ଉଛୁଡ଼ନ୍ତି ପାଣି ।
ସାତ ସମୋଦ୍ର କି ଶୋଷିବ ଏହିକ୍ଷଣି ॥
ନାରାଚ ତେଜ କରି ପୂରାଇଲା ଜଗତ ।
ପାଣି ଥୋପା ପ୍ରାୟେ ଦିଶଇ ସିନ୍ଧୁସାତ ॥
କୋପେ ଶ୍ରୀରାମର ରକତ ବେନି ଆଖି ।
ଆକାଶେ ସୁରଗଣ ଭୟେ କଲେ ଦେଖି ॥
ବୋଇଲେ ମେଦନୀ ପଡ଼ିବ ରାସାତଳେ ।
ବରୁଣ ନୃପତି ଆଜ ଯିବ ଯମଆଳେ ॥
ଧବଳ ମୁଖୀ ଗଙ୍ଗା ବିଧବା ହୋଇବ ।
ଯେହେର୍ଣେକ କୃତ କରିଛି ଦଇବ ॥୧୦
ଏସନେକ ବୋଲି ଭାଳନ୍ତି ଦେବତାୟେ ।
ଶୁଣ ପାର୍ବତୀ ଗୋ ଅପୂର୍ବ କଥା ଯେ ॥
ଯେତେବେଳେ ରାମ ନାରାଚ ପୂରାଇଲା ।
ଶୋଷିବ ମାହାଜଳ ବୋଲିଣ ବୋଇଲା ॥
ଡରେଣ ବରୁଣ ଆସଇ ତଡ଼ତି ।
ଉଦୟ ଗିରି ଯେହ୍ନେ ଗମଇ ଛାୟାପତି ॥
ଭୟେ ଆରତ ଏ ଗମଇ ଜଳଧର ।
ରତ୍ନ ଆଞ୍ଜୁଳିୟେ ଧରିଅଛି କର ॥
ସମୁଦ୍ର ଭିତରୁ ହୋଇଲା ବାହାର ।
ଦଶଦିଗ କିରଣ ଆଲୁଅ ତାହାର ॥ ୨୦
ଶ୍ରୀରାମ ଛାମୁରେ ମିଳିଲାକ ଆସି ।
ନିକଟ ହୋଇଂତ ନୁଆରଇ ଭାଷି ॥
ରତ୍ନ ଆଞ୍ଜୁଳି ଥୋଇ ଯୋଡ଼ି ବେନି କର ।
ବୋଲଇ ସ୍ୱାମୀ ତୁ ତ୍ରୈଲୋକ୍ୟ ଈଶ୍ୱର ॥

ବ୍ରହ୍ମା ଇନ୍ଦ୍ର ତୋର କୋପକୁ ଭାର୍ଜନ ।
ଶଙ୍ଖ ଚକ୍ର ଚିହ୍ନ ଶ୍ରୀବଛ ଲକ୍ଷଣ ॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଟୁ ତୁ ନାଏକ ।
ତୋହୋର ଆଶ୍ରେକେ ଛନ୍ତି ସର୍ବଲୋକ ॥
ଜନ ଆଚାରେ ତୋହୋର ଜନାର୍ଦ୍ଦନ ନାମ ।
ଆଦି ଅଚ୍ୟୁତ ଅବୟେ ମାହାତମ ॥ ୩୦
ମୁଂ ତୋର ଚରଣେ ସର୍ବଦା ଅଟଇ ଦାସ ।
ରକ୍ଷାକର ମୋତେ କମଳାବିଳାସ ॥
ଦେବତାଙ୍କର ଛଳେ ହୋଇଂଛୁ ଅବତାର ।
ଆନରେ ଉଶ୍ୱାସ ନୋହିଲା ମହୀଭାର ॥
ତୁ ଦେବ ନାରାଏଣ ନରେ ତୋତେ ଆଶ୍ରେ ।
ନରକରୁ ଉଦ୍ଧାର କରିପାରୁ ତୁହି ସେ ॥
ତେଣୁ ସେ ନାରାଏଣ ନାମ ଦେବ ବହୁ ।
ଏ ମୋହୋର ଦୋଷ କ୍ଷେମାକର ପ୍ରହୁ ॥
ତୋହୋର ଉପର ବଂଶେ ସଗର ନୃପତି ।
ସାଗର ନାମେ ସେ କଲାକ କୀରତି ॥୪୦
ସମୟକେ ଶୋଷିଲା ସେ କୁମ୍ଭରଷି ସୁତ ।
ଯହୁଂ ପଶିଲେ ସେ ଦୁଷ୍ଟ ଯେ ଦଇତ ॥
ଶୁଖାଇଲା ପାଣି ପୂରାଇଲା ଭାଗୀରଥି ।
ଭୋ ଦେବ ସପତ ସମୁଦ୍ର ତୋହୋର କୀରତି ॥
ଏ ମାହାଜଳ ଅଟଇ ଅକଳଣା ।
କଉଂ ପ୍ରକାରେ ନ ଛାଡ଼ନ୍ତି ନିଜ ଗୁଣା ॥
ଏଥକୁ କୋପ ତୁ ନକର ଗୋସାଇଂ ।
ଏ ତୋହୋର ନାରାଚକୁ ଭାର୍ଜନ କେହି ନାହିଂ ॥
ଭୋ ରଘୁନାଥ ମୋତେ ଯେକ ବର ଦେବା ।
ଯଦ୍ୟପି ନାରାଏଣ ଘେନିଲୁ ମୋର ସେବା ॥୫୦
ଅପୂର୍ବ ପଦାର୍ଥ ଧନୁରେ ଅଛୁ ସନ୍ଧି ।
ପାପ ଭାରା ମୋର ଛେଦ ଏହା ବିନ୍ଧି ॥

ସମୁଦ୍ର ଭିତରେ ଅଛନ୍ତି ଦୁଷ୍ଟମାନ ।
ପବିତ୍ର ଜଳ ନାଶ କରନ୍ତି ରଘୁନାନ ॥
ତାହାଙ୍କର ପ୍ରାଣ ଘେନସି ଗୋସାଇଂ ।
ଶୁଣିଣ ସନ୍ତୋଷ ହୋଇଲେ ରଘୁସାଇଂ ॥
ଲୀଳା ଗତି କରି ବିନ୍ଧିଲେ ନାରାଜ ।
ଯେତେ ଥିଲେ ହତ ହୋଇଲେ ଦନୁଜ ॥
ଯୋଗବଳେ ତାହା ଜାଣିଲେ ବରୁଣ ।
ବାହୁଡ଼ି ନାରାଜ ଯାଇଂ ପଶିଲାକ
ତ୍ରୋଣ ॥୬୦
ଦେଖିଣ ଜଳପତି ଶ୍ରୀରାମ ପାଦେ ପଡ଼ି ।
ପୁଣି ଉଭା ହୋଇଲା ଶିରେ କରଯୋଡ଼ି ॥
ରତ୍ନ ଅଳଙ୍କାର ଯେତେକ ଆଣିଥିଲା ।
ଶ୍ରୀରାମ ଆଗେଣ ଥୋଇଣ ବୋଇଲା ॥
ଭୋ ଦେବ ଦାସମଛଳ ଭଗବାନ ।
ନିଚୟେ ସଂପୋଂଡ଼େ ମଲା ଦଶାନନ ॥
ସୁରଗଣଙ୍କର ଦୁଃଖ ହୋଇଲାକ ଦଳି ।
ସୁଖେଣ ଇନ୍ଦ୍ର ବସିବ ସ୍ୱର୍ଗଆଳି ॥
ତୁ ଯେବେ କଥାଏ କର ରଘୁମଣି ।
ସୁଖେ ତରିଯିବ ମହାର୍ଣ୍ଣବ ପାଣି ॥ ୭୦
ନଳ ହାଥରେ ବନ୍ଧାଇବୁ ସେତୁ ।
ଯେ ହାଦେ ନିଷୟ ଜାଣଇ ପରମ ତତ୍ତ୍ୱ ॥
ଜଳ ଥଳ ଏକତ୍ର ତୁ କରିବୁ ରାଘେବ ।
ପର୍ବତ ଉପୁଚିଆଇବ ବଳ ସୁଖେ ଯିବ ॥
ନଳ ସେନାପତି ବିଶ୍ୱକର୍ମାର ସୁତ ।
ବନ୍ଧର ବିଧାନ ସେ ଜାଣଇ ସମସ୍ତ ॥
ଋଷିଙ୍କର ଶାପ୍ୟ ପୂର୍ବେ ତାହାକୁ ଅଛି ।
ଏ କାଳକୁ ତ ଭଲ ହୋଇଲା ରଘୁବଚ୍ଛି ॥
ବାଳୁତ କାଳେ ନଳ ବିପୁନ୍ୟେଣ ଥାଇ ।
ଋଷିଙ୍କର ତପ ଥାନକଇଂ ଯାଇଂ ॥ ୮୦
ଧ୍ୟାୟେ ମୁନିମାନେ ବ୍ରହ୍ମ ଚିନ୍ତା କରି ।
ମୂଳ କମଳ ଚାପି ନିଶ୍ୱାସନ୍ତ ଧରି ॥
ତାହାଙ୍କର ମଉନ ବ୍ରତ ଦେଖି ବୀରନଳ ।
ପଦାର୍ଥମାନ ସବୁ ପକାଇ ନେଇ ଜଳ ॥
ଧ୍ୟାନ ଭାଙ୍ଗିଲେ ଦେଖନ୍ତି ନାହିଂ ଆୟେ ।
ଥୋକାୟେକ ଧୂରେ ବାଳୁତ ଖେଳୁଥାଏ ॥
ଯୋଗେ ଜାଣିଣ ନିଅନ୍ତି ଆୟେମାନ ।
ଶାପ୍ୟ ନ ଦିଅନ୍ତି ଯହୁଂ ସେ ଅତି ସାନ ॥
ନିତିହିଂ ଏହିମତେ କରଇ ଆୟେମାନ ।
ଦେଖି ଋଷିମାନେ ବିକଳିତ ମନ ॥୯୦
ପୋଥି ଧୋତି ପିଢ଼ା ପକାଇ ନେଇଂ ଜଳ ।
ଋଷିମାନଙ୍କର ପଦାର୍ଥ ସକଳ ॥
ଜାଣିଣ ମୁନିମାନେ ବୋଇଲେ ରେ ବାଇ ।
ଆମ୍ଭର ଆୟେ କି କେ ନାଶ ଯାଇ ॥
ଆଜହୁଂ ତୁ ଆୟେ ପକାଇବୁ ନୀରେ ।
ନ ବୁଡ଼ି ରହିବ ସେ ଜଳର ଉପରେ ॥
ପୂର୍ବର କଥା ରାମ ଅଛଇ ଏସନ ।
ନଳ ହାଥେ ଦେବ କରହ ବନ୍ଧନ ॥
ଏହା ଛୁଇଂଲେ ନ ବୁଡ଼ିବାକ ଜଳ ।
ମେରୁ ସମ ଯେବେ ହୋଇବାକ
ଶଇଳ ॥୧୦୦
ବନ୍ଧ ବାନ୍ଧି ସୁଖେ ଯାଅ ପାରି ହୋଇଂ ।
ଯେତେ ବୋଲି ଗଲା ଗଙ୍ଗାଦେବୀର ସାଇଂ ॥
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ୱେରୀ ।
ବରୁଣ ଦେବତା ଯହୁଂ ଗଲା ନିଜ ପୁରୀ ॥
ଶ୍ରୀରାମର ମନ ହୋଇଲା ସନ୍ତୋଷ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ସୁଗ୍ରୀବରକୁ ଚାହିଂଲେ ରଘୁନାଥ ।
ଦେଖି କପି ରାଜା ଶିରେ ଦେଲା ହାଥ ॥
କି ବୁଦ୍ଧି କରିବା ମୈତ୍ର ଶ୍ରୀରାମ ବୋଲନ୍ତୁ ।
ବରୁଣ ଆସି କହିଲା ନଳ ବାନ୍ଧୁ ସେତୁ ॥୧୦
ଯାହା ସେ କହିଲେ ଅଟଇ ଯଥାର୍ଥ ।
ଦୈବ ସଂଯୋଗେ ବହିଛି ବିଧାତ ॥
ଯେତେବୋଲି ନଳକୁ ଆଣିଲେ ହକରାଇ ।
ଗଉରୋବ କଲେ କତିରେ ବସାଇଂ ॥
ଶିର ଆଉଂସିଣ ପଚାରିଲେ କଥା ।
କହ ନଳ ବାବୁ ବନ୍ଧର ବାରତା ॥
ତୋହୋର ଛୁଇଂଲେ ନ ବୁଡ଼ିବ ଶିଳ ।
ଲୁହା କାଠ ମାଟି ପଦାର୍ଥ ସକଳ ॥
ଯେସନେକ ବିଧାତା ଆଗହୁଂ ଗଢ଼ିଅଛି ।
କେମନ୍ତ ବଞ୍ଚିବ ଆନେ ବିଶର୍ବାଗ
ବଚ୍ଛି ॥୨୦
ଯେତେବାଗେ ତାକୁ ନ ସହନ୍ତି ସୁରଗଣ ।
କିସ କିସ ବଚନ ହୋ ବୋଲନ୍ତି
ବିଭୀଷେଣ ॥
ଶୁଣିଣ ରାବଣ ଭାଇ ଯୋଡ଼ଇ ବେନି କର ।
ବୋଲଇ ଶୁଣ ତୁମ୍ଭେ ଅଯୋଧ୍ୟା ଈଶ୍ୱର ॥
ଦଶଗ୍ରୀବ ଅଇଶ୍ୱର୍ଯ୍ୟ ବରେଣ ପାଇଲା ।
ଲାଭହାନି ଦୁଇ ଜାଣିତ ନଗଲା ॥
ସୀତ୍ୟା ନ ହରିଲେ ନୋହନ୍ତା ପ୍ରାଣନାଶ ।
ଦେବେ ନ ସହିଂ ଅବା କରିବେ ତାହାଇଂ
କିସ ॥
ସବୁ ଯହୁଂ ଶିରୀ ଯେଣେ ନାଶ ଗଲା ।
ଅଗ୍ୟାଂନ ହୋଇଣ ତ ସେ ଦିନ
ହାରିଲା ॥୩୦
ପାପୀ ଜନକଇ ନ ସହଇ ମହୀ ।
ତାହାର ଥିଲେ କି ସଂସାର ସୁସ୍ଥେ ଥାଇ ॥
ଶୁଣିଣ ଶ୍ରୀରାମ ହସନ୍ତି ମନେ ମନ ।
ସୁଗ୍ରୀବରକୁ ଚାହିଂ ବୋଲନ୍ତି ବଚନ ॥
ଆଗ୍ୟାଂ ଦିଅ ମଇତ୍ର ଋକ୍ଷ କପି ରାଇଂ ।
ପର୍ବତ ଉପାଡ଼ି ଆଣନ୍ତୁ ବେଗେ ଯାଇଂ ॥
ନଳକୁ ଛୁଆଇଂ ପକାଅ ସିନ୍ଧୁଜଳ ।
କଥା ବ୍ରତିଥାଉ ଏବେ ସର୍ବକାଳ ॥
ଯେହି ଶକ୍ତୁନ୍ୟ ଯେବେ ଅଟଇ ଆମ୍ଭର ।
ପଥର ଉପୁଚାଇଲେ ମରିବ ଦଶଶିର ॥୪୦
ବିଭୀଷେଣକୁ ଚାହିଂ ବୋଲନ୍ତି ଶ୍ରୀରାମ ।
ଯେଥକଇଂ କେତେଦୂର ଅଟଇ ଲଙ୍କାଗ୍ରାମ ॥
କେବଣ ଠାବେ ଆହୋ ବାନ୍ଧିବାକ ବନ୍ଧ ।
କେବଣ ପ୍ରକାର ଜିଣିମା ଦଶକନ୍ଧ ॥
ବିଭୀଷେଣ ବୋଇଲା ଶୁଣିମା ଗୋସାଇଂ ।
ଶତେ ଯୋଜନ ଅଟଇଂ ଲଙ୍କଭୂଇଂ ॥
ଯେହି ସଲଖେ ଅଟଇ ସିଂଘଦ୍ୱାର ।
ପଛିମେ ମଇଦାନ ପୂର୍ବେ ତାଟିବାଡ଼ ॥

ଦକ୍ଷିଣ ଦ୍ୱାରେ ରାଜା ଆସ୍ଥାନ କରି ବସଇ ।
ସକଳ ଦିଗକଇ ତେଜ ବିକାଶଇ ॥୫୦
ଶତେ ଯୋଜନ ଗଡ଼ର ଆୟେତନ ।
ଚାଳିଶ କୋଶ ପାଚେରୀ ଉଚ୍ଚ ବିଦ୍ୟମାନ ॥
ପକ୍ଷୀ ଜନ୍ତୁମାନେ ନ ପାରନ୍ତି ଉଡ଼ି ।
ମେଘମାନେ ଯାଉଂ ଯାଉଂ ପଡ଼ୁଥାନ୍ତି ହୁଡ଼ି ॥
ତେଣୁ ସେ ପାଚେରୀ ହୋଇଲା ମେଘଦଣ୍ଡ ।
ଲଙ୍କାରେ ଭିତରେ ଦେବ ଚଉଷଠି ଦାଣ୍ଡ ॥
ଆବର ବାଟ କନ୍ଦି ନ ଯାଇ ଗଣିନ୍ତା ।
ଶତେକ ହାଟ ବସଇ ସବୁ ସର୍ବ ଶିରୀଯୁତା ॥
ଗଡ଼ର ପାଚେରୀ ଦଶ ଦଶ କ୍ରୁଣ ।
ବନ ଗିରି ପର୍ବତ ଅଟଇ ରଘୁରାଣ ॥୬୦
ଭାର୍ଗବୀ ବୋଲିଣ ବହଇ ଯେକ ନଦୀ ।
ଶତେ ଯୋଜନ ଯାଏ ଅଛଇ ଆଛାଦି ॥
ଯେ ଯାହା ସମୟେ ତହିଁ ସ୍ନାହାନ କରନ୍ତି ।
ଦ୍ୱାଦଶ ଗୋରୁ ଦାନ ଦେଲାକ ଫଳ ଶୃତି ॥
ଲଙ୍କେଶ୍ୱରୀ ନାମେ ଦେବୀଯେ ତହିଁ ଅଛି ।
ଯାବତ କାର୍ଯ ରାବଣ ତାହାକୁଇ ପୁଛି ॥
ଘୃତ ସମିଧ ଦେଇଂ ଅଗ୍ନିକି ତୋଷଇ ।
ଦେବତାଙ୍କୁ ପୂଜା କରଇ ତହୁଂ ଯାଇଂ ॥
ରଦ୍ରକୁ ସ୍ନାହାନ କରାଇ ଲକ୍ଷେ ଯୋଡ଼ା
ପାଣି ।
ବିଷ୍ଣୁ ଦେବତାକୁ ଲକ୍ଷେ ପ୍ରଜମ୍ଫ ପୁଣି ॥୭୦
ଲକ୍ଷେକ ବୋଦା ଦେଇଂ ତୋଷଇ
ଶାକମ୍ଭେରୀ ।
ବଳି ଭାତ ଭୋଜି କେତେ ଅନ୍ତ କରି ॥
ଲକ୍ଷେକ ବ୍ରାହ୍ମଣକୁ ପଞ୍ଚବିଂଶ ଦାନ ।
ଦୁଃଖୀ ଦରିଦ୍ରକୁ ଦିଅଇ ଲକ୍ଷେ ଧନ ॥
ତହୁଂ ଗଜ ଚଢ଼ି ମରାଇ ମଇଂଷି ।
ତହୁଂ ଉଭାରେ ଅଶ୍ୱ ପିଠିରେ ବସି ॥
ଧୁଆଇଂଣ ତୀର ବିନ୍ଧଇ ଖଣ୍ଡା କାଢ଼ି ।
ପାଞ୍ଚ ସାତ ହୟ ଫୁଟିଲେଣ ଛାଡ଼ି ॥
ବାହୁଟିଆ ମେଲିଣ ଗୋଡ଼ାଇଂ ଧରଇ ।
ତହୁଂ ଉଭାରେଣ ମରଡ଼ାୟେ ବିଜେ
କରଇ ॥୮୦

ସୁଗନ୍ଧ ବୋଳିଣ ଶ୍ରୀଅଙ୍ଗ ପଖାଳଇଂ ।
ବିଚିତ୍ର ବସନ ମନ ହିଆଳୀ ପିନ୍ଧଇ ॥
ଦିବ୍ୟ ଅଳଙ୍କାର ଶରୀର ଭୂଷଣ ।
ନବରତ୍ନ ନବ ଗ୍ରହଙ୍କର କିରଣ ॥
କେଶେ କୁସୁମ ସୁନ୍ଦର ଦିଶଇ ଗଭା ।
ପାଗର ଉପରେ ମୁକୁଟ ଦିଶଇ ଶୋଭା ॥
ଦଶ ଲଲାଟେ କସ୍ତୁରୀ ଚିତା ଘେନି ।
ସାଙ୍ଗେଣ ଗୋଡ଼ାଇ ଥଆନ୍ତି ସୁର ମୁନି ॥
ବିଚିତ୍ର ତଡ଼ପ ଶ୍ୟରୀରେ ଶୋହଇ ।
ରଣ ଝୁଣ ବାଜେ ପାଦର ନୂପୁର ଦୁଇ ॥
ସୁବର୍ଣ୍ଣ କଠାଉ ଚଢ଼ିଣ ଯେ ଆସି ।
ଶିରେ ବୀରଛତ୍ର ଶରଦର ଶଶୀ ॥
ତାମ୍ବୋଳ ଭୁଜଂଇ ପୟରେ ଚାଲିଯାନ୍ତେ ।
ପଟୋଆରି ଥାନ୍ତି ରାଉତ ମାହୁନ୍ତେ ॥
ଚାମର ବିଚଂଣି ପଡ଼ଇ ନିରନ୍ତର ।
ଆସ୍ଥାନେ ବିଜୟେ କରଇ ଦତ୍ୟବୀର ॥
ଗହ ଗହ ସଭା ଯେ ସାତ ଘଡ଼ି ଯାୟେ ।
ହାଥୀ ଘୋଡ଼ା ପାଇକ ଯେ ଦେଖଇ
ଲଙ୍କରାୟେ ॥
ରାଜ୍ୟର ନିତି ପରଦେଶର ବାରତା ।
ପାତ୍ର ଅମନାତ୍ୟଙ୍କୁ ପଚାରଇ ସକଳ
କଥା ॥୧୦୦
ଆସନୁ ଉଠିଣ ଭିତରକୁ ଯାଇଂ ।
ମତଫୁଲି ଘରେ ପ୍ରବେଶ ଯାଇଂ ହୋଇଂ ॥
ଚାରି ଘଡ଼ିମାନେ ମୋଣୋହି ସମ୍ପୂର୍ଣ୍ଣ ।
ଆଚୋଂବନ ବିଧି ସାରଇ ଦଶାନନ ॥
ତଇଳ ବାସ ଗୁଆ କର୍ପୂର ତାମ୍ବୋଳ ।
ଶେଜ୍ୟାୟେ ବିଜୟେ କରଇ ଲଙ୍କପାଳ ॥
ଲୋକ କଢ଼ାଇଣ ହୋଅଇ ନଅବକାଶ ।
ମନ୍ଦୋଦରୀ ରାଣୀ ଖଟଇ ତାର ପାଶ ॥
ତିନିକୋଟି ପଚାଶ ଲକ୍ଷ ଯାହାର ନାରୀ ।
ଯାହାକୁ ଶରଧା ତାହାକୁ ଭୋଗ୍ୟ କରି ॥୧୦
ୟେଥିର ଅନ୍ତରେ ନିଦ୍ରା ଅବକାଶ ।
ସନ୍ଧ୍ୟା ସୁମରି ଯେ ଉଠଇ ଦଶାଇଶ ॥

ଶୁଣିଣ ଶ୍ରୀରାମ ଧଇଲେ ଧନୁକର ।
ବୋଇଲେ ଅନକୂଳ ହୋଇଲା ମୋହୋର ॥
ଦିବସେ ରତିଭୋଗ୍ୟ କରଇ ଦଶଗିରି ।
ଦିବସ ରମଣେ ସରଇ ପୁରୁଷର ଶିରୀ ॥
ନିଚୟେ ରାବଣ ଆଇଷ ହୋଇଲା କ୍ଷୟେ ।
ଏ ଘାନ୍ତିର ସମରେ ନାହିଂ ଜୟେ ॥
ସୁର ନର କିନ୍ନର ରଖିବେ ଯେବେହେଂ ।
ଦଶକନ୍ଧ ଜୀବନ ନ ପାଇବ
ତେବେହେଂ ॥୨୦
ଯେତେବୋଲି ରାମ ଉଠି ଉଭା ହୋନ୍ତି ।
ପର୍ବତ ବୁହାଅ ସୁଗ୍ରୀବରକୁ ବୋଲନ୍ତି ॥
ରାବଣର ନିଉନ ପାଇଲଇଂ ମୁଇଂ ।
ଅନକୂଳ ବେଳ ଯେହାଉଂ ଆନ ନାହିଂ ॥
ଶୁଣି କପିବର ଯେ ହନୁମନ୍ତ ରାଇଂ ।
ସନ୍ୟ ଘେନି ପର୍ବତ ଆଣସି ଆଗ୍ୟାଂ ଦେଇଂ ॥
ଯୂଥପତିମାନେ ସମସ୍ତେହେଂ ଯାଅ ।
ଯେ ଯାହା ଅନରୂପେ ପର୍ବତ ବୁହାଅ ॥
ବନ୍ଧ ବାନ୍ଧିଲେ ସନ୍ୟ ସୁଖେ ଯିବ ।
ଏ ମାହାଜଳକୁ କେହି ଭ୍ରାନ୍ତି ନ
କରିବ ॥୩୦
ଶୁଣି ଯୂଥପତି ଯେ ହନୁମନ୍ତକୁ ଘେନି ।
ସାଙ୍ଗେଣ ରକ୍ଷ କପି ଅନେକ ସଇନି ॥
ବିପୁନ୍ୟେ ପଶି ପର୍ବତ ଉପାଡ଼ନ୍ତି ।
ଯେକେ ଦୁଇ ଦୁଇ କେ ଚାରିହିଂ ଆଣନ୍ତି ॥
କେବଣ କପି ଆଣନ୍ତି ଦଶ ବିଂଶ ।
କେହୁ ଆଣନ୍ତି ସେ ତିରିଶ ଚାଳିଶ ॥
ନଳର ହାଥେ ଛୁଆନ୍ତି ତାହା ନେଇଂ ।
ବାହୁଡ଼ି ଆସନ୍ତି ସେ ସମୁଦ୍ରେ ପକାଇଂ ॥
ପୁଣି ଆସି ପର୍ବତ ଉପାଡ଼ି ନିଅନ୍ତି ।
ଯେକକୁ ଆରେକ ଆଗସରି ଧାମନ୍ତି ॥୪୦
କେ କାନ୍ଧେଣ କେ କଣ୍ଡେଣ ଯେ ଘେନି ।
କେ ଉଡ଼ି ଆସଇ ବାଟନ୍ତ ନ ପାଇଂ
ମେଦନୀ ॥
ଅଠାର ଲକ୍ଷ ଯହିଂ ପଦ୍ମମୁଖା ବାନର ।

ବିଶାଶୟେ ମର୍ଭୁତ ଗୋଲାଙ୍ଗୁଡ଼ା ବୀର ॥
ଦଧିମୁଖ ଅଶୀକୋଟି କପିବହେ ।
ତିନି ଶଙ୍ଖ କାଳିମୁଖା ବୀର ହୋୟେ ॥
ରକତବର୍ଣ୍ଣ କପି ୟେକାଦଶ ଖର୍ବ ।
ବନ୍ଧକଇ ପର୍ବତ ବହୁଛନ୍ତି ସର୍ବ ॥
ପର୍ବତ ଉପରେ ଆସଇ ଜୀବଜନ୍ତୁ ରୁକ୍ଷ ।
କେ ତହିଂ ବହି ଆଣନ୍ତି ଅନେକ ବୃକ୍ଷ ॥୫୦
ଆକାଶ ଗଙ୍ଗାକୁ ସେ ବଢ଼ାବନ୍ତି କର ।
ଶ୍ରୀରାମ ପ୍ରସାଦେ ସେ ପିବନ୍ତି ସର୍ଗ ନୀର ॥
ଦେବେ ସାଧୁ ସାଧୁ କରନ୍ତି ଆନନ୍ଦେ ।
ହୁଳହୁଳି ଦିଅନ୍ତି ଅପଛରା ବୃନ୍ଦେ ॥
ବାବୁ ରଘୁନାଥ ମହିମା ତୋହୋର ।
ମହୀର ଜୀବ ପିଅନ୍ତି ଆକାଶର ନୀର ॥
ବାନର ଭାଲୁକେଂ ବହୁଛନ୍ତି ପର୍ବତ ।
ସମୋଦ୍ର ବାନ୍ଧିବାକୁ ହୋଇଲେ ସାମରଥ ॥
ଦତ୍ୟଙ୍କର ସଙ୍ଗତେ ସେ କରିବେ ସମର ।
ଧନ୍ୟ ଧନ୍ୟ ମହିମା ଅଟଇ ଶ୍ରୀରାମର ॥୬୦
ଏଥୁ ଅନନ୍ତରେ ଶୁଣ ଦେବୀ ଉମା ।
ତଇଲୋକେ ବିଦିତ ସେ ଶ୍ରୀରାମର ମହିମା ॥
ହେଳେ ପୋତିଲେ ସେ ତେଡ଼େ ମାହାସିନ୍ଧୁ ।
ସଂୟେ ନାରାୟେଣ ଜଗତର ବନ୍ଧୁ ॥
ସୟେଂ ନାରାୟେଣ କଉଶୁଲା ସୁତ ।
ସିଧ୍ୟ ଲକ୍ଷ୍ମୀ ଅଟଇ ସେ ଜନେକ ଦୋହିତ ॥
ଦେବେ ଜନମିଲେ କପି ରୂପ ଧରି ।
ନୋହିଲେ କି ସିନ୍ଧୁ ଆନରେ ପୋତି ପାରି ॥
ନଳକୁ ଛୁଆଇଂଲେ ପର୍ବତ ନ ବୁଡ଼ଇ ।
ପ୍ରଥମ ଦିନେ ବନ୍ଧ ଚଉଦ ଯୋଜନ ଯାଇଂ ॥୭୦
ଦଶ କୁଣ ଓସାର ତହିଂ ଖାଲ ଖୋଲ ନାହିଂ ।
ଜଳ ଥମ୍ଭିଅଛି ଜାନେକୀର ସାଇଂ ॥
ତେଣୁକରି ପର୍ବତ ନ ବୁଡ଼ନ୍ତି ତଳ ।
ସୟେଂ ବିଶ୍ୱକର୍ମା ଅଟଇ ବୀର ନଳ ॥
ବିଛେଦ କପିର ଭାରିଯା ଇନ୍ଦୁମୁଖୀ ।
ମୁନି ରେତ ଛାଡ଼ନ୍ତି ତାହାଙ୍କ ରୂପ ଦେଖି ॥
ଦିନେକ ନଦୀକି ସ୍ନାହାନ କରି ଗଲା ।
ରେଣୁକା ନଦୀ ତୀରେ ଯାଇଂଣ ମିଳିଲା ॥
ସେ ଦିନ ରଜବତୀ ହୋଇଂଥିଲା ବାଳୀ ।
ଶୁଦ୍ଧ୍ୟ ଶ୍ୟରୀର ନିମନ୍ତେ ଶ୍ୟରୀର ପଖାଳି ॥୮୦
ବିଚିତ୍ର-ତଡ଼ପେକ ପିନ୍ଧିଣ ସୁନ୍ଦେରୀ ।
ବିଚିତ୍ର ଅଳଙ୍କାର ଆଭରଣ କରି ॥
ନିଜ ମନ୍ଦିରକୁ ଆସନ୍ତେ ଲେଉଟି ।
ବିଶ୍ୱକର୍ମା ତାକୁ ବାଟରେଣ ଭେଟି ॥
ଅନେକ ଚାଟୁ ଯେ ବୋଇଲାକ ବୋଲ ।
ଜାଣିଣ ବୋଲି ତାର ଅମିଅ ରସତୁଲ ॥
ହାଥ ଦୁଇ ଧରି ବୋଇଲା ଆରେ ସହି ।
ମୁହିଂ ବିଶ୍ୱକର୍ମା ବିରହେଣ ବାଇ ॥
ତୁ ମୋତେ ସୁରତି ଦେଇଂଣ ପ୍ରାଣ ରଖ ।
ଯେ ମୋହୋର ଶ୍ୟରୀର ବିକଳିତ ଦେଖ ॥୯୦
ଶୁଣି ସୁନ୍ଦେରୀ ସନମତ କଲା ।
ଜଗତ କରତା ସାଙ୍ଗେଣ ରମିଲା ॥
ରେତ ଖଳିତେ ସରିଲା ସୁରତି ।
ଯେ ଯାହା ଆଶ୍ରମକୁ ବେନି ଜନେ ଯାନ୍ତେ ॥
ବିଶ୍ୱକର୍ମାର ବୀର୍ଯ୍ୟ ଇନ୍ଦୁମତୀ ଧରେ ।
ଦଶ ମାସ ଅନ୍ତେ ପ୍ରସବ ତାହାର କୁମରେ ॥
ପୁତ୍ର ଜାତ ହୋନ୍ତେ ପିତା ସୁଖ ପାଇ ।
ନଳ ନୃପତି ବୋଲି ନାମ ତାହାର ଦେଇ ॥
କାଳେ ବିଶ୍ୱକର୍ମା ଜାଣିଣ ଅଇଲା ।
ବନ୍ଧର ବିଧାନ ସମସ୍ତ କହିଲା ॥ ୧୦୦
ବୋଇଲେ ନାରାୟେଣ ହୋଇବେ ଉତପତି ।
ତେବେ ସେ ନାଶ ଯିବ ପୌଲସ୍ତିର ନାତି ॥
ସମ୍ରୋଦ୍ରେଣ ସେତୁ କରିଣ ତରି ଯିବେ ।
ତେବେ ସେ ଅସୁରଙ୍କର ସଂଗୋତ୍ର ନାଶ ହେବେ ॥
ତୁ ବାବୁ ଶ୍ରୀରାମକୁ ସେବା କରିଥିବୁ ।
ପର୍ବତ ଘେନିଣ ସାଗରେ ସେତୁ ବନ୍ଧାଇବୁ ॥
ୟେସନେକ ପୂର୍ବର ଅଛଇ କାହାଣୀ ।
ଶ୍ରୀରାମକୁ ବରୁଣ କହିଲା ତାହା ଜାଣି ॥
ତେଣୁ କରି କପି ଆଣନ୍ତି ଗିରି ବିହିଂ ।
ଛୁଆଂଇବା ନିମନ୍ତେ ନଳ କର ଲଗାଇ ତହିଂ ॥୧୦
ଶ୍ରୀରାମ ଥମ୍ଭିଲେ ଥିର ହୋଇଲା ମଉଦଧି ।
ବିଧାତା ଭିଆଇଅଛି ୟେସନେକ ବିଧି ॥
ରକ୍ଷ କପିମାନେ ଲାଞ୍ଜେ ଲାଞ୍ଜ ଛନ୍ଦି ଆଣନ୍ତି ପର୍ବତ ।
ଦେଖିଣ ହରଷ ହୋଇଲେ ରଘୁନାଥ ॥
ବନ୍ଧର ଓସାର ଅଟଇ ଦଶ କୁଣ ।
ଏଥୁ ଅନନ୍ତରେ ଅପୂର୍ବ କଥା ଶୁଣ ॥
ଆଦିତ୍ୟ ଦେବତା ପଶ୍ଚିମରେ ଅସ୍ତ ଗଲା ।
ଜଗତ ସଂସାର ତିମିରି ଆଛାଦିଲା ॥
ସ୍ନାହାନ ମଣୋହି କରି ଶ୍ରୀରାମ ପହୁଡ଼ନ୍ତି ।
ରଜନୀ ପ୍ରଭାତେ ଉଦୟେ ଛାୟାପତି ॥୨୦
ସନ୍ୟକୁ ରାଇଂଣ ଶ୍ରୀରାମ ଆଗ୍ୟାଂ ଦ୍ୟନ୍ତି ।
ଆଣ ହୋ ପର୍ବତ ବେଗେ ବନ୍ଧବାନ୍ଧି ॥
ତେବେ ସିନା ନାଶ ଯିବ ଦଶକନ୍ଧଇ ।
ଶୁଣିଣ କପିବୀରେ ଆଣନ୍ତି ଗିରି ବହି ॥
ବୈଶାଖ କୃଷ୍ଣ ଯେ ଅଟଇ ପ୍ରତିପଦା ।
ଗିରି ଆଣନ୍ତି କପି ହୋଇଣ ମୟେମଦା ॥
ନଳକୁ ଛୁଆଇଂ ପକାନ୍ତି ନେଇଂ ବନ୍ଧେ ।
ନବୁଡ଼ି ପଥର ଉପୁଟିଆଇ ଜଳ ମଧ୍ୟେ ॥
ସେ ଦିନ ବତିଶ ଯୋଜନ ହୋଇଲାକ ଦୀର୍ଘ ।
ଦେଖିଣ ସନ୍ତୋଷ ହୋଇଲେ ରାଘେବ ॥୩୦
ଆରେକ ଦିନ ପଚଶ ଯୋଜନ ଦୀର୍ଘ କଲେ ।
ତିନି ଦିନେ ଛୟାଶୋଇ ଯୋଜନ ନିର୍ଭାଇଲେ ॥
ଆରେକ ଦିନକଇ ଅଛେଇ କୁଣ ଚାରି ।

ସୁଗ୍ରୀବରକୁ ଚାହିଁ ଶ୍ରୀରାମ ପଚାରି ॥
ଭୋ ମନ୍ତ୍ର ବନ୍ଧ ହୋଇଲାନିକି ନିର୍ଭା ।
ଦେଖୁ ଆସି ଲଙ୍କପତି ଯେ ମୋହୋର ପ୍ରଭା ॥
ଶୁଣିଣ ସୁଗ୍ରୀବର ଯୋଡ଼ଇ ବେନି କର ।
ଭୋ ଦେବ ଶ୍ରୀରାମ ତଇଲୋକ ଈଶ୍ୱର ॥
କଥା ଜାଣିମାକୁ ସେ କହୁଁଥାଉ ଛନ୍ଦ ।
ଆଗ୍ୟାଂ ପ୍ରମାଣେ ପଡ଼ିଲା ମାହାବନ୍ଧ ॥ ୪୦
ଯେଥୁ ଅନନ୍ତରେ ଶୁଣିମା ରସବାଣୀ ।
ଋକ୍ଷ କପିମାନେ ପର୍ବତ ବହି ଆଣି ॥
ନଳକୁ ଛୁଆଇଂ ସମୋଦ୍ରେ ପକାଦନ୍ତି ।
ରାମର ଆଗ୍ୟାଂୟେ ଶିଳେ ପାଣିରେ ନ ବୁଡ଼ନ୍ତି ॥
ଯେତେକ ସନ୍ୟ ଆଣନ୍ତି ଗିରି ବହି ।
ନଳର ଛାମୁରେ ଚାହା ଦୁରୁଶାନ୍ତି ନେଇଂ ॥
ବିଶ୍ୱକର୍ମା ପୁଅ ତା ଛୁଅଇଂ ବେଗ ବେଗ ।
ଯେସନେକ ସମୟେ ହନୁ ମିଳିଲା ତାହାର ଆଗ ॥
ବୋଇଲା ପର୍ବତ ଛୁଅଂସି ମୋହୋରି ।
ଶୁଣିଣି ନିଜ ବାମ କରେ ଧରି ॥୫୦
ଅଭିମାନ ପାଇଲା ବୀର ପବନର ସୁତ ।
ଅଗମ୍ୟ ବନକୁ ଗଲାକ ତୁରିତ ॥
ଶତେକ ପର୍ବତ ଉପାଡ଼ି ବିଚାରିଲା ।
ନଳକୁ ଆଜ ବନ୍ଧେ ପୋତିବି ବୋଇଲା ॥
ହନୁମନ୍ତ ଆସନ୍ତେ ଆକାଶେ ସୂର୍ଯ୍ୟ ଲୁଚି ।
ଜୟେବ ମନ୍ତ୍ରୀକି ଚାହିଁ ଶ୍ରୀରାମଚନ୍ଦ୍ର ପୁଛି ॥
ଦିବସ ଅନ୍ଧାରତ ନ ଦିଶଇ କିସ ପାଇଂ ।
ଋକ୍ଷ ରାୟେ ବୋଇଲେ ଶୁଣିମା ଗୋସାଇଂ ॥
ଯେତେ ସନ୍ୟ ତୋର ଆଣନ୍ତି ପର୍ବତ ।
ଛୁଇଂବାର ନିମନ୍ତେ ନଳ ଲଗାଇ ନେଇଂ ହସ୍ତ ॥୬୦
ହନୁମନ୍ତ ଗିରି ଧଇଲା ବାମକରେ ।
ଅଭିମାନ ପାଇଲା ପବନ କୁମାରେ ॥
ଏ ବନ୍ଧେ ନଳକୁ ପୋତିବି ବିଚାରି ।
ଅନେକ ପର୍ବତ ଯେ ଆଣଇ ମନସରି ॥

ଯେଣେ ସେ ଅନ୍ଧାର ଦିଶଇ ଦଶଦିଶ ।
ଶୁଣିଣ ଶ୍ରୀରାମ ହୋଇଲେ ହରଷ ॥
ନଳକୁ ରାଇଂଣ ବୋଇଲେ ରଘୁପତି ।
ତୋତେ ଅଭିମାନ କରିଗଲାକ ମାରୁତି ॥
ବାମ ହସ୍ତେ ଗିରି ଯେ ଛୁଇଂଲୁ ତୋହାର ।
ତେଣୁ ତୋତେ କୋପ କଲାକ ପବନକୁମାର ॥୭୦
ଯେବେ ତୁ ମୋହୋର ବଚନେଣ ଯିବୁ ।
ଶ୍ରୀରାମ ପେଷିଲେ ବୋଲିଣ କହିବୁ ॥
ତେବେ ସେ କୋପ ତାହାର ହୋଇବାକ ଶାନ୍ତି ।
ଶୁଣିଣ ନଳ ନୀଳ ଅଙ୍ଗଦ ଘେନି ଯାନ୍ତି ॥
ଶତବଳ ସେନାପତି ଗନ୍ଧମାରଦନ ।
ମହୀନ୍ଦ୍ର ଗବାକ୍ଷ ଦଧିମୁଖ ଚନ୍ଦନ ॥
ଡାଳିମ୍ବ ମରୁତ କେଶରୀ ସୁନାସ ।
ଦୃବିନ୍ଦ ଶଉରୀ ତାରାକ୍ଷ ପାରାସ ॥
ପଚିଶ ସେନାପତି ସମସ୍ତେହେଂ ଗଲେ ।
ଯାନ୍ତେ ହନୁମନ୍ତକୁ ବାଟରେ ଦେଖିଲେ ॥୮୦
ଶିରେ ଦଶ ଦଶ କରେ ଦଶ ଦଶ ।
ଦୁଇ ବାହେ ବହିଅଛଇ ତିରିଶ ॥
ଲାଞ୍ଜରେ କୋଡ଼ିଏ ପିଠିରେ ଅଛି ଷୋଳହ ।
ଦୁଇ ପାଦେ ଦୁଇ ଦୁଇ ଘେନି ଅଚାର୍ଗଳ ॥
ବିକ୍ରମ ଗତି କରି ଉଡ଼ି ବୀର ଆସଇ ।
ନଳ ସେନାପତି ଦୂରୁଂ ଦେଖି ଭାଷଇ ॥
ଭୋ ହନୁମନ୍ତ ତୁ କେଶରୀର ସୁତ ।
ତୋହୋର ଭଗ୍ନୀ ଇନ୍ଦୁମତୀ ମୋହୋର ମାତ ॥
ତୁ ମୋହୋର ମାତୁଳ ମୁ ତୋହୋର ଭଣଜା ।
କିପାଂ କୋପ କରୁ ପବନ ଆତୁଜା ॥୯୦
ତଳୟେ ନ କରି ମୁ ଛୁଇଂଲି ବାମ କରେ ।
ତହିଂକି କୋପ ବହିଲା ତୋହୋର ଶରୀରେ ॥

ଯେବେ ଶ୍ରୀରାମ ପେଷିଲେ ମୋତେ ରାଇଂ ।
ଯୂଥପତିମାନଙ୍କୁ ଦେଲେକ ପଠିଆଇଂ ॥
ଯେତେ ପର୍ବତ ଯେ ବହିଅଛୁ ବୀର ।
ବଥା ପାଇବ ଯେ ତୋହୋର ଶରୀର ॥
ଆମ୍ଭେ ଥୋକାୟେକ ବହି ଘେନି ଯାଇଂ ।
ତୋହୋର ଭଲେ ଥିଲେ ଆମ୍ଭେ ଭଲ ଥାଉଂ ॥
ଶୁଣି ହନୁମନ୍ତ ହସିଣ ବୋଇଲା ।
ରାମର ପ୍ରସାଦେ ତୋର ଜୀବନ ରହିଲା ॥୧୦୦
ନୋହିଲେଣ ତୋତେ ପୋତନ୍ତି ସେତୁବନ୍ଧେ ।
ରଘୁନାଥ ତୋତେ ରଖିଲେ କଥା ଛନ୍ଦେ ॥
ଆବରହିଂ ସଙ୍ଗେ ଅଙ୍ଗଦହିଂ ଅଛି ।
ନୋହିଲେ ଯମ ଆଜ ପକାନ୍ତା ପାଞ୍ଜି ପୋଛି ॥
ଶୁଣିଣ ସକଳ ସେନାୟେ ଭୟେ କଲେ ।
ଆମ୍ଭେ ଥୋକାୟେକ ବହିନେମାକ ବୋଇଲେ ॥
କେ ଯେକ କେ ଦୁଇ କେ ପାଞ୍ଚ ଦଶ ।
ବାହୁଡ଼ି ସିନ୍ଧୁକୂଳେ ହୋଇଲେ ପରବେଶ ॥
ନଳକୁ ଛୁଆଇଂ ସମୋଦ୍ରେ ପକାଇଲେ ।
ସେ ଦିନ ଚାରି ଯୋଜନ ନିର୍ଭା କଲେ ॥୧୦
ଶତେ ଯୋଜନ ଯେ ହୋଇଲାକ ଦୀର୍ଘ ।
ସେ କୂଳେ ସୁବଳୟା ନାମେ ମହାନଗ ॥
ବନ୍ଧର ମୁଖ ଯେ ଲାଗିଲା ତହିଂ ଯାଇଂ ।
ପର୍ବତେ କପିବଳ ପଶିଲେ ଧସାଇଂ ॥
ତହିଂକି ଲଙ୍କାଗଡ଼ରେ ଦିଶଇ ଧ୍ୱଜମାନ ।
ଜଗତୀ ଅଟାଳି ଦିଶଇ ଥାନମାନ ॥
ସିନ୍ଧୁଘୋଷ ଜାଣି ଶୁଭଇ ଚହଳ ।
ଦେଖି ବାହୁଡ଼ିଲେ ଋକ୍ଷ କପିବଳ ॥
ଶ୍ରୀରାମ ଛାମୁରେ ଜଣାଇଂଲେ ଯାଇଂ ।
ଦକ୍ଷିଣ କୂଳେ ବନ୍ଧ ନାଗିଲା ଗୋସାଇଂ ॥୨୦

ସୁବଳୟା ସନଖେ ପର୍ବତେ ବନ୍ଧ ପଡ଼ି ।
ଆଗ୍ୟାଂ ଦିଅ ସଇନି ଯାଆନ୍ତୁ ଆଗ ବଢ଼ି ॥
ଶୁଣିଣ ଶ୍ରୀରାମ ହୋଇଲା ଆନନ୍ଦ ।
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ॥
ଜମ୍ବେବକୁ ବୋଇଲେ ଖୋଜ ଅନକୂଳ ।
କେତେବେଳେ ଲଙ୍କାକୁ ଯିବା ହୋ ବେଗେ ଚାଲ ॥
ସୁଷେଣ ରକ୍ଷପତି ବିଚାରିଲେ ବେନି ।
କୋଠି ପାଡ଼ିଲେ ହାଥେ ପୋଥି ଘେନି ॥
ଆଠ ଅକ୍ଷର ଆଠ ଦିଗେ ଲିହି ।
ଅପଣ୍ଡିତ ଲୋକର ହାଥେଂ ଫଳ ଦେଇ ॥୩୦
ତାହାକୁ ବୋଇଲା ହୋ ମଧ୍ୟସ୍ଥାନ ଛାଡ଼ି ।
ଯହିଂ ପାର ଫଳ ଦିଅ ଦିଗବାଡ଼ି ॥
ମନେ ବିଚାରି ସେ ଦେଲା ଯହିଂ ନେଇଂ ।
ଶ୍ରୀରାମକୁ ଅନେକ ସମ୍ପଦ ଅଛଇ ॥
ସିଂଘ ନକ୍ଷେତ୍ରେ ପଡ଼ିଲା ଶକୁନ୍ୟ ।
ରାଜବିଧି ଭୋଗ କରିବେ ରଘୁନାନ ॥
ଫଳଘେନି କୋଷ୍ଟି ପୁଛନ୍ତି ରଘୁପତି ।
କରଯୋଡ଼ି ବୋଇଲା ପ୍ରାପତ ହୋଉସ୍ୟତୀ ॥
ରାବଣ ସଂଗୋତ୍ର ସହିତେ ନାଶ ଯିବେ ।
ଦେବ ଋଷିମାନେ ତୋତେ ଅବିଷେକ କରିବେ ॥୪୦
ତଇଲୋକେ ନୃପତି ହୋଇବେ ରଘୁନାଥ ।
ନୋହିଲେଣ ପାଞ୍ଜି ନ ବୋହିବିଂ ମୋର ହାଥ ॥
ଆଜ ଚଉଠି ଅଟଇ ଶନିବାର ।
କାଲି ଅର୍କବାର ତୋତେ ସଂପଦ ତାର ॥
ବିଛା ରାଶିରେ ଚନ୍ଦ୍ର ଅଟଇ ବିଜେକରି ।
ସେ ତୋତେ ପଞ୍ଚମ ଅଟଇ ଶୁଭକାରୀ ॥
ଏକାଦଶ ଘରେ ଅଛଇ ଆଦିତ ।
କାଲି ଅନକୂଳ କରିବା ରଘୁସୁତ ॥
ଉତ୍ତରେଣ ଯୋଗ୍ନୀ ଥିବ ତତ୍‌କାଳ ।
ଆମ୍ଭେ ଏଥୁଂ ଯିବା ଶୁକ୍ରଙ୍କର ବେଳ ॥୫୦
ସିଧ୍ୟ ନାମେ ଯୋଗ କୈବଲ୍ୟ ନାମେ କରଣ ।
ଏ ତୋତେ ପ୍ରୀତି ଅଟଇ ରଘୁରାଣ ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ସୁଗ୍ରୀବରକଇ ହକାରିଲେ ପାଶ ॥
ବୋଇଲେ ଏ ବନ୍ଧ ଯେବେ ଦେବତାଙ୍କର ମାୟା ।
ଯହୁଂ ସେ ରାବଣ ହରିନେଲାକ ସୀତୟା ॥
ସୁରଗଣେ ବିଚାରି ଏହା କଲେ ଛନ୍ଦ ।
ନୋହିଲେକି ସମୋଦ୍ରେ ବାନ୍ଧି ହୋଅଇ ବନ୍ଧ ॥
କେବଣ ପର୍ବତ ପାଣିରେ ଉପୁଚିଆନ୍ତି ।
ଏ କତିର ମାଛ ସେକତିକି ଗଳି ଯାନ୍ତି ॥୬୦
ଦେଖ ଦେଖ ମୈତ୍ରଏ ବିପୁରୀତ କର୍ମ ।
ଜାଣିଲି ନିରେଖ ଲୋକକୁ ସାହା ଅଟଇ ଧର୍ମ ॥
ଏହି ସମୁଦ୍ରେ ଅଛି ମଣିନାଗ ଗିରି ।
ଶତେକ ଯୋଜନ ଦୀର୍ଘ ପ୍ରତି ତାହାରି ॥
ସେ କେଣେ ଅଛି ନ ଦିଶଇ କିଛି ।
ଏହେନ୍ତେ ଘଟସୂତ୍ର ବିଧାତା କରିଅଛି ॥
ପଥର ଉପୁଚିଆଇ ନ ପଡ଼ଇ ତଳେ ।
ଏଣେ ସେ ପାରିହୋଇ ଯିବେ ମୋହର ବଳେ ॥
ଏତେବୋଲି ରାମ ହୋଇଲେକ ତୁନି ।
ସଂଧ୍ୟା ସମୟେ ସେ ଶୁଭଇ ଶଙ୍ଖଧ୍ଵନି ॥୭୦
ରବି ଅସ୍ତ ଗଲା ପହରେ ହୋଇଲା ନିଶି ।
ପହରକ ଉତାରେ ଉଦୟ ହୋଇଲାକ ଶଶୀ ॥
ଶ୍ରୀରାମ ଆଜ୍ଞା ଦେଲା ହନୁମନ୍ତକୁ ରାଇ ।
ସୁବଳୟା ଗିରିରେ ତୁ ଆଜ ଥିବୁ ରହି ॥
ସଂଗେ ଶତବଳ ଶୌରୀ ସେନାପତି ।
ଅଙ୍ଗଦ ନଳନୀଳ ଜମ୍ବେବ ପ୍ରଭୃତି ॥
ଥୋକାଏକ ସୈନ୍ୟ ସାଂଗେ ଘେନିଯାଅ ।
ଆଜ ମାହାବନ୍ଧ ରକ୍ଷା କରିଥାଅ ॥
ରାକ୍ଷସେ ମାୟାଭି କରନ୍ତି ନ ପୁଣ ଦ୍ଵନ୍ଦ ।
ଅନେକ କପଟ ଜାଣଇ ଦଶକନ୍ଧ ॥୮୦
ବଜ୍ର ଶର ପେଷି କରଇ ନ ପୁଣ ନାଶ ।
ଆଜକ ରଖଯାଇ ପବନର ଶିଷ ॥
ସୁଷେଣ ଅଂଗଦ ହନୁମନ୍ତ ତିନି ।
ସାଂଗେ ରୁକ୍ଷକପି ଅନେକ ସଇନି ॥
ସୁବଳୟା ପର୍ବତେ ଦେଲେ ନେଇ ଠଣା ।
ଏଥୁ ଅନନ୍ତରେ ଶୁଣିବା କହଣା ॥
ନିଶି ଶେଷ ହୁଅନ୍ତେ ଅରୁଣ ପ୍ରକାଶଇ ।
ସପତ ସମୋଦ୍ରେଣ ସୂର୍ଯ୍ୟ ତେଜ ଲାଗଇ ॥
ମଳୟ ପବନ ବହଇ ଧୀର ଧୀର ।
ନିଦ୍ରା ତେଜିଣ ଉଠିଲେ ରଘୁବୀର ॥୯୦
ନିତ୍ୟକର୍ମ ସାରି ସାଗରେ ନାହିଲେ ।
ସୁଗ୍ରୀବରକଇ ରାଇଣ ଆଜ୍ଞାଦେଲେ ॥
ଭୋ ମୈତ୍ର ଥାଟ ସଜ୍ଜଳା କର ।
ଲଗ୍ନ ହୋଇଲାକି ଜମ୍ବେବକୁ ପଚାର ॥
ଏସନ ସମୟେ ରୁକ୍ଷ କପିଯାନ୍ତି ।
ଶ୍ରୀରାମ ଚରଣେ ଓଳୋଗି ଶୁଅନ୍ତି ॥
ହନୁମନ୍ତ ଅଂଗଦ ଗଂଧ ମାରଦନ ।
ନଳ ନୀଳ ସହିତେ ତାରାକ୍ଷ ସୁଷେଣ ॥
ସୁବଳୟା ଗିରିରେ ଠଣା ଜଗିଥିଲେ ।
ରଘୁନାଥ ଛାମୁରେ ଦ୍ରୁଶନ ଯାଇକଲେ ॥୧୦୦
ପାୟେ ପଡ଼ି ଶୋଇ ଶିରେ କର ଦେଇ ।
ବଂଧ ରଖି ଆମ୍ଭେ ଥିଲୁ ଯେ ଗୋସାଇଂ ॥
ଲଂକାର ମୁଖରାବ ଶୁଭଇ ମହାଘୋର ।
ବେଗେ ଯିବାଦେବ ଅନକୂଳ କର ॥
ଶୁଣିଣ ଜମ୍ବେବକୁ ଶ୍ରୀରାମ ପଚାରି ।
ଋକ୍ଷରାଜା ବୋଇଲା ଅନୁକୂଳ କରି ॥
ଶୁକ୍ରଙ୍କର ବେଳା ହୋଇଲାକ ଆସି ।
ଆଗହୋଇ ସୈନ୍ୟ ଯାଉ ଆଜ୍ଞା ଦେସି ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ମାହାପାତ୍ର ସୋମନାଥ ମନ୍ତ୍ରୀବର ।
ସର୍ବଦା ଆଶ୍ରେ ଶଙ୍ଖଚକ୍ରଧର ॥

ସେ ନିଳଗିରି ଜଗନ୍ନାଥର ପ୍ରସାଦେ ।
ମୁହିଂ ତାହାର ପୁତ୍ର ଯେ ହୋଇଲି
ମହୀମଧ୍ୟେ ॥
ରାମାୟଣ ଗ୍ରନ୍ଥ କରିବାକୁ କଲଇଂ ଇଚ୍ଛା ।
ଜଗନ୍ନାଥ ସ୍ୱାମୀ ମୋର ପୂରାଅ ମନବାଞ୍ଛା ॥
ବଂଧ ପଡ଼ିବା ଦେଖି ଶ୍ରୀରାମ ହରଷ ।
ଅଂଗଦ ହନୁମନ୍ତକୁ ହକାରିଲେ ପାଶ ॥
ବୋଇଲେ ଋକ୍ଷ କପି ଯାଆନ୍ତୁ ଆଗସରି ।
ଏକେକୁ ଆରେକ ନୋହିବ ମରାମରି ॥
ବାଟ ସଂକଟ ପାଇବଟି ଘଞ୍ଚ ।
ଚଉକଟି ଲୋକ ବସାଇ ଠଣା ସଞ୍ଚ ॥
ଆଗର ଲୋକଙ୍କୁ ଆଗରେ ଛାଡ଼ିଦେବ ।
ପଛର ଲୋକମାନେ ମାଡ଼ି ନ ପଡ଼ିବ ॥
ଆବର କଥା ଏକ ଶୁଣ ସୁଗ୍ରୀବର ।
ବାଲି ବିଛିବ ବଂଧର ଉପର ॥
ପାଷାଣ ଭୂମୀ ଖାଲ କଣ୍ଟା ଅଛି ।
ଗମନ୍ତେ ବଥା ପାଇବେ ତରୁ ବଛି ॥
ଯୁଦ୍ଧର ବେଭାର ହାନି ଅପଚୟେ ।
ବାହୁଡ଼ି ଆସିବାକୁ ନ ଥିବ ନା ଭୟେ ॥
ହେତୁ ପାଇଲେଣ ଆସିବନା ଘୁଞ୍ଚି ।
ତହିଂକି ଆଗତ କରିଣ ଥିବା ସଂଚି ॥
ବାଲି ପକାଇ ବାଟ ସମତୁଲ କର ।
ଲତାପତ୍ର ଛେଦିଲେ ହୋଇବନା ଭଲ ॥
ଶୁଣି ସୁଗ୍ରୀବ ଯେ ହନୁମନ୍ତକୁ ବୋଲି ।
ବନ୍ଧର ଉପରେ ପକାଅ ନେଇ ବାଲି ॥
ଅଂଗଦ ସୁଷେଣ ଜୟେବ ନଳନୀଳ ।
ଅଧିଷ୍ଠାନ ହୋଇଣ ଏଥେ ଅଛନ୍ତି ସକଳ ॥
ଋକ୍ଷ କପି ବୀରେ ବାଲିନେଲେ ବହି ।
ବନ୍ଧର ଉପରେ ପକାନ୍ତି ତାହାନେଇ ॥
ବାଟକୁ ବଣଲତା ପତ୍ର ଥିଲା ମାଡ଼ି ।
ଋକ୍ଷ କପି ତାହା ପକାଉଛନ୍ତି କାଢ଼ି ॥
ଏସନ ସମୟେ ଏକଇ ଇନ୍ଦୁର ।
କ୍ରୀଡ଼ା ନିମନ୍ତେ ପଶଇ ସିନ୍ଧୁନୀର ॥
ତଟର ବାଲିରେ ଯାଇଂ ଲୋଟଗାଳି ।
ବଂଧର ଉପରେ ଝାଡ଼ଇ ନେଇ ବାଲି ॥
ଦେଖି ହନୁମନ୍ତ ଶ୍ରୀରାମକୁ ଚାହିଂ ।
ଭୋଦେବ ପର ଉପଗାରୀ ଅଟଇ ଏହି ॥
ଆମ୍ଭର ନିମନ୍ତେ ପଶି ସିନ୍ଧୁଜଳେ ।
ବାଲିରେ ଲୋଟଗାଳି ଦେଇ ଆସି କୂଳେ ॥
ସେ ବାଲି ବନ୍ଧ ଉପରେ ଯେ ଝାଡ଼ି ।
ଆମ୍ଭର ପାଇଂ ଦେବ ମୂଷାହିଂ ଦୁଃଖ ପଡ଼ି ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ଆଜ୍ଞାଦେଲେ ତାକୁ କତିକୁ ଘେନିଆସ ॥
ଶୁଣିଣ ମାରୁତି ଅଇଲା ଖର କରି ।
ମୂଷାକୁ ଘେନିଗଲା ବାମକରେ ଧରି ॥
ଶ୍ରୀରାମକୁ ଦେଖି ଓଳଗୋଇ ଇନ୍ଦୁର ।
ଆସ ଆସ ବୋଲି ଡାକନ୍ତି ରଘୁବୀର ॥
କତିରେ ବସାଇ ଦେହ ଆଉଂଷନ୍ତି ।
ଅନେକ ପ୍ରିୟ କଥା ମଧୁର କୁହନ୍ତି ॥
ବୋଲନ୍ତି ଧନ୍ୟ ତୁ ଅଟୁ ପୁଣ୍ୟ ଆତ୍ମା ।
ପର ଉପଗାରୀ ତୁ ମହତ ମହାତ୍ମା ॥
ପଶୁ ଜନ୍ତୁ ହୋଇ ଏଡ଼େ ତୋର ବୁଦ୍ଧି ।
ମୁହିଂ ଜାଣିଲଇଂ ତୁ ନିର୍ମଳ ଚଉନିଧି ॥
ଯାଅ ତୋତେ ପ୍ରାପତ ହୋଉ ସୁରଆଳ ।
ଏତେ ବୋଲି ଉଠିଲେ ଦଶରଥ ବାଳ ॥
ସର୍ବାଙ୍ଗେ ଚନ୍ଦନ ଲଲାଟେ କସ୍ତୁରୀ ।
ଅମଳାନ ବାସ ଉପୁରାଣ କରି ॥
ବାମେ ଯମଦାଢ଼ ତ୍ରୋଣ ଦୁଇ କାନ୍ଧେ ।
ଶିରେ ଜଟା ବାନ୍ଧି କୁସୁମ ଘେନି ଗନ୍ଧେ ॥
ବାମକରେ ଧନୁ ଦକ୍ଷିଣେ ଖଡ଼ଗ ।
ଯିବାକୁ ରଘୁନାଥ ହୁଅନ୍ତି ଉଦ୍‌ବେଗ ॥
ଲକ୍ଷଣ ସଜହୋଇ ମିଳିଲେକ ଆସି ।
ସୁଗ୍ରୀବକୁ ଚାହିଂ ଶ୍ରୀରଘୁନାଥ ପୁଛି ॥
ଭୋ ମୈତ୍ର ବଂଧେ ପଡ଼ିଲାକ ବାଲି ।
ହୋଇଦେବ ବୋଲି କପିରାଜ ବୋଲି ॥
ଲତାପତ୍ର ଡାଳ ସବୁ କଢ଼ାଇଲି ।
ଖୋଲ ଖାଲ ଟିକର ସବୁ ଏକାକଲି ॥
ଆଖି ବୁଜିଗଲେ କିଛି ଚିନ୍ତା ନାହିଂ ।
ଶୁଣିଣ ଅଳପ ହସନ୍ତି ରଘୁସାଇଂ ॥
ରାମେଶ୍ୱର ବୋଲି ଶଙ୍କରେ ପୂଜାକଲେ ।
ଶିରେ ପ୍ରସାଦେ ଘେନି ହୃଦେ ବିଚାରିଲେ ॥
ନଳକୁ ବୋଇଲେ ତୁ ହୁଅ ଆଗିଆଣି ।
ସାଙ୍ଗେ ବଳ ଥିବେ ତୋର ଶତେକ
ଖେଉଣୀ ॥
ଶତବଳ ସେନାପତି ଗନ୍ଧ ମାରଦନ ।
ପଛିଆଣି ଦଣ୍ଡେ ତୁମ୍ଭେ ସମ୍ଭାଳିନିଅ
ସୈନ୍ୟ ।
ଏତେବୋଲି ହନୁ କାନ୍ଧରେ ବିଜେକରି ।
ଗରୁଡ଼ି ପିଠିରେ ଯେହ୍ନେ ବିଜୟେ ଶ୍ରୀହରି ॥
ଲକ୍ଷଣକୁ ବହିଲା ବାଳୀର କୁମର ।
ଅଇରାବ୍ରତ ଆରୋହି କି ଅଇଲା
ବଜ୍ରଧର ॥୯୦
ପାଞ୍ଚକୋଶ ମଧରେ ପଟୁଆର କେହ୍ନିନାହିଂ ।
ବାମପାଶେ ଅଛି ଯେ କିଷ୍କିନ୍ଧ୍ୟାର ସାଇଂ ॥
ଡାହାଣେ ବୀର ନୀଳ ଛତ୍ରୀ ଅଚାର୍ଗଳ ।
ପଶ୍ଚିମେ ଗନ୍ଧମାର୍ଦ୍ଦନ ଅଛନ୍ତି ସକଳ ॥
ଜୟେବ ସୁଷେଣ ତାରାକ୍ଷ ସୁଶୋଦନ ।
ଗବାକ୍ଷ ମହୀନ୍ଦ୍ର କେଶରୀ ଚନ୍ଦନ ॥
ଡାଳିମ୍ଭ ମରୁତ ସାରାସ ପାରାସ ।
ଦୁନ୍ଦୁମ୍ଭ ଦଧିମୁଖ କଞ୍ଚଣସୁନାସ ॥
ବଳିମୁଖ କାଳିମୁଖ କାଳିଞ୍ଜନ ବୀର ।
ଶଉରୀ ସେନାପତି ସଂଗେ ଅଛନ୍ତି
ଅପାର ॥୧୦୦
ବାଜଇ ଟମକ ନିଶାଣ ଶଙ୍ଖଧ୍ୱନି ।
ସର୍ଗେ ଦେଖୁଛନ୍ତି ସକଳ ସୁରମୁନି ॥
ଅପଛରୀ ବିଦ୍ୟାଧରୀ ହୁଳହୁଳି ଦ୍ୟନ୍ତି ।
ଦେଖନ୍ତି ଶ୍ରୀରାମ ଲଙ୍କାକଇ ଯାନ୍ତି ॥
ଦକ୍ଷିଣ ମୂର୍ତ୍ତି ଏ ଜାନେକୀର ସାଇଂ ।
ଆନନ୍ଦେ ଦେବଗଣ ହରଷ ସୁରସାଇଂ ॥
ଜୟେ ଜୟେ ଶବଦ ଶୁଭଇ ଧ୍ୱନି ପରେ ।
ସେତୁବନ୍ଧ ଉପରେ ବିଜୟେ ରଘୁବୀରେ ॥
ଲଙ୍କାକୁ କଟକାଇ ଦଶଦିଗ ଶଙ୍କି ।

ପାତାଳେ ବାସୁକୀ କୁରୁମ ଚମକି ॥ ୧୦
ମୁଖରାବ ଶବଦେ ସାହେର ଉଛୁଳି ।
ଯାନ୍ତେଣ ମେଦିନୀ ହୋଇଲା ହାଲହୋଳି ॥
ତିନିଘଡ଼ିମାନେ ବିଜେ କରିଗଲେ ।
ବେଳ ଅସ୍ତମାନେ ସୁବଳୟାରେ ପ୍ରବେଶ
ହୋଇଲେ ॥
ଦେଖନ୍ତି ପର୍ବତ ଅପୂର୍ବ ରମ୍ୟସ୍ଥାନ ।
ସୁସ୍ୱାଦ ଫଳ ଅଛଇ ପୂରିବନ ॥
ବିବିଧ ପ୍ରକାରେ କୁସୁମେ ଆମୋଦନ୍ତି
ବାସ ।
ଦେବନଦୀ, ଝରଝର ବହଇ ଚଉପାଶ ॥
ଶୁକଳ ବର୍ଣ୍ଣ ଅଟଇ ଗିରିବର ।
ଦୁଇକୋଶ ଅଟଇ ଊର୍ଦ୍ଧ୍ୱର ଶିଖର ॥୨୦
ଯୋଜନେକ ମାଡ଼ି ବସିଅଛି ଗିରି ।
ବିଧାତା ଭିଆଇଲା ତାହା ସାତପୁର କରି ॥
ଉପରେ କୋଶେକକ ଅଛଇ ତା ଅର୍ବ ।
ଏକଖଣ୍ଡ ଶିଳା ସ୍ଫଟିକର ଭାବ ॥
ଗିରିବରକୁ ଦେଖିଣ ହନୁମନ୍ତକୁ ପଚାରି ।
ଆଗେ ଦିଶୁଅଛି ହୋ କେବଣହିଂ ଗିରି ॥
ହନୁମନ୍ତ ବୋଇଲା ଦେବ ସେ ସୁବଳୟା
ପର୍ବତ ।
ଧ୍ୱଜମୟେ ଶରୀର ଦିଶଇ ସବୁ ଶ୍ୱେତ ॥
ଏଥି ଗଡ଼ କରିଣ ହୋ ରହିବା ଗୋସାଇଂ ।
ଲଙ୍କା ପୋଡ଼ିବା କାଳେ ଦେଖିଯାଇଅଛି
ମୁହିଂ ॥୩୦
ଏଥି ବସିଥିଲେ ଲଂକାଯାକ ଦିଶଇ ।
ଭୋଦେବ ତୋହୋର ବିଚାରକୁ କିସ
ଆସଇ ॥
ଶ୍ରୀରାମ ବୋଇଲେ ହୋ ଏଥିସେ ରହିବା ।
ଏହୁ ଭଲ ସ୍ଥାନ କିମ୍ପାଇଂ ଛାଡ଼ିବା ॥
ଏସନେକ ଭାଳିଣ ଯାଆନ୍ତି ବଳ ଚଳି ।
ଆଗିଆଣି ଦଣ୍ଡ ଦକ୍ଷିଣ କୂଳେ ମିଳି ॥
ବୀରତୂର ବଜାଇ କିଳିକିଳା ରାବଦେଲେ ।
ସୁବଳୟା ପର୍ବତ ଉପରେ ଉଠିଲେ ॥

ଏଥି ଅନ୍ତେ ଦେବ ରଘୁନାଥ ।
କୋଦଣ୍ଡ କାଣ୍ଡ ଖଣ୍ଡା ଅଛଇ ବେନି
ହସ୍ତ ॥୪୦
ଶୁଭ ବେଳ ପାଇଣ ସୁବଳୟାରେ ପାଇ ।
ଆଗେଣ ଦେଖିଲେ ଅଛଇ ଦେବନଈ ॥
ହନୁମନ୍ତ କାନ୍ଧରୁ ଓହ୍ଲାଇଲେ ତତ୍‌କ୍ଷଣି ।
ସନ୍ଧ୍ୟା ସୁମରିଲେ ରଘୁକୁଳମଣି ॥
ଅଙ୍ଗଦ ପିଠିରୁ ଲକ୍ଷଣ ଓହ୍ଲାଇଲେ ।
ଯାଇଂଣ ଶ୍ରୀରାମଙ୍କୁ ନମସ୍କାର କଲେ ॥
ସେହି ସନ୍ଧ୍ୟା ସୁମରିଲେ ଦେବନଦୀ
କୂଳେ ।
ଶଯେ କ୍ରୁଣ ଅଇଲେ ସାତଘଡ଼ି ବେଳେ ॥
ଦୁଇଘଡ଼ି ଉତ୍ତାରୁ ଉତ୍ତର କୂଳୁଂ ଗଲେ ।
ସାତଘଡ଼ିମାନେ ଲଙ୍କାରେ ମିଳିଲେ ॥୫୦
ପବନହୁଂ ବେଗେ ଚଳିଲାକ ଥାଠ ।
ଗହଣରେ ଘାଏ ନପାଇଲେ ଭଲ ବାଟ ॥
ପଛର ଲୋକେ ଆସି ନ ପାରନ୍ତି ।
ହିୟାରେ ହିୟା ଲାଗି ହୋଇଲେ ଯନ୍ତାଯନ୍ତି ॥
ଆଗିଆଣି ଥାଠ ଭଲ ମନ୍ତେ ଗଲେ ।
ପର୍ବତ ଉପରେ ଉଠିଣ ରଡ଼ିଦେଲେ ॥
ଶ୍ରୀପୟରେ ଚାଲନ୍ତି ରଘୁକୁଳ ନାଥ ।
ସୁଗ୍ରୀବର ଉପରେ ଦେଇଣ ବାମହାଥ ॥
ଗିରିବର ଉପରେ ଉଠିଲେ ଦେବସାଇଂ ।
ଦେଖିଲେ ଶଉଚ ନିର୍ମଳ ଚାରୁଭୂଇଂ ॥୬୦
ଦଶକ୍ରୁଣ ଓସାର ଶତେକ କ୍ରୁଣ ଦୀର୍ଘ ।
ଗଡ଼ ପର୍ବତ ଉପରେ ଅଛଇ ଅପୂର୍ବ ॥
ଶ୍ରୀରାମ ପଚାରନ୍ତି ଏ ଅଟଇ ଭଲ ସ୍ଥାନ ।
ସିନ୍ଧୁକୂଳ ମାଡ଼ିଣ ରହୁ ଆମ୍ଭ ସୈନ୍ୟ ॥
ଏହି ସୁବଳୟା ଗିରି ଆମ୍ଭର କଟେକ ।
ଏଥି ଥାଇଂ ଆମ୍ଭେ ବିଧସିଂବା ଲଙ୍କ ॥
ସୁଗ୍ରୀବରକୁ ଯେ ବୋଇଲେ ମୈତ୍ର ଶୁଣ ।
ପାଗିହୋଇ ଅଇଲାର ସୈନ୍ୟ କେତେ ଗଣ ॥
ଯୂଥପତିମାନଙ୍କୁ ଆଜ୍ଞା ଦିଅସି ରାଇ ।
ଏକେ ଆରେକ କଳି ନକରିବାର
ପାଇଂ ॥୭୦

ଋକ୍ଷ ବାନର ବଳକୁ ମୁଂ କଳିଂ ଭରସା ।
ଶତ୍ରୁର କଡିରେ କଲଇଂ ଆସି ବସା ॥
ଦୁଷ୍ଟପଣ କଲେ କଳିବ ବଇରି ।
ଆମ୍ଭର ବୋଇଲା ବୋଲ ଆସହୋ ତିଆରି ॥
ସୀତ୍ୟାକୁ ଆଣିମାର ଅଟଇ ଆମ୍ଭର ମୂଳ ।
ଅନୁବ୍ରତେ ସେକଥା ଚିନ୍ତୁଥିବେ ବଳ ॥
ଆବର କଥା ଏକ ଶୁଣିମା କପିରାୟେ ।
ଯେତେ ଥାଠ ଆମର ସାଙ୍ଗରେ ପାଗିହୋଏ ॥
ଏତେକ ଘେନିଣ ନୀଳ ବୀର ଯାଉ ।
ଆଗିଆଣି ହୋଇଣ ବାଟେ ରହିଥାଉଂ ॥୮୦
ପଛର ସଇନି ତାର ଶ୍ୱଶୁର ଘେନିଆସୁ ।
ତାହାର ଅଙ୍ଗବଳ ତାହାର ସଙ୍ଗେ ମିଶୁ ॥
ଶୁଣିଣ ସୁଗ୍ରୀବର ଯୋଡ଼ଇ ବେନିକର ।
ଶୁଣ ଦେବ ଠାକୁର ତୈଲୋକ ଈଶ୍ୱର ॥
ବୋଇଲ ଯେ ସୈନ୍ୟ କେତେକ ଅଇଲା ।
କାହାର ବଳେ ଏ ହୁଅଇ କହିଲା ॥
ପଚିଶ ଯୂଥପତି ଏ ଅଟନ୍ତି ମହାବୀର ।
ଏହାନ୍ତ ସମାନ ନୁହନ୍ତି ସୁରେଶ୍ୱର ॥
କାହାର ଶଂଖେ ପଦ୍ମେ ମଭୁତେ ବଳ
ଖଟଇ ।୯୦
ଖର୍ବେ ନିଖର୍ବେ କାହାର ଅଗଣିତା ଅଟଇ ॥
ଆଉରି ଅଛନ୍ତି ଯେ ଲକ୍ଷେକ କୋଟିସେନା ।
ଶୂନ୍ୟ ଲେଖି ଜାଣି ସେ ଏକସର
ହୋଇକିନା ॥
ସମୋଦ୍ର ସମାନେ ଅଟଇ ତୋହୋର ବଳ ।
କେହୁ ଭାର୍ଜନ ହୋଇଂ କରିଣ ଜାଣିମାକ
ଥଳ ॥
ସୁଗ୍ରୀବର ବୋଲ ଶୁଣି ଶ୍ରୀରାମ ଆନନ୍ଦ ।
ବିଭୀଷେଣକୁ ଚାହିଂଣ ବୋଲନ୍ତି ଆଦିକନ୍ଦ ॥
ଦୈତ୍ୟଙ୍କର ମାୟା ତୁ ଜାଣି ବୀର ଥାସି ।
ତୋହୋର ବିଶ୍ୱସେ ମୁଂ ଏଥକଇ ଆସି ॥
ଶିରେ କର ଦେଇଣ ବୋଲଇ ବିଭୀଷେଣ ।
ଏଥକଇ ଚିନ୍ତା ନକର ରଘୁରାଣ ॥୧୦୦
ଶୁଣିଣ ଶ୍ରୀରାମ ହନୁମନ୍ତକୁ ଚାହିଂ ।

ସୁବଳୟା ଗିରି ରଖିଥିବୁ ତୁହି ॥
ନୀଳ ସେନାପତିକି ହକାରିଲେ ପାଶ ।
କୋମଳ କରିଣ କହିଲେ ବିଶ୍ୱାସ ॥
ଶତବଳ ମାରୁତିକି ସଙ୍ଗେ ଘେନିଯିବୁ ।
ଆଗିଆଣି ଦଣ୍ଡ ଆଗରେ ତୁ ଥିବୁ ॥
ଶୁଣି ଦୁଇବୀର ପର୍ବତକୁ ଗଲେ ।
ରୋମାବାପକୁ ଶ୍ରୀରାମ କତିକି ହକାରିଲେ ॥
ପଛିଆଣି ଦଣ୍ଡକୁ ବେଗେଣ ତୁ ଯାସି ।
ସୁଷେଣକୁ ଘେନିଣ ସୈନ୍ୟ ସମ୍ଭାଳସି ॥୧୦
ସୁଗ୍ରୀରେ ଜମ୍ୱେବ ଲକ୍ଷଣ ଜନ ତିନି ।
ବାମ ପାଶୁଶେ ଥିବେ ଅନେକ ସୈନ୍ୟ
ଘେନି ॥
ଅଙ୍ଗଦ ମହେନ୍ଦ୍ର କୁମୁଦ ନଳନୀଳ ।
ଡାହାଣେ ରହ ତୁମ୍ଭେ ଘେନିଣ ଅଙ୍ଗବଳ ॥

ଆବର ସଇନି ଘେନିଣ ଥୋକାଏକ ।
ହନୁମନ୍ତ ସାଙ୍ଗେଣ ଏ ବୁଲିବେ କଟେକ ॥
ଏତେବୋଲି ଶ୍ରୀରାମ ଦେଲେ ଫରମାଣ ।
ବୋଲନ୍ତି ସଦାଶିବ ଶାକମ୍ୱେରୀ ଶୁଣ ॥
ସୁନ୍ଦରା କାଣ୍ଡ ଏଯେ ଶ୍ୟାମବେଦୁ ଜାତ ।
ବାଲମ୍ମିକ ଆଗେ ଯାହା କହିଲେ
ବିଧାତ ॥୨୦
ତାହା ତୋହୋର ଆଗେ କହିଲିରେ ସହି ।
ସୁବଳୟାଗିରିରେ ଶ୍ରୀରାମ କଟକ କରି ରହି ॥
ଏଥୁ ଅନନ୍ତରେ ଗୋଳ ହୋଇବ ଅପାର ।
ରାମ ରାବଣ ଯୁଦ୍ଧ ଅମୃତମୟେ ସାର ॥
ଶ୍ରୀଜଗନ୍ନାଥ ପ୍ରସନ୍ନେ ଯେ ବଳରାମ ଦାସ ।
ଶ୍ରୀ ଜଗମୋହନ ରାମୟେଣ କଲଇଂ
ପ୍ରକାଶ ॥

ଶ୍ରୀରାମାୟେଣ ଗ୍ରନ୍ଥ ଯେ ପବିତ୍ର ଆଛାନ ।
ଯେକମନ ହୋଇଂଣ ଶୁଣିମ ଯେଉଂ ଜନ ॥
ପିବନ୍ତେଣ ଭକ୍ତି ଯେ ମରନ୍ତେଣ ମୁକ୍ତି ।
ନିର୍ମଳ ହୋଅନ୍ତି ଯେ ଯେ ଗନ୍ଥ ଶୁଣନ୍ତି ॥୩୦
ଦେବା ଦୟା ଧର୍ମ ହୋଅଇ ଉଦୟେ ।
ଜନ୍ମ ଜନ୍ମାନ୍ତର ଦୁରିତ ଯିବ ଛୟେ ॥
ଶ୍ରୀରାମ ରହିଲେ ଯେ ସୁବଳୟା ପର୍ବତରେ ।
ରାବଣକୁ ମାରିବେ ଯେ ଆପଣା ହାଥରେ ॥
ଶୁଣିମା ଶାକେମ୍ୱରୀ ଗୋ ପରମେ ଯେହୁ ରସ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ମାହାପାତ୍ର ସମନାଥର ମୁଂ ଅଟଇ ଯେ ସୁତ ।
ବଳରାମ ଦାସ ମୁଂ ଯେ ଶ୍ରୀରମର
ଭୃତ୍ୟ ॥୩୯

**ଇତିଶ୍ରୀ ଜଗମୋହନ ରାମାୟଣ**
**ସୁନ୍ଦରା କାଣ୍ଡ ସମ୍ପୂର୍ଣ୍ଣ**

# ଲଙ୍କା କାଣ୍ଡ

ବନ୍ଦଇ ଜଗନ୍ନାଥ କମଳାର ପତି ।
ସର୍ବଦେବ ନିସ୍ତାରଣ ପ୍ରମବ୍ରହ୍ମ ମୂର୍ତ୍ତି ॥
ଜଗତ ଜନ୍ତୁ ହୃଦେ ସର୍ବଦା ଯାହାର ବାସ ।
ଭଗତ ମଛଳ ସ୍ୱାମୀ ପୁରାଣ ପୁରୁଷ ॥
ଅପାର ମହିମା ଯେ ଶରଣଜନଙ୍କ ସାହା ।
ଗରୁଡ଼ ଆସନ ଦେବ ଶଙ୍ଖ ଚକ୍ର ବେନି ବାହା ॥
ମଛ କୂର୍ମ ବରେହା ଯେ କେଶରୀ ବାମନ ।
ପ୍ରଶୁରାମ ଶ୍ରୀରାମ ଦେବକୀର ନାନ ॥
ବଉଦ କଳକୀ ଦଶ ରୂପ ଧରି ।
ସହସ୍ରେ ମୂରତି ଧରି ଯେ ଅସୁରନ୍ତ ମାରି ॥୧୦
ପୃଥିବୀର ହିତେ ଦେବଙ୍କର ଛଳେ ।
ବେଳେ ବେଳେ ଅବତାର ହୋଇ ରବିତଳେ ॥
ନୀଳଗିରି ବିଜୟେ ଅପୂର୍ବ ରୂପ ସାର ।
ଡାହାଣେ ବଳରାମ ସୁଭଦ୍ରା ମଧର ॥
ବାମେଣ ସୁଦର୍ଶନ ଡାହାଣେ ଶୂଳପାଣି ।
ଆଗେ ଖଗପତି ଆକାଶେ ଦିନମଣି ॥
ପଛେଣ ବିମଳା କମଳା ବକ୍ଷସ୍ଥଳେ ।
ଭୋଗ ବିଳସନ୍ତି ପାଷାଣ ଦେଉଳେ ॥
ପୂର୍ବେଣ ଇନ୍ଦ୍ରଦ୍ୟୁମନ ବୋଲିଣ ଯେକ ମନୁ ।
ସେ ଆଣିଲା ସ୍ୱାମୀଙ୍କି ବୈକୁଣ୍ଠ ଭୁବନୁ ।୨୦।
ଦିବ୍ୟ ଅବତାର ପୂର୍ବେ ବିଧାତା ଆଣିଦେଲେ ।
ଭାବେଣ ଜଗନ୍ନାଥ ତହିଂ ବିଜେ କଲେ ॥
ବାସୁଦେବ ଆସନ୍ତେଣ ଅଲେଖ ପୁରୁ ଖସି ।
ମୃତ୍ୟୁପରେ ନୀଳଗିରିରେ ଆସି ବସି ॥
ବିବିଧ ବିନୋଦେ ଯେ କରନ୍ତି କ୍ରୀଡ଼ାରସ ।
ନିଯୋଗେଣ ଦେଲେ ସୁଗନ୍ଧ ପୁଷ୍ପବାସ ॥

ଚନ୍ଦନ କର୍ପୂର କସ୍ତୁରୀ ଗନ୍ଧ ଗୁଣ୍ଡି ।
ନାନା କୁସୁମେ ସ୍ୱାମୀ ହୋଇଛନ୍ତି ମଣ୍ଡି ॥
ଦେବାଙ୍ଗ ପାଟ ନେତବସ୍ତ୍ର ପରିହରଣ ।
ଶୁଦ୍ଧ ସୁବର୍ଣ୍ଣର ହାର ଯେ କଙ୍କଣ ।୩୦।
ବିଦ ମୁଦି ବାହୁଟି ଶିକୁଳି ତାଡ଼ ବଳା ।
କ୍ଷୁଦ୍ର ମୁକୁତା କଦମ୍ବ ରତ୍ନମାଳା ॥
ବିବିଧ ପଦେକ ଭିନ ଭିନ ପରି ।
କଣ୍ଠେଣ ମାଣିକ୍ୟମାଳି ଶତେସରି ॥
ହୀରା ନୀଳା ମାଣିକ୍ୟ ପୋଏଳା କୁରୁବିନ୍ଦ ।
ବ୍ରହ୍ମଜାତି ହୀରା ଘଟଣ ଅରବିନ୍ଦ ॥
ଗୋପୀନାଥ ଅବତାର କେବଣ ପଦେକ ।
କେବଣହିଂ ମାଳେ ସୁବର୍ଣ୍ଣ ବ୍ୟାଘ୍ରନଖ ॥
କେବଣହିଂ ପଦେକ କଳ୍ପତରୁ କମ ।
କାହିଁ ସୀତ୍ୟା ଘେନି ଅଭିଷେକ ଶ୍ରୀରାମ ।୪୦।
କେବଣହିଂ ମାଳେ କୂର୍ମ ଅବତାର ।
ମଛର ନାୟେକ ଅଟଇ କେବଣହିଂ ହାର ॥
କେ ଚନ୍ଦ୍ରଉଦିଆ କେ ସୁବର୍ଣ୍ଣ ଆଛନ ।
କାହିଂ ଲକ୍ଷ୍ମୀ ଘେନି ବିଜୟେ ଭଗବାନ ।
କାହିଂ ନରସିଂହ କାହିଂ ବିଶ୍ୱନାଥ ।
କାହିଂ ବରୁଣ ଚଢ଼େ ସହସ୍ରେ ଉଲୋଳ ରଥ ॥
କାହିଂ ବାଳଗୋପାଳ ହରିଡ଼ା କଣ୍ଠିମାଳ ।
କନେକ ଚମ୍ପାମାଳ ପୂରିଛି ଗଣ୍ଡସ୍ଥଳ ॥
ହେମ ନାଗେଶ୍ୱର ମାଣିକ୍ୟରେ ମିଶା ।
ମାଣିକ୍ୟର କିରଣ ଜଳଇ ମହାନିଶା ॥ ୫୦।
ନାନା ପୁଷ୍ପମାନ ପଟାନ୍ତର କରି ।
ଅନେକ ଅଳଙ୍କାରମାନ ସ୍ୱାମୀ କଣ୍ଠରେ ଛନ୍ତି ଭରି ॥
ନବରତ୍ନହାର ଯେ ଶୋହଇ ଗଣ୍ଡସ୍ଥଳ ।
ଶ୍ରବଣେ ପ୍ରକଟ କୁଣ୍ଡଳ ଯୁଗଳ ॥

ମଉଳି କିରଟୀ ଯେ ମୁକୁଟ ବିତପନ ।
ମଣିଗଣ କିରଣ ବିରାଜଇ ଛନ ଛନ ॥
ଗଳାରେ ଲମ୍ବଇ ଯେ ଗଜମୋତି ହାର ।
ମାଣିକ୍ୟର ପଗଡ଼ ନୀଳାର କେଶର ॥
ଶ୍ରବଣ ଶିଖରେ ସଟିକ ଚାରୁ ଛନ୍ଦ ।
ଜାଣି ଅବତଂଶ ପ୍ରକଟ କୃବିନ୍ଦ ॥୬୦॥
ଶୁଦ୍ଧ ସୁବର୍ଣ୍ଣର କଙ୍କଣ ଶୋହେ ଶ୍ରୀଭୁଜ ।
ଜାମ୍ବୋନଦ ଘଟଣ ଶଙ୍ଖ ଚକ୍ର ସଜ ॥
ଶାତକୁମ୍ଭ ପଦ୍ମ ଚରଣ ଯୁଗଳ ।
ପ୍ରତିମା ରୂପେ ଅଛି ବିନତାର ବାଳ ॥
ପ୍ରକଟ ତୋଡ଼ର ନୂପୁର ବେନି ପାୟେ ।
ନେତ ପଟନୀ ପିନ୍ଧିଣ ଦେବରାୟେ ॥
ଶିରେ ଶିରୀକାପଡ଼ା ଯେ ସୁରଙ୍ଗଣୀ ପାଟ ।
ଭାଲ ପରେ ଶୋଭା ଯେ ଅଭିଷେକ ମୁକୁଟ ॥
ହୃଦୟ ପରେ ଦୋସରି କୁସୁମମାଳା ଶୋହେ ।
ଜଉତିଷ ଜଣାଇଲା ଅନୁକୂଳ ହୋୟେ ॥୭୦॥
ଅରୁଣ ପ୍ରକାଶେ ଅମୃତ ଯେ ବେଳ ।
ଡାହାଣାବ୍ରତେକ ଶଙ୍ଖ ଶବଦ କୋଡୋହୋଳ ॥
ପୁଷ୍ୟା ନକ୍ଷତ୍ର ଆବର ଧନୁମାସ ଅନ୍ତେ ।
ବନ୍ଦାପନା ବିଧି ଯେ ହୋଇବେ ଅନନ୍ତେ ॥
ଦିବ୍ୟବେଶ ହୋଇଲେ ଯେ ସାହେର କୁମାରୀ ।
ନବରଙ୍ଗ ପାଟେକ ପରିହରଣ କରି ॥
ଉପରେ ଉପରାଣ ଦେଲାକ ଦାସୀ ନେତ ।
ବାହେଣ ବାହୁଟି ଦୁଇ ଶୁଦ୍ଧ ସୁବର୍ଣ୍ଣ ମତ ॥
ଜଗନ୍ନାଥ କୋଳରେ ବସଇ ଦେବୀ ଯାଇଂ ।
ପରମ ସନ୍ତୋଷ ହୋଇଲେ ବ୍ରହ୍ମାଣ୍ଡ ଗୋସାଇଂ ॥୮୦।

କନେକର ଦଣ୍ଡ ତୋଳି ଧରନ୍ତି
ଭୃତ୍ୟମାନେ ।
ଶ୍ରୀହରି ଶବଦ କରନ୍ତି ସୁଜ୍ଞଜନେ ॥
ଯୁବତୀଜନେ ମିଳି ହୁଳହୁଳି ଦିଅନ୍ତି ।
ବିଦୁଜନେ ବେଦ ଆଧ୍ୟାନ କରନ୍ତି ॥
ଜଗନ୍ନାଥର ବନ୍ଦାପନା ଦେଖନ୍ତି ସର୍ବଦାସ ।
ଦେଖନ୍ତାଜନଙ୍କର ବଇକୁଣ୍ଠ ବାସ ॥
ସୁବର୍ଣ୍ଣ ଥାଳିରେ ଦୁର୍ବାକ୍ଷତ ଘେନି ।
ବାସୁଦେବଙ୍କୁ ଅର୍ଘ୍ୟ ଦିଅନ୍ତି ସୁରମୁନି ॥
ଲକ୍ଷ୍ମୀନାରାୟେଣ ଯେ ହୁଅନ୍ତି ବନ୍ଦାପନା ।
ଦେଖିଲେ ମହାପାତେକ ନ ରହଇ
ନିନା ॥୯୦॥
ସେ କନେକ ଦଣ୍ଡ ନବରତ୍ନ ମୟେ ।
ହରିର ଦଶରୂପ ପିତୁଳି କମ ହୋୟେ ॥
ନେତର ଚିରାଳ ଗଜମୋତି ଝରା ।
ଉପରେଣ କମ ବ୍ରହ୍ମଜାତି ହୀରା ॥
ସୁବର୍ଣ୍ଣର ବେଷ୍ଟେ ଯେ ଲମ୍ବଇ ପାଟ ଝୁମ୍ପା ।
ଜାଣି ପଟାନ୍ତର ନବଗ୍ରହ ଥୋପା ॥
ସୁବର୍ଣ୍ଣ ଦୀପ ଯେ ନେତର ବଳିତା ।
ଅର୍ଘ୍ୟ ଘେନି ବନ୍ଦାବନ୍ତି ଶୁଦ୍ଧ ଯେ ବନିତା ॥
ପରମ ପୁରୁଷ ସରସ ବଦନ ।
ଦେଖିଣ ଦୁସ୍ତରୁ ତରିବେ ସର୍ବଜନ ॥୧୦୦॥
ଅଯୋଧ୍ୟାରେ ଅବିଷେକ ଯେସନେକ
ରୀତି ।
ନୀଳଗିରିରେ ତେସନେକ ବନ୍ଦାପନା
ହୁଅନ୍ତି ॥
ମୁହିଂ ବଳରାମ ଦାସ ତହିଂ ହାଦେ ଥିଲି ।
ଲକ୍ଷ୍ମୀ ନାରାୟେଣଙ୍କର ଆନନ୍ଦ ଦେଖିଲି ॥
ତେଣୁ ସେ ସକଳ ପାପ ମୋହୋର ଗଲା ।
ରାମାୟେଣ ଗ୍ରନ୍ଥ ମୋହୋର ମୁଖରୁ ସ୍ଫୁରିଲା ॥
ତେଣୁ ବିଚରାଇଂ ମୁଂ କହିବି ରାମକେଳି ।
ପାର୍ବତୀ ଆଗେ ଯାହା କହିଲେ ତ୍ରିଶୂଳୀ ॥
ବାଲ୍ମିକି ଅଗ୍ରତେ ବିଧାତା ଯାହା ଭଣି ।
ସେ ମୁନିର ପ୍ରସାଦେ ତରିଲେ
ଚାରିଖାନି ॥୧୦॥
ସାମବେଦୁଂ ସମ୍ଭୂତ ରାମାୟେଣ ପୁରାଣ ।
ନାରଦଙ୍କ ମୁଖେ ଯେ ହୋଇଲା ଉଚ୍ଚାରଣ ॥
ଆପଣେ ସରସ୍ୱତୀ ହୃଦରେଣ ଥାଇ ।
ଗ୍ରନ୍ଥ ବଖାଣିଲେ ପ୍ରସନ ମନ ହୋଇ ॥
ଚଉଦ ଖଣ୍ଡ ମହାନାଟେକ କାବ୍ୟରସ ।
ପଞ୍ଚଶ ସହସ୍ର ଶିଲୋକ ସାମବେଦୁଂ
ପରକାଶ ॥
ଯେହାଉଂ ଆଗତ ଯେ ପୁରାଣ ନ ଥିଲା ।
ଯେହାର ଉଦେ ହୁଅନ୍ତେ ଜଗତେ
ପ୍ରକାଶିଲା ॥
ତେଣୁ ସେ ମହାନାଟେକ ଯେହାର ନାମ ।
ଶ୍ରୀରାମ ଚରିତ ଅତି ଅନୁପାମ ॥୨୦॥
ବିଦୁଜନ ମୁଖେ ଶୁଣିଲି ବାକ୍ୟ ଛନ୍ଦ ।
ହେଲେ ନାଶିଲା ମୋର ସଂସାର ମୋହ
ବନ୍ଧ ॥
ମନେ ମନେ ବିଚାର କରଇ ମୁହିଂ ନିତି ।
ବିଷ୍ଣୁ ଦେବତାଙ୍କୁ ହୋଇବି ଭଗତି ॥
ଶ୍ରୀରାମ ମହିଂମା ମୁଂ କରିବି ସୁମରଣ ।
ହେଲେ ଖଣ୍ଡିବି ମୁଂ ଅକାଳ ମରଣ ॥
ରଘୁକୁଳତିଳକ କରିବେ ମୋତେ ଦୟା ।
ବାସୁଦେବ ଭଗତି କି ନୋହିଲା ମୋତେ
ମାୟା ॥
ଜଗନ୍ନାଥ ସ୍ୱାମୀ ନୀଳଗିରିରେ ଯାର ବାସ ।
ସେ ପ୍ରଭୁର ଦାସ ମୁଂ ଯେ ବଳରାମ
ଦାସ ॥୩୦॥
ସୋମନାଥ ମହାପାତ୍ର କୋଳରେ ସମ୍ଭୂତ ।
ଯହୁଂ ପିତା ମୋର ବିଷ୍ଣୁରେ ଭଗତ ॥
ତେଣୁ ଜଗନ୍ନାଥ ଦୟା ମୋତେ କଲେ ।
ରାମାୟେଣ ଗ୍ରନ୍ଥ ମୋ ମୁଖରୁ ଉଚ୍ଚାରିଲେ ॥
ଜଗତର ହିତେ ଅନେକ ଯତ୍ନ କରି ।
ଶ୍ରୀରାମ ଚରିତ ମୁଂ କହିଲି ସୁମରି ॥
ଆଦି ଅଯୋଧ୍ୟା ଆରନ୍ୟେକ କଥା ।
ଇଷ୍କିନ୍ଦା ସୁନ୍ଦରା କାଣ୍ଡର ବେବସ୍ଥା ॥
ଯେବେ ଲଙ୍କା କାଣ୍ଡ ମୁଂ କହିବାକୁ
ଭାଳଇଂ ।
ସୂଚୀମୂନେ ଘେନି ପର୍ବତ ଟାଳଇଂ ॥୪୦॥
ରାମ ରାବଣର ହୋଇବାକ ସମର ।
ଅସଂଖ୍ୟ କଥା ଏଯେ ଅତିହିଂ ଅଗୋଚର ॥
ଦେଖିଲାର କଥା କହିତ ନୁଆରି ।
ମୁହିଂ କେହ୍ନ କହିବି ମାନେବ ତନୁ ଧରି ॥
ପୁଣି ବିଚାରିଲି ପାଞ୍ଚ ଖଣ୍ଡ କଲି ।
ଶ୍ରୀରାମ ସୀତ୍ୟାଙ୍କୁ ଭେଟାଇ ନ ପାରିଲି ॥
ଗହନ ଲଙ୍କା କାଣ୍ଡ ଯେ କହିବି କେମନ୍ତେ ।
ଯେତେ ବୋଲି ଆକୁଳେ ଭାଳଇ ମୋର
ଚିତ୍ତେ ॥
ପୁଣି ବିଚାରଇ ଜଣାଇଂବି ଜଗନ୍ନାଥ ।
ତେବେ ସେ କହିବି ଲଙ୍କା କାଣ୍ଡ
ଅର୍ଥ ॥୫୦॥
ଯେତେକ ବିଚାରିଣ ଶ୍ରୀପୁରୁଷୋତ୍ତମ ଗଲି ।
ଗୁଣ୍ଡିଚା ବିଜେ ଯାଇ ରଥରେ ଦେଖିଲି ॥
ଆଗେ ବଳଦେବ ଜ୍ୟେଷ୍ଠ ସହୋଦର ।
ମଧ୍ୟେଣ ସୁଭଦ୍ରା ରଥର ଉପର ॥
ନନ୍ଦୀଘୋଷ ରଥେ ଦେବରାହୁ ।
ଶୁଦ୍ଧ ସୁବର୍ଣ୍ଣ ଯେ ଶଙ୍ଖ ଚକ୍ର ବାହୁ ॥
ମୁକୁଟ କୁଣ୍ଡଳ ଯେ ନାନା ଅଳଙ୍କାର ।
ଅପୂର୍ବ ରୂପ ଯେ ଦିବ୍ୟ ଅବତାର ॥
ମନୋହର ନାସିକା ଅପୂର୍ବ ମୂରତି ।
ଅମୃତଲୋଚନ ଯେ ସୁନ୍ଦର
ଦିବ୍ୟଜ୍ୟୋତି ॥୬୦॥
ସୁସଞ୍ଚ ସୁରଙ୍ଗ ଯେ ରକ୍ତିମା ଅଧର ।
କପାଳେ ଶୋଳରି ଚିତା ରତ୍ନ ପଟାନ୍ତର ॥
ଶିରେଣ କିରଟୀ ସିନ୍ଦୂରୀ ଝୋଲା ପାଗ ।
ଝଲ ଝଲ ମୁଖ କଳାମେଘର ବାଗ ॥
ବିଜୁଳି ଝଳି ଜାଣି ଅଧର ନୟନ ।
ଅନୁଗ୍ରହ ମେଘେ କି ଉଦଏ ତପନ ॥
କରୁଣା ପାଣି ଝରଝର ବୃଷ୍ଟି ।
ତେଣୁ ସେ ସୁସ୍ଥ ହୋଇଲା ନବସୃଷ୍ଟି ॥
ମାନେବ କୃଷି ଯେ ଲୋଭେଣ ମୁଂ ଲୁଳି ।
ଯେ ପାଣି ପିଅନ୍ତେ ଚାରି ଯୁଗ ଫଳି ॥୭୦॥
ଆଖି ନ ପିଛାଡ଼ନ୍ତେ ଭୃତ୍ୟ ଜନ ଚାହୁଂ ।
ଅଧର ବିକାଶଇ ହସି କଥା କହୁଂ ॥
ଦୁଇ ଭୁଜ ତୋଳି ଯେ ଯାଚନ୍ତି ଶରଣ ।
ଲୋଭେଣ ମହାଲକ୍ଷ୍ମୀ ନ ଛାଡ଼ନ୍ତି ଚରଣ ॥

ଶୁଣ ସୁଜ୍ଞଜନେ ଲଙ୍କାକାଣ୍ଡ କଥା ।
ପାର୍ବତୀ ଆଗେ ଯାହା କହିଲେ ପଞ୍ଚୁମଥା ॥
ଟାହା ବଖାଣ କରଇଂ ଯେ ତରିବାର
ହିତେ ।
ଶ୍ରୀରାମର ନାମ ଯେ ସୁମରିବାର ନିମନ୍ତେ ॥
ସିନ୍ଦୁରା କାଣ୍ଡ ଯହୁଂ ହୋଇଲା ସମାପତ ।
ଉମା ବୋଇଲେ ଦେବ ଶୁଣ ଶୂଳହସ୍ତ ॥୮୦
ସମୋଦ୍ର ତରି ଯହୁଂ ଗଲେକ ଶ୍ରୀରାମ ।
ସୁବଳୟା ଗିରିରେ ଯାଇ କଲେକ ବିଶ୍ରାମ ॥
ରାବଣ ବାରତା ପାଇଲାଟିକି ତାହା ।
କେବଣ ପ୍ରକାରେ ରାମ ଛେଦିଲେ
ବିଂଶବାହା ॥
ଯେହା ସଞ୍ଚପି ମୋତେ ଯେ କହିବା
ତ୍ରିପୁରାରି ।
ଯେ ମୋହେର ଦୋଷକୃତ ହୋଉ ଅପହରି ॥
ରଘୁନାଥ ମହିଂମା ଯେ ଦେବେ
ଅଗୋଚର ।
ଶୁଣିମାକୁ ଦେବ ଶରଧା ମୋହର ॥
ସଦାଶିବ ବୋଲନ୍ତି ଶୁଣ ଗୋ ହେମବନ୍ତୀ ।
ଶୁଣ ତୁ ସାବଧାନେ ବାସୁଦେବର
କୀରତି ॥୯୦॥
ସାହେର ଜିଣି ଯହୁଂ ଗଲେକ ପାରି
ହୋଇଂ ।
ସୁବଳୟା ଗିରି ଯେ ରହିଲେ ରଘୁସାଇଂ ॥
ରାବଣର ଆଗେ କହିଲା ଯାଇ ଚାର ।
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର ॥
ଶ୍ରୀରାମ ଲକ୍ଷଣ ଯେ ଦୁଇ ଜଟାଧାରୀ ।
ପର୍ବତ ଘେନିଣ ପୋତିଲେ ସିନ୍ଧୁ ବାରି ॥
ସୁବଳୟା ଗିରିରେ ଯେ ରହିଲେ ଦେବ
ଆସି ।
ସଇନି ନିଘଞ୍ଚରେ ଗିରିବର ନଦିଶି ॥
ବିଭୀଷେଣ କଢ଼ାଇ ଆଣିଲାକ ବାଟ ।
ତୋହୋର ଭାଇ ବୋଲକୁ ବିଶ୍ୱାସିଥାନ୍ତି
ଥାଠ ।୧୦୦।
ଶୁଣି ରାବଣେଶ୍ୱର ଚକିତ ହୋଇଲା ।
ମହୋଦର ମୁଖ ଚାହିଂଣ ବୋଇଲା ॥

କିସ କିସ କଥା କହଇଂ ସେ ଚାର ।
ଭଲ କରି ଯେହାକୁ ରାଇଣ ପଚାର ॥
ଶୁଣି ମୋହୋଦର ଧୂମାକ୍ଷ ବେନିଜନ ।
ଚାରକଇଂ ରାଇଣ ଯେ ପଚାରନ୍ତି ବହନ ॥
ରାୟେ ଅବଧାନ ବାରତା କିସ କିସ କହ ।
ଶୁଣିକରି ଚାର କମ୍ପୁଅଛି ଦେହ ॥
ଆଗ ହୋଇଣ ଯୋଡ଼ିଣ କହଇ
ବେନିପାଣି ।
ଶୁଣ ଦେବ ଠାକୁର ଲଙ୍କାର
ଶିରୋମଣି ॥୧୦॥
ଶ୍ରୀରାମ ଲକ୍ଷଣ ଦଶରଥ ସୁତ ।
ତାହାର ତହିଂ ଶରଣ ପଶିଲା ତୋର ଭ୍ରାଥ ॥
ବାଳିକି ମାରି ଯେ ସୁଗ୍ରୀକି ରାଜ୍ୟ ଦେଲା ।
ତୋହୋର ଉପରକୁ ଏବେ କଟକାଇ
କଲା ॥
ରିକ୍ଷ କପିବଳ ଅଛନ୍ତି ଅନେକ ।
ଯେକେୟେକେ ନାମ ଧରି କହିବି
କେତେକ ॥
ପର୍ବତ ଘେନିଣ ଯେ ପୋତିଲେ ସିନ୍ଧୁଜଳ ।
ଅଚିନ୍ତେଣ ପାରିହୋଇଲେ ତେଡ଼େ
ମହାବଳ ॥
ସଇନି ନିଘଞ୍ଚରେ ନିଦିଶଇଂ ଭୂଇଂ ।
ଇନ୍ଦ୍ରବନ ମାଡ଼ି ରହିଲେ ଗୋସାଇଂ ॥୨୦॥
ଅପ୍ରମିତ ବଳ ଯେ ନ ଯାଇ କଳଣା ।
ଭୋଦେବ ରାଜ୍ୟ ତୋର ଯେ କର
ସମ୍ଭାଳଣା ॥
ଶୁଣିଣ ଲଙ୍କେଶ୍ୱର ଯେ ହୋଇଲା ବିସ୍ମୟେ ।
ଇନ୍ଦ୍ରଜିତକଇ ଯେ କତିକି ହକରାୟେ ॥
ଦୂତର ବାରତା ଶୁଣିଲୁଟିକି ଏବେ ।
ସିନ୍ଧୁ ପାରହୋଇ ଅଇଲା ରାମ ଯେବେ ॥
ବାଳୀକି ମାଇଲା କଥା ହୋଇଲାନିକା ସତ ।
ସୁଗ୍ରୀବର ବାଳୀର ଅଟଇ ବଇରତ ॥
ସେ ମନ୍ଦ କହିଲା ଶ୍ରୀରାମର ପାଶ ।
ତେଡ଼େ ରାଜାକୁ ଯତି ପ୍ରାଣେ କଲା
ନାଶ ॥୩୦॥
ପରୀକ୍ଷ ନିମନ୍ତେ ବିନ୍ଧିଲେ ସପତଶାଳ ।

ଦୁନ୍ଦୁଭିର ହାଡ଼କୁ ବୁଲାଇଲା ଅନ୍ତରାଳ ॥
ତେଣୁ ସେ ରିକ୍ଷ କପି ଭଯେ ସେବା
କଲେ ।
ଭଣ୍ଡ ବୋଲ ଶୁଣି ଯେଥକୁ ଅଇଲେ ॥
ସମୋଦ୍ର ବନ୍ଧ କଲେ କେବଣ ପ୍ରକାରେ ।
ଯେ କଥାମାନ ତୁ ବୁଝହୋ ମନରେ ॥
ପ୍ରଶସ୍ତ ବୋଇଲା ଅଟଇ ଯେ ସତ ।
ସଇନିର ମୁଖରୋଳ ଶୁଭଇ ବହୁତ ॥
ସୁବଳୟା ପର୍ବତେ ରହିଲେ ବଳ ଆସି ।
ତରସ୍ତ ହୋଇଲେନି ଲଙ୍କାପୁରବାସୀ ॥୪୦
ଭୋଦେବ ଲଙ୍କେଶ୍ୱର ନକରସି ହେଳ ।
ଯେବଣ ଶତୃ ତରି ଅଇଲା ମାହାଜଳ ॥
ମନିଷ୍ୟ ଯୋଗ୍ୟତା କି ଯେହା ହୋୟେ
କରି ।
ଅସୁରକୁ ଦେଖନ୍ତେ ରିକ୍ଷ କପି ଡରି ॥
ସାମାନ୍ୟ ପ୍ରାୟେ ତାହା ନମଣ ଗୋସାଇଂ ।
ଗଡ଼ର ଭିତରେ ନପୁଣ ପଶଇ ଝସାଇଂ ॥
ଶୁଣି ରାବଣେଶ୍ୱର ଯେ ମନ୍ତ୍ରୀକି ହକାରି ।
ଯେକାନ୍ତେ କହଇଂ ଯେ ପ୍ରିୟଭାବ କରି ॥
ତୁମ୍ଭେ ଶୁକ ସାରଣ ମୋହୋର ବିଶ୍ୱଆସ ।
ସର୍ବଦା ସେବା ଯେ କରୁଥାଅ ମୋର
ପାଶ ॥୫୦॥
ଅନେକ ଭୋଗ୍ୟକର ଲଙ୍କାପୁରେ ଥାଇଂ ।
ତୁମ୍ଭ ଦୁହିକିଂ ମୋହୋର ମାୟା ହୃଦେ
ନାହିଂ ॥
ସ୍ୱର୍ଗମର୍ଞ୍ଚ ପାତାଳ ଜିଣିଲଇଂ ହେଳେ ।
ସୁରଗଣକଇ ଖଟାଇଲି ପାଦତଳେ ॥
ଚଉଦ ଭୁବନେ ଯେତେକ ଅର୍ଥ ନାରୀ ।
ବେଭାରେତ ସକଳ ହୋଇଲା ମୋହୋରି ॥
ଧ୍ରୁବମଣ୍ଡଳ ପରିଯନ୍ତେ ଆକାଶକୁ ଗଲି ।
ପାତାଳ ବୈକୁଣ୍ଠେ ନାରାୟଣଙ୍କୁ ଦେଖିଲି ॥
ବ୍ରହ୍ମାର ପ୍ରସନେ ଯୁଗପତି ପଣ ।
ଯେବେଣ ଧାତା ମୋତେ କଲାକ
ରଣଭଣ ॥୬୦॥
ମନିଷ୍ୟ ମର୍କଟ ଆବର ରିକ୍ଷ ଜାତି ।
ସେ ଆସି ମୋତେ ଉପୁଜାଉଛନ୍ତି ଭୀତି ॥

ସାମାନ୍ୟ ଭରସାକି ତରିଲେ ସିନ୍ଧୁପାଣି ।
ସୁବଳୟା ଗିରି ମାଡ଼ି ବସିଲେ ରଘୁମଣି ॥
ଯେବେ ତୁମ୍ଭେ ବେନିଜନେ ଯିବ ଯେହିକ୍ଷଣି ।
ଦେଖିବ ଶ୍ରୀରାମ ଅଛଇ କେତେ ସୈନ୍ୟ ଘେନି ॥
ବାନର ଶ୍ୱରୀର ଧରିବ ମାୟା କରି ।
ବୁଝିବାନା କେତେ ବଳ ଅଛଇ ଜଟାଧାରୀ ॥
କେଉଂଦର୍ପେ ଅଇଂଲେ କେତେକ ସାହସ ।
ବେଗେ ଆସ ଏବେ ଖଟ ମୋହୋର ପାଶ ॥୭୦॥
କେମନ୍ତେ ଯୁଝିବେ କାହାକୁ ସାହା ଘେନି ।
ଯେ ବାରତା ତୁମ୍ଭେ ଜାଣି ଆସ ବେନି ॥
ଶୁଣି ଶୁକ ସାରଣ କରନ୍ତି ନମସ୍କାର ।
ତତକ୍ଷଣେ ନବରୁ ହୋଇଲେ ବାହାର ॥
ରାତ୍ର ପହଡ଼କେ ଲଙ୍କାରୁ ଚଳିଗଲେ ।
ଇନ୍ଦ୍ର ଉପବନେ ସେ ଯାଇଣ ମିଳିଲେ ॥
କପି ରୂପ ଧରି ଥାଠ ବୁଲିଯାନ୍ତି ।
ନୀଳ ସେନାପତିକି ପ୍ରଥମେ ଦେଖନ୍ତି ॥
ଆଗିଆଣି ଦଣ୍ଡେ ଅଛଇ ସେହୁ ବୀର ।
ସାଙ୍ଗେ ଶତବଳ ସଇନି ଅପାର ॥୮୦॥
ମହାମେଘ ଜାଣି ଯେ ଦିଶଇ ତାର କାୟେ ।
ତେଜ ଲାଗୁଅଛି ବ୍ରହ୍ମଲୋକଯାୟେ ॥
ଦୂର ବଜାଇଣ ଯେ ବୁଲନ୍ତି ପାହାରୀ ।
ରିକ୍ଷ ବାନର ଯେ ଅଛନ୍ତି ମହୀପୁରୀ ॥
ଶୁକ ସାରଣ ପଶି ଖୋଜନ୍ତି ବଳମାନ ।
କାହିଂ ନରହନ୍ତି ସେ ଚଳନ୍ତି ଘନଘନ ॥
ସୁବଳୟା ପର୍ବତ ଉପରେ ଯାଇ ଉଠି ।
ଚାହିଂଲେ କପିମୟେ ଦିଶୁଅଛି ନବସୃଷ୍ଟି ॥
ଶ୍ରୀରାମ ଲକ୍ଷଣଙ୍କୁ ଦେଖିଲେ ତହିଂ ଯାଇଂ ।
ବିଚିତ୍ର ନବରେ ଅଛନ୍ତି ରଘୁସାଇଂ ॥୯୦॥
ବାଏଂଶର ଗଡ଼ କାଠର ପାଚେରୀ ।
ମଧରେ ମଣ୍ଡୋପ ଯେ ନବରତ୍ନେ କରି ॥
ପୁନ୍ୟକୁଟୀ ପ୍ରାୟେକ ଅଛଇ ମଣ୍ଡୋପ ।
ମୃଗଛାଲରେ ଶୋଇଅଛନ୍ତି ରାମନୃର୍ପ ॥
ଧନୁଶର ଧରି ଲକ୍ଷଣ ଅଛଇଂ ବସି ।
ଦେଖି ଶୁକ ସାରଣ ପଳାଇଲେ ତ୍ରାସି ॥
ମନେ ବିଚାରନ୍ତି ଯେ ନୁହଇ ମନୁଷ୍ୟ ।
ମାନେବ ଅବତାର ଯେ ହୋଇଲେ ତ୍ରିଦଶ ॥
ମେରୁ ଶିଖରେ ଯେହ୍ନେ ବିଷ୍ଣୁ ଇନ୍ଦ୍ରଥାନ୍ତି ।
ଶ୍ରୀରାମ ଲକ୍ଷଣ ବେନି ତେସନେ ଦିଶନ୍ତି ॥୧୦୦
ଯେତେକ ବିଚାରି ତହୁଂ ହୋଇଲେ ବାହାର ।
ବାମ ପାଶୁଷେ ଦେଖିଲେ ଅଛଇ ସୁଗ୍ରୀବର ॥
ଠଣା ପଡ଼ିହାରି ଯେ ଜଗନ୍ତି ଉଜାଗରେ ।
ଉକାସି ପଡୁଅଛି ଯେ ବିବିଦ ପ୍ରକାରେ ॥
ଦେଖିଲେ ଅଙ୍ଗଦ ଜମ୍ବେବ ଅଛନ୍ତି ।
ଶ୍ରୀରାମ ଆଗ୍ୟାଂରେ ପଖା ରଖିଅଛନ୍ତି ॥
ହୁଳାଙ୍କର ଘାୟେ ଜଗତ ହାଲୋଳ ଦିଶଇ ।
ବାଜଣା ବଜାଇ ବିଭୀଷେଣ ବୁଲିଣ ଆସଇ ॥
ହନୁମନ୍ତ ଗନ୍ଧମାର୍ଦନ କଞ୍ଚଣ ।
ମରୁତ କେଶରୀ ସୁଷେଣ ଚନ୍ଦନ ॥୧୦॥
ଯେହାକୁଂ ଦେଖିଣ ଶଙ୍କିଯାନ୍ତି ବେନି ।
ବିଭୀଷେଣ ଦେଖିଣ ଆସୁଅଛି ଚିହ୍ନି ॥
ବାନରନ୍ତ ବୋଇଲାରେ ବେଗେ ଯେକାନ୍ତ ଧର ।
ମାୟାଦନୁଜ ଯେହାଂକୁଂ ଓପ୍ରୋଧ ନକର ॥
ଶୁଣିଣ ମର୍କଟେ କୋପଭରେ ଧାଇଂ ।
ବନସ୍ତର ନଟି ଘେନି ବାନ୍ଧିଲେ ନିଠାଇଂ ॥
ରାତ୍ରେଣ ରଖିଲେ ଯେ ବହୁତ ଯତ୍ନକରି ।
ଅରୁଣ ପ୍ରକାଶନ୍ତେ ଫିଟିଲା ତିମିରି ॥
ଶେଯା ଛାଡ଼ିଣ ଯେ ଉଠିଲେ ରଘୁବୀର ।
ନିତ୍ୟକର୍ମ ବିଧାନ ଯେ ସାରିଲେ ତାହାଙ୍କର ॥୨୦॥
ସୂର୍ଯ୍ୟ ଉଦେମାନେ ସନ୍ଧ୍ୟା ସୁମରନ୍ତି ।
ବିଭୀଷେଣ ହନୁମାନ ଦର୍ଶନ କରନ୍ତି ॥
ମହୀନ୍ଦ୍ର ଚନ୍ଦନ କୁମୁଦ ପନଶିକ ।
ଗନ୍ଧମାରଦନ ବସନ୍ତ ନଳନୀଳ ॥
ସୁଗ୍ରୀବରେ ଅଙ୍ଗଦ ଜମ୍ବେବ ଶତବାଳି ।
ଶଭରୀ ସେନାପତି ଶତବଳ ମିଳି ॥
କେଶରୀ ଗବୟେ ଗବାକ୍ଷ ଦଧିମୁଖ ।
ଡାଳିମ୍ବ ସେନାପତି ଆବର କାଳିମୁଖ ॥
ଏମାନେ ଦର୍ଶନ ଯେ କଲେକ ବେଗେ ଯାଇ ।
ବିଭୀଷେଣ ବୋଇଲେ ଯେ ଶୁଣିମା ଗୋସାଇଂ ॥୩୦॥
ଶୁଣ ଦେବ ଶ୍ରୀରାମ ବ୍ରହ୍ମାଣ୍ଡ ଆଧିପତି ।
ଅପୂର୍ବ କଥାଯେ ଦେବ ହୋଇଲା ଆଜ ରାତି ॥
ଲଙ୍କାଗଡ଼ ରାଜ ଅଟଇ ରାବଣ ।
ତାହାର ମନ୍ତ୍ରୀ ବେନି ଶୁକ ଯେ ସାରଣ ॥
କପି ରୂପ ଧରି ଥାଠରେ ବୁଲୁଥିଲେ ।
ଯୋଗେ ଆସି ମୋହୋର ଛାମୁରେ ପଡ଼ିଲେ ॥
ମୁଂ ତାହା ଧରାଇ ଅଛଇଂ ଦେବ ଥୋଇଂ ।
ଶୁଣିଣ ହସନ୍ତି ଦେବ ରଘୁକୁଳସାଇଂ ॥
କାହିଂ ଅଛନ୍ତି ମନ୍ତ୍ରୀ ବେଗେ ଘେନି ଆସ ।
ଦେଖିବା କେମନ୍ତେକେ ରାବଣ ବିଶ୍ୱଆସ ॥୪୦॥
ଶୁଣି ବିଭୀଷେଣ ହନୁକୁଂ ବୋଇଲେ ।
ଅଣାଅ ଦୁଇ ବନ୍ଦୀ ଶ୍ରୀରାମ ଆଗ୍ୟାଂ ଦେଲେ ॥
ଶୁଣି ହନୁମନ୍ତ ଯେ ପେଷିଲାକ ଚାର ।
ବେଗେ ଘେନିଆସ ମାୟା ଯେ ବାନର ॥
ଶୁକସାରଣ ଅଣାଅ ଶ୍ରୀରାମ ଆଗ୍ୟାଂ ଦେଲେ ।
ଆଗ୍ୟାଂପାଇ ଚାର ଧାତିକାରେ ଗଲେ ॥
ଯେହୁ ରଖିଥିଲେ ଶୁଣିଲେ ସେହୁ ବୋଲ ।
ଉଠି ସଜହୋଇ ବୋଇଲେ ଚାଲ ଚାଲ ॥
ନିବିଡ଼ ବାନ୍ଧେଣି ଯେ ବାନ୍ଧି ଅଛନ୍ତି ଛନ୍ଦି ।
ଶ୍ରୀରାମ ଛାମୁରେ କଲେକ ନେଇ ବନ୍ଦୀ ॥୫୦॥
କନେକ ମୃଗ ଛାଲେ ବସିଛନ୍ତି ଶ୍ରୀରାମ ।
ରାଜୀବ ଲୋଚନ ମଧୁର ମୂରତି ଶ୍ୟାମ ॥
ଶିରେଣ ଜଟାଭାର ତପୋଧନ ଅଳଙ୍କାର ।
କଷା ବସ୍ତ୍ର ପରିହରଣ ସନ୍ନ୍ୟାସ ବେଭାର ॥
ଲଲାଟେ ବିଲୋପନ ବିଭୂତି ତିନିରେଖା ।
ଆଗରେ ଜମ୍ବେବ କରନ୍ତି ସନ୍ୟ ଲେଖା ॥

ସୁଗ୍ରୀବର ଉପରେ ଆଉଜି ଅଛନ୍ତି ପ୍ରଭୁ ।
ଅଙ୍ଗଦ କରେଣ ଦେଇଣ ବାମବାହୁ ॥
ଶ୍ରୀଚରଣ ଚାପଇ ପବନର ସୁତ ।
କାନରେ କହୁଅଛି ରାବଣର ଭ୍ରାଥ ॥୬୦॥
ଥୋକାୟେ ଧୂରେ ବସିଅଛଇ ସଉମିତ୍ରୀ ।
ଶସ୍ତ୍ରେ ଯନ୍ତା ଦେଉଅଛନ୍ତି ମହାକ୍ଷତ୍ରୀ ॥
ମନ୍ତପୋଥି ଘେନି ସୁଷେଣ ମନ୍ତ୍ରୀ ଉଭା ।
ଗହଗହ ଶୁଭୁଅଛି ଯେ ଶ୍ରୀରାମର ସଭା ॥
ଗନ୍ଧମାରଦନ ଶଉରୀ ଶତବାଳୀ ।
କୁନ୍ଦ କାମୋଦ କଞ୍ଚଣ ଛନ୍ତି ମିଳି ॥
କାଳିମୁଖ ଦଧିମୁଖ ନଳ ନୀଳ ତପନ ।
ସମ୍ପାତି ଦ୍ୱିବିଧ ସୁନାସ ସୁସୋଦନ ॥
ତାରାକ୍ଷ ରମଣ ଚନ୍ଦନ ବସନ୍ତ ।
ଗବୟେ ଗବାକ୍ଷ ସାରାସ ପାରାସତ ॥
ଡାଳିମ୍ବ ପବନ କେଶରୀ ସହିତ ।
ବଡ଼ ଅବକାଶ ଯେ କଉଶଲ୍ୟାର ସୁତ ॥
ରିକ୍ଷ କପି ସଇନି ଯେ ଅଛନ୍ତି ପଟୁଆରି ।
ଦେବତାୟେ ଅଛନ୍ତିକି ନାରୟେଣେ
ବେଢ଼ିକରି ॥
ଅଷ୍ଟ ଅବଧାନ ଶ୍ରୀରାମଚନ୍ଦ୍ର ରାୟେ ।
ଯେସନେକ ସମୟେ ନେଇ ଦୁଇ ବନ୍ଦୀ
କୟେ ॥
ଦେଖି ରଘୁନାଥ ହସିଣ ବୋଲନ୍ତି ।
ସତେକି ତୁମ୍ଭେ ଯେ ରାବଣର ମନ୍ତ୍ରୀ ॥
ହୋଇ ଦେବ ବୋଲି ଯେ ଶୋଇଲେ
ଗଡ଼ଘାଲି ।
ଦଶରଥ ନନ୍ଦନ ଯେ ଉଠ ଉଠ
ବୋଲି ॥୮୦॥
କିମ୍ପା ଅଇଲ ତୁମ୍ଭେ କେ ପେଷିଲା ତୁମ୍ଭନ୍ତ ।
ଆମ୍ଭର ଆଗେ କହସି ସ୍ୱରୂପ ସିଦ୍ଧାନ୍ତ ॥
ଉଠି କରଯୋଡ଼ି ଦୁଇ ଯେ ଅସୁର ।
ବୋଲନ୍ତି ଶୁଣ ଦେବ ଅଯୋଧାଈଶ୍ୱର ॥
ଲଙ୍କାର ନୃପତି ବିଶର୍ବାର ସୁତ ।
ଆମ୍ଭେ ଶୁକ ସାରଣ ଅଟୁ ତାର ଦୂତ ॥
ସେ ଆମ୍ଭନ୍ତ ପେଷିଲା ସଇନ୍ୟ ଖୋଜିବାକୁ ।
ଦୁଇ ଭାଇଙ୍କର ବଳ କଳିବାକୁ ।'

କେତେ ସାହାସ ଘେନି କେତେମାନ ବୁଧି ।
କେବଣ ପ୍ରକାରେ ତରିଲେ
ବାରାନିଧି ॥୯୦॥
ଯେକଥା ଜାଣି ଯାଇ କହିବୁ ଦଶଗ୍ରୀବ ।
ଶୁଣି ବୋଲନ୍ତି ଯେ ରଘୁକୁଳ ଦେବ ॥
ଯଦି ଶୁକ ସାରଣ ଅଟ ମନ୍ତ୍ରୀ ବେନି ।
ଯେଥକୁ ଅଇଲ ଯେ ସ୍ୱାମୀର ଆଗ୍ୟାଂ
ଘେନି ॥
ଯେବେ ତୁମ୍ଭର ଯେ ନିଜ ରୂପ ଧର ।
କିମ୍ପାଇ ମହାତମା ଶରୀର ଗୋପ୍ୟ କର ॥
ଶୁଣି ଶୁକ ସାରଣ ଦତ୍ୟ ରୂପ ଧରନ୍ତି ।
ଦେଖିଣ ସୀତ୍ୟାପତି ଆନନ୍ଦ ହୁଅନ୍ତି ॥
ବିଭୀଷେଣଙ୍କୁ ଚାହିଁ ବୋଲନ୍ତି ଚାପଧାରୀ ।
ଦେଖ ହୋ ମାୟା ଯେ କଲାକ
ଦଶଶିରି ॥୧୦୦॥
ବନପର୍ବତେ କି ଲୁଚିଅଛି ମୁହିଁ ।
ଚାର ପେଷିଲା ତାହା ଜାଣିମାର ପାଇଂ ॥
ସିନ୍ଧୁ ଜିଣିକରି ଅଇଲୁ ତୁମ୍ଭ ଘର ।
ଯେଥକୁ କିମ୍ପା ତୁମ୍ଭେ ବରଗୁଅଛ ଚାର ॥
ଦିଶନ୍ତାକୁ ଦିଶୁଅଛି ଏ ମୋହର ଥାଠ ।
ଅନ୍ଧଂ ଯେହ୍ନେ ଜାଣଇ ଗୋହିରିର ବାଟ ॥
ମେଘନାଦ ପାଚେରୀ ତାର ଚାଳିଶି କୋଶ
ଉଚଂ ।
ମଞ୍ଚକଇ ସ୍ୱର୍ଗ ସ୍ୱର୍ଗକଇ ମଞ୍ଚ ॥
ତହିଂଥାଇଂ ଚାହିଁଲେ କି ନ ଦିଶଇଂ ବଳ ।
ଯେବଣ ଶତ୍ରୁ ଜିଣି ଅଇଲା ମହାଜଳ ॥୧୦।
ତାହାର କି ଲଣା ଯେଥକୁ ସାହସ କରି ।
ଯେକଥା ଲଙ୍କେଶ୍ୱର କିମ୍ପାଇ ନ ବିଚାରି ॥
ମନ୍ତ୍ରୀକିଂ ପେଷିଲା ଯେ ନଜାଣିମା ପଣ ।
ଯେଣେ ସେ ମହୀପତି ନାଶଇ ଆପଣ ॥
ଯେଡ଼େ ନୃପତିର ଡଗରା କି ନାହିଁ ।
ମନ୍ତ୍ରୀକି ଚାରପଣେ ପେଷଇ କିସପାଇଂ ॥
ରାଜାର ବିଶୁଆସ ଅଟଇ ଅମନାତ୍ୟ ।
ଯେହାନ୍ତ ନ ଛାଡ଼ିବ ଯେହୁ ସେହି ସେ
ନୃପତ୍ୟ ॥
ବିଭୀଷେଣ ବୋଇଲା ଯୋଡ଼ିଣ ବେନିକର ।

ଶୁଣଦେବ ରଘୁନାଥ
ତୈଲୋକ୍ୟଈଶ୍ୱର ।୨୦।
ସତୁଜନଙ୍କର ନୁହଂଇ ଏ ବୁଦ୍ଧି ।
ରାବଣକୁ ଗ୍ରାସିଲା ନିଷ୍ଟୟେ କାଳବ୍ୟାଧି ॥
ପ୍ରକୃତି ଅନ୍ତର ହୋଇଲା ଆନୁଆନ ।
ସୀତ୍ୟା ହରିଲା ଦିନୁ ବୁଡ଼ିଲା ତାର ଗ୍ୟାଂନ ॥
ନୋହିଲେ ଆନେ ମୋତେ କେମନ୍ତେ
କୋପକଲା ।
ଡଗରା ନପେଷିଣ ମନ୍ତ୍ରୀକି ପେଷିଲା ॥
ଯେ ଶୁକ ସାରଣ ଯେ ଅଟନ୍ତି ମନ୍ତ୍ରୀବର ।
ଚିତ୍ରଗୁପତ ସମାନେ ଯେ ବୁଦ୍ଧି ଯେହାଙ୍କର ॥
ସର୍ବଦା କାଳେ ଯେ ରାବଣ ବିଶ୍ୱାସ ।
ଅନୁବ୍ରତେ ଖଟିଥାନ୍ତି ରାବଣର ପାଶ ॥୩୦।
ଯେଡ଼େ ନଜାଣିମା ପଣ କିମ୍ପା ହାଦେ
କଲା ।
ଯେହାଙ୍କ ପରା ମନ୍ତ୍ରୀ ଅଖଡ଼େ ହରାଇଲା ॥
ତୁ ଦେବ ବିଚାର ଯେହାକୁଂ କିସ କରି ।
ମୋହୋର ବିଚାରେ ଯେହାକୁଂ ପକାଇବା
ମାରି ॥
ତୁ ଦେବ ଯେହାକୁଂ ନକର ଉପ୍ରୋଧ ।
ରାବଣର ବିଶୁଆସ ଅଟନ୍ତି ଏ ସାଧ ॥
ଯେହାଙ୍କର ବୁଦ୍ଧିବଳେ ରାଜା ଲଙ୍କପତି ।
ଯେହି ଯେବେ ଦେବ ପଡ଼ିଲେ ନିନା
ଯେଥି ॥
ବାହୁଡ଼ି ନଯାନ୍ତୁ କରିବା ଦେବ ନାଶ ।
ଯେହାଙ୍କର ଗଲେ ଦେବ ନାହିଁ କିଛି
ଯଶ ॥୪୦॥
ବଳ କଳି ଯାଇ ରାବଣକୁ କହିବେ ।
ଶୁଣିଣ ଅସୁରେଣ ଯେ କପିଙ୍କି ଆହାରିବେ ॥
ବିଭୀଷେଣ ବଦନୁ ଏସନେକ ଶୁଣି ।
ଚାହିଂଣ ବୋଲନ୍ତି ସ୍ୱାମୀ ରଘୁକୁଳମଣି ॥
ଯେହାକୁଂ ମାଇଲେ ହୋଇବାକ କିସ ।
ଯେଣେକି ଯେ ଶତ୍ରୁ ହୋଇବ ପ୍ରାଣନାଶ ॥
ସେ ଅବା ନ ଜାଣି କଲ଼କ ଦୁଷ୍ଟପଣ ।
ଦୂତକୁ ବଧିବାର ନୁହଂଇ କାରଣ ॥
ବିଶେଷେ ମଧସ୍ଥ ପଣେ ସେ ଆସଇ ।

ଜାଣିମାର ଲୋକ କି ଯେହାକୁଂ
ମାରଇ ॥୫୦॥
ରାବଣର ମନ୍ତ୍ରୀ ଯେ ମୋହରି ଯେ ଲୋକ ।
କିମ୍ପାଇଂ ପ୍ରାଣେନାଶ କରିବା ସେବକ ॥
ଛାଡ଼ ଛାଡ଼ ବିଭୀଷେଣ ମନ୍ତ୍ରୀ ବେନି ଯାନ୍ତୁ ।
ଦଶଗ୍ରୀବ ଆଗରେ ଯାଇଣ କହଂନ୍ତୁ ॥
ସୁସ୍ଥ ହୋଇଣ କରୁ ହୋ ସମର ।
ମୁଂତ ରହିଅଛି ସୁବଳୟା ଗିରିର ॥
ଥାଠ ସମ୍ଭାର ଯେବେ କରୁ ଲଙ୍କସାଇଂ ।
ଯେଉଁଦିନ ଯୁଝିବ ପଠିଆଉ କହି ॥
ଶୁଣିଣ ପାତ୍ର ବେନି ଯେ ନମସ୍କାର କଲେ ।
ଭୋଦେବ ନିସ୍ତରିଲୁ ବୋଲିଣ
ବୋଇଲେ ॥୬୦॥
ଅନେକ ଜନ୍ମର ଯେତେକ ପାପ ଥିଲା ।
ରଘୁନାଥ ଦ୍ରଶନେ ସକଳେ ଦୂରଗଲା ॥
ଭୋଦେବ ଜଗତଈଶ୍ୱର ରଘୁପତି ।
ଆମ୍ଭେ ବେନି ଜନେ ତୋହ ବଶ୍ୟାବୃତ୍ତି ॥
ରାବଣ ଆମ୍ଭର ସ୍ୱାମୀ ତାହାର ବୋଲକରି ।
ତେଣୁ ସେ ତୋହୋର ବଳ ଅଇଲୁ ଯେ
କଳି ॥
ଭୋଦେବ ରଘୁନନ୍ଦନ ଆମ୍ଭେ ଅଟୁ
ନିଗିମାକ୍ଷି ।
ଯେଥି ଆମ୍ଭର ଦୋଷ ନାହିଂ ଚନ୍ଦ୍ର ସୂର୍ଯ୍ୟ
ସାକ୍ଷୀ ॥
ଦଶଗ୍ରୀବ ଅଜ୍ଞାନ ସୀତ୍ୟାକୁ ନେଲା ହରି ।
ଯେଣେ ତାହାର ନାଶିବ ଯେଡ଼େକ
ଭୋଗଶିରୀ ॥୭୦॥
ବିଭୀଷେଣ ପ୍ରାୟେ ଭାଇକିଂ କୋପକଲା ।
କେବଣ ପାପେ ତାହାକୁଂ ଯେ ବୁଦ୍ଧି
ଦିଶିଲା ॥
ନିଷ୍ଟୟେ ଲଙ୍କାରେ ଯେ ନ ବ୍ରତନ୍ତି ପ୍ରାଣୀ ।
ଆମ୍ଭନ୍ତ ତୁମ୍ଭେ ରକ୍ଷା କରିବ ରଘୁମଣି ॥
ଯେତେବୋଲି ପାୟେ ପଡ଼ି ଶୋଇଲେ
ବେନିଜନ ।
ଉଠ ଉଠ ବୋଲନ୍ତି ରଘୁକୁଳ ରାଣ ॥
ପ୍ରସନ ହୋଇ ଆଗ୍ୟାଂ ଦିଅନ୍ତି ପୁଣ ପୁଣି ।
ବିଭୀଷେଣକୁ ଲଙ୍କାରେ କଲି ଯେ
ନୃପମଣି ॥
ତୁମ୍ଭେ ବେନି ମନ୍ତ୍ରୀ ହୋଇବ ଯେହାର
ପାତ୍ର ।
ଶୁଣି ଶୁକ ସାରଣଙ୍କର ପୁଲକଇ
ଗାତ୍ର ॥୮୦
ହୋଇ ଦେବ ବୋଲି ଉଠି ଓଳୋଗିଲେ ।
ଯାଅ ଯାଅ ବୋଲି ଯେ ଶ୍ରୀରାମ ଆଗ୍ୟାଂ
ଦେଲେ ॥
ଶ୍ରୀରାମ ଆଗ୍ୟାଂରେ ଯେ ରିକ୍ଷ କପିମାନ ।
ତତକ୍ଷଣେ ଯେହାଙ୍କର ଯେ ଫେଡ଼ିଲେ
ବନ୍ଧନ ॥
ବାହୁଡ଼ନ୍ତି ମନ୍ତ୍ରୀ ବେନି ଓଳେଗ ମେଲାଇଂ ।
ଲଙ୍କାଗଡ଼ ଭିତରେ ପଶିଲେକ ଯାଇଂ ॥
ନଗ୍ର ନରନାରୀମାନେ ବସିଣ ବିଚାରନ୍ତି ।
କେଣେ ଯାଇଥିଲେ ରାଜାର ବେନି ମନ୍ତ୍ରୀ ॥
କେ ବୋଲଇ ଶ୍ରୀରାମ ଛାମୁକୁ ଯାଇଥିଲେ ।
ବଳ ପ୍ରାକର୍ମ ତାର ବୁଝିଣ ଅଇଲେ ॥୯୦॥
ଯେଥିଅନନ୍ତରେ ଶୁଣ ଗୋ ପାର୍ବତୀ ।
ଆସ୍ଥାନ କରି ବସିଅଛି ଲଙ୍କାପତି ॥
ବ୍ରହ୍ମା ସହିତେ ସକଳ ଦେବଗଣ ।
ଯେସନେକ ବେଳେ ମିଳିଲେ ଶୁକ ଯେ
ସାରଣ ॥
ରାବଣକୁ ଦେଖି ପାୟେ ପଡ଼ି ଶୋଇଂ ।
ପୁଣି ଉଭା ହୋଇଲେ ଯେ ଶିରେ କର
ଦେଇଂ ॥
ଦେଖି ଦଶଗ୍ରୀବ ଯେ ଆସ ଆସ ରାଇ ।
ତତକ୍ଷଣେ ପ୍ରଶସ୍ତ ଯେ ଲୋକନ୍ତ କଢ଼ାଇ ॥
ବ୍ରହ୍ମାକୁ ଚାହିଂ ବୋଲଇ ବିଂଶକର ।
ଶୁଣସି ପିତାମହ ଜଗତଈଶ୍ୱର ॥୧୦୦
ଦଶରଥ ନନ୍ଦନ ଅଟଇ ଜଟାଧାରୀ ।
ରିକ୍ଷ କପି ଘେନି ହୋଇଲେ ସିନ୍ଧୁ ପାରି ॥
ସୁବଳୟା ପର୍ବତ ରହିଲେ ଆଶ୍ରେ କରି ।
ଯେଡ଼େକ ଭରସା ଦେବ ଯୁଝିବା ବୋଲିଣ
ବୋଲି ॥
ଯେକଥାମାନ ମୋ ନିବର୍ତ୍ତ କରିବାର
ଯାୟେ ।
ତୁମ୍ଭେ ଦେବତାଗଣ ନଥାଅ ଲଙ୍କାୟେ ॥
ଶ୍ରୀରାମ ଲକ୍ଷଣ କପିକିଂ ମାରିବି ।
ଅଯୋଧ୍ୟାରେ ଯେଉଂଦିନ ଅବିଷେକ
ହେବି ॥
ବିଭୀଷେଣ ସୁଗ୍ରୀ ହୋଇବେ ପ୍ରାଣନାଶ ।
ଯେଦିନ ଆସିବ ତୁମ୍ଭେ ସକଳ
ତ୍ରିଦଶ୍ୟ ॥୧୦॥
ଯେବେ ଆସି ଅନର୍ଥ ହୋଇଲାକ କାଳ ।
ଯେବେ ତୁମ୍ଭେ ଦେବତାୟେ ଯାଅ ନିଜ
ଆଳ ॥
ଶୁଣି ସୁରଗଣେ ଆନନ୍ଦ ହୋଇଲେ ।
ଅନ୍ତରୀକ୍ଷ ମାର୍ଗେ ଚଳି ଆକାଶକୁ ଗଲେ ॥
ଜାଣିଲେ ରାବଣ ମରିବ ନିୟତ ।
ପ୍ରୀତିକଥା ଯହୁଂ କହିଲା ଦଇତ ॥
ପ୍ରକୃତି ଛାଡ଼ିଲା ପୂରିଲାକ କାଳ ।
ଯେବେ ଦେବତାଏ ବସିବା ସୁରଆଳ ॥
ଦୁଷ୍ଟ ପ୍ରାଣୀ ଯେବେ କହଇ ସନ୍ଥ କଥା ।
ଅନୁମାନେ ଜାଣିମା ମରଣ ବେବସ୍ଥା ॥୨୦।
କିଅବା ଶୁଭ ହୋଇବ ପରାପତ ।
ଦୁର୍ଜନ ସନ୍ଥ ହୋଇଲେ ହୁଅଇ ଏମନ୍ତ ॥
ସୁଜନ ଲୋକ ଯେବେ କହଇ ମନ୍ଦବାଣୀ ।
ଜାଣିମ ବିଯୋଗ ପଡ଼ଇ ସେହୁ ପ୍ରାଣୀ ॥
ନୋହିଲେ ମୃତ୍ୟୁଯୋଗ ନିକଟ ହୋଇଲା ।
ପ୍ରକୃତି ଅନ୍ତରେ ଯେବେ ମନିଷ୍ୟ କହିଲା ॥
ଯେକଥା ନିଷ୍ଟୟେ ବୋଲନ୍ତି ସୁରଗଣ ।
ଆବର କେତେ ସମ୍ପଦ ଅର୍ଜ୍ଜିବ ରାବଣ ॥
ତିନିପୁର ଜିଣି ସୀତ୍ୟାକୁ ନେଲା ହରି ।
ଯେକାୟେ ହୋଇଲା ଏବେ ବ୍ରହ୍ମାଣ୍ଡ
ଅଧିକାରୀ ॥୩୦॥
ଛପନଗଣ୍ଡା ଯୁଗକୁ ପାଇଲାକ ଆୟୁଷ ।
ଶ୍ରୀରାମର ବାଣେ ନିଷ୍ଟେ ହୋଇବ
ପ୍ରାଣନାଶ ॥
ଯେତେ ବୋଲି ଦେବେ ଗଲେ ନିଜ
ସ୍ଥାନେ ।
ବୋଲନ୍ତି ରୁଦ୍ର ଶୁଣ ଗୋ ବରାଙ୍ଗନେ ॥
ଲଙ୍କପତି ଆସ୍ଥାନୁ ଦେବଙ୍କୁଂ ପଠିଆଇ ।

ଆବର ସର୍ବଲୋକଙ୍କୁ ଦେଲାକ କଢ଼ାଇ ॥
ଇନ୍ଦ୍ରଜିତ ପ୍ରଶସ୍ତ ରହିଲେ ଯେ ବେନି ।
ଯେକାନ୍ତେ ବିଚାର କରନ୍ତି ମନ୍ତ୍ରୀକି ଘେନି ॥
ବୋଇଲା ଦେବତାଯେ ଅଟନ୍ତି ମୋହର
କାର୍ଜୀ ।
ନଗ୍ର ବାହାର କରିଦେଲି ଦେଖ ମୋହର
ବୁଦ୍ଧି ॥୪୦॥
ଯେଥି ଥିଲେ ନାନା କଥାନ୍ତ ଜାଣିମେ ।
ଉଶ୍ବାସ କଥା କହି ଯେ ଶତୃକୁ ଆଣିମେ ॥
ଯୁଦ୍ଧ ସରିବାଯାଏ ସ୍ୱର୍ଗପୁରେ ଥାନ୍ତୁ ।
ଶ୍ରୀରାମ ଲକ୍ଷଣ ବଧ୍ୟ ହୋଇଲେ ଆସନ୍ତୁ ॥
ଇନ୍ଦ୍ରଜିତ ବୋଇଲା ଯୋଡ଼ିଣ ବେନିକର ।
ତୁ ଅବା କାହା ନଜାଣୁ ଦଶଗ୍ରୀବ ବୀର ॥
ରିକ୍ଷ ମର୍କଟଙ୍କୁ ତୋହୋର କିସ ଭୟେ ।
ଯେ ତୋହୋର ବାନା ତୈଲୋକ୍ୟେ
ଅଜୟେ ॥
ଯଦି ତୁ ଆଗ୍ୟାଂ ଦେବୁ ଦଶଗ୍ରୀବ ରାୟେ
ମୋତେଂ ।
ଶ୍ରୀରାମ ଲକ୍ଷଣ ମାରିବି ସଇନି
ସହିତେ ॥୫୦॥
ଯେ ଶୁକ ସାରଣେ ଯେ ଆଣିଲେ ବାରତା ।
ଯେଥକୁ ସାବଧାନ ତୁମ୍ଭେ ହୁଅସି
ନୃର୍ପନାଥା ॥
କଥା ବିଚାରିଣ କରିବୁ ନିନା କାର୍ଯ ।
ଶୁଣିଣ ବୋଲଇ ଯେ ଅସୁରକୁଳରାଜ ॥
କିହୋ ଶୁକ ସାରଣେ କେବଣ ବାରତା ।
ସାଧ୍ୟକରି ମୋତେ କହ ତଥ୍ୟ କଥା ॥
ରାମ ଲକ୍ଷଣଙ୍କୁ ଭେଟିଲଟିକି ଯାଇଂ ।
କେତେ ବଳ ଘେନି ଅଇଲା ରଘୁସାଇଂ ॥
ବିଭୀକ୍ଷେଣ ସୁଗ୍ରୀବର କେଡ଼େକ ବିଶ୍ବଆସ ।
ଯେସନେକ କଥା କହ ମୋର ପାଶ ॥୬୦॥
ଶୁଣି ମନ୍ତ୍ରୀ ବେନି କହନ୍ତି କର ଯୋଡ଼ି ।
ଆଜ ଦେବ ପ୍ରାଣ ପାଇ ଅଇଲୁ ବାହୁଡ଼ି ॥
ଯେ ତୋହୋର ଆଗ୍ୟାଂ ପ୍ରମାଣେ ଏଥି
ଗଲୁ ।
କପି ରୂପ ଧରି ଆଟରେ ପଶିଲୁ ॥
ପ୍ରଥମେ ଭେଟିଲୁ ଯାଇ ନୀଳ ସେନାପତି ।
ଶତବଳ ବୀର ଅଛଇ ତାର କତି ॥
ସଇନି ନିଘଞ୍ଚରେ ନଦିଶଇ ଭୂଇଂ ।
ନିଘଂଚର ହୋଇ ଅଛନ୍ତି ଥାଟ ଶୋଇଂ ॥
ତହୁଂ ସୁବଳୟା ପର୍ବତକୁ ଗଲୁଂ ।
ସେନାସେନାପତି ବହୁତ ଦେଖିଲୁଂ ॥୭୦॥
ଅପୂର୍ବ ନବରେ ଯେ ଅଛନ୍ତି ରାମରାଣ ।
ଧନୁ ସହସ୍ର ଧରି ଅଛଇ ଲଇକ୍ଷଣ ॥
ସୁଗ୍ରୀ ହନୁମନ୍ତ ଜମ୍ବେବ ସୁକ୍ଷେଣ ।
ବଡ଼ ବିଶୁଆସ ତୋ ଭାଇ ବିଭୀକ୍ଷେଣ ॥
ରିକ୍ଷ କପିଗଣ କଳନା ନ ଯାଇ ।
କି ଜାଣି ମେଦନୀ ଯେ ହୋଇଅଛି ଛାଇ ॥
ଇନ୍ଦ୍ର ଉପବନ ସହିତେ ପୂରିଣ ଅଛନ୍ତି
ସଇନି ।
ଥାଟର ଭିଡ଼ ନଘଞ୍ଚେ ପଶିନପାରିଲୁ
ମେଦନୀ ॥
ଶଏ ଯୋଜନ ଦୀର୍ଘ ପଚାଶ ଯୋଜନ
ପ୍ରତି ।
ସଇନି ପୂରିବାରେ ନଦିଶଇ ପୃଥି ॥ ୮୦
ସୁବଳୟା ପର୍ବତ ପଚାଶ ଯୋଜନ ଉଚଂ ।
ଭାଲୁକ ବାନରେ ହୋଇଛନ୍ତି ଘଚଂ ॥
ବନ୍ଧଂ ଚାରିଶତ କୋଶ ଲମ୍ବ ହୋଇ ।
ଦଶଯୋଜନ ଓସାର ବାରିତ ନୁହଇ ॥
ଦେହେ ଦେହେ ହୋଇଅଛନ୍ତି ଲଗାଲଗି ।
ନପୁଣି ତେଡ଼େ ବନ୍ଧଂ ନପଡ଼ି ଯାଇ
ଭାଙ୍ଗି ॥
ବାଟ ନପାଇ ଅଡ଼େ ହୋଇ ରହିଛନ୍ତି ।
କେ ବୋଲଇ ତେଣି କୂଳେ ଅନେକ
ଆସନ୍ତି ॥
ଅପ୍ରମିତ ବଳ ଯେ କଳନା ନ ଯାଇଂ ।
ରିକ୍ଷ କପି ବୀରେ ଯେକକୁ ଯେକ ବଳୀ
ହୋଇଂ ॥୯୦
କେବଣ ଭାଲୁକଂ ପର୍ବତ ସରି ଦିଶଇଂ ।
ବୃକ୍ଷେଙ୍କର ଥିବା ପ୍ରାୟେ ରୋମମାନ
ପ୍ରକାଶଇଂ ॥
ନଦୀକୂଳ ଚରିବାକୁ କି ସମାନ୍ୟ
କପିମାନେ ।
ପକ୍ଷୀ ନ ଥିବାରେ ଉଡ଼ନ୍ତି ଗଗନେ ॥
କାହାରିହିଂ ବେଳେସେ ନୁହଇନା କରି ।
ପାଷାଣ ବୃକ୍ଷେ ଅଛନ୍ତି କରେ ଧରି ॥
ଦେବେ ଅସୁରେ ସେ ନୁହନ୍ତି ପ୍ରାଣବଧ ।
କାଣ୍ଡ ଖଣ୍ଡା ନାହିଂ ଦୁଇ ହାତ ସୋଧ ॥
ବଜ୍ର ପଡ଼ିଲେହେଂ ନ କମ୍ପନ୍ତି କାୟେ ।
ଗର୍ଜନ କରନ୍ତି ଆଷାଢ଼ ମେଘ
ପ୍ରାୟେ ॥୧୦୦
ଧ୍ରୁବମଣ୍ଡଳ ପରିଯନ୍ତେ ଆକାଶକୁ
ଖେପିଯାନ୍ତି ।
ସମୋଦ୍ର ଭିତରକୁ ସେ ଶୂନ୍ୟେ ଝାମ୍ପ ଦିଅନ୍ତି ॥
କପିଙ୍କର ରାଜା ଯେ ଅଟଇ ସୁଗ୍ରୀବର ।
ଅଯୋନି ଜାତ ହୋଇଲା ସୂର୍ଯର କୁମର ॥
ରଣେ ଇନ୍ଦ୍ରକୁ ପାରଇ ସେହୁ ଜିଣି ।
ଦୁତୀ ଆଦିତ୍ୟକି ଉଦଏ ଧରଣୀ ॥
ବାଳୀର ସୁତ ଯେ ଅଙ୍ଗଦ ନାମେ ବୀର ।
ଯୁବରାଜା ପଣେ ଶାଢ଼ୀ ଅଟଇ ତାହାର ॥
ସକଳ କାର୍ଯ ସେ ପାରଇ ନିର୍ବାଇଂ ।
ରଣେ ସମାନ୍ୟ ନୁହନ୍ତି ତାକୁକେହିଂ ॥୧୦
ନଳ ବୋଲିଣ ଯେବଣ ସେନାପତି ।
ଉପାଡ଼ି ପାରଇ ସେ ସପତ ଦ୍ୱୀପା ପୃଥି ॥
ବିଧାର ଘାୟେ ମେରୁ ପର୍ବତକୁ ଚୂରି
ପାରଇ ।
ତାହାର ସଙ୍ଗେ ଯୁଝିବକୁ ଯମଇଂ ନ
ପାରଇ ॥
ହନୁମନ୍ତର ମହିମା ପ୍ରତକ୍ଷେ ଦେଖିଅଛ ।
ଭୋ ମାହାରାୟେ ଆବର କେବଣ କଥା
ପୁଛ ॥
ସୁକ୍ଷେଣ ମନ୍ତ୍ରୀର ଯେ ଅଗୋଚର କଥା ।
ତାହାର ହାତରେ ଅଛଇ ଯେବଣ
ମନ୍ତ୍ରପୋଥା ॥
ସେ ମନ୍ତ୍ରର ବଳେ ଜଗତ ବନ୍ଦୀ ପାରଇ ।
ବାଦେ ବସିଲେ ବୃହସ୍ପତି ନୁଆରଇ ॥୨୦
ଜମ୍ବେବ ରକ୍ଷ ରାଜା ସଂଯେଣ ଶକତା ।
ବୁଧିବନ୍ତପଣେ ସମାନ୍ୟ ବିଧାତା ॥
ନୀଳ ସେନାପତି ବୋଲିଣ ଯେବଣ ବୀର ।

ପିଇଂ ଶୋଷି ପାରଇ ସକଳ ସାଗର ॥
ମହୀନ୍ଦ୍ରର ମହିଂମା ପୃଥ୍ୱି ଲେଉଟାଇଂ ।
କୋମୋଦର ମହିଂମା କହିଣ ନମାଇଂ ॥
ସଂଗ୍ରାମେ ଜିଣିନ୍ତ ପାରଇ ଦେବାସୁର ।
ବଳିମୁଖ ମହିମା ଅତି ଅଗୋଚର ॥
ଅଗ୍ନି ଦେବତା ତେଜ ଜାଣିଣ ବିରାଜି ।
ପ୍ରଳୟ ସମୋଦ୍ର ଜାଣି ଗଳଗାଜି ॥୩୦॥
କାଳୀମୁଖ କାଳ ଦେବତା ସାରିକ୍ଷ ।
ରଣେ ମତ୍ତଗଜ ବୋଲାଇ ତାରାକ୍ଷ ॥
ଶରସେତୁ ସଙ୍ଗେ ଯୁଝିତ ନୁଆରି ।
ଚନ୍ଦନର ମହିମା କହିଲେ ନସରି ॥
ବନପର୍ବତ କମ୍ପଇ ଯାହାର ପାଦେ ।
ପୃଥ୍ୱି ହେଳ ଘେନଇ ଯାହାର ସିଂଘନାଦେ ॥
ବସନ୍ତ ସେନାପତି ବୀରବର ବାନା ।
ରଣେ ଜିଣିପାରଇ ବୃର୍ଧ ହୋଇକିନା ॥
ଗବୟେ ବୋଲିଣ ଯେକ ବୀର ହୋଇ ।
ତାହାର ସଙ୍ଗେ ଯୁଝିଲେ ମୃତ୍ୟୁ ଯେ
ହୁଅଇ ॥୪୦॥
ଗବାକ୍ଷର ଘାୟେ କମ୍ପଇ ବସୁମତୀ ।
ଯାହାର ନାମେ ଭୟ କରଇ ସୁରପତି ॥
ପାରାସର କଥା ନୁହଇ ଗୋଚର ।
ଶଦୃ ହୋଇ କେହି ମିଳିବେ ଛାମୁର ॥
ସାରାସର ମହିମା ଶୁଣିମା ଲଙ୍କସାଇଂ ।
ଜିଣିକେ ଆସିବ ଛାମୁକୁ ଯୁଝି ଯାଇଂ ॥
ଶଉରୀ ସେନାପତି ଅଟଇ ବଡ଼ବୀର ।
ତାହାର ଘାୟେ ବାସୁକି ନାଟେକଇ ଶିର ॥
ସେ ରଣେ ପଶିଲେ ଜଗତ ଜିଣି ପାରଇଂ ।
ଭୋଦେବ ତାହାକୁ କେହି ନୁଆରଇଂ ॥୫୦
ଶତବାଳୀ ବୋଲି ଯେବଣ ସେନାପତି ।
ଦିଗପାଳକୁ ସେ ଜିଣିପାରଇ ଲକ୍ଷେ ଘାନ୍ତି ॥
ଯେକକୁ ଯେକ ବୀରେ ଅଟନ୍ତି ଅଚାର୍ଗଳ ।
ନାମ ଧରି କେତେ କହିବି ଦଶଶିର ॥
କାହାକୁ କେତେ ବଳ ଖଟନ୍ତି ଲେଖା
ନାହିଂ ।
ରଡ଼ି ପାଡୁଛନ୍ତି ସେ ଲଙ୍କାକୁ ଅନାଇଂ ॥
ନପୁଣ ଉପାଡ଼ି ସେ ଲଙ୍କାକଇ ନିଅନ୍ତି ।
ପାଚେରୀ ଡେଇଂ ପୁଣି ନଗ୍ରରେ ପଶନ୍ତି ॥
ଶ୍ରୀରାମଚନ୍ଦ୍ର ଯେ ନିଧୂମ ଅଗ୍ନି ପ୍ରାୟେ ।
ବିଷ୍ଣୁ ଅବତାର ଅଟନ୍ତି ନିଶ୍ଚୟେ ॥୬୦
ସ୍ୱୟେଂ ରୁଦ୍ର ଅଟଇ ଶ୍ରୀରାମର ଭାଇ ।
ତାହାର ସମର ସହିବାକୁ କେହି ଭାର୍ଜନ
ଯେ ନାହିଂ ॥
ଜଗତ ଦହି ସେ ପାରଇ ଅଗ୍ନିଶରେ ।
ମେରୁ ପର୍ବତ ଉପାଡ଼ି ସେ ପାରନ୍ତି କିହ୍ନିତ
ଶରେ ॥
ଶ୍ରୀରାମ ଦୟାଳୁ ସେ ନକରନ୍ତି କୋହ ।
ବଡ଼ାଇ ପ୍ରତାପୀ ଅଟଇ ସୁମିତ୍ରାର ପୁଅ ॥
ସୁଗ୍ରୀ ହନୁମନ୍ତକୁ ଯେକଯେକ ବଳି ।
କେ ତାହାର ସଇନି ପାରିବାକ କଳି ॥
ବନ ନଦୀ ସାହେର ପର୍ବତ ଦଶଦିଶ ।
ଥାଟ ପୂରିବାରେ ନଦିଶଇଂ ଆକାଶ ॥୭୦।
ବିଭୀଷେଣ ହନୁମନ୍ତ ରାତ୍ରେଣ ବୁଲନ୍ତି ।
ଉକାସି ଦେଇଣ ସେ ଦାଉଡ଼ି ବଜାନ୍ତି ॥
ଯାନ୍ତେଣ ଦେଖିଲେ ଆମ୍ଭର ଆସିବାର
ବାଟେ ।
ଭାଇ ତୋହୋର ବିଭୀଷଣ ଡାକିଲାକ
ଆଣ୍ଟେ ॥
କେରେ କେରେ ଥାଠ ଭିତରେ ପଶି
ଯାଇଂ ।
ହନୁମନ୍ତକୁ ପେଷି ଅଣାଇଲାକ ଧରାଇ ॥
ରାତ୍ରେଣ ବନ୍ଧନ କରିଣ ଥୋଇଥିଲା ।
ରାତ୍ର ପାହିଲା ଶ୍ରୀରାମ ଛାମୁକୁ ଘେନିଗଲା ॥
ଦେଖିଣ ବୋଇଲେ ରଘୁକୁଳ ସାଇଂ ।
କହିଲୁ କଥାମାନ ଗଲୁ ଯହିଂ ପାଇଂ ॥୮୦॥
ବିଭୀଷେଣ ବହୁତ କଥା କହିଲାକ ପେଲି ।
ଶ୍ରୀରାମ ଦୟାଳୁ ଯେ ଛାଡ଼ିଦିଅ ବୋଲି ॥
ଧର୍ମେଣ ପ୍ରାଣ ପାଇ ଅଇଲୁ ଗୋସାଇଂ ।
ତାହାର ସାଙ୍ଗେ ଯୁଝିଲେ ଜୟ ତୋତେ
ନାହିଂ ॥
ଅକାରଣେ ନମରିବା କଥାରେ କର ସନ୍ଧି ।
ଯହୁଂ ସେ ହେକେ ଅଇଲେ ସପତ ସିନ୍ଧୁ
ବାନ୍ଧି ॥
ତାହାର ତୁଲେ ଦ୍ୱନ୍ଦ୍ୱ ନକର ଲଙ୍କପତି ।
ରାକ୍ଷସ ଲୁଚାୟେ ନମରନ୍ତୁ ଏଥି ॥
ଶୁକ ସାରଣଙ୍କର ଯେସନେକ ବାଣୀ ।
ଶୁଣିଣ କୋପ ଯେ କଲାକ
ବିଂଶପାଣି ॥୯୦॥
ରଜତଲୋଚନ କରିଣ କଥା କହି ।
ବୋଇଲା ରିକ୍ଷ କପି ଅଟନ୍ତି ନିନା ସେହି ॥
ଶ୍ରୀରାମ ଲକ୍ଷଣେ ଯେ ମାନବେ ଉତପତ୍ତି ।
ଜଟାକଷା ବହି ବୋଲାନ୍ତି ମହାକ୍ଷତ୍ରୀ ॥
ମୋହୋର ସାଙ୍ଗେ ଯୁଝିବାକୁ ଭାର୍ଜନ କି
ସେହି ।
ନଜାଣିମା କଥା ଅଟଇ ତୁମ୍ଭର ଯେହି ॥
ଅନେକ ବେଳ ମୁଇଂ ଇନ୍ଦ୍ରକୁ ଅଛି ଜିଣି ।
ବୀରଧ୍ୱ ବୋଲାଇଲି ଦିଗପାଳ ଚୂଡ଼ାମଣି ॥
ଚାରିଦିଗକୁ ମୁଂ ଦିଗବିଜେ କରିଗଲି ।
ରୁଦ୍ର ସହିତେ କପିଳାସ ପର୍ବତ
ଟୋଳିଲି ॥୧୦୦॥
କେ ମୋହର ହାଥେ ପ୍ରାଭବ ପାଇ ନାହିଂ ।
କେ ଅବା ନ ଡରଇ ମୋ ମୁଖକୁ ଅନାଇଂ ॥
ଯେ ମୋହର କଟେକ ଦେବେଣ
ଅଜୟେ ।
ମୋତେ ସେ ଡରନ୍ତି ମୋହର କାହାକୁ ଯେ
ଭୟେ ॥
ତୁମ୍ଭେ ମନ୍ତ୍ରୀ ବେନି ମୋହର କଥା ନିନ୍ଦ ।
ରାମଲକ୍ଷଣକୁ ବଡ଼ କରି ବନ୍ଦ ॥
ସଚରାଚର ମହୀ ବ୍ରହ୍ମାଣ୍ଡ ସାଗର ।
ଯେ ମୋହୋର ଭୟେ ଯେ କମ୍ପନ୍ତି
ଥରହର ॥
ମେରୁ ଗିରି ଚୂରି ପାରଇ ଏକା ନିମିଷକେ ।
କେ ଅଛି ମୋତେ ଜିଣିବାକୁ ସଂସାର ଭୂଇଂ
ଲୋକେ ॥୧୦॥
ଯେତେ ବୋଲି ଉଠି ଭିତରକୁ ଗଲା ।
ଦୂର କରି ଯେହାନ୍ତ ନିଅରେ ବୋଇଲା ॥
ବାରତା ପାଇ ସେ ଅନ୍ତରାଳ ଚିତ ।
ଛନ ଛନ ମନ ହୋଇଲା ବିପରୀତ ॥
ତୋଟାପୁର ଜଗତୀରେ ଉଠିଲାକ ଯାଇଂ

ପଞ୍ଚାଶ ଯୋଜନ ସେ ଉଚ୍ଚର୍ଗ ଅଛି ହୋଇଂ ॥
ଶତେ ପୁର ମେଢ଼ ସୁବର୍ଣ୍ଣମୟେ କମ ।
ନବରତ୍ନେ ଖଞ୍ଜଣି ଯେ ଦିଶଇ ଅନୁପାମ ॥
କସ୍ତୁରୀ ଚିତା କୁପୂରର ଗୁଣ୍ଡି ।
ନାନା କୁସୁମେ ଯେ ଅଛନ୍ତି ତାହା ମଣ୍ଡି ॥୨୦
ନେତ ପାଟ ପତନୀ ନାନା ବସ୍ତ୍ରମାନ ।
ଚଉକତି ଟେରା ଦିଶଇ ବିତପନ ॥
ମର୍କତର ଓରା ନୀଳମଣି ଗୁରୁଜ ।
କୃବିନ୍ଦର ଗୁଅ ଶେଣି ଯେ ବୈଡୁ଼ଯ ॥
ମାଣିକର ସ୍ତମ୍ଭ ସ୍ଫଟିକର ପାବଚ୍ଛ ।
ଗଜମୋତି ଝରା ଦିଶଇ ମହାଘଞ୍ଚ ॥
ସାତ ପୁରେଣ ଯେ ଅଛଇ ଶତ ଆଟୁ ।
ଯେ ଯାହାର ବେଳେ ଯୁବତୀ ଥାନ୍ତି ଖଟୁ ॥
ମର୍କତ ନବର ଯେ ଶୋଭିତ ସର୍ବଠାୟେ ।
ଉପରେ ବିଚିତ୍ର ଯେ ଟାଣିଲାଅଛି ଚାନ୍ଦୁଆଏ ॥୩୦॥
କେବଣ ପିତୁଳୀ ବାଡ଼େ ଅଙ୍ଗ ଢାଳି ।
ବିବିଧ ବର୍ଣ୍ଣେ ଚାମର ପାରୁଶେ ଲୁଳି ॥
କାହିଂ ପାଟ ମୋଡ଼ା କାହିଂ ଖଟ ଦୋଳି ।
କେବଣ ହିଂ ପୁରେ ଶେଯାଇ ପାଟତୂଳୀ ॥
କାହିଂ ରତ୍ନପଲଙ୍କ କାହିଂ ସିଂହାସନ ।
ପୁରେକ କବାଟ ଶୁଦ୍ଧ୍ୟ ଯେ ସୁବର୍ଣ୍ଣ ॥
ତହିଂଯାଇ ବିଜୟେ ଲଙ୍କାର ଦଶଶିରି ।
ଉପରକୁ ବୋଲି ସେ ଗଲା ଖର କରି ॥
ଉତ୍ତର ଦିଗକଇ ସେ ଚାହିଂଲା ନିରୋପି ।
ଦେଖିଲା ପୃଥିବୀଯାକେ ପୂରିଅଛି କପି ॥୪୦॥
ନଦୀ ବନ ପର୍ବତ ସମୋଦ୍ର ଚଉପାଶ ।
ବାନର ଭାଲୁକେ ସେ ପୂରିଛି ଦଶଦିଶ ॥
ଇନ୍ଦ୍ରର ଉପବନ ସୁବଳୟା ପର୍ବତ ।
ସିନ୍ଧୁ ଉତ୍ତର କୂଳ ବନ୍ଧ ଯେ ସହିତ ॥
ଦେହେ ଦେହ ଲାଗି ଅଛନ୍ତି ସଇନି ।
କିଳିକିଳା ଘାୟେ କମ୍ପଇ ମେଦିନୀ ॥
କେବଣ ଠାବରେ ଯେ ସିନ୍ଦୂର ବର୍ଣ୍ଣ ଦିଶେ ।
କାହିଂ ହରିତାଳ ତେଜ ଯେ ପ୍ରକାଶେ ॥

କାହିଂ ମେଘଖଣ୍ଡ ଦିଶଇ କାହିଂ ଦିଶଇ କଳା ।
କେବଣ ଠାବରେ ଯେ ଦିଶଇ ଶାମଳା ॥୫୦॥
କାହିଂ ପାଣ୍ଡୁର କାହିଂ ଧୂମ ବର୍ଣ୍ଣ ।
କାହିଂ ପଚାବର୍ଣ୍ଣ କାହିଂ ଯେ ସୁବର୍ଣ୍ଣ ॥
କାହିଂ ତାରାଗଣ ଅଛନ୍ତି କି ଶୋହି ।
କେବଣ ଠାବରେ ଅନେକ ଚନ୍ଦ୍ର ଅଛଇ କି ଉଇଂ ॥
କାହିଂ କୁହୁଡ଼ି କାହିଂ କଜ୍ଜଳ ନିଶାନଭ ।
କେବଣ ସ୍ଥାନ ଯେ ଦିଶଇ ଚିତ୍ରଭାବ ॥
ଦେଖି ରାବଣର ନପୁରଇ କିଛି ।
କି ଜାଣି ତଇଳରେ ପଡ଼ିଯାଇ ମାଛି ॥
ଧାତିକାରେ ହୋଇ ଯେ ମେଢ଼ରୁ ଓହ୍ଲାଇଲା ।
ଆସ୍ଥାନ ନବରେ ଆସି ଅବକାଶ ହୋଇଲା ॥୬୦॥
ଇନ୍ଦ୍ରଜିତ ପ୍ରଶସ୍ତ ଅଛନ୍ତି ବେନିଜନ ।
ଉଭା ହୋଇଲେ ସେ ଓଲଗ ମେଲିଣ ॥
ବାଜିଆରେ ବିଜୟେ କଲାକ ରାୟେ ଯାଇଂ ।
ଆଜ୍ଞା ଦେଲା ଯେ ଇନ୍ଦ୍ରଜିତକଇ ରାଇଂ ॥
ଶାର୍ଦୋଳକୁ ହକରାଇ ଅଣାଅ ମୋର ପାଶ ।
ଆନ କେହି ନଆସନ୍ତୁ ଦୁଆରେ କହି ଆସ ॥
ଶୁଣି ଇନ୍ଦ୍ରଜିତ ଯେ ଗଲାକ ତଡ଼ତି ।
ଶାର୍ଦୋଳ ନାମ ଧରି ରାଇଲାକ ଧାତି ॥
ଶୁଣିଣ ତଗର ଯେ ବେଗ ହୋଇ ଗଲା ।
ମେଘନାଦ ଛାମୁରେ ଯାଇଣ ମିଳିଲା ॥୭୦।
କୁମାର ବୋଇଲା ତୋତେ ନୃପତିର ଆଦେଶ ।
ଯେକାନ୍ତ କଥା କହିବେ ବେଗେ ତୁମ୍ଭେ ଆସ ॥
ଦ୍ୱାରପାଳକଇ କହିଲା ନପଶିବେ କେହି ।
ଛାଡ଼ି ନଦେବୁଟି ନୃପତି ଆଜ୍ଞା ନାହିଂ ॥
ଯେତେ କହିଣ ସେ ଭିତରକୁ ଗଲା ।
ନୃପତି ଛାମୁରେ ସେ ଯାଇଣ ମିଳିଲା ॥

ପ୍ରଳମ୍ଭ କରିଣ ଶାର୍ଦୋଳ ବେଗେ ଉଠି ।
ଶିରେ ଯୋଡ଼ି ଅଛଇ ବେନିକର ଗୋଟି ॥
ରାବଣ ବୋଇଲା ତୁ ସନ୍ନିଧକୁ ଆସ ।
ଶୁଣି ଶାର୍ଦୋଳ ମିଳଇ ରାୟେ ପାଶ ॥୮୦।
ଦଶଗ୍ରୀବ କହଇ ମଧୁର ବଚନ ।
ଇନ୍ଦ୍ରଜିତ ପ୍ରଶସ୍ତ ତୁମ୍ଭେ ଅଛ ବେନିଜନ ॥
ଯେ ମୋହୋର ଯେତେ ବିଶ୍ୱାସ ତୁମ୍ଭେ ଜାଣ ।
ଯେହାଙ୍କର ଜଂଘେ ମୁଂ ଦିଅଇ ସାମସ୍ଥାନ ॥
ଚାର ବୋଲିଣ ମୁଂ ଯେହାକୁ ନକରଇ ସାନ ।
ତୁମ୍ଭରି ସମାନେ ଯେହାକୁ ଦିଅଇ ସନମାନ ॥
ଗୁପତ କଥାମାନ ଯେହାକୁ ରାବଣ ପୁଛଇଂ ।
ଯେହାକୁ ମୋହୋ ଅନେକ ଦୟା ଯେ ଅଛଇ ॥
ଯେତେକାଳୁ ମୁଂ ଲଙ୍କାରେ ରାଜ୍ୟ କଲି ।
ଦିନେହେଂ ମୁଂ ତାକୁ ଅନ୍ତର ନବୁଝିଲି ॥୯୦।
ଯେବେ ଆସି ମୋତେ ଯେ ପଡ଼ିଲା ବିପତ୍ତି ।
ଯେଥି ରିକ୍ଷ ପ୍ରକଟକୁ ହୋଇଲା ମୋର ଭାତି ॥
ରାମ ଲକ୍ଷ୍ମଣ ବେନି ଜଟାଧାରୀ ।
ପର୍ବତ ବାନ୍ଧିଣ ସେ ହୋଇଲେ ସିନ୍ଧୁ ପାରି ॥
ତାହାଙ୍କର ବଳ ଯେବେ କଳିଆସ ଯାଇ ।
ଆନ ବୋଲକୁ ଯେ ପ୍ରତେ ମୋହର ନାହିଂ ॥
ଶୁକ ସାରଣେ ଯେ କହିଲେ ମୋତେ ଭଣ୍ଡ ।
ତାହାଙ୍କର ବୋଲକୁ ମୁଂ ପାଇଲି ବିଖଣ୍ଡ ॥
ଯେବେ ଯାଇ ଖୋଜି ଆସିବାକ ଯାହା ।
ମୁହିଂ ସଂପ୍ରତେ ଯେ କରିବଇଂ ତାହା ॥୧୦୦॥
ଶୁଣି ଇନ୍ଦ୍ରଜିତ ପ୍ରଶସ୍ତ ବୋଲନ୍ତି ।
ତୋହୋର ଆଗ୍ୟାଂକେ ଭାଙ୍ଗିବ ଲଙ୍କପତି ॥
ଯିବ ଏହିକ୍ଷଣି ଆସିବ ସକଳ କଳି ।
ଶୁଣି ବୋଲଇ ଯେ ରାବଣ ମହାବଳୀ ॥
ଯାସି ଶାର୍ଦୋଳ ହୋ କରସି ମୋର କାର୍ଯ୍ୟ ।

ତୋହୋର ଅଇଲେ ଯେ ମୋହର
ମୋଣୋହି ଆଜ ॥
ଶୁଣି ଶାର୍ଦ୍ଦୋଳ ଯେ ଶିରେ କର ଯୋଡ଼ି ।
ଯିବି ବେଗ ହୋଇ ଆସିବି ବାହୁଡ଼ି ॥
ନବର ଭିତରୁ ସେ ବାହାର ହୋଇଗଲା ।
ମାୟାମତେ କପି ଶ୍ୟରୀର ଧଇଲା ॥୧୦॥
ଲଙ୍କାଗଡ଼ର ସେ ଉତ୍ତର ଦ୍ୱାରେ ଥାଇଂ ।
ବାହାରେଣ ଥାଇ ଉତ୍ତରକୁ ଦୃଷ୍ଟି ଦେଲା
ଚହି ॥
ଇନ୍ଦ୍ର ଉପବନ ସୁବଳୟା ପର୍ବତ ।
ଯେଥି ସଇନି ପୂରିଅଛନ୍ତି ଅପ୍ରମିତ ॥
ଦେଖି ଭୟେକରି ପାଚେରୀକି ଉଠି ।
ଚାହିଂଲା କପିମୟେ ଦିଶୁଅଛି ସୃଷ୍ଟି ॥
ଶତେ ଯୋଜନ ଦୀର୍ଘ ପ୍ରତି ଶହେକୋଶ ।
ଲଙ୍କା ଚାରିକତି ଅଛି ଯେହାଙ୍କର ଦେଶ ॥
ଯେଥି ନିଘଞ୍ଚରେ ପୂରିଅଛି ବଳ ।
ପଚାଶ ଯୋଜନ ଦୀର୍ଘ ଦିଶଇ ଗହଳ ॥୨୦॥
ବନ୍ଧ ଶତେଯୋଜନ ଚାରିଶତ କ୍ରୋଶ ପ୍ରତି ।
ଆସିବାର ଘାୟେ ଦେହେ ଦେହେ
ଯନ୍ତାଯନ୍ତି ॥
ଦୁଇ ପାଖେ ବଳ ଥୋକାୟେ ଅଛନ୍ତି ରହି ।
ଗହଳ ସରିଲେ ସେ ଆସିବେ ପାରିହୋଇ ॥
ସିନ୍ଧୁ ଉତ୍ତର କୂଳ ଦିଶଇ ଧୂମ ମୟେ ।
ଶାର୍ଦ୍ଦୋଳ ମହାତ୍ମା ଯେ ପାଇଲା ମହାଭୟେ ॥
ମନ୍ତ୍ରେକ ପଢ଼ିଣ କପାଳେ ଧୂଳି ଘେନି ।
ଲକ୍ଷେ ଯୋଜନ ଲୋକନ୍ତ ପାରଇ ତହିଂ
ଚିହ୍ନି ॥
ସେ ମନ୍ତ୍ର ଶାର୍ଦ୍ଦୋଳକୁ ଯେ ନାରଦ
କହିଥିଲେ ।
କେବଣହିଂ ବେଳେ ସେ ପ୍ରସନ୍ନ ହୋଇ
ଦେଇଥିଲେ ॥୩୦॥
ତୁ ଯେ ଡଗରା ହୋ ଦଶଦିଗ ଯାଉ ।
ଅନେକ ଦୂରର ଯେ ବାରତାମାନ ପାଉ ॥
ଗୁପତ ପ୍ରଘଟ ଜାଣିମୁଂ କେମନ୍ତେ ।
ମୁହିଂ ଏବେ ପଦାର୍ଥେ କହୁଅଛି ତୋତେ ॥
ଅଶ୍ୱ ଲାଦି କରେ ଆଣିବ ତଡ଼ତି ।
ବସ୍ତ୍ରେ ପୂରାଇ ତାହା ଚିପୋଡ଼ିବ ଧାତି ॥
ତମ୍ୟାପାତ୍ରକେକ ଅଦା ଲୋଟିୟେ
ଘେନିଥିବ ।
ମରିଚ ଘେନି ଦଳିଲେ ଯେ ଅଞ୍ଜନେକ
ହୋଇବ ॥
ନୟନେ ରଞ୍ଜିଲେ ଯେ ଅନ୍ଧାର ଆଲୁଅ
ଦିଶଇ ।
ଘେନ ତୋର ବିଚାରେ ଯେବଣ
ଯୋଗାଇ ॥୪୦॥
ଆବର ମନ୍ତ୍ରେକ ପଢ଼ି ବାମପାଦ ଧୂଳି ।
ସୂର୍ଯ୍ୟ ସୁମରି ବୋଳିବ ଆପଣା ମଉଳି ॥
ଲକ୍ଷେକ ଯୋଜନର ଜାଣିବ ବାରତା ।
ଆବର ଶାର୍ଦ୍ଦୋଳ ହୋ ଶୁଣ ରସ କଥା ॥
ଶେତ ଅରଖ ସେ ପୂର୍ବକତି ମୂଳ ।
ଶୁକଳ ଅଙ୍କରାନ୍ତି ଶିଖର ଏକ ଡାଳ ॥
ଗୋରଚନା କର୍ପୂର କୁଙ୍କୁମ ଯେସବୁ ସମ ।
ସବୁୟେକ କରି ଦଳିଲେ ଯେ ହୋଇବ
ଉପାମ ॥
ତୈଲୋକ୍ୟ ବଶ ହୋଇବେ ତହିଂକି ।
ମଦନ ଅବତାର ଦିଶିବୁ ସ୍ତିରୀଙ୍କି ॥୫୦॥
ଯେ ତିନି ପଦାର୍ଥକୁ ଘେନ ହୋ ଶାର୍ଦ୍ଦୋଳ ।
ଯନ୍ତ ବଜାଇଣ ଯେ କଲୁ ମୋତେ ଭୋଳ ॥
ପ୍ରସନ ହୋଇଲି ଘେନ ତିନି ବର ।
ବିଘ୍ନ ଉପୁଜିବ ତୋତେ ଯେବଣହିଂ ପୁର ॥
ଯେତେକ ବୋଲି ନାରଦ ଯେ ଯେ ମନ୍ତ୍ର
ଦେଲା ।
ପୂର୍ବର ଭାଗ୍ୟେ ଶାର୍ଦ୍ଦୋଳକୁ ପ୍ରାପତ
ହୋଇଲା ॥
ସେ ଘେନି ନାନାପୁରକୁ ସେ ଯାଇଂ ।
ନାନା ବାରତା ଆଣି ରାବଣକୁ ଦ୍ୟଇ ॥
ସେ କଥା ଜାଣିଣ ସେ ବିଶର୍ବାର ସୁତ ।
ଥାଠ କଳିବାକୁ ପେଷିଲା ତାହାନ୍ତ ॥୬୦॥
ସ୍ୱାମୀ ଆଜ୍ଞା ପ୍ରମାଣେ ଶାର୍ଦ୍ଦୋଳ ଅଇଲା ।
ପାଚେରୀ ଉପରେ ଯେ ଉଠିଣ ଅନାଇଲା ॥
ନାରଦ କହିଲା ମନ୍ତ୍ର ସୁମରଣା କରି ।
ବାମ ପାଦ ଧୂଳି ନିଜ କରେ ଧରି ॥
କଜ୍ଜଳ ନିଜ କପୋଳେ ଲିପିଲାକ ନେଇ ।
ଉତ୍ତର ଦିଗକଇ ସେ ଦେଲାକ ଅନାଇ ॥
ଶ୍ରୀରାମ ସଇନି ରିକ୍ଷ କପି ବଳ ।
ସଇନି ଗହଳେ ତିଳ ନ ପଡ଼ଇ ତଳ ॥
ଇନ୍ଦ୍ର ଉପବନ ସମୋଦ୍ର ଉତ୍ତର ପାଶ ।
ସୁବଳୟା ପର୍ବତ ନ ଦିଶଇ ଲେଶ ॥୭୦॥
ବନ୍ଧର ଉପରେ ସିନ୍ଧୁର ଉତ୍ତର କୂଳ ।
ମାଲ୍ୟବନ୍ତ ପର୍ବତେଯେ ଅଛନ୍ତି କପି ବଳ ॥
ବିଂଝଗିରି ଶିଖର ବେଳାବନ ଲାଇଂ ।
ସଇନି ନିଘଞ୍ଚରେ ନ ଦିଶଇ ଭୂଇଂ ॥
ବେଣୀ ନଦୀ ପଛକତି ଋଷିମୁଖ ଘେନି ।
ତୁଙ୍ଗଭଦ୍ରା କୂଳେ ମାଡ଼ିଅଛନ୍ତି ସଇନି ॥
ଗୋଦାବରୀ କୂଳ କିଅର ପରବତ ।
ଯେଥି ରିକ୍ଷ କପିଯେ ଅଛନ୍ତି ବହୁତ ॥
ପଦ୍ମନାଭ ଶୟନ ପଞ୍ଚୁଧାରା ଗିରି ।
ମହୀନ୍ଦ୍ର ସୀମାରେ ଥାଠ ଅଛି ପୂରି ॥୮୦॥
କିଷ୍କିନ୍ଧା କଟକରୁ ଆସିବା ଅଛି ଆସି ।
କାବେରୀ ନଦୀର ବାଲି ନାହିଂ ଦିଶି ॥
ମଇଲାଣ ଦେଶ କନାଉଜ କାଞ୍ଚି ।
ଯେଥି ନିଘଞ୍ଚର ସଇନି ଘଞ୍ଚାଘଞ୍ଚି ॥
କନାଉଜ ସଉରାଷ୍ଟ୍ର ପଶ୍ଚିମ ସିନ୍ଧୁକୂଳ ।
ଛଡ଼ାଛଡ଼ି ନାହିଂ ଯେ ରିକ୍ଷ କପିବଳ ॥
ଗଦା ଆକାର କେ ପର୍ବତଙ୍କ ସରି ।
ନଦୀକୂଳ ଗଛ କାହାକୁ ପଟାନ୍ତରି ॥
ଦେଖି ଶାର୍ଦ୍ଦୋଳ ପାଚେରୀ ଉପରୁ ଖସି ।
ଗଡ଼ର ଭିତରକୁ ବାହୁଡ଼ିଣ ଆସି ॥ ୯୦॥
ରାଜାର ନବରେ ପଶିଲାକ ଯାଇଂ ।
ଦେଖିଲା ଜଗତୀରେ ବସିଛି ଲଙ୍କସାଇଂ ।
ପାୟେ ପଡ଼ି ଶୋଇ ଉଠିଲାକ ଧାତି ।
ହାଥଯୋଡ଼ି ଗଲା ନୃପତିର କତି ॥
ଇନ୍ଦ୍ରଜିତ ପ୍ରଶସ୍ତ ଅଛନ୍ତି ଯେ ବେନି ।
ଶାର୍ଦ୍ଦୋଳ ସହିତେ ଯେ ହୋଇଲେ ଜଣ
ତିନି ॥
ଲଙ୍କପତି ପୁଛଇ କେବଣହିଂ କଥା ।
କହହୋ ଡଗର ତୋହୋର ତଇଥ
ବାରତା ॥

କେବଣ କେବଣ କଥା ଦେଖିଣ ଅଇଲୁ ।
କିସ କିସ କଥା ମନରେ ବିଚାରିଲୁ ॥୧୦୦
ଶାର୍ଦ୍ଦୋଳ ବୋଲଇ ଯେ ଯୋଡ଼ି ବେନି
କର ।
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର ॥
ଯେ ତୋହୋର ଆଜ୍ଞା ପ୍ରମାଣେ ମୁହିଂ ଗଲି ।
ନବରୁ ବାହାର ହୋଇ ମୁଂ କପି ରୂପ
ଧଇଲି ॥
ଶ୍ରୀରାମ ଥାଟରେ ଯେ ନ ପାରିଲି ପଶି ।
ପାଚେରୀକି ଉଠିଲି ବାହୁଡ଼ିଣ ଆସି ॥
ଉତ୍ତର ଦିଗକଇ ନିରୋପି ଚାହିଂଲି ।
ମନ୍ତ୍ରବଳେ ଜମ୍ବୋଦ୍ୱୀପକୁ ଅନାଇଲି ॥
ଦେଖିଲି ଅପ୍ରମିତ ସଇନି ଅଛଇଂ ।
କଳିତ ଭାର୍ଜନ କେ ହୋଇବ
ଥାଠକଇ ॥୧୦॥
ଇନ୍ଦ୍ର ଉପବନ ସୁବଳୟା ପରବତ ।
ଲଙ୍କା ଉତ୍ତର ଗଡ଼ଦ୍ୱାରେ ଯେ ସୀମାନ୍ତ ॥
ବନ୍ଧ ଶହେ କ୍ରୁଶ ସିନ୍ଧୁ ତେଣି କୂଳ ।
ମାଲ୍ୟବନ୍ତ ଗିରି ମହେନ୍ଦ୍ର ସକଳ ॥
ପଶ୍ଚିମ ସାଗର କନାଉଜ ଘେନି ।
ଚନ୍ଦ୍ରଗିରି ସୀମାନ୍ତେ ଅଛନ୍ତି ସଇନି ॥
ଋଷିମୁଖ ପର୍ବତ ଆବର ବେଲାବଣ ।
ବିନ୍ଧ୍ୟ ମହାନ୍ଦ୍ର କିଷ୍କିନ୍ଧ୍ୟା ଆୟତନ ॥
ଦେବଗିରି କତି ଋଷିକୋଇଲା କନାଉଜ
ଘେନି ।
ମହ୍ଲାର ଗୋଦାବରୀ ଆବର ଉଜାଣି ॥୨୦॥
ସଇନି ପୂରିବାରେ ନ ଦିଶଇ ଭୂଇଂ ।
ଶ୍ରୀରାମ ଥାଠକୁ ମୁଂ ଯେ ନ ପାରିବି କହି ॥
ଭୋଦେବ ଦଶକନ୍ଧ ତୁ କି ବିଚାରୁ ମନର ।
ଦେବେଣ ଅଗୋଚର ଯେ ଶ୍ରୀରାମ ଈଶ୍ୱର ॥
ଶୁଣିଣ ରାବଣେଶ୍ୱର ତରସ୍ତ ହୋଇଲା ।
ପଞ୍ଚଭୂତ ଆତ୍ମାରେ ବହୁତ ଭୀତି କଲା ॥
ଇନ୍ଦ୍ରଜିତକୁ ବୋଇଲା ଶୁକ ସାରଣକୁ ରାଅ ।
ଆବର ଅମନାତ୍ୟମାନଙ୍କୁ ହକରାଅ ॥
ରାଉତ ମାହୁନ୍ତ ରଥୀ ପୟେକାରୀ ।
ବେଗେଣ ଆସନ୍ତୁ ବୋଇଲା ଦଶଶିରି ॥୩୦॥

ତତକ୍ଷଣେ ମେଘନାଦ ଯେ ଦ୍ୱାରୀକି
ଆଜ୍ଞାଦେଲା ।
ନୃପତି ଅବକାଶ ହୋଇଲେ ବୋଇଲା ॥
ଆସନ୍ତୁ ସମସ୍ତ ସଇନି ନିରୋଧ ନ କର ।
ବାହାରେ ଥିବା ଲୋକକୁ ବେଗେଣ ହକାର ॥
ଶୁକ ସାରଣ ବେନି ଆସନ୍ତୁ ସଜ ହୋଇ ।
ତୋଷ ମନେ ଆଜ୍ଞା ଯେ ଦେଲା
ଲଙ୍କସାଇଂ ॥
ଶୁଣିଣ ଦ୍ୱାରପାଳ ଯେ ବାହାରକୁ ଗଲା ।
ରାୟେ ଅବକାଶ ହୋଇଲେ ବୋଇଲା ॥
ନିଯୋଗର ଲୋକ ଯେ ବହନ ହୋଇ
ଆସ ।
ରଥୀ ଯୋଧା ପାଇକ ଯେତେ ଅସୁର
ବଂଶ ॥୪୦॥
ପାତ୍ର ଅମନାତ୍ୟ ମନ୍ତ୍ରୀଗଣମାନ ।
ବଡ଼ ଅବକାଶ ନୃର୍ପତି ଦଶାନନ ॥
ଆଜ୍ଞା ହୋଇଲା ଯେ ଦ୍ରଶନ ଆସି କର ।
ଶୁଣି ସମସ୍ତେ ହେ ପଶିଲେ ଭିତର ॥
ପାୟେ ପଡ଼ି ଉଠି ଦ୍ରଶନ ଯାଇ କଲେ ।
ଯେ ଯାହାର ଅନରୂପେ ପଟୁଆରି ରହିଲେ ॥
ରାଉତ ମାହୁନ୍ତ ରଥୀ ପୟେକାର ।
ବିଶ୍ୱାସ ଲୋକ ଯେ ଅଛନ୍ତି ଅପାର ॥
ଶୁକ ସାରଣ ଯେ ବେନି ମନ୍ତ୍ରୀ ଛନ୍ତି ।
ମେଘନାଦ ଯମଘଣ୍ଟ ପ୍ରଶସ୍ତ
ସେନାପତି ॥୫୦॥
ମୋହୋଦର ମହାପାରୁଶ ଧୂମ୍ରାକ୍ଷ ।
କାକାକ୍ଷ ସହିତେ କୁଳୁପାକ୍ଷ ଲୋହିତାକ୍ଷ ॥
କାଳଘଣ୍ଟ ଯମଘଣ୍ଟ ବୀରଭଦ୍ର ଅସୁର ।
ଅଜୟେ ଅମୟେ ଯେ ଶାନ୍ତି ଯେ ସାଗର ॥
କାଳିଜଂନ କାପିଳି ବିରଙ୍ଗ ବକାକ୍ଷଣ୍ଡ ।
ସାକାକ୍ଷ ବିରୁପାକ୍ଷ କୁଣ୍ଡଳ ପରଚଣ୍ଡ ॥
କୁମ୍ଭ ନିକୁମ୍ଭ ଯେ ମହାକାଳକେତୁ ।
ଭାରିଯା ଭାଇମାନେ ବଇରି ଶଲ ହେତୁ ॥
ଦେବଦୂତ ମହାଧର ଭାସକର୍ଣ୍ଣ ଚେତା ।
ନାମଧରି କେ ତାହା କରିବ ଗଣିତା ।୬୦
ସଇନି ନିରନ୍ତରେ କଳନା ନ ଯାଇ ।

ଲଙ୍କପତି ବୋଇଲା ସଇନିଙ୍କୁ ହାଦେ
ଚାହିଂ ॥
ରଥୀ ମହାରଥୀ ସମସ୍ତେ ଅଛ ଏଥ ।
ଯେକେ ଯେକେ ଜିଣିପାର ଶଚିନାଥ ॥
ଯୋଦ୍ଧା ରାଉତ ଯେ ପାଇକ ଲେଖାନାହିଂ ।
ଯେତେକାଳ ଅପଚୟ ନ ପାଇଲ କାହିଂ ॥
ମୋହୋର ପରସାଦେ ଭୁଞ୍ଜିଲ ବିଭୂତି ।
ସ୍ୱର୍ଗେ ବସାଇଲି ଯେ ଦେବତାଙ୍କ କତି ॥
ଯାନ ସୁକାସନ ଯେ ହୟଗଜ ଚଢ଼ ।
ବେଦ ପୁରାଣ ଯେ ଆଗମ ଶାସ୍ତ୍ର ପଢ଼ ॥୭୦
ନବରତ୍ନ ଶୁଦ୍ଧ ସୁବର୍ଣ୍ଣମୟେ ଜଡ଼ି ।
ଆନୁ ଆନ ଅଳଙ୍କାର ନାଅ ଷୋଳ ଘଡ଼ି ॥
ଚନ୍ଦ୍ରବଦନୀଯେ ଯୁବତୀ ଭୋଗ୍ୟ କର ।
ବିଚିତ୍ର ମହାକମ ଯେ ସବୁଙ୍କରି ଘର ॥
ସଂଗ୍ରାମରେ ନିଶଙ୍କ ସମସ୍ତେହେଂ ଅଟ ।
ଅବଜ୍ଞା ନକର ମୋହୋର ପାଦେ ଖଟ ॥
ଯମରାଜକୁ ଜିଣିଲ ଯେ ମୃତ୍ୟୁ ନାହିଂ
ଏଣେ ।
ଏତେ ଅଇଶ୍ୱର୍ଯ୍ୟ ପାଇଅଛ ଯେଣେ ॥
ତହିଂକି ଉବୁରା ଯେ ହୋଇଅଛି
ଆନଲୋକ ।
ରାତ୍ରେ ନିଦ୍ରା ନାହିଂ ଦିବସେ ନାହିଂ
ଭୋଖ ॥୮୦
କି ବୁଧି କରିବା ହୋ କହସି ବିଚାରି ।
ନର ବାନର ଆସି ଏବେ ହୋଇଲେ
ବଇରି ॥
ଯେସନେକ ବିପରୀତ ଶୁଣିଲା ନ ଥିଲା ।
ଚୋର ଆସି ଯେବେ ସେରନ୍ତା ହୋଇଲା ॥
ରିକ୍ଷ କପିମାନେ ବନସ୍ତେଣ ଥାନ୍ତି ।
ମନିଷ୍ୟ ଦେଖିଲେ ପଳାଇ ପଶନ୍ତି ॥
ଯେବେ ଆସି ପାରିହୋଇଲେ ମହାଜଳ ।
ମାଡ଼ି ବସିଲେକ ସୁବଳୟା ଶୟଳ ॥
ଶ୍ରୀରାମ ଲକ୍ଷଣ ଅଟନ୍ତି ଜଟାଧାରୀ ।
କରେଣ ଶସ୍ତ୍ର ଧରି ଲୋଡ଼ନ୍ତି ମୋତେ
ମାରି ॥୯୦॥
ସେ ଆମ୍ଭର ଭକ୍ଷମାନ ଅଟନ୍ତି ଯୁକତେ ।

ଯେଡ଼େକ ଭରସା ବହିଲେ କେମନ୍ତେ ॥
ଭୟେ ନ କରିଣ ତରିଲେ ସିନ୍ଧୁ ପାଣି ।
ଅତିହିଁ ଘଞ୍ଚାଇ ଯେ କଲେ ମୋତେ ଆଣି ॥
ଆହେ ସମସ୍ତେହେଁ ବିଚାର କେମନ୍ତ ।
ଅକାଳେ ଶତୃକୁ ଯେ ହୋଇଲ ପରାପତ ॥
ରାବଣ ମୁଖରୁ ଯେ ଯେସନେକ ବାଣୀ
ଶୁଣି ।
ଦଇତେ ପ୍ରତିଜ୍ଞା କରନ୍ତି ଶିରଧୁଣି ॥
ଭୋଦେବ ଦଶଗ୍ରୀବ ଯେହା କିମ୍ପା କହୁ ।
ବ୍ରହ୍ମାଣ୍ଡେ କେ ତୋ ତହୁଁ ଅଛି
ମହାବାହୁ ॥୧୦୦॥
ଚଉଦ ଭୁବନେ ଇନ୍ଦ୍ର ଆଧିପତି ।
ସେ ଆସି ବସଇ ତୋର ଦ୍ୱାରପାଳ କତି ॥
ବ୍ରହ୍ମା ପିତାମହ ଯେ ତିନି ଜଗତର ସାଇଁ ।
ରାତ୍ର ପହଡ଼େ ଥାଉ ସେ ବେଦ ଆସି
ପଢ଼ଇଁ ॥
ସଦାଶିବ ପ୍ରସନ ହୋଇଣ ବରଦେଲା ।
ଯେକା ମାତ୍ରକ ବିଷ୍ଣୁ ପ୍ରସନ ନୋହିଲା ॥
ସେ ପୁଣି ପାତାଳେ ଯେ ଭେଟିଲାକ
ତୋତେ ।
ଅନୁଗ୍ରହ କଲା କରୁଣାମୟ ଚିତ୍ତେ ॥
ଦଶ ଦିଗପାଳ ଅଟନ୍ତି ତୋର ବଶ ।
ତୋତେ ସେବା କରିଅଛନ୍ତି ତ୍ରିଦଶ ॥୧୦॥
ଯେ ମହୀମଣ୍ଡଳେ ଯେତେକ ନୃପତି ।
ଯେ ତୋହୋର ଚରଣେ ଖଟନ୍ତି ବଶ୍ୟବୃତି ॥
ସର୍ବଶତୃ ତୃଣ ଅଟଇ ତୋର ବାନା ।
ସାରଥି ବିହୁନେ ଚଳଇ ବିବାନା ॥
ଅମୋହ ଶହସ୍ର ଯେ ପ୍ରାପତ ତୋର କର୍ମେ ।
ଯମ ଦେବତାକୁ ଜିଣି ତୁ ସଂଗ୍ରାମେ ॥
ଜଗତ ସମ୍ପତ୍ତି ଲଙ୍କାରେ ଠୁଳ କଲୁ ।
ଛପନ ଗଣ୍ଡା ଯୁଗକୁ ଆୟୁଯେ ପାଇଲୁ ॥
ସଂଏଣ ଶକତା ତୁ ବଏଣ ବକତା ।
ଧାର୍ମିକ ଆଚାର ବିବେକ ମରିଜିତା ॥୨୦
ତିନି ତୈଲୋକ୍ୟେ ତୁ ଅଟୁ ଯେ
ଗୋସାଇଁ ।
କେ ତୋହୋର ହାଥେ ପ୍ରାଭବ ପାଇନାହିଁ ॥

କିମ୍ପା ତୁ ବିସ୍ମୟେ ହଉ ଦଶଶିର ।
ବୀରଙ୍କର ଉପରେ ତୁ ଅଟୁ ବୀରବର ॥
ଋକ୍ଷ ବାନରମାନେ ଆବର ଜଟାଧାରୀ ।
କିସ ବଳବୀର୍ଯ୍ୟ ଅଟଇ ତାହାଙ୍କରି ॥
ସିନ୍ଧୁ ତରିବାକୁ ନ କରସି ଚିନ୍ତା ।
ଦେସି ଆଗ୍ୟାଂ ଦେବ ମନ୍ଦୋଦରୀର କାନ୍ତା ॥
ଭଲ୍ଲୁକ ମରକଟ ଯେତେକ ବଳ ଅଛି ।
ଆବର ଦଶରଥଙ୍କର ବେନି ବଛି ॥୩୦॥
ଯେହିକ୍ଷଣି ସବୁନ୍ତି ଆସିବୁ ଆମ୍ଭେ ମାରି ।
ଯେ ପରିଘାଇବ ତାହାନ୍ତ ଆଦିକରି ॥
ଇକ୍ଷିନ୍ଧ୍ୟା ଅଯୋଧ୍ୟା କରିବୁ ଭସ୍ମରାଶି ।
ବିପିନେ ଗୋଟିଏ ନ ଥିବେ ତରୁ ଶିଷି ॥
ନ କରସି ହେଳ ଯିବୁ ଯେହିକ୍ଷଣି ।
ଦଶଗ୍ରୀବ ସନ୍ତୋଷ ହୋଇଲା ଯେହା ଶୁଣି ॥
ଅକପ ହସିକରି ଯେ ସମାର୍ଜଇ କର ।
ମଧୁର ବଚନ ଯେ କହଇ ସଧୀର ॥
ଯାହା ସେ କହିଲ ଅଟଇ ଯେ ସାଧ ।
ଆଗକରି କିମ୍ପା ଆରମ୍ଭିବା ଯୁଦ୍ଧ ॥୪୦॥
ଯେବେ ଆମ୍ଭେ ଗଡ଼ର କପାଟ ପାଡ଼ିଥିବା ।
ନବରୁ ବାହାର ହୋଇ ଗୋଟିଯେ ନ ଯିବା ॥
ସୁବଳୟା ପର୍ବତେ ଯେ ଅସଭାବ ନାହିଁ ।
ବାହୁଡ଼ି ପଳାନ୍ତି ସିନା ଦିନାକେତେ ରହି ॥
ଭଣ୍ଡିଣ ତପୁସୀ ଯେ ଆଣିଅଛି ରାଇ ।
ଲଙ୍କାଗଡ଼ ଚୂର କରିବ ବୋଲି କହି ॥
ଅନ୍ନ ବ୍ୟଞ୍ଜନ ଯେ ଭୁଞ୍ଜିବା ସାରଦ୍ରବ୍ୟ ।
ଯେବଣ ଦ୍ରବ୍ୟ ପାଇବା ଦେବଙ୍କୁ ଦୁର୍ଲ୍ଲଭ ॥
ଯେମନ୍ତେ ମନାଇଲାକୁ ବାନରେ ଅଇଲେ ।
ବଣଜନ୍ତୁ ମୂରୁଖ ଜାଣି ନୁଆରିଲେ ॥୫୦॥
ଭୁଞ୍ଜିବା ଯୁଝିବା ଯେକଦ୍ ମଣନ୍ତି ।
ମରିବା ଜୀଇଂବା କିଛି ନ ଜାଣନ୍ତି ॥
ଯେବେ ଆମ୍ଭେ ଚାରିଦ୍ୱାର କିଳିଥିବା ।
ହାନି ଅପଚୟେ ସକଳ ବିଚାରିବା ॥
ବାହୁଡ଼ିଣ ଗଲେ ବାହୁଡ଼ିଣ ଯାନ୍ତୁ ।
ନୋହିଲେଣ ଦିନାକେତେ ରହିଣ ଥାଆନ୍ତୁ ॥
ଆହାର ନ ପାଇଲେ ତୁଟଇ ସିନା ପ୍ରାଣ ।
ତେତେବେଳେ ତାହାଙ୍କର ସଙ୍ଗେ କରିବାକ
ରଣ ॥

ନିରେଖ କରିଣ ମାରିବା ହାଥ ସୁଖେ ।
କେ ପ୍ରାଣ ପାଇବଟି ପଡ଼ିଲେ ଆମ୍ଭ
ମୁଖେ ॥୬୦॥
ଶୁଣିଣ ରାକ୍ଷସେ ହୋଇଲେ ତୃପତି ।
ରାବଣକୁ ବିବିଧ ପ୍ରକାରେ କଲେ ତୁଷ୍ଟି ॥
ଭୋ ଲଙ୍କପତି ତୁ ନ ଜାଣୁ ଅବା କିସ ।
ତୁମ୍ଭେ ଯେ ସର୍ବ ରୂପେ ଜାଣ ମହତ ପୁରୁଷ ॥
ଭୂତ ଭବିଷ୍ୟ ଯେ ବର୍ତ୍ତମାନ ତିନି ।
ଜନମ ହୋଇ ଅଛୁ ସକଳ ଗୁଣ ଘେନି ॥
ଯାହା ସେ ବିଚାରିଲୁ ଅଟଇ କଥା ସତ ।
ଯେ ବୁଧି ଜାଣି ସାଧିଲୁ ଜଗତ ॥
ଦେସି ଆଗ୍ୟାଂ ଦେବ କବାଟ ପାଡ଼ନ୍ତୁ ।
ରାତ୍ର ଦିବସରେ ନିରୋଧିଣ ଥାନ୍ତୁ ॥୭୦॥
ଅମନାତ୍ୟ ବଚନ ଶୁଣିଲାକ ରାୟେ ।
ପ୍ରାକର୍ମ ହୋଇଣ ଉଲ୍ଲସଇ କାୟେ ॥
ବାମକରେ ନିଶ ମରଦଇଂ ପୁଣି ।
ଚନ୍ଦ୍ରହାସ ଖଡ଼ଗ ଦକ୍ଷିଣ କରେ ଝୁଣି ॥
ପ୍ରଶସ୍ତକୁ ବୋଇଲା ତୁ ନଉକେଶୀର ଭାଇ ।
ତୋହୋର ଭଗ୍ନୀ ଯେ ମୋହୋରହିଁ ଆଇ ॥
ସର୍ବଦା କାଳେ ତୁ ମୋହୋର ବିଶୁଆସ ।
ମୋହର କଥାକି ତୋତେ ନୁହଇ ପ୍ରାଶ ॥
ଯେବେ ତୁ ଯାଅସି କୋଟିଏ ରଥ ଘେନି ।
ପୂର୍ବ ଦୁଆର ରଖିଥିବୁ ଦିବା ଯେ
ରୟଣୀ ॥୮୦॥
ପାଚେରୀ ଡେଇଂଣ ନପୁଣ ବାନର ପଶନ୍ତି ।
ତୋହୋର ଥିବାଠାରେ ମୋହୋର ନାହି
ଭ୍ରାନ୍ତି ॥
ଶଙ୍ଖେକ ଅଶ୍ୱ ଦୁଇ ବୃନ୍ଦ ଗଜ ।
ଅଶୀ ପଦ୍ମ ପାଦାନ୍ତି ହଉ ବେଗେ ସଜ ॥
ଯାସି ପ୍ରଶସ୍ତ ହୋ ଯେହି ଅନୁକୂଳେ ।
ଯେତେ ବୋଲି ଦେଲା ହାର ରତ୍ନ ଚନ୍ଦ୍ର
ମାଳେ ॥
ଶାଢ଼ୀ ଶିରେ ଘେନି ପ୍ରଶସ୍ତ ସେନାପତି ।
ନବରୁ ବାହାରିଯାଇ ପ୍ରଚଣ୍ଡ ମୂରତି ॥
ସୁବର୍ଣ୍ଣମୟେ ରଥେ ବସିଲାକ ଯାଇଂ ।
ପୂର୍ବଦ୍ୱାର ରଖିଲା ରାଜାର ଆଗ୍ୟାଂ
ପାଇ ॥୯୦॥

ଯେଥିଅନନ୍ତରେ ଶୁଣିମା ଦିବ୍ୟରସ ।
ଇନ୍ଦ୍ରଜିତ ପୁତ୍ରକୁ ହକାରିଲା ପାଶ ॥
ଶାଢ଼ୀ ସୁନାବଳା ଚନ୍ଦନ ପୁଷ୍ପ ଦେଲା ।
ପଶ୍ଚିମ ଦ୍ୱାର ତୁ ଜଗସି ବୋଇଲା ॥
ଯେତେ ତୋହୋର ଇଚ୍ଛା ସଇନି
ତେତେନିଅ ।
ତେଇଂଣ ପଶଚିତି ନିର୍ବନ୍ଧି ଜଗିଥାଅ ॥
ଶୁଣି ମେଘନାଦ ଓଳେଗ ମେଲାଇଲା ।
ବଡ଼ସମ୍ଭରେଣ ନବରୁଂ ବାହାର ହୋଇଲା ॥
ଶତ୍ରୁଜୟେ ହସ୍ତୀ କାନ୍ଧରେଣ ବସି ।
ପଶ୍ଚିମ ଦ୍ୱାର ବୀର ଆବୋରିଲା
ଆସି ॥୧୦୦॥
ପାରାଶ ମୋହୋଦର ଏ ବେନି କୁମର ।
ଏହାଙ୍କୁ ଚାହିଂଣ ରାବଣ ଦିଅଇ ଉତ୍ତର ॥
ତୁମ୍ଭେ ମୋହୋର ପୁତ୍ର ଅଟ ବୀରବର ।
ଦକ୍ଷିଣ ଦ୍ୱାର ବାବୁ ବେଗେ ରକ୍ଷାକର ॥
ଇନ୍ଦ୍ରଜିତକୁ ମାଗି ସଇନ ସଙ୍ଗେ ନିଅ ।
ତେଇଂ ପେଶିବେଟି ବିଚାର କରି ଥାଅ ॥
ଏତେ ବୋଲି ଶାଢ଼ୀ ଚନ୍ଦନ ପୁଷ୍ପ ଦେଲା ।
ଯାଅ ଯାଅ ବୋଲି ଆଜ୍ଞା ତାକୁ ଦେଲା ॥
ଶୁଣିଣ ପାରାଶ ମୋହୋଦର ବେନି ।
ନବରୁ ବାହାର ହୋଯେ ନୃପତି ଆଜ୍ଞା
ଘେନି ॥୧୦॥
ଅଶ୍ୱ ଆରୋହିଣ ଧରାଇଲେ ପାଟଛତ୍ର ।
ଦକ୍ଷିଣ ଦ୍ୱାରକୁ ଗଲେ ରାଜପୁତ୍ର ॥
ଆବର ଦଶଗ୍ରୀବ ବିଚାରଇ ମନେ ।
ମୁଇଂ ଯେବେ ବୁଦ୍ଧି କରିବି କେସନେ ॥
ଉତ୍ତର ଦିଗେ ଅଛି ମୋହୋର ବଇରି ।
ମୁହିଂ ଯାଇଣ ଯେ ଜଗିବି ଯତ୍ନ କରି ॥
ଶୁକ ସାରଣଙ୍କୁ ବୋଇଲାକ ଚାହିଂ ।
ଉତ୍ତର ଦ୍ୱାରକଇ ଯାଉଅଛି ମୁହିଂ ॥
ଟେରୋବାଡ଼ ତହିଂ ପଡୁ ଏହିକ୍ଷଣି ।
ମଣ୍ଡୋପ ଶାଢ଼ୀଘର ନବର ପାତେଣି ॥୨୦॥
ସାଙ୍ଗି ସଜ କରି ବେଗେ ଘେନି ଆସ ।
ଯେତେ ବୋଲି ବାକିଆରୁ ଓହ୍ଲାଇଲା
ଦଶାଇସ ॥

ସୁନାସନେ ରାଜା ବିଜେ କଲା ଯାଇ ।
ଶିର ଉପରେ ବୀରଛତ୍ର ଧରାଇ ॥
ମଙ୍ଗଳ ଗୁଜ୍ଜରୀ ଆଳାପ ଶଙ୍ଖ ଧ୍ୱନି ।
ନିଶାଣର ଘାୟେ କମ୍ପଇ ମେଦିନୀ ॥
ଢୋଲ ଦମା ଟମକ କଂସାଳ ଘନ ବାଜେ ।
ପଖାରେ ରାଉତ ମାହୁନ୍ତ ବେଗେ ସାଜେ ॥
ପଞ୍ଚାଶ କୋଟି ଯେ ଅଛନ୍ତି ମୁକୁଟ ବନ୍ଧା ।
ସଭିଯେ ସାଂଗ୍ରାମେ ଅଟନ୍ତି
ମହାଯୋଦ୍ଧା ॥୩୦॥
ପାଦାନ୍ତି ନିରନ୍ତରେ କଳଣା ନଯାଇଂ ।
ଧର୍ମ ନୁଚାଇଲା କ୍ଷତ୍ରୀଙ୍କର ଛାଇଂ ॥
ପାଦରେଣୁ ଉଡ଼ି ଗଗନ ନଦିଶି ।
ହସ୍ତୀଙ୍କର ଗର୍ଜନ ଘୋଡ଼ାଙ୍କର ହିଂସା ମିଶି ॥
ରଥଚକ ଘୋଷ ପଦାନ୍ତିଙ୍କର ଡାକ ।
ହେଳ ଘେନୁଅଛି ସଂସାର ତଇଲୋକ ॥
ଉତ୍ତରଗଡ଼ ଦ୍ୱାରେ ବିଜୟେ ରାଜା ଯାଇଂ ।
ଆଗ୍ୟାଂଦେଲାକ ସେ ଦ୍ୱାରପାଳଙ୍କୁ ରାଇଂ ॥
ବୋଇଲାକ କବାଟରେ ପାଡ଼ ବେଗ କରି ।
କିଳିଣି କିଳିବରେ ପଡ଼ିତାଳ ମାରି ॥୪୦॥
ଅଗଳି ମେଲିଣ ତ୍ରିଶୂଳ ଆଉଜାଅ ।
ଅଚଳ ପଥରମାନ ହାବୋଡ଼ାଇ ଥାଅ ॥
ଲୁହାର ଶିକୋଳି ଉପରେ ଲମ୍ବାଇ ।
ଯେ ଯାହାର ଯନ୍ତ୍ରେ ଛନ୍ଦ ତାହାନେଇଂ ॥
ବେଗେ ସଜକର ତପତ ଚିକୁଣ ।
ରଣଘର ନିଶୁଣୀ ସଜ କରିଆଣ ॥
ସାଙ୍ଗି ଶାବେଳୀ ଖଡ଼୍ଗ ତୀକ୍ଷ୍ଣ ଶର ।
ଯେହାନ୍ତ ଘେନି ଉଠ ପାଚେରୀ ଉପର ॥
ନିଶୁଣୀ ନିରନ୍ତରେ ଲଗାଅରେ ଆଣି ।
କୋଣେକ ପାତିବ ଲକ୍ଷେକ ଛିଟିକିଣି ॥୫୦॥
କମଲଶିରାରେ ଜଣେ ଜଣେ ଥିବ ରହି ।
ପାଞ୍ଚ ପାଞ୍ଚ ପାଇକରେ ଥିବେ ବାଘମୁହିଂ ॥
କାଗୁଂଲାରେ ବସିଥିବ ବଳବନ୍ତ ପନ୍ତି ।
ଦୁଇଜଣ ରହିଥିବ ବନ୍ଧାପେଂରକତି ॥
ବଜ୍ରଶାଣ ଶାବେଲୀ ବେଗ କରି ସାଜ ।
ଚୋରୀ ଦ୍ୱାରମାନଙ୍କରେ ଥିବେ ମତ୍ତଗଜ ॥
ରାତ୍ରେଣ ହୁକା ଯେ ଜାଳିବ ନିରନ୍ତର ।

ଗୋରୁ ଅସ୍ଥି ଗବତେଲ ଅରଖ ଅଙ୍ଗାର ॥
ହରିତାଳ ଯବକ୍ଷାର ଗନ୍ଧକ ଟାଙ୍ଗଣା ।
ଲୁହାନଳି ଅପାର କରହୋ ଭିଆଣା ॥୬୦॥
ଚାରପଟା ବାନ୍ଧି ଶଗଡ଼ ସଜକର ।
ଲେନ୍ତି ମାରିବାକୁ କୁଢ଼ାଅ ପଥର ॥
ଗୋରୁ ଚର୍ମ ଦଉଡ଼ି ପକାଅ ବେଗେ ଆଣି ।
ସେ କତିକି ଲମ୍ବାଅ ବାନ୍ଧି ଦାରୁ ଟାଣି ॥
ଚଉକତି ଠଣା ଜଗି ରହିଥିବ ।
ଯେ ଯାହାର ସଜ ଛଣେ ନ ଛାଡ଼ିବ ॥
ଉକାସି ନ ଦେବ ନଯିବ ବାହାରକୁ ।
ପିଠି ହୋଇଥିବ ଯେକ ଆରକକୁ ॥
ତୁଣ୍ଡ ନଶୁଭିବ ନଡ଼ାକିବ ଆଣ୍ଟେ ।
ନିରୋଧି ଜଗିଥିବ ଯେ ଯାହାର
ବାଣ୍ଟେ ॥୭୦॥
ଠାରିଣ ସମାଦିବ ଯେ ଯାହାର ବାଂଛା ।
ଯେସନେକ ବୋଲିଣ ଦେଲା ରାୟେ
ଦୀକ୍ଷା ॥
ଆଗ୍ୟାଂ ପାଇଣ ସେ ଆନନ୍ଦ ସର୍ବଜନ ।
ସାଜିଲେ ଲଙ୍କାଗଡ଼ ବିବିଧ ବିଧାନ ॥
ଚାରି ଭାଗ କରି ବାଣ୍ଟିଲେ ସଇନି ।
ଯେ ଯାହାର ବାଣ୍ଟରେ ରହିଲେ ସନ୍ୟ
ଘେନି ॥
ଆପଣେ ଦଶଗ୍ରୀବ ନବରେ ଭିଆଇଂ ।
ଉତ୍ତର ଗଡ଼ ଦ୍ୱାରେ ବିଜୟେ ଲଙ୍କସାଇଂ ॥
ପ୍ରଶସ୍ତ ସେନାପତି ରଖିଲା ପୂର୍ବ ଦ୍ୱାର ।
ସଙ୍ଗତେ ସଇନି ଅନେକ ସମ୍ଭାର ॥୮୦॥
ଦକ୍ଷିଣେ ଅଛନ୍ତି ପାରାଶ ମୋହୋଦର ।
ଅନେକ ସଇନି ତାହାଙ୍କ ସଙ୍ଗତର ॥
ଇନ୍ଦ୍ରଜିତ ପଶ୍ଚିମେ ଆବୋରିଲା ଯାଇଂ ।
ସୂଚୀମାଛି ପରୀକ୍ଷ ରହନ୍ତା କେହି ନାହିଁ ॥
ଯହୁଂ ସେ ଗଡ଼ର ପାଡ଼ିଲେ ଦ୍ୱାରମାନ ।
ଶୁଣଗୋ ଶାକାମ୍ବରୀ ବୋଇନ୍ତି ଈଶାନ ॥
ସୁବଳୟା ପର୍ବତେ ଅଛନ୍ତି ରଘୁବୀର ।
ତାହାଙ୍କୁ ବାରତା ଦେଲା ଯାଇଂ ଚାର ॥
ଶୁଣ ଦେବ ଶ୍ରୀରାମ ଅଯୋଧ୍ୟାର ସାଇଂ ।
ଲଙ୍କାଗଡ଼ ବାରତା ଆଣିଅଛି ମୁହିଂ ॥୯୦॥

ଦଶଗ୍ରୀବ ରାୟେ ଯେମନ୍ତ ବିଚାରିଲା ।
ରଥ ଗଜ ଅଶ୍ୱ ଚାରିଭାଗ କଲା ॥
ମଉଳା ପ୍ରଶସ୍ତ ପୂର୍ବଦ୍ୱାରେ ରହି ।
ପଶ୍ଚିମେ ଇନ୍ଦ୍ରଜିତ ଆବୋରିଲା ଯାଇଂ ॥
ମାହୋଦର ପାରୁଶ ଦକ୍ଷିଣ ଦ୍ୱାରେ ଛନ୍ତି ।
ଆପଣେ ଉତ୍ତର ଦ୍ୱାରେ ରହିଲା ଲଙ୍କପତି ॥
ନିଶବଦ ହୋଇଅଛନ୍ତି ଭିତରେ ।
ଯେକ ଗୋଟିଏ ଦେବ ନ ଦେଖଇ ବାହାରେ ॥
କିମ୍ବା ଗଡ଼ଦ୍ୱାର ପାଡ଼ିଲା ରାବଣ ।
କିଅବା ଅଟଇ ଏହାର ଅଳପ ପରାଣ ॥୧୦୦
ତଇଲୋକ ସାଧିଲା ତାହାର ଭୟେ କାହିଂପାଇଂ ।
କିଅବା ଆମ୍ଭଙ୍କୁ ପଠିଆଇବ ଲେଉଟାଇ ॥
ଭୟ ନାହିଂ ବୋଲି ବୋଲିବା କେମନ୍ତେ ।
ଗଡ଼ଦ୍ୱାର ଏବେ ପାଡ଼ିଲା କେମନ୍ତେ ॥
ବିଭୀଷେଣ ବୋଇଲା ସେ ବଚନ ଶୁଣି ।
ଶୁଣ ଦେବ ରଘୁନାଥ ଅଯୋଧ୍ୟା ଶିରୋମଣି ॥
ଗଡ଼ଦ୍ୱାର ଯେବେ ପାଡ଼ିଲା ଲଙ୍କପତି ।
ଜାଣିଲି ହୃଦୟକୁ ଲାଗିଲାକ ଭୀତି ॥
ବିଚାରିଲା ତେଇଂ ନପଶନ୍ତି ପୁଣ ଗଡ଼େ ।
ତେଣୁ ସେ କବାଟ ପାଡ଼ିଲାକ ଗାଢ଼େ ॥୧୦॥
ଭୟେ ନ ଥିଲେ କି ଦୁଆର ପାଡ଼ନ୍ତା ।
ସେନା ସେନାପତି ଥାଟ ବରଗନ୍ତା ॥
ଯଦ୍ୟପି ରାବଣ ଜିଣିଲା ତିନିପୁର ।
ଯେବେ ତାହାର ଭୟେ ହୋଇଲା ରଘୁବୀର ॥
ନିଷୟ ସମ୍ପଦ ଛାଡ଼ିଲା ଲଙ୍କ ରାୟେ ।
ଆକୁ ଆତ୍ମାକୁ ତାର ଲାଗିଲା ମହାଭୟେ ॥
ବିଚାରିଣ କାର୍ଯ୍ୟ କରସି ଗୋସାଇଂ ।
ଏ ଘାଟି ଯୁଦ୍ଧରେ ଜୟ ତାକୁ ନାହିଁ ॥
ଶୁଣିଣ ଶ୍ରୀରାମ ନିଶରେ ହାଥ ଭରି ।
ହୋଇହୋଇ କାହିଂଯିବୁ ଦଶଶିରି ॥୨୦॥
କବାଟ ପାଡ଼ିଲେକି ନ ନିଅଇ ଯମ ।
ବାଇକି ବାତୁଳ ସେ ଅଟଇ ଦୁରାତମ ॥

ଗଡ଼ ଛାଡ଼ିଣ ଯେବେ ପଳାଇଣ ଯିବ ।
ଏ ମୋହୋର ନାରାଚ ତାହାକୁ ଗୋଡ଼ାଇ ଖାଇବ ॥
ଛତ୍ରୀ ହୋଇଣ ଯେ ବୋଲାଉ ଥାଇ ଟାଣି ।
ଏବେ କିମ୍ପା କବାଟ ପାଡ଼ିଲା ବିଂଶପାଣି ॥
ଏମନ୍ତ ପ୍ରକାରେ କି ଶତ୍ରୁ ହୋଏ ସାଧି ।
କେବଣ ବିଧାତାଠାରୁ ପାଇଲା ଏହୁ ବୁଧି ॥
ସେ ଯେବେ କବାଟ ପାଡ଼ିଲା ଘରେ ପଶି ।
ଆମ୍ଭେ ଆଉ କିମ୍ପା ଥିବା ଯେଥି ବସି ॥୩୦॥
ଚାଲ ଯେବେ ତାର ବେଢ଼ିବା କଟେକ ।
ସଜ ହୁଅନ୍ତୁ ସଇନି ଅଛନ୍ତି ଯେତେକ ॥
ଶୁଣି ସୁଗ୍ରୀବର ଦୂତ ପଠିଆଇ ।
ସେନାପତିମାନନ୍ତ ଆଣିଲା ହକରାଇଂ ॥
ଶ୍ରୀରାମ ଚରଣେ ଦ୍ରଶନ ଯାଇ ବୀର କଲେ ।
ଦୂରୁଂ ଦେଖି ବୀରେ ପାୟେ ପଡ଼ି ଶୋଇଲେ ॥
ନୀଳ ଶତବଳ ଶଉରୀ ସେନାପତି ।
ସୁଷେଣ ତାରାକ୍ଷ ଅଙ୍ଗଦ ମାରୁତି ॥
ଦଧିମୁଖ କାଳିମୁଖ କଞ୍ଚଣ ସୁନାସ ।
ବଳିମୁଖ ତାରାକ୍ଷ ସାରାସ ପାରାସ ॥ ୪୦॥
କଞ୍ଚଣ କୁମୁଦ କେଶରୀ ମହୀନ୍ଦ୍ର ।
ଜମ୍ୱେବ ଶତବାଳି ଚନ୍ଦନ ଦୁବିନ୍ଦ ॥
ଗନ୍ଧମାରଦନ ଯେ ପନଶିଳ ଆୟେ ।
ଏହାନ୍ତ ଚାହିଂଣ ଆଗ୍ୟାଂ ଦିଅନ୍ତି ରାମରାୟେ ॥
ଯେ ଯାହା ଅଙ୍ଗବଳ ଘେନି ତୁମ୍ଭେ ଯିବ ।
ଯେହିକ୍ଷଣି ଲଙ୍କାଗଡ଼ ବେଢ଼ିଣ ପଶିବ ॥
ସୁଗ୍ରୀବର ସାଙ୍ଗେ ନଳନୀଳ ଯାଅ ।
ଗନ୍ଧମାରଦନ ଶତବାଳି ଥାଅ ॥
ପୂର୍ବଦ୍ୱାରେ ଅଛି ମଉଳା ତାହାର ।
ପ୍ରଶସ୍ତ ସେନାପତି ଅଟଇ ବଡ଼ବୀର ॥୫୦॥
ସେ ଦ୍ୱାର ସୁଗ୍ରୀବର ଓଗାଳସି ଯାଇ ।
ଆଜ୍ଞାଦିଅ କପି ପଶନ୍ତୁ ଗଡ଼େ ତେଇଂ ॥
ଅଙ୍ଗଦକୁ ଚାହିଂ ବୋଇଲେ ରାମଦେବ ।
ତୋହୋର ସାଙ୍ଗେ ଶଉରୀ ସେନାପତି ଥିବ ॥

ତାଳିମ୍ୱ କେଶରୀ ଦଧିମୁଖ ଘେନି ।
ଯେ ଯାହାର ଅଙ୍ଗବଳ ଘେନିଣ ସଇନି ॥
ଏହାନ୍ତ ଘେନିଣ ତୁ ଦକ୍ଷିଣ ଦ୍ୱାରେ ଯାଅ ।
ନିର୍ବନ୍ଧ କରିଣ ଗଡ଼ ଜଗିଥାଅ ॥
ରାବଣର ପୁତ୍ର ଶାରାସ ମହୋଦର ।
ଦକ୍ଷିଣେ ତାହାକୁ ଥୋଇଲା ଦଶଶିର ॥୬୦॥
ତେଣୁ ତୁମ୍ଭେ ଆବୋର ମୋହୋର ବୋଲ କରି ।
ପାଚେରୀ ଡେଇଂ ପଶ କିଳିକିଳାନାଦ କରି ॥
ଯେତେ ବୋଲି ହନୁମନ୍ତକୁ ରାଆନ୍ତି ।
ପଶ୍ଚିମ ଦ୍ୱାରକୁ ଯାଅସି ବୋଲନ୍ତି ॥
ବସନ୍ତ ମହୀନ୍ଦ୍ର ଦୁବିନ୍ଦ ସାରାସ ।
ସଇନି ଘେନି ବେଗେ ସଜ ହୋଇଆସ ॥
ପଛିମ ଦ୍ୱାର ବୀର ଆବୋରସି ଯାଇଂ ।
ଇନ୍ଦ୍ରଜିତ ବୀର ଅଛିଟି ସେଠାଇଂ ॥
ଗଡ଼ ନିରୋଧିଣ ତୁ ଦ୍ୱାର ମାଡ଼ି ବସ ।
ବାନରଙ୍କୁ ବୋଲ ପାଚେରୀ ଡେଇଂ ପଶ ॥୭୦॥
ଆମ୍ଭେ ଆପଣେ ଉତ୍ତର ଦ୍ୱାରେ ଥିବୁ ।
କେର୍ଣ୍ଣେ ଦିଶଇ ରାବଣ ତା ମୁଖ ଦେଖିବୁ ॥
ଶୁଣି ହନୁମନ୍ତ ଅଙ୍ଗଦ ସୁଗ୍ରୀବର ।
ଶ୍ରୀରାମ ଆଜ୍ଞା ପାଇଂ ଶିରେ ଦେଲେ କର ॥
ବୋଲନ୍ତି ଯେହିକ୍ଷଣି ବେଢ଼ିବୁ ଦେବ ଲଙ୍କା ।
ଦେବ ଦାନବେ ନାହିଂ ଆମ୍ଭର ଶଙ୍କା ॥
ଆଜ୍ଞାଦେଲେ ରାବଣକୁ ଆଣିବୁ ଆମ୍ଭେ ଧରି ।
ଅସୁର ବଳ ସଂଘାରିବୁ ନିଶେଷ କରି ॥
ଶ୍ରୀରାମ ବୋଇଲେ ହୋ ଗଡ଼ ଯାଇଂ ବେଢ଼ ।
ମିଛେହେଂ ଦଇତେ ବୋଲନ୍ତି ବଡ଼ଗାଢ଼ ॥୮୦॥
ଆଜ ଜାଣିମା ହୋ ମହିମା ତାଙ୍କର ।
ଗଡ଼ ଭିତରୁ ଯେବେ ହୋଇବେ ବାହାର ॥
ତେବେ ସେ ବୁଝିବାନା କେହୁ ବଡ଼ସାନ ।
ନୋହିଲେ ଧରି ଆଣିମା ଦଶାନନ ॥

ଶୁଣିଣ ଯୂଥପତି ସଜ ହୋଇଯାନ୍ତି ।
ହନୁମନ୍ତକୁ ଚାହିଁ ଶ୍ରୀରାମ ଆଜ୍ଞାଦ୍ୟନ୍ତି ॥
ଅଠାର କ୍ଷୋଉଣୀ ହୋ ରାବଣର
ବାଦ୍ୟମାନ ।
ଆମ୍ଭର ବାଜେଣିଆ କରାଇବା ଭିଆଣ ॥
କଂସାର ଘଟଣ ନାମ ରାମତାଳି ।
ବାଜନ୍ତେଣ ସବୁ ବାଦ୍ୟୁଂ ବାଜିବ
ଉଗୁଳି ॥୯୦॥
ଢୋଲ ଦମାଲୁ ନିଶାଣ ଟମକ ଶଙ୍ଖକମ ।
ତହୁଂ ରାମତାଳି ବାଜିବ ଉପାମ ॥
ଅଷ୍ଟସେନାପତି ମୂଳେ ଯେତେ ଯୂଥପତି ।
ବୀର ମହାବୀର ଯେତେକ ଅଛନ୍ତି ॥
ସବୁଙ୍କରି ଥାଟେ ବାଜୁ ରାମତାଳି ।
ଶୁଣି ଦୈତ୍ୟବଳ ଦର୍ପ ହେଉ ଦଳି ॥
ଶ୍ରୀରାମ ବଚନ ଶୁଣି ହନୁମନ୍ତ ।
ଟହ ଟହ ହୋଇ ହସି ହୋଇଲା ଉଷତ ॥
ସୁଗ୍ରୀବି ଜଣାଇ ମାହାରଣାନ୍ତ ଆଜ୍ଞଦେଲା ।
ତତକ୍ଷଣି ରାମତାଳି ଭିଆଣ
ହୋଇଲା ॥୧୦୦॥
କରତାଳୁ ବଡ଼ କଂସାଳୁ ଅଟଇ ସାନ ।
ଗମ୍ଭୀର ରାବ ବହ ଉଣମାନ ॥
ଦୁଇଗୋଟିରେ ଯେ ଗୁନ୍ଥିଲେ ପାଟସୂତା ।
ସମତୁଲ କରି ହସ୍ତେ ଘେନିଲେ ତା ॥
ଦୁଇକରେ ଧରି ବାଇଲେ ସୁସ୍ୱର କରି ।
ଅପୂର୍ବ ବାଦ୍ୟ ଯେ ବାଜିଲା ବସଂନ୍ଧରୀ ॥
ସବୁ ଶବଦହୁଂ ରାମତାଳି ଟାଣ ।
ଲଙ୍କାକୁ ଶୁଭିଲା ଭୟ କଲାକ ରାବଣ ॥
ଶ୍ରୀରାମର ଦଣ୍ଡରେ ବାଜିଲା ଯହୁଂ ବାଦ୍ୟ ।
ସର୍ଗେଣ ଆନନ୍ଦ ହୋଇଲେ ସୁରସିଦ୍ଧ ॥୧୦॥
ଯେଥିଅନନ୍ତରେ ଯେ ବିବିଧ ବାଜଣା ।
ସଜ ହୋଇଆସନ୍ତି ଯେ ସୁଗ୍ରୀବର ରଣା ॥
ସର୍ବାଙ୍ଗେ କୁଙ୍କୁମ କଣ୍ଠେ ରତ୍ନହାର ।
ଶିରରେ ମୁକୁଟ କର୍ଣ୍ଣେ କୁଣ୍ଡଳ ଦିନକର ॥
ବାହେଣ ବାହୁଟି କଙ୍କଣ ହୀରାବଳୀ ।
ହୃଦେଣ ଲଗାଇଣ ଗଜମୋତି ମାଳି ॥
ଭୁଜେ ବୀରନେତ ଉଡ଼ଇ ଫରଫର ।
ଚରଣେ ନେପୁର ଯେ ଅନର୍ଗଳ ତୋଡ଼ର ॥
ନେତ କାଛି ପିନ୍ଧି ମାଲ ଛନ୍ଦେ ଭିଡ଼ି ।
ଉପରେ ଦୋସଡ଼ା ରଙ୍ଗ ପାଟଶାଢ଼ୀ ॥୨୦॥
କଟିରେ କଟିମେଖଳା ବାମେ ଯମଦାଢ଼ ।
ବାନା ଉଡ଼ାଇଲା ବଇରି ବିଭାଣ୍ଡ ॥
ସର୍ବାଙ୍ଗେ ଚନ୍ଦନଚିତା କପୋଳେ କସ୍ତୁରୀ
କେରା ।
କର୍ଣ୍ଣକତି ଲମ୍ବଇ ଯେ ମୁକୁତା କଡ଼ିଝରା ॥
ଫରହର ନିଶ ନିଶ୍ୱାସ ବାଏ ହଲେ ।
କପୋଳେ ଭୃକୁଟିମାଳା ଉଦୁଅଛି ଭାଲେ ॥
ନଳନୀଳ ଗନ୍ଧମାର୍ଦନ ଶତବଳ ।
ସଜ ହୋଇଅଛନ୍ତିଏ କରିବେ ମହାଗୋଳ ॥
ଗନ୍ଧମାରଦନ ବୀର ହୋଇଲା ସାଜେଣି ।
କଣ୍ଠେ ଲମ୍ବାଇଲା ପଦ୍ମରାଗ ମଣି ॥୩୦॥
ଭିନେ ନୀଳାମାନ ଖଞ୍ଜିଲା କର୍ଣ୍ଣେ ନେଇ ।
ଚଉସରା ମୁକୁତା ମାଳ ଅଛି ଲାଇ ॥
କର୍ଣ୍ଣରେ ତଡ଼କି ଉପରେ ମୋଡ଼ିଆ ।
ସେବତୀ କୁସୁମ ଗଭାଏ ଭାରିଆ ॥
କପାଳେଣ ଗନ୍ଧ ଶୋହଇ ଠିଆ ଚିତା ।
ଗଳାଏ ଲମ୍ବାଇଲା ସୁବର୍ଣ୍ଣ ପଇତା ॥
ମର୍କତ ବଳା ବେନିକରେ ଶୋହେ ।
ନୀଳ ବସ୍ତ୍ର ପିନ୍ଧି ଦୋସଡ଼ା ନେତହୋଯେ ॥
ସର୍ବାଙ୍ଗେଣ ଗଣ୍ଠିଅନା ପ୍ରଘଟଇ ଗନ୍ଧ ।
ପିଠି କଟିକି ଯେ ଲମ୍ବଇ ଶିର ଚୂଡ଼ା
ବନ୍ଧ ॥୪୦॥
ନିଶମୋଡ଼ି ବାହା ମରଦଇବୀର ।
ଦେଖି ଆନନ୍ଦ ଯେ ହୋଇଲେ ସୁଗ୍ରୀବର ॥
ନୀଳସେନାପତି ଯେ ବୀରବେଶ ହୋଇ ।
ବସନ୍ତ ପଟନୀ କାଛା ତାହାକୁ ସେ ଶୋହି ॥
ଉପରେ ପଟନୀ ପାଛୋଡ଼ି ଦୋସଡ଼ା ।
ପଣନ୍ତେକ ଉଡ଼ଇଯେ ଆବର କଳାବେଢ଼ା ॥
ସର୍ବାଙ୍ଗେଣ କର୍ପୂର କାଖେଣ ଯୁଆଦ ।
କାନେ କାନଫୁଲ ବାହେଣ ରତ୍ନବିଦ ॥
କରେଣ କଙ୍କଣ ଅଙ୍ଗୁଷ୍ଠିରେ ମୁଦି ।
କସ୍ତୁରୀ କଣେୟର ଗଭା ଶିରେ
ବାନ୍ଧି ॥୫୦॥
ଲଲାଟେ ସିନ୍ଦୂର ଚିତା ଶୋଭାବନ ।
ଶିରରେ ଟୋପର ମୟୂର କଣ୍ଠ ବିତପନ ॥
ତାମ୍ବୋଳ ଭୁଞ୍ଜିଣ ସେ ଚାଲଇ ଗେଲେ
ଗେଲେ ।
କପିକୁଳେ ଗଣିତା ସେ ଉତ୍ତମ ମହାମଲେ ॥
ଦେଖିଣ ସୁଗ୍ରୀବର ହୋଇଲା ସନ୍ତୋଷ ।
ନଳ ସେନାପତିର ସଜଦିବ୍ୟବେଶ ॥
ଅଙ୍ଗେଣ ଲେପିଲା କୃଷ୍ଣ ଅଗ୍ରଗୁଣ୍ଡି ।
ରଙ୍ଗଣୀ କୁସୁମେ ଚୂଳ ଅଛି ମଣ୍ଡି ॥
କପୋଳେ ଚନ୍ଦନ ଲେପନ ବୀରକଲା ।
ସଗୁଝିନନେତ ପାଗେକ ବାନ୍ଧିଲା ॥୬୦॥
ଉପରେ ଦୋସଡ଼ା ସୁବର୍ଣ୍ଣ କମପାଟ ।
ନବରତ୍ନ ମଏ ଶୋଭଇ ଚାରୁକଣ୍ଠ ॥
ହୃଦେଣ ପଦେକ ରବିକିରଣ ମଣ୍ଡଳ ।
ଶର୍ବଣେ ଖଞ୍ଜିଲା ବେନି ମାଣିକ୍ୟ କୁଣ୍ଡଳ ॥
କେତକୀ କୁସୁମର ପାଖୁଡ଼ା ସୁବର୍ଣ୍ଣର କଢ଼ି ।
କେଶ ଲମ୍ବାଇଲା ପିଠିରେ ଅଛି ପଡ଼ି ॥
ଭୁଜମୂଳେ ଶ୍ୱେତ ନେତ ଫରହର ।
ବାମକରେ ଅଛି ଅନର୍ଗଳ ତୋଡ଼ର ॥
ବାହେ ବାହୁଟି ଶିକଳି ତାଡ଼ ବଳା ।
ଗଳାୟେ ଲମ୍ବାଇଲା କଦମ୍ବ
ପୁଷ୍ପମାଳା ॥୭୦॥
ଜାଇଫଳ ଚୋବାଇ ଯେ ଆସଇ
ମହାବୀର ।
ଦେଖିଣ ଆନନ୍ଦ ହୋଇଲେ ଅଯୋଧ୍ୟା
ଈଶ୍ୱର ॥
ଶତବାଳି ସେନାପତି ମିଳିଲାକ ଯାଇଂ ।
ନୀଳମଣିମୟ ଟୋପରରେ ଅଛି ଲାଇଂ ॥
ଉପରେ ନେତପାଟ ଅଛଇ ଗୁଡ଼ିଆଇଂ ।
ରଙ୍ଗମାଟି ଘେନନ୍ତେ ସୁନ୍ଦର ଦିଶଇ ॥
ଉପରେ ଠିଆ ଚିତା ଗନ୍ଧକ ହିଂ ଦେଲା ।
ମର୍କତର ଆଡ଼କାନି ଶ୍ରବଣେ ଲାଇଲା ॥
ବସନ୍ତ ପଟନୀ ବାନ୍ଧିଣ କାନ୍ଧ ମୋଡ଼ି ।
ଉପରେ ପଟନୀ ମାଧବ ପାଛୋଡ଼ି ॥୮୦॥
ଚଉସରା ମୁକୁତା କଣେ କଣ୍ଠମାଳି ।
ଚନ୍ଦ୍ରମଣ୍ଡଳ ପଦେକ ଲୁଳଇ ବକ୍ଷସ୍ଥଳୀ ॥

ଦାଢ଼ିରେ କସ୍ତୁରୀ ଘଷଇ ସୁଖ ପାଇଂ ।
ନିଶ ଆଉଂସଇ ଦ୍ରପଣକୁ ଅନାଇଂ ॥
ମାଣିକର କଙ୍କଣ ଜଡ଼ିତ ବେନିକରେ ।
ଦେଖିଣ ସୁଗ୍ରୀବର ପ୍ରଶଂସଇ ତାହାରେ ॥
ଅଙ୍ଗଦ କୁମାର ଯେ ହୋଇଲା ବୀରବେଶ ।
କେଶ ସାଂଢୋଇଲା ନାଗେଶ୍ୱର ପୁଷ୍ପ ॥
ସରୁ ଝିନ କଳା ପାଟେକ କାଛି ପିନ୍ଧି ।
ତଥିଉପରେ ରତ୍ନ ଖୋଳ ନନ୍ଦି ॥୯୦॥
ପତନୀ ପାଟ ଘେନି ବାନ୍ଧିଲାକ ତାହା ।
ମଣିମୟ ମୁକୁଟ ଭୂଷଣ କପିନାହା ॥
ପାଗ ପଛେ ପାଟସୂତା ଲମ୍ବଇ କେରିକେରି ।
ଚନ୍ଦନ ସିନ୍ଦୂର କପାଳେ ଚିତାକରି ॥
ଚନ୍ଦ୍ରସୂର୍ଯ୍ୟ ସାରିକ୍ଷ କାନରେ କାନଫୁଲ ।
ତହିଂର ତଳେ ଅଛି ମୁକୁତାର ଝୁଲ ॥
ମାଣିକ ମୁକୁତ ମର୍କତ ତିନିସରି ।
ଏସନେ କରିଣ କଣ୍ଠରେ ଅଛି ଭରି ॥
ପୋଯେଳାର ସଙ୍ଗେ ସୁନା କଣ୍ଠିମାନ ।
ଖୁଦ୍ର ମୋତିମାଳା ଦିଶଇ ଅନୁପାମ ॥୧୦୦॥
ଶ୍ୱେତଦଳ ପଦ୍ମର ପ୍ରାୟେକ ପଦେକ ।
ମଧରେ ଅଛଇ କୁବିନ୍ଦ ନାୟକ ॥
ମାଣିକର ବେସର ଗୁଣା ଶୁଦ୍ଧସୁନା ।
ହୀରାର ପାଖୁଡ଼ା ସେ ରବିର ଦ୍ରୋଛନା ॥
ସେ ପଦେକ ବୀର ହୃଦରେ ଲମ୍ବାଇଂ ।
ଆବର ବିବିଧ ଅଳଙ୍କାର ଲାଇଂ ॥
ପିଠିରେ ଶେତଚାମର ପିଠିଆଳି ।
ବାହେଣ ବାହୁଟି କଙ୍କଣ ଶିକୁଳି ॥
ମୁକୁତା ପୋଡ଼ିଣ ବିଭୂତି ଅଙ୍ଗେ ଘେନି ।
ଲୋଟାଇଅଛି କାଛ ଶୁକଳ ପତନୀ ॥୧୦॥
ଫରହର ଲାଞ୍ଜ ସାଉଂଟର ଧୂଳି ।
ଦୋସଡ଼ାର ପାଟ ଅର୍ଦ୍ଧେକ ଓହଳି ॥
ନେତ ତିନି କାନି ଅଣ୍ଟାରେ ଅଛି ଭିଡ଼ି ।
ଉପରେ ନବରତ୍ନ କଟି ମେଖଳାଜଡ଼ି ॥
ଜାନୁ ପରିଯନ୍ତେ ଲମ୍ବଇ ମୋତିଝରା ।
ବାମେ ବୀରବର ବାନା ଫରହରା ॥
ପୟରେ ନେପୁର ବାଜଇ ରୁଣଝୁଣ ।
ଦେଖିଣ ପରମ ସନ୍ତୋଷ ହୋଇଲେ
ରଘୁରାଣ ॥

ଶଉରୀ ସେନାପତି ମିଳିଲାକ ଆସି ।
ମଣିଶିଳ ଗୁଣ୍ଡି ଦେହରେ ଅଛି ଘଷି ॥୨୦॥
ଶିରରେ କୁସୁମ ସୁବାସ ଫୁଲ ଜାଇ ।
କଣ୍ଠେଣ ଶତେସରି ମୁକୁତା ମାଳଲାଇଂ ॥
କର୍ଣ୍ଣେ ତଡ଼କୀ ଶୋହଇ ହୀରାଫେର ।
ବାମଚରଣେ ଅଛି ଅନର୍ଗଳ ତୋଡ଼ର ॥
କରେଣ କଙ୍କଣ ବାହୁଟି ବିଦମୁଦି ।
କପାଳେଣ ଚିତା ଶୋହଇ ଗନ୍ଧକାଦି ॥
ଭାଳେ ଚିତ୍ରପାଟ କାଛ ଆଗଭର ଛନ୍ଦ ।
କାଖରେ ଜରଜର ଦିଶୁଅଛି ଗନ୍ଧ ॥
ଶୁକଳ ବସନ ଦୋସଡ଼ା ବେଢ଼ାଇଲା ।
ଅଙ୍ଗଦର ପାଶ ଖର ହୋଇଗଲା ॥୩୦॥
ଡାଳିମ୍ୱ ମହାବୀର ସର୍ବାଙ୍ଗେ ବିଭୂତି ।
ଜାଣି ପଟାନ୍ତର ଯେ ଶରଦଚନ୍ଦ୍ର କାନ୍ତି ॥
କପାଳେ ହରିତାଳ ଚିତା ଶୋଭାବନ ।
ସୁବର୍ଣ୍ଣର ନୋଳି ଶୋଭିତ ବେନିକର୍ଣ୍ଣ ॥
କେଶ କୁରଳି ଗଭାଛନ୍ଦେ ବାନ୍ଧି ।
ଉପରେଣ ମଲ୍ଲୀ ଗୋଟି ଗୋଟି ଛନ୍ଦି ॥
ଗୁଞ୍ଜୁରା ଗୁଞ୍ଜମାଳି ମସ୍ତକେ ଶୋଭାଦିଶେ ।
ଡାଳିମ୍ୱନେତ ବାନ୍ଧିକରି ଆସେ ॥
ଉପରେ ପୀତପାଟ ଦୋସଡ଼ା ପାଛୋଡ଼ି ।
ବିଦମୁଦି ବାହୁଟି ଆଭରଣ କରି ॥୪୦॥
ଦକ୍ଷିଣଭୁଜେ ବାନ୍ଧିଅଛି ଚାମର ।
ଦେଖିଣ ସନ୍ତୋଷ ହୋଇଲେ ରଘୁବୀର ॥
କେଶରୀ ମହାବୀର କେଶରେ
ଫୁଲସାଜେ ।
ବସନ୍ତ ତରାଟ କରବୀର ମିଶି ଖଞ୍ଜେ ॥
ସର୍ବାଙ୍ଗେ ଆଭରଣ ଦିଶଇ ଝଟପଟ ।
ପରିହରଣ କରିଅଛଇ ରଙ୍ଗ ପାଟ ॥
ଉପରେ ଘୋଡ଼ାଇଲା ସହ୍ଣ ଦୋସଡ଼ା ।
ସୁବର୍ଣ୍ଣର ପିତୁଳି ମୁକୁତା ମୋତିଝରା ॥
କାନେ ଆଡ଼କାନି ଦିନକର ଜାଣି ।
କଣ୍ଠେଣ ଶତସରି ଲମ୍ବଇ ନୀଳମଣି ॥୫୦।
ଗନ୍ଧ ଲଗାଇଣ ଦାଢ଼ି କଳା କଳା ।
ଦୁଇହାଥେ ଶୋହଇ ହୀରାର ଦୁଇବଳା ॥
କୁପୂର ଚୋବାଇ ସଂଗ୍ରାମକୁ ଆସି ।

ନିଶ ମୋଡ଼ିଲା ଦେଖି ଶ୍ରୀରାମଚନ୍ଦ୍ର ହସି ॥
ଦଧିମୁଖ ବୀର ମିଳିଲାକ ଯାଇଂ ।
କଣ୍ଠେଣ ପଦେକ ସେ ଅଛି ଲାଇଂ ॥
ବାହେଣ ବୀରନେତ ବେନିବାହେ ଉଡ଼େ ।
ଅନର୍ଗଳ ତୋଡ଼ର ବାନ୍ଧିଅଛି ଗୋଡ଼େ ॥
କଟିରେ କଟି ମେଖଳା ଶିରରେ ଠେକ
ପାଗ ।
ଗର୍ଜନ କରୁଅଛି ଜାଣି ମତନାଗ ॥୬୦॥
ନବତନ ଚନ୍ଦନ ସର୍ବାଙ୍ଗେ ଭୂଷଣ ।
ଛୁରୀଅନା ଗଭା ରଞ୍ଜିତ କେଶେଣ ॥
ବାମଭୁଜେଣ କଙ୍କଣ ଯୋଡ଼ା ଚାରି ।
ସାହାଣ ସୁଆଦ କପୋଳେ ଚିତା କରି ॥
ଲବଙ୍ଗ ଚୋବାଇ ଆସଇ ସେ ବୀର ।
ରାମକୁ ଦେଖି ଯୋଡ଼ଇ ବେନିକର ॥
ମାହାବଳ ହନୁମନ୍ତ ସଜ ହୋଇ ଆୟେ ।
ସିନ୍ଦୂର ଶୋଭାବନ ଦିଶଇ ତାହା କାୟେ ॥
କର୍ପୂର ଚିତା କପାଳେ ବିରାଜି ।
ଶ୍ରବଣେ ମାଣିକ କୁଣ୍ଡଳ ଦୁଇ ଖଞ୍ଜି ॥୭୦॥
କେଶେଣ ପାଟୋଳି କୁସୁମ ଚାରିଜଟ ।
ଶିରେଣ ସିନ୍ଧୁଆ କରିଅଛି ପାଟ ॥
ସୁବର୍ଣ୍ଣର ଗୁଣାଏ ମୁକୁତା କେରି କେରି ।
ନବରତ୍ନେ ଜଡ଼ି ଅଛଇ ଆବୋରି ॥
ରଙ୍ଗ ଶୁକଳର ପାଟ ଫୁଲି ଛନ୍ଧି ।
ପିଠିକଇ ଓହଳି ପଡୁଛି ଚୂଟ ବାନ୍ଧି ॥
ହୀରାର କିରଣ ସୂର୍ଯ୍ୟ ଜ୍ୟୋତି ଜାଣି ।
ଭଲା ହନୁମନ୍ତକୁ ଶୋହିଲା ସେ ବେଣୀ ॥
ନବରତ୍ନେ ଗୁନ୍ଥିଲାଅଛି ଶତେସରିମାଳା ।
ତେଣେ ମାଗୁଡି ସୁନ୍ଦର ଦିଶଇ ଗଳା ॥୮୦॥
ବ୍ରହ୍ମାଣ୍ଡର ଗାଡ଼େଣୀ ହୀରାର ପଦକ ।
ନୀଳରତ୍ନ ଖଞ୍ଜି ଅଛଇ ଅନେକ ॥
ଗଜମୋତି ଝରା କୁବିନ୍ଦର ପାଟି ।
ପଦ୍ମରାଗ ମାଣିକ ପାଖୁଡ଼ା ଉକୁଟି ॥
ଚାରିଚଉରସେ କ୍ଷୁଦ୍ରମୋତି ଝରା ।
ମଧେଣ ନାଏକା ବ୍ରହ୍ମଜାତି ହୀରା ॥
ପଦ୍ମରାଗ ପଗଡ଼ା ମର୍କତେ ଅଛି ଝଳି ।
ସେ ଅଳଙ୍କାର ହୃଦେ ଲାଇଲା ମହାବଳୀ ॥

ପିଉଳା ପତନୀ ମାଲକାଛ ଛନ୍ଦେ ।
କ୍ଷୀରୋଦ୍ର ପଖାଡ଼ି ପାଟେକ ଦୋସଡ଼ା କରି
ବାନ୍ଧେ ॥୯୦॥
କଟିମେଖଳା ଶୋହେ ସୁବର୍ଣ୍ଣର ଘଣ୍ଟି ।
ମାଲବନ୍ଧ କରି ଦୃଢ଼କଲା ଗଣ୍ଠି ॥
ବାମେ ବୀରନେତ ଉଡ଼ଇ ଫରହର ।
ଚରଣେ ବୀର ଘଣ୍ଟି ମର୍କତ ତୋଡ଼ର ॥
ବାହେଣ ବାହୁଟି ଶିକଳା ତାଡ଼ବଳା ।
କଙ୍କଣ ସରଳ ସୁନ୍ଦର ବିଦମାଳା ॥
ଲାଙ୍ଗୁର ଅଗ୍ରେ କୃଷ୍ଣଚାମର ଅଛି ମଣ୍ଡି ।
ବିଷମରୋଳେ ଯମକୁ ମାରି ପାରଇ ଦଣ୍ଡି ॥
କୁପୂର ତାମ୍ବୋଳ ମରିଚ ସାଙ୍ଗେ ଖାଇ ।
ନିଶମୋଡ଼ି ବୀର ସଜହୋଇ
ଯାଇଂ ॥୧୦୦॥
ଶ୍ରୀରାମ ଚରଣେ କରଇ ନମସ୍କାର ।
ଦେଖିଣ ଆନନ୍ଦେ ହସନ୍ତି ରଘୁବୀର ॥
ବସନ୍ତ ସେନାପତି ମିଳିଲାକ ଆସି ।
ସର୍ବାଙ୍ଗେ କସ୍ତୁରୀ ହୋଇଅଛି ଘଷି ॥
କପାଳେ ତିଳକ ଶୋହଇ ଚାରୁଚିତା ।
ବଧୁକ କୁସୁମେ କବେରୀ ରଞ୍ଜିତା ॥
ପିଠିକତିକି ଓହୋଳି ପଡ଼ିଅଛି ବେଣୀ ।
କାଳିଆ ବିଷଧର ମୋହିଲାକ ଜାଣି ॥
କର୍ଣ୍ଣେ କୁସୁମ ତାର ଚଉକତି କାନଫୁଲ ।
କଣ୍ଠେଣ ମୋତିମାଳା ଅପୂର୍ବ ଅମୂଲ୍ୟ ॥୧୦॥
ରାୟେଟ ପାଟ ସେ ମାଇକାଛେ ଭିଡ଼ି ।
ଦୋସଡ଼ାନେତ ବାନ୍ଧି କୁସୁମ ପାଛୋଡ଼ି ॥
ଦୁଇ ବାହାର ମୂଳେ ଦୁଇ ଚାମର ବାନ୍ଧେ ।
ପାଟକଇ ବାନ୍ଧିଲାଅଛି ଦୁଇ କାନ୍ଧେ ॥
ଲାଙ୍ଗୁର ଶିଖରେ ନେତର ଚିରାଳ ।
ଚରଣେ ନେପୁର ଶବଦ ପରିମଳ ॥
ଶ୍ରୀରାମ ଛାମୁରେ ମିଳିଲାକ ଯାଇଂ ।
ଦେଖିଣ ଆନନ୍ଦ ହୋଇଲେ ରଘୁସାଇଂ ॥
ମହାନ୍ଦ୍ରମହାବୀର ନୀଳବସ୍ତ୍ରେକ ପିନ୍ଧି ।
ଉପରେ ଦୋସଡ଼ା ସିନ୍ଧୁଆ ଶାଢ଼ୀ
ବାନ୍ଧି ॥୨୦॥
ରଙ୍ଗମାଟି ଲେପନ ଅଷ୍ଟାଙ୍ଗ ଶରୀରେ ।
ନବରତ୍ନେ ଜଡ଼ିଅଛି ଶର୍ବଣ ତଡ଼କୀରେ ॥
କସ୍ତୁରୀ ଲେପନ କରିଣ ଅଙ୍ଗର ।
କଣ୍ଠରେଣ ଶତେସରି ମୁକୁତାର ହାର ॥
କେଶେ ଖୋଷିଅଛି ମାଳତୀ ପୁଷ୍ପ ଲାଇଂ ।
ଦିବ୍ୟବଳା ବାହୁଟି ଭୁଜରେ ଅଛି ଶୋହି ॥
କଟିରେ କଟିସୂତା ନବରତ୍ନେ ଖଞ୍ଜି ।
ନୀଳାମୋତି ମାଣିକ୍ୟ ସୁବର୍ଣ୍ଣ ପୁଞ୍ଜି ପୁଞ୍ଜି ॥
ଚରଣେ ବୀରଘଣ୍ଟି ବାନ୍ଧିଣ ବୀର ଆୟେ ।
ଦେଖି ହସ ହସ ହୋଅନ୍ତି ରାମରାୟେ ॥୩୦
ଦୃବିନ୍ଦ ଅଇଲା ମୁକୁଳା କରି କେଶ ।
ବାଳ କେରି କେରି ଗୁନ୍ଥିଅଛି ଗଇଶ ॥
ପିଠିରେଣ ଗଙ୍ଗାଦୟଣା ଚାମର ବେନି ।
ସର୍ବାଙ୍ଗେଣ ଅଛି ହରିତାଳ ଘେନି ॥
କର୍ଣ୍ଣେଣ ହୀରାକଢ଼ି ସୂର୍ଯ୍ୟଜ୍ୟୋତି ବିରାଜେ ।
ମେଘର ଗର୍ଜନ ଜାଣି ବୀର ଗଳଗାଜେ ॥
କପାଳର ଚିତା କୁସୁମ କେଶର ।
କଣ୍ଠେଣ ରତ୍ନମାଳା ବକ୍ଷସ୍ଥଳେ ପଦ୍ମଫୁଲ ॥
ବିଦ ବଳୟା କଙ୍କଣ ଭଲା ଶୋହେ ।
ସଜହୋଇ ବୀର ଶ୍ରୀରାମ ଛାମୁରେ
ହୋୟେ ॥୪୦॥
ପାରାସ ସେନାପତି ଅଇଲା କଥା ଶୁଣ ।
କରେ ରୁଣଝୁଣ ବାଜଇ କଙ୍କଣ ॥
ପୟରେ ନେପୁର ଘରଘରି ଝମଝମ ।
କପାଳ ପାଟିରେ କସ୍ତୁରୀ କଳା କମ ॥
ସର୍ବାଙ୍ଗେ ବିଭୂତି କର୍ଣ୍ଣେ ରତ୍ନନୋଳି ।
ଗଳାରେ ମୁକୁତା ଶତେସରି ମାଳି ॥
ଶିରରେ ମନ୍ଦାର କୁସୁମ ଶୋଭାବନ ।
ଉଦୟେ ଗିରି ଦିଶିଲା କି କଶ୍ୟପର ନାନ ॥
ବାମବାହୁରେ ବୀରଘଣ୍ଟ ବାନ୍ଧେ ।
ଚାଲିଯିବାୟେ ଧ୍ୱନି ବାଜଇ ଛନ୍ଦେ ॥୫୦॥
ବାହେ ବାହୁଟି ଶିକୁଳି ବିଦମୁଦି ।
ଅଇରି ଉରଶଲ ଭୁଜେ ନେତବାନ୍ଧି ॥
ଶ୍ରୀରାମ ଛାମୁରେ ମିଳିଲାକ ଯାଇଂ ।
ଶୁଣଗୋ ଭାବାନୀ ସଦାଶିବ କହିଂ ॥
ଇମ୍ଭେବ ସୁଷେଣ ତାରାକ୍ଷ ତିନିଜଣ ।
ୟେହାନ୍ତେ ଚାହିଂ ସ୍ୱାମୀ ବୋଲନ୍ତି ବଚନ ॥
ଚାରିଭାଗ କରି ବାଣ୍ଟ ହୋ ସଇନି ।
ଯାଆନ୍ତୁ ଯୂଥପତି ଯେ ଯାହାର ସଇନି
ଘେନି ॥
ସମୋଦ୍ର ପାରିହୋଇଂ ଯେତେକ ଆସିଛନ୍ତି ।
ବେଢ଼ନ୍ତୁ ଗଡ଼ ଯାଇ ଯେତେକ
ପାରନ୍ତି ॥୬୦
ଆବର ବଳ ଅଇଲେ ପଛେ ଯାନ୍ତୁ ।
ବସିବାର ହୋଇଣ ଯେ ଜଣେହେଂ ନଥାନ୍ତୁ ॥
ଯିବାର ଯାଆନ୍ତୁ ଆସିବାର ଆସନ୍ତୁ ।
ଆଗ୍ୟାଂ ଦିଅସି ପାଚେରୀ ଡେଇଂ ପଶନ୍ତୁ ॥
ଶୁଣିଣ ରିକ୍ଷରାୟେ ଯୋଡ଼ନ୍ତି ବେନିକର ।
ଶୁଣଦେବ ଶ୍ରୀରାମ ଜଗତଈଶ୍ୱର ॥
ପଶ୍ଚିମ ସମୋଦ୍ରଯାଏ ଲାଗିଅଛି ଥାଟ ।
ଆସିବାର ଗହଳେ ନ ପାଇଣ ବାଟ ॥
ମାଲ୍ୟବନ୍ତ ପର୍ବତରୁ ଋଷିମୁଖ ଲାଇଂ ।
ସଇନ ପୂରିବାଏ ନଦିଶଇ ଭୂଇଂ ॥୭୦॥
କିଷ୍କିନ୍ଧା ନବରୁ ବିଝଂଗିରି ପର୍ବତ ।
ଯେଥି ରିକ୍ଷକପି ଅଛନ୍ତି ବହୁତ ॥
ବେଣୀ ଗୋଦାବରୀ ତୁଙ୍ଗଭଦ୍ରା କାବେରୀ ।
ବଳ ନିରନ୍ତରେ ଘଞ୍ଚାଘଞ୍ଚ ପୂରି ॥
ଦକ୍ଷିଣ ସିନ୍ଧୁକୂଳେ ବନ୍ଧ ଶଏକୁଣ ।
ନିରନ୍ତରେ ବଳ ଅଛି ଅପ୍ରମାଣ ॥
ଯେମାନେ ଅଇଲେ ପୂରିବ ଲଙ୍କାଦେଶ ।
ଠାବ ନ ପାଇବେ ଶୁଣିମା ରଘୁଶିଷ ॥
ଯେଥେ ଯେତେ ବଳ ଛାମୁକୁ ଆସିଛନ୍ତି ।
ଯେମାନେ ଗଡ଼ ଯାଇ ବେଢ଼ନ୍ତୁ
ରଘୁପତି ॥୮୦॥
ଲଙ୍କାଗଡ଼ ପାଚେରୀ ଚାରିକତି ପ୍ରବନ୍ଧ ।
ଶଏକୋଶ ଓସାର ଶଏକୋଶ ଦୀର୍ଘ ॥
ଯେଥିଥିଲାମାନେ ରହନ୍ତୁ ତହିଂ ଯାଇଂ ।
ପଛ ଥାଟ ଅଇଲେ ପୂରିବ ଏ ଭୂଇଂ ॥
ସେନାପତିମାନଙ୍କ ସଙ୍ଗେ ଯେ ସନ୍ୟ ଯାନ୍ତୁ ।
ଯେ ଯାହାର ବଣ୍ଟାରେ ଆବୋରି ରହିଥାନ୍ତୁ ॥
ଏଥୁ ଅନନ୍ତରେ ଶୁଣ ଗୋ ଶାକାମ୍ଭେରୀ ।
ଉଠିଣ ଶ୍ରୀରାମଯେ ସୁଗ୍ରୀବକୁ କୋଳକରି ॥
ଭୋ ମଇତ୍ର ଅଭିମାନ ଶୁଣସି ମୋହର ।

ମୁହିଁ ଆସି କର୍ମେ ଲାଗିଲି ତୋହୋର ॥୯୦
ସୀତ୍ୟା ଦେବୁ ବୋଲି ପ୍ରତିଜ୍ଞା ଯେ କଲୁ ।
ଏତେ ରିକ୍ଷ କପି ଘେନିଣ ଅଇଲୁ ॥
ସିନ୍ଧୁ ତରିଲୁ ଯେ ପୂର୍ବର ଭାଗ୍ୟବଳେ ।
ଶତ୍ରୁର ଦ୍ୱାରେ ଆସି ମିଳିଲୁ ଏତେକାଳେ ॥
ସେହୁ ରାକ୍ଷସ ଆମ୍ଭେ ବାନର ମନିଷ ।
ଯେକଥା ଆମ୍ଭର ତ ବଡ଼ଇଂ ସାହସ ॥
ଦେବେ ବର୍ଣ୍ଣାବୃଦ୍ଧି ଖଟନ୍ତି ଯାହାକୁ ।
ଆମ୍ଭ କର୍ମେ ଶତ୍ରୁ ପାଇଲୁ ତାହାକୁ ॥
ଛତ୍ରୀ ହୋଇ କେର୍ଣ୍ଣେ ହୋଇବା ନିସତ ।
କଟକାଇ କଲୁ ବୋଲି ଜାଣିଲା
ଜଗତ ॥୧୦୦॥
ବାହୁଡ଼ି ଗଲେତ ପାଇବା ବଡ଼ ଲଜ୍ୟା ।
ଅସୁରଙ୍କୁ ଭୋଗ୍ୟ ହୋଇବକି ମୋର
ଭାର୍ଯ୍ୟା ॥
ସୂର୍ଯ୍ୟବଂଶେ କଳଙ୍କ ଲାଗିବ ବହୁତ ।
ମୋତେ ଉପହାସ୍ୟ କରିବେ ଜଗତ ॥
ବିଭୀଷେଣ ରାଜା ହୋଇବ ବଡ଼ ଦୁଃଖୀ ।
ମୁହିଁ ଆବର କାହିଁ ପାଇବି ସୀତ୍ୟାସଖୀ ॥
ସୀତ୍ୟାଙ୍କୁ ନ ଦେଖିଲେ ତ ଅଯୋଧାକୁ ନ
ଯିବି ।
ଅରଣ୍ୟେ ପଶି ଜୀବନ ହରାଇବି ॥
ଯେ ମୋହୋ ମଲେତ ଲକ୍ଷଣ ନବର୍ତ୍ତି ।
ଯେକା ଘରକଇଂ ଯେ ନଯିବ
ସଉମିତ୍ରୀ ॥୧୦॥
ଚଉଦ ବରଷକୁ ଭରଥ କଣ୍ଟ କଲା ।
ସେଦିନ ନ ଦେଖିଲେ ମରିବି ବୋଇଲା ॥
ଭ୍ରଥର ମଲେ ନ ଜୀଅଇଂ ଶତ୍ରୁଘନ ।
ଆବର କି ଜନନୀ ଧରିବେ ଜୀବନ ॥
ଜନନୀ ନାଶ ଯାନ୍ତେ ବୁଡ଼ିବ ହାଦେ କୁଳ ।
ସୂର୍ଯ୍ୟବଂଶ ପୃଥିରେ ନୋହିବ ମହୀପାଳ ॥
ତୁହୋ ସୂର୍ଯ୍ୟପୁତ୍ର ରକ୍ଷାକର ମୋତେ ।
ତୋହୋର ପ୍ରସାଦେ ଯେ ତରିବେ ଜଗତେ ॥
ରାବଣ ମାରି ଯେବେ ଲଙ୍କା ପାରୁ ଧ୍ୱଂସି ।
ତେବେ ସେ ପାଇବି ନା ସୀତ୍ୟା
ଶୁଭ୍ରକେଶୀ ।୨୦॥

ସୀତ୍ୟାକୁ ଘେନିଣ ମୁଂ ଅଯୋଧାକୁ ଯିବି ।
ନୋହିଲେଣ ସାଂଗ୍ରାମ କରିଣ ପ୍ରାଣ ଦେବି ॥
ଦୁଃଖର କାଳେ ମଇତ୍ର ହୋଇଲୁ ମୋତେ
ସାହା ।
ତୁକି ନ ଜାଣୁ କହିବି ତୋତେ କାହା ॥
ପାରୁ ଯେବେ ଉପକାର କରସି ମୋହରେ ।
ଅସମୟ କାଳେ ମୁଂ ଆଶ୍ରେ କଲି ତୋରେ ॥
ଶୁଣିଣ ସୁଗ୍ରୀବର ପୁଲକଇ ଅଙ୍ଗ ।
ରାଗେଣ ଅଧର କାମୋଡ଼ିଲା ରଂଗ ॥
ବାହାସ୍ଫୋଟ ମାରି ହୋଇଲା ଆଗୁଂସାର ।
ବୋଇଲା ନଭାଳ ତୁ କଉଶୁଲା
କୁମର ॥୩୦॥
ସୁର ଅସୁରଯେ ବୀରରକ୍ଷ ଦକ୍ଷ ।
ଯେବେ ଛାମୁରେ ଆସି ମିଳିବ ସହସ୍ରାକ୍ଷ ॥
ପ୍ରାଣ ଘେନିଣ କି ବାହୁଡ଼ି ଆଜି ଯିବ ।
ଯେ ମୋହୋର ପ୍ରତଗ୍ୟାଂ ବୁଝସି ରାଘବ ॥
ରାବଣକୁ ମାରି ସୀତ୍ୟାକୁ ଦେବି ତୋତେ
ଆଣି ।
ଶୁଣିଣ ସାନନ୍ଦ ଯେ ହୁଅନ୍ତି ରଘୁମଣି ॥
ବୀରବର ଛନ୍ଦେ ବାଜଇ ବାଜଣା ।
ବାହୁତୋଳି ଗର୍ଜଇ ଯେ ସୁଗ୍ରୀବର ରଣା ॥
ଶ୍ରୀରାମ ଚରଣ ଧରିଣ ଶିର ନଦି ।
ଶ୍ରୀକରେ ଆପଣେ ଯେ ତୋଳନ୍ତି
ଦୟାନିଧି ॥୪୦॥
ଉଠ ଉଠ ମଇତ୍ର କାର୍ଯ୍ୟକର ମୋର ।
ଅଭିମାନ ସମୁଦ୍ର ଉଧରି ମୋତେ ଧର ॥
ଯେତେ ବୋଲି କୋଳ କରି ଚୁମ୍ବନ
ଦିଅନ୍ତି ।
ଶତ୍ରୁ ମାରିଆସ ବୋଲିଣ ବୋଲନ୍ତି ॥
ଯେତେ ବୋଲି ରାମର ଦକ୍ଷିଣ ଚକ୍ଷୁ
ଡେଇଂ ।
ବୋଇଲେ ପ୍ରାପତ ହୋଇ ବଇଦେଇ ॥
ଯେଥୁ ଅନନ୍ତରେ ସୁଗ୍ରୀବର ରାୟେ ।
ଶୁଭ ଲଗ୍ନ ଘେନି ପର୍ବତୁ ଓଲାୟେ ॥
ନଳ ନୀଳ ଗନ୍ଧମାରଦନ ଶତବଳ ।
ସନ୍ୟ ଅପ୍ରମିତ ଶୁଭଇ ଚହଳ ॥ ୫୦॥

ଘନ ଘନ ନିଶାଣ ଘୋର ରାବେ ଗର୍ଜେ ।
ଢୋଲ ଦମା କାହାଳ ଶଂଖ ତୂରୀ ବାଜେ ॥
ନେତର ଚିରାଳ ଧରାଇ କପିରାଜ ।
ଚଳନ୍ତେ ଆକାଶେ ଲୁଚିଲାକ ସୂର୍ଯ ॥
ସେନାସେନାପତି ଯୂଥପତି ଗଲେ ।
ବୀର ମାହାବୀର ମାରମାର ବୋଇଲେ ॥
ସନ୍ୟ ମୁଖରାବ ସାହେର ଉଛୁଳି ।
ଗଗନ ନଦିଶଇ ଯେ ଚରଣର ଧୂଳି ॥
କିଳିକିଳା ଶବଦ ଶୁଭଇ କୋଳାହଳ ।
ସପତଦୀପ କି ଘୋଟିଲା ମାହାଜଳ ॥୬୦॥
ପ୍ରଳୟ ଅଗ୍ନିକି ଜଳିଣ ଉଠଇ ।
ସୁଗ୍ରୀବର ଥାଟ ତେସନ ଦିଶଇ ॥
ଦଳ ଦଳ ମେଦିନୀ କମ୍ପଇ ପାଦଭରେ ।
ଶଙ୍ଖ ମହୁରୀ ଶବଦ ଶୁଭଇ ସୁସ୍ୱରେ ॥
କର୍ନାଟ ରାଗେଣ ଶୁଭଇ ଆଳାପ ।
ଚରଣେ ଘଣ୍ଟି ଘାଗୁଡ଼ି ମୁଖରାବ ଧାପ ॥
କେ ଚିରା ମାରିଣ ଆଗସରି ଯାନ୍ତି ।
କେ ତାଳ ଦେଇଣ ସଂସରି ରହନ୍ତି ॥
କେ ଗାଇ ତୂରୀ ବଜାଇ ଚାଲଇ ଗେଲ
ଗେଲ ।
କେ ଉଠିଯାଇ ବୋଲଇ ଚାଲ ଚାଲ ॥୭୦॥
ଦେହେ ଦେହେ ଲାଗିଣ ଉଠିଲାକ ଝାଳ ।
ସ୍ୱଭାବେ ଜେଷ୍ଠମାସ ଅଟଇ ଖରାକାଳ ॥
ରୋହିଣୀ ନକ୍ଷତ୍ର ଅଟଇ ଅମାବଇ ତିଥି ।
ଶ୍ରୀରାମ ନକ୍ଷତ୍ରକୁ ସାଧେକତାର ହୋଇଅଛି ॥
ଅର୍କବାର ସାଧଯୋଗକଇଂ ଲବ କରଣ ।
ସେ ଦିନେ ରଘୁନାଥ ଆରମ୍ଭିଲେ ରଣ ॥
ପୂର୍ବଦ୍ୱାରେ ସଇନି ଆବୋରିଲେ ଯାଇଂ ।
ଗହ ଗହ ନାଦେ କିଳିକିଳା ରାବଦେଇଂ ॥
ଶତେଯୋଜନ ଦୀର୍ଘ ଶଏକୋଶ ପ୍ରତି ।
ଥାଟ ପୂରିବାରେ ନ ଦିଶଇ
ବସୁମତୀ ।୮୦॥
ଗଡ଼ଦ୍ୱାର ମାଡ଼ି ବସିଲା ସୁଗ୍ରୀବର ।
ନଳନୀଳ ଗନ୍ଧମାର୍ଦନ ଶତବଳ ॥
ପାଚେରୀ ତଳେ ଯେ ଲାଗିଲେ ବଳ
ଯାଇଂ ।

ପାର୍ବତୀଙ୍କ ଆଗେ କହନ୍ତି ତାହାଙ୍କର ସାଇଁ ॥
ଶୁଣଗୋ ଶାକାମ୍ଭେରୀ ଏଥୁ ଅନନ୍ତରେ ।
ସୁବଳୟା ପର୍ବତେ ଯେ ଅଛନ୍ତି ରଘୁବୀରେ ॥
ଅଙ୍ଗଦକୁମରକୁ ଚାହିଁଣ ବୋଲନ୍ତି ।
ତୋହୋର ପ୍ରତଗ୍ୟାଁ ବାବୁ ବୁଝିବା ଏଘାନ୍ତି ॥
ରାବଣ ମାରି ଯେବେ ସୀତ୍ୟାଂକୁ ମୋତେ
ଦେଉ ।
ତେବେ ସିନା ରଣେ ବୀରଧୁ
ବୋଲାଉ ॥୯୦॥
ହୋଇ ଦେବ ବୋଲି ଅଙ୍ଗଦ ଆଗସରି ।
ଅତି ସେନେହେ ରାମ କୋଳ ତାକୁ କରି ॥
ମୁଖେ ଚୁମ୍ବନ୍ୟ ଦେଇ ବୋଲନ୍ତି ବାବୁ ଯାଅ ।
ଯେସନେକ ପ୍ରକାରେ ପ୍ରାପତ ହୋଏ
ଜନକର ଝିଅ ॥
ଶୁଣିଣ ମହାବୀର ଶିରେ କର ଦେଲା ।
ଯାଉଅଛି ବୋଲି ସେ ଚରଣ ବଢ଼ାଇଲା ॥
ଶଉରୀ ସେନାପତି ସଙ୍ଗେଣ ତାହାର ।
ତାଳିମ୍ବ କେଶରୀ ଦଧିମୁଖ ଆବର ॥
ଯେମାନେ ଗର୍ଜନ୍ତି ପ୍ରଳୟମେଘ ଜାଣି ।
ଚାଲ ଚାଲ ବୋଲି ବୋଇଲେ
ଆଗିଆଣି ॥୧୦୦॥
ପର୍ବତୁ ଓହ୍ଲାଇ ଆସନ୍ତି ବୀରମାନେ ।
ଚରଣ ରେଣୁ ଧୂଳି ଉଡ଼ଇ ଗଗନେ ॥
ଟମକ ଡଡ଼ବଡ଼ି ବାଜଇ ବିକଟାଳ ।
ଚାମଣ୍ଡା ଛନ୍ଦେଣ ବାଜଇ ମର୍ଦଳ ॥
ଧୃତୁକାର ମହୁରୀ ବାଜଇ ବସନ୍ତ
ଖେଚଡ଼େ ।
ହୁଳହୁଳି ପ୍ରାୟେ ମଷାଂସିଂଘ ବାଜେ ଗାଢ଼େ ॥
ଶଙ୍ଖ ଚକ୍ର ଆଳମ୍ବ ଖଞ୍ଜାଇ ତାରାପୁତ୍ର ।
କି ଜାଣି ଦିଶଇ ଲଙ୍କାକୁ ଧୂର୍ମକ୍ଷେତ ॥
ଦକ୍ଷିଣଦ୍ୱାର ବୀର ଆବୋରିଲା ଯାଇ ।
ସଇନି ନିରନ୍ତର କଳନା ନଯାଇ ॥୧୦॥
ଯେଥୁ ଅନନ୍ତରେ ରଘୁକୁଳ ନାଥ ।
ହନୁମନ୍ତ ପିଠିରେ ଦେଲେ ନେଇ ହାଥ ॥
ଯାଅସି ପାବେନି ତୁ ପଶ୍ଚିମଦ୍ୱାରେ ଲାଗ ।
ବସନ୍ତ ସେନାପତି ଯାଉ ତୁମ୍ଭ ସାଙ୍ଗ ॥

ମହୀନ୍ଦ୍ର ଦୁବିନ୍ଦ ସାରାସହିଁ ଯାନ୍ତୁ ।
ସଇନଙ୍କୁ ବୋଲ ଗଡ଼ ଡେଇଂଣ ପଶନ୍ତୁ ॥
ଇନ୍ଦ୍ରଜିତ ଅଛି ବିଚାରି କାର୍ଯ୍ୟ କର ।
ଦେବଙ୍କର ଉପରେଯେ ବାନ୍ଧଇ ବୀରବର ॥
ରାବଣକୁ ମାରି ସୀତ୍ୟାକୁ ଦେବୁ ମୋତେ ।
ଅନେକ ଆଶ ମୁଂ କରିଅଛି ତୋତେ ॥୨୦॥
ସମୋଦ୍ର ଡେଇଁ ଆସି ସୀତ୍ୟାକୁ ଠାବ କଲୁ ।
ଦେବେ ଅଜୟେ ଗଡ଼ ଅଗ୍ନିରେ ଦହିଲୁ ॥
ଯେବେ ଯଶ ବାବୁ ପ୍ରାପତ ତୋତେ ହେଉ ।
ଆନନ୍ଦେ କଲ୍ୟାଣ ଯେ କରନ୍ତି ରାମରାହୁ ॥
ଯାସି ମହାବୀର ସୀତ୍ୟାକୁ ମୋହୋର ଆଣ ।
ଦଶଗ୍ରୀବରାଜାର ଘେନିଣ ପରାଣ ॥
ଶୁଣିଣ ହନୁମନ୍ତ ରାମର ପାଦେ ପଡ଼ି ।
ଉଠି ଠିଆ ହୋଇଲା କରଦୁଇ ଯୋଡ଼ି ॥
ଶ୍ରୀରାମ ସୁମରି ଚରଣ ବଢ଼ାଇଲା ।
ବସନ୍ତ ସେନାପତି ଯେ ପଛେଣ
ଗୋଡ଼ାଇଲା ॥୩୦॥
ମହୀନ୍ଦ୍ର ଦୁବିନ୍ଦ ସାରାସହିଁ ଯାନ୍ତି ।
ସଇନର ଗହଳେ ଯନ୍ତାଯନ୍ତି ହୋନ୍ତି ॥
ରିକ୍ଷ ବାନରେ ଯେ ଅଛନ୍ତି ରାମ ସଙ୍ଗେ ।
ଉଷତ ହୋଇଣ ଧାମନ୍ତି ରଣରଙ୍ଗେ ॥
କିଳିକିଳା ରଡ଼ି ଦଶଦିଗ ପୂରି ।
ମାଳଶ୍ରୀ ରାଗେ ବାଜଇ ମହୁରୀ ॥
ଝଂଝାଳ ଝମଝମ ମର୍ଦଳ ଦିମିଦିମି ।
ଯେଉଁଣେ କୁଣ୍ଡଳୀ ଭାଙ୍ଗି ଲାଂଜ ଲୋଟେ
ଭୂମି ॥
ଦିମି ଦିମି ଦମାଲୁ ନିଶାଣ ଘଣ୍ଟ ସାଜେ ।
ସୁମୁସୁମୁ ଦୁମୁଦୁମୁ ବିଜିଘୋଷ
ବାଜେ ।୪୦।
ଦିବସ ଅଦୃଶଯେ ଚନ୍ଦ୍ରମା ରୂପ ଧରେ ।
ପବନ ଦେବତା ବହଇଂ ବସନ୍ତ ସମୀରେ ॥
ଗରୁଡ଼ ଧ୍ୱଜ ଧରାଇ ଆଳମ୍ବ ମହାବୀର ।
ସଇନର ଚଳନ୍ତେ ଶୁଭଇ ଦୂରଦୂର ॥
ରେଣୁ ଧୂଳିରେ ଯେ ନ ଦିଶଇ ବାଟ ।
ବଣା ହୋଅନ୍ତି ନିକି ବିଚାରନ୍ତି ଥାଟ ॥
ହରିହରି ବୋଲି ତହୁଂ ଚଳିଗଲେ ।

କିଳିକିଳା ଧ୍ୱନି କରିଣ ରଡ଼ିଦେଲେ ॥
ନବଖଣ୍ଡ ମେଦିନୀ ହୋଇଲା ଟଳଟଳ ।
ସ୍ତମ୍ଭୀଭୂତ ହୋଇଲା ପବନ ସିନ୍ଧୁଜଳ ॥୫୦॥
କିଅବା ଯୁଗାନ୍ତେକ ହୋଇଲାକ ଆସି ।
ଯେହି ମଣ୍ଡଳେକି ମହାର୍ଣ୍ଣବ ଭାସି ॥
ପଶ୍ଚିମଦ୍ୱାରେ ଯେ ଲାଗିଲେ ବୀରେ ଯାଇ ।
ପାଚେରୀକି ଡେଇଂଲେ କିଳିକିଳା
ରାବଦେଇ ॥
ଦ୍ୱାରମାଡ଼ିଣ ଯେ ବସିଲା ହନୁମନ୍ତ ।
ଜାଣି ସ୍ୱରୂପ ଯେ ଦିଶଇ ଦୁତୀ କୃତାନ୍ତ ॥
ତିନିଦ୍ୱାରେ ଯାଇ ପୂରିଲେକ ବଳ ।
ସିନ୍ଧୁଘୋଷ ଜାଣିସେ ଶୁଭଇ ଚହଳ ॥
ସୁବଳୟା ଗିରିରେ ଅଛନ୍ତି ରଘୁସାଇଂ ।
ଆଗ୍ୟାଂ ଦେଲେ ସ୍ୱାମୀ ବିଭୀଷେଣକୁ
ଚାହିଁ ॥୬୦॥
ଯେବେ ଆମ୍ଭେ ଉତ୍ତର ଦ୍ୱାରକଇଂ ଯିବା ।
ଥୋକାଯେ ବଳ ଆଗେଣ ବରଗିବା ॥
ଯେତେବୋଲି ସ୍ୱାମୀ ହୋଅନ୍ତି ଯେ ସଜ ।
ଦମା ଦୁନ୍ଦୁଭି ଯେ ବାଜଇ ପଖାଉଜ ॥
ସର୍ବାଙ୍ଗେ କୁପୂର ଯେ ହୋଇଲେ ମଖାମଖି ।
ସୂର୍ଯସେନା ବାନାଯେ ଚନ୍ଦ୍ରସୂର୍ଯ ସାକ୍ଷୀ ॥
ରାମ ଲକ୍ଷଣ ବୋଲି ଯେକଇ ଚାରୁପାଟ ।
ତାହା କୁଣ୍ଠିତ କଲେ ଦଶରଥର ଚାଟ ॥
କସ୍ତୁରୀ ଚିତା କପାଳେ ଶୋଭା ଦିଶେ ।
ନିର୍ମଳ ଗଗନେକି କଳାମେଘ ମିଶେ ॥୭୦॥
ଶିରେ ନାଗବନ୍ଧ ଛନ୍ଦେ ଚାରୁଜଟା ।
ଜାଇ କୁସୁମେ ଦିଶଇ ମହାଛଟା ॥
ଜାନେକୀର ଥିଲା ଅମଳାଣ ଶାଢ଼ୀ ।
କାଛଟା ଉପରେଣ ଉପରାଣ ତାହାକରି ॥
କର୍ଣ୍ଣେ ତମ୍ଭାର କୁଣ୍ଡଳ କଣ୍ଠେ ରୁଦ୍ରାକ୍ଷର
ହାର ।
ବାହୁମୂଳେ ବିଦ କମଳ କେଶର ॥
ଭୁଜେଣ କଙ୍କଣ ପୁଇଂଚାନ୍ଦିଆମାଳି ।
ସୀତୟାର ମଣିଗୋଟି ହୃଦୟରେ ଲୁଳି ॥
ରଜନୀ ପ୍ରଭାତେ କି ଉଇଂଲା ସୂର୍ଯ ଆସେ ।
ବିଷ୍ଣୁର କୌସ୍ତୁଭ ପଟାନ୍ତର କିସେ ॥୮୦॥

ଶ୍ୟାମଳ ସୁନ୍ଦର ମଧୁର ଶ୍ୟାନ୍ତ ମୂର୍ତି ।
ଅନନ୍ତକୋଟି ବ୍ରହ୍ମାଣ୍ଡର ଅଟଇ ଆଦିପତି ॥
ସଂଗ୍ରାମକୁ ସଜ ବାମେ ଧନୁ ଧରି ।
ଦୁଇକାନ୍ଧେ ଅକ୍ଷୟେ ତ୍ରୋଣ ଅଛି ପୂରି ॥
କଟିରେ ଯମଦାଢ଼ ଉଡ଼ଇ ବୀରନେତ ।
ଅଙ୍ଗଦାବ ଖଣ୍ଡା ଦିଶଇ ସବୁଶେତ ॥
ଶତ୍ରୁ ଅନେକ କାଣ୍ଡ ଅଛଇ ଦକ୍ଷିଣ କରେ ।
ଲକ୍ଷ୍ମଣର ସଜ ଏହି ପରକାରେ ॥
କୁନ୍ଦ କାଳିମୁଖ ବଳିମୁଖ ବୀର ।
ଚନ୍ଦନ ପବନ ଯେ ମହାନ୍ଦ୍ର ମହୀଧର ॥୯୦॥
ସୁନାସ ସୁସୋଦନ ଗବୟେ ଗବାକ୍ଷ ।
ଜୟେବ ଶତବାଳି ସୁଷେଣ ତାରାକ୍ଷ ॥
ଯେ ଯାହା ଅନରୂପେ ହୋଇଲେ କାଛେଣି ।
କାହାର ମୁଣ୍ଡେ ଟୋପର କାହା ମୁଣ୍ଡେ ବେଣୀ ॥
କେ ପାଗ ବାନ୍ଧିଣ ଯେ ଖୋଷିଅଛି ଖୋପା ।
କାହାର କପାଳରେ ଚନ୍ଦନର ଟୋପା ॥
କେ ରଙ୍ଗ ମାଟି କେ କସ୍ତୁରୀ ବିଲେପନ ।
କାହାର ହାଥେ ଅଛି ସୁବର୍ଣ୍ଣର କଙ୍କଣ ॥
କେ ପାଟ କାଛେଣି କେ ପିନ୍ଧିଅଛି ଝିନଝାଳି ।
କେବଣ ବୀର ସର୍ବାଙ୍ଗେ ହୋଇଅଛି ଧୂଳି ବୋଳି ।୧୦୦।
କେହୁ କୁହୁକ ବର୍ଣ୍ଣ କେ ଚିତ୍ରପାଟ ପିନ୍ଧି ।
କାକବର୍ଣ୍ଣ ପାଗେକ ଯେ ଅଛଇ ଶିରେ ବାନ୍ଧି ॥
କାହାର ପିଠିରେ ଅଛି ଚୂଟବନ୍ଧ ।
କେ ହାତୀ ପ୍ରାୟେ କରି ମାଖି ଅଛି ଗନ୍ଧ ॥
କେହୁ ଗେରୁ ଘଷି କପାଳେ କମ କଳା ।
କେହୁ ଗୋଡ଼ରେ ବୀରଘଣ୍ଟ ବାନ୍ଧିଲା ॥
କେ ଅଣ୍ଟାରେ ଘାଗୁଡ଼ିମାଳ ବାନ୍ଧେ ।
କେ ଗେଲେ ଚାଲୁଅଛି ନାଚିବାର ଛନ୍ଦେ ॥
ଚାମରେ ଚାମରେ କେ ହୋଇଅଛି ମଣ୍ଡି ।
ହୁଳହୁଳି ପାଡ଼ି କେ ଆଣ୍ଟେ ଦିଅନ୍ତି ରଡ଼ି ॥୧୦॥
କାହାର କାନରେ ତଡ଼କି ସୁନାସୂତା ।
କାହର ମୁକଳ ବାଳ କଣ୍ଠେଣ ସଞ୍ଜୁତା ॥
କାହାର ଯେକ ହାଥେ ବାହୁଟି ଚାରିପଟ ।
କରତାଳ ବାଇ କେହୁ କରୁଛନ୍ତି ନାଟ ॥
କାହାର ନିଶ ଦୁଇଂ ଉଡ଼ଇ ଫରହର ।
ଲାଗିର ମଧ୍ୟେ କାହାର ଲାଗିଅଛି ଥୋର ॥
ବିଭୀଷେଣ ବୀର ଅଇଲା ସଜ ହୋଇ ।
କିଜାଣି ଶରୀରେ ଅଛଇ ରତ୍ନ ଛାଇ ॥
ଶିରେ ମଲ୍ଲୀଫୁଲ ଗୁନ୍ଥିଅଛି ସଞ୍ଜେ ।
ମୁକୁତା ପ୍ରାୟେ ହୋଇ ଦିଶଇ ମହାଘଞ୍ଜେ ॥୨୦॥
ଇନ୍ଦ୍ରଗୋବିନ୍ଦ ପାଟ ପାଗ ବାନ୍ଧି ।
ତହିଂର ଉପରେ ତରାଟ ନେଇ ଛନ୍ଦି ॥
କଣ୍ଠେ କଣ୍ଠିମାଳ ମୁକୁତାର ସରି ।
ନାନାବର୍ଣ୍ଣେ ପଦେକ ହୃଦରେ ହାରକରି ॥
ସର୍ବାଙ୍ଗେ କସ୍ତୁରୀ ଗୋରଚନା ଚିତା ।
ଭେବଳ ଛନ୍ଦେ ଖଞ୍ଜିଣ ପଇତା ॥
ବାହେଣ ବୀରନେତ ମାଣିକ ବିଦମାଳି ।
ନବରତ୍ନମଏ ଯେ କଟିରେ ମେଖଳି ॥
ଶବଦ ନ ଶୁଭଇ କଙ୍କଣର ରୋଳେ ।
କର୍ଣ୍ଣରେ କୁଣ୍ଡଳ ଯେ ଗଳାରେ ମୋତିମାଳେ ॥୩୦॥
ବାହୁଟିର କମ ଅତିହିଂ ଉପାମ ।
କି ଜାଣି ପଟାନ୍ତର ପୂର୍ଣ୍ଣମୀର ସୋମ ॥
ଡାଳିମ୍ବ ଶେତ ପାଗ ଅଛି ବୀର ପିନ୍ଧି ।
ଦେବାଙ୍ଗ ପାଟ ଶାଢ଼ୀ ଦୋସଡ଼ା କରି ବାନ୍ଧି ॥
ଅଙ୍ଗୁଷ୍ଠିରେ ମୁଦି ନବଗ୍ରହ ଓଳି ।
ଚରଣ ତୋଡ଼ର କି ମିଥୁନ ବିଜୁଳି ॥
ନେପୁର ଯୁଗଳ ଚଳନ୍ତେ ଝମଝମ ।
ଦେଖିଣ ପରମ ସନ୍ତୋଷ ହୋଇଲେ ଶ୍ରୀରାମ ॥
ଧର୍ମ ସୁମରିଣ ପର୍ବତୁ ଓହ୍ଲାଇଲେ ।
ଜୟେବ ମଙ୍ଗଳ ଆଳତି ନେଇଦେଲେ ॥୪୦॥
ଗୋରଚନା ଚିତା ସିନ୍ଦୂର ଟୋପି ସାଙ୍ଗେ ।
କଲ୍ୟାଣ କରନ୍ତି ଦୁ ଜିତ ରଣରଙ୍ଗେ ॥
ଆଗେଣ ଦଧିମାଛ ପୂର୍ଣ୍ଣକୁମ୍ଭ ଶ୍ରୀଫଳ ।
କଦଳୀ ଚାରିଗଛ ଆବର ଚୂତପତ୍ର ତାଳ ॥
ଶେତ ପାରୁଆ ଯେ ରାଜହଂସ ପକ୍ଷି ।
ଶ୍ରୀରାମର ଅନୁକୂଳ ବେଳେ ତାହା ଦେଖି ॥
ସୁଷେଣ ତାରାକ୍ଷ ହୋଇଲେ ଆଗିଆଣି ।
ଟମକର ଘାୟେ କମ୍ପଇ ମେଦିନୀ ॥
ଘଣ୍ଟି ଘାଗୁଡ଼ି କଂସାଳ ମର୍ଦ୍ଦଳ ।
ଦମା ଦୋକାଠିଆ ଦାଉଡ଼ି ପରଖର ॥୫୦॥
ରାମତାଳି ତାଳଯନ୍ତ ବେଣୀ ଗୀତ ।
ମର୍ଦ୍ଦଳ ଭେରୀ ଶଙ୍ଖ ଶବଦ ବହୁତ ॥
ଢୋଲ ଦମାଲୁ ଟାଗୁ କୁଣ୍ଡଳୀ କଢ଼ା ।
ଘୁମୁରା ବିଜିଘୋଷ ଦୋସରି ଯୋଡ଼ା ଯୋଡ଼ା ॥
ମାଳେବ ରାଗେଣ ଯେ ବାଜଇ ମହୁରୀ ।
ଶବଦ ନିରନ୍ତରେ ଆକାଶ ସିନ୍ଧୁପୂରି ॥
ଶ୍ରୀରାମର ଚଳନ୍ତେ ଚଳଇ ସଇନି ।
ଟଳଟଳ ହୋଇ କମ୍ପଇ ମେଦିନୀ ॥
କପି ରକ୍ଷ ବଳ ଯେ ସୁବଳୟାରେ ଥିଲେ ।
କେ ଶାଳ ଉପାଡ଼ି ଓହ୍ଲାଇ ଅଇଲେଂ ॥୬୦॥
କେ ଭଡ଼ାଦେଇଣ ହୋଅନ୍ତି ଆଗୁସାର ।
କେହୁ ଡାକ ପାଡୁ ଯେ ଅଛନ୍ତି ମାର ମାର ॥
ଥାଠ ଚଳନ୍ତେ ଯେ ଉଡ଼ିଲାକ ଧୂଳି ।
ମୁଖରାବ ଶବଦେ ଯେ କୁରୁମ ଉଛୁଳି ॥
ବାଦ୍ୟ ନିରନ୍ତରେ ନିଶାଣ ଘଣ୍ଟବାଜେ ।
ବ୍ରହ୍ମାଣ୍ଡ ଖଣ୍ଡ କି ଯେହିକ୍ଷଣି ଭାଜେ ॥
ଚାଲ ଚାଲ ବଡ଼ ବଡ଼ ଆସ ଆସ ଧାଅଂ ।
ଯେ ଯାହାର ସଙ୍ଗ ଡାକନ୍ତି ଧରିନିଅ ॥
କିଜାଣି ବନପର୍ବତ ଚଳିଯାଇଂ ।
ବିକର୍ମ ସିଂଘର ପ୍ରାୟେ ଚଳନ୍ତି ବେନିଭାଇ ॥୭୦॥
ସେନା ସେନାପତିମାନେ ମତ୍ତଗଜର ପ୍ରାୟେ ।
ସ୍ୱର୍ଗେଣ ଉଛତ ହୋଅନ୍ତି ଦେବତାଏ ॥
ବ୍ରହ୍ମା ସହିତେଣ ଶଚୀର ପ୍ରାଣନାଥ ।
କୋବେର ମରୁତ ଅଗ୍ନିଶୂଳହସ୍ତ ॥
ନଉରତ ବରୁଣ ଅଙ୍ଗିରା ବୃହସ୍ପତି ।
ଦଶଦିଗପାଳେ ଆନନ୍ଦେ ଦେଖନ୍ତି ॥
ଚନ୍ଦ୍ର ସୂର୍ଯ୍ୟ ଚାରିମେଘ ଅଷ୍ଟବସୁ ।

ବିଶ୍ୱଦେବାଙ୍କୁହିଁ ଲଙ୍କା ଅଛି ଦିଶୁ ॥
ନବଗ୍ରହ ସିଦ୍ଧସାଧେକ ମହାମୁନି ।
ସନକାଦି ମୁନି ପ୍ରମବ୍ରହ୍ମ ଗ୍ୟାଂନୀ ॥୮୦॥
ବାରହ ଆଦିତ୍ୟ ଯେ ନବଗ୍ରହ ସହିତେ ।
ଷୋଳକଳାଶଶୀ ସପତ ମରୁତେ ॥
ଗନ୍ଧର୍ବ କିନ୍ନର ଯେ ଦକ୍ଷଗଣ ମିଳି ।
ଅପଛରୀ କିନ୍ନରୀ ବିଦ୍ୟାଧରୀ ବାଳୀ ॥
ଯେକାଦଶ ରୁଦ୍ର ମରୁତ କଶ୍ୟପ ।
ଭୃଗୁ ଭାର୍ଗବ ସହିତେ ଦେବ ନୃପ ॥
ଧାମ ଧାମ ଶବଦ ଶୁଭଇ ଚଉପାଶ ।
ଶ୍ରୀରାମର ସଂଗ୍ରାମ ଦେଖିବେ ମହାରସ ॥
ତଇଲୋକର ଶତ୍ରୁ ହୋଇବ ସଙ୍ଘାରି ।
ରଘୁନାଥର ପ୍ରସାଦେ ଦୁଃଖ ଯିବ ପାରି ॥୯୦॥
ଏକ ଆରକେଣ ରାଇଣ ଆସନ୍ତି ।
ଶୂନ୍ୟେ ଥାଇ ଶ୍ରୀରାମର ବଦନ
ନିରୋପନ୍ତି ॥
ଧନ୍ୟ ଧନ୍ୟ ରାଘେବ ଧନ୍ୟ ରଘୁବୀର ।
ସଂସାର ବଇରୀ ଦେବ ବେଗକରି ମାର ॥
ନୋହିଲେ ସ୍ୱର୍ଗେ ନୁଆରି ସୁସ୍ଥେ ରହି ।
ତୋ ତହୁଂ ମିତ୍ରକେ ଆମ୍ଭର ଆନ କେହି
ନାହିଁ ॥
ବିଶର୍ବାର ନନ୍ଦନ ହୋଇଲା ଆମର ଶତ୍ରୁ ।
ତୁଦେବ ନାରାୟଣ ଦିଅ ତାକୁ ମୃତ୍ୟୁ ॥
ଏ ବ୍ରହ୍ମାଣ୍ଡ ତୋହୋର ଅଟଇ ଖେଡ଼ଘର ।
ବାରେକ ଉଦ୍ଧର ଦେବ ଶଙ୍ଖ
ଚକ୍ରଧର ॥୧୦୦॥
ବିଷମ ଶତ୍ରୁ ମାରି ଗୁହାଅ ତୋର ବାନା ।
ତୁ ଦେବ ଭଗତମକ୍ଷଳ ଭଗବାନା ॥
ଯେସନେକ ବୋଲି ଡାକନ୍ତି ସୁରନାରୀ ।
ଆକୁଳେ ଦେବତାଯେ ବହୁତ ତୁଷ୍ଟିକରି ॥
ଛପନ ଗଣ୍ଡାର ଯେତେକ ଦୁଃଖ ଥିଲା ।
ଶ୍ରୀରାମକୁ ଦେଖି ସବୁ ଦୁଃଖଗଲା ॥
ବିଚାରନ୍ତି ଯେହାକୁ ଅଛୁ ଆଗକରି ।
ବିଧାତାର ଭବିଷ ବଚନମାନ ଧରି ॥
ଯଦ୍ୟପି ରାବଣ ନୋହିବ ଆଜ ନାଶ ।
ନିଷ୍ଚଯେ ଦେବତାଯେ ଛାଡ଼ିବେ
ସର୍ଗବାସ ॥୧୦॥

ରାବଣର ଘାଯେ ପାରିବାକି ସହିଂ ।
ରାସାତଳେ ଭାସି ହୋଇବ ନା ମହୀ ॥
ସଚରାଚର ସବୁ ଦଇତ ଭୋଗ ପୁଣି ।
ଯେବେ ରାମ ରାବଣକୁ ନୁଆରିବେ ଜିଣି ॥
ଯେସନେକ ହୋଇ ଭାଳନ୍ତି ସୁରଲୋକେ ।
ରମ୍ଭା ଅପଛରୀ ରୋଦନ କରନ୍ତି ଶୋକେ ॥
ବସନ୍ତା ମେନକା ଉର୍ବଶୀ ତିଆରନ୍ତି ।
କିମ୍ପା ତୁ ବିକଳ ଗୋ ହୋଉ ରୂପବନ୍ତୀ ॥
ଯେକାକି ତୋତେଯେ ଧଂସିଲା ଦଇତ ।
ଭୋଗକଲା ସେ ସଂସାର ତଇଲୋକ ॥୨୦
ତେଣୁ ସେ ଶ୍ରୀହରି ମାନେବ ରୂପ ଧରି ।
ଅବତାର ହୋଇଲା ଅସୁର ବଳ ମାରି ॥
ଆଜୁଂ ସବୁ କଷ୍ଟ ଯିବତ ଆମ୍ଭର ନାଶ ।
ନ ଭାଳ ସୁନ୍ଦେରୀ ତୁ ଛାଡ଼ ଛାଡ଼ ରୋଷ ॥
ଯେସନେକ ବୋଲି ଯେ ରମ୍ଭାକୁ ତିଆରନ୍ତି ।
ବୋଲନ୍ତି ସଦାଶିବ ଶୁଣ ଗୋ ହେମବନ୍ତୀ ॥
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଯେ ।
ଲଙ୍କାର ଉତ୍ତରଗଡ଼ ଦ୍ୱାର ପାଯେ ॥
ସନ୍ୟ ନିଘଞ୍ଚରେ ପୂରିଲାକ ମହୀ ।
କେତେ ଏହା ସଞ୍ଚପି ପାରିବାକ କହି ॥୩୦॥
ପାଚେରୀ ପାଖେ ପାଖେ ନାଗିଲେ ଯାଇ
ବଳ ।
ଦଶଦିଗ ପୂରିଲା ତୁଣ୍ଡର ଚହଳ ॥
ଆପଣେ ଶ୍ରୀରାମ ଦ୍ୱାରେଣ ମିଳନ୍ତି ।
ବିଭୀଷେଣ ଦକ୍ଷିଣେ ରିକ୍ଷ କପି ମନ୍ତ୍ରୀ ॥
ଆଗେଣ ସୁଷେଣ ତାରାକ୍ଷ ବେନିବୀର ।
ପଛେଣ ଲଇକ୍ଷଣ ସାହା ସହୋଦର ॥
ବୀର ମହାବୀର ଅଛନ୍ତି ଅଗଣିନ୍ତା ।
ଯୂଥପତିମାନେ ସଂଗ୍ରାମେଣ ଜିତା ॥
ପୂର୍ବେଣ ସୁଗ୍ରୀବ ଦକ୍ଷିଣେ ଅଙ୍ଗଦ ।
ପଶ୍ଚିମେ ହନୁମନ୍ତ ଉତ୍ତରେ ରାମଚନ୍ଦ୍ର ॥୪୦॥
ସହସ୍ରେ ପୁର କରି ବେଢ଼ିଲେ ଚଉକତି ।
ଭିତରେ ଥାଇ ତାହା ଜାଣିଲା ଲଙ୍କପତି ॥
ମନରେ ବିଚାରିଲା ଗଲା ମୋର ଶିରୀ ।
ଶ୍ରୀରାମ ପ୍ରତକ୍ଷେ ଅଟନ୍ତି ନରହରି ॥
ପରମଲକ୍ଷ୍ମୀ ସଂଯେ ଜନକ ଦୁହିତା ।

ମୋହୋର ଛଳେ ଜାତ କଲାକ ବିଧାତା ॥
ଯହୁଂ ମୁଂ ଦେବତାଙ୍କୁ ଅନେକ ଦୁଃଖ
ଦେଲି ।
ଗୋରୁ ବ୍ରାହ୍ମଣ ରଷିନ୍ତ ଦ୍ରୋହ କଲି ॥
ସୀତା ହରିଲଇଂ କାମେ ବଶ୍ୟ ହୋଇ ।
ଆଣି ରମଣୀତ କରି ନୁଆରିଲି ମୁହିଁ ॥୫୦॥
ଯେବେତ ସଂଗ୍ରାମ ନିକଟ ଆସି ହୋଯେ ।
କେବଣ ବୁଧି କରିବି କେବଣ ଉପାଯେ ॥
ଯଦ୍ୟପି ଶ୍ରୀରାମ ମାରିବେକ ମୋତେ ।
ଜାନେକୀ ମୋହୋର ତ ନୋହିଲା
ରତିପ୍ରୀତେ ॥
ଯେତେ ଭାଳି ମନେ ବିସ୍ମୟ ବିଚାରି ।
ଭାଲୁ ବୁଧି ଏକ ପାଇଲା ଦଶଶିରି ॥
ବୋଇଲା ଆନ ମତେ ନୋହିଲା ସୀତ୍ୟା
ରମି ।
ସାକ୍ଷାତେ ସାଧେବୀ ସେ ଅପାପୀ ଅକାମୀ ॥
ଆନପ୍ରକାରେ ତାର ନବଳଇ ମତି ।
ବୋଲିବି ତୋହରି ହାଦେ ନାଶିଲଇ ନିଜ
ପତି ॥୬୦॥
ରାମଲକ୍ଷଣଙ୍କର ସାକ୍ଷାତେ ବେନି ଶିର ।
କୋଦଣ୍ଡ ଧନୁରେ ତାହା କରିଥିବି ଭାର ॥
ତେବେ ସେ ପ୍ରତେ ଯେ କରିବ
ଚାନ୍ଦମୁର୍ହୀଂ ।
ଆନମତେ ଭୋଗ କରିତ ନୁଆରଇ ॥
ଯେତେ ବୋଲିକରି ବିଚାରିଣ ରାବଣ ।
ଦଇତ ଦୁଇଗୋଟା ହାଣିଲା ତତକ୍ଷଣ ॥
ସେ ମୁଣ୍ଡ ଦୁଇ ଯେ ମାୟାଯେ ଭିଆଇଲା ।
ରାମ ଲକ୍ଷଣଙ୍କ ଶିରପ୍ରାଯେ କଲା ॥
ବିଦ୍ୟୁତଜିଭ ବୋଲି ଏକଇ ଦଇତ ।
ତାହାକୁ ବୋଇଲା ମୁଣ୍ଡ ଘେନ ହାଥ ॥୭୦॥
ଆପଣାର ଧନୁ ମାୟାରେ କୋଦଣ୍ଡ କଲା ।
ତାହା ଘେନାଇ ଓଶେକ ବିପୁନ୍ୟକଇ ଗଲା ॥
ସନ୍ୟକୁ ବୋଇଲାରେ ଦ୍ୱାର ଜଗିଥାଅ ।
ଅରଗଳି ପାଡ଼ି ଆନ ଆଡ଼କୁ ନ ଯାଅ ॥
ଓଶେକ ବିପୁନ୍ୟ ମୁଂ ଆସି ଏହିକ୍ଷଣି ।
ଯେତେ ବୋଲି ଯେକସରେ ଆସଇ
ଲଙ୍କମଣି ॥

ମଧୁବନେ ଯାଇ ହୋଇଲା ପରବେଶ ।
ଝାଳେ ଝମ ଝମ ବହଇ ଖର ନିଶ୍ୱାସ ॥
ଓଶେକ ବିପୁନ୍ୟେ ହୋଇଲାକ ଯାଇ ।
ଜଗତୀର ଉପରେ ସୀତ୍ୟା ଅଛି
ଶୋଇଁ ॥୮୦॥
ସହସ୍ରେ ଅସୁରୀ ଯେ କହନ୍ତି କଥାମାନ ।
ଏସନେକ ବେଳେ ଯାଇ ମିଳିଲା
ଦଶାନନ ॥
ଧୂର୍ରୁ ଦେଖି ଜାନେକୀ ଉଠିଲେ ତଡ଼ତି ।
ଶିର ଲୁଆଂଇଣ ବସିଲେ ମହାସ୍ୟତୀ ॥
ତ୍ରିଜଟା ସହିତେଣ ଉଠିଲେ ଦଇତୁଣୀ ।
ନିମସ୍କାର କରି ଉଭା ସକଳ ତରୁଣୀ ॥
ଦଇତ କାନ୍ଧୁ ମୁଣ୍ଡ ଭାର ଘେନିଲା ଦଶଶିରି ।
ଭୂମିରେ ଥୋଇଣ ସେ କହଇ ଥିର କରି ॥
ଶୁଣଗୋ ଶଶୀମୁଖୀ ଜନେକର ସୁତା ।
ସିନ୍ଧୁ ଜିଣିକରି ଯେ ଅଇଲେ ତୋହୋର
ଭ୍ରଥା ॥୯୦॥
କାଲି ଆସି ସୁବଳୟାରେ ହୋଇଲେ
ପରବେଶ ।
ମୋହୋର ଆଗ୍ୟାଂୟେଂ ତାକୁ ଦଇତେ
କଲେ ନାଶ ॥
ଦେଖ ଦେଖ ରାମଲକ୍ଷଣଙ୍କର ବେନିମୁଣ୍ଡ ।
ଆବରହିଂ ଦେଖ ସ୍ୱାମୀର ତୋହୋର
କୋଦଣ୍ଡ ॥
ଯେବେ ପ୍ରତେ ଗଲୁଟିକି ଶୁଦ୍ଧ ସୁବର୍ଣ୍ଣର
ଗାତ୍ରୀ ।
ହୁଅତୁ ମାଇଣା ସେ ଶରଦ ପଦ୍ମନେତ୍ରୀ ॥
ଶ୍ରୀରାମ ଲକ୍ଷଣ ଯେ ମାନେବ ଶରୀର ।
ଆମ୍ଭେ ଦଇତମାନେ ଅଟୁ ମହାବୀର ॥
ଦେବତାୟେ ଭୟକରି ସେବାକରେ
ମୋତେ ।
ୟେକାକୀ କ୍ଷତ୍ରୀ ମୁଇଂ ଅଟଇ
ଜଗତେ ॥୧୦୦॥
ସେ କାହିଂ ଜାଣିବେ ଯେ ଯୁଦ୍ଧର କିସ
ଗୀତି ।
ରାମର ଉପର ବଂଶେ ଅରଣ୍ୟକ ନୃପତି ॥
ତାହାର ସାଂଗରେ ମୁଂ ରଣଗୋଳ କଲି ।
ମାୟାଯୁଦ୍ଧ କରି ଯେ ଚାପୋଡ଼େ ମାଇଲି ॥
କନ୍ଧ ଛିଡ଼ିଣ ମୁଣ୍ଡ ପଡ଼ିଲାକ ତଳେ ।
ଅଯୋଧ୍ୟା କଟେକ ମୁଂ ଚୂରକଲି ବଳେ ॥
ସେ ବଂଶେ ଯେତେକ ନୃପତି ଜାତ
ହୋନ୍ତି ।
ଭୟ କରି ମୋତେ ସନମାନ ଦିଅନ୍ତି ॥
ଏ ରାମ ବାଳୁତ ଯେ ନ ଜାଣଇ କିଛି ।
ମୋତେ ଜିଣିବ ବୋଲି ଧାଇଂ
ଆସିଅଛି ॥୧୦॥
ଯେବେ ପ୍ରାଣ ହାରିଲାୟେ ସାନଭାଇ
ଘେନି ।
ତୋହୋର ପ୍ରତେ ଯିବାକୁ ଆଣିଲି ମୁଣ୍ଡ
ବେନି ॥
ଭ୍ରଥା ଦିଅରକୁ ଏବେ ଭଲ କରି ଚିହ୍ନ ।
ଏବେ ଦୃଢ଼େ କରି ହୋଅସି ୟେକମନ ॥
ଖେଦ ନ କରିଣ ଛାଡ଼ ସଖୀ ଚିନ୍ତା ।
ଆବର ହିଂ ଲୋଡ଼ିଲେ ପାଇବୁ କାହୁଂ
କାନ୍ତା ॥
ଆଶା ବଢ଼ାଇଲେ ଶରୀରକୁ ହୁଅଇ ରୋଗ ।
ମୋତେ ଘେନିଣ ଏବେ କର ବଇଭୋଗ ॥
ଶ୍ରୀରାମ ମନିଷ୍ୟ ନ ଜାଣଇ ରତିରସ ।
ମୋହୋର ସଂଗ ମେଳେ ପାଇବୁ ସଖୀ
ତୋଷ ॥୨୦॥
ମୁହିଂ ସେ ରାବଣ ଦେବଙ୍କୁ ତୋଷ କଲି ।
ଚଉଦ ଭୁବନେ ମୁଂ ନୃପତି ହୋଇଲି ॥
ତୁ ମୋର ଭାବେନୀ ହୋଅସି ରେ ସହି ।
ମୋହୋର ବହୁତ ଶରଧା ତୋତେ ହୋଇ ॥
ଉଠ ଉଠ ସୁନ୍ଦରୀରେ ନୋହସି ବିସ୍ମୟେ ।
ହରଷକାଳେ ବିମୁଖ କିମ୍ପା ହୋୟେ ॥
ମୁହିଂ ମାହାରାଜା ତୋତେ ଆଶା କଲି ।
ଦଶମାସ ହେଲା ହରି ଯେ ଆଣିଲି ॥
କିମ୍ପା ତୁ ନିର୍ଦ୍ଦୟା ହେଉ ବଇଦେହୀ ।
ଭୋଗ ଭୁଞ୍ଜିବାର କାଳ ଅଟଇଟି
ୟେହି ॥୩୦॥
ଦିବ୍ୟ ଅଳଙ୍କାର ଯେ ଆଭରଣ କର ।
ଦେବାଙ୍ଗ ବସ୍ତ୍ର ଯେ ଶରୀରେ ପରିହର ॥
କ୍ରପୂର ତାମ୍ବୁଳ ଯେ ମିଶାଇଣ ଭୁଞ୍ଜ ।
କୋଳକରି ମୋତେ କାମ ଜ୍ୱର ଭାଞ୍ଜ ॥
ତିନିକୋଟି ପଚାଶ ଲକ୍ଷ ଯେ କୁମାରୀ ।
ଅନୁବ୍ରତେ ମୋହରି ପାଶେ ମନୋହାରୀ ॥
ମଏ ଦଇତର ଅଟଇ ମନ୍ଦୋଦରୀ ସ୍ୟତୀ ।
ସେ ମୋହର ରମଣୀ ଅଟଇ ପ୍ରିୟବତୀ ॥
ତୋତେ ଦେଖି ତାହାରେ ଯେ ନ ବଳଇ
ମନ ।
ମୋହନମନ୍ତ୍ରେ ମତେ ତୁ କଲୁ
ଅଚେତନ ॥୪୦॥
ଯତିର ଯୁବତୀ ହୋଇ ଯେତେଦିନ ଥେଲୁ ।
ଅରନ୍ୟେ ବୁଲି ଯେ ତୁ ଦୁଃଖେ ଦିନ ନେଲୁ ॥
ସୁଖ ଭୋଗରେତ ନ ପାଇଲୁ ଲେଶ ।
ନଡ଼ପ ବିହୁନେଣ ପିଙ୍ଗଳ ଦିଶଇ କେଶ ॥
ଘଟି ବିହୁନେଣ ଦେହେ ମଳିଅଛି ।
ବସ୍ତ୍ର ବିହୁନେ ତୁ ହୋଇଲୁ କମଳ ପତ୍ରାକ୍ଷୀ ॥
ଅଳତା ବିହୁନେ ଯେ ଚରଣ ରଂଗ
ନୋହେ ।
କଜ୍ଜଳ ନଥିବାୟେ ନୟନ ନ ଶୋହେ ॥
ତାମ୍ବୋଳ ବିହୁନେ ଯେ ଅଧର ଦିଶଇ
ଗତା ।
ଅଳକା ବଢ଼ିଣ ଘୋଟିଲା ଆଖିପତା ॥୫୦॥
ଏବେତୁ ସୁନ୍ଦେରୀ ଗୋ ମୋହୋର ବୋଲ
କର ।
ଶ୍ରୀରାମ ଗୁଣ ତୁ ବେଗେଣ ପାଶୋର ॥
ଯଦ୍ୟପି ଲୋଡ଼ିବୁ ତୁ ପାଇବୁ ଆଉ କାହିଂ ।
ଯେ ଜନ୍ମେ ତାହାର ତୋହୋର ଦେଖାଦେଖି
ନାହିଂ ॥
ପୂର୍ବର କର୍ମ ସେ ଯେ ଭୁଞ୍ଜିଲା ଜଟାଧାରୀ ।
ଦଇତ ହାଥେ ଯେ ହୋଇଲା ସଂଘାରି ॥
ଯେତେ ଦିବସକୁ ସେ ଜୀବନ ପାଇଥିଲା ।
କାଳକୃତ ଘେନି ସେ ଭୋଗ କରିଗଲା ॥
ତୋହୋର ମଲେ ସେ ଗୋ ନୁଆସଇ
ଆଉ ।
ମୁହିଂ ଦଶଗ୍ରୀବ ଅଟଇ ଦତ୍ୟ ରାହୁ ॥୬୦

ପୂର୍ବର କର୍ମେ ତୁ ହୋଇଲୁ ଆସି ଯେଥ ।
ଅନେକ ତପବଳେ ଧଇଲୁ ମୋର ହାଥ ॥
ଏ ପୁରେ ଠାକୁରାଣୀ ହୋଇବୁ ତୁ ସୀତ୍ୟା ।
ଯେଣ୍ଣେ କପାଳେ ତୋ ଲିହିଲା ବିଧାତା ॥
ଏତେ ବଏସେ ତୋତେ ସୁଖଶିରୀ ଦେଲା ।
ସାଧୁ ସାଧୁ ବିଧାତା ଯେ ଭଲା ଠାବ କଲା ॥
ଯେ ତୋହୋର ଇଚ୍ଛା ଭୋଗସିରେ ବାଳୀ ।
ଶୁଣିଣ ଶୋକ କଲା ଜନେକ ଦୁଲାଳୀ ॥
ଆଗେଣ ଦେଖିଲା ଶ୍ରୀରାମର ମୁଣ୍ଡଗୋଟି ।
ମହାର୍ଣ୍ଣବ ଜଳେକି ମର୍କତ ପଦ୍ମଫୁଟି ॥୭୦
ଲକ୍ଷଣର ମୁଣ୍ଡ ଯେ ସୁବର୍ଣ୍ଣର କମଳ ଜାଣି ।
ଦେଖି ଉରେ କର ତାଡ଼ଇ ତରୁଣୀ ॥
ମଲି ମଲି ବୋଲି ସାଉଂଟଇ ଧୂଳି ।
ଶ୍ରୀରାମର ମୁଣ୍ଡ ଗୋଟି ଧଇଲାକ ତୋଳି ॥
ଝରଝର ରୁଧିର ଝରି ପଡ଼ଇ ତଳେ ।
ଦେଖି ମହାସ୍ୟତୀ ରୋଦଇ ବିକଳେ ॥
ହାହା ବନ୍ଧୁ ମୋର ପୀରତିର ସାଇଂ ।
ତୋହୋର ବିତ୍ରକେ ମୋହୋର ଆନପ୍ରିୟ ନାହିଁ ॥
ସୁଦୀର୍ଘ ନାସା ଗୋଟି ତିଳହୁଲି ଜାଣି ।
ନୟନ ଯୁଗଳ କି ଅଟଇ ନୀଳା ମଣି ॥୮୦
ସୁରଙ୍ଗ ଅଧର କସ୍ତୁରୀ ରେଖ ଦାଢ଼ୀ ।
ଫରହର ନିଶ ବାଏ ଅଛି ଉଡ଼ି ॥
ଶର୍ବଣେ ତମ୍ୱାର କୁଣ୍ଡଳ ବେନି ଶୋହେ ।
ଏକଖଣ୍ଡେ କପାଳ ତଇଲୋକ ଜନମୋହେ ॥
ନାଗବନ୍ଧ ଛନ୍ଦଣି ଅଟଇ ଚାରୁଜଟ ।
ଧନ୍ୟ ଧନ୍ୟ ରାମ ତୋହୋର ନାସିକା କଣ୍ଠତଟ ॥
ଅଯୋଧ୍ୟା ରାଜ୍ୟର ରାଜାପଣ ଛାଡ଼ି ।
ଚଉଦ ବରଷ ବୁଲିଲୁ ବନ ମାଡ଼ି ॥
ଯେବେ ଅସୁରଙ୍କର ହାଥରେ ପ୍ରାଣଦେଲୁ ।
ମୋହୋର ଛାର ପାଇଂ କିମ୍ପା ଯେଥକୁ ଅଇଲୁ ॥୯୦
ତୋହୋ ଜୀଇଂଥିଲେ କୋଟିଯେ ନାରୀ ଅଛି ।
କିମ୍ପା ଅଗ୍ୟାଂନ ବୁଧି କଲୁସି ରଘୁବଚ୍ଛି ॥

ମୁହିଂ ଛାର ହୀନ ପାମର ଚାଣ୍ଡାଳୁଣୀ ।
ମୋତେ କିମ୍ପା ଶରଧା କଲୁ କୋଦଣ୍ଡ ଚାପପାଣି ॥
ଅଯୋଧ୍ୟା ନଗ୍ରେ ତୋହୋର ଅଛନ୍ତି ବନ୍ଧୁବର୍ଗ ।
ସେ ଆଶ ଛାଡ଼ିଣ ତୁ ଚଳିଲୁ କୁମାର୍ଗ ॥
ଦଇତଙ୍କର ମାୟାତ ଜାଣି ନ ପାରିଲୁ ।
ବାଳୀ ମ୍ରକଟକୁ ମାରିବା ପରା ମଣିଲୁ ॥
ତୁଯେ ମଲୁ ତୋହୋର ଘରଣୀ ନିମନ୍ତେ ।
ଲକ୍ଷ୍ମଣକୁ ମରାଇଲୁ କେବଣହିଂ ମତେ ॥୧୦୦
ସୋଦର ଗୁଣ ଘେନି ସେ ଗୋଡ଼ାଇ ଅଇଲା ।
ଅକାରଣେ ସୁମଇତ୍ରାନନ୍ଦନ ପ୍ରାଣଗଲା ॥
ଶୁଣିଲେ କି ବୋଲି ବୋଲିବେ ଯେହାର ଆଇଂ ।
ଦେହ କେହ୍ନେ ଧରିବଟି ଶତୃଘନ ଭାଇ ॥
ଭ୍ରଥ ଜାଣିଲେ କରିବ ମହାରୋଷ ।
ଏପୁରକୁ ଭ୍ରଥ ବାହିବ ଅବଶ୍ୟ ॥
ଏ ଲଙ୍କା ଗଡ଼ ଯେ ଅବଶ୍ୟ ଧୂମାନ୍ତିବେ ।
ଏହି ସୁଗ୍ରୀବକି ସାଙ୍ଗେଣ ଘେନି ଆସିଥିବେ ॥
ହନୁମନ୍ତ ଥିଲେ ତ ସରିବ ତୋହୋର ଶିରୀ ।
ବିଭୀଷେଣର ଅଟୁ ତୁ କୁଳର ବଇରୀ ॥୧୦
ସେ ତୋତେ କେବେହେଂ ନଚିନ୍ତଇ ଭଲ ।
ଏଯୋଗେ ଅବଶ୍ୟ ମରିବୁ ଲଙ୍କମଲ ॥
ଏବେ ତୁ ମୋହୋର ବୋଲ କର ଦଶଶିରି ।
ଶ୍ରୀରାମ ଉପରେ ପକାଅ ମୋତେ ମାରି ॥
ଶ୍ରୀରାମ ପଛି ଜୀବ ପଞ୍ଜୁରୀ ମୋହୋରି ଅଙ୍ଗ ।
ତୁ ଯେ ଅନମିତେ ଭାଙ୍ଗିଲୁ ଏଡ଼େ ରଙ୍ଗ ॥
ଆବର ଥାଇଂ ମୁହିଂ କରିବଇଂ କିସ ।
ଆଜ୍ଜୁ ମୋତେ ଅନ୍ଧାର ହୋଇଲା ଦଶଦିଶ ॥
ସ୍ୱାମୀର ବିହୁନେ ମୁଂ ନ ବ୍ରତଇ ବିଂଶପାଣି ।
ଚନ୍ଦ୍ରହାସ୍ୟ ଖଡ଼ଗେ ପକାଅ ମୋତେ ହାଣି ॥୨୦

ସ୍ୱାମୀର ଶତ୍ରୁ ତୁ ମୋହର ବଇରୀ ।
ମୁଇଂ କିମ୍ପା ନୟନେ ଦେଖିବି ତୋହୋର ଶିରୀ ॥
ସଂହାତେ ବଧ୍ୟ ତୁ କଲୁ ମୋହୋର ପତି ।
ମୋତେ ଥୋଇବାର ତୋହୋର ନୁହଇ ଯୁଗତି ॥
ସ୍ୱାମୀ ମୋହୋର ମଲା ମୁଂ ବିଧବା ହୋଇଲି ।
ପୂର୍ବେ ଋଷିଙ୍କର ତୁଣ୍ଡରୁ ଶୁଣିଥିଲି ॥
ପିତାର ଘରକୁ ମୋହୋର ଆସୁଥାନ୍ତି ଯତି ।
ସେ ବୋଲନ୍ତି ବିଧବା ଗୋ ନୋହିବୁ ତୁ ସତୀ ॥
ତାହାଙ୍କର ବୋଲତ ହୋଇଲାକ ମାୟା ।
ଏକାଙ୍ଗ ଲକ୍ଷ୍ମୀ ଏବେ ଭୁଞ୍ଜୁ କଏକୟା ॥୩୦
ମନ୍ଥୁଡ଼ିର ବୋଲେ ଯେ ଏଡ଼େ କର୍ମ କଲା ।
ତାହାର ପ୍ରସାଦେ ଯେବେ ସ୍ୱାମୀ ମୋହୋର ମଲା ॥
ଗୁରୁଜନ ଲୋକକୁ ମୁଂ କି ବୋଲି ବୋଲିବି ।
ମନ୍ଦ ବୋଲି ବୋଇଲେ କି ସ୍ୱାମୀ କି ପାଇବି ॥
ଲକ୍ଷ୍ମଣର ମୁଣ୍ଡ ଚାହିଂଣ ସତୀ କାନ୍ଦି ।
ଧିକ ଧିକ ବୋଲିଯେ ବିଧାତାକୁ ନିନ୍ଦି ॥
କିମ୍ପା ଦଇବତୁ ଯେଡ଼େ କର୍ମ କଲୁ ।
ସୁମିତ୍ରା ପୁତ୍ରକୁ ଅକାରଣେ ମୃତୁ ଦେଲୁ ॥
ଶ୍ରୀରାମ ଯେବେ ରାବଣର ଅଟଇ ବଇରୀ ।
ସେହି ଏହାକୁ ପାରିଲେ ଯାଆନ୍ତିଟିକି ମାରି ॥୪୦
କେଣ୍ଣେଣ ଧର୍ମେ ନ ପଶଇ ଯେ ମନ୍ଦ ।
ଏବେକଉଂ ପୁଣ୍ୟ କଲା ଦଶକନ୍ଧ ॥
ପରଘରଣୀକି ଆଣିଲା ଚୋରୀ କରି ।
ମାୟାଛନ୍ଦେ ତାହାକୁ ପକାଇଲା ମାରି ॥
ଛାମୁରେ ମିଳିଣ ସମର ନ କଲା ।
ବିଶ୍ୱାସଘାତେକୀ ପାପ ଅରଜିଲା ॥
ବିଶର୍ବା ଋଷିର ଅଟୁ ଯେ ତନୟେ ।
ଋଷି ପୁତ୍ର ହୋଇ ବଧକୁ ନାହିଂ ଭୟେ ॥

ସମଦଣ୍ଡ ଘେନି ନ କଲା ସମର ।
ଜାଣିଲୁ ଦଇତ ଯେ ଅଟଇ ପାମର ॥୫୦
ଏତେ ବୋଲି ଦେବୀ ଯେ ରୋଦଇ
ପୁଣପୁଣି ।
ରାବଣେଶ୍ୱର ଯେ ବୋଇଲା ତାହା ଶୁଣି ॥
ଯେତେକାଳକୁ ଯେ ଆଇଷ ପାଇଥିଲେ ।
କର୍ମର ଅନୁସାରେ ଭୋଗ କରିଗଲେ ॥
ଏବେ ଲୋଡ଼ିଲେ ତୁ ପାଇବୁ ଆଉ କାହିଁ ।
ଏବେ ତୁ ସ୍ନାହାନ କରସି ସଖି ଯାଇଂ ॥
ବେଶ ବେସନ ଗୋ ହୁଅସି ତଡ଼ତି ।
ମୁଇଂ ଯେ କାମେଣ ହୋଇଅଛି ଆରତି ॥
ଏସନେକ ସମୟେ ଅଇଲାକ ଚାର ।
ଶୁଣ ଦେବ ରାବଣ ପ୍ରତାପୀ
ଲଙ୍କେଶ୍ୱର ॥୬୦
ଶ୍ରୀରାମଚନ୍ଦ୍ର ଯେ ସୁବଳୟା ଗିରିବରେ
ଥିଲେ ।
ଚାରିଦ୍ୱାରକୁ ତୋହୋର ସନ୍ୟ ବରଗିଲେ ॥
ପୂର୍ବେଣ ସୁଗ୍ରୀବର ପଶ୍ଚିମେ ମାରୁତି ।
ଅଙ୍ଗଦ ଆବୋରିଲେ ଦକ୍ଷିଣ ଦ୍ୱାର କତି ॥
ଆପଣେ ରଘୁନାଥ ଉତ୍ତର ଦ୍ୱାରେ ଅଛି ।
ସାଙ୍ଗେ ସାହାତାର ସୁମେଇତ୍ରାର ବଛି ॥
ଭାଇ ତୋର ବିଭୀଷେଣ ଅଟଇ ଆଗିଆଣି ।
ସନ୍ୟ ଅପ୍ରମିତ ପାରିବ କେ ଗଣି ॥
ସହସ୍ରେ ପୁର କରି ଗଡ଼ ବେଢ଼ିଛନ୍ତି ।
ପାଚେରୀ ଉପରେ ଉଠି ରଡ଼ି
ଦେଉଛନ୍ତି ॥୭୦
ଏହିକ୍ଷଣି କଟେକ ଯେ କରିବେ ଧୂମାନ୍ତ ।
ଅସଂଖ୍ୟ ସଇନି ଦେବ ମନ୍ଦୋଦରୀକାନ୍ତ ॥
ନ କର ବିଳମ୍ୱ ତୁ ବେଗ ହୋଇ ଆସ ।
ବୀରତୂର ଘାଏ କମ୍ପଇ ଦଶଦିଶ ॥
ଆଉ ଦଣ୍ଡକେ ଭାଙ୍ଗିବେ କବାଟ ।
ନାରଖାର ହୋଇବ ଏଡ଼େ ବଡ଼ ରାଷ୍ଟ୍ର ॥
ଡଗର ମୁଖରୁ ଯେସନେକ ବାଣୀ ।
ଶୁଣିଣ ଚକିତ ହୋଇଲା ବିଂଶପାଣି ॥
ଯିସ ଯିସ କଥା ସୀତ୍ୟାକୁ କହୁଥିଲା ।
ତାହା ଛାଡ଼ିଣ ଯେ ବାହୁଡ଼ି ଅଇଲା ॥ ୮୦

ଯେସନ ସମୟେ ଚାର ବାରତା ନେଇ
ଦେଲା ।
ସୀତ୍ୟା ଯେ ସେ କଥା ଶୁଣି ଆନନ୍ଦ
ହୋଇଲା ॥
ତ୍ରିଜଟା ଜାନେକୀ ଯେ ହୋଇଲେ
ଠାଠରି ।
ଯେସନେକ ବେଳେ ବାହୁଡ଼ି ଗଲା
ଦଶଶିରି ॥
ରାକ୍ଷାସୁଣୀମାନେ ଯେ ଉଭା ହୋଇଂଥିଲେ ।
ରାବଣ ଗଲେ ଯେ ସଭିୟେଂ ବସିଲେ ॥
ସମଯଂନା ନାମେ ଏକଇ ଦଇତୁଣୀ ।
ସୀତୟା ସାଙ୍ଗେ ସେ ଅଟଇ ମିତଣୀ ॥
ସେ ବୋଇଲା ସଖୀ ଶୁଣିଲୁଟିକି କଥା ।
ମାୟାଛନ୍ଦ ଆଣି ପାତିଲା ଦଶମଥା ॥ ୯୦
ଅସୁରଙ୍କ ମାୟାଯେ ନ ଜାଣୁଗୋ ନାରୀ ।
ଯେତେ ବିଧାନ ପାରନ୍ତି ହାଦେ କରି ॥
ପ୍ରତକ୍ଷେ ଆଣି ଦେଖାଇଲା ବେନି ଶିର ।
କନ୍ଧୁ ତୁଟି ଗଳି ପଡ଼ଇ ରୁଧିର ॥
ସ୍ୱାମୀ ଦିଅର ପରାୟେ ମଣିଥିଲୁ ।
ତେଣୁ ସେ ମହାସ୍ୟତୀ ଅନେକ
ଶୋକକଲୁ ॥
ଏବେତୁ ପ୍ରତେଗଲୁ କି ସଙ୍ଗାତୁଣୀ ।
ଡଗରା କହିଲା ଯେସନେକ ବାଣୀ ॥
ଭ୍ରଥା ଦିଅର ତୋର ଗଡ଼ ବେଢ଼ିଛଂତି ।
ରିକ୍ଷ କପି ଗଡ଼େ ଡେଇଂଣ ପଶନ୍ତି ॥୧୦୦
ଟମକ ଘନ ଘନ ଶୁଣୁକିନା ସହି ।
ତାହାଶୁଣି ଡଗରା ଅଇଲା ହାଦେ କହି ॥
ବାରତା ପାଇଂ ରାବଣ ହୋଇଲା ହାଦେ
ଧନ୍ଦ ।
ବାହୁଡ଼ି ପଳାଇଣ ହାଦେ ଗଲା ଦଶକନ୍ଧ ॥
ଲାଜ ପାଇବ ବୋଲି ବାହୁଡ଼ି ଗଲା ଧାତି ।
ଶୁଣିଣ ପରମ ସନ୍ତୋଷ ହୋଇଲେ
ମହାସ୍ୟତୀ ॥
ବୋଇଲେ ଯାହା ସଖୀ କହିଲୁ ମୋହୋର
ଆଗେ ।
ଅସୁରମାନେ ତୁମ୍ଭେ ଭଣ୍ଡ କେତେ ବାଗେ ॥

ନୋହିଲେଣ ସୁବର୍ଣ୍ଣ ମୃଗ କାହିଁ ଅଛି ।
ଦଶମୁଣ୍ଡ ଲୁଚ୍ଛଇଣ ତପସୀ ଦେହ
ଇଛି ॥୧୦
ଭିକ୍ଷା ମାଗି ଯାଇ ବଳେ ଧରିଆଣି ।
ଯହୁଂ ସେ ନାନା ଉପାଏମାନ ଜାଣି ॥
ମାୟାଏ ଆଣିଲେ ହୋଇବ ପୁଣ କିସ ।
କର୍ମକୁ ଜିଣନ୍ତା ଯେ ନାହିଁଟି ତ୍ରିଦଶ ॥
ଯେବେଣକାଳେ ମୁଂ ପିତାଘରେ ଥିଲି ।
ମୁନିମାନଙ୍କର କହନ୍ତେ ଶୁଣିଲି ॥
ବୋଇଲେ ଜାନେକୀର ବିଧବା ଗୁଣ
ନାହିଁ ।
ଲକ୍ଷେକ ସୁଲକ୍ଷଣ ଅଛଇ ଏହାର ତହିଁ ॥
ଗଣ୍ଡସ୍ଥଳ ସୁନ୍ଦର ସମଦନ୍ତପନ୍ତି ।
ତିଳଫୁଲ ନାସିକା ଦନ୍ତ
ଗଜମୋତି ॥୨୦
ସୁରଙ୍ଗ ଅଧର ଚାଚର ଚାରୁକେଶ ।
ସମ୍ପୂର୍ଣ୍ଣ ଭ୍ରୂଲତା ଗଣ୍ଡସ୍ଥଳ ଦେଶ ॥
ପଲ୍ଲବ ନୟନ ସୁଶୀତଳ ଚକୋରୀତ ।
ସମତୁଲ ଲଲାଟ ସୁଦୀର୍ଘ ଗଳାର ବୃତ୍ତ ॥
କମ୍ୱୁକଣ୍ଠ ରୁଚିର ହୃଦୟ ବୃଷାଳ ।
ସୁଦୀର୍ଘ ନୟନ ଲାବଣ୍ୟ ରସଡୋଳ ॥
କୋମଳ ବଚନ କଠୋର ଉରଜ ।
ପ୍ରଲମ୍ୱ ସୁବଳିତ ବୃଷାଳ ବେନିଭୁଜ ॥
ବିସ୍ତାର ବକସ୍ଥଳ ପଦ୍ମପତ୍ର ପେଟ ।
ନାଭିଗଭୀର ସିଂହ କଟିତଟ ॥ ୩୦
ଗଜକନ୍ଧ ଯୁଗଳ ରୁଚିର ଚାରୁପିଠି ।
ଆରକତ ଲୋଚନ ମଧୁର ବିମ୍ୱୋଷ୍ଠୀ ॥
ମଧ୍ୟେ ରୋମାବଳୀ ଷଟପଦ ଜିଣି ।
ଉର ଜାନୁ ଜଂଘନ ଉଭାର ଗଣ୍ଠି ଟାଣି ॥
ବିପୁଳ ପୁଲକ ମନ୍ଦ ମନ୍ଦ ଗତି ।
କରଚରଣ ତଳି ଅଶୋକ ପୁଷ୍ପଜୋତି ॥
ହସ୍ତର ଅଙ୍ଗୁଷ୍ଠି ଚମ୍ପାକଢ଼ି ଓଳି ।
ଜାତି କୁସୁମ ସୁବର୍ଣ୍ଣ ନଖର ସୁବଳି ॥
ପୟର ଅଙ୍ଗୁଷ୍ଠି ଓଶେକ କଢ଼ିମତି ।
ସେବତୀ ପାଖୁଡ଼ା ନଖର ସଂଜାତି ॥୪୦
ଅଛିଦ୍ରେ ରୋମରାଜି ନ ପାରଇ ଗୁଣେ ।

ଦରଫୁଟି କମଳ ଅଳପ ହାସ୍ୟ ଯେହ୍ନେ ॥
ଅତିହିଂ ସ୍ଥୂଳ ନୋହେ ଅତିହିଂ ନୋହେ
ଉଞ୍ଚ ।
ଆଗକୁ ଉଭାର ପଛକୁ ଚାରୁସଞ୍ଚ ॥
ଅତି ନିଷ୍ଚଳ ଚଞ୍ଚଳ ନୋହଇ ଅତି ।
ଆବର୍ତ୍ତ ନ ଅଟଇ ନିସ୍ଥମ୍ବର ପ୍ରକୃତି ॥
ଚଳନ୍ତେଣ ଅଙ୍ଗ କମ୍ପମାନ ନୋହେ ।
ସ୍ୱର୍ଗରୁ ଶଶୀ ଉଇଂଲା ପ୍ରାଏ ଶ୍ୟରୀର
ଶୋହେ ॥
ସ୍ନିଗ୍ଧ ପାଟେଳି ଯେ କଠିଣ କରସ୍ଥଳ ।
ବାଚା ସୁଲଳିତ କୋମଳ ପରିମଳ ॥ ୫୦
ବିଲକ୍ଷଣ ନ ବହଇ ଜାତି କମଳଣୀ ।
ଗହ ଗହ ଶବଦ ଶୁଭଇ ମୁଖବାଣୀ ॥
ବାଟୋଳ ଲୋଚନ ନୁହଇଂ କାକ ଦୃଷ୍ଟି ।
ପିଙ୍ଗଳ କବେରୀ ନୋହଇ ବିମ୍ୱୋଷ୍ଠୀ ॥
ଭାଲତଟେ ଭ୍ରମର ଅଖଣ୍ଡିତ ଭ୍ରୂଲତା ।
କସ୍ତୁରୀ ରେଖ ଜାଣି ଦିଶଇ ଆଖିପତା ॥
ଜାତି ପଦ୍ମିନୀ ସେ ଅଟଇ କମଳାକ୍ଷି ।
ଅବିଗୁଣ ବର୍ଣ୍ଣିବାକୁ ଗୋଟିଏ ନାହିଂ କିଛି ॥
ଗଳାରେ ପ୍ରଲମ୍ବ ଦିଶି ଯାର କଣ୍ଠିମାଳି ।
ଏଣେ ସେ ବିଶ୍ୱାସୀ ହୋଅନ୍ତି
ଚାରୁବାଳୀ ॥୬୦
କୋମଳ ଯଉବନ ଅତି ଘଞ୍ଚ ଦିଶେ ।
କିଅବା ଉରୁଜଂଘ ଜାନୁ ଉଚ୍ଚ ଦିଶେ ॥
ଅତି ମୋଟ ମଝା ଭ୍ରମର ମଧ ଘେନି ।
କାଏ ଅନୁରୂପେ ଖୁଦ୍ରବାହୁ ବେନି ॥
ଉଚ୍ଚ ଘଞ୍ଚ ଦିଶେ ଜଘନ ପୁଲକ ।
ମିଥ୍ୟା ଅଭାଷଣେ ନିନ୍ଦଇ ସ୍ୱାମୀଲୋକ ॥
କର ଉପରେ ରୋମ ଆବର୍ତ୍ତ ବହୁତ ।
ଆଗପଛ ନିଷ୍ଚଳ ପାଟିର ନିଜଦାନ୍ତ ॥
ଉଭା ହୋଅନ୍ତେ ବାମଚରଣ ତୁଲନୋହେ ।
କନେଷ୍ଠ ଆଙ୍ଗୁଠି ନ ପଡ଼ି ଉର୍ଦ୍ଧ୍ୱ
ହୋୟେ ॥୭୦
କରନଖ ଇନ୍ଦୁର ଚରଣ ନଖର ଓଳି ।
ଦ୍ରଶନର ମୂଳେ ଦିଶଇଂ ଗୋଲବଳି ॥
ତାଳୁ ଭିତରେଣ କାଳ ପାଦ ଚିହ୍ନ ।

ଉର୍ଦ୍ଧ୍ୱ କେଶପନ୍ତି ହୋଅନ୍ତି ଭିନ ଭିନ ॥
ବୃଷାଳ ପିଠି ଅଧର ସଗୁହୋୟେ ।
ଅତି ଦୟାଳୁ ଅତିହିଂ ଅଟେକୋହେ ॥
ଦନ୍ତୁର ଦନ୍ତ ଅଲଗା ଯାର ହୋନ୍ତି ।
ଦୀର୍ଘ ହୋୟେ ଅବା ପୃଥୁଳ ହୋୟେ ଅତି ॥
ଚରଣ ଚଳନ୍ତେ ଫୁଟଇ ଭଡ଼ା ଚାରି ।
କାମେନୀ ଅକାମେନୀଏ ପୁରୁଷ ଖାନ୍ତି
ନାରୀ ॥୮୦
ପାତଳ କବେରୀ ପାଦ ବହୁତ ଖର ।
ଚରଣ ନଖ ନମାଡ଼େ ମେଦନୀର ॥
ଚଞ୍ଚଳ ଅଞ୍ଚଳ ଭୋଜନେ ପୀରତି ।
ବଳବନ୍ତ ରାଗୀଅଇରି ଦମ୍ଭମତି ॥
ସ୍ନାହାନେ ଅପ୍ରୀତି ଆସ୍ନାହାନେ ତୋଷ ।
ଜାଣିମା ଯୁବତୀଙ୍କର ବିଧବାଏ ଦୋଷ ॥
ମହା ବୁଧିବନ୍ତ ନ ଜାଣଇ ବୁଧି ।
ଅତି ଲମ୍ବ କବେରୀ ଅତି ଛୋଟ ଯଦି ।
ସର୍ବାଙ୍ଗେ ସୁବେଶିତ ମଳିଣ ଯାର ଇଚ୍ଛା ।
ଦୟାଳୁ ଗରିଷ୍ଠାଣ ଧନବନ୍ତ ଇଚ୍ଛା ॥ ୯୦
ଫଳପୁଷ୍ପଙ୍କର ନାମ ଯାହାର ହୋଇ ।
କିଅବା ନାମମାନ ବହଇ ନାନା ନଈ ॥
ପର୍ବତଙ୍କର ସାଙ୍ଗିଆ ହୋଇଲେ ଯୁବତୀ ।
ଅବଶ୍ୟ ତାହାଙ୍କର ନାଶିବାକୁ ପତି ॥
ଯଦି ବିଡ଼ମ୍ବଣ ଅଶୋଭା ନାମ ହୋଇ ।
ସେଇ ପରମଦା ନିଚୟେ ପୁରୁଷ ଖାଇଂ ॥
ସର୍ବାଙ୍ଗେ ରୋମ ଦୀର୍ଘ କଟୀତଟ ।
ଭ୍ରୂଲତା ଯୁଗଳ ହୋଇବ ଯେବେଭେଟ ॥
ଡାକନ୍ତେ ଶୁଭଇ ଯେହ୍ନେ ପୁରୁଷଙ୍କର
ବାଣୀ ।
ସେ ଅବଶ୍ୟ ବିଧବା ହୋଇବତ
ଜାଣି ॥୧୦୦
ସୀତ୍ୟାର ତହିଂ ଯେ ଏହୁ ବିଲକ୍ଷଣ ନାହିଂ ।
ସର୍ବଗୁଣେ ସୁଲକ୍ଷଣ ଅଛଇ ଯେହାର ତହିଂ ॥
ଅପୂର୍ବ ସୁନ୍ଦେରୀୟେ ଅପାପୀ ଶ୍ୟରୀର ।
ଆବର କଥାୟେ କହଇ ଏହାର ॥
ବାମକରସ୍ଥଳେ ରେଖାମାନ ଦେଖ ।
ମୃତୁ ନ ଗଛଇ ଅପୂର୍ବ ଲକ୍ଷଣ ହାକ ॥

ଯେସନେକ ବୋଲିଗୋ ବୋଲନ୍ତି
ଋଷିଗଣେ ।
ତେଣୁ ସେ ପ୍ରତେ ନ ଯାଇ ମୋର ମନେ ॥
ସାମାନ୍ୟ ମାୟାକି ବୋଲିବା ଦଶଶିର ।
ମାୟାରେ ଜଗତ ଜିଣିଲା ଅସୁର ॥ ୧୦
ଦଶରଥର ନନ୍ଦନ ଅପାପୀ ମାହାତମା ।
ଦେଖିଣ ଗର୍ବ ଯେ ଛାଡ଼ିଲା ପ୍ରଶୁରାମା ॥
ମାରୁଚି ମାତାଯେ ତାଡ଼କୀ ଦଇତୁଣୀ ।
ବାଟେଯେ ତାହାକୁ ଭେଟିଲେ ରଘୁମଣି ॥
ଦୁଷ୍ଟପଣ ଦେଖି ନାରାଚ ମାଇଲେ ।
ତିରୀ ବୋଲି କରି ତାକୁ ଉପ୍ରୋଧ କଲେ ॥
ଈଶ୍ୱର ଧନୁ ମୋର ପିତା ଥୋଇଥିଲା ।
ଇନ୍ଦ୍ର ଯେବଣ କୋଦଣ୍ଡ ତୋଳି ନୁଆରିଲା ॥
ଦଶଦିଗପାଳେ ଯେ ନୁହନ୍ତି ଭାର୍ଜନ ।
ଦେଖିଣ ପ୍ରାଣ ଛାଡ଼ିଲା ସୁଧର୍ମା ରାଜନ ॥୨୦
ଆଠଶତଲୋକେ ବହି ତାକୁ ନେନ୍ତି ।
ରାଜାଗଣମାନେ ଦେଖିଲେ ଭଏପାନ୍ତି ॥
ସେ ଧନୁ ଶ୍ରୀରାମ ଯେ ଭାଙ୍ଗି ପକାଇଲା ।
ବାର ବରଷ ବେଳେ ଯେଡ଼େ କର୍ମକଲା ॥
ବିଶ୍ୱାମଇତ୍ରଙ୍କର ଯାଗ ରଖିଲାକ ହେଳେ ।
ଅନେକ ଦଇତ ଯେ ମାଇଲା
କୋତୋହଳେ ॥
ଶାପ୍ୟେଣ ଅହିଲା ପଥର ହୋଇଥିଲା ।
ଶ୍ରୀରାମ ପାଦ ଲାଗି ସେ ମୁକ୍ତ ହୋଇଗଲା ॥
ପିତା ସତ୍ୟ ନିମନ୍ତେ ବନେକଲେ ବାସ ।
ଖର ଧୂଷଣ ତିଶିରା ପେଶିଲେ
ଯମପାଶ ॥୩୦
ଏବେ ସିନ୍ଧୁ ବାନ୍ଧି ସୁବଳୟାରେ ବିଜେ ।
ରିକ୍ଷପତି ସହିତେ ସୁଗ୍ରୀବର ରାଜେ ॥
ଜାଣନା ହନୁମନ୍ତ ଯେକା ଆସିଥିଲା ।
ଅଛୟେ ଜମ୍ବୁମାଳି ଦୁହିନ୍ତି ନାଶକଲା ॥
ସେନାପତିମାନେ ଯେ ଶାଳେକଗଣମାନ ।
କିଙ୍କରଗଣ ଅଶୀସହସ୍ର ଦୃଢ଼ମାନ ॥
ମଧୁବନ ଭାଙ୍ଗି ସେ ଲଙ୍କା ଗଲା ଦହି ।
ସେ ବୀର ଅଛିଟିକି ଶ୍ରୀରାମର ତହିଂ ॥
ଆବର ଅନେକ ଗୁଣେ ଅଛନ୍ତି ମାହାବୀର ।

ତୁମ୍ଭେ ସେ କହନା ଯେ ସନ୍ୟହିଂ
ଅପାର ॥୪୦
ଲକ୍ଷଣର ନାମେ ଯେ ଶ୍ରୀରାମର ସାନ ।
ଯେ ସେ ସୂପଲେଖିର କାଟିଲା ନାକକାନ ॥
ରଘୁନାଥ ସଂଏ ଅବତାର ହରି ।
ରାବଣ ଉପାଏକି ତାହାଙ୍କୁ ହୋଅଇ ପାରି ॥
ଏ ବୁଧି ବିଚାରି ସେ ଅଇଲା ମୋର ପାଶ ।
ଶ୍ରୀଅଙ୍ଗକୁ ଦ୍ରୋହ କଲା ଦଶାଇସ ॥
ଧର୍ମଦେବତା ଆଣି ପ୍ରତିକାର କଲା ।
ଡଗରା ମୁଖୁଂ ସାଧୁ ବାରତା ହୋଇଲା ॥
ତେଣୁ ସେ ବାହୁଡ଼ି ଗଲା ଲଙ୍କସାଇଂ ।
ଏବେ ସତକଥା ପାଇଲି ତୋହର
ତହିଂ ॥୫୦
ଭଲା କହିଲୁ ଗୋ ଟମକ ହିଂ ବାଜୁଅଛି ।
ଚାରିକତି ଗଡ଼ରେ ବେଢ଼ିଲେ ରଘୁବଛି ॥
ଯେବେ ଜାଣିମାନା ଉତ୍ତମ କେ ଓଛ ।
ରାମ ରାବଣର କେହୁ ପ୍ରତିକଛ ॥
ସଂଗ୍ରାମର ବାରତା ଗୋ ଜାଣିମା ତଥ୍ୟକରି ।
ହାନିଅପଚୟେ ଚିନ୍ତା ଏଠାରୁ ସରି ॥
ମୁହିଂ ଯେ ଆଶ କରିଛି ହୋଇଦୁଖୀ ।
ପ୍ରାଣ ବିସର୍ଜିବି ସ୍ୱାମୀର ମୁଖ ଦେଖି ॥
ତ୍ରିଜଟା ସମାର୍ଜଇ ଯେ ଜାନେକୀ ସଙ୍ଗେ
କଥା ।
ଯେହା କହିବାକୁ ଭାର୍ଜନ ପଞ୍ଚମଥା ॥୬୦
ମୁଇଂ ପାମର ଯେ ବିଶେଷ ଶୂଦ୍ରଯୋନି ।
ସୁଂଗ୍ୟଜନେ କୋପ ନ କରିବା ଏହା ଶୁଣି ॥
ନୀଳଗିରି ଜଗନ୍ନାଥ କିଛୁ ଦୟାକଲା ।
ତେଣୁ ସେ ଗ୍ରନ୍ଥ ମୋ ମୁଖରୁ ସ୍ଫୁରିଲା ॥
ବଳରାମ ଦାସ ମୁଂ ଶ୍ରୀହରି ସେବକ ।
ଶୁଣି ଉପହାସ ନକର ଦୁଷ୍ଟଲୋକ ॥
ଶ୍ରୀରାମ ଚରିତ ଅମୃତ ରସପାନ ।
ତେଣୁ ସେ ଶରଧା କଲଇ ମନେମନ ॥
ମାୟାସଂସାର ଶ୍ୟରୀର ଅନୀତି ।
ବାସୁଦେବ ମହିମାକୁ ବହୁତ ମୋହର
ପ୍ରୀତି ॥୭୦
ବିଚାରି ଯମ ଦଣ୍ଡିବ ଅବଶ୍ୟ ।

ଯହୁଂ ପାପେ ମୁଂ ହୋଇଲି ପରବେଶ ॥
ତେଣୁ ସେ ଆଶ୍ରେ ମୁଂ କଲଇଂ ଜଗନ୍ନାଥ ।
କଷ୍ଟ ଫେଡ଼ିବେ ମୋହୋର ଶଙ୍ଖଚକ୍ର ହାଥ ॥
ବିଷ୍ଣୁର ପ୍ରସାଦେ ଯେ ହୋଇବ ଦୁଃଖ ପାର ।
ଦାସ ମଛଳ ବାନା କରୁଣାସାଗର ॥
ପୁରାଣ ପୁରୁଷୋତ୍ତମ ନୀଳଗିରି ବାସ ।
ଶ୍ରୀଜଗନ୍ନାଥଙ୍କ ଶରଣ ମୁଂ ବଳରାମ ଦାସ ॥
ଶୁଣ ସୁଜ୍ଞଜନେ ଯେ ଯେଥିଅନନ୍ତରେ ।
ପାର୍ବତୀ ଅଗ୍ରତେ ଯେ କହନ୍ତି
ଶୂଳଧରେ ॥୮୦
ରାବଣ ଯେ ସୀତ୍ୟାକୁ ମାୟାରେ ଭଣ୍ଡୁଥିଲା ।
ଡଗରାମୁଖୁଂ ବାରତା ଶୁଣି ତହୁଂ
ବେଗେଗଲା ॥
ଯାନ୍ତେଣ ଶୁଣିଲା ଯେ ବହୁତ ବିପରୀତ ।
ନଗ୍ର ନରନାରୀମାନେ ଭୟେଣ ଆରତ ॥
ଗହଗହ ରାବ ଶୁଭଇ ଚହଳ ।
ଅନର୍ଥ ବୋଲି ପଡ଼ଇ ବଡ଼ ଗୋଳ ॥
କେ ବୋଲଇ ପାଚେରୀରେ ଉଠିଲେନି
କପି ।
ଭାଲୁକଙ୍କ ବଳ କେ ପାରିବ ସଞ୍ଚପି ॥
ପ୍ରାକର୍ମ କରିଣ ଉଠୁଛନ୍ତି ଧାଇଂ ।
ଯେତେ଼ ଭରସା ଯେ ହୋଇଲେ କିସ
ପାଇଂ ॥୯୦
ଏହି ଦୁଇ ଆଖିରେ ଏହାହିଂ ଦେଖିଲା ।
ବାନର ଭଲ୍ଲୁକଙ୍କର ଭୟତ ହୋଇଲା ॥
କେ ବୋଲଇ ରାବଣ କଲାକ ଅନୀତି ।
ତହିଂର ପ୍ରାଭବ ଏବେ ବିହିଲା ବିଧାତି ॥
ନୋହିଲେ ଏହାର କେତେକ ଯୁବତୀ
ନାହିଂ ।
ପର ଯୁବତୀକି କିମ୍ପାଇଂ ଆଣିଲା ଚୋରାଇ ॥
ନିରେଖ ଦେଶାନ୍ତରୀ ବୋଲିଣ ହରିଲା ।
ନୃପବର ହୋଇଣ ଯେ ଅଧର୍ମ ଅରଜିଲା ॥
କାଳେ ଯେ ହୋଇଲା ଅଯୋଧ୍ୟାର ରାୟେ ।
ପିତାର ବୋଲେ ସେ
ବନବାସକୟେ ॥୧୦୦
ଦେଶ ଛାଡ଼ିଲା ସେ ଜଟାକଷା ବହି ।

ସୂପଲେଖି ତାହା ଭାଇର ଆଗେ କହି ॥
ବିପରୀତ ବଚନ ଶୁଣିଲା ଯହୁଂ କର୍ଣ୍ଣେ ।
ତତକ୍ଷଣେ ଆରୋହିଗଲା ପୁଷ୍ପକ
ବିମାନେ ॥
ମାୟାମୃଗେକ ସୁବର୍ଣ୍ଣର ଦେଖାଇଲା ।
ଶରଧା ନିମନ୍ତେ ରାମ ତାହା ମାଗିଗଲା ॥
ମରନ୍ତେଣ କୁରଙ୍ଗୀ ଲକ୍ଷଣ ସୁମରିଲା ।
ସେ କଥା ଶୁଣି ତାର ସାନଭାଇ ଗଲା ॥
ହରିଆଣିଲା ପୁଣି ନକଲାକ ଭୋଗ ।
ଜାଣିଲୁ ତାହାକୁ ହୋଇବ ମୃତ୍ୟୁଯୋଗ ॥୧୦
ଯେବେ ଆଉ ନିସତ ହୋଇଲେ ହୋଇବ
କିସ ।
ଜାଣିଲୁ ତାହାକୁ ହୋଇବ ମୃତ୍ୟୁଯୋଗ ॥
କିମ୍ପା ଲୁଚଦେଇ ଅଛଇ ଯେବେ ପଶି ।
ଶତ୍ରୁ ଯେ ଗଡ଼ ବେଢ଼ିଲାକ ଆସି ॥
ପାଚେରୀ ଡେଇଂଣ ପଶିବେ ଯେହିକ୍ଷଣି ।
ଯେ ବାରତା ସତ୍ୟ ଯେ ପାଇଲା ବିଂଶପାଣି ॥
କେ ବୋଲଇ କିମ୍ପା ଯେ ଏସନେକ
ବିଚାର ।
ନ ଜାଣିବା ଲୋକଙ୍କ ପରାୟେ ପଚାର ॥
ରାବଣ ପ୍ରତାପୀ ଯେ ଅଟଇ ତିନିପୁରେ ।
କଟକାଇ କରଇ ସେ ଦେବତାଙ୍କ
ଉପରେ ॥୨୦
ଚଉଦ ଭୁବନର ଅଟଇ ଆଦିପତି ।
ଇନ୍ଦ୍ରବସଇ ତାର ଦ୍ୱାରପାଳ କଟି ॥
ସ୍ୱର୍ଗ ମର୍ତ୍ତ ପାତାଳ ବୁଲିଲା ତିନିପୁର ।
ମୁଖ ଦେଖି ଭୟେ ପଳାଇଲା କୋବେର ॥
ପୁଷ୍ପକ ବିବାନ ଚଳଇ ଅନ୍ତରୀକ୍ଷ ।
ପ୍ରସନ୍ନ ହୋଇ ବର ଦେଲା ବିରୂପାକ୍ଷ ॥
ଇନ୍ଦ୍ରଜିତ ନାମେ ତନୟେ ଯାହାର ।
ଇନ୍ଦ୍ରକୁ ଜିଣି ଇନ୍ଦ୍ରଜିତ ନାମ ଯେ ତାହାର ॥
ଭାଇ କୁମ୍ଭକର୍ଣ୍ଣ ମଉଳା ପ୍ରଶସ୍ତ ।
ସେନା ସେନାପତି ଅଛନ୍ତି ବହୁତ ॥ ୩୦
ଯେକୁ ଆରେକ ସେ ପାରନ୍ତି ସିନ୍ଧୁଦଳି ।
ଓଲଟାଇ ପକାଇବେ ସପତ ମହୀଆଳି ॥
ରିକ୍ଷବାନରଙ୍କୁ କିସ ତାହାର ଭୟେ ।

ଯାହାର ବାନା ଅଟଇ ଦେବେଣ ଅଜୟେ ॥
କିସ ଛତ୍ରୀ ଯେ ଯେ ମାନେବ ଜଟାଧାରୀ ।
ଯେକ୍ଷଣି ସର୍ବ ଯେ ହୋଇବେ ସଂହାରି ॥
ରାବଣକି ଯେହାକୁ ସଂଗ୍ରାମେ ମଣଇ ।
ମନକଲେ ତେତିଶକୋଟି ଦେବତାକୁ
ବାନ୍ଧିଯେ ଆଣଇ ॥
କପିଳାସ ପର୍ବତ ଉପାଡ଼ିଲା ବାହୁବଳେ ।
ଯେହି ରଜା ଅଜାକୁ ମାଇଲା
ଭୁଜବଳେ ॥୪୦
ଜାଣି ସିନା ପଳାଇ କେଉଂବାଟେ ଯିବ ।
ବଣଜନ୍ତୁ ଲୋଚାଙ୍କରି ହତ୍ୟା ସେ ପାଇବ ॥
ଗୁଣ୍ଡିଆଣିଲା ସେ ଅଜ୍ଞାନ ଜୀବମାନ ।
ଯେକେହ୍ନେ ଜାଣିମେଟି ଯୁଦ୍ଧର ବିଧାନ ॥
ଶହସ୍ରମାନ ଦେଖି ହୋଇବ ନିସତ ।
ଉଶ୍ୱାସ ବକତା ଅଟନ୍ତି ସମସ୍ତ ॥
ଯେହିକ୍ଷଣି ଡରାଇଲେ ପଳାଇବେ ଡରି ।
ସମୋଦ୍ର ପାରି ହୋଇବେ ପଛକୁ ବିସ୍ମରି ॥
ଯେକଥାକୁ କ୍ଷାର ନ କର ତୁମ୍ଭେ ଚିନ୍ତା ।
ଅଝଟ ଦର୍ପ ଗଞ୍ଜନ ସେ ମନ୍ଦୋଦରୀ
କାନ୍ତା ॥୫୦
ଯେସନେକ ବୋଲି କୁହାକୋହି ହୁଅନ୍ତି ।
ରୁଦ୍ର ବୋଲନ୍ତି ଗୋ ଶୁଣ ଭଗବତୀ ॥
ଯେଥୁ ଅନନ୍ତରେ ଯେ ଦଶାନନ ରାୟେ ।
ଓଶେକ ବିପୁଣ୍ୟରୁ ବାହୁଡ଼ିଣ ଆୟେ ॥
ଉଭର ଗଡ଼ଦ୍ୱାରେ ମିଳିଲାକ ଯାଇଂ ।
ବିସ୍ମୟେ ହୋଇଲା ଯେ ପାଚେରୀ ଉପରକୁ
ଚାହିଂ ॥
ବାନର ଭାଲୁକ ଅଛନ୍ତି ନିରନ୍ତର ।
କେହୁ ଉଠୁଛନ୍ତି ବନ୍ଧାଫେରି ଉପର ॥
କେ କାଂଗୁଲା ଉପରେ ଘର ବୋଲି ପଶି ।
ଛିଟିକିଣି ଉପରେ କେବଣ କପି ବସି ॥୬୦
କେ କମଳଶିରା ବୁଲିଣ ଦେଖନ୍ତି ।
ଅସୁରଙ୍କୁ କିଛିହିଂ ପ୍ରାୟେ ନ ମଣନ୍ତି ॥
ନଗ୍ରକୁ ଚାହିଂଣ ପ୍ରଶଂସନ୍ତି ବହୁତ ।
ବାବୁ କଟକଯେ ବାରସ୍ୱତୀ ମତ ॥
ସ୍ୱର୍ଗ ହିଂ ସମସରି ନୋହିବ ଯେହାକୁ ।
ଯେଡ଼େ ସମ୍ପଦ ବିଧାତା ଦେଲାକ ଯାହାକୁ ॥
ଯେ କିମ୍ପା ଅନ୍ୟାୟେ ଆଚରିଲା ଅନମିତେ ।
ଯେଡ଼େ ପାପକଥା ଧଇଲା କିମ୍ପା ଚିତ୍ତେ ॥
ଶ୍ରୀରାମଙ୍କ ଘରଣୀକି ଆଣିଲା ଚୋରାଇ ।
ଯେଣେ ପ୍ରାଣହାରି ବଂଶଗୋତ୍ର
ମରାଇ ॥୭୦
ଯେ ମେଡ଼ ମଣ୍ଡୋପ ଦେଉଳ ଜଗତୀ ।
ବିବିଧ ପ୍ରକାରେ ଘରମାନେ ଅଛନ୍ତି ॥
ନେତ ପାଟାଙ୍ଗ କଳସ ନାନାବର୍ଣ୍ଣ ।
ଅଷ୍ଟରତ୍ନ ମନ୍ଦିର ଦିଶଇ ଶୋଭାବନ ॥
ହ୍ରଦ ନଦୀ ଦୀଘା ପୋଖରୀ ସରୋବର ।
କୂପ ବାମ୍ପୀ ତଳାଉ ଅଛଇଂ ଅପାର ॥
ସୁସ୍ୱାଦୁ ଫଳ ଯେ ବିବିଧ ତରୁମାନ ।
ରଥ ଗଜ ଅଶ୍ୱ ଅପ୍ରମିତ ସନ୍ୟ ॥
ପୁତ୍ର ଭାରିଯା କୁଟୁମ୍ବ କୁଳବଧୂ ।
ଏହାଙ୍କର ଆଶା ଛାଡ଼ିଲେ କେବଣ
ସଧୁ ॥୮୦
ବିଷ ଖାଇଯେ ମରିବାକୁ ମନ କଲା ।
ପାଷାଣ ପକାଇ କିମ୍ପା ମଉଳି ପାତିଲା ॥
ଜଳନ୍ତା ଅଗ୍ନିରେ ପଶିଲା କିମ୍ପା ଯାଇଂ ।
ସାପ ତୁଣ୍ଡେ ଅଙ୍ଗୁଳି ନାଇଲା କିସ ପାଇଂ ॥
ସୀତ୍ୟାକୁ ଆଣିଲା ହୋ ସାମାନ୍ୟ ଭରସା ।
ସମୁଦ୍ରଭେଳାଏ ତରିକଲା ଆଶା ॥
ଏବେହୋ ଶରଣ ପଶିଲେ ଜୀଇଂବ ।
ନୋହିଲେ ସଗୋତ୍ର ସହିତେ ନାଶଯିବ ॥
କେ ବୋଲଇ ଆହୋ କିଛିହିଂ ନଜାଣ ।
ଜଗତର ଶତ୍ରୁ ଯେ ଅଟଇ ରାବଣ ॥ ୯୦
ଦେବତାୟେ ଏହାକୁ ସାରିଲେ ସମ୍ପ୍ରଧି ।
ସଂସାରକୁ ଯେ ମୋଢ଼ା ଅଟଇ କାଳବ୍ୟାଧି ॥
ଏହା ଛାରକୁ କିମ୍ପା ଏ ପୁର ହୋଇବ ।
ବିଭୀଷଣ ଏଥେ ଯେ ଭୋଗ ବିଳସିବ ॥
ନଗ୍ର ନରନାରୀ ହୋଇବେ ସବୁ ରୁଣ୍ଡ ।
ଏଥିଂ ପୁରୁଷଙ୍କର କାଟିବେ ରାମମୁଣ୍ଡ ॥
ଏ ନଗ୍ର ଧୂମାନ୍ତ କରିବୁ ଆମେ ସତ୍ୟ ।
ସମୁଦ୍ରେ ପକାଇବୁ ଅଛି ଯେତେ ବିତ୍ତ ॥
ଯେ ମେଡ଼ ମଣ୍ଡୋପ ଅବଶ୍ୟ ବିଧୋଂସିବୁ ।
ପୁନରପି ଏ ପୁର ବିଭୀଷେଣକୁ
ଦେବୁ ॥୧୦୦
ଯେସନେକ ବୋଲି ବିଚାର କରନ୍ତେ ।
ନଗ୍ରକୁ ଚାହିଂଣ ଉପରେ ବିହଡ଼ନ୍ତେ ॥
ଆଡ଼ଚିରା ମାରି କେହୁ ରଡ଼ିଦେଇ ଯାଇ ।
ଥୋକାୟେକ ଦୂରେ ଧାମନ୍ତି ବୋବିଦେଇ ॥
ନଗ୍ରଲୋକକୁ ଚାହିଂଣ ହସନ୍ତି ।
ଆଖି ଲେଉଟାଇ ଚିତୋଇ ଚାହାନ୍ତି ॥
କିଳିକିଳା ଧ୍ୱନି ଶୁଭଇ ବିକଟାଳ ।
କୋପେଣ ଆଗ୍ୟାଂ ଦେଲା ସେ ବିଶର୍ବାର
ବାଳ ॥
ତୁମ୍ଭେ ଶୁକ ସାରଣ ସନ୍ୟଙ୍କୁ ବୋଲ ଯାଇଂ ।
ରିକ୍ଷ କପି ମାରନ୍ତୁ ଅବଧାନ ହୋଇ ॥୧୦
ଯେତେ କପି ପାଚେରୀ ଉପରେ ଉଠିଛନ୍ତି ।
ଯେମନ୍ତେଣ ଯେଥି ଗୋଟିଏ ନ ରହନ୍ତି ॥
ମରିବା ଜୀଇଂବା ଏକତ ମଣନ୍ତି ।
ବନଜନ୍ତୁ ସିନାଏ କିଛିହିଂ ନ ଜାଣନ୍ତି ॥
ସିନ୍ଧୁ ପାରିକରି ଘଉଡ଼ି ଆସ ଯାଇଂ ।
ହାଥ ସୁଖେ ଅସୁରେ ମାରନ୍ତୁ ସୁଖ ପାଇଂ ॥
ଶୁଣିଣ ଶୁକସାରଣେ ସନ୍ୟଙ୍କୁ ଆଜ୍ଞା ଦିଅନ୍ତି ।
ମାରରେ କପିକି ଯେମନ୍ତେ ମରନ୍ତି ॥
ଶୁଣି-ଅସୁର ବଳ ଯୁଦ୍ଧ ଆରମ୍ଭିଲେ ।
ପାଚେରୀକି ଉଠିସେ କପିକି
ମାଇଲେ ।୨୦
ଖଡ଼ଗେ ହାଣନ୍ତି ବିନ୍ଧନ୍ତି ଧନୁ ଧରି ।
ସାବେଳୀ ମାରନ୍ତି ନାକିଆ ରୋଷେ ଭରି ॥
କେ ବୋଲଇ ମାର କେ ବୋଲଇ ଧର ।
କେ ବୋଲଇ ଏହାଙ୍କର ଜିଭନ୍ତ ଉପାଡ଼ ॥
ଲକ୍ଷେକ ରାଜାକୁ ଜିଣିଲା ଲକ୍ଷେ ବାର ।
ତେଣୁ ସେ ଛତ୍ରୀ ଉଡ଼ଇ ଫରହର ॥
ରଥେ ବସି ଭୃତ୍ୟେ ଅଛଇ ତାହାଧରି ।
ଲକ୍ଷେକ ଚାମର ଧରିଅଛନ୍ତି ପରିବାରୀ ॥
ଲକ୍ଷେକ ଶଙ୍ଖଯେ ପୁରଇ ଘନଘନ ।
ଲକ୍ଷେକ ଗଣିତାଯେ ନାନାବାଦ୍ୟମାନ ॥୩୦
ଘଣ୍ଟିଘାଗୁଡ଼ି ବାଜଇ ଚାରୁଛନ୍ଦ ।
ମନ୍ତ୍ରୀଗଣ ସହିତେ ଅଛଇ ଦଶକନ୍ଧ ॥

ନାନାକ୍ଷତ୍ରୀମାନ ଅଛଇ ତାର ପାଶ ।
ଆପଣହିଂ ହୋଇଅଛଇଂ ଦିବ୍ୟବେଶ ॥
ଦଶଶିରେ ଦଶମୁକୁଟ ମଣିମୟେ ।
ନବରତ୍ନେ କୁଣ୍ଡଳ ଶ୍ରବଣେ ଶୋଭାପାୟେ ॥
କଣ୍ଠେଣ ମୁକୁତା ମାଣିକ୍ୟ ହୀରାମାଳ ।
ବିରାଜେ ପଦକ ଲୁଳଇ ବକ୍ଷସ୍ଥଳ ॥
ବସନ୍ତ ପାଟ ମର୍କତର ସେହ୍ଲା ।
ମୁକୁତାର ଚାପ ଯୋଡ଼ାଚନ୍ଦ୍ରର
ଦ୍ରୋଛନା ॥୪୦
ଚରଣେ ଅନର୍ଗଳ ତୋଡ଼ର ବୀରନେତ ।
ଗଦା ଏକ ଧରିଲା ତାର ନାମ ଧୂମକ୍ଷେତ ॥
ଫରହର ନିଶ ଦିଶଇ ବଦନ ।
ଦାଢ଼ୀ ହଲାଇଣ କହଇ ଦଶାନନ ॥
ଜାଣିମା ଶ୍ରୀରାମର କେତେକ ଗରୁଛନ୍ଦ ।
ରଥ ଘୋଡ଼ା ହାଥୀ କେତେକ ଆଉଧ ॥
କିସ କିସ ମାୟା ଜାଣନ୍ତି ଜାଣିମା ।
ଉର୍ଦ୍ଧେ ଥାଇ ତାହାଙ୍କର ସନ୍ୟହିଂ ଗଣିମା ॥
ଶୁଣି ପାତ୍ର ମନ୍ତ୍ରୀ ଶିରେ କର ଦେଲେ ।
ହୋଇଂଦେବ ଏକଥା ଅଟଇ
ବୋଇଲେ ॥୫୦
ଶୁଣି ଦଶବଦନ ପରମ ସୁଖ ପାଇଂ ।
ରଥକୁ ବୋଇଲା ତୁ ହୋ ଉଠ ଉଚ୍ଚ ହୋଇ ॥
ସହସ୍ରେ ଯୋଜନ ପରିଯନ୍ତେ ବିକ୍ରମିଣ
ଯିବୁ ।
ତେବେ ଆମ୍ଭେ ସିନା ଜଗତ ଦେଖିବୁ ॥
ଶ୍ରୀରାମର ବଳ ବୁଝିବା କେତେମାନ ।
ଆଜ୍ଞା ପାଇଣ ଗର୍ଜିଣ ଉଠିଲାକ ଯାନ ॥
କିଜାଣି ଭୂଅ ଜଗତୀ ଉଡ଼ାଇଲା ।
ଶୂନ୍ୟ ପୁରୁଷକି ମୁକତ ହୋଇଲା ॥
ବାଦ୍ୟ ନିରନ୍ତରେ ବାଜଇ କୋଳାହଳ ।
ଯୁବତୀଜନଙ୍କର ହୁଳାହୁଳି ଗହଳ ॥୬୦
ଲକ୍ଷେ ଶଙ୍ଖ ଯେ ଶବଦ ଗରୁଟାଣ ।
ସୁର ଗିରି ଚମକ ବାଜଇ ନିଶାଣ ॥
ସହସ୍ରେକ ବାଜୀ ପୁଷ୍ପ ବୃଷ୍ଟିକଲେ ।
ଲକ୍ଷେକ ଛତ୍ର ଲକ୍ଷେକ ଚାମର ଢାଳିଲେ ॥
ପାରିଜାତେକ ପୁଷ୍ପ ମଣ୍ଡିଲାଅଛି ଯାନ ।
ଉଦୟଗିରିରେ ଉଠିଲାକି କଶ୍ୟପର ନାନ ॥
ଦେବେ ମାହାଭୟେ ସର୍ଗେ ଥାଇଂକଲେ ।
ଯହୁଂ ରାବଣ ବୀରବେଶ ସେ ଦେଖିଲେ ॥
ସହସ୍ରେ ଯୋଜନେ ରହିଲା ଯାନ ଯାଇଂ ।
ରାବଣ ଆଶ୍ରିଯ ହୋଇଲା ରବିତଳକୁ
ଚାହିଂ ॥୭୦
ପୃଥ୍ୱୀ ପୂରିଅଛି ରିକ୍ଷକପିବଳ ।
ଲଙ୍କା ସେତୁବନ୍ଧ ଉତ୍ତର କୂଳର ॥
ଚାରିଦ୍ୱାରେ ତା' ଅଛଇ ବଳ ଲାଗି ।
ସହସ୍ରେ ପୁର କରି ବନ୍ଧେଛନ୍ତି ଜଗି ॥
ପଛିମେ ହନୁମନ୍ତ ପୂର୍ବେଣ ସୁଗ୍ରୀବର ।
ଦକ୍ଷିଣେ ଅଙ୍ଗଦ ଯେ ବାଳୀର କୁମର ॥
ଉତ୍ତରେ ଶ୍ରୀରାମ ଲକ୍ଷଣ ଦୁଇଭାଇ ।
ବିଭୀଷେଣ ଜମ୍ବେବ ସୁଷେଣ ହିଂ ଥାଇ ॥
ରାମର କରେ କୋଦଣ୍ଡ ଯୁବ କାମ ଜାଣି ।
ଦେଖିଣ ପ୍ରଶଂସା କରଇ
ଲକ୍ଷ୍ମଣି ॥୮୦
ଧନ୍ୟ ସୂର୍ଯ୍ୟ ଗୋତ୍ର ଧନ୍ୟ ରଘୁବଂଶ ।
ଏପୁତ୍ର ପାଇଲା ସାକ୍ଷାତେ ବିଷ୍ଣୁଅଂଶ ॥
ଲକ୍ଷଣକୁ ଦେଖି ଯେ ପ୍ରଶଂସଇ ପୁଣି ।
ଧନ୍ୟ ଦଶରଥ ତୁ ଅଟଇ ପୁଣ୍ୟ ପ୍ରାଣୀ ॥
ଏସନେକ ତପ ଅର୍ଜିଲୁ କେବଣ ପୁଣ୍ୟେ ।
ଏବେ ନାଶଯିବେ କଲା ପାପ କର୍ମେ ॥
ଏତେ ବୋଲିଣ ବିଭୀଷେଣର ମୁଖଚାହିଂ ।
ଏହି ଚଣ୍ଡାଳଟି ଅଟଇ ମୋହର ଭାଇ ॥
ଶତୃର ତହିଂ ଯାଇ ପଶିଲା ଶରଣ ।
ଏହାର ବୁଧିରେ ଅଇଲେ ସମୁଦ୍ର
ତରିଣ ॥୯୦
ଦେଖିଣ ମନ ମୋହୋର ପାଉଅଛି ଖେଦ ।
ଯେତେମାନ ହୋଇଲା ସବୁ ଯେହାର
ଭେଦ ॥
ମାରିବିକି ଗଦା ଚୂରିବିକି ଏହାର ମୁଣ୍ଡ ।
ତପୁସୀ ଦୁଇଗୋଟା ହୋଇଯାନ୍ତୁ ଭାଣ୍ଡ ॥
ଏସନେକ ବୋଲିଣ ବିଚାରଇ ଲକ୍ଷ୍ମଣି ।
ଛତ୍ରଙ୍କର ଛାୟାରେ କରି ଅନ୍ଧାର ଧରଣୀ ॥
ବାଦ୍ୟ ଗରୁତର ଜ୍ୟୋତିର୍ମୟ ରଥ ।
ଦିଗପାଳ ସାମାନ୍ୟରେ ରଥୀ ଦଶମାଥ ॥
ଅପୂର୍ବ ଦେଖିଣ ଯେ ଚାହାଂତି ରିକ୍ଷ କପି ।
ବିଭୀଷେଣ ବୋଇଲା ତୁମ୍ଭେ ଶୁଣ
ରଘୁବଛି ॥୧୦୦
ରାବଣ ଗଗନେ ଅଛଇ ଦେବ ରହି ।
ତୋହୋର ବଳ ଯେ କଳିବାର ପାଇଂ ॥
ମାୟାରେ ଅସୁର କରେ ନପୁଣ ମନ୍ଦ ।
ଏସନେକ ବେଳେ ଗଦା ମାଇଲା ଦଶକନ୍ଧ ॥
ସୂର୍ଯ୍ୟକି ଖସିଲା ପ୍ରାୟେକ ହାଦେ ଦିଶି ।
କିଅବା ମେଦନୀରେ ପଡ଼ିଲାକ ଆସି ॥
ଶୂନ୍ୟ ପୁରୁଷ କି ଆସଇ ଚ୍ୟୁତ ହୋଇ ।
କିଅବା ଅଗ୍ନିଦେବତା ଆସୁଅଛି ଧାଇଂ ॥
ଛତ୍ରଙ୍କର ଛାୟାରେ ଅନ୍ଧାର ହୋଇଥିଲା ।
ସୂର୍ଯ୍ୟ ଉଦେ ହୁଅନ୍ତେ କି ତିମିରି
ତୁଟିଲା ॥୧୦
ପବନ ଦେବତା ପ୍ରସନେ ଥିଲା ଦେଇଂ ।
ସେ ଗଦା ମନ୍ତ୍ରିଣ ଯେ ମାଇଲା ଲଙ୍କସାଇଂ ॥
ସହଜେ ତେଜବନ୍ତ ମନ୍ତ୍ରରେ ଉଗୁଳି ।
ଶ୍ରୀରାମର ଥାଟେ ହୋଇଲା ହାଲୋହୋଳି ॥
ପଛିମ ଦ୍ୱାରେ ଯେ ହନୁମନ୍ତ ଥିଲା ।
ଊର୍ଦ୍ଧ୍ୱକଇ ବିକ୍ରମି ଶତେ ଯୋଜନ ଗଲା ॥
ବଳେଣ ଶହସ୍ରକୁ ଧଇଲା ଆକ୍ରୋଷି ।
ବାହୁଡ଼ି ରବିତଳେ ହୋଇଲାକ ଆସି ॥
ଦେଖି ଦୁଇବଳ ହୋଇଲେ ଆଶିର୍ଯ୍ୟ ।
ବିଭୀଷେଣକୁ ଚାହିଂ ବୋଇଲେ
ରାମରାଜ ॥୨୦
ରଥଙ୍କର ଶୀତଳିକି ଛତ୍ରଙ୍କର ଛାଇ ।
କରପତ୍ର ଯୋଡ଼ିଣ ଯେ ବିଭୀଷେଣ କହି ॥
ଲକ୍ଷେ ରାଜା ଯେ ମେଦନୀରେ ଥିଲା ।
ଏକା ଦଶଗ୍ରୀବ ସବୁନ୍ତି ଜିଣିଲା ॥
ରାଜାଙ୍କର ଛତ୍ର ଆଣିଲା ବଳେ ଜିଣି ।
ଲକ୍ଷେ ଛତ୍ର ତେଣୁ ଧରାଇଲା ଲଙ୍କମଣି ॥
ସେ ଛତ୍ର ଛାୟାରେ ଯେ ଓହାଡ଼ିଲା ସୂର୍ଯ୍ୟ ।
ପୁଷ୍ପେକ ବିମାନ ଏ ଅଟଇ ରଘୁରାଜ ॥
ଯହିଂ ବସିଥିଲେ ତିନିଲୋକ ଜିଣି ।
ରୋଗ ନବାଧଇ ଶୁଣିବା ଚାପପାଣି ॥୩୦

ସେ ରଥେ ରାବଣ ନିଶ୍ଚଏ ଅଛି ବସି ।
ଗଦାଏ ମାଇଲା ଦେବ କୁମନ୍ତ୍ର ଅଭ୍ୟାସି ॥
ଧନ୍ୟତୁ ଶ୍ରୀରାମ ସେବକ ତୋହର ହନୁ ।
ଅତିବେଗେ ଅସ୍ତ୍ର ଆଣିଲା ଗଗନୁ ॥
ବ୍ରହ୍ମାଣ୍ଡ ଭିତରେ ନ ଥିଲା ଯେଡ଼େ କଥା ।
ଏହି ଘାନ୍ତି ଲଘୁ ହୋଇଲା ଦଶମଥା ॥
ଶୁଣି ଶ୍ରୀରାମ ଯେ କୋଦଣ୍ଡେ ଶରସନ୍ଧି ।
ଛତ୍ରବେଗେ କାଟ ବୋଲିଣ ବାଣ ବିନ୍ଧି ॥
ଗୁଣ ଛାଡ଼ି ନାରାଚ ମନରୁ ବେଗେ ଗଲା ।
ଲକ୍ଷେ ଛତ୍ର ଛେଦି ବାହୁଡ଼ି
ଅଇଲା ॥୪୦
ଶ୍ରୀରାମ ତ୍ରୋଣେ ହୋଇଲା ପ୍ରବେଶ ।
ଛିଡ଼ି ଛତ୍ରମାନେ ପଡ଼ିଲେ ଦଶଦିଶ ॥
ତାରାମାନେ ଗଗନୁକି ଖସିଲେ
ଏକାବେଳେ ।
କିଅବା ଓହ୍ଲାଇ ଅଇଲେ ଦିଗପାଳେ ॥
ଅନେକ ଚନ୍ଦ୍ର କି ପୃଥିରେ ଆସିପଡ଼ି ।
ଥୋକାଏ ସେ ଛତ୍ର ସମୁଦ୍ରେ ଯାଇ ବୁଡ଼ି ॥
ଥୋକାଏ ପର୍ବତେ ଥୋକାଯେ ମେଦିନୀ ।
ଜୀବ କରି ତାହା ସଞ୍ଚିଲା ପଦ୍ମଯୋନି ॥
ତେବେ ସେ କୀରତି ଶ୍ରୀରାମର ଯୁଗେ
ଯୁଗେ ଥିବ ।
ରାବଣର ଛତ୍ର ବୋଲି ଏବେହେଂ
ବୋଲାଇବ ॥୫୦
ଏଥୁ ଅନନ୍ତରେ ଯେ ଦଶଗ୍ରୀବ ରାୟେ ।
ଥରହର ହୋଇ କମ୍ପଇ ତାର କାୟେ ॥
ଶୁକ ସାରଣକୁ ପଚାରଇ ଚାହିଁ ।
ଛତ୍ରେ ଛିଡ଼ିଲେ ମୋର କେବଣ ଗୁଣ ପାଇଁ ॥
ଏକାବେଳେ କିମ୍ପାଇ ଲକ୍ଷେ ଛତ୍ର ଛିଡ଼ଇ ।
ବନଗିରି ସାହେର ମଧରେ ପଡ଼ଇ ॥
ଶୁକ ସାରଣେ ବୋଇଲେ ଦେବେ ଶୁଣ ।
ଶ୍ରୀରାମ ଯେ ବିନ୍ଧିଲେ ଏକ ତୀକ୍ଷ ବାଣ ॥
ତେଣୁ ସେ ଛିଡ଼ିପଡ଼ିଲା ତୋହୋର ଛତି ।
ବିଚିତ୍ର ସଂଗ୍ରାମ ଦେବ ଜାଣନ୍ତି
ରଘୁପତି ॥୬୦
ନୋହିଲେ କି ଏକାକାଣ୍ଡକେ ବାଳୀ ମରି ।
ସପତ ଶାଳତରୁ ଏକା କାଣ୍ଡକେ ଛେଦନ
କରି ॥
ଅବୋଧ ରିକ୍ଷ ବାନରେ ବୋଧଗଲେ ।
ପର୍ବତ ବୁହାଇଂ ସମୁଦ୍ର ବାନ୍ଧିଲେ ॥
ସାମାନ୍ୟ ଶତ୍ରୁ ଯେ ନୋହଇ ଜାଣ
ତୋତେ ।
ଦେଖ ରିକ୍ଷ କପି ଯେ ମିଳିଛନ୍ତି ଯେତେ ॥
ଶୁଣି ରାବଣ ଯେ ବିସ୍ମଏ ମୁଖ ହୋଇଂ ।
ନିଜ ପୁରକଇଂ ବାହୁଡ଼ି ଗମଇଂ ॥
କିଜାଣି ସୂର୍ଯ୍ୟ ଯେ ଖସିଲାକ ଶୂନ୍ୟଂ ।
ଆସଇ ରହୁବରେ ବେଗେଣ ଗଗନୁ ॥୭୦
ତେସନ ପ୍ରକାରେ ଖସିଲାକ ରଥ ।
ଲଙ୍କାଗଡ଼େ ପ୍ରବେଶ ହୋଇଲା ଦଶମାଥ ॥
ସଭା କରିଣ ବସିଲା ଆସ୍ଥାନ ।
ଇନ୍ଦ୍ରଜିତକୁ ରାଇ ଆଣିଲା ଦଶାନନ ॥
ଶୁଣ ହୋ ଅପୂର୍ବ ଯେ ଶ୍ରୀରାମର ରୀତି ।
ଏକାବାଣକେ ଛେଦିଲା ମୋହର ଲକ୍ଷେ
ଛତ୍ରୀ ॥
କୋପେଣ ଗଦା ଯେ ମାଇଲଇଂ ମୁହିଂ ।
ହନୁମନ୍ତ ତାହା ଯେ ଧଇଲା ଡେଇଂଯାଇଂ ॥
ତେଡ଼େ ଅସ୍ତ୍ର ଗୋଟା ମୋହୋର ବିଅର୍ଥ
ହୋଇଲା ।
ଏ ମୋହର ଆଉଧ କିଛି ହିଂ
ନୋହିଲା ॥୮୦
ଏବେ କି ବୁଧି ଯେ କରିବଇଂ ମୁହିଂ ।
କେ ରାମ ଲକ୍ଷ୍ମଣକୁ ମାରିଆଣୁ ଯାଇ ॥
ଶୁଣି ଇନ୍ଦ୍ରଜିତ ବୋଇଲାକ ହସି ।
କିମ୍ପା ଦେବ ଯେକଥା କହିଲ ପ୍ରକାଶି ॥
କି ଅବା ଆମ୍ଭ ମନ ଜାଣିମା ନିମନ୍ତେ ।
ଯେ କଥା କହୁଅଛ ବିଶର୍ବାର ସୁତେ ॥
ସ୍ୱର୍ଗେ ଦେବତାୟେ ନୁହନ୍ତି ତୋତେ ସରି ।
ଯେ କିସ ମାନେବ ଯେ ଦୁଇ ଜଟାଧାରୀ ॥
ଛତ୍ର ଛିଣ୍ଡାଇଲେ କି ତୋତେ ହୋଏ ଜିଣି ।
ଶୁଖିଲା ବାଏଂଶ ସେ ପକାଇଲା ହାଣି ॥୯୦
ତହିଂର ଛାରକୁ ଯେବେ କରୁଅଛୁ ଚିନ୍ତା ।
ଶୁଣିଣ ସନ୍ତୋଷ ଯେ ମନ୍ଦୋଦରୀ କାନ୍ତା ॥
ଏଥୁଅନନ୍ତରେ ଶୁଣିମା ରସବାଣୀ ।
ରାବଣ ଛତ୍ର ଯହୁଂ ଛେଦିଲେ ଚାପପାଣି ॥
ଭଏ ପାଇ ଦଶଗ୍ରୀବ ବାହୁଡ଼ିଣ ଯାନ୍ତେ ।
ଗବାକ୍ଷକୁ ଚାହିଂଣ ଯେ ବୋଲନ୍ତି
ସାତ୍ୟାକାନ୍ତେ ॥
ଯାଅ ତୁ ଦକ୍ଷିଣ ଦୁଆରୁ ଅଙ୍ଗଦକୁ ଘେନି
ଆସ ।
ଶଉରୀ ସେନାପତିକି କହିବୁ ବିଶ୍ୱଆସ ॥
ଡାଳିମ୍ଭ କେଶରୀ ଏ ତିନିହେଂ ଥାନ୍ତୁ ରହି ।
ଦ୍ୱାର ନ ଛାଡ଼ନ୍ତୁ ଆସନ୍ତୁ ବେଗ
ହୋଇ ॥୧୦୦
ଅଙ୍ଗଦକୁ ବୋଲିବୁ ସମାଦି ମୋତେ ଯାଉ ।
ଡାଳିମ୍ଭ କେଶରୀ ଶଉରୀ ତହିଂ ଥାଉ ॥
ଶୁଣିଣ ଗବାକ୍ଷ ଯେ ଶିରେ କର ଦେଲା ।
ଦକ୍ଷିଣ ଦ୍ୱାରକୁ ବୀର ବିକ୍ରମିଣ ଗଲା ॥
ପଶ୍ଚିମ ଦ୍ୱାର ବାଟେ ଗଲା ପଥ ବହି ।
ଅଙ୍ଗଦକୁ ଆଣିଲା ଯେ ଶ୍ରୀରାମ ଆଗ୍ୟାଂ
ପାଇ ॥
ଡାଳିମ୍ଭ କେଶରୀ ଯେ ଶଉରୀ ସେନାପତି ।
ଯେହାଙ୍କୁ ତିଆରି ଯେ ଗଲାକ ତଡ଼ତି ॥
ଅଙ୍ଗଦକୁ ଘେନି ଶ୍ରୀରାମ ଛାମୁରେ ମିଳି ।
ନମସ୍କାର କରିଣ ଯେ ଶୁତିଲା
ମହୀଆଳି ॥୧୦
ଉଠି ଉଭା ହୋଇ ଯେ ଯୋଡ଼ଇ ବେନି
କର ।
ଅଙ୍ଗଦକୁ ଚାହିଂଣ ଯେ ବୋଲନ୍ତି ରଘୁବୀର ॥
ତୁ ହୋ କୁମର ଯିବୁ ଯେହିକ୍ଷଣି ।
ଏ ମୋହର ଆଗ୍ୟାଂ ନେଇଂ କହିବୁ
ଲଙ୍କମଣି ॥
ସୀତା ଘେନି ମୋରେ ଶରଣ ଆସି ପଶୁ ।
ଜୀବନକୁ ଆଶା ଥିଲେ ତୋହୋର ସଙ୍ଗେ
ଆସୁ ॥
ନୋହିଲେ ଦୋଷ ଯେ ନାହିଂଟି ମୋହର ।
ଅବଶ୍ୟ ତାହାର ମୁଂ ଛେଦିବି ଦଶଶିର ॥
ସଗୋତ୍ର ସହିତେ ଯେ ବନ୍ଧୁବର୍ଗମାନ ।
ତୁଳା ରାଶି ଜାଣି ଯେ କିରିବି ଦହନ ॥୨୦

ମେଢ଼ ମଣ୍ଡୋପ ଯେ ଦେଉଳ ନାଶ ହେବ ।
ଗୋରୁ ବ୍ରାହ୍ମଣ ଯେ ସମସ୍ତେ କ୍ଷୟେ ଯିବ ॥
ଯେ ପାପେ କର୍ତ୍ତା ଯେ ହୋଇବୁ ଦଶଶିର ।
ଯଦି ସୀତ୍ୟାକୁ ତୁ ନଦେବୁ ମୋହୋର ॥
ପଞ୍ଚବଟୀ ବନୁ ଯେ ଆଣିଲୁ ଚୋରାଇ ।
ମୁହିଁ ବୋଲୁଅଛି ଯେ ଦୋଷ ତୋର ନାହିଁ ॥
ଯେବେ ମୋ ଘରଣୀ ପାଇଲେ ବାହୁଡ଼ିବି ।
ଏହିକ୍ଷଣି ସିନ୍ଧୁ ପାରି ହୋଇଯିବି ॥
ଆଜହୁଂ ମିତ୍ର ଯେ ହୋଇବି ତୋହୋର ତୁଳେ ।
ଜନେକ ଦୋହିତାକୁ ଦେବୁ ଯଦି ଭଲେ ॥୩୦
ନଦେଲେ ନଯିବଇଂ ଯେହୁ ମୋହୋର ସତ୍ୟ ।
ଅବଶ୍ୟ ରାବଣକୁ କରିବି ପ୍ରାଣହତ ॥
ସାକ୍ଷୀ ହୋଇଥାନ୍ତୁ ଦଶ ଦିଗପାଳ ।
ରିକ୍ଷ ବାନର ତୁମ୍ଭେ ଶୁଣ ହୋ ସକଳ ॥
ଯେତେ ବୋଲି ରାମ ଅଙ୍ଗଦକୁ ପେଷି ।
ବାଳୀର ତନୟେ ଯେ ପ୍ରସନ ମନେ ହସି ॥
ଯିବି ବୋଲି ବୀର ଯେ କଲା ସନମତ ।
ଶିରର ଉପରେ ଯେ ଯୋଡ଼ଇ ବେନିହସ୍ତ ॥
ଶ୍ରୀରାମ ମୁଖ ଚାହିଁ ଶୂନ୍ୟେଣ ବିକ୍ରମିଲା ।
ପଞ୍ଚାଶ ଯୋଜନ ଯେ ଉଚ୍ଛର୍ଗେ ଉଡ଼ିଗଲା ॥୪୦
ଧୀର ଧୀର ହୋଇ ଯେ ପଡ଼ିଲା ଗଗନୁ ।
ଅସ୍ତ ଗିରିରୁ ଯେହ୍ନେ ଓହ୍ଲାଇଲା ଭାନୁ ॥
ଲଙ୍କାପୁରେ ଯାଇ ହୋଇଲା ପରବେଶ ।
ଯହିଂ ସେ ଆସ୍ଥାନେ ବିଜେକରି ଅଛଇ ଦଶାଇସ ॥
ସୁବର୍ଣ୍ଣ ଜଗତୀରେ ଯେ ନବରତ୍ନ ମୟେ ।
ଅମାନାତ୍ୟ ଗଣଘେନି ବିଜୟେ ଲଙ୍କରାୟେ ॥
ଯେକଯେକ ଦଇତେ କରନ୍ତି ପ୍ରତଜ୍ଞା ।
ଅଙ୍ଗଦ ବୋଇଲାରେ ଘେନସି ମୁଠା ଆଜ୍ଞା ॥
ଶ୍ରୀରାମ ଘରଣୀ ସୀତ୍ୟାକୁ ସମର୍ପିବୁ ।
ଦନ୍ତେ ତିରଣ ଘେନି ଶରଣ ପଶିବୁ ॥୫୦
ତେବେ ଲଙ୍କାରେ ଥିବ ସମସ୍ତେ ସୁସ୍ଥ ହୋଇ ।
ନୋହିଲେ ନିଶ୍ଚେ ତୋତେ ମାରିବେ ରଘୁସାଇଂ ॥
ଇନ୍ଦ୍ରଜିତ ସହିତେ ସଭିୟେ ସଜ ହୁଅ ।
ଦେଖ ରଘୁନାଥ ଦଶରଥର ପୁଅ ॥
ଯାହାର ନାରାଚେ ବାଳୀ ବୀର ମଲା ।
ସୁଗ୍ରୀବରକୁ ଯେ କିଷ୍କିନ୍ଧାରେ ରାଜାକଲା ॥
ରିକ୍ଷ କପି ଘେନି ଯେ ପୋତିଲେ ମହାଜଳ ।
ପିତା ସତ୍ୟ ନିମନ୍ତେ ବୁଲନ୍ତି ବନଗିରିମାଳ ॥
ନିରାକାର ପୁରୁଷୟେ ପ୍ରମବ୍ରହ୍ମରାଶି ।
ଅସୁର ନିବାରଣେ ଅବତାର ଆସି ॥୬୦
ଏ ତୋହୋର ଭାଗ୍ୟ ଯେ ରବିତଳେ ଥାଉ ।
ଶ୍ରୀରାମରେ ଶରଣ ପଶ ଲଙ୍କରାଉ ॥
ଶୁଣି ଦଶଗ୍ରୀବ କୋପେ ପରଚଣ୍ଡ ।
ବିଂଶଲୋଚନେ କି ଉଦୟେ ମାରତଣ୍ଡ ॥
ନାସା ଫୁଲାଇଣ କହିଲାକ ରାଗେ ।
ବୋଇଲା ହୀନ ଜନ୍ତୁରେ ମିଳିଲୁ ମୋର ଆଗେ ॥
ଯାହାକୁ ଦେଖିଲେ ଅନେକ ପାପପାଇଂ ।
ସୁବର୍ଣ୍ଣ ଦାନ ଦେଲେ ତହିଂର ଦୋଷ ଯାଇ ॥
ଏ ନିଲକ୍ଷଣ ପାମରକୁରେ କେହୁ ପଶିଦେଲା ।
ଏତେକ ରାଜସଭା ମୋର ଅରେଖରେ କଲା ॥୭୦
କାହୁଂ ଅଇଲା ଏ କହଇ କିସ କିସ ।
ଯେ ବଚନ ଶୁଣି ବୋଲଇ ବାଳୀଶିଷ ॥
ତୁହୋ ରାବଣ ଜାଣିମୁ ମୋତେ କାହୁଂ ।
ଅବଧାନ ହୋଇ ଶୁଣ ଅଇଲି ମୁଂ ଯହୁଂ ॥
ଅଯୋଧ୍ୟା ନୃପତି ଦଶରଥ ସୁତ ।
ସ୍ୱୟେଂ ନାରାୟଣ ନାମ ରଘୁନାଥ ॥
ବନେ ବୁଲନ୍ତେ ଯେ ଆଣିଲୁ ତାର ନାରୀ ।
ସେ ରାଗେ ଶ୍ରୀରାମ ମୋର ପିତାକୁ ହାଣିମାରି ॥
ମୁହିଂ ସେ ବାଳୀର ତନୟ ଅଙ୍ଗଦ ।
ତୁ ମୋତେ କାହୁଂ ହୋ ଜାଣିମୁ ଦଶକନ୍ଧ ॥୮୦
ମୁଇଂହାଦେ ତୋତେ ଚିହ୍ନି ନୁଆରିଲି ।
ସ୍ୱାମୀର ଆଜ୍ଞା ପ୍ରମାଣେ ଯେଥକୁ ଅଇଲି ॥
ଶ୍ରୀରାମ ବୋଇଲେ ତୁ ରାବଣକୁ ଯାଇ କହ ।
ଶରଣ ପଶିଲେ ତାର ରଖିବିଟି ଦେହ ॥
ସେ କଥା ଶୁଣିଣ ଅଇଲଇଂ ଏଥ ।
ଭ୍ରାନ୍ତି କଲଇଂ ମୁଂ ତୁ କେବଣ ଦଶମାଥ ॥
ରାବଣ ନାମେଣ ଯେ ଅଛଇ ଅନେକ ରାୟେ ।
ମୁଇଂ ତୋତେ ଜାଣିଲି ସୀତାର ଚୋର ପ୍ରାୟେ ॥
ଶୁଣି ରାବଣ ଯେ ବୋଇଲାକ ରୋଷେ ।
କେବଣ କେବଣ ରାବଣ ଅଛଇ କେବଣ ଦେଶେ ॥୯୦
କହସି ବାନର ତୋର ଶୁଣିମା ବଚନ ।
ଦଶାନନର ବଚନେ କହଇ କପିନାନ ॥
ଅଙ୍ଗଦ ବୋଇଲା ମୁଂ କହଇ ଶୁଣ ତାହା ।
ଏକମନେ ପାମର ଶୁଣ ଜାଣଇ ଯାହା ॥
ସହସ୍ରାର୍ଜ୍ଜୁନ ନାମେଣ ନୃପତି ।
ଏ ମହୀମଣ୍ଡଳେ ବୀର ଚକ୍ରବର୍ତ୍ତୀ ॥
ରାବଣେକ ଧଇଲା ଯେ ଜଳକ୍ରୀଡ଼ା ବେଳେ ।
ଅନେକ ମାଡ଼ ଯେ ମାଇଲା ଭୁଜବଳେ ॥
ନିଜ ପୁରେ ନେଇ ବାନ୍ଧି ଥୋଇଥିଲା ।
ପୌଲସ୍ତି ମୁନିଙ୍କର ବୋଲେ ଛାଡ଼ିଦେଲା ॥୧୦୦
ସେ ସହସ୍ରାର୍ଜ୍ଜୁନକୁ ପ୍ରଶୁରାମ ମାରି ।
ସେ ପ୍ରଶୁରାମ ଶ୍ରୀରାମ ଛାମୁରେ ଗଲା ହାରି ॥
ଯେବେ ସେ ତୋହୋର ଗଡ଼ ବେଢ଼ିଛନ୍ତି ।
ମୋତେ ଯେବଣ ରାମ ପେଷି ସେ ଅଛନ୍ତି ॥
ତେଣୁ ସେ ତୋହର ଆଗେ କହଇ ଦଶଶିର ।
ପାମର ଦୁରାଆତ୍ମା ନଜାଣୁରେ ଚୋର ॥
ଆବର ରାବଣେକ ଶୁଣିଅଛି କର୍ଣ୍ଣେ ।
ବାଳିର ପୁରେ ସେ ପାଇଲା ଅପମାନେ ॥
ଆବର ରାବଣ କପିଳାସ ତୋଳିଗଲା ।

ପର୍ବତ ମାଡ଼ି ପଡ଼ନ୍ତେ ସେହୁ ହାଦେ
ମଲା ॥୧୦
ନିରେଖ ବୋଲି ତାକୁ ଜୀଆଂଇ ଦେଲେ
ଶିବ ।
ଆର କଥାଏକ ଶୁଣ ଦଶଗ୍ରୀବ ॥
ଯେକ ରାବଣେକ ବାନ୍ଧିଥିଲା ମୋର ପିତା ।
ଆରେକ ରାବଣ ଚୋରାଇ ନେଲାସୀତା ॥
ରମ୍ଭା ଅପଛରୀ ଦେଇଅଛି ଶାପ ।
ନନ୍ଦିକେଶ୍ୱରୀ ଯେ ପ୍ରଜ୍ୱଳିତ କୋପ ॥
ଯେଣୁ ସେ ରାବଣ ମରିବ ନିଶ୍ଚୟେ ।
ଆବର କଥାୟେକ ଶୁଣ ଲଙ୍କରାୟେ ॥
ରାବଣେକ ଅଯୋଧ୍ୟା କଟକାଇ କଲା ।
ଅରଣ୍ୟେକ ରାଜାର ସଙ୍ଗରେ
ଯୁଝିଲା ॥୨୦
କପଟ ଯୁଦ୍ଧ କରି ମାଇଲାକ ତାହା ।
ମରିବାର ବେଳେ ଶାପ୍ୟଦେଲା ନରନାହା ॥
ବୋଇଲା ମାୟାରେଣ କଲୁ ମୋତେ ନାଶ ।
ତୋତେ ପ୍ରାଣନାଶ କରିବ ମୋର ବଂଶ ॥
କାଳେଣ ଶ୍ରୀରାମ ସେହି କୁଳେ ଜାତ ।
ଯେ ମୋତେ ରାବଣ ହୋ ପେଷିଣ ଅଛି
ଦୂତ ॥
ଆବର ରାବଣେକ ଯେ କୋବେର ସାଙ୍ଗେ
ଯୁଝି ।
ଡରେ ଧନପତି ପଳାଇଲାକ ଭାଜି ॥
ବୋଇଲା ରାବଣରେ ଅଟୁ ମୋହର ଭାଇ ।
ସାବତ ଗୁଣ ଘେନି ହୋଇଲୁ ହିଂସାଇ ॥୩୦
ଯେ ମୋହୋର ଶାପ୍ୟ ହୋଇବ ପରାପତ ।
ମରିବାର ବେଳେ ତୋତେ ଛାଡୁ ନିଜ
ଭ୍ରାଥ ॥
ସେ କଥା ହୋଇଲା ଯେ ବିଭୀଷେଣ
କେଣେ ଗଲା ।
ତାହାର ଶାପ୍ୟ ହାଦେ ତତକାଳ ହୋଇଲା ॥
ଆବର ରାବଣେକ ଯେବେ ଭେଟିଲା
ବେଦମତୀ ।
ଦ୍ରୋହ କରି ଲୋଡ଼ିବାରୁ ସେ କୋପ କଲାକ
ସ୍ୱତୀ ॥

ବୋଇଲା ରାବଣରେ କଲୁ ଯେଡ଼େ କଥା ।
ଯେଡ଼େ କର୍ମ ମୋର ହୋଇଲା ଅନ୍ୟସ୍ତା ॥
ଯେଦେହ ନ ଧରିବି ବୋଲି ଆପଣେ
ଭସ୍ମଗଲା ।
ମରିବାର ବେଳେ ସେ ବେଗେଣ ଶାପ୍ୟ
ଦେଲା ॥୪୦
ବୋଇଲା ଯେହିକ୍ଷଣି କଗନ୍ତି ତୋତେ ନାଶ ।
ସ୍ତିରୀ ହୋଇ ପାଇବିନା ପୁରୁଷ
ହତ୍ୟାଦୋଷ ॥
ଏ ମୋହର ଯୋଗେ ହାଦେ ତୁହି ହିତ
ହୁଅ ।
ଯେତେକ ବୋଲୁ ଦେବୀ ଦହିଲା ତାର
ଦେହ ॥
ସେସେ ବେଦମତୀ ଜନେକ ଘରେ ଜାତ ।
ଯେବେତୁ ତାହା ଚୋରାଇ ଅଣିଲୁ ଦଇତ ॥
ପତ୍ନୀ ଅର୍ଥେ ରାମ ବେଢ଼ିଲେ ତୋର ପୁର ।
ବାଳୀର ନନ୍ଦନ ମୁଂ ଆସିଅଛି ଚାର ॥
ଶରଣ ପଶ ଏବେ ଜାନେକୀକି ଦେଇ ।
ନୋହିଲେ ତ ନିଶ୍ଚୟେ ତୁ ମରିବୁ
ଲଙ୍କସାଇଂ ॥୫୦
ଯେତେକ ରାବଣ ଅଛନ୍ତି ରବିତଳେ ।
ତୋତେ କି ସାମାନ୍ୟ ଅଟନ୍ତି ଭୁଜବଳେ ॥
ଆଉ ରାବଣରେ କେବଣ କାର୍ଯ୍ୟ ଅଛି ।
ଯେ ସେ ଚୋରାଇଲା ସୀତ୍ୟା କମଳାଛୀ ॥
ସେ ନିଷ୍ଟେ ମରିବ ଶରଣ ନପଶିଲେ ।
ତୋହୋର ଯିବାକୁ ସ୍ୱାମୀ ମୋତେ ଯେ
ପେଷିଲେ ॥
ତୁ କେଉଂ ରାବଣ ହୋ ବିଚାରି କାର୍ଯ୍ୟକର ।
ଶୁଣିଣ ଦଶଗ୍ରୀବ କମ୍ପଇ ଥରହର ॥
ସଇନଙ୍କୁ ଚାହିଂ ବୋଲଇ କୋପକରି ।
ଯେହିକ୍ଷଣି ଏହାକୁ ପକାଅସିରେ ମାରି ॥୬୦
ଶ୍ରୀରାମ ପ୍ରଭୁ ଆସି କରୁ ଯେହା ରକ୍ଷା ।
ଯେମନ୍ତ ବୋଲି ଆଜ୍ଞା ଦେଲାକ ଦଶଇସ୍ୟା ॥
ତପୁସୀ ଦୁଇ ବାପୁଡ଼ାର ବଳ
ତାଳବୀଜମାନ ।
ଯେମନ୍ତ ଭୁରୁଡ଼େକି ଡରଇ ଦଶାନନ ॥

ବାଳୀ ଯେହାର ବାପ ଯତି ତାହାକୁ ମାରଇ ।
ଯେ ପାପିଷ୍ଠ ପୁଣି ପିତା ଶତୃକୁ ସେବା
କରଇ ॥
ମାରରେ ଚାଣ୍ଡାଳକୁ ଯେହାର ନ ଚାହିଂବା
ମୁଖ ।
ଦେଖିଲେ ହରଇ ଦିନକର ସୁଖ ॥
ସରି ସିଦ୍ଧାନ୍ତ କହଇ ନେଞ୍ଚ ହୋଇଂ ।
ଭିକାରୀର ଟେକ କହଇ ଗାରିମାଇ ॥୭୦
ଏହାରେ ମାରରେ ଓପ୍ରୋଧ ନକର ।
ଯେହାର ଜୀଇଂଥିଲେ ହୋଇବଟି ଅସାର ॥
ଜାଣନା ହନୁମନ୍ତ ଯେତେକ ଛନ୍ଦକଲା ।
ଆଶ୍ୱାସିବା ମାତ୍ରକେ ଲଙ୍କା ପୋଡ଼ିଦେଲା ॥
ଅପୋଷା ଜୀବୟେ ପୋଷା ନମାନଇ ।
ବାନ୍ଧି ଧରିଥିଲେ ଯାବତ ବୋଲ କରଇ ॥
ହାଥୁଂ ଫିଟିଲେ କତିକି ନଆସି ।
ବୃକ୍ଷଲତା ପର୍ବତ ଯେ ଗହନ ବନେ ପଶି ॥
ନହେ ଆମ୍ଭୋଡ଼ନ୍ତି ରକଟନ୍ତି ଦାନ୍ତେ ।
ଭଲା ଯତି ସଙ୍ଗ ପାଇଲା ଏହାନ୍ତେ ॥୮୦
ମାରରେ ବାନରକୁ ନଥୁଅ ଏହା କ୍ଷଣେ ।
ଶୁଣିଣ ଆକର୍ଷି ଯେ ଧଇଲେ ଦତ୍ୟଗଣେ ॥
ସହସ୍ରେକ ଅସୁରେ ଯେ ଅଛନ୍ତି
ଜଗଜେଠୀ ।
ଅଙ୍ଗଦ ଉପରେ ନେଇ ପହୁଡ଼ିଲେ ମୁଠି ॥
ସହସ୍ରେକ ବିଧା ଯେ ଫେରାଇ ବାଳୀସୁତ ।
ବୋଇଲା ରାବଣରେ କଲୁ ମନ୍ଦକୃତ ॥
ଶୁକ ସାରଣ ଯେ ଗଲେ ଥାଟ ଖୋଜି ।
ଦେଖି ଦୟା କଲେ ଶ୍ରୀରାମଚନ୍ଦ୍ର ରାଜି ॥
ତୁ ତାହାର ଲୋକକୁ ଅନମିତେ ମାରୁ ।
ପାପ ପୁଣ୍ୟ କଥା ଯେ ବିଚାର ନ
କରୁଂ ॥୯୦
ଯେସନେକ ବୋଲନ୍ତେ ଯେ ସହସ୍ରେକ
ମାଲ ।
କାୟା ବଢ଼ାଇଲେ ଯେ ସେ ପର୍ବତ
ସମୁତଲ ॥
ଅଙ୍ଗଦକୁ ନିର୍ବନ୍ଧେ ଧଇଲେ ଯତ୍ନକରି ।
ସୂର୍ଯ୍ୟ ଦେବତା ଯେହ୍ନେ ମେଘରେ ଓହାଡ଼ି ॥

ଜାଣି ଅଙ୍ଗଦ ଯେ ବଢ଼ାଇଲା କାୟେ ।
ଉପରକୁ ବଢ଼ିଣ ସେ ଗଲାକ କ୍ଷଣ ଶହେ ॥
ଷାଠିଏ କୋଶ ଯେ ଦୁଇ ଭୁଜ କଲା ।
ଧାଇଁଣ ଦଇତକୁ ଆକ୍ରୋଷି ଧଇଲା ॥
ଦୁଇ ଭାଗ କରି ସେ ବାଣ୍ଟିଲା ସହସ୍ରେକ ।
କିଜାଣି ନବଗ୍ରହଙ୍କର ଅଟଇ
ସେବକ ॥୧୦୦
ପାଞ୍ଚଶତ ଅସୁରଙ୍କର କେଶ କରେ ଧରି ।
ତାମସେ ମାରୁଅଛି ଉପ୍ରୋଧ ନ କରି ॥
ବାଳ ଧରିଣ ଯେ ଝିଙ୍କିଲା ଦୁଇ ଘାନ୍ତି ।
ସହସ୍ରେକ ଅସୁର ଯେ ରୁଧିର କଲେ ବାନ୍ତି ॥
ତାହାନ୍ତ ଘେନି ବୀର ଜଗତୀରେ ଉଠି ।
ରାବଣକୁ ଚାହିଂ କଲାକ କୋପଦୃଷ୍ଟି ॥
ଆମ୍ଭନ୍ତ ମାୟାକଲେ କିରେ ପାଇଂ ।
ଖରଦୂଷଣ ତ୍ରିଶିରା ତୋର ତିନି ଭାଇ ॥
ଆବର ସଙ୍ଗରେ ଚଉଦ ସହସ୍ରବଳ ।
ଶ୍ରୀରାମ ବାଣେ ତାହାଙ୍କର ପୂରିଲାକ
କାଳ ॥୧୦
ନାସା ଶ୍ରବଣ ଛେଦିଲାକ ତୋର ବହିଣୀ ।
ସେ କଥାହିଂ ହାଦେ କଲେଟି ରଘୁମଣି ॥
ତୋତେ ମାରିବେ ବୋଲି ଯେ ପ୍ରତିଜ୍ଞା
କରିଛନ୍ତି ।
ତେଣୁ ସେ ରାବଣ ଜୀଇଁଲୁ ଯେ ଘାନ୍ତି ॥
ନୋହିଲେଣ ମୁଣ୍ଡ ମୋଡ଼ନ୍ତି ବାଳ ଧରି ।
ସ୍ୱାମୀଙ୍କର ପ୍ରତିଜ୍ଞାକି ଯିବି ବିଅର୍ଥ କରି ॥
ତହିଂକି ସେ ଜୀବନ ରଖିଲଇଁ ଆଜ ।
ନୋହିଲେଣ ମୃତ୍ୟୁ ସେ ଯେ ପାଆନ୍ତୁ
ଲଙ୍କରାଜ ॥
ଶିରମାନ ଛିନାଇଂ ପକାନ୍ତି ରବିତଳେ ।
କଥା ରହିଥାଆନ୍ତା ଏ ମହୀମଣ୍ଡଳେ ॥୨୦
ଯେହିମତି କରିବି ବୋଲିଣ ରଡ଼ିଦେଲା ।
ଧଇଲା ଅସୁରଙ୍କର ମୁଣ୍ଡ ଯେ ମୋଡ଼ିଲା ॥
ମୃତ୍ୟୁପିଣ୍ଡମାନ ପଡ଼ିଲେ ଆସିତଳେ ।
ଜଗତୀରୁ ଖଣ୍ଡେ ଧରି ଝିଙ୍କିଲାକ ବଳେ ॥
ଉପର ରତ୍ନଚାଳ ଘେନିଣ ଉଡ଼ିଗଲା ।
ଗଗନ ପଥେ ପଶି ବିକ୍ରମି ଅଇଲା ॥
ଦୁଇଶତ ଯୋଜନ ଯେ ଉଡ଼ିଲା ଉଗୁଇଂ ।
ତଳକୁ ଖସି ଆସଇ ଧୀର ଧୀର ହୋଇ ॥
ଶ୍ରୀରାମ ଯେ ଉତ୍ତର ଗଡ଼ ଦ୍ୱାରେ ଛନ୍ତି ।
ସଇନି ସହିତେଣ ଆକାଶକୁ ଦୃଷ୍ଟି
ଦ୍ୟନ୍ତି ॥୩୦
ଜ୍ୟୋତିର୍ମୟ ତେଜ ଯେ ବିରାଜଇ
ଗଗନେ ।
ସ୍ୱର୍ଗେ ସାଧୁ ସାଧୁ କରନ୍ତି ସୁରଗଣେ ॥
ଗରୁଡ଼ ଯେହ୍ନେ ଇନ୍ଦ୍ରକୁ ଜିଣି ଅମୃତଅଛି
ଆଣି ।
ତେସନେକ ସଂଯାତ ଦିଶଇ କପି
କୁଳମଣି ॥
ସୁଧର୍ମା ସଭାକି ଖସିଲା ଗଗନୁ ।
କି ଅବା ମଞ୍ଚକୁ ଅଇଲା ଦେବଭାନୁ ॥
ଧୀର ଧୀର ହୋଇ ଖସିଲା ତାରାସୁତ ।
ମହୀତଳେଣ କି ଉଇଂଲା ଧୂମଖେତ ॥
ଜଗତୀର ଚାଳ ଯେ ଅଛି ବୀର ଧରି ।
ମସ୍ତକ ଉପରେ କି ଅଛଇ ମହାଗିରି ॥୪୦
ନେତର ପଣନ୍ତ ଉଡ଼ଇ ଫରହର ।
ବିକ୍ରମ ଗତି କରି ଆସଇ କପିବୀର ॥
ଲଙ୍କାର ଲୋକେ ଯେ ଉପରକୁ ଦୃଷ୍ଟିଦ୍ୟନ୍ତି ।
ଶ୍ରୀରାମର ଦୂତ ଯେ ବୋଲିଣ ବୋଲନ୍ତି ॥
ପ୍ରୀତି ହୋଇବାକୁ ଆସି ଯେହୁ ଥିଲା ।
କଥାମାନ ବୁଝି ବାହୁଡ଼ିଣ ଗଲା ॥
ସହସ୍ରେ ମାଲର ଏ ମୋଡ଼ିଲାକ ମୁଣ୍ଡ ।
ଯେବେ ଘେନିଗଲା ଜଗତୀର ଚାଳଖଣ୍ଡ ॥
ରାବଣକୁ ମାରିବ ବୋଲିଣ କୋପକଲା ।
ସ୍ୱାମୀଦ୍ରୋହୀ ହୋଇବିକି ବୋଲିଣ
ବୋଇଲା ॥୫୦
ଦେଖ ଧୂମଖେତ ପ୍ରାୟେକ ଦିଶଇ ।
ଚନ୍ଦ୍ରଦେବତାକି ମେଦନୀକି ଖସଇ ॥
ବାବୁ ରାମଦୂତେ ସଭିଏ ତୁମ୍ଭେ ଧନି ।
ଯେକେୟେକେ ଜିଣିପାରହୋ ମେଦନୀ ॥
ହନୁମନ୍ତ ନାମେ ଯେ ବାନର ଆସିଥିଲା ।
ସୁବର୍ଣ୍ଣମୟେ ଲଙ୍କା ଅଙ୍ଗାର କରିଗଲା ॥
କେହି ତାକୁ କିଛି କରି ନୁଆଇଲା ।
ଅକ୍ଷୟେ କୁମାର ମାରି ଶୀଘ୍ରେ ଚଳିଗଲା ॥
ଯେସନେକ ବୋଲିଣ ଯେ ଭାଳନ୍ତି
ଲଙ୍କାଜନ ।
ଯେଥୁ ଅନନ୍ତରେ ବାଳୀର ନନ୍ଦନ ॥୬୦
ରବିତଳେ ଉଭା ହୋଇଲାକ ଯାଇ ।
ଶ୍ରୀରାମକୁ ଓଳଗିଲା ଜଗତୀ ଚାଳ ଥୋଇ ॥
ପାୟେ ପଡ଼ି ଶୋଇ ଉଠିଲା ତଡ଼ତି ।
ଅଙ୍ଗଦକୁ ଚାହିଂ ଯେ ବୋଲନ୍ତି ରଘୁପତି ॥
ଯେକିସ ପଦାର୍ଥରେ ପାଇଲୁ ବଳା କାହିଂ ।
ଭେଟ ପାଇଲୁ କି ମନ୍ଦୋଦରୀ ସାଇଂ ॥
ହୋଇ ଦେବ ବୋଲିଯେ ବୋଇଲା
ବାଳୀସୁତ ।
ତୋହର ଆଜ୍ଞା ଘେନି ଗଲଇ ମୁହିଂ ଦୂତ ॥
ଗଗନେ ବିକ୍ରମିଣ ପଶିଲି ଲଙ୍କପୁରୀ ।
ଦେଖିଲି ଜଗତୀରେ ବସିଛି ଦଶଶିରି ॥୭୦
ମନ୍ତ୍ରୀ ଅମନାତ୍ୟ ବନ୍ଧୁ ଇଷ୍ଟଜନ ।
ଆସ୍ଥାନ କରି ବସିଅଛଇ ଦଶାନନ ॥
ଯେ ତୋହର ଆଜ୍ଞା ମୁଂ କହିଲି ତାର
ଆଗେ ।
ବେଭାର କଥାକୁ ବୁଝିଲା ବଇରାଗେ ॥
ସହସ୍ରେ ଅସୁର ଧଇଲେ ମୋତେ ବେଢ଼ି ।
ମୁହିଂ ତାହାଙ୍କର ମୁଣ୍ଡ ପକାଇଲି ମୋଡ଼ି ॥
ରାବଣକୁ ମାରିତ ଦେବ କଲି ମନ ।
ତୋହର ଆଜ୍ଞା ଥିଲେ ଯେ ଘେନନ୍ତି ତାର
ପ୍ରାଣ ॥
ଆସ୍ଥାନ ନବର ଅଟଇ ଏ ଚାଳ ।
ଦେଖା ନିମନ୍ତେ ତୋତେ ଆଣିଲି
ରଘୁବାଳ ॥୮୦
ରାବଣ ଯେ ମୂର୍ଖ ଦେବ ନୋହିଲାକ
ପ୍ରବୋଧ ।
ନିଶ୍ଚେ ସେ ବାଣେ ତୋର ହୋଇବାକ
ବଧ ॥
ପ୍ରୀତି କଥାକୁ ସେ ନକରଇ ହିତା ।
ବୋଇଲା କିମ୍ପା ମୁହିଂ ସମର୍ପିବି ସୀତା ॥
ତୁମ୍ଭେ ନରବାନର ଯେ ମୋହର
ଭକ୍ଷକାରୀ ।

ତୁମ୍ଭ ଶରଣେ କି ମୋତେ ହୋଅଇ ମାରି ॥
ଯୁଦ୍ଧକୁ ନୁଆରି ପ୍ରୀତିକି ସଧ କର ।
ଯେଣେ କି ରେ ପ୍ରାଣ ରଖିବି ତୁମ୍ଭର ॥
ଦେବତାଙ୍କୁ ଦଳିଲି ଯେହି ଭୁଜ ଦର୍ପେ ।
ଯେତେ ବୋଲି ବାହୁ ବିସ୍ତାରିଲା କୋପେ ॥୯୦
ଦାନ୍ତ ରକଟିଣ କହଇ ଶିର ଝୁଣି ।
ମୁହିଂ ତହିଂକି ଭୟେ ନକଲି ରଘୁମଣି ॥
ଚାପୋଡ଼େ ମାରି ତାର ଘେନନ୍ତି ପରାଣ ।
ତୁ ଯେ ମୋତେ ଆଗ୍ୟାଂ ଦେଇନାହୁଂ ରଘୁରାଣ ॥
ଶୁଣି ଦାଶରଥି କାଳିମୁଖକୁ ରାଇ ।
ପୂର୍ବ ଦ୍ୱାରୁ ସୁଗ୍ରୀକି ଆଣ ବୋଲି ଆଗ୍ୟାଂ ଦେଇ ॥
ନଳ ନୀଳ ଗନ୍ଧମାର୍ଦ୍ଦନ ଶତବଳ ।
ଯେହାନ୍ତ ବୋଲ ତୁମ୍ଭେ ଯେହୁ ଠାବରୁ ନ ଚଳ ॥
ସୁଗ୍ରୀ ଆସିବାଯାଏ ଦ୍ୱାର ଜଗିଥାଅ ।
ଶ୍ରୀରାମର ଆଗ୍ୟାଂ ଯେ କାହିଂକି ନ ଯାଅ ॥୧୦୦
ଯେମନ୍ତ ତିଆରି ତୁ ସୁଗ୍ରୀକି ଘେନିଆସ ।
ଶୁଣିଣ କାଳିମୁଖ ଯେ ହୋଇଲା ହରଷ ॥
ଶିରେ କର ଦେଇ ଯେ ପଛକୁ ଘୁଞ୍ଚିଗଲା ।
ଶ୍ରୀରାମ ସୁମରି ଯେ ଗଗନେ ବିକ୍ରମିଲା ॥
ପୂର୍ବଦ୍ୱାରେ ଯାଇଂ ଯେ ମିଳିଲା ତଡ଼ତି ।
ଦେଖିଲାକ ବସିଣ ଅଛଇ ରୋମାପତି ॥
ନମସ୍କାର କରିଣ କହିଲା ବାରତା ।
ବୋଇଲା ମୋତେ ପେଷିଅଛନ୍ତି ଜଗୁଜିତା ॥
ତୁ ବେଗେ ଆସିବୁ ସେନାମାନନ୍ତ ଛାଡ଼ି ।
ଏମାନେ ବସିଥିବେ ଗଡ଼ଦ୍ୱାର ମାଡ଼ି ॥୧୦
ଶୁଣି ସୁଗ୍ରୀବର ନଳ ନୀଳନ୍ତ ରାଇ ।
ଗନ୍ଧମାର୍ଦ୍ଦନ ଶତବଳନ୍ତ ହକରାଇ ॥
ଦ୍ୱାର ଜଗି ବସିଥାଅ ବୋଲିଣ ବୋଇଲା ।
ଯେମନ୍ତ ତିଆରି ଯେ ସୁଗ୍ରୀବର ଚଳିଲା ॥
ସାଙ୍ଗେଣ ଅନେକ ଅଛଇ ଅଙ୍ଗବଳ ।
ଉଡ଼ନ୍ତି ପାଟଛତ୍ର ଚିରାଳ ଗହଳ ॥
ଶ୍ରୀରାମ ଛାମୁରେ ମିଳିଲାକ ଯାଇ ।
ଧାତିକାରେ ଉଠିଲା ପାୟେ ପଡ଼ି ଶୋଇଂ ॥
ମଥାରେ ହାଥ ଦେଇଂ ସେ ନିକଟକୁ ଗଲା ।
ସୁଗ୍ରୀବରକୁ ଚାହିଂ ଯେ ଶ୍ରୀରାମ ବୋଇଲା ॥୨୦
ଶୁଣ ହୋ ମଇତ୍ର ରାବଣର ବିଧାନ ।
ଆମ୍ଭେ ଯେ ପେଷିଲୁ ବାଳୀର ନନ୍ଦନ ॥
ବୋଇଲି ରାବଣ ଅବା ନ ଜାଣିମା ପଣ କଲା ।
ପ୍ରିୟବତୀ ବାମା ମୋର ଚୋରାଇ ଆଣିଲା ॥
ସେ ଦୋଷ ନ ଧଇଲୁ ସୀତା ମୋତେ ଦେଉ ।
ତାହାର ମୋହୋର ପୀରତି ଯୁଗେ ଯୁଗେ ଥାଉ ॥
ଯେସନେକ ବୋଲିଣ ମୁଂ ପେଷିଲି ଅଙ୍ଗଦ ।
ଯେକଥାକୁ ଯିସ ଯିସ ବୋଇଲା ଦଶକନ୍ଧ ॥
ତାହା ଶୁଣ ତୁ ଯେ ସାବଧାନ ହୋଇଂ ।
କହ ହୋ ଅଙ୍ଗଦ ଯାହା କହିଲା ଲଙ୍କସାଇଂ ॥୩୦
ଅଙ୍ଗଦ ବୋଇଲା ମୁଂ ତୋହୋର ଆଗ୍ୟାଂରେଣ ଗଲି ।
ଆସ୍ଥାନ କରି ବସିଅଛଇଂ ଦେଖିଲି ॥
ଯେ ସର୍ବକଥାମାନ କହିଲି ଯାବତ ।
ସୀତା ସମର୍ପ ହୋ ବିଶର୍ବାର ସୁତ ॥
ଯେଉଂ ଦୋଷ କଲୁ ତାହା ନ ଘେନିଲେ ରାମ ।
ଜାନେକୀ କି ପାଇଲେ ଯିବେ ନିଜ ଗ୍ରାମ ॥
ଯେହି କହିଲେ ମୋତେ ପାଇଲାକ ଖଙ୍ଗ ।
ଲଉଡ଼ି ଦେଖିଲେ ଯେହ୍ନେ ଗର୍ଜଇ ପନ୍ନଗ ॥
ଦାଢ଼ୀ ଧରିଣ ଯେ ପ୍ରତଗ୍ୟାଂ ବହୁତ କଲା ।
କାଲି ରିକ୍ଷ ବଜ ଯେ ମାରିବଇଂ ବୋଇଲା ॥୪୦
କିମ୍ବାଇଂ ସୀତାକୁରେ ସମର୍ପିବି ନେଇଂ ।
ତୁମ୍ଭେ କି ଯେଥିରେ ଯିବ ପ୍ରାଣ ପାଇଂ ॥
ଯେତେ ବୋଲି ମୋତେ ମାରିତ ବିଚାରିଲା ।
ସହସ୍ରେ ମାଲ ମୋତେ ଯତନେ ବେଢ଼ାଇଲା ॥
ତାହାନ୍ତ ବିନାଶିଣ ମୁଂ ବାହୁଡ଼ିଣ ଅଇଲି ।
ଆସ୍ଥାନ ଜଗତୀ ଚାଳହିଂ ଆଣିଲି ॥
କେବେହେଂ ସଦଭାବ କଥା ନ କହିଲା ।
ଯୁଦ୍ଧ କରିବାକୁ ବହୁତ ପ୍ରତଗ୍ୟାଂ ଯେ କଲା ॥
ଶୁଣି ସୁଗ୍ରୀବର ଅଙ୍ଗଦ କହନ୍ତେ ।
ବାହୁ ଫୁଲାଇଣ କହଇ ରୋମାକାନ୍ତେ ॥୫୦
ଭୋ ଦେବ ଶ୍ରୀରାମ ବିଚାରୁ ଦେବ କିସ ।
ମରିବା ପ୍ରାଣୀକି ଅମୃତ ହୋୟେ ବିଷ ॥
କି ଅବା ଧର୍ମକୁ ଜିଣିତ ଇଚ୍ଛା କଲୁ ।
ଦଣ୍ଡ ସାମ ଭେଦ ତିନିଙ୍କି ଜିଣିଲୁ ॥
ସୁବୁଦ୍ଧି ଆସ୍ତେ ଯାହାକୁ ନାହିଂ ରାମରାଜ ।
ଅବଶ୍ୟ ଖାଇବ ଯେ ତୋହୋର ନାରାଜ ॥
ଦେସି ଆଗ୍ୟାଂ ଦେବ ଥାଠ ଗଡ଼େ ପଶୁ ।
ଆକୁଂ ଅସୁରଙ୍କର ମୁଣ୍ଡୁଭେଦ ଦିଶୁ ॥
ଶୁଣି ରଘୁନାଥ ଆମଞ୍ଚିଲେ ଧନୁ ।
ଗୁଣ ଟଙ୍କାରିଣ ପୁଲକିତ ତନୁ ॥୬୦
ସୁଗ୍ରୀକି ବୋଇଲେ ମଇତ୍ର ପୂର୍ବ ଦ୍ୱାରକଇ ଯାଅ ।
ପାଚେରୀ ଡେଇଂ ଲଙ୍କାଗଡ଼ ଦ୍ୱାର ଭାଙ୍ଗିଦିଅ ॥
ଦେଉଳ ମଣ୍ଡପ ଯେ ଅଟାଳି ଜଗତୀ ।
ନେତର ଚିରାଳ ଯେ ଉଡ଼ନ୍ତି ପନ୍ତି ପନ୍ତି ॥
ତାହା ନାରଖାର କରନ୍ତୁ ସଇନି ।
ଯାଆସି ମଇତ୍ର ହୋ ମୋର ବୋଲ ଘେନି ॥
ଅଙ୍ଗଦ କୁମାରକଇ ବୋଲନ୍ତି ତୁ ଯାସି ।
ଦକ୍ଷିଣ ଦ୍ୱାରକଇ ନିର୍ବନ୍ଧିଣ ଆସି ॥
କବାଟ ଭାଙ୍ଗିଣ ପାଚେରୀ ଡେଇଂ ପଶ ।
ଉଜାଡ଼ କରନ୍ତୁ ସୁବର୍ଣ୍ଣମୟେ ଦେଶ ॥୭୦।
ଶୁଣି ସୁଗ୍ରୀବର ଅଙ୍ଗଦ ବେନିଗଲେ ।
ଯେ ଯାର ବଣ୍ଟାରେ ଯାଇଣ ଲାଗିଲେ ॥
ବାଳୀର ତନୟେ ହନୁମନ୍ତକୁ କହିଲା ।
ଶ୍ରୀରାମ ଆଗ୍ୟାଂରେ ଗଡ଼ରେ ପଶ ହୋ ବୋଇଲା ॥
ଶୁଣି ହନୁମନ୍ତ ଶୀଘ୍ରେ ଦେଲା ସିଂଘରଡ଼ି ।

ମେରୁ ଗିରିଶୃଙ୍ଗକି ପଡ଼ିଲାକ ଝଡ଼ି ॥
ବସନ୍ତ ଦୃବିନ୍ଦ ମହାନ୍ଦ୍ର ପାରାସ ।
ଯେମାନଙ୍କୁ ବୋଇଲା ପବନର ଶିଷ ॥
କବାଟ ଭାଙ୍ଗିବା କି ପାଚେରୀ
ଡେଇଂଯିବା ।
କେବଣ ପ୍ରକାରେ ଭିତରେ ପଶିବା ॥ ୮୦
ଶୁଣି ମହାନ୍ଦ୍ର ଯେ ବସନ୍ତ ପାରାସ ।
ଦୃବିନ୍ଦ ସହିତେ ଯେ ମିଳିଲେ ହନୁପାଶ ॥
ତହିଂ ରିକ୍ଷ କପି ଯେ ମିଳିଲେକ ଯାଇ ।
କାଣ୍ଡ ଖଣ୍ଡା ବଜ୍ରବାଣକୁ ଭୟେ ନାହିଂ ॥
ଟପଟ ଚିକ୍କଣକୁ ନ କରନ୍ତି ଶଙ୍କା ।
ଯେକକୁ ଆରେକ ଯେ ନ କରନ୍ତି ମନେ
ଦକା ॥
ପଥର ପଡ଼ିଲେ ସେ ନ କରନ୍ତି ଭୟେ ।
ଯେକ ପଛ କରି ଆରେକ ଆଗ ହୋୟେ ॥
ବୋଲନ୍ତି କବାଟ ଭାଙ୍ଗିବା ଯେହିକ୍ଷଣି ।
ତୁ କିସ ବିଚାର କରୁ କପିକୁଳମଣି ॥୯୦
ଯେତେ ବୋଲି ଦ୍ୱାରେ ଲାଗିଲେ
ଚାରିବୀରେ ।
ପବନତନୟେ ଲାଗିଲା କୋପଭରେ ॥
ବଜ୍ରସମ ବିଧାୟେ ପହୁଡ଼ିଲା ନେଇଂ ।
ଅଗ୍ନି ଉଠିଲା ଯେ ସଂଯାଳ ଯୋଗ ହୋଇ ॥
ନିର୍ଘାତ ପଡ଼ିଲାକି ଶୁଭିଲା ଶବଦ ।
ଶୁଣି ସର୍ବଜନେ ହୋଇଲେ ତବଦ ॥
ବଜ୍ର ଉପରେ କି ମହାବଜ୍ର ପଡ଼ି ।
ଯେସନେକ ବିଧାଯେକ ନେଇଂ କବାଟେ
ପହୁଡ଼ି ॥
ନିର୍ବନ୍ଧ କିଳିଣି ଯେ ମହାଯନ୍ତ୍ର କରିଣ ଛନ୍ଦ ।
ବଜ୍ର ସମାନେ କବାଟ କିଳିଛି
ଦଶକନ୍ଧ ॥୧୦୦
ଇନ୍ଦ୍ରଦେବତା ଯାହାର ଆଗ୍ୟାଂରେଣ ଥାଇ ।
କୁଳିଶ କବାଟ କି ଅପୂର୍ବ ତାହାକଇ ॥
ତ୍ରିଶୂଳ ଆଉଜାଇ ଅର୍ଗଳି ଛନ୍ତି ମେଲି ।
ପୁଣି ହନୁମନ୍ତ ହିଆରେ ଦେଲା ପେଲି ॥
ପଥର ଆଉଜାଇ ଅଛନ୍ତି ମହାଗାଢ଼େ ।
ଦ୍ୱାର ନିର୍ବନ୍ଧିଣ ଅଛନ୍ତି ଲୁହାବାଡ଼େ ॥

ପାଞ୍ଚ ସେନାପତି ଯେକ ମନ ହୋଇଂ ।
ବତା ଟୋକି ଧଇଲେ ଯେ ପୟେ ନ
ଘୁଞ୍ଚଇ ॥
ନ ଚଳଇ ସେହୁ ଯେ ମେରୁର କୀଳା
ଜାଣି ।
ବାହାଦଣ୍ଡେ ହନୁମତ ମାଇଲା ନେଇ
ପୁଣି ॥୧୦
ବାବୁ ସେ କବାଟ ନୋହିଲାକ କିଛି ।
କୋପେଣ ବାହୁଡ଼ିଲା ପବନର ବଛି ॥
ଦୃବିନ୍ଦ ମହାନ୍ଦ୍ର ଯେ ସାରାସ ପାରାସ ବସନ୍ତ ।
ଯେହାନ୍ତ ଚାହିଂଣ ଯେ ବୋଇଲା ହନୁମନ୍ତ ॥
ଥାଉ ଯେ କବାଟ ପଶିବା ଗଡ଼ ଡେଇଂ ।
ସଇନିକି ଚାହିଂ ଯେ ବୋଇଲା ଶବଦାଇଂ ॥
ଉଠରେ ପାଚେରୀରେ ନ କର ଆଉ
ଭୟେ ।
ଆଜ ଧରି ମାରିବାଟି ଦଶାନନ ରାୟେ ॥
ଶୁଣି ରିକ୍ଷ କପି ଯେ କିଳିକିଳା ରାବ
ଦେଇଂ ।
ଖେପି କମଳଶିରାରେ ବସିଲେକ
ଯାଇଂ ॥୨୦
ଚାରିଦ୍ୱାରେଣ ଉଠିଲେ ବଳ ଯହୁଂ ।
ରାକ୍ଷସେ ଘୋର ଯୁଦ୍ଧ ଆରମ୍ଭିଲେ ତହୁଂ ॥
ଦଉଡ଼ିମାନ ଓହୋଳାଇଂ ବାନ୍ଧିଥିଲେ ଯାହା ।
ଦଇତେ କାଟି ପକାଇଲେ ତାହା ॥
ଲେଚି ପଥର ଯେ ମାଇଲେ ଅବିଛନ୍ନେ ।
ଛିଟିକିଣି ପଥର ଯେ ମାରନ୍ତି ବହନେ ॥
ବଜ୍ରବାଣ ଶାବେଳୀ ଯେ ମାରନ୍ତି ତୀକ୍ଷ
ଭାଲ ।
ଟପଟ ଚିକ୍କଣ ଇଡ଼ନ୍ତି ଗବତେଲ ॥
ଅଚଳ ପଥର ଯେ ପକାଇଣ ଦ୍ୟନ୍ତି ।
ବନ୍ଧାପେର ଓହାଡ଼ି ହୋଇଣ ବିନ୍ଧନ୍ତି ॥୩୦
ବାଜିଲା ରଣଗୋଳ ଦୁଇ ବଳ ଥାଠ ।
ଉଛୁଳି ଯାଉଅଛି ତେଡ଼େ ମହାରାଷ୍ଟ୍ର ॥
ଚାଳିଶ କୋଶ ଯେ ପାଚେରୀ ଉଚ୍ଚ
ହୋୟେ ।
ଅର୍ଦ୍ଧ କୋଶ ଓସାର ସବୁ ସନ୍ୟମୟେ ॥

ପୂର୍ବ ଦ୍ୱାରେଣ ସୁଗ୍ରୀବର ଥିଲା ।
ଥାଠ ଘେନିଣ କଟକେ ଡେଇଂଣ ପଶିଲା ॥
ଦକ୍ଷିଣ ଦ୍ୱାରେ ଥିଲା ବାଳୀ ସୁତ ।
ବଳ ଘେନି ଗଡ଼େ ପଶିଲା ତୁରିତ ॥
ଶ୍ରୀରାମ ଉତ୍ତର ଗଡ଼ ଦ୍ୱାରେ ଥିଲେ ।
ସନ୍ୟକୁ ଚାହିଂଣ ଶ୍ରୀରାମ ଆଗ୍ୟାଂ
ଦେଲେ ॥୪୦
ଗଡ଼ ଡେଇଂଣ ବେଗେ ଅସୁରନ୍ତ ମାର ।
ରତ୍ନମୟେ କଟେକ ପଶିଣ ଜୁର କର ॥
ଶୁଣି ରିକ୍ଷ କପି ଶାଳ ବୃକ୍ଷ ଧରି ।
ଡେଇଂଣ ପଶିଲେ ସୁବର୍ଣ୍ଣ ପାଚେରୀ ॥
ଡାକନ୍ତି ଆରେ ଆରେ ଦଇତେ ଆଜ ମଲ ।
ରାବଣର ଲୋକରେ ସଭିଯେ କ୍ଷୟେ ଗଲ ॥
ଯେତେ ବୋଲି ରଡ଼ି ଛାଡ଼ନ୍ତି ଘନଘନ ।
ଚାରିଦ୍ୱାରେ ଯେ ପୂରିଲେ କପିସନ୍ୟ ॥
ବନ୍ଧ ଭାଙ୍ଗିଲେ ଯେହ୍ନେ ପଶଇ ବଢ଼ି ପାଣି ।
ବାଜିଲା ରଣଗୋଳ ପ୍ରଳୟ ସିନ୍ଧୁ ଜାଣି ॥୫୦
କେବଣ ଅସୁର କପିଙ୍କି ଧରି ମାରି ।
କେବଣ ରିକ୍ଷ କପି ଅସୁରକୁଂ ସଂଘାରି ॥
କେହୁ ମାଲ ଯୁଧ୍ୟ କରିଣ ଗଡ଼ାଗଡ଼ି
ହୋଇଯାନ୍ତି ।
କେହୁ ବିଧା କେହୁ ପାଦଘାତେ ମାରନ୍ତି ॥
ତଣ୍ଟି ଧରିଣ କେ ଛିଣ୍ଡାବନ୍ତି କାହାର ।
କେହୁ ବୁକୁ ବିଦାରିଣ ଅନ୍ତ କରନ୍ତି ବାହାର ॥
ରକତେ ଜରଜର କାହାର ହୋଅଇ ହାଥ ।
ଗୁରୁଜ ବାଡ଼ିରେ କାହାର ଭାଙ୍ଗିଲାକ ମାଥ ॥
କାହାର ଗୋଡ଼ମାନ ଧାମନ୍ତେ ପିଛଳିଲା ।
ନିସତେ ପଳାନ୍ତେ କେ ସାଂଗ୍ରାମେ ପଡ଼ି
ମଲା ॥୬୦
କାହାକୁ ଗୋଡ଼ାଇଂ କେ କଚାଡ଼ଇଂ ଧାଇଂ ।
ରଖ ବୋଲନ୍ତେ ଯେ ରଖନ୍ତା କେହି ନାହିଂ ॥
କେ କାହାର ପିଠିରେ ମାରନ୍ତି ନେଇଂ ନାତ ।
କାହାର ହୃଦରେ ମାରନ୍ତି ପାଦଘାତ ॥
ଘନ ଘନ ରଡ଼ି ଛାଡ଼ନ୍ତି କୋପଭରେ ।
କେ ମାଡ଼ି ପଡ଼ନ୍ତି ଯେକ ଆରେକ ଉପରେ ॥
ଦୁଇ ବଳର ଯେ ବାଜଇ ବାଦ୍ୟମାନ ।

ମୁଖ ରାବ ଶବଦ ଯେ ଶୁଭଇ ଘନଘନ ॥
ହନୁମନ୍ତ ପାଚେରୀ ଉପରେଣ ଥିଲା ।
ଗଡ଼ ଭିତରକୁ ସେ ଡେଇଁଣ ପଶିଲା ॥୭୦
ଧୂମଖେତ ଗଦା ଯେ ଧରିଅଛି କରେ ।
ଯାହା ସେ ବିଭୀଷେଣକୁ ମାଇଲା
ଦଶଶିରେ ॥
ସେ ଗଦା ଯେ ହନୁମନ୍ତ ଗଗନୁ ଘେନିଗଲା ।
ଗଦା ଘେନିକରି ଯେବେ ସମରେ ପଶିଲା ॥
ଯମ ଦେବତାର କି କାଳଦଣ୍ଡ କରେ ।
ଦେଖିଣ ଅସୁରେ ଯେ ପଳାବନ୍ତି ଡରେ ॥
ପାଞ୍ଚ ସେନାପତି ଯେକୁଂ ଯେକ ଯୋଧି ।
ବିଚିତ୍ର ସାଂଗ୍ରାମ ଜାଣନ୍ତି ସେ ବିଧି ॥
ମାହା ମେଘ ଜାଣି ବଢ଼ାଇଲା କାୟେ ।
ଶାର୍ଦ୍ଦୋଳ ପଲେ ବିକ୍ରମ ସିଂହ
ପ୍ରାୟେ ॥୮୦
ଅସୁରଙ୍କୁ ଧରି ଯେ କଚାଡ଼ନ୍ତି ଟୋଳି ।
କାହାକୁ ପାଦେ ଧରି କରନ୍ତି ମସି ଧୂଳି ॥
ହାଥୀକି ହାଥୀର ଉପରେ କଚାଡ଼ି ।
ରଥର ଉପରେ ନେଇଂ ଆରେକ ରଥ
ପାଡ଼ି ॥
ଅସୁରଙ୍କର ଚରଣ ଧରିଣ ବୁଲାବନ୍ତି ।
ଆରେକ ଅସୁର ଉପରେ ପକାନ୍ତି ॥
ପୟେକାର ସଇନି ଯେ ପଳାନ୍ତି ସେହୁ
ଡରି ।
ବହୁତ ଅନର୍ଥ କଲେକ ଲଙ୍କପୁରୀ ॥
ରାବଣ ଯେ ଆସ୍ତାନ କରିଣ ବସିଥିଲା ।
ଅଙ୍ଗଦ ଯହୁଂ ଉପର ଚାଳ ଘେନିଗଲା ॥୯୦
ସହସ୍ରେ ମାଳର ସେ ମୋଡ଼ିଲାକ ମୁଣ୍ଡ ।
ଦେଖି ଲଜ୍ଜା ପାଇଲା ଅସୁର କୁଳ ଷଣ୍ଢ ॥
ଇନ୍ଦ୍ରଜିତ ସହିତେ ଯେ ମନ୍ତ୍ରୀଗଣ ଥିଲେ ।
ଯେସନେକ ସମୟେ କପି କଟକରେ
ପଶିଲେ ॥
ଚାର ଜଣାଇଲା ଶୁଣିମା ଦଶାନନ ।
ଗଡ଼ ବେଢ଼ିଥିଲେ ଯେ ରିକ୍ଷ କପି ସନ୍ୟ ॥
ଶ୍ରୀରାମର ଆଗ୍ୟାଂରେ ସେ ଡେଇଂଲେ
ପାଚେରୀ ।

ନବରେ ପଶିଣ ଯେ କରନ୍ତି ହୁରି ଜୁରି ॥
ସମ୍ଭାଳ ଭଣ୍ଡାର ଯେ ପରଜା ଦେଶ ମାନ ।
ରିକ୍ଷ କପିଙ୍କି ଅସୁରେ ନୋହିଲେ
ସମାନ ॥୧୦୦
ଚାରିଦ୍ୱାରେ ଦେବ ରକତ ନଦୀ ବହେ ।
ପର୍ବତ ସମାନେ ମଡ଼ା କୁଢ଼ କୁଢ଼ ହୋୟେ ॥
ଶୁଣି ଲାଙ୍କରାୟେ ବିସ୍ମୟେ ବଦନ ।
ଇନ୍ଦ୍ରଜିତ କୁମର ଯେ ଅଛି ସନ୍ନିଧାନ ॥
ତାହାକୁ ବୋଇଲାରେ ତୋହୋର ଦ୍ୱାରକଇ
ରଖ ।
କେ କେ ପଶିଛନ୍ତି ତାହାକୁହିଂ ଦେଖ ॥
ମାର ରିକ୍ଷ କପି ନିସଂଶୟେ କରି ।
ସାମାନ୍ୟ ଭରସା କି ଡେଇଂଲେ ପାଚେରୀ ॥
ଭୟେ ନ କରି ସେ କଟକରେ ପଶିଲେ ।
ଅକାରଣେ ମୋହୋର ସଇନି ନାଶ
କଲେ ॥୧୦
ଯାସି ଇନ୍ଦ୍ରଜିତ ଯେ କଥାମାନ ବୁଝ ।
ଦୟା ନକର ବାବୁ ଓପ୍ରୋଧେ ନ ଯୁଝ ॥
ପ୍ରଶସ୍ତକୁ ବୋଇଲା ତୁହି ବେଗେ ଯାସି ।
ଶ୍ରୀରାମ ସଇନି ବେଗେ ପକା ନାଶି ॥
ଦକ୍ଷିଣ ଦ୍ୱାରକୁ ପମନ୍ତି ବେଗେ ଚାର ।
କରନ୍ତୁ ସାଂଗ୍ରାମ କିଛିହିଂ ନ ବିଚାର ॥
ଶୁଣି ଇନ୍ଦ୍ରଜିତ ପ୍ରଶସ୍ତ ବେନି ଗଲେ ।
ଥାଠ ଭିତରେ ଯାଇଂ ପ୍ରବେଶ ହୋଇଲେ ॥
ହନୁମନ୍ତକୁ ଦେଖି ଯେ ଇନ୍ଦ୍ରଜିତ ଖଙ୍ଗ ।
ରହୁବର ନେଇଂ ଯେ ଟେକିଲା ତାର
ଆଗ ॥୨୦
ଇନ୍ଦ୍ର ଗରୁଡ଼ କି ହୋଇଲେ ଭେଟାଭେଟି ।
ଦେଖି ହନୁମନ୍ତ ଯେ ଗଦା ଘେନି ପିଟି ॥
ଉଞ୍ଚ ପରବତେ କି ହୋଇଲା ବଜ୍ରଘାତ ।
କି ଅବା ଶୂନ୍ୟରୁ ପଡ଼ିଲା ନିର୍ଘାତ ॥
ଭାଙ୍ଗି ରହୁବର ହୋଇଲା ଖଣ୍ଡ ଖଣ୍ଡ ।
ଇନ୍ଦ୍ରଜିତ ସମ୍ଭାଳି ସେ ପାତିଲା ଭୁଜଦଣ୍ଡ ॥
ବାମକରେ ଗଦା ପଡ଼ିଲାକ ଯାଇଂ ।
ଦକ୍ଷିଣ କରେ ଗଦା ଧଇଲାକ ନିଠାଇଂ ॥
କୋପେ ଇନ୍ଦ୍ରଜିତ ତାକୁ ନାରାଚେ
ମାଇଲା ।

ଉଛୁଡ଼ି ମାରନ୍ତେ ତା ହନୁମନ୍ତ ନେଲା ॥୩୦
ଶୁକଳ ବର୍ଣ୍ଣ ଶରୀର ଦିଶଇ ଶସ୍ତ୍ରଫଳ ।
ରତ୍ନରେ ଜଡ଼ିଲା ଅଛଇ ପଛାମୂଳ ॥
କଟି ସଲଖରେ ସୁବର୍ଣ୍ଣ ଲେଖନ ।
ସାରଙ୍ଗ ଚଢ଼େଇର ପକ୍ଷୀ ବିତପନ ॥
ପାଟ ସୂତା ଘେନି ପହୀ ଅଛି ଛନ୍ଦି ।
ପୋୟେଲାର ମୁଗୁରି ଗୁଣେ ଦେଇ ବିନ୍ଧି ॥
ଗର୍ଜ୍ଜିଣ ବାଣ ଯେ ବେଗେ ଚଳିଗଲା ।
ତାରାକି ଯେ ସ୍ଥାନୁ ସେ ସ୍ଥାନେ ବସିଲା ॥
ଗଦା ଛେଦ ବୋଲି ଯେ ପେଷିଲାକ ପୁଣି ।
ଅମୋହ ଶହସ୍ରକୁ ବାଣ ପକାଇଲା
ହାଣି ॥୪୦
ଦୁଇ ଖଣ୍ଡ କରିଣ ବାହୁଡ଼ି ଅଇଲା ।
ଦେଖି ମେଘନାଦ କ୍ରୋଧେ ସଂହରିଲା ॥
ହନୁମନ୍ତ କରେ ଥିଲା ଯେଉଂ ଖଣ୍ଡ ।
ତାହା ଘେନି ପିଟିଲା କପିକୁଳ ଷଣ୍ଢ ॥
କୁମାର ଅଙ୍ଗରେ ପହୁଡ଼ିଲା ଭଗ୍ନ ଗଦା ।
ଘାୟେ ଘୁମାଇଲା ଯେ ଅସୁର କୁଳଯୋଦ୍ଧା ॥
ଉପୁଡ଼ିଣ ଅସ୍ତ୍ର ବାହୁଡ଼ିଣ ଯାଇଂ ।
ଆରେକ ଖଣ୍ଡ ହନୁମନ୍ତ ମାଇଲା ନିଠାଇଂ ॥
ଦୁଇ ଖଣ୍ଡ ଭେଟାଭେଟି ହୋଇଂ
ଅଧବାଟେ ।
ଯେକ ଖଣ୍ଡ ହୋଇ ଗଲେ ସୁରଗାସ୍ତ୍ରେ ॥୫୦
ଦେଖିଣ ବିଧାତା ଯେ ଅନେକ ପୂଜା
କଲା ।
ପ୍ରସନ ହୋଇ ପୁଣ ପବନକୁ ଦେଲା ॥
ନିଜ ଶସ୍ତ୍ର ପାଇଂ ପବନ ମହାବଳୀ ।
ବୋଇଲା ଶ୍ରୀରାମ ଯେ ପାରିବେ ଦତ୍ୟ
ଦଳି ॥
ଯେହି ଗଦାରେ ଯେ ରାବଣ ଶିରୀ ଥିଲା ।
ଅସମୟେ ନୋହିଲେ କି ଯେ ଶହସ୍ର
ଛାଡ଼ିଲା ॥
ଶ୍ରୀରାମ ସୁମରି ସବୁ ଦେବତାୟେ ହୋଇଲେ
ସନ୍ତୋଷ ।
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ ॥
ହନୁ ଇନ୍ଦ୍ରଜିତ ସେ ଶହସ୍ର ଗଲାର ଚାହିଂ ।

ରଣ ଛାଡ଼ି ଦୁହେଁ ରହିଲେ ଛନ୍ନ
ହୋଇଂ ॥୬୦
ହନୁ ବୋଇଲା ଯେ ଅଟଇ ବିପରୀତ ।
ଦେବଙ୍କର ଶହସ୍ର ଯେ ବହନ୍ତି ଦଇତ୍ ॥
ଓପ୍ରୋଧେ ଦେଇଥାଉଂ ଅନ୍ତକାଳେ
ନେଲେ ।
ଭଲା ଦେବତାଯେ ଜାଣି କାର୍ଯ କଲେ ॥
ଯେତେ ବୋଲି ସଙ୍ଗେ ଚାରିବୀର ଘେନି ।
ପବନହୁଂ ବେଗେ ଯେ ଧାଇଂଲେ
ପାବେନୀ ॥
ଭଗ୍ନ ରଥେ କୁମର ଯେ ମେଘନାଦ ଥିଲା ।
ଯେହାଙ୍କର ଆସନ୍ତେ ସେ ଚିତ୍ରଗତି କଲା ॥
ମତ୍ତଗଜ ଉପରେ ଯେ ଆରୋହିଲା ଯାଇଂ ।
ଦୃବିନ୍ଦ ଗୁରୁଦାୟେ ମାଇଲାକ ନେଇଂ ॥୭୦
ହସ୍ତୀର ପେଟରେ ଯେ ପଶିଲା ହସ୍ତ ତାର ।
ତୋଳି ବୁଲାଇଲା ପବନ ଆକାର ॥
ଡେଇଂ ଇନ୍ଦ୍ରଜିତ ଆନ ଗଜେ ବସି ।
କରିବର ବେଗେ ବିକ୍ରମିଣ ଆସି ॥
ଦେଖି ଥୋର ହସ୍ତ ଧରି ପଛକୁ
ଛାଟିଦେଲା ।
ଜାଣି ଇନ୍ଦ୍ରଜିତ ବେଗେ ଆଡ଼ ହୋଇଲା ॥
ଭୂମିରେ ମିଳିଲା ଯେ ବାମକରେ ଧନୁ ।
ଦେଖି ପଲାସିଣ ଝାସିଲା ବୀର ହନୁ ॥
ମେଘନାଦ ଭୟେ କରି ପଛକୁ ଗଲା ଘୁଞ୍ଚି ।
ମହୀନ୍ଦ୍ର ବିଧାୟେ ମାଇଲା ନେଇ ସଞ୍ଚି ॥୮୦
ବଞ୍ଚାଇଲା ଅସୁର ତା ଅଙ୍ଗଡ଼ାଳ ଦେଇ ।
ବସନ୍ତ ସେନାପତି କୋପ ମୁଖେ ଧାଇଂ ॥
ପାଞ୍ଚେହେଂ ବେଢ଼ିଲେ ଯେ ମଧ୍ୟେ
ଇନ୍ଦ୍ରଜିତ ।
ମେଘ ଭିତରେ ଯେହ୍ନେ ଲୁଚଇ ଆଦିତ୍ୟ ॥
ଅଙ୍ଗ ଡାବ ଖଣ୍ଡା ଘେନିଣ ବେଗେ ମାରି ।
ଧାଇଂଣ ଦୃବିନ୍ଦ ଦୁଇ ହାଥେ ଧରି ॥
ଛଡ଼ାଇ ଘେନିଣ ଯେ ପକାଇଲା ଭାଜି ।
ଯମ କରଣ କି ପୋଛିଲା ତାର ପାଞ୍ଜି ॥
ପୁଣିହିଂ ଦେଖିଲା ଯେ ପାଇଲା ଯହୁଂ
ଭୟେ ।

ବୋଇଲା ରିକ୍ଷ କପି ସବିହେଂ
ବିସ୍ମୟେ ॥୯୦
ଯେସନେକେ ସମୟେ ଅଙ୍ଗଦ ଥାଠ
ଘେନି ।
ଲଙ୍କାରେ ବିଧଂସଇ ଅନେକ ସଇନି ॥
ପାରୁଶ ମହୋଦର ଯେ ରାବଣ ବେନି
ପୁତ୍ର ।
ଦକ୍ଷିଣ ଦ୍ୱାରକୁ ଯେ ପେଷିଲା ତାହାନ୍ତ ॥
ଅଙ୍ଗଦର ସଙ୍ଗେ ସେ କଲେ ମହାରଣ ।
ଶ୍ରାବଣ ବରଷା ଜାଣି ବିନ୍ଧନ୍ତି ତୀକ୍ଷବାଣ ॥
ତାରାଗଣ ଜାଣି ସେ ବିନ୍ଧନ୍ତି ନାରାଜ ।
ଦେଖି ବେଗେ ଧାଇଂଲା ବାଳୀର ଆତ୍ମଜ ॥
ଓଶସ୍ତ ବୃକ୍ଷ ଉପାଡ଼ି ବେଗେ ଧରି ।
ଧରି ଫୋପଡ଼ାଇଲା ଟେଳା ମତି
କରି ॥୧୦୦
ଥୋକାୟେକ ସଇନ ହୋଇଲେ ତହିଂ
ହତ ।
ଶଉରୀ ସେନାପତିଙ୍କର କଥା ଅପ୍ରମିତ ॥
ଜାମ୍ବୁଗଛ ଉପାଡ଼ି ମାଇଲାକ ବଳ ।
ମନ୍ଦର ପର୍ବତ କି ଘୋଟିଲା ମହାଜଳ ॥
ଓପ୍ରୋଧ ଛାଡ଼ିଣ ସେ ମାରନ୍ତି କୋପଭରେ ।
ଅନେକ ଅସୁର ଯେ ପଡ଼ିଲେ ସମରେ ॥
କେଶରୀ ଡାଳିମ୍ବ ଦଧିମୁଖ ତିନି ।
ପାଞ୍ଚ ଜଣ ହୋଇଲେ ଅଙ୍ଗଦକୁ ଘେନି ॥
ଛାଗଳ ପଲେକ ସିଂହ ଖେଦା ଖେଦି ।
ରଣରଙ୍ଗ ସ୍ଥାନେ ବହଇ ରକତ ନଦୀ ॥୧୦
ମାର ମାର ଶବଦ ଯେ ଶୁଭଇ ଚଉପାଶ ।
ଲଙ୍କାର ନରନାରୀ ମନରେ ମହାତ୍ରାସ ॥
ସପନ ଦେଖିଲା ପ୍ରାଏକ ମଣୁଛନ୍ତି ।
ଅପୂର୍ବ ଦେଖିଣ ସେ କଥା ନ କହନ୍ତି ॥
ଉର୍ଦ୍ଧ୍ୱ ନିଶ୍ୱାସରେ ଅଣ୍ଟାରେ ହାଥ ଦେଇ ।
ଥମ୍ଭୀଭୂତ ହୋଇଂ ଯେକ ଆରେକ କଥା
କହି ॥
କେ ବୋଲଇ ରାବଣ ଆବର କେଣିକି
ଯିବ ।
ଅକାରଣ କଥାରେ ନିଶ୍ଚୟେ ମରିବ ॥

ବାବୁ ବିଧାତା ଯେହା ସେ ସମ୍ପାଦିଲୁ ।
ଅକଣ୍ଟେକ ପୁରୀ ବାନରେ ବିଧ୍ୱଂସିଲୁ ॥୨୦
ଦେଖିଲା ନ ଥିଲା ଶୁଣିଲା ନାହିଂ କର୍ଣ୍ଣେ ।
ରାବଣକୁ ଜିଣିମେ ରକ୍ଷ କପିମାନେ ॥
ଭଲା ବିପୁରୀତ ହୋଇଲା ଆରେ ଆଜ ।
ଅକାରଣେ ମୋଡ଼ାୟେ ମଜ୍ଜିଲେ ମହାରାଜ୍ୟ ॥
ଭୟେ ଭୀତି ନାହିଂ କପି ନିଲକ୍ଷଣ ।
ମାନେବ ଶରୀର ତ ପୁଣି ଦୁଇ ଜଣ ॥
ଉଶ୍ୱାସି କହନ୍ତେଣ ଆକ୍ରଷିଲେ ଆସି ।
କେ ବୋଲଇ ମାରରେ ସାଂଗ୍ରାମରେ ପଶି ॥
କୋନ୍ତ ଧରିଣ କେ ମାରନ୍ତି ଅତି ବେଗେ ।
ଉଠି ଯୁଦ୍ଧ କରନ୍ତି ରକ୍ଷ କପି ସଙ୍ଗେ ॥ ୩୦
ପୃଥିବୀ କମ୍ପଇ ଧାଇଂମାର ଗତି ।
କଦଳୀ ବନ କି ଭାଙ୍ଗନ୍ତି ମତ୍ତହସ୍ତୀ ॥
ହୁଳହୁଳି ଶବଦ ଆକାଶ ମାର୍ଗେ ପୁରେ ।
ପୃଥିବୀ ଟଳମଳ କପିଙ୍କର ପାଦଭରେ ॥
ପ୍ରଳୟ କାଳେ ଯେହ୍ନେ ସଂସାର ବିନାଶ ।
ଦେଖିଣ ଅସୁରେ ଯେ ପାଇଂଲେ ମହାତ୍ରାସ ॥
କଷୋର ମାରେଣି ଯେ ବିକଟାଳ ରଡ଼ି ।
କେ ଅନ୍ତ ଲୋଚାୟେ ଯେ ଗଳାରେ ଛନ୍ତି
ଭରି ॥
କେହୁ କନ୍ଧରେ ମୃତ୍ତୁପିଣ୍ଡ ଧରି ଧାଇଂ ।
ମୋଡ଼ିଣ ମୁଣ୍ଡକେ ଧରିଣ ଫିଙ୍ଗି
ଦେଇଂ ॥୪୦
ଶୟେ କୁଣ ଲଙ୍କା ଯେ ପୂରିଲେ ରିକ୍ଷ ହରି ।
ଘରେ ଘରେ ପୁରେ ପୁରେ ଅଛନ୍ତି
ବିଜେକରି ॥
ପୂର୍ବଦ୍ୱାର ଲୋକେ ଦଖିଣକୁ ଗଲେ ।
ଉତ୍ତର ସଇନି ପଶ୍ଚିମେ ମିଳିଲେ ॥
ଚାରିଦ୍ୱାର ଲୋକେ ମିଳି ଯେକ ହୋୟେ ।
ସବୁଙ୍କରି ଶରୀର ହୋଇଲା ରକ୍ତମୟେ ॥
ଅଙ୍ଗଦ ଶତବଳ ଶଉରୀ ଦଧିମୁଖ ନଳ ।
ସୁଗ୍ରୀବର କେଶରୀ ଡାଳିମ୍ବ ବୀର ନୀଳ ॥
ଗନ୍ଧମାରଦନ ରମଣ ତାରାକ୍ଷ ।
କାଳିମୁଖ କାଳିଞ୍ଜନ ଗବୟେ ଗବାକ୍ଷ ॥୫୦
ବଳିମୁଖ ଚନ୍ଦନ ଶରସେତୁ ବୀର ।

ରଣ ରଙ୍ଗେ ଅସୁରନ୍ତ କଲେ ନାରଖାର ॥
ପଶ୍ଚିମ ଦ୍ୱାରେ ଯେ ମିଳିଲେ ବୀରେ
ଯାଇଂ ।
ଦେଖିଲେ ଇନ୍ଦ୍ରଜିତ ସାଂଗ୍ରାମେ ଅଛି ରହି ॥
କରେ ଧନୁ ଧରି ବିକରାଳ ମୁଖ ।
ନାରାଚ ପୂରାଇଂ ଅଛଇ ମହାତୀକ୍ଷ ॥
ହନୁମତ ସାରାସ ଦୃବିନ୍ଦ ପାରାସ ।
ବେଢ଼ି ମାରିଲେକ ଅସୁରର ପାଶ ॥
ମହୀନ୍ଦ୍ର ମାହାବୀର ଲିମ୍ବବୃକ୍ଷେ ଧରି ।
ଉପାଡ଼ି ଧାଇଂଲା ଯେ ଶୀଘ୍ର ଗତି କରି ॥୬୦
ଦେଖି ଇନ୍ଦ୍ରଜିତ ଯେ ପେଷିଲାକ ନାରାଚ ।
ଛେଦିଲାକ ବୃକ୍ଷ ଯେତେ କପିରାଜ ॥
ଧାଇଂଣ ବିଧାୟେକ ଯେ ମାଇଲାକ
ନେଇଂ ।
ପଞ୍ଚଶ ଯୂଥପତି ଲାଗିଲେ ବୋବିଦେଇଂ ॥
ପାଦେ ପହୁଡ଼ଇ କେଂ ଗୁରୁଦାୟେ ମାରି ।
କେହୁ ବୃକ୍ଷ ଧରି ପିଟନ୍ତି ଆଗସରି ॥
ମେଘନାଦ ବଞ୍ଚାଇଲା ଯେ ବିବିଧ ଗତି
ଦେଇଂ ।
କୋପେ ବାଳୀସୁତ ଧଇଲାକ ଯାଇଂ ॥
ହନୁମନ୍ତ ଆସି ଧଇଲାକ ଧନୁ ।
ଶୂନ୍ୟ ହସ୍ତ ହୋଇ ଗଲା ରାବଣର
ତନୁ ॥୭୦
ବିଧାୟେ ମାଇଲା ନେଇ କିଷ୍କିନ୍ଧାର ପତି ।
ଅଙ୍ଗ ଢାଳି ଦଇତ ଗଲାକ ଚିତ୍ରଗତି ॥
ଶୀଘ୍ରେ ଇନ୍ଦ୍ରଜିତ ଆସି ମିଳିଲା
ଦେବରଥ ।
ତହିଂ ଆରୋହିଲା ଯେ ରାବଣର ସୁତ ॥
ସହସ୍ରେକ ଅଶ୍ୱ ଯୋଚିଅଛି ଯାନେ ।
ମନ୍ତ୍ରବଳେ ଚଳଇ ସେ ସାରଥି ବିହୁନେ ॥
ଦିଗ ଦହନ ଚିରାଳ ଯେ ଉଡ଼ଇ ଗଗନେ ।
ଦେବତାୟେ ଭୟେ କରନ୍ତି ଦେଖି ମନେ ॥
ଯାହା ଦେଖିଣ ଯେ କମ୍ପଇ ବଜ୍ରଧର ।
ସେ ରଥ ଆସି ମିଳିଲା ଇନ୍ଦ୍ରଜିତ
ଛାମୁର ॥୮୦
ତହିଂ ବସି ବୀର ଯେ ହୋଇଲାକ ସୁସ୍ଥ ।

ପିଠି ଆଡ଼େ ମିଳିଲେ ଦଶ ସହସ୍ର ମହାରଥ ॥
କାକାକ୍ଷ ଜୁଳୁପାକ୍ଷ ଅମୟେ ମୁରାସୁର ।
ପ୍ରଶସ୍ତ ଧୂମାକ୍ଷ ବିକଟ ମହୋଦର ॥
ପାରୁଶ ମହୀରାବଣ ବିସ୍ମୟେ ଅତିକାୟେ ।
କଙ୍କ ଧଙ୍କ ସିଙ୍ଘ ତୁରଙ୍ଗ ବେଗେ ଆଏ ॥
କାକାସୁର ବାକାସୁର ପ୍ରଚଣ୍ଡ ପ୍ରହ୍ଲାଦ ।
ବଜ୍ରମୁଷ୍ଟି ଧୂଧଂସ ଦେବଦତ୍ତ ସାଧ୍ୟ ॥
ଗୁଣ ଟଙ୍କାର କରି ନାରାଚ ପେଷିଲେ ।
ଶୂନ୍ୟ ପଥ ଗୋଟା ଯେ ନାରାଚେ
ରୁନ୍ଧିଲେ ॥୯୦
ସ୍ୱର୍ଗେ ଦେବତାୟେ ହୋଇଲେ ବିଷାଦ ।
ଅପୂର୍ବ ଯୁଦ୍ଧ ହାଦେ କଲାକ ମେଘନାଦ ॥
ଶ୍ରୀରାମର ସନ୍ୟକୁ ଆକ୍ରେଷିଲା ଯହୁଂ ।
ଅଙ୍ଗଦ ଦେଖିଣ ଧାଇଂଲାକ ତହୁଂ ॥
ତାହାର ପଛରେ ଦୃବିନ୍ଦ ହନୁମନ୍ତ ।
ଯେହାଙ୍କର ପିଠିରେ ଯେ ଅଛନ୍ତି ତାରାକାନ୍ତ ॥
ମୁକୁଳା ମତ୍ତଗଜ ପ୍ରାୟେକ ଦିଶନ୍ତି ।
ଦେଖିଣ ଦଇତେ ନାରାଚ ପେଷନ୍ତି ॥
ପାଏ ନ ଘୁଞ୍ଚନ୍ତି କପିକୁଳ ମଲ୍ଲ ।
ମନ୍ତ୍ରି ଇନ୍ଦ୍ରଜିତ ମାଇଲାକ ଭାଲ ॥ ୧୦୦
ଶଉରୀ ସେନାପତି ଧଇଲାକ ଯାଇଂ ।
ସେହି ଅସ୍ତ୍ର କୋପେ ଯେ ମାଇଲା ନିଠାଇଂ ।
ଦେଖି ମେଘନାଦ ପ୍ରତି ଅସ୍ତ୍ର କରି ।
ଛେଦି ପକାଇଲା ବାବଲ ସୁମରି ॥
ତେଇଂ ହନୁମନ୍ତ ବସିଲା ତାର ରଥେ ।
ବଜ୍ର ସମାନ ପଥରେକ ଧରିଅଛି ହାଥେ ॥
ଇନ୍ଦ୍ରଜିତକୁ ମାଇଲା ଗରୁତର କୋହେ ।
ବଜ୍ରେ ନିବାରିଲା ତାହା ରାବଣର ପୋୟେ ॥
ବାହୁଡ଼ି ହନୁମତ ଭୂମିରେ ଆସି ମିଳି ।
ବ୍ୟାଘ୍ର ଦେଖିଲେ ଯେହ୍ନେ ପଳାବନ୍ତି ଛେଳି ॥
ଅସୁର ସଇନି ଯେ ହନୁମତକୁ ଦେଖି
ତ୍ରାସି ।
ସୁଗ୍ରୀବର ରାୟେ ଯେ ରଣରଙ୍ଗେ
ପଶି ॥୧୦
ଶାଳବୃକ୍ଷ ଧରି ମାରଇ ପୁଣି ପୁଣ ।
ପ୍ରାଣ ଛାଡ଼ି ଦଇତେ ଲୋଟନ୍ତି ଧରଣୀ ॥

ଯେକ ପ୍ରହାରକେ ଯେ ସଇନି ନିବାରି ।
ପୁଣ ପୁଣ ତରୁବର ପେଷଇ କୋପ କରି ॥
ହନୁମତ ହିଂ ଯେସନ ସଂଘାତେ ବଳ
ମାରି ।
ଯେକାବେଳକରେ ଦଶବିଂଶହିଂ ପ୍ରହାରି ॥
ଅଙ୍ଗଦ ଯୁଝଇ ଯେସନେକ ପରକାରେ ।
କେଶରୀ ମହିମା ଯେ କହିଲେ ନ ସରେ ॥
ବେଲ ବୃକ୍ଷ ଧରିଣ ଧାଇଂଲାକ ଯହୁଂ ।
ସାଂଗ୍ରାମ ଛାଡ଼ି ଦଇତେ ପଳାଇଲେ
ତହୁଂ ॥୨୦
ବାଳିମୁଖ କାଳିମୁଖ ଦଧିମୁଖ ତିନି ।
ରଣେ ପଶିଲେ ଯେ ଶାଳଶିଳ ଘେନି ॥
ଗବୟେ ଗବାକ୍ଷ ତାରାକ୍ଷ ଶତବଳ ।
ପବନ ମହୀନ୍ଦ୍ର ଅଟନ୍ତି ପନଶିଳ ॥
କଞ୍ଚନ ଶରସେତୁ ଡାଳିମ୍ବ ଚନ୍ଦନ ।
ସୁନାସ ପାରିଜାତେକ ଗନ୍ଧମାଦନ ॥
କୁମୁଦ ଶତବଳ ଶଉରୀ ସେନାପତି ।
ଅସୁରଙ୍କର ସଇନି ଯେ ମାରନ୍ତି ବିକୋଟି ॥
ଝାଳ ରକତରେ ହୋଇଲେ ସବୁ ମିଶା ।
ସୁରଙ୍ଗବଦନ ରକତେ ଶ୍ରୀଭୂଷା ॥୩୦
ଯହୁଂ ସେ ଅସୁର ବଳ ଭାଙ୍ଗୁଣି ପାଇଲେ ।
ପ୍ରହସ୍ତ ସେନାପତି ଆଶ୍ରକେ ରହିଲେ ॥
ଥାଠ ସମ୍ଭାଳିଣ ଯେ ଅନେକ ଯୁଦ୍ଧ କଲା ।
ତୁଷାର ବୃଷ୍ଟି ଜାଣି ନାରାଚ ମାଇଲା ॥
ଘଡ଼ଘଡ଼ି ପ୍ରାୟେକ କରଇ ଗୁଣନାଦ ।
ନାରାଚ କରନ୍ତେ ଯେ ବିଜୁଳି ମହାନାଦ ॥
ଡାକି ନାରାଚ ଯେ ବିନ୍ଧିଲାକ ପୁଣି ।
ବରଷାର ପ୍ରାୟେକ ନାରାଚ ବିନ୍ଧଇ
ମନେଗୁଣି ॥
ତାହା ଦେଖି ନୀଳ ଯେ କୋପେଣ
ଧାଇଂଲା ।
ନୀଳର ଧାମନ୍ତେ ଦଇତ ଚାହିଂଲା ॥
ଅତି ବଡ଼ ପଥରେକ ମାଇଲାକ ନେଇଂ ।
ଦଇତର ହୃଦରେ ବାଜିଲାକ ଯାଇଂ ॥
ରକତ ଉଦ୍‌ଗାରି ଛାଡ଼ିଲାକ ପ୍ରାଣ ।
ଧରଣୀରେ ପଡ଼ିଲାକ ରଘୁବର ତେଜିଣ ॥

ଦେଖିଣ ଦୁର୍ଦ୍ଧକ୍ଷ ଧାଇଂଲାକ ତଡ଼ତି ।
ହନୁ ତାହାକଇ ଦେଖି ଓଗାଳିଲାକ ଧାତି ॥
ପଥରେକ ଧରି ମାଇଲାକ ତଡ଼ତି ।
ଦେଖିଣ ଦୁର୍ଦ୍ଧକ୍ଷ ମାଇଲା ସୁସଞ୍ଚ ବାଣ ମୁର୍ତ୍ତି ॥
ହନୁମନ୍ତ ଦେଖି ତାହା ମନରେ କୋପ
ବହି ।
ରୋଷେ ଧାଇଂଲା ସେ ପବନ ତନଈ ॥୫୦
ରାଗେଣ ମାରୁତି ଯେ ଟାପୋଡ଼େ ମାଇଲା ।
ରଥ ଭାଙ୍ଗିଯାଇ ଯେ ଦୁର୍ଦ୍ଧକ୍ଷହିଂ ପଡ଼ି ମଲା ॥
ବଜ୍ରମୁଷ୍ଟି ସଇନି ମାଇଲା ବିକୋତି ।
ଦୃରୁହୁଂ ଉଗାଳିଲା କିଷ୍କିନ୍ଧାର ପତି ॥
ତାଳ ବୃକ୍ଷେକ ଧରି ଅଛି କରେ ।
ଦେଖି ବଜ୍ରମୁଷ୍ଟି ଛେଦିଲା ତୀକ୍ଷଶରେ ॥
କୋପେ ସୁଗ୍ରୀବର ଯେ ପେଷିଲାକ ଶିଳ ।
ରଥ ଭାଙ୍ଗିଯାଇଂ ଦଇତ ପଡ଼ିଲାକ ତଳ ॥
ପ୍ରାଣଗଲା ସେ ଯେ ପାର୍ଥିବ ଦେହ ଛାଡ଼ି ।
ଅନେକ ବାନର ଯେ ପଡ଼ିଲାକ ମାଡ଼ି ॥୬୦
ସିଂହନାଦ ଦେଇଂଣ ସେ କିଷ୍କିନ୍ଧାର ରାୟେ ।
ଅସୁର ସଇନି ସେ ମରଦଇ ପାୟେ ॥
କାହାକୁ ବିଧାୟେ କାହାକୁ ନାତେ ମାରି ।
କାହାକୁ ଫିଙ୍ଗିଦେଇ ଟେଙ୍କାମତି କରି ॥
କାହାର ବାଳ ଧରିଣ କଚାଡ଼ଇଂ ।
ଯେକର ଉପରେ ଆରେକ ତାଡ଼ଇ ॥
ଦେବେ ପ୍ରଶଂସା କରନ୍ତି ସ୍ୱର୍ଗପୁରେ ଥାଇଂ ।
ଧନ୍ୟ ଧନ୍ୟ କ୍ଷତ୍ରୀ ତୁ ରିକ୍ଷ କପି ସାଇଂ ॥
ରଣଗୋଳ କରି ଯେଣେ ଚଳଇ ସୁଗ୍ରୀବର ।
ପିଠିକି ରକ୍ଷା ଅଛି ପବନକୁମାର ॥ ୭୦
ଡାହାଣେ ଅଙ୍ଗଦ ବାମେ ନଳନୀଳ ।
ଶଉରୀ ସେନାପତି କୁମୋଦ ପନଶିଳ ॥
ଯେ ଯାହାର ସୁଖେ ଯେ କରନ୍ତି ସାଂଗ୍ରାମ ।
ଯାହାକୁ ଭେଟନ୍ତି ସେ ଯାଇ ଯମଗ୍ରାମ ॥
ଅତି ପ୍ରବଳ ହୋଇଲେ ଯହୁଂ ବୀରେ ।
ଦୃଧଂସ ଧାଇଂଲା ଧରିଣ ମୁଦ୍‌ଗରେ ॥
ଦେଖିଣ ଦୃବିନ୍ଦ ଯେ ଓଗାଳିଲାକ ଯାଇଂ ।
ଦୁହେଂ ଭେଟାଭେଟି ନ ଯୁଝିଲେ କେହି ॥
ଶାଳତରୁ ଯେକ ଦୃବିନ୍ଦ ଘେନିଥିଲା ।
ଦୃଧଂସ ଉପରେ ନେଇଣ ପିଟିଲା ॥ ୮୦
ସେ ତାହା ଓହାଡ଼ି ଯେ ସହିଲା ଦେହ
ଦେଇ ।
ଅଙ୍ଗେ ବାଜି ବୃକ୍ଷ ଗଲାକ ଚୂର୍ଣ୍ଣ ହୋଇ ॥
ଡାଳମାନ ବାଜି ବହିଲା ରକତ ।
ରାଗେଣ ଉପରକୁ ଡେଇଂଲା ଦଇତ ॥
ଯେବଣ ଆଉଧ କରେଣ ଘେନିଥିଲା ।
ଦୃବିନ୍ଦ ଉପରେ ନେଇ ପହୁଡ଼ିଲା ॥
ଦେଖିଣ କପିବୀର ପାତିଲାକ ମୁଣ୍ଡ ।
ବାଜି ମୁଦ୍‌ଗର ହୋଇଲା ମସିଖଣ୍ଡ ॥
ଦେଖିଣ ଦଇତ ହୋଇଲା କମ୍ପମାନ ।
ବୋଇଲେ ସମରକୁ ଯେ ନୋହଇ
ସମାନ ॥୯୦
ଯେତେ ବୋଲି କୋପେ ଧାଇଂଲା ଶୂଳ
ଘେନି ।
ଦୃବିନ୍ଦ ଓହାଡ଼ିଲା ପଡ଼ିଲା ମେଦନୀ ॥
ଧାଇଂ କପିବୀର ସାଉଂଟିଲାକ ତାହା ।
ଦଇତକୁ ମାଇଲା ତୋଳିଣ ବେନି ବାହା ॥
ଦୃଧଂସ ଉପରେ ପଡ଼ିଲା ଶୂଳ ଯାଇ ।
ସର୍ପ ଯେହ୍ନେ ଗାଡ଼ରେ ପଶଇ ପଳାଇଂ ॥
ବୁକୁ ଫୁଟି ପିଠିରେ ହୋଇଲା ବାହାର ।
ଦେହଛାଡ଼ି ପ୍ରାଣ ଗଲାକ ତାହାର ॥
ଦେଖି ଇନ୍ଦ୍ରଜିତର ନ ପୁରଇ କିଛି ।
ଯେସନେକ ସମୟେ ଯେ ଦଶରଥ
ବଛି ॥୧୦୦
ଶତବାଳିକି ବୋଇଲେ ତୁ ବହନ ହୋଇ
ଯାସି ।
ଆମ୍ଭର ସଇନକୁ କଡ଼ାଇ ଆଣସି ॥
ବେଳ ଅସ୍ତକାଳ ଆସିଣ ହୋଇଲା ।
ରହୁ ଆଜ ରଣ ଶ୍ରୀରାମ ଆଗ୍ୟାଂ ଦେଲା ॥
ସନ୍ଧ୍ୟା ସୁମରିବା ସୁବଳୟାକୁ ଯିବା ।
ଏକାଦିନକେ କି ଶତ୍ରୁକୁ ଜିଣିବା ॥
ବିଚାରିଣ କାର୍ଯ୍ୟ କରିବା ଉଚିତ ।
ସମାନ୍ୟ ଛତ୍ରୀ ଯେ ନୋହଇ ଇନ୍ଦ୍ରଜିତ ॥
ନାମ ଶୁଣି ତିନି ଭୁବନ ଭୟେ କରି ।
ଭୟେ ଇନ୍ଦ୍ରରାଏ ବଜ୍ରହିଂ ନ ଧରି ॥୧୦
କେଉଂ ଯୋଗେ ମୃତ୍ୟୁ ପାଇବ ଯେତେ
ବୀର ।
ଯାସି ଶତବାଳି ସନ୍ୟକୁ ହକାର ॥
ଶ୍ରୀରାମର ବଚନେ ଯେ ଗଗନେ
ବିକ୍ରମିଲା ।
ଅନ୍ତରୀକ୍ଷେ ଥାଇ ସନ୍ୟକୁ ଡାକିଲା ॥
ଆହୋ ରିକ୍ଷ କପି ତୁମ୍ଭକୁ ଶ୍ରୀରାମର ଆଗ୍ୟାଂ
ପୁଣ ।
ଆଗ୍ୟାଂ ଦେଲେ ହାଦେ ମୋହୋର ବୋଲ
ଶୁଣ ॥
ମୁହିଂ ଯେ ଶତବାଳିଂ ଆସିଅଛି ନେଇଂ ।
ଆଜର ରଣ ଆଉ ନ କରିବା କେହି ॥
ସନ୍ଧ୍ୟା ସୁମରିବେ ରଘୁକୁଳ ନାଥ ।
କାଲି ରାତ୍ର ପାହିଲେ ଯେ ଛେଦିବେ
ଦଶମାଥ ॥୨୦
ଆହୋ ବୀରମାନେ ସୁଗ୍ରୀବର ରାୟେ ।
ଆସିବ ସମର ଛାଡ଼ି ଶ୍ରୀରାମ ଆଗ୍ୟାଂ ଦିୟେ ॥
ଆହୋ ହନୁମନ୍ତ ଅଙ୍ଗଦ ତୁମ୍ଭେ ଶୁଣ ।
ରାଘେବ ବୋଇଲା ତୁମ୍ଭେ ନକର ଆଜ
ରଣ ॥
ବାହୁଡ଼ା ବିଜୟେ କରିବେ ଦାଶରଥି ।
ରିକ୍ଷ କପି ଗୋଟିୟେ ନ ଥିବ ଆଉ ଯେଥି ॥
ଶୁଣି ସୁଗ୍ରୀବର ଅଙ୍ଗଦ ଅନୁମତ ।
ରହ ରହ ବୋଲି ଡାକିଲେ ସଇନନ୍ତ ॥
ସେନା ସେନାପତି ମଲ ମହାମଲ ।
ବୀର ମହାବୀର ବୋଲନ୍ତି ଚାଲ ଚାଲ ॥୩୦
ଗଗନେ ପକ୍ଷୀ ପ୍ରାୟେ ହୋଇଂଣ
ଉଡ଼ିଗଲେ ।
ଲଙ୍କାର ଭିତରେ କେହି ଗୋଟିୟେ ନ
ରହିଲେ ॥
ଯେଉଂ ଯେଉଂ ଦ୍ୱାରେ ଯେତେକ
ପଶିଥିଲେ ।
ସେହି ବାଟେ ସମସ୍ତେ ବାହାର
ହୋଇଗଲେ ॥
ଅମଙ୍ଗଳ କରି ଗଲେକ ଲଙ୍କପୁରୀ ।
ଶତବାଳି ବାହୁଡ଼ି ଭେଟିଲେ ଚାପଧାରୀ ॥

ଶିରେ କର ଦେଇଂ ବୋଇଲା ଦେବ ଶୁଣ ।
ଯାହା ସେ ଦେଖିଲି ଦେବ ଅପୂର୍ବ ମହାରଣ ।
ଲଙ୍କାଗଡ଼ ଯାକ ମଡ଼ା ପଡ଼ିଅଛି ।
କ୍ରୀଡ଼ା କରୁଛନ୍ତି ଶ୍ରିକାଳ ଗୃଧ ପକ୍ଷୀ ॥୪୦
ସୁଗ୍ରୀବର ହନୁମନ୍ତ ଯେ ଅଙ୍ଗଦ ନଳ ନୀଳ ।
ଯେହାଙ୍କରେ ଧ୍ୱଂସ ଯେ ହୋଇଲା ଦତ୍ୟବଳ ॥
ମୋହୋ ନ ଗଲେ ନ ଆସନ୍ତେ ଆଜ ।
ଶୁଣି ପରମ ସନ୍ତୋଷ ହୋଇଲେ ରାମରାଜ ॥
କଥା କହୁଂ କହୁଂ ଦିଶିଲାକ ବଳ ।
ବୀରତୂର ଶବଦ ଯେ ଶୁଭଇ ଚହଳ ॥
ହନୁମତ ଅଙ୍ଗଦ ଅଇଲେ ଯେକ ହୋଇଂ ।
ପୂର୍ବ ଦ୍ୱାରୁ ଅଇଲା କିଷ୍କିନ୍ଧାର ସାଇଂ ॥
ଛତ୍ର ଚିରାଳ ଯେ ଆଲମ୍ବ ବୀରନେତ ।
ସବୁଙ୍କରି ଶରୀର ସର୍ବାଙ୍ଗ ରକତ ॥୫୦
ଶ୍ରୀରାମ ଚରଣେ ଆସି ନମସ୍କାର କଲେ ।
ଦେଖି ରଘୁନାଥ ଉଠ ଉଠ ବୋଇଲେ ॥
ଉଭା ହୋଇଂଣ ସେ ଯୋଡ଼ନ୍ତି ବେନିକର ।
ବୋଲନ୍ତି କିମ୍ପା ତୁମ୍ଭେ ଅଣାଇଲ ରଘୁବୀର ॥
ରାବଣକୁ ମାରି ଆଣନ୍ତୁ ଦେବୀ ସୀତ୍ୟା ।
ଶୁଣି ଟହଟହ ହସନ୍ତି ଜଗୁଜିତା ॥
ବୋଇଲେ ବେଳ ଯେ ଅସ୍ତ ହୋଯେ ଆସି ।
ପରଦେଶେ କିମ୍ପା ପଶିଥିବା ନିଶି ॥
ଆଜ ଯେବେ ଆମ୍ଭେ ସୁବଳୟାକୁ ଯିବା ।
କାଲି ପ୍ରଭାତରୁ ଆସି ସମର କରିବା ॥୬୦
ଅଇଲାଇଂ ଅଛି ଯେବେ ଯେତେକ ଦିନେ ପାରି ।
ଆରତ ହୋଇଲେ କି ଶତୃକୁ ହୋଯେ ମାରି ॥
ଶୁଣି ସୁଗ୍ରୀବର ମଥାରେ ହାଥ ଦେଲା ।
ହୋଇ ଦେବ ଯେ କଥା ବୋଲିଣ ବୋଇଲା ॥
ଶ୍ରୀରାମ ଆଗ୍ୟାଂ ଦେଲେ ଥାଠ ଚଳିଯାଉ ।
ଯେ ଗଡ଼ ସୀମାନ୍ତରେ ଗୋଟିଯେ ନ ଥାଉ ॥

ନଳ ଆଗିଆଣି ପଛେ ବିଭୀଷେଣ ।
ବାମ ପାଖେ ରହୁ ସୁଗ୍ରୀବର ରାଣ ॥
ଜମ୍ୟେବ ଦଖିଣେ ମଧରେ ରାମରାୟେ ।
ହନୁମନ୍ତ କାନ୍ଧରେ ବିଜେ କରିଯାୟେ ॥୭୦
ଲକ୍ଷଣ ଅଛି ଯେ ଅଙ୍ଗଦ ପିଠିରେ ବସି ।
ବୈକୁଣ୍ଠ କପିଳାସେ କି ହରି ହର ଦିଶି ॥
ଉତ୍ତର ମୁଖ ହୋଇଂ ଯେ ଚଳନ୍ତି ଘନ ଘନ ।
ସନ୍ୟକୁ ବୋଲନ୍ତି ଚାଲ ଚାଲ ବହନ ॥
ପ୍ରଚଣ୍ଡ ବାଜଣା ଯେ ବାଜଇ ବାଦ୍ୟମାନ ।
ଛତ୍ର ଚିରାଳ ଯେ ଉଦଣ୍ଡ ଧ୍ୱଜ ଚିହ୍ନ ॥
ଯିବାର ବେଳେ ଯେ ଯେକ ଯେକ ଗଲେ ।
ବାହୁଡ଼ା ବିଜେକାଳେ ସଭିଯେଂ ମିଳିଲେ ॥
ମଙ୍ଗଳ ଗୁଜ୍ଜରୀ ଯେ ବାଜଇ ମହୁରୀ ।
ନାଚନ୍ତି ବାନରେ ଯେ ବିବିଧ ଗତିକରି ॥୮୦
ରଣେ ଜିଣିଣ ଯେ ଅଛନ୍ତି ତୁହାଇ ।
ସୁର ନର ଅସୁରଙ୍କ କଳଣା ନ ଯାଇ ॥
ଶ୍ରୀରାମ ଆନନ୍ଦ ଯେ ସନ୍ୟଙ୍କର ତେଜ ଦେଖି ।
ମନେ ବଚାରନ୍ତି ପାଇବି ମୋର ସଖୀ ॥
ଯେଥୁ ଅନନ୍ତରେ ଯେ ସୁବଳୟାରେ ପ୍ରବେଶ ।
ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ଶୁଣ ଗୋ ପାର୍ବତୀ କହନ୍ତି ସଦାଶିବ ।
ସୁବଳୟା ଗିରିରେ ଆସି ବିଜୟେ ରାଘେବ ॥
ନଗ୍ରରେ ପ୍ରବେଶ ହୋଇଲେ ବେଗେ ଯାଇଂ ।
ହନୁମନ୍ତ କନ୍ଧରୁ ଉତୁରିଲେ ରଘୁସାଇଂ ॥୯୦
ଲକ୍ଷଣ ଅଙ୍ଗଦ ପିଠିରୁ ଓହ୍ଲାଇଲେ ।
ଶ୍ରୀରାମ ଚରଣେ ଆସି ନମସ୍କାର କଲେ ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମତ ।
ସେନାପତିମାନେ ଯେ ଅଛନ୍ତି ସମସ୍ତ ॥
ନଳକଇଂ ଚାହିଂ ଯେ ବୋଇଲେ ସୀତାସାଇଂ ।

ଆଗିଆଣି ଥାଠରେ ରହ ତୁମ୍ଭେ ଯାଇଂ ॥
ବାମେ ହନୁମତ ପଖା ରଖିଥାଉ ।
ଡାହାଣ ପଖାରେ ବିଭୀଷେଣ ରହୁ ॥
ଆଜର ସଇନି କେତେ ଅଇଲେ ପାରିହୋଇଂ ।
ସୁଷେଣ ଜଣାଇ ଶୁଣିମା ରଘୁସାଇଂ ॥୧୦୦
ଇନ୍ଦ୍ର ଉପବନ ପୂରିଅଛି ବଳ ।
କେ ତାହା ସଙ୍ଖୋଳି କହିବ ରଘୁବାଳ ॥
ନିତି ଯେହିମତି ଆସୁଥିବେ ଥାଠ ।
ପୂର୍ବର ଭିଆଣ ଯେ ଦଶରଥଙ୍କର ଟାଟ ॥
ଯେବଣ ମନ୍ତ୍ର ପୋଥି ଅଛଇ ମୋର ହାଥ ।
ଯେହାଉଂ କରି ମୁଂ ଜଣାଇ ରଘୁନାଥ ॥
ବେଦରୁ ବ୍ରହ୍ମା ଯେ ମନ୍ତ୍ରନ୍ତ କାଢ଼ିଲା ।
ରାମାୟେଣ ଯୁଧ୍ୟକୁ ଏତେକ ନିବାଡ଼ିଲା ॥
ଯେ ତୋହୋର ଚରିତ ପୋସ୍ତକେ ଲିହିଅଛି ।
ଶୁଣିଣ ହରଷ ହୋଇଲେ ରଘୁବଛି ॥୧୦
ଆଗ୍ୟାଂ ଦେଲେ ଆଜ ଅଇଲେ ଯେତେ ବଳ ।
ଯେହାନ୍ତ ଘେନି ଆଗିଆଣି ହୋଉ ନୀଳ ॥
ଶୁଣି ମହାବୀର ଯେ ଥାଟ ଘେନିଗଲା ।
ସୁବଳୟାକୁ ପାଞ୍ଚ କୁଣେ ନେଇଂ ଠଣା ଦେଲା ॥
ଯେଥୁ ଅନନ୍ତରେ ରବି ଅସ୍ତକାଳ ।
ଯୁଦ୍ଧ ସଜ ଫେଡ଼ିଲେ ଯେ ଦେବ ନଦୀକୂଳ ॥
ଲକ୍ଷଣ ସହିତେ ଯେ ଯୂଥପତିମାନ ।
ରୁଧିର ଛଡ଼ାଇ କରନ୍ତି ସ୍ନାହାନ ॥
ଶ୍ରୀରାମ ଲକ୍ଷଣ ଯେ ସୁମରିଲେ ସନ୍ଧ୍ୟା ।
ସଙ୍ଗେ ପଟୋଆରି ଅଛନ୍ତି ସକଳ ଯୋଦ୍ଧା ॥୨୦
ତହୁଂ ଶ୍ରୀପୟରେ ବିଜେ କରିଗଲେ ।
ସ୍ୱର୍ଗେଣ ଅପଛରୀ ହୁଳହୁଳି ଦେଲେ ॥
ସୁବଳୟା ଗିରି ଉପରେ ଯେବଣ ନବର ।
ତହିଂ ବିଜେକଲେ କୌଶଲ୍ୟା କୁମର ॥
ରଜନୀ ପ୍ରବେଶେ ଲଗାଇଲେକ ହୁଳା ।

ସଜଳସ ଗୁଣ୍ଡିମାନ ଜଳଇ ଦୀପମାଳା ॥
କନ୍ଦମୂଳ ମଣୋହି ଯେ କରନ୍ତି ରଘୁସାଇଂ ।
ଆଚୋବନ ସାରି ହରିଡ଼ା ଫଳ ଖାଇଂ ॥
ଲକ୍ଷ୍ମଣ ମଣୋହିଂ କଲାକ ସେବା ସାରି ।
ସେନାନ୍ତ ଘେନି ଭୁଞ୍ଜଇ ସୁଗ୍ରୀବର
ଦଣ୍ଡଧାରୀ ॥୩୦
ବିଭୀଷେଣ ସୁଗ୍ରୀବର ଆଗ ଛାମୁଆ ହୋଇ ।
କନ୍ଦମୂଳ ଭୁଞ୍ଜନ୍ତି କଥାମାନ କୋହାକୋହି
ହୋଇ ॥
ସଂଗ୍ରାମର ବିଧାନ ଶ୍ରୀରାମର ମହିମା ।
କପିକୁଳର ସାହାସ ଅସୁରଙ୍କର ଗାରିମା ॥
କଟେକର ବଡ଼ପଣ ରାବଣର ତପ ।
ଅଙ୍ଗଦ ଦୂତ ଯିବା ଇନ୍ଦ୍ରଜିତର ଧାପ ॥
ଛତ୍ର ଛିଡ଼ି ପଡ଼ିବା ହନୁମତ ଗଦା ନେମା ।
ପୋଡ଼ିଲାର ଗଡ଼ ଯେ ଗଢ଼ିଲା ବିଶ୍ୱକର୍ମା ॥
ଲଙ୍କାର ବିକଳ ସେନାପତିଙ୍କର ବଧ ।
ରଣରଙ୍ଗ କରିବା ସେନାପତିଙ୍କର ସଧ ॥୪୦
ସୀତା ହରଣ ଯେ ରାବଣର ମରଣ ।
ଭୁଞ୍ଜିବାର ବେଳେ ଯେ କରନ୍ତି ବିଚାରଣ ॥
ଉଦର ତୋଷିଣ ଯେ ଆଞ୍ଚୋବନ କଲେ ।
ପୁଣି ଶ୍ରୀରାମକୁ ଦ୍ରଶନ ଯାଇ କଲେ ॥
ରାତ୍ର ପାଞ୍ଚ ଘଡ଼ି ହୋଇଲାକ ନିଶି ।
ସୁଗ୍ରୀବରକୁ ଚାହିଂ ବୋଲନ୍ତି ରଘୁଶିଷି ॥
ଯାସି ମୈତ୍ର ହୋ ବିଭୀଷେଣ ସହିତେ ।
ନିଦ୍ରା ଆକର୍ଷଣ କଲାକ ଆସି ମୋତେ ॥
ଯେ ଯାହାର ବସାରେ ରହ ତୁମ୍ଭେ ଯାଇଂ ।
ଅଙ୍ଗଦ ବୁଲୁ ଯେ ରାତ୍ରେଣ ବାଜଣା
ବଜାଇ ॥୫୦
ତୁମ୍ଭେ ଶ୍ରମ ଆଜର ସମରେ ପାଇଲ ।
ଆଗଭର ହୋଇଂଣ ଯେ ଅସୁର ମାଇଲ ॥
ଯାଅ ଯେବେ ସୁସ୍ଥେ ଘଡ଼ିୟେ ନିଶି ଶୁଅ ।
ରାତ୍ର ନ ପାହୁଣୁ ଯେ ଟମକ ଦିଆଅ ॥
ଆଜର ଯୁଦ୍ଧ ରାବଣକୁ ହୋଇଲା ଅଜୟେ ।
କାଲି ବିଷମ ରୋଳ କରିବ ଲଙ୍କରାୟେ ॥
ସଜ ହୋଇଂ ଆମ୍ଭେ ଯେହି ପର୍ବତରେ
ଥିବା ।
ତଇଥ ବାରତା ପାଇଲେ ଓହ୍ଲାଇଣ ଯିବା ।
କି ହୋ ବିଭୀଷେଣ ଅଟଇଟିକି ଯେହି ।
ସାମାନ୍ୟ ଶତ୍ରୁ ମୋତେ ନୋହଇ
ଲଙ୍କସାଇଂ ॥୬୦
ବିଚାରି ତ କାର୍ଯ୍ୟ କରିତ ଯୋଗାଇଂ ।
ବଳୀୟାର ହୋଇଲେ କି ଅମଡ଼ାରେ
ଯାଇଂ ॥
ଶୁଣିଣ ସମସ୍ତେ ଯେ ମଥାରେ ହାଥ
ଦେଲେ ।
ଭୋ ଦେବ କାହା ନ ଜାଣ ବୋଇଲେ ॥
ତୋହୋର ମନ କଲେ ଏବେହେଂ ହୋଅଇ
ମାରି ।
ସାଧୁ ଗୁଣ ଘେନି ତୁମ୍ଭେ ଏମନ୍ତ ବିଚାରି ॥
ଆଜହିଂ ସେ ଦେବ ଆଣିଲୁ ବଳ କାଢ଼ି ।
ଅସୁରେ ଭାର୍ଜନ ନୋହିଲେ ଆଗ ବଢ଼ି ॥
ଶ୍ରୀରାମ ବୋଇଲେ ବେଭାର ମତେ ଥିବା ।
ବିଧିମତ କଥାରୁ ଆଡ଼େ ହୋଇଂ ନ
ଯିବା ॥୭୦
ଯୋଗେ ଧର୍ମ ଦେବତା ଯାହା କରୁ କରୁ ।
ମୋହୋର ନ ଯୋଗାଇଲେ ବିଧାତା
ମୋତେ ମାରୁ ॥
ମୁଂ ତ ଯତନେହେଂ ପୁଣି ନ କଳିନା କଳି ।
ସେ ସିନା ମୋତେ ଲଙ୍ଘିଲା ଆଗ ବଳି ॥
ଯେବେହେଂ ସୀତାକୁ ଯେ ଦେଲେ ମୁହିଂ
ଯିବି ।
କିମ୍ୱା ତାହାର ସଙ୍ଗେ ଅପ୍ରୀତି ହୋଇବି ॥
କାଲିହିଂ ହନୁମତ ବେଳେହେଂ ପୁଣିଯାଉ ।
ସୀତା ଦେଇ ସୁସ୍ଥେ ଥାଉ ବିଂଶବାହୁ ॥
ମୂର୍ଖ ପଣେ ଅବା ନ ଜାଣି ଆଣିଲା ।
ସେ ଦୋଷ ଛାଡ଼ିଲି ଯେ ଶ୍ରୀରାମ ଆଗ୍ୟାଂ
ଦେଲା ॥୮୦
ଶୁଣି ସର୍ବ କପି ମଥାରେ ହାଥ ଦେଲେ ।
ଯେ ତୋହୋରେ ସେ ହୋଅଇ ବୋଇଲେ ॥
ରାତ୍ର ଅର୍ଦ୍ଧ ପରିଯନ୍ତେ ହୋଇଲା ଭାଳେଣି ।
କୃଷ୍ଣାଜିନ ଛାଲେ ପହୁଡ଼ିଲେ ରଘୁମଣି ॥
ଧନୁଶର ଘେନି ଜଗଇ ସଉମିତ୍ରୀ ।
ନିଦେ ଅଚେତନ ଯେ ରଘୁକୁଳ ପତି ॥
ସେନାପତିମାନେ ଯେ ଯାହାରେ ଗଲେ ।
ବାଜଣା ବଜାଇ ଅଙ୍ଗଦ ରାତ୍ରେଣ ବୁଲିଲେ ॥
ଠଣା ପଢ଼ିହାରି ଉକାସି ବୋବି ଦ୍ୟନ୍ତି ।
ରିକ୍ଷ କପିବଳ ନିଶ୍ଚିନ୍ତେ ଶୋଇଛନ୍ତି ॥୯୦
ଯେଥୁ ଅନନ୍ତରେ ଗୋ ଶୁଣ ଶାକେମ୍ୱରୀ ।
ଲଙ୍କାଗଡ଼ରେ ଯେ ଅଛଇ ଦଶଶିରି ॥
ସେନାପତି ଚାରିହେଂ ପଡ଼ିଲେ ବୋଲି ଶୁଣି ।
ମହାବିସ୍ମୟେ ହୋଇ ବସିଲା ବିଂଶପାଣି ॥
ନିଶ୍ୱାସ ଛାଡ଼ଇ ଯେ କ୍ରୋଧେ ଗରୁତର ।
ଭୟମନେ ବିଚାରଇ ଗର୍ଭର ଭିତର ॥
ସାମାନ୍ୟ ଭରସା କି ରିକ୍ଷ କପିମାନ ।
ଯେ ମୋହୋର ପାପ ଦିଶିଲା ଆଜ ଦିନ ॥
ଯେବଣ ଯେବଣ ଚାରିହେଂ ଆଜ
ହାରିଲେଟି ପ୍ରାଣ ।
ତାହାଙ୍କର ମୁଖ ଦେଖିଲେ ଡରଇ
ଜନ୍ତୁରାଣ ॥୧୦୦
ଜଗତେ ମହିମା ଯେ ଅଟଇ ଅପ୍ରମାଣ ।
ରିକ୍ଷ କପି ହାଥେ ହାରିଲେ ନିଜ ପ୍ରାଣ ॥
ଅନେକ ସଇନି ଯେ ସମରେ ପଡ଼ିଲେ ।
ହସ୍ତୀ ଘୋଡ଼ା ପାଦାନ୍ତି ଅନେକ କ୍ଷୟେ
ଗଲେ ॥
ନଗ୍ର ଉଜାଡ଼ିଲେ ଭାଙ୍ଗିଲେ ଦିବ୍ୟପୁର ।
ଅପୂର୍ବ ପଦାର୍ଥମାନ ହାଦେ କଲେ କୂର ॥
ଚାରି କୋଶ ଉଞ୍ଚ ପାଚେରୀ ଦୁଇ କୋଶ
ଓସାର ।
ଯେହା କେମନ୍ତେ ଡେଇଂଲେ ରିକ୍ଷ ଯେ
ବାନର ॥
ଯେତ୍ତେକ ଯଶ ମୋହୋର ସବୁ ଗଲା
ନାଶ ।
କିମ୍ୱା ଦେବତାୟେ ହୋଇବେ ମୋତେ
ବଶ୍ୟ ॥୧୦
ଜନମୁଖେ ଅପଛାଟି ପାଇଲି ବହୁତ ।
ଉପହାସ୍ୟ କରିବେ ମୋତେ ସକଳ ସିଦ୍ଧାନ୍ତ ॥
ଯେତେକ ସୁଖ ଭୋଗ ଯିବାକ ବିଫଳେ ।
ଯଦ୍ୟପି ଶ୍ରୀରାମ ମାରଇ ମୋତେ ବଳେ ॥

କିମ୍ବା ମୁଂ ସୀତ୍ୟାକୁ ଆଣିଲି ଚୋରାଇଂ ।
କେବଣ କେବଣ ଷ୍ଟିରୀ ମୋହୋର ପୁରେ ନାହିଂ ॥
ସାନ ଲୋକ ପ୍ରାୟେ ବୁଝି ଭରସା କଲି ।
ଯେବେ ବିଚାରନ୍ତେ ମୁଂ ସମ୍ପୋଡ଼େ ନାଶଗଲି ॥
କି ବୁଦ୍ଧି କରିବି ମୁଇଂ ଯିବି କେଉଂ କତି ।
କେମନ୍ତେ ମାରିବି ରାମ ଲକ୍ଷଣ ବେନି ଯତି ॥୨୦
ତେବେ ସେ ସୀତ୍ୟାକୁ ରମିବି ସୁଖ ପାଇଂ ।
ଯେମନ୍ତ ସମୟେ ଇନ୍ଦ୍ରଜିତ ଦ୍ରଶନ କଲା ଯାଇଂ ॥
ପାଏ ପଡ଼ି ଶୋଇଣ ଯେ ଉଠିଲା ତଡ଼ତି ।
ପୁତ୍ରକୁ ଚାହିଂ ସେ ଉଠଇ ଲଙ୍କପତି ॥
ପ୍ରଶସ୍ତ ବଜ୍ରମୁଷ୍ଟି ଅଛନ୍ତି ଯେ କାହିଂ ।
ଦୃଧଂସ ଜୁଲୁପାକ୍ଷ ନଇଲେ କିସ ପାଇଂ ॥
ମେଘନାଦ ବୋଇଲା ଦେବ ପଡ଼ିଲେ ସେହୁ ରଣେ ।
ଶୁଣିଣ କୋପେ ଯେ ଚାହିଂଲା ବିଂଶଲୋଚନେ ॥
ବୋଇଲା ତୁ କିରେ ନ ଥିଲୁ ରଣେ ପଶି ।୩୦
ରିକ୍ଷ କପି ଗଲେ ସବୁ ବଳ ନାଶି ॥
ମହାବୀର ବୋଲିଣ ଯେ ବୋଲାଉଣ ଥିଲ ।
ଅସମୟ କାଳେ ବୀରଧୂ ବାନା ହିଂ ଛାଡ଼ିଲ ॥
ଇନ୍ଦ୍ରକୁ ଜିଣି ତୁ ଯେ ପାରୁ ମନ କଲେ ।
ସେ ବୁଧିମାନ ତୁମ୍ଭର ହାଦେ କେଣେ ଗଲେ ॥
ସାମାନ୍ୟ ଭରସା କି ବୋଲିବେ ହାଦେ ଲୋକେ ।
ଯେହି ବ୍ରହ୍ମାଣ୍ଡ ଯେ ସାଧିଲି ମୁଇଂ ଯେକେ ॥
ପାତାଳେ ପଶିଣ ମୁଂ କଲଇ ରଣଗୋଳ ।
ସର୍ବ ସମ୍ପଦେ ମୁଂ ତହୁଂ ଆଣିଲି ସକଳ ॥
ସ୍ୱର୍ଗ ଦେବତାଙ୍କୁ ଆଣିଲି ମୁଇଂ ଧରି ।
ଯେ ମୃତୁଲୋକେ ମୋତେ କହୁଅଛି ସରି ॥୪୦

ଯେକା ହୋଇବା କାଳେ ଯେତ୍ତେ କର୍ମ କଲି ।
ଯେବେ ଆସି ନର ବାନରେ ହାରିଲି ॥
ମୁଂ ଯଦି ସମରେ ଥାନ୍ତି ଉଭାହୋଇଂ ।
ଚାରିସେନା ମୋର ପଡ଼ନ୍ତେ କିସ ପାଇଂ ॥
କିମ୍ବା ନ ଗଲିଟି ମୋହୋର ମନ୍ଦ ପଣ ।
ବିଚାରିଲି ପ୍ରକଟେ କରିବେ କିସ ରଣ ॥
କାଳେ ଯେବେ ଯେତେଦୂରକୁ କଥା ଗଲା ।
ଦିଗପାଳ ସମାନେ ମୋର ଚାରିସେନା ମଲା ॥
ଯେବେହେଂ ନ ଗଲେ ଯେ ହୋଇବାକ ମନ୍ଦ ।
ମୁଇଂ ଯାଇଂ ଆପଣେ କରିବି ମହାଦ୍ୱନ୍ଦ ॥୫୦
ଛୋଟା ଅପାରବନ୍ତ ନୋହଇଂ ହାଦେ କିଛି ।
ସଂସାରେ କେହୁ ମୋତେ ପ୍ରତିକଛ ଅଛି ॥
ରାମ ଲକ୍ଷଣ ଯେ ଅରଣ୍ୟ ରାଜାର ବଂଶ ।
ସେହି ମୋର ହାଥେ ହୋଇଲେ ତୁଳ କସ ॥
ଯେସନେକ ନ ଜାଣି ମୋହୋର ସଙ୍ଗେ ଯୁଦ୍ଧ ।
କାଲି ନିଶ୍ଚୟେଟି କରିବି ପ୍ରାଣବଧ ॥
ଯେତେବୋଲି ଶୁକ ସାରଣକଇଂ ଚାହିଂ ।
ଆଗ୍ୟାଂ ଦେଲାକ ଯେ ମନ୍ଦୋଦରୀ ସାଇଂ ॥
ବୋଇଲା ଘୋଷଣ ତୁମ୍ଭେ ଦିଅ ଲଙ୍କପୁରେ ।
କାଲି ସମର ମୁଂ ଯେ କରିବି ନିକରେ ॥୬୦
ରଥୀ ଯୋଧ୍ୟା ରାଉତ ପାଦାନ୍ତି ମୋର ଯେତେ ।
ସବିହେଂ ସଜହୋଇ ଆସିବେ ପରଭାତେ ॥
ଦେଖନ୍ତୁ ଅପୂର୍ବ ରଣ ପାଶୋରନ୍ତୁ ଦୁଃଖ ।
ପୁଣି ସମୟେ ପରିଯନ୍ତେ ପାଇବେ ମହାସୁଖ ॥
ଯେ ମୋହୋର ଶତୃକୁ ଯେବେ ମୁଇଂ ନ ମାରିବି ।
ଯେ ଲଙ୍କାପୁରେ ରାଜ୍ୟ କେମନ୍ତେ କରିବି ॥

ଯେତେ ବୋଲି ରାୟେ ଭିତରକୁ ଗଲା ।
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକ ଦେଲା ॥
ନି ଅବକାଶେ ବିଜେ କଲା ଲଙ୍କପତି ।
ମନ୍ଦୋଦରୀ ଦର୍ଶନ କଲାକ ତଡ଼ତି ॥୭୦
ଭିତରେ ନୃପବର ସନ୍ଧ୍ୟା ସୁମରିଲା ।
ଅପାର ରାତିରେ ସେ ମଣୋହି ସାରିଲା ॥
ଶୟନ ମନ୍ଦିରେ ଯେ ପହୁଡ଼ିଲା ଯାଇଂ ।
ଦାସୀ ପରିବାରୀ ଛନ୍ତି ନିଶବଦ ହୋଇ ॥
ରାଣୀ ମହଦେଈ ଖଟିଛନ୍ତି ପାଶ ।
ଯେସନେକେ ନୃପତି ହୋଇଲା ଅବକାଶ ॥
ଯେଥୁ ଅନନ୍ତରେ କୁମର ମେଘନାଦ ।
ଲାଜେ ମଥା ପୋତି ଯେ ହୋଇଲା ତବଦ ॥
ଯହୁଂ ସେ ରାବଣ ଭିତରକୁ ଗଲା ।
ଇନ୍ଦ୍ରଜିତ କୁମର ଆପଣା ମନ୍ଦିରେ ହୋଇଲା ॥୮୦
ସେନାପତିମାନେ ଯେ ଯାହା ମନ୍ଦିରକୁ ଗଲେ ।
ନଗ୍ର ଦୋସାଧୁକୁ ମନ୍ତ୍ରୀ ରାଇଂଣ ଆଗ୍ୟାଂ ଦେଲେ ॥
ଦିଅ ହୋ ଘୋଷଣ ସାଜନ୍ତୁ ସର୍ବଥାଠ ।
ସ୍ୱର୍ଗକୁ ଯିବାର ବେଳେ ଯେବଣ ମୁରାଟ ॥
ତହୁଂ ଶତେ ଗୁଣେ ହୋଇବେ କାଛେଣି ।
ସିଂହଦ୍ୱାରେ ଥିବେ ନ ପାହୁଂ ରୟଣୀ ॥
ଆଗ୍ୟାଂ ଭଗ୍ନ କଲେ ହୋଇବେ ପ୍ରାଣନାଶ ।
ଯେସନେକ ଘୋଷଣ ଦିଆଅ ନଗ୍ର ଚାରିପାଶ ॥
ଶୁଣି ନିଶାପତି ଦିଆଇଲା ଦାଉଣ୍ଡି । ୯୦
ନଗ୍ରଲୋକ ଶୁଣି ହୋଇଲେ ହାଉଣ୍ଡି ॥
ଯେକକୁ ଆରେକ ଯେ ହୋଇଲେ ପୁଛାପୁଛି ।
କି ବୋଲି ଦାଣ୍ଡରେ ଯେ ଢେଙ୍ଗୁରା ପଡୁଅଛି ॥
ଶୁଣିମା ଲୋକେ ବୋଇଲେ ଯେ ସନ୍ୟମାନ ସାଜି ।
ଆପଣେ ରାବଣେଶ୍ୱର ଯିବ କାଲି ଯୁଝି ॥

ନୋହିଲେହେଁ ଅତି ଉପଦର୍ପ କଲେ ।
ହେଳ ଯୁଦ୍ଧେ ତେଡ଼େ ଚାରିବୀର ମଲେ ॥
ମାରିବା ରିକ୍ଷ ହରି ଦୁଇ ଜଟାଧାରୀ ।
ସାମାନ୍ୟ ଭରସା କି ପଶିଲେ ଲଙ୍କପୁରୀ ॥
ଛିନ୍ନଛତ୍ର କରି ଦେଶ ଉଜାଡ଼ିଲେ ।
ବେଳବୁଡ଼କୁ କେହି ଗୋଟିଏ ନ
ରହିଲେ ॥୧୦୦
ଭଲା ତରକି କଢ଼ାଇ ନେଲେକ ମହାପତି ।
ଦଶଶିରିକି କିଂକେ ନ କରିବେ ଭୀତି ॥
ଯେସନେକ ବୋଲି ବୋଲନ୍ତି ସର୍ବଜନ ।
ଯେଥୁ ଅନନ୍ତରେ ଶୁଣ ହୋ ବିଧାନ ॥
ନିଶି ଆଚ୍ଛାଦିଲା ଲୋକେ ନିଦ୍ରା ଗଲେ ।
ତୂର ବଜାଇଂ ଯେ ନଗ୍ରେ ଦୋସାଧୁ
ବୁଲିଲେ ॥
ଯେଥୁ ଅନନ୍ତରେ ଯେ ରଜନୀ ହୋଯେ
ଶେଷ ।
ପାଣ୍ଡୁର ବର୍ଷ ଯେ ଦିଶିଲା ପୂର୍ବ ଦିଶ ॥
ଦେବଙ୍କର ଆଳେ ଯେ ଶୁଭିଲା ଶଙ୍ଖଧ୍ୱନି ।
ରାବଣ ବିଚାରିଲା ଯେ ପାହିଲା
ରଜନୀ ॥୧୦
ଯେତେ ବୋଲିଣ ଶଯ୍ୟା ଛାଡ଼ିଣ ଉଠିଲା ।
ମୁଦ୍‌ସୁଲୀକି ଚାଇଣ ରାବଣ ଆଗ୍ୟାଂ ଦେଲା ॥
ବୋଇଲା ଟମକ ଦିଆଅ ବେଗେ ବୋଇ ।
ସଜ ହୋଇଆସନ୍ତୁ ମଲ୍ଲୁ ମହାମଲ୍ଲୁ ॥
ଶୁଣି ପରିବାରୀ କହିଲା ବାହାରେ ।
କେବଣ ଖୁଣ୍ଟିଆ ଅଛ ହୋ ଦୁଆରେ ॥
ଟମକ ଦିଆଇ ହୋ ଥାଠ ସଜକର ।
ଆଗ୍ୟାଂ ଦେଲେକ ସେ ନୃପତି ଦଶଶିର ॥
ଶୁଣିଣ ଦ୍ୱାରପାଳ ଯେ ତଡ଼ବେଗେ ଗଲା ।
ଟମକିଆ ନାମ ଧରିଣ ଡାକିଲା ॥୨୦
ଦେସି ଟମକ ହୋ ଜାଣନ୍ତୁ ସର୍ବଜନ ।
ରଣକୁ ସଜ ହୋଇ ଆସନ୍ତୁ ସର୍ବସନ୍ୟ ॥
ନୃପତି ଆଦେଶ କହିଲା ମୁଦ୍‌ସୁଲୀ ।
ବଜାଅ ଟମକ ବୋଲି ଖୁଣ୍ଟିଆ ଗଲା
ବୋଲି ॥
ଶୁଣିଣ ଟମକିଆ ଟମକ ବଜାଇଂ ।
ଟମ ପାତି ଘେନି ସେ ପିଟିଲା ନିଠାଇଂ ॥
ସୁରଗିରି ଟମକ ଯେବଣ ନିଶାଣ ।
ବିକାଟାଳ ହୋଇଂଣ ବାଜିଲା ମହାଟାଣ ॥
କୋଟିଯେକ ବଜ୍ର କି ପଡ଼ିଲା ଯେକଠାଇଂ ।
ଦେବତାଯେ କମ୍ପିଲେ ଯେ ସ୍ୱର୍ଗପୁରେ
ଥାଇଂ ॥୩୦
ସୁବଳୟା ପର୍ବତକୁ ଶବଦ ଶୁଭିଲା ।
କି ଅବା ପୃଥିବୀ ଦେବୀ ଆକୁଳେ
ରୋବିଲା ॥
ନିଦ୍ରା ଭାଜିଲା ଯେ ଉଠିଲେ ରାମଦେବ ।
ସୁମିତ୍ରା ନନ୍ଦନ ଯେ ଦ୍ରଶନ କରଇ ବେଗ ॥
ରାଘେବ ପଚାରନ୍ତି କି ବାଜଇ ନିଶାଣ ।
ସାଂଗ୍ରାମକୁ ସଜ କି ହୋଉଛି ରାବଣ ॥
କାଲିର ଘାଆ ପାଇଂ କରିଅଛି ରାଗ ।
ଆଜ ସେ ଜାଣିମା କେ ସାମଳ କେ
ବଗ ॥
ଯେସନେକ ସମୟେ ଯେ ହନୁମନ୍ତ ଯାଇଁ ।
ପାଯେ ପଡ଼ି ଶୋଇଂ ମଥାରେ ହାଥ
ଦେଇଂ ॥୪୦
ସୁଗ୍ରୀବର ଅଙ୍ଗଦ ଦ୍ରଶନ ଯାଇଂ କଲେ ।
ବିଭୀଷେଣ ଜମ୍ୱେବ ସହିତେ ଅଇଲେ ॥
ଚନ୍ଦନ କୁମୁଦ ଗବଯେ ଗବାକ୍ଷ ।
ଗନ୍ଧମାରଦନ ତାରାକ୍ଷ ବିରୂପାକ୍ଷ ॥
କେଶରୀ ରମଣ ଶଉରୀ ବସନ୍ତ ଅଇଲେ ।
ଡାଳିମ୍ୱ ଦ୍ୱିବିନ୍ଦ ଦ୍ରଶନ ଆସି କଲେ ॥
ମହୀନ୍ଦ୍ର ପବନ ବଳିମୁଖ ସାରାସ ।
ନଳ କାଳିଞ୍ଜନ କାଳିମୁଖ ପାରାସ ॥
ସନ୍ନିଧ୍ୟେ ପଟୋଆରି ଅଛନ୍ତି ଉଭାହୋଇ ।
ନିତ୍ୟକର୍ମ ବିଧାନ ସାରିଲେ
ରଘୁସାଇଂ ॥୫୦
ଟମକ ବାଜିଲାର ପଚାରନ୍ତି କଥା ।
ନଳ ଦ୍ରଶନ କଲା ଭୂମି ଦେଇ ମଥା ॥
ଉଠି ଉଭା ହୋଇଂ କହଇଂ ବଚନ ।
ଶୁଣ ଦେବ ଅଯୋଧ୍ୟା ଦଶରଥ ନନ୍ଦନ ॥
ରାବଣ କଟକରେ ବାଜଇ ନିଶାଣ ।
ମୁଖରାବ ଶବଦ ଶୁଭଇ ଅପ୍ରମାଣ ॥
ଧାଅଂ ଧାଅଂ ଆସ ଆସ ଯାଅ ଯାଅ
ବୋଲ ।
ଯେସନେକ ବିଧାନେ ବାଜୁଅଛି ଗୋଳ ॥
କେବଣ ବିଚାର ଯେ କରହୋ ଗୋସାଇଂ ।
ଠଣା ଛାଡ଼ିକରି ଅଇଲି ମୁଂ ଧାଇଂ ॥୬୦
ରାମ ବୋଇଲେ ବାଦ୍ୟ ଏବେହେଂ
ବାଜୁଅଛି ।
ଲଙ୍କପତି ଯେ ଚତୁରାଙ୍ଗ ବଳ ସାଜୁଅଛି ॥
ନିଶାଣ ଶୁଣି ସେ ଭାଜିଲା ମୋର ନିଦ ।
ଆପଣେ ଦଶକନ୍ଧ କରୁଅଛି ବାଦ୍ୟ ॥
କରିବେ ସମର ଆଜ ମରିବେ ସଇନି ।
ଜାଣିମା ଆଜ କେମନ୍ତେ ଯାଇଂ ପ୍ରାଣଘେନି ॥
ହନୁମନ୍ତକଇଂ ଚାହିଁ ବୋଇଲେ ଦାଶରଥି ।
ଲଙ୍କାପୁରକୁ ତୁ ଚଳସି ମାରୁତି ॥
ରାବଣ ଆଗେ କହିବୁ ମୋର ବାଣୀ ।
ଏ କାଣ୍ଡ ଗୋଟି ଚିହ୍ନାଇ ଆସିବୁ
ବିଂଶପାଣି ॥୭୦
ବୋଲିବୁ ସୀତ୍ୟା ନେଇ ସମର୍ପିବୁ ରାମ
ପାଶ ।
ନୋହିଲେ ଯେହି ଆୟୁଧେ ଯିବୁ ପ୍ରାଣନାଶ ॥
ଯେ କାଣ୍ଡ ଗୋଟି ହାଦେ ତାଡ଼େକୀ ବଧ
କଲା ।
ଖର ଧୂଷଣ ତ୍ରିଶିରା ଯେଣେ ଛୟେ ଗଲା ॥
ବାଳୀ ନୃପତିର ଏ ହାରିଲାକ ପ୍ରାଣ ।
ଯେବେ ଯେ ବିଚାରଇ ଖାଇବି ରାବଣ ॥
ସୀତ୍ୟାକୁ ନ ଦେଲେ ମାରିବି ନିଷ୍ଚୟେ ।
ଯେତେ ବୋଲି ରାମ ଯେ କାଣ୍ଡ ତୋଳି
ଦିଯେ ॥
କର ଦୁଇ ଯୋଡ଼ିଣ ଘେନଇ ମାରୁତି ।
ସୁଷେଣକୁ ଚାହିଂଣ ବୋଇଲେ
ରଘୁପତି ॥୮୦
ଶ୍ରୀମୁଖ ଲିହିଣ ହନୁମନ୍ତ ହସ୍ତେ ଦିଅ ।
ପୁଣି ଆରବେଳେ ଧର୍ମକୁ ଜିଣିଥାଅ ॥
ଶୁଣି ସୁଷେଣ କରେ ଲେଖନ ପତ୍ର ଧରି ।
ଶ୍ରୀମୁଖ ଲିହିଲା ଯେ ବିଚିତ୍ର ଗତି କରି ॥
ମୁଦ ଦେଇ ମାରୁତି କରେ ଲେଖ ଦେଲା ।

ଶ୍ରୀରାମକୁ ଓଳଗି ପବନ ସୁତ ଗଲା ॥
ଗରୁଡ଼ ଯେହ୍ନେ ଶୂନ୍ୟେଣ ଗବନ କରି
ଯାଇଂ ।
ରାତ୍ର ପାହୁଂ ବୀର ଲଙ୍କାଗଡ଼ରେ ପଶଇଂ ॥
ଦେଖିଲା ରାବଣେଶ୍ୱର କରୁଛି ନିତ୍ୟକର୍ମ ।
ହନୁମନ୍ତକୁ ଚାହିଂ ସନ୍ଧ୍ୟା କଲା ଭ୍ରମ ॥୯୦
ଦୁଇକୋଶ ଉଚ୍ଚ ଜଗତୀରେ ବସିଥିଲା ।
ପବନ ତନୟେ ମନରେ ବିଚାରିଲା ॥
ଯେତ ଉଠିକରି ନ ଘେନିମି ରାମ ଆଗ୍ୟାଂ ।
ତଳେ ଥାଇଂ କହିବି କି ସ୍ୱାମୀର ପ୍ରତଗ୍ୟାଂ ॥
ଯେତେବୋଲି ଲାଙ୍ଗେଂ ସେ ବସିଲା ଟେକି
କରି ।
ରାବଣର ସମାନେ ଯେ ବସିଲା ବୀର
ଯାଇଂ ॥
ବୋଇଲା ଶ୍ରୀମୁଖ ଘେନସି ଦଶଶିର ।
ଦୟା କଲେ ତୋତେ ରଘୁକୁଳ ବୀର ॥
ଧର୍ମକୁ ଦୁଇ ବାର ଜିଣଇ ପୁଣପୁଣି ।
ଶୁଣି କୋପ କରି ବୋଲଇ
ବିଂଶପାଣି ॥୧୦୦
ରିକ୍ଷ ମ୍ରକଟ ଯେ ତପୁସୀ ଦୁଇ ରାଜା ।
କେଉଂ ଗୁଣେ ତାହାକୁରେ କରିଅଛ ପୂଜା ॥
ସେ ପୁଣି ଶ୍ରୀମୁଖ କାଟଇ ଲଜ୍ଜା ଛାଡ଼ି ।
ତହିଂକି ଆଡ଼ତିଆ କହୁଛୁ ଆଗ ବଢ଼ି ॥
କିସ କିସ ଲେଖିଅଛି ପଢୁକିନା ତୁହି ।
ଅଳପ ହସିଣ ଯେ ଦଶାନନ କହି ॥
ମୁଦ ଭାଙ୍ଗିଣ ହନୁମାନ ପଢ଼ଇ ଶ୍ରୀମୁଖ ।
ଅବଧାନ ହୋଇଣ ତୁ ଶୁଣ ଦଶମୁଖ ॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଯେ ଅଟୁ
ଅଧିକାରୀ ।
ମାନବେ ଅବତରିଲୁ ଅସୁର ବଳ
ମାରି ॥୧୦
ଆମ୍ଭେ ସେ ପରମ ପଦ ଯେ ଜଗନ୍ନାଥ ।
ଶଙ୍ଖ ଚକ୍ର ଗଦା ପଦ୍ମ ଚତୁର୍ଭୁଜ ହସ୍ତ ॥
ଆମ୍ଭେ ସେ ବ୍ରହ୍ମାକୁ ନାଭିରୁ ଜନ୍ମ କଲୁ ।
ଶଙ୍କର ନାମେ ରୁଦ୍ରକୁ ଈଶ୍ୱର ପଦ ଦେଲୁ ॥
ଆମ୍ଭେ ସେ ଇନ୍ଦ୍ରକୁ ନୃପତି କଲୁ ସ୍ୱର୍ଗେ ।
ଆମ୍ଭେ ସେ ସର୍ବଦା ଚଳୁ ଶୂନ୍ୟ ମାର୍ଗେ ॥
ଆମ୍ଭେ ସେ ସଞ୍ଚିଲୁ ପବନ ହୁତାଶନ ।
ଆମ୍ଭେ ସେ କୁବେରକୁ ସମର୍ପିଲୁ ଧନ ॥
ଆମ୍ଭେ ସେ ବରୁଣକୁ ସପତ ସିନ୍ଧୁ ଦେଲୁ ।
ଆମ୍ଭେ ସେ ନୈଋତକୁ ଦିଗପାଳ କଲୁ ॥୨୦
ଆମ୍ଭେ ସେ ଧ୍ରୁବକୁ ଉପରେ ଥୋଇଲୁ ।
ଆମ୍ଭେ ସେ ସଚରାଚର ପୃଥିବୀ ଥାପନା
କଲୁ ॥
ଆମ୍ଭେ ସେ ବାସୁକୀ ଶିରରେ ଦେଲୁ ମହୀ ।
ଆମ୍ଭର ପ୍ରସନେ ଯେ ଜୀବଜନ୍ତୁ ରହି ॥
ଆମ୍ଭର ବିନା ଆଗ୍ୟାଂରେ ତିରଣ ନ ହଲେ ।
ଅଷ୍ଟ ଅଇଶ୍ୱର୍ଯ ଦେଇ ହୋଇ ଆମ୍ଭର
ବୋଲେ ॥
ଫଳଙ୍କର ସ୍ୱାଦ ଯେ ଫୁଲଙ୍କର ବାସ ।
ଆମ୍ଭେ ସେ ଭିଆଇଂଅଛୁ ଯେ ତ୍ରିଦଶ୍ୟ ॥
ଆମ୍ଭେ ସେ ସଂସାର ଲକ୍ଷ୍ମୀ ଆଧିପତି ।
ଆମ୍ଭେ ସେ ଅଟୁ ଯେ ଅନନ୍ତ ମୂରତି ॥୩୦
ଆମ୍ଭେ ସେ ଦଶ ଅବତାର ରୂପ ଧରି ।
ମୀନ ରୂପେ ସମୋଦ୍ରରେ ପଶି ଶଙ୍ଖାସୁର
ମାରି ॥
ପୃଥିବୀ ଧଇଲୁ କୂରୁମ ମୂରତି ।
ତେବେ ସେ ରକ୍ଷା ହୋଇଲା ବସୁମତୀ ॥
ବରେହା ରୂପ ଧରି ହିରଣାକ୍ଷ ମାଇଲୁ ।
ସଚରାଚର ପୃଥିବୀ ଦାନ୍ତରେ ଧଇଲୁ ॥
ନରସିଂହ ରୂପେ ହିରଣ୍ୟ ବିଦାରି ।
ପ୍ରହ୍ଲାଦକୁ କଲୁ ସ୍ୱର୍ଗେ ଅଧିକାରୀ ॥
ବାମନ ରୂପେ ବଳିକି ପାତାଳେ ଚାପିଲୁ ।
ପ୍ରଶୁରାମ ରୂପେ ନିକ୍ଷତ୍ରୀ ମହୀ କଲୁଂ ॥୪୦
ଯେବେ ସେ ସୂର୍ଯ୍ୟବଂଶେ ଅଯୋଧ୍ୟା
ନୃପବର ।
ତିନିପୁର ରାଜାଙ୍କ ଉପରେ ଠାକୁର ॥
ଭୁଜବଳ ପ୍ରାକର୍ମେ ଅସୁରବଳ ମାରି ।
ଦେବତାମାନଙ୍କର ପରମ କଷ୍ଟ ସାରି ॥
ଇକ୍ଷ୍ୱାକୁ ଗୋତ୍ରେ କାକୁସ୍ଥ କୁଳେ ପୁଣି ଜାତ ।
ରଘୁପତି ପଣେ ବୋଲାଉ ରଘୁନାଥ ॥
ଦଶରଥ ନନ୍ଦନ କଉଶଲ୍ୟା କୋଳେ ଜାତ ।
ଭରଥ ଲକ୍ଷଣ ଶତ୍ରୁଘ୍ନ ମୋର ଭ୍ରାଥ ॥
ପିତା ସତ୍ୟ ନିମନ୍ତେ ବନଗିରି ବୁଲିଲି ।
ଗୋଦାବରୀ ନଦୀକୂଳରେ ରହିଲି ॥୫୦
ତୁ ମୋହୋର ଭାରିଯାକୁ ଆଣିଲୁ ଚୋରାଇଂ ।
ସେ ଦୋଷ କ୍ଷେମା ତୋତେ କଲି
ଲଙ୍କସାଇଂ ॥
ଯେବେ ହନୁମନ୍ତର ସାଙ୍ଗେ ତୁ ବେଗେ
ଆସ ।
ସୀତା ଦେଇଂ ମୋହୋର ଚରଣେ ଶରଣ
ପଶ ॥
ନୋହିଲେଣ ଯେଉଂ କାଣ୍ଡ ନେଇଅଛି
ହନୁ ।
ଯେ ଅସ୍ତ୍ରେ ବିନାଶ ହୋଇବ ତୋର ତନୁ ॥
ଦଶଦିଗକୁ ଦେବି ତୋର ଦଶ ମୁଣ୍ଡ ବଳି ।
ହୃଦୟ ଖଣ୍ଡ ତୋର ଖାଇବ ମହୀଆଳି ॥
ଯମ ଦେବତା ପ୍ରାଣକୁ ତୋର ନେମ ଧରି ।
ବିଭୀଷେଣ ନୃପତି ହୋଇବ
ଲଙ୍କପୁରୀ ॥୬୦
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ତୋର ଯେତେ ବଂଶ ।
ମଞ୍ଚେ ଦେହ ଛାଡ଼ି ସବିହେଂ ଯିବେ ଯମ
ପାଶ ॥
ଶରଣ ନ ପଶିଲେ ଜୀବନ ଆଶ ଛାଡ଼ ।
ଯେଡ଼େ ସୁଖ ଯେଡ଼ାଇଂ ଅମଡ଼ା ନ ମାଡ଼ ॥
ମୁହିଂ ସେ ଶ୍ରୀରାମ ଲକ୍ଷଣ ଅଗ୍ରଜ ।
ରଘୁବଂଶ ନାତି ତେଣେ ରଘୁରାଜ ॥
ସୀତ୍ୟାବଲ୍ଲଭ ନାମ ମୋ ସୀତାପତି ।
ସୁନ୍ଦର ବୋଲନ୍ତି ଯହୁଂ ମଧୁର ମୂରତି ॥
କାକୁସ୍ଥ ବଂଶେ ଜାତ କାକୁସ୍ଥ ବୋଲି
ତେଣେ ।
କରୁଣା ସାଗର ମୁଂ ଅଟଇ ହାଦେ
ଯେଣେ ॥୭୦
ଗୁଣେ ପରିପୂରିତ ଅଟଇ ଗୁଣନିଧି ।
ବିପ୍ରପ୍ରିଅ ବୋଲି ବୋଲନ୍ତି ବିବୁଧାଦି ॥
ମୁଇଂ ସେ ଧାର୍ମିକ ଅନ୍ୟାୟେ ନ ଥାଇଂ ।
ରାଜାଙ୍କର ଉପରେ ରାଜେନ୍ଦ୍ର ବୋଲାଇଂ ॥
ସତ କହଇ ମୁଂ ତେଣୁ ସେ ସତଧର୍ମ ।

ଦଶରଥ ସୁତ ମୋର ନାମ ଯେ ଶ୍ରୀରାମ ॥
ଶାମଳ ବର୍ଣ୍ଣ ଶାନ୍ତି ମୂର୍ତ୍ତି ଯେ ମୋହୋର ।
ତିନିଲୋକ ବନ୍ଦିତ ମୋହୋର ପୟର ॥
ଅଭିରାମ ବୋଲିଣ ବୋଲନ୍ତି ସର୍ବଜନେ ।
ରଘୁକୁଳ ତିଳେକ ରାଘବ ବୋଲନ୍ତି
ଯେଣେ ॥୮୦
ରାବଣାରି ନାମ ମୁଂ ନ ବହଇଂ ଯେମନ୍ତେ ।
ତେଣୁ ସେ ପୁଣ ପୁଣ ବୋଲୁଅଛି ତୋତେ ॥
ତୁ ମୋତେ ସାନ ପ୍ରାୟେ ନ ମଣ ଦଶମାଥ ।
ଜଗତେ ବୋଲନ୍ତି ମୋତେ ଜାନକୀର
କାନ୍ତ ॥
ଯେହୁ ତୁ ଭାଳିଣ ଭାରିଯା ମୋତେ ଦେସି ।
ଲଙ୍କା ଭୁବନେ ତୁ ନିଷ୍ଚିନ୍ତ ହୋଇଂଥାସି ॥
ନୋହିଲେଣ ସଜ ହୋଇଣ ଯୁଦ୍ଧ କର ।
ମୁଇଂ ତ ରହିଅଛି ସୁବଳୟା ଗିରିର ॥
ଯେଉଂଦିନ ସଂଗ୍ରାମ କରିବୁ ପଠିଆଅ
କହି ।
ସୀତା ନ ଦେଲେ ତୋର ପ୍ରାଣ
ପାଇନାହିଂ ॥୯୦
ଫେଡ଼ି ହନୁମନ୍ତ ଶ୍ରୀମୁଖ ପଢ଼ିଲା ।
ଶୁଣି ରାବଣେଶ୍ୱର ନାସା ତିଂଆଇଲା ॥
ବୋଇଲା ଛାର ନିଲକ୍ଷଣ ବାନରରେ
ତୁମ୍ଭେ ।
ଏ ବ୍ରହ୍ମାଣ୍ଡେଶ୍ୱର ଅସୁର ଅଟୁ ଯେ ଆମ୍ଭେ ॥
ଦେବ ଦାନେବ ଆମ୍ଭେ ଅଟୁ ଯେ
ବେନିଭାଇ ।
ଦିତି ଅଦିତି ଆମ୍ଭର ଅଟନ୍ତି ଗର୍ଭଧାରୀ ଆଇ ॥
ସ୍ୱର୍ଗେ ଦେବତାୟେ ମଞ୍ଚରେ ଦଇତ ।
କଶ୍ୟପ ଋଷିଙ୍କର ବୀର୍ଯ୍ୟରୁ ସମ୍ଭୂତ ॥
ବାଣ୍ଟିଣ ରାଜ୍ୟ ଘେନିଲୁ ଯେ ଯାହାର
ସୁଖେ ।
ବିବିଧ ସୁଖ ଭୋଗ ବିଳସିଲୁ ସୁଖେ ॥୧୦୦
ଆମ୍ଭେ ସେ ରାକ୍ଷସ ରାଜା ସପତଦ୍ୱୀପା
ମହୀ ।
ଆମ୍ଭର ଭୟେ ସ୍ୱର୍ଗେ ଦେବତାୟେ ନ ରହି ॥
ଅନେକ ରାକ୍ଷସ ଯେ ଯେ ମହୀମଣ୍ଡଳେ
ଥିଲେ ।
ନିଜ ଭୁଜ ବଳେ ପୃଥିବୀ ଭୋଗ କଲେ ॥
ମାଇଙ୍କା ଅଜା ମୋର ସୁକେଶୀ ଦଇତ ।
ସ୍ୱର୍ଗେଣ ପଶି ସେ ଜିଣିଲା ପୁରୁହୂତ ॥
ବିଦ୍ୟୁତକେଶୀ ବୋଲି ତାହାର ତନୟେ ।
ଚଉଦ ଭୁବନେ ସେ ହୋଇଲା ଯେକ
ରାୟେ ॥
ତାହାର ତନୟେ ସେ ମାଳି ଯେ ସୁମାଳି ।
ମାଲ୍ୟବନ୍ତ ଘେନି ସେ ତନିହେଂ
ମହାବଳୀ ॥୧୦
ସର୍ବଦା ନାରାୟେଣ ଆମ୍ଭର ବଇରୀ ।
ମାଳି ମାଲ୍ୟବନ୍ତକୁ ମାଇଲେ ଚକ୍ରଧାରୀ ॥
ପାତାଳେ ସୁମାଳି ଯେ ପଶିଲାକ ଯାଇଂ ।
ନଭକେଶୀ ନାମେ ଝିଅ ବିଶ୍ରବା ଋଷିଙ୍କି
ଦେଇ ॥
ତହୁଂ ଜାତ ହୋଇଲୁ ଆମ୍ଭେ ତିନି ଭ୍ରାଥ ।
ମୋହୋର ଭାଗ୍ୟରେ ମୁଂ ଜିଣିଲି ଜଗତ ॥
ରାଜ୍ୟେ ରାଜ୍ୟେଶ୍ୱର ଅଟଇଂ ମହାକ୍ଷତ୍ରୀ ।
ଏକାୟେଂ ଭୋଗ୍ୟ ମୁଂ କରଇଂ ଧରିତ୍ରୀ ॥
ବ୍ରାହ୍ମଣ କୋଳେ ଯେ ହୋଇଲି ମୁଇଂ
ଜାତ ।
ଧନପତି କୋବେର ଅଟଇ ଜ୍ୟେଷ୍ଠ
ଭ୍ରାଥ ॥୨୦
ସାନୁଜ କୁମ୍ଭକର୍ଣ୍ଣ ବଇରୀ କୁଳ କାଳ ।
ଇନ୍ଦ୍ରଦେବତାକୁ ଜିଣିଲା ମୋର ବାଳ ॥
ସ୍ୱୟେଂ ଦଶଗ୍ରୀବ ବହଇଂ ବିଂଶପାଣି ।
ଦଇତ ଶରୀର ମୋର ଅନେକ ମାୟା ଜାଣି ॥
କାମରୂପୀ ହୋଇଂ ସକଳ ପୁରେ ଯାଇଂ ।
ପୁଷ୍ପେକ ରଥ ଥିଲେ ଅଜୟେ ନ ପାଇ ॥
ସମୁଦ୍ର ଭିତରେ ଯେ ଅକ୍ଷୟେ ଲଙ୍କା ଗଡ଼ ।
ରଥ ଗଜ ପାଦାନ୍ତି ଯେକକୁ ଯେକ ଗାଢ଼ ॥
ଯେତେ ଫଳମାନ ବିଫଳକୁ ଗଲା ।
ଶ୍ରୀରାମ ଜଟାଧାରୀ ଶ୍ରୀମୁଖ ମୋତେ
ଦେଲା ॥୩୦
ଆଡ଼ତିଆପଣେ ମାଙ୍କଡ଼େକ ଅଛି ଆସି ।
ସରି ସିଂହାସନେ ମୋହୋର ସାଙ୍ଗେ ବସି ॥
ଦୂକାରିଣ କଥାମାନ କହଇ ମୋର ଆଗ ।
ଦଇବର ବଳେ ସିନା ହୋଇଲା ଯେତେ
ଯୋଗ ॥
ଇନ୍ଦ୍ରାଦି ଦେବତା ଖଟାଇଲି ପାଦତଳେ ।
କପିଳାସ ପର୍ବତ ଉପାଡ଼ିଲି ଭୁଜବଳେ ॥
ସଇନି ସହିତେ ଚଉଦ ଭୁବନକୁ ଗଲି ।
ବ୍ରହ୍ମାଣ୍ଡ ସମ୍ପଦ ମୁଂ ଲଙ୍କାରେ ଠୁଳ କଲି ॥
ଏବେ ନାରଖାର ହୋଇଲି କର୍ମ ହୀନେ ।
ମୋହାର ସାଙ୍ଗରେ ବସନ୍ତି ତାଳ
ଜୀବମାନେ ॥୪୦
ତପୁସୀ ରାଜା ପଣେ ଶ୍ରୀମୁଖ କାଟଇ ।
ଭଲା ନିଲଜରେ ତୁମ୍ଭ ମୁଖରେ ଲାଜ ନାହିଂ ॥
କେଉଂଠାରେ ବସି ଭାଳେଣି କଲ ଯେହା ।
ଆପଣେ ଆପଣେ ଯତି ବୋଇଲା
ନରନାହା ॥
ବାପ ବାହାର କଲା ରାଜ୍ୟରୁ ଅଧମ ପଣ
ଦେଖି ।
ବନକୁ ପଳାଇଲା ନିଜ ରାଜ୍ୟ ଉପେକ୍ଷି ॥
ସୁଜନ ସଭାବେ କନ୍ଦମୂଳ ଖାଇଂ ।
ଭାଲୁଙ୍କ ମର୍କଟ ଲୋଚାୟେ ସଙ୍ଗେ ଥାଇଂ ॥
ଆରମ୍ଭ ହୋଇଣ ଆସିଅଛି କାଛି ।
ମିଛେ ରାଜା ବୋଲି ଲେଖା
ଦେଇଅଛି ॥୫୦
ତେଣୁ ସେ ତାହାକୁ ଅଛ ହୋ ଗୋଡ଼ାଇଂ ।
ଯତିକି ରାଜା କରି ସେବକ ତାହାର
ହୋଇଂ ॥
ଭିକାରୀର ବୋଲେ ମରିବା ଠାବକୁ ଆଶ ।
ଜଳନ୍ତା ଅଗ୍ନିରେ କେଉଂ ଭରସାରେ ପଶ ॥
ସେ ଘାନ୍ତି ଅଇଲୁ ଯେ ଧର୍ମେ ଜୀଇଂ ଗଲୁ ।
ପୁଣି କିମ୍ପା ନିଲଜ ସେ ଯେଥକୁ ଅଇଲୁ ॥
ହନୁମନ୍ତ ବୋଇଲା ମୁଂ ଅଇଲି
ଯହିଂପାଇଂ ।
ଶ୍ରୀରାମ ଅଛନ୍ତି ଯେ ଶ୍ରୀମୁଖ ହାଦେ ଦେଇଂ ॥
ତାହା ଜାଣିମାକ ଆହୁରି କାର୍ଯ ଅଛି ।
ଯଦି ନ ସମର୍ପିବୁ ସୀତା କମଳାକ୍ଷି ॥୬୦
ଅବଶ୍ୟ ପ୍ରାଣ ତୁ ହାରିବୁ ଲଙ୍କସାଇଂ ।
ଯେ କାଣ୍ଡ ଆଣିଛି ତୋତେ ଚିହ୍ନାଇବା
ପାଇଂ ॥

ଯେବେ ଦେଖିଥିଲେ ତୁ ନୋହିବୁ ହାଦେ ବଣା ।
ଏ ନିମନ୍ତେ ମୁହିଂ ଅଇଲିରେ ରାବଣା ॥
ଯୁଧ୍ୟ କଲେ ପ୍ରାଣ ହାରିବୁ ଅବଶ୍ୟ ।
ଧର୍ମକୁ ଜିଣିମେ ବୋଲି ସେ ପେଷିଲେ ତୋର ପାଶ ॥
ଶୁଣିଣ ଲଙ୍କପତି କୋପେଣ ଚାହିଁଲା ।
ଆଜ ଜାଣିମାରେ ବୋଲିଣ ବୋଇଲା ॥
ତୁମ୍ଭଙ୍କୁ କିବାରେ ମୁଂ ଡରଇ ସମରେ ।
ଯାଇଂ କହ ତୋର ଶ୍ରୀରାମ ଛାମୁରେ ॥୭୦
ମାଙ୍କଡ଼ ଭାଲୁଙ୍କୁ ଆଣିଅଛି ଯେତେ ।
ଏ ହୀନ ଜନ୍ତୁମାନ ନ ମରାଉ ଅନମିତେ ॥
ଆପଣେ ଦୁଇ ଭାଇ ହୋଇଥାନ୍ତୁ ସଜ ।
କିମ୍ପା କହିବାଟି ଆଜହୁଂ ହୋଉ ଯୁଧ୍ୟ ॥
ଯେ ମୋର ବିଂଶବାହୁ ସେ ଛେଦିଲେ ନେଉ ସୀତା ।
ଯାଯାରେ କପିବାପୁଡ଼ା ଯାଇଂ କହ ଜଗୁଜିତା ॥
ଏକା କରିଣ ମୁଂ ନ ମାରଇଂ ତୋତେ ।
ସାଗ୍ରାମ ମଣ୍ଡଳେ ପଶିବି ଶ୍ରୀରାମ ସଙ୍ଗତେ ॥
ଏତେ ବୋଲିଣ ସନ୍ଧ୍ୟା ସାରିଣ ଉଭା ହୋଇଂ ।
ସାଜିଲେ କି ସଇନି ବୋଲିଣ ବୋଲଇ ॥୮୦
ଶୁକ ସାରଣ ଯେ କହନ୍ତି କରଯୋଡ଼ି ।
ଆଗ୍ୟାଂ ଦେଲେ ଆଗେ ଯିବେ ବଳ ବଢ଼ି ॥
ସିଂହଦ୍ୱାରେ ଆସି ହୋଇଲେ ସମସ୍ତ ।
ସଜ ହୋଇଅଛି କୁମର ଇନ୍ଦ୍ରଜିତ ॥
ରାବଣ ବୋଇଲା ରେ ସର୍ବବଳ ଥାନ୍ତୁ ।
ସମ୍ପର ହୋଇଂଣ ମୋହୋର ସଙ୍ଗତରେ ଯାନ୍ତୁ ॥
ଏଥୁଅନନ୍ତରେ ଯେ ହନୁମନ୍ତ ବୀର ।
କରେ ଧରିଅଛି ଶତୃଜୟେ ଶର ॥
ଗଗନେ ବିକ୍ରମିଣ ସେ ଗଲାକ ତତକ୍ଷଣ ।
ସୁବଳଯାରେ ଭେଟିଲା ଶ୍ରୀରାମ ଲକ୍ଷଣ ॥୯୦

ପ୍ରଳମ୍ଭ କରିଣ ସେ ଶିରେ କର ଦେଲା ।
ଯେ ବିଧି ବିଧାନ ଯେ ସକଳ କହିଲା ॥
ଭୋ ଦେବ ରଘୁନାଥ ଅଯୋଧ୍ୟା ରଘୁସାଇଂ ।
ତୋହୋର ଆଗ୍ୟାଂ ପ୍ରମାଣେ ଗଲଇ ଲଙ୍କଭୂଇଂ ॥
ସନ୍ଧ୍ୟା କରନ୍ତେ ଯେ ଦେଖିଲି ଲଙ୍କପାଳ ।
ମୋହୋର ଶ୍ରୀମୁଖ ନେଲାର ଦେଖି ଅଚାର୍ଗଳ ॥
ମୋତେ ବୋଇଲା ସେ ତୁହି ପଢୁ କିନା ।
କି କି ଲିହିଅଛି ଶୁଣିମାହିଂ ନିନା ॥
ତାହାର ବଚନେ ମୁଂ କହିଲି ସମସ୍ତ ।
କାଣ୍ଡ ଦେଖାଇଲେ ନ ଡରିଲା ଦଇତ ॥୧୦୦
ଶ୍ରୀମୁଖ ସମ୍ବାଦ ଶୁଣି କୋପ କଲା ।
କିମ୍ପା ଜାନେକୀକି ସମର୍ପିବି ବୋଇଲା ॥
ଯୁଧ୍ୟକୁ ଆସିବାକୁ ହୋଉଅଛି ସଜ ।
ମୋତେ କହିଲା ଯାଇଂ କହ ରଘୁରାଜ ॥
ବାରତା ଶୁଣି ଦେବ ଅଇଲି ବାହୁଡ଼ି ।
ହସିଣ ଶ୍ରୀରାମ ବାମ କରେ ନିଶ ମୋଡ଼ି ॥
ଜାଣିମା ଜାଣିମାରେ ଆଜର ରଣଗୋଳ ।
କେତେମାନ ଯୁଦ୍ଧ ଜାଣଇ ଲଙ୍କପାଳ ॥
ମୁହିଂ ଶିଶୁପୁଅ ମାନେବ ଜଟାଧାରୀ ।
ଏହିରୁ ଜାଣିମା ନା ଅପଚୟେ ହାରି ॥୧୦
ସୁଗ୍ରୀକି ବୋଇଲେ ହୋ ମଇତ୍ର ତୁମ୍ଭେ ଶୁଣ ।
ଥାଟ ସଜ ହୋଉ ଦିଆଅ ଘୋଷଣ ॥
ଏତେ ବୋଲି ରାମ ଉଠିଲେ ଆସନୁ ।
ବାମ କରେ ଧରିଅଛନ୍ତି ଅଗସ୍ତି ଦେଲା ଧନୁ ॥
ପ୍ରଶୁରାମ କୋଦଣ୍ଡେ ପୁଣିହିଂ ଗୁଣ ଦେଲେ ।
ପଇତା ଛନ୍ଦେଣ ଶ୍ରୀଅଙ୍ଗେ ଭରିଲେ ॥
ଦୁଇକନ୍ଧରେ ଯେ ଅଛନ୍ତି ତ୍ରୋଣ ଭିଡ଼ି ।
ଦୋସଡ଼ା କଲେକ ସୀତ୍ୟାର ପାଟ ଶାଢ଼ୀ ॥
ଅତିହିଂ ସୁସଞ୍ଚେ ଯେ ବାନ୍ଧିଲେକ ଜଟା ।
ଉପରେ ମଣ୍ଡିଲେ ଜାଇ ପୁଷ୍ୟ ଗୋଟା ଗୋଟା ॥୨୦

କଣ୍ଠରେ ତୁଳସୀକାଠର ମାଳମାନ ।
ଗଳାରେ ନୀଳାର ମାଳ ଶୋଭିତ ଶୋଭାବନ ॥
ଆବର ଶତେ ସରି ଧବଳ ବଉଳ ମାଳ ।
ତ୍ରିସରି ଚମ୍ପାମାଳ ଲୁଳଇ ବକ୍ଷସ୍ଥଳ ॥
ଦୋସରି ମନ୍ଦାର ମାଳେ ଅଛନ୍ତି ସ୍ୱାମୀ ଭରି ।
ବୈକୁଣ୍ଠ ପର୍ବତେ ଯେହ୍ନେ ବିଜୟେ ନରହରି ॥
ସୀତୟାର ମଣି ଗୋଟି ହୃଦୟରେ ଦିଶେ ।
ନାରାୟଣ ଗଳାରେ କୌସ୍ତୁଭମଣି କିସେ ॥
କର୍ଣ୍ଣରେ ତମ୍ବାର କୁଣ୍ଡଳ ଝଲକନ୍ତି ।
ସର୍ବାଙ୍ଗେ କର୍ପୂର ଗୁଣ୍ଡି ଘଷିଛନ୍ତି ॥ ୩୦
ବତିଶ ବରଷ ରାମର ଅଟଇ ବୟେସ ।
କୋଟିୟେ କନ୍ଦର୍ପକୁ ହୋଇଲେ ଯେକ ବେଶ ॥
ବାମେ ଯମଦାଢ଼ ଉପରେ ବୀରନେତ ।
ଅଙ୍ଗଡ଼ାବ ଖଣ୍ଡା ଅଟଇ ସବୁ ଶ୍ୱେତ ॥
ଦଖିଣ ଅଙ୍ଗର ମୁଧୁନା ଅଙ୍ଗୁଷ୍ଠି ।
ତହିଂରେ ସାଜିଲେ କଷଣି ଯେ ଗୋଟି ॥
ଡାହାଣେ ଶରଗ୍ରନ୍ଥି ଛାଟେଣୀ ବାମେ ବାନ୍ଧି ।
କାମଦେବ ସଜ୍ଜକି ତ୍ରୈଲୋକ ଯହିଂ ସାଧି ॥
କସ୍ତୁରୀ ରେଖ ପ୍ରାୟେ ଦାଢ଼ୀର ରେଖାମାନ ।
ନୀଳମଣି ନିନ୍ଦିତ ନିଶର ବିଧାନ ॥୪୦
କପାଳେ କସ୍ତୁରୀ ମଙ୍ଗଳ ଚାରୁଚିତା ।
ଅର୍ଦ୍ଧ ଗଣ୍ଡ ପାରି ଖୋଷିଲେ ପଇତା ॥
ବୀରବର ବାନା ବାନ୍ଧିଲେ ଅସରଳା ସୂତା ।
ସୂର୍ଯମଣ୍ଡଳ ଜାଣି ସିନ୍ଦୂରର ଚିତା ॥
ଗୋରଚନା ଚିତା ଜମ୍ୱେବ ନେଇ ଦେଲେ ।
ଶତୃ ମାରି ଉଭା ହୋଅସି ବୋଇଲେ ॥
ଖୁପ ନାରାଙ୍ଗେକ ଦଖିଣ କରେ ଧରି ।
ପାଦ ବଢ଼ାଇଲେ ପବନ ହେତୁ କରି ॥
ଲକ୍ଷଣ ହିଂ ଯେହି ପ୍ରକାରେ ହୋଇଲେ ସଜ ।
ଦମା ଦାଉଣ୍ଡି ଯେ ବାଜଇ ପଖାଉଜ ॥୫୦
ଟମକ ନିଶାଣ ଶବଦ ଗରୁ ଟାଣ ।

ଶଙ୍ଖ କମ ମହୁରୀ ବାଜଇ ଅପ୍ରମାଣ ॥
ସୁଗ୍ରୀବର ରାୟେ ସଜ ହୋଇ ଆୟେ ।
ସଙ୍ଗେଣ ବିଭୀଷେଣ ହନୁମତ ଯାୟେ ॥
ଅଙ୍ଗଦ ତାରାକ୍ଷ ସୁଷେଣ ନଳ ନୀଳ ।
କୁମୁଦ ପନସ ଯେ ପନଶିଳ ॥
ଡାଳିମ୍ବ ଚନ୍ଦନ କାଳିଞ୍ଜନ ବୀର ।
ଶତବଳ ପବନ ହନୁର ପିଅର ॥
ସାରାସ ପାରାସ ମହୀନ୍ଦ୍ର ଗବାକ୍ଷ ।
ସମସ୍ତେ ସଜ ହୋଅନ୍ତି ଯେକକୁ ଯେକ
ସମକକ୍ଷ ॥୬୦
ଜମ୍ୱେବ ଶତବଳ ଗନ୍ଧମାରଦନ ।
ବସନ୍ତ ଦଧିମୁଖ ଦୁବିନ୍ଦ ସୁସୋଦନ ॥
ରମଣ ଶରସେତୁ ଶଉରୀ ସେନାପତି ।
ଦେଖିଣ ଶ୍ରୀରାମ ଯେ ମନେ ବିଚାରନ୍ତି ॥
ଜାଣିମା ସଂଗ୍ରାମ ଭୂମିରେ ଆଜ କଥା ।
ଅପାର କାଳର ବୀର ଅଟଇ ଦଶମଥା ॥
ଅଙ୍ଗଦକୁ ବୋଇଲେ ତୁ ତଳକୁ ନ ଯାଅ ।
ଏ ମୋହୋର ବୋଲେ ପର୍ବତେ ଦଣ୍ଡେ
ରହ ॥
ଆସିବ ଯେବେ ସେ ଲଙ୍କାର ଆଧିପତି ।
ବିଚାରି ବୁଝିବାର ସେ ଅଟଇ ଯୁଗତି ॥୭୦
ଏତେକ ବୋଲି ରାମ ବିଜେ କରିଗଲେ ।
ପର୍ବତୁ ଓହ୍ଲାଇଂ ଯେକ ଠାବରେ ରହିଲେ ॥
ସଇନି ଅପ୍ରମିତ ଅଛଇ ପିଠିକତି ।
ବିକ୍ରମ ସିଂହ ଜାଣି ଦିଶନ୍ତି ଶାନ୍ତି ମୂତି ॥
ଦକ୍ଷିଣେକଇଂ ମୁଖ କରି ଶ୍ରୀରାମଚନ୍ଦ୍ରରାୟେ ।
ଦିଶୁଅଛି ଲଙ୍କା କଟକ ସବୁ ସ୍ୱର୍ଣ୍ଣମୟେ ॥
ଚିହ୍ନ ଚିରାଳ ଯେ ଉଡ଼ଇ ଫରହର ।
ଯେଥୁ ଅନନ୍ତରେ ଯେ ଦଶାନନ ବୀର ॥
ମଉଦାଣ ଜଗତୀରେ ବିଜେ କଲା ଯାଇଂ ।
ଅପ୍ରମିତ ବଳ ଦେଖିଲା ଲଙ୍କସାଇଂ ॥୮୦
ବିସ୍ମୟେ ଛାଡ଼ିଣ ସେ ହୋଇ ହରଷ ମତି ।
ମରିବ ବୋଲି ତାର ମନେ ନାହିଂ ଭୀତି ॥
ସଭାବେଣ ଅସୁର ବିଶେଷେଣ ଦୁଷ୍ଟ ।
ଅପ୍ରମିତ ବଳ ସେ ଦେଖିଲା ଦ୍ରପିଷ୍ଟ ॥
ଇନ୍ଦ୍ରଜିତ କୁମର ଯାଇଂ ଦ୍ରଶନ କଲା ।
ପାୟେଂ ପଡ଼ି ଶୋଇଂ ମଥାରେ ହାଥ ଦେଲା ॥
ଦିବ୍ୟ ସେ କାଛେଣୀ ହୋଇଅଛି ବୀର ।
ରତ୍ନମୁକୁଟ ଶୋହଇ ତାହାର ଯେ ଶିର ॥
ତାଟର ଉପରେ କଷିଅଛି ପାଗ ବାନ୍ଧି ।
ଗୁପତେ ମସ୍ତକେ ସୁବର୍ଣ୍ଣ ଖୋଳ ନନ୍ଦି ॥୯୦
କଣ୍ଠେଣ ମୁକୁତା ଯେ ଶତେସରି ମାଳ ।
ନବରତ୍ନ ପଦେକ ଲମ୍ୱଇ ବକ୍ଷସ୍ଥଳ ॥
ବଜ୍ର ଘୋଟି ସେହ୍ନା ହୀରାମୟେ କମ ।
ଦ୍ରପଣ ଚାମର ମଣ୍ଡିଅଛି ଅନୁପାମ ॥
ହାଥରେ ହାଥ ସେହ୍ନା ଶୋହଇ ବଜ୍ରଜାଲି ।
ମୁକୁତା ଖଞ୍ଜିଅଛି ଜାଣି ଗୋଟି ମଲ୍ଲୀ ॥
କଟିରେ କଟିମେଖଳା ନୀଳମଣି ଶୋହେ ।
ଡାହାଣେ ଯମଦାଢ଼ ଖାପ ରତ୍ନମୟେ ॥
ଅଇରି ଉରଣଳ ବାନା ଫରହର ।
ବାମ ଗୋଡ଼େ ବାନ୍ଧିଅଛି ଅନର୍ଗଳ
ତୋଡ଼ର ॥୧୦୦
ଦକ୍ଷିଣ ଚରଣେ ବୀରଘଣ୍ଟ ସାଜି ।
ପୟରେ ଚଳନ୍ତେ ବିକରାଳ ବାଜି ॥
ଇନ୍ଦ୍ରଗୋବିନ୍ଦ ପାଟ ଶୁଦ୍ଧ ସୁବର୍ଣ୍ଣ ଜ୍ୟୋତି ।
ସେ ପାଗ ଯୋଡ଼ା ବାନ୍ଧିଲା ବିଶର୍ବାର ନାତି ॥
ପୟରେ ନେପୁର କରେଣ କଙ୍କଣ ।
ବିଦ ମୁଦି ବାହୁଟି ବିବିଧ ଆଭରଣ ॥
ମକରଧ୍ୱଜ ପ୍ରାୟେ ଦିଶଇ ସୁନ୍ଦର ।
ହେଲ ଯୁଦ୍ଧେ ଜିଣି ପାରଇ ପୁରନ୍ଦର ॥
ଯତନେ ସଜ ଯେ ବାନର ବଳ ମାରି ।
ଦେଖିଣ ତୋଷ ଯେ ହୋଇଲା
ଦଶଶିରି ॥୧୦
ନରାନ୍ତେକ ଦେବାନ୍ତେକ ଦୁଇ ଭାଇ ଆୟେ ।
ଚାହିଂଣ ପ୍ରଶଂସା କରଇ ଦଶାନନ ରାୟେ ॥
ମହୋଦର ମହାପାରୁଶ ସଜ ଦେଖି ।
ଅନେକ ସୁଖ ଯେ ପାଇଲା ବିଂଶଆଖି ॥
କୁମ୍ଭ ନିକୁମ୍ଭ ଯେ ଦେବଦନ୍ତ ତିନି ।
ସିଂଘ ତୁରଙ୍ଗ ଅଇଲେ କୁଳୁପାକ୍ଷ ଘେନି ॥
କାକାକ୍ଷ ବିରୁପାକ୍ଷ ଅଜୟେ ଅମୟେ ।
କଙ୍କ ଧଙ୍କ ଶାର୍ଦ୍ଦୋଳ ଦୁମୁଖା ସଜ ହୋୟେ ॥
ସୁଖା ମୁଖା ଯେ ଯମଘଣ୍ଟ ବୀର ।
କାଳଘଣ୍ଟ ମହୀରାବଣ ବକାସୁର ॥୨୦
ଏକପାଦ ପାଟୋଳି ବିଜୟେ ପଲାଦ ।
ସଲୋପି ଅଲୋପି ନାଦ ମହାନାଦ ॥
ଲୋହିପାଦ ଲୋହିତାକ୍ଷ ଚାରଣ ବିଚାରଣ
ବୀର ।
ଏହାଙ୍କର ସଜ ଦେଖି ହସଇ ଦଶଶିର ॥
ବୋଲଇ ଆଜ ସେ ଜାଣିମା ତୁମ୍ଭର ବଳ ।
ରିକ୍ଷ କପି ମାରିବ ଯେ ଦଶରଥ ବାଳ ॥
ତେବେ ସେ ମହିମା ଯେ ରହିବ
ତିନିପୁରେ ।
ସର୍ଗେ ଯେହ୍ନେ ଯୁଝିଲ ଦେବଙ୍କ
ସଙ୍ଗତରେ ॥
ତେସନେକ କାର୍ଯ କଲେ ନା ଯଶ ପାଇଂ ।
ନୋହିଲେ ରିକ୍ଷ କପି ମାରଣ ନ ଯାଇ ॥୩୦
ଇନ୍ଦ୍ରଜିତ ଉତର ଯେ ନ ଦେଲା ତାହା ଶୁଣି ।
ଲାଜେ ମୁଣ୍ଡପୋତି ଉଭା କୁମରମଣି ॥
ଆବର ଯୋଦ୍ଧାମାନେ କରନ୍ତି ଗାରିମା ।
ତୋହୋର ବୋଇଲେ ଆମ୍ଭେ ଜିଣିପାରୁ
ବେଦବ୍ରହ୍ମା ॥
ଏ କିସ କରିବେ ଯେ ନର ବାନର ଛାର ।
ଯେ କଥାକୁ ଭୋ ଦେବ କିଛିହିଂ ନ
ବିଚାର ॥
ସମର ଥାନେ ସେ ବୁଝି ସିନା ଆଜ ।
ଆଗହୁଂ ବୋଇଲେ ହୋଇବ କିସ କାର୍ଯ ॥
ଶୁଣିଣ ଲଙ୍କରାୟେ ପରମତୋଷ ମତି ।
ସେନାପତିମାନଙ୍କୁ ହକାରିଲା କତି ॥୪୦
ବୋଇଲା ତୁମ୍ଭେ ଯେ ପଞ୍ଚାଶ କୋଟି
ଯୋଦ୍ଧା ।
ଯେକେ ଯେକେ ପୃଥ୍ୱି କରିପାର ଶୋଧା ॥
ଯୋଧାକେ ଦଶ ସସ୍ର ରଥୀ ଥିବ ଘେନି ।
ରଥୀକେ ମତ୍ତଗଜ ଥିବ ସସ୍ର ବେନି ॥୫୦
ମତ୍ତଗଜ ସହସ୍ରେ ଦନ୍ତା ଜଗିଥିବେ ।
ଦନ୍ତାକେ ପାଞ୍ଚଶତ ରାଉତ ରହିବେ ॥
ରାଉତକେ ଶତ ପାଇକ ଥିବେ ଜଗି ।
ରଣେ ପିଠି ଦେଇ ନୁ ଆସିବ ଭାଗି ॥
ମୁଇଂ ଥିବି ଇନ୍ଦ୍ରଜିତକଇ ଘେନି ।

ନରାନ୍ତେକ ଦେବାନ୍ତେକ ଗଡ଼େ ଥିବେ ବେନି ॥
ଏହାଙ୍କର ସଙ୍ଗତରେ ଦଶକୋଟି ଥିବେ ରଥୀ ।
ମେବକ୍ଷେକ ଥିବ ସଙ୍ଗେଣ ମତ୍ତହସ୍ତୀ ॥
ଅଠାର ପଦ୍ମ ରାଉତ ଘେନିକରି ଯିବ ।
ସତୁରୀ କ୍ଷେଉଣୀ ସଙ୍ଗତରେ ବଳ ଥିବ ॥
ମଧ୍ୟଦଣ୍ଡରେ ଯେ ଥିବ ବେନି ଭାଇ ।
ଯେମନ୍ତେ ରିକ୍ଷ କପି ଗୋଟିଏ ନ ଥାଇଂ ॥
କୁମ୍ଭ ନିକୁମ୍ଭ ଯେ ଯେହି ବିଧାନରେ ଯାନ୍ତୁ ।
ଯେତେକ ପାରନ୍ତୁ ତେତେକ ସନ୍ୟ ନେନ୍ତୁ ॥
ଦଶ ପଦ୍ମ ଯୋଧା ମୋହୋର ସଙ୍ଗେ ଥାନ୍ତୁ ।
ଷାଠିଏ କୋଟି ମରଗଜ ଆମ୍ଭର ସଙ୍ଗରେ ରହନ୍ତୁ ॥୬୦
ଲକ୍ଷେ ଲକ୍ଷେ ଶଙ୍ଖ ଅଶୁଆର ଘେନି ।
ବୃନ୍ଦେ ବୃନ୍ଦେ କାଠିଏ ଥିବାକ ସଇନି ॥
ଅଠର ଗଣ୍ଡା କୁମର ତେର ଶତ ନାତି ।
ଜଣକେ ଥିବ ଯେ ମର୍ତ୍ତୁତେକ ହାଥୀ ॥
ଶୟେକୋଟି ପଞ୍ଚାଶ ସହସ୍ର ବଳବନ୍ତା ।
ଅଶ୍ୱ ଥିବ ସହସ୍ରେ କୋଟି ମେବକ୍ଷେ ଗଣିତା ॥
ଶଙ୍ଖେକ ପଦ୍ମ ଯେ ପାଇକ ଘେନିଯିବ ।
ଭିନ ଭିନ ହୋଇ ତୁମ୍ଭେ ସାଂଗ୍ରାମେ ପଶିବ ॥
ଯେତେକ ଥିବ ତହିଁ ରିକ୍ଷ କପି ପୁଣି ।
ବିଭୀଷେଣ ସହିତେ ଥିବେଟି ଭାଇ ବେନି ॥୭୦
ମଧ୍ୟରେ ପଶିଲେ ବେଢ଼ିବଟି ଗୁଡ଼ିଆଇଂ ।
ଯାହାର କଡିରେ ଯିବ ତାହାର ବର୍ତ୍ତି ନାହିଁ ॥
ଗୋଳ ଯୁଦ୍ଧ କରିଣ ମାରିବ ହାଥ ସୁଖେ ।
କେ ପ୍ରାଣ ପାଇବଟି ପଡ଼ିଲେ ଆମ୍ଭ ମୁଖେ ॥
ଯେତେକ ବୋଲି ଉଠି ପିନ୍ଧିଲାକ ଗଡା ।
ବଜ୍ର ଘୋଟି ସେହ୍ନା ଯେ ଲାଇଲା ବଳବନ୍ତା ॥
ବିଂଶ ଭୁଜେଣ ଯେ କୋଡ଼ିଏ ବୀରବାହୁ ।
ଯାହାର ବାନା ବୋଲାଇଂ ସାଂଗ୍ରାମେଣ ରାହୁ ॥

ସୁରଂଗଣୀ ପାଟ ହୀରାର ଦରପଣ ।
ମୁକୁତାର ମେଖଳା ଚନ୍ଦ୍ରର କିରଣ ॥୮୦
ନିରନ୍ତରେ ଶୁକଳ ଚାମର କେରି କେରି ।
ସେହ୍ନାର ଉପରେ ନେଇଂ ପୁଣ ରତ୍ନଜାଲି ଭରି ॥
ବିବିଧ ପଦେକ ଲୁଳଇ ବକ୍ଷସ୍ଥଳେ ।
ବାଟୁଳ ମୁକୁତା ଶତେସରି ମାଳେ ॥
ବ୍ରହ୍ମା ଯେବଣ ଅକ୍ଷତମଣି ଦେଇଥିଲା ।
ଲଙ୍କା ପୋଡ଼ିବା ଦିନ ବିଶକର୍ମା ତାହା ଦେଲା ॥
ସେ ଅମୋହମଣି ଯେ ଭୂଷଣ ଲଙ୍କା ସାଇଂ ।
ଦେବତାମାନଙ୍କୁ ଭୟେ ତାର ନାହିଂ ॥
ଅନର୍ଗଳ ତୋଡ଼ର ବାନ୍ଧିଲା ଦୁଇ ପାଦେ ।
ଚରଣ ଶୋଭାପାୟେ ନୂପୁରର ନାଦେ ॥୯୦
କଟିରେ କଟିମେଖଳା ବାମେ ଯମଦାଢ଼ ।
ନେତେକ ଉଡ଼ାଇଲା ବଇରୀ ବିଭାଣ୍ଡ ॥
ଦଶଶିରରେ ଯେ ଦଶମୁକୁଟ ରତ୍ନମୟେ ।
ଦଶଇ ବଦନେ ଯେ ତାମ୍ବୁଳ ଲାଗିହୋୟେ ॥
ଶ୍ରବଣେ କୁଣ୍ଡଳ ଯେ ବିଜୁଳି ଝଳି ଜାଣି ।
ଲଲାଟେ ଝରା ଯେ ଲମ୍ବଇ ନାନାମଣି ॥
କେଶେ ପୁଷ୍ପଲାଇଂ ବାନ୍ଧିଅଛି ଗଭା ।
ଆନୁଆନେଣ ଯେ ଦିଶିଲା ମହାଶୋଭା ॥
ଫରହର ନିଶ ନିଶ୍ୱାସ ବାୟେଂ ଉଡ଼ି ।
ଭ୍ରୁକୁଟିମାନେ ଯେ କର୍ଣ୍ଣତଟେ ପଡ଼ି ॥୧୦୦
କପାଳେ କସ୍ତୁରୀ ଯେ ଗୋରଚନା ଚିତା ।
ନୟନର ତେଜ ବୂଲଇ ଅପ୍ରମିତା ॥
ଦାଢ଼ୀ ଫୁଲାଇଣ ଛାଡ଼ଇ ନିଶ୍ୱାସ ।
ପୁଷ୍ପେକ ରଥେ ବିଜେ କଲା ଦଶାଇସ ॥
ଲକ୍ଷେକ ଶଙ୍ଖ ଯେ ପୂରଇ ଘନଘନ ।
ଇନ୍ଦ୍ରଜିତ ଚଢ଼ିଲା ଦେବଦଳନ ନାମେ ଯାନ ॥
ଯେ ଯାହାର ବାହାନ ଚଢ଼ି ଅଇଲେ ପୋୟେ ।
ସେନାପତିମାନେ ଆଗୁସାର ହୋୟେ ॥
ନରାନ୍ତେକ ଦେବାନ୍ତେକ ଅଟନ୍ତି ଆଗିଆଣି ।
ପାଦ ଭରେ ଟଳ ଟଳ କମ୍ପୁଛି ଧରଣୀ ॥୧୦

ସୁରଗିରି ଚମକଇ ବାଜଇ ନିଶାଣ ।
ଢୋଲ ଦମା ଟମକ ବାଜୁଛି ଅପ୍ରମାଣ ॥
ହସ୍ତୀଙ୍କର ଗର୍ଜନ ଘୋଡ଼ାଙ୍କର ହିଂସା ରାବ ।
ପାଦାନ୍ତିକର ମୁଖରାବ ଯେ ଶବଦ ଶୁଭିବ ॥
ଫରୀଙ୍କର ଠେଂଶ ଯେ ଧନୁଙ୍କର ଟଙ୍କାର ।
ଗଜ ଘଣ୍ଟ ଘାଘୁଡ଼ି ଶବଦ ଗରୁଟାଣ ॥
ଚାଲ ଚାଲ ଶବଦ ଧାଂଅ ଧାଂଅ ରାନ୍ତି ।
ଯେକକୁ ଆରେକ ଯେ ଆଗକରି ଯାନ୍ତି ॥
ଅସୁର ସଇନି କେ ପାରିବାକ କଳି ।
ଚିତ୍ରଗୁପତେ ସେ ପାରିବେ ଅବା କଳି ॥୨୦
ବିଭୂତି ଭୂଷଣ ସେ ରଙ୍ଗମାଟିମୟେ ।
ଚତୁସମ ବୋଲି କେ ବେଗେ ବେଗେ ଧାୟେଂ ॥
କେହୁ ଲତା ପତ୍ର ଗୁଡ଼ିଆଇଂ ଦେହେ ।
କେହୁ ଠାବକେ ଯୋଡ଼ା ପହଣ୍ଡ ଡିଅନ୍ତି ପାୟେ ॥
କେହୁ ଖୁରି ଦେଇଂଯାନ୍ତି କେହୁ ଚିରା ମାରେ ।
କେବଣ ଅସୁର ଖଣ୍ଡା ପକାଇଣ ଧାୟେଂ ॥
କେହୁ ଦାଢ଼ୀ ଆଉଂସି ମୋଡ଼ଇ କେହୁ ନିଶ ।
ଯେକକୁ ଆରେକ ଦେଖି ହୋଅନ୍ତି ହସ ହସ ॥
କେହୁ ହୁଳହୁଳି କେହୁ ରଡ଼ି ଦ୍ୟନ୍ତି ।
କେହୁ ମାର ମାର ଆଞ୍ଜେଣ ଡାକନ୍ତି ॥୩୦
କେ ରଡ଼ି ପାରନ୍ତି ଖଣ୍ଡେ ଦୂରେ ପଡ଼ି ।
ଯେକର ଉପରେ ଆରେକ ମାଡ଼ି ପଡ଼ି ॥
କାହାର ମାଇ କାଛ କାହାର ମାନିଆ ପରିଚ୍ଛନ୍ଦ ।
ପିଠି କତିକି କାହାର ଲମ୍ବିଛି ନୂଟବନ୍ଧ ॥
କେ ପାନ ଭୁଞ୍ଜଇ କେ ପୋଡ଼ା ମାଂସ ଖାଇ ।
କେହୁ ମୃଦୁ ମୃଦୁ ଘୁମୁରା ବଜାଇ ॥
କେହୁ କେଶ ଫେଡ଼ି ଭକୁଟାନ୍ତି ଆଖି ।
କତି ଲୋକେ ପଳାନ୍ତି ତାହାକୁ ହାଦେ ଦେଖି ॥
ବସିବା ହୋଇଂ କେ ନୃତ୍ୟ କରିଯାଇଂ ।

କେହୁ ଭଣ୍ଡ ବିଭଣ୍ଡ କରିଣ ଗୀତ
ଗାଇଂ ॥୪୦
କେ ଦାନ୍ତ ନିକୁଟିଣ କାଢୁଛନ୍ତି ଜିଭ ।
ଉଡ଼ା ମାରିଣ କେ ପାଲଟି ରହିବ ॥
କେହୁ ଯୁଦ୍ଧରେ ପଶଇ ଠାଣ ଘେନି ।
କେହୁ ଗର୍ଜନ୍ତି ଯେ ମେଘନାଦ ଜାଣି ॥
କେ କରେ ଖଡ଼ଗ କାହା କରେ ଧନୁଶର ।
କେହୁ ଧରିଛନ୍ତି ଦୁସହ ମୁଦ୍ଗର ॥
କେହୁ ଖଣ୍ଡା ଶକତି କେହୁ ଯନ୍ତ୍ର ବାଇ ।
ତୀକ୍ଷ ଭାଲ ଘେନି କେବଣ ଅସୁର ଧାଇଂ ।
କେ ବଜ୍ରବାଣ କେ ହାବେଳି ସଜ କରି ।
ଛିଟିକିଣି ପାଟେଣି କେ ଘେନିଣ
ଆଗସରି ।୫୦
ଲେନ୍ତି ପଥର କେ ଗଧଡ଼ି ବହି ନ୍ୟନ୍ତି ।
କଙ୍କଣ ରଣଝଣ କେ ବାହୁଟି ରାବ ଦ୍ୟନ୍ତି ॥
କେହୁ ଭୁଶଣ୍ଡୀ କେ ପରିଘ ଘେନି ଧାୟେଂ ।
କେହୁ ନିଜ ସାଙ୍ଗିକି ଛାଡ଼ିକରି ଯାୟେ ॥
ଓଟ ପିଠି ନିଶାଣ କେ ବଜାନ୍ତି ଅବିଛନ୍ନ ।
ବିବିଧ ଛନ୍ଦେଣ ଯେ ବାଜଇ ବାଦ୍ୟ ମାନ ॥
ଅଠର କ୍ଷୋଉଣୀ ଯହିଂ ବାଜେଣିଆ ଥାଟ ।
କିମ୍ବା ସ୍ୱର୍ଗ ଆୟେ ନ ଘେନିମେ ପାପିଷ୍ଟ ॥
ପବନେଣ ମେଘ ଯେହ୍ନେ ଗଗନେଣ
ପୂରି ।
ଅସୁର ଚଳନ୍ତେ କମ୍ପଇଂ ବସନ୍ଧରୀ ॥୬୦
ଉତ୍ତର ଦ୍ୱାର ଫେଡ଼ି ଦ୍ୱାରପାଳ ଦେଲା ।
ଯହୁଂ ସେ ନୃପତି ଫରମାଣ ପାଇଲା ॥
ସେହି ବାଟେ ଥାଟ ଯେ ହୋଇଲେ
ବାହାର ।
ସୁବଳୟାରେ ଥାଇଂ ଯେ ଚାହିଁଲେ
ରଘୁବୀର ॥
ଅପ୍ରମିତ ସଇନି ଯେ ଆସୁଛନ୍ତି ମାଡ଼ି ।
ସର୍ଗପୁଚକଇ କଲେ ଯେବଣ ମତେ ଧାଡ଼ି ॥
ତହୁଂ ସହସ୍ରେକ ଗୁଣେ ଅଛି ଥାଟ ପୂରି ।
ମୁଖ ରାବ ଶବଦ ଯେ ଅନ୍ତରୀକ୍ଷେ ପୂରି ॥
ଅତି ବୃଦ୍ଧ ଅତି ବାଳକ ନଇଲେ ।
ମାଇପେ ମାତ୍ର ଯେ ଲଙ୍କାରେ
ରହିଲେ ॥୭୦

ହୁରି ଜୁରି ଦେଖିଣ ଆସିଣ ଅଛନ୍ତି ।
ପାଇକ ଭିତରେ ରାଉତେ ଝମକନ୍ତି ॥
ଝାଙ୍କ ଝାଙ୍କ ହୋଇ ଚଳନ୍ତି ଅଶ୍ୱଆର ।
ଅଙ୍ଗେ ଲୋହ ସେହ୍ନା ଦିଶନ୍ତି ଅପାର ॥
ପଚା ପାଟ ପ୍ରାୟେ କେବଣ ପଲ ଦିଶେ ।
କେ ସୂର୍ଯ୍ୟ ସେହ୍ନା କେ ବିଭୂତି ଅଙ୍ଗେ
ଘଷେ ॥
କରେ ଗଦା ଧରିଣ କେ ଦେଖାବନ୍ତି ଛାଟ ।
କେବଣ ଘୋଡ଼ା ଭଡ଼ଇ ନ ପାଇଣ ବାଟ ॥
କେ ତୂର ବଜାଇଣ ହାଙ୍କଇ ତୁରଙ୍ଗମ ।
କୋନ୍ତ ଧରି କେହୁ ଦିଶଇ କାଳଯମ ॥୮୦
କେବଣ ଅଶ୍ୱରେ କେ ମଣ୍ଡିଅଛି ନେତ
ପାଟ ।
ଯାଉଂ ଯାଉଂ ଭଲ ଯେ ବୋଲଇ
ଦୁଇଥାଟ ॥
କେହୁ କଡ଼ା ଚମ ହୋଇଛନ୍ତି ଓହାଡ଼ି ।
କେବଣ ଅଶ୍ୱ ଗୋଟା ଯାଉଛନ୍ତି ବଢ଼ି ॥
ପାଦେକ ତୋଳି କେ ତିନି ପାଦେ ଚାଲେ ।
କାହାକୁ ରାଇଂ କେ ହେଲୁ ହେଲୁ ବୋଲେ ॥
କେ ବାନ୍ତି କରନ୍ତି ସମର ଭୂମି ଦେଖି ।
କେ ଲାଞ୍ଜ ତୋଳନ୍ତି ଦୁଇ ଗୋଡ଼ ଯୋଖି ॥
କେ ଖୁରି ଧାଆନ୍ତି କେ ପକାନ୍ତି କଇଥା ।
ଘୋଡ଼ା କେ ତୋଳି ଦେଖିଣ ଚାହେଂ
ମଥା ॥୯୦
ବଜ୍ରବାଣ ପଡ଼ନ୍ତେ କେହୁ ଟେକଇ କାନ ।
ପଛ କିଳାନ୍ତମାନ କେ ପିଟନ୍ତି ଘନଘନ ॥
କେହୁ କଡ଼ିଆଳି ଚୋବାନ୍ତି ଅତି କୋହେ ।
କାହାର କଳରୁ ରୁଧିର ଜାତ ହୋଏ ॥
କେ ପେଲି ପଶି କେ ହାଣିମା ଦେଖିକରି ।
କେ ତ୍ରାସନ୍ତି ସନ୍ନିଧେ ଦେଖି ରଙ୍ଗଫରୀ ॥
ମତ୍ତଗଜମାନେ ଦିଶନ୍ତି କୁଦାକୁଦା ।
କି ଜାଣି ପର୍ବତେ ଦିଶିଲେ ମହାବୁଦା ॥
କେ ଆରଣେ ଚଳଇ କେ ନମାନଇ
ଆଙ୍କୁଶ ।
କେ ଟେକି ମାରଇ ଲୋକ ଦେଖି
ପାଶ ॥୧୦୦

ଥୋରହସ୍ତ ତୋଳି କେ କରଇ ଗରଜନ ।
ଲୋହଟ ପିଟନ୍ତେ କେ ଚଳଇ ଘନଘନ ॥
ଲାଞ୍ଜ ପିଟିଣ କେ ଚଳାନ୍ତି ମାହୁନ୍ତ ।
କେହୁ ଝିଙ୍କାରିଲେ ବସଇ ତୁରିତ ॥
କେ ଠାବୁଂ ପଳାଇ ପାଗଡ଼ ସୁସ୍ଥ ନୋହି ।
ପୃଥିବୀ ଦଳିତ କେବଣ ମତ୍ତଗଜ ଧାଇଂ ॥
କାହାର ଘଣ୍ଟ ବାଜଇ ଟଣମଣ ।
ଉରୁମିଳ ଘାଗୁଡ଼ି ବାଜଇ ରୁଣଝୁଣ ॥
ପାଗଡ଼ ଦଉଡ଼ି ଉରୁର ଗଣ୍ଠି ଘଞ୍ଚ ।
ବେଲୁରି ପାଟ ଭାଲ ବହିଲା ସୁସଞ୍ଚ ॥୧୦
ସୁବର୍ଣ୍ଣର ଶିକୁଳି ରୁପା ତମ୍ଭା କଂସା ।
କେବଣ ମାହୁନ୍ତେ ହାଙ୍କିଣ କରନ୍ତି ପ୍ରଶଂସା ॥
କେ ମଥା ଟାଙ୍ଗର କପାଳ କାହାର ତୂଳ ।
କଳିଆର ଗୋଟି କାହାର ଅତିହିଂ ଅମୂଲ୍ୟ ॥
କାହାର କାନ୍ଧରେ ବସିଥିଲେ ସୁଖ ପାଇ ।
ମଥାଫୁଲ ନ ହଲଇ କେ ସଦଭାବେ ଯାଇ ॥
ଖଳଖଳ ମତ୍ତଝାଳ ଗଳଇ କାହାର ।
କେ ଠାବେ ପାଣି ପିଇ ଯୁଦ୍ଧକୁ ବାହାର ॥
କାହାର ଶିରରେ ଫୁଲ ମଣ୍ଡିଛନ୍ତି ।
ଅମାରୀ ସାଜିଣ କେ ଅସଭାବ ବହନ୍ତି ॥୨୦
ଦୋଚଢ଼ା କୋଦମା କେ ବରଷେକ ନୂଆ ।
ବିଂଝସିଲା କେହୁ ନିଶାଘଣ୍ଟ କଳାଜୁଆ ॥
ଶେତ ଚାମର ଲମ୍ବଇ କାହାର ଯେ ଗଳା ।
କାହାର ଗଳାରେ ମୁକୁତାମାଳ ନୀଳା ॥
କେହୁ ନାହାଳ ଖାଇ ଗିରିବର ପ୍ରାୟେ
ଚାହିଁ ।
କେ ଅତିହିଂ ବେଗ ହୋଇ ଗଲା ହାଦେ
ଧାଇଁ ॥
କେବଣ ମାହୁନ୍ତ ତରକସ କଷି ।
ଗଜକୋନ୍ତ ଧରି କେ ହସ୍ତୀରେ ଅଛି ବସି ॥
କେବଣ ଗଜ ଲଲାଟେ ମୁକୁତା
ଦ୍ରୋଣାପନ୍ତି ।
କାହାର କପୋଳେ ନୀଳମଣି
ଝଟକନ୍ତି ॥୩୦
ସିନ୍ଦୂରର ପାଟି କପୋଳେଣ ଚିତା ।
ଗୁରୁଜ ଧରିଅଛି କେବଣ ମାହୁନ୍ତା ॥

ପୁଣି ଅଇଲେକ ଅଶୁଆର ପଲେ ।
ସମସ୍ତେ ଖଡ଼ଗ ଧରି ମାରମାର ବୋଲେ ॥
ଘୋଡ଼ା ଆଡ଼ବାଖର ରାଉତେ ବକ୍ର ସେହ୍ନା ।
ଛାଣି ପଟାନ୍ତର ସୁବର୍ଣ୍ଣର ଦ୍ରୋଛନା ॥
ନିଘୋଡ଼ ସାଜେଣି ସାଜିଲେ ବୀରମାନ ।
ମାହୁନ୍ତେ ବସିଛନ୍ତି କନ୍ଧ ଉପରେଣ ॥
ଅଭେଦକପଟ ଶିରରେ ଟୋପର ।
ଗଜଦନ୍ତ ଆୟୁଧ ଶିରର ଉପର ॥୪୦
ଅଗିଆଣି ହୋଇ ଅଛନ୍ତି ବେନି ଭ୍ରାଥ ।
ନରାନ୍ତେକ ଦେବାନ୍ତେକର ଦିଶିଲାକ ରଥ ॥
ତାହାଙ୍କର ପଛେ ସେନାପତି ଆୟେ ।
ରଥ ଗଜ ଅଶ୍ୱ କଳଣା ନ ଯାଏ ॥
ଯେ ଯାହାର ମୂଳେ ମୁକାରେ ବାଣ୍ଡି
ହୋଇ ।
ଖନ୍ଦାମୂଳେ ଅଛନ୍ତି ବିବିଧ ଶସ୍ତ୍ର ବହି ॥
କୁମ୍ଭ ନିକୁମ୍ଭର ଦିଶିଲା ବେନି ରଥୀ ।
ଗୋଟା ଗଣିତା ଅଛନ୍ତି ସତୁରି କୋଟି ହାଥୀ ॥
କାକାକ୍ଷ ଲୁଲୁପାକ୍ଷ ଲୋହିତାକ୍ଷ ବୀର ।
ଯେହାଙ୍କର ତୁଲେ ପାଞ୍ଚସହସ୍ର
ଅଶୁଆର ॥୫୦
ମହୀରାବଣ ମୁଖା ଦୁର୍ମୁଖା ଦିଶିଲେ ।
ତିନି ବୃନ୍ଦ ରଥ ଯେହାଙ୍କର ସଙ୍ଗେ ଗଲେ ॥
ମଧ ଦଣ୍ଡେଣ ଦିଶିଲା ଲଙ୍କପତି ।
ଶିରର ଉପରେ ଦିଶଇ ବୀର ଛତ୍ରି ॥
ପୁଷ୍ପେକ ରଥ ଯେ ଚଳଇ ଘନଘନ ।
ଦଶଭୁଜେ ଦଶଧନୁ ଧରି ଦଶାନନ ॥
ଦଶକରେ ଦଶଶର ଅଛି ହାଦେ ଘେନି ।
ସଙ୍ଗେ ଅଙ୍ଗବଳ ଅନେକ ସଇନି ॥
ଇନ୍ଦ୍ରଜିତ ଅମୟେ ସମୟେ ଲୋହପାଦ ।
ସିଂହ ତୁରଙ୍ଗ କଙ୍କ ଧଙ୍କ ପ୍ରଲାଦ ॥୬୦
ଅଲୋପି ସଲୋପି ମୁଖା ଯେ ଦୁର୍ମୁଖ ।
ଶାର୍ଦ୍ଦୋଳ ଏକପାଦ ଦେବଦତ୍ତ ବିସ୍ମମୁଖ ॥
ଅକମ୍ପନ କାଳଘଣ୍ଟ ଧ୍ରୁବ ଯେ ତିଶିରା ।
କାଳି ନାଗେଣୀ ନାଦ ମହାନାଦ ବୀରା ॥
ସମସ୍ତେ ରହୁବର ଚଢ଼ିଣ ରଥେ ଛନ୍ତି ।
ଶ୍ରୀରାମଙ୍କୁ ଜିଣିମେ ବୋଲି ପ୍ରତଜ୍ଞା କରନ୍ତି ॥

ଶୁକ ସାରଣ ଦୁଇ ମନ୍ତ୍ରୀ ଅଛନ୍ତି ତାର ରଥ ।
ତାହାଙ୍କର ସଙ୍ଗେ କଥା ହୁଅଇ ଦଶମାଥ ॥
ରାଜାର ପଛେ ଅଛି ନଉକୋଟି ହାଥୀ ।
ପିଠି ଜିଣିଅଛନ୍ତି ତେରଶତ ନାତି ॥ ୭୦
ଦୁଇପଦ୍ମ ରଥ ସହସ୍ରେ ଶଙ୍ଖ ଅଶ୍ୱ ।
ଅପ୍ରମିତ ପାଦାନ୍ତି ଚଉଦ ସହସ୍ର ଅଙ୍କୁଶ ॥
ସମସ୍ତେ ମଣିମୟେ ଦେବତା ସମାନ ।
ସମଦଣ୍ଡେ ପଲାସିଅଛି ଦଶାନନ ॥
ଟମକ ନିରନ୍ତରେ ଗର୍ଜ୍ଜଇ ବିକଟାଳ ।
ଅଶୀକୋଟି ଢୋଲ ମର୍ଦ୍ଦୁଡେ ମର୍ଦ୍ଦଳ ॥
ଶଙ୍ଖେକ ଶଙ୍ଖ ପଦ୍ମେକ ଗିଡ଼ିଗିଡ଼ି ।
ଖର୍ବେକ ଘଣ୍ଟ ନିଖର୍ବେ ସିଂହରଡ଼ି ॥
ପରାର୍ଦ୍ଧେକ କାହାଳି ମର୍ଦ୍ଦୁଡେକ ଭେରୀ ।
ବାଦ୍ୟ ବାଜନ୍ତେ କମ୍ପଇ ବସନ୍ଧରୀ ॥୮୦
ଉଦଣ୍ଡ ଆଲମ୍ବ ଚିରାଳ ପନ୍ତିପନ୍ତି ।
ସବୁ ସୈନ୍ୟ ମିଳି ହୋଇଲେ ଯନ୍ତାଯନ୍ତି ॥
ଧୂଳି ଉଡ଼ନ୍ତେ ପୂରିଲା ଗଗନ ।
ସ୍ୱର୍ଗେ ବିଚାର କରନ୍ତି ସୁରଗଣ ॥
ଯେ ସେ ଲଙ୍କପତି ଜଗତେ ବଳିୟାରୀ ।
ଯେହାର ମହିମା କେ ଅନ୍ତ କରିପାରି ॥
ଶ୍ରୀରାମ ପୁଣ ଗୁଝନ୍ତି ଯେହାକଇ ଦେଖି ।
ରିକ୍ଷ କପି ପଳାନ୍ତି ପୁଣ ସଂଗ୍ରାମ ଉପେକ୍ଷି ॥
ନପୁଣ ରଘୁନାଥ ନ ପାରନ୍ତି ମାରି ।
ଯେମନ୍ତେ ବିଚାର କରନ୍ତି ସ୍ୱର୍ଗପୁରୀ ॥୯୦
ଯେଥୁଅନନ୍ତରେ ଶୁଣ ଗୋ ଭଗବତୀ ।
ସୁବଳୟା ଗିରିରେ ଥାଇଂ ଦେଖନ୍ତି ରଘୁପତି ॥
ଅସଂଖ୍ୟ ସଇନି ଅତି ଅପ୍ରମିତ ।
ଶ୍ରୀରାମ ବୋଇଲେ ତୁ ଶୁଣ ବାଳୀସୁତ ॥
ଆପଣେ ଲଙ୍କେଶ୍ୱର ବାହିଲାକ ରଣେ ।
ଆମ୍ଭେ ଯେଥୁ ଥିବା କେବଣ କାରଣେ ॥
ପର୍ବତୁ ଓହ୍ଲାଇଂ ଆସନ୍ତୁ ଯେବେ ଥାଟ ।
ଅସୁରଙ୍କ ସାଙ୍ଗେ ହୁଅ ଯାଇଂ ଭେଟ ॥
ମଲ୍ଲ ମହାମଲ୍ଲ ବୀରମାନେ ଯାନ୍ତୁ ।
ମଧଭୁବନୁ ଅସୁରଙ୍କୁ ନ ଛାଡ଼ନ୍ତୁ ॥୧୦୦
ସେନାପତିମାନେ ସମସ୍ତେ ତୁମ୍ଭେ ଯାଅ ।
ସଇନିକି ଉପର ପିଠି ହୋଇଥାଅ ॥

ଭୟେ କରି ତୁମ୍ଭେ ଭାଙ୍ଗି ନୁଆସିବ ।
ପାରନ୍ତୁ ନ ପାରନ୍ତୁ ଦଇତେ ବଡ଼ ଗର୍ବ ॥
ଅନେକ ମାୟା ସେ ଜାଣନ୍ତି କୂଟଛନ୍ଦ ।
କେମନ୍ତେ ତୈଲୋକ ଜିଣିଲା ଦଶକନ୍ଧ ॥
ଅବିଛନ୍ନେ ଯୁଦ୍ଧ କରିବ ଆଜ ଆପେ ।
ଛାମୁରେ ମିଳି ଯୁଦ୍ଧ କରିବ କାହାର ଧାପେ ॥
ଆମ୍ଭେ ଆଉ କିମ୍ପା ଥିବା ଯେଥେ ରହିଂ ।
ଆଗିଆଣି ଥାଟ ଯାଉଂ ବେଗ ହୋଇ ॥୧୦
ରିକ୍ଷ କପିମାନେ ନ ଜାଣନ୍ତି ଯୁଦ୍ଧର ଗତି ।
ବେଢାରେ ସେ ଅସୁରଙ୍କୁ ସଭିଂଏ କରି
ଭାତି ॥
ତହିଂକି ଉଗୁଳି ଯେତେ ତେଜ ହୋଏ ।
ହୋଇ ଦେବ ଆପଣେ ଅଘଲା ଲଙ୍କରାୟେ ॥
କି ହୋ ସୁଗ୍ରୀବର ଅଟଇଟିକି ଜାଣି ।
ପାତାଙ୍ଗ ଫରହର କି ଲହଡ଼ି ଉଠଇ ପାଣି ॥
ନାନା ଆୟୁଧମାନେ ଗରିଗରି ଛଟା ।
ଝଲକିବା ମାତ୍ରକେ ମାଛର ଚହଟା ॥
ରଥ ବୋହିତ ମଗର ଗଜମାନ ।
ତୁରଙ୍ଗମ ଓଟ ଯେ କୁମ୍ଭୀର ବିଧାନ ॥୨୦
ଶବଦ ଶୁଭଇ କି ସିନ୍ଧୁ ଗର୍ଜନ ଜାଣି ।
ଏସନ ପଟାନ୍ତର ଯେ ରାମାୟେଣ ବାଣୀ ॥
ଚଳିବାର ଛଟକ ପବନର ଗତି ।
ବରୁଣ ଦେବତା ପ୍ରାୟେ ଦିଶଇ ଲଙ୍କପତି ॥
ପୁଷ୍ପେକ ରଥ ଯେ ଚଳଇ ଘନଘନ ।
ନେତର ଚିରାଳ ଉଡ଼ଇ ବିତପନ ॥
ରତ୍ନର କଳସ ସୁବର୍ଣ୍ଣ ପିତୁଳି ।
ଚଉକତି ଲମ୍ବଇ ମୁକୁତା ମାଳିମାଳି ॥
ପାରିଜାତେକ ପୁଷ୍ପ ଯେ ମଣ୍ଡିଲାଅଛଇ
ଯାନ ।
ଆବର ଚିରାଳ ଅଛି ବିବିଧ ବର୍ଣ୍ଣ ॥୩୦
ଯେବଣ ବିବାନ ଛଡ଼ରତୁ ମିଶା ।
ଯହିଂ ବସିଥିଲେ ନ ଲାଗେ କ୍ଷୁଧା ତୃଷା ॥
ସୁବର୍ଣ୍ଣର ଘଟି ବାଜଇ କିଣିକିଣି ।
ଘାଗୁଡ଼ି ରୁଣଝୁଣ ଶୁଭଇ ସୁନ୍ଦର ରସବାଣୀ ॥
ଲକ୍ଷେକ ଶେତଛତ୍ର ଉଡ଼ଇ ହାଦେ ପାଶେ ।
ସମୁଦ୍ର ଭିତରୁକି ଚନ୍ଦ୍ର ଉଇଂ ଆସେ ॥

ଦେବଦଳନ ରଥ ଚଢ଼ି ଇନ୍ଦ୍ରଜିତ ।
ନବ ନିଶି କୋନ୍ତ ଧରିଅଛି ହାଥ ॥
ଆବର ଯୋଦ୍ଧାଯେ ଅଛନ୍ତି ପାଶେ ବେଢ଼ି ।
ପର୍ବତୁ କୁଆର କି ଆସୁଅଛି ମାଡ଼ି ॥୪୦
ମେଦନୀ ନ ଦିଶଇ ନ ଦିଶଇ ସୂର୍ଯ୍ୟ ।
ବିଭୀଷେଣକଇ ବୋଲନ୍ତି ରଘୁରାଜ ॥
ଏ କିସ ପରାଯେ ଦିଶଇ ଲଙ୍କପତି ।
ସାଧୁ ସାଧୁ ମହିମା ପୌଲୋସ୍ତିର ନାତି ॥
ଯେତେକ ସମ୍ପଦ ଗଲାକ ତୋହରି ।
ଆଜହୁଂ ହାଦେ ତୋର ସରିଲାକ ଶିରୀ ॥
ଆଜ ଜାଣିମା ଧର୍ମ କେତେ ତୋତେ ସତ୍ୟ ।
ଯେତେ ବୋଲି ପର୍ବତୁଂ ଓହ୍ଲାନ୍ତି ରଘୁନାଥ ॥
ଶ୍ରୀରାମ ଆସନ୍ତେ ସଇନି ଆଗସରି ।
ରିକ୍ଷ କପି ଧାମନ୍ତେ ହଲି ବସନ୍ଧରୀ ॥୫୦
ସଭିଏଂ ତରୁଶିଳ ଧରିଛନ୍ତି କରେ ।
କିଳିକିଳା ରଡ଼ି ଛାଡ଼ନ୍ତି ଉଚସ୍ୱରେ ॥
କେହୁ ପାଦେ ଚାଲନ୍ତି କେହୁଯାନ୍ତି ଉଡ଼ି ।
ଆକାଶ ପୂରଇ ଦିଅନ୍ତେ ସିଂହରଡ଼ି ॥
ଏକ ପଛ କରି ଆରେକ ଆଗହୋନ୍ତି ।
କେ ଚିରାମାରି ସଞ୍ଚରିଣ ଯାନ୍ତି ॥
ବିବିଧ ଛନ୍ଦେଣ ବାଜଇ ତୂରମାନ ।
ପାଦଭରେ ରେଣୁ ଉଡ଼ଇ ଗଗନ ॥
ଦଶଦିଗ ଅନ୍ଧାର ପ୍ରଳୟ କାଳ ଜାଣି ।
ଅଣଚାଶ ପବନ ପ୍ରଳୟ ସିନ୍ଧୁ ପାଣି ॥୬୦
ଜଗତ ଦହଇ ହୁତାଶନ ଦେବତା ।
ନାରାୟଣ ଛାଡ଼ିଲେ କି ବସନ୍ଧରୀ ଚିନ୍ତା ॥
ବ୍ରହ୍ମପ୍ରଳୟ କି ହୋଇଲା ନବ ସୃଷ୍ଟି ।
ମହାର୍ଣ୍ଣବ ଜଳ କି ସପତଦିଗ ଘୋଟି ॥
କି ଅବା ବସୁମତୀ ପଡ଼ିବ ରାସାତଳେ ।
ବାର ଆଦିତ୍ୟ କି ଉଇଂଲେ ଯେକାବେଳେ ॥
କି ଅବା ଷୋଳ ଚନ୍ଦ୍ରମା ପ୍ରକାଶିଲା ।
ସଂସାରୁ ଉତପାତ କି ଯେକାବେଳେ
ଖସିଲା ॥
ଜଗତ ଜୀବଜନ୍ତୁ କି ଯେକାବେଳେ
ମଲେ ।
କି ଅବା ବାସୁଦେବ ଆନ ସୃଷ୍ଟି କଲେ ॥୭୦

ଯେଣୁ ସେ ଯେବେ ହୋଇଲା ଉତପାତ ।
ମାଡ଼ି ପଡ଼ିଲା କି ମେରୁ ପରବତ ॥
ଦେବତାଯେ କମ୍ପନ୍ତି ସ୍ୱର୍ଗପୁରେ ଥାଇଂ ।
ବ୍ରହ୍ମା ଜାଣନ୍ତି ଧ୍ୟାନେ କିଛି ଭଯେ ନାହିଂ ॥
କଞ୍ଚେକ ଅନ୍ତରେ ଅପୂର୍ବ ଯୁଦ୍ଧ ଗୋଟା ।
ରାମ କୋପାନଳେ ଦହିବେ ଦୈତ୍ୟ ଲତା ॥
ତେବେ ସେ ଚଉଦ ଭୁବନ ସୁସ୍ଥ ହୋଏ ।
ନିଶ୍ଚିନ୍ତେଣ ବସିବ ସ୍ୱର୍ଗେ ସୁରରାଯେ ॥
ପ୍ରଥର ସମର ରାମ ରାବଣର ତୁଲେ ।
କହିତ ଭାର୍ଜନ କେ ହୋଇବ କାହାର
ବୋଲେ ॥୮୦
ସଦାଶିବ କହନ୍ତେ ପାର୍ବତୀ ଦେବୀ ଶୁଣଇ ।
ଶ୍ରୀରାମ ଚରିତଯେ ଅମୃତ ରସ ଅଟଇ ॥
ଯେସନେକ ବିଧି ବାଲମ୍ଭିକ ଆଗତ ବାକ୍ୟ
କଲା ।
ସରସ୍ୱତୀ ପ୍ରସନ୍ନେ ଏ ଗ୍ରନ୍ଥ ବଖାଣିଲା ॥
ବ୍ରହ୍ମାର ବଚନେ ପୂର୍ବ ହେତୁଂ ପାଇଂ ।
ସାମ ବେଦୁଂ ମହାନାଟେକ କାଢ଼ିଲଇଂ ॥
ପଞ୍ଚଶ ସହସ୍ର ଶୋଳକ ଚଉଦ ଲକ୍ଷ ପଦ ।
ସୁଜନ ପ୍ରାଣୀମାନେ ଏକମନେ ବୁଝ ॥
ବେନିଜନେ ଯହୁଂ ହୋଇଲେକ ଭେଟ ।
ବେନି ନଦୀର ସଙ୍ଗମ ପ୍ରାଯେ ଦିଶଇ ବେନି
ଥାଟ ॥୯୦
ତହିଂ ସେନାପତି ଶ୍ରୀରାମ ଦଶକନ୍ଧ ।
ରିକ୍ଷ କପିଙ୍କର ହୋଇଲା ମହାଦ୍ୱନ୍ଦ୍ୱ ॥
କିଳିକିଳା ଦେଇଣ ଉଠିଲେ କପିବଳ ।
ଧାଇଂ ପଡ଼ିଲେ ସେ ଅସୁର ଅଚାର୍ଗଳ ॥
କେ ଶହସ୍ର ପିଟଇ କେ ବୃକ୍ଷଧରି ପିଟି ।
ପଛ ଘୁଞ୍ଚିଯାଇ ଆଗସରି ଉଠି ॥
ଶିଳ ପଡ଼ନ୍ତେଣ କେ ପଳାଇଣ ଯାଇଂ ।
କେ ଖଣ୍ଡା ଝମକାଇଣ ହାଣନ୍ତି ରୋଷବହି ॥
ମୁଣ୍ଡେ ମୁଣ୍ଡ ମାରି ହୋଇଲେ ମିଶାମିଶି ।
ଯେକର ଉପରେ ଆରେକ ଯାଇଂ
ପଶି ॥୧୦୦
ମାର ମାର ହାଣ ହାଣ ଶୁଭଇ ଶବଦ ।
ବିକରାଳ ଧ୍ୱନି ଶୁଭଇ ବିବିଧ ବାଦ୍ୟ ॥

ହୋଇଲା ରଣଗୋଳ ଦୁଇ ଘଡ଼ି ଯାଏ ।
ଶୂନ୍ୟେଣ ଥାଇ ଦେଖନ୍ତି ଦେବତାଯେ ॥
ରୁଧିର ନଦୀ ଯେ ବହିଲା ଚଉକଟି ।
କୁଡ଼କୁଡ଼ ହୋଇ ମଡ଼ା ପଡ଼ିଛନ୍ତି ॥
ପଞ୍ଚାଶ କୋଟି ଯେ ମୁକୁଟ ଯୋଧ୍ୟା ଥିଲେ ।
ରଥ ଗଜ ଅଶ୍ୱ ସେ ଘେନିଣ ଧାଇଂଲେ ॥
କପି ରିକ୍ଷ ଉପରେ ପାଡ଼ିଲେ ଆଣି ଧାଡ଼ି ।
ଜଳବୃଷ୍ଟି ଜାଣି ନାରାଜନ୍ତ ପହୁଡ଼ି ॥୧୦
ବାନରେ ଭାଗିଲେ ଯେ ବିଷମ ଘାତ ପାଇ ।
ବୀର ମହାବୀର ଆବୋରିଲେ ଯାଇଂ ॥
ଯେକ ଯେକ କପି ସମରେଣ ଜିତା ।
ସଇନି ସମ୍ଭାଳିଣ ଉଠିଲେ ବଳବନ୍ତା ॥
ସହିଲେ ସେ ଯୁଦ୍ଧ ମରଣେ ନାହିଂ ଶଙ୍କା ।
ଆହାର ଲୁବ୍‌ଧେ ଯେହ୍ନେ ପଡ଼ଇ ମାଛରଙ୍କା ॥
କରନ୍ତି ସମର କିଛିହିଂ ନାହିଂ ଭଯେ ।
ଅସୁରଙ୍କର ତେଜକୁ ନ ଘୁଞ୍ଚନ୍ତି ପଯେ ॥
ଅଗ୍ନିକୁ ଝାସିବାକୁ ସତୀର ଯେହ୍ନେ ମନ ।
ତେସନେକ ପଟାନ୍ତର ଓହୋବଳ
ସୈନ୍ୟ ॥୨୦
ଧରାଧରି କୋଡ଼ାକୋଡ଼ି ହୁଅନ୍ତି ମୁଣ୍ଡେମୁଣ୍ଡ ।
ହିଆରେ ଯନ୍ତାଯନ୍ତି ବାହେ ବାହାଦଣ୍ଡ ॥
ହାଥକୁ ହାଥ ସେ ପେଟକୁ ନାତ ମାରି ।
କେ ଶିଳା ବୃକ୍ଷ ସହସ୍ର ପହୁଡ଼ନ୍ତି ଧରି ॥
ବିଷମ ଘାତ ପାଇ ନୋହନ୍ତି ବିମନ ।
କେହୁ ରୁଧିର ଉଦ୍ଗାରନ୍ତି ଅନୁକ୍ଷନ ॥
ରଥ ଗଜ ଅଶ୍ୱ ଅସୁର ସଇନି ।
ରକ୍ଷ କପି ମିଶି ହୋଇଲେ ଅନ୍ୟାଅନି ॥
ମାହୁନ୍ତେ ମାରନ୍ତି ରାଉତେ ଶର ବିନ୍ଧି ।
ରଥୀଙ୍କର ଯୁଧ୍ୟ ଯେସନେକ ବିଧି ॥୩୦
ପାଦାନ୍ତିଙ୍କର ସମର ତୁଳାଇବା କାହିଂ ।
ପୂର୍ବେ ନ ଥିଲା ଆଗେ କେହି ଦେଖି ନାହିଂ ॥
କୋଳାହଳ ଶବଦ ଯେ ଶୁଭଇ ଚଉପାଶ ।
ଗହଗହ ଶବଦ ଶୁଭଇ ମହାଘୋଷ ॥
ପୁଣି ଘଡ଼ିଯେ ପରିଯନ୍ତେ ବାଜିଲାକ ରଣ ।
ବଢ଼ିନଦୀ ଜାଣି ବହୁଅଛି ଶ୍ରୋଣ ॥
ନିବିଡ଼ ଅନ୍ଧାରେ କି ବରଷଇ ମେଘ ।

ପ୍ରଥମ ସମର ବେନିବଳର ଆଗ ।।
ରାବଣର ଦଣ୍ଡ ଶ୍ରୀରାମ ସଇନି ।
ଦୁହେଂ ସମକକ୍ଷ କେହି ନୋହେ ହାନି ।।୪୦
ମରଣକୁ ନିର୍ଭୟେ ସାହାସ ଅପାର ।
ଓହୋବଳ ଥାଠ ସମର ମହାଘୋର ।।
ଅସୁରେ ମର୍କଟେ ବୀର ମହାବୀର ।
ସମରେ ପଡ଼ିଲେ ସଇନି ଅପାର ।।
ମଧ ଦଣ୍ଡେ ଥାଇଂ ରାବଣ ମହାରାୟେ ।
ମୃଗ ପଲଦେଖି ଶାର୍ଦ୍ଦୋଳ ଯେହ୍ନେ ଧାୟେଂ ।।
କ୍ଷୀର ସମୋଦ୍ର ଯେହ୍ନେ ମନ୍ଥଇ ମନ୍ଦର ।
ସଇନି ସୃଷ୍ଟିରେ ଯେ ମେରୁ ଗିରିବର ।।
ପୁଷ୍ପକ ରଥ ଯେ ଚଳଇ ଘନଘନ ।
ଯୋଚିଲା ଅଛି ଯେ ସହସ୍ରେକ ଯାନ ।।୫୦
ଆପଣେ ଦଶ ଧନୁ ଧରିଣ ଲଙ୍କପତି ।
ବିନ୍ଧଇ ନାରାଜ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତି ।।
ଇନ୍ଦ୍ରଜିତ ସହିତେ ଯେକସ୍ତରି ସୁତ ।
ତେର ଶତ ନାତି କରନ୍ତି ଶସ୍ତ୍ରଘାତ ।।
କୁମ୍ଭ ନିକୁମ୍ଭ କାକାକ୍ଷ କୁଳୁପାକ୍ଷ ।
ବକାସୁର ଲୋହିତାକ୍ଷ କୁମ୍ଭକର୍ଣ୍ଣର ବେନି
ବକ୍ଷ ।।
ଚାରଣ ବିଚାରଣ ନାଦ ମହାନାଦ ।
ଅମୟେ ଅଜୟେ କାଳଘଣ୍ଟ ପ୍ରହ୍ଲାଦ ।।
ସିଂହ ତୁରଙ୍ଗ ଯେ କଙ୍କ ଧଙ୍କ ମୂଳେ ।
ଶାର୍ଦ୍ଦୋଳ ଦେବଦତ୍ତ ପଶିଲେ ରଣ
ରୋଳେ ।।୬୦
ସଲୋପି ଅଲୋପି ବୀରଘଣ୍ଟ ନରାନ୍ତେକ ।
ମକରାକ୍ଷ ମହୀରାବଣ ଦେବାନ୍ତକ ।।
ଯୁଦ୍ଧ କରନ୍ତି ଯେ ଯେ ଯାହାର ଇଚ୍ଛା ।
ବିନ୍ଧନ୍ତି ନାରାଜ ଦିଶନ୍ତି ମହାତୀକ୍ଷା ।।
ସଂସାର ଅନ୍ତକାଳେ ଯେହ୍ନେ ଚାରିମେଘ
ବୃଷ୍ଟି ।
ତେଣୁ ସେ ଜନମ ହୋଇଲାକ ନବସୃଷ୍ଟି ।।
ତେସନେକ ପ୍ରାୟେ ବିନ୍ଧୁଛନ୍ତି ଶର ।
ପ୍ରଶଂସବା ଭଳି ସେ ସଭିୟେଂ ଧନୁର୍ଦ୍ଧର ।।
ଆପଣେ ଦଶଗ୍ରୀବ ଅବଧାନ ହୋଇଂ ।
ରିକ୍ଷ ବାନର ସନ୍ୟ ସଂଘାରଇ ସେହି ।।୭୦

ଦଶବାଣ ଦ୍ରୋଣୁ କାଢ଼ଇ ଲଙ୍କସାଇଂ ।
ଗୁଣରେ ବସାନ୍ତେ ସହସ୍ରେ ରୂପ ହୋଇ ।।
ହାଥରୁ ଫିଟନ୍ତେ ଲକ୍ଷେ ତନୁ ହୋୟେ ।
ପଡ଼ିବାର ବେଳେ ମର୍ଭୁତ ରୂପ ପାୟେ ।।
ଯେକା ନାରାଜକେ ମର୍ଭୁତେ ସନ୍ୟ ନାଶ
ଯାଇଂ ।
ନିଶ୍ୱାସକେ ଦଶବେଳ ନାରାଜ ପେଷଇଂ ।।
ଏମନ୍ତେ ଘଡ଼ିୟେ ଯୁଝିଲା ମନ ସରି ।
ଏହି ବିଧାନେ ଇନ୍ଦ୍ରଜିତ ବଳ ମାରି ।।
ପଡ଼ିଲେ ରିକ୍ଷ କପି ରଣ ରଙ୍ଗ ସ୍ଥାନେ ।
କାକ ଗ୍ରିଧପକ୍ଷୀ ଉଡ଼ନ୍ତି ଗଗନେ ।।୮୦
ରକତ ନଦୀ ବହିଲା ଚଉପାଶ ।
ପାଦଭରେ କର୍ଦ୍ଦନ ହୋଇଲାକ ମାଂସ ।।
ଅପ୍ରମିତ କପି ଶୋଇଲେ ମୃତୁ ପାଇଂ ।
ଅତି କୋହେ ଯୁଦ୍ଧ ଯହୁଂ କଲାକ
ଲଙ୍କସାଇଂ ।।
ପଞ୍ଚାଶ କୋଟି ଯେ ମୁକୁଟ ଯୋଧାମାନ ।
ତାହାଙ୍କର ବାଣେ ହତ ଶ୍ରୀରାମର ସନ୍ୟ ।।
ଏକସ୍ତରି କୁମର ତେରଶତ ନାତି ।
ରଘୁନାଥର ବଳ ଯେ ମାରନ୍ତି ବିକୋଟି ।।
ରଣଭଙ୍ଗ ହୋଇଲେ ରିକ୍ଷ କପିମାନ ।
କି ଜାଣି ସମର ଜଳନ୍ତା ହୁତାଶନ ।।୯୦
ଭରସା ପାଇଂଣ ଧାମନ୍ତି କେହୁ ରାଗେ ।
ବେନି ଖଣ୍ଡ ହୋଇଣ ପଡ଼ନ୍ତି ଭୂମିଭାଗେ ।।
ଦେଖି ଅପସରିଲେ ବୀର ମହାବୀର ।
ପୁଣି ଗୋଡ଼ାଇଣ ବିନ୍ଧନ୍ତି ତୀକ୍ଷଶର ।।
ଡାକନ୍ତି ରେ ବାନରେ ଯିବ ଆଜ କାହିଁ ।
ତପୁସୀର ବୋଲକୁ ଆସିଅଛ ଧାଇଂ ।।
ଭୁଞ୍ଜିବା ପ୍ରାୟେରେ ଯୁଝିବା ନୋହଇଂ ।
ଏ ସେ ରଣଭୂମି ପ୍ରାଣ ଯେଥେ ଦେଇଂ ।।
ଏବେ ନିସତ ହୋଇଲେ ହୋଇବାକ
କିସ ।
ଯତିର ବୋଲକୁ ଯେ କଲ
ବିଶ୍ୱଆସ ।।୧୦୦
ଏସନେକ ବୋଲି ଶର ଛାଡ଼ନ୍ତି ଘନଘନ ।
ଅସମ୍ଭାଳ ହୋଇଣ ପଳାନ୍ତି ଶ୍ରୀରାମର
ସନ୍ୟ ।।

ପଛକୁ ଚାହିଂଲେ ମୁହଂରେ ପଡ଼ଇ କାଣ୍ଡ ।
ନ ଚାହିଂଲା କପିର ପିଠି ଖଣ୍ଡ ଖଣ୍ଡ ।।
ଆରତ ହୋଇଂଣ ପଳାଇଲେ ବଳ ମାଡ଼ି ।
ଆଗ ଜନମାନଙ୍କୁ ପଛକୁ ଗଲେ ଛାଡ଼ି ।।
ଦେଖିଣ ସୁଗ୍ରୀବର ବୋଇଲା ଆରେ ରହ ।
କାହାର ଭୟେ ପଳାଇଲରେ ମୋହୋର
ଆଗେ କହ ।।
କପି ବୋଇଲେ ଦେବ ରାବଣ ଅଛି ଆସି ।
ଅନେକ ସନ୍ୟ ମାଇଲା ରଣଭୂମିରେ
ପଶି ।।୧୦
ଦେବେ ନ ସହନ୍ତି ଯାହାର ଶର ଘାତ ।
ଆବର ସଙ୍ଗରେ ଅଛଇ ଇନ୍ଦ୍ରଜିତ ।।
ସେନା ସେନାପତି କେ କରିବ ଲେଖା ।
ଦତ୍ୟଙ୍କର ତେଜ ପ୍ରଳୟ ଅଗ୍ନିଶିଖା ।।
ଯେ ଯେଣେ ପାରନ୍ତି ମାରନ୍ତି ରଣମୁଖେ ।
ସବିହେଂ ମଲେ ଯେ ପଡ଼ିଲେ ତାଙ୍କ ମୁଖେ ।।
ଦେଖି ରିକ୍ଷ କପି ଆସୁଛନ୍ତି ଖେଦି ।
ଏକ ନାରାଜକେ ଲକ୍ଷେ କୋଟି ଛେଦି ।।
ତୁ ଦେବ ବାହୁଡ଼ି ଶ୍ରୀରାମକୁ କହ ।
ରାବଣ ଛାମୁକୁ ଇନ୍ଦ୍ରଦେବତା ନୋହେ
ରହ ।।୨୦
ଶୁଣି ସୁଗ୍ରୀବର ବୋଇଲା ରହ ଭାଇଂ ।
ଏ କଥା ଛାରକି ଶ୍ରୀରାମକୁ କହିବି ଯାଇଂ ।।
ଦେଖ ଆଜ ଅପୂର୍ବ ସଂଗ୍ରାମ ମୋହୋର ।
ଏହିକ୍ଷଣି ସମରେ ମାରିବି ଦଶଶିର ।।
ଆସ ଆସ ବାହୁଡ଼ି ନ କର ତୁମ୍ଭେ ଭୟେ ।
ଯେଥୁ ପଳାଇଂଣ ହୋ ଯିବ କେଉଂ
ଯାୟେ ।।
ସମର ଭୂମିରେ ମଲେହେଂ ପୁଣ୍ୟ ପାଇଂ ।
ଅବଶ୍ୟ ତ ଶରୀରୁ ଜୀବନ ଛାଡ଼ିବଇଂ ।।
ଆସ ଆସ ବୋଲି ରଡ଼ିୟେ ଛାଡ଼ିଲା ।
ଅତି ବଡ଼ କଦମ୍ବ ବୃକ୍ଷେକ ଉପାଡ଼ିଲା ।। ୩୦
ସଙ୍ଗେ ନଳ ନୀଳ ଡାଳିମ୍ବ କେଶରୀ ।
ଚନ୍ଦନ ଗବୟେ ପବନ ଶଉରୀ ।।
ଶତବଳ ରମଣ ବସନ୍ତ ମହୀନ୍ଦ୍ର ।
ଦଧିମୁଖ ବୀର କଞ୍ଚଣ ଦୁବିନ୍ଦ ।।

ସାଂଗ୍ରାମେ ଧାଇଂଲେ ତରୁଶିଳ ଧରି ।
ପାଦଭରେ ଟଳ ଟଳ ହୋଇଲା ବସନ୍ଧରୀ ॥
ପାଲଟିଣ ବଳ ଧାଇଂଲେ ରାଜାର ତୁଳେ ।
ଉଗ୍ରତେଜ ହୋଇଲେ ନିଜ ରାଜାର
ବୋଲେ ॥
ବୀର ମହାବୀର ମଲ ମହାମଲ ।
ସମର ଭୂମିରେ ଆସି ପଶିଲେ
ପଲପଲ ॥୪୦
ଜମ୍ବୋଦ୍ୱୀପ ମହୀ କି ସିନ୍ଧୁବୃନ୍ଦ ଘୋଟି ।
କି ଅବା ସେ ଦିନ ହୋଇବ ଅନାବୃଷ୍ଟି ॥
ସୁଗ୍ରୀବର ଧାମନ୍ତେ ଶ୍ରୀରାମଚନ୍ଦ୍ର ଜାଣି ।
ଆପଣେ ରଣକଇ ଧାଇଂଲେ ରଘୁମଣି ॥
ଲକ୍ଷଣ ଅଙ୍ଗଦ ଜମ୍ୱେବ ବିଭୀଷେଣ ।
ଗନ୍ଧମାରଦନ ହନୁମନ୍ତ ସୁଷେଣ ॥
କାଳିମୁଖ ବଳିମୁଖ ବସନ୍ତ ପାରିଜାତ ।
ତାରାକ୍ଷ ସୁଶୋଦନ କାଳିଞ୍ଜନ ଶେତ ॥
ଶତବଳ କାମୋଦ ପବନ ପାରାସ ।
ମରୁତ ସମ୍ପ୍ରତି ଦ୍ୱିବିନ୍ଦ ସାରାସ ॥ ୫୦
ମାର ମାର ଧ୍ୱନି ଡାକନ୍ତି ଉଚ୍ଚ ସ୍ୱରେ ।
ମହୀ ଟଳଟଳ ହୋଇଲା ପାଦଭରେ ॥
ଅପ୍ରମିତ ବଳ କଳଣା ନ ଯାଇଂ ।
ଏକତ୍ର ହୋଇଂଣ କି ବହିଲା ଦୁଇ ନଈ ॥
ବାଜିଲା ରଣଗୋଳ ଓହୋ ବଳ ଥାଠ ।
ମୁଖ ଗୋଳେ ପୂରିଲା ଅନ୍ତରୀକ୍ଷ ବାଟ ॥
ବେନି ସଇନି ଯହୁଂ ହୋଇଲେ
ଭେଟାଭେଟି ।
ଯେ ଯାହାର ଅସ୍ତ୍ର ଘେନି ହୋଇଲେ
ପିଟାପିଟି ॥
ଧାଇଂ କପିବଳ ପଶିଲେ ଧସାଇଂ ।
ଗଜଙ୍କର ଉପରେ ଉଠିଲେକ ଯାଇଂ ॥୬୦
ମାହୁନ୍ତ ପାଗଡ଼କୁ ମାରନ୍ତି ବାଳ ଧରି ।
ତାହାଙ୍କର ଶହସ୍ର ଧରି ତାହାଙ୍କୁହିଁ ମାରି ॥
ଘୋଡ଼ାଙ୍କର ରାଉତ ତଳକୁ ପକାଇଲେ ।
ରଥଙ୍କର ଉପରେ ଉଠି ବାନରେ ରଡ଼ି
ଦେଲେ ॥
ରଥୀକି ମାଇଲେ ବିବିଧ ଗତି କରି ।

ହାଥୁଂ ଶସ୍ତ୍ରମାନ ପକାଇଲେ ଉଛୁଡ଼ି ॥
ସାରଥିର ଉପରେ ପଡ଼ିଗଲେ ମାଡ଼ି ।
ଘୋଡ଼ାନ୍ତ ଫେଇ ଦେଇଂ ଛିନାଇଂଲେ
ଦଉଡ଼ି ॥
ହୁଳହୁଳି ଦେଇଂଣ କରନ୍ତି ରଣରଙ୍ଗ ।
ଅସୁରଙ୍କର ମାରେଣିକି ନୋହନ୍ତି
ମାନଭଙ୍ଗ ॥୭୦
ହାଥୀଙ୍କର ଉପରେ ମାହୁନ୍ତ ଯହୁଂ ନାହିଂ ।
ପଲ ପଲ ହୋଇଂ ସେ ଯେଣେତେଣେ
ଧାଇଂ ॥
ଘଣ୍ଟ ଶିକୁଳି ନିଘୋଡ଼ ସବୁ ସଜ ।
ଧନ୍ଦି ହୋଇଣ ସେ ବୁଲନ୍ତି ମତ୍ତଗଜ ॥
ଅଶ୍ୱେ ପଳାବନ୍ତି ସମରେ ବଣା ହୋଇଂ ।
ଯହୁଂ ସେ ରାଉତ ପିଠିରେ ବସି ନାହିଂ ॥
ରଥ ଖଣ୍ଡ ଖଣ୍ଡ ଚକ ଅଖ ଦଣ୍ଡା ।
ରିକ୍ଷ କପିଙ୍କ କରେ ଅଛନ୍ତି କୋଦଣ୍ଡ କାଣ୍ଡ
ଖଣ୍ଡା ॥
ରଣରଙ୍ଗ କରନ୍ତି ହୋଇଣ ଯେକ ଯେକ ।
ପରିଘାଇଂ ଯୁଝନ୍ତି ନ ଘୁଞ୍ଚନ୍ତି ପଯେକ ॥୮୦
ଯହୁଂ ସେ ଅନର୍ଥ ହୋଇଲା ଅତିଶୟେ ।
କୋପେ ତୀକ୍ଷଶର ବିନ୍ଧିଲା ଲଙ୍କରାୟେ ॥
ସୁଗ୍ରୀବରକୁ ଦେଖି ବିନ୍ଧିଲା ତଡ଼ତି ।
ଶ୍ରୀରାମ ଛେଦିଲେ ତାହା ପବନହୁଂ ଗତି ॥
ମିତ୍ର ଘନ ଯିଗ୍ନକେତୁ ବୀର ।
ଅଗ୍ନିକେତୁ ରଶ୍ମିକେତୁ ହୋଇଂଲେ
ଆଗୁଂସାର ॥
ଶ୍ରୀରାମକୁ ବେଢ଼ିଲେ ଅନେକ ସନ୍ୟ
ଘେନି ।
ଚନ୍ଦ୍ର ସୂର୍ଯ୍ୟ ମହୀନ୍ଦ୍ର ଯୁଝନ୍ତି ବୀର ତିନି ॥
ବିବିଧର ତୁଳେ ଅଶ୍ୱନି ସାଂଗ୍ରାମ ।
ସମର ଗୁରୁତର ବିଂଝମାଳି ସୁଷେଣ ॥୯୦
ପ୍ରଚଣ୍ଡ ସୁଗ୍ରୀବରକୁ ଓଗାଳିଲା ଯାଇ ।
ଲକ୍ଷଣ ଭେଟ ପାଇଲା ଲଙ୍କସାଇଂ ॥
ମିତ୍ରଘନର ତୁଳେ ବିଭୀଷେଣର ଯୁଧ୍ୟ ।
ନାହିଂ ପଟାନ୍ତର କ୍ଷେତ୍ରୀ ତ୍ରିଭୁବନ ମଧ ॥
ନୀଳକଇ ଦେଖି ତପନ ଓଗାଳି ।

ନଳ ସେନାପତି ନିକୁମ୍ଭର କଳି ॥
ଇନ୍ଦ୍ରଜିତ ଅଙ୍ଗଦ ହୋଇଲେ ବେନି ଭେଟ ।
ଐରାବତ ଯେହ୍ନେ ମେରୁର ନିକଟ ॥
ପ୍ରମଥ ସମ୍ପାତିର ତୁଳେ ରଣ କଲା ।
ଜମ୍ୱୋମାଳି ପୁତ୍ରକଇ ହନୁମତ
ଦେଖିଲା ॥୧୦୦
କୁମ୍ଭ ଶତବାଳି କରନ୍ତି ସମର ।
ନରାନ୍ତେକ ସଙ୍ଗତରେ ଜମ୍ୱେବ ମନ୍ତ୍ରୀବର ॥
ତାରାକ୍ଷ ପ୍ରବିନ୍ଦବାହୁ ବେନି ଯୁଝି ।
ଏକଇ ଆରେକକୁ ନ ପଳାନ୍ତି ଭାଜି ॥
ଶଉରୀ ସେନାପତି ଦେବାନ୍ତେକର ତୁଳେ ।
କେଶରୀ ଦୃମୁଖା ମିଳିଲେ ରଣଗୋଳେ ॥
ଅକମ୍ପନର ତୁଳେ ଦଧିମୁଖର ସମର ।
ବଜ୍ରଧନୁଷ୍ଟ ବଳିମୁଖର ସମର ମହାଘୋର ॥
ବସନ୍ତ କୁଳୁପାକ୍ଷ ହୋଅନ୍ତି ମରାମରି ।
ପ୍ରଶସ୍ତ କାଳିମୁଖର ତୁଳେ ଯୁଦ୍ଧ କରି ॥୧୦
ଧୂମାକ୍ଷ ଡାଳିମ୍ବର ବାଜିଲା ରଣଗୋଳ ।
ମୋହୋଦର ତୁଳେ ଯୁଝଇ ଶତବଳ ॥
ପିଚାଶ ରମଣ ହୋଇଲେ ପିଟାପିଟି ।
ମକରାକ୍ଷ ସଜାଇଂଣ କୁମୋଦକୁ ଭେଟି ॥
ଶକତିରେ ପହୁଡ଼ି କେ ଶୂଳରେ କଚାଡ଼ି ।
କେ ଖଡ଼ଗେ ହାଣଇଂ କେ ଶିଳରେ ନେଇଂ
ମାରି ॥
ବିଧା, ଗୁରୁଦା କେ ପହୁଡ଼ନ୍ତି ଲାତ ।
ମୁଣ୍ଡେ ମୁଣ୍ଡ ବାଜି ଶୁଭଇ ନିର୍ଘାତ ॥
ହିଆକୁ ହିଆ କେ ବାହାକୁ ବାହା ପେଲି ।
କେ ବିଚିତ୍ର ସମରେ ହୋଇଲେ
ମେଲାମେଲି ॥୨୦
କେ ତଳେ ପଡ଼ଇ ଆରକକୁ ଘେନି ।
ଏକ ଜଣକୁ କାହିଂ ବେଢ଼ନ୍ତି ଜଣ ତିନି ॥
ନାରାଚେ ବିନ୍ଧଇ କେ ପରିଘ ଘେନି ମାରି ।
କେହୁ ପର୍ବତ ପକାନ୍ତି ରୋଷ ଭରି ॥
କେ ବୃକ୍ଷେ ପିଟି କେ ଚାପୋଡ଼େ
ଫୋପଡ଼ାଇଂ ।
କାହାକୁ ଧରନ୍ତେ କେ ଅଙ୍ଗ ଢାଳି ଯାଇ ॥
ଜଣକେ ପାଞ୍ଚ ସାତ ଦଶ ବିଂଶ ଶୟେ ।

ରାମ ରାବଣର ଗୋଳ ଯୁଦ୍ଧ ହୋଏ ॥
ମକରାକ୍ଷ କୁମୋଦ ଯେ ଯେ ବୀର ବେନି ।
ରଣରେ ପଡ଼ିଲେ ମାଲ ଗତି ଘେନି ॥୩୦
ଦେଖି ଦେବାନ୍ତେକ ମାଇଲା ନେଇ ଶୂଳେ ।
ଦୂରହୁଁ ଛେଦିଲା ତାହା ସୁମେତ୍ରାର ବାଳେ ॥
ମକରାକ୍ଷ ବୀରକୁ କୁମୋଦ ତଳେ ପାଡ଼ି ।
ପଡ଼ିଣ ଦଉଡ ଛାଡ଼ିଲା ସିଂଘରଡ଼ି ॥
ଦେଖିଣ ଅଗ୍ନିକେତୁ କୁମୋଦକୁ ଯାଇଂ ଧରି ।
ପେଲି ପକାଇଲା ଅତି ରୋଷ ଭରି ॥
ପଡ଼ିବନ୍ଧେ ଥିଲେ ହୋଇଲେ ଛଡ଼ାଛଡ଼ି ।
ଖଣ୍ଡେ ଦୂରେ ଯାଇଂ ବେନିବୀରେ ପଡ଼ି ॥
ମୁକୁଳା ମତ୍ତଗଜ ମାଇଲା ଯେହ୍ନେ ଧାଇଂ ।
ବେଗେଣ କୁମୋଦ ଗଲାକ ପଳାଇଂ ॥୪୦
ମୋହୋଦର ସଙ୍ଗେ ଯୁଝଇ ଶତବଳ ।
ଦୂରହୁଁ ଦେଖିଣ ଧାଇଂଲା ବୀର ନୀଳ ॥
କାଳିମୁଖ ସହିତେ କେଶରୀ ତିନିଜଣ ।
ଦେଖିଣ ଭାଲେକ ମାଇଲା ରାବଣ ॥
ସୁଗ୍ରୀବର ଧାଇଂ ଧଇଲାକ ତାହା ।
ଇନ୍ଦ୍ରଜିତକଇ ମାଇଲା କପିନାହା ॥
ଅଙ୍ଗଦ ହନୁମତ ସୁଗ୍ରୀବର ତିନି ।
ପାଞ୍ଚଜଣ ହୋଇଲେ ନୀଳକଇ ଘେନି ॥
କୁମ୍ଭ ନିକୁମ୍ଭ ଉପରେ ଲାଗିଲେ ବୋବି ଦେଇଂ ।
ଶ୍ରୀରାମକୁ ଦେଖି ଇନ୍ଦ୍ରଜିତ ଧାଇଂ ॥୫୦
ବାଳୀର ତନୟେ ଉଗାଳିଲାକ ବଳେ ।
ପ୍ରଚଣ୍ଡକୁ ସୁଗ୍ରୀବର ମାଇଲାକ ଶୂଳେ ॥
କୁଳୁପାକ୍ଷ ତାହା ବଜ୍ରେ ହତ କଲା ।
ମିତ୍ରଘନ ବିଭୀଷେଣ ଯୁଦ୍ଧ ମହା ଭଲା ॥
ଦୁଇ ଅସୁରେ ଜାଣନ୍ତି ମାୟାମାନ ।
ବିଶେଷେଣ ଏକ ଆଖଡ଼ାରେ ଶର ଯେ ସାଧନ ॥
ପରିଘେକ ଘେନି ମିତ୍ରଘନ ବୀର ।
ବିଭୀଷେଣ ଉପରକୁ ମାଇଲା ନିର୍ଭର ॥
ଦେଖିଣ ଗଗନେ ବିକ୍ରମିଲା ଦତ୍ୟରାୟେ ।
ଏଡ଼େ ଶାହସ୍ର ଗୋଟା ଭୂମିବିନ୍ଧା ହୋୟେ ॥୬୦
ପୁଣି ବିଭୀଷେଣ ଶକତି ଯେକ ଧରି ।
ମିତ୍ରଘନକୁ ଯେ ମାଇଲା କୋପ କରି ॥
ବିଦ୍ୟୁତମାଳି ସୁଷେଣକୁ ଯୁଝୁଥିଲା ।
ଦେଖି ଶକତି ଯେ ନାରାଚକେ ଛେଦିଲା ॥
ଜମ୍ୟେବ ନରାନ୍ତେକ ଯୁଧ୍ୟ ମହାଘୋର ।
ନିର୍ଯାପ କରି ଯେ ବିନ୍ଧଇ ଦତ୍ୟ ଶର ॥
ଜମ୍ୟେବ ଚାହାନ୍ତି ତାହା ବିଚିତ୍ର ଗତି କରି ।
ଘନ ଘନ କରି ତରୁ ଶିଳ ପହୁଡ଼ି ॥
ଡାଳିମ୍ୱ ପବନ ହୋଇଲେ ଭେଟାଭେଟି ।
ଶତବଳ ତାରାକ୍ଷ ରଥରେ ଯାଇଂ ଉଠି ॥୭୦
ଅଙ୍ଗଦକଇ ଦେଖି ନରାନ୍ତେକ ବୀର ।
ଅତି ବେଗ କରି ମାଇଲା ତୀକ୍ଷ ଶର ॥
ହୃଦରେ ବାଜିଣ ରକତ ଝର ଝର ଗଳେ ।
ଦେଖିଣ ଶତବଳ ମାଇଲା ଚାପୋଡ଼େ ॥
ତାହା ବଞ୍ଚାଇଲା ଶୂଳ ଘେନି ପିଟି ।
ଆକାଶମାର୍ଗେ କପି ପଳାଇଲାକ ଉଠି ॥
ପ୍ରଶସ୍ତ ସେନାପତି କରନ୍ତି ସମର ।
ରଣଝଣ ସମର ଶୁଭଇ ଅତି ଘୋର ॥
କେଶରୀ ଦୁମୁଖା ଗଡ଼ାଗଡ଼ି ହୋଇଯାନ୍ତି ।
ମୁଣ୍ଡେ ମୁଣ୍ଡ ମାରି କୋଡ଼ାକୋଡ଼ି ହୁଅନ୍ତି ॥୮୦
ଆନନ୍ଦେ ସଇନି ଦେଖନ୍ତି ସୁଖ ପାଇଂ ।
ତପନ ମକର ଯୁଦ୍ଧ ପରିମାଣ ନାହିଂ ॥
କେ ଶିଳେ ମାରଇ କେ ଚକ୍ରେଣ ନିବାରଇ ।
ମହାଘୋର ଯୁଦ୍ଧ ଶ୍ରୀରାମ ରାବଣଇ ॥
ଧୂମ୍ରାକ୍ଷ ଡାଳିମ୍ୱ ଆରେଣିର ଗୋଳ ।
ଦୁହିଁଙ୍କରି ଶ୍ୟରୀର ରୁଧିରେ ଜରଜର ॥
ରାବଣ ସଙ୍ଗେ ଲକ୍ଷଣ ଯୁଝୁଥିଲା ।
ଅଭେଦ କପଚ ତାର ନାରାଚେ ଛିନାଇଲା ॥
ରୋମେକେ ନାରାଚେ ବିନ୍ଧିଲା ସଉମିତ୍ରୀ ।
ରକତେ ବିଲୋପନ ଅସୁର କୁଳପତି ॥୯୦
ଲକ୍ଷଣକଇ କୋପେ ବିନ୍ଧଇ ତୀକ୍ଷବାଣ ।
ଚଳିଲେ ନାରାଚମାନେ ଶବଦ ଗରୁ ଟାଣ ॥
ଶ୍ରୀରାମ ଅନୁଜ ଛେଦଇ ତାହା ଝାଟି ।
ଧନ୍ୟ ଧନ୍ୟ ବୋଲି ପ୍ରଶଂସଇ ଲଙ୍କପତି ॥
ଶହସ୍ରେ ନାରାଚ ବିନ୍ଧିଲାକ ପୁଣି ।
ହାଥରୁ ନ ଛୁଟୁ ଲକ୍ଷଣ ତାହା ହାଣି ॥
କୋପେଣ ରାବଣ ଗର୍ଜଇ ଘନ ଘନ ।
ତୁଷାର ବୃଷ୍ଟି ଜାଣି ବିନ୍ଧଇ ଅନୁକ୍ଷନ ॥
କୁହୁଡ଼ିର ପ୍ରାୟେକ ଦିଶଇ ଶରପନ୍ଥ ।
ଶ୍ରୀରାମ ତୁଳେ ବିନ୍ଧଇ ଇନ୍ଦ୍ରଜିତ ॥୧୦୦
ଆବର ରଶ୍ମିକେତୁ ଅଗ୍ନିକେତୁ ଘେନି ।
ତିନିଜଣ ହୋଇଲେ ସୁକେତୁକୁ ଘେନି ॥
ମିତ୍ରଘନ ସହିତେ ରାମକୁ ବେଢ଼ିଛନ୍ତି ।
ମେଘ ବୃଷ୍ଟି ଜାଣି ନାରାଚ ବରଷନ୍ତି ॥
ନାରାଚଙ୍କର ଯିବାରେ ଗୁଣଙ୍କର ଟଙ୍କାର ।
ମାତ୍ର ଶୁଭଇ ସମର ଅନ୍ଧକାର ॥
କିଞ୍ଚିତ ମାତ୍ରେକ ତାହା ଛେଦନ୍ତି ସୀତ୍ୟାସାଇଂ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ତାଂକୁ ସରିସମ ନାହିଂ ॥
ଲୀଳାଯୁଦ୍ଧରେ ଯେ ଅସୁର ବଳ ମାରି ।
ଗଣ୍ଠି ମୁଠି ଦେଖି ଭାଳଇ ଇନ୍ଦ୍ରର ଅଇରି ॥୧୦
ବାବୁ ଯୋଧାୟେ ଯେ ଦଶରଥ ସୁତ ।
ଏହାଙ୍କର ସାମାନ୍ୟକୁ ନୋହନ୍ତି ପୁରୁହୁତ ॥
ମନିଷ୍ୟ ହୋଇଣ ଯେ ଅପୂର୍ବ ମହାଯୋଦ୍ଧା ।
ଏ ମୋହୋର ସମରକୁ ଡରନ୍ତି ବିବୁଧା ॥
ଭୟେ ନକରି ଯେ ରହିଲା ଯୁଦ୍ଧ ସହିଂ ।
ସାମାନ୍ୟ ଭରସା କି ମାନେବ ତନୁ ବହିଂ ॥
ଏସନେକ ସମର ଶ୍ରୀରାମ ଇନ୍ଦ୍ରଜିତ ।
ଆବରହିଂ ଚାରିହେଂ ଅସୁର ବଳବନ୍ତ ॥
ଲକ୍ଷଣ ରାବଣର ସମର ମହାଘୋର ।
ଦେବେଣ ଦୁର୍ଲଭ ମାନବେ ଅଗୋଚର ॥୨୦
ଦଶ ନାରାଚ ଯେ ପେଷିଲା ଶ୍ରୀରାମର ଭାଇ ।
ଲଙ୍କପତି ଦଶଲଲାଟେ ପଡ଼ଇ ଯାଇଂ ॥
ଅସ୍ତ୍ରଭେଦ ହୋଅନ୍ତେ ରୁଧିର ବାହାର ।
ଦଶମୁଖେ ରୁଧିର ପଡ଼ଇ ଅନ୍ୟାକାର ॥
ଲକ୍ଷଣ ହସଇ ବିରୂପ ତାର ଚାହିଂ ।

କିରେ ପଶ୍ଚିମୁଖା ଯିବୁ ଆଉ କାହିଁ ॥
ଏହିକ୍ଷଣି ତୋହୋର ଛେଦିବି ଦଶକନ୍ଧ ।
ସୀତା ଆଣିଲା ପ୍ରାୟେକ ବୁଝିକିରେ ଅନ୍ଧ ॥
ଏତେକ ବୋଲି ବୀର ତିନିବାଣ ପେଷି ।
ଧନୁର୍ବେଦ ପଢ଼ି ବିନ୍ଧିଲାକ ଆଞ୍ଚି ॥୩୦
ରାବଣ ହୃଦରେ ପଡ଼ିଲା ତିନିକାଣ୍ଡ ।
ହୃଦରେ ପଡ଼ନ୍ତେ କମ୍ପିଲା ବ୍ରହ୍ମାଣ୍ଡ ॥
ଦେଖିଣ ଇନ୍ଦ୍ରଜିତ ଶ୍ରୀରାମକୁ ଛାଡ଼ି ।
ଲକ୍ଷଣକୁ ଶକତି ମାଇଲା କୋପ କରି ॥
ରାବଣ ହିଂ ଶୂଳେ ମାଇଲା ରୋଷଭରେ ।
ସଉମିତ୍ରୀ ତାହା ଛେଦିଲା ତୀକ୍ଷଣରେ ॥
ଇନ୍ଦ୍ରଜିତ ଶକତିକି ପ୍ରତି ଅସ୍ତ୍ର କରି ।
ଅତି ଦୁଃଖେ ତାହା ଯେ ନିବାରି ନପାରି ॥
ଶ୍ରୀରାମ ହିଂ ନାରାଜ ବିନ୍ଧିଲେ ବହୁତ ।
ଶକତିର ତେଜଙ୍କୁ ନୋହିଲେ
ସାମରଥ ॥୪୦
ଲକ୍ଷଣ ବକସ୍ଥଳେ ପଡ଼ିଲାକ ଯାଇଂ ।
ମୋହେ ଅଚେତନ ଶ୍ରୀରାମର ଭାଇ ॥
ଦେଖିଣ ରାବଣେଶ୍ୱର ରଥରୁ ଓହ୍ଲାଇଲା ।
ତତକ୍ଷଣେ ଲକ୍ଷଣର ସନ୍ନିଧିକୁ ଗଲା ॥
ଲଙ୍କା ନମ ବୋଲି ତୋଳିଲାକ ଯାଇଂ ।
ହାଥକେ ହାଥ ଧରିଣ ଉଛୁଡ଼ଇ ॥
ତୋଳନ୍ତେ ନ ଉଠଇ ସୁମିତ୍ରାର ସୁତ ।
ପୁଣ ବିଂଶଭୁଜେ ତୋଳଇ ଦଇତ ॥
ଦୁଇବେଳ ଝୁଙ୍କି ନୁଆରିଲା ତୋଳି ।
ଆପଣେ ଆପଣେ ପଞ୍ଚମନେ ଭାଳି ॥୫୦
କପିଳାସ ପର୍ବତରୁ ତ ହୋଇଲା ମୋତେ
ଗରୁ ।
କିଅବା ମନିଷ୍ୟ ରୂପେ ଅବତାର ମେରୁ ॥
ଏସନେକ ବିଚାରି ତୋଳଇ ପୁଣପୁଣି ।
ଦେଖିଣ କୋପକରି ଧାଇଂଲେ ରଘୁମଣି ॥
ତୀକ୍ଷ ନାରାଚ୍ଚେକ ବିନ୍ଧିଲେ ତଡ଼ତି ।
ଦଶମକୁଟ ତାର କାଟିଲେ ରଘୁପତି ॥
ଧାଇଂ ହନୁମତ ବିଧାୟେ ମାଇଲା ।
ରାବଣ ହୃଦରେ ବାଜିଣ ମୋହଗଲା ॥
ଆଣ୍ଠୁମାଡ଼ିଣ ସେ ପଡ଼ିଲା ଭୂମିରେ ।

ଇନ୍ଦ୍ରଜିତ ଦେଖିଲା ଯେସନେକ
ବେଳେ ॥୬୦
ବଜ୍ରସମ ଶୂଳେ ମାଇଲା କୋପକରି ।
କଟୁରୀ ବାଣେ ତାହା ଛେଦିଲେ ରାବଣାରି ॥
ରାବଣ ଯେ ମୋହେ ଭୂମିରେ ପଡ଼ିଥିଲା ।
ସାଷ୍ଟାମ ହୋଇଂ ଯାଇଂ ରଥରେ ବସିଲା ॥
ଧନୁଶସ୍ତ୍ର ଧରିଣ ବିନ୍ଧଇ ଅନୁକ୍ଷନ ।
ରଘୁବଂଶନନ୍ଦନ ତା' ଛେଦନ୍ତି ଘନଘନ ॥
ଇନ୍ଦ୍ରଜିତ ବୀର ଶ୍ରୀରାମକୁ ବିନ୍ଧଇ ଶର ।
ଆବର ହିଂ ବିନ୍ଧନ୍ତି ଅନେକ ଅସୁର ॥
ଗହଳ ଦେଖି ଯେ ପବନର ସୁତ ।
ମନେ ବିଚାରିଲା ହୋଇଲା ବିପରୀତ ॥୭୦
ମୁଂ ଯେବେ ଲକ୍ଷଣକୁ ଯେଠାରୁ
ଘେନିଯିବି ।
ତୋଳି ନ ପାରିଲେ ଉପହାସ୍ୟ ପାଇବି ॥
ଏତେ ବୋଲି ହୃଦୟ ଭିତରେ କଲା ତୁଷ୍ଟି ।
ଜୟତୁ ଲକ୍ଷଣ ହୋ ଅନନ୍ତ ମୂରତି ॥
ଯୋଗଧାରଣ ତୁ ପରମ ଯୋଗଗ୍ୟାଂନୀ ।
ବ୍ରହ୍ମାଣ୍ଡ ଈଶ୍ୱର ତୁ ଦୁଖ ସୁଖ ଦାନୀ ॥
ସର୍ବାଙ୍ଗ ସୁନ୍ଦର ତୁ କରୁଣାମୟେ ତନୁ ।
ତୁ ସେ ନାରାୟଣ ନିଜଭୁଜ ମନୁ ॥
ଲକ୍ଷେକ ଲକ୍ଷଣ ବହଇଂ ତୋର ଅଙ୍ଗ ।
ସଂସାର ଭାରା ତୁ ଯେ ବଳୟ ତରଙ୍ଗ ॥୮୦
ତୋହୋର ଆଗ୍ୟାଂରେ ବାସୁକୀ ନାଗ
ବଳୀ ।
ତିଳ ମନ୍ଦା ପ୍ରମାଣେ ବହିଲା ମହୀଆଳି ॥
ତୁ ସେ ପବନଆହରୀ ବ୍ରହ୍ମତପୀ ।
ତୁ ସେ ତପୋବନ୍ତ ଠୂଳ ଶୂନ୍ୟରୂପୀ ॥
ତୁ ଦେବ ଶଙ୍କର ତୁ ଜଗତରେ ବ୍ୟାପି ।
ତ୍ରୈଲୋକ ଈଶ୍ୱର ତୁ ସର୍ବକାଳେ କଳ୍ପି ॥
ଭାବକଇ ଭାବ ତୁ ଅଭାବକଇ ଭ୍ରାନ୍ତି ।
ସତକଇ ସାକ୍ଷୀ ଦେବକଇ ଶ୍ୟାନ୍ତି ॥
ଚିଆଂକୁ ଚୈତନ ତୁ ଚୈତନ୍ୟକୁ ହେତୁ ।
ଗ୍ୟାଂନକୁ ଧାରଣା ତୁ ଧାରଣାକୁ ତତ୍ତ୍ୱ ॥୯୦
ପ୍ରକୃତି ପୁରୁଷ ତୁ ପୁରୁଷଙ୍କର ପ୍ରିୟା ।
ଲକ୍ଷ୍ମୀର ବାନ୍ଧବ ତୁ ନାରାୟେଣର ହିଆ ॥

ସ୍ୱପନର ସତ୍ୟତୁ ସ୍ୱତୀଙ୍କର ତେଜ ।
ରଜର ଧାତୁ ତୁ ରୁଧିରକଇ ବୀଜ ॥
ଦେହକଇ ଅସ୍ଥି ତୁ ଅସ୍ଥିକଇ ତୋଷି ।
ପବନକଇ ଯାନ ତୁ ଅପାପୀ ଅଦୋଷୀ ॥
ହୃଦକଇ ବପୁ ତୁ ବପୁକଇ ଅନ୍ତ ।
ସନ୍ଥଜନକଇ ମତି ତୁ ତପୀଙ୍କର ତତ୍ତ୍ୱ ॥
ମନ୍ତ୍ରୀଙ୍କର ମନ୍ତ୍ରୀ ତୁ କ୍ଷତ୍ରୀଙ୍କର ସାହସ ।
ସ୍ୱାମୀଙ୍କର ପ୍ରଭୁ ତୁ ଭୃତ୍ୟଙ୍କର ବଶ୍ୟ ॥୧୦୦
ନାଗାନ୍ତକ ଯୋଗାନ୍ତକ ଦେବାନ୍ତକ ତିନି ।
ଇଂଅଳା ପିଅଂଳା ଶିଶୁମୁନା ଘେନି ॥
ମୂଳ କମଳଚାପି ହଂସ ଯହିଂ ଚିର ।
ଯାହା ସେ ଯୋଗୀଜନେ ଅଜପା ଆଚରି ॥
ସେ ଶୂନ୍ୟପୁରୁଷ ତୁ ରେଖ ରୂପ ନାସ୍ତି ।
ପଛେ ଲିଙ୍ଗ କମଳ ଉଜାଇଲାକ ଅସ୍ତି ॥
ନବକୋଣେ ପଦ୍ମ ନବଚକ୍ରପାଦ ।
ନୀଳାମ୍ବର ଭ୍ରମରା ନୀଳାମ୍ବର ବୃନ୍ଦ ॥
ଅନୁକ୍ଷଣେ ଚଳ ନିଚଳ ତୋର କାଏ ।
ଗ୍ୟାଂନର ଗୁରୁଦେବ ଅଗ୍ୟାଂନର
ଆୟେ ॥୧୦
ଦୀପର ଅଗ୍ନି ତୁ ଆବର ବଳ ତେଜ ।
ଜୟ ଜୟ ଲକ୍ଷଣ ତୁ ଦେବାଧି ଦେବରାଜ ॥
ଜୟ ଜୟ ପନଗାନାରାୟେଣ ବିଶ୍ୱବାସ ।
ଜୟ ଜୟ ଉପଦର୍ପ ତୁ ଅଯୋନି ପରକାଶ ॥
ଦଇତ ନିଶୋଧନେ ଦେବଗଣଙ୍କର
ଛଳେ ।
ଦଶରଥ ନନ୍ଦନ ତୁ ହୋଇଲୁ ରବିତଳେ ॥
ଶ୍ରୀରାମର ଅନୁଜ ତୁ ସୁମିତ୍ରାର ସୁତ ।
ଅପାର ମହିଂମା ସ୍ୱାମୀ ଉର୍ମିଳା ପ୍ରାଣନାଥ ॥
ମୁହିଂ ତୋର ଭୃତ୍ୟ ପବନର ନାନ ।
ତୁ ଦେବ ଲୀଳା ଯୁଦ୍ଧେ ହୋଇଲୁ
ଅଚେତନ ॥୨୦
ଇନ୍ଦ୍ରଜିତ ରାବଣର ଶ୍ରୀରାମ ସଙ୍ଗେ ଯୁଦ୍ଧ ।
ମୁହିଂ ତୋତେ ନେମଇଂ ସୁବଳୟାଗିରି
ମଧ୍ୟ ॥
ହୋଅସି ପ୍ରସନ୍ନ ନାଥ ଉର୍ମିଳାର କାନ୍ତ ।
ଦୟା ଥିଲେ ଆସିଣ ବସ ମୋର ମାଥ ॥

ଯେତେ ବୋଲି ନମସ୍କାର କରିଣ
ଶୋଇଲା ।
ଶିରେ ଧରି ସୁବଳୟା ଗିରିକି ଚଳିଗଲା ॥
ଜମ୍ୱେବ ସୁଗ୍ରୀବର ସଂଗତେ ଚଳିଗଲେ ।
ଆବର ଅନେକ ସଇନି ଗୋଡ଼ାଇଲେ ॥
ଶ୍ରୀରାମ ଯେ ରାବଣର ସଂଗେ ଯୁଝୁଛନ୍ତି ।
ନିଶ୍ୱାସକେ ଲକ୍ଷେ ନାରାଜ ବିନ୍ଧନ୍ତି ॥୩୦
ଯୂଥପତିମାନେ କରନ୍ତି ମହାରଣ ।
ଏସନେକ ବେଳ ସୁମରି ବାହୁଡ଼ଇ
ରାବଣ ॥
ଇନ୍ଦ୍ରଜିତକୁ ବୋଇଲ ନକରସି ଯୁଦ୍ଧ ।
ଭାଇ ଲକ୍ଷଣ ଯେ ହୋଇଲା ଶକ୍ତିଭେଦ ॥
କାଲି ଆସି ଯତିକି କରିବା ପ୍ରାଣନାଶ ।
ବେଳ ଶେଷ ହୋଇଲା ତୁ ବାହୁଡ଼ିଣ ଆସ ॥
ଶୁଣି ମେଘନାଦ ପାଲଟିଲା ଧାଡି ।
ଗୋଡ଼ାଇଂ ନାରାଜ ବିନ୍ଧନ୍ତି ରଘୁପତି ॥
ଦୁଇ ସହସ୍ର ହାଥ ଯେବଣ ବିମାନ ।
ଶରେଣ ଅଦୃଶ୍ୟ ତା କଲେକ
ରଘୁନାନ ॥୪୦
ବାପ ପୁଅଙ୍କର କାଟିଲେ ସାରଥି ।
ଧନୁ ଶହସ୍ର ତାଙ୍କର ଛେଦିଲେ ଦାଶରଥି ॥
ସାଙ୍ଗେଣ ଅଙ୍ଗଦ ସୁଷେଣ ନଳନୀଳ ।
ସଇନି ମାରନ୍ତି ଘେନିଣ ତରୁଶାଳଶିଳ ॥
ଦଶସହସ୍ର ରଥୀ ପଡ଼ିଲେ ରାମବାଣେ ।
ପାଦାନ୍ତି ସଇନି ପଳାନ୍ତି ଯେଣେ ତେଣେ ॥
ହାଥୀଙ୍କର ଉପରେ ପଡ଼ନ୍ତି ଯହୁଂ ଶର ।
ଗର୍ଜ୍ଜକରି ଜୀବନ ଛାଡ଼ନ୍ତି କରୀବର ॥
ଇନ୍ଦ୍ରଜିତ ସହିତେ କୁମ୍ଭ ନିକୁମ୍ଭ ବେନି ।
ନରାନ୍ତେକ ଦେବାନ୍ତେକ ଜୁଳୁପାକ୍ଷ
ଘେନି ॥୫୦
କାକାକ୍ଷ ପ୍ରଶସ୍ଥ ଜମ୍ୱୋମାଳିର ସୁତ ।
ପିଚାଶ ପ୍ରବର ମହାବାହୁ ମହାରଥ ॥
ମିତ୍ରଘନ ତପନ ପ୍ରଜଙ୍ଘ ବିରୂପାକ୍ଷ ।
ଅଗ୍ନିକେତୁ ରଶ୍ମିକେତୁ ସୁପୁତ୍ରଘନ ଧୂମାକ୍ଷ ॥
ଯଗ୍ୟଂକେତୁ ଚକ୍ରମୁଷ୍ଟି ଅଶ୍ୱିନୀ ପରାଭବ ।
ବିଦ୍ୟୁମାଳି କ୍ରୋଧପନ ଆବର
ପ୍ରସନଦେବ ॥

ମୋହୋଦର ମହାପାରୁଶ ବଜ୍ରଦୃଷ୍ଟ ଦୃମୁଖା ।
ମହୀରାବଣ ଅଜଏ ଅମଏ ତ୍ରିଶିରା ଦୁଶାଖା ॥
ପଞ୍ଚାଶକୋଟି ଯେ ମର୍କଟ ଯୋଦ୍ଧାମାନ ।
ତେରଶତ ନାତି ଏକସ୍ତରି ନନ୍ଦନ ॥୬୦
ମାହୁନ୍ତ ପୟେକାର ରାଉତ ସଇନ୍ୟ ।
ବାଜେଣିଆ ସହିତେ ଦେଖଣାହାରୀମାନ ॥
ଗୁଧିରେ ଜର ଜର ସବୁଙ୍କରି କାୟେ ।
ରୋଷେଣ ରାବଣକୁ ବିନ୍ଧନ୍ତି ରାମରାୟେ ॥
ଅଘାଇଆ ହୋଇ ତହିଂ ନାହିଂ ଜଣେ ।
ସ୍ୱର୍ଗେଣ ପ୍ରଶଂସା କରନ୍ତି ସୁରଗଣେ ॥
ପଳାନ୍ତି ଅସୁରେ ପଛକୁ ନଚାହିଂ ।
ଲଙ୍କାଗଡ଼ ଭିତରେ ପଶିଲେକ ଯାଇଂ ॥
ଉତ୍ତର ଦ୍ୱାରେଣ ଉତ୍ତମମାନ ଗଲେ ।
ବାଟ ନ ପାଇ ଥୋକେ ପୂର୍ବଦ୍ୱାରେ
ପଶିଲେ ॥୭୦
ତହୁଂ ଗହଳ ପାଇ ପଶ୍ଚିମଦ୍ୱାରେ ଆସି ।
ଥୋକାୟେକ ବଳ ଦକ୍ଷିଣ ଦ୍ୱାରେ ପଶି ॥
ଚାଲ ଚାଲ ଆଡ଼ୋ ଆଡ଼ୋ ପଡ଼ଇ
ଡାକମାନ ।
ମଡ଼ାମଡ଼ି ହୋଇ ମଲେ ଅନେକ ସନ୍ୟ ॥
କେହୁଂ ଫୁଟିଣ କେ ନ ପାରନ୍ତି ଯାଇଂ ।
କାକୁସ୍ତ ହୋଇଣ କେ ତୁଣ୍ଡରେ କର
ଦେଇଂ ॥
ପାୟେଂ ପଡ଼ିଲେ ମର୍କଟ ମାଡ଼ିଯାନ୍ତି ।
କେହୁଂ ମଡ଼ା ତଳେ ନିସତେ ପଶନ୍ତି ॥
ତାହାଙ୍କର ବିକଳ ଦେଖିଣ ଶ୍ରୀରାମ ।
ପଳାଇଲା ଶତ୍ରୁବୋଲି ନକଲେ
ସଂଗ୍ରାମ ॥୮୦
ଉତ୍ତରଗଡ଼ ଦ୍ୱାରୁ ବାହୁଡ଼ି ଆସନ୍ତି ।
ଅଷ୍ଟାଙ୍ଗ ଶ୍ୟରୀର ଝାଳେ ଅଛି ତିନ୍ତି ॥
ବାମେଣ ସାଏକ ଦଖିଣ କରେ ଶର ।
ସେନାପତିଙ୍କି ଘେନି ବାହୁଡ଼ନ୍ତି ରଘୁବୀର ॥
ଲକ୍ଷଣକୁ ଦେଖିବାକୁ ଉଦ୍‌ବେଗ ମନ ।
ବାଟେ ଦ୍ରଶନ ଆସି କଲାକ ହନୁମାନ ॥
ଶ୍ରୀରାମ ପଚାରନ୍ତି ଲକ୍ଷଣକୁ କିସ କଲୁ ।
ପ୍ରାଣସଖାକୁ କାହିଂ ଛାଡ଼ିଣ ଅଇଲୁ ॥

ମୋହ ହୋଇଲା କି ଅଜ୍ଞାନ ଶ୍ୟରୀର ।
କେତେମାନ ଘା ଅଟଇ ଶକତିର ॥୯୦
ହନୁମତ ଜଣାଇଲା ଦେବ କଠୋର ଘାଆ
ନୋହି ।
ଚେତନା ପାଇଲେଣି ସୁମିତ୍ରା ତନଇ ॥
ଶହସ୍ର ଉପାଡ଼ିଲୁ ଅଳପ ବହିଥିଲା ।
ଜମ୍ୱେବ ଫୁଙ୍କିଣ ଘାଆ ଭଲ କଲା ॥
ଯୁଦ୍ଧକୁ ସଉମିତ୍ରୀ ଆସିତ କଲା ମନ ।
ପ୍ରବୋଧି ରୁହାଇଲେ ସୁଗ୍ରୀବ ରାଜନ ॥
ଶୁଣିଣ ଶ୍ରୀରାମ ସନ୍ତୋଷ ହୋଇଲେ ।
ଲେଉଟିଣ ଲଙ୍କାଗଡ଼କୁ ଚାହିଂଲେ ॥
ବୋଇଲେ କାଲି ସେ ଜାଣିମା ରେ ଅସୁର ।
ସଂଗୋତ୍ର ସହିତେ ପେଷିବି
ଯମପୁର ॥୧୦୦
ଏତେବୋଲି ହନୁମନ୍ତ କାନ୍ଧରେ ବସିଲେ ।
ଉତରା ଅଭିମୁଖେ ସୁବଳୟାକୁ ଗଲେ ॥
ବୈକୁଣ୍ଠ ପର୍ବତେ ଯେହ୍ନେ ବିଷ୍ଣୁନାଥ ଥାନ୍ତି ।
ସେନାପତିମାନ ସକଳ ସୁରଗଣ ଅଟନ୍ତି ॥
କ୍ଷୀର ସମୁଦ୍ର ମନ୍ଥି ଯେହ୍ନେ ବାହୁଡ଼ନ୍ତି
ନାରାୟେଣ ।
ରକ୍ଷକପି ତେସନ ଦିଶନ୍ତି ବିତପନ ॥
ସୁବଳୟା ଗିରିରେ ଆସି ହୋଇଲେ ତତ୍ପତି ।
ଜମ୍ୱେବ କହିଲେ ଅଇଲେ ରଘୁପତି ॥
ପାଛୋଟି ଅଇଲେ ଲକ୍ଷଣ ସୁଗ୍ରୀବର ।
ଜମ୍ୱେବ ସହିତେ ନମିଲେ ଶ୍ରୀରାମ
ପୟର ॥୧୦
ଦେଖିଣ ଆନନ୍ଦ ଅଯୋଧ୍ୟାର ସାଇଂ ।
ହନୁମତ କନ୍ଧରୁ ଉତୁରିଲେ ରଘୁସାଇଂ ॥
ଭାଇକି କୋଳକରି କରନ୍ତି ରୋଦନ ।
ତୁ ମୋହୋର ସଖାରେ ସୁମେତ୍ରାନନ୍ଦନ ॥
ଯେତେବେଳେ ତୋତେ ରେ ମାଇଲା
ଶକତି ।
ଅନ୍ଧାରମୟେ ମୋତେ ଦିଶିଲା ନବସୃଷ୍ଟି ॥
ନାକରେ ପଶି ଯେହ୍ନେ ତାଲୁକୁ ଯାଇ ପାଣି ।
ବୁଦ୍ଧି ସରିଲା ମୋର ତେସନେକ ଜାଣି ॥
ସେ ବାପ ପୋୟେ ଯେ ଅଟନ୍ତି କ୍ଷତ୍ରୀବର ।

ନୋହିଲେଣ କେମନ୍ତେରେ ଜିଣିଲେ
ପୁରନ୍ଦର ॥୨୦
ପ୍ରାଣେଣ ତ ଅସୁର ସେ କ୍ଷତ୍ରିପଣେ
ବଳିଆରୀ ।
ବ୍ରହ୍ମାଣ୍ଡ ଭିତରେ ସେ ଅଟନ୍ତି ହନ୍ତକାରୀ ॥
ଆରବେଳେ ବାବୁ ସମରେ ନୋହିବୁ
ଆଗୁସାର ।
ମାୟା ଯୁଦ୍ଧ ବାବୁରେ ଜାଣନ୍ତି ଅପାର ॥
ବିଭୀଷେଣ ସଙ୍ଗେ ସମର କାଳେ ଥିବୁ ।
ଯେଣେ ନିଅଇ ସେ ତେଣେ ତୁହି ଯିବୁ ॥
ଜାଣୁଟିକି ମିତ୍ରଘନ ମାଇଲା ଯେବଣ ଶୂଳ ।
ବିଭୀଷେଣ ନୋହିଲେ ଆନର ପୂରନ୍ତା ଯେ
କାଳ ॥
ମାୟା ଅମାୟା ଜାଣଇ ପୌଲସ୍ତିର ନାତି ।
ଶହସ୍ର ନ ଆସୁ ଗଲା ଉର୍ଦ୍ଧ୍ୱଗତି ॥୩୦
ଏହାର ବେଳେ ସେ ମେଣ୍ଟି ହୋଇବାକ
ତହିଁ ।
ଅସୁରମାନଙ୍କୁ ଯେକା ମାୟାହିଁ ସେ ସାହି ॥
ଯେବେ ବାହାରିଲେ ବାବୁ ମୋହୋର ସଙ୍ଗେ
ଥିବୁ ।
ଯେକା ହୋଇ ଇନ୍ଦ୍ରଜିତ ସଂଗେ ନ
ଯୁଝିବୁ ॥
ତୋହୋର ଜୀଇଂଥିଲେ ମୋହୋର ସବୁ
ଅଛି ।
ତୋହୋର ବିହୁନେ ମୋର ଯଶ ନାହିଁ
କିଛି ॥
ତୁ ପ୍ରାଣର ଧାରଣା ମୋର ଅଟୁସିରେ ଭାଇ ।
ତୋତେ ନ ଦେଖିଲେ ମୋର ପ୍ରାଣ ଯେ
ନ ପାଇ ॥
ସୀତାଙ୍କୁ ମୁରୁଛିଲି ତୋହୋର ସଂଗେ
ଥାନ୍ତେ ।
ସବୁ ସମ୍ପଦ ମୋର ତୋହୋର
ଜୀବନ୍ତେ ॥୪୦
ଯୁଦ୍ଧର ଭଙ୍ଗିମା ତୁ ନ ଜାଣୁରେ ସାନ ।
ମେଘନାଦ କୁମର ସେ ଇନ୍ଦ୍ରଜିତ ନାମ ॥
ରାବଣହୁଁ ଅଧିକ ବୋଲନ୍ତି ତାକୁ ଲୋକେ ।
ତୁ କାହିଁ ଯୁଝିବୁ ସେ ମାରିବଟି ଛଟକେ ॥
କହୁଂ କହୁଂ ରାମର ନୟନୁ ବହେ ଜଳ ।
ସେନା ସେନାପତି ସମସ୍ତେ ବିକଳ ॥
ଶୁଣିଣ ଲକ୍ଷଣ ଅରୁଣ ବର୍ଣ୍ଣ ତେଜ ।
ଥରହର ହୋଇ କମ୍ପଇ ତାର ଭୁଜ ॥
ଦଶ ଦିଗକୁ ଚାହିଁ କହଇ କୋପକରି ।
ତୁ କିଂପା ଗାଢ଼ ମୋତେ କହୁ
ଚାପଧାରୀ ॥୫୦
ଛତ୍ରୀର ପୁତ୍ର ମୁଂ ମୂର୍ଚ୍ଛିବି କେହ୍ନେ ରଣେ ।
ହାନି ଅପଚୟେ ଅଛିନା ପୁରାଣେ ॥
ରାବଣର ଶୂଳ ସେ ଦେଖିଲଇ ମୁହିଂ ।
ଇନ୍ଦ୍ରଜିତ ଶକତି ମାଇଲା ଆଡ଼େ ଥାଇଂ ॥
ତେଣୁ ସେ ପ୍ରତି ଅସ୍ତ୍ର ନୁଆରିଲି କରି ।
ଛାମୁରେ ମିଳି ଅସ୍ତ୍ର ହୋଅଇ କାହାର ମାରି ॥
ଶ୍ରୀରାମ ବୋଇଲେ ମୁଂ ଯେଥିକି କହିଲି ।
ଅସୁରେ ଯେ ମାୟାଯୁଦ୍ଧ ଜାଣନ୍ତି ବୋଇଲି ॥
ଅଧର୍ମ ନକରି ଯୁଝିବେ ଯେବେ ରହି ।
ତିନିପୁରେ ଜିଣନ୍ତା ନାହିଁ ହାଦେ
କେହି ॥୬୦
ଲକ୍ଷଣ ବୋଇଲା ସେ ଜାଣୁ ପଛେ ମାୟା ।
ମୁଇଂ ସେ ଯୁଦ୍ଧେ ବିଦାରିବି ତାର କାୟା ॥
ଇନ୍ଦ୍ରଜିତ ଯୁଦ୍ଧ ହୋଇଲା ମୋର ଭାଗେ ।
ପୁଣ ପୁଣ ପ୍ରତଜ୍ଞା କରଇ ବୀର ରାଗେ ॥
ଏବେ ଭେଟ ପଡ଼ିଲେ ନ ଯିବ ପ୍ରାଣ
ଘେନି ।
ଏକଥାକୁ ସାକ୍ଷ ଚନ୍ଦ୍ର ସୂର୍ଯ୍ୟ ବେନି ॥
ଯେବେ ଇନ୍ଦ୍ରଜିତର ନ ଛେଦଇ ମାଥ ।
ଏ ଧନୁ ଶହସ୍ର ମୁଂ ନ ଧରଇ ହାଥ ॥
ଶୁଣି ବିଭୀଷେଣ ଅଙ୍ଗଦ ହନୁମତ ।
ନଳନୀଳ ସୁଷେଣ ତାରାକ୍ଷ
ଜମ୍ୱୋବନ୍ତ ॥୭୦
ଗନ୍ଧମାରଦନ ଶଉରୀ ଶତବାଳି ।
ରଣେ କପିପୁତ୍ର ଯେତେକ ଛନ୍ତି ମିଳି ॥
ରିକ୍ଷ କପିମାନେ ଅଛ ହାଦେ ପୂରି ।
ଇନ୍ଦ୍ରଜିତ ସଙ୍ଗେ ମୁଂ ଯୁଦ୍ଧକୁ ହୋଇଲି ବଳି ॥
ସତ୍ୟ ସତ୍ୟ ମୁହିଂ କରୁଅଛି ହାକ ।
ଯେକଥାକୁ ନ ଭାଳ ରଘୁ ଯେ ନାୟେକ ॥
ସାକ୍ଷୀ ହୋଇଥାଅ ପଞ୍ଚଶ ଯୂଥପତି ।
ଇନ୍ଦ୍ରଜିତ ଯୁଦ୍ଧକୁ ନ ଭାଳ ରଘୁପତି ॥
ଯେବେଳେ ଅଇଲେ ନେଉଟି ନଯିବ ।
ବ୍ରହ୍ମାଦି ଶଙ୍କର ରଖି ନ ପାରିବ ॥୮୦
ଜାଣିମା ଇନ୍ଦ୍ରକୁ ଜିଣିଲା କେବଣ ରଣେ ।
ଦଶଦିଗପାଳଙ୍କୁ ଜିଣିଲା କେବଣ ବାଣେ ॥
ମୁଇଂ ନୋହଇ ନା ସୁରଗଣମାନ ।
ମୋହୋର ହାଥରେ ତାହାର ସରିବ
ଜୀବନ ॥
ଲକ୍ଷଣ ପ୍ରତଜ୍ଞା କରନ୍ତେ ଶ୍ରୀରାମ ଯେ ହସି ।
ନିଶବଦ ହୋଇଣ ଅଛନ୍ତି ତରୁଣିଷି ॥
ବିଭୀଷେଣ ଜଣାଇଲା ଯୋଡ଼ି ବେନି କର ।
ଲକ୍ଷଣର ପ୍ରତଗ୍ୟାଂ ଯେ ରହିବ ରଘୁବୀର ॥
ଇନ୍ଦ୍ରଜିତ ନାମେ କମ୍ପନ୍ତି ସୁରମୁନି ।
କେହି ଧନୁ ଶହସ୍ର ନୁଆରନ୍ତି ଘେନି ॥୯୦
ପଳାଇଣ ମନ କରନ୍ତି ଭୟେ ପାଇଂ ।
ବେଳେ ହେଂ ପ୍ରତଗ୍ୟାଂ ଦେବ କେହି
କରିନାହିଁ ॥
ଯେବେ ବିଚାରିଲୁ ମରିବ ଇନ୍ଦ୍ରଜିତ ।
ଲକ୍ଷଣ ପ୍ରତଗ୍ୟାଂ ଯହୁଂ କଲାକ ବହୁତ ॥
ବିଶେଷେଣ ଛତ୍ରୀ ଧର୍ମେଣ ଅଚାର୍ଗଳ ।
ଅଗମ୍ୟ ଗମିଲେ ଯାଆନ୍ତି ଯମଆଳ ॥
ମୁହିଂ ସୋହୋଦର ଅଟଇ ତାହାଙ୍କରି ।
ଅବେଭାର ଦେଖି ଅଇଲି ଅପସରି ॥
ତୁ ଯେବେ ରିକ୍ଷକପିର ବଳ ସାଇଂ ।
ନିଶ୍ଚୟେ ମେଘନାଦକୁ ମାରିବ ଲକ୍ଷଣ
ହିଂ ॥୧୦୦
ବ୍ରହ୍ମା ରୁଦ୍ର ରଖିଲେ ରକ୍ଷା ସେ ନୁହଇଂ ।
ଯେ ମେଘନାଦକୁ ଯେ ମାରିବ ଲକ୍ଷଣ ହିଂ ॥
ଯେବେଣ ଶକତି ଆଜି ମାଇଲା ଇନ୍ଦ୍ରଜିତ ।
ରାବଣକଇ ଦେଲା ତାହା ମନ୍ଦୋଦରୀ ତାତ ॥
ଯଉତୁକ ବୋଲିଣ ସେ ବିଭାର
ସମୟେଣ ।
ଶର ଦେଲା ମୟେଦଇତ ପ୍ରସନ ହୋଇଣ ॥
ପୂର୍ବେଣ ପିତାମହ ତାହାକୁ ଦେଇଥିଲା ।

ସେ ସେ ଶକତି କୁଆଡ଼କି ଯଉତୁକ ଦେଲା ॥
ସମୟେକ ରାବଣ ବହିଲା ବୀର ପଣେ ।
ଅନେକ ଛତ୍ରୀ ପ୍ରାଣ ହାରିଲେକ
ତେଣେ ॥୧୦
କାଳେଣ ସୁରପୁରେ ହୋଇଲା ସମର ।
ଇନ୍ଦ୍ରକୁ ଜିଣିଲା ମେଘନାଦ କୁମର ॥
ପ୍ରସନ ହୋଇ ପିତାପୁତ୍ରକଙ୍କ ଦେଲା ।
ଅଜାର ଶସ୍ତ୍ର ତୁ ବହସି ବୋଇଲା ॥
ଯେବେ ସେ ଶହସ୍ର ମାଇଲା ଯୁଦ୍ଧକାଳେ ।
ଶକତି ପଡ଼ିଲା ଲଇକ୍ଷଣ ବକସ୍ଥଳେ ॥
ପିଠିକି ନ ଗଳିଲା ମାଉଂସେ ଓହୋଳିଲା ।
ମେଦିନୀଭେଦି ପାରଇ ପିଠିକି ନଗଳିଲା ॥
ଯେବେ ଜାଣିଲି ମୁହିଂ ଯେଥି ନାହିଂ ଯଶ ।
ନିଶ୍ଚୟେ ନାଶଯିବ ରାବଣର ବଂଶ ॥୨୦
ତହିଂକି ଲକ୍ଷଣ ପ୍ରତଗ୍ୟାଂ ଦେବ କଲା ।
ଜାଣିଲି ପ୍ରତଗ୍ୟାଂ ଲଇକ୍ଷଣର ସିଧ୍ୟ ଯେ
ହୋଇଲା ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ବୋଇଲେ ତୋହୋର ଥିବାରେ ମୋହୋର
ସବୁ ଯଶ ॥
ନିଶ୍ଚୟେ ମାରିବାକ ରାବଣର ବଂଶ ।
ରିକ୍ଷ କପି ମିଳି କରିବାକ ଧ୍ୱଂସ ॥
ଜମ୍ୱେବ ପ୍ରସନେ ଜିଣିମ ମୋର ଭାଇ ।
ସୁଗ୍ରୀବର ଦେବ ରାବଣକୁ ମରାଇ ॥
ହନୁମତ ସେ ଅଟଇ ଥାଠକୁ ସେନାପତି ।
ଅଙ୍ଗଦର ଫଳେ ପାଇବି ମୁଇଂ ସ୍ୱତୀ ॥୩୦
ନଳ ସେ ଥାଠକୁ ଆଣିଲା ପାରିକରି ।
ସୁଷେଣ ଗନ୍ଧମାର୍ଦ୍ଦନ ଆବର ଶଉରୀ ॥
ସେନା ଯୂଥପତି ରିକ୍ଷ କପିବଳ ।
ତୁମ୍ଭେ ସେ ମାରିବ ଦୈତ୍ୟ ଅଚାର୍ଗଳ ॥
ଏତେ ବୋଲିଣ ଶକତି ଧଇଲେ
ରାମକରେ ।
ଅଂଗଦକୁ ଯାଚିଦେଲେ ସ୍ନେହଭରେ ॥
ରବି ଅସ୍ତ ହୋଅନ୍ତେ ସ୍ନାହାନ ସେ କଲେ ।
ଦେବ ପିତୃ ତର୍ପଣ ସାରି ସନ୍ଧ୍ୟା ସୁମରିଲେ ॥
ନବରେଣ ପ୍ରବେଶି ସାରିଲେ ମଣୋହିଂ ।

ନିଶି ବଞ୍ଚିଲେ ଦେବ ସୁବଳୟାରେ
ରହିଂ ॥୪୦
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ ।
ଶ୍ରୀରାମ ଛାମୁରୁ ଯେ ଗଲା ଲଙ୍କପତି ॥
ସଇନି ସହିତେ ଇନ୍ଦ୍ରଜିତ କୁମର ।
ମହୀରାବଣ କୁଳୁପାକ୍ଷ ମୋହୋଦର ॥
କାକାକ୍ଷ ବିରୁପାକ୍ଷ ବୀଯୁତରମଣ ।
ନରାନ୍ତେକ ଦେବାନ୍ତେକ ଏ ବେନି ନନ୍ଦନ ॥
କୁମ୍ଭ ନିକୁମ୍ଭ ସୁଖା ଯେ ଦୃମୁଖା ।
ପଞ୍ଚାଶ କୋଟି ମକୁଟବନ୍ଧା ଯୋଦ୍ଧା ଲେଖା ॥
ରଥ ଗଜ ଅଶ୍ୱ ପାଦାନ୍ତି ଗହନ ।
ରଣଭଣ ହୋଇଂ ଚଉଦ ଭୁବନ ॥୫୦
ଯେ ଯେଣେ ପାରନ୍ତି ଗଲେ ମଲବୃନ୍ଦ ।
ନଗ୍ର ନରନାରୀ ହୋଇଲେ ବିଷାଦ ॥
ଏକକୁ ଆରେକ କହନ୍ତି ଶବଦାଇ ।
ଦେଖତ ସଇନି ପଳାନ୍ତି ଭୟେ ପାଇ ॥
ଜଣେ ହିଂ ପଛକୁ ଅନାନ୍ତା ନାହିଂ କେହି ।
ରକତେ ଜର ଜର ସବୁଙ୍କରି ଦେହୀ ॥
ସବୁଙ୍କରି ବେଶଭଗ୍ନ ସବୁଙ୍କରି ଦେହ ରଙ୍ଗ ।
ଏତେ ମହାବଳ ହୋଇଲେ ରଣଭଙ୍ଗ ॥
ବାହୁଡ଼ି ଥାଠ ଯେ ପଶିଲେ ନିଜ ଦେଶେ ।
ରାମଲକ୍ଷଣ ରିକ୍ଷ କପିଙ୍କର ତ୍ରାସେ ॥୬୦
ରାବଣ ଆଜ୍ଞା ଦେଲା ଡଗରାକୁ ଚାହିଂ ।
ଅମାତ୍ୟଗଣଙ୍କୁ ଅଣାଅ ବେଗେ ରାଇଂ ॥
କେହି କାହାରି ଘରକୁ ନ ଯିବେ ।
ଏ ମୋହୋର ବଚନ ସବିହେଂ ଶୁଣିମେ ॥
ଥାଠ ସହିତେଣ ରଥୀ ଯୋଦ୍ଧାମାନ ।
ଆବର ପାଦାନ୍ତି ଅଛନ୍ତି ଯେତେମାନ ॥
ସମସ୍ତେ ଆସ୍ଥାନୁ ନ ଯାନ୍ତୁ କେହି ଜଣେ ।
ଶୁଣିଣ ଡଗରା ଧାଇଂଲା ତତ୍‌କ୍ଷଣେ ॥
ଯହିଂଥିଲା ତହିଂ ତାହାକୁ କହିଲା ।
ରାଜାର ଆଗ୍ୟାଂରେ ଥାଠ ନ ଛାଡ଼
ବୋଇଲା ॥୭୦
ସମସ୍ତେ ସିଂହଦ୍ୱାରେ ରହିଣ ଯେ ଥିବେ ।
ରାଜାର ତହୁଂ ଶୁଣିଲେ ଘରକୁ ପୁଣି ଯିବେ ॥
ଏସନେକ ବୋଲି ଡାକିଲାକ ଚାର ।

ନିଜ ନବରେ ପ୍ରବେଶ ଯାଇଂ ଦଶଶିର ॥
ଆସ୍ଥାନରେ ମିଳି ରଥରୁ ଓହ୍ଲାଇଲା ।
ରତ୍ନଖଟ ଦୋଳିରେ ଯାଇଣ ବସିଲା ॥
ସେନା ସେନାପତି ରାଉତ ମାହୁନ୍ତ ।
ପୁତ୍ର ବନ୍ଧୁ ନାତି ସହିତେ ଅମନାତ୍ୟ ।
ଏହାନ୍ତ ଚାହିଂଣ ବୋଲଇ ଦଶଶିର ।
ରିକ୍ଷ ମର୍କଟରେ ହରିଲେ ମୋର ଶିରୀ ॥୮୦
ରାମ ଲକ୍ଷଣର ଯୁଦ୍ଧ ଯେ ଅପୂର୍ବ ।
ଯାହା ସେ ଦେଖିଲି ଆଜି ଅତି ହିଂ ଅସମ୍ଭବ ॥
ଜାଣିଲି ସଂଗ୍ରାମରେ ଜଗତ ଜିଣି ପାରଇ ।
ତାହାର ପ୍ରାକର୍ମକୁ ତ ଇନ୍ଦ୍ର ନୁଆରଇ ॥
ଆଜ ଯେ ମୋତେ ସେ ଆକ୍ରେଷି ଯୁଦ୍ଧ
କଲା ।
ଶ୍ରାବଣ ବରଷା ଜାଣି ନାରାଜ ବିନ୍ଧିଲା ॥
ଦଶଧନୁ ମୋର ପକାଇଲା ଛେଦି ।
ଅଭୟ କବଚ ଫୁଟି ଶରୀରେଣ ଭେଦି ॥
ମକୁଟ କାଟିଲା ଛିନାଇଲା ରଥଧ୍ୱଜ ।
ସାରଥିର ମୁଣ୍ଡ କାଟିଲା ରଘୁରାଜ ॥୯୦
ଛତ୍ରୀ ଧର୍ମପଣ ଅଛଇ ତାର ତହିଂ ।
ତେଣୁ ସେ ଅଇଲିବେଳେ ପ୍ରାଣ ପାଇ ॥
ଧନ୍ୟ ଧନ୍ୟ ଶ୍ରୀରାମ ତୁ ଦଶରଥ ସୁତ ।
ମାନେବ ଦେହ ବହି ବଳ ତୋ ଅପ୍ରମିତ ॥
ଜଟାଧାରୀ ହୋଇ ତୁ ଯେତେକ ଯୁଦ୍ଧ ଜାଣୁ ।
ମନିଷ୍ୟ ପରାୟେ ଆମ୍ଭେ ସବିହେଂ ମଣୁ ॥
ଜାଣିଲି ସେହୁ ସେ କ୍ଷତ୍ରୀଙ୍କର ବର ।
ତିନିପୁରେ ତୋତେ ନାହିଂ ପଟାନ୍ତର ॥
ଯେତେକ ରାକ୍ଷସ ବ୍ରହ୍ମାଣ୍ଡେ ଶସ୍ତ୍ରଧାରୀ ।
ତୋ ମୁଖ ଦେଖିଲେ ରଣେ ପଳାଇବେ
ହାରି ॥୧୦୦
ଧିକ ଧିକ ଆନ କ୍ଷତ୍ରୀଙ୍କ ପ୍ରତଗ୍ୟାଂ ।
ଶରଦ ମେଘ ଗର୍ଜନ ଜାଣି ଯେବେହେଂ
ଦମ୍ଭନ୍ତି ଆଗ୍ୟାଂ ॥
କାଳେ ରଣଗୋଳ ଦେଖିଲେ ଅପସରି ।
ନିର୍ବଳ ଲୋକକୁଂ ପାରନ୍ତି ସେହୁ ମାରି ॥
ଆଜ ଯେ କଥା ଦେଖିଲି ବେନି ଡୋଳେ ।
ବିଷମ ସମର ବାଜିଲା ଏତେକାଳେ ॥

ରାମ ଜନ୍ତୁପତି ଆମ୍ଭେ ସେ ସର୍ବ ସାନଜୀବ ।
ମୃଗପଲ ଦେଖି ଯେହ୍ନେ ଶବର ଖେଦିବ ॥
ଶ୍ୟାମଳ ପକ୍ଷୀ ଯେହ୍ନେ ବକଯୂଥ ଦଳି ।
ବଜ୍ରଧାଉଡ଼ରେ ଯେହ୍ନେ ପର୍ବତେ
ନିକିଳି ॥୧୦
କ୍ଷୀର ସମୋଦ୍ର କି ମନ୍ଥଇ ମନ୍ଦର ।
ତେସନେକ ବୃତ୍ତାନ୍ତ ଆଜି ଦେଖିଲି
ରଘୁବୀର ॥
ଶୁଣି ଇନ୍ଦ୍ରଜିତ କୁମର ଆଗସରି ।
କର ବେନି ଯୋଡ଼ି କହଇ କୋପକରି ॥
ତୁ ସେ ବାହୁଡ଼ାଇ ଆଣିଲୁ ଆଜ ଥାଠ ।
ସଂଗ୍ରାମେ ବଳ ତୋର ନୋହିଲେ ତ ଘାତ ॥
ଜୟେ ପାଇଲୁ ତ ଲକ୍ଷଣ ଶକ୍ତିଭେଦ ।
କ୍ଷଣେ ଦୁଃଖ ସହିଲେ ଦେଖନ୍ତୁ ପରମାଦ ॥
ଶ୍ରୀରାମର ଶିର ପକାନ୍ତି ଆଜ ଛେଦି ।
ଅସୁରେ ମାରନ୍ତେ ରିକ୍ଷ କପି ବଧି ॥୨୦
ଆଜହୁଂ ଶତ୍ରୁ ତୋର ହୋଅନ୍ତା ପ୍ରାଣନାଶ ।
ଆମ୍ଭନ୍ତ ବାହୁଡ଼ାଇଲୁ ତୋହୋର ସିନା
ଦୋଷ ॥
ରାବଣ ବୋଇଲା ଶୁଣସିରେ ବାବୁ ।
ଯଦ୍ୟପି ରଣେ ଜିଣି ପାରିବାକ ସବୁ ॥
ଦେବ ଦାନେବ ସଙ୍ଗତେ ଯୁଦ୍ଧ କଲି ।
ଆଜିର ସଂଗ୍ରାମ ମୁଂ ଅପୂର୍ବ ଦେଖିଲି ॥
ଲକ୍ଷଣ ନାରାଚ ଜଳନ୍ତା ଅଗ୍ନି ଜାଣି ।
ଇନ୍ଦ୍ର ଦେବତାକୁ ସଂଗ୍ରାମେ ପାରଇ ଜିଣି ॥
ଶକତି ଘାଆ ପାଇ ଭୂମିରେ ଶୋଇଲା ।
ମୋହୋର ତୋଳନ୍ତେ ସେ ମେରୁହୁଂ ଗରୁ
ହୋଇଲା ॥୩୦
ହନୁମନ୍ତ ବିଧାୟେ ଯେ ମାଇଲାକ
ମୋତେ ।
ଏକାବେଳେ ପଡ଼ିଲାକ ବଜ୍ର ଅହିବ୍ରତେ ॥
ମୋତେ ମାରିଣ ସେ ଲକ୍ଷଣକୁ ନେଲା ।
ମର୍କଟ ଗୋଟାକର ବଳ ସଞ୍ଚପି ନୋହିଂଲା ॥
ଏସନେକ ବେଳେ ଜଣାଇଲା ଡଗର ।
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର ॥
ଇନ୍ଦ୍ରଜିତ ଶକତିରେ ଲକ୍ଷଣ ମୋହଗଲା ।
ହନୁମତ ନିଅନ୍ତେ ସେ ଚେତନା ପାଇଲା ॥
ହୃଦକଇ ଭେଦି ନ ଥିଲା ସେ ଶର ।
ବାହାର ଘାଆ ହୋଇ ଫୁଟିଥିଲା
ମାୟେଂସର ॥୪୦
ଜମ୍ଭେବ ମନ୍ତ୍ରୀ ଯେ ଅଟଇ ମହାକ୍ଷତ୍ରୀ ।
ଶକତି କାଢ଼ିଣ ସେ ଫୁଙ୍କିଲା ତଡ଼ତି ॥
ମାୟା ରୂପେଣ ଯେ ଅନ୍ତର ହୋଇଥିଲୁ ।
ଲକ୍ଷଣ ବ୍ରତିବାର ଦେଖିଣ ଅଇଲୁ ॥
ଶୁଣି ଲଙ୍କପତି ପୁତ୍ରର ମୁଖ ଚାହିଂ ।
ଶୁଣ ଶୁଣ ଆରେ କହ ପୁଣ ତାହିଂ ॥
ଚାର ବୋଇଲା ଦେବ ବ୍ରତିଲା ଲଇକ୍ଷଣ ।
ଦେଖି ବାହୁଡ଼ି ଅଇଲି ଯେହିକ୍ଷଣ ॥
ହନୁମତ ନେଲାବେଳେ ସଙ୍ଗେ ସଙ୍ଗେ
ଗଲି ।
ଜୀଇବା ଦେଖି ତାର ବାହୁଡ଼ି ଅଇଲି ॥୫୦
ଏସନେକ କଥା ନୋହଇ ଦେବ ମାୟା ।
ଶୁଣି ପ୍ରଜ୍ୱଳିତ ଇନ୍ଦ୍ରଜିତ କାୟା ॥
ରାଗେଣ ଥରହର ହୋଇଣ କହଇ ।
ତମେଣ ଶ୍ରମଝାଳ ପୂରିଣ ବହଇ ॥
ପିତାକୁ ଚାହିଂଣ ବୋଲଇ ତୁନିକରି ।
କାଲି ଶତ୍ରୁ ତୋର ପକାଇବି ମାରି ॥
ଶ୍ରୀରାମ ଲକ୍ଷଣ ସୁଗ୍ରୀ ବିଭୀଷେଣ ।
ଅଙ୍ଗଦ ସହିତେ ରିକ୍ଷ କପିମାନ ॥
ଗୋଟିଏ ନବର୍ତ୍ତିବେ ପ୍ରତଜ୍ଞା ମୋର ଦେଖ ।
ମୋହୋର ଶପଥ ତୁ ଚିନ୍ତା ଭୟେ
ଉପେଖ ॥୬୦
ବ୍ରହ୍ମାଣ୍ଡ ଭିତରେ ଦେବେ ବଳୀଆର ।
ତାହାଙ୍କର ରାଜା ପୁଣି ଅଟଇ ବଜ୍ରଧର ॥
କିଅିତ ଯୁଦ୍ଧେ ମୁଂ ଜିଣିଲି ତାହାକୁ ।
କାଲି ହାଦେ ମାରି ଦେବଇଂ ରାମଙ୍କୁ ॥
ନକରସି ଚିନ୍ତା ମନେ ନୋହସି ବିସ୍ମୟେ ।
ରାତ୍ର ପାହିଲେ ତୋତେ ହୋଇବାକ
ଜୟେ ॥
ଯେବେ ସ୍ତାହାନ ଯେ ମୋଣୋହି ବିଧି
ସାର ।
ଯାଆନ୍ତୁ ସଇନି ଯେବେ ଯେ ଯାହାର ପୁର ॥
ଶୁଣିଣ ଲଙ୍କପତି ଭିତରକୁ ଯାୟେ ।
ମଣିମା ମଣିମା ବୋଲି ଖୁଣ୍ଟିଆ
ଡାକଦିଏ ॥୭୦
ମନ୍ଦୋଦରୀ କରେ ରାୟେ ଦେଇ କର ।
ଯାଇ ପ୍ରବେଶ ତୋଟା ଜଗତୀ ଭିତର ॥
ମର୍ଦ୍ଦନ ମାଜଣା ସନ୍ଧ୍ୟା ସର୍ବ ସାରି ।
ମୋଣୋହି ସାରିଣ ସନ୍ତୋଷ ଦଶଶିରି ॥
ମୁକୁତା ଯେ ନିର୍ମିତ ଚନ୍ଦ୍ରଶାଳାପୁର ।
ଦକ୍ଷିଣ ପବନ ବହଇ ଧୀର ଧୀର ॥
ଦିଉଡ଼ି ନିରନ୍ତରେ ଜଳଇ ଚଉକତି ।
ଖଟଣିରେ ଅଛନ୍ତି ଅନେକ ଯୁବତୀ ॥
ସୁବର୍ଣ୍ଣ ପଲଙ୍କରେ ଶେଯାଇଅଛି ଶେଯ ।
ନିଦ୍ରାରେ ଅଚେଷ୍ଟ ହୋଇଲା
ଲଙ୍କରାଜ ॥୮୦
ଏଥିଅନନ୍ତରେ ଇନ୍ଦ୍ରଜିତ ବୀର ।
ଯହୁଂ ସେ ରାବଣ ଗଲାକ ଭିତର ॥
ସେନା ସେନାପତି ଅମାତ୍ୟମାନ ଘେନି ।
ଆବର ଶୁକ ଯେ ସାରଣ ମନ୍ତ୍ରୀ ବେନି ॥
ନବରୁ ବାହର ହୋଇଲେ ଅନେକ
ସମ୍ଭରେ ।
ରଣ ରାଜପୁତ୍ରେ ଗଲେ ଯେ ଯାହାର ଘରେ ॥
ନିଶି ଅର୍ଦ୍ଧ ହୁଅନ୍ତେ ଦୋସାଧୁ ନଗ୍ର ବୁଲେ ।
ଡେଙ୍ଗୁରା ଟମକ ଅଛଇ ତାର ତୁଲେ ॥
ଜ୍ୟେଷ୍ଠମାସ ଗୁଳୁଗୁଳି ବାହାରେ
ଶୋଇଛନ୍ତି ।
ଯୁଦ୍ଧର କଥାମାନ କୁହକୋହି ହୋନ୍ତି ॥୯୦
ବୃଦ୍ଧା ରାଣ୍ଡେ ତ ତହିଂ ଡାକଇ ଆଣ୍ଟିକରି ।
ଏତେକାଳେ ଖଳବଳ ହୋଇଲା
ଲଙ୍କପୁରୀ ॥
କାହୁଂ ଯତିଯେକ ଅଇଲା ଯେଥକୁ ।
ମାଙ୍କଡ଼ ଲୋଚାୟେ ଘେନିଣ ଅନର୍ଥକୁ ॥
ଇନ୍ଦ୍ରଜିତ ପ୍ରାୟେକ ବୀର ଥାଉଂ ଥାଉଂ ।
ଏତେ ବିପରୀତ ହୋଉଅଛି କାହୁଂ ॥
ଏଥିଅନନ୍ତରେ ରଜନୀ ଶେଷ ହୋୟେ ।
ଦେବତାଙ୍କର ଆଳେ ଶୁଭଇ ଶଙ୍ଖବାୟେ ॥
ଶଯ୍ୟା ଛାଡ଼ିଣ ଉଠିଲା ଲଙ୍କପତି ।

ନିତ୍ୟକର୍ମ ବିଧାନ ସାରିଲା ତତ୍‌ପରି ॥୧୦୦
ମଉନ୍ଦାଣ ଜଗତୀରେ ହୋଇଲା ଅବକାଶ ।
ଭିତରକୁ ଗଲେ ସକଳ ରାଣୀହଂସ ॥
ପ୍ରକୃତି ସେବକ ଦ୍ରଶନ କଲେ ଆସି ।
ଶୁକ ସାରଣ ଅମନାତ୍ୟଗଣ ଭାଷି ॥
ଇନ୍ଦ୍ରଜିତ ବୀର ଦ୍ରଶନ କଲାକ ସଜ ହୋଇ ।
କୁମ୍ଭ ନିକୁମ୍ଭ ଅଇଲେ ବେନିଭାଇ ॥
ମୁଖା ଦୃମୁଖା ସଲଜିତ ଅକଯେ ।
ତ୍ରିଶିରା ଅଲୋପି ଧୂମାକ୍ଷ ଅମୟେ ॥
ବଜ୍ର ଧନୁଷ୍କକାକାକ୍ଷ ଜୁଲୁପାକ୍ଷ ।
ପ୍ରଚଣ୍ଡ ଅଗ୍ନିକେତୁ ଚକ୍ରମୁଷ୍ଟି ବିରୁପାକ୍ଷ ॥୧୦
ନରାନ୍ତେକ ଦେବାନ୍ତେକ କାଳଘଣ୍ଟବୀର ।
ରଶ୍ମିକେତୁ ମିତ୍ରଘନ ପ୍ରମଥ ଅସୁର ॥
ବିଜୁମାଳି କଙ୍କ ଧଙ୍କ କ୍ରୋଧନ ସନ୍ୟ
ବେଗେ ।
ରାଉତ ମାହୁନ୍ତ ମିଳିଲେ ରାବଣର ଆଗେ ॥
ମେଘନାଦ ଜଣାଇଲା ଯୋଡ଼ି ବେନିକରଂ ।
ଯିବାକୁ ଆଜ୍ଞା ଦେବା ହୋଉ ଦଶଶିର ॥
ରାମ ଲକ୍ଷଣକୁ ଆସଇ ଆଜ ନାଶି ।
ବିଭୀଷେଣ ରିକ୍ଷ କପି ସକଳ ବିନାଶି ॥
ଚିନ୍ତା ସମୋଦ୍ରୁ ଅସୁରେ ହୋନ୍ତୁପାରି ।
ଶୁଣିଣ ପୁତ୍ରକୁ ବୋଲଇ ଦଶଶିରି ॥୨୦
ଯଦ୍ୟପି ବଳା ତୁ ସଂଗ୍ରାମକୁ ଯିବୁ ।
ଲକ୍ଷଣର ତୁଲେ ଯେକାୟେ ନ ଯୁଝିବୁ ॥
ସାମାନ୍ୟ କ୍ଷତ୍ରୀ ସେ ନୁହଇ ରାମଭାଇ ।
କିଛିତ ନାରାଜେ ପୃଥିବୀ ପାରଇ ଦହି ॥
ଅଭେଦ କପଚ ମୋର କଲା ଖଣ୍ଡ ଖଣ୍ଡ ।
ଫୁଟି ଶ୍ୱରୀରେ ମୋର ଭେଦିଲାକ କାଣ୍ଡ ॥
ରୋମକେ ନାରାଜେ କରିଣ ବିନ୍ଧିଲା ।
ଶର ନିରନ୍ତରେ ଶରୀର ଭେଦିଲା ॥
ଅଗ୍ନି କଣିକା ଜାଣି ପଡ଼ଇ ତାର ବାଣ ।
ତେଣୁ ସେ ତୋତେ ଚିଆରଇ ପୁଣ
ପୁଣ ॥୩୦
ବିଚାରିଣ ଯୁଦ୍ଧ କରସି ମୋର ବାବୁ ।
ଲକ୍ଷଣକୁ ଛାଡ଼ି ତୁ ଜିଣିପାରୁ ସବୁ ॥
ଶ୍ରୀରାମରୁ ସଉମିତ୍ରୀ ଅଟଇ ବଡ଼ ରାଗୀ ।
ଏକାବେଳେ ଯୁଝି ଅଇଲି ମୁହିଁ ଭାଗି ॥
ଇନ୍ଦ୍ରଜିତ ବୋଲଇ ଏସନ କିମ୍ପା କହୁ ।
ମୋହର ମହିମା କି ନ ଜାଣୁ ବିଂଶବାହୁ ॥
ଏହିକ୍ଷଣି ତୋହୋର ଶତ୍ରୁ ଆସିବଇଂ ସାଧି ।
ରକ୍ଷା କରିତ ଯେ ନ ପାରିବେ ବିବୁଧି ॥
ଏତେକ ବୋଲିଣ ଓଳେଗ ମେଲାଇଂ ।
ହୋମ ଘର ଭିତରେ ବୀର ପ୍ରବେଶ
ହୋଇଂ ॥୪୦
ଅଗ୍ନିରେ ଆହୁତି ଦିଅନ୍ତେ ରଥେକ ବାହାର ।
ଦେବଦଳନ ନାମ ଅଟଇ ତାହାର ॥
ତହିଂ ବିଜେ କଲା ରାବଣ କୁମାର ।
ଫର ଫର ଉଡ଼ଇ ଦିଗଦହନ ଚିରାଳ ॥
ରଘୁବର ତେଜ ଆଷାଢ଼ ମେଘ ଜାଣି ।
ଇନ୍ଦ୍ରଜିତ ତେଜ ସାମାନ୍ୟ ଦିନମଣି ॥
ରଥ ଚଳିଯାନ୍ତେ କମ୍ପଇ ମେଦିନୀ ।
ସ୍ୱର୍ଗେ ବିସ୍ମୟେ ହୋଇଲେ ଦିନମଣି ॥
ଇନ୍ଦ୍ରର ତହିଂକି ବୃତ୍ତ ଅସୁର ଯେହ୍ନେ ଯାଇ ।
ରାବଣର ନନ୍ଦନ ତେସନ ଶୋଭା
ପାଇ ॥୫୦
ସଙ୍ଗେଣ ସଇନି ଅଛନ୍ତି ଅପ୍ରମିତ ।
ସେନା ସେନାପତି କେ କରିବ ଅନ୍ତ ॥
ରଥଗଜ ଅଶ୍ୱ ତଦନ୍ତ ନ ଜାଣି ।
ଚଳନ୍ତେ ଟଳ ଟଳ କମ୍ପଇ ଧରଣୀ ॥
ଛତ୍ର ଆଲମ୍ବ ବିମଳ ପନ୍ତି ପନ୍ତି ।
ବିବିଧ ଛନ୍ଦେଣ ବାଜଣା ବାଜନ୍ତି ॥
ଘଣ୍ଟଘଣ୍ଟି ଶବଦ ଶୁଭଇ ନିରନ୍ତର ।
ଟମକ ନିଶାଣ ଶବଦ ଶୁଭଇ କୁତୂହଳ ॥
ମାର ମାର ଧ୍ୱନି ଗଗନପଥେ ପୁରେ ।
ମଙ୍ଗଳ ପାଠ ପଢ଼ନ୍ତି ବିଦୁ ବରେ ॥୬୦
ଘରେ ଘରେ ଉଛବ ଦ୍ୱାରେ ପୂର୍ଣ୍ଣକୁମ୍ଭ ।
କଦଳୀ ବୃକ୍ଷମାନ ଧରିଣ ଆରମ୍ଭ ॥
ଦଧିମାଛ ଦୀପଧରି ହୁଳାହୁଳି ପାରି ।
କାମଦେବ ବିଜୟେ କି ମଦନ ରଥଚଢ଼ି ॥
ନାନାରତ୍ନେ ଭୂଷଣ ଦିଶଇ ଇନ୍ଦ୍ରଜିତ ।
ବାମଗୋଡ଼େ ଅନର୍ଗଳ ତୋଡ଼ର
ବୀରନେତ ॥
ଶିରରେ ମୁକୁଟ କିରଟୀ ବିତପନ ।
ବିଦ ମୁଦି କଟଚି ତାଡ଼ ଅପ୍ରମାଣ ॥
ଜନେକ ଶିକଳୀ ପୁଷ୍ପ ମାଳା ଶୋହି ।
ପଦ୍ମରାଗ ପଦେକ ହୃଦରେ ଅଛି ଲାଇ ॥୭୦
ଭିନ୍ନେ ଭିନ୍ନେ ଶ୍ୱରୀରେ ନବରତ୍ନ ମାଳ ।
କଣ୍ଠରେ ଲାଇଅଛି ରାବଣ ଦୁଲାଳ ॥
ଫରହର ନିଶ କସ୍ତୁରୀ ରେଖ ଜାଣି ।
ସର୍ବାଙ୍ଗ ସୁନ୍ଦର ଅସୁର କୁଳମଣି ॥
ବାମକରେଣ ବିଜୟେ କୋଦଣ୍ଡ ।
ଦକ୍ଷିଣ ଭୁଜରେ ଅଛଇ ଯେକ କାଣ୍ଡ ॥
କନ୍ଧେ ଭିଡ଼ିଅଛି ଅକ୍ଷୟେ ତ୍ରୋଣ ବେନି ।
ଆନନ୍ଦେଣ ଦେଖନ୍ତି ଲଙ୍କାର କାମେନୀ ॥
ଧନ୍ୟ ମେଘନାଦ ରାବଣ ତନୟେ ।
ତୋହୋର ଥାଉ ଯତି ଉପଦର୍ପ
ହୋୟେ ॥୮୦
ତପୁସୀ ଦୁଇ ବାପୁଡ଼ା ମ୍ରକଟ ରିକ୍ଷ ଆୟେ ।
ମରିବେ ବୋଲି ଯେହାଙ୍କର ନାହିଂ ଭୟେ ॥
ଜଳନ୍ତା ଅଗ୍ନିରେ ପଶିଲେ ନଜାଣି ।
ଆଜ କେହ୍ନେ ପ୍ରାଣ ପାଇବେଟି ପୁଣି ॥
ଦେବେ ନସହନ୍ତି ଯାହାର ଶରଘାତ ।
ନରେ ବାନରେ କି ତହିଂକି ସାମରଥ ॥
ଏସନେକ ବିଚାର କରନ୍ତି ଅସୁରୁଣୀମାନେ ।
ଉତ୍ତର ଗଡ଼ଦ୍ୱାରେ ବାହାର ହୋଇଲେ
ସଇନେ ॥
ଏଥୁ ଅନନ୍ତରେ ଶୁଣ ଗୋସାମଣି ।
ସୁବଳୟା ପର୍ବତେ ଅଛନ୍ତି ରଘୁମଣି ॥୯୦
ନିତ୍ୟକର୍ମ ସାରି ସନ୍ଧ୍ୟା ସୁମରିଲେ ।
ଆସ୍ତାନ କରିଣ ମୃଗଛାଲରେ ବସିଲେ ॥
ଶ୍ରୀରାମ ଛାମୁରେ ସମସ୍ତ ଯୋଦ୍ଧା ମିଳି ।
ସୁଗ୍ରୀ ବିଭୀଷେଣ ଜମ୍ୱେବ ଶତବାଳି ॥
ରିକ୍ଷ କପିଗଣ ସମସ୍ତେ ହେଂ ମିଳି ।
ଆତ୍ମା ଗୋଷ୍ଠୀ କରି ଶ୍ରୀରାମଚନ୍ଦ୍ର ଭାଳି ॥
ଲଙ୍କାଗଡ଼ରେ ଟମକ ନିଶାଣ ।
ରାତ୍ର ପହଡ଼େ ଥାଉଂ ବାଜୁଅଛି ପୁଣ ॥
କାଲି ଯେ ରାବଣ ଅପଚୟେ ପାଇଗଲା ।
କେବଣ କେବଣ କଥା ବିଚାର ଯାଇଂ
କଲା ॥୧୦୦

ଏସନେକ ସମୟେ ଦ୍ରଶନ କଲା ନଳ ।
ଶଭରୀ ସେନାପତି ଆବର ମନ୍ତ୍ରୀବର ॥
କରପତ୍ର ଯୋଡ଼ି କହନ୍ତି ତିନିଜଣ ।
ଶୁଣଦେବ ଅଯୋଧାର ଶ୍ରୀରାମ ରାଜନ ॥
ଲଙ୍କାପୁରୁ ବାହାର ହୋଇଲା ଇନ୍ଦ୍ରଜିତ ।
ସଂଗେ ସଇନି ତାର ଅଛଇ ଅପ୍ରମିତ ॥
ଆଗିଆଣି ଦାଣ୍ଡରେ ବାଜିଲାଣି ଯୁଦ୍ଧ ।
ଶୁଣି ଉଠି ଶ୍ରୀରାମ ବେଗେ ହୋନ୍ତି ସଜ ॥
ଅଙ୍ଗଦକୁ ବୋଇଲେ ଆଗେ ସଜ ହୋଇ
ଯାସି ।
ମୋହୋର ଯିବା ଯାୟେ ଯୁଦ୍ଧ ସହି
ଥାସି ॥୧୦
ରିକ୍ଷ କପି ପଳାଇବେ ଆବୋରନ୍ତା କେହି
ନାହିଁ ।
ତୁ ଯାଇଂ କ୍ଷଣେକ ଥାଅସି ଯୁଦ୍ଧ ସହି ॥
ଶୁଣି ବାଳୀ ତନୟେ ପାୟେ ପଡ଼ି ଶୋଇ ।
ଉଠି କରଯୋଡ଼ି ବେଗେଣ ଧାଅଇ ॥
ସଂଗେ ନଳନୀଳ ଗନ୍ଧମାରଦନ ।
ଗବୟେ ଗବାକ୍ଷ ମହୀନ୍ଦ୍ର ଚନ୍ଦନ ॥
ସାରାସ ପାରାସ ଶରସେତୁ କାଳିବୀର ।
ଶଭରୀ ସେନାପତି ହନୁର ପିଅର ॥
ତରୁଶିଳ ଧରି ଧାଇଂଲେ ଉଗ୍ରମୂର୍ତ୍ତି ।
ଚରଣ ପଡ଼ନ୍ତେଣ କମ୍ପଇ ବସୁମତୀ ॥୨୦
ପର୍ବତୁ ଓହ୍ଲାଇଂ ଥୋକାଏ ଦୂର ଗଲେ ।
କପି ଋକ୍ଷ ସୈନ୍ୟ ପଳାନ୍ତି ଦେଖିଲେ ॥
ଅଙ୍ଗଦ ବୋଇଲା କିମ୍ପାଇଂ ଭୟେକର ।
କପି ବୋଇନ୍ତି ଦେବ ବିଷମ ସମର ॥
ଆପଣେ ଇନ୍ଦ୍ରଜିତ ବଳ କରଇ ନାଶ ।
ପନ୍ନଗା ଶସ୍ତ୍ର ଜାଣି ପାଇଲୁ ମହାତ୍ରାସ ॥
ତୋହାଙ୍କଂଣ ଯୁଦ୍ଧ ଆଜ କରଇ ଗୋସାଇଂ ।
ସଇନି ଭିତରେ ଦେବ ଆସୁଅଛି ଧାଇଂ ॥
କ୍ଷୀର ସମୋଦ୍ର ଯେହ୍ନେ ମନ୍ଥର ମନ୍ଦର ।
ତା ତହୁଂ ଉଗୁଳି ରାବଣ କୁମାର ॥୩୦
ଏସନେକ ବିଚାରି ଶ୍ରୀରାମଚନ୍ଦ୍ର ରାୟେ ।
ସଂଗେ ବିଭୀଷେଣ ସୁଗ୍ରୀବର ଆୟେ ॥
ଲକ୍ଷଣ ହନୁମନ୍ତ ଜମ୍ବେବ ସୁଷେଣ ।
ତାରାକ୍ଷ ସମ୍ପାତି ବଳିମୁଖ କଞ୍ଚଣ ॥
କାମୋଦ ସାରାସ ରମଣ ଶତବାଳି ।
କାଳିମୁଖ ଗବାକ୍ଷ ଦଧିମୁଖ ବଳି ॥
ଡାଳିମ୍ବ ବସନ୍ତ ଗବୟେ ଗବାକ୍ଷ ।
ତରୁଶିଳ ଧରି ଉଡ଼ନ୍ତି ପ୍ରତକ୍ଷ ॥
ଅପ୍ରମିତ ସୈନ୍ୟ ନ ଦିଶଇ ସୃଷ୍ଟି ।
ବାଟେ ଦୁଇବଳ ହୋଇଲେ
ଭେଟାଭେଟି ॥୪୦
ରଣଗୋଳ ଧନ୍ଦୋଳ ଆରେଣି ଭିତରେ ।
ରିଝାଇଂ ଯୁଦ୍ଧ କଲେ ଅସୁର ବାନରେ ॥
ଏକକୁ ଆରେକ ନ ଘୁଞ୍ଚନ୍ତି ପୟେ ।
ମହାଘୋର ସାଗ୍ରାଂମ ହୋଇଲା ଅତି
କୋହେଂ ॥
ଇନ୍ଦ୍ରଜିତକୁ ଦେଖି ଧାଇଂଲା ବାଳୀସୁତ ।
କରେ ଧରିଥିଲା ମହା ପରବତ ॥
ଦୁଇ ବେଢ଼ ବୁଲାଇ ମାଇଲା ରୋଷକରି ।
ମେଘନାଦ ଛେଦିଲା ତା ପ୍ରତି ଅସ୍ତ୍ରଦେଇ ॥
ପୁଣ ବାବଲେକ ଛେଦିଲାକ ଝାଡି ।
ଅଙ୍ଗଦ ଶ୍ୱରୀର କାଟିଲା ବିକୋତି ॥୫୦
ପୁଣ ତୀକ୍ଷବାଣ ଘେନିଲାକ ପାଞ୍ଚ ।
ବାଳୀର ତନୟେ ଦିଶିଲା ପରପଞ୍ଚ ॥
ରକତେ ଜର ଜର ଦିଶଇ ତାର ଦେହ ।
ପରିଘେକ ମାଇଲା ପୁଣ ରାବଣର ପୁଅ ॥
ଘାଆ ପାଇ ଅଙ୍ଗଦ ମାଇଲା ଶକତି ।
ବାଣେ ଛେଦିଲା ତାହା ପୌଲସ୍ତିର ନାତି ॥
ମୟେ ଦଇତର ଅସ୍ତ୍ର ହୋଇଲା ନିଧନ ।
ପୁଣି ତିନିବାଣ ପେଷିଲା ଦଶାନନର ନନ୍ଦନ ॥
ଅଙ୍ଗଦ ଶ୍ୱରୀର ଚିରିଲା ଶରମୁନେ ।
ବିକଳେ ସିଂହରଡ଼ି ଛାଡ଼ଇ ବାଳୀର
ନାନେ ॥୬୦
ଦୂରୁହୁଂ ଦେଖିଣ ଧାଇଂଲାମା ସଉମିତ୍ରୀ ।
ଅଙ୍ଗଦକୁ ପଛକରି ରହିଲା ମହାକ୍ଷତ୍ରୀ ॥
ବୋଇଲା ପାମରରେ ତାହାକୁ କିମ୍ପାମାରୁ ।
ମୁଇଂ ତୋର ଶତ୍ରୁ ମୋତେ ତୁ ନମାରୁ ॥
ତେବେ ସେ ସାଂଗ୍ରାମର ପ୍ରତଜ୍ଞା ତୋହୋର ।
ପାରିଲେଣ ନାରାଚ ସହସି ମୋହୋର ॥
ଏତେ ବୋଲିଣ ବିନ୍ଧିଲା ପାଞ୍ଚବାଣ ।
ଆଦି ଆଷାଢ଼େ କି ଗର୍ଜଇ ମେଘ ଦ୍ରୋଣ ॥
ଇନ୍ଦ୍ରଜିତର ଉପରେ ପଡ଼ିଲା କାଣ୍ଡ ଯାଇଂ ।
ସର୍ପ ଯେହ୍ନେ ଗାତେ ପଶଇ ପଳାଇଂ ॥୭୦
ପାଞ୍ଚ ଧାରା ହୋଇ ବହଇ ରକତ ।
କୋପେଣ ଦଇତ ହୋଇଲା ବିରକତ ॥
ବିଶାଶୟେ ନାରାଚ ପେଷିଲାକ ଧାତି ।
ଲକ୍ଷଣ ଛେଦିଲା ତାହା ପବନହୁଂ ଗତି ॥
ନିରନ୍ତରେ ବାଣ ବିନ୍ଧଇ ଶ୍ରୀରାମର ଭାଇ ।
ବରଷିବା ବେଳେ ଯେହ୍ନେ ବୃକ୍ଷ ନ ଦିଶଇ ॥
ତେସନେକ ପ୍ରାୟେକ ଦେବଦଳଣ ରଥ ।
କୁହୁଡ଼ି ପଡ଼ିବା ପ୍ରାୟେକ ଦିଶଇ ଶରପଥ ॥
ଅସଂଖ୍ୟ ଅଗୋଚର କରନ୍ତି ଯୁଦ୍ଧ ବେନି ।
ସ୍ୱର୍ଗରେ ସାଧୁ ସାଧୁ କରନ୍ତି ସୁରମୁନି ॥୮୦
ସୁମେତ୍ରା ନନ୍ଦନ ଅନ୍ତରୀକ୍ଷେ ବାଣ ମାରି ।
ମନ୍ଦୋଦରୀ ପୁତ୍ର ଶରୀର ବିଦାରି ॥
କଳାମେଘେ ଯେହ୍ନେ ବିଜୁଳି ତେଜପରି ।
ତେହ୍ନେ ପ୍ରାୟେକରି ଲକ୍ଷଣ ବାଣମାରି ॥
ଦିଶଇ ମେଘନାଦର ସର୍ବାଙ୍ଗେ ରକତ ।
କୋପେ ଦିବ୍ୟଅସ୍ତ୍ର କଲାକ ଦଇତ ॥
ଲକ୍ଷଣ ଛେଦିଲା ତା କିଞ୍ଚିତ ପ୍ରକାରେ ।
ପୁଣି ଲକ୍ଷଣ ଧଇଲା ଗରୁଡ଼ା ଶରେ ॥
ମନ୍ତ୍ରିଣ ବିନ୍ଧିଲା ଅତି କୋପଭରେ ।
ଇନ୍ଦ୍ରଜିତର ଧନୁ ଶହସ୍ର ସହିତରେ ॥୯୦
କାଟି ପକାଇଲା ସୁମେତ୍ରାର ସୁତ ।
ଦେଖି ରିକ୍ଷ କପିମାନ ବିନ୍ଧନ୍ତି ତୁରିତ ॥
ପୁଣି ଇନ୍ଦ୍ରଜିତ ମାୟାଧନୁ ଧରି ।
ଚାରି ମେଘରେ କି ଜଗତ ଆବୋରି ॥
ଘଡ଼ଘଡ଼ି ଚଡ଼ଚଡ଼ି ବରଷନ୍ତି ପାଣି ।
କପଟ ବୋଲି ତାହା ସଉମିତ୍ରୀ ଜାଣି ॥
ପବନା ଅସ୍ତ୍ର ମାରିଣ ଉଡ଼ାଇଣ ଦେଲା ।
ଇନ୍ଦ୍ରଜିତକୁ ଚାହିଁ ବଚନ ବୋଇଲା ॥
ମାୟାକଲେ କିରେ ଆମ୍ଭନ୍ତ ସେ ପାଇ ।
କାହିଁ ଯିବୁ ଆଜ ଜାଣିମାରେ ଭାଇ ॥୧୦୦
କାଲି ପରାୟେକ ନୋହଇ ପରସ୍ତାବ ।
ଆନ ସେ ବାରତା ତୋର ବାପକୁ ଆଜ
ଦେବ ॥

ତୁ ଯାଇ ଲେଉଟିକି ଦେଖିବୁ ଲଙ୍କପୁରୀ ।
ଏହେନ୍ନେକ ବିଚାର କି ମନରେ ଅଛୁ ଧରି ॥
ଯେତେ ବୋଲିଣ ବିନ୍ଧିଲେ ତୀକ୍ଷ ଶର ।
ଦେଖି ନିବାରିଲା ତା ରାବଣ କୁମାର ॥
ପ୍ରତି ଅସ୍ତ୍ରକରି ଶହସ୍ର ବେଗେ ମାରି ।
ଦେଖି ସଉମିତ୍ରୀ ପାଞ୍ଚ କାଣ୍ଡରେ ନିବାରି ॥
ଦଶଶତ ନାରାଜ ବିନ୍ଧିଲାକ ହେଳେ ।
ଦୁହିଁଙ୍କର ସମର ବଢ଼ିଲା ବେଳେବେଳେ ॥୧୦
ଶହସ୍ର ଆତଯାତ ହୋଅନ୍ତେ ଦୁହେଂ ନ ଦିଶନ୍ତି ।
ବଜ୍ରଘାତ ପରାୟେକ ଟଙ୍କାର କରନ୍ତି ॥
ଶ୍ରୀରାମ ଅଙ୍କପନ ସଙ୍ଗରେ ଯୁଝୁଥିଲେ ।
ହନୁମନ୍ତ କହନ୍ତେ ସେ ବାହୁଡ଼ି ଧାଇଂଲେ ॥
ଜ୍ଜୁପାକ୍ଷକୁ ଛାଡ଼ି ସୁଗ୍ରୀବର ଆୟେ ।
ନରାନ୍ତେକ ବୀରକୁ ଛାଡ଼ି ବିଭୀଷେଣ ଧାୟେ ॥
ଅମର ଛାମୁରୁ ଅଇଲା କେଶରୀ ।
ଦେବାନ୍ତେକକୁ ଛାଡ଼ି ଅଇଲା ଶଉରୀ ॥
ନୀଳ ବାହୁଡ଼ିଲା ପ୍ରଶସ୍ତ ଛାମୁରୁ ।
ଲକ୍ଷଣ ଇନ୍ଦ୍ରଜିତ ସମର ମହାଗରୁ ॥ ୨୦
ନଳ ସୁଷେଣ ଜମ୍ୱେବ ଶତବାଳି ।
କାଳିମୁଖ ଦଧିମୁଖ ଧାମନ୍ତି ବିକରାଳି ॥
ଶରସେତୁ ଗବୟେ ଗବାକ୍ଷ ସୁନାସ ।
ଚନ୍ଦନ ମହୀନ୍ଦ୍ର ସାରାସ ପାରାସ ॥
ଡାଳିମ୍ୱ ପବନ ବସନ୍ତ ସୁସୋଦନ ।
କୁମୁଦ କଞ୍ଚଣ ଗନ୍ଧମାରଦନ ॥
ଶୁଣିଲେ ଇନ୍ଦ୍ରଜିତ ଲକ୍ଷଣର ଯୁଦ୍ଧ ।
ରଣଛାଡ଼ି ଧାମନ୍ତି ଘେନିଣ ଆୟୁଧ ॥
ଅଷ୍ଟ ସେ ଯୂଥପତି ଯେକମୁଖ ହୋଇ ।
ଲକ୍ଷଣକୁ ପିଠି ସର୍ବ ହୋଇଲେକ ଯାଇଂ ॥୩୦
ଶ୍ରୀରାମ ଧାମନ୍ତେ ଜାଣିଲା ଇନ୍ଦ୍ରଜିତ ।
ଲକ୍ଷେକ ନାରାଜ ବିନ୍ଧିଲା ତୁରିତ ॥
ଲକ୍ଷଣକୁ ଶୟେ ସୁଗ୍ରୀବରକୁ ସାତ ଶର ।
ବିଭୀଷେଣକୁ ଲକ୍ଷେ ନାରାଜ ପରିହର ॥
ଅଙ୍ଗଦକୁ ପାଞ୍ଚ ହନୁମତକଇ ଦଶ ।

ଗନ୍ଧମାର୍ଦନକଇ ବିନ୍ଧିଲା ପଞ୍ଚାଶ ॥
ସୁନାସକୁ ଦୁଇବାଣ ଗବାକ୍ଷକୁ ବେନି ।
ନଳକଇ ଆଠ ନୀଳକଇ ତିନି ॥
ଡାଳିମ୍ୱକଇ ଚାରି ପବନକଇ ବାର ।
କେଶରୀକି ଆଠ ମହୀନ୍ଦ୍ରକଇ ପନ୍ଦର ॥୪୦
ଦ୍ୱିବିନ୍ଦକଇ ବତିଶ କାଳିମୁଖକଇ ଚାରି ।
ସୁଷେଣ ମନ୍ତ୍ରୀକି କୋଡ଼ିୟେ ବାଣ ମାରି ॥
ଜମ୍ୱେବକଇ ଚଉଦ ବଳିମୁଖକଇ ସାତ ।
ସୁସୋଦନକୁ ଦୁଇ ପାରାସକୁ ଏକଶତ ॥
ଦଧିମୁଖକୁ ଷୋଳ କାଳିଜନକଇ ଯେଗାର ।
ସମ୍ପାତିକି ଷାଠିୟେ ଶରସେତୁକୁ ପନ୍ଦର ॥
କୁମୁଦକୁ ଚଉବିଂଶ ପାରିଜାତକଇ ଦୁଇ ।
ଶଉରୀକି ସାତ ନାରାଜ ପେଷଇ ॥
ରମଣକୁ ପନ୍ଦର ତାରା ପିତାକୁ ସହସ୍ରେ ବାଣମାରି ।
ମାୟା ଶସ୍ତ୍ରମାନ ବିନ୍ଧଇ ହାକିକରି ॥୫୦
ସବୁ କପିଙ୍କି ମାଇଲା କାଣ୍ଡେ କାଣ୍ଡେ ।
ହାକିଣ ବିନ୍ଧଇ ହୋଇଣ ପରଚଣ୍ଡେ ॥
ଉତ୍ତମ କପିଙ୍କି ବାଛି କାଣ୍ଡ ମାରି ।
ରିକ୍ଷ କପିକି କାଣ୍ଡେ କାଣ୍ଡେ ପ୍ରହାରି ॥
ରିକ୍ଷ ବାନର ଯେ ଯେତେକ ସୈନ୍ୟ ଥିଲା ।
ନାରାଜେ ଲେଖାୟେ ସବୁ କପିଙ୍କି ପ୍ରହାରିଲା ॥
ପନ୍ନଙ୍ଗ ଉଡ଼ିଲାକି ଅନଙ୍ଗ ମୂର୍ଚ୍ଛି ହୋଇ ।
କୁଳୁକୁଳା ପୋକକି ପଡ଼ିଲେ ରଣଭୂଇଂ ॥
ତାରାଗଣେ ଗଗନୁ ପଡ଼ିଲେ କି ଖସି ।
ନାରାଜ ତେସନ ପରାୟେକ ଦିଶି ॥୬୦
ମନଭେଦୀ ଶର ସୁମରଣା କଲା ।
ପହଡ଼େ ପରିଯନ୍ତେ ସଇନି ନ ଦିଶିଲା ॥
ଅଙ୍ଗଦର ସଙ୍ଗେ ଘଡ଼ିୟେ ଯୁଦ୍ଧ କରି ।
ଲକ୍ଷଣର ସଙ୍ଗେ ଯୁଝିଲା ନବଘଡ଼ି ॥
ସୂର୍ଯ୍ୟ ଦେବତାକି ପଶିଲାକ ରଣେ ।
ଅସ୍ତଗିରିକି ହୋଇଲା ଛାୟାର ରମଣେ ॥
ଅସୁରେ ନିଶାଚରେ ରାତ୍ରେଣ ବଳୀଆର ।
ସନ୍ଧ୍ୟାବେଳେ ଯୁଦ୍ଧ କଲାକ ଅପାର ॥
ଯେବଣ କାଳେ ସେ ଜିଣିଲା ସ୍ୱର୍ଗପୁରୀ ।

ତହୁଂ ଦଶଗୁଣେ ସମର ଘୋର କରି ॥୭୦
ଘଡ଼ିକ ଭିତରେ ଶ୍ରୀରାମ ସୈନ୍ୟ କାଟି ।
ରିକ୍ଷ କପିମାନେ ସମରେଣ ଲୋଟି ॥
ଘାୟେ ଘୁମାଇଣ ପଡ଼ିଲେ ପଲ ପଲ ।
ସେନା ସେନାପତି ମଲ୍ଲ ମହାମଲ୍ଲ ॥
ପଞ୍ଚଶ ଯୂଥପତି ହୋଇଲେ ସଂଘାରି ।
ଅଷ୍ଟ ସେନ୍ୟାକୁ ବିକୋଡିଣ ମାରି ॥
ବିଭୀଷେଣ ଜ୍ଞାନ ହାରୀଭୂମିରେ ଶୋଇଲା ।
ସୁଗ୍ରୀବର ରାଜା ଅଚେତନ ହୋଇଲା ॥
ହନୁମନ୍ତ ଅଙ୍ଗଦ ପଡ଼ିଲେ ନଳନୀଳ ।
ଜମ୍ୱେବ ସୁଷେଣ ରିକ୍ଷ କପିବଳ ॥୮୦
ଶ୍ରୀରାମ ଲକ୍ଷଣ ଅଛନ୍ତି ଭାଇବେନି ।
କୋପେ ଇନ୍ଦ୍ରଜିତ ନାଗଫାଶ ଘେନି ॥
ମନ୍ତ୍ରିଣ ବିନ୍ଧିଲା ବୀର ଗୁଣରେ ବସାଇ ।
ଦେଖି ପଳାଇଲେ ସ୍ୱର୍ଗସୁର ସାଇଂ ॥
ବ୍ରହ୍ମାଣ୍ଡ କମ୍ପିଲା ସପତ ସିନ୍ଧୁ ଥିର ।
ବାସୁକି ଭୟେ ନ ଟେକଇ ଶିର ॥
ଚଳିଲାକ ଅସ୍ତ୍ର ଘୋର ରାବକରି ।
କୃତାନ୍ତେକ ଆଇଲାକି ଅନଳ ମୁଖେ ଭରି ॥
ବିକଟାଳ ମୁଖ ବିକଟ ଦଶନ ।
ଜିଭ ଲହ ଲହ ପ୍ରଚଣ୍ଡ ବଦନ ॥ ୯୦
ଫୁ ଫୁ କାର ଧ୍ୱନି ଗର୍ଜଇ ପୁଣପୁଣି ।
ଅଣଚାଶ ପବନ ଗର୍ଜନ ପ୍ରାୟେ ମଣି ॥
ଫେରି ଟେକିବାରେ ଗଗନ ଉହାଡ଼ିଲା ।
ସ୍ୱର୍ଗମର୍ଣ୍ଣ ଦୁଇପୁର ନିରୋଧିଲା ॥
ଶ୍ରୀରାମ ଉପରକୁ ପଡ଼ିଲାକ ଧାଇଂ ।
ଅସ୍ତ୍ର ନିବାରି ନପାରିଲେ ରଘୁସାଇଂ ॥
ଲକ୍ଷଣକୁ ଆଗେ ବାନ୍ଧିଲା ଅହିଶର ।
ପଛେଣ ବାନ୍ଧିଲା କୌଶଲ୍ୟା କୁମର ॥
ଧନୁ ଶସ୍ତ୍ର ଛାଡ଼ି ପଡ଼ିଲେ ବେନି ଭାଇ ।
ମନେ ବିଚାରିଲେ ଆମ୍ଭେ ସେ ବିଷ୍ଣୁଂଦେହୀ ॥୧୦୦
ଅସୁର ଯୋଗ୍ୟତା ଯେ କି ଆମ୍ଭକୁ ହୋୟେ ନାଶି ।
କିସ କରିବ ଯେହୁଂ ଦୁଃସହ କାଳଫାଶୀ ॥
ଏସନେକ ଭାଳି ପଡ଼ିଲେ ଯହୁଂ ବେନି ।

ଶହସ୍ର ଭୟେ କଲା ନାରାୟେଣକୁ ଚିହ୍ନି ॥
ଇନ୍ଦ୍ରଜିତର ଭୟେ ମନ୍ତର ପ୍ରବଳେ ।
ଆପଣାର ଗାଢ଼େ ସାଗ୍ରାଂମର କାଳେ ॥
ଶ୍ରୀରାମ ଲକ୍ଷଣକୁ ବାନ୍ଧିଲା ଯତ୍ନକରି ।
ଦୁଇଭାଇ ନିଚେଷ୍ଟ ଶୋଇଲେ ବସନ୍ଧରୀ ॥
ଯାହାରଟି ସେବକ ଗରୁଡ଼ ବାହନ ।
ସେ ଦେବ କାଳଗରଳେ ହୋଇଲେ ଅଚେତନ ॥୧୦
ଆନନ୍ଦେଣ ଇନ୍ଦ୍ରଜିତ ଶଙ୍ଖଧ୍ୱନି କରି ।
ବିଚାରଇ ପ୍ରବେଶ ହୋଇଲାକ ତିମିରି ॥
କାଲି ପିତା ଆସି ଆଖି ସୁଖେ ଦେଖୁ ।
ତେବେ ସେ ତାହାର ବିରସହି ଉପେଖୁ ॥
ରାତ୍ର ପାହିବା ଯାଯେ ଥିବେକି ଯେହ୍ନୁଂ ବ୍ରତି ।
ଏତେ ବୋଲି ବାହୁଡ଼ଇ ବିଶ୍ରବାର ନାତି ॥
ଦେବଦଳଣ ରଥ ଚଳଇ ଘନଘନ ।
ଶରଦ ପଦ୍ମ ଜାଣିକି ବିକାଶଇ ବଦନ ॥
କୋଳାହଳ ରାବ ଶୁଭଇ ଚଉପାଶ ।
ରଣଜୟେ କରି ଚଳଇ ନିଜବାସ ॥୨୦
ନରାନ୍ତକ ମୋହୋଦର ଅଙ୍କପନ ।
କୁମ୍ଭ ନିକୁମ୍ଭ ଦେବାନ୍ତେକ ମିତ୍ରଘନ ॥
ସଲୋପି ଅଲୋପି ମୁଖା ଯେ ଦୃମୁଖାକଙ୍କ ।
ସିଘ ତୁରଙ୍ଗ କାଳଘଣ୍ଟ ବୀରଘଣ୍ଟ ଧଙ୍କ ॥
ବିକୁମାଛି ଅମୟେ ଅଜମୟେ ତ୍ରିଶିରା ।
ମହୀରାବଣ ବଜ୍ରଧନୁଷ୍ଟ ମହାବୀରା ॥
ରଥୀ ଯୋଦ୍ଧା ରାଉତ ପାଦାନ୍ତି ଆନନ୍ଦ ।
ବାଜଇ ବାଦ୍ୟ ବୀରତୂର ଛନ୍ଦ ॥
ଚିହ୍ନ ଚିରାଳ ଉଡ଼ଇ ଫରହର ।
ଆଲମ୍ବ ପାଟଛତ୍ର ବିଲମ୍ବ ଅପାର ॥୩୦
ଦିହୁଡ଼ି ନିରନ୍ତରେ ଜଳଇ ନିଶାକାଳେ ।
ଆନନ୍ଦେଣ ଥାଠ ଚଳଇ ଅବନିକେ ॥
ଲଙ୍କାଗଡ଼ରେ ଯହୁଂ ହୋଇଲା ବାରତା ।
ନର ବାନର ସଂହାରି ଆସଇ ଇନ୍ଦ୍ରଜିତା ॥
ରାବଣ ଶୁଣିଲା ପୁତ୍ରର ଯୁଦ୍ଧ ରୀତି ।
ଆସ୍ଥାନରେ ବିଜୟେ ଯାଇଂ କଲାକ ଲଙ୍କପତି ॥

ଶୁକ ସାରଣ ଅଛନ୍ତି ମନ୍ତ୍ରୀ ବେନି ।
ସଭା କରିଅଛି ଅମନାତ୍ୟ ପାତ୍ର ଘେନି ॥
ରାଉତ ମାହୁନ୍ତେ ରଥୀ ପୟେକାର ।
ପଞ୍ଚକୋଶ ମାଡ଼ି ପଡ଼ିଲେ ପଟୋଆର ॥୪୦
ଘନ ଘନ ଚାର ବାରତା ଜଣାଇଂ ।
ଶୁଣଦେବ ଲଙ୍କା ନୃପତି କୁଳସାଇଂ ॥
ମେଘନାଦ କୁମର ସଂଗ୍ରାମକୁ ଗଲା ।
ଲକ୍ଷଣ ସଂଗେ ଅନେକ ଯୁଦ୍ଧ କଲା ॥
ରିକ୍ଷ କପି ସମସ୍ତ ସଂଘାରିଲା ହେଳେ ।
ସେନା ସେନାପତି ମାଇଲା ଭୁଜବଳେ ॥
ରାମ ଲକ୍ଷଣଙ୍କୁ ନାଗଫାଶେ ବାନ୍ଧି ।
ବାହୁଡ଼ି ବିଜେ କଲା ଶତ୍ରୁକୁ ତୋର ସାଧି ॥
ଶୁଣି ଲଙ୍କପତି ପ୍ରସନ୍ନ ମୁଖ ହୋଇ ।
ଚାରକଇ ପ୍ରସନେ ଧନରତ୍ନ ଦେଇ ॥୫୦
ମନ୍ତ୍ରୀ ଅମାନାତ୍ୟକୁ ଚାହିଂକରି ହସି ।
ଶୁଣ ହୋ ଇନ୍ଦ୍ରଜିତ ବଇରୀ ମୋର ନାଶି ॥
ସାଧୁ ସାଧୁ ପୁତ୍ର ଲଙ୍କାକଇ ପ୍ରଦୀପ ।
ନୋହିଲେ କେମନ୍ତେ ଆନେ ଜିଣିଲା ସୁର ନୃପ ॥
ଯାଅ ହୋ ଶୁକ ସାରଣ ମନ୍ତ୍ରୀ ବେନି ।୬୦
ପୁତ୍ରକଇ ବାହୁଡ଼ାଇ ପାଛୋଟି ଆସ ଘେନି ॥
ମେଘନାଦ ତୁଣ୍ଡରେ ଶୁଣିମି ଶତ୍ରୁହତ ।
ତେବେ ସେ ଭ୍ରାନ୍ତି ଫିଟିବ ମୋର ଚିତ୍ତ ॥
ଶୁଣି ଶୁକ ସାରଣେ ସୈନ୍ୟ ସଙ୍ଗେ ଘେନି ।
ରାଜାର ଆଜ୍ଞା ପାଇ ଗଲେକ ମନ୍ତ୍ରୀ ବେନି ॥
ଦେଖିଲେ କଟକେ ପଶିଲା ଇନ୍ଦ୍ରଜିତ ।
ସଙ୍ଗରେ ରଥଗଜ ସଇନି ଅପ୍ରମିତ ॥
ଦଉଡ଼ି ନିରନ୍ତରେ ଆଲୋଅମୟ ଦିଶଇ ।
ଦେବଦଳଣ ରଥ ଚଢ଼ି ବେଗେଣ ଆସଇ ॥
ବାଟରେ ଆସନ୍ତେ ଦେଖିଲେ ମନ୍ତ୍ରୀ ବେନି ।
ରାଜା ଆଜ୍ଞାଦେଲା ଯିବୁ ତୋତେ ଘେନି ॥
ଶତ୍ରୁର ନିଧନ ଶୁଣିମ ତୋର ତହୁଂ ।
ଲଙ୍କପତିକି ଜୀବଦାନ ଦେଲୁ ଯହୁଂ ॥
ଶୁଣି ଇନ୍ଦ୍ରଜିତ ଚଳଇ ଘନଘନ ।
ଦେଖନ୍ତି ଲଙ୍କାର ନରନାରୀ ସର୍ବଜନ ॥୭୦
ପ୍ରଶଂସା କରନ୍ତି ସାଧୁ ସାଧୁ ମେଘନାଦ ।

ତୋହୋରେ ବଞ୍ଚିଲୁ ଆମ୍ଭେ ଯେତେକ ପରମାଦ ॥
ରିକ୍ଷ ବାନର ମାରି ଅକଟେଙ୍କ କଲୁ ।
ଲଙ୍କା ଲୋକକଇ ଜୀବଦାନ ଦେଲୁ ॥
କେ ବୋଲଇ ବିଭୀଷେଣ ଅକାରେଣ ମଲା ।
ଏକୁଳ ଗୋଟାରୁ ଛିଡ଼ି ପଡ଼ିଗଲା ॥
କେ ବୋଲଇ ଲଙ୍କା ପୋଡ଼ିଲା ହନୁମନ୍ତ ।
ସେହି ମଲାଟିକି ମଧୁବନ ବୃତ୍ତାନ୍ତ ॥
କେ ବୋଲଇ ଜଗତୀ ଚାଳ ଯେହୁଂ ନେଲା ।
ସେ ଦୃଷ୍ଟ କେମନ୍ତେ ପ୍ରକାରେ କ୍ଷୟେ ଗଲା ॥୮୦
ଦୁଇଯତି ପଡ଼ିଲେ କେବଣହିଂ ଶରେ ।
ଥିଲା ଲୋକେ ବୋଇଲେ ବିନ୍ଧିଲୁ ଅହିଶରେ ॥
ସୁଗ୍ରୀବର ବିଭୀଷେଣ ଅଙ୍ଗଦ ହନୁମନ୍ତ ।
ରିକ୍ଷ କପି ବଳ ଆଜ କଲୁ ଯେ ଧୂମାନ୍ତ ॥
ସ୍ୱର୍ଗେ ପଶି ଯେହ୍ନେ ଧୂମାନ୍ତ କଲୁ ସୁରଗଣେ ।
ଅଗ୍ନି ଦହଇ ଯେହ୍ନେ ଶୁଖିଲା ତିରଣେ ॥
ତେହ୍ନେ ପରାକରି ଦହିଲୁଂ ଜଗତ ।
କ୍ଷତ୍ରୀଙ୍କର ବର ଯେ ରାବଣର ସୁତ ॥
ଏହାର ଯୁଝିଲେ କି ରିକ୍ଷ କପି ରହି ।
ଯାହାର ନାରାଚ ଘାତ ଇନ୍ଦ୍ର ହିଂ ନ ସହଇ ॥୯୦
ଯେସନେକ ବୋଲି ବୋଲନ୍ତି ସର୍ବଜନ ।
ଆନନ୍ଦେ ଧାମନ୍ତି ହୋଇଣ ଉନ୍ମାନ ॥
ନଗ୍ରରେ ଆନନ୍ଦ ଉଛବ ସର୍ବଜନ ।
ଭାଟେ କୟେବାର କରନ୍ତି ଅବିଛନ୍ନ ॥
ସିଂହଦ୍ୱାରେ ରଥ ଲାଗିଲାକ ଯାଇଂ ।
ଭିତରକୁ ଇନ୍ଦ୍ରଜିତ ଗଲାକ ଓହ୍ଲାଇଂ ॥
ଦେଖିଲା ଆସ୍ଥାନେ ଅଛଇ ଲଙ୍କପତି ।
ଦୂରହୁଂ ପ୍ରଳମ୍ବ କରି ଉଠିଲାକ ଧାଡି ॥
ଶିରେ କର ଦୁଇ ଯୋଡ଼ି ଉଡ଼ା ଦୁଇ ଗଲା ।
ପୁଣି ପାଯେ ପଡ଼ି ଶୋଇଣ ଉଠିଲା ॥୧୦୦

ରାୟେ ଆଜ୍ଞା ଦିଅନ୍ତି କତିକି ମୋର ଆସ ।
ଆଜିର ସଂଗ୍ରାମ ବାବୁ କଲୁ କିସ କିସ ॥
ପୁତ୍ର ବୋଇଲା ତୁ ଶୁଣ ଲଙ୍କସାଇଂ ।
ଆବର କହିବାରେ ପ୍ରୟୋଜନ ନାହିଁ ॥
ଅସୁରଙ୍କର ଶତ୍ରୁ ଅଇଲି ସଂଘାରି ।
ରାମ ଲକ୍ଷଣ ରିକ୍ଷକପି ମାରି ॥
ସେ କେହ୍ନେ ଜାଣିମେ ମାୟା ଯୁଦ୍ଧର ଗତି ।
ମନିଷ୍ୟ ଶ୍ୟରୀର ସେ ଅଟନ୍ତି ଦୁଇ ଯତି ॥
ଘଡ଼ିକର ମଧ୍ୟେ ସଂଘାରିଲି ବଳ ।
କାଲି ଯାଇ ଆପଣେ ଦେଖ ଲଙ୍କପାଳ ॥୧୦
ଶୁଣି ଦଶାନନ ହୋଇଲା ଆନନ୍ଦ ।
ମୁଖ ବିକାଶଇ ପୌର୍ଣ୍ଣମୀର ଚାନ୍ଦ ॥
ସିଂଘାସନୁ ଉଠି ପୁତ୍ରକୁ କୋଳକଲା ।
ମନ୍ତ୍ରୀଗଣମାନଙ୍କୁ ରାଇଣ ବୋଇଲା ॥
ରାମ ଯେ ସମୁଦ୍ରେ ବାନ୍ଧିଲେ ସେତୁବନ୍ଧ ।
ଯେବେଦ୍ୱାରେ କିମ୍ପା ଲୋଟିଲା ତାରକନ୍ଧ ॥
ନଗ୍ର ଉଚ୍ଛବ କରାଅ ମୋର ଯାଇଂ ।
ଦେବତାନ୍ତ ପୂଜାଅ ବିବିଧ ପୁଷ୍ପଦେଇ ॥
ବ୍ରାହ୍ମଣେ ଭୋଜନ ଦୁଃଖୀକି ଧନ ଦିଅ ।
ସଂଗ୍ରାମ ଭୂମିକି ସୀତାକୁ ବେଗେ ନିଅ ॥୨୦
ଦେଖୁଂ ଯାଇଂ ସ୍ୱାମୀ ଦିଅର ବଡ଼ପଣ ।
ସୁଗ୍ରୀ ବିଭୀକ୍ଷେଣ ରିକ୍ଷ କପିଗଣ ॥
ଭାଇ ଚାଣ୍ଡାଳ ମୋର ଅକାରଣେ ମଲା ।
ଯେହି ଶତ୍ରୁ ଦେଖି ଅକାରଣେ ଛାଡ଼ିଗଲା ॥
ଯେବେ ସେ ଜାଣିଲି ହୃଦେ ତାର ପାପ ।
କେବଣ ପ୍ରକାରେ ତାକୁ ମାଇଲୁରେ ବାପ ॥
ସେ ଯେ ଅମର ବ୍ରହ୍ମାର ପରସନେ ।
ତାକୁ ମାଇଲୁ କେବଣ ଆକ୍ରୁଷନେ ॥
ଇନ୍ଦ୍ରଜିତ ବୋଇଲା ଶୁଣ ଦଶଶିରି ।
ଧରି ମାଇଲେ ଚାତ ସିଧହିଂ ହାଦେ ମରି ॥୩୦
ଅମର ହୋଇଲା ଲୋକ ତାହାର ସୁଖେ ଥିବ ।
ସାଂଗ୍ରାମ କଲେ କି ଅନ୍ୟାୟେ ପାରଯିବ ॥
କୁଳ ଛାଡ଼ିଲା ଯେଣେ ଧର୍ମହାନୀ ।
ଶତ୍ରୁରେ ଶରଣ ପଶିଲା ଯେତେକ ଅଜ୍ଞାନୀ ॥

ତାହାଙ୍କ ସଂଗତେ ପୁଣ ଆମ୍ଭଙ୍କୁ ଶହସ୍ର ମାରି ।
ତାହାର ମାଇଲେକି ହୋଇବ ସଂଘାରି ॥
ତୁ କାଲି ପ୍ରଭାତେ ଦେଖୁସିନା ଯାଇଂ ।
ସ୍ନାହାନ ଭୋଜନ ଯେବେ କର ଲଙ୍କସାଇଂ ॥
ଶୁଣି ଦଶଗ୍ରୀବ ହୋଇଲା ସନ୍ତୋଷ ।
ଯେ ଯାହାରେ ଯାଅ ବୋଲି ଦେଲାକ ଆଦେଶ ॥୪୦
ଆପଣେ ଭିତର ପୁରକଇ ଗଲା ।
ଯେ ବିଧି ମାଜଣା ମୋଣୋହିଂ ସାରିଲା ॥
ତ୍ରିଜଟାକୁ ହକାରି ବୋଲେ ଲଙ୍କେଶ୍ୱର ।
ଏ କଥା କହଯାଇଂ ସୀତୟା ଛାମୁର ॥
ପୁଷ୍ପୋକ ରଥ ମୋର ଚଢ଼ାଇ ଘେନିଯାଅ ।
ସାଂଗ୍ରାମ ଭୂମିରେ ଶ୍ରୀରାମକୁ ଦେଖାଅ ॥
ଇନ୍ଦ୍ରଜିତ ନାରାଚେ ତାର ପତିର ପ୍ରାଣହାରି ।
ଦେଖି ପ୍ରତେ ଯାଉ ଜନେକ କୁମାରୀ ॥
ବାହୁଡ଼ାଇ ଆଣି ଓଶେକ ବନେ ଥୁଅ ।
ପୁଷ୍ପେକ ରଥ ଘେନି ଯେହିକ୍ଷଣି ଯାଅ ॥୫୦
ଆଜ୍ଞା ପାଇଂଣ ଯେ ଗଲାକ ତ୍ରିଜଟା ।
ଯାଇଂ ପ୍ରବେଶ ହୋଇଲା ମଧୁବନ ତୋଟା ॥
ରାବଣ ଆଜ୍ଞାୟେ ପୁଷ୍ପେକ ରଥ ଘେନି ।
ସୀତାକୁ କହଇ ସେ ବିଭୀଷେଣର ଦୂଲଣୀ ॥
ଶୁଣ ଗୋ ଜାନେକୀ ଆଜିର ସମର ।
ଇନ୍ଦ୍ରଜିତ ବୋଲି ରାବଣ କୁମର ॥
ପରିଘାଇ ଯୁଦ୍ଧ କଲାକ ରଣେ ପଶି ।
ରିକ୍ଷ କପିବଳ ସକଳ ବିନାଶି ॥
ରାମ ଲକ୍ଷଣଙ୍କୁ ନାଗଫାଶେ ବାନ୍ଧି ।
ସୁଗ୍ରୀ ବିଭୀଷେଣକୁ ବିଷମ ଶର ବିନ୍ଧି ॥୬୦
ହନୁମତ ଅଙ୍ଗଦ ସହିତେ ନାଶ ଗଲେ ।
ପତିର ସଇନି ତୋର ଗୋଟିୟେ ନ ବର୍ତ୍ତିଲେ ॥
ରାବଣେଶ୍ୱର ତୋତେ ବାରତା ଦେଇଅଛଇ ।
ତୋତେ ଘେନିଯିବି ମୁଂ ପୁଷ୍ପେକ ରଥେ ବସାଇ ॥

ଦେଖ ଯାଇଂ ତୋର ସ୍ୱାମୀର ମରଣ ।
ଦେଖାଇ ଆଣିମି ରାଜା ଦେଇଛି ଫରମାଣ ॥
ଆସ ଆସ ସୁନ୍ଦେରୀରେ ପୁଷ୍ପେକ ରଥେ ବସ ।
ଶୁଣି ଜାନେକୀ ମନରେ ପାଇଲାକ ପ୍ରାଶ ॥
ନୟନୁ ଅଶ୍ରୁଜଳ ଗଳଇ ଅବିକ୍ଷନେ ।
ଫୁଇ ସୂତାରୁ ଛିଡ଼ି ମୁକୁତା ପଡ଼ଇ ଯେସନେ ॥୭୦
ଶୋକ ସମ୍ଭାଳିଣ ବୋଲଇ ଚାନ୍ଦମୁହୀଂ ।
ଶ୍ରୀରାମକୁ ଜିଣନ୍ତା ପୃଥିରେ କେହି ନାହିଂ ॥
ଦେବେ ନ ପାରନ୍ତି ଅସୁରେ କିସ କରି ।
ଅପୂର୍ବ କଥା କିରେ ପ୍ରତେ କରି ପାରି ॥
ଚାଲ ଚାଲ କେସନେ ଦେଖିବାକ ରୀତି ।
ଯେତେବୋଲିଣ ଉଠିଲା ମହାସ୍ୟତୀ ॥
ପୁଷ୍ପେକ ବିବାନେ ବିଜେ କଲା ଯାଇଂ ।
ରଘୁବର ଆନନ୍ଦ ଅନେକ ସୁଖପାଇଂ ॥
ବିଚାରଇ ଯେବେ ଗଲା ମୋର କଷ୍ଟ ।
ଯହୁଂ ଅଙ୍ଗେ ମୋର ଲାଗିଲା ପାଦପୃଷ୍ଟ ॥୮୦
ଲକ୍ଷ୍ମୀ ପ୍ରସନ୍ନ ମୋତେ ହୋଇଲେ ଯେତେକାଳେ ।
ଏତେ ବୋଲି ରଥ ଉଡ଼ଇ ଅନ୍ତରାଳେ ॥
ତ୍ରିଜଟା ସୁରମା ସହିତେ ସହସ୍ରେକ ନାରୀ ।
ମଧ୍ୟେ ବସିଛନ୍ତି ଜନେକ କୁମାରୀ ॥
ତାରାଗଣେ ଯେହ୍ନେ ପୌର୍ଣ୍ଣମୀର ଶଶୀ ।
ରାକ୍ଷସୁଣୀଙ୍କ ମଧ୍ୟେ ଜାନେକୀ ଶୋଭାଦିଶି ॥
ଉତ୍ତର ମୁଖେ ରଥ ଚଳଇ ଘନ ଘନ ।
ନିଶ୍ୱାସକେ ଛାଡ଼ିଲା ଲଙ୍କାର ଆୟେତନ ॥
ପାଚେରୀ ଡେଇଂଯାଇଂ ସାଂଗ୍ରାମ ଭୂମିରେ ପଶି ।
ରିକ୍ଷ କପି ମୃତ୍ୟୁ କୁଢ଼ ହୋଇ ଦିଶି ॥୯୦
ରକତେ ଜର ଜର ସବୁଙ୍କରି କାୟେ ।
ନାନାବର୍ଣ୍ଣେ କପି ପଡ଼ିଛନ୍ତି ଘାୟେ ॥
କାହାର ନିଶ୍ୱାସ ବହଇ ଖରତର ।
କେ ଚିରି ହୁଗାଳି ପକାଇଲେ ଶର ॥
କେହୁଂ ଆପଣେ ଫୁଙ୍କନ୍ତି କଟାକ୍ଷି ।

ଧୀର ଧୀର ହୋଇଣ କେ ବାହାର
ହେଉଅଛି ॥
ଏକକୁ କହିବାରୁ ଆରେକ ନିସତ ।
କେ ବୋଲଇ କାହିଁ ଅଛନ୍ତି ରଘୁନାଥ ॥
କେବଣହିଁ କପି ନିଚେଷ୍ଟ ହୋଇଥିଲା ।
ଲୋକ ତୁଣ୍ଡ ଶୁଣି ଉଠିଣ ବସିଲା ॥୧୦୦
ଏକ ଆରେକର ଉଶ୍ୱାସନ୍ତି କାୟେ ।
କେ ବୋଲନ୍ତି ରଖ ଆସି ବାପମାୟେ ॥
କେ ବୋଲଇ ବାବୁରେ କ୍ଷତ୍ରୀ ଇନ୍ଦ୍ରଜିତ ।
ଏତେ ବଳ ଗୋଟାକୁ କଲାକ ବିଘାତ ॥
ଦୁଇ ଚାରି ପାଞ୍ଚ ସାତ ଦେଖିଯାନ୍ତି ।
ଅଜ୍ଞାନ ଲୋକ ଦେଖିଲେ ଉଠାଇ ବସନ୍ତି ॥
ନାରାଚ ଉପାଡ଼ି ଫୁକନ୍ତି ମନ୍ତ୍ର ପଢ଼ି ।
ଚୁମ୍ୱେକ ପଥର ଦେଖାଇ ଫଳା କାଢ଼ି ॥
ହୋଇଲେ ସଚେତ ରିକ୍ଷ କପି ବଳ ।
ମୋହ ତେଜି ତହିଁ ଉଠିଲେ ସକଳ ॥୧୦
ସୁଗ୍ରୀବର ହନୁମତ ଜମ୍ୱେବ ବିଭୀଷେଣ ।
ଗନ୍ଧମାରଦନ ଅଙ୍ଗଦ ସୁଷେଣ ॥
କାଳିଞ୍ଜନ କାଳିମୁଖ ସମ୍ପାତି ପାରାସ ।
ଦଧିମୁଖ କୁମୋଦ କଞ୍ଜଣ ସାରାସ ॥
ବସନ୍ତ ରମଣ ଶଉରୀ ସେନାପତି ।
ତାରାକ୍ଷ ଗବୟେ ଗବାକ୍ଷ ଉଠନ୍ତି ॥
ତାରାର ପିଅର ରୋମାଦେଇର ତାତ ।
ମୋହ ତେଜି ଉଠି ବସିଲେ ସମସ୍ତ ॥
ଶର ହୁରାଳି ଫୁକନ୍ତି ଘାଆ ମୁଖେ ।
ଶ୍ରୀରାମକୁ ଚାହିଁ ରୋଦନ୍ତି ମହାଦୁଃଖେ ॥୨୦
ବିଷର ଜ୍ୱାଳାରେ ସ୍ୱାମୀ ଥିଲେ ଶୋଇ ।
ଲୋକ ତୁଣ୍ଡ ଶୁଣି ଉଠନ୍ତି ଗୁଆଇଂ ॥
ପୁଣି ପଡ଼ିଲେ ସେ ସମ୍ଭାଳି ନ ପାରି ।
ନାଗଫାଶ ବାନ୍ଧିଅଛି ଅତି ଯତ୍ନକରି ॥
ଚରଣୁ ବେଢ଼ାଇ ଅଛି କଣ୍ଠ ପରିଯନ୍ତେ ।
ଦେଖିଣ ଆକୁଳ ସବୁଙ୍କରି ଚିତ୍ତେ ॥
ବାସ୍ତରି ବେଢ଼ା କରି ଗୁଡ଼ିଆଇ ଅଛି ।
ଏହି ପରକାରେ ସୁମେତ୍ରାର ବଛି ॥
ଲକ୍ଷଣକୁ ଚାହିଁ ରୋଦନ୍ତି ଦାଶରଥି ।
ଆମ୍ଭଙ୍କୁ ଭାଇରେ ମୃତ୍ୟୁ ଅଛି ଯେଥି ॥୩୦
ସୀତା ସେ କଢ଼ାଇ ଆଣିଲା ମୋତେ ବାଟ ।
ସ୍ୱଭାବେ ଦକ୍ଷିଣ ଦିଗ ଅଟଇ ଯମରାଷ୍ଟ୍ର ॥
ରିକ୍ଷ କପି ଲୋଚାୟେ ମରାଇଲି ଆଣି ।
କେହ୍ନେ ବିଭୀଷେଣକୁ କରାଇବି ନୃପମଣି ॥
ସବୁ କଥାମାନ ନିଷ୍ଫଳକୁ ଗଲା ।
ନିଶ୍ଚୟେ ରାବଣ ମୋ ସୀତାକୁ ଭୋଗ
କଲା ॥
ଯଶ ସମ୍ପଦରେ ନାହିଁ ମୋର କାର୍ଯ୍ୟ ।
କେମନ୍ତେ ପ୍ରାଣ ପାଇବ ସୁମେତ୍ରା ତନୁଜ ॥
ଲକ୍ଷଣ ବିକଳେ ସୁମରଇ ଆଈ ଆଈ ।
ଶ୍ରୀରାମକୁ ବୋଲଇ ମୋର ପ୍ରାଣ ରଖ
ଭାଇ ॥୪୦
ଖଣ୍ଡି ଖଣ୍ଡି ହୋଇ ଛିଡ଼ିଲା ମୋର ଦେହ ।
ଜମ୍ୱେବ ମନ୍ତ୍ରୀ ହୋ ଉପାୟ ମୋତେ କହ ॥
ପ୍ରାଣ ଯାଉ ପଛେ ଯେହା ଦେହ ନ
ସହଇ ।
ନିଲଜର ଦେହ ରହିଅଛି କାହିଂପାଇଂ ॥
କର ଲେଉଟାନ୍ତି ଆପଣା ମନେ ମନେ ।
ଟାଳି ନୁଆରନ୍ତି ନିବିଡ଼ ବଂଧନେ ॥
କର ପାଦ ପେଟ ବୁକୁ କଟିଯାନୁ ।
ଅହିର ବାନ୍ଧେଣି ଅଟଇ ଅନୁ ଆନୁ ॥
ଶ୍ରୀରାମ ଉଠିବାକୁ ପୁଣିହିଁ ମନ କଲେ ।
ଲକ୍ଷଣ ଉପରେ ଆଉଜି ପଡ଼ିଲେ ॥୫୦
ଅନନ୍ତ ଶଯ୍ୟାରେ ଯେହ୍ନେ ନାରାୟଣ
ଶୋୟେ ।
ଶ୍ରୀରାମ ଲକ୍ଷଣ ଦିଶନ୍ତି ତେହ୍ନେ ପ୍ରାୟେ ॥
ଆକାଶରେ ଥାଇ ଦେଖନ୍ତି ଦେବୀ ସୀତା ।
କପାଳେ କର ମାରଇ ଜନେକ ଦୋହିତା ॥
ପୋତୁ ମୋର ମୁଣ୍ଡ ମରଇଂକିନା ମୁଇଂ
ଦୁଃଖୀ ।
ସ୍ୱାମୀ ଦିଅରଙ୍କର ଯେସନ କଷ୍ଟ ଦେଖି ॥
ବାବୁ ବିଧାତାରେ ଯେହା ଆଣି କଲୁ ।
ରାଜ୍ୟ ସୁଖ ଛାଡ଼ି ବନସ୍ତେ ବୁଲାଇଲୁ ॥
ଏତେକେହେଂ ତୋର ନ ପୂରିଲା ପେଟ ।
ଯୁବାକାଳେ ସ୍ୱାମୀଙ୍କି ମୋର ଦେଲୁ ଏଡ଼େ
କଷ୍ଟ ॥୬୦
ଏବେ ମରାଇଲୁ ଅସୁର ପାପୀ ହାଥେ ।
ଏଡ଼େ ବଡ଼ପଣ ତୋର ଦିଶିଲା ଚଉମାଥେ ॥
ମୋହୋର ପ୍ରାଣ କିଂପା ଅଛୁ ହାଦେ ଥୋଇ ।
ତିନି ପ୍ରାଣୀ ହତ୍ୟା କନ୍ଧେ ଥାଅ ବସାଇ ॥
ଯେତେବୋଲି ଦେବୀ ଭୂମିକି ଦେଲା ଦୃଷ୍ଟି ।
ଦେଖିଲା ରିକ୍ଷ କପି ପୂରିଅଛି ସୃଷ୍ଟି ॥
ବୋଇଲା ଶ୍ରୀରାମ ଧନ୍ୟରେ ତୋର ପୁଣ୍ୟ ।
କାହୁଂ ଭିଆଇଲୁ ଯେତେକ ସୈନ୍ୟ ॥
ମୋହୋର ଥିଲାକାଳେ ଗୋଟିୟେ ନ
ଥିଲେ ।
ଏବେ ଏତେ ବଳ କାହୁଂ ଉପୁଜିଲେ ॥୭୦
ହନୁମତକୁ ଚାହିଁ ବୋଲଇ ଦେବୀ ସ୍ୟତୀ ।
ତୋହୋର ଥାନ୍ତେ ବନ୍ଧନ ହାଦେ ମୋର
ପତି ॥
ଏ ଲଙ୍କାଗଡ଼ ହେଳେ ଧ୍ୱଂସ କରିଗଲୁ ।
ଜମ୍ୱୋମାଳି ଅକ୍ଷୟେକୁମାର ମାଇଲୁ ॥
ଅନେକ ଅସୁର ସଇନି କଲୁ ତୁ ନିପାତ ।
ଏବେ ବୁଦ୍ଧି ହରାଇଲୁ ଇନ୍ଦ୍ରଜିତର ହାଥ ॥
ଶ୍ରୀରାମକୁ ଦେଖିଣ କହଇ ଶଶିମୁଖୀ ।
ସୁକୁମାର ଦେହଗୋଟି ହୋଇଲା ଏବେ
ଦୁଃଖୀ ॥
ଭ୍ରଥ ଶତ୍ରୁଘନ କେମନ୍ତେ ମୁରୁଛିବେ ।
ଶାଶୁ ମୋର କୌଶଲ୍ୟା ନିଶ୍ଚୟେ
ମରିବେ ॥୮୦
ସେ ମରିବେ ମୁଇଂ ହୋଇଲି ଯେ ରାଣ୍ଡ ।
କାହିଂଥିଲା ତୋତେ ଅକାଳର କାଣ୍ଡ ॥
ଆହା ସ୍ୱାମୀ ମୋର ମଧୁର ମୂରତି ।
ତୋ ତହୁଂଆନେ ମୋହୋର ନାହିଂ ଯେ
ପୀରତି ॥
ପ୍ରାଣର ପ୍ରାଣ ମୋର ଭାବର ଭାବନା ।
ଅଳପ ହସି ମୋତେ କଥା କହ କିନା ॥
ମୁହିଂ ଯେ ନିରେଖେ ହୋ ଠାକୁରହିଂ ତୁହିଂ ।
ନିଚେଷ୍ଟ ହୋଇ କି ଶୋଇଅଛୁ ମହୀ ॥
ଧର୍ମ ତ ମିଛ ହୋଇଲା ତୋହୋର ମଲେ ।
ଭ୍ରାନ୍ତି ନାହିଂ ମୋହୋର ମୁନିଙ୍କର
ବୋଲେ ॥୯୦

ପିତାର ଘରକୁ ମୁନିମାନେ ଗଲେ ।
ସମସ୍ତ ମୁନିମାନେ ଏମନ୍ତ ବୋଇଲେ ॥
ସଧବା ଲକ୍ଷଣ ମୋତେ ଯେ କହନ୍ତି ।
ବିଧବା ଲକ୍ଷଣ ମୋତେ ନାହିଁ ଯେ ବୋଲନ୍ତି ॥
ତାହାଙ୍କର ବୋଲ ଯେବେ ହୋଇଲାତ ମାୟା ।
ସେ ବୋଲନ୍ତି ବିଧବା ଗୋ ନୋହିବ ସୀତୟା ॥
ସେ କଥା ଯେବେ ହୋଇଲାକ ଆନ ।
କେବେହେଁ ମିଛ ନ କହନ୍ତି ତପୀଜନ ॥
ଏ ବୋଲ ଶୁଣି ବୋଲଇ ତ୍ରିଜଟା ।
ସୁଜ୍ଞ ମୁନିମାନେ ନୋହନ୍ତି ପ୍ରକଟା ॥୧୦୦
ସେ ଯାହା ବୋଲନ୍ତି ଗୋ ନୁହଁଇ ଅନୀତି ।
ବିଧବା ସ୍ତିରୀପ୍ରାୟେ ନ ଦିଶୁ ଦେବୀ ସ୍ୟତୀ ॥
ପୁଷ୍ପେକ ରହୁବର ଗୋ ପାଉଅଛି ଶୋଭା ।
ଦଶଦିଶ ଆଲୋଅ ଗୋ ଦେଖି ତୋର ପ୍ରଭା ॥
ଶ୍ରୀରାମ ଉତ୍ତାନ ହୋଇଣଛନ୍ତି ଶୋଇ ।
ଜାନେକୀଙ୍କି ତ୍ରିଜଟା ଦେଲାକ ଦେଖାଇ ॥
ତୋହୋର ସ୍ୱାମୀ ଗୋ ନ ଦିଶଇ ମୃତ୍ୟୁପ୍ରାୟେ ।
ସୁଲକ୍ଷଣ ତୁଲ ଅଟଇ ତାର କାୟେ ॥
ମରିବାର ଲୋକକି ଯେମନ୍ତ ଦେହ ବହି ।
ଶୁଣିଣ ଅଳପ ଥିର ବଇଦେହୀ ॥୧୦
ତହୁଁ ବାହୁଡ଼ିଣ ଓଶେକ ବନ ଗଲେ ।
ରଥୁଁ ଓହ୍ଲାଇଣ ଜଗତୀରେ ବସିଲେ ॥
ପୁଷ୍ପେକ ବିମାନ ରଥ ରକ୍ଷାଲୋକେ କଲେ ।
ସହସ୍ରେ ରାକ୍ଷେସଣୀ ଜଗିଣ ବସିଲେ ॥
ରାତ୍ର ସାତ ଘଡ଼ିରେ ନିଶବଦ ଲୋକେ ।
ଶ୍ରୀରାମ ରୋଦନ କରନ୍ତି ଅତି ଶୋକେ ॥
ବିଷର ଜାଳାରେ ଅଥିର ତାଙ୍କ ଦେହୀ ।
କୋଳେ ଧରି ବସିବାକୁ ନୁଆରନ୍ତି କେହି ॥
କାଳ ସର୍ପ ଗୁଡ଼ିଆଇ ବାନ୍ଧି ଯେ ଅଛଇ ।
ଝୁଣଂବାକୁ ଭାର୍ଜନ ଜଣେହେଂ କେହି ନାହିଁ ॥୨୦

ଲକ୍ଷଣ ଉପରେ ଆଉଜି ପଡ଼ିଥିଲେ ।
ଭାରା ପାଇବ ବୋଲି ତଳକୁ ଖସିଲେ ॥
କରଚରଣ ଯେ ନୁଆରନ୍ତି ଚାଳି ।
ହାହାକାର କହନ୍ତି କପିଜନେ ମିଳି ॥
ହନୁମନ୍ତ ସୁଗ୍ରୀବର ସୁଷେଣ ଜମ୍ୱେବନ୍ତ ।
ରାମକୁ ପ୍ରବୋଧନା କରନ୍ତି ବହୁତ ॥
ତୁ ଦେବ ବିକଳ ନୋହିବା ଦାଶରଥି ।
ଅପୂର୍ବ ଯୁଦ୍ଧ କଲା ବିଶର୍ବାର ନାତି ॥
ସ୍ୱର୍ଗ ମଞ୍ଚ ପାତାଳ ଜିଣିଲା ତିନିପୁର ।
ଇନ୍ଦ୍ରଜିତ ନାମ ଦେଲେ କୁଶଧର ॥୩୦
ଯହୁଁ ଦେବତାୟେ ନୁଆରିଲେ ବଳେ ।
ତେଣୁ ସେ ସେବାକଲେ ଦଇତ ପାଦତଳେ ॥
ତୁ ଯେବେ ସ୍ୱାମୀ ଆତ୍ମା ଥିର କର ।
ଜୟେ ଅପଚୟେ ଯୁଦ୍ଧର ବେଭାର ॥
କ୍ଷତ୍ରୀଙ୍କର ବେଭାର ହାନି ଅପଚୟେ ।
କୂଟ କରି ସାଂଗ୍ରାମେ ବାନ୍ଧିଲା ଦତ୍ୟରାୟେ ॥
ତ୍ରିପୁରକଇ ଶଙ୍କର କପଟେ ବଧକଲେ ।
ଦେବଙ୍କୁ ଅସୁର ମାୟାରେ ଜିଣିଲେ ॥
ଏହି ରାବଣ ଯେ ବାଳୀକି ହାରିଅଛି ।
ନିର୍ବାତକପଚ ତହୁଁ ପଳାଇଲା ଘୁଞ୍ଚି ॥୪୦
ସହସ୍ରାର୍ଜୁନ ଯେହାକୁ ବାନ୍ଧି ରଖିଥିଲା ।
ଅଙ୍ଗଦର ହାଥେ କେଉଂ ଗଂଜଣା ନ ପାଇଲା ॥
କ୍ଷତ୍ରୀଯୁଦ୍ଧ କଲେ ହାରନ୍ତି ଜିଣନ୍ତି ।
ଅତି ନିଆଚାର କଲେ ଖେଦ ନ ବହନ୍ତି ॥
ଇନ୍ଦ୍ରକୁ ବାନ୍ଧିଣ ଆଣିଲା ଦଇତ ।
ଫରହର ବାନା ବୋଲାଇ ଇନ୍ଦ୍ରଜିତ ॥
ସେ କଥାକୁ ଶକ୍ର ନ କଲାକ ଖେଦ ।
ହାନି ଅପଚୟେ ପାଇଂ ରଣ ମଧ ॥
ତୁ ଦେବ ସାଷ୍ଟାମ ହୋଅସି ରଘୁପତି ।
ତୋହୋର ଅଧର୍ମେ ରଣେ ପାଉଂ ଆମ୍ଭେ ଭୀତି ॥୫୦
ଶ୍ରୀରାମ ବୋଇଲେ ମୁଂ ନ ପାରଇଂ ସହି ।
ଚଳିଲେ ପାପ ଅହି ଭିଡ଼ଇ ଗୁଡ଼ିଆଇ ॥
କି ବୁଦ୍ଧି ଉପାୟେ କରିବା କିସ ଜାଣ ।

ମନେ ବିଚାର କରି ବିଭୀଷେଣ ॥
ଏ ଯେ ବିଷ୍ଣୁନାଥ ଅଟଇ ପ୍ରତକ୍ଷ ।
ବାହାନ ଅଟଇ ଯେହାର ବିନତାର ବଛ ॥
ସର୍ପେ ପଳାଇବେ ତାହାର ଅଇଲେ ।
ନୋହଇ ଯେ ନାରାୟେଣ ଗରୁଡ଼ ନଇଲେ ॥
ଏ ମୋହୋର ଶକୁନ୍ୟ ଜାଣରେ ଏହିକ୍ଷଣି ।
ନୋହିଲେଣ ଦେବ ନିଶ୍ଚୟେ ଏଥେ ମରି ॥୬୦
ବ୍ରହ୍ମାର ମନ୍ତ୍ରେ ଯେ ଅହିଶର ଚାଳି ।
ଯେ ମୁଖେ ପଡ଼ଇ ଦେହ ତାର ଜାଳି ॥
ସବୁ ଅସ୍ତ୍ରକୁ ଯେ ପ୍ରତିଅସ୍ତ୍ର ଅଛି ।
ଏଥକୁ ପ୍ରତି ଅସ୍ତ୍ର ନାହିଁ ଦେବ କିଛି ॥
ପନଙ୍ଗା ଅସ୍ତ୍ର ଯେ ଗରୁଡ଼ା ଅସ୍ତ୍ରେ ହତ ।
ପର୍ବତା ଅସ୍ତ୍ରକୁ ବଜ୍ର ଅସ୍ତ୍ରେ ନିବାରିତ ॥
ମେଘାକଇ ପର୍ବତ ହୁତାଶନକଇ ପାଣି ।
ଅନ୍ଧାରକୁ ଚନ୍ଦ୍ର ନିଶାକୁ ଦିନମଣି ॥
ଏକକୁ ଆରେକ ଅଛନ୍ତି ପ୍ରତି ତୁଲ ।
ଏ ପାଞ୍ଚଶସ୍ତ୍ର ଦେବ ସବୁହୁଁ ଅମୂଲ୍ୟ ॥୭୦
ବ୍ରହ୍ମାର ଶକ୍ତିକି ଦେବ ନାହିଁ ଶସ୍ତ୍ର ସରି ।
ଇନ୍ଦର ବଜ୍ର ଦେବ ନିବାରି ନ ପାରି ॥
ପଶୁପତିର ଯେ ପାଶୁପତ ଅସ୍ତ୍ର ।
ତହିଂକି ପ୍ରତିକଛ ନାହିଁ ରଘୁଗୋତ୍ର ॥
ବିଷ୍ଣୁର ନାରାୟଣ ଅସ୍ତ୍ରକୁ ତୁଲ ନାହିଁ ।
ନିସତ ହୋଇଲେ ରଖନ୍ତି ଗୋସାଇଂ ॥
ଅନନ୍ତ ବାସୁକିର ଅଟଇ ନାଗଫାଶ ।
ନିଶ୍ୱାସକେ ବାନ୍ଧି ପାରଇ ଅଶେଷ ॥
ଏହାକୁ ପ୍ରତିଅସ୍ତ୍ର ନାହିଁ ଦେବ କିଛି ।
ଏକାମାତ୍ର ଅପୂର୍ବ କଥାଏ ଦେବ ଅଛି ॥୮୦
ବିଷ୍ଣୁର ସେବକ ଅଟଇ ଖଗପତି ।
ତାହାକୁ ମାତ୍ର ଦେବ କରଇ ଯେହୁ ଭୀତି ॥
ଆବର ପ୍ରତିକାର ନାହିଁ ଦେବ କିଛି ।
ଶୁଣି ଶୋକଭରେ ବୋଲନ୍ତି ରଘୁବଛି ॥
ସେ ପକ୍ଷୀରାଜ ତ ଶ୍ରୀହରିର ଦାସ ।
ରମ୍ୟେକ ଦୀପରେ ଅଟଇ ତାର ବାସ ॥
ସେ କିଂପା ଆସିବଟି ମୋହୋର ବିଷହରି ।
ଇନ୍ଦ୍ରଦେବତା ଯାକୁ ସମରେ ନୋହେ ସରି ॥

କେ ତାକୁ ଆଣିବ କହିବ କେ ପୁଣି ।
ହନୁମତ କହଇ କୋପେ ଶିରଝୁଣି ॥୯୦
ଦେସି ଆଜ୍ଞା ଦେବ ଆଣିମଇଂ ଯାଇଂ ।
ରମ୍ୟେକ ଦୀପକୁ ବାଟ ଦିଅସି ଦେଖାଇ ॥
କହିଲାରେ ନଇଲେ ଆଣିମି ତାଙ୍କୁ ଧରି ।
ଏହିକ୍ଷଣି ଗରୁଡ଼କୁ ଆଣିମି ଆଜ୍ଞା ପାଇକରି ॥
ଶ୍ରୀରାମ ବୋଇଲେ ସେ ଅଟଇ
କେତେଦୂର ।
ଜମ୍ୱେବ ବୋଇଲେ ସେ ଦୂର ଯେ ଅପାର ॥
ଲବଣ ସମୋଦ୍ର ଷାଠିଏ ସସ୍ରକୁଣ ।
ଶାମଳ ଦୀପର ମହିଂମା ଦେବ ଶୁଣ ॥
ତହିଂକି ଆଠସହସ୍ର ଅଟଇ ପୁଣ ।
ତହିଂରେ ନାରାୟଣ ଅନନ୍ତ ଶୟନ ॥୧୦୦
ରମ୍ୟେକ ଦୀପରେ ଅଛଇ ଗିରିବର ।
ସେ ଗିରିରେ ଦେବ ଗରୁଡ଼ର ଘର ॥
ବାସୁଦେବ ସେବକ ସେ ତାଙ୍କ ପାଶେ
ଥାଇ ।
ହନୁମନ୍ତ ତହିଂକି ଯାଇ ନ ପାରଇ ॥
ଶ୍ରୀରାମ ବୋଇଲେ ଯେ କଥା ଅଟଇ ସତ ।
ଶୟେ କୁଣରେ ଯେ ବଳ ହୋଇଲେ
ନିସତ ॥
ବଂଧ ନ ବାନ୍ଧିଲେ ନ ପାରନ୍ତେ ଆସି ।
ହନୁମନ୍ତ ତେଇଂଲା ମନରେ ଅସାହସୀ ॥
ଯାହା କହିଲ ଯେଥକୁ ନ ପାଇ ଯାଇଂ ।
ହନୁମତ ବୋଇଲା ଯାଇଂ ପାରିବି
ଗୋସାଇଂ ॥୧୦
ତୋହୋର ଆଜ୍ଞା ଦେଲେ ଗରୁଡ଼କୁ
ଆଣିବି ।
ଏ କିସ ଦୃଗମ ବାଟ ଘଡ଼ିକେ ଗମିବି ॥
ସୁଷେଣ ବୋଇଲା ଥିର ହୁଅସିରେ ବାବୁ ।
ଏ ଯୁଦ୍ଧର କଥା ନାଗଇ ତୋତେ ସବୁ ॥
ଶ୍ରୀରାମ ସୁମରଣ କରନ୍ତୁ ହାଦେ ମନେ ।
ନଇଲେ ନିଶ୍ଚୟେ ଯିବୁ ହନୁମାନେ ॥
ବିଭୀଷେଣ ବୋଇଲା ନିଶ୍ଚୟେ ରାମ ହରି ।
ନୋହିଲେ କି ହନୁମତ ଏଡ଼େ ପ୍ରତଜ୍ଞା କରି ॥
ପେଷିଲେଣ ଯାଇ ଆଣିମ ଖଗପତି ।
ଦ୍ରୋହ ଯେ ଚିନ୍ତିଲି ମୋର ଦୁଷ୍ଟମତି ॥୨୦
ଏତେ ବୋଲିଣ ଯୋଡ଼ଇ ବେନିକର ।
ଶୁଣ ଦେବ ଶ୍ରୀରାମ ତୈଲୋକ୍ୟଈଶ୍ୱର ॥
ସୁମର ଗରୁଡ଼କୁ ଆସିବ ଯେହିକ୍ଷଣି ।
ଦଶରଥର ପ୍ରୀତି ସେ ଅଛଇ ମୁଇଂ ଶୁଣି ॥
ଶ୍ରୀରାମ ବିଚାରନ୍ତି ନୁଆସଇନିକି ।
ମୁଂ ହୋ ବିଭୀଷେଣ ବିଚାରଇ ତହିଂକି ॥
ଦେଖାଦେଖି ନାହିଂ ଶୁଣିଲା ନାହିଂ କେହ୍ନେ ।
ନ ପୁଣ ନୁଆସଇ ବିନତା ନନ୍ଦନେ ॥
ଲବଣ ସମୋଦ୍ର ଲକ୍ଷେ କୁଣ ଚାରି ।
ଦୁଇ ଲକ୍ଷ ଯୋଜନ ପ୍ଲକ୍ଷ ଦ୍ୱୀପ ବସନ୍ଧରୀ ॥୩୦
ଦୁଇ ସମୋଦ୍ର ତହୁଂ ଷୋଳ ଲକ୍ଷ କୋଶ ।
ଚଉଷଠୀ ଲକ୍ଷ ଅଟଇ କୁଶ ଦେଶ ॥
ସୁରା ସମୋଦ୍ର ଯେ ଷାଠିଏ ଚାରିଲକ୍ଷ କୁଣ ।
ଘୃତ ସମୋଦ୍ର ତହୁଂ ଅଟଇ ଚାରିଗୁଣ ॥
ତହିଂ ପୁଣ ଶାକଲ୍ୟ ଦ୍ୱୀପ ଅଟଇ ଦୁଗୁଣ
ଚଡ଼ା ।
ଦଧି ସମୁଦ୍ର ଯେ ତହିଂକି ଚାରିଗୁଣ ବଡ଼ା ॥
ଶାମଳ ଦେଶର ମହିମା ଏବେ ଶୁଣ ।
ତହିଂକି ଆଠଗୁଣେ ଅଟଇ ହାଦେ ପୁଣ ॥
ତାହାକୁ କ୍ଷୀରସିନ୍ଧୁ ଷୋଳ ଗୁଣେ ହୋଇଣ ।
ତହିଂ ସେ ନାରାୟଣ ଅନନ୍ତ ଶୟନ ॥୪୦
ସୁଗ୍ରୀବର ବୋଇଲେ ଆସିବ ଯେହିକ୍ଷଣି ।
ମୋହୋର ବୋଲକର ସୁମର ରଘୁମଣି ॥
ଶୋକକରି ବୋଇଲେ ଶ୍ରୀରାମଚନ୍ଦ୍ର ରାୟେ ।
ମନ ପ୍ରକୃତି ଆତ୍ମା ସବୁ ଯେକକରି କାୟେ ॥
ଗରୁଡ଼କୁ ତୁଷ୍ଟି କରନ୍ତି ରଘୁସାଇଂ ।
ମନ କ୍ରୋଧରେ ଗରୁଡ଼କୁ ଜଣାଇଂ ॥
ଜୟତୁ ବଇନେତ୍ର ପକ୍ଷୀଙ୍କର ବର ।
ବିଷ୍ଣୁର ବାହନ ତୁ ବଳରେ ଅଗୋଚର ॥
କଶ୍ୟପର ନନ୍ଦନ ତୁ ଅଟୁ ଖଗେବର ।
ବାରେକ ମୋତେଣ ଉଧରିଣ ଧର ॥୫୦
ମାତାର ଛଳେ ଅମୃତ କୂର କଲୁ ।
ସ୍ୱର୍ଗମଣ୍ଡଳ ପକ୍ଷଘାତରେ ଉଡ଼ାଇଲୁ ॥
ସତ୍ୟଯୁଗରେ ଶ୍ରୀହରି ବାହନ ହୋଇଲୁ ।
ଅଙ୍ଗରେ ବଜ୍ର ବାଜନ୍ତେ କିଛିହିଂ ନୋହିଂଲୁ ॥
ଦେବତାଙ୍କର ତୁଷ୍ଟିରେ ପ୍ରବୋଧ ହୋଇଲୁ ।
ତୋହୋର ପକ୍ଷୀଘାତେ ସ୍ୱର୍ଗହିଂ ନ ରଖିଲୁ ॥
ଦେବଙ୍କର ପ୍ରବୋଧ ଘେନି ହୋଇଲୁ ତୁ
ଶାନ୍ତି ।
ତେବେ ସେ ଥିର ହୋଇଲା ସୁରପତି ॥
ଗଜ କଚ୍ଛପ ସହସ୍ରେ ଯୋଜନ କାୟେ ।
ତାହାନ୍ତ ଘେନିଣ ତୁ ଉଡ଼ିଲୁ ଖଗରାଏ ॥୬୦
ନିଗ୍ରୋଧ ବଟର ଶତେ ଯୋଜନ ଡାଳ ।
ନାହୁଡ଼େ ଧରିଣ ଉଡ଼ିଲୁ ଅନ୍ତରାଳ ॥
ବାଳଖିଲା ଋଷି ସହସ୍ରେ ଚେଲା ଘେନି ।
ତାହାକୁ ଘେନି ଘଡ଼ିକେ ବୁଲିଲୁ ମେଦନୀ ॥
ବସିବାକୁ ଥାନ ଉଡ଼ନ୍ତେ ନ ପାଉ ।
ନାରାୟେଣ ବଢ଼ାଇଦେଲେ ବେନିବାହୁ ॥
ତେଣୁ ସେ ଶ୍ରୀହରିର ହୋଇଲୁ ପୀରତି ।
ତୁ ଅଟୁ ପନଙ୍ଗନାଶନ ପ୍ରଜାପତିର ନାତି ॥
ସର୍ପନ୍ତ ଭକ୍ଷନ୍ତେ ତୋର ନାଗାନ୍ତେକ ନାମ ।
ରମ୍ୟେକ ଦୀପରେ ଅଟଇ ବିଶ୍ରାମ ॥୭୦
ସୁଦୀର୍ଘ ନାସା ସୁପର୍ଣ୍ଣ ତୋତେ ବୋଲି ।
ଏଥିର ନିମନ୍ତେ ତୋତେ ମୁହିଂ ଚିନ୍ତାକଲି ॥
ଦଶରଥର ସୁତ ଶ୍ରୀରାମ ମୋର ନାମ ।
ସୂର୍ଯ୍ୟବଂଶେ ଅବତାର ଅଯୋଧ୍ୟା ମୋର
ଗ୍ରାମ ॥
ପିତାର ବଚନେ ବନବାସ କଲି ।
ଗୋଦାବରୀ କୂଳେ ଘରଣୀ ହରାଇଲି ॥
ଖୋଜି ଜାଣିଲି ଯେ ରାବଣ ଅଛି ଆଣି ।
ମାଗି ଅଇଲାକୁ ନ ଦେଲା ବିଂଶପାଣି ॥
ଇନ୍ଦ୍ରଜିତ ନାମେ ରାବଣ କୁମାର ।
ମାୟା ଯୁଦ୍ଧ କରି ମୋତେ ପେଷିଲା
ଅହିଶର ॥୮୦
ସାନୁଜ ସହିତେଣ ପଡ଼ିଲୁ ବନ୍ଧନ ।
ରକ୍ଷାକର ମୋତେ ହେ ବିନତାନନ୍ଦନ ॥
ବିଷକୁ ହରି ବିଷହେରି ଅଟେ ତୋର
ନାମ ।
ଏହାଙ୍କର ଉପରେ ଅଟୁସି ରାଜନ ॥
ଏ କାଳ ଗରଳୁ ମୋତେ କର ପାର ।
ଉଧରି ଧର ମୋତେ ପକ୍ଷୀଙ୍କର ବର ॥

ଆରତଭଂଜନ ସ୍ୱାମୀଙ୍କର ବାହାନ ।
ଏ ମୋର ଆରତ ଫେଡ଼ହୋ ବିନତାନନ୍ଦନ ॥
ବିଷମଘାତ ବନ୍ଧନ ନୁଆରଇଂ ସହି ।
ଆକୁଳେ ଚିନ୍ତା ଯେ ପାଇଲା ମୋର ଦେହୀ ॥୯୦
ପାରିଲେ ହୋ ରକ୍ଷାକର ହାଦେ ମୋତେ ।
ପୁଣ ପୁଣ ବନ୍ଦନା କରୁଅଛି ତୋତେ ॥
ସର୍ପବିଘାତରୁ ଉଧରି ଧର ମୋତେ ।
ଦୁଃସହ କାଳ ଫାଶୀ ଦୂର ହୋଅଇ ଯେମନ୍ତେ ॥
ଏସନେକ ବୋଲି ରାମ କଲେ ଯହୁଂ ତୁଷ୍ଟି ।
ରତ୍ନେକ ଦୀପରେ ଥାଇଂ ଜାଣିଲେ ଖଗପତି ॥
ବୋଇଲା ଲକ୍ଷ୍ମୀନାଥ ବିଷ୍ଣୁ ଅବତାର ।
ରାବଣ ସଂଗରେ ସମର ମହାଘୋର ॥
ନାଗଫାଶ ବନ୍ଧନରେ ବାନ୍ଧିଲା ଇନ୍ଦ୍ରଜିତ ।
ତେଣୁକରି ସୁମରଣା କଲେକ ରଘୁନାଥ ॥୧୦୦
ଅନେକ ଜନ୍ମର ପାପ ହୋଇବ ମୋର ନାଶ ।
ଏ ଜନ୍ମେ ସ୍ୱାମୀର ନୋହିଥିଲି ଦାସ ॥
ଏବେ ଦେଖିବି ମୁଂ ନାରାୟେଣର ମୂତି ।
ପୂର୍ବରେ ଯେଉଂ କଥା କହୁଥାଇ ବାଚସ୍ପତୀ ॥
ଏତେକ ପାଞ୍ଚି ତହୁଂ ଆସଇ ଖର କରି ।
ପକ୍ଷୀର ଗମନେ ଥରଇ ବସୁନ୍ଧରୀ ॥
ସମୁଦ୍ର ପାଣି ଆକାଶକୁ ଗଲାକ ଉଡ଼ି ।
ପର୍ବତେ ଉଡ଼ିଲେ ନିଜ ସ୍ଥାନ ଛାଡ଼ି ॥
ସଚରାଚର ମହୀ ହୋଇଲା ଥମ୍ଭୀଭୂତ ।
ସ୍ୱର୍ଗରେ ଦେବତାୟେ ହୋଇଲେ କୃତକୃତ ॥୧୦
ମହାର୍ଣ୍ଣବ କାଳେ ଯେହ୍ନେ ଷୋଳ ଚନ୍ଦ୍ରମା ଉଅଇଂ ।
ଶ୍ରୀରାମ ପଚାରନ୍ତି ବିଭୀଷେଣକଇ ଚାହିଂ ॥
ପୁଣିକି ଇନ୍ଦ୍ରଜିତ ଆସୁଅଛି ବାହି ।
ମୋତେ ତ ଭୋ ମୈତ୍ର ଯେମନ୍ତ ଲାଗଇ ॥
ଏ ଘାନ୍ତି ନିଶ୍ଚୟେ କରିବ ପ୍ରାଣନାଶ ।
ବାବୁ ବିଧାତା ତୁ କଲୁ ତ ଅକଶ ॥
ରିକ୍ଷ କପି ଲୁଚାୟେ ମରାଇଲୁ ଅନମିତେ ।
ବିଭୀଷେଣ ମହାତ୍ମା ପଳାଇବ କେବଣ ପଥେ ॥
ମୋତେ କାଳ ଯେବେ ଆଣିଲା କଢ଼ାଇ ।
ଭାଇ ଚାଣ୍ଡାଳ କିମ୍ବା ଅଇଲା ଗୋଡ଼ାଇ ॥୨୦
ହୋଇଲି ନିରେଖ କରିବି କିସ ବୁଦ୍ଧି ।
କିମ୍ବା ପାରି ହୋଇ ଅଇଲି ପୟୋଧି ॥
ଯେସନେକ ଭାଳୁ ବିନତା ତନୟେ ।
ଜଳ ଥଳ ଅନଳ ପର୍ବତ ଜିଣିଆୟେ ॥
ସ୍ୱର୍ଗେଣ ପଶିଣ ଆଣିଲା ଅମୃତ ।
ଦେବତାୟେ ତୁଷ୍ଟି କଲେ ଅନେକମତ ॥
ଯାସି ବଇନେତ୍ର ସ୍ୱାମୀକି ତୋର ଦେଖ ।
ନପୁଣି ଗତକଥା କହୁ ଖଗ ନୃପ ॥
ଶୁଣିଣ ଖଗପତି ଖସଇ ଧୀର ଧୀର ।
ସାମାନ୍ୟ କଲା ନେଇ ଆପଣା କଳେବର ॥୩୦
ସୂର୍ଯ୍ୟ ଦେବତା କି ନିଶାକାଳରେ ଆସଇ ।
ଲଙ୍କା ଭୂମି ଆଲୁଅମୟେଣ ଦିଶଇ ॥
ପକ୍ଷୀର ଗମନ ଜାଣିଲେ ନାଗଫାଶ ।
ମନେ ବିଚାରିଲେ ଆମ୍ଭେ ଗଲୁ ନାଶ ॥
ଏସେ ନାରାୟେଣ ମାନେବ ତନୁ ଧରି ।
ଚାଣ୍ଡାଳ ଦଇତ ପେଷିଲା ମୋତେ ମାରି ॥
ଏହିକ୍ଷଣି ପ୍ରାଣ ଯେ ଘେନିମ ମୋହୋର ।
କୋପେ ଆସୁଅଛି ବିନତା କୁମର ॥
ଯେତେ ବୋଲିଣ ଯେ ପଳାଇଣ ଗଲା ।
ଶ୍ରୀରାମ ଲକ୍ଷଣଙ୍କର ବଂଧନ ଫିଟିଲା ॥୪୦
ଦୁହେଂ ଯେ ସର୍ପ ହୋଇଲେ ଯେକ କାୟେ ।
ପବନହୁଂ ବେଗେ ପଳାଇଣ ଯାୟେ ॥
ବାଟ ନ ପାଇଲେ ପଳାଇ ମନ କଲେ ।
ପାତାଳ ନାଗଙ୍କ ସଂଗତେ ମିଳିଲେ ॥
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟ ରସ ।
ଯହୁଂ ପଳାଇଂଣ ଗଲାକ ନାଗଫାଶ ॥
ଶ୍ରୀରାମ ଲକ୍ଷଣ ଉଶ୍ୱାସ ପାଇଲେ ।
ଗରୁଡ଼ ଆସୁଅଛି ବୋଲିଣ ବୋଇଲେ ॥
ଏସନେକ ସମୟେ ଖଗବର ରାୟେ ।
ଦୂରହୁଂ ଦେଖିଣ ରାମଙ୍କୁ ତୁଷ୍ଟି କୟେ ॥୫୦
ମନେ ମନେ କୋଟି ନମସ୍କାର କଲା ।
ଅମୃତ ଘେନି ଯାଇଂ ଛାମୁରେ ମିଳିଲା ॥
ଶ୍ରୀରାମ ଶ୍ୱରୀରେ ସିଞ୍ଚିଲାକ ନେଇ ।
ପୁଣି ଆଣି ଲକ୍ଷଣ ଉପରେ ନିଉଡ଼ଇ ॥
ସୁଗ୍ରୀବର ବିଭୀଷେଣ ସେନାପତି ମାନ ।
ଆବର ଅଛନ୍ତି ଯେତେକ ରିକ୍ଷକପି ସୈନ୍ୟ ॥
ନିରୋପିଣ ସିଞ୍ଚିଲେ ସବୁଙ୍କରି ଦେହଶୁଦ୍ଧ ।
ତରୁଶିଷଗଣେ ଛାଡ଼ିଲେ ମୋହ ବାଧ ॥
ଗତୁଂ ଶତେଗୁଣେ ହୋଇଲାକ ବଳ ।
ସୁଗ୍ରୀ ବିଭୀଷେଣ ଅଙ୍ଗଦ ନଳନୀଳ ॥୬୦
ହନୁମନ୍ତ କେଶରୀ ଗବୟେ ଗବାକ୍ଷ ।
ମହୀନ୍ଦ୍ର ମରୁତ କାମୋଦ ତାରାକ୍ଷ ॥
ଶଉରୀ ସେନାପତି ଆବର ସୁସୋଦନ ।
ସମ୍ପାତି ବଳିମୁଖ ଗନ୍ଧମାରଦନ ॥
କୁନ୍ଦ ବସନ୍ତ ପବନ ପାରିଜାତ ।
ଶରସେତୁ ସାରାସ ପାରାସ ରୋମାର ସୁତ ॥
ତାରାର ପିଅର ଆବର ଶତବଳ ।
ରମଣ କଞ୍ଚଣ ଆବର ପନଶିଳ ॥
ଦେବତା ସମାନେ ଦିଶନ୍ତି ତେଜମୟେ ।
ରାମ ଲକ୍ଷଣ ଦିଶନ୍ତି ହରିହର ପ୍ରାୟେ ॥୭୦
ଉଠି ଦୁଇଭାଇ ହୋଇଛନ୍ତି ଉଭା ।
ଆଗେ ବିରାଜଇ ଗରୁଡ଼ର ପ୍ରଭା ॥
ଶ୍ରୀରାମ ପଚାରନ୍ତି ହସ ହସ ହୋଇ ।
ତୁମ୍ଭର ମୋହୋର ପୂର୍ବେ ଦେଖାଦେଖି ନାହିଂ ॥
କାହୁଂ ଅଇଲ ଯେ କିସ ତୁମ୍ଭର ନାମ ।
କେବଣ ଦେଶରେ ତୁମ୍ଭେ କରିଛ ବିଶ୍ରାମ ॥
ନିରେଖ ଦେଖିଣ ହୋଇଲେ ମୋତେ ସାହା ।
ମୁଇଂ ଉପଗାର କରିବଇଂ କାହା ॥
ଧର୍ମର ପିଅର ଅଟ ମୋର ତୁମ୍ଭେ ।
ମନିଷ୍ୟ ଶରୀର ଚିହ୍ନି ନୁଆରିଲୁ ଆମ୍ଭେ ॥୮୦
କହ ତୁ ଯେକଥା ପ୍ରତେ ଯେଣେ ଆସଇ ।

ଶ୍ରୀରାମ ବଚନେ ଗରୁଡ଼ ପ୍ରକାଶଇ ॥
ମୁହିଂ ଯେ ଅଟଇ ନଜାଣିଲ କି ତୁମ୍ଭେ ।
ଯୁଦ୍ଧ ସାରିଲେ ତା କହୁଂ ସିନା ଆମ୍ଭେ ॥
ଯେବେ ଯେ ଅଇଲୁ ଯେବଣ ବିଧାନେ ।
ଯେହି ରାତ୍ରେଣ ମୁଂ ଦେଖିଲି ସପନେ ॥
ଶଙ୍ଖ ଚକ୍ରଧାରୀ ଦେବ ନାରାୟେଣ ।
ଯାଇଂଣ ବସିଲେ ମୋହୋର ସୀମସ୍ଥାନ ॥
ବୋଇଲେ ଲଙ୍କାକଇ ଯେହିକ୍ଷଣି ଯିବୁ ।
ଦଶରଥ ନନ୍ଦନଙ୍କୁ ଦେଖିଣ ଆସିବୁ ॥୯୦
ତେଣୁ ସପନ ମୁଂ ଚେଇଁଣ ଉଠିଲି ।
ଯୋଗେ ଆସି ତୁମ୍ଭଙ୍କୁ ଯେଠାରେ ଦେଖିଲି ॥
ମାର ଅସୁରଙ୍କୁ ଅଟନ୍ତି ବଡ଼ ଦୁଷ୍ଟ ।
ତେବେ ସେ ସରଇ ଦେବଙ୍କର କଷ୍ଟ ॥
ଆବର କଥାଏ ମୁଂ ଯାଉଅଛି କହି ।
ଏ ଜନ୍ମରେ ତୁମ୍ଭର ମୋହୋର ଦେଖା ନାହିଂ ॥
ଏଯୁଗ ଅନ୍ତରେ ଦ୍ୱାପର ଯୁଗର ଶେଷେ ।
ତୁମ୍ଭେ ଜନ୍ମ ହୋଇବ ମଧୁବନ ଦେଶେ ॥
ତୁମ୍ଭେ ଶ୍ରୀକୃଷ୍ଣ ରୂପେ ଗୋପରେ ବଢ଼ିବ ।
ଏହି ଲକ୍ଷଣ ଯେ ଜ୍ୟେଷ୍ଠ ଭ୍ରାଥ ହୋଇଥିବ ॥୧୦୦
କଂସର ଭୟେ ବଢ଼ିବ ଗୋପପୁରେ ।
କ୍ରୀଡ଼ା କରିବ ଯାଇଂ କାଳିନ୍ଦୀ ହ୍ରଦରେ ॥
ପଦ୍ମବନ ଭିତରେ କାଳୀ ଅହିଥିବ ।
ସେ ତୋତେ ଭୋ ରାମ କୋପେଣ ଡଂଶିବ ॥
ସେ ବେଳେ ସୁମରଣା କରିବ ରାମ ମୋତେ ।
ଏହି ଲକ୍ଷଣ ହୋଇଥିବ ଜ୍ୟେଷ୍ଠ ଭ୍ରାଥେ ॥
ତୁମ୍ଭେ ଯେ ନ ଜାଣିମ ବିଷରେ ଅଚେତନ ।
ଲକ୍ଷଣ କହନ୍ତେ ସୁମରିବ ମନେ ମନେ ॥
ମୁହିଂ ଯାଇଂ ତୁମ୍ଭର ଖଣ୍ଡିବି କାଳକୂଟ ।
ସେ ଜନ୍ମରେ ତୁମ୍ଭର ମୋହୋର ହେବ ଭେଟ ॥୧୦
ଏବେ ରାବଣକୁ କର ପ୍ରାଣନାଶ ।
ଜାନେକୀ ଘେନିଯାଅ ଅଯୋଧ୍ୟା ନାମେ ଦେଶ ॥
ଯେ ମୋହୋର ବଚନ ଅସ୍ତୁ ତୋତେ ହୋଉ ।
ଏତେବୋଲି ବାହୁଡ଼ିଗଲେ ଖଗରାଉ ॥
ହନୁମତ ବୋଇଲା ଶୁଣିମା ରଘୁପତି ।
ଯୁଦ୍ଧ ସରିବା ଯାଏ ଥାଅ ଦେବ ଯେଥି ॥
ପୁଣ କାର୍ଯ୍ୟ ପଡ଼ିଲେ ନିଆସଇନିକି ।
ମୋହୋର ଭାଳେଣି ଦେବ ଅଟଇ ତହିଁକି ॥
ବୋଇଲେ ନ ରହିଲେ ବଳେ ଗୁହାଇବା ।
ମୋହୋ ଗୋଚରେ ଥାଉ ଆଜ୍ଞା ମୋତେ ଦେବା ॥୨୦
ଶ୍ରୀରାମ ବୋଇଲେ ହୋ ନ ବୋଲ ଯେ ବାଣୀ ।
କୋପ କରିବଟି ଖଗରାଜା ଶୁଣି ॥
ଦେବତାଙ୍କ ମଧେ ସେହୁ ଅଟେ ଯେକ ।
ସେହୁ ସେ ଗରୁଡ଼ ବିଷ୍ଣୁର ସେବକ ॥
ଆପଦ କାଳେ ଆସି ଜୀଆଇଲା ମୋତେ ।
ମୁଂ ତାହାକୁ ଦ୍ରୋହ ଚିନ୍ତିବି କେମନ୍ତେ ॥
ଯେବେ ଯେ ଅଇଲା କେ ତାହାକୁ କହିଲା ।
ଏହାହିଂ ଏଣିକିତ ପରତେ ହୋଇଲା ॥
ନବୋଲ ନବୋଲ ହନୁ ଯେସନେକ ସିଦ୍ଧାନ୍ତ ।
ଦଶରଥର ମୈତ୍ର ଅଟଇ ମୋର ତାତ ॥୩୦
ଶ୍ରୀରାମ ବଚନେ ହନୁମନ୍ତ ତୁନି ।
ବିଭୀଷେଣ ମନେ ବିଚାରଇ ଆତ୍ମଜ୍ଞାନୀ ॥
ନିଷ୍ଟୟେ ରଘୁନାଥ ଅଟନ୍ତି ନାରାୟେଣ ।
ଅସୁର ନାଶିତେ ଧଇଲେ ଧନୁତ୍ରୋଣ ॥
ଭ୍ରାନ୍ତି ଫିଟିଲା ମୋର ହୋଇଲି ତ୍ରିଜୀବୀ ।
ପୁଣି ସୁବନ୍ୟମୟେ ପୁର ଭୋଗ୍ୟ କରିବି ॥
ଏତେ ବୋଲି ଶ୍ରୀରାମ ଚରଣେ କଲାକ ପ୍ରତିକ୍ଷଣ ।
ଅଙ୍ଗଦ ହନୁମନ୍ତ ସୁଗ୍ରୀବର ସୁଷେଣ ॥
ଜମ୍ୱେବ ଶତବାଳି କାଳିୟଂନ ବୀର ।
ରମଣ ଡାଳିମ୍ବ ଆବର ହନୁର ପିଅର ॥୪୦
କାଳିମୁଖ ଗବୟେ ଗବାକ୍ଷ ସାରାସ ।
ବଳିମୁଖ ଦଧିମୁଖ ଆବର ସୁନାସ ॥
ମହାନ୍ଦ୍ର ଦ୍ୱିବିନ୍ଦ କଞ୍ଚଣ ଚନ୍ଦନ ।
ସାରାସ ପାରାସ ବସନ୍ତ ପବନ ॥
ତାରାର ପିଅର ସୁଗ୍ରୀବର ଶଶୁର ।
ସମ୍ପାତି ଚନ୍ଦନ ଲକ୍ଷଣ କୁମାର ॥
ସେନା ସେନାପତି ଯହୁଂ ପଡ଼ିଲେ ପାଦତଳ ।
ସଇନି ସହିତେ ଓଳଗିଲେ ସକଳ ॥
ଶ୍ରୀରାମ ମୁଖ ଚାହିଂ ପ୍ରଶଂସା କରନ୍ତି ।
ଯେବେ ସେ ଦେବ ଆମ୍ଭର ଫିଟିଲା ମନଭ୍ରାନ୍ତି ॥୫୦
ସ୍ୱୟେଂ ନାରାୟେଣ ତୁ ବିଷ୍ଣୁ ବ୍ରହ୍ମରାଶି ।
ନୋହିଲେ ଗରୁଡ଼ ସୁମରିଲେ କି ଆସି ॥
ରାବଣ ମୂଢ଼ ଛାର କେତେକ ମାତର ।
ତୁ ସେ ନାରାୟେଣ ଜଗତ ଠାକୁର ॥
ଦେସି ଆଜ୍ଞା ଦେବ ଭାଙ୍ଗିବୁ ଲଙ୍କପୁରୀ ।
ଅସୁରଙ୍କ ସମ୍ପଦ କରିବୁ ହୁରିକୁରି ॥
ଇନ୍ଦ୍ରଜିତ ରାବଣ ମାରିବୁ ବିକୋଟି ।
ଏତେ ବୋଲି ରଡ଼ି ଛାଡ଼ି ଶୀଘ୍ର ଗତି ॥
ତରୁଶିଳ ଧରି ସଂଗ୍ରାମକୁ ଆଗୁସାର ।
ଉଚ୍ଛେଣ ଡାକନ୍ତି ଧର ଧର ମାର ମାର ॥୬୦
ଲଙ୍କାର ଲୋକେ ଶୁଣି ହୋଇଲେ ବିସ୍ମୟେ ।
ନିଦ ଭାଙ୍ଗି ଉଠିଲା ଦଶାନନ ରାୟେ ॥
ରାତ୍ର ଅର୍ଦ୍ଧରୁ ହୋଇଲା ଅବକାଶ ।
ଇନ୍ଦ୍ରଜିତ କୁମରକୁ ହକାରିଲା ପାଶ ॥
ପାତ୍ର ମନ୍ତ୍ରୀ ଅମାତ୍ୟ ଅଇଲେ ସର୍ବଜନଇ ।
ରାବଣ ପଚାରଇ ପୁତ୍ରର ମୁଖ ଚାହିଂ ॥
କେହ୍ନେ ଯେ ରାମ ଲକ୍ଷଣ ବେନି ମଲେ ।
ରିକ୍ଷ କପିମାନେ ସବିହେଂ କ୍ଷୟେ ଗଲେ ॥
ଯେବେ କିସ ରୋଳ ଶୁଭଇ ଶଙ୍ଖ ଧ୍ୱନି ।
ଇନ୍ଦ୍ରଜିତ ବୋଇଲା ପଚାର ତୋହୋର ସଇନି ॥୭୦
ଯେତେ ରିକ୍ଷକପି ମାଇଲି ନିରୋଧି ।
ରାମ ଲକ୍ଷଣକୁ ଅଇଲି ନାଗଫାଶେ ବାନ୍ଧି ॥
କେବଣ ପ୍ରକାରେ ପାଇଲେ ଯେବେ ପ୍ରାଣ ।
ଯେକଥା ତୁମ୍ଭେ ଯେବେ ତଇଥ କରି ଜାଣ ॥

ମରିବାର ବେଳେ ଛାଡ଼ନ୍ତି ସେ ରଡ଼ି ।
ନିତାନ୍ତ ଜାଣି କେହୁ କହିଲାଟି ବଢ଼ି ॥
ଚାର ଜଣାଇଲା ଯେକଥା ଅଟଇ ସତ ।
ଯେହିକ୍ଷଣି ଦେଖି ଅଇଲି ଆଗତ ॥
ରାମ ଲକ୍ଷଣଙ୍କର ନାଗଫାଶ ନାହିଁ ।
ଯୁଦ୍ଧ କରିବେ ବୋଲି ଆସୁଛନ୍ତି ଧାଇଁ ॥୮୦
ଚାର ତହୁଁ ଶୁଣି ବୋଇଲା ଦଶଶିର ।
ରାମ ଲକ୍ଷଣ ନୋହନ୍ତି ମନିଷ ଶ୍ୱରୀର ॥
କେ ମୋହୋର ଶତ୍ରୁ ପାରିବାକ ସାଧି ।
କାହିଁକି ଯିବି ମୁଂ କରିବି କିସ ବୁଦ୍ଧି ॥
ଭାଇ କୁମ୍ଭକର୍ଣ୍ଣ ନିଦ୍ରାରେ ଅଛି ଶୋଇ ।
ସେହି ସେ ପାରିବ ଭାର୍ଜନ କେହି ନାହିଁ ॥
ଏ ବଚନ ଶୁଣି ଧୂମାକ୍ଷ ଆଗ ବଢ଼ି କହି ।
କେତେ ତୋର ଯୋଦ୍ଧା ନାହିଁ ଲଙ୍କସାଇଁ ॥
କିମ୍ପା କୁମ୍ଭକର୍ଣ୍ଣର ଭାଙ୍ଗିବୁ ତୁ ନିଦ ।
ଯେହିକ୍ଷଣି ତୋହୋର ଫେଡ଼ିବି ବିଷାଦ ॥୯୦
ଦେସି ସଇନି ମୁଂ ଯିବଇଂ ତଡ଼ତି ।
ମାରିବି ରାମ ଲକ୍ଷଣ ବେନି ଯତି ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମତ ।
ରିକ୍ଷ କପିବଳ ମାରିବି ଧୂମାନ୍ତ ॥
ତୁଦେବ ଚିନ୍ତା ନକର ଲଙ୍କସାଇଂ ।
କର ଶୟନ ତୁ ଅବକାଶରେ ଯାଇଂ ॥
ରାବଣ ବୋଇଲା ତୁ ସାଂଗ୍ରାମରେ ଗରିଷ୍ଠ ।
ସ୍ୱର୍ଗରେ ପ୍ରଶଂସା ତୋତେ କରନ୍ତି ସୁରଶ୍ରେଷ୍ଠ ॥
ତୁ ମୋହୋର ବଂଧୁ ବିଶେଷେଣ ନାତି ।
ଫେଡ଼ି ପାରିବୁଟି କି ବାବୁ ଯେଡ଼େକ ଦୃଗତି ॥୧୦୦
ଅଙ୍କପନ କ୍ରୋଧନ ସୁରସେନହିଂ ସାଙ୍ଗରେ ଯାନ୍ତୁ ।
ବକ୍ରଧୃଷ୍ଟ ପ୍ରଶସ୍ତହିଂ ସଂଗରେ ଥାଆନ୍ତୁ ॥
ଚାରଣ ବିଚାରଣ ଆବର ଆବର ମୋହୋଦର ।
ପିଚାଶ ନିକୁମ୍ଭ ତ୍ରିଶିରା ପ୍ରବୀର ॥

ନରାନ୍ତେକ ଦେବାନ୍ତେକ ଯେମାନେହେଂ ଯାନ୍ତୁ ।
ଯେମନ୍ତେ ପାର ବାବୁ ମାର ବନଜନ୍ତୁ ॥
ଶୁଣି ସଜ ହୋଇଲେ ଅସୁର ବୀରେ ।
ମାର ମାର ଶବଦ ଶୁଭଇ ଉଞ୍ଚସ୍ୱରେ ॥
ଗଜ ଅଶ୍ୱ ପାଦାନ୍ତି କେହୁ ଅନ୍ତ କରି ।
ବାଦ୍ୟ ବାଜିବାରେ କମ୍ପଇ ବସନ୍ଧରୀ ॥୧୦
ଲକ୍ଷ ଲକ୍ଷ ହୋଇ ହୁଳା ଜଳଇ ଚଉକତି ।
ଉଦଣ୍ଡ ଆଲମ୍ବ ବିଳମ୍ବ ପନ୍ତି ପନ୍ତି ॥
ଧୂମାକ୍ଷ ସେନାପତି ରହୁବରେ ବସି ।
ତହିଂ ସେ ଯୋଚିଲା ଅଛି ସହସ୍ରେ ମଇଂଷି ॥
କ୍ରୋଧନର ରଥେ ଯେ ଦଶ ଶହସ୍ର ବାଘ ।
ପ୍ରବୀର-ବାହୁ ଚଢ଼ିଲା ମତ୍ତଗଜ ॥
ଅଙ୍କପନ ବିବାନ ବହନ୍ତି ଗୃଧପକ୍ଷୀ ।
ବକ୍ର ଧନୁଷ୍ଟ ରଥେ ଶ୍ରୀକାଳ ଲକ୍ଷେ ଯୋଚି ॥
ପ୍ରଶସ୍ତ ସେନାପତିର ଲୌହମୟେ ରଥ ।
ସହସ୍ରେ ଘୋଡ଼ା ତହିଂ ବହି ସାମରଥ ॥୨୦
ମକରାକ୍ଷସ ବୀର ରହୁବରେ ବସି ।
ଯମ ଦେବତା ପ୍ରାୟେ ରୂପ ତାର ଦିଶି ॥
ବିବାନ ବହନ୍ତି କାକପକ୍ଷୀମାନ ।
ଆଗଭରେ ରଥ ଚଳଇ ଘନ ଘନ ॥
ଦେବାନ୍ତେକ ଯାନ ସହସ୍ରେକ ଅସୁର ।
ସୂର୍ଯ୍ୟମଣ୍ଡେଳ ଜାଣି ଦିଶଇ ରହୁବର ॥
ପଚ୍ଛିମ ଦ୍ୱାରବାଟେ ବାହାର ହୋଇଯାନ୍ତି ।
ପିଠି ଉପରେ ପଡ଼ି ମାରିବା ବୋଲନ୍ତି ॥
ଦ୍ୱାରପାଳ ଫେଡ଼ି ଦେଲାକ କବାଟ ।
ରାତ୍ର ପହଡ଼େ ଥାଉଂ ବାହାର ସର୍ବଥାଟ ॥୩୦
ଜଗତ ପୂରିଲା ଦିହୁଡ଼ି ହୁଳାମୟେ ।
ରଣଭୂମିରେ ଥାଇଂ ଚାହାଂନ୍ତି ରାମ ରାୟେ ॥
ଅହିଶର ଫିଟି ସୁବଳୟାକୁ ଯାଉଂଥିଲେ ।
ଥାଠ ଦେଖି ପୁଣି ବାହୁଡ଼ି ଅଇଲେ ॥
ତୁହାଇଣ ଯୁଦ୍ଧ ବାଜିଲା ଦୁଇ ବଳ ।
କୋନ୍ତ ଭାଲ ଖଡ଼ଗ ଶକତି ତରୁ ଶିଳ ॥
ଆତଯାତ ହୋନ୍ତି ତୀକ୍ଷଣରମାନ ।
କିଜାଣି ଶୁଭଇ ପକ୍ଷୀର ଗରଜନ ॥
ହାଣ ହାଣ ମାର ମାର ଡାକନ୍ତି ରୋଷଭରେ ।

ଯେକୁ ଆରେକ ଡାକନ୍ତି ଆଗଭରେ ॥୪୦
ଟମକ କୋଳାହଳ ବାଜଇ ଚଉକତି ।
ଶ୍ରୀରାମର ଥାଠେ ଜଳଇ ସଜଳସ ବତୀ ॥
କେ ବାମ ହାଥେ ହୁଳା ଡାହାଣେ କରବାଳ ।
ହାଥେ କେ ଦିହୁଡ଼ି ଆରହାଥେ ଶିଳ ॥
ଦିହୁଡ଼ିରେ ଦିହୁଡ଼ି କେ ପିଟାପିଟି ହୋନ୍ତି ।
କେ ସଜଳସ ନିଆଂ ଆଗକୁ ଫିଙ୍ଗିଦ୍ୟନ୍ତି ॥
କେ ବୃକ୍ଷେ ପିଟନ୍ତି କେ ନ ଚିହ୍ନନ୍ତି ଲୋକ ।
କେ ବୋଲନ୍ତି ମାର ମାର ଡାକନ୍ତି ବୀର ଡାକ ॥
ରିକ୍ଷ କପି ଅସୁର ମିଶାମିଶି ହୋଇଲେ ।
ଯେକକୁ ଆରେକ ସମ୍ଭାଳି ନୁଆରିଲେ ॥୫୦
ଶ୍ରୀରାମ ଲକ୍ଷଣ ବେନି ହୋଇଲେକ ବଣା ।
ବେଢ଼ରେ ପଡ଼ିଲା ସୁଗ୍ରୀବର ରଣା ॥
ବିଭୀଷେଣ ସୁବଳୟା ଗିରିକି ପଳାଇଲା ।
ହନୁମତ ଲଙ୍କା ପାଚେରୀକି ଆଶ୍ରେ କଲା ॥
ଅଙ୍ଗଦ ଲକ୍ଷଣ ହୋଇଲେ ଭେଟାଭେଟି ।
ସଉମିତ୍ରୀ ବସିଲା ବାଳୀସୁତ ପିଠି ॥
ନିରନ୍ତରେ ନାରାଜ ବିନ୍ଧଇ କୋପ କରି ।
ନିଶ୍ୱାସକେ ସହସ୍ରେ ନାରାଜ ପୁଣି ମାରି ॥
ଜମ୍ପେବ ଜାଣିଣ ମିଳିଲା ତାର ପାଶ ।
ଶ୍ରୀରାମ ନାହିଂ ବୋଲି ଲକ୍ଷଣ ବିରସ ॥୬୦
ଗନ୍ଧ ମାର୍ଦନ ସୁଗ୍ରୀକି ଭେଟପାୟେ ।
ତେତେବେଳେ ସେ ଥିର ହୋଇଲା କପି ରାୟେ ॥
ନଳ ନୀଳ ଶଉରୀ ଭେଟିଲେ ବିଭୀଷେଣ ।
ଚାରିହେଂ ଧାଇଂଣ କରନ୍ତି ମହାରଣ ॥
ସୁଷେଣ ରମଣ ତାରାକ୍ଷ ଯେ ତିନି ।
ଚାରିଜଣ ହୋଇଲେ ଶଉରୀକି ଘେନି ॥
ସଂଗ୍ରାମରେ ପଶି କରନ୍ତି ରଣଗୋଳ ।
ସୁସୋଦନ ଡାଳିମ୍ବ ଆବର ଶତବଳ ॥
ହାଥୀଦଣ୍ଡ ଭିତରେ ସେହୁ ପଶିଗଲେ ।
ରାଗେ ମତ୍ତଗଜ ବହୁତ ମାଇଲେ ॥ ୭୦
ପବନ ବସନ୍ତ ସାରାସ ପାରାସ ।
ଏ ପଶି ମାଇଲେ ଅନେକ ରାକ୍ଷସ ॥

ହନୁମନ୍ତ ପଚାରଇ ହୋଇଲା ରଣଗୋଳ ।
କାହିଁ ଅଛନ୍ତି ରାମ ସୁମିତ୍ରାର ବାଳ ॥
ସୁଗ୍ରୀ ବିଭୀଷେଣ ବାଳୀସୁତକଇ ।
ବିଚାରିଣ ସଇନି ମାରଇ ରୋଷ ବହି ॥
ରଥର ଉପରେ ନେଇ କଚାଡ଼ଇ ରଥ ।
ହସ୍ତୀଙ୍କର ଉପରେ ନେଇ କଉଡ଼ଇ ମୟେମତ ॥
ଘୋଡ଼ାକୁ ଧରିଣ କଚାଡ଼ଇ ପୁଣ ପୁଣି ।
ଆପଣା ସଇନିକି ପକାବଇ ହାଣି ॥୮୦
ଶ୍ରୀରାମ ଯେ ଲଙ୍କାର ଉତ୍ତର ଦ୍ୱାରେ ଥିଲେ ।
ଅସୁର ସଇନି ବହୁତ ନିବାରିଲେ ॥
ପଚାଶ ଲକ୍ଷ ଯେ ପଡ଼ିଲେ ମତ୍ତ ହସ୍ତୀ ।
କୋଟିଯୁଦ୍ଧାକାର ମାଇଲେ ଦାଶରଥି ॥
ତିନିକୋଟି ପାଦାନ୍ତି ଚଉଦ ସହସ୍ର ରଥ ସହିତେ ।
ଦୁଇବୃନ୍ଦ ଅଶ୍ୱ ପାଞ୍ଚ ଅହିବ୍ରତେ ॥
ଯେଗାର ବାଣେ ରାମା ଯେତେକ ବଳ ନାଶି ।
ନିଶ୍ୱାସକେ ବାଣ ତିନିବେଳ ପେଷି ॥
ଯେମନ୍ତେ ଦୁଇଘଡ଼ି ପରିଯନ୍ତେ ଯୁଝିଲେ ରଘୁସାଇଁ ।୯୦
ରକତ ନଦୀ ବହିଲା ରଣଭୂଇଁ ॥
କୋପଭରେ ହନୁମନ୍ତ ଧାଇଁଲାକ ରାଗେ ।
ମଡ଼ା କୁଢ଼ କୁଢ଼ ଦେଖିଲାକ ଆଗେ ॥
ବିଚାରିଲା ଶ୍ରୀରାମ ଲକ୍ଷଣ ଏଣେ ଛନ୍ତି ।
ବୃକ୍ଷଶିଳଛେଚା ଅଙ୍ଗ ଯେମାନେ ନୁହନ୍ତି ॥
ରିକ୍ଷ କପିମାନଙ୍କର ନୋହଇ ଯେମନ୍ତ ।
ଯେଣେ ସେ ଅଛନ୍ତି ରଘୁକୁଳସୁତ ॥
ଯେତେକ ବୋଲିଣ ଖଣ୍ଡିଏ ଦୂର ଗଲା ।
ଅକମ୍ପନ ଶ୍ରୀରାମର ଯୁଦ୍ଧ ସେ ଦେଖିଲା ॥
ରାତ୍ର ପାହିଲା ଉଦଏ ଅରୁଣ ।
ମାରୁତି ଚିହ୍ନିଲାନି ସ୍ୱୟଂ ଅଟନ୍ତି ରଘୁନାନ ॥୧୦୦
ଯେତେକ ବୋଲିଣ ଧାଇଁଲା ପଥରେକ ଘେନି ।
ଅକମ୍ପନର ରଥରେ ନେଇ ପିଟିଲା ପାବେନି ॥

ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଲା ରହୁବର ।
ଦେଖି ଅକମ୍ପନ ବିଧାଏ ପ୍ରହାରିଲା ହନୁର ଉପର ॥
ତା ଜାଣି ପାବେନି ମୁଣ୍ଡପାଟି ସହିଲାକ ତାହା ।
ଧାଇଁ ହନୁମନ୍ତ ଧଇଲା ବେନି ବାହା ॥
ଭିଡ଼ାଭିଡ଼ି ହୋଇଣ ପଡ଼ିଲେ ଦୁଇ ବୀରେ ।
ଦଇତ ବସିଲା ହନୁମନ୍ତ ଉପରେ ॥
ତଳେ ଥାଇ ମାରୁତି ମାଇଲା ପାଦଘାତ ।
ଓଲୋଟି ହୋଇଣ ପଡ଼ିଲା ଦଇତ ॥୧୦
ଧାଇଁ ହନୁମନ୍ତ ପିଠିରେ ବସିଲା ।
ମୁଥେ ମାରନ୍ତେ ଅସୁର ପ୍ରାଣ ଛାଡ଼ିଗଲା ॥
ତାକୁ ମାରି ପାବେନି ଶ୍ରୀରାମ ଚରଣେ ପଡ଼ିଲା ।
ବିନତି ହୋଇଣ କାନ୍ଧରେ ବସାଇଲା ॥
ସୁଗ୍ରୀବର ବଜ୍ରଧନୁଷ୍ଟ ଦୁହେଂ ମାହାରଥୀ ।
ଦୁହେଂ ଧରାଧରି ହୋଇ ରଥ ତଳେଣ ପଡ଼ନ୍ତି ॥
ଦୁହେଂ ଜଡ଼ ବନ୍ଧେ ଗଡ଼ାଗଡ଼ି ହୋଇଯାନ୍ତି ।
ଯେକ ହୋଇଣ ଦୁହେଂ ବାରି ନୁଆରନ୍ତି ॥
କୋପେ ସୁଗ୍ରୀବର ବସିଲା ତାର ତଣ୍ଟି ।
ପ୍ରାଣ ଛାଡ଼ି ଅସୁର ଭୂମିରେଣ ଲୋଟି ॥୨୦
ବଜ୍ରଧନୁଷ୍ଟ ଯହୁଂ ହୋଇଲା ପ୍ରାଣେ ନାଶ ।
ଅସୁର ସଇନି ଅନେକ ଗଲେ ନାଶ ॥
ଲକ୍ଷଣ ନାରାଜ ନୁଆରିଲେ ସହି ।
ବିଷମ ସମର କରନ୍ତି ବେନିଭାଇ ॥
କ୍ରୋଧନ ବୀରବାହୁ ହାରିଣ ଯେ ଗଲେ ।
ତ୍ରିଶିରା ମୋହୋଦର ସହିତେ ପଳାଇଲେ ॥
ମକରାକ୍ଷ ପିଚାଶ ନିକୁମ୍ଭ ହିଂ ଯେ ଭାଜି ।
ବିଭୀଷେଣ ଓଗାଳିଲା କୋପେଣ ଗଜଗାଜି ॥
କାହିଁକି ଯିବରେ ପାପିଷ୍ଠ ଦୈତ୍ୟମାନ ।
କାଲିର ପରାୟେ ନୁହଂଇ ଆଜ ଦିନ ॥୩୦
ଶୁଣିଣ ପାଲଟିଲେ ସାତ ସେନାପତି ।
କୁମ୍ଭ ମକରାକ୍ଷ ଧାଇଁଲେ ତଡ଼ତି ॥
ବିଭୀଷେଣ ଦେଖି ପାଲଟି ଯୁଦ୍ଧ କଲେ ।
ଛେଲ ଚକ୍ର ତ୍ରିଶୂଳ ନାରାଜ ମାଇଲେ ॥

ମେଘର ଭିତରେ ଯେହ୍ନେ ରାହୁ ଯେ ପ୍ରକାଶି ।
ଯେକା ବିଭୀଷେଣ ସବୁଙ୍କି ଅଛି ଗ୍ରାସି ॥
ଶହସ୍ରନ୍ତ ବଞ୍ଚାଇ ବିବିଧ ଗତିକରି ।
ତାହାଙ୍କରି ଶହସ୍ର ଘେନି ତାହାଙ୍କୁ ହିଂ ମାରି ॥
ରାବଣ ସାମାନ୍ୟେ ସେ ଅଟନ୍ତି ମହାକ୍ଷତ୍ରୀ ।
ପ୍ରଥମ ଯୁଦ୍ଧରେ ସାଧିଲେ ଧରିତ୍ରୀ ॥୪୦
ବେଳୁବେଳ ସମର ବାଜିଲାକ ଗୋଳ ।
ଦୁହିଂଙ୍କରି ଶ୍ୱରୀର ରକତେ ଜରଜର ॥
ଶ୍ରୀରାମ ସହିତେଣ ଗଲେ ଯହୁଂ ମାଡ଼ି ।
ପଳାଇଲେ ଅସୁରେ ବିଭୀଷେଣକୁ ଛାଡ଼ି ॥
ପୁଣି ହିଂ ଜମ୍ୱେବ ସୁଷେଣ ଗୋଡ଼ାବନ୍ତି ।
ତରୁଶିଳ ଧରି ଗୋଡ଼ାଇ ମାରନ୍ତି ॥
ନଳନୀଳ ଗନ୍ଧମାର୍ଦନ ଶତବଳ ।
ଦଇତଙ୍କ ଉପରେ ମାରନ୍ତି ତରୁଶିଳ ॥
ଗବୟେ ଗବାକ୍ଷ ମହୀନ୍ଦ୍ର ପବନ ।
ତାଳିମ୍ବ ଶରସେତୁ ଦୃବିନ୍ଦ କଞ୍ଚଣ ॥୫୦
ରାକ୍ଷସନ୍ତ ଗୋଡ଼ାଇ ମାରନ୍ତି ରୋଷ ବହି ।
ପଳାନ୍ତି ଅସୁରେ ପଛକୁ ନ ଚାହିଁ ॥
ଶ୍ରୀରାମ ଲକ୍ଷଣ ଅଙ୍ଗଦ ହନୁମନ୍ତ ।
ଦୁଇ କନ୍ଧେ ବସି ବିନ୍ଧନ୍ତି ନାରାଜନ୍ତ ॥
ରିକ୍ଷ କପି ବଳ ପ୍ରଚଣ୍ଡ ସୂର୍ଯ୍ୟ ଜ୍ୟୋତି ।
ଯହୁଂ ପିଠି ଉପରେ ପଡ଼ିଲେ ରଘୁପତି ॥
ପଳାଇ ଅସୁରେ ପଶିଲେକ ଭିତରେ ।
ଯେକ ବାଟେ ନୋହିଁ ଚାରିଦ୍ୱାରେ ଗଲେ ॥
ଲେଉଟି ଚାହିଁଲେ ପିଠିରେ ପଡ଼ଇ କାଣ୍ଡ ।
ସେହିଠାରେ ପଡ଼ି ହୋଅନ୍ତି ବେନିଖଣ୍ଡ ॥୬୦
ବାନରେ ତରୁଶିଳ ପହୁଡ଼ନ୍ତି ନେଇ ।
ମରନ୍ତି ଅସୁରେ ପଡ଼ନ୍ତି ଛେଚି ହୋଇ ॥
ଗଡ଼ ଭିତରେ ଯେ ପଶିଲେ ରିକ୍ଷକପି ।
ଶ୍ରୀରାମ ହିଂ ପଶିଲେ ସେ ଅଛନ୍ତି ମହାକୋପୀ ॥
ଲକ୍ଷଣକୁ ବୋଇଲେ ମୁଂ ଆସଇ ଲଙ୍କା ଦେଖି ।
ତୁମ୍ଭେ ଦୁଇ ଲୋକେ ଦ୍ୱାର ଥାଅ ରଖି ॥
ଆଜ୍ଞା ପାଇ ରହିଲେ ଲକ୍ଷଣ ଅଙ୍ଗଦ ।

ସଂଗରେ ସଇନି ଅଛନ୍ତି ଦୁଇବୃନ୍ଦ ॥
ଲକ୍ଷଣ ଧନୁଧରି ହୋଇଲେ କାଳମୂର୍ତ୍ତି ।
ଲଙ୍କାଗଡ଼ ଭିତରେ ପଶିଲେ ଦାଶରଥି ॥୭୦
ନରାନ୍ତେକ ଦେବାନ୍ତେକ କୁମ୍ଭ ନିକୁମ୍ଭ
କ୍ରୋଧନ ।
ରଥ ଚଢ଼ିଣ ଯେ ଗଲେକ ଘନଘନ ॥
ବୀରବାହୁ ଯେ ପିଚାଶ ମୋହୋଦର ।
ତ୍ରିଶିରା ଅମୟେ ଦେବଙ୍କୁ ଅଗୋଚର ॥
ରଥ ଦିଶୁଅଛି ଝିଙ୍କପକ୍ଷୀ ପ୍ରାୟେ ଜାଣି ।
ନାରାଚ ବିନ୍ଧୁଛନ୍ତି ରଘୁକୁଳମଣି ॥
ରାଉତ ମାହୁନ୍ତ ଗଲେକ ପୟେକାରୀ ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ନରନାରୀ ॥
ହନୁମନ୍ତ କନ୍ଧରେ ବିଜେକରି ଅଛନ୍ତି
ଦାଶରଥି ।
ଦୁଇ କନ୍ଧେ ଶୋହଇ କୋଦଣ୍ଡ ଭାରଥି ॥୮୦
ବାମେଣ କୋଦଣ୍ଡ ଦକ୍ଷିଣେ ତୀକ୍ଷଣର ।
ଝାଳରେ ତ୍ରିପଣ୍ଡ ରକତେ ଜରଜର ॥
ଇନ୍ଦ୍ର ଦେବତା ଯେହ୍ନେ ପୌର୍ଣ୍ଣମୀରେ ଫଗୁ
ଖେଳି ।
ଦେଖିଲେ ଲଙ୍କା ଲୋକେ ମନରେ ହାଦେ
ଭାଳି ॥
ଭୟ ଶରଧା ଦୁଇ ମିଶାଇଲେ ।
ନପଳାଇ ଶ୍ରୀରାମଙ୍କୁ ଦେଖିବାକୁ ରହିଲେ ॥
ହନୁମତ ଗମନ ବିଚିତ୍ର ଗତି ଜାଣି ।
ଦେଖିଣ ବିଚାର କରନ୍ତି ତରୁଣୀ ॥
ଏ ସେ ଲଙ୍କା ପୋଡ଼ା ଅଟଇ ବଇରୀ ।
ଏବେ ସେ ରାମଙ୍କୁ କନ୍ଧରେ ଅଛି ଧରି ॥୯୦
ଏ ସେ ବିଭୀଷେଣ ରାବଣର ଭାଇ ।
ଲଙ୍କପତି ହୋଇବ ଅଛଇ ଗୋଡ଼ାଇ ॥
ବାନରଙ୍କର ରାଜା ଯେ ଅଟଇ ସୁଗ୍ରୀବର ।
ଜଗତୀର ଚାଳ ନେଲାଟି ଏହାର ଦୁଲାଳ ॥
ଭାଲୁଙ୍କ ମନ୍ତ୍ରୀଏ ଜମ୍ବେବ ଯାରେ କହି ।
ବୃଦ୍ଧ କାଳେ ଯେହ୍ନୁଂ ହାଥେ ବୃକ୍ଷ ଧରଇ ॥
ଶଉରୀକି ଦେଖିଣ ବୋଲନ୍ତି ଅସୁରୀ ।
ଏଡ଼େ ବଏସେ କିମ୍ପା ଯେତେ ଦୁଃଖ
ତୋହୋରି ॥

କେ ବୋଲଇ କେଶରୀ ହନୁମନ୍ତର ବାପ ।
ଷୋଡ଼ଶା ଭେଣ୍ଡା ପ୍ରାୟେକ ଅଟଇ ଏହାର
ରୂପ ॥୧୦୦
ଚିହ୍ନିଥିଲା ଲୋକେ ଚିହ୍ନାଇଣ ଦ୍ୟନ୍ତି ।
ଦେଖିବା ନିମନ୍ତେ କେହ୍ନୁଂ ସୁଖେଣ
ଗୋଡ଼ାନ୍ତି ॥
କେ ବୋଲଇ ଶ୍ରୀରାମ ଭାଇ ଯେଥେ
ନାହିଁ ।
କେ ବୋଲଇ ଅଇଲେ ଗଡ଼ଦ୍ୱାରେ ଜଗାଇ ॥
ସାମାନ୍ୟ ଭରସା କି ଗଡ଼ରେ ପଶିଅଛି ।
ରାବଣକୁ ଭୟେ ନାହିଁ ଯେହାର କିଛି ॥
ଏସନେକ ବୋଲି ବୋଲନ୍ତି ଥୋକେ
ଲୋକ ।
ଲକ୍ଷଣକୁ ଦେଖିବେ ବୋଲି ଧାଇଂଲେ
ନଗ୍ରଲୋକ ॥
ଅଙ୍ଗଦର କନ୍ଧେ ଅଛଇ ସଉମିତ୍ରୀ ।
କନ୍ଧରେ କୋଦଣ୍ଡ ପ୍ରଚଣ୍ଡ ମହାକ୍ଷେତ୍ରୀ ॥୧୦
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେକ ଦେହ ଝଳି ।
ରକତେ ଜରଜର ଫୁଗଣେ ଫଗୁ ଖେଳି ॥
ଦେଖିଣ ଲୋକେ ଯେ ପ୍ରଶଂସା କରନ୍ତି ।
ସାଧୁ ସାଧୁ ଅଟନ୍ତି ଦୁଇଭାଇ ମହାକ୍ଷେତ୍ରୀ ॥
ସୀତାର ଦିଅର ଶ୍ରୀରାମଙ୍କର ସାନଭାଇ ।
ରାବଣ ଚୋରାଇ ଆଣିଲା ବଇଦେହୀ ॥
ଏବେ କିମ୍ପା ରାୟେ କାହିଁ ଲୁଚିଅଛି ।
ଏକଥାମାନ ନଜାଣଇ ବିଶର୍ବାର ବଛି ॥
କାଲି ଭଣିଲା ଯେ ମାଇଲୁ ରିକ୍ଷକପି ।
ମଲାଲୋକ କିମ୍ପା ପଶିଲେକ କୋପି ॥୨୦
ପୋଡୁ ପୋଡୁ ଯେହାଙ୍କର ମାୟାବୁଦ୍ଧିମାନ ।
ପଳାଇ ଯାଇଂ ଆମ୍ଭେ ପଶିବା କେଉଁ ସ୍ଥାନ ॥
ଏସନେକ ବୋଲି ଭାଜନ୍ତି ଲଙ୍କା
ଲୋକେ ।
ଭୟେ ପାଇଣ ତହୁଂ ପଳାଇଯାନ୍ତି ଥୋକେ ॥
ଏକ ଆରେକ ଯେ ପଳାଇଣ ଯାନ୍ତି ।
ହାଟବାଟ କନ୍ଦି ବିକନ୍ଦି ଦେଖନ୍ତି ॥
ପିଢ଼ା ଉପରେ ଦେଉଳ ଉପରେ ଚାହାନ୍ତି ।
କେ ଦେଖିବା ପାଇଁ ବୃକ୍ଷରେ ଉଠନ୍ତି ॥

କେ ବୋଲଇ ରାମ ଗଡ଼ରେ ପଶିଅଛି ।
ଇନ୍ଦ୍ରଜିତ ରାବଣ ପଳାଇଲେ ଲୁଚି ॥୩୦
କେ ବୋଲଇ କପି ହାଟନ୍ତ କୂର କଲେ ।
କେ ବୋଲଇ ତିନି ସେନା ଆଜ ରଣେ
ମଲେ ॥
କେ ବୋଲଇ ଯେବେ କିମ୍ପା ଗଡ଼ରେ
ଲୁଚିଅଛି ।
ଘରୁ ବାହାର ହୋଇ ଯେକୁ ଆରେକ ପୁଛି ॥
ମୁଖରାବମାନ ନିଶାଣ ଶବଦ ।
ଶ୍ରୀରାମର ଶର ବିନ୍ଧିବା ଗୁଣ ନାଦ ॥
ଶୁଣିଣ ହାଲହୋଳି ହୋଇଲେ କଟକେ ।
ଉଚ୍ଛୁଳି ପଡୁଅଛି କପିଙ୍କର ଡାକେ ॥
ଶ୍ରୀରାମ ଡାକନ୍ତି ନମାର ଦେଖଣାହାରିନ୍ତ ।
ଏମାନେ ବୋଇଲେ କି ଆଣ ସୀତା
ଚୋରାଇନ୍ତ ॥୪୦
ରାଜାର ପାପେ ପରଜାର ଯେ ଦୁଃଖ ।
ଅଳପ ଦିନେ ହାଦେ ପାଇବେ ବହୁତ ସୁଖ ॥
ରାଜଦାଣ୍ଡେ ସଇନି ଗଲେକ ପଳାଇ ।
ରାବଣ ନବରେ ସମସ୍ତେ ପଶିଲେକ
ଯାଇଂ ॥
ହାଥୀ ରଥୀ ଘୋଡ଼ା ସଇନି ସହିତେ ।
ରାଜାର ନବରେ ପଶିଲେ ସମସ୍ତେ ॥
ରକତେ ବିଲୋପନ ଦେହ ତାହାଙ୍କର ।
ସବୁଙ୍କରି ଦେହ ରକତେ ଜରଜର ॥
କାଣ୍ଡମାନ ଲାଗିଅଛି ସବୁଙ୍କରି ଦେହେ ।
ଦେଖିଣ ରାବଣ ପାଇଲା ଗରୁ ଭୟେ ॥୫୦
ଯହୁଂ ସେ ରାବଣ ମନ୍ଦିରେ ପଶି ।
ସିଂହଦ୍ୱାରୁ ରାମ ବାହୁଡ଼ିଣ ଆସି ॥
ବିଭୀଷେଣ ସୁଗ୍ରୀବର ପଛରେ ପଛିଆଣି ।
ସଇନି ନିରନ୍ତରେ କଳଣା ନୋହେ ପୁଣି ॥
ବୀର ମହାବୀର ମଲ ମହାମଲ ।
ଆଡ଼ୋ ଆଡ଼ୋ ଶବଦ ବଡ଼ାଇ ଚହଲ ॥
ଶ୍ରୀରାମ ପ୍ରଶଂସନ୍ତି ଲଙ୍କାଗଡ଼କୁ ଚାହିଁ ।
ଏଡ଼େ ସମ୍ପଦ ତୋତେ ଯୋଗାଇଲା ନାହିଁ ॥
ନଗ୍ର ନରନାରୀ ତୁମ୍ଭେ ଜାଣିଥାଅ ।
ମୁଇଂ ସୂର୍ଯ୍ୟବଂଶରେ ଦଶରଥ ପୁଅ ॥୬୦

ପିତାର ଆଜ୍ଞାରେ ବନବାସ କଲି ।
ଗୋଦାବରୀ କୂଳେ ଘରଣୀ ହରାଇଲି ॥
ମାୟା ମୃଗେକ ଦେଖାଇଲା ତୁମ୍ଭ ରାଜା ।
ଚୋରାଇ ଆଣିଲା ଆମ୍ଭର ଭାରିଯା ॥
ଏକ ନାରୀ ବ୍ରତ ମୋହୋର ପ୍ରତିପାଳି ।
ଆନ ଯୁବତୀକି ଶରଧା ନବଳି ॥
ହନୁମତକୁ ବଟିଆଇଲି ଖୋଜିବାର ପାଇଁ ।
ତାହାଙ୍କୁ ମରାଉଥିଲା ସେ ଧର୍ମେଣ ପଳାଇଁ ॥
ବିଭୀଷେଣ ତିଆରନ୍ତେ ନ କଲା ତାର
ବୋଲ ।
ତୁମ୍ଭେମାନେ ଯେହା କିହୋ ବୁଝିଲ କି
ଭଲ ॥୭୦
ଅଙ୍ଗଦ କୁମରକୁ ପେଷିଲି ପ୍ରୀତି ଅର୍ଥେ ।
ମରାଉଥିଲା ତାଙ୍କୁ ସହସ୍ରେ ମାଲ ହାଥେ ॥
ପୁଣି ହନୁମତ ଅଇଲା ସୀତା ମାଗି ।
ବୋଲ ନ କଲା ଦୈତ୍ୟ ମନରେ ବଡ଼
ରାଗୀ ॥
ଏବେ ବୋଲୁଅଛି ତୁମ୍ଭେମାନେ ସାକ୍ଷୀ ।
ଦେଉ ମୋର ଭାରିଯା ସମ୍ପୂର୍ଣ୍ଣ ଚନ୍ଦ୍ରମୁଖୀ ॥
ନ କରିବି ସମର ଯିବି ଯେହିକ୍ଷଣି ।
ନୋହିଲେ ମୁଣ୍ଡ ତାର ପକାଇବି ହାଣି ॥
ଏତେବୋଲି ରାମ ବିଜେ କରିଗଲେ ।
ସଇନି ନିରନ୍ତରେ ଗହ ଗହ ହେଲେ ॥୮୦
ଗୋଡ଼ାଇ ଦେଖନ୍ତି ରାକ୍ଷସ ରାକ୍ଷସଣୀ ।
ସାଧୁ ସାଧୁ ବୋଲି ଡାକନ୍ତି ଉଚ୍ଚେ ବାଣୀ ॥
ଲଙ୍କା ଭିତରୁ ବାହାର ହୋଇଲେ ରଘୁବୀର ।
ଲକ୍ଷଣ ଥିଲା ଯେ ଉତ୍ତର ଗଡ଼ଦ୍ୱାର ॥
ଶ୍ରୀରାମକୁ ଦେଖି ମଥାରେ କର ଦେଲା ।
ଅଙ୍ଗଦ ପିଠିରେ ବସି ଲକ୍ଷଣ ଆଗହେଲା ॥
ଗଡ଼ ଭିତରୁ ସମସ୍ତେ ହୋଇଲେ ବାହାର ।
ବିଭୀଷେଣ ସୁଗ୍ରୀବର ଜମ୍ବେବ ମନ୍ତ୍ରୀବର ॥
କାଲି ଦିନାନ୍ତେକ ଆଜ ବେଳ ସାତଘଡ଼ି ।
ସୁବଳୟା ଗିରିକି ଯାଆନ୍ତି ବେଗକରି ॥୯୦
ଗହଗହ ରାବ ଶୁଭଇ ଚଉପାଶ ।
ଦମା ଦୁନ୍ଦୁଭି ଶବଦ ବିଜିଘୋଷ ॥
ରକତ ମାଂସ ମାଡ଼ିଣ କାଦୁଅ କଲେ ।

ଅସଂଖ୍ୟ ସଇନି ଯହୁଁ ଧାଇଣ ହାଦେ
ଗଲେ ॥
ସୁବଳୟା ଗିରିରେ ହୋଇଲେ ପ୍ରବେଶ ।
ହନୁମନ୍ତ କନ୍ଧରୁ ଉତୁରିଲେ ରଘୁଶିଷ ॥
ଅଙ୍ଗଦ ପିଠିରୁ ଉତୁରିଲେ ଲକ୍ଷଣ ।
ଯାଇଂଣ ଶ୍ରୀରାମଙ୍କୁ କଲେ ପ୍ରତିକ୍ଷଣ ॥
ନମସ୍କାର କରି ଉଲାଗିଲେ ସଜ ।
ଯେ ବିଧି ନିତ୍ୟକର୍ମ ସାରିଲେ
ରଘୁରାଜ ॥୧୦୦
ଦେବ ନଦୀରେ ସ୍ନାହାନ କଲେକ
ରଘୁପତି ।
ଦେବତର୍ପଣ ସାରିଣ ସନ୍ଧ୍ୟା ସୁମରନ୍ତି ॥
ଲକ୍ଷଣ ବିଭୀଷେଣ ସୁଗ୍ରୀବର ସହିତେ ।
ସେନା ସେନାପତି ସଇନି ଅପ୍ରମିତେ ॥
ସ୍ନାହାନ ସାରିଣ ଭୁଂଜିଲେ କନ୍ଦମୂଳ ।
ମଣୋହି ସମ୍ପୂର୍ଣ୍ଣ ଆଞ୍ଚୋବନ ରଘୁବାଳ ॥
ଲକ୍ଷ୍ମଣ ଭୋଜନ ସାରିଣ ଆଞ୍ଚୋବନ ।
ଭୋଜନ କଲେ ଯେ ସୁଗ୍ରୀବର ସବୁ
ସୈନ୍ୟ ॥
ଆଞ୍ଚୋବନ ସାରି ଶ୍ରୀରାମ ପାଶେଯାନ୍ତି ।
ସୁଗ୍ରୀବର ରାଜା ଦ୍ରଶନ କରନ୍ତି ॥୧୦
ବିଭୀଷେଣ ଅଙ୍ଗଦ ସୁଷେଣ ନଳନୀଳ ।
ହନୁମତ ତାରାକ୍ଷ କୁମୋଦ ପନଶିଳ ॥
ଶଉରୀ ସେନାପତି ଶତବଳ ରମଣ ।
ଡାଳିମ୍ବ ପବନ ରୋମା ବଲଭ ନନ୍ଦନ ॥
ଗନ୍ଧମାର୍ଦ୍ଦନ ବସନ୍ତ କଞ୍ଚଣ କାଳିଜଂନ ।
କୁନ୍ଦ ଗବୟେ ଗବାକ୍ଷ ସୁସୋଦନ ॥
ସାରାସ ପାରାସ ଦୃବିନ୍ଦ ବିବିଧ ଯେ ଚାରି ।
ବଳିମୁଖ କାଳିମୁଖ ମରୁତ କେଶରୀ ॥
ତାରାର ପିଅନ ଦ୍ରଶନ ଆସି କରି ।
ରୋମାର ବାପ ଆବର ସଂପାତି ବେଗେ
ମିଳି ॥୨୦
ଶରସେତୁ କାଳିଞ୍ଜନ ଯେ ଆସନ୍ତି ।
ସମସ୍ତ ସୈନ୍ୟ କୁହାକୁହି ହୋନ୍ତି ॥
ବିଚାର କରନ୍ତି ଯୁଦ୍ଧର କଥାମାନ ।
ଶ୍ରୀରାମ ବୋଲନ୍ତି ଶୁଣ ହୋ ବିଭୀଷେଣ ॥

ଅପୂର୍ବ ଅଟଇ ହୋ ଆଜିର ମହାରଣ ।
ବାବୁ ସେନାପତିମାନେ ଆସିଥିଲେ ରଣ ॥
ତାହାଙ୍କ ଯୁଦ୍ଧକଲେ ହାରିଲେଟି ଅସୁର ।
କେମନ୍ତେ ଆନେ ସେ ଜିଣିଲେ ତିନିପୁର ॥
ଯେବଣ ଯେବଣ ତିନିହେଂ ପଡ଼ିଲେଟି
ଆଜି ।
ଶୁଣିଲେ ଦଶଗ୍ରୀବ ପାଇବ ମନେ
ଲାଜି ॥୩୦
ଆମ୍ଭର ଗଳାର ହୋ ବୁଝିବ କେମନ୍ତ ।
କିସ କିସ ବିଚାର କରିବ ଇନ୍ଦ୍ରଜିତ ॥
ସୁବନ୍ୟମୟ ଲଙ୍କା ଦେଖିଲୁ ହୋ ଆଜ ।
ତେଡ଼େ ସମ୍ପଦ ଭୋଗ କରଇ ଲଙ୍କରାଜ ॥
କିମ୍ବା ବିଧାତା ଯେ ହୀନ ବୁଦ୍ଧି ଦେଲା ।
ମୋହୋର ଘରଣୀକି ଚୋରାଇ ଆଣିଲା ॥
ଧର୍ମ କିମ୍ବା ସହିବ ସେ ମରିବ ନିଅତ ।
ଏତେ ବୋଲି ଖଡ଼୍‌ଗ ଝମକାନ୍ତି ରଘୁନାଥ ॥
ଏସନେକ ସମୟେ ତାରାର ପିଅର
ଜଣାଇ ।
କପି ତିନି ମେବକ୍ଷ ଅଇଲେ ପାରି
ହୋଇ ॥୪୦
ସତୁରି କୋଟି ଭାଲୁଙ୍କ ହୋଇଲେ
ପରବେଶ ।
ଗୋଲାଂଯା କାଳିମୁଖ ଅଇଲେ କୋଟିଦଶ ॥
ଶୁଣି ଆଜ୍ଞା ଦେଲେ ସ୍ୱାମୀ ନଳକଇ ଚାହିଁ ।
ଆଜର ସଇନି ଆଗିଆଣି ହୋଅନ୍ତୁ ଯାଇଂ ॥
ହୋଇ ବୋଲି କରି ପୟାଣ କଲା
ନଳବୀର ।
ସଇନିକି ବୋଇଲା ତୁମ୍ଭେ ହୋଅ ଆଗୁସାର ॥
ଶ୍ରୀରାମ ଆଜ୍ଞା ପ୍ରମାଣେ ତୁମ୍ଭେ ଯିବ ।
ଆଗିଆଣି ଥାଠେ ଯେ ଠଣା ଦେଉଥିବ ॥
ଶୁଣିଣ ତିନି ମେବକ୍ଷ କରିଯାନ୍ତି ।
ସତୁରି କୋଟି ଭାଲୁଙ୍କ ବେଗେଣ
ଆସନ୍ତି ॥୫୦
ସବୁଙ୍କରି ଜାତି ସବୁ ସିନ୍ଦୂର ମୟେ ।
ରିକ୍ଷ କପି ବୋଲି ତହିଁ ବାରଣ ନ ଯାୟେ ॥
ପଞ୍ଚାଶ କୋଟି ରିକ୍ଷ କପି ଠଣା
ଯାଇଦେଲେ ।

ରଙ୍ଗ ମାଟି ଲୋଚାଏ ପ୍ରାଏକ ଦିଶିଲେ ॥
ଏଥୁ ଅନନ୍ତରେ ଦିନକର ଅସ୍ତେ ।
ସନ୍ଧ୍ୟା ସୁମରିଲେ ଦଶରଥ ସୁତେ ॥
କାଲି ଅନିଦ୍ରାରେ ଆଳସ ରଘୁସାଇଂ ।
କନେକ ମୃଗଛାଲେ ପହୁଡ଼ିଲେ ଯାଇଂ ॥
ଯେ ଯାହାର ବଣ୍ଟାରେ ଜଗିଲେ
ସଇନିମାନେ ।
ବାଜଣା ବଜାଇ ବୁଲଇ ବାଲୀ
ନାନେ ॥୬୦
ଏଥୁ ଅନନ୍ତରେ ଶୁଣ ଗୋ ଗିରିଜା ।
ରାବଣ ଯେ ଅଟେ ଲଙ୍କାଗଡ଼ର ରାଜା ॥
ବାର ସେନାପତିର ଶୁଣିଲା ଭାଗେଣି ।
ସିଂହଦ୍ୱାର ପରିଯନ୍ତେ ଅଇଲେ ରଘୁମଣି ॥
ଆପଣେ ଶ୍ରୀରାମ ସଇନି ସଙ୍ଗେ ଘେନି ।
ଗଡ଼ରେ ପଶି ମାଇଲେ ଅନେକ ସଇନି ॥
ଏଥୁ ଅନନ୍ତରେ ରାବଣ ଅନ୍ତେଶ୍ୱରେ ଥିଲା ।
ବାହାର ଗୋଳ ଶୁଣି ଅବକାଶ ହେଲା ॥
କାଲାନ୍ତେକ ଦେବାନ୍ତେକ ଦ୍ରଶନ ଆସି
କଲେ ।
କୁମ୍ଭ ନିକୁମ୍ଭ ପିଚାଶ ପ୍ରବୀର ଯେ
ଅଇଲେ ॥୭୦
କ୍ରୋଧନ ଚାରଣ ଅଇଲେ ମୋହୋଦର ।
ସବିହେଂ କାଣ୍ଡ ଘାଆ ରକତେ ଜରଜର ॥
ରଥୀ ପାଦାନ୍ତି ରାହୁତ ମାହୁନ୍ତ ।
ମିଶାମିଶି ହୋଅନ୍ତେ ପଚାରଇ ଲଙ୍କାନାଥ ॥
କେବଣ ପ୍ରକାର ହୋ କହ ମୋର ଆଗ ।
ପିଚାଶ କହିଲା ରାମ କରିଛି ବଇରାଗ ॥
ଆଜିର ସମରେ ଧୂମାକ୍ଷ ଅଙ୍କପନ ବଜ୍ର
ଦନ୍ତୁଷ୍ଟ ମଲେ ।
ରଥଗଜ ପାଦାନ୍ତି ଅନେକ କ୍ଷୟେ ଗଲେ ॥
ଆପଣେ ଶ୍ରୀରାମ ଲକ୍ଷଣଙ୍କୁ ଘେନି ।
ଏକ ଏକ ଶର ବିନ୍ଧନ୍ତି ଅଗ୍ନି ଜାଣି ॥୮୦
ମହାଯୁଦ୍ଧ ଆଜକଲା ଜଟାଧାରୀ ।
କାହାରିହିଂ ଓର ନ ପାଇଲେ ତଥ୍ୟ କରି ॥
ବିଭୀଷେଣକୁ ଆମ୍ଭେ ବେଢ଼ି ମାରୁଥିଲୁ ।
ରାମ ଲକ୍ଷଣ ଦେଖି ଭାଜି ପଳାଇଲୁ ॥
ପିଠି ଉପରେ ପଡ଼ି ହାଣିଲାକ ଖେଦି ।
ସଇନି ପଳାଇଲେ ଅଟନ୍ତି ଶିଶୁବୁଦ୍ଧି ॥
ଭାଜିଲା ଥାଠକୁ ଯେହ୍ନେ ସିଂହ ଯେ ଶିଆଳ ।
ତେଣୁକରି ଆମ୍ଭେ ପଳାଇଲୁ ଲଙ୍କପାଳ ॥
ଶ୍ରୀରାମ ସହିତେ ସକଳ ଗୋଡ଼ାଇଲେ ।
ହନୁମନ୍ତ ଚଢ଼ି ଲଙ୍କାରେ ପଶିଲେ ॥୯୦
ତୋହ ସିଂହଦ୍ୱାରୁ ଗଲାକ ବାହୁଡ଼ି ।
ଶୁଣି ରାବଣ ହଲାଇଲା ଦାଢ଼ୀ ॥
ଆଖି ବୁଲାଇଣ କହିଲା କୋପଭରେ ।
କେମନ୍ତେ ହୋଇ ଯତିରେ ପଶିଲା ଭିତରେ ॥
ବେଢ଼ି ନ ମାଇଲ ଅଇଲ ପଳାଇ ।
କ୍ଷତ୍ରୀପୁଅ ହୋଇ ପ୍ରତଜ୍ଞାକର ମୋହୋର
ଆଗେ ରହି ॥
ବାଘର ଘରକୁ ଯେବେ ଅଇଲାକ ଛେଳି ।
ମାରି ନୁଆରିଲ ବୋଲାଅ ମହାବଳୀ ॥
ତୁମ୍ଭଙ୍କୁ ଆଶ କଲେରେ ହୋଇବାକ କିସ ।
ଭାଇ କୁମ୍ଭକର୍ଣ୍ଣକୁ ମୋହାର ବେଗେ ଘେନି
ଆସ ॥୧୦୦
ଆନର ବେଳେ ତାହାକୁ ନ ପାରଇ ମାରି ।
ପାଇଲି ଅପଚୟେ ହେଳ ଯୁଦ୍ଧ କରି ॥
ଯେଉଁ ଯେଉଁମାନେଟି ପଡ଼ିଲେ ତିନି
ସେନ୍‌ହା ।
ତୁମ୍ଭେ ରହି ଯୁଦ୍ଧ କଲେ ଆସନ୍ତେ ସେହୁ
ସିନା ॥
ଛାଡ଼ି ପଳାଇଲ ସଇନି ମୋର ମଲା ।
ତୁମ୍ଭଙ୍କୁ ଆଶ କଲାର ଯେମନ୍ତ ହୋଇଲା ॥
କୁକୁପାକ୍ଷ ମୋହୋଦରଙ୍କୁ ବୋଇଲାକ
ଚାହିଂ ।
କୁମ୍ଭକର୍ଣ୍ଣକୁ ବେଗେ ତୋଳି ଆଣି ଯାଇଂ ॥
ଯେସନେକ ସମୟେ ଇନ୍ଦ୍ରଜିତ ବୀର ।
ଦ୍ରଶନ କରି ସେ ଯୋଡ଼ଇ ବେନିକର ॥୧୦
ନିଜ ନବରେ ସେ ନିଶ୍ଚିନ୍ତେଣ ଥିଲା ।
ଶ୍ରୀରାମ ଗଡ଼େ ପଶିଲେ ବୋଲି ଧାଇଂଣ
ଅଇଲା ॥
ଗଡ଼ଦ୍ୱାର ପରିଯନ୍ତେ ଗଲାକ ସେହୁ ଧାଇଂ ।
ମନେ ବିଚାରିଲା ତ ମୋ ସଙ୍ଗେ କେହି
ନାହିଂ ॥
କାହାରିଟି ଭୟେ ନାହିଂ ମରିବାକୁ ।
ସେଠାରୁ ବାହୁଡ଼ିଲା ଲଙ୍କପତି ଛାମୁକୁ ॥
ଦେଖିଲା ଲଙ୍କପତି ବୋଲଇ ବଚନ ।
ଦୂରେ ନଥିଲୁକି ଗଡ଼େ ପଶିଲା ଯତିପୁଣ ॥
ଶୁଣି ଇନ୍ଦ୍ରଜିତ ବୋଲଇ ବଚନ ।
ଶବଦ ପାଇ ଯେ ଗଲଇ ବହନ ॥୨୦
ଉତ୍ତର ଦ୍ୱାରୁ ମୁଂ ବାହୁଡ଼ି ଅଇଲି ।
ରିକ୍ଷକପି ଗୋଟିୟେ ଭେଟ ନ ପାଇଲି ॥
ଭୋଟିଲେକି ଯତି ଯାଆନ୍ତା ପ୍ରାଣ ପାଇ ।
ଆଉ କ୍ଷଣେ କିଂପା ନରହିଲା ଗୋସାଇଂ ॥
ରାବଣ ବୋଇଲା ମୁଂ ଜାଣଇନା ବାବୁ ।
ଏ ଓପ୍ରୋଧ ଯୁଦ୍ଧ ହାଦେ କର ତୁମ୍ଭେ ସବୁ ॥
ବିଭୀଷେଣ ତହିଂକି ଯେ ଯେଥୁ
ଲୋକଯାଇ ।
ଛେଦଭେଦ ବାରତା ସବୁ କହୁଥାଇ ॥
ଦ୍ୱାରିଆ ଛାଡ଼ିଲା ଯେ ଦ୍ରୋହ ତା ଅଟଇ ।
ମୋହୋର ପାଶେ ଥାଇଂ ବିଭୀଷେଣକୁ
ଚିଟାଉ କଟାଇଂ ॥୩୦
ଚକ୍ରମୁଷ୍ଟିକି ଚାହିଂ ବୋଇଲା ଲଙ୍କପତି ।
ଉତ୍ତର ଗଡ଼ ଦ୍ୱାରୀକି ଆଣିବୁ ତୁରିତି ॥
ଆହୁରି ହିଂ କଥାଯେ [illegible]ଇ ତାର ତହିଂ ।
ଏହିକ୍ଷଣି ବେଗେ ଘେନିଆସ ଯାଇଂ ॥
ତତକ୍ଷଣେ ଚକ୍ରମୁଷ୍ଟି ବେଗେ ଧାଇଂଗଲା ।
ଉତ୍ତରଗଡ଼ ଦ୍ୱାରିଆକୁ ବେଗେ ଯେ ଆଣିଲା ॥
ରାବଣ ଛାମୁରେ କରାଇଲା ଦରଶନ ।
କୋପେ ଆଜ୍ଞା ଯେ ଦେଲାକ ଦଶାନନ ॥
କିରେ ଭୀମାହିଂ ବିଭୀଷେଣକୁ ଦ୍ୱାର ଛାଡୁ ।
ବିଭୀଷେଣକୁରେ ରାଜାକରି ଲୋଡୁ ॥୪୦
ଶ୍ରୀରାମଙ୍କୁ କିଂପାରେ ଗଡ଼ରେ ଭରିଦେଲୁ ।
ଦୂରୁ ଦେଖି କିମ୍ପାଇଂରେ କବାଟ ନ ପାଡ଼ିଲୁ ॥
ଦ୍ୱାରିଆ ଜଣାଇଲା ଶୁଣିମା ଗୋସାଇଂ ।
ସେନାପତିମାନେ ତୋର ଅଇଲେ ପଳାଇ ॥
ସଇନି ଭିତରେ ଯେ ହାଥୀ ଘୋଡ଼ା ରଥ ।
ତାହାଙ୍କର ସଙ୍ଗତେ ପଶିଲେ ରଘୁନାଥ ॥
କବାଟ ପାଡ଼ିଲେ ସଇନି ନାଶ ଯାନ୍ତେ ।
ଶ୍ରୀରାମର ନାରାଜେ ଗୋଟିଏ ନ ବ୍ରତନ୍ତେ ॥

ତହିଂକି କୋପ ତୁମ୍ଭେ କରନ୍ତ ଗୋସାଇଂ ।
କବାଟ ନ ପାଡ଼ିଲି ସଇନିକି ଅନାଇଂ ॥୫୦
ଏ ବଚନ ଶୁଣି ଯେ ବୋଲଇ ଲଙ୍କପତି ।
ତୋହୋର କୂଟ ହାଦେ ଅଟଇ ଅପାରମତି ॥
କପାଟ ପାଡ଼ିଲେ ସିନା ସଇନି ମରନ୍ତା ।
ଶତ୍ରୁ କିମ୍ପା ମୋର କଟକେ ପଶନ୍ତା ॥
ନଗ୍ର ନବଳନ୍ତା ନ ପାନ୍ତା ଛେଦ ଭେଦ ।
ଆଜହୁଂ ଦ୍ୱାରପାଳ ହେଉ ବୀରଭଦ୍ର ॥
ଭୀମକେଶାକୁ କର ଶିର ଛେଦନ ।
ଏହାର ଥାନ୍ତେ ଶତ୍ରୁ ପାଇ ଛେଦ ଭେଦ
କଥାମାନ ॥
ଯେମନ୍ତେ ଗଡ଼ରେ ପଶିଲେ ଝସାଇଂ ।
ଧର୍ମେ ସେ ନବରେ ନ ପଶିଲା ଯାଇଂ ॥୬୦
ନିଅବକାଶ ପୁରେ ଶୟନ କରିଥିଲି ।
ଏହାଦେ ମାୟା କଲା ମୁଂ ଧର୍ମେଣ ବୁଝିଲି ॥
ଏବେ ଯେହିକ୍ଷଣି କାଟ ଯେହାର ମୁଣ୍ଡ ।
ସେହି ଗଡ଼ଦ୍ୱାରେ ଶୂଳ ଦିଅ ଯେହାର ପିଣ୍ଡ ॥
ଶୁଣି ଚକ୍ରମୁଷ୍ଟି ଘେନି ତାକୁ ଗଲା ।
ଭୀମକେଶାର ମୁଣ୍ଡ କାଟି ଶୂଳ ଦେଲା ॥
ଯେସନେକ ସମୟେ ବେଳ ଅସ୍ତ
ହୋୟେ ।
ସନ୍ଧ୍ୟା ସୁମରିବାକୁ ଉଠିଲା ଲଙ୍କରାୟେ ॥
ଶୁକ ସାରଣକୁ ଆଜ୍ଞାଦେଲା ପୁଣ ।
ଯେ ଲଙ୍କାରେ ହୋ ଦିଆଅ ଘୋଷଣ ॥୭୦
ବିଭୀଷେଣ ବଂଧୁବର୍ଗ ଅଛନ୍ତି ଯେତେକ ।
ଗୋଟିୟେକ ନ ଥିବେଟି ଲଙ୍କା
ସୀମାନ୍ତେକ ॥
ଇନ୍ଦ୍ରଜିତ ବୋଇଲା ଦେବ ନୋହଇଟି
ଭଲ ।
କିୟେ ଯେ ବିଭୀଷେଣ ବଂଧୁ ନ ଅଟଇ
ଲଙ୍କପାଳ ॥
ତୋହୋର ବଂଧୁ ଯେ ବିଭୀଷେଣର ବନ୍ଧୁ ।
କିଂପାଇ ଯେ କଥା କହିଲ ଦେବପ୍ରଭୁ ॥
ଯେମନ୍ତେ ଆଜ୍ଞା ସେ ଦେବୁ ଲଙ୍କପତି ।
ଗଡ଼ଦ୍ୱାରୁ ବାହାର ହୋଇ ନଯିବେ ଦ୍ୱାର
କତି ॥

ଦିବସେ ଯୁଝିବାର ଲୋକମାତ୍ର ଯିବେ ।
ଦ୍ୱାରପାଳ ଲୋକ ଚିହ୍ନି ଛାଡ଼ିଦେବେ ॥୮୦
ପୁତ୍ରର ବୋଲେ ରାଜା ସନମତ କଲା ।
ସନ୍ଧ୍ୟା ସୁମରିବାକୁ ଭିତରକୁ ଗଲା ॥
ଯେ ଯାହାର ପୁରକୁ ଗଲେ ପାତ୍ରମନ୍ତ୍ରୀ ।
ସଇନି ସହିତେ ପୁତ୍ରମାନେ ଯାନ୍ତି ॥
ନୃପତି ମାଜଣା ମୋଣୋହି ନିତ୍ୟକର୍ମ ସାରି ।
ପଲଙ୍କେ ପହୁଡ଼ିଲା ଖଟିଲା ମନ୍ଦୋଦରୀ ॥
ନିଦ୍ରା ନ ମାଡ଼ଇ ପଚାରଇ ରାଣୀ ।
କିଂପାଇ ମନରେ ବିରସ କର ଲଙ୍କମଣି ॥
ରାବଣ ବୋଇଲା ଯାହା ଗୋ ଅରଜିଲି ।
ଭୁଂଜିଲାର ଫଳ ପୁଣି ଯେ ଭୋଗ
କରିନପାରିଲି ॥୯୦
ସୀତା ଆଣିଲି ନୋହିଲା ପରାପତ ।
ଦ୍ୱନ୍ଦ ଭିଆଇଂଲେ ହୋଇଲା ମନ୍ଦକୃତ୍ୟ ॥
ମାଙ୍କଡ଼ ଭାଲୁଙ୍କ ଦୁଇଜଟାଧାରୀ ।
ବନ୍ଧ ବାନ୍ଧିଣ ସେ ହୋଇଲେ ସିନ୍ଧୁପାରି ॥
ଗତ ଯୁଦ୍ଧକଥା ଶୁଣି ଅଛୁନିନା ।
ଆଜି ପଡ଼ିଲେ ମୋହୋର ତିନି ସେହ୍ନା ॥
ଅଙ୍କପନ ବଜ୍ରଧନୁଷ୍ଟ ଧୂମାକ୍ଷ ।
ସେନାପତିଙ୍କର ଅଟନ୍ତି ଏ ମୋକ୍ଷ ॥
ଏହାକୁ ମାରିଣ ଯତି ସୈନ୍ୟକୁ
ଗୋଡ଼ାଇଲା ।
ଗଡ଼ରେ ପଶିଣ ସିଂହାଦ୍ୱାରୁ
ବାହୁଡ଼ିଲା ॥୧୦୦
ତେଣୁ ସେ ଖେଦ ମୁଂ ପାଇଲି ମନେ ମନ ।
ଚିନ୍ତାଭରେ ନିଦ୍ରା ନ ମାଡ଼ଇ ନୟନ ॥
ଶୁଣିଣ କରଦୁଇ ଯୋଡ଼ଇ ମନ୍ଦୋଦରୀ ।
ବାହୁଡ଼ାଇ ଦେବା ଦେବ ତାହାର ସେ
ନାରୀ ॥
ଯତି ବାପୁଡ଼ା ସ୍ୟତୀକି ଘେନି ଯାନ୍ତୁ ।
ଘୋର ଅରଣ୍ୟ ବନରେ ପଶିଥାନ୍ତୁ ॥
ତୁ ମାହାରାଜା ଯେ ଆଣିଲୁ ଶ୍ରଧାକରି ।
କେବଣ ଯୁବତୀ ନାଥ ନାହିଂଟି ତୋର
ପୁରୀ ॥
ନମୁରଛି ଯତି ଯେବେ ଦ୍ୱନ୍ଦ ଆଶ୍ରେ କଲା ।

ଲୋକରେ ଅପକାର୍ତ୍ତି ବହୁତ ଉପୁଜିଲା ॥୧୦
ଦେବା ସୀତାକୁ ଦେବ ନେଉ ତାର ନାରୀ ।
ଆନମତେ ଆମ୍ଭେ ଆଣିବା ପୁଣ ହରି ॥
ଯେ ଯେ ରକ୍ଷ ମର୍କଟ ପଶୁ ଜନ୍ତୁ ।
ଲଙ୍କାଗଡ଼ ଭାଙ୍ଗି ସାରିଲେ ମୋର ସତୁ ॥
ଡଗର ପେଷି ଦେବ ରୋଆଇଆଣିମା ।
ଏ ବେଳକ ଦେବ ମୋହୋର ବୋଲ ଯେ
ଘେନିମା ॥
ରାବଣ ବୋଇଲା ସଖି ହୋଇଲୁକି ବାଇ ।
ପାଇଲା ପଦାର୍ଥ ଦେବାକି ବାହୁଡ଼ାଇ ॥
ସେ ରିକ୍ଷ କପିକି ମୁଂ ନକରଇ ଭୟେ ।
ଜାଣୁ ଟିକି ବାନା ମୋହୋର ଜଗତେ
ଅଜୟେ ॥୨୦
ଯେତେବେଳେ ଇଚ୍ଛା ତେତେବେଳେ ମୁଂ
ମାରିବି ।
ରାମ ଲକ୍ଷଣ ବିଭୀଷେଣକୁ ସଂହାରିବି ॥
ଇନ୍ଦ୍ରଜିତ ମାଇଲା ନାଗପାଶ ବାଣ ।
ଧର୍ମେଣ ଯତି ସେ ପାଇଲାକ ପ୍ରାଣ ॥
ଏବେ କୁମ୍ଭକର୍ଣ୍ଣକୁ କାଲି ତୋଳିବି ଯାଇଂ ।
ନିମିଷ ମାତ୍ରକେ ରାମ ଲକ୍ଷଣ ମାରିବଇଂ ॥
ସୁଗ୍ରୀ ହନୁମନ୍ତ ସହିତେ ନାଶଯିବେ ।
ବିଭୀଷେଣ ମହାତ୍ମା କି ଜୀବନ ପାଇବେ ॥
ମୋହୋର ମହିମା କି ନ ଜାଣୁରେ ସହୀ ।
ଶତ୍ରୁମାରି ଭୋଗ କରିବି ବଇଦେହୀ ॥୩୦
ଯେହା ଯେବେ ବାହୁଡ଼ାଇ ସମର୍ପିବି ରାମ ।
ଆଜୁ ଭାଜିଲାକକି ନାହିଂ ଲଙ୍କାଗ୍ରାମ ॥
ଦେବତାୟେକି ଆଉ ହୋଇବେ ମୋତେ
ବଶ୍ୟ ।
ରାଜାମାନେ ଶୁଣି କରିବେ ଉପହାସ୍ୟ ॥
ପୁଷ୍ପେକ ବିମାନ କୋବେର ଆସି ନେମ ।
ଦେବତାୟେ ଯେ ଯାହାରେ ନେମେ
ଆୟେମାନ ॥
ଅପଛରୀକିନ୍ନରୀ ବିଦ୍ୟାଧରୀଯିବେ ।
କନେକ ଦଣ୍ଡ ଯେ ବରୁଣ ଆସି ନେବେ ॥
ଚନ୍ଦ୍ର କିଂପା ମୋତେ ଦେବାକ ରାନ୍ଧିଣ ।
ଆଉ କି ଖଟିବେ ସକଳ ସୁରଗଣ ॥୪୦

ଅଗ୍ନିକିଂପା ମୋହୋର ପଖାଳିବ ବସ୍ତ୍ର ।
ରିକ୍ଷ ମର୍କଟକୁଂ ମୋହୋର ନାହିଂ ତ୍ରାସ ॥
ସୀତ୍ୟା ଦେଲେ ମୋହୋର ଆଶ୍ୟଯିବ
ହାଦେ ।
ଶୁଣି ମନ୍ଦୋଦରୀ ହୋଇଲା ତବଦେ ॥
ମଉନବତୀ ହୋଇ ନ କହଇ ସମ୍ବାଦ ।
ପୁଣି ମଞ୍ଜାଳିଲା ସ୍ୱାମୀର ବେନିପାଦ ॥
ନିଦରେ ଅଚେତନ ହୋଇଲା ଲଙ୍କପତି ।
ଏଥୁ ଅନନ୍ତରେ ହୋଇଲା ପାହାନ୍ତି ॥
ଦେବତାଙ୍କର ଆଳେ ଶୁଭଇ ଶଙ୍ଖଧ୍ୱନି ।
ଶଯ୍ୟାଛାଡ଼ି ଉଠିଲା ଦଶଇ ମୁର୍ଦ୍ଧନି ॥୫୦
ନିତ୍ୟକର୍ମ ସାରି ବାହାରେ ଅବକାଶ ।
ମନ୍ତ୍ରୀ ଅମାନାତ୍ୟ ଯାଇଂ ମିଳିଲେ ତାର
ପାଶ ॥
କାକାକ୍ଷ କୁଳୁପାକ୍ଷ ମେଘନାଦ ମହୋଦର ।
ପ୍ରଥ୍ମ ମିତ୍ରଘନ କମ୍ପୋମାଳି କୁମାର ॥
ଶୁଶୁମୋଧା କୋମାଏକ ଘନନାଦଂ
ଆବର ।
ତପନ ମିତ୍ରଘନ ପହଲାଦ କୁମାର ॥
ସୁରସେନ ରଶ୍ମିକେତୁ ଶରକେତୁ ଆୟେ ।
ସୁପୁତ୍ର ଯଜ୍ଞକେତୁ ଦ୍ରଶନ ଆସି କୟେ ॥
ଚକ୍ରୁ ମୁଷ୍ଟିକ ଯେ ଅଶ୍ୱିନୀ ବିଦୁମାଳି ।
କ୍ରୋଧନ ପ୍ରବୀର ବୀରବାହୁମିଳି ॥ ୬୦
ପିଚାଶ ତିଶିରା କୁମ୍ଭ ନିକୁମ୍ଭ ମକରାକ୍ଷ ।
ଦେବାନ୍ତେକ ଅଶ୍ୱମାଳି ଆବର ବିରୁପାକ୍ଷ ॥
ସଲୋପି ଅଲୋପି ଜୟେ ଯେ ଅଜୟେ ।
କଙ୍କସିଂହ ତୁରଙ୍ଗ ତିନିହେଂ ଆୟେ ॥
କାଳଘଣ୍ଟ ମହୀଘଣ୍ଟ ମହୀରାବଣ ଆୟେ ।
ମୁଖାଦୃମୁଖା ଚାରଣ ଧାରଣ ବିଜୟେ ॥
ସେନା ସେନାପତି ଦ୍ରଶନ ଆସି କଲେ ।
କୁଳୁପାକ୍ଷ ମୁଖଚାହିଂ ଦଶାନନ ବୋଲେ ॥
ମୋହୋଦର ସହିତେ ଯାଅ ତୁମ୍ଭେ ବେନି ।
ନିଦରୁ କୁମ୍ଭକର୍ଣ୍ଣକୁ ତୋଳି ଆସ ଘେନି ॥୭୦
ସେସେ ବଇରୀକି କରୁମୋର ହତ ।
ଶୁଣିଣ ପାତ୍ରମନ୍ତ୍ରୀ ଚଳିଲେ ତୁରିତ ॥
କୁମ୍ଭକର୍ଣ୍ଣ ମନ୍ଦିରେ ଯାଇଂଣ ମିଳିଲେ ।
ଦ୍ୱାରପାଳକୁ ସେ ରାଇଂଣ ବୋଇଲେ ॥
ରଜାର ଆଜ୍ଞା ହୋଇଲା ନେମୁ କୁମ୍ଭକର୍ଣ୍ଣ ।
ଭିତରକୁ କହି ପଠିଆଅ ବହନ ॥
ଯୁବତୀମାନେ କତିରୁ ଆଡ଼େ ହୋଇଯାନ୍ତୁ ।
ଧାଇଂ ପରିବାରୀ ଦାସୀମାନେ ଥାନ୍ତୁ ॥
ଶୁଣିଣ ଦ୍ୱାରପାଳ ଭିତରକୁ ଗଲା ।
ତାଟିବାଡ଼ରେ ଥାଇଂ ଦାସୀକି ଡାକିଲା ॥୮୦
ନାମଧରି ଡାକନ୍ତେ ଦାସୀ ଯେ ଅଇଲେ ।
କିସ କିସ କଥା କହସି ବୋଇଲେ ॥
ଦ୍ୱାରପାଳ ବୋଇଲେ ନୃପତି ଫରମାଣ ।
ଦ୍ୱାରେ ଛନ୍ତି କୁଳୁପାକ୍ଷ ମୋହୋଦର
ବେନିଜନ ॥୯୦
ସେନା ସେନାପତି ସମସ୍ତେହେଂ ଛନ୍ତି ।
ରାଜାର ଆଜ୍ଞା ହୋଇଅଛି ବୋଲିଣ
ବୋଲନ୍ତି ॥
ଦେଖି ବାହୁଡ଼ିଣ ଗଲେକ ପରିବାରୀ ।
ଯାଇଂ ଜଣାଇଲେ କୁମ୍ଭକର୍ଣ୍ଣ ମନୋହାରୀ ॥
ନମସ୍କାର କରିଣ କହିଲେ ବଚନ ।
କୁଳୁପାକ୍ଷ ମୋହୋଦର ଆସିଅଛନ୍ତି
ବେନିଜନ ॥
ରାଜାର ଭାଇକି ନିଦରୁ ତୋଳି ନେବେ ।
ତେବେ ସେ ଲଙ୍କାଗଡ଼ ଲୋକ ସୁସ୍ଥ
ହୋଇବେ ॥
ତୁମ୍ଭେ ଯେ ଆଡ଼େ ହୋଇ ଭିତରକୁ ଯିବ ।
ତେବେ ସେ ସଇନି ଯେଠାକୁ ଆସିବ ॥
ଶୁଣି ବଡ଼ୋଯା କନ୍ୟା ଉଠିଲା ଚଡ଼ତି ।
ସମସ୍ତ ସପତଣୀ ଭିତରେ ପଶନ୍ତି ॥
କେବଣ ସୁନ୍ଦେରୀ ଚାମର ଥୋଇଂଗଲା ।
କେହୁ ଆଳଟ ବିଞ୍ଚଣୀ ପକାଇଲା ॥
ପାନବଟା କେହୁ ଲୁଗାରେ ଘୋଡ଼ାଇଲା ।
କେବଣ ଯୁବତୀ ଚନ୍ଦନ
ଘୋରୁଥିଲା ॥୧୦୦
କେହୁ ଗନ୍ଧପେଡ଼ି ମୁଦି ଥୋଇଗଲା ।
ଲୋକ ଆସନ୍ତେ ସେ ଭିତରକୁ ଗଲା ॥
ବିବିଧ ବସ୍ତ୍ର ଭାଙ୍ଗୁଥିଲେ ଘେନି ।
ଚାଙ୍ଗଡ଼ାୟେ ଥୋଇ ଆଡ଼େ ହୋଇଲେ
କାମିନୀ ॥
କେବଣ ଯୁବତୀ କୁସୁମ ଆଞ୍ଜୋଳି
ଦେଉଥିଲା ।
ଫୁଲ ଛାଡ଼ିକରି ଭିତରକୁ ଗଲା ॥
କେହୁ ଛୁରୀ ଖଣ୍ଡା ଥୋଇଣ ଆଡ଼େ ହୋନ୍ତି ।
କେହୁ ପାଦ ମଞ୍ଜାଳିବା ଛାଡ଼ିଣ ଚଳନ୍ତି ॥
କେହୁଂ ଯେ ଅଙ୍ଗୁଳି ଫୁଟାଉଣ ଥିଲା ।
କସ୍ତୁରୀ ଲେପିବା ଲୋକ ଆଡ଼େ
ହୋଇଗଲା ॥୧୦
ଯେବଣ ଯେବଣ ନାରୀମାନେ ଥିଲେ ।
ଉପହାର ପଦାର୍ଥମାନ ଛାଡ଼ିଗଲେ ॥
ରତ୍ନ ଅଂଳକାର ଯେହୁ ଘେନି ଥିଲା ।
ଥିବାର ଲୋକଙ୍କୁ ଦେଖାଇକରି ଗଲା ॥
କୁମ୍ଭକର୍ଣ୍ଣ ନିଚେଷ୍ଟ ନ ଜାଣଇ କିଛି ।
ଶୁଦ୍ଧ ସୁବର୍ଣ୍ଣର ମନ୍ଦିରେ ଶୋଇଅଛି ॥
ଗଜଦନ୍ତ ମାଣିକରେ ଯେ ଚାରିଖୁରା ।
ନୀଳାର ପଲଙ୍କ ଗଜଦନ୍ତର ଚାରିଉରା ॥
ମୁକୁତାର ଝରା ବଉଳାକାଠି ହୀରା ।
ସୁବର୍ଣ୍ଣ ପିତୁଳି ବନ୍ଧ ଯୋଡ଼ା ଯୋଡ଼ା ॥୨୦
ଖଟଦିବ୍ୟବେଲୁରି ଦାସୀନେତର ତୁଳୀ ।
ନାଗେଶ୍ୱର କେଶର ଗୁଣ୍ଡିର ମୁଚଳୀ ॥
ବିଚିତ୍ର ଘରେ ଯେ ଶୋଜାଇ ଅଛି ଶେଜ ।
ସୁଗନ୍ଧ ପୁଷ୍ପର ପାଖୁଡ଼ା କର୍ପୂରର ରଜ ॥
ଚଉକତି ମଶହେରୀ ସୁବର୍ଣ୍ଣର ଟେରା ।
ସିନ୍ଧୁଆ ଚାନ୍ଦୁଆ ଗଜମୋତିଝରା ॥
ଉତ୍ତାନମତି ହୋଇ ଅଛଇ ବୀର ଶୋଇ ।
ହେଠମତି ଜ୍ଞାନ ଗୋଚର ତାର ନାହିଂ ॥
ଚିଆଂ ଚୈତନ୍ୟ ହୃଦୟ ମଧ୍ୟେ ଅଛି ।
ହଂସା ଉଡ଼ାଇଣ ମୂଳକମଳ ରନ୍ଧିଅଛି ॥୩୦
ଷୋଳ ଡମ୍ବରୁ ନିଶ୍ୱଳେ ଅଛି ରହି ।
ତାଳୁ ସଳଖେ କୁଂଚିଦ୍ୱାର ଶୋହଇ ॥
ଛଡ଼ଚକ୍ର ଭେଦି ହାନ୍ଦୋଳଇ ପବନ ।
ତିନିପ୍ରହର ଶୟନେ ଭ୍ରମଇ ନୟନ ॥
ମାହା ଯୋଗନିଦ୍ରା ବିଶର୍ବାର ବଚ୍ଛା ।
ଯାଇଂଣ ଦେଖିଲେ ମୋହୋଦର
କୁଳୁପାକ୍ଷା ॥
ସଇନି ସହିତେ ଦେଖନ୍ତି ଦିବ୍ୟପୁର ।

ସାଧୁ ସାଧୁ ବୋଲି ପ୍ରଶଂସା କରନ୍ତି ଅସୁର ॥
ମହାଗିରି ସମାନେ ଅଛଇ ବୀର ଶୋଇ ।
ଲୋକେ ନିଶବଦ ଦେଖନ୍ତି ତୋଷ
ହୋଇ ॥୪୦
ନିଶ୍ୱାସ ବହନ୍ତେ ଚଳଇ ଉପରଚାଳ ।
କି ଜାଣି ବତାସ ବହଇ ଯମଆଳ ॥
ଉଠ ଉଠ ବୋଲି ଡାକଇ ମୋହୋଦର ।
ଆଜ୍ଞା ଦେଉଛନ୍ତି ତୋର ଜ୍ୟେଷ୍ଠ ସହୋଦର ॥
ଶତ୍ରୁ ଉପଗତ ହୋଇଅଛି ଆସି ।
ନିଦ୍ରା ତେଜିଣ ତୁ ଭାଇକି ଦ୍ରଶନ କରସି ॥
ନଶୁଣଇ କୁମ୍ଭକର୍ଣ୍ଣ ନ ଭାଙ୍ଗଇ ନିଦ ।
ସହସ୍ରେ ଲୋକ ହୋଇ ମଚାଳନ୍ତି ପାଦ ॥
କେ ହାଥ ଫୁଟାଇଣ ଗାବନ୍ତି ଯେ ଗୀତ ।
କେ ବାଜଣା ବଜାଇଣ କରୁଛନ୍ତି
ନୃତ୍ୟ ॥୫୦
ଚନ୍ଦ୍ରସମ ଯେପନ୍ତି ଶୀତଳ ପାଇ ଉଠୁ ।
କାନ କତିରେ ଯେ ଟମକଛନ୍ତି ପିଟୁ ॥
ଘୋଡ଼ାଙ୍କର ହିଂସାରାବ ହସ୍ତୀଙ୍କ ଗର୍ଜନ ।
ଯେକ ଶବଦ ହୋଇ ଡାକନ୍ତି ସର୍ବଜନ ॥
ଗହ ଗହ ଶବଦ ସିନ୍ଧୁଘୋଷ ଜାଣି ।
କୁମ୍ଭକର୍ଣ୍ଣ ଚିଆଇଂ ଉଠଇ ତାହା ଶୁଣି ॥
ଦେଖିଣ ସମସ୍ତେ ଦୂର ହୋଇଗଲେ ।
ପାୟେ ପଡ଼ି ଶୋଇଂ ମଥାରେ ହାଥ
ଦେଲେ ॥
ଚକ୍ଷୁକରେ ମଳିଣ ବୋଇଲା ମହାବୀର ।
ସୟକ୍ଷର ନପୁରୁ ନିଦ୍ରା ଭାଙ୍ଗିଲ
ମୋହୋର ॥୬୦
କେବଣ ପରସ୍ତାପ ପଡ଼ିଅଛି କହ ।
ଏ ବ୍ରହ୍ମାଣ୍ଡେ କେହୁ ଅଛଇ ମୋତେ ରହ ॥
କାହାକଇ ମାରି ଅବା ନ ପାରଇ ମୁଇଂ ।
ନିଦ ଭାଙ୍ଗିଲ ମୋହୋର କେବଣ ଗୁଣ
ପାଇଂ ॥
ଚନ୍ଦ୍ରସୂର୍ଯ୍ୟ ସହିତେ ନବଗ୍ରହମାନ ।
ପୃଥିବୀରେ ନଥିବେକି କହରେ ବହନ ॥
ମେରୁ ସହିତେ ଉପାଡ଼ିବି ବସୁନ୍ଧରୀ ।
ପିଇଂଣ ଶୁଖାଇବି କି ସପତ ସିନ୍ଧୁବାରି ॥

ଯେକାମୁଥେ ମାରି ମେରୁ କରିବି କି ଧୂଳି ।
ଗୋଇଠା ମାରି କି ଭାଙ୍ଗିବି ମହୀଆଳି ॥୭୦
ଏବେରେ ଯେହିକ୍ଷଣି ଆହାର ମୋତେ
ଦିଅ ।
କିସ କିସ କାର୍ଯ୍ୟରେ ପଛେ ମୋତେ କହ ॥
ଭୟେ କରିଣ ଲୋକେ ସମାସ୍ୟା ନ ଦିଅନ୍ତି ।
ଶାଳିଅନ୍ନ ନାନା ମେଘଂନ ପରଷନ୍ତି ॥
କ୍ଷୀରି ଖିରିସା ଶାକର ଦୁଧସର ।
ଅଧାମ ଗୋଟିକା ନାନା ବର୍ଣ୍ଣେଣ ପ୍ରୀତିସାର ॥
ସୁବର୍ଣ୍ଣର ପଲମରେ ଭୁଞ୍ଜଇ ଅବଶେଷ ।
ଏହା ଖାଇ ପଚାରଇ ଅଛିକି ଆମିଷ ॥
ଛେଳି ମେଣ୍ଢା ମଇଂଷି ଯେ ପରଷନ୍ତି
ନେଇଣ ।
ସହସ୍ର ସହସ୍ର କରି ଖାଇଲା ହରିଣ ॥୮୦
ଦୁଧ ମଦ ରକତ ବହୁତ ଖାଇଲା ।
ଘୋଡ଼ା ହସ୍ତୀ ନିଆଇଂ ଅନେକ ଗିଳିଲା ॥
ଲକ୍ଷ ଲକ୍ଷ କରି ବଢ଼ାଇ ଦେଉଛନ୍ତି ଦୂତ ।
ଦୁଇ ହାଥେ ଖାଇ କୁମ୍ଭକର୍ଣ୍ଣ ପୂରୋଇଲା
ପେଟନ୍ତ ॥
ଆଞ୍ଚୋବନ ସାରି ଚାମ୍ବୁଳ ଭୁଞ୍ଜିଲା ହରଷେ ।
ଚନ୍ଦ୍ରସମ ଘେନିଣ ପିନ୍ଧିଲା ଝିନବାସେ ॥
ନାନାରତ୍ନେ ଶରୀର କଲାକ ଭୂଷଣ ।
କର୍ଣ୍ଣେ ମଣି କୁଣ୍ଡଳ ତୋଡ଼ର ଚରଣ ॥
ଏତେକ ସଜ ହୋଇ ଚଳଇ ଧୀର ଧୀର ।
ପୃଥିବୀ କମ୍ପୁଅଛି ଚଳନ୍ତେ ତାହାର ॥୯୦
ଛାମୁରେ ସମସ୍ୟା ଦିଅନ୍ତା କେହିନାହିଂ ।
ମଉଗଜ ଯେସନେ ଯାଉଅଛି ଚଳାଇ ॥
ଖୁଣ୍ଟିଆ ମଣିମା ମଣିମା ବୋଲିଣ
ଡାକଦେଇ ।
ଆଗରେ ବାଜଣା ବୀର ତୂର ବାଜଇ ॥
କେହୁ ବିଞ୍ଚଇ କେ ଢାଳଇ ଚାମର ।
କେହୁ ଗୁମ୍ପ ବିଞ୍ଚଣୀ ଧରି ବିଞ୍ଚନ୍ତି ଛାମୁର ॥
ପିଙ୍ଗଳ ବର୍ଣ୍ଣ ଯେ ଦିଶଇ ତାର କାୟେ ।
କେଶ ନିଶ ଦାଢ଼ୀ ଯେ ରକତ ପରାୟେ ॥
ନିଜ ନବରୁ ଯେ ହୋଇଲା ବାହାର ।
ଆକାଶ ମାର୍ଗେ କାୟା ବଢ଼ାଇଲା
ଅସୁର ॥୧୦୦

ରାଜାଦାଣ୍ଡଯାକ ଦେଖୁଛନ୍ତି ଲୋକେ ।
ଯେବେ ସେ ଦୁଃଖ ଯିବ ବୋଲୁଛନ୍ତି
ଥୋକେ ॥
ଭାଟେ କୟେବାର କରନ୍ତି ତହିଂ ମିଳି ।
ଆନନ୍ଦେ ଯୁବତୀମାନେ ଦିଅନ୍ତି ହୁଳହୁଳି ॥
ମଙ୍ଗଳାଅଷ୍ଟକ ପଢ଼ନ୍ତି ଜ୍ୟୋତିଷ ।
କିଜାଣି ଅସୁର ହୋଇଅଛି ଦିବ୍ୟବେଶ ॥
କୁଳୁପାକ୍ଷ ଯୋଡ଼ଇ ବେନିକର ।
ଶୁଣ ଦେବ ଲଙ୍କପତି ତୈଲୋକ୍ୟ ଈଶ୍ୱର ॥
ଶ୍ରୀରାମ ଲକ୍ଷଣ ବୋଲି ଦୁଇ ଜଟାଧାରୀ ।
ସୀତା ବୋଲିଣ ସେ ଅଟଇ ତାର
ନାରୀ ॥୧୦
ପଞ୍ଚୁବଟୀ ବନେ ବସାକରିଥିଲେ ।
ସୂପଲେଖି ନାସା ଶ୍ରବଣ ଛେଦିଲେ ॥
ଖର ଧୂଷଣ ଯେ ଗଲେ ପରିଘାଇଂ ।
ତ୍ରିଶିରା ସହିତେ ଅସୁର ବଳ ଯାଇଂ ॥
ଯତିର ନାରାଙ୍କେ ସଭିୟେ ନାଶଗଲେ ।
ଗୋଟିଏ କେହି ଯେ ଜୀଇଂଣ ନଇଲେ ॥
ସୂପଲେଖି ଆସି କରିଲା ବାରତା ।
କୋପେଣ ରାବଣ ଆଣିଲା ତାର ସୀତା ॥
ସୁବର୍ଣ୍ଣମୟେ ମୃଗେକ ଦେଖାଇଲା ।
ଲକ୍ଷଣ ଘେନି ରାମ କୁରଙ୍ଗୀ ମାରିଗଲା ॥୨୦
ଏକା ହୋଇଣ ଯେ ଥିଲା ତାର ନାରୀ ।
ଭାଇ ଯେ ତୋର କପଟେ ହୋଇଲା
ଭିଖାରୀ ॥
ଫଳଭିକ୍ଷା ଦିଅନ୍ତେ ଧରିଣ ଆଣିଲା ।
ବାଟରେ ଆସିବାବେଳେ ଗରୁଡ଼ସୁତ ଯେ
ଜିଣିଲା ॥
ଓଶେକ ବିପୁନ୍ୟେ ଥୋଇଣ ଅଛଇଂ ।
ତ୍ରିଜଟା ମୂଳେ ସହସ୍ରେ ଅସୁରୀ ଜଗାଇଂ ॥
ରମି ନ ପାରଇ ରମ୍ଭାର ଶାପ ଜାଣି ।
ଭାବରେ ଅଙ୍ଗ ଯେ ନ ଦେଇ କାମିନୀ ॥
ଆହାର ନ ଖାଇ ଧରିଅଛି ଦେହ ।
ଦଶଗ୍ରୀବର ତାହାକୁ ବଢ଼ାଇ ସେନେହ ॥୩୦
ଆଣିମା ପାଞ୍ଚମାସେ ମାଙ୍କଡ଼େକ ଅଇଲା ।
ମଧୁବନ ତୋଟା ଭାଙ୍ଗି ପକାଇଲା ॥

କିଙ୍କର ଗଣ ପେଷିଲା ତୋର ଭାଇ ।
ତାହାଙ୍କୁ ନାଶିଲା ଯେକା କପି ହୋଇ ॥
ଶାଳେକଗଣ ସହିତେ ନାଶିଗଲା ।
ସାତ ସେନାପତି ପ୍ରାଣେଣ ମାଇଲା ॥
ଜମ୍ବୋମାଳି ଅକ୍ଷୟେ କୁମାର ଯୁଝିଗଲେ ।
କପିର ହାଥେ ସେ ଦୁଇବୀର ମଲେ ॥
ଇନ୍ଦ୍ରଜିତ ନାଗଫାଶେ ଆଣିଲାକ ବାନ୍ଧି ।
ମାୟା ବାନର ସେ ଭୂମିରେ ପଡ଼ି କାନ୍ଦି ॥୪୦
ମାଇଲେ ନ ମଲା ଯେ ହାଣିଲେ ନ ଛିଡ଼ିଲା ।
କୋପେ ଲଙ୍କପତି ତାର ଲାଞ୍ଜ ପୋଡ଼ିଦେଲା ॥
ସେହି ଅଗ୍ନି ଘେନି ଦହିଲା ଲଙ୍କପୁରୀ ।
ଶ୍ରୀରାମକୁ ବାରତା ଦେଲା ନେଇ ସିନ୍ଧୁପାରି ॥
ଯତି ଯେ ଜନେକ ମୃଗ ମାରି ଯାଇଥିଲା ।
କୁରଙ୍ଗୀ ଘେନିକରି ମଢ଼ିଆକୁ ଅଇଲା ॥
ଘରଣୀ ନ ପାଇ ବୁଲଇ ଚଉକତି ।
ଋଷିମୁଖ ପର୍ବତେ ହୋଇଲେ ଦୁଇଯତି ॥
ବାଳୀ ନୃପତି ଯେ କିଷ୍କିନ୍ଧାର ରାୟେ ।
ସାନୁଜ ଭାଇ ତାର ନାମ ସୁଗ୍ରୀବର ହୋୟେ ॥୫୦
ଜ୍ୟେଷ୍ଠ କନେଷ୍ଟ ହୋଇଲେ ମରାମରି ।
ସୁଗ୍ରୀବର ପଳାଇ ପଶିଲା ଋଷିମୁଖଗିରି ॥
ତାହାର ସଙ୍ଗେ ଯତି ହୋଇଲାକ ଭେଟ ।
ମଇତ୍ର ହୋଇ ଦୁହେଁ କୁହାକୁହି କଷ୍ଟ ॥
ମଇତ୍ରର ଛଳେ ଯତି ବାଳୀକି ମାଇଲା ।
କିଷ୍କିନ୍ଧା ନବର ସୁଗ୍ରୀବରକୁ ଦେଲା ॥
ଋକ୍ଷକପି ଘେନିଣ ସୁଗ୍ରୀବର ରାୟେ ।
ରାମ ଲକ୍ଷଣଙ୍କର ସଙ୍ଗତରେ ଗୋଡ଼ାୟେ ॥
ଚାରିଦିଗକୁ ରାମ ପେଷିଲେ ଚାର ମାନ ।
ଦକ୍ଷିଣକୁ ଅଇଲା ପବନ ନନ୍ଦନ ॥ ୬୦
ସୀତା ଖୋଜିଣ ପୁଣି ବାହୁଡ଼ିଣ ଗଲା ।
ଶ୍ରୀରାମ ଛାମୁରେ ଯାଇ ସମସ୍ତ କହିଲା ॥
ଶୁଣି ଜଟାଧାରୀ ହୋଇଲା ଉଷତ ।
ଋକ୍ଷ କପି ହାଥେ ବୁହାଇ ପରବତ ॥
ବିଭୀଷେଣ ଯାଇ ପଶିଲା ଶରଣ ।
ତିଆରିଲେ କୋପ କଲାକ ରାବଣ ॥
ସମୋଦ୍ରେଣ ବଂଧ ବାନ୍ଧିଣ ପାରି ହୋୟେ ।
ସୁବଳୟା ଗିରିରେ କଟକ କରି ରହେ ॥
ଜ୍ୟେଷ୍ଠ ଅମାବୈ ଦିନରେ ଧାଡ଼ିଦେଲା ।
ସହସ୍ରେପୁର କରି ଲଙ୍କା ଯେ ବେଢ଼ିଲା ॥୭୦
ଭାଇ ତୋର ଯାଇ ଶୂନ୍ୟରେ ଥାଠ ଯେ ଦେଖିଲା ।
ଗଦାମାରନ୍ତେ ତାହା ହନୁମନ୍ତ ନେଲା ॥
ଜାଣି ରଘୁନାଥ ପେଷିଲେ ଯେକ କାଣ୍ଡ ।
ଲକ୍ଷେବୀରକ୍ଷତ୍ର କଲାକ ଖଣ୍ଡ ଖଣ୍ଡ ॥
ବାହୁଡ଼ି ରାବଣ ଅଇଲା ଲଙ୍କପୁରୀ ।
ମାଙ୍କଡ଼େକ ଅଇଲା ମୁଠା ଆଜ୍ଞା ଘେନିକରି ॥
ତାହାଙ୍କୁ ଭାଇ ତୋର ବଳେ ମାରୁଥିଲା ।
ମାରିବା ଲୋକଙ୍କୁ ମାରି ଜଗତୀ ଚାଳ ନେଲା ॥
ସେ ଦିନରୁ ଯୁଦ୍ଧ ହୋଇଲା ବହୁତ ।
ପାଚେରୀ ଡେଇଂ ବାନରେ ପଶିଲେ ତୁରିତ ॥୮୦
ଚାରିଦ୍ୱାରେ ଯେ ମାରିଲେ ଚାରି ସେହ୍ନା ।
ଇନ୍ଦ୍ରଜିତ କୁମରକୁ ମାରୁଥିଲେ ନିନା ॥
ଧର୍ମେଣ ପଳାଇଲା ଧନୁ ଶସ୍ତ୍ର ଛାଡ଼ି ।
ହନୁମନ୍ତ ନାମେ ବାନରେକ ପଡ଼ିଲାକ ମାଡ଼ି ॥
ସେଦିନ ଯୁଦ୍ଧ ଯେ ଯେତେକେ ହେଂ ଗଲା ।
ବେଳ ବୁଡ଼ନ୍ତେ ଯତି ଥାଠ ଘେନିଗଲା ॥
ଆରଦିନରେ ଯତି ପେଷିଲାକ ଚାର ।
ଶ୍ରୀମୁଖ ଆଣିଥିଲା ପବନ କୁମାର ॥
କାଣ୍ଡ ଦେଖାଇଣ ସୀତାଙ୍କୁ ମାଗୁଥିଲା ।
ପ୍ରୀତି ନ କହିଲେ ବାହୁଡ଼ିଣ ଗଲା ॥
ତାହାର ଯାଆନ୍ତେଣ ଆପଣେ ଦଶଶିର ।
ଚତୁରାଙ୍ଗ ବଳ ଘେନି ହୋଇଲା ବାହାର ॥
ରିକ୍ଷବାନରେ ମିଳି ଅନେକ ଯୁଦ୍ଧ କଲେ ।
ଦୁଇକଟିରୁ ବଳ ଅନେକ କ୍ଷୟ ଗଲେ ॥
ଲକ୍ଷଣ ନାମେଣ ଶ୍ରୀରାମ ସାନଭାଇ ।
ଇନ୍ଦ୍ରଜିତ ଶକତି ମାଇଲା ତାହାକଇ ॥
ସେ ଘାୟେ ଘୁମାଇଂଣ ପଡ଼ିଲା ଧରଣୀ ।
ଯଶ ଘେନି ବାହୁଡ଼ି ଅଇଲା ଲଙ୍କମଣି ॥
ପୁଣି ସାନଯତି ବ୍ରତିଲା କେବଣ ସାଧେ ।
ଆରଦିନରେ ଇନ୍ଦ୍ରଜିତ ପଶିଲାକ ଯୁଦ୍ଧେ ॥୧୦୦
ଋକ୍ଷକପି ବଳ ଅନେକ କ୍ଷୟେକଲା ।
ନାଗଫାଶରେ ରାମ ଲକ୍ଷଣଙ୍କୁ ବାନ୍ଧିଲା ॥
ଶିର ନ ଛେଦିଲା ମୃତ୍ୟୁପିଣ୍ଡ ବୋଲି ।
ସେହି ରାତ୍ରେଣ ବ୍ରତି ବେଢ଼ିଲେ ଲଙ୍କପୁରୀ ॥
ଗଲାକାଲି ଦିବସରେ ବାରବୀର ଗଲେ ।
ଧୂମାକ୍ଷ ଅଙ୍କପନ ବଜ୍ରଧୁଷ୍ଟ ମଲେ ॥
ଥାଠ ଭାଙ୍ଗିଲା ଯେ ଗୋଡ଼ାଇଲା ଯତି ।
ପଳାଇ ସଇନି ମରଣକୁ କରି ଭୀତି ॥
କଟକରେ ପଶିଲେ ନଗଲେକ ଛାଡ଼ି ।
ଲଙ୍କାଗଡ଼ରେ ବୁଲିଲା ମାଙ୍କଡ଼େକ ଚଢ଼ି ॥୧୦
ସିଂହଦ୍ୱାରୁ ବୀର ବାହୁଡ଼ିଣ ଗଲା ।
ଶୁଣିଣ ଭାଇ ତୋର ଅନେକ ଶୋକ କଲା ॥
ତୋତେ ଆଶ୍ରେ କରିଛନ୍ତି ଅସୁର ବଳନ୍ତ ।
ତେଣୁ ତୋତେ ତୋଳିଲୁ ହୋ ବିଡ଼ୋଜାରକାନ୍ତ ॥
ଶୁଣି କୁମ୍ଭକର୍ଣ୍ଣ ଛାଡ଼ିଲାକ ରଡ଼ି ।
ମହାପ୍ରଳୟ କାଳେ କି ପଡ଼ିଲା ଘଡ଼ଘଡ଼ି ॥
ସନ୍ନିଧର ଲୋକେ ପଳାଇଲେ ଶୁଣି ।
ରାକ୍ଷସ ପ୍ରତଜ୍ଞା କରଇ ଶିର ଝୁଣି ॥
ବୋଇଲା ଯେହେର୍ଣ୍ଣେରେ ହୋଇଅଛି କଥା ।
ଶୁଣି ଆତ୍ମା ମୋର ପାଉଅଛି ବ୍ୟଥା ॥୨୦
ରାବଣ ଛାମୁକୁ ତୁଚ୍ଛା ହୋଇ କେମନ୍ତେଣ ଯିବି ।
ଶ୍ରୀରାମ ଲକ୍ଷଣ ମୁଣ୍ଡ ଘେନି ଆସିବି ॥
ତେବେ ସେ ତୃପତି ହୋଇବ ଲଙ୍କସାଇଂ ।
କୁଳୁପାକ୍ଷ ବୋଇଲା ଶୁଣିମା ଗୋସାଇଂ ॥
ମୋହୋର ବୋଲକରି ଶୁଣିମା ଲଙ୍କସାଇଂ ।
ଆଗେ ତୁ ରାଜାଙ୍କୁ ଦ୍ରଶନ କର ଯାଇଂ ॥

ପଚ୍ଛେଣ ରାମ ଲକ୍ଷଣ କପି ମାରି ।
ରାଜା ଆଜ୍ଞା ଦେଇଅଛି ଦ୍ରଶନ ବେଗେ
କରି ॥
ଏହାଶୁଣି ଦଇତ କଲାକ ସନମତ ।
ହୋଇ ହୋଇ ଦ୍ରଶନ କରିବା
ନୃପତିନ୍ତ ॥୩୦
ଯେତେ ବୋଲି କାୟା ବଢ଼ାଇଲା ଦୈତ୍ୟ
ରାଗେ ।
ଚାଲନ୍ତେଣ ବୀରତୂରୀ ବାଜୁଅଛି ଆଗେ ॥
ଲଙ୍କାର ପାଚେରୀ ଉଞ୍ଚ ଦଶଗୁଣ ।
ଦୁଇକୋଶ ଓସାର ଦିଶଇ ପରମାଣ ॥
ତାହା ଜିଣି ଦେହ ବାହାରକୁ ଦିଶିଲା ।
ଦେଖିଣ ଠଣା ବଳ ଧାଇଂଣ ଯେ ଗଲା ॥
ନିଆଇଂ ଯୁଝନ୍ତି ସେ ଯେବେ ଯେ
ଅଇଲେ ।
ବିପରୀତ ଦେଖି ଛାଡ଼ି ପଳାଇଲେ ॥
ସିଂହରଡ଼ି ବେଳୁ ଥିଲେକ ଚରକି ।
ଏବେ ପଳାଇଲେ ବଢ଼ିବାର ଦେଖି ॥୪୦
ତିନିକୋଟି କପି ସତୁରୀ କୋଟି ରକ୍ଷ ।
ସିନ୍ଦୂରାବର୍ଣ୍ଣ କପି ତହିଂ ଅଟନ୍ତି ବେନିଲକ୍ଷ ॥
ଦଣ୍ଡ ଭଗ୍ନ ସୈନ୍ୟ ଯେହାନ୍ତ ହାଦେ ବୋଲି ।
ମାଡ଼ି ନପଡୁଣୁ ବୋଇନ୍ତି ମଲି ମଲି ॥
ସେମାନେ ପଳାଇଲେ ସେନାପତି ଛାଡ଼ି ।
ରହ ରହ ବୋଇଲେ ପଥେ ଯାନ୍ତି ମାଡ଼ି ॥
ଶ୍ରୀରାମ ଯେ କାଲି ଅନିଦ୍ରା ହୋଇଥିଲେ ।
ରାତ୍ରି ପାହିବାରୁ ନିଦ୍ରାରୁ ଉଠିଲେ ॥
ନିତ୍ୟକର୍ମ ସାରି ସନ୍ଧ୍ୟା ସୁମରନ୍ତି ।
ଆଗରେ ପଟୋଆରି ଯୋଦ୍ଧାମାନେ
ଛନ୍ତି ॥୫୦
ଏସନେକ ସମୟେ ବାଜିଲାକ ଗୋଳ ।
କିସ କିସ ବୋଲି ବୋଇନ୍ତି ରଘୁବାଳ ॥
ଆଗିଆଣି ଅଇଲା ବୋଲି ବଳକୁ
ଚାହିଁଦେଲେ ।
ଅପୂର୍ବ ଦେଖି ବିଭୀଷେଣକୁ ପଚାରିଲେ ॥
ସନ୍ଧ୍ୟାମେଘ ପ୍ରାୟେ ଦିଶଇ ଯେ କିସ ।
ସୂର୍ଯ୍ୟ ଅସ୍ତ ହୋଇଲାକି ପ୍ରହରେ ଦିବସ ॥

ଲଙ୍କା ଭିତରେ ହୋ ଦିଶଇକି ମେରୁ ।
ଆଗେ ତ ଏତେ ଉଞ୍ଚରେ ନଥିଲାକ ତରୁ ॥
ପ୍ରସାଦ ଅଟାଳୀ ନ ଥିଲାକ କେହୁ ।
ଇନ୍ଦ୍ରଧନୁ ବୋଲନ୍ତି ଆଦ୍ରାବଳୀ ଯେହୁ ॥
ମେଘର ପ୍ରାୟେକ ହୋ ଦିଶଇ ଯେ କିସ ।
ଏକଥା ମୋତେ କହ ହୋ ବିଶର୍ବାର ଶିଷ ॥
ବିଭୀଷେଣ ବୋଇଲା ଯୋଡ଼ି ବେନି ହସ୍ତ ।
ମୋହୋର କଥା ଯେବେ ଶୁଣିମା ରଘୁନାଥ ॥
ମେରୁ ବୋଲି ଯାହା ବୋଲୁଛ ଗୋସାଇଂ ।
ଏଟି କୁମ୍ଭକର୍ଣ୍ଣର ମୁକୁଟ ଅଟଇ ॥
ରାବଣର କନେଷ୍ଟ ବଇରୀକୁଳକାଳ ।
ସାବଧାନ ହୋଇ ତୁମ୍ଭେ ଶୁଣିମା ରଘୁବାଳ ॥
ତ୍ରୈଲୋକ୍ୟେ ବଳୀଆର ସରିସମ ନାହିଁ ।
ନିଜ ଥାନ ଛାଡ଼ି ଦେବେ ଯାଆନ୍ତି
ପଳାଇ ॥୭୦
ରାବଣ କନେଷ୍ଟ ଯେ ବଇରୀ କୁଳ ନାଶ ।
ଋଷି ବ୍ରାହ୍ମଣ ଯେ କରଇ ବିନାଶ ॥
ଯେବଣ କାଳେ ଏହାକୁ ବାରହ ବରଷ ।
ବାଳୁତ ବୁଦ୍ଧି ଘେନି ବୁଲଇ ଦେଶ ଦେଶ ॥
ହାତୀ ଘୋଡ଼ା ଗୋରୁ ପରଜାନ୍ତ ଖାଇ ।
ସମୟେକେ ଦେବ ତୁଚ୍ଛା କଲା ମହୀ ॥
ଅସ୍ଥି ମାଂସ ଚର୍ମ ସର୍ବ ଦେଶ ।
ଯେ ଅବା ମନୁଷ୍ୟ ଥିଲେ ହୋଇଲେ
ପ୍ରାଣନାଶ ॥
ଇନ୍ଦ୍ର ଦେବତାକୁ ଗୁହାରି ଯାଇଂକଲେ ।
କୁମ୍ଭକର୍ଣ୍ଣର ଭୟେ ନରହିଲୁ
ବୋଇଲେ ॥୮୦
ସୃଷ୍ଟି ସରିଲା ହୋଇଲା ହାଡ଼କୁଡ଼ ।
ଜୀବଜନ୍ତୁ ସମସ୍ତ ଖାଉଅଛି ମୂଢ଼ ॥
କି ବୁଦ୍ଧି କରିବା ପଳାଇତ ଠାବ ନାହିଁ ।
ସପତ ଦୀପ ଅସୁର ବୁଲଇ ଗୋସାଇଂ ॥
ଶୁଣି ଇନ୍ଦ୍ରଦେବତା ମନରେ ଗରୁ ଖଙ୍ଗ ।
ବିଷ ପୂରିଲେ ଯେହ୍ନେ ଗର୍ଜଇ ପନଙ୍ଗ ॥
ବୋଇଲେ ଅସୁର ରେ ପ୍ରବଳ ହୁଅନ୍ତି ।
ଧର୍ମ ନ ଥାପିଣ ଅନ୍ୟାୟ କରନ୍ତି ॥
ବଜ୍ର ଶର ମାରି ଏହାର ଘେନିମି ପରାଣ ।

ଐରାବତ ଗଜ ମୋର ସଜ କରି
ଆଣ ॥୯୦
ଶୁଣିଣ ଗନ୍ଧର୍ବଗଣେ ଆଣିଲେ ମହାନାଗ ।
ଚଳିଲା ବାସେବ ମନରେ ଗରୁ ଖଙ୍ଗ ॥
ଅମୋହ ବଜ୍ର ଦକ୍ଷିଣ କରେ ଧରି ।
ଯେବଣ ବଜ୍ର ଘାୟେ ବୃତ୍ରାସୁର ମରି ॥
ସୁରପତି ଅସୁରକୁ ମାଇଲା ଯାହା ଘେନି ।
ପର୍ବତଙ୍କର ପକ୍ଷୀ ପଳାଇଲା ଛିନି ॥
ଗରୁଡ଼କୁ ପିଟିଲା ବିଷମ ମହାରଣେ ।
ତାହା ବହିଲା ଏବେ ଜଗତ କାରଣେ ॥
ସଙ୍ଗେଣ ଗନ୍ଧର୍ବ ବଳ ଅଛନ୍ତି ବହୁତ ।
ଶିର ଉପରେ ଉଡ଼ଇ ବୀରଛତ୍ର ॥୧୦୦
ଲକ୍ଷେ ଚାମର ଉଡ଼ଇ ଚଉପାଶ ।
କୁମ୍ଭକର୍ଣ୍ଣକୁ ଭେଟିଲା ଉତ୍ତର କୂଳ ଦେଶ ॥
ପରଜାନ୍ତ ଖାଇ ସେ ବୁଲଇ ଅବନୀ ।
ଘନ ଘନ ରଡ଼ି ଛାଡ଼ଇ ସିଂହଧ୍ୱନି ॥
ଗନ୍ଧର୍ବ ବଳଘେନି ଓଗାଳିଲା ଇନ୍ଦ୍ର ।
ବଜ୍ର ଉଚାଇଂଣ ବୋଇଲା ଆରେ ମନ୍ଦ ॥
କିଂପାଇଂ ସୃଷ୍ଟି ମୋର କରୁଅଛୁ ନାଶ ।
ଏଇକ୍ଷଣି ତୋତେ ପେଷିବି ଯମପାଶ ॥
ଏତେବୋଲି କରେ ମହାବଜ୍ର ଧରି ।
ଦୈତ୍ୟ ଉପରେ ଯେ ପିଟିଲା
କୋପକରି ॥୧୦
କୁମ୍ଭକର୍ଣ୍ଣର ଉପରେ ପଡ଼ିଲା ବଜ୍ରଘାତ ।
ଟହ ଟହ ହୋଇ ହସିଲା ଦଇତ ॥
ବୋଇଲାରେ ଏଣେ ମୋହୋର ହୋଏ
କିସ ।
ନିଶ୍ଚୟେ ଆଜ ତୋତେ ମୁଂ କରିବି
ପ୍ରାଣନାଶ ॥
ଏତେବୋଲି ଐରାବତର ଦନ୍ତଧରି ।
ହେଳେ ଉପାଡ଼ିଲା ଲୀଳାଗତି କରି ॥
ବିକଳେ ଗଜ ଛାଡ଼ିଲା ସିଂହରଡ଼ି ।
ରକତ ଝରେ ଝରେ କି ମେରରୁ ଗଙ୍ଗା ପଡ଼ି ॥
ହସ୍ତୀର ଦନ୍ତ ଉପାଡ଼ିଲା ଦଇତ ।
ଇନ୍ଦ୍ର ଉପରେ ନେଇ ପିଟିଲା
କୋପଚିତ୍ତ ॥୨୦

ବିଷମ ଘାତ ପାଇ ସୁରପତି ମଲା ।
ଜାଣି ଐରାବତ ଇନ୍ଦ୍ରକୁ ଘେନିଗଲା ॥
ବ୍ରହ୍ମାର ଛାମୁରେ ହୋଇଲାକ ଯାଇ ।
ଦେଖିଣ ଚକିତ ସାବେତ୍ରୀ ଦେବୀ ସାଇଂ ॥
ହସ୍ତୀ କହିଲା ଯୁଦ୍ଧର ବିଧାନ ।
ଶୁଣିକରି ତବଦ ଚତୁର ବଦନ ॥
ମନେ ବିଚାରଇ କରିବା ହାଦେ କିସ ।
କୁମ୍ଭକର୍ଣ୍ଣର ଘାୟେ ଜଗତ ଯିବ ନାଶ ॥
ଯଦ୍ୟପି ତାହା ପ୍ରାଣ ହରିବଇଂ ବଳ ।
ବଂଶ ଦ୍ରୋହ କଲେ ନୋହିବ ଭଲ
କାର୍ଯ୍ୟ ॥୩୦
ଉପାୟେ କରି ଦଇତର ହରିବଇଂ ଆଜ ।
ଯେତେ ବୋଲି ଶାପ ଦେଲେ ଲୋକପାଳ ॥
ବୋଇଲା ତୁ ନିଦ୍ରା ଯାଆରେ କୁମ୍ଭକର୍ଣ୍ଣ ।
ଯେତେକାଳେ ତୋର ଥିବାକ ଜୀବନ ॥
ସୁଖ ଭୋଗ ତୁରେ ନ ଘେନିମୁ କାହିଂ ।
ତେବେ ସେ ଥିର ମୋର ହୋଇବ ସାତ
ମହୀ ॥
ଯେତେ ବୋଲିଣ ସେ ବଜ୍ରଧର କର୍ଣ୍ଣେ ।
ସାରସ୍ୱତ ମନ୍ତ୍ର କହିଲା ବ୍ରହ୍ମଜ୍ଞାନେ ॥
ଯେବଣ ପ୍ରକାରେ ସେ ଜଗତ ପ୍ରାଣସାଇଂ ।
ସାମବେଦ ଉପଦେଶରେ ଯହୁଂଥାଇଂ ॥୪୦
ତାହା ଇନ୍ଦ୍ର କର୍ଣ୍ଣେ କହିଲେ ବେଦପତି ।
ବୁଡିଲା ଶକ୍ରରାୟେ ପ୍ରଚଣ୍ଡ ସୂର୍ଯ୍ୟମୂର୍ତ୍ତି ॥
ବ୍ରହ୍ମାର ତିଆରନ୍ତେ ନିଜପୁରୀ ଗଲା ।
ଏଥୁଅନନ୍ତରେ କିଛୁଦିନ ଗଲା ॥
ରାବଣ କୁମ୍ଭକର୍ଣ୍ଣ ସହିତେଣ ମୁହିଂ ।
ବିରଞ୍ଚା ମଣ୍ଡଳେ ତପକଲୁ ଯାଇଂ ॥
ତୋଷ ହୋଇଆସି ବ୍ରହ୍ମା ବର ବେଳେ ।
ତେତିଶ କୋଟି ଦେବ କହିଲେ ବିକଳେ ॥
ଭୋ ପିତାମହ ତୁ ନକର ଅନୀତି ।
କୁମ୍ଭକର୍ଣ୍ଣ ଘାୟେ ନରହିବ ପୃଥ୍ୱୀ ॥ ୫୦
ଦୁଷ୍ଟଲୋକଙ୍କର ନ ଘେନ ସନମାନ ।
ଶୁଣି ତୁଷ୍ଟ ହୋଇଲେ ଚତୁରବଦନ ॥
କୁମ୍ଭକର୍ଣ୍ଣକଇ ବୋଇଲେ ମାଗବର ।
ସ୍ୱରସ୍ୱତୀ କଣ୍ଠେ ବସିଲେ ତାହାର ॥

ଦଇବର ମାୟା ମଣିତ ନଗଲା ।
ନିଦ୍ରାଯିବ ବୋଲି କୁମ୍ଭକର୍ଣ୍ଣ ମାଗିଲା ॥
ଅସ୍ତୁହୋଉ ବୋଲି ଗଲେକ ସୁରମାନେ ।
ରହି ଆଜ୍ଞା ଦେଲେ ଚତୁର ବଦନେ ॥
ବୋଇଲା ବରଷେକେ ଦିନେକ ଉଠିବୁ ।
ବିବିଧ ସୁଖ ଭୋଗ ସେଦିନ କରିବୁ ॥ ୬୦
କଷ୍ଟ ନ ପୂରୁ ଉଠିବୁସି ଯଦି ।
ପ୍ରାଣେ ନାଶଯିବୁ କହିଲୁସି ବୁଧି ॥
ଏତେ ବୋଲି ଧାତା ବ୍ରହ୍ମଲୋକେ ଗଲା ।
ଶୁଣ ଦେବ ଶ୍ରୀରାମ ବିଭୀଷେଣ ଜଣାଇଲା ॥
ବର ପାଇଣ ଯେ ଅଇଲୁ ତିନିଭାଇ ।
ବ୍ରହ୍ମାର ବଚନେ କୁମ୍ଭକର୍ଣ୍ଣ ନିଦ୍ରାଯାଇ ॥
ସଂମ୍ୱକ୍ଷର ପୂରନ୍ତେ ଉଠଇ ଯେକଦିନ ।
ସ୍ନାହାନ ଭୋଜନ ଯେ ବିବିଧ ବିଧାନ ॥
ଅବିକ୍ଷନେ ଦାନ ଦିଅଇ ନଗ୍ରେ ଫେରି ।
ଦେବତାଙ୍କୁ ଭୋଗ୍ୟ ଦିଅଇ ତୋଷ
କରି ॥୭୦
ବିଦ୍ୟାସାଧନ ଯେ ବିବିଧ ହରଷ ।
ଅଳଙ୍କାର ଗନ୍ଧଚନ୍ଦନ ବସ୍ତ୍ରପୁଷ୍ପ ॥
ସ୍ତିରୀ ଉପଭୋଗ୍ୟ କରଇ ରାଜ୍ୟ ଚିନ୍ତା ।
ଶତ୍ରୁ ନିବାରଇ ଯେ ବଳେଣ ବଳବନ୍ତା ॥
ଭଣ୍ଡାର ସଙ୍ଖୋଳଇ ଭୃତ୍ୟଙ୍କୁ ଧନବସ୍ତ୍ର ।
ଚାରିବେଦ ଜପି ଅଗ୍ନିରେ ଦିଅଇ ଘୃତ ॥
ଏମନ୍ତେ ରାତ୍ରେକ ଦିବସେକ ଭୋଗ୍ୟକରି ।
ପୁଣି ନିଦ୍ରାଯାଇ ଯେ ଖଟିଥାନ୍ତି ନାରୀ ॥
ପୁଣ ବରଷେକେ ଉଠଇ ଯେକଦିନ ।
ବ୍ରହ୍ମାର ଆଜ୍ଞାଯେ କରିବକେ ଆନ ॥ ୮୦
ଏହି ପ୍ରମାଣେ ଯେ ଅନେକ ଯୁଗ ଗଲା ।
ଏବେ ଆଜ କଷ୍ଟ ନ ପୂରି ଉଠିଲା ॥
ଏଗାରମାସେ ପକ୍ଷେକ ହୋଇଲା ଗଣିତା ।
ଶୁଣିଅଛି ଯାହା ଯେ କହିଲା ବିଧାତା ॥
ନିଶ୍ଚୟେ କୁମ୍ଭକର୍ଣ୍ଣ ହୋଇବ ଆଜ ନାଶ ।
ସେହି ଅନେକ ଲୋକ କରିବ ପ୍ରାଣନାଶ ॥
ବଳବନ୍ତ ପଣେ ନାହିଂ ସରିସମ ।
ତାହାରି ମୁଖ ଦେଖିଲେ ଭୟେ ପାଇ ଯମ ॥
ଐରାବତ ଦାନ୍ତ ଯେ ଉପାଡ଼ିଲା ବଳେ ।

ନେଉଟାଇ ପହୁଡ଼ିଲା ଇନ୍ଦ୍ରର
ବକ୍ଷସ୍ଥଳେ ॥୯୦
ସେ ଘାୟେ ମୋହିତ ଯେ ହୋଇଲା
ସୁନାସୀର ।
ଭୋ ରାମ କୁମ୍ଭକର୍ଣ୍ଣ ଯେଡ଼େମାନ ବୀର ॥
ଉଚ୍ଚଂ ଗଛ ଯେହ୍ନେ ପତ୍ର ଦେଖି ଜାଣି ।
ଏଣ୍ଣେକ କୁମ୍ଭକର୍ଣ୍ଣର ବିଚାର ରଘୁମଣି ॥
ସାବଧାନ ହୋଇକରି ଯେକଇଂ ଯୁଝ ।
ଭୋସ୍ୱାମୀ ଯେହାକୁ ତୁ ସାମନ୍ୟ ନ ବୁଝ ॥
ଶୁଣିଣ ଶ୍ରୀରାମ ଯେ ଅଳପ ହୋଇ ହସି ।
ବୁଝିବାନା କୁମ୍ଭକର୍ଣ୍ଣ ସାଂଗ୍ରାମକୁ ଯେବେ
ଆସି ॥
ଯେତେବୋଲି ରାମ ଯେ ନୀଳକୁ ଚାହାନ୍ତି ।
ସଇନି ନ ପଳାନ୍ତୁ ଶ୍ରୀରାମ ଆଜ୍ଞା
ଦ୍ୟନ୍ତି ॥୧୦୦
ମୁଇଂ ଯେ ଦୈତ୍ୟକୁ କରିବି ପ୍ରାଣହତ ।
ରକ୍ଷକପିଙ୍କି ବୋଲ ଯେ ନୋହନ୍ତୁ ତରସ୍ତ ॥
ଯେ ଯାହାର ଆୟୁଧ ଧରିଣ ରହିଥାନ୍ତୁ ।
ରାକ୍ଷସ ଅଇଲେ ଯେ ସାଂଗ୍ରାମ ଦେଖନ୍ତୁ ॥
ଶୁଣି ରକ୍ଷକପି ଯେ ଭରସା ପାଇଲେ ।
ପର୍ବତେ ଥାଇଂ ଲଙ୍କାଗଡ଼କୁ ଚାହିଂଲେ ॥
ଭିତରେ ମହାଭୟେ ବାହାରେ ଗର୍ଜନ୍ତି ।
ଶାଳଶିଳ ଧରି ସଂଗ୍ରାମେ ଧାମନ୍ତି ॥
ଏଥୁ ଅନନ୍ତରେ ଯେ ଲଙ୍କାରେ କୁମ୍ଭକର୍ଣ୍ଣ ।
ଧୀର ଧୀର ହୋଇ ସେ କରଇ ଗମନ ॥୧୦
ରାଜାର ନବର ଭିତରେ ଯାଇ ପଶି ।
ଦ୍ୱାର ଜିଣିଣ ଯେ ଦଶାନନ ଦିଶି ॥
ଇନ୍ଦ୍ରଜିତ ପ୍ରଭୃତି ଯେତେକ ଲୋକ ଥିଲେ ।
ପ୍ରଲମ୍ବ କରିଆସି ପାୟେ ପଡ଼ି ନେଲେ ॥
ଜଗତୀର ତଳେ ଆସି କୁମ୍ଭକର୍ଣ୍ଣ ହୋୟେ ।
ନିଉଛାଳି ପକାଇ ପାୟେ ପଡ଼ି ଶୋୟେ ॥
ଉଠି ଉଭା ହୋଇ ପହଣ୍ଡ ଦଶ ଗଲା ।
ପୁଣି ଗଡ଼ଘାଲି ଶୋଇଣ ଉଠିଲା ॥
ନିକଟକୁ ଗଲା ଯେ ଯୋଡ଼ି ବେନିକର ।
ଦେଖି ସିଂହାସନୁ ଉଠିଲା ଦଶଶିର ॥ ୨୦
ଭାଇକି କୋଳକରି ମୁଖେ ଚୁମ୍ବନ ଦେଲା ।

ପୁଣି ଯାଇଂ ନିଜ ଆସ୍ଥାନେ ବସିଲା ॥
କୁମ୍ଭକର୍ଣ୍ଣ ବିଞ୍ଚଇ ଘେନିଣ ବିଞ୍ଚଣି ।
ମଉନେ ସମାସ୍ୟା ନ ଦିଅଇ ବିଂଶପାଣି ॥
ସଭା ନିଶବଦ ହୋଇଲେ ସର୍ବଜନ ।
କର ଦୁଇଯୋଡ଼ି ବୋଲଇ କୁମ୍ଭକର୍ଣ୍ଣ ॥
ଭୋ ଦେବ ଦଶଗ୍ରୀବ କାହିଂ ରାମଯତି ।
କାହାର ତନୟେ କେବଣ ଦେଶରେ ଉତପତ୍ତି ॥
ସେ ତୋହୋର ବଇରୀ ହୋଇଲା କିସ ପାଇଂ ।
ରକ୍ଷ ବାନର ସଇନି ପାଇଲା ସେ ଅବା କାହିଂ ॥୩୦
ସୁବଳୟାଗିରିରେ ରହିଲା କେମନ୍ତେ ଆସି ।
କିସ କିସ ଯୁଦ୍ଧ କରି ସେ ତପୁସୀ ॥
ଭାଇର ବଚନେ କହଇ ଯେ ଦଶଶିର ।
ଅଯୋଧ୍ୟା ଦେଶରେ ଦଶରଥ ନୃପବର ॥
ତାହାର ତନୟେ ଯେ ରାମ ଲକ୍ଷଣ ବେନି ।
ବନବାସ କଲେ ସେ ଭାରିଯାକୁ ଘେନି ॥
ପଞ୍ଚୁବଟୀ ବନେ ଆଶ୍ରମ କଲେ ଆସି ।
ଜଟା କକ୍ଷା ବହି ହୋଇଲେ ତପୁସୀ ॥
ତହିଂ ସୂପଲେଖିର ଯେ କାଟିଲେ ନାକ କାନ ।
ଖର ଧୂଷଣ ତ୍ରିଶିରା ମାଇଲେ ବହୁତ ସୈନ୍ୟ ॥୪୦
ତାହା ଶୁଣିଣ ମୁଂ ଯେ ଗୁପତେଣ ଗଲି ।
ଶ୍ରୀରାମ ଲକ୍ଷଣ ନଥିଲେ ସୀତ୍ୟାକୁ ଆଣିଲି ॥
ଭାରିଯାକୁ ନ ଦେଖି ବିକଳେ ବେନି ଯତି ।
ଋଷିମୁଖ ପର୍ବତେ ସୁଗ୍ରୀବକି ଭେଟନ୍ତି ॥
ବାଳୀର ଡରେ ସେ ଲୁଚିଣ ହାଦେ ଥିଲା ।
ଶ୍ରୀରାମର ସାଥେ ମଇତ୍ର ହୋଇଲା ॥
ମଇତ୍ରର ଛଳେ ରାମ ବାଳୀ ପ୍ରାଣେ ମାରି ।
ଦୁନ୍ଦେଭି ହାଡ଼ ଟୋଳି ସପତ ଶାଳ ତରୁ ନିବାରି ॥
କିସ୍କିନ୍ଧାରେ ହୋଇଲା ସୁଗ୍ରୀବର ନୃପତି ।
ତାହାର ସୈନ୍ୟ ଘେନି ଅଇଲା ଯେବେ ଯତି ॥୫୦
ହନୁମନ୍ତ ନାମେ ସେ ଅଇଲା ଯେକ ଚାର ।
ଯେଥି ଉପଦ୍ରପ ସେ କଲାକ ଅପାର ॥
ମଧୁବନ ଭାଙ୍ଗି ଯେ ଲଙ୍କାଗଲା ଦହି ।
ଜମ୍ବୋମାଳି ଅକଏ କୁମାର ହତ ହୋଇ ॥
ଅନେକ ସଇନି ମାରି ଏଥୁ ଗଲା ।
ଶ୍ରୀରାମ ତପୁସୀକି ବାରତା ନେଇ ଦେଲା ॥
ଶୁଣିଣ ଯତି ପୁଣି ପର୍ବତେ ସିନ୍ଧୁ ପୋତି ।
ବିଭୀଷେଣ ଶରଣ ପଶିଲା ପ୍ରାଣଭୀତି ॥
ଖଡ଼ଗ ଘେନି ମୋର ଛତ୍ର ଛିନାଇଲା ।
ଚାରି ସେନାପତିଙ୍କି ପ୍ରଥମେ ମାଇଲା ॥୬୦
ଆରଦିନ ମୁଂ ଯେ ସମରେଣ ଗଲି ।
ବେଳ ଅସ୍ତ ପରିଯନ୍ତେ ଅନେକ ଯୁଦ୍ଧ କଲି ॥
ଇନ୍ଦ୍ରଜିତ ଯୋଗେ ମାଇଲା ଶକତି ।
ସେ ଶହସ୍ରେ ହାଦେ ନ ମଲା ସାନଯତି ॥
ଆବର ତିନି ଦିବସେ ଇନ୍ଦ୍ରଜିତ ଗଲା ।
ରକ୍ଷ କପି ବଳ ବହୁ ସଂହାରିଲା ॥
ନାଗଫାଶେ ବାନ୍ଧିଲା ଶ୍ରୀରାମ ଲକ୍ଷଣ କାୟେ ।
ରଣଜଏ କରିଣ ସେ ବାହୁଡ଼ିଣ ଆୟେ ॥
ପୁଣି ବ୍ରତିଲେ ସେ କେବଣ ଗୁଣ ପାଇଂ ।
ବାର ସେନାପତି ମୋ ଗଲେ ପରିଘାଇଂ ॥୭୦
ଧୂମାକ୍ଷ ବଜ୍ରଧନୁଷ୍ଟ ଗଲେକ ଅକମ୍ପନ ।
ସଂଗ୍ରାମେ ପଡ଼ିଲେ ହାଦେ ଯେହୁ ତିନିଜଣ ॥
ସେନା ପଡ଼ନ୍ତେ ଭାଜିଲେକ ଥାଠ ।
ଗୋଡ଼ାଇ ସେ ଯତି ପଶିଲା ଲଙ୍କରାଷ୍ଟ ॥
ସିଂହଦ୍ୱାର ପରିଯନ୍ତେ ଆସି ବାହୁଡ଼ିଣ ଗଲା ।
ନରବାନରେ ମୋତେ ଅନେକ ଦୁଃଖ ଦେଲା ॥
ତୁ ମୋହୋର ସାଖା କହିଲଇଂ ତୋତେ ।
ଏ ଶୋକସୋମୋଦ୍ର ଉଧରି ଧର ମୋତେ ॥
ଶୁଣି କୁମ୍ଭକର୍ଣ୍ଣ ଯେ ବୋଇଲା ବଚନ ।
ଏତେକ ହୀନ ବୁଦ୍ଧି କଲୁସି ରାଜନ ॥୮୦
ପ୍ରାକର୍ମେ ନ ପାରି ସେ ଚୋରାଇଂ ଆଣିଲୁ ।
ଯେକାଜଣେ ହୋଇଥିଲା ମାରି ନ ପାରିଲୁ ॥
ଯେବେ ବଳ ସାହା ପାଇଲା ବହୁତ ।
ଭୋ ଲଙ୍କପତି ତୁ କଲୁସି ଅନିତ୍ୟ ॥
ବାଳୀକି ମାଇଲା ବୋଲି ଯେବେ ଜାଣି ।
ରହ୍ର ହୋଇଲେ କି ପାରିବୁ ହାଦେ ଜିଣି ॥
ତୋହୋର ବଳେ ଶ୍ରୀରାମକୁ ନପାରିବୁ କରି ନାଶ ।
ବାଳୀକି ମାଇଲା ଶୁଣି ମୁଂ କଲି ମନେ ତ୍ରାସ ॥
ଯେବେ ଯଦି ମୁହିଂ କରିବଇଂ ପୁଣି ରଣ ।
ଜଏ ନାହିଂ ପୁଣି ଏକଥା ହିଂ ଶୁଣ ॥୯୦
ଧର୍ମ ତାହାତହିଂ ଅଛଇ ବିଜେ କରି ।
ପର୍ବତେ ସିନ୍ଧୁ ପୋତି ହୋଇଲା ଯେହୁ ପାରି ॥
ବଣଜନ୍ତୁମାନେ ବିଶ୍ୱାସ ତାକୁ ଗଲେ ।
ରକ୍ଷ କପି ହୋଇ ଗିରି ଉପାଡ଼ିଲେ ॥
ଅସୁରଙ୍କର ସଙ୍ଗେ ଯୁଝନ୍ତି ଶରଧା ।
ଶୁଣିଣ କୋପେ ଯେ ବୋଲଇ ଦଶମୁଧା ॥
ନିସତ ହୋଇଲୁ ଯେବେ ଶତ୍ରୁର ସୈନ୍ୟ ଦେଖି ।
ସାଂଗ୍ରାମକଇ ଛାଡ଼ି ଭାଇ ପଳାଇଯା ଉପେକ୍ଷି ॥
ବିଭୀଷେଣ ଜୀଇଲା ବଇରୀ ଜଟାପଣେ ।
ତୁ ଯେବେ କୁମ୍ଭକର୍ଣ୍ଣ ପଳା ଯା ଯେଣେତେଣେ ॥୧୦୦
ରାବଣର କୋପ ଦେଖି ମହୋଦର ।
କର ଦୁଇ ଯୋଡ଼ି ବୋଲଇ ଶୁଣ ଦଶଶିର ॥
କିମ୍ପା ତୁ କୁମ୍ଭକର୍ଣ୍ଣକୁ କୋପକରୁ ରାୟେ ।
ତାହା ନ ଡିଆରିଲେ ଡିଆରିବ ତୋତେ କିୟେ ॥
ଅକାରଣେ ବଇରୀ କରୁ ତୁ କିସ ଅର୍ଥେ ।
ସମ୍ପଦ ନାଶଗଲା ବିଷମ ବିଅର୍ଥେ ॥
ବିଭୀଷେଣ ପ୍ରାଏକ ଛାଡ଼ିଲାକ ଭାଇ ।
ଏବେ କୁମ୍ଭକର୍ଣ୍ଣର କଥା ନ ଯୋଗାଇ ॥
ତାହାର ବୋଲ ଆମ୍ଭେ କରିବୁ ନୃପତି ବର ।
ମିଛେହେଂ କୋପ କରୁଯେ ଅବେଭାର ॥୧୦
ଶୁଣି ଦଶଗ୍ରୀବ କୋପରେ ଥରହର ।
ଭୟେକରି ପଛଘୁଞ୍ଚା ଗଲାକ ମହୋଦର ॥

କୁମ୍ଭକର୍ଣ୍ଣ ବୋଇଲା ତୁ କୁଳକୁ ଲାଜକଲୁ ।
ଯତିର ଭାରିଯାକୁ ଚୋରାଇ ଆଣିଲୁ ॥
ସ୍ତିରୀ ଚୋର ନାମ ବୋଲାଇବୁ ଜଗତର
ମଧ୍ୟେ ।
କିମ୍ପା ଆମ୍ଭଙ୍କୁ ଭଲ ବୋଲିବେ ସୁରସିଧ୍ୟେ ॥
ବିଭୀଷେଣ ଚାଣ୍ଡାଳ ହୀନ ବୁଧି କଲା ।
ଶତ୍ରୁର ତହିଂଯାଇ ଶରଣ ପଶିଲା ॥
ସେହି କୁଳକୁ କରାଇଲା ଲାଜ ।
ଶତ୍ରୁର ସଙ୍ଗରେ ସଂହାରିବି ଆଜ ॥ ୨୦
ସଇନି ସେନା ତୋର ସବୁ ଯେଥି ଥାଉ ।
ମୋହୋର ସଙ୍ଗତେ ଏବେ ଗୋଟିଏ
ନଯାଉ ॥
ଏକା ଯୁଦ୍ଧ ମୁଇଂ କରିବି ବାହୁବଳେ ।
ଋକ୍ଷ କପି ସୈନ୍ୟ ସଂହାରିବି ରୋଳେ ॥
ଯଦ୍ୟପି ଶ୍ରୀରାମକୁ ତ୍ରୈଲୋକ୍ୟ ରଖନ୍ତି ।
ମାରିବି ଆଜ ତାଙ୍କୁ ନାହିଂ କିଛି ଭ୍ରାନ୍ତି ॥
ଆଜୁଂ ହାଦେ ସୀତୟା ହୋଇଲା
ତୋହୋର ।
ଋକ୍ଷକପି ଭୋଗ୍ୟ ହୋଇଲା ମୋହୋର ॥
ଯେତେ ବୋଲି ବିଞ୍ଚଣା ତଳେ ପକାଇଲା ।
ଶୂଳ ଧରି ଗରଜି ଘୋର ରଡ଼ି ଦେଲା ॥୩୦
ପୃଥିବୀ କମ୍ପିଲା ଝଡ଼ିଲା ପରବତ ।
ଆକାଶେ ବେଗେ ବେଗେ ପଳାଇ
ଆଦିତ୍ୟ ॥
ଦେବେ ଜାଣିଲେ କୁମ୍ଭକର୍ଣ୍ଣର ରଡ଼ି ।
ଆଜ ସେ ବାନରଙ୍କୁ ପଡ଼ିବ ବିଷମ ଧାଡ଼ି ॥
ସମୋଦ୍ର ଲହଡ଼ି ହୋଇଲାକ ଥିର ।
ତିନିବେଳ ଯହୁଂ ଗର୍ଜିଲା ମହାବୀର ॥
ଆସ୍ଥାନର ଲୋକେ ତରସ୍ତ ହୋଇଲେ ।
ନିଶ୍ଚୟେ ଋକ୍ଷକପି ମରିବେ ବୋଇଲେ ॥
କୁମ୍ଭକର୍ଣ୍ଣ ପ୍ରତଜ୍ଞା କରଇ ଶିର ଝୁଣି ।
ଯେ ମୋହୋର ପ୍ରତଜ୍ଞା ତୁ ଦେଖ
ଲଙ୍କମଣି ॥୪୦
ଶୁଣି ଦଶାନନ ସନ୍ତୋଷ ହୋଇଲା ।
ରତ୍ନ ଜଡ଼ିଲାର ଅନେକ ଆୟେ ଦେଲା ॥
ମକୁଟ କୁଣ୍ଡଳ କିରୀଟୀ ବିତପନ ।
ମଣିରତ୍ନ କିରଣ ଦିଶଇ ଛନ ଛନ ॥
ହୃଦକଇ ପଦେକ କଣ୍ଠକଇ ହାର ।
ବାହୁମୂଳେ ତାଡ଼ ସରଳ ରତ୍ନସାର ॥
କରେଣ କଙ୍କଣ ଅଙ୍ଗୁଷ୍ଟିରେ ମୁଦି ।
ତାଉଆ ମେଘେ ଯେହ୍ନେ ବିଜୁଳି ଆଚ୍ଛାଦି ॥
କଟିରେ କଟିମେଖଳା ଯମଦାଢ଼ ନେତ ।
ପୟରେ ନୂପୁର ରତ୍ନେଣ ନିର୍ମିତ ॥ ୫୦
ପର୍ବତ ସମକରି ବଢ଼ାଇଲା କାୟେ ।
କରେ ଶୂଳ ଧରି ସାଂଗ୍ରାମକୁ ଆୟେ ॥
ଫରହର ନିଶ ନିଃଶ୍ୱାସ ବାୟେ ଉଡ଼ି ।
ପହଣ୍ଡକେ ଆସି ଛାଡ଼ଇ ସିଂହ ରଡ଼ି ॥
ନବରୁ ବାହାର ହୋଇ ଦିଶିଲା ବୀର
ଯେକା ।
ଯାଉଂ ଯାଉଂ ଦଲଦଲ ହୋଉଅଛି ଲଙ୍କା ॥
ମହାମେଘ ପ୍ରାୟେକ ଯେ ଦିଶିଲା ରାକ୍ଷସ ।
ଦେଖିଣ ନଗ୍ରଲୋକ ପାଇଲେ ମନେ ତ୍ରାସ ॥
ମନେ ବିଚାରନ୍ତି ଯେବେ ଶତ୍ରୁନାଶ ଯିବ ।
ଯେହାର ମୁଖେ ପଡ଼ିଲେ କେ ଜୀବନ
ପାଇବ ॥
ଆଗେ କୁମ୍ଭକର୍ଣ୍ଣ ପଛେଣ ସଇନି ।
ସାରଥି ମିଳିଲା ଯାଇଂ ରହୁବର ଘେନି ॥
ତହିଂ ଆରୋହିଲା ଯେ ରାବଣର ଭାଇ ।
କରେଣ ଧନୁ ଧରି ସାଂଗ୍ରାମକୁ ଯାଇ ॥
ଉତ୍ତର ଗଡ଼ ଦ୍ୱାରେ ହୋଇଲା ବାହାର ।
କୋଟିୟେ ଯମ ଜିଣି ବଦନ ତାହାର ॥
ବାନରେ ପଳାଇଲେ ଭୟେମାନ ପାଇଂ ।
ସେନା ସେନାପତିମାନଙ୍କୁ ପେଷିଲେ
ରଘୁସାଇଂ ॥
ଆପଣଇ ସାଂଗ୍ରାମକୁ ଆସନ୍ତି ପଛ ପଛ ।
ଏଥୁଅନନ୍ତରେ ବିଶର୍ବାର ବଛ ॥ ୭୦
ସାଂଗ୍ରାମ ମଣ୍ଡୋଳେ ପଶି ଶର ବୃଷ୍ଟିକଲା ।
ଧାଇଂ ଆସି ଅଙ୍ଗଦ ଆଗେ ଓଗାଳିଲା ॥
ହନୁମତ ମିଳିଲା ଯେସନେକ ସମୟେ
ଆସି ।
ତାହାକୁ କୁମ୍ଭକର୍ଣ୍ଣ ନାରାଜ ବରଷି ॥
କାଣ୍ଡ ବଞ୍ଚାଇଣ ଦୁଇ କପି ବୀରେ ।
କରେ ଧରିଥିଲେ ଯେ ମହତ ପଥରେ ॥
ରହୁବର ଉପରେ ପିଟିଲେ ବୃକ୍ଷେ ବୃକ୍ଷେ
ନେଇ ।
ରଥ ଭାଜିଲାକ ଶତେ ଖଣ୍ଡ ହୋଇ ॥
କୁମ୍ଭକର୍ଣ୍ଣର ଦେହେ ବାଜିଲା ତରୁରାଜି ।
ଘାଆ ପାଇ ରାକ୍ଷାସ କୋପେ ଗଳଗାଜି ॥୮୦
ଶୂଳ ଘେନିଣ ଯେ ହନୁମତକୁ ପିଟିଲା ।
ଜ୍ଞାନ ହରାଇଣ ବୀର ଭୂମିରେ ଲୋଟିଲା ॥
ଅଙ୍ଗଦକୁ ନାତ ମାରି ଫିଙ୍ଗିଦେଲା ।
ଖଣ୍ଡେ ଦୂରେ ପଡ଼ି ସେ ଜ୍ଞାନ ହରାଇଲା ॥
ଯହୁଂ ସେ ଅଙ୍ଗଦ ହନୁ ମୋହଗଲେ ।
ଝମ୍ପି କୁମ୍ଭକର୍ଣ୍ଣ ପଶିଲା କପି ପଲେ ॥
ଦେଖି ଉଗାଳିଲେ ପାଞ୍ଚ ଯୂଥପତି ।
ନଳନୀଳ ଗନ୍ଧମାର୍ଦ୍ଦନ ପ୍ରଭୃତି ॥
ଗବାକ୍ଷ ଶଉରୀ ମୂଳେ ପାଞ୍ଚଜଣ ।
ହାକି ଓଗାଳିଲେ ରହିଲା କୁମ୍ଭକର୍ଣ୍ଣ ॥ ୯୦
ମଉଗଜକୁ ଯେହ୍ନେ ଶାର୍ଦ୍ଦୋଳ ବେଢ଼ନ୍ତି ।
ଦୈତ୍ୟର ଆଗେ କପି ତେସନ ଦିଶନ୍ତି ॥
ଯେହାଙ୍କର ପଛେ ଯେ ଅଛନ୍ତି ସଇନି ।
ଯେ ଯାହାର ଆୟୁଧ ଅଛନ୍ତି ସେ ଘେନି ॥
ପାଞ୍ଚ ଯୂଥପତି ଓଗାଳିଣ ଥିଲେ ।
ପାଞ୍ଚେହେଂ ପାଞ୍ଚ ବୃକ୍ଷ ଧରିଣ ପିଟିଲେ ॥
ଦୈତ୍ୟର ଦେହେ ବାଜି ଭାଙ୍ଗିଲା ତରୁବର ।
ପୁଣି ପାଞ୍ଚବୀରେ ଧଇଲେ ପଥର ॥
ରାକ୍ଷସ ଉପରେ ପିଟିଲେ ତାହା ନେଇ ।
ପାଞ୍ଚ ପଥର ଭଙ୍ଗିଗଲା ଗୁଣ୍ଡା ହୋଇ ॥୧୦୦
କୋପେଣ ଦୈତ୍ୟ ଯେ ପିଟିଲା ନେଇ
ଶୂଳ ।
ପାଞ୍ଚ ସେନାପତି ଲୋଟିଲେ ମହୀତଳ ॥
ସେନାଙ୍କର ପଡ଼ନ୍ତେ ପଳାଇଲେ ବଳ ।
ଗର୍ଜିଣ ପାଦେ ଯେ ମର୍ଦ୍ଦଇ କପିବଳ ॥
ଶ୍ରୀରାମ ଆଶ୍ରେକେ ରହିଲେ ସଇନି ।
କରେ ତରୁଶିଳ ନୁଆରନ୍ତି ଘେନି ॥
ରାଘେବ ବୋଇଲେ ଶୁଣସି କପିରାଜ ।
ଅନେକ ଯୁଦ୍ଧ ଦୈତ୍ୟ ଯେ କବିରାକ ଆଜ ॥
ସଇନିକି ଘେନି ତୁ ଓଗାଳସି ଯାଇଂ ।

ମୁଇଂ ଯାଉଅଛି ଧନୁରେ ଗୁଣ ଦେଇ ॥୧୦
ଶୁଣି କପିରାଜ ଧାଇଂଲା କୋପଭରେ ।
ବିକରାଳ ବଦନ ଶିଳ ତରୁ କରେ ॥
ରାଜାର ଧାମନ୍ତେ ଯେ ଧାଇଂଲେ ରକ୍ଷ
କପି ।
ଯେକକୁ ଆରେକ ଶୂନ୍ୟେ ଯାନ୍ତି ଖେପି ॥
ବଂଧ ଭାଙ୍ଗିଲେ ଯେହ୍ନେ ପଶଇ ବଢ଼ିପାଣି ।
ଧାମନ୍ତି ଶ୍ରୀରାମର ସୈନ୍ୟ ତେସନେକ
ଜାଣି ॥
କୁମ୍ଭକର୍ଣ୍ଣ ଉପରେ ଉଠିଲେ ରକ୍ଷକପି ।
ଧରି ଗିଳିଲା ସେ ବିକରାଳ ରୂପୀ ॥
ନାକ କାନେ ନିକିଳି ହୋଇଲେ ବାହାର ।
ପର୍ବତଗୁହା ଜାଣି ବଦନ ତାହାର ॥ ୨୦
କାହାକୁ ପାଦେଣ ମର୍ଦ୍ଦି କରଇ ଧୂଳି ।
କାହାକୁ ଆକାଶକୁ ପକାବଇ ଟୋଳି ॥
ରୋଷଭରେ କାହାକୁ ଚକଟଇ ଦନ୍ତେ ।
କାହାର ହୃଦରେ କୋଡ଼ଇ ତୀକ୍ଷ କୋନ୍ତେ ॥
କାହାକଇ ଗଦା କାହାକଇ ବିଧା ।
କାହାକଇ ଗୁରଦା କାହାକଇ ଖୁନ୍ଦା ॥
ଯେମନ୍ତେ ଅନେକ ଯେ ମାଇଲା ସଇନି ।
ସୁଗ୍ରୀବର ମିଳିଲା ଶିଳା ବୃକ୍ଷ ଘେନି ॥
ମକୁଟ କୁଣ୍ଡଳ ଯେ କଣ୍ଠେ ରତ୍ନ ହାର ।
ପିଠି କଟିକି ବାଳ ଲାଗିଅଛି ତାହାର ॥୩୦
ଦେଖିଣ କୁମ୍ଭକର୍ଣ୍ଣ ମନରେ ବିଚାରି ।
ଯେ ସେ ସୁଗ୍ରୀବର ବାଳୀର ବଇରୀ ॥
ସେ ବେଳହୁଂ ରୂପ ଯେହାର ହୋଇଥାନ ।
ଯେହାର ଭରସାରେଟି ଅଇଲେ ରଘୁନାନ ॥
ବାଳୀକି ମରାଇ ଯେ ରାଜା ହୋଇଅଛି ।
ଆଜି ଯେ ଯମ ଯେହାର ପକାଇବ ପାଞ୍ଜି
ପୋଛି ॥
ଯେତେକ ବିଚାରିଣ ପରିଘେକ
ଫୋପଡ଼ାଇ ।
ବୃକ୍ଷପାତି ତାହା ସୁଗ୍ରୀବର ସଂହାରଇ ॥
ତରୁ ଭାଜିଣ ଯେ ପଡ଼ିଲା ଦେହେ ଅସ୍ତ୍ର ।
ଘାୟେ ଘୁମାଇଲା ଯେ ପଡ଼ିଲା
ସୂର୍ଯ୍ୟଶିଷି ॥୪୦

ଧାଇଂଣ କୁମ୍ଭକର୍ଣ୍ଣ ଧଇଲା କୋଳକରି ।
ମାତା ଯେହ୍ନେ ପୁତ୍ରକୁ କୋଳରେ ଆବୋରି ॥
ଉତ୍ତାନ ହୋଇଣ ଯେ ସୁଗ୍ରୀବର
ଶୋଇଥିଲା ।
ବିଚାରିଲା ଯଶତ ମୋହୋର ନୋହିଲା ॥
ବିଚାରିଲା ଯଶତ ହୋଇଲା ମୋହୋର ।
ବାନରଙ୍କର ରାୟେ ଯେ ପଡ଼ିଲା ସୁଗ୍ରୀବର ॥
ରାବଣର ଛାମୁରେ ଦେବଇଂ ଏହାକୁ
ନେଇ ।
ଭ୍ରାନ୍ତି ଛାଡ଼ୁ ଯେବେ ମନ୍ଦୋଦରୀ ସାଇଂ ॥
ଶ୍ରୀରାମ ଲକ୍ଷଣଙ୍କୁ ଯେ କରଇ ପଛେ ନାଶ ।
ପ୍ରଥମେ ଯୁଦ୍ଧ ହୋଇଲା ମୋତେ
ଯଶ ॥୫୦
ଯେତେ ବୋଲି ବୀର ବାହୁଡ଼ଇ ଝାଟି ।
ହିଆରେ ଲଗାଇଣ ଯେ ଭିଡ଼ଇ କପିପତି ॥
ଦକ୍ଷିଣ ମୂରତି ହୋଇ ଯେ ଚଳଇ ଘନଘନ ।
ହାହାକାର କରନ୍ତି ରକ୍ଷ କପି ସୈନ୍ୟ ॥
ଶ୍ରୀରାମର ମଇତ୍ର ଯେ ସୁଗ୍ରୀବର ରାୟେ ।
ତାହାକୁ ଦଇତ କୋଳକରି ଘେନିଯାୟେ ॥
ବନ୍ଦୀପଡ଼ିଲେ ଆମ୍ଭର ରକ୍ଷ କପି ସାଇଂ ।
ବୋବିପାଡ଼ନ୍ତି କପି ରାକ୍ଷସକୁ ଗୋଡ଼ାଇ ॥
ହନୁମନ୍ତ ଅଙ୍ଗଦ ଯେ ମୋହେ ପଡ଼ିଥିଲେ ।
ଶବଦ ଶୁଣି ସେ ଚେତନା ପାଇଲେ ॥୬୦
ଗନ୍ଧମାଦନ ଯେ ନଳ ସେନାପତି ।
ଗବୟେ ଗବାକ୍ଷ ଶଉରୀ ଉଠନ୍ତି ॥
ରାଜାକୁ ନେଲା ବୋଲି ଧାଇଂଲେ ସମସ୍ତ ।
ଆଗ ହୋଇ ଅଛନ୍ତି ଅଙ୍ଗଦ ହନୁମନ୍ତ ॥
ସଇନି ନିରନ୍ତରେ କଳଣା ନ ଯାଇଂ ।
ରକ୍ଷ କପି ପୃଥି ହୋଇଛନ୍ତି ଛାଇଂ ॥
ଶ୍ରୀରାମ ନ ଜାଣନ୍ତି ସୁଗ୍ରୀବର ନେଲା ।
ଜମ୍ୱେବନ୍ତଙ୍କର ଭାଇ ଯାଇ ଜଣାଇଲା ॥
ଭୋସ୍ୱାମୀ ରଘୁନାଥ କୁମ୍ଭକର୍ଣ୍ଣ ବୀର ।
ଧରି ନେଉଅଛି ଯେ ମୈତ୍ରକୁ ତୁମ୍ଭର ॥
ଶୁଣି ଦାଶରଥି ହୋଇଲେ ଆରତ ।
ବିଭୀଷେଣକୁ ଚାହିଂ ବୋଲନ୍ତି ରଘୁନାଥ ॥
ଯାଅ ହୋ ଲଙ୍କପତି କୁମ୍ଭକର୍ଣ୍ଣକଇଂ ଦେଖ ।

ଯେମନ୍ତେ ପାର ଯାଇଂ ଘେନ ମୋହୋର
ସଖ୍ୟ ॥
ଲକ୍ଷଣ ଆସିବାକୁ ଅଛଇ ବାଟ ଚାହିଂ ।
ତୋହୋର ପଛେ ପଛେ ଯାଉଅଛି ମୁଇଂ ॥
ଯେତେ ବୋଲି ରାମ ଧନୁରେ ଦେଲେ
ଗୁଣ ।
କେତେହେଂକ ଦୂରେ ଦିଶିଲା ଲକ୍ଷଣ ॥
ବଳ ଅପ୍ରମିତ ତାହାର ସଙ୍ଗେ ଅଛି ।
ଦ୍ରଶନ କଲା ଆସି ସୁମେତ୍ରାର ବଚ୍ଛି ॥୮୦
ଶ୍ରୀରାମ ବୋଲନ୍ତି ଆରେ ଶୁଣିଲୁଟିକି ଭାଇ ।
କୁମ୍ଭକର୍ଣ୍ଣ ରାକ୍ଷସ ସୁଗ୍ରୀକି ଘେନିଯାଇ ॥
ଶୁଣିଣ ସଉମିତ୍ରୀ କୋପେଣ ପରଚଣ୍ଡ ।
ଯେହିକ୍ଷଣି ଦଇତର କାଟିବଇଂ ମୁଣ୍ଡ ॥
ଯେସନେକ ବୋଲି ଧାଇଂଲେ ଭାଇ
ବେନି ।
ସାଙ୍ଗରେ ରକ୍ଷକପି ବହୁତ ସଇନି ॥
ଯେକକୁ ଆରେକ ଗୋଡ଼ ଜିଣାଜିଣି ।
ଯହୁଂ ସେ ଆପଣେ ଧାଇଂଲେ ରଘୁମଣି ॥
ଜମ୍ୱେବ ଶତବାଳି କାଳିଞ୍ଜନ ବୀର ।
ନୀଳ ଶତବଳ ହନୁର ପିଅର ॥ ୯୦
ସାରାସ ପାରାସ ତାଳିମ୍ୱ ଦୃବିନ୍ଦ ।
କଞ୍ଚଣ କୋମୋଦ ପନସ ମହାନ୍ଦ୍ର ॥
ମାର ମାର ବୋଲି ଯେ ଡାକନ୍ତି କପିବଳ ।
ମୁଖରାବ ଶବଦ ଯେ ଅନେକ ଚହଳ ॥
ହନୁ ଅଙ୍ଗଦ ଯେ ଅଛନ୍ତି ବେଢ଼ ପାରି ।
ଚଳଇ ଦୈତ୍ୟ ଯେ କରିଣ ଘୋର ରଡ଼ି ॥
ଅଙ୍ଗଦ କୁମର ଯେ ମାରୁତିକି ପୁଚ୍ଛି ।
କୁମ୍ଭକର୍ଣ୍ଣ ରାକ୍ଷସ ଯେ ଆମ୍ଭ ରାଜାକୁ
ନେଉଅଛି ॥
ଲଙ୍କାରେ ପ୍ରବେଶ ହୋଇବ
ଯେତେବେଳେ ।
ସୁଗ୍ରୀବର ଜୀବନକି ପାଇବ
ତେତେବେଳେ ॥୧୦୦
ଏବେ ଓଗାଳିଣ ଘେନିମା ଛଡ଼ାଇ ।
କେତେକ ଦୂର ଆମ୍ଭେ ଥିବାକ ଗୋଡ଼ାଇ ॥
ବିଷମଘାତ ପାଇ ଯେ ମୋହ କପିରାଜ ।

ରାମାୟେଣ ଯୁଧେ କପିରାଜ କରାଇଲା
ଲାଜ ॥
ଏହାର ଜ୍ୟେଷ୍ଠଭାଇ ମୋହୋର ପିଅର ।
ତିନିପୁରେ ତାକୁ ବୋଲନ୍ତି ବଳୀଆର ॥
ଏହି କୁମ୍ଭକର୍ଣ୍ଣର ଅଗ୍ରଜ ଦଶାନନ ।
ବାଳୀର ହାଥେ ମାସେ ଥିଲାକ ବନ୍ଧନ ॥
ମୈତ୍ର ହୋଇଣ ସେ ଜୀବନ ଘେନିଆସି ।
ତାହାଥିଲେ ଅସୁର ପକାନ୍ତା
ବେଗେନାଶି ॥୧୦
ବାବୁ ବିଧାତାରେ ଏକାଳକୁ ସେ ନାହିଁ ।
ଅକାଳ ମରଣ ଥିଲା ତାକୁ କାହିଁ ॥
ଏବେ କିସ ବୁଧି କରିବା ହନୁମନ୍ତ ।
ଦୈତ୍ୟର ହାତରୁ କେମନ୍ତେ ଆସଇ
ରୋମାକାନ୍ତ ॥
ହନୁ ବୋଇଲା ତୁ ଆସୁ ଥାଅ ଯେବେ ।
ଆମ୍ଭେ ସୁଗ୍ରୀବରକୁ ଛଡ଼ାଇବା ଯେବେ ॥
ଲାଜ ପାଇବନା କପିକୁଳ ପତି ।
ନିନ୍ଦା କରିବେ ତାକୁ ସକଳ ନୃପତି ॥
ଲଙ୍କା ଦ୍ୱାର ଯାଏ ଗୋଡ଼ାଇଣ ଥିବା ।
ସେଠାରୁ ନଇଲେ ପଛେ ଛଡ଼ାଇ
ଘେନିମା ॥୨୦
ଯେସନେକ ବୋଲି ଯେ ବିଚାର କରନ୍ତି ।
କୁମ୍ଭକର୍ଣ୍ଣ ଦୁଇପାଖେ ଲାଗଦେଇଛନ୍ତି ॥
ମଲମହାମଲ ଯେ ଯୂଥପତିମାନେ ।
ଗୋଡ଼ାଇଣ ଅଛନ୍ତି ରକ୍ଷକପି ସୈନ୍ୟେ ॥
ପଛିଆଣି ଦଣ୍ଡେ ଅଛନ୍ତି ରଘୁରାଜ ।
ସୁଗ୍ରୀବରକୁ ଯେ ଘେନି ଯାଉଅଛି ରାବଣ
ସାନୁଜ ॥
ଲଙ୍କାର ପାଚେରୀ ଜିଣି ଦିଶିଲାକ ଯାଇଂ ।
ଅସୁର ଅସୁରୀ ଆଶ୍ରିଯ ହୋନ୍ତି ଚାହିଁ ॥
କେ ବୋଲଇ କାହାକୁ ଯେ ଆଣୁଅଛି ଧରି ।
କେ ବୋଲଇ ସୁଗ୍ରୀ ବାନରଙ୍କର
ଅଧିକାରୀ ॥୩୦
କେ ବୋଲଇ ଭଲା କୁମ୍ଭକର୍ଣ୍ଣ ବୀର ।
ଲଙ୍କା ଭୁବନ ହାଦେ କଲା ସେହୁ ସ୍ଥିର ॥
ସୁଗ୍ରୀ ପଡ଼ିଲା ଯେ, ସରିଲାନିନା ରଣ ।
ଶ୍ରୀରାମ ଲକ୍ଷଣ ଅଟନ୍ତି ଦୁଇଜଣ ॥
ରାଜାର ନିଧନେ ଯେ ବଳ ପଳାଇବେ ।
ଶ୍ରୀରାମ ଲକ୍ଷଣ କି ରହିନ୍ତ ପାରିବେ ॥
ଯେସନେକ ବୋଲି ଭାଳେଣି କରନ୍ତି
ଚାହିଁ ।
କପିରାଜ ଚେତନା ପାଇଲା ବନ୍ଦୀରେଣ
ଥାଇଂ ॥
ମନେ ବିଚାରଇ କରିବଇଂ କିସ ।
କ୍ଷତ୍ରୀଙ୍କର ମୁଖେ ମୁଂ ପାଇଲି
ଉପହାସ୍ୟ ॥୪୦
ଯେବେ ରାକ୍ଷସକୁ ସେ ମାରିବି କେମନ୍ତେ ।
ତେବେ ସେ କୀରତି ମୋର ରହିବ
ଜଗତେ ॥
ଯେତେକ ବିଚାରିଣ ସାମାନ୍ୟ ରୂପ ହୋଇ ।
ଧାଇଂପଡ଼ି ଦଇତର ନାସିକା କାମୋଡ଼ଇ ॥
ଦୁଇ ହାଥରେ ଯେ ଛିନାଇଲା ଦୁଇକାନ ।
ବଳେଣ ଧରୁ ଧରୁ ଯେ ଉଡ଼ିଲା ଗଗନ ॥
ଶ୍ୟାମଳ ପକ୍ଷୀ ଯେହ୍ନେ ମତ୍ସ୍ୟ ଘେନିଯାଇଂ ।
କପି କୁଳପତି ତେସନେକ ଦିଶଇ ॥
ତୁଣ୍ଡେ ନାକ ଧରି ହାଥେ ଦୁଇକାନ ।
ଦକ୍ଷିଣେ ଜମ୍ୱେବ ଅଙ୍ଗଦ ହନୁମାନ ॥୫୦
ସେନା ସେନାପତି ଯେ ଉପରକୁ ଚାହାନ୍ତି ।
ବାହୁଡ଼ିଣ ରକ୍ଷ କପି ଆନନ୍ଦେ ବୋବି ଦ୍ୟନ୍ତି ॥
ରକ୍ଷ କପି ବଳ ଯେ ହୋଇଲେ ଉଛତ ।
ବୋଇଲେ ଅଇଲେ ହୋ ଶ୍ରୀରାମ ମୈତ୍ର ॥
ରକତ ଟୋପା ଟୋପା ଯେ ପଡୁଅଛି କ୍ଷିତି ।
କିସ କିସ ଘେନି ଉଡ଼ଇ କପିପତି ॥
କେ ବୋଲଇ ଓଷ୍ଠ କାମୋଡ଼ି ଅଛି ରାଗେ ।
ତେଣୁ ସେ ରୁଧିର ପଡୁଛି ଭୂମି ଭାଗେ ॥
କେ ବୋଲଇ ଘାଆ ହୋଇ ଅବା ଯେ
ଅଇଲା ।
ଆସିପାରିଲା ଯେ ଭଲା ସେ
ହୋଇଲା ॥୬୦
ଏସନେକ ବୋଲିଣ ଯେ ଧାଇଂଲେ
ସଇନ ।
ଗଗନେ ବିକ୍ରମି ଯେ ଆସଇ ସୂର୍ଯ୍ୟନାନ ॥
ଆସନ୍ତେ ଶ୍ରୀରାମଙ୍କୁ ଭେଟିଲାକ ବାଟେ ।
ଆକାଶୁ ଖସିଣ ସେ ଲମ୍ୱଇ ପାଦ ପୃଷ୍ଟେ ॥
ତୁଣ୍ଡରୁ ପକାଇଲା ନାକର ମାୟେଂସ ।
ଦୁଇ କାନ ଥୋଇ ଉଭା ହୋଇଲା
ସୂର୍ଯ୍ୟଶିଷ ॥
ଶ୍ରୀରାମ ବୋଇଲେ ହୋ ମଇତ୍ର ହାଦେ
ଯେକି ।
ଯେମନ୍ତ ପଦାର୍ଥ ନାହିଂ ହାଦେ ଦେଖି ॥
ସୁଗ୍ରୀବର ବୋଇଲା ଯେ କୁମ୍ଭକର୍ଣ୍ଣର
ନାକକାନ ।
ଦେଖା ଆଣି ତୁମ୍ଭଙ୍କୁ ଦେଲି ରଘୁନାନ ॥୭୦
ତୋହୋର ଆଜ୍ଞାରେ ଯେ ଗଲି ମୁଇଂ ଯୁଝି ।
ରାକ୍ଷସକୁ ଭେଟ ପାଇଲି ରଣମଝି ॥
ପାଞ୍ଚ ସେନାପତିକି ସେ ପିଟିଲାକ ଶୂଳେ ।
ବୃକ୍ଷେକ ଘେନି ମୁଂ ଯେ ଓଗାଳିଲି ବଳେ ॥
କୋପେଣ ପରିଘେକ ଯେ ମାଇଲା ମୋତେ
ଅଣି ।
ଗଛଧରି ସମ୍ଭାଳି ଯେ ନୁଆଁଇଲି ରଘୁମଣି ॥
ବୁକୁରେ ପକାଇ ମୋତେ ବଳେ
ଧରିନେଲା ।
ଥୋକାୟେକ ଦୂରେ ମୋର ଚେତନା
ବସିଲା ॥
କୋଳେ ଥାଇ ତାର ମୁଖକୁ ଧାଇଂଲି ।
ଦନ୍ତ ଘେନି ତାହାର ନାକ ଛିନାଇଲି ॥୮୦
ବେନି ହସ୍ତରେ ଯେ ମୋଡ଼ିଲି ବେନିକର୍ଣ୍ଣ ।
ଛିନାଇ ଘେନି ରାମ ଉଠିଲି ଗଗନ ॥
ଶୁଣି ଶ୍ରୀରାମ ଯେ ସୁଗ୍ରୀକି କୋଳ କଲେ ।
ଅନେକ ପୃଷାର୍ଥ ବଚନ ବୋଇଲେ ॥
ସାଧୁ ସାଧୁ ତୁ ଯେ କପି କୁଳପତି ।
ଯାହା ସେ କଲୁ ସେ ଅଦୃଷ୍ଟ ଅଶୃତି ॥
କୁମ୍ଭକର୍ଣ୍ଣ ବୋଲି ଯେ ଜଗତେ ବଳୀଆରୁ ।
ଦେହ ଦିଶଇ ତାର ସମାନ୍ୟ ମହାମେରୁ ॥
ଦେବତାଯେ କମ୍ପନ୍ତି ଯାହାର ନାମ ଶୁଣି ।
ତାହାର ଦର୍ପ ଆଜି ଦଳିଲୁ କପିମଣି ॥ ୯୦
ଧନ୍ୟ ଧନ୍ୟ ତୁମ୍ଭେ କ୍ଷତ୍ରୀ ଅଟ ବେନିଭାଇ ।
ଜଣା ବୋଲିଣ ମୁଂ ବୋଲିବି କାହାକଇଂ ॥

ପର୍ବତ ସମ ଜାଣି ଦିଶଇ ନାକ କାନ ।
ଏହା ଘେନି ମଇତ୍ର ତୁ ଉଡ଼ିଲୁ ଗଗନ ॥
ଏତେ ବୋଲି ଶ୍ରୀରାମ କଲେ କୋଳ ।
ପାୟେ ପଡ଼ି ଶୋଇଲେ ସଇନି ସକଳ ॥
ଗୁରୁଜନମାନେ ଶୁଣି ତୁଷ୍ଟି କଲେ ।
ଉଷତ ହୋଇଣ ରକ୍ଷ କପି ହୁଳହୁଳି ଦେଲେ ॥
ଏସନେକ ସମୟେ ଯେ କୁମ୍ଭକର୍ଣ୍ଣ ବୀର ।
ନାସିକା ଶ୍ରବଣ ଯହୁଂ ନେଲାକ ସୁଗ୍ରୀବର ॥୧୦୦
ଲଙ୍କା ପାଇଣ ଯେ ରାବଣ ଭାଇ ।
ଭାଳିଲା ରାବଣ ମୁଖ ଚାହିଁବି କେମନ୍ତ ହୋଇ ॥
ପ୍ରତଜ୍ଞା କରିଣ ଯେ ଅଇଲି ଶତ୍ରୁ ମାରି ।
କି ବୋଲି ବୋଲିବେ ମୋତେ ନଗ୍ର ନରନାରୀ ॥
ଜଗତେ ଉପହାସ୍ୟ ପାଇବି ମୁହିଂ ଆଜ ।
ଶୁଣି କିସ ବିଚାର କରିବ ଲଙ୍କରାଜ ॥
ଆବର ଯାଇଂ ମୁଂ ଚାହିଁବି କାହା ମୁଖ ।
ଯେମନ୍ତ ହୋଇ ଜୀଇଂବାରୁ ମରିବା ବଡ଼ ସୁଖ ॥
ଯେତେ ବୋଲି ଦତ୍ୟ ଧାଇଂଲା କୋପକରି ।
ରକ୍ଷ କପିବଳ ପଳାଇଲେ ଭୟେ କରି ॥୧୦
ଶତେ କୋଶ କରି ବଢ଼ାଇଲା କାୟା ।
ପନ୍ଦର ପନ୍ଦର କୋଶ ବଢ଼ାଇଲା ବେନି ବାହା ॥
ତିନିଧାର ହୋଇ ବହଇ ରକତ ।
କି ଜାଣି ନଦୀ ବହଇ ମେରୁ ପରବତ ॥
ସମର ମଣ୍ଡୋଳେ ପଶିଲାକ ଆସି ।
ଜାଣି ପଟାନ୍ତର କି ପ୍ରଳୟ ଅଗ୍ନିରାଶି ॥
ରାଗେଣ ଦେହ ତାର କମ୍ପଇ ଘନଘନ ।
ପାଦେ ମରଦିଲା ଶ୍ରୀରାମର ସୈନ୍ୟ ॥
ଲକ୍ଷ ଲକ୍ଷ କରି ତୁଣ୍ଡକଇ ଟିଣ୍ଡି ।
ଚଉକତି ରାକ୍ଷସ ଗୋଡ଼ାଇ ବଳ ହେଟି ॥୨୦
କାହାକୁ ଗୋଇଠା ଯେ କାହାକୁ ବିଧା ମାରି ।
କାହାକୁ ପାଦରେ ମର୍ଦ୍ଦଇ ଗୁଣ୍ଡାକରି ॥
ବାନରକଇ ପଚାରଇ ଶ୍ରୀରାମ ତୁମ୍ଭର କାହିଁ ।
ହୀନ ଜନ୍ତୁ ବଧିବାରେ ପ୍ରିଓଜନ ନାହିଁ ॥
ଏସନେକ ବୋଲିଣ ଧାମଇ ବୀର ରଣେ ।
ଚନ୍ଦ୍ରକୁ ଘୋଟିଲା ଯେହ୍ନେ ରାହୁଯେ ଗ୍ରହଣେ ॥
ବୋଇଲା ତପୁସୀରେ କେବଣ କୃତକଲୁ ।
ମରିବା ଠାବକୁ ତ ସିନ୍ଧୁ ତରିଣ ଅଇଲୁ ॥
ମୋହୋର ହସ୍ତରେ ତୋହୋର ଅଟଇ ନିଦାନ ।
ହରିହର ବ୍ରହ୍ମା କେହି କରି ନୁଆରିବେ ଆନ ॥୩୦
ଆଜି ତୋର ପ୍ରାଣ ଘେନଇ ଯେହିକ୍ଷଣ ।
ଏତେ ବୋଲି ରଡ଼ିୟେ ଛାଡ଼ଇ ଘନ ଘନ ॥
ସଇନି ପଳାଇଲେ ଗର୍ଜିବା ତାର ଚାହିଁ ।
ସୁଗ୍ରୀବର ହନୁମନ୍ତ ଅଙ୍ଗଦ ଛନ୍ତି ରହି ॥
ଗନ୍ଧମାର୍ଦ୍ଦନ ପଛେ ବିଭୀଷେଣ ଅଛି ଲୁଚି ।
ବୋଇଲା ଦେଖିଲେ ଗାଳିଦେବ ପରପଞ୍ଚ ॥
ସେନା ସେନାପତି ଅଛଇ ବହୁତ ।
ସଇନକୁ ଚାହିଁ ଯେ ବୋଲଇ ରାମଭ୍ରାଥ ॥
ନକର ଭୟେ ତୁମ୍ଭେ ରକ୍ଷକପିମାନ ।
ରାକ୍ଷସର ଦେହ ପର୍ବତ ସମାନ୍ୟ ॥ ୪୦
ଯେହାର ଉପରେ ଉଠ ସମସ୍ତେହେଂ ଯାଇଂ ।
ରତ୍ନ ଆୟେମାନ ଘେନ ହୋ ଛଡ଼ାଇ ॥
ଆମ୍ଭେ ଅଛୁନି ନକର ତୁମ୍ଭେ ଭୟେ ।
ଶୁଣିଣ ରକ୍ଷକପି ଭରସାମନ କୟେ ॥
କୋପେ ଲକ୍ଷଣ ରାମକୁ ପଛକରି ।
ହୁଂକାରିଣ ସାତବାଣ ମାଇଲା ଅନୁସରି ॥
ଦୈତ୍ୟର ଦେହେ ଯାଇ ପଡ଼ିଲାକ ଶର ।
ଘାଆ ପାଇ ଦୈତ୍ୟ ମାଇଲା ମୁଦୁଗର ॥
ତୀକ୍ଷ ନାରାଚ୍ଛେକେ ଛେଦିଲେ ତାହା ରାମ ।
ଘଡ଼ିୟେ ଯାୟେ ସମର ବାଜିଲା ଅବିକ୍ଷନ ॥୫୦
ଲକ୍ଷ ଲକ୍ଷ କରି ବିନ୍ଧନ୍ତି ବେନିଭାଇ ।
କାଣ୍ଡ କାଠିରେ ଦେହ ହୋଇଲାନି ଛାଇ ॥
ରାକ୍ଷସ ଘାଆ ଯେ ପାଇଣ କୋପ କଲା ।
ରକ୍ଷ ରାକ୍ଷାସ କପି ମିଶାଇଣ ଖାଇଲା ॥
ଶ୍ରୀରାମ ଲକ୍ଷଣେ କପିକି ଡାକ ଦ୍ୟନ୍ତି ।
ଦୈତ୍ୟର କତିକି ତୁମ୍ଭେ ନ ଯାଅ ଯେଘାନ୍ତି ॥
ନେଉଟି କୁମ୍ଭକର୍ଣ୍ଣ ପରିଘେକ ମାରି ।
ବାଇବା ଅସ୍ତ୍ରେ ତାହା ଶ୍ରୀରାମ ନିବାରି ॥
ପୁଣି ବାଇବା ଅସ୍ତ୍ରେକ କଲେ ଦାଶରଥି ।
ଦକ୍ଷିଣ ହସ୍ତ ଦଇତର ଛିଡ଼ିଣ ପଡ଼ିଲାକ ପୃଥି ॥୬୦
ସହସ୍ରେ ବାନର ଉପରେ ମାଡ଼ିଣ ପଡ଼ିଲା ।
ଏକହାଥେ ଦନୁଜ ଅନେକ ଯୁଦ୍ଧ କଲା ॥
ବାମହାଥେ ତରୁ ଘେନି ଯୁଦ୍ଧକରି ।
ରକ୍ଷ କପିବଳ ବହୁତ ସଂହାରି ॥
ଦେଖିଣ ବାବଲ ଯେ ପେଷିଲେ ସାତା ସାଙ୍ଗ ।
ଆରେକ ଭୁଜ ତାର ପକାଇଲେ ଛିନାଇଂ ॥
ପୁଣି ଅଧାଚନ୍ଦ୍ରବାଣ ପେଷିଲେ ରଘୁମଣି ।
ଦୁଇଚରଣ ତାର ପକାଇଲେ ହାଣି ॥
ଚାରିଡ଼ାଳ ଛିଡ଼ିଣ ଯେ ପଡ଼ିଲାକ ଦୈତ୍ୟ ।
ଉଗୁଇଂ ଦଇତ ଖାଉଛି ସଇନି ବହୁତ ॥୭୦
ଶିର ଛେଦିବେ ବୋଲି ବିଚାର କରନ୍ତି ।
ଅତିବଡ଼ ତୀକ୍ଷନାରାଚେ ବିନ୍ଧନ୍ତି ॥
ଅଧାଚନ୍ଦ୍ର ଆକାର ସୂର୍ଯ୍ୟର କିରଣ ।
ମନ୍ତ୍ରି ପେଷିଲେ ତାହା ରଘୁକୁଳନାନ ॥
ସେ କାଣ୍ଡ କୁମ୍ଭକର୍ଣ୍ଣର କଣ୍ଠରେ ପଡ଼ିଲା ।
ଭେଦି ନ ପାରିଣ ବାହୁଡ଼ି ଅଇଲା ॥
ଦେଖି ରଘୁନାଥ ଦେହରୁ ଝାଳ ଗଳି ।
ଗରିଷ୍ଠ ଦାନେବ ବୋଲି ମନେ ମନେ ଭାଳି ॥
ତାଡ଼େକାକି ବିନ୍ଧିଲେ ରାମ ଯେବଣହିଁ ଶରେ ।
ତାହା ଶ୍ରୀରାମ ଯେ ପେଷିଲେ କୋପଭରେ ॥୮୦
କୁମ୍ଭକର୍ଣ୍ଣ କଣ୍ଠେ ପଡ଼ିଲା ଅସ୍ତ୍ର ଯାଇ ।

ଭେଦି ନୁଆରିଣ ଗଲାକ ପଳାଇ ॥
ଦେଖି ରଘୁନାଥ ଆଶ୍ରିଯ ହୋଇଲେ ।
ଧନ୍ୟ କୁମ୍ଭକର୍ଣ୍ଣରେ ବୋଲିଣ ବୋଇଲେ ॥
କିଂପା ଦେବତାଯେ ନ କରିବେ ଭୀତି ।
ଯେଡ଼େ ଯେଡ଼େ ନାରାଚେ ଉପୁଡ଼ି ପଡୁଛନ୍ତି ॥
କୁମ୍ଭକର୍ଣ୍ଣ ବୋଇଲା ତୁ ଶ୍ରୀରାମ ଅଜ୍ଞାନ ।
ଆନ ଦୈତ୍ୟପ୍ରାଯେ ବୁଝିଲୁ ମୋତେ ସାନ ॥
ବାଳୀ ବିରାଉଧ କୋବନ୍ଧ ଜିଣିଲୁ ।
ତାହାଙ୍କର ପରାଯେ କି ମୋତେହେଂ ମଣିଲୁ ॥୯୦
ତିନିପୁର ମହୀ ଜିଣିଲଇଂ ହେଳେ ।
ବଜ୍ର ପଡ଼ିଅଛି ଯେହି ବକସ୍ଥଳେ ॥
କିଞ୍ଚିତ ନାରାଚେ ତୁ ମାରି ଲୋଡୁ ମୋତେ ।
ଯେତେ ଶହସ୍ର ତୋର ବିନ୍ଧ ହୋ ତୁରିତେ ॥
ଏତେ ବୋଲି ଉଂଗୁଅଇଂ ଆଗସରି ।
ସମ୍ପୂର୍ଣ୍ଣ ଚନ୍ଦ୍ର ଯେହ୍ନେ ରାହୁଗ୍ରହ ଆବୋରି ॥
ଲକ୍ଷଣ ବୋଇଲା ତୁ ହୋ ସୁଗ୍ରୀବର ଶୁଣ ।
ଏ ତୋହୋର ଥାଠକୁ କଢ଼ାଇଣ ଆଣ ॥
ଅକାରଣ ଯୁଦ୍ଧେ ମରିବେ କିସ ପାଇଂ ।
ନରାଚ ଉପୁଡ଼ି ଯେ ପଡୁଅଛି ଭୂଇଂ ॥୧୦୦
ଅଜଯେ ଦନୁଜ ଯେ ଅପୂର୍ବ ପୁରୁଷ ।
ଆମ୍ଭର ଭାଗ୍ୟ ଥିଲେ ହୋଇବଯେ ନାଶ ॥
ଏସନେକ ସମଯେ ଧାଇଂଲା କୁମ୍ଭକର୍ଣ୍ଣ ।
ପ୍ରଳଯ ଅଗ୍ନି ଜାଣି ବୁଲାଇ ନଯନ ॥
ଦେଖିଣ ଶ୍ରୀରାମ ମନେଣ କୋପଭରେ ।
ବାଳୀକି ମାଇଲା ଶର ମାଇଲେ ରଘୁବୀରେ ॥
ଗୁଣେ ବସାଇଣ ବିନ୍ଧିଲେ ଆଗସରି ।
ଚଳିଲାକ ଶସ୍ତ୍ର ଯେ ଘୋର ରାବ କରି ॥
କୁମ୍ଭକର୍ଣ୍ଣ କଣ୍ଠେ ପଡ଼ିଲାକ ଯାଇଂ ।
ଭେଦି ନୁଆରି ଅସ୍ତ୍ର ବାହୁଡ଼ି ପଳାଇଂ ॥୧୦
ଟହ ଟହ ହୋଇ ଯେ ହସିଲା ଦଇତ ।
କେତେ ଅସ୍ତ୍ର ଅଛି ବିନ୍ଧରେ ରଘୁସୁତ ॥
ଆଜ ଜାଣିମା ତୋହର ବୀରଶୂର ପଣ ।
କେଉଂବାଣେ ମୋତେ ମାରିବୁ ରାମରାଣ ॥
ଯେ ତୋହେର ସୈନ୍ୟସବୁ କରିବି ଯେ ଗ୍ରାସ ।
ଜଣେ ହେଂ ନ ଥୋଇବି ଭୁବନ ଚତୃଦଶ ॥
ଶୁଣି ଶ୍ରୀରାମର ନ ସ୍ଫୁରଇ କିଛି ।
ସପତ ଶାଳ ଭେଦିଲା ଶର ଗୋଟି ବାଛି ॥
ଗୁଣେ ବସାଇଣ ମନ୍ତ୍ରିଣ ଛାଡ଼ିଦେଲେ ।
ଆଷାଢ଼ ମେଘ ଗର୍ଜନ ଶବଦ ଶୁଭିଲେ ॥୨୦
ଦଇତ ଗଳାରେ ବାଜିଲା ଶର ଯାଇ ।
ମୁନ ମୋଡ଼ି ହୋଇ ପଡ଼ିଲା ରଣଭୂଇଂ ॥
ଯେବଣ ନାରାଚେ ସପତ ଶାଳଫୁଟି ।
ପର୍ବତ ଫୁଟିଯାଇଂ ପାତାଳକୁ କଣ୍ଟି ॥
ବଳିପୁର ଭୂମି ବାହୁଡ଼ି ଛିଡିଗଳି ।
ପୁଣି ପର୍ବତେ ଅଇଲା ନିକିଳି ॥
ସେ କାଣ୍ଡର ମୁନ ହୋଇଲା ଏବେ ମୋଡ଼ି ।
ଲାଜେ ନ ଆସଇ ଭୂମିରେ ଅଛି ପଡ଼ି ॥
ସାଉଂଟି ଲକ୍ଷଣ ଥୋଇଲା ନେଇ ତ୍ରୋଣେ ।
ଖର ଧୂଷଣକୁ ରାମ ମାଇଲେ ଯେବଣ ବାଣେ ॥୩୦
ସେ କାଣ୍ଡ ମାଇଲେ ନୋହିଲା ତାର କିଛି ।
ରାଗେ ରଘୁରାଜ ଯେ ନାରାଚେକ ବାଛି ॥
ଇନ୍ଦ୍ର ଅସ୍ତ୍ର ନେଇ ଗୁଣେ ବସାଇଲେ ।
କୁମ୍ଭକର୍ଣ୍ଣର ମୁଣ୍ଡ କାଟସି ବୋଇଲେ ॥
ଧନୁର୍ବେଦ ପଢ଼ନ୍ତେ ଗଳା ଖରକରି ।
ପକ୍ଷୀର ଶବଦେ ଯେ କମ୍ପିଲା ବସନ୍ଧରୀ ॥
କୁମ୍ଭକର୍ଣ୍ଣର କଣ୍ଠେ ପଡ଼ିଲାକ ଯାଇ ।
ଉବୁରି କାଟୁଅଛି ବଇରାଗ ପାଇ ॥
ବେଗେ ଗଳିଯାଇ ଯେ ଛିଡ଼ିଲା ଦୈତ୍ୟର ମୁଣ୍ଡ ।
ପ୍ରାଣ ଛାଡ଼ିଗଲା ପୃଥିରେ ପଡ଼ିଲା ତାର ପିଣ୍ଡ ॥୪୦
ମରିବା ବେଳେ ଯେ ରଡ଼ିଯେ ଛାଡ଼ିଲା ।
ଯେକାବେଳେ ବଜ୍ରକି କୋଟିଯେ ପଡ଼ିଲା ॥
ଦୁଇସସ୍ର ବାନର ମାଡ଼ି ପଡ଼ିଲା ତାର କାଯେ ।
ଲଙ୍କାର ପାଚେରୀ ଭାଙ୍ଗିଲା ମୁଣ୍ଡ ଘାଯେ ॥
ଘର ଅଟାଳି ମଣ୍ଡୋପ ହୋଯେ ଚୂରି ।
ଦଲ ଦଲ ହୋଇ ଯେ କମ୍ପିଲା ବସୁନ୍ଧରୀ ॥
ସମୋଦ୍ର ଲହରୀ ଯେ ହୋଇଲାକ ଥିର ।
ଡରେ ହେଲୁ ହେଲୁ ଯେ ବହଇ ସମୀର ॥
ଧାଇଂ କପିବୀର ଯେ ସିଂହରଡ଼ି ଦେଲେ ।
ରାକ୍ଷସର ଉପରେ ଉଠିଣ ନୃତ୍ୟ କଲେ ॥୫୦
ରଣ ଜଯେକରି ଶ୍ରୀରାମ ବାହୁଡ଼ି ।
ପବନ ତନଯେ ହନୁମନ୍ତ କନ୍ଧେ ଚଢ଼ି ॥
ବାଳୀସୁତ କନ୍ଧରେ ଲକ୍ଷଣ ବସିଲେ ।
ହରିହର ଗମନ ପ୍ରାଯେକ ଦିଶିଲେ ॥
ଉତ୍ତରା ଅଭିମୁଖେ କରନ୍ତି ଗମନ ।
ସମ୍ଭର ହୋଇଗଲେ ସେନାପତିମାନ ॥
ବିଭୀଷେଣକୁ ଚାହିଂ ଯେ ବୋଲନ୍ତି ରଘୁବୀର ।
କୁମ୍ଭକର୍ଣ୍ଣ ପଡ଼ିଲା ହୋ ସୋହାଦ୍ର ତୋହୋର ॥
ବଭୀଷେଣ ବୋଇଲା ସେ କିସ ମୋର ବଂଧୁ ।
କିମ୍ଵା ସ୍ଵାମୀତ ମୋହୋର ସତ ନିନ୍ଦୁ ॥ ୬୦
ତୁ ମାହା ଦଯାଳୁ ମୁଂ ତୋହୋର ଭୃତ୍ୟ ।
ଏ ମୋହୋର ବଇରୀ ଅଟନ୍ତି ଲଙ୍କାଦୈତ୍ୟ ॥
ଯିସ ଅବା ମନରେ ଭ୍ରାନ୍ତି କରୁଥିଲି ।
ଆଜ ସେ ସ୍ଵାମୀ ମୁଇଂ ନିଶ୍ଚିନ୍ତ ହୋଇଲି ॥
ଆବର ହାବୋଡ଼େକ ଇନ୍ଦ୍ରଜିତ ଅଛି ।
ତାହାକୁ ମାଇଲେ ରାବଣ ନ ଯୋଗାଇ କିଛି ॥
ଶୁଣି ଶ୍ରୀରାମ ଯେ ହୋଇଲେ ସନ୍ତୋଷ ।
ବିଭୀଷେଣକୁ ପ୍ରଶଂସା କରନ୍ତି ରଘୁଶିଷ ॥
ଏଥୁ ଅନନ୍ତରେ ସୁବଳଯାରେ ହୋଇ ।
ଅଙ୍ଗଦ ହନୁମନ୍ତ କନ୍ଧରୁ ଓହ୍ଲାଇ ॥ ୭୦
ସଉଚଲାଗି ହୋଅନ୍ତି ଦେବନଦୀ କୂଳେ ।
ସ୍ନାହାନ ଦେବ ତର୍ପଣ ସାରିଲେ ॥
ପିତୃତର୍ପଣ କରି ମଧାହ୍ନ ସନ୍ଧ୍ୟା ପଢ଼ି ।
ଏସନେକ ବେଳେ ଯେ ହୋଇଲା ତେରଘଡ଼ି ॥
ନିଜପୁରେ ଆସି ମଣୋହି ସାରିଲେ ।
ଶ୍ରମ ପାଇଛନ୍ତି ଯେ ଘଡ଼ିଯେ ପହୁଡ଼ିଲେ ॥
ଲକ୍ଷଣ ସୁଗ୍ରୀବର ଜମ୍ୱେବ ବିଭୀଷେଣ ।

ହନୁମନ୍ତ ଅଙ୍ଗଦ ନଳନୀଳ ସୁଷେଣ ॥
ସେନା ସେନାପତି ଭୋଜନ ସାରିଲେ ।
ରକ୍ଷକପି ବଳ ଯେ ମିଳିଣ ଖାଇଲେ ॥୮୦
ଏଥୁ ଅନନ୍ତରେ ଯେ ରାବଣର ଆଗେ ।
ଡଗରା ବାରତା ନେଇ ଦେଲା ଅତି ବେଗେ ॥
ଶୁଣ ଦେବ ଦଶଗ୍ରୀବ ଅସୁରକୁଳମଣି ।
କୁମ୍ଭକର୍ଣ୍ଣକଇ ଯେ ମାଇଲା ଯତି ପୁଣି ॥
ଅନେକ ସମର ଯେ କଲା ତୋର ଭାଇ ।
ଛାମୁରେ ମିଳନ୍ତା ତାହାର କେହି ନାହିଁ ॥
ଅଷ୍ଟସେନାକୁ ମାଇଲା ରଦ୍ରଶୂଳେ ।
ରକ୍ଷ କପିବଳ ପଳାଇଲେ ପ୍ରାଣର
ବିକଳେ ॥
ସୁଗ୍ରୀବରକଇ ଯେ ପରିଘେକ ମାଇଲା ।
କପିରାଜ ପଡ଼ି ଯେ ଭୂମିରେ ମୋହ
ଗଲା ॥୯୦
ବଳେ ଭାଇ ତୋହୋର ଆଣୁଥିଲା ଧରି ।
ମାତାପୁତ୍ରକୁ ଯେହ୍ନେ ଆଣଇ କୋଳକରି ॥
ସିଂହରଡ଼ି ଦେଇ ବାହୁଡ଼ି ଆସନ୍ତେ ।
ପଛେ ଗୋଡ଼ାଇଲେ ଅଙ୍ଗଦ ଅନୁମନ୍ତେ ॥
ଅଷ୍ଟସେନା ସହିତେ ରକ୍ଷକପିବଳ ।
କୁମ୍ଭକର୍ଣ୍ଣକୁ ଗୋଡ଼ାଇ ଅଇଲେ ସକଳ ॥
ଭାଇ ଯେ ତୋହୋର ସୁଗ୍ରୀକି ଆଣୁଥିଲା ।
ଥୋକାଯେକ ଦୂରେ କପି ଚେତନା
ପାଇଲା ॥
ଧାଇଂ ପଡ଼ି ଡେଇଂ କାମୋଡ଼ିଲା ନାକ ।
ଦୁଇ ଶ୍ରବଣ ଯେ ଛିନାଇଲା ହାକ ॥୧୦୦
ତିନିକଇ ଘେନି ଗଗନେ ବିକ୍ରମିଣ ଗଲା ।
ଲାଜେ କୁମ୍ଭକର୍ଣ୍ଣ ବହୁଡ଼ି ଧାଇଂଲା ॥
ରକ୍ଷକପି ବଳ କୋପେ କଲାକ ନାଶ ।
ସୈନ୍ୟ ଆଶ୍ରେକଲେ ଶ୍ରୀରାମର ପାଶ ॥
ପରିଘାଇ କ୍ଷତ୍ରୀ ଯେ ବହୁତ ଯୁଦ୍ଧ କଲା ।
ଦୁଇ ବାହା ବେଗେ କାଟି ପକାଇଲା ।
ପୁଣି ହିଁ ତୀକ୍ଷକାଣ୍ଡ ବିନ୍ଧିଲାକ ସେହି ।
ବେନି ଗୋଡ଼ କାଟି ପକାଇଲା ମହୀ ॥
ଯେମନ୍ତେ ଉଗ୍ରୁଇଂ ଅନେକ ଯୁଦ୍ଧ କଲା ।
ରକ୍ଷ କପି ଧରି ଅନେକ ଗିଳିଲା ॥୧୦

ତୀକ୍ଷ ନାରାଚେ ପୁଣି ଛିନାଇଲା ମୁଣ୍ଡ ।
ରଣେ ପଡ଼ିଲା ଦେବ ଅସୁରକୁଳ ଷଣ୍ଢ ॥
ଶୁଣି ଦଶଗ୍ରୀବ ହୋଇଲା ବିଷାଦ ।
ଦଣ୍ଡେ ପରିଯନ୍ତେ ନଦେଲା ସଂପାଦ ॥
ପୁଣି ପଚାରିଲା କହିଲୁରେ କିସ ।
ଆର ବେଳେ ଶୁଣଇ ଭାଇର ପ୍ରାଣନାଶ ॥
ଚାର ଜଣାଇଲା ଦେବ ପଡ଼ିଲା କୁମ୍ଭକର୍ଣ୍ଣ ।
ଶୁଣିଣ ଶୋକ ଯେ କଲାକ ଦଶାନନ ॥
ଭାଇ ଭାଇ ବୋଲି ଡାକିଲା ଉଚ୍ଚ କରି ।
କାନ୍ଦଇ ଦଶଗ୍ରୀବ ଗୁଣନ୍ତ ସୁମରି ॥ ୨୦
ଆରେ କୁମ୍ଭକର୍ଣ୍ଣ କାହିଁ ତୁରେ ଗଲୁ ।
ଅସମୟେ ଦେଖି ଯେ କେଣେ ଲୁଚାଦେଲୁ ॥
ଭାଇ ମୋର କୁମ୍ଭକର୍ଣ୍ଣ ବଇରୀ ଧୂମଖେତ ।
କାହିଁ ଲୋଟି ଅଛଇ ତୋହୋର ବୀର
ନେତ ॥
ଭଇରୋବ ମୂର୍ତ୍ତି ତୁ ମହାବିଶ୍ୱରୂପୀ ।
ମୁଖ ଦେଖିଲେ ତୋର ସୁରଗଣେ କମ୍ପି ॥
ସାଚା ଅନର୍ଗଳ ବିରଧୂ ତୋହୋର ।
ବଇରୀ ବିଭାଣ୍ଡବାନା ଯେ ଉଡ଼ଇ ଫରହର ॥
ମଞ୍ଚେ ମହାବୀର ଯେ ବୋଲିଣ ବୋଲାଉ ।
ଅଇରି ବଳକୁ ଯେ ଭେଟିଲେ ମୃତୁ
ଦେଉ ॥୩୦
କାହିଁକି ଗଲୁ ମୋତେ ଯେକାକରି ଛାଡ଼ି ।
ମୁଇଂ ଯେ ମରୁଅଛି ଶୋକଜଳେ ବୁଡ଼ି ॥
ନିଦ୍ରାହୁଂ ଯେ ଆନେ ନାହିଁ ତୋର ପ୍ରୀତି ।
ତଇଲୋକ ବିଖ୍ୟାତ ଯାହାର କୀରତି ॥
ଯେବଣ ଦିବସେ ଉଠୁ ନିଦ୍ରା ଛାଡ଼ି ।
ଦେଶ ଦେଶାନ୍ତରୀକି ଭଣ୍ଡାର ଦେଉ କାଢ଼ି ॥
ମାଗନ୍ତା ଲୋକକୁ ଯେ ନକରୁ ନିରାଶ ।
ଆହା ଭାଇରେ ମୋର ସାରିଲୁ ମୁହାଂସ ॥
ତୋତେ ତୋଳିବି ବୋଲି ଯେ ଶତ୍ରୁକୁ
ଚମ୍ପୁଥାଇଂ ।
ପ୍ରାଣ ଘେନି ନଇଲୁ ଯେକାବେଳେ
ଯାଇଂ ॥୪୦
ତପୁସୀ ନିଲକ୍ଷଣ ମାଇଲାକ ତୋତେ ।
ଏକଥା ଆଶ୍ଚିଯ ଲାଗିଲାକ ମୋତେ ॥

ବାଳେକ କାଳେ ତୁ ଯେ ଜିଣିଲୁ ବଜ୍ରଧର ।
ବ୍ରହ୍ମା ପ୍ରଶଂସଇ ଯେ ସମର ତୋହୋର ॥
କୋପିଲେ ଜଗତ କରିପାରୁ ଧୂଳି ।
ଏ ମହୀ ଭିତରେ ତୁ ଏକା ମହାବଳୀ ॥
ତୋ ତହୁଂ ବଡ଼ ମୁଂ ନ ଦେଖଇ କାହିଂ ।
ଜଟାଧାରୀ ଛାର ତୋତେ ମାଇଲାରେ
ଭାଇ ॥
ରଦ୍ରଶୂଳ ତୋହୋର ନ ଥିଲାକି କରେ ।
କି ଅବ ନଥିଲା ଅଗ୍ନି ମୁଦୁଗରେ ॥୫୦
ବ୍ରହ୍ମାର ଶକତି ବାବୁ ନ ଥିଲୁ କି ଘେନି ।
ଯାହା କରେ ଘେନି ଜିଣିଲୁ ପୁର ତିନି ॥
ପ୍ରଥମ ବର ତୋତେ ଯେ ଦେଲାକୁ
ଚାମଣ୍ଡା ।
ସେ ତୋହୋର କରେ ନ ଥିଲାକ ଖଣ୍ଡା ॥
ନୈରତ ପରିଘ ନ ଥିଲୁ କି ଧରି ।
କେବଣ ବାଣେ ଯତି ମାଇଲା କୋପକରି ॥
ଭଇରୋବ ରଡ଼ି ନ ଦେଲୁକିରେ ବାବୁ ।
ଯେକା ଘାନ୍ତି ଗର୍ଜିଲେ ମରନ୍ତେ ଶତୃସବୁ ॥
କଟାକ୍ଷ ନୟନେ ତୁ କ୍ଷଣେ ନ ଚାହିଂଲୁକି ।
ରଦ୍ରଭଳି ଲୋକେ ଡରନ୍ତି ଯହିଂକି ॥ ୬୦
ସବୁକଥାମାନ ନିଷ୍ଫଳକୁ ଗଲା ।
ତପୁସୀ ନିଲକ୍ଷଣ ମୋର ଭାଇକି ମାଇଲା ॥
କହ କହ ହୋଇ ଯେ ରୋବଇ
ବିଂଶପାଣି ।
ନୟନୁ ଅଶ୍ରୁଜଳ କି ବହଇ ପର୍ବତୁଂ ଧାରା
ଜାଣି ॥
ପ୍ରବୋଧ କରନ୍ତି ଶୁକ ସାରଣ ଇନ୍ଦ୍ରଜିତ ।
ମୁଖା ଦୃମୁଖା ମୋହୋଦର ଲୁଲୁପାକ୍ଷ ପ୍ରଶସ୍ତ ॥
ରାଜାର ରୋଦନ୍ତେ ବିକଳ ସର୍ବଜନ ।
ପୁତ୍ରବଧୂ ବାଂଧବ ଅମାତ୍ୟଗଣମାନ ॥
କେ ବୋଲଇ କେହ୍ନେ ପଡ଼ିଲା କୁମ୍ଭକର୍ଣ୍ଣ ।
ରଥୀ ମହାରଥୀ ଯେତେ ଥିଲେକ
ସଇନ ॥୭୦
ବେନିଯତି ବନ ଜନ୍ତୁ ରକ୍ଷକପି ରାଢ଼ ।
କୁମ୍ଭକର୍ଣ୍ଣ ପଡ଼ିଲା ଭାଜିଲାନି ବାଢ଼ ॥
କାନ୍ଦ କାନ୍ଦ ହୋଇଣ ଭାଳୁଛନ୍ତି
ମନେମନେ ।

ଘାଟ ହୋଇଲା ଯେଣିକି ଯେହୁ
ଯୁଗକଥାମାନ ॥
କେ ବୋଲଇ ଯେବା ଇନ୍ଦ୍ରଜିତର ଥାନ୍ତେ ।
କାହାକୁ ନଡ଼ରଇ ମନ୍ଦୋଦରୀ କାନ୍ତେ ॥
କେବଣ କେବଣ ଦଇତେ ନାହାନ୍ତିନା
ଯେଥେ ।
ଯୋଗେ ଅବା ମୃତ୍ୟୁ ଥିଲା ଶ୍ରୀରାମର ହାଥେ ॥
ଯେକର କହନ୍ତେ ଆରେକ ତୁନି ହୋନ୍ତି ।
ନୋହଇକି ଆନେ ବୋଲିଣ
ବୋଲନ୍ତି ॥୮୦
ଯେଥୁ ଅନନ୍ତରେ ଯେ ଦଶଗ୍ରୀବ ରାୟେ ।
ଭାଇ ଗୁଣମାନ ଘେନିଣ ବୋବାୟେ ॥
ପୁଣ ପୁଣ ଉରେ ନେଇ ପାଡ଼ଇ ନିଜ ହାଥ ।
ଆହା କୁମ୍ଭକର୍ଣ୍ଣରେ କଲୁ ତୁ ଅନାଥ ॥
ଅତିକାୟେ ଚାହିଁ ବୋଲଇରେ ବାବୁ ।
ଯତିର ହାଥେ ମୋର ସରିଲା ବୁଧି ସବୁ ॥
ନରାନ୍ତେକ ଦେବାନ୍ତେକ ତ୍ରିଶିରା ଯେ ତିନି ।
ମହାପାରଶ ମୋହୋଦର ଅଛନ୍ତି ଯେ
ବେନି ॥
ବୋଲଇ ଦଶଗ୍ରୀବ ତୁମ୍ଭେମାନେ ଥାଉଂ ।
ତପୁସୀ ଦୁଇଜଣ ମୋର ବଂଶ ଅଛି
ଦହୁଂ ॥୯୦
ଆଜିହୁଂ ଜୟେ ତାର ହୋଇଲା ନିଅତ ।
ଯହୁଂ ସେ ପଡ଼ିଲା ମୋର କୁମ୍ଭକର୍ଣ୍ଣ ଭ୍ରାଥ ॥
ଜାଣିଲି ରାମ ବିଶ୍ୱସଂସାର ଜିଣିପାରଇ ।
ତାହାକୁ ରଣେ ଜିଣି ଇନ୍ଦ୍ରଜିତହିଁ ନୁଆରଇ ॥
କି ବୁଧି କରିବି କିଏ ଶତୃ ସାଧି ଦେଉ ।
ଅନ୍ତର୍ଗତ ବ୍ୟାଧି ହୋଇଲା ମୋତେ ସେହୁ ॥
ଶୁଣିଣ ମହାପାରଶ ଯୋଡ଼ଇ ବେନିକର ।
ବୋଇଲା ଭୋଦେବ ତୁ ଶୋକ ଯେ
ନକର ॥
ଶତୃ କ୍ଷିଦ୍ର ହାଦେ ପାଇବ ଯେହା ଶୁଣି ।
ଦିଅସି ଆଜ୍ଞା ଦେବ ଆସଇ ମୁଇଂ
ଜିଣି ॥୧୦୦
ଦେଖ ମୋହୋର ପ୍ରତିଜ୍ଞା ମାୟା ବୁଧି ବଳ ।
ସର୍ଗରେ ଯୁଝନ୍ତେ ମୁଂ କଲଇଂ ମହାଗୋଳ ॥

ଐରାବ୍ରତ ସହିତେ ଇନ୍ଦ୍ରକୁ ଜିଣିଲି ।
ଅଗ୍ନି ଦେବତାକୁ ତିନିବେଳ ଘୁଞ୍ଚାଇଲି ॥
ଯମର ଚିତ୍ରଗୁପତକୁ ବନ୍ଦୀ କଲି ।
ରଥେ ପକାଇଣ ଧରି ଆଣିଥିଲି ॥
ତୋହୋର ବୋଲେ ଯେ ଛାଡ଼ି ଦେଲି
ତାହା ।
କିମ୍ପା ବିଚାର ତୁ ନ କରୁ ବିଂଶବାହା ॥
କୁମ୍ଭକର୍ଣ୍ଣ ମରିଲା ଯେ ପୂରିଲା ତାର କାଳ ।
ନିଦ୍ରାଗଲା ପ୍ରାଣୀର କିସ ଆନେ ବଳ ॥୧୦
ବିଦ୍ୟା ଅସାଧନ ପାଶୋରିଲା ବୁଧି ।
ସେ କିସ ଜାଣିମ ଯେ ତରକଛନ୍ଦ ବିଧି ॥
ସର୍ବଦା ନିଦ୍ରାରେ ଅଳସ ରୋଗ କାୟେ ।
ବେଳକାଳ ଜାଣି ଆହାର ନ ଖାଏ ॥
କ୍ରିୟାହୀନ ଲୋକକୁ ଯଶ ଅଛି କାହିଁ ।
ତୋହ ନଥିଲେଣ ପୂଜା ତାକୁ ନାହିଁ ॥
ସେ ଯେ ପଡ଼ିଲା ସ୍ୱଭାବେ ମଲା ଲୋକ ।
ସେ କଥାକୁ ଭୋଦେବ ନକର ମନେ
ଶୋକ ॥
ଦେସି ଆଜ୍ଞା ମୁଂ ଯିବଇଂ ଯେହିକ୍ଷଣି ।
ଶ୍ରୀରାମ ଲକ୍ଷଣକୁ ଛାମୁରେ ଦେବି
ଆଣି ॥୨୦
ରକ୍ଷ କପିକରି ନ ଥୋଇବି ଜଣେ ।
ଶୁଣି କରି ଶୋକ ସମ୍ଭାଳଇ ଦଶାନନେ ॥
ପଣ୍ଡିତ ଗୁଣ ଘେନି ଯେହା ସେ ବିଚାରି ।
ମହାପାରଶକୁ ବୋଇଲା ଦଶଶିରି ॥
ପାରିଲେ ପୁତରେ ମୋହୋର କାର୍ଯ୍ୟକର ।
ରାମଲକ୍ଷଣ ରକ୍ଷ କପିଙ୍କୁ ତୁମ୍ଭେ ମାର ॥
ଶୋକ ସମୁଦ୍ରୁ ଯେ ଉଧରି ଧର ମୋତେ ।
ସ୍ୱର୍ଗରେ ଇନ୍ଦ୍ର ବଳା କରିବଇଂ ତୋତେ ॥
ନରାନ୍ତେକ ଦେବାନ୍ତେକ ମୋହୋଦରହିଁ
ଯାନ୍ତୁ ।
ତ୍ରିଶିରା ଅତିକାୟେ ତୋହୋର ସଂଗେ
ଥାନ୍ତୁ ॥୩୦
ତୁମ୍ଭେ ଛଡ଼ ରଥୀ ଅଟ ଜଗୁଜିତା ।
ତୁମ୍ଭର ପ୍ରସାଦେ ମୁଂ ଭୋଗକରଇ ସୀତା ॥
ଶୁଣିକରି ସଜ ଯେ ହୋଇଲେ ଚାରିଭାଇ ।

ଅତିକାୟେ ତ୍ରିଶିରା ଆନନ୍ଦେ ରଣକୁ ଯାଇ ॥
ସଂଗେଣ ସଇନି ସପତକୋଟି ରଥୀ ।
ପଞ୍ଚାଶ କୋଟି ତହିଁ ଅଛନ୍ତି ମଉହସ୍ତୀ ॥
ପୟେକାର ସଇନି ଅଟଇ ଅପ୍ରମିତ ।
ଛଡ଼ ସେନାପତି ଯେ ବଳେ ବଳବନ୍ତ ॥
ରାବଣକୁ ନମସ୍କାର କରି ଚଳିଗଲେ ।
ସିଂହଦ୍ୱାରେ ଯାଇ ବାହନ ଚଢ଼ିଲେ ॥୪୦
ନରାନ୍ତେକ ଦେବାନ୍ତେକ ଚଢ଼ିଲେ ବେନି
ହାଥୀ ।
ମହାପାରଶ ମୋହୋଦର ଦୁହେଂ ରଥେ
ରଥୀ ॥
ତ୍ରିଶିରା ଅତିକାୟେ ଅଟନ୍ତି ଅଶୁଆର ।
ଭାଦ୍ରବ ଆଦିତ୍ୟ ଜାଣି ତେଜ ତାହାଙ୍କର ॥
ମୁକୁଟ କୁଣ୍ଡଳ ରତ୍ନ ଯେ ପଦେକ ।
ବିଦମୁଦି ବାହୁଟି କଙ୍କଣ ବଳୟର ଛଳକ ॥
ତାଡ଼ଶିକୁଳି ଯେ ମୁଦ୍ରିକା ବିତପନା ।
ପୟରେ ନୂପୁର ଯେ ତୋଡ଼ର ବୀରବାନା ॥
ଅଭେଦ କପଚ ଲାଇଲେ ଛଡ଼ରଥୀ ।
ବ୍ରହ୍ମଜାତି ହୀରାରେ ଛାଇଣ ଅଛନ୍ତି ॥ ୫୦
ତରକସ କମାୟେଣ ଆଙ୍କୁଶୀ କୋନ୍ତ
ଧରେ ।
କେ ଶୂଳ ଶକତି ଧରିଣ ଉଭାରେ ॥
ଶିରରେ ଟାଟ ଟୋପର କେହୁ ଭିଡ଼ି ।
କେହୁ ଘନ ଘନ ଛାଡ଼ଇ ସିଂହରଡ଼ି ॥
କେ ନିଶ ମର୍ଦ୍ଦିଣ ସମରକୁ ବାହାର ।
କେ ତହିଁ ପ୍ରତଜ୍ଞା ଯେ କରନ୍ତି ଅପାର ॥
ଗଜ ଯୂଥ ଯୂଥ ହୟ ପଲ ପଲ ।
ରଥୀ ଝାଙ୍କ ଝାଙ୍କ ବୋଲନ୍ତି ଚାଲ ଚାଲ ॥
ପାଦାନ୍ତି ସଇନି ଯେ ମୁଖରାବ ଧ୍ୱନି ।
ବୀରତୂର ଶବଦ ଯେ କମ୍ପଇ
ମେଦନୀ ॥୬୦
ଯାନ୍ତେଣ ପଚାରନ୍ତି ଲଙ୍କାପୁରବାସୀ ।
ଯେ ଅବା ପାରନ୍ତି ହୋ ରକ୍ଷ କପି ନାଶି ॥
ରାବଣ ସମାନ୍ୟେ ଏ ଅଟନ୍ତି ଛଡ଼ଯୋଧି ।
ଜାଣନ୍ତି ବିଷମ ସମର ଛେଦ ବୁଧି ॥
ଦୁତୀ ଦଶଗ୍ରୀବ ଯେହାକୁ ପଟାନ୍ତରି ।

ଖୁତୁତାଙ୍କର ଛଳେ ଯେ ପାରନ୍ତି ସଂହାରି ॥
ଏହାଙ୍କୁ ପଠିଆଇ ନିଶ୍ଚିନ୍ତ ହୋଇ ପିତା ।
ଏହାଙ୍କର ବୀରଧୂତ ଅଟଇ ଜଗଜିତା ॥
ଆଜ ଜାଣିମାନା କରନ୍ତି କେମନ୍ତ ।
ଯେ ଛଡ଼ଭାଇ ଅଟନ୍ତି ସମାନ୍ୟ
ଇନ୍ଦ୍ରଜିତ ॥୭୦
ଏହାଙ୍କ ମୁଖେ ପଡ଼ିବ ଯେବେ ଶକ୍ର ।
ନାରାଜର ଘାୟେଂ କରିବ ମୁଖ ବକ୍ର ॥
ଯେସନେକ ବୋଲି ମୁଖେ ପ୍ରଶଂସା
କରନ୍ତି ।
ପୂର୍ବଦ୍ୱାରେ ସଇନି ବାହାର ହୋଇଯାନ୍ତି ॥
ଦେଖି ରକ୍ଷ କପି ରହି ଯୁଦ୍ଧ କଲେ ।
ଶିଳା ବୃକ୍ଷ ଧରି ଯେ ଅସୁରନ୍ତ ମାଇଲେ ॥
ରାକ୍ଷସ ବଳ ବିବିଧ ଶସ୍ତ୍ର ପରିତାଳି ।
ମୁଖରାବ ଶବଦେ କୁରମ ଉଛୁଳି ॥
ବାଳୀର ତନୟେ ଯେ ଧାଇଂଲାକ ରାଗେ ।
ଯାଇଂ ସେ ମିଳିଲା ନରାନ୍ତେକ ଆଗେ ॥୮୦
ଅତି ବଡ଼ ଶାଳ ବୃକ୍ଷେକ ଧରିଥିଲା ।
ଦଇତ ଉପରେ ତା କୋପେଣ ପିଟିଲା ॥
ସେ ତରୁ ଫେରାଇଲା ରାବଣ ତନୟେ ।
ଶକତି ଯେ ମାଇଲା ନବରତ୍ନମୟେ ॥
ଜାଜୁଲ୍ୟମାନ ହୋଇ ଅଇଲାକ ଶର ।
ବାଜନ୍ତେ ମୋହେ ପଡ଼ିଲା ବାଳୀର କୁମର ॥
ଚେତି ଉଠି ପୁଣି ବିଧାୟେ ମାଇଲା ।
ନରାନ୍ତେକ ହୃଦରେ ଯାଇଣ ପଡ଼ିଲା ॥
ରକତ ଉଦ୍‌ଗାରିଣ ସେ ପଡ଼ିଲା ଧରଣୀ ।
ନାହିଂ ପଟାନ୍ତର ନିର୍ଘାତ ମାରେଣି ॥୯୦
ଦୈତ୍ୟ ପଡ଼ନ୍ତେ ମୁକୁଳା ମତ୍ତହସ୍ତୀ ।
ତାହାର ଥୋଇ ହସ୍ତ ଧଇଲାକ ତଡ଼ତି ॥
ବଳେ ଧରନ୍ତେଣ ଛାଡ଼ଇ ସିଂହରଡ଼ି ।
ନରାନ୍ତେକ ମୃତୁପିଣ୍ଡ ଉପରେଣ ପାଡ଼ି ॥
ଦୁଇହସ୍ତୀ ଜାଣି ଦିଶନ୍ତି ଅତିକାୟେ ।
ଦେଖି ଦେବାନ୍ତେକ ତ୍ରିଶିରା ବେଗେ
ଧାୟେ ॥
ମହୋଦର ସହିତେ ଅଙ୍ଗଦକୁ ବେଢ଼ି ।
ବିନ୍ଧନ୍ତି ନାରାଜ ଛାଡ଼ନ୍ତି ସିଂହରଡ଼ି ॥

ନିର୍ଘାତ ଶବଦ ଧନୁର ଟଙ୍କାର ।
ଶରେ ଶର ବିନ୍ଧିଣ କଲେକ ଅନ୍ଧାର ॥୧୦୦
ବାଳୀର ତନୟ, ଶ୍ୟରୀରେ କାଣ୍ଡ ପଡ଼ି ।
ଅବିକ୍ଷନେ ରୁଧିର ସର୍ବାଙ୍ଗେଣ ଝଡ଼ି ॥
କୋପେଣ ତାରାସୁତ ବୃକ୍ଷେକ ମାଇଲା ।
ଦେବାନ୍ତେକ ହୃଦରେ ଯାଇଂଣ ପଡ଼ିଲା ॥
ହସ୍ତେ ଧରି ଦଇତ ବଞ୍ଚାଇଲା ତାହା ।
ରାଗେଣ ଅଙ୍ଗଦ ଯେ କାମୋଡ଼ଇ ବାହା ॥
ନରାନ୍ତେକ ହସ୍ତୀର ଯେ ବେନି ଦନ୍ତ ଧରି ।
ଏକ ଭରା ଦେଇ ଯେ ଆରେକ ଉପାଡ଼ି ॥
ଗଜର ବାମ ଦନ୍ତ ଯେ ଦକ୍ଷିଣ କରେ ଧରି ।
ଦେବାନ୍ତକକୁ ମାଇଲା ଯେ ହୁଂକାର
ଧ୍ୱନିକରି ॥୧୦
ଅଙ୍ଗେ ବାଜି ଦୈତ୍ୟ ପାଇଲାକ ବ୍ୟଥା ।
ଝିମଣ୍ଡେ ପରିଯନ୍ତେ ନ କହିଲା କଥା ॥
ପରିଘ ଘେନିଣ ଯେ ମାଇଲା ଅତିକୋହେ ।
ବାଜି ଅଙ୍ଗଦ ଯେ ପଡ଼ିଲା ଅତିମୋହେ ॥
ଦେଖି ହନୁମନ୍ତ ଧାଇଂଲାକ ରାଗେ ।
ଅଙ୍ଗଦକୁ ଆବୋରି ରହିଲା ଦତ୍ୟ ଆଗେ ॥
ପର୍ବତେକ ଧରି ଯେ ନିରାଶି ମାଇଲା ।
ଦେବାନ୍ତେକ ହାଥୀ ସହିତେ ପ୍ରାଣ ଗଲା ॥
ଛେଚି ହୋଇଣ ଯେ ପଡ଼ିଲା ଭୂମିତଳେ ।
ମୋହ ଛାଡ଼ି ଅଙ୍ଗଦ ଉଠିଲା
ତେତେବେଳେ ॥୨୦
ଯେଥିଅନନ୍ତରେ ଯେ ମହୋଦର ନୀଳ ।
କରନ୍ତି ଦୁଇବୀରେ ସଂଗ୍ରାମ ମହାଘୋର ॥
ଅନେକ ନାରାଜ ଯେ ବିନ୍ଧିଲା ଦଇତ ।
ନୀଳର ଶ୍ୟରୀର ସର୍ବାଙ୍ଗେ ରକତ ॥
ଝିଙ୍କ ପକ୍ଷୀପ୍ରାୟେ ଦିଶଇ ତାର ପିଣ୍ଡ ।
ଘାଆ ପାଇଣ ସେ ଧଇଲା ଶିଳାଖଣ୍ଡ ॥
ବିକ୍ରମ ଗତି କରି ମାଇଲାକ ରାଗେ ।
ପ୍ରାଣ ଛାଡ଼ି ମହୋଦର ପଡ଼ିଲା ଭୂମିଭାଗେ ॥
ଦେଖିଣ ତ୍ରିଶିରା ଯେ ବିସ୍ମୟେ ହୋଇଲା ।
କୋପମୁଖ କରି ଶକ୍ତିୟେ ମାଇଲା ॥ ୩୦
ଦେଖି ହନୁମନ୍ତ ଦେଲା ସିଂହରଡ଼ି ।
ଧାଇଂ ଶକତି ବେଗେ ଧଇଲା ଉଛୁଡ଼ି ॥

ଦୁଇଖଣ୍ଡ କରି ଭାଙ୍ଗି ପକାଇଲା ।
ପୁଣି ତ୍ରିଶିରାଯେ ଖଣ୍ଡାୟେକ ମାଇଲା ॥
ହାଥ ତୋଳନ୍ତେ ଯେ ଧଇଲା ମାରୁତି ।
ଛଡ଼ାଇ ଘେନିଗଲା ପବନହୁଂ ଝାଟି ॥
ସେହି ଖଣ୍ଡା ଘେନି ଯେ ମାଇଲାକ ତୋଳି ।
ତ୍ରିଶିରା ବେକ ବାଟରେ ଗଲା ଗଳି ॥
ମୁଣ୍ଡ ସହିତେ ଯେ ପଡ଼ିଲା ପିଣ୍ଡ ଖଣ୍ଡ ।
ଅସିବର ଧରି ଯେ ପାବେନି
ପରଚଣ୍ଡ ॥୪୦
ତ୍ରିଶିରାର ପଡ଼ନ୍ତେ ମାହାପାରୁଶ ଯେ ଦେଖି ।
କୋପେ ପାଲଟିଲା ସେ ସଇନ ଉପେଖି ॥
କରେ ଧରିଣ ଯେ ଅଛଇ ୟେକ ଗଦା ।
ରଷଭ ଓଗାଳିଲା ଦୁଇହାତ ଶୋଧା ॥
ମହାପାରଶ ଯେ ମାଇଲା ବାହା ତୋଳି ।
ଦୁଇହାଥ ପାତି ଯେ ଧଇଲା ମହାବଳୀ ॥
ସେହି ଗଦା ଘେନିଣ ରାଗେଣ ପିଟିଲା ।
ମହାପାରୁଶର ମୁର୍ଦ୍ଧନା ଫାଟିଗଲା ॥
ପଡ଼ିଲା ଦଇତ ଇନ୍ଦ୍ର ମହାଧ୍ୱଜ ଜାଣି ।
ଟଳ ଟଳ ହୋଇଣ ଯେ କମ୍ପିଲା
ଧରଣୀ ॥୫୦
ଭାଇଙ୍କର ପଡ଼ନ୍ତେ ଧାଇଂଲା ଅତିକାୟେ ।
କରେ ଧନୁଧରି ଦିବ୍ୟ ଅସ୍ତ୍ର କୟେ ॥
ଅନେକ ସଇନି ଯେ କଲାକ ନିପାତ ।
ରକ୍ଷକପି ବଳ ଯେ ଭୟେଣ ତରସ୍ତ ॥
ଜଳନ୍ତା ହୁତାଶନ ଜାଣିଣ ତା ଶର ।
ରଣଭଙ୍ଗ ହୋଇ ପଳାନ୍ତି ବାନର ॥
ରହ ରହ ବୋଲନ୍ତେ ନରହିଲେ କେହି ।
ଦିବ୍ୟ ଅସ୍ତ୍ରଘାତ ପାରିବ କେ ସହି ॥
ଦେବତାୟେ ଭୟେ କରିବେ ଯାକୁ ଦେଖି ।
ପଳାନ୍ତି ରକ୍ଷକପି ସମର ଉପେକ୍ଷି ॥ ୬୦
ହନୁମତ ଅଙ୍ଗଦ ନୁଆରିଲେ ସହି ।
ଅତିକାୟେ ଅସ୍ତ୍ରକୁ ମହାଭୟେ ପାଇ ॥
ଅଷ୍ଟ ସେହ୍ନା ଯେ ଯେ ପାଇଲେ ଭାଙ୍ଗେଣି ।
କୋପେ ଦଇତ ଯେ ବିନ୍ଧଇ ଶିରଝୁଣି ॥
ରକ୍ଷକପିବଳ ଯେ ପଛଘୁଞ୍ଚା ଦେଲେ ।
ଯହୁଂ ଅଗୋଚର ସଂଗ୍ରାମ ଦେଖିଲେ ॥

ସୁଷେଣ ଜମ୍ୱେବ ଭାକିଲେ ରମଣ ।
ଅତିକାୟେ କରଇ ବିଷମ ମହାରଣ ॥
ସୂର୍ଯ୍ୟଦେବତାକି ଭାଦ୍ରବ ମାସେ ଉଏଂ ।
ତେସନ ପଟାନ୍ତର ରାବଣ ତନୟେ ॥୭୦
ଏକା ନାରାଜକେ ଯେ ଲକ୍ଷେ ମାରଇ କପି ।
ନିଶ୍ୱାସକେ ଲକ୍ଷେ ଷାଠିଏ ବାଣ ମାରଇ
କୋପି ॥
ଖଣ୍ଡ ଖଣ୍ଡ ହୋଇଣ ଯେ ପଡ଼ନ୍ତି ତରୁଶିଷ ।
ରକତ ନଦୀ ଯେ ବହଇ ଚଉପାଶ ॥
ଏକାରଥୀଙ୍କରେ ମଚ୍ଛଇ ତେଡ଼େ ବଳ ।
ତାହାର ଭରସାରେ ଦଇତେ ଅଚାର୍ଗଳ ॥
ଗୋଡ଼ାଇ ମାରନ୍ତି ସାଂଗ୍ରାମ ସୁଖ ପାଇ ।
ଛାମୁରେ ଜଣେହେଂ ରହନ୍ତା କେହି ନାହିଂ ॥
ଶ୍ରୀରାମରେ ଶରଣ ପଶିଲେ ରକ୍ଷକପି ।
ଭୋଦେବ ସମର ହୋଇଲା
ଅସଙ୍ଖେଂପି ॥୮୦
ରାବଣର ତନୟେ ତେଜ ଅଗ୍ନି ଜାଣି ।
ଏଡ଼େକ ଥାଠ ତୋହୋର ପକାଇଲା ହାଣି ॥
କ୍ଷୀର ସମୋଦ୍ର ଯେହ୍ନେ ମଚ୍ଛଇ ମନ୍ଦର ।
ରକ୍ଷକପି ମଚ୍ଛଇ ରାବଣ କୁମାର ॥
ଶୁଣିଲେ ଶ୍ରୀରାମ ଲକ୍ଷଣ ଭାଇ ବେନି ।
କୋପେଣ ଧାଇଂଲେ ଯେ ଧନୁଶର ଘେନି ॥
ସଇନି ପଛକରି ଆପଣେ ଆଗ ହୋନ୍ତି ।
ଦେଖିଲେ ଅସୁର ଆସଇ ଥାଠ ମଚ୍ଛି ॥
କଳାମେଘ ଜାଣି ଶ୍ୟରୀର ତାହାର ।
ପବନହୁଂ ବେଗେ ଚଳଇ ରହୁବର ॥୯୦
ଦେଖିଣ ଲକ୍ଷଣ ଶ୍ରୀରାମଙ୍କୁ ପଛକରି ।
ତୀକ୍ଷ ନାରାଜେକ ଯେ ଅଛନ୍ତି କରେ ଧରି ॥
ଦୈତ୍ୟ ବୋଇଲା ତୁ ନୋହୁଂସି ଭାରଜନ ।
କାହିଂ ଅଛି ତୁମ୍ଭର ଶ୍ରୀରାମ ରାଜନ ॥
ତୋତେ ମାଇଲେ ହୋଇବ ଧର୍ମ ହାନି ।
ଉପହାସ୍ୟ ବଚନ ବୋଲିବେ ପୁର ତିନି ॥
ବାଳୁତ ପୁଅତୁ ନ ଜାଣୁ ଯୁଦ୍ଧଗତି ।
ମୋତେ ସମାନ୍ୟ ନୋହଇ ସୁରପତି ॥
ବଛ ଦ୍ରୋହ କଲେ ପାପ ବହୁତ ପାଇଂ ।
ସରିସମ ଲୋକଙ୍କୁ ଜିଣିଲେ ଧର୍ମ
ହୋଇ ॥୧୦୦

ତୁ ଆଡ଼େ ହୋଅ ମୁଂ ଶ୍ରୀରାମ ଦେଖଇ ।
ତାହାକଇ ମାରି ଭାଇ ଦୁଃଖ ପାଶୋରଇ ॥
ତାହାକୁ ପେଷିବି ମୁଂ ଯମରାଜା ପୁର ।
ଶୁଣି ଲକ୍ଷଣ ଯେ ପେଷିଲା ସାତଶର ॥
ଅସୁର ଶ୍ୟରୀରେ ଯେ ନଭେଦିଲା କାଣ୍ଡ ।
ପୁଣି ଲକ୍ଷଣ ବୀର ହୋଇଲା ବଡ଼ଖଙ୍ଗ ॥
ପୁଣି ପାଞ୍ଚ ବାଣ ବିନ୍ଧଇ ତୁରିତ ।
ହେଳେ ଛେଦିଲା ତା' ରାବଣର ସୁତ ॥
ସେ ଶର ଛେଦି ବୀର ସହସ୍ରେ କାଣ୍ଡ ମାରି ।
ଲକ୍ଷଣ ଛେଦିଲା ତାହା ପ୍ରତିଅସ୍ତ୍ର କରି ॥୧୦
ଦୁଇଙ୍କର ଯୁଦ୍ଧେ କମ୍ପଇ ବସୁନ୍ଧରୀ ।
ଦଶଦିଗ ଅନ୍ଧାର ହୋଇଲା ବିଚାରି ॥
ନାରାଜଙ୍କର ତେଜ ଗୁଣଙ୍କର ଟଙ୍କାର ।
ହାଂକି ବିନ୍ଧିବାରେ ଶବଦ ଅପାର ॥
ଦେଖଣାହାରି ଜାଣି ଦେଖନ୍ତି ସଇନି ।
ସ୍ୱର୍ଗେ ପ୍ରଶଂସା ଯେ କରନ୍ତି ଦୁହେଂ ଧନ୍ୟି ॥
ଦଇତ ବିଚାରଇ ଅଟଇ ଯେ ବଡ଼ କ୍ଷତ୍ରୀ ।
ଆଜ ଯେହାର କନ୍ଧ ଲୋଟିବ ଧରିତ୍ରୀ ॥
ଏତେକ ଭାଳିଣ ଯେ ଅହିଶର ପେଷି ।
ଇନ୍ଦ୍ରାଅସ୍ତ୍ରେ ତାହା ଲକ୍ଷଣ ବିନାଶି ॥୨୦
ଲକ୍ଷଣ ତହିଂ ପୁଣ ହୃଦୟରେ ଚିନ୍ତି ।
ଦିଶଇ ଅସୁର ଅନୁଆନ ଭ୍ରାନ୍ତି ॥
କେମନ୍ତେ ଦଇତର ମୁଂ ଘେନିମି ପରାଣ ।
ଇନ୍ଦ୍ରଜିତର ତହୁଂ ଗାଢ଼ ଅଟଇ ଯେହାରଣ ॥
ଯେସନେକ ବିଚାରନ୍ତେ ପବନ କର୍ଣ୍ଣେ
କହି ।
ବ୍ରହ୍ମଅସ୍ତ୍ର କଲେ ଦଇତ ହତ ହୋଇ ॥
ଶୁଣି ସଉମିତ୍ରୀ ପ୍ରସନ୍ନ ବଦନ ।
ବେଦପତି ଅସ୍ତ୍ର କଲାକ ଆଧାନ ॥
ମନ୍ତ୍ରିଣ ବିନ୍ଧିଲା କୋପଭରେ ହୋଇ ।
ଚଳିଲାକ ଅସ୍ତ୍ର ଯେ ପବନୁଂ ବେଗେ
ଧାଇଂ ॥୩୦
ଅତିକାୟେ ହୃଦେ ବସିଲା ଯାଇଂ ବେଗେ ।
ବକସ୍ଥଳେ ବସି ଯେ ରୁଧିର ଖାଇ ରାଗେ ॥
ପିଠି କତିକି ବାହାର ହୋଇ ଶର ଗଲା ।
ଲକ୍ଷଣର ତ୍ରୋଣେ ବେଗେ ସମ୍ଭାଇଲା ॥

ପ୍ରାଣ ଯାନ୍ତେ ଦୈତ୍ୟ ପଡ଼ିଲା ଧରଣୀ ।
ଦେଖିଣ ଆନନ୍ଦ ଯେ ହୋଇଲେ ରଘୁମଣି ॥
ଅସୁର ସଇନି ଯେ ପଳାଇଲେ ଭୟେ ।
ସ୍ୱର୍ଗରେ ଉଷତ ହୋଇଲେ ଦେବତାୟେ ॥
ଶ୍ରୀରାମ ବାହୁଡ଼ିଲେ ରଣଜୟ କରି ।
ସୁବଳୟା ପର୍ବତେ ବିଜୟେ ରାବଣାରି ॥୪୦
ସଉଚଲାଗି ହୋଇ ସ୍ନାହାନ ସନ୍ଧ୍ୟାକଲେ ।
ନିଶ୍ଚିନ୍ତେ ରଘୁନାଥ ରଜନୀ ବଞ୍ଚିଲେ ॥
ଏଥୁଅନନ୍ତରେ ଶୁଣ ଗୋ ମାହେଶ୍ୱରୀ ।
ରାବଣ ଛଡ଼ପୁତ୍ର ଯହୁଂ ହୋଇଲେ ସଂହାରି ॥
ସଇନି ପଳାଇଣ ଲଙ୍କାପୁରେ ପଶିଲେ ।
ରଣଭଙ୍ଗ ସଇନି ଅଶୋଭା ଦିଶିଲେ ॥
ନଗ୍ର ନରନାରୀ ହାହାକାର କରି ।
ଶତେ ଯୋଜନ କଟକେ ହୋଇଲା
ହାଲୋହୋଳି ॥
ରାବଣ ଛାମୁରେ ଯାଇ କହିଲାକ ଚାର ।
ଶୁଣ ଦେବ ଦଶଗ୍ରୀବ ପ୍ରତାପୀ
ଲଙ୍କେଶ୍ୱର ॥୫୦
ଛଡ଼ପୁତ୍ର ତୋହୋର ଯେ ସାଂଗ୍ରାମକୁ ଗଲେ ।
ଅନେକ ସମର କରିଣ ସେହୁ ମଲେ ॥
ଶୁଣି ରାବଣ ଯେ ପଡ଼ିଲା ସିଂହାସନୁ ।
ଗଙ୍ଗଶିଉଳି ପୁଷ୍ପ କି ଦ୍ରଷନ କଲା ଭାନୁ ॥
ମଉଳା ପ୍ରଶସ୍ତ ଯେ ଧଇଲାକ ତୋଳି ।
ଶୋକ କରଇ ରାବଣ ନୟନୁ ଲୁହଗାଳି ॥
ବୋଇଲା ପୁତ୍ରରେ ରଣେ ଧୂମକ୍ଷେତା ।
ଲକ୍ଷେ ଲକ୍ଷେ ଯେ ଅଟଇ ତୁମ୍ଭର ବନିତା ॥
ତାହାନ୍ତ ଛାଡ଼ିଣ ଗଇ ଯେବେ କାହିଂ ।
କୁମ୍ଭକର୍ଣ୍ଣ ଦାଦିକିରେ ନେଲା ତୁମ୍ଭଙ୍କୁ
କଡ଼ାଇଂ ॥୬୦
ଅଛୟେ ଭାଇର କତିକି ହାଦେ ଗଲ ।
ଅସମୟେ ଦେଖିବାରୁ ଛାଡ଼ି ପଳାଇଲ ॥
ଆରେ ଦେବାନ୍ତେକ ତୁହିଂ ହାଦେ ଗଲୁ ।
ଦେବତାନ୍ତ ଅନ୍ତ କରିଣ ତୁହିଂ ଥିଲୁ ॥
ଦେବାନ୍ତେକ ବୋଲି ବିଧାତା ତୋତେ ନାମ
ଦେଲା ।
ଏବେ ଦେବେ କିମ୍ପା ମୋତେ ତରିବେଟି
ଭଲା ॥

ମହାପାରଶ ତୋର ମହିଂମା ଅପାର ।
ମହାଦେବ ଭଳି ତୋତେ ଦେବତା କାତର ॥
ଆରେ ମହୋଦର କେଣେ ଛାଡ଼ିଗଲୁ ବାବୁ ।
ମାହା ଉଦରେ ତୋର ଭରିପାରି ସବୁ ॥୭୦
ଏବେ ରକ୍ଷ କପି ମାଇଲେକ ତୋତେ ।
ଏ ବାରତା କହି ପଠିଆଇଲୁ ମୋତେ ॥
ତ୍ରିଶିରା ତୁ କେମନ୍ତେ ହୋଇଲୁ ପ୍ରାଣହତ ।
ତିନିବେଳେ ଯେକା ତୁ ଜିଣିଲୁ ଜଗତ ॥
ସ୍ତିରୀଙ୍କର ବଦନ ପ୍ରାୟେ ମୁଖଗୋଟି ।
ତ୍ରିଶିରା ନାମ ତୋତେ ଦେଲା ପରମେଷ୍ଠୀ ॥
ଅତିକାୟେ ବାବୁରେ ପଡ଼ିଲୁ କେହ୍ନେ ରଣେ ।
କେହ୍ନେ ତୁ ବଧ୍ୟ ନୋହୁ ଆନ ବାଣେ ॥
ବ୍ରହ୍ମଅସ୍ତ୍ର ଯତି ପାଇଲା ଅବା କାହିଂ ।
କେହ୍ନେ ଦେହ ଧରିବୁରେ ମୋତେ ଛାଡ଼ିଯାଇଂ ॥୮୦
ଅହିଶର କିଂପାଇ ନକଲୁରେ ବାବୁ ।
ସେ ଶର ବିନ୍ଧିଲେ ଯେ ଜିଣିପାରୁ ସବୁ ॥
ମାୟା ବୁଧିମାନ ତୋର କେଣେ ଗଲା ।
ହାହା ବିଧାତାରେ ଛଡ଼ପୁତ୍ର ମୋର ମଲା ॥
ଆଉକି ଶତ୍ରୁକୁ ପାରଇ ମୁଇଂ ଜିଣି ।
କେ ରାମ ଲକ୍ଷଣଙ୍କୁ ମାରିଦେବ ଆଣି ॥
ଏ ମୋହୋର କଷ୍ଟ କରିବ କେହୁ ପାର ।
ଭାଇପୁତ୍ର ବଇରୀ କେ ସାଧିବ ମୋହୋର ॥
ଶୁଣି ଇନ୍ଦ୍ରଜିତ କହଇ କରଯୋଡ଼ି ।
କିମ୍ପା ମରୁଅଛ ଦେବ ଶୋକଜଳେ ବୁଡ଼ି ॥୯୦
ମୁଇଂ ତୋର ଶତ୍ରୁକୁ ସାଧିବି ଯେହିକ୍ଷଣି ।
କେତେବେଳ ନାହିଂ ସ୍ୱର୍ଗପୁର ଜିଣି ॥
ପାତାଳଭୁବନ ସାଧିଲି ସାତବାର ।
ମୃତୁପୁରେ ସହନ୍ତା ନାହିଂ କେହି ମୋହୋର ଶର ॥
ଦେବନ୍ତାତ ଜିଣି ଖଟାଇଲି ପାଦତଳେ ।
ମାତେଲି ପୁତ୍ରକୁ ମାଇଲି ଭୁଜବଳେ ॥
ସ୍ୱର୍ଗ ସମ୍ପଦ ଜିଣି ମୁଂ ଯାବତ ଭୋଗ୍ୟ କଲି ।
ଅପକ୍ଷରୀ ଧରି ଲଙ୍କାପୁରକୁ ଆଣିଲି ॥
ଦେବଭଣ୍ଡାରୁ ବାଛି ଆଣିଲି ରତ୍ନ ଆୟେ ।
ତେଣେ ସେ ଭୂଷଣ ହୋଇଅଛି ମୋର କାୟେ ॥୧୦୦
ଏକାଏ ଭୋଗ୍ୟ କରିଛି ଧରିତ୍ରୀ ।
ଚନ୍ଦ୍ର ସୂର୍ଯ୍ୟ ମୋତେ ଡରେ କଥା ନ କହନ୍ତି ॥
ତେବେ ସେ ଗଗନମାର୍ଗେ ଦେବେଥାନ୍ତି ଉଇଂ ।
କାହାକଇ ଶରେ ମୁଂ ହାରିଣ ଅଛଇ ॥
ପବନ ନବହି ମୋର ଆଜ୍ଞା ପାଇଲେ ।
ଦେବଗୁରୁ ବୃହସ୍ପତି ଯେ ମୋହୋର ବୋଲେ ॥
ପୃଥ୍ୱି ଖଣ୍ଡ ଖଣ୍ଡ କରିତ ପାରଇ ମୁଇଂ ।
ଆକାଶ ଛନାଇକି ପକାଇବି ମହୀ ॥
ରାମଲକ୍ଷଣ ଯେ ରକ୍ଷକପି ଛାର ।
ଯେ କଥାକୁ ପିତା ତୁମ୍ଭେ ଶୋଚନା ନକର ॥୧୦
ଯେହିକ୍ଷଣି ଶତ୍ରୁକୁ ତୋହୋର ସଂହାରିବି ।
ରାମ ଲକ୍ଷ୍ମଣଙ୍କୁ ମାରି ତୋହୋର ଆଗେ ଦେବି ॥
ଶୁଣି ଦଶଗ୍ରୀବ ହୋଇଲା ସନ୍ତୋଷ ।
ଅଶ୍ରୁଜଳ ପୋଛଇ ଯେ ଘେନିଣ ନିଜବାସ ॥
ସାଷ୍ଟାମ ହୋଇଣ ଯେ କହଇ ବଚନ ।
ଭୋପୁତ୍ର ଶତ୍ରୁ ମୋତେ ଦେଖିଲାକ ନିଉନ ॥
ମୁଇଂକି ନ ଜାଣଇ ତୋହୋର ଗାରିମା ।
ଇନ୍ଦ୍ରକୁ ଜିଣି ସ୍ୱର୍ଗେ ରୁହାଇଲୁ ସୀମା ॥
ରକ୍ଷବାନର ଯେ ମାନେବ ଦୁଇଜଣ ।
ଜୟେ ନୋହିଲାରେ ମୋତେ ଯେହାଙ୍କର ରଣ ॥୨୦
ଅତିକାୟେ ପଡ଼ିଲା ଲକ୍ଷଣର ବାଣେ ।
ଦେଖିଆସି ମୋତେ କହିଲେ ଚାରଗଣେ ॥
ତୁ ଯେବେ ଅଭିମାନ ସମୋଦୃ କରିପାରୁ ପାର ।
ତେବେ ସେ ପୁତ୍ର ଅଛିରେ ପ୍ରତିକାର ॥
ରତ୍ନ ଜଡ଼ିଲାର ବିବିଧ ଅଳଙ୍କାର ଆୟେ ।
ଇନ୍ଦ୍ରଜିତକୁ ଦେଲା ଲଙ୍କେଶ୍ୱର ରାୟେ ॥
ଶ୍ରୀଭୂଷା କିରଟୀ ମୁକୁଟ କୁଣ୍ଡଳ ।
ହୃଦକଇ ପଦେକ କଣ୍ଠକଇ ହାର ॥
ବାହେ ତାଡ଼ ବିଦ ମୁଦି ରତ୍ନମୟେ ।
ଭୁଜକଇ ବାହୁଟି ଶିକୁଳିମାନ ଦିୟେ ॥୩୦
କରକଇ କଙ୍କଣ ଅଙ୍ଗୁଷ୍ଠିକଇ ମୁଦି ।
କଳାମେଘେ ଯେହ୍ନେ ବିଜୁଳି ଘନଘନ ଭେଦି ॥
କଟିକି କଟି ମେଖଳା ଚରଣକଇ ନେପୁର ।
ଦେବାଙ୍ଗ ବସ୍ତ୍ର ଦେଲା ବିବିଧ ପ୍ରକାର ॥
ବସନ୍ତ କୁସୁମର ଶତେସେରିମାଳା ।
ଆପଣେ ରାବଣ ଲମ୍ବାଇଲା ପୁତ୍ରଗଳା ॥
ମଳୟ ଚନ୍ଦନ ଲେପିଲା ସର୍ବାଙ୍ଗେ ।
ରଥ ଗଜ ଘୋଡ଼ା ପାଦାନ୍ତି ଦେଲା ସଙ୍ଗେ ॥
ଓଳଗ ମେଲାଇଂଣ ଚଳିଲାକ ପୁତ୍ର ।
ନିକୁମ୍ଭିଲା ବଟତଳକୁ ଚଳିଲା ତୁରିତ ॥୪୦
ସେ ବୃକ୍ଷତଳରେ ଅଛଇ ହୋମଖାତ ।
ଅଗ୍ନି ରାଖିଥାନ୍ତି ବ୍ରାହ୍ମଣ ଚାରିଶତ ॥
ଆପଣେ ମେଘନାଦ ମିଳିଲା ତହିଂ ।
ଜପରେ ବସିଲା ଶୁଚିବନ୍ତ ହୋଇ ॥
କଳାଛେଳି ରୁଧିରେ ଆହୁତି ସମର୍ପିଲା ।
ଯେ ବିଧି ବିଧାନ ବିଧାତା ତାହାକୁ କହିଥିଲା ॥
ସେହି ମନ୍ତ୍ର ଜପନ୍ତେ ତୋଷିଲା ହୁତାଶନ ।
ତହୁଂ ଜାତ ହୋଇଲା ଦେବଦଳଣ ନାମେ ଯାନ ॥
ଅକ୍ଷୟେ ତ୍ରୋଣ ଧନୁ ସହିତେ ଉତପତ୍ତି ।
ତହିଂ ବିଜେକଲା ବିଶର୍ବାର ନାତି ॥୫୦
ଦିଗଦହନ ଚିରାଳ ରଥରେ ମଣ୍ଡିଲା ।
ଯେବଣ ଚିରାଳେ ସୁରପତିକି ଦହିଲା ॥
ବାମେଣ ବିଜୟା ନାମେ ଶରାସନ ।
କନ୍ଧ ତଟେ ଅକ୍ଷୟେ ତ୍ରୋଣ ଶୋଭାବନ ॥
ବୀରବେଶ ହୋଇଣ ପ୍ରତଜ୍ଞା ବହୁତ କରି ।
ରହୁବର ଆରୋହି ଯେ ଚଳଇ ଇନ୍ଦ୍ର ଐରୀ ॥
ରଥଗଜପାଦାନ୍ତି ହୟଲେଖା ନାହିଂ ।

ଦେବତାଯେ ଡ଼ରିଲେ ଯେ ସୁରପୁରେ
ଥାଇଂ ॥
ଚଳନ୍ତେ ମେଦିନୀ ଯେ କମ୍ପଇ ପାଦଭରେ ।
ମଙ୍ଗଳ ଆରୋପଣ ସବୁରି ଦୁଆରେ ॥୬୦
ଭାଟକଯେବାର ବ୍ରାହ୍ମଣ ବେଦପଢ଼ି ।
ପାଦରେଣୁରେ ଯେ ଗଗନ ଓହାଡ଼ି ॥
ଆଲମ୍ବ ବୀରକ୍ଷତ୍ର ବିଲମ୍ବ ପନ୍ତି ପନ୍ତି ।
ବିବିଧ ଛନ୍ଦେ ଯେ ବାଜଣା ବଜାନ୍ତି ॥
ନଗ୍ରଲୋକେ ଡାକନ୍ତି ବାବୁ ତୋତେ ଜୟ
ହୋଉ ।
ରାମ ଲକ୍ଷଣ ରକ୍ଷକପି ଭସ୍ମଯାଉ ॥
କୁମ୍ଭକର୍ଣ୍ଣ ବଇରୀକି ଆସ ଆଜି ନାଶି ।
ରଣଜୟେ କରି ଲଙ୍କାରେ ହୋଅସି ॥
ଏସନେକ ବୋଲି ମନରେ ବାଞ୍ଛା ଯେ
କରନ୍ତି ।
ପଛିମ ଦ୍ୱାରେ ସଇନ ବାହାର
ହୋଇଯାନ୍ତି ॥୭୦
ସୂର୍ଯ୍ୟ ଉଦେମାନେ ମାଇଲେ ନେଇ ଠଣା ।
ରଣଭଙ୍ଗ କରିଣ ବାଇଲେ ବାଜଣା ॥
ଶ୍ରୀରାମ ଯେ ସୁବଳୟା ଗିରିରେ ରହିଥିଲେ ।
ନିଦ୍ରା ତେଜିଣ ଯେ ନିତ୍ୟ କର୍ମ ସାରିଲେ ॥
ଏସନେକ ବେଳେ ଯେ ଶୁଭିଲା ନିଶାଣ ।
ଦେଖିଲେ ଆଗିଆଣି ଦଳର ଭଙ୍ଗାଣ ॥
ଇନ୍ଦ୍ରଜିତ ଆସି ଯେ ଅଛଇ ଆପଣ ।
ବାରତା ପାଇ ଶ୍ରୀରାମ ଧନୁରେ ଦେଲେ
ଗୁଣ ॥
ଲକ୍ଷଣକୁ ଘେନି ରାମ ଧାମନ୍ତି ଅତିଖରେ ।
ସଙ୍ଗେ ବିଭୀଷେଣ ବାଳୀର କୁମାରେ ॥୮୦
ତହୁଂ ଆଗ ହୋଇ ଯେ ଅଛଇ ହନୁମନ୍ତ ।
ଶ୍ରୀରାମ ଦକ୍ଷିଣ ପାରଶେ ତାରାକାନ୍ତ ॥
ବାମେଣ ଅଛଇ ଯେ କେଶରୀ ଦୁବିନ୍ଦ ।
ପଛେ ଶତବାଳି ଆବର ମହାନ୍ଦ୍ର ॥
ପବନ ତାଳିମ୍ବ ସାରାସ ପାରାସ ।
ଗନ୍ଧମାରଦନ ବିଜୟେ ସୁନାସ ॥
ସଂପାତି ଦ୍ୱିବିଜ ଶଉରୀ ଶତବଳ ।
ବଳିମୁଖ ଦଧିମୁଖି କଞ୍ଚଣପନଶିଳ ॥

କାଳିମୁଖ କୋମଦ କାଳିଞ୍ଜନବୀର ।
ନଳ ଗବାକ୍ଷ ଯେ ସୁଷେଣ ମାହାନୀଳ ॥୯୦
ସଇନି ଅପ୍ରମିତ କଳଣା ନ ଯାଇ ।
କିଚ୍ଛାଣି ମେଦନୀ ହୋଇଲାକ ଛାଇ ॥
ତରୁଶିଳ ଘେନିଣ ଯେ ସବିହେଂ
ବଳବନ୍ତା ।
ସମରେ ମରଣକୁ ନ କରନ୍ତି ଚିନ୍ତା ॥
ଯେକକୁ ଆରେକ ଯେ ଆଗସରି ଧାଇଂ ।
ଯହୁଂ ସେ ଶ୍ରୀପୟରେ ଧାମନ୍ତି ଗୋସାଇଂ ॥
ଆଗଆଣି ଥାଟେ ଠଣା ଦେଇଥିଲା ନୀଳ ।
ଯେହାକଇ ପିଠି ହୋଇଲେ ଯାଇ ବଳ ॥
ପାଦାନ୍ତି ସଙ୍ଗେଣ ପାଦାନ୍ତି ଯେ ଯୁଝି ।
କଦଳୀବନ ଯେହ୍ନେ ମାହାବାତେ
ଭାଜି ॥୧୦୦
ତେସନେକ ହୋଇ ଯେ ପଡ଼ିଲେ
ଦୁଇବଳ ।
କାହର ଶ୍ୟରୀରୁ ରୁଧିର ବହଇ ଖଳଖଳ ॥
ଶିଳାବୃକ୍ଷ ପ୍ରହାରନ୍ତି ଆବର ଶହସ୍ର ମାରି ।
ଦୁଇକୂଳ ସଇନି ହୋଇଲେ ସଂଘାରି ॥
ରକ୍ଷରାକ୍ଷସ ବାନର ବଳ ମିଶି ।
ସ୍ୱର୍ଗେ ଦେବତାଯେ କରନ୍ତି ପ୍ରଶଂସି ॥
ଅସୁରେ ବିନ୍ଧନ୍ତି କୋଦଣ୍ଡ କାଣ୍ଡ ଧରି ।
କେହୁ ଖଡ଼ଗ ଧରି ଉଘୁରଣ ମାରି ॥
କେହୁ ମୁଷଳ ଘେନି ପିଟନ୍ତି ପୁଣପୁଣି ।
କେହୁ ଘାଆପାଇଣ ଲୋଟଇ ଧରଣୀ ॥୧୦
ରଣଭଙ୍ଗ ହୋଇଲେ ତେଡ଼େ କପିବଳ ।
ଶକତିର ଘାଏ ପଡ଼ନ୍ତି ଭୂମିତଳ ॥
କାହାକୁ ଦୈତ୍ୟଗଣେ ମାରନ୍ତି ବେଢ଼ପାରି ।
କେବଣ ବାପୁଡ଼ା ଯେ ପାଡ ସିଂହରଡ଼ି ॥
କାହାକଇ କୋନ୍ତ କାହାକଇ ଗଦା ।
କାହାକଇ ମୁଷଳ କାହାକଇ ବିଧା ॥
ନିର୍ଦ୍ଦୟା ମାରେଣି ଯେ ଓପ୍ରୋଧ ତହିଁ
ନାହିଁ ।
ରକ୍ଷକପି ସମର କରନ୍ତି ତାହା ସହି ॥
ବୃକ୍ଷେଣ ପିଟନ୍ତି ଯେ ରକଟନ୍ତି ତଣ୍ଡି ।
ତାହାଙ୍କର ଶସ୍ତ୍ର ତାହାଙ୍କୁ ହିଂ ପିଟି ॥ ୨୦

କାହାକୁ ପଥର ଯେ ମାରନ୍ତି ବୁଲାଇ ।
କାହାକୁ ହୟ ପିଠିରୁ ପକାନ୍ତି ଓହ୍ଲାଇ ॥
ଆପଣେ ଘୋଡ଼ା ଚଢ଼ି କମାଣେ ଧରି ।
ଅସୁର ବଳକଇ ଯେ ହସିଣ ବୀରମାରି ॥
ଶତ ଶତ ହୋଇଣ ବେଢ଼ନ୍ତି ମତ୍ତହସ୍ତୀ ।
ମାହୁନ୍ତ ପେଲି ଯେ ପକାବନ୍ତି ପୃଥ୍ୱି ॥
ଉପରେ ଉଠନ୍ତି କିଳିକିଳା ରାବରାଜି ।
ନାନାଶସ୍ତ୍ରମାନ ପକାବନ୍ତି ଭାଜି ॥
କେବଣ ହସ୍ତୀର ଉପରେ ପାଞ୍ଚସାତ ।
ବିକରାଳ ହୋଇ ଯେ ପଳାନ୍ତି
ମୟେମତ ॥୩୦
ଗଜଙ୍କର ମାଏ ନଖରେ ଉକୁଟାଇ ।
ଆପଣା ଲଲାଟେ ଘଷନ୍ତି ସୁଖ ପାଇ ॥
ଅଙ୍କୁଶ ଧରିଣ ହାଥୀର ମୁଣ୍ଡ ହାଣି ।
ଗର୍ଜିଣ ମାତଙ୍ଗ ଯେ ଚାହଂଇ ଯେଣିତେଣି ॥
ପଲପଲ ହୋଇ ଲୋଟିଲେ ମତ୍ତହସ୍ତୀ ।
ପରିଘାଇ ଯୁଦ୍ଧ କଲେ ଯାଇ ରଥୀ ॥
ଦେଖି ରକ୍ଷ କପି ଯେ ଏକମନ ହୋଇ ।
କାଣ୍ଡ ପଡ଼ନ୍ତେ ତାହାଙ୍କର ଭୟେଭ୍ରାନ୍ତି
ନାହିଁ ॥
ସାଙ୍ଗି ଶାବେଳି ଯେ ଭାଲୁଙ୍କ ନ ଡରନ୍ତି ।
ସହସ୍ରେ ସହସ୍ରେ ହୋଇ ରଥରେ
ଉଠନ୍ତି ॥୪୦
ମଣ୍ଡିଲାର ନେତ ପତନୀ ପାଟମାନ ।
କେମୁଣ୍ଡେ ବାନ୍ଧିଣ କେ ପିନ୍ଧଇ ବସନ ॥
ଶାଢ଼ୀ ପାଇଂ ଅଇଲା ପ୍ରାଏକ ଦିଶନ୍ତି ।
ରଥଗଜ କଳସ ପାଦରେ ମରଦନ୍ତି ॥
ଗୋଇଠା ମାରିଣ ଭାଙ୍ଗନ୍ତି କାପଖଞ୍ଜା ।
କେବଣ ରଥେ ଉଠିଲେ ସବିହେଂ
ଗୋଲଞ୍ଜା ॥
କାଳିମୁଖ କପି କାହିଂ କାଳି ଗାତ୍ର କଂପି ।
କେବଣ ରଥେ ଉଠିଲେ ସିନ୍ଦୂରମୟେ
ବ୍ୟାପି ॥
ରଥର ଫେଡ଼ମାନ ଭାଙ୍ଗିଣ ପକାବନ୍ତି ।
ଗରୁ ହୁଅନ୍ତେ ସ୍ୟନ୍ଦନ ଚଳି ନ ପାରନ୍ତି ॥୫୦
ଦୈତ୍ୟଙ୍କର ମାରଣେ ନ ହୋଅନ୍ତି
ହତବୀର୍ଯ୍ୟ ।

ଦୁଇଥାଠେ ଯୁଝନ୍ତି ଅତିହିଂ ଆଶ୍ରିଯ ॥
ରଣଗୋଳ ଶବଦ ଯେ ଶୂନ୍ୟ ପନ୍ଥେ ପୂରି ।
ଦୁଇକତି ବାଜେଣାରେ କମ୍ପନ୍ତି ବସେନ୍ଧରୀ ॥
ମୁଚୁପିଣ୍ଡମାନ ଯେ ଗଡ଼ାଗଡ଼ି ଯାନ୍ତି ।
ପାଦଘାତ ଲାଗି ଭୂମିରେ ପେଶିହୋନ୍ତି ॥
ରକତ ଝର ଝର ଯେ ବହଇ ଚଉପାଶ ।
ଅପୂର୍ବ ସମର ଯେ ହୋଇଲା ଘଡ଼ିଦଶ ॥
ଅଙ୍ଗଦ ନଳ ନୀଳ ସୁଷେଣ ହନୁମାନ ।
ରଣରଙ୍ଗ କରି ମାରନ୍ତି ବହୁତ ସୈନ୍ୟ ॥୬୦
ପବନ କେଶରୀ ଯେ ଗବଯେ ଗବାକ୍ଷ ।
ଏମାନେ ମାଇଲେ ବହୁତ ରଥୀ ସମକକ୍ଷ ॥
ସୁଗ୍ରୀ ବିଭୀଷେଣ ଡାଳିମ୍ବ ପବନ ।
ନୀଳ କାମୋଦ ଯେ ଗନ୍ଧମାରଦନ ॥
ଶଉରୀ ସେନାପତି ଅନେକ ଯୁଦ୍ଧ କଲା ।
ବିଶାଶଏ ରଥ ଭାଙ୍ଗି ପକାଇଲା ॥
କେଶରୀର ରଣ ଅତି ଅଗୋଚର ।
ଶ୍ରୀରାମ ନାରାଜେ ପଡ଼ିଲେ ବହୁତ ଅସୁର ॥
ଲକ୍ଷଣ ସଂହାରିଲା ଅସୁର ଅନେକ ।
ହନୁମନ୍ତ ମାରେଣିକି ସାକ୍ଷି ସୁରଲୋକ ॥୭୦
ଅଙ୍ଗଦ ଛାମୁରେ ପଡ଼ିଲେ ନ ବ୍ରତି ।
ଗନ୍ଧମାରଦନ ରାକ୍ଷସ ବଳ ମନ୍ଥି ॥
ଦଧିମୁଖ ଅପୂର୍ବ ସାଂଗ୍ରାମ ରୋଳ କଲା ।
ଦଶ ସହସ୍ର ହାଥୀର ମାହୁନ୍ତ ହାଦେ ମାଇଲା ॥
ରଥ ଧରିଣ ଯେ ବାଳଧରି ନେଇ ।
ମୁଣ୍ଡଟେକି ସବୁ ଭୂମିରେ ପକାଇ ॥
ଡାଳିମ୍ବ ମାଇଲା କୋଟିଏ ହୟବର ।
ପବନର କଥା ଅତି ଅଗୋଚର ॥
ଇାଂଢେଣ ରଥ ବାନ୍ଧି ଶୂନ୍ୟେଣ କଚାଡ଼ି ।
ତିନିଖର୍ବ ବଳ ସାଂଗ୍ରାମେଣ ପଡ଼ି ॥୮୦
ସୁଗ୍ରୀବର ଧନ୍ଦୋଳ ଆଗେଣି ରଣଗୋଳ ।
ଦୁଇଲକ୍ଷ ହାଥୀ ଯେ ମାଇଲା ଶତଦଳ ॥
ଏକର ଉପରେ ଆରେକ ନେଇ ପିଟି ।
ଏକାବେଳେ ଦୁଇଲକ୍ଷ ଗଜ ଭୂମିରେଣ
ଲୋଟି ॥
ପାରାସ ମାଇଲା ଲକ୍ଷେକ ଅସୁର ।
ସହସ୍ରେକ ଅସୁର ପଞ୍ଚାଶ କରୀବର ॥

ଜମ୍ୱେବର ମହିମା କହଣା ନ ଯାଇ ।
ସଙ୍ଗେ ଅଛି ତାହାର ଡାଳିମ୍ବ ନାମେ ଭାଇ ॥
ଚାଳିଶି ସହସ୍ର ଯେ ମାଇଲା ମରହସ୍ତୀ ।
ଋକ୍ଷ ଦୁଇଜଣେ ରାକ୍ଷସ ବଳମନ୍ଥି ॥୯୦
ସୁଷେଣ ଶତେକ ସହସ୍ରେ ବଳମାରି ।
ଶିଳାବୃକ୍ଷ ଧରି ସୈନ୍ୟନ୍ତ ସଂଘାରି ॥
ବିଭୀଷେଣ ମାରିଲା ଚଉଦ କୋଟି ହାଥୀ ।
ଦଶ ଶଙ୍ଖ ଅସୁର ଚଉବିଂଶ ସହସ୍ର ରଥୀ ॥
ଏହି ପରିମାଣେ ସେହି ନାଶ ଗଲେ ।
ଦୁଇ ବଳର ଯେ ଅନେକ ସୈନ୍ୟ ମଲେ ॥
ଋକ୍ଷ କପି ଅସୁର ଦନୁଜ ଦଇତ ।
ଋକ୍ଷ ରାକ୍ଷସ ବଳ ପଡ଼ିଲେ ବହୁତ ॥
ରକତ ନଦୀରେ ଯେ ବୁଡ଼ିଯାନ୍ତି ମଡ଼ା ।
ବିକଟାଳ ଛନ୍ଦେ ବାଜୁଅଛି କଡ଼ା ॥୧୦୦
ଇନ୍ଦ୍ରଜିତକୁ ଭେଟିଲେ ଯେ ଅଙ୍ଗଦ
ହନୁମନ୍ତ ।
ନଳନୀଳ ସୁଷେଣ ଆବର ଜମ୍ୱୋବନ୍ତ ॥
ଆଗେ ଓଗାଳିଲେ ଶିଳାବୃକ୍ଷ ଧରି ।
ଏକକୁ ଆରେକ ମାରନ୍ତି ଆଗ ସରି ॥
ଯେକାବେଳେକେ ପିଟିଲେ ଗଛ ସାତ ।
ନାରାଜ ପେଷି ତାହା ଛେଦିଲା ଦଇତ ॥
ପୁଣି ପାଞ୍ଚବୀରେ ମାଇଲେ ପାଞ୍ଚ ବୃକ୍ଷ ।
ହେଳେ ନିବାରିଲା ରାବଣର ବଛ ॥
ମାୟା ଯୁଦ୍ଧେ ଅସୁର ଅନ୍ଧକାର କଲା ।
ଘଡ଼ଘଡ଼ି ମାରି ପଥର ବରଷିଲା ॥୧୦
ପବନା ଅସ୍ତ୍ରେ ଶ୍ରୀରାମ ଛିନାଇଲେ ତାହା ।
କୋପେ ବ୍ରହ୍ମ ଅସ୍ତ୍ର କଲା ଦୈତ୍ୟ ନାହା ॥
ଚଉବିଂଶ କୋଟି ବାନରେ ତେଣେ ମଲେ ।
ଦେଖିଣ ଶ୍ରୀରାମ ଲକ୍ଷଣ ଅଇଲେ ॥
ରଘୁନାଥକଇ ପଛକରି ରହିଲା ସଉମିତ୍ରୀ ।
ସମ ଭେଟଟି ଯୁଦ୍ଧ ବାଜିଲା ଦୁଇକ୍ଷତ୍ରୀ ॥
କୋପେ ଇନ୍ଦ୍ରଜିତ ଯେ ପାଞ୍ଚ ବାଣ ମାରି ।
ଲକ୍ଷଣ ଛେଦିଲା ତାହା କିଛିତ ଶସ୍ତ୍ର କରି ॥
ସତୁରି ନାରାଜ ଯେ ପେଷିଲା ଇନ୍ଦ୍ରଜିତ ।
ହେଳେ ଛେଦିଲାକ ସୁମେତ୍ରାର ସୁତ ॥୨୦
ସହସ୍ରେକ ଅସ୍ତ୍ର ଯେ ପେଷିଲାକ ରାବଣୀ ।

ପ୍ରତି ଅସ୍ତ୍ର କରି ଲକ୍ଷଣ ତାହା ହାଣି ॥
ଲକ୍ଷେ କାଣ୍ଡ ଯେ ଇନ୍ଦ୍ରଜିତ ପେଷି ।
କତୁରୀ ନାରାଜେ ତାହା ସଉମିତ୍ରୀ ନାଶି ॥
ବେଳୁବେଳ ଯୁଦ୍ଧ ଯେ ବାଜିଲା
ମହାଗୋଳ ।
ଦୁହେଂ କ୍ଷତ୍ରୀବର ଅଟନ୍ତି ଅଚାର୍ଗଳ ॥
କୁହୁଡ଼ି ପରାୟେକ ଯେ ନାରାଜ ବିନ୍ଧୁଛନ୍ତି ।
ଦୁହେଂ କ୍ଷତ୍ରୀବର ସମାନ୍ୟ ଉଠନ୍ତି ॥
ଦଶଲକ୍ଷ ବାଣ ଯେ ପେଷିଲା ରାମଭାଇ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ହୋଇଲାକ ଛାଇ ॥୩୦
ଦିଗ ନ ଦିଶଇ ସ୍ୱଭାବେ ସନ୍ଧ୍ୟାକାଳ ।
ଅସ୍ତ ହୋଇଲାକ କାଶ୍ୟପର ବାଳ ॥
ରାତ୍ର ଘଡ଼ିଏ ସମର ମହା ଘୋର ।
ବିନ୍ଧିଣ କରନ୍ତି ଧନ୍ଦୋଳ ଅପାର ॥
ଦୁହିଂଙ୍କରି ଦେହେରେ ଚାଲୁଣି ମତ ଜଳା ।
ଘାୟେ ବିକଟାଳ ରାବଣର ବଳା ॥
ଲକ୍ଷଣ ବୋଇଲାରେ ଶୁଣ ଇନ୍ଦ୍ରଜିତ ।
କେହ୍ନେ ଯେ ସାଂଗ୍ରାମରେ ବୋଲାଉ
ସୁରବନ୍ତ ॥
ଯେବେ ନିସତ ତୁ ହଉ କାହିଂପାଇଂ ।
ବାହୁଡ଼ି କି ବାପକୁ ଦେଖିବୁ ଘରକୁ
ଯାଇ ॥୪୦
ଯେତେ ବୋଲିଣ ସେ ସହସ୍ରେକ
ବାଣମାରି ।
ଇନ୍ଦ୍ରଜିତ ଶ୍ୱରୀର ଯେ ହୋଇଲା ବିଦାରି ॥
ଆଖି ନ ପିଛାଡୁ ପଡ଼ଇ ଆସି କାଣ୍ଡ ।
ମେଘନାଦ ଦେହ ଯେ ହୋଇଲା ଖଣ୍ଡ
ଖଣ୍ଡ ॥
ରାଗେଣ ରାକ୍ଷସ ଯେ ବ୍ରହ୍ମ ଅସ୍ତ୍ର କଲା ।
ତେତିଶ କୋଟି ଋକ୍ଷ ବାନର ତେଣେ ମଲା ॥
ଅଘାତୁକ ହୋଇ ଗୋଟିଏ ତେଣେ ନାହିଂ ।
ସବୁଙ୍କରି ଦେହ ଯେ ଅଛଇ କାଣ୍ଡ ଛାଇଂ ॥
କୋପେଣ ଦଇତ ପୁଣି ପେଷିଲା ବ୍ରହ୍ମଶର ।
ଦେଖି ପଳାଇଲା ବିଭୀଷେଣ ବୀର ॥୫୦
ସାଂଗ୍ରାମ ମଣ୍ଡୋଳ ସେ ଛାଡ଼ି ବୀର ଗଲା ।
ସୁବଳୟା ପର୍ବତ ଉପରେ ଉଠିଲା ॥

ଦେବେ ଆକୁଳ ହୋନ୍ତି ସୁରପୁରେ ।
ଶ୍ରୀରାମ ଲକ୍ଷଣ ପଡ଼ିଲେ ବ୍ରହ୍ମଶରେ ॥
ଏତେକ ଭାଳି ବ୍ରହ୍ମା ପବନକୁ ପେଷି ।
ଅସ୍ତ୍ରକୁ ତୁଷ୍ଟି କରନ୍ତୁ ଶ୍ରୀରାମକୁ କହସି ॥
ଶୁଣି ମରୁତ ଯେ ଅଇଲା ତଡ଼ତି ।
କହିଲା ଶ୍ରୀରାମର ଶ୍ରବଣର କତି ॥
ଜାଣିଲେ ଶ୍ରୀରାମ ଯେ ଲକ୍ଷଣ ବେନିଭାଇ ।
ହନୁମନ୍ତ ଶୁଣିଲା ଯେ କତିରେଣ ଥାଇଂ ॥୬୦
ଇନ୍ଦ୍ରଜିତ ବ୍ରହ୍ମ ଅସ୍ତ୍ର ମାରିବାର ବେଳେ ।
ତିନିଜଣେ ତୁଷ୍ଟି କଲେକ ତତ୍କାଳେ ॥
ଭୋ ଅସ୍ତ୍ର ତୁ ପିତାମହ ତେଜ ।
ମୋତେ ଦେବ ରକ୍ଷା କରସି ତୁ ଆଜ ॥
ଅନମିତ କାରଣେ ମୁହିଂ ନ କଲିଟି ରଣ ।
ଭାରିଯାକୁ ମୋହୋର ହରି ଆଣିଲା ରାବଣ ॥
ମାଗି ଅଇଲାକୁ ପେଷୁଅଛି ତୋତେ ।
ବିଚାରି କାର୍ଯ୍ୟ ଅନୁଗ୍ରହ କରସି ମୋତେ ॥
ମୁହିଂ ନାରାୟେଣ ମାନେବ ଅବତାର ।
ନୋହିଲେଣ ଉଶ୍ୱାସ ନୋହଇ ମହୀଭାର ॥୭୦
ତୁହୋ ଅସ୍ତ୍ରରାଜ ନଜାଣୁନିକି ମୋତେ ।
ମୋହୋର ଶ୍ୱରୀରୁ ଯେ ଜାତକଲି ତୋତେ ॥
ଅନନ୍ତ କୋଟି ବ୍ରାହ୍ମାଣ୍ଡରେ ମୁହିଂ ଅଧିପତି ।
ଦଇତ ନିଲକ୍ଷଣକି ହରିବ ମୋର ସ୍ୟତୀ ॥
ବଜ୍ରକୁ ବଜ୍ର ମୁହିଂ ସେ ଭିଆଇଲି ।
ତୋତେହେଂ ବ୍ରହ୍ମ ଅସ୍ତ୍ର ମୁହିଂ ହାଦେ କଲି ॥
ଯେସନେକ ବୋଲି ଦୁଇ ଭାଇ କଲେ ତୁଷ୍ଟି ।
ଯେହାଙ୍କର କହନ୍ତେ ଯେ ଶୁଣିଲା ମାରୁତି ॥
ହନୁ ବିଚାରିଲା ଶ୍ରୀରାମ ନାରାୟଣ ।
ଅନନ୍ତ ବାସୁଦେବ ଅଟଇ ଲକ୍ଷଣ ॥୮୦
ମୁହିଂ ଏହାଙ୍କରେ ଯେ ପଶିବି ଶରଣ ।
ବ୍ରହ୍ମ ଅସ୍ତ୍ରେ କିମ୍ପା ମୁଇଂ ପାଇବି ମରଣ ॥
ଯେସନେକ ଭାଳୁ ଇନ୍ଦ୍ରଜିତ ବୀର ।
ମନ୍ତ୍ରିଣ ପେଷିଲା ଯେ ବ୍ରହ୍ମଶକ୍ତିଶର ॥
ଶ୍ରୀରାମ ଲକ୍ଷଣଙ୍କର ଉପରେ ଶରପଡ଼ି ।
ଅଜ୍ଞାନ ହୋଇଣ ଦୁଇଭାଇ ଅସ୍ତ୍ର ଛାଡ଼ି ॥

ହନୁମନ୍ତ ସହିତେ ଯେ ପଡ଼ିଲେ ତିନିଜଣ ।
ପଡ଼ିଲେ ସୁଗ୍ରୀ ତାରାକ୍ଷ ଜମ୍ୱେବ ସୁଷେଣ ॥
ନଳନୀଳ ଗନ୍ଧମାର୍ଦ୍ଦନ ନାଶ ଗଲେ ।
କୁମୁଦ କୁନ୍ଦ ଯେ ଦ୍ୱିବିନ୍ଦହିଂ ମଲେ ॥୯୦
ସାରାସ ପାରାସ ଶଉରୀ ସେନାପତି ।
ଦଧିମୁଖ ବଳିମୁଖ ଢଳିଣ ପଡ଼ିଛନ୍ତି ॥
କାଳିଞ୍ଜନ ରମଣ ବିବିଧ ଶତବଳ ।
କାଳିମୁଖ କେଶରୀ ବାଳୀର ଦୁଲାଳ ॥
ତାରାକ୍ଷ ସୁସୋଦନ ତାରାର ପିତା ଗଡ଼ି ।
ସୁଗ୍ରୀବର ଶଶୁର ଶତବାଳି ହିଂ ପଡ଼ି ॥
ବସନ୍ତ ପବନ ଚନ୍ଦନ ଯେ ତିନି ।
ମୋହେ ଅଚେତନ ପଡ଼ିଲେ ଧରଣୀ ॥
ଗୋଲଗୁଣ୍ଡା ବୀରେ ଯେ ହୋଇଲେ ଖଣ୍ଡ ଖଣ୍ଡ ।
ଇନ୍ଦ୍ରଜିତ ନାରାଜ ପ୍ରତକ୍ଷେ କାଳଦଣ୍ଡ ॥୧୦୦
କାଳିମୁଖର ସଇନି ନିରନ୍ତରେ ପଡ଼େ ।
ଶତେକୋଟି ଭାଲୁଙ୍କ ପଡ଼ିଲା ଯମଦାଢ଼େ ॥
ଘଡ଼ିକେ କାଟିଲା ସତୁରୀ କୋଟି ରକ୍ଷ କପି ।
ଶୂଳେ ପାଞ୍ଚ ବୃନ୍ଦ ମର୍କଟ ଅଛି ଖେପି ॥
ଚକ୍ରେ ଛିନାଇଲା କୁମ୍ୱେକା ଶଙ୍ଖସାତ ।
ପରିଘେଣ ମାଇଲା କପି ସହସ୍ରେ ଅହିବ୍ରତ ॥
କୋପେ ମୁଦୁଗର ପୁଣି ହିଂ ପେଷିଲା ।
ଅଠାର ଲକ୍ଷ ବାନର ତେଣେ ହତ କଲା ॥
ଗଦାରେ ପିଟିଲା ଷାଠିଏ କୋଟି ମ୍ରକଟ ।
ପୁଣି ବଜ୍ରେ ପେଷି ପାଞ୍ଚ କ୍ଷେଉଣି ମାଇଲା ପାପିଷ୍ଟ ॥୧୦
ନାରାଜେଣ ଅନେକ ଭାଲୁଙ୍କ ନାଶକଲା ।
ରକତ ବର୍ଣ୍ଣ କପି ବହୁତ କ୍ଷୟେ ଗଲା ॥
କାହାକୁ ଦୁଇକାଣ୍ଡ କାହାକୁ ପାଞ୍ଚଶର ।
ତିନିବାଣ ଫୁଟିଲା କାହାର ହୃଦୟର ॥
କାହାକୁ ଦଶ ନାରାଜ କାହାକୁ ଶଏ ମାରି ।
କାହାକୁ ଚଉଦ କାହାକୁ କୋଡ଼ିଏ ପ୍ରହାରି ॥
କାହାକୁ ତିରିଶ କାହାକୁ ସତାଇଶ ।
ହାଙ୍କି ବିନ୍ଧୁଅଛି ରାବଣର ଶିଷ ॥
କେହୁ ବୋଲଇ ରକ୍ଷାକର ମୋତେ ଭାଇ ।

କେହୁ କାନ୍ଦିଣ ବୋଲଇ ଆଇ ଆଇ ॥୨୦
କେ ବୋଲଇ ମାଆ ଗୋ କେବଣ ପାପ କଲି ।
କେ ବୋଲେ ବିଧାତା ସେ ନିଷ୍ଠଏଂ ପ୍ରାଣଦେଲି ॥
କେ ବୋଲଇ ପ୍ରାଣ ଛାଡ଼ିକି ପାରିହିଂ ।
ଏ ପରମ କଷ୍ଟ ଆବର ମହାଦୁଃଖ ସହି ॥
କେହୁ ରକତ ଯେ ପକାନ୍ତି ଉଦଗାରି ।
କେ ନିଜ କପୋଳେ ନିଜ କରତଳ ମାରି ॥
କେ କାଣ୍ଡ ଉପାଡ଼ଇ ଭାଙ୍ଗି ଦୁଇଫାଳ ।
ମଲି ମଲି ବୋଲି କେହି ହୁଅନ୍ତି ବିକଳ ॥
କେ ବୋଲଇ ପାମରରେ ମଲୁ ଇନ୍ଦ୍ରଜିତ ।
ଏବେ ଯେତେ଼ ବଳଗୋଟା କଲୁ ଯେ ନିପାତ ॥୩୦
ଅବଶ୍ୟ ମରିବୁ ଯେତେ ଦୁଃଖ ଦେଲୁ ।
ବ୍ରହ୍ମା ଈଶ୍ୱରଙ୍କୁ ଦୋରେହା ହୋଇଲୁ ॥
ଏହା ଶୁଣି ଦଇତ ପୁଣି ହିଂ ବିନ୍ଧଇ କାଣ୍ଡ ।
ଜୀଇଥିଲା ଲୋକକୁ କରଇ ଖଣ୍ଡ ଖଣ୍ଡ ॥
ଅନେକ ନାରାଜ ମାଇଲା ଯହୁଂ କୋପି ।
ନିଶବଦ ହୋଇ ଯେ ପଡ଼ିଲେକ ଲୋଟି ॥
ଅଙ୍ଗଦ ହନୁମନ୍ତ ଜମ୍ୱେବ ସୁଷେଣ ।
ଦଧିମୁଖ କାଳିମୁଖ ଆବର କଂଚଣ ॥
ନଳନୀଳ ଗନ୍ଧମାର୍ଦ୍ଦନ ସହିତେ ।
ଉତ୍ତମ ଯୋଦ୍ଧା ଅଟନ୍ତି ହାଦେ ଯେତେ ॥୪୦
ଯେହାର ମୁଣ୍ଡ ପକାଇବି କାଟି ।
ନପୁଣି ବ୍ରତନ୍ତି ଏ ଅଟନ୍ତି କପଟୀ ॥
ନାଗଫାଶ ବାଣୁ ବ୍ରତିଲେ କେମନ୍ତେ ।
ଏବେ ନମାଇଲେ ବ୍ରତିବେ ପ୍ରଭାତେ ॥
ଏତେକ ବୋଲି ବୀର ଖଡ଼ଗେ କରଧରି ।
ରଥୁ ଓହ୍ଲାଇଲା ବିକ୍ରମ ଗତିକରି ॥
ଦେବତାଏ ଆକୁଳେ ଭାଳନ୍ତି ଭାଳେଣି ।
ଅସୁର ଯାଉଅଛି ଶ୍ରୀରାମକୁ ହାଣି ॥
ସାମାନ୍ୟ ଭରସାକି ବୋଲିବା ଦଇତର ।
ମାରିବ ବୋଲି ଧରିଅଛି ଖଡ଼ଗ ହସ୍ତର ॥୫୦
ସ୍ୱରସ୍ୱତୀ କି ସୁମରଣ କଲାକ ବିଧାତା ।
ତତକ୍ଷଣେ ଆସି ଯେ ମିଳିଲା ବୁଧମାତା ॥

ବ୍ରହ୍ମା ବୋଇଲେ ତୁ ଯେହିକ୍ଷଣି ଯିବୁ ।
ଇନ୍ଦ୍ରଜିତ କଣ୍ଠରେ ଯାଇଂଣ ବସିବୁ ॥
ଯେମନ୍ତେ ଶ୍ରୀରାମ ଲକ୍ଷଣଙ୍କୁ ଦୟା କରଇ ।
ରକ୍ଷ କପିମାନଙ୍କୁ ଯେମନ୍ତେ ପ୍ରାଣେ ନମାରଇ ॥
ତେସନେକ ବୁଧି ଦିଅ ଏହିକ୍ଷଣି ।
ଶୁଣି ଚଳିଲା ଯେ ବ୍ରହ୍ମାର ଦୂଇଣୀ ॥
ମେଘନାଦ କଣ୍ଠେ ବସିଲାକ ଯାଇଂ ।
ଦୈତ୍ୟେ ବିଚାରଇ ଯେ ଶ୍ରୀରାମକୁ ଚାହିଁ ॥୬୦
ମଲାର ପ୍ରାଣୀ ଯେ ଅଟନ୍ତି ଭାଇବେନି ।
ମୋହୋରି ନାରାଜେ ସକଳ ସଇନି ॥
ମଇାଇ ମାଇଲେ ନୋହୋଇ ବଡ଼ପଣ ।
ମୃତ୍ୟୁ ଲୋକଙ୍କୁ ଯେ ତୁଇଂମାର ଅକାରଣ ॥
ଜଗତେ ଅପଛାତି ପାଇବଇଂ ମୁହିଂ ।
ପ୍ରାଣ ଗଲା ପ୍ରାଣୀକି ଯେ ମାରିବଇଂ ଯାଇଂ ॥
ନୋହଇ ଉଚିତ ଯେ କ୍ଷତ୍ରୀଙ୍କର ପୁରାଣେ ।
କେବଳ ମାରିଣ ଅଛଇ ବ୍ରହ୍ମବାଣେ ॥
ଯେବେ କେହ୍ନେ ମୁଂ ଯେ ମାରିବି ଖଡ଼ଗ ଧରି ।
ଦେବ ଅସ୍ତ୍ର ମନିଷଙ୍କୁ କଲି କୋପକରି ॥୭୦
ଯେଣେ ସୁରାସୁର ନ ବ୍ରତନ୍ତି କେହି ।
ବାନରେ ଜୀବନ ପାଇବେ ଯେବେ କାହିଁ ॥
ହୀନକର୍ମ ମୁହିଂ ନ କରଇ ସବୁକାଳେ ।
ଇନ୍ଦ୍ରକୁ ଜିଣିଲି ଯେବଣହିଂ କାଳେ ॥
ଧରି ସେ ଆଣିଲି ନକଲି ପ୍ରାଣେ ନାଶ ।
ହତ ଆଉଧ ହୋଇଲେ ବାନ୍ଧିବା ବଡ଼ ଦୋଷ ॥
ଧନୁ ଶହସ୍ର ପକାଇ ହାରିଛନ୍ତି ପ୍ରାଣ ।
କାଲି ଆସି ସୁଖେ ଦେଖିବ ରାବଣ ॥
ରାଜପୁତ୍ର ହୋଇ ମୁଂ ନ ଛୁଅଇଂ ମଡ଼ା ।
ଅନେକ ଛତ୍ରୀ ମୁଂ ମାଇଲି ବଡୁବଡ଼ା ॥୮୦
ବାଣ ସେ ମାରଇ ନକରଇ ଶିରଛେଦ ।
ଯେବେ ଯେଥେ କିମ୍ପା କରିବି ଅଧର୍ମ ଯୁଦ୍ଧ ॥

ଯେତେକ ବୋଲି ବୀର ବାହୁଡ଼ିଲାକ ପୁରୀ ।
ରହୁବରେ ବସିଲା ଖଡ଼ଗ କରେ ଧରି ॥
ସିଂହନାଦ ବଜାଇ ବାହୁଡ଼ି ବୀରଗଲା ।
ବୀରତୂର ଛନ୍ଦେ ଯେ ଟମକ ଦିଆଇଲା ॥
ରାତ୍ର ପାଞ୍ଚ ଘଡ଼ିରେ ଯେ ବାହୁଡ଼ିଲାକ ଥାଠ ।
ଶୁଣି ଲଙ୍କା ଲୋକେ ଯେ କରନ୍ତି ମୁରାଟ ॥
ରଣ ରଙ୍ଗ କରି ଚଳନ୍ତି ସଇନି ।
ବିଚିତ୍ର ଆଖଡ଼ା କରନ୍ତି ନିଜ ଅସ୍ତ୍ର ଘେନି ॥୯୦
ଦିଉଡ଼ି ହୁଳାମାନ ଯେ ଜଳଇ ନିରନ୍ତର ।
ପଶଇ ଇନ୍ଦ୍ରଜିତ କଟେକ ଭିତର ॥
ଉଛୁରାଉଛୁରି ହୋଇ ଦେଖନ୍ତି ଲୋକମାନେ ।
ସାଧୁ ସାଧୁ ବୋଲି ଡାକନ୍ତି ଅବିକ୍ଷଣେ ॥
ଯେକକୁ ଆରେକ ଯେ ପଚାରି ଦେଖି ଆସି ।
ମାନିତି ଗଉରୋବ ଯେ ହୋଇଲେ ମିଶାମିଶି ॥
କୋଣ୍ଡି ବିକୋଣ୍ଡିରେ ଯେତେକ ବାଟ ଥିଲା ।
ସବୁପୁର ଲୋକ ଦେଖିନ୍ତେ ଅଇଲା ॥
ଏକକୁ ଆରେକ ଯେ ଡାକନ୍ତି ଯୁବତୀ ।
ରଣଜୟେ କଲା ଯେ ବିଶର୍ବାର ନାତି ॥୧୦୦
ଇନ୍ଦ୍ରଜିତ ବଳେ ଯେ ଶତ୍ରୁ ହୋଅଇ ସାଧି ।
ଅନେକ ଜାଣିମା ଯେ ମାୟାମାନ ବୁଧି ॥
ଶ୍ରୀରାମ ଲକ୍ଷଣ ରକ୍ଷ କପି ବଳ ।
ମାରି ଆସୁଅଛି ରାବଣ ଦୁଲାଳ ॥
ଥାଠ ଜୟେ କଲେ ଯେ ଦିଶଇ ଧୂମଖେତ ।
ଦେଖିଣ ସଖୀ ଗୋ ପାଇବ ମାହାସୁସ୍ଥ ॥
ମଲାମାନଙ୍କର ଯେ କଷ୍ଟ ପାଶୋରିବା ।
ଭାଳି ହୋଉଥିଲା ହିଂ ଯେ ଆମ୍ଭେ ହେଂ ମରିବା ॥
ସବୁ ଭୟେ ଛଡ଼ାଇଲା ବୀର ଇନ୍ଦ୍ରଜିତ ।
ଯେତେକ ବୋଲି କାମେନୀ ଧାଇଂଲେ ବହୁତ ॥୧୦

ରାଜଦାଣ୍ଡେ ଦେଖୁଛନ୍ତି ଇନ୍ଦ୍ରଜିତ ଯାଉଂ ।
କେ ବୋଲଇ ଏ ରୂପ ଅଇଲା ତୋର କାହୁଂ ॥
ଶତ୍ରୁ ସଂହାରିଲା ଯେ ଦିଶନ୍ତି ଶ୍ରୀବନ୍ତ ।
ରକ୍ଷାକଲୁ ଆଜ ଲଙ୍କାର ଅସୁରନ୍ତ ॥
ନାହିଂ ନାହିଂ ଦେଖିଲା ଶୁଣିଲା ନାହିଂ ଶ୍ରୁତି ।
ଧନ୍ୟ ଧନ୍ୟ ମହିମା ତୁ ଅବା କାଳମୂର୍ତ୍ତି ॥
ବ୍ରହ୍ମାଣ୍ଡ ଭିତରେ ତୁ ଏକା ଧନୁର୍ଦ୍ଧର ।
ଆଜ ସେ ଚିନ୍ତା ଛାଡ଼ିବ ଦଶଶିର ॥
ଏସନେକ ବୋଲିଣ ଯେ ବୋଲନ୍ତି ଅସୁରୀ ।
ଆନନ୍ଦେଣ ପାଇକେ ଧାମନ୍ତି ଆଗସରି ॥୨୦
ଖଣ୍ଡା ବୁଲାଇଣ ଫେରିକରିଯାନ୍ତି ।
ଉଡ଼ାମାରିଣ ଠଣା ହୋଇ ରହନ୍ତି ॥
ଯେ ଯାହାର ଶହସ୍ର ଝମକାଇ ଦୈତ୍ୟେବଳ ।
ବୋଲନ୍ତି ମାଇଲୁ ଆମ୍ଭେ ରକ୍ଷ କପିବଳ ॥
ଲୋକେ ପଚାରନ୍ତି କେମନ୍ତେ ରାମ ମଲା ।
ଥାଠ ଲେକେ ବୋଲନ୍ତି ବ୍ରହ୍ମଅସ୍ତ୍ର କଲା ॥
ତିନିବେଳ ରାଗେ ଯେ ପେଷିଲା ତାହାପୁଣି ।
ଘଡ଼ିକେ ତେଡ଼େବଳ ପକାଇଲା ହାଣି ॥
କାଲି ଆମ୍ଭେ ସୁଖେ ଦେଖଇ ସିନା ଯାଇଂ ।
କହୁଂ କହୁଂ ଲୋକେ ଯାଉଛନ୍ତି ଧାଇଂ ॥୩୦
ରାବଣର ଆଗେ ଜଣାଇଲା ଚାର ।
ରଣ ଜୟେ କଲା ଦେବ ତୋହୋର କୁମର ॥
ବ୍ରହ୍ମ ଅସ୍ତ୍ରେ ସବୁ ପକାଇଲା କାଟି ।
ରାମ ଲକ୍ଷଣ ଅଛନ୍ତି ଭୂମିରେଣ ଲୋଟି ॥
ଶୁଣି ଲଙ୍କପତି ହରଷ ବିସ୍ମୟେ ।
ଇନ୍ଦ୍ରଜିତ ମିଳିଲା ଏସନେକ ସମୟେ ॥
ପାଏ ପଡ଼ି ଶୋଇ ମଥାରେ ହାଥ ଦେଲା ।
ବୋଇଲା ଭୋ ରାଜା ଶତ୍ରୁ ତୋହୋର ମଲା ॥
ଗୋଟିଏ ହୋଇନ୍ତ ନାହାନ୍ତି ପ୍ରାଣ ପାଇଂ ।
ରାତ୍ର ପାହିଲେ ତୁ ଆପଣେ ଦେଖ ଯାଇଂ ॥୪୦
ରକ୍ଷ କପି ସଇନି ପଡ଼ିଲା ବହୁତ ।
କୋପେ ବ୍ରହ୍ମଅସ୍ତ୍ର ଯେ ପେଷିଲି ଭୋ ତାତ ॥
ତିନିବେଳ ପରିଯନ୍ତେ ସେହି ଅସ୍ତ୍ର କଲି ।

ତେବେ ସେ ସକଳ ସଇନି ନିବାରିଲି ॥
ରାବଣ ବୋଇଲା କିମ୍ପାଇ କଲୁ ଏହ୍ନେକୃତ ।
ରକ୍ଷକପି ମାନୁଷ୍ୟଙ୍କୁ କଲୁ ବ୍ରହ୍ମଅସ୍ତ୍ର ॥
ଦେବେ ଅସୁରେ ଯେ ପିଚାଶ ଯକ୍ଷଗଣ ।
ଗନ୍ଧର୍ବ ବିଦ୍ୟାଧରୀ କିନ୍ନର ମାତ୍ରେଣ ॥
ତୋହୋର ପରାଏ କ୍ଷତ୍ରୀ ଅବେଭାର କଲୁ ।
ହୀନ ଜନ୍ତୁକଇ ଦେବ ଅସ୍ତ୍ର ପ୍ରହାରିଲୁ ॥୫୦
ଇନ୍ଦ୍ରଜିତ ବୋଇଲା ସେ ନୋହଇ ମନୁଷ୍ୟ ।
ମ୍ରକଟ ଭାଲୁଙ୍କକି ଏଡ଼େକ ସାହାସ ॥
ମାନେବର ହସ୍ତେ କି କୁମ୍ଭକର୍ଣ୍ଣ ମରି ।
ଯେବଣ ସାଂଗ୍ରାମ ଆଜି କଲାକ ଜଟାଧାରୀ ॥
ସହି ନୁଆରି ସେ ପେଷିଲି ବ୍ରହ୍ମଶର ।
ନୋହିଲେଣ ଆଜ ଆସି ନୁଆରନ୍ତି ଘର ॥
ତିନିପୁରେ ମୁହିଂ ଯୁଦ୍ଧ ଅଛି କରି ।
କେହୁଣି ସାଂଗ୍ରାମ ଏଥକୁ ନୋହଇ ସରି ॥
ଶ୍ରୀରାମ ଲକ୍ଷଣ ଅଟନ୍ତି ଯେବଣ ବେନି ।
ରଣେ ପଶିବେ ଯେବେ ଧନୁ ଶହସ୍ର ଘେନି ॥୬୦
ବହ୍ମା ରଦ୍ର ଇନ୍ଦ୍ରକୁ ଜିଣିମେ ଦୁଇଭାଇ ।
ବ୍ରହ୍ମ ଅସ୍ତ୍ର ନ କଲେକି ଆନେ ତାକୁ ପାଇଂ ॥
ଅସୁରଙ୍କର ବିକଳେ ଭାଇଙ୍କର ଛଳେ ।
କୁମ୍ଭକର୍ଣ୍ଣର କଥା ଏ ତୋହୋର ଆକୁଳେ ॥
ଲଙ୍କାର ଭାଜିଲା ଅସୁରଙ୍କର ଦୁଃଖ ।
ଏ ଲୋକମାନଙ୍କୁ ଯେ ନୋହିଲା ଯହୁଂ ସୁଖ ॥
ତେଣୁ ସେ ଧର୍ମକୁ ବିଚାର ନ କଲି ।
ବ୍ରହ୍ମ ଅସ୍ତ୍ର ଘେନି ଶତୃକୁ ସଂହାରିଲି ॥
ଶୁଣି ଦଶାନନ ସନ୍ତୋଷ ହୋଇଲା ।
ସିଂହାସନୁ ଉଠି ପୁତ୍ରକୁ କୋଳକଲା ॥୭୦
ମୁଖେ ଚୁମ୍ବନ ଦେଇ ଯେ ବସାଇଲା କତି ।
ବୋଇଲା ନିଦ ଯେ ମାଡ଼ିବ ଆଜ ରାତି ॥
ବିଭୀଷେଣ ଆଦିକରି ପଡ଼ିଲେକ ବାବୁ ।
ଇନ୍ଦ୍ରଜିତ ବୋଇଲା ଦେଖଯାଇଂ ସବୁ ॥
ସାଂଗ୍ରାମ ମୋଣ୍ଡେକେ ଯେତେକ ଅବା ଥିଲା ।
ସେ ହାଦେ ଶହସ୍ର ଘାଏ ଦେବ ଗୋଟିଏ ନ ବର୍ତ୍ତିଲା ॥
ଯେବେ ତୁ ସ୍ନାହାନ ଭୋଜନ ଦେବ କର ।
ସଇନିମାନେ ଯାଆନ୍ତୁ ଯେ ଯାହାର ଘର ॥
ରାତ୍ର ନପାହୁ ଯେ ସାଂଗ୍ରାମେ ପଶିଥିଲେ ।
ବେଳ ଅସ୍ତ ପାଞ୍ଚଘଡ଼ି ପରିଯନ୍ତେ ଯୁଦ୍ଧ କଲେ ॥୮୦
ଶ୍ରମ ପାଇଛନ୍ତି ଘାଆ ବହୁତ ଲୋକ ।
ଆଜୁ ସେ ଯେହାଙ୍କର ସରିଲାନି ଶୋକ ॥
ଶୁଣି ଲଙ୍କପତି ଦେଲାକ ଆଜ୍ଞା ପୁଣି ।
ଯେତେକ ବୋଲି ଭିତରକୁ ଯେ ଗଲାକ ତତକ୍ଷଣି ॥
ମାଜଣା ମଣୋହି ସାରିଲେ ଶୟନ ବୀର କରି ।
ପାଶେ ମାହାଦେଇ ଯେ ଖଟେଇ ମନ୍ଦୋଦରୀ ॥
ଇନ୍ଦ୍ରଜିତ କୁମର ଯେ ବାହାରେଣ ଥିଲା ।
ଅମନାତ୍ୟଗଣ ଘେନି ସେ ନବରକୁ ଗଲା ॥
ଯେ ଯାହାର ପୁରେ ପ୍ରବେଶ ହୋଇଲେ ।
ଆଜ ସେ ନିଷ୍ଟିନ୍ତ ହୋଇଲୁ ବୋଇଲେ ॥୯୦
ସ୍ନାହାନ ଭୋଜନ ସାରି ସୁଖେ ଶୋଇ ।
ଏଥୁ ଅନନ୍ତରେ ରାତ୍ର ଅର୍ଦ୍ଧ ହୋଇ ॥
ଶ୍ରୀରାମ ଯେ ବ୍ରହ୍ମଅସ୍ତ୍ରେ ଅଜ୍ଞାନ ହୋଇଥିଲେ ।
ଘଡ଼ିକେ ଦୁଇଭାଇ ଚେତନା ପାଇଲେ ॥
ଚଳି ନୁଆରନ୍ତି ମହାଶସ୍ତ୍ର ଘାଏ ।
କଥା ନ କହନ୍ତି ଜୀବନଇ ଅଛି ଦେହେ ॥
ଶହସ୍ର ଜାଣିଲା ସ୍ୱୟେଂ ବିଷ୍ଣୁରାଶି ।
ଦେବତାଙ୍କର ଛଳେ ଅବତାର ହୋଏ ଆସି ॥
ଅସୁରବଳମାନନ୍ତ ମାରିବେ ରଣଗୋଳେ ।
ତେବେ ସେ ସୁରଗଣେ ବସିବେ ସୁରଆଳେ ॥୧୦୦
ମୁହିଂକି ଭାର୍ଜନ ଯେହାଙ୍କର ଦର୍ପ ହରି ।
ବିଶେଷେ ତୃପ୍ତି ଯେ କଲାକ ପୁରସରି ॥
ଶ୍ରୀରାମ ଲକ୍ଷଣ ହନୁମନ୍ତ ତିନି ।
ଏହାଙ୍କଇ ଅସ୍ତ୍ର ଯେ ଛାଡ଼ିଲାକ ଚିହ୍ନି ॥
ଆବର ଜୀବମାନେ ଯେ ହାରନ୍ତି ନିଜ ପ୍ରାଣ ।
ଅସ୍ତ୍ରଘାତ ନୋହିଲା ଶ୍ରୀରାମ ଲକ୍ଷଣ ହନୁମାନ ॥
ସୁଗ୍ରୀବର ସହିତେ ଯେତେକ ରକ୍ଷ ହରି ।
ସବୁଙ୍କୁ ହିଂ କାଟିଲା ଯେ ଭିନ୍ନ ଭିନ୍ନ କରି ॥
ବିଭୀଷେଣ ଜାଣି ଆଗହୁଂ ପଳାଇଲା ।
ଯହୁଂ ସେ ମେଘନାଦ ବ୍ରହ୍ମ ଅସ୍ତ୍ର କଲା ॥୧୦
ରାବଣର ଭାଇ ମନରେ ବିଚାରି ।
ଦେବେ ଦାନବେ ଯେ ଶହସ୍ରେ ପ୍ରାଣ ହାରି ॥
ଶ୍ରୀରାମ ଲକ୍ଷଣ ଯେ ଅଟନ୍ତି ବିଷ୍ଣୁକାଏ ।
ଯେହାଙ୍କର ପ୍ରାଣ ନ ହରିବ ଜନ୍ତୁରାଯେ ॥
ରକ୍ଷକପି ହୋଇ ଯେ ନବ୍ରତନ୍ତି କେହି ।
ମୁହଂ ଯାଇଂଣ ରଖିବି ଏ ମୋହୋର ଦେହୀ ॥
ଏ ବ୍ରହ୍ମ ଅସ୍ତ୍ର ଯେ ଅଟନ୍ତି ବ୍ରହ୍ମ ଆତ୍ମା ।
ନିସତ ପ୍ରାଣୀ କି ନ ମାରଇ ମାହାତ୍ମା ॥
ସାଂଗ୍ରାମ ଛାଡ଼ି ପଳାଇଲେ ଦୟା କରି ।
ଯେହେନ୍ତ୍ରେକ ନିର୍ଭା କରିଅଛଇ କୁଶଧାରୀ ॥୨୦
ଯେତେ ଭାଜି ବୀର ପଳାଇଣ ଗଲା ।
ଧନୁଶସ୍ତ୍ର ପକାଇଣ କେଶ ମୁକୁଳା କଲା ॥
ନିସତ ହୋଇଣ ସେ ରଖିଲାକ ପ୍ରାଣ ।
ତାହାଙ୍କଇ ଏକା ନ ଲାଗିଲା ବ୍ରହ୍ମବାଣ ॥
ସୁବଳୟା ଗିରିରେ ଯେ ଉପରେ ବସିଥିଲା ।
ବିଷମ ରୋଳ ଯେ ଧନ୍ଦୋଳ ଦେଖିଲା ॥
ଶ୍ରୀରାମ ଲକ୍ଷଣ ରକ୍ଷ କପି ମାରି ।
ବାହୁଡ଼ିଲା ମେଘନାଦ ରଣ ଜୟେ କରି ॥
ଲଙ୍କାଗଡ଼ ଭିତରେ ଯହୁଂ ପ୍ରବେଶ ହୋଇଲା ।
ବିଭୀଷେଣ ପର୍ବତ ଉପରୁ ଓହ୍ଲାଇଲା ॥୩୦
ରକ୍ଷକପିବଳ ଦେଖଇ ବିଭୀଷେଣ ।
କେବଣହିଂ ପ୍ରକଟର ନିହାଇଯାଇ ପ୍ରାଣ ॥
କେ ଛଟପଟ କେ ତବଦ ହୋଇଅଛି ।
ଜଣେ ଜଣେ ଚାହିଂଣ ଯେ ବିଭୀଷେଣ ପୁଚ୍ଛି ॥
କେ କେ ହୋଇଣ ଅଛ ବାବୁ ଯେଥ ।

ମୁହିଂ ବିଭୀଷେଣ ହୋଇଲି ଅନାସ୍ତ ॥
ମାୟାଯୁଦ୍ଧେ ଦୈତ୍ୟ ସକଳ ମାରିଗଲା ।
ହୀନ ଜନ୍ତୁମାନଙ୍କୁ ବ୍ରହ୍ମ ଅସ୍ତ୍ର କଲା ॥
ଅଣ ଦେଖାର ସମର କଲାକ କଉଂପଣ ।
କେବଣ ଠାବରେ ଅଛନ୍ତି ରାମ ପୁଣ ॥୪୦
ଲକ୍ଷଣ ହନୁମନ୍ତ ସୁଗ୍ରୀବର କାହିଂ ।
ମୁହିଂ ଆଉ ପଳାଇ ପଶିବି କାହିଂଯାଇଂ ॥
ଜଣେହେଂ ନକହନ୍ତି ସବିହେଂ ହତଚେତା ।
ଯେକାବେଳେ ସବୁଙ୍କୁହିଂ ମାଇଲା ବିଧାତା ॥
ମାହା ମାହା ବୀରେ ଯେକକୁ ଯେକେ
ଯୋଧି ।
କାଳ ନଜାଣିଣ ହରାଇଲ ତୁମ୍ଭେ ବୁଧି ॥
ମୁଇଂ ଯେ ଆଶ୍ରେ ପୁଣି କଲଇଂ ତୁମ୍ଭନ୍ତ ।
ଇଷ୍ଟ ଦେବତା ମୋର ଅଟନ୍ତି ସୀତାକାନ୍ତ ॥
ରାବଣର ସଂଗୋତ୍ର ହୋଇଲି ବଇରୀ ।
ରାତ୍ର ପାହିଲେଣ ଆସିବ ଦଶଗିରି ॥ ୫୦
ଖୋଜି ମୋତେ ସେ ଯେ କରିବ
ପ୍ରାଣନାଶ ।
କେବଣ ବିଧାତା ମୋର ଛିନାଇଲା ଆଶ ॥
ଯେତେକ ବୋଲି ବୀର ଯେ କଲାକ
ରୋଦନ ।
ନୟନୁ ଅଶ୍ରୁଜଳ ଯେ ବହଇ ଘନ ଘନ ॥
ଆହୋ ଶ୍ରୀରାମ ବୋଲି ଯେ ଉଚ୍ଚସ୍ୱରେ
ରାଇ ।
କପି ଜାଣିଲେ ଯେ ରାବଣର ଭାଇ ॥
ଭଲା ବରତିଲା ଯେ ଜାଣିଲା କେମନ୍ତେ ।
ଦଇତ୍ୟଙ୍କର ମାୟା ଯେ ଜାଣନ୍ତି ଦଇତେ ॥
ଯେହାର ଜୀଇଥିଲାର ହୋଇଲା ଭଲ
କାର୍ଯ୍ୟ ।
ଅନେକ ବିଧାନ ଯେ ଜାଣଇ
ଦୈତ୍ୟରାଜ ॥୬୦
ଯେତେକ ବୋଲି ଲୋକେ ସମାସ୍ୟା
କରନ୍ତି ।
ଚଳି ନ ପାରି ଯେ ସମାସ୍ୟା ଦିଅନ୍ତି ॥
ଶୁଣ ହୋ ବିଭୀଷେଣ ଆମ୍ଭେ ଅଛୁ ବର୍ତ୍ତି ।
କାଣ୍ଡ ଘାଆରେ ସେ ତ ଚଳି ନୁଆରନ୍ତି ॥

ଶୁଣିଣ ଅସୁରେଶ୍ୱର ବାହୁଡ଼ିଣ ଆସି ।
ହାଥ ଧରି କପିଙ୍କି ଯେ ତୋଳଇ ଆକ୍ରୋଷି ॥
ଶହସ୍ର ହୁଗାଳିଣ ଯେ ଫୁଙ୍କିଣ ବସନ୍ତି ।
ଫୁଙ୍କିଲାରୁ କପିମାନେ ଉଠିଣ ଚିଆଂତି ॥
ଯେକ ତୁଣ୍ଡ ଶୁଣି ଯେ ଉଠଇ ଆରେକ ।
ରକ୍ଷ କପି ପ୍ରକଟ ମିଳିଲେ ଅନେକ ॥୭୦
ସଇନି ନିରନ୍ତରେ ଯାଆନ୍ତି ଥାଠ ଖୋଜି ।
ମଲା ହଜିଲାର ଲୋକମାନେ ହେଜି ॥
ଯେକକୁ ଆରେକ ଯେ ନାମ ଧରି ରାଇ ।
ଜୀଇଲା ଲୋକେ ଅଇଲେ କାହାକୁ
ଅନାଇ ॥
ବିଭୀଷେଣ ପଚାରଇ ଶ୍ରୀରାମ କାହିଂଅଛି ।
ପ୍ରାଣ ହାରିଲେ କି ଦଶରଥର ବେନି ବଛି ॥
ଯେହୁଂ ଜାଣନ୍ତି ସେ କହିଲେ ତାର ଆଗେ ।
ଶ୍ରୀରାମକୁ ଦାନବ ମାରିବ କେବଣ ବାଗେ ॥
ସଂଏ ନାରାୟେଣ ଅଟନ୍ତି ରାମ ରାଏ ।
ଶହସ୍ରେଣ ଭେଦ ଯେ ନୋହିବ ତାର
କାୟେ ॥୮୦
ଜୀଇଅଛନ୍ତିଟିକି ରାମ ଲକ୍ଷଣ ବେନି ।
ତାହାଙ୍କୁକି ସମାନ୍ୟ ଅଛଇ ପୁରତିନି ॥
ଶୁଣିଣ ଆନନ୍ଦ ଯେ ହୋଇଲା ବିଭୀଷେଣ ।
ଭୋଖିଲା ଚାତେକ କି ପାଇଲା ବରଷଣ ॥
ଉଷତ ଚିରେଣ ସେ ତାହୁଂ ଚଳିଗଲା ।
ଯୂଥପତିମାନଙ୍କୁ ତହିଂଣ ଦେଖିଲା ॥
ଡାଳିମ୍ବ କେଶରୀ ମହୀନ୍ଦ୍ର ପାରାସ ।
ପବନ ଚନ୍ଦନ ଗବୟ ଗବାଛ ॥
ଶଉରୀ ସେନାପତି ତାରାର ପିଅର ।
ବିବିଧ ସଂପାତି ରମଣ ମାହାବୀର ॥୯୦
କଞ୍ଚଣ କାଳିଞ୍ଜନ କୋମଦ ପନଶିଳ ।
ଗନ୍ଧମାର୍ଦ୍ଦନ ଶତବଳ ନଳନୀଳ ॥
ଅଙ୍ଗଦ ହନୁମତ ବଳିମୁଖ ସୁଷେଣ ।
ଦଧିମୁଖ କାଳିମୁଖ ଶ୍ରୀରାମ ଲକ୍ଷଣ ॥
ଜମ୍ୱେବ ଶତବାଳି ସୁଗ୍ରୀବ ଶ୍ୱସୁର ।
କୁନ୍ଦ ଗବାକ୍ଷ ଯେ କିଷ୍କିନ୍ଧା ଈଶ୍ୱର ॥
ଜଣେ ଜଣେ ନିରୋପି ଚାହାଇଂ
ଦୈତ୍ୟରାୟେ ।

ନାମ ଧରିଣ ଗୁଣ ବାହୁନି ରୋଦନ କୟେ ॥
ଆହା ଦଇବରେ ଯେହାନ୍ତ ନାଶକଲୁ ।
ରକ୍ଷକପି ନୁଚାୟେ କିମ୍ପାଇଂ
ମରାଇଲୁ ॥୧୦୦
ପର ଉପଗାରୀ ଅଟନ୍ତି ଯେହି ।
କାହାରିହିଂ ଦ୍ରବ୍ୟ ନ ଖାବନ୍ତି କେହି ॥
ବୋଲଇ ଭାବକୁ ଭାବେ ବଶ୍ୟ ଗଲେ ।
ରଘୁନାଥର ସଂଗତେ ଗୋଡ଼ାଇ ଅଇଲେ ॥
ଯେବେ ଇନ୍ଦ୍ରଜିତ ହାଥେ ପ୍ରାଣ ଦେଇ ।
ନିଷ୍ଚିନ୍ତ ହୋଇଣ ଶୋଇଲେ ରଣଭୂଇଂ ॥
ସ୍ୱର୍ଗମର୍ତ୍ତ୍ୟ ପାତାଳ ପାରନ୍ତି ଯେହୁ ଜିଣି ।
ସେ ବୀରମାନେ ପଡ଼ିଲେ କାଳ ବେଳ ନ
ଜାଣି ॥
ଆହୋ ସୁଗ୍ରୀବର ବାନର ଅଧିପତି ।
ଅଚେତନ ହୋଇ କିଂପା ପଡ଼ିଅଛ
ପୃଥି ॥୧୦
କୁମ୍ଭକର୍ଣ୍ଣର ନାସାଶ୍ରବଣ କଲୁ ହତ ।
ସେ ରାଗେ ପ୍ରାଣ ତୋର ହାରିଲା ଇନ୍ଦ୍ରଜିତ ॥
ବାବୁ ନଳନୀଳରେ ଗନ୍ଧମାରଦନ ।
ବୀରପଣ ହୋଇ ପଡ଼ିଲ ଅଗିଆନ ॥
ମହୀନ୍ଦ୍ର ଦୃବିନ୍ଦ ହୋ ଆହୋ ବୀରମାନେ ।
ନିଶ୍ଚେଷ୍ଟ ହୋଇ କିମ୍ପା ରହିଲ ରଣସ୍ଥାନେ ॥
ଅଙ୍ଗଦ କୁମରକୁ ଚାହିଂଣ ବାହୁନି ।
ଏକାଏ ଅଇଲୁ ଯେ ଜଗତୀଚାଳ ଘେନି ॥
ସହସ୍ରେ ଦଇତର ମୋଡ଼ିଲୁ ତୁ ମୁଣ୍ଡ ।
ଯେବେ କାହିଂ ଥିଲା ଯେ ଅକାଳର
କାଣ୍ଡ ॥୨୦
ଆହୋ ଜମ୍ୱେବ ରକ୍ଷପତି ତୁମ୍ଭେ ।
ମନ୍ତ୍ରୀ ବୋଲିଣ ଯେ ପୂଜା କରି ଆମ୍ଭେ ॥
ସୁଷେଣକୁ ଘେନି ପଡ଼ିଲେ ରଣସ୍ଥଳୀ ।
ଶଉରୀ ସେନାପତି ଆବର ଶତବାଳି ॥
କୁନ୍ଦ କାମୋଦ କଞ୍ଚଣ ନଳନୀଳ ।
ଗବୟେ ଗବାକ୍ଷ ପନଶିଳ ଶତବଳ ॥
ମାୟାଯୁଦ୍ଧକଇ ତରକି ନପାରିଲ ।
ଯେଡ଼େ ଯେଡ଼େ ଲୋକେ ପଡ଼ି ମୋହଗଲ ॥
ଯେତେ ବୋଲି ତହୁଂ ଯେ ଥୋକାଏ ଦୂର
ଗଲା ।

ଶ୍ରୀରାମ ଲକ୍ଷଣ ହନୁମତକୁ ଦେଖିଲା ॥୩୦
କପାଳେ କର ମାରି ଗଡ଼ଇ ଭୂମିତଳେ ।
ଅନେକ ରୋଦନ ଯେ କଲାକ ବିକଳେ ॥
ଆହା ସ୍ୱାମୀ ମୋର କରୁଣାଜଳଧି ।
ତ୍ରୈଲୋକ ଭିତରେ ତୁ ଯେକା ଅଟୁ ଯୋଧି ॥
ଛାର ଦନୁଜକୁ ଛାଡ଼ିଲୁ ଧନୁଶସ୍ତ୍ର ।
ଭାଇକି ଘେନି ଅଗିଆନ ହୋଇଲୁ କୁଳଗୋତ୍ର ॥
ଯେ ଯେ ହନୁମତ ପବନର ସୁତ ।
ଯେକାଯେ ଲଙ୍କାଗଡ଼ କଲାକ ଧୂମାନ୍ତ ॥
ଅକ୍ଷୟେକୁମାର ନାଶି ଜମ୍ୱୋମାଳି ମାରି ।
ପୁଣି ସିନ୍ଧୁ ତୁ ଡେଇଂଲୁ ବିକ୍ରମ ଗତିକରି ॥୪୦
ଯେବେ ବୁଦ୍ଧି ହାରିଣ ତୁ ପଡ଼ିଲୁ ଭୂମିତଳେ ।
ସେକଥାମାନ ତୋର ଜାଣୁ ଗଲା କେଣେ ॥
ବିଭୀଷେଣର ବଚନ ସୁସ୍ୱର ମୃଦୁବାଣୀ ।
ମୋହେ ଥାଇ ତାହା ଯେ ହନୁମନ୍ତ ଜାଣି ॥
ଶୁଣି ନିଜ ହୃଦରେ ପୁଣି ବିଚାରଇ ।
ସ୍ୱପନ ପରାୟେକ ଯେ ବୁଝୁଛି ତୁନି ହୋଇ ॥
ନୋହଇ ସ୍ୱପନ ଯେ ଇନ୍ଦ୍ରଜିତ ବୀର ।
ସେ ଆମ୍ଭଙ୍କୁ ପେଷିଲା ବ୍ରହ୍ମଶକ୍ତି ଶର ॥
ଜ୍ଞାନ ହାରି ଯେ ପଡ଼ିଲେ ସର୍ବ ସୈନ୍ୟ ।
ବିଭୀଷେଣ ପରାୟେ ଯେ ଶୁଭଇ ବଚନ ॥୫୦
ଯେତେକରି ଆଖି ଯେ ଅଳପ କରି ଚାହିଂଲା ।
ଚିହ୍ନି ମନେ ମନେ ଆନନ୍ଦ ହୋଇଲା ॥
ମୋହ ଛାଡ଼ି ବୀର ସୁସ୍ଥ ହୋଇ ଉଠି ।
ଦେଖି ବିଭୀଷେଣ ଆଉଂସଇଂ ପିଠି ॥
ସ୍ନେହଭର ହୋଇଣ ଯେ ପୁଣି କୋଳ କଲା ।
ଯେବେ ସେ ଜୀବନ ବାବୁ ଶ୍ୟରୀରେ ପଶିଲା ॥
ଦେଖି ରକ୍ଷକପି ସବିହେଂ ହାଦେ ମଲେ ।
ଇନ୍ଦ୍ରଜିତର ଯୁଦ୍ଧେ ମାୟା ନାରାଙ୍କେ ମୋହ ଗଲେ ॥
କି ବୁଧି କରିବା କହସିରେ ବାବୁ ।
ଦେଖ ରଣେ ସୈନ୍ୟ ପଡ଼ିଛନ୍ତି ସବୁ ॥୬୦
ହନୁମନ୍ତ ବୋଇଲା କରିବା ଯେବେ କିସ ।
ଦେଖ ଅଚେତ ଦଶରଥର ବେନି ଶିଷ ॥
ଅଷ୍ଟ ସେନାପତି ପଞ୍ଚଶ ଯୂଥପତି ।
ରକ୍ଷକପି ପଡ଼ିଲେ ସୁଗ୍ରୀବର ପ୍ରଭୃତି ॥
ଅଙ୍ଗଦ କୁମରର ତ ଚଇତନ ନାହିଂ ।
ବାବୁରେ ଇନ୍ଦ୍ରଜିତ ଗଲୁ ବଳ ଦହି ॥
ବିଭୀଷେଣ ବୋଇଲା ଅଣାଅ ବେଗେ ହୁଳା ।
ମଲା ଜୀଇଲା ମାନ କରିବା ଶଙ୍ଖୋଳା ॥
ଯେତେ ବିଚାରିଣ ଦିହୁଡ଼ି ଲଗାଇଲେ ।
ସଜଳସ ଗୁଣ୍ଡି ଯେ କାହାଳିଆ କଲେ ॥୭୦
ହୁଳା ଲଗାଇଣ ଲୋକେ ଦେଖିଯାନ୍ତି ।
ସହସ୍ରେ ମୁହଂହୋଇ ଖୋଜିଣ ଆସନ୍ତି ॥
ଗଣିତାରେ ପାଇଲେ ଶତଷଠୀ କୋଟି ମଲା ।
ଦଇବେ ବ୍ରହ୍ମଅସ୍ତ୍ର ଯେ ସଇନିକି କଲା ॥
ଆଉ କପି ଘାଆ ଘାଉଡ଼ ହୋଇଣ ଅଛନ୍ତି ।
ପ୍ରାଣ ଅଛି ଦେହେ ଚଳି ନୁଆରନ୍ତି ॥
ଶତାଶୀ କୋଟି ହାଦେ ଢାଳେ ନାଶଗଲେ ।
ବିଭୀଷେଣ ମହାତ୍ମା ଅନେକ ଚିନ୍ତାକଲେ ॥
ଭାଳିକରି ପୁଣି ଜମ୍ୱେବ କତିକି କଲେ ।
ଆହୋ ମନ୍ତ୍ରୀବର ବୋଲିଣ ଡାକିଲେ ॥୮୦
କିମ୍ପା ହୋ ରକ୍ଷପତି ହୋଇଲୁ ଅଗିଆନ ।
କେଣେ ଗଲା ତୋର ମାୟା ବୁଧିମାନ ॥
ଘର ପ୍ରାୟେ ବୁଝି ନିଶ୍ଚିନ୍ତେଣ ଶୋଇଲୁ ।
ଏତେକି ଅଇଧିର୍ଯ୍ୟ ବାବୁ କେମନ୍ତ ହୋଇଲୁ ॥
ଉଠ ଉଠ ମାହାତ୍ମା ମନ୍ତ୍ରୀ ଶିରୋମଣି ।
ସୁବୁଧି ବୋଲି ତୋତେ ଜଗତେ ବଖାଣି ॥
ବିଭୀଷେଣ ବଚନେ ଜମ୍ୱେବ ମନ୍ତ୍ରୀ ଚେତି ।
କ୍ଷଣକେ ବିଚାରି ଯେ ଥିର କଲା ପୁଣି ॥
ମନେ ବିଚାରିଲେ ଯେତ ଅଟଇ ବିଭୀଷେଣ ।
ଯେ ଯେ ବର୍ତ୍ତିଲା ଆମ୍ଭର ଅଟଇ ଭାଗ୍ୟ ବଡ଼ ।୯୦
ଦେହ ଥିର କରିଣ ଜମ୍ୱେବ ବୋଲନ୍ତି ।
ଶୁଣ ହୋ ବିଭୀଷେଣ ଅସୁରକୁଳ ମନ୍ତ୍ରୀ ॥
ଯହିଂ ପାଅ ତହିଂ ହନୁମନ୍ତ ହିଂ ଯାଅ ଖୋଜି ।
ଜୀଇଂ ଅଛିଟିକି ପବନର ଆତ୍ମଜ ॥
ବିଭୀଷେଣ ବୋଇଲା ଯେକା ହନୁମନ୍ତ ଜୀଇଂ ।
କିସ କରିବ ସେ ଯେକା ଜଣେ ହୋଇ ॥
ଶତଷଠୀ କୋଟି ରକ୍ଷକପି ମଲା ।
ଆବରହିଂ ସଇନି ଘାୟେ ଘୁମାଇଲା ॥
ଶ୍ରୀରାମ ଲକ୍ଷଣ ଯେ ସୁଗ୍ରୀବର ସହିତେ ।
ପଡ଼ିଅଛି ସଇନି ବିଷମ ଶରଘାତେ ॥୧୦୦
ହନୁ ଜୀଇଂଣ ଯେ କରିବ ଯେବେ କିସ ।
ଜମ୍ୱେବ ବୋଲନ୍ତି ଶୁଣ ବିଶ୍ରବାର ଶିଷ ॥
ହନୁ ଜୀଇଂଥିଲେ ବର୍ତ୍ତିବେ ସକଳ ସୈନ୍ୟ ।
ଯେସନେକ ମୋର ଅଛଇ ବିଧାନ ॥
ରକ୍ଷପତି ମୁଖୁ ଯେସନେକ ବାଣୀ ଶୁଣି ।
ହନୁମନ୍ତ ଗାଢ଼େ ଯେ ବୋଇଲା ତାହା ଶୁଣି ॥
ଭୋ ରକ୍ଷରାଜା ଆଜ୍ଞା ମୋତେ ଦେବା ।
ବିଅର୍ଥ ହୋଇଲାତ ମୋହୋର ଶ୍ରୀରାମର ସେବା ॥
ଯେବେ କିସ ବୁଧି ଯେ କରିବଇଂ କହ ।
ସ୍ୱାମୀଙ୍କର ମୋହ ଦେଖି ମୋର ନସହଇ ଦେହ ॥୧୦
ଜମ୍ୱେବ ବୋଇଲେ ତୁ ଶୁଣ ହନୁମତ ।
ଯେହିକ୍ଷଣି ଚଳ ବାବୁ ହେମବନ୍ତ ପର୍ବତ ॥
ଅମର ମଉଷଧି ବୃକ୍ଷ ତହିଂ ଅଛି ।
ତୋହୋରେ ସେ ହୋଅଇ ପବନର ବଛି ॥
ପୂର୍ବଭାଗେ ମର୍କତ ପରାୟେ ଯେବଣ ଶୃଙ୍ଗ ।
ତାହାର ଉପରେ ଆରେକ ସିଂହ ରଙ୍ଗ ॥
ତହିଂର ପଛିମଭାଗରେ ଅଛଇ ସୁରାସୁରି ।

ସେଥେ ନନ୍ଦୀର ଉପରେ ବିଜେ ତ୍ରିପୁରାରି ॥
ତହିଁର ଉତ୍ତର ପାରୁଶେ ଯେବଣ ଗଛ ।
ଛାୟାତଳେ ବାଞ୍ଛା କଲେ ପାଇ ଯେ
ପ୍ରତ୍ୟକ୍ଷ ॥୨୦
ତହିଁର ଉପରେ ଯେ ଅଛଇ ଯେବଣ
ତରୁ ।
ସେ ସେ ଅଷ୍ଟଧାତୁ ଯତନ ଅଛି କରୁ ॥
ପୂର୍ବଭାଗେ ଗଛ ଅନେକ ଶକୁନ୍ୟ ।
ମଧ୍ୟ ଗଛ ବେଗେ ଆଣ ହନୁମାନ ॥
ଅଳସ ନକର ବାବୁ ରାତ୍ର ଥାଇ ଆସ ।
ରାତ୍ର ପାହିଲେ ରାବଣେଶ୍ୱର ବାହିବ
ଅବଶ୍ୟ ॥
ଶୁଣି ହନୁମନ୍ତର ଯେ ଉଲୁସଇ କାୟେ ।
ଶ୍ରୀରାମକୁ ଓଳୋଗି ଯେ ଗଗନମାର୍ଗେ
ଯାୟେ ॥
ଉତ୍ତର ମୁଖ ହୋଇ ବୀର ଉଠିଗଲା ।
ଘଡ଼ିକେ ହେମବନ୍ତେ ପ୍ରବେଶ
ହୋଇଲା ॥୩୦
ପବନ ଦେବତା ଯେ ନେଲାକ ଉଡ଼ାଇ ।
ମଉଷୋଧି ଥାନେ ଯେ ମିଳିଲା ବୀର
ଯାଇଂ ॥
ପ୍ରଳୟ ବତାସ ଜାଣି ଯେ ଶୁଭଇ ଶବଦ ।
ରକ୍ଷାଲୋକେ ଶୁଣି ହୋଇଲେ ତବଦ ॥
ଧାଇଂ ଆସିଣ ଯେ ମାଇଲେକ ତୀର ।
ବୋଇଲେ କାହିଁର ତୁ ଅଟୁରେ ବାନର ॥
ଦେବତାଙ୍କର ଆଶ୍ରମେ ମିଳିଲୁ କିସ ପାଇଂ ।
କି ତୋହୋର ଜ୍ଞାନଗୋଚର ମେଳା ନାହିଁ ॥
ପ୍ରାଣକୁ ଆଶା ତୁ ନକଲୁରେ କପି ।
ଯେ ପୁଣ୍ୟଥାନେ କିମ୍ପା ମିଳିଲୁ ଆସି
ପାପୀ ॥୪୦
ଏସନେକ ବୋଲି ଯେ ମାଇଲେ
ବଜ୍ରକୋନ୍ତ ।
ଶହସ୍ର ସଂଘାରି ସେ ବୋଇଲା ହନୁମନ୍ତ ॥
ତୁମ୍ଭେ ନ ଜାଣ ଯେ ଆମ୍ଭରେ କର ଯୁଦ୍ଧ ।
ଏକଥାମାନ କିଂପା ବିଚାରି ନ ବୁଝ ॥
ଦେବତାଙ୍କର ଆଶ୍ରମେ ହେମବନ୍ତ ଗିରି ।
କପି ଦେହ ଘେନି ମୁଂ କେମନ୍ତେ ଠାବକଲି ॥
ଏକଥା ନ ଜାଣିଣ ଯେ ସାଂଗ୍ରାମକୁ ଆସ ।
ମୁହିଂ ହନୁମନ୍ତ ଶ୍ରୀରାମର ଅଟଇ ଦାସ ॥
ଇନ୍ଦ୍ରଜିତ ବ୍ରହ୍ମଅସ୍ତ୍ର ଯେ ମାଇଲା ।
ରକ୍ଷକପିବଳ ବହୁତେ କ୍ଷୟେ କଲା ॥ ୫୦
ଶ୍ରୀରାମ ଲକ୍ଷଣ ଯେ ହୋଇଲେ
ହତଜ୍ଞାନେ ।
ରକ୍ଷକପି ରାଜା କହିଲେ ମୋର କର୍ଣ୍ଣେ ॥
ମହଷୋଧି ନେଇ ପଠିଆଇଲେ ମୋତେ ।
ବିରୋଧ ନ କର ମୁଂ ଯିବଇଂ ତୁରିତେ ॥
ଶୁଣି ଦେବ ସୈନ୍ୟ ବାହୁଡ଼ିଣ ଗଲେ ।
ଯେ ତୋହୋର ଇଚ୍ଛା ବାବୁ ନିଅସି
ବୋଇଲେ ॥
ତାହାଙ୍କର ଯାଆନ୍ତେ ଯେ ହନୁମନ୍ତ ବଚାରି ।
ଜମ୍ବେବର କଥାସେ ନୁଆଗିଲା ହେତୁକରି ॥
ଅମର ମଉଷୋଧି ଯେ ଦେଖିଲା ମୋର
ନାହିଂ ।
ତାହାନ୍ତ ପଚାରିଲେ ମୋତେ ଦିଅନ୍ତେ
ଚିହ୍ନାଇଂ ॥୬୦
ଯେବେ ମୁଂ କି ବୁଧି କରିବି ବିଧାନ ।
ରାତ୍ର ପାହିଲେ ତ ନାହିଂ ପ୍ରିଓଜନ ॥
ପୂର୍ବ ଶୃଙ୍ଗଖଣ୍ଡ ଯେ ନେମି ମୁଣ୍ଡିଆଇ ।
ଆନପ୍ରକାରେ ଯେ ବୁଦ୍ଧି ମୋର ନାହିଂ ॥
ଏତେକେ ବିଚାରିଣ ଲେଡ଼ା ଏକ ମାରି ।
ପର୍ବତ ଶିଂଘ ଖଣ୍ଡି ପଡ଼ିଲାକ ଝଡ଼ି ॥
ଦେଖି ହନୁମନ୍ତ ଯେ ଧଇଲାକ କରେ ।
ଦକ୍ଷିଣ ଦିଗକଇଂ ବିକ୍ରମିଗଲାକ
ମାହାବୀରେ ॥
ଚାରିଶତ ଯୋଜନ ପଡ଼ିକେ ଉଡ଼ିଆସି ।
ଲଙ୍କାର ସାଂଗ୍ରାମ ମୋଣ୍ଡୋଳେ ଆସି
ପଶି ॥୭୦
ମଉଷୋଧି ପବନେ ଯେ ଜାଇଂଲେ
ରକ୍ଷହରି ।
ଶତଷଠୀ କୋଟି ମାତ୍ର ସେ ଦିନରେ ମରି ॥
ଖଣ୍ଡ ଖଣ୍ଡ ହୋଇ ଯେ ଛାଡ଼ିଲେନି ପ୍ରାଣ ।
ଆନ ଦେହ ତାଙ୍କୁ ଦେଲାନି ଜମ୍ବୁରାଣ ॥
ସ୍ୱଦେହ ଘେନି ଯେତେ ସଂଯିବନୀ ପୁରେ
ଛନ୍ତି ।
ମହଷୋଧି ଛାଡ଼ି ସେ କେବେହେଂ
ନଜୀଅନ୍ତି ॥
ଶତଷଠୀ କୋଟି ମାତ୍ର ସେଦିନ ଯୁଦ୍ଧେ
ମଲେ ।
ଘାଆ ଘାଉଡ଼ମାନେ ଉଠିଣ ବସିଲେ ॥
ବ୍ରହ୍ମଅସ୍ତ୍ର ଘାତେ ଯେ ପଡ଼ିଣ ଅଛନ୍ତି ।
ଅଷ୍ଟସେନା ଆବର ପଞ୍ଚଶ ଯୂଥପତି ॥୮୦
ଉଠି ନପାରନ୍ତି ବିଷମଘାତ ପାଇ ।
ଏସନ ସମୟେ ମିଳିଲା ବୀର ଯାଇ ॥
ଯହୁଂ ରଘୁନାଥ ମୋହେ ପଡ଼ିଛନ୍ତି ।
ପର୍ବତ ଘେନି ଉଭା ପବନର ବଛି ॥
ଜମ୍ବେବ ବୋଇଲେ ଅଇଲୁକି ବାବୁ ।
ତୁହିଂ ସେ ଆମ୍ଭକୁ ହୋ ଜୀବ ଦାନ ଦେବୁ ॥
ଆଣ ମଉଷୋଧି ଦିଅ ମୋର ହାଥ ।
କ୍ଷେଣେ ସେ ସଚେତ ହୋଇବେ ରଘୁନାଥ ॥
ହନୁମନ୍ତ ବୋଇଲା ମୁଂ ଗଛ ନ ଚିହ୍ନିଲି ।
ଶିଂଘଖଣ୍ଡଯାକ ମୁଂ ମୁଣ୍ଡରେ ଆଣିଲି ॥୯୦
ମୁଣ୍ଡେ ବହିଣ ମୁଂ ଆଣିଲି ଦୁଃଖପାଇ ।
ପୂର୍ବେ ଯେ ମଉଷୋଧି ଦେଖିଲା ମୋର
ନାହିଂ ॥
ତେଣୁକରି ମୁହିଂ ଆଣିଲି ପରବତ ।
ଶୁଣି ରକ୍ଷରାଜ ହୋଇଲା ଉଷତ ॥
ଧୀର ଧୀର ହୋଇ ଯେ ଉଠିଲା ଆଣ୍ଠୁଆଇଂ ।
ବଳ ହୋଇଲାନି ମହଷୋଧି ବାସ ପାଇ ॥
ହନୁ ମୁଣ୍ଡରୁ ପର୍ବତ ଓହ୍ଲାଇ ବିଭୀଷଣେ ।
ଯେସନେକ ସମୟେ ଯେ ଉଠିଲା ସୁଷେଣ ॥
ଦୁଇମନ୍ତ୍ରୀ ହୋଇ ଯେ ଚିହ୍ନିଲେ ଧନିତିରୀ ।
ପ୍ରତିକ୍ଷେଣ କଲେ ନମସ୍କାର କରି ॥୧୦୦
ଅମର ମଉଷୋଧି ପତ୍ର ଛିନାଇଲେ ।
ଜମ୍ବେବ ନେଇ ସୁଷେଣ ହାଥେ ଦେଲେ ॥
ଦୁଇହାଥରେ ଯେ ମଞ୍ଚାଳିଲେ ପତ୍ର ।
ଶୀଘ୍ରେ ଚଳିଗଲେ ଯହିଂ ଅଛନ୍ତି ରଘୁନାଥ ॥
ଅଶ୍ୱିନୀକୁମାରଙ୍କୁ ସୁମରିଣ ସୁଷେଣ ।
ରସ ଚିପୋଡ଼ିଲେ ଶ୍ରୀରାମ ନାକେଣ ॥

ଉଠିଲେ ରଘୁନାଥ ଅନେକ ବଳ ପାଇଂ ।
ପୁଣି ଲକ୍ଷଣଙ୍କୁ ସୁଷେଣ ନାସ ଦେଲେ ନେଇଂ ॥
ସୁମେତ୍ରାର ବଳା ଯେ ତେଜ ଅନର୍ଗଳା ।
ଯହୁଂ ସେ ନିଦା ବିଷ୍ଣୁ ନିଜକଳା ॥୧୦
ସୁଗ୍ରୀବରକୁ ଯେ ଶୁଂଘାଇଲା ସୁଷେଣ ନେଇ ।
ଜମ୍ୱେବନ୍ତର ନାକେ ନାସ ଦେଲାକ ସେହି ॥
ଯେ ବିଧିରେ ଅଷ୍ଟ ସ୍ନେହାକୁ ଜୀଆଇଲା ।
ଯୂଥପତିମାନଙ୍କୁ ନେଇଣ ନାସ ଦେଲା ॥
ପଞ୍ଚଶ ଯୂଥପତି ପାଇଲେ ଯହୁଂ ନାସ ।
ପ୍ରାଣ ପାଇ ଉଠି ବସିଲେ ରାମପାଶ ॥
ସବୁଙ୍କରି ପଛେ ଶୁଂଘିଲା ହନୁମତ ।
ସଇନିକି ଶବଦାଇଂ ବୋଇଲା ଜମ୍ୱୋବନ୍ତ ॥
ଅମର ପଦାର୍ଥଯେ ସମସ୍ତେ ଶୁଂଘିଥାଅ ।
ଚତୁଶତେ ଗୁଣେ ବଳବପୁ ପାଅ ॥୨୦
ଶୁଣି ରକ୍ଷ କପି ଉଭୁରାଉଭୁରି ।
ଯେକକଇ ଆରେକ ନିଅଇ ଉଛୁରି ॥
ଶୁଂଘି ବାହୁଡ଼ାଇ ଆଣି ହନୁର ହାଥେ ଦେଲେ ।
ଜମ୍ୱେବ ଘେନି ତାହା ଆପଣେ ଚଳିଲେ ॥
ସଇନର ତେଜ ପ୍ରଳୟ ଅଗ୍ନି ଜାଣି ।
ବିଭୀଷେଣକଇ ଚାହିଁ ଯେ ବୋଲନ୍ତି ରଘୁମଣି ॥
କିହୋ ଇଙ୍କପତି ଆମ୍ଭେହେଂ ପୁଣି ମଲୁ ।
ଇନ୍ଦ୍ରଜିତର ବ୍ରହ୍ମ ଅସ୍ତ୍ରେ ଯେ ମୋହ ଗଲୁ ॥
ବାବୁ ଛତ୍ରୀ ତୁରେ ଅଟୁ ମେଘନାଦ ।
ନୋହିଲେ ଇନ୍ଦ୍ରତୁଲେ କଲୁକି ବିବାଦ ॥୩୦
ଯେତେକ ଛତ୍ରୀ ଅଛନ୍ତି ବ୍ରହ୍ମାଣ୍ଡ ଭିତରେ ।
ତୋହୋର ମୁଖ ଦେଖିଲେ ହୋନ୍ତି କାତରେ ॥
ସୁର ସିଦ୍ଧଗଣେ ନୋହନ୍ତି ତୋତେ ସରି ।
ଯେ ମହୀ ମଣ୍ଡୋଳେ ସେ ତୋହୋର ବାହାବଳୀ ॥
ଆହୋ ସୁଗ୍ରୀବର ଜମ୍ୱେବଇ ଶୁଣ ।
କୁହୁଡ଼ି ପ୍ରାଏ କରି ବିନ୍ଧିଲା ଯେବେଣ ବାଣ ॥

ଦଶଦିଗ ଅନ୍ଧାର ଦିଶିଲାକ ମୋତେ ।
ଏଥିକିଟି ଲକ୍ଷଣରେ ଡିଆରଇଂ ତୋତେ ॥
କ୍ଷତ୍ରୀଙ୍କର ଧର୍ମ ରଖି ସେ ଶିର ନ ଛେଦିଲା ।
ଏଡ଼େକ ବଳ ଗୋଟା ମୋର ଘଡ଼ିକେ ଧ୍ୱଂସିଲା ॥
ହନୁମନ୍ତ ନଥିଲେ ନପାନ୍ତି ଆଜ ପ୍ରାଣ ।
କେମନ୍ତେ ରକ୍ଷା ତୁମ୍ଭେ ହୋଇଲ ବିଭୀଷେଣ ॥
ରାବଣର ଭାଇ ଯେ କହଇ ଯୋଡ଼ି କର ।
ଯେତେବେଳେ ଇନ୍ଦ୍ରଜିତ ଧଇଲା ବ୍ରହ୍ମଶର ॥
ଜାଣିଲି ସୁରାସୁର ନ ବର୍ତ୍ତନ୍ତି ଯେଣେ ।
ରାମ ଲକ୍ଷଣ ବିଷ୍ଣୁ ନମରନ୍ତି ଯେ ବାଣେ ॥
ରକ୍ଷ କପି ହୋଇଣ ନବର୍ତ୍ତନ୍ତି କେହି ।
ମୁହିଂ ଯାଇ ପଳାଇ ରଖିବି ମୋର ଦେହୀ ॥
ଯେତେକ ବୋଲି ଦେବ ସାଂଗ୍ରାମ ଛାଡ଼ିଗଲି ।
ଶହସ୍ର ପକାଇ ଯେ କେଶ ମୁକୁଳା କଲି ॥୫୦
ସୁବଳୟା ପର୍ବତେ ଉଠିଲି ଦେବ ଯାଇଂ ।
ବେଳେକ ପ୍ରାଣ ଦେବ ରଖିଲି ତହିଂଥାଇଂ ॥
ଯେତେବେଳେ ମେଘନାଦ ବାହୁଡ଼ିଣ ଗଲା ।
ସବୁ ସୈନ୍ୟ ତାହାର ଗଡ଼ରେ ପଶିଲା ॥
ତେବେ ସେ ସୁବଳୟାରୁ ଅଇଲି ଓହ୍ଲାଇ ।
ଦେଖିଲି ରକ୍ଷକପି ଗୋଟିଏ ଜୀଇଂ ନାହିଂ ॥
ମୋହୋର ତୁଣ୍ଡ ଶୁଣି ଯେ ଉଠିଲା ହନୁମନ୍ତ ।
ପୁଣି ଚେତନା ଯେ ପାଇଲେ ଜମ୍ୱୋବନ୍ତ ॥
ମଉଷୋଧି ଆଣନ୍ତି ଯେ ପେଷିଲୁ ପାବେନି ।
ଦୁଇ ଘଡ଼ି ଭିତରେ ଅଇଲା ହନୁ ଘେନି ॥୬୦
ଦେଖ ହେମବନ୍ତ ପର୍ବତ ଶିଖଖଣ୍ଡ ।
ବହିଆଣିଲା ଯେହାର କିସ ହୋଇଲା ମୁଣ୍ଡ ॥
ଯେସନେକ ଜଣେ ନ ଥିଲେ ସବିହେଂ ମରି ।
ବାବୁ ହନୁମନ୍ତରେ ନାହିଂ ତୋତେ ସରି ॥

ଜମ୍ୱେବ ବୋଇଲେ ଶୁଣ ହୋ ମାରୁତି ।
ଦେବ ଆସନ ଯେ ନଥାଉ ଦେବ ଯେଥି ॥
ଯେହାର ଆଶ୍ରମ ଯହିଂ ତହିଂ ଥୁଅ ନେଇ ।
ଶ୍ରୀରାମ ବୋଇଲେ ମନ୍ତ୍ରୀ ଦୟା ତୋର ନାହିଂ ॥
ଗଲା ଅଇଲା ଯେବେହେଂ ପୁଣି ଯିବ ।
ତୁମ୍ଭେ ସିନା ଯେବେ କହିତ ପାରିବ ॥୭୦
ମୋହୋର ବୋଲିବାକୁ ଭରସା ତ ନାହିଂ ।
ହନୁମନ୍ତ ବୋଇଲା ଶ୍ରୀରାମଙ୍କୁ ଚାହିଂ ॥
ତୁ କିମ୍ପା ଯେମନ୍ତ ବିଚାରୁ ରଘୁପତି ।
ତୋହୋ ଚରଣେ ଖଟଇ ବଶ୍ୟାବୃତ୍ତି ॥
ସୀତା ନଆଣିମାଯାଏ ବିଶ୍ରାମ ମୋର ନାହିଂ ।
ରାବଣକୁ ମାଇଲେ ସୁସ୍ଥ ମୋର ଦେହୀ ॥
ଯେବେ ଯେହିକ୍ଷଣି ପର୍ବତ ଘେନିଯିବି ।
ହେମବନ୍ତ ପର୍ବତେ ଥୋଇଣ ଆସିବି ॥
ଯେତେ ବୋଲି ରାମ ଲକ୍ଷଣଙ୍କୁ ପ୍ରତିକ୍ଷଣ କଲା ।
ଗିରି ମୁଣ୍ଡିଆଇ ଗଗନ ମାର୍ଗେ ଗଲା ॥୮୦
ଉତ୍ତର ମୁଖ ହୋଇ ଚଳଇ ଘନ ଘନ ।
ଘଡ଼ିକେ ବିକ୍ରମି ଚାରିଶତ ଜୁଣ ॥
ଯେ ଯାହାର ଆଶ୍ରମେ ଥୋଇଲା ତାହା ନେଇ ।
ବାହୁଡ଼ିଣ ଘଡ଼ିକେ ଲଙ୍କାରେ ଯାଇଂ ପାଇଂ ॥
ଶ୍ରୀରାମ ଚରଣେ ଯାଇଂ କଲା ନମସ୍କାର ।
ବୋଇଲା ଭୋ ଦେବ ଆଉ କି କଥା ବିଚାର ॥
ଆମ୍ଭେ ମଲୁ ବୋଲି ଯେ ରାବଣ ଅଚିନ୍ତ ।
ଲଙ୍କାରେ ପଶି ଆମ୍ଭେ ମାରିବା ଅସୁରନ୍ତ ॥
ଗଡ଼ ପୋଡ଼ିବା ଦେବ ଭାଙ୍ଗିବାକ ରାଷ୍ଟ୍ର ।
ନୋହିଲେ ଆନମତେ ନମରନ୍ତି ଦୃଷ୍ଟ ॥୯୦
ଯେ ଯାହା ମନ୍ଦିରେ ନିଶ୍ଚିନ୍ତେ ଶୋଇଛନ୍ତି ।
ଏମନ୍ତ ବେଳେ ପଡ଼ି ମାରିବା ନିପାତି ॥
ସୁଗ୍ରୀବରକୁ ଯେ ଯୋଗାଇଲା ଏହି କଥା ।
ହସି ସନମତ ଯେ କଲେ ରଘୁନାଥା ॥
ସାଜ ସାଜ ବୋଲି ପଡ଼ିଲାକ ଡାକ ।
ଧାମନ୍ତି ରକ୍ଷକପି ହୋଇଣ ଉଛୁକ ॥

ହାଥେ ତରୁଶିଳ ବିକରାଳ ମୂର୍ତ୍ତି ।
ସଜ୍ଜଳସଗୁଣ୍ଡି ଯେ ଜାଳିଲେ ତହିଁ ବତୀ ॥
ଶ୍ରୀରାମ ଲକ୍ଷଣ ଯେ ସୁଗ୍ରୀବର ରାୟେ ।
ବାଟ କଢ଼ାଇଣ ବିଭୀଷେଣ ଆୟେ ॥୧୦୦
ଗଡ଼ର ଉତ୍ତର ଦ୍ୱାରେ ଲାଗିଲେ ଯାଇ ବଳ ।
କବାଟ ଭାଙ୍ଗିବାକୁ ନପାଇଲେ ବେଳ ॥
ଶ୍ରୀରାମ ଆଜ୍ଞାଦେଲେ ସୁଗ୍ରୀବଙ୍କୁ ଚାହିଁ ।
ପାଚେରୀ ଡେଇଁ କପି ପଶନ୍ତୁ ଝସାଇଁ ॥
ତେଣେ ଥାଇଂ ଆମ୍ଭଙ୍କୁ କବାଟ ଫେଡ଼ି ଦ୍ୟନ୍ତୁ ।
କଟକ ଭିତରେ ପଶି ଅସୁରନ୍ତ ମାରନ୍ତୁ ॥
ହନୁମନ୍ତ ଅଙ୍ଗଦ ନଳନୀଳ ପଶ ।
ଗର୍ବମାର୍ଦ୍ଦନ ଯେ ସାରାସ ପାରାସ ॥
ପଞ୍ଚାଶ ଯୂଥପତି ଅଷ୍ଟସେହ୍ନା ଯାଅ ।
ଦେଉଳ ମଣ୍ଡୋପ ଅଟାଳି ଭଙ୍ଗାଅ ॥୧୦
ଶୁଣିଣ ଋକ୍ଷକପି ପଶିଲେ ଶିଳାବୃକ୍ଷ ଧରି ।
ଗଗନେ ବିକ୍ରମିଲେ ଚିତ୍ରଗତି କରି ॥
ପାଚେରୀ ଉଚ୍ଚ ଯେ ଅଟଇ ଦଶ କୁଣ ।
ଦୁଇକୋଶ ଓସାର ସୁବର୍ଣ୍ଣରେ ରଚାଣ ॥
ତାହା ଡେଇ କପି ଯେ ପଶିଲେ ଭିତରେ ।
ଶିଳାବୃକ୍ଷ ଦିଉଡ଼ି ସବୁଙ୍କରି ହାଥରେ ॥
ଯୂଥପତିମାନେ ଯେ ପଶିଲେ ଗଡ଼ ଡେଇଁ ।
ବାହାର ଲୋକଙ୍କୁ କବାଟ ଦେଲେ ଫେଇଁ ॥
ବନ୍ଧ ଭାଙ୍ଗିଲେ ଯେହ୍ନେ ପଶଇ ବଢ଼ିପାଣି ।
ଋକ୍ଷ କପିବଳ ତେସନେକ ଜାଣି ॥୨୦
ଶ୍ରୀରାମ ଲକ୍ଷଣ ସହିତେ ଗଡ଼େ ପଶି ।
ଶଏ କୁଣ ଲଙ୍କା ପୂରିଲେ ତରୁଶିଷି ॥
ଅସୁରେ ନଜାଣନ୍ତି ଅଚିନ୍ତେଣ ଛନ୍ତି ଶୋଇ ।
ଡରଭଏ ତାହାଙ୍କର କାହାକୁତି ନାହିଁ ॥
ବିଚାରିଲେ ଶତ୍ରୁ ହୋଇଲା ଆମ୍ଭର ହତ ।
ଇନ୍ଦ୍ରଜିତ ନାରାଜେ ପଡ଼ିଲେ ସମସ୍ତ ॥
ଏସନେକ ଭାଳି ନିଶ୍ଚିନ୍ତେ ଶୋଇଥିଲେ ।
ଋକ୍ଷା ଅସୁରୀ ଯାଇଂ ଯେ ସୀତ୍ୟାକୁ କହିଲେ ॥
ଶୁଣସି ଗୋ ଜାନେକୀ ଶ୍ରୀରାମ ତୋର ମଲା ।
ଲକ୍ଷଣ ସହିତେ ଋକ୍ଷକପି କ୍ଷଏ ଗଲା ॥୩୦
ଲୋକ ମୋତେ କହିଲେ ଗୋଟିଏ ଜାଇଂନାହିଁ ।
ଶୁଣି ବଇଦେହୀ ଉଠିଲେ ବୋବାଇ ॥
ଆହା ସ୍ୱାମୀ ବୋଲି ରୋଦନ ଉଚ୍ଚ ସ୍ୱରେ ।
ଦୁଇ ହାଥ ନେଇ କୋଡ଼ିଲେ ହୃଦରେ ॥
ଭୋ ପ୍ରାଣନାଥ ତୁ ଅଇଲୁ କିସ ପାଇଂ ।
ମୁହିଁ ଦ୍ରୋହୀ ଅଇଲି ତୋତେ ବାଟରେ ବସାଇ ॥
ତୁ କିଂପା ନାଥ ନ ଜାଣିଲୁ ଏହା ।
ମୋହୋ ପାମେରୀକି ବଢ଼ାଇଲୁ ସେନେହା ॥
ଅଯୋଧ୍ୟାର ରାଜା ତୁ ସୁନ୍ଦର ବୟସ ।
ତେହୋର ମନ କଲେ କେତେହେଁ ନାହିଁ ରାଣୀହଂସ ॥୪୦
ରାଜାମାନେ ତୋତେ ଯାଚିଣ ଝିଅ ଦେବେ ।
ସଇନି ସେନା ଘେନି ସେବା କରୁଥିବେ ॥
ସେ କଥା ଛାଡ଼ିଣ ସ୍ୱାମୀ ଅଇଲୁ କିସ ପାଇଂ ।
ଅଭିମାନ କରି ଦେହ ହରାଇଲୁ ଗୋସାଇଂ ॥
ପାପୀ ଇନ୍ଦ୍ରଜିତରେ ହୋଅସି ଶିରଛେଦ ।
ସ୍ୱାମୀକି ମୋହୋର ଯେ କଲୁ ଶରଭେଦ ॥
ଦେବତାଙ୍କର ଅସ୍ତ୍ର ମନିଷ୍ୟାକୁ କଲା ।
ମାୟା ଯୁଦ୍ଧେ ସିନା ମୋର ଶ୍ରୀରାମକୁ ମାଇଲା ॥
ଧର୍ମ ସଂଗ୍ରାମ କରି ନ ପାରିଲା ମାରି ।
ଲକ୍ଷଣ ଛାମୁରୁ କେତେବେଳେ ନାହିଁ ହାରି ॥୫୦
ସେହି ଲକ୍ଷଣ ଯେବେ ଯେହାର ମୁଣ୍ଡ କାଟୁ ।
ରାବଣର ଗେଲ ଗରବ କଥା ତୁଟୁ ॥
ତ୍ରିଜଟା ବୋଇଲା କହିଲୁ ସେ ଗୋ ଭଲା ।
ମେଘନାଦର ବାଣେ ଦିଅର ତୋର ମଲା ॥
କେହ୍ନେ ପୁଣ ଇନ୍ଦ୍ରଜିତକୁ କରିବ ପ୍ରାଣହତ ।
କେହ୍ନେ ସେ ଜାନେକୀ ଗୋ ବୋଲ ତୋର ସତ ॥
ସୀତୟା ବୋଇଲେ ଶୁଣସି ଗୋ ତ୍ରିଜଟା ।
ଅଦଭୁତେ ବାହାର ହୋଇଲା କଥା ଗୋଟା ॥
ମୁଂ ଯେବେ ସତୀ ଆନରେ ନାହିଁ ରତି ।
ଲକ୍ଷଣ ଜୀଇ ମାରିବ ବିଶର୍ବାର ନାତି ॥୬୦
ଯଦି ବାର ମାସ ନାହିଁ ମୋର ନିଦ ।
ସଉମିତ୍ରୀର ବାଣେ ପଡୁ ମେଘନାଦ ॥
ସମ୍ଭକ୍ଷର ପରିଯନ୍ତେ ଯଦି ନକଲି ଆହାର ।
ଇନ୍ଦ୍ରଜିତକୁ ମାରିବ ମୋହର ଦିଅର ॥
ଶ୍ରୀରାମ ବିଛେଦ ଦିନରୁ କାମରସ ।
ଯଦି ମୋହୋର ମନେ ନୋହଇ ପ୍ରବେଶ ॥
ରାବଣର ପୁତ୍ରକୁ ଶ୍ରୀରାମର ଭାଇ ମାରୁ ।
ଲଙ୍କା ଲୋକଙ୍କର ଯେ ଉଷତ କର୍ମସରୁ ॥
ବାର ବରଷ ଯାର ମଇଥୁନ ନିଦ୍ରା ନାହିଁ ।
ମେଘନାଦର ଜୀବନ ପାଇବ ଆଉ କାହିଁ ॥୭୦
ଯେସନେକ ବୋଲୁ ବାଜିଲା ରଣ ଗୋଳ ।
ମାର ମାର ଧର ଧର ତୁଣ୍ଡର ଚହଳ ॥
ସୀତୟା ପଚାରିଲେ କିସ ଗୋ ବୋବାଳି ।
ଗାଂଆଯାକ ତୁମ୍ଭର ଶୁଭିଲା ହାଲୋହୋଳି ॥
ଶ୍ରୀରାମ ଯେ ମଲେ ଶତ୍ରୁ ଆଉ କାହିଁ ।
ରାତ୍ର ଅର୍ଦ୍ଧେ ଗୋଳ ଶୁଭଇ କାହିଂପାଇଂ ॥
ଲୋକ ପଠିଆଇ ଜାଣିଲେ ବାରତା ।
ଅପୂର୍ବ କଥାଯେ ଗୋ ଶୁଣସି ତ୍ରିଜଟା ॥
ଶ୍ରୀରାମ ଲକ୍ଷଣ ଯେ ଋକ୍ଷ କପି ବଳ ।
ଗଡ଼େ ଡେଇଂ ପଶି କରନ୍ତି ଚହଳ ॥୮୦
ଦିଉଡ଼ି ନିରନ୍ତରେ ଆଲୁଅ ଦିଶଇ ।
ଅସୁର ନିଶ୍ଚୟେ ଗୋ ଯେବେ ନାଶଯାଇ ॥
ସବିହେଂ କହିଲେ ଇନ୍ଦ୍ରଜିତ ଅଇଲା ମାରି ।
ପୁଣି ଜୀଇଂଲେ ସେ କେମନ୍ତ ବୁଧିକରି ॥
ଦଣ୍ଡେ ନ ବିଶୋଇ ସାଂଗ୍ରାମକୁ ଧାମନ୍ତି ।
ନିଶ୍ଚଏ ଅସୁର ବଳମାରିବେ ଯେ ଘାନ୍ତି ॥
ତୁ ଗୋ ମାହାସ୍ୟତୀ ବୋଇଲୁ ସିନା ଯାହା ।
ଯେହିକ୍ଷଣି ଫଳିଲା ଦେଖିଲୁ ଆମ୍ଭେ ତାହା ॥
ତୁ ଗୋ ରାମରାଣୀ ଦୟା ଆମ୍ଭଙ୍କୁ କର ।
ଅନେକ ଦୋଷ କଲୁ ସେ କଥା ନଧର ॥୯୦
ଏତେ ବୋଲି ସଭିଏଂ ପଡ଼ିଲେ ପାଦତଳେ ।

ଉଠ ଉଠ ବୋଇଲେ ଦେବୀ ହରଷମନ ବେଳେ ॥
ନାହିଁ ଅପରାଧ କ୍ଷେମା ତୁମ୍ଭଙ୍କୁ କଲି ।
ଭଗତି ଘେନି ମୁଂ ଯେ ପ୍ରସନ୍ନ ହୋଇଲି ॥
ଏଥୁ ଅନନ୍ତରେ ରାମଚନ୍ଦ୍ର ରାଏ ।
ଚାରି ଦ୍ୱାରକଇ ଯେ ସଇନି ବଟିଥାଏ ॥
ଭିତରେ ଥିବାଲୋକେ କବାଟ ଫେଡ଼ିଦେଲେ ।
ଦ୍ୱାରପାଳମାନଙ୍କୁ ବିକୋଡି ମାଇଲେ ॥
ମତ୍ତଗଜମାନେ ଆବୋରି ଥିଲେ ରହି ।
ତାହାଙ୍କୁ ବେଢ଼ିଲେ କପି ଶତ ଶତ ହୋଇ ॥୧୦୦
ପିଠିରୁ ମାହୁନ୍ତକୁ ଧରି କଚାଡ଼ିଲେ ।
ଆରଣ ଘେନିକରି ହସ୍ତୀଙ୍କର ନୟନ ଖୋଳିଲେ ॥
ଆଙ୍କୁଶେ ହାଣନ୍ତି କପାଳ ଖଣ୍ଡ ଖଣ୍ଡ ।
ଗର୍ଜନ୍ତେ କରୀବର କମ୍ପଇଂ ବ୍ରହ୍ମାଣ୍ଡ ॥
ବିକରାଳ ହୋଇ ପଳାଇଣ ଯାନ୍ତି ।
ଗୋଡ଼ାଇ ରକ୍ଷକପି ଅନେକ ମାରନ୍ତି ॥
ଥୋକାଏକ ଦୂରେ ପଡ଼ନ୍ତି ପ୍ରାଣ ହାରି ।
କପି ବାହୁଡ଼ନ୍ତି ମତ୍ତଗଜକୁ ସଂହାରି ॥
ଚାରି ଦ୍ୱାରରେ ଯେ ଫିଟିଲା କବାଟ ।
ଅବିକ୍ଷଣେ ପଶୁଛନ୍ତି ଶ୍ରୀରାମର ଥାଟ ॥୧୦
ବିଭୀଷେଣ ବୋଇଲା ଦେବ ଶୁଣ ରଘୁବୀର ।
ସଜ ହୋଅ ତୁମ୍ଭେ କୋଦଣ୍ଡକାଣ୍ଡଧର ॥
ଚାରିଦ୍ୱାରକଇ ଦେବ ଯୂଥପତି ଯାନ୍ତୁ ।
ରକ୍ଷକପି ଲଙ୍କା ଘରନ୍ତ ପୋଡ଼ନ୍ତୁ ॥
ନୋହିଲେ ବିଛେଦ ଯେ ପାଇବା ଗୋସାଇଂ ।
ଆମ୍ଭର ଲୋକେ ପୂର୍ବେ ହାଦେ ଦେଖିଲା ନାହିଁ ॥
କିମ୍ବା ତୁନି ହଉ ମହା ରାଜ୍ୟେ ପଶି ।
ଅସୁରେ ନିଶାଚରେ ମାରିବେଟି ପ୍ରାଶି ॥
ଘର ଗ୍ରାମ ପୋଡ଼ିଲେ ଦିଶିବ ହାଟ ବାଟ ।
ଚିହ୍ନି ଯୁଦ୍ଧ କରନ୍ତୁ ରକ୍ଷ ମରକଟ ॥୨୦

ଶ୍ରୀରାମ ବୋଲନ୍ତି ଶତ୍ରୁ ଯେଣେ ମରି ।
କଳିର ବେଳେ କି କଲ୍ୟାଣ ବାଞ୍ଛା କରି ॥
ରାବଣକୁ ମାଇଲେ ସେ ଲଙ୍କାକୁ ମୋର ଦୟା ।
ଯେବେ ଯେତେ ବୁଧି କରିବି ସବୁ ମୋର ମାୟା ॥
ଦିଅ ଘର ପୋଡ଼ି ମାର ଯେ ଅସୁର ।
ବିବିଧ ପଦାର୍ଥମାନ କର ହୁରକ୍ରୂର ॥
ଯେତେକ ବୋଲି ଆପଣେ ଧନୁରେ ଗୁଣ ଦେଲେ ।
ତ୍ରୋଣ ସଜ କରି ନାରାଜ ଘେତିଲେ ॥
ଉତ୍ତମ ରକ୍ଷକପିନ୍ତ ପେଷିଲେ ଚାରିଦିଗେ ।
ରାମକୁ ପଛକରି ଲକ୍ଷଣ ହୋୟେ ଆଗେ ॥୩୦
ଶ୍ରୀରାମ ଆଜ୍ଞା ଦେଲେ ନଗ୍ର ପୋଡ଼ି ଦିଅ ।
ପଳାଇ ଯିବେଟି ନିର୍ବନ୍ଧେ ଜଗିଥାଅ ॥
ବୋଲାବୋଲି ହୁଅନ୍ତେ ଉଠିଲାକ ହୁରି ।
ଚାରିଦ୍ୱାରେ ଅଗ୍ନି ଲଗାଇଲେ ରକ୍ଷକପି ହରି ॥
ସଭାବେ ଯେ ସେଦିନ ସପତମୀ ରାତି ।
ଜହ୍ନ ବୁଡ଼ି ନିଶି ହୋଇଲାନି ପାହାନ୍ତି ॥
ପିଢ଼ାଙ୍କର ଛଣ ଯେ ସବୁ ଅଛି ଶୁଖି ।
ତହିଂକି ଅଗ୍ନି ଦେବତା ଅଛଇ ଯେ ଭୋଖି ॥
ରାବଣର ଡରେ ନ କଲେ ମୁନି ଯାଗ୍ୟଂ ।
ତେଣୁ କରି ଅଗ୍ନିର ଲଙ୍କାକୁ ବଡ଼ ରାଗ ॥୪୦
ଦଶଗ୍ରୀବର ମୁଖ ଦେଖିଲେ ସିନା ଡରଇ ।
ଯେବେ ଇଚ୍ଛାସୁଖେ କଟକ ଭୋଗ୍ୟ କରଇ ॥
ଯେତେବେଳେ କପି ଲଗାଇଲେ ଜୁଇ ।
ଚଡ଼ଚଡ଼ ହୋଇ ନିଆଂ ଉତ୍ତୁକଳ ହୋଇ ॥
ଏଘରୁ ସେ ଘରକୁ ବଢ଼ାଇଲା ଜିଭ ।
ଦେଖିଣ ପବନ ଯେ ହୋଇଲା ବଳ ଭାବ ॥
ଚାରି କତି ନିଆଂ ଉଠିଲା ବିକରାଳି ।
ଭଡ଼ ଭଡ଼ ହୋଇ ଯେ ଯାଉଅଛି ଜଳି ॥
ରକ୍ଷ କପିମାନେ କିଳିକିଳା ରାବଦେଲେ ।
ବାଦ୍ୟମାନ ବଜାଅ ଶ୍ରୀରାମ ଆଜ୍ଞା ଦେଲେ ॥୫୦

ଶୁଣି ବୀର ତୂର ବାଇଲେ ବାଜେଣିଆ ।
ପ୍ରଳୟ ଅଗ୍ନି ଜାଣି ଜଳୁଅଛି ନିଆଂ ॥
ଅସୁରେ ନିଶ୍ଚିନ୍ତେ ଯେ ମନ୍ଦିରେ ଶୋଇଥିଲେ ।
ମାହାଗୋଳ ଶୁଣି ଉଠିଣ ବସିଲେ ॥
ବାହାର ଲୋକେ ଯେ ପିଢ଼ାର ଉପରେଣ ଚାହିଁ ।
ବୋଇଲେ କଟେକ ତ ହେଉଂଅଛି ଦହି ॥
କେମନ୍ତ ଆକାରର ହୋ ଚଉକତି ଜଳି ।
ମୁଖରାବ ଶବଦ ଯେ ସାହେର ଉଚ୍ଛୁଳି ॥
କେ ବୋଲଇ ଅବା ହୋ ଜୀଇଂଲେ ରଘୁନାଥ ।
କେ ବୋଲଇ ଆନଯେତେକ କରିଣ ସାମରଥ ॥୬୦
କେ ବୋଲଇ ମେଘନାଦ ସେ ବ୍ରହ୍ମଅସ୍ତ୍ର କଲା ।
କାଲି ଦେଖି ଅଇଲୁ ସବୁ ସଇନି ମାଇଲା ॥
ପୁଣି ପ୍ରାଣ ଅବା ପାଇଲେ କେମନ୍ତେ ।
କେ ବୋଲଇ ବ୍ରହ୍ମଶରୁଂ ଉତରିଲେ କି ମନ୍ତ୍ରେ ॥
ମାଇଲେ ନ ମରନ୍ତି ରାମ ଲକ୍ଷଣ ବେନି ।
ବକ୍ରରେ ଗଢ଼ିଅଛି ତାହାଙ୍କର ସଇନି ॥
କିଛିହିଂ ନୋହନ୍ତି ସେହି ଉଠିଣ ବସନ୍ତି ।
ଆଜ ଅସୁରନ୍ତ ମାରିବେ ନିପାତି ॥
ଚାରି ଦ୍ୱାରବାଟେ ପୂରିଲେ ସଇନ ।
ଅନେକ ଠାବ ହୋଇ ଜଳଇ ହୁତାଶନ ॥୭୦
ଶୁଭୁଣ ନାହିଂ କି ହୋ ତାହାଙ୍କ ରାମତାଳି ।
ରକ୍ଷ କପିଙ୍କର ଯେ ଶୁଭଇ ହୁଳହୁଳି ॥
ପଳାଅରେ ବାବୁ ଘରଦ୍ୱାର ଛାଡ଼ି ।
ଚାରିକତି ଗ୍ରାମ ଆସୁଅଛନ୍ତି ପୋଡ଼ି ॥
ହନୁମନ୍ତର ବେଲୁ ଯେ ଘାନ୍ତି ହାଦେ ଗାଢ଼ ।
ଧୂମାନ୍ତ ହୋଇଲାନି ଯେତେବଡ଼ ଗଡ଼ ॥
ଏତେକ ବୋଲି ଲୋକେ ଅନ୍ତରାଳ ଚିତ୍ତ ।
ଛାଡ଼ିଲେ ପୁତ୍ର ଭାରିଯା ଧନବିତ୍ତ ॥
ପଡ଼ି ଉଠି ପଳାନ୍ତି ପ୍ରାଣର ବିକଳେ ।

କପିଙ୍କି ଦେଖିଲେ ପଶନ୍ତି ଯମ ଆଳେ ॥୮୦
ଏକକୁ ଆରେକ ଡାକନ୍ତି ନାମ ଧରି ।
କେ କାହାକୁ ଧରନ୍ତେ ପକାନ୍ତି ସିଟାଂଡ଼ି ॥
ମଲି ମଲି ବାବୁ ରଖ ରଖ ଆହୋ ।
କେ ବୋଲେ ଗୋସାଇଂ ନିର୍ଦ୍ଦୟା ମୋତେ ନୋହୋ ॥
କେ ବୋଲଇ ଆସ କେ ବୋଲଇ ଗଲା ।
କେହୁ କୂପର ଭିତରେ ଯାଇଂଣ ପଶିଲା ॥
ଦେଉଳେ ଉଠନ୍ତେ ମାରଇ ତାକୁ ଝାଇଂ ।
ଧୂମ୍ର ଘାଏ ସେ ପଡ଼ନ୍ତି ଓହ୍ଲାଇ ॥
କେ ଗଛର ଡାଳ ଭାଙ୍ଗିପଡ଼ି ମଲେ ।
ପଳାଉ ପଳାଉ କାହାକୁ କୁକୁଡ଼େ କାମୋଡ଼ିଲେ ॥୯୦
କେ ବୋଲଇ ଠଣାରେ ମୁହିଂ ଥିଲି ଶୋଇ ।
ଦେଖିଲି କପି ଯେ ପୂରିଲେ ଲଙ୍କା ଭୂଇଂ ॥
ରକ୍ଷ କପି ସଇନି ବିକରାଳ ମୁଖ ।
ଆଜ୍ଜୁଂ ସରିଲା ବାବୁ ଯେ ଜନ୍ମର ସୁଖ ॥
ମାଇପେ ପଳାନ୍ତି ଯେ ପୁଅଝିଅ ଛାଡ଼ି ।
ମଲି ମଲି ବୋଲି କେ ବୁକୁରେ ହୋନ୍ତି କୋଡ଼ି ॥
କେହୁ ଧନ ସୁନା ପୁତ୍ରକୁ ଛାଡ଼ିଯାନ୍ତି ।
କେହୁଂ ଡରତରେ ଝିଅକୁ ଘୋଷାରନ୍ତି ॥
କେ ପେଡ଼ି କାଖେ କାହାର କାନ୍ଧେ ଶାଢ଼ୀ ।
କେହୁଂ ଗୁରୁସ୍ତର ପଣନ୍ତ ନଛାଡ଼ି ॥୧୦୦
କେ ବୋଲଇ ଗୋସାଇଂ ଏହି ବାଟେ ଯିବା ।
କପିଙ୍କର ଛାମୁରେ ପଡ଼ିଲେ ମରିବା ॥
କେ ବୋଲଇ ତତଲା ଲାଗିଲାନି ଆସି ।
କେ ପ୍ରାଣ ବିକଳେ ପୋଖରୀରେ ପଶି ॥
କେ କାହାର ବୁଜୁଳା ଛଡ଼ାଇଣ ନେଲା ।
ଅନ୍ଧାରେ ଭାଲୁଙ୍କ ରୂପେଣ ଡରାଇଲା ॥
ମାଙ୍କଡ଼ଙ୍କର ଭୟେ ଆଣ୍ଠେଣ ଡାକଇ ।
ଘାଉ ଘାଉ ହୋଇଣ ନିଜ ଲୋକଙ୍କୁ ଘଉଡ଼ାଇ ॥
କପି ବୋଲିଣ କେହୁ ପଳାଇଣ ଯାଇ ଓରେ ।
ବୁଜୁଳା ଗଡ଼ାଗଡ଼ି ହୋଉଛି ଅନ୍ଧାରେ ॥୧୦
ଜାଣିଲା ଭଳି ଲୋକ ତାହା ଘେନିଣ ଯାଉଛନ୍ତି ।
ଟାକ ଟେରକ ମଣି ପୁଣି ଜଗିଥାନ୍ତି ॥
ଲୋକ ପଳାବନ୍ତେ ଦ୍ରବ ଘେନିଗଲେ ।
ନିଜ ରାଜ୍ୟେ ଲୋକେ ଅନେକ ଗୋଳ କଲେ ॥
ଶତେ ଯୋଜନ ଲଙ୍କା ହୋଇଲା ହାଲୋହୋଳି ।
ବିକଳେ ରାବଣକୁ ଲୋକେ ଦିଅନ୍ତି ଗାଳି ॥
କେ ବୋଲଇ ସୀତ୍ୟାକୁ ଆଣିଲା କିସପାଇଂ ।
କେତେକ ଯୁବତୀଟି ଯେହାର ପୁରେ ନାହିଂ ॥
କେ ବୋଲଇ ଯେହାର ବୁଡ଼ିଲାନି ଜ୍ଞାନ ।
ସୋଦର ଭାଇଯେ ପଡ଼ିଲା କୁମ୍ଭକର୍ଣ୍ଣ ॥୨୦
ଦେଖୁ ଦେଖୁ ଯେବେ ଛଡ଼ ପୁତ୍ର ମଲା ।
ସେନା ସେନାପତି ଅନେକ ଛୟେଗଲା ॥
ଯେହା ବିଚାର ଯେ ନ କରଇ ଦଶଶିରି ।
ଜାଣିଲୁ ଶିରାଗତ ଯେ ହୋଇଲା ଯେହାର ଶିରୀ ॥
କୋ ବୋଲଇ ଇନ୍ଦ୍ରଜିତର ଭରସାଏ ।
ସୀତା ନ ସମର୍ପଇ ଦଶାନନ ରାଏ ॥
କେ ବୋଲଇ ଦେଖ ସିନା ପରମାଦ ।
ଏହି ନିକଟେ ଯେ ମରିବ ମେଘନାଦ ॥
ଆଜିର ଗୋଳ କି ଭଲେହେଂଣ ଯିବ ।
ଯିସ ତିସ ହୋଉ କଥାଏ ହୋଇବ ॥୩୦
ଏତେକ ହୋଇଣ ବିକଳ ସର୍ବଜନ ।
ରାବଣ ନବରେ ଲାଗିଲା ହୁତାଶନ ॥
ବିଚିତ୍ର ଘରମାନ ଯେ ଯାଉଛନ୍ତି ପୋଡ଼ି ।
ମନ୍ଦୋଦରୀ ରାଣୀ କାନ୍ଦଇ ବୁକୁରେଣ କୋଡ଼ି ॥
ତିନି କୋଟି ପଞ୍ଚାଶ ଲକ୍ଷ ରାଣୀ ମହାଦେଈ ।
ଝଡ଼ା ମୁହୁସୁଲୀ ବାହୁଟିଆଇ ଧାଇ ॥
ପୋଇଲି ପରିବାରୀ ଯେ ଦାସୀଗଣମାନେ ।
ଦଶଖର୍ବ ନାରୀ କରନ୍ତି ରୋଦନ ॥
ଗୋଳ ଶୁଣିକରି ଉଠିଲା ଲଙ୍କପତି ।
ବାହାରେ ଅବକାଶ ହୋଇଲା ତଡ଼ନ୍ତି ॥୪୦
ଆଗେ ଦଶଲକ୍ଷ ଦିହୁଡ଼ି ହୁଳାହୁଳି ।
ଅମାନାତ୍ୟଗଣଙ୍କଇ ଯେ ରଆଇଂଣ ଭାଳି ॥
କେବଣ କଥାଏ ଶୁଭଇ ମହାଗୋଳ ।
କିମ୍ବା କଟକ ହୋ ଦହଇ ଅନଳ ॥
ମନ୍ତ୍ରୀମାନେ କହିଲେ ଶ୍ରୀରାମ ଅଛି ଆସି ।
ଗଡ଼ର ଭିତରେ ଆପଣେ ଅଛି ପଶି ॥
କାଲି ଇନ୍ଦ୍ରଜିତ ମାଇଲା ବ୍ରହ୍ମଶର ।
ପୁଣି ଜୀଇଂଲେ ସେ କେବଣ ପ୍ରକାର ॥
ଶୁଣି ଦଶଗ୍ରୀବ ଛାଡ଼ଇ ନିଶ୍ୱାସ ।
ବୋଇଲେ ଅସୁରେ ଯେ ନିଶ୍ଚେ ଯିବେ ନାଶ ॥୫୦
ରଣ ରାଜପୁତ୍ର ଯେତେକ ଯୁଦ୍ଧକୁ ଗଲେ ।
କୁମ୍ଭକର୍ଣ୍ଣ ସହିତେ ବାହୁଡ଼ି ନଇଲେ ॥
ଆମ୍ଭର ମାଇଲେ ସେ କେବେହେଂ ନ ମରନ୍ତି ।
ରାତ୍ରେଣ ଜୀଇଂଣ ପୁଣି ସମର କରନ୍ତି ॥
ଏବେ କିସ ବୁଧି କରିବଇଂ ମୁହିଂ ।
ସୀତୟାକୁ ନେଇଣ ନୁଚାଇବି କାହିଂ ॥
ନ ପୁଣି ରକ୍ଷ କପି ଘେନି ତାକୁ ଯାନ୍ତି ।
ଯେତେବୋଲି ଅନେକ ଅସୁର ପମନ୍ତି ॥
ଯାଅରେ ଓଶେକ ବିପୁନ୍ୟ ରକ୍ଷାକର ।
ଶ୍ରୀରାମ ସୈନ୍ୟ ଯେମନ୍ତେ ନ ପଶନ୍ତି ଭିତର ॥୬୦
ସହସ୍ରେ ପୁର କରି ବେଢ଼ି ବସିଥିବ ।
ଆଜ୍ଞା ଭ୍ରଷ୍ଟ ହୋଇଲେ ନିଷ୍ଟଏ ମରିବ ॥
ପୁଣି ପାଞ୍ଚ ଖର୍ବ ନିଶାଚରେ ଗଲେ ।
ଅତି ଯତ୍ନ କରି ସୀତ୍ୟାକୁ ରଖିଲେ ॥
ସଇନି ପେଷଇ ଆପଣେ ଦଶଶିରି ।
ମନ୍ତ୍ରୀଗଣ ଘେନି ଆପଣେ ବିଚାରି ॥
କେମନ୍ତେ ଶ୍ରୀରାମଙ୍କୁ କରିବି ପ୍ରାଣନାଶ ।
ମନୁଷ୍ୟମାତ୍ରେଣ ଯେତ୍ରେକ ସାହାସ ॥
ଯେସନେକ ଭାଲୁ ବାଜିଲାକ ଗୋଳ ।
ପଳାନ୍ତି ଲଙ୍କା ଲୋକେ ପ୍ରାଣର ବିକଳ ॥୭୦

ଗଡ଼ରୁ ବାହାର ହୋଇଲେ ଚାରିବାଟେ ।
ଆଜ୍ଞା ରଖିବେ ବୋଲି ପଶିଲେକ ଥାଟେ ॥
ଦେଖନ୍ତି ବାନରଙ୍କର ବୀରଶୂର ପଣ ।
ଆପଣେ ଯୁଝନ୍ତି ଶ୍ରୀରାମ ଲକ୍ଷଣ ॥
ସୁଗ୍ରୀବର ଅଙ୍ଗଦ ହନୁ ଜାମ୍ବେବ ମହାବୀର ।
ବିଭୀଷେଣ ସୁଷେଣ ତାରାର ପିଅର ॥
ଗନ୍ଧମାରଦନ ଶଭରୀ ଶତବଳ ।
ଡାଳିମ୍ବ କୁମୋଦ ପବନ ନଳନୀଳ ॥
କୁନ୍ଦ ସଂପାତି ମାରୁତି ଚନ୍ଦନ ।
ବିବିଧ ରମଣ ପନସ କାଳିଞ୍ଜନ ॥ ୮୦
ଶରସେତୁ ଗବୟ ଗବାକ୍ଷ ରୋମାପିତା ।
ମହାନ୍ଦ୍ର ଦ୍ବିବିନ୍ଦ ବଳିମୁଖ ବଳବନ୍ତା ॥
କାଳିମୁଖ ପାରିଜାତ ସାରାସ ପାରାସ ।
ବିଜୟେ ହରବପୁ ବସନ୍ତ ସୁନାସ ॥
ସାଂଗ୍ରାମ ଧନ୍ଦୋଳ କରନ୍ତି ଆଗସରି ।
ଅଶୁରେ ସୁହସ୍ରନ୍ତ ପିଟନ୍ତି ମନସରି ॥
ଏକର କହନ୍ତେ ଧାଇଂଲେ ଆରେକ ।
ମାର ମାର ବୋଲି ଯେ ଶୁଭୁଅଛି ଡାକ ॥
ଯେତେ ଭରସାରେ ରାତ୍ରକାଳେ ଆସି ।
ଘରନ୍ତ ପୋଡ଼ିଦେଲେ ଗଡ଼ ଭିତରେ
ପଶି ॥୯୦
ଋକ୍ଷ କପି ହୋଇ ଏତେମାନ ଦର୍ପ ।
ମଣ୍ଡୁକୀ ଓଗାଳଇ ଭୋଖିଲା କାଳସର୍ପ ॥
ସିଂହର ମନ୍ଦିର ଯେ ଭାଙ୍ଗଇ ମଞ୍ଜାରୀ ।
ଟେକାମାରି ପର୍ବତ ଭାଙ୍ଗିପାରଇ ଚୂରି ॥
ଓପ୍ରୋଧ କରନ୍ତେଣ ଓହାଡ଼ିଣ ମାଇଲେ ।
ଉଶ୍ବାସ କରନ୍ତେଣ ଭରସା ପାଇଲେ ॥
କାଲି ଇନ୍ଦ୍ରଜିତ ଛେଦୁଥିଲା ଶିର ।
ଆମ୍ଭେ ସେ ବୋଇଲୁ ମଲାର ନମାର ॥
ମୁଣ୍ଡ ଛିଡ଼ାଇଥିଲେ କରନ୍ତେଟି କିସ ।
ଯେ ଘାନ୍ତି ସମରେ ଜିଣିମା ହରିଶିଷ ॥୧୦୦
ଯେତେକ ବୋଲି ଅସୁରେ ଧାମନ୍ତି
ଅସ୍ତ୍ରଧରି ।
କେହୁ ମତ୍ତଗଜ ଆରୋହଣ କରି ॥
କେ ଅଶ୍ବ ପିଠିରେ କେ ବସିଲାକ ରଥ ।
ଉଚ୍ଚେଣ ଡାକ ଦିଅନ୍ତିରେ ମାର ରଘୁନାଥ ॥

ଅପ୍ରମିତ ସଇନି ପଡ଼ିଲେକ ମାଡ଼ି ।
ଋକ୍ଷ କପି ଯୁଝନ୍ତି ପଏକ ନଛାଡ଼ି ॥
ଶିଳାବୃକ୍ଷଢେଲ ଚକ୍ର ଗରୁଡ଼ାଳ ।
ସାଙ୍ଗି ଶାବେଳି ନାକିଂଆ କରବାଳ ॥
ଭାଇପଟା ଶକତି ଭୂଶୁଣ୍ଡୀ ମୁଦ୍‌ଗର ।
ବଜ୍ରଘାତ ପରାଏ ଯେ ବିନ୍ଧୁଛନ୍ତି ଶର ॥୧୦
ମିଶାମିଶି ଗୋଳ ବାଜିଲା ମହାଯୁଦ୍ଧ ।
ପରିଘାଇ ସମର କଲେକ ରାମ ରାଜ ॥
ହାକିଣ ନାରାଚ ଯେ ବିନ୍ଧନ୍ତି ପୁଣ ପୁଣି ।
ଯେକା କାଣ୍ଡକରେ ସହସ୍ରେ ଅସୁର ହାଣି ॥
ଏକାବେଳକେ ଯେ ପେଷନ୍ତି ଦଶଶର ।
ନିଶ୍ବାସକେ ପେଷନ୍ତି ବିଶାଶଏ ଥର ॥
ଦୁଇଘଡ଼ିଯାଏ ରିଝାଇ ଯୁଦ୍ଧକଲେ ।
ଅସୁର ସଇନି ସବୁ ଦଳି ପକାଇଲେ ॥
ଶ୍ରୀରାମ ନାରାଚେ ଦାନବ ବଳ ମଲେ ।
ପାର୍ଥିବ ଦେହ ଛାଡ଼ି ସ୍ବର୍ଗକଇ ଗଲେ ॥୨୦
ଏହି ପ୍ରମାଣେ ଲକ୍ଷଣ ଯୁଦ୍ଧ କଲା ।
ପଡ଼ି ଗଡ଼ି ଉଠି କୋବଂଧ ନାଚିଲା ॥
ଆଶ୍ଚିଯ ହୋଇଣ ଦେଖନ୍ତି ସର୍ବଜନ ।
ଟହ ଟହ ହୋଇ ହସନ୍ତି ମୁଣ୍ଡମାନ ॥
ରକତ ସମୋଦ୍ର ବହିଲାକ ତହିଂ ।
ମଡ଼ା ପଡ଼ିଲା ଯେ କୁଢ଼ କୁଢ଼ ହୋଇଂ ॥
ଋକ୍ଷ କପି ଅସୁର ମୃତ ପିଣ୍ଡ ମିଶି ।
ପାଦଘାତେ ହୋଅନ୍ତି ପେଷାପେଷି ॥
ଶ୍ରୀରାମ ମୁଖେ ଟୋପି ଟୋପି ଝାଳ ।
ଶ୍ବରୀରୁ ଶ୍ରମ ଝାଳ ବହଇ ଖଳଖଳ ॥୩୦
ରକତ ଜରଜର ଦୁଇଭାଇଙ୍କର କାଏ ।
ଆଦିତ୍ୟ ଦେବତାକି ଅରୁଣ ଘେନି ଉଦୟେ ॥
ଅସୁରେ ପ୍ରଶଂସନ୍ତି ଭଲା ଯୋଧା ରାମ ।
ହଳଦୀ ପିଚିକା କି ଖେଳୁଛନ୍ତି କାମ ॥
ଅବିଶ୍ରାମ ବିନ୍ଧଇଂ ଫୁଟିବାର ଯେହାର
ନାହିଂ ।
ଜନ୍ମ ହୋଇଲା ଦଇତ୍ୟ ଦଳିବାର ପାଇଂ ॥
ବାବୁ ତୁମ୍ଭେ ଧନ୍ୟ ଶ୍ରୀରାମ ଲକ୍ଷଣ ବେନି ।
କାମଦେବ ବିଜଏକି ବସନ୍ତରତୁ ଘେନି ॥
କିଅବା ଚନ୍ଦ୍ର ସୂର୍ଯ୍ୟ କିଅବା ହରିହର ।

ସୀତୟାର କାନ୍ତ ଏ ଆରକ ଦିଅର ॥୪୦
କେମନ୍ତେ ଯେ ମେଘନାଦ ଏହାନ୍ତ
ମାଇଲା ।
ମଲାଲୋକ ଆସି ଏତେ କୃତ୍ୟ କଲା ॥
ଦେଖ ରଣ ଧନ୍ଦୋଳ ମାରନ୍ତି ସଇନି ।
ବିଷମ ସମର କରନ୍ତି ଭାଇବେନି ॥
ବଜ୍ରଘାତ ଜାଣି ଯେ ନାରାଚ ପଡ଼ନ୍ତି ।
ଅସୁର ସୋମୋଦ୍ର ଯେ ମନ୍ଦର ହୋଇମନ୍ଥି ॥
ଯେସନେକ ବୋଲିଣ ବିଚାରନ୍ତି ଲୋକେ ।
ଇଷ୍ଟ ବଂଧୁ ସୁମରି କାନ୍ଦୁଛନ୍ତି ଥୋକେ ॥
ଯହୁଂ ସେ ଅସୁର ବଳ ପାଇଲେ
ଭାଙ୍ଗେଣି ।
ସେନାସେନାପତି ଧାଇଂଲେ ତାହାଶୁଣି ॥୫୦
କୁମ୍ଭ ନିକୁମ୍ଭ ବଜ୍ରଦନ୍ତଷ୍ଟ ଅସୁର ।
ଶୋଣିତାକ୍ଷ ଜ୍ବଳୁପାକ୍ଷ ଲୋହିତାକ୍ଷ ବୀର ॥
ଏ ଛଡ଼ରଥୀ ଯେ ଆବୋରିଲେ ଆସି ।
ଛଡ଼ ଗୋଟା ରାହୁକି ସାଂଗ୍ରାମେ ଛନ୍ତି ପଶି ॥
ଉତ୍ତର ଗଡ଼ଦ୍ବାରୁ ଆସୁଛନ୍ତି ଖେଦି ।
ଏକା ନାରାଚକେ ସହସ୍ର କପି ଛେଦି ॥
ଅନ୍ଧାର ରଜନୀ ନ ଦିଶଇ ପନ୍ଥ ।
ପଂଚାପଂଚି ଯୁଦ୍ଧ କରନ୍ତି ଦଇତ ॥
ଆପଣାର ସଇନକୁ ଯେ ଯାଆନ୍ତି ଆଗସରି ।
ଋକ୍ଷ କପି ବଳ ଦେଖିଲେଣ ମାରି ॥୬୦
ମରକଟ ଭାଲୁଙ୍କ ନିଜ ଲୋକ ଚିହ୍ନି ।
ଦଇତଙ୍କୁ ମାରନ୍ତି ଶିଳାବୃକ୍ଷ ଘେନି ॥
ସୁଗ୍ରୀବର ସୁଷେଣ ଗନ୍ଧମାରଦନ ।
ରଣରଙ୍ଗ କରିଣ ସଂଘାରନ୍ତି ସୈନ୍ୟ ॥
କୁନ୍ଦକାମୋଦ ବଳିମୁଖ ଶତବାଳି ।
ଯେହାଙ୍କର ଘାତେ ପଡ଼ଇ ହାଲୋହୋଳି ॥
ଚନ୍ଦନ ପବନ ସାରାସ ପାରାସ ।
ଅନେକ ରାକ୍ଷସ ଯେ କଲେକ ପ୍ରାଣନାଶ ॥
କେଶରୀ ଗବୟେ ଗବାକ୍ଷ ଶରସେତୁ ।
ଅସୁରଙ୍କୁ ଦେଖି ଏ ଦେଉଛନ୍ତି ମୃତୁ ॥୭୦
କାଳିମୁଖ ଦଧିମୁଖ କଞ୍ଚଣ କାଳିଞ୍ଜନ ।
ପରିଘାଇ ଯୁଦ୍ଧେ ମାରୁଛନ୍ତି ସୈନ୍ୟ ॥
ଡାଳିମ୍ବ ରମଣ ରମାର ପିଅର ।

ଏହାଙ୍କର ମାରେଣି ଅତି ଅଗୋଚର ॥
ତାରାର ପିଅର ଯେ ଦୁଇବୃକ୍ଷ ଘେନି ।
ରୋଷେଣ ସଂହାରଇ ଅସୁର ସଇନି ॥
ସଂପାତି ବିବିଧ ନଳ ବାନର ଶତବଳ ।
ଦେବରୂପା ସଙ୍ଗେ କରନ୍ତି ରଣଗୋଳ ॥
ଯେକଠାବ ହୋଇ ଯେ ଯୁଝନ୍ତି
ବଳମାନେ ।
ଦେଖାଦେଖି ସଂଗ୍ରାମ କରନ୍ତି ଭିନ୍ନେ
ଭିନ୍ନେ ॥୮୦
ଶ୍ରୀରାମ ଲକ୍ଷଣଙ୍କର ଅବିଶ୍ରାମ ଯୁଦ୍ଧ ।
ନାହିଁ ପଟାନ୍ତର ତିନି ଭୁବନର ମଧ୍ୟ ॥
କେତେ ହାଥୀ ରଥୀ ପଡ଼ିଲେ ନ ଜାଣି ।
ଅଶ୍ୱ ପାଦାନ୍ତିକେ ପାରିବାକ ଗଣି ॥
କୋବନ୍ଧ ନାଚିବାରେ ତହିଁ ନାହିଂ ଲେଖା ।
ବ୍ରହ୍ମାଣ୍ଡ ଭିତରେ ରାମ ଧନୁଧର ଯେକା ॥
ରାତ୍ର ଏଗାର ଘଡ଼ିରେ ସମର ଆସି କଲେ ।
ପାଞ୍ଚ ଘଡ଼ି ପରିଯନ୍ତେ ଆପଣେ ଯୁଝିଲେ ॥
ଭାଇ ଲକ୍ଷଣକୁ ପାଇଂଛନ୍ତି ପିଠି ।
ଏକୁ ଏକ ନାରାଚ ମାରନ୍ତି ବଚ୍ଚ
ଘୋଟି ॥୯୦
ଅସୁରେ ନ ଭାଙ୍ଗନ୍ତି ବିଷମ ରୋଳ ଦେଖି ।
ଦୁଇ ବଳ ସାଂଗ୍ରାମକୁ ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ॥
କୁମ୍ଭ ନିକୁମ୍ଭ ଯେ ସମର କରୁଥିଲେ ।
ଅନ୍ଧାରେ ଶ୍ରୀରାମଙ୍କୁ ବାରି ନୁଆରିଲେ ॥
ଫସରଫାଟି ଉଇଂଲାକ ଅରୁଣ ।
ଦୂରୁହୁଂ ଦିଶିଲେ ଶ୍ରୀରାମ ଲକ୍ଷଣ ॥
ଦେଖିଣ ରଥୀମାନେ ଧାଇଂଲେ ଅତି
ବେଗେ ।
ଅଙ୍ଗଦ ମହାବୀର ଉଗାଳିଲା ଆଗେ ॥
ଶର ଦତ୍ୟ କୋପେ ପରିଘ ଘେନିମାରି ।
ବଥା ପାଇଂ ବାଳିସୁତ ବୃକ୍ଷେକ ହାଥେ
ଧରି ॥୧୦୦
ଉଗୁଳଣ ଅସୁର ଉପରେ ପିଟିଲା ।
ଖଡ଼ଗ ଘେନି ତାହା ଦଇତ କାଟିଲା ॥
ଧାଇଂଣ ଅଙ୍ଗଦ ଖଣ୍ଡା ଘେନି ଉଛୁଡ଼ି ।
ଝମକି ଉଗୁଂଆଇ ମାଇଲା କୋପକରି ॥

ଶରଦଣ୍ଡର ଯେ ଛିଡ଼ିଲାକ ମୁଣ୍ଡ ।
ଭୂମିରେ ପଡ଼ିଲା ଯେ ହୋଇଣ ବେନିଖଣ୍ଡ ॥
କରତି ପକାଇଲା ବେକୁ ଗୋଡ଼ଯାଏ ।
ଦିଶଇ ବିକଟାଳ ଅସୁରର କାୟେ ॥
ଶରଦଣ୍ଡ ପଡ଼ିବା ଦେଖି ଧାଇଂଲେ
ଆଉମାନେ ।
ସଇନ ଛାଡ଼ି ଧାଇଂଲେ ପବନହୁଂ
ବହନେ ॥୧୦
ଶୋଣିତାକ୍ଷ ଜୁଳୁପାକ୍ଷ ବଜ୍ରଅଙ୍ଗ ତିନି ।
ବାଳୀର ସୁତକୁ ଯେ ବିନ୍ଧୁଛନ୍ତି ଚିହ୍ନି ॥
ଅତିଘୋର ସାଂଗ୍ରାମେ ବିନ୍ଧୁଛନ୍ତି ଶର ।
ଯେସନେକ ବୃଷ୍ଟି କରଇ ଜଳଧର ॥
ତିନିହେଂ ତିନିକି ଯେ ଅଛନ୍ତି ବେଢ଼ପାରି ।
କାଣ୍ଡ ବାଜି ଅଙ୍ଗଦ ଶରୀରୁ ରକ୍ତ ଝରି ॥
ବଥା ପାଇଲାକ ଯେ ବାଳୀର କୁମର ।
ଯହୁଂ ଅବିଛନେ ପଡ଼ିଲାକ ଶର ॥
ମହାନ୍ଦ୍ର ଦୃବିନ୍ଦ ଯେ ସଇନି ମାରୁଥିଲେ ।
ଭଣଜାକୁ ଦେଖିଣ ଧାଇଂଣ ପଡ଼ିଲେ ॥୨୦
ଦୁଇ ମଉଳାକୁ ପିଠି ପାଇଲାକ ବୀର ।
ତିନିହେଂ ତିନିଙ୍କି କରନ୍ତି ସମର ॥
କୋପେ ବଜ୍ରଅଙ୍ଗ ପରିଘ ଘେନିମାରି ।
ବୁଲାଇ ଅଙ୍ଗଦକୁ ମାଇଲା କୋପକରି ॥
ବାଳୀର ନନ୍ଦନ ଯେ ଫେରାଇଲାକ ତାହା ।
ପର୍ବତେକ ଘେନିଣ ମାଇଲା କପିନାହା ॥
ଦୈତ୍ୟଙ୍କର ସଙ୍ଗରେ ପରମେଶ୍ୱର ଯୁଝ ।
ତେସନ ପଟାନ୍ତର ଦିଶଇ ବାଳୀର ତନୁଜ ॥
ଦୈତ୍ୟର ଉପରେ ଯେ ପିଟିଲା ନେଇ
ଶାଳ ।
ପ୍ରହାରି ବଜ୍ରଅଙ୍ଗ ପଡ଼ିଲା ମହୀସ୍ଥଳ ॥୩୦
ଦେଖିଣ ଶୋଣିତାକ୍ଷ ମାଇଲାକ ଶୂଳେ ।
ଆସିଣ ପଡ଼ିଲା ଯେ ଅଙ୍ଗଦ ବକ୍ଷସ୍ଥଳେ ॥
ବୁକୁରେ ବାଜିଣ ଭାଜିଲା ତେଡ଼େ ଶର ।
ଟହ ଟହ ହୋଇଣ ଯେ ହସିଲା ବାଳୀର
କୁମର ॥
ଆରେ ଆରେ ଦଇତ ମୁହିଂ ସେ ଅଙ୍ଗଦ ।
ସାନ ବେଳେ ମାସେ ମୁଂ ବାନ୍ଧିଲି ଦଶକନ୍ଧ ॥

ବାଳୀର ତନୟେ ବୋଲି ନ ଜାଣୁକିରେ
ମୋତେ ।
ଯେହିକ୍ଷଣି ଯମଦ୍ୱାରକୁ ପେଷଇରେ ହାଦେ
ତୋତେ ॥
ଶୁଣିଣ ଶୋଣିତାକ୍ଷ ମାଇଲା ବଜ୍ରମୁଷ୍ଟି ।
ଅଙ୍ଗଦ ମୁଣ୍ଡେଣ ବାଜି ଅଗ୍ନି ଉଠି ॥ ୪୦
ଘୁମାଇଣ ପଡ଼ିଲା ବାଳୀର କୁମର ।
ଦେଖିଣ ଜୁଳୁପାକ୍ଷ ପେଷିଲା ଅସିବର ॥
ଖଣ୍ଡା ନପଡୁ ଯେ ଧାଇଂଲା ମହାନ୍ଦ୍ର ।
ଉଛୁଡ଼ି ପକାଇଣ ଯେ ଲାଗିଲେ ମାଲବଂଧ ॥
ଧରାଧରି ହୋଇଣ ଯେ ପଡ଼ିଲେ ଆସି
ତଳେ ।
ନିବିଡ଼ ବିନ୍ଧାଣ ଯେ ଘେନନ୍ତି ବେଳେ
ବେଳେ ॥
ଉପରେ ତଳେ କେ ତଳେ ଉପରେ ।
ଯାଆନ୍ତି ଗଡ଼ାଗଡ଼ି ସଇନିର ଭିତରେ ॥
ମହାନ୍ଦ୍ରକୁ ମାଡ଼ି ବସିଲା ଅସୁର ।
ଦୁହିଂଙ୍କ ଶ୍ୱରୀର ରକତେ ଜରଜର ॥୫୦
ନଖଦନ୍ତେ ମରାମରି ଛିନାଛିନି ହୋଅନ୍ତି ।
ମୁଣ୍ଡେ କୋଡ଼ାକୋଡ଼ି ହିଆରେ ଯନ୍ତାଯନ୍ତୀ ॥
ତାରାର ସୋଦର ବିଚାରିଲା କଳ ।
ଦଇତର ତୋଣ୍ଡିରେ ମାଇଲା କରସ୍ଥଳ ॥
ପାଦ ଖସାଇଣ ବୁକୁରେ ଆଣ୍ଠୁଦେଲା ।
ଡାହାଣ ହସ୍ତରେ ପଖାଡ଼ାଳି ଦେଲା ॥
ହିଆ ଭରସାରେ ପାରିଲା ଲେଉଟାଇ ।
ମୁଣ୍ଡେଣ ବିଧାଏ ମାଇଲା ତୁହାଇ ॥
ଫାଟିଲା ମୁର୍ଦ୍ଧନି ଗଲା ତାର ପାଣ ।
ଚେତି ଉଠିଲାକ ଅଙ୍ଗଦ କପିରାଣ ॥୬୦
ଦେଖିଲା ଜୁଳୁପାକ୍ଷ ପଡ଼ିଲାକ ମୃତୁପାଇଂ ।
ପଥରେ ଘେନି ମହାନ୍ଦ୍ର ଯାଉଂଅଛି ଧାଇଂ ॥
ଶୋଣିତାକ୍ଷ ଉପରେ ପକାଇଲା ତାହା ।
ଦେଖି ଅସୁରବଳ ଯେ ବୋଲନ୍ତି ଆହା
ଆହା ॥
ଦଇତ ଛେଦିଲା ତାହା ବାବଲବାଣ ପେଷି ।
ବାହୁଡ଼ି ପାଷାଣ ଭୂମିରେ ପଡ଼ଇ ଆସି ॥
ପାଞ୍ଚ ନାରାଚ ପେଷିଲା ଦଇତ ।

ଦେଖି ମହୀନ୍ଦ୍ର ବୀର ଧାଇଂଲା ତୁରିତ ॥
ବାଟେ କାଣ୍ଡ ଦେଖି ଦଶଖଣ୍ଡ କଲା ।
ବାହୁଡ଼ି ଅସୁର ଉପରେ ପକାଇଲା ॥୭୦
ବିକର୍ମ ଗତିକରି ଭୂମିରେ ଉଭା ହୋଏ ।
ଶୋଣିତାକ୍ଷ ବୀର ଯେ ବଳିକ୍ଷିତ ପାଏ ॥
ତୀକ୍ଷ ଭାଲେକ ମାଇଲାକ ପୁଣି ।
ଧାଇଂଲା ମହୀନ୍ଦ୍ର ଯେ ପବନୁ ବେଗେ ଜାଣି ॥
ହସ୍ତରୁ ନ ଯାଉ ତାହା ଉଛୁଡ଼ି ଘେନିଗଲା ।
ଆଣ୍ଠୁଭରା ଦେଇ ଦୁଇଖଣ୍ଡ କଲା ॥
ପଶି ଶୋଣିତାକ୍ଷ ପରିଘେକ ମାରି ।
ମୁଣ୍ଡ ନେଇ ଅଙ୍ଗଦ ପାତିଲା ଆଗସରି ॥
ମଥାରେ ବାଜିଣ ଆୟୁଧ ଭାଜିଗଲା ।
କୋପେଣ ଦଇତ ଶର ବୃଷ୍ଟିକଲା ॥୮୦
ଶାଳତରୁ ଘେନିଣ ଅଙ୍ଗଦ ମାଇଲା ।
ଗିଝାଇଣ ଧାଇଂଲା ତାରାକ୍ଷର ବଳା ॥
ଶୋଣିତାକ୍ଷ ଉପରେ ପିଟିଲା ତାହା ନେଇ ।
ପଡ଼ିଲାକ ରାକ୍ଷାସ ଯେ ଶତେଖଣ୍ଡ ହୋଇ ॥
ଦେଖିଣ ଅସୁର ସଇନି ପଳାଇଲେ ।
କୁମ୍ଭ ନିକୁମ୍ଭରେ ଶରଣ ପଶିଲେ ॥
ବାରତା ପାଇଯେ ଧାଇଂଲେ ଦୁଇଭାଇ ।
କାଳକୃତାନ୍ତକ ଜାଣି ଦିଶୁଅଛି ଦେହୀ ॥
ଗଦାଶକତି ଯେ ମାରନ୍ତି ମୁଦ୍‌ଗର ।
ଚକ୍ର ଢେଲ ଭାଲ ନାନାପ୍ରତି ଶର ॥୯୦
ଭୁଶୁଣ୍ଡୀ ପରିଘ ଶୂଳ ଅସୀପତ୍ର ।
ହାଣନ୍ତେ ରିକ୍ଷକପି ପଳାନ୍ତି ଛିନଛତ୍ର ॥
ବଳର ଭାଙ୍ଗେଣି ଦେଖି ବାଳୀର ଶଳା ବେନି ।
କୁମ୍ଭକୁ ଓଗାଳିଲେ ଶିଳା ବୃକ୍ଷ ଘେନି ॥
ଯେକାବେଳେ ଦୁହେଂ ମାଇଲେ ବେନିଗଛ ।
ନାରାଚ ଛେଦିଲା ତାହାକୁ କୁମ୍ଭକର୍ଣ୍ଣର ବଛ ॥
ପୁଣି ଦୁଇ ଶିଳା ମାଇଲେ ଦୁଇ କପି ।
ବଜ୍ରବାଣ ଘେନି ଦଇତ ତାହା କାଟି ॥
କୋପେ କୁମ୍ଭେକ ଯେ ପେଷିଲା ତୀକ୍ଷଶରେ ।
ଯାଇଂଣ ପଡ଼ିଲା ସେ ଦୁବିନ୍ଦ ଉପରେ ॥୧୦୦
ମୋହେ ପଡ଼ି ବୀର ଅଚେତ ହୋଇଲା ।
ରାଗେଣ ଦୁବିନ୍ଦ ଯେ ଶିଳାବୃକ୍ଷ କଲା ॥
ପାଣି ବରଷିବା ପରାଏ ପଡ଼ଇ ପଥର ।
ଧ୍ୱଜ ଚିରାଳ ଚିହ୍ନ ଭାଜିଲେ ରଥର ॥
କୁମ୍ଭକର୍ଣ୍ଣର ସୁତ ଯେ ତେଜେ ଅପ୍ରମିତ ।
ମନ୍ତ୍ରିଣ ମାଇଲା ତିନି ଲକ୍ଷକୋନ୍ତ ॥
ଦୁଇଜଂଘ ଫୁଟି ପଡ଼ିଲାକ ଦୁବିନ୍ଦ ।
ମଉଳାର ଛଳେ ଯେ ଯୁଝିଲା ଅଙ୍ଗଦ ॥
ଅଶ୍ୱସ୍ଥ ବୃକ୍ଷ ଯେ ଘେନିଣ ପିଟିଲା ।
କୁମ୍ଭ ଦଇତ ତା ନାରାଚେ ଛେଦିଲା ॥୧୦
ପୁଣି ତାରାସୁତ ଯେ ଗରୁ ଶିଳ ମାରି ।
ଏକାକାଣ୍ଡକେ ତା ରାକ୍ଷସ ନିବାରି ॥
କୁମ୍ଭକର୍ଣ୍ଣର ସୁତଯେ ବିନ୍ଧିଲା ପାଞ୍ଚକାଣ୍ଡ ।
ଅଙ୍ଗଦ ଶରୀର ଯେ ହୋଇଲା ଖଣ୍ଡ ଖଣ୍ଡ ॥
ପାଞ୍ଚଧାର ହୋଇଯେ ବହଇ ରକତ ।
ପୁଣି ପରିଘେକ ମାଇଲା ଦଇତ ॥
ବାଜନ୍ତେ ବାଳୀର ନନ୍ଦନ ପଡ଼ିଲାକ ।
ରିକ୍ଷକପି ଡାକିଲେ ଯେ ଯାହାର ଡାକ ॥
ଶୁଣିଣ ଶ୍ରୀରାମ ଯେ ଜମ୍ୱେବକୁ ଚାହିଂ ।
ବୋଇଲେ ଅଙ୍ଗଦକୁ ରଖ ତୁମ୍ଭେ ଯାଇଂ ॥୨୦
ଆହେ ନୀଳ ନଳ ଶୁଣ ତୁମ୍ଭେ ବେଗେ ଯାଅ ।
ମୋହୋର ଯିବାଯାଏ ଆବୋରି ଯୁଝୁଥାଅ ॥
ରିକ୍ଷକପିମାନେ ତୁମ୍ଭର ସଙ୍ଗେ ଯାନ୍ତୁ ।
ଆମ୍ଭେ ଯୁଝିବାଯାଏ ଅଙ୍ଗଦକୁ ରଖନ୍ତୁ ॥
ରଘୁପତି ଆଜ୍ଞାରେ ଜମ୍ୱେବ ଲଇକ୍ଷଣ ।
ସଇନି ଘେନି ଧାଇଂଲେ ନୀଳ ସହିତେଣ ॥
ସୁଗ୍ରୀବର ରାଇଂ ବୋଲନ୍ତି ରାମରାଏ ।
ଯୁଦ୍ଧ ଛାଡ଼ି ମଇତ୍ର ଯାଅ ତହିଂ ଯାଏ ॥
ବାଳୀର ତନଏ ଅଛଇ ମୋହ ଯାଇ ।
ଶୁଣି କିଷ୍କିନ୍ଧାଠାକୁର ବେଗେ ଧାଇଂ ॥୩୦
ଅତିବଡ଼ ପଥର ଯେ ମୁଣ୍ଡିଆଇ ଆଣି ।
କୁମ୍ଭର ଉପରକୁ ଯେ ମାଇଲା କପିମଣି ॥
ବାବଲ ବାଣେ ତା ଛେଦିଲା ଦଇତ ।
ମାହାଘୋର ସାଂଗ୍ରାମେ ଯେ ହୋଇଲା ବହୁତ ॥
କୁମ୍ଭ ବୋଇଲାରେ ମୋର ପିତାର ବଇରୀ ।
ଏହିକ୍ଷଣି ତୋତେ ଦେବଇ ଯମପୁରୀ ॥
ଏତେ ବୋଲି କୋନ୍ତ ମାଇଲା ନିଠାଇ ।
ଅଧବାଟୁ ସୁଗ୍ରୀ ଧଇଲାକ ଯାଇଂ ॥
ଦୁଇଖଣ୍ଡ କରି ଭାଙ୍ଗି ପକାଇଲା ।
ସେହି ଶସ୍ତ୍ର ଘେନି ଦୈତ୍ୟକୁ ମାଇଲା ॥୪୦
ତାହା ବାଜନ୍ତେ ଯେ ରଥ ଚୂର୍ଣ୍ଣ ହୋଇ ।
ଚାରିଅଶ୍ୱଙ୍କର ଯେ ଆଡ଼େ ପ୍ରାଣ ଯାଇ ॥
ସାଧୁ ସାଧୁ ସ୍ୱର୍ଗେ ଦେବେ ପ୍ରଶଂସନ୍ତି ।
ରାକ୍ଷସକୁ ଘେନି ଯେ ପଡ଼ିଲାକ ପୃଥ୍ୱି ॥
ଦୁହେଂ ମାଲବନ୍ଧେ ଗଡ଼ାଗଡ଼ି ହୋଇଯାନ୍ତି ।
ତରତରେ ବିନ୍ଧାଣ ଯେ ଘେନି ନ ପାରନ୍ତି ॥
ଅସୁରକୁ ଛାଡ଼ି ଯେ ଉଠିଲା ସୁଗ୍ରୀବର ।
ମରାମରି କୋଡ଼ାକୋଡ଼ି ହୋଇଲେ ଅପାର ॥
ଦୁଇପାଦ ଧରି ବୁଲାଇ ଫିଙ୍ଗିଦେଲା ।
କୁମ୍ଭକର୍ଣ୍ଣ ସୁତ ସମୋଦ୍ରେ ପଡ଼ିଲା ॥୫୦
ମାହାଜଳେ ପଡ଼ି ନୋହିଲାକ ନାଶ ।
ସାଂଗ୍ରାମ କରିବାକୁ ଧାଇଂଲା ମାହାରୋଷ ॥
ସୁଗ୍ରୀ ନିବିଶୋଢଂ ମାଇଲାକ ମୁଠି ।
କପିରାଜ ହୃଦେ ବାଜି ଅଗ୍ନି ଉଠି ॥
କୋପେ ରୋମାପତି ମାଇଲା ମୁଣ୍ଡେ ମୁଣ୍ଡ ।
କୁମ୍ଭର ମୁଧନା ହୋଇଲା ବେନିଖଣ୍ଡ ॥
ପ୍ରାଣ ଛାଡ଼ି ଦଇତ ପଡ଼ିଲା ମେଦନୀ ।
ନିକୁମ୍ଭ ଧାଇଂଲା ପରିଘେକ ଘେନି ॥
ଦେଖି ହନୁମନ୍ତ ଓଗାଳିଲା ଆସି ।
ରାହୁ ଦୁଇଗୋଟା କି ସାଂଗ୍ରାମେ ଛନ୍ତି ପଶି ॥୬୦
କୁମ୍ଭକର୍ଣ୍ଣର ତନଯେ ପରିଘ ଘେନି ମାରି ।
ତେଇଂଣ ପବନ ତନଯେ ତାହା ଧରି ॥
ସଂଘରି ନପାରି ଯେ ପଡ଼ିଲା ଆସି ଦେହେ ।
ଆନଲୋକ ହୋଇଲେ ପଡ଼ନ୍ତାନା ମୋହେ ॥
ବଜ୍ରହୁଂ ଆଣ୍ଟ ଯେ ମାରୁତି ଶ୍ୟରୀର ।
ଅଙ୍ଗରେ ପଡ଼ି ଶର ହୋଇଲା ଶତେଚୂର ॥

ତାହା ସହି ହନୁ ବିଧାଏ ମାଇଲା ।
କୁମ୍ଭକର୍ଣ୍ଣସୁତ ପଡ଼ି ମୋହ ଗଲା ॥
ଝାଡିକାରେ ଉଠି କୋପକରି ଧାଇଁ ।
ବଜ୍ରସମ ମୁଠିଏକ ମାଇଲାକ ନେଇ ॥୭୦
ବାଜନ୍ତେ ମୋହେପଡ଼ି ପବନର ସୁତ ।
ଅଚେଷ୍ଟ ଦେଖି ସେ ଧାଇଁଲା ଦଇତ ॥
ହନୁମନ୍ତ ଅଚେଷ୍ଟ ଦେଖି ରଥରେ ପକାଇ ।
ବାଇବେଗ କରି ରଥ ଲଙ୍କାକଇ ନେଇ ॥
ମହୀନ୍ଦ୍ର ଦ୍ବିବିନ୍ଦ ଯେ ମୋହେ ପଡ଼ିଥିଲେ ।
ଅଙ୍ଗଦ ସହିତେ ଉଠିଣ ବସିଲେ ॥
ସୁଗ୍ରୀବର ସୁଷେଣ ଅଙ୍ଗଦ ନଳନୀଳ ।
ହନୁମନ୍ତକୁ ନେଲାବୋଲି ଧାଇଁଲେ
ସକଳ ॥
ଋକ୍ଷକପି ବଳ ଓଗାଳିଲେ ଆଗେ ।
ତାହାଙ୍କୁ ଦଇତ ଯେ ବିନ୍ଧଇ
ମାହାରାଗେ ॥୮୦
ହନୁମନ୍ତ ଚେତନା ପାଇଁଣ ଉଠିବସି ।
ଦୈତ୍ୟକୁ ଚାପୋଡ଼େ ମାଇଲା ନିପ୍ରାସି ॥
ପଡ଼ିଲା ନିକୁମ୍ଭ ଯେ ରଥ ଛାଡ଼ି ତଳେ ।
ସୁଗ୍ରୀ ଗୋଇଁଠାଏ ମାଇଲା ଏମନ୍ତ ବେଳେ ॥
ବୁକୁ ଭାଜିଣ ରକତ ଉଦୁଗାରି ।
କୁମ୍ଭକର୍ଣ୍ଣସୁତ ପଡ଼ିଲା ପ୍ରାଣ ହାରି ॥
ରାବଣର ଆଗେ କହିଲା ଯାଇଁ ଚାର ।
ଶୁଣି ବହୁତ ଶୋକକଲା ଲଙ୍କେଶ୍ବର ॥
ଏଥୁ ଅନନ୍ତରେ ଖରର ତନୟେ ।
ଋକ୍ଷକପି ବଳ ଅନେକ ନାଶକୟେ ॥୯୦
ଏକ ନାରାଚ୍ଛେକେ ଲକ୍ଷେ କପି ଛେଦି ।
ବାଏମେଘ ଜାଣି ଆସୁଛନ୍ତି ଖେଦି ॥
ସଇନି ନ ସହନ୍ତି ତାହାର ଶରାଘାତ ।
ଭାଳନ୍ତ ନୋହିଲେ ଅଙ୍ଗଦ ହନୁମନ୍ତ ॥
ସୁଗ୍ରୀବର ରାଜା ଆଡ଼େ ହୋଇଗଲା ।
ଯହୁଁ ସେ ଅପ୍ରମାଣ ସମର ଦେଖିଲା ॥
ଅଷ୍ଟସେନାଏ ଯେ ଭାଜିଲେ
ବେଳୁଁବେଳ ।
ପଞ୍ଚଷ ଯୂଥପତି ଚାହାଁନ୍ତି ଫଇଫଲ ॥
ତୂଳା ଅଗ୍ନି ଜାଣି ଦହଇ ସଇନ ।
ରଘୁବର ଚଳଇ ଯେ ପବନୁ
ବହନ ॥୧୦୦
ମକ ରାକ୍ଷସକୁ ବେଢ଼ିଲେକ ଆସି ।
ରାହୁଗ୍ରସ୍ତ ଯେହ୍ନେ ଓଗାଳଇ ଶଶୀ ॥
ଶ୍ରୀରାମକୁ ଚାହିଁ ଯେ ବୋଲଇ ଦଇତ ।
ତୋହୋର ନାରାଚ୍ଛେ ପଡ଼ିଲା ମୋର ତାତ ॥
ମୁହିଁ ଯେ ମକରାକ୍ଷସ ପିତା ମୋର ଖର ।
ଆଜରେ ଜଟିଆ ତୋତେ ପେଷିବି
ଯମପୁର ॥
ରଘୁନାଥ ବୋଇଲେ କେ ତୋର ଜାଣଇ
ବାପ ।
କିଂପା ହୋ ଦଇତ ଆଗ କଲୁ ଧାପ ॥
ସାଂଗ୍ରାମ କଲେଣ ବୁଝିବା ବଡ଼ ସାନ ।
ରାକ୍ଷସମାନେ ତୁମ୍ଭେ ସଭିଏଂ
ଅଗିଆନ ॥୧୦
ପିତା ଯେବେ ତୋହୋର ମୋହୋର ହାଥେ
ମଲା ।
ତୋହୋର ବୋଲେକି ହୋଇ ଆନ କଲା ॥
ବାପକୁ ନ ଦେଖି ତୁ ବଣା ହୋଇଅଛୁ ।
ତେଣୁ ସେ ସାଂଗ୍ରାମ ମଣ୍ଡଳେ ମୋତେ ପୁଛୁ ॥
ଯେବଣ ଦିନେ ତୋର ପଡ଼ିଲା ପିଅର ।
ସେହିଦିନୁ ସାଂଗ୍ରାମ ଦେଖିଲୁ ନାହିଁ ତୋର ॥
ଯେବେ ଯେହିକ୍ଷଣି ପଠିଆଇବା ତୋତେ ।
ତୁ ଯେବେ ବଳାରେ ଭେଟିଲୁନି ମୋତେ ॥
ଚଉଦ ସହସ୍ର ବଳ ଦେଖ ତୋର ଯାଇଁ ।
ଯମପୁରେ ଅଛନ୍ତି ବସି ମୃତ୍ୟୁ ପାଇଁ ॥୨୦
ତହିଁ ଯାଇଁଣ ତୁ ଇଷ୍ଟବନ୍ଧୁ ଚିହ୍ନ ।
ମୁଣ୍ଡ ଗଣ୍ଡି ତୋର କରଇ ଭିନ୍ନ ଭିନ୍ନ ॥
ଶୁଣି ଦଶକାଣ୍ଡ ଯେ ପେଷିଲା ଅସୁର ।
ଶ୍ରୀରାମ ଛେଦିଲେ ତା' କିଞ୍ଚିତ ପ୍ରକାର ॥
ଖରର ତନୟେ ଯେ ମାଇଲା ଦଶବାଣ ।
ବାବଲ ବାଣେ ତାହା ନିବାରିଲେ ରଘୁରାଣ ॥
ଅନୁଆନ ଶହସ୍ର ଧରିଣ ରାମ ମାରି ।
ଏକର ପେଷନ୍ତେ ଯେ ଆରେକ ନିବାରି ॥
ଦୁଇ ଚାରି ଦଶବିଂଶ ତିରିଶ ଯେ ଶଏ ।
ଏଣୁ ତେଣିକି ନାରାଚ ଯେ ଆତଯାତ
ହୋଏ ॥୩୦
ଘୋର ସାଂଗ୍ରାମ ଦେଖି ଶ୍ରୀରାମ ବିଚାରି ।
ହେଳ ଯୁଦ୍ଧ କଲେ ଦୈତ୍ୟକୁ ନ ପାରି ॥
ଇନ୍ଦ୍ରଜିତ ପରାଏ ଅଟଇ ଧନୁର୍ଦ୍ଧର ।
ବଜ୍ରଘାତ ଜିଣି ପଡ଼ଇ ଯେହାର ଶର ॥
ଯେତେକ ବୋଲି ରାମ ଧନୁ ସଜ କଲେ ।
ରଣଭୂମି ଗୋଟା ଅନ୍ଧକାର କଲେ ॥
ସହସ୍ରେକ ବାଣ ଯେ ବିନ୍ଧିଲେ ଦାଶରଥି ।
ଦୈତ୍ୟର ଶ୍ୟରୀର କାଟିଲେ ବିକୋଟି ॥
ତୀକ୍ଷ ନାରାଚମାନେ ଦେହେ ବସିଛନ୍ତି ।
ଆନନ୍ଦେ ଅସୁର ରୁଧିର ପିଅନ୍ତି ॥୪୦
ବିକରାଳ ହୋୟେ ଖରର ତନୟେ ।
ଅସ୍ତ୍ର ଖଣ୍ଡିବାକୁ ଦିବ୍ୟଅସ୍ତ୍ର କୟେ ॥
ଅସ୍ତ୍ରଙ୍କର ତେଜ ଦିବସ ଆଲୁଅ ଦିଶଇ ।
ପୁଣି ପୁଣି ଦାନେବ ଅନେକ ଶର ପେଷଇ ॥
ତୀକ୍ଷ ନାରାଚେକ ଯେ ପେଷିଲେ
ଦାଶରଥି ।
ଅସୁର ଧନୁଶର କାଟିଲେ ତଡ଼ତି ॥
କୋପେଣ ଦାନେବ ଶକତି ଘେନି ମାରି ।
ଶ୍ରୀରାମ ଛେଦିଲେ ତାହା ପ୍ରତିଅସ୍ତ୍ର କରି ॥
ଅଧାଚନ୍ଦ୍ର ବାଣ ଯେ ପେଷିଲେ ରଘୁମଣି ।
ମକରାକ୍ଷସକୁ ଦେବ ପକାଇଲେ ହାଣି ॥୫୦
ବେକଠାରୁ ଛିଡ଼ି ଯେ ହୋଇଲା
ବେନିଖଣ୍ଡ ।
ପ୍ରାଣ ଛାଡ଼ି ଭୂମିରେ ପଡ଼ିଲା ପିଣ୍ଡମୁଣ୍ଡ ॥
ମୁକୁଟ କୁଣ୍ଡଳ ସହିତେ ମୁଣ୍ଡଛିଡ଼ି ।
ପ୍ରାଣଯୋନେ ଅସୁର ପାଡିଲା ସିଂହରଡ଼ି ॥
ପଡ଼ିଲେ ରାବଣ ଛଡ଼ ସେନାପତି ।
ପଳାଇଲେ ଅସୁରେ ଯେ କରିଣ ପ୍ରାଣ
ଭାତି ॥
ବିଭୀଷେଣ ଜଣାଇଲା ଶୁଣିମା ରାମରାଉ ।
ଆଜହିଁ ସାଂଗ୍ରାମ ଦେବ ଏତିକିହିଁ ହଉ ॥
କାଲିଦିନକ ଯେବେ ଘଡ଼ିସାତ ।
ଦୁଇବଳ ସଇନି ପଡ଼ିଲେ ଅପ୍ରମିତ ॥
ଚାଲ ବାହୁଡ଼ିଣ ଯିବାକ ଗୋସାଇଁ ।
ଆଜିର ରଣ ମୋର ଦେଖିଲାକ
ନାହିଁ ॥୭୦

କୁମ୍ଭନିକୁମ୍ଭ ରାବଣର ପଡ଼ିଲେ ପୁତୁରା ।
ଖର ତନୟେ ମକରା ମାହାବୀରା ॥
ବଜ୍ରଅଙ୍ଗ ଶୋଣିତାକ୍ଷ କୁଳୁପାକ୍ଷ ମଲା ।
ଅସୁର ବଳ ଆଜ ଅଧେ କ୍ଷୟେ ଗଲା ॥
ଯିବା ବାହୁଡ଼ି ନକର ରାମ ଖେଦ ।
ଯେତେ ବୋଲି ବିଭୀଷେଣ ପଡ଼ଇ ଶ୍ରୀରାମ ପାଦ ॥
ଶ୍ରୀଅଙ୍ଗକୁ ଶ୍ରମ ହୋଇବ ଗୋସାଇଂ ।
କାହାକୁ ଯୁଝିବୁ ଯେଥିଯେ କେହି ନାହିଂ ॥
ଦେଖ ପଳାଇଣ ଗଡ଼େ ପଶୁଛନ୍ତି ।
ଶୁଣିଣ ଶ୍ରୀରାମ ଯେ ପରମ ତୋଷମତି ॥
ଉଠ ଉଠ ବୋଲି ବିଭୀଷେଣକୁ ହିଂ ତୋଳି ।
ଋକ୍ଷ କପିମାନେ ଦିଅନ୍ତି ହୁଳହୁଳି ॥
ବାହୁଡ଼ା ବିଜେ ସ୍ୱାମୀ କଲେକ ରଘୁନାଥ ।
ବିକ୍ରମ ସିଂହ ମୂର୍ତ୍ତି କୋଦଣ୍ଡ କାଣ୍ଡ ହସ୍ତ ॥
ହନୁମନ୍ତ କାନ୍ଧରେ ବସିଲେ ରଘୁସାଇଂ ।
ଲକ୍ଷଣକୁ ଅଙ୍ଗଦ ପିଠିରେ ବସାଇ ॥
ବିଭୀଷେଣ ରାଜା ଯେ ହୋଇଲା ଆଗିଆଣି ।
ପଛେ ଆସୁଛନ୍ତି କପି ନୃପମଣି ॥ ୮୦
ବାମେଣ ଜମ୍ବେବ ଡାହାଣେ ସୁଷେଣ ।
ଆଗଭରି ବାଜଇ ଯେ ଟମକ ନିଶାଣ ॥
ଅଷ୍ଟ ସେନାପତି ମୂଳେ ପଞ୍ଚଶ ଯୂଥପତି ।
ମଲମାହାମଲ ଯେତେକ ଅଛନ୍ତି ॥
ପଟୁଆର ପଡ଼ି ରାମର ସଙ୍ଗେ ଯାନ୍ତି ।
ରଣଜୟେ କରିଣ ସଇନି ବାହୁଡ଼ନ୍ତି ॥
ସବୁଙ୍କରି ଶ୍ୟରୀର ରକତ ରଙ୍ଗମୟେ ।
ବିଭୀଷେଣ ଚାହିଂ ଯେ ବୋଲନ୍ତି ରାମରାୟେ ॥
ଆହେ ଲଙ୍କପତି ଇନ୍ଦ୍ରଜିତର ଶରେ ।
ଅନେକ ରିକ୍ଷକପି ପଡ଼ିଲେ ସମରେ ॥୯୦
ଆଜ ତ ବାପପୋଏ ନୋହିଲେ ବାହାର ।
ଏମନ୍ତେ କେତେ ବଳ ନଇଲେ ତାହାର ॥
ବାବୁ ରାବଣରେ ଅର୍ଜିଲୁ ଏଡ଼େ ଶିରୀ ।
ଆପଣେ ହରାଇଲୁ ହୀନ ବୁଧିକରି ॥
ଯେତେକ ବୋଲି ରାମପଛକୁ ଚାହାନ୍ତି ।

ଲଙ୍କାଗଡ଼ ଭିତରେ ଯେ ଧୂଆଂମାନେ ଯାନ୍ତି ॥
ରାଘେବ ବୋଇଲେ ଶୁଣ ବିଭୀଷେଣ ।
ପୋଡ଼ିବାର ଘରମାନ ଛଡ଼ାଉଛି ରାବଣ ॥
ମେଘନାଦ ସହିତେଣ ତେଣେ ନାଗିଛନ୍ତି ।
ଆମ୍ଭଙ୍କୁ ଭଏ ନାହିଂ ଛଡ଼ାଇ ପଶନ୍ତି ॥୧୦୦
ଏବେ ସେ ଶୁଣିମନା ପୁତୁରାଙ୍କ ମଲା ।
ବଜ୍ରଅଙ୍ଗ ଶୋଣିତାକ୍ଷ କୁଳୁପାକ୍ଷ କ୍ଷୟେଗଲା ॥
ସଇନି ପଡ଼ିବାର ଶୁଣିମ ବାରତା ।
କିସ କିସ କଥା ଭାଳିବେ ପୁତ୍ରପିତା ॥
ବିଭୀଷେଣ ବୋଇଲା ହୋଇବ ଆଉ କିସ ।
ଜାଣୁ ଜାଣୁ ସଂହାଥେ ଖାଇଲାକ ବିଷ ॥
ଯେବେ ଭାଳିଲେଣ ବୁଧିଅଛି କାହିଂ ।
ବିଭୀଷେଣର ବଚନେ ବୋଲନ୍ତି ରଘୁସାଇଂ ॥
ଅଛି ବୁଧି ଯେକ ଯଦି ସମର୍ପଇ ସୀତା ।
ସୁଖେ ଭୋଗ କରଇ ଲଙ୍କା ଦଶମଥା ॥୧୦
ନୋହିଲେ ପ୍ରାଣ ତାର କେବେହେଂ ନ ପାଙ୍ଗ ।
ଜାନେକୀର କୋପ ଅଗ୍ନି ପୁର ତାର ଦହଇ ॥
ହୋଇ ଦେବ ବୋଲି ବୋଲଇ ବିଭୀଷେଣ ।
ଯେଥୁ ଅନନ୍ତରେ ଶ୍ରୀରାମ ଲକ୍ଷଣ ॥
ସୁବଳୟା ଗିରିରେ ଯେ ହୋଇଲେ ପରବେଶ ।
ହନୁମନ୍ତ କାନ୍ଧରୁ ଯେ ଓହ୍ଲାନ୍ତି ରଘୁଶିଷ ॥
ଅଙ୍ଗଦ ପିଠିରୁ ଓହ୍ଲାଇ ଲକ୍ଷଣ ।
ନମସ୍କାର କରି କଲାକ ପ୍ରଦକ୍ଷିଣ ॥
ଧନୁ ଶହସ୍ର ଧରି ନୀଳର ହାଥେ ଦେଲେ ।
ଦ୍ରୋଣ ଦୁଇବିଡ଼ା ବିଭୀଷେଣ ଘେନିଲେ ॥୨୦
ଅମଳାଣ ବସ୍ତ୍ର ଲକ୍ଷଣ ଧନୁଶର ।
ସବୁ ସମ୍ଭାଳି ଯେ ତାରାର ପିଅର ॥
ଅଷ୍ଟ ସେନାଯୂଥପତି ସଇନି ସହିତେ ।
ଦେବନଦୀରେ ସ୍ନାହାନ କଲେକ ବେନିଭ୍ରାଥେ ॥
ନିତ୍ୟକର୍ମ ସାରି ସନ୍ଧ୍ୟା ସୁମରିଲେ ।

ଦେବ ପିତୃଗଣକୁ ଜଳଦାନ ଦେଲେ ॥
ଯେସନେକ ସମୟେ ଯେ ଅଶୀକୋଟି ରକ୍ଷ ।
ଦ୍ରଶନ କଲେ ଆସି ଘେନିଣ ତାରାକ୍ଷ ॥
ସୁଗ୍ରୀବର ଜଣାଇଲା ଯୋଡ଼ି ବେନି କର ।
ଆଜ ଏତେ ବଳ ଅଇଲେ ରଘୁବୀର ॥୩୦
ଶ୍ରୀରାମ ପଚାରନ୍ତି ଭାଲୁଙ୍କନ୍ତ ଚାହିଂ ।
କିସ କିସ ବାରତା ଶୁଭଇ ତେଣେ ଯାଇଂ ॥
କୁମ୍ଭକାଏ ବୋଇଲେ ଦେବ ନ ଜାଣୁ ଆମ୍ଭେ କିଛି ।
ଯାଆନ୍ତା କେହି ନାହିଂ ଆସନ୍ତା ଆସୁ ଅଛନ୍ତି ॥
ପରିଦିନ ଏକା ରଡ଼ିଏ ଶୁଭିଲା ।
ଥଏ ନ ଜାଣିଲୁ କେହି ନ କହିଲା ॥
ହସି ରଘୁନାଥ ଜମ୍ବେବକୁ କହି ।
କୁମ୍ଭକର୍ଣ୍ଣର ଗର୍ଜନ ଶୁଣିଲେଟି ଯେହି ॥
ବାବୁ ରାକ୍ଷସରେ ମରିବାର ତୋର ଧନି ।
ସ୍ୱର୍ଗ ମଞ୍ଚ ପାତାଳପୁର ତିନି ॥ ୪୦
ଶ୍ରୀରାମ ବୋଇଲେ ହୋ ଶୁଣିଲ ତାର ରଡ଼ି ।
ତାହାକୁ ମାଇଲୁ ଆମ୍ଭେ ସଂଗ୍ରାମେ ଅଛି ପଡ଼ି ॥
ରାବଣର ଭାଇ ସେ ନାମ କୁମ୍ଭକର୍ଣ୍ଣ ।
ତେତେ ଦୂରକୁ ଶୁଭିଲା ତାହାର ଗରଜନ ॥
ଶୁଣି ଜିଭ କାମୋଡ଼ିଲେ ଅଇଲା ରକ୍ଷମାନେ ।
ଦୁଇହାଥେ ଭୂଇଂ ଛୁଇଂ ଲଗାଇଲେ କାନେ ॥
ରଘୁନାଥ ବୋଇଲେ ଶୁଣସି ହୋ ନୀଳ ।
ଆଗିଆଣି ଥାଠେ ରଖ ଯେହୁ ବଳ ॥
ଯୁଝିଲାର ମାନେ କନ୍ଦମୂଳ ଖାନ୍ତୁ ।
ଏମାନେ ଯେହିକ୍ଷଣି ଆଗିଆଣି ହୋଅନ୍ତୁ ॥୫୦
ଆଜ୍ଞାପ୍ରମାଣେ ଯେ ଗଲେ ଋକ୍ଷ କପିବଳ ।
ପାଞ୍ଚଜଣେ ଠଣା ଦେଲା ଦେଇ ନୀଳ ॥
କୁମ୍ଭକର୍ଣ୍ଣର ଦେହ ତାକୁ ଦେଖାଇଲେ ।
ଶ୍ରୀରାମ ମାଇଲେଟି ବୋଲିଣ କହିଲେ ॥
ଦେଖି ରକ୍ଷବଳ ଯେ ହୋଇଲେ ଭକ୍ଷତ ।
ରଘୁନାଥଙ୍କୁ ଦେଖି ପ୍ରଶଂସା କରନ୍ତି ବହୁତ ॥

ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ସ୍ନାହାନ ସନ୍ଧ୍ୟାସାରି ନବରକୁ ଯାଏ ॥
ଫଳମୂଳ ଭୋଜନ କଲେଙ୍କ ଦାଶରଥି ।
ଲକ୍ଷଣ ସୁଗ୍ରୀବର ଜମ୍ବେବ ପ୍ରଭୃତି ॥୬୦
ଅଷ୍ଟସେନା ସହିତେ ଋକ୍ଷକପିବଳ ।
ଯେ ଯିସ ସୁହାଇଲା ଭୁଂଜିଲେ ସେ ଫଳ ॥
ଆଞ୍ଚୋବନ ସାରି ଯେ ଶ୍ରୀରାମ ଗୋସାଇଂ ।
ଗୁଆଫଳ କୋଳି କଷାଅର୍ଥେ ଖାଇ ॥
ଶ୍ରମେଣ ନିଦ୍ରା ଯେ ଅଶକତ ଦେହ ।
ଶେଯ୍ୟାପାରି ଦେଲା ସୁମିତ୍ରାର ପୁଅ ॥
ମୃଗଛାଲେଣ ଯେ ଅମଳାଣ ଶାଢ଼ୀ ।
ତହିଂରେ ରଘୁନାଥ କ୍ଷଣେକ ପହୁଡ଼ି ॥
ହନୁମନ୍ତ ପାଦ କରଇ ମଞ୍ଚାଳନ ।
ଲକ୍ଷଣର ଜାନୁରେ ଦେଲେକ ସୀମସ୍ଥାନ ॥୭୦
ସେନା ସେନାପତି ଯେ ପାରଶେଣ ଥିଲେ ।
ଗତ ଯୁଦ୍ଧ କଥା ବିଚାରି କହିଲେ ॥
ନାନାକଥାମାନ ଯେ କୁହାକୋହି ହୁଅନ୍ତି ।
ସଦାଶିବ କହନ୍ତି ଶୁଣ ଗୋ ହେବବନ୍ତୀ ॥
ଯେଥୁ ଅନନ୍ତରେ ଯେ ରାବଣ ଅଗ୍ରତେ ।
ଚାର ଜଣାଇଲା ଯୋଡ଼ିଣ ବେନି ହସ୍ତେ ॥
ଶୁଣ ଦେବ ଦଶଗ୍ରୀବ ପ୍ରତାପୀ ଲଙ୍କେଶ୍ବର ।
ରାମ ଲକ୍ଷଣ ବେନି ଯେ ଦଶରଥ କୁମର ॥
ବିଷମ ଯୁଦ୍ଧ ଆସି କଲାକ ଜଟାଧାରୀ ।
କୁମ୍ଭକର୍ଣ୍ଣ ବେନିପୁତ୍ର ଗଲା ସେହୁମାରି ॥୮୦
ବଜ୍ରଅଙ୍ଗ ମକରାକ୍ଷସ ସେହୁ ଯେ ପଡ଼ିଲେ ।
ଶୋଣିତାକ୍ଷ ବ୍ରୁପାକ୍ଷ ବେନିବୀର ମଲେ ॥
ହସ୍ତୀ ଘୋଡ଼ାରଥୀ ପାଦାନ୍ତି ଲେଖା ନାହିଁ ।
ଅନେକ କୋବନ୍ଧ ଯେ ମଡ଼ା ନାଚିଲା ରଣଭୂଇଁ ॥
ଶୁଣିଣ ରାବଣେଶ୍ବର ଯେ ବିକଳ ହୋଇଲା ।
ପୁତୁରାଙ୍କୁ ସୁମରି ଅନେକ ଶୋକ କଲା ॥
ବୋଇଲା ବାବୁରେ କୁମ୍ଭନିକୁମ୍ଭ ବେନି ।
ବାପ ଦୁମ୍ଭରରେ ସାଙ୍ଗେ ଗଲାକି ଘେନି ॥
ଦେବେଣ ଅଗୋଚରେ ମନିଷେ କେହ୍ନେ ମାରି ।
କିସେ ବାଘଭେଲିକି ଜାଣଇଂ ଜଟାଧାରୀ ॥୯୦
ମୁଖ ଦେଖିଲେ ତାହାକୁ ନ ପାରି ଶସ୍ତ୍ର ଘେନି ।
ନିଷ୍ଟେ ଯତି ଜିଣି ପାରଇ ପୁର ତିନି ॥
ଯେବେ କିସ ବୁଧି କରିବଇ ମୁଇଂ ।
ବିକଳ ହୋଇଲା ରାଜା ଇନ୍ଦ୍ରଜିତକୁ ଚାହିଁ ॥
ଭୋପୁତ୍ର ଦେଖିଲୁଟିକି ଯତିର ସାହାସ ।
ବ୍ରହ୍ମଶସ୍ତ୍ର କଲେ ନୋହିଲେ ହାଦେ ନାଶ ॥
ତୋହୋର ପରାୟେ କ୍ଷେତ୍ରୀରେ ଅନେକ ଯୁଦ୍ଧ କଲୁ ।
କହୁଣିସି ପ୍ରକାରେ ମାରି ତ ନପାରିଲୁ ॥
ସ୍ବର୍ଗରେ ପଶି ବାବୁ ଜିଣିଲୁ ବଜ୍ରଧର ।
ବୁଧି ହରାଇଲୁ ବାବୁ ମନୁଷ୍ୟହାଥର ॥୧୦୦
ଋକ୍ଷକପି ମୋତେ ଦୁଃଖ ଦେଉଛନ୍ତି ।
ମାନେବ ଦୁଇଜଣ ମୋର ସଂଗୋତ୍ର ମାରନ୍ତି ॥
ଦେଖିବା ଛାଡ଼ି ଏହା ଶୁଣିମାକୁ ଲାଜ ।
ବ୍ରହ୍ମାଣ୍ଡେ ବୋଲନ୍ତି ମୋତେ ଦେବାଧିଦେବ ରାଜ ॥
ମନୁଷ୍ୟମାତ୍ରକ ମୋତେ ଏତେ ଦୁଃଖ ଦେଲେ ।
ଯାହାର ମୁଖ ଦେଖିଣ ଦେବ ଭଏ କଲେ ॥
କପି ନ ମରନ୍ତି ଆମ୍ଭର ମାଇଲେ ।
ପୁଣି ପ୍ରାଣ ପାଆନ୍ତି ଆମ୍ଭର ଅଇଲେ ॥
ହେଳ ଯୁଦ୍ଧ କଲେ ନ ମରଇ ବଇରୀ ।
ଶତୃକୁ ସାନରେ ବୋଲିତ ନ ପାରି ॥୧୦
ଅଗ୍ନି ବ୍ରାହ୍ମଣ ସମେସ୍ତ ଗୁପତରୁ ଜାତ ।
ସାନ ନ ବୋଲିବୁରେ ତନୁଜ ଏକାନ୍ତ ॥
ଦୟା ନ କରିଣ କରିବୁଟି ସମର ।
ଦାରୁଣ ସମରଟି ରାମ ଲକ୍ଷଣର ॥
ସୁଗ୍ରୀ ହନୁମନ୍ତ ନୁହନ୍ତିଟି ସାନ ।
ଖୁଡୁତା ବିଭୀଷେଣ ଆବର ବାଳୀନାନ ॥
ଜମ୍ବେବ ସୁଷେଣ ନୋହନ୍ତିଟି ଓଛ ।
ଏହାକୁ ଦେଖିବୁଟି ଶ୍ରୀରାମ ସମକଛ ॥
ନଳନୀଳ ଗନ୍ଧମାର୍ଦ୍ଦନ ସେନାପତି ।
ଏମାନେ ଦ୍ୟୁତୀଅଗ୍ନି ଜାଣି ତେଜ କାନ୍ତି ॥୨୦
ପଞ୍ଚଶ ଯୂଥପତି ଆବର ଅଷ୍ଟ ସେହ୍ନା ।
ଇନ୍ଦ୍ରଦେବତାକୁ ନ କରନ୍ତି ଗଣନା ॥
ଋକ୍ଷକପିବଳ ଯେକ ଯେକ ଯୋଧି ।
ଜାଣନ୍ତି ସାଂଗ୍ରାମର ବିଷମ ଭେଦବୁଧି ॥
ଯେହାଙ୍କ ସାଙ୍ଗେ ଯେ ବିଚାରି ଯୁଦ୍ଧକରି ।
ଶତୃକୁ ମାଇଲେ ଯେ ମଣୋହି ମୋହୋରି ॥
ନୋହିଲେଣ ଆଜୁ ଛାଡ଼ିଲଇଂ ଅନ୍ନ ।
ସୋଦର ଭାଇ ମୋର ପଡ଼ିଲା କୁମ୍ଭକର୍ଣ୍ଣ ॥
ପୋଏ ପୁତୁରା ଯେ ପୀରତି ଲୋକ ମଲେ ।
ରଥଗଜ ପାଦାନ୍ତି ଅନେକ କ୍ଷଏଗଲେ ॥୩୦
ଏ ଦୁଃଖ ପାଶୋରଇ ତୋହୋର ମନ କଲେ ।
ସବିହେଂ ଜୀଅନ୍ତି ଯେକା ହନୁମନ୍ତ ଥିଲେ ॥
ଆଜହିଂ ଚାର ମୋତେ କହିଲେ ବାରତ ।
ହେମବନ୍ତକୁ ଗଲା ପବନର ସୁତ ॥
ମଉଷୋଧି ଆଣି ରାମ ଲକ୍ଷଣକୁ ଜୀଆଂଇଲା ।
ଜମ୍ବେବ ମନ୍ତ୍ରୀ ତାହା ଉପାଏ କଲା ॥
ଶୁଣିଣ ଇନ୍ଦ୍ରଜିତ ଯେ କମ୍ପଇଂ ଥରହର ।
କରଯୋଡ଼ି କହଇ ଯେ ପିତାର ଆଗର ॥
ଶୁଣ ଦେବ ଠାକୁର ଲଙ୍କାର ଆଧିପତି ।
ଅବିଛନ୍ନେ ଶତୃକୁ କିଂପା କରୁ ଭୀତି ॥୪୦
ଶ୍ରୀରାମର ଆନେ ପ୍ରାଣ କାହିଂ ଅଛି ।
ବିରହ ଜରେ ସେ ହୋଇଅଛି ଦୁଃଖୀ ॥
ଗତ ଆତ୍ମା ପରାଏ ହୋଇଲାହିଂ ତାର ବଳ ।
ଯେବେ ଯୁଦ୍ଧ କରଇ ପ୍ରାଣର ବିକଳ ॥
ଲାଜେ ସେ ଧନୁଧରି ସାଂଗ୍ରାମରେ ପଶି ।
ଧାତୃକ୍ଷଏ ହୋଇଲାନି ଭାରିଯା ଉପେକ୍ଷି ॥
ଶ୍ରୀରାମ ଚିନ୍ତାରେ ଲକ୍ଷଣ ପ୍ରାଣ ଦୁଃଖୀ ।
ବୋଇଲା ଏଡ଼େ ଦେହ ଯାଉଅଛି ଶୁଖି ॥
ଭାରିଯାକୁ ନ ଦେଖି ହରାଇବ ପ୍ରାଣ ।
ଯେତେ ବୋଲି ଭାଳଇ ସୁମିତ୍ରାନନ୍ଦନ ॥୫୦
ଭାଳି ଲକ୍ଷଣ ହୋଇଲା ପ୍ରାଣ ହାରି ।
ଦୁଇଭାଇ ଧନୁ ନ ପାରନ୍ତି ଧରି ॥
ଲୋକ ଲାଜକୁ ସେ ସାଂଗ୍ରାମେ ପଶନ୍ତି ।

ତାହାଙ୍କର ନଇଲେ କପି ନୁଆସନ୍ତି ॥
ତେଣୁ ସେ ଉଭାହୋଇ ସାଂଗ୍ରାମେ ଥାନ୍ତି ।
ତାହାଙ୍କର ଯୁଦ୍ଧ ଆପଣେ ଅଛି ମୁହିଂ କଷି ॥
ସୁଗ୍ରୀବର ବୋଲି ତାତ ବୋଲୁଅଛୁ ଯାହା ।
ମୁହିଂକି ସାଂଗ୍ରାମେ ଗଣଇ ଯେ ତାହା ॥
ବାଳୀର ନନ୍ଦନ ଯେ ଅଟଇ ଅଙ୍ଗଦ ।
ଖୁଡୁତା ପୁତୁରାଙ୍କର ଉକୁଟିଅଛି ବାଦ ॥୬୦
ସୁଗ୍ରୀବର ବୋଲଇ ମୁଂ ବାଳୀକି ମରାଇଲି ।
ତାହାର ଭାରିଯା ଯେ ଧନ ଭୋଗ୍ୟକଲି ॥
ଅଙ୍ଗଦ କୁମାରନିକି ସଂହାରଇ ମୋତେ ।
ପିତାର ଶତ୍ରୁ ମୁଂ ତାର ଅଟଇ ଯୁଗତେ ॥
ରାତ୍ର ଦିବସେ ସେ ବିଚାରଇ ଏହା ।
ତେଣୁ ବଳଭଗା ହୋଇଲା କପିନାହା ॥
ଶ୍ରୀରାମ ଡରେ ସେ ସାଂଗ୍ରାମେ ପଶିଥାଇ ।
ଧରିଆଣିଲା ତୋର କୁମ୍ଭକର୍ଣ୍ଣ ଭାଇ ॥
ଧରୁ ଧରୁ ସେ ଫିଟି ପଳାଇଣ ଗଲା ।
ତାହାର ସାଙ୍ଗେ ଯୁଦ୍ଧ ଅଛଇନିକି କଲା ॥୭୦
ଅଙ୍ଗଦ ବିଚାର କରଇ ଦିବାନିଶି ।
ନ ପୁଣି ସୁଗ୍ରୀବର ପକାଇ ମୋତେ ନାଶି ॥
ପିତାକୁ ମରାଇଲା ହିଂସାଗୁଣ ଧରି ।
ବାଳୀ ପୁତ୍ର ବୋଲି ପୁଣ ମୋତେ ମାରି ॥
ଏତେ ବୋଲି ଭାଳଇ ତାରାର ତନୟେ ।
ହାଡ଼ ଥାଉଂ ତାର ମାଏସଂ ମିଳାୟେ ॥
ପ୍ରାଣର ବିକଳେ ସାଂଗ୍ରାମରେ ଥାଇଂ ।
ମୋତେ ଦେଖିଲେ ସେ ଦୂରହୁଂ ପଳାଇ ॥
ବିଭୀଷଣେକୁ ସମରେ ମୁଂ ନଗଣଇ ତାତ ।
ପୂର୍ବେ ବଳ ତାର ଥିଲାକ ବହୁତ ॥୮୦
ଯେବେ ନିସତ ହୋଇଲା ତୋର ଭାଇ ।
ସର୍ବଦା ଶ୍ୟରୀରେ କି ବଳ ଦର୍ପ ଥାଇ ॥
ଶତ୍ରୁରେ ଶରଣ ପଶିଲା ଯେବଣ ଦିନ ।
ଯଶଶ୍ରୀ ଆୟୁଷ ହୋଇଲା ତାର ଖିନ ॥
ବୁଦ୍ଧିବଳ ନାଶିଲା କୁଳଶୀଳପଣେ ।
ମୋହୋର ଛାମୁରେ ମିଳିବ କି ରଣେ ॥
ଏକା ହନୁମନ୍ତକୁ ମାଇଲେ ଯୁଦ୍ଧ ସରି ।
ଅକ୍ଷୟେ କୁମାରକୁ ପକାଇଲା ମାରି ॥
ଏ ଲଙ୍କପାଟଣା ସେ ପୋଡ଼ିକରି ଗଲା ।
ବିଚିତ୍ରପୁରମାନ ଅଗ୍ନିରେ ଦହିଲା ॥ ୯୦
ଆଜ ପୋଡ଼ିବାର ତାହାର ସେ ବୁଦ୍ଧି ।
ହନୁମନ୍ତ ମୂଳ ତରୁ ଆଉମାନେ ଓଷଧି ॥
ତାହାକୁ ମାରଇ ଯେବେ ଯେ ମୋହୋର ସତ୍ୟ ।
ପୁଣି ପୁଣି ପ୍ରତଜ୍ଞା କରଇ ଇନ୍ଦ୍ରଜିତ ॥
ଆଜି ସଂହାରିବି ରକ୍ଷକପିବଳ ।
ରଖି ନ ପାରନ୍ତି ଦଶଦିଗପାଳ ॥
ଶ୍ରୀରାମ ଲକ୍ଷଣ ଅଙ୍ଗଦ ସୁଗ୍ରୀବର ।
ଏହାଙ୍କର ରୋଧିର ଖାଇବ ମୋର ଶର ॥
ଶୁଣି ଲଙ୍କପତି ଉଠିଣ କୋଳ କଲା ।
ଦିବ୍ୟବସ୍ତ୍ରମାନ ଅଳଙ୍କାର ଦେଲା ॥୧୦୦
ଯାଅବାବୁ ବେଗେ ଜୟେକରି ଆସ ।
ତୋହୋର ଅଇଲେ ହୋଇବି ଅବକାଶ ॥
ଶୁଣି ଇନ୍ଦ୍ରଜିତ ମଥାରେ ହାଥ ଦେଲା ।
ମାରିବି କପିବଳ ବୋଲିଣ ବୋଇଲା ॥
ସିଂହଦ୍ୱାରେ ଆସି ଚଢ଼ିଲାକ ରଥ ।
ସେନା ସେନାପତି ଯେ ଅଛନ୍ତି ସମସ୍ତ ॥
ରଥଗଜ ପାଦାନ୍ତି ଗଣିତ ନ ପାରି ।
ବୀରତୂର ନାଦେ କମ୍ପଇଂ ବସୁନ୍ଧରୀ ॥
ଉଦଣ୍ଡ ଆଳୟ ବିଳୟ ପନ୍ତି ପନ୍ତି ।
ପଶ୍ଚିମ ଦ୍ୱାରେ ବଳ ବାହାର ହୋଇଯାନ୍ତି ॥୧୦
ସୁବଳୟାଗିରିରେ ଯେ ଅଛନ୍ତି ରଘୁନାଥ ।
ପଟୋଆରି ଅଛନ୍ତି ଯୋଧାୟେ ସମସ୍ତ ॥
ଥାଠ ଦିଶିଲାର କହିଲେକ ଯାଇଂ ।
ଅସୁରେ ସାଂଗ୍ରାମକୁ ଅଇଲେ ଗୋସାଇଂ ॥
ସେନାସେନାପତି ଆସୁଛନ୍ତି କେହୁ ।
ଏତେ ବେଳ ଯାଏ ନ ଦିଶଇ ସେହୁ ॥
ଶୁଣିଣ ରଘୁନାଥ ସୁଗ୍ରୀକି ଆଜ୍ଞାଦେଲେ ।
ଆମ୍ଭର ସଇନି ଓହ୍ଲାଅ ବୋଲିଣ ବୋଇଲେ ॥
ଆଗିଆଣି ଦଣ୍ଡେ ହୋ କର ମରାମରି ।
ପଛେଣ ଆମ୍ଭେ ଯେ ଯିବା ବୁଝିକରି ॥୨୦
ଶ୍ରୀରାମ ଆଜ୍ଞାରେ ସୁଗ୍ରୀବର ରାଏ ।
ନାମଧରି ଯୁଦ୍ଧକୁ ସଇନି ବଟିଆଏ ॥
ଶୁଣିଣ ଧାଇଂଲେ ଯେ ରକ୍ଷକପିବଳ ।
ସବୁଙ୍କରି ହସ୍ତରେ ଅଛି ତରୁଶିଳ ॥
ଏକକୁ ଆରେକ ଯାଆନ୍ତି ଆଗେ ଖେପି ।
ଅସୁରଙ୍କ ସାଙ୍ଗେ ଭେଟିଲେ ଯାଇଂ କପି ॥
ରଣ ଝଣ ଧନ୍ଦୋଳ ବାଜିଲା ରଣଗୋଳ ।
ପରିଘାଇ ଯୁଦ୍ଧ ହୋଇଲା ଅପାର ॥
ବୃକ୍ଷେ ପିଟାପିଟି ଶିଳେ ମରାମରି ।
ଜଡ଼ବନ୍ଧ ହାନ୍ଦୋଳ ମୁଣ୍ଡେ କୋଡ଼ାକୋଡ଼ି ॥୩୦
ଖଡ଼ଗେ ହାଣନ୍ତେ ଧରନ୍ତି କପି ଯାଇଂ ।
ଶକତି ପରିଘକୁ ଅଛନ୍ତି ପିଠିଦେଇ ॥
କାଣ୍ଡ ପଡ଼ିଲେ ରଣେ ନ କରନ୍ତି ଶଙ୍କା ।
ଦୁଇବଳ ଅଟନ୍ତି ରଣଗୋଳ ରଙ୍କା ॥
ସିଂହରଡ଼ି ଛାଡ଼ନ୍ତି ସାଂଗ୍ରାମେ ସୁଖ ପାଇ ।
ଛଣେ ହେ ନିସତ ହୋଅନ୍ତି କେହି ନାହିଂ ॥
ଘଡ଼ିଏ ପରିଯନ୍ତେ ବାଜିଲା ସମର ।
ସବୁଙ୍କରି ଦେହ ରକତେ ଜରଜର ॥
ଶ୍ରୀରାମଙ୍କର ସୈନ୍ୟ ବିକରାଳ ମୂର୍ତ୍ତି ।
ରାବଣର ସଇନ ଯେ ପଳାଇଲେ ବିକୋଡି ॥୪୦
ଭାଜିଲେ ଅସୁରେ ଦେଲେ ପଛଘୁଞ୍ଚା ।
କୁଆ ଡରେ ଯେହ୍ନେ ଦିବସେ ଲୁଚେ ପେଚା ॥
ବେଳୁ ବେଳ ନିସତ ହୋଇଲେ ଦନୁଜ ।
ସହି ନ ପାରିଲେ କପିଙ୍କର ତେଜ ॥
ରାବଣ ଥାଠ ଯେ ବାହୁଡ଼ି ପଳାଇଲେ ।
ପଶ୍ଚିମ ଦ୍ୱାର ବାଟେ ଗଡ଼ରେ ପଶିଲେ ॥
ଲଙ୍କାରେ ପଶନ୍ତେ ଦେଖିଲା ଇନ୍ଦ୍ରଜିତ ।
ଦୃଢ଼ୁଂ ସମାର୍ଜନା ଯେ କରଇ ନିଜ ହସ୍ତ ॥
କିଂପା ପଳାଅରେ କିସ ଭଏ ପାଇ ।
ଅସୁରେ ବୋଇଲେ କପି ଅଛନ୍ତି ଗୋଡ଼ାଇ ॥୫୦
ଗଡ଼ଦ୍ୱାର ପରିଯନ୍ତେ ଡାକ ପାଉଛନ୍ତି ।
ଆଜିର ଯୁଦ୍ଧ ଦେବ ରିଝାଇ ଯୁଝନ୍ତି ॥
ଶୁଣି ଇନ୍ଦ୍ରଜିତ ନିଶରେ ହାଥ ଭରି ।
ଆଜ ପକାଇବି ରକ୍ଷକପି ମାରି ॥
ମୋହୋର ପଛକତି ଥାଇଂଣ ଯୁଦ୍ଧ ଦେଖ ।

ବାଇକି ବାତୁଳରେ ସମର ଉପେଖ ॥
ଏହିମତେ ଶତ୍ରୁ ଦେଖିଲା ନିଉନ ।
ନିସତ ହୋଇଲରେ ଲଙ୍କାର ସର୍ବଜନ ॥
ରକ୍ଷପ୍ରକଟଙ୍କୁ ପଲାଇ ଆସୁଅଛ ।
ମୁହିଂ ଆପଣେ ଦେଖୁଛଇ ପ୍ରତକ୍ଷ ॥୬୦
ଯେତେକ ବୋଲି ବୀର ରଥ ଧୁଆଂଇଲା ।
କୃତାନ୍ତେକ ଦେବତାକି କୋପେଣ ଅଇଲା ॥
ଦ୍ୱାରୁଂ ବାହାର ଯେ ହୋଇଲା ବିକରାଳ ।
ଅସୁରକୁ ଗୋଡ଼ାଇ ମାରନ୍ତି ରକ୍ଷକପିବଳ ॥
ଯହୁଂ ମେଘନାଦର ଦିଶିଲାକ ରଥ ।
ଧାଇଂ ରକ୍ଷକପି ମାଇଲେ ପରବତ ॥
ବିଚିତ୍ର ନାରାଙ୍କେ ଛେଦଇ ଇନ୍ଦ୍ରର ଅରି ।
ଦୁଇବଳ ସେନା ହୋଇଲେ ମରାମରି ॥
ଇନ୍ଦ୍ରଜିତକୁ ପିଠିପାଇଣ ଦଇତ ।
ଅନେକ ବାନର ମାଇଲେ ଶସ୍ତ୍ରଘାତ ॥୭୦
ଅଭିମାନ ଘେନି ବହୁତ ଯୁଦ୍ଧ କଲେ ।
ରଣେ ମରିବାକୁ ନିସତ ନୋହିଲେ ॥
କଠୋର ମାରେଣି ମାରନ୍ତି ପରିଘାଇ ।
ଦୁଇବଳ ଲୋକଙ୍କର ଓପ୍ରୋଧ କିଛିନାହିଂ ॥
ବେଳୁଂ ବେଳ ସମର ହୋଇଲା ଅମରିଷ ।
ରାକ୍ଷସଙ୍କ ମାରେଣିକି ଭାଜିଲେ ତରୁଶିଷ ॥
ପଳାଇ ମନକଲେ ଶ୍ରୀରାମର ସୈନ୍ୟ ।
ସୁବଳୟାରେ ଥାଇ ଦେଖନ୍ତି ରଘୁନାନ ॥
ଦିଗ ଦହନ ଚିରାଳ ଦିଶିଲା ହୋ ଯେବେ ।
ଆପଣେ ଇନ୍ଦ୍ରଜିତ ବାହିଲାନି
ଯେବେ ॥୮୦
ତାହାର ଛାମୁକୁ କି ଭାର୍ଜନ ରକ୍ଷହରି ।
ଏହିକ୍ଷଣି ବଳ ଯେ ପକାଇବ ମାରି ॥
ରକ୍ଷପତିମାନେ ତୁମ୍ଭେ ଯେହିକ୍ଷଣି ଯାଅ ।
ଗାଢ଼ ଯୁଦ୍ଧ ହୋଇଲେ କହି ବଟିଆଅ ॥
ଆଜ୍ଞା ପାଇଂଣ ଯେ ଧାଇଂଲେ ଅଷ୍ଟସେହ୍ନା ।
ବୀର ମହାବୀର କେ କରିବ ଗଣନା ॥
ଗନ୍ଧମାର୍ଦ୍ଦନ ଗବୟେ ଗବାକ୍ଷ ।
ନୀଳ ସହିତେଣ ଘେନିଲେ ତିନିଗଛ ॥
ଇନ୍ଦ୍ରଜିତକଇଂ ଓଗାଳିଲେ ଯାଇଂ ।
ପିଟିଲେ ତିନିଗଛ କୋପଭର ହୋଇ ॥୯୦

ଦେଖିଣ ମେଘନାଦ ଛେଦିଲା ତୀକ୍ଷଶରେ ।
ଷାଠିଏକ ବାଣ ମାଇଲା କୋପଭରେ ॥
ତିନିଙ୍କରି ଦେହରେ ତିନି କୋଟି କାଣ୍ଡ ।
ପଡ଼ିଣ ରୋଧିର ଗଳଇ ପ୍ରଚଣ୍ଡ ॥
କୋପେ ଇନ୍ଦ୍ରଜିତ ଘୋର ଯୁଦ୍ଧ କରି ।
ଅଶୀକୋଟି ପ୍ରକଟ ନିମିଷେକ ମାରି ॥
ଏମନ୍ତେ ଘଡ଼ିଏ ସାଂଗ୍ରାମେ ଯୁଦ୍ଧ କଲା ।
କ୍ଷଣକେ ପାଞ୍ଚକାଣ୍ଡ ଧରିଣ ବିନ୍ଧିଲା ॥
ଶ୍ରୀରାମର ଥାଠ ପକାଇଲା ଦଳି ।
କେହୁ ମଲା କେହୁ ପଡ଼ିଲେ
ଲୋଟଗାଳି ॥୧୦୦
କେ ମରିଅଛି କେ ଘାଆ ହୋଇ ପଳାଏ ।
କେବଣ ରକ୍ଷ କପି ପଛକୁ ନ ଚାହେଂ ॥
କେ ବୋଲଇ ମଲି କେ ବୋଲଇ ଡକା ।
କେ ବୋଲଇ ସଇନି ନାଶୁଅଛି ଏକା ॥
କେ ବୋଲଇ ବାବୁ କେ ବୋଲଇ ଆଈ ।
କେ ବୋଲଇ କାଣ୍ଡ ଘାଏ ଜଳୁଅଛି ଦେହୀ ॥
ଚାରିକତି ସଇନି ପଳାନ୍ତି ଛିନଛତ୍ରେ ।
ଦେଖିଣ ଧାଇଂଲେ ଦଶରଥଙ୍କର ବେନି
ପୁତ୍ରେ ॥
ରହ ରହ ବୋଲନ୍ତେ ପଳାନ୍ତି
ଯେଣେତେଣେ ।
ଶ୍ରୀରାମ ଲକ୍ଷଣ ଆସି ପଶିଲେକ ରଣେ ॥୧୦
ଦୂରୁ ଦେଖିଲେକ ଦିଶଇ ଇନ୍ଦ୍ରଜିତ ।
ଗଗନ ମେଘ ଯେହ୍ନେ ଚଳଇ ତୁରିତ ॥
ତେସନେକ ସଂଯାତ ଦିଶଇ ଇନ୍ଦ୍ରର
ଅରି ।
ରକ୍ଷ କପି ବଳ ଯେ ଆସୁଅଛି ମାରି ॥
ଲକ୍ଷଣ ବୋଇଲା ତୁ ଶୁଣ ଦାଶରଥି ।
ଆନ ମତେଣ ଯେ ପ୍ରତିକାର ନାହିଂ ଯେଥି ॥
ବ୍ରହ୍ମ ସହସ୍ର ଯେ ମାରିବି ରଘୁବୀର ।
ଦିଅସି ଆଜ୍ଞା ମୋତେ କଉଶୁଲା ବାଳ ॥
ଶ୍ରୀରାମ ବୋଇଲେ ଯେ ନୁହଇ ଉଚିତ ।
କେମନ୍ତେ ମରିବ ଯେ ବୀର
ଇନ୍ଦ୍ରଜିତ ॥୨୦
ସେ ବୁଧି ଏବେ ସିନା କରିବୁରେ ବାବୁ ।

ମେଘନାଦ ମଲେ ମରନ୍ତିନା ସବୁ ॥
ପାଣି ଶୁଖିଲେଣ ବନ୍ଧ ଦୃଢ଼େ ପୂରି ।
ଇନ୍ଦ୍ରଜିତ ମଲେ ସଇନି କିସ କରି ॥
ଅପୂର୍ବ ଯୁଦ୍ଧୟେ ଜାଣଇ ଇନ୍ଦ୍ରଜିତ ବୀର ।
ଏହାକୁ ମାରିବାକୁ ବୁଧି ଯେକକର ॥
ଦେଖ ଲଙ୍କା ଦେବତା ପରାୟେ ଦିଶୁଅଛି ।
ଏହାର ଥାନ୍ତେ ବାବୁରେ କାର୍ଯ୍ୟ ନୋହି
କିଛି ॥
ଶ୍ରୀରାମର ଆଜ୍ଞାରେ ଲକ୍ଷଣ ବୀର ଖଙ୍ଗ ।
ବୋଇଲା ଆଜି ସେ କରିବି ରଣ ରଙ୍ଗ ॥୩୦
ଯେହିକ୍ଷଣି ଇନ୍ଦ୍ରଜିତକୁ ପକାଇବି ମାରି ।
ଆଗ ହୋଇଲା ବୀର ଧନୁଶର ଧରି ॥
ଲକ୍ଷଣକୁ ଦୂରୁ ଦେଖିଣ ଇନ୍ଦ୍ରଜିତ ।
ସାଂଗ୍ରାମ ମଣ୍ଡୋଳ ଛାଡ଼ି ଚଳିଲା ତୁରିତ ॥
ମନେ ବିଚାରିଲା ଅଇଲେ ଦୁଇଭାଇ ।
ଯେ ରଥରେ ଥିଲେ କି ଯେହାନ୍ତ କିଣି
ହୋଇ ॥
ଦେବଦଳଣ ରଥ ମୁଂ ଘେନିଣ ଆସଇ ।
ଅକ୍ଷୟେ ତ୍ରୋଣ ବାଣେ ସବୁ ବିନାଶଇ ॥
ଯେତେବୋଲି ଲଙ୍କାରେ ହୋଇଲା
ପରବେଶ ।
ସଇନି ପେଷିଦେଲା ଶ୍ରୀରାମର ପାଶ ॥୪୦
ମାର କପି ରକ୍ଷ ମୁଂ ଆସଇ ଯେହିକ୍ଷଣି ।
ଯେତେକ ବୋଲି ଯାଇଂ ଭେଟିଲା
ବିଂଶପାଣି ॥
ରଥୁ ଓହ୍ଲାଇଣ ନମସ୍କାର କଲା ।
ପୁତ୍ର ମୁଖ ଚାହିଂ ରାବଣ ବୋଇଲା ॥
କେବଣ ଚରିତ ହୋଇଲା ଆଜି ରଣେ ।
ଏକା ବାହୁଡ଼ିଲୁ କେବଣ କାରଣେ ॥
ଇନ୍ଦ୍ରଜିତ ବୋଇଲା ବହୁତ ଯୁଦ୍ଧ କଲି ।
କଥାଏକ ଭାଳି ବାହୁଡ଼ି ଅଇଲି ॥
ନିକୁମ୍ଭିଲା ବଟ ତଳୁ କାଢ଼ିବଇଂ ରଥ ।
ଆବର ବିଚାରେକ ତୁମ୍ଭେ ଶୁଣ
ଦଶମାଥ ॥୫୦
ଶ୍ରୀରାମ ଲକ୍ଷଣର ସମର ମହାଘୋର ।
ବ୍ରହ୍ମଶର ସମାନ୍ୟେ ତାହାଙ୍କର ତୀକ୍ଷ ଶର ॥

ଅନେକ ସାଂଗ୍ରାମ ଦେବ ହୋଇଲା
ଅକାରଣେ ।
ଭଲ ଭଲ ଯୋଧାଏ ପଡ଼ିଲେ ରାମ ବାଣେ ॥
ବୁଧିଏକ ମୋର ଶୁଣିମା ଗୋସାଇଂ ।
ମାୟା ସୀତାୟେକ ମାରିବାକ ନେଇ ॥
ନିରାଶ ହୋଇ ସେ ବାହୁଡ଼ି ଯାଉ ଯତି ।
ଆନବୁଦ୍ଧିରେ ସେ ନାଶ ନାହିଂ ଲଙ୍କପତି ॥
ରାବଣ ବୋଲଇ ଯେ ମିଳଇ ବିଚାର ।
ମାୟା ଭଣ୍ଡାର ତୁ ମୋହୋର କୁମର ॥୬୦
କରସି ଉପାଏ ଶତ୍ରୁ ଯେମନ୍ତେ ଯାଇଂ ।
ବଳେ ନୁଆରିଲେ ଉପାଏ କରିଥାଇଂ ॥
ଶୁଣିଣ ମେଘନାଦ ଅଇଲା ତଡ଼ତି ।
ଓଶେକ ବିପୁନେ ଚଳିଲାକ ଝଟତି ॥
ଅଧବାଟେ ମାୟା ବୁଧିୟେକ କଲା ।
ଜାମ୍ବୋମାଳିର ସୁତକୁ କତିକି ହକାରିଲା ॥
ବୋଇଲା ଯେହିକ୍ଷଣି ଉପାଏକ କରି ।
ମାୟାରେ ଭିଆଇବୁ ଜନେକ କୁମାରୀ ॥
ନଖମୁଖ ନାସିକା ହୋଇବାକ ସେହି ।
ଯେବଣ ରୂପଗୁଣ ଅଟଇ ବଇଦେହୀ ॥୭୦
ବେଗକରି ଆଣ ସମର୍ପ ମୋର ପାଶ ।
ଶୁଣି ସିଂହନାଦ ଚଳିଲା ପ୍ରୟାଗ ପାଶ ॥
ଆପଣାର ଭଗ୍ନୀ ସୁକାନ୍ତି ନାମେ ବାଳୀ ।
ତାହାକୁ ଘେନିଣ ଅନ୍ତରୀକ୍ଷେ ଗଲା ଚଳି ॥
ମକରାକ୍ଷସର ଅଟଇ ସେ ବାମା ।
ନାହିଂ ପଟାନ୍ତର ଭୁବନ ଉପମା ॥
ଭାଇ ଭଗ୍ନୀ ଯେ ଗଗନ ମାର୍ଗେ ଗଲେ ।
ଜମ୍ବୋଦୀପ ପ୍ରାଗରେ ଯାଇଂଣ ମିଳିଲେ ॥
ଗଙ୍ଗା ଯମୁନା ଯେ ସଙ୍ଗମ ହୋଅନ୍ତି ବେନି ।
ଗୁପତେ ସରସ୍ୱତୀ ଏମନ୍ତେ ନଦୀ
ତିନି ॥୮୦
କଶ୍ୟପ ତୀର୍ଥ ବୋଲି ଯାହାବୋଲି କହି ।
ମନାସି ଝାସିଲେ ସେହି ତନୁ ବହି ॥
ତାହାଜାଣି ଭଗ୍ନୀକି ସିଂହନାଦ ଘେନିଗଲା ।
ପବିତ୍ର ନଦୀକୂଳେ ଯାଇଂଣ ମିଳିଲା ॥
ମହାଦେବ ଦେବଙ୍କୁ ନମସ୍କାର କରି ।
ବୋଇଲା ଯେବଣ କାର୍ଯ୍ୟେ ଅଇଲୁ
ତ୍ରିପୁରାରି ॥

ସେ କାର୍ଯ୍ୟସିଦ୍ଧି ହୋଇ ତୋହୋର
ପରସନେ ।
ଯେତେବୋଲି ତହୁଂ ଚଳିଲେ ବେନି
ଜନେ ॥
ତିନି ନଦୀର ମଧ୍ୟେ ଅଛି ଅନ୍ତର୍ବେଦୀ ।
ଯହିଂ ବସି ବ୍ରହ୍ମା ବେଦ କଲାକ ସିଦ୍ଧି ॥୯୦
ସେ ଜଳେ ସ୍ନାହାନ କରଇ ମୋର ଭଗ୍ନୀ ।
ସିଂହନାଦ ବୀର ଯେ ସୁକାନ୍ତିକି ଘେନି ॥
ତୁଗୋ ମନାସିଣ ଏହି ଜଳେ ପଶ ।
ଶ୍ରୀରାମ ଘରଣୀ ହୋଇବୁ ସାଦୃଶ ॥
ତୋତେ ଦେଇ ଲଙ୍କା ଲୋକେ ସୁସ୍ଥେ
ଥିବେ ।
ନୋହିଲେ ସମସ୍ତ ଅସୁର ନାଶଯିବେ ॥
ତୁହିଂ ରଘୁନାଥର ଯେ ହୋଇବୁ ଘରଣୀ ।
ଅଯୋଧ୍ୟା ନବରେ ତୁ ହୋଇବୁ ପାଟରାଣୀ ॥
ଶୁଣିଣ ସୁକାନ୍ତି ସନମତ କଲା ।
ସୀତା ରୂପ ହୋଇବି ବୋଲିଣ
ବୋଇଲା ॥୧୦୦
ଗଙ୍ଗାକୁ ସୁମରି ଯମୁନା ଜଳେ ଝାସି ।
ପୁଣି ବାହୁଡ଼ିଣ କୂଳେ ଲାଗଇ ଆସି ॥
ପ୍ରତକ୍ଷେ ଜାନେକୀ ସେ ଶ୍ରୀରାମର ଘରଣୀ ।
ରୂପ ଯଉବନ ସମ୍ପୂର୍ଣ୍ଣ କମଳଣୀ ॥
ଦେଖି ସିଂହନାଦ ହରଷ ହୋଇଲା ।୧୦
ଭଗ୍ନୀକି ଘେନିଣ ଯେ ଲଙ୍କାକଇ ଗଲା ॥
ଅସୁରେ କାମରେ ଜାଣନ୍ତିନା ଯାଇ ।
ଘଡ଼ିକେ ଚାରିଭାଗ କରନ୍ତି ଏ ମହୀ ॥
ମାୟାସୀତା ନେଇ ଇନ୍ଦ୍ରଜିତ ଆଗେ ଦେଲା ।
ଦେଖି ମେଘନାଦ ଆନନ୍ଦ ହୋଇଲା ॥
ରଥେ ବସାଇ ସାଂଗ୍ରାମକୁ ଚଳି ।
ମୁଣ୍ଡ ପୋଟିଣ ଯେ କାନ୍ଦୁଛି ମାୟା ବାଳୀ ॥
ଓଶେକ ବିପିନୁ ଆଣିଲା ପ୍ରାଏ ହୋଇ ।
ଲଙ୍କାର ଲୋକେ ବୋଇଲେ ବୀରେ ଚାହିଂ ॥
ଏ ସୀତାର ପାଇଂ ଏତେ ମହାଦ୍ୱନ୍ଦ ।
ବିଚାର ନ କଲା ମୋ ପିତା ଦଶକନ୍ଧ ॥
ପର ଯୁବତୀକି ଆଣିଲା ଚୋରାଇ ।
ମୁହିଂ ଯେବେ ଯେହା ଦେଉଛି ବାହୁଡ଼ାଇ ॥

ନଗ୍ରପୁର ଜନେ ତୁମ୍ଭେ ଥାଆ ଜାଣି ।
ବୋଲୁ ଯେ ଥିଲ ମନ୍ଦ କଲାକ
ବିଂଶପାଣି ॥୨୦
ଯେବେ ଯେହିଠାରୁ ରହୁ କଳିମାନ ।
ଏତେବୋଲି ରଥ ବାହାଇ ଘନ ଘନ ॥
ବାଟେ ଆସୁ ଆସୁ ଜଣାଇଲା ଚାର ।
ଶୁଣ ଦେବ ଇନ୍ଦ୍ରଜିତ ରାବଣ କୁମର ॥
ଯୁଦ୍ଧ ଛାଡ଼ିଣ ଯେ ଗଲୁ ଆଡ଼େ ହୋଇ ।
ସବୁ ସୈନ୍ୟ ତୋର ଲକ୍ଷଣ ଗଲା ଦହି ॥
ଶୁଣି ଇନ୍ଦ୍ରଜିତ ପ୍ରଜ୍ୱଳିତ ରାଗେ ।
ମାୟା ସୀତା ଦେବୀ ବସିଅଛି ଆଗେ ॥
ଗଡୁ ବାହାର ହୋଇ ସାଂଗ୍ରାମେ ଯାଇଂ ପଶି ।
ଦେଖି ରକ୍ଷ କପି ପଳାଇଲେ ତ୍ରାସି ॥୩୦
ହନୁମନ୍ତ ଓଗାଳିଲା ଶିଳାବୃକ୍ଷ ଧରି ।
ଦଇତ ଛେଦିଲା କିଞ୍ଚିତ ଶର କରି ॥
କୋପେଣ ପବନ ତନୟେ ଥର ହର ।
ବରଷଣ ପ୍ରାଏ କରି ବରଷିଲା ପଥର ॥
ଇନ୍ଦ୍ରଜିତ ରଥ ନ ଦିଶଇ ତେଣେ ।
ଘନ ଘନ ରାବେଣୀ ଛେଦଇ ତୀକ୍ଷ ବାଣେ ॥
ମେଘନାଦ ବୋଇଲା ହନୁମତ ଚାହିଂ ।
ତୁମ୍ଭର ଆମ୍ଭର ହୋ ଯୁଦ୍ଧ ଯହିଂ ପାଇଂ ॥
ଯେ ଚାଣ୍ଡାଳୀ ମଲେ ସରଇ ସବୁ ସଳି ।
ଅକାରଣେ ଆମ୍ଭେ କରିବା କିମ୍ପା କଳି ॥୪୦
ଏତେବୋଲି ଯୁବତୀର ଧଇଲାକ ବାଳ ।
ତୋଳି ମାଇଲା ଯେ ପ୍ରଚଣ୍ଡ ଅସିବର ॥
ମୁଣ୍ଡ ଛିଡ଼ିଣ ଯେ ପଡ଼ିଲାକ ତଳେ ।
ରକ୍ଷ କପି ରୋଦନ କରନ୍ତି ବିକଳେ ॥
ହନୁମନ୍ତ ଦେଖିଣ ଛାଡ଼ିଲା ଶହସ୍ର ।
ଜ୍ଞାନଭ୍ରଷ୍ଟ ହୋଇଲା ପବନର ଶିଷ ॥
ବୁକୁରେ ଦୁଇହସ୍ତ କୋଡ଼ଇ ଘନ ଘନ ।
ନୟନୁ ଅଶ୍ରୁଜଳ ବହଇ ଅବିକ୍ଷଣ ॥
ରାଗେଣ ବାନରେ ମାରନ୍ତି ତରୁଶିଳ ।
ନାରାଜେ ନିବାରଇ ରାବଣର ବାଳ ॥୫୦
ଶିର ଝୁଣିଣ ଯେ ପ୍ରତଜ୍ଞା ବୀର କରି ।
ତୁମ୍ଭନ୍ତ ଛାରରେ ନ ମାରଇ ରକ୍ଷ ହରି ॥
ଯେବଣ କାଣ୍ଡରେ ଅଇରାବ୍ରତକୁ ବିନ୍ଧଇ ।

ସେ ନାରାଜମାନଙ୍କି ତୁମ୍ଭଙ୍କୁ ସନ୍ଧଇ ॥
ଲାଜ ପାଇବେନା ମୋହ ତୀକ୍ଷସର ।
ମୁଇଂ ଅବା କେହ୍ନେ କରିବି ପ୍ରହାର ॥
ଅଷ୍ଟ ସେହ୍ନା ତୁମ୍ଭେ ଯୂଥପତିମାନ ।
ଲକ୍ଷଣ କୁମାର ବଏସେଣ ସାନ ॥
ଏହାନ୍ତ ନ ମାରଇ ମୁହିଂ କ୍ଷତ୍ରୀବର ।
ଇନ୍ଦ୍ରଜିତ ବାନା ଅଟଇ ମୋହୋର ॥୬୦
ଯେବେଣ ଶ୍ରୀରାମ ବୋଲେ ସେତୁବନ୍ଧ ।
ଏ ବାଣେ ତାହାର ଛେଦିବଇ କନ୍ଧ ॥
ରଘୁନାଥକୁ ନୋଡ଼ଇଂ ଆନେ କାର୍ଯ୍ୟ
ନାହିଂ ।
ନୟନ ତରାଟି ବୋଇଲା କୋପେ ଚାହିଂ ॥
ଶୁଣି ପଳାଇଲେ ରକ୍ଷ କପି ସୈନ୍ୟ ।
ରହରହ ବୋଲି ଡାକିଲା ହନୁମାନ ॥
ଭାଲୁକ ମରକଟେ ଲାଗିଲେ ତାର କତି ।
ଅନେକ ବଳ ଘେନି ଧାଇଂଲା ମାରୁତି ॥
ତରୁଶିଳ ପେଷନ୍ତି ସୀତାର ଅଭିମାନେ ।
ମାର ମାର ଡାକ ଡାକନ୍ତି ଅବିକ୍ଷଣେ ॥୭୦
ହନୁମନ୍ତ ବୋଇଲା ଶୁଣସି ଇନ୍ଦ୍ରଜିତ ।
ଅବଧ ବଧିବାକୁ ବଳିଲା କେହ୍ନେ ଚିଉ ॥
ଏଡ଼େ ବଡ଼ କଥା ତୁ କଲୁ ଯେ କେମନ୍ତେ ।
ସ୍ତିରୀ ହତ୍ୟା ଘେନିଲୁ ରେ ପାମର ଦଇତେ ॥
ଧର୍ମ ଅଧର୍ମରେ କିଛିହିଂ ନ ଜାଣ ।
ଅପାପୀ ଲୋକଙ୍କର ମସ୍ତକହିଂ ହାଣ ॥
କେବଣ ଯୁଗେ ପ୍ରାପତ ତୁମ୍ଭଙ୍କୁ ଯେଡ଼େ
ଶିରୀ ।
ଏବୁଧି ଚାଣ୍ଡାଳେ କେବେହେଂ ନକରି ॥
ଯେତେକ ବୋଲିଣ ପର୍ବତେକ ଧରି ।
ତିନିବେଢ଼ ବୁଲାଇ ମାଇଲା କୋପ
କରି ॥୮୦
ଇନ୍ଦ୍ରଜିତର ରଥେ ପଡ଼ିଲାକ ଯାଇଂ ।
ଜାଣିଣ ମେଘନାଦ ଗଲାକ ପଳାଇ ॥
ପଥର ବାଜି ତାହାର ଭାଜିଗଲା ଯାନ ।
ଭୂମିରେ ଉଭା ହୋଇଲା ରାବଣର ନାନ ॥
ଯହୁଂ ସେ ମେଘନାଦ ହୋଇଲା ବିରଥୀ ।
ପଳାଇଲେ ରାକ୍ଷାସେ କରିଣ ପ୍ରାଣ ଭୀତି ॥

ଗୋଡ଼ାଇ ବାନରେ ମାରନ୍ତି ଅବିକ୍ଷଣ ।
ଦେଖି ରୁହାଇଲା ପବନର ନାନ ॥
ପାଦଗତି ହୋଇ ଇନ୍ଦ୍ରଜିତ ବୀର ।
ବାମେଣ କୋଦଣ୍ଡ ଦକ୍ଷିଣେ ଏକ
ତୀର ॥୯୦
ଯହୁଂ ସେ ହନୁମନ୍ତ କପିଙ୍କି ବାହୁଡ଼ାଇ ।
ଇନ୍ଦ୍ରଜିତ ବୀର ଲଙ୍କାକଇ ଯାଇ ॥
ପିଅର ଆଗରେ ଯେ କହିଲା ବାରତା ।
ଭୋ ଦଶାନନ ମୁଂ ମାଇଲି ମାୟା ସୀତା ॥
ଶହସ୍ର ପକାଇଣ ପଳାଇଲେ କପି ରକ୍ଷ ।
ଯହୁଂ ସେ ସ୍ତିରୀ ବଧ ଦେଖିଲେ ପ୍ରତ୍ୟକ୍ଷ ॥
ରାତ୍ର ପାହିବାକୁ ଗୋଟିଏ ନ ଥିବେ ।
ଏହିକ୍ଷଣି ସବିହେଂ ଯେ ପାରିହୋଇ ଯିବେ ॥
ସୀତା ମଲା ତାହାଙ୍କର ସରିଲାନି ଯୁଦ୍ଧ ।
ଆବର ସାଂଗ୍ରାମେ କରିତ ଅଛି
ସାଧ୍ୟ ॥୧୦୦
ଶୁଣି ଦଶଗ୍ରୀବ ସନ୍ତୋଷ ହୋଇଲା ।
ମୋଣୋହି କରିବାକୁ ଭିତରକୁ ଗଲା ॥
ଇନ୍ଦ୍ରଜିତ ବାହୁଡ଼ି ଗଲାକ ନିଜପୁରେ ।
ଶୁଣିମା କାହାଣୀ ଯେ ଯେଥୁ ଅନନ୍ତରେ ॥
ସାଂଗ୍ରାମ ଭୂମିରେ ମାୟା ସୀତାକୁ ଦେଲା
ହାଣି ।
ସତ ପରାଏ ତାହାକୁ ହନୁମନ୍ତ ଜାଣି ॥
ଯୁଦ୍ଧ ଛାଡ଼ି ସେ ବାହୁଡ଼ିଣ ଗଲା ।
ଶ୍ରୀରାମ ଛାମୁରେ ଯେ କହିବି ବୋଇଲା ॥
ଏତେକ ବୋଲିଣ ଆସଇ ପାବେନି ।
ଲୁହ ଝରଝରେ ବହଇ ନୟନ ବେନି ॥୧୦
ସୀତାକୁ ମାରିବାର ରଘୁନାଥ ନ ଜାଣନ୍ତି ।
ଜମ୍ଭେବ ମନ୍ତ୍ରୀକି ରାଇଣ ଆଜ୍ଞା ଦ୍ୟନ୍ତି ॥
ଇନ୍ଦ୍ରଜିତର ତୁଲେ ହନୁମନ୍ତର ଯୁଦ୍ଧ ।
ଯାଅ ରକ୍ଷ ରାୟେ ଯେକଥାମାନ ବୁଝ ॥
ଏକାୟେ ମାରୁତି କରଇ ରଣଗୋଳ ।
ପିଠି ହୋଅ ତୁମ୍ଭେ ଘେନିଣ ରକ୍ଷବଳ ॥
ଶୁଣିଣ ଜମ୍ଭେବ ଥାଠ ଘେନିଗଲେ ।
ହନୁମତର ଆସନ୍ତେ ବାଟରେ ଭେଟିଲେ ॥
ଦେଖି ହନୁମତ ବୋଇଲା ଗୋସାଇଂ ।

ଶ୍ରୀରାମର ଶୋକେ କାହାରି ଜୀଇଂ
ନାହିଂ ॥୨୦
ପ୍ରିୟବତୀ ଭାରିଯା ତାହାର ନାଶଗଲା ।
ମୂଢ଼ ଇନ୍ଦ୍ରଜିତ ମାରି ପକାଇଲା ॥
ଶୁଣି ରକ୍ଷ ରାଜା ଯେ ବିଷାଦ ହୋଇଲେ ।
ଦୁଇଲୋକେ ବାହୁଡ଼ି ସୁବଳଯା ଗଲେ ॥
ଦୂରୁହୁଂ ଶ୍ରୀରାମ ଯେ ବିଚାରନ୍ତି ଦେଖି ।
ଯେ ଦୁଇ ଲୋକଙ୍କର ତ ମୁଖ ଅଛି ଶୁଖି ॥
ନିକଟେ ଜମ୍ଭେବ ଜଣାଇଲା ଯାଇଂ ।
ଇନ୍ଦ୍ରଜିତ ସୀତାକୁ ହାଣିଲା ଗୋସାଇଂ ॥
ରଣ ଭୂମିରେ ପଡ଼ିଅଛି ତୋହର ଘରଣୀ ।
ହନୁମନ୍ତ ଦେଖି ଯେ ଅଇଲା
ଯେହିକ୍ଷଣି ॥୩୦
ଶୁଣିଣ ଶ୍ରୀରାମ ଢଳିଣ ପଡ଼ିଲେ ।
କେଜାଣି ଶ୍ୱରୀରୁ ଜୀବନ କାଢ଼ିନେଲେ ॥
ତୋଳି ଧଇଲାକ ସୁମେତ୍ରା ତନୟେ ।
ପାଣି ସିଞ୍ଚଇ ନେଇ ସୁଗ୍ରୀବର ରାୟେ ॥
ଚେତନା ପାଇ ଯେ ଚାହିଂଲେ ଅଙ୍କକରି ।
ହନୁମନ୍ତ ବସିଲା ଚରଣ ଦୁଇଧରି ॥
ବାଳୀର ତନୟେ ଗନ୍ଧମାରଦନ ।
କୋମଳ ପତ୍ର ଘେନି ବିଞ୍ଚନ୍ତି ଘନ ଘନ ॥
ସେନା ସେନାପତି ସେ ସବିହେଂ ତବଦ ।
ରକ୍ଷକପି ସଇନି ହୋଇଲେ ବିଷାଦ ॥୪୦
ଶ୍ୱେତ ନାଗ ଯେହ୍ନେ କାତି ଛାଡ଼ିଯାଇଂ ।
ତେସନ ସଂଯାତ ଯେ ଶ୍ରୀରାମ ଦିଶଇ ॥
ଚେତନା ପାଇଣ କରନ୍ତି ସନ୍ତାପ ।
ଭୋ ବିଷ୍ଣୁ କେବଣ ମୁଂ ଅରଜିଲି ପାପ ॥
ରାଜ୍ୟ ଛାଡ଼ି ଆସି ବନବାସ କଲି ।
ଯୁବା ବୟସେ ମୁଂ ଘରଣୀ ହରାଇଲି ॥
ଚାଣ୍ଡାଳ ଦଇତ ଆଣିଲା ଚୋରିକରି ।
ଉପ୍ରୋଧ ନକରି ସେ ସଖୀକି ଗଲା ମାରି ॥
ଆହା ଜାନେକୀ ଗୋ ଜନକ ଦୁହିତା ।
ସର୍ବ ସୁଲକ୍ଷଣୀ ନାମ ଗୋଟି ସୀତା ॥୫୦
ଚମ୍ପା କୁସୁମର ପ୍ରାଏକ ତୋର ବର୍ଣ୍ଣ ।
ପାଶେ ମଳିଣ ଦିଶଇ ଶୁଦ୍ଧ ଯେ ସୁବର୍ଣ୍ଣ ॥
ଚନ୍ଦ୍ରମା ମଣ୍ଡୋଳ ପ୍ରାଏକ ତୁମ୍ଭର ମୁଖ ।

ନୟନ ଯୁଗଳ କି କାମର ବିଶିଖ ॥
ଚାଚର କେଶ ତୋର ସୁବଳିତ ଖୋଷା ।
ଶ୍ରବଣ ସୁସଞ୍ଚ ସୁଦୀର୍ଘ ଚାରୁ ନାସା ॥
ବନ୍ଧୁକ ଅଧର ଦଶନ ଗଜମୋତି ।
ଡାହାଣବର୍ତ୍ତେକ ଶଙ୍ଖ କଣ୍ଠର ଆକୃତି ॥
ବୃଷାଳ ହୃଦୟ ବେନିଭୁଜ ପଦ୍ମନାଳ ।
ସୁନ୍ଦର ଯଉବନ ଉପରେ ମୋତି ମାଳ ॥୬୦
ମଝା ସଂକୀର୍ଣ୍ଣ ବିକ୍ରମ ସିଂହ ଠାଣି ।
ବିସ୍ତାର କଟି ମଦନ ସିଂହାସନ ଜାଣି ॥
ଗଭୀର ନାଭି ଯେ ପଦ୍ମପତ୍ର ପେଟ ।
ଆଗକୁ ସୁନ୍ଦର ପଛକୁ ମୁରାଟ ॥
ଉଲଟ କଦଳୀ ଜାଣି ବେନି ଜାନୁ ।
ପାଦ ତଳିପା ରଙ୍ଗ ଅଳତାର ବିନୁ ॥
ବିଚିତ୍ର ବସ୍ତ୍ର ବିବିଧ ଅଳଙ୍କାର ।
ତିନି ଭୁବନେ ତୋତେ ନାହିଁ ପଟାନ୍ତର ॥
ପ୍ରାଣର ସଖା ମୋର ଅଟୁ ବଇଦେହୀ ।
ତୋ ତହୁଁ ସୁନ୍ଦର ମୋତେ ନ ଦିଶଇ କେହି ॥୭୦
ସ୍ୱୟଂବରକାଳେ ଅନେକ ରାଜାଗଣ ଥିଲେ ।
କେହି ତୋର ରୂପକୁ ସଖୀ ଭାଜନ ନୋହିଲେ ॥
ମୋତେ ବରିଲୁ ତୁ ରତ୍ନମାଳା ଦେଇ ।
ବନସ୍ତକୁ ଗୋଡ଼ାଇ ଅଇଲୁ ମୋର ପାଇଁ ॥
ଅଳପ ହସି ଯେ କହୁ ଥିର କରି ।
ସୁରତି ମାଗୁ ମୋତେ ଚରଣ ଦୁଇଧରି ॥
ନିବିଡ଼ କୁଚ ଲଗାଇ ଯେ କୋଳ କରୁ ମୋତେ ।
ଯେବେ ଆଉ ସଖୀ ଦେଖିବି କାହିଁ ତୋତେ ॥
ପ୍ରେମ କରିଣ ଯେ ବକ୍ରକରି ଚାହୁଁ ।
ଛାଇ ଜାଣିଣ ଯେ ମୋତେ ସେବା କରିଥାଉ ॥୮୦
ମୋହ ଲଗାଇଣ ଯେ କେବଣ କତି ଗଲୁ ।
ପାମର ଦଇତର ହାଥରେ ପ୍ରାଣ ଦେଲୁ ॥
ଗାଢ଼େ ଆଲିଙ୍ଗନ ଯେ ନ ସହୁଁ ଭାବାନି ।
ଯେବେ ତୋତେ ଦଇତ ହାଣିଲା ଖଡ଼ଗ ଘେନି ॥
ପ୍ରାଣର ବଲଭୀରେ କେବଣ କତିଗଲୁ ।
ଯୁବାକାଳେ ବିଧାତାରେ ଯେତେ କଷ୍ଟ ଦେଲୁ ॥
ସଖୀ ସଖୀ ବୋଲି ରୋଦନ୍ତି ଉଚ୍ଚ ସ୍ୱରେ ।
ନିଜ ଭୁଜ ନେଇ କୋଡ଼ନ୍ତି ହୃଦୟରେ ॥
ଆହା ଭାବିନୀରେ ଗୁଣର ଗୁଣନିଧି ।
ରାଜ୍ୟତପ କାୟା ନୋହିଲା ତ ସିଦ୍ଧି ॥୯୦
ମରିବି ମରିବି ମୁଂ ଜୀବନେ ନାହିଁ ଆଶ ।
କେହୁଁ ଛିନାଇଲା ଯେଡ଼େକ ମୁହାଂସଂ ॥
ରାଜାର ଦୋହିତା ସେ ରାଜାର ବହୁଆରି ।
ଦେଶ ଛାଡ଼ି ବନସ୍ତେ ମୋତେ ସେବାକରି ॥
ମୁଇଂ ପାମର ତ ନ ପାରିଲି ରଖି ।
ନିରେଖ ପ୍ରାଣୀ ମତେ କଲା ମୋର ସଖୀ ॥
କାହିଁକି ଯିବଇ ପଶିବି ଯେବେ କାହିଁ ।
କେ ମୋତେ ସୀତାକୁ ଦେବାକ ଦେଖାଇ ॥
ବାବୁ ଦଇବରେ ଲାଗିଲୁ ମୋତେ ବାଦେ ।
ରାଜ୍ୟ ପଳାଇଲି ସାବତ ଜନନୀ ପ୍ରସାଦେ ॥୧୦୦
କନ୍ଦମୂଳ ଖାଇ ବନସ୍ତେ ରହିଲି ।
ଯେତେ ଦୁଃଖେ ପୁଣି ଜୀଇଂ ନପାରିଲି ॥
ଘରଣୀକି ରାବଣ ଆଣିଲା ଚୋରୀ କରି ।
ଯେବେ ଇନ୍ଦ୍ରଜିତ ପକାଇଲା ମାରି ॥
ସଖୀର ମୁଖ ଦେଖି ନକଲା ଓପ୍ରୋଧ ।
କେହ୍ନେମତେ ଚାଣ୍ଡାଳରେ କଲୁ ସ୍ତିରୀ ବଧ ॥
ଆହୋ ଜଟେବ ଦେଖାଅ ମୋର ସଖୀ ।
କେଉଂଠାରେ ଅଛି ଶରତଚନ୍ଦ୍ରମୁଖୀ ॥
ଆଖି ପୂରାଇଣ ଦେଖିବି ମିତଣୀ ।
ଯୁଗକୁ ବୋଲିଣ ଯେ ଗଲାକ ସଂଘାତୁଣୀ ॥୧୦
ଯେତେବୋଲି ରାମ ଉଠି ଉଭାହୋଇ ।
ଯହିଂ ଅଛି ଜାନକୀ ତହିଂକି ବୋଲି ଯାଇଂ ॥
ଦେଖିଲେ ରଣମଧେ ପଡ଼ିଛି ସୁନ୍ଦେରୀ ।
ଧାଇଂଣ ଶ୍ରୀରାମ ଧଇଲେ କୋଳକରି ॥
ମୃତପିଣ୍ଡ ଆଣି ବସାଇଲେ କୋଳେ ।
ବାଉନିଣ ରୋଦନ କରନ୍ତି ବିକଳେ ॥
ଜାନୁ ଯଉବନ ହୃଦୟ କଣ୍ଠ ତଟ ।
ଆଖୁ ଗଣ୍ଡି କର ଚରଣ ନାଭି ପେଟ ॥
ସବୁ ଆଉଂସନ୍ତି ସେନଧ ରସଘେନି ।
କାମ କଳାରେ କୁଶଳ ଅଟୁରେ କାମେନୀ ॥୨୦
ଯେ ବାହା ଘେନିଣ ଯେ ମୋତେ କୋଳକରି ।
ଯେ ଲଖମାନ ମୋର ଦେଉଥାନ୍ତି ଚିରି ॥
ଯେକୁଚ ଯୁଗଳ ମର୍ଦ୍ଦଇ ମୋର ହସ୍ତ ।
ଯେଡ଼େକ ବୟେସ ତୋର ଗଲାକ ବିଅର୍ଥ ॥
ଅରଣ୍ୟର ମାଳତୀ ପ୍ରାୟେ ହୋଇଗଲୁ ।
ମୋତେ ଘେନି ଭୋଗ୍ୟ କରି ନ ପାରିଲୁ ॥
ନିରାଶ ହୋଇଣ ଛାଡ଼ିଲୁ ମୋର ପାଶ ।
ମୁହିଁ ଯେ ତୋତେ ବହୁତ କରିଅଛି ଆଶ ॥
ରାବଣ ମାରି ତୋତେ ଅଯୋଧ୍ୟାକୁ ନେମି ।
ଯେ ତୋହୋର ବଞ୍ଛାଭାବନ୍ତ ଘେନିମି ॥୩୦
ଚିତ୍ରକୂଟ ପର୍ବତେ ତୁ କଲୁ ଯାହା ଯାହା ।
ନିଜପୁର ତୋଟାରେ ମୁଂ ଆଚରିବି ତାହା ॥
ସେକଥା ବିଫଳ ହୋଇଲା ସଖୀ ଯେବେ ।
ଦଇତ ହାଥେ ମୃତ୍ୟୁ ପାଇଲୁନି ଯେବେ ॥
ପିଠିକରି ଶୋଇଲେ ରୁଷୁଥାଉ ପ୍ରିୟା ।
ଯେବେ କାହାକୁ ଗୋ ସମର୍ପିବୁ ହିଆ ॥
ଖୋଷା ଖୋଷିଣ ଯେ ଦେଖାଉଂ ଥାଉ ମୋତେ ।
ଯେବେ କେମନ୍ତେ ଗୋ ମୁରଛିବି ତୋତେ ॥
ବୋଇଲା ବୋଲ ଯେ ନ ଭାଙ୍ଗୁ ମୋହୋର ।
ଯେଗୁଣ କେମନ୍ତେ ଗୋ ପାଶୋରିବି ତୋର ॥୪୦
ଅଳତା ଘେନିଣ ଯେ ଛାମୁକୁ ମୋର ଆସୁ ।
ଚରଣ ଅଙ୍ଗୁଷ୍ଠି ତଳକୁ କରି ବସୁ ॥
ମାଜିଲାର ଲଖରେ ଜାଣି ଦିଶଇ ମୁଖ ମାନ ।
ହସି କୋଳ କରି ଯେ ଦେଉ ଚୁମ୍ବନ ॥

ଚରଣ ମଞ୍ଜାଳନ୍ତେ ଅନିଦ୍ରା ହୋଇ ନିଶି ।
କେମନ୍ତେ ଯେକଥା ପାଶୋରିବି
ଶୁଭ୍ରକେଶୀ ॥
ଯେତୋର ସୁନ୍ଦର ସୁକୁମାର ଅଙ୍ଗ ।
ଏହା ଘେନିଣ ଯେ କରଇ ରତି ରଙ୍ଗ ॥
ଯେବେ ଶରଧା ଯେ ସାରିବି କାହାର
ତୁଲେ ।
ମୃଗମାରି ଯିବି କାହାର ବୋଇଲେ ॥୫୦
କାହାର ସଙ୍ଗରେ ଯେ ଖେଳିବି ଯେବେ
ପଶା ।
କେତକୀ ଫୁଲରେ କାହାର ଖୋଷିବିଟି
ଖୋଷା ॥
ଚନ୍ଦନ ଘଷିବିଟି କାହାର ସର୍ବାଙ୍ଗେ ।
ଯେକାନ୍ତେ କ୍ରୀଡ଼ା ମୁଂ କରିବି କାହାର
ସଙ୍ଗେ ॥
ଅଗର ପୋଡ଼ି କାହାକୁ ଦେବଇ କଜ୍ଜ୍ୱଳ ।
କସ୍ତୁରୀ ଘଷିବି ମୁଂ କାହାର ବକ୍ଷସ୍ଥଳ ॥
ଗନ୍ଧ ଘେନିଣ ମୁଂ ମଣ୍ଡିବି ଅଳକା ।
କାହାର କପୋଳେ ମୁଂ ଦେବି ସିନ୍ଦୂର
ଟୀକା ॥
କାହାକୁ ସରୁ ଶାଢ଼ୀ ପିନ୍ଧାଇବି କାଛି ।
କାହାର ତୁଲେ ଖେଳ ଖେଳିବି
ମୃଗାକ୍ଷି ॥୬୦
କେ ମୋହୋର ମନ ଜାଣି ପରଷିବ ।
କେହୁଂ ଚନ୍ଦ୍ରସମ ମୋ ଅଙ୍ଗରେ ଘଷିବ ॥
କୋପ କଲେଣ ଯେ ନକହୁ ମୋତେ
କଥା ।
ସମସ୍ୟା ପାଇବା ଯାଏ ପୋତିଥାଉ ମଥା ॥
ହସି କହିଲେଣ ତୁହିଂ ହସି କହୁ ।
ଶରଧାବେଳେ ମୋତେ ବଇରାଗ ନୋହୁଂ ॥
ସୁକୁମାର ଦେହ ଗୋଟି ଶୀତକୁ ଉଷ୍ମମ ।
ଉଷ୍ମମକୁ ଶୀତଳ ତୁ ଅମୂଲ୍ୟ ପ୍ରତିମ ॥
ବରଷାକୁ ଶୀତଳ ଉଷ୍ମମ ଦୁଇମତ ।
ହସି କହିଲେଣ ପଡ଼ଇ ଅମୃତ ॥୭୦
ଚାହିଂଲେଣ ତପ ଗୋ ଛାଡ଼ିବେ ସୁରମୁନି ।
ତୋହୋର ଭାବ ସଖୀ ନପାରିଲେ ଘେନି ॥

ନିୟମ କରାଇଣ ଯେ ଥିଲୁ ମହୁଶେଯେ ।
ଅଗ୍ନି ଦେବତାଙ୍କୁ ଛୁଇଂଲି ନିଜ ଭୁଜେ ॥
ଏକକୁ ଆରେକ ଯେ ନୋହିବା ଛଡ଼ାଛଡ଼ି ।
ତୁହିଂ ସିନା ଆଗ ଗଲୁ ମୋତେ ଛାଡ଼ି ॥
ମୁଇଂ ତୋତେ କ୍ଷଣେ ଛାଡ଼ି ନ ପାରଇ ।
ଦାରୁଣ ହିଆ ତୋର ଅଟଇ ବଇଦେହୀ ॥
ସପନ ନିଧି ମୋତେ କାହିଂ ଛାଡ଼ିଗଲୁ ।
ଯୁବାକାଳେ ମୋତେ ଯେତେକଷ୍ଟ
ଦେଲୁ ॥୮୦
ପୋଡୁ ପୋଡୁ ଜୀବନରେ ଯାଉ
ଦେହୁଛାଡ଼ି ।
ଭୋ ଯମ ଦେବତା ନିଅ ପ୍ରାଣ କାଢ଼ି ॥
ଆଉ କାହାକୁ ଘେନି ଥିବଇ ମୁଂ ଯେଥ ।
ଯଶଶ୍ରୀ ଆୟୁଷ ମୋର ହରିଲା ଦଶମାଥ ॥
କିବୁଧି କରିବଇଂ ପୋଡୁ ମୋର ମୁଣ୍ଡ ।
ସୀତାର ଦେହ ଗୋଟି ହୋଇଲା
ବେନିଖଣ୍ଡ ॥
ଯେହା ଦେଖି ପ୍ରାଣ ନ ଯାଇ କିସ ପାଇଂ ।
କେବଣ ସୁଖ ଭୋଗ କରିବି ଜୀଇଂଥାଇଂ ॥
ସତୀ ସାଧବୀରେ ଅଟୁ କମଳଣୀ ।
ଇନ୍ଦ୍ରଜିତ ତୋତେ ପକାଇଲା ହାଣି ॥୯୦
ଯେ କର୍ମ ଅରଜିଲୁ ଦେବୀ ଚାନ୍ଦମୁର୍ହୀଂ ।
ଏତେ ବୋଲି ରାମ ଢଳି ପଡ଼ିଲେ ମହୀ ॥
ଦେଖି ସଉମିତ୍ରୀ ଧଇଲାକ ତୋଳି ।
ସବୁଙ୍କର ନୟନୁ ଅଶ୍ରୁଗଳି ॥
ହାହାକାର କରନ୍ତି ଋକ୍ଷକପିମାନ ।
ଯେଡ଼େ ଦୁଃଖ ପାଇବାର ହୋଇଲା
ଅକାରଣ ॥
ଜମ୍ୱେବ ପ୍ରବୋଧନ୍ତି ଶୁଣ ରଘୁନାଥ ।
ଶୋକ ସମ୍ଭାଳିଣ ତୁ ବୁଝ ତଥ୍ୟ ଅର୍ଥ ॥
ଦେବଙ୍କର ଈଶ୍ୱର ତୁ ଶୁଣସି ଗୋସାଇଂ ।
ମୋହୋର ମନକୁ ତ ପ୍ରତେ
ଯାଉନାହିଁ ॥୧୦୦
ଏ ମାୟା ଅସୁରେ ଜାଣନ୍ତି ବୁଧିବନ୍ତ ।
ଅପୂର୍ବ ଉପାୟେମାନ ଦିଶଇ ଏହାନ୍ତ ॥
ଶ୍ରୀରାମ ବୋଇଲେ ହୋଇଲକି ତୁମ୍ଭେ
ବାଇ ।

ଯେ ସତ ଜାନେକୀ ଯେ ମୋହୋର
ପ୍ରାଣସହୀ ॥
କିହୋ ହନୁମନ୍ତ ଅଟଇ ଟିକି ସୀତା ।
ତୁ ସେ ଦେଖିଅଛୁନା ଜନେକ ଦୁହିତା ॥
ପବନ ତନୟ କହଇ ଯୋଡ଼ିକର ।
ନୋହଇ ଯେକନ୍ୟା ଜାନେକୀନିକର ॥
ଯେସନେକ ସମୟେ ଯେ ବିଭୀଷେଣ
ରାୟେ ।
ରାକ୍ଷସ ବଳ ସେ ସଂହାରଇ
ଯେକାୟେ ॥୧୦
ବାରତା ପାଇଲା ସୀତାର ଶିରଛେଦ ।
ରଣଛାଡ଼ି ଧାଇଂଲା ହୋଇଣ ବିଷାଦ ॥
ଶ୍ରୀରାମକୁ ଦେଖିଲା ଯେ, ସଭିହେଂ
କାନ୍ଦୁଛନ୍ତି ।
ମାୟା ସୀତା ବେଢ଼ି ଯେ, ସଭିହେଂ
ବୋବାନ୍ତି ॥
ଲକ୍ଷଣ ବୋଇଲେ ହୋ ଲଙ୍କପତି ଶୁଣ ।
ଯେତେ କାଳେ ଧାତା କଲାକ ବାଦୀପଣ ॥
ଯାହାପାଇଂ ଏତେକ ସାଂଗ୍ରାମ ହୋଇଲା ।
ସେ ଜନେକର ଦୋହିତାକୁ ତୋର ପୁତୁରା
ମାଇଲା ॥
ସ୍ତିରୀବଧ ବୋଲି ସେ ନ କଲାକ ଭୟେ ।
କେମନ୍ତେ ଥାନେ ଯେହାକୁ ଡରିଲେ
ଦେବତାୟେ ॥୨୦
ଶୁଣି ବିଭୀଷେଣ ହୋଇଲା ଚକିତ ।
ବୋଇଲା ପାପିଷ୍ଟରେ ଅଟୁ ଇନ୍ଦ୍ରଜିତ ॥
ସାଂଗ୍ରାମେ ନ ପାରି ଉପାୟେ କରିଗଲୁ ।
ଯୁବତୀ ଶିରୋମଣିକି ତୁ କିମ୍ପାଇଂ ମାଇଲୁ ॥
ଶ୍ରୀରାମ ବୋଇଲେ ହୋ ଭାରିଯା ମୋର
ମଲା ।
ସବୁ ବିଧିବିଧାନ ଯେହିଠାରୁ ଗଲା ॥
ପ୍ରିୟବତୀ ଭାର୍ଯ୍ୟାକୁ ମୁଛିବି କେମନ୍ତେ ।
ଦେଖ ସଂଘାତୁଣୀ ଶାଢ଼ୀର ପଣନ୍ତେ ॥
ଫଳମୂଳ ଗୁଡ଼ାଏ ବାନ୍ଧି ଥୋଇଥାଇ ।
ନ ପାଇଲା ଦିନକୁ ଆଗହୁଂ ଭିଆଇ ॥୩୦
ରାଜାର ଝିଅ ହୋଇ ଘରଣୀପଣ ଯେତେ ।

ଯୁବତୀଙ୍କ ଗୁଣ ଯେହାହୁଂ ଆନ କେତେ ॥
ଏତେକ ମୁହାଂସ ଛାଡ଼ିଣ କେଣେ ଗଲା ।
ମେଘନାଦ ଚାଣ୍ଡାଳ ଯେହା ମୋତେ କଲା ॥
ଯେବେ ସେ ଜାଣିଲି କଥାର ଯିସ ମତି ।
ସୀତାର ସଙ୍ଗେ ରାବଣର ନୋହିଲାକ ପ୍ରୀତି ॥
ଭୋଗ କରିଥିଲେ ନ ପାରନ୍ତା ମାରି ।
ରମିଲା ସ୍ତିରୀକି ସେ ଓପ୍ରୋଧ ଛାଡ଼ି ନପାରି ॥
ଯହୁଂ ସେ ଜାନେକୀ ନ ଦେଲା ତାକୁ ଅଙ୍ଗ ।
ତେଣୁ ସେ ଦଶଗ୍ରୀବ ପାଇଲା ମନେ ଖଙ୍ଗ ॥୪୦
ଯେ ଯେବେ ମୋତେ ନୋହିଲା ବିଶ୍ବଆସ ।
ବିଚାରିଲା ଯେହାର ଥିବାର କେଉଂ ଯଶ ॥
ରାମହିଂ ନ ପାଉ ପକାଅ ବେଗେ ହାଣି ।
ତେବେ ସେ ଦଇତ ମାଇଲା ମୋର ରାଣୀ ॥
ଶୁଣି ବିଭୀଷେଣ ଉପରକୁ ଚାହିଂ ।
ବିଚାରିଲା ନିଶ୍ଚେ କି ଅଟଇ ବଇଦେହୀ ॥
ଯେସନେକ ସମଯେ ରାକ୍ଷସୀ ଯେକ ଆସି ।
ତ୍ରିଜଟା ସୀତା ତାକୁ ଦେଇଛନ୍ତି ପେଷି ॥
ଯହୁଂ ସେ ଲଙ୍କାରେ ଶୁଭିଲା ସୀତାମଲା ।
ଇନ୍ଦ୍ରଜିତ ତାହା ଯେ ହାଣି ପକାଇଲା ॥୫୦
ବିକଳ ହୋଇଲେ ଯେ ସକଳ ନରନାରୀ ।
ସୀତା ସହିତେ ଯେ ଶୁଣିଲେ ସହସ୍ରେକ ଅସୁରୀ ॥
ହସିଣ ଚାହିଂଣ ପୁଣିଣ ଭାଳିଲେ ।
ଯୁଝି ନପାରି ଗୋ ଯେମନ୍ତ ବୁଧି କଲେ ॥
ସୀତା ତ୍ରିଜଟାସରମା ଭାଳିଲେ ତିନିଜନ ।
କେମନ୍ତେ ବାରତା ପାଆନ୍ତି ଶ୍ରୀରାମ ରାଜନ ॥
ନ ପୁଣ ରଘୁନାଥ ଆତ୍ମାଘାତେ ମରଇ ।
ମାୟା କଥା ବୋଲି ବିଚାର ନ କରଇ ॥
ଏମନ୍ତ ଭାଳି ଯେକ ଅସୁରୀ ଯେ ରାଆନ୍ତି ।
ଯାହାକୁ ସର୍ବଦା ପ୍ରତେ କରିଥାନ୍ତି ॥୬୦
ନିକୁମ୍ଭିଲା ନାମ ଯେ ଅଟଇ ତାହାରି ।
ତ୍ରିଜଟା ବୋଇଲା ଶୁଣସିରେ ନାରୀ ॥

ମାୟା ସୀତା ନେଇ ଯେ ମାଇଲା ଇନ୍ଦ୍ରଜିତ ।
ବିଭୀଷେଣ ଆଗେ ଯାଇଂ କହସି ତୁରିତ ॥
ଶୁଣି ରାକ୍ଷସଣୀ ଯେ ଅଇଲା ତଡ଼ତି ।
ଘରୁ ବାହାର ହୋଇ ଧଇଲା କପିମୂର୍ତ୍ତି ॥
ନିଜ ମୂର୍ତ୍ତି ଧରି ବିଭୀଷେଣକୁ ଭେଟଇ ।
ଶୂନ୍ୟରୁ ଖସି ଯେ ଛାମୁରେ ମିଳଇ ॥
ଶତେ ଦଣ୍ଡ ପ୍ରଳମ୍ବ କରି କହଇ କଥାମାନ ।
ଶୁଣ ଦେବ ଠାକୁର ଲଙ୍କାର ରାଜନ ॥୭୦
ଇନ୍ଦ୍ରଜିତ ଯେ ମାୟାସୀତାକୁ ମାରିଗଲା ।
ସେକଥା ନଗ୍ରଯାକେ ଯେ ଉଚ୍ଚାନ ପଡ଼ିଲା ॥
ତ୍ରିଜଟା ସରମା ମୋରେ ପେଷିଲେକ ରାଇ ।
ବୋଇଲେ ବିଭୀଷେଣକୁ କହ ବେଗେ ଯାଇଂ ॥
ଭୋ ରାଜନ ଶ୍ରୀରାମର କୋପ କର ଶାନ୍ତି ।
ଏତେ ବୋଲି ରାକ୍ଷସୀ ଚଳିଲା ତଡ଼ତି ॥
ହରଷ ହୋଇଣ ଯେ ବିଭୀଷେଣ ଚଳିଯାଇଂ ।
ଶ୍ରୀରାମଙ୍କୁ ଚାହିଂ ବଚନ ବୋଲଇ ॥
ଛାଡ଼ ମୃତପିଣ୍ଡ ନୋହଇ ତୋର ସତୀ ।
ଅସୁରଙ୍କର ମାୟା ତୁ ନ ଜାଣୁ ରଘୁପତି ॥୮୦
ମାୟା ଯୁବତୀ ସେ ପକାଇଲା ହାଣି ।
ଯହୁଂ ଯେ ଯୁଦ୍ଧରେ ନ ପାରିଲା ଜିଣି ॥
ଘୋର ଯୁଦ୍ଧ ଦେଖି ଡରକେ ଯେହାକଲା ।
କେମନ୍ତେ ଆନେ ଚଉଦ ଭୁବନ ସାଧିଲା ॥
କୁମନ୍ତ୍ର କୂଟ କପଟ ଜାଣଇ ବହୁତ ।
ସୀତାକୁ ଛୁଇଂବାକୁ କି ଭାର୍ଜନ ଦଇତ ॥
ଅଗ୍ନିର ତେଜ ଯେ ଅଗୁଳି ତୋର ନାରୀ ।
ଦେବ ଦାନବେ ଯାହାକୁ ଚାହିଂତ ନପାରି ॥
ମାୟା କଥା ଯେଥକୁ ନ ଭାଳ ଗୋସାଇଂ ।
ଶୋକ ଛାଡ଼ିଣ ଯେ ଉଠିଲେ ରଘୁସାଇଂ ॥୯୦
ଭୋ ବିଭୀଷେଣ କହ ମୋତେ ସତ ।
ଅଟଇକି ନୋହଇ ଜନେକଦୋହିତ ॥
ସୀତା ହୋଇଲେଣ ଯୁଦ୍ଧ ନ କରିବା ।
ରକ୍ଷକପି ସଇନି କିମ୍ପା ମରାଇବା ॥
ବାହୁଡ଼ିଣ ଯିବା ଯେ ଶବଦାହ କରି ।

ବିଭୀଷେଣ ବୋଇଲା ତୁ ଶୁଣ ଦଣ୍ଡଧାରୀ ॥
ମାୟାଛଟକେ ସେ ଭଣ୍ଡିଲା ଦଇତ ।
ଲଙ୍କାର ଲୋକ ଆସି କହିଗଲା ବାରତ ॥
ଶୁଣିଣ ଶ୍ରୀରାମ ଯେ ସମ୍ପ୍ରତେ ନ କରନ୍ତି ।
ସୀତାର ମୁଣ୍ଡ ଚାହିଂଣ ବାହୁନନ୍ତି ॥୧୦୦
ଦୁଇ ଯଉବନ ସୁବର୍ଣ୍ଣ କୁମ୍ଭ ଜାଣି ।
ଅମୃତ ପୂରାଇଲାକି ପ୍ରକଟ ଢାଙ୍କେଣି ॥
ପୂର୍ବର କଥା ଜାଣି ଶ୍ରୀରାମ ପ୍ରଶଂସି ।
ଭାଳନ୍ତି ଯେହାକୁ ମୁଂ ନ ପାଇଲି ବିଳସି ॥
ଯେଡ଼େକ ପଦାର୍ଥ ମୋତେ ନୋହିଲାକ ଭୋଗ ।
ଏହେହେକ କର୍ମରେ ଅଛଇ ପୂର୍ବଯୋଗ ॥
ସର୍ବାଙ୍ଗ ସୁଲକ୍ଷଣୀ ଅବିଗୁଣ ନାହିଂ ।
ଶିରଛେଦ ଯୋଗ ହୋଇଲା କିସ ପାଇଂ ॥
ପୂର୍ବେ ଚିତ୍ରକୂଟେ ଥିଲୁ ଯେବଣ କାଳେ ।
କାକ ପକ୍ଷୀ ଧାଇଂଲା ଭୋଖର ବିକଳେ ॥୧୦
ସୀତୟା ଯେ କସ୍ତୁରୀ ମାଯେସଂ ବାଛୁଥିଲା ।
କୁଆର ଲାଉଡ଼ ଯେହାର ଥନରେ ଲାଗିଲା ॥
ଅବିଗୁଣ ହୋଇଣ ଯେକାଯେ ମାତ୍ର ଅଛି ।
ଆଉ ଖୁଣିବାକୁ ଏହା ଦେହେ ନାହିଂ କିଛି ॥
ଆବର ଅଧର କାମୋଡ଼ି ଥଣ୍ଡେ ଘେନି ।
ବିଭୀଷେଣ ବୋଇଲା ଦେବ ସେ ଶକୁନ୍ୟ ଚିହ୍ନି ॥
ନିରୋପି ଚାହିଂଲେ ଯୌବନେ ଘାତ ନାହିଂ ।
ମୃତପିଣ୍ଡ ଛାଡ଼ି ଉଠିଲେ ଶ୍ରୀରାମ ଗୋସାଇଂ ॥
ଉଠିଯାଇ ଦେଖିଲେ କାଟିଲା ମୁଣ୍ଡ ଗୋଟି ।
ଝର ଝର ରୁଧିର ବହଇ ବେକ ତଣ୍ଟି ॥୨୦
ଅଧର ନିରୋପନ୍ତି ସୀତୟାର ସାଇଂ ।
କାକ ପକ୍ଷୀର ଯେ ଥଣ୍ଡ ଚିହ୍ନ ନାହିଂ ॥
ନୋହଇ ଯେ ସୀତା ବୋଲିଣ ଉଭା ହୋନ୍ତି ।
ଶଙ୍କୁନ ନାହିଂ ବୋଲି ଯେ ଆଣ୍ଟେଣ ଡାକ ଦ୍ୟନ୍ତି ॥
ଶୁଣିଣ ହରଷ ଯେ ହୋଇଲେ କପିବଳ ।

ସୁଗ୍ରୀବ ବିଭୀଷେଣ ଅଙ୍ଗଦ ନଳ ନୀଳ ॥
ହନୁ ଜମ୍ବେବ ଶଭରୀ ସେନାପତି ।
ସୁଷେଣ ତାରାକ୍ଷ କେଶରୀ ପ୍ରଭୃତି ॥
ଦଧିମୁଖ କାଳିମୁଖ କଞ୍ଚଣ ସୁନାସ ।
କୁମୁଦ କାଳିଞ୍ଜନ ପବନ ପାରାସ ॥୩୦
କୁନ୍ଦ ଦୃବିନ୍ଦ ମହାନ୍ଦ୍ର ଚନ୍ଦନ ।
ଗବୟେ ଗବାକ୍ଷ ଗନ୍ଧମାରଦନ ॥
ଡାଳିମ୍ବ ବସନ୍ତ ସାରାସ ପନଶିଳ ।
ଶତବାଳି କାଳିମୁଖ ଶରସେତୁ ବାଳ ॥
ଆନନ୍ଦ ହୋଇଲେ ଯେ ଶ୍ରୀରାମ ବୋଲ
ଶୁଣି ।
ଯହୁଁ ସେ ନୋହିଂଲାକ ଶ୍ରୀରାମ ଘରଣୀ ॥
ବିଭୀଷେଣ ବୋଇଲା ଦେବ ଶୁଣ
ରଘୁନାଥ ।
ମୁଇଂ ଯାହା କହିଲଇଂ ଅଟଇ ଯଥାର୍ଥ ॥
ଇନ୍ଦ୍ରଜିତ ବଳେ କି ସୀତାକୁ ହୋୟେ ମାରି ।
ସାକ୍ଷାତ ସାଧେବୀ ସେ ଜନେକ
କୁମାରୀ ॥୪୦
ଚାଲ ସ୍ୱାମୀ ଏବେ ସୁବଳୟାକୁ ଯିବା ।
ବେଳ ଅସ୍ତ ହୋଇଲା ଯେଥେ କିମ୍ପା ଥିବା ॥
ମୃତପିଣ୍ଡ ନେଇ ସମୋଦ୍ରେଣ ମେଲ ।
ଜାନେକୀର ରୂପକୁ ହୋଇଲା ସମତୁଲ ॥
କିମ୍ପା ଅକାରଣେ ପଡ଼ିଥିବ ଯେଥ ।
ଯେତେ ବୋଲି ବାହୁଡ଼ା ବିଜଏ ରଘୁନାଥ ॥
ମାୟାସୀତାନେଇ ଯେ ଅଙ୍ଗଦ ହନୁମାନ ।
ସମୁଦ୍ରେ ପକାଇଣ ଅଇଲେ ବହନ ॥
ସୁବଳୟାରେ ପ୍ରବେଶ ହୋଇଲେ
ରଘୁନାଥ ।
ଦେବନଦୀରେ ସ୍ନାହାନ କଲେକ
ତୁରିତ ॥୫୦
ସଇନି ସହିତେ ରୁଧିର ଛଡ଼ାଇଲେ ।
ରଣପୁତ୍ରମାନେ ସନ୍ଧ୍ୟା ସୁମରିଲେ ॥
ନିଜ ନବରେ ଯେ ହୋଇଲେ ପରବେଶ ।
ନିଦ୍ରାରେ ଅଶକତ ଦଶରଥର ଶିଷ୍ୟ ॥
ନୀଳ ଆଗିଆଣି ରଖିଲାକ ଠଣା ।
ବିଭୀଷେଣ ବୁଲଇ ବଜାଇ ବାଜଣା ॥

ସୁଗ୍ରୀବର ଅଙ୍ଗଦ ଜମ୍ବେବ ହନୁମନ୍ତ ।
ଆଗପଛ ଦୁଇପଖା ଲାଗଇ ଯେହାନ୍ତ ॥
ଲକ୍ଷଣ ଧନୁଧରି ଜଗଇ ପାହାରୀ ।
ନିଜେ ଅଚେତନ ଅଯୋଧ୍ୟା
ଦଣ୍ଡଧାରୀ ॥୬୦
କୃଷ୍ଣାଜିନ ଛାଲେ ଅମଳାଣ ଶାଢ଼ୀ ଶେଯ ।
ତହିଂ ପହୁଡ଼ିଣ ଅଛନ୍ତି ରାମରାଜ ॥
ନିଦ୍ରାରେ ରଘୁନାଥ ଦେଖିଲେ ସପନ ।
ଶ୍ୱେତ ଗଜ ଆରୋହି ଅଛନ୍ତି ରଘୁନାନ ॥
ଶିରେ ଶ୍ୱେତ ଛତ୍ର ଉଡ଼ଇ ଫର ଫର ।
ଶ୍ୱେତ ପୁଷ୍ପମାଳା ଲମ୍ବଇ ହୃଦୟର ॥
ଶ୍ୱେତବସ୍ତ୍ର ପରିହରଣ ସର୍ବାଙ୍ଗେ ଚନ୍ଦନ ।
ସୁବର୍ଣ୍ଣ କଟୋରାୟେ ଶାଳୀଅନ୍ନ କରନ୍ତି
ଭୋଜନ ॥
ଶ୍ୱେତ ପର୍ବତ ଉପରେ ଛନ୍ତି ଉଠି ।
ଶ୍ୱେତ ମେଘଙ୍କର ଶୁକଳ ପୁଷ୍ପ ବୃଷ୍ଟି ॥୭୦
ଶଙ୍ଖଚକ୍ର ବାହେ ଶାରଙ୍ଗ ଧନୁଶର ।
ସାମବେଦ ଶିଖା ଶିଖାନ୍ତି ଦ୍ୱିଜବର ॥
ସୁବାସ ସମୀର ଶୀତଳ ଘେନି ବହେ ।
ସନ୍ତୋଷେଣ ସାନନ୍ଦ ମନ ହୋୟେ ॥
ଶୁକଳ ଶୂନ୍ୟ ଯେ ଦିଶଇ ସୃଷ୍ଟି ଯାକ ।
ସାଧୁ ସାଧୁ ଡାକ କରନ୍ତି ସୁରଲୋକ ॥
ଶ୍ୱେତଚାମର ଯେ ପଡ଼ଇ ଚଉପାଶ ।
ଶିରେ ବାନ୍ଧିଛନ୍ତି ଶୁକଳ ଝିନବାସ ॥
ଶ୍ରୀକର୍ପୂର ଗୁଣ୍ଡି ଯେ ସିଞ୍ଚନ୍ତି ସେନାମାନେ ।
ଶ୍ୱେତ ରତ୍ନ ଶୋଭାବନ ଶ୍ୱରୀର
ଭୂଷଣେ ॥୮୦
ସୁନ୍ଦରୀ ସୁସ୍ୱରେ ହୁଳହୁଳି ଦ୍ୟନ୍ତି ।
ସୀତୟା କୋଳେଧରି ପୂର୍ବ ମୁଖେ ବସିଛନ୍ତି ॥
ଶ୍ୱେତ ଅଶ୍ୱ ସଜ କରି ସନ୍ନିଧେ ଲୋକ
ଘେନି ।
ଶୁଦ୍ଧ ସୁମଙ୍ଗଳେ ଯେ ଶବଦ ଶୁଭଇ
ଶଙ୍ଖଧ୍ୱନି ॥
ଏସନେକ ସପନ ଯେ ଦେଖିଲେ
ରଘୁପତି ।
ନିଦ୍ରା ତେଜିଣ ଯେ ଉଠିଲେ ଦାଶରଥି ॥

ଲକ୍ଷଣକୁ କହିଲେ ଯେ ସପନ ବୃତ୍ତାନ୍ତ ।
ସଉମିତ୍ରୀ ବୋଇଲା ଶୁଣ ସୀତାକାନ୍ତ ॥
ତଇଲୋକରେ ଈଶ୍ୱର ତୁ ହୋଇବୁ ଯେ
ଯେକା ।
ଅଳପ ଦିନେ ଆମ୍ଭେ ବିଧସିଂବା ଲଙ୍କା ॥୯୦
ଆଜର ସାଂଗାମ ହୋଇବ ଦେବଜୟେ ।
ଇନ୍ଦ୍ରଜିତକୁ ଦେବ ଆଜି କରିବି କ୍ଷୟେ ॥
ଏହି ରାତେ ସପନ ଦେଖିଲି ଭୋଦେବ
ଯାହା ।
ଶୁଣ ସାବଧାନେ ତୁମ୍ଭେ ତୈଲୋକ୍ୟର
ନାହା ॥
ରାବଣର ତନୟେ ଯେ ମଇଂଷି ବାହାନ ।
ଗଳାରେ ରଙ୍ଗପୁଷ୍ପ ମାଳା ଶୋଭାବନ ॥
ରଙ୍ଗବସ୍ତ୍ର ପରିହରଣ ତଇଳେ ଜରଜର ।
ଦକ୍ଷିଣ ଦିଗକୁ ଗମଇ ରାବଣ କୁମାର ॥
ଯେସନେକ ସପନ ଦେଖିଲି ଗୋସାଇଂ ।
ବସିଥିଲି ସିନା ନୟନେ ନିଦ୍ରା
ନାହିଂ ॥୧୦୦
ଅଳପ ଘୁମଘାଲି ହୋଇଲା ପାହାନ୍ତିକି ।
ଭୋଦେବ ସପନ ମୁଂ ଦେଖିଲି ଯେତିକି ॥
ବିଚାରି ଜାଣିଲି ମରିବ ଇନ୍ଦ୍ରଜିତ ।
ଶୁଣି ସନ୍ତୋଷ ଯେ ହୋଇଲେ ରଘୁନାଥ ॥
ନିତ୍ୟକର୍ମ ବିଧାନ ସାରିଲେ ବେଗକରି ।
ଦର୍ଶନ କଲା ଆସି କିଷ୍କିନ୍ଧା ଦଣ୍ଡଧାରୀ ॥
ଜମ୍ବେବ ହନୁମତ ଅଙ୍ଗଦ ଅଇଲେ ।
ଅଷ୍ଟ ସେନ୍ୟେ ଆସି ଦ୍ରଶନ ବେଗେକଲେ ॥
ପଞ୍ଚଶ ଯୂଥପତି ମିଳିଲେ ତଡ଼ତି ।
ସଙ୍ଗଳସଗୁଣ୍ଡି ଯେ ନିରନ୍ତରେ ଜଳଇ
ବତୀ ॥୧୦
ରାତ୍ର ପ୍ରହରେ ଥାଉ ଉଜାଗର ।
ବିଭୀଷଣେ ଚାହିଁ ଯେ ବୋଲନ୍ତି ରଘୁବୀର ॥
କିହୋ ଲଙ୍କପତି କରିବା ଆମ୍ଭେ କିସ ।
ଇନ୍ଦ୍ରଜିତ କୁମର କେମନ୍ତେ ହୋଇ
ପ୍ରାଣନାଶ ॥
ତାହାକୁ ଦେଖି ମୋର ପଳାନ୍ତି ସଇନି ।
ଯୂଥପତି ନପାରନ୍ତି ଶାଳଶିଳ ଘେନି ॥

ସେନାମାନେ ଭୟେ ଆଡ଼ ହୋଇଯାନ୍ତି ।
ବୀର ମହାବୀର କେହି ନରହନ୍ତି ॥
ଲକ୍ଷଣ କୁମର ନୋହଇ ସାମରଥ ।
ମୋତେ ତୁମେ ଯୁଝି ନଦିଅ କଦାଚିତ ॥୨୦
ତୁତ ବିଭୀଷେଣ ଓପ୍ରୋଧ ତାକୁ କରୁ ।
ଇନ୍ଦ୍ରଜିତ ବୀର କେମନ୍ତେ ଆନେମରୁ ॥
ବାବୁ କ୍ଷେତ୍ରୀ ତୁରେ ଅଟୁ ମେଘନାଦ ।
ସାଚା ବୀରଧୁ ତୋର ଇନ୍ଦ୍ରଜିତ ପଦ ॥
ଦେବେ ଦାନବେ ତୋତେ ହାରିଲେ ରଣେ ।
ରାବଣ ଯେତେ ସଂପଦ ପାଇଲା ଆନେ କେଣେ ॥
ସବୁ ଦେବତାଙ୍କର ଶହସ୍ର ଆୟେ ଥିଲା ।
ହେଳ ଯୁଦ୍ଧେ ଚଉଦ ଭୁବନ ଜିଣିଲା ॥
ଯମ ପାଞ୍ଜିରେ ତୁରେ ନୋହିଲୁ ଲେଖନ ।
ଧନ୍ୟ ଶକ୍ରାଜିତରେ ଧନ୍ୟ ତୋ ଜୀବନ ॥୩୦
ତୋହୋରଥାନ୍ତେ କି ଜୟେ ଅଛି ମୋତେ ।
ବାହୁଡ଼ି ଯିବି ଯେବା ଭୟେ କରି ତୋତେ ॥
ରକ୍ଷ କପି ଲୋଚାୟେ ମରିବେ କି ପାଇଂ ।
ତୋତେ ନଜିଣିଲେରେ ମୋତେ ଯଶ ନାହିଂ ॥
ଶ୍ରୀରାମ ବିମନ ଜାଣିଲା ବିଭୀଷେଣ ।
କରଯୋଡ଼ି କହିଲା ଯେ ଶୁଣିମା ରଘୁନାନ ॥
ପୂର୍ବେ ଇନ୍ଦ୍ରଜିତ ଅନେକ ତପ କଲା ।
ବାର ବରଷ ଯେ ଆହାର ବର୍ଜ୍ଜିଲା ॥
ବାର ବରଷ ଯେ ନକଲା ମଇଥୁନ ।
ନିଦ୍ରା ସହିତେ ନାହିଂ ଦ୍ୱାଦଶ ବରଷେଣ ॥୪୦
ଇନ୍ଦ୍ରି ନିଗ୍ରହିଣ ଅନେକ ତପ କଲା ।
ପ୍ରସନ୍ନ ହୋଇଣ ବିଧାତା ବରଦେଲା ॥
ଜଗତ ଜିଣ ବୋଲି ଯେକମନ୍ତ୍ର କର୍ଣ୍ଣେ ।
ଦେବଦଳଣ ରଥ ଦେଲାକ ତୋଷମନେ ॥
ଅକ୍ଷୟେ ତ୍ରୋଣ ଯେ ଦିବ୍ୟଅସ୍ତ୍ର ଦେଲା ।
ଦିଗଦହନ ଚିରାଳ ବିଜୟେ ଧନୁ ସମର୍ପିଲା ॥
ତେଣୁ ସେ ଦଇତ ଜିଣିଲା ତିନିପୁର ।
ପ୍ରଥମ ରଣବେଳେ ଜିଣିଲା ବଜ୍ରଧର ॥
ଦେବତାମାନଙ୍କୁ ସେ ଆଣିଲା ବନ୍ଦୀକରି ।
ତେଣୁ ନାମ ବୋଲାଇଲା ଇନ୍ଦ୍ରର ଅଇରି ॥୫୦
ବ୍ରହ୍ମାଣ୍ଡେ ଅଜୟେ ବିଶ୍ରର୍ବାର ନାତି ।
କୋଟିଯେ ଭାରିଯା ତାର ଅଛେ ପଦ୍ମନେତ୍ରୀ ॥
ସବୁ ଭୁବନରୁ ଅଛି ବାଛି ଆଣି ।
ତରେଣ ମଇତ୍ର ହୋଇଲା ବଜ୍ରପାଣି ॥
ବଡ଼ ଦୁଲଭେ ସେ ମରଇ ଅସୁର ।
ଶୁଣି ବିସ୍ମୟେ ଯେ ହୋଇଲେ ରଘୁବୀର ॥
ଲକ୍ଷଣ ପ୍ରତଜ୍ଞା ଯେ କରନ୍ତି ଶିରଝୁଣି ।
ଦେସି ଆଜ୍ଞା ଦେବ ସୂର୍ଯ୍ୟ କୁଳମଣି ॥
ଯେତେ ଜପତପ ଇନ୍ଦ୍ରଜିତ କଲା ।
ବ୍ରହ୍ମାଣ୍ଡ ଭିତରେ ସବୁନ୍ତି ଜିଣିଲା ॥୬୦
ଆଜ ତାର ଜୀବନ ହରିବଇଂ ମୁଇଂ ।
ନିୟମ କରୁଅଛି ଧନୁଶସ୍ତ୍ର ଛୁଇଂ ॥
ଯେବଣ ବ୍ରହ୍ମା ତାହାକୁ ଦେଇଅଛି ବର ।
ତାହାରେ ରଖିଲେ ମାରିବି ଅସୁର ॥
ଯେତେ ବୋଲି ସଜ ସମରେ କନେଷ୍ଟ ।
ଅକ୍ଷୟେ ବେନିତ୍ରୋଣ ଭିଡ଼ିଲେ କାନ୍ଧତଟ ॥
କରେଣ କୋଦଣ୍ଡ ଯେ ବିକ୍ରମ ସିଂହମୂର୍ତ୍ତି ।
ଦେଖିଣ ଆନନ୍ଦ ଯେ ହୋଇଲେ ରଘୁପତି ॥
ବିଭୀଷେଣକଇ ବୋଇଲେ ତୁ ଶୁଣ ଲଙ୍କପତି ।
ଲକ୍ଷଣର ସଙ୍ଗେ ତୁ ହୋ ଯାଅସି ତଡ଼ତି ॥୭୦
ସଉମିତ୍ରୀ ସାନ ନ ଜାଣଇ ଯୁଦ୍ଧର ଭଙ୍ଗୀ ।
ତୁମ୍ଭେ ଦୁଇ କ୍ଷତ୍ରୀ ହୋଅ ଏକ ସଙ୍ଗୀ ॥
ଅଙ୍ଗଦ ହନୁମନ୍ତ ଯିବେ ଆଗ ହୋଇ ।
ନଳ ନୀଳ ସୁଷେଣ ଯୁଝିବେ ପରିଘାଇ ॥
ସୁଗ୍ରୀବର ଜମ୍ଭେବ ପଖା ରଖିଥିବେ ।
କେଶରୀ ଗନ୍ଧମାର୍ଦ୍ଦନ ପଛକୁୟେ ଯିବେ ॥
ଶଉରୀ ଶତବଳ ଆଣିମେ କଢ଼ାଇ ।
ଦଧିମୁଖ ବଳିମୁଖ ଓଗାଳିବେ ଯାଇଂ ॥
ତାଳିମ୍ଭ ଚନ୍ଦନ ପବନ କାଳିଞ୍ଜନ ।
ଗବୟେ ଗବାକ୍ଷ କାମୋଦସୁସୋଦନ ॥୮୦
ଏ ଆଠବୀରେ ମାରିବେ ସୈନ୍ୟପଶି ।
ବସନ୍ତ କଞ୍ଚଣ ନ ଥିବେ ଯୁଦ୍ଧେମିଶି ॥
ସଂପାତି ଶତବାଳି ଓହାଡ଼େଣ ଥିବେ ।
ସୈନ୍ୟଆଗ କରି ପଛେଣ ଯୁଝିବେ ॥
ତୋତେ ହୋ ବିଭୀଷେଣ ଲାଗଇ ମୋର ଭାଇ ।
ଗାଢ଼ ପାଇଲେ ତୁମ୍ଭେ ଆସିବ କଢ଼ାଇ ॥
ଗଡୁ ବାହାର କରିଆଣିମ ମେଘନାଦ ।
କଟେକ ଭିତରେ ପଶି ନ କରିବ ବାଦ ॥
ସବୁ ରକ୍ଷକପି ତୁମ୍ଭର ସଙ୍ଗେ ଯାନ୍ତୁ ।
ଅଧ ସୈନ୍ୟମାତ୍ର ଏକା ଏଥେ ଥାନ୍ତୁ ॥୯୦
ତୁହୋ ବିଭୀଷେଣ କରିବୁଟି ଯୁଦ୍ଧ ।
ଦୈତ୍ୟଙ୍କର ମାୟା ତୁମ୍ଭେ ଦଇତେ ସିନା ବୁଝ ॥
ଯେତେ ବୋଲିଣ ଶ୍ରୀରାମ ଉଠିଣ ଉଭା ହୋନ୍ତି ।
ଲକ୍ଷଣକୁ କୋଳକରିଣ ତିଆରନ୍ତି ॥
ବାବୁ ସଉମିତ୍ରୀ ମୋହୋର ବୋଲେ ଥିବୁ ।
ଆଗଭର ହୋଇ ଇନ୍ଦ୍ରଜିତକୁ ନ ଯୁଝିବୁ ॥
ମୋହୋର ସପତ ତୋତେ ଜାନେକୀର ଚରଣ ।
ବିଭୀଷେଣ ପଛେ ଥାଇ ଯୁଝିବୁ ଲକ୍ଷଣ ॥
ଜାଣୁନା ମେଘନାଦ ଯେମନ୍ତ ଶହସ୍ର ବିନ୍ଧଇଂ ।
ଆଖି ନ ପିଆଡୁ ସ୍ୱର୍ଗ ମଞ୍ଚ ରୁନ୍ଧଇଂ ॥୧୦୦
ରଣଗୋଳ କରିରେ ମାରଇଟି ବଳେ ।
ସେ କଥାକୁ ତଲେ ବାବୁ ଥିବ ସମର କାଳେ ॥
ଯାଅ ତୋତେ କଲ୍ୟାଣ ହୋଇ ସଉମିତ୍ରୀ ।
ହେଳେ ଜିଣି ଆସ ଇନ୍ଦ୍ରଜିତ କ୍ଷେତ୍ରୀ ॥
ପରିମୁକ୍ଷା ହୋଇ ଯାଇଂରେ ତୋତେ ବାବୁ ।
ତୋହୋର ଜୀଇଂଥିଲେ ଅଛଇ ମୋତେ ସବୁ ॥
ନପୁଣ ରଣଦେଖି ଆଗଭର ଧାଉଂ ।
ଜଗତ ଅନ୍ଧାର ସେ କରଇ ଚାହୁଂ ଚାହୁଂ ॥
ଶୂଳ ଶକତି ଗଦା ଯେକାବେଳେ ଯେ ମାରଇ ।

ଦେବତାଙ୍କୁ ଦୁଲଭ ଯେମନ୍ତ ଯୁଦ୍ଧ ସେ
କରଇ ॥୧୦
ମୁହିଂ ତୋତେ ମୁରୁଛି ନ ପାରଇରେ ଭାଇ ।
ଇନ୍ଦ୍ରଜିତ ଛାମୁକୁ ଭାର୍ଜନ କେ ଯାଇଂ ॥
ତୋତେ ପଠିଆଇ ମୁଂ ଏଥେ କିମ୍ପା ଥିବି ।
ସଇନି ସଜ ହୋଇ ମୁଇଂ ଯେବେ ଯିବି ॥
ବିଭୀଷେଣ ବୋଇଲା ତୁ ଶୁଣ ରଘୁବୀର ।
ରାତ୍ର ପ୍ରହରେକ ଅଛଇ ଅପାର ॥
ନିଶବଦ ହୋଇ ଯେଥୁ ଆମ୍ଭେ ଯିବା ।
ତୁନି ହୋଇ କବାଟ ବାହାରେ ରହିଥିବା ॥
ଦ୍ୱାର ଫିଟିଲେ ଯେ ପଶିବା ଝସାଇଂ ।
ଆନ ପ୍ରକାରେ ଜୟ ନାହିଂଟି
ଗୋସାଇଂ ॥୨୦
ଗୋଳ ବାଜିଲେଣ ଜାଣିମ ମେଘନାଦ ।
ବ୍ରହ୍ମା ଦେଇଅଛି ଯେବଣ ମନ୍ତ୍ରପଦ ॥
ନିକୁମ୍ଭିଲା ବଟତଳେ କରିବାକ ହୋମ ।
ରଥେକ ବାହାର ହୋଇବ ଦେବଦଳଣ
ନାମ ॥
ତାହା ଚଢ଼ି ଆସି ସମରେ ପଶଇ ।
ଅକ୍ଷୟେ ତ୍ରୋଣ ବାଣେ ସବୁ ସୈନ୍ୟ
ନାଶଇ ॥
କାଲି ଯେ ମାୟା ସୀତାକୁ ଗଲା ମାରି ।
ଯେବୁଧି କପଟ ହାଦେ ଅଟଇ ତାହାରି ॥
ଯହୁଂ ସେ ଲକ୍ଷଣ ହୋଇଲା ଆଗୁସାର ।
ବିଚାରି ବାହୁଡ଼ିଲା ରାବଣ କୁମର ॥୩୦
ଭାଳିଲା ଯେ ରଥେ ଥିଲେ ନୋହଇଂ
ଶତ୍ରୁଜିଣି ।
ସବୁ ସଂହାରଇ ହୋମଘରୁ ରଥ ଆଣି ॥
ଯେତେ ବୋଲି ତରକ ଛନ୍ଦ କରିଗଲା ।
ମାୟା ସୀତାଯେକ ଉପାୟେ ଭିଆଇଲା ॥
ସେ ରଥ ଚଢ଼ିଣ ଅଇଲା ଦୁଇବେଳ ।
ନାଗ ଫାଶେ ବାନ୍ଧି କଲାକ ମହାଗୋଳ ॥
ବ୍ରହ୍ମ ଶସ୍ତ୍ର ଦିନରେ ସେହି ରଥ ଚଢ଼ି ।
ଏଡ଼େ ବଳ ତୋର ମାଇଲା ଯେକ ଘଡ଼ି ॥
କାଲି ସେ ବିବାନ ନଥିଲାକ ଯହୁଂ ।
ତରକ ଛନ୍ଦେଣ ବାହୁଡ଼ିଣ ଗଲାକ ସେହୁ
ତହୁଂ ॥୪୦

ଯେବେ ଆମ୍ଭେ ପାଚେରୀ ପାଖେ
ଲାଗିଥିବା ।
କବାଟ ଫିଟିଲେଣ ଭିତରେ ପଶିବା ॥
ଇନ୍ଦ୍ରଜିତ ମନ୍ଦିରେ ବେଢ଼ିବା ଧାତିକାରେ ।
ଗୋଳ ଯୁଦ୍ଧ କରି ମାରିବା ଯେ ଯାହାରେ ॥
ନିକୁମ୍ଭିଲା ବଟ ତଳକୁ ନ ପାରି ଯାଇଂ ।
ତେତେବେଳେ ସେ ଅବା ମରିବାକ
ଗୋସାଇଂ ॥
ଶୁଣି ହରଷ ଯେ ହୋଇଲେ ଶ୍ରୀରାମ ।
ବିଭୀଷେଣକୁ ପ୍ରଶଂସା କରନ୍ତି ରଘୁନାନ ॥
ସାଧୁ ସାଧୁ ଲଙ୍କପତି ସାଧୁ ତୋର ହିଆ ।
ଜାଣିଲି ମହାତ୍ମାତୁ ଅଟୁ ପୁଣ୍ୟ ଦେହା ॥୫୦
ସୋଦର ଭାଇଙ୍କି ଛାଡ଼ିଲୁ ମୋର ପାଇଂ ।
ବଂଧୁବର୍ଗ ମଲେ ଭାଳିବା ତୋର ନାହିଂ ॥
ଯେବେ ପୁତୁରାକୁ ଯାଉଅଛୁ ମାରି ।
ଯେକଥା ଆନବେଳେ ନୁହଂଇନା କରି ॥
ଏତେ ବୋଲି ରାମ ବିଭୀଷେଣକଇ
କୋଳକଲେ ।
ଲକ୍ଷଣ ହାଥଧରି ସମର୍ପିଣ ଦେଲେ ॥
ଏହାର କଥା ରାଜା ଲାଗଇନା ତୋତେ ।
ଇନ୍ଦ୍ରଜିତକଇ ଆଜି ଜିଣିଦେବୁ ମୋତେ ॥
ହୋଉ ଦେବ ବୋଲି ଯେ ବୋଲଇ
ବିଭୀଷେଣ ।
ମୋତେ ସାହା ଘେନି ସେ ମାରିବେ
ଲକ୍ଷଣ ॥୬୦
ଏତେ ବୋଲି ଶ୍ରୀରାମ ଚରଣେ ନମନ୍ତି ।
ଆପଣେ ରଘୁନାଥ କୋଦଣ୍ଡ ଗୁଣେ ଦ୍ୟନ୍ତି ॥
ଦୁଇକନ୍ଧେ ଭିଡ଼ିଲେ ଅକ୍ଷୟେ ତ୍ରୋଣବେନି ।
ପାଦ ବଢ଼ାଇଲେ ଅନୁକୂଳ ଘେନି ॥
ଜମ୍ୱେବ ସୁଷେଣ ମଙ୍ଗଳ ପାଠ ପଢ଼ି ।
ଯାଆନ୍ତି ରାତ୍ର ଯେ ଅଛଇ ବେନିଘଡ଼ି ॥
ନବମୀର ତିଥି ଯେ ହୋଇବ ପରାଭାତେ ।
ରବିବାର ଦିବସ ହସ୍ତାନକ୍ଷତ୍ରେ ॥
ଶ୍ରୀରାମ ରାଶିକି ସାଧକେ ତାର ହୋଇ ।
ଦୃତୀୟ ଚନ୍ଦ୍ର ବୋଲି ଜମ୍ୱେବ ମନ୍ତ୍ରୀ
କହି ॥୭୦

ଲକ୍ଷଣ ରାଶିକି ପ୍ରଶସ୍ତ ଅଟଇ ସେଦିନ ।
ଶୁଣି ରଘୁପତି ଆନନ୍ଦ ମନେ ମନ ॥
ପର୍ବତୁ ଓହ୍ଲାଇଲେ ଦିଉଡ଼ି ଲଗାଇ ।
ପଥ ବାହି ଯାନ୍ତି ନିଶବଦ ହୋଇ ॥
ଲଙ୍କାଗଡ଼ ତଳେ ହୋଇଲେ ପରବେଶ ।
ଶିଳାବୃକ୍ଷ ଧରି ଯେ ରହିଲେ ତରୁଶିଷ ॥
କୋଟିଏ ରାକ୍ଷସ ଯେ ରକ୍ଷା କରିଥିଲେ ।
ଆଗିଆଣି ଦଣ୍ଡର ମୁଖରେ ପଡ଼ିଲେ ॥
ବାଜିଲା ରଣଗୋଳ ସାଂଗ୍ରାମ ଧନ୍ଦୋଳ ।
ମାର ମାର ଧ୍ୱନି ଯେ ବାଜଇ
ରଣଗୋଳ ॥୮୦
ଶହସ୍ରେ ମରାମରି ବୃକ୍ଷେ ପିଟାପିଟି ।
ରକ୍ଷ ଭାଲୁଙ୍କ ଯେ ଅସୁର ରଣେ ଲୋଟି ॥
ଲଙ୍କାର ଦଇତେ ପାଇଲେ ବାରତା ।
ଏକକୁ ଆରେକ ପଚାରନ୍ତି କଥା ॥
କେ ବୋଲଇ ଗଡ଼େ ଯେ ପଶିଲେ
ରକ୍ଷକପି ।
କାଲି ଗଡ଼ଦ୍ୱାରେ ରହିଥିଲେ ଛପି ॥
ତୁଣ୍ଡ ନ ଶୁଭଇ ବାଜଣା ନ ବଜାଇ ।
କବାଟ ଫିଟିବା ମାତ୍ରକେ ପଶିଲେ ଝସାଇ ॥
ଠଣା ରାକ୍ଷସଙ୍କ ସଙ୍ଗେ ଯୁଦ୍ଧ କଲେ ।
ଦୁଇ କତିରୁ ଯେ ଅନେକ ସୈନ୍ୟ
ମଲେ ॥୯୦
ଆଜି ନଗ୍ର ନିଶ୍ଚୟେ କରିବେ ଧୂମାନ୍ତ ।
ଆପଣେ ଭାଳିଆସି ଅଛଇ ସୀତାକାନ୍ତ ॥
ଗଡ଼େ ନିହାଇ ପଶନ୍ତି ଲୋକେ ଯେ
କହିଲେ ।
ବିଭୀଷେଣର ବୁଧିରୁ ରାତ୍ରହୁଂ ଅଇଲେ ॥
ବିକରାଳ ମୂର୍ତ୍ତି ଦିଶନ୍ତି କପିମାନେ ।
ଦେଖୁ ଦେଖୁ ଖେପୁ ଯେ ଅଛନ୍ତି ଗଗନେ ॥
ଯେକର କହନ୍ତେ ଆରେକ ତହିଂଜାଣି ।
ଉତ୍ତର ଦ୍ୱାରେ ଯେ ବାଜିଛି ହଣାହଣି ॥
ନଗ୍ର ନରନାରୀ ହୋଇଲେ ବିକଳ ।
କୁଦାକୁଦା ହୋଇ ଭାଳନ୍ତି ସକଳ ॥୧୦୦
ପିଣ୍ଡାଙ୍କର ଉପରେ ଉଠିଣ ଚାହାନ୍ତି ।
କେ ବୃକ୍ଷରେ ଆଇଂଣ ସାଂଗ୍ରାମ ଦେଖନ୍ତି ॥

ପ୍ରସାଦ ଅଟାଳି କେ ମେଢ଼ରେ ଉଠିଚାହିଁ ।
ତଳର ଲୋକଙ୍କୁ ଯେ ଦେଖିଲେ କଥା କହି ॥
ହୋଇଲା ହାଲୋହୋଳି ଯେ ଶଏକୁଣ ଲଙ୍କା ।
ମର୍କଟ ଭାଲୁଙ୍କଙ୍କୁ ଅସୁରେ କଲେ ଶଙ୍କା ॥
ସାଜ ସାଜ ବୋଲି ଯେ ପାଡ଼ିଲେ ଡାକମାନ ।
ସାଜିଲେ ରଥଗଜ ଚତୁରାଙ୍ଗ ସୈନ୍ୟ ॥
ଧାଇଂଲେ କଙ୍କ ଧଙ୍କ ସିଙ୍ଘ ତୁରଙ୍ଗ ଚାରି ।
ସଲୋପି ଅଲୋପି ଦେବଦତ୍ତ ଆଦି କରି ॥୧୦
ଉତ୍ତରଦ୍ୱାରେ ଯାଇଂ ବିରୋଧ ବୀରକଲେ ।
ପଛେ ଯାଇ ଶ୍ରୀରାମ ପଶି ନୁଆରିଲେ ॥
ଲକ୍ଷଣ ବିଭୀଷେଣ ଅଙ୍ଗଦ ହନୁମତ ।
ସୁଗ୍ରୀ କେଶରୀ ସୁଷେଣ ଜମ୍ୱୋବନ୍ତ ॥
ଶଉରୀ କାଳିଞ୍ଜନ ଗାନ୍ଧମାରଦନ ।
ଦଧିମୁଖ କାଳିମୁଖ ବସନ୍ତ ପବନ ॥
କୁନ୍ଦ କାମୋଦ ପନସ ପନଶିଳ ।
ବିବିଧ ସଂପାତି ବଳିମୁଖ ନଳ ନୀଳ ॥
ଯେମାନେ ପଶିଲେକ ବହୁତ ଥାଠ ଘେନି ।
ଶ୍ରୀରାମ ରହିଲେ ସଙ୍ଗେକ ସେନା ଘେନି ॥୨୦
ଡାଳିମ୍ୱ ଚନ୍ଦନ ଆବର ଶତବାଳି ।
ଋକ୍ଷକପି ସଇନ ଯେ ନୋହଇ ଆନେ କଳି ॥
ଗଡ଼ର ବାହାରେ ଯେ ରହିଲେ ଦାଶରଥି ।
ଆଗେ ଓଗାଳିଲେ ଦଇତ ସାତରଥୀ ॥
ଦଇତଙ୍କର ବଳଯେ କଳଣା ନଯାଇ ।
ଶ୍ରୀରାମଙ୍କୁ ଯୁଦ୍ଧ ଯେ କରନ୍ତି ସାତଭାଇ ॥
ଘୋର ସାଂଗ୍ରାମ ଯେ ବଢ଼ିଲା ବେଳୁବେଳ ।
ଭିତରେ ପଶିଲା ଯେ ସୁମିତ୍ରାର ବାଳ ॥
ଇନ୍ଦ୍ରଜିତ ପୁରକୁ ବୋଲିଣ ଧାଡ଼ିଦେଲେ ।
ବାଟେ ଯାଉଂ ଅନେକ ଦାନବ ଓଗାଳିଲେ ॥୩୦
ଦେଖି ହନୁମତ ଧାଇଂଲା ଆଗସରି ।
ରାକ୍ଷସନ୍ତ ମାଇଲା ଯେ ଶିଳାବୃକ୍ଷ ଧରି ॥
ଅଙ୍ଗଦ ଜମ୍ୱେବ ସୁଷେଣ ସୁଗ୍ରୀବର ।
ଏହି ଦୈତ୍ୟ ସୈନ୍ୟ ଯେ ମାଇଲେ ଅପାର ॥
କେଶରୀ ଦ୍ୱିବିନ୍ଦ ରଣଗୋଳ କଲେ ।
ବିଭୀଷେଣ ମାରନ୍ତେ ଅନେକ କ୍ଷୟେଗଲେ ॥
ଦୈତ୍ୟଙ୍କର ପ୍ରବଳ ଦେଖି ଯେ ଶ୍ରୀରାମର ଭାଇ ।
ଦିବ୍ୟ ଅସ୍ତ୍ର କରି ଯେ ମାରିଲା ତୁହାଇ ॥
ଯେକା କାଣ୍ଡକେ ସହସ୍ରେ ଅସୁରେ ସଂହାରଇ ।
ଶହସ୍ରେକ ନ ଛାଡୁ ଆରେକ ଶହସ୍ର ବିନ୍ଧଇଂ ॥୪୦
ଅନେକ ଦୈତ୍ୟ ଯେ ପଡ଼ିଲେ ତାର ବାଣେ ।
ବିକଳେ ରାକ୍ଷସେ ପଳାନ୍ତି ଯେଣେତେଣେ ॥
ଇନ୍ଦ୍ରଜିତ ଲକ୍ଷଣ ସମର କଥା ଶୁଣ ।
ଦେବତା ଦୁଲଭ କରନ୍ତି ଯେବଣ ରଣ ॥
ଦୁହିଂଙ୍କରି ଶ୍ୟରୀରୁ ରୁଧିର ଗଳୁଅଛି ।
ଶକ୍ରାଜିତ ବୋଇଲାରେ ଶୁଣ ରଘୁବଛି ॥
ଯୁବାକାଳେ ସ୍ତିରୀ ଭୋଗ୍ୟ କରି ନ ପାରିଲୁ ।
ମରିବୁ ବୋଲି ମୋର ମୁଖରେ ପଡ଼ିଲୁ ॥
ତୁ କେହ୍ନେ ଜାଣିବୁ ଯୁଦ୍ଧର କିସ ମତ ।
ନ ଜାଣି ହୁତାଶନେ ପଶୁରେ ବାଳୁତ ॥୫୦
ମୁଇଂ ସେ ଇନ୍ଦ୍ରଜିତ ନଜାଣୁକି ମୋତେ ।
ବିଭୀଷେଣ ତୁମ୍ଭର କହିନାହିଂ କି ତୋତେ ॥
ଶତେକ ବେଳ ମୁଂ ଯେ ଜିଣିଲି ସୁରଆଳ ।
ମୋହୋର ମୁଖ ଦେଖି ଡରନ୍ତି ଦିଗପାଳ ॥
ମେରୁ ପର୍ବତ ମୁଂ କରିପାରଇ ଧୂଳି ।
ଲେଉଟାଇ ପକାଇ ମହୀଆଳି ॥
ପୃଥିବୀ ବିଦାରିବି କି ନା ରାଜର ଘାୟେ ।
ସାତସିନ୍ଧୁ ପାଣି ଉଡ଼ାଇବି କି ବାୟେ ॥
ପାତାଳ ଭୁବନ ମଞ୍ଚକୁ ଆଣି ପାରଇ ।
ଯେହିକ୍ଷଣି ତୋତେ ନାରାଚ ସଂହାରଇ ॥୬୦
ମୋହୋର ମୁଖେ ପଡ଼ି କେହ୍ନୁ ଜୀଇଂ ଯିବ ।
ଦେବତା ପ୍ରଭୃତି କେ ଜୀବନ ପାଇବ ॥
ଲକ୍ଷଣ ବୋଇଲା ତୁ ଶୁଣରେ ରାବେଣୀ ।
ତୋହୋର କଥା ମୁଂ ଅଛିନିଆଗୁ ଜାଣି ॥
ଯେ ମୃତୁ ଭୁବନରେ ସଭିହେଂ ନାଶଯାଇ ।
ଚିର ହୋଇ ଯେଥେ କେହି ଯେ ନରହଇ ॥
ଯେ ସୃଷ୍ଟିକି ଯେ ସର୍ଜିଲା ଦଇବ ।
ପ୍ରଳୟ କାଳେ ପୁଣି ଯେହା ନାଶଯିବ ॥
ଚନ୍ଦ୍ରସୂର୍ଯ୍ୟ ଉଇଂଣ ଅସ୍ତ ହେଉଣ ଅଛନ୍ତି ।
ଯେ ଯାହାର ବେଳେ ଋତୁ ଭୋଗ କରନ୍ତି ॥୭୦
ଶୀତ ବରଷା ଗ୍ରୀଷମ ଋତୁ କାଳେ ।
ଆତଯାତ ହୋଉଛନ୍ତି ଯେ ଯାହାର ବେଳେ ॥
ଦିବସ ସରିଲେ ପୁଣି ରାତ୍ର ଆସି ହୋୟେ ।
ରାତ୍ର ହୋଇପୁଣ କାଳକୁ ନ ଥାୟେ ॥
ପୁଣିହିଂ ଦିବସ ପୁଣିହିଂ ନିଶିହୋୟେ ।
ବାର ତିଥି ନକ୍ଷତ୍ର ମାସ ପକ୍ଷ ଯାୟେ ॥
ଦ୍ୱୀପେକେ ସମୋଦ୍ର ସମୋଦ୍ରେ କେ ଦ୍ୱୀପେ ।
ଜଣେଙ୍କର ନାମେ ନାମ କେ ସ୍ୱରୂପେ ॥
ସ୍ତିରୀ କେ ପୁରୁଷେ ପୁରୁଷେ ସ୍ତିରୀଅଛି ।
ଆତଯାତ ହୋଇ ଜୀବନ ଗଛାଗଛି ॥୮୦
ଯେକା ହୋଇଣ ତ ପଦାର୍ଥେ ନାହିଂ କିଛି ।
ହାନି ଅପଚୟେ ସବୁରି ଅଙ୍ଗେ ଅଛି ॥
ପୃଥି ଆପ ତେଜ ବାଇବ ଆକାଶ ।
ସାଗର ସଙ୍ଗମ ଯେ ନଦୀ ପରକାଶ ॥
ପୃଥିବୀକି ମେରୁ ଧାରଣା ଅଟଇ ।
ବାଲି ମାଟି ପଥର ଅଟଇ ଯେକ ଦେହୀ ॥
ମାଟି ବାଲିରୁ ବାଲିରୁ ଶିଳ ଜାତ ।
ସତ ରଜ ତମ ତ୍ରିଗୁଣଟି ବିଖ୍ୟାତ ॥
ଉଦୟେ ମଧାହ୍ନେ ଯେ ସନ୍ଧ୍ୟା ତିନିକାଳ ।
ଆତଯାତ ହୋଉଅଛି ଯେ ଯାହାର ବେଳ ॥୯୦
ତୁ କେହ୍ନେ ବିଚାର କରୁ ଯେ ଅସୁର ।
ଏ ପୃଥିର ନାମ ହାଦେ ଅଟଇ ମୃତ୍ୟୁପୁର ॥
ବେଦ ବଉଦ ବୋଲି ଅଛଇ ଦୁଇମତ ।
ଶ୍ୟରୀରାର୍ଥ ପରମାର୍ଥ ଏଯେ ଦୁଇ ସତ ॥

ଯେଥିଜାତ ହୋଇଲେ ଅବଶ୍ୟ ପ୍ରାଣହାରି ।
ତୁ ବୋଲୁ ମୋତେ କେହି ନ ପାରଇ ମାରି ॥
ପୂର୍ବ ଭାଗ୍ୟ ଘେନି ସମୟେ ଭୋଗ୍ୟକଲୁ ।
ମରିବାର କାଳେ ଆସି ମୋର ମୁଖରେ ପଡ଼ିଲୁ ॥
ଆଜ ଜାଣିମାରେ ତୋହୋର ବଡ଼ପଣ ।
କିଞ୍ଚିତ ନାରାଚେ ଘେନଇ ତୋର ପ୍ରାଣ ॥୧୦୦
କଥା କହୁଂ କହୁଂ ବିନ୍ଧୁଛନ୍ତି ଶର ।
ଦୁହିଂଙ୍କରି ଶ୍ୟରୀର ରକତେ ଜରଜର ॥
କୁହୁଡ଼ି ପ୍ରାୟେ ହୋଇ ଦିଶଇ ରଣଭୂଇଂ ।
ଏକକୁ ଆରେକ ଚିହ୍ନନ୍ତା କେହିନାହିଂ ॥
ସାତ ଶସ୍ତ୍ରବାଣ ବାଛି ପେଷିଲା ଇନ୍ଦ୍ରଜିତ ।
ଦେଖିଣ ନିବାରିଲା ସୁମେତ୍ରାର ସୁତ ॥
ଅଶୀସସ୍ତ୍ରବାଣ ଯେ ପେଷିଲା ଶ୍ରୀରାମର ଭାଇ ।
ଗରୁଡ଼ା ଶହସ୍ରେ ଦନୁଜ ପ୍ରତିତୁଲ ଦେଇ ॥
ଦୁଇ ଶସ୍ତ୍ର ମଧ୍ୟବାଟେ ଭେଟାଭେଟି ।
ହାବୋଡ଼ା ବାଜିଣ ଯେ ପ୍ରଳୟ ଅଗ୍ନିଉଠି ॥୧୦
ନିର୍ଘାତ ପରାୟେ ଶବଦ ଶୁଭିଲା ।
ଅସ୍ତ୍ରଙ୍କର ତେଜେ ସୂର୍ଯ୍ୟକିରଣ ଲୁଚିଲା ॥
ଦୁଇଅସ୍ତ୍ର ବାଜିଣ ପଡ଼ିଲା ରଣତଳେ ।
ଉଲ୍କାପାତ କି ହୋଇଲା ପ୍ରଳୟର କାଳେ ॥
ଏସନେକ ଦେଖି ରିଷଭ ସୁଷେଣ ।
ଜମ୍ବେବ ହନୁମନ୍ତ ଅଙ୍ଗଦ ବିଭୀଷେଣ ॥
କୁନ୍ଦ କାମୋଦ ଯେ ଶରସେତୁ ନଳ ।
ଧାଇଂଲେ ଯୂତପତି ଘେନିଣ ତରୁଶିଳ ॥
ଇନ୍ଦ୍ରଜିତ ରଥେ ଉଠିଲେ ବୀରେ ଯାଇଂ ।
ଚାରି ଘୋଡ଼ାକଇ ଯେ ମାଇଲେ ତୁହାଇ ॥୨୦
ଚକ୍ଷୁର ଛଟକେ ବାହୁଡ଼ିଲେ ପୁଣି ।
ସାରଥି କି ଲକ୍ଷଣ ନାରାଚ ଘେନିହାଣି ॥
ବିରଥୀ ହୋଇଲା ଯେ ରାବଣର ସୁତ ।
ଲକ୍ଷଣକୁ ଚାହିଂ ଯେ ବୋଇଲା ଦଇତ ॥
କ୍ଷଣେ ରହିଥାଅ ମୁଂ ଆସଇ ସଜ ହୋଇ ।
ପିତା ନ ଜାଣଇ ମୁଂ ତାହାକୁ ହାଦେ କହି ॥
ସୈନ୍ୟର ସଙ୍ଗେ ତୁ ଯୁଝୁଥାଅ ବୀର ।
ବିରଥୀ ହୋଇଲି ମୁଂ ନାହିଂ ରହୁବର ॥
ଏତେ ବୋଲି ଭଗ୍ନ ରଥରୁ ଓହ୍ଲାଇଲା ।
ଲକ୍ଷଣର କର୍ଣ୍ଣେ ବିଭୀଷେଣ କହିଲା ॥୩୦
ନୋହଇ ସଉମିତ୍ରୀ ନ ଦିଅ ଯେହାକୁ ଯାଇଂ ।
ଯେମନ୍ତ ବେଳ ହାଦେ କେବେ ହେଂ ନପାଇଂ ॥
ନିକୁମ୍ଭିଲା ବଟତଳକୁ ଯେ ଯିବ ।
ଦେବ ଦଳଣ ରଥ ହୋମରୁ କାଢ଼ିବ ॥
ତହିଂ ବସି ଯୁଝିଲେ ଜିଣଇ ଜଗତ ।
ବ୍ରହ୍ମାର ଆଜ୍ଞା ଯେ ଅଟଇଟି ସତ ॥
ସେହି ରଥେ ବସି ଦୁଇବେଳ ଗଲା ।
ନାଗପାଶ ବ୍ରହ୍ମଅସ୍ତ୍ର ଦୁଇ ଯେ ମାଇଲା ॥
ଯେବେ ମୋହୋର ବୋଲ କର ସଉମିତ୍ରୀ ।
ଯେ ସେ ଇନ୍ଦ୍ରଜିତ ଅଟଇ ମହାକ୍ଷତ୍ରୀ ॥୪୦
କିଞ୍ଚିତ ନାରାଚେ ଜଗତ ଦହି ପାରଇ ।
ସେ ରଥେ ଥିଲେ ଯେହାକୁ କେହି ନ ପାରଇ ॥
ତୁ ଯେହାକୁ ଓଗାଳି ଯୁଦ୍ଧ କର ଯେବେ ।
ମୁଇଂ ବୋଲୁଅଛି ଛାଡ଼ି ଯେହାକୁ ନଦେ ॥
ବିଭୀଷେଣ କହନ୍ତେ ଜାଣିଲା ଇନ୍ଦ୍ରଜିତ ।
ମନେ ବିଚାରିଲା ହୋଇଲା ବିପରୀତ ॥
ଚାଣ୍ଡାଳ ଖୁଡୁତା ମୋର କହିଲା ମୃତ୍ୟୁଭେଦ ।
ଏତେ ବୋଲି ତୁରିତେ ବାହୁଡ଼ିଲା ମେଘନାଦ ॥
ଦିବ୍ୟ ରଥେକ ଯେ ସାରଥି ଆଣିଦେଲା ।
ତହିଂ ମହାବୀର ବିଜେ ଯାଇ କଲା ॥୫୦
ବାବୁ ସେ ରହବୁର ସବୁ ହୀରାମୟେ ।
ନବରତ୍ନେ ଜଡ଼ିତ ଶୁଦ୍ଧ ସୁବର୍ଣ୍ଣମୟେ ॥
କାଳକେତୁ ଧ୍ୱଜ ଦିଗଦହନ ଚିରାଳ ।
ଦେଖି ରିପୁବଳ ଯେ ହୋଇଲେ ଅନ୍ତରାଳ ॥
କରେ ଧନୁ ଧରି ଆସି ପଶିଲାକ ରଣେ ।
ଭୋଖିଲା ସିଂହ କି ବୁଲଇ ଘୋର ବନେ ॥
ବିଭୀଷେଣକୁ ଚାହିଂ ଯେ ବୋଲଇ ଇନ୍ଦ୍ରଜିତ ।
ଧିକ ହୋଇ କିନା ତୋର ନିଲଜ ଜୀବିତ ॥
କ୍ଷତ୍ରୀ ହୋଇ ତୁ ମରିବାକୁ ଡରିଲୁ ।
ଶତ୍ରୁର ତହିଂ ଯାଇ ଶରଣ ପଶିଲୁ ॥୬୦
ସୁକେଶା ଦଇତ ବିଦ୍ୟୁତକେଶୀ ସୁତ ।
ମାଳି ସୁମାଳି ତାର ତନୟେ ମାଲ୍ୟବନ୍ତ ॥
ମାଳି ମାଲ୍ୟବନ୍ତକୁ ଶ୍ରୀହରି ନାଶକଲା ।
ପଳାଇ ଯାଇଂ ସୁମାଳି ପାତାଳେ ପଶିଲା ॥
ତାହାର ଦୋହିତା ଅଟଇ ନଉକେଶୀ ।
ତାହାକୁ ବିଭା ହୋଇଲେ ବିଶ୍ରବା ମହାରଷି ॥
ତହୁଂ ତିନିପୁତ୍ର ତୁମ୍ଭେ ହୋଇଲ ଖ୍ୟାତ ।
ମାତାଗୁଣ ଘେନି ହୋଇଲ ଦଇତ ॥
ଜ୍ୟେଷ୍ଠ ଭାଇ ରାବଣ ସାଧିଲା ତିନିପୁର ।
କଟେକ କଲା ଆଣି ସମୋଦ୍ର ଭିତର ॥୭୦
ଚଉଦ ଭୁବନର ଧନବିତ୍ତ ନାରୀ ।
ଲଙ୍କାଗଡ଼େ ଠୁଳ କଲା ସବୁ ଶିରୀ ॥
କୁମ୍ଭକର୍ଣ୍ଣ ମହାବୀର ନିଦ୍ରାଭୋଗ କଲା ।
ସବୁ ସମ୍ପଦ ତୋତେ ରାବଣ ସମର୍ପିଲା ॥
ଅନେକ ରାଜ୍ୟ ଯେ ଭୋଗ୍ୟ କରିଥିଲୁ ।
ଅସମୟ ଦେଖି ଛାଡ଼ି ପଳାଇଲୁ ॥
ଶତ୍ରୁର ସଙ୍ଗେ ଥାଇଂ କୁଟୁମ୍ବ ଛିଦ୍ର କହୁ ।
ଯେଡ଼େ ପାପ ଆତ୍ମା କେବଣ ଗୁଣେ ବହୁ ॥
ବିଶ୍ୱାସଘାତେକୀ ତୁ ଅଟୁରେ ଚାଣ୍ଡାଳ ।
ଯେଡ଼େ ନିସତେ ତୁ ଜୀଇଂବୁ କେତେ କାଳ ॥୮୦
ଧର୍ମଶାସ୍ତ୍ର ପୁରାଣ କି ଶୁଣିଲା ନାହିଂ କର୍ଣ୍ଣେ ।
ସୋଦର ବଧ୍ୟକଲେ କିସ ହୋନ୍ତି ଜନେ ॥
ଯେକା ଜୀଇଂଣ କୁଟୁମ୍ବ ମରାଇଲୁ ।
ଆପଣେ ନୁଆରି ପରରେ କରାଇଲୁ ॥
ମୁଇଂ ତୋର ପୁତୁରା ମୋତେ ମନ୍ଦ ଚିନ୍ତୁ ।
ଜ୍ୟେଷ୍ଠଭାଇ କୁମ୍ଭକର୍ଣ୍ଣ ମଲା ତୋର ହେତୁ ॥
ଲଙ୍କାଗଡ଼େ ରାଜା ହୋଇବୁ ବୋଲିଅଛୁ ।
ତେଣୁ ସେ ପାପିଷ୍ଠରେ କୂଟବୁଧି ରଛୁ ॥
ରକ୍ଷ ମର୍କଟଙ୍କୁ ପାଇଅଛୁ ସାହା ।
ତପୁସୀ ଦୁଇ ବାପୁଡ଼ାକୁ ହୋଇଲୁ ଡାହାଣ ବାହା ॥୯୦

ଯେମନ୍ତ ବୁଧିକରି ମରାଇବୁ ବଂଶ ।
ଯେତେକ ଭରସା କେମନ୍ତେ କଲୁରେ
କୁଳପାଂଶ ॥
ନଜାଣୁ କି ରାବଣର ବୀର ଶୂରପଣ ।
ଆଖି ଘେନି ଦେଖିନାହୁଂକି ମୋର ରଣ ॥
ସାଂଗ୍ରାମ ଭୂମିରେ କାହାକୁ ଅଛି ହାରି ।
ଯେକଥା କିଂପାରେ କହିଲୁ ନ ବିଚାରି ॥
ଆଜି ତୋତେ ମୁଁ ଯେ ପେଷିବି ଯମପୁର ।
ଯେତେବୋଲି କରେ ଧଇଲା କରବାଳ ॥
ବିଭୀଷେଣ ବୋଇଲା ଶୁଣସିରେ ପୁତ୍ର ।
ମୁହିଂ କିମ୍ପା ନାଶ କରିବି ତୁମ୍ଭ
ଗୋତ୍ର ॥୧୦୦
ଆପଣାର ଦୋଷ ତୁମ୍ଭେ ନ ବିଚାର ମନେ ।
ଶ୍ରୀରାମ ଘରଣୀକି ଆଣିଲ କେସନେ ॥
ଯେତେକ ଉପଦର୍ପ କହିଲେ ନଗଲା ।
ରମ୍ଭାକୁ ହରିଲ ପୁରନ୍ଦର ଶାପ୍ୟ ଦେଲା ॥
କପିଳାସ ଉପାଡ଼ିଲ ନନ୍ଦିକେଶ୍ୱର ଶାପ୍ୟ ।
ବୁଝି ନ ପାରିଲା ତୁମ୍ଭର ଏ ବାପ ॥
ଅଯୋଧ୍ୟାରେ ମାଇଲ ଶ୍ରୀରାମର
ଉପରବଂଶ ।
ସେ ବୋଇଲା ମୋହର ବଂଶେ ତୁହିଂ ହୋଅ
ନାଶ ॥
ବେଦମତୀ କନ୍ୟା ଯେ ତପ କରୁଥିଲା ।
ଚାଣ୍ଡାଳ ପିତା ତୋର ତାହାକୁ
ହରିଗଲା ॥୧୦
ବିଡ଼ମ୍ବଣ ହୋନ୍ତେ କୋପିଲା ମହାସ୍ୟତୀ ।
ବୋଇଲା ମୋର ଯୋଗୁଁ ମରସି ଲଙ୍କପତି ॥
ଯେତେବୋଲି ବାଳୀ ଅଗ୍ନିରେ ଝାସ
ଦେଲା ।
ସେସେ ବେଦମତୀ ଜାନେକୀ ହୋଇଲା ॥
ଆବର କୋବେର ଯେ ଦେଇଅଛି ଶାପ୍ୟ ।
ଯହୁଂ ହୃଦରେ ତାହାକୁ ଚିନ୍ତିଲେ ଲକ୍ଷେ
ପାପ ॥
ସେ ବୋଇଲା ମୁଇଂ ତୋର ଜ୍ୟେଷ୍ଟ ଭାଇ ।
ମୋତେ ହିଂସାକଲ ସାବତ ଗୁଣ ବହି ॥
ତୋତେହିଂ ବିପରି ପଡ଼ିବାର କାଳେ ।
ଭାଇ ଭାଇ ଛଡ଼ାଛଡ଼ି ହୋଇବ
ତେତେବେଳେ ॥୨୦
ସେ କଥା ଜାଣିଣ ମୁଁ ଅଛଇ ହେତୁ କରି ।
ଯେତେକେ ଶାପ୍ୟ ତୁମ୍ଭର ସକଳ ସୁମରି ॥
ଶ୍ରୀରାମ ଘରଣୀ ଯହୁଂ ଆଣିଲା ଚୋରାଇ ।
ମୁଇଂ ଜାଣିଲି ନିଶ୍ଚେ ମରିବ ଲଙ୍କସାଇଂ ॥
ବ୍ରହ୍ମା କହିଅଛି ନ ହରିବୁ ସୀତା ।
ଆପଣେ ଶୋଳକ ପଢ଼ଇ ତୋର ପିତା ॥
ଏବେ ପାଶୋରିଲା ହେତୁ ମତି ଥାଉଂ ।
ମୋତେ ମାରୁଥିଲା ଭଲ କଥା କହୁଂ ॥
ତିଆରିଲା ବୋଲ କେବେହେଂ ନ କଲା ।
ଲଙ୍କାଗଡ଼ରୁ ମୋତେ ବାହାର
କରିଦେଲା ॥୩୦
ଭଲ ହିଂ ସେ କଥା ଯୋଗାଇଲା ମୋତେ ।
ମୁଇଂ କିମ୍ପା ମନ୍ଦକୁ ଯିବଇଂ ଅନୁମତେ ॥
ଯେବେ ତୋର ବାପ ପାଇଲା କେବଳ
କାର୍ଯ୍ୟ ।
କରୁଣାସାଗର ଯେ ଅଟନ୍ତି ରାମରାଜ ॥
ଯେବେହେଂ ସୀତାଙ୍କୁ ଯେବେ ସମର୍ପିବ
ଆଣି ।
ଶରଣ ପଶିଲେ ନମାରନ୍ତି ରଘୁମଣି ॥
ବାପ ପୋଯେ ହୋଇକି ପାରିବ
ଯେହାକରି ।
ଯେଥି କିଛି ଦୋଷ ନାହିଂରେ ମୋହରି ॥
ମୁଇଂ ଆଉ ତୁମ୍ଭନ୍ତ ନ କରଇ ସୋଗ ।
ସେନେହ ଛାଡ଼ିଲାରେ କେବଣ ପାପ
ଯୋଗ ॥୪୦
ଶ୍ରୀରାମ ମୋହୋର ପ୍ରାଣର ଅଧିକାରୀ ।
ଶ୍ରୀରାମ ପାଇଂ ମୁଁ ତୋତେ ପାରଇଂ ମାରି ॥
ପୁତ୍ର ବୋଲି ଯେ ପାପକୁ ଭୟେ କରଇ ।
ନୋହିଲେ ମୁଣ୍ଡ ତୋର ଯେହିକ୍ଷଣି କାଟି
ପାରଇ ॥
ଯେତେବୋଲି ଖଡ଼ଗ ପକାଇଲା ତୋଳି ।
ଶୁଣିଣ ଇନ୍ଦ୍ରଜିତ କୋପେଣ ପ୍ରଜ୍ୱଳି ॥
ଚାଳିଶ ନାରାଚ ଯେ ପେଷିଲା ତୀକ୍ଷମୁନା ।
ଗର୍ଜିଣ ଆସନ୍ତି ଅମ୍ବର ଡ୍ରୋଛନା ॥
ଦେଖିଣ ସଉମିତ୍ରୀ ବିଭୀଷେଣକୁ ପଛକରି ।
ସେ ସହସ୍ର ଛେଦିଲା ବାବଲ ଶସ୍ତ୍ର ଧରି ॥୫୦
ଦେଖି ହନୁମନ୍ତ ଓଗାଳିଲାକ ଯାଇଂ ।
ଅତିବଡ଼ ପଥରେ ମାଇଲା ନିଠାଇ ॥
ବଜ୍ର ବାଣେ ତାହା ଛେଦିଲା ଦଇତ ।
ଦେଖି ଧାଇଂଲେ ସୁମେତ୍ରାର ସୁତ ॥
ଧନୁ ଓଟାରିଣ ଅସୁର ଆଗେ ମିଳି ।
ଯେମନ୍ତେଣ ଅସ୍ତ୍ର ହୋଇଲା ଅସମ୍ଭାଳି ॥
ଷଷ୍ଟ ପ୍ରହର ପ୍ରଥମ ରଜନୀ ।
ସ୍ୱର୍ଗରେ ଥାଇଂଣ ଭାଳନ୍ତି ସୁରମୁନି ॥
ଗନ୍ଧର୍ବ ଯକ୍ଷଗଣ ରାଇଲେ ଦୁଇବଳ ।
ବୋଇଲେ ତୁମ୍ଭେ ଲଙ୍କା ଭୁବନକୁ
ଚଳ ॥୬୦
ଲକ୍ଷଣ ଇନ୍ଦ୍ରଜିତ ସମର ଗରୁ ଟାଣ ।
ଦୈତ୍ୟ ନିଶାଚର କରିବ ମହାରଣ ॥
ଋକ୍ଷ ମର୍କଟେ ନ ଜାଣନ୍ତି କିଛି ଭେଦ ।
ତ୍ରୈଲୋକ୍ୟର ଶତ୍ରୁ ଅଟଇ ମେଘନାଦ ॥
ଇନ୍ଦ୍ର ସହିତେ ସକଳ ସୁରଗଣେ ଯାଅ ।
ଶ୍ରୀରାମର ଭାଇକି ଅନ୍ତରୀକ୍ଷେ ଜଗିଥାଅ ॥
ବ୍ରହ୍ମାର ଆଜ୍ଞାରେ ଅଇଲେ ଦେବଗଣ ।
ଦେଖନ୍ତି ଆରେଣ ଧନ୍ଦୋଳ ମହାରଣ ॥
ଇନ୍ଦ୍ରଦେବତା ଯେହ୍ନେ ବୃତାସୁର ସଙ୍ଗେ
ଯୁଝି ।
ସୁରଗଣମାନେ ତେସନ ପ୍ରାୟେ ବୁଝି ॥୭୦
ଲଙ୍କା ନରନାରୀ ଦେଖନ୍ତି ସମସ୍ତ ।
ଦୁଇକୁଳ ଲୋକେ ହୋଇଲେ ମଧ୍ୟସ୍ଥ ॥
ଲକ୍ଷଣ ମେଘନାଦର ସମର ମହାଘୋର ।
ମୂଷଳ ସମାନ୍ୟଟି ଯେକୁ ଯେକ ଶର ॥
ଏକର ପଡ଼ନ୍ତେଟି ଆରେକ ନାଶ ଯାଇଂ ।
ରଣଭୂମି ଗୋଟା ଯେ କୁହୁକମନ୍ତ ଦିଶଇ ॥
କେବଣହିଂ ଶର ଯେ ପ୍ରଖର ତେଜକାନ୍ତି ।
କେବଣ ନାରାଚ ଗୋଟା ଅର୍ଧଚନ୍ଦ୍ର ଜ୍ୟୋତି ॥
କେବଣ ହିଂ ଶର ଯେ ସୂର୍ଯ୍ୟର ପ୍ରକାଶ ।
କେବଣ କାଣ୍ଡ ଚଳନ୍ତେ କମ୍ପଇ
ଦଶଦିଶ ॥୮୦
କେବଣ ହିଂ ଶହସ୍ର ପବନୁ ବେଗେ ଆସି ।

ଯେକକୁ ଆରେକ ଯେ ଶହସ୍ର
ପେଷାପେଷି ॥
ବରଷଣ ପ୍ରାୟେକ ଯେ ପଡ଼ଇ ଶସ୍ତ୍ରମାନ ।
ବେଲ୍କୁଂବେଲ ସମର ବଢ଼ିଲା ଅନ୍ୟୋଅନ୍ୟ ॥
ହାକ୍ଲିମରାମରି ଡାକି ବିନ୍ଧାବିନ୍ଧି ।
ଅପୂର୍ବ ସାଂଗ୍ରାମ କହିତ କିସପାରି ସନ୍ଧି ॥
ନବଖଣ୍ଡ ମେଦନୀ ହୋଇଲା ଟଳମଳ ।
ଶହସ୍ରଙ୍କର ଗର୍ଜନ କି ପ୍ରଚଣ୍ଡ ମେଘମାଳ ॥
ବିଜୁଳି ପ୍ରାୟେ ହୋଇ ଶହସ୍ର ଆତଯାତ ।
ଦୁହିଂଙ୍କରି ଶ୍ୟରୀରେ ଭୂଷଣ ରକତ ॥୯୦
ଯେକ ଦୁଇ ଚାରି ଦଶବିଂଶ ବାଣ ।
ଯେକର ନାରାଜ ଯେ ଆରେକ ଗରୁ ଟାଣ ॥
ଶଏ ସହସ୍ର ଲକ୍ଷ କୋଟିଏ ବାଣ ବିନ୍ଧି ।
ମେବକ୍ଷେ ମର୍ତ୍ତୁତେ ନାରଜ ସନ୍ଧାସନ୍ଧି ॥
ନିମିଷକେ ନାରାଜ ବେଳକୁ ବେଳ ଟାଣ ।
ଚାହାଂନ୍ତା ଭାର୍ଜନ ତହିଂ ନାହିଂ ଆନଜଣ ॥
ଅସଂଖ୍ୟ ଅଗୋଚର ପ୍ରଳୟ ବୃଷ୍ଟି ଜାଣି ।
ଅପୂର୍ବ ସାଂଗ୍ରାମେ ପାହିଲା ରୟଣୀ ॥
ସୂର୍ଯ୍ୟ ଦେବତାର ଦିଶିଲାକ ତେଜ ।
ଦେବେ ବାହୁଡ଼ିଲେ ରାଇଲେ
କମଳଜ ॥୧୦୦
ଦୁହିଂଙ୍କର ସମର ବେଳକୁ ବେଳ ହୋଇ ।
ହାକିଣ ବିନ୍ଧନ୍ତି ନାନାଶସ୍ତ୍ର ପରିଘାଇ ॥
ଏକକୁ ଆରେକ ନଭାଙ୍ଗନ୍ତି ରଣେ ।
ସ୍ୱର୍ଗେ ଥାଇଂ ଦେଖୁଅଛନ୍ତି ସୁରଗଣେ ॥
ଇନ୍ଦ୍ରଜିତ ରଥ ଚଳଇ ଘନଘନ ।
ରହୁବରେ ଯୋଡ଼ିଅଛି ସହସ୍ରେକ ଯାନ ॥
ଦିଗଦହନ ଚିରାଳ ଉଡ଼ଇ ଫରହର ।
ବ୍ରହ୍ମଜାତି ହୀରାରେ ନିର୍ଯ୍ୟାତ ରହୁବର ॥
ଦିବ୍ୟ ବେଶ ହୋଇଅଛି ରାବଣର ସୁତ ।
ଅବିଶ୍ରାମ ଯୁଦ୍ଧ କରଇ ଅପ୍ରମିତ ॥୧୦
ଲକ୍ଷଣ ପୟେକାରୀ ହୋଇଣ ଯୁଦ୍ଧ କରି ।
ରାତ୍ର ପାହି ବେଳ ହୋଇଲା ତିନିଘଡ଼ି ॥
ଦୁହିଂଙ୍କର ଶର ପନ୍ତୁ ଛାଡ଼ିଲାନି ଗୁଣେ ।
ହାଥ ବୋଲ ନ କରନ୍ତି ଅତି ଘୋର ରଣେ ॥
ବାବୁ ସେ ଧନୁ ପ୍ରତ୍ୟକ୍ଷ ତହିଂ ଧନୁର୍ଦ୍ଧର
ଭଙ୍ଗା ।

କେବଣ ବିଶ୍ୱକର୍ମା ନିର୍ମାଣ ଯେହା କଲା ॥
ଇନ୍ଦ୍ରଜିତ ରଥେ ଶହସ୍ରମାନେ ପଡ଼ିଅଛନ୍ତି ।
ଝିଙ୍କ ପକ୍ଷୀ ପ୍ରାୟେ ଦୂରକୁ ଦିଶନ୍ତି ॥
ଶ୍ରୀରାମର ଭାଇ ସେ ବିନ୍ଧିଲା ଲକ୍ଷେ କାଣ୍ଡ ।
ମେଘନାଦ ଶ୍ୟରୀର ହୋଇଲା ଖଣ୍ଡ
ଖଣ୍ଡ ॥୨୦
କୋପେଣ ଶକ୍ରାଜିତ ତିନିବାଣ ଘେନି ।
ମନ୍ତ୍ରିଣ ବିନ୍ଧିଲା ଯେ ଶୁଭିଲା ଘୋର ଧ୍ୱନି ॥
ତିନି ମୂର୍ତ୍ତି ଅଗ୍ନି ଅଇଲାକ ଉଡ଼ି ।
ଲକ୍ଷଣ ଲଲାଟେ ନାରାଜ ଆସିଣ ପଡ଼ି ॥
ବିଭୀଷେଣକୁ ପାଞ୍ଚବାଣ ମାଇଲା ତୁହାଇଂ ।
ତେଡ଼େ ବଡ଼ ଛତ୍ରୀ ପଡ଼ିଲା ମୋହ ଯାଇଂ ॥
ହନୁମନ୍ତକୁ ପାଞ୍ଚବାଣ ମାଇଲାକ ପୁଣି ।
ବାଜନ୍ତେ ମହୀରେ ପଡ଼ଇ କପିମଣି ॥
ସୁଗ୍ରୀବରକୁ କୋଡ଼ିଏ ମହାନ୍ଦ୍ରକୁ ଯେଗାର ।
ଗନ୍ଧମାର୍ଦନକୁ ବିନ୍ଧିଲା ବାରଶର ॥୩୦
ଜମ୍ୱେବକୁ ଦୁଇ ସୁଷେଣକୁ ଚାରି ।
ତାରାକ୍ଷକୁ ଆଠ ରିଷଭକୁ ତିନିମାରି ॥
ଦଧିମୁଖକୁ ସାତ କେଶରୀକି ପଞ୍ଚଶ ।
ହାକି ବିନ୍ଧୁଅଛି ରାବଣର ଶିଷ ॥
ନଳକୁ ଚଉଦ ନୀଳକୁ ସାତବାଣ ।
ଶଉରୀକି ସତର ବିଭୀଷେଣକୁ ପାଞ୍ଚବାଣ ॥
ସଂପାତିକି ବାଇଶି ବିବିଧକୁ ଚାରି ।
ଶତବଳକୁ କୋଡ଼ିଏ ବଳିମୁଖକୁ ପାଞ୍ଚ ମାରି ॥
କାଳିଞ୍ଜନକୁ ଅଠାଇଶ ପନଶିଳକୁ ଦଶ ।
ମହାନ୍ଦ୍ରକୁ ତିରିଶ ଦ୍ୱିବିନ୍ଦକୁ ପଞ୍ଚାଶ ॥୪୦
ଗମଣକୁ ଚଉଦ ତାରାପିତାକୁ ତିନି ।
ସୁଗ୍ରୀବ ଶଶୁରକୁ ମାଇଲା ପାଞ୍ଚ ଘେନି ॥
ଗବୟେକୁ ଆଠ ଗବାକ୍ଷକୁ ସାତ ।
ହାକି ବିନ୍ଧୁଅଛି ରାବଣର ସୁତ ॥
କାଳିମୁଖକୁ ପନ୍ଦର ପାରାସକୁ ଚାରି ।
ରକ୍ଷକପିଙ୍କି କାଣ୍ଡେ କାଣ୍ଡେ ମାରି ॥
ଯେକାୟେ ଦଳିଲାନି ତେଡ଼େ ମହାବଳ ।
ଶ୍ରୀରାମର ସଇନି ହୋଇଲେ ବିକଳ ॥
ଯୂଥପତିମାନେ ମୋହ ତେଜି ଉଠି ।
ଲକ୍ଷଣ ଲଲାଟେ ତିନିବାଣ ଫୁଟି ॥୫୦

ମେରୁରୁ ଗଙ୍ଗା ଯେହ୍ନେ ବହଇ ଝର ଝର ।
ଲକ୍ଷଣ ଲଲାଟେ ରୁଧିର ବହେ ତିନିଧାର ॥
ଆକୁଳେ ଲକ୍ଷଣ ପୋଛିତ ମନ କରଇ ।
ନପୁଣ କାଣ୍ଡ ଆସି ପଡ଼ଇ ବୋଲିଣ ଡରଇ ॥
ମୁହିଂ ବୁଡ଼ି ରୁଧିର ହୃଦେ ଆସି ପଡ଼ି ।
ତୁଣ୍ଡରେ ପଶନ୍ତେ ପୁଙ୍କିଣ ଛିଞ୍ଚାଡ଼ି ॥
ଶ୍ରୀରାମର ସୈନ୍ୟ ସବୁ ରକତମୟେ ।
ଦେଖିଣ ଲକ୍ଷଣ ଆତଙ୍ଗ ମନ ହୋୟେ ॥
ବିଭୀଷେଣକୁ ଚାହିଂ ବୋଲଇ ସଉମିତ୍ରୀ ।
ବାବୁ ମେଘନାଦ ଅଟଇ ମହାକ୍ଷତ୍ରୀ ॥୬୦
ବିଭୀଷେଣ ବୋଇଲା ବାବୁ ମୋତେ ତୁ ନ
ଚାହାଂ ।
ଜାଣିଛୁନା ପ୍ରତଜ୍ଞା କରିଅଛୁ ଯାହା ॥
ବିଭୀଷେଣ ବୋଇଲା ମୋତେ ନଚାହାଂରେ
ବାବୁ ।
ଥାଠଯାକ ତୋର ଜୀଇଂଲେଣି ସବୁ ॥
ଶ୍ରୀରାମହିଂ ଅଇଲେ ଦିଶିଲାଣି ସୈନ୍ୟ ।
ବିନ୍ଧ ବିନ୍ଧ ନାରାଜ ହୋ ନକର ବିଡ଼ମ୍ୱନ ॥
ମୁଇଂ ଅଛିନି ବାବୁ ପିଠିକି ତୋର ରକ୍ଷା ।
ଇନ୍ଦ୍ରଜିତକୁ ନ ମାଇଲେ ନ ରହଇଟି କକ୍ଷା ॥
ସୁଗ୍ରୀ ହନୁମନ୍ତ ସବିହେଂ ଦେଖୁଛନ୍ତି ।
ଅନେକ ଯଶ ବାବୁ ପାଇବୁ ଯେ
ଘାନ୍ତି ॥୭୦
ନ ପୋଛ ରକତ ସେ ବହି ଯାଉଂ କିନା ।
ଦୈତ୍ୟ ମଲେ ସେ ଆମ୍ଭେ ଓଷଧ ଦେଇ
ସିନା ॥
ସେନା ସେନାପତି ଅଛନ୍ତି ତୋର ପଛ ।
ସବୁଙ୍କରି ହସ୍ତରେ ଅଛି ଶିଳାବୃକ୍ଷ ॥
ରାକ୍ଷସ ଯେତେ ବାଣ ମାରଇ ତାହା ସହି ।
ବିଭୀଷେଣ ବଚନେ ଲକ୍ଷଣ ବଳ ପାଇ ॥
ଅପୂର୍ବ ସାଂଗ୍ରାମ କରଇ ରାମ ଭାଇ ।
ପିଛଡ଼ା ନ ପଡୁ ଶର ଚକ୍ରି ଯାଇଂ ॥
ଶ୍ରାବଣ ବରଷା ଜାଣି ବିନ୍ଧୁଛନ୍ତି ଶର ।
ଘନ ଘନ ଛେଦଇ ତାହା ରାବଣ
କୁମାର ॥୮୦
କୋପେ ସଉମିତ୍ରୀ ବିନ୍ଧଇ ତୀକ୍ଷବାଣ ।

ଚଳିଲା ନାରାଚ ଶବଦ ଗରୁଢାଣ ॥
ମେଘନାଦ ଶ୍ୟରୀରେ ବସିଲାକ ଯାଇ ।
ସେହ୍ନାଫୁଟି ଦେହେ ପଶିଲା ଝସାଇ ॥
ଘାଏ ଇନ୍ଦ୍ରଜିତ ହୋଇଲା ନିସତ ।
ଶହସ୍ରେ ବାଣ ଧରି ବିନ୍ଧିଲା ଦଇତ ॥
ଦେଖିଣ ଲକ୍ଷଣ ତାହା ଦୂରୁହୁଂ ନିବାରି ।
ଆପଣେ ସୂଚୀମୁନା ପାଞ୍ଚକାଣ୍ଡ ଧରି ॥
ଗୁଣଯୋଚି ପୂରାଇ ବିନ୍ଧିଲା ତଡ଼ତି ।
ମେଘନାଦ ଶ୍ୟରୀର କାଟିଲା ବିକୋଟି ॥୯୦
ଯେତେକ ଅସୁର ରଣମଧ୍ୟେ ଥିଲେ ।
ଜଣକେ ପାଞ୍ଚକାଣ୍ଡ କରିଣ ବିନ୍ଧିଲେ ॥
ରଣଗୋଳ ଧନ୍ଦୋଳ ହୋଇଲା ଦୁହିଁଙ୍କରି ।
ଲଙ୍କାର ରାଜଦାଣ୍ଡ ରକତେଣ ପୂରି ॥
ସ୍ୱର୍ଗ ଦେବତାଯେ ସାଧୁ ସାଧୁ କଲେ ।
ଧନ୍ୟ ଧନ୍ୟ ଲକ୍ଷଣ ବୋଲିଣ ବୋଇଲେ ॥
ଆଷ୍ଟେଣ ଡାକନ୍ତି ବେଗେ ଦୈତ୍ୟ ଜିଣ ।
ତେବେ ସେ ରହଇ ଆମ୍ଭ ବଡ଼ପଣ ॥
ଶୁଣିଣ ସଉମିତ୍ରୀ କୋବେରା ଶସ୍ତ୍ର ପେଷି ।
ଇନ୍ଦ୍ରଜିତ ହୃଦରେ ଶର ଯାଇଂ ବସି ॥୧୦୦
ବଥା ପାଇଲାକ ରାବଣର ସୁତ ।
କୋପେ ବାରୁଣା ଶସ୍ତ୍ର ବିନ୍ଧିଲା ଦଇତ ॥
ଦୂରୁହୁଂ ଦେଖିଣ ଲକ୍ଷଣ ନିବାରି ।
ସହସ୍ରେକ ବାଣ ମାରିଲା ଇନ୍ଦ୍ରର ଅଇରି ॥
ପ୍ରତି ଅସ୍ତ୍ର କରି ଲକ୍ଷଣ ତାହା ଛେଦି ।
ଦୁହିଂଙ୍କରି ଶ୍ୟରୀରେ ଅଛି ଶର ଭେଦି ॥
ଅପୂର୍ବ ନାରାଚ ବିନ୍ଧିଲା ଇନ୍ଦ୍ରଜିତ ।
ଦେଖି ପଳାଇଲେ ସଇନି ସମସ୍ତ ॥
କୋଟିଯେ ସୂର୍ଯ୍ୟ କି ଯେକ ରୂପ ଧରି ।
ପବନା ଶହସ୍ରେ ତାହା ସଉମିତ୍ରୀ
ନିବାରି ॥୧୦
ଦୁଇ ଶହସ୍ରଙ୍କର ଲାଗିଲାକ ବାଦ ।
ଉଡ଼ାଇ ପବନ ପକାଇଲା ସିନ୍ଧୁ ମଧ ॥
ଶକ୍ରଜିତ ପୁଣି ବିନ୍ଧିଲା ତୀକ୍ଷଣର ।
ଆସିଣ ପଡ଼ିଲା ଲକ୍ଷଣ ହୃଦୟର ॥
ବିଭୀଷେଣ ମୁଖକୁ ଚାହିଂଣ ସଉମିତ୍ରୀ ।
ବୋଇଲା ଇନ୍ଦ୍ରଜିତ ଅଟଇ ବଡ଼କ୍ଷତ୍ରୀ ॥
ମହାର୍ଣ୍ଣବ ସାଂଗ୍ରାମ ଜାଣଇ କୂଟଛନ୍ଦ ।
ଏହାକୁ ସମାନ ତ ନୋହଇ ଦଶକନ୍ଧ ॥
ବିଭୀଷେଣ ବୋଇଲା ମୋତେ ତୁ ନ
ଚାହାଂ ।
ଜାଣୁଟିକି ପ୍ରତଜ୍ଞା କରିଅଛୁ ଯାହା ॥୨୦
ମରୁ ଇନ୍ଦ୍ରଜିତ ମାର ତୀକ୍ଷଣ ବାଣ ।
ଶୁଣିଣ ଆଗଭରି ଧାଇଂଲା ଲକ୍ଷଣ ॥
ଇନ୍ଦ୍ର ଦେବତାର ବାବଲ ପୂରାଇଲା ।
ଶ୍ରୀରାମ ସୁମରି ନାରାଚ ଛାଡ଼ିଦେଲା ॥
ବଜ୍ରଘାତ ଜାଣି ଶୁଭିଲା ଶବଦ ।
ଶିର ଛିଡ଼ି ଭୂମିରେ ପଡ଼ିଲା ମେଘନାଦ ॥
ଦେଖି ଦେବଗଣ ଜୟେ ଜୟେ କଲେ ।
ଅପକ୍ଷରୀମାନେ ହୁଳହୁଳି ଦେଲେ ॥
ଇନ୍ଦ୍ରର ବଦନ ଫୁଟିଲା ପଦ୍ମଜାଣି ।
ରୋମ ଟାଙ୍କୋରାଇଂ ବଜ୍ରଧରି ଝୁଣି ॥୩୦
ଆନନ୍ଦେ ନିଶ୍ୱାସ ଛାଡ଼ନ୍ତି ଘନଘନ ।
ଦୁଖ ସରଇ ବୋଲି ଭାଳଇ ମନେମନ ॥
ବ୍ରହ୍ମା ସହିତେଣ ସକଳ ସୁରଗଣ ।
ସ୍ୱର୍ଗ ମଣ୍ଡାଇଣ କଲେ ବେହରଣ ॥
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀ ଉଷତ ।
ଦିବ୍ୟବେଶ ହୋଇଣ କରନ୍ତି ନୃତ୍ୟଗୀତ ॥
ଗନ୍ଧର୍ବେ ଉଷତ ଦକ୍ଷଗଣେ ମିଳି ।
ଗହଳ ଧନ୍ଦୋଳ ହୋଇଲା ସ୍ୱର୍ଗସ୍ଥଳୀ ॥
ସୁଗନ୍ଧ ଘେନି ଯେ ବହିଲା ବସନ୍ତ ।
ଦିଗପାଳେ ବସି କରି ବିଚାରନ୍ତ ॥୪୦
ସାଧୁ ଲକ୍ଷଣ ତୁ ସାଧୁ ସଉମିତ୍ରୀ ।
ବ୍ରହ୍ମାଣ୍ଡ ଭିତରେ ତୋତେ ସମ ନାହିଁ କ୍ଷତ୍ରୀ ॥
ଯେ ଯେ ମେଘନାଦ ରାବଣ କୁମାର ।
ଚଉଦ ଭୁବନରେ ଅଟଇ ବଳୀଆର ॥
ନିଦ୍ରା ମଇଥୁନ ଯେ ବର୍ଜ୍ଜିଲା ଆହାର ।
ବାର ବରଷ ସେବି ପାଇଲାକ ବର ॥
ତ୍ରୈଲୋକ ଜିଣିଲା ବୀରଶୂର ପଣେ ।
ଯେବେ ନିଧନ ହୋଇଲା ଲକ୍ଷଣର
ବାଣେ ॥
ସାଧୁ ଲକ୍ଷଣ ଜୀବନ ତୋର ଧନ୍ୟ ।
ପୁଣ ପୁଣ ପ୍ରଶଂସା କରନ୍ତି ସୁରଗଣ ॥୫୦
ଅତି ଆନନ୍ଦେ କଲ୍ୟାଣ ବାଞ୍ଛା କଲେ ।
ସଉମିତ୍ରୀ ଶିରେ କୁସୁମ ବୃଷ୍ଟି କଲେ ॥
ଲଙ୍କାର ଲୋକମାନେ ଅଛନ୍ତି ତାହା ଦେଖୁ ।
ବିଷାଦେ ବଚନ ନ ଫୁରଇ ମୁଖୁ ॥
ଯେତେବେଳେ ଇନ୍ଦ୍ରଜିତ ପଡ଼ିଲାକ ରଣେ ।
ହୁଳହୁଳି ଦେଇ ହନୁ ନାଚିଲା ଆପଣେ ॥
ଦଧିମୁଖ ବାନର ଠଣା ଛାଡ଼ି ଧାଇଂ ।
ବୋଇଲା ଶ୍ରୀରାମକୁ ଜଣାଇବି ଯାଇଂ ॥
ସେନା ଯୂଥପତି ସମସ୍ତେ ବାହୁଡ଼ିଲେ ।
ଲକ୍ଷଣକୁ ଆଗକରି ଶ୍ରୀରାମ ପାଶ
ଗଲେ ॥୬୦
ଗଡ଼ର ଉତ୍ତର ଦ୍ୱାରେ ଶ୍ରୀରାମ ଛନ୍ତି ରହି ।
ଯେଉଂମାନେ ଓଗାଳିଲେ ପଶିତ ନଦେଇ ॥
ତାହାଙ୍କର ତୁଲେ ଅନେକ ଯୁଦ୍ଧ କଲେ ।
ଦୁଇବଳର ଅନେକ ସୈନ୍ୟ ମଲେ ॥
କଙ୍କ ଧଙ୍କ ସିଂହ ତୁରଙ୍ଗ ଦେବଦତ୍ତ ।
ସଲୋପି ଆଲୋପି ଅଟନ୍ତି ଭାଇ ସାତ ॥
ରାବଣର ତନୟେ ସାଂଗ୍ରାମେ ବଳବନ୍ତା ।
ଯେହାକୁ ଦେଖି ଇନ୍ଦ୍ର ନିତ୍ୟେ କରେ ଚିନ୍ତା ॥
ଅପକ୍ଷରୀନ୍ତ ଭୋଗ କରନ୍ତି ଯେ ବଳେ ।
ଅନ୍ୟାୟେ ଆଶ୍ରୟେ କରନ୍ତି
ସର୍ବକାଳେ ॥୭୦
ଇନ୍ଦ୍ରଜିତ ସମାନେ ଯେ ଅଟନ୍ତି ସାତକ୍ଷତ୍ରୀ ।
ଚରଣ ପଡ଼ନ୍ତେ କମ୍ପଇ ଧରିତ୍ରୀ ॥
ଶୂରବନ୍ତପଣେ ତିନିପୁର ଜିଣି ।
ଏହାଙ୍କ ବାହୁକୁ ଆଶ କରଇ ବିଂଶପାଣି ॥
ବିବିଧ ଭୋଗ ଯେ କରନ୍ତି ବିଳାସ ।
ଅଳିଅଳ ଦୁଲଣା ସବୁଙ୍କରି ହାସ ॥
ନାନା ବିନୋଦେଣ କ୍ରୀଡ଼ା କରିଥାନ୍ତି ।
ଶତ୍ରୁ ବୋଲି ମନେ ନ ଥାଇ ଭ୍ରାନ୍ତି ॥
ନିଶ୍ଚିନ୍ତେଣ ନିଜ ମନ୍ଦିରେ ଶୋଇଥିଲେ ।
ମୁଖରାବ ଶୁଣି ଧାଇଂଣ ଅଇଲେ ॥୮୦
ସଙ୍ଗେ ଅଙ୍ଗବଳ ଅଛନ୍ତି ଅପ୍ରମିତ ।
ତୂହାଣ କଢ଼ାଇ ଆଣିଲା ତୁରିତ ॥
ସାତଭାଇ ସାଥରଥେ ଛନ୍ତି ବସି ।
ରାହୁ ସାତ ଗୋଟାକି ଚନ୍ଦ୍ରମାକୁ ଗ୍ରାସି ॥

ଦେଖିଣ ଶ୍ରୀରାମ ଧଇଲେ ଧନୁଶର ।
ଅବିକ୍ଷନେ ନାରାଚ ବିନ୍ଧିଲେ ରଘୁବୀର ॥
ସାତ ସେନାପତି ଓଗାଳିଲେ ଯାଇଂ ।
ଗଡ଼ରେ ପଶି ନପାରିଲେ ରଘୁସାଇଂ ॥
ମହାଘୋର ସାଂଗ୍ରାମ ହୋଇଲା ବହୁତ ।
ଅବିଶ୍ରାମ ଯୁଦ୍ଧ ହୋଇଲା ଅପ୍ରମିତ ॥୯୦
ଦିବସେକ ରାତ୍ରେକ ଅବିଶ୍ରାମ ସମର ।
ନିଶି ପାହି ତିନି ଘଡ଼ି ହୋଇଲାକ ବେଳ ॥
ପ୍ରଥମ ସମରେ ପଡ଼ିଲା ଦେବଦତ୍ତ ।
ରାତ୍ରରେ ପଡ଼ିଲେ ଆବର ଚାରିଭ୍ରାଥ ॥
ଅରୁଣ ଉଦୟମାନେ ଅଲୋପି ନାଶଗଲା ।
ତିନିଘଡ଼ି ପ୍ରବେଶେ ସଲୋପି ପ୍ରାଣଦେଲା ॥
ଅସୁରନ୍ତ ମାରି ଶ୍ରୀରାମ ବିକଳ ।
ଖଳ ଖଳ ଶ୍ୟରୀରୁ ବହଇ ଶ୍ରମଝାଳ ॥
ଅସ୍ତ୍ରଙ୍କର ଘାତେ ଶ୍ୟରୀର ବଡ଼ ଜ୍ୱାଳା ।
ରକତ ରଙ୍ଗେଣ ଯେ ଲୁଚିଲା ଦେହକଳା ॥୧୦୦
ଶତବାଳି ଡାଳିମ୍ବ ବସନ୍ତ ଚିନିଙ୍କଣ ।
ଶ୍ରୀରାମ ସମାନ୍ୟେ ଯେ କଲେ ମହାରଣ ॥
ରକ୍ଷକପି ନାରାଚ ମାଇଲେ ଅପାର ।
ରକତ ନଦୀ ବହିଲା ଗଡ଼ଦ୍ୱାର ॥
ରାକ୍ଷସ ବଳନ୍ତ ସଂହାରି ରଘୁପତି ।
ଲକ୍ଷଣଙ୍କୁ ନ ଦେଖି ଆକୁଳ ତାଙ୍କ ମତି ॥
ପୁଣ ବିଚାରନ୍ତି ଇନ୍ଦ୍ରଜିତ ଛାର ।
ବ୍ରହ୍ମାଣ୍ଡ ଧର ସର୍ପ କୁଣ୍ଡଳ ଯାହାର ॥
ସଂସାରକୁ ସାର ଅଟଇ ଯେବଣ ଜନ ।
ଯେ କିଞ୍ଚିତ ସିନା ଅଟଇ ଯେହୁ ରଣ ॥୧୦
ଯାହାର ମନ କଲେ ପ୍ରଳୟ ହୋଇ ସୃଷ୍ଟି ।
ଯାହାର ମହିମା କହି ନ ପାରିଲେ ପରମେଷ୍ଟୀ ॥
ତାହାକୁ କି ବିପତ୍ତି ଅଛି ଯହିଂ ତହିଂ ।
ଜଗତ ନିମନ୍ତେ ଅଛି ଧନୁ ଶସ୍ତ୍ର ବହି ॥
ଅନନ୍ତ ପୁଷୋତ୍ତମ ଅଟଇ ବିଶ୍ୱନାଥ ।
ଅପାପୀପୁରୁଷ ପରମ ପୁରୁଷାର୍ଥ ॥
ଜଗତମଙ୍ଗଳ କରୁଣାମୟେ ତନୁ ।
ବିଷ୍ଣୁର ଜୀବ ଆତ୍ମା ପ୍ରକୃତିର ଅନୁ ॥

ପୁରାଣ ପୁରୁଷ ରେଖ ରୂପ ବର୍ଣ୍ଣ ।
ପଞ୍ଚାଶ କୋଟି ବସନ୍ଧରୀ କୁଣ୍ଡଳ ଯାର କର୍ଣ୍ଣ ॥୨୦
ଯାହାର ସେ ରୋମ ଅଟଇ ମେରୁଗିରି ।
ଦୈତ୍ୟ ନିଲକ୍ଷଣକି ତାହାକୁ ହୋଇ ମାରି ॥
ଯେହିକ୍ଷଣି ଇନ୍ଦ୍ରଜିତକୁ କରିବ ପ୍ରାଣନାଶ ।
ଯଶ କରି ଆସି ମିଳିବ ମୋର ପାଶ ॥
ତାହାକୁ ଅଗୋଚର ଅଟଇ କି ରଣ ।
କିଂଚିତେ ଜଗତ ବୁଝଇ ତିରଣ ॥
ମୋତେ ସେ ଯେକା ଡରଇ ମୋର ଭାଇ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର କଳଣା ନଯାଇ ॥
ଯେସନେକ ବିଚାରୁ ଦିଶିଲା ସଉମିତ୍ରୀ ।
ଶତ୍ରୁ ସଂହାରି ଆସଇ ମହାକ୍ଷତ୍ରୀ ॥୩୦
ରକତେ ଜରଜର ଲାଗିଅଛି କାଣ୍ଡ ।
ରକ୍ଷକପି ବାହୁଡ଼ନ୍ତେ ପୂରିଲା ଲଙ୍କାଦାଣ୍ଡ ॥
ଅସୁର ଅସୁରୀ ଦେଖିଣ ଭୟେ କଲେ ।
ବିଶ୍ୱରୂପ ଚାହିଂ ନୟନ ବୁଜିଲେ ॥
ଫୁଟି ସଉମିତ୍ରୀ ଅଳସ ଗତି ଚାଲି ।
ଜୟେ ହୋଇଲା ବୋଲି ଶ୍ରୀରାମଚନ୍ଦ୍ର ବୋଲି ॥
ଯେସନେକ ସମୟେ ବିଭୀଷେଣ ବୀର ।
ଲକ୍ଷଣକୁ ଆଗ କରି କିଷ୍କିନ୍ଧା ଈଶ୍ୱର ॥
ଜମ୍ୱେବ ସୁଷେଣ ଅଙ୍ଗଦ ହନୁମନ୍ତ ।
ଗଡୁ ବାହାର ହୋଇ ଦେଖିଲେ ସୀତାକାନ୍ତ ॥୪୦
କରେଣ କୋଦଣ୍ଡ ବିକରାଳ ମୂର୍ତ୍ତି ।
ଅନେକ ଅସୁର କନ୍ଧ ଲୋଟିଛି ଧରିତ୍ରୀ ॥
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ସେନାମାନେ ।
ସାଧୁ ସାଧୁ ଡାକ ଡାକନ୍ତି ଅବିକ୍ଷଣେ ॥
ମଡ଼ାଙ୍କର ଘାଏ ଆସିତ ବାଟ ନାହିଂ ।
ବିଭୀଷେଣ ଜିଭ କାଢ଼ିଲା ତାହା ଚାହିଂ ॥
ରଥ ଗଜ ଅଶ୍ୱ ପାଦାତି ଅଗଣିତ ।
ଏକାୟେ ସବୁ ସୈନ୍ୟ ମାଇଲେ ଜଗୁଜିତ ॥
ସୈନ୍ୟ ବୋଇଲେ ଯେ କଥାମାନ ବୁଝ ।
ଦୁଇକତିକି ଯେ ଅଣିଅଛି ଯୁଦ୍ଧ ॥୫୦

ରାମ ଲକ୍ଷଣ ନୋହିଂ ଆନ ଯେବେ ହୋନ୍ତା ।
ଏସନେକ ଯୁଦ୍ଧେ କି ପ୍ରାଣ ପାଇଥାନ୍ତା ॥
ଯେତେ ବୋଲି ଯାଇଂ ଶ୍ରୀରାମ ପାଶେ ମିଳି ।
ପାୟେ ପଡ଼ି ଶୋଇ ରକତେ ଲୋଟଗାଳି ॥
ଉଭା ହୋଇଲେ ସେ ଯୋଡ଼ିଲେ ବେନିକର ।
ବିଭୀଷେଣ ବୋଇଲା ଶୁଣିମା ରଘୁବୀର ॥
କାହାରି ହିଂ ହାଥେ ନୋହଇ ସେ ବଧ ।
ରାଣ ମେଣ୍ଟାଇ ଯାଆନ୍ତି ସୁର ସିଦ୍ଧ ॥
ସେସେ ମେଘନାଦକୁ ମାଇଲା ତୋର ଭାଇ ।
ଦେଖିବା ଛାଡ଼ି ଯେହା ଶୁଣିମା ନ ଯୋଗାଇ ॥୬୦
ବାବୁ କ୍ଷତ୍ରୀ ତୁମ୍ଭେ ଅଟ ଭାଇବେନି ।
ଦୈତ୍ୟ ଦଳିବାକୁ ଜାତ ହୋଇଛ ମେଦିନୀ ॥
ଶୁଣିଣ ଶ୍ରୀରାମ ଲକ୍ଷଣକୁ କୋଳକଲେ ।
ଅତି ଆନନ୍ଦେଣ ମୁଖେ ଚୁମ୍ବ ଦେଲେ ॥
ଦେହ ଆଉଂଷିଣ କାଢ଼ିଲେ କାଣ୍ଡମାନ ।
ଲକ୍ଷଣକୁ ଚାହିଂଣ ବୋଲନ୍ତି ରଘୁନାନ ॥
ଇନ୍ଦ୍ରଜିତ ପଡ଼ିଲା ହୋଇଲାନି ଭଲ ।
ଏବେ ସେ ମରିବ ରାବଣ ମହାମଲ ॥
ବୁଧିବଳ ତାର ସରିଲାନି ସବୁ ।
କେମନ୍ତେ ଭାଇ ମୋର ଜାଇଂବରେ ବାବୁ ॥୭୦
ଏଣି ତେଣିକି ଯେ ଫୁଟିଅଛି ଶର ।
କପାଳର ଘାଆ ତ ଅତି ଅଗୋଚର ॥
ହୃଦରେ ଯେକା କାଣ୍ଡ ନାହିଂ ମାତ୍ର ଗଳି ।
ପାମର ଦୈତ୍ୟ ଭଲା କାଟିଲା ବିରୋଳି ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମନ୍ତ ।
କୁଳିଶ ଘାତେ ରିକ୍ଷରାଜା ଜମ୍ୱୋବନ୍ତ ॥
ସେନା ଯୂଥପତି ସକଳ ସଇନି ।
ସବୁଙ୍କରି ଶ୍ୟରୀର ଅଛି କାଣ୍ଡ ଛିନ୍ନି ॥
ଏ ଘାଉଆମାନେ କେମନ୍ତେ ଭଲ ହୋନ୍ତୁ ।
ରକ୍ଷକପିମାନେ ମୋର ନିକେଳଶି ଥାନ୍ତୁ ॥୮୦

ସୁଷେଣ ବୋଇଲେ ତୁମ୍ଭେ ଶୁଣ ରଘୁମଲ ।
ଘଡ଼ିକ ଭିତରେ କରିବି ସବୁ ଭଲ ॥
ଯେବେ ସୁବଳୟା ପର୍ବତକୁ ଯିବା ।
ତହିଁ ଯାଇ ବିଧି ବିଚାର କରିବା ॥
ଶୁଣିଣ ଶ୍ରୀରାମ କଲେ ବାହୁଡ଼ା ବିଜୟେ ।
ଧୀର ଧୀର ହୋଇ ଉତ୍ତରା ମୁଖେ ଯାଏ ॥
ସୁବଳୟା ଗିରିରେ ହୋଇଲେ ପରବେଶ ।
ଦେବନଦୀ କୂଳେ ହୋଇଲେ ରଘୁଶିଷ ॥
ସଜ ଉଲାଗି ହୋଇ ସୁଷେଣକୁ ହକାରି ।
କୋଳକରି କହନ୍ତି କୋଦଣ୍ଡ ଚାପଧାରୀ ॥୯୦
କି ବୁଧି କରିବା କହସି ଉତ୍ତର ।
ଶରାଘାତେ ମୋର ବଳ ହୋଇଲେ କାତର ॥
ସୁଷେଣ ବୋଲଇ ଏବେ ହନୁମନ୍ତ ଯାଉ ।
ହେମବନ୍ତୁ ମଉଷୋଧି ବେଗେଣ ଅଣାଉ ॥
ଶୁଣି ଶ୍ରୀରାମ ଯେ ହୋଇଲେ ଚକିତ ।
ଜମ୍ୱେବ ବୋଇଲେ ତୁ ନ ଭାଳ ନଘୁନାଥ ॥
ସେଦିନର ଓଷଧ ଅଛି ମୋର ତହିଁ ।
ଆଗତ ଜାଣି ମୁଁ ଗର୍ଭେ ଅଛି ଥୋଇଂ ॥
ଯେତେ ବୋଲି ଉଦୁଗାରି ଗର୍ଭୁଂ ବାହାର କଲେ ।
ଦେଖି ରଘୁନାଥ ଅନେକ ପ୍ରଶଂସିଲେ ॥୧୦୦
ଦେବନଦୀ ଜଳେଣ କଲେକ ପଖାଳଣ ।
ଜମ୍ୱେବ ହସ୍ତରୁ ଘେନିଲେ ସୁଷେଣ ॥
କଞ୍ଚ ପଦାର୍ଥ ସେ ଅମଳା ହୋଇଅଛି ।
ଦେଖିଣ ଆନନ୍ଦ ହୋଇଲେ ରଘୁବଚ୍ଛି ॥
ଶ୍ରୀରାମକୁ ସୁଷେଣ ଶୁଙ୍ଘାଇଲାକ ନେଇ ।
ଅନେକବଳ ପାଇଲେ ରଘୁସାଇଂ ॥
ଶହସ୍ର ଘାଆମାନ ଭଲ ହୋଇଲେ ତକ୍ଷଣ ।
ଶ୍ରୀରାମ ଉତ୍ତାରେ ଶୁଙ୍ଘିଲେ ଲକ୍ଷଣ ॥
ତେଡ଼େ ଘାଆମାନ ହୋଇଲେ ସବୁ ବୁଜି ।
ଗତୁ ଶତେଗୁଣେ ଶ୍ୟରୀର ବିରାଜି ॥୧୦
ସୁଗ୍ରୀ ବିଭୀଷେଣ ଜମ୍ୱେବ ଶୁଙ୍ଘିଲେ ।
ହନୁ ଅଙ୍ଗଦ ଯେ ମାଗି ଘେନିଗଲେ ॥
ଯେକର ହାଥରୁ ଆରେକ ଗଲେ ଘେନି ।
ଘଡ଼ିକ ଭିତରେ ଶୁଙ୍ଘିଲେ ସଇନି ॥
ଅଷ୍ଟ ସେହ୍ଣାଯେ ପଞ୍ଚଶ ଯୂଥପତି ।
ବ୍ୟାଧି ନିବାରିଣ ହୋଇଲେ ଉଗ୍ରମୂର୍ତ୍ତି ॥
ଡେଇଂଲେ ରକ୍ଷ କପି ସିଂହରଡ଼ି ଦେଇ ।
ଇନ୍ଦ୍ରଜିତ ପଡ଼ିଲାକୁ ଉଶ୍ୱାସମତି ହୋଇ ॥
ଆଷେଣ ଡାକ ଦିଅନ୍ତି ରାବଣ ବେଗେ ମରୁ ।
ଶ୍ରୀରାମର ବାଣ ତା ହୃଦୟ ଯାଇଂ ବିଦାରୁ ॥୨୦
ଜାନେକୀକି ଘେନି ଅଯୋଧ୍ୟା ରାମ ଯାନ୍ତୁ ।
ବ୍ରହ୍ମା ଇନ୍ଦ୍ର ଦେବତା ସୁସ୍ଥେଣ ରହନ୍ତୁ ॥
ଯେସନେକ ବୋଲି ବୋଲନ୍ତି ସଇନି ।
ଏଥୁ ଅନନ୍ତରେ ରାମ ଲକ୍ଷଣ ବେନି ॥
ନିତ୍ୟକର୍ମ ସାରିଲେ ଦେବନଦୀ କୂଳେ ।
ମନ୍ତ୍ର ସ୍ନାହାନ ସାରିଲେ ସର୍ବେ ଜଳେ ॥
ଗୁଧିର ଛଡ଼ାଇ ସଂନ୍ଧ୍ୟା ସୁମରିଲେ ।
ଦେବ ପିତୃଗଣଙ୍କୁ ଜଳ ଦେଇ ବାହୁଡ଼ିଲେ ॥
ସୁଗ୍ରୀ ବିଭୀଷେଣ ସହିତେ ସର୍ବଜନ ।
ନିତ୍ୟକର୍ମ ସାରି ଆସନ୍ତି ବହନ ॥୩୦
ସୁବଳୟା ନବରେ ପ୍ରବେଶ ଭାଇ ବେନି ।
ଯେ ଯାହାର ବସାରେ ରହିଲେ ସଇନି ॥
ଅଢ଼ାଇ ପ୍ରହର ଆସି ହୋଇଲାକ ବେଳ ।
ମଣୋହିରେ ବିଜେ କୌଶଲ୍ୟାର ବାଳ ॥
କନ୍ଦମୂଳ ଫଳ ଲକ୍ଷଣ ପରଷି ।
ସେନାନ୍ତ ଘେନିଣ ଶ୍ରୀରାମ ଭୁଞ୍ଜି ବସି ॥
ମଣୋହିଂ ସମ୍ପୂର୍ଣ୍ଣ ଉଠିଲେ ଚାପଧାରୀ ।
ସୁବାସିତ ଜଳେ ଆଞ୍ଚୋବନ କରି ॥
କଷାଫଳ ଖାଇ ବସିଲେ ମୃଗଛାଲେ ।
ପଞ୍ଚଶ ଯୂଥପତି ଆନନ୍ଦେ ଭୁଞ୍ଜିଲେ ॥୪୦
ଉଦର ତୋଷିଣ କଲେକ ଆଞ୍ଚୋବନ ।
ରଘୁନାଥ ଚରଣେ କଲେକ ଦରଶନ ॥
ସୁଗ୍ରୀ ବିଭୀଷେଣ ଜମ୍ୱେବ ଅଙ୍ଗଦ ।
ହନୁମତ ସୁଷେଣ ଦ୍ୱିବିନ୍ଦ କୁମୁଦ ॥
ପବନ କେଶରୀ ମହାନ୍ଦ୍ର ଗବାକ୍ଷ ।
ଦଧିମୁଖ ବଳିମୁଖ ଡାଳିମ୍ୱ ତାରାକ୍ଷ ॥
ସଂପାତି ବିବିଧ ଶଉରୀ ଶତବଳ ।
ଗନ୍ଧମାର୍ଦ୍ଦନ କାଳିମୁଖ ନଳ ନୀଳ ॥
ବସନ୍ତ ଚନ୍ଦନ ସାରାସ ପାରାସ ।
କାଳିଞ୍ଜନକୁନ୍ଦ ଶତବାଳି ପ୍ରଶସ୍ତ ॥୫୦
ଦ୍ରଶନ କରିଣ ପଟୋଆରି ଛନ୍ତି ।
ଯୁଦ୍ଧ କଥାମାନ କୁହାକୋହି ହୋନ୍ତି ॥
ରାମ ବୋଇଲେ ହୋ ଶୁଣ ବିଭୀଷେଣ ।
ଆଗ ହୋଇ ତୁମ୍ଭେ ଗଲ ଯେ ପଶିଣ ॥
ଆମ୍ଭନ୍ତ ଓଗାଳିଲେ ସାତ ସେନାପତି ।
ଇନ୍ଦ୍ରଜିତ ସମାନ୍ୟରେ ସେ ଯେକ ଯେକ କ୍ଷତ୍ରୀ ॥
ସଇନି ନିରନ୍ତରେ କଳଣା ନ ଯାଇଂ ।
ଦ୍ୱାର ନିରୋଧିଣ ଯୁଝିଲେ ପରିଘାଇଂ ॥
ଡାଳିମ୍ୱ ବସନ୍ତ ଶତବାଳି ଘେନି ।
ନାରାଜ ବୃଷ୍ଟିକରି ମାଇଲେ ସଇନି ॥୬୦
ଘୋର ସାଂଗ୍ରାମ କରି ମୋହୋର ସୈନ୍ୟ ମାରି ।
ଦିବସେକ ରାତ୍ରେକ ଆବର ତିନିଘଡ଼ି ॥
ସେମାନେ କେକେ ଅଟନ୍ତି ହୋ ବିଭୀଷେଣ ।
ଅପୂର୍ବ ମଣିଲି ମୁଁ ତାହାଙ୍କର ରଣ ॥
ଶୁଣି କରଯୋଡ଼ି ରାବଣର ଭାଇ ।
ସେ ସାତବୀରେ ପାରନ୍ତି ହୋ ପୃଥ୍ୱୀ ଦହି ॥
ରାବଣର ତନୟେ ସେ ମନ୍ଦୋଦରୀ ସୁତ ।
ଆବର ଛଡ଼ଙ୍କର ଅଟନ୍ତି ତିନିମାତ ॥
ଯେବେଣ କାଳେ ସ୍ୱର୍ଗେ ଯୁଝିଲା ଦଶଗିରି ।
ଏ ସାତକୁମରଙ୍କୁ ଥିଲା ଆଗକରି ॥୭୦
ଗନ୍ଧର୍ବବଳଙ୍କୁ ଆଣି ବନ୍ଦୀ କଲେ ।
ବେଢ଼ି ପବନ ଦେବତାକୁ ଧଇଲେ ॥
ଚାରିମେଘନ୍ତ ଯେ ଆଣୁଥିଲେ ବାନ୍ଧି ।
ଆକାଶ ପୂରାଇଲେ ଶରେ ଶରେ ବିନ୍ଧି ॥
ସେ ସାତଭାଇ ଯେ ଯେକ ହୋଇଥାନ୍ତି ।
ଯହିଂକି ଯିବେ ସେ ଯେକାବେଳେ ଯାନ୍ତି ॥
ଭଲା ଦୁଇଭାଇ ଥାଠକଲ ନାଶ ।
ଶୁଣି ରଘୁନାଥ ହୋଅନ୍ତି ହସ ହସ ॥
ଏଥୁ ଅନନ୍ତରେ ଲଙ୍କାଗଡ଼ କଥା ।
ଚାର ଜଣାଇଲା ଶୁଣିମା ଦଶମଥା ॥୮୦

ଇନ୍ଦ୍ରଜିତ କୁମର ରଣରେ ପଡ଼ିଲା ।
ବିଭୀଷେଣକୁ ଘେନି ଲକ୍ଷଣ ମାରିଗଲା ॥
ସବୁ ଭେଦ ଶତ୍ରୁକୁ କହିଲା ତୋର ଭାଇ ।
ଶୁଣି ଲଙ୍କପତି ପଡ଼ିଲାକ ମହୀ ॥
ଶୁକ ସାରଣ ଯେ ଧଇଲେକ ତୋଳି ।
ଶୀତଳ ଜଳ ଘେନି ବଦନ ପଖାଳି ॥
ମୋହୋଦର ବିଞ୍ଚଣା ବିଞ୍ଚଇ ଧୀର ଧୀର ।
ଅଗ୍ନିକେତୁ ରଶ୍ମିକେତୁ ଚାପନ୍ତି ପୟର ॥
ସେନା ସେନାପତି ସମସ୍ତେ ଅଛନ୍ତି ।
ଏକକୁ ଆରେକ ସମସ୍ୟା ନ ଦିଅନ୍ତି ॥୯୦
କ୍ଷଣକେ ଚେତନା ପାଇଲା ଲଙ୍କରାୟେ ।
ବିଂଶଲୋଚନ ବୁଝି ଲୋକଙ୍କୁ କଥାକୁହେ ॥
କାଠଖଣ୍ଡ ପରାୟେ ହୋଇଅଛି ଦେହୀ ।
ଆହା ପୁତ୍ର ବୋଲି ଉଠିଲା ବୋବାଇ ॥
ସର୍ବସୁଲକ୍ଷଣ ଅଟୁ ମୋର ବଳା ।
ସମୋଦ୍ର ଭିତରେ ମୋର ବୁଡ଼ାଇଲୁ ଭେଳା ॥
ଗହନ ଅରନ୍ୟେ ମୋତେ ବଣାକରି ଗଲୁ ।
ଗଛେ ଉଠାଇ ମୋତେ ନିଶୁଣୀ କାଟିଲୁ ॥
ତୋତେ ଦେଖି ମୋହୋର ଅନେକ ଭରସା ।
ବିଚାର କରଇ ପୁତ୍ର ଦେବକଇ ସାଦ୍ରିଶା ॥୧୦୦
ଅପୂର୍ବ ପୁରୁଷ ତୁ କ୍ଷେତ୍ରୀଙ୍କ ଈଶ୍ୱର ।
ତୋହୋର ମହିମାରେ ବିଖ୍ୟାତ ତିନିପୁର ॥
ବାଟରେ ବସାଇ ଗଲୁ ମୋତେ ଛାଡ଼ି ।
ଦେହରୁ ପ୍ରାଣ ମୋର କେହ୍ନୁ ନେଲା କାଢ଼ି ॥
ଅନର୍ଗଳ ତୋହ୍ଵର ବୀରବର ବାନା ।
ତପୁସୀର ବାଣେ ପଡ଼ିଲା ସର୍ବସେନା ॥
ମକୁଟ କୁଣ୍ଡଳ ସହିତେ ଶିର ଦେଖି ।
ଅବିକ୍ଷନେ ଅଶ୍ରୁଜଳ ବହଇ ବିଂଶ ଆଖି ॥
ଫରହର ସୁନ୍ଦର କସ୍ତୁରୀରେଖନିଶ ।
ରୁଧିରେ ବିଲେପନ ହୋଇଲୁରେ ଶିଷ ॥୧୦
ରଣେ ଯେ ପିଠି ନ ଦେଉରେ ବାବୁ ।
ଯେକାବେଳେ ଦୁଃଖ ତ ହୋଇଲା ଆସି ସବୁ ॥
କୁମ୍ଭକର୍ଣ୍ଣ ପଡ଼ିଲା ପୁତ୍ରମାନେ ମଲେ ।
ରଥ ଗଜ ଅଶ୍ୱ ପାଦାନ୍ତି କ୍ଷୟେ ଗଲେ ॥
ହୀନ ଶତ୍ରୁ ମୋତେ କଲାକ ଯେଡ଼େକର୍ମ ।
ବିଭୀଷେଣ ତହୁଂ ଯତି ପାଇଲା ଯେତେ ମର୍ମ ॥
କୁଳରେ କଳଙ୍କ ଲଗାଇଲା ପାପିଷ୍ଠ ।
ତାହାର ଯୋଗୁଂ ପୁତ୍ର ହୋଇଲା ପ୍ରାଣଭ୍ରଷ୍ଟ ॥
ଯେସନେକ ବୋଲି ଦୈତ୍ୟ ଦଶଗିରି ।
ରାଜାର କାନ୍ଦନ୍ତେ କାନ୍ଦନ୍ତି ନରନାରୀ ॥୨୦
ଯେସନେକ ବେଳେ ଗଲା ମିତ୍ରଘନ ।
ଅକାରଣେ ରୋଦନ କରୁ ଦଶାନନ ॥
ଇନ୍ଦ୍ରଜିତ ମଲା ଯେ ଜାଣିଅଛି ଯେଣେ ।
ଆବର ସାତପୁତ୍ର ମଲେ ସେ ନ ଜାଣେ ॥
ବୁକୁ ଦମ ଦମ ଖର କରି ନିଶ୍ୱାସ ।
ସୁସ୍ଥେ ନରହି ଉଠିଲାକ ସାହସ ॥
ବିଂଶଲୋଚନେ ଚାହାଂଇ ଥିରକରି ।
ଉଚ୍ଚେଣ କାନ୍ଦିଲା ପୁତ୍ରର ନାମ ଧରି ॥
ବୀରଧ୍ୱ ବୋଲାଇଲୁ ଇନ୍ଦ୍ରଜିତ ପଦ ।
ଆହା ତନୟରେ ମୋର ମାହାବଳବନ୍ତ ॥୩୦
ବ୍ରହ୍ମାଣ୍ଡ ଭିତରେ ତୋତେ ସରିସମ ନାହିଂ ।
କେବଳ କେବଣ କଥା ନ ଉପୁଜିଲା ମହୀ ॥
ତୋହୋର ମଲା ବୋଲି ଶୁଣିଲି ମୁଁ କର୍ଣ୍ଣେ ।
ପ୍ରତେ ନ କରଇ ନ ଦେଖିଲେ ନୟନେ ॥
ମିତ୍ରଘନଙ୍କୁ ଚାହିଂ ବୋଲଇ ଲଙ୍କମଣି ।
ସତେକି ତପୁସୀ ମୋ ପୁତ୍ରକୁ ଗଲାହାଣି ॥
ସମୋଦ୍ର କେ ଅଗ୍ନି ଘେନି ପୋଡ଼ି ଦେଲା ।
ପବନ ଦେବତା କେ ଫାନ୍ଦରେ ବନ୍ଦୀକଲା ॥
ବ୍ରହ୍ମଦଇତକୁ କେ ଲଗାଇଲା ତୋଟି ।
ବିଧାରେ ଚୂରିଲା କେ ମରୁ ଶିଂଘଗୋଟି ॥୪୦
ହାଥ ବଢ଼ାଇଣ କେ ଚନ୍ଦ୍ର ସୂର୍ଯ୍ୟ ନେଲା ।
ତପତ ଲୋହା କେ ଦନ୍ତେ କାମୋଡ଼ିଲା ॥
ବଜ୍ର ପକାଇ କେ ପାତିଲାକ ମୁଣ୍ଡ ।
ନିଆଂ ପୂରାଇ କେ ବୁଜିଲାକ ତୁଣ୍ଡ ॥
ଇନ୍ଦ୍ରଜିତ ଛାମୁରେ ନଡ଼ରି ଯୁଦ୍ଧ କଲା ।
ଆବର ବିଶେଷେ ସାଂଗ୍ରାମେ ମାରିଗଲା ॥
ଇନ୍ଦ୍ରହୁଂ ବଡ଼ ହୋଇଲା ମଣିଷ ।
ଖାଇଂ ପାର କଲାକ କାଳକୂଟ ବିଷ ॥
ପ୍ରଳୟଜଳେ କାହାକୁ ନୋହିଲା ବୁଡ଼ଣା ।
କେ ମୋହୋର ମାଇଲା କୁଳର ଦୂଲଣା ॥୫୦
ଇନ୍ଦ୍ରଜିତ ପଡ଼ିଲା ସମାନ୍ୟ କି କର୍ମ ।
ଯେବେ ସେ ଜାଣିଲି ଛାଡ଼ିଲା ମୋତେ ଧର୍ମ ॥
ଦେବଦଳଣ ରଥ ନଥିଲୁ କି ଚଢ଼ି ।
ଯହିଂ ବସିଥିଲେ ପୃଥ୍ୱି ଜିଣୁ ଯେକ ଘଡ଼ି ॥
ଦିବ୍ୟଅସ୍ତମାନ ନକଲୁକିରେ ପୁତ୍ର ।
ମାୟାବୁଦ୍ଧିମାନ ଜାଣୁ ଯେ ବହୁତ ॥
ସାଧ୍ୟ କଥାମାନ କେଉଂ ଗତି ଗଲା ।
ଶ୍ରୀରାମ ଭାଇ ମୋର ପୁତ୍ରକୁ ମାରିଗଲା ॥
ଇନ୍ଦ୍ରାଧିଦେବତା ଯେ ହୋଇବେ ହରଷ ।
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀମାନେ ତୋଷ ॥୬୦
ରାଜାମାନେ ଭୟେ କରିବେ କିମ୍ପା ମୋତେ ।
କୋବେରର ମୁଖ ମୁଂ ଚାହିଂବି କେମନ୍ତେ ॥
କାହିଂ ଅଛି ପୁତ୍ର ଦେଖାଅ ମୋତେ ନେଇ ।
ଯେତେ ବୋଲି ସିଂହାସନୁ ଉଠିଲା ଲଙ୍କସାଇଂ ॥
କାନ୍ଦି କାନ୍ଦି ନବରୁ ହୋଇଲା ବାହାର ।
ସଇନି ସାହା ତାର ଅଛଇ ଅପାର ॥
ରାଜଦାଣ୍ଡରେ ଯାଇଂ ହୋଇଲା ରାବଣ ।
ପୁତ୍ର ପଡ଼ିଅଛି ଦେଖିଲା ତକ୍ଷଣ ॥
ଧାଇଂ ପିଣ୍ଡଖଣ୍ଡ କୋଳକରି ଧରି ।
ଆହାରେ ପୁତ୍ର ବୋଲି କାନ୍ଦଇ ଉଚ୍ଚ କରି ॥୭୦
ସର୍ବାଙ୍ଗ ସୁନ୍ଦର ତୋର ଯୁବା ଯେ ବୟସ ।
ମର୍କତ ପ୍ରତିମା ତୁ କନ୍ଦର୍ପ ସାଦ୍ରିଶ ॥
ରୂପରେ ପଟାନ୍ତର ଗୁଣରେ ଗୁଣନିଧି ।
ବଡ଼ିମାୟେ ମେରୁ ଗଭୀରେ ପୟୋଧି ॥
ଦାନରେ ସାଚା ତୁ ଖାଣ୍ଡେଣ ଗାରିମା ।
ଇନ୍ଦ୍ରକୁ ଜିଣି ସ୍ୱର୍ଗେ ରୁହାଇଲୁ ସୀମା ॥

ଏସନେକ ରୋଦନ କରଇ ଲଙ୍କସାଇଁ ।
ପୁଣ ଯେକ ଚାର ଜଣାଇଲା ଯାଇଁ ॥
ଶୁଣିମା ସାବଧାନେ ଲଙ୍କାର ଈଶ୍ୱର ।
ରଣେ ପଡ଼ିଲେ ତୋର ସପତ କୁମାର ॥୮୦
ସିଂହ ତୁରଙ୍ଗ ଯେ ଦେବଦତ୍ତ କୁମର ।
ଆବର ସଙ୍ଗତେ ଚାରି ସହୋଦର ॥
ଗଡ଼େ ପଶନ୍ତେ ଓଗାଳିଲେ ଯାଇଁ ।
ଲକ୍ଷଣ ନ ରହିଲା ପଶିଲା ବଳିଆଇ ॥
ପଛେ ଶ୍ରୀରାମକୁ ପାଇଲେ ଯେ ଭେଟ ।
ଦ୍ୱାର ଓଗାଳି କିଳିଲେ କପାଟ ॥
ସଇନି ସାହା ଘେନି ଅନେକ ଯୁଦ୍ଧକଲେ ।
ରଘୁନାଥର ବାଣେ ସପତ ପୁଅ ମଲେ ॥
ଶୁଣି ଦଶଗ୍ରୀବ ହୋଇଲା ଚକିତ ।
ହୃଦୟ କମଳ ମଧ୍ୟେ ରାମକୁ କଲା ଭୀତ ॥୯୦
ମୃତପିଣ୍ଡ ଛାଡ଼ି ଉଠିଲା ଦଶଶିରି ।
ରାମ ଲକ୍ଷଣଙ୍କୁ ଆସଇ ଆଜି ମାରି ॥
ଯେବଣ କାଳେ ମୁଂ ଜଗତ ସାଧ କଲି ।
ସେ ବେଳେ ପୁତ୍ର କି ମୁଂ ସଙ୍ଗେ ଘେନିଥିଲି ॥
ମନ୍ଦୋଦରୀ ଯେବେ ନୋହିଥିଲି ବିଭା ।
ଚଉଦ ଭୁବନେ ଲାଗିଲା ମୋର ପ୍ରଭା ॥
ମଲେ ମଲେ ପୁତ୍ର ମୋର ମନେ ନାହିଁ ଚିନ୍ତା ।
ଶମଶାନେ ଦହନ କରାଅ ଇନ୍ଦ୍ରଜିତା ॥
ଏତେ ବୋଲି ରାଜା ବାହୁଡ଼ିଣ ଗଲା ।
ମଉଗଜ ଆରୋହି ପ୍ରତଜ୍ଞା ବହୁତ କଲା ॥୧୦୦
ଥାଟ ସଜକର ବୋଲି ମନ୍ତ୍ରୀଙ୍କି ଆଗ୍ୟାଂଦେଇ ଚଳଇ ।
ଓଶେକ ବିପୁନ୍ୟଙ୍କୁ ସେ ବେଗେଣ ଚଳଇ ॥
ବୋଇଲା ଇନ୍ଦ୍ରଜିତ ମାଇଲା ଯେ ମାୟାସୀତା ।
ସତେହେଂ ମାରିବି ମୁଂ ଜନେକ ଦୁହିତା ॥
ମଧୁବନେ ପଶି ହସ୍ତୀରୁ ଓହ୍ଲାଇଲା ।
କରେ ଖଡ଼ଗ ଧରି ଶୀଘ୍ର ହୋଇଗଲା ॥

ସୀତା ଯେ ସୁବର୍ଣ୍ଣ ଜଗତୀରେ ଅଛି ବସି ।
ବେଢ଼ିଛନ୍ତି ତାକୁ ସହସ୍ରେ ରାକ୍ଷସୀ ॥
ତ୍ରିଜଟା ସହିତେ ଦୂରୁହୁଂ ଅନାଇଲେ ।
କୋପଭରେ ରାବଣ ଆସଇ ବୋଇଲେ ॥୧୦
ଶ୍ରୀରାମ ଲକ୍ଷଣ ପଡ଼ିଲେ ଅବା ରଣେ ।
ସୀତାକୁ ହରିବ ବୋଲି ଆସଇ ରାବଣେ ॥
ଜାନେକୀ ସଂପ୍ରତେ କଲେ ଯେହଇ କଥା ।
ଯହୁଂ ବେଗ ବେଗ ଆସଇ ଦଶମଥା ॥
ବଇଦେହୀ ବୋଇଲେ ଗୋ ହୋଇଲା ବିପରୀତ ।
ରଣେ ପଡ଼ିଲେ ଅବା ଦଶରଥ ବେନିପୁତ୍ର ॥
ଚାଣ୍ଡାଳୁଣୀ ମନ୍ଦୋଦ୍ରୀ ଯୋଗୁଂ ଯେତେ ହୋଇଲା ।
କୈକେୟୀ ମହାରାଣୀ ଯେହା ସେ ଭିଆଇଲା ॥
ପୁଣି ବିଚାରନ୍ତି ନ ମରନ୍ତି ରାମ ।
ଦେବାସୁର ନରେ ଯାହାକୁ ରଣେ ନୋହେ ସମ ॥୨୦
ସାକ୍ଷାତେ ନାରାୟେଣ ବ୍ରହ୍ମାଣ୍ଡେ ଅଧିକାରୀ ।
ଯତନେ ଜାତ ହୋଇଲେ ଯେ ଅସୁରନ୍ତ ମାରି ॥
ଯେସନେକ ଭାଲୁ ନିକଟ ଲଙ୍କରାୟେ ।
ପ୍ରଚଣ୍ଡ ଖଡ଼ଗ ସେ ଧରିଅଛି ବାହେ ॥
ସହସ୍ରେ ଅସୁରୀ ଯେ ପ୍ରଳମ୍ବ କଲେ ଯାଇଁ ।
ସୀତା ବସିଅଛି ବଦନ ଲମ୍ବାଇଁ ॥
ରାବଣ ବୋଇଲା ଲୋ ଆଣ ତାକୁ ଧରି ।
ଇନ୍ଦ୍ରଜିତକୁ ପାଶୋରିବି ଏହାକୁ ବଧକରି ॥
ଇଷ୍ଟକୁଟୁମ୍ବ ମୋର ସମସ୍ତେ ନାଶଗଲେ ।
ଏ ଦ୍ରୋହୀର ଛଳେ ସିନା କୁଟୁମ୍ବ ମୋର ମଲେ ॥୩୦
ଇନ୍ଦ୍ରଜିତକୁ ମାଇଲା ଏହାର ଦିଅର ।
ଆବର ସାତପୁତ୍ରକୁ ମାଇଲା ଯେହାର ବର ॥
କ୍ଷଣେ ନ ଥୋଇବି ଆଣ ତାକୁ ଧରି ।
ତ୍ରିଜଟା ପ୍ରବୋଧିଲା ଅନେକ ଯତ୍ନ କରି ॥
ଭୋଦେବ ରାବଣ ତୁ ଲଙ୍କାର ଅଧିପତି ।
ଏ ସୀତା ଅଟଇ ଜନେକ ଦୁହିତୀ ॥

ଶ୍ରୀରାମ ଲକ୍ଷଣର ଯେହାର ବରଷେ ଦେଖାନାହିଁ ।
ଯେ ବୋଇଲାକି ତୋର ପୁତ୍ର ମାରିବାର ପାଇଁ ॥
ଛାଡ଼ ଛାଡ଼ ରାଏ କୋପ ନକର ତୁମ୍ଭେ ପୁଣ ।
ଅବଧ ବଧିବାର ଅଟଇ ଅକାରଣ ॥୪୦
ଋଷିକୁଳେ ଜାତ ହୋଇ ହୋଇଲୁ ରାକ୍ଷସ ।
ପୁରୁଷେ ସ୍ତିରୀ ହତ୍ୟା କଲେଣ ବଡ଼ ଦୋଷ ॥
ନୋହଇ ଉଚିତ ଯେ ଶୁଣିମା ଗୋସାଇଁ ।
ଶ୍ରୀରାମ ଲକ୍ଷଣ ବେଗେ ମାରି ଆସ ଯାଇଁ ॥
ପଛେ ସୀତା ଘେନି ବଇଭୋଗ କର ।
ଅଦୋଷୀ ପ୍ରାଣୀକି ଆଗକରି ନ ମାର ॥
କୃଷ୍ଣ ଚତୁର୍ଦ୍ଦଶୀ ଅଟଇ ଆଜଦିନ ।
ରୁଦ୍ର ଦେବତାଙ୍କୁ ପୂଜାକର ଦଶାନନ ॥
ସେବା ମନାଇଂଣ ହରଙ୍କୁ ମାଗ ବର ।
କାଲି ଯାଇଁ ଶ୍ରୀରାମ ସଙ୍ଗତେ ଯୁଦ୍ଧକର ॥୫୦
ଶ୍ରୀରାମ ଲକ୍ଷଣ ମାରି ପଛେ ଭୋଗ୍ୟକର ସୀତା ।
ଶୁଣିଣ ପ୍ରବୋଧି ହୋଇଲା ଦଶମଥା ॥
କୋପ ସଂହରି ସେ ଅଇଲା ବାହୁଡ଼ି ।
ନିଜ ନବରେ ପ୍ରବେଶ ମଉଗଜ ଚଢ଼ି ॥
ମନ୍ତ୍ରୀଗଣକଇ ଚାହିଁଂଣ ବୋଇଲା ।
ଇନ୍ଦ୍ରଜିତ ଶବ କେମନ୍ତ ହୋଇଲା ॥
ଆବର ସାତପୁତ୍ରଙ୍କୁ କଲକି ଦହନ ।
ହୋଇ ଦେବ ବୋଲି କହନ୍ତି ମନ୍ତ୍ରୀଗଣ ॥
ଦଶଗ୍ରୀବ ବୋଇଲା ହୋଉ ଥାଠ ସଜ ।
କୃଷ୍ଣ ଚତୁର୍ଦ୍ଦଶୀ ଅଟଇ ହୋ ଆଜ ॥୬୦
ମହାଦେବ ପୂଜାକରି ଘେନିମା ପରସାଦ ।
ଶ୍ରୀରାମର ସଙ୍ଗେ ମୁଂ କରିବି ବିବାଦ ॥
ସଇନି ସଜହୋଇ ସିଂହଦ୍ୱାରେ ଥିବ ।
ଯେତେ ବୋଲି ଭିତରକୁ ଗଲା ଦଶଗ୍ରୀବ ॥
ମାଜଣା ସାରି ଦେବାର୍ଚ୍ଚନେ ବିଜେକଲା ।
ଧୂପଦୀପ ଦେଇ ରୁଦ୍ରଙ୍କୁ ପୂଜିଲା ॥
ଅରଖ ଗଇଶ ଦୁଦୁରା ବେଲପତ୍ର ।

ଗନ୍ଧ ଚନ୍ଦନ ଦେବାଙ୍ଗ ଝିନବସ୍ତ୍ର ॥
ମଧୁ ଅବିଷେକ କ୍ଷୀର ନିଉଡ଼ାଇ ।
ଜାମ୍ବୁପତ୍ର ଚମ୍ପା କୁସୁମ ଫୁଲ ଦେଇ ॥୭୦
ଅଗ୍ରଧୂପ କର୍ପୂର ଆଳତି ପୁଣ ଦେଲା ।
ଆସନ ଦୃଢ଼ କରି ରୁଦ୍ରଙ୍କୁ ତୁଷ୍ଟିକଲା ॥
ହୃଦୟ ସୁସ୍ଥ କରି ସୁମରିଲା ମନ୍ତ୍ର ।
ସର୍ବାଙ୍ଗେଣ ନ୍ୟାସକଲା ଯେବଣ ଯନ୍ତ୍ର ॥
ଦେବତାଙ୍କୁ ପୂଜିଲା ପ୍ରତି ପ୍ରତି କରି ।
ଆତ୍ମାଶୁଦ୍ଧ କଲା ମନ୍ତ୍ର ଯେ ସୁମରି ॥
ମନେ ମନେ ସୁବାସ ପାଣି ବୁହାଇଲା ।
ମାତୃକା ଦଶବିଧି ପୁଣି ହିଂ ଧାୟେ କଲା ॥
ଯଜ୍ଞପବିତ୍ର ଯେ ପିନ୍ଧଇ ଝିନବାସ ।
ସପତ ମୁଦ୍ରିକା କରେ ଲାଇଲା
ଦଶଦିଶ ॥୮୦
ରୁଦ୍ରଙ୍କୁ ପୂଜାକରି ବହୁତ ତୁଷ୍ଟି କଲା ।
ଶତ୍ରୁ ସଂହାରିବି ବୋଲିଣ ମାଗିଲା ॥
ହେଙ୍ଗୁଳି ଜାଳିଣ ଘାଟ ଶୁଦ୍ଧ କରି ।
ଶତେ ସହସ୍ରେ ପ୍ରଳମ୍ବ କଲା ମନସରି ॥
ଯେସନେ କବନ୍ଧ ମୁଦ୍ର ଆଦି ବିଧି ।
ଯେଣେ ସେ ଭବାନୀ ପତି ହୋଅଇ
ପ୍ରବୋଧି ॥
ନନ୍ଦୀ ମହାକାଳ ମୁଳେ ଭୃତ୍ୟମାନ ।
ତାହାଙ୍କଇ ବଳିଦେଲାକ ଦଶାନନ ॥
ତହୁଂ ସହସ୍ରେ ଦ୍ରଶନ ମୁଦ୍ରା ସାରି ।
ରୁଦ୍ର ଜପି ତୁଷ୍ଟି କରଇ ଦଶଶିରି ॥୯୦
ଭୋଦେବ ମହାଦେବ ମୃତ୍ୟୁଞ୍ଜୟ ନାହା ।
ପୂର୍ବେଣ ବିଧାତା ଯେ ଶିଖାଇଛି ଯାହା ॥
ଶୟେଅଷ୍ଟ ଉତ୍ତର ନାମ ସୁମରିଲା ।
ଇକ୍ଷେକ ପ୍ରଳମ୍ବ ହୋଇଣ ସେବାକଲା ॥
ବାଞ୍ଛା କରିଣ ସେ ଘେନିଲା ପ୍ରସାଦ ।
ପୂଜାସାରି ବାହାର ହୋଇଲା ରାତ୍ରଅର୍ଦ୍ଧ ॥
ଅନ୍ତେଶ୍ୱରକଇ ବିଜେକରି ଗଲା ।
ପୁତ୍ରଶୋକେ ସେଦିନ ମୋଣୋହି ନକଲା ॥
ମନ୍ଦୋଦରୀ ରାଣୀର ସନ୍ନିଧକୁ ବୋଲି
ଯାଇଂ ।
ମୁଖ ପୋତି ଶୋଇଅଛଇ ମହାଦେଈ ॥

ତାହାକୁ ପ୍ରବୋଧନା କଲାକ ବହୁତ ।
ବୋଇଲା ରଣେ ଗୋ ପଡ଼ିଲେ କ୍ଷତ୍ରୀପୁତ୍ର ॥
ଅବଶ୍ୟ ସେ ମୃତ୍ୟୁ ନପାନ୍ତେ କି ପୁଣି ।
ଯେକଥାକୁ ଶୋଚନା ନକର ଗୋ ରାଣୀ ॥
ତୋହୋର ମୋହୋର ଥିଲେ ଗୋ ଅନେକ
କାର୍ଯ୍ୟ ଅଛି ।
ମୂଳଗଲେ ଫଳ ନ ଯୋଗାଇ କିଛି ॥
ମୂଳ ଥିଲେ ଯେ ଫଳ ପୁଣ ଜାତ ।
ନୋହ ତୁ ବିସ୍ମୟେ ମୋହୋର ସପତ ॥
କାଲି ତୋର ପୁତ୍ର ବଇରୀ ସଂହାରଇ ।
ସୁଖେ ମୁଂ ଯେ ଭୋଗ କରିବି
ବଇଦେହୀ ॥୧୦
ଏସନେକ ବୋଲି ତହୁଂ ଗଲାକ ହାଦେ
ଚଳି ।
ବାହାର ଅବକାଶ ହୋଇଲା ମହାବଳୀ ॥
ନିଶି ଶେଷ ହୋଅନ୍ତେ ନିତ୍ୟକର୍ମ ସାରି ।
ମନ୍ତ୍ରୀ ଅମାନାତ୍ୟ ଦ୍ରଶନ ଆସିକରି ॥
ରାବଣ ବୋଇଲାରେ ଥାଠ ହୋଅ ସଜ ।
ରାମ ଲକ୍ଷଣ ସେ ସଂହାରିବି ଆଜ ॥
ଶୁକ ସାରଣେ ଯେ କହନ୍ତି ଯୋଡ଼ିକରି ।
ସଇନି ସଜ ହୋଇଣ ଅଛନ୍ତି ସିଂହଦ୍ୱାର ॥
ଯେତେବେଳେ ଆଜ୍ଞା ଦେବୁ ଯିବେ
ଆଗହୋଇ ।
ଶୁଣି ସିଂହାସନୁ ଉଠିଲା ଲଙ୍କସାଇଂ ॥୨୦
ହାର କଙ୍କଣ କୁଣ୍ଡଳ ରତ୍ନମୟେ ।
ବିବିଧ ଚାରୁ ପଦକେ ଆଭରଣ କାୟେ ॥
ବ୍ରହ୍ମଜାତି ହୀରା ଆବର ଦ୍ରୋଛନା ।
ଆପଣାର ଦେହେ ଲାଇଲା ବଜ୍ରସେହ୍ନା ॥
ପଦ୍ମରାଗ ମାଣିକ ନିର୍ମିତ ପାଗ ଯୋଡ଼ି ।
ତାହା ପିନ୍ଧିଣ ଯେ ଅଛଇ ରଣ ବନ୍ଧେ ଭିଡ଼ି ॥
ବିଂଶ ଭୁଜେଣ ଯେ ଲାଇଲା ବୀରବାହୁ ।
ପୂର୍ଣ୍ଣମୀ ଦିନକୁ କି ସଜ ହୋଇ ରାହୁ ॥
ଦଶମୁଣ୍ଡେ ଟୋପର ମର୍କତର କାନ୍ତି ।
ତାଟରେ ଖୋଞ୍ଚିଲା ସୁବର୍ଣ୍ଣର
ଖୋଳପାତି ॥୩୦
ଅକ୍ଷୟେ ତ୍ରୋଣ ଭିଡ଼ିଲାକ କାନ୍ଧେ ।

ଦକ୍ଷିଣେ ବୀରନେତ ଯମଦାଢ଼ ବାନ୍ଧେ ॥
ଅନର୍ଗଳ ତୋଡ଼ର ଚରଣେ ଶୋଭାପାୟେ ।
ଦଶଧନୁ ଧରି ଝମକାଇଂ ଦୈତ୍ୟରାୟେ ॥
ବୋଇଲା ଆଜ ସେ ଜାଣିମା ରାମବଳ ।
ଯେ ମୋହୋର ନାରାଜ ନ ସହନ୍ତି
ଦିଗପାଳ ॥
କେତେକ ପ୍ରାକର୍ମ ତାହାର କେତେ ବଳ
ଅଟଇ ।
ଏତେ ବୋଲିଣ ସେ ରାବଣ ଝମକାଇ ॥
ଆଜ ସେ ପରୀକ୍ଷା କରିବା ଭଲକରି ।
ଗୁଣ ଟଙ୍କାର କଲା ଦଶଧନୁ ଧରି ॥୪୦
ଯେତେବୋଲି ରହୁବରେ ବସିଲାକ
ଯାଇଂ ।
ସୁରସିଦ୍ଧ ଗଣେ ଦେଖନ୍ତି ସ୍ୱର୍ଗେ ଥାଇଂ ॥
ସେନାପତିମାନନ୍ତ ରାଇଂଣ ଆଜ୍ଞା ଦେଲେ ।
ଥାଠ ଘେନି ତୁମ୍ଭେ ଯାଅସି ବୋଇଲେ ॥
ଶୁଣି ଆଗ ହୋଇଲେ ମତ୍ତ ଅନୁମତ୍ତ ।
ଦଶ ପଦ୍ମଗଜ ଦୁଇ ପରାର୍ଦ୍ଧ ରଥ ॥
ସତୁରୀ କ୍ଷଉଣୀ ପାଦାନ୍ତି ସଜ ହୋୟେ ।
ଚଉଦ ପରାର୍ଦ୍ଧ ରଥ ଆଗ ହୋଇ ଆୟେ ॥
ବାଜଣା ବାଜନ୍ତେ କମ୍ପଇ ବସୁନ୍ଧରୀ ।
ଆଲମ୍ବ ପାଟକ୍ଷତ୍ର ଦୈତ୍ୟ ଓହାଡ଼ି ॥୫୦
ପ୍ରଭାତ ସମୟେ ହୋଇଲାକି ରାତି ।
ସମରକୁ ବେଗେ ସଜ ପୌଲୋସ୍ତିର ନାତି ॥
ମଧ୍ୟଦଣ୍ଡେ ପୁଣି ପେଷିଲା ସେନାଦଶ ।
ହସ୍ତୀକର୍ଣ୍ଣ ବିରୁପାକ୍ଷ ପରକେତୁ ଗଡ଼ହାସ ॥
ଗଜକୁମ୍ଭ ସିଂହଗ୍ରୀବ ରାକ୍ଷସ ଏ ବେନି ।
ସୂର୍ଯ୍ୟଶତ୍ରୁ ମହାକାୟ ଅଗ୍ନିକେତୁ ତିନି ॥
ରଶ୍ମିକେତୁ ଘେନି ହୋଇଲେ ଜଣ ଦଶ ।
ଇନ୍ଦ୍ରଜିତ ସମାନେ ଯେ ଅଟନ୍ତି ଗରୁହଂସ ॥
ଏହାନ୍ତ ଦେଖିଲେ ସେ ଡରଇ ସୁରପତି ।
ପାଦ ପଡ଼ନ୍ତେଣ କମ୍ପଇ ବସୁମତୀ ॥୬୦
ପ୍ରମଥ ଯଜ୍ଞକେତୁ ଯେହ୍ନେ ବେନିଭାଇ ।
ଏହାଙ୍କର ପରେ ମିତ୍ରଘନ ଯାଇଂ ॥
ଜମ୍ୟୋମାଳି ପୁତ୍ର ସିଂହନାଦ ବୀର ।
ସ୍ଥୁଳଜଙ୍ଘ ସହିତେ ମହୀରାବଣ କୁମାର ॥

ତିନିଶତ ନାତି ପଞ୍ଚଶ କୋଟି ଯୋଧା ।
ସାଂଗ୍ରାମକୁ ଗଲେ ପୃଥୀ କରିପାରନ୍ତି ସୋଧା ॥
ରାମଲକ୍ଷଣଙ୍କୁ ମାରିବେ ସେ ତାହାଙ୍କ ବଇରୀ ।
ଯହୁଁ ସେ ଆଜ୍ଞା ଦେଲାକ ଦଶଶିରି ॥
କାଳଘଣ୍ଟ ବୀରଘଣ୍ଟ ଅଇଲେ ଭାଇବେନି ।
ସୁଖା ଦୃମୁଖା ତପନବୀର ତିନି ॥୭୦
ସଲୋପି ଅଲୋପି ବିଦ୍ୟୁତ ଜିହ୍ୱ ।
ଏହାଙ୍କର ମହିମା ଦେବଙ୍କୁ ଦୁର୍ଲଭ ॥
ଅଇରାବ୍ରତ ଜିଣି ଦିଶନ୍ତି ହସ୍ତୀମାନେ ।
ସମୋଦ୍ର ଲହଡ଼ି ଜାଣି ରଥ ଗରଜନେ ॥
ବିକଟାଳ ବଦନ ଅସୁରେ ଭୟାଙ୍କର ।
ଉତ୍ତର ଗଡ଼ଦ୍ୱାରେ ହୋଇଲେ ବାହାର ॥
ଶ୍ରୀରାମ ଯେ ସୁବଳୟା ଗିରିରେ ଛନ୍ତି ରହି ।
ନୀଳ ସେନାପତି ପଠି ଅଇଲା କହି ॥
ଭୋଦେବ ଆଗିଆଣି ଦଣ୍ଡେ ଯୁଧ ହୋୟେ ।
ଆପଣେ ଥାଠ ସେନାପତି ଲଙ୍କାରାୟେ ॥୮୦
ଶୁଣିଣ ଶ୍ରୀରାମ ଯେ ସାରିଲେ ନିତ୍ୟକର୍ମ ।
କୂଳେ ଉଭା ହୋଇ ଧନୁରେ ଦେଲେ ଗୁଣ ॥
ଅଙ୍ଗଦଙ୍କୁ ବୋଇଲେ ତୁ ଯାସି ବେଗ ହୋଇ ।
ଆମ୍ଭର ଯିବା ଯାୟେ ଯୁଧେ ଥାଅ ରହି ॥
ହନୁମନ୍ତ ଗବୟେ ଗବାକ୍ଷହିଂ ଯାଅ ।
ଆମ୍ଭର ଯିବା ଯାୟେ ଯୁଦ୍ଧ କରୁଥାଅ ॥
ସେନା ସେନାପତି ଶତବଳ ଯାଉ ।
ଚନ୍ଦନ ବସନ୍ତ ଶତବାଳି ଥାଉ ॥
ଶ୍ରୀରାମ ଆଜ୍ଞାରେ ଧାଇଂଲେ ରକ୍ଷକପି ।
ତରୁଶିଳ ଘେନି ଶୂନ୍ୟେ ଯାନ୍ତି ଖେପି ॥୯୦
ଅସୁର ସଇନିକୁ ପାଇଲେ ଯହୁଁ ଭେଟ ।
ରୋଷଭର ହୋଇ ଧାଇଂଲେ ଦୁଇଥାଠ ॥
ୟେକକୁ ଆରେକ ବୋଲନ୍ତି ମାର ମାର ।
ଓପ୍ରୋଧ ସାଂଗ୍ରାମ ଯେ ନୋହିଲା ଦୁଇବଳ ॥
ଘାଆପାଇ ଯୁଝଇ କେ ପାଇଅଛି ତଳ ।
ଶହସ୍ର ଶିଳା ବୃକ୍ଷ କରନ୍ତି ପ୍ରହାର ॥
ମୁଖରାବ ଶବଦ ଆୟୁଧ ପିଟାପିଟି ।
ମାହା ମାହାବୀରେ ହୋଇଲେ ଭେଟାଭେଟି ॥
ହସ୍ତୀ ଘୋଡ଼ା ରାଉତ ମାହୁନ୍ତ ରଣେ ପଡ଼ି ।
ବହୁତ ରକ୍ଷକପି ହୋଇଲେ ମଡ଼ାମଡ଼ି ॥୧୦୦
ରକତ ନଦୀ ଯେ ବହିଲା ଉଲ୍ଲୋଳ ।
ପହଡ଼େ ପରିଯନ୍ତେ ହୋଇଲା ମହାଗୋଳ ॥
ବୃକ୍ଷଶିଳ ତହିଂ ଆତଯାତ ହୋନ୍ତେ ।
ଗଗନେ ଅଦୃଶ୍ୟ ହୋଇଲେ ଛାୟାକାନ୍ତେ ॥
ଅସୁର ସଇନି ଯହୁଁ ରହିଣ ଯୁଦ୍ଧକଲେ ।
ରକ୍ଷକପିବଳ ବହୁତ କ୍ଷୟେ ଗଲେ ॥
ଏସନେକ ସମୟେ ମିଳିଲେ ଦାଶରଥି ।
ଦେଖିଲେ ନିଜ ସୈନ୍ୟ ପଳାନ୍ତି ପ୍ରାଣଭୀତି ॥
ରହ ରହ ବୋଲି ଲକ୍ଷଣ ଡାକ ଦେଲା ।
ଆମ୍ଭର ସମର ଦେଖନି ବୋଇଲା ॥୧୦
ଦେଖି ବାହୁଡ଼ିଲେ ରକ୍ଷକପି ମରକଟ ।
ଅସୁର ସଙ୍ଗରେ ବାଜିଲା ଚୋଟ ମୋଟ ॥
ଆପଣେ ଶ୍ରୀରାମ ଶସ୍ତ୍ରକରେ ଧରି ।
ଧନୁର୍ବେଦ ପଢ଼ି ବିନ୍ଧନ୍ତି କୋପକରି ॥
ଅସୁର ସଇନି ସଂହାରନ୍ତି ଅଙ୍ଗଛଳେ ।
ଅସଂଖ୍ୟ ସମର କରନ୍ତି ଭୁଜବଳେ ॥
ନିମିଷେକ ପେଷନ୍ତି ଲକ୍ଷେକ ନାରାଚ ।
ଶରେ ଶରେ ଅଦୃଶ୍ୟ ଯେ କଲେକ ରାମରାଜ ॥
ଦୁଇବଳର ଅନ୍ଧକାର ନଦିଶଇ କିଛି ।
ଜାନେକୀର ମଥାମଣି ଶ୍ରୀରାମ ହୃଦେ ଅଛି ॥୨୦
ସେ ମାତ୍ର ଝଟକଇ ସୂର୍ଯ୍ୟର ପରାୟେ ।
ଦେହ ସହିତେଣ ଅଦୃଶ୍ୟ ରାମରାୟେ ॥
ପବନେ କଦଳୀବୃକ୍ଷ ଯେହ୍ନେ ଭାଜିଣ ପଡ଼ନ୍ତି ।
ମରିବାବେଳେ ଦୈତ୍ୟ ତେସନ ଦିଶନ୍ତି ॥
ଏମନ୍ତେ ଶ୍ରୀରାମ ଦୁଇଘଡ଼ି ସମର କଲେ ।
ଦଶସସ୍ର ରଥୀ ମାରିପକାଇଲେ ॥
ଅଶୀ ସହସ୍ର ହାଥୀ ଚଉରାଶି ସହସ୍ର ଅଶ୍ୱ ।
ପଞ୍ଚାଶକୋଟି ଯେ ପୟେକାର ରାକ୍ଷସ ॥
ଅପୂର୍ବ ସାଂଗ୍ରାମ ଦେବେ ଅଗୋଚର ।
ୟେହି ବିଧିରେ ମାଇଲେ ସୁମେତ୍ରାର ବାଳ ॥୩୦
ସୁଗ୍ରୀବର ଜମ୍ୱେବ ବିଭୀଷେଣ ସେନାପତି ।
ନଳନୀଳ ଗନ୍ଧମାର୍ଦ୍ଦନ ମାରୁତି ॥
ଅଙ୍ଗଦ ଦୁବିନ୍ଦ କୋମୋଦ ମହୀନ୍ଦ୍ର ।
ସାରାସ ପାରାସ ଶତବଳ କୁନ୍ଦ ॥
ଗବୟେ ଗବାକ୍ଷ ଶଉରୀ ଶତବାଳି ।
ରକତ ଜରଜର ଚରଣେ ରଙ୍ଗଖେଳି ॥
କେଶରୀ ପନଶିଳ ଡାଳିମ୍ୱ ପବନ ।
ବସନ୍ତ ପାରିଜାତେକ ସଂପାତି କାଳିଞ୍ଜନ ॥
ବିବିଧ ଶରସେତୁ ବଳିମୁଖ ବୀର ।
ସୁଷେଣେ ଚନ୍ଦନ ମାଇଲେ ବହୁତ ଅସୁର ॥୪୦
ଗଜ ରଥ ଅଶ୍ୱ ଗଡ଼ାଗଡ଼ି ମଡ଼ାମଡ଼ି ଯାନ୍ତି ।
ରାକ୍ଷସ ବଳ ସବୁ ପକାଇଲେ ମନ୍ଥି ॥
ସ୍ୱର୍ଗେ ସାଧୁ ସାଧୁ କଲେକ ସୁରମୁନି ।
ଅତି ଆନନ୍ଦ ହୋଇଲେ ରିକ୍ଷକପି ସୈନି ॥
ସଇନି ସଂହାରନ୍ତେ ଦେଖିଲେ ସେନାପତି ।
ବୋଇଲେ ୟେହିତ ଅଟନ୍ତି ଦୁଇଯତି ॥
ମାରରେ ବେଢ଼ିଣ ନକର କିଛି ଭୟେ ।
ପଛେ ଆସୁଛନ୍ତି ଦଶାନନ ରାୟେ ॥
ୟେତେ ବୋଲି ଧାଇଂଲେ ଶୀଘ୍ର ଗତିକରି ।
ଦେଖିଣ ଶ୍ରୀରାମ ଯେ ଦଶବାଣ ମାରି ॥୫୦
ମନ୍ତ୍ରିଣ ପେଷିଲେ ଚକ୍ଷୁର ଝଟକେ ।
ପଡ଼ିଲେ ଦଶସେହ୍ନୀ ଚକ୍ଷୁର ଝିମଣ୍ଡକେ ॥
ବାଣ ଗଳିଯାଇଂ ତ୍ରୋଣରେ ପଶିଲା ।
ଲକ୍ଷଣ ସହିତେ କେହି ଜାଣି ନପାରିଲା ॥
ଛିଡ଼ିଲା ପ୍ରାୟେକ ଯେ ନ ଦିଶିଲା ମୁଣ୍ଡମାନ ।
ସାରଥି ନ ଜାଣନ୍ତି ବାହୁଛନ୍ତି ଯାନ ॥
ନିକଟ ହୋଅନ୍ତେ ମୁଣ୍ଡମାନେ ପଡ଼ିଲେକ ତଳେ ।
ସେନା ସେନାପତି ଦେଖିଲେ ତେତେବେଳେ ॥
ଦେବେ ନ ଜାଣନ୍ତି ଛିଡ଼ିଲା ନ ଛିଡ଼ିଲା ।
ଯହୁଁ ସେ ମୁଣ୍ଡମାନ ଭୂମିରେ ପଡ଼ିଲା ॥୬୦

ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ସୁରଗଣ ।
ସାଧୁ ସାଧୁ ଶ୍ରୀରାମ ତୋହୋର କ୍ଷତ୍ରାପଣ ॥
କୁମ୍ଭାର ଯେହ୍ନେ କଞ୍ଚାହାଣ୍ଡି ଯେ ଛେଦଇ ।
ଛିଡ଼ି ନ ପଡ଼ିଣ ସେ ସୂତ୍ରରେ ରହିଥାଇ ॥
ତେସନେକ ପ୍ରାୟେକ ମଲେ ଦଶବୀରେ ।
ଏବେ ସେ ମୁଣ୍ଡମାନେ ପଡ଼ୁଛନ୍ତି ଭୂମିରେ ॥
ଏଥୁ ଅନନ୍ତରେ ଯେ ଶୁଣ ରସ ବାଣୀ ।
ଅସୁର ସଇନି ରାମ ପକାଇଲେ ହାଣି ॥
ପଡ଼ିଲେ ସାଂଗ୍ରାମେ ଦଶ ସେନାପତି ।
ହସ୍ତୀକର୍ଣ୍ଣ ଶିକ୍ଷକେତୁ ବିଡ଼ୋଳାକ୍ଷ ପ୍ରଭୃତି ॥୭୦
ହୟଶିରା ଶମ୍ଭୁକ ଅନୁମନ୍ତ ବୀର ।
ନିମର୍ଦ୍ଦନ ଦୀର୍ଘପାଦ ଯେ ବିଘ୍ନେଶ୍ୱର ॥
ଆଉ ସେନାମାନେ ସମର କରୁଛନ୍ତି ।
ଦଶଗ୍ରୀବ ଛାମୁରେ ଯେ ଡଗରା ଜଣାନ୍ତି ॥
ଶୁଣ ଦେବ ଈଶ୍ୱର ନୃପତି ଲଙ୍କେଶ୍ୱର ।
ଅନେକ ସୈନ୍ୟ ତୋର ଯେ ମାଇଲେ ରଘୁବୀର ॥
ମହୀରାବଣ ନାମେ ପଡ଼ିଲା ତୋର ନାତି ।
ହସ୍ତୀକର୍ଣ୍ଣ ମୂଳେ ଯେ ଦଶ ସେନାପତି ॥
ସନ୍ୟ କେତେ ମଲେ କଳଣା ନ ଯାଇ ।
ରାକ୍ଷସଙ୍କ ରୁଧିରେ ଯେ ବହୁଅଛି ନଈ ॥୮୦
ରାବଣ ସଜହୋଇ ଯେ ରଥରେ ବସିଥିଲା ।
ଅମାବାସ୍ୟା ଉତାରୁ ଯିବଇଂ ବୋଇଲା ॥
ନଷ୍ଟଚନ୍ଦ୍ର ସେଦିନ ସେ ଅର୍ଦ୍ଧଭୋଗ ହୋଏ ।
ରଥେ ଥାଇଂଣ ସଇନି ପେଷଇ ଲଙ୍କରାୟେ ॥
ଯେସନେକ ସମୟେ କହିଲା ଯାଇ ଚାର ।
ଶୁଣିବା ଲଙ୍କପତି ଥାଠର ଅପହର ॥
ବିସ୍ମୟେ ହୋଇଣ ମନେ ମନେ ଭାଳି ।
ଶଏକୁଣ ଲଙ୍କା ହୋଇଲା ହାଲୋହଳି ॥
ଯହୁଁ ସେ ଲୋକମାନେ ବାରତା ପାଇଲେ ।
ଯେ ଯାହାର ଇଷ୍ଟବନ୍ଧୁ ପତି ରୋଦନ କଲେ ॥୯୦
ଘରେ ଘରେ କାନ୍ଦନ୍ତି ଦେଇ ଲୋଟଗାଳି ।
କୁରୁମ ଉଚ୍ଛୁଳିଲା ଲଙ୍କାର କୋବାଳି ॥

କେ ବୋଲଇ ବାବୁ କେ ବୋଲଇ ଦାଦି ।
ରିକ୍ଷ ବାନର ହୋଇଲେ ଅକାରଣେ ବାଦୀ ॥
କେ ବୋଲଇ ସ୍ୱାମୀ କେ ବୋଲଇ ପିତା ।
କପାଳେ କରଦେଇ ସୁମରନ୍ତି ବିଧାତା ॥
କେ ବୋଲଇ ପୋଡୁ ଚାଲ ହୋ ନ ଥିବା ।
ଯେଥିଥିଲେ ଆମ୍ଭେ ସମସ୍ତେ ମରିବା ॥
ଅନମିତେ ଶତ୍ରୁ ଅରଜିଲା ଦଶଶିରି ।
ଆପଣେ ହରାଇଲା ହୀନବୁଧି କରି ॥୧୦୦
ମାୟାବୁଧିମାନ ଯେହାର କେଣେ ଗଲା ।
କେବଣ ମତେ ଯେ ଦେବତାଙ୍କୁ ବନ୍ଦୀ କଲା ॥
ନର ବାନରଙ୍କୁ ନ ପାରିଲା ଜିଣି ।
କିଂପାଇଂ ଆଣିଲା ପରର ଘରଣୀ ॥
ପୋଡୁ ସୂପଲେଖୀ ଯେବେ ସୁଖେ ଥାଉ ।
ସଗୋତ୍ର ମରାଇଲା କି କରିବ ଆଉ ॥
ପରର ଘରଣୀକି ଭାଳକି ବିଆଇଲା ।
ତହିଂର ଫଳ ଗୋ ଯେମାନ ହୋଇଲା ॥
ବାବୁ ଶ୍ରୀରାମ ତୋର ଗର୍ଭଧାରୀ ମାୟେ ।
ଧନ୍ୟ ତୋ ନାରାଜ ଅଧୁର ରକ୍ତ ମାଂସ ଖାୟେ ॥୧୦
ଧନ୍ୟ ତୋର ବାହା ଧନ୍ୟ ତୋର ବୁକୁ ।
ଯେଡ଼େ ନିରାଶ ଯେ ହୋଇଲୁ ସାଂଗ୍ରାମକୁ ॥
ଭାଇ ଦୁଇଗୋଟି ଭଲା ଯୁଝିପାର ।
ଦଣ୍ଡକାଅରନ୍ୟେ ମାଇଲ ଚଉଦସସ୍ର ବଳ ॥
ଯେବେ ଆସି ଠାବ କରିଅଛ ଯେହା ।
ରକ୍ଷ ମର୍କଟହୁଂ ଆନ ନାହିଂ ସାହା ॥
ଭୋଖିଲା ପିଚାଶୁଣୀ ଅଟଇ ଜାନେକୀ ।
ଅସୁର ଭକ୍ଷିବ ବୋଲି ଅଇଲା ଯେଥିକି ॥
ଯେତେବେଳେ ତାହାର ପେଟ ନାହିଂ ପୂରି ।
ବିଷ୍ଣୁ ଅବା ରାମ ହୋଇଛି ଅବତରି ॥୨୦
ଚଉଦଗଣ୍ଡା ଯଗୁକୁ ଧାତା ବରଦେଲା ।
ସେ ସହି ନ ପାରି ଅବା ଯେହା ଭିଆଇଲା ॥
ଆନମତେ ଯହୁଂ ଏ ନହୋଇଲା ନିବାରି ।
ସ୍ୱୟଂ ଅବତାର ଅବା ହୋଇଲେ ଚକ୍ରଧାରୀ ॥
ମନୁଷ୍ୟର ସକ୍ଷେକି ସମୁଦ୍ରେ ପଡ଼ଇ ବନ୍ଧ ।

ଯେହା କିମ୍ପା ବିଚାର ନ କଲା ଦଶକନ୍ଧ ॥
ଏସନେକ ବୋଲି ଭାଳନ୍ତି ପୁରଜନ ।
ଶୁଣିଣ କୋପେ ବୋଇଲା ଦଶାନାନ ॥
ଆହୋ ଅନୁମନ୍ତ ତୁ ହୋଅସି ଆଗିଆଣି ।
ମତ୍ତ ବିରୂପାକ୍ଷ ଚଳ ଯେହିକ୍ଷଣି ॥୩୦
ଥାଠ ଘେନି ତୁମ୍ଭେ ରିକ୍ଷକପି ମାର ।
ମାହାଗୋଳ ଯୁଦ୍ଧ ଆଜ କରିବି ଅପାର ॥
ନଗ୍ରଲୋକଙ୍କର ଯେବେ ଦୁଃଖ ପାଶୋରଇ ।
ତେବେ ସେ ପ୍ରତାପୀ ଲଙ୍କେଶ୍ୱର ବୋଲାଇ ॥
ଦଶକୋଟି ବଳ ତାହାର ସଙ୍ଗେ ଥିଲା ।
ଆଗ ହୋଇଯାଅ ବୋଲିଣ ବୋଇଲା ॥
ଆପଣେ ରତ୍ନମୟେ ରଥରେ ବସିଅଛି ।
ଆଠସସ୍ର ଅଶ୍ୱ ରହୁବରେ ଯୋଚି ॥
ହିରଣ୍ୟକଶିପୁ ପ୍ରାଏ ରୂପ ତା ଦିଶଇ ।
ଚଳିଯାନ୍ତେ ମେଦନୀ ଯେ ତଳକୁ ଲସଇ ॥୪୦
ନିରନ୍ତରେ ବାଜଇ ଟମକ ନିଶାଣ ।
ସୁରଗିରି ଚମକଇ ଶବଦ ଗରୁଟାଣ ॥
ଭୂମି ଟଳ ଟଳ ସ୍ୱର୍ଗଲୋକେ ଥରହର ।
ଘଣ୍ଟି ଘାଘୁଡ଼ି ଶବଦ ଶୁଭଇ ରଥର ॥
ଉଦଣ୍ଡ ଆଲମ୍ବ ବିମଳ ପନ୍ତି ପନ୍ତି ।
ଦେଖିଣ ନଗ୍ରଲୋକେ ମନେ ବିଚାରନ୍ତି ॥
ଏ ଘାନ୍ତି ଦୁଇକଥାରୁ ହୋଇବ କଥାଏ ।
ଆପଣେ କଟକାଇ କରୁଛି ଲଙ୍କରାଏ ॥
ଏମନ୍ତ ବିଚାରି ମଙ୍ଗଳ ଆରମ୍ଭ କରନ୍ତି ।
ମିଳିଣ ଯୁବତୀମାନେ ହୁଳହୁଳି ଦ୍ୟନ୍ତି ॥୫୦
ମାର ଶତ୍ରୁ ବୋଲି ଡାକନ୍ତି ସର୍ବଜନ ।
ବ୍ରାହ୍ମଣେ ବେଦଧ୍ୱନି କରନ୍ତି ଆଧାନ ॥
ଉତର ଗଡ଼ଦ୍ୱାରେ ବାହାର ହୋଏ ଥାଟ ।
ରିକ୍ଷମର୍କଟକୁ ପାଇଲେ ଯାଇଂ ଭେଟ ॥
ଶ୍ରୀରାମ ସଙ୍ଗେ ଅସୁରେ ଯୁଝୁଥିଲେ ।
ଶାଳଶିଳ ପଡ଼ନ୍ତେ ବିମୁଖ ପାଇଲେ ॥
ଦିବ୍ୟ ରୂପ ଦେଖି ଡରିଲେ ସଂଗ୍ରାମକୁ ।
କାଳଦେବତା ପ୍ରାୟେ ବୁଝନ୍ତି ଶ୍ରୀରାମକୁ ॥
ଭାଜି ପଳାନ୍ତେ ଦେଖିଲା ରାବଣ ।

ଆଶ୍ୱାସନା କରି କଲାକ ତିଆରଣ ।।୬୦
ଆସ ଆସ ବାରେ ସାଂଗ୍ରାମ ମୋର ଦେଖ ।
ଯେ ଯେତେ କଷ୍ଟ କରିଛ ସମସ୍ତେ ଉପେଖ ।।
ଶୁଣିଣ ଦୈତ୍ୟବଳ ଧାଇଂଲେ ବଳପାଇ ।
ଶ୍ରୀରାମ ବୋଇଲା ହୋ ଅଇଲା ଲଙ୍କସାଇଂ ।।
ପୁତ୍ରଶୋକେ ରାକ୍ଷସ କରିବ ବହୁତ ରଣ ।
ମୋହୋର ପଛକତି ଥିବୁଟି ଲଇକ୍ଷଣ ।।
ଦିଗପାଳେ ଯାହାକୁ ସାଂଗ୍ରାମେ ନୁହନ୍ତି ସରି ।
ଏହା ପୁତ୍ରକୁ ଯେ ଇନ୍ଦ୍ରହିଂ ହାଦେ ଡରି ।।
ଏବେ ସେ ଆପଣେ ଆଇଲା ପରିଘାଇ ।
ବିଚିତ୍ର ସାଂଗ୍ରାମ ସେ କରିବ
ଲଙ୍କସାଇଂ ।।୭୦
ଏସନକ ବୋଲି ଯେ ଶ୍ରୀରାମ ବିଭୀଷେଣ ।
ଜମ୍ୱେବ ହନୁମନ୍ତ ଅଙ୍ଗଦ ସୁଷେଣ ।।
ଯୂଥପତିମାନଙ୍କ ମଧେ ଲକ୍ଷଣ ଲୁଚଇ ।
ରିକ୍ଷକପି ବଳଙ୍କୁ ଆଜ୍ଞାଦେଲେ ଚାହିଂ ।।
ରାବଣର ଛାମୁରେ ମିଳିଲେ ବେଗେ
ଯାଇଂ ।
ଆମ୍ଭର ଛାମୁକୁ ତାକୁ ଆଣସି କଢ଼ାଇ ।।
ଶୁଣିଣ ଭଲ୍ଲୁକ ମର୍କଟେ ରଡ଼ିଦେଲେ ।
ଶ୍ରୀରାମର ଆଜ୍ଞାରେ ଯୁଦ୍ଧକୁ ଧାଇଂଲେ ।।
ହାତେ ତରୁଶିଳ ବିକରାଳ ବଦନ ।
ମାର ମାର ବୋଲି ଡାକନ୍ତି ଅବିଛିନ୍ନ ।।୮୦
ରାବଣେଶ୍ୱର ରଥ ଉପରେ ଯାଇଂ ଉଠି ।
ବୃକ୍ଷନ୍ତ ପିଟିଣ କଲେ ଶିଳା ବୃଷ୍ଟି ।।
ଦେଖି ରାବଣେଶ୍ୱର କୋପମନ କଲା ।
କିଞ୍ଚିତ ନାରାଜେ ତରୁଶିଳ ଛିନାଇଲା ।।
ଯେତେ ରକ୍ଷକପି ରଥ ଉପରେ ଉଠିଥିଲେ ।
ରାବଣର ବାଣ ସହି ନ ପାରିଲେ ।।
ଘୁଞ୍ଚି ପଳାଇଣ ପଶିଲେ କପିଥାଟେ ।
ପଚିଶ ଯୂଥପତି ଦେଖିଲେ ତାଙ୍କୁ ବାଟେ ।।
ରହ ରହ ବୋଲି ଧାଇଂଲେ ଆଗସରି ।
ପାଦଭରେ ହୁଲୁହୁଲି କମ୍ପଇ ବସୁନ୍ଧରୀ ।।୯୦
ଦେଖି ଦଶଗ୍ରୀବ ବିଚାରଇ ମନେ ।
ମୋହୋର ସଙ୍ଗେ ସାଂଗ୍ରାମ କରିବେ କି
ଏମାନେ ।।

ସାମାନ୍ୟ ଲଜ୍ଜା କି ବିଧାତା ଏହା କଲା ।
ଇନ୍ଦ୍ରଜିତ ମରିବାରୁ ଭରସା ହୋଇଲା ।।
ଯାହା ନାମ ଧରିଲେ ଜନ୍ତୁପତି ଡରି ।
ତାହାର ସଙ୍ଗେ ଏବେ ମର୍କଟେ ଯୁଦ୍ଧକରି ।।
ଭାଇପୁତ୍ରେ ମୋର ସମସ୍ତେ ନାଶଗଲେ ।
ମୋହୋର ତହୁଂ ବିକଳେ ଘେନିଗଲେ ।।
ନ ଜାଣି ରକ୍ଷକପି ଯେ ଆସୁଛନ୍ତି ଧାଇଂ ।
ମୋହ ମହିମା ଏହାଙ୍କର ଶୁଣିଲାଣ
ନାହିଂ ।।୧୦୦
ଅଗ୍ନିରେ ନ ପୋଡ଼ଇ ଯେ ନବୁଡ଼ଇ ଜଳେ ।
ଖଡ଼ଗେ ନ ଛିଡ଼ଇ ମୁଂ ବ୍ରହ୍ମାଙ୍କର ବରେ ।।
ଦେବ ଦାନବେ କିନ୍ନରେ ମୁଂ ନୋହଇ
ବିନାଶ ।
ମୁଣ୍ଡକାଟିଲେ ମୁଂ ନୋହଇ ପ୍ରାଣନାଶ ।।
ଚଉଦ କୋଟି ଯୁଗକୁ ମୁଂ ଅମର ବର
ପାଇ ।
ବ୍ରହ୍ମାଣ୍ଡ ମଧରେ ମୋତେ କ୍ଷତ୍ରୀ ସମ ନାହିଂ ।।
ଛପନଗଣ୍ଡା ଯୁଗ କରିବି ରାଜଭୋଗ ।
ଧାତାର ବଚନ ଅଛଇ ପୂର୍ବର ଯୋଗ ।।
ବିଷ୍ଣୁ ସହିତେ ସାଂଗ୍ରାମେ ଗଲେ ହାରି ।
ନରବାନରେ ଏବେ ଆସୁଛନ୍ତି ମାରି ।।୧୦
ଏହିକ୍ଷଣି ସୃଷ୍ଟି ପକାଇବି ରାସାତଳେ ।
ସ୍ୱର୍ଗପୁର ନେଇ ଥୋଇବି ପାତାଳେ ।।
ମେରୁ ଭାଙ୍ଗିଣ କରିବି ମସିଗୁଣ୍ଡା ।
ଚଉଦ ଭୁବନ ଅଗ୍ରଣୀ ମୋର ଖଣ୍ଡା ।।
ମୋତେ ଯୁଝିବାକୁ ଆସନ୍ତି ଏ ହୀନଜୀବ ।
ତୁଚ୍ଛ ପ୍ରାୟେ ମୋତେ ଜାଣିଲା ରାଘବ ।।
ଏତେ ବୋଲି ଧନୁରେ ଯୋଚିଲା
ଦଶବାଣ ।
ମନ୍ତ୍ରିଣ ବିନ୍ଧିଲା ଶବଦ ଗରୁଟାଣ ।।
ଓଟାରନ୍ତେ ଲକ୍ଷେ ଚଳନ୍ତେ ଦଶଲକ୍ଷ ଯାଏ ।
ଗର୍ଜନ୍ତେ କୋଟିକୋଟି ବାଣ ପୁଣ
ହୋଏ ।।୨୦
ପଡ଼ିବାର ବେଳେ ହୋ ମର୍ଭୁତେକ ବାଣ ।
ସେ ନାରାଜମାନଙ୍କର ଏସନେକ ଗୁଣ ।।
ଏହି ପ୍ରକାରେଣ ବିନ୍ଧିଲା ଦଶଶିର ।

ଚଳନ୍ତେ ନାରାଜ ଶବଦ ଗରୁତର ।।
ଅପ୍ରମିତ ବଳ ଯହୁଂ ପେଷିଲା ଲଙ୍କସାଇଂ ।
ଅନେକ ରକ୍ଷକପି ପଡ଼ିଲେ ମୃତ୍ୟୁପାଇ ।।
ପଚିଶ ଯୂଥପତିଙ୍କର ଯେତେକ ଶସ୍ତ୍ର ଥିଲା ।
ନିଶ୍ୱାସକେ ତାହା କାଟି ପକାଇଲା ।।
ଆଗରେ ହୋଇଥିଲେ ଯେ ଗନ୍ଧମାରଦନ ।
ଅଠର ବାଣ ତାଙ୍କୁ ଯେ ବିନ୍ଧିଲା
ଦଶାନନ ।।୩୦
ନଳକୁ ଦଶ ଯେ ଗବାକ୍ଷକୁ ପଚିଶ ।
ଦୃବିନ୍ଦକୁ କୋଡ଼ିଏ ଯେ ରଷଭକୁ ଦଶ ।।
କୁମୁଦକୁ ପଞ୍ଚାଶେ ପବନକୁ ପଚିଶେ ।
ଜମ୍ୱେବକୁ ଅଶୀଏ ଅଙ୍ଗଦକୁ ତିରିଶେ ।।
ତାରାକ୍ଷକୁ ତିନି ନୀଳକୁ ଆଠମାରି ।
ସୁଷେଣେ ମନ୍ତ୍ରୀକି ପଚିଶ ବାଣ ମାରି ।।
ଦଶକାଳ ବୃଦ୍ଧକୁ ମାଇଲା ଆଠଶର ।
ଗବଏକୁ ତିରିଶ ହନୁମନ୍ତକୁ ବାର ।।
ପୁଣ ପବନକୁ ଚାରିବାଣ ଚନ୍ଦନକୁ ସାତ ।
ମହୀନ୍ଦ୍ରକୁ ମାଇଲା ପୁଣ ବାଣ
ଦୁଇଶତ ।।୪୦
ବସନ୍ତକୁ ଚଉଦ କାଳିଞ୍ଜନକୁ ତିନି ।
ବଳିମୁଖକୁ ବିନ୍ଧିଲା କୋଡ଼ିଏ ବାଣ ଘେନି ।।
ସୁନାସକୁ ସତର ସାରସକୁ ଦଶ ।
ପାରାସକୁ ପାଞ୍ଚ କେଶରୀକି ପଚିଶ ।।
ଶଉରୀକି ଅଠର ଶତବାଳିକି ଷୋଳ ।
ବିବିଧକୁ ଏଗାର ମାରି କଲା ରଣଗୋଳ ।।
ସବୁ ରକ୍ଷକପିଙ୍କି ତିନି ତିନି କାଣ୍ଡ ।
ପୁଣି କୋପେ ରାଏ ବିନ୍ଧଇ ପରଚଣ୍ଡ ।।
ଘନ ଘନ ସିଂହନାଦ କରଇ ଦଶଶିରି ।
ଘଡ଼ିକ ଭିତରେ ତେଡ଼େକ
ସୈନ୍ୟମାରି ।।୫୦
କାହାଉପରେ କାହାର ଶିରେ ବାଜିଅଛି ।
କେ ପିଠି ଘାଆରୁ ରକତ ପକାଉଛି ପୋଛି ।।
କାହାର ବାହାରେ କାହାର ଗୋଡ଼େ
ପେଟେ ।
ଘାଆ ହୋଇ ବାନରେ ପଳାନ୍ତି ଗରୁକଷ୍ଟେ ।।
ଥୋକାଏକ ସଇନି ନ ପାରିଲେ ଚଳି ।

କାହାର ଦେହରେ ଏଣୁ ତେଣିକି ଅଛି ଗଳି ॥
ସେମାନଙ୍କର ଦେହରୁ ପ୍ରାଣ ଗଲା ଛାଡ଼ି ।
ବିକଳେ କପିଏ ଛାଡ଼ନ୍ତି ସିଂହଗଡ଼ି ॥
ଶ୍ରୀରାମରେ ଶରଣ ପଶିଲେ ଯାଇଁ ବଳ ।
ଦେଖିଣ ଧାଇଁଲା ଯେ କିଷ୍କିନ୍ଧା ଭୂପାଳ ॥୬୦
ଅସୁରବଳ ଯେ ସଂହାରୁଣ ଥିଲା ।
ନିଜ ବଳ ଭାଙ୍ଗେଣି ଦେଖିଣ କୋପ କଲା ॥
ଦକ୍ଷିଣ ହସ୍ତରେ ଅଛି ଗିରିବରେ ।
ଅତିବଡ଼ ଶାଳବୃକ୍ଷେ ଅଛି ବାମକରେ ॥
ଆସନ୍ତେଣ ଅସୁରେ ତ୍ରାସିଲେ ଭୟ ପାଇଁ ।
ଦେଖିଣ ବିରୂପାକ୍ଷ ଓଗାଳିଲା ଯାଇଁ ॥
ସୁଗ୍ରୀବର ଉପରେ ଶର ବୃଷ୍ଟିକଲା ।
ମୁଣ୍ଡପୋତି ତାହା କପିରାଜ ସେ ସହିଲା ॥
ରୋମମୂଳେ ବସି କାଣ୍ଡମୁଖେ ରକ୍ତ ଖାନ୍ତି ।
ରଣଭୂମି ଅନ୍ଧାର ଲୋକେ ନ ଦିଶନ୍ତି ॥୭୦
କୋପେ ସୁଗ୍ରୀବର ଯେ ତରୁ ଧରିଥିଲା ।
ଏକାବେଳକେ ଦୁଇ ଆୟୁଧ ମାଇଲା ॥
ଦେଖି ବିରୂପାକ୍ଷ ନାରାଚେ ନିବାରି ।
ଲଜ୍ଜା ପାଇଲାକ କିଷ୍କିନ୍ଧା ଦଣ୍ଡଧାରୀ ॥
ବେଗ କରି ନେଇ ନାଟେକ ମାଇଲା ।
ବିରୂପାକ୍ଷ ରଥ ଭାଙ୍ଗି ପକାଇଲା ॥
ବିଧା ଘାଏଣ ପଡ଼ିଲେ ଚାରିଅଶ୍ୱ ।
ସାରଥି ପ୍ରାଣ ହାରିଲା ସୂର୍ଯ୍ୟଶିଷ ॥
ବିରଥୀ ହୋଇଲାକ ବିରୂପାକ୍ଷ ବୀର ।
ନାରାଚେକ ପେଷିଲା ମତ୍ତଗଜ ଆକାର ॥୮୦
ଅଇଲାକ ଅସ୍ତ୍ର ଘୋର ନାଦକରି ।
ଧାଇଁଲା ସୁଗ୍ରୀବର ଦାନ୍ତ ତାର ଧରି ॥
କପାଳରେ ବିଧାଏକ ମାଇଲାକ ନେଇ ।
ମୂର୍ଚ୍ଛାପାଇ ବିରୂପାକ୍ଷ ପଡ଼ିଲା ମୋହ ଯାଇଁ ॥
ଚେତନା ପାଇ ବିରୂପାକ୍ଷ ଧଇଲା ଧନୁ ସଙ୍ଗେ ।
ରଣଭୂମି ଅନ୍ଧାର ହୋଇଲା ନାରାଚେ ॥
ଅତିହିଂ ଘୋର ଯୁଦ୍ଧ ଦେଖି ସୁଗ୍ରୀବର ।
ଉଛୁଡ଼ି ଘେନିଲା ଦୈତ୍ୟର ଧନୁଶର ॥

ହତ ଆୟୁଧ ଯେ ବିରୂପାକ୍ଷ ହୋଇଥିଲା ।
କରରେ ଖଣ୍ଡା ଫଳା ଧରିଣ ଧାଇଁଲା ॥୯୦
ତାହା ଉଛୁଡ଼ି ପକାଇଲା କପିପତି ।
ମୁଷ୍ଟିକ ଯୁଦ୍ଧ ଆରମ୍ଭ କଲେ ପ୍ରାଣକୁ କରି ଭୀତି ॥
ଫସରେ ସେ ମେଲାମେଲି ହୋଇଲେ ବେନିବୀରେ ।
ଧାଇଁ ସୁଗ୍ରୀବର ଧଇଲେ ପଥରେ ॥
ଦଇତର ଉପରେ ପକାଇଲା ନେଇ ।
ଶତେ ଖଣ୍ଡ ହୋଇ ପର୍ବତ ଅଙ୍ଗେ ପାଇ ॥
ଟହ ଟହ ହୋଇ ହସିଲା ରାକ୍ଷସ ।
ଲଜ୍ଜା ପାଇଲାକ ଖଦଡ଼ ରାଜା ଶିଷ ॥
ଔଷ୍ଠ କାମୋଡ଼ି ଧାଇଁଲା ଉପରକୁ ।
ନିରାଶେ ଚାପୋଡ଼େ ମାଇଲା ରାକ୍ଷସକୁ ॥୧୦୦
ବିରୂପାକ୍ଷ ଉପରେ ପଡ଼ିଲା ବଜ୍ରଘାତ ।
ପ୍ରାଣ ଛାଡ଼ି ଭୂମିରେ ପଡ଼ିଲା ଦଇତ ॥
ଆପଣେ ପ୍ରତକ୍ଷେ ଦେଖିଲା ରାବଣ ।
ଭାଙ୍ଗିଲା ସୁଗ୍ରୀବର ବାଜୀ ସରି ପ୍ରାଣ ॥
ଏତେ ବୋଲି ମତ୍ତକୁ ରାଇଣ ଆଗ୍ୟାଂ ଦେଲା ।
କପି ନିଲକ୍ଷଣ ବିରୂପାକ୍ଷକୁ ମାଇଲା ॥
ତୁ ମୋହୋର ଭାଇ ତୋତେ ମୋର ଆଶ ।
ରିଷ ମର୍କଟକୁ କର ବାବୁ ନାଶ ॥
ଶୁଣିଣ ମତ୍ତବୀର ଧୁଆଇଁଲା ରଥ ।
ଦେଖି ଓଗାଳିଲା ବାଳୀର ନିଜ ଭ୍ରାଥ ॥
ଗୋଡ଼ାଇ ନାରାଚ ବିନ୍ଧଇ ମତ୍ତବୀର ।
ପର୍ବତ ସମାନେ ଏକୁଂଏକ ଶର ॥
ଅଗ୍ନି ଉଡ଼ିବା ପ୍ରାଏ ଦିଶଇ କାଣ୍ଡ ତେଜ ।
ଦେଖି ବେନି ବଳ ହୋଇଲେ ଆଶ୍ଚିଯ ॥
ମତ୍ତଗଜ ଯେସନେ ପଦ୍ମବନ ଭାଙ୍ଗଇ ।
ଶ୍ରୀରାମର ସନ୍ୟ ଏକା ମତ୍ତବୀର ଗଞ୍ଜଇ ॥
ପଡ଼ିଲେ ରିକ୍ଷ କପି ନିରନ୍ତର ହୋଇ ।
ଦେଖି ସୁଗ୍ରୀବର ଅଇଲାକ ଧାଇଁ ॥
ଦତ୍ୟର ଛାମୁରେ ପଡ଼ିଲା ଯାଇ ଭେଟ ।
ଅଇରାବ୍ରତ ଯେହ୍ନେ ମେରୁର ନିକଟ ॥୨୦

କୋପେ ସୁଗ୍ରୀବର ମାଇଲାକ ଶିଳ ।
ବାଣରେ ନିବାରିଲା ରାକ୍ଷସ ମହାବୀର ॥
ଅନ୍ୟୋଅନି ସମର ହୋଇଲା ବହୁତ ।
ରୋଷଭରେ ଧାଇଁଲା ଆଦିତ୍ୟର ସୁତ ॥
ଚାରି ବିଧା ମାରି ପଡ଼ିଲା ଅଶ୍ୱ ଚାରି ।
ଏକର ଉପରେ ନେଇ ଆରେକ କଚାଡ଼ି ॥
ବିରଥୀ ହୋଇଲା ମତ୍ତ ମହାବୀର ।
ରହୁବରୁ ଓହ୍ଲାଇଲା ଶୂଳେକ ଧରି କର ॥
ବାନର ନୃପତି ଯେ ଶୂନ୍ୟ ହସ୍ତେ ଥିଲା ।
ଉଛୁଡ଼ି ହାତରୁ ତା ପରିଘ ଘେନି ଗଲା ॥୩୦
ଦୁହେଂ ମେଲାମେଲି ରଣରଙ୍ଗ ସ୍ଥାନ ।
ଏକାବେଳେ ଦୁହେଂ ପିଟିଲେ ବହନ ॥
ମତ୍ତର ଶୂଳଘାତ ସୁଗ୍ରୀ ଦେହେ ବାଜି ।
ଅଙ୍ଗେ ବାଜି ଦୁଇ ଖଣ୍ଡ ହୋଇଗଲା ଭାଜି ॥
ହତ ଆୟୁଧ ହୋଇ ଚାହାନ୍ତି ଏଣେତେଣେ ।
ବହୁତ ଶହସ୍ର ପଡ଼ିଅଛି ମହାରଣେ ॥
ଦୁହେଂ ଖଣ୍ଡା ଫଳା ଘେନିଣ ଯୁଦ୍ଧ କଲେ ।
ହନ୍ତକାରେ ଦୁହେଂ ମେଲାମେଲି ହେଲେ ॥
ଫଳା ଟେକି ରହିଲେ ବାମ ଅଂଶେ ।
ଟକାଟକି ପାଞ୍ଚେଣି ପାଞ୍ଚଲେ ଅମରିକ୍ଷେ ॥୪୦
ପିଟାପିଟି ମେଲାମେଲି ଫରୀର ଆଡ଼େଣୀ ।
ଆଂଶ ଘେନି ଏକ ଆରେକକୁ ହାଣି ॥
କେ ଶୂନ୍ୟେ ଠେସଇଂ କେ କାଢ଼ନ୍ତି ଉଞ୍ଚାଇ ।
କେହୁ ନାହିଂ ନାହିଂ ବୋଲିଣ ଯାଏ ଧାଇଁ ॥
ଦୁହିଂଙ୍କରି ପଛରେ ବାଜଇ ବୀରତୂର ।
କେ ଘେନି ପଶଇ କେ ଭଣଇ ଅପାର ॥
ଖଣ୍ଡା ମୁନେ ମୁନ ଲଗାବନ୍ତି ନେଇ ।
ଜଡ଼ବନ୍ଧ ହୋଇ ଅଛନ୍ତି ଦୁହେଂ ରହି ॥
ପୁଣି ପିଠିଦେଇ ପେଷନ୍ତି କରବାଳ ।
ରଣ ଝଣ ଶବଦ ଖଡ଼ଗ ପରିତାଳ ॥୫୦
ଖରତର ନିଃଶ୍ୱାସ ଦମଦମ ବୁକୁ ।
ଘେନି ପଶି ମାରିନପାରନ୍ତି ଏକ ଆରେକକୁ ॥
ମତ୍ତ ମହାବୀର ଭୂମିରେ ପଦ ମାରି ।
ତାହା ବାହିବା ପରା କପିରାଜ ବିଚାରି ॥

ଘୋଡ଼ ଛନ୍ଦି ଭୂମିରେ ଛେଲ ଠେଂସ ଦେଇ ।
ମୁଣ୍ଡ ଦିଶିବାରେ ପିଟିଲାକ ନେଇ ॥
ପୁଣି ସୁଗ୍ରୀବର ଫଳା ଦେଲା ଏଡ଼ି ।
ଖଣ୍ଡା ବାଜି ଦଣ୍ଡ ଖିକୁଳି ଗଲା ଛିଡ଼ି ॥
ନାହିଂ ନାହିଂ ବୋଲି ମାଇଲା ସୁଗ୍ରୀବର ।
ବଞ୍ଚାଇ ନ ପାରିଲା ପଡ଼ିଲା ହୃଦୟର ॥୬୦
ମୁକୁଟ କୁଣ୍ଡଳ ସହିତେ ଶିର ଛିଡ଼ି ।
ପ୍ରାଣ ଯାନ୍ତେ ତ ଛାଡ଼ିଲା ଘୋର ରଡ଼ି ॥
ଶ୍ରୀରାମ ଆନନ୍ଦ ହୋଇଲେ ତାହା ଚାହିଂ ।
ରାବଣ ପେଷିଲା ଅନୁମନ୍ତକୁ ରାଇ ॥
ଦେଖ ତୋର ଭାଇ ପଡ଼ିଲାକ ମନ୍ତ ।
ତୁନି ହୋଇଅଛୁ ଏଡ଼େକ ତୋର ସତ ॥
ସୋଦର ଜ୍ୟେଷ୍ଠ ଭାଇ ସମାନ ଅଟଇ ତାତ ।
ଶୁଣି କୋପଭରେ ଧାମଇଂ ଅନୁମନ୍ତ ॥
ଦୂରୁଂ ଦେଖିଲା ତାହା କପିକୁଳ ପତି ।
ପରିଘେକ ଘେନି ଧାଇଂଲା ଶୀଘ୍ରଗତି ॥
ଅନୁମନ୍ତ ଉପରେ ପିଟିଲାକ ନେଇ ।
ରଥ ଛାଡ଼ି ଦତ୍ୟ ଗଲାକ ପଳାଇ ॥
ଅନୁମନ୍ତ ଯାନ ହୋଇଲା ଖଣ୍ଡ ଖଣ୍ଡ ।
ଛେଚି ହୋଇଲା ଅଛି ସାରଥିର ମୁଣ୍ଡ ॥
ଭୂମିରେ ଅନୁମତ ଉଭା ହୋଇଥିଲା ।
ଅଧଲା କାମୋଡ଼ି ରାଗେ ବିଧାଏ ମାଇଲା ॥
ଅନୁମନ୍ତ ଉପରେ ପଡ଼ିଲାକ ଯାଇଂ ।
ବୁକୁ ହାଡ଼ ଭାଜି ହାତ ଭିତରେ ପଶଇ ॥
ପ୍ରାଣଲିଙ୍ଗ ସୁଗ୍ରୀବର ଆଣିଲା ଆକ୍ରେଷି ।
ଅନ୍ତ କାଢ଼ି ଗଳାରେ ଲାଇଲା ସୂର୍ଯ୍ୟଶିଶି ॥୮୦
ଗର୍ଜିଣ ଅନୁମନ୍ତ ପଡ଼ିଲା ଭୂମିତଳେ ।
ରାବଣେଶ୍ୱର ଦେଖିଲା ଏସନେକ ବେଳେ ॥
ସାରଥିକି ବୋଇଲା ମୋତେ ତୁ ନ ଚାହଂ ।
ଶ୍ରୀରାମ ଲକ୍ଷ୍ମଣ କତିକି ରଥ ବାହ ॥
ରଘୁବଂଶନାଥକୁ କରଇ ଆଜ ହତ ।
ଯାହାର ସଖା ଅଟଇ ସୁମିତ୍ରାର ସୁତ ॥
ସୁଗ୍ରୀ ଜମ୍ୱେବ ହନୁମତ ନଳ ନୀଳ ।
ସନ୍ୟ ଯୂଥପତି ରିକ୍ଷ କପିବଳ ॥
ବିଭୀଷେଣ ସହିତେ ଯାକୁ ହୋଇଛନ୍ତି ସଖା ।
ସେ ରାମ କାହିଂଛନ୍ତି ବେଗେ ନେଇ ଦେଖା ॥୯୦
ଏତେବୋଲି ରାଗେ କମ୍ପଇ ଥରହର ।
ଦଶଭୁଜେ ଧନୁ ଦଶଭୁଜେ ଶର ॥
ସାରଥି ବାହାଇ ରହୁବର ବିତପନ ।
ଯେବଣ ରଥେ ଯୋଚିଛି ସହସ୍ରେକ ଯାନ ॥
ସନ୍ୟ ସମୋଦ୍ରେ ବୋଇତ ଚଳି ଯାଇ ।
ଶ୍ରୀରାମ ଛାମୁରେ ଯାଇଂ ତକ୍ଷଣେ ମିଳଇ ॥
ଦେଖି ରଘୁନାଥ ଲକ୍ଷଣକୁ ପଛ କଲେ ।
ଧନୁଶର ଧରି ଆଗକୁ ଧାଇଂଲେ ॥
ସହସ୍ରେକ ନାରାଚ ବିନ୍ଧିଲେ ତଡ଼ତି ।
ତୀକ୍ଷ ଶରେ ତାହା ଛେଦିଲା ଲଙ୍କପତି ॥୧୦୦
ପୁଣ ଶ୍ରୀରାମ ଯେ ଦୁଇଶତ ବାଣ ମାରି ।
କିଞ୍ଚିତ ଶରେ ତାହା ରାବଣ ନିବାରି ॥
ଦଶସହସ୍ର କାଣ୍ଡ ବିନ୍ଧିଲେ ଦାଶରଥି ।
ପାଞ୍ଚବାଣେ ତାହା ଛେଦିଲେ ପଉଲୋସ୍ତିର ନାତି ॥
ଦେଖିଣ ଶ୍ରୀରାମ କଲେକ ଅତି ମାନ ।
ଲକ୍ଷେକ ନାରାଚ ପେଷିଲେ ରଘୁନାନ ॥
ହାତରୁଂ ନ ଫିଟୁ ଛେଦିଲା ଦଶାନନ ।
କୋପେ ରଘୁନାଥ ମାଇଲେ ବିଂଶବାଣ ॥
ଏକା ନାରାଜକେ ରାବଣ ତାହା ଛିନ୍ନି ।
ଦୁହିଂଙ୍କରି ଯୁଦ୍ଧ ଲାଗିଲା ଅନ୍ୟାଅନ୍ନି ॥୧୦
ବେଳକୁ ବେଳ ଯେ ସାଂଗ୍ରାମ ମହାଘୋର ।
ଶହସ୍ରଙ୍କ ଆତଯାତେ ଦିଶିଲା ଅନ୍ଧାର ॥
ଗୁଣଙ୍କ ଟଙ୍କାର ଘଡ଼ଘଡ଼ି ଜାଣି ।
ଅସ୍ତ୍ରଙ୍କର ତେଜ କି ସମାନ ଦିନମଣି ॥
ଏକକୁ ଆରେକ ହାଙ୍କିଣ ବିନ୍ଧାବିନ୍ଧି ।
ଦୁହିଂଙ୍କରି ନାରାଚ ଗଗନପଥ ରୁନ୍ଧି ॥
ସହସ୍ରେକ ନାରାଚ ବିନ୍ଧିଲା ଲଙ୍କସାଇଂ ।
ସୂର୍ଯ୍ୟ ଦେବତାକି ପଡ଼ିଲାକ ଭୂଇଂ ॥
ଜଗତ ଛନ୍ନଛନ୍ନ ଦିଶଇ କାଣ୍ଡ ତେଜେ ।
ଶ୍ରୀରାମ ନିବାରିଲେ ତାହା କିଞ୍ଚିତେ ନାରାଚେ ॥୨୦
ଦେଖି ଲଙ୍କପତି ମାଇଲା ଦଶବାଣ ।
ଚଳିଲେକ ଅସ୍ତ୍ର ଶବଦ ଗରୁଟାଣ ॥
ଶ୍ରୀରାମର ଶରୀରେ ପଡ଼ିଲେ କାଣ୍ଡମାନେ ।
କୋପେ ପାଞ୍ଚବାଣ ବିନ୍ଧିଲେ ରଘୁନାନେ ॥
ରାବଣର ଲଲାଟେ ପଡ଼ିଲେ ପାଞ୍ଚଶର ।
ଘାଏ ଦଶଗ୍ରୀବ କମ୍ପଇ ଥରହର ॥
ବଜ୍ର ସମ ଶୂଳେ ପିଟିଲାକ ନେଇ ।
ଶ୍ରୀରାମ ଛେଦିଲେ ତାହା ପ୍ରତିଅସ୍ତ୍ର ଦେଇ ॥
ଦେଖିଣ ସଙ୍କୋଚ ପାଇଲା ବିଂଶଭୁଜ ।
ତୁଷାର ବୃଷ୍ଟି ଜାଣି ବିନ୍ଧିଲା ନାରାଜ ॥୩୦
ଅଗ୍ନି କଣିକା ଜାଣି ଗଗନୁଂ ପଡ଼େ ଶର ।
ଘନ ଘନ କରି ଛେଦନ୍ତି ରଘୁବୀର ॥
ଯହୁଂ ସେ ସାଂଗ୍ରାମ ହୋଇଲା ଅପ୍ରମିତ ।
ସହି ନ ପାରିଲା ସୁମିତ୍ରାର ସୁତ ॥
ଶ୍ରୀରାମ ଯେ ତାହାକୁ ଲୁଚାଇଣ ଥୋଇ ।
ଯୂଥପତିମାନଙ୍କର ଭିତରେଣ ନେଇ ॥
ବିଭୀଷେଣ ଗୋଚରେ ତାକୁ ଥିଲେ ଯେ ରଖାଇ ।
ଆଜ ନ ଯୁଝିବୁ ଯେ ନିୟମ କରାଇ ॥
ଆପଣେ ଧନୁଶର ଘେନିଣ ରଣେ ପଶି ।
ରାବଣର ସଙ୍ଗେ ଯୁଝନ୍ତି ରଘୁଶିଷି ॥୪୦
ଘୋର ସାଂଗ୍ରାମ ଯହୁଂ ହୋଇଲା ବେଳୁଂ ବେଳ ।
ଦେଖିଣ ସଉମିତ୍ରୀ ଧାଇଂଲା ତତକାଳ ॥
ସଙ୍ଗତରେ ବିଭୀଷେଣ ସୁଗ୍ରୀବର ରାଏ ।
ପଞ୍ଚେଣ ପଚିଶ ଯୂଥପତି ଗୋଡ଼ାଏ ॥
ଆରେ ଆରେ ବୋଲି ପଶିଲେ ଆସି ରଣେ ।
ଦେଖିଣ ଅସୁରେ ପଳାନ୍ତି ଏଣେତେଣେ ॥
ଶ୍ରୀରାମକୁ ଆଗ ହୋଇଣ ସଉମିତ୍ରୀ ।
ଦେଖିଣ ବିଚାରନ୍ତି ରଘୁକୁଳ କ୍ଷତ୍ରୀ ॥
ବିଷମ ସମର ହୋଇବ ରଣଗୋଳ ।
ଭାଳି ଆଗ ହୋଇଲେ କୌଶଲ୍ୟା ଦୁଲାଳ ॥୫୦

ଦୁଇ ଭାଇ ଏକ ହୋଇଣ ଯୁଦ୍ଧ କଲେ ।
ମକର ଚନ୍ଦ୍ର ଜାଣି ନାରାଚ ପେଷିଲେ ॥
ରାବଣ ସମର୍ଥ ଦୁହିଁଙ୍କ ବାଣ ଛେଦଇ ।
ପ୍ରତି ଅସ୍ତ୍ର କରଇ ଅଙ୍ଗକୁ ନ ଭେଦଇ ॥
କୋପେଣ ଲକ୍ଷ୍ମଣ ବିନ୍ଧିଲେ ଚାରିଶର ।
ଲଙ୍କପତି ତାହା ନିବାରିଲା ଦୂର ॥
ଶ୍ରୀରାମଙ୍କୁ ପାଞ୍ଚବାଣ ମାଇଲା କୋପ ଭରେ ।
ଭାଲ ଘେନି ତାହାକୁ ଛେଦିଲେ ରଘୁବିରେ ॥
ନିଃଶ୍ୱାସକେ ଲକ୍ଷେ ନାରାଚ ଘେନି ବିନ୍ଧି ।
ଦିବସେ ଅନ୍ଧାର କଲେକ ଶର ସନ୍ଧି ॥୬୦
ସୁବର୍ଣ୍ଣ କାନ୍ତି ଜାଣି ଦିଶୁଛନ୍ତି କାଣ୍ଡମାନ ।
ଗରଜିଣ ଧାମନ୍ତି ପବନୁଂ ବେଗେଣ ॥
ରାବଣର ଅଙ୍ଗେ ଭେଦି ନ ପାରିଲେ ।
ମୁନ ମୋଡ଼ି ହୋଇ ବାହାରି ଅଇଲେ ॥
ଦେଖି ରଘୁନାଥ ଗନ୍ଧର୍ବାଶର କଲେ ।
କଉଣସି ଅସ୍ତ୍ର ତାର ଦେହେ ନ ଭେଦିଲେ ॥
ବାୟବା ଅସ୍ତ୍ର ପୁଣି କଲେ ରଘୁମଣି ।
କିଞ୍ଚିତ ନାରାଚେ ତାହା ରାବଣେଶ୍ୱର ହାଣି ॥
ଦଶ ଧନୁରେ ଯୋଚିଲା ଦଶ ସହସ୍ର ଶର ।
ଏକ ନାରାଚକେ ଛେଦିଲେ ରଘୁବୀର ॥୭୦
ପୁଣି ରାବଣ ମାଇଲା ମୁଦ୍ଗରେ ।
ପବନହୁଁ ବେଗେ ସେ ଅଇଲାକ ଖରେ ॥
ସୁର ଇନ୍ଦ୍ର ହୋଇଲେ ମରଇ ନିଅତ ।
ଦୁଇ ଆଠ ଲୋକେ ହୋଇଲେ ଚକିତ ॥
ଦେଖିଣ ଶ୍ରୀରାମ ଗନ୍ଧର୍ବାଶର କଲେ ।
ତେତେ ମହା ଆୟୁଧ ଛିଣ୍ଡାଇ ପକାଇଲେ ॥
ଦେଖି ଲଙ୍କପତି ଖିନଖିନା ଶସ୍ତ୍ର ପେଷି ।
ରଣଭୂମି ଅନ୍ଧାର କିଛିହିଁ ନ ଦିଶି ॥
ଶ୍ରୀରାମ ଲକ୍ଷ୍ମଣ ବିନ୍ଧନ୍ତି ତୀକ୍ଷ୍ଣ ବାଣ ।
ଆବର ବିନ୍ଧୁଅଛି ବୀର ବିଭୀଷେଣ ॥୮୦
କୁହୁଡ଼ି ପ୍ରାୟେକ ଅସ୍ତ୍ର ବରଷିବା ।
ବିଜୁଳି ଛଟକ ଜାଣି ଯିବା ଯେ ଆସିବା ॥
ଏକା ଲଙ୍କପତି ତିନିଙ୍କି ଯୁଝଇ ।
ଏହାଙ୍କର କାଣ୍ଡ ତା ହୃଦରେ ନ ବାଜଇ ॥
ହାତରୁ ନ ଫିଟୁ ଛେଦଇ ଘନ ଘନ ।
ଶତେ ବାଣ ମାଇଲେ ସୁମିତ୍ରା ନନ୍ଦନ ॥
ସାରଥିର ମୁଣ୍ଡ ପକାଇଲା କାଟି ।
ରଥଧ୍ୱଜ ସହିତେ ଭୂମିରେଣ ଲୋଟି ॥
ଏସନେକ ବେଳେ ଧାଇଂଲା ବିଭୀଷେଣ ।
ପରିଘ ମାରି ଘୋଡ଼ାଙ୍କର ଘେନିଲା ପରାଣ ॥୯୦
ଆଠ ଶତ ଅଶ୍ୱ ଲୋଟିଲେ ଧରଣୀ ।
ରଥରୁ ଓହ୍ଲାଇଲା ଅସୁର କୁଳମଣି ॥
ପୁଷ୍ପକ ବିମାନ ସୁମରିଲା ମନେ ମନ ।
ତତକ୍ଷଣେ ଉପଗତ ହୋଇଲା ଦେବଯାନ ॥
ସେ ବିମାନେ ବସି ବିନ୍ଧିଲା ତୀକ୍ଷ ବାଣ ।
ଦେଖି ଛେଦିଲା ତାହା ବିଭୀଷେଣ ରାଣ ॥
କୋପେ ପୁଣ ପୁଣ ବିନ୍ଧଇ ତହିଂ ଶର ।
ସେ ଯୁଦ୍ଧ ସହିଲାକ ସୁମିତ୍ରା କୁମର ॥
ସୁଗ୍ରୀବର ରାଜା ପିଟିଲା ଶାଳ ବୃକ୍ଷ ।
ପର୍ବତେ ମାଇଲା ଯେ ପବନର ବକ୍ଷ ॥୧୦୦
ଅଙ୍ଗଦ ତରୁଶିଳ କୋପେ ପୁଣ ପେଷି ।
ପଞ୍ଚଶ ଯୂଥପତି ଯେ ପଡ଼ିଲେକ ଆସି ॥
ଅଷ୍ଟସେନାଏ ଆସି ବେଢ଼ି ଯୁଦ୍ଧ କଲେ ।
ରିକ୍ଷ କପିବଳ ଆସି ସମସ୍ତ ମିଳିଲେ ॥
କେ ଶିଳା ଆୟୁଧ ଧରିଣ ବଳେ ମାରି ।
ବେଢ଼ରେ ପଡ଼ିଲାକ ରାଜା ଦଶଶିରି ॥
ଶ୍ରୀରାମ ଲକ୍ଷ୍ମଣ ବିନ୍ଧନ୍ତି ଘନ ଘନ ।
ବିଭୀଷେଣ ନାରାଚ ବିନ୍ଧଇ ଅବିଚ୍ଛନ୍ନ ॥
ମାର ମାର ଡାକ ଡାକନ୍ତି କପି ରିକ୍ଷ ।
ବରଷଣ ପରା କରି ପକାନ୍ତି ଶିଳାବୃକ୍ଷ ॥୧୦
ମୁହଂରେ ରହି ଏକା ଯୁଝଇ ବିଭୀଷେଣ ।
ଦକ୍ଷିଣ ପାଶେ ଶ୍ରୀରାମ ବାମେ ଯେ ଲକ୍ଷ୍ମଣ ॥
ସେନା ଯୂଥପତି ଉପରେ ବେଢ଼ି ମାରି ।
ରିକ୍ଷ କପିମାନେ ପାଡ଼ନ୍ତି ହୁଳହୁଳି ॥
ଧର ଧର ମାର ମାର ଶୁଭଇ ଚଉପାଶ ।
ବୃକ୍ଷ ଶିଳା ପିଟନ୍ତେ ଅନ୍ଧାର ଦଶଦିଶ ॥
ଶ୍ରୀରାମ ଲକ୍ଷ୍ମଣ ବିନ୍ଧନ୍ତି ଅବିଚ୍ଛନ୍ନ ।
ଲଙ୍କପତି ତାହା ଛେଦଇ ଘନ ଘନ ॥
କୋଟିଏ କୋଟି ମର୍କଟ ଶିଳା ଧରି ମାରି ।
କୋଟିଏ କୋଟି ଭଲ୍ଲୁକ ତରୁବର ପ୍ରହାରି ॥୨୦
ପଚିଶ ଯୂଥପତି ଆବର ଅଷ୍ଟସେହ୍ନା ।
ଶ୍ରୀରାମର ସନ୍ୟ କେ କରିବ କଳଣା ॥
ଅବିଶ୍ରାମ ଯୁଦ୍ଧ କରନ୍ତି ଅଙ୍ଗଛଳେ ।
ବିଭୀଷେଣ ନାରାଚ ବିନ୍ଧଇ ବାହୁବଳେ ॥
ଶ୍ରୀରାମ ସଉମିତ୍ରୀ ବିନ୍ଧନ୍ତି ଶରମାନ ।
ସବୁକୁ ହିଂ ଏକା ବିନ୍ଧଇ ଦଶାନନ ॥
କାହାରି ଆୟୁଧ ଆସି ନ ବାଜଇ ଅଙ୍ଗେ ।
ବିଭୀଷେଣ ଲକ୍ଷ୍ମଣ ଧାଇଂଲେ ଅତି ବେଗେ ॥
ରଥ ପାଖ ଯାଏ ଅଇଲେ ପେଲି ପଶି ।
ଲକ୍ଷ୍ମଣ କୋଟି କୋଟି ନାରଚ ବରଷି ॥୩୦
ମାୟା ରଥ ଚଢ଼ିଅଛି ଲଙ୍କପାଳ ।
ତେଣୁ ଉପୁଡ଼ି ପଡ଼େ ଶର ତରୁ ଶିଳ ॥
ଦଶଭୁଜରେ ଯହୁଂ ଧନୁଅଛି ଧରି ।
ରାମ ଲକ୍ଷ୍ମଣ ବିଭୀଷେଣଙ୍କୁ ଯୁଝଇ ତେଣୁ କରି ॥
ଅପୂର୍ବ ସଂଗ୍ରାମ ସେ ହୋଇଲା ବେଲୁଂବେଳ ।
ରଥରେ ଉଠିଲା ଯାଇଂ ପବନର ବାଳ ॥
ତଳକୁ ଓଲଟାଇଂ ଦେଲାକ ଦେବଯାନ ।
ଉଛୁଡ଼ି କରି ତଳକୁ ପକାଇଲା ଶସ୍ତ୍ରମାନ ॥
ଲକ୍ଷ୍ମଣ ବିଭୀଷେଣ କଟାଳି ଯୁଝନ୍ତି ।
ରାମହିଂ ଅପ୍ରମିତ ନାରାଚ ପେଷନ୍ତି ॥୪୦
ଏମନ୍ତ ପହଡ଼େକ ହୋଇଲା ରଣଗୋଳ ।
ଆତ୍ମାକୁ ଭୟ ଯେ କଲାକ ଲଙ୍କପାଳ ॥
ଏକଘନୀ ନାମେ ଧଇଲା ଶକତି ।
ପୂର୍ବେ ପ୍ରସନ୍ନେ ଯାହା ଦେଇଛି ବେଦପତି ॥
ମାଇଲେ ମରନ୍ତି ଦଶଦିଗପାଳ ।
ଯମଦେବତା ହୋଇଲେ ପୂରଇ ତାର କାଳ ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ନୁହନ୍ତି ଭାର୍ଜନ ।
ଯାହା ହୃଦେ ପଡ଼ଇ ହରଇ ତା ଜୀବନ ॥
କମାର ଯେହ୍ନେ ଶହସ୍ର ଗଡ଼ିଣ ପାଣି ଦେଇ ।
ତାହା ଧରି ହାଣିଲେ ଯେହ୍ନେ ଆନ ଶହସ୍ର ଛିଡ଼ଇ ॥୫୦
ତେସନେକ ସଂଯାତ ବ୍ରହ୍ମାର ତହୁଂ ଜାତ ।

ବ୍ରହ୍ମାକୁ ମାଇଲେ ସେ ହରଇ ଜୀବିତ ॥
ଏକା ଜଣକରୁ ଦୁଇଜଣ ନମାରି ।
ତେଣୁ ଏକଘନି ନାମ ବୋଲାଇ ତାହାରି ॥
ଅତିହିଁ ଘଞ୍ଚାଳ ଯହୁଁ ଶ୍ରୀରାମଚନ୍ଦ୍ର କଲେ ।
ଲକ୍ଷ୍ମଣ ବିଭୀଷେଣ ବିକୋଟି ମାଇଲେ ॥
ଅଷ୍ଟସେନା ଆବର ପଚିଶ ଯୂଥପତି ।
ସନ୍ୟ ସହିତେଣ ସୁଗ୍ରବୀର ପ୍ରଭୃତି ॥
ବେଢ଼ି ଗୋଳ କରି ମାଇଲେ ତରୁ ଶିଳ ।
ଅସଂଖ୍ୟ ସମର ହୋଇଲା
ବେଳୁଂବେଳ ॥୬୦
ବିଭୀଷେଣର ଆଜ ଘେନିମି ପରାଣ ।
ତେଣୁ ବ୍ରହ୍ମ ଶକତି ଧଇଲା ରାବଣ ॥
ଯେସନେ ଅଗ୍ନି ଦେବତା ପ୍ରଳୟକାଳେ
ଜଳଇ ।
ପରିଘ ବୁଲାବନ୍ତେ ସପ୍ତଦ୍ୱୀପ ଚଳଇ ॥
ଦେବେ ବିଚାରନ୍ତି ଆଜ ବିଭୀଷେଣ ମଲା ।
ଶ୍ରୀରାମ ଶରଣ ପଶି ଅକାରଣ ହେଲା ॥
ଆଜହୁଂ ସରିଲା ଯେହାର ଜୀବନ ।
ହାହାକାର କରନ୍ତି ଅପଛରୀମାନ ॥
ଏହାର ପରା ଲୋକକୁ ସେ ମରଣହିଁ ଅଛି ।
କେଉଂ ମନ୍ଦପଣ ଦେଖି ଯମହିଁ ପାଞ୍ଜି
ପୋଛି ॥୭୦
ଏସନେକ ଭାଳେଣି ଭାଳନ୍ତି ସ୍ୱର୍ଗପୁରେ ।
ବ୍ରହ୍ମଶକତି ରାବଣ ଧରିଅଛି କରେ ॥
ବିଭୀଷେଣକୁ ମାରିବ ବୋଲି ଉଞ୍ଚାଇଲା ।
ଏହାର ଯୋଗୁଂ ସିନା ଇନ୍ଦ୍ରଜିତ ପଡ଼ିଲା ॥
କୁଳକୁ କଳଙ୍କ ଅଟଇ ଚାଣ୍ଡାଳ ।
ଶକତି ମାରି ଏହାର ପୂରୋଇବି କାଳ ॥
ଜାଣି ସଉମିତ୍ରୀ ବିଭୀଷେଣକୁ ପଛ କଲା ।
ଆଗଭର ହୋଇଣ ଆପଣେ ଯୁଝିଲା ॥
ଲକ୍ଷ ଲକ୍ଷ କରି ବିନ୍ଧିଲା ନାରାଚ ।
ରକତେ ଜରଜର ହୋଇଲା
ଲଙ୍କରାଜ ॥୮୦
ବିମୁଖ ପାଇଲା ଲଙ୍କାର ଅଧିପତି ।
କୋପଭର ହୋଇ ଚମକାଇ ଶକତି ॥
ଲକ୍ଷ୍ମଣକୁ ବୋଇଲା ଆଡ଼ ହୋ ଯତିଆ ।
ଚାଣ୍ଡାଳ ବିଭୀଷେଣର ଛେଦିବି ଆଜ
କାୟା ॥
ଏହାର ମରିବାର ମୋହର ବଡ଼ କାର୍ଯ୍ୟ ।
ଚଉଦ ଭୁବନେ ମୋତେ କରାଇଲା ଲାଜ ॥
ମନୁଷ୍ୟରେ ମରନ୍ତି କି ମୋହର ପୁତ୍ର ଭାଇ ।
ଏ ଯେବେ ଶରଣ ହୋ ନ ପଶନ୍ତା ଯାଇଂ ॥
ଆଡ଼ ହୋ ଆଡ଼ ହୋ ଲକ୍ଷ୍ମଣ ତୁ ସାମରଥ
ନୋହୁ ।
ଏ କାଳ ଶହସ୍ର ବିଭୀଷେଣକୁ ଦହୁ ॥୯୦
ଏହାର ଘାଏ ନ ବର୍ତ୍ତନ୍ତି ସୁରାସୁର ।
ପଡୁ ଏ ଶକତି ବିଭୀଷେଣ ହୃଦୟର ॥
ମରୁ କୁଳକଣ୍ଟକ ଯାଅ ତୁ ଆଡ଼ ହୋଇ ।
ଶୁଣି ଲକ୍ଷ୍ମଣ ଯେ ବୋଇଲେ ପରିଘାଇ ॥
ଶରଣ ରକ୍ଷଣ ଅଟଇ ମୋର ବାନା ।
ତୋହୋର ଶହସ୍ର ମୁଂ ସହିପାରଇ ସିନା ॥
ମାର ମାର ଶକତି ଅଟଇ କେତେ ଗାଢ଼ ।
ନ କହ ଗାରିମା ହୋ ପୂର୍ବର କଥା ଛାଡ଼ ॥
କିଞ୍ଚିତ ନାରାଚେ ଘେନିବି ତୋର ପ୍ରାଣ ।
ମୋତେ କିସ କରିବ ଶକତି
ନିଲକ୍ଷଣ ॥୧୦୦
ଏତେବୋଲି ସଉମିତ୍ରୀ କୋଡ଼ିଏ ବାଣ
ମାରି ।
ଲଙ୍କପତିର ଦେହ ହୋଇଲା ବିଦାରି ॥
ନିଃଶ୍ୱାସକେ ମର୍ତ୍ତୁତେ ବିନ୍ଧିଲେକ ଶର ।
କୋପେ ପ୍ରଜ୍ୱଳିତ ସୁମିତ୍ରା କୁମର ॥
ରୋମେକେ ନାରାଚ କରିଣ ବିନ୍ଧିଲା ।
କୋପେ ଦଶଗିରି ଆକ୍ରୋଷି ଚାହିଁଲା ॥
ଆଣ୍ଟେଣ ଡାକିଲା ତୁମ୍ଭେ ଦିଗପାଳେ ଶୁଣ ।
ତେତିଶ କୋଟି ଦେବତା ସହ ଗ୍ରହଗଣ ॥
ଚନ୍ଦ୍ର ସୂର୍ଯ୍ୟ ଅନଳ ପବନ ସାକ୍ଷୀ ହୁଅ ।
ଏ ବ୍ରହ୍ମ ଶକତିକି କେହି ନାହିଁ ରହ ॥୧୦
ବିଭୀଷେଣ ଶତ୍ରୁ ମୋର ତାହାକୁ ସଂହାରିବି ।
କୁମାର ବୟସ ଲକ୍ଷ୍ମଣକୁ ନମାରିବି ॥
ଏ ଧର୍ମ ନୁହଇ ଏହା ମୁଂ ଜାଣଇ ।
ଆଡ଼େ ହୋଇ ଯାଉ ମୁଂ ବିଭୀଷେଣକୁ
ମାରଇ ॥
ମଉଗର୍ବ ହୋଇ ଡାକଇ ମୋତେ ରଣେ ।
ସାକ୍ଷୀ ହୋଇଥାଅ ହେ ସକଳ ସୁରଗଣେ ॥
ମୋହର ଦୋଷ ନାହିଁ ହେ ମାରୁଅଛି ଶର ।
ଶୁଣିଣ ପ୍ରଜ୍ୱଳିତ ସୁମିତ୍ରା କୁମର ॥
ଲକ୍ଷେ ଲକ୍ଷେ ନାରାଚ ବିନ୍ଧିଲା
ନିଃଶ୍ୱାସକେ ।
ପଡ଼ିଲେ କାଣ୍ଡମାନେ ଦଶଗ୍ରୀବ ମୁଖେ ॥୨୦
ନାକ କାନ ଆଖି ତୁଣ୍ଡରେ କାଣ୍ଡ ଲାଗି ।
ବ୍ୟଥା ପାଇ ରାବଣ ହୋଇଲା ବଡ଼ ରାଗୀ ॥
ଶକତି ଧରି ପୁଣ ବୁଲାଇଲା ତୋଳି ।
ଅନ୍ତରାଳ ହୋଇ ବୁଲିଲା ମହୀଆଳି ॥
ଉଲୁକାପାତ ଯେହ୍ନେ ଦିଶିଲା ଛନ୍ନଛନ୍ନ ।
ଏକାବେଳେକେ ଜଳିଲାକି ଦଶ ସହସ୍ର
ହୁତାଶନ ॥
ସୂର୍ଯ୍ୟ ଦେବତା ଦିଶିଲା ମଳିନ ।
ଶକତି ଦ୍ରୋଛନାରେ ଲିଭିଲା କିରଣ ॥
ଭଡ଼ା ଚାରି ଯାଇ ମାଇଲା ତୋଳି ।
ଅନ୍ତରାଳ ପୁଣ ହୋଇଲା ମହୀଆଳି ॥୩୦
ଯେବଣ ରିକ୍ଷ କପି ରଥରେ ଉଠିଥିଲେ ।
ତେଜ ଲାଗିଣ ସେ ତଳେ ପଡ଼ିମଲେ ॥
ଅଷ୍ଟ ସେନାମାନ ବୁଜିଲେ ଆଖି କାନ ।
ପଚିଶ ଯୂଥପତି ହୋଇଲେ ହତଜ୍ଞାନ ॥
ସୁଗ୍ରୀ ବିଭୀଷେଣ ପଛକୁ ମୁହଁ କଲେ ।
ସଂଗ୍ରାମ ଛାଡ଼ିଣ ପଛକୁ ପଳାଇଲେ ॥
ଶ୍ରୀରାମ ବୋଇଲେ ହୋ ହୋଇଲା
ବିପରୀତ ।
ଆଜ ଏ ଅସ୍ତ୍ରରେ ନ ଜୀଅଇଂ ମୋର ଭ୍ରାତ ॥
ଏଡ଼େ ପାପ ଲକ୍ଷ୍ମଣରେ ଅର୍ଜିଥିଲୁ କାହିଁ ।
ଏ ବ୍ରହ୍ମ ଶକତିକି ତ ପ୍ରତି ଅସ୍ତ୍ର ନାହିଁ ॥୪୦
ଏତେ ବୋଲି ରାମ କୋଡ଼ିଏ ବାଣ
ପେଷି ।
ସଉମିତ୍ରୀ ଲକ୍ଷେ ନାରାଚ ବରଷି ॥
ବିହୁଡ଼ି ପାଖେ ଯେହ୍ନେ ଜୁଳୁଜୁଳା
ପୋକମାନ ।
ଶକତି ନିବାରିବାକୁ ନୋହିଲେ ଭାର୍ଜନ ॥
ସ୍ୱର୍ଗେ ଦେବତାଏ ହାହାକାର କରି ।

ଲକ୍ଷ୍ମଣ ମରିବ ବୋଲି ବିଧାତା ହିଁ ଡରି ॥
ଘୋର ରାବ କରି ଗର୍ଜିଲା ମହାଶର ।
ନିଶବଦ ହୋଇ ଦେଖନ୍ତି ସୁରନର ॥
ପ୍ରଚଣ୍ଡ ହୁତାଶନ କି ଉଡ଼ି ଆସୁଅଛି ।
ନିବାରି ନ ପାରିଲେ ସୁମିତ୍ରାର ବଚ୍ଛି ॥ ୫୦
ଦେଖୁଁ ଦେଖୁଁ ଶକତି ପଡ଼ିଲା ଆସି ହୃଦେ ।
ହାହାକାର ଶବଦ ଶୁଭିଲା ସ୍ୱର୍ଗ ମଧେ ॥
ଶହସ୍ର ପଡ଼ନ୍ତେ ଲକ୍ଷ୍ମଣ ପ୍ରାଣ ହାରି ।
ବିଷ୍ଣୁର ସଖା ବୋଲି ମନରେ ବିଚାରି ॥୬୦
ଭାରା ନିବାରଣ ପାଇଁ ହୋଇଅଛି ଜାତ ।
ତୈଲୋକେ ଅକ୍ଷଏ ମୁଁ ଶ୍ରୀରାମର ଭ୍ରାଥ ॥
ଏ ବ୍ରହ୍ମ ଶକତି କି ମୋହର ପ୍ରାଣ ହାରି ।
ଅଜ୍ଞାନ ବାପୁଡ଼ା ଏ ମୋତେ ମାରଇ ॥
ଏସନ ବିଚାରୁ ହୃଦେ ଫୁଟିଲାକ ଶର ।
ବୁକୁ ଫୁଟି ପିଠିକି ହୋଇଲା ବାହାର ॥
ବଳେ ଲକ୍ଷ୍ମଣକୁ ପକାଇଲା ମାଡ଼ି ।
ଉତ୍ତାନ ହୋଇପଡ଼ିଲେ ଧନୁଶର ଛାଡ଼ି ॥
ଭୂମିରେ ପଶି ଶର ପାତାଳକୁ କଣ୍ଟିଲା ।
ବାସୁକୀ ଫେଣାରେ ଯାଇଂଣ ଲାଗିଲା ॥
ଦିତୀ ମେରୁ ପ୍ରାୟେ ଦିଶିଲା ମହାଶର ।
ଦେଖି ସିଂହନାଦ କଲାକ ଅସୁର ॥
ରଥରୁ ଓହ୍ଲାଇଲା ଅତି ଖରକରି ।
ମତ୍ତହସ୍ତୀ ଯେହ୍ନେ ଘୋଡ଼ାକୁ ପାଡ଼ି ମାରି ॥
ଧରି ନେବ ବୋଲି ଅଇଲାକ ରାଗେ ।
ଦେଖିଣ ଶ୍ରୀରାମ ଓଗାଳିଲେ ବେଗେ ॥୭୦
ଭାଇକି ଆବୋରି ବିନ୍ଧିଲେ ତୀକ୍ଷ ବାଣ ।
ବାହୁଡ଼ି ରଥେ ଯାଇ ବସିଲା ରାବଣ ॥
ଧନୁଶର କରେ ଧରି ସେହି ଅସ୍ତ୍ର କଲା ।
ବେଳୁଁବେଳ ସଂଗ୍ରାମ ଅନେକ ହୋଇଲା ॥
ରଘୁନାଥ ବିନ୍ଧନ୍ତି କୋପମୁଖ ହୋଇ ।
ଘାଏ ବିରକତ ହୋଇଲା ଲଙ୍କସାଇଁ ॥
ବେଳକେ ଶ୍ରୀରାମ ଲକ୍ଷେ ବାଣ ମାରି ।
ନିଶ୍ୱାସକେ ସାତବେଳ ମାରନ୍ତି ମନ ସରି ॥
ଘଡ଼ିଏ ପରିଯନ୍ତେ ଶର ବୃଷ୍ଟି କଲେ ।
ଲଙ୍କପତି ସର୍ବାଙ୍ଗ ବିକୋଡି କାଟିଲେ ॥୮୦
ଥୋକାଏକ ବାଣ ନିବାରଇ ଲଙ୍କପତି ।
ତେଣୁ ସେ ରାବଣ ପାଇଲା ମନେ ଭୀତି ॥
ରଥ ଗଜ ଅଶ୍ୱ ସବୁଠାରେ କାଣ୍ଡ ଲାଗି ।
ବ୍ରିମଖେ ଦଶଗ୍ରୀବ ପଳାଇଲା ଭାଜି ॥
ଉଭାଳେକ ପରିଯନ୍ତେ ରାମ ଗୋଡ଼ାଇଲେ
ସଙ୍ଗେ ।
ପାଲଟି ବିଂଶଭୁଜ ନ ରହିଲା ଆଗେ ॥
ଯୋରବୋର ହୋଇ ପଳାଇଣ ଗଲା ।
ଉତ୍ତର ଗଡ଼ ଦ୍ୱାରବାଟେ ଯାଇଂଣ ପଶିଲା ॥
ଶ୍ରୀରାମ ବାହୁଡ଼ିଲେ ଭାଇର ତହିଁ ମନ ।
ସଙ୍ଗେ ଗୋଡ଼ାଇଲେ ରିକ୍ଷ କପି ସନ୍ୟ ॥୯୦
ଧାଡିକାରେ ମିଳିଲେ ଭାଇର ସନ୍ନିଧେ ।
ପଡ଼ିଅଛି ବୀର ବିଷମ ଶର ଭେଦେ ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମନ୍ତ ।
ନଳନୀଳ ସୁଷେଣ ତାରାକ୍ଷ ଜମ୍ୱୋବନ୍ତ ॥
ଅଷ୍ଟସେନା ଆବର ପଚିଶ ଯୂଥପତି ।
ଉବୁରା ଉବୁରି ହୋଇ ସଇନି ଦେଖନ୍ତି ॥
ଏସନେକ ସମଏ ମିଳିଲେ ରାମ ଆସି ।
ଦେଖି ବାଟ ଛାଡ଼ିଦେଲେ ତରୁଶିଷି ॥
ଭିତରେ ପଶି ରାମ ଚାହିଁଲେ ଭାଇ ମୁଖ ।
ତତକ୍ଷଣେ ପାଇଲେ ଅନେକ ଘୋର
ଦୁଃଖ ॥୧୦୦
ଧନୁଶସ୍ତ୍ର ଦେଲେ ନେଇ ସୁଗ୍ରୀବର ହାତେ ।
ଲକ୍ଷଣକୁ ତୋଳନ୍ତି ରଘୁକୁଳନାଥେ ॥
ନ ଟଳଇ ସଉମିତ୍ରୀ ଶସ୍ତ୍ର ଅଛି ଫୁଟି ।
ପାତାଳ ପରିଯନ୍ତେ ଅସ୍ତ୍ର ଅଛି କଣ୍ଟି ॥
ଭାଇକି ଚାଳନ୍ତେ ଟଳଇ ମହୀଆଳି ।
ଛାଡ଼ିଣ ଶ୍ରୀରାମ ହୋଇଲେ ବିଜଳି ॥
ବିଭୀଷେଣକୁ ବୋଇଲେ ଏ କିସ ଆକାର ।
କିମ୍ପାଇ ନ ଉଠିଲା ସୁମିତ୍ରା କୁମର ॥
ରାବଣର ଭାଇ କହଇ କରଯୋଡ଼ି ।
ଭୋ ସ୍ୱାମୀ ନଜାଣ ଶକତି ଅଛି ପଡ଼ି ॥୧୦
ବ୍ରହ୍ମଶକତି ଏ ଅଟଇ ଭାରି ଶର ।
ମନ୍ତ୍ରିଣ ପେଷିଲା ଏହା ଦଶାନନ ବୀର ॥
ଲକ୍ଷ୍ମଣ ସହିତେ ଫୁଟିଲା ବସନ୍ଧରୀ ।
ତେଣୁ ସେ ଚାଳନ୍ତେ ଟଳଇ ମହୀଆଳି ॥
ଶହସ୍ର ଉପାଡ଼ିଲେ ତାହାକୁ ତୋଳି ପାରି ।
ଶୁଣିଣ ଶ୍ରୀରାମ ନୟନୁଁ ଲୁହ ଗଳି ॥
କୋହ କୋହ ହୋଇଂ ରୋବନ୍ତି
ରଘୁସାଇଂ ।
ଗୁଣ ବାହୁନନ୍ତି ଭାଇର ମୁଖ ଚାହିଁ ॥
ଆରେ ବାବୁ ଲକ୍ଷ୍ମଣ ତୁ କେତେ ପାପ କଲୁ ।
କାଳମୁଖ ଶରେ ପ୍ରାଣ ହରାଇଲୁ ॥୨୦
ନିରେଖ କରିଣ ଛାଡ଼ିଗଲୁ ମୋତେ ।
ଅନେକ ପ୍ରକାରେ ତିଆରିଥିଲି ତୋତେ ॥
ଆଜ ନ ଯୁଝିବୁରେ ମୋହର ଶପତ ।
ରାଣ ମେଣ୍ଟି ଯୁଝିଲୁ ହୋଇଲା ଏଡ଼େ କୃତ୍ୟ ॥
ଏବେରେ କି ବୁଦ୍ଧି କରିବଇଁ ମୁହିଁ ।
ଅନାସ୍ତ ହେଲିରେ ତୋତେ ମୁଁ ହରାଇ ॥
ଆହୋ ସୁଗ୍ରୀବର ଆହୋ ବିଭୀଷେଣ ।
ଜମ୍ୱେବ ହନୁମନ୍ତ ଅଙ୍ଗଦ ସୁଷେଣ ॥
କାହାର କିସ ବୁଦ୍ଧି ଅଛି ବାବୁ କହ ।
ଏହି ଶକତି ଘେନୁଅଛି ଦୁଇ ଦେହ ॥୩୦
ଭାଇ ମୋର ମଲେ ମୁହିଁ ନ ଜୀଅଇଁ ।
ଏ ଶହସ୍ର ଉପାଡ଼ ମୁଁ କେଡ଼େ ଘାଆ
ଦେଖଇ ॥
ଶୁଣିଣ ରକ୍ଷ କପି ଧଇଲେ ମହାଶର ।
ବଳେ ଉପାଡ଼ିତ ମନ ତାହାଙ୍କର ॥
ନିଃଶ୍ୱାସ ଧରିଣ ଉପାଡ଼ିଲେ ଆଣ୍ଟେ ।
ନ ଟଳଇ ଶହସ୍ର ବସିଛି ମୁରାଟେ ॥
ପୁଣ ହଙ୍କାହଙ୍କି କରିଣ ଧଇଲେ ।
କେଉଣସି ପ୍ରକାରେ ଉପାଡ଼ି ନ ପାରିଲେ ॥
ଦେଖି ସୁଗ୍ରୀବର ବୋଇଲେ ତୁମ୍ଭେ ଛାଡ଼ ।
ଦେବ ଆୟୁଧ ଯେ ଅଟଇ ବଡ଼ ଗାଢ଼ ॥୪୦
ଝୁଙ୍କାଝୁଙ୍କି ନ କର ପାଇବ ବୀରବ୍ୟଥା ।
ପୁତ୍ର ଶୋକେ ମାରିଗଲା ଦଶମଥା ॥
ରାଜା ଆଜ୍ଞା ପାଇଂ ରକ୍ଷ କପି ଆଡ଼
ହୋଇଗଲେ ।
ସୁଗ୍ରୀ ହନୁମନ୍ତ ଜମ୍ୱେବ ଧଇଲେ ॥
ଅଙ୍ଗଦ ବିଭୀଷେଣ ଆବର ନଳନୀଳ ।
ତାରାକ୍ଷ ଶତବାଳି ମହାନ୍ଦ୍ର ସକଳ ॥
ଗବଏ ଗବାକ୍ଷ ଶରସେତୁ ବାଳ୍ପ ।
ସମ୍ପାତି ଡାଳିମ୍ବ ପବନ ପନଶିଳ ॥

ଦଶକାଳ ବୃଦ୍ଧ ବିବିଧ ପାରାସ ।
ଗଷଭ କୁମୁଦ ଚନ୍ଦନ ସାରାସ ॥୫୦
ମହାନ୍ଦ୍ର ଦ୍ବିବିନ୍ଦ କଞ୍ଚଣ ସୁଶୋଦନ ।
ରମଣ କାଳିମୁଖ ଦଧିମୁଖ ପବନ ॥
ଅଷ୍ଟସେନା ଆବର ପଚିଶ ଯୂଥପତି ।
ସହସ୍ରେକ ବୀର ବିଭୀଷେଣ ପ୍ରଭୃତି ॥
କଳବଳ କରି ସେ ଧଇଲେ ଗଣ୍ଡି ମୁଠି ।
ଅସ୍ତ୍ର ନ ଉପୁଡ଼ିଲା ଚଳିଲାକ ସୃଷ୍ଟି ॥
ତିନିବେଳ ହୁଙ୍କାରି ଧଇଲେ ଏକମନେ ।
ଯେହ୍ନେ ପର୍ବତ ନ ଟଳଇ ବହୁତ
ସୂଚୀମୁନେ ॥୬୦
ସବୁଙ୍କରି ଶରୀରୁ ବହେ ଶ୍ରମଝାଳ ।
ଦେଖି ବିସ୍ମଏ ହେଲେ କୌଶଲ୍ୟା ଦୁଲାଳ ॥
ବାବୁରେ ରାବଣ ମହିମା ତୋର ଧନି ।
ଶସ୍ତ୍ର ଗୋଟାଏ ମାଇଲୁ ଫୁଟିଲା ମେଦିନୀ ॥
ଏତେ ବଳ ମୋର ନ ପାରଇ ଚାଳି ।
ଶହସ୍ର ଉପାଡ଼ନ୍ତେ ଚଳଇ ମହୀଆଳି ॥
ଧନ୍ୟ ଧନ୍ୟ କ୍ଷତ୍ରୀ ତୁ ବୀର ଲଙ୍କନାଥ ।
ଏଡ଼େକ ପ୍ରାକର୍ମ ବହଇ ତୋର ହାଥ ॥
ଇନ୍ଦ୍ରଜିତ ମରିବାରୁ ଭରସା ପାଇଥିଲି ।
ଆଜ ତୋର ସାଂଗ୍ରାମ ଦେଖିଣ ଭାଳିଲି ॥
ଏତେବୋଲି ଆପଣେ ଧଇଲେ ଶକତି ।
ଛାଡ଼ି ଉଭା ହୋଇଲେ ସେନା
ଯୂଥପତି ॥୭୦
ଭାଇର ମୁଖ  ଦେଖି ବିକଳ ରଘୁବୀର ।
ନୟନୁ ଅଶ୍ରୁଜଳ ଖଳଇ ଧାର ଧାର ॥
ଶୋକଭରେ କହି ନପାରନ୍ତି ବାଣୀ ।
ଦୁଃଖେ ଦୁଃଖୀ ହୋଇ ଭାଳନ୍ତି ରଘୁମଣି ॥
ବାମହସ୍ତ ଦେଲେ ନେଇ ଶକତିର
ବେଣ୍ଟେ ।
ପ୍ରାସ ପାଇବ ବୋଲି ନ ଧଇଲେ ଆଣ୍ଟେ ॥
ଅବହେଳା କରି ଉପରକୁ ଟାଳି ଦେଲେ ।
ପୂର୍ବେ ଯେହ୍ନେ କରି ମନ୍ଦର ଉପାଡ଼ିଲେ ॥
ମଧ୍ୟାହ୍ନ ଆଦିତ୍ୟଙ୍କର ପ୍ରାଏ ଶହସ୍ରଙ୍କର ତେଜ ।
ବେନି ଖଣ୍ଡ କରିଣ ଭାଙ୍ଗିଲେ
ରଘୁରାଜ ॥୮୦

ଦେଖି ଦେବତାଏ ବହୁତ ପ୍ରଶଂସିଲେ ।
ଆନରେ ଏ ଶହସ୍ର ନ ଉପୁଡ଼ଇ
ବୋଇଲେ ॥
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାୟେ ।
ଲକ୍ଷ୍ମଣକୁ କୋଳ କରିଣ ଶୋକ କଏ ॥
ଗଳାରେ ଗଳା ଛନ୍ଦି ଭୁଜରେ ଭୁଜ ବାନ୍ଧି ।
ବହୁତ ବାହୁନଇ କୌଶଲ୍ୟା ସୁତ କାନ୍ଦି ॥
ହା ଦଇବରେ ଏହା ସେ ମୋତେ କଲୁ ।
ଉଦାସ ଭାଇକି ମୋର ଏଡ଼େ କଷ୍ଟ ଦେଲୁ ॥
ରାଜ୍ୟ ସୁଖ ଛାଡ଼ି ଅଇଲା ମୋର ଦୁଲେ ।
ବାହୁଡ଼ି ନଗଲା ଅନେକ ତିଆରିଲେ ॥୯୦
କନ୍ଦମୂଳ ଖାଇ ଦୁଃଖେ ଦିନ ନେଲା ।
ଚଉଦ ବରଷ ନିଦ୍ରାହିଁ ବଞ୍ଚିଲା ॥
ରାତ୍ରେ ଉଜାଗର ହୋଇ ଜଗିଥାଇ ।
ଦୁଃଖକୁ ସଂଘାତ ତୁ ଅଟୁ ମୋର ଭାଇ ॥
ସାବତ ଜନନୀର ଅଟୁ ତୁ ତନୟେ ।
ହିଂସା ନ କରଇ ଏ ତୋହର କାୟେ ॥
ଅର୍ଥ ଭାଗ ବଣ୍ଟାନ୍ତି ଆନ ଭାଇମାନେ ।
କଷ୍ଟ ପାଇବୁ ବୋଲି ଅଇଲା ଘୋର ବନେ ॥
ଆରେ ଆରେ ଲକ୍ଷ୍ମଣ ଆରେ ମୋର ବାପ ।
କାହିଂ ବସି ଅର୍ଜ୍ଜିଲୁ ଏଡ଼େ ପାପ ॥୧୦୦
ସର୍ବଗୁଣେ ସୁନ୍ଦର ଅଟଇ ମୋର ଭାଇ ।
ଘରକୁ ଗଲେ ମୋତେ କି କହିବେ ଆଇ ॥
ଲକ୍ଷ୍ମଣ କାହିଂ ବୋଲି ପଚାରିବେ ଆସି ।
କି ବୋଲି କହିବିରେ ସୁମିତ୍ରାର ଶିଷି ॥
ତୋହର ମଲେ ମୁଂ କି ଅଯୋଧ୍ୟାକୁ ଯାଇ ।
ଜାନେକୀ କି ନେବାରେ ପ୍ରୟୋଜନ
ନାହିଂ ॥
ଆପଣେ ଜୀଇଂଥିଲେ ମାଇପ ମିଳେ ସିନା ।
ଭାଇ ଉପୁଜଇ ବାପ ଥିଲେ ନିନା ॥
କେଣେ ବିଧାତାରେ ଲାଗିଲୁ ମୋତ ବାଦ ।
ରାଜ୍ୟ ଭ୍ରଷ୍ଟ କରି ରଖିଲୁ ବନ ମଧ ॥୧୦
ତହୁଂ ପୁଣ ଘରଣୀକି ଆନ ଘେନିଗଲା ।
ଏବେ ସାଖା ସହୋଦର ଭାଇ ମୋର ମଲା ॥
ଅଇଲୁ ତିନି ଜଣ ଦୁଇଜଣ ଛାଡ଼ିଗଲେ ।
ଅଗାଧ ଜଳେ ମୋର ଭେଳା ବୁଡ଼ାଇଲେ ॥

ସୁକୁମାର ଶରୀରେ ବିଷମ ଶର ଫୁଟି ।
ଏଡ଼େ ଭାରା କେମନ୍ତେ ସହିଲା ଦେହ
ଗୋଟି ॥
ଛାଇ ଜାଣି ମୋତେ ସେବା କରୁଥାଇ ।
ଅଗମ୍ୟ ବନକୁରେ ମୃଗ ମାରି ଯାଇ ॥
ଚଉଦ ବରଷ ବଞ୍ଚିଲି ଘୋର ବନେ ।
ଦିନେହେଂ ଦୁଃଖ ତୁ ନ ମଣିଲୁ ମନେ ॥୨୦
ସୀତା ହଜିଲା ଦିନୁଂ ହୋଇଲି ମୁଂ ବାଇ ।
ତୁ ପୁଣି ଅନେକ ତିଆରୁ ମୋତେ ଭାଇ ॥
ତୋହୋର ପ୍ରବୋଧନ୍ତେ ଛାଡ଼ିଲି ମୁହିଂ
ଚିନ୍ତା ।
ତୋତେ ଦେଖି ମୁରୁଛିଲି ଆବରହିଂ ଭ୍ରାଥା ॥
ଦୁଃଖକୁ ଦୁଃଖୀ ତୁ ସୁଖକୁ ଉପଗାରୀ ।
ଅଯୋଧ୍ୟା କଟକେ ତୁ ଅଟୁ ଅଧିକାରୀ ॥
ସାନୁଜ ଶତ୍ରୁଘନ ପାଳୁଅଛି ପୃଥ୍ୱୀ ।
ନିରେଖ ଜନ ପ୍ରାୟେରେ ପ୍ରାଣ ଦେଲୁ ଏଥି ॥
ଛେଦ ଭେଦ ମୋର ନ ଜାଣୁରେ ଭାଇ ।
ମୁହିଂ ନ ଜାଣିଲେ ଦେଉ ଯେ ଶିଖାଇ ॥୩୦
ସୀତା ସ୍ୱୟେମ୍ବର କାଳେ ଯେ କହିଲୁ ।
ଶିର ନୁଆଇଂ ଧନୁ ନ ଧର ବୋଇଲୁ ॥
ରାଜାମାନେ ମିଳିଅଛନ୍ତି ସମସ୍ତ ।
ନମସ୍କାର ପ୍ରାୟେ ଦିଶିବ ରଘୁନାଥ ॥
ତାହା ଶୁଣି ନଇଂ ଧନୁ ମୁଂ ନ ଧରଇ ।
କଥାଏ ଲାଗିଲେ ତୋତେ ମୁଂ ପଚାରଇ ॥
ସୀତା ହଜିଲା ଦିନ ଧଇଲା କୋଦଣ୍ଡ ।
ଆଖି ଥାଉଂ ଥାଉଂ ହୋଇଲି ମୁଂ ଅନ୍ଧ ॥
ସୂପଲେଖାର ତୁ କାଟିଲୁ ନାକ କାନ ।
ହେଲେ ନାଶିଲୁ ଖରଦୂଷଣ ଚଉଦ
ସସ୍ତ୍ରଗଣ ॥୪୦
ଇନ୍ଦ୍ରଜିତ ପ୍ରାୟେ କ୍ଷତ୍ରୀକି ମାଇଲୁ ।
ଦେବତାମାନଙ୍କୁ ରେ ଅଭଏ ବର ଦେଲୁ ॥
ଏବେ ଜୀବନ ହାରିଲୁ ରାବଣର ହାତେ ।
ମୁହିଂ ଦେହ ଆଉ ଧରିବି କେମନ୍ତେ ॥
ତୋତେ ନ ଦେଖିଣ ମୁଂ ସବୁ ପାଶୋରିଲି ।
ରାବଣର ତହିଂ ଏବେ ବୁଧି ହରାଇଲି ॥
କେ ମୋତେ ସେବା କରିବ ଦିବାନିଶି ।

କେ ମୋତେ ଜଗିବରେ ଉଜାଗରେ ବସି ॥
ମନ ଜାଣିଣ କେ ପରଷିବ ବାବୁ ।
ତୋହୋର ସୁଖେ ଥିଲେ ସମ୍ପଦ ମୋର ସବୁ ॥୫୦
ଦିଗପାଳ ସମାନେ ଅଟଇ ମୋର ଭାଇ ।
ଦେବାସୁରନରେ ଜିଣନ୍ତା କେହି ନାହିଁ ॥
ଲକ୍ଷଣ ପରିପୂରିତ ନାହିଁ ତୋତେ ମୃତ୍ୟୁ ।
ବିଶ୍ୱାମିତ୍ର ମୁନି ମୋତେ କହିଛନ୍ତି ହେତୁ ॥
ତାହାଙ୍କର ବୋଲ କି ହୋଇବାକ ଆନ ।
କିମ୍ପାଇଂ ଏ ଶକତି ମାଇଲା ଦଶାନନ ॥
ତୋହୋର ଛାମୁରେ ନ ମଲିରେ ମୁହିଂ ।
ତୋତେ ହଇରାଣ ଥିବି କିମ୍ପା ଜୀଇଂ ॥
ସୁଷେଣଙ୍କୁ ଚାହିଂ ବୋଲନ୍ତି ରାମ ରାଏ ।
ଲକ୍ଷ୍ମଣ ବିହୁନେ ମୁଂ ମରିବି ନିଶ୍ଚଏ ॥୬୦
ଆଉ ଜୀଇଂଥାଇଂ ଚାହିଂବି କାହା ମୁଖ ।
ତାହାର ବିହୁନେ ମୋତେ ସବୁ କଥା ଦୁଃଖ ॥
ସୁଷେଣ ବୋଇଲେ ଦେବ ନମରଇ ତୋର ଭାଇ ।
ମରିବା ପରାଏ ତ ନ ଦିଶେ ଏହା ଦେହୀ ॥
ପ୍ରସନ୍ନ ବଦନ ନୟନ ଅଛି ବୁଜି ।
ଡାଳିମ୍ବ କୁସୁମ ପ୍ରାଏ ଅଧର ବିରାଜି ॥
ଟେକ ଶ୍ରବଣ ନାସିକା କଠିଣ ।
ନିବିଡ଼ ମଷା ଦିଶଇ ଘଟଣ ॥
ଅଙ୍ଗୁଳି ଫୁଟଇ ବହଇ ନିଃଶ୍ୱାସ ।
ସର୍ବାଙ୍ଗ ସୁନ୍ଦର ସୁମିତ୍ରାର ଶିଷ ॥୭୦
ଦେଖ ଏହାର ସୁଖ ଦୁଃଖ ନାହିଂ କିଛି ।
ଶ୍ରୀରାମ ବୋଇଲେ ଏକା ଅବିଗୁଣେ ଅଛି ॥
ଦକ୍ଷିଣ ଭୁଜରେ ନ ବହେ ନାଟିକା ।
ତେଣେ ସେ ମନକୁ ମୋର ହୋ ନାଗଇ ଟାଟକା ॥
ସୁଷେଣ ବୋଇଲେ ଦେବ ତହିଂକି ନ ଡର ।
ତ୍ରାସ ମରଣମାନ ଏସନେକ ବେଭାର ॥
ଶସ୍ତ୍ରଘାତେ ବଜ୍ରଘାତେ ଅଚେତ ପଡ଼ିବା ।
ଅପମାନ କଥା ଶୁଣି ଅଗ୍ୟାନ ହୋଇବା ॥
କି ଅବା ଦଣ୍ଡିବାକୁ ବସାଇବ ନେଇ ।
ସର୍ପ ବିଘାତକକୁ କି ଶୀତୁଳି ଥିବ ଛୁଇଂ ॥୮୦
ଅଳପ ଦୋଷେ ତ ନୁହଇ ଅଗିଆନ ।
କାକ ତାଳୁକା ଲୋକଙ୍କ ଯେମନ୍ତ ବିଧାନ ॥
ନାଡ଼ୀ ନ ଚଳଇ ଜୀବନ ଥାଇ ରହିଂ ।
କ୍ଷଣକ୍ଷଣକେ ପୁଣ ଉଠନ୍ତି ଚିଆଇଂ ॥
ଯେହାର ଦେହରେ ଦୋଷ ନାହିଂ କିଛି ।
ଯେକା ମାତ୍ର ଅବିଗୁଣ ଗୋଟିଯେ ମାତ୍ର ଅଛି ॥
ବୁକୁ ଫୁଟିକି ଫୁଟିଅଛି ଶସ୍ତ୍ର ।
ଯେଥକୁ ଭ୍ରାନ୍ତି ମୁଂ କରଇ ରଘୁଶିଷ ॥
ଶୁଣି ଶ୍ରୀରାମ ଯେ ଅନାଇଲେ ତାହା ।
ଅନ୍ଧାର ବେଳେ ଜାଣି ନ ପାରିଲେ ରଘୁନାହା ॥୯୦
ବେଳ ଅସ୍ତମାନେ ଶକତି ମାରିଗଲା ।
କାନ୍ଦୁ କାନ୍ଦୁ ରାତ୍ର ପହରେ ହୋଇଲା ॥
ଶ୍ରୀରାମ ବୋଇଲେ ହେ ଦିଉଡ଼ି ଜାଳି ଆଣ ।
ଦେଖିବା ଶକତିର କେତେକ ବରଣ ॥
ତତକ୍ଷଣେ ସଜଳସ ଗୁଣ୍ଡି ହୁଳା କଲେ ।
ରଘୁନାଥ ଛାମୁରେ ନେଇ ଦେଖାଇଲେ ॥
ଆଲୁଯେ ତରାସେ ଦେଖିଲେ ଶରଘାତ ।
ଚାହିଂଲେ ବୁକୁର ମଧେ ମହାଘାତ ॥
ଶଗଡ଼ ଚକ ମଧରେ ଅଖ ଚଳଇ ଯେହ୍ନେ ।
ଯେଣି ତେଣିକି ଦିଶୁଅଛି ତେହ୍ନେ ॥୧୦୦
ଇଂଅଳା ପିଅଂଳା ଯେ ଶିଷୁମୁନା ନାଡ଼ି ।
ଭିନ ଭିନ ହୋଇ ଦିଶୁଅଛି ବାରି ॥
କଳା ଶୁକଳ ପିଳୋହି ପିଉଜାଣି ।
ତଣ୍ଡି ଘଣ୍ଟିକା ଦେଖିଲେ ରଘୁମଣି ॥
ମଳି ମଳି ବୋଲି ବୁକୁରେ କୋଡ଼ି ହୁଅନ୍ତି ।
ଦୁଇ ଚକ୍ଷୁ ଘେନି ନିରୋପି ଚାହାନ୍ତି ॥
ଦିଶୁଅଛି ଅନ୍ତ ପ୍ରାଣଲିଙ୍ଗ ଗୋଟି ।
ଘାଆ ମୁଖରେ ରକତ ବହେ ଫୁଟି ଫୁଟି ॥
ଶ୍ରୀରାମ ବୋଇଲେ ହୋ ମଲା ମୋହୋର ଭାଇଂ ।
ଯେକା ଯେହା ମୋତେ କଳାକ କଯେକୟା ଆଇ ॥୧୦
ମନ୍ଥେଡ଼ିର ବୋଲେ ଧର୍ମକୁ ନ ଡରିଲା ।
ହସ୍ତେ ନ ମାରିଣ ଅଖଡ଼େ ନାଶ କଲା ॥
ଭାଇର କଷ୍ଟ ମୁଂ ନ ପାରଇ ଦେଖି ।
ଦୁଇଜଣ ଦୁଇ ମୁଂ ହେଲି ନିରିମାଖି ॥
ଆଉ କି ଲକ୍ଷଣ ଜୀଇଂବ ଯେତେ ଘାୟେ ।
ପୋତୁ ଯେ ଜୀବନ ଅଛି କିଂପା ଦେହେ ॥
ଶ୍ରୀରାମ ରୋଦନ୍ତେ ସେ ରୋଦନ୍ତି ବିଭୀଷେଣ ।
କାନ୍ଦନ୍ତି ସୁଗ୍ରୀବର ଅଙ୍ଗଦ ସୁଷେଣ ॥
ଜମ୍ବେବ ଶତବାଳି ଗନ୍ଧମାଦନ ।
ନଳନୀଳ ସମ୍ପାତି ତାରାକ୍ଷ ସୁଶୋଦନ ॥୨୦
ଗବୟେ ଗବାକ୍ଷ ମହୀନ୍ଦ୍ର ଦୁବିନ୍ଦ ।
ଦଧିମୁଖ ବାଳିମୁଖ କାଳିମୁଖ କୁମୁଦ ॥
କଂଚଣ କାମୋଦ ବିବିଧ ଶତବଳ ।
ଶଉରୀ ସେନାପତି କେଶରୀ ପନଶିଳ ॥
ଡାଳିମ୍ବ ଋଷଭ କେଶରୀ ଚନ୍ଦନ ।
ସାରାସ ପାରାସ କାଳିମୁଖ ପବନ ॥
ଋକ୍ଷ କପି ବଳ ରୋଦନ କରନ୍ତି ।
ଶ୍ରୀରାମ ଲକ୍ଷଣଙ୍କୁ ବେଢ଼ିଣ ଅଛନ୍ତି ॥
ଶୋକ ସମ୍ଭାଳିଣ ସୁଷେଣ ଜଣାଇଲା ।
ଭୋ ରାମ ରୋଦନ ତୁ ନକର ବୋଇଲା ॥୩୦
ନ ମରଇ ଭାଇ ତୋର ଜୀଇବ ନିଅତ ।
ଯେବେଣ ମନ୍ତ୍ରପୋଥି ଅଛି ମୋର ହାଥ ॥
ଯେହାର ପରସାଦେ ଜୀଇଁବ ଲକ୍ଷଣ ।
ନିଦରୁ ଉଠିଲା ପ୍ରାୟେ ଉଠିବ ଯେହିକ୍ଷଣ ॥
ଯେତେ ବୋଲି ପୋଥି ଫେଡ଼ି ପତ୍ରକୁ ଚାହିଂ ।
ଦିଉଡ଼ିର ତ୍ରାସକୁ ନେଇଣ ଅନାଇ ॥
ପୁଡ଼ାକୁ ପୁଡ଼ା ପଢ଼ିଣ ଲେଉଟାଇଂ ।
ପୁଡ଼ାକର ଅନ୍ତରେ ଲୋଡ଼ିଲା କଥା ପାଇଂ ॥
ଯେବଣ ଅସ୍ତ୍ରକୁ ଯେବଣ ମଉଷୋଧି ।
ସାମବେଦରୁ ଯାହା ଉଧାରିଅଛି ସୋଧି ॥୪୦
ବ୍ରହ୍ମ ଶକତି କି ଯେବଣ ହିଂ ରସ ।
ପଢ଼ିଣ ସୁଷେଣ ହୋଇଲା ହରଷ ॥
ଶ୍ରୀରାମଙ୍କୁ ଚାହିଂ ବୋଇଲା ଗୋସାଇଂ ।
ଲକ୍ଷଣ ଘାଆକୁ ମଉଷୋଧି ଅଛି ଯହିଂ ॥

ଗନ୍ଧମାଦନ ନାମେଣ ଗିରିବର ।
ଛୟାଶୀ ସହସ୍ର ଯୋଜନ ଅଟଇ ସେହୁ
ଦୂର ॥
ତହିଂର ପୂର୍ବ ଭାଗେ ଉଦୟଗିରିର କତି ।
ଦକ୍ଷିଣ ଆଡ଼େ ସିଂଘ ପରାୟେକ କୋଡି ॥
ତହିଂର ଉପରେ ଅଛଇ ତରୁବର ।
ପାଞ୍ଚ ଯୋଜନ ସେ ଅଟଇ ଶିଖର ॥୫୦
ପଚାଶ କୋଶ ଓସାର ପର୍ବତ ଗୋଟି ।
ମଉଷୋଧି ତହିଂ ଯତନେ ରଞ୍ଚିଲା
ପରମେଷ୍ଠୀ ॥
ବ୍ରହ୍ମଲୋକକୁ ସେ ତହିଂ ଅଛି ବାଟ ।
ନନ୍ଦନବନକୁ ସେ ଅଟଇ ମୁରାଟ ॥
ପ୍ରଳୟକାଳରେ ସେ ନ ଭାଙ୍ଗଇ ତୋଟା ।
ବ୍ରହ୍ମାଣ୍ଡଯାକ ସେ ସୁଖ ଥାନ ଗୋଟା ॥
ଅସର ପାଇଲେ ଧାତା ତହିଂ ଆସି ବସଇଂ ।
ସବୁ ଦେବତା ଘେନି ଚିନ୍ତାଜ୍ୱର ନାଶଇ ॥
ଅମୃତମୟେ ଫଳ ଭୁଂଜନ୍ତି ଦେବଗଣ ।
ଅଛନ୍ତି ଘରମାନେ ରତ୍ନ ନିରିବାଣ ॥୬୦
ବ୍ରହ୍ମା ବାହୁଡ଼ିଲେ ଗୋଟିୟେ ନ ରହନ୍ତି ।
ବାବୁ ସେ ବିପୁନ୍ୟ ବନ ବାରସ୍ୱତୀ ॥
ବ୍ରହ୍ମଲୋକକୁ ସେ ବିପୁନ୍ୟଯାକ ଦିଶଇଂ ।
ଶତ୍ରୁ ସାଧିବାକୁ ଧାତା ତହିଂକି ଆସଇଂ ॥
ତହିଂ ଥାଇ ଚାହିଂଲେ ଦିଶଇ ବ୍ରହ୍ମପୁର ।
ଅତି ଯତନେ ତାହା ସଞ୍ଚିଲା ବେଦବର ॥
ତାହାକୁ ଗନ୍ଧର୍ବ ତିନି କୋଟି ରଖିଥାନ୍ତି ।
ଦେବାସୁର ନରେ ପଶି ନ ଦିଅନ୍ତି ॥
ପଚାଶ ଲକ୍ଷ ସନ୍ୟ ଦ୍ୱାରେ ଛନ୍ତି ରହିଂ ।
ଆନଲୋକ ହୋଇଲେ ଯୁଝନ୍ତି
ପରିଘାଇଂ ॥୭୦
ତୋଟାର ଭିତରେ ସବୁହୁଂ ବଡ଼ ଗଛ ।
ଶୁଦ୍ଧ ସୁବର୍ଣ୍ଣ ଜାଣି ଦିଶଇ ପ୍ରତକ୍ଷ ॥
ଲୋହିତ ବର୍ଣ୍ଣ ପତ୍ର ଲୋଚିୟେ ଯେବେ
ଆଣି ।
ତାହାକୁ ସେ ବୋଲି ବିଶଲ୍ୟା କରଣୀ ॥
ବ୍ରହ୍ମଶକତି କି ଯେବଣ ମଉଷୋଧି ।
ଯେସନେକ ସନମତେ ଦେବତାଙ୍କର ବୁଧି ॥

ରାତ୍ର ନ ପାହୁଣ ଯେବେ ଆଣିତ ପାରି ।
ବାସିଘାଆ ହୋଇଲେ ଭରସି ନପାରି ॥
ବିଷମ ଶକତିର ଘାତ ଯେ ଦୃଭାର ।
ରାତ୍ର ପାହିଲେ ଲକ୍ଷଣ ନ ବ୍ରତଇ
ରଘୁବୀର ॥୮୦
ବୁକୁ ପାଚିବ ଅରୁଣ ହେଲେ ଉଦେ ।
ରଣଗୋଳ ହୋଇଲେ ହୋଇବ
ପରମାଦେ ॥
ମନେ ମନେ ବିଚାରି କହିଲେ ସୁଷେଣକୁ ।
ତୁ ମୋତେ ମନ୍ତ୍ରୀ ହୋ କହିଲୁ ଯିବାକୁ ॥
ଛୟାଶୀ ସହସ୍ର ଯୋଜନ ଅଟଇ ଯେବଣ
ଧୂର ।
ରାତ୍ର ନପାହୁ ଯାଇ ଆସିବ କେବଣ ବୀର ॥
ନୋହିଲେ ଲକ୍ଷଣ ରାତ୍ର ପାହିଲେ ନ
ବ୍ରତଇଂ ।
ଯେସନେକ ବିଧାତା ମୋର କପାଳେ
ଲେଖଇଂ ॥
ଯେହା ଶୁଣିଣ ଦୁଗୁଣ ଶୋକ ଜାତ ।
ଆଉ କି ପ୍ରାଣ ପାଇବ ମୋର ଭ୍ରାଥ ॥୯୦
ସୁଷେଣ ବୋଇଲେ ଯେହା କିମ୍ପା ବୋଲୁ ।
ଦୂର୍ଗମ ଥାନକୁ ଯେ ହନୁମତକୁ ମେଲୁ ॥
ଯେବେ କିମ୍ପା ବିସ୍ମୟେ ହୋଇଣ ପଚାରୁ ।
ପବନ ତନୟେ ଅଟଇ ମହାମେରୁ ॥
ସେହି ସେ ପାରିବ ଆନକୁ ଅଗୋଚର ।
ନକର ବିଳମ୍ବ ଦେବ ପଥ ବହୁତ ଦୂର ॥
ଶୁଣିଣ ଶ୍ରୀରାମ ହୋଇଲେ ମଉନ ।
ଲାଜେ ନ ବୋଲନ୍ତି ଭାଳନ୍ତି ମନେ ମନ ॥
ଯେଡ଼େ ଦୂର୍ଗମ ସ୍ଥାନକୁ ପେଷିବି
କେମନ୍ତେ ।
ଅନ୍ନ ବସ୍ତ୍ର ନ ଖାଇ ସେବା କରନ୍ତି
ମୋତେ ॥୧୦୦
ସବୁ ଝେଞ୍ଜକାତ ତାହାକୁ ଲାଗଇଂ ।
ସୀତ୍ୟାକୁ ଖୋଜିଲା ଯେ ସମୋଦ୍ର ଗଲା
ଡେଇଂ ॥
ଲଙ୍କା ପୋଡ଼ିଣ ଅକ୍ଷୟ କୁମାରକୁ ମାଇଲା ।
ପର୍ବତ ମୁଣ୍ଡେ ବହି ସେତୁବନ୍ଧ କଲା ॥

ଯୁଦ୍ଧକୁ ଆଗୁସାର ସେହି ଯେ ଅଟଇଂ ।
ଲେଙ୍କା ଲମ୍ଫନ୍ତା ତାହା ତହୁଂ କେହି ନାହିଂ ॥
ହେମଗିରି ପର୍ବତୁ ଆଣିଲା ମଉଷୋଧି ।
ତେଣୁ କ୍ଷୟେ ଗଲା ମୋହୋର ବ୍ରହ୍ମ ଶହସ୍ର
ବ୍ୟାଧି ॥
ରାତ୍ର ଉଜାଗରେ ସେ ବୁଲଇ ମୋର ଥାଠ ।
ଯେ ମୋହୋର ଥାଠକୁ ସେହି ସେ
କବାଟ ॥୧୦
ଯେବେ ଯେତେ ଧୂରକୁ କେମନ୍ତେ
ବରଗିବି ।
ନୋହିଲେ ଯେହିକ୍ଷଣି ଭାଇକି ନ ପାଇବି ॥
ଓହୋ ସଙ୍କଟ କଥା ଭାଳନ୍ତି ରାମ ରାୟେ ।
ସଇନି ନିଶବଦ ସମାର୍ଜନା କୟେ ॥
କର ଦୁଇ ଯୋଡ଼ି ବୋଲଇ ହନୁମତ ।
ମୋତେ ଦୟା ନାହିଂକି ଜାନେକୀର କାନ୍ତ ॥
ଲକ୍ଷଣ ଭାଇ ତୋର ହୋଇଛି ଶକ୍ତିଭେଦ ।
ଯେହାଉଂ କି ବଡ଼ ହୋଇଛି ପରମାଦ ॥
କିମ୍ପାଇ ଯାଅ ବୋଲି ନଦେଉ ମୋତେ
ଆଗ୍ୟାଂ ।
ତିନି ଭୁବିକିତ ତୋହୋର ପ୍ରତଗ୍ୟାଂ ॥୨୦
ଗନ୍ଧମାର୍ଦ୍ଦନ ପର୍ବତ ଅଟଇ କେତେ ଧୂର ।
ଯେହିକ୍ଷଣି ମଉଷୋଧି ଆଣିମି ରଘୁବୀର ॥
ତୋହୋର ପେଷିଲେ ବ୍ରହ୍ମାଣ୍ଡଯାକ ବୁଲି
ପାରଇଂ ।
ବ୍ରହ୍ମା ରଦ୍ର ଇନ୍ଦ୍ର କାହାକୁ ନ ଡରଇଂ ॥
ଦେସି ଆଗ୍ୟାଂ ମୋତେ ମୁଂ ନ ପାରଇ
ରହିଂ ।
ଲକ୍ଷଣ କଷ୍ଟ ଦେଖି ବିକଳ ମୋର ଦେହୀ ॥
ଶୁଣିଣ ଶ୍ରୀରାମ ହୋଇଲେ ଉଷତ ।
ସେନା ଯୂଥପତି ସଇନି ସମସ୍ତ ॥
ସାଧୁ ସାଧୁ ବୋଲି ପ୍ରଶଂସା କରନ୍ତି ।
ସୁଗ୍ରୀ ବିଭୀଷେଣ ବହୁତ ତିଆରନ୍ତି ॥୩୦
ଯାଅ ବାବୁ ମଉଷୋଧି ବେଗେ
ଘେନିଆସ ।
ଶତ୍ରୁମୁଖେ ଯେମନ୍ତେ ନ ପାଇ ଯେ ହାସ ॥
ହସଇ ମାରୁତି ତାହାଙ୍କର ବୋଲ ଶୁଣି ।

ଆଗହୁଁ କହିଲେ ହୋଇବ କିସ ପୁଣି ॥
ଯାଇ ଆସି ପାରଇ କରଇ ଯେବେ କାର୍ଯ୍ୟ ।
ଶତ୍ରୁମୁଖେ ତେବେ ନ ପାଇବା ଲାଜ ॥
ଯେତେବୋଲି ଶ୍ରୀରାମଙ୍କୁ ନମସ୍କାର କଲା ।
ପଚିଶ ଯୋଜନ ଉପରକୁ ଉଡ଼ିଗଲା ॥
ଉତ୍ତର ଦିଗକୁ କଲାକ ଗମନ ।
ଯୋଗବେଳ ଘେନି ଚଳଇ ଘନଘନ ॥୪୦
ରାବଣ ଯେ ଲକ୍ଷଣକୁ ଶକତି ମାରିଗଲା ।
ଶ୍ରୀରାମ ଯୁଝନ୍ତେ ଭାଗି ପଳାଇଲା ॥
ନିଜ ନବରେ ହୋଇଲାକ ସମ୍ଭାଳି ।
ଜୟେ କଲି ବୋଲି ମନେ ମନେ ଭାଳି ॥
ଚାର ପମନ୍ତିଲା ଶ୍ରୀରାମର ପାଶ ।
ଲକ୍ଷଣ ଜୀଇବା ମରିବା ଜାଣି ଆସ ॥
ଶୁଣି ଦେଶାଉର ଅଇଲା ତତ୍‌ପତି ।
ଗଡ଼ରୁ ବାହାର ହୋଇ ଧଇଲା କପି ମୂର୍ତି ॥
ରିକ୍ଷ ବାନରଙ୍କ ଭିତରେ ପଶିଲା ।
ହନୁମତ ଯିବାର ଜାଣି ବାହୁଡ଼ି ଅଇଲା ॥୫୦
ଦଶଗ୍ରୀବର ଆଗରେ ଜଣାଇଲା ଯାଇଂ ।
ଶୁଣସି ରାବଣ ତୁ ମନ୍ଦୋଦରୀର ସାଇଂ ॥
ଲକ୍ଷଣକୁ ଶକତି ମାରି ଯେ ଅଇଲୁ ।
ଶତ୍ରୁର ମୁଖେ ଯେ କାଳି ଲଗାଇଲୁ ॥
ରାମର ବିକଳ କହିଲେ ନସରି ।
ଅନେକ ରୋଦନ କଲା ଭାଇକି କୋଳ
କରି ॥
ବୁକୁରୁ ଶକତି କେହି କାଢ଼ି ନ ପାରିଲେ ।
ହନୁ ଅଙ୍ଗଦ ଯେ ଭାର୍ଜନ ନୋହିଲେ ॥
ଶ୍ରୀରାମ ଉପାଡ଼ିଲେ ବାମ କରେ ଧରି ।
ମହିମା ପଣେ ଦେବ ଶ୍ରୀରାମ ଉପାଡ଼ି ॥୬୦
ସୁଷେଣ ନାମେଣ ଅଛଇ ଯେକ ବେଯ ।
ସେ ବୋଇଲା ଇକ୍ଷଣକୁ ମୁଂ ଜୀଆଇବି
ଆଜ ॥
ଗନ୍ଧମାର୍ଦ୍ଦନ ପର୍ବତେ ଅଛି ମଉଷୋଧି ।
ପଶି ଆଣିମାକୁ ହନୁମତ ତହିଂ ସେ ଯୋଧି ॥
ଶୁଣିଣ ଶ୍ରୀରାମ ଉଷତ ହୋଇଲେ ।
ପବନ ପୁତ୍ରକୁ ରାଜଣ ବରଗିଲେ ॥
ଓଳେଗ ମେଲାଇ ବିକ୍ରମିଣ ଗଲା ଗଗନେ ।
ଯେହିକ୍ଷଣି ଦେଖି ଅଇଲି ଦଶାନନେ ॥
ଶୁଣି ଲଙ୍କପତି ହୋଇଲା ଆରତ ।
କାଳନଉମି ନାମେ ଯେକଇ ଦଇତ ॥୭୦
ଚାରିମୁଣ୍ଡ ଯାର ଅଷ୍ଟ ଯେ ଲୋଚନ ।
ଦୁଇ ଚରଣ ଆଠ ଭୁଜ ଭିନ୍ନ ଭିନ୍ନ ॥
ତାହାକୁ ହକାରି ବୋଇଲା ଲଙ୍କସାଇଂ ।
ଗନ୍ଧମାର୍ଦ୍ଦନ ପର୍ବତକୁ ହନୁମତ ଯାଇଂ ॥
ମଉଷୋଧି ଆଣି ଲକ୍ଷଣକୁ ଜୀଆଇବ ।
ତୁମ୍ଭର କି ବୁଧି ଅଛି ତାହା ଭିଆଇବ ॥
ଗନ୍ଧମାର୍ଦ୍ଦନକୁ ପାରିବୁ କି ଯାଇଂ ।
ତହିଂର ସନ୍ନିଧେ ଯେକ ଖଣ୍ଡେକ ଅଛଇଂ ॥
ସ୍ୱର୍ଗର ଅପକ୍ଷରୀ କୁମ୍ଭୀର ରୂପ ଧରି ।
ସେ ଜଳ ଭିତରେ ଅଛି ବାସ କରି ॥୮୦
ଯେ ତହିଂ ପଶଇ ସେ ତହିଂ ପ୍ରାଣ ହରାଇଂ ।
ବ୍ରହ୍ମା ରୁଦ୍ର ହୋଇଲେ ହେଂ ଧରଇ ॥
ପାରିବୁ କି ଉପାୟେ କରି ଦେବଇ
ବଧାଇଂ ।
ବିଳମ୍ବ ନକର ଯାଅସି ବେଗ ହୋଇଂ ॥
ଶୁଣିଣ କାଳନଉମି ୟୋଳେଗ
ମେଲାଇଲା ।
ବିକ୍ରମ ଗତି ହୋଇ ଗଗନ ମାର୍ଗେ ଗଲା ॥
ହନୁମନ୍ତହୁଂ ଆଗ ଗଲାକ ରାକ୍ଷସ ।
ନିଜ ତନୁ ଛାଡ଼ି ହୋଇଲା ଯତି ବେଶ ॥
ଗନ୍ଧମାର୍ଦ୍ଦନ ନଦୀର ନିକଟେ ।
ଦେବଥାନେକ ଯେ ରଚିଲା କପଟେ ॥୯୦
ସୁବର୍ଣ୍ଣର ଦେଉଳ ସୁବର୍ଣ୍ଣର ମଣ୍ଡୋପ ।
ଉପରେ ଟାଣିଲା ଅଛଇ ଚନ୍ଦ୍ରାତପ ॥
ଶଶିଭୂଷଣ ନାମେ ଯେକଇ ଶଙ୍କର ।
ଆପଣେ ମାୟାରେ ହୋଇଲା ଜଟିଳ ॥
ନନ୍ଦି ମହାକାଳ ବିଘ୍ନରାଜ ଥୋଇଂ ।
ଗଙ୍ଗା କାର୍ତ୍ତିକେଶ୍ୱର କତିରେ ବସାଇଂ ॥
ଅପୂର୍ବ ବିପୁନ୍ୟେ ରଚିଂଲା ପୁଷ୍ୟ ଫଳ ।
ଦେବଥାନେ ଯେହ୍ନେ ଦିଶଇ ନିର୍ମଳ ॥
ବାଘଛାଲ ମାଡ଼ି ବିଭୂତି ଭୂଷଣ ।
କର୍ଣ୍ଣେଣ ତମ୍ଭା କୁଣ୍ଡଳ ବିଦ୍ୟମାନ ॥୧୦୦
କକ୍ଷା କଉପୁନୀ ପାଖରେ ଆଧାରୀ ।
ସ୍ଫଟିକର ମାଳା ଗୋଟି ଘେନିଣ ଜପ କରି ॥
ବାମେଣ କମଣ୍ଡଳୁ ଦଖିଣେ ଛତାପିଢ଼ା
ଥୋଇଂ ।
ବସିଲାକ ଜଟାସୁର ମଉନବ୍ରତ ହୋଇଂ ॥
ଆଗେ ବନ୍ଧ ନଦୀ ବହଇ ଝର ଝର ।
ଗଣ୍ଡ ଭିତରେ ଯେ ଅଛଇ କୁମ୍ଭୀର ॥
ତହିଂ କୂଳେ ବସି ଜପଇ ଦଇତ ।
ହନୁମତ ଯାଆନ୍ତେ ଶୁଭଇ ବାହାନାଦ ॥
ବନଗିରି କମ୍ପିଲା ଯିବାର ଶବଦେ ।
ପକ୍ଷୀ ପ୍ରାୟେ ହନୁ ଗଗନେ ଉଡ଼ଇ
ହାଦେ ॥୧୦
ଜାଣି ଜଟାସୁର ଉପରକୁ ଚାହିଂ ।
ମନେ ବିଚାରଇ ହନୁମତ ଯେହି ॥
କର ଘେନି ରାଇଲା ଆସ ହୋ ମାରୁତି ।
କ୍ଷଣେକ ବିଶ୍ରାମ କର ମୋର କତି ॥
ଯେ ସରୋବରୁ ପାଣି ପିଅ ଶର୍ମ ଭାଜୁ ।
ବଳ ପାଇଣ ଯେ ରିପୁମାନ ଗଞ୍ଜୁ ॥
ଶୁଣିଲା ହନୁମନ୍ତ ମାୟା ଯତିର ବାଣୀ ।
ବିଚାରିଲା ମହାତ୍ମା ଅଟଇ ଧର୍ମ ପ୍ରାଣୀ ॥
ଯେକାନ୍ତ ଠାବେ ବସି ନିର୍ଦ୍ଦନ୍ଦେ ତପ
କରଇ ।
ପର ଉପଗାରୀ ଦୟା ଚିତ୍ତେ ଧରଇ ॥୨୦
ଯେ ମୋହୋର ଆସିବାର ଜାଣିଲା ଯୋଗ
ବଳେ ।
ମୁହିଂ ଶର୍ମ ପାଇବାର ଜାଣିଲା ଜଟିଳେ ॥
ହିତ ନିମନ୍ତେ ମୋତେ ରାବଇ ପୁଣ ପୁଣି ।
ବୋଲଇ ସରୋବରୁ ପିଅସି ପାଣି ॥
ଯେ ମୋହୋର ଯିବାର ଜାଣିଲା କେହ୍ନେ
ଋଷି ।
ସମାସ୍ୟା ହୋଇ ନଗଲେ ହୋଇବି ନା
ଦୋଷୀ ॥
ଯେତେ ବୋଲି ହନୁମନ୍ତ ନମସ୍କାର କଲା ।
ଭୋ ମୁନି ରହି ମୁଂ ନ ପାରଇ ବୋଇଲା ॥
ରାମ ରାବଣର ସମର ଘୋର କାଳେ ।
ଶକତି ଭେଦ ହୋଇଲା ସୁମେତ୍ରାର
ବାଳେ ॥୩୦

ମଉଷୋଧି ନେମାକୁ ପେଷିଛନ୍ତି ମୋତେ ।
ଗନ୍ଧମାର୍ଦ୍ଦନ ଗିରି ଦୂର ଅଛି କେତେ ? ॥
ରାତ୍ର ନପାହୁ ଅଇଲେ ସେ ହୋଇବାକ କାର୍ଯ୍ୟ ।
ଜାଣୁଟିକି ମହାତ୍ମା ସୁଗ୍ରୀବର ରାଜ ॥
ତାହାର ଭଗ୍ନୀର ପତି କେଶରୀ ନାମେ ବୀର ।
ମୋହୋର ନାମ ହନୁମନ୍ତ ମୁଂ ତାହାର କୁମର ॥
ଶ୍ରୀରାମ ସୁଗ୍ରୀ ଯେ ଅଟନ୍ତି ମଇତ୍ର ବେନି ।
ଯେ ବଚନ ଶୁଣି ବୋଇଲା ମହାମୁନି ॥
ଆସ ହନୁମତ ଦେଖ ତପ ସ୍ଥାନ ।
ନୋହିଲେ ପ୍ରାଭବ ହୋଇବ ପବନର ନାନ ॥୪୦
ଦେବତା ଗୁରୁଜନ ତପ ଥାନ ଯେତ ।
ଯେହାକୁ ଅବଗ୍ୟାଂ ତୁ ନକର କପିସୁତ ॥
ଯେ ଜଳେ ସ୍ନାନ କରି ଶଙ୍କରକୁ ଦେଖ ।
ଅନେକ ଜନ୍ମର ତୋର ପାପନ୍ତ ଉପେଖ ॥
ଆସ ଆସ ଆମ୍ଭ ଆଗ୍ୟାଂ କିମ୍ପା ଭାଗୁ ।
ତପୀ ବୋଲ ନକଲେ ପୁଣି ନରକକୁ ଯିବୁଂ ॥
ଯହିକି ଯାଉଅଛୁ ତାହି ନ ପାଇବୁ ।
ଆମ୍ଭର ବୋଲ ଯେବେ ଅବଗ୍ୟାଂ କରିବୁ ॥
ଯେସନେକ ଶୁଣି ହନୁମତ ଭୟେ କଲା ।
ଗଗନୁଂ ଖସି ଯାଇଂ ଭୂମିରେ ମିଳିଲା ॥୫୦
କର ଦୁଇ ଯୋଡ଼ି ବୋଲଇ କହ କିସ ।
ଯତି ବୋଇଲା ତୁ ଯେହି ଜଳେ ପଶ ॥
ସ୍ନାହାନ କରି ଆସି ଦେଖ ଶଙ୍କରକୁ ।
ଯେ ଦେହ ଆଷ୍ୟ ନଥାଉ ଯମକୁ ॥
ଶୁଣି ହନୁମତ ପଶିଲା ଗନ୍ଧ ନଦୀ ।
ପାତାଳ ପରିଯନ୍ତେ ସେ ଗଣ୍ଡୁକୀ ଅଛି ଭେଦି ॥
ସ୍ନାହାନ କରନ୍ତେ ଧଇଲାକ କୁମ୍ଭୀରିଣୀ ।
କ୍ଷୁଧା ମତେ ଧଇଂଲା ଆହାର ମତ ଜାଣି ॥
ହନୁମତର ଚରଣ କାମୋଡ଼ି ଘେନି ଗଲା ।
ଜଳେ ବୁଡ଼ାବନ୍ତେ ମାରୁତି ଜାଣିଲା ॥୬୦

ଆପଣେ ବୁଡ଼ିଣ ଧଇଲା ତାକୁ ଆଣ୍ଟେ ।
ଉଛୁଡ଼ି ଆଣିଣ ପକାଇଲା ଜଳ ତଟେ ॥
ଦୁଇଗୋଡ଼ ଧରି ଚିରି ପକାଇଲା ।
ବୁକୁ ବିଦାରିଣ ଅନ୍ତ ବାହାର କଲା ॥
ମଲା କୁମ୍ଭୀରିଣୀ ଘୋର ରାବ କରି ।
ପାର୍ଥିବ ଦେହ ଛାଡ଼ି ନିଜ ତନୁ ଧରି ॥
ଦେଖିଲା କୁମାରୀ ରୂପେ ନିରିଜିତା ।
ରୂପ ଯଉବନେ ସମ୍ପୂର୍ଣ୍ଣେ ବନିତା ॥
ଚନ୍ଦ୍ରବଦନୀ କୁରଙ୍ଗୀ ଜାଣି ଆଖି ।
ହନୁମତ ଆଶ୍ରିଯ ହୋଇଲା ତାହା ଦେଖି ॥୭୦
କନ୍ୟା ବୋଇଲା ତୁ ଶୁଣସି ମାରୁତି ।
ମୁହିଂ ଗନ୍ଧବାଳିକା ଦକ୍ଷର ଦୋହିତି ॥
ବ୍ରହ୍ମା ଯେ ଗୟାରେ ତପ କରୁଥିଲେ ।
ମକର ମାସେ ପ୍ରଜାପତି ସ୍ନାହାନ କରିଗଲେ ॥
ସେ ପୁଣ୍ୟ ନଦୀ କି ମୁଂ ସ୍ନାହାନ କରିଗଲି ।
ପାଣିରେ ଧରି ମୁଂ ଧାତାକୁ ଉଛୁଡ଼ିଲି ॥
ଜାଣି ପିତାମହ ମୋତେ ଶାପ୍ୟ ଦେଲା ।
ଯାଅସି ଜଳରେ ତୁ କୁମ୍ଭୀରୀ ହୁଅସି ବୋଇଲା ॥
ଶୁଣି କରିଣ ମୁଂ କମ୍ପିଲି ଥରହର ।
ଜଳରୁ ବାହାର ହୋଇଣ ମୁଂ ଯୋଡ଼ିଲି ବେନିକର ॥୮୦
ଅନେକ କାର୍ପୁଣ୍ୟ ହୋଇଣ ତୁଷ୍ଟି କଲି ।
ଶାପ୍ୟକୁ ପ୍ରତିକାର ଅନୁଗ୍ରହ ମାଗିଲି ॥
ବ୍ରହ୍ମା ବୋଇଲେ ତୁ କଲୁ ମନ୍ଦକୃତ ।
ତପ ଭାଙ୍ଗିଲୁ ମୋହୋର ଅରଜିଲୁ ଦୂଷିତ ॥
ଗନ୍ଧମାର୍ଦ୍ଦନ ସନ୍ନିଧେ ଅଛି ଗନ୍ଧ ନଦୀ ।
ପାତାଳ ପରିଯନ୍ତେ ସେ ଗଣ୍ଡୁକୀ ଅଛି ଭେଦି ॥
ତହିଂ ଯାଇ କୁମ୍ଭୀରୀ ରୂପ ହୋଇଥିବୁ ।
ଶ୍ରୀରାମ ଦୂତ ଦେଖି ମୁକତି ହୋଇବୁ ॥
ମୁହିଂ ବୋଇଲି ମୁଂ ତ ଥିବି ଜଳେ ।
କେମନ୍ତେ ଜାଣିମି ସେ ଯାଉଥିବ କୂଳେ ॥୯୦
ଧାତା ବୋଇଲା ପାଣିରେ ଯେହୁ ପଶି ।

ତାହାକୁ ଆହାର କରିବୁ ଶୁଭ୍ରକେଶୀ ॥
ଯେହୁ ତୋତେ କୂଳରେ ଧରି ମାରଇ ଆଣି ।
ସେ ସେ ରାମଦୂତ ଥେବୁ ତାହା ଜାଣି ॥
ତେବେ ସେ ତୋହୋର ଦୁଃଖ ହୋଇବ କ୍ଷୟେ ।
ପାଇବୁ ନିଜ ତନୁ ଯେକଥା ନିଶ୍ଚୟେ ॥
ତହୁଂ ଆସିଣ ମୁଂ ପଶିଲଇଂ ଜଳେ ।
ଭୋ ମହାତ୍ମା ଦୁଃଖ ଗଲା ଯେତେ କାଳେ ॥
ଯେ ମାୟା ମୁନି ହାଦେ ଅଟଇ ରାକ୍ଷସ ।
ଯେ ଯୋଗବଳେ ମୋତେ ହୋଇଲାକ ଦୃଶ ॥୧୦୦
ରାବଣ ପେଷିଲା ତୋତେ ନାଶ କରିବ ବୋଲି ।
କାଳନଉମି ଦଇତ ଯେ ଜଟାସୁର ରୂପ ଧରି ॥
ଯେତେ କହି ବାଳୀ ମୁକତି ହୋଇଗଲା ।
ଧାଇଂ ହନୁମତ ଯତିକି ଧଇଲା ॥
ବୋଇଲା ଆରେ ଭଣ୍ଡ ଯେହା ମୋତେ କଲୁ ।
ବିଶ୍ୱାସ କରି ମୋତେ ମାରିତ ବିଚାରିଲୁ ॥
ଯେତେ ବୋଲିଣ ଜଟା ଧରିଣ ଉଛୁଡ଼ିଲା ।
ମାୟା ଦେଉଳ ଉପରେ କଚାଡ଼ିଲା ॥
ଭାଜିଗଲା ଦେଉଳ ହାରିଲା ଦତ୍ୟ ପ୍ରାଣ ।
ଗଗନେ ହନୁମତ ଗଲାକ ବିକ୍ରମିଣ ॥୧୦
ଗନ୍ଧମାର୍ଦ୍ଦନ ପର୍ବତେ ହୋଇଲା ପରବେଶ ।
ସୁଷେଣ କହିଥିଲା ଯେବଣ ସନ୍ଦେଶ ॥
ପୂର୍ବ ଭାଗେ ଉଦୟେ ଗିରି କତି ।
ଗିରିବର ଶିଂଘ ଅଟଇ ହୀରା ଜୋତି ॥
ତହିଂ ଯାଇ ପ୍ରବେଶ ହୋଇଲା ମାରୁତି ।
ପଲବିଲା ଶ୍ୱରୀର ହୋଇଲା ଶାନ୍ତି ମୁର୍ତ୍ତି ॥
ହନୁ ବିଚାରଇ ଯେ ସେ ସୁରଆଳ ।
ଅମୃତ ସମାନ୍ୟେ ଯେଥିର ଫୁଲ ଫଳ ॥
ଯେଥି ବସି ଧାତା କ୍ରୀଡ଼ା ଯେ କରଇଂ ।
ଗ୍ରୀଷମ ଋତୁକାଳେ ଯେଥି ବସିଥାଇଂ ॥୨୦
ବାବୁ ମହାତ୍ମାରେ କଲୁ କେଉଣ ତପ ।

ନାମ ବୋଲାଇଲୁ ଜଗତର ବାପ ॥
ବ୍ରହ୍ମା ପଦରୁ ତ ବଡ଼ କେହି ନାହିଁ ।
କେବଣ ଗୁଣେ ଯେଡ଼େ ସମ୍ପଦ ଅଛି ପାଇଁ ॥
ଯେସନେକ ବିଚାରନ୍ତେ ଜାଣିଲେ ରକ୍ଷାଲୋକେ ।
ଭୂମି ଗରୁ ଲାଗିଲା ବୋଇଲେ ତହିଁ ଥୋକେ ॥
ଖୋଜି ଜାଣିଲେ ଯେ ଅଛଇ ହନୁମତ ।
ତିନି କୋଟି ଗନ୍ଧର୍ବ ଧାଇଁଲେ ତ୍ୱରିତ ॥
ମାରୁତିକି ବେଢ଼ିଲେ ଶତେପୁର କରି ।
ବୋଇଲେ ବାନରରେ ପଶିଲୁ ଯମପୁରୀ ॥୩୦
ମରିବାକୁ ଭୟେ ନୋହିଲା ତୋହୋର ।
କି କାର୍ଯ୍ୟେ ଯେଥକୁ ଅଇଲୁରେ ବାନର ॥
ବ୍ରହ୍ମଲୋକକୁ ଯେ ଦୁର୍ଲଭ କର୍ମ ସ୍ଥାନ ।
ବ୍ରହ୍ମାର ବୋଲେ ପଶି ପାରଇ ଆନ ॥
ତୁହି ହୀନ ଜନ୍ତୁ ରିକ୍ଷ କପି ଛାର ।
କେମନ୍ତେ ଠାବ କଲୁ ଅମୂଲ୍ୟ ଭଣ୍ଡାର ॥
ହନୁମତ ବୋଇଲା ହୋ ନଜାଣ ହାଦେ ମୋତେ ।
ଆସିଣ ଅଛି ମୁଂ ଯେବଣ ନିମନ୍ତେ ॥
ରାମ ରାବଣର ସମର ମହାଘୋର ।
ଲକ୍ଷଣର ହୃଦେ ପଡ଼ିଲା ଶକତି ଶର ॥୪୦
ମଉଷୋଧି ନେମାକୁ ପଠିଆଇଲେ ମୋତେ ।
ତେଣୁ ପ୍ରବେଶ ହୋଇଲଇଂ ଯେଥେ ॥
ରାତ୍ର ପାହିଲେ ଲକ୍ଷଣ ନ ବ୍ରତି ।
ଓଷଧ ଘେନି ମୁଂ ଯିବଇଂ ତଡ଼ତି ॥
ନିରୋଧ ନ କର ତୁମ୍ଭେ ମୋହର ତହୁଂ ଶୁଣ ।
ଯେଠାକୁ ଲଙ୍କାଗଡ଼ ଛୟାଶୀ ସହସ୍ର କ୍ରୁଣ ॥
ରାତ୍ର ନ ପାହୁ ନେଲେ ହୋଇବାକ କାର୍ଯ୍ୟ ।
ଯୁଝି ମନ କଲେ ମରିବ ତୁମ୍ଭେ ଆଜ ॥
ଶ୍ରୀରାମର ଦୂତ ମୁହିଂ ନ ଡରଇ ତୁମ୍ଭନ୍ତ ।
ଶୁଣି ନାହିକି ମୋହୋର ନାମ ହନୁମନ୍ତ ॥୫୦
ନିର୍ଘାତ ମାରେଣି ମାରିବି ଅଙ୍ଗ ଛଳେ ।
ପର୍ବତ ସହିତେ ଉପାଡ଼ି ନେମି ବଳେ ॥
ଶୁଣିଣ ଗନ୍ଧର୍ବେ କଲେ ମନେ ଖଙ୍ଗ ।
କାଳ ସର୍ପ ପ୍ରାୟେ ବେଢ଼ିଲେ ଯେ ବେଗ ॥
ଚକ୍ର ଛେଲ କୋନ୍ତ ମାରନ୍ତି ଭାଲ ଗଦା ।
ହନୁ ବିଚାରଇ ମୋହୋର ଦୁଇହାଥ ଶୋଧା ॥
ଯେତେବୋଲି ଲାଞ୍ଜ ବେଢ଼ାଇଲା ଶୀଘ୍ର କରି ।
ଗନ୍ଧର୍ବଙ୍କୁ ପିଟିଲା କୋପ ମୁଖ କରି ॥
ହାଥକୁ ହାଥ ହିଆକୁ ହିଆ ଦେଇ ।
ଯେକ ଧରି ଆରେକ ଉପରେ କଚାଡ଼ଇଂ ॥୬୦
ପାଦେ ମରଦି କାହାକୁ କରଇ ଧୂଳି ।
ତାହାଙ୍କର ଶହସ୍ର ଧରି ତାହାଙ୍କୁ ହି ମାରି ॥
ବାଳ କଦଳୀ ବନ ଯେହ୍ନେ ମତ୍ତଗଜ ଭାଙ୍ଗଇଂ ।
ଯେକା ହନୁମତ ଗନ୍ଧର୍ବବଳ ଗଜଂଇଂ ॥
ତାହାଙ୍କର ମାରନ୍ତେ ଯେହାର ନୋହେ କିଛି ।
ହନୁମନ୍ତର ଦେହେ ଯେ ବିଷ୍ଣୁ ତେଜ ଅଛି ॥
ଦେବାସୁରେ ଯାହାକୁ ନୁହନ୍ତି ସମସରି ।
ତ୍ରେତୟା ମଲ୍ଲ କ୍ଷତ୍ରି ଯାହାର ନାମ ଧରି ॥
ଘଡ଼ିଯେ ପରିଯନ୍ତେ ବାଜିଲା ରଣ ଗୋଳ ।
ଭାଜି ପକାଇଲେ ଗନ୍ଧର୍ବ ସକଳ ॥୭୦
ହନୁମନ୍ତ ବିଚାରଇ କରିବା କିସ ବୁଧି ।
କେମନ୍ତ ପ୍ରକାରେ ଯେଥୁଂନେମଇ ମଉଷୋଧି ॥
ଗନ୍ଧର୍ବେ ପଳାଇବେ ଆସିବେ ପୁଣ ଧାଇଂ ।
ଯୁଦ୍ଧ କରି କରି ରାତ୍ର ଯିବ ପାହିଂ ॥
ମଉଷୋଧ ନେମିକି ମୁହିଂ ପର୍ବତ ନେମି ବହିଂ ।
ଯେଡ଼େ ଦୃଗମ ଥାନେ କେମନ୍ତେ ଥିବି ରହି ॥
ଯେତେବୋଲି ଗିରିର ଶିଙ୍ଘ ଧରି ଝୁଙ୍କଇଂ ।
ଯହୁଂ ନ ଚଳଇ ପାଦେ ପ୍ରହାର କରଇଂ ॥
ହିଆ ଭର ଦେଇ ପେଲଇ ଆଣ୍ଠୁଆଇଂ ।
ଭାଜିଲା ପର୍ବତ ବିଷମ ଭାରା ପାଇଂ ॥୮୦
ଶତେ ଯୋଜନ ଉଛର୍ଗ ଶତେ ଯୋଜନ ସ୍ଥଳୀ ।
ଉପାଡ଼ି ମୁଣ୍ଡରେ ଘେନିଲା ମହାବଳୀ ॥
ବିକର୍ମ ଗତି କରି ଗଗନ ମାର୍ଗେ ଆସଇ ।
ଦକ୍ଷିଣ ଦିଗକୁ ମୁଖ କରିଣ ଗମଇଂ ॥
ଯିବା ବେଳେ ଜଟାସୁରକୁ ମାଇଲା ।
ସେ କଥା ରାବଣେଶ୍ୱର ବାରତା ପାଇଲା ॥
ଚାର ଜଣାଇଲା ଶୁଣିମା ଲଙ୍କପତି ।
କାଳନଉମି ଦତ୍ୟକୁ ମାଇଲା ମାରୁତି ॥
ଗନ୍ଧ ନଦୀରେ ସେ ପଶି ସ୍ନାହାନ କରି ।
କୁମ୍ଭୀରିଣୀ ତାହାକୁ ନେଉଥିଲା ଧରି ॥୯୦
ବଳେ ଧରି ହନୁମତ ଆଣିଲା କୂଳକୁ ।
ପେଟଚିରି ତାହାର ବିଦାରିଲା ବୁକୁ ॥
ସେ କୁମ୍ଭୀରିଣୀ ଦେହରୁ ବାହାର ଏକ କନ୍ୟା ।
ସୁର ନର ମୋହିନୀ ଅପୂର୍ବ ସୁନ୍ଦରୀ ବାମା ॥
ସେ ନାରୀ କହିଲା ରାବଣର ଲୋକ ।
ତୋତେ ମାରିବ ବୋଲି ବୁଦ୍ଧି ହାଦେ ଦେଖ ॥
ଶୁଣି ହନୁମତ କୋପ ମୁଖ କଲା ।
କାଳନଉମି ଦଇତକୁ ବାଳଧରି ନେଲା ॥
ମାୟା ଦେଉଳ ଉପରେ ତାହାକୁ କଚାଡ଼ି ।
ମଲା ଜଟାସୁର ଗଲା ପ୍ରାଣ ଛାଡ଼ି ॥୧୦୦
ଯେ ଦୁଇ ସଘାଂରିଣ ଗଲା ତହୁଂ ଚଳି ।
ଗନ୍ଧମାର୍ଦ୍ଦନ ପର୍ବତେ ପ୍ରବେଶ ମହାବଳୀ ॥
ଜାଣିଣ ଗନ୍ଧର୍ବେ ସମର ଆସି କଲେ ।
ହନୁମତର ମାରୁଣି ସହି ନ ପାରିଲେ ॥
ଭାଜି ପଳାଇଲେ ହତ ଶହସ୍ର ହୋଇଂ ।
ଆସୁଅଛି ଯେବେ ପର୍ବତ ମୁଣ୍ଡିଆଇଂ ॥
ଶୁଣି ଲଙ୍କପତି ଉଦ୍‌ବେଗ ମନ ।
ଦଶ ସହସ୍ର ରାକ୍ଷାସ ରାଇଲା ସନିଧାନ ॥
ବୋଇଲା ଯେହିକ୍ଷଣି ଯାଅ ବେଗ ହୋଇ ।
ହନୁମତ ପର୍ବତ ଘେନସି ଛଡ଼ାଇ ॥୧୦
ପ୍ରାଣେ ମାରି ପାରିଲେ ସବୁହୁଂ ହୁଅଇ ଭଲ ।
ପର୍ବତ ଛଡ଼ାଇ ପାରିଲେ ହେବ ସମତୁଲ ॥

ଆଗ୍ୟାଂ ପାଇଂ ଧାଇଂଲେ ଦଶ ସହସ୍ର
ଅସୁର ।
କରେ ଧରିଛନ୍ତି ଢେଲ ଭାଲ ଶର ॥
ଉତ୍ତର ଦିଗେଣ ଗଗନ ମାର୍ଗେ ଗଲେ ।
ଚାଳିଶି ସସ୍ର ଯୋଜନେ ହନୁମତକୁ
ଦେଖିଲେ ॥
ଆଗେ ଉଗାଳିଣ କଲେକ ମହାରଣ ।
ମାରୁତି ଜାଣିଲା ଯେହାନ୍ତ ପେଷିଲା ରାବଣ ॥
ଯେତେବୋଲି ପର୍ବତ ଧଇଲା ଦୁଇ ହାଥେ ।
ଅସୁରଙ୍କୁ ଗୋଡ଼ାଇ ମାଇଲା
ପାଦଘାତେ ॥୨୦
ଲାଙ୍ଗେ ଗୁଡ଼ିଆଇ ମାଇଲାକ ନେଇ ।
ତାହାଙ୍କ ମାରିବାକୁ ଯେହାର ଭୟେ ନାହିଂ ॥
ଘଡ଼ିଯେ ପରିଯନ୍ତେ ହୋଇଲା ମହାଗୋଳ ।
ହନୁମନ୍ତ ଘାତେ ପଡ଼ିଲେ ଦତ୍ୟ ବଳ ॥
ଦେଖି ଦେବତାୟେ ସାଧୁ ସାଧୁ କଲେ ।
ଯେ ଯୁଦ୍ଧ ଆନ ବଳେ ନୁହଇ ବୋଇଲେ ॥
ମୁଣ୍ଡରେ ପରବତ ଅଛଇ ଶୟେ କୁଣ ।
ଗଗନ ମାର୍ଗରେ ଯାଉଅଛି ପୁଣ ॥
ଯେଥି ଆସି ଶତ୍ରୁ ହୋୟେ ଉପଗତ ।
ଗୋଡ଼େ ହତ କଲା ଦଶ ସହସ୍ର
ଦଇତ ॥୩୦
ଯେ ପୃଥ୍ୱି ମଧରେ ଅଛନ୍ତି ଯେତେ ବୀର ।
ଯେ ମାହାରଣ ସବୁହିଂ ଅଗୋଚର ॥
ଆନ କି ଭାର୍ଜନ ଯେମନ୍ତ କରିପାରି ।
ଧନ୍ୟ ହନୁମତ ତୋତେ ନାହିଂ ସମ ସରି ॥
ଯେସନେକ ବୋଲି ପ୍ରଶଂସା କରନ୍ତି
ଦେବାସୁର ।
ଯେଥୁ ଅନନ୍ତରେ ହନୁମନ୍ତ ବୀର ॥
ଦଇତ ମାରି ଯେ ବିଚାରଇ ମନେ ।
ନ ପୁଣି ଆଉ ଥାଠ ପେଷଇ ଦଶାନନେ ॥
କି ବୁଧ୍ୟ କରିବି ହୋଇଲା ଉଛୁର ।
ଆହୁରି ଲଙ୍କାଗଡ଼ ଅଛଇ ବହୁତ ଧୂର ॥୪୦
ବାଟ ଭାଙ୍ଗି ବୀର ଆଡ଼େ ହୋଇ ଗଲା ।
ପଛିମ ମୁଖ ହୋଇ ଡାହାଣକୁ ଗଲା ॥
ଥୋକାୟେକ ଧୂରେ ଉତ୍ତରକୁ ପିଠିକରି ।
ଘନ ଘନ ହୋଇ ଆସଇ ଗିରିଧରି ॥
ଦକ୍ଷିଣ କୋଶଳ ଅଯୋଧ୍ୟା ବୋଲି ରାଷ୍ଟ୍ର ।
ସେହି ସଳଖରେ ହୋୟେ ପବନର ଚାଟ ॥
ଉଡ଼ନ୍ତେ ଶବଦ ହୋୟେ ମହାଗୋଳ ।
ଖଳ ଖଳ ଶ୍ୱରୀର ବହେ ଶ୍ରର୍ମ ଝାଳ ॥
ନନ୍ଦୀଗ୍ରାମ ଭିତରେ ଖେପିଣ ଆସଇ ।
ପର୍ବତର ତେଜ ମାଣିକ୍ୟ ପ୍ରାୟେ
ଦିଶଇ ॥୫୦
ଯେସନେକ ସମୟେ ଶ୍ରୀରାମର ସାନ
ଭାଇଂ ।
ନନ୍ଦୀଗ୍ରାମରେ ସେ କଟେକ କରିଥାଇ ॥
ରାତ୍ର ଅର୍ଧମାନେ ସେ ଅନ୍ଧାରି ବିଜେ
କରିଗଲା ।
ଗୁଲୁଚା ବାଟୁଳି ହସ୍ତେ ଘେନିଥିଲା ॥
ନିଶବଦ କାଳେ ନଗ୍ର ବୁଲି ଯାଇଂ ।
ଗଗନେ ହନୁମନ୍ତ ବିକ୍ରମିଣ ଆସଇଂ ॥
ପ୍ରଳୟ ପ୍ରାୟେକ ଶୁଭଇ ଶବଦ ।
ଭ୍ରଥ ଶୁଣି କରି ହୋଇଲା ତବଦ ॥
ଉପରକୁ ଚାହିଂ ବିଚାରଇ ମନେ ।
ଘୋର ଧ୍ୱନିୟେକ ତ ଶୁଭଇ ଗଗନେ ॥୬୦
କେବଣ ପକ୍ଷୀୟେ କେତେ ଯେହାର ବଳ ।
କି ଅବା ଗରୁଡ଼ ଯେ ବିନତାର ବାଳ ॥
ଦେବ ଦାନେବ କି ଉଚ୍ଚିଶ୍ରବା ଅବା ।
କେବଣ ଦିଗପାଳେ ଅବା ଆପଣେ ମଘବା ॥
ଦେଖିଲେ ସେ ଜାଣିମା ନା କେବଣିହଂ
ଜାତି ।
ଯେତେବୋଲି ବାଟୁଳି ମାଇଲା ଶୀଘ୍ରଗତି ॥
ଅଣଚାଶ ପବନ ପ୍ରାୟେକ ଗର୍ଜିଗଲା ।
ହନୁମତ କପାଳେ ଯାଇଣ ବାଜିଲା ॥
ବଜ୍ର ଉପରେ କି ମହାବଜ୍ର ପଡ଼ି ।
ହନୁ ଛାଡ଼ିଲାକ ବିକର୍ମ ସିଘଂ ରଡ଼ି ॥୭୦
ଗ୍ୟାଂନ ଧ୍ୱଂସ ହୋଇଣ ପଡ଼ିଲାକ
ଭୂମିତଳେ ।
ପର୍ବତ ମୁଣ୍ଡିଆଇ ଧରିଛି ବିକଳେ ॥
ଚେତନା ପାଇଣ ଶ୍ରୀରାମ ସୁମରି ।
ପୁଣି ଉଠିଲା ଯେ ପର୍ବତ ମୁଣ୍ଡେ ଧରି ॥
ଭ୍ରଥ ବିଚାରଇ ବାବୁ ଯେହାର ବଳ ।
ମୋହୋର ବାଟୁଳିକି ଡରନ୍ତି ଦିଗପାଳ ॥
କେବେଣ ବାପୁଡ଼ା କେତେ ଯେହାର ପ୍ରାଣ ।
ପକ୍ଷୀ ନ ଥାଉ ଉର୍ଦ୍ଧେ କରଇ ପୟାଣ ॥
ପର୍ବତ ଗୋଟାୟେ ଅଛଇ ମୁଣ୍ଡିଆଇଂ ।
କ୍ଷଣେ ମାତ୍ର କେବଳ ପଡ଼ିଲା ମୋହ
ଯାଇଂ ॥୮୦
ପୁଣି ଉଠିଅଛି କାହିଂକି ଯେ ଯିବ ।
ମୁଖ ଦିଶୁଅଛି ମର୍କଟ ସ୍ୱଭାବ ॥
ପଚାରିବା ବୋଲି ନିକଟକୁ ଗଲା ।
କାହିଂର ମହାତ୍ମା ବୋଲିଣ ସମାଦିଲା ॥
ହନୁମତ ବୋଇଲା ହୋ କେତେ ଅଛଇ
ରାତି ।
ଭ୍ରଥ ବୋଇଲା ହୋଇଲାନି ପାହାନ୍ତି ॥
ଶୁଣି ଉଦବେଗେ ଉଠଇ ପାବେନି ।
ଶୟେ କୁଣ ଗିରିବର ମୁଣ୍ଡେ ଅଛଇ ଘେନି ॥
କୟେକୟା ନନ୍ଦନ ବୋଲଇ ଆହୋ ଶୁଣ ।
ତରତର ହେଉଛୁ କେବଣ କାରଣ ॥୯୦
ହନୁମତ ବୋଇଲା ମୁଂ ନ ପାରଇ ରହି ।
ଆସର ନାହିଂ ମୋତେ ତୋତେ କଥା କହିଂ ॥
ଶ୍ରୀରାମର ଭାଇ ଲକ୍ଷଣ ଶକ୍ତିଭେଦ ।
ମଉଷଧି ନେମି ମୁଂ ଲଙ୍କାଗଡ଼ର ମଧ ॥
ରାତ୍ର ପାହିଲେ ନ ବ୍ରତଇ ବୀର ।
ସମୋଦ୍ର ଲେଛି ପଶିଲି ବନ ଘୋର ॥
ସଳଖ ବାଟ ଛାଡ଼ି ଅଇଲି ବେଢ଼ ପଥେ ।
ବାଟ ଚାହୁଂଥିବେ ରଘୁକୁଳ ଗୋତ୍ରେ ॥
ଶୁଣି ଭ୍ରଥ ବୀର ପୁଣିହିଂ ପଚାରି ।
କାହିଂର ରାମ ଲକ୍ଷଣ କାହିଂରେ ଯୁଦ୍ଧ
କରି ॥୧୦୦
କେ ମାଇଲା ଶକତି କାହାର ତୁ ଲୋକ ।
କହ ମହାତମା ହୋ ଛାଡୁ ମୋର ଶୋକ ॥
ହନୁମତ ବୋଇଲା ଅଯୋଧ୍ୟା ନାମେ
ଦେଶ ।
ଦଶରଥ ରାଜା ଅଟେ ସୂର୍ଯବଂଶ ॥
ତିନି ରାଣୀରୁ ତାର ଚାରିପୁତ୍ର ଜାତ ।
ରାମ ଲକ୍ଷଣ ଶତ୍ରୁଘନ ଭ୍ରଥ ॥

ଜନେକର ଝିଅ ଗୋଟି ନାମ ସୀତ୍ୟା ।
ରଦ୍ରଧନୁ ବଳେ ଭାଙ୍ଗିଲେ ଜଗୁଜିତା ॥
ତାଡ଼େକୀ ମାରିଣ ଅହିଲା ମୁକତ କଲେ ।
ବିଶ୍ଵାମିତ୍ର ମୁନି ଯାଗ ଆରମ୍ଭିଲେ ॥୧୦
ତାହା ରଖି ଶ୍ରୀରାମ ମିଥିଳାକୁ ଗମଇଂ ।
ସୀତ୍ୟା ବିଭା ହୋଇ ନିଜ ପୁରେ ଯାଇଂ ॥
ବାଟେ ପ୍ରଶୁରାମ ଦର୍ପ କଲେ ନାଶ ।
ସାବତ ଜନନୀର ବୋଲେ ଗଲେ
ବନବାସ ॥
ଶ୍ରୀରାମ ଲକ୍ଷଣ ସୀତ୍ୟା ତିନିଜଣ ।
ପୁତ୍ରକୁଂ ନ ଦେଖି ଦଶରଥ ଛାଡ଼ିଲେ
ଜୀବନ ॥
ଭ୍ରଥ ନ ଜାଣଇ ଅଜାଘରେ ଥିଲା ।
ବାରତା ପାଇ ଶତୃଘନର ଅଇଲା ॥
ପିତାକୁ ଦହନ କରି ଶ୍ରୀରାମକୁ ଆଣିଗଲେ ।
ସତ୍ୟ ପାଳି ସ୍ଵାମୀ ବାହୁଡ଼ି ନଇଲେ ॥୨୦
କୁଶ ପାଦୁକା ଦୁଇ ଦେଲେ ଭ୍ରଥ ହାଥେ ।
ଆପେ ବେହରନ୍ତି ଗହନ ବନସ୍ତେ ॥
ଦଶ ବରଷ ଯେ ନାନା ବନେ ଥିଲେ ।
ଯାଇ ଗୋଦାବରୀ କୂଳରେ ରହିଲେ ॥
ଦୁଇ ବରଷ ତହିଂ ଶୁଭେକ ନେଲେ ଦିନ ।
ସୂପଲେଖୀର ତହିଂ କାଟିଲେ ନାସା ଶର୍ବଣ ॥
କର ଧୂଷଣ ଯେ ଚଉଦ ସହସ୍ର ବଳ ।
ଯେକାଯେ ସଂଘାରିଲେ କଉଶୁଲାର ବାଳ ॥
ଜାଣି ରାବଣ ଅଇଲା ମାୟା ରୂପେ ।
ଭିକ୍ଷା ମାଗିଲାକ ସନ୍ୟାସୀ ସରୂପେ ॥୩୦
ମାୟା ମୃଗେକ ଦେଖାଇଲା ନବରତ୍ନ
ମୟେ ।
ଦେଖି ରଘୁନାଥ ଗୋଡ଼ାଇଲେ ତାୟେ ॥
ବାଣ ବିନ୍ଧନ୍ତେ କୁରଙ୍ଗୀ ପ୍ରାଣ ଦେଲା ।
ମରିବାର ବେଳେ ଲକ୍ଷଣକୁ ସୁମରିଲା ॥
ଜାଣି ସଉମିତ୍ରୀ ଗଲାକ ତଡ଼ତି ।
ସମୟ ଜାଣି ରାବଣ ହରିନେଲା ସତୀ ॥
ରାମ ବାହୁଡ଼ିଣ ଦେଖିଲେ ଆସି ଘର ।
ସୀତା ନ ଦେଖି ସେ ବୁଲିଲେ ବନ ଘୋର ॥
ଋଷିମୁଖ ପର୍ବତେ ଭେଟିଲେ ଆସି
ମୋତେ ।
ମୁହିଂ ହନୁମତ କେଶରୀର ସୁତେ ॥୪୦
ବାଳୀର ଭାଇ ଯେ ସୁଗ୍ରୀବର ମହାବୀର ।
ଦୁଖେ ଲୁଚିଥିଲା ସେ ପର୍ବତ କନ୍ଦର ॥
ତାହାର ତୁଲେ ରାମ ମୈତ୍ର ହୋଇଲେ ।
ମୈତ୍ରର ଛଳେ ରାମ ବାଳୀକି ମାଇଲେ ॥
ଇଷ୍କିନ୍ଧ୍ୟା ରାଜେ ସୁଗ୍ରୀକି ରାଜା କରି ।
ଚତୃମାସ୍ୟା ବଞ୍ଚିଲେ ମାଲ୍ୟବନ୍ତ ଗିରି ॥
ଥାଠ ଘେନିଣ ସୁଗ୍ରୀବର ଅଇଲା ।
ଶ୍ରୀରାମଚନ୍ଦ୍ରଙ୍କୁ ଯାଇ ଦ୍ରଶନ ସେ କଲା ॥
ଚାରି ଦିଗକୁ ରାମ ଦୂତ ବରଗିଲେ ।
ଯାଅ ବାବୁ ସୀତ୍ୟାକୁ ଖୋଜିଆସ
ବୋଇଲେ ॥୫୦
ମୁହିଂ ଯାଇ ସୀତ୍ୟାକୁ ଲଙ୍କାରେ ଠାବ
କଲି ।
ଅନେକ ସନ୍ୟ ମାରି ତାହାର କଟେକ
ପୋଡ଼ିଲି ॥
ବାହୁଡ଼ି ଶ୍ରୀରାମକୁ ବାରତା ଦେଲି ଆଣି ।
ମଣି ଦେଇଥିଲେ ଜଗତ ଜନନୀ ॥
ଦେଖିଣ ଶ୍ରୀରାମ ଜାଣିଲେ ଶକୁନ୍ୟ ।
ସାହେର କୂଳେ ରହିଲେ ସର୍ବ ସନ୍ୟ ॥
ସମୋଦ୍ରେ ବନ୍ଧ ବାନ୍ଧିଲା ବୀର ନଳ ।
ବରୁଣ ଦେବତା ଆସି କହିଲା ସକଳ ॥
ରାବଣର କନେଷ୍ଟ ଭାଇ ବିଭୀଷେଣ ।
ଶ୍ରୀରାମର ପାଦେ ଆସି ପଶିଲା ଶରଣ ॥୬୦
ସିନ୍ଧୁପାରି ହୋଇ ଲଙ୍କା ଗଡ଼କୁ ଗଲୁ ।
ସୁବଳୟା ପର୍ବତେ ଯାଇଣ ହୋଇଲୁ ॥
ସେ ଦିନୁ ସମର ହୋଇଲା ବହୁତ ।
ରାବଣର ତନୟେ ବୀର ଇନ୍ଦ୍ରଜିତ ॥
ନାଗଫାଶ ଆଣି ବେଳେକ ବାନ୍ଧିଗଲା ।
ଗରୁଡ଼ ମହାତ୍ମା ଆସି ବେଳେକ ଜୀଆଁଇଲା ॥
ପୁଣି ବ୍ରହ୍ମଅସ୍ତ୍ର ମାଇଲା ଆର ଘାନ୍ତି ।
ରିକ୍ଷ କପିବଳ ପକାଇଲା ବିକୋଟି ॥
ସେ ପରସ୍ତାପକୁ ମୁ ହେମବନ୍ତକୁ ଗଲି ।
ମଉଷୋଧି ନେଇ ସୁଷେଣ ହାଥେ
ଦେଲି ॥୭୦
ତେଣୁ ବ୍ରତିଲେ ରାମ ଲଇକ୍ଷଣ ବେନି ।
ପ୍ରାଣ ପାଇଲେ ଯେ ସକଳ ସଇନି ॥
କୁମ୍ଭକର୍ଣ୍ଣ ନାମେ ରାବଣର ସାନ ।
ତାହାକୁ ମାଇଲେ ରଣେ ରଘୁନାନ ॥
ଇନ୍ଦ୍ରଜିତକଇ ଲକ୍ଷଣ ହତ କଲା ।
ପୁତ୍ର ଶୋକେ ରାବଣ ଶକତି ମାଇଲା ॥
ରଣେ ପଡ଼ିଲେକ ଶ୍ରୀରାମର ସାନ ଭାଇ ।
ବ୍ରହ୍ମ ଶକତିର ଘାତେ ଫୁଟିଲାକ ମହୀ ॥
ଅସ୍ତ୍ର ଉପାଡ଼ି ରାମ କରନ୍ତି କାରୁଣ ।
କପିକୁଳର ବଦ୍ୟ ଅଟଇ ସୁଷେଣ ॥୮୦
ସେ ବୋଇଲା ଭୋ ଦେବ ଚିନ୍ତା ତୁ ନ
କର ।
ଗନ୍ଧମାର୍ଦ୍ଦନ ନାମେ ଯେକଇ ଗିରବର ॥
ମୃତୁସଞ୍ଜୀବନୀ ଅଛଇ ଦେବ ତହିଂ ।
ହନୁମତ ବେଗେ ଘେନି ଆସୁ ଯାଇଂ ॥
ଶୁଣିଣ ଶ୍ରୀରାମ ପମନ୍ତିଲେ ମୋତେ ।
ବାଟେ ଗୋଡ଼ାଇ ମୋତେ ମାଇଲେ
ଦଇତେ ॥
ତହୁଂ ଜିଣିଣ ପର୍ବତେ ହୋଇଲି ।
ରକ୍ଷା ଗନ୍ଧର୍ବଙ୍କ ସଙ୍ଗତେ ଯୁଦ୍ଧ କଲି ॥
ପର୍ବତ ସହିତେ ଉପାଡ଼ି ନେଉଅଛଇଂ ।
କେତେ ରାତ୍ର ଅଛଇ ବୋଲି ତେଣୁ ମୁଂ
ପୁଛଇଂ ॥୯୦
ରାତ୍ର ପାହିଲେ ନ ଜୀଅଁଇ ଶ୍ରୀରାମର
ଭାଇଂ ।
ବାସି ଘାଆ ହୋଇଲେ ଓଷଧି ନ କାଟଇଂ ॥
ବେଗେ ଯିବି ବୋଲି ନ ଗଲି ସଳଖ
ବାଟେ ।
ବାହୁଡ଼ିବା ବେଳେ ଆସି ଉଗାଳିଲେ ଦଇତ
ଥାଠେ ॥
ଅସୁର ସଙ୍ଘାରି ମୁଂ ଯେ କତି ଅଇଲି ।
ଯେ ତୋହୋର କିଞ୍ଚିତ ବାଟୁଳିରେ
ମୋହଗଲି ॥
କେବଣ ମହାତମା ତୁ କହ ମୋତେ ସତ ।
ନୋହିଲେ ମାରିବିଟି ଯେହି ପରବତ ॥
ଶୁଣି ଭ୍ରଥ ବୀର ଭୟେ ମନ କଲା ।
ଶ୍ରୀରାମର ଭାଇ ମୁଂ ଅଟଇ
ବୋଇଲା ॥୧୦୦

ଯେହି ଯେ ଅଯୋଧ୍ୟା ନନ୍ଦୀନାମେ ଗ୍ରାମ ।
ଶ୍ରୀରାମ ଗଲାଦିନୁ ମୋହୋର ନାହିଁନା ବିଶ୍ରାମ ॥
କଯେକୟାର ସୁତ ମୁଁ ନ ଜାଣୁ ବୀର ମୋତେ ।
ଭ୍ରଥ ନାମ ମୋହୋର ଅଟଇ ଯୁଗତେ ॥
କଉଶୁଲା କଯେକୟା ସୁମେତ୍ରା ଭଲେ ଛନ୍ତି ।
ପାତ୍ର ମନ୍ତ୍ରୀ ପରଜା ସୁଖେଣ ବ୍ରତନ୍ତି ॥
ରାଘେବ ଗଲାଦିନୁ ମୋହୋର ଯତି ବେଶ ।
ଦେଖ ଜଟା ଭାର ରଦ୍ରାକ୍ଷ କଷା ବାସ ॥
ଚଉଦ ବରଷ ହୋଇଲା ନ ଥିଲା ବାରତା ।
ଯେ ଦୁଖ ସେ ଭାଇକି ମୋର ଦେଲୁରେ ବିଧାତା ॥୧୦
ସୀତା ଚନ୍ଦ୍ରମୁଖୀ ଅସୁରଘରେ ବନ୍ଦୀ ।
ଲକ୍ଷଣ ଶକ୍ତିଭେଦ ଶ୍ରୀରାମଚନ୍ଦ୍ର କାନ୍ଦି ॥
ଏହା ଶୁଣିଲି ମୁଁ ଶର୍ବଣ ଦୁଇ ଘେନି ।
ସବୁ ମନ୍ଦ କଲେ ମୋହୋର ଜନନୀ ॥
ଯେବେ ହନୁମତ କରିବୁ ବାବୁ କିସ ।
ଜାଣିଲି ଶ୍ରୀରାମର ତୁ ବହୁତ ବିଶୁଆସ ॥
ଯାସି ହନୁମତ ଭାଇ ମୋର ବ୍ରତୁ ।
ଅସୁର ନିଲକ୍ଷଣ ହୋଇଲା ଆମ୍ଭ ଶତ୍ରୁ ॥
କିପାଇଂ ରଘୁନାଥ କରାଇଲେ ଲାଜ ।
ଜଗତ ଦହଇ ତାର କିଚିଂତ ନାରାଜ ॥୨୦
ରାବଣ ନିଲକ୍ଷଣ ଅସୁର ଛାର କିସ ।
ହନୁ ବୋଇଲା ଶୁଣ କଯେକୟାର ଶିଷ ॥
ସାମାନ୍ୟ ନୁହଇ ସେ ଲଙ୍କାର ଅଧିପତି ।
ଅଠାର ଗଣ୍ଡା କୁମର ତେର ଶତ ନାତି ॥
ସଂଯେ ଦଶଶିର ଅଟଇ ବିଂଶ ଭୁଜ ।
ଧନପତି କୋବେର ଯାହାର ଅଗ୍ରଜ ॥
କନେଷ୍ଟ କୁମ୍ଭକର୍ଣ୍ଣକୁ କ୍ଷତ୍ରୀ ସମ ନାହିଂ ।
ପୁତ୍ର ମେଘନାଦ ଜିଣିଲା ଶଚୀସାଇଂ ॥
ଚଉଦ ଭୁବନେ ଗମଇ ଯାର ରଥ ।
ବ୍ରହ୍ମାର ନାତି ସେ ବିଶର୍ବାର ସୁତ ॥୩୦
ସୁବର୍ଣ୍ଣମୟେ ଲଙ୍କା ସମୋଦ୍ର ଚଉକତି ।
ରଥ ଗଜ ଅଶ୍ୱ ଅନେକ ପଦାନ୍ତି ॥
ସବୁ ଦେବତାଯେ ଖଟନ୍ତି ଯାର ପାଶ ।
ତିନି କୋଟି ପଚାଶ ଲକ୍ଷ ଯାହାର ରାଣୀହଂସ ॥
ବ୍ରହ୍ମାଣ୍ଡ ଭିତରେ ଯେକା ବଳୀଆର ।
ମାୟା କୂଟ ଛନ୍ଦ ଜାଣଇ ଅପାର ॥
ଦେବ ଦାନବରେ ନାହିଂ ତାର ମୃତ୍ୟୁ ।
ଚଉଦ କୋଟି ଅମର ବର ଦେଲା କୁଶକେତୁ ॥
ଶ୍ରୀରାମ ସେ ତାହାର ଦର୍ପ ହରି ପାରଇ ।
ଆନ କେ ତାହାର ଆଗରେ ରହି ଯୁଦ୍ଧ କରଇଂ ॥୪୦
ତୁ ତାହାକୁ ସାମାନ୍ୟ ବୁଝିଲୁ କି କଯେକଇଂ ।
ରଣେ ନଥିଲା ଲୋକ ବଡ଼ ପାଇକ ବୋଲାଇଂ ॥
ପଞ୍ଚାଶ କୋଟି ଯାର ମକୁଟ ବନ୍ଧା ଯୋଧା ।
ଯେକକୁ ଆରେକ ପୃଥ୍ୱି କରିପାରନ୍ତି ଶୋଧା ॥
କିଞ୍ଚିତ ନାରାଜେ ପୃଥ୍ୱି ସାଧି ପାରଇଂ ।
ଆଜକୁ ଚଉଦ ଗଣ୍ଡା ଯୁଗ ଭୋଗ୍ୟ କରଇଂ ॥
ଯେକକୁ ଯେକ ରାକ୍ଷସ ଅଟନ୍ତି ମହାବୀର ।
କହିଲେ ନ ସରିଇ ରାବଣ ସମର ॥
ଯିବି ବେଗ ହୋଇ ନ ପାରଇ ରହିଂ ।
ରାତ୍ର ପାହିଲେ ଯେ ଲକ୍ଷଣ ନ ବ୍ରତଇଂ ॥୫୦
ଭ୍ରଥ ବୋଇଲେ ହୋ ଶୁଣ ହନୁମତ ।
ଯେ କଥା ନ ଜାଣିମେଟି ଜାନେକୀର କାନ୍ତ ॥
ମୁହିଂ ଯେ ତୋତେ ବାଟୁଳି ମାଇଲି ନ ଜାଣି ।
କାହାରିହିଂ ଆଗେ ନ କହିବୁ କପିମଣି ॥
କ୍ଷତ୍ରୀମାନେ ବୋଲିବେ ମୋତେ ସାନ ।
ବୋଲିବେ କିସ ଯୋଦ୍ଧା କଯେକୟାର ନନ୍ଦନ ॥
ବାଟୁଳି ମାଇଲା ବାନର ନ ମଲା ।
ରଘୁକୁଳ ବଂଶକୁ କଳଙ୍କ ଲଗାଇଲା ॥
ଧିକ ବାହୁବଳ ଧିକ କ୍ଷତ୍ରୀପଣ ।
କଯେକୟାର ନନ୍ଦନ ଜୀବନ ଅକାରଣ ॥୬୦
ଯେସନେକ ବୋଲି ପାଇବି ମୁଂ ଲାଜ ।
ତେଣୁ ତିଆରଇ ତୋତେ ପବନ ଆତ୍ମଜ ॥
ସତ୍ୟ କରିଥିବୁ ନ କହିବୁ କାହିଂ ।
କହିଲେ ଅବଶ୍ୟ ମୁଂ ମରିବି ବିଷ ଖାଇ ॥
ଶ୍ରୀରାମ ଶୁଣିଲେ ମୋତେ କରିବେ ଧିକାର ।
ବହୁତ ଧିକାରିବ ମୋତେ ସୁମିତ୍ରା କୁମର ॥
ଯଦ୍ୟପି ଅଟୁ ତୁ ଶ୍ରୀରାମର ସେବକ ।
ଯେ ବାଟୁଳି ମାଇଲା କଥା ନ ଜାଣିମେଟି ଆନ ଲୋକ ॥
ଶୁଣି ହନୁମତ କୋପେ ଥରହର ।
ଭ୍ରଥକୁ ବୋଇଲା ତୁ ତାହିଂ ସତ୍ୟ କର ॥୭୦
ମୋତେ ମାଇଲୁ ବୋଲି ନ କହିବୁ କାହିଂ ।
କହିଲେ ଅବଶ୍ୟ ମୁଂ ମରିବି ବିଷ ଖାଇ ॥
ବଜ୍ରହୁଂ ଆଣ୍ଟ ଯେ ମୋହୋର କାୟେ ।
ତୋହୋର କିଞ୍ଚିତ ବାଟୁଳିରେ ମୋହ ଯାୟେ ॥
କ୍ଷତ୍ରୀମାନେ ଶୁଣିକରି କରିବେ ଉପହାସ୍ୟ ।
ବୋଲିବେ ନିର୍ବଳ ହୋଇଲା ପବନର ଶିଷ ॥
ଭ୍ରଥର ବାଟୁଳିରେ ମୋହ ହାଦେ ଗଲା ।
କେହ୍ନେ ଧାତା ଯେହାକୁ ସେ ବଜ୍ର ଅଙ୍ଗକଲା ॥
ଯେସନେକ ବୋଲି ମୋତେ କରାଇବୁ ଲାଜ ।
ଯେ କଥା ଶୁଣି ମରିବାର ବଡ଼ କାର୍ଯ୍ୟ ॥୮୦
ଭୋ ଭ୍ରଥ ଯେବେ ତୁ ଶ୍ରୀରାମର ଭାଇ ।
ମୋତେ ମାଇଲୁ ବୋଲି ନ କହିବୁ କାହିଂ ॥
ମହା ମହାବୀରେ ବୁଝିବେ ମୋତେ ସାନ ।
ଦୁହିଂଙ୍କର ଦୁଇକଥା ନ ଜାଣନ୍ତୁ ଆନ ॥
ଯେତେ କହି ହନୁ ଗଗନ ମାର୍ଗେ ଗଲା ।
ରାତ୍ର ଥାଉ ଥାଉ ଲଙ୍କାରେ ପ୍ରବେଶ ହୋଇଲା ॥

ରଣ ଭୂମି ଦେଖି ଆକାଶରୁ ଖସି ।
ଲକ୍ଷଣଙ୍କୁ ଧରି ଶ୍ରୀରାମ ଛନ୍ତି ବସି ॥
ସେନା ଯୂଥପତି ସୁଗ୍ରୀ ବିଭୀଷେଣ ।
ରିକ୍ଷ କପିବଳ ଅତି ଅପ୍ରମାଣ ॥୯୦
ଚାଟେକ ଚଢ଼େଇ ପ୍ରାୟେ ସମସ୍ତେ ହୋଇଛନ୍ତି ।
ହନୁମନ୍ତ ଆସିବାକୁ ବାଟ ଯେ ଚାହାନ୍ତି ॥
ଯେସନେକ ସମୟେ ଶୁଭିଲା ବାହା ନାଦ ।
ଜୟେବ ବୋଇଲେ ହୋଇଲା କାର୍ଯ୍ୟ ସିଦ୍ଧ ॥
ଯେସନେକ ସମୟେ ପବନ ତନୟେ ।
ଗଗନୁ ଖସି ଯାଇଂ ଭୂମିରେ ଉଭା ହୋୟେ ॥
ଉଡ଼ନ୍ତା ପାରୁଆ ଯେହ୍ନେ ଆକାଶେ ଉଡ଼ୁଥାଇଂ ।
ପାରୋଇ ଦେଖିଲେ ଯେହ୍ନେ ଆକାଶୁ ଖସଇ ॥
କି ଅବା ଶୂନ୍ୟ ପୁରୁଷ ଚ୍ୟୁତ ହୋୟେ ।
ତେସନେକ ପଟାନ୍ତର ପବନ ତନୟେ ॥୧୦୦
ଗଙ୍ଗାର ବୁଡ଼ାଇ ଚଢ଼ଇ ଯେହ୍ନେ ଉଡ଼ି ।
ମତ୍ସ୍ୟ ଦେଖି ଯେହ୍ନେ ଗଭୀର ଜଳେ ବୁଡ଼ି ॥
କି ଅବା ଶାମଳ ଝାଙ୍କିଲା ବକ ଚାହିଂ ।
ହାଥୀକ୍ଷଣ୍ଡୋ ଉଇଂ ପଡ଼ିଲାକ ଭୂଇଂ ॥
ବଜ୍ରବାଣ ପଥର କି ଭୂମିରେ ପଡ଼ିଲା ।
ସର୍ପ ଦେଖି ଗରୁଡ଼ ଅବା ଧାଡ଼ିଦେଲା ॥
ଇନ୍ଦ୍ରଦେବତା କି ମାଇଲା ବଜ୍ର ସୂଚୀ ।
ରିକ୍ଷ ମର୍କଟେ ଯେକୁ ଆରେକ ପୁଛାପୁଛି ॥
ଜୟେବ କହନ୍ତେ ସମସ୍ତେ ପ୍ରତେ ଗଲେ ।
ହନୁମନ୍ତକୁ ଚାହିଂ ସମସ୍ତେ ପ୍ରଶଂସିଲେ ॥୧୦
ଯେସନେକ ସମୟେ ପବନ କୁମର ।
ମୁଣ୍ଡେ ଧରିଅଛି ମହତ ଗିରିବର ॥
ଶ୍ରୀରାମ ଛାମୁରେ ହୋଇଲେକ ଉଭା ।
ଅନନ୍ତ ଆଗରେ ଯେହ୍ନେ ବସନ୍ଧରୀ ଶୋଭା ॥
କରପତ୍ର ଯୋଡ଼ିଣ ବୋଲାଇ ପାବେନୀ ।
ତୁସ୍ତି କରୁଅଛି ଶ୍ରୀରାମକୁ ଚିହ୍ନି ॥
ଦେଖି ରଘୁନାଥ ଆନନ୍ଦ ହୋଇଲେ ।
ଅଇଲୁ କି ବାବୁ ବୋଲିଣ ବୋଇଲେ ॥
ତୋତେ ନ ଦେଖି ମୋର ଅଥିର ଜୀବନ ।
ଉତ୍ତର ଦିଗକୁ ମୁଂ କରିଅଛି ମନ ॥୨୦
ମୁହିଂ ସେ ମୃତୁଶବ ତୁହି ସେ ମଉଷୋଧି ।
ଯେସନେକ ପ୍ରକାରେ ହୋଇଅଛି ବୁଧି ॥
ଆସ ଆସ ମାରୁତି ବିଷଲ୍ୟକରଣୀ ଆଣ ।
ଯେଣେ ବ୍ରତିବ ମୋର ଅନୁଜ ଲଇକ୍ଷଣ ॥
ହନୁମତ ବୋଇଲା ମୋର ଦୋଷ ଯେ ନ ଧର ।
ଗଛ ନ ଚିହ୍ନି ଆଣିଲି ଗିରିବର ॥
ବାଟେ ମୋତେ ବହୁତ ବିଘ୍ନ ଯେ ପଡ଼ିଲା ।
ତୋହୋର ପ୍ରସାଦେ ମୋତେ ଧର୍ମ ରକ୍ଷା କଲା ॥
ଶୁଣିଣ ଶ୍ରୀରାମ ଆଶ୍ୱାସନା କଲେ ।
ତୋହୋରେ ଯେ କର୍ମ ହୋଅଇ ବୋଇଲେ ॥୩୦
ସୁଗ୍ରୀବର ରାୟେ ଦୟା ମୋତେ କଲା ।
ଦୁଃଖକାଳେ ମୋତେ ସାହାପକ୍ଷ ହୋଇଲା ॥
ତାହାର ପ୍ରସାଦେ ମୋର ସବୁ ବଡ଼ ପଣ ।
ଲକ୍ଷଣଙ୍କୁ ଜୀଆଁଇବେ ଜୟେବ ସୁଷେଣ ॥
ହନୁମନ୍ତ ମୋତେ ଉଦ୍ଧରି ଧଇଲା ।
କେଶରୀ ମହାତମା ମୋତେ ଏତେ ଗୁଣ କଲା ॥
ଅଙ୍ଗଦ କୁମାର ମୋତେ ଉପୁଗାରୀ ଅଟଇଂ ।
ଯେତେ ସନ୍ୟ ଘେନି ମୋହୋର ପାଦେ ଖଟଇ ॥
ନଳର ପ୍ରସାଦେ ଅଇଲି ସିନ୍ଧୁ ପାରି ହୋଇଂ ।
ସବୁ ବୁଧି ପାଇଲି ବିଭୀଷେଣର ଠହିଂ ॥୪୦
ନୀଳ ସେ ଥାଠକୁ ଅଟଇ ସେନାପତି ।
ଗନ୍ଧମାର୍ଦ୍ଦନ ଫଳେ ମୁଂ ପାଇବି ମହାସ୍ୱତୀ ॥
ଶଉରୀ ସେନାପତିର ଭରସାୟେ ଅଇଲି ।
ଶତବାଳି ବୁଧିରେ ରଣଜୟେ କଲି ॥
ତାରାକ୍ଷ କହିଲା ମୋତେ ଶତ୍ରୁ ଛେଦ ଭେଦ ।
ଗବୟେ ଗବାକ୍ଷକୁ ଅସୁରଙ୍କର ବଡ଼ ଖେଦ ॥
ମହାନ୍ଦ୍ର ଦୃବିନ୍ଦ ଯେ ନ ଭାଙ୍ଗନ୍ତି ରଣେ ।
ଯେହାଙ୍କୁ ଦେଖି ଦଇତେ ପଳାନ୍ତି ଯେଣେ ତେଣେ ॥
ଶତବାଳି ରମଣ ଡାଳିମ୍ୱ ପାରାସ ।
ବସନ୍ତ ପବନ କାମୋଦ ସାରାସ ॥୫୦
ସମ୍ପାତି ବିବିଧ ତାରାର ପିଅର ।
ରୋମା ପିତା କଥା ସବୁହୁଂ ଅଗୋଚର ॥
ବଳିମୁଖ କାଳିମୁଖ କୁନ୍ଦ ଯେ ଚନ୍ଦନ ।
ଦଧିମୁଖ ପନସ ସୁସୋଦନ କାଳିଞ୍ଜନ ॥
ଅଷ୍ଟସେନା ମୋହୋର ପଚିଶ ଯୂଥପତି ।
ବୀର ମହାବୀର ଅନେକ ଅଛନ୍ତି ॥
ମଲ ମହାମଲ ରିକ୍ଷ କପିବଳ ।
ଯେହାଙ୍କର ପ୍ରାସାଦେ ମୁଂ କଲି ରଣଗୋଳ ॥
ସବୁ ଯଶ ମୋତେ ହନୁମତ କଲା ।
ଛୟାଶୀ ଯୋଜନୁ ମଉଷୋଧି ଆଣିଲା ॥୬୦
ଓଲ୍ହାହ ପବନସୁତ ଥୁଅ ମହାଗିରି ।
କେତେବେଳ ବାବୁରେ ମୁଣ୍ଡେଥିବୁ ଧରି ॥
ଆଗ୍ୟାଂ ପ୍ରମାଣେ ଅଷ୍ଟସେନାୟେ ଧଇଲେ ।
ହନୁମତ ଶିରରୁ ପର୍ବତ ଓହ୍ଲାଇଲେ ॥
ତେଇଂ ରକ୍ଷକପି ଉଠିଲେ ଗିରିବରେ ।
ଅଧେକ ପଶିଲା ଗିରି ସମୋଦ୍ର ମଧରେ ॥
ସୁଷେଣ ମଉଷୋଧି ଚିହ୍ନି ଠାବ କଲା ।
ପତ୍ର ଗୁଡ଼ିୟେକ ଛିନାଇ ଆଣିଲା ॥
ଦୁଇ ହାଥେ ଧରି ମଚାଳିଲା ଆଣ୍ଟେ ।
ଲକ୍ଷଣ ଛାମୁକୁ ଚଳିଲାକ ଝାଣ୍ଟେ ॥୭୦
ଶ୍ରୀରାମ ଭାଇକି କୋଳେ ଧରିଛନ୍ତି ।
ଦୁହିଙ୍କରି ଶରୀର ଲୁୟେ ତିନ୍ତିଛନ୍ତି ॥
ମୃତୁ ସଞ୍ଜବନୀ ସୁଷେଣ ଘେନିଗଲା ।
ସଉମିତ୍ରୀ ନାସିକାରେ ରସ ନେଇ ଦେଲା ॥
ରସ ଚିପୋଡ଼ନ୍ତେ ପବନ ଦେଲା ବାସ ।
ହୃଦୟ ବୁଜିହୋଇ ଛାଡ଼ିଲେ ବଥା ପ୍ରାସ ॥
ଗତୁଂ ଶତେଗୁଣେ ହୋଇଲାକ ପ୍ରାଣ ।
ଆଖି ମଳିଣ ଉଠିଲା ଲଇକ୍ଷଣ ॥
ଶ୍ରୀରାମ କୋଡ଼ରୁ ଉଠି ଉଭା ହୋଇଂ ।
ଦ୍ରୋହ କଲି ବୋଲି ଯୋଡ଼ଇ କର ଦୁଇଂ ॥୮୦
ପୁଣି ପୁଣି ଆଲିଙ୍ଗନ କରନ୍ତି ଗୋସାଇଂ ।

ଅତି ଗାଢ଼େ ଭିଡ଼ନ୍ତି ହିଆକୁ ହିଆ ଦେଇଂ ॥
ବୋଇଲେ ବାବୁରେ ତୁ ମୋହ
ହୋଇଥିଲୁ ।
ସୁଷେଣ ମନ୍ତ୍ରୀର ପ୍ରସାଦେ ଜୀଇଂଲୁ ॥
ହନୁମନ୍ତ ମଉଷୋଧି ଆଣିଲା ବହୁତ ଧୂଗୁଂ ।
ଆମ୍ଭେ ସମସ୍ତେ ବସି ଶୋକ କରୁଥିଲୁ ॥
ଯେତେ ବୋଲି ରାମ ସୁଷେଣଙ୍କୁ ଚାହିଂ ।
ତୋହୋର ପ୍ରସାଦେ ଜୀଇଂଲା ମୋର ଭାଇ ॥
କିସ ଦେଇ ତୋତେ କରିବି ଉପଗାର ।
ଶୁଣି ପଛଘୁଞ୍ଚା ଦେଲା ମନ୍ତ୍ରୀବର ॥୯୦
ମସ୍ତକେ ହସ୍ତଦେଇ ବୋଇଲା ଗୋସାଇଂ ।
କିପାଇଂ ପ୍ରାର୍ଥନା ମୋତେ କର ରଘୁସାଇଂ ॥
ତୋହୋର ପୁନ୍ୟେ ତୋର ଭାଇ ପ୍ରାଣ
ପାୟେ ।
ହନୁମତ ମହାତମା କଲା ଯେ ଉପାୟେ ॥
ଶ୍ରୀରାମ ବୋଇଲେ କହ କିମ୍ପା ଯେହା ।
ସବୁଠାରେ ମୋତେ ହନୁମତ ଅଟଇ ସାହା ॥
ରାବଣକୁ ମାରି ଯେବେ ଅଯୋଧ୍ୟାକୁ ଯିବି ।
ପବନ ସୁତକୁ କପାଳ ବଣ୍ଟା ଦେବି ॥
ଯେସନେକ ସମୟେ ରକ୍ଷ କପି ବଳ ।
ପର୍ବତେ ଉଠିଣ ଭୁଞ୍ଜନ୍ତି ସ୍ୱାଦ ଫଳ ॥୧୦୦
ବିଚାରିଲେ ହନୁମତ ଯାଇଥିଲା ଆଣି ।
ଅମୃତ ଫଳ ତହିଂ ଖାଇଲା କପିମଣି ॥
ଯେତେବୋଲି ଗନ୍ଧମାର୍ଦନ ପର୍ବତେ
ବିହରନ୍ତି ।
ଗତୁଂ ଶତେ ଗୁଣେ ବଳମାନ ହୁଅନ୍ତି ॥
କିଳିକିଳା ରାବ ଛାଡ଼ନ୍ତି ଘନ ଘନ ।
ସୁଷେଣ ବୋଇଲା ତୁ ଶୁଣ ହନୁମାନ ॥
ଯେଦେବ ପର୍ବତ ଯେଥେ କିମ୍ପା ଥିବ ।
ଜାଣିଲେ ପିତାମହ କୋପ ଯେ କରିବ ॥
କାର୍ଯ ସରିଲା ତ ଯେହା ଘେନିଯାଅ ।
ଯହୁଂ ସେ ଆଣିଲୁ ସେହିଠାରେ ଥୁଅ ॥୧୦
ଶୁଣିଣ ସନ୍ତୋଷ ପବନ କୁମାର ।
ଶ୍ରୀରାମର ଚରଣେ କଲାକ ନମସ୍କାର ॥
ଯୂଥପତିମାନେ ପର୍ବତ ମୁଣ୍ଡେ ଦେଲେ ।
ଶୁଭେ ଆସ ବୋଲି ଶ୍ରୀରାମ ବୋଇଲେ ॥

ତିନି ଘଡ଼ି ରାତି ଥାଉଂ ବୀର ଗଲା ।
ଉତ୍ତରମୁଖ ହୋଇ ଗଗନେ ବିକ୍ରମିଲା ॥
ରାବଣ ଆଗେ ଯାଇ କହିଲାକ ଚାର ।
ଶୁଣ ଦେବ ରାବଣ ତୁ ପ୍ରତାପ ଲଙ୍କେଶ୍ୱର ॥
ଲକ୍ଷଣଙ୍କୁ ଶକ୍ତି ମାରି ଅଇଲୁ ଗୋସାଇଂ ।
ଯେତେବେଳ ଯାୟେ ସେ ଥିଲା
ମୋହଯାଇଂ ॥୨୦
ଗନ୍ଧମାର୍ଦନ ପର୍ବତକୁ ହନୁମତ ଗଲା ।
ପର୍ବତ ଶିଖ ଖଣ୍ଡ ଭାଙ୍ଗିଣ ଆଣିଲା ॥
ବିଶଲ୍ୟକରଣୀ ତହିଂ ଖୋଜିଲା ସୁଷେଣ ।
ନାକେ ନାଶଦେଲେ ଉଠିଲା ଲକ୍ଷଣ ॥
ସେହି ପର୍ବତ ହନୁ ନେଉଅଛି ଯେବେ ।
ବାହୁଡ଼ାଇ ନେଇ ଥୋଇ ଆସିବ
ସେହିଠାବେ ॥
ଶୁଣି ଲଙ୍କପତି କୋପେ ଥରହର ।
ପୁଣି ରାଇଲା ଦଶ ସହସ୍ର ଅସୁର ॥
ବୋଇଲା ଯେକ୍ଷଣି ବେଗ ହୋଇଯାଅ ।
ହନୁମତ ଯାଉଅଛି ବେଗେଣ
ଗୋଡ଼ାଅ ॥୩୦
ପର୍ବତ ଗୋଟାଏ ଅଛି ମୁଣ୍ଡେ ଧରି ।
କେମନ୍ତେ ଯୁଝିବ ସେ ଶାଳଶିଳ ଧରି ॥
ଛାଡ଼ି ନୁଆରିବ ଯେମନ୍ତ ବେଳେ ମାର ।
ମଉଷୋଧି ସହିତେ ପର୍ବତ ଚୂର କର ॥
ଶୁଣି ଦଇତ ବଳ ଅତିବେଗେ ଧାଇଂଲେ ।
ହନୁକୁ ଦଶ ସହସ୍ର ଯୋଜନେ ଭେଟ
ପାଇଲେ ॥
ଗଦା ଢେଲ ଚକ୍ର ପରିଘ ମାଇଲେ ।
ଯେକ ଲାଖ ହୋଇ ସମସ୍ତେ ବେଢ଼ିଲେ ॥
ଡାକ ଦିଅନ୍ତିରେ କାହିଂରେ ଆଜ ଯିବୁ ।
ଯେକା ହୋଇ ଆମ୍ଭ ହାଥରେ ପ୍ରାଣ
ଦେବୁ ॥୪୦
ଯେତେ ବୋଲିଣ ସେ ମାଇଲେ
ଶହସ୍ରମାନ ।
ମାରୁତି ବୋଇଲା ଯେ ରାବଣର ସନ୍ୟ ॥
ଭଳା ତରକିଣ ଅଛଇ ବଳ ପେଷୁ ।
ନୋହିଲେ କେମନ୍ତେ ରାଜାମାନେ
ପଳାଇଲେ ଦେଖୁଂ ॥

ଯେଦେବଙ୍କୁ ଜିଣିଲା ଯେହି ବୁଦ୍ଧିବଳେ ।
ରାମଙ୍କୁ ହାରିଲା ବିପାକ କର୍ମଫଳେ ॥
ସାମାନ୍ୟ ଛନ୍ଦକି ବୋଲିବା ଯେହାର ବୁଧି ।
ଯେତେ ବାଗେଣ ସେ ତିନିପୁର ସାଧି ॥
ଯେକା ଜଣକୁ ମୋତେ ପେଷିଲା ତିନି
ଥାଠ ।
ନିମିଷକେ ସଇନି ଆସନ୍ତି ଯେତେ
ବାଟ ॥୫୦
ଯେତେ ବୋଲିଣ ସେ ଲାଞ୍ଜ ବେଢ଼ାଇଲା ।
ଦୃଢ଼ କରି ଦୁଇହାଥେ ପର୍ବତ ଧଇଲା ॥
ପାଦଘାତେଣ ମାଇଲା ଦତ୍ୟବଳ ।
ଲାଞ୍ଜେ ଗୁଡ଼ିଆଇଲା ଦଇତ ଅଚାର୍ଗଳ ॥
ଯେକର ଉପରେ ନେଇ ଆରେକ
କଚାଡ଼ି ।
ପ୍ରାଣ ଛାଡ଼ି ଦଇତେ ସମୋଦ୍ର ମଧ୍ୟେ ବୁଡ଼ି ॥
ଯେବଣ ଦତ୍ୟମାନଙ୍କୁ ଲାଞ୍ଜେଣ ବାନ୍ଧିଥିଲା ।
ସୁନାସୂତା ପୋୟେଲା ପ୍ରାୟେକ ଦିଶିଲା ॥
ତାହାନ୍ତ ଓଝାଳି ପକାଇଲା ସିନ୍ଧୁ ଜଳେ ।
ଲୀଳାଗତି କରି ଚଳିଲା ଅନ୍ତରାଳେ ॥୬୦
ଯେତେ ଅସୁର ତହୁଂ ଉବୁରିଣ ଗଲେ ।
ରାବଣ ଆଗରେ ସେ ସକଳ କହିଲେ ॥
ଭୋ ଦେବ ଦଶଗ୍ରୀବ ତୋର ଯେତେ ସନ୍ୟ
ଗଲେ ।
ହନୁମତ ହାଥେ ସମସ୍ତେ ପ୍ରାଣ ଦେଲେ ॥
ମୁଣ୍ଡେ ପର୍ବତ ଧରି ପାଦେ ଯୁଦ୍ଧ କଲା ।
ଲାଞ୍ଜେ ବାନ୍ଧିଣ ସମୋଦ୍ରେ ବୁଡ଼ାଇଲା ॥
ସନ୍ୟ ସଘାରି ଗଲା ଗଗନେ ବିକ୍ରମି ।
ଧର୍ମେ ପଳାଇଣ ଅଇଲୁ ହାଦେ ସ୍ୱାମୀ ॥
ଯେ ବଚନ ଶୁଣି ରାଜା ଅଧୀର ବିରସ ।
ବୋଇଲା ଧାତା ମୋତେ କଲା ତୁଚ୍ଛ
କଷ ॥୭୦
ଯେଥୁଅନନ୍ତରେ ପବନ ତନୟେ ।
ଗନ୍ଧମାର୍ଦନ ପର୍ବତେ ଘଡ଼ିକେ ଯାଇ
ହୋୟେ ॥
ଯେବଣ ଠାବରୁ ଆଣିଲା ମଉଷୋଧି ଗିରି ।
ସେହି ଠାବରେ ଥୋଇଲା ପୂର୍ବବିଧି କରି ॥

ଯୋଳେଗ ମେଲାଇ ବାହୁଡ଼ି ଅଇଲା ।
ରାତ୍ର ପାହୁ ପାହୁ ଲଙ୍କାରେ ହୋଇଲା ॥
ଶ୍ରୀରାମ ଚରଣେ କଲାକ ନମସ୍କାର ।
ବୋଇଲା ବାଟେ ମୋତେ ବେଢ଼ିଲେ ଅସୁର ॥
ତୁମ୍ଭର ପ୍ରସାଦେ ମୁଂ ରିପୁବଳ ନାଶ କଲି ।
ଯେ ଯାହାର ଥାନେ ଗିରିବର ଥୋଇଣ ଅଇଲି ॥୮୦
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ରିକ୍ଷ କପିବଳ ସାଧୁ ସାଧୁ କଲେ ॥
ଯେଥିଅନନ୍ତରେ ଶୁଣି ଗୋ ଭଗବତୀ ।
ସୁବଳୟା ଗିରିକି ଅଇଲେ ଦାଶରଥି ॥
ନିତ୍ୟକର୍ମ ସାରିଲେ ଦେବ ନଦୀକୂଳେ ।
ସନ୍ଧ୍ୟା ସୁମରିଣ ଗଲେ ରାମ ଆଳେ ॥
ଫଳମୂଳ ଭୋଜନ କଲେକ ଯିସ ରୀତି ।
ସେନା ଯୂଥପତି ସଇନି ପ୍ରଭୃତି ॥
ସୁଗ୍ରୀ ବିଭୀଷେଣ ଲକ୍ଷଣ ଭୋଜନ କଲେ ।
ରକ୍ଷ କପିବଳ ମିଳିଣ ଖାଇଲେ ॥୯୦
ଶ୍ରୀରାମ ଆଚୋବନ କରିଣ ବସିଲେ ।
ଗୁଆଫଳ କଷା ଅର୍ଥେ ଖାଇଲେ ॥
କୃଷ୍ଣାଜିନ ଛାଲରେ ବସିଲେ ଗୋସାଇଂ ।
ସଇନି ବେଢ଼ିଣ ଚଉପାଶେ ରହି ॥
ଯେଥିଅନନ୍ତରେ ଶୁଣିମା ଦିବ୍ୟ ରସ ।
ପାର୍ବତୀ ପଚାରିଲେ ସଦାଶିବଙ୍କର ପାଶ ॥
ଭୋ ଦେବ କଥାଯେ ପଚାରିବି କହିବା ଯେବେ ସତ ।
ହନୁମତ ଗଲା ଯେ ଗନ୍ଧମାର୍ଦ୍ଦନ ପରବତ ॥
ରାବଣ ବ୍ରହ୍ମଶକତି ମାରିବାର ସମୟେ ।
ରବିର ତେର ଘଡ଼ିଯେ ତୋର ଲିତା ହୋୟେ ॥୧୦୦
ଶ୍ରୀରାମ ରୋଦନ କରନ୍ତେଣ ରବି ଗଲା ଅସ୍ତ ।
ମେରୁ ଉହାଡ଼ ହୁଅନ୍ତେ ନ ଦିଶିଲା ଦିନକର ନାଥ ॥
ଶକତି ଉପାଡ଼ନ୍ତେ ରାତ୍ର ପହଡ଼େକ ।
ଜାମ୍ବବ ଶ୍ରୀରାମକୁ ତିଆରି କହିବାକ ॥

ହନୁ ଗଲାବେଳେ ଦେଢ଼ ପ୍ରହର ଯେ ରାତି ।
କାଳନେମି ଦତ୍ୟକୁ ମାଇଲା ମାରୁତି ॥
ଗନ୍ଧନଦୀରେ ପଶି ମାଇଲା କୁମ୍ଭୀରିଣୀ ।
ତଟେ ପକାଇ ତାକୁ ଚିରିଲା କପିମଣି ॥
ତହୁଂ ସେ ଗନ୍ଧମାର୍ଦ୍ଦନ ପର୍ବତକୁ ଗଲା ।
ଗନ୍ଧର୍ବଙ୍କ ସଙ୍ଗତେ ଅନେକ ଯୁଦ୍ଧ କଲା ॥୧୦
ଭାଜିଲେକ ଗନ୍ଧର୍ବେ ହତଶସ୍ତ୍ର ହୋଇ ।
ଅଇଲାକ ହନୁ ଗିରିବର ମୁଣ୍ଡାଇ ॥
ଆସନ୍ତେ ହନୁକୁ ଅସୁରେ ଦେଖିଲେକ ବାଟେ ।
ଆଗେ ଓଗାଳିଣ ଯୁଦ୍ଧ କଲେକ ଦର୍ପିଷ୍ଟେ ॥
ତାଙ୍କୁ ମାରି ହନୁ ଆକାଶ ମାର୍ଗେ ଆସଇ ।
ଦକ୍ଷିଣକୁ ମୁଖକରି ସେହି ଚଳିଯାଇ ॥
ଅଯୋଧ୍ୟା ଦେଶରେ ନନ୍ଦୀଗ୍ରାମର ନିକଟେ ।
ତହିଂ ପରେ ଉଡ଼ିଯାଇ ପବନର ଚାଟେ ॥
ଦେଖିଣ ଭ୍ରଥବୀର ବାଟୁଳି ମାଇଲା ।
ସମ୍ଭାଳି ନ ପାରି ହନୁ ଭୂମିରେ ପଡ଼ିଲା ॥୨୦
ଭରତ ତାହାକୁ ପୁଣି ପଚାରିଲା କଥା ।
ହନୁମତ କହିଲାକ ସକଳ ବାରତା ॥
ଯେ କଥା ମୋତେ ଦେବ ଲାଗିଲା ସନ୍ଦେହ ।
ଯେହା ମୋତେ ବିଚାରି କୃତ୍ତିବାସ କହ ॥
ଈଶ୍ୱର ବୋଇଲେ ଶୁଣ ଶୁଭ୍ରକେଶୀ ।
ଯେଥିର ସନ୍ଦେଶ ତୋତେ କହଇ ବିଶେଷି ॥
ଯେହି ତ୍ରେତାଯୁଗେ ବଇତ୍ରଣୀ ବୋଲି ନଗ୍ରେ ।
ସେ ନଗ୍ର ଅଟଇ ଜମ୍ବୋଦ୍ୱୀପର ମାର୍ଗେ ॥
ସେ ନଗ୍ରେ ସାମବେଦୀ ବିଷ୍ଣୁ ଦାସ ବୋଲି ବ୍ରାହ୍ମଣେକ ।୩୦
ଭିକ୍ଷା ମାଗି ବିଭା ହୋଇଲା ବ୍ରାହ୍ମଣୀକ ॥
କେତେହେଂକ ଦିନେ ସେ ବ୍ରାହ୍ମଣୀ ହୋଇଲା ଯୁବତୀ ।
ଭାଦ୍ରବ ମାସେ ଅର୍କବାର ଯେକାଦଶୀ ତିଥି ॥
ବଇଧୃତି ନାମେ ଯୋଗ ଅମାବଇ ରାତି ।

ଯେମନ୍ତ ଦିନେ ବ୍ରାହ୍ମଣୀ ହୋଇଲା ରଜବତୀ ॥
ଯେ ପାପ ଦୋଷକୁ ବ୍ରାହ୍ମଣ ଭାଳୁଥାଇଂ ।
ଗିରସ୍ତ ଗିରସ୍ତାଣୀ ମନରେ ତାପ ପାଇ ॥
ଯେମନ୍ତେ କେତେହେଂକ ଦିନ ତହିଂ ଗଲା ।
ପଣ୍ଡିତର ମୁଖେ ବ୍ରାହ୍ମଣ ଗଣାଇଲା ॥
ଯେମନ୍ତେ ବିପାକ ପାଇଲା ବେନି ଦୋଷ ।
ବ୍ରାହ୍ମଣ ବିଷ୍ଣୁ ପିଣ୍ଡା ମନରେ ବିରସ ॥୪୦
ଯେକାନ୍ତେ ବ୍ରାହ୍ମଣ ମନେ ମନେ ଭାଳି ।
ଯେକଦିନେ ବଳକ୍ରାରେ ଘରଣୀକି ମନବଳି ॥
ସେଦିନ ରଜବତୀ ହୋଇଥିଲା ଅବଳା ।
ମୂର୍ଖ ବ୍ରାହ୍ମଣ ତାକୁ ବଳେ ରମଣ କଲା ॥
ତତ୍ର ଦୋଷେ ବ୍ରାହ୍ମଣ ହୋଇଲାକ କଷ୍ଟି ।
ସମୟେକ ବସିଲା ସେ ଅସମୟେ ସୃଷ୍ଟି ॥
ବ୍ରାହ୍ମଣୀ ବିଚାରଇ ଯେ ମୋହୋର ଗିରସ୍ତ ।
କେମନ୍ତେ ବଳିବ ମୋର ଛାଡ଼ିବାକୁ ଚିତ୍ତ ॥
ନିଜ ପ୍ରତି ତାହାକୁ ଥାଇ ସେବା କରି ।
ଯେମନ୍ତେ ତାହାକୁ ପାଳିଲା ବରଷ ଚାରି ॥୫୦
ଆନ ପୁରୁଷକୁ ଚିତ୍ତ ନ ବଳଇ ତାହାରି ।
ମନ ଚିତ୍ତ ପ୍ରକୃତି ଏକ କରି ॥
ଦିନୁଦିନ ସୁସ୍ଥ କରି ତାହାକୁ ଦିଅଇ ଅନ୍ନ ।
ଗନ୍ଧ ଚନ୍ଦନ ଚତୁସମ ବୋଳଇ ଅବିଛନ୍ନ ॥
ଯେମନ୍ତ କେତେହେଂକ ଦିନ ବହିଗଲା ।
ଦୃବଳ ବ୍ରାହ୍ମଣ ମଣ୍ଡୋପେ ବସିଥିଲା ॥
ସେ ନଗ୍ରକୁ ନଟକାରୀମାନେ ଯେ ଗଲେ ।
ରାଜାର ସନିଧ୍ୟେ ସେହୁ ନୃତ୍ୟ କଲେ ॥
ନାଟ ଦେଖି ବେଶ୍ୟାଙ୍କର ଦୃବଳ ବ୍ରାହ୍ମଣ ।
ଚିତ୍ତ ବଳିଲା ତାଙ୍କୁ ଯେ କରିବ ବିଡ଼ମ୍ବଣ ॥୬୦
ଯେମନ୍ତେ ବ୍ରାହ୍ମଣ ଘରକୁ ହାଦେ ଗଲା ।
ଅନ୍ନ ଭୁଞ୍ଜ ବୋଲି ବ୍ରାହ୍ମଣୀ କହିଲା ॥
ପଣ୍ଡା ବୋଇଲା ମୋର ଦେହରେ ସୁସ୍ଥ ନାହିଂ ।
ବ୍ୟାଧି ଥିଲେ କିଗୋ ଅନ୍ନକି ରୁଚଇ ॥

ନ କହି ବ୍ରାହ୍ମଣ ଶୋଇଲା ନିଜ ସ୍ଥାନେ ।
ପତିଭକ୍ତା ନାରୀ ପଚାରେ ବହନେ ॥
ସେ ବ୍ରାହ୍ମଣ ବୋଇଲା ମୋତେ ବେଶ୍ୟାଯେ ମୋହ କଲେ ।
ଅକାରଣ କଥାରେ ମୋତେ ସେ ଛନ୍ଦିଲେ ॥
ସେ ବ୍ରାହ୍ମଣୀ ଆଗେ ବ୍ରାହ୍ମଣ କହିଲା ।
ତାହାର ମନ୍ଦିରକୁ ନଗଲେ ପ୍ରାଣ ଛାଡ଼ିବି ବୋଇଲା ॥୭୦
ଶୁଣିଣ ବ୍ରାହ୍ମଣୀ ବୋଇଲା ଉତର ।
ଯେ କଥା ଭୋ ସ୍ୱାମୀ ଅଟଇ ନିକର ॥
ଅବୋଧ ବାମା ସେ ବୋଧିବି କେମନ୍ତେ ।
ସେବା କରିବି ସେ ବୋଧ ହୋଇବେ ଯେମନ୍ତେ ॥
ଯେବେତୁ ଭୋଜନ କର ବାବୁ ଦେବ ସ୍ୱାମୀ ।
ଅବଶ୍ୟ ତୋତେ ସେଠାକୁ ଯିବି ହାଦେ ଘେନି ॥
ଯେତେ କହି ତାହାକୁ ଭୁଂଜାଇଲା ଅନ୍ନ ।
ଦିନା କେତେ ଅନ୍ତରେ ବ୍ରାହ୍ମଣୀ କଲା ଗମନ ॥
ନିତିପ୍ରତି ତାଙ୍କର ଅଗଣା ଖରକଇଂ ।
ଚନ୍ଦନ ପିଚିକା ମାରି କ୍ରପୂର ନିଉଡ଼ଙ୍ଗ ॥୮୦
ତାହା ସାରି ଆସି କରଇ ସ୍ନାହାନ ।
ସ୍ୱାମୀ ସେବା ସାରି କରଇ ରନ୍ଧନ ॥
ଯେମନ୍ତେ ସେବା କଲା କେତେହେଂକ ଦିନ ।
ବେଶ୍ୟାଯେ ବସି ଯେ ଭାଳନ୍ତି ମନେ ମନେ ॥
କେବଣ ଆକାର ଯେ ଅଟଇ ବିପ୍ରୀତ ।
କେ ଆସି ରାତ୍ର ଥାଉଂ କରି ଏସନେକ କୃତ୍ୟ ॥
ଯେମନ୍ତେ ପ୍ରତିଦିନେ ଚଳଇ ବିପ୍ରନାରୀ ।
ଦିନେକ ଜଗି ବସି ଯେକଇ ଚତୁରୀ ॥
ପଥରେ ଚନ୍ଦନ ଛେଡ଼ା ପକାଇବାର ବେଳେ ।
ସେ ବେଶ୍ୟାମାନେ ଧଇଲେ ଯାଇ ବଳେ ॥୯୦

କେ ତୁମ୍ଭେ ଅଟ ଯେ କାହାର ତୁମ୍ଭେ ଅବଳା ।
କିମ୍ବା ତୁମ୍ଭେ ସେବା କର ଗୋ ଚଞ୍ଚଳା ॥
ବ୍ରାହ୍ମଣୀ ବୋଇଲା ମୋର ଯେଉଂ କାର୍ଯ୍ୟେ ସେବା ।
ତୁମ୍ଭେ ସତ୍ୟ କର ମୋତେ କାରଣ କରିବା ॥
ଯେବଣ ଦିନେ ତୁମ୍ଭେ ଗଲ ଆମ୍ଭର ଭୁବନକୁ ।
ମୋହୋର ସ୍ୱାମୀ ଅପାରଗ ଦେଖିଲା ତୁମ୍ଭକୁ ॥
କି ଦ୍ରବ୍ୟ ଦେବି ତୁମ୍ଭଙ୍କୁ କିସ ଅପୂରୁବ ।
ଯେ ଘେନି ସେବା କରଇ ତୁମ୍ଭକୁ ସ୍ୱାମୀ ଦାନଦେବ ॥
ତୁମ୍ଭର ପ୍ରସାଦେ ମୋର ବ୍ରତିବ ବ୍ରାହ୍ମଣ ।
ଶୁଣି ବେଶ୍ୟାମାନେ ବୋଇଲେ ତାହାକୁ ଆଣ ॥୧୦୦
ଯେ ତୋହୋର ସେବା ଶୁଝିବୁ କେମନ୍ତେ ।
ସ୍ୱାମୀ ଯେବେ ଜୀଇଂବେ ଯେଠାକୁ ଆସନ୍ତେ ॥
ସତ୍ୟ କରାଇ ବ୍ରାହ୍ମଣୀ ଘରକୁ ଅଇଲା ।
ବ୍ରାହ୍ମଣକୁ ଭୁଞ୍ଜାଇ ବୀରବେଶ କଲା ॥
ଶୁଣ ପାର୍ବତୀ ଶ୍ରୀରାମର ମହିମା ।
ସେହିଦିନ ଅଗ୍ନିକାର ମହରଷି ନଗ୍ର ସୀମା ॥
ସନ୍ଧ୍ୟା ସାରି ମନ ବନ୍ଦିଲାକ ମହରଷି ।
ଝିଣ୍ଟିକା ଗୋଟିକୁ ଶୂଳ ଦେଲେ ଯେ ଅଦୋଷୀ ॥
ଯେମନ୍ତେଣ ବିଧାତା ତାକୁ ଶାପ୍ୟ ଦେଲା ।
ଯେହି ଜନ୍ମେ ଜୀବନ୍ତେ ଶୂଳେ ବସିବୁ ବୋଇଲା ॥୧୦
ଦଇବର ମାୟା ଗୋ ଆନ କେ କରିପାରିବ ।
ରଷି ଲୟେ କରି ବ୍ରହ୍ମଗ୍ୟାନ ସାଧିବ ॥
ଯେମନ୍ତେ ସେ ନଗ୍ରେ ଟସ୍କର ଚୋରି କଲେ ।
ନଗ୍ରେ ପଶି ଅନ୍ତେଶ୍ୱରୁ ଚୋରାଇଲେ ॥
କଟେକ ବାହାରେ ନେଇ ବାଣ୍ଟିଲେକ ସୁନା ।

ଦେଖିଲେ ମଉନେ ବସିଛି ବ୍ରହ୍ମମୁନ୍ୟା ॥
ତାହାର ଛାମୁରେ ରତ୍ନଝରି ଥୋଇଂ ।
ବୋଇଲେ ଯେହାକୁ ଦେଲେ ନ କହିବ କାହିଂ ॥
ଯେମନ୍ତ ବିଚାରି ଦେଲେ ତାକୁ ଝରି ।
ଦିବସେ ରାଜାଘରେ ପଡ଼ିଲା ହୁରିକୁରି ॥୨୦
ଚୋର ଖୋଜା କରି ଦୋସାଧୁକୁ ହକାରି ।
ନଗ୍ର ବାହାରେ ଦେଖିଲେ ରଷି ଆଗେ ଝରି ॥
ଦେଖିଲେ ପ୍ରତକ୍ଷେ ସେ ଅଟଇ ଭଣ୍ଡାରର ।
ଧରି ନେଇ ଚୋର କଲେ ରାଜାଙ୍କ ଛାମୁର ॥
ଦେଖି ଦୋସାଧୁକୁ ରାଜା ଆଗ୍ୟାଂ ଦେଲା ।
ଜୀବନ୍ତା ଯେହାକୁ ଶୂଳ ଦିଅରେ ବୋଇଲା ॥
ତତକ୍ଷଣେ ଧାତାର ଶାପ୍ୟ ଯେ ପଡ଼ିଲା ।
ଅଗ୍ନିକାର ରଷି ବାଟେ ଶୂଳ ଯେ ବସିଲା ॥
ସେହି ଦିନ ହାଦେ ରଜନୀର ମଧେ ।
ବ୍ରାହ୍ମଣକୁ ଘେନି ଚଳଇ ସ୍ୱାମୀର କାର୍ଯ୍ୟ ଶଧେ ॥୩୦
ଯେମନ୍ତେ ଯାଉ ଯାଉ ନିବିଡ଼ ଅନ୍ଧାରେ ।
ରଷିଙ୍କର ଶୂଳ ଝୁଣ୍ଟିଲା ଗୋଡ଼ରେ ॥
ରଷି ବୋଇଲେ ଯେ କଷ୍ଟେ କେ ଚାଳିଲା ।
ପୁରୁଷ ହୋଇଲେ ଶିର ଛେଦ ହୁଅ ବୋଇଲା ॥
ଯୁବତୀ ହୋଇଲେ ତାହାର ନାସା ଛେଦ ହଉ ।
ମୋହୋର ଶାପ୍ୟ ତାକୁ ଗଡ଼ିଣ ନଯାଉ ॥
ଶୁଣି ବ୍ରାହ୍ମଣୀ ସ୍ତମ୍ଭୀଭୂତ ହୋଇଲା ରହି ।
ଦଶଦିଗକୁ ଯେ ଚାହାଇଂ ଚାନ୍ଦମୁହିଂ ॥
ମୁହିଂ ଯେବେ ସତୀ ପରିଭକ୍ତା ନାରୀ ।
ରାତ୍ର ନପାହୁ ବୋଇଲାକ ସ୍ତିରୀ ॥୪୦
ରାତ୍ର ପାହିଲେ ମରିବେ ଯେବେ ସ୍ୱାମୀ ।
ଯେହିମତି ଥାଉ ନପାହୁ ରୟଣୀ ॥
ଯେମନ୍ତେଣ ରାତ୍ର ବଢ଼ିଣ ପୁଣ ଗଲା ।
ସାତ ରାତ୍ର ଯେକ ରାତ୍ରେକ ଭୋଗ କଲା ॥
ସେହିଦିନ ହନୁମତ ଗଲା ଗନ୍ଧମାର୍ଦ୍ଦନ ପର୍ବତ ।
ମଉଷୋଧି ଆଣିଲା ପବନର ସୁତ ॥

ତୁ ଯାହା ପଚାରିଲୁ ଶୁଣସିରେ ସହି ।
ଯେଥିର ପାଇଁ ରାତ୍ର ବିଳମ୍ବ ଯେ ହୋଇ ॥
ପାର୍ବତୀ ବୋଇଲେ ଶୁଣ ଦେବ ହର ।
ଯେଥି କେବଣ କୃତ କଲା ଖଣ୍ଡିଆ
ଦ୍ୱିଜବର ॥୫୦
କହିବା ଦେବ କଥା ବିସ୍ତାର ଯେ କରି ।
ପତିଭକ୍ତା ସ୍ତିରୀ କଥା କହିଲେ ନସରି ॥
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ ।
ଯହୁଁ ସେ ରଜନୀ ବହୁତ ହୋଇଲା ॥
ପୃଥିବୀ ଆକୁଳ ଯେ ମରନ୍ତି ଜନପ୍ରଜା ।
ଗୋରୁ ବ୍ରାହ୍ମଣ ଦେବତା ହୋଇଲେ ଅପୂଜା ॥
ଯେସନେକେ ବିଷ୍ଣୁଙ୍କୁ ଜଣାଇଲେ ଯାଇଁ ।
ନାରାୟେଣ ବୋଇଲେ ସେ ସତୀର ବୋଲ
ଆନ ନୋହି ॥
ଋଷିଙ୍କର କଥା ତ ଅଟଇ ଅମେଣ୍ଟଣ ।
ଯେ ଦୁଇ କଥା ଅଟଇ ବଡ଼ାଇ କଷଣ ॥୬୦
ଆଗ୍ୟାଂ ହୋଇଲା ତାହାକୁ ଆଣ ପୁଷ୍ୟ
ବିବାନେ ବସାଇଂ ।
ସେ ବ୍ରାହ୍ମଣୀ କି ଘେନି ଆସ ଯାଇ ॥
ଆଗ୍ୟାଂ ହୋଇଲା ନବତନ ହୋଇଲା
ବ୍ରାହ୍ମଣ ।
କୋଷ୍ଟ ଦେହ ଛାଡ଼ି ଦିଶିଲା ମକରକେତନ ॥
ଆଗ୍ୟାଂ ହୋଇଲା ତୁମ୍ଭେ ବେନିଜନେ
ଯାଅ ।
ଅନେକ ସୁଖ ସମ୍ପଦେ ପୂଜା ପାଅ ॥
ସେ ଋଷି ଆସିବେ ବଇକୁଣ୍ଠପୁର ।
ବ୍ରହ୍ମାର ସାଙ୍ଗେ ସେ ବସିବେ ଆସ୍ତାନର ॥
କଳିଯୁଗରେ ତୁମର କୀରତି ରହିଥାଉ ।
ପତିଭକ୍ତା ସ୍ତିରୀକଥା ଯୁଗେ ଯୁଗେ
ରହୁ ॥୭୦
ଶୁଣ ଗୋ ଗଉରୀ ସେ ବ୍ରାହ୍ମଣର କଥା ।
ଯେକେ ରକ୍ଷା ହୋଇଲେ ସେ ପାତେକୀ
ତିନିଗୋଟା ॥
ଝିଣ୍ଟିକା ଗୋଟି ଯେ ଶୂଳରେ ବସିଥିଲା ।
ନାରାୟେଣ ଆଗ୍ୟାଂରେ ସେ ଲିଙ୍ଗେକ
ହୋଇଲା ॥

କଳିଯୁଗେ ନାମ ଝିଣ୍ଟିକେଶ୍ୱର ବୋଲି ।
ନରେ ପୂଜିଲେ ନାରାୟେଣ ତୋଳି ॥
ଯେଥୁ ଅନନ୍ତରେ ମନ୍ଦୋଦରୀ ନାଥ ।
କର୍ପୂର ତାମ୍ବୋଳ ଘେନିଲା ନିଜ ହସ୍ତ ॥
ଥୂଳଜଙ୍ଘ କୁମରକୁ ରାଇଣ ଆଗ୍ୟାଂ ଦେଲା ।
ଶକତି ଭେଦରୁ ହାଦେ ଲକ୍ଷଣ ଜୀଇଂଲା ॥
ପାରୁ ଯେବେ ବାବୁ ରିପୁବଳ ନାଶ ।
ସଭିଯେ ମଲେ ବାବୁ ତୋତେ ଅଛି ଆଶ ॥
ଘେନ ଗୁଆ ପାନ ମାର ରିକ୍ଷ କପି ।
ଶୁଣିଣ ଥୂଳଜଙ୍ଘ ବୋଇଲାକ କୋପି ॥
ସାନ ବୋଲିଣ ନ ପେଷୁ ତାତ ମୋତେ ।
ଯେବେ ଅକଣ୍ଟେକ ରାଜ୍ୟ ଦେବି ତୋତେ ॥
ଯେତେବୋଲି ବୀର ଘେନିଲା ଗୁଆପାନ ।
ନଗରୁ ବାହାର ହୋଇଲା ଚଢ଼ିଲା
ଦିବ୍ୟଯାନ ॥
ଚତୁରାଙ୍ଗବଳ ଘେନିଣ ସେ ଗଲା ।
ଅନେକ ସମ୍ପରେ ସେ ରଥରେ ବିଜେ
କଲା ॥୯୦
ସାଙ୍ଗେଣ ସିଙ୍ଘ ଅସୁର ସେ ଯାଇଂ ।
ଜଠର ଚନ୍ଦ୍ରନେତ୍ର ଅଇଲେ ଦୁଇ ଭାଇ ॥
ଉଲୁକ ମୋକ୍ଷକର୍ଣ୍ଣ ମାହାକର୍ଣ୍ଣ ବୀର ।
ରଥ ଗଜ ଅଶ୍ୱ ପାଦାନ୍ତି ଅପାର ॥
ପାତ୍ର ସେନାପତି ବାହାର ହୋଇଯାଆନ୍ତି ।
ଢୋଲ ଦମା ଟମକ ନିଶାଣ ବଜାନ୍ତି ॥
ଉଦଣ୍ଡ ଆଲମ୍ବ ବିଳମ୍ବ ପାଟଛତ୍ରୀ ।
ଡରେ ଥରହର କମ୍ପଇ ବସୁମତୀ ॥
ସୁରଗଣେ ସ୍ୱର୍ଗେ ବିଚାରନ୍ତି ବସି ।
ରାଗେ ଥୂଳଜଙ୍ଘ ସାଂଗ୍ରାମକୁ ଆସି ॥୧୦୦
ମହାଘୋର ସାଂଗ୍ରାମ ହୋଇବ ବହୁତ ।
ପିତାର ଅଭିମାନେ ସମରକୁ ଆଗତ ॥
ଯେସନେକ ବିଚାର କରନ୍ତି ଦେବାସୁର ।
ଉତ୍ତର ଗଡ଼ ଦ୍ୱାରେ ସଇନି ହୋଇଲେ
ବାହାର ॥
ଶ୍ରୀରାମ ଯେ ସୁବଳୟା ଗିରିରେ ଛନ୍ତି ରହି ।
ନୀଳ ସେନାପତି ପଠିଆଇଲା କହି ॥
ଭୋଦେବ ଆଗିଆଣି ଦଣ୍ଡରେ ଯୁଦ୍ଧ
ହୋଏଂ ।

ଆପଣେ ସେନାପତି ଅଟଇ ଲଙ୍କରାୟେ ॥
ଯେସନେକ ସମୟେ ଦିଶିଲାକ ଥାଠ ।
ବିଭୀଷେଣ ପଚାରନ୍ତି ଦଶରଥିର ଚାଟ ॥୧୦
ଲଙ୍କାରୁ ସନ୍ୟ ହୋଇଲେ ବାହାର ।
କି ଅବା ଆପଣେ ଅଇଲା ଦଶଶିର ॥
ଅପ୍ରମିତ ସଇନ ତ ଆସୁଛନ୍ତି ମାଡ଼ି ।
ଆଗିଆଣି ବଳ ପଳାଇଲେ ଠଣା ଛାଡ଼ି ॥
ଯାଅ ନଳନୀଳ ଅଙ୍ଗଦ ହନୁମତ ।
ଦୟା ନକରି ବାବୁ ମାର ଅସୁରନ୍ତ ॥
ଶୁଣିଣ ଆଗସରି ହୋଇଲେ ଚାରି
ସେନାପତି ।
ସଇନି ସହିତେ ଧାଇଂଲେ ଉଗ୍ରମୃତି ॥
ତରୁଶିଳ ଧରି ଦେଲେ କିଳିକିଳା ରାବ ।
ପର୍ବତ ଉପରେ ଦେଖନ୍ତି ରାଘବ ॥୨୦
ରଣଭୂମି ମଧ୍ୟେ ଯେ ଦୁଇବଳ ଭେଟ ।
ବାଜିଲା ଅନର୍ଥ ଦୁଇବଳ ଥାଠ ॥
ରଣଝଣ ଶବଦ ପଥର ପରିତାଳ ।
ତରୁଶିଳ ଶକତି ମୁଷଳ ଭାଲ ଶୂଳ ॥
ପିଟାପିଟି ଧରାଧରି ମରାମରି ହୁଅନ୍ତି ।
ଗଡ଼ାଗଡ଼ି ହୋଇଣ ଯେଣେତେଣେ ପଡ଼ନ୍ତି ॥
ଯେକକୁ ଆରେକ ନ ଘୁଞ୍ଚନ୍ତି ପୟେ ।
ମାର ମାର ଡାକ ଡାକନ୍ତି ଅତି କୋହେ ॥
ଅସ୍ତ୍ର ଶିଳା ବୃକ୍ଷ ବାଜିଣ ପ୍ରାଣ ହାରି ।
କେହୁ ଭୂମିରେ ମୋହ ଯାଇ ପଡ଼ି ॥୩୦
ରକତ ନଦୀ ବହଇ ଚଉପାଶ ।
ଅପୂର୍ବ ସମର ହୋୟେ ଘଡ଼ି ଦଶ ॥
ରିକ୍ଷ କପିବଳ ମାଇଲେ ବେଢ଼ ପାରୁ ।
ଭାଙ୍ଗିଲେ ଅସୁର ବଳ ହନୁମତକୁ ଦେଖି
ଦୂରୁ ॥
ଅଙ୍ଗଦ ନଳନୀଳ ପଶିଲେ ଆସି ରଣେ ।
ତେଡ଼େ ଅସୁର ବଳ ପଳାଇଲେ କେଣେ ॥
ଥୂଳଜଙ୍ଘରେ ଶରଣ ପଶିଲେ ବଳ ଯାଇଂ ।
ଦେଖି ରାବଣ ସୁତ ବୋଇଲାକ ଚାହିଂ ॥
କିମ୍ପାରେ ପଳାଅ ଯେ ମୋହୋର ଥାନ୍ତେ ।
ରିକ୍ଷ କପି ଆଜ ଯିବେକି ଜୀବନ୍ତେ ॥୪୦
ଦେଖ ଦେଖ ବୋଲି ଧୁଆଇଂଲେକ ରଥ ।

ପିଠି ରକ୍ଷା କରିଅଛନ୍ତି ଅନେକ ଦଇତ ॥
ଉଲୁକ ମୋକ୍ଷ କର୍ଣ୍ଣ ମାହାକର୍ଣ୍ଣ ତୁଳେ ।
ବୀର ଜଠର ଚନ୍ଦ୍ରନେତ୍ର ଧାଇଁଲେ ॥
ସିଂଘ ଅସୁର ସହିତେ ଷଡ଼ରଥୀ ।
ଚାଳିଶି ସହସ୍ର ଅଶ୍ୱ ଅହିବ୍ରତେକ ହସ୍ତୀ ॥
ପୟେକାର ସଇନି ଗଣି ତ କି ପାରି ।
ରଥୀ ମହାରଥୀ ଧାଇଁଲେ ଆଗ ସରି ॥
ମାର ମାର ଶବଦ ବାଜଇ ଅବିଚ୍ଛିନେ ।
କି ଅବା ମେଘମାନେ ରହନ୍ତି ଗଗନେ ॥୫୦
ରିକ୍ଷ କପି ବଳେ ପଶିଲେକ ଝାସି ।
ଦୁଇ ବଳ ସମର କଲେ ମିଶାମିଶି ॥
ଥୁଳଜଙ୍ଘ ନାରାଜ ପଡ଼ଇ ଅଗ୍ନି ଜାଣି ।
ଯେକଇ ବାଣକେ ଲକ୍ଷେ କପି ହାଣି ॥
ସାତ ରଥୀ ଯେକମନେ ଯୁଦ୍ଧ କଲେ ।
ଶ୍ରାବଣ ବରଷା ଜାଣି ନାରାଜ ବରଷିଲେ ॥
ଖଣ୍ଡ ଖଣ୍ଡ କରି କାଟିଲେ କପିବଳ ।
ଦେଖିଣ ଧାଇଁଲା ଅଙ୍ଗଦ ନଳନୀଳ ॥
ହନୁମତକୁ ଘେନି ହୋଇଲେ ଜଣ ଚାରି ।
ଥୁଳଜଙ୍ଘ ଉଗାଳିଲେ ଶିଳାବୃକ୍ଷ ଧରି ॥୬୦
ଦେଖି ରାବଣ ସୁତ ଯେକ ନାରାଚେ ମାଇଲା ।
ଚାଗିଙ୍କରି ତରୁ ହେଲେଣ ବିନାଶିଲା ॥
ଚନ୍ଦ୍ରନେତ୍ର ନାମେ ଯେବଣ ସେ ବୀର ।
ଅଙ୍ଗଦର ସଙ୍ଗେ କଲାକ ସମର ॥
ଥୁଳଜଙ୍ଘ ସଙ୍ଗେ ନୀଳ ହୋଇଲେ ଭେଟାଭେଟି ।
ଜଠୋର ହନୁମନ୍ତ ହୋଇଲେ ଭେଟାଭେଟି ॥
ମହାକର୍ଣ୍ଣ ରହିଲା ନଳ ସେନାପତି ଆଗେ ।
ଉଲୁକ ମୋକ୍ଷକର୍ଣ୍ଣ ଧାଇଁଲେ ଦୁହେଁ ରାଗେ ॥
ସିଙ୍ଘ ଅସୁର ସହିତେ ତିନିଜଣ ।
ସଇନି ଭିତରେ ଯେ କଲେ ମହାରଣ ॥୭୦
ଚନ୍ଦ୍ରନେତ୍ର ନାମେ ଯେବଣ ଅସୁର ।
ଅଙ୍ଗଦ ଉପରେ ମାଇଲା ମୁଦ୍ଗର ॥
ମୁଣ୍ଡେ ବାଜନ୍ତେ ବାଳୀର ତନୟେ ମୋହେ ଗଲା ।
ପୁଣି ଚେତନା ପାଇ ସେ ବିଧାୟେ ମାଇଲା ॥
ରହୁବରେ ଉଠି ମାଇଲା ବଜ୍ରମୁଠି ।
ହୃଦେ ବାଜି ଦଇତ ପଡ଼ିଲା ମହୀ ଲୋଟି ॥
ସଚେତ ହୋଇଣ ପୁଣି ବିଧାୟେ ମାଇଲା ।
ବାଳୀର ତନୟେ ତା ଫେରାଇଣ ଗଲା ॥
ଦୁହେଁ ଜଡ଼ବନ୍ଧେ ଗଡ଼ାଗଡ଼ି ଯାନ୍ତି ।
ଯେକ ତନୁ ଧରି ବାରିତ ନୁହନ୍ତି ॥୮୦
ରହୁବରୁ ଆସି ପଡ଼ିଲେ ଦୁହେଁ ତଳେ ।
ଉପରେ ଦଇତ ତଳେ ବାଳୀର ଦୁଲାଳେ ॥
ଅଙ୍ଗଦର ତଣ୍ଟି ମାଡ଼ିଲା ଚନ୍ଦ୍ରନେତ୍ର ।
ବିକଳେ ରଡ଼ି ଛାଡ଼ଇ ବାଳୀସୁତ ॥
ଆଣ୍ଠୁ ଭିଡ଼ି ଦେଇ ପେଟକୁ ଖୁନ୍ଦିଲା ।
ଟାଚୋଇ ନ ପାରି ଦଇତ ତଳରେ ପଡ଼ିଲା ॥
ଧାଇଁଣ ଅଙ୍ଗଦ ବସିଲା ତାର ବୁକୁ ।
କୋପେଣ ମୁଥେ ଯେ ମାଇଲା ମୁଣ୍ଡକୁ ॥
ଚନ୍ଦ୍ରନେତ୍ର ମୁଣ୍ଡ ହୋଇଲା ବେନି ଫାଳ ।
ମସ୍ତକୁ ରୁଧିର ବହଇ ଖଳ ଖଳ ॥୯୦
ପଡ଼ିଲାକ ରାକ୍ଷାସ ଗଲା ତାହାର ପ୍ରାଣ ।
ଜଠର ହନୁମତର ହୋଇଲା ମହାରଣ ॥
ପବନ ତନୟେ ମାଇଲା ମୁଦ୍ଗର ।
ନାରାଚେ ଛେଦିଲା ଦତ୍ୟ ତାହା ଦୂରେଦୂର ॥
ଦେଖି ହନୁମତ ପର୍ବତେକ ମାରି ।
ଜଠର ରହୁବର ଉପରେ କଚାଡ଼ି ॥
ଚାରି ଅଶ୍ୱ ରଥ ଦଇତ ସହିତେ ।
ପ୍ରାଣ ଛାଡ଼ି ଦଇତ ପଡ଼ିଲା ଭୂମିଗତେ ॥
ମାହାକର୍ଣ୍ଣ ନୀଳ ସମର କଲେ ବେନି ।
ନୀଳ ସେନାପତି ପିଟିଲା ବୃକ୍ଷ ଘେନି ॥୧୦୦
କିଛୁତ ନାରାଚେ ଦଇତ ନିବାରି ।
କୋପେ ମହାବୀର ପର୍ବତେକ ମାରି ॥
ପରିଘ ଘେନି ତାହା ଛେଦିଲା ମାହାକର୍ଣ୍ଣ ।
ଦେଖି ଧାଇଁଲେ ଅଙ୍ଗଦ ହନୁମାନ ॥
ବିଧା ମାରି ଅଙ୍ଗଦ ମାରିଲା ଅଶ୍ୱ ଚାରି ।
ସାରଥିକି ମାଇଲା ପବନ ମହାବଳୀ ॥
ମାହାକର୍ଣ୍ଣକୁ ବୀର ମାଇଲା ବାଳ ଧରି ।
ତାହାରି ଖଡ଼ଗ ଧରି ହାଣିଲା କୋପ କରି ॥
ବେକ ସଳଖୁଁ ଛିଡ଼ିଗଲା ବୁକୁଅଧ ।
ତାହାର ହସ୍ତ ଗୋଟାଏ ରହିଅଛି କନ୍ଧ ॥୧୦
ଅନ୍ତ ବାହାର ହୋଇ ପଡ଼ିଲା ପିଣ୍ଡ ଖଣ୍ଡ ।
ନୀଳ ହସ୍ତରେ ଅଛଇ ଦଇତର ମୁଣ୍ଡ ॥
ଦକ୍ଷିଣ ଭୁଜେ ଖଡ଼ଗ ରଥୁଁ ଓହ୍ଲାଇଲା ।
ଭୂମିରେ ମହାକର୍ଣ୍ଣ ଶିର କାଟି ପକାଇଲା ॥
ଅଙ୍ଗଦ ହନୁମତ ସହିତେ ବୀର ତିନି ।
ସିଙ୍ଘ ଅସୁର ଉଲୁକ ମାରନ୍ତି ସଇନି ॥
ଆବର ଅଛଇ ମୋକ୍ଷକର୍ଣ୍ଣ ଦଇତ ।
ରିକ୍ଷ କପିବଳ ମାରନ୍ତି ଅପ୍ରମିତ ॥
ଦେଖି ଅଙ୍ଗଦ ହନୁମତ ତିନି ବୀର ।
ଦଇତକୁ ପିଟିଲେ ସେ ଘେନିଣ ତରୁଶିଳ ॥୨୦
ଧାଇଁ ବାଳୀସୁତ ମୋକ୍ଷକର୍ଣ୍ଣ ରଥେ ।
ବୃକ୍ଷେକ ପିଟିଲା ପୁଣି ମାଇଲା ପର୍ବତେ ॥
ଜାଣିଣ ଅସୁର ରହୁବର ଛାଡ଼ିଗଲା ।
ହନୁମତକୁ ଦେଖି ଶକତି ମାଇଲା ॥
ପବନତନୟର ବୁକୁରେ ଶର ବାଜି ।
ନୀଳ ଧାଇଁଲା ହୋଇଣ ବଇରାଗୀ ॥
ଯେବଣ ଶହସ୍ର କରେ ଧରିଥିଲା ।
ମୋକ୍ଷକର୍ଣ୍ଣକୁ ସେ ପେଲିଣ ମାଇଲା ॥
ଫେରାଇ ଦଇତ ତଳେ ଗଲା ଗଳି ।
ହନୁମତ ଧଇଲା ଶକତି ଉଗାଳି ॥୩୦
ଅଙ୍ଗଦ ସହିତେ ବେଢ଼ିଲେ ତିନିବୀର ।
ମଧ୍ୟେ ମୋକ୍ଷକର୍ଣ୍ଣ ବିନ୍ଧଇ ତୀକ୍ଷଶର ॥
ନୀଳ ଧନୁ ତାର ଖଡ଼ଗେ କାଟି ପକାଇଲା ।୪୦
ଦକ୍ଷିଣ ଭୁଜ ତାର ଅଙ୍ଗଦ ଧଇଲା ॥
ହନୁମତ ତାର ଧଇଲା ବାମକର ।
ଚରଣ ତାର ଧରିଅଛି ବାଳୀର କୁମର ॥
ଚାରି ଡାଳ ଧରି ବୁଲାଇଲେ ଚାରି ଘାନ୍ତି ।
ମୋକ୍ଷକର୍ଣ୍ଣ ବୀର ରୁଧିର କଲା ବାନ୍ତି ॥
ହାଥନ୍ତ ଛାଡ଼ିଣ ଗୋଡ଼ନ୍ତ ଉଛୁଡ଼ିଲେ ।
ହଙ୍କାହଙ୍କି କରି ଚିରି ପକାଇଲେ ॥
ଦୁହେଁ ଦୁଇଖଣ୍ଡ ଖେନିଣ କୋପେ ଧାମନ୍ତି ।

ସିଂଘନାଦ ସନିଧେ ଯାଇଣ ମିଳନ୍ତି ॥
ମୃତ୍ୟୁଶବ ବାଜିଲା ସିଂଘର ରହୁବର ।
ପଳାଇଲା ରାକ୍ଷସ ପବନହୁଁ ଖର ॥
ଗୋଡ଼ାଇଣ ନୀଳ ମାଇଲା ଖଡ଼ଗ ଘେନି ।
କଟି ଭାଗଠାରୁ ପକାଇଲା ଛିନି ॥
ପ୍ରାଣ ଛାଡ଼ିଲା ସେ ଅସୁର ସିଂଘବୀର ।
ଉଲୁକ ନାମେ ଅଛି ଯେକଇ ଅସୁର ॥
ତାହାକୁ ତିନିବୀରେ ବେଢ଼ିଲେକ ଯାଇଂ ।
ଦେଖି ଦଇତ ନାରାଜ ବିନ୍ଧିଲା କୋପ ବହି ॥୫୦
ନଳ ହାଥୁଂ ଖଡ଼ଗ ପକାଇଲା କାଟି ।
ହନୁମତକୁ ଯେ ବଜ୍ରଶୂଳେ ପିଟି ॥
ଅଙ୍ଗଦକୁ ଭୁଷଣ୍ଡୀ ମାଇଲା କୋପଭରେ ।
ପାଞ୍ଚବାଣ ମାଇଲା ନୀଳର ଉପରେ ॥
ସହିକରି ତାହା ଉଠିଲେ ରଥେ ଯାଇଂ ।
ଉଚ୍ଛୁଡ଼ି ଶହସ୍ର ପକାଇଲେ ଭୂଇଂ ॥
ଦୁଇ ହାଥ ଧରି ଅଙ୍ଗଦ ହନୁମତ ।
ବାଳ ଧରି ନଳ ମାରିଲା ତୁରିତ ॥
ଦଇତ କେଶ ଧରି ପକାଇଲା ତୋଳି ।
ହନୁ ଅଙ୍ଗଦ ସହିତେ ପଡ଼ିଲେ ମହୀଆଳି ॥୬୦
ଦେଖି ଦେବତାଯେ ସାଧୁ ସାଧୁ କଲେ ।
ଯେ କର୍ମ ଆନରେ ନୁହଇ ବୋଇଲେ ॥
ଦଇତ ସହିତେ ହନୁ ଅଙ୍ଗଦ ତିନି ଜଣ ।
ତୋଳି ପକାଇଲା ସାମାନ୍ୟ କି ପ୍ରାଣ ॥
ଧନ୍ୟ ତୁ ବଛ ଅଟୁ କପିବଳା ।
ନୋହିଲେ କେମନ୍ତେ ସମୋଦ୍ରେ ପଥର କଲୁ ଭେଳା ॥
ଯେସନେକ ପ୍ରଶଂସା କରନ୍ତି ଦେବଗଣ ।
ଯେଥିଅନନ୍ତରେ ଯୁଦ୍ଧର କଥା ଶୁଣ ॥
ଉଲୁକ ଭୂମିରେ ପଡ଼ିଲାକ ଯାଇଂ ।
ହନୁମତ ଅଙ୍ଗଦ ସହିତେ ମୋହ ଯାଇଂ ॥୭୦
ଦେଖି ନଳବୀର ମନେ କଲା ଖଙ୍ଗ ।
ମନେ ବିଚାରିଲା ହୋଇଲା ରସଭଙ୍ଗ ॥
ଯେସନେକ ସମଯେ ଉଠିଲେ ତିନିବୀରେ ।
ଦଇତକୁ ଉଗାଳିଲେ ପବନହୁଂ ଖରେ ॥
ପଛେଣ ଅଙ୍ଗଦ ମାଇଲା ନେଇ ଲାତେ ।
ଆଗକୁ ପଡୁ ବୋଲି ପେଲିଦେଲା ହନୁମତେ ॥
ପୁଣି ତାରାସୁର ବିଧାୟେକ ମାରି ।
ହନୁମତ ଚାପୋଡ଼େ ମାଇଲା ମନଭରି ॥
ମୁଧୁନା ଫାଟି ଉଲୁକ ପ୍ରାଣ ଦେଲା ।
ଥୁଳଜଙ୍ଘ ତାହାଙ୍କ ରଣ ଦେଖୁଥିଲା ॥୮୦
ନୀଳ ଯେ ଉଗାଳିଥିଲା ତାକୁ ରଣେ ।
ଭାଜିଲା କପିବୀର ବିଷମ ତୀକ୍ଷ ବାଣେ ॥
ହନୁମତକଇ ଷାଠିଯେ ଅଙ୍ଗଦକଇ ଷୋଳ ।
ପାଞ୍ଚବାଣେ ମୋହଗଲା ହାଦେ ନୀଳ ॥
ରିକ୍ଷକପି ବଳ କିଚିଂତେ ବିନାଶଇଂ ।
ହୁକାଂରିଣ ବୀର କୋପେଣ ବିନ୍ଧଇ ॥
ପଳାଇଲେ ସଇନି ବିଷମ ଘାତ ପାଇଂ ।
ରହ ରହ ବୋଇଲେ ନ ରହନ୍ତି କେହି ॥
ଅସୁରେ ପିଠିପାଇ ଗୋଡ଼ାଇଣ ମାରନ୍ତି ।
ଯେକା ଥୁଳଜଙ୍ଘ ପକାଇଲା ମନ୍ତ୍ରି ॥ ୯୦
ହନୁ ଅଙ୍ଗଦ ନଳ ନୀଳ ଉଗାଳିଲେ ।
ଅସୁର ଶହସ୍ର କରନ୍ତେ ପଛଘୁଞ୍ଚା ଦେଲେ ॥
ସଇନି ସମ୍ଭାଳି ହେଲୁ ହେଲୁ ଯାନ୍ତି ।
ନାରାଜଙ୍କ ତେଜ ସହି ନପାରନ୍ତି ॥
ଦଇତ ରହୁବର ଚଳଇ ଘନ ଘନ ।
ଭାଜିଣ ପଳାଇଲେ ଶ୍ରୀରାମର ସନ୍ୟ ॥
ସୁବଳୟା ପରିଯନ୍ତେ ବଳ ନେଲା ଖେଦି ।
ଯେକା ନାରାଜକେ ଲକ୍ଷେ କପି ଛେଦି ॥
ଶ୍ରୀରାମ ବୋଇଲେ ହୋ ଭାଜିଲା ମୋର ବଳ ।
ପଳାଇ ଅଇଲେ ହନୁ ଅଙ୍ଗଦ ନଳ ନୀଳ ॥୧୦୦
ଧାଅଂ ସୁଗ୍ରୀବର ଧାଅଂ ବିଭୀଷେଣ ।
କି ଅବା ଆପଣେ ଅଇଲା ରାବଣ ॥
ଯେତେ ବୋଲିଣ ଆପଣେ ସଜ ହୁଅନ୍ତି ।
ଦ୍ରୋଣ କଷିଣ କୋଦଣ୍ଡେ ଗୁଣ ଦିଅନ୍ତି ॥
ଲକ୍ଷଣ ସହିତେ ସୁଷେଣ ଶତବଳ ।
ଜମ୍ୱେବ ସାରାସ ପାରାସ ସକଳ ॥
ଡାଳିମ୍ୱ କଞ୍ଚଣ ଚନ୍ଦନ ସୁସୋଦନ ।
ତାରାକ୍ଷ ଶତବାଳି ଗନ୍ଧମାରଦନ ॥
ରିଷଭ କାଳିଞ୍ଜନ ବିବିଧ ମହୀନ୍ଦ୍ର ।
ଗବୟେ ଗବାକ୍ଷ କାମୋଦ ମହୀନ୍ଦ୍ର ॥୧୦
ଦଶକାଳବୃଦ୍ଧ ଶଉରୀ ସେନାପତି ।
ତରୁଶିଳ ଘେନି ଧାଇଂଲେ ଉଗ୍ରମୂର୍ତି ॥
ତାରାର ପିଅର ସୁଗ୍ରୀବରର ଶଶୁର ।
ରମଣ କାଳିମୁଖ ଦଧିମୁଖ ବୀର ॥
ବଳିମୁଖ ପନଶିଳ ତରୁଶିଳ ଧରି ।
ଶ୍ରୀରାମ ସହିତେ ଧାଇଂଲେ କୋପକରି ॥
ଭାଜିଲାର ବଳ ପର୍ବତେ ଯାଇଂ ଉଠି ।
ନଳନୀଳ ଅଙ୍ଗଦ ହନୁ ଦେଇଛନ୍ତି ପିଠି ॥
ଥୁଳଜଙ୍ଘ ନାରାଜ ବିନ୍ଧଇ ଘନ ଘନ ।
ସୁବଳୟା ଗିରିରେ ଉଠଇ ତାର ଯାନ ॥୨୦
ଆଗେ ଉଗାଳିଲେ ପଚିଶ ଯୂଥପତି ।
ଅଷ୍ଟସେନା ଆଗରେ ହୋଇଛନ୍ତି ରଘୁପତି ॥
ରିକ୍ଷ କପିବଳ ଭିତରେ ପେଲି ପଶଇ ।
ତରୁଶିଳ ପଡ଼ନ୍ତେ କିଞ୍ଚିତେ ବିନାଶଇ ॥
ହନୁମତ ଅଙ୍ଗଦ ଭାଜି ପଳାଇଥିଲେ ।
ଶ୍ରୀରାମଙ୍କୁ ଦେଖି ପାଲଟି ଧାଇଂଲେ ॥
ନଳ ନୀଳ ସହିତେ ଯୂଥ ସେନାପତି ।
ଉଗାଳିଲେ ନ ରହଇ ବିଶର୍ବାର ନାତି ॥
ମୂଷଳ ଶକତି ବିବିଧ ବଜ୍ରବାଣ ।
ଗଦା ଛେଲ ଚକ୍ର କୋନ୍ତ ଗରୁ ଟାଣ ॥୩୦
ଭୂଷଣ୍ଡୀ ମୁଦ୍‌ଗର ଘେନି କରବାଳ ।
ଅବିଶ୍ରାମେ ପେଷଇ ରାବଣ ଦୁଲାଳ ॥
ତେଡ଼େ ସୈନ୍ୟ ଗୋଟା ବିମୁଖ ପାଇଲା ।
ପର୍ବତ ଉପରେ ଆଣି ରହୁବର କଲା ॥
ଶ୍ରୀରାମକୁ ଲୋଡ଼ଇ ଆନେ କାର୍ଯ୍ୟ ନାହିଁ ।
ଦେଖି ଉଗାଳିଲେ ରଘୁକୁଳ ସାଇଂ ॥
ଲକ୍ଷଣ ବିଭୀଷେଣ ବିନ୍ଧନ୍ତି ନାରାଜ ।
ଦେଖି ବିଚାରଇ ରାବଣ ତନୁଜ ॥
ଯେ ସେ ଯତିଆ ଶ୍ରୀରାମ ଲକ୍ଷଣ ।
ଯେମନ୍ତ ବୋଲି ଶସ୍ତ୍ର ମାଇଲେ ଅବିକ୍ଷଣ ॥୪୦
ତିନିଙ୍କରି ଶହସ୍ର ଯେ ଛେଦଇ ଯେକାଜଣ ।

ଘଡ଼ିଯେ ପରିଯନ୍ତେ ହୋଇଲା ମହାରଣ ॥
ଦେଖିଣ ଲକ୍ଷଣ ମାଇଲା ତୀକ୍ଷବାଣ ।
ଧୂରୁଂ ନିବାରିଲା ତାହା ରାବଣ ନନ୍ଦନ ॥
ଗଦାଯେକ ଧରି ବିଭୀଷେଣ ମାରି ।
ଦଇତ ଛେଦିଲା ତାହା ବାବଲ ବାଣ ଧରି ॥
କୋପେ ଶ୍ରୀରାମ ଅଗ୍ନିବାଣ କଲେ ।
ରଥ ସହିତେ ଦତ୍ୟକୁ ଦହି ପକାଇଲେ ॥
ପଡ଼ିଲା ଥୂଳଜଙ୍ଘ ଭାଜିଲେ ଦତ୍ୟବଳ ।
ଗୋଡ଼ାଇ ରାକ୍ଷସଙ୍କୁ ମାରନ୍ତି ତରୁଶିଳ ॥୫୦
ଥୋକାଯେକ ମଲେ ଥୋକାଯେକ ଉବୁରିଣ
ଗଲେ ।
ନିଜ ଲଙ୍କାଗଡ଼େ ପଳାଇ ପଶିଲେ ॥
ଗଡ଼ଦ୍ୱାରୁ ବାନରେ ବାହୁଡ଼ି ଆସନ୍ତି ।
ସୂର୍ଯ୍ୟ ଅସ୍ତ ହୋଇଲା ଆଛାଦିଲା ରାତି ॥
ଶ୍ରୀରାମ ଲକ୍ଷଣ ସଧ୍ୟାଂ ସୁମରିଲେ ।
ବିଭୀଷେଣକୁ ରାଘେବ ପଚାରିଲେ ॥
ବାବୁ ଦଇତରେ ଅଇଲା ଯେତେ ଧୂର ।
ରଥ ଟେକିଲା ଆଣି ପର୍ବତ ଉପର ॥
କିସ ଯେହାର ନାମ କାହାର ଯେ ସୁତ ।
ଶୁଣି ବିଭୀଷେଣ ଯୋଡ଼ଇ ବେନି
ହସ୍ତ ॥୬୦
ଶୁଣ ଦେବ ଠାକୁର ବ୍ରହ୍ମାଣ୍ଡ ଗୋସାଇଂ ।
ଯେ ଥୂଳଜଙ୍ଘକୁ କ୍ଷତ୍ରୀ ସମ ନାହିଂ ॥
ରାବଣର ତନୟେ ଇନ୍ଦ୍ରଜିତ ଭ୍ରାଥ ।
ମାଇକା ଅଜା ଯେହାର ରକତ ବୀର୍ଯ୍ୟ
ଦଇତ ॥
ଇନ୍ଦ୍ରଜିତ ସମାନେ ଅଟଇ ଧନୁର୍ଦ୍ଧର ।
ବ୍ରହ୍ମ ଶହସ୍ର ସମାନେ ଅଟଇ ଯେହାର
ଯେକୁଯେକ ଶର ॥
ଦେବ ଦାନବରେ ନୋହଇ ପ୍ରାଣନାଶ ।
ତାହାକୁ ସଙ୍ଘାରିଲେ ଦଶରଥଙ୍କର ଶିଷ ॥
ଯେହାକୁ ରାବଣର ଅନେକ ଆଶ ଥିଲା ।
ସମସ୍ତେ ମଲେ ବୋଲି ଏହାକୁ
ବରଗିଲା ॥୭୦
ଯହୁଂ ସେ ଇନ୍ଦ୍ରଜିତ ପଡ଼ିଲା ମହାରଣେ ।
ଭାଳି ଥୂଳଜଙ୍ଘକୁ ପେଷିଲା ରାବଣେ ॥
ତୁ ତାହାକୁ କିଞ୍ଚିତ ନାରାଜେ କଲୁ ନାଶ ।
ଆଜ ସରିଲା ଦେବ ଦଇତଙ୍କର ସାହସ ॥
ଯେକାମାତ୍ର ରାବଣ ଅଛଇ ବୀର ହୋଇଂ ।
ଆଉମାନଙ୍କୁ ହାଦେ ମୋହୋର ଗଣନା
ନାହିଂ ॥
ଶୁଣିଣ ଶ୍ରୀରାମ ହୋଇଲେ ହସ ହସ ।
ନିଦ୍ରାରେ ଅଶକତ କଉଶୁଲାର ଶିଷ ॥
କୃଷ୍ଣାଜିନ ଛାଲେ ପହୁଡ଼ିଲେକ ଯାଇଂ ।
ଧନୁଶର ଧରି ଜଗଇ ଉର୍ମିଳାର
ସାଇଂ ॥୮୦
ନୀଳ ଆଗିଆଣି ହନୁ ରଖଇ ପଖା ।
ବାଜଣା ବଜାଇ ବିଭୀଷେଣ ବୁଲଇ
ଯେକା ॥
ସୁଗ୍ରୀବର ରାଜା ଜଗଇ ସିଂଘଦ୍ୱାର ।
ସର୍ବଦା ଆଗିଆଣି ବାଳୀର କୁମର ॥
ଡାହାଣ ପାଖକଇ ଜମ୍ୱେବ ମନ୍ତ୍ରୀ ଯାୟେ ।
ସେନା ଯୂଥପତି ନିଷ୍ଚିନ୍ତେଣ ଶୋୟେ ॥
ରିକ୍ଷ କପିବଳ ନିଦ୍ରାରେ ଅଚେତନ ।
ଯେଥୁ ଅନନ୍ତରେ ଶୁଣ ହୋ ବିଧାନ ॥
ଥୂଳଜଙ୍ଘ ଯହୁଂ ସାଂଗ୍ରାମେ ପଡ଼ିଲା ।
ରାବଣ ଛାମୁରେ ଚାର ବାରତା ନେଇ
ଦେଲା ॥୯୦
ଶୁଣ ଦେବ ଠାକୁର ଅସୁରକୁଳସାଇଂ ।
ଥୂଳଜଙ୍ଘ ରଣେ ପଡ଼ିଲା ଗୋସାଇଂ ॥
ଉଲୁକ ମୋକ୍ଷକର୍ଣ୍ଣ ଚନ୍ଦ୍ରନେତ୍ର ମଲେ ।
ସିଙ୍ଘଅସୁର ଜଠର କ୍ଷୟେ ଗଲେ ॥
ମହାକର୍ଣ୍ଣ ସହିତେ ପଡ଼ିଲେ ସାତବୀରେ ।
ରଥ ଗଜ ସନ୍ୟ ଅନେକ ଅସୁରେ ॥
ଶୁଣି ଦଶଗ୍ରୀବର ଉଡ଼ିଲା ସାହାସ ।
କାଳସର୍ପ ଯେହ୍ନେ ଛାଡ଼ଇ ନିଶ୍ୱାସ ॥
କ୍ଷଣେ ପରିଯନ୍ତେ ମଉନେ ରହିଲା ।
ଆସ୍ଥାନରୁ ଉଠି ଅନ୍ତେଶ୍ୱରକୁ ଗଲା ॥୧୦୦
ମୁଦୁସୁଲୀମାନେ ଯେ ଯାହାର ଗଲେ ।
ରାଣୀ ମହାଦେଈ ଦ୍ରଶନ ଆସି କଲେ ॥
ବିସ୍ମୟେ ଚିତ୍ତେ ରାୟେ ହୋଇଲା
ଅବକାଶ ।
ମନ୍ଦୋଦରୀ ରାଣୀକି ହକାରିଲା ପାଶ ॥
ତୋଟାପୁର ଜଗତୀରେ ମୁକୁତା ମଣ୍ଡୋପ ।
ମହାଦେଈ ନେଇ ବସିଲା ଅସୁର ନୃପ ॥
ଲୋକନ୍ତ କଢ଼ାଇ ଯେକାନ୍ତେ ଭାଳେଣି ।
ପାଟ ମହାଦେଈକି କହଇ ବିଂଶପାଣି ॥
ବୋଇଲା ସଖିରେ କରିବା ଯେବେ କିସ ।
ଶ୍ରୀରାମ ଲକ୍ଷଣ ମୋ ବଂଶ କଲେ ନାଶ ॥୧୦
କୁମ୍ଭକର୍ଣ୍ଣ ପ୍ରାୟେ ପଡ଼ିଲା ମୋର ଭାଇ ।
ଯେକା ଘୋର ରଡ଼ିକେ ଜଗତ ପାରଇଂ
ଦହିଂ ॥
ତପୁସୀର ନାରାଜେ ଅନେକ ବୀର ମଲା ।
ଇନ୍ଦ୍ରଜିତ ସହିତେ ସମସ୍ତ ନାଶ ଗଲା ॥
ମହୀରାବଣ ନାମେ ପଡ଼ିଲା ମୋର ନାତି ।
ଯାହାର ମୁଖ ଦେଖିଲେ ଡରଇ ଶଚୀପତି ॥
ଅକ୍ଷୟେ କୁମାର ଜମ୍ୱୋମାଳି ମଲା ।
ପୁତ୍ର ବନ୍ଧୁବର୍ଗ ସକଳ କ୍ଷୟେ ଗଲା ॥
ଅଜୟେ ଲଙ୍କାଗଡ଼ ବାନରେ ବିଧଂସିଲେ ।
ରଥ ଗଜ ଅଶ୍ୱ ପାଦାନ୍ତି କ୍ଷୟେ ଗଲେ ॥୨୦
ଅଠର ଗଣ୍ଡା କୁମର ତେର ଶତ ନାତି ।
ଶ୍ରୀରାମ ନାରାଜେ ହୋଇଲେ ନିପାତି ॥
ଭାଇ ବିଭୀଷେଣ ମୋତେ ଛାଡ଼ିଗଲା ।
ଶତ୍ରୁର ତହିଂ ଭେଦତଦନ୍ତ କହିଲା ॥
ଜାନେକୀ ହୋଇଲା ମୋତେ ଗଳିତ କୁଷ୍ଠ
ବ୍ୟାଧି ।
ଅକାରଣେ ନାଶଗଲା ମୋର ଯେତେ୍କ
ସଂମ୍ବଧି ॥
ଥୂଳଜଙ୍ଘ ପୁତ୍ରକୁ ମୋର ପେଷିଲି ଅତି
ନିସତେ ।
ସେହି ପଡ଼ିଲା ଶ୍ରୀରାମର ଶରାଘାତେ ॥
ଯେବେ ବୁଧି ମୁହିଂ କରିବଇଂ କିସ ।
ଅନ୍ଧାର ଦିଶିଲା ମୋତେ ସଂସାର
ଦଶଦିଶ ॥୩୦
ଯେକ କଥାଯେକ ବିଚାରିଅଛି ମନେ ।
କ୍ଷତ୍ରୀସମ ମୋତେ ନାହିଂ ଚଉଦ ଭୁବନେ ॥
କାଲି ଚତୁରାଙ୍ଗ ବଳ ଘେନିଣ ଯିବି ।
ଶ୍ରୀରାମ ଲକ୍ଷଣ ରିକ୍ଷ କପି ମାରିବି ॥

ମାରି ନ ପାରିଲେ ଝାସିବଇଂ ରଣେ ।
ନିସତ ହୋଇଲେ ଆର ପଳାଇବି କେଣେ ॥
ଭାଇବନ୍ଧୁ ସୁତ ସମସ୍ତେ ହେଂ ମଲେ ।
ଦେବତାମାନେ ଭାଳି ଯେହାଟିକି କଲେ ॥
ଯେବେ ରାମ ଲକ୍ଷଣ ପାରଇ କାଲି ମାରି ।
ପୁଣି ଭୋଗ୍ୟ କରିବି ରତ୍ନମୟେ ପୁରୀ ॥୪୦
ନୋହିଲେ ସାକ୍ଷାଦେ ଅକ୍ଷୟେ ସ୍ୱର୍ଗ ପାଇବି ।
ବିଷ୍ଣୁ ବୈକୁଣ୍ଠେ ଯାଇଣ ବସିବି ॥
ପୂର୍ବେ ମୋତେ ନାରାୟେଣ ଅଛନ୍ତି ଯାହା କହି ।
ସେ କଥା ପାଶୋରିଥିଲି ଚିତୋଇଲି ମୁହିଂ ॥
ଯେବଣ କାଳେ ମୁହିଂ ପାତାଳକୁ ଗଲି ।
ବ୍ରହ୍ମଜାତି ହୀରା ପୁରେକ ଦେଖିଲି ॥
ମାୟା ଭୁବନେ ଯେ ଜନପଦ ନାହିଂ ।
ମଧରେ ଯେକଇ ମଣ୍ଡପେକ ଅଛି ତହିଂ ॥
ଯୋଗବଳେ ମୋତେ ପୁରେକ ହୋଇଲାକ ଦୃଶ ।
ରଥୁଂ ଓହ୍ଲାଇଣ ଗଲି ତହିଂର ପାଶ ॥୫୦
ଅପୂର୍ବ ପୁର ଭିତରେ ଯାଇଣ ପଶି ।
ସ୍ତିରୀ ପୁରୁଷ ବେନି ଜନେ ଛନ୍ତି ବସି ॥
ରୂପେଣ ପଟାନ୍ତର ନାହିଂ ଆନ ଜଣ ।
ଅସୁର କିନ୍ନର ନୁହନ୍ତି ଭାର୍ଜନ ॥
ପଶା ଖେଳନ୍ତି ଦିବ୍ୟବେଶ ହୋଇଂ ।
ତାହାଙ୍କର ସନ୍ନିଧେ ମୁଂ ପଚାରିଲି ଯାଇଂ ॥
କେ ତୁମ୍ଭେ କାହିଂର କିସ ତୁମ୍ଭର ନାମ ।
ଯେଥିର ପୁର ନାମ ଅତିହିଂ ଉପାମ ॥
ସେହି ବୋଇଲେ ଆମ୍ଭେ ଅଟୁ ଦେବଦେବୀ ।
ଚଉଦ ଭୁବନ ଲୋକେ ଆମ୍ଭର ପାଦ ସେବି ॥୬୦
ପୂର୍ବେ ହୀନଜନ୍ତୁ ହୋଇ ଜନ୍ମିଥିଲୁ ।
ବିଷ୍ଣୁର ନାରାଜେ ବେନି ଖଣ୍ଡ ହୋଇଲୁ ॥
ବିଷ୍ଣୁ ଯେ ଉଗ୍ରମୂର୍ତ୍ତି ହୋଇଥିଲେ ।
ଅସୁରବଳ ଯହୁଂ ପ୍ରବଳ ହୋଇଲେ ॥
ଦନୁଦାନେବ ବୋଲିଣ ଭାଇ ବେନି ।
ରମଣୀ ରସକେଳି ସେ ସୁରନାରୀ ଘେନି ॥
ତେଣୁ ଭଗବାନ ସାରଙ୍ଗ ଧନୁଧରି ।
ଦନୁଜ ଦାନେବଙ୍କୁ ପକାଇଲେ ମାରି ॥
ପ୍ରଥମ ଅସ୍ତ୍ର ଯେ ବିନ୍ଧିବାର କାଳେ ।
ଭୂମିକି କାଣ୍ଡେକ ମାଇଲେ ଅବହେଳେ ॥୭୦
ଆମ୍ଭେ ତହିଂର ମଧରେ ଲତା ହୋଇଥିଲୁ ।
ନାରାଜ ବାଜନ୍ତେ ବେନି ଖଣ୍ଡ ହୋଇଲୁ ॥
ଭୂମିଲତା ସ୍ୱରୂପ ଛାଡ଼ିଲୁ ତତକ୍ଷଣେ ।
ସ୍ତିରୀ ପୁରୁଷ ହୋଇଲୁ ବେନିଜନେ ॥
ଜ୍ୟେଷ୍ଠ ଖଣ୍ଡି ପୁରୁଷ କନେଷ୍ଠ ଖଣ୍ଡି ସ୍ତିରୀ ।
ଜୀଅାଂନାଡ଼ ଗୋଟି ଯେସନେକ ରୂପ ଧରି ॥
ଶ୍ରୀହରି ନାରାଜେ ହୋଇଲୁ ଆମ୍ଭେ ହତ ।
ଦେବଦେବୀ ବୋଲି ପୂଜନ୍ତି ଜଗତ ॥
ଯେସନେକ କହିଲେ ମୋତେ ଯହୁଂ ।
ଆନନ୍ଦ ହୋଇଣ ବସିଲି କ୍ଷଣେ ତହୁଂ ॥୮୦
ପଶା ଖେଳନ୍ତେ ତାହାଙ୍କର କାଠି ଗଡ଼ିଗଲା ।
ରତ୍ନ ମଣ୍ଡୋପ ତଳେଣ ପଡ଼ିଲା ॥
ମୋତେ ବୋଇଲେ ହୋ ଆଣ ପଶାକାଠି ।
ତାହାଙ୍କର ବୋଲନ୍ତେ ମୁଂ ତଳକୁ ଗଲି ଉଠି ॥
ହାଥ ବଢ଼ାଇଣ ଆଣିତ ମନ କଲି ।
କୋଡ଼ିଯେ ଭୁଜରେ ମୁଂ ଟୋଳି ନ ପାରିଲି ॥
ଲାଜ ପାଇଣ ମୁଂ ବାହୁଡ଼ିଣ ଆସି ।
ଦେଖି ସ୍ତିରୀ ପୁରୁଷ କରତାଳି ମାରି ହସି ॥
ପୁଣି ସେହି ମଣ୍ଡୋପେ ବସିଣ ମୁହିଂ ଥିଲି ।
କେ ପୁଣି ଆଣଇ ଜାଣିମି ବୋଇଲି ॥୯୦
ଗର୍ଭବାସ ଯୁବତୀ ପାଣିକି ଯାଇଥିଲା ।
କାଖେ ନୀରକୁମ୍ଭ ଘେନି ବାହୁଡ଼ିଲା ॥
ମଣ୍ଡୋପ ତଳ ବାଟେ ଆସଇ ସୁନ୍ଦେରୀ ।
ଧୀରେ ଧୀରେ ଚଳଇ ସେ ଗର୍ଭବାସ ନାରୀ ॥
ତାହାକୁ ବୋଇଲେ ଗୋ ଦିଅ ପଶାକାଠି ।
ଶୁଣି ଥମ୍ଭୀଭୂତେ ରହିଲା ବିମ୍ବୋଷ୍ଠୀ ॥
ନଇଂ ନପାରି କାଖେ ମୁଣ୍ଡେ କୁମ୍ଭ ।
ସ୍ୱଭାବେ ଗର୍ଭବାସ ଚଡ଼ଚଡ଼ ଗର୍ଭ ॥
ବୋଲ ନ ଭାଙ୍ଗିଣ ବେଗେ ସେ ରହିଲା ।
ଦକ୍ଷିଣ ପାଦ ଅଙ୍ଗୁଷ୍ଠିରେ ପଶାକାଠି ଧଇଲା ॥୧୦୦
ବଡ଼ ଅଙ୍ଗୁଷ୍ଠି ସନ୍ଧିରେ ଆଣି ଟୋଳି ।
ଦକ୍ଷିଣ ଭୁଜେ ଟୋଳି ଫିଙ୍ଗିଦେଲାକ ବାଳୀ ॥
ମଣ୍ଡୋପେ ପଡ଼ିଲା ଆସି ତାହାଙ୍କରି ପାଶେ ।
ସ୍ତିରୀ ପୁରୁଷେ ପଶା ଖେଳନ୍ତି ହରଷେ ॥
ମୁହିଂ ବୋଇଲି ହୋ ଯାଉଅଛି ହାକ ।
ରତ୍ନମାନେ ତୁମ୍ଭର ପଡ଼ିଛନ୍ତି ଦେଖ ॥
ପୁଣ ସେ ପୁରୁଷ ମୋତେ ବୋଇଲାକ ତାହିଂ ।
ବିଶର୍ବାର ନନ୍ଦନ ତୁ ଅଟୁ ଲଙ୍କସାଇଂ ॥
ମୁହିଂ ବୋଇଲି ତୁମ୍ଭେ ଜାଣିଲ କେମନ୍ତ ।
ସେ ଯେ ବୋଇଲେ ଆମ୍ଭେ ବୁଝିଲୁ ଯେମନ୍ତ ॥୧୦
ବିଷ୍ଣୁ ଭଗତ ନୋହିଲେ ଯେ ନ ଦିଶଇ ପୁର ।
ବ୍ରହ୍ମା ବୋଇଲେ ଯେ ଅଟଇ ଦୂରୁଦୂର ॥
ତୁ ଯହୁଂ ନିଶଙ୍କେ ପଶିଲୁ ଆସି ଯେଥେ ।
ଜାଣିଲି ଦୟା ତୋତେ କରନ୍ତି ବିଷ୍ଣୁନାଥେ ॥
ପୂର୍ବେଣ ଅଟୁ ତୁ ଶ୍ରୀହରିର ଦାସ ।
କିଞ୍ଚିତ ପାପେ ତୁ ହୋଇଲୁ ରାକ୍ଷସ ॥
ପୁଣି ବଇକୁଣ୍ଠକୁ ତୁ ଯିବୁଟି ନିଶ୍ଚୟେ ।
ଯେ ପୁର ନାମ ଅଟଇ ଜ୍ୟୋତିରାୟେ ॥
ବ୍ରହ୍ମା ପ୍ରଳୟ କାଳେ ନୁହଇ ଯେ ନାଶ ।
ଯେଥି ଥାଇଣ ଯେ ଭଜଇ ପୀତବାସ ॥୨୦
ସୃଷ୍ଟି ସର୍ଜିବାକୁ ଯେଥି ବିଜୟେ କରଇ ।
ଭାବେ ଭାବିବାର ଲୋକ ଯେଥି ଥାଇଂ ॥
ବ୍ରହ୍ମାଣ୍ଡର ଶ୍ରେଷ୍ଠ ଅଟଇ ମହାପୁର ।
ଯେଥି ବସିଲା ଲୋକକୁ କେହି ନୋହେ ଦୂର ॥
ଲକ୍ଷ୍ମୀ ଚରଚଇ ଘରେ ଘରେ ପଶି ।
ନାରାୟେଣ ଥାଇ ସବୁରି ସଙ୍ଗେ ବସି ॥
ଆନକୁ ପ୍ରକାଶଇ ନୋହଇ ଯେ ପୁର ।
ତୁ ହୋ ରାବଣ ସେବାକର ବିଷ୍ଣୁର ପୟର ॥
ପାରୁ ପରିଯନ୍ତେ ଆଶ୍ରେ କର ଭଗବାନ ।
ସବୁ ପାପମାନ କରିବୁ ଦହନ ॥୩୦
ତାହାର ହାଥେ ମଲେ ସକଳ ପାପ ଯାଇଂ ।
ବିଷ୍ଣୁର ଭକ୍ତି ହେଲେ ଏ ସ୍ଥାନ ଦେଖଇ ॥

ଯେସନେକ ବଚନ ମୋ କହିଲେ ମାହାତ୍ମା ।
ତାହା ଜାଣି ହରିଲି ମୁଁ ଶ୍ରୀରାମର ବାମା ॥
ସଗୋତ୍ର ସହିତେ ମୋର ମାରିବେ
ରଘୁସାଇଁ ।
ଅଭୟ ପଞ୍ଜରେ ମୁହିଁ ପଶିବଇ ଯାଇଁ ॥
ବିଷ୍ଣୁର ବିତ୍ରକେ ନ ମରଇ ଆନ ହାଥେ ।
ନିଶ୍ଚୟେ ଯେ କଥା ମୋତେ କହିଅଛନ୍ତି
ଚଉମାଥେ ॥
ସବୁ ଦେବତାଙ୍କର ସଙ୍ଗତେ ଯୁଦ୍ଧ କଲି ।
କାହାରିହିଁ ହାଥେ ଅପଚୟେ ନ
ପାଇଲି ॥୪୦
ଶ୍ରୀରାମଚନ୍ଦ୍ର ଯେବେ ଅଟଇ ନାରାୟେଣ ।
ସେ ସେ ନାରାଜେ ମୋର ଘେନିବ
ପରାଣ ॥
ବିଷ୍ଣୁ ନୋହିବେ ଯେବେ ଦଶରଥଙ୍କର
ସୁତ ।
ମୋହୋର ବାଣେ ସେ ହାରିବ ଜୀବତ ॥
ସ୍ୱର୍ଗ ସହିତେ ମୁଁ ଜିଣିଲି ବଜ୍ରଧର ।
ଯେତେ ବୋଲି ଆସ୍ଥାନୁ ଉଠିଲା ଲଙ୍କେଶ୍ୱର ॥
ମନ୍ଦୋଦରୀ ରାଣୀ ନ କହିଲା କଥା ।
ଶୋକାଭରେ ତଳକୁ ନୁଆଇଂଲାକ ମଥା ॥
ରାଜା ବୋଇଲା ତୁ କିପାଇଁ ଚିନ୍ତା କରୁ ।
ବୁଧିବନ୍ତ ହୋଇଣ କଥା ନ ବିଚାରୁ ॥୫୦
ଯେବେ ଭାଳିଲେ ବୋଲିବେ ମୋତେ
ମନ୍ଦ ।
ଶତ୍ରୁକୁ ଭୟେ କଲା ଦଶକନ୍ଧ ॥
ଯେହା ବୋଲନ୍ତେ ପାଇବି ମୁହିଁ ଲାଜ ।
ଯେତେବୋଲି ରାଣୀର ଧଇଲା ଦୁଇଭୁଜ ॥
ନୃପତିର ବଚନ ଶୁଣି ମନ୍ଦୋଦରୀ ରାଣୀ ।
କରପତ୍ର ଯୋଡ଼ି କହଇ ଧୀର ବାଣୀ ॥
ଭୋ ଦେବ ଦଶଶିରି ଅସୁର କୁଳ ରାୟେ ।
ପୂର୍ବେ ମୁଁ ଶୁଣି ଅଛଇ କଥାୟେ ॥
ନାରଦ ମହାମୁନି କହିଅଛନ୍ତି ମୋତେ ।
ଯେତେ କାଳେ ତାହା ପ୍ରକାଶ କରଇ
ତୋତେ ॥୬୦
ଯେବଣ ହିଁ କାଳେ ତୁ ଦିଗିବିଜେ କଲୁ ।
ସ୍ୱର୍ଗମର୍ତ୍ତ୍ୟ ପାତାଳ ତିନିପୁର ଗଲୁ ॥
ବିଦେହ ନାମେଣ ମିଥିଲା ଦେଶ ଜତି ।
ବେଦମତୀ ନାମେ କୁଶଧ୍ୱଜର ଦୋହିତି ॥
ସେ କନ୍ୟା ଅବତାର ଅଟଇ କମଳିଣୀ ।
ସାମବେଦୁଁ ସମ୍ଭୂତ ସେ ବ୍ରହ୍ମାର ଦୁଲଣୀ ॥
ଶ୍ରୀହରିଙ୍କି ବରିବ ବୋଲି ସେ କମଳାକ୍ଷୀ ।
ମହୀମଣ୍ଡଳେ ସେ ଅନେକ କାଳ ଅଛି ॥
ପୃଥିବୀରେ ବୁଲନ୍ତେ ଭେଟିଲୁ ସେ ନାରୀ ।
ରୂପ ଗୁଣ ଦେଖି ବଳେ ଲୋଡୁ ହରି ॥
ସେ ମହାସ୍ୟତୀ ଯେ ନକଲା ସନମତ ।
ତୁ ତାହାର କେଶ ଧରିଲୁ ପୌଲସ୍ତ ॥
ଅଭିମାନ ପାଇଲେ ସେ ଶ୍ରୀହରିର ଘରଣୀ ।
ଛାଡ଼ ଛାଡ଼ ବାଳ ସେ ବୋଇଲା ତରୁଣୀ ॥
ତପ ଗୁଣ ଘେନି ସେ କୋପ କଲା
ତୋତେ ।
ବୋଇଲା ରାକ୍ଷସରେ ଦ୍ରୋହ କଲୁ ମୋତେ ॥
ଏ ଦେହ ନରଖଇ ଅଗ୍ନିରେ ଝାସ ଦେବି ।
ତୁ ଯେଣେ ହରି ହେବୁ ସେ ବୁଧି କରିବି ॥
ତାହା ଶୁଣି କରି ଛାଡ଼ିଲୁ ତାର ବାଳ ।
କନ୍ୟାର କୋପୁଁ ଜାତ ହୋଇଲା
ଅନଳ ॥୮୦
ପବିତ୍ର ଅଙ୍ଗ ଗୋଟା ଦହିଲା ସୁନ୍ଦରୀ ।
କାଳେ ସେ ଜନକେ ଋଷି ଘରେ ଅବତରି ॥
ଏ କଥା ଜାଣି ମୋତେ ନାରଦ କହିଲେ ।
ସ୍ୱାମୀର ଶତୃ ତୋର ଜନ୍ମିଲା ବୋଇଲେ ॥
ସେ କଥା ହେତୁ କରିଅଛି ମୁହିଁ ଧରି ।
ପୁଣି ହିଁ ନାରଦ କହିଲେ ଗୁପ୍ତ କରି ॥
ବୋଇଲେ ନାରାୟେଣ ହୋଇଲେ ହାଦେ
ଜାତ ।
ଅଯୋଧ୍ୟା ରାଜ୍ୟରେ ସୂର୍ଯ୍ୟବଂଶର ଦଶରଥ ॥
କୈକେୟୀ କଉଶଲ୍ୟା ସୁମିତ୍ରାର ତିନି ରାଣୀ ।
ତାହାଙ୍କର ଗର୍ଭେ ଜାତ ହୋଇଲେ
ଚକ୍ରପାଣି ॥୯୦
ଏ ଶ୍ରୀରାମ ଲକ୍ଷ୍ମଣ ଭରଥ ଶତୃଘନ ।
ଦେବଙ୍କ ଛଳେ ମାନବ ମୂରତି ଭଗବାନ ॥
ଯହୁଁ ସ୍ୱାମୀ ତୋର ଉପଦର୍ପ କଲା ।
ପାପକୁ ଆଚରି ସେ ଧର୍ମକୁ ବିନାଶିଲା ॥
ତେଣୁ ରଘୁନାଥ ହୋଇଲେ ହାଦେ ଜାତ ।
ତାହାର ନାରାଜେ ରାବଣ ମରିବ ନିୟତ ॥
ଏତେ କହି ନାରଦ ଅନ୍ତର୍ଦ୍ଧାନେ ଗଲା ।
ସେହି ଦିନୁ ମୋର ମନ ଦମକିଲା ।
ପୁଣି ସୂପଲେଖୀ କହିଲା ବାରତା ଆସି ।
ଶ୍ରୀରାମ ଲକ୍ଷଣ ନାମେ ଦଶରଥ ଶିଷି ॥୧୦୦
ଦଣ୍ଡକାରଣ୍ୟେ ଅଛନ୍ତି ଯତି ବେଶେ ।
ବସା କରିଛନ୍ତି ଗୋଦାବରୀ ପାଶେ ॥
ସୀତ୍ୟା ନାମେଣ ଅଟଇ ସୁନ୍ଦେରୀ ।
ସେ ସେ ସୁଲକ୍ଷଣୀ ଶ୍ରୀରାମର ନାରୀ ॥
ତାହା ଶୁଣି ମୁହିଁ ବିଚାରିଲି ମନେ ।
ଅଯୋଧ ଛାଡ଼ି ରାମ ଅଇଲେ କେସନେ ॥
ନାରଦଙ୍କ କଥା ତ ସତକୁ ଯାଉଅଛି ।
ଯେହା ଜାଣି ମୁହିଁ ମନେ ମନେ ଭାଳୁଅଛି ॥
ପୁଣି ଭାଳିଲଇଁ ହୃଦପଦ୍ମ ମଧେ ।
ଯାହା ସେ ଭିଆଇଅଛି ସୁର ସିଧେ ॥୧୦
ଯେବଣ ପଥ ଯେ ଯାହାକୁ ପରାପତ ।
ଦୂରଇ ନିକଟ ଆସି କରଇ ବିଧାତ ॥
ଶ୍ରୀରାମର ହସ୍ତେ ମରିବ ମୋର ସ୍ୱାମୀ ।
ତେଣେ ସେ ରାଜ୍ୟ ଛାଡ଼ି ହୋଇଲା
ବନଗାମୀ ॥
ସୂପଲେଖୀ ତାହା କେମନ୍ତେ ଠାବ କଲା ।
କାଳ ଜାଣି ଭାଇକି ବାରତା ଆଣି ଦେଲା ॥
ଯେତକ ଜାଣି ମୁଁ ଜଣାଇଲି ତୋତେ ।
ପରନାରୀ ହରଣ ନ କର ଅନମିତେ ॥
ସ୍ୱଭାବରେ ପରବାସୀ ଦେଶାନ୍ତରୀ ବାମା ।
କେଶବାସ ମଳିଣ ନୁହଇ ଉପାମା ॥୨୦
ମନ ମଞ୍ଜାଇଣ ଅନେକ କହିଲି ।
ଯେ ତୋହୋର ମନକୁ ପ୍ରବୋଧି ନ
ପାରିଲି ॥
ଈଶ୍ୱର ପୁରୁଷ ତୁ ଜଗତେ ବଳବନ୍ତା ।
ତୋହୋର ନ ବୁଝିଲେ ତୋତେ କେହୁ
ଚିନ୍ତା ॥
ବୋଲ ନ କରି ତୁ ଧାଡିକାରେ ଗଲୁ ।
ଶ୍ରୀରାମ ଘରଣୀକି ଚୋରାଇ ଆଣିଲୁ ॥

ଶତ୍ରୁକୁ ନ ମାରି ଯହୁଁ ହରିଲୁ ମାୟା ରୂପେ ।
ଜାଣିଲି ନାରାୟେଣ ଅବତାର ସରୂପେ ॥
ରାବଣ ସଂଗ୍ରାମେ ତାହାକୁ ନପାରଇ ମାରି ।
ମରିବାର ହେତୁ ପାଇଲା ଦଶଶିରି ॥
ଯେସନେକ ବିଚାରି ହୋଇଲି ମୁହିଁ ତୁନି ।
ପୁଣି ଆସି ମୋତେ କହିଲେ ମହାମୁନି ॥
ଜାଣୁନା ମନ୍ଦୋଦରୀ ପୂର୍ବର କଥାମାନ ।
ଅମୃତ ବୋଲି ସ୍ୱାମୀ ତୋ ବିଷ କଲା ପାନ ॥
ଯେତେ କହିଣ ଗଲେ ମହରଷି ।
ତରେଣ ତୋହୋର ଆଗରେ ନକହେ ପରକାଶି ॥
ସମୋଦ୍ର ଡେଇଂ ହନୁ ଅଇଲାକ ଯେଥ ।
ଅକ୍ଷୟେକୁମାର ମାରି କଲାକ ଅନର୍ଥ ॥
ମଧୁବନ ଭାଙ୍ଗି ଲଙ୍କାପୋଡ଼ି ଗଲା ।
ମୁହିଁ ବିଚାରିଲି ବିପୁରୀତ ହୋଇଲା ॥୪୦
ନାରଦଙ୍କ ବଚନ ତ ସତକୁ ଯାଉଅଛି ।
ସେ କଥା ଜାଣି ମୁଂ ପୁତ୍ରକୁ ମୁରୁଛି ॥
ବାଳୀକି ମାଇଲା କଥା କହିଲା ମାରୁତି ।
ଜାଣିଲି ରଘୁନାଥ ଅଟନ୍ତି ଶ୍ରୀପତି ॥
ସେତୁବନ୍ଧ ବାନ୍ଧିବାରୁ ମୁଛିଲିନି ମୁହିଁ ତୋତେ ।
ବିଭୀଷେଣଙ୍କୁ ଯହୁଁ କୋପିଲୁ ଅନମିତେ ॥
ସହୋଦର ଭାଇ ସେ ସେନେହ ଛାଡ଼ିଗଲା ।
ଭାଳିଲି କଥାମାନ ନିକଟ ହୋଇଲା ॥
ଗଡ଼ ବେଢ଼ିଣ ସେ ଛେଦିଲେ ଛତ୍ରମାନ ।
ତାହା ମୁଂ ଫେଡ଼ି ନ କହଇଂ ଭାଳଇଂ ମନେମନ ॥୫୦
ରିକ୍ଷ କପି ଡେଇଂଲେ ଯହୁଁ ସୁବର୍ଣ୍ଣ ପାଚେରୀ ।
ଶୟେ କୁଣ ଲଙ୍କା କଲେ ହୁରିଜୁରି ॥
କୁମ୍ଭକର୍ଣ୍ଣ ପଡ଼ିଲାରୁ ହୋଇଲି ମୁହିଁ ତୁନି ।
ବୋଇଲି ସତ ହୋଇଲା ଯାହା କହିଲା ଭୋ ମୁନି ॥
ଇନ୍ଦ୍ରଜିତ ମଲା ଯେବଣ ହିଂ ଦିନ ।
ଦେହରୁ ଛାଡ଼ି ଯେ ଗଲାକ ଜୀବନ ॥
ନାଗଫାଶ ବାନ୍ଧି ମାଇଲା ବ୍ରହ୍ମଶରେ ।
ଶକତି ଭେଦ କଲୁ ଲକ୍ଷଣ ହୃଦରେ ॥
ଯେ କଥା ଜାଣିଣ ମୁଂ ହସଇ ମନେ ମନ ।
ଦୃଢ଼ କରିଅଛଇ ନାରଦଙ୍କ ବଚନ ॥୬୦
ତୋତେ ନକହଇ କୋପ ଯହୁଁ କରୁ ।
ସରିଲା କଥାରେ ମୋତେ କିଂପା ପଚାରୁ ॥
ଯେକ ପ୍ରତିକାର ଅଛଇ ଗୋସାଇଂ ।
ସୀତ୍ୟା ସମର୍ପିଲେ ମୃତ୍ୟୁ ତୋତେ ନାହିଁ ॥
ଯେଡ଼େ ସମ୍ପଦ ନକର ତୁମ୍ଭେ ନାଶ ।
ମୋହୋ ତହୁଂ ତୋତେ ନାହିଁଟି ବିଶ୍ୱଆସ ॥
ଯଦ୍ୟପି ପୁତ୍ର ମୋର ପଡ଼ିଲେ ରାମବାଣେ ।
ନ କରଇ ଶୋକ ମୁଂ ତୋହୋର କାରଣେ ॥
ତୁ ଯଦି କୁଶଳ ହୋଇଥିବୁ ଲଙ୍କପତି ।
ପୁଣି ସମୟେକେ ହୋଇବ ପୁତ୍ର ନାତି ॥୭୦
ତୋହୋର ଥିଲେ ଯେ ମୁହିଁ ପଛେ ଥାଇଂ ।
ସ୍ୱାମୀର ବିହୁନେ କିଛିହିଂ ନ ଯୋଗାଇଂ ॥
ମୟେ ଦଇତର ମୁଂ ଅଟଇ ଦୋହିତା ।
ଅନେକ ଯତନେ ମୋତେ ପାଳିଲାକ ପିତା ॥
ଅଗ୍ନିର ଭିତର ମୁଂ ହୋଇଲି ଉତପତି ।
ମନ୍ଦୋଦରୀ ନାମ ମୋତେ ଦେଲାକ ବ୍ରହ୍ମପତି ॥
ମୋହୋର ସାଦ୍ରିଶେ ବର ନ ପାଇଣ ତାତ ।
ମୋତେ ସାଙ୍ଗେ ଘେନି ବୁଲିଲା ଜଗତ ॥
ଯୋଗେ ଆସି ଭେଟ ପାଇଲାକ ତୋତେ ।
କନ୍ୟା ଦାନକରି ସମର୍ପିଲାକ ମୋତେ ॥୮୦
ତୋହୋର ତହିଂ ଅନେକ ଭୋଗ୍ୟ କଲି ।
ପାଞ୍ଚପୁତ୍ର ଦୋହିତାୟେ କର୍ମେଣ ପାଇଲି ॥
ଇନ୍ଦ୍ରଜିତ ଦେବାନ୍ତେକ ନରାନ୍ତେକ ତିନି ।
ଦେବଦତ୍ତ ଅକ୍ଷୟକୁମାର ପାଞ୍ଚ ଘେନି ॥
ଦୋହିତା ସେନେହା ଯେ ପରେ ଦେଲ ଦାନ ।
ନିର୍ବାଚ କପଚର ସେ ଅଟଇ ନନ୍ଦନ ॥
ବଜ୍ରକପଚ ନାମେଣ କୁଆଇଂ ।
ତାହାର ତହିଂ ଦୁଇ ପୁତ୍ର ଉପୁଜଇଂ ॥
ଭୀମ ଭୟାଙ୍କାର ବୋଲିଣ ତନୟେ ।
ତାହାଙ୍କଇ ପୁଣ ଡରଇ ସୁରରାୟେ ॥୯୦
ପାଞ୍ଚପୁତ ତହୁଂ ସାତ ନାତି ଜାତ ।
ତିନି ନାତୁଣୀ ରୂପେ ଅନିନ୍ଦିତ ॥
ଆବର ରାଣୀ ତୋର ଅଛଇ ଅପାର ।
ତେର ଶତ ନାତି ବାସ୍ତରି କୁମର ॥
ତୋହୋର ସମାନେ ଯେ ପାରନ୍ତି ସମର କରି ।
ଯେବେ ଶ୍ରୀରାମର ନାରାଜେ ହୋଇଲେ ସଙ୍ଘାରି ॥
ଯେତେକ ଅଛନ୍ତି ତାହାନ୍ତ ରକ୍ଷାକର ।
ଭୋ ନାଥ ଯେବେ ତୁ କିଛିହିଂ ନ ବିଚାର ॥
ଲବଣ ନାମେଣ ମଧୁବନର ରାଜା ।
ସେ ଅଟଇ ତୋର ସୋଦରଭଣଜା ॥୧୦୦
ତାହାର ତନୟେ ମଧୁବନ ନାରୀ ।
ନାତୁଣୀକି ବିଭା ହୋଇଲୁ ଦଶଶିରି ॥
ତାହାର ରୂପକୁ କି ବିଦ୍ୟାଧରୀ ସମ ।
ଜଗତମୋହିନୀ ସେ ରୂପେ ଅନୁପାମ ॥
ଶଙ୍ଖାସୁର ଦୁଲଣୀ ସରୋଜକେଶୀ ।
ଯାହାର ମୁଖ ଦେଖିଲେ ଟଳିବେ ମହାରଷି ॥
ଦୁନ୍ଦଭି ଦଇତର ଦୁଲଣୀ ଅଟଇ ଅଶ୍ୱମଂଜା ।
କେବଣ ସ୍ତିରୀ ତାକୁ ପଟାନ୍ତର ଦେବା ॥
ବାଣାସୁର ଝିଅ ଅଜପା ନାମେ ବାଳୀ ।
ତାହାର ଥାନ୍ତେ ଶୋଭାପାଇ ମହୀଆଳି ॥୧୦
ନାରକାସୁର ନନ୍ଦିନୀ ପଦ୍ମାବତୀ ।
ନାହିଂ ସମାନ୍ୟ ସେ ଅପୂର୍ବ ଯୁବତୀ ॥
ପ୍ରହଲାଦର ଝିଅ ପାଟୋଳି ନାମେ କନ୍ୟା ।
ସୁନ୍ଦେରୀ ବୋଲି ତାକୁ ପ୍ରଶଂସିଲେ ଦେବବ୍ରହ୍ମା ॥
ନାରକାସୁରର ଦୋହିତା ଚନ୍ଦ୍ରକାନ୍ତି ।
ତାହାକୁ ଦେଖିଲେ ତପ ଛାଡ଼ନ୍ତି ଯତି ॥
ଶାର୍ଦ୍ଦୋଳ ଦଇତର କୁମାରୀ ଶାରଦା ।
ତୈଲୋକ୍ୟ ମୋହିନୀ ସେ ଅଟଇ ପ୍ରମଦା ॥
ମକ୍ଷାଂସୁର ନନ୍ଦିନୀ ସୁଭାଗୀ ଦୋହିତା ।
ରୂପ ଯଉବନେସେ ଅଟଇ ଅନିଜିତା ॥୨୦
ଗୟାସୁର ନନ୍ଦିନୀ ଅଟଇ ଗନ୍ଧମତୀ ।
ତାହାକୁ ସମ ଅବା କେବଣ ଯୁବତୀ ॥

ରାହୁର ନନ୍ଦିନୀ ଗନ୍ଧର୍ବା ନାମେ ଦୋହିତା ।
ବ୍ରହ୍ମାଣ୍ଡ ଭିତରେ ସମ ନାହିଁ ସେ ଶୋଭିତା ॥
ମୟେ ଦଇତର ଦୋହିତା ସ୍ୱରସ୍ୱତୀ ।
ସଂସାର ମୋହନୀ ସେ ଅଟଇ ଯୁବତୀ ॥
ସମୋଦ୍ର ଭିତରୁ ସେ ଆଣିଲୁ ସ୍ୟତୀ କାନ୍ତି ।
ଦେଖିଣ ସ୍ତିରୀ ପୁରୁଷ ମୋହ ଯାନ୍ତି ॥
ବ୍ରହ୍ମା ଦେଲା ଯେ ସହସ୍ରେକ କୁମାରୀ ।
କେବଣ ଯୁବତୀ ଅଟଇ ତାକୁ ସରି ॥୩୦
ଇନ୍ଦ୍ରର ଅପକ୍ଷରୀ ଅଛନ୍ତି ତୋର ଘରେ ।
ବିଦ୍ୟାଧରୀ କିନ୍ନରୀ ଗହଳ ଅନ୍ତେପୁରେ ॥
ସ୍ୱର୍ଗମର୍ତ୍ତ୍ୟ ପାତାଳେ ଯେତେକ ରୂପବନ୍ତୀ ।
ଲଙ୍କାପୁରେ ତୋର ସଭିହେଂ ଅଛନ୍ତି ॥
ଦିବ୍ୟ ଗନ୍ଧ ଚନ୍ଦନ ବିବିଧ ଦିବ୍ୟବାସ ।
ଦିବ୍ୟଭୋଗ ବିଳାସ କରୁ ଦଶାଇସ ॥
ଯେକା ଯୁବତୀ ଶ୍ରୀରାମର ଘରଣୀ ।
ତାହାକୁ ଉପେକ୍ଷା କର ବିଂଶପାଣି ॥
ଦେବା ଜାନେକୀ କି ନେଉ ରାମ ଯତି ।
ନୋହୁ ଦ୍ୱନ୍ଦ୍ୱ ସ୍ୱାମୀ ନ ଶୁଣ ଅପଛାତି ॥୪୦
ନ ମରନ୍ତୁ ସଇନି ନିରେଖ ନୋହିବା ।
ନେଇ ସୀତ୍ୟାକୁ ଦେବ ବାହୁଡ଼ାଇ ଦେବା ॥
ଯେତେ ବୋଲି ରାଣୀ ଦନ୍ତେ ତିରଣ ଧରି ।
ରାବଣ ପାଦ ଧରି ପଡ଼ିଲା ସୁନ୍ଦେରୀ ॥
ଉଠ ଉଠ ବୋଲି ବୋଇଲା ଲଙ୍କେଶ୍ୱର ।
ଆପଣେ ବଢ଼ାଇ ଦେଲା ବେନି କର ॥
ମହାଦେଈ କି ଆଣି କୋଡ଼ରେ ବସାଇଲା ।
ଶୁଣରେ ସଖି ବୋଲି ପୁଣି ହିଂ ଭାଳିଲା ॥
ତୁମ୍ଭେ ଯାହା କହିଲ ଯେ କଥା ଅଟଇ
ସତ ।
ସୀତ୍ୟା ଦେଲେ ଶ୍ରୀରାମ ଛାଡ଼ିବେ
କୋପଚିତ୍ତ ॥୫୦
ଶତ୍ରୁର ମୁଖେ ଅପଛାତି ଉପୁଜିବ ।
ଯେ ଦେହ ସଖିରେ କେତେ ଦିନ ଥିବ ॥
ସର୍ବଦା କାଳେ ମୁହିଂ ବଳ ଆଶ୍ରେ କରଇଂ ।
ଅନ୍ୟାୟେ କଥାମାନ ସୁଲଭ ମଣଇଂ ॥
ଅସାଧ ମାର୍ଗେ ସିନା ଅର୍ଜିଲି ଯେତେ ଶିରୀ ।
ବ୍ରହ୍ମାଦି ଦେବତା ମୋତେ ଥାନ୍ତି ସେବା
କରି ॥
ଛପନ ଯୁଗର ମୁଂ ଅର୍ଜିଅଛି ପାପ ।
କେହୁଣି ପ୍ରକାରେ ସେ ନୁହଇ ସଂକ୍ଷେପ ॥
ଅବଶ୍ୟ ପିଣ୍ଡରୁ ପ୍ରାଣ ଛାଡ଼ି ଯିବ ।
କାଳେ ବିଧାତା ମୋତ ନର୍କ ଗତି
ଦେବ ॥୬୦
ଶ୍ରୀରାମ ନାରାୟେଣ ଅଟନ୍ତି ଚକ୍ରପାଣି ।
ପରମ ଲକ୍ଷ୍ମୀ ଅଟନ୍ତି ଜନେକ ଦୁଲଣୀ ॥
ମୁହିଂ ସେ ଜାଣଇ ମାରିବେ ରାମ ମୋତେ ।
ତେଣୁ କରି ସୀତ୍ୟାକୁ ନ ଦିଅଇ କଦାଚିତେ ॥
ବିଷ୍ଣୁର ହାଥେ ମୁଂ ମରିବି ଅବଧି ।
କେମନ୍ତେ ପାପଭାରା ଛେଦିବି କାଳ ବ୍ୟାଧି ॥
ବିଷ୍ଣୁ ନାରାୟେଣ ବୈକୁଣ୍ଠକୁ ଯିବି ।
ନିଜ ରୂପ ଧରିଣ ମୁଂ ଦ୍ୱାରପାଳ ହୋଇବି ॥
ବାରସ୍ୱତୀ ଭୁବନେ ମୁଂ କେମନ୍ତେ ବସିବି ।
ଅମର ବୈକୁଣ୍ଠ କେମନ୍ତେ ପାଇବି ॥୭୦
କୁମ୍ଭକର୍ଣ୍ଣ ଭାଇ ମୋର ଆଗ ହୋଇଗଲା ।
ଶ୍ରୀରାମ ନାରାଜେ ତାର ପାପ କ୍ଷୟେ ଗଲା ॥
ମୁହିଂ ଯିବି ଯେଥି ନ ପାରଇ ରହି ।
ଯେମନ୍ତେ ଜନମିଲି ଶୁଣରେ ପ୍ରାଣ ସହି ॥
ବିଷ୍ଣୁର ଦ୍ୱାରପାଳ ପଶ୍ଚିମ ଦ୍ୱାର ରଖୁ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର କାହାକୁ ନ ଲେଖୁ ॥
ଶ୍ରୀହରିର ବଲ୍ଲଭୀ ମହାଲକ୍ଷ୍ମୀ ଦିବ୍ୟ ବେଶ
ହୋଇଂ ।
ନାରାୟେଣ ସନ୍ନିଧେ ଗମଇ ଚାନ୍ଦମୁଂହୀ ॥
ଆଗେ ଉଗାଳିଣ ମୁଂ ବୋଇଲଇଂ ରାଗେ ।
ସୁର ମୁନିମାନେ ଛନ୍ତି ଶ୍ରୀହରିର ସଙ୍ଗେ ॥୮୦
ଯେସନେକ ସମୟେ ଗୋ ଯିବା ନୁହଇଂ
ଉଚିତ ।
ତୁହି କୁଳବଧୂ ସିନ୍ଧୁର ଦୋହିତ ॥
ଯେକାନ୍ତ ସମୟେ ସ୍ୱାମୀର ସଙ୍ଗେ ଥେବୁ ।
ଉଦ୍ୟାମ ଥାନକୁ ଗୋ କିପାଇଂ ଦେଖିଯିବୁ ॥
ଚଞ୍ଚଳ ହୋଇବେ ଦେଖି ସୁରଜ୍ଜନ ।
ସେ ବୋଇଲେ ସଭିଯେ ଅଟନ୍ତି ମୋର
ନନ୍ଦନ ॥
ତହିଂକି ବିକାରକି ଉକୁଟଇ ତୋତେ ।
ବାଟ ଛାଡ଼ ହୋ ବିକାର ନାହିଂ ମୋତେ ॥
ଆଜ ଗୁରୁବାର ମୁଂ ସମୋଦ୍ରେ ସ୍ନାହାନ
କଲି ।
ଦର୍ଶନ କରିବାକୁ ବେଗେଣ ଅଇଲି ॥୯୦
ଦିନ ସୁଫଳ କରିବି ସ୍ୱାମୀ ମୁଖ ଚାହିଂ ।
ନମସ୍କାର କରିଣ ଆସିବି ବେଗ ହୋଇଂ ॥
ତୁ ହୋ ଚଣ୍ଡବୀର କଟାଳ କିମ୍ପା କରୁ ।
ଦେସି ଆଗ୍ୟାଂ ମୋତେ ଦେଖଇ
ମହାମେରୁ ॥
ଦେବୀର ବଚନେ ମୁଂ ପ୍ରବୋଧ ନ ଗଲି ।
ଚକ୍ଷୁ ବୁଲାଇ ମୁଂ ବିକଟାଳ ରୂପ କଲି ॥
ଭୟେ କରି ବାହୁଡ଼ିଲେ ସର୍ବ ସୁଲକ୍ଷଣୀ ।
ଶାପ୍ୟ ଦେଲା ମୋତେ ସଂଯେ କମଳଣୀ ॥
ରାକ୍ଷସ ପ୍ରକୃତି କରି ମୋତେ ଡରାଇଲୁ ।
ସ୍ୱାମୀ ସେବା ମୋର ବିଅର୍ଥ
କରାଇଲୁ ॥୧୦୦
ଯାସି ଦ୍ୱାରପାଳ ଅସୁର ବଦନ ହଉ ।
ଯେ ମୋହୋର ଆଗ୍ୟାଂ ଅବଗାଂ ହାଦେ
ନୋହୁ ॥
ଯେସନେକ ବୋଲି ବାହୁଡ଼ି ବେଗେ ଗଲା ।
ତତକ୍ଷଣେ ମୁଖ ମୋର ରାକ୍ଷସ ହୋଇଲା ॥
ଶ୍ରୀହରି ଛାମୁରେ ଜଣାଇଲି ଯାଇଂ ।
ଗଦା ପକାଇଣ ମୁଂ ଉଠିଲି ବୋବାଇ ॥
ସ୍ୱାମୀ ବୋଇଲେ ଉଠସି ହୋ ଚଣ୍ଡ ।
ଦେବୀର କୋପେ ବିକଟ ହୋଇଲା ତୋର
ମୁଣ୍ଡ ॥
ଘେନ ପ୍ରତିକାର ଦୟା ତୋତେ କଲି ।
ଜଗତ ପିତା ତୋତେ ବିଜୟା ନାମ
ଦେଲି ॥୧୦
କମଳା ବଚନ ନୁହଇ ଆନ ଜାଣ ।
ପୂର୍ବର ପାପେ ହୁଅ ଅସୁର ବଦନ ॥
ତୁ ମୋର ବିଶ୍ୱାସ ଅଟୁ ପରମ ହିତ ।
ତୋତେ ସମର୍ପଇ ମୋହୋର ଅର୍ଥ ବିତ୍ତ ॥
ନ ବିଚାରି ପ୍ରିୟା ଯେବେ କୋପ ତୋତେ
କଲା ।
ବେଭାର କଥା ତ ନବୁଝି ଶାପ୍ୟ ଦେଲା ॥
ଯେଥକୁ ପ୍ରାଭବ ତ ପାଇବ କମଳାକ୍ଷି ।

ଭୃତ୍ୟଙ୍କୁ ତାହାର ଯେବେ ଯେତେକ ମାୟା
ଅଛି ॥
ତୋତେ ଅସୁର କଲା ଶାପ୍ୟ ହାଦେ
ଦେଇଂ ।
ମୃତ୍ୟୁଲୋକେ ଜନମ ସେ ମନିଷ୍ୟ ଦେହ
ବହି ॥୨୦
ତୁ ଯେ ବିଶର୍ବା ଋଷିର ହୋଇବୁ ସୁତ ।
ମାତା ଗୁଣ ଘେନି ବୋଲାଇବୁ ଦଇତ ॥
ଆମ୍ଭେ ଦଶରଥ ଘରେ ଜାତ ହୋଇଂ ।
ଗୋଦାବରୀ କୂଳେ ଥିବୁ ହାଦେ ରହି ॥
ଯେ ଲକ୍ଷ୍ମୀ ଅଟଇ ଆମ୍ଭର ମନୋହାରୀ ।
ନାମ ବୋଲାଇବ ଜନେକ କୁମାରୀ ॥
ତୁ ତାହା ମାୟା ରୂପେ ଚୋରାଇବୁ ସୀତ୍ୟା ।
ଲଙ୍କାପୁରେ ନେଇ ଥୋଇବୁ ଜଗତମାତା ॥
ବନ୍ଦୀ ପ୍ରକାରେଣ ଜଗାଇଣ ଥେବୁ ।
ଯେସନେ ଯୋଗୁଂ ଅନେକ ଭ୍ରଷନା
ବୋଲିବୁ ॥୩୦
ଯେ ଯେ ଲକ୍ଷ୍ମୀ ତୋତେ ବୋଇଲା
ମନ୍ଦବାଣୀ ।
ତୁହି ମନ୍ଦ ବୋଲିବୁ ଆଜର କଥା ଶୁଣି ॥
ସେ କିସ ଭାରିଯା ତୁ କିସ ସେବକ ।
ମୋହୋର ତହୁଂ ବଡ଼ ମୋହୋର ଭୃତ୍ୟ
ଲୋକ ॥
ଯେସନେକ କହି ତୋଷିଲେ ମୋର ମନ ।
ଭାବଗ୍ରାହୀନାଥ ଅଟନ୍ତି ଭଗବାନ ॥
ନିଜ ସେବକର ନିମନ୍ତେ ଘରଣୀକି କୋପ
କଲେ ।
ଯେଥୁଅନନ୍ତରେ କେତେହେଂକ ଯୁଗ
ଗଲେ ॥
ଲକ୍ଷ୍ମୀ ନାରାୟେଣଙ୍କ ଯେକାନ୍ତ ସମୟେ ।
ଦୃଭାସ୍ୟା ମହାଋଷି ପ୍ରବେଶ ଯାଇ
ହୋୟେ ॥୪୦
ପଛିମ ଦ୍ୱାର ବାଟେ ପଶନ୍ତେ ମହାମୁନି ।
ତାହାଙ୍କୁ ଦେଖି ଆମ୍ଭେ ବାଟ ଓଗାଳିଲୁ
ବେନି ॥
ନୁହଇ ରଚିତ ଯେ ମାର୍ଗେ ନ ଯାଅ ।
କେମନ୍ତେ ହୋଇ ତୁମ୍ଭେ ହେ ବ୍ରହ୍ମମୁନି
ବୋଲାଅ ॥
କମଳାକୁ ଘେନି ଶ୍ରୀହରି ଅବକାଶ ।
ବେଳ କାଳ ନଜାଣି ଭିତରେ ତୁମ୍ଭେ
ପଶ ॥୫୦
ପଶ୍ଚିମ ଦ୍ୱାରକି ଅଟଇ ତୁମ୍ଭର ବାଟ ।
ଠାକୁରେ ଜାଣିଲେ ହୋଇବ ବଡ଼ ଘାଠ ॥
ଯେସନେକ କହନ୍ତେ ନ ରହିଲେ ଋଷି ।
ତପ ବଳ ଦେଖାଇ ଗଲେ ବଳେ ପଶି ॥
ବିଜୟେ ସହିତେ ଆମ୍ଭେ କୋପ କଲୁ
ବେନି ।
ବୋଇଲୁ ଯେ ପରା ବଡ଼ାଇ ଅଟଇ ହାଦେ
ମୁନି ॥
ତଇଲୋକ ଠାକୁର ଅଟନ୍ତି ଯେବଣ ନାହା ।
କିଚିଂତ ତପେ ତୁମ୍ଭେ ନ ଗଣନି ତାହା ॥
ଅମାର୍ଗେଣ ଯାଅ ଶ୍ରୀହରିର ଆଗ୍ୟାଂ ମେଣ୍ଟି ।
ଯେତେବୋଲି ତାହାଙ୍କର ଚିପିଲୁ ଆମ୍ଭେ
ତଣ୍ଟି ॥
ଗଳଥା ମାରିଣ ବାହାରକୁ ପକାଇ ଦେଲୁ ।
ପୁଣି ପଶଇ ବୋଲିତ କବାଟ ପାଡ଼ିଲୁ ॥
କୋପେ ମୁନିଶ୍ୱର ଆମ୍ଭଙ୍କୁ ଶାପ୍ୟ ଦେଲା ।
ମର୍ତ୍ତ୍ୟେ ଅସୁର ହୁଅସି ବୋଇଲା ॥୬୦
ମୁହିଂ ପରା ଅଟଇ ଶ୍ରୀବିଷ୍ଣୁର ବାହିଯ
ଲୋକ ।
ତୁମ୍ଭେ ତାହାଙ୍କର ଅଟ ହାଦେ ବିଶ୍ୱାସ
ସେବକ ॥
ଓପ୍ରୋଧ ଛାଡ଼ିଣ ଧ୍ୱଗାଂସ ମୋତେ କଲ ।
ବ୍ରାହ୍ମଣ ବୋଲିଣ ମୋତେ ଭୟରେ ନକଲ ॥
ବିଶେଷେ ବିଷ୍ଣୁର ଭଗତ ମୋହୋର ଯେ
ଆତ୍ମା ।
ଯେ କଥାକୁ ଗଉରୋବ ନକଲ ମାହାତ୍ମା ॥
ତୁମ୍ଭେ ସେ ବାସୁଦେବର ଅଙ୍ଗ ଲୋକ
ଅଟ ।
ତୁମ୍ଭେ ସିନା ଯେକା ପଦ୍ମପାଦେ ଖଟ ॥
ଆମ୍ଭେ ତ ଦୋରେହା ହୋଇଲୁ ତୁମ୍ଭର
ବୋଲେ ।
ଗଳଥା ମାଇଲ ନବରେ ପଶିଲେ ॥୭୦
ଯେବେ ମୁଂ ବ୍ରାହ୍ମଣ ବାସୁଦେବର ଭୃତ୍ୟ ।
ତୁମ୍ଭେ ଦୋରେହାରେ କଲ ମନ୍ଦକୃତ୍ୟ ॥
ଯେବେ ସେ ରାକ୍ଷସ ହୋଇବ ଶତେ ବାର ।
ଶ୍ରୀହରି ଦୋରେହା ତୁମ୍ଭଙ୍କୁ ବୋଲିବେ
ଜଗତର ॥
ଯେତେ ବିଶ୍ୱାସ ତେତେ ଶତୃ ହୋଅ ।
ନାରାୟେଣ ଦୋରେହା ଜଗତେ ବୋଲାଅ ॥
ଯେତେ କହି ମୁନି ଅନ୍ତର୍ଦ୍ଧାନେ ଗଲେ ।
ଜାଣିଣ ଶ୍ରୀହରି ଆମ୍ଭନ୍ତ ପୁଛିଲେ ॥
କହିଲୁ ଦୃଭାସାର ଶାପ୍ୟ ଗତି ।
ଶୁଣିଣ ପ୍ରସନ୍ନ ହୋଇଲେ ଶ୍ରୀପତି ॥୮୦
ବୋଇଲେ ମହାମୁନିଙ୍କର ବଚନ ନୋହଇ
ଆନ ।
ପୂର୍ବେ ହୋଇଛି ତୁମ୍ଭଙ୍କୁ କମଳାର ବଚନ ॥
ଶତେ ଜନ୍ମକୁ ଯାହା ବୋଇଲେ ଦୃଭାସା ।
ଦ୍ୱାରପାଳ ନଥିଲେ ତୁଚ୍ଛ ହୋଇବ ମୋର
ବସା ॥
ତିନିବେଳ ଜନମ ହୋଇବ ମୃତ୍ୟୁପୁରେ ।
ଜନ୍ମେକ ମନୁଷ୍ୟ ଦୁଇଜନ୍ମ ଋଷିର ଘରେ ॥
ମାତା ଗୁଣ ଘେନି ହୋଇବ ରାକ୍ଷସ ।
କଶ୍ୟପର ଘରେ ହିରଣ ହିରଣାକ୍ଷ ॥
ବରାହ ରୂପେ ହିରଣାକ୍ଷ ମାରିବି ।
ନରସିଂହ ରୂପ ଧରି ହିରଣ ବିଦାରିବି ॥୯୦
ଦୃତୀଅ ଜନେମେ ବିଶ୍ରବାର କୋଳେ
ଜାତ ।
ରାବଣ କୁମ୍ଭକର୍ଣ୍ଣ ନାମେଣ ଦଇତ ॥
ଯେ ଯେ ଲକ୍ଷ୍ମୀ ତୋତେ ଅଦୋଷେ କୋପ
କଲା ।
ନ୍ୟାୟେ ଭାଷା କହନ୍ତେଣ ଅହନ୍ତା ବୁଝିଲା ॥
ସେ ଦୋଷ ଘେନି ଯେ ମାନୁଷ୍ୟ ଜନ୍ମ ଲଭୁ ।
ଦଣ୍ଡକାଅରନ୍ୟ ଯେହାକୁ ଚୋରାଇ ନେବୁ ॥
ସେ କଥା ଜାଣି ତୁମ୍ଭଙ୍କୁ କରିବି ଖେଦ ।
ନାରାଜେ ମାଇଲେ ପୁଣି ପାଇବ ନିଜ ପଦ ॥
ଦୃତୀୟ ଜନ୍ମକୁ ମନିଷ୍ୟ ଘରେ ଜାତ ।
ଦମଘୋଷ ରାଜାର ହୋଇବ ବେନି
ପୁତ୍ର ॥୧୦୦

ଶାଲ୍ଲ ଶିଶୁପାଳ ରୂପେ ଅବତାର ।
ଚକ୍ରେ ମାଇଲେ ଦୋଷ ଯିବ ପାର ॥
ତିନି ଜନ୍ମରେ କରିବ ପାର ଦୋଷ ।
ତେବେ ସେ ଖେଦ ପାଇ ତୁମ୍ଭକୁ କରିବି
ବିନାଶ ॥
ଶତେ ଜନ୍ମ ଦୋଷ ତିନି ଜନ୍ମେ ଯିବ ।
ଯେବେ ମୋହୋର ହାଥେ ମରଣ ପାଇବ ॥
ଯେସନେକ ଆଗ୍ୟାଂ ଦେଇଛନ୍ତି
ନାରାୟେଣ ।
କେ ଆନ କରିବଟି ବିଷ୍ଣୁର ବଚନ ॥
ସେ କଥା ଜାଣିଣ ମୁଂ ଆଣିଲି ସୀତ୍ୟା ହରି ।
ଓଶେକ ବିପୁନ୍ୟରେ ଥୋଇଛି ଯତ୍ନ
କରି ॥୧୦
ରକ୍ଷା ଅସୁରୀ ଅଛନ୍ତି ଗ୍ୟାନବନ୍ତ ।
ତ୍ରିଜଟା ଜାଣଇ ତାହାର ହାନି ଲାଭନ୍ତ ॥
ସୂଚୀମାଛି ପରୀକ୍ଷା ସୀତ୍ୟା ଥିବା ଠାବରେ ।
ଗୁପତ କଥାମାନ ସଖି ଯେବେ କହି
ତୋରେ ॥
ଦିନେକ ଦଣ୍ଡକାଅରଣ୍ୟକୁ ଯାଇଥିଲି ।
ଶ୍ରୀରାମର ମୃଗୟା ବିନୋଦ ଦେଖିଲି ॥
ଯେବଣ ଜୀବକଇ ବାଣେ କରଇ ନାଶ ।
ପାର୍ଥିବ ଦେହ ଛାଡ଼ି ହୁଅଇ ଦିବ୍ୟ ବେଶ ॥
ସୁବର୍ଣ୍ଣ ବିବାନେ ବସି ଦେବପୁରେ ଯାଇଂ ।
ସୁରପୁରେ ଯାଇଂ ସକଳ ପାପ
ଦହଇଂ ॥୨୦
ଦେଖି ଜାଣିଲି ମୁଂ ଯେ ସେ ନାରାୟେଣ ।
କଇବଲ ମୁକତି ଅଟଇ ଯେହାର ବାଣ ॥
ସେହି ଦିନୁ ତାହାର ହାଥରେ ନୋଡ଼ଇ
ମରି ।
ତେଣୁ ସେ ସୀତ୍ୟାକୁ ଆଣିଲି ଚୋରି କରି ॥
ବାଞ୍ଛା ମୋହୋର ଗୋ ସିଦ୍ଧ ହେଲା ଏବେ ।
ଶ୍ରୀରାମ ନାରାଚେ ପ୍ରାଣ ହରାଇବଇଂ
ଯେବେ ॥
ନପୁଣ ରଘୁନାଥ ନ ପାରନ୍ତି ମୋତେ ମାରି ।
କେତେ କାଳ ଥିବି ମୁଂ ଅସୁର ରୂପ ଧରି ॥
ବଇକୁଣ୍ଠପୁରରେ ମୋର ନିଜ ଘର ।
ବନ୍ଧୁ କୁଟୁମ୍ବ ଅଛନ୍ତି ମୋର ସେହିଠାର ॥୩୦
ଅନେକ କାଳ ବିଛେଦ କଲାକ ଧାତା ।
ଶ୍ରୀହରି ଘରଣୀ ଯେ ଅଟଇ ଦେବୀ ସୀତ୍ୟା ॥
ତାହାକୁ ଦ୍ରୋହ କଲି ମରିବାର ପାଇଂ ।
ଯେ ମହୀମଣ୍ଡଳେ ସଖୀ ମୋହୋର କାର୍ଯ୍ୟ
ନାହିଂ ॥
ଅଶ୍ରୁତ ନାରାୟେଣ ପାଶରେ ମୁହିଂ ଥିବି ।
କି ପାଇଂ ଅକାରଣେ ଯେଡ଼େ ସୁଖ
ହରାଇବି ॥
ଶାପ୍ୟ ପାର କରି ମୁଂ ଯିବି ସୁରଆଳ ।
ଶ୍ରୀରାମର ନାରାଚେ ପୂରିବ ମୋର କାଳ ॥
ଭୋ ସଖି ମନ୍ଦୋଦରୀ ଗୁପତ ଯେ ବାଣୀ ।
ଯଦ୍ୟପି ଆଣିଲି ମୁଂ ଶ୍ରୀହରିର ଘରଣୀ ॥୪୦
ସ୍ୱାମୀର ଅଗ୍ରତେ ଅଭାବ ନାହିଂ ମୋତେ ।
ପଛିମ ଦ୍ୱାରପାଳ ଅଟଇ ଯୁଗତେ ॥
ସେ ମୋହୋର ସନିଧେ ସମର୍ପଇ
କମଳାକ୍ଷି ।
ମୁହିଂ ସେ ସର୍ବଦା ସେବା କରିଅଛି ॥
ତେଣୁ କରି ସୀତ୍ୟାକୁ ନୁହଇ ଆଗ ବଢ଼ି ।
ଶୁଣି ମନ୍ଦୋଦରୀ ଦୁଇ କର ଯୋଡ଼ି ॥
ଶୁଣ ଦେବ ରାବଣ ପ୍ରତାପ ଲଙ୍କେଶ୍ୱର ।
ଯେ କଥା ଅଛି ଯେବେ ତୋହୋର ମନର ॥
ସୀତ୍ୟାକୁ ବିଡ଼ମ୍ବଣ କହୁ ତୁ କେମନ୍ତେ ।
ଦଶଗ୍ରୀବ ବୋଇଲା ମୁଂ ନକରଇ ପ୍ରତେ
ଚିତ୍ତେ ॥୫୦
ମହାଲକ୍ଷ୍ମୀ ନୁହଇ ମନେ ବିଚାରଇଂ ।
ଆନ ସ୍ତିରୀ ହୋଇଲା ପ୍ରାୟେକ ମଣଇଂ ॥
ଅନ୍ୟାଚାରୀ ହୋଇଲେ କରିବ ମୋତେ
ମତି ।
ଅଟଇ କି ନୁହଇ ସେ ସିନ୍ଧୁର ଦୋହିତୀ ॥
ଯେସନେକ ବିଚାରି କୁମାର୍ଗ କଥା କହଇ ।
ବାହାର ମନେ ଡରାଇ ଭିତରେ ଭିତରେ
ଭୟେ ପାଇଂ ॥
କୁମ୍ଭକର୍ଣ୍ଣ ପଡ଼ିଲାଠାରୁ ହୋଇଲାନି ତୋଷ ।
ବୋଇଲି ଶ୍ରୀରାମ ଅଟନ୍ତି ପୀତବାସ ॥
ଯେବଣ ଦିନେ ରାଘେବ ସୀତ୍ୟାକୁ ବିଭା
ହୋୟେ ।
ଅନ୍ତରୀକ୍ଷେ ଦେଖୁଥିଲେ ସକଳ
ଦେବତାୟେ ॥୬୦
ଈଶ୍ୱର ଧନୁ ସେ ତୋଳିଲେ ବାମ କରେ ।
ଗୁଣ ଦେଇ ଆମଞ୍ଚିଲେ ଜନେକର ଘରେ ॥
ସେ ଦିନରେ ଦେଖି ମୁଂ ହୋଇଲି ଚକିତ ।
ବାର ବରଷ ପୁଅ କଲା ଯେଡ଼େ କୃତ ॥
ଇନ୍ଦ୍ର ଯେଉଂ ଧନୁ ନ ପାରିଲା ତୋଳି ।
ହେଳ ପ୍ରକାରେ ବାମ ଭୁଜେ ହାମୋଳି ॥
ଗୁଣ ଟଙ୍କାରିଣ ତାହା ଦୁଇ ଖଣ୍ଡ କଲା ।
ଯୋଗେ ଜାଣିଲଇଂ ଶ୍ରୀରାମ ଉପୁଜିଲା ॥
ଆନନ୍ଦ ହୋଇ ତହୁଂ ବାହୁଡ଼ି ଅଇଲି ।
ପ୍ରଶୁରାମକୁ ଜିଣିବାର ବାରତା ପାଇଲି ॥୭୦
ବନବାସ ଅଇଲାର ପୁଣି ଗଲି ଦେଖି ।
ସଂଗେଣ ଅଛନ୍ତି ଜାନେକୀ ପଦ୍ମମୁଖୀ ॥
ବନଫଳ ଖାନ୍ତି ତରୁ ତଳେ ବାସ ।
ପଞ୍ଚୁ ମନେ ମୁହିଂ ପାଇଲି ମହାତ୍ରାସ ॥
ବୋଇଲି ବ୍ରହ୍ମରାଶି ଅଇଲେ ମୋହୋର
ନିମନ୍ତେ ।
ଯେତେ କଷ୍ଟ ପାଉଛନ୍ତି ପ୍ରଭୁ ଅନମିତେ ॥
ବେଗ କରି ସୀତ୍ୟାକୁ ମୁଂ ନେମଇ ହରି ।
ତେବେ ସେ ଦୁଃଖ ସରଇ ସବୁଙ୍କରି ॥
ମୁହିଂ ରାକ୍ଷସ ତନୁ ଛାଡ଼ିବଇଂ ଚେବେ ।
ସ୍ୱର୍ଗେ ସୁର ମୁନି ବସିବେ ସୁସ୍ଥ
ଭାବେ ॥୮୦
କମଳା ସହିତେ ହରି ଯିବେ ସର୍ଗବାସ ।
ବଇକୁଣ୍ଠ ଯିବି ସେବା କରିବି ସ୍ୱାମୀ ପାଶ ॥
ଯେସନେକ ବିଚାରି ଆଣିଲି ବଇଦେହୀ ।
ତୁ ମୋତେ ଅଗିଆନ ନ ବୋଲରେ ସହୀ ॥
ବାଳୁତ କାଳେ ମୁଂ ଅନେକ ତପ କଲି ।
କେବେହେଂ ବ୍ରହ୍ମାଙ୍କୁ ମନାଇ ନ ପାଇଲି ॥
ଚନ୍ଦନ କାଠରେ ମୁଂ ଜାଳିଲି ହୁତାଶନ ।
ଭାଳିଲି ଯେଥି ଦେହ କରିବି ଦହନ ॥
ଯେତେବୋଲି ମୁଣ୍ଡ ମୋଡ଼ିଲି ଆପଣେ ।
ଅଗ୍ନିରେ ପକାଇଲି ବ୍ରହ୍ମାର କାରଣେ ॥୯୦
ପ୍ରଜ୍ୱଳିତ ଅଗ୍ନିର ଉପର ଚର୍ମ ଗଲା ।
ଲଲାଟେ ଅଢ଼ାଇ ପନ୍ତି ଅକ୍ଷର ଦିଶିଲା ॥

ପଢ଼ିଲି ଜାନେକୀ ହରଣେ ରାବଣ ମୃତ୍ୟୁ ।
ରାମର ବାଣେ ନିଧନ ପରମତତ୍ତ୍ୱ ॥
ସୀତ୍ୟା ନ ହରିଲେ ହୋଇବି ଅମର ।
ସୁଖେଣ ଭୋଗ୍ୟ କରିବି ତିନିପୁର ॥
ଯେକଥା ପଢ଼ିଣ ଆଶ୍ରିଯ ହୋଇଲି ।
ପୁଣି ଆରେକ ମୁଣ୍ଡ ମୋଡ଼ି ପକାଇଲି ॥
ସେ ମୁଣ୍ଡ ପୋଡ଼ନ୍ତେ ଦିଶିଲା ଅକ୍ଷର ପନ୍ତି ।
ଦଶରଥ ବହୂ ରୂପେ ରୂପବନ୍ତୀ ॥୧୦୦
ତାହା ଚୋରାଇଲେ ମରିବ ଦଶଶିରି ।
ନୋହିଲେ ସୁଖ ଭୋଗ କରିବ ଲଙ୍କପୁରୀ ॥
ପଢ଼ିଣ ବିଚାରି ଜାଣିଲି ତତ୍ତ୍ୱ କଥା ।
ପୁଣ ଅଗ୍ନିରେ ପକାଇଲି ଆର ମଥା ॥
ତା ତହିଁ ପଢ଼ିଣ ମୁଁ ଜାଣିଲି ଲେଖନ ।
ସୀତ୍ୟା ହରିନେଲେ ମରିବ ଦଶାନନ ॥
ଚଉଦ ଭୁବନେ ସେ ହୋଇବ ଗୋସାଇଂ ।
ସୀତ୍ୟା ନ ହରିଲେ ମୃତୁ ତୋତେ ନାହିଁ ॥
ପଢ଼ିଣ ମୁହିଁ ଯେ ହୋଇଲି ଆନନ୍ଦ ।
ଯେଣେ ସେ ମୃତୁ ଅଟଇ ନିତାନ୍ତ
ଭେଦ ॥୧୦
ପୁଣି ଆରେକ ମୁଣ୍ଡ ମୋଡ଼ି ପକାଇଲି ।
ଅଗ୍ନିରେ ପୋଡ଼ନ୍ତେ ଅକ୍ଷର ଦେଖିଲି ॥
ତାହାର ତହିଁ ଲିହିଅଛି ଯାହା ।
ରାମନାରୀ ହରିଲେ ମରିବ ବିଂଶବାହା ॥
ନୋହିଲେ କେବେହେଁ ନୋହିବ ବିନାଶ ।
ଯେସନେକ ଲେଖନ ପୂର୍ବ କର୍ମ ଦୋଷ ॥
ପୁଣି ଆର ମୁଣ୍ଡ ପକାଇଲି ମୋଡ଼ି ।
ମୁଣ୍ଡ ବିନାଶ ହୁଅନ୍ତେ ଦିଶିଲା ଅକ୍ଷର ଧାଡ଼ି ॥
ଜନେକର ଝିଅ ଲକ୍ଷଣ ଭାଉଜ ।
ତାହକୁ ଚୋରାଇଲେ ମରିବ
ଲଙ୍କାରାଜ ॥୨୦
ଆନେ ଶ୍ୟରୀର ତାର ନୋହିବ ବିନାଶ ।
ତାହା ଜାଣି ମୁଁ ହୋଇଲି ହରଷ ॥
ନବ ମୁଣ୍ଡ ମୁହିଁ ପକାଇଲି ଅନଳେ ।
ପୋଡ଼ନ୍ତେ ଅକ୍ଷର ପନ୍ତି ବିରାଜନ୍ତି କପାଳେ ॥
କଉଶୁଲା ନନ୍ଦନ ଯୁବତୀ ଯେବେ ହରଇଂ ।
ସବୁ ସମ୍ପଦ ଛାଡ଼ି ରାବଣ ମରଇଂ ॥

ମନେ ବିଚାରିଣ ଜାଣିଲି ତତ୍ତ୍ୱକଥା ।
କିମ୍ପା ପ୍ରସନ ମୋତେ ନୋହିଲା ବିଧାତା ॥
ଯେତେ ବୋଲି ଅଗ୍ନିରୁ କାଢ଼ିଲି ଯେକ
ମୁଣ୍ଡ ।
ବାମହସ୍ତରେ ଛିନାଇଲି ମୁଣ୍ଡ ଖଣ୍ଡ ॥୩୦
ଅଙ୍ଗୁଷ୍ଠିରେ ବାନ୍ଧି ମସ୍ତକ ଚାଳିଲି ।
ଦଖିଣ ଭୁଜରୁ ଭୁଜେକ ଉପାଡ଼ିଲି ॥
ତର୍ଜନୀ ଅଙ୍ଗୁଷ୍ଠି ମୃଧୁନାରେ ତାହା ବାନ୍ଧି ।
ଯେକେଣ ଆରେକ ଛାଡ଼ିଲି ପବନ
ନିରୋଧି ॥
ଯେକାପାଦେ ଉଭା ହୋଇଣ ଗୀତ କଲି ।
ଗାନ୍ଧାର ରାଗେ ସାମବେଦ ଉଚାରିଲି ॥
ବ୍ରହ୍ମାଙ୍କୁ ବନ୍ଦିଣ ଗାଇଲି ଗୀତମାନ ।
ତତକ୍ଷଣେ ମିଳିଲେ ଚତୁର ବଦନ ॥
ବୋଇଲେ ମୂଢ଼ରେ କିଂପାଇଂ ଦୁଃଖ ପତୁ ।
କେବଣ କାରଣେ ନିଜ ମୁଣ୍ଡ ମୋଡୁ ॥୪୦
ମରଣକୁ ଡର ନାହିଁ ଯେ ତୋହୋର ।
ଦେଖିଣ ବିକଳ ହୋଇଲା ଆତ୍ମା ମୋର ॥
କିଂପା ନବ ମୁଣ୍ଡ ପକାଇଲୁ ଅନଳେ ।
ଯେ ବଚନ ଶୁଣି ପଡ଼ିଲି ପାଦତଳେ ॥
ପ୍ରସନ ହୋଇଣ ମୋତେ ଆପଣେ
ତୋଳିଲେ ।
କିସର ବର ତୋତେ ଦେବଇଂ
ବୋଇଲେ ॥
ବିଚାରି ଅନଳୁ କାଢ଼ିଲେ ମୁଣ୍ଡମାନ ।
କାନ୍ଧେ ଲଗାଇଣ କହିଲେ ବ୍ରହ୍ମଗ୍ୟାଂନ ॥
ହସ୍ତରେ ଧରିଣ ବାଉଥିଲି ବୀଣା ।
ସେ ହସ୍ତ କନ୍ଧରେ ଲଗାଇଲେ
ଜଗୁଜିଣା ॥୫୦
ନିଜ ମୁଖ ମୋର ହୋଇଲା ଦଶଶିର ।
ଧାତା ବୋଇଲା ତୁ ଶୁଣସିରେ ବୀର ॥
ଶିର ଛେଦିଣ ସେବା କଲୁ ମୋତେ ।
ମୁହିଁ ହାଦେ ପ୍ରସନ ହୋଇଲଇଂ ତୋତେ ॥
ଦେବ ଦାନବେ ତୁ ନୋହିବୁ ବିନାଶ ।
ଶିର ଛେଦିଲେ ତୁ ନୋହିବୁ ପ୍ରାଣ ନାଶ ॥
ଜଳେ ନ ବୁଡ଼ିବୁ ପବନେ ନ ଉଡ଼ିବୁ ।

ଖଡ଼ଗେ ନ ଛିଡ଼ିବୁ ଅଗ୍ନିରେ ନ ପୋଡ଼ିବୁ ॥
ଚଉଦ କୋଟି ଅମର ବର ଦେଲି
ତୋତେ ।
ଛପନ ଗଣ୍ଡା ଯୁଗ ଭୋଗ୍ୟ କର
ତୁରିତେ ॥୬୦
ଚଉଦ ଭୁବନେ ଚଳିବ ତୋର ରଥ ।
ଘଡ଼ିକେ ବୁଲି ତୁ ପାରିବୁ ଜଗତ ॥
ଯେସନେକ ବର ଦେଲା ପିତାମହ ।
ଶୁଣି ପରମ ସନ୍ତୋଷ ହୋଇଲା ମୋର
ଦେହ ॥
କରଯୋଡ଼ି କହିଲି ଶୁଣ ହୋ ବେଦପତି ।
କେବଣହିଂ ବିଧାନେ ମୋର ମୃତୁ ଗତି ॥
ଅବଶ୍ୟ ଜନମ ହୋଇଲେ ନାଶ ଯାଇଂ ।
ଯେଥିର ସନ୍ଦେଶ ମୋତେ କହିବା
ଗୋସାଇଂ ॥
ବ୍ରହ୍ମା ବୋଇଲେ ତୁ ଶୁଣସି ତନଯେ ।
ମୋହୋର ପ୍ରସାଦେ ତୋତେ କିଛି ନାହିଁ
ଭଯେ ॥୭୦
ଯେକମାତ୍ର କଥାଯେ ପାଳିଥିବୁ ବାବୁ ।
ନାରାୟେଣ ସଙ୍ଗେ ତୁ ଅଭାବ ନୋହିବୁ ॥
ଯଦ୍ୟପି ହୋଇବୁ ନ ହରିବୁଟି ତାହାର
ନାରୀ ।
ଯଦ୍ୟପି ହରିବୁ ଜନେକ କୁମାରୀ ॥
ତେବେ ସେ ନାରାୟେଣ ମାରିବାକ
ତୋତେ ।
ଯେତେ ବୋଲି ବ୍ରହ୍ମଲୋକକୁ ନେଲା
ମୋତେ ॥
ନୋହିଲେଣ ଜିଣନ୍ତା ନାହିଁ ତୋତେ ଆନ ।
ଦେବତା ରୂପେ ମାରି ନ ପାରଇ ଭଗବାନ ॥
ଏହି ରୂପେ ରାମ ଏହି ରୂପେ ସୀତା ।
ଅଙ୍ଗୁଷ୍ଠି ଘେନି ମୋତେ ଚିହ୍ନାଇଲେ
ଜଗତପିତା ॥୮୦
ବୋଇଲେ ନାରାୟଣର ନୋହିବୁ ବଇରୀ ।
ଜଗତ ଲକ୍ଷ୍ମୀକି ନ ନେବୁ ଚୋରୀ କରି ॥
ଶ୍ରୀରାମର ବାଦୀ ନୋହିବୁ କଦାଚିତେ ।
ନହରିବୁ ସୀତା ଜନେକ ଦୋହିତେ ॥

ଏତେକ ମୂର୍ଚ୍ଛିଲେ ନାହିଁ ତୋତେ ମୃତ୍ୟୁ
ଗତି ।
ଏତେ ବୋଲି ଶକତି ଦେଲେ ବେଦପତି ॥
ବୋଇଲେ ଏ ଶହସ୍ର ଘେନିଣ ତୁ ଥିବୁ ।
ଇତର ଜନକୁ କେବେହେଁ ନ ମାରିବୁ ॥
ଦେବ ଦାନବେ ମରନ୍ତି ଯେ ଶରେ ।
ଦଶଦିଗପାଳେ ପଳାବନ୍ତି ଡରେ ॥୯୦
ଏକଘନୀ ନାମ ଅଟଇ ଏହାର ।
ଏକା ଜଣକୁ ଯେ କରିବୁ ପ୍ରହାର ॥
ଆତଙ୍କ କାଳେ ମାରିବୁ ଏହା ରଣେ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ହେଲେ ନତରିବେ ଏଣେ ॥
ତୋହର ପ୍ରାଣକୁ ଯେବେ ଲାଗିବ ସଂକଟ ।
ତେବେ ସେ ଏ ଶହସ୍ର କରିବୁ ପ୍ରଘଟ ॥
ଏତେବୋଲି ମୋତେ ଦେଲାକ ପଠିଆଇଂ ।
ସୀତ୍ୟା ନ ହରିବୁ ନିଅମ କରାଇଂ ॥
ସେ କଥା ଜାଣି ମୁଂ ଅଛଇ ହେତୁ କରି ।
ମରିବାକୁ ଭୟେ ନାହିଁ ଯେ
ମୋହୋରି ॥୧୦୦
ସମସ୍ତ ଦେବତାଙ୍କର ସଙ୍ଗେ ଯୁଦ୍ଧ କଲି ।
କାହିରିହିଂ ଠାରେ ଅପଚୟେ ନ ପାଇଲି ॥
ସଦାଶିବର ଶୂଳ ବାସୁଦେବର ଚକ୍ର ।
ମୋହୋର ଅଙ୍ଗେ ବାଜି ହୋଇଲେ ସେ
ବକ୍ର ॥
ଇନ୍ଦ୍ରର ମହାବଜ୍ର ଅଗ୍ନିର ମୁଦୁଗର ।
ସମସ୍ତ ଦେବତାଙ୍କର ଶହସ୍ର ପରିତାଳ ॥
ଦେଖ ଅସ୍ତ୍ରେ ମୋର ଫଳିଅଛି କାୟେ ।
ସେ ଶହସ୍ର ମଣଇ ମୁଂ ତୁଳା କୁଢ଼ ପ୍ରାୟେ ॥
ବ୍ରହ୍ମାର ବୋଲେ ମୁଂ ଜଗତ ଜୟେ କଲି ।
ଲଲାଟର ଲେଖନ ଭରସାରେ ଡରିଲି ॥୧୦
ବିଚାରିଲି ଶ୍ରୀରାମ ପାରଇ ମୋତେ ମାରି ।
ସୀତ୍ୟା ନ ହରିଲେ ସେହି ମୋତେ ନ ମାରି ॥
ଶିଲୋକ ଲିହିଲଇଂ ଚିତୋଇବାର ପାଇଂ ।
ଅବକାଶେ ନିଅବକାଶେ ଗୁଣୁଥାଇଂ ॥
ବସ୍ତ୍ରଙ୍କରେ ଚିହ୍ନ ଦିଅଇ ସେହି କଥା ।
କାଳେ ସବୁ ଆସି ହୋଇଲା ଅନ୍ୟଥା ॥
ଶ୍ରୀରାମରେ ବଇରୀ ହୋଇଲଇଂ ଯୋଗେ ।
ସୀତା ହରିଲଇଂ କାମର ବିଯୋଗେ ॥
ଶକତି ମାରିଲଇଂ ନମଲା ଲକ୍ଷ୍ମଣ ।
ଏତେ ସମ୍ପଦ ମୋର ହୋଇଲା
ରଣଭଣ ॥୨୦
ଭାଇବଂଧୁ ପୁତ୍ରେ ସକଳେ ନାଶ ଗଲେ ।
ସୁବର୍ଣ୍ଣମୟୀ ଲଙ୍କା ବାନରେ ବିଧ୍ୱଂସିଲେ ॥
ଭଲ୍ଲୁକ ମର୍କଟ ଦେଖି ଭାଙ୍ଗିଲେ ମୋ
ସଇନି ।
ମହାକ୍ଷତ୍ରୀ ରାମ ଲକ୍ଷ୍ମଣ ଭାଇ ବେନି ॥
ତାହାଙ୍କ ନାରାଜକୁ କରଇ ମୁହିଂ ଭୟେ ।
ସମୋଦ୍ର ଜିଣି ଯତି ଅଇଲା ଏଥି ଯାଏ ॥
ସାମାନ୍ୟ ଭରସା କି ବୋଲିବା ତାହାରି ।
ତ୍ରୈଲୋକ୍ୟ ଭିତରେ ଯତିକି ମୋତେ ସରି ॥
ଜାଣିମା ଜାଣିମା କାଲି କରିବି ମହାରଣ ।
ସଂହାରିବି ରାମ ଲକ୍ଷ୍ମଣ ବିଭୀଷେଣ ॥୩୦
ଅଷ୍ଟ ସେହ୍ନା ଆବର ପଚିଶ ଯୂତପତି ।
ହନୁମନ୍ତ ଅଙ୍ଗଦ ସୁଗ୍ରୀବ ପ୍ରଭୃତି ॥
ବୀର ମହାବୀର ଯେ ରୁକ୍ଷ କପିବଳ ।
ଘଡ଼ିକ ଭିତରେ କାଲି ପୂରାଇବି କାଳ ॥
ଏସନେକ ବୋଲି ପ୍ରତିଜ୍ଞା କରଇ ।
ଫେରାଫେରି ଦେଖି ମନ୍ଦୋଦରୀ ଡରଇ ॥
ଭୟେ କରି ଆଗରୁ ପଛକୁ ଘୁଞ୍ଚିଗଲା ।
ରାବଣେଶ୍ୱର ଯହୁଂ ବହୁତ ପ୍ରତଜ୍ଞା କଲା ॥
ମଉନ ହୋଇଣ ରହିଲା ମନ୍ଦୋଦରୀ ।
ଅନ୍ତପୁରୁ ବାହାର ହୋଇଲା ଦଶଶିରି ॥୪୦
ରାଣୀ ମହାଦେଈ ଭିତରେ ରହିଲେ ।
ମୁଦୁସୁଲୀମାନେ ସଙ୍ଗେ ଗୋଡ଼ାଇଲେ ॥
ଅବକାଶ ହୁଅନ୍ତେ ବାହୁଡ଼ିଲେ ସେହି ।
କବାଟ ଆଡ଼େ କରି ଦୁଆରେ ଛନ୍ତି ରହି ॥
ଯହୁଂ ସେ ରାଏ ହୋଇଲେ ଅବକାଶ ।
ନିଯୋଗର ଲୋକେ ମିଳିଲେ ଆସି ପାଶ ॥
ମନ୍ତ୍ରୀ ଅମାତ୍ୟ ଦର୍ଶନ କଲେ ଆସି ।
ଶୁକ ସାରଣଙ୍କୁ ବୋଇଲେ ଆକ୍ରୋଶି ॥
ଅହୋ ପାତ୍ର ଅମାତ୍ୟେ ମୋହୋର ବୋଲ
ଶୁଣ ।
ମୁଂ ଅବା ତୁମ୍ଭଙ୍କୁ ନକଲି କେଉଂ ଗୁଣ ॥୫୦
ଶତ୍ରୁ ଦେଖି ମୋତେ ଛାଡ଼ି ଲୋଡ଼ୁଅଛ ।
ତୁମ୍ଭଙ୍କୁ କିସ କଲି ହୋ ମୋହୋର ଆଗେ
ପଛ ॥
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ଏ ପଡ଼ିଲେ ବେନି ।
ସେ କି ବଳବୀର୍ଯ୍ୟ ଗଲେ ମୋର ଘେନି ॥
କିମ୍ପାଇ ସାଂଗ୍ରାମକୁ ହୋଉଛ ନିସତ ।
ନଜାଣ କି ତୁମ୍ଭେ ମୁଂ କେବଣ ଦଶମାଥ ॥
ବ୍ରହ୍ମା ଆଦି ଦେବାତଙ୍କୁ ଖଟାଇଲି
ପାଦତଳେ ।
କପିଳାସ ପର୍ବତ ଉପାଡ଼ିଲି ହେଳେ ॥
ଧ୍ରୁବମଣ୍ଡଳ ପର୍ଯ୍ୟନ୍ତ ଆକାଶକୁ ଗଲି ।
ପାତାଳ ବୈକୁଣ୍ଠେ ନାରାୟଣଙ୍କୁ
ଦେଖିଲି ॥୬୦
ବଳି ରାଜାର ଦ୍ୱାରପାଳ ହୋଇ ।
ଇନ୍ଦ୍ର କରିବେ ବୋଲି ଲୁଚାଇଛନ୍ତି ତହିଂ ॥
ତାହାଙ୍କୁ ଦର୍ଶନ କରିଣ ଅଇଲି ।
ପଚାଶ କୋଟି ବସନ୍ଧରୀ ଆୟତ କଲି ॥
ବ୍ରହ୍ମାଣ୍ଡର ସାର ପଦାର୍ଥ ସ୍ୱର୍ଗପୁର ।
ସେ ଦେବ ଭଣ୍ଡାର ମୋର ଥାଟ କଲେ
ଜୁର ॥
ଇନ୍ଦ୍ରଦେବତାକୁ ଜିଣିଲା ମେଘନାଦ ।
ବିରଧୁ ବୋଲାଇଲା ସେ ଇନ୍ଦ୍ରଜିତ ପଦ ॥
ଚଉଦ ଭୁବନ ସହିତେ ଜୁର କଲି ।
କାହାରିହିଂ ହାଥେ ଅପଚୟେ ନ ପାଇଲି ॥
ରକ୍ଷକପି ଛାର ମାନେବ ଜଟାଧାରୀ ।
ସେ ମୋହୋର କୁଳ ତ ହେଲେଣ
ନାଶକରି ॥
ବିଭୀଷେଣ ଶରଣ ପଶିଲା ଶତ୍ରୁଠାଇଂ ।
ତାହାର ଆଶେ ତୁମ୍ଭେ ନ ଯୁଝ ପରିଘାଇଂ ॥
ଦୁଇ ଗୋଡ଼ ହୋଇଣ ଆପଣେ ନାଶ
ଗଲା ।
ଓପ୍ରୋଧ ନ ଛାଡ଼ିବା ଅର୍ଥେ ହାଦେ ମଲା ॥
ମୁହିଂ ସେ ରାଜା ମୋହୋର ବୋଲେ
ଥିବ ।
ଅସମୟ କାଳେ ମୋତେ ହୋ ଛାଡ଼ିଣ
ନଯିବ ॥

କି ତୁମ୍ଭଙ୍କୁ ସୁଖ ଭୋଗ ନ ଦେଲଇ ମୁହିଁ ।
କେବଣହିଁ ଦ୍ରବ୍ୟ ଅପୂର୍ବ ତୁମ୍ଭଙ୍କୁ ହିଁ ॥୮୦
ମୋହୋର ପ୍ରସାଦେ ହୋ ଭୋଗ କର ଶିରୀ ।
କେଉଂ ପଦାର୍ଥ ଅବା ନାହିଁ ତୁମ୍ଭ ପୁରୀ ॥
ମୋହୋର ନାଶଗଲେ କି ତୁମ୍ଭେ ଭଲେ ଥିବ ।
ପୁଣି କି ସ୍ୱର୍ଗେ ପଶି ଉପଦର୍ପ କରିବ ॥
ଆଜହୁଁ ଛାଡ଼ି ଗଲହୋ ପୂର୍ବର ଧାପ ମାନ ।
ଶୁଣି ମନ୍ତ୍ରୀଗଣେ ବୋଲନ୍ତି ବଚନ ॥
କିମ୍ପାଇଂ ତୁ ଆମ୍ଭଙ୍କୁ ଝିଙ୍ଗାସ କଥା କହୁ ।
କିସ କରିବୁ ଆଜ୍ଞା କିଂପାଇଂ ନ ଦେଉ ॥
ଆମ୍ଭର ମହିମା କି ନ ଜାଣୁ ଆପଣେ ।
କାହା ଛାରକୁ ଆମ୍ଭେ ହାରିଅଛୁ ରଣେ ॥୯୦
ସ୍ୱର୍ଗ ମଞ୍ଚ ପାତାଳ ତିନିପୁରେ ଯୁଝୁ ।
ଘଡ଼ିକରେ ଜଗତ ତିରଣ ପ୍ରାୟେ ବୁଝୁ ॥
ରାବଣ ବୋଇଲା ମୁଁ ଜାଣଇ ତୁମ୍ଭର ବଳ ।
ଏକେ ଏକେ ଜିଣି ପାର ହୋ ଦିଗପାଳ ॥
ଯେ ମୋହୋର କର୍ମର ଅବଳେ ହୋଇଲ ହୀନବୀର୍ଯ୍ୟ ।
ତପୁସୀ ଦୁଇ ବାପୁଡ଼ା ମୋତେ କରାଇବାରେ ଲାଜ ॥
ଶୁଣିକରି ପ୍ରମଥ ମିତ୍ରଘନ ଆଗସରି ।
ତପନ ସିଂହନାଦ ଶୁଣିଲେ କୋପକରି ॥
ଅଗ୍ନିକେତୁ ରଶ୍ମିକେତୁ ଏହୁ ବେନିବୀର ।
ସେହୁ ପ୍ରତିଜ୍ଞା କଲେକ ଅପାର ॥୧୦୦
ପଚିଶ କୋଟି ଯେ ମୁକୁଟ ଯୋଦ୍ଧାଛନ୍ତି ।
ରାଉତ ମାହୁନ୍ତ ରଥୀ ମହାରଥୀ ॥
ପ୍ରତଗ୍ୟାଂ କରନ୍ତେ ଶୁଭଇ ଘୋର ଧ୍ୱନି ।
ପ୍ରଳୟ ଶବଦକି ଘୋଟଇ ମେଦନୀ ॥
ନୃପତିର ଅଛଇ ପଚିଶଇ ପୁତ୍ର ।
ଆବରହିଁ ଅଛନ୍ତି ନାତି ତେରଶତ ॥
ପଚିଶ କୋଟି ଯୋଦ୍ଧାରୁ ପଡ଼ିଲେ କୋଟି ବାର ।
ରାଉତ ମାହୁନ୍ତ ଅଛନ୍ତି ଅପାର ॥
କରନ୍ତି ପ୍ରତଜ୍ଞା ରାଜାମୁଖ ଚାହିଁ ।
ଶୁଣିଣ ପରମ ତୋଷ ମନ୍ଦୋଦରୀ ସାଇଁ ॥୧୦

ଶୁକ ସାରଣଙ୍କୁ କହିଲା ନୃପବର ।
କାଢ଼ିଣ ଆଣ ମୋର ଅମୂଲ୍ୟ ଭଣ୍ଡାର ॥
ସେନାପତିମାନଙ୍କୁ ଦେବି ରତ୍ନ ଆୟେ ।
ମୋହ ପାଇଂ ରଣେ ପିଞ୍ଚାଇବେ କାୟେ ॥
ଆଜ୍ଞା ପରମାଣେ ଗଲେ ମନ୍ତ୍ରୀ ବେନି ।
ଦ୍ରବ୍ୟନ୍ତ ବୁହାବନ୍ତି ଲୋକନ୍ତ ହାଥେ ଘେନି ॥
ନୃପତିର ଛାମୁରେ ବାଢ଼ିଲେ ଆୟେମାନ ।
ଦିଅସି ସବୁନ୍ତି ହୋ ବୋଲଇ ଦଶାନନ ॥
ଏ ମୋହୋର ଅଟଇ ଯେ ଅରଜିଲା ବିତ୍ତ ।
ଚଉଦଭୁବନୁ ଆଣିଲି ଯାବତ ॥୨୦
ଏଥିକି ଦେବଭଣ୍ଡାର ନୋହେ ସରି ।
ସପତ ସିନ୍ଧୁ ମଧ୍ୟୁଂ ଆଣିଛି ଯତ୍ନ କରି ॥
ଯେବେ ବିଧଂସିବି ଶ୍ରୀରାମର ନିମନ୍ତେ ।
ଦେହ ଥିଲେ ପୁଣ ଅର୍ଜିବି ଅନେକ ବିତ୍ତେ ॥
ଏତେ ବୋଲି ଶୁକ ସାରଣନ୍ତ ରାଇ ।
ଆଜ୍ଞା ଦେଲାକ ସେ ଅସୁର କୁଳସାଇଂ ॥
ଯେ ଯାହା ଅନୁରୂପେ ଦିଅ ଆୟେମାନ ।
ବିବିଧରତ୍ନମାନ ବିଲୋହ ଅବିଛିନ୍ନ ॥
ଯେତେ ଲୋକ ସାଂଗ୍ରାମକୁ ଯିବେ ମୋର ସଙ୍ଗେ ।
ରତ୍ନ ଅଳଙ୍କାର ହୋଇଥିବେ ସର୍ବାଙ୍ଗେ ॥୩୦
ଦେଖିଲା ମାତ୍ରକେ ଶତ୍ରୁ ହୋଇବ ଅଜ୍ଞାନ ।
ବୋଲିବେ କେମନ୍ତେ ଅର୍ଜିଲା ଏତେ ଧନ ॥
ଦେସି ରତ୍ନମାନ ବେଗେ ମଣ୍ଡି ହନ୍ତୁ ।
ଗୃକ୍ଷ କପିବଳ ସମରେ ମାରନ୍ତୁ ॥
ଶୁଣି ଶୁକ ସାରଣ ଆୟେମାନ ଦେଲେ ।
ବିବିଧ ରତ୍ନମାନ ବିଳୋହିଲେ ॥
ମୁକୁଟ କୁଣ୍ଡଳ ବାହୁଟି ରତ୍ନବଳା ।
ନେପୁର ତୋଡ଼ର ବିବିଧ ବର୍ଣ୍ଣେ ମାଳା ॥
ହାର ପଦେକ କଟଟୀ ସୁନାସୂତା ।
ମୁଦିମଲ୍ଲୀକଢ଼ି ଆବର କଙ୍କଣ ପଇତା ॥୪୦
ତାଡ଼ ସରଳ ଶିକଳି ଚଉସରା ।
କେବଣ ଅଳଙ୍କାର ଯେ ବ୍ରହ୍ମ ଜାତିହୀରା ॥
କାହିଁ ମରକତ ଜଡ଼ିଲା ରେଖ ରେଖ ।
କାହିଁ ପ୍ରବାଳ କାହିଁ ମାଣିକ୍ୟ ନାୟେକ ॥
କାହିଁ ହୀରାଲୀଳା କାହିଁ ପୁଷ୍ପ ରାଗ ।

କାହିଁ କୁରୁବିନ୍ଦ ଖଞ୍ଜିଲା ପଦ୍ମରାଗ ॥
ଅନେକ ପ୍ରକାରେ ଖଞ୍ଜଇ ରତ୍ନମାନ ।
ନେତ ପାଟ ପଟନୀ ସିନ୍ଧୁଆ ବସନ ॥
ରତ୍ନଖଞ୍ଜିଲା ଅଛି କେବଣ ବସ୍ତ୍ର ପୁଣି ।
ଅଞ୍ଚଳରେ ଖଞ୍ଜିଅଛି ରତ୍ନମଣି ॥୫୦
ସୁବର୍ଣ୍ଣର ପିତୁଳି ଲେଖନ ପରକାର ।
କଳା କେତକୀର କବାଇ ଅପାର ॥
ପାଟ ପାଛୋଡ଼ି ଦୋଷଡ଼ା ଶାଢ଼ୀ ଖଦି ।
ଉତ୍ତମ ଭଳି ଲୋକଙ୍କୁ ଦିଅନ୍ତି ଖୋଜିଲୋଡ଼ି ॥
କାହାକୁ କନକ ସ୍ନାହାନ କରାବନ୍ତି ।
କାହାର ମୁଣ୍ଡେ ମାଣିକ୍ୟ ମୁକୁତା ନିହୁଡ଼ନ୍ତି ॥
କାହାକୁଇ ଶ୍ରୀକର୍ପୂର ଗୁଣ୍ଡିରେ ଗାଧୁଆନ୍ତି ।
କାହାର ସର୍ବାଙ୍ଗେ କସ୍ତୁରୀ ଘଷନ୍ତି ॥
ଚତୁଃସମ ଲେପନ୍ତି କାହାର କଳେବରେ ।
କେ ଗନ୍ଧ ଯୁଆଦେ ହୁଅନ୍ତି ଜରଜରେ ॥୬୦
ଆୟେ ଅଳଙ୍କାର ଆପଣେ ଭୂଷଣ ।
ରଥୀ ଯୋଦ୍ଧା ରାଉତ ପାଦାନ୍ତି ଅପ୍ରମାଣ ॥
ରାଏ ଆଜ୍ଞା ଦେଲାକ ଶୁକ ସାରଣଙ୍କୁ ଚାହିଁ ।
ସହସ୍ରମାନ ସବୁ ଘେନି ଆସ ଯାଇ ॥
ଦେବ ଶସ୍ତ୍ର ଘେନି ଯୁଝନ୍ତୁ ମୋର ବଳ ।
ନୋହିଲେ ନ ମରନ୍ତି ଦଶରଥବାଳ ॥
ଶୁଣି ମନ୍ତ୍ରୀମାନେ ଶହସ୍ର ଶାଳେ ଗଲେ ।
କୋନ୍ତ ତୀକ୍ଷଶର ଭାଲ ଅଣାଇଲେ ॥
ବହୁତ ଲୋକେ ସହସ୍ର ନ ପାରନ୍ତି ବହି ।
ଦେଖି ଲଙ୍କପତି ନିଶରେ ହାଥ ଦେଇ ॥୭୦
ପ୍ରାକର୍ମ ହୋଇ ସେ ବସିଲା ମୂର୍ତ୍ତିବନ୍ତେ ।
ହାଥରେ ଘେନିଲା ରତ୍ନମୟ କୋନ୍ତେ ॥
ବେଳ ଦୁଇ ଝମକି ମନ୍ତ୍ରୀଙ୍କୁ ଆଜ୍ଞା ଦେଲା ।
ଶହସ୍ରମାନ ବାଣ୍ଟି ଦିଅସି ବୋଇଲା ॥
ଶୁଣି ଶୁକ ସାରଣେ ଦେଲେ ଆୟୁଧମାନ ।
ଫରି ଖଣ୍ଡା କୋନ୍ତ ବିବିଧ ବିଧାନ ॥
ଶୂଳ ପରିଘ ଭୂଷଣ୍ଡୀ ଛେଲ ଚକ୍ରକାତି ।
ଗଦା ମୁଦ୍‌ଗର ସାଙ୍ଗିଆ ଶକତି ॥
ପଟା ପଛେଲ ଖଣ୍ଡା ଆଡ଼ଣ ବଦାଉ ।
ଅବଧାନ ହୋଇ ବିଲୋହିଲେ ଲଙ୍କରାହୁ ॥୮୦

ଶହସ୍ରଙ୍କର ତେଜ ପ୍ରଳୟ ଅଗ୍ନି ଜାଣି ।
ସୁବର୍ଣ୍ଣ ତାଟରେ ନାନାବର୍ଣ୍ଣେ ରତ୍ନମଣି ॥
ପଟାଦଳା ପିଛା ପଖରି ନାନା ମେଖ ।
ବୀର ନେତ ଚାମର ଉଡ଼ନ୍ତି ରେଖ ରେଖ ॥
ବୀର ଘଣ୍ଟ ଘାଗୁଡ଼ି ଶିକଳି କୁମ୍ଭୀରା ।
ରଙ୍ଗ ପାଟ ଘଣ୍ଟି ମୁକୁତା ହୀରା ନୀଳା ॥
ଚତୁରାଙ୍ଗ ବଳ ପାଇଲେ ଶସ୍ତ୍ରମାନ ।
ଆୟୁଧ ପାଇଣ ଝମକାନ୍ତି ଘନ ଘନ ॥
ରାବଣ ବୋଇଲା ଯେ ରଥ ଗଜ ଅଶ୍ୱ ।
ଯେ ଯାହାକୁ ସଜ ସେ ତାହା ପିଠିରେ
ବସ ॥୯୦
ବାହନ ବିହିନେ ଯୁଝିତ ନପାରି ।
ଯାନ ନ ଆରୋହିଲେକି ସମର କରିପାରି ॥
ଶୁଣି ମନ୍ତ୍ରୀବରେ ଅଣାଇଲେ ଘୋଡ଼ା ହାତୀ ।
ନାମ ଧରି କରି ଦିଅଇ ଲଙ୍କାପତି ॥
ଯେ ଯେତେ ସାମରଥ ତାକୁ ତେଡ଼େ
ବାହାନ ।
ରଥ ଗଜ ଅଶ୍ୱ ଦେଲା ଦଶାନନ ॥
ଚାମର ବିଳମ୍ବ ଆଲମ୍ବ ପାଟଛତ୍ର ।
ରଥଗଜ ଅଶ୍ୱ ଶହସ୍ର ଅଳଂକାର ବସ୍ତ୍ର ॥
ଦିଆଇ ଲଙ୍କେଶ୍ୱର ସିଂହାସନୁ ଉଠି ।
ସନ୍ୟାକୁ ଚାହିଂଣ ବଚନ ପ୍ରକଟି ॥୧୦୦
ରଣ ରାଜପୁତ୍ର ବୀର ମହାବୀର ।
କ୍ଷତ୍ରୀକୁଳ ତୁମ୍ଭେ ଅକ୍ଷୟ ସକଳ ॥
ମୁହିଂ ଲଙ୍କପତି ବୋଲୁଅଛି ଶୁଣ ।
ଶ୍ରୀରାମର ସାଙ୍ଗେ କାଲି କରିବି ମହାରଣ ॥
ଯେବେ ଯୁଝିଯିବଟି ରାତ୍ରହୁଂ ସଜହୁଅ ।
ନିସତ ହେଲା ଲୋକ ଘରେ ରହିଥାଅ ॥
ଏ ଦେହ ଅବଶ୍ୟତ ପାଇବ ମରଣ ।
କ୍ଷତ୍ରିଙ୍କର ଧର୍ମ ଅଟଇ ସିନା ରଣ ॥
ଦେବେଣ ଦୁର୍ଲଭ କାଲି କରିବି ସମର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଚିରିବି ନାରାଚ୍ଚର ॥୧୦
ଯେ ମୃତୁଲୋକ ନେଇ ବ୍ରହ୍ମଲୋକେ
ଥୋଇବି ।
ସ୍ୱର୍ଗପୁର ମୁହିଂ ପାତାଳକୁ ଆଣିବି ॥
ଶ୍ରୀରାମ ଲକ୍ଷଣ ରିକ୍ଷ କପି ଛାର ।

ନାରାଚ୍ଚର ତେଜେ ମାରିବି ସକଳ ॥
ଦେଖ ମୋହୋର ପ୍ରତାପ ଆରେଣି ଭିତରେ ।
ଜଗତକୁ ଜିଣିମାକୁ ଅଛଇ ମୋ ହସ୍ତରେ ॥
ଦୟା କରିଣ ମୁଂ ରଖିଥିଲି ନବସୃଷ୍ଟି ।
ମୋହୋର କୋପକୁ ଭାର୍ଜନ ନୁହଇ
ପରମେଷ୍ଠୀ ॥
ଦଶଦିଗପାଳେ କମ୍ପନ୍ତି ମୋତେ ଦେଖି ।
ଇନ୍ଦ୍ର ଉଠଇ ମୋତେ ଆସନ ଉପେକ୍ଷି ॥୨୦
ତୁମ୍ଭେ କାହା ନ ଜାଣ ମୁଂ କହିବି ଅବା
କିସ ।
ଏବେ ଯାଇ କାଲି ସଜ ହୋଇ ଆସ ॥
ଏତେ ବୋଲି ରାଏ ଭିତରକୁ ଗଲେ ।
ମୁଦୁସୁଲୀ ପହୁଣ୍ଡ ମଣାଇ ଘେନିଗଲେ ॥
ମନ୍ଦୋଦରୀ ରାଣୀ ଦର୍ଶନ କଲା ଆସି ।
ନୃପତି ଆଜ୍ଞା ଦେଲେ ଅଳପ ହୋଇ ହସି ॥
ଶୁଣସି ଶଶିମୁଖୀ ଗୋ ଆଜର ପ୍ରସ୍ତାବ ।
ଥୁଳଜଙ୍ଘ କୁମରକୁ ମାଇଲା ରାଘେବ ॥
ସେନାପତିମାନେ ଦର୍ଶନ ଆସି କଲେ ।
ଶ୍ରୀରାମକୁ କାଲି ମାରିବୁ ବୋଇଲେ ॥୩୦
ମୁହିଂ ପ୍ରବୋଧିଲି ଧନବସ୍ତ୍ର ଦେଇ ।
ରଣ ଦୀକ୍ଷା କରିବୁ ବୋଲି ଧନୁ ଶସ୍ତ୍ର ଛୁଇଂ ॥
କାଲି ସେ ଜାଣିମାନା ସବୁ କଥାମାନ ।
କେ ବକ କେ ଶାମଳ ବୁଝିବା ବଡ଼ସାନ ॥
ହୋଇ ଦେବ ବୋଲି ବୋଇଲେ
ମନ୍ଦୋଦରୀ ।
ଯେ ତୋହୋର ଆଜ୍ଞା ଅଟଇ ଦଣ୍ଡଧାରୀ ॥
ଏଥୁ ଅନନ୍ତରେ ଶୁଣସି ଗୋ ଦେବୀ ଶିବା ।
ଅମନାତ୍ୟେ ଦେଖି ରାବଣ ଭିତରକୁ ଯିବା ॥
ନବରୁ ବାହାର ହୋଇଲେ ସର୍ବସନ୍ୟ ।
ରଥ ଗଜ ଅଶ୍ୱ ପାଦାନ୍ତି ଗହନ ॥୪୦
ଢୋଲ ଦମା ଟମକ ଯେ ବାଜଇ
ବୀରତୂର ।
ଆଲମ୍ବ ପାଟଛତ୍ର ବିଲମ୍ବ ଅପାର ॥
ସନମାନ ପାଇ ପ୍ରତିଜ୍ଞା କରନ୍ତି ।
ଯେ ଯାହାର ସମ୍ପଦ ଘେନି ଘରକଇ ଯାନ୍ତି ॥
ରାବଣେଶ୍ୱର ଯେନିଅବକାଶ ହୋଇ ।

ଦର୍ଶନ କଲେ ଯାଇ ସମସ୍ତ ମହାଦେଈଂ ॥
ଝଡ଼ା ମୁଦୁସୁଲୀ ପଟୁଆରି ଛନ୍ତି ।
ଧୀରେ ଧୀରେ ଗମନ କରଇ ଲଙ୍କପତି ॥
ନବରତ୍ନେ ଜଡ଼ିଲା ଅଛଇ ଏକଘର ।
ଯୋଜନେକ ଲମ୍ବ ଦୁଇ ଯୋଜନ
ଓସାର ॥୫୦
ମଧ୍ୟେ ମାଣିକ୍ୟର ଅଛଇ ମଣ୍ଡପ ।
ଉପରେ ଟାଣିଲାକ ବିଚିତ୍ର ଚନ୍ଦ୍ରାତପ ॥
ତହିଂ ଶେଜାଇଅଛି ଦୁଇ ଶେଯ ।
ବିଜୟେ କଲା ଯାଇ ଅସୁରକୁଳ ରାଜ ॥
ସହସ୍ରେକ ଯୁବତୀ ସୁଗନ୍ଧ ତୈଳଘେନି ।
ବିବିଧ ମତେ ମର୍ଦନ କରନ୍ତି କାମେନୀ ॥
କେ ଶ୍ୱେତ ଚାମର ଢାଳନ୍ତି ପାଶେ ଥାଇ ।
କେହୁ ରତ୍ନବିଞ୍ଚଣୀ ବିଞ୍ଚନ୍ତି ପରିଘାଇଂ ॥
କେହୁ ଆଳଟ କେହୁ ଧରନ୍ତି ଦର୍ପଣ ।
କେହୁ ଘେନିଣ ଅଛନ୍ତି ରତ୍ନ ଆଭରଣ ॥୬୦
କେହୁ ଝିନ ପତନୀ ବିଚିତ୍ର ଝିନବାସ ।
ଉଭା ପଟୋଆରି ଅଛନ୍ତି ରାୟେ ପାଶ ॥
ତିନିକୋଟି ପଚାଶ ମହାଦେଈ ଘେନି ।
ମୁଦୁସୁଲୀ ଝଡ଼ା ଅନେକ କାମେନୀ ॥
ଯେ ଯାହାର ସେବାରେ ଅଛନ୍ତି ପରିଜନ ।
ଏଥୁ ଅନନ୍ତରେ ରାଏ ଦଶାନନ ॥
ମର୍ଦ୍ଦନ ହୋଇଣ ମାଜଣାରେ ବିଜେ କଲା ।
ସୁବର୍ଣ୍ଣ ନୀଳା ପିଢ଼ା ଉପରେ ବସିଲା ॥
ମନ୍ଦୋଦରୀ ସହିତେ ସକଳ ରାଣୀହଂସ ।
ସେବା କରୁଛନ୍ତି ନୃପତିର ପାଶ ॥ ୭୦
ତିଳ ଅଏଂଳା ଯେ ଚତୁଃ ସମ ଘୋଟି ।
ମହା ସୁଗନ୍ଧ ଜଳରେ ପଖାଳନ୍ତି ବିମ୍ବୋଷ୍ଠୀ ॥
ସୁବର୍ଣ୍ଣ ଗରୁଆରେ ବାସ ପଣିମାନ ।
ଘେନି ନାରୀଗଣେ କରାନ୍ତି ସ୍ନାହାନ ॥
ଶ୍ରୀଅଙ୍ଗ ପୋଛନ୍ତି ଝିନ ପୀତବାସେ ।
ବିବିଧ କୁସୁମ ଗଭା ବାନ୍ଧିଲେକ କେଶେ ॥
ଦିବ୍ୟ ବସ୍ତ୍ର ପିନ୍ଧି ଆୟେମାନ ଆଭରଣ ।
ଝିନବାସ ପରିହରଣ ଉପରେଣ ॥
ରତ୍ନ ପାଦୁକାରେ ଚଢ଼ିଣ ବିଜେ କଲା ।
ମଣୋହି ପୁରେ ଭୋଜନ ଠାବରେ
ବସିଲା ॥୮୦

ଟେରା ମାରିଗଲେ ମହାଦେଈମାନନ୍ତ ।
ଛାମୁରେ ରହିଲେ ବିଶ୍ବୁଆସ ସ୍ତିରୀନ୍ତ ॥
ସୁବର୍ଣ୍ଣ ପଲମେ ମନ୍ଦୋଦରୀ ରାଣୀ ।
ଶାଳୀଅନ୍ନ ବେଞ୍ଜନ ପରଷନ୍ତି ଆଣି ॥
କାଳକେତୁର ଦୋହିତା ସୁଲକ୍ଷଣୀ ।
ସେ ସେ ରାନ୍ଧିଅଛି ଅପୂର୍ବ ରାନ୍ଧେଣି ॥
ନାରକାସୁରର ଦୋହିତା ପଦ୍ମାବତୀ ।
ଆବରହିଂ ରଜତବୀର୍ଯ୍ୟର ଦୋହିତି ॥
ସେ ଆଣି ଦ୍ରବ୍ୟନ୍ତ ଦିଅଇ ଘନ ଘନ ।
ମଣୋହି ସମ୍ପୂର୍ଣ୍ଣ ହୋଇଲା ଦଶାନନ ॥୯୦
ଆସନରୁ ଉଠି ବିଜେ କରିଗଲା ।
ରତ୍ନ ପିଢ଼ାରେ ବସି ଆଚୋବନ କଲା ॥
କର୍ପୂର ବାସଜଳ ଚତୁସମ ଗନ୍ଧି ।
ଚରଣ ପଖାଳଇ ଝିନବାସ ପିନ୍ଧି ॥
ଛାମୁରେଣ ଉଭା ମନ୍ଦୋଦରୀ ରାଣୀ ।
ଶ୍ରୀଅଙ୍ଗ ପୋଛଇ ଦଶଇ ମୁଧୁନି ॥
ଉଠି ଦେବାଙ୍ଗ ପାଟ ପରିହରଣ କରି ।
ମୁଖବାସ ତାମ୍ବୋଳ ଭୁଞ୍ଜଇ ଦଶଶିରି ॥
ପ୍ରହଲ୍ଲାଦ କୁମାରୀର କରେ ଦେଇ ହାଥ ।
ରତ୍ନପାଦୁକା ମାଡ଼ି ଚଳଇ ଦଶମାଥ ॥୧୦୦
ଗଜଦନ୍ତ ମୁକୁତା ସୁବର୍ଣ୍ଣ ଖୋରା ଚାରି ।
ବ୍ରହ୍ମାକାତି ହୀରା ପିତୁଳି କମକରି ॥
ପଦ୍ମରାଗ ମାଣିକ୍ୟ ଚାରି ପ୍ରାଙ୍ଗଣେ ଝଳି ।
ନୀଳମଣି ଝରା ଗଜମୋତି ମିଳି ॥
ମଧୁପି ବେଲୁରି ଉପରେ ପାଟ ଶେଯାଇଂ ।
ଶେଯାଇଲେ ପାଛୋଡ଼ି ବସ୍ତ୍ର କରେ ନେଇଂ ॥
ଶ୍ରୀକର୍ପୂର ଗୁଣ୍ଡି ସିଞ୍ଚିଲାକ ତହିଂ ।
ମର୍କତ ବେନି ଖମ୍ବେ ଅଛଇ ଦୋଳି ରହି ॥
ପ୍ରବାଳ ରତନର ତୋରଣା କାଠ ମଞ୍ଚା ।
କୁବିନ୍ଦ ବାଙ୍କିଆରେ ସଞ୍ଚିଲା ଅଛି ସଞ୍ଚା ॥୧୦
ଉପରେ ଚନ୍ଦ୍ରାତପ ଖଞ୍ଜି ପୁଞ୍ଜି ପୁଞ୍ଜି ମୋତି ।
କିଅବା ପଟାନ୍ତର ପୂର୍ଣ୍ଣିମା ଚନ୍ଦ୍ରଜ୍ୟୋତି ॥
ମଧେ ମାଣିକର ପଦ୍ମରାଗ ଝରା ।
ଅରୁଣ ସଙ୍ଗେ କି ଉଦୟେ ଲକ୍ଷେ ତାରା ॥
ନେତ ପାଟ ଚାମର ମଣ୍ଡଣି ଚଉପାଶେ ।
ପ୍ରକଟଇ କର୍ପୂର କସ୍ତୁରୀର ବାସେ ॥
ଚନ୍ଦନ ପିଚିକା ମାରନ୍ତି ଚଉକତି ।
ଜାଣି ପଟାନ୍ତର ଶରଦଚନ୍ଦ୍ର କାନ୍ତି ॥
ରୁପାର ଘର ଗୋଟା ନବରତ୍ନ ମୟେ ।
ଦୀର୍ଘ ପାଞ୍ଚ ଯୋଜନ ଓସାର ତିନି ଯୋଜନ ହୋଏ ॥୨୦
ଉଞ୍ଚେଣ କୋଶେକ ଚନ୍ଦନ କାଠ ଚାଳ ।
ମର୍କତ ଉରାରେ ଲମ୍ବେ ଗଜମୋତି ମାଳ ॥
କୃଷ୍ଣ ଅଗ୍ରଶେଣୀ ଗଣ୍ଠିଅନା ବତା ।
ଲଇକରି ବାନ୍ଧି ଅଛଇ ପାଟସୂତା ॥
ପଚାପତ୍ର ଛାଏଣୀ ଯେ ପିଢ଼ାରେ କଳସ ।
ଉପରେ ଉଡ଼ଇ ବହୁତ ଝିନ ବାସ ॥
ସେ ଘରେ ମଣ୍ଡିଲା ଅଛଇ ଖଟଦୋଳି ।
ବିଜୟେ କଲା ତହିଂ ରାବଣ ମହାବଳୀ ॥
କଠାଉ ଛାଡ଼ି ଶେଯ୍ୟାରେ ବସିଲାକ ଯାଇ ।
ରାଣୀ ମହାଦେଈ ରହିଲେ ପଟୁଆର ହୋଇ ॥୩୦
କେ ଶ୍ୱେତ ଚାମର ଢାଳନ୍ତି ଅବିଚ୍ଛିନ୍ନ ।
ରତ୍ନ ବିଞ୍ଚଣୀ କେ ବିଞ୍ଚନ୍ତି ଘନଘନ ॥
କେହୁ ଧୂପକାଠି ଦର୍ପଣ ଧରିଛନ୍ତି ।
କେବଣ ଯୁବତୀ ଆଳଟ ବିଞ୍ଚନ୍ତି ॥
ଦିବ୍ୟ ସିଂହାସନେ ଅଛଇ ରାଏ ବସି ।
ମହିଷାସୁର ନନ୍ଦିନୀ ନାମ ଶୁଭ୍ରକେଶୀ ॥
ସେ ଆଗ ହୋଇଣ ଯୋଡ଼ଇ ବେନିକର ।
କମ୍ପମାନ ହୋଇଣ କହଇ ଉତ୍ତର ॥
ଶୁଣ ଦେବ ଠାକୁର ଅସୁରକୁଳ ପତି ।
ତିନିକୋଟି ପଚାଶ ଲକ୍ଷ ଯେ ଯୁବତୀ ॥୪୦
ଯେକକୁ ଯେକ ସୁନ୍ଦେରୀ ନାହିଂ ପଟାନ୍ତରି ।
ଜଗତ ମୋହଇ ରାଣୀ ମନ୍ଦୋଦରୀ ॥
ଚଉଦ ଭୁବନରେ ଯେତେକ ଅର୍ଥମାନ ।
ଅଧିକାରୀ ହୋଇଣ ବିଳସୁ ଦଶାନନ ॥
ଯେ ଲଙ୍କା କଟେକ ସକଳ ଗୁଣେ ପୂରି ।
ଅମର ବାରସ୍ୟତୀ ଯହିଂକି ନୋହେ ସରି ॥
ଅଠର ଗଣ୍ଡା ତୋର ଅଟନ୍ତି ତନୟେ ।
ତେରଶତ ନାତି ତୋର ସାଂଗ୍ରାମରେ ଅଜୟେ ॥
ପାତ୍ର ଅମନାତ୍ୟ ଅନେକ ବନ୍ଧୁଜନ ।
ପଚାଶ କୋଟି ଯୋଦ୍ଧା ଇନ୍ଦ୍ରର ସମାନ ॥୫୦
ରଥୀ ହାଥୀ ଘୋଡ଼ା କଳିତ ନ ପାରି ।
ଚାଳିଶ କୋଶ ଉଞ୍ଚ ସୁବର୍ଣ୍ଣ ପାଚେରୀ ॥
ପୁଷ୍ପକ ବିବାନେ ଚଉଦ ଭୁବନ ଗମଇଂ ।
ଦେବଗଣ ସହିତେ ଖଟିଥାନ୍ତି ଯମଇଂ ॥
ଚନ୍ଦ୍ରଦେବତା ରାନ୍ଧଇ ପାଗ ସଞ୍ଚି ।
ପ୍ରସନ୍ନ ହୋଇଣ ବର ଦେଲାକ ବିରଞ୍ଚି ॥
ପବନ ଚାମର ଧରଇ ଅଗ୍ନି ଧୁଅଇ ଲୁଗା ।
ରମ୍ଭା ଗୀତ ଗାଇ ବରୁଣ ଧରଇ ଫୁଂଙ୍ଗା ॥
ମେନକା ନାଚଇ ନାରଦ ଯନ୍ତ୍ର ବାଇ ।
ଜଉତିଷ ପାଞ୍ଜି ଘେନି ବୃହସ୍ପତି ଖଟିଥାଇ ॥
ଇନ୍ଦ୍ରଦେବତାକୁ ଜିଣିଲା ତୋର ସୁତ ।
ଇନ୍ଦ୍ରଜିତ ନାମ ଜଗତେ ବିଦିତ ॥
ଜ୍ୟେଷ୍ଠଭାଇ କୁବେର ଦେବତାକଇ ଜିଣି ।
ମଝିଆ କୁମ୍ଭକର୍ଣ୍ଣ ଅଟଇ ବୀରମଣି ॥
କନେଷ୍ଟ ବିଭୀଷେଣ ଛେଦଭେଦ ଜାଣଇ ।
ବ୍ରହ୍ମାଣ୍ଡ ଭିତରେ କ୍ଷତ୍ରିପଣେ ଗଣାଇ ॥
ସାହେର ଭିତରେ ଅଜୟେ ଗଡ଼ କଲୁ ।
ଛପନ ଗଣ୍ଡା ଯୁଗକୁ ଆଷ୍ୟ ହିଂ ପାଇଲୁ ॥
ଏବେ ଆଉ ଦ୍ୱନ୍ଦ୍ୱ ନକର ଗୋସାଇଂ ।
ଆମ୍ଭମାନଙ୍କୁ ନଯାଅ ବାଟରେ ବସାଇଂ ॥୬୦
ତୋହୋର ବିହୁନେ ହୋଇବୁ ନିରମାଖି ।
ଲୋକେ ଉପହାସ କରୁଥିବେ ଦେଖି ॥
ବୋଲିବେ ରାବଣ ଆଣିଲା ପରନାରୀ ।
ଭୋଗବିଳାସ କିଛି ନ ପାରିଲା କରି ॥
ଆପଣେ ନାଶ ଗଲା ରାଣୀମାନେ ଦୁଃଖୀ ।
ଲୋୟେ ମଳିଣ ହୋଇବ ଆମ୍ଭ ଆଖି ॥
କୁସୁମ ବିହୁନେ ନଶୋହିବ କେଶ ।
ପରିହରଣ ନକରିବୁ ବିବିଧ ଝିନ ବାସ ॥
ବାହି ନ ଥିବ ନ ଘେନିବୁ ବାସ ଗନ୍ଧ ।
ଆଖି ଥାଉଂ ଥାଉଂ ହୋଇବୁ ଆମ୍ଭେ ଅନ୍ଧ ॥୮୦
ଚନ୍ଦନ କସ୍ତୁରୀ ହୋ କର୍ପୂର ନମିଳିବ ।
ବ୍ୟଥାୟିତ ଲୋକ ଦେଖିଲେ ଭାଳିବ ॥

ଦିବ୍ୟ ବସ୍ତ୍ର ଦିବ୍ୟ ଅଳଙ୍କାର ଲେଛି ।
ବସି ରୋବୁଥିବୁ ତୋହୋର ନାମ ବାଛି ॥
ଏତେକ ଯେବେ ତୋର ହୁଅଇ ଦଶାନନ ।
ସେ କଥା କରତୁ ବୀରଙ୍କ ମୋକ୍ଷପାନ ॥
ରାମ ସାଙ୍ଗେ ଯୁଝିବାକୁ ଆମ୍ଭର କାର୍ଯ୍ୟ ନାହିଁ ।
ଏତେ ବୋଲି ସୁନ୍ଦେରୀ ସେ ପ୍ରଳମ୍ଭ କରି
ଶୋଇ ॥
ରାଣୀଏ ଜଣାବନ୍ତି ପାଏ ପଡ଼ି ଶୋଇ ।
ସୀତା ଉପେକ୍ଷିବାକୁ ଆଗ୍ୟାଂ ଦିଅସି
ଗୋସାଇଂ ॥୯୦
ସୁଲକ୍ଷଣୀ ହୋଇ ନିଶ୍ଚିନ୍ତେ ଆମ୍ଭେ ଥିବୁ ।
ତୋହୋର ହାଥ ଧରି ଅନାସ୍ତ ନୋହିବୁ ॥
ସୁବ ରାଣୀମାନେ ଆମ୍ଭେ ଏତେକ ମାଗିଲୁ ।
ଆମ୍ଭର ଦୋଷ କ୍ଷମାକର ଯେ ବୋଇଲୁ ॥
ଶୁଣି ଲଙ୍କେଶ୍ୱର ହସଇ ଟହ ଟହ ।
ଯାହା ସେ ମାଗିଲ ଗୋ ଏକଥା ଅଟଇ
ରହ ॥
ଉଠ ଉଠ ସୁନ୍ଦେରୀ ଗୋ ଆମ୍ଭ ତହୁଂ ଶୁଣ ।
ସ୍ୱଭାବେ ଅବଳା ଅଟଇ ତୁମ୍ଭ ଗୁଣ ॥
ଏ ମୋହର ମହିମା ଜାଣୁ ଜାଣୁ ହୁଡ଼ ।
ତୁମ୍ଭ ପ୍ରାୟେ ଲୋକ ହୋଉଅଛ
ମୂଢ଼ ॥୧୦୦
ଉଠ ଉଠ ବୋଲି ପଲଙ୍କୁ ଓହ୍ଲାଇଲା ।
ଆପଣେ ଶ୍ରୀକରେ ମନ୍ଦୋଦରୀକି ତୋଳିଲା ॥
ଉଠ ଶାନ୍ତି କାନ୍ତି ସୁଲକ୍ଷଣୀ ଇନ୍ଦୁମତୀ ।
ସବୁ ମହାଦେଈ ଉଭା ଏକ ଦୃଷ୍ଟି ॥
ବାହୁଡ଼ି ଲଙ୍କପତି ପଲଙ୍କେ ବସଇ ।
ମଂଷାସୁର ନନ୍ଦିନୀକି ବଚନ ପ୍ରକାଶଇଂ ॥
ପ୍ରହଲ୍ଲାଦର ଦୋହିତାକୁ କଥାରେ ସାକ୍ଷୀ
କରି ।
ପ୍ରତିଉତ୍ତର ଭାଷା ଦିଅଇ ମନ୍ଦୋଦରୀ ॥
ଦୁନ୍ଦେଭି ଦଇତର ଦୋହିତା ଅସମନ ।
ହୋଇ ହୋଇ ବୋଲଇ ରୂପବନ୍ତୀ
କନ୍ୟ ॥୧୦
ସବୁ ମହାଦେଈକି ଚାହିଁ ବୋଲଇ
ଲଙ୍କରାଏ ।

ତୁମ୍ଭେ ଯାହା ବୋଇଲ ଶୁଣସି କଥାଏ ॥
ସୀତାଙ୍କୁ ଆଣିଲି ମୋହୋର ମନ୍ଦପଣ ।
ନଦେବି ବୋଇଲାରୁ ହୋଇଲା ଏତେ
ରଣ ॥
ଭଲ ଭଲ ଲୋକେ ପଡ଼ିଲେ ମୋହୋର
ପାଇଂ ।
ମୁହିଂ ଆଉ କିସ କରିବି ଜୀଇଂଥାଇଂ ॥
କୁମ୍ଭକର୍ଣ୍ଣ ଭାଇ ପୁତ୍ର ଇନ୍ଦ୍ରଜିତ ।
ରଥ ଗଜ ଅଶ୍ୱ ପାଦାନ୍ତି ବହୁତ ॥
ସମ୍ପଦ ସରିଲା ପୋଡ଼ିଲା ଲଙ୍କପୁରୀ ।
ରୁକ୍ଷ କପିବଳ କଲେ ହୁରି ଜୁରି ॥୨୦
ଏହା ସହିବିକି ମୁଂ କ୍ଷତ୍ରୀବର ହୋଇ ।
ନିଲଜ ଦେହ ମୁଂ ରଖିବି ସୀତା ଦେଇଂ ॥
ଆଣିଲି ଆଣିଲି ନ ଦିଅଇ କଦାଶ୍ଚିତେ ।
ପ୍ରାଣ ଛାଡ଼ିବି ମୁଂ ଜନେକ ଝିଅର ନିମନ୍ତେ ॥
କାଲି ରଣଗୋଳ ହୋଇବ ଅପାର ।
ଶ୍ରୀରାମ ଲକ୍ଷ୍ମଣ ଆବର ଅଙ୍ଗଦକୁମାର ॥
ନଳ ନୀଳ ସୁଷେଣ ସୁଗ୍ରୀବର ରାଏ ।
ବିଭୀଷେଣ ବାପୁଡ଼ା କି ଭେଟିଲେ
ପ୍ରାଣପାଏ ॥
ଶତ୍ରୁ ନସଂହାରିଲେ ନୁଆସଇ ଘର ।
କାଲି ସେ ପ୍ରତିଜ୍ଞା ଦେଖିବ ମୋହୋର ॥୩୦
ଏ ରବି ତଳେ କି ଆନ ମୋତେ ସରି ।
କାହାର କେଶ ମୁଂ ଭୁଜେ ନାହିଂ ଧରି ॥
ନାରାୟେଣ ଦେବତା ମୋତେ ସମରେ
ହାରିଗଲା ।
ପୁତ୍ର ଇନ୍ଦ୍ରଜିତ ଯେ ଇନ୍ଦ୍ରକୁ ଜିଣିଲା ॥
ପୁଷ୍ପେକ ବିମାନ କି ନଚଳଇ ତିନିପୁର ।
କେ ମୋତେ ସମାନ ବ୍ରହ୍ମାଣ୍ଡ ଭିତର ॥
ତୁମ୍ଭେ ମହାଦେଈମାନେ ଗୋ ନଜାଣ ହାଦେ
କିଛି ।
ସାଂଗ୍ରାମ କଲେକି ଅଜଏ ମୋତେ ଅଛି ॥
ଏତେ ବୋଲି ଦାଢ଼ୀ ଧରିଣ ବାମକରେ ।
ମୁଦ୍‌ସୁଲୀ ହାତରୁ ଧଇଲା ଅସିବରେ ॥୪୦
ଦକ୍ଷିଣ ଭୁଜେ ଧରି ଝମକାଇ ଘନ ଘନ ।
ଦେଖି ଭୟେ ପାଇଲେ ମହାଦେଈମାନ ॥

ଏସନେକ ସମୟେ ରବି ଅସ୍ତ ଗଲା ।
ବାହୁଡ଼ାଇ ଖଡ଼ଗ ପାଟେଲି ହାଥେ ଦେଲା ॥
ବାଙ୍କିଆରୁ ଓହ୍ଲାଇ ରତ୍ନ କଠାଉ ମାଡ଼ି ।
ଅବକାଶ ନୃପବର ଅନ୍ତେପୁର ଛାଡ଼ି ॥
ରାଣୀ ମହାଦେଈ ଭିତରେ ରହିଲେ ।
ନିଯୋଗ ଲୋକମାନେ ଦର୍ଶନ ଆସି
କଲେ ॥
ସନ୍ଧ୍ୟା ସୁମରିଲା ଲଙ୍କାର ନାୟକ ।
ଦିହୁଡ଼ି ଦୀପ ହୁଳା ଜଳଇ ରେଖ
ରେଖ ॥୫୦
ହସ୍ତୀ ଘୋଡ଼ା ଆସୁ ରାୟେ ଆଜ୍ଞା ଦେଲା ।
କମାଏଣ ଘେନି ରାଏ ଆସ୍ଥାନେ ବସିଲା ॥
ତତକ୍ଷଣେ ଭୃତ୍ୟମାନେ ଆଣିଲେ ଗଜ
ଅଶ୍ୱ ।
ଦେଖି ପରିମ ସନ୍ତୋଷ ବିଶ୍ରବାର ଶିଷ ॥
ମନେ ବିଚାରଇ ଏତେକ ବଳ ଥାଉଂ ।
କିମ୍ପା ସାଂଗ୍ରାମରେ ଅଛି ହାନି ଆଉ ॥
ଅକଣ୍ଟକ ରାଜ୍ୟ ମୋର ଶ୍ରୀରାମ ନାଶ
କଲା ।
ଇନ୍ଦ୍ରଜିତ ପ୍ରାୟେ ପୁତ୍ରକୁ ମାଇଲା ॥
କୁମ୍ଭକର୍ଣ୍ଣ ମଲା ବୀର ଶିରୋମଣି ।
ଆବର ସଇନି କେ ପାରିବ ଗଣି ॥ ୬୦
ମୋହୋର ଅସ୍ତ୍ର କରନ୍ତେ ନମରନ୍ତି କେହି ।
ବଜ୍ର ହୁଂ କଠିଣ ଅଟଇ ତାଙ୍କ ଦେହୀ ॥
କାଲି ଜାଣିମାନା ହାନି ଅପଚଏ ।
ହସ୍ତୀ ଘୋଡ଼ା ଯାଉ ବୋଇଲେ ଲଙ୍କରାଏ ॥
ରାତ୍ର ପ୍ରହରେ ଥାଉ ସଜ ହୋଇଥିବ ।
ଯେଣିକି ଆଜ୍ଞାଦେବି ତେଣିକି ଧାଡ଼ିଦେବ ॥
ଆପଣେ ନିଅବକାଶ ହୋଇଲାକ ଝାଟି ।
ପାତ୍ର ମନ୍ତ୍ରୀମାନେ ଯେ ଯାହାରେ ଯାନ୍ତି ॥
ସବୁଙ୍କୁ ମେଲାଣି ଯେ ଦେଇ ଲଙ୍କସାଇଂ ।
ଏକାଏ ଅବକାଶ ହୋଇଅଛି ସେହି ॥ ୭୦
ରାବଣ ବିଚାରଇ ସଂଗୋତ୍ର ନାଶଗଲା ।
ସୀତାର ପାଇଂ ମୋର ସମ୍ପଦ ସରିଲା ॥
ଯଦ୍ୟପି ସରିଲା ମୋର ଏଡ଼େ ଯଶ ଶିରୀ ।
ସୀତଯାକୁ ଭୋଗତ ନପାରିଲି କରି ॥

କେବଣ ପ୍ରକାରେ ମୁଂ ହରିବି ବଇଦେହୀ ।
ଏହାର ବିନୁ ଆନ ଯେ ନରୁଚଇ କେହି ॥
ତାହାକୁ ଦେଖିବି ସେ ତାହାର ସଙ୍ଗେ ଥିବି ।
ସେ ଯେଣିକି ଯିବ ମୁଂ ତେଣିକି
ଗୋଡ଼ାଇବି ॥
ଏସନେକ ମନେ ହୋଉଥାଇ ମୋର ।
ସୀତା ସେ ଅଟେ ଯେ ପରମ ସୋଦର ॥୮୦
ଏସନେକ କରି ବିଧାତା ନିର୍ଭାଇଲା ।
ଅଯୋଧ୍ୟାର ଲୋକକୁ ଯେ ଏଥକୁ ଆଣିଲା ॥
କି ବୁଦ୍ଧି କରିବା ନରୁଚଇ କିଛି ।
କେମନ୍ତେ ଭୋଗ୍ୟ ମୋତେ ହୋଇବ
କମଳାକ୍ଷି ॥
ଯିବଇଂ ତାର ପାଶ କହିବି ଚାଟୁଆଇଂ ।
ତୋହର ବିନୁ ମୋହୋର ଆନେ କାର୍ଯ୍ୟ
ନାହିଂ ॥
ଯଦ୍ୟପି ମହାରଣ କରିବଇଂ ରାମତୁଲେ ।
ଜିଣି ନୁହଇଂ ତାହାକୁ କାହାରହିଂ ବଳେ ॥
ଏ କୂଳର ସେକୂଳର ନୋହିଲି ଦୁଇକତି ।
କେବଣ ପ୍ରକାରେ ମୁଂ ଲଭିବଇଂ
ମହାସ୍ୱତୀ ॥୯୦
ମାୟା କହିଲେ ସେ କଥାମାନ ଆଗହୁଂ
ଜାଣଇଂ ।
କହିଲେଣ ମାୟା କଥା ସଂପ୍ରତେ ନଯାଇ ॥
ଯିବି ସୀତା ପାଶ ହୋଇବି ଭଗତି ।
ଦୟା କରଇ ଅବା ଜନେକ ଦୋହିତି ॥
ବିବିଧ ବିନୋଦ କରିବି ତାର ତୁଲେ ।
ବିଅର୍ଥ ହୋଇବିନା ସାଂଗ୍ରାମେ ପଡ଼ିଲେ ॥
ଏତେକ ବିଚାରି ବିମାନ ଆରୋହି ।
ଅଶୋକ ବନେ ଦେଖିବାକୁ ଚାନ୍ଦ ମୁହାଂ ॥
ରାତ୍ର ପହଡ଼େକ ନିବିଡ଼ ଅନ୍ଧାର ।
ସୀତାର ସନ୍ନିଧେ ଯାଇ ମିଳିଲା
ଦଶଶିର ॥୧୦୦
ବିମାନୁଂ ଓହ୍ଲାଇ ଜଗତୀରେ ବିଜେ କଲା ।
ସହସ୍ରେ ଅସୁରୀ ମଧରେ ଦେଖିଲା ॥
ଦୀପ ନିରନ୍ତରେ ଜଳଇ ଚଉପାଶ ।
ରାବଣ ବିଜେ କଲା ପ୍ରକଟିଲା ବାସ ॥

ଜାଣିଣ ଉଠିଲେ ସହସ୍ରେ ରାକ୍ଷାସଣୀ ।
ଦେଖି ମୁଖ ପୋତିଲେ ଜନେକ ଦୁଲଣୀ ॥
ତ୍ରିଜଟା ସୁରମା ଦ୍ରର୍ଶନ ଆସି କଲେ ।
ଆବର ଅସୁରୀମାନେ ଗଡ଼ଘାଲି ଶୁତିଲେ ॥
ଉଠିଣ କର ଯୋଡ଼ି ଉଭା ହୋଇ ।
ଜାନେକୀଙ୍କି ଚାହିଂଣ ବୋଲଇ
ଲଙ୍କାସାଇଂ ॥୧୦
କିରେ ସୁନ୍ଦେରୀ ତୋର ପାଷାଣର ହିଆ ।
ପୁରୁଷକୁ ଯୁବତୀ ନକରନ୍ତି ଏହା ॥
ମୁହିଂ ଯେତେ ଆଶେ ଆଣିଲି ସଖୀ
ତୋତେ ।
ସେ ଗୁଣ ନଘେନି ଉପେଖିଲୁ ମୋତେ ॥
କେବଣ ହିଂ ଗୁଣେ ମୁଂ ନୋହିଲି ତୋତେ
ସରି ।
କିମ୍ବା ମୋତେ ଉପେଖୁ ଜନେକ କୁମାରୀ ॥
ମୁହିଂ ସେ ଲଙ୍କପତି ଅସୁରଙ୍କର ଦଣ୍ଡଧାରୀ ।
ଅନେକ ସୁନ୍ଦେରୀ ମୋର ଅଛନ୍ତି
ଅନ୍ତେପୁରୀ ॥
କେବଣ ଗୁଣେ ଚିତ୍ତ ବଳିଲା ମୋହୋରି ।
ତୁ କିମ୍ବା ଅନଗ୍ରହ ନକରୁ ସୁନ୍ଦେରୀ ॥୨୦
ତୋହୋର ପ୍ରସାଦେ ମୋର ମଲେ ପୁତ୍ର
ଭାଇ ।
ରଥ ଗଜ ଅଶ୍ୱ ଅନେକ କ୍ଷୟ ଯାଇ ॥
ସୁବର୍ଣ୍ଣମୟ ପୁର ଅଗ୍ନିରେ ନାଶଗଲା ।
ଏଡ଼େ ସମ୍ପଦ ମୋର ତୋହରେ ସରିଲା ॥
ତୁହି ଚାଣ୍ଡାଳୁଣୀ ଅଛୁ କେହ୍ନେ ସହି ।
ଏଡ଼େ କଷ୍ଟ ଦେଖିରେ ଦୟା ତୋର ନାହିଂ ॥
ଆସ ଆସ ସୁଲକ୍ଷଣୀ ଧର ମୋର ହାଥ ।
ଉଠି ଉଭା ହୋଇ କର-କୋଳାଗ୍ରତ ॥
ଯେ ତୋର ରୂପ ଦେଖି ନ ପାରଇ ମୂର୍ଚ୍ଛି ।
ଯଉବନ ଭିତରେ ଅମୃତ ପୂରିଅଛି ॥୩୦
କୃତାର୍ଥ ହୋଇବି ସଖୀ ତୋହୋର ଅଙ୍ଗ
ଛୁଇଂ ।
ହସି କଥା କହିଲେ ଜୀଇଂବଇ ମୁହିଂ ॥
ସୁନ୍ଦର ମୁଖ ଗୋଟା ତୋ ଫୁଟିଲା ପଦ୍ମଫୁଲ ।
ତିନି ଭୁବନରେ ଅଟଇ ଅମୂଲ୍ୟ ॥

ତହୁଂ ସେ ମଧୁପାନ କରିବଇଂ ମୁହିଂ ।
ଏ ମୋର ବୋଲ ମାନ ଗୋ ରତିଦାନ
ଦେଇ ॥
ଚକୋର ନୟନେ ଚାହୁଂ କିନା ମୋତେ ।
କାମଦେବର ବାଣ କି ନ ବିନ୍ଧଇ ତୋତେ ॥
ନାସିକା ପୁଡ଼ା ଫୁଲାଇ ହସି କଥା କହ ।
ଚୁମ୍ବନ ଦାନ ଦେଇ ରଖ ମୋର
ଦେହ ॥୪୦
ହିଆରେ ହିଆ ଲଗାଇ କୋଳ କରୁ କିନା ।
ଏତେ ମତେ ଦୟା ତୋହୋର ନବସଇ
ନିନା ॥
କେବଣ ଦଇବ ଗଢ଼ିଲା ତୋତେ ଆଇଂ ।
କି ଅବା ରତି ଯୋଗ ନୋହୁତୁ ନିହାଇ ॥
କି ଅବା ରଙ୍ଗଫୁଲ ତୋର ହୃଦରେ ନ
ଫୁଟିଲା ।
କି ଅବା କାମଦେବ ଅପସରି ଗଲା ॥
ଯାନୁ ଯଉବନ କେମନ୍ତେ ଆନେ ବହୁ ।
ଯୁବାସ୍ତିରୀ ହୋଇ କେମନ୍ତେଣ ସହୁ ॥
ରୂପ ଗୁଣ ତୋର ସୁନ୍ଦର ବୟେସ ।
ରତି ଶ୍ରଧା ନାହିଂ କାରଣ ଏଥି କିସ ॥
କିମ୍ବା କାମଦେବ ନକରେ ଉତ୍ସାହା ।
ମୋହର ତହୁଂ ସାର ପାଇବୁ କାହିଂ ନାହା ॥
ମୁହିଂ ଲଙ୍କପତି ଦିଗପାଳ ସମ ।
ମୋହର ମୁଖ ଦେଖିଲେ ଭୟେ କରଇ
ଯମ ॥
କେବଣ ଦେବତାର ଦୋହିତା ଆଣି ନାହିଂ ।
ଅପକ୍ଷରୀ କିନ୍ନରୀ ଅଛନ୍ତି ମୋର ତହିଂ ॥
ତୁ କିସ ମଣୁଅଛୁ ରଷିର ଦୋହିତା ।
ତୋହର ମନକୁ କି ନ ଯୋଗାଇ ଭ୍ରଥା ॥
ଇତର ଲୋକ ପ୍ରାଏ ଭାଙ୍ଗୁ ମୋର ବୋଲ ।
ବହନ୍ତା ପାଣିରେ କେହ୍ନେ ମେଲୁ
ଶୋଲ ॥୬୦
ମୁହିଂ ସେ ତୋହୋର ରଖିବି ବଡ଼ ପଣ ।
ତୁ ଲଘୁ ହୋଉଅଛୁ ଆପଣେ ଆପଣ ॥
ସତେହେଂ କାହା ମୁଂ ନ ପାରଇ କରି ।
ମାରି ପକାଇଲେ କି ରଖିବ ଜଟାଧାରୀ ॥

ବାଇ ମୂର୍ଖ ତୁ ଗୋ ଅଟୁ ହାଦେ ବାମା ।
ତିନିପୁରେ ହାଦେ ବିଦିତ ମୋହୋର
ମହିମା ॥
ତେତିଶ କୋଟି ଦେବେ ମୋହୋର
ବଶ୍ୟାବୃତି ।
ମୁହିଂ ସେ ରାବଣ ବ୍ରହ୍ମାଣ୍ଡେ ଏକଛତ୍ରୀ ॥
ମୋତେ କେଉଂ ଗୁଣେ ସରି ତୋର ରାମ ।
ଏହାର ଉପର ବଂଶେ ଅରଣ୍ୟେକ
ନାମ ॥୭୦
ଅଠଚାଳିଶ ପୁରୁଷେ ହୋଇଥିଲା ରାଜା ।
ଚାରି ଯୁଗେଣ ସେ ପାଇଲାକ ପୂଜା ॥
ଦେବେ ପ୍ରଶଂସନ୍ତି ସମର ତାହାର ।
ଜମ୍ବୋଦୀପେ ଏକା ଅଟଇ ବଳୀୟାର ॥
ମୋହର ମୁଖେ ସେ ପଡ଼ିଲା ରଣଗୋଳେ ।
ଚାପୋଡ଼େ ମାରି ମୁଣ୍ଡ ପକାଇଲି ତଳେ ॥
ଏ କିସ ଶ୍ରୀରାମରେ କେତେ ଯେହାର
ବୟେସ ।
ାଲି ଦୁଇ ଭାଇଙ୍କି ପେଷିବି ଯମପାଶ ॥
ଏସନେକ ବୋଲି ଗର୍ଜଇ ଘନ ଘନ ।
ଜାନେକୀ ବୋଇଲେ ତୁ ଶୁଣ
ଦଶାନନ ॥୮୦
ଏ ନବ ସୃଷ୍ଟିରେ ଯେତେକ ଲୋକ ଅଛି ।
ତୋତେ ସମ ନୁହନ୍ତି ହୋ ବିଶ୍ରବାର ବସି ॥
ଜାଣୁ ଜାଣୁ ବିଷ ଖାଉଅଛୁ ପୁଣି ।
ଏସନେକ ବିଧାତା ଅଛଇ ନିରିବାଣି ॥
ଶ୍ରୀରାମ ପ୍ରତଗ୍ୟାଂ କି ତୋର ଶୁଣିଲା ନାହିଂ ।
କେତେହେଂମାନ ବଳବନ୍ତ ଅଟଇ ଦୁଇ
ଭାଇଂ ॥
ସୁଗ୍ରୀବ ହନୁମନ୍ତ କେତେମାନ ଯୋଧି ।
ବିଭୀଷେଣ ତୁମ୍ଭର ନଜାଣଇ କେବଣ ବୁଦ୍ଧି ॥
ଅଙ୍ଗଦ କୁମର ମହିମା ତୁତ ଜାଣୁ ।
ଆବର ସାହା ବଳ ତାହାଙ୍କର କେହୁ
ଗଣୁ ॥୯୦
ତୁମ୍ଭେ ସେ ଜାଣନା କେତେ ମାନ ଯୋଧି ।
ଅଜ୍ଞାନ ପିଣ୍ଡମାନେ କିଛିହିଂ ନବୁଝି ॥
ତୁ କେହ୍ନେ ଭରସା ଯୁଝିବୁ ଦଶଶିରି ।

ତୋହୋର ବଳେ କି ଶ୍ରୀରାମକୁ ହୋୟେ
ମାରି ॥
ଶକତି ମାଇଲୁ ଯେ ଶ୍ରୀରାମର ହୃଦେ ।
ସୁରଗଣ ହୋଇ ନ କାଢ଼ିଲେ ସ୍ୱର୍ଗ ସାଧେ ॥
ଶ୍ରୀରାମର ତହିଂ ଅଛି ଯେସନେକ ବେଯ ।
ସେ ଘାଉ ଉତୁରିଲେ ଶ୍ରୀରାମ ସାନୁଜ ॥
ଇନ୍ଦ୍ରଜିତ କୁମାରତୋର କେତେମାନ
ଯୋଧା ।
ଆପଣେ ତ ତୁହି ଜାଣୁ ଦଶମଥା ॥୧୦୦
ଲକ୍ଷ୍ମଣର ନାରାଚେ ସେ ହୋଇଲା ନିଧନ ।
ରାମର ବାଣେ ପଡ଼ିଲା ତୋହୋର କୁମ୍ଭକର୍ଣ୍ଣ ॥
ତୁ ସେ ଜାଣୁନା କେତେକ ସୈନ୍ୟ ଥିଲା ।
ଏବେ ଆସି ମହାତ୍ମା ହୋଇଲୁ ଏକଲା ॥
ଶ୍ରୀରାମକୁ ଜିଣିମୁଂ ତୁ ଏହ୍ନେ ମନ ଧରି ।
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଶ୍ରୀରାମ
ହନ୍ତକାରୀ ॥
ନଜାଣୁକି ଠାକୁରଙ୍କ ବୀରଶୂର ପଣ ।
ପୁତ୍ର ତୋର ମାଇଲା ନାଗଫାଶ ବାଣ ॥
ବ୍ରହ୍ମଶହସ୍ରେ ତାହାର ନୋହିଲାକ କିଛି ।
ତିନିପୁରେ ଅଜୟେ ଦଶରଥଙ୍କ ବଛି ॥୧୦
ଉପରବଂଶେ ତାହାଙ୍କର ମାଇଲୁ ଯେବଣ
ରାଜା ।
ଏବେ ସେ ଶ୍ରୀରାମ ଫେଡ଼ିବେ କୁଳ ଲଜ୍ଜା ॥
ତୋତେ ମାରିବେ ଏ ଘାନ୍ତି ଯୁଝି ଗଲେ ।
ପ୍ରାଣ ପାଇବୁ ଯେ ମୋତେ ସମର୍ପିଲେ ॥
ନୋହିଲେ ନିଷ୍ଟେ ତୁ ଯିବୁ ଯମପୁର ।
ତିନିପୁରେ ରଖିବାକୁ ସାମର୍ଥି କାହାର ॥
ତୋହର ଜୀବନ ଯେ ଶ୍ରୀରାମର ହାତ ।
ନିଷ୍ଟେ ଦଇବ ଏହା କରିଛି ସଂଜାତ ॥
ହସିଲା ଲଙ୍କେଶ୍ୱର ସୀତାର କଥା ଶୁଣି ।
ହୋଇ ହୋଇ ଏ କଥାରେ ଅଟଇ
ତରୁଣୀ ॥୨୦
ଶ୍ରୀରାମ ମୋହୋର ବଂଶନ୍ତ ସଂଘାରି ।
ସୁଖେ ବିହରିଲେ ଯେହୁ ଲଙ୍କାପୁରୀ ॥
ବନ୍ଦଇ ଶ୍ରୀ ଜଗନ୍ନାଥ ନୀଳଗିରିବାସୀ ।
ସଂସାର ତ୍ରାହି ନିମନ୍ତେ ବିଜେ କଲେ ଆସି ॥

ଲକ୍ଷ୍ମୀର ବଲ୍ଲଭ ସକଳ ସୁରନାଥ ।
ଶୁଦ୍ଧ ସୁବର୍ଣ୍ଣର ଶଙ୍ଖଚକ୍ର ହସ୍ତ ॥
ମଣିମୟେ କୁଣ୍ଡଳ ଶୋଭିତ ରତ୍ନ ହାର ।
ସର୍ବାଙ୍ଗେ ଶୋଭିତ ରତ୍ନ ଅଳଙ୍କାର ॥
ବିପୁଳ ଭୋଗ ବିଳସ ଦଇତାରି ।
ଅଚଳ ସିଂହାସନେ ସାଙ୍ଗ ହଳଧାରୀ ॥୩୦
ସୁଭଦ୍ରା ସହିତେ ସୁଦରଶନ ସାଜେ ।
ଇହଲୋକ ପରଲୋକ ଜଗୁଜନ ଗଞ୍ଜେ ॥
ବାସବତ୍ସଳ ବାନା କରୁଣାମୟେ ତନୁ ।
ଆରତ ଭଞ୍ଜନ ସ୍ୱାମୀ ମୂରତି ଅନୁଆନୁ ॥
ପରମ ଈଶ୍ୱର ପରମ ଯୋଗ ଗ୍ରାହୀ ।
ନମୋ ନାରାୟେଣ ବ୍ରହ୍ମାଣ୍ଡ ଗୋସାଇଂ ॥
ପାଦୁଂ ଲକ୍ଷ୍ମୀଜାତ ନାଭିରୁ ବିଧାତା ।
ଶ୍ୟରୀରୁ ଜାତ ଯେ ହୋଇଲା ବୁଧମାତା ॥
ଯେଣୁ ସୃଷ୍ଟିଦେବ ରଚିଂଲୁ ଗୋସାଇଂ ।
ଦେବ ମହାଦେବ କମଳାର ସାଇଂ ॥୪୦
ନୀଳ ସୁନ୍ଦର ମୂରତି ପବିତ୍ର ଚାରୁ ଶୋଭା ।
ପ୍ରସନ୍ନ ହୋଇ ମୋତେ ଅଭୟେ
ବରଦେବା ॥
ଶରଣ ରକ୍ଷଣ ତୁ ଦୁଃଖୀଜନ ସାହା ।
ଜୟ ଜୟ ଜଗନ୍ନାଥ ତୁ ଜଗତର ନାହା ॥
ଭୟ ଆକ୍ରୋଷି ଝାମ୍ପୁଅଛି ମୋତେ ।
ମୁହିଂ ଦେବ ପ୍ରାର୍ଥନା କରୁଅଛି ତୋତେ ॥
କ୍ଳେଶ ନିବାରିଣ କରିବା ମୋତେ ଦୟା ।
ନୋହିଲା ନୋହିଲା ବୋଲି ଡରାଉଅଛି
କାୟା ॥
ପ୍ରହ୍ଲାଦ କୁମର ତୋହୋରେ ଶରଣ ଗଲା ।
ଆଦ୍ୟହୁଂ କୀର୍ତ୍ତି ବେଦ ପୁରାଣେ
ରହିଲା ॥୫୦
ବିଭୀଷେଣ ଅମର ତୁମ୍ଭର ପାଦେ ସେବି ।
ସୁଖେ ଭୋଗ୍ୟ କରଇ କନେକମୟେ
ପୃଥିବୀ ॥
ଯୁଯେଷ୍ଟି ରାଜାର ଫେଡ଼ିଲୁ ଅଭିମାନ ।
କଂସନାଶି ରାଜା କଲୁ ଉଗ୍ରେସେନ ॥
ଅପାର ମହିମା କେ କହିପାରିବ ।
ଆରତ ତାରଣେ ବାନା ଅଟୁ ଜଗତହିତ ॥

ରଖ ରଖ ଜଗନ୍ନାଥ ମୁହିଁ ତୋହର ଦାସ ।
ବଳରାମ ଦାସର ପୂରୋଉ ମନ ଆଶ ॥
ଏଥୁ ଅନନ୍ତରେ ଦଶଗ୍ରୀବ ରାଏ ।
ରାତ୍ର ପାଞ୍ଚଘଡ଼ିରେ ନବରେ ବିଜୟେ ॥୬୦
ବିବାନୁଂ ଓହ୍ଲାଇ ହୋଇଲା ନିଅବକାଶ ।
ଦ୍ରଶନ କଲେ ଆସି ସକଳ ରାଣୀହଂସ ॥
ବୋଇଲା ଜାନେକୀର ତହିଂକି ଯାଇଥିଲି ।
ଅନେକ ପ୍ରକାରେ ଚାଟୁ ବଚନ କହିଲି ॥
କେବେହେଁ ସେ ବୋଲ ନକଲା
ବଇଦେହୀ ।
ଶୁଣି କର ଯୋଡ଼ଇ ମନ୍ଦୋଦରୀ ମହାଦେଈ ॥
ଯାହା ସେ ଭୋ ଦେବ ଦେଉଅଛୁ ଆଜ୍ଞା ।
ତିନିପୁରେ ବିଦିତ ତୋହର ପ୍ରତିଜ୍ଞା ॥
ମାଇ ଗାଇ ସ୍ତିରୀ ନଜାଣଇ କିଛି ।
ସ୍ୱର୍ଗର ବିଦ୍ୟାଧରୀ ତୋହୋର ପୁରେ
ଅଛି ॥୭୦
ଏହା ଜାଣି ସିନା ବୋଲଇ ମୁହିଂ ତୋତେ ।
ନେଉ ରାମ ସୀତାକୁ ନଥାଉ ହାଦେ
ଯେଥେ ॥
ଅକାରଣ କଥାରେ ପ୍ରୟୋଜନ ନାହିଂ ।
ଭୋଦେବ ଜାନେକୀକି ଦେବାକ
ବାହୁଡ଼ାଇ ॥
ଶୁଣି କରି ଅଳପ ହସଇ ଲଙ୍କପତି ।
ଏକଥା ସଖିରେ ନକହ ମୋର କତି ॥
ଯେ ଦେହେ ପ୍ରାଣ ଥିଲେ ନଦିଅଇ ସୀତ୍ୟା ।
ଏ ମୋହର ବୀରଧୁ ଅଟଇ ଜଗୁଜିତା ॥
କାଲି ରଘୁନାଥକୁ ସଂହାରିବି ରଣେ ।
ପୁତ୍ର ଭାଇ ଶୋକ ନିବାରିବି ତେଣେ ॥୮୦
ସୀତାର ମାଂସ ଯେବେ ବ୍ୟଞ୍ଜନ କରି
ଖାଇ ।
ତେବେ ସେ ପ୍ରତାପୀ ଲଙ୍କେଶ୍ୱର ବୋଲାଇ ॥
ଏତେ ବୋଲି ରାୟେ ପଦ୍ମାବତୀର ହାଥ
ଧରି ।
ଶୟନ ମନ୍ଦିରେ ମିଳିଲା ଦଶଶିରି ॥
ରତ୍ନ ପଲଙ୍କରେ ସରୁ ଝିନ ବାସ ।
ତହିଂ ଶେଜାଇଲା ନାନାବର୍ଣ୍ଣେ ପୁଷ ॥

ବିଚିତ୍ର ଖଣ୍ଡୁଆ ନେତର ମଶହେରୀ ।
ମୁକୁତାର ରତ୍ନଝରା ଲମ୍ବଇ କେରି କେରି ॥
ଅଗ୍ରଧୂପ ଗନ୍ଧ ପ୍ରକଟଇ ଚଉପାଶ ।
ଦେଢ଼ ପ୍ରହରମାନେ ଦିଶିଲା ଚନ୍ଦ୍ର
ତ୍ରାସ ॥୯୦
ଶେଜ୍ୟାରେ ବିଜେ କଲା ଲଙ୍କାର
ଅଧିପତି ।
ପାଶେଣ ସକଳ କାମିନୀ ଖଟିଛନ୍ତି ॥
ନିଦ୍ରାରେ ଅଶକତ ଅସୁର କୁଳ ସାଇଂ ।
ପଲଙ୍କେ ପହୁଡ଼ିଲା ଉତ୍ତାନଶାୟୀ ହୋଇ ॥
ରାଣୀ ମହାଦେଈ କି ଦେଖିଣ ବିଚାରି ।
ମୋହର ମୂର୍ଖପଣେ ଯେ ସରିଲା ଏତେ
ଶିରୀ ॥
ଏଡ଼େ ଶିରୀ ଭୋଗ ଯେ ବିଳସି ନ
ପାରିଲି ।
ଅକାରଣେ ଏଡ଼େ ସମ୍ପଦ ହରାଇଲି ॥
ଏହିକ୍ଷଣି ଯେବେ ସୀତ୍ୟାକୁ ସମର୍ପିବି ।
ଏ ଲଙ୍କାଗଡ଼ରେ ନିଶ୍ଚିନ୍ତେଣ ଥିବି ॥୧୦୦
ମଲାର ଲୋକଙ୍କୁ ପାଇବି ଆଉ କାହିଂ ।
ସୀତାକୁ ଦେଲେ ତାହାଙ୍କର ଜୀଇଂନାହିଂ ॥
କିମ୍ପା ସମର୍ପିବି କିରବି କାଲି ରଣ ।
ମାରିବି ଶ୍ରୀରାମ ଲକ୍ଷ୍ମଣ ବିଭୀଷେଣ ॥
ଭାଲୁ ଭାଲୁ ନିଦ୍ରା ଘାରିଲା ନୟନେ ।
ନିଚେଷ୍ଟ ହୋଇଣ ଶୁତିଲା ଦଶାନନେ ॥
ମାଣିକ୍ୟର ଦୀପାବଳୀ ଜଳଇ ଚଉକତି ।
ବେଢ଼ିଣ ଶୁତିଲେ ସକଳ ଯୁବତୀ ॥
ମନ୍ଦୋଦରୀ ରାଣୀ ଚାପଇ ଚରଣ ।
ଆଲଟ ଚାମର ବିଞ୍ଚନ୍ତି ନାରୀଗଣ ॥୧୦
ଏଥୁ ଅନନ୍ତରେ ନିଶି ହୋଏ ଶେଷ ।
ସ୍ୱପନେ ଦେଖିଲା ବିଶ୍ରବାର ଶିଷ ॥
ଚେତି ଉଠି ପୁଣି ବିଚାରଇ ମନେ ।
ଶ୍ରୀରାମ ତୁଲେ ମୁଂ ଯୁଝିବି କେସନେ ॥
ମନ୍ଦୋଦରୀ କି ଚାହିଂ ହସଇ ଦଶଶିରି ।
ସ୍ୱପନେ ଦେଖିଲି ଆଜ ମୁଂ ଗଲି ଯୁଦ୍ଧକରି ॥
ରଘୁନାଥ ତୁଲେ ବାଜିଲା ରଣ ଗୋଳ ।
ବ୍ରହ୍ମ ଅସ୍ତେ ମୋର ଫୋଡ଼ିଲା ବକ୍ଷସ୍ଥଳ ॥

ପ୍ରାଣ ହାରିଣ ମୁଂ ପଡ଼ିଲି ରବିତଳେ ।
ତୁମ୍ଭେ ବେଢ଼ି ରୋଦନ କରୁଅଛ
ବିକଳେ ॥୨୦
ବିଭୀଷେଣ ରାଜା ହୋଇଲା ଲଙ୍କାଦେଶେ ।
ବଇକୁଣ୍ଠେ ସେବା ମୁଂ କଲି ବିଷ୍ଣୁ ପାଶେ ॥
ଏହି ଶ୍ରୀରାମ ତହିଂ ଅଟନ୍ତି ନାରାୟେଣ ।
ସୀତାଙ୍କୁ ଧରିଣ ଅଛନ୍ତି କୋଡ଼େଣ ॥
ଶଙ୍ଖଚକ୍ର ଗଦା ଶାରଙ୍ଗ ଚତୁର୍ଭୁଜ ।
ମୋତେ ଦେଖି ଗଉରୋବ କଲେକ
ରାମରାଜ ॥
ବୋଇଲେ ଆଉ ଦୁଃଖ ନ ପାଇବୁ ମୃତ୍ୟୁ
ପୁରେ ।
ପୁଣି ସ୍ୱର୍ଗ ପାଇବୁ ମୋହର ଚକ୍ରରେ ॥
ଯାଅ ତୁ ପଶ୍ଚିମ ଦ୍ୱାର ତୋର ରଖ ।
କୁମ୍ଭକର୍ଣ୍ଣ ଅଛି ହୋ ତାହାକୁ ଯାଇ
ଦେଖ ॥୩୦
ଏ ବଚନ ଶୁଣି ଶୀଘ୍ର ହୋଇ ଗଲି ।
ନାରାୟେଣ ପଶ୍ଚିମ ଦ୍ୱାର ମୁଂ ରଖିଲି ॥
ଦେଖିଲି କୁମ୍ଭକର୍ଣ୍ଣ ଅଛଇ ତହିଂ ବସି ।
ମୋତେ ସାନ୍ନିଧକୁ ରାଇଲାକ ହସି ॥
ପଚାରିଲା ଶ୍ରୀରାମ ନେଲେଟିକି ସୀତ୍ୟା ।
ଏହିକ୍ଷଣି ହାଦେ ପଡ଼ିଥିଲା ଏ କଥା ॥
ମୁହିଂ ବୋଇଲି ସେ ଅଶୋକ ବନେ ଅଛି ।
ପରମଲକ୍ଷ୍ମୀ ସେ ସ୍ୱୟଂ କମଳାକ୍ଷି ॥
ଏସନ ସମୟେ ଭାଜିଲା ଭୋର ନିଦ ।
ସଂଗ୍ରାମ କରି ସଖୀ ଏତେ ମାନ ସଧ ॥୪୦
ମନ୍ଦୋଦରୀ କହିଲା ଦେବ କହିଲୁସି
ଯାହା ।
ମୁହିଂ ସେ ସ୍ୱପନେ ଦେଖିଲଇଂ ଦେବ
ତାହା ॥
ପୁଷ୍ପକ ବିମାନେ ଚଢ଼ିଣୁ ତୁ ଗଲୁ ।
ସାତ ରାତି ସାତ ଦିବସ ଯୁଦ୍ଧ କଲୁ ॥
ସ୍ୱର୍ଗରୁ ଦେବରଥ ମାତେଳି ଆଣିଦେଲା ।
ତହିଂବସି ଶ୍ରୀରାମ ସକଳ ଜିଣିଲା ॥
ଦଶ ମଉଳି ତୋର ପକାଇଲା କାଟି ।
ବ୍ରହ୍ମ ଶହସ୍ର ଘାତେ ହୃଦୟ ଗଲା ଫୁଟି ॥

ଏସନେକ ବେଳେ ଗଲା ଘୁମ ଛାଡ଼ି ।
ବିଷାଦ ହୋଇଲି ତୋର ଚରଣ
ନମାଡ଼ି ॥୫୦
ତୁମ୍ଭେ କହିଲ ମୋହୋର ଭାଳିବାର
ବେଳେ ।
ଭୋନାଥ ବିପତ୍ତି ପଡ଼ିଲା ଏତେ କାଳେ ॥
କେହ୍ନେ ବିଧାତା ଆଣି ଏଥି ଯୋଗ କଲା ।
ଏଡ଼େ ସମ୍ପଦ ଗୋଟା ହେଳେ ନାଶଗଲା ॥
କାହୁଂ କାଳୁଆ ଗରଳ ଅଇଲା ଜାନେକୀ ।
କେବଣ ଦଇବ କଢ଼ାଇ ଆଣିଲା ଏଥିକି ॥
କିମ୍ବା ଆମ୍ଭର ଶିରୀ ଦେଖି ନପାରିଲା ।
କେବଣ କଥାକୁ ଅବା ଅସୁଖ ପାଇଲା ॥
ଏତେ ବୋଲି ରାଣୀ ଛାଡ଼ିଲା ନିଃଶ୍ୱାସ ।
ଡରେ ନ ବୋଲଇ ମନେ ମହାତ୍ରାସ ॥୬୦
ଏସନେକ ସମୟେ ରଜନୀ ହୋଏ ଶେଷ ।
ଦେବତାଙ୍କର ଆଳେ ଶୁଭଇ ଶଙ୍ଖ ଘୋଷ ॥
ଶେଯ୍ୟା ଛାଡ଼ିଣ ସେ ଉଠିଲା ଲଙ୍କରାୟେ ।
ଯେ ବିଧିବିଧାନ ନିତ୍ୟକର୍ମ କୟେ ॥
ମୁଦୁସୁଲୀକି ଚାହିଂ ବୋଲଇ ନୃପବର ।
ଦ୍ୱାରେଣ କେହୁ ଅଛି ଯାଇଣ ପଚାର ॥
ଦିଅନ୍ତୁ ଟମକ ଆସନ୍ତୁ ପାତ୍ରମନ୍ତ୍ରୀମାନ ।
ସଜହୋଇ ଆସନ୍ତୁ ଚତୁରାଙ୍ଗ ସୈନ୍ୟ ॥
ଶୁଣି ମୁଦୁସୁଳୀ ଚଳିଲାକ ଖରେ ।
ଯାଇଣ ପ୍ରବେଶ ହୋଇଲା
ସିଂଘଦ୍ୱାରେ ॥୭୦
କବାଟ ନ ଫିଟୁ ଖୁଣ୍ଟିଆକୁ ଡାକ ଦେଲା ।
ନୃପତି ଆଗ୍ୟାଂରେ ଟମକ ଦିଅ ବୋଇଲା ॥
ଶୁଣି ଦ୍ୱାରପାଳ ଟମକିଆକୁ ହକାରି ।
ବୋଇଲା ଟମକ ହୋ ବଜାଅ ବେଗ କରି ॥
ଶୁଣି ଟମକିଆ ବଜାଇଲା ତୂର ।
ବଜାନ୍ତେ ଟମକ ଶୁଭଇ ତିନିପୁର ॥
ସୁରଗିରି ଟମକ ଅଟଇ ତାର ନାମ ।
ବାଦ୍ୟ ଶୁଣି ଉଚାଟ ହୋଇଲେ ଲଙ୍କାଗ୍ରାମ ॥
ପାତ୍ର ଅମନାତ୍ୟ ଚତୁରାଙ୍ଗ ବଳ ।
ସିଂଘଦ୍ୱାରେ ଗୁଣ୍ଡ ହୋଇଲେ ସକଳ ॥୮୦
ଏଥୁ ଅନନ୍ତରେ ଦଶଗ୍ରୀବ ରାଏ ।

ଯେ ବିଧିବିଧାନ ନିତ୍ୟ କର୍ମ କଏ ॥
ସୁବର୍ଣ୍ଣ ପାଦୁକା ଚଢ଼ି ବାହାରେ ବିଜେ
କଲା ।
ମାଣିକ ଜଗତୀରେ ଅବକାଶ ହୋଇଲା ॥
ରତ୍ନ ପଲଙ୍କରେ ବସିଲା ନୃପବର ।
ମହାଦେଈମାନେ ଗଲେ ଅନ୍ତେସ୍ୱର ॥
ରାଜା ଅବକାଶେ ଅମନାତ୍ୟେ ଦର୍ଶନ
କଲେ ।
ବେଳୁବେଳ ସଭା ବସଇ ଗହଳେ ॥
ଶୁକ ସାରଣେ ଦର୍ଶନ କଲେ ଯାଇଂ ।
ତାହାକୁ ଚାହିଂଣ ବୋଲଇ ଲଙ୍କସାଇଂ ॥୯୦
କିହୋ ସାଂଗ୍ରାମକୁ ହୋଇଲ ଟିକି ସଜ ।
ଶ୍ରୀରାମ ତୁଲେ ଯୁଦ୍ଧ କରିବି ମୁହିଂ ଆଜ ॥
ଜାଣିମା ରଘୁନାଥ କେତେ ମାନ୍ ବଳ
ବହଇ ।
କେବଣ ବାଣେ ମୋହୋର ଅସୁରବଳ
ଦଳଇଂ ॥
କୁମ୍ଭକର୍ଣ୍ଣକୁ ମାରିଣ ଜଟାଧାରୀ ।
ଏକ ଲକ୍ଷି ବାନା ସେ ବହିଲା ଦଇତାରି ॥
ଆଜ ଅସୁରଙ୍କର ଉଦ୍ଧରିବି ମାନ ।
ଜାଣିବା ଯେହ୍ନୁ ଦେବତାଙ୍କର ବିଧାନ ॥
ବାସୁଦେବଙ୍କୁ ଜାତ କରାଇଲେ
ମୃତ୍ୟୁପୁରେ ।
ଏଡ଼େକ ସମ୍ପଦ ମୋର ହରାଇଲି
ସଂପୋଡ଼େ ॥୧୦୦
ପୁତ୍ର ଭାଇ ବନ୍ଧୁ ମରାଇଲି ଯଶ ନାହିଂ ।
ଏତେ ବୋଲି ଆସ୍ଥାନୁ ଉଠିଲା ଲଙ୍କସାଇଂ ॥
ନୀଳାପିଢ଼ା ଉପରେ ବସି ସନ୍ଧ୍ୟା ସୁମରିଲା ।
କାଳକେତୁ ବୀର ଦ୍ରଶନ ଆସି କଲା ॥
ଅଗ୍ନିକେତୁ ରଶ୍ମିକେତୁ ମହାକେତୁ ଆଏ ।
ଏକଶିର ପଞ୍ଚଶିର ଦ୍ରଶନ ଆସି କଏ ॥
ଯମଦାଢ଼ ସେନାପତି ବିଦ୍ୟୁଲାକ୍ଷ ବୀର ।
ସମୟେ ଅସମୟେ ଜୋତି ଯେ ସାଗର ॥
ମକରାକ୍ଷ ଅସୁରଭାଇ ଶୂଳଧାରୀ ।
ତାହା ନାମ ଅଟଇ ଅମର ହନ୍ତକାରୀ ॥୧୦
ତାହାର ଦ୍ରଶନ କରନ୍ତେ ପଚାରନ୍ତି ରାଏ ।

ତୋହୋର ନାମ ଧଇଲେ ଡରନ୍ତି
ସୁରରାୟେ ॥
ଖରର ତନୟେ ତୁ ପୁତୁରା ମୋହୋରି ।
ଏ ଘାନ୍ତି ଯୁଦ୍ଧ ବାବୁରେ ଅଟଇ ତୋହରି ॥
ଶୂର ବିଦ୍ୟାରେ କୁଶଳ ତୁ ଅଟୁ ତିନିପୁରୀ ।
ଈଶ୍ୱର ସଂଗ୍ରାମେ ନୁହଇ ତୋତେ ସରି ॥
ଶୂଳ ବିଦ୍ୟାରେ ପରିପୂର୍ଣ୍ଣ ତୁ ଅସୁର କୁଳମଣି ।
ତୁ ହୁଅ ଆଗିଆଣି କାଳକେତୁକୁ ଘେନି ॥
ସମଏ ଅସମଏ ଯାଆନ୍ତୁ ଭାଇବେନି ।
ଶ୍ରୀରାମ ଲକ୍ଷଣଙ୍କୁ ମାର ରକ୍ଷ କପି
ସଇନି ॥୨୦
ଯମଦାଢ଼ ଅଗ୍ନିକେତୁ ରଶ୍ମିକେତୁ ଯାଉ ।
ଦଶଲକ୍ଷ ଗଜ ତୁମ୍ଭର ସଙ୍ଗେ ଥାଉ ॥
ଉତ୍ତର ରଥୀଗୁ ସହସ୍ରେକ ଘେନି ।
ଅଇବ୍ରତେ ଅଶ୍ୱ ଯାଆନ୍ତୁ ବହନି ॥
ପଏକାର ସଇନି ଯାଆନ୍ତୁ କୋଟିଚାରି ।
ଆଗିଆଣି ଦଣ୍ଡେ କରନ୍ତୁ ମରାମରି ॥
ବଜ୍ରକପଚ ଦୃଢ଼କପଚ ଅଜଏ ।
ଅଶୋକ ବିଶୋକ ଅମୟେ ସମୟେ ॥
ଶତଜିତ ସହସ୍ରାଜିତ ଅଇରିଜଏ
ମହାବୀର ।
ଦକ୍ଷିଣ ଦ୍ୱାରବାଟେ ହୋଇବେ
ବାହାର ॥୩୦
ପୂର୍ବ ସିନ୍ଧୁ ସଳଖେ ଏ ସୁବଳୟାକୁ ଯିବେ ।
ପର୍ବତୁ ଓହ୍ଲାନ୍ତେ ଯେ ବେଢ଼ିଣ ମାରିବେ ॥
ଦଶ ସହସ୍ର ରଥୀ ଥିବେ ନଥିବେ ଆନ
ସୈନ୍ୟ ।
ବାଦ୍ୟ ନ ବାଜିବ ନ ଦିଶିବ ଯାନ ॥
ସିନ୍ଧୁ କାଛେ କାଛେ ଏ ଆସୁଥିବେ ମାଡ଼ି ।
ବନସ୍ତ ଗିରି ଶତ୍ରୁର ଥାନ ଛାଡ଼ି ॥
ପର୍ବତ ଉଠାଣି ଠାବରେ ଥିବେ ରହି ।
ଓହ୍ଲାଇଲେ ମାରିବେ ଆମ୍ଭର ପିଛା ପାଇ ॥
ବୁଡ଼ା ଦେଇଣ ସାଙ୍ଗେ ଯାଇଣ ଥିବେ ।
ସମର ଗୋଳ କରନ୍ତେ ଧାଇଂଣ
ପଡ଼ିବେ ॥୪୦
କୁମ୍ଭେକ ଯୁରାସୁର ମହୀସୁର ତିନି ।

ମହାପାରୁଶ ପ୍ରଶସ୍ତ ବିକଟ ଭାଇ ବେନି ॥
ପାଞ୍ଚ ସହସ୍ର ଗଜ ମୁକୁଳାମଏମତ ।
ତୀକ୍ଷ ଚୋଖାର ରହଇ ସମଦନ୍ତ ॥
ପୂର୍ବ ଦ୍ୱାରେଣ ଯେ ଉଭାରିଣ ଥିବେ ।
ଥୋକାଏକ ବଳ ଏ କଢ଼ାଇ ଘେନିଯିବେ ॥
ଅଶ୍ୱକର୍ଣ୍ଣ ଏକପାଦ ପାଟେଳି ବିରୂଳାକ୍ଷ ।
ଚାରଣ ବିଚାରଣ ପ୍ରମାର୍ଥ ଲୋହିତାକ୍ଷ ॥
ପଶ୍ଚିମ ଦ୍ୱାରେଣ ଯେ ହୋଇବେ ବାହାର ।
ଦଶକୋଟି ତେଜି ଅଶ୍ୱ ସଙ୍ଗତେ ଥିବେ ତାହାଙ୍କର ॥୫୦
ନିଶାଣ ନ ବଜାଇ ଯେ ସଳଖେ ସଳଖେ ଯିବେ ।
ସମର ଗୋଳ ହୋଇଲେ ଧାଇଂଣ ପଡ଼ିବେ ॥
ମିତ୍ରଘନ ଏକଘନ ଉତ୍ତର ଦ୍ୱାରେ ଥିବେ ।
ଭେଟ ପାଇଣ ସେ ରହିଣ ଯୁଝିବେ ॥
ମୁହିଂ ଆପଣେ ଥିବି ପଛିଆଣି ।
ସଙ୍ଗେ ବଳ ଥିବେ ମୋର ଅଠର କ୍ଷଉଣି ॥
ଲକ୍ଷେକ ଚାମର ଯେ ଲକ୍ଷେକ ବୀରଛତ୍ର ।
ଲକ୍ଷେକ ବିଲମ୍ବ ଲକ୍ଷେକ ବୀରନେତ ॥
ଲକ୍ଷେକ ମର୍ଦ୍ଦଳ ଲକ୍ଷେକ ବୀରଘଣ୍ଟ ।
ଲକ୍ଷେକ ଗାଏଣୀ ଲକ୍ଷେକ ଚହଟ ॥୬୦
ଲକ୍ଷେ ଲକ୍ଷେକ ସିଂଘନାଦ କରି ।
ମାଳବ ରାଗେଣ ବଜାଇବେ ମହୁରୀ ॥
ତିନିଶତ ନାତି ପଞ୍ଚବିଂଶ ପୁତ୍ର ।
ପଚାଶ କୋଟି ମୁକୁଟ ଯୋଦ୍ଧା ଅତି ଅପ୍ରମିତ ॥
ବାରକୋଟି ଯୋଦ୍ଧା ଯେ ପଡ଼ିଲେକ ରଣେ ।
ଅଠତିରିଶ କୋଟି ଯୋଦ୍ଧା ଅଛନ୍ତି ପୁଣ ଏଣେ ॥
ରଥୀ ମହାରଥୀ ରାଉତ ମାହୁନ୍ତ ।
ଚତୁରାଙ୍ଗ ବଳ କେକରିବ ଅନ୍ତ ॥
ଯାଅ ବୋଲି କରି ରାୟେ ଆଜ୍ଞା ଦେଲା ।
ଆପଣେ ପୁଷ୍ପକ ବିମାନ ସୁମରିଲା ॥୭୦
ଆସିଣ ଦେବରଥ ମିଳିଲା ତଡ଼ତି ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି କି ହୋଇଲେ ଏକମୂର୍ତ୍ତି ॥

ଜଗତ ଆଲୁଅମଏ ଦିଶଇ ଲଙ୍କାପୁର ।
ଦେବ ଆସନ ମଣ୍ଡିଲା ଦର୍ପଣ ଚାମର ॥
ପାରିଜାତେକ ପୁଷ୍ପ ମଣ୍ଡିଲା ଅଛି ଅପାର ।
ତେଣୁକରି ପୁଷ୍ପେକ ନାମ ଅଟଇ ତାହାର ॥
ଚଉଦ ଭୁବନରେ ଚଳଇ ମାୟାରଥ ।
ତେଣୁ ସେ ଜଗତ ସାଧିଲା ଦଶମାଥ ॥
ପାତାଳୁ ବୈକୁଣ୍ଠ ଦେବଲୋକ ଯାଏ ।
ବୁଲି ଆୟତ୍ତ କଲା ଦଶାନନ ରାଏ ॥୮୦
ସେ ରଥେ ବସିଲେ ନୁହଇଂ ରଣଭଙ୍ଗ ।
ସବୁ ଯାନମାନଙ୍କର ଉପରେ ଭୁଜଙ୍ଗ ॥
ଅଷ୍ଟାଙ୍ଗ କାଳରେ ସେ ରଥରେ ବସିଥିଲେ ।
ନିର୍ଭୟ ହୋଅଇ ଆରଣି ଭିତରେ ପଶିଲେ ॥
ଯହୁଂ ସେ ଶ୍ରୀରାମ ବସିଲେ ଗଡ଼ ମାଡ଼ି ।
ହେଳେ ଯୁଦ୍ଧ କରି ଅସୁର ବଳ ପାଡ଼ି ॥
ମହା ମହାବୀରମାନେ ରାବଣର ମଲେ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ସହିତେ କ୍ଷୟ ଗଲେ ॥
ତେଣୁ ସେ ଦଶଗ୍ରୀବ ରଣଦୀକ୍ଷା କଲା ।
ପୁଷ୍ପେକ ବିମାନେ ବସି ଯୁଦ୍ଧକୁ ମନକଲା ॥୯୦
ସୁମରନ୍ତେ ପୁଷ୍ପେକ ମିଳିଲା ଆସି ପାଶ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ଶ୍ରୀପୁରୁଷୋତ୍ତମ ବଇଠି ଗୋଟିକି ବନ୍ଦଇ ।
ରାବାୟେଣ ଗୀତ ଗ୍ରନ୍ଥ କହଇ ॥
ଯହୁଂ ପ୍ରସନ୍ନ ମୋତେ କମଳାର ପତି ।
ତେଣୁ ଦୟାକଲେ ଦେବୀ ସରସ୍ୱତୀ ॥
ବ୍ରହ୍ମାର ପ୍ରସନେ ବାଲମ୍ଭିକ ଆଗେ କହି ।
ପୂର୍ବେ ନାରଦ ଯାହା ସଞ୍ଚିଅଛି ଯାଇଂ ॥
କୃଉଞ୍ଚ ଚଢ଼ାଇକି ଧଇଲାକ ବ୍ୟାଧ ।
ଦେଖି ଋଷି ତାହା କଲେକ ଗ୍ରନ୍ଥ ସାଧ ॥୧୦୦
ସେ ବାଣୀ ଈଶ୍ୱରଙ୍କୁ କହିଲେକ ଶିବା ।
ଭୋଦେବ ମହାଦେବ ଦୟା ମୋତେ ହୋଇବା ॥
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଠାକୁର ରାମରାଉ ।
ଲୀଳାଯୁଦ୍ଧ କଲେ ରାବଣ ସାଙ୍ଗେ ପ୍ରଭୁ ॥

ଦଶଶିର ଛେଦି ସୀତ୍ୟାଙ୍କୁ ଘେନିଗଲେ ।
ଲଙ୍କାଗଡ଼େ ବିଭୀଷେଣଙ୍କୁ ରାଜା କଲେ ॥
ସେ କଥା ଶୁଣିମାକୁ ମୋହୋର ବଡ଼ ମନ ।
ଗିରିଜାର ବଚନେ ହସନ୍ତି ତ୍ରିଲୋଚନ ॥
ବୋଲନ୍ତି ମହେଶ୍ୱର ଶୁଣଗୋ ରାମଯୁଦ୍ଧ ।
ଯେମନ୍ତେ ରଘୁନାଥ ରାବଣ କଲେ ବଧ ॥୧୦
ରାମାୟଣ ଗ୍ରନ୍ଥ ଏ ଲଙ୍କା ନାମେ କାଣ୍ଡ ।
ରଣଗୋଳ ଆଛାନ ଅପୂର୍ବ ଯୁଦ୍ଧ ଖଣ୍ଡ ॥
ପଦେ ପଦେ ଶ୍ରବଣେ ଅମୃତ ଯେହୁ ଶୁଣି ।
କର୍ଣ୍ଣେଣ ପିବନ୍ତେ ନର୍କରୁ ହୋଏ ଜିଣି ॥
ବିଷ୍ଣୁର ଅଂଶେଣ ଯେତେକ ଲୋକ ଜାତ ।
ସେ ଯେହା ଶୁଣିମାକୁ ବଢ଼ାଇ ଉଷତ ॥
ତୁଗୋ ପରମ ସ୍ୟତୀ ପରମ ବଇଷ୍ଣବୀ ।
ତୋହୋର ଆଗେ ମୁଂ ଯେ ରାମାୟେଣ କହିବି ॥
ମୁହିଂ ନିସ୍ତରିବି ତୁହି ମୋକ୍ଷ ହୁଅ ।
ଏଥୁ ଅନନ୍ତରେ ବିଶ୍ରବାର ପୁଅ ॥୨୦
ଶକତି ଘାତେ ଯହୁଂ ଲକ୍ଷ୍ମଣ ନ ମଲା ।
ଥଳଜଙ୍ଘ ପୁଅ ଯହୁଂ ସାଂଗ୍ରାମେ ପଡ଼ିଲା ॥
ବାରତା ପାଇଲା ଦଶଗ୍ରୀବ ରାଏ ।
ମନ୍ତ୍ରୀ ଅମନାତ୍ୟ ସକଳ ହକରାୟେ ॥
ଚାରିଭାଗ କରି ବାଣ୍ଟିଲାକ ଦଣ୍ଡ ।
ସଇନି ବାହାର ହୁଅନ୍ତେ ପୂରିଲା ଲଙ୍କାଦାଣ୍ଡ ॥
ଚାରିଦ୍ୱାର ବାଟେ ବାହାର ଚାରିଥାଟ ।
ରଥଗଜ ଅଶ୍ୱ ଯେ ପାଦାନ୍ତି ମୁରାଟ ॥
ହସ୍ତୀ ଘୋଡ଼ା ଚଢ଼ି ଯେ ମହାଯୋଦ୍ଧାମାନେ ।
କେହୁ ରଥେ କେହୁ ପାଦରେ ଗମନେ ॥୩୦
ଯିବା ତଡ଼ବଡ଼ି ହାକିବାର ଡାକ ।
ଢୋଲ ଦମା ମର୍ଦ୍ଦଳ ବାଜଇ ଟମକ ॥
ଶଙ୍ଖ କମ ଭେରୀ ହସ୍ତୀଙ୍କର ଗର୍ଜନ ।
ହାବେଳି ବଜ୍ରବାଣ ମାରନ୍ତି ଘନଘନ ॥
ଘଣ୍ଟି ଘାଗୁଡ଼ି ଯେ ପିଟା ଘଣ୍ଟକାଠି ।
ରଣ ଦେଖି ରାଉତେ ଧାଉଂଛନ୍ତି ହେଠି ॥
ଫରୀ ଫଳାଟେଂସ ଘୋଡ଼ାଙ୍କ ଟାପୁଘାତ ।

ସାଂଗ୍ରାମକୁ ଯାନ୍ତେ ଅଶ୍ୱ ହସନ୍ତି ବହୁତ ॥
କଡ଼ା ଦୋସରି ମର୍ଦ୍ଦଳ କମବୀଣା ଧରି ।
ବିଜିଘୋଷ ଦାଉଣ୍ଡି ଦୁଇକୋଟି ମହୁରୀ ॥୪୦
ବାଜଇ ଗିଡ଼ିଗିଡ଼ି ମହିଷି ସିଂହାଧ୍ୱନି ।
ସିଂହାନାଦରେ ପୁଣ କମ୍ପଇ ମେଦିନୀ ॥
ଆବର ଅନେକ ଅଛନ୍ତି ବାଦ୍ୟମାନ ।
ଆଲମ୍ୱ ପାଟଛତ୍ର ବୀରନେତମାନ ॥
ରଥଙ୍କର ପାତାଙ୍ଗ ଶହସ୍ର ଝଲକିବା ।
ତେଜମୟେ ସଇନି ବାହାର ହୋଇଯିବା ॥
ପୃଥ୍ୱୀ ଟଳ ଟଳ କମ୍ପଇ ବ୍ରହ୍ମାଣ୍ଡ ।
ଲହସଇ ଲଙ୍କ ନଗ୍ରସିଂହ ଖଣ୍ଡ ॥
ପାଦଭରେ ରେଣୁ ଯେ ଉଡ଼ିଲା ଗହଳେ ।
ଶୂନ୍ୟେଣ ଦେହ ହୋଇଲା କର୍ଦ୍ଦନ
ଝାଳେ ॥୫୦
ଏକର କହନ୍ତେ ଆରେକ ନ ଶୁଣି ।
ଯେକ ଆରକେ ଭାଳନ୍ତି ମନେ ପୁଣି ॥
ଏଡ଼େ ଥାଟ ଗୋଟା ପୋଷିଥିଲା କାହିଁ ।
ବାହାର ହୁଅନ୍ତେ ନ ଦିଶଇ ମହୀ ॥
ବାବୁ ଦଶଗ୍ରୀବ ଧନ୍ୟ ତୋର ପୁଣ୍ୟ ।
ଭଲା ସମ୍ଭାଳିଅଛ ଚତୁରାଙ୍ଗ ସନ୍ୟ ॥
କେତେକ ସଇନି ଅଛଇ ନ ଜାଣି ।
ଶ୍ରୀରାମ ହିଁ ଭଲା ପକାଉଅଛି ହାଣି ॥
ଏବେ ଆଜ ଜାଣିମାନା ଯୁଦ୍ଧର ବିଧାନ ।
ଆପଣେ ଯେବେ ଯୁଦ୍ଧ କରିବ
ଦଶାନନ ॥୬୦
ରାମ ରାବଣର ହୋଇବାକ ଯୁଦ୍ଧ ।
କେ କାହାକୁ ରଣେ କରିବ ପ୍ରାଣେ ବଧ ॥
ଦୁହେଁ ମହାରଥୀ କେହି ନୋହେ ଓଛ ।
ଏକକୁ ଆରେକ ଅଟନ୍ତି ସମକଛ ॥
କେ ବୋଲଇ ଶ୍ରୀରାମକୁ ନ ପାରଇ
ରାବଣ ।
ବଜ୍ର ପଟାନ୍ତର ଅଟଇ ତାର ବାଣ ॥
ଦେଖିଲଟିକି କୁମ୍ଭକର୍ଣ୍ଣ ପଡ଼ିଲା ତାର
ବାଣେ ।
ଯେବଣ ବୀରଙ୍କୁ ସକ୍ଷମ ନାହିଁ ତିନିପୁରେ
ଏ ରଣେ ॥

ଇନ୍ଦ୍ରଜିତ ମହିମାଯେ କହିଲେ ନସରି ।
କଟକରେ ପଶି ଲକ୍ଷ୍ମଣ ଗଲା ମାରି ॥୭୦
ଆବର ଅନେକ ପଡ଼ିଲେ ଅସୁର ।
ରାବଣ ହାରି ପୁଣ ଅଇଲା ଦୁଇବାର ॥
ହନୁମନ୍ତ ସୁଗ୍ରୀବର ଯେ ନ ଭାଜନ୍ତି ରଣେ ।
ତାହାଙ୍କୁ ଦେଖି ଅସୁରେ ଯେ ପଳାନ୍ତି
ଏଣେତେଣେ ॥
ଏବେହୋ ଆହୁରି ଦଣ୍ଡକେ ଶୁଣିମା ।
ଉଠନ୍ତା ଗଛପତ୍ର ଦେଖି ଜାଣି ନିନା ॥
ଯଦ୍ୟପି ଲଙ୍କାପତି ସାଧିଲା ଜଗତ ।
ଶ୍ରୀରାମର ବାଣେ ତାର ହୋଇଲାନି ଅନ୍ତ ॥
କେ ବୋଲଇ ରାବଣ ନୁହଇଟି ସାନ ।
ସୁରଗଣନ୍ତ ବଶ କଲାକ ଦଶାନନ ॥୮୦
ସଦାଶିବ ଦେବତା ପିତାମହ ବ୍ରହ୍ମା ।
ଏ ଦଶଗ୍ରୀବଙ୍କୁ କରନ୍ତି ଗାରିମା ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜିଣିଲା ତିନିପୁର ।
ଏଡ଼େ ସମ୍ପଦ ନ ପାଇଲେ କେବଣ ଅସୁର ॥
ରବିତଳେ ଜନ୍ମିଲେ ମରଣ ନିୟତ ।
ଆନବଳେ କରି ନୋହଇ ନା ହତ ॥
ନାରୟେଣ ପ୍ରଭୁ ନାଥ ସବୁଙ୍କରି ।
ତାହାର ବଳେ ହୁଅଇ ଆନବଳେ ନୁହଇ
ମାରି ॥
ବ୍ରହ୍ମରାକ୍ଷାସ ଯେ ରାବଣ ଅଟଇ ଜାତି ।
ସାଂଗ୍ରାମେ ପଡ଼ିବାର ତାର ମିଳଇ
ଯୁଗତି ॥୯୦
ପିତାଗୁଣ ଘେନି ଯେ ଅଘୋର ତପ କଲା ।
ମାତା ରାକ୍ଷାସୁଣୀ ଗୁଣେ ଜଗତ ଡରାଇଲା ॥
ଯେବଣ ପ୍ରାଣୀକି ଯେ ଡରନ୍ତି ଜଗତ ।
ତାହା ଥିଲେ କି ସଂସାର ହୋଏ ସୁସ୍ଥ ॥
କିମ୍ପା ବିଧାତା ତାକୁ ଥୋଇବ ଚିରକାଳ ।
ସୀତ୍ୟାକୁ ଆଣିଲା ଦିନୁଂ ପୂରିଲାନି କାଳ ॥
ଏସନେକ ଭାଳି ଭାଳି ପୁରଜନ ।
ଏଥୁ ଅନନ୍ତରେ ଚଳିଯାନ୍ତି ସନ୍ୟ ॥
ରଥଗଜ ଅଶ୍ୱ ଯେ ଅପାର ପାଦାନ୍ତି ।
ଚିହ୍ନ ଚିରାଳ ଚାମର ଉଡ଼ନ୍ତି ପନ୍ତି
ପନ୍ତି ॥୧୦୦

ବୀର ତୂର ଘାଏ କୁରୁମ ଉଛୁଳି ।
ଦ୍ୱାରେ ପୂର୍ଣ୍ଣକୁମ୍ଭ ଆବର କଦଳୀ ॥
ନ ବୁଝିବା ଲୋକଙ୍କୁ ଶିଖାଇଦ୍ୟନ୍ତି ବୁଦ୍ଧି ।
ଯେମନ୍ତେଣ ପାର ବାବୁ ରିପୁବଳ ସାଧି ॥
ଅସୁର ବଳ ବହୁତ ହୋଇଲେ ବିନାଶି ।
ବେଳେବେଳେ ବାନରେ ମାଇଲେ
ପଳାସି ॥
ଅଭିମାନ ସମୋଦ୍ରେ ବୁଡ଼ିଲା ଦଶଶିରି ।
ମନଦେଇ ଯୁଝିଲେ ରାଜା ପାଉ ଶିରୀ ॥
ଗଲା ଲୋକେ ବୋଲନ୍ତି ତୁମ୍ଭର
ପରସାଦେ ।
ଯେହିକ୍ଷଣି ରାମଙ୍କୁ ମାରିବୁ ଅପ୍ରମାଦେ ॥୧୦
ଶୁଣି ଧୂଆଂଧୁଇଂ ଶହସ୍ର ଝୁଣାଝୁଣି ।
ହାଇ ହାଇ ଶବଦ ସର୍ବତ୍ର ଲୋକେ ଶୁଣି ॥
ଘୋଡ଼ାଙ୍କର ହିଂସାରବ ଟାପୁଙ୍କର ତଡ଼ବଡ଼ି ।
ରଥଙ୍କର ଗର୍ଜନ କି ଆକାଶ ଘଡ଼ଘଡ଼ି ॥
ରାଜାଙ୍କ ଘାଗୁଡ଼ି ଘଣ୍ଟି ଝମଝମ ।
ବଜାଉରଙ୍କର ଠେସ ଛାଟେଣି ଦମଦମ ॥
ଅବିଛନ୍ନେ ବାଦ୍ୟ ବାଜଇ ବିକଟାଳ ।
ହେଳ ଘେନୁଅଛି ଆକାଶ ପାତାଳ ॥
ଚାରିଦ୍ୱାରେ ବେଗେ ବାହାର ହୋଏ ଥାଟ ।
ରାତ୍ର ପ୍ରହରେ ଥାଉଂ ଫିଟିଲା କବାଟ ॥୨୦
ଯୁଦ୍ଧକୁ ଯିବା ଲୋକେ ନିଦ୍ରାହିଁ ନଗଲେ ।
ଯେ ଯାହାର ସଜ ସଭିଏଂ ନିର୍ଭା କଲେ ॥
କାଲି ହୁଂ ଆଜ୍ଞା ଦେଇଛନ୍ତି ଲଙ୍କରାଏ ।
ରାତ୍ରକେ ସଇନି ସକଳ ସଜହୋଏ ॥
ପାହାନ୍ତି ପହରରୁ ଯେ ଯାହା ବଣ୍ଟାବାଟେ ।
ସେନାପତିମାନେ ବାହାର ଆଗ ଥାଟେ ॥
କାଳକେତୁ ଅଗ୍ନିକେତୁ ରଶ୍ମିକେତୁ ତିନି ।
ଏକଶିର ପଞ୍ଚଶିର ଯେହୁ ଭାଇ ବେନି ॥
ବିଗ୍ରୁଲାକ୍ଷ ଜ୍ୟୋତି ସାଗର ମହାକାଏ ।
ଉତ୍ତର ଗଡ଼ ଦ୍ୱାରେ ବାହାର
ହୋଇଯାଏ ॥୩୦
ଉତ୍ତମ ମହାରଥୀ ସହସ୍ରେକ ଶସ୍ତ୍ର ଘେନି ।
ଚାଳିଷି ଲକ୍ଷ ଯେ ପୟେଦାର ସଇନି ॥
ଅଇବ୍ରତେକ ଅଛନ୍ତି ଅଶ୍ୱଆର ।

ଦଶଲକ୍ଷ ଗଜ ଘେନି ମାହୁନ୍ତ ବାହାର ॥
ଦେଖିଣ ଦ୍ୱାରେଣ ଅଶୋକ ବିଶୋକ ।
ବଜ୍ରକପଚ ଦୃଢ଼କପଚ ଅମର ଅନେକ ॥
ସହସ୍ରଜିତ ଶତ୍ରୁଜିତ ଶ୍ରୋଣିତାକ୍ଷ ବୀର ।
ଅଜଏ ଅମୟେ ହୋଇଲେ ବାହାର ॥
ପୂର୍ବ ପନ୍ତାରେ ଦଶସହସ୍ର ରଥୀ ଘେନି ।
ରଥ ଗଜ ଘୋଡ଼ା ପାଦାନ୍ତି ସଇନି ॥୪୦
ସୁବଳୟା ଗିରିକି ରାତ୍ର ଥାଉଂ ଗଲେ ।
ଝାଡ଼ର ଉହାଡ଼େ ବୁଡ଼ା ଦେଇଣ ରହିଲେ ॥
ବାଦ୍ୟ ନ ବାଜଇ ନଶୁଭଇ ତୁଣ୍ଡ ।
ବୁଡ଼ା ପଡ଼ିଣ ରହିଲେ ତେଡ଼େ ଦଣ୍ଡ ॥
କୁମ୍ଭେକ ମହାସୁର ପ୍ରଶସ୍ତ ତିନି ।
ମହାପାରୁଶ ବିକଟ ଭାଇ ବେନି ॥
ପାଞ୍ଚକୋଟି ଗଜ ସନ୍ୟ ଆନ ନାହିଂ ।
ପୂର୍ବ ଦ୍ୱାରରେ ଏ ଗଲେ ବାହାର ହୋଇଂ ॥
ଗଡ଼ ସୀମାନ୍ତ ଛାଡ଼ି ପାଞ୍ଚଜଣ ଗଲେ ।
କୁଦା ହୋଇଣ ଆପଟେ ଜାଗିଣ
ରହିଲେ ॥୫୦
ପଶ୍ଚିମ ଦ୍ୱାରେ ପ୍ରମାର୍ଥ ଲୋହିତାକ୍ଷ ।
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳି ବିରୂପାକ୍ଷ ॥
ଚାରଣ ବିଚାରଣ ବଙ୍କା ଅସମୟେ ।
ଅନକୂଳ ଘେନି ଏ ବାହାର ହୋଇଯାଏ ॥
ଆଠ ସେନାପତି ବାହାର ସେ
ପଶ୍ଚିମଦ୍ୱାରେ ।
ରଥ ଗଜ ଅଶ୍ୱ ପାଦାନ୍ତି ସମ୍ଭରେ ॥
ଚାର ଜଣାଇଲା ଶୁଣିମା ଦଶଶିରି ।
ଚାରିଦ୍ୱାରେ ସନ୍ୟ ଗଲେକ ବାହାରି ॥
ଯହିଂ ଯହିଂ ରହିବାକୁ ଆଜ୍ଞା ଦେଇଅଛୁ ।
ତହିଂ ଯହିଂ ଆରୋହିଲେ ତୁ ଯାହା
ମନେଇଛୁ ॥୬୦
ଶୁଣି ଲଙ୍କପତି ଯେ ପରମତୋଷ ମନ ।
ଆପଣେ ସଜ ସେ ହୋଇଲେ ଦଶାନନ ॥
ନୀଳାରତ୍ନ ପିଢ଼ାରେ ବିଜେ କରିଥିଲା ।
ସୁବର୍ଣ୍ଣ ପାଦୁକା ଚଢ଼ିଣ ତହୁଂ ଚଳିଗଲା ॥
ରତ୍ନପଲଙ୍କରେ ଶୋଜାଇଅଛି ତୂଳୀ ।
ତହିଂ ଉଭା ହୋଇଲା ସେ ଦଶଇ ମଉଳି ॥

ଦେବାଙ୍ଗ ପାଟର ତୂଳୀ ସୂଚୀକମ ।
ସୁବର୍ଣ୍ଣର ପିତୁଳି ସେ ଅତି ଅନୁପାମ ॥
ତାହା ପିନ୍ଧି ରାବଣ ବାନ୍ଧିଲା ପାଗଯୋଡ଼ା ।
ନୀଳମଣି ମେଖଳା କମଳ ପାଖୁଡ଼ା ॥୭୦
ଶୁକଳ ଗନ୍ତା ପରିହରଣ ଉପରେ କବାଇଂ ।
ବ୍ରହ୍ମଜାତି ହୀରା ତିନିସରି ନାଇ ॥
ଅଭେଦକପଚ ଖଞ୍ଜିଲା ଉପରେ ।
ମଣିମୟେ ନେତ ଉଡ଼ାଇଲା ବାମକରେ ॥
ଦଶମୁଣ୍ଡେ ଦଶ ପାଗ ଭିନ ଭିନ୍ନ ପରି ।
ପଦ୍ମରାଗ ମାଣିକ୍ୟ ଟୋପର ନେଇ ଭରି ॥
ନବରତ୍ନେ ଜଡ଼ିତ ଦଶଇ ମୁକୁଟ ।
କସ୍ତୁରୀ ରେଖ ବସଇ ସୁନ୍ଦର ଲଲାଟ ॥
ବାହେ ବୀରନେତ ଉଡ଼ଇ ଫରହର ।
ମର୍କତର କଙ୍କଣ ଶୋହଇ ବେନିକର ॥୮୦
କର୍ଣ୍ଣରେ କୁଣ୍ଡଳ ଦିନକର ଜୋତି ।
କଣ୍ଠେଣ କଣ୍ଠମାଳ ଯେ ଶତେସରି ମୋତି ॥
ବିଦମୁଦି ବାହୁଟି ଶିକଳି କଙ୍କଣ ।
ବିବିଧ ପଦେକ ହୃଦରେ ଭୂଷଣ ॥
କଟିରେ କଟିମେଖଳା ତାହାଣେ ତୀକ୍ଷ
କାତି ।
ପୟରେ ନେପୁର ଦିନକର ଜ୍ୟୋତି ॥
ରାଜା ସଜ ହୁଅନ୍ତେ ଶୁଭଇ ଶଙ୍ଖଧ୍ୱନି ।
ହୁଳହୁଳି ଦିଅନ୍ତି ସକଳ କାମେନୀ ॥
ଆଗେ ପୂର୍ଣ୍ଣକୁମ୍ଭ ଚୂତ ପତ୍ରଡ଼ାଳ ।
କଦଳୀ ଗଛ ଶ୍ୱେତ ପାରୁଆ ମରାଳ ॥୯୦
ଶ୍ୱେତ ଚାମର ଉଡ଼ଇ ଚଉପାଶ ।
ଗୋରୋଚନା ଚିତା ଘେନିଣ ଦଶାଇସ ॥
ପ୍ରୋହିତ ଦେଲା ନେଇ ମଙ୍ଗଳ ଆଳତି ।
ବସିଣ ଅର୍ଘ୍ୟ ଘେନିଲା ଲଙ୍କପତି ॥
ବିଦ୍ୱଜନମାନେ ପଢ଼ନ୍ତି ଚତୁର୍ବେଦ ।
ଜଉତିଷେ ପଢ଼ନ୍ତିମଙ୍ଗଳ ଆଠପଦ ॥
ସୁସର ମହୁରୀ ବସନ୍ତ ରାଗେ ବାଜେ ।
ଆନନ୍ଦେ ଆସ୍ଥାନୁ ଉଠିଲା ଲଙ୍କରାଜେ ॥
ନିଃଶ୍ୱାସ ଖୋଜିଣ ଚରଣ ବଢ଼ାଇଲା ।
ବେଜଜାଣି ଟମକିଆ ଟମକ
ବଜାଇଲା ॥୧୦୦

ଶିରରେ ଶ୍ୱେତଛତ୍ର ଉଡ଼ଇ ଫରହର ।
ଶୁକ ସାରଣଙ୍କର କରେ ଦେଇ କର ॥
ପୁଷ୍ପେକ ବିମାନେ ବିଜେକଲା ଯାଇଂ ।
ସୁରଗଣେ ବିଚାର କରନ୍ତି ସ୍ୱର୍ଗେ ଥାଇଂ ॥
ରାବଣ ଦିଗବିଜେ କରୁଅଛି ପୁଣି ।
ନପୁଣ ରଘୁନାଥ ନ ପାରନ୍ତି ଜିଣି ॥
ଛପନଗଣ୍ଡା ଯୁଗକୁ ଏହାର ବୟେସ ।
ଶ୍ରୀରାମର ଆଜକୁ ବୟେସ ବତିଶ ॥
ସାଂଗ୍ରାମରେ ଜିଣନ୍ତା ଅଟଇ ଲଙ୍କପାଳ ।
ଅସୁରଙ୍କର ମାୟା ଦେବେ ଅଗୋଚର ॥୧୦
ପୁଣି ବିଚାରନ୍ତି ରାଘେବ ବିଷ୍ଣୁଦେହୀ ।
ଦଶଗ୍ରୀବର ମୃତ୍ୟୁ ଅଛଇ ଏହାର ତହିଂ ॥
ଏହିକ୍ଷଣି ଭେଟ ପଡ଼ିଲେ ନାଶଯିବ ।
ରାବାୟେଣ ଯୁଦ୍ଧ ଆଜ ହିଂ ସେ ହୋଇବ ॥
ଯେତେ ଦୁଷ୍କୃତ ଥିଲା ଆମ୍ଭ ଅଙ୍ଗେ ।
ପାପକ୍ଷୟେ ଗଲା ରାଘେବ ପ୍ରସଙ୍ଗେ ॥
ଆଜହୁଂ ସୁସ୍ଥ ହୋଇବ ସ୍ୱର୍ଗପୁର ।
ଶ୍ରୀରାମ ନାରାଜେ ଯେବେ ମରଇ ଅସୁର ॥
ଏସନେକ ବୋଲି ଭାଳନ୍ତି ସୁରଗଣ ।
ଏଥୁ ଅନନ୍ତରେ ପରମରସ ଶୁଣ ॥୨୦
ପୁଷ୍ପେକ ବିମାନେ ରାବଣ ବିଜେ କଲା ।
ଲକ୍ଷେକ ଅଶ୍ୱ ତହିଂ ଅଛଇ ଯୋଚିଲା ॥
ଚିହ୍ନ ଚିରାଳ ତହିଂ ଉଡ଼ି ବୀରନେତ ।
ଢୋଲ ଦମା ଟମକ ବାଜଇ ବହୁତ ॥
ଜ୍ୟେଷ୍ଠ ଶୁକ୍ଳ ପକ୍ଷ ଅଷ୍ଟମୀ ଶନିବାର ।
ଉତ୍ତରା ଫାଲଗୁନୀ ନକ୍ଷତ୍ର ରାବଣକୁ ସମ୍ପଦ
ତାର ॥
ଧୃତି ନାମେ ଯୋଗ କରଣ କଇଳବ ।
ଦୁଇଘଡ଼ିମାନେ ରାବଣ ଚଳିବ ॥
ଲକ୍ଷେକ ଶଙ୍ଖ ଫୁରଇ ଘନ ଘନ ।
ଧୀରେ ଧୀରେ ଚଳଇ ପୁଷ୍ପେକ
ବିମାନ ॥୩୦
ଆଗରେ ନୃତ୍ୟ କରନ୍ତି ବିଳାସୁଣୀ ।
ପଞ୍ଚମ ସୁରେ ଗୀତ ଗାବନ୍ତି ଗାୟେଣୀ ॥
ମର୍ଦ୍ଦଳ କଂସାଳ ତାଳ ତାଳି ବୀଣା ।
ବହୁରୀ ଶବଦ ସବୁ ତହୁଂ ଜିଣା ॥

ବଇଂଶୀ ଅୟେଂଳାବେଣୀ ଘଣ୍ଟି ଘଣ୍ଟ
ବାଜେ ।
ଚତୁରାଙ୍ଗ ବଳ ସମଦଣ୍ଡେ ସାଜେ ॥
କୁସୁମ ସିଞ୍ଚନ୍ତି ଚନ୍ଦନ ଛଡ଼ା ଦେଇ ।
ଶତ୍ରୁ ମାରି ଉଭା ହୁଅସି ଗୋସାଇଂ ॥
ଅସୁର କୁଳର ଫେଡ଼ସି ଅଭିମାନ ।
ରିକ୍ଷ କପି ମର୍କଟକୁ ନବୁଝିବୁ ସାନ ॥୪୦
ଏସନକେ ବୋଲି ବୋଲନ୍ତି ଲୋକମାନେ ।
ଶୁଣି ଖଡ଼ଗ ଧରି ଝମକାଇ ଦଶାନନେ ॥
ନବରୁ ବାହାର ହୋଇଲା ଦେବ ରଥ ।
ଦିଗପାଳ ସମାନେ ଦିଶଇ ଦଶମାଥ ॥
ବାମକରେ ଧରି ଅଛଇ ଗଜ କୋନ୍ତ ।
ସାଙ୍ଗେଣ ସନ୍ୟ ଅଛି ତିରିଶ କୋଟି ମାହୁନ୍ତ ॥
ତିନିଶତ ନାତି ପଚିଶ ପୁତ୍ର ଘେନି ।
ଅଠର କ୍ଷେଭଣୀ ପଏକାର ସଇନି ॥
ଷୋଳକୋଟି ରଥୀ ତାହାର ସମାନେ ।
ଚାରି ମର୍ଭୁତ ବାଉ ବେଗ ଯାନେ ॥ ୫୦
ଥାଟ ଚଳି ଯାନ୍ତେ ମହୀ ଟଳମଳ ।
ମାଳଶ୍ରୀ ଖେଚଡ଼େ ବଜାନ୍ତି ମର୍ଦ୍ଦଳ ॥
ଘୁମୁରା ଘୁମୁଘୁମା ଗୁଡୁଗୁଡ଼ି ଦମା ।
ରାଜା ବିଜେ ଦେଖି ଧାମନ୍ତି ସର୍ବବାମା ॥
ଆଲମ୍ୱ ପାଟଛତ୍ର ବିଲମ୍ୱ ଉଦଣ୍ଡ ।
ରଥଘୋଷ ଘାଏ କମ୍ପଇ ନବଖଣ୍ଡ ॥
ହୋଇଲା ମହାଗୋଳ ଲଙ୍କ ମହାରାଷ୍ଟ ।
ଚଉଷଠି ଦାଣ୍ଡେ ପଶିଣଯାନ୍ତି ଥାଟ ॥
ନଟଭାଟ କଏବାର କରନ୍ତି ଟହଳ ।
ଶୂନ୍ୟେ ଥାଇ ଦେଖନ୍ତି ସୁର ଆଖଣ୍ଡଳ ॥୬୦
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ସୁବଳୟା ପର୍ବତେ ଅଛନ୍ତି ରଘୁପତି ॥
ଅରୁଣ ପ୍ରକାଶନ୍ତେ ଶୁକଳବର୍ଣ୍ଣ ପୂର୍ବ ।
ନିଦ୍ରା ତେଜିକରି ଉଠିଲେ ରାଘେବ ॥
ସେନାପତିମାନେ ଦ୍ରଶନ ଆସି କଲେ ।
ନିତ୍ୟକର୍ମ ସାରିବାକୁ ରାମ ନଦୀକୂଳକୁ
ଗଲେ ॥
ଯେ ବିଧିବିଧାନ ସାରିଲେ ଦିବ୍ୟରୀତି ।
ବାହୁଡ଼ି ନବରକୁ ଅଇଲେ ରଘୁପତି ॥

କୃଷ୍ଣାଜିନ ଛାଲେ ବସିଲେ ରାମ ଯାଇଂ ।
କାଣ୍ଡ ସଳଖନ୍ତି ଦ୍ରୋଣ ଆଗେ ଥୋଇ ॥୭୦
ଅଗସ୍ତି ଦେଲା ଧନୁରେ ରାମ ଉଠି ଦେଲେ
ଗୁଣ ।
କଷି ଗୁଣ ଟଙ୍କାର କରନ୍ତି ରାମ ରାଣ ॥
ବିଭୀଷେଣକୁ ଚାହିଂ ବୋଲନ୍ତି କେମନ୍ତ ।
ମାରିପାରିବାଟିକି ହୋ ମେଘନାଦର ତାତ ॥
ଏ ଘାନ୍ତି ଅଇଲେ ବୁଝିବାନା କଥା ।
ଭେଟ ପଡ଼ିଲେ କି ଆଉ ବଞ୍ଚିବ କି
ଦଶମଥା ॥
ଜଗତ ସଂସାର ମଟ୍ଟିଲା ପ୍ରାୟେ ମଣଇଂ ।
ଲକ୍ଷ୍ମଣ ଶକତି ଯେବେ ତାହାକୁ ଶୁଝାଇ ॥
ବାଦ ବିବାଦ ଯେ ବଢ଼ାଇଲେ ବଢ଼ଇ ।
ନାନାକଥା ମାନ ଛିଣ୍ଡାଇଲେ ଛିଣ୍ଡଇ ॥୮୦
ରାବଣ ଅଇଲେ ଯୁଝିବି ଆଜ ମୁହିଂ ।
ରିକ୍ଷ କପି ମୋର ଥିବେ ତୁନି ହୋଇ ॥
ଜାଣିମାନା କେତେ କ୍ଷତ୍ରୀ ଅଟଇ ଅଚାର୍ଗଳ ।
ଏହି ହସ୍ତେ ତାହାର ଫୋଡ଼ିବି ବକ୍ଷସ୍ଥଳ ॥
ଏତେ ବୋଲି ଅଗସ୍ତିଙ୍କ ଦେଲା ବ୍ରହ୍ମ ଶର ।
ଘେନି ଯୂଥପତିଙ୍କି ଦେଖାନ୍ତି ରଘୁବୀର ॥
ବୋଇଲେ ଯେ ଶସ୍ତ୍ରେ ହତ ହୋଇବ
ଦଶମାଥ ।
ଯମଦେବତାର ଜୀବନ ହାରିତ ସାମରଥ ॥
ଯେହାର ଘାତେ ନ ବ୍ରତନ୍ତି ଦେବାସୁର ।
ଯେ ବାଣ କାହାକୁ ହିଂ ନ ବିନ୍ଧିବୁ
ରଘୁବୀର ॥୯୦
ବ୍ରହ୍ମାର ପ୍ରାଣ ଏ ପାରଇ ନାଶକରି ।
ତୁ ରାମ ମନ୍ତ୍ରିଣ ବିନ୍ଧିବୁ ମନେଧରି ॥
ଆନବେଳେ ଶସ୍ତ୍ର ନ ଚଳଇ ହାଦେ ।
ଶଙ୍କର ଘେନି ପଶିଲେ ବଳେ ତ୍ରିପୁରର
ଯୁଦ୍ଧେ ॥
ଗୁଣ ବସାନ୍ତେଣ ଦ୍ରୋଣ ଜଳିଗଲା ।
ସେ ବାଣ ତେଜ ଲାଗି ଅସୁର କ୍ଷୟ ଗଲା ॥
ପୁଣ ଶୂନ୍ୟେ ଆସି ହର ଆଗେ ହୋଇଲା ।
ବାହୁଡ଼ାଇ ରୁଦ୍ର ବ୍ରହ୍ମାଠାରେ ଦେଲା ॥
ଆଣି ପିତାମହ ସମର୍ପିଲାକ ମୋତେ ।

ମୁହିଂ ଶ୍ରୀରାମ ହୋ ଦେଉଅଛି
ତୋତେ ॥୧୦୦
ଏସନେକ ବୋଲି କହିଲେ ବ୍ରହ୍ମମୁନି ।
ସେଦିନୁ ବ୍ରହ୍ମ ଅସ୍ତ୍ର ସମ୍ଭାଳି ଅଛି ଘେନି ॥
ଏବେ ବିଚାରିଲି ହୋଇଲା କାର୍ଯ୍ୟସିଧ୍ୟ ।
ରାବଣ ଜାଣଇ ଅପୂର୍ବ ମାୟାଯୁଦ୍ଧ ॥
ଏ ନାରାଜ ଘେନି କରିବି ତାକୁ ନାଶ ।
ଏସନେକ ସମୟେ ନୀଳ ମିଳିଲା
ରାମପାଶ ॥
ପାଏ ପୋଡ଼ି ଶୋଇ ମଥାରେ ହାଥ ଦେଲା ।
ନୀଳର ଦ୍ରଶନ ହନୁମନ୍ତ ଜଣାଇଲା ॥
ରଘୁନାଥ ଚାହିଂ ପଚାରନ୍ତି ହସି ।
କିସ କିସ ବାରତା ହୋ ଘେନିଅଛୁ
ଆସି ॥୧୦
ରାତ୍ରେଣ ବଡ଼ଗୋଳ ଶୁଭିଲା ଲଙ୍କରାଷ୍ଟ୍ର ।
ଅସୁର କୁଳରାଏ ସାଜିଲାକି ଥାଟ ॥
ଟମକ ନିଶାଣତ ବାଜଇ ଘନ ଘନ ।
ଆପଣେ କି ଯୁଝି ଆସିବ ଦଶାନନ ॥
ନୀଳ ସେନାପତି ଯୋଡ଼ଇ ବେନିକର ।
ହୋଇ ଦେବ ଥାଟ ସାଜିଲା ଦଶଶିର ॥
ଆଜର ରଜନୀ ଉଚାଟ ଲଙ୍କଦେଶେ ।
କୋଳାହଳ ନିଶାଣ ବାଜଇ ଚଉପାଶେ ॥
ଆସ ଆସ ଚାଲ ଚାଲ ଧାଅଂ ଧାଅଂ ଡାକ ।
ନିଦ୍ରା ନ ଗଲେ ଦେବ ଲଙ୍କାର ଯେତେ
ଲୋକ ॥୨୦
ତାହା ଜାଣି ସିନା ଅଇଲି ଛାମୁକୁ ।
ଆପଣେ ଲଙ୍କପତି ସଜ ସାଂଗ୍ରାମକୁ ॥
ଏତେ ବେଳ ଯାଏ ନିହାଇ ଦିଶଇ ଥାଟ ।
ମୁଖ ଗୋଳେ ଉଛୁଳି ପଡୁଛି ଲଙ୍କରାଷ୍ଟ ॥
ଉଡ଼ାନ୍ତି ବାରତା ପାଇଲି ଗୋସାଇଂ ।
ଆପଣେ ଆଜ କଟକାଇ କରିବ
ଲଙ୍କସାଇଂ ॥
ଶୁଣି ଶ୍ରୀରାମ ସୁଗ୍ରୀବକୁ ଚାହିଂ ।
ଶୁଣିଲଟିକି ମଇତ୍ର ହୋ ନୀଳ ଯାହା କହି ॥
କପିରାଜ ବୋଇଲା ଶୁଣିମା ରଘୁପତି ।
କୁମ୍ଭକର୍ଣ୍ଣର ପ୍ରାୟେ କରିବି ଏ ଘାନ୍ତି ॥୩୦

ହୋଇ ହୋଇ ବୋଲି ବୋଲନ୍ତି ରାମରାଏ ।
ଦୃବିନ୍ଦ ସେନାପତି ଛାମୁରେ ଜଣାଏ ॥
ଭୋଦେବ ଲଙ୍କାରୁ ଯେ ବାହାର ହେଲେ
ସନ୍ୟ ।
ଦିଶୁଅଛି ଦେବ ପାତାଂଗ ଧ୍ୱଜ ଚିହ୍ନ ॥
ଶୁଣି ରଘୁପତି ଚାହିଂଲେ ନିରୋପି ।
ଚତୁରାଙ୍ଗ ବଳ ଆସନ୍ତି ମହୀବ୍ୟାପି ॥
ରଥୀ କୁଦାକୁଦା ରଥ ପନ୍ତି ପନ୍ତି ।
ଝାଙ୍କ ଝାଙ୍କ ହୋଇ ରାଉତେ ଝଲକନ୍ତି ॥
ଏକମୁଖ ହୋଇ ଅସୁରେ ବାହାର ହୋଇ ।
ଘୋର ଶବଦରେ ପୃଥିବୀ କମ୍ପଇ ॥ ୪୦
ଦେଖିଣ ଶ୍ରୀରାମ ଆତଙ୍କ ମନ କଲେ ।
କାଖବାଟେ ଝାଳମାନ ଗଳି ପଳାଇଲେ ॥
ମନେ ବିଚାରନ୍ତି ଏ ଘାନ୍ତି ବଡ଼ ଗାଢ଼ ।
ନ ପୁଣ ମାୟାରେ ଜିଣଇ ମୋତେ ମୂଢ଼ ॥
ଏତେ ଭାଳି ଦେବ ଅଙ୍ଗଦକୁ ବୋଲି ।
ଠଣାମାରି ଦଇତେ ଆସନ୍ତି ପୁଣ ପେଲି ॥
ନୀଳ ସହିତେଣ ସେନାପତିମାନେ ।
କେହି ନ ରହନ୍ତୁ ମୋହୋ ସନ୍ନିଧାନେ ॥
ବିଭୀଷେଣ ସୁଗ୍ରୀବର ଜମେବ ହିଂ ଯାନ୍ତୁ ।
ରିକ୍ଷ କପିବଳ ଗୋଟିଏ ନଥାନ୍ତୁ ॥୫୦
ହନୁମନ୍ତ ଲକ୍ଷ୍ମଣ ସୁଷେଣ ପନଶିଳ ।
ଗନ୍ଧମାର୍ଦ୍ଦନ ସମ୍ପାତି ବିବିଧ ନଳନୀଳ ॥
ଦଶକାଳ ବୃଦ୍ଧ ଶଉରୀ ସେନାପତି ।
ଏମାନେ ରହିଣ ଥାଆନ୍ତୁ ମୋର କତି ॥
ରାବଣ ଅଇଲେ ପଠିଆଅ ମୋତେ କହି ।
ଆଗିଆଣି ଦଣ୍ଡେ ଯୁଝ ତୁମ୍ଭେ ଯାଇଂ ॥
ଅନେକ କୁମନ୍ତ ଜାଣଇ ଲଙ୍କପତି ।
ପରିଘାଇ ସମର କରିବ ଏ ଘାନ୍ତି ॥
ରାବଣକୁ ଦେଖିଲେ ଆସିବ ଜାଢ଼ି ଦେଇ ।
ବିବିଧ ମାରେଣୀ ସେ ମାରିବ
ଲଙ୍କସାଇଂ ॥୬୦
ଇନ୍ଦ୍ର ଦେବତା ତାକୁ ସମରେ ଡରଇ ।
ନାମ ଶୁଣିଲେ ବିଧାତା ଭୟେ କରଇଂ ॥
ତୁମ୍ଭେ କି ସାଂଗ୍ରାମେ ତାହାକୁ ଭାର୍ଜନ ।
ମୁହିଂ ସେ ତାହାର ହରିବି ଜୀବନ ॥

ଏ କଥା କହନ୍ତେଣ ପଡ଼ିଲେ ଥାଟ ମାଡ଼ି ।
ଆଗିଆଣି ରକ୍ଷ କପି ପଳାଇଲେ ଠଣା ଛାଡ଼ି ॥
ଶ୍ରୀରାମ ବୋଇଲେ ହୋ ଅଇଲା ଲଙ୍କପତି ।
କେମନ୍ତେ ସନ୍ୟ ମୋର ନ ପାଇବେ ଭୀତି ॥
ଆମ୍ଭେ ସେ ଯିବା ହୋ ନଥିବାକ ଏଥ ।
ଆପଣେ ଯେବେ ସମ୍ମର୍ବରେ ଅଇଲା
ଲଙ୍କମାଥ ॥୭୦
ଆପଣାର ନାମ ଧରି ମନ୍ତ୍ରିଲେକ ଅଙ୍ଗ ।
ଯେଣେ ସେ ସାଂଗ୍ରାମେ ନୋହିବି
ମନଭଙ୍ଗ ॥
ଶୁଚିବନ୍ତ ହୋଇ ଶିରେ କର ଦ୍ୟନ୍ତି ।
ବଜ୍ରହୁଂ ବଜ୍ର ତୁ ହୁଅସି ବୋଲନ୍ତି ॥
ରାଘବ ରକ୍ଷା ମୋ କରନ୍ତୁ ମୂଧୁନି ।
ଯାହାକଇ ଚିନ୍ତା କରନ୍ତି ସୁରମୁନି ॥
ଦଶରଥ ଆତ୍ମଜ ମୋର କପାଳ କରୁ ରକ୍ଷା ।
ଲଲାଟ ଛୁଇଂଣ ବୋଲନ୍ତି ରଘୁବଛା ॥
କଉଶୁଲାଙ୍କୁ ସୁମରି ନୟନେ କରଦ୍ୟନ୍ତି ।
ନୟନ ଦୁଇ ରକ୍ଷା କରିବେ
ବଇନେତ୍ରୀ ॥୮୦
ବିଶ୍ୱାମିତ୍ର ପ୍ରିୟ ମୋର ଶ୍ରବଣ ରକ୍ଷାକରୁ ।
ଅହିଲା ତାରିଲା ଯେହୁଂ ଏ କର୍ଣ୍ଣକୁ
ରକ୍ଷାକରୁ ॥
ସଉମିତ୍ରୀ ସୋଦର ମୁଖ ଯେ ଉଦ୍ଧରୁ ।
ଖର ଦୂଷଣ ବଇରୀ ମୋ ନାସିକା ରକ୍ଷାକରୁ ॥
ତାଲୁ ଚୂଳ ମୋର ଯେ ଶ୍ରୀରାମ କରୁ ରକ୍ଷା ।
ରଘୁନନ୍ଦନ ମୋ ଜୀବନ କରୁ କକ୍ଷା ॥
ଭ୍ରଥର ଅଗ୍ରଜ ମୋର କଣ୍ଠ ରକ୍ଷାକରୁ ।
ବୀରାଉଧ ବଇରୀ ମୋ କନ୍ଧ ଯେ ଉଦ୍ଧାରୁ ॥
ସଦାଶିବ ଧନୁ ଭାଙ୍ଗିଲା ଯେବଣ ଦେବ ।
ସେହି ମୋହୋର ଭୁଜ ଯୁଗଳ ରଖିବ ॥୯୦
ସୀତାପତି ମୋହାର କରିବାକ ରକ୍ଷା ।
ସମରେ ଘେନିଲି ମୁଂ ରାମକପଚ ଦୀକ୍ଷା ॥
ଦୟା କରନ୍ତୁ ମୋତେ ଜମଦଅଗ୍ନିଜିତେ ।
ଧର୍ମ ଆଶ୍ରେ କଲି ମୁଂ ଦଶରଥଙ୍କର ପୁତ୍ରେ ॥
ଖର ଧ୍ୱଂଷଣ ଅଇରି ମୋର ରଖନ୍ତୁ ମଧ୍ୟସ୍ଥାନ ।
ଜିହ୍ୱା କମଳ ରଖନ୍ତୁ ମୋର ଆଶ୍ରିତ
ଭଗବାନ ॥

ସୁଗ୍ରୀବର ଆଶ୍ରିତ ମୋର କଟୀ ରକ୍ଷାକରୁ ।
ହନୁମନ୍ତ ପ୍ରଭୁ ମୋର ସଙ୍କଟୁ ଉଦ୍ଧାରୁ ॥
ରଘୁକୁଳ ତିଳେକ ମୋହୋର କର କରୁ
ରକ୍ଷା ॥୧୦୦
ରାବଣକୁ ମାଇଲେ ମୋହୋର ରହିବ ହାଦେ
କକ୍ଷା ॥
ପିତାର ସୁକୃତ ମୋର ଜାନୁ ଯେ ଉଦ୍ଧାରୁ ।
ଦଶମାଥ ବଇରୀ ମୋର ଜଂଘ ରକ୍ଷାକରୁ ॥
ଅଖିଳ ବପୁ ମୋର ଶ୍ରୀଅଙ୍ଗକୁ ରଖୁ ।
ଅଷ୍ଟାଙ୍ଗ ଶ୍ୟରୀର ହୋଇଣ ଉପେଖୁ ॥
ଏତେବୋଲି ରଘୁନାଥ ଛୁଇଂଲେ
ସ୍ଥାନମାନ ।
ଅତି ଆନନ୍ଦେଣ ଭାଳନ୍ତି ମନେମନ ॥
ମୁହିଂ ସେ ମୋତେ ରଖିତ ସାମରଥ ।
ମୁହିଂ ସେ ଅଟଇ ଦେବାଧିଦେବ ନାଥ ॥
ମୋତେ କି ସମାନ୍ୟ ଅଛଇ ଆନଜଣ ।
ମୁହିଂ ସେ ନରକୁଂ ଆଶ୍ରିତ
ନାରାୟେଣ ॥୧୦
ଯାହା ସେ ସୁମରି ମୁଂ ଅଙ୍ଗ କପଚିଲି ।
ସଂଗ୍ରାମେ ଜୟେ ହୋଇବି ବୋଲିଣ
ବୋଇଲି ॥
ଆଜୁଂ ଯେ ମାହାମନ୍ତ୍ର ହୋଇବ ସାରସ୍ୱତ ।
ଏହା ଯେ ସୁମରିବ ତରିବ ନିଅତ ॥
ବିଶ୍ୱାମିତ୍ର ଋଷି ଅଟନ୍ତି ମୋର ଗୁରୁ ।
ଯେ ଯେହା ସୁମରିବ ସାଂଗ୍ରାମେ ଉତୁରୁ ॥
ମୋହର ନାମ ଜପିବ ଥାନ ମାନ ଧରି ।
ବିଶ୍ୱାମିତ୍ର ଋଷିଙ୍କୁ ହୃଦରେ ସୁମରି ॥
ବଜ୍ରହୁଂ ଆଣ୍ଡ ହୋଇବ ତାହାର କାଏ ।
ଗ୍ରହ ଦୋଷୁଂ ବଞ୍ଚି ମହାସୁଖ ପାଏ ॥୨୦
ଜଳେ ନ ବୁଡ଼ିବ ଖଡ଼ଗେ ନଛିଡ଼ିବ ।
ପବନେ ନ ଉଡ଼ିବ ଅଗ୍ନିରେ ନ ପୋଡ଼ିବ ॥
ଯଶଶିରୀ ଆୟୁଷ ବର୍ଦ୍ଧିତି ତାହାର ।
ଯୋଗବଳ ପ୍ରାପତ ଅମିଅ ଆହାର ॥
ସର୍ବମଙ୍ଗଳ ସର୍ବକାର୍ଯ୍ୟ ସିଦ୍ଧ ।
ଯେହୁ ରାମକପଚ ପଢ଼ିବ ଯେହୁ ବିଧ ॥
ଏତେ ବୋଲି ଦେବ ଶ୍ରୀକ୍ରପୂର ଗୁଣ୍ଡି ।

ଅଷ୍ଟାଙ୍ଗ ଶରୀରେ ହୋଇଲେ ଦେବ ମଣ୍ଡି ॥
ଶ୍ରୀରାମ କବଚ ବୀରଧ୍ୱ ସୂର୍ଯ୍ୟସେହ୍ନା ।
ବାମେ ଛୁରୀ ନେତ ବୀରବର ବାନା ॥
ସୀତାର ମଣିଗୋଟି ଲାଇଲେ କଣ୍ଠେ ନେଇ ।
ତୁଳସୀକାଠମାଳି ଆଭରଣ ରଘୁସାଇଂ ॥
ସୀତାର ଅମଳାଣ ଶାଢ଼ୀ କଟିରେ ବେଢ଼ାଇଲେ ।
କୁପୂର ଲବଙ୍ଗ ମିଶାଇ ଚୋବାଇଲେ ॥
ରୁଦ୍ରାକ୍ଷ କୁଣ୍ଡଳ ଶୋହଇ କର୍ଣ୍ଣତଟ ।
ପୁଣଂ ଚାନ୍ଦିଆ ମାଳ ଲମ୍ବଇ ହୃଦତଟ ॥
ସର୍ବାଙ୍ଗେ ଶୋହଇ ସନ୍ୟାସ ଅଳଙ୍କାର ।
ଜାଇ କୁସୁମେ ସେ ମଣ୍ଡିଲେ ପଟାଭାର ॥
ଗଳାରେ ଶ୍ୱେତପଦ୍ମ ମାଳେକ ଆଭରଣ ।
କୁଇ ମାଳା ଦଏଣା ଲାଇଲେ ରଘୁକୁଳ ରାଣ ॥୪୦
ତିନିସରି କୃଷ୍ଣ ତୁଳସୀ ମାଳା ଲାନ୍ତି ।
ଚଉସରି ଧବଳ ବକୁଳ ଲମ୍ବାନ୍ତି ॥
ପଞ୍ଚ ବନି ମାଳେ ଲାଇଲେ ଗୋସାଇଂ ।
ସପତ ସରି ମନ୍ଦାର ମାଳେ ଲାଇଂ ॥
କପୋଳେ କସ୍ତୁରୀ ଘେନିଲେ ଆଡ଼କେରା ।
କସ୍ତୁରୀରେଖ ନିଶ ଉଡ଼ଇ ଫରହରା ॥
ମଧୁର ମୂରତି କୋଟି କାମତେଜ ।
କନ୍ଧେ ଅକ୍ଷୟେ ତ୍ରୋଣ ଭିଡ଼ିଲେ ଦେବରାଜ ॥
ପ୍ରଶୁରାମ ଦେଲା ଧନୁରେ ଗୁଣ ଦ୍ୟନ୍ତି ।
ପଇତା ଛନ୍ଦେ ତାହା ଅଙ୍ଗେଣ ନାଆନ୍ତି ॥୫୦
ଅଗସ୍ତିଙ୍କ କୋଦଣ୍ଡ ଦକ୍ଷିଣ କରେ ଧରି ।
ଗୁଣ ଦେଇଣ ଆମଞ୍ଚିଲେ ବେଳ ଚାରି ॥
ବଳ ଆକ୍ରେଷିଣ ଗୁଣ ଟଙ୍କାର କଲେ ।
ମୃଧୁନି ଅଙ୍ଗୁଷ୍ଠିରେ ଗୁଣ ଆମଚିଲେ ॥
ଶରପଥ ଛାଟେଣି ବାନ୍ଧିଲେକ ସଜ ।
ଅଙ୍ଗଡ଼ାବ ଖଣ୍ଡା ବାନ୍ଧିଲେ ରାମରାଜ ॥
ବୀରବର ବାନା ଅସରଳା ସୂତା ।
କାନ୍ଧେଣ ଖୋଷିକରି ବାନ୍ଧିଲେ ପଇତା ॥
ଦାଢ଼ୀରେ ହସ୍ତଲାଇ ବୋଲନ୍ତି ଆଇ ଆଇ ।
କାହିଂକି ଯିବୁ ଆଜ କୁମ୍ଭକର୍ଣ୍ଣ ଭାଇ ॥୬୦

ଏସନେକ ସମୟେ ଶୁଭଇ ଶଙ୍ଖଧ୍ୱନି ।
ସ୍ୱର୍ଗପୁରେ ଥାଇ ଦେଖନ୍ତି ସୁରମୁନି ॥
ସଜହୋଇ ରାମ ବସିଲେ ମୃଗଛାଲେ ।
ଗୋରଚନା ଚିତା ଜମ୍ୱେବ ନେଇଂ ଦେଲେ ॥
ଛତ୍ରିବର ବୋଲି ସିନ୍ଦୂର ଟୀକାରେ ଦିଅନ୍ତି ।
ମଙ୍ଗଳ ଆଳତି ଘେନିଣ ବନ୍ଦାନ୍ତି ॥
ଶିରରେ ଖୋଷିଲେ ତ୍ରିଶାଖା ଶ୍ୱେତଦୁବ ।
ଶତ୍ରୁମାରି ଉଭା ହୁଅସି ରାଘେବ ॥
ଏସନକ ବୋଲି ଛାମୁରୁ ଆଡ଼େ ହୋନ୍ତି ।
ସାମବେଦ ବାଣୀ ଆଧ୍ୟାନ କରନ୍ତି ॥୭୦
ସୁଷେଣ ମନ୍ତ୍ରୀବର ମଙ୍ଗଳ ପାଠ ପଢ଼ି ।
ଯେସନେକ ବେଳେ ବେଜ ହୋଇଲା ତିନି ଘଡ଼ି ॥
ଯେକ କପିଯେକ ଜଣାଇଲା ଯାଇଂ ।
ଭୋଦେବ ସାଂଗ୍ରାମକୁ ଅଇଲା ଲଙ୍କସାଇଂ ॥
ଆଗିଆଣି ଦଣ୍ଡେ ଆସିଛନ୍ତି ପାଞ୍ଚସେନା ।
ଚତୁରାଙ୍ଗ ବଳ ଦେବ ନ ଯାଇ କଳଣା ॥
ଶୁଣିଣ ଶ୍ରୀରାମ ଉଠିଣ ଉଭା ହୁଅନ୍ତି ।
ଦକ୍ଷିଣ କରେ ଧନୁ ନାରାଜ ଧରନ୍ତି ॥
ବାମେଣ କୋଦଣ୍ଡ ଯେ ବାଳଅର୍କ ଜାଣି ।
ବିଷ୍ଣୁଙ୍କୁ ସୁମରି ପାଦ ବଢ଼ାଇଲେ ପୁଣି ॥୮୦
ପବନ ବେଳ ଖୋଜି ସୀତା ରୂପ ଚିନ୍ତି ।
ଯୁଦ୍ଧ ଦେଖିଣ ଯେ ରୋମ ଟାଙ୍କୋରାନ୍ତି ॥
ଶ୍ରୀରାମ ଚଳନ୍ତେ ବାଜଇ ବାଦ୍ୟମାନ ।
ଏସନେକ ସଜ ଯେ ସୁମିତ୍ରା ନନ୍ଦନ ॥
ସୁଗ୍ରୀବର ରାଜା ହୋଇଲା କାଛେଣୀ ।
ସର୍ବାଙ୍ଗେ ମଣ୍ଡି ହୋଇଲା ନାନା ମଣି ॥
ବିଭୀଷେଣ ସଜ ଦେବଙ୍କୁ ଦୁର୍ଲ୍ଲଭ ।
ସ୍ୱର୍ଗେଣ ପ୍ରଶଂସା କରନ୍ତି ଗନ୍ଧର୍ବ ॥
ହନୁମତ ଅଙ୍ଗଦ ଶଉରୀ ସେନାପତି ।
ବୀରତୂର ବଜାଇ ସଜ ହୋଇଯାନ୍ତି ॥୯୦
ନଳନୀଳ ସୁଷେଣ ଗନ୍ଧମାଦନ ।
ରୋଷଭରେ ରଡ଼ି ଛାଡ଼ନ୍ତି ଘନଘନ ॥
ମହୀନ୍ଦ୍ର ଦ୍ୱିବିନ୍ଦ ପବନ କେଶରୀ ।
ଯେହାଙ୍କର ଚଳନ୍ତେ କମ୍ପଇ ବସନ୍ଧରୀ ॥

ଚନ୍ଦନ ଗବଏ ଗବାକ୍ଷ ଶତବଳ ।
କରେ ଧରିଛନ୍ତି ମହତ ତରୁଶିଳ ॥
ବସନ୍ତ ବିବୁଧ ସମ୍ପାତି ଋକ୍ଷବଳ ।
ରଡ଼ି ଛାଡ଼ନ୍ତି ଯେ ଧରିଣ ତରୁଶିଳ ॥
କୁମୁଦ କଞ୍ଚଣ କାଳିଞ୍ଜନ ପନଶିଳ ।
ଏହାଙ୍କର ଧାମନ୍ତେ ମହୀ ଟଳଟଳ ॥୧୦୦
ଦଧିମୁଖ ଯେ ସାରାସ ଶତବାଳି ।
ରଣ ଦେଖି ବୀରେ ଦିଅନ୍ତି ହୁଳାହୁଳି ॥
ପାରାସ ତାରାକ୍ଷ ଦଶକାଳ ବୃଦ୍ଧ ।
ଅନେକ ପଥର ଏ କରନ୍ତି ଆଉଧ ॥
କାଳିମୁଖ ଶରସେତୁ ରମଣ ତାରାପିତା ।
ଆଗଭରେ ଧାମନ୍ତି ହୋଇଣ ମଯେମତା ॥
ବୀର ମହାବୀର ମଲ୍ଲ ମହାମଲ୍ଲ ।
ଧାମନ୍ତେ ପୃଥିବୀ କମ୍ପଇଂ ଢଳଢ଼ଳ ॥
ଆକାଶେ କି ମହାର୍ଣ୍ଣବ ଜଳ ହୋଇଲାକ ଆସି ।
ପାଦରେଣୁ ଭରେ ଆକାଶ ନଦିଶି ॥୧୦
ନିଶାଣ ତଡ଼ବଡ଼ି ବାଜଇ ବିକଟାଳ ।
ଉଦଣ୍ଡ ଆଲମ୍ବ ବିଳମ୍ବ ଚିରାଳ ॥
ନାନା ବାଦ୍ୟମାନ ଘାଗୁଡ଼ି ଘଣ୍ଟଧ୍ୱନି ।
ମୁଖରାବ ଶବଦେ କମ୍ପଇ ମେଦିନୀ ॥
ପର୍ବତୁ ଓହ୍ଲାଇଲେ ରିକ୍ଷ କପିବଳ ।
ସପତ ଦ୍ୱୀପକି ଘୋଟିଲା ମାହାଜଳ ॥
ଦଶ ଲକ୍ଷ ରଥୀ ରାବଣ ପେଷିଥିଲା ।
ରାତ୍ର ପ୍ରହରେ ଥାଉଂ ଲଙ୍କା ପୁରୁ ଅଇଲା ॥
ଦକ୍ଷିଣ ଦ୍ୱାରେ ବାହାରି ପୂର୍ବ କଟିକି ଗଲେ ।
କେହି ନ ଦେଖିଲେ ଭଲା ଲୁଚା ଦେଲେ ॥୨୦
ତୂଣ୍ଡ ନ ଶୁଭଇ ବାଜଣା ନ ବାଜଇ ।
ସୁବଳୟା ଗିରିର ନିକଟେ ବୁଡ଼ା ଦେଇ ॥
ପୂର୍ବ ସମୋଦ୍ର ପନ୍ତାରେ ଯାଇଣ ରହିଲେ ।
ପିଆଶାଳ ବନରେ ଯାଇଣ ବୁଡ଼ାଦେଲେ ॥
ରାମ ଆଗିଆଣି ସେ ନ ପଡ଼ିଲେ ମାଡ଼ି ।
ରଣଭୂମି ସୀମାନ୍ତକୁ ପାଞ୍ଚ କ୍ରୁଣ ଛାଡ଼ି ॥
ଗୁପତେ ରହିଲେ ଶ୍ରୀରାମ ନ ଜାଣନ୍ତି ।
ରାବଣ ଅଇଲା ବୋଲି ସେ ଆଗକୁ ଧାମନ୍ତି ॥

ଯାନ୍ତେଣ ପୂର୍ବକୁ ଚାହିଂଲା ବିଭୀଷେଣ ।
ମଉଗଜ କୁଦା ଯେକ ଦିଶିଲା
ଅପ୍ରମାଣ ॥୩୦
ପ୍ରଥମେ ପର୍ବତ ପ୍ରାୟେକ ମଣିଥିଲା ।
ଦ୍ରୁଷ୍ଟିହିଂ ବାହିଂ ନିରେଖି ଚାହିଂଲା ॥
ବିଚାରିଲା ଲଙ୍କେଶ୍ୱର କଳାକ କପଟ ।
ଉହାଡ଼େ ନେଇ ଲୁଚାଇଣ ଅଛଇ ହାଥୀ
ଥାଟ ॥
ଶ୍ରୀରାମ ଛାମୁରେ ଜଣାଇଲା ଯାଇଂ ।
ଭୋଦେବ କପଟ କଳାକ ଲଙ୍କସାଇଁ ॥
ଦେଖ ବାମକଟି ଦିଶଇ ହାଥୀଦଣ୍ଡ ।
ଜାଣି ପଟାନ୍ତର ପର୍ବତ ସିଙ୍ଘ ଖଣ୍ଡ ॥
ଆପଣେ ଲଙ୍କପତି ତହିଂ ଅଛି ଅବା ।
ଥାଟ ବରଗିବା କି ଆମ୍ଭେମାନେ ଯିବା ॥୪୦
ଏସନେକ ବିଚାରନ୍ତେ ଦିଶିଲା ଲଙ୍କରାଏ ।
ଆଠତିରିଶ କୋଟି ଯୋଦ୍ଧା ସବୁହିଂ
ରତ୍ନମଏ ॥
ଅଠରକୋଟି କ୍ଷେଉଣୀ ଛନ୍ତି ପଏକାର ।
ରାଉତେ ଝଲକନ୍ତି ଚଢ଼ିଣ ହୟେବର ॥
ରଣ ରାହୁ ବାନା ଫରହର ଉଡ଼େ ।
ଦୁଇ ପାଖେ ଶ୍ୱେତ ଚାମର ଲକ୍ଷେ ପଡ଼େ ॥
ଲକ୍ଷେକ ପାଟଛତ୍ର ଲକ୍ଷେକ ବିଲମ୍ବ ଚିହ୍ନ ।
ପୁଷ୍ପେକ ବିମାନ ଚଳଇ ଘନଘନ ॥
ପ୍ରଳୟ କାଳେ ଯେହ୍ନେ ଉଠି ଆସଇ ଚାନ୍ଦ ।
ତେସନ ଦିଶଇ ଅସୁରକୁଳ ଇନ୍ଦ୍ର ॥
ସୁଗ୍ରୀବର ବୋଇଲା ଏହିତ ଦଶଶିରି ।
ମଧଦଣ୍ଡେ ଅଛି ସଇନି ଆବୋରି ॥
କିମ୍ବାଇ ସେ ଆଡ଼ ଉହାଡ଼େ ଲୁଚିଥିବ ।
ବଇରୀ ବିଭାଣ୍ଡେକ ବାନା ବହଇ
ଦଶଗ୍ରୀବ ॥
ଶ୍ରୀରାମ ବୋଇଲେ ଆହୋ ବିଭୀଷେଣ ।
ଅନେକ ବିଛନ୍ଦ ହୋଇବ ଆଜ ରଣ ॥
ସେ ହସ୍ତୀ ଦଣ୍ଡକୁ କେ ହୋଇବ
ସେନାପତି ।
କାହାକୁ ପେଷିବା ବୋଲି ଚାହିଂଲେ ମାରୁତି ॥
ଜାଣି ହନୁମନ୍ତ ମଥାରେ ହାଥ ଦେଲା ।
ଆଜ୍ଞା ହୋଇଲେ ଭୋ ଦେବ ଯିବଇଂ
ବୋଇଲା ॥୬୦
ଏହିକ୍ଷଣି ମାରି ଆସିବି ହାଥୀ ଦଣ୍ଡ ।
ମଉଗଜ ମଉଳି କରିବି ଖଣ୍ଡ ଖଣ୍ଡ ॥
ଶ୍ରୀରାମ ବୋଇଲେ ତୁ ଶତବାଳିକି ନେସି ।
ଗବଏ ଗବାକ୍ଷ ମହାନ୍ଦ୍ର ସାଙ୍ଗେ ଯାସି ॥
ଥୋକାଏକ ରକ୍ଷକପି ଥାନ୍ତୁ ସାହାହୋଇଂ ।
ଗାଢ଼ ଯୁଦ୍ଧ ହୋଇଲେ ଆସିବ ତୁମ୍ଭେ ସହି ॥
ସବୁଦିନ ପରାୟେ ନୁହଇଟି ଆଜ ।
ଅସୁରଙ୍କର ମାୟା ଦେବଙ୍କୁ ଆଶ୍ଚିର୍ଯ ॥
ଅଭିମାନେ ମାରିବେ ବୋଲିଣ ଆସିଛନ୍ତି ।
ନୋହିଲେ କି ତିନିଭୁଅ କରିଣ ଥାଠ
ପାଞ୍ଚ ॥୭୦
ଜାଣି ହନୁମନ୍ତ ବିଚାରି କାର୍ଯ୍ୟ କର ।
ଅଗୋଚର ହୋଇଲେ ବୁଝି ଅପସର ॥
ଶୁଣି ହନୁମନ୍ତ ଶତବାଳିକି ଘେନି ।
ମହାନ୍ଦ୍ର ଗବଏ ଗବାକ୍ଷୀ ବୀର ତିନି ॥
ସନ୍ୟକୁ ଡାକିଲେ ଥୋକାଏ ଏଣେ ଆସ ।
ହାଥୀଦଣ୍ଡ ମାରି କରିବା ଆମ୍ଭେ ଯଶ ॥
ଶୁଣିଣ ମର୍କଟ ଭଲ୍ଲୁକେ ରଡ଼ି ଦ୍ୟନ୍ତି ।
ଥାଠର ଭିତରୁ ବାହାର ହୋଇଯାନ୍ତି ॥
ଦୁଇ ଖର୍ବ ରୁକ୍ଷ ବାନର ଖର୍ବ ଚାରି ।
ସାଂଗ୍ରାମକୁ ଜିଣା ସଭିଏଂ ଶସ୍ତ୍ରଧାରୀ ॥୮୦
ଗଜବଳ ମାରିବେ ବୋଲି ହୋଇଲେ
ଆଗୁସାର ।
ପାଦଭରେ ଟଳଟଳ ହୋଇଲା ଲଙ୍କପୁର ॥
ମାଳଶ୍ରୀ ରାଗେଣ ବାଜଣା ବଜାଇ ।
ଗଜବଳ ମାରିବାକୁ ଗଲେ ଆଗହୋଇଂ ॥
ପାଟଛତ୍ର ଆଲମ୍ବ ଫର ଫର ଉଡ଼େ ।
ଯାହାକୁ ଦେଖିଲେ ଲଙ୍କାରେ ଚମକ ପଡ଼େ ॥
ଘାଇ ଭାଜିଲେ ଯେହ୍ନେ ପଶଇ ବଢ଼ିପାଣି ।
ଥାଟ ଧାଇଂଲେ ତେସନେକ ଜାଣି ॥
ତାହାନ୍ତ ପଠିଆଇ ରାମଚନ୍ଦ୍ର ରାଏ ।
ଆଗିଆଣି ଦଣ୍ଡେ ମାରିବେ ବୋଲି
ଯାଏ ॥୯୦
ଲକ୍ଷ୍ମଣକୁ ବୋଇଲେ ତୁ ନୋହିବୁ
ଆଗୁସାର ।
ମୋହୋର ପଛେ ଥାଇ ବିନ୍ଧୁଥିବୁ ଶର ॥
ବିଭୀଷେଣ ତୋହୋର ଡାହାଣ ପାଖେ
ଥିବ ।
ଦୁହିଙ୍କି ଯେ ଖେଦ କରଇ ଦଶଗ୍ରୀବ ॥
ସୁଗ୍ରୀବର ରାଏ ହେଉ ଆଗିଆଣି ।
ଅଙ୍ଗଦ ସାହା ଘେନି କପି କୁଳମଣି ॥
ଦୃବିନ୍ଦ କେଶରୀ ସମ୍ପାତି ଶତବଳ ।
କୁନ୍ଦ କୁମୁଦ ବସନ୍ତ ପନଶିଳ ॥
ଏହି ଆଠବୀରେ ରାଜାଙ୍କ ସାଙ୍ଗେ ଥାନ୍ତୁ ।
ରିକ୍ଷ କପିବଳ ଆଗ ହୋଇ ଯାନ୍ତୁ ॥୧୦୦
ବଳିମୁଖ କାଳିମୁଖ ଗନ୍ଧମାରଦନ ।
ତାରାକ୍ଷ ସୁନାସ କଞ୍ଚଣ ସୁସୋଦନ ॥
ଏ ସାତ ସେନାପତି ରଖନ୍ତୁ ବାମପଖା ।
ଡାହାଣ ପାଖେ ଥାଉ ଦଧିମୁଖ ଏକା ॥
ପଛିଆଣି ଦଣ୍ଡେ ଜମ୍ୱେବ ସୁଷେଣ ।
ଦଶକାଳ ବୃଦ୍ଧ କାଳିଞ୍ଜନ ରମଣ ॥
ଶରସେତୁ ଡାଳିମ୍ବ ବସନ୍ତ ଚନ୍ଦନ ।
ସମ୍ଭାଳି ଆସନ୍ତୁ ରକ୍ଷ କପି ସନ୍ୟ ॥
ଏତେ ବୋଲି ରାମ ଆମଞ୍ଚିଲେ ଧନୁ ।
ଆଗିଆଣି ବଳ ପଳାଉଛନ୍ତି ତେଣୁ ॥ ୧୦
ରହ ରହ ବୋଇଲେ ନ ରହନ୍ତି କେହି ।
କୋପେ ଶଉରୀ ସେନାପତି ଆଗୁସାର
ହୋଇ ॥
ସନ୍ୟଙ୍କୁ ବୋଇଲାରେ ଯୁଦ୍ଧ ନିହାଇବାକି ।
ଅକାରଣେ କିମ୍ପା ପଳାଉଅଛ ଭାଜି ॥
ଭାଜି ଗଲେ ଏଥୁ ଯିବ କେଉଂ ଯାଏ ।
ଗୋଡ଼ାଇ ମାରିବଟି ଦଶାନନରାଏ ॥
ରହି ଯୁଦ୍ଧ କଲେ ଶତ୍ରୁକୁ ହୋଏ ଜିଣି ।
ପଛେ ଆସୁଛନ୍ତି ଧନୁକୀ ଚୂଡ଼ାମଣି ॥
କପି ବୋଇଲେ ଆଜ ହୋଇବ ମହାରଣ ।
ଅସୁରେ ମାରୁଛନ୍ତି ଅପୂର୍ବ ଶରମାନ ॥୨୦
ଦେଖ ଛିଟିକିଣୀ ଯେ ପଡୁଅଛି ଥାଟେ ।
ପଥର ବସାଇ ଛାଟୁଛନ୍ତି ଆଣ୍ଟେ ॥
ପବନହୁଂ ବେଗେ ଗର୍ଜି ଆସି ପଡ଼ି ।
କ୍ଷତ୍ରୀଙ୍କର କାଣ୍ଡମାନେ ପକ୍ଷୀ ଜାଣ ଉଡ଼ି ॥
ଚଡ଼ଚଡ଼ ହାବେଳି ମାରନ୍ତି ବଜ୍ରବାଣ ।

ବିକଟାଳ ହୋଇ ବାଜଇ ନିଶାଣ ॥
ରାତ୍ରପହରୁ ଅସୁରେ ହୋଇଲେନି ସଜ ।
ପଛିଆଣି ଥାଠେ ବିନ୍ଧଇ ଲଙ୍କରାଜ ॥
ବିହୁଡ଼ି ଜଳିବାର ଦିଶୁଅଛି କାଣ୍ଡ ।
ଦେହଯାକ ଆମ୍ଭର ହୋଇଲା ଖଣ୍ଡ
ଖଣ୍ଡ ॥୩୦
କେମନ୍ତେ ନଭାଜିବୁ ଯେ ସେନାପତି
ନାହିଁ ।
ଏମନ୍ତେହେଁ ଘଡ଼ିଏ ଥିଲୁ ଯୁଦ୍ଧ ସହି ॥
ଶ୍ରାବଣ ବରଷା ଜାଣି ନାରାଜ ବିନ୍ଧୁଛନ୍ତି ।
ସ୍ୱର୍ଗ ମଞ୍ଚ ଦୁଇ ଶରେ ନିରୋଧନ୍ତି ॥
ଶଉରୀ ବୋଇଲା ହୋ ଶୁଣ ମୋହୋର
କଥା ।
କେଉଂଠାରେ ଅଛି ଦେଖାଅ ଦଶମଥା ॥
ରଥ ସୁଦ୍ଧା କରି ଯେ ବୁଡ଼ାଇବି ସିନ୍ଧୁଜଳେ ।
କଥା ରହିଥିବ ଏ ମହୀମଣ୍ଡଳେ ॥
ଶୁଣି ରୁକ୍ଷ କପି ଯେ ପାଇଲେ ଭରସା ।
ମେଘ ଗର୍ଜିଲେ ଯେହ୍ନେ ଚାତେକ କରଇ
ଆଶା ॥୪୦
ବୃକ୍ଷ ଶିଳା ଧରି ରକ୍ଷ କପି ଧାଇଂ ।
ଅସୁରଙ୍କୁ ରଣେ ପାଇଲେକ ଯାଇଂ ॥
ସମୋଦ୍ରେ ସମୋଦ୍ରେ କି ହୋଇଲେକ
ସମଧ ।
ସ୍ୱର୍ଗେ ଥାଇଣ ଦେଖୁଅଛନ୍ତି ସୁରସିଦ୍ଧ ॥
ଦୁଇଦଣ୍ଡର ଯେ ଥାଠ ଆଗିଆଣି ।
ମାର ମାର ବୋଲି ଶୁଭିଲା ଗହଳ ଧ୍ୱନି ॥
ଘେନି ପଶାପଶି ଧାଇଂ ପିଟାପିଟି ।
କେହୁ ଘାଆପାଇ ପଡ଼ନ୍ତି ମହୀଲୋଟି ॥
କେ ବୃକ୍ଷ ପହୁଡ଼ି ପକାବନ୍ତି ଶିଳ ।
କେ ନେଇ ତୋଳିଣ ମାରନ୍ତି
କରବାଳ ॥୫୦
କେହୁ ଗଦା କେହୁ ମାରଇଂ ଶକତି ।
କେହୁ ବିନ୍ଧାଣ ଘେନି ମାରନ୍ତି ଚକ୍ରଗତି ॥
କେହୁ ମୁଣ୍ଡେ ମୁଣ୍ଡ ହିଆରେ ପେଲାପେଲି ।
କେହୁ ବାହାକୁ ବାହା ହୁଅନ୍ତି ଠେଲାଠେଲି ॥
କେ କାହା ବୁକୁରେ ମାରନ୍ତି ପାଦଘାତ ।

କେ ଅଙ୍ଗେ ବାଜିଣ ଫେଡ଼ାବନ୍ତି ନାତ ॥
କେହୁ ମାରୁଛନ୍ତି ବଜ୍ର ସମ ବିଧା ।
କେହୁ ନାହିଂ ନାହିଂ ବୋଲି ବଞ୍ଚାବନ୍ତି
ଗୁଗୁଦା ॥
ଚାପୋଡ଼େ ମାରିଣ କେ ପୁଣିହିଂ ଉଞ୍ଚାଇ ।
ଧରୁ ଧରୁଣ କେ ଗଳିଣ ପଳାଇ ॥୬୦
ଆଇ ଗୋ ବୋଲିଣ କେ କାମୋଡ଼ନ୍ତି ଓଷ୍ଟ ।
କେ ଆଗସରି ଯାଇ ଓଗାଳନ୍ତି ବାଟ ॥
କେ ଧରି କଚାଡ଼ଇ କେ ପକାଇ ତୋଳି ।
କେ ଧର୍ମଯୁଦ୍ଧ କରଇ କେ ମୁଖେ ମୁଖ
ମିଳି ॥
କେହି ନେନ୍ତି ପଥର କେ ବଜ୍ରବାଣ ମାରି ।
କେ ଗାଢ଼ ପାଇଲେ ଯାନ୍ତି ଅପସରି ॥
କେହୁ ଯନ୍ତ୍ରକାଠ କେ ହାବେଳି ବାଣ ମାରି ।
ଛିଟିକିଣି ପଥର କେ ମାରନ୍ତି ଗାଢ଼ କରି ॥
ମୁଖରାଜ ଶବଦ ଆୟୁଧଙ୍କର ଘାତ ।
ବୀରତୂର ଶବଦ ଶୁଭଇ ବହୁତ ॥୭୦
କ୍ଷୀର ସମୋଦ୍ର ଯେହ୍ନେ ମନ୍ଥିବାର କାଳେ ।
କୋଳାହୋଳ ଶବଦ ଶୁଭଇ ଅନ୍ତରାଳେ ॥
ତେସନ ରାବାୟେଣ ଗୋଳ ଯୁଦ୍ଧ ବାଜେ ।
ରକ୍ଷକପି ରାକ୍ଷସ ସମର ଦେବକାର୍ଯ୍ୟେ ॥
ଯେବଣହିଂ ଥାଠରେ ଶ୍ରୀରାମ ସେନାପତି ।
ଭଲ୍ଲୁକ ମର୍କଟଙ୍କର କାହାକୁ ନାହିଂ ଭୀତି ॥
ସୁରଗଣେ ଯାହାଙ୍କୁ ନ ପାରିଲେ ମାରି ।
ରକ୍ଷ କପିବଳ ତାହାଙ୍କୁ ସଂହାରି ॥
ସମୋଦ୍ର ପାରିହୋଇ ଯୁଝନ୍ତି ରାମରଣେ ।
ଆନ କେହିଂ ନାହିଂ ଦେଖନ୍ତି
ଦେବଗଣେ ॥୮୦
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀ ବାଳୀ ।
ସାଧୁ ରଘୁନାଥ ବୋଲି ଦିଅନ୍ତି ହୁଳାହୁଳି ॥
ଗନ୍ଧର୍ବ କିନ୍ନର ଯକ୍ଷ ବିଦ୍ୟାଧରୀ ।
ସନକାଦି ସହିତେ ଜନ୍ମିଲେ ମଞ୍ଚପୁରୀ ॥
ସାଂଗ୍ରାମ ଧନ୍ଦୋଳ ଚାହିଂଣ ବିଚାରନ୍ତି ।
ନ ପୁଣ ନିଶାଚରେ କପିଙ୍କୁ ମାରନ୍ତି ॥
ଆଜ ଯୁଦ୍ଧ ଦେଖି ଭୟ ହୁଏ ମନ ।
ତିନିପୁର ଜିଣିଲା ଏକାଏ ଦଶାନନ ॥

ସଂସାର ଗୋଟା ଖେଦ ପାଇଲା ଏହାରେ ।
ଜଗତ ଲୋକ ଦୁଃଖ କହିବା
କାହାରେ ॥୯୦
ନାରାୟଣ ପୁରୁଷ ସେ ନ ପାରିଲା ସହି ।
ଏତେ ଦୁଃଖ ସହି ଉଦ୍ଧାରୁଛନ୍ତି ମହୀ ॥
ନୋହିଲେ କି ମରଇ ଏଡ଼େକ ଅସୁର ।
ରାମ ରାବଣର ଆଜ ହୋଇବ ସମର ॥
ଶୁଣିଲା ନାହିଂ ଦେଖିଲା ନାହିଂ ଆଖି ।
ଅପୂର୍ବ ସାଂଗ୍ରାମକୁ ଦେବଧର୍ମ ସାକ୍ଷୀ ॥
ଦେଖ ଆଗିଆଣି ରଣ ଯୁଦ୍ଧ ମେଳ ।
ବ୍ରହ୍ମାଣ୍ଡ ପୂରିଅଛି ମୁଖରାବ ଚହଳ ॥
ନାନା ଆୟୁଧ ଯେ ପାଷାଣ ବୃକ୍ଷ ମେଳା ।
ଧନୁର୍ଦ୍ଧର ବୋଲିବାକୁ ଦଶରଥଙ୍କର
ବେନିବଳା ॥୧୦୦
ବିଭୀଷେଣଙ୍କୁ ଘେନି ତିନିଜଣ ଯୋଦ୍ଧା ।
ଦଣ୍ଡକେ ମନକଲେ ପୃଥ୍ୱୀ କରିପାରନ୍ତି
ଶୋଧା ॥
ସୁଗ୍ରୀ ହନୁମନ୍ତ ଅଙ୍ଗଦ କୁମର ।
ରୁକ୍ଷ କପି ଜମ୍ୱେବ ସବୁହୁଂ ବଳୀଆର ॥
ସୁଷେଣ ନଳନୀଳ ଗନ୍ଧମାରଦନ ।
ସଂଚପି କହିବ କେ ଶ୍ରୀରାମର ସନ୍ୟ ॥
ରାବଣର ଦଣ୍ଡତ ଭଲେ ଆମ୍ଭେ ଜାଣି ।
ଏସନେକ ବୋଲି ଦେବ କରନ୍ତି ଭାଳେଣି ॥
ଏଥୁ ଅନନ୍ତରେ ରାକ୍ଷାସ କପିବଳ ।
ଘଡ଼ିଏ ପରିଯନ୍ତେ ବାଜିଲା
ମହାଗୋଳ ॥୧୦
ନିରନ୍ତରେ ମଢ଼ା ରୁଧିର ଚଉକଟି ।
ଯୁଦ୍ଧ ନରହଇ ପ୍ରଚଣ୍ଡ ମୂରତି ॥
ରାବଣର ଚାରିଭାଗ କରିଅଛି ବଳ ।
ହାଥୀଦଣ୍ଡ ରହିଲେ ସମୋଦ୍ରର କୂଳ ॥
ଆଗେ ଆଗିଆଣି ପଛେ ଲଙ୍କପତି ।
ଯେବଣ ଥାଟ ରହିଲା ପଶ୍ଚିମ ଦ୍ୱାର କଟି ॥
ତହିଂ ସେନାପତି ପ୍ରମଥ ଲୋହିତାକ୍ଷ ।
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳି ବିରୋଲାକ୍ଷ ॥
ଚାରଣ ବିଚାରଣ ସମଏ ବକାସୁର ।
ଚତୁରାଙ୍ଗ ବଳ ଘେନି ହୋଇଲେ
ବାହାର ॥୨୦

ପଶ୍ଚିମ ପାଚେରୀ ତଳେ ଗଲେ ।
ଅଗ୍ନିକୋଣ ସଳଖୁ ଧାଇଂଣ ପଡ଼ିଲେ ॥
ମଧ୍ୟଦଣ୍ଡେ ଆସି ପଡ଼ିଲେ ଝସାଇ ।
କିଳିକିଳା ରାବ କରି ବାଜଣା ବଜାଇ ॥
ରଥ ଗଜ ଅଶ୍ୱ ପାଦାନ୍ତି ଗହଳ ।
ପାଦଭରେ ମେଦିନୀ ହୋଇଲା ଟଳମଳ ॥
ଦୂରେ ଥାଇ ତାହା ଦେଖିଲେ ରଘୁପତି ।
ଏ କିସ ବିଭୀଷେଣ ହୋ ବୋଲିଣ
ପଚାରନ୍ତି ॥
ଗଗନ ମାର୍ଗେ ତ ଲାଗୁଅଛି ଧୂଳି ।
ଚତୁରାଙ୍ଗ ବଳ କି ତେଣୁ ଆସଇ
ଚଳି ॥୩୦
ଆଗେ ଆଗିଆଣି ପଛେ ଲଙ୍କପତି ।
ହାଥୀଦଣ୍ଡ ଦେଖ ଈଶାନ୍ୟର କତି ॥
କେହୁଣିହି ଦିନେ ତ ନ ଆସଇ ଏତେ
ବାଗେ ।
ଚାରି ଭୂଅ କରି ଥାଠ ବାଣ୍ଟିଅଛି ରାଗେ ॥
ସେ ଦଣ୍ଡ ଯେମନ୍ତ ଆସି ନ ପାରଇ ଯେଥ ।
ସଭିଏଂ ରୁଣ୍ଡ ହୋଇଲେ ବଢ଼ିବ ଅନର୍ଥ ॥
ଏସନେକ ବୋଲି ଯେ ଅଙ୍ଗଦକୁ ଚାହିଂ ।
ଜାଣି ବାଳୀସୁତ ମଥାରେ ହାଥ ଦେଇଂ ॥
ଶ୍ରୀରାମ ବୋଇଲେ ଶୁଣସିରେ କୁମର ।
ଆଡ଼ପାଖ ସନ୍ୟଙ୍କୁ ଉଠି ବାବୁ ମାର ॥୪୦
କଞ୍ଚଣ ଦଧିମୁଖ କାଳିମୁଖକୁ ନେସି ।
ଯେମନ୍ତେ ସେ ଦଣ୍ଡ ଆସି ଏଥରେ ନ
ପଶି ॥
ତେସନେକ କର ବୋଲି ଆଜ୍ଞା ଦେଲେ ।
ଶୁଣି ରିକ୍ଷକପି ବାଟ ଭାଙ୍ଗି ଗଲେ ॥
ନବକୋଟି ବାନର ଚାଳିଶ କୋଟି ରିକ୍ଷ ।
ସବୁଙ୍କରି ହସ୍ତେ ଅଛଇ ଶିଳାବୃକ୍ଷ ॥
ଥାଠେ ସେନାପତି ବାଳୀର କୁମର ।
କନଡ଼ା ରାଗେଣ ବାଜଇ ବୀରତୂର ॥
ଗରୁଡ଼ ଧ୍ୱଜଛତ୍ର ଦେଖିଣ କପି ଧାନ୍ତି ।
ଏକ ଆରେକ ସେ ଆଗସରି ହୋଅନ୍ତି ॥୫୦
ବନ୍ଧ ଭାଜିଲେ ଯେହ୍ନେ ପଶଇ ବଢ଼ିଜଳ ।
ରାକ୍ଷସଙ୍କୁ ଭେଟ ପାଇଲେ ରକ୍ଷବଳ ॥

ବାଜିଲାକ ରଣଗୋଳ ହୋଇଲେ
ମିଶାମିଶି ।
ଦଶ ସେନାପତି ଓଗାଳିଲେକ ଆସି ॥
ଥାଠ ପଛକରି ରଥୀ ଆଗ ହୁଅନ୍ତି ।
ମେଘ ବୃଷ୍ଟି ଜାଣି ନାରାଜ ବରଷନ୍ତି ॥
ଅଙ୍ଗଦ ମୁକ ଦଧିମୁଖ କାଳିକଞ୍ଚଣ ।
ଆଗେଣ ଯୁଝିଲେ ପଛକରି ସନ୍ୟ ॥
ପାଷାଣ ତରୁବର ମାରନ୍ତି ରୋଷଭରି ।
ଦଇତେ ଛେଦନ୍ତି ତାହା ପ୍ରତିଅସ୍ତ୍ର କରି ॥୬୦
ବେଳୁବେଳ ସମର ହୋଇଲା ମହାଗୋଳ ।
ଅସୁରଙ୍କର ମାରେଣିରେ ଭାଜିଲେ କପିବଳ ॥
ଅଙ୍ଗଦ ସହିତେ ପଛଘୁଞ୍ଚା ଦେଲେ ।
ପ୍ରମଥ ନାରାଜକୁ ବହୁତ ଭୟ କଲେ ॥
ଦଧିମୁଖ କାଳିମୁଖ କଞ୍ଚଣ ସହିତେ ।
ଭାଜି ପଳାଇଲେ ପବନୁ ତୁରିତେ ॥
ଅଶ୍ୱକର୍ଣ୍ଣ ଏକପାଦ ପାଟୋଳି ବିରୁପାକ୍ଷ ।
ଚାରଣ ବିଚାରଣ ଅମଏ ଲୋହିତାକ୍ଷ ॥
ବକାସୁର ସହିତେ ପ୍ରମଥ ମହାବୀର ।
ପିଠିଆଇ ଗୋଡ଼ାଇ ବିନ୍ଧୁଛନ୍ତି ଶର ॥୭୦
ଅଗ୍ନିକଣିକା ଜାଣି ସେ ପଡ଼ଇ ଶରୀର ।
ପାଇଲେ ଭଙ୍ଗାଣ ରିକ୍ଷ କପିବଳ ॥
କୋଶେ ପରିଯନ୍ତେ ଅଇଲେ ପିଠିଦେଇ ।
ବାଳୀର କୁମର କୋପେ ରହିଲା ପରିଘାଇ ॥
ବାମ ଡାହାଣେ କଞ୍ଚଣ କାଳିଞ୍ଜନ ।
ପଛେ ଦଧିମୁଖ ଘେନି ସବୁ ସନ୍ୟ ॥
ରହ ରହ ବୋଇଲେ ରହିଲେ ଶସ୍ତ୍ର ଧରି ।
ପୁଣି ବେନିବଳ ହୋଇଲେ ମରାମରି ॥
ମାର ମାର ବୋଲି ଡାକିଲେ କପିବଳ ।
ଅଶ୍ୱକର୍ଣ୍ଣ ଉପରେ ପହୁଡ଼ିଲେ ତରୁଶିଳ ॥୮୦
ଘାଏଣ ଭାଜିଲେ ରାବଣର ସନ୍ୟ ।
ଧାଇଂଲେ ଆଗସରି ସେନାପତିମାନ ॥
ପ୍ରମଥ ନାମେଣ ରାବଣ ତନଏ ।
ଥାଠ ଭାଙ୍ଗିବା ଦେଖି ଅସୁରା ଅସ୍ତ୍ର କଏ ॥
ଏକାବାଣେକେ ସେ ମାଇଲା ଲକ୍ଷେ କପି ।
ପୁଣି ଆର ଶସ୍ତ୍ର ବିନ୍ଧିଲାକ କୋପୀ ॥
ଶଏ ସହସ୍ର ଭଲୁକ ତେଣେ ମଲା ।

ଦେଖିଣ ଅଙ୍ଗଦ ଗରୁ ଚିନ୍ତା କଲା ॥
ମନେ ବିଚାରିଲା ସରିଲା ବଡ଼ପଣ ।
କି ବୋଲି ବୋଲିବେ ମୋତେ ରଘୁକୁଳ
ରାଣ ॥୯୦
ଏସନେକ ବୋଲି ଶିଳାବୃକ୍ଷ ଧରି ।
ଗଗନେ ବିକ୍ରମିଲା ଚିତ୍ରଗତି ପରି ॥
ପ୍ରମଥର ଉପରେ ପିଟିଲା ନେଇ ଶିଳ ।
ଦେଖିଣ ଛେଦିଲା ତାହା ରାବଣ ଦୁଲ୍ଲାଳ ॥
ଲଜ୍ଜା ପାଇଲାକ ସେ କପିକୁଳ ପତି ।
ଧାଇଂଣ ବୃକ୍ଷେକ ପିଟିଲା ନେଇ ଧାତି ॥
ପ୍ରମଥ ନାଶିଲା ତାହା ବଜ୍ରବାଟୁଳି ଘେନି ।
ଧାଇଂଣ ଅଙ୍ଗଦ ମାଇଲା ଘୋଡ଼ା ବେନି ॥
ପ୍ରମଥ ମହାରଥୀ ଦେଖିଲା ତାହା ଡୋଳେ ।
ଆପଣେ ଅଙ୍ଗଦକୁ ମାଇଲା ନେଇ
ଶୂଳେ ॥୧୦୦
ଘାୟେ ଘୁମାଇଲା କପିକୁଳ ଷଣ୍ଡ ।
ଯେମନ୍ତ ସମୟେ ରଣ ହୋଇଲା ପଞ୍ଚଦଣ୍ଡ ॥
ଚାରଣ ବିଚାରଣ ବେଢ଼ିଲେ ଆସି ବେନି ।
ସମର ଗୋଳ ଦେଖି ଭାଜିଲେ ସଇନି ॥
କାଳିମୁଖ ଦଧିମୁଖ କଞ୍ଚଣ ତିନିବୀର ।
ବିଛନ୍ଦ ଯୁଦ୍ଧ ଦେଖି ଧାଇଂଲେ ଆଗୁସାର ॥
ମୁଖ ଚୁହାଂ ଚୁହିଂ ହୋଇଲେ ଆଗସରି ।
ବୃକ୍ଷଶିଳା ଧରି ଅନେକ ଦୈତ୍ୟ ମାରି ॥
ଭୂଅ ଭେଦି ଯାଇଂ ଭିତରେ ପଶିଲେ ।
ବେଢ଼େ ପଡ଼ିଅଛି ଅଙ୍ଗଦକୁ
ଦେଖିଲେ ॥୧୦
ଚାରିହେଂ ଏକହୋଇ କଲେକ ସମର ।
ଅସୁରଙ୍କର ଶହସ୍ର ଘେନିଲେ କପିବର ॥
ଅଶ୍ୱକର୍ଣ୍ଣ ଯେକପାଦ ପାଟୋଳି ବିରୁପାକ୍ଷ ।
ଅମଏ ବକାସୁର ସହିତେ ଲୋହିତାକ୍ଷ ॥
କପି ଚାରିଜଣଙ୍କୁ ବେଢ଼ିଲେ ଦଶସେହ୍ନା ।
ରଥଗଜ ଅଶ୍ୱ ନଯାନ୍ତି କଳନା ॥
ପାଦାନ୍ତି କୋପଭରେ ମାରନ୍ତି ନିରାଟ ।
ରଣଭଙ୍ଗ ହୋଇଲେ ଶ୍ରୀରାମର ଥାଟ ॥
ଯୂଥପତିମାନେ ପଡ଼ିଲେ ଯନ୍ତୁଂ ବେଢ଼େ ।
ରୁକ୍ଷକପିଙ୍କି ଅସୁରେ ଗୋଡ଼ାଇଛନ୍ତି
ଗାଢ଼େ ॥୨୦

ଏସନେକ ବେଳେ ଦେଖିଲା ରାବଣ ।
ସାଂଗ୍ରାମକୁ ଆଗଭର ହୋଇଲା ଆପଣ ॥
ସୁରଗିରି ଚମକ ଟମକ ଦିଆଇଲା ।
ଶ୍ରୀରାମ ସାନ୍ନିଧକୁ ରଥ ଧୁଆଂଇଲା ॥
ପୂର୍ବକୁ ହନୁମନ୍ତ ଗଲା ହାଥୀଦଣ୍ଡ ମାରି ।
ସାଂଗ୍ରାମେ ଭାଜିଣ ଅଇଲା ଅପସରି ॥
ପଚାଶ କୋଟି ଗଜରୁ ଲକ୍ଷେକ ନାଶ ଗଲେ ।
ମହାପାରୁଶକୁ ଦେଖିଣ ଭାଜିଲେ ॥
କୁମ୍ଭେକ ମହୀସୁର ଯୁରାସୁର ତିନି ।
ବିକଟ ପ୍ରଶସ୍ତ ଅଟନ୍ତି ଭାଇ ବେନି ॥୩୦
ଷଡ଼ରଥୀ ଏହୁ ମିଳିଣ ଯୁଦ୍ଧ କଲେ ।
ମକର କୁହୁଡ଼ି ଜାଣି ନାରାଜ ବିନ୍ଧିଲେ ॥
ପୃଥ୍ୱୀ ଟଳଟଳ କମ୍ପଇ ବାଣପଡ଼ି ।
କିଜାଣି ଗୁଣନାଦ ମେଘ ଘଡ଼ଘଡ଼ି ॥
ପ୍ରଶସ୍ତ ମହାପାରୁଶ ଏ ବେନି ବଳବନ୍ତା ।
ତିନିପୁରେ ଏହାନ୍ତ ନାହିଁ ଯେ ଜିଣନ୍ତା ॥
ଏମାନେ ଅସୁରା ଶହସ୍ର କଲେ ଆଗ କରି ।
ହାଥୀଦଣ୍ଡ ଘେନିଣ ବେଢ଼ିଲେ ଯତ୍ନ କରି ॥
ଆଦ୍ରାବଳି ଉଇଂଲା ପ୍ରାୟେ ଧନୁଙ୍କର ଜ୍ୟୋତି ।
ଆଷାଢ଼ ମେଘମାନେ କି ଗର୍ଜି ଯାଉଛନ୍ତ ॥୪୦
ତେସନକ ଶବଦ ଶୁଭଇ ଗୁଣନାଦ ।
ବିଶେଷେ ଅସୁରେ ଜାଣନ୍ତି ଧନୁର୍ବେଦ ॥
ଶ୍ରାବଣ ବରଷା ଜାଣି ବିନ୍ଧୁଛନ୍ତି ଶର ।
ଘାଆ ପାଇ ପଳାଇଲେ ରିକ୍ଷ କପିବଳ ॥
ମହୀନ୍ଦ୍ର ସମର ତହିଁ କଲାକ ଅନେକ ।
ତାହାକଇ ଶକତି ମାଇଲା କୁମ୍ଭେକ ॥
ଜଘେ ବାଜି ଶହସ୍ର ଗଳି ପଳାଇଲା ।
ସେହି ଶସ୍ତ୍ର ଧରି ମହୀନ୍ଦ୍ର କୁମ୍ଭକକୁ ମାରିଲା ॥
ଯେବଣ ଗଜପିଠିରେ ବସିଥିଲା ବୀର ।
ତାହାର ବକ୍ଷସ୍ଥଳେ ପଶିଲା ଯାଇ ଶର ॥୫୦
ବୁଡ଼ିଣ ବସିଲା ନଗଲା ବାହାରକୁ ।
ଗଲଗାଜି ହସ୍ତୀ ପଡ଼ିଲା ଆଗକୁ ॥
ଜାଣିଣ କୁମ୍ଭେକ ଛାଡ଼ିଲା ତାର ପିଠି ।
ମହାପାରୁଶ ଗଜ ଉପରେ ଯାଇଂ ଉଠି ॥

ସମ୍ଭାଳି ହୋଇ ବୀର ଉଠିଲାକ ଯହୁଂ ।
ଦୁଇଭାଇ ମହୀନ୍ଦ୍ରକୁ ନାରାଜ କଲେ ତହୁଂ ॥
ଦେଖି ହନୁମନ୍ତ ମାତୁଳକଇ ଆବୋରି ।
ଶାଳବୃକ୍ଷ ଧରି ମାଇଲା କୋପକରି ॥
କୁମ୍ଭେକ ମାଇଲା ବାବଲ ନାମେ ଶର ।
କାଟି ପକାଇଲା ତେଡ଼େକ ତରୁବର ॥୬୦
ଛିଡ଼ିଲା ଖଣ୍ଡ ପଡ଼ିଲା ଭୂମିତଳେ ।
ଧଇଲା ଖଣ୍ଡ ହନୁ ମାଇଲା ଭୁଜବଳେ ॥
ମହାପାରୁଶ କୁମ୍ଭେକ ଯେବଣ ଗଜେ ଥିଲେ ।
ରାବଣର ପୋଏ ଭଲା ଆଡ଼େ ହୋଇଗଲେ ॥
ତରୁଖଣ୍ଡ ନାଗି ହୋଇଲା ହସ୍ତୀ ଛେଞ୍ଚ ।
କୁମ୍ଭେକ ମହାପାରୁଶ ପଳାଇଲେ ଘୁଞ୍ଚ ॥
ପୁଣ ଆନ ହସ୍ତୀ ଚଢ଼ିଲେ ଭାଇ ବେନି ।
ସାଂଗ୍ରାମ କଲେ ପୁଣି ଅସୁର ଶସ୍ତ୍ର ଘେନି ॥
ମଧ୍ୟାହ୍ନ ଆଦିତ୍ୟ ଜାଣି ବିନ୍ଧୁଛନ୍ତି ଶର ।
ଚାରିକୋଟି ଭଲ୍ଲୁକ ମର୍ଦ୍ଦୁତେକ ବାନର ॥୭୦
ଦଶବାଣ ପେଷି ମାଇଲେ ଏତେବଳ ।
ଦେଖିଣ ଭାଜିଲା ଅଞ୍ଜନାର ବାଳ ॥
ଶ୍ରୀରାମର ଥାଠ ମୋହୋର ଥାଉଂ ମଲା ।
ବିଚାରିଣ ଶ୍ରୀରାମ ମୋତେ ବରଗିଲା ॥
ପଚାରିଲେ କି ବୋଲି କହିବି ମୁଖ ଚାହିଁ ।
ମୋହୋର ଥାଉଂ ଥାଉଂ କପି ଲୋଟିଲେ ରଣଭୂଇଂ ॥
ଏତେ ବୋଲି ପୁଣି ତିନିସେନା ଘେନି ।
ଗବଏ ଗବାକ୍ଷ ଶତବାଳି ତିନି ॥
ରୁକ୍ଷ କପିବଳକୁ ଆସରେ ବୋଲି ରାନ୍ତି ।
ଯେଥୁ ପଳାଇଲେ କାହିଂକି ଯିବ ବୋଇନ୍ତି ॥୮୦
ବେଗେ ଆସି ବାବୁ ଶ୍ରୀରାମ କାର୍ଯ୍ୟ କର ।
ଯେମନ୍ତେ ପାର ବାବୁ ହାଥୀଦଣ୍ଡ ମାର ॥
ଶୁଣି ରିକ୍ଷ କପି କିଳିକିଳା ରାବଦେଲେ ।
ହନୁମନ୍ତ ଭରସା ପାଇଣ ଧାଇଂଲେ ॥
ଯେ ଯାହା ସାଧେ ପଶିଲେ ଗଜଯୂଥେ ।
ଢୋଲ ଦମା ଟମକ ନିଶାଣ ସହିତେ ॥

ଗବଏ ଗବାକ୍ଷ ମହୀନ୍ଦ୍ର ହନୁମନ୍ତ ।
ବିଧା ମାରି ହସ୍ତୀ ମାଇଲେ ବହୁତ ॥
କାହାକୁ ଧରିଣ କଚାଡ଼ନ୍ତି କୋପେ ।
କାହାକୁ ଫୁଟାଇ ମାରନ୍ତି ଆଗ ଧାପେ ॥୯୦
କେବଣ ମତ୍ତଗଜକୁ ବେଢ଼ନ୍ତି ଦଶବିଂଶ ।
ଲାଞ୍ଜ ମୋଡ଼ିଣ ଉଚ୍ଛୁଡ଼ନ୍ତି ଅଙ୍କୁଶ ॥
କର୍ଣ୍ଣ ଛିଣ୍ଡାନ୍ତି ବିଦାରନ୍ତି ଥୋରହସ୍ତ ।
କାନ୍ଧରୁ ବାଳଧରି ମାରନ୍ତି ମାହୁନ୍ତ ॥
ଉପରେ ଉଠିଣ ପାଗଡ଼କୁ ପକାନ୍ତି ପେଲି ।
କାହାର ଗୋଡ଼ ଧରନ୍ତେ କେ ନ ପାରଇ ଟାଳି ॥
କାହାକୁ ହିଆଦଣ୍ଡ ମାରିଣ ପକାବନ୍ତି ।
କେବଣ ଗଜକଇ ହାବୋଡ଼ିଣ ଯାନ୍ତି ॥
କେବଣ ହସ୍ତୀର ରକତ କପାଳେ କରନ୍ତି ଟିତା ।
କେ ହସ୍ତ ଶୁଙ୍ଘିଣ ବୋଲନ୍ତି ମହାପିତା ॥୧୦୦
କେହୁ ଗଜର ମୁଣ୍ଡରେ ଆପଣା ମୁଣ୍ଡ ଘଷି ।
ସିନ୍ଦୂର ଲାଗିଲା ବୋଲିଣ କେହୁ ହସି ॥
ମରନ୍ତେଣ ହସ୍ତୀ କରନ୍ତି ଗରଜନ ।
ଦେଖି କୋପକଲେ ରାବଣ ନନ୍ଦନ ॥
କୁମ୍ଭେକ ମହୀସୁର ଯୁରାସୁର ଧାମନ୍ତି ।
ଗିରିବର ସମାନେ ହସ୍ତୀ ଚଢ଼ିଛନ୍ତି ॥
କେ କାଣ୍ଡ କୋଦଣ୍ଡ ଗଦା ଚକ୍ର ଘେନି ।
ଅଙ୍ଗଛଳେ ଯୁଝିଲେ ଅସୁର ସଇନି ॥
ବିକଟ ପ୍ରଶସ୍ତ ଚଢ଼ିଣ ମତ୍ତଗଜ ।
ରିକ୍ଷ ମର୍କଟଙ୍କୁ ବିନ୍ଧନ୍ତି ନାରାଜ ॥୧୦
ମହାପାରୁଶ ବୀର ଉତ୍ତମ ନାଗ ଚଢ଼ି ।
ପାଞ୍ଚକୋଟି ଭଲ୍ଲୁକ ମାଇଲା ଏକଘଡ଼ି ॥
ଅସୁର ଅସ୍ତ୍ର କରି ନାଶିଲାକ ବଳ ।
ଦେଖିଣ ଧାଇଂଲା ପବନର ବାଳ ॥
ଗବଏ ଗବାକ୍ଷ ଶତବାଳି ମହୀନ୍ଦ୍ର ବୀର ।
ତରୁଶିଳ ବୃଷ୍ଟି କରନ୍ତେ ଅନ୍ତରାଳ ॥
ସେ ଷଡ଼ରଥୀ ବିନ୍ଧିଲେ ତୀକ୍ଷଶର ।
ଶ୍ରାବଣରେ ଯେହ୍ନେ ବରଷଇ ଜଳଧାର ॥
କପି ପାଞ୍ଚବୀରେ ହେଠମାଥ ହୋଇ ।

ବିଷମ ରଣ ଧନ୍ଦୋଳ କଲେକ
ରଣଭୂଇଁ ॥୨୦
ଲକ୍ଷେକ ମତ୍ତଗଜ ମାରିଲେ ନିମିଷକେ ।
ଆକାଶେ ଥାଇ ତାହା ଦେଖନ୍ତି ସୁରଲୋକେ ॥
ରାବଣ ତନଏ ମହାପାଗୁଶ ନାମ ।
ଦେବଙ୍କୁ ଦୁର୍ଲ୍ଲଭ କଲାକ ସାଂଗ୍ରାମ ॥
ସ୍ୱର୍ଗ ମଞ୍ଚପୁର ପୂରାଇଲାକ ବାଣେ ।
ଋକ୍ଷ କପିବଳ ପଳାଇଲେ ଯେଣେତେଣେ ॥
ଅନେକ ସୂର୍ଯ୍ୟକି ଉଦଯେ ରଣଭୂଇଁ ।
ଶହସ୍ରଙ୍କର ତେଜ କି ଚନ୍ଦ୍ରମା ଉଇଁ ଆସଇ ॥
ଭାଙ୍ଗିଲେ ଶତବାଳି ଗବଯେ ଗବାକ୍ଷ ।
ପଛଘୁଞ୍ଚା ଦେଲେ ପବନର ବଚ୍ଛ ॥୩୦
ପଳାଇଲେ ଥାଠ ନ ରହିଲେ କେହି ।
ପାଞ୍ଚ ସେନାପତି ଆସନ୍ତି ଯୁଦ୍ଧ ସହି ॥
ରହ ରହ ବୋଇଲେ ନ ରହନ୍ତି ବଳ ।
ଗୋଡ଼ାଇ ମାରନ୍ତି ଅସୁର ଅଚାର୍ଗଳ ॥
ଯେକ ମୁଂହ ହୋଇ ଉଠିଲେ ହାଥୀଦଣ୍ଡ ।
ନିଶାଣର ଘାୟେ କମ୍ପଇଂ ଭୂଅଖଣ୍ଡ ॥
ଦୂରେ ଥାଇ ତାହା ଦେଖଇ ଲଙ୍କପତି ।
ଶୁକ ସାରଣଂକୁ ହକାରିଲା କତି ॥
ବୋଇଲା ଶ୍ରୀରାମର ଭାଙ୍ଗିଲେ ଦୁଇ ଥାଠ ।
ଦେଖ ପଳାଉଣ ଅଛନ୍ତି ନ ପାଇଣ
ବାଟ ॥୪୦
ଭଲା ପୁତ୍ରେ ତୁମ୍ଭେ କଲ ବାପର କାର୍ଯ୍ୟ ।
ଅଭିମାନ ସମୋଦ୍ରେ ମୋତେ ଉଦ୍ଧରି ଧଇଲ
ଆଜ ॥
ଯେସନେକ ବୋଲି ସାରଥିକି ଚାହିଁ ।
ବୋଇଲା ରଥ ମୋର ବେଗେ ନିଅ ବାହି ॥
ଶ୍ରୀରାମକୁ ଛୋଡ଼ଇ ନ ଛୋଡ଼ଇଂ ଆନ ।
ସୋଦର ଭାଇ ମୋର ପଡ଼ିଲା କୁମ୍ଭକର୍ଣ୍ଣ ॥
ସେ କଷ୍ଟ ପାଶୋରିବି ଶ୍ରୀରାମକୁ ମାରି ।
ଇନ୍ଦ୍ରଜିତ ପୁରୁଛିବି ଲକ୍ଷଣକୁ ସଂଘାରି ॥
ହନୁମନ୍ତକୁ ମାରିଲେ ସରଇ ଲଙ୍କା ଦୁଃଖ ।
ଅଙ୍ଗଦକୁ ବଧିଲେ ଆତ୍ମା ମୋର ସୁଖ ॥୫୦
ସୁଗ୍ରୀବର ନେଲା କୁମ୍ଭକର୍ଣ୍ଣର ନାକ କାନ ।
ନଳ ବନ୍ଧ ବାନ୍ଧିଲା ପାରି ହୋଇଲେ ସନ୍ୟ ॥

ବିଭୀଷେଣ ମୋର ସଗୋତ୍ର ମରାଇଲା ।
ନୀଳ ଆଗିଆଣି ହୋଇଣ ଡରାଇଲା ॥
ସୁଷେଣ ଓଷଧେ ମୋର ଜୀଇଂଲା ବଇରୀ ।
ଜମ୍ୱେବ ବୁଦ୍ଧିରେ ମୋର ରାମ ସଇନି
ମାରି ॥
ଗନ୍ଧମାଦନ ମୋର ପୁତ୍ରରା ମାଇଲା ।
କେଶରୀ ପୁଅ ଯୋଗେ ମୋର ଅକ୍ଷଯେ
କ୍ଷୟ ଗଲା ॥
ମହୀନ୍ଦ୍ର ଦୃବିନ୍ଦ ଭଣଜାକୁ ଘେନି ।
ଦଳି ପକାଇଲେ ଅସୁର ସଇନି ॥୬୦
ବଳିମୁଖ ମୋତେ ଦେଖିଲେ ବୋବି
ପାରଇ ।
ଶଉରୀ ସେନାପତିକି ମୋର ଯେତ୍ତେ ଥାଠ
ଡରଇ ॥
ତାରାକ୍ଷ ଶ୍ରୀରାମକୁ ଆଣିଲା କଡ଼ାଇଂ ।
ରାମଣ ପ୍ରସାଦେ ତାର କାହାକୁ ଭୟେ
ନାହିଁ ॥
ଋକ୍ଷ କପିବଳ ଦେଖିଲେ ମୋତେ ସାନ ।
ଆଜ ସେ ସାରିବି ତହିଂର ଅଭିମାନ ॥
ଶତ୍ରୁ ନ ମାଇଲେ ମୋର ନ ରହଇ
ବଡ଼ପଣ ।
ଯେଥୁ ଅନନ୍ତରେ ବିଚିତ୍ର କଥା ଶୁଣ ॥
ଦଶ ସହସ୍ର ରଥୀ ବୁଡ଼ା ଦେଇଥିଲେ ।
ସୁବେଳୟା ଗିରି ସଳଖୁଂ ଧାଇଂଣ
ପଡ଼ିଲେ ॥୭୦
କୋଳାହଳ ନିଶାଣ ବାଜଇ ବିକଟାଳ ।
ବିଭୀଷେଣକୁ ପଚାରିଲେ କୌଶୁଲ୍ୟା
ଦୁଲାଳ ॥
ହନୁମନ୍ତ ଅଙ୍ଗଦ ଆସୁଛନ୍ତି ଭାଜି ।
ଆଗିଆଣି କପି ଫୁଟିଲେନି ଯୁଝି ॥
ପଛେଣ ଟମକ ବାଜଇ ଘନଘନ ।
ଆଇମ୍ୟ ଧ୍ୱଜ ପାତାଙ୍ଗ ଅସୁରଙ୍କର ଚିହ୍ନ ॥
ହସ୍ତୀ ଘୋଡ଼ା ନାହିଂ ଅଳପ ପାଦାନ୍ତି ।
ଅନେକ ରହୁବର ଦିଶନ୍ତି ପନ୍ତି ପନ୍ତି ॥
କେହୁଣିହି ଦିନେତ ନାହିଂ ଏ ବିଛନ୍ଦ ।
କୁମନ୍ତ୍ର ବୁଦ୍ଧି ଯେ ପାଞ୍ଚିଛି ଦଶକନ୍ଧ ॥୮୦

ପଛର ଥାଠ ଦେଖି ଆଡ଼ହୋଇ ଗଲେ ।
ପିଠି ଉପରେ ଯାଇ ମାଡ଼ିଣ ପଡ଼ିଲେ ॥
ପଛେ ଦଶଗ୍ରୀବ ଆଗେ ପଛିଆଣି ।
ଅସଂଖ୍ୟ ସନ୍ୟ କେ ପାରିବାକ ଗଣି ॥
ବ୍ରହ୍ମାଣ୍ଡ ନ ସହଇ ଯାହାର କଟକାଇ
କଲେ ।
ଋକ୍ଷ କପି ଲୁଚାଯେ ଅକାରଣ ମଲେ ॥
ଯେ ସେ ରାବଣର ସମ୍ପଦ ବଡ଼ପଣ ।
ବେନି ଚକ୍ଷୁ ଘେନି ଦେଖିଲି ଆପଣ ॥
ରଣ ବାହୁ ବାନା ଉଡ଼ୁଛି କେତ୍ତେ ଉଞ୍ଚେ ।
ଫରହର ସୁନ୍ଦର ଦିଶଇ ମହାସଞ୍ଚେ ॥୯୦
ଏହି ସେ ପୁଷ୍ପେକ ସୁନ୍ଦର ଦେବଯାନ ।
ଏଥେ ବସି ସୃଷ୍ଟି ସାଧିଲା ଦଶାନନ ॥
ଲକ୍ଷେକ ଶ୍ୱେତ ଚାମର ଉଡୁଅଛି ଚାହାଂ ।
ଧନ୍ୟ ଧନ୍ୟ ଜୀବନରେ ଅଟଇ ବିଂଶବାହା ॥
ଏତ୍ତେ ସମ୍ପଦ ତୋତେ ହୋଇଲାକ ଗରୁ ।
ମହାରାଜା ହୋଇଣ ତୁ ପରସ୍ତିରୀ ହରୁ ॥
ଆଜ ସେ ଜାଣିମାନ ସଂଗ୍ରାମ ତୋହୋର ।
ଏତେ ବୋଲି ତ୍ରୋଣରୁ କାଢ଼ିଲେ ତୀକ୍ଷ
ଶର ॥
ପଛିଆଣି ଦଣ୍ଡକୁ ପେଷିଲେ ବିଭୀଷେଣ ।
ନଳନୀଳ ଜମ୍ୱେବ କୁମୁଦ ସୁଷେଣ ॥୧୦୦
ବୋଲନ୍ତି ଏ ଯେମନ୍ତେ ନପଡ଼ିବେ ମାଡ଼ି ।
ମାରମାର ଅସୁରକୁ ଓପ୍ରୋଧମାନ ଛାଡ଼ି ॥
ଶୁଣିଣ ଧାଇଂଲେ ଜମ୍ୱେବ ନଳନୀଳ ।
କୁମୁଦ ସହିତେ ଆବର ବିଶ୍ୱବୀର ବାଳ ॥
ଥାଠ ଅପ୍ରମିତ ଋକ୍ଷ କପିବଳ ।
ମାର ମାର ଶବଦ ଡାକନ୍ତି ଅପାର ॥
ବିଭୀଷେଣ ବୋଇଲା ଶ୍ରୀରାମକୁ ଚାହିଁ ।
ଆପଣେ ସମରେ ପଶିଲା ଲଙ୍କସାଇଂ ॥
ସର୍ବଦା ଲକ୍ଷ୍ମଣକୁ କରଇ ସେ ରାଗ ।
ନପୁଣ ସଉମିତ୍ରୀ ପଡ଼ଇ ତାର ଆଗ ॥୧୦
ତୁ ଦେବ ସମର ବିଚାରି ଆଜକର ।
ଆନଦିନ ପରାଏ ଆଜ ନୁହଂଇଟି ରଘୁବୀର ॥
ଅସୁରେ ନିଶାଚରେ ଯୁଝନ୍ତି ପରିଘାଇ ।
ଆଗିଆଣି ବଳ ତୋର ଆସୁଅଛନ୍ତି ପଳାଇ ॥

ଅଙ୍ଗଦ ଭାଙ୍ଗିଲା ଭାଙ୍ଗିଲା ହନୁମନ୍ତ ।
ବିଷମ ସମର ଆଜ ହୋଇବ ସୀତାକାନ୍ତ ॥
ପଞ୍ଚରଥୀମାନେ ପଡ଼ିଲେକି ମାଡ଼ି ।
ଦେଖ କପିମାନେ ପଳାନ୍ତି ଶସ୍ତ୍ର ଛାଡ଼ି ॥
କଥା କହନ୍ତେଣ ଅଙ୍ଗଦ ଆସି ହୋଏ ।
ପୟେଡ଼ ପଡ଼ିଛନ୍ତି ରାବଣର ପୋଏ ॥୨୦
ଦେଖିଣ ଶ୍ରୀରାମର ନ ଫୁରଇ କିଛି ।
ପୂର୍ବକୁ ଚାହିଂଲେ ହନୁମନ୍ତ ଭାଙ୍ଗିଅଛି ॥
ଶତବାଳି ମହୀନ୍ଦ୍ର ଗବଏ ଗବାକ୍ଷ ।
ପିଠି ଦେଇଛନ୍ତି ଦେଖିଲେ ରଘୁବନ୍ଧ ॥
ପଛେଣ ମାରନ୍ତି ଦଶ ସହସ୍ର ରଥୀ ।
ତେତେ ସନ୍ୟ ଗୋଟା ପକାଇଲେ ମନ୍ଥି ॥
ନଳନୀଳ କୁମୁଦ ଜମ୍ବେବ ସୁଷେଣ ।
ସମଦଣ୍ଡେ ପଶି ଏ କଲେ ମହାରଣ ॥
ଏସନକ ସମଏ ଧାଇଲା ଲଙ୍କପତି ।
ପିଠିକି ରକ୍ଷା ଅଛନ୍ତି ତେରଶତ ନାତି ॥୩୦
ଅଠତିରିଶି କୋଟି ମୁକୁଟ ଯୋଦ୍ଧା ଘେନି ।
ଅଠର କ୍ଷଉଣୀ ପଏକାର ସଇନି ॥
ଯମଦାଢ଼ ଅଶ୍ୱକର୍ଣ୍ଣ ପାଟୋଳୀ ବିରୁଳାକ୍ଷ ।
ଚାରଣ ବିଚାରଣ ସମଏ ଲୋହିତାକ୍ଷ ॥
ଏକପାଦ ପ୍ରମାଦ ଅଟଇ ଦଶସେହ୍ନା ।
ସଙ୍ଗରେ ରଥ ଗଜ ନଯାଇ କଳନା ॥
ରକ୍ଷ କପିବଳ ମାରନ୍ତି ପରିଘାଇ ।
ଯେ ଭେଟ ପଡ଼ଇ ଜୀବନ ତାର ନାହିଂ ॥
ଦଶ ସହସ୍ର ରଥୀ ଅଶୋକ ବିଶୋକ ।
ଦୃଢ଼କପଟ ବଜ୍ରକପଟ ଅମର
ଅନେକ ॥୪୦
ଶତ୍ରୁଜିତ ସହସ୍ରାଜିତ ଶ୍ରୋଣିତାକ୍ଷ ଅମଏ ।
ଆଗେ ଥାଟ ସେନାପତି ଅଟନ୍ତି ଅଜଏ ॥
ପିଠି ଉପରେ ପଡ଼ି ମାଇଲେ କପି ବଳ ।
ଡରେ ରକ୍ଷ କପି ଧରି ନ ପାରନ୍ତି ତରୁଶିଳ ॥
ଜମ୍ବେବ ନଳନୀଳ କୁମୁଦ ସୁଷେଣ ।
ଏହାଙ୍କର ନଯାଉଂ ତେଣେ ଭାଜିଲେଣି
ସନ୍ୟ ॥
ପଳାଇଣ ଥାଟ ଶ୍ରୀରାମଙ୍କୁ ଆଶ୍ରେ କଲେ ।
ଆଗିଆଣି ବଳ ସହିତେ ଭାଜିଲେ ॥

କାଳକେତୁ ଅଗ୍ନିକେତୁ ରଶ୍ମିକେତୁ ଅମୟେ ।
ଯମଦାଢ଼ ଘେନି ଯେ ପାଞ୍ଚବୀର ଆଏ ॥୫୦
ଜ୍ୟୋତିସାଗର ଏକଶିର ପଞ୍ଚଶିର ।
ମହାସନିନାମେ ଇନ୍ଦ୍ରଜିତର କୁମର ॥
ଚତୁରାଙ୍ଗ ବଳ ଘେନି ପଡ଼ିଲେକ ଝାସି ।
ରକ୍ଷ ବାନରଙ୍କୁ ପକାଉଛନ୍ତି ନାଶି ॥
ଆପଣେ ଦଶଗ୍ରୀବ ପଶିଲାକ ରଣେ ।
ଚାଳିଶି ଲକ୍ଷ ଅଶୁଆର ତାର ଅଛନ୍ତି
ଗହଣେ ॥
ପଚିଶ ପୁତ୍ର ଘେନି ମନ୍ଥଇ କପିବଳ ।
ବ୍ରହ୍ମାଣ୍ଡ ପୂରିଅଛି ମୁଖର ଚହଳ ॥
ପାଦଘାତରେ କମ୍ପଇ ମେଦନୀ ।
ସ୍ୱର୍ଗପୁରରେ ଥାଇ ଦେଖନ୍ତି ସୁରମୁନି ॥୬୦
ରକ୍ଷକପି ଅସୁରେ ହୋଇଲେ ମିଶାମିଶି ।
ଦିବସର ବେଳେ ଆଦିତ୍ୟେ ନ ଦିଶି ॥
ପର ଆପଣା କେ ବାରିତ ନପାରି ।
ନିରନ୍ତରେ ଏକ ଆରେକ ମରାମରି ॥
ବୃକ୍ଷଶିଳା ଆତଯାତ ଅସ୍ତ୍ର ପିଟାପିଟି ।
ଗାଢ଼ ଘାଆ ପାଇକି ଅନଳ ଜଳିଉଠି ॥
ଅସୁରେ ଛିଟିକିଣି ଛାଟନ୍ତି ଘନଘନ ।
ପାଷାଣ ଯନ୍ତାକାଣ୍ଡ ଉଡ଼ନ୍ତି ଗଗନ ॥
ଶତେ ଯୋଜନ ଦୀର୍ଘ ଶତେ ଯୋଜନ
ପ୍ରତି ।
ସଇନି ପୂରିବାରେ ନଦିଶଇ ପୃଥ୍ୱୀ ॥୭୦
ସନ୍ୟ ବଳ ହୋଇ କରନ୍ତି ସମର ।
ଦେବଙ୍କୁ ଦୁର୍ଲଭ ମାନୁଷ୍ୟେ ଅଗୋଚର ॥
ସୁଗ୍ରୀବରଙ୍କୁ ଚାହିଂ ବୋଲନ୍ତି ଭୋ ମଇତ୍ର ।
ଆଜର ଯୁଦ୍ଧେ ମୋତେ ଲାଗୁଛି ବିପରୀତ ॥
କି ହୋ ବିଭୀଷେଣ କେମନ୍ତ ଏ କଥା ।
ଇନ୍ଦ୍ରଜିତ ତହୁଂ ବଡ଼ ସାମରଥା ॥
ତାହାକୁ ଦେଖିଲେ ମୋର ନଭାଜନ୍ତି ସନ୍ୟ ।
କେବଣ ଆକାର ଏଥି ହୋଇଲା ଏ ମାନ ॥
ବିଭୀଷେଣ ବୋଇଲା କିମ୍ପାଇ ତୁହି ଭାଳୁ ।
ବଇରୀକି ପୁତ୍ରପ୍ରାୟେ ତୁହି ପାଳୁ ॥୮୦
ଭୁଞ୍ଜିବାର ପରାୟେ ନୁହଇ ସମର ।
ହାରିବା ଜିଣିବା ଯେ କ୍ଷତ୍ରିଙ୍କର ବେଭାର ॥

ରାବଣ କେତେବେଳେ ଯାଇ ନାହିଂ ହାରି ।
ଇନ୍ଦ୍ରଜିତ ଗଲାଟିକି ଦୁଇବେଳ ମାରି ॥
ଲକ୍ଷ୍ମଣ ଶକତି ତହୁଂ କି ଏ ଅଟଇ
ବଡ଼କଥା ।
ଏହିକ୍ଷଣି ମାରି ପାରଇ ଦଶମଥା ॥
ହନୁମନ୍ତ ଭାଜି ଯେ ଆସୁଅଛି ଯେଣେ ।
ତହିଂକି ଏବେ ଯାନ୍ତୁ ସୁଗ୍ରୀବର ରାଣେ ॥
ଅଙ୍ଗଦକୁ ପିଠି ହୁଅନ୍ତୁ ଲକ୍ଷଣ ।
ତୁ ଦେବ ଆପଣେ ଲଙ୍କପତି ଜିଣ ॥୯୦
ପଛିଆଣି କଥା ଲାଗିଲାକ ମୋତେ ।
ନଳନୀଳ ପିଠିକି ରକ୍ଷା ଥିବେ ତୋତେ ॥
ଏହୁ ଅଟନ୍ତି ଯେ ଜମ୍ବେବ ସୁଷେଣ ।
ଏହାନ୍ତ ନଛାଡ଼ ତୁ ମୋହୋର ବୋଲଶୁଣ ॥
ପଚିଶ ଯୂଥପତିଙ୍କୁ ଚାରିଦିଗକୁ ବାଣ୍ଟ ।
ଏକାବେଳେକେ ବାବୁରେ ସମସ୍ତେ ଘେନି
ଉଠ ॥
ଏତେ ବୋଲି ବିଭୀଷେଣ ଟମକ
ଦିଆଇଲା ।
ସେ କଥା ଶ୍ରୀରାମର ମନକୁ ଯୋଗାଇଲା ॥
ରକ୍ଷ କପିମାନଙ୍କୁ ବୋଇଲେ ଶବଦାଇ ।
ମଲ୍ଲ ମହାମଲ୍ଲ ବୀରମାନନ୍ତ ଚାହିଂ ॥୧୦୦
ଯେଉଂ ଯେଉଂମାନେ ଅଛ ହୋ
ବଳୀଆର ।
ଘେନିଉଠ ବାବୁରେ ଅସୁରଙ୍କୁ ମାର ॥
ଦେଖଟିକି ଯେବେ ଅପଚୟେ ପଡ଼ିଲା ।
ରାକ୍ଷସ ବଳ ଆମ୍ଭଙ୍କୁ ନିର୍ବନ୍ଧେ ବେଢ଼ିଲା ॥
ପଳାଇ ଯିବାକୁ ନାହିଂ ଏଥି ବାଟ ।
ଯେ ଯାହାର ସୁଖେ ବାବୁରେ ଘେନି ବେଗେ
ଉଠ ।
ଯେତେବୋଲି ରଘୁନାଥ କଲେକ ଶଙ୍ଖ
ଧ୍ୱନି ।
ତେଜମୟେ ହୋଇଲେ ରକ୍ଷକପି ସଇନି ॥
ଗମ ଗମ ହୋଇ ଗର୍ଜଣ ଉଠିଲେ ।
କୋଟି କୋଟି ହୋଇ ପଶିଲେ ଦତ୍ୟ
ପଲେ ॥୧୦
ମାର ମାର ହାଣ ହାଣ ଶୁଭଇ ଶବଦ ।

ଦୁଇଆଡ଼େ ବାଜଇ ବୀର ତୂର ବାଦ୍ୟ ॥
ଗଲା ଗଲା ନାହିଁ ନାହିଁ ହୋଇ ହୋଇ
ଶୁଭେ ।
ବ୍ରହ୍ମା ରୁଦ୍ର ମୂଳେ ଦେଖନ୍ତି ସର୍ବ ଦେବେ ॥
ଅସଂଖ୍ୟ ସମର କହିତ କେହୁ ପାରି ।
ନାହିଁ ବିଶୁଆସ ଅବିଛନ୍ନେ ମାରି ॥
ଧାଇଂ ତେଇଂଣ ମିଶି ପଶି କାର୍ଯ୍ୟ କରି ।
ଉଡ଼ା ମାରି ଫରି ରହନ୍ତି ସଂହରି ॥
ଓଷ୍ଟ କାମୋଡ଼ିଣ ତରାଟନ୍ତି ଆଖି ।
ଆଗଭର ସମର କରନ୍ତି ଦେଖାଦେଖି ॥୨୦
ଧରିମାରି ପକାନ୍ତି ଏଣେ ତେଣେ ।
ଦୁଇ ବଳ ଲୋକେ ଉତକର୍ମ ରଣେ ॥
ରଡ଼ି ଘନ ଘନ ଖର ନିଶୁଆସ ।
ବିଷମ ଘାତ ପାଇ ନମଣନ୍ତି ପ୍ରାସ ॥
ପରିଘାର ଯୁଝନ୍ତି ଅଙ୍ଗଛଳ କରି ।
ପଛକୁ ନଘୁଞ୍ଚନ୍ତି ଅଇରି ଆଗେ ମିଳି ॥
ବଳ ନିରିବଳ ବାରିତ ନପାରି ।
ଯାହାର ମୁଖେଣ ଯେ ପଡ଼ଇ ସେ ତାହା
ଘେନି ମାରି ॥
ଅଣଚାଶ ପବନ ପ୍ରଳୟ କାଳେ ବହି ।
ମୁଖ ରୋଳେ ତବଦ ହୋଇଅଛି
ମହୀ ॥୩୦
ଚଉଦ ଭୁବନ ଲୋକେ ନିଶବଦ ହୋଇ ।
ଏକ ଦୃଷ୍ଟି ହୋଇଣ ଚାହାନ୍ତି ରଣଭୂଇଂ ॥
ଅନିର୍ଯ୍ୟାପ ରଣ ଅବିଚାରେ ମରି ।
ଦେବଙ୍କୁ ଦୁର୍ଲଭ ସଂଗ୍ରାମ କହିତ ନ ପାରି ॥
ସ୍ୱୟଂ ନାରାୟେଣ ଆପଣେ ଯୁଦ୍ଧ କରଇ ।
ରକ୍ଷ କପି ଘେନି ଅସୁର ବଳ ସଂଘାରଇ ॥
ଉଗାଳି ଉଠାଉଠି ରହି ମରାମରି ।
ରିଝାଇ ଅଭିମାନେ ସମର ହାଦେ କରି ॥
ଯହୁଂ ସେ ଅସଖ୍ୟ ହୋଇଲା ରଣଗୋଳ ।
ଅସୁରଙ୍କ ଯୁବତୀମାନେ ଧାମନ୍ତି
ସକଳ ॥୪୦
ଧାଅଂ ଧାଅଂ ଆସ ଆସ ଦେଖ ଦେଖ
ଆହେ ।
ଅପୂର୍ବ ସଂଗ୍ରାମ ଦେଖିଲା ନାହିଁ କିହେ ॥

ଆମ୍ଭର ଲୋକମାନେ ଜିଣିଲେଣି ଆଜ ।
ରକ୍ଷ କପି ସହିତେ ବନ୍ଦୀ ପଡ଼ିଲେ ରଘୁରାଜ ॥
କେ ବୋଲଇ ତଇଥ ବାରତା ନିହାଇ
ନପାଇ ।
କେ ବୋଲଇ ଅସୁରେ ମାଇଲେକି
ଗୋଡ଼ାଇ ॥
ରାବଣ ବୁଧିକି କି ଆନ ଲୋକ ସରି ।
ଥାଟ ବାଣ୍ଟିଲା ଚାରି ଭାଗ କରି ॥
ଆପଣେ ପଛିଆଣି ସମ୍ପଦଯୋକ ଘେନି ।
ଏଥୁଂ ଉବୁରନ୍ତି କି ରକ୍ଷ କପି ସଇନି ॥୫୦
ସୀତାଙ୍କୁ ବାରତା ଯାଇ କହିଲେକ ତ୍ରିଜଟା ।
ଅପୂର୍ବ ହୋଇଅଛି ଗୋ ଆଜର ଯୁଦ୍ଧ
ଗୋଟା ॥
ରକ୍ଷ କପି ରାକ୍ଷାସେ ରଣରଙ୍ଗେ ମିଶା ।
ଆଜୁଂଅବା ଲେଉଟଇ ଗୋ ତୋହୋର କର୍ମ
ଦଶା ।
ହୋଇ ହୋଇ ବୋଲଇ ସେ ଜାତି
କମଳିଣୀ ।
ଧର୍ମର ପ୍ରସାଦେ ଗୋ ଜିଣନ୍ତୁ ରଘୁମଣି ॥
ଦୁଃଖୀ ଲୋକକଇ ଧର୍ମ ହାଦେ ସାହା ।
ନିରେଖ ନିର୍ବଳ ଅଟନ୍ତି ମୋର ନାହା ॥
ବିକଳେ ଭାଲୁକ ମର୍କଟକୁ କଲା ଆଶ ।
ଦଇବକୁ କି ବୋଲିବି ସବୁ ମୋର
ଦୋଷ ॥୬୦
ଏସନେକ ବୋଲି ବୋଲଇ ବଇଦେହୀ ।
ପାର୍ବତୀର ଆଗେ ସଦାଶିବ କହି ॥
ଶୁଣ ଶାକାମ୍ଭେରୀ ଗୋ ଶ୍ରୀରାମ ଚରିତ ।
ଯେବଣ ପ୍ରକାରେ ମାଇଲେ ଦଇତ ଗୋତ୍ର ॥
ବ୍ରହ୍ମାଣ୍ଡର ଶତ୍ରୁ ସେ ଦଶଗ୍ରୀବ ବୀର ।
ଦଶଭୁଜେ ଧନୁ ଦଶ ଭୁଜେ ଶର ॥
ଅଙ୍ଗଦ ହନୁମନ୍ତ ଭାଜିଲେ ଯହୁଂ ରଣେ ।
ଦଶସହସ୍ର ରଥୀ ଧାଇଂଲେ ଯେ ତେଣେ ॥
ଆଗିଆଣି ଦଣ୍ଡ ପଯେକାର କଲା ।
ଦେଖି ଦଶଗ୍ରୀବ ସନ୍ତୋଷ ହୋଇଲା ॥୭୦
ବିଚାରିଲା ଇଙ୍କମଲ୍ଲ ମରିବ ଯେବେ ମୋର
ଶତ୍ରୁ ।

ଯୁଦ୍ଧେ ଜିଣିଲେ କଥା ଯୁଗେ ଯୁଗେ ବ୍ରତୁ ॥
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ଦୁଇ ବୀରେ ଗଲେ ।
ଆବର ହିଂ ଅନେକ ରଥୀ ରଣେ ମଲେ ॥
ସେନା ସେନାପତି ପଡ଼ିଲେ ମୋର ଦେଖୁ ।
ମହାମହାବୀରେ ଅଟନ୍ତି ଏକଏକୁ ॥
କେବଣ ଚରିତ ଆଜ ଭାଜିଲ ଶ୍ରୀରାମର
ସନ୍ୟ ।
ବାବୁରେ ପୁତ୍ରେ ତୁମ୍ଭ ମହିମା ଧନ୍ୟ ଧନ୍ୟ ॥
ରଘୁନାଥ ପ୍ରାୟେ ମିଳିଅଛି ବଇରୀ ।
ତୁମ୍ଭର ବଳେ ହୁଅଇ ଏମନ୍ତ କର୍ମ
କରି ॥୮୦
ଯେବଣ ରକ୍ଷ କପି ମୋତେ ନଡରନ୍ତି ।
ତୁମ୍ଭର ମୁଖ ଦେଖି ସେ ପଳାଇ ଯାଉଛନ୍ତି ॥
ରଶ୍ମିକେତୁ ଅଗ୍ନିକେତୁ ପାଟେଳି ବିରୁଲାକ୍ଷ ।
କୁମ୍ଭେକ ମହୀଘଣ୍ଟ ବୀରଘଣ୍ଟ ଲୋହିତାକ୍ଷ ॥
ଆବର ମହାସନି ପ୍ରଶସ୍ତ ବେନିବୀର ।
ଚାରଣ ବିଚାରଣ ଜ୍ୟୋତି ଯେ ସାଗର ॥
ଶତ୍ରୁଜିତ ଶସ୍ତ୍ରଜିତ ମିତ୍ରଘନ ଅମଏ ।
ପ୍ରମଥ ଅଶ୍ୱକର୍ଣ୍ଣ ଏକପାଦ ସମଏ ॥
ବିକଟ ବକାସୁର ଅଶୋକ ବିଶୋକ ।
ବକ୍ରକପଚ ଦୃଢ଼କପଚ ଅମଏ
ଅନେକ ॥୯୦
ଶୋଣିତାକ୍ଷ ମହୀଶୂର ଓହୋବଳ ଯୋଧି ।
ନୋହିଲେ ରକ୍ଷ କପି ହୋଇଲେ କେନ୍ଦ୍ରେ
ଧନ୍ଧି ॥
ହନୁମନ୍ତ ପ୍ରାୟେ ଭାଜିଲା ତେଡ଼େ ବୀର ।
ଆବର ହିଂ ଭାଜିଲା ବାଳୀର କୁମର ॥
ଆଗିଆଣି ଦଣ୍ଡ ସହିତେ ଗଲେ ହାରି ।
ଦଶସହସ୍ର ରଥୀ ଆସୁଛନ୍ତି ତେଣେ ମାରି ॥
ଇଷ୍ଟଦେବତା ଯେବେ କଲା ମୋତେ
ଦୟା ।
କେତେ ଅଭିମାନ ସହିବ ମୋର କାୟା ॥
ଆଜ ଯେବେ ବଳ ପାରଇ ସଂହାରି ।
ତେବେ ସେ ଭୋଗ୍ୟ ମୁଂ କରିବି
ତିନିପୁରୀ ॥୧୦୦
ଏସନେକ ବିଚାରି ଶ୍ରୀରାମର ସନ୍ୟ ।

ରାକ୍ଷସଙ୍କ ସଙ୍ଗେ ଯୁଝନ୍ତି ଅନ୍ୟୋଅନ୍ୟ ॥
ଅଭିମାନ ଘେନି ଅନେକ ଯୁଦ୍ଧ କଲେ ।
ତରୁଶିଳ ଘାଏ ବହୁତ ରାକ୍ଷସ ହିଂ ମଲେ ॥
କିଳିକିଳା ଶବଦ କରନ୍ତି ରୋଷଭରେ ।
କେହୁ ନିସତ ହୋଇ ମହାଯୁଦ୍ଧ କରେ ॥
ହନୁମନ୍ତକୁ ପିଠି ହୋଇଲା ସୁଗ୍ରୀବର ।
ଅଙ୍ଗଦକୁ ରଖିଲେ ସୁମିତ୍ରାକୁମର ॥
ପଛିଆଣି ଥାଟକୁ ଯେ ବିଭୀଷେଣ ଗଲା ।
ଶ୍ରୀରାମ ଧନୁ ଧରି ଆଗିଆଣି ବଳକୁ
ଯୁଝିଲା ॥୧୦
ପଚିଶ ଯୂଥପତି ଗୋଳଯୁଦ୍ଧ କଲେ ।
ତରୁଶିଳ ଘାୟେ ଅନେକ ରାକ୍ଷସ ମଲେ ॥
ଦୁଇ ମନ୍ତ୍ରୀ ଘେନି ଶ୍ରୀରାମଚନ୍ଦ୍ର ରାଏ ।
ଦେବଙ୍କୁ ଦୁର୍ଲଭ ସେ ଯେବଣ ଯୁଦ୍ଧ କଏ ॥
ଏକଇ ନାରାଚ୍ଚକେ ମାଇଲେ ଲକ୍ଷେ ଲକ୍ଷ ।
ଏ ବିଧିରେ ଯୁଝୁଅଛି ସୁମିତ୍ରାର ବଛ ॥
ଅପୂର୍ବ ସାଂଗ୍ରାମ ଯେ କଲା ବିଭୀଷେଣ ।
ହନୁମନ୍ତ ଜମ୍ବେବ ନଳନୀଳ ସୁଷେଣ ॥
ଶତବାଳି ମହାନ୍ଦ୍ର ଚନ୍ଦନ ଦଧିମୁଖ ।
ଗବଏ ଗବାକ୍ଷ ଡାଳିମ୍ବ ବଳିମୁଖ ॥୨୦
କୁମୁଦ କାଳିଞ୍ଜନ ଦ୍ୱିବିନ୍ଦ ଶତବଳ ।
ସମ୍ପାତି ମରୁତ ବସନ୍ତ ପନଶିଳ ॥
ତାରାର ପିଅର ଆବର ଦଶକାଳ ବୃଦ୍ଧ ।
କେଶରୀ ପବନ କରନ୍ତି ରଣଯୁଦ୍ଧ ॥
କାଳିମୁଖ କଞ୍ଚଣ ସୁନାସ ସୁସୋଦନ ।
ସମ୍ପାତି ଶରସେତୁ ଯେ ଗନ୍ଧମାରଦନ ॥
ଲକ୍ଷେକ ମହାମଲ୍ଲ ଗୋଟିଏ ଜଗଜେଠି ।
ବୀର ମହାବୀର ଅପ୍ରମୟେ ହେଠି ॥
ରକ୍ଷ କପିବଳ କଳିତ ନପାରି ।
ରାକ୍ଷାସ ବଳେ ପଶି କଲେ ମରାମରି ॥୩୦
ଘେନି ଉଠା ଉଠି ଡାକହାକି ଯୁଝି ।
ଏକ ଆରେକ ଯେ ତୁହାଇ ଯୁଦ୍ଧ ବାଜି ॥
ହୋଇଲା ରଣଗୋଳ ଦୁଇ ବଳ ଥାଟ ।
ମୁଖ ଗୋଳ ଶବଦେ ପୂରୁଛି ଅନ୍ତରୀକ୍ଷ
ବାଟ ॥
ଟମକ ନିଶାଣ ବାଜଇ ତଡ଼ବଡ଼ି ।
ଆଲମ୍ବ ପାଟଛତ୍ର ଚିରାଳମାନ ଉଡ଼ି ॥
ହସ୍ତୀ ଘୋଡ଼ା ଥାଟ ରାଉତ ପାଦାନ୍ତି ।
ରକ୍ଷ ରାକ୍ଷାସ ମିଳି ହୋଇଲେ ଯନ୍ତାଯନ୍ତି ॥
ଉତ୍ତରର ବଳ ପଶ୍ଚିମକୁ ଗଲେ ।
ପୂର୍ବ କତି ବଳ ଦକ୍ଷିଣେ ମିଳିଲେ ॥୪୦
ଦକ୍ଷିଣର ଥାଟ ପୂର୍ବ କତି ମିଶି ।
ପଶ୍ଚିମର ସଇନି ଉତ୍ତରେ ଯାଇ ପଶି ॥
ସେନାସେନାପତି ହୋଇଲେ ଢଡ଼ାଢଡ଼ି ।
ବହୁତ ଲୋକ ତହିଂ ମଲେ ମଡ଼ାମଡ଼ି ॥
ରଥର ଉପରେ ମର୍କଟ ପଲ ପଲ ।
ମଣ୍ଡଣି ଲୁଗାମାନ ଚିରନ୍ତି ଉଲ ଉଲ ॥
ପଦାନ୍ତି ସଇନିଙ୍କି କେ ମଦଦନ୍ତି ପାଏ ।
କେବଣ ଘୋଡ଼ା ମଲେ ବାନରଙ୍କର ଘାଏ ॥
କେବଣ ହସ୍ତୀକି ବେଢ଼ି ରଡ଼ି ଦିଅନ୍ତି ରକ୍ଷ ।
କେବଣ ଗଜ ଉପରେ ପିଟନ୍ତି ନେଇ
ବୃକ୍ଷ ॥୫୦
କେବଣ ବାନରକୁ ଅସୁରେ କଚାଡ଼ନ୍ତି ।
କେବଣ ବାନରକୁ ପାଦେ ମରଦନ୍ତି ॥
କେହୁ ସିଙ୍ଘ ରଡ଼ି ଛାଡ଼ନ୍ତି ଘନ ଘନ ।
ଅନିର୍ଯାପ ମାରେଣି ବାଜିଲା ଦୁଇ ସନ୍ୟ ॥
କେ ବୃକ୍ଷ ପିଟା କେ ପାଷାଣେ ଛେଚା ମଡ଼ା ।
କେବଣ ଘାଉଆ କେ ତ୍ରାସେ ପ୍ରାଣଛଡ଼ା ॥
କେ ଗଦାବଜ୍ରା କେ ମୁଦ୍‌ଗର ପିଟା ।
ଶକତି ବାଜି କାହାର ଭାଜିଅଛି ଅଣ୍ଟା ॥
କେ କାଣ୍ଡ ପରିଘାଇ ତ୍ରାସରେ ପ୍ରାଣ ଦେଲା ।
ମଲି ମଲି ବୋଲି ପିଣ୍ଡରେ ପ୍ରାଣ ଗଲା ॥୬୦
କେ କୋନ୍ତ ଫୁଟା କେ ପରିଘେ ପ୍ରାଣ
ଦେଲା ।
କେବଣ ବାପୁଡ଼ା ଚକ୍ରେଣ ଛିଡ଼ି ମଲା ॥
କେ ଶୂଳେ ପଡ଼ିମଲା କେ ମାଳଯୁଦ୍ଧେ ପଡ଼ି ।
କେହୁ ଯନ୍ତା କାଣ୍ଡ ପଡ଼ନ୍ତେ ପ୍ରାଣ ଛାଡ଼ି ॥
କେହୁ ବଜ୍ରବାଣେ କେହୁ ପଳାଇଲେ ।
କେହୁ ମୁଷ୍ଟି ଯୁଦ୍ଧ କରିଣ ପ୍ରାଣଦେଲେ ॥
କାହା ଉପରେ ରହୁବର ଚକ ଗଲା ମାଡ଼ି ।
କାହାକୁ ମତ୍ତଗଜ ମାଇଲା ହାବୋଡ଼ି ॥
ଘୋଡ଼ା କାମୋଡ଼ିଲା କେବଣ ବାପୁଡ଼ାକୁ ।
ହାବୋଡ଼ାର ଘାଏ ଭାଜିଲା କାହାର
ବୁକୁ ॥୭୦
କେ ଲେଡ଼ା ଖାଇଣ ନ ପାରନ୍ତି ଉଠି ।
ଗୋଇଠାର ଘାଏ କାହାର ଭାଜିଗଲା ପାଟି ॥
କାହାକୁ ଅଖଡ଼ରେ ରଥୀ ମାଉଂସ ଚିରିଲା ।
ରକତ ଉଦ୍‌ଗାରି ମୋହେ କେ ପଡ଼ିଲା ॥
ଗହଳେ କାହାକୁଂ କାଟିଗଲା ପର୍ଶୁ ।
କେ ଝୁଣ୍ଟି ପଡ଼ିଲା ଗୋଡ଼ରେ ରକତ ଦିଶୁ ॥
କେବଣ କପିକି ଧରିଣ ନିଅନ୍ତି ।
କେହୁ ହେତୁ ପାଇ ବହନ ପଳାନ୍ତି ॥
କେହୁ ରହ ରହ ବୋଲନ୍ତି ଉଠିକରି ।
କେ ଚିରାମାରିଣ ଉଠି ଝଲକାନ୍ତି ଫରୀ ॥୮୦
କେ କାଣ୍ଡ ପୂରାଇ ଭଡ଼ା ମରିଯାନ୍ତି ।
ବାଜିଲାରେ ବୋଲି ନାରାଚ ଛାଡ଼ନ୍ତି ॥
କେ ଧରନ୍ତି କେ ଛାଳନ୍ତି ବକ ସ୍ଥଳ ।
ଉପରେ ଥିଲା ଲୋକର କେ ଧରି ଝୁଙ୍କଇ
ବାଳ ॥
କେ କାହାକୁ ଆଣୁଆ ମାରନ୍ତି ପେଲି
ଦେଇଂ ।
କେ ଡାକେ ସମ୍ଭାଳ ବୋଲି ରଡ଼ି ଦେଇଂ ॥
ଅସୁରେ ତରୁଶିଳ ବାନରେ ଶସ୍ତ୍ର ଧରି ।
ଯେ ଯାହା ଦେଖଇ ସେ ତାହା ଘେନି ମାରି ॥
ଅନିର୍ଯ୍ୟାପ ସମର ଦେବଙ୍କୁ ଅଗୋଚର ।
ରକତ ସମୋଦ୍ର ବହିଲା ଆରେଣି
ଭିତରେ ॥୯୦
ରଥ ଉପୁଚିଆନ୍ତି ବୋଇତ ସଂଙ୍ଘାତ ।
ହସ୍ତୀମାନେ ଦିଶନ୍ତି ମଗର ଯୂଥ ଯୂଥ ॥
ଅଶ୍ୱପଦାନ୍ତି ଯେ ମଛ କଛପମାନ ।
ଲହଡ଼ି ପଟାନ୍ତର ଆଲମ୍ବ ଧ୍ୱଜ ଚିହ୍ନ ॥
ରକ୍ଷକପି ମଡ଼ା କି କ୍ଷୁଦ୍ର ମସ୍ୟ ଯୂଥ ।
ଅନ୍ତ ପିଇ ପଡ଼ିଅଛନ୍ତି ବହୁତ ॥
ସେ ପଙ୍କ ପରାୟେ ଗନ୍ଧାନ୍ତି ଆମିଷ ।
ବସ୍ତ୍ରେ ଉପୁଚିଆନ୍ତି ନାନାବର୍ଣ୍ଣେ ପୁଷ୍ପ ॥
ଦେବ ଅସୁରେ ଯେହ୍ନେ ମନ୍ଥନ୍ତି କ୍ଷୀରାର୍ଣ୍ଣବ ।
ରକ୍ଷ ରାକ୍ଷାସ କପି ଦିଶନ୍ତି ତେସନେକ
ଭାବ ॥୧୦୦

ଶ୍ରୀରାମ ତହିଁକି ଯେ ଅଟନ୍ତି ମନ୍ଦର ।
କୋଦଣ୍ଡ ଧନୁ ସେ ଧଇଲେ ଅହିବର ॥
ସେ ମନ୍ଥନୁ ଉପୁଜିବେ ଜାନକୀ
କମଳଣୀ ।
ଭାବେ ପାଇବେ ତାହା ଶ୍ରୀରାମ ଚକ୍ରପାଣି ॥
ଅଗୋଚର କର୍ମକି ହୋଇବ ଏତେ କଥା ।
ଅସଂଖ୍ୟ ସମର ଯହୁଁ ଦେଖିଲା ଦଶମଥା ॥
ବିଚାରିଲା ପ୍ରଳୟ ହୋଇବକି ଆଜ ।
ସୃଷ୍ଟି ସଂହାରଣ କରିବକି କୁଶଧ୍ୱଜ ॥
ଯେ ଯୁଦ୍ଧେ ଜିଣିମି ତାହାକୁ ବୋଲିବା
କ୍ଷତ୍ରୀବର ।
ଏତେ ବୋଲି ଦଶଧନୁ ଧଇଲା
ବିଂଶକର ॥୧୦
ତ୍ରୋଣୁ ଦଶ ନାରାଚ କାଢ଼ି ବସାଇଲା
ଗୁଣେ ।
ପୂରୋଇ ବିନ୍ଧିଲା ଶବଦ ଗରୁଡାଣେ ॥
ରକ୍ଷ କପି ବଳ ନାଶ ବୋଲି ନାରାଜନ୍ତ
ପେଷି ।
ପେଷନ୍ତେଣ ନାରାଚ ଗର୍ଜନ କରିଆସି ॥
ମର୍କଟ ଭଲୁକ ଚିହ୍ନିକରି ପ୍ରାଣ ହାରି ।
ସାଧୁ ଯୋଧା ବୋଲି ରାବଣଙ୍କୁ ପ୍ରଶଂସନ୍ତି
ସୁରାସୁରି ॥
ଏଥୁ ଅନନ୍ତରେ ଦଶଗ୍ରୀବ ରାଏ ।
ଚତୁରାଙ୍ଗ ବଳ ଘେନି ସମରେ ଗୋଳ
କଏ ॥
ଅବଧାନ ହୋଇ ମାରଇ ରକ୍ଷ ହରି ।
ବସନ୍ତ ମସେ ଯେହ୍ନେ ଫଗୁ ବୃଷ୍ଟି
କରି ॥୨୦
ତେସନେକେ ଅବିଛନ୍ନେ ବିନ୍ଧୁଅଛି ଶର ।
ଦେଖି ଓଗାଳିଲା ହନୁର ପିଅର ॥
ଦୁଇ ହାଥରେ ଦୁଇ ବୃକ୍ଷ ଘେନି ।
ଦୂରୁହୁଁ ଦେଖିଣ ରାବଣ ପକାଇଲା ଛିନି ॥
କେଶରୀ ମହାବୀର ହୋଇଲା ଶୂନହସ୍ତ ।
ଦେଖିଲା ଆଗେ ଅଛଇ ଏକଇ ପରବତ ॥
ଟେକି ପକାଇଲା ଯେ ପୁଷ୍ପକ ବିମାନେ ।
ବଜ୍ରଶରେ ପୁଣି ପେଷିଲା ଦଶାନନେ ॥

ମହୀନ୍ଦ୍ର ଦୃବିନ୍ଦ ଧାଇଁଲେ ତାହା ଦେଖି ।
କଞ୍ଚଣ ହିଁ ଅଇଲେ ସମର ଉପେକ୍ଷି ॥୩୦
ଚାରିହେଁ ମିଳିଲେ ଦଶଗ୍ରୀବ ଆଗେ ।
ଦେଖି ଚାରିବାଣ ବିନ୍ଧିଲାକ ରାଗେ ॥
କାଣ୍ଡ ଆସନ୍ତେଣ ଉର୍ଦ୍ଧ୍ୱେ ଗଲେ
ଚାରିବୀରେ ।
ଭୂମିବିନ୍ଧା ହୋଇଲା ତେତେଡ଼େ ମହାଶରେ ॥
କୋପେ ଦଶାନନ ଦିବ୍ୟ ଅସ୍ତ୍ର କଲା ।
ଦଶକୋଟି ଭଲୁକ ନାଶି ପକାଇଲା ॥
ଅନେକ ସନ୍ୟ ଯେ ପଡ଼ିଲେ ତାର ଶରେ ।
ଦେଖି ମହୀନ୍ଦ୍ର ଯେ ଧାଇଁଲା କୋପଭରେ ॥
ଦୃବିନ୍ଦ ସହିତେ କଞ୍ଚଣ କେଶରୀ ।
ଚାରିହେଁ ଓଗାଳିଲେ ଶିଳାବୃକ୍ଷ ଧରି ॥୪୦
ରୋଷେଣ ରାବଣ ନେଇ ମାଇଲା
ଚାରିଭାଲ ।
ମୋହେଣ ପଡ଼ିଲେ ସେ କପିକୁଳ ମାଲ ॥
ତହୁଁ ରହୁବର ଚଳାଇ ଶୀଘ୍ର ଗତି ।
ପିଠିକି ରକ୍ଷା ଅଛନ୍ତି ତିନିଶତ ନାତି ॥
ଅଠତିରିଶ କୋଟି ମୁକୁଟ ଯୋଦ୍ଧା ଘେନି ।
ବିକୋଟି କାଟୁଅଛି ଶ୍ରୀରାମର ସଇନି ॥
ରକ୍ଷ କପିବଳ ନ ଘୁଞ୍ଚନ୍ତି ପଏ ।
ଏସନେକ ସାଂଗ୍ରାମ ଏଗାର ଘଡ଼ି ହୋଏ ॥
ବୁଲିଣ ଲଙ୍କପତି ମାରଇ କପି ବଳ ।
ଦେଖିଣ ଧାଇଁଲେ ଅଙ୍ଗଦ ନଳନୀଳ ॥୫୦
ରଥ ଓଗାଳିଲେ ଶିଳା ବୃକ୍ଷ ଧରି ।
ଦଶଗ୍ରୀବ ଛେଦିଲା ତାହା ଧୂଳୁଁ କିଛୁତ କରି ॥
କୋପେ ତିନି ବୀରେ ଉଠିଲେ ରଥେ
ଯାଇଁ ।
ବାହୁଡ଼ି ପଳାଇଲେ ଅଭରସା ପାଇଁ ॥
ବାଳୀର ତନୟେ ଧଇଲା ରହୁବର ।
ବୋଇଲା ପକାଇବି ନେଇ ସାହେର
ଭିତର ॥
ଟେକି ନପାରି ମୁଣ୍ଡେ ପେଲି ଦେଲା ।
ଘଡ଼ ଘଡ଼ ହୋଇଣ ବିବାନ ବାହୁଡ଼ିଲା ॥
ଲାଜ ପାଇଲାକ ଅସୁର କୁଳପତି ।
ଯହୁଁ ସେ ଅଙ୍ଗଦର ଦେଖିଲା
ବିଶ୍ୱମୂର୍ତ୍ତି ॥୬୦

ଶୁକ ସାରଣେ ଯେ ରଥ ବାହୁଥିଲେ ।
ଛାଟେକ ଉଞ୍ଚାଇ ପଛକୁ ବୁଲାଇଲେ ॥
ଯାଆ ଯାଆ ବୋଲିଣ ଆଗକୁ ଦେଲା ଟିପି ।
ଦେଖି ଉଗାଳିଲେ ସେହି ତିନି କପି ॥
ଅଙ୍ଗଦ ମୁଣ୍ଡିଆଇ ପେଲିଲା ନିଠାଇଁ ।
ବାହୁଡ଼ିଲା ରହୁବର କମ୍ପମାନ ହୋଇ ॥
ଦେଖି ଲଙ୍କରାୟେ ମାଇଲା ଚକ୍ରଧରି ।
ଅଙ୍ଗଦ ଫେରାଇଲା ବିଚିତ୍ର ଗତି କରି ॥
ଶୁକ ସାରଣେ ବାହାନ୍ତେ ଆଗକୁ ଚାଲଇ
ଯାନ ।
ପୁଣି ପେଲିଦେଲା ବାଳୀର ନନ୍ଦନ ॥୭୦
ମହାଗର୍ଜନ କରି ବାହୁଡ଼ିଲା ରଥ ।
ଦେଖି ବଡ଼ ଲାଜ ପାଇଲା ଲଙ୍କନାଥ ॥
ବଜ୍ର ସମ ଶୂଳେ ମାଇଲା ନିଠାଇ ।
ଅଙ୍ଗଦ ପଳାଇଲା ପଛଘୁଞ୍ଚା ଦେଇ ॥
ଭୂମି ବିନ୍ଧା ହୋଇଲା ରାବଣର ଅସ୍ତ୍ର ।
ବାହୁଡ଼ି ଧାଇଁ ମିଶିଲା ତାରା ଶିଷ ॥
ବିବାନ ଆସନ୍ତେ ହିଆରେ ପେଲିଦେଲା ।
ଯାଇ ନ ପାରି ରଥ ପଛ ଘୁଞ୍ଚା ଦେଲା ॥
ଦେଖିଣ ବିସ୍ମୟେ ହୋଇଲା ଲଙ୍କପତି ।
ରୋଷଭରେ ପୁଣି ମାଇଲା ଶକତି ॥୮୦
ସେ ଅସ୍ତ୍ର ଅଙ୍ଗଦ ଧଇଲାକ ଡେଇଁ ।
ରାବଣେଶ୍ୱରକୁ ମାଇଲା ବାହୁଡ଼ାଇ ॥
ଅଙ୍ଗେ ବାଜି ଶହସ୍ର ଉପୁଡ଼ି ପଡ଼ିଲା ।
ଧାଇଁ ବାଳୀସୁତ ରଥରେ ଉଠିଲା ॥
ପୁଣି ଓହ୍ଲାଇଣ ପେଲିଲା ରହୁବର ।
ଦେଖି ଦଶଶିର ଧଇଲା ବ୍ରହ୍ମ ଶର ॥
ଅଙ୍ଗଦ ପଳାଇଲା ଲୁଲୁକି ମାନ ହୋଇଁ ।
ଭଲା ଘାଯେ ଗଲୁ ବୋଇଲା ଲଙ୍କସାଇଁ ॥
ନଳ ସହିତେ ସେ ଗଲେକ ଆଡ଼ ହୋଇ ।
ରକ୍ଷ କପିମାନେ ଭୟରେ ପଳାଇ ॥୯୦
ସେ ଅସ୍ତ୍ର ସଂହାରିଲା ଲଙ୍କାର ନାୟେକ ।
ମସ୍ତକ ଉପରେ ନେଇ ବୁଲାଇଲା
ଶାୟେକ ॥
ରଥ ବାହା ବୋଲି ମନ୍ତ୍ରୀଙ୍କି ଆଜ୍ଞା ଦେଲା ।
ରକ୍ଷ କପି ଉପରେ ଶର ବୃଷ୍ଟି କଲା ॥

ଦୂରୁହୁଁ ଦେଖିଲା ତାହା ଶଉରୀ ସେନାପତି ।
ଧାଇଁ ଓଗାଳିଲା ପବନହୁଁ ଧାଡି ॥
ବେନି କରେ ଧରିଅଛି ବେନି ଶିଳ ।
ରୋଷେଣ ଡାକିଲା ରହରେ ଲଙ୍କପାଳ ॥
ଆଜ ତୋର ପ୍ରାଣ ଘେନିମଇଁ ମୁହିଁ ।
ଦଶମୁଣ୍ଡ ତୋର ଲୋଟିବ ଲଙ୍କଭୂଇଁ ॥୧୦୦
ଏତେ ବୋଲି ପର୍ବତ ପକାଇଲା ଟୋଳି ।
ନାରାଚେ କାଟିଲା ତାହା ରାବଣ ମହାବଳୀ ॥
ମହତ ମୁଦୁଗରେ ପିଟିଲାକ ପୁଣି ।
ଶଉରୀ ସେନାପତି ରହିଲା ଛପି ପୁଣି ॥
ଭୂମି ବିନ୍ଧା ହୋଇଲା ତେଡ଼େକ ମହାଶର ।
ଧାଇଁଣ ଶଉରୀ ଧଇଲା ରହୁବର ॥
ଓଲଟାଇ ଦେବ ବୋଲି ସେ ପେଲିଦେଲା ।
ଦେବତାଙ୍କ ବିମାନ ସେ ଟୋଳି ନପାରିଲା ॥
ଦୁଇବେଳ ପରିଯନ୍ତେ ହୁଙ୍କାରି ଟୋଳି ଧରି ।
କେଉଁଣି ପ୍ରକାରେ ତାହା ଢାଳି ସେ ନପାରି ॥୧୦
ହନୁମନ୍ତ ଅଙ୍ଗଦ ସେ ଆଡ଼ହୋଇ ଥିଲେ ।
ନଳନୀଳ ସହିତେ ପାଲଟି ଧାଇଁଲେ ॥
ମହୀନ୍ଦ୍ର ଦ୍ବିବିନ୍ଦ କଞ୍ଚଣ କେଶରୀ ।
ଗବଏ ଗବାକ୍ଷ କୁମୁଦ ଆଦିକରି ॥
ବଳିମୁଖ ଦଧିମୁଖ ଗନ୍ଧମାରଦନ ।
ଚନ୍ଦନ ଡାଳିମ୍ଭ ବସନ୍ତ କାଳିମୁଖ ସୁସୋଦନ ॥
ଡାଳିମ୍ଭ କଞ୍ଚଣ ପବନ ପନଶିଳ ।
ଶଉରୀ ସମ୍ପାତି ବିବିଧ ଶତବଳ ॥
ତାରାକ୍ଷ ରମଣ ଦଶକାଳ ବୃଦ୍ଧ ।
ଧାମନ୍ତି ରକ୍ଷ କପି ଧରିଣ ଆୟୁଧ ॥୨୦
ପୁଷ୍ପେକ ବିମାନ ବେଢ଼ିଲେ ସେନାମାନେ ।
ମାର ମାର ଶବଦ ଶୁଭଇ ଗଗନେ ॥
ବୃକ୍ଷ ପାଷାଣ ପକାନ୍ତି ନିରନ୍ତର ।
ଅଦୃଶ୍ୟ ହୋଇଲା ତେଡ଼େକ ରହୁବର ॥
ଅଙ୍ଗଦ ହନୁମନ୍ତ ଉଠିଲେ ଯାଇ ରଥେ ।
ଯେବଣ ଧନୁ ରାବଣ ଧରିଥିଲା ହାତେ ॥
ଉଚ୍ଛୁଡ଼ି ଘେନି ତାହା ପକାଇଲେ ତଳେ ।
ବିଭୀଷେଣ ଧାଇଁଲା ସେ ଏସନେକ ବେଳେ ॥
ରକ୍ଷ କପି ଘେନି ପଡ଼ିଲାକ ମାଡ଼ି ।
ଦେଖି ରାବଣର ଦର୍ପ ଗଲା ଛାଡ଼ି ॥୩୦
ହନୁମନ୍ତ ଅଙ୍ଗଦ ରଥରେ ଉଠିଥିଲେ ।
ବିଭୀଷେଣକୁ ଦେଖି ତଳକୁ ଓହ୍ଲାଇଲେ ॥
ସଭିଏଁ ମେଣ୍ଟ ହୋଇ କରନ୍ତି ସମର ।
ଆନ ଧନୁ ଧଇଲା ଦଶାନନ ବୀର ॥
ବୀଭୀଷେଣକୁ ସହସ୍ରେ ନାରାଚ କୋପେ କଲା ।
ହନୁମନ୍ତ ଅଙ୍ଗଦକୁ ଶକତି ମାଇଲା ॥
ଗନ୍ଧମାରଦନ ନଳ ନୀଳ କାଳିଞ୍ଜନ ।
ପରିଘର ଘାତେ ଏ ହୋଇଲେ ଅଚେତନ ॥
ଗବଏ ଗବାକ୍ଷକୁ ବଜ୍ରଶର ନାଶି ।
ବଳିମୁଖ ଦଧିମୁଖକୁ ମୁଦୁଗର ପେଷି ॥୪୦
ବଜ୍ର ପିଟିଲା ଶତବାଳି ତାରାକ୍ଷକୁ ।
ତିନିଶତ ନାରାଚ ବିନ୍ଧିଲା ଗବାକ୍ଷକୁ ॥
ଗଦା ଘେନିଣ ରମଣକୁ ମାଇଲା ।
ଚକ୍ରେ ଶତବାଳି ମହୀନ୍ଦ୍ରକୁ ନାଶ କଲା ॥
ଡାଳିମ୍ଭ କଞ୍ଚଣର ଫୋଡ଼ିଲା ବକ୍ଷସ୍ଥଳ ।
ଶରସେତୁକୁ ଭାଲ ମାଇଲା ଲଙ୍କମଲ୍ଲ ॥
ଅଷ୍ଟ ସେନା ଆବର ପଚିଶ ଯୂଥପତି ।
ଭିନ ଭିନ କରି କାଟିଲା ବିକୋଟି ॥
ଦେଖି ବିଭୀଷେଣ ମାଇଲା ସାତ ଶର ।
ପଡ଼ିଲା ବାଣ ଯାଇ ରାବଣର ଉପର ॥୫୦
ଘା ପାଇ ବୋଇଲାରେ ପାମର ପାପିଷ୍ଠ ।
ଆଜ ତୋର ନିଶ୍ଚେ କରିବି ମୁଣ୍ଡକାଟ ॥
ଏତେବୋଲି କୋପେ ଧଇଲା ବ୍ରହ୍ମବାଣ ।
ଦେଖିଣ ପଳାଇଲା ବିଭୀଷେଣ ରାଣ ॥
ଶୁକସାରଣଙ୍କୁ ବୋଇଲା ଦଶ ମାଥ ।
ବେଗେ ନେଇ ମୋତେ ହୋ ଭେଟାଅ ରଘୁନାଥ ॥
ରାମକୁ ନ ମାଇଲେ ନରହଇ ମୋର କକ୍ଷା ।
ଆଜ ମୁଁ କରିଅଛି ରଣ ଯଜ୍ଞ ଦୀକ୍ଷା ॥
କଥା କହୁ କହୁ ବିନ୍ଧଇ ନାରାଚ ।
ରକ୍ଷ କପି ବଳ ନାଶଇ ଦତ୍ୟରାଜ ॥୬୦
ପୁଷ୍ପେକ ବିମାନ ଚଳଇ ଘନ ଘନ ।
ଦେଖି ଓଗାଳିଲେ ସୁମିତ୍ରା ନନ୍ଦନ ॥
ଦୂରୁହୁଁ ଡାକିଲେ ରାବଣ ଆଜ ମଲୁ ।
ଚତୁରାଙ୍ଗ ବଳ ସହିତେ ନାଶ ଗଲୁ ॥
ଗତ ଘାନ୍ତି ପ୍ରାଏ ମଣିଛ କି ଏବେ ।
ମୋହର ମୁଖେ ଆସି ପଡ଼ିଲୁଣି ଯେବେ ॥
ଏତେବୋଲି ବିନ୍ଧିଲା ଚାରି ଶର ।
କିଞ୍ଚିତେ ଛେଦିଲା ତାହା ଦଶାନନ ବୀର ॥
କୋପେ ସଉମିତ୍ରୀ ଷାଠିଏ ବାଣ ମାରି ।
ରାବଣ ଛେଦିଲା ତାହା ପ୍ରତି ଅସ୍ତ୍ର କରି ॥୭୦
ଏସନକ ସମଏ ପଚିଶ ଯୂଥପତି ।
ଅଷ୍ଟ ସେନାଏ ଧାଇଁଲେ ସୁଗ୍ରୀବର ପ୍ରଭୃତି ॥
ଦଶଗ୍ରୀବ ନାରାଚେ ସେ ମୋହ ଯାଇଥିଲେ ।
ଚେତନା ପାଇ ଆସି ବିବାନ ଧଇଲେ ॥
ପଛକୁ ଓଟାରିଣ ଘୋଷାଡ଼ି ନିଅନ୍ତି ।
ଦେଖିଣ ଧାଇଁଲେ ତେର ଶତନାତି ॥
ମହାଗୋଳ ସାଂଗ୍ରାମ ହୋଇଲା ଅପ୍ରମିତ ।
ଜମେବଙ୍କୁ ଚାହିଁ ବୋଲନ୍ତି ରଘୁନାଥ ॥
ପୁଷ୍ପେକ ବିମାନତ ପଛକୁ ଲେଉଟିଲା ।
ଭୂମି ଛାଡ଼ି କିମ୍ପା ଉପରକୁ ଉଠିଲା ॥୮୦
ଏକ କପିଏକ ଜଣାଇଲା ଯାଇ ।
ଲକ୍ଷ୍ମଣ ସଙ୍ଗତେ ଦେବ ଯୁଝଇ ଲଙ୍କସାଇଁ ॥
ସବୁ ରକ୍ଷ କପି ରଥ ଧରିଛନ୍ତି ।
ଲକ୍ଷ୍ମଣ ବିଭୀଷେଣ ନାରାଚ ବିନ୍ଧନ୍ତି ॥
ରାବଣ ପୁତ୍ର ନାତି କରନ୍ତି ସମର ।
ଶୁଣି ଆତଙ୍କମନ ହୋଇଲା ଶ୍ରୀରାମର ॥
ସୁଗ୍ରୀବର ସୁଷେଣ ଜମେବଙ୍କୁ ସାଙ୍ଗେ ଘେନି ।
ଧାମନ୍ତି ରଘୁରାଜ ରହୁବର ବାନା ଚିହ୍ନି ॥
ଲଙ୍କପତି ଛାମୁରେ ହୋଇଲେ ଯାଇ ଭେଟ ।
ଡାକନ୍ତି ଆଜ କାହିଁକି ଯିବୁରେ ପାପିଷ୍ଠ ॥୯୦
ଜୀବନର ଆଶା ଛାଡ଼ରେ ଲଙ୍କପତି ।
ଲକ୍ଷ୍ମଣଙ୍କୁ ପଛକରି ଶ୍ରୀରାମ ଆଗ ହୋନ୍ତି ॥

ଶ୍ରୀରାମଙ୍କୁ ଦେଖି ବିଶ୍ରବାର ସୁତ ।
ବିନ୍ଧିଲା ତୀକ୍ଷ ନାରାଚ ଦୁଇଶତ ॥
ଆସନ୍ତେଣ ବାଣ କରଇ ଘୋର ରାବ ।
ବାବଲ ଶରେ ତାହା ଛେଦିଲେ ରାଘବ ॥
ମହାପାରୁଶ ନାମେ ରାବଣ ତନଏ ।
ଲକ୍ଷ୍ମଣ ସଙ୍ଗତେ ସମର ଘୋର କଏ ॥
ପ୍ରମଥ ବିଭୀଷଣେର ହୋଇଲା ମହାରଣ ।
ମହାଶୂର ସଙ୍ଗତେ ଯୁଝଇ ସୁଷେଣ ॥୧୦୦
ଲୋହିତାକ୍ଷ ଶତବଳ ହୋଇଲେ ଭେଟାଭେଟି ।
ସୁଗ୍ରୀବରକୁ ବଜ୍ରକପଚ ଗଦା ପିଟି ॥
ବିଚିତ୍ର ଗତିକରି ଫେରାଇଲାକ କପି ନାହା ।
ମଲ୍ଲଯୁଦ୍ଧ କଲେ ଦୁହେଂ ଧରାଧରି ବାହା ॥
କୁମ୍ଭେକ ସଙ୍ଗେ ଗନ୍ଧମାର୍ଦନ ସମର ।
ତାଳିମ୍ବ ଓଗାଳିଲା ଶତଜିତ ବୀର ॥
ଦୃଢ଼କପଚ ପବନ ଦୁହେଂ କଳି କଲେ ।
ମେଘ ବୃଷ୍ଟି ଜାଣି ନାରାଚ ବରଷିଲେ ॥
ପ୍ରଶସ୍ତ ଅଙ୍ଗଦ ହୋଇଲେ ମେଳାମେଳି ।
ରଶ୍ମିକେତୁ ଜମ୍ବେବ ସଙ୍ଗତେ ରଣକେଳି ॥୧୦
ଜ୍ୟୋତିସାଗର ଚନ୍ଦନ ଏ ବେନି ରଣ କଲେ ।
ଗବାକ୍ଷ ବିଚାରଣ ବିନ୍ଧାଣ ଲାଗିଲେ ॥
ମିତ୍ରଘନ ଗବଏ ସମର ମହାଘୋର ।
ଅଶ୍ୱକର୍ଣ୍ଣ ସଙ୍ଗତେ ହନୁମନ୍ତ ପିଅର ॥
ବସନ୍ତର ସଙ୍ଗେ ରମଣ ପିଟାପିଟି ।
ଦଶକାଳ ବୃଦ୍ଧ ବିକଟ ଭେଟାଭେଟି ॥
ବକାସୁର ଶଉରୀ ସମର କଲେ ବେନି ।
ଏକପାଦ ଦୃବିନ୍ଦ ହୋଇଲେ ଅନ୍ୟାଅନି ॥
ଅମଏ ଅନ୍ତେକ ଦଧିମୁଖ ସମର କଲେ ।
ବିଶୋକର ସଙ୍ଗେ ମହାନ୍ଦ୍ର ଯୁଝିଲେ ॥୨୦
ଅଶୋକ ବିଶୋକ ସମଳ ବଣ୍ଟାବଣ୍ଟି ।
ପାଟଳି ଶତବାଳି କି ଏହି ଯୁଦ୍ଧ ନିଅଣ୍ଟି ॥
ଏକମୁଖ ବଳିମୁଖ ସଙ୍ଗତେ ଯୁଦ୍ଧ କଲେ ।
କାଳିଞ୍ଜନ ପାଞ୍ଚଶିର ସମର ଗରୁ କଲେ ॥
କାଳିମୁଖ ଅଗ୍ନିକେତୁ କରନ୍ତି ସମର ।
ଦଧିମୁଖ ଓଗାଳିଲା ଅଜଏକ ନାମେ ବୀର ॥
ଜଣେ ଜଣେ ଅସୁର କରନ୍ତି ସମର ।
ରକ୍ଷ କପି ସନ୍ୟ ବୀର ମହାବୀର ॥
ଯୁରାସୁର ସଙ୍ଗେ ପନଶିଳ ଯୁଦ୍ଧ କଲା ।
ଅସମଏ ସୁସୋଦନ ସମର ବାଜିଲା ॥୩୦
ବିରୂଳାକ୍ଷ କଞ୍ଚଣ ସମର ଗୋଳ ବାଜେ ।
ଶ୍ରୋଣିତାକ୍ଷ ସାରାସ ସମର ମହାସାଜେ ॥
ପାରାସର ସଙ୍ଗେ ଅମଏ ସମର କଲା ।
ଦଶଗ୍ରୀବ ସଙ୍ଗେ ଶ୍ରୀରାମ ଯୁଦ୍ଧ କଲା ॥
ମୁଖରାବ ଶବଦେ କମ୍ପଇ ସପ୍ତମହୀ ।
ଭୟେଣ ଅନନ୍ତ ମହୀ ଛାଡ଼ି ଲୋଡ଼ଇଂ ॥
ଦୁଇ ବଳର ବାଜଇ ବୀରତୂର ।
ଆୟୁଧ ପିଟାପିଟି ସମର ଅଗୋଚର ॥
ପାଦ ଭାରେଣ ଟଳମଳ ମେଦିନୀ ।
ନାହିଂ ପଟାନ୍ତର ବିଛନ୍ଦ ମାରୁଣୀ ॥୪୦
ଦକ୍ଷିଣେ ରାକ୍ଷସ ଉତ୍ତରେ କପିବଳ ।
ରଥ ଗଜ ଅଶ୍ୱ ଅନେକ ଗହଳ ॥
ତୁହାଇଣ ସମର ଅଙ୍ଗ ଛଳେ ବାଦ ।
ନାହିଂ ତୁଳାଇତ ତ୍ରିଭୁବନ ମଧ ॥
ଅଙ୍ଗ ଭରେ ଯୁଝନ୍ତି ନ ଘୁଞ୍ଚନ୍ତି ପଏ ।
ବେଳକୁ ବେଳ ରଣ ଅଗୋଚର ହୋଏ ॥
ବାନରେ ଫରୀ ଖଣ୍ଡା ଗଦା ଚକ୍ର ଧରି ।
ରାକ୍ଷସେ ତରୁଶିଳ ଘେନି ଯୁଦ୍ଧ କରି ॥
ଯେ ଯେଉଁ ଆୟୁଧ ଲୋଡ଼ିବା ବେଳେ ପାନ୍ତି ।
ଘେନିକରି ପୁଣ ସମରେ ଧାମନ୍ତି ॥୫୦
କେ କାହା ଆୟୁଧ ବାରିତ ନପାରନ୍ତି ।
ପଡ଼ିବାର ଶହସ୍ର ସାଉଂଟି ମାରନ୍ତି ॥
ତୈଲୋକେ ହାଲୋହୋଳି ଗହଳ ଯୁଦ୍ଧ ବାଜେ ।
ପୃଥୀ ଘୋଟିଲେ ଯେହ୍ନେ ପ୍ରଳୟ ଗୋଳ ଗାଜେ ॥
ପାଷାଣ ତରୁବର ନାନା ପ୍ରତିଶର ।
ଆତଯାତ ହୁଅନ୍ତି ପକ୍ଷୀଙ୍କର ଆକାର ॥
କେତେ ରାକ୍ଷାସ ବଳ ପଡ଼ିଲେ ନଜାଣି ।
ରକ୍ଷ ମର୍କଟ ମଡ଼ା କେ ପାରିବ ଗଣି ॥
ରକତେ କର୍ଦ୍ଦନ ହୋଇଲା ମେଦନୀ ।
ସିନ୍ଦୂରାବର୍ଣ୍ଣବ କି ବିରାଜଇ ଧରଣୀ ॥୬୦
ତେସନେକ ସଂଯାତ ଦିଶଇ ବସନ୍ଧରୀ ।
ରକତ ମାଂଏସରେ କର୍ଦ୍ଦନ ହୋଇଲାକ ଦଳି ॥
କ୍ଷଣକେ ଧୂଳି ଉଡ଼ଇ କ୍ଷଣେ ରକତ ନଦୀ ବହେ ।
ଅବିଶ୍ରାମ ସାଂଗ୍ରାମ କ୍ଷଣେହେଂ ନରହେ ॥
ଝାଳ ରକତରେ ଓଦା ସର୍ବଲୋକେ ।
କେଶବାସ ଅସମ୍ଭାଳ ହୋଇଛନ୍ତି ଥୋକେ ॥
ମଡ଼ାଙ୍କର ଉପରେ ଧାମନ୍ତି ଅନୁକ୍ଷଣ ।
ତେଡ଼େ ସନ୍ୟ ଗୋଟା ସମସ୍ତେ ରଙ୍ଗବର୍ଣ୍ଣ ॥
ଏକକୁ ଆରେକ କରନ୍ତି ପିଠି ରକ୍ଷା ।
କରନ୍ତି ସଂଗ୍ରାମ ରଖିଣ ନିଜ କକ୍ଷା ॥ ୭୦
ମହାପାରୁଶ ଲକ୍ଷ୍ମଣ ସଙ୍ଗେ ଯୁଦ୍ଧ ।
ନାହିଂ ପଟାନ୍ତର ତ୍ରିଭୁବନ ମଧ ॥
ଅନେକ ସାଂଗ୍ରାମ କଲେକ ବେନିବୀର ।
ଦେବଙ୍କୁ ଦୁର୍ଲ୍ଲଭ ମାନୁଷେ ଅଗୋଚର ॥
କୋପେଣ ରାବଣ ତନୟେ ଆଗୁସରି ।
ଶରୀର ପୁଲକାଇ ଅସୁରା ଶରକରି ॥
ପ୍ରତିତୁଲ କରି ଛେଦଇ ସଉମିତ୍ରୀ ।
ନୁହନ୍ତି କେହି ଓଛ ଦୁହେଂ ସମ କ୍ଷତ୍ରୀ ॥
ବେଳୁଂ ବେଳ ରଣ ହୋଇଲା ଅପାର ।
ଦୁହିଂଙ୍କର ଶରୀର ରକତେ ଜରଜର ॥୮୦
ବାଣ ଆତଯାତେ କମ୍ପଇଂ ମେଦନୀ ।
କୋପେ ସଉମିତ୍ରୀ ବାବଲ ଶର ଘେନି ॥
ମନ୍ତ୍ରିଣ ପେଷିଲା ସେ ଶ୍ରୀରାମ ସୁମରି ।
ଚଳିଲାକ ନାରାଚ ଘୋର ଗର୍ଜନ କରି ॥
ଶହସ୍ର ଆସନ୍ତେଣ ରାବଣ ତନଏ ।
ସହସ୍ରେକ ନାରାଚ ପ୍ରତିଶର କଏ ॥
କେବେହେଂ ନିବାରି ନ ପାରିଲା ମହାଶର ।
ଅଇଲାକ ନାରାଚ ପବନହୁଂ ଖର ॥
ଆସିଣ ପଡ଼ିଲା ଦଇତର ଟୋଟି ।
ବେକ ଛିଡ଼ିଯାଇ ମୁଣ୍ଡ ଭୂମିରେଣ ଲୋଟି ॥୯୦
ମୁକୁଟ କୁଣ୍ଡଳ ସହିତେଣ ଗଲା ଛିଡ଼ି ।

ଥରହର ହୋଇଣ ରହୁବରୁ ପଡ଼ି ॥
ଦେଖିଲା ଲଙ୍କପତି ପୁତ୍ରର ବିନାଶ ।
ବଜ୍ରକପଚ ତେଣେ ହୋଇଲା ପ୍ରାଣ ନାଶ ॥
ମଲ୍ଲ ବନ୍ଧେ ସୁଗ୍ରୀ ମୋଡ଼ିଲା ତାର ଶିର ।
ଗଳଗାଜି ପଡ଼ିଲା ତେଡ଼େ ମହାବୀର ॥
ଦେଖି ଦଶଗ୍ରୀବ ମନେ ଭୟ କଲା ।
ହନୁମନ୍ତ ହସ୍ତରେ ତେଣେ ମହାସନି ମଲା ॥
ସୁବର୍ଣ୍ଣର ରଥେ ଥିଲା ମେଘନାଦର ତନୟେ ।
ମାରୁତି କି ଦେଖି ଅନେକ ଶସ୍ତ୍ର କୟେ ॥୧୦୦
ପଡ଼ିଲା ହନୁମତ ହେଠମାଥ ହୋଇଂ ।
ନିରନ୍ତରେ ନାରାଜ ଶ୍ୟରୀରେ ଅଛି ବହି ॥
ରୁଧିର ଖଳଖଳ କପାଳରୁ ପୋଛି ।
ଓଷ୍ଠ କାମୋଡ଼ି ଧାଇଂଲା ପବନର ବଛି ॥
ରଥ ନେଉଟାଇ ପକାଇଲା ତୋଳି ।
ଗୋଇଠାୟେ ମାରି କଲା ତାହା ଧୂଳି ॥
ପଳାଇ ମହାସନି ଧଇଲାକ ଗଦା ।
ହନୁ ବିଚାରଇ ଦୁଇ ହାଥ ଶୋଧା ॥
ଯେତେ ବିଚାରିଣ ଚାହାଇଂ ଯେଣେ ତେଣେ ।
ଅନେକ ଶହସ୍ର ପଡ଼ିଅଛି ରଣେ ॥୧୦
ତହୁଂ ଗଦାୟେକ ଧଇଲା ମାରୁତି ।
ମହାସନି ସାଙ୍ଗେ ମିଳିଲା ଚିତ୍ରଗତି ॥
ହନ୍ତକାରୁ ମେଲାମେଲି ଓପ୍ରୋଧ ତହିଂ ନାହିଂ ।
ଯେକକୁ ଆରେକ କଟାକଟି ହୋଇଂ ॥
ଉଶ୍ୱାସିଲେ ଖୁନ୍ଦନ୍ତି ମଧରେ ପଶିଲେ ।
ହେଠ ଆଉଜାଇ କେ ଧାଇଂ କରି ମାରେ ॥
ନାହିଂ ନାହିଂ ବୋଲି ଯାନ୍ତି ଅପସରି ।
କେହି ନ ମାରିଣ କେ ଝଲକାନ୍ତି ଫରୀ ॥
କେହି ମଲି ବୋଲି ଦେଖାବନ୍ତି କାୟେ ।
କେ ପଶି ହାଣନ୍ତେ କେ ଅପସରି ଯାୟେ ॥୨୦
ଗଦା ମୁନ ନୟନ କରିଛନ୍ତି ଯେକ ।
ମିଛେହେଂ ମହାସନି ହଲାଇଲା ବେକ ॥
ଘାଆ ହୋଇଲା ପ୍ରାୟେ ହନୁମନ୍ତ ଜାଣି ।
ଉଠନ୍ତେ ଗଦା ଘେନି ପିଟିଲା ଅସୁରମଣି ॥
ସଲଖେ ନରହି ପୁଣି ଚିରାକଲା ।
ଭଲା ହନୁମନ୍ତ ପିଠି କଡି ଗଲା ॥
ଲୟେ କରି ଦଇତର ମାଇଲା ମୁଣ୍ଡକୁ ।
ନଇଂ ମହାସନି ଖୁନ୍ଦିଲା ପେଟକୁ ॥
ଦୁହିଂଙ୍କରି ଦେହେ ନ ବାଜିଲା ଅସ୍ତ୍ର ।
ଧଡ଼ସି ପଶିଲା ପବନର ଶିଷ ॥୩୦
ଦୁହେଂ ଜଡ଼ବନ୍ଧେ ଗଡ଼ାଗଡ଼ି ଯାନ୍ତି ।
ପ୍ରାଣର ବିକଳେ ଗଦା ନ ଛାଡ଼ନ୍ତି ॥
ତଳେ ଦଇତକୁ ପାଡ଼ିଲା ପାବେନି ।
ମୁଣ୍ଡେ ମୁଣ୍ଡ ମାରି ଦଇତ ତଣ୍ଡି ଛିନି ॥
ପଡ଼ିଲା ଇନ୍ଦ୍ରଜିତ ତନୟେ ମହାବୀର ।
ଦେଖିଣ ବିଛନ୍ଦେ ଭାଳିଲା ଦଶଶିର ॥
ଇନ୍ଦ୍ରଜିତର ନନ୍ଦନ ସେ ବାପର ସମାନ ।
ତାହାଙ୍କର ରଣେ ମାଇଲା ହନୁମାନ ॥
ଆବର ଦେଖିଲା ପ୍ରମଥ ରଣେ ମଲା ।
ବିଭୀଷେଣର ଶକତି ବଞ୍ଚାଇ ନ ପାରିଲା ॥୪୦
ଖୁଡ଼ୁତା ପୁତୁରାଙ୍କର ହୋଇଲା ମହାଗୋଳ ।
ଦୁହେଂ କ୍ଷତ୍ରିବର ଅଟନ୍ତି ଅଚାର୍ଗଳ ॥
ଅସୁରା ଶହସ୍ର ଘେନି ସମର ଦୁହେଂ କଲେ ।
ଶ୍ରାବଣ ବରଷା ଜାଣି ନାରାଜ ବରଷିଲେ ॥
ରଣ ଗୋଳ କାଳେ ରାବଣର ଭାଇ ।
ପ୍ରମଥକୁ ଶକତି ମାଇଲା ନିଠାଇଂ ॥
ନିବାରି ନ ପାରିଲା ଲଙ୍କପତି ସୁତ ।
ପ୍ରତିଅସ୍ତ୍ର ବୀର କଲାକ ବହୁତ ॥
ଧଡ଼ସି ଶକତି ପକାଇଲା ବକସ୍ଥଳେ ।
ପିଠିକି ବାହାର ହୋଇଲା ବାହୁବଳେ ॥୫୦
ରକତ ଉଦ୍‌ଗାରି ପକାଇଲା କୁମର ।
ଦେଖି ଚିନ୍ତା ପାଇଲା ରାବଣ ମହାବୀର ॥
ଅଙ୍ଗଦର ହସ୍ତେ ପ୍ରଶସ୍ତ ବୀର ମଲା ।
ଦୁହିଂଙ୍କରି ସମର ଅସଂଖ୍ୟ ହୋଇଲା ॥
ନାନା ପ୍ରତିଶର ବିନ୍ଧଇ ପ୍ରଶସ୍ତ ।
ବିବିଧ ଗତି କରି ଫେରାଇ ବାଳୀ ସୁତ ॥
କେବେହେଂ କାଣ୍ଡ ଆସି ନ ବାଜଇ ଅଙ୍ଗେ ।
ବେନି ବୀର କୁଶଳ ଅଟନ୍ତି ରଣ ରଙ୍ଗେ ॥
ପ୍ରଶସ୍ତର ବାଣେ ବିମୁଖ ତାରା ବଛ ।
କୋପେ ଉପାଡ଼ିଲା ଯେକଇ ଶାଳ ବୃକ୍ଷ ॥୬୦
ଓଝାଳି ପିଟିଲା ନେଇ ଅସୁର ଉପରେ ।
ରହୁବର ଭାଜି ପଡ଼ିଲା ଭୂମିରେ ॥
ସାରଥିର ବାଳ ଧରି କଚାଡ଼ିଲା ।
ଆପଣେ ଧାଇଂଣ ରଥରେ ଉଠିଲା ॥
ଦେଖିଣ ପ୍ରଶସ୍ତ ମାଇଲା ଶକତି ।
ଅଙ୍ଗଦ ଫେରାଇଲା କରିଣ ଚିତ୍ରଗତି ॥
ଅସ୍ତ୍ର ବଞ୍ଚାଇଣ ଧାଇଂଲା ବହନି ।
ତଡ଼ବନ୍ଧେ ମାଲ ବିନ୍ଧାଣ କଲେ ବେନି ॥
ଗଡ଼ିଯାଇ ଦୁହେଂ ପଡ଼ିଲେ ରଥ ତଳେ ।
ପ୍ରଶସ୍ତ ବସିଲା ଯାଇ ଅଙ୍ଗଦ ବକସ୍ଥଳେ ॥୭୦
ସମ୍ଭାଳି ହୋଇ ଦଇତ ବସି ନ ପାରିଲା ।
ବାଳୀର ନନ୍ଦନ ତାର ତଣ୍ଟିରେ ହାଥ ଦେଲା ॥
ଡାହାଣ ଆଣ୍ଠୁକୁ ଘେନି ଖୁନ୍ଦିଲା ପେଟକୁ ।
ଆଣ୍ଠୁଘେନି ପେଲି ପକାଇଲା ତଳକୁ ॥
ଉଠି ଗୋଇଠାୟେ ମାଇଲା ମୁଣ୍ଡେ ନେଇଂ ।
ଭାଙ୍ଗିଲା ମୁଧୁନି ଶତେ ଖଣ୍ଡ ହୋଇଂ ॥
ଗଳଗାଜି ଦଇତର ବାହାର ହୋୟେ ପ୍ରାଣ ।
ପୁତ୍ରହତ ଆପଣେ ଦେଖିଲା ରାବଣ ॥
ରଶ୍ମିକେତୁ ଜମ୍ବେବର ସମର ମହାଘୋର ।
କୁମ୍ଭେକର ସାଙ୍ଗେ ଗନ୍ଧମାର୍ଦ୍ଦନ ବୀର ॥୮୦
ଦୃଢ଼କପଚ ଯେ ପବନ ହାଥେ ମଲା ।
ତାଳିମ୍ୟର ହାଥେ ଶତ୍ରୁଜିତ ପ୍ରାଣ ଦେଲା ॥
ଶୋଣିତାକ୍ଷ ନଳର ସମର ମହାଘୋର ।
ସୁଷେଣକୁ ହାରି ପଳାଇଲା ମହୀସୁର ॥
ଜ୍ୟୋତି ସାଗର ଚନ୍ଦନକୁ ଗଲା ଭାଜି ।
ଗବାକ୍ଷର ସଙ୍ଗେ ବିଚାରଣ ମଲା ଯୁଝି ॥
ଗବୟେ ମିତ୍ରଘନ ସମର ବେନି କଲେ ।
ଅଙ୍ଗଦକୁ ଦେଖି ଧାଇଂଣ ପଡ଼ିଲେ ॥

ମିତ୍ରଘନ ବୀର ବଳେ ବଳବନ୍ତା ।
ତିନିପୁରେ ତାହାକୁ ନାହିଁ ନା ଜିଣନ୍ତା ॥୯୦
ଶରବୃଷ୍ଟି କଲା ବରଷା ସମାନ ।
ସାଧୁ ତୁ ସାଧୁ ବୋଲି ବୋଲନ୍ତି ଦୁଇ ସନ୍ୟ ॥
ଅଙ୍ଗଦ ହନୁମତ ଗବୟେ ତିନିବୀର ।
ଧାଇଁ ଉଠିଲେ ଯାଇ ତା ରଥର ଉପର ॥
ଅସ୍ୱମାନ ଫିଙ୍ଗି ପକାଇଲେ ତଳେ ।
ବିଭୀଷେଣ ଧାଇଂଲା ଯେସନେକ
ବେଳେ ॥
ରଘୁବରେ ପଶି ମାଇଲା ମୁଦୁଗର ।
ଅଙ୍ଗ ଢାଳି ବଞ୍ଚାଇଲା ମିତ୍ରଘନ ବୀର ॥
ରଥ ଫୁଟି ଅସ୍ୱ ବାହାର ହୋଇଗଲା ।
ଯେକ ମଉଗଜ ଉପରେ ପଡ଼ିଲା ॥୧୦୦
ପ୍ରାଣ ହାରି ହସ୍ତୀ ପଡ଼ିଲା ଧରଣୀ ।
ସାଧୁ ବିଭୀଷେଣ ବୋଲନ୍ତି ଆରେଣି ॥
ଅଙ୍ଗଦ ଧଇଲା ମିତ୍ରଘନର ବାଳ ।
ବିଧାୟେ ମାଇଲା ନେଇ ପବନ ଦୁଲାଳ ॥
ଫିଟି ବାଇ ଗଲା ରାବଣ ତନୟେ ।
ଧାଇଂ ଧଡ଼ସି ପଶି ହାଣିଲା ଗବୟେ ॥
କରବାଳ ଧରି ମାଇଲା ବିଭୀଷେଣ ।
ଛିଡ଼ିଗଲା ବୁକୁ ବେକ ସଲଖେଣ ॥
ଖଳ ଖଳ ହୋଇ ପଡ଼ିଲା ଅନ୍ତ ଲୋଚାୟେ ।
ଚାରିଙ୍କରି ଦେହେ ରକତ ନାଗି
ଅଛୟେ ॥୧୦
ମୁଣ୍ଡ ଖଣ୍ଡ ଘେନି ହନୁମତ ଗଲା ।
ରାବଣ ଆଗେ ନେଇଣ ପକାଇଲା ॥
ବୋଇଲା ଦେଖ ହୋ ଦଶଇବଦନ ।
ଯେ ସେ ମିତ୍ରଘନ ତୋହୋର ନନ୍ଦନ ॥
ଲଙ୍କପତି ଗ୍ୟାନ ହାରିଲା ତାହା ଚାହିଁ ।
ଆଗେ ଅନାଇଲା ତେଣେ ପାଟୋଳି ଆସଇ
ଧାଇଁ ॥
ଶତବାଳି ଘୋଡ଼ାଇ ଅଛି ତାର ପଛ ।
କରେ ଧରିଅଛି ଅଂୟେଳା ଶାଳ ବୃକ୍ଷ ॥
ସାହାସି ପିଟନ୍ତେ ପଡ଼ିଲା ଦଇତ ବୀର ।
ଧାଇଂ ଶତବାଳି ବସିଲା ହୃଦୟର ॥୨୦
ମୁଣ୍ଡକୁ ମୁଣ୍ଡ ମାରି ଘେନିଲା ତାର ପ୍ରାଣ ।
ପ୍ରତକ୍ଷେ ଦେଖିଲା ସେ ବୀର ଦଶାନନ ॥
ପୁତ୍ରଙ୍କର ପଡ଼ିବା ଦେଖି କୋପ ମନ କଲା ।
ଦଧିମୁଖର ହାଥେ ପୁଣି ଅମରେନ୍ତକ ମଲା ॥
ଦଶକାଳ ବୃଦ୍ଧ ବିକଟକୁ ପ୍ରାଣେ ମାରି ।
ଯେକ ପାଦକଇ ନାଶିଲା ଶଉରୀ ॥
ମହୀନ୍ଦ୍ର ବିଧାରେ ବିଶୋକ ପ୍ରାଣ ଦେଲା ।
କେଶରୀ ଡରେ ଅଶ୍ୱକର୍ଣ୍ଣ ପଳାଇଲା ॥
ବକାସୁର ମଲା ବସନ୍ତ ବୃକ୍ଷ ବାଜି ।
ଓଶେକ ପଳାଇଲା ବିବୁଧକୁ ଭାଜି ॥୩୦
ଚାରଣ ନ ରହିଲା ବିବିଧ ଛାମୁରେ ।
ଯେକଶିର ନାଶଗଲା ବଳିମୁଖ ଶରେ ॥
ଦଧିମୁଖ ହାଥରେ ଅଇରି ପ୍ରାଣ ଦେଲା ।
ବଳିମୁଖ ଗୁରୁଦାରେ ରଶ୍ମିକେତୁ ମଲା ॥
କୁନ୍ଦ ମୋଡ଼ିଲାକ ପଞ୍ଚଶିର ମୁଣ୍ଡ ।
ସୁଶୋଦନ ଅମୟକୁ କଲା ଖଣ୍ଡ ଖଣ୍ଡ ॥
ସାଧୁ ସାଧୁ କ୍ଷତ୍ରୀ ବୋଲନ୍ତି ବେନି ସନ୍ୟ ।
ଏସନକ ବୋଲି ବୋଲନ୍ତି ସର୍ବଜନ ॥
କଞ୍ଚଣ ପାରିଲା ବିରୋଳାକ୍ଷ କଇ ।
ସାରାସର ଛାମୁରୁ ଶୋଣିତାକ୍ଷ ଗଲା
ହାରି ॥୪୦
ପନଶିଳ ମାରନ୍ତେ ଯୁରାସୁର ମଲା ।
ଦେଖି ଦଶଗ୍ରୀବ ମନରେ ଚିନ୍ତାକଲା ॥
ନିଶ୍ଚୟ ରାମ ମୋତେ କରିବ ପ୍ରାଣ ନାଶ ।
ରଣେ ପଡ଼ିଲେ ଆଜ ଯିବି ସ୍ୱର୍ଗବାସ ॥
ଆଉକି ସଂଗ୍ରାମ ଛାଡ଼ିଲେ ସୁଖ ଅଛି ।
ନିସତକୁ ଗଲେ ଦେହ ନ ଯୋଗାଇ କିଛି ॥
ଅସଂଖ୍ୟ ଯୁଦ୍ଧ ଆଜ ମୁଂ କରିବି ରାମ
ତୁଳେ ।
ବଇକୁଣ୍ଠ ପାଇବି ମୁଂ ଶ୍ରୀରାମ ହାଥେ ମଲେ ॥
ମୁହିଂ ସିନା ହାଦେ ହରିଲି ତାର ନାରୀ ।
ନ ଦେବି ବୋଲି ସିନା ଥିଲି ଦୃଢ଼
କରି ॥୫୦
ଯଦ୍ୟପି ଏହିକ୍ଷଣି ଜାନେକୀକି ଦେବି ।
ଯେ ଲଙ୍କା ଭୁବନେ ନିଶ୍ଚିନ୍ତେ ଭୁଞ୍ଜିବି ॥
ସନ୍ତୋଷ ହୋଇ ଯିବେ ରଘୁକୁଳ ପତି ।
ପୁଣି ମରିବେ କି ମୋହର ପୁତ୍ର ନାତି ॥
ଜନ୍ମ ମୃତ୍ୟୁ ସଂସାର ଅଟଇ ଯେ ମହୀ ।
ବ୍ରହ୍ମାଣ୍ଡେ ଆନଛତ୍ରି କାହାକୁ ନଜାଣଇ ॥
ଶ୍ରୀରାମ କି ମୋତେ ପାରିବାକ ମାରି ।
ଚତୁର୍ଦ୍ଦଶ ଭୁବନେ ମୋତେ କେହି ନାହିଂ
ସରି ॥
ଦେବତାୟେ ଭୃତ୍ୟ ପଣେ ଖଟିଥାନ୍ତି
ମୋତେ ।
ଏ କିସ ମାନବ ସିନା ଦଶରଥଙ୍କର
ସୁତେ ॥୬୦
ଏକା ନାରାଜକେ ଘେନିମି ତାର ପ୍ରାଣ ।
ଏତେ ବୋଲି କରେ ଧଇଲା ଧନୁର୍ବାଣ ॥
ଶୁକ ସାରଣ ଯେ ବାହୁଥିଲେ ରଥ ।
ତାହାଙ୍କୁର ଚାହିଂ ବୋଇଲା ଦଶମାଥ ॥
ଲକ୍ଷେକ ଘୋଡ଼ା ଯେ ଉଚିଶ୍ରର୍ବା ସମ ।
ତୁମ୍ଭେ ତ ସାରଥି ପଣକୁ ଅନୁପାମ ॥
ପୁଷ୍ପେକ ବିମାନ ମୋର ଚଳଇ ଚିତ୍ରଗତି ।
ଯେଥି ବସି ଯୁଝିଲେ ଜିଣି ପାରଇ ପୃଥୀ ॥
ବିଶେଷେଣ ମୁହିଂ କ୍ଷତ୍ରିପଣେ ବଳବନ୍ତା ।
ତିନିପୁରେ ମୋତେ ନାହିଂ ନା ଜିଣନ୍ତା ॥୭୦
ସାବଧାନ ହୋଇ ବାହ ରଘୁବର ।
ମୁହିଂ କରିବି ଆଜ ଅସଂଖ୍ୟ ସମର ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପୂରାଇବି କୋପେ ।
ଲକ୍ଷେ କୋଟି ନାରାଜ ପୂରାଇବି ଚାପେ ॥
ଦେଖ ମୋହର ମହିମା କ୍ଷତ୍ରିୟ ଭୁଜ ବଳ ।
ରାମ ଲକ୍ଷଣ ସହିତ ରକ୍ଷ କପି ବଳ ॥
ନାରାଜ ଅନଳେ କରିବି ଭସ୍ମରାଶି ।
ଦେଖନ୍ତୁ ସମର ମୋର ଅମର ସ୍ୱର୍ଗବାସୀ ॥
ରକ୍ଷ କପି ରାକ୍ଷାସେ ଶଙ୍କିଲେ ତାହା ଶୁଣି ।
ଦେବେ ଭୟ କଲେ ପୂର୍ବର କଥା
ଗୁଣି ॥୮୦
ଜଗତ ସଂସାର ହୋଇଲା ଟଳମଳ ।
ଆପଣେ କାୟା ବଢ଼ାଇଲା ମହା ମଲ୍ଲ ॥
ତିନିଶତ କୋଟି ହାଥ ହୋଇଲାକ ଉଚ ।
ପ୍ରଚଣ୍ଡ ଉଗ୍ର ମୂରତି ସେ ଦିଶଇ ଅତି ସଞ୍ଚ ॥
ଅତ୍ୟନ୍ତ ଭୟଙ୍କର ଅଟଇ ତାର ତେଜ ।
ଦଶଭୁଜେ ଧନୁ ଦଶ ଭୁଜେ ନାରାଜ ॥

କାମରୂପୀ ବମାନ ସେହି ଚଢ଼ିଗଲା ।
ଚନ୍ଦ୍ରସୂର୍ଯ୍ୟ, ବହନି କି ସବୁ ଏକ କଲା ॥
ମହାଯୋଦ୍ଧା ସେ ଯେ ଅଟଇ ଦଶାନନ ।
ଯେବଣ ରଥେ ଯୋଚିଲା ଅଛଇ ସହସ୍ରେକ
ଯାନ ॥୯୦
ସାରଥି ବିହୁନେ ଲୀଳାଗତି ଚଳଇ ।
ଯହିଁ ମନ କରଇ ତହିଁକି ବୋଲି ଯାଇ ॥
ରାବଣର ତେଜ ଦେଖିଣ ରଘୁନାଥ ।
ମନେ ବିଚାରନ୍ତି କୋଦଣ୍ଡ କାଣ୍ଡ ହସ୍ତ ॥
ଏ କିସ ଭୟଙ୍କର ଦିଶଇ ବିକଟାଳ ।
ଆନ ଆନ ମୂରତି ଭବିଷ ମୁଣ୍ଡମାଳ ॥
ବୋଲନ୍ତି ଯେ ବ୍ରହ୍ମ ରାକ୍ଷାସ ଲଙ୍କପତି ।
ଏବେ ସେ ଏହାକୁ ଦେଖିଲି ଏ ଘାନ୍ତି ॥
ଏମନ୍ତ ରୂପକୁ କି ବଶ ହୁଅଇ ସୀତା ।
ଏ ସେ ଲଙ୍କପତି ଇନ୍ଦ୍ରଜିତର ପିତା ॥୧୦୦
ଏହାର ପରା ପୁରୁଷ ପୃଥ୍ୱୀରେ ଯେବେ
ଥାଇ ।
ତେବେ ସେ ମେଦିନୀ ଅନେକ ଦୁଃଖପାଇ ॥
ବିପରୀତ କାୟା ଏ ଧରଇ କ୍ଷଣେକ୍ଷଣ ।
ଧାଇଂଣ ଦଶକାଣ୍ଡ ବିନ୍ଧିଲେ ଲକ୍ଷ୍ମଣ ॥
ଏକା ବାଣକେ ତାହା ଛେଦିଲା ଲଙ୍କେଶ୍ୱର ।
ଦେଖି ଆଗ ହୋଇଲେ ଶ୍ରୀରାମ ନୃପବର ॥
ରହ ରହ ଲକ୍ଷ୍ମଣରେ ଭାଇକି ଡାକଦ୍ୟନ୍ତି ।
ରାବଣର ସଙ୍ଗେ ମୁଁ ଯୁଝଇ ଏ ଘାନ୍ତି ॥
ଏସନେକ ସମୟେ ମିଳିଲା ବିଭୀଷେଣ ।
କରେ ଧରିଅଛି କୋଦଣ୍ଡ ତୀକ୍ଷ ବାଣ ॥୧୦
ଶ୍ରୀରାମର ଦକ୍ଷିଣ ପଖା ଆବୋରିଲା ।
ଦେଖି ଦଶଗ୍ରୀବ ଅଳପ ଡରିଲା ॥
ରଘୁନାଥ ବାମ ପଖାରେ ସଉମିତ୍ରୀ ।
ଏକମୁଖ ହୋଇ ରହିଲେ ତିନିକ୍ଷତ୍ରୀ ॥
ଅଷ୍ଟସେନା ଆବର ପଚିଶ ଯୂଥପତି ।
ବୀର ମହାବୀର ଅନେକ ଅଛନ୍ତି ॥
ମଲ୍ଲ ମହାମଲ୍ଲ ଜଗଜେଠିମାନ ।
ରକ୍ଷ କପି ବଳ ଅନେକ ସଇନ ॥
ପଡ଼ିଲା ଆରେଣି ପ୍ରଚଣ୍ଡ ଗୋଳଯୁଦ୍ଧ ।
ଯେ ଯାହାର ମତେ ଘେନିଲେ ଆୟୁଧ ॥୨୦

ଅପାର ବଳଘେନି ଦଶଗ୍ରୀବ ରାଏ ।
ରଥଗଜ ପାଦାନ୍ତି କଳନା ନଯାଏ ॥
ସମ୍ପର୍ବେ ହୋଇଣ ରହନ୍ତି ସମଦଣ୍ଡ ।
ଓହୋ ମୁଖେ ସମର ହୋଇଲା ଯୁଦ୍ଧ ଖଣ୍ଡ ॥
ମୁକୁଟ ଯୋଦ୍ଧାମାନଙ୍କୁ ଲଗାଇଣ ପିଠି ।
ପ୍ରତାପୀ ଲଙ୍କେଶ୍ୱର ସମରକୁ ଉଠି ॥
ପୁତ୍ର ନାତି ଯେତେ ଅଛନ୍ତି ସାହା ଶାଖା ।
ଇନ୍ଦ୍ର ସଙ୍ଗେ ଯୁଝି ପାରନ୍ତି ଏକୁଂ ଏକା ॥
କେବଣ ହସ୍ତୀ ତୋଳନ୍ତି ମନ ସୁଖେ ।
କେହୁ ଘୋଡ଼ାନ୍ତ ଧୁଆଂନ୍ତି ଅସଲଖେ ॥୩୦
କେବଣହିଁ ରଥୀ ଆଗୁସାର ହୁଅନ୍ତି ।
କାହିଁ ହଣାହଣି କରନ୍ତି ପାଦାନ୍ତି ॥
ଶ୍ରୀରାମର ସନ୍ୟ ପରିଘାଇ ଯୁଝି ।
ଯେକ ମଲେ ଆରେକ ନ ପଳାଇ ଭାଜି ॥
ହନୁ ସୁଗ୍ରୀବର ଜମ୍ୱେବ ସୁଷେଣ ।
ନଳ ନୀଳ ଗନ୍ଧମାର୍ଦ୍ଦନ ବିଭୀଷେଣ ॥
ଜମ୍ୱେବ ରମଣ ଶଉରୀ ସେନାପତି ।
ଦଧିମୁଖ କାଳିମୁଖ ବାଳିମୁଖ ପ୍ରଭୃତି ॥
ବସନ୍ତ ଡାଳିମ୍ୱ ଗବ୍ୟ ସୁସୋଦନ ।
ପବନ ଗବାକ୍ଷ ସାରାସ କାଳିଞ୍ଜନ ॥୪୦
ଶରସେତୁ କୁନ୍ଦ କୁମୁଦ ପନଶିଳ ।
ଆବର ଅଛନ୍ତି ଅନେକ ମହାମଲ ॥
ରଣଗୋଳ ଧନ୍ଦୋଳ ଆରେଣି ଭିତର ।
ମାର ମାର ଶବଦ ଶୁଭଇ ତିନିପୁର ॥
ଦୁଇକତି ନିଶାଣ ଘନ ଘନ ବାଜେ ।
ରକ୍ଷ କପି ରାକ୍ଷସ ସମର ଦେବ କାର୍ଯେ ॥
ଉଦଣ୍ଡ ଉଲାଖ ଚାମର ବୀରନେତ ।
ଝଲ ଝଲ ବିଲମ୍ୱ ପ୍ରଲମ୍ୱ ବହୁତ ॥
ବିବିଧ ବସ୍ତ୍ର ଶୋହଇ ଶୋଭାବନ ।
ବିଚିତ୍ର ଗତି ଯୁଦ୍ଧ କରନ୍ତି ଦୁଇ ସନ୍ୟ ॥୫୦
ଧରାଧରି ମରାମରି ସହସ୍ରେ ପିଟାପିଟି ।
ମାଲ ବିନ୍ଧାଣେ ପହୁଡ଼ନ୍ତି ମୁଷ୍ଟି ॥
ନଖଦନ୍ତ ଘାୟେ ବାହାର ରକତ ।
ସାଂଗ୍ରାମେ ଦୁଇବଳ ହୋଇଛନ୍ତି ମତ ॥
ରାବଣର ତନୟେ ଅଶ୍ୱକର୍ଣ୍ଣ ବୀର ।
ସାଙ୍ଗେ ସାହା ଘେନି ବହୁତ ସୋଦର ॥

ବାଆସ୍ତରୀ ନାତି ଅଛନ୍ତି ଖଣ୍ଡା ଧରି ।
ଦଶକୋଟି ମାହୁନ୍ତ ଅଛନ୍ତି ହନ୍ତକାରୀ ॥
ଯରଦ କେତୁ ନାମେ ଏକଇ ମହାମଲ୍ଲ ।
ତାହାର ପିଠିକତି ଘେନି ଅଛନ୍ତି
ସକଳ ॥୬୦
ଲକ୍ଷେକ ବୀରଛତ୍ର ଉଡ଼ଇ ଫରହର ।
ଆଗେ ବାଜୁଅଛି ରଣଜୟେ ମର୍ଦ୍ଦଳ ॥
ମୁକୁଟବନ୍ଧା ଯୋଦ୍ଧା ଅଛନ୍ତି ପଚାଶ କୋଟି ।
ସହସ୍ରେ କୋଟି ଅସୁର ଅଛନ୍ତି ବଜ୍ର ଘୋଟି ॥
ଚାଳିଶି ପରାଉଧ ଅଛନ୍ତି ଅଙ୍ଗବଳ ।
ସାଂଗ୍ରାମକୁ ଶରାଧା ସଭିୟେ ମହାବଳ ॥
ଶ୍ରୀରାମକୁ ଚାହିଁ ବିଚାରଇ ରାବଣ ।
ଧନ୍ୟ ଦଶରଥ ରାଜା ତୋର ପୁନ୍ୟ ॥
ଧନ୍ୟ ସୂର୍ଯ୍ୟ ବଂଶ ଅଯୋଧ ପୁର ଧନୀ ।
ଧନ୍ୟ ଗୃକ୍ଷ କପି ଧନ୍ୟ ଏ ମେଦନୀ ॥୭୦
ରମଣୀକି ନେବଏ ନିଷ୍ଟେ ଆଜ ଯୁଝି ।
ମନସରି ଦିଅଂଏ ଆସିଅଛି ପୂଜି ॥
ଅସରଳା ସୂତା ଯେ ଗଳାରେ ଧଣ୍ଡାମାଳ ।
ସିନ୍ଦୂର ଚିତା ଭଲା ଶୋହଇ କପାଳ ॥
ଯେବେ ସେ ରଜିଂଣ ଆସଇ ଦାଢ଼ୀ
ରୋମ ।
କସ୍ତୁରୀ ରେଖ ନିଶ ସୁନ୍ଦର ଅନୁପମ ॥
ଯୁବାବୟେସ ଏ ଯୁଦ୍ଧ କାଳ ନୋହେ ।
ବୀରବର ବାନା ଏହାକୁ ସେ ମୋହେ ॥
ମାନେବ ହୋଇ କାହିଁ ପାଇଲା ଦିବ୍ୟ
ଅସ୍ତ୍ର ।
କେବଣ ଦେବତା ଏ ଦଶରଥର ଶିଷ ॥୮୦
ଆଜ ଯେ ପରୀକ୍ଷା କରିବି ଏହାର ବଳ ।
ଏ ମୋହୋର ନାରାଚ ନସହନ୍ତି ଦିଗପାଳ ॥
ଯେସନେକ ବୋଲି ବିନ୍ଧୁଅଛି ଶରମାନ ।
ଅନ୍ତରୀକ୍ଷେ ଉଡୁଅଛି ପୁଷ୍ପେକ ବିମାନ ॥
ରାମ ରାବଣର ସମର ମହାଘୋର ।
ଅନ୍ୟାଅନ୍ୟ ଯୁଦ୍ଧ ମୁଖରାବ ଚହଳ ॥
କେ ଦୁଇ ଶହସ୍ର ପେଷଇ ରୋଷଭରେ ।
କେ ତାହା ନିବାଇ ପେଷିଣ ଏକ ଶରେ ॥
କେ ପାଞ୍ଚ କାଣ୍ଡ କେ ବିନ୍ଧନ୍ତି ତୀକ୍ଷମୁନା ।

କାହାର କାଣ୍ଡ ଆସଇ ରବିର
ଜୋଛନା ॥୯୦
କେ ଚନ୍ଦ୍ର ଉଦିଆ କେ କଳାଞ୍ଚ ବାଣ ମାରି ।
ଗଗୁଡ଼ା କାଣ୍ଡ କେ ପେଷଇ ରୋଷଭରି ॥
କେ ରତ୍ନ ଜଡ଼ିତ ପେଷଇ ଶସ୍ତ୍ର ଗୋଟା ।
କେ ଫଳା ଓସାର ମୁଗୁରି କାହା ରୋଟା ॥
କେ ତିନିକନା କେ ପାଞ୍ଚ ମୁଖ ଶର ।
କାହାର ଆଙ୍କୋରି ଅଛଇ ଚିଆର ॥
କାହାର ଚମ୍ପାକଢ଼ି ସମାନେ ଫଳାଦିଶି ।
କେବଣ ଅସ୍ତ୍ର ଫଳା ଦିଶଇ ଜାଣି ଦୁଜା
ଶଶୀ ॥
କେ ଆଡ଼େ ତେଜ କେ ସାହାଣେ
ମହାତେଜ ।
ବଜ୍ର ବେଲୁରି ଫଳାକେବଣ ଶସ୍ତ୍ର
ଉଜ ॥୧୦୦
କେବଣ କାଣ୍ଡରୁ ହୁଗୁଳି ରହଇ ଫଳ ।
ବସାଇଲା ଅଛି କେବଣ ଶର ମୂଳ ॥
କେ ହଲି ଚଳଇ କେ ପାଣି ଥୋପାପ୍ରାଏ ।
କେହୁ ପ୍ରତିଅସ୍ତ୍ର କରନ୍ତି କେହୁ ବଳିଆଏ ॥
କେ ମନୁହୁଂ ବେଗକେ ପବନହୁଂ ଖର ।
ଧନୁରୁ ଛାଡ଼ିବା ଯାଏ ରହେ କାହାର ଶର ॥
କେ ଗର୍ଜି ଚଳଇ କାହାର ଯିବାର ନଜାଣି ।
କେ ଦେଖି ତରକି ଯାଉଛନ୍ତି ହାଣି ॥
କେ ଫୁଟି ପଡ଼ଇ କେ ନିହାଳେ ବସଇ ।
କେହୁ ସେହ୍ନା ଫୁଟି ଦେହକୁ ଗଳଇ ॥୧୦
ଦୁହିଙ୍କରି ଶ୍ୟରୀର କାଣ୍ଡେ କାଣ୍ଡେ ଘାଆ ।
ରକତ କର୍ଦ୍ଦନେ ଦିଶୁଅଛି ଛାଉଆ ॥
ରାବଣର ଦଶଧନୁ ଶ୍ରୀରାମର ଏକ ।
ସମର ବେଳେ ମାରି ନ ପାରଇ ଆରେକ ॥
ଲକ୍ଷ୍ମଣ ବିଭୀଷେଣ ଯୁଝନ୍ତି ପରିଘାଇ ।
ତିନିଙ୍କି ସମର କରାଇ ଲଙ୍କସାଇଂ ॥
ରାଗେଣ ଶରୀର କମ୍ପଇ ଥରହର ।
ମର୍ମସ୍ଥାନକୁ ବିନ୍ଧଇ ବିଭୀଷେଣ ବୀର ॥
ଲକ୍ଷ୍ମଣ ନାରାଜକୁ ଡରଇ ଲଙ୍କପତି ।
ଯୁଝନ୍ତି ଅଷ୍ଟସେହ୍ନା ପଚିଶ ଯୂଥପତି ॥୨୦
ଉହୁଳିଲା ଶହସ୍ର ଆତଯାତ ଗୋଳ ।
ଦିବସରେ ଅନ୍ଧାର ଶୁଭଇ ମୁଖଗୋଳ ॥
କୋପେ ଲଙ୍କପତି ଲକ୍ଷେ କାଣ୍ଡ ଯୋଚି ।
ଶ୍ରୀରାମର ଉପରକୁ ବିନ୍ଧିଲା ସଞ୍ଚି ॥
ଲକ୍ଷ୍ମଣକୁ ଲକ୍ଷେ ବିଭୀଷେଣକୁ ଶଏ ।
ସୁଗ୍ରୀବିକି ପଞ୍ଚାଶ ବିନ୍ଧିଲା ଲଙ୍କରାଏ ॥
ଅଙ୍ଗଦକୁ କୋଡ଼ିଏ ହନୁମନ୍ତକୁ ଦଶ ।
ଗନ୍ଧମାରଦନକୁ ବିନ୍ଧିଲା ଅଠାଇଶ ॥
ନଳକଇ ସାତ ନୀଳକୁଇ ସତର ।
ରମଣକୁଇ କୋଡ଼ିଏ ବିନ୍ଧଇ ଦଶଶିର ॥୩୦
ଦଧିମୁଖକୁ ପାଞ୍ଚ କାଳିମୁଖକୁ ଚାରି ।
ଦଶଭୁଜେ ଧନୁ ଧରି ବିନ୍ଧଇ ହୁଂକାରି ॥
ସୁଷେଣକୁ ତିରିଶ ତାରାକ୍ଷକୁ ବାର ।
ବସନ୍ତକୁ ଚଉଦ ଡାଳିମ୍ବକୁ ଏଗାର ॥
ପବନକୁ ପଞ୍ଚାଶ ଗବାକ୍ଷକୁ ଦଶ ।
ଗବଏ କପିକି ବିନ୍ଧିଲା ଅଠାଇଶ ॥
କାଳିମୁଖକୁ ମାଇଲାକ ସାତ ।
ଅନେକ ଶରବୃଷ୍ଟି କରଇ ଦଇତ ॥
ସୁନାସକୁ ଷାଠିଏ କାଳିଞ୍ଜନକୁ ସତୁରି ।
ଚନ୍ଦନକୁ ଆଶୀ ଏ କେଶରୀକି ଷାଠିଏ
ମାରି ॥୪୦
କୁନ୍ଦକୁ ଚଉଦ କୁମୁଦକୁ ଷୋଳ ।
ହାକିଣ ନାରାଜ ବିନ୍ଧଇ ଲଙ୍କପାଳ ॥
ଶଭରୀକି ପୁଣ ବିନ୍ଧିଲା ପାଞ୍ଚବିଂଶ ।
ଶରସେତକୁ ଚାରିବାଣ ପନଶିଳକୁ ଚାରିଶ ॥
ସବୁରକ୍ଷ କପିଙ୍କି କାଣ୍ଡେ କାଣ୍ଡେ ମାରି ।
ମହାଘୋର ଗର୍ଜନ କରିଣ ଦଶଶିରି ॥
ଅସଂଖ୍ୟ ସମର କଳାକ କଉଣୋପ ।
ଧନୁରୁ ବାଣ ଫିଟି ଅଇଲେ ଅନିର୍ଯାପ ॥
ଦେଖି ରଘୁନାଥ କୋପ ଗରୁ କଲେ ।
ଏକା ବାଣକେ ସବୁ ଛିନାଇ
ପକାଇଲେ ॥୫୦
କାହାରହିଂ ଅଙ୍ଗେ ନବାଜିଲା କାଣ୍ଡ ।
ରାଗେଣ ରାବଣ ହଲାଇଲା ଦଶମୁଣ୍ଡ ॥
ଧନୁର୍ବେଦ ପଢ଼ି ପୁଣି ବିନ୍ଧଇଂ ଶର ।
ପ୍ରତିହୂଳ କରି ଛେଦନ୍ତି ରଘୁବୀର ॥
ଏସନେକେ ବେଳ ଚଉଦ ଘଡ଼ି ହୋଏ ।
ରିଝାଇ ଯୁଝିଲେ ରାବଣର ପୋୟେ ॥
ରକ୍ଷ କପି ବଳ ରିଝାଇ ଯୁଝନ୍ତି ।
ସେନା ଯୂଥପତି ରହିଣ ସହନ୍ତି ॥
ଏଥୁ ଅନନ୍ତରେ ରାମ ଯେ ରାବଣ ।
ପ୍ରଳୟ କାଳେ ଯେହ୍ନେ କରଇ
ବରଷଣ ॥୬୦
ସ୍ୱର୍ଗ ମଞ୍ଚ ପାତାଳ ଶବଦ ମହାଘୋର ।
ସର୍ବ ସନ୍ୟ ଯୁଦ୍ଧ କରନ୍ତି ଅଗୋଚର ॥
ଗୁଣନାଦ ଗର୍ଜନ ବଜ୍ରଘାତ ଜାଣି ।
ଅସ୍ତ୍ର ଆତଯାତେ କମ୍ପଇ ମେଦିନୀ ॥
ଆୟୁଧର ତେଜ ବିଜୁଳି ଝଳି ଦିଶେ ।
ଲକ୍ଷ ଲକ୍ଷ ନାରାଜ ବିନ୍ଧନ୍ତି ନିମିଷେ ॥
ମହାକୋପମୁଖ ଶ୍ରୀରାମର ଥାଟ ।
ପଶି ମିଶି ମାରନ୍ତି ଦଇତ ଦୁର୍ପିଷ୍ଟ ॥
ରକ୍ଷ କପିବଳ ପଶିଲେ ସମରେ ।
ତରୁଣିଳ ମାଇଲେ ପୁଷ୍ପେକ
ରଥବରେ ॥୭୦
ରାକ୍ଷାସେ ବେଢ଼ିଣ ମାରନ୍ତି ଶ୍ରୀରାମଙ୍କୁ ।
ସୁରଗଣେ ଆକାଶେ ଚାହାଂନ୍ତି ସମରକୁ ॥
ନିବିଡ଼ ଅନ୍ଧକାର ନ ଦିଶଇ ରଣଭୂଇଂ ।
ଶହସ୍ରଙ୍କର ତେଜକି ଚନ୍ଦମାପାଏ ଉଇଂ ॥
ପୁଷ୍ପେକ ବିମାନ ଦିଶଇ ମହାଶୋଭା ।
କିଜାଣି ପଟାନ୍ତର ସୁଧର୍ମାର ସଭା ॥
ଲକ୍ଷେକ ଶ୍ୱେତଛତ୍ର ପାଗୁଶେ ଛନ୍ତି ରଖି ।
ଲକ୍ଷେକ ବୀର ଘଣ୍ଟ ଚାମର ଗୋଟି ଗୋଟି ॥
ଦର୍ପଣ ରାଜନ୍ତି ନକ୍ଷତ୍ର ପନ୍ତି ସଞ୍ଚି ।
ଲକ୍ଷେକ ହୟବର ଉତ୍ତମ ଜାନେ
ଯୋଚି ॥୮୦
ବିଚିତ୍ର ଗତିରେ ଚଳଇ ବିବାନ ।
ରଣରାହୁ ବାନା ଉଡ଼ଇ ଘନ ଘନ ॥
ସେ ରଥେ ଥାଇଂ ଯୁଝଇ ଦଶଶିରି ।
ଶ୍ରୀରାମ ସ୍ୱାମୀ ତଳେ ଥାଇଣ ଯୁଦ୍ଧକରି ॥
ନାରାଜ ବିନ୍ଧୁଛନ୍ତି ପବନୁ ଖରକରି ।
ଆଗକୁ ଆଗସରି ପଛକୁ ପଛ ସରି ॥
ଯେକ କାଣ୍ଡ ନ ବିନ୍ଧୁ ଆରେକ କାଣ୍ଡ ଧରି ।
ଦଶ ଧନୁରେ କାଣ୍ଡ ଧରିଣ ବିନ୍ଧଇ ॥

ଧରି ପୂରାଇ ବିନ୍ଧଇ ତାକପାରି ।
ମନୁବେଗେ ନାରାଚ ଦେଉଛନ୍ତି ଛାଡ଼ି ॥୯୦
ଦେଖି ଦେବତାଏ କରନ୍ତି ବିଚାର ।
ପୁଷ୍ପେକ ବିମାନ ଚଢ଼ି ଯୁଝଇ ନିଶାଚର ॥
ରଘୁନାଥ ତଳେ ଅଛନ୍ତି ଉଭା ହୋଇଂ ।
ଏତେ ଦୁଃଖ ସ୍ୱାମୀ ପାଉଅଛି ଆମ୍ଭପାଇଂ ॥
ଏକଥା ଅଯୁଗତ ବୋଇଲେ ବେଦପତି ।
ବ୍ରହ୍ମାଣ୍ଡ ଈଶ୍ୱର ଯୁଝଇ ପାଦଗତି ॥
ଦେବରଥ ଘେନି ମାତେଳି ବେଗେଂ
ଯାଉ ।
ଏଥିବସି ସମର କରନ୍ତୁ ରାମରାହୁ ॥
ଶୁଣିଲା ଦେବଇନ୍ଦ୍ର ବ୍ରହ୍ମାର ବଚନ ।
ମାତେଳିକି ହକାରିଲେ ସହସ୍ର
ଲୋଚନ ।୧୦୦
ବୋଇଲା ଯାହା ଆଜ୍ଞା ଦେଲେ କୁଶଧାରୀ ।
ସେ ଆଜ୍ଞା ମାତେଳି ହୋ କର ବେଗକରି ॥
ଶୁଣି ମାତେଳି ଯୋଡ଼ଇ ବେନିକର ।
କିସ ଆଜ୍ଞା ମୋତେ ଦିଅସି କୁଶଧର ॥
ବିଧାତା ବୋଇଲା ତୁ ଏହିକ୍ଷଣି ଯିବୁ ।
ଗରୁଡ଼ ଧ୍ୱଜ ରଥ ସାଜିଣ ଆଣିବୁ ॥
ଲଙ୍କାରେ ଶ୍ରୀରାମଙ୍କୁ ସମର୍ପିବୁ ନେଇଂ ।
ତହିଂ ବସି ସମର କରିବେ ରଘୁସାଇଂ ॥
ତେବେ ସେ ଦଇତ ହୋଇବ ପ୍ରାଣନାଶ ।
ଭଣ୍ଡାରୁ ରହୁବର ଏଠାକୁ ଘେନିଆସ ॥୧୦
ଶୁଣିଣ ମାତେଳି ଗଲାକ ଶୀଘ୍ରଗତି ।
ଗରୁଡ଼ଧ୍ୱଜ ରଥ ସେ ଆଣିଲା ତଡ଼ତି ॥
ସର୍ବଦା ବିଷ୍ଣୁର ଅଟଇ ସେ ଯାନ ।
ଦିଗବିଜେ କାଳେ ବସନ୍ତି ଭଗବାନ ॥
ସେ ରଥ ମାତେଳି ବ୍ରହ୍ମାର ଆଗେ ଦେଲା ।
ଦେଖି ପିତାମହ ହରଷ ହୋଇଲା ॥
ବୋଇଲା ସକଳ ସୁରଗଣ ଚାହିଂ ।
ରାବଣ ମରିବାରେ କିଛି ଖେଦନାହିଂ ॥
ଏକକଥା ମାତ୍ର ଅଟଇ ଗୁପତ ।
ନନ୍ଦିକେଶ୍ୱର ଶାପ ନ ଜାଣ ସମସ୍ତ ॥୨୦
ତହିଂର ହେତୁ ସିନା ରକ୍ଷ ମର୍କଟ ବଳୀ ।
ଅସୁର ସଇନି ସବୁ ପକାଇଲେ ଦଳି ॥
ରାବଣକୁ ମାରିବାକୁ କି ବାନରେ ଭାର୍ଜନ ।
ଦଶମଉଳି ଖଣ୍ଡିବେ ଶ୍ରୀରାମରାଜନ ॥
ଆପଣେ ନନ୍ଦିକେଶ୍ୱର ରଥ ମଧ୍ୟେ ଥିବ ।
ତେବେ ସେ ନାରାୟଣ ଅସୁର ନିବାରିବ ॥
ଏତେ ବୋଲିଣ ସେ ନନ୍ଦି କି ହକାରିଲେ ।
କେବଣ ରୂପେ ରଥେ ରହିବୁ ବୋଇଲେ ॥
ହୃଦରେ ଚିନ୍ତା କରି ନ ପାରିଲା ବୁଦ୍ଧି ।
ନନ୍ଦିକେଶ୍ୱରଙ୍କୁ ଚାହିଂ ବୋଲଇ
କୁଶନିଧି ॥୩୦
ଏହୁ ରହୁବର ଚକମଧ୍ୟେ ଥିବୁ ।
ଯାନ ଚଳିଯାନ୍ତେ ଗର୍ଜନ କରିବୁ ॥
ସେ ରାବ ଶୁଣିଲେ ଭାଜିବ ଅସୁର ବଳ ।
ତେବେ ସିନା ବଧ ହୋଇବ ଲଙ୍କପାଳ ॥
ଆଜହୁଂ ଏ ରଥ ନାମ ନନ୍ଦିଘୋଷ ।
ସର୍ବଦା ଏ ରଥେ ତୁ କରିଥିବୁ ବାସ ॥
ପ୍ରତ୍ୟକ୍ଷେ ଈଶ୍ୱର ତୁ ଅଟୁ ଶିବଗଣ ।
ଯାସି ଶୀଘ୍ର ହୋଇ ହୋ ଲଙ୍କପତି ଜିଣ ॥
ଶଙ୍କର ବାହନ ତୁ ବିଷ୍ଣୁଙ୍କୁ ଏବେ ବହ ।
ହରିହର ବେନି ସେ ଅଟନ୍ତି
ଏକଦେହ ॥୪୦
ଯାହା ସେ ପ୍ରତିଜ୍ଞା ହୋ ଅଛୁ ପୂର୍ବେ କରି ।
ମାର ଲଙ୍କପତି ହୋ ସେ କଥା ସୁମରି ॥
ବ୍ରହ୍ମାର ବଚନେ ନନ୍ଦିକେଶ୍ୱର ଗଲା ।
ଗରୁଡ଼ ଧ୍ୱଜ ରଥ ଚକ୍ରରେ ବସିଲା ॥
ଶରୀର ଲୁଚାଇ ସେ ଗୁପତେ ଅଛି ରହି ।
ପୂର୍ବର ଶାପ ଅର୍ଥେ ବ୍ରହ୍ମାବର ପାଇ ॥
ଘୋ ଘୋ କିରି କିରି ରାବଘୋଷ ଶୁଭେ ।
ଶୁଣିଣ ଉଷତ ହୋଇଲେ ସର୍ବ ଦେବେ ॥
ଶ୍ୱେତ ଅଶ୍ୱ ଚାରି ଯୋଚିଲା ଅଛି ତହିଂ ।
ଗରୁଡ଼ ଧ୍ୱଜ ଚିହ୍ନ ଭଲା ଅଛି ଶୋହି ॥୫୦
ବ୍ରହ୍ମାଙ୍କୁ ମାତେଳି କହଇ ଯୋଡ଼ିକର ।
ଦିଅସି ଆଜ୍ଞା ମୁଂ ଯିବଇଂ ଲଙ୍କାପୁର ॥
ଶ୍ରୀରାମଙ୍କୁ ବିମାନ ସମର୍ପିବି ନେଇଂ ।
ଯାଅ ବୋଲି ବୋଇଲେ ସାବିତ୍ରୀ ଦେବୀ
ସାଇଂ ॥
ଇନ୍ଦ୍ର ଦେବତା ଯେ ଦେଲା ଧନୁ ଶସ୍ତ୍ର ।
ଏହା ନେଇ ଦେବୁ ଦଶରଥ ଶିଷ ॥
ଏ କୋଦଣ୍ଡ ଧରି ଦତ୍ୟବଳ ମାରୁ ।
ଚଉଦ ଭୁବନର ଉତପାତ ସରୁ ॥
ଆୟୁଧ ଘେନି ମାତେଳି ରଥେ ଯାଇ ବସି ।
ଏମନ୍ତ ବେଳେ ରଥ ଗଗନୁ ପଡ଼େ
ଖସି ॥୬୦
ଭୂଅତଳେ ଲଙ୍କା ଭୁବନେ ଯାଇ ମିଳି ।
ସାଂଗ୍ରାମ ମଣ୍ଡଳେ ମିଳିଲା ମାତେଳି ॥
ରାମ ରାବଣର ସାଂଗ୍ରାମ ମହାଘୋର ।
ଦେଖିଣ ମାତେଳି ଛାଡ଼ିଲା ରହୁବର ॥
କୃତାଞ୍ଜଳି ହୋଇ ବେନିକର ଯୋଡ଼ି ।
ଶ୍ରୀରାମଙ୍କୁ ଚାହିଂଣ ଅନେକ ସ୍ତୁତି ପଢ଼ି ॥
ଶୁଣିମା ରଘୁନାଥ ଅଯୋଧ୍ୟାର ପତି ।
ତୁ ଯେ ସମର କରୁଅଛୁ ପାଦଗତି ॥
ଏହା ଦେଖି ଦେବେ ପାଇଲେ ମନେ
ବ୍ୟଥା ।
ମୋତ ହକାରିଣ ବୋଇଲେ ଚଉମଥା ॥୭୦
ନନ୍ଦିଘୋଷ ରଥ ଗରୁଡ଼ ଧ୍ୱଜ ଚିହ୍ନ ।
ଏଥି ଆରୋହିଣ ଯୁଝସି ରଘୁନାନ ॥
ମୁହିଂ ସେ ମାତେଳି ଇନ୍ଦ୍ରର ସାରଥି ।
ଏ ତୋହର ରଥ ହୋ ବାହିବି ଦାଶରଥି ॥
ରାବଣ ପଡ଼ିଲେ ସେ ବିମାନ ଘେନିଯିବି ।
ଯେତେଦିନେ ମରିବ ତେତେ ଦିନ ଥିବି ॥
ଅକ୍ଷୟେ ଦ୍ରୋଣ ଇନ୍ଦ୍ରଧନୁ ଆଣିଅଛି ।
ଏହା ଘେନି ସମର କରହୋ ରଘୁବଂଶି ॥
ଶୁଣିଲେ ଶ୍ରୀରାମ ମାତେଳି ବଚନ ।
ବାମ ପାଶେ ଚାହିଂଲେ ଅଛି
ବିଭୀଷେଣ ॥୮୦
ଦେଖି ରାବଣ ଭାଇ ମଥାରେ ହାଥ ଦେଲା ।
ଭୋ ଦେବ କି ଆଜ୍ଞା ହେଉଛି ବୋଲିଣ
ବୋଇଲା ॥
ରାଘେବ ବୋଇଲନ୍ତି କି ହୋ ବିଭୀଷେଣ ।
ଏ ରଥ ଆସିଅଛି ହୋ କେବଣ କାରଣ ॥
ଇନ୍ଦ୍ର ପେଷିଲା କି ରାବଣର କପଟ ।
ଶୁଣିକରି ଯୋଡ଼ଇ ବିଶ୍ରବାର ଚାଟ ॥
ଭୋ ରଘୁନନ୍ଦନ ତୁ କ୍ଷେତ୍ରୀଙ୍କ ଶିରୋମଣି ।

ନିଶ୍ଚୟ ଏହାଙ୍କୁ ପେଷିଛି ବଜ୍ରପାଣି ॥
ଏ ସେ ମାତେଳି ସୁର ଗଣଙ୍କର ସାର ।
ଏକଥାଙ୍କୁ ସ୍ୱାମୀ କିଛି ନି ବିଚାର ॥୯୦
ସ୍ୱୟଂ ନାରାୟଣ ଅଟନ୍ତୁ ରଘୁନାଥ ।
ନୋହିଲେ କି ଆନଙ୍କୁ ଆସଇ ଦେବରଥ ॥
ବସ ବସ ଶ୍ରୀରାମ ଦେବଙ୍କ କାର୍ଯ୍ୟକର ।
ତ୍ରୈଲୋକ୍ୟର ଶତ୍ରୁକୁ ବେଗେଣ ସଂହାର ॥
ଶୁଣିଲେ ଶ୍ରୀରାମ ବିଭୀଷଣେର ବାଣୀ ।
ପ୍ରତେ ଗଲେ ସ୍ୱାମୀ କୋଦଣ୍ଡ ଚାପପାଣି ॥
ନନ୍ଦିକେଶ୍ୱର ରଥେ ବିଜେ ଯାଗଂ କଲେ ।
ସ୍ୱର୍ଗରେ ଅପଛରୀ ହୁଳାହୁଳି ଦେଲେ ॥
ଶ୍ୱେତପୁଷ୍ପ ବୃଷ୍ଟି କରନ୍ତି ଦେବଗଣ ।
ଦେଖି ଦୈତ୍ୟ ବଳେ ଛାଡ଼ିଲେ
ଗର୍ବପଣ ॥୧୦୦
ଅପୂର୍ବ ବିମାନେ ବିଜଏ ରାମ ରାହୁ ।
ଗୁଣ୍ଡିଚା ବିଜୟକି ଜଗନ୍ନାଥ ପ୍ରହୁ ॥
କରେ କାଣ୍ଡ କୋଦଣ୍ଡ ବିକ୍ରମ ସୁରପଣ ।
ଦେଖି ଭୟ କଲା ମନରେ ରାବଣ ॥
ହୃଦେ ବିଚାରିଲା ହୋଇଲା ବିପରୀତ ।
ମନୁଷ୍ୟ ନୁହଇଂ ଏ ଦଶରଥ ସୁତ ॥
ଆକାଶେ ଶିର ଏହାର ଲାଗୁଅଛି ଯାଇ ।
ଚନ୍ଦ୍ରସୂର୍ଯ୍ୟ ଚକ୍ଷୁକି ରହିଛି ଅନାଇ ॥
ଦଶ ଦିଗେ ଏହାର ତ ପୂରିଲା କଳେବର ।
ପାତାଳ ପୁରେ ଏହାର ଲାଗିଲା ପୟର ॥୧୦
କ୍ଷତ୍ରୀଙ୍କର ଈଶ୍ୱର ଦଶରଥଙ୍କର ସୁତ ।
ନୋହିଲେ ରଥ କେଣେ ଆଣିଲା
ଦେବଦୂତ ॥
ଏସନେକ ଭାଲୁଂ ଜାଣିଲା ମାତେଳି ।
ମନେ ବିଚାରିଲା ଦଶଗ୍ରୀବ ଭାଳି ॥
ଏତେ ବୋଲି ରହୁବରେ ବସିଲାକ ଯାଇ ।
ବାଗ ଦଉଡ଼ି ଘେନି ଘୋଡ଼ାକୁ ଧୁଆଂଇ ॥
ଯାଅ ବୋଲି ଜୟା ବିଜୟା ସୁମରିଲା ।
ନନ୍ଦିଘୋଷ ରଥ ତାହାର ବୋଲ କଲା ॥
ଯହିଂକି ମନକରଇ ତହିଂକି କରଇ ଗମନ ।
ରାବଣ ଚଢ଼ିଅଛି ପୁଷ୍ପେକ ବିମାନ ॥୨୦
ଶୁକସାରଣେ ଚାହିଁ ବୋଇଲା ବାହା ରଥ ।

ଦିଗପାଳ ସମାନେ ମୁହିଂ ଦଶମାଥ ॥
କରେ ଧନୁଶର ବିକରାଳ ମୂର୍ତ୍ତି ।
କେବଣ କରେ ଧରି ଅଛଇ ଚକ୍ରକାତି ॥
କେବଣ କରେ ଗଦା କେବଣ କରେ
ଶୂଳ ।
କାହିଂ ମୁଦ୍‌ଗର କାହିଂ କରବାଳ ॥
କେବଣ କରେ ଶକତି ଅଛଇ ହାଦେ
ତୋଳି ।
କେବଣ କରେ କୋନ୍ତ ହଲାଉଅଛି
ମହାବଳୀ ॥
କାହିଂ ମୂଷଳ କାହିଂ ତୀକ୍ଷ ଭାଲ ।
କେବଣ କରେ ଶସ୍ତ୍ର ଗିରିବର
ସମତୁଲ ॥୩୦
କାହିଂ ଜମାଏଣ ଗୁଳିନ୍ତ ଅଛି କାହିଂ ।
ବଜ୍ରବାଟୁଳି ମାରଇ ସାବଧାନ ହୋଇ ॥
କାହିଂ ଯଷ୍ଟି କାହିଂ କରବାଳ ଧରେ ।
କେବଣ କରେ ଫାଶୀ ଆଙ୍କୁଶ କେବଣ
କରେ ॥
ଦଇତ କାମରୂପୀ ବିଷ୍ଣୁର ଦ୍ୱାରପାଳ ।
କାଳକୁ ଡରାଇ ସେ ବୋଲାଇ ମହାକାଳ ॥
ଦଶଦିଗେ ଦଶଦିଗପାଳ ମୂର୍ତ୍ତି ।
ଦେଖି ଦେବେ ଯାହାକୁ କରିଥିଲେ ସ୍ତୁତି ॥
ପୁଷ୍ପେକ ବିମାନେ ବସି କ୍ଷତ୍ରୀପଣ କରଇ ।
ନାରାୟଣ ଛାମୁରେ ସମର କରଇ ॥୪୦
ସାଧୁ ସାଧୁ ରାବଣ କେବଣ ତପ କଲୁ ।
ତେତିଶ କୋଟି ଦେବତାଙ୍କୁ ସମରେ
ଜିଣିଲୁ ॥
ଏବେ ଜଗନ୍ନାଥଙ୍କ ଛାମୁରେ ଖଣ୍ଡା ପାତୁ ।
ଏହାଙ୍କୁ ଜିଣିମାକୁ ମନେ ମନେ ଆଞ୍ଚୁ ॥
ଏସନେକ ବୋଲି ବୋଲନ୍ତି ସର୍ବସୁର ।
ଭେଟ ପଡ଼ିଅଛି ଦୁଇ ରହୁବର ॥
ରକ୍ଷକପି ରାକ୍ଷାସ ଯୁଝିଣ ହେଲେ ଧନ୍ଧା ।
ଶ୍ରୀରାମହୁଁ ରାବଣ ହୋଇବକି ବଡ଼ ଯୋଦ୍ଧା ॥
ଶ୍ରୀରାମ ଅବା ତାହାକୁ ନାହାନ୍ତି କେବଣ
କରି ।
ବିଭୀଷେଣହିଂତ ଭରସା ଅଛି କରି ॥୫୦

ଦୁଃଖ ସୁମରି ରାବଣ ଆସିଅଛି ଯୁଦ୍ଧକରି ।
କାଣ୍ଡ ଖଣ୍ଡା ପଡ଼ନ୍ତେ ତୁଳା ପ୍ରାୟେକ ମଣଇ
ଦଶଶିରି ॥
ନାନା ପ୍ରତିଶର ବିନ୍ଧଇ ଶ୍ରୀରାମଙ୍କୁ ।
ମାତେଳି ଅଇଲାରୁ ଭାଜିଲାନି ତାର ବୁକୁ ॥
ରାଗେଣ ସାଂଗ୍ରାମେ ଅଛଇ ମୁଖ ଟେକି ।
ନନ୍ଦିଘୋଷ ରଥ ଟେକିଲେ ତହିଂକି ॥
ଶ୍ରୀରାମଙ୍କୁ ଶର ବିନ୍ଧଇ ଅନୁକ୍ଷଣେ ।
ପ୍ରତିତୁଲ କରି ଛେଦନ୍ତି ରଘୁନାନେ ॥
ବେଲୁ ବେଳ ଶର ଶ୍ରୀରାମଙ୍କୁ ବିନ୍ଧଇ ।
ମାତଳିକି ବିନ୍ଧି ତା ଦେହ ନ ଦିଶଇ ॥
ଦେଖିଣ ରଘୁନାଥ କୋଦଣ୍ଡ ସଜକରି ।
ହାତୁଂ ନଫିଟୁ ତାହା ବାଣନ୍ତ ନିବାରି ॥
ଗରୁଡ଼ା ଶର ବିନ୍ଧିଲେ ଦାଶରଥି ।
ଦେଖି ବେନି ଆଖି ବୁଜିଲା ପୌଲସ୍ତି ॥
କାଖର ସଲଖେ ଯେ ବାଣ ଚଳିଗଲା ।
ରଘୁନାଥ ତ୍ରୋଣେ ଯାଇ ସମ୍ଭାଇଲା ॥
ଘାଆ ପାଇ ରାବଣ ପେଷିଲା ମୋହଫାଶ ।
ବାବଲ ଶରେ ତାହା କଲେ ରାମ ନାଶ ॥
ହସି ବୋଲନ୍ତି ରେ ଲଙ୍କପତି ବାଇ ।
ଏ ଶହସ୍ରମାନନ୍ତରେ କିରେ ଆସ୍ମନ୍ତ କି
ପାଇ ॥୬୦
ଅପୂର୍ବ ବିଦ୍ୟା ଥିଲେ ହୋ ପରୀକ୍ଷା କରିବୁ ।
ଏହି ନାରାଜେ କି ଶତ୍ରୁକୁ ସଂହାରିବୁ ॥
ଶୁଣି ରାବଣ ଯେ ପେଷିଲା ତୀକ୍ଷ ଶରେ ।
ଯାଇଣ ପଡ଼ିଲା ଶ୍ରୀରାମ ଜାନୁର ଉପରେ ॥
ଗଳି ପଳାଇଲା ସେ ଛିନ୍ନଛତ୍ର ହୋଇ ।
ଦେବତାଏ ବ୍ୟଥା ପାଇଲେ ସ୍ୱର୍ଗେ ଥାଇ ॥
ଘାଆ ପାଇ ରଘୁନାଥ କୃତାନ୍ତକ ରୂପ ଧରି ।
ଶରୀର କମ୍ପାଇଲେ ମହାକୋପ କରି ॥
ଦେଖି ରିପୁ ବଳ ହୋଇଲେ କାତର ।
ଯେ ସେ ବିଷ୍ଣୁନାଥ ଯେ ରାକ୍ଷାସ
ମାତର ॥୮୦
ସୁବଳୟା ପର୍ବତ କମ୍ପିଲା କୋପ ଚାହିଂ ।
ସିନ୍ଧୁ ଉଛୁଳିଲା ଯେ ମହାଭୟେ ପାଇ ॥
ଦେବେ ବିଚାରିଲେ ଜଗତ ନାଶଯିବ ।

ଶ୍ରୀରାମ କୋପକୁ କେ ଭାର୍ଜନ ହୋଇବ ॥
ଦେଖି ଦଶଗ୍ରୀବ ଭାଳିଲାକ ମନେ ।
ମନୁଷ୍ୟ ଶରୀର ଏହାକୁ ବୋଲନ୍ତି
କେସନେ ॥
ମହାଘୋର ସାଂଗ୍ରାମ ପାଇଲି ଏତେ
କାଳେ ।
ନପୁଣ ରଘୁନାଥ ମାରଇ ମୋତେ ବଳେ ॥
ଏତେ ଭାଳି ପେଷିଲା ସହସ୍ରେକ ଶର ।
ଲକ୍ଷ ଲକ୍ଷ କୋଟି କୋଟି ପୁଣି ତହିଂର
ଉପର ॥୯୦
ଶୂଳ ଶକତି ଚଳଇ ବଜ୍ରବାଣ ।
ଗଦା ମୁଦଗର ପରିଘ ଗରୁ ଟାଣ ॥
କନ୍ୟାମାସେ ଯେହ୍ନେ ମେଘ ବରଷଇ ପାଣି ।
ବାଣ ବିନ୍ଧଇ ଦଶାନନ ତେସନେକ ଜାଣି ॥
ଶ୍ରୀରାମ ଘନଘନ ତାହା ପକାଉଛନ୍ତି ଛେଦି ।
ଥୋକାଏକ ଶର ଶରୀରେ ଅଛି ଭେଦି ॥
କୋପେ ଲଙ୍କପତି ଧଇଲା ଏକ ଶର ।
କି ଜାଣି ଦିଶଇ ମହତ ଗିରିବର ॥
ଶ୍ରୀରାମକୁ ଚାହିଂ ବୋଲଇ ଲଙ୍କମଲ୍ଲ ।
ଦୁଇଭାଇ ଆଜରେ ମୋହର ହାଥେ
ମଲ ॥୧୦୦
ନ ଜାଣୁକି ଦେବଙ୍କୁ ଦୁଲ୍ଲଭ ମୋର ବାଣ ।
ଏତେ ବୋଲି ଶର ପେଷିଲା ତତକ୍ଷଣ ॥
ପୃଥ୍ୱୀ କମ୍ପିଲା ସୁବଳୟା ଗିରି ଶଙ୍କି ।
ସବୁ ସନ୍ୟ ଭୟକରି ପଳାଇଲେ ତହିଂକି ॥
ମାତେଳିକି ଶକତି ମାଇଲାକ ନିଠାଇ ।
ଦେଖି ଦୁଇ ଶର ପେଷିଲେ ରଘୁସାଇଂ ॥
ପୁଷ୍ପେକ ବିମାନେ ଲକ୍ଷେକ ଅଶ୍ୱ ଥିଲା ।
ଏକାବାଣକେ ରାମ ସବୁନ୍ତି ଛେଦିଲା ॥
ଦେଖିଣ ରାବଣ ବାରୁଣା ଶରମାରି ।
ଚଳିଲାକ ଅସ୍ତ୍ର ଘୋର ରାବ କରି ॥୧୦
ଶ୍ରୀରାମ ଶରୀରେ ନ ପାରିଲା ଭେଦି ।
କିଛିତ ପ୍ରକାରେ ରାମ ଦୂରୁହୁଂ ତାହା ଛେଦି ॥
ବଡ଼ବାଆ ବହିଲେ ଯେହ୍ନେ ପରବତ
ନଟଳି ।
ତେସନେକ ପଟାନ୍ତର ଶ୍ରୀରାମ ମହାବଳୀ ॥

ଖିପ ନାରାଜେକ ଗୁଣରେ ବସାଇ ।
ରାବଣକୁ ଚାହିଂ ବୋଲନ୍ତି ରଘୁସାଇଂ ॥
କେବଣ ଭରସାରେ ହରିଲୁ ମୋର ନାରୀ ।
ଭଲଲୋକ ଗୋଟା ତୁରେ ନ ଅଟୁ
ଦଶଶିରି ॥
କାଳସର୍ପ କିମ୍ପା ତୁ ଚାଳିଲୁ ଅତି ଗାଢ଼େ ।
ବିଷଖାଇ ତରିବୁ ଭରସା ତୋର
ଯେଡ଼େ ॥୨୦
ବଳବନ୍ତ ପଣେ ଯେବେ ତୋର ଯେତେ
ଗାଢ଼ ।
ଚୋରାଇ କିମ୍ପା ତୁ ଆଣିଲୁରେ ରାଢ଼ ॥
ନିଜ ଶଉର୍ଯ୍ୟ ଶ୍ୟରୀରେ ଯେବେ ହାଦେ
ଜାଣୁ ।
ଯୁଦ୍ଧ ନକରି କିମ୍ପା ଚୋରାଇଣ ଆଣୁ ॥
ଆଜୁଂ ଜୀବନର ଛାଡ଼ ତୁହି ଆଶ ।
ଯେ ମୋହୋର ବାଣେ ତୁ ନିଷ୍ଟେ ଯିବୁ
ନାଶ ॥
ଯେସେନେକେବେଳେ ରାମ ରାବଣର
ଯୁଦ୍ଧକାଳେ ।
ରବି ଅସ୍ତ ହୋଇଲା କେତେହେଂକ
ବେଳେ ॥
କ୍ଷଣେ ବିଶ୍ରାମ ନାହିଂ ଅବିଶ୍ରାମ ସମର ।
ପୁଣି ଗୋଳ ଯୁଦ୍ଧ ବାଜିଲା ଅପାର ॥୩୦
ଅନ୍ଧାର ବେଳେ ଯେ ହୋଇଲେ ପିଟାପିଟି ।
ପଶି ମରାମରି ଘେନି ଉଠାଉଠି ॥
ରାବଣ ପୁତ୍ରନାତି ରାମଙ୍କୁ ବେଢ଼ିମାରି ।
ଲକ୍ଷ୍ମଣ ବିଭୀଷେଣ ରାବଣକୁ ଶର ମାରି ॥
ସ୍ୱଭାବେ ଲଙ୍କପତି ବିରଥୀ ହୋଇଲା ।
ଶ୍ରୀରାମ ତାହାର ଘୋଡ଼ାନ୍ତ ନାଶକଲା ॥
ବିଭୀଷେଣ ବାଣେ ମୋହଗଲା ଦଶଶିରି ।
ଅନ୍ଧାରେ ରାବଣ ନ ପାରିଲା ତଥ୍ୟକରି ॥
ବିଭୀଷେଣ ନାରାଜ ବିନ୍ଧିଲା ବେଳ ଜାଣି ।
ଆଦି ଆଷାଢ଼େ ଯେହ୍ନେ ବରଷଇ
ପାଣି ॥୪୦
ବୁକୁ ଦୁକୁ ଦୁଡ଼ିକି କାଖ ଖୋଳା ସନ୍ଧି ।
ନାସାର ବିମ୍ବରକୁ ବିଭୀଷେଣ ବିନ୍ଧି ॥

କଣ୍ଠ କପାଳ ଆଣ୍ଠୁ ଗଣ୍ଡି ଆଖି ।
ଅନ୍ଧାରେ ତରକିଣ ବିନ୍ଧୁଅଛି ସଞ୍ଚ ॥
ବସାଇଲା କାଣ୍ଡର ହୁଗୁଳି ରହଇ ଫଳା ।
ବେଲୁକି ଅଧାଚନ୍ଦ୍ର ତ୍ରିକନା ଚିଆରା ॥
ତୀକ୍ଷ ନାରାଜ ଅସୁରା ଶହସ୍ରମାନ ।
ଦିବ୍ୟାଅସ୍ତ୍ର ଗନ୍ଧର୍ବାସ୍ତ୍ର ଅନେକ ବିଧାନ ॥
ମନ୍ତ୍ରିଣ ବିନ୍ଧଇ ମରମକୁ ଖୋଜି ।
ବାଣ ପଡ଼ନ୍ତେଣ ରାବଣ ଗଳଗାଜି ॥୫୦
ଚାଳିଲେ କାଟଇ ହୁଗାଳିଲେ ଫଳା
ରହଇଂ ।
ଧରି ଉଛୁଡ଼ିଲେ କନାମାନନ୍ତ ଲାଗଇଂ ॥
ବାଣ ପଡ଼ନ୍ତେଣ ରାବଣ ବିକଳାଇ ।
ଧନୁଶସ୍ତ୍ର ପକାଇ ରଥେ ମୋହଯାଇ ॥
ଦେଖି ବିଭୀଷେଣ ପୁଣ ବିନ୍ଧଇ ଶର ।
ଭାଇ ବୋଲି ଓପ୍ରୋଧ ନାହିଂ ଯେ ତାହାର ॥
ଅଜ୍ଞାନ ହୋଇ ଯହୁଂ ପଡ଼ିଲା ଦଶଶିରି ।
ବାଛି ବିଭୀଷେଣ ଦଶକାଣ୍ଡ ମାରି ॥
ଶିରଚ୍ଛେଦ ବୋଲି ପେଷିଲାକ ଶର ।
ଯାଇଣ ପଡ଼ିଲା ସେ ରାବଣର କପାଳ ॥୬୦
ଦଶଇ ଲଲାଟେ ପଡ଼ିଲା ଦଶବାଣ ।
ରକତ ବହୁଅଛି ନ ଜାଣେ ରାବଣ ॥
ଜୀବନ ହାରିଣ ରଥେ ଅଛି ପଡ଼ି ।
ପଡ଼ିଲା ବୋଲି କେହୁ ନ ପାରନ୍ତି ବାରି ॥
ଅନ୍ଧାର ରଜନୀ ଦିହୁଡ଼ି ହୁଳା ନାହିଂ ।
ଶ୍ରୀରାମ ନ ଜାଣନ୍ତି ଢଳିଲା ଲଙ୍କସାଇଂ ॥
ଶୁକସାରଣ ଅଟନ୍ତି ବୁଦ୍ଧିବନ୍ତ ।
ସେ ବୋଇଲେ ପଡ଼ିଲା ହୋ ମନ୍ଦୋଦରୀ
କାନ୍ତ ॥
ଅନ୍ଧାର ବେଳେ ରଥ ବାହିଲେ ବାହୁଡ଼ାଇ ।
ନିବିଡ଼ ରଜନୀ କିଛିହିଂ ଦିଶୁନାହିଂ ॥୭୦
ଚେତି ଲଙ୍କପତି ବୋଇଲା କୋପକରି ।
ଜ୍ଞାନ ହାରିଲ କିହୋ ଦେଖିଣ ବଇରୀ ॥
ଏ ମୋହୋର ବଳରେ ନ ଜାଣ କି ଅବା ।
ବାହୁଡ଼ାଇ ରଥ କି ରୂପେ ବାହିନେବା ॥
ଏସନେକ ବିଚାର କିମ୍ପା ନକଲ
ବେନିଜନ ।

ରଣୁ ବାହୁଡ଼ାଇ ଆଣିଲ ମୋର ଯାନ ॥
ବିଜୟେ ରଥ ଏହାର ହାରିବାର ନାହିଁ ।
କ୍ଷତ୍ରୀକୁଳେ ମୋତେ ଲାଜ କରାଇଲ
କାହିଁପାଇଁ ॥
ଶୁଣି ରାଜାମାନେ କି ବୋଲିବେ ମୋତେ ।
ଯେ ବେଳେ କ୍ଷେମା ମୁଁ କଲଇ
ତୁମ୍ଭନ୍ତେ ॥୮୦
ଶ୍ରୀରାମ ଛାମୁକୁ ବୋଲି ରଥ ମୋର ବାହ ।
ମହାସଂଗ୍ରାମ ଗୋଟା ବେଗେ ମୋତେ ଦିଅ ॥
ଏତେ ବୋଲି ରାଏ ଉଠି ସୁସ୍ଥ ହୋଇ ।
ଦେଖିଲା କାଣ୍ଡ ଦେହେ ହୋଇଅଛି ଛାଇ ॥
ସେନ୍‌ହାଖଣ୍ଡ ଖଣ୍ଡ ଦେହ ବଡ଼ ବ୍ୟଥା ।
ବିଭୀଷେଣର କାଣ୍ଡ ବୋଲି ଚିହ୍ନିଲା
ଦଶମଥା ॥
ଶ୍ରୀରାମହୁଁ ଅଧିକ ମୋତେ ବିଭୀଷେଣ
ବଇରୀ ।
କେହୁଣସି ପ୍ରକାରେ ତାକୁ ନ ପାରିଲି ମାରି ॥
ଏତେ ବୋଲି କରେ ଧନୁଶର ଧରି ।
ଯୁଦ୍ଧକୁ ଉଦ୍‌ବେଗ ହୋଇଲା ଦଶଶିରି ॥୯୦
ଶୁକସାରଣ ବେନି ଯୋଡ଼ନ୍ତି ବେନିକର ।
ଶୁଣ ଦେବ ରାବଣ ପ୍ରତାପୀ ଲଙ୍କେଶ୍ୱର ॥
ଅଚେତ ହୋଇଲୁ ତୁ ବିଭୀଷେଣର ଶରେ ।
ରଥ ଘୋଡ଼ାମାନେ ଛେଦିଲେ ରଘୁବୀରେ ॥
ବିଚାରିଲୁ ଆନ ଅଶ୍ୱ ଯୋଚିଣ ଆଣିବା ।
ରାଜା ସଚେତନ ପାଇଲେ ସମରେ ପଶିବା ॥
ଏବେ ଏହିକ୍ଷଣି ବାହିବୁ ରହୁବର ।
କରସି ସଂଗ୍ରାମ ଦେବ ଯେତେ ମାନ ପାର ॥
ଏତେ ବୋଲି ଯାନେ ଲକ୍ଷେକ ଅଶ୍ୱ
ଯୋଚି ।
ବାଗଦଉଡ଼ି ଧରିଲେକ ଦିହେଁ ସଞ୍ଚି ॥୧୦୦
ଯାଅ ବୋଲି ରଥ ଉଭରା ମୂର୍ଛି କଲେ ।
ଦେଖି ରଘୁନାଥ ମାତେଳିକି ବୋଇଲେ ॥
ଏବେ ଏ ମୋହୋର ଯାନ ନେଇ ରାବଣ
ଆଗେ କର ।
ଶୁଣିଣ ସାରଥି ଯେ ବାହିଲା ରହୁବର ॥
ଶ୍ୱେତଘୋଡ଼ା ଚାରି ହାକିଣ ଛାଡ଼ିଦେଲା ।

ପୁଷ୍ପେକ ରଥ ଆଗେ ନନ୍ଦିଘୋଷ କଲା ॥
ଦେଖି ରାବଣ ଯେ ଦୂରହୁଁ ଅସ୍ତ୍ର ମାରି ।
ସାଂଗ୍ରାମ ଭୂମି ଗୋଟା ଅନ୍ଧକାର କରି ॥
ଗରୁତର ସାଂଗ୍ରାମ କରନ୍ତି ବେନିଜନ ।
କହିବାକୁ ଆଉ କେ ନୁହନ୍ତି ଭାରଜନ ॥୧୦
ଦିବ୍ୟଅସ୍ତ୍ର ଘେନିଣ ସାଂଗ୍ରାମ କରନ୍ତି ବେନି ।
ସ୍ୱର୍ଗ ମର୍ତ୍ତ ସମାନ ନାହାନ୍ତି କେହି ପୁଣି ॥
ହାକି ବିନ୍ଧିବାରେ କମ୍ପଇ ମେଦିନୀ ।
ସାଂଗ୍ରାମ କରନ୍ତି ଯେ ନିବିଡ଼ ରଜନୀ ॥
ଦୁହିଙ୍କର ଶ୍ୟରୀରୁ ବହଇ ଶ୍ରମଝାଳ ।
ବାଣ ପଡ଼ି ରୁଧିର ବହଇ ଖଳଖଳ ॥
କ୍ଷଣେ ଅବିଶ୍ରାମ ବିଷମ ମହାରଣ ।
ରାତ୍ରପାହି ଉଦୟ ଛାୟାର ରମଣ ॥
ପରିଘାଇ ଯୁଝନ୍ତି ବେଳକୁ ବେଳ ରାଗେ ।
ଛଡ଼ାଛଡ଼ି ନାହିଁ ଅଛନ୍ତି ଅତି ଲାଗେ ॥୨୦
ଲକ୍ଷ ଲକ୍ଷ ନାରାଜ ବିନ୍ଧଇ ଦଶଶିର ।
ଯେସନେକ ଜଳ ବୃଷ୍ଟି କରଇ ଜଳଧର ॥
ଘନଘନ ତାହା ଛେଦନ୍ତି ରଘୁପତି ।
ଅସଂଖ୍ୟ ସମର କଲା ପୌଲସ୍ତିର ନାତି ॥
ରାବଣ କୋପମୁଖ ଦେଖିଣ ରଘୁନାଥ ।
ଇନ୍ଦ୍ର ଦେଲା ଧନୁ ଧଇଲେ ବାମହସ୍ତ ॥
ଅକ୍ଷୟ ତ୍ରୋଣ ଭିଡ଼ି ଦିବ୍ୟାଅସ୍ତ୍ର କଲେ ।
ଦଶଗ୍ରୀବ ରଥରେ ରୁଧିର ବରଷିଲେ ॥
ଉଲ୍କା ପାତ ଯେ ହୋଇଲା ରଣମଧେ ।
ସ୍ୱର୍ଗେ ଥାଇଂ ଦେଖୁଅଛନ୍ତି ବିବୁଧେ ॥୩୦
ଅଗସ୍ତିଙ୍କ ଶର ପୁଣି ପେଷିଲେ ରାମରାଉ ।
ଜଗତ ଛନ୍ନ ଛନ୍ନ ଦିଶଇ ହାଉ ହାଉ ॥
ରଙ୍ଗମଯେ ଦିଶିଲା ସବୁଙ୍କରି କାୟେ ।
ଦୁଇବଳ ସଇନି ସବୁ ଭୟ ପାୟେ ॥
ରାବଣର ପୁତ୍ର ନାତି ସକଳ ସଇନି ।
ଯୋଦ୍ଧା ରଥୀରାଉତେ ଥିଲେ ଶହସ୍ରମାନନ୍ତ
ଘେନି ॥
ଅପୂର୍ବ ସଂଗ୍ରାମ ଦେଖି ଆୟୁଧ ପକାଇଲେ ।
ମଧ୍ୟସ୍ଥ ପ୍ରାୟେ ହୋଇ ସମସ୍ତ ରହିଲେ ॥
ଶ୍ରୀରାମର ସଇନି ସମସ୍ତେ ଶସ୍ତ୍ର ଛାଡ଼ି ।
କେହି ସାଂଗ୍ରାମକୁ ନଗଲେ ଆଗବଢ଼ି ॥୪୦

ଲକ୍ଷ୍ମଣ ବିଭୀଷେଣ ସୁଗ୍ରୀବର ରାଏ ।
ଯୁଦ୍ଧ ନ କରିଣ ଉଭାରିଣ ଚାହେଂ ॥
ଅଷ୍ଟସେନା ଆବର ପଚିଶ ଯୂଥପତି ।
ବୀର ମହାବୀର ଯେତେକ ଅଛନ୍ତି ॥
ତରୁଶିଳ ପକାଇ ସମସ୍ତେ ମଧ୍ୟସ୍ଥ ପଣେ
ଚାହିଁ ।
ରାମରାବଣର ଅସଂଖ୍ୟ ଯୁଦ୍ଧ ହୋଇ ॥
ଏମନ୍ତେ ଦିବସ ହୋଇଲାକ ଶେଷ ।
ଆଦିତ୍ୟ ଅସ୍ତ ହୁଅନ୍ତେ ରଜନୀ ପ୍ରବେଶ ॥
ରାତ୍ରେ ପୁଣ ସମର ହୋଇଲା ଅପାର ।
ଅପୂର୍ବ ମାୟାଯୁଦ୍ଧ କଲାକ ନିଶାଚର ॥୫୦
ପୁଣି ରଜନୀ ପାହି ଉଦୟେ ସବିତା ।
ଶ୍ରୀରାମ ରାବଣର ସମର ଅପ୍ରମିତା ॥
ନିଃଶ୍ୱାସେ ବିଶ୍ରାମ ନାହିଁ ଦୁହିଁକରି ।
ଲକ୍ଷେକୋଟି ମରଭୂତେ ଶର ହାଦେ ମାରି ॥
ଜୟା ବିଜୟା ଶର ଦୁହିନ୍ତି ଆମଟଂଇଂ ।
ନିର୍ଘାତ ଶବଦ ଜାଣି ଶର ଗୋଟା ପଡ଼ଇ ॥
ଏମନ୍ତେ ରାତ୍ର ଦିବସେ ଅବିଶ୍ରାମ ।
ସାତରାତି ସାତ ଦିବସ ହୋଇଲା ସାଂଗ୍ରାମ ॥
ରାବଣ ମାୟାଯୁଦ୍ଧ କଲାକ ଅନେକ ।
ମନୋରଥ ବିବାନ ଅଟଇ ପୁଷ୍ପେକ ॥୬୦
ମନେଧରି ଯାନ ଶୂନ୍ୟକୁ ତୋଳିଦେଲା ।
ନନ୍ଦିଘୋଷ ରଥ ତହିଁ ଯାଇଣ ମିଳିଲା ॥
ଅନ୍ତରୀକ୍ଷେ ସମର ହୋଇଲା ଅପାର ।
ପୁଣି ଭୂମିଗତ ହୋଇଲା ରହୁବର ॥
ଉଡ଼ନ୍ତି ରହୁବର ପକ୍ଷୀରାଜ ଜାଣି ।
ସୂର୍ଯ୍ୟଚନ୍ଦ୍ର ଉଦେକି ହୋଇଲେ ମେଦିନୀ ॥
ବାଣ ବରଷିବାରେ ନ ଦିଶଇ ରଥ ।
ମେଘର ଉହାଡ଼େ ଯେହ୍ନେ ଚନ୍ଦ୍ରମା ଆଦିତ୍ୟ ॥
ଥମ୍ଭୀଭୂତ ହୋଇଣ ଦେଖନ୍ତି ସର୍ବସନ୍ୟ ।
କୋପେ ତୀକ୍ଷ ବାଣ ମାଇଲା
ଦଶାନନ ॥୭୦
ଦେଖି ରଘୁନାଥ ଅଜଏ ବାଣ ପେଷି ।
ଶୂନ୍ୟମାର୍ଗେ ଗଲାକି ଆକାଶରୁ ଖସି ॥
ଦୁଇ ଶହସ୍ର ଘୋଡ଼ାଙ୍କର ଉପରେ
ବିଶୋଇଲେ ।

ବାବୁ ସେ ଅଶ୍ୱମାନେ କିଛିହିଂ ନୋହିଲେ ॥
ଦେଖି ଲଙ୍କାପତି ପେଷିଲା ଅଗ୍ନିଶର ।
ଏହିକ୍ଷଣି ଦହିବଙ୍କି ଜଗତ ସଂସାର ॥
ନାରାଚ ଆସନ୍ତେ ଶ୍ରୀରାମ ତାହା ଜାଣି ।
ବରୁଣା ଅସ୍ତ୍ର ଦେବ ବିନ୍ଧିଲେକ ଟାଣି ॥
ଅଗ୍ନି ଲିଭିଲାକ ପରିତାଳ ପାଇଂ ।
ପୁଣିହିଂ ଶସ୍ତ୍ର ପେଷିଲା ଲଙ୍କସାଇଂ ॥୮୦
ପ୍ରତିଅସ୍ତ୍ର ପେଷି ଛେଦିଲେ ରାମ ତାହା ।
ଅପୂର୍ବ ସାଂଗ୍ରାମ କରଇ ଲଙ୍କନାହା ॥
ଧନୁର୍ବେଦ ପଢ଼ି ଥାନମାନ ଛୁଇଂ ।
ମତ୍ତ ପଢ଼ି ଶସ୍ତ୍ର ଯାଅ ବୋଲି ବୋଲଇ ॥
ରାଗେଣ ଶ୍ୟରୀର କମ୍ପଇ ଥରହର ।
ଶ୍ରୀରାମହିଂ ଅତି ରୋଷେ ରୋଷଭର ॥
ଦୁଇକ୍ଷତ୍ରୀଙ୍କର ସମର ବଣ୍ଟାବଣ୍ଟି ।
ଯେଡ଼େ ମହାଯୁଦ୍ଧ କାହାକୁହିଂ ନିଅଣ୍ଟି ॥
ଶର ହୃଦେ ପଡ଼ି ବହଇ ରୁଧିର ।
ଦୁହିଙ୍କର ଶ୍ୟରୀର ରକତେ ଜରଜର ॥୯୦
ଗଗନ ପୂରିଲା ଶସ୍ତ୍ର ଆତଯାତ ।
ପୁଣି ରଜନୀ ହୁଏ ପୁଣିହିଂ ପ୍ରଭାତ ॥
ଦୁଇବଳର ସଇନି ନଦିଶିଲେ କିଛି ।
ଅସ୍ତ୍ରଙ୍କର ତେଜ କି ଆଦିତ୍ୟ ଉଇଂଅଛି ॥
ରାତ୍ର ଦିବସ ତହିଂ ନୋହିଲାକ ବାରି ।
କେତେବେଳେ ସୂର୍ଯ୍ୟ ମେରୁରେ ଉହାଡ଼ି ॥
କେତେବେଳେ ଅରୁଣ ପ୍ରକାଶଇ ନିଜ ସାହା ଘେନି ।
ଦିବାରାତ୍ର ତହିଂ ନୁହଇଂ ନା ଚିହ୍ନି ॥
ଅସ୍ତ୍ରଙ୍କର ତେଜେ ହୀନ ବୀର୍ଯ୍ୟ ରବି ।
ଗ୍ରହଙ୍କର ତେଜମାନ ହୋଇଲା ପରାଭବି ॥୧୦୦
ରଜନୀ ପ୍ରକାଶେ ଯେହ୍ନେ ଉଅଂନ୍ତି ଲକ୍ଷେ ତାରା ।
ଶହସ୍ତ୍ରଙ୍କର ତେଜ ଦିଶଇ ତେହ୍ନେ ପରା ॥
ନିଶି ଦିବସ ତହୁଂ ବାରିତ ନପାରି ।
ଅପୂର୍ବ ସାଂଗ୍ରାମ ରାମ ରାବଣ ସଙ୍ଗେକରି ॥
ଅଷ୍ଟସେହ୍ନା ଆବର ପଚିଶ ଯୂଥପତି ।
ଲକ୍ଷ୍ମଣ ସୁଗ୍ରୀବର ବିଭୀଷେଣ ପ୍ରଭୃତି ॥

ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି କପିବଳ ।
ଜୟେବ ବୋଇଲେ ସାଧୁ ଦଶରଥର ବାଳ ॥
ଧନ୍ୟ କଉଶୁଲା ଧନ୍ୟ ତୋର ତାତ ।
ଧନ୍ୟ ଦଶରଥ ଅଯୋଧ୍ୟା ନୃପନାଥ ॥୧୦
ନାରାୟେଣ ସ୍ୱରୂପ ଦେଖିଲୁ ଦେବ ଏବେ ।
ଦେବ ବ୍ରହ୍ମା ମୁନି ଯାହାର ପାଦ ସେବେ ॥
ଏତେ ବୋଲି ମନେ ବିଚାର କରନ୍ତି ।
ବାବୁ ଯୋଦ୍ଧା ଶ୍ରୀରାମ ବୋଲିଣ ବୋଲନ୍ତି ॥
ତୋହୋର ପରା କ୍ଷତ୍ରୀ ସଙ୍ଗେ ଯେବେ ଯୁଝି ।
ତେବେ ସେ ସାଂଗ୍ରାମ କଲା ପ୍ରାୟେ ବୁଝି ॥
ବୟେସ ସରିଲା ଏବେ କହିଲେ ହେବ କିସ ।
ମନ୍ତ୍ରୀମନେ ଭାଳନ୍ତେ ଜାଣିଲେ ରଘୁଶିଷ ॥
ସର୍ବଜ୍ଞ ପୁରୁଷ ସେ ହସନ୍ତି ମନେମନ ।
ଏଥୁ ଅନନ୍ତରେ ରାଏ ଦଶାନନ ॥୨୦
ଘୋଡ଼ାଙ୍କର ଉପରେ ପଡ଼ିଲା ଯହୁଂ ଶର ।
ଅରଷ୍ଟି ନାମେ ଶର ପେଷଇ ଦଶଶିର ॥
ଅନେକ ଶହସ୍ତ୍ର ଯେ ମାତେଲି କି ମାରି ।
ଚାରି ଘୋଡ଼ାକୁ ମାଇଲା ଚକ୍ରକଚାରି ॥
ବାଣ ଆସନ୍ତେଣ ସମୋଦ୍ର ଛାଇ ହୋଏ ।
ସ୍ୱର୍ଗରେ ତରସ୍ତ ହୋଇଲେ ଦେବତାଏ ॥
ଆକୁଳ ଧ୍ୱନି ଶୁଣି ରାମ ଉପରକୁ ଚାହିଂ ।
ଦାଶରଥିଙ୍କି ଯେ ଦେବତାଏ କହି ॥
ଭୋରାମ ତୋହୋର ନାରାଜେ ରାବଣ ଆଜ ମରୁ ।
ଚଉଦ ଭୁବନର ଉତପାତ ସରୁ ॥୩୦
ଶୁଣିଲେ ରଘୁନାଥ ବିବୁଧଙ୍କର ବାଣୀ ।
ରାବଣ ଶସ୍ତ୍ରମାନ ସବୁ ପକାଇଲେ ହାଣି ॥
ଦେଖି ଦଶଗ୍ରୀବ ପେଷିଲାକ ଏକଶର ।
ରାମ ଛେଦିଲେ ତାହା କିଅତ ପରକାର ॥
ପୁଣି ବାବଲ ବାଣ ବିନ୍ଧିଲେ ରଘୁନାଥ ।
ହେଳେ ଛେଦିଲା ତାହା ଦଇତ ଦଶମାଥ ॥
ଶହସ୍ତ୍ର ଗଳିଗଲା ନ ଛିଡ଼ିଲା ମୁଣ୍ଡ ।
ଗର୍ଜଇ ଦଇତ ଯେ କମ୍ପଇ ବ୍ରହ୍ମାଣ୍ଡ ॥
ପୁଣିହିଂ ଶ୍ରୀରାମ କୁବେରା ଶର ପେଶି ।

ଦଶମଉଳି ତାର ପକାଇଲେ ନାଶି ॥୪୦
ବେକ ସଳଖେ ବାଣ ଗଳିଗଲା ।
ଛିଡ଼ି ଦଶମୁଣ୍ଡ ତଳେ ନ ପଡ଼ିଲା ॥
ପାଣି କାଟିଲେ ଯେହ୍ନେ ନୁହଇ ବେନିଭାଗ ।
ଦେଖି ରଘୁନାଥ ପାଇଲେ ବଡ଼ରାଗ ॥
ପୁଣିହିଂ ଦେବ ଜଗନ୍ତା ଶର କଲେ ।
ତୋଟି ସଳଖେ ବାଣ ଗଳି ପଳାଇଲେ ॥
ଛିଡ଼ିଣ ମୁଣ୍ଡ ଲାଗିଲା ତତକ୍ଷଣ ।
କୋପେଣ ଘୋର ଯୁଦ୍ଧ କଲାକ ରାବଣ ॥
ଶ୍ରୀରାମ ପେଷିଲେ ଅଧାଚନ୍ଦ୍ର ଶର ।
ପଡ଼ିଲା ଦଶଗ୍ରୀବର ବେକ ସଳଖର ॥୫୦
ଦଶମୁଣ୍ଡ ଛିଡ଼ିଲା ନାଗିଲାକ ପୁଣି ।
ରାମ ରାବଣର ଯୁଦ୍ଧ ମାତେଲି ବିଭୀଷେଣ ଜାଣି ॥
ଦେବେ ବିଚାରନ୍ତି ରାବଣ ମହାବୀର ।
ନ ପୁଣ ଜୀଅଇଂନିକି ଆଜର ସମର ॥
ଏଘାନ୍ତି ବର୍ଣ୍ଣିଲେ ନରହନ୍ତି କେହି ।
ନିଶ୍ଚୟେ ରାସାତଳେ ପଡ଼ିବାକ ମହୀ ॥
ଆଜର ସାଂଗ୍ରାମକୁ ଆଶ କରିଥିଲୁ ।
ଏବେ ଦେଖିଣ ମନରେ ଭ୍ରାନ୍ତି କଲୁ ॥
ନ ପୁଣ ରଘୁନାଥ ନ କରନ୍ତି ନାଶ ।
ଏ ଘାନ୍ତି ନିଶ୍ଚୟେ ଛାଡ଼ିବା ସ୍ୱର୍ଗବାସ ॥୬୦
ଏସନେକ ବୋଲି ଭାଳନ୍ତି ସୁରଗଣ ।
ରାମ ରାବଣର ଅସଂଖ୍ୟ ମହାରଣ ॥
ଗୁଣ ଟଙ୍କାର ନାଦ ପ୍ରଳୟ ମେଘ ଜାଣି ।
ଶ୍ରାବଣ ମାସେ ଯେହ୍ନେ ବରଷଇ ପାଣି ॥
ତେସନେକ ପ୍ରାଏ ଶର ବିନ୍ଧନ୍ତି ବେନିବୀର ।
ଉଦୟ ହୋଇଛନ୍ତି ନାନା ପ୍ରତିଶର ॥
ବ୍ରହ୍ମଅସ୍ତ୍ର ପାଶୁପତ ନାରାୟଣ ଅସ୍ତ୍ର ।
ଯକ୍ଷଅସ୍ତ୍ର କାଳଶସ୍ତ୍ର ରୁନ୍ଧିଲା ଜଗତ ॥
ବାରୁଣାଅସ୍ତ୍ର ଇନ୍ଦ୍ରଅସ୍ତ୍ର ଅଗ୍ନିଶର ସହିତେ ।
ଶଙ୍କରା ଅସ୍ତ୍ର ଶୂଳା ଶହସ୍ତ୍ର ଗର୍ଜନ ସହିତେ ॥୭୦
କପାଳ ବିମୋଚନା ସୋମନାଥ ଅସ୍ତ୍ର ଅଛି ।
ମୋହନା ଶସ୍ତ୍ର ସୂର୍ଯ୍ୟାଅସ୍ତ୍ର ଘାଏ ସୂର୍ଯ୍ୟଲୁଚି ॥

ଚକ୍ରାଅସ୍ତ୍ର ବ୍ରହ୍ମାୟଣୀ ବ୍ରହ୍ମଶିରାକାଣ୍ଡ ।
କୋବେରା ଅସ୍ତ୍ର ଘାଏ କମ୍ପଇ ବ୍ରହ୍ମାଣ୍ଡ ॥
ପବନା ଅସ୍ତ୍ର ବାଇବା ଅସ୍ତ୍ର ଗରୁଡ଼ା ଅସ୍ତ୍ର
ଅଛି ।
ଗର୍ଜନା ମୋହନାଏ ସୁରପୁର ଲୁଚି ॥
ଗନ୍ଧର୍ବା ଦାନେବା ସୋମ ସୂର୍ଯ୍ୟ ଆଭା ।
ସାବେତ୍ରୀ ଷୋଳହ ବାରୁଣା ଅଧାଚକ୍ର
ଶୋଭା ॥
ବଜ୍ରମୁନା ଜୟା ବିଜୟା ଶକତି ।
ଅମୋହ ଶକତି ବଜ୍ର ଶକତି ମାରନ୍ତି ॥୮୦
ଇନ୍ଦ୍ରଶକତି ବ୍ରହ୍ମଶକତି କୁମାର ଶକତି ।
ଲୋହମଏଗଦା ପ୍ରହାର ପହୁଞ୍ଚନ୍ତି ॥
ବ୍ରହ୍ମ ମୁଦ୍‌ଗର ବଜ୍ର ମୁଦ୍‌ଗର ବ୍ରହ୍ମପାଶ ।
ମହାମାୟା ଶୂଳ ବଜ୍ର ଶୂଳହଂସ ॥
ଶିବଶୂଳ ଚନ୍ଦ୍ରଶୂଳ ଅପୂର୍ବ ଶସ୍ତ୍ରମାନ ।
ଏକକୁ ଆରେକ ବିନ୍ଧନ୍ତି ଘନଘନ ॥
ଏସନେକ ଅପ୍ରମିତ ହୋଇଲା ସମର ।
ବାରୁଣା ଅସ୍ତ୍ର ପେଷି ରାମ ଛେଦିଲେ
ଦଶଶିର ॥
ବେକେ ଗଳିଗଲା ନ ଛିଡ଼ିଲା ମୁଣ୍ଡ ।
ପୁଣି ବିନ୍ଧିଲେ ରାମ ତାଡ଼କୀ
ବଧ୍ୟକାଣ୍ଡ ॥୯୦
ମୁଣ୍ଡ ଛିଡ଼ି ସ୍କନ୍ଧେ ପୁଣିହିଂ ଲାଗିଲା ।
ବେଳକୁ ବେଳ ରାମର ସାହାସ ଭାଙ୍ଗିଲା ॥
ରାବଣ ବୋଇଲା ତୁ ନଜାଣୁ ରଘୁନାଥ ।
ସହସ୍ରେ ଛେଦନ ଯେ ନୁହଂଇ ମୋର
ମାଥ ॥
ମୁହିଂ ଯେବେ ମୁଣ୍ଡ କାଟିଲେ ମରନ୍ତି ।
ଏତେଦିନ ଯାଏଂ କେମନ୍ତେ ଜୀଇଂଥାନ୍ତି ॥
ଦେବତାଯେ ବେଢ଼ି ମାରନ୍ତେନି ମୋତେ ।
ଚଉଦ ଭୁବନେ ଆନେ ମୁଂ ଜିଣନ୍ତି
କେମନ୍ତେ ॥
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ପ୍ରାୟେକ ମୋତେ ବୁଝୁ ।
ଦେବତାଙ୍କ ଶିଖାଇଲା ବୋଲ ଘେନି
ଯୁଝୁ ॥୧୦୦
ଆଜରେ ଏହିକ୍ଷଣି ଘେନିବି ତୋର ପ୍ରାଣ ।
ଏତେ ବୋଲି ବୃଷ୍ଟି କରଇ ଲକ୍ଷେ ବାଣ ॥
ତାହା ଦେଖି ନିବାରିଲେ କଉଶଲ୍ୟା ସୁତ ।
ବାଳୀକି ମାଇଲା କାଣ୍ଡ ବିନ୍ଧିଲେ ତୁରିତ ॥
ଛିଡ଼ିଲାକ ଦଶମୁଣ୍ଡ ଲାଗିଲାକ ବେକେ ।
ସପ୍ତଶାଳ ଛେଦକାଣ୍ଡ ବିନ୍ଧିଲେ ରାମରାଗେ ॥
ଦଶବେକେ ଗଳିଗଲା ନିଛିଡ଼ିଲା ଶିର ।
କୋପେଣ ଗର୍ଜନ କରଇ ଦଶଶିର ॥
ଆକାଶକୁ ଚାହିଂ ଦେବତାଙ୍କୁ ପୂଜଇ ।
ନିମିଷେକ ଦଶବେଳ ଧନୁର୍ଗୁଣ
ମାଜଇଂ ॥୧୦
ଧାଇଂ ଆଗସରି ବିନ୍ଧଇ ଶରମାନ ।
ଶ୍ରୀରାମ ଅଙ୍ଗେ କାଣ୍ଡ ପଡ଼ଇ ଅବିଛିନ୍ନ ॥
ଖଳ ଖଳ ରୁଧିର ବାହାର ଚଉକତି ।
କାଳମୁଖ ଶର ରାମ କୋପେଣ ବିନ୍ଧନ୍ତି ॥
ଛିଡ଼ି ଦଶମୁଣ୍ଡ ଲାଗିଲାକ ପୁଣି ।
ଶ୍ରୀରାମ ବୋଲନ୍ତି ମୁଂ ନ ପାରିବି ଜିଣି ॥
ଏତେ ବୋଲି ରାମ ଦଶବାଣ ମାରି ।
ଛିଡ଼ିଲା ଦଶମୁଣ୍ଡ ଉଭା ହୋଇଛି ଦଶଶିରି ॥
ଏମନ୍ତେଣ ଏକ ଉଭର ଶତେ ବାର ।
ରାବଣର ମୁଣ୍ଡ କାଟିଲେ ରଘୁବୀର ॥୨୦
ଆଶ୍ଚର୍ଯ୍ୟ ହୋଇ ଦେବ ମାତେଲିକି ପୁଛି ।
କେବଣ ଆକାର ଯେ ଜାଣୁଟିକି ବୋଲି
ପୁଛି ॥
ବାବୁ କ୍ଷତ୍ରି ତୁରେ ଅଟୁ ଲଙ୍କପାଳ ।
ଶହସ୍ରେ ଭେଦ ନୁହଇଂ ଯେହାର ଶରୀର ॥
ମୋହର ପରାଯୋଦ୍ଧା ସାତଦିନ ଯୁଦ୍ଧକଲି ।
କେହୁଣିସି ପ୍ରକାରେ ସଂହାରି ନ ପାରିଲି ॥
କିବୁଦ୍ଧି କରିବି ଏ କେମନ୍ତେ ନାଶଯାଇଂ ।
ମୋହର ତ ବୁଦ୍ଧି ବିଦ୍ୟା ଆନ କିଛି ନାହିଂ ॥
ଶହସ୍ରଙ୍କର ତେଜେ ଛିଡ଼ିଯାଇ ବେକ ।
କେବେହେଂ ତଳେ ନ ପଡ଼ଇ
ମସ୍ତକ ॥୩୦
ବଜ୍ରହୁଂ ଆଣ୍ଡ ହୋଇଲା ଏହାର ଦେହୀ ।
ଏହାର ପ୍ରାୟେ ଅସୁର ନଥିଲେ ହାଦେ
କାହିଂ ॥
ମୟେଂକ୍ଷାସୁର ଦଇତ ଅତି ବଳବାନ ।
ଏକାଶୂଳକେ ସେ ହାରିଲା ପରାଣ ॥
ହିରଣ୍ୟ ହିରଣାକ୍ଷ ମଧୁ କଇଟପ ।
ଶଙ୍ଖାସୁର ଅସୁର ବୈଲୋଚନ ନୃପ ॥
ବୃତ୍ର ଅସୁର ସହିତେ ଯେତେ ଥିଲେ
ପୃଥିବୀ ।
ଏହାର ପ୍ରାୟେ ଦେଖା ନ ଥିଲାକ କ୍ଷତ୍ରୀ ॥
କେହି ଏଡ଼େ ଉପଦର୍ପ କରି ନ ପାରିଲା ।
ମାଇଲେ ମରନ୍ତି ଏହା ଅଛଇ ଶୁଣିଲା ॥୪୦
ରକତବୀର୍ଯ୍ୟ ଶରୀରୁ ସନ୍ୟ ହୋଇଲେ
ଜାତ ।
ଶହସ୍ରେ ମାରନ୍ତେ ପୁଣି ମରିଲେ ଦଇତ ॥
ଅତି ଅଷ୍ଟାଙ୍ଗେ ସେ ବେଳେକ ନ ମରନ୍ତି ।
ଆରବେଳେ ଶସ୍ତ୍ର ମାଇଲେ ସେ ପ୍ରାଣ
ହାରନ୍ତି ॥
ଗରିଷ୍ଠ ଦାନେବ ଏ କେବେହେଂ ନମରି ।
କେମନ୍ତେ ଆନ ବ୍ରହ୍ମାଣ୍ଡେ ଆନ କେହି
ନୋହିଲେ ସରି ॥
କିହୋ ମାତେଲି ତୁ ଜାଣୁଟିକି ଯେଥିର
ଉପାୟେ ।
କେବଣ ପ୍ରକାରେ ମରିବ ଲଙ୍କରାଏ ॥
ଅନେକ ଦିବ୍ୟଅସ୍ତ୍ର କଲେହେଂ ନମଲା ।
ଚାଣ୍ଡାଳ ଦଇତ ମୋତେ ଅନେକ କଷ୍ଟ
ଦେଲା ॥୫୦
ମାତେଲିକି କହନ୍ତେ ତେଣେ ବିନ୍ଧୁଛନ୍ତି ଶର ।
ରଣଗୋଳ ଧନ୍ଦୋଳ ଅସଂଖ୍ୟ ସମର ॥
ମାତେଲି ବୋଇଲା ତୁମ୍ଭେ ଶୁଣ ରଘୁରାଜ ।
ବ୍ରହ୍ମାର ବରେଯେ ଅଜୟେ ଦନୁଜ ॥
ଭୋ ରାମ ଏହାର ତୁ ମହିମା ନ ଜାଣୁ ।
ଆନ ଅସୁରକୁ ରାବଣ ସଙ୍ଗେ ଗଣୁ ॥
ସୃଷ୍ଟି କରତା ଅସୁରକୁ ଅଭୟେ ବର
ଦେଲା ।
ସେହି ପୁଣି ତାହାକୁ ବାହୁଡ଼ି ସେବାକଲା ॥
ଇନ୍ଦ୍ର ଯେ ଅଟଇ ଦେବତାର ରାଏ ।
ସେ ଏହା ଦ୍ୱାରପାଳ କତିରେ
ବସିଥାଏ ॥୬୦
ରୁଦ୍ର ନୃତ୍ୟ କରଇ ଅଗ୍ନି ଧୁଅଇ ଶାଢ଼ୀ ।

ଏହାର ମହିମା ଦେବ କହିଲେ ନ ସରି ॥
ଯେବଣ ଦିନ ଯାଇ ସ୍ୱର୍ଗ ଜୁର କଲା ।
ପ୍ରଳୟ ମେଘ ଜାଣି ନାରାଚ ବରଷିଲା ॥
ଦଶଦିଗପାଳଙ୍କୁ ଆଣିଲା ବନ୍ଦୀକରି ।
ପୁଷ୍ପକରଥ ଚଢ଼ି ଭ୍ରମିଲା ତିନିପୁରୀ ॥
ରାକ୍ଷାସଙ୍କର ଇନ୍ଦ୍ର ଏ ବଳେ ବଳବନ୍ତା ।
ଦେବାସୁର ନରେ ଏହାକୁ ନୋହିଲେ ଜିଣନ୍ତା ॥
ଅତିହିଂ ଦୁଃଖେ ଦେବ ତୋତେ ଆଶ୍ରେ କଲେ ।
ସୁରଗଣେ ବିଚାରି ମାନେବ ଦେହ ଦେଲେ ॥୭୦
ସ୍ୱୟେଂ ନାରାୟଣ ତୁ ନପାରୁଛୁ ମାରି ।
ଆନର ବଳେ କି ସେ ହୋଇବ ସଂହାରି ॥
ତୋହର ଏହାରେ ଯେହ୍ନେ ଜିଣିମ ରଣ ।
ତାହାକୁ ସେବା କରିବେ ଦେବଗଣ ॥
ସାମାନ୍ୟ ପରାୟେ ଏହାକୁ ନମଣ ରଘୁସାଇଂ ।
ମୁଣ୍ଡ କାଟିଲେ ମୃତ୍ୟୁ ଏହାର ନାହିଂ ॥
ବ୍ରହ୍ମଅସ୍ତ୍ର ଘେନି ମରମ ସ୍ଥାନକୁ ମାର ।
ହୃଦୟ ଫୁଟିଲେ ମରିବ ନିଶାଚର ॥
ପୂର୍ବେଣ ଶିର କମଳ ଦେଇଣ ମନାଇଲା ।
ପ୍ରସନ୍ନ ହୋଇ ବିଧାତା ଏହାକୁ ବରଦେଲା ॥୮୦
ତେଣୁ ସେ ମୁଣ୍ଡ ହୋ କାଟିଲେ ନଛିଡ଼ି ।
ବେକ ଛିଡ଼ିଗଲେ ମୁଣ୍ଡ ତଳେ ନ ପଡ଼ି ॥
ଆନହିଂ ମୁଣ୍ଡ ତହାର କାଟିତ ଭାର୍ଜନ ନୋହେ ।
ତୋହୋର ବଳେ ରଘୁନାଥ ଏଡ଼େ କର୍ମ ହୋଯେ ॥
ଏବେ ବ୍ରହ୍ମ ଅସ୍ତ୍ର ଘେନିଣ ବୁକୁ ଫୋଡ଼ ।
ଏହାର ବକ୍ଷସ୍ଥଳ ବଜ୍ରହୁଂ ଅଟେ ଗାଢ଼ ॥
ଶୁଣିଣ ରଘୁନାଥ ପ୍ରସନ୍ନ ମୁଖ ହୋଇ ।
ନନ୍ଦିଘୋଷେ ରଥେ ବିକ୍ରମ ହୋଇ ତେଇଂ ॥
ଅଗସ୍ତିଙ୍କ ଦେବାର ଯେବଣ ବ୍ରହ୍ମଶର ।
ତତକ୍ଷଣେ ତ୍ରୋଣୁ କାଢ଼ିଲେ ରଘୁବୀର ॥୯୦
ଧନୁର୍ବେଦ ପଢ଼ି ବସାଇଲେ ଗୁଣେ ।
ଦେଖି ଦତ୍ୟ ବଳ ପଳାଇଲେ ଏଣେତେଣେ ॥
ମଧ୍ୟାହ୍ନ ଆଦିତ୍ୟ ପରାୟେ ଦିଶଇ ଅସ୍ତ୍ରଙ୍କର ତେଜ ।
ପ୍ରଳୟ ଅଗ୍ନି ଘେନି କରିବ ଦହିଜ ॥
ମେରୁଗିରି ସମ ଜାଣି ଦିଶିଲାକ ପ୍ରଭା ।
ବିଷ୍ଣୁର ହାଥେ ଯେହ୍ନେ ସୁଦରଶନ ଚକ୍ର ଶୋଭା ॥
ବନ ପର୍ବତ ଯେ କମ୍ପିଲା ବସନ୍ଧରୀ ।
ଜଗତ ସଂସାର କି ହୋଇବ ସଂହାରି ॥
ଶ୍ରୀରାମ କୋପେ କି ଦହିବେ ସୁରମୁନି ।
ଖଳବଳ ହୋଇଲେ ଲୋକେ ଆତଙ୍କ ମନ ଘେନି ॥୧୦୦
ଶ୍ରୀରାମ ନାରାଚ ପୂରାଇ ଉଛୁଡ଼ି ଓଟାରନ୍ତି ।
ମନପବନ ପ୍ରାଣ ଏକ କରିଛନ୍ତି ॥
ମୁଖ ବାଟେ ଗଳିକି ବହଇ ରକତ ।
ଆଖି ହୁଗୁଳିବା ପ୍ରାୟେ ଦିଶନ୍ତି ରଘୁନାଥ ॥
ଉଛୁଡ଼ିବା ଘାଏ ଧନୁ ଲୋଚାହୋଇ ।
ଗୁଣ ବାଏଂଶ କେ ବାରିତ ନୁହଇଂ ॥
ଚକ୍ର ପରାଏକ ଦିଶିଲା ଶରାସନ ।
ବଳୟା ଭିତରେ କି ଲୁଚିଲା ଗୁଣମାନ ॥
କଟ କଟ କରି ଆଣିଲେ ପୂରୋଇ ।
ଦେଖିଣ କର୍ଣ୍ଣ ପରିଯନ୍ତେ ଉଛୁଡ଼ିଲେ ରହି ॥୧୦
ଏସନେକ ସମଏ ଶ୍ରୀରାମ ବାମକର ।
ଦକ୍ଷିଣ କରକୁ ସେ କହଇ ଉତ୍ତର ॥
ସାଂଗ୍ରାମ କାଳେ କିମ୍ପା ପଛଘୁଞ୍ଚା ଦେଉ ।
ତୋହୋର ପରଲୋକ ନିସତ କିମ୍ପା ହଉ ॥
ଦକ୍ଷିଣ କର ସେ ବୋଲଇ ତାହା ଶୁଣି ।
ତୁ ଯାହା ବୋଇଲୁ ହୋ ନୁହଇ ସେ ବାଣୀ ॥
ମୁହିଂ କିମ୍ପା ସାଂଗ୍ରାମେ ଦେବି ପଛଘୁଞ୍ଚା ।
ତୁ ଏମନ୍ତ ମନରେ କରିଛୁକି ପଚାଂ ॥
ଫଳା ମେଳିବାରେ ତୋତେ ଆଗ କରୁ ।
କରବାଳ ଫରୀ ଆଗେ ଆମ୍ଭେ ମାରୁ ॥୨୦
ଯେବଣ କାରଣେ ମୁଂ ପଛକୁ ଅଇଲି ।
ଶ୍ରୀରାମ ଦକ୍ଷିଣ କର୍ଣ୍ଣରେ କହିଲି ॥
କରୁଣା ସାଗର ଯେ ଅଟନ୍ତି ରଘୁନାଥ ।
ଛେଦିବେ କି ନଛେଦିବେ ରାବଣ ଦଶମାଥ ॥
ସତ ପଚାରିଣ ଅଇଲଇଂ ମୁହିଂ ।
ଆଜ୍ଞା ପାଇଲେ ସେ ମାରିବଇଂ ଯାଇଂ ॥
ଏସନେକ ସମଏ ବିଶ୍ରବା ତନଏ ।
ବ୍ରହ୍ମ ଅସ୍ତ୍ର ଦେଖି ମନରେ ଶଙ୍କାକଏ ॥
ହୃଦରେ ପାଞ୍ଚିଲା ରଘୁନାଥ ଜାଣିଲେ ମୃତ୍ୟୁଭେଦ ।
ଏହିକ୍ଷଣି ସରିବ ମୋର ଏଡ଼େକ ସମ୍ପଦ ॥୩୦
ଏତେଭାଳି ଦଶକରେ ଦଶଧନୁ ଧରି ।
ଅପ୍ରମିତ ନାରାଚ ବିନ୍ଧିଲା କୋପକରି ॥
ଲକ୍ଷ ଲକ୍ଷ କୋଟି କୋଟି ଏକାବେଳେ ପେଷଇ ।
ପ୍ରଳୟ କାଳେ ଯେହ୍ନେ ମେଘ ବରଷଇଂ ॥
ନନ୍ଦିଘୋଷ ରଥ କାଣ୍ଡରେ ଅଛି ପୂରି ।
ମାତେଳିକି ନାରାଚ କୋଟିଏ ମାରି ॥
ଲକ୍ଷ ଲକ୍ଷ ନାରାଚ ବିନ୍ଧଇ ଶ୍ରୀରାମକୁ ସନ୍ଧି ।
ପଞ୍ଚ ଆକାଶ ଶରରେ ପୁଣ ରୁନ୍ଧି ॥
ରଥ ଘୋଡ଼ା ଅଶ୍ୱକୁ ଶକତି ଚାରି ମାରି ।
ଲକ୍ଷ୍ମଣଙ୍କୁ ଲକ୍ଷେ ନାରାଚ ପ୍ରହାରି ॥୪୦
ବିଭୀଷେଣକୁ ଲକ୍ଷେ ହନୁମନ୍ତକୁ ଶଏ ।
ଅଙ୍ଗଦଙ୍କୁ ଷାଠିଏ ବିନ୍ଧଇ ଲଙ୍କରାଏ ॥
ସୁଗ୍ରୀବରକୁ ଶହେ ଜମ୍ବେବକୁ ଅଶୀ ।
ନଳନୀଳ ଦୁହିଙ୍କୁ ବହୁତ ବାଣ ପେଷି ॥
ସୁଷେଣଙ୍କୁ ପଞ୍ଚାଶ ଗନ୍ଧମାର୍ଦ୍ଦନକଇ ଷୋଳ ।
ହାଙ୍କିଣ ନାରାଚ ବିନ୍ଧଇ ଲଙ୍କପାଳ ॥
ତାରାକ୍ଷକୁ ଚାଳିଶି ରମଣକୁ ଦଶ ।
ଶଉରୀ ସେନାପତିକି ବିନ୍ଧିଲା ଅଠାଇଶ ॥
ଶତବଳକୁ ଆଠ ବଳିମୁଖକୁ ବାର ।
ମହାଦ୍ରକୁ କୋଡ଼ିଏ ଦ୍ୱିବିଦକୁ ଏଗାର ॥୫୦
କୁମୁଦକୁ ବାଇଶି କୁନ୍ଦକୁ ବାର ।
ଦଶକାଳ ବୃଦ୍ଧକୁ ମାଇଲା ପନ୍ଦର ॥
ସାରାସକୁ ସାତ ପାରାସକୁ ଚାରି ।

ବଳିମୁଖ କାଳିମୁଖକୁ ପାଞ୍ଚ ପାଞ୍ଚ ମାରି ॥
ଦଧିମୁଖକୁ ଦଶ ବିନ୍ଧଇ ଲଙ୍କରାଏ ।
ସମ୍ପାତିକି ସତର ବିନ୍ଧଇ ଲଙ୍କରାଏ ॥
ଦ୍ୱିବିଧକୁ ଚାଳିଶ ଗନ୍ଧମାର୍ଦ୍ଦନକୁ ଅଠାଇଶ ।
ରୁଷଭକୁ ବତିଶ କାଳିଞ୍ଜନକୁ ଦଶ ॥
ବସନ୍ତ କଇ ଚଉଦ ତାଳିମ୍ୱକଇ ବାର ।
ଚନ୍ଦନ ପନଶିକକୁ ମାଇଲା ତେର
ତେର ॥୬୦
ଯେତେକ ଋକ୍ଷ କପି ରଣରଙ୍ଗେ ଥିଲେ ।
ସବୁଙ୍କୁହିଁ ପାଞ୍ଚ ପାଞ୍ଚ କରିଣ ବିନ୍ଧିଲେ ॥
କାହାକୁ ବାବଲ କାହାକୁ ଦିବ୍ୟଅସ୍ତ୍ର ।
କାହାକୁ ଅସୁରାଅସ୍ତ୍ର କାହାକୁ ଅଙ୍ଗିରା ଶସ୍ତ୍ର ॥
ବିଚାରଇ ମୁହିଁ ମରିବି ଯେବେ
ରାମବାଣେ ।
ମାରି ପାରଇ ଯେବେ ଏଥିଂ ଭଲ ଜଣେ ॥
ମାରି ମଲାବୋଲି ମୋତେ ସେ
ବୋଲିବେ ।
ଭଲା କ୍ଷତ୍ରି କଲା ବୋଲି ସୁମରିବେ ॥
ଶ୍ରୀରାମ ଏତେବେଳେ ନପାରିବେ ଛେଦି ।
ଯେ ଶହସ୍ରବାରି ନ ପାରିବେ ଆନ
ଯୋଧି ॥୮୦
ଏତେବେଳେ ମାରି ପାରିଲେ ମାରିବି ।
ଅଷ୍ଟ ସେହ୍ନାରୁ ହେଲେ ଗୋଟିଏ ସିଂହାରିବି ॥
ଏତେ ବୋଲି ରାଗେ ଶର ବୃଷ୍ଟି କଲା ।
ଶ୍ରୀରାମକୁ ଲକ୍ଷେ ପୁଣ ନାରାଚ ବିନ୍ଧିଲା ॥
କୋଦଣ୍ଡ କାଟିବାକୁ ପେଷିଲା ଚକ୍ର ଶଏ ।
ବ୍ରହ୍ମ ଅସ୍ତ୍ରକୁ ବ୍ରହ୍ମ ଅସ୍ତ୍ର ପ୍ରତି ତୁଳଏ ॥
ଧନୁଗୁଣ ନାଶିବାକୁ ପେଷିଲା ତୀକ୍ଷ ଶର ।
ବଜ୍ରବାଣ ମାଇଲା ଛେଦ ରଘୁବର ॥
ରଡ଼ିଛାଡ଼ି ଗର୍ଜି ବିନ୍ଧିଲାକ ବହୁତ ବାଣ ।
ଧାଇଂଲେ ଶସ୍ତ୍ରମାନେ ଶବଦ ଗରୁ ଟାଣ ॥
ନାରାଚ ଆସନ୍ତେ ଲକ୍ଷ୍ମଣ ଚାହିଂଲା ।
ବାବଲ ବାଣେ ସବୁ ଛେଦି ପକାଇଲା ॥
ଦେଖି ଦେବତାଏ ସାଧୁ ସାଧୁ କଲେ ।
ଧନ୍ୟ କ୍ଷତ୍ରି ଲକ୍ଷ୍ମଣ ବୋଲିଣ ବୋଇଲେ ॥
ଏସନେକ ସମୟେ ଶ୍ରୀରାମଚନ୍ଦ୍ର ରାଏ ।
ଧନୁର୍ବେଦ ପଢ଼ି ବ୍ରହ୍ମ ଅସ୍ତ୍ର କଏ ॥
ନାରାଚ ଛାଡ଼ିଲେ ହୁଙ୍କାର ଗତି କରି ।
ଅସ୍ତ୍ର ଆସନ୍ତେଣ କମ୍ପିଲା ବସୁନ୍ଧରୀ ॥
ଦଶଦଗପାଳେ ବୁଜିଲେ ଆଖିକାନ ।
ଜଳି ଆସୁଅଛି କି ପ୍ରଳୟ ହୁତାଶନ ॥୯୦
ଯେତେ ଅସ୍ତ୍ର ରାବଣ ପ୍ରତିଅସ୍ତ୍ର କଲା ।
କେହି ତାହାକୁ ଯେ ନିବାରି ନ ପାରିଲା ॥
ଭାଗ୍ୟ ସରିଲା ପ୍ରାଣୀଙ୍କର ନକାଟଇ ଖଣ୍ଡା ।
ଭାଗ୍ୟ ଥିଲା କାଳେ ହୁଅଇ ପରଚଣ୍ଡା ॥
ଯେବଣ କାଳେ ରାବଣର କନ୍ଧେ ଶିରୀ
ଥିଲା ।
ବ୍ରହ୍ମା ତାହାକୁ ଆସି ପ୍ରବୋଧି କହୁଥିଲା ॥
ଯହୁଂ ସରିଲା ଏବେ ସକଳ ବଡ଼ ପଣ ।
ମୁହେଂ ମୁହେଂ ରହି ଯୁଝିଲେ କପିଗଣ ॥
ବ୍ରହ୍ମଅସ୍ତ୍ର ପେଷିଲେହେଂ ହୋଇଲା ବିଅର୍ଥ ।
ସାକ୍ଷାତେ ଧର୍ମ ଯେ ଅଟନ୍ତି ରଘୁନାଥ ॥୧୦୦
ଜଗତ ନିମନ୍ତେ ଅସୁର ସଙ୍ଗେ ଯୁଝି ।
ଅଗସ୍ତିଙ୍କ ନାରାଚ ପେଷିଲେ ରାମ ହେଜି ॥
ରାବଣର ହୃଦେ ପଡ଼ିଲା ଶର ଯାଇ ।
ପିଠିକି ଗଳିଗଲା ଛିନ୍ନଛତ୍ର ହୋଇ ॥
ଅସ୍ତ୍ର ବାହାର ହୁଅନ୍ତେ ପିଣ୍ଡରୁ ପ୍ରାଣ ଗଲା ।
ସମୋଦ୍ରେ ନାରାଚ ସ୍ନାହନ ଯାଇ କଲା ॥
ରକତ ଛଡ଼ାଇ ଶ୍ରୀରାମ ତ୍ରୋଣେ ପଶି ।
ରଘୁନାଥ ଚକ୍ଷୁକୁ କିଛିହିଂ ନ ଦିଶି ॥
ଦଶଦିଗ ଅନ୍ଧାର ଭାଳନ୍ତି ରାମରାଏ ।
ଆତଙ୍ଗ ମନ ହୋଇ ମାତେଳି କି
ପୁଛୟେ ॥୧୦
ମାତେଳି ବୋଇଲେ ରାବଣକୁ ମାଇଲ
ବ୍ରହ୍ମବାଣ ।
ଆବର ବିଶେଷେ ସେ ଅଟଇ ବ୍ରାହ୍ମଣ ॥
ବିଶ୍ରବା ତହୁଂ ହାଦେ ଉପୁଜିଲା ।
ମାତା ଗୁଣ ଘେନି ସେ ରାକ୍ଷସ ହୋଇଲା ॥
ବ୍ରହ୍ମାର ନାତି ସେ ବିଶ୍ରବାର ସୁତ ।
ଋଷି କ୍ଷତ୍ରି ସେ ଅଟଇ ବେନିରେତ ॥
ବ୍ରହ୍ମକର୍ମ ଗୋଟା ଥିଲା ତାର ତହିଂ ।
ତୁମ୍ଭେ ତାଙ୍କୁ ସଂହାର କଲ ରଘୁସାଇଂ ॥
ତେଣୁ ସେ ହତ୍ୟା ଗୋଟା ଆକ୍ରୋଷି ଅଛି
ତୋତେ ।
ବ୍ରହ୍ମ ଅସ୍ତ୍ର ତେଜ ଲାଗିଛି ଯୁଗତେ ॥୨୦
ଆନ ହୋଇଲେକି ପ୍ରାଣ ଆଜ ଥାନ୍ତା ।
ରାବଣର ସଙ୍ଗେ ସେହି ସେ ନାଶଯାନ୍ତା ॥
ଶୁଣିଣ ଶ୍ରୀରାମ ହୋଇଲେ ବିଷାଦ ।
ମାତେଳିକି ଚାହିଂ ପୁଛନ୍ତି ସମ୍ବାଦ ॥
କେବଣ ମତେ ଦୋଷ ଯାଇ ମୋର ପାର ।
ଶୁଣି ଦେବଦୂତ କହଇ ମଧୁର ॥
ଭୋ ରଘୁନନ୍ଦନ ତୁ ନୁହସି ବିକଳ ।
ତୁ ଯେ ଅଟୁ ଯେହୁ ମନେ ମନେ ଭାଳ ॥
ତୋତେ କିମ୍ପା ପାପ ଲାଗିବ ରଘୁପତି ।
ତୁହି ସିନା କରିଅଛୁ ଏସନେକ ରୀତି ॥୩୦
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ଚକ୍ରପାଣି ।
ତୋହରେ ସଞ୍ଚିଲା ଯେ ଅଟଇ ଚାରିଖାନି ॥
ଶୁଣି ରଘୁନାଥ ପରମ ତୋଷ ମନ ।
ହୃଦପଦ୍ମ ମଧେ ବିଚାରିଲେ ବ୍ରହ୍ମଜ୍ଞାନ ॥
ଜୀବ ପରମଆତ୍ମା ଏକମେଳ କଲେ ।
ପ୍ରକୃତିକି ଅନ୍ତର କରିବି ବିଚାରିଲେ ॥
ମୁହିଂ ସେ ଶ୍ରୀହରି ଜଗତର ନାଥ ।
ମୋହର ସଞ୍ଚିଲାସିନା ଅଟଇ ଜଗତ ॥
ପାପପୁଣ୍ୟ ବୋଲି ମୁହିଂ ସେ ଭିଆଇଲି ।
ଧର୍ମ ଆଗକରି ପାପ ପଛ କଲି ॥୪୦
ବେଦ ବଉଦ ମୋହୋର ଦୁଇମତ ।
ମୁହିଂ ସେ ଭିଆଇଲି ଦେବତା ଦଇତ ॥
ସନ୍ଥ ପ୍ରତିପାଳି ଦୁଷ୍ଟନ୍ତ ନାଶଇ ।
ରାକ୍ଷାସକୁ ମାରି ବୃନ୍ଦାର୍କ ସଞ୍ଚଇ ॥
ଏ ଯେ ରାବଣେଶ୍ୱର ଅନ୍ୟାୟେ ବହୁତ
କଲା ।
ମୋହୋର ଘରଣୀ ଜଗତମାତାଙ୍କୁ ଚୋରାଇ
ଆଣିଲା ॥
ତେଣୁ ସେ ନାରାଚେ ଘେନିଲି ତାର ପ୍ରାଣ ।
ମୁହିଂ ସେ ଅପାପୀ ପୁରୁଷ ନାରାୟେଣ ॥
ସର୍ବ ପାପ ଦହନ୍ତି ଜନେ ମୋତେ
ସେବାକରି ।
ଜଗତ ରଖିଲି ମୁଂ ରାବଣକୁ ମାରି ॥୫୦

ମାୟା ସଂସାର ଏ ମୋହୋର ପାତନା ।
ନ ଜାଣି କଲୁଷ ହୋ ହୋଇଲୁ କି ବଣା ॥
କେହ୍ନୁ ମୃତ୍ୟୁ ପାଇଲା କାହାକୁ କେ ମାରି ।
କେହ୍ନୁ ପାପ ପୁଣ୍ୟ ସେ କାହାକୁ କିସ କରି ॥
ଯାଅସି କଲୁଷ ହୋ ଶୁଝିଲୁ ତୋର ସେବା ।
ନୋହିଲେଣ ଶାପ୍ୟ ତୁ ପାଇବୁ ଅଥବା ॥
ପୂର୍ବେ ଯେ ମରୁତ ରାଜାର ଥିଲା ଦୋଷ ।
ତାହା ତ ଭୋଗ୍ୟ ଏବେ କଲୁହୋ କଲୁଷ ॥
ନିୟମ ବଢ଼ିଲା ତୁ ଯାସି ମୋ ଅଙ୍ଗୁ ଛାଡ଼ି ।
ଏତେ ବୋଲି ଶୀରାମ ଆପଣା ନାମ ପଢ଼ି ॥୬୦
ତାରେକ ବ୍ରହ୍ମଜ୍ଞାନ ଶ୍ରୀରାମ ନାମ ଗୋଟି ।
ସୁମରିବା ମାତ୍ରକେ ବ୍ରହ୍ମହତ୍ୟା ଦୋଷ ତୁଟି ॥
ଶ୍ରୀରାମ ଶ୍ୟରୀରୁ ଛାଡ଼ିଲା ପାପ ରାଶି ।
ପଦ୍ମଦଳ ଲୋଚନକୁ ଦଶଦିଗ ଦିଶି ॥
ଏଥୁ ଅନନ୍ତରେ ସେ ଦଶାନନ ବୀର ।
ହୃଦୟ ଫୁଟି ଯହୁଂ ଗଲା ବ୍ରହ୍ମଶର ॥
ଘୋର ରାବ କରି ପଡ଼ିଲାକ ଗର୍ଜି ।
ସର୍ବ ଦେବତାଏ ପଳାଇଲେ ଭାଜି ॥
ତିନିଶତ ଷାଠିଏ ହାଥ ଲମ୍ବ ହୋଇ ।
ଶଏ ଷାଠିଏ ହାଥ ଓସାର ଲଙ୍କସାଇଂ ॥୭୦
ଚାରି ସହସ୍ର ଘୋଡ଼ା ଦୁଇ ସହସ୍ର ହାଥୀ ।
ମାଡ଼ିଣ ପଡ଼ିଲା ମନ୍ଦୋଦରୀର ପତି ॥
ଦେଖିଣ ରାମଚନ୍ଦ୍ର ଗୁଣ ଟଙ୍କାର କଲେ ।
ଏବେ ସେ ରାବଣେଶ୍ୱର ମଲା ବୋଲି ପ୍ରତେଗଲେ ॥
ଜୟେ ଜୟେ ଶବଦ ଆକାଶରେ ଶୁଭି ।
ଗନ୍ଧର୍ବ ପୁରୁଷେ ବଜାଇଲେ ଦୁନ୍ଦୁଭି ॥
ସୁଛନ୍ଦ ଗନ୍ଧ ଘେନି ବହିଲା ପବନ ।
ଗାନ୍ଧାର ରାଗେ କିନ୍ନରୀ କରନ୍ତି ଗାୟନ ॥
ତିନିପୁର ଲୋକଙ୍କର ଅପଗ୍ରହ ଗଲା ।
ଦୁଷ୍ଟ ଦୁର୍ପିଷ୍ଟ ରାବଣ ଯହୁଂ ମଲା ॥୮୦
ସବୁ ଦେବତାଙ୍କର ବିକଶିଲା ତେଜ ।
ଏବେ ସେ ବ୍ରହ୍ମାଣ୍ଡେ ବିହରିବେ ଦେବରାଜ ॥
ଅଗ୍ନି ମୁଖେ ହୋମ ଦେବେ ମୁନିମାନେ ।
ଯୋଗୀମାନେ ନିଶ୍ଚିନ୍ତେ ସାଧିବେ ବ୍ରହ୍ମଜ୍ଞାନେ ॥
ପୃଥ୍ୱୀ ଶସ୍ୟ ହାନି ଏବେ ସେ ନୋହିବ ।
ଯେ ଯାହାର କାଳେ ଋତୁ ଭୋଗ କରିବ ॥
ଚଉଦ ଭୁବନକୁ ଯେ ଲାଗିଥିଲା ଶଙ୍କା ।
ଶ୍ରୀରାମ ବିଧ୍ୱଂସିବେ ଅଜୟେଗଡ଼ ଲଙ୍କା ॥
ରାବଣ ଇନ୍ଦ୍ରଜିତ ଅସୁର ବଳ ମଲେ ।
ଶୁଣିଣ ସୃଷ୍ଟି ଲୋକେ ସାଧୁ ସାଧୁ କଲେ ॥୯୦
କ୍ଷତ୍ରୀବର ସୁନ୍ଦର ଧନ୍ୟ ରଘୁନାଥ ।
ରଣଗୋଳ ଧନ୍ଦୋଳେ ତୁ ମାଇଲୁ ଦଶମାଥ ॥
ପ୍ରତ୍ୟକ୍ଷେ ନାରାୟେଣ ମାନେବ ତନୁ ଧରି ।
ନୋହିଲେଣ ସଂସାର ବଇରୀ ହୋୟେକି ମାରି ॥
କରୁଣା ସାଗର କମଳା ବିଳାସ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ନମୋ ନୀଳଗିରି ଜଗନ୍ନାଥ ସ୍ୱାମୀ ।
ତାହାର ପ୍ରିୟବତୀ ତୈଲୋକର ଲକ୍ଷ୍ମୀ ॥
ତୁମ୍ଭେ ସେ ଅନନ୍ତ କୋଟି ବ୍ରହ୍ମାଣ୍ଡର ନାଥ ।
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୃହସ୍ତ ॥୧୦୦
ଗରୁଡ଼ ବାହନ ପୀତାମ୍ବର ମଧୁହାରୀ ।
ଶ୍ରୀବଛ ଲକ୍ଷଣ ଧାରଣ ଦଇତାରି ॥
ଅପାର ମହିମା ଭଗତ ଜନ ସାହା ।
ଲୀଳା ଯୁଦ୍ଧ କରି ମାଇଲ ବିଂଶ ବାହା ॥
ଦେବେଣ ଦୁର୍ଲଭ ନଉକେଶାର ସୁତ ।
ମନୁଷ୍ୟ ରୂପ ଧରି ବଧ୍ୟକଲ ଦଇତ ॥
ବ୍ରହ୍ମଅସ୍ତ୍ର ଘେନି ଫୋଡ଼ିଲୁ ବକ୍ଷସ୍ଥଳ ।
ପ୍ରାଣଯାନ୍ତେ ଭୂମିରେ ପଡ଼ିଲା ଲଙ୍କପାଳ ॥
ଦେଖି ଦୈତ୍ୟବଳ ପଳାଇଲେ ରଣ ଛାଡ଼ି ।
ଗୋଡ଼ାଇ ରକ୍ଷକପି ମାଇଲେ ବେତବାଡ଼ି ॥୧୦
ଧନ୍ୟ ଧନ୍ୟ ରାଘେବ ତୁ କ୍ଷତ୍ରିଙ୍କର ଶିରୋମଣି ।
ଦଇତ ନିବାରଣ ଧାନୁକୀ ଚୂଡ଼ାମଣି ॥
ତିନି ଭୁବନ ଲୋକର ରିପୁ କଲ ନାଶ ।
ଏତେ ବୋଲି ବୃଷ୍ଟି କଲେକ ଶ୍ୱେତପୁଷ୍ୟ ॥
ଦେବସଭା ମଣ୍ଡାଇ ବସିଲେ ଆସ୍ଥାନେ ।
ସଜ ହୋଇ ଅଇଲେ ଅପଛରା ଗଣେ ॥
ରମ୍ଭାର ମୁଖ ଯେ ଶରଦ ଚନ୍ଦ୍ର ଜାଣି ।
ପରିଘାଇ ନୃତ୍ୟରେ ପଶିଲାକ ତରୁଣୀ ॥
ଡ଼ିମ୍ବୁର ସାହା ଘେନି ଗାନ୍ଧାର ହୁଂକାରି ।
ଉର୍ବଶୀ ନାଚଇ ବିଚିତ୍ର ଗତି କରି ॥୨୦
ମେନକା ବସନ୍ତା ଆବର ତିଳୋତ୍ତମା ।
ଲକ୍ଷଣା ଇନ୍ଦୁମତୀ ସେ ସୁକାନ୍ତି ଅଷ୍ଟ କନ୍ୟା ॥
ବିଦ୍ୟାଧରୀ କିନ୍ନରୀ ଅପସରୀ ମାନେ ।
ସମ୍ଭର୍ବ ହୋଇଣ ବସିଲେ ମେରୁ ଆସ୍ଥାନେ ॥
ଦଶ ଦିଗପାଳ ମୂଳେ ସୁରଗଣ ଲୋକ ।
ଶ୍ରୀରାମ ପ୍ରସାଦେ ଛାଡ଼ିଲେ ସର୍ବେ ଶୋକ ॥
ଯକ୍ଷ ଗନ୍ଧର୍ବ କିନ୍ନର ପଟୁଆରି ।
ସଭା କରି ବସିଲେ ବ୍ରହ୍ମାଙ୍କୁ ଆବୋରି ॥
ଚଉଦ ଭୁବନ ଲୋକ ହୋଇଲେ ଉଶ୍ୱାସ ।
ମଳୟ ପବନ ବହଇ ଗନ୍ଧ ବାସ ॥୩୦
ନିଶ୍ଚିନ୍ତ ହୋଇଲେ ବୃନ୍ଦାଅର୍କ ମାନେ ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଣେ ॥
ରାବଣକୁ ମାରି ପରମ ତୋଷ ମନ ।
ଧନୁଗୁଣେ ଟଙ୍କାର କରନ୍ତି ରଘୁରାଣ ॥
ଜୟେ ଜୟେ ଶବଦ ଶୁଭଇ ଚଉପାଶେ ।
ବାନରେ ସିଂହନାଦ କରନ୍ତି ହରଷେ ॥
ଯେତେବେଳେ ରାବଣ ପଡ଼ିବାର ଦେଖିଲେ ।
ପଚିଶ ଯୂଥପତି ସମର ତେଜିଲେ ॥
ଅଷ୍ଟସେନା ସହିତେ ସୁଗ୍ରୀବ ବିଭୀଷେଣ ।
ଯୁଦ୍ଧ ଛାଡ଼ି ବେଗେ ଦେଖନ୍ତି ରାବଣ ॥୪୦
ଶିରେ କର ଦେଇ ବଖାଣନ୍ତି ସ୍ତୁତି ।
ଜୟେ ଜୟେ ରଘୁନାଥ ଅନନ୍ତ ମୂରତି ॥
ଯେବଣ ଯୁଦ୍ଧ ଆଜ କଲୁସି ଗୋସାଇଂ ।
ଆଖିରେ ନ ଦେଖିଲା ଶୁଣିଲା ପୂର୍ବେ ନାହିଂ ॥
ବିଭୀଷେଣକୁ ଚାହିଂ ବିଚାରେ ସୁଗ୍ରୀବର ।
ଏହାର ନିକି ବ୍ୟଥା ବସଇ ହୃଦୟର ॥
ସ୍ୱଭାବେ ଏହାର ଯେ ଅଟେ ଜ୍ୟେଷ୍ଟଭାଇ ।
କଳିକରି ଅବା ଏ ଅଇଲା ପଳାଇ ॥
ଏବେ ମଲାକୁ କ୍ରୋଧ କରିବଟି ଚିତ୍ତେ ।

ମୁହିଁ ଏହା ମନ ବୋଧିବି କେମନ୍ତେ ॥୫୦
ଏତେ ବୋଲି ସେନା ଯୂଥପତିଙ୍କି ଘେନି ।
ବିଭୀଷେଣକୁ ପ୍ରଶଂସା କରନ୍ତି ବାହୁନି ॥
ଧନ୍ୟ ଲଙ୍କପତି ଧନ୍ୟ ତୋର ହିଆ ।
ଆନ ବଳେ କରି ନୁହଇନା ଏହା ॥
ଆଜଏ ଦନୁଜ ତୋହୋର ବୁଦ୍ଧିରେ ମଲା ।
ତୋହୋରେ ସେ ଶ୍ରୀରାମ ଏଡ଼େକ କର୍ମ କଲା ॥
ତୁ ପୁଣ୍ୟ ପୁରୁଷ ପାପପୁଣ୍ୟ ଜ୍ଞାନୀ ।
ତୋତେ ବହିଅଛି ଧନ୍ୟ ଏ ମେଦିନୀ ॥
ଶୁଣି ବିଭୀଷେଣ ସମାର୍ଜଇ ହାଥ ।
ସବୁ ବଡ଼ପଣ ଅର୍ଜ୍ଜିଲେ ରଘୁନାଥ ॥ ୬୦
ଏହାର ନାରାଜେ ମଲା ଦଇତ ଇନ୍ଦ୍ର ।
କ୍ଷତ୍ରୀଙ୍କର ଶାର୍ଦ୍ଦୋଳ ଅଟନ୍ତି ରାମଚନ୍ଦ୍ର ॥
ଆନର ବଳେ କାହିଁ ରାବଣେଶ୍ୱର ମରଇ ।
ନାମ ସୁମରିଲେ ଯାର ସୁରପତି ଡରଇ ॥
ଦିଗପାଳ ସମାନେ ଅଟଇ ମୋର ଭାଇ ।
ଏତେ ବୋଲି ବିଭୀଷେଣ ଉଠିଲା ବୋବାଇ ॥
ପଛଘୁଞ୍ଚିଯାଇ ପୁଷ୍ପେକ ବିମାନ ତଳେ ମିଳି ।
ଦେଖିଲାକ ରଣେ ପଡ଼ିଛି ମହାବଳୀ ॥
ଦଶଶିରେ ମୁକୁଟ କୁଣ୍ଡଳ ଶୋଭାବନ ।
ହାହା ଭାଇ ବୋଲି କଲାକ ରୋଦନ ॥୭୦
ଦଶଭୁଜେ ଧନୁ ଦଶଭୁଜେ ଶର ।
ଢଳି ପଡ଼ିଅଛି ପ୍ରତାପୀ ଲଙ୍କେଶ୍ୱର ॥
ବ୍ରହ୍ମଜାତି ହୀରା ଅଙ୍ଗେ ସେହ୍ନା ଲାଇ ।
ରଣ ମଧ୍ୟେ ବୀର ପଡ଼ିଛି ମୃତ୍ୟୁ ପାଇ ॥
ଫରହର ନିଶ ଉଭାଡ଼ି ଦିଶଇ ଦାଢ଼ୀ ।
ସୁନ୍ଦର ଦିଶୁଅଛି ରକତ ସଞ୍ଚାପଡ଼ି ॥
ଆଖି ଜଳ ଜଳ ଚାହିଁବା ମତି ଦିଶଇ ।
ଦେଖି ବିଭୀଷେଣ ଗୁଣ ପ୍ରଶଂସଇ ॥
ଚାଣ୍ଡାଳ ଭାଇରେ ନ କଲୁ ମୋର ବୋଲ ।
ଅକାରଣେ ଜୀବନ ହାରିଲୁ ଲଙ୍କମଲ୍ଲ ॥୮୦
ଅନ୍ୟାୟ ଅବିଚାରେ ଝିଙ୍ଗାସିଲୁ ଧର୍ମ ।
ଆପଣେ ଯତନେ ଲୋଡ଼ିଲୁ ଯେଡ଼େ କର୍ମ ॥

ସୀତା ନୁଆଣିଲେ ମୃତ୍ୟୁ ତୋତେ ନାହିଁ ।
ଅନେକ ବାରେ ତିଆରି ବ୍ରହ୍ମା ଥିଲେ କହି ॥
ସେ କଥା ଛାଡ଼ିଲୁ ତୁ କର୍ମର ବିପାକେ ।
ମୋତେ ତେଜ୍ୟା କଲୁ ମରିବାର ବେଳେ ॥
ଏଡ଼େ ସମ୍ପଦ ହରାଇଲୁ କିସ ପାଇଁ ।
ପର ଯୁବତୀ କି ଆଣିଲୁ ଚୋରାଇ ॥
ଦେବ ଦାନବେ ଜିଣନ୍ତା କେହି ନାହିଁ ।
ମନ୍ଦୋଦରୀକୁ ଗଲୁ ବାଟରେ ବସାଇ ॥୯୦
ଚଉଦ ଭୁବନେ ଗମଇ ତୋର ରଥ ।
ଏବେ ତୁ ନିରେଖେ ହୋଇଲୁ ଦଶମାଥ ॥
ଯେବଣ ଯେବଣ ଲୋକ ତୋତେ କୁମନ୍ତ ବୁଦ୍ଧି ଦେଲେ ।
ଏବେତ କେହି ତୋତେ ରଖି ନପାରିଲେ ॥
ଗର୍ବ କରି ଭାଇ ହରାଇଲୁ ଏଡ଼େ ଶିରୀ ।
ଜଗତେ ଅପଛାତି ପାଇଲୁ ଦଶଶିରି ॥
ଏସନେକ ବୋଲି କରଇ ରୋଦନ ।
ସମାର୍ଜନା କରନ୍ତି ରକ୍ଷକପି ସନ୍ୟ ॥
କାହାରି ବୋଲରେ ଶୋକ ନୁହଇ ନିବାରି ।
ପୁଣ ପୁଣ କହଇ ଭାଇକି କୋଳକରି ॥୧୦୦
ଲକ୍ଷଣ ତିଆରଇ ସୁଗ୍ରୀବରକୁ ଘେନି ।
ଆବେର ପ୍ରବୋଧନ୍ତି ଜମ୍ବେବ ସୁଷେଣ ମନ୍ତ୍ରୀ ବେନି ॥
ଅଙ୍ଗଦ କୁମର ବୁଝାଇ ବହୁତ ।
ବେଢ଼ି ରକ୍ଷ କପି ଦେଖନ୍ତି ସମସ୍ତ ॥
ଯହୁଁ ଯେ ଶୋକ କଲାକ ଉଚ୍ଚସ୍ୱରେ ।
ଆପଣେ ରହୁବରୁ ଓହ୍ଲାଇଲେ ରଘୁବୀରେ ॥
ମାତେଲିକି ଘେନି ବିଭୀଷେଣ ପାଶେ ଗଲେ ।
ପୁରାତନ କଥାମାନନ୍ତ ଦେଖାଇ କହିଲେ ॥
କି ହୋ ବିଭୀଷେଣ ହୋଇଲୁ କି ବାଇ ।
କେ କାହାର ସୋଦର କେ କାହାର ଭାଇ ॥୧୦
ଜନ୍ମ ମରଣ ଏ ସଂସାର ରଚନା ।
ତୁହିତ ଧର୍ମ ଶାସ୍ତ୍ର ବିଚାର କରୁ କିନା ॥

ହିରଣ୍ୟକଶିପୁକୁ ଯେ ମାଇଲେ ଶ୍ରୀହରି ।
ପ୍ରହ୍ଲାଦକୁମରକୁ ତାହାର ରାଜ୍ୟେ ରାଜାକରି ॥
ବୈରୋଚନ ମଲେ ବଳିରାଜା ହୋଇ ।
କାହାରିହିଁ କ୍ଷମତା ପାହାନ୍ତା କେହି ନାହିଁ ॥
ମୁହିଁ ଯେ ପିତାର ଆଗ୍ୟାଂରେ ବନବାସ କଲି ।
ବାପ ମଲେ ମୁହିଂତ ମରି ନ ପାରିଲି ॥
ମାଇକା ଅକା ତୋହୋର ସୁମାଳି ଦଇତ ।
ତାହାର ଜ୍ୟେଷ୍ଠଭାଇ ମାଳି ମାଲ୍ୟବନ୍ତ ॥୨୦
ତାହାକୁ ନାରାୟେଣ ଚକ୍ରେ ନାଶକଲେ ।
ସୁମାଳି ପଳାଇ ପାତାଳେ ପଶିଲେ ॥
ଭାଇଙ୍କ ମଲେ ସେ ତ ନୋହିଲାକ ନାଶ ।
ତାହାର ଦୋହିତାରୁ ଉପୁଜିଲା ତୁମ୍ଭର ବଂଶ ॥
ଦେବେ ଦାନବେ ଯେ ଅଟନ୍ତି ଦୁଇଭାଇ ।
କାହାରି ସଙ୍ଗତେ ନ ମଲେ ହାଦେ କେହି ॥
ମାୟା ସଂସାର ଯେ ଦଇବ ସର୍ଜ୍ଜିଲା ।
ଯେ ଯାହାର କର୍ମଫଳ ସେ ଭୁଞ୍ଜିଲା ॥
ମଲାଲୋକ ମରଇ ଜୀଇଂଲା ଲୋକ ଜୀଇଂ ।
ବିଧାତା ନିରିମାଣି ସର୍ଜ୍ଜିଲା ଫଳ ପାଇଁ ॥୩୦
ଉଠ ଉଠ ରାଜା ହୋ ନକର ସନ୍ତାପ ।
ତାହାର ତୋହୋର ଯେ ହୋଇଲା ଏକ ବାପ ॥
ଛପନ ଗଣ୍ଡା ଯୁଗକୁ ଆଇଷ ପାଇଥିଲା ।
ଏବେ ସେ ସୀତାଙ୍କୁ ଚୋରାଇ ପ୍ରାଣଦେଲା ॥
ଜଗତେ ଅପଛାତି ପାଇଲା ଲଙ୍କେଶ୍ୱର ।
ସିଂହାସନ ତଳେ ଖଟାଇଲା ସକଳ ସୁର ॥
ତାହାର ଭାଗରେ ତୁ ନୋହୁଂନା ଭଗାରି ।
ତୋହୋର ଭାଗ୍ୟରେ ଯେ ଅଛି ଯଶଶିରୀ ॥
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଦେହ ଘେନିଥିବୁ ।
ରାକ୍ଷାସ ଇନ୍ଦ୍ରପଦେ ଲଙ୍କାରେ ବିଳସିବୁ ॥୪୦
ବିଷ୍ଣୁର ଭଗତ ବୋଲି ବୋଲିବେ ତୋତେ ଲୋକେ ।
ତୋହୋର ମୁଖ ଦେଖି ତରିଯିବେ ଥୋକେ ॥
ତୁ ପୁଣ୍ୟ ପୁରୁଷ ଜଗତ ହିତକାରୀ ।
ଦୁତୀ ନାରାୟେଣ ତୋତେ ନାହିଁ ପଟାନ୍ତରି ॥

ତୁ କିମ୍ପା ଆରତ ହୋଉ ମହାରାଜ ।
ତ୍ରୈଲୋକ୍ୟର ସମ୍ପଦ ତୋତେ ସମର୍ପିବି
ଆଜ ॥
ଏ ଯେ ମାତେଳି ଦେଖ ଗନ୍ଧର୍ବ
ସେନାପତି ।
ଏହାର ପୁତ୍ରକୁ ମାଇଲା ପୌଲସ୍ତି ॥
ଏ ପୁଣ ଦେହ ବହି ଅଛଇ କଷ୍ଟ ସହି ।
ବିଧାତା କଲା କଥା ମେଣ୍ଟଣ ନଯାଇ ॥୫୦
ଆସ ଆସ ବିଭୀଷେଣ ମୋହୋର
ବୋଲକର ।
ଆନନ୍ଦ କାହେ ମୋତେ ବିରସ ନ କର ॥
ଏ ତୋହୋର ବିକଳ ମୁଁ ନ ପାରଇ ସହି ।
ଚିନ୍ତା ଭରେ ବ୍ୟଥା ପାଉଛି ମୋର ଦେହୀ ॥
ଏତେ ଶୋକ ଯେବେ ଭାଇକି ତୋର
ଅଛି ।
କିମ୍ପାଇ ମାରନ୍ତି ଆନେ ବିଶ୍ରବାର ବଚ୍ଛି ॥
ସୀତାକୁ ମୁରୁଛି ବାହୁଡ଼ିଣ ଯାନ୍ତି ।
ତୋହାର ଅସନମାନେ ଦଣ୍ଡେହେଁ ନ
ରହନ୍ତି ॥
ତୁ ସେ ପ୍ରାଣ ମୋର ଅଟୁ ବିଭୀଷେଣ ।
ତୋ ତହୁଁ ଅଧିକ ମୋତେ ନୁହଇଁ
ଲକ୍ଷ୍ମଣ ॥୬୦
ଏବେ ହେ ବୋଇଲେ ତୋର ଜୀଆଇଂ
ପାରଇ ଭାଇ ।
ତୋତେ ଯେଣେ ହିତ ମୋତେ ସେ
ଯୋଗାଇ ॥
ସୀତା ଘେନି ପଛେ ସେହୁ କରୁ ଘର ।
ଉଠ ଉଠ ବିଭୀଷେଣ ଶୋକ ତୁ ନକର ॥
ଶୁଣି ନଉକେଶା ତନୟେ ଉୟେ କଲା ।
ଶୋକ ସମ୍ଭାଳି ପାୟେ ପଡ଼ି ଶୋଇଲା ॥
ଉଠି ଉଭାହୋଇ ସେ କହଇ ସିଧ୍ୟାନ୍ତ ।
କିମ୍ପା ତୁ ଅସିଧ୍ୟାନ୍ତ କହୁ ସୀତାକାନ୍ତ ॥
ରାବଣ ଜ୍ୟେଷ୍ଠ ମୋହୋର ଦିଗପାଳ ସମ ।
ତାହାର ପ୍ରାଣ ହାଦେ ହରିଲାକ ଯମ ॥୭୦
ମୁହିଁ ଯେବେ ଶୋକ ନ କରିବି ତାହୁଁ
ତାହୁଁ ।

ଲୋକାଚାରେ ଆନେ ପଶିବି ମୁହିଁ କାହୁଁ ॥
ତୁହି ବୋଲିବୁ ମୋହ୍ରା ଦଇତେ ନିର୍ଦ୍ଦୟା ।
ଶୋକ ସନ୍ତାପ ନ ପଶଇ ଏହାଙ୍କର କାୟା ॥
ସହୋଦର ଜ୍ୟେଷ୍ଠ ଭାଇ କି କୂଟେ
ମରାଇଲା ।
ଏଡ଼େ ଯଶ ଗୋଟା ଏହାରେ ନାଶଗଲା ॥
ମୁହିଁ ତାହାର ଶତ୍ରୁ ସେ ମୋହୋର ବଇରୀ ।
ଚୋରାଇ ଯେବେ ସେ ଆଣିଲା ତୋର
ନାରୀ ॥
ତେଣୁ ସେ ନାରାଜ ଘେନିଲା ତାର ପରାଣ ।
ଏବେ ମୋ ଭାଳିବାର ଦେବ ଅଟଇ
ଅକାରଣ ॥୮୦
ଏ କିମ୍ପା ସୋଦର ନ ପାଇଲା ବ୍ୟଥା ।
ଦିଗପାଳ ସମାନେ ଅଟଇ ଦଶମଥା ॥
ଏସନେକ ବିଚାରି ଶୋକ ମୁହିଁ କଲି ।
ଲଙ୍କାଗଡ଼ ଲୋକଙ୍କୁ ଅଭୟେ ବର ଦେଲି ॥
ମୁହିଁ ଯେବେ ନ କାନ୍ଦନ୍ତି ସୋଦରିମା
ପଣେ ।
ଦେଶ ଛାଡ଼ି ଦଇତେ ପଳାନ୍ତେ ଏଣେ
ତେଣେ ॥
ବିଚାର କରନ୍ତେ ରାବଣେଶ୍ୱର ଏବେ
ମଲା ।
ବିଭୀଷେଣ ବୁଦ୍ଧିରେ ସଗୋତ୍ର କ୍ଷୟେ ଗଲା ॥
ଏବେ ଏହିକ୍ଷଣି ମାରିବ ଆମ୍ଭନ୍ତ ।
ଏହାର ବଚନେ ସେ ଚଳନ୍ତି
ସୀତ୍ୟାକାନ୍ତ ॥୯୦
ଯେସନେକ ଭାଳି ଦଇତେ ତ୍ରାସ ପାନ୍ତେ ।
ଏହିକ୍ଷଣି ଲଙ୍କା କଟେକ ଛାଡ଼ିଯାନ୍ତେ ॥
ଧନରତ୍ନଭଣ୍ଡାର ହୁଅନ୍ତା ସବୁ ଜୂର ।
ଅଗ୍ନି ଘେନି ଦହିନ୍ତ୍ୟ କରନ୍ତେ ତେଡ଼େ ପୁର ॥
ଏବେ ସେ ଯେ କଥା ନୋହିବ ଦେବ
କିଛି ।
ଅସୁରେ ବୋଲିବେ ବିଭୀଷେଣ କାନ୍ଦୁଅଛି ॥
ଯଦ୍ୟପି ଶତ୍ରୁ ତହିଁ ଶରଣ ପଶିଲା ।
ରାଗକ୍ରୋଧ ଘେନି ସଂଗୋତ୍ର ମରାଇଲା ॥
ଭାଇ ମଲେ ପୁଣି ସେ ନ ପାରିଲା ମୂର୍ଚ୍ଛି ।

ବାରତା ପାଇଲୁ ଏବେ ଧରିଣ
କାନ୍ଦୁଅଛି ॥୧୦୦
ରାବଣକୁ ଯେବେ ଅଛି ଏତେକ
ସେନେଧ ।
ତାହା ଯୋଗୁଁ ଆମ୍ଭଙ୍କୁ ନୋହିବ ବିରୋଧ ॥
ଯଦ୍ୟପି ରଘୁନାଥ କରିବେ କୋପ ଚିତ୍ତ ।
ବିଭୀଷେଣ ବୋଲିବ ଶୁଣିମା ଦଶରଥ ପୁତ୍ର ॥
ଯେ ତୋହୋର ଦୋରେହା ମାଇଲୁ
ଦଶଗିରି ।
ଅଦୋଷୀ ଲୋକଙ୍କୁ କିମ୍ପା କୋପକରି ॥
ଏସନେକ ବୋଲି ପ୍ରବୋଧିବ ରାମ ।
ବିଭୀଷେଣ ବୋଲକୁ ଛାଡ଼ିବେ ରାମ ତମ ॥
ଏସନେକ ଭାଳେଣି ଭାଳିବେ
ଲଙ୍କାଲୋକେ ।
ଯେ ଯାହାର ଠାବେ ରହିବେ
ନିଶଙ୍କେ ॥୧୦
ଏକଥା ବିଚାରି ମୁହିଁ ଶୋକ କଲି ।
ଇହଲୋକ ପରଲୋକ ଦୁହିଙ୍କି ଜିଣିଲି ॥
ତୁ କିମ୍ପା ବୋଲୁ ମୁଁ ରାବଣକୁ ଜୀଆଂଇବି ।
ଜନକ ଦୁଲଣୀ ସହିତେ ମୁରୁଛିବି ॥
ଏ ମୋତେ ଅପାର ଶୁଭିଲାକ ମନ୍ଦ ।
ତୋହ ତହୁଁ ମୋହୋର ସେ ବଇରୀ
ଦଶକନ୍ଧ ॥
ତୋହୋର ଭାରିଯାକୁ ଆଣିଲାକ ହରି ।
କହିଲାକୁ ମୋତେ ପ୍ରାଣେ ପକାଉଥିଲା
ମାରି ॥
ସେ ଗୁଣ ଖଣ୍ଡି ମୁଁ ମୂର୍ଚ୍ଛିବି କେମନ୍ତେ ।
ମିଛେହେଁ ଶୋକକରି ପଶିଲି
ଲୋକମତେ ॥୨୦
ତୁ ତାହା ନ ବୁଝିଲୁ କଉଶଲ୍ୟା ସୁତ ।
ବୋଇଲୁ ରାବଣକୁ ଦେବଇଂ ଜୀବିତ ॥
ତୋହୋର ପରା ପ୍ରଭୁ ଯେମନ୍ତ କଥା କହୁ ।
ମଲାଲୋକ ପ୍ରଭୁ ଜୀଇଂବକି ଆଉ ॥
ଚାରିଯୁଗରେ ତ ମରିବା କଥା ସତ ।
ମଲେ ଜୀବଜନ୍ତୁ ନପାନ୍ତି ଜୀବିତ ॥
ତୁ ଯେବେ ଜୀଆଇଂ ପାରିବୁ ଦାଶରଥି ।

କେତେ ସନ୍ୟ ମୋର ମରିନାହାନ୍ତି ଏଥି ॥
ଯେହାନ୍ତ ଜୀଆଂଇ ଦେଉକିନା ରଘୁକୁଳ ସାଇଂ ।
ଏ ଲଙ୍କାଗଡ଼ରେ ସଇନି ଥାଠ କିଛି ନାହିଂ ॥୩୦
ଅଦୋଷୀ ଲୋକ ଏଥି ମରିଛନ୍ତି ସିନା ।
ଯେଥୁ ଥୋକାଯେତ ଜୀଆଇଂ ଦେଉକିନା ॥
ମୋତେ ଲଙ୍କାଗଡ଼େ କରିବୁ ନୃପବର ।
ବଳ ନଥିଲେ କେମନ୍ତେ ରଖିବି ଏ ପୁର ॥
ରାବଣ ଜୀଇଂଲେକି ମୁଂ ହୋଇବି ମହୀପାଳ ।
ତୋହର ଆଜ୍ଞା ଦେବ ହୋଇବ ବିଫଳ ॥
ଦଶଗ୍ରୀବ ନଜୀଉଂ ନ ଜୀଉଂ କୁମ୍ଭକର୍ଣ୍ଣ ।
ନ ଜୀଉଂ ଇନ୍ଦ୍ରଜିତ ନ ଜୀଅନ୍ତୁ ଦୁଷ୍ଟ ସନ୍ୟ ॥
ପୁତ୍ର ନାତି ଦୁଷ୍ଟ ଦର୍ପିଷ୍ଟ ନ ଜୀଅଂନ୍ତୁ ।
ଗଜ ଅଶ୍ୱ ପାଦାନ୍ତି ଏମାନେ ପ୍ରାଣ ପାନ୍ତୁ ॥୪୦
ଜୀଆଇଂ ପାରୁ ଯେବେ କର କିନା ଏହା ।
ଶୁଣିକରି ଅଳପ ହସିଲେ ରଘୁରାହା ॥
ଏସନେକ ସମୟେ ମନ୍ଦୋଦରୀ ରାଣୀ ।
ସାଙ୍ଗେ ଅଛି ତାର ଅନେକ ତରୁଣୀ ॥
ସ୍ୱାମୀର ନିଧନ ଶୁଣିଲା ବାଳୀ କର୍ଣ୍ଣେ ।
ଆରତ ହୋଇଲେ ଲଙ୍କାର ସର୍ବଜନେ ॥
ପଳାଇ ମନ କଲେ ଘରଦ୍ୱାର ଛାଡ଼ି ।
ବୋଇଲେ ଏହିକ୍ଷଣି ପଡ଼ିବ କପିଧାଡ଼ି ॥
ଶୁଣି ବାରତିଆ କହିଲାକ ଯାଇଂ ।
ନ ପଳାଅ କେହି ହୋ କିଛିହିଂ ଭୟେ ନାହିଂ ॥୫୦
ରାବଣ ପଡ଼ିବାରେ ବିଭୀଷେଣ କାନ୍ଦଇ ।
ବସ୍ତ୍ର ନ ସମ୍ଭାଳଇ ସେ କେଶ ନ ବାନ୍ଧଇ ॥
ଗୁଣ ସୁମରି ସେ ଅନେକ ରୋଦନ କରଇଂ ।
ଭାଇ ଭାଇ ବୋଲି ଭୂମିରେ ମୁଣ୍ଡ କୋଡ଼ଇଂ ॥
ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀ ହନୁମନ୍ତ ।
ଅନେକ ତିଆରିଣ କହଇ ଜୟୋବନ୍ତ ॥
ଅଙ୍ଗଦର ମୂଳେ ସେ ଅଷ୍ଟ ସେନାପତି ।
ଥାଟ ଯାକ ବେଢ଼ିଣ ବିଭୀଷେଣକୁ ତିଆରନ୍ତି ॥
ଶୋକ ନ ସମ୍ଭାଳି ଦଶଗ୍ରୀବର ଭାଇ ।
ରାଗେ ଥରହର ନ ଶୁଣେ କିଛିହିଂ ॥୬୦
ମୋହୋରହିଂ ମନକୁ ଏମନ୍ତ ହାଦେ ଗଲା ।
ଯାହା ସେ ବିଭୀଷେଣ ରାଗବେଳେ କଲା ॥
ଏବେ କ୍ରୋଧ ତାହାର କହିଲେ ନ ସରି ।
ତହୁଂ ଉଗୁଳି ସେ ପାଳିବ ଲଙ୍କପୁରୀ ॥
ଶୁଣି ନଗ୍ରଲୋକେ ମନ ଥୟ କଲେ ।
ନୁହଇଂକି ଏକଥା ବୋଲିଣ ବୋଇଲେ ॥
ଶ୍ରୀରାମ ବିଭୀଷେଣକୁ ବାନ୍ଧିଅଛି ପାଟ ।
ରାବଣକୁ ମାରି ତେତେ ଦେବଇଂ ଲଙ୍କରାଷ୍ଟ୍ର ॥
ଏକଥା ସେ ମାୟା ହୋ ନୁହଇଂ କଦାଣ୍ଡିତେ ।
ସତ୍ୟଶୀଳ ପୁରୁଷ ସେ ଦଶରଥ ସୁତେ ॥୭୦
ଭାରିଯା ଚୋରାଇଲା ବୋଲି ଏହା କଲା ।
ଯେଥିଆସି କେତେବେଳ ନ ମାଗିଲା ॥
ହନୁମନ୍ତ ଅଙ୍ଗଦ ଅଇଲେ ଦୁଇ ଘାନ୍ତି ।
ଦିନକେ ଦୁଇବେଳ ହାଦେଣ ମାଗିଯାନ୍ତି ।
ଅକାରଣେ ଦୋଷ ଅର୍ଜିଲା ଲଙ୍କସାଇଂ ।
ଶ୍ରୀରାମର ଏଥି କେଉଣ ଦୋଷ ନାହିଂ ॥
ଏସନେକ ବୋଲି ବିଚାରନ୍ତି ନଗ୍ରଲୋକେ ।
ଘଡ଼ିଦୁଇରେ ଜାଣିମା ବୋଲୁଛନ୍ତି ପୁଣ ଥୋକେ ॥
ପୁତ୍ର ଦାରା ଧନ ସକଳ ସଜ କରି ।
ଯେ ଯାହାର ଅନରୂପେ କରେ ଶସ୍ତ୍ର ଧରି ॥୮୦
ବାରତା ଜାଣିମାଯାଏ ସ୍ଥିର ହୋଇଛନ୍ତି ।
ନୋହିଲେ ସିନ୍ଧୁରେ ପଶିବା ବୋଲନ୍ତି ॥
କେ ବୋଲଇ ସମୋଦ୍ର ରାମଙ୍କୁ ନୋହେ ବଡ଼ ।
ସେତୁବନ୍ଧ ବାନ୍ଧି ଧଂସିଲା ଏଡ଼େ ଗଡ଼ ॥
କେ ବୋଲଇ ଆମ୍ଭେ କିକଲା ଅଛି ତାହାକୁ ।
ମାରି ପକାଇଲା ସେ କୋପିଲା ଯାହାକୁ ॥
ଆମ୍ଭେ ପଳାଇଲେ ସେ ଗୋଡ଼ାଇବ କାହିଂପାଇଂ ।
ଆମ୍ଭର ସ୍ଥାନେ ତାହାକୁତ କିଛିହିଂ ଦୋଷ କଲା ନାହିଂ ॥
ରାଜା ଆମ୍ଭର ରାବଣ ତାହାର ବୋଲେ ଥାଉଂ ।
ସେ ଯହିଂକି ପେଷଇ ତହିଂକି ଆମ୍ଭେ ଯାଉ ॥୯୦
ଏବେ ଆମ୍ଭର ସୁଖେ ଯୁଦ୍ଧକରି କିନା ।
ସେବକ ଲୋକେ ଆମ୍ଭେ ସବୁଙ୍କରି ସିନା ॥
ଏସନେକ ବୋଲି କରନ୍ତି ବିଚାର ।
ଯେ ଯାହା ଇଚ୍ଛାରେ ସେ ହୁଅନ୍ତି ଆତୁର ॥
ବୋଲେ ମନ୍ଦୋଦରୀ ନଗ୍ରଜନମାନନ୍ତ ବୋଧ ।
ରାବଣେଶ୍ୱର ଯେବେ ହୋଇଲା ପ୍ରାଣେ ବଧ ॥
ଭାଇ ବିଭୀଷେଣ ତାହାର ରାଜା ହୋଇଅଛି ।
ମାସେ ହେଲା ଅଭିଷେକ କଲେଣି ଦାଶରଥି ॥
ସେ ଅବଶ୍ୟ ଯେ ପୁରେ ହୋଇବ ଲଙ୍କପାଳ ।
ସତ୍ୟ କରିଛନ୍ତି ଦଶରଥଙ୍କର ବାଳ ॥୧୦୦
ଏବେ କେହି ତୁମ୍ଭେ ନ କର କିଛି ଚିନ୍ତା ।
ମୁହିଂ ପ୍ରବୋଧିବି ଯାଇ ଜାନେକୀର କାନ୍ତା ॥
ନେଉ ତାର ଭାରିଯା ନ ଭାଙ୍ଗୁ ମୋର ଦେଶ ।
ନଥିବ ଜାନେକୀ ଏଥି କାର୍ଯ୍ୟ ଅଛି କିସ ॥
ଏସନେକ ବୋଲି ଦୂତ ପମନ୍ତିଲାକ ରାଣୀ ।
ଶୁଣି ସନ୍ତୋଷ ହୋଇଲେ ଲଙ୍କାର ସମସ୍ତ ପ୍ରାଣୀ ॥
ବୋଇଲେ ଯାହା ଆଜ୍ଞା ଦେଲେ ରାଣୀ ମହାଦେଈ ।
ତାହାଙ୍କ ଆଗ୍ୟାଂ ଘେନି ଦେଶ ନ ଉଜାଡ଼ିବ କେହି ॥
ଆଉ ଗୋଳ ହେଲେ ରହିତ ନ ପାରିବୁ ।

ଲେଉଟ ବାରତା ପାଇବା ଯାଏ ଥିବୁ ॥୧୦
ଏସନେକ ବୋଲି ଲଙ୍କାର ନରନାରୀ ।
ଏଥୁ ଅନନ୍ତରେ ରାଣୀ ମନ୍ଦୋଦରୀ ॥
ତିନିକୋଟି ପଞ୍ଚାଶ ଲକ୍ଷ ମହାଦେଈନ୍ତ
ଘେନି ।
ପରିବାରୀନ୍ତ ଘେନି ଦଶଖର୍ବ କାମେନୀ ॥
ଭ୍ରୁଥା ମଲା ବୋଲି ଉଚ୍ଚସ୍ୱରେ ରୋଦନ
କଲେ ।
ନବର ଭିତରୁ ସେ ବାହାର ହୋଇଗଲେ ॥
କୋଳାହଳ ରାବ ଶୁଭଇ ଚଉପାଶ ।
ଲଙ୍କାଗଡ଼ର ଅସୁର ଅସୁରୀ ବିରସ ॥
ଜାନେକୀ ବାରତା ପାଇଲେ ରାବଣ ବଧ ।
ମନେ ମହାସ୍ୟତୀ ପତିକି କଲା ସଧ ॥୨୦
ଚିରେ ବିଚାରିଲେ କଷ୍ଟ ମୋର ଗଲା ।
ସ୍ୱାମୀ ମୋର ଭଲା କ୍ଷତ୍ରୀପଣ କଲା ॥
ତ୍ରିଜଟା ସହିତେ ସକଳ ରାକ୍ଷସୀ ।
ଚାଟୁ କଥା କହନ୍ତି ସୀତାଙ୍କୁ ବେଢ଼ି ବସି ॥
ଏଥୁ ଅନନ୍ତରେ ମନ୍ଦୋଦରୀ ରାଣୀ ।
ଉତ୍ତର ଗଡ଼ଦ୍ୱାରେ ବାହାର ତରୁଣୀ ॥
ଗଡୁ ବାହାର ହୁଅନ୍ତେ ଦିଶନ୍ତି ଯୁବତୀ ।
ରୋଦନ କରିବାରେ କମ୍ପଇ ବସୁମତୀ ॥
ଋକ୍ଷ କପି ସନ୍ୟ ଲେଉଟି ଚାହିଁଲେ ।
ଏମାନେ କେ କେ ଆସୁଅଛନ୍ତି
ବୋଇଲେ ॥୩୦
ଲୋକେ ବୋଇଲେ ରାବଣ
ରାଣୀହଂସମାନ ।
ସ୍ୱାମୀ ପଡ଼ିଲା ବୋଲି ସେ କରନ୍ତି ରୋଦନ ॥
ବିଭୀଷେଣ ଥିବାରେ ଯେ ଭରସା
ତାହାଙ୍କରି ।
ରାବଣ ମଲା ବୋଲି ସେ ଆସନ୍ତି
ଶୋକକରି ॥
ଏସନେକ ବିଚାରୁ ମିଳିଲେ ରାଣୀଗଣ ।
ଦେଖିଲେ ରଣେ ପଡ଼ିଅଛଇ ରାବଣ ॥
ଆହା ସ୍ୱାମୀ ବୋଲି ଧାଇଁଣ କୋଳକଲେ ।
ଦେଖି ରଘୁନାଥ ପଛକୁ ଘୁଞ୍ଚିଗଲେ ॥
ବିଭୀଷେଣ ସହିତେ ସୁଗ୍ରୀବର ଘେନି ।
ଆବର ଜାମ୍ୱେବ ସୁଷେଣ ମନ୍ତ୍ରୀ
ବେନି ॥୪୦
ଅଙ୍ଗଦ ହନୁମନ୍ତ ଗନ୍ଧମାରଦନ ।
ଅଷ୍ଟ ସେହ୍ନା ଆବର ଯୂଥପତିମାନ ॥
ମଲ୍ଲୁ ମହାମଲ୍ଲୁ ବୀରମାନନ୍ତ ଘେନି ରାଇ ।
ଆଡ଼େ ହୋଇଗଲେ ଦେବ ରଘୁକୁଳ
ସାଇଁ ॥
ବୋଇଲେ ଯୁବତୀ ଯେବେ ଅଇଲେ
ସନେଧ ଭରେ ।
ଭାଳୁ ଉତପାତ ଦେଖନ୍ତୁ ସ୍ୱାମୀ ଧୀରେ ॥
ଏସନେକ ବୋଲି ଗଲେ ଅପସରି ।
ଏଥୁ ଅନନ୍ତରେ ରାଣୀ ମନ୍ଦୋଦରୀ ॥
ଉପରାଣ ବସ୍ତ୍ର ଲେଛି ପକାଇଲା ।
ଦଶ ବେଙ୍କ ମୁର୍ଦ୍ଧନି ଭୂମିରେ ମାଇଲା ॥୫୦
ଧୂଳି ସାଉଂଟିଣ ଭାଙ୍ଗିଲାକ ସ୍ୱର୍ଣ୍ଣ ଚୂଡ଼ି ।
ବେନିକର ଆଣି ବକସ୍ତଳେ କୋଡ଼ି ॥
ମଡ଼ା ଲେଉଟାଇ ଶୁଆଇଲା ନେଇ
କୋଡ଼େ ।
ସବୁ ମହାଦେଈ ରୋଦନ୍ତି ବିକଳେ ॥
କେହୁ କର ଧରି ବୁକୁରେ କୋଡ଼ି ହୋନ୍ତି ।
କେ ତାହାର ଚରଣ ଧରିଣ ବୋବାନ୍ତି ॥
କୋଳ କରିଣ କେ ମୁଣ୍ଡ ଧରି କାନ୍ଦି ।
ଦେହେ ଦେହେ ଲଗାଇ ବାହେ ବାହେ
ବାନ୍ଧି ॥
କେ ମୁଖକୁ ଅନାଇ ବାହୁନୁଛନ୍ତି ନାହା ।
କେବଣ ସୁନ୍ଦେରୀ ଯାଇ ଆଉଂଷନ୍ତି
ବାହା ॥୬୦
କେ ମୁକୁଟ କୁଣ୍ଡଳ ଚହିଂଣ ବୁକୁକୋଡ଼ି ।
କେ ମଲି ମଲି ବୋଲି ଯାଉଛନ୍ତି ଗଡ଼ି ॥
ହାର ଛିନାଇଣ କେ ସମ୍ଭାଳଇ କେଶ ।
କେହୁ ପ୍ରଶଂସଇ କଟିର ଝିନବାସ ॥
କେ ନାସା ଚିପନ୍ତି କେହୁ ତୁଣ୍ଡରେ ହାଥ
ଲାନ୍ତି ।
ଜୀଇଂ ଅଛି ବୋଲି କେ ମନେ କରେ
ଭ୍ରାନ୍ତି ॥
କେ ବୋଲଇ ସ୍ୱାମୀ ମୋର ଦିଗପାଳ ସମ ।
ତୋହୋର ପ୍ରାଣେ କିକେ ହାରିଲାକ ଯମ ॥
କେ ବୋଲଇ ନାଥ ପ୍ରତାପୀ ଲଙ୍କେଶ୍ୱର ।
କେ ବୋଲଇ ପ୍ରାଣ ବଲ୍ଲଭ
ମୋହୋର ॥୭୦
କାନ୍ଦନ୍ତି ସୁନ୍ଦେରୀ ଅନେକ ଗୁଣ ଘେନି ।
ବହୁତ ଶୋକ କଲା ମନ୍ଦୋଦରୀ ରାଣୀ ॥
କୋଡ଼ କରି ଧଇଲା ତେଡ଼େ ମଡ଼ା ଗୋଟା ।
ଦେଖିଲା କପାଳେ ବିଚିତ୍ର ଗନ୍ଧ ଟୋପା ॥
ହା ହା ସ୍ୱାମୀ ବୋଲି ଚୁମ୍ୱଇ ବଦନ ।
ତୋତେ ପଟାନ୍ତର ନୁହଇଂ ମଦନ ॥
ପ୍ରାଣର ପୀରତି ମୋର ଅଟୁ ଲଙ୍କସାଇଂ ।
ତ୍ରିଭୁବନେ ତୋତେ ଜିଣନ୍ତା କେହି ନାହିଁ ॥
ସାଂଗ୍ରାମେ ଅଜୟେ ଅଟୁ ମୋର ନାଥ ।
ମୁଣ୍ଡର ଉପର ମୁଣ୍ଡ ବହୁ ଦଶମାଥ ॥୮୦
ମନୁଷ୍ୟ ମାତ୍ରକେତୋତେ କେମନ୍ତେ
ମାଇଲା ।
ଏକଥା ତ ମୋତେ ସନ୍ଦେହ ଲାଗିଲା ॥
ଇନ୍ଦ୍ର ଦେବତାହୁଂ ଅଟୁ ବଡ଼ ସୁଖୀ ।
ଏବେ ତ ଭୋନାଥ ହୋ ହୋଇଲୁ
ନିରିମାଖୀ ॥
ଅମର ବର ତୋତେ ଦେଲାକ ପିତାମହ ।
ସେ କଥା ନୋହିଲା ଏବେ ହରାଇଲୁ
ଦେହ ॥
ଇନ୍ଦ୍ରଜିତ କୁମର ତୋର ବଳରେ
ବଳବନ୍ତା ।
ଚଉଦ ଭୁବନେ ତାକୁ ନାହିଁନା ଜିଣନ୍ତା ॥
ଦେବତାହୁଂ ବଡ଼ କି ଅଟଇ ରଘୁନାଥ ।
ମାୟାରେ ଧନୁଶର କି ଧରିଅଛି ହାଥ ॥୯୦
ମନୁଷ୍ୟକୃତ୍ୟ ଯେ ନୁହଇ ଏହାଙ୍କରି ।
କିମ୍ବା ସ୍ୱାମୀ ତାର ନ ଦେଲୁଟି ନାରୀ ॥
ଅନେକ ପ୍ରକାରେ ଚିଆରିଲି ତୋତେ ।
ମୋହୋର କଥା କାନେ ନ ଶୁଣିଲୁ
କଦାଚିତେ ॥
ମନ୍ତ୍ରୀ ଅମାନାତ୍ୟ ପୀରତି ବନ୍ଧୁଜନ ।
ମୂର୍ଖପଣେ କାହାରି ନ କଲୁ ବଚନ ॥
ଧାପ ପଣ କରି ଏବେ ପ୍ରାଣ ଦେଲୁ ।

ଏଡ଼େ ଯଶ ଶିରୀ ହରାଇଣ ଗଲୁ ॥
ଅନାସ୍ତ କରି ସ୍ୱାମୀ ଛାଡ଼ିଗଲୁ ଆମ୍ଭନ୍ତ ।
ଜଗତେ କହୁଥିଲେ ମନ୍ଦୋଦରୀ
କାନ୍ତ ॥୧୦୦
ସେ କଥା ବିଫଳ ହୋଇଲା ଏବେ ନାହା ।
ଧନ୍ୟ ଧନ୍ୟ ଠାକୁର ତୁ ଆଜାନୁ ବିଂଶବାହା ॥
ଦିବ୍ୟ ପଲଙ୍କ ତେଜି ଭୂମିରେ ଶୟନ କଲୁ ।
ଅକାରଣ କଥାରେ ଅନମିତେ ପ୍ରାଣ ଦେଲୁ ॥
ଚନ୍ଦ୍ରସମ ଲୋଚ୍ଛି ଜଗତେ କର୍ଦ୍ଦନ ।
ବିଧବା ଅବସ୍ଥା ଆମ୍ଭକୁ ଦେଲୁ ଦଶାନନ ॥
ଦେବତାମାନେ ଆସି ଖଟନ୍ତି ପାଦତଳେ ।
ତୁ ଏବେ ପଡ଼ିଲୁ ଋକ୍ଷ କପିଙ୍କର ମେଳେ ॥
ପୁତ୍ର ନାତି ଘେନି ଯମପୁର ଗଲୁ ।
ହାହା ସ୍ୱାମୀ ମୋତେ ନିକି ଏହା କଲୁ ॥୧୦
ମୁଣ୍ଡ ନ କାଟିଲା ମାଇଲା ତୋତେ କେଣେ ।
ଏଡ଼େ ବୀର ହତ ହୋଇଲୁ କେବଣ
ବାଣେ ॥
ଏତେ ବୋଲି ଚାହିଁଲା ଫୁଟିଅଛି ବୁକୁ ।
ଦେଖିଣ ଶଙ୍କା ପାଇଲା ମନକୁ ॥
ବିଚାରିଲା ସୂଚୀମୂନେ ଟାଳିଲା ପର୍ବତ ।
ହୃଦେ ବିଚାରିଲା ଧନ୍ୟ ରଘୁନାଥ ॥
ଅନ୍ତ ପିଇ ବୁକୁ ଦିଶଇ ପ୍ରାଣଲିଙ୍ଗ ।
ଇଅଂଳା ପିଅଂଳା ପିଳୋହି ଯେକ ସଙ୍ଗ ॥
ପିଠି ହାଡ଼ ଭାଙ୍ଗି ଦିଶୁଅଛି ଜଙ୍ଗା ।
ଦେଖିଣ ଆକୁଳେ କାନ୍ଦଇ ଅବଳା ॥୨୦
ତିନିକୋଟି ପଚାଶ ଲକ୍ଷ ମହାଦେଈ ।
ପରିବାରୀ ସହିତେ ମଧ୍ୟରେ ଦଶଗ୍ରୀବ
ପୂରାଈଂ ॥
ବିକଳେ ରୋଦନ କରନ୍ତି ତରୁଣୀ ।
ଆକାଶ ପୂରିଅଛି ମୁଖରାବ ଧ୍ୱନି ॥
କାହାର ଲୋଚନୁ ବହଇ ଅଶ୍ରୁଜଳ ।
କେ ସ୍ତମ୍ଭୀଭୂତ ହୋଇ ଚାହାଁନ୍ତି ଫଇଫଳ ॥
କାହାର ତୁଣ୍ଡ କଣ୍ଠ ନ ଫିଟଇ ଆଉ ।
କେହୁ ବାହୁନଇ ଆହାହା ମୋର ପ୍ରହୁ ॥
ଏସନେକ ରୋଦନ କରନ୍ତେଣ ନାରୀ ।
ବିଭୀଷଣଙ୍କୁ ଚାହିଁ ବୋଲନ୍ତି
ରାବଣାରି ॥୩୦
ଆହୋ ଲଙ୍କପତି ଆମ୍ଭର ବୋଲ ଶୁଣ ।
ଅନ୍ତଃପୁରକୁ ଏବେ ଯାଆନ୍ତୁ ନାରୀଗଣ ॥
ଆବର ରୋଦିଲେ କି ପାଇବେ ନିଜ
ସାଇଂ ।
ସେମାନଙ୍କୁ ପଠିଆଅ ପ୍ରବୋଧ କରାଇ ॥
ଦଶଗ୍ରୀବ ପିଣ୍ଡ କରାଅ ଦହନ ।
ଯେ ବିଧି ବିଧାନ ସାରହୋ ବହନ ॥
ମୁହିଁ ଏଥେଂ ଆଉ ନ ପାରଇ ରହି ।
ତୁ ଏବେ ସୁଖେଣ ବିଳସ ଲଙ୍କଭୂଇଂ ॥
ଯାହା ସେ ପୂର୍ବେ ଅଛଇ ତୋତେ ବୋଲି ।
ତୋହୋରେ ସିନା ଏଡ଼େ ଯୁଦ୍ଧରେ ଜୟୀ
କଲି ॥୪୦
ସୁଗ୍ରୀବର ରାଜା ହୋଇଲା ହେତୁ ମାତ୍ର ।
ତେବେ ସେ ଦହିଲି ମୁଂ ଦୈତ୍ୟଙ୍କର
ଗୋତ୍ର ॥
ତୁ ହୋ ବିଭୀଷେଣ ମୋହୋର ବୋଲ
ଶୁଣ ।
ଯେସନେକ ଭାଇ ତୋର ଅଟଇ ରାବଣ ॥
ମୁହିଁ ତେସନେକ ତୋର ଅଟଇ
ସୋଦର ।
ଏକଥା ବିଚାରିଥିବୁ ହୃଦୟର ॥
ରାବଣଙ୍କୁ ମାତ୍ର ନ ପାରିବି ତୋତେ ଦେଇ ।
ଯେ ମୋହୋର ବୋଲ ହୃଦରେ ଥିବୁ ବହି ॥
ଏବେ ଯୁବତୀକି ପଠିଆଅ ଅନ୍ତଃପୁର ।
ଦହନ କର ନେଇ ଭାଇକି
ତୋହୋର ॥୫୦
ଶୁଣିଣ ବିଭୀଷେଣ ମଥାରେ ହାଥ ଦେଇ ।
ମନ୍ଦୋଦରୀ ନିକଟକୁ ଖରହୋଇ ଯାଇ ॥
ଦେଖି ରାଣୀମାନେ ବୋଇଲେକ ବାଣୀ ।
ମନ୍ଦୋଦରୀ ବୋଇଲା ହୋ ନାଶିଲା
ବିଂଶପାଣି ॥
ଦିଗପାଳ ସମାନେ ଭାଇ ପଡ଼ିଲା ତୋର
ରଣେ ।
ଶ୍ରୀରାମଚନ୍ଦ୍ରଙ୍କର କିଛିତ ତୀକ୍ଷ ବାଣେ ॥
ବିଭୀଷେଣ ବୋଇଲା ନ ରୋଦ ଗୋ
ମାତୀ ।
ଆବର କି ପ୍ରାଣ ପାଇବ ତୋର ପତି ॥
ତୁହି ତିଆରିଲୁ ଗୋ ମୁହିଁ କହିଲଇଂ ।
ପଛାନ୍ତରେ ନାତେ ମାଇଲା ମୋତେ
ନେଇ ॥୬୦
ଲୋକଚାରେ ନ ରଖି ବାହାର କରିଦେଲା ।
ଲଙ୍କାଲୋକେ ବୋଇଲେ ଦୋଷ ନାହିଁ
ରାବଣ ନ ବୁଝିଲା ॥
ପ୍ରାଣର ବିକଳେ ପଳାଇଣ ଗଲି ।
ଶ୍ରୀରାମ ତହିଂ ଯାଇ ଶରଣ ପଶିଲି ॥
ମୋର କେଉଂ ଦୋଷ ବିଚାରିଣ କହ ।
ସୀତା ଅଭିମାନେ ମାଇଲେ ଦଶରଥ ପୁଅ ॥
ଶ୍ରୀରାମ ବୋଇଲେ ତୁମ୍ଭେ ନଅରକୁ ଯାଅ ।
ଏ ମୃତ୍ୟୁପିଣ୍ଡ ଆମ୍ଭେ କରିବୁ ଗୋ ଦାହ ॥
ଏଡ଼େ ବଡ଼ ଜଣ କିମ୍ପା ଅପାର ବେଳ
ଥିବ ।
ତୋହୋର ମୋହୋର ଥାନ୍ତେ କିଂପାଇ
ନିରେଖ ହୋଇବ ॥୭୦
ଶୁଣି ମନ୍ଦୋଦରୀ ଆତ୍ମା ସ୍ଥିର କଲା ।
ଶୋକ ସମ୍ଭାଳିଣ ସେ ବଚନ ବୋଇଲା ॥
ଏବେ ବଥା ପାଇଲୁ ହୋ ସୋରିମା
ପଣେ ।
ଏଡ଼େ ଅନର୍ଥ ଆନେ କରାଇଲୁ କେବଣ
ଗୁଣେ ॥
ବିଭୀଷେଣ ବୋଇଲା ତୁ ହୁଡ଼ିଲୁକିରେ
ରାଣୀ ।
ଜାଣୁଟିକି ପୂର୍ବେ ଅଛି ଯେବଣ କାହାଣୀ ॥
ବ୍ରହ୍ମା କହିଅଛି ନ ହରିବୁ ସୀତା ।
ପୁଣ ପୁଣ ସତ୍ୟ କରାଇଲା ଜଗତର ପିତା ॥
ସେ କଥା କିମ୍ପା ପାଶୋରିଲା ଜାନକୀ
ଚୋରାଇଲା ।
ତିଆରିଲା ଲୋକକୁ ବଇଗୁଣ ବୁଝିଲା ॥୮୦
ମୋତେ ମାରୁଥିଲା ଧର୍ମେ ପଳାଇଲି ।
ତୋତେହେଂ କୋପିବାର ବାରତା ପାଇଲି ॥
ଅଗତି ଲୋକ ହାଦେ କେବେହେଂ ନ
ଜୀଅଇଂ ।
ଏ ଧର୍ମ ମେଦିନୀ ପାପୀଙ୍କି ନ ସହଇ ॥

ମେରୁ ପର୍ବତ ତହୁଁ ବୁଝଇ ବଡ଼ ଗରୁ ।
ତୁ ପୁଣ୍ୟ ସ୍ତିରୀ କିମ୍ପା ବିଚାର ନ କଲୁ ॥
ମନ୍ଦୋଦରୀ ବୋଇଲା ନୁହଇ କଥା ଆନେ ।
ଚିରକାଳ ନ ବର୍ତ୍ତନ୍ତି ଦୁଷ୍ଟ ଲୋକମାନେ ॥
ସ୍ୱାମୀ ପୁରୁଷ ବୋଲି ଶୋକହିଁ ମୁହିଁ କରି ।
ଅତିହିଁ ଅନାୟ ଅରଜିଲା ଦଶଶିରି ॥୯୦
ଯେ ଯାହାର କର୍ମ ଘେନି ବାଟ ବହିଗଲା ।
ବିଧାତା ଆଣି ତୋତେ ଏତେ ଶିରୀ ଦେଲା ॥
ସୁଖେ ବିଳସ ଏବେ ରତ୍ନମୟେ ପୁର ।
ଶୁଣି ବିଭୀଷେଣ ଯୋଡ଼ଇ ବେନିକର ॥
ତୁ ଯେବେ ପ୍ରସନ୍ନ ହୋଇବୁ ମହାଦେଈ ।
ତେବେ ସେ ପ୍ରାପତ ହୋଇବ ରତ୍ନମହୀ ॥
ରାଣୀ ବୋଇଲା ତୋତେ ଶ୍ରୀରାମ
ଦେଇଅଛି ।
ମାସେ ହେଲାନି ପାଟ ଦେଇଛି ରଘୁବଚ୍ଛି ॥
ମୋହୋର ନାସ୍ତି କଲେ ହୋଇବ ପୁଣ
କିସ ।
ଅନୁଗ୍ରହେ ଦେଇଅଛନ୍ତି ରଘୁ ଶିଷ ॥୧୦
ବିଭୀଷେଣ ବୋଇଲେ ଯଦ୍ୟପି ରାମ
ଦେଲେ ।
ତୋହର ସ୍ୱାମୀ ଏହାପୂର୍ବେ ଅର୍ଜ୍ଜିଥିଲେ ॥
ତାହାର ଅନ୍ତେ ତୁ ରାଜ୍ୟରେ କାରିଣୀ ।
ତୋତେ କି ବାହାର ଗୋ କରିବେ ରଘୁମଣି ॥
ତୁ ପାଟ ବଂଶୀ ଲଙ୍କାରେ ଅଧିକାରୀ ।
ତୋତେ ଆରାଧି ଥିବଇଂ ସେବା କରି ॥
ଶୁଣି ଭିତର ମନେ ସୁନ୍ଦରୀ ହସିଲା ।
ଦିଅର କଥା ଶୁଣି ସେ ଶରଧା ପାଇଲା ॥
ଛାଡ଼ିଲା ମଡ଼ା ସେ ପତିର ସୁହାଂସ ।
ବୋଇଲା ଏଥିରେ ନାହିଁ କିଛି ଦୋଷ ॥୧୦
ଯାହା ସେ ବିଧାତା ପୂର୍ବରେ କହିଅଛି ।
ନିଜ ପ୍ରତି ଉର୍ଭା ବିଭୀଷେଣ ଅଛି ॥
ସେ ସତ ହୋଇଲା ନିସତ ଲୋକ ଗଲା ।
ଏତେ ବୋଲି ମନ୍ଦୋଦରୀ ରାଣୀ ଯେ
ଉଠିଲା ॥
ସଉତୁଣୀମାନଙ୍କ ଘେନିଣ ବାହୁଡ଼ି ।
ଧୀର ଧୀର କରି ବଢ଼ାଇ ପାଦ ଯୋଡ଼ି ॥

ବିରସ ମନରେ ଗମନ ସର୍ବେ କଲେ ।
ନିଜ ଲଙ୍କା ଗଡ଼କୁ ସେ ବୋଲି ଚଳି ଗଲେ ॥
ଉତ୍ତର ଗଡ଼ ଦ୍ୱାରେ ହୋଇଲେ ପରବେଶ ।
ଅନ୍ତଃ ପୁରେ ମିଳିଲେ ସକଳ ରାଣୀ
ହଂସ ॥୨୦
ମହାଦେଈମାନେ ଯହୁଁ ବାହୁଡ଼ିଣ ଗଲେ ।
ଲଙ୍କା ଗଡ଼ ଲୋକେ ଭୟ ପାଉଥିଲେ ॥
ପଳାଇ ଯିବାକୁ ବୁଧି ଧରି ଥିଲେ ମନେ ।
ସେ କଥା ଛାଡ଼ିଲେ ସେ ରାଣୀଙ୍କ ବଚନେ ॥
ବିଭୀଷେଣର ତିଆରିବା ବାରତା
ପାଇଥିଲେ ।
ସନ୍ତୋଷ ହୋଇ ଅସୁରୀ ରହିଲେ ॥
ଏଥୁ ଅନ୍ତରେ ବିଭୀଷେଣ ବୀର ।
ମହାଦେଈମାନେ ଯହୁଁ ଗଲେ ଅନ୍ତଃପୁର ॥
ଶ୍ରୀରାମ ଛାମୁରେ ଜଣାଇଲେ ଯାଇଂ ।
ରାଣୀ ହଂସ ବାହୁଡ଼ି ଗଲେ ରଘୁସାଇଂ ॥୩୦
ରାଘବ ବୋଇଲେ ନ କର ଯେ ହେଳ ।
ମୋହ ଯିବାକୁ ଯେ ନାହିଁ ଆଉ କାଳ ॥
ଏବେ ରାବଣକୁ କରସି ଦହନ ।
ମୋହର ସନିଧିରୁ ଚଳନ୍ତୁ ବହନ ॥
ସେନା ସେନାପତି ତୋହର ସଙ୍ଗେ ଯାନ୍ତୁ ।
ରକ୍ଷ କପି ବଳ ପଟୋଆରି ଥାନ୍ତୁ ॥
ଅଗର ଚନ୍ଦନ କର୍ପୂର ପୁରେକ ସଞ୍ଚ ।
ନେତ ପାଟ ପତନୀ ଚାନ୍ଦୁଆ ନେଇ ଖଞ୍ଜ ॥
ଶୁଣି ବିଭୀଷେଣ ହୋଇଲା ତ୍ରିପୁତି ।
ଶ୍ରୀରାମ ଆଜ୍ଞାରେ ବାହୁଡ଼ିଲାକ ଧାତି ॥୪୦
ସେନା ଯୂଥପତି ଘେନିଣ ସଙ୍ଗର ।
ମିଳିଲେ ଯହିଂ ପଡ଼ିଅଛି ଦଶଶିର ॥
ଗୁଣ ପ୍ରଶଂସିଣ ବିକଣ ହୋଇଲେ ।
ଶୁକ ସାରଣ ବେନି ମନ୍ତ୍ରୀକି ହକାରିଲେ ॥
ଗଉରବ କରି ଗଡ଼କୁ ପଠିଆନ୍ତି ।
ଭଣ୍ଡାରୁ ନେତ ପାଟ ଚାନ୍ଦୁଆ ଆଣନ୍ତି ॥
ଚନ୍ଦନ ଅଗରୁ କର୍ପୂରର ଗୁଣ୍ଡି ।
ଶ୍ମଶାନ ଭୂମିରେ ସମ୍ପଦ କରି ମଣ୍ଡି ॥
ବିଭୀଷେଣ ବଚନେ ପୁରୋହିତ ଦାହକରି ।
ଦୋହରା ଘରୁ ଅଗ୍ନି ଆଣିଲେ ବେଗ
କରି ॥୫୦

ଜୁଇ ରଞ୍ଚିଣ ଜାଳିଲେ ହୁତାଶନ ।
ବିକରାଳ ହୋଇ ଅଗ୍ନି ଲାଗିଲା ବହନ ॥
ରାବଣେଶ୍ୱରକୁ ନେଇ ସ୍ନାହାନ କରାଇଲେ ।
ନୂଆ ବସ୍ତ୍ର ପିନ୍ଧାଇ ଅଳଙ୍କାର ମଣ୍ଡିଲେ ॥
ଗୋତ୍ର ଲୋକେ ମଡ଼ା ବହି ଘେନି ଗଲେ ।
ଜଳନ୍ତା ହୁତାଶନ ଭିତରେ ଶୁଆଇଲେ ॥
ମହାନାଦ ନାମେ ରାବଣର ପୁତ୍ର ଥିଲା ।
ସେ ଆସି ପିତାକୁ ମୁଖାଅଗ୍ନି ଦେଲା ॥
ନାନା ଉପକର୍ମ ପ୍ରୋହିତ ଭିଆଇଲା ।
କ୍ରିୟା ଘେନି ପୁତ୍ର ନିଜପୁରେ ଗଲା ॥୬୦
ଏଥୁ ଅନନ୍ତରେ ରାବଣ ଦହନ ।
ବେଢ଼ିବାକୁଅଛି ଅନେକ ବାଦ୍ୟମାନ ॥
ଗୁଆ ଘୃତ ଜାଳି ନିଉଡ଼ନ୍ତି ଗନ୍ଧ ।
ପହଡ଼କେ ଧୂମାନ୍ତ ହୋଇଲା ଦଶକନ୍ଧ ॥
ମହାଦେଈମାନେ ପୁଣି ସ୍ନାହାନକୁ ଗଲେ ।
ଅସୁର ଘରର ଆଚାର ଭିଆଇଲେ ॥
ଏଥୁଅନନ୍ତରେ ବିଭୀଷେଣ ବୀର ।
ସେହ୍ନା ଯୂଥପତି ସହିତେ ସୁଗ୍ରୀବର ॥
ରାବଣ ଦହନ ସାରି ସମୁଦ୍ରେ ସ୍ନାନ କଲେ ।
ବାହୁଡ଼ି ଶ୍ରୀରାମ ସନ୍ନିଧିକୁ ଗଲେ ॥୭୦
ଦର୍ଶନ କରିଣ ଜଣାଇଲେ ସର୍ବ କଥା ।
ଶୁଭେ ଦହନ ଦେବ କଲୁ ଦଶମଥା ॥
ଶୁଣି ରଘୁନାଥ ପରମ ତୋଷ ମନ ।
ସୁଗ୍ରୀବରକୁ ଚାହିଁ ବୋଲନ୍ତି ବଚନ ॥
ଭୋ ମଇତ୍ର କପି ରାଜା ମାତେଳି ଏବେ
ଯାଉ ।
ରାବଣ ମଲା ବାରତା ଦେବ ଇନ୍ଦ୍ର ପାଉ ॥
ହୋଇ ଦେବ ବୋଲି ବୋଇଲା ସୁଗ୍ରୀବର ।
କିମ୍ପା ଦେବଦୂତ ଥିବ ଅସୁର ପୁର ॥
ଶ୍ରୀରାମ ଆଜ୍ଞାରେଇ ମାତେଳି ଚଳିଗଲା ।
ବ୍ରହ୍ମାଦି ଦେବତାଙ୍କ ଆଗରେ କହିଲା ॥୮୦
ରଘୁନାଥ ସମର ଦେଖିଲି ବେନି ଡୋଳେ ।
ଦଶଗ୍ରୀବ ପ୍ରାଣ ହାରିଲା ବିଷମ ରୋଳେ ॥
ଶୁଣି ଦେବତାଏ ସାଧୁ ସାଧୁ କରି ।
ଆଦିନାଥ କହନ୍ତି ଶୁଣ ଗୋ ଶାକାମ୍ଭେରୀ ॥
ଏଥୁ ଅନନ୍ତରେ ଲଙ୍କାରେ ରାମରାହୁ ।

ସୁଗ୍ରୀବରକୁ ଚାହିଁ ଆଜ୍ଞାଦେଲେ ପ୍ରଭୁ ॥
ଯାହା ସେ ପ୍ରତିଜ୍ଞା କଲଇଁ ସିନ୍ଧୁ ତଟେ ।
ଲଙ୍କାରେ ବିଭୀଷେଣକୁ ବସାଇବି ପାଟେ ॥
ଲକ୍ଷ୍ମଣ ସଙ୍ଗତେ ସମସ୍ତେ ହେଂ ଯାଅ ।
ରାବଣର ଭାଇକି ଅଭିଷେକ କରାଅ ॥୯୦
ପାତ୍ର ଅମାନାତ୍ୟ ଚତୁରାଙ୍ଗ ବଳ ଥାଇଂ ।
କରସି ନୃପବର ହୋ ଆଗଭର ହୋଇ ॥
ଏସନେକ ବିଚାରୁ ମିଳିଲେ ବିଭୀଷେଣ ।
ହନୁମନ୍ତକୁ ଚାହିଂ ବୋଲନ୍ତି ରଘୁରାଣ ॥
ଯାସି ମାରୁତି ହୋ ସୀତ୍ୟାକୁ ବେଗେ ଜଣା ।
ଏ ମୋହର ନାରାଙ୍କେ ବଧ କଲି ରାବଣା ॥
ଶୁଣି ପରମ ତୋଷ ପବନ ନନ୍ଦନ ।
ଆଦିତ୍ୟ ଉଦୟେ ଯେହ୍ନେ ବିଘସଇ ପଦ୍ମ
ବନ ॥
ତେସନେକ ସାନନ୍ଦ ହୋଇଣ ହନୁମନ୍ତ
ଯାଇ ।
ଲଙ୍କାଗଡ଼ ଭିତରେ ଅଶୋକ ବନେ
ପାଇ ॥୧୦୦
ମାରୁତି କି ପେଷି ଶ୍ରୀରାମଚନ୍ଦ୍ରରାୟେ ।
ତୀର୍ଥରାଜ ଜଳ ତତକ୍ଷଣେ ଅଣାଏ ॥
ଲକ୍ଷଣ ସୁଗ୍ରୀବରକୁ ଲଙ୍କାକୁ ପେଷନ୍ତି ।
ହକରା କଲେ ଶୁକ ସାରଣେ ବେନି ମନ୍ତ୍ରୀ ॥
ଶୁକ ସାରଣେ ଦର୍ଶନ ଆସି କଲେ ।
ତାହାଙ୍କୁ ଶ୍ରୀରାମ ଗଉରୋବ କଲେ ॥
ଆହୋ ମନ୍ତ୍ରୀମାନେ ଆମ୍ଭର ବୋଲ ଶୁଣ ।
ଲଙ୍କାରେ ନୃପତି ଆମ୍ଭେ କରିବୁ
ବିଭୀଷେଣ ॥
ମନ୍ଦୋଦରୀ ରାଣୀ ହୋଇବାକ ପାଟ ।
ତେବେ ସେ ସୁସ୍ଥ ହୋଇବ ଲଙ୍କରାଷ୍ଟ୍ର ॥୧୦
ଲକ୍ଷଣ ସୁଗ୍ରୀବର ସଙ୍ଗରେ ତୁମ୍ଭେ ଯାଅ ।
ମୟ ଦୈତ୍ୟ ଦୁହିତାକୁ ବୁଝାଇଣ କହ ॥
ମୁହିଂ ଯେ ପ୍ରତିଜ୍ଞା କଲଇଂ ପୂର୍ବ କାଳେ ।
ମୋହର ଭାରିଯାକୁ ଯେବେ ନେଲା
ଲଙ୍କପାଳେ ॥
ତୋହର ଭାରିଯାକୁ ଆନକୁ ଯେବେ
ଦିଅଇ ।
ତେବେ ସେ କ୍ଷତ୍ରିବର ବୀରଧୁ ବୋଲାଇ ॥
ଏସନେକ ସତ୍ୟ ମୁଂ କରିଅଛଇ ପୂର୍ବେ ।
ଧର୍ମ ବଳ ଘେନି ମୁଂ ମାଇଲି ଦଶଗ୍ରୀବେ ॥
ଏବେ ତାହାର ନାରୀକୁ ବିଭୀଷେଣକୁ
ଦେବି ।
ମୁହିଂକି ଅଜ୍ଞାନ ଆନକୁ ବିଳୋହିବି ॥୨୦
ସ୍ୱଭାବେ ରାବଣ ତ ଅଟଇ ଜ୍ୟେଷ୍ଠଭାଇ ।
ଭାଉଜ ଲେଖାରେ ବିଭୀଷେଣକୁ
ଯୋଗାଇ ॥
ଯାଅ ମନ୍ତ୍ରୀ ବେନି ଘେନି ବେଗେ ଆସ ।
ଶୁଣି ଶୁକ ସାରଣେ ହୋଇଲେ ହରଷ ॥
ଲକ୍ଷଣର ସାଙ୍ଗେ ଚଳଇ ବିଭୀଷେଣ ।
ଜମ୍ବେବ ସୁଗ୍ରୀବର ଅଙ୍ଗଦ ସୁଷେଣ ॥
ଶୁକ ସାରଣ ସହିତେ ମନ୍ତ୍ରୀ ବେନି ।
ଯାଆନ୍ତି ରକ୍ଷ କପି ଅନେକ ସଇନି ॥
ଲଙ୍କାରେ ପରବେଶ ଦେଖନ୍ତି ନରନାରୀ ।
କେ ବୋଲଇ ଅଇଲେ ଏ ବିଭୀଷେଣକୁ
ରାଜା କରି ॥୩୦
ମନ୍ଦୋଦରୀ ରାଣୀ ହୋଇବେ ପାଟ
ମହାଦେଈ ।
ଶୁଣି ଲଙ୍କା ଲୋକେ ପରମ ତୋଷ ହୋଇ ॥
ଏଥୁ ଅନନ୍ତରେ ସୁମିତ୍ରା ତନଏ ।
ରାଜାର ନବର ମଧ୍ୟରେ ଯାଇଂ ହୋଏ ॥
ଦେଖିଣ ପ୍ରଶଂସଇ ଧନ୍ୟ ହୋ ରାବଣ ।
କେବଣ ପାପେ ହରାଇଲୁ ଏଡ଼େ ବଡ଼
ପଣ ॥
ସ୍ୱର୍ଗର ସମାନେ ଅଟଇ ତୋର ପୁର ।
ସୁଖ ଭୋଗ କରି ନ ପାରିଲୁ ଦଶଶିର ॥
ଏସନେକ ବୋଲି ଆସ୍ଥାନ ଉପରେ ।
ଅଭିଷେକ ଯୋଗାଡ଼ ଅଣାଇଲେ
ସମ୍ଭର୍ବରେ ॥୪୦
ନଗ୍ର ମଣ୍ଡାଇଣ ଉଛେବ କରାଇଲେ ।
ମନ୍ଦୋଦରୀ ରାଣୀ ଭିତରୁ ଅଇଲେ ॥
ବାଡ଼ ଓହାଡ଼େଣ ରହିଲେ ସୁନ୍ଦେରୀ ।
ଶୁକ ସାରଣ ବେନି ଅନେକ ତିଆରି ॥
ଶୁଣ ଗୋ ଠାକୁରାଣୀ ଶ୍ରୀରାମଙ୍କର ଆଜ୍ଞା ।
ପୂର୍ବେ ଯାହା କରିଅଛନ୍ତି ପ୍ରତିଜ୍ଞା ॥
ସୀତାଙ୍କୁ ହରିଲା ବିଂଶ ଭୁଜଧାରୀ ।
ମୁହିଂ ଯେବେ ରାବଣକୁ ପାରିବିଟି ମାରି ॥
ତାହାର ଘରଣୀକି ଆନକୁ ବିଳୋହିବି ।
ତେବେ ସେ ଧନୁଶର ଏ ଭୁଜରେ
ବହିବି ॥୫୦
ଏସନେକ ବୋଲିଣ ଅଛନ୍ତି ଦୃଢ଼ କରି ।
ମହିଂମାସାଗର ଏବେସେ ମାଇଲେ
ଦଶଶିରି ॥
ତୋହର ଭଲପଣ ଗୋ ବାରତା
ପାଇଥିଲେ ।
କିମ୍ପା ଆନକୁ ବିଳୋହିବି ବୋଲିଣ
ବୋଇଲେ ॥
ପୁଣି ବିଚାରିଲେ ବିଭୀଷେଣକୁ ଦେବା ।
ଏ ମହାତ୍ମା ଯେବେ ଆମ୍ଭଙ୍କୁ କଲା ସେବା ॥
ସ୍ୱଭାବେ ରାବଣତ ଅଟଇ ଜ୍ୟେଷ୍ଠ ଭାଇ ।
ଭାଉଜ ଲେଖାରେ ବିଭୀଷେଣକୁ
ଯୋଗାଇ ॥
ମହାଦେଈପଣରୁ ତ ନକଲୁ ବାହାର ।
ଆମ୍ଭ ବୋଲ ଭାଙ୍ଗିବା କି ଯୁଗତ
ତୋହର ॥୬୦
ବାଳୀର ଭାରିଯାକୁ ସୁଗ୍ରୀବରକୁ ଦେଲୁ ।
ଆମ୍ଭର ଆଜ୍ଞା ପାଳିବାରୁ ଅନୁଗ୍ରହ କଲୁ ॥
ଅହିଲ୍ୟା ଯେ ଦୋଚାରୀ ହୋଇଣ
ପଡ଼ିଥିଲା ।
ଆମ୍ଭ ପାଦ ଲାଗି ମୁକତ ହୋଇଗଲା ॥
ଯେବେ ମନ୍ଦୋଦରୀ କରିବୁ ଆମ୍ଭ ବୋଲ ।
ତେବେ ଦୁଇକୁଳକୁ କଥା ରହିବ ଭଲ ॥
ଆମ୍ଭେ ସେ ଠାକୁର ସଂସାର ଅଧିପତି ।
ଆମ୍ଭଙ୍କୁ ସେ ଭଲେ ଜାଣଇ ମହାସତୀ ॥
ଲକ୍ଷ୍ମଣ ବହୁତ କହିଲେ ତିଆରିଣ ।
ଶୁକ ସାରଣ ସୁଗ୍ରୀ ଜମ୍ବେବ ସୁଷେଣ ॥୭୦
ପଚିଶ ଯୂଥପତି ଅଷ୍ଟ ସେହ୍ନା ହୋଇ ।
ବୋଲନ୍ତି ରାମ ଆଜ୍ଞା କର ଗୋ ମହାଦେଈ ॥
ଏସନେକ ଆଜ୍ଞା ଦେଲେକ ରାମରାଏ ।
ଆସ ଆସ କିଛି ନ ଭାଳ ଗୋ ମାଏ ॥

ଶୁଣି ମନ୍ଦୋଦରୀ ତବଦ ହୋଇଲା ।
ହୃଦପଦ୍ମ ମଧ୍ୟେ କଥାନ୍ତ ବିଚାରିଲା ॥
ବୋଇଲା ଯଦ୍ୟପି କରିବି କଥା ଶିଷ୍ଟ ।
ସୁମିତ୍ରା ପୁତ୍ରକୁ ଯେ ବୋଲନ୍ତି ବଡ଼ଦୁଷ୍ଟ ॥
ଅକାରଣେ ସୁପଲେଖୀର ଏ କାଟିଲା ନାକ କାନ ।
ଇନ୍ଦ୍ରଜିତ ପରାଏ ସଂହାରିଲା ମୋହୋର ନାନ ॥୮୦
ଶ୍ରୀରାମନ୍ତୁଂ ଅବୁଝା ଅଟଇ ସଉମିତ୍ରୀ ।
ବିଶେଷ ଆଜ୍ଞା ଭ୍ରଷ୍ଟ ନ ସହନ୍ତି କ୍ଷତ୍ରୀ ॥
ନାହିଂ ଯେବେ କରିବି କରିବେ ମୋତେ ଲଘୁ ।
ପ୍ରତିଜ୍ଞା ଏହାଙ୍କର ମୁଂ ଶୁଣିଅଛି ସବୁ ॥
ଏହାଙ୍କର ଘରଣୀକି ଯେବେ ଆନ ନେଲା ହରି ।
ଏହି ବିଳୋହିଲେ ପରକୁ ତାର ନାରୀ ॥
ବାଳୀର ଘରଣୀକି ଏ ସୁଗ୍ରୀବରକୁ ଦେଲେ ।
ଅହିଲ୍ୟା ସୁନ୍ଦେରୀ କି ସେ ପାଷାଣୁଂ ମୁକତି କଲେ ॥
ସୁଗ୍ରୀବର ଭାରିଯା ଯେ ରୋମା ନାମେ ନାରୀ ।
ଭାଇବୋହୂ ବାଳୀ ବଳେ ରମଣ କରି ॥୯୦
ଶ୍ରୀରାମ ସେ କଥା ବାରତା ପାଇଲେ ।
ଆପଣେ ହାତ ଧରି ସୁଗ୍ରୀକି ସମର୍ପିଲେ ॥
ଯେବେ ସେ ସୁହାଗୀ ସୁଗ୍ରୀବର ପ୍ରିୟବତୀ ।
ବିପୁରୀତ କଥା ସେ କରନ୍ତି ରଘୁପତି ॥
ଯେ ମୋହୋର କର୍ମେ ଅଛଇ ଯେବେ ଯେହେର୍ଣ୍ଣେକ ଯୋଗ ।
ରାବଣର ଅନ୍ତେ ହୋଇବି ବିଭୀଷେଣକୁ ଭୋଗ ॥
ନାହିଂ ବୋଇଲେ ହୋଇବ ଆଉ କିସ ।
ଯେଣେ ଯେବେ ରକ୍ଷା ହୋଇବ ମୋର ଦେଶ ॥
ରାଜ୍ୟ ଲୋକଙ୍କର ପାଇଂ କରିବି ଏସନ ମତ ।
ଯାହା ସେ କପାଳେ ଲିହିଛି ବିଧାତ ॥୧୦୦
ଏସନେକ ବୋଲି ଭାଳଇ ମନ୍ଦୋଦରୀ ।
ସଉତୁଣୀମାନେ ବୋଲନ୍ତି ଶୁଣ ଗୋ ସୁନ୍ଦେରୀ ॥
ନ କରସି ନାହିଂ ଗୋ ନୁହସି ବିମୁଖ ।
ଆମ୍ଭର କଟକେ ସିନା ଭୁଞ୍ଜିବା ଆମ୍ଭେ ସୁଖ ॥
ରାବଣ ପ୍ରାୟେ ସ୍ୱାମୀକି ମାଇଲା ଯେବର ବଇରୀ ।
ଆମ୍ଭଙ୍କୁ ଓପ୍ରୋଧ ସେ କେବଣ ଗୁଣେ କରି ॥
ଭଲ ସେ ହୋଇଲା ବିଭୀଷେଣକୁ ହାଦେ ଦେଲା ।
ରୁକ୍ଷ ମର୍କଟକୁ ଦିଅ ବୋଲି ନ ବୋଇଲା ॥
ତାହାର ବୋଇଲେଣ କରିବା ଆମ୍ଭେ କିସ ।
ଯେହେର୍ଣ୍ଣେକ କର୍ମେ ଲିହିଅଛି ଭବିଷ ॥୧୦
ଆମ୍ଭର ରାଜ୍ୟରେ ସିନା ହୋଇବା ଆମ୍ଭେ ରାଣୀ ।
ଦିଅର ସିନା ହୋଇବ ରାଜ୍ୟରେ କାରେଣୀ ॥
ହଉ ସନମତ କର ମହାଦେଈ ।
କ୍ଷଣେ ତୁନି ହୋଇ ମନ୍ଦୋଦରୀ କହି ॥
ଯେ ତୁମ୍ଭର ସମସ୍ତ ମନକୁ ଯୋଗାଇଲା ।
ଏ ମୋହୋର ବୋଇଲେ କି ହୋଇବ ଆନ କଲା ॥
ହୋଇବି ଦୋଚାରୀ ବସିବି ଯାଇଂ ପାଟେ ।
ଏଣେ ଯେବେ ସୁସ୍ଥ ହୋଇବ ଲଙ୍କରାଷ୍ଟେ ॥
ଶୁଣିଲେ ଶୁକ ସାରଣେ ମହାଦେଈର ବାଣୀ ।
ଭୋଖିଲା ଚାତକ ଯେହ୍ନେ ପାଇଲା ସ୍ୱର୍ଗପାଣି ॥୨୦
ଶୁଣିଣ ବୋଇଲେ ଗୋ ମାଜଣା ହୁଅ ଆସ ।
ଆମ୍ଭେ ଜଣାଉଂ ଯାଇଂ ସଉମିତ୍ରୀର ପାଶ ॥
ଶୁଣି ମହାଦେଈ ଭିତରକୁ ଗଲେ ।
ଯେ ବିଧିବିଧାନ ମାଜଣା ସାରିଲେ ॥
ପାଟେକ ପିନ୍ଧିଣ ପାଟେକ ଉପରାଣ ।
ନବରତ୍ନ ଅଳଙ୍କାର ଶ୍ୟରୀରେ ଆଭରଣ ॥
ବିବିଧ ବେଶ ହୋଇ ଅଇଲାକ ଯୁବତୀ ।
ମୁଦୁସୁଲୀ ପହଣ୍ଡ ମଣାଇ ଘେନିଯାନ୍ତି ॥
ଲକ୍ଷ୍ମଣର ଆଗେ ଜଣାନ୍ତି ମନ୍ତ୍ରୀ ବେନି ।
ତୋହୋର ଆଜ୍ଞାରେ ଅଇଲୁ ମନ୍ଦୋଦରୀ ଘେନି ॥୩୦
ଶୁଣିଣ ସନ୍ତୋଷ ହୋଲେ ଶ୍ରୀରାମର ଭାଇ ।
ବିଭୀଷେଣ ଅଇଲା ନୃପତି ହୋଇ ॥
ଲକ୍ଷ୍ମଣର ଚରଣେ କଲାକ ନମସ୍କାର ।
ମନ୍ଦୋଦରୀ ପ୍ରଲମ୍ଭ କଲାକ ଶତେବାର ॥
ଲକ୍ଷ୍ମଣ ବୋଇଲେ ଗୋ ଉଠ ଉଠ ସୁଲକ୍ଷଣୀ ।
ହୁଅ ଅଭିଷେକ ଲଙ୍କାରେ ପାଟରାଣୀ ॥
ସୁନ୍ଦେରୀ ବୋଇଲା ଯେ ତୋହର ଫରମାଣ ।
ଏତେ ବୋଲି ଯାଇଂ ବସିଲେ ସିଙ୍ଘାସନେଣ ॥
ପଛେ ବିଭୀଷେଣ କୋଳ କରି ବସି ।
ଅଭିଷେକ ହୋଇଣ ନିଜ ନବରକୁ ଆସି ॥୪୦
ଯେ ବିଧି ବିଧାନ ତୀର୍ଥଜଳ ଘେନି ।
ପଞ୍ଚାମୃତ କଲେ ବିଭୀଷେଣର ମୁଧନୀ ॥
ଶୁକ ସାରଣେ ଧରନ୍ତି ଦଣ୍ଡଛତ୍ର ।
ଅର୍ଘ୍ୟ ବଢ଼ାବନ୍ତି ସୁମିତ୍ରାର ସୁତ ॥
ସୁଗ୍ରୀବର ରାଜା କୁସୁମ ବରଷି ।
ସେନା ଯୂଥପତି ଜୟେ ଜୟେ ଭାଷି ॥
ଅସୁର ଅମାନାତ୍ୟେ ଧରନ୍ତି ଚାମର ।
ବେଦଧ୍ୱନି କରନ୍ତି ସୁଜ୍ଞ ଦିଜବର ॥
ନାରୀଏ ହୁଳହୁଳି ପାରନ୍ତି ଆନନ୍ଦେ ।
ମଙ୍ଗଳ ବାଜଣା ବଜାନ୍ତି ବିବିଧ ଛନ୍ଦେ ॥୫୦
ହୋଇଲା ନୃପବର ଦଶାନନର ଭାଇ ।
ଅଭିଷେକ ସରିଲା ବନ୍ଦାପନା ହୋଇ ॥
ପାଟଗଜ ପାଟ ଅଶ୍ୱ ଆଗରେ ଯେ ଅଛି ।
କୋଳେ ମନ୍ଦୋଦରୀ ଶରଦଚନ୍ଦ୍ର ମୁଖୀ ॥
ମୂର୍ଦ୍ଧନୀ ଅଭିଷେକ ହୋଇଲା ବିଭୀଷେଣ ।
ମନେ ବିଚାରଇ ଧନ୍ୟ ହେ ରାମରାଣ ॥
ତୋହର ଶରଣ ଯେବେ ନ ପଶନ୍ତି ମୁହିଂ ।
ପ୍ରାଣ ଛାଡ଼ି ଭୂମିରେ ଥାନ୍ତି ଆଜ ଶୋଇ ॥

ଏତେକ ସମ୍ପଦ ମୁଁ ପାଇଲି ତୋହାର
ଫଳେ ।
ଲଙ୍କପତି ନାମ ବୋଲାଇବି ମହୀ
ତଳେ ॥୬୦
ଏସନେକ ସମୟେ ସରିଲା ଅଭିଷେକ ।
ଆନନ୍ଦ ହୋଇଲେ ଲଙ୍କାର ସର୍ବଲୋକ ॥
ସିଂହାସନୁ ଉଠି ବିଭୀଷେଣ ରାଏ ।
ମନ୍ଦୋଦରୀ କି ଘେନି ଲକ୍ଷ୍ମଣ ପାଶେ ଯାଏ ॥
ଚରଣ ଯୁଗଳ ଧରି ପଡ଼ଇ ଗଡ଼ ଘାଲି ।
ଶ୍ରୀରାମର ଅନୁଜ ଉଠଉଠ ବୋଲି ॥
ଆପଣେ ଲକ୍ଷ୍ମଣ ତୋଳିଲା ଦୁହିଙ୍କି ।
ଅନେକ ପୁରୁଷାର୍ଥ ପ୍ରୀତିକଥା କହନ୍ତି ॥
ଶ୍ରୀରାମ ସନିଧକୁ ବାହୁଡ଼ିଲେ ପୁଣି ।
ଯିବି ବୋଲି ବୋଇଲା ମନ୍ଦୋଦରୀ
ରାଣୀ ॥୭୦
ରାଘେବର ଶରଣ ପଶିଲା ବିଭୀଷେଣ ।
ସାତ୍ୟାର ଶରଣ ମୁଁ ପଶିବି ଲକ୍ଷଣ ॥
ଶୁଣି ସଉମିତ୍ରୀ ଯେ ଆସ ବୋଲି ରାଇ ।
ମନ୍ଦୋଦରୀ ସପତଣୀମାନେ ତାହା ଚାହିଁ ॥
ଧନ୍ୟରେ ସୁନ୍ଦେରୀ ବୋଲି ପ୍ରଶଂସା କରନ୍ତି ।
କେବଣ ପେଟୁ ଜନ୍ମ ବୋଲିଣ ବୋଲନ୍ତି ॥
ଏଥୁଅନନ୍ତରେ ବିଭୀଷେଣ ବୀର ।
ଶୁକ ସାରଣକୁ କହଇ ଉତ୍ତର ॥
ଆଣ ଭଣ୍ଡାରୁ ସୁବର୍ଣ୍ଣ ଆୟେମାନ ।
ଏହା ଘେନି ଶ୍ରୀରାମକୁ କରିବି ଦ୍ରଶନ ॥୮୦
ଶୁଣି ମନ୍ତ୍ରୀମାନେ ଯାଇ ଭଣ୍ଡାରେ
ପରବେଶ ।
ରକ୍ଷା ଲୋକମାନଙ୍କୁ ବୋଇଲେ ରାଜାର
ଆଦେଶ ॥
ଧନ ଭଣ୍ଡାରୁ ବିବିଧ ଧନମାନ ।
ସଂସକାର କରି ଘେନି ଆସସି ବହନ ॥
ଶ୍ରୀରାମ ଛାମୁରେ ଦରଶାଇବ ରାୟେ ।
ଭଣ୍ଡାର ଅଧିକାରୀ ଶୁଣି ସନ୍ତୋଷ ହୋଏ ॥
ଅନେକ ଲୋକ ଆଣି ବୁହାଇଲେ ଧନ ।
ପଟୁଆର ପକାଇ ଚଳାନ୍ତି ଆୟେମାନ ॥
ବିଭୀଷେଣ ଦେଖି ଆନନ୍ଦ ହୋଇଲା । ୯୦

ରଥଗଜ ଅଶ୍ୱ ଆସନ୍ତୁ ବୋଇଲା ॥
ପାତ୍ର ଅମନାତ୍ୟ ନଗ୍ରର ନରନାରୀ ।
ସବୁ ମହାଦେଈ ଘେନାଇ ମନ୍ଦୋଦରୀ ॥
ମୁଦୁସୁଲ ଝଡ଼ା ବାହୁଟିଆଣି ଦାଇ ।
ସମସ୍ତେ ଆସ ବୋଲି ବିଭୀଷେଣ ବୋଲଇ ॥
ଦେଖ ରଘୁନାଥ ଛାଡୁ ପାପମାନ ।
ଏ ଚର୍ମ ଲୋଚନରେ ଦେଖନ୍ତୁ ଭଗବାନ ॥
ନୃପତିର ମୁଖୁଂ ଯେସନେକ ବାଣୀ ଶୁଣି ।
ନଗ୍ରଲୋକେ ଉଷତ ହୋଇଲେକ ପୁଣି ॥
ଧାଅଂ ଧାଅଂ ଚାଲ ଚାଲ ଆସ ଆସ ଯିବା ।
ଗଗନ ପୂରୁଅଛି ଏସନେକ କହିବା ॥୧୦୦
ଦାଣ୍ଡରେ ଗହଳ ନ ପାବନ୍ତି ବାଟ ।
ସମ୍ଭର୍ବ ହୋଇଣ ବାହାର ହେଲେ ଥାଟ ॥
ଲକ୍ଷ୍ମଣକୁ ଆଗକରି ଯୂଥପତିମାନ ।
ମନ୍ଦୋଦରୀ ସହିତେ ବିଭୀଷେଣ ରାଜନ ॥
ତିନି କୋଟି ପଞ୍ଚାଶ ଲକ୍ଷ ମହାଦେଈ ।
ନଗ୍ର ସ୍ତିରୀ ପୁରୁଷ କଳନା ନଯାଇ ॥
ଲଙ୍କାର ଉତ୍ତର ଦ୍ୱାରେ ବାହାର
ହୋଇଗଲେ ।
ଧୂରୁହୁଂ ରଘୁନାଥ ଚାହିଂଣ ବୋଇଲେ ॥
ଯୁବତୀ ପୁରୁଷ ଥାଠ ଅନେକ ଦିଶଇ ।
ଜୟେବ ବୋଇଲେ ଦେବ ଆସନ୍ତି ତୁମ୍ଭ
ଭାଇ ॥୧୦
ବିଭୀଷେଣ ସହିତ ଆବର ମନ୍ଦୋଦରୀ ।
ଚତୁରାଙ୍ଗ ବଳ ସହିତେ ନରନାରୀ ॥
ତୁମ୍ଭଙ୍କୁ ଦର୍ଶନ କରିବେ ବୋଲି ଆସୁଛନ୍ତି ।
ଏସନେକ ବିଚାରୁ ନିକଟେ ଆସି ହୁଅନ୍ତି ॥
ଦୂରୁ ପାୟେ ପଡ଼ି ଶୋଇଲା ବିଭୀଷେଣ ।
ନିଉଛାଳି ପକାଇଲା ଅନେକ ଆଭରଣ ॥
ମନ୍ଦୋଦରୀ ସହିତେ ସକଳ ରାଣୀହଂସ ।
ଗଡ଼ଘାଲି ଶୁଅନ୍ତି ଘେନିଣ ଝିନ ବାସ ॥
ଶୁକ ସାରଣ ସହିତେ ସକଳ ପାତ୍ର ମନ୍ତ୍ରୀମାନ ।
ସାଷ୍ଟାଙ୍ଗେ ପ୍ରଣମ୍ୟ କରି ଭୂମିରେ ଶୟନ ॥୨୦
ପୁଣି ଉଠି ଉଭା ହୋଇ ଶିରେ କର
ଦେଲେ ।
ଧୀର ଧୀର କରି ଚରଣ ବଢ଼ାଇଲେ ॥

ବିଭୀଷେଣ ରାଏ ଗଲା ପହଣ୍ଡ ଦଶ ।
ପୁଣି ନିଉଛାଳି ଅଳଙ୍କାର ଝିନବାସ ॥
ପାଏ ପଡ଼ି ଶୋଇ ସେ ପୁଣହିଂ ଉଠି ଉଭା
ହୋଇ ।
ଶ୍ରୀରାମ ଅମୃତ ନୟନେ ଛନ୍ତି ଚାହିଁ ॥
ନିକଟକୁ ଡାକନ୍ତି ଆସ ଆସ ବୀର ।
ଏଲଙ୍କା କଟେକ ତୁ ବିଳସ ଲଙ୍କେଶ୍ୱର ॥
ବିଭୀଷେଣର ପାଶେ ଦେଖିଲେ
ମନ୍ଦୋଦରୀ ।
ତାହାକଇ ଶ୍ରୀରାମ କହନ୍ତି ପୁରସରି ॥୩୦
ଆସ ଆସ ସାଧେବୀ ଗୋ ବିଭୀଷେଣର
ବନିତା ।
ତୋହୋର ପଟାନ୍ତର ଅଟଇ ମୋର ସୀତା ॥
ବାବୁ ରୂପ ବନ୍ତୀ ଗୋ ଅପୂର୍ବ ସୁନ୍ଦେରୀ ।
ତ୍ରିଭୁବନେ ତୋତେ କେହି ଗୋ ନାହିଂ
ପଟାନ୍ତରି ॥
ତୁ ଯାହାର ଘରେ ଥିବୁସିରେ ସୁନ୍ଦେରୀ ।
ତହିଂ ସର୍ବଦା ଥିବା ସାହେର କୁମାରୀ ॥
ଧନ୍ୟ ଧନ୍ୟ ସ୍ତିରୀ ତୁ ସୁଲକ୍ଷଣୀ ସ୍ୟତୀ ।
ତୋହୋର ଥାଉ ଦଶଗ୍ରୀବ କଲାକ ଅନୀତି ॥
ସାମାନ୍ୟ ମୂର୍ଖ କି ବୋଲିବା ତାହାକଇ ।
ସେ ପୁଣ ବାଇପଣେ ପରସ୍ତିରୀ ହରଇ ॥୪୦
ଡିଆରିଲା ଲୋକର ବଚନ ନ କରି ।
ଶୁଣି ବେନି କର ଯୋଡ଼ଇ ମନ୍ଦୋଦରୀ ॥
ବୋଲଇ ଭୋ ଦେବ ତୁମ୍ଭେ ଶୁଣ
ରଘୁବୀର ।
ରାବଣ ଦୁଷ୍ଟ ପଣ କଲାକ ଅପାର ॥
ତୁ ସ୍ୱାମୀ ତାହାକୁ ପକାଇଲୁ ମାରି ।
ତାହା ପାପ କର୍ମ ଭୋଗ କଲାକ ଦଶଶିରି ॥
ମୋତେ ବିଡ଼ମ୍ୱଣ କଲୁ କାଳେ ନା
ଗୋସାଇଂ ।
ଏସନେକ ଚରିତ ଦେବ ଶୁଣିଲା ହାଦେ
ନାହିଁ ॥
କି ବୋଲି ବୋଲିବେ ମୋତେ ସଂସାର
ଲୋକ ଶୁଣି ।
ଉପହାସ୍ୟ କଥା ମୋତେ ଉପୁଜିଲା
ରଘୁମଣି ॥୫୦

ତୁ ତ ସ୍ୱାମୀ ପୁରୁଷ ଅବା କି ବୋଲିବି
ତୋତେ ।
ଯେ କଷ୍ଟ ଭୋ ସ୍ୱାମୀ କିପାଇଁ ଦେଲୁ
ମୋତେ ॥
ଜନେ ଉପହାସ୍ୟ ମଲେ ନର୍କ ଯିବି ।
ଜଗତ ଜନମୁଖେ ଅପଖ୍ୟାତି ପାଇବି ॥
ଶୁଣିଣ ଶ୍ରୀରାମ ସମାର୍ଜନ୍ତି କର ।
ଧୀର କରି କହନ୍ତି ଶୁଣରେ ନାରୀବର ॥
ଯାହା ସେ ବୋଲିଅଛି ନୁହଇଁ କଥା ଆନ ।
ତୁହି ସେ ହୋଇବୁ ଗୋ ଯୁବତୀଙ୍କ
ମୋକ୍ଷପାନ ॥
ନିଶ୍ଚିନ୍ତ ହୋଇଣ ଗୋ ବିଭୀଷେଣ ସଙ୍ଗେ
ଥିବୁ ।
ଏ ମହୀମଣ୍ଡଳେ ତୁ ପ୍ରଶଂସା ପାଇବୁ ॥୬୦
ପ୍ରଭାତେ ସୁମରଣା କରିବ ଯେଉଁ ପ୍ରାଣୀ ।
ଗନ୍ଧମୟେ ପୁର ଭୋଗ କରିବ ଗୋ ରାଣୀ ॥
ସପତଣୀକି ଘେନି ଗୋ ବିଭୀଷେଣ ପାଦେ
ଖଟ ।
ଅକଣ୍ଟେକ ରାଜ୍ୟ ତୋତେ ଦେଲି ଗୋ
ଲଙ୍କରାଷ୍ଟ ॥
ଶୁଣି ମନ୍ଦୋଦରୀ ପାଏ ପଡ଼ି ଶୋଇ ।
ଗଡ଼ଗାଲି ଶୁତିଲେ ସକଳ ମହାଦେଈ ॥
ଉଠ ଉଠ ବୋଲି ବୋଲନ୍ତି ରଘୁବୀର ।
ଆପଣେ ଧଇଲେ ଦେବ ମନ୍ଦୋଦରୀ କର ॥
ଯେତେବେଳେ ଶ୍ରୀରାମ ଛୁଇଁଲେ ତାର
କାଏ ।
ସ୍ୱର୍ଗେ ସାଧୁ ସାଧୁ କଲେ ଦେବତାଏ ॥୭୦
ହୋଇଲା ନିର୍ଦୋଷୀ ସକଳ ପାପ ଗଲା ।
ଦଶରଥନନ୍ଦନ ଯହୁଁ ଅନୁଗ୍ରହ କଲା ॥
ଏସନେକ ଭାଳେଣି ଭାଳନ୍ତି ସୁରଜନ ।
ଏଥୁଅନନ୍ତରେ ବିଚିତ୍ର କଥା ଶୁଣ ॥
ମନ୍ଦୋଦରୀ ରାଣୀ ଗଡ଼ଘାଲି ଶୋଇଥିଲା ।
ଶ୍ରୀରାମ ତୋଳନ୍ତେ ସେ ଆନନ୍ଦ ହୋଇଲା ॥
ନିସ୍ତରିଲି ନିସ୍ତରିଲି ବୋଲିଣ ଡାକଦେଇ ।
ଋକ୍ଷ କପି ରାକ୍ଷାସେ ସବିହେଁ ତୋଷ
ହୋଇ ॥

ମନ୍ଦୋଦରୀ ଭୁଜ ଧରିଣ ରଘୁନାଥ ।
ନେଇଣ ସମର୍ପିଲେ ବିଭୀଷେଣ ହାଥ ॥୮୦
ଆହେ। ଲଙ୍କପତି ଏ ତୋହୋର
ପାଟରାଣୀ ।
ଏ ଲଙ୍କା କଟକେ ଏ ଅଟଇ ଠାକୁରାଣୀ ॥
ଏହାକୁ ପାଳିଣ ଭୋଗ ତୁ ଭୁଂଜ ଲଙ୍କପତି ।
ଶୁଣିଣ ଅତି ସାନନ୍ଦ ବେନିଜନେ ହୋନ୍ତି ॥
ଏସନେକ ସମଏ ହନୁମନ୍ତ ଆୟେ ।
ସୀତାର ତହିଁକି ପେଷିଥିଲେ ରାମରାଏ ॥
ହନୁମତକୁ ବୋଇଲେ ତୁ ସୀତ୍ୟାକୁ ବେଗେ
ଯାଇ ଜଣା ।
ମୁହିଁ ହାଦେ ପୁଣି ମାଇଲି ରାବଣା ॥
ଶୁଣି ପବନସୁତ ଶିରେ କର ଦେଲା ।
ଦକ୍ଷିଣ ମୁଖ ହୋଇ ଲଙ୍କାକୁ ଚଳିଗଲା ॥୯୦
ଉତ୍ତର ଦ୍ୱାର ବାଟେ ହୋଇଲା ପରବେଶ ।
ଖେପି ଯାଉଅଛି ପବନର ଶିଷ ॥
ରାବଣକୁ ମାରି ଉଷତ ରଘୁସାଇଁ ।
ବେଗକରି ଜାନେକୀ କି ପଠିଆଇଲେ
କହି ॥
ଲଙ୍କା ଲୋକେ ଦେଖି କରିଛନ୍ତି ଭଏ ।
କେ ବୋଲି ସୀତାର ତହିଁକି ଏହୁ ଯାୟେ ॥
ଦଶଗ୍ରୀବ ପଡ଼ିବାର କହିବ ବାରତା ।
କି ଅବା ଘେନିଣ ଆସିବ ଏହୁ ଜନେକ
ଦୁହିତା ॥
କେ ବୋଲଇ ଅବା ନଜାଣନ୍ତି ବଇଦେହୀ ।
ଆଗ ହୋଇଣ ଯେ ଯାଉଅଛି କହି ॥୧୦୦
ଏସନେକ ବୋଲିଣ କରନ୍ତି ବିଚାର ।
ଆକାଶେ କ୍ଷେପି ଯାଇ ପବନ କୁମାର ॥
ମଧୁବନ ଭିତରେ ଅଶୋକ ବିପୁନ୍ୟ ।
ତହିଁ ଯାଇଂଣ ମିଳିଲା ବୀର ହନୁମାନ ॥
ଦୂରୁହୁଁ ଦେଖିଲା ସୀତ୍ୟା ଜଗତୀରେ ଛନ୍ତି
ବସି ।
ବେଢ଼ି ବସିଛନ୍ତି ସହସ୍ରେ ରାକ୍ଷେସୀ ॥
ଜାନେକୀ ବୋଇଲେ ତ ଆସଇ ହନୁମନ୍ତ ।
କେବଣ କୃତ ଆଜ କଲେ ମୋର କାନ୍ତ ॥
ତ୍ରିଜଟା ବୋଇଲା ଯାହା କହିଲଇଁ ମୁହିଁ ।

ରାବଣକୁ ପ୍ରାଣେ ମାରିଲେ ରଘୁସାଇଁ ॥୧୦
ହନୁ ଆସିବାରେ ଏ କହିବ ବାରତା ।
ଶୁଣିଣ ସନ୍ତୋଷ ହୋଇବେ ଦେବୀ ସୀତା ॥
ଏସନେକେ ସମଏ ପବନ ତନୟେ ।
ଜାନେକୀ କି ଦେଖି ପାଏ ପଡ଼ି ଶୋଏ ॥
ଉଠି ଉଭା ହୋଇ ଉଡ଼ା ଚାରି ଗଲା ।
ନିକଟ ହୁଅନ୍ତେ ଗଡ଼ଘାଲି ଶୁତିଲା ॥
ପୁଣିହିଁ ଉଠିଣ ଶିରେ କର ଯୋଡ଼ି ।
ଚାଲଇ ଧୀରେ ଧୀରେ ବଢ଼ାଇ ପାଦ
ଯୋଡ଼ି ॥
ନିର୍ଭର ହୋଇଣ ହନୁମନ୍ତ ଜଣାଇଲା ।
ଭୋ ମାତ ସାଂଗ୍ରାମେ ଗୋ ଲଙ୍କପତି
ପଡ଼ିଲା ॥୨୦
ତୋହୋର ଛଳେ ଶ୍ରୀରାମ ଏଡ଼େ କର୍ମ
କଲେ ।
ଅଜଏ ଦନୁଜକୁ ମାରି ପକାଇଲେ ॥
ଦଶଗ୍ରୀବକୁ ମାରି ବିଭୀଷେଣକୁ ରାଜା
କଲେ ।
ଅଭିଷେକ କରିବାକୁ ସେନାପତିମାନେ
ଗଲେ ॥
ଲକ୍ଷ୍ମଣ ସୁଗ୍ରୀବର ଜମ୍ୱେବ ସୁଷେଣ ।
ଏମାନେ ଅଇଲେ ଘେନିଣ ବିଭୀଷେଣ ॥
ମନ୍ଦୋଦରୀ ହୋଇବ ପାଟମହାଦେଈ ।
ଆପଣେ ରଘୁନାଥ ଏମନ୍ତ ଆଜ୍ଞାଦେଇ ॥
ମୋହର ପଛେ ପଛେ ସେମାନେ
ଆସୁଛନ୍ତି ।
ଏହିକ୍ଷଣି ବିଭୀଷେଣ ହୋଇବ ନୃପତି ॥୩୦
ମୋତେ ରାଇ ଶ୍ରୀରାମ ପେଷିଲେ ତୁମ୍ଭ
ପକ୍ଷ ।
ଯାଅ ହନୁମନ୍ତ ହୋ ସୀତ୍ୟାଙ୍କୁ କହିଆସ ॥
ଏଡ଼େ ବଡ଼ ଅସୁରକୁ ମାଇଲେ ତୋର
ଛଳେ ।
କଥା ଗୁହାଇଲେ ଏ ମହୀମଣ୍ଡଳେ ॥
ଏତେ କହି ସ୍ୱାମୀ ପେଷିଲେକ ମୋତେ ।
ଏହିକ୍ଷଣି ଆସି ଗୋ ଘେନିଯିବେ ତୋତେ ॥
ଶୁଣି ବଇଦେହୀ ହସିଣ ବୋଇଲେ ।

ସତେହେଂକି ସ୍ୱାମୀ ମୋର ରାବଣକୁ
ମାରଇଲେ ॥
ଏତେକର୍ମ କରି ପାରିଲେ କି ମୋର ନାହା ।
ଦେବତା ଅଜୟେ ସେ ଅଟଇ
ବିଂଶବାହା ॥୪୦
ହନୁମନ୍ତ ବୋଇଲା ମୁଂ ଦେଖିଲି ଗୋ
ମାତ ।
ବ୍ରହ୍ମ ଅସ୍ତ୍ରେ ପଡ଼ିଲା ଗୋ ବିଶର୍ବାର ସୁତ ॥
ଜାନେକୀ ବୋଇଲେ ହନୁ ରାବଣ ଯେବେ
ମଲା ।
ଏ ମୋହର କଷ୍ଟ ଆଜହୁଂ କ୍ଷୟେ ଗଲା ॥
ତୁ ଯେବେ କହିଲୁ ମୁଂ ବଧାଇ ଦେବି
କିସ ।
ଶୁଣିଣ ଉଷତ ପବନର ଶିଷ ॥
ଯେବେ ତୁ ପ୍ରସନ୍ନ ମୋତେ ହୋଇଲ ଗୋ
ମାଏ ।
ସତେ ଯେବେ ଦେବୁ ମାଗିବି କଥାଏ ॥
ଏ ଯେ ସହସ୍ରେ ଅସୁରୀ ତୋତେ
ବେଢ଼ିଛନ୍ତି ।
ତୋହର ଆଜ୍ଞାଦେଲେ ମାରିବି ସବୁନ୍ତି ॥୫୦
ଜାଣୁନା ମୋହୋର ଆସିବା ଦିନ ରାତି ।
ଯେବଣ ସିଦ୍ଧାନ୍ତ ତୋତେ କହୁଥିଲେ ସତୀ ॥
ତାହା ଶୁଣି ସେ ଦିନ ମାରିବାକୁ ମନ କଲି ।
ସେ ଦିନୁଂ ଏହାଙ୍କ ପ୍ରାଣ ଘେନିବି ବୋଇଲି ॥
ଯହୁଂ ସେ କଥାମାନ ଅକଳ ହୋଇଥିଲେ ।
ଏଣୁକରି ଏମାନେ ଜୀବନ ପାଇଲେ ॥
ଏହିକ୍ଷଣି ମାଏ ମୋତେ ଆଜ୍ଞା ଦେବା ।
ଯଦି ରାମରାଣୀ ଗୋ ଘେନିଲୁ ମୋର
ସେବା ॥
ଶୁଣି ବଇଦେହୀ ବୋଇଲେ ହନୁମନ୍ତକୁ
ଚାହିଁ ।
ଭୋ କପିରାଜ ଏହାଙ୍କର କିଛିହିଂ
ଦୋଷନାହିଂ ॥୬୦
ରାବଣର ସେବକ ଏ ତାହାର ବୋଲେ
ଥାନ୍ତି ।
ଏହାଙ୍କର ସୁଖେ କି ଏ ମୋତେ ଗାଳିଦ୍ୟନ୍ତି ॥

ଯେ ମୋହୋର କର୍ମେ ଅରଜିଥିଲି ଦୋଷ ।
ବେଳକାଳ ଜାଣି ଫଳିଲା ଭବିଷ ॥
ଶୁଣି ହନୁମନ୍ତ ସୀତାଙ୍କୁ ପ୍ରଶଂସି ।
ଧନ୍ୟ ଧନ୍ୟ ଲକ୍ଷ୍ମୀ ତୁ ଶରଦ ପଦ୍ମବାସୀ ॥
ଯେ ତୋତେ ଦ୍ରୋହ ଚିନ୍ତଇ ତାକୁ ରଖୁ ।
ତାହାଙ୍କର ଦୋଷ ଗୋ ତୁହି ଯେ ଉପେକ୍ଷୁ ॥
ବାବୁ ମହିମା ତୋର ଜନେକକୁମାରୀ ।
ବ୍ରହ୍ମାଣ୍ଡ ମଧରେ ତୋତେ ନାହିଂ
ସମସରି ॥୭୦
ଅପାପୀ ଆତ୍ମା ସଦୟେ ତୋହୋର ଚିତ୍ତ ।
ତୋତେ ଦେଖିଲଇଂ ଧନ୍ୟ ମୋର ଜୀବିତ ॥
ଏତେବୋଲି ପୁଣି କରଇ ନମସ୍କାର ।
ସୀତା ବୋଇଲେ ଶୁଣ ହୋ ପବନକୁମର ॥
ଶ୍ରୀରାମଙ୍କୁ ଦେଖିତ ଶରଧା ମୋହୋର ।
ତାହାଙ୍କୁ ଦର୍ଶନ କଲେ ମୋହୋର ଚିତ୍ତ
ଥିର ॥
ଯେ ମୋହରକ ଇଚ୍ଛା ପୂରାଅ ପାବେନି ।
ସ୍ୱାମୀକି ଜଣାଅ ମୋର ସହସ୍ରେ ଦଣ୍ଡନି ।
ବେଗେ ମୋତେ ନେଇ ଦେଖାନ୍ତୁ ପଦ୍ମମୁଖ ।
ଅନେକ କାଳର ପଳାଉ ପାପ ଦୁଃଖ ।
ଶୁଣି ହନୁମନ୍ତ ଓଳେଗ ମେଲାଇ ।
ଗଗନେ ବିକ୍ରମିଣ କ୍ଷେପିଣ ପୁଣ ଯାଇ ॥
ସାଂଗ୍ରାମ ମଣ୍ଡଳେ ଯହିଂଅଛନ୍ତି ରଘୁନାଥ ।
ଛାମୁରେ ଲଙ୍କପତି ବିଶ୍ରବାର ସୁତ ॥
ମନ୍ଦୋଦରୀ ସହିତେ ସକଳ ନାରୀଗଣ ।
ସେନାଯୂଥପତି ସୁଗ୍ରୀବର ଲକ୍ଷ୍ମଣ ॥
ଶୁକ ସାରଣେ ଅସୁର ମନ୍ତ୍ରୀମାନ ।
ଅଶ୍ୱଗଜମାନେ ପାଦାନ୍ତି ସର୍ବସେନ୍ୟ ॥
ଦେଖଣାହାରୀ ଲୋକେ ରକ୍ଷ କପିବଳ ।
ନିଶବଦ ହୋଇଅଛନ୍ତି ସକଳ ॥୯୦
ବିଭୀଷେଣ ବାଢ଼ିଅଛଇ ଆୟେମାନ ।
କିହୋ ଲଙ୍କପତି ଯେ କିସ ବୋଲନ୍ତି
ରଘୁନାନ ॥
ରାବଣର ଭାଇ ଯୋଡ଼ଇ ବେନିକର ।
ବୋଲଇ ଭୋ ଦେବ ଏ ରାବଣ ଭଣ୍ଡାର ॥
ଆବରହିଂ ଦେଖ ଦେବ ଲଙ୍କାର
ଘୋଡ଼ାହାତୀ ।

ସେନା ସନ୍ୟ ଯେତେକ ଅଛନ୍ତି ପାଦାନ୍ତି ॥
ତାହା ତୋହୋର ଛାମୁକୁ ଆଣିଅଛି ମୁହିଂ ।
ଶୁଣି ଶ୍ରୀରାମ ଯେ ଶ୍ରବଣ ଭୂମି ଛୁଇଂ ॥
ବୋଇଲେ ବେଗକରି ବାହୁଡ଼ାଇ ନିଅ ।
ଲଙ୍କାରୁ ନେଇତକି ମୁଁ ଆସିଅଛି
ଏହା ॥୧୦୦
ସୀତା ଚୋରାଇବାରୁ ରାବଣକୁ ନାଶିଲି ।
ତାହାର ଅର୍ଥ ସମ୍ପଦ ତୋତେ ସମର୍ପିଲି ॥
ତୁହି ସିନା ଏ ଅର୍ଥରେ ଅଟୁ ହୋ
କାରେଣୀ ।
ଏହାଶୁଣି ବୋଲଇ ମନ୍ଦୋଦରୀ ରାଣୀ ॥
ଭୋଦେବ ରାଘେବ କଥାଯେ ମୋତେ
କର ।
ତୋହୋର ଦେଲେ ଭଣ୍ଡାର ଅଛଇ ଅପାର ॥
ମୁହିଂ ଦେଉଅଛି ସୀତ୍ୟାକୁ କିଛି ଆଏ ।
ସେ ସେ ଅଟନ୍ତି ମୋର ଧର୍ମର ଯେ ମାଏ ॥
ସ୍ୱଭାବେ ଦେବୀର ଶରୀରେ କିଛି ଆୟେ
ନାହିଂ ।
ବାଟରେ ଆଭରଣ ସେ ଅଇଲେ
ପକାଇ ॥୧୦
ଶୁଣି ନ ଶୁଣିଲେ ଶ୍ରୀରାମ ମନ୍ଦୋଦରୀର
ବାଣୀ ।
ଯେ ତୋହୋର ଇଚ୍ଛା ବୋଇଲେ ରଘୁମଣି ॥
ଏସନେକ ବେଳେ ଜଣାଇ ବିଭୀଷେଣ ।
ମୋତେ ଦୟା କିମ୍ପା ଛାଡ଼ିଲୁ ରଘୁରାଣ ॥
ମନ୍ଦୋଦରୀ ଦେବ ସୀତାଙ୍କୁ ଅଳଙ୍କାର ।
ତୁ କିପା ମୋହୋର ତହୁଂ ନ ଘେନୁ
ଉପହାର ॥
ତୁ ମୋହୋର ବାପ ମୁଂ ତୋହୋର ସେବକ ।
ଅଭେଦ ବୋଲି କେମନ୍ତେ ବୋଲିବେଟି
ଲୋକ ॥
ଶ୍ରୀରାମ ବୋଇଲେ ତୁ ଦେଉକିନା ଯିସ ।
ଯେଣେ ତ୍ରିପୁତି ହେବୁ ତୁ ବିଶ୍ରବାର
ଶିଷ ॥୨୦
ବିଭୀଷେଣ ବୋଇଲା ମୁଂ କନେକଦଣ୍ଡ
ଦେବି ।

ଯେବଣ ଛତ୍ର ତୋଳିଲେ ରତ୍ନପଡ଼େ ସ୍ରବି ॥
ହଉ ବୋଲି ଶ୍ରୀରାମ କଲେକ ସନମତ ।
ଏସନେକ ସମଏ ମିଳିଲା ହନୁମନ୍ତ ॥
ଶୁଣିମା ରଘୁନାଥ ଅଯୋଧ୍ୟାର ସାଇଂ ।
ଜାନେକୀର ତହିଂକି ଯାଇଥିଲି କହି ॥
ତୋତେ ଦେଖିବାକୁ ଉଛୁକ ତାଙ୍କର ମନ ।
ମୋତେ ବାହୁଡ଼ାଇ ପେଷିଲେ ବହନ ॥
ଶୁଣି ରଘୁନାଥ ଥନଥନ କଲେ ଆଖି ।
ବିଭୀଷେଣକୁ ବୋଇଲେ ହୋ ଆଣ ମୋର
ସଖୀ ॥୩୦
ଯେବଣ ଆୟେମାନ ଦେବ ମନ୍ଦୋଦରୀ ।
ଏହାନେଇ ଦିଅହୋ ଜନେକ କୁମାରୀ ॥
ଦେବାଙ୍ଗ ବସନ ବିଚିତ୍ର ଚାରୁଶାଢ଼ୀ ।
ନିଅ ହାର କଙ୍କଣ ମୁଦି ରତ୍ନ ନୂପୁର ଯୋଡ଼ି ॥
ବେଶ କରାଇ ମୋ କତିକି ଘେନିଆସ ।
ତେବେ ସେ ପ୍ରାଣ ମୋର ହୋଇବାକ
ତୋଷ ॥
ଯାହାର ନିମନ୍ତେ ଏଡ଼େ ଦୁଃସହ କର୍ମ କଲି ।
ମରିବା ଠାବରୁ ସିନା ବେଳେକ ଜୀଇଂଲି ॥
ଆଖି ପୂରାଇଣ ଦେଖିବି ମୋର ସଖୀ ।
ଅସୁର ଘରେ ସେ ହୋଇଛି ନିରିମୋଖୀ ॥୪୦
ଶ୍ରୀରାମ ବଚନେ ବିଭୀଷେଣ ତୋଷ ।
ଭଣ୍ଡାରୁ ବାଛିଲା ଅଳଙ୍କାର ଝିନବାସ ॥
କନେକଦଣ୍ଡ ନେଇ ହନୁମନ୍ତ ହାଦେ
ଦେଲା ।
ସୀତାକୁ ନେବ ବୋଲି ଲଙ୍କାକୁ ବାହୁଡ଼ିଲା ॥
ଭଣ୍ଡାର ବୁହାଇ ନେଲା ଲଙ୍କାଦେଶ ।
ଗଡ଼ ଭିତରେ ଯାଇ ହୋଇଲା ପରବେଶ ॥
ଆସବାବମାନ ନବରକୁ ଚଳାଇ ।
ଆପଣେ ଅଶୋକ ବନେ ମିଳିଲାକ ଯାଇଂ ॥
ସଙ୍ଗେଣ ଚତୁରାଙ୍ଗ ବଳ ବେଢ଼ିଛନ୍ତି ।
ଯହିଂ ବସିଅଛଇ ସୀତା କମଳାକ୍ଷୀ ॥୫୦
ଦୃଷ୍ଟି ଅପସରି କରଇ ନମସ୍କାର ।
ସନ୍ନିଧେଣ ଯାଇ ଯୋଡ଼ଇ ବେନିକର ॥
କମ୍ପମାନ ହୋଇ ରାୟେ କହଇ ଉତ୍ତର ।
ଶୁଣଗୋ ଠାକୁରାଣୀ ଶ୍ରୀରାମର ଉତ୍ତର ॥

ତ୍ରିଜଟାକୁ ବୋଲିବା ପ୍ରାୟେକ ପଚାରି ।
ଶ୍ରୀରାମ ଆଜ୍ଞାରେ ଯିବ ଜନେକକୁମାରୀ ॥
ଆରତ ରଘୁନାଥ ଏହାଙ୍କ ଯିବା ଯାଏ ।
କେବଳ ସାଷ୍ଟାମେ ଧରିଛନ୍ତି କାଏ ॥
ଭୋ ମାତ ଜାନେକୀ ଗୋ ସ୍ନାହାନ ବେଗେ
କର ।
ଦେଖ ରଘୁନାଥ ତ୍ରୈଲୋକ୍ୟଈଶ୍ବର ॥୬୦
କିଞ୍ଚିତ ଅଳଂକାର ଗୋ ଆଣିଲା ଅଛି
ତୋତେ ।
ଅତି ବେଗେ ସ୍ୱାମୀ ପେଷିଲେକ ମୋତେ ॥
ଜାନେକୀ ବୋଇଲେ ମୁଂ ଏହିମତେ ଯିବି ।
କେମନ୍ତେ ଦୁଃଖେ ଛନ୍ତି ମୁଂ ସ୍ୱାମୀଙ୍କି
ଦେଖିବି ॥
ସେ ମୋହାର କଷ୍ଟ ଦେଖୁ ପ୍ରାଣନାଥ ।
ଯେତେ ଦୁଃଖ ସହିଅଛି ମୁହିଂ ଏଥ ॥
ସ୍ୱାମୀର ମୁଖ ଦେଖି ମୁଂ କରିବଇ ସ୍ନାହାନ ।
ଏ ବଚନ ଶୁଣି ବୋଇଲା ବିଶ୍ରବାନନ୍ଦନ ॥
ନୁହଂଇ ଉଚିତ ଏ ନୁହଇଂ ଗୋ ମାଏ ।
ଆଜ୍ଞା ଦେଇଛନ୍ତି ଶ୍ରୀରାମଚନ୍ଦ୍ର ରାଏ ॥୭୦
ମାଜଣା ସାରିଣ ଗୋ ହୁଅ ଦିବ୍ୟବେଶ ।
ତେବେ ସେ ଯିବ ଗୋ ନିଜ ପତି ପାଶ ॥
ଶୁଣି ବଇଦେହୀ ଉଠିଲେ ଆସନୁ ।
ବିଜୁଳି ମାରିବା ପ୍ରାୟେ ଦିଶଇ ତାର ତନୁ ॥
ସଙ୍ଗରେ ସୁରମା ତ୍ରିଜଟା ଗୋଡ଼ାଇଲେ ।
ସହସ୍ରେ ଅସୁରୀ ପଟୁଆରି ହେଲେ ॥
ମଉଗଜଗବନୀ ଯେହ୍ନେ ଚଳଇ
ବୈଦେହୀ ।
ବୃଦ୍ଧ ଗଣ୍ଡକୀ ନଦୀ ସନ୍ନିଧେଣ ହୋଇଂ ॥
ପଞ୍ଚାମୃତ ଯୋଗାଡ଼ ମାଜଣା ସଞ୍ଚାମାନ ।
ଦେଇ ବଟିଆଇଲେ ଲଙ୍କାର ରାଜନ ॥୮୦
ମୁଦୁସୁଲୀମାନେ ଛାମୁରେ ନେଇ ଦେଲେ ।
ସହସ୍ରେ ରାକ୍ଷସଣୀ ପରିବାରୀପଣ କଲେ ॥
ନଦୀରେ ସ୍ନାହାନ କରିଣ ଚାନ୍ଦମୁର୍ହୀଂ ।
ସୁବାସ ଜଳରେ ଶ୍ରୀଅଙ୍ଗ ଗୋଟି ଧୋଇ ॥
କୂଳେ ଉଭାହୋଇ ପିନ୍ଧିଲେ ରଙ୍ଗପାଟ ।
ଆୟେ ଅଳଂକାରେ ହୋଇଲେ ମୁରାଟ ॥

ବିବିଧ କୁସୁମେ କେଶ ସାଂଯୋଇଲେ ।
ଉପରାଣ ଦେଇ ହାନ୍ଦୋଳାରେ
ବିଜେକଲେ ॥
ପଞ୍ଚରତ୍ନ ଓହାଡ଼ି ନବରତ୍ନ କମମଏ ।
ତ୍ରିଜଟା ସୁରମା ହାନ୍ଦୋଳା କୁମ୍ଭ ବହେ ॥୯୦
ମନ୍ଦୋଦରୀ ରାଣୀ ଢାଳଇ ଚାମର ।
ଆବରହିଂ ରାଣୀ ଅଛନ୍ତି ରାବଣର ॥
ଛତ୍ର ଆଲଟ କୁସୁମ ବିଞ୍ଚନ୍ତି ।
ନଗ୍ରର ନରନାରୀ ସଭିଏଂ ଗୋଡ଼ାବନ୍ତି ॥
ଆଗେ ବିଭୀଷେଣ ସନ୍ୟ ସଙ୍ଗେ ଘେନି ।
ପଛ ପଟୁଆରେ ଅଛନ୍ତି ମନ୍ତ୍ରୀ ବେନି ॥
ହାତୀ ରଥୀ ପାଦାନ୍ତି ଅନେକ ଅଶ୍ବୁଆର ।
ଆଡ଼ୋ ଆଡ଼ୋ ଡାକ ପଡ଼ଇ ନିରନ୍ତର ॥
କଟେକର ଲୋକେ ହୁଅନ୍ତି କୁହାକୁହି ।
ଏସେ ଜାନେକୀ ସେ ଦେଖିବା ଚାଲ
ସହୀ ॥୧୦୦
ଏହାର ଅର୍ଥେ ରାମ ଏଡ଼େ କର୍ମ କଲା ।
ରାବଣ ପ୍ରାୟେକ କ୍ଷତ୍ରିକି ମାଇଲା ॥
ଇନ୍ଦ୍ରଦେବତା ଯାହାକୁ ଦେଖିଲେ ଭୟ
କରଇ ।
ତାହାର ଦର୍ପ ଏବେ ଋକ୍ଷ କପି ହରଇ ॥
ଏ ସତୀର କୋପେ ରାବଣ ବଂଶ ଗଲେ
କ୍ଷଏ ।
ବାବୁ ବିଧାତାରେ ଏହେଣ୍ଢେକ କଲୁ
ଉପାଏ ॥
ଏସନେକ ବିଚାର କରନ୍ତି ଅସୁର ଅସୁରୀ ।
ଜାନେକୀକି ଦେଖିବେ ବୋଲି ଧାମନ୍ତି
ଆଗସରି ॥
ପଟୁଆର ପଡ଼ିଣ ଅଛନ୍ତି ଚଉପାଶ ।
ଆଡ଼ୋ ଆଡ଼ୋ ଡାକ ପୂରଇ ଆକାଶ ॥୧୦
କେ ବୋଲଇ ସୀତାକୁ ଦେଖିବା କେମନ୍ତେ ।
ଏଡ଼େ ମହାରଣ ହୋଇଲା ଯେବଣ କୃତେ ॥
କେତେମାନ ସୁନ୍ଦରୀ ଅଟଇ ବଇଦେହୀ ।
କେ ବୋଲଇ ଆମ୍ଭେ ଦେଖିଲା ନାହିଂ ପୁଣ
କେହି ॥
କେ ବୋଲଇ ରାବଣ ନିରୋଧ କରିଥିଲା ।

ଲଙ୍କାର ଲୋକଙ୍କୁ ଯେ ପଶିତ ନ ଦେଲା ॥
ରକ୍ଷା ଅସୁରୀ ଜାଣନ୍ତି ନ ଚିହ୍ନନ୍ତି କେହି ।
ଠଣା ବସାଇଲା ପାହାରୀ ଜଗାଇ ॥
ଯେତେ ଯତନେ ଥୋଇ ନ ପାରିଲା
ଭୋଗକରି ।
ଏବେ ଚାମର ଧରିଅଛି ରାବଣ ରାଣୀ
ମନ୍ଦୋଦରୀ ॥୨୦
ରାଣୀ ମହାଦେଈ ଯେ ପଟୋଆରି ଛନ୍ତି ।
ଚତୁରାଙ୍ଗ ବଳ ଯେ ସମ୍ପଦ କରିନିଅନ୍ତି ॥
ଏସନେକ ବିଚାର କରନ୍ତି ପୁରଜନ ।
ଏଥୁଅନନ୍ତରେ ଅପୂର୍ବ କଥା ଶୁଣ ॥
ଜାନେକୀର ହାନ୍ଦୋଳା ଲଙ୍କାରୁ ବାହାର ।
ପଡ଼ଇ ହୁଳାହୁଳି ଜୟେ ଜୟେକାର ॥
ରାବଣର ତିନିକୋଟି ପଞ୍ଚାଶଲକ୍ଷ ରାଣୀ ।
ଛତ୍ର ଚାମର କେ ଧରନ୍ତି ବିଞ୍ଚଣି ॥
କେ ପୁଷ୍ପ ବିଞ୍ଚନ୍ତି କେ ବିଞ୍ଚନ୍ତି ଝିନବାସେ ।
କେହୁ ଧୂପକାଠି କେ ଧରିଛନ୍ତି ପାଶେ ॥୩୦
ଉତ୍ତର ଗଡ଼ଦ୍ୱାରେ ବାହାର ହୁଅନ୍ତି ।
ଭୋଡ଼ଙ୍ଗିଆ ପାଇକେ ଆବୋରିଣ ନିଅନ୍ତି ॥
ଆଗପଛେ ଡାକ ପଡ଼ଇ ନିରନ୍ତର ।
ପାଦରେଣୁ ଘାତେ ଦିଶଇ ଅନ୍ଧକାର ॥
ସୀତାର ସଙ୍ଗେ ଥାଇ ଅସୁରେ ତେଜମାଏ ।
ଋକ୍ଷକପିମାନଙ୍କୁ ନାହିଁ ତାଙ୍କର ଭଏ ॥
ହାଥେ ବେତ ଧରି ଗୋଡ଼ାବନ୍ତି ମାରି ।
ଦେଖି କପିମାନେ ପଳାନ୍ତି ପଛସରି ॥
ବାବୁ ବିଧାତାରେ ଏହିକ୍ଷଣି କଥା ।
ଧାଡିକାରେ ଦେିତେ ଛାଡ଼ିଲେ ତେତେ
ବ୍ୟଥା ॥୪୦
ଯହୁଁ ସେ ସୀତାଙ୍କୁ ଆଶ୍ରେ କଲେ ଯାଇ ।
ତେଣୁ ସେ ତାହାଙ୍କର କିଛିହିଁ ଭୟନାହିଁ ॥
ହରି ହରି ଡାକ ପଡ଼ଇ ନିରନ୍ତର ।
ଅସୁରେ ଡାକନ୍ତ୍ୟନ୍ତି କତି ଲୋକ ମାର ॥
ବିଭୀଷେଣ ଡାକନ୍ତି ମଣିମା ମହାମାଏ ।
ସବୁ ରାଣୀମାନେ ହୁଳହୁଳି ଦିଏ ॥
ରାକ୍ଷସେ ଜୟେ ଜୟେ କପିଏ ରାମ ରାମ ।
ଲଙ୍କାର ରାକ୍ଷାସୀ ଡାକଇ ଘନ ଘନ ॥

ସ୍ୱାମୀର ଆଣ୍ଟପଣେ ସେବକ ଗାଢ଼ କହେ ।
ନିର୍ବଳ ଠାକୁର ଭୃତ୍ୟ ପରି ନୋହେଁ ॥୫୦
ହନୁମନ୍ତ ଯେହ୍ନେ ସୁଗ୍ରୀବ ସଙ୍ଗେ ଥିଲା ।
ବାଳୀର ଡରେ ବାଳକ ବିପୁନ୍ୟେ ବଢ଼ିଲା ॥
ଯହୁଁ ସେ ସୁଗ୍ରୀବର ଯୁଦ୍ଧକୁ କଲା ଭୟେ ।
କହୁଁ ସେ ପବନସୁତ ବନସ୍ତେ ଲୁଚିଥାଏ ॥
ଯେତେବେଳେ ଶ୍ରୀରାମକୁ ଆଶ୍ରେକଲା
ଯାଇ ।
ଶତେ ଯୋଜନ ସେ ସାହେର ଗଲା
ଡେଇଂ ॥
ଲଙ୍କାଗଡ଼ ପୋଡ଼ି ଅକ୍ଷୟକୁ କ୍ଷୟ କଲା ।
ପର୍ବତ ଉପାଡ଼ି ସମୁଦ୍ର ବାନ୍ଧିଲା ॥
ସ୍ୱାମୀର ବଳେଣ ସେବକ କାର୍ଯ୍ୟକରି ।
ଅସୁରେ କପିଙ୍କି ଯେ ପଳାଉଥିଲେ
ଡରି ॥୬୦
ଏବେ ସୀତା ସାଙ୍ଗେ ଯହୁଁ ସେ ଅଛନ୍ତି ।
ଋକ୍ଷକପି ବଳଙ୍କୁ ମାରିଣ ଖେଦନ୍ତି ॥
ତାହାଙ୍କର ଡରାଇଲେ ଡରନ୍ତି ରକ୍ଷସନ୍ୟ ।
ଦୂରେଥାଇ ଦେଖନ୍ତି ଜାନେକୀ ଆଗମନ ॥
ଲୋକଙ୍କ ଗହଳେ ସେ ନ ଦିଶଇ
ହାନ୍ଦୋଳା ।
କ୍ଷୀର ସମୋଦ୍ରକି ହଉଅଛି ଗୋଳା ॥
ଲକ୍ଷ୍ମୀ ଜାତହୋଇ ଆସୁଛନ୍ତି ଅବା ।
ତେସନେକ ଦିଶଇ ଜାନେକୀର ପ୍ରଭା ॥
ଆଗେ ବିଭୀଷେଣ ଶାର୍ଦ୍ଦୋଳକୁ ଘେନି ।
ପଛ ପଟୁଆରେ ଅଛନ୍ତି ମନ୍ତ୍ରୀ ବେନି ॥୭୦
ଦୁଇ ପଖା ରଖନ୍ତି ସଇନ ଅପ୍ରମିତ ।
ମଧରେ ସୀତା ସଙ୍ଗେ ଯୁବତୀ ବହୁତ ॥
ଲଙ୍କାର ଅସୁର ଅସୁରୀ ଅପ୍ରମାଣ ।
ବାଜଇ ଶଙ୍ଖଭେରୀ ଟମକ ନିଶାଣ ॥
ଧୀର ଧୀର ହୋଇ ଚଳଇ ହାନ୍ଦୋଳା ।
ଏଥୁଅନନ୍ତରେ ଦଶରଥଙ୍କ ବଳା ॥
ଗହଳ ଶୁଣିକରି ସୁଗ୍ରୀବରକୁ ପୁଛି ।
ଭୋ ମଇତ୍ର କିସ ଗହଳ ଶୁଭୁଅଛି ॥
କପିରାଜ ବୋଇଲେ ଦେବ ଆସଇ
ବଇଦେହୀ ।

ଲୋକ ଦୂର କରିବାରେ ଯେସନ
ଶୁଭଇ ॥୮୦
ଶୁଣି ରଘୁନାଥ ଦୃବିନ୍ଦକୁ ବୋଲି ।
କହ ହୋ ଜାନେକୀ ଆସୁ ଯେବେ ଚାଲି ॥
ଯେ ମୋହୋର ଆଜ୍ଞା ବିଭୀଷେଣକୁ କହ ।
ରକ୍ଷ ମର୍କଟ ଯେ ଅଟନ୍ତି ମୋର ଦେହ ॥
ଯାହାର ନିମନ୍ତେ ଏଡ଼େ କନ୍ଦଳ କଲେ ।
ନବମାସ ଘରଦ୍ୱାର ଛାଡ଼ିଣ ଅଇଲେ ॥
ଭାତ ବରତନ ଦେଇନାହିଁ ମୁହିଁ ।
କ୍ଷଣେହେଂ ବିମୁଖ ଦେଖିଲା ତାଙ୍କର ନାହିଁ ॥
ଅଯୋଧା ଲୋକରୁ ଏ ଅଟନ୍ତି ବ୍ୟଥାୟିତ ।
ଲକ୍ଷ୍ମଣହୁଁ ଅଧିକ ମୁଁ ମଣଇ ଯେହାନ୍ତ ॥୯୦
ରକ୍ଷ ବାନରଙ୍କୁ ମୋହୋର ଅଭ୍ୟାନ୍ତର
ନାହିଁ ।
ହାନ୍ଦୋଳା ଚଢ଼ି ସୀତା ଆସଇ କାହିଁ ପାଇଂ॥
ଚାଲିଆସୁ ତାହାକୁ ଦେଖନ୍ତୁ ସମସ୍ତେ ।
ଏସନେକ ସ୍ତିରୀ ଦେଖିନାହାନ୍ତି ଜଗତେ ॥
ମନରେ ଅନ୍ତର ଧରିବେ ମୋର ବଳ ।
ବୋଲିବେ ଏହାର ପାଇଂ କଲୁ ଏତେ
ଗୋଳ ॥
କାଳେ ତାହାକୁ ତ ଦେଖି ନପାରିଲୁ ।
ଯେତେମାନ ପାରୁ ସମର ଘୋର କଲୁ ॥
ଏସନେକ ବୋଲି ପାଇବେ ମନେ ତ୍ରାସ ।
ଯାଅ ହୋ ଦୃବିନ୍ଦ ତୁ ଚଳାଇ
ଘେନିଆସ ॥୧୦୦
ଶୁଣି ଗନ୍ଧମାର୍ଦ୍ଦନ ତନଏ ବେଗେ ଯାଏ ।
ବିଭୀଷେଣର ଆଗେ ରାମର ଆଜ୍ଞା କହେ ॥
ଆଜ୍ଞା ହୋଇଲା ଯେବେ ସୀତୟା
ଚାଲିଆସୁ ।
ସ୍ୱର୍ଗ ମଞ୍ଚ ଦୁଇଲୋକ କଇ ଦିଶୁ ॥
ଶୁଣି ବିଭୀଷେଣ ଲେଉଟିଣ ଗଲା ।
ହାନ୍ଦୋଳ ବାହାରେ ଥାଇଣ ଜଣାଇଲା ॥
ଭୋ ମାତ ବଇଦେହୀ ଶୁଣସି କଥାଏ ।
ଦୃବିନ୍ଦ ସେନାପତି ରାମର ତହୁଁ ଥାଏ ॥
ବୋଇଲେ ଠାକୁରାଣୀ ଆସନ୍ତୁ ପାଯେ
ଚାଲି ।

ରକ୍ଷ ରାକ୍ଷାସ କପି ଦେଖିବେନା
ବୋଲି ॥୧୦
ଶୁଣିଣ ଜାନେକୀ ବାହାର ତତକ୍ଷଣ ।
ଆଗ ପଟୁଆରେ ଗଲା ବିଭୀଷେଣ ॥
ଜାନେକୀ ମନେମନେ କରଇ ବିଚାର ।
ସ୍ୱାମୀର କୋପ ମୋତେ ହୋଇଲା
ଗରୁତର ॥
ହାନ୍ଦୋଳା ଛାଡ଼ି ଯହୁଁ ଚାଲିଲାକ ସୀତା ।
ସାଧୁ ସାଧୁ କଲେ ସକଳ ଦେବତା ॥
ତିନିଭୂଲୋକ୍ୟେ ପରମଲକ୍ଷ୍ମୀ ବୋଲି ସ୍ତୁତି
ଭଣି ।
ଦେଖନ୍ତି ଲଙ୍କାର ରାକ୍ଷାସ ରାକ୍ଷାସୁଣୀ ॥
ଅଙ୍ଗୁଷ୍ଠି ଘେନିଣ ଚିହ୍ନାନ୍ତି ବଇଦେହୀ ।
ଶ୍ରୀରାମ ଅନରୂପେ ପ୍ରବର୍ତ୍ତଇ ଏହି ॥୨୦
ରକ୍ଷକପି ଦେଖନ୍ତି ଭରସା ତାହାଙ୍କରି ।
ବୋଲନ୍ତି ଏହି ସେ ଶ୍ରୀରାମ ମନୋହାରୀ ॥
ତୋହୋରେ ଶ୍ରୀରାମ ବାନ୍ଧିଲେ ସେତୁବନ୍ଧ ।
ତୋହୋରେ ଶ୍ରୀରାମ ଛେଦିଲେ ଦଶକନ୍ଧ ॥
ତୁ ସେ କମଳଣୀ ଗୋ ମାୟାରୂପେ ସୀତା ।
ଜନେକନନ୍ଦିନୀ ବରୁଣ ତୋହୋର ପିତା ॥
ଦଶରଥନନ୍ଦନ ଶ୍ରୀରାମ ଚକ୍ରଧାରୀ ।
ତୁ ସେ ଅଟୁ ତାହାର ଗୋ ପ୍ରିୟବତୀ ନାରୀ ॥
ଆମ୍ଭେ ସେ ଦେଖିଲୁ ଗୋ ଚର୍ମ ନୟନ
ଘେନି ।
ଗଲା ମହାପାତେକ ତୋହୋର ରୂପ
ଚିହ୍ନି ॥୩୦
ଲକ୍ଷ୍ମୀନାରାୟେଣର ହୋଇଲୁ ସେବକ ।
ଏସନେକ ବୋଲନ୍ତି ସୁଗ୍ରୀବର ଲୋକ ॥
ଏଥୁଅନନ୍ତରେ ଜନେକଦୋହିତା ।
ପଟୁଆର ଭିତରେ ଚାଲଇ ଦେବୀସୀତା ॥
ମତ୍ତଗଜଗବନୀ ଧୀରେ ଧୀରେ ଆଏ ।
ଜଳେ ହଂସ ଯେହ୍ନେ ବଢ଼ାବନ୍ତି ପାଏ ॥
ଶ୍ୟରୀର ଝଳକଇ ବିଜୁଳି କୋଟି ଜାଣି ।
ଷୋଳକଳା ଶଶୀକି ପଡ଼ିଲା ଧରଣୀ ॥
ନିର୍ଦ୍ଧୂମ ଅଗ୍ନିକି ଆସୁଅଛି ଜଳି ।
ନବରତ୍ନେ ଜଡ଼ିତ କି ସୁବର୍ଣ୍ଣ
ପିତୋଳୀ ॥୪୦

ରକ୍ଷ ରାକ୍ଷାସ କପି ଦେଖି ମୋହଯାନ୍ତି ।
ଉଚ୍ଛୁଳି ବେଣ୍ଟେ ଯେହ୍ନେ ଜନ୍ତୁମାନେ
ଧାମନ୍ତି ॥
ସ୍ୱର୍ଗେ ଦେବତାଏ ସ୍ତମ୍ଭୀଭୂତ ହୋଇ ।
ଜାନେକୀର ରୂପକୁ ଅଛନ୍ତି ଅନାଇ ॥
ଶ୍ରୀରାମର ସନ୍ନିଧେ ମିଳିଲେ ଚନ୍ଦ୍ରମୁଖୀ ।
ସେନା ଯୂଥପତି ଚମତ୍କାର ଦେଖି ॥
ମକର ଆଦିତ୍ୟ ଯେହ୍ନେ ପ୍ରଭାତେ
ଉଇଂଆସଇଂ ।
ଶ୍ରୀରାମ ଘରଣୀ ତେସନେକ ଦିଶଇ ॥
ରଘୁନାଥଙ୍କୁ ନମସ୍କାର କଲେ ବଇଦେହୀ ।
ଦୁଇ ଭଡ଼ା ପଛକୁ ଘୁଞ୍ଚି ଉଭାହୋଇ ॥୫୦
ଭୋଦେବ ଦଶରଥ ନନ୍ଦନ ବୋଲିଣ କାନ୍ଦି ।
ମୁହିଂ ହାଦେ ଅସୁର ଘରେ ଥିଲି ବନ୍ଦୀ ॥
ଏକର୍ମ ସେ ବିଧାତା ମୋତେ ଆଣି କଲା ।
ମୋହୋର ଯୋଗୁଂ ତୋତେ କଳଙ୍କ
ଉପୁଜିଲା ॥
ଏତେ ବୋଲି ଦେବୀ ରୋବଇ
ଉଚ୍ଚଂସ୍ୱରେ ।
ଶ୍ରୀରାମହିଂ ଲୁଥ ପକାଇଲେ ଶୋକଭରେ ॥
ମୁଖେ ବସ୍ତ୍ର ଦେଇ କାନ୍ଦନ୍ତି ଲକ୍ଷ୍ମଣ ।
କାନ୍ଦନ୍ତି ସୁଗ୍ରୀବର ଜମ୍ୱେବ ସୁଷେଣ ॥
ଅଙ୍ଗଦ ହନୁମନ୍ତ ଗନ୍ଧମାରଦନ ।
ଶରଭୀ ସେନାପତି ବସନ୍ତ ଚନ୍ଦନ ॥ ୬୦
ମହୀନ୍ଦ୍ର ଦୃବିନ୍ଦ ଗବଏ ଗବାକ୍ଷ ।
ସମ୍ପାତି ବିବିଧ ରମଣ ତାରାକ୍ଷ ॥
କାନ୍ଦନ୍ତି ନଳ ନୀଳ କୁମୁଦ ସୁସୋଦନ ।
ରମଣ କାଳିଞ୍ଜନର ଶୋକ ଅବିଚ୍ଛିନ୍ନ ॥
ଅନେକ ଶୋକ ଯେ କହିତ ନୁହଇ ।
ରକ୍ଷକପି ରୋଦନେ ଉଚ୍ଛୁଳିଲା ମହୀ ॥
ବିଭୀଷେଣ ରାଜା ସହିତେ ମନ୍ଦୋଦରୀ ।
ଲଙ୍କାର ଅସୁରୀ ହାହାକାର କରି ॥
ବାବୁ ଯେ ସାଧେବୀ ପତିବ୍ରତା ସ୍ୟତୀ ।
ରଘୁନାଥ ଏହାର ଅନରୂପେ ପତି ॥୭୦
ଯୁବକାଳେ ଦୁହେଂ ହୋଇଲେ ଛଡ଼ାଛଡ଼ି ।
ତେରମାସେ ଯେବେ ଦୁହେଂ ଅଛନ୍ତି
ଭେଟପଡ଼ି ॥

ମୁରୁଛି ନ ପାରି ଯେବେ ରୋଦନ କରନ୍ତି ।
କାନ୍ଦୁ କାନ୍ଦୁ ଲୋକେ ଏମନ୍ତ ବୋଲନ୍ତି ॥
ଏମନ୍ତେ ଘଡ଼ିଏ ପର୍ଯନ୍ତ ରୋଦନ କଲେ ।
ଶୋକ ସମ୍ଭାଳିଣ ଶ୍ରୀରାମଚନ୍ଦ୍ର ବୋଇଲେ ॥
ଭୋ ସୀତା ଶୁଣସି ଗୋ ଯେ ମୋହୋର
ବାଣୀ ।
ପ୍ରତିଜ୍ଞା ଯେ କରି ମାଇଲି ବିଂଶପାଣି ॥
ଅସୁରବଳକଇ ଧୂମାନ୍ତି ପକାଇଲି ।
ସୁଗ୍ରୀବର ଛଳେ ବାଳୀକି ବଧ୍ୟକଲି ॥୮୦
ସମୋଦ୍ର ଭିତରେ ବାନ୍ଧିଲି ସେତୁବନ୍ଧ ।
ଯଶ ପାଇବା ଅର୍ଥେ ଛେଦିଲି ଦଶସ୍କନ୍ଧ ॥
ତୋହୋର ନିମନ୍ତେ ହାଦେ କଲଇଂ
ଏମାନ ।
ରଘୁବଂଶର ଛଳେ ଫେଡ଼ିଲି ଅଭିମାନ ॥
ପରଘରେ ଆଗୋ ଯେବଣ ନାରୀ ଥିଲା ।
ସେ ପୁଣି କୁଳକୁ କେମନ୍ତେ ଯୋଗାଇଲା ॥
ମୁହିଂ ଯେବେ ପ୍ରତିଗ୍ରହ ଗୋ ନକରିବି
ତୋତେ ।
ତୁ ଜନେକଦୋହିତା ଗୋ ନ ଯୋଗାଉ
ମୋତେ ॥
ଦଶଦିଶେଣ ଗୋ ଯେଣେ ପାରୁ ଯାଅ ।
ଆବର ତୁ ଗୋ ମୋତେ ଆଶା ନ
ବଳାଅ ॥୯୦
ଶ୍ରୀରାମର ମୁଖୁ ଏସନେକ ବାଣୀ ଶୁଣି ।
ତବଦ ହୋଇଲେ ସର୍ବଲୋକେ ପୁଣି ॥
ଦେହରୁ କିଅବା ଛାଡ଼ିଗଲା ପ୍ରାଣ ।
ସୁଗ୍ରୀବ ଜମ୍ୱେବ ଅଙ୍ଗଦ ସୁଷେଣ ॥
ହନୁମନ୍ତ ନଳ ଗନ୍ଧମାରଦନ ।
ଲକ୍ଷ୍ମଣ ସୁଷେଣ ମହୀନ୍ଦ୍ର ଚନ୍ଦନ ॥
ଅଷ୍ଟସେହ୍ମା ଆବର ପଚିଶ ଯୂଥପତି ।
ରକ୍ଷକପି ରାକ୍ଷାସେ ଯେତେକ ପ୍ରଭୃତି ॥
ଥମ୍ଭୀଭୂତ ହୋଇ ଚାହାନ୍ତି ଜଳଜଳ ।
ଓପ୍ରୋଧ ଛାଡ଼ି ଯହୁଁ କହିଲେ
ରଘୁବାଳ ॥୧୦୦
ଶୁଣି ବଇଦେହୀ କପାଳ କଣ୍ଟିଲେ ।
ହୃଦପଦ୍ମ ମଧେ କଥାନ୍ତ ବାଣ୍ଟିଲେ ॥

ବିଚାରିଲେ ଶ୍ରୀରାମ ହୋଇଲା ମୋତେ
କୋପ ।
ଭୁଞ୍ଜିବି ନା ଯାହା ଅରଜିଅଛି ପାପ ॥
ଏତେ ଭାଳି ତବଦ ହୋଇ ଚାହିଁଅଛି ।
ପୁଣି ତମ କରି ବୋଲନ୍ତି ରଘୁବଛି ॥
ତୁ ଯେବେ ଦଶଦିଶେ ନଯିବୁରେ ନାରୀ ।
ଭ୍ରଥ ଲକ୍ଷ୍ମଣ ଭାଇ ଅଛନ୍ତି ମୋହୋରି ॥
ଏହାଙ୍କର ଘରଣୀ ହୋଇଣ ଘର କର ।
ନ ଉଚିତ ହୋଇଲେ ବିଭୀଷେଣକୁ
ବର ॥୧୦
ଲଙ୍କାଗଡ଼କୁ ବିଳସ ସୁଖ ପାଇ ।
ତୋହୋର ମୋହେରେ ଗୋ କିଛିହିଁ କାର୍ଯ୍ୟ
ନାହିଁ ॥
ସୁଗ୍ରୀବର ଜମ୍ୱେବ ହୁନମନ୍ତକୁ ଚାହିଁ ।
ଯେମନ୍ତେ ରୁଚଇ ବରସି ତାହାକଇ ॥
ଶୁଣି ବଇଦେହୀ ଉଚ୍ଚେଂ ରୋଦନ କଲା ।
ଶ୍ରୀରାମର ମୁଖ ଚାହିଁ ବଚନ ବୋଇଲା ॥
ଋଷିକୁଳରେ ମୁହିଁ ହୋଇଲଇଂ ଜାତ ।
ରଘୁକୁଳନାଥକୁ ବିଭାଦେଲା ମୋର ତାତ ॥
ନଟନାରୀ ପରାୟେ ମୋତେ ତୁ ଆନକୁ
ବିଳୋହୁ ।
ଏଡ଼େ ନ ଜାଣିମା କଥା କହୁ କିମ୍ପା
ପ୍ରହୁ ॥୨୦
ଭୋ ଶତ୍ରୁଜିତା ମୁଂ ନରେନ୍ଦ୍ରର ରାଣୀ ।
ଦୁଇକଳକୁ ଶୁଦ୍ଧ ମୁଂ ଜଗତେ ବଖାଣି ॥
ଏ ଗୁଣ ଛାଡ଼ିଣ ତୁ କୋପ ମୋତେ କରୁ ।
ହାନିଲାଭ କଥା କିଂପା ବିଚାର ନକରୁ ॥
ଭୋସ୍ୱାମୀ ଏବେ ତୁ ମୋହୋର ବୋଲ
ଶୁଣ ।
ଧର୍ମବଳ ସାହା ମୋତେ ହୋଇବ ରଘୁରାଣ ॥
ତୁ ଏବେ ପରୀକ୍ଷା କରିଣ ମୋତେ ବୁଝ ।
ଇହଲୋକ ପରଲୋକ ଦୁଇଲୋକ କଥା
ସୁଝ ॥
ତିନିଲୋକହାଦେ ଜିଣସି ଗୋସାଇଂ ।
ଜଳନ୍ତା ଅନଳେ ମୁଂ ପଶିବି ଝସାଇ ॥୩୦
ଭୋ ଲକ୍ଷ୍ମଣ ଅଗ୍ନି ଅରୋପଣ କର ।
କିମ୍ପା ମନେ ତୁମ୍ଭେ ଅବିଗୁଣ ଧର ॥
ଏ ମୋହୋର ପ୍ରାଣପତି ପ୍ରତେ ଯାଉ ।
ତାହା ମୁଂ କରିବି କଥା ରହିଥାଉ ॥
କିମ୍ପା ଅଳସ ତୁହୋ କରୁ ଲଇକ୍ଷଣ ।
ଅଗ୍ନି ଜାଳି ଦିଅ ମୁଂ ପଶିବି ଏହିକ୍ଷଣ ॥
ଶୁଣି ସଉମିତ୍ରୀ ଶ୍ରୀରାମ ମୁଖଚାହିଁ ।
ଦୃଷ୍ଟି ଅନୁମତେ ନୟନେ ରାମ କହି ॥
ରଘୁନାଥର ସନମତ ଜାଣିଲା ଲଇକ୍ଷଣ ।
ଥାଠ ପେଷି କାଠ ଅଣାଇଲା ତତକ୍ଷଣ ॥୪୦
ତ୍ରୋଣୁ ଅଗ୍ନିବାଣ ଘେନି ଜାଳିଦେଲେ ।
ପରଖର ଅନଳ ଜଳିଣ ଉଠିଲେ ॥
ବିଭୀଷେଣ ଘୃତ ଅଣାଇଲା ତତକ୍ଷଣ ।
ଜଳନ୍ତା ହୁତାଶନେ ପକାବନ୍ତି ଢାଳିଣ ॥
ବିକରାଳ ହୋଇ ଜଳଇ ବହନି ।
ତପତର ଘାଏ ଦୂର ହୋଇଲେକ ସଇନି ॥
ଦେଖିଣ ଜାନେକୀ ପରମ ତୋଷ ଚିତ୍ତ ।
ପୂର୍ବମୁଖ ହୋଇ ବୋଲଇ ଜନେକର
ଦୋହିତ ॥
ଶ୍ରୀରାମହୁଂ ମୋର ମନ ଆନେ ଯେବେ
ଥାଇ ।
ଭୋ ହୁତାଶନ ପକାଅ ମୋତେ ଦହି ॥୫୦
ଏସନେକ ବୋଲି ପାଣିରେ ଯେହ୍ନେ ପଶି ।
ଜଳନ୍ତା ହୁତାଶନେ ପଶଇ ଦେବୀ ଝାସି ॥
ଦେଖି ସକଳ ଲୋକେ ହାହାକାର କଲେ ।
ନିଷ୍ଚୟେ ଜାନେକୀ ଗୋ ଯେଥି
ନାଶଗଲେ ॥
କିମ୍ପା ରଘୁନାଥ କଲେ ଏଡ଼େ କର୍ମ ।
ଜାଣିଲୁ ଲୋକକଇ ଝିଙ୍ଗାସଇ ଧର୍ମ ॥
ଯାହା ନିମନ୍ତେ ଏଡ଼େକ କାର୍ଯ୍ୟ କଲେ ।
ଏବେ ସେ ମହାସ୍ୟତୀକି ଗୋ ଅଗ୍ନିରେ
ପୋଡ଼ିଦେଲେ ॥
ରକ୍ଷୀ ଅସୁରୀଙ୍କର ବୋଲ ଅପ୍ରମାଣ ।
ବୋଇଲେ ଏଡ଼େ ନିର୍ଦ୍ଦୟା ଅଟନ୍ତି
ରଘୁରାଣ ॥୬୦
ଆମ୍ଭକୁ ମାଣ୍ଡୁବୁଡ଼ା କରନ୍ତେ ସର୍ପଘଟ ।
ଯେ କିମ୍ପା ଜାନେକୀକି କଲେ ପ୍ରାଣଭ୍ରଷ୍ଟ ॥
ମନ୍ଦୋଦରୀ ସହିତେ ବିଭୀଷେଣର
ରାଣୀମାନେ ।
ଡରେ ଥରହର ଭାଳନ୍ତି ମନେ ମନେ ॥
ବିଚାରନ୍ତି ଶ୍ରୀରାମର ନାହିଁ ଯେ ଓପ୍ରୋଧ ।
କେମନ୍ତେ ରାବଣକୁ ନ କରନ୍ତେ ପ୍ରାଣେ
ବଧ ॥
ଲଙ୍କାର ରାକ୍ଷାସ ରାକ୍ଷାସୁଣୀ ରୋଦନ କରି ।
ଶ୍ରୀରାମକୁ ବଇରାଗ ମନେ ମନେ ଧରି ॥
ଏଡ଼େକ ନିର୍ଦ୍ଦୟା ଯେ କଉଶୁଲାର ସୁତ ।
ଏହାର ପରା ସୁନ୍ଦେରୀକି କଲା
ପ୍ରାଣହତ ॥୭୦
ରକ୍ଷକପି ଭାଳନ୍ତି କଲୁ ଏଡ଼େ ରଣ ।
ତେତେଡ଼େ ଦୁଃଖ ପାଇଲାର ହୋଇଲା
ଅକାରଣ ॥
କିମ୍ପାଇଂ ରଘୁନାଥ କଲେକ ପାପବୁଦ୍ଧି ।
ହୁତାଶନେ ଧଂସିଲେ ଯୁବତୀ ରତ୍ନନିଧି ॥
ଅଷ୍ଟସେହ୍ନା ପଚିଶ ଯୂଥପତି କାନ୍ଦି ।
ବସ୍ତ୍ରହିଂ ନ ପିନ୍ଧିଲେ ବାଳହିଂ ନବାନ୍ଧି ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହୁନମନ୍ତ ।
ନଳନୀଳ ସୁଷେଣ ତାରାକ୍ଷ ଜମ୍ୱୋବନ୍ତ ॥
ଓପ୍ରୋଧ ଶ୍ରୀରାମଙ୍କୁ ନ ବୋଲନ୍ତି କିଛି ।
ସବୁଙ୍କରି ଦେହ ଆଉଟି ହେଉଅଛି ॥୮୦
ଖଳ ଖଳ ନୟନୁ ବହଇ ଅଶ୍ରୁଜଳ ।
ବୁକୁରେ କୋଡ଼ି ହୋଇ କାନ୍ଦନ୍ତି ସୁମିତ୍ରାର
ବାଳ ॥
ଶ୍ରୀରାମହିଂ ମନେ ମୁରୁଛି ନ ପାରିଲେ ।
ସୀତା ସୀତା ବୋଲି ଆପଣେ କାନ୍ଦିଲେ ॥
ଆହା ଜାନେକୀ ଗୋ ମୋ ପ୍ରାଣର ପୀରତି ।
କଥାର ଛଟକେ ମୁଂ ହରାଇଲି ସତୀ ॥
କିମ୍ପା ଯେ ପାପବୁଦ୍ଧି ପ୍ରସରିଲା ମୋତେ ।
କେବଣ ମୂର୍ଖପଣେ ମୃଛିଲି ମୁଂ ତୋତେ ॥
ଏ ଜନ୍ମେ ତେତେ ମୃଛିଲି ଦେଖିବି ହାଦେ
କାହିଂ ।
ତୋର ପରାୟେ ସୁନ୍ଦେରୀ ଦେଖିଲା
ମୋହୋର ନାହିଂ ॥୯୦
ଯାହା ନିମନ୍ତେ ମୁଂ ଦୁର୍ଲଭ କାମ କଲି ।

ସେ ପ୍ରାଣବଲ୍ଲଭୀକୁ ଅଖଡ଼େ ହରାଇଲି ॥
ଏସନେକ ବୋଲି କାନ୍ଦନ୍ତି ରଘୁରାଣ ।
ରଘୁନାଥ ଭାଳନ୍ତେ ଭାଳନ୍ତି ସୁରଗଣ ॥
କେବଣ ପ୍ରକାରେ ରାମ ପ୍ରବୋଧ ଏବେ ହେଉ ।
କେବଣ ଉପାୟେ ଏହାର କାନ୍ଦିବାର ରହୁ ॥
ବ୍ରହ୍ମାଦି ଦେବତାଏ ଏସନେକ ବିଚାରି ।
ରଦ୍ର ବୋଲନ୍ତି ଶୁଣଗୋ ଶାକାମ୍ଭେରୀ ॥
ଜଳନ୍ତା ଅନଳେ ପଶିଲେ ଯହୁଂ ସୀତା ।
ଚଉଦ ଭୁବନ ଲୋକେ ପାଉଛନ୍ତି ବ୍ୟଥା ॥୧୦୦
ଶ୍ରୀରାମର ରୋଦନ କହିଲେ ନସରି ।
ଅଗ୍ନିକି ତରକି ଯେ ଚାହାନ୍ତି ରାବଣାରି ॥
ତପତର ଘାୟେ ନପାରିଲେ ଦୃଷ୍ଟି ଦେଇ ।
ଜାନେକୀ ବୋଲିଣ ବୁକୁରେ କୋଡ଼ିହୋଇ ॥
ଶ୍ରୀରାମ ବିକଳ ଲଙ୍କା ନାରୀମାନେ ଚାହିଁ ।
ରୋଦନ୍ତି ନିର୍ମାକ୍ଷୀଜନପ୍ରାୟେ ହୋଇ ॥
ଏକଳେ ରୋଦନ୍ତେ ସେ ପ୍ରଳୟ ସିନ୍ଧୁ ଜାଣି ।
ଆକାଶେ ସୁରଗଣେ କାନ୍ଦୁଛନ୍ତି ପୁଣି ॥
ସେ ଘୋର ଗର୍ଜନ ସମୁଦ୍ର ଯେସନ ।
ଦେବତାଙ୍କ ରୋଦନ ଶୁଭଇ ତେସନ ॥୧୦
ଏସନେକ ସମୟେ ଜଳନ୍ତା ହୁତାଶନର ମଧ୍ୟେ ।
ପୁରୁଷେକ ଉପୁଜିଲା ଦେଖିଲେ ସୁରସିଧେ ॥
ଅଗ୍ନିର ଭିତରୁ ସେ ହୋଇଲା ବାହାର ।
ଅଗ୍ନିପରାୟେ ଦେହ ଦିଶଇ ତାହାର ॥
ସୀତାକୁ ଆଗକରି ଶ୍ରୀରାମକୁ କହି ।
ଏସେ ଅପାପୀ ହୋଇ ଅଟଇ ବଇଦେହୀ ॥
ଏସନେକ କୃତ୍ୟ ଦେଖିଲେ ଦେଖଣାହାରୀମାନେ ।
ଉଭୁରାଉଭୁରି ହୋଇ ଧାମନ୍ତି ବହନେ ॥
ହୁତାଶନ ବେଢ଼ି ଶୁଣନ୍ତି ସମାଦ ।
ସମସ୍ତ ଶୁଣି ହୋଉଛନ୍ତି ତବନ୍ଦ ॥୨୦
ଅଗ୍ନି ଭିତରେ ଥାଇ କହଇ ସେ ପୁରୁଷ ।
ଭୋରାମ ଜାନେକୀର କିଛି ନାହିଁ ଦୋଷ ॥
ମୁଂ ଏହାନ୍ତ ସମର୍ପୁଅଛି ରାମ ତୋତେ ।
ମାନେବ ଦେହେ ତୁ ନ ଚିହ୍ନିଲୁ ମୋତେ ॥
ମୁହିଂ ତୋତେ ଜାଣଇ ତୁ ପରମ ବ୍ରହ୍ମପୁରୁଷ ।
ଅନନ୍ତ ମୂରତି ତୁ ସ୍ୱୟେଂ ବିଶ୍ୱବାସ ॥
ସେ ସୀତା ଅଟଇ ସୟେଂ କମଳିଣୀ ।
ନିକଳଙ୍କ ପ୍ରତିମା ତୋହୋର ପାଟରାଣୀ ॥
ଦେବସ୍ତିରୀମାନେ ଏହାକୁ ନୁହନ୍ତି ସରି ।
ପରମ ବୈଷ୍ଣବୀ ଏ ଜନେକକୁମାରୀ ॥୩୦
ଅଗ୍ନିକି ଅଗ୍ନି ଭକ୍ଷିତ କି ପାରିବ ।
ଏକଥା ତୁ ନିସଂଶୟେ ବୁଝସି ରାଘେବ ॥
ସୀତ୍ୟା କାଳାନଳ ଅଗ୍ନିର ସମାନ ।
ଏହାକୁ ଭାର୍ଜନ କି ଛୁଇଂତ ଦଶାନନ ॥
ଜଗତଜନନୀ କମଳଆସନୀ ।
ଦରିଦ୍ରଲୋକଙ୍କର ଦୁଃଖବିନାଶିନୀ ॥
ମୁହିଂ ବୋଲୁଅଛି ଏହାର ପାପ ନାହିଁ ।
ପରିଗ୍ରହ କର ସୀତାକୁ ପରମ ତୋଷ ହୋଇଂ ॥
ଶୁଣିଣ ରଘୁନାଥ ପରମ ତୋଷ ହେଲେ ।
ଆସ ଆସ ଜାନେକୀ ଗୋ ବୋଲିଣ ବୋଇଲେ ॥୪୦
ସୀତାଙ୍କୁ ସମର୍ପି ସେ ପୁରୁଷ ଅନ୍ତର୍ଦ୍ଧାନେ ।
ସାଧୁ ସାଧୁ ବୋଇଲେ ଦେଖଣାହାରୀମାନେ ॥
ଅଗ୍ନିର ଭିତରୁ ସୀତା ହୋଇଲେ ବାହାର ।
ଶୁଦ୍ଧ ସୁବର୍ଣ୍ଣ ତନୁ ଦିଶଇ ତାହାଙ୍କର ॥
ନିକଳଙ୍କ ଚନ୍ଦ୍ରମା ପ୍ରାୟେ ତାହାର ମୁଖ ଦିଶି ।
ଶ୍ରୀରାମ କୋଳକରି ଘେନିଗଲେ ଆସି ॥
ବିଷ୍ଣୁ ସନ୍ନିଧେ କି ଅଛଇ କମଳଣୀ ।
ସୀତା କୋଳେଧରି ତେସନ ରଘୁମଣି ॥
ଦେଖି ଦେବତାଏ ସାଧୁ ସାଧୁ କଲେ ।
ବ୍ରହ୍ମା ସହିତେ ସ୍ୱର୍ଗୁ ଓହ୍ଲାଇ ଅଇଲେ ॥୫୦
ଇନ୍ଦ୍ର ଚନ୍ଦ୍ର ବରୁଣ କୋବେର ନଇରତ ।
ଅଗ୍ନି ପବନ ଯମ ଦଇବତ ॥
ସୂର୍ଯ୍ୟ ଚନ୍ଦ୍ର ବିଶ୍ୱଦେବା ବୃହସ୍ପତି ।
ଅଙ୍ଗିରା ସନାତନ ସନକ ପୌଲସ୍ତି ॥
କଶ୍ୟପ ମହାଋଷି ନାରଦ ଯୋଗେଶ୍ୱର ।
ଅପସରୀ ବିଦ୍ୟାଧରୀ ଗନ୍ଧର୍ବ କିନ୍ନର ॥
ଅଷ୍ଟବସୁ ନବଗ୍ରହ ଅଣଚାଶ ବାୟେ ।
ଏକାଦଶ ରୁଦ୍ର ଦ୍ୱାଦଶ ରବି ଆଏ ॥
ପଞ୍ଚ ହୁତାଶନ ଷୋଳହ ଚନ୍ଦ୍ରମା ।
ସପତ ବରୁଣ ନବଗ୍ରହ ବିଶ୍ୱକର୍ମା ॥୬୦
ଚିତ୍ରରଥ ଅନଙ୍ଗ ପନଙ୍ଗ ଜୟେସେନ ।
ଏମାନେ ମିଳିଲେ ଶ୍ରୀରାମ ସନ୍ନିଧାନ ॥
ଅଶ୍ୱିନୀକୁମାର ବାରଗ୍ରହ ବିଶ୍ୱଦେବା ।
ଦଶ ଦିଗପାଳ ସହିତେ ମଘବା ॥
ସତୀ ପତିଭକ୍ତା ତପୀ ଜପୀମାନେ ।
ଐରାବତ ଗଜ ଉଚ୍ଚୈଃଶ୍ରବା ଯାନେ ॥
କଳ୍ପତରୁ ଅଇଲା ମୂର୍ତ୍ତିମନ୍ତ ହୋଇ ।
ଅରୁଣ ଗରୁଡ଼ ସହିତେ ଆସିଛନ୍ତି ତହିଁ ॥
ମାତେଳି ମାନସିକ ମହାଦାନୀମାନେ ।
ନନ୍ଦନ ଧନ୍ୱନ୍ତରୀ ଆୟେ ବେନିଜନେ ॥୭୦
ଦକ୍ଷ ବିଦ୍ୟାଧରୀ ପିଚାଶ ଉଡ଼ଙ୍ଗ ।
ଚଉଷଠି ଯୋଗ୍ନୀ ବାସୁକି ମହାନାଗ ॥
ଦୁର୍ଗା ସାବେତ୍ରୀ ମେନକା ଆସନ୍ତି ।
ଗଙ୍ଗା ଯମୁନା ସରସ୍ୱତୀ ମିଳନ୍ତି ॥
କୋଟିଏ ତୀର୍ଥ ଘେନି କାଳିନ୍ଦୀ ନଦୀ ଥାଏ ।
ସବୁ ନଦୀ ସଙ୍ଗମ ଯମୁନା ବୋଲି ଧାଏଂ ॥
ଗର୍ଜନ ନାଦକରି ଆସନ୍ତି ଯୋଗ୍ନୀ ରୂପେ ।
ଲଙ୍କାରେ ପ୍ରବେଶ ଦେବତାଙ୍କର ସମୀପେ ॥
ଅଷ୍ଟକୁଳାନାଗ ସାତବାର ସଙ୍କରାନ୍ତି ।
ବାରମାସ ଛଡ଼ରତୁ ଚାରିଯୁଗେ ଛନ୍ତି ॥୮୦
ତେତିଶକୋଟି ଦେବେ ଦଶଦିଗପାଳ ।
ସକଳ ବିଦ୍ୟାଧର ଘେନି ଗନ୍ଧର୍ବ ଦୁଲ୍ଲାଳ ॥
ତିମ୍ବୁର ହାହାହୁହୁ ଗନ୍ଧର୍ବ ମୋକ୍ଷପାନ ।
ଅଇଲେ ଦେବଋଷି ବ୍ରହ୍ମଋଷିମାନ ॥
ମେରୁ ସହିତେ ନିଘୋଡ଼ କପିଳାସ ।
ମହା ବୈକୁଣ୍ଠ ମନ୍ଦର କୃତ୍ତିବାସ ॥
ଅଷ୍ଟ ଗିରି ସହିତେ ନିଜରୂପ ଧରି ।
ଶ୍ରୀରାମଙ୍କୁ ଦେଖିବାକୁ ଆସନ୍ତି ଖରକରି ॥
ସତ୍ୟବନ୍ତ ପ୍ରାଣୀମାନେ ସ୍ୱର୍ଗେ ବସିଥିଲେ ।
ଦେବତାଙ୍କ ସଙ୍ଗେ ସେମାନେ ଅଇଲେ ॥୯୦

ଶଚୀ ସହିତେଣ ଅଇଲେ ସୁରପତି ।
ତେତିଶି କୋଟି ଦେବେ ବ୍ରହ୍ମା ଯେ ପ୍ରଭୃତି ॥
ସ୍ୱର୍ଗ ତେଜିଣ ଅଧୋମୁଖ ହୋଇ ।
ମନପବନ ଯୋଗେ ଆସନ୍ତି ଓହ୍ଲାଇ ॥
ଗଗନ ଛନଛନ ଦିଶଇ ତେଜପ୍ରଭା ।
ଅନେକ ସୂର୍ଯ୍ୟ ପ୍ରାୟେ ଦିଶଇ ମହାଶୋଭା ॥
ଜଗତ ଆନନ୍ଦ ବ୍ରହ୍ମାଣ୍ଡ ଆଲୁଅମୟେ
ଦିଶଇ ।
ସକଳ ଦେବତାଙ୍କୁ ଘେନି ପିତାମହ ଆସଇ ॥
ଲଙ୍କାଗଡ଼ ବାହାରେ ସମର ଭୂମିସ୍ଥାନେ ।
ମୂର୍ତ୍ତିବନ୍ତ ହୋଇ ବୃନ୍ଦାଅର୍କିଗଣେ ॥୧୦୦
ଆସିଣ ଶ୍ରୀରାମ ଛାମୁରେ ମିଳନ୍ତି ।
ଭୂମିରୁ ବେନିହାତ ଛାଡ଼ିଣ ଉଭା ହୁଅନ୍ତି ॥
ପୁଷ୍ପବୃଷ୍ଟି କରନ୍ତି ଶ୍ରୀରାମର ତହିଁ ।
ବୋଲନ୍ତି ଦେବତାଏ ଶୁଣ ରଘୁସାଇଁ ॥
ତୋହୋର ଆତ୍ମା ତୁ ନ ଚିହ୍ନିଲୁ ଦେବ ।
ଅନନ୍ତକୋଟି ବ୍ରହ୍ମାଣ୍ଡ ଅଟଇ ତୋର ଗର୍ଭ ॥
ସୀତାର ପତି ତୁ ଅଟୁ ବିଷ୍ଣୁନାଥ ।
ଶଙ୍ଖ ଚକ୍ର ଗଦା ପଦ୍ମ ବହୁ ତୁ ଯେ ହାଥ ॥
ଜଳନ୍ତା ଅଗ୍ନିକେ ପାରିବାକ ହରି ।
ଜାନେକୀକୁ ଛୁଇଁବାକୁ କି ଭାର୍ଜନ
ଦଶଶିରି ॥୧୦
ଆମ୍ଭେ ଅଇଲୁ ସୀତ୍ୟାର ଗୁଣ କହି ।
ମୁହିଁ ହାଦେ ବ୍ରହ୍ମାଟି ବୋଇଲାକ ବିହି ॥
ଭୋ ରାମ ମନୁଷ୍ୟ ତୁ ନୋହୁ ଅଟୁ
ମହାଶୂନ୍ୟ ।
ବ୍ରହ୍ମାଣ୍ଡର ଠାକୁର ତୁ ଅଟୁ ନାରାୟେଣ ॥
ସମସ୍ତ ପୁରେ ତେତେ କରନ୍ତି ହାଦେ ପୂଜା ।
ସେ ସୀତା ସର୍ବଦା ଅଟଇ ତୋହର
ଭାରିଯା ॥
ଏଥକୁ ସଂଶୟେ ତୁ ନ କର ରଘୁପତି ।
ଅନନ୍ତ ପୁରୁଷୋତ୍ତମ ଅଟୁ ବ୍ରହ୍ମଜୋତି ॥
ତୁ ସେ ଆଦିନାଥ ପୁରାଣ ପୁରୁଷ ।
ଏକଥାକୁ ଅଭିମାନ ନକର ରଘୁବଂଶ ॥୨୦
ମହତ ପୁରୁଷ ତୁ ପରମ ବ୍ରହ୍ମମୂରତି ।
ଜଗତ ଜନ୍ତୁ ହୃଦରେ ତୁହି ହାଦେ ସ୍ଥିତି ॥

ବଇକୁଣ୍ଠବାସୀ ତୁ ଅଟୁ ରାବଣାରି ।
ତୁ ସେ ରଘୁନାଥ ଦାସବତ୍ସଳ ଅଟୁ
ଦଇତାରି ॥
ଶୁଣିଣ ଶ୍ରୀରାମ ବୋଲନ୍ତି ଉଚ୍ଚକରି ।
ମୋତେ ତୁ କିମ୍ପାଇଁ କହୁଛୁ ପୁରସରି ॥
ଦଶରଥର ପୁତ୍ର ମୁଂ ରଘୁବଂଶରେ ଜାତ ।
ମାତା କଉଶୁଲ୍ୟା ଅଟନ୍ତି ମୋର ମାତ ॥
ଏହା ସେ ଜାଣଇ ମୁଂ ନ ଜାଣଇ ଆନ ।
କିସ କିସ କଥା ତୁମ୍ଭେ କହ ସୁରଗଣ ॥୩୦
ଜାତି ସ୍ୱରୂପ ହୋ ଅଟଇ ମୋହର କିସ ।
କହ ହୋ ବ୍ରହ୍ମା ମୁଂ କେବଣ ପୁରୁଷ ॥
କେବଣର କଥା ମୁଂ କିସ କରି ପାରଇ ।
ତୁ ଯେବେ ଜଗତ ତାତ ମୁଂ ତୋତେ
ପଚାରଇ ॥
ବ୍ରହ୍ମା ବୋଲଇ ତୁ ଅଟୁ ନାରାୟେଣ ।
ସୁଦ୍ରିସେନ ଚକ୍ର ତୁ ବହୁ ଯେ ଆପଣ ॥
ନାରାୟେଣ ପୁରୁଷ ତୁ ସ୍ୱୟେଂ ବ୍ରହ୍ମବାସ ।
ତୁହି ସେ ମହାବଳୀ ପରମପୁରୁଷ ॥
ତୁହି ସେ ଜଳଥଳ ଅନଳହିଂ ତୁହି ।
ଭୂତ ଭବିଷ୍ୟ ବର୍ତ୍ତମାନ ଦେହୀ ॥୪୦
ବିପଦ ସମ୍ପଦ ତୋ ତହୁଂ ନାହିଁ ଆନ ।
ଆନର ବେଳେ ନାଶ ନ ଯାଇ ଦଶାନନ ॥
ଦେବତାଙ୍କର ପାଇଂ ତୁ ମନୁଷ୍ୟ ରୂପ
ଧଇଲୁ ।
ତୈଲୋକ୍ୟର ଶତ୍ରୁ ହେଲେଣ ମାଇଲୁ ॥
ଚଉଦଭୁବନ ପ୍ରାଣୀଙ୍କର ତୁ ଅଟୁ ପଞ୍ଚଭୂତ ।
ତୁ ସେ ଭଗବାନ ଚିନ୍ତିଲେ ଅଚିନ୍ତ ॥
ତୁ ଯୋଗ ତୁ ଭୋଗ ତୁ ସେ ସକଳ
ଲୋକ ।
ତୁ ସେ ପରମବ୍ରହ୍ମ ପୁରୁଷ ମହତ ବିବେକ ॥
ତୁମ୍ଭେ ସେ ଶାନ୍ତିମୂର୍ତ୍ତି କ୍ଷେମା ଯେ ଅକ୍ଷେମା ।
ଅଦଏ ସଦଏତୁ କାମା ଯେ ଅକାମା ॥୫୦
ଶରଣ ରକ୍ଷଣ ତୁ ଅଟୁ ହୋ ଜନାର୍ଦ୍ଦନ ।
ଜଗତମଙ୍ଗଳ ଅଟଇ ତୋର ନାମ ॥
ଏସନେକ ବୋଲି ବ୍ରହ୍ମା ଯୋଡ଼ଇ
ବେନିକର ।

ଶ୍ରୀରାମଙ୍କୁ ସ୍ତୁତି କରଇ ଶଶୀଧର ॥
ଭୋଦେବ ତୁ ଚତୁର୍ବେଦର ଶାଖା ଅଟୁ ।
ସମାଗାନ ତୁ ଅଟୁ ବିଷ୍ଣୁ ବଟୁ ॥
ଉ କାର ମ କାର ଅ କାର ଜଗତେ
ପ୍ରଧାନ ।
ତୁ ସେ ଦଶଦିଗ ପର୍ବତ ଧାତୁମାନ ॥
ଅଭାବ ବିଭବ ତୁ ସକଳ ଶ୍ୟରୀର ।
ଭିନ୍ନ ଅଭିନ୍ନ ତୁ ଜଗତ ଯୋଗେଶ୍ୱର ॥୬୦
ତୁ ସେ ପଦ୍ମନାଭ ଜଗତ ଉଧାରଣ ।
ମୁଂ ତୋତେ ଜାଣଇ କମଳା ରମଣ ॥
ତୋହୋର ଜିଭ୍ୟାରେ ସ୍ୱରସ୍ୱତୀ ବସି ।
ସର୍ବ ଦେବ ଶାସେକ ଅଟୁ ତୁ ହୃଷୀକେଶୀ ॥
ଚନ୍ଦ୍ରସୂର୍ଯ୍ୟ ତୋହୋର ଅଟନ୍ତି ନୟନ ।
ତୁ ସେ ବିଶ୍ୱମୂର୍ତ୍ତି ଜଗୁ ଯେ ଜୀବନ ॥
ତୁମ୍ଭେ ସେ ହେତୁମତି ଜଗତ ଶ୍ୟରୀର ।
ଧଉର୍ଯେ ପୃଥ୍ୱୀ ତୁ ଧଇଲୁ ରଘୁବୀର ॥
ତେଜରୁ ଅଗ୍ନିକୁ ତୁ କଲୁ ହାଦେ ଜାତ ।
ଶ୍ରୀବତ୍ସ ଲକ୍ଷଣ ତୋହୋଇ ଚନ୍ଦ୍ରମା
ଉଦିତ ॥୭୦
ତୈଲୋକ୍ୟ ଭିତରେ ସମସ୍ତେହେଂ ଅଛୁ ପୂରି ।
ଦଇତବନ ନିଧନ ତୁ କଲୁ ଚକ୍ରଧାରୀ ॥
ଦଇତ ମାରି ତୁ ଇନ୍ଦ୍ରରାଜ୍ୟ ସ୍ଥିର କଲୁ ।
ରାବଣ ମାରିବା ଅର୍ଥେ ମନୁଷ୍ୟ ହୋଇଲୁ ॥
ଏ ସୀତା ଅଟଇ ସାକ୍ଷାତ କମଳଣୀ ।
ଏହାକୁ ଅବିଗୁଣ ନଧର ରଘୁମଣି ॥
ଶୁଣିଣ ଶ୍ରୀରାମ ବୋଲନ୍ତି ବେଦପତି ।
ଯାହା କହିଲୁ ନରୁଚଇ ମୋର ମତି ॥
ଦେବ ଶ୍ୟରୀର ବୋଲି ବୋଇଲୁ
ବେଦପତି ।
ସଂସାର ଭାବନା କରିଅଛୁ ଉତପତି ॥୮୦
ଶାନ୍ତି ହୋଇବି କେହ୍ନେ ତୋହୋର ବୋଲ
ଶୁଣି ।
ଲୋକର ମୁଖେ ବାଡ଼କେ ଦେବ
ପଦ୍ମଯୋନି ॥
ଯେବେ ହୋଇବା ନା ଭବନଦୀ ପାର ।
ତଥାପି ନ ଛାଡ଼ିବା ଲୋକର ଆଚାର ॥

ଏସନେକ ବୋଲିଣ ଅଛଇ ପୂର୍ବ ବାଣୀ ।
ତବଦ ହୋଇଲେ ସକଳ ସୁରଗଣେ ଶୁଣି ॥
ବ୍ରହ୍ମା ବୋଇଲେ ରାମ କିମ୍ପାଇ ଏହା କହୁ ।
ତୁ ସେ ଅଟୁ ଅନନ୍ତକୋଟି ବ୍ରହ୍ମାଣ୍ଡର ପ୍ରଭୁ ॥
ଯେ ତୋହୋର ବାପ ଦଶରଥ ଆସିଅଛି ।
ଦେଖିବୁ ଟାକୁ ଟିକି ହୋ କୌଶୁଲ୍ୟାର ବଛି ॥୯୦
ତୋହୋର ବନ-ବାସ ଅଇଲେ ସେ ମଲା ।
ଏବେ ତୋତେ ଦେଖିବ ବୋଲି ସେ ଅଇଲା ॥
ଏତେ ବୋଲି ଦଶରଥଙ୍କୁ ଦେଖାଇଲେ ନେଇ ।
ଆନନ୍ଦ ହୋଇଲେ ରାମ ପିତାଙ୍କୁ ପୁଣ ଚାହିଁ ॥
ଲକ୍ଷ୍ମଣ ସହିତେ ଶ୍ରୁତିଲେ ଗଡ଼ଘାଲି ।
ଅଯୋଧ୍ୟା ନୃପତି ଉଠ ଉଠ ବୋଲି ॥
ଦୁଇହାତରେ ଯେ ତୋଳିଲେ ଦୁଇପୁଅ ।
ଆନନ୍ଦେ ଦଶରଥ ନୟନୁ ବହେ ଲୁହ ॥
ପୁତ୍ରନ୍ତ କୋଳେ ଧରି ମୁଖେ ଚୁମ୍ବନ ଦେଲା ।
ଶ୍ରୀରାମର ମୁଖ ଚାହିଁ ଅନେକ ଚାଟୁ କଲା ॥୧୦୦
ବୋଇଲେ ବାବୁରେ ତୋହୋର ବିହୁନେ ।
ସ୍ୱର୍ଗ ସମ୍ପଦ ନରୁଚଇ ମୋର ମନେ ॥
ତୋତେ ଅରଜିଲି ତୋହୋର ପୁଣ୍ୟେଣ ତରିଲି ।
କୟେକୟା ମାଆର କୁମନ୍ତ୍ରେଣ ପଡ଼ିଲି ॥
ତୁ ପୁତ୍ର ବୋଲିଣ ସେ କଲୁ ମୋତେ ପାରି ।
ଧନ୍ୟ ପୁତ୍ର ଗୁଣ ଅଟଇ ତୋହୋରି ॥
ରାବଣ ମାରିବାକୁ ବିଷ୍ଣୁ ଅବତରି ।
ଏ ମୋହୋର କାକୁସ୍ଥ କୁଳ ଉଦ୍ଧରିଣ ଧରି ॥
ଯେ ତୋହୋର ଗର୍ଭଧାରୀ ଅଟଇ କଉଶୁଲ୍ୟା ।
ତାହାର ସେ ଜୀବନ ସୁଫଳ ହୋଇଲା ॥୧୦
ଏବେ ରଘୁନାଥ ଅଯୋଧ୍ୟାକୁ ଯାଯା ।
ସତ୍ୟ ପୂରିଲା ଯେବେ ହୁଅ ନିଜ ରାଜ୍ୟରେ ରାଜା ॥

ଦେଖନ୍ତୁ ଜନନୀ ଦେଖନ୍ତୁ ଭାଇମାନେ ।
ଲଙ୍କାପୁରୁ ଯେବେ ଚଳସି ବହନେ ॥
ଏଥୁ ଯାଇ ବାବୁ କରିବୁଟି ଯାଗ ।
ଦେବତା ନିସ୍ତରିବେ ଭୁଞ୍ଜିଣ ହବିର୍ଭାଗ ॥
ଏ ସୀତା ମୋହୋର କୁଳ ଉଦ୍ଧରିଲା ।
ଏହାର ପ୍ରସାଦେ କୁଳ ମୋ ସ୍ୱର୍ଗରେ ବସିଲା ॥
ଏହାନ୍ତ ବିଚାର ତୁ ନକର ରଘୁପତି ।
ଲକ୍ଷ୍ମୀ ବୋଲି ହାଦେ ଦେବତାଏ ବୋଲନ୍ତି ॥୨୦
ଭୋ ପୁତ୍ର ତୋହୋରେ ତରିଲି ନିଶ୍ଚୟେ ।
ଶୁଣିଣ ଆନନ୍ଦ ହୋଇଲେ ରାମରାଏ ॥
କର ଦୁଇ ଯୋଡ଼ିଣ ବୋଲନ୍ତି ଭୋ ପିତା ।
ଧନ୍ୟ ଅଟଇ ମୋର କୟେକୟା ମାତା ॥
ସେ ଯେବେ ମୋତେ ନ ପେଷନ୍ତେ ବନ ।
ମୁଁ ପୁଣି ତୁମ୍ଭଙ୍କୁ ଦେଖନ୍ତି କେସନ ॥
ତାହାର ଫଳେ ସିନା ଦେଖିଲଇଁ ତୋତେ ତାତ ।
ଆଜ ସେ ସୁଫଳ ହୋଇଲା ସୂର୍ଯ୍ୟଗୋତ୍ର ॥
ଶୁଣି ଦଶରଥ ପୁତ୍ରକୁ କୋଳକଲେ ।
ତୁ ସେ ଅବ୍ୟୟ ବିଷ୍ଣୁ ବୋଲିଣ ବୋଇଲେ ॥୩୦
ତୁ ସେ ପରମବ୍ରହ୍ମ ଅଟୁ ରାବଣାରି ।
ଶୁଣି ପ୍ରସନ୍ନବଦନ କୋଦଣ୍ଡ ଚାପଧାରୀ ॥
ଦକ୍ଷିଣ ପାରୁଶେ ଅଛି ଜନେକନନ୍ଦିନୀ ।
ବିଷ୍ଣୁ ସହିତେଣ ବିଜୟେ କମଳିଣୀ ॥
ଏସନେକ ସମଏ ବ୍ରହ୍ମାଦି ସୁରମୁନି ।
ରାମ ରାମ ବୋଲି ଡାକନ୍ତି ଉଚ୍ଛେଧ୍ୱନି ॥
ରକ୍ଷାକର ବୋଲି ଯେ ପଡ଼ିଲେ ଗଡ଼ଘାଲି ।
ପାଏ ପଡ଼ି ଶ୍ରୁତିଲେ ଅନେକ ସ୍ତୁତି ବୋଲି ॥
ଭୋଦେବ ଅପ୍ରମିତ ମହିମା ତୋହୋରି ।
ସଞ୍ଚପି କେହୁ କହି ପାରିବ ଚକ୍ରଧାରୀ ॥୪୦
ରାମବେନି ଅକ୍ଷର ପରମବ୍ରହ୍ମ ଜ୍ଞାନ ।
ଯାହା ସେ ସୁରମୁନି କରନ୍ତି ନିତ୍ୟେଧ୍ୟାନ ॥
ସେ ବ୍ରହ୍ମ ଦେଖିଲୁ ଅନେକ ତପ ଫଳେ ।
ଦୁସ୍ତର ଦୁଃଖ ଆମ୍ଭର ଗଲା ଏତେକାଳେ ॥

ଦେବଙ୍କର ପ୍ରଳମ୍ଭ ଦେଖି ଦଶରଥ ।
ସେହି ଶିରେ ନେଇ ଯୋଡ଼ିଲେ ବେନି ହସ୍ତ ॥
ଧାଇଁଣ ଶ୍ରୀରାମ ପିତାଙ୍କୁ କୋଳ କଲେ ।
ଭୋ ତାତ ଏହା କିମ୍ପା କରସି ବୋଇଲେ ॥
ଏସନେକ ସମଏ ଉଠିଲେ ସୁରଗଣ ।
ଏଥୁ ଅନନ୍ତରେ ଅପୂର୍ବ କଥା ଶୁଣ ॥୫୦
ଶ୍ରୀରାମଙ୍କୁ ଚାହିଁ ବୋଲନ୍ତି ବଜ୍ରଧର ।
ଭୋ ରଘୁନନ୍ଦନ ମୋହର ବୋଲ କର ॥
ଯେଥି ଥାଇଣ ତୁମ୍ଭେ କରିବ ଆଉ କିସ ।
ଜାନେକୀ କି ଘେନି ଚଳ ନିଜ ଦେଶ ॥
ତୋହୋର ଏଥୁ ଗଲେ ଆମ୍ଭେ ପାରୁ ଯାଇ ।
ତୁ ପରମ ବ୍ରହ୍ମନାଥ ଉଦ୍ଧାରିଲୁ ମହୀ ॥
ଶ୍ରୀରାମ ବୋଇଲେ ତୁମ୍ଭେ ସୁରଗଣେ ଶୁଣ ।
ତୁମ୍ଭର ପ୍ରସାଦେ ମୁଁ ମାଇଲି ରାବଣ ॥
ସୀତା ଯେ ବରଷେ ଅସୁର ଘରେ ଥିଲା ।
ଏହାକୁ ଜଗତେ ଅପଛାଡି ଶୁଭିଲା ॥୬୦
ତୁମ୍ଭେ ଜାଣିଅଛ ଏହାର କିଛି ନାହିଁ ଦୋଷ ।
ଲୋକେ ନ ବୁଝିବେ କରିବା ବୁଧି କିସ ॥
ବ୍ରହ୍ମା ବୋଇଲେ ତୁ ଆଜ୍ଞା ଦେବୁ ଯାହା ।
ଆମ୍ଭେ ସୁଣଗଣେ ପାଳିବୁ ଯେ ତାହା ॥
ତୋହୋର ବଶ୍ୟ ଅଟନ୍ତି ଦେବବୃନ୍ଦ ।
ତୁ ଦେବ ମଧୁରିପୁ ମାଧବ ମୁକୁନ୍ଦ ॥
ଯେବଣ ତୁ ସମ୍ପ୍ରତେ ଯିବୁ ତାହା କହ ।
ଶୁଣିଣ ରଘୁନାଥ ହସନ୍ତି ଟହଟହ ॥
ବୋଲନ୍ତି ରାମଚନ୍ଦ୍ର ଇନ୍ଦ୍ରାଦି ଦେବ ଶୁଣ ।
ଯେବଣ ଦିନେ ମୁଁ ବସିବି ପାଟେ ପୁଣ ॥୭୦
ଅଯୋଧ୍ୟାର ରାଜା ମୁଁ ସୀତା ମୋର ରାଣୀ ।
ଦୋଷ କଲା ବୋଲି ଦଣ୍ଡୁଥିଲି ଆଣି ॥
ବିବୁଧଗଣେ ମିଳି ବୋଇଲେ ଯେହାର ଦୋଷ ନାହିଁ ।
ପ୍ରତେ କରାଇଲେ ପିତାଙ୍କୁ ଦେଖାଇ ॥
ମଲାଲୋକ ଯେବେ ତୁମ୍ଭର ବୋଲେ ଜୀଅଇଁ ।

ସବୁ କଥାମାନ ଯେବେ ବ୍ରହ୍ମା ସେ ବିହଇ ॥
ତହିଂକି ଦେବଗଣେ ସୀତ୍ୟା ମୋତେ
ଦେଲ ।
ମୁହିଂ କେମନ୍ତେ ନ କରିବି ତୁମ୍ଭ ବୋଲ ॥
ଜମ୍ବୋଦ୍ଵୀପ ଲୋକେ ନ ଜାଣିମେ ଏହା ।
ଯେଣେ ପ୍ରତେ ଯିବେ କହ ମୋତେ
ତାହା ॥୮୦
ଯେତେ ରକ୍ଷ କପି ରାକ୍ଷାସେ ରଣେ
ପଡ଼ିଲେ ।
ଜାନେକୀର ନିମନ୍ତେ ଯେତେ ଲୋକ
ପ୍ରାଣଦେଲେ ॥
ଯେବେ ସେ ଜାଇଂଣ କହିବେ ମୋର
କୀରତି ।
ତେବେ ସେ କଥା ମୋହୋର ରହିବ
ସପତଦ୍ଵୀପା ପୃଥ୍ଵୀ ॥
ଅଭିଷେକ କାଳେ ବ୍ରହ୍ମଋଷିମାନେ ।
ଗନ୍ଧ ଅମୃତ ମୋ ଶିରେ ଢାଳିବେ
ବିଦ୍ଵଜନେ ॥
ସୀତାକୋଳେ ଧରି ହୋଇବି ଅଭିଷେକ ।
ଦେଖିବେ ଚଉଦ ଭୁବନର ଲୋକ ॥
ପ୍ରତେକରି ବୋଲିବେ ଶ୍ରୀରାମ ସୀତା ଶୁଦ୍ଧ ।
ପ୍ରତ୍ୟକ୍ଷରେ ଆସି କହିବେ ବିବୁଧ ॥୯୦
ତହିଂକି ଜୀଆଂଇବେ ରକ୍ଷ ରାକ୍ଷାସ କପି ।
ଯଶ ଧବଳିବ ବ୍ରହ୍ମାଣ୍ଡ ଗୋଟା ବ୍ୟାପୀ ॥
ଶ୍ରୀରାମ ମୁଖରୁ ଏସନେକ ବାଣୀ ଶୁଣି ।
କଲ୍ୟାଣ କରିଣ କଥା କହନ୍ତି କୁଶପାଣି ॥
ଯାହା ସେ ସୀତାପତି ହୋ ବୋଇଲୁ
ବଚନ ।
ଆଜ୍ଞା ପ୍ରମାଣେ ଜୀଇଂବେ ରକ୍ଷ ରାକ୍ଷାସ
ସୈନ୍ୟ ॥
ଦୁଷ୍ଟ ଅସୁର ପୁଣ କରିବେଟି ଦ୍ଵନ୍ଦ ।
କେତେପ୍ରକାରେ ଦେବ ମାଇଲୁ ଦଶସ୍କନ୍ଧ ॥
ଆମ୍ଭ ସୁରଗଣମାନଙ୍କୁ ଦେବ କଲୁ ରକ୍ଷା ।
ଏ ସଂସାର ଗୋଟାରେ ରହିଲା ତୋର
କକ୍ଷା ॥୧୦୦
ଏବେ ଯେବେ ଦୟା କଲୁସି ଗୋସାଇଂ ।

କେବଣ କେବଣ ଅସୁରେ ଉଠିବେ
ପ୍ରାଣପାଇ ॥
ବିଚାରିଣ କହ ହେ ରଘୁକୁଳ ନାଥ ।
ବିଭୀଷେଣ ଯେତେକ ବୋଲଇ ଚଉମାଥ ॥
ସେମାନେ ଜୀଅନ୍ତୁ ବୋଲନ୍ତି ରାମରାହୁ ।
ମୋତେ ମାଗିବାର ନିଷ୍ଫଳ ନ ଯାଉ ॥
ବିଭୀଷେଣକୁ ଚାହିଂ ବୋଲନ୍ତି ହୋ କହ ।
ଯେତେ ଅସୁର ତୋର ଜୀଆଂଇବ
ପିତାମହ ॥
ବିଭୀଷେଣ ବୋଲଇ ଯୋଡ଼ିଣ
ବେନିକର ।
ପାଏ ପଡ଼ି ଶୋଇ ବୋଲଇ ଉତ୍ତର ॥୧୦
ଭୋ ଦେବ ନାରାୟେଣ ପରମପୁରୁଷ ।
ମୁହିଂ ସେ ଅପରାଧୀ ନଧର ମୋର ଦୋଷ ॥
କଥାର ପ୍ରସଂଗେଣ କହିଲି ଦେବ ଯାହା ।
ସର୍ବଜ୍ଞ ପୁରୁଷ ତୁ ଦୃଢ଼ କଲୁ ତାହା ॥
ଯେବେ ତୁ ପ୍ରସନ୍ନ ମୋତେ ହୋଇଲୁ
ରଘୁମଣି ।
କଥା ରହିଥିବ ତୋର ପୁରାଣେ ବଖାଣି ॥
ଦିଅ ମୋତେ ରଥ ଗଜ ଚତୁରାଙ୍ଗ ବଳ ।
ଅଦୋଷ ପ୍ରାଣୀମାନେ ଜୀଅନ୍ତୁ ସକଳ ॥
ରାବଣର ସଂଗୋତ୍ର ଶତୃଗଣ ସହିତେ ।
ବନ୍ଧୁ ମଇତ୍ରଗଣେ ପଡ଼ିଲେଟି ଯେତେ ॥୨୦
ତାହାଙ୍କୁ ପ୍ରାପତ ନୋହିବ ଗତ ପ୍ରାଣ ।
ଦୁଷ୍ଟ ଲୋକଙ୍କର ବର୍ଦ୍ଧିବା ଅକାରଣ ॥
ମୋହୋର ଭକ୍ତି ହାଦେ ଯେତେକ ଲୋକ
ଥାନ୍ତୁ ।
ସନ୍ଥଜନ ଜୀଅନ୍ତୁ ଦୁଷ୍ଟ ନାଶ ଯାନ୍ତୁ ॥
ଶୁଣିଣ ରଘୁନାଥ ବିଭୀଷେଣର ବାଣୀ ।
ବ୍ରହ୍ମା ଇନ୍ଦ୍ର ଚାହିଂ ବୋଲନ୍ତି ଚକ୍ରପାଣି ॥
ଯେତେ ଅସୁର ଏ କହିଲା ନାମ ଧରି ।
ରାବଣର ସଂଗୋତ୍ର ବାନ୍ଧବ ଆଦିକରି ॥
ଏମାନେ ନବର୍ତ୍ତନ୍ତୁ ଚତୁରାଙ୍ଗ ବଳ ଜୀଉଂ ।
ତୁମ୍ଭ ସୁରଗଣଙ୍କର କଥା ରହିଥାଉ ॥୩୦
ସୁଗ୍ରୀବ ଆଣିମାର ଯେତେକ କପି ରକ୍ଷ ।
ତାହାଙ୍କ ମହିମା ଦେବେଣ ଅସକ୍ଷ ॥

ଭାତ ବରତନ ନ ଖାନ୍ତି ମୋହୋର ।
ଇଷ୍ଟ ବନ୍ଧୁ ନୁହନ୍ତି ମୋର ଭଲ୍ଲୁକ ବାନର ॥
ଅବୋଧ ଜନ୍ତୁମାନେ ଦୟା ମୋତେ
କଲେ ।
ରାବଣ ପରା ଶତ୍ରୁକୁ ମାରି ପକାଇଲେ ॥
ତୁମ୍ଭେ ତ ଦେବତାଏ ଭଲେ ତାହା ଜାଣ ।
ଅନେକ ରକ୍ଷ କପି ଦେଲେକ ଏଥି ପ୍ରାଣ ॥
ସେମାନେ ନ ଜୀଇଂଲେ ଯେ ନ ରହେ
ମୋର ଯଶ ।
ସୀତା ସତୀ ବୋଲି ଜଗତେ ଶୁଭିବ ଘୋଷ ॥
ଯେବେ ଜୀଇଂବେ ସେ ରାକ୍ଷାସ ରକ୍ଷ
କପି ।
ତେବେ ସେ ଯଶ ମୋର ଜଗତେଣ
ବ୍ୟାପୀ ॥
ସୀତା ସାଧେବୀ ବୋଲି ଉଠିବାକ ରାବ ।
ଶୁଣିଲା ଲୋକକୁ ବୈକୁଣ୍ଠେ ହେବ ଠାବ ॥
ବେଦ ପୁରାଣେ ଯଶକୀର୍ତ୍ତି ରହୁ ।
ଚାରିଯୁଗରେ ଯେ ପୃଥ୍ଵୀରେ କଥା ଥାଉ ॥
ସତମିଛ କଥାକୁ ଲୋକ ହାସ୍ୟ ନୋହୁ ।
ହସ୍ତୀ ଘୋଡ଼ା କପି ରାକ୍ଷାସ ବଳ ଜୀଉ ॥
ଶୁଣି ସୁରଗଣେ ପରମ ସନ୍ତୋଷ ।
ସାଧୁ ସାଧୁ ବୋଲି ଶୁଭିଲାକ ଘୋଷ ॥୫୦
ବହ୍ମାର ବଚନେ ଅମୃତ ବରଷିଲା ।
ରକ୍ଷ ରାକ୍ଷାସ କପି ସମସ୍ତେ ଜୀଇଂଲା ॥
ରାବଣର ବନ୍ଧୁ ଗୋତ୍ର ନ ଜୀଇଂଲେ
କେହି ।
ବାବୁ ମତ୍ତ ଗୋଟା ଯନ୍ତ କଲାକ ବିହି ॥
ସ୍ଵର୍ଗ ଉଦକ ଯେହ୍ନେ ଶାମୁକୁ ଦିଏ ମୋତି ।
ଅନ୍ୟସ୍ଥାନେ ପଡ଼ନ୍ତେ ହୁଅଇ ଉଗ୍ର ମୂରତି ॥
ତେସନେକ ଜଳ ମନ୍ତ୍ର ଅମୃତ ବରଷିଲା ।
ନିର୍ଦ୍ଦୋଷୀ ଲୋକଙ୍କର ସାହାସ ପଶିଲା ॥
ଦୁଷ୍ଟ ରାକ୍ଷାସମାନେ ନବର୍ତ୍ତିଲେ କେହି ।
ରକ୍ଷ ମର୍କଟ ଗୋଟିଏ ହତ ନୋହି ॥୬୦
ଅମୃତ ବୃଷ୍ଟି କାଳେ ଦୁନ୍ଦୁଭି ବଜାଇଲେ ।
ଅପସରାମାନେ ହୁଳହୁଳି ଦେଲେ ॥
ମର୍ଦ୍ଦଳ କଂସାଳ ରାମତାଳି ବାଜି ।

ରକ୍ଷ କପି ରାକ୍ଷାସ ଉଠିଲେ ଗଳଗାଜି ॥
ହାଥୀ ଘୋଡ଼ା ପାାଦାନ୍ତି ଗଧ ଶୁଗୁଗାଳ ।
ଜୀଇଂଣ ଉଠିଲେ ବୁଲନ୍ତି ମାଳମାଳ ॥
ଅସୁର ଯୋଦ୍ଧା ରଥୀ ରାଉତ ପାଦାନ୍ତି ।
ପ୍ରାଣପାଇ ଉଠି ଚାହାଂନ୍ତି ପନ୍ତି ପନ୍ତି ॥
ରକ୍ଷ କପି ରାକ୍ଷାସ ସିଂହ ରଡ଼ିଦେଲେ ।
ସାଂଗ୍ରାମ କରିବେ ବୋଲି କୋପେଣ ଧାଇଂଲେ ॥୭୦
ଯୂଥପତିମାନେ ପ୍ରବୋଧିଲେ ଯାଇ ।
ବୋଇଲେ ଶ୍ରୀରାମ ବାଣେ ହୋ ପଡ଼ିଲା ଲଙ୍କସାଇଂ ॥
ବିଭୀକ୍ଷେଣ ପାଇଲା ସୁବର୍ଣ୍ଣମୟେ ଦେଶ ।
ତୁମ୍ଭେ ରକ୍ଷ କପି ବାହୁଡ଼ିଣ ଆସ ॥
ଶୁଣିଣ ଶାନ୍ତି ମନ ଭଲ୍ଲୁକ ମର୍କଟ ।
ବୋଇଲେ ଭଲା ରଣେ ପଡ଼ିଲା ତେଡ଼େ ଦୁଷ୍ଟ ॥
ବାବୁ ରଘୁନାଥ ହୋ ମାଇଲୁ ବଡ଼ ବେଗେ ।
ଏତେ ବୋଲି ମିଳିଲେ ଶ୍ରୀରାମର ଆଗେ ॥
ଅସୁରେ ଜୀଇଂଣ ସାଂଗ୍ରାମ କରି ଲୋଡ଼ି ।
ମନ୍ତ୍ରୀ ତିଆରନ୍ତେ ଲଙ୍କାକୁ ବାହୁଡ଼ି ॥୮୦
ଯେ ଯାହାର ମନ୍ଦିରେ ମିଳିଲେକ ଯାଇ ।
ପୁତ୍ର ଦାରା ଦୁହିତା ସନ୍ତୋଷ ହେଲେ ଚାହିଁ ॥
କେ ବୋଇଲ ଆଗୋ ମଲାର ଲୋକ ଜୀଇଂଣ ଅଇଲେ ।
କେ ବୋଲେ ଏହାଙ୍କୁ ସୁରଗଣେ ଜୀଆଇଂଲେ ॥
କେ ବୋଲେ ବିଭୀକ୍ଷେଣ ମାଗିଲାକ ସନ୍ୟ ।
ପ୍ରସନ୍ନ ମନେ ତାକୁ ଦେଲେ ରଘୁରାଣ ॥
ଶ୍ରୀରାମର ଆଜ୍ଞା କି ବିଧାତା ଭାଙ୍ଗି ପାରଇ ।
ଯାହାର ଅନୁଗ୍ରହେ ବିଧାତା ପଣ କରଇ ॥
ସେ ପ୍ରଭୁ ଆପଣେ ମୂର୍ତ୍ତିବନ୍ତ ହୋଇ ।
ବୋଲୁଛନ୍ତି ଥାଟ ଜୀଆଇଂ ଦେବା ପାଇଂ ॥୯୦
କଥା ଗୁହାଇବା ନିମିତ୍ତେ ଏହା କଲା ।
ଯୁଦ୍ଧ ସରିଲେ ପୁଣି ସୈନ୍ୟ ଜୀଆଂଇଲା ॥

ଯେତେକ ସମର ଏ ପୃଥ୍ୱୀରେ ଅଛି ହୋଇ ।
ଆବର ଯେତେକ ସମର ହେବ ମହୀ ॥
ଅପୂର୍ବ ସାଂଗ୍ରାମ କେହି ନ ପାରିବେ କରି ।
ଆନ ସମରମାନେକେ ବେନି ବଳ ମରି ॥
ଶ୍ରୀରାମର ମହିମା ଅଶ୍ରୁତି ଅଗୋଚର ।
ଶତ୍ରୁ ମିତ୍ର ଏହାର ଅଟେ ଏକାକାର ॥
ଜୀଇଂଲେ ଦୁଇବଳ ଗୁହାଇଲେ କଥା ।
ମୁଣ୍ଡ କାଟି ମୁଣ୍ଡ ଲଗାଇଲେ ରଘୁନାଥା ॥୧୦୦
ଏସନେକ ବୋଲି ବୋଲନ୍ତି ନରନାରୀ ।
ଜୀଇଂବାର ସଇନି ପଶନ୍ତି ଲଙ୍କପୁରୀ ॥
ହନୁ ଯେତେ ଅକ୍ଷଏ ସଙ୍ଗେ ମାରିଥିଲା ।
ସେ ସନ୍ୟମାନ ଯେବେ ସମସ୍ତେ ଜୀଇଂଲା ॥
ମହା ମହା ଗରିଷ୍ଟେ ନ ବର୍ତ୍ତିଲେ ନ ଜୀଇଂଲେ ଦୁଷ୍ଟେ ।
ତୋଟାଙ୍କ ସହିତେ ଜୀଇଂଲେ ସବୁଥାଟେ ॥
ଖର ଦୂଷଣ ତ୍ରିଶିରା ସହିତେ ଯେତେ ମଲେ ।
ଶ୍ରୀରାମର ଆଜ୍ଞାରେ ସେ ଜୀଇଂଣ ଉଠିଲେ ॥
ଦୁଷ୍ଟ ଦୁର୍ପିଷ୍ଟମାନେ ନ ପାଇଲେ ପ୍ରାଣ ।
ତାହାଙ୍କୁ ଆନ ଦେହ ଦେଲାକ ଜନ୍ମୁରାଣ ॥୧୦
ଅପ୍ରମିତ ସନ୍ୟ ଲଙ୍କାରେ ପରବେଶ ।
ଦେଖିଣ ବିଭୀକ୍ଷେଣ ମନରେ ହରଷ ॥
ମନେ ବିଚାରିଲା ବିଶ୍ରବାର ସୁତ ।
ଏ ସେ ରଘୁନାଥ ଅବ୍ୟୟ ଅଶ୍ରୁତ ॥
ଏହାକେ ଆଶେ କଲେ ମୃତ ନୋହେ ପ୍ରାଣୀ ।
ବେଦ ପୁରାଣେ ଯେ ଶାହାସ୍ରେ ଅଛି ଶୁଣି ॥
ଏବେ ପ୍ରତ୍ୟକ୍ଷେ ମୁଂ ଦେଖିଲି ବେନି ଡୋଳେ ।
ଦୁଃସହ ଦୋଷ ମୋର ଗଲା ଏତେ କାଳେ ॥
ଏସନେକ ବୋଲି ଭାଳଇ ବିଭୀକ୍ଷେଣ ।
ଏଥୁଅନନ୍ତରେ ଅପୂର୍ବ କଥା ଶୁଣ ॥୨୦
ରକ୍ଷ କପିବଳ ଗୋଟିଏ ନ ମଲେ ।

ଅମୃତ ଜଳ ପ୍ରସାଦେ ସବିହେଂ ଜୀଇଂଲେ ॥
ଇନ୍ଦ୍ରଜିତ ବ୍ରହ୍ମଶରେ ଯେତେକ ମରିଥିଲେ ।
ତାହାଙ୍କ ପ୍ରାଣମାନ ଜନ୍ତୁପତି ଦେଲେ ॥
ସେକାଳମାନଙ୍କର ହାଡ଼ମୁଣ୍ଡ ଥିଲା ।
ଶ୍ରୀରାମ ବଚନେ ଜନ୍ତୁପତି ଜୀବଦାନ ଦେଲା ॥
ପାଇଲେ ଜୀବନ ସକଳ ରକ୍ଷକପି ।
ଡିଅନ୍ତି ଆକାଶକୁ ସୁବଳୟା ଗିରି କ୍ଷେପି ॥
ଶ୍ରୀରାମ ଆଜ୍ଞାରୁ ମୃତଜୀବ ବ୍ୟାପୀ ।
ଅଜୀବ ଜୀବଦ୍ୟନ୍ତା ମହିମା ଅଦ୍ୟାପି ॥୩୦
ସୁଗ୍ରୀବର ସନ୍ତୋଷ ମନରେ ବିଚାରି ।
ବୋଲଇ ରଘୁନାଥ ପ୍ରତ୍ୟକ୍ଷେ ଚକ୍ରଧାରୀ ॥
ଦୁନ୍ଦୁଭିର ହାଡ଼ ଫିଙ୍ଗିଦେଲେ ଯେବେଣ କାଳେ ।
ଦେଖିଣ ଅପ୍ରତେ ମୁଂ କରଇ ସେକାଳେ ॥
ଏହାର ପ୍ରାଏ ସ୍ୱାମୀକି ମୁଂ ପରୀକ୍ଷା ମାଗଇ ।
ହୀନଜନ୍ତୁ ପାମର ମୁଂ ଶ୍ରୀପୟର ଛୁଅଇଂ ॥
ସେକଥା ସ୍ୱାମୀ ଯେ ନ କରନ୍ତି ଛଳ ।
ନୋହିଲେ ବୀରଧୁ କେହ୍ନେ ଭଗତବତ୍ସଳ ॥
ଏବେ ଶୁଣିଲି ଯେ ଦେବତାଙ୍କ କହନ୍ତେ ।
ମଲାର ସଇନ୍ୟ ଜୀଇଂଲେ ସମସ୍ତେ ॥
ଏଡ଼େ ମହାଯୁଦ୍ଧେ ଅପଚଏ ନପାଇଲେ ।
ଲୋଏଙ୍କର ମୁଖେ ରାମ ଅପକୀର୍ତ୍ତି ନ ଶୁଣିଲେ ॥
ଯେବେଣ ରକ୍ଷ କପି ରଣେ ପଡ଼ିଥିଲେ ।
ରଘୁନାଥ ନିମନ୍ତେ ବହୁତ ପ୍ରାଣ ଦେଲେ ॥
ସାଂଗ୍ରାମେ ପଡ଼ନ୍ତେ ଯାଆନ୍ତେ ସ୍ୱର୍ଗବାସ ।
ଇଷ୍ଟବନ୍ଧୁ କୁଟୁମ୍ବ ପାଆନ୍ତେ ମନେ ତ୍ରାସ ॥
ଏବେ ସେ କଥାମାନ ନୋହିଲାକ କିଛି ।
ଯେ ଯାହାର ପୁରେ ହୋଇବେ ରକ୍ଷ କପି ॥
ଏସନେକ ବୋଲି ସୁଗ୍ରୀବର ଭାଳି ।
ଈଶ୍ୱର କହନ୍ତି ଶୁଣ ଗୋ ହେମବନ୍ତର ଦୁଲାଳୀ ॥୫୦
ଯେତେବେଳେ ଜୀଇଂଲେ ଓହୋବଳ ସନ୍ୟ ।
ବ୍ରହ୍ମାଙ୍କୁଇ ଚାହିଂଣ ବୋଲନ୍ତି ରଘୁରାଣ ॥

ମୁହିଂ ଯେ ଅଯୋଧ୍ୟାରେ ହୋଇବି
ଅଭିଷେକ ।
ପ୍ରତେ ଯିବେ ଯେମନ୍ତେ ଅଯୋଧ୍ୟାର
ଲୋକ ॥
ତେସନେକ ବିଚାର କରହୋ କୁଶଧାରୀ ।
ବୋଇଲୁ ଅପାପୀ ଜନେକକୁମାରୀ ॥
ଏକଥା ପ୍ରତେ ଆସଇ ମୋତେ ଯେଣେ ।
ମୁଂ ହୋ ପିତାମହ ବୋଲୁଅଛି ତେଣେ ॥
ବ୍ରହ୍ମଋଷିମାନେ ଅଭିଷେକ କରିବେ ।
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀ ଥିବେ ॥୬୦
ତୁ ଧାତା ଇନ୍ଦ୍ରାଦି ଦେବସଙ୍ଗେ ଘେନି ।
ସଙ୍ଗତେ ନେଇଥିବୁ ସକଳ ସୁର ମୁନି ॥
ତେତିଶ କୋଟି ଦେବେ ଚଉଷଠି କୋଟି
ବଳ ।
ଅଭିଷେକ କାଳେ ଏମାନେ ଥିବେ ହୋ
ସକଳ ॥
ଆବର କଥାଏ ତୁ ଶୁଣ ପଦ୍ମଯୋନି ।
ମୁଂ ଯେବେ ଜନମିଲି ମନୁଷ୍ୟ ଦେହ
ଘେନି ॥
ଅଯୋଧ୍ୟା ରାଜ୍ୟରେ ଯେ କରିବି ରାଜପଣ ।
ପ୍ରକୃତି ସେବକ ମୋର ହୋଇବେ ବ୍ରାହ୍ମଣ ॥
ଶୂଦ୍ର ନ ଛୁଇଂବେ ନଛୁଇଂବେ କ୍ଷତ୍ରୀ ।
ତେବେ ସେ କୀରତି ମୋର ରହିବ
ଧରତୀ ॥୭୦
ଅବକାଶ ନିଅବକାଶ ଏହୁ ବେନି କାଳ ।
ସନ୍ନିଧେ ମୋହୋର ଖଟିଥିବେ ବିପ୍ରବାଳ ॥
ବେଭାର କାଳେ ସେ ଛୁଇଂବେ
କ୍ଷତ୍ରୀବଶ୍ୟ ।
ଅନିମିରେ ଏମାନେ ନଯିବେ ମୋର ପାଶ ॥
ବ୍ରାହ୍ମଣେ ଭଲାଗି କରିବେ ବସ୍ତ୍ରମାନ ।
ବ୍ରାହ୍ମଣେ ଛୁଇଂବେ ଉଚ୍ଛିଷ୍ଟ ଭୋଜନ ॥
ବ୍ରାହ୍ମଣେ ମୋତେ ମାଜଣା ସ୍ନାହାନ
କରାଇବେ ।
ବ୍ରାହ୍ମଣେ ନେଇ ମୋତେ ତଡ଼ପ
ପିନ୍ଧାଇବେ ॥
ପାଇଟୀ ମଡ଼ିଆଳ ଛୁଇଂବ ବ୍ରାହ୍ମଣ ।

ରାଜା ହୋଇବାର ଏମନ୍ତ କାରଣ ॥୮୦
ବିଡ଼ିଆ ଲାଗି ମୋତେ କରାଇବ ଦ୍ୱିଜବର ।
ପାନପିକ ଛେପ ଧରିବ ମୋହୋର ॥
ବ୍ରାହ୍ମଣର ଜଳ ପଡ଼ିବ ମୋହୋର ଶିର ।
କେଶ ସଂଯୋଇବ ମୋହୋର ଦ୍ୱିଜବର ॥
ବ୍ରାହ୍ମଣେ ପାଏ ପଡ଼ି ଶୋଇବାକ ମୋତେ ।
ବ୍ରାହ୍ମଣେ ସେବା କରିଥିବେ ମୋତେ
ଅନୁବ୍ରତେ ॥
ପାଦରେ କଠାଉ ବ୍ରାହ୍ମଣେ ଆଣି ଦେବେ ।
ନାନା ବିଧାନ ମୋତେ ହୋ ବ୍ରାହ୍ମଣ
କରିବେ ॥
ବିଷ୍ଣୁ ବୋଲି ଯେବେ ବୋଇଲୁ ତୁ
ମୋତେ ।
ତେଣୁ ସେ ଏକଥା କହିଲି ହାଦେ
ତୋତେ ॥୯୦
ବାସୁଦେବର ସେବକ ଅଟଇ ବ୍ରାହ୍ମଣ ।
ବ୍ରାହ୍ମଣେ ସେ ତାଙ୍କୁ ହୁଅଇ କାପୁଣ୍ୟ ॥
ମୁଂ ଯେବେ ନାରାୟଣ ହୋ ଅଛଇ
ଅବତରି ।
କିମ୍ବା ବ୍ରାହ୍ମଣେ ମୋତେ ନ ଥିବେ
ସେବାକରି ॥
ଶୁଣି ପିତାମହ ଯୋଡ଼ଇ ବେନିକର ।
ଯେବଣ ଆଜ୍ଞା ମୋତେ ଦେଲୁ ହୋ
ଚକ୍ରଧର ॥
ଯେଉଁ ଠାକୁର ଯେଉଁ ଧାରଣା ତୋର ବାନା ।
ତେଣୁ ହୋ ଏକଥା କହିଲୁ ବକ୍ରସେହ୍ନା ॥
ବୋଇଲୁ ଯେ ବ୍ରାହ୍ମଣ ଖଟିଥିବେ ମୋତେ ।
ଏକଥା ବଡ଼ ହାଦେ ନୁହଇଂ ନା
ତୋତେ ॥୧୦୦
ବାବନ ମୂରତି ଧଇଲୁ ଯେବଣ କାଳେ ।
ବଳି ନୃପତିକି ଚାପିଲୁ ପାତାଳେ ॥
ତ୍ରିବିକ୍ରମ ମୂରତି ଦେବେଣ ଅଗୋଚର ।
ବ୍ରହ୍ମଲୋକ ଭେଦିଲା ତୋହୋର ପୟର ॥
ମୁହିଂ ପିତାମହ ଗଙ୍ଗା ଘେନିଥିଲି ।
ଏ ତୋହୋର ପାଦପଦ୍ମ ପଖାଳି ମନେକଲି ॥
ଚଉରାଶୀ କୋଟି ଗଙ୍ଗା ମହାନଦୀ ।

ପଞ୍ଚାଶକୋଟି ବସୁନ୍ଧରୀ ଅଛଇ ଆଚ୍ଛାଦି ॥
ତ୍ରିଦଶ ଦେବତା ଯାହାର ତଟେ ଛନ୍ତି ।
ସୁରେଶ୍ୱରୀ ବୋଲି ଯାହାକୁ ବୋଲନ୍ତି ॥୧୦
ସେ ପବିତ୍ର ଜଳ ମୁଂ ସିଞ୍ଚିଲଇଂ ଆଣି ।
ଏ ତୋର ପାଦେ ପୁଣି ଢାଳିଲଇଂ ପାଣି ॥
ବିଶ୍ୱରୂପ ଧରି ନଖକୋଣେ ଲୁଚି ।
ଦେଖି ଦେବତାଏ ପଳାଇଲେ ଘୁଞ୍ଚି ॥
ଶଙ୍କର ଯେଉଂ ପାଦଉଦକ ଆଶ୍ରେ
କରିଥିଲା ।
ଲଜ୍ୟା ପାଇଣ ସେ ବାହୁଡ଼ିଣ ଗଲା ॥
ମୁହିଂ ମଉନେ ଯେ ନ କହିଲି କଥା ।
ଗଙ୍ଗାଦେବୀ ହୋଇଲେ ମୃତ୍ୟୁ ଯେ ଅବସ୍ଥା ॥
ଯେବଣ ସ୍ୱାମୀର ଏସନେକ ରୀତି ।
ସୁରମୁନି ଯାହାକୁ ହୃଦରେ ନିତ୍ୟ ଚିନ୍ତି ॥୨୦
ସେ ପ୍ରଭୁ ପ୍ରସନ୍ନ ହୋଇ ବର ଯାଚି ।
ସେ କଥା ଜାଣିଣ ମୁଂ ଅଛଇ ଦେବ ସଞ୍ଚି ॥
ବଶିଷ୍ଠ ଜାବାଳି ଯେ କାଶ୍ୟପ ବାମଦେବ ।
ଏହାଙ୍କର ଶିଷ୍ୟ ତୋତେ ଖଟିବେ ରାଘେବ ॥
ତୁ ତାହାନ୍ତ ଭାବେ ଦେଇଅଛୁ ବର ।
କାଳେ କାଳେ ଭୃତ୍ୟ ଅଟନ୍ତି ତୋହୋର ॥
କିମ୍ବା ଶ୍ରୀଅଙ୍ଗ ତୋର ଛୁଇଂବାକ ଆନ ।
ତୁ ଦେବ ଭଗତବଛଳ ଭଗବାନ ॥
ଯାଅ ଯେବେ ଅଯୋଧ୍ୟାକୁ ନକର ହାଦେ
ହେଳ ।
ଆମ୍ଭେ ଦେବତାଯେ ଯିବୁ ସ୍ୱର୍ଗ ଆଳ ॥୩୦
ଏତେ ବୋଲି ଦେବତାଏ ଆରୋହିଲେ
ଯାନ ।
ଚଳିଲେ ଦେବତାଏ ଯେ ଯାହା ସଦନ ॥
ବ୍ରହ୍ମା ସହିତେଣ ଇନ୍ଦ୍ର ଆଦି ହୋଇ ।
ଯେ ଯାହା ପୁରେ ପ୍ରବେଶ ହୋଇଲେକ
ଯାଇ ॥
ସିଦ୍ଧ ସାଧେକ ବ୍ରହ୍ମାଦି ଚାରିଲୋକେ ।
ଦେବୀଦେବୀମାନେ ଚଳିଲେ ଏକୁଏକ ॥
ବିଭୀଷେଣ ଜଣାଇଲା ଶୁଣିମା ରଘୁବୀର ।
ତୁମ୍ଭେ ଦେବ ବେଗେ ସ୍ନାହାନ ଏବେ କର ॥
ଜଟା ଫିଟାଇଣ କେଶେ କୁସୁମ ପୁଣ ବାନ୍ଧ ।

ଛାଡୁ ଶ୍ରୀଅଙ୍ଗୁ ଯେ ବିଭୂତି ମଳିଗନ୍ଧ ॥୪୦
କଷାବସ୍ତ୍ର ନେଉଛି ଦେବାଙ୍ଗ ବସ୍ତ୍ର
ପରିହରଣ ।
ନବରତ୍ନ ଦେବ କର ଆଭରଣ ॥
ଏତେ ବୋଲି ଶୁକ ସାରଣ ପ୍ରଣମନ୍ତି ।
ମାଜଣା ଯୋଗାଡ଼ମାନ ଅଣାଇଲେ ଧାଡି ॥
ଅସୁର ବନିତାଏ ଦିବ୍ୟବେଶ ହୋଇ ।
ଶରଧା କରିଛନ୍ତି ଦେଖିବେ ରଘୁସାଇଁ ॥
ସୁବର୍ଣ୍ଣର ଘଟେ ପୂରୋଇ ତୀର୍ଥ ଜଳ ।
ସୁଗନ୍ଧ ମିଶାଇ କରନ୍ତି ଶୀତଳ ॥
ଶ୍ରୀରାମର ପାଶେ ଆସନ୍ତି ତାହା ଘେନି ।
ଆନନ୍ଦେ ଉଷତ ଲଙ୍କାର କାମିନୀ ॥୫୦
ପଞ୍ଚାମୃତ ଯୋଗାଡ଼ ମାଜଣା ସଞ୍ଚାମାନ ।
ଘେନି ପଟୁଆର ହୋଇ ଆସନ୍ତି ସ୍ତିରୀଜନ ॥
ଶ୍ରୀରାମ ପଚାରନ୍ତି ବିଭୀଷେଣଙ୍କୁ ଚାହିଁ ।
କିସ ଘେନି ଯୁବତୀଏ ଅଛନ୍ତି ଉଭାହୋଇ ॥
ଲଙ୍କପତି ବୋଇଲା ଦେବ ସ୍ନାହାନ
ଯୋଗାଡ଼ ।
ମାଜଣା ହୁଅ ସ୍ୱାମୀ ଅଳସମାନ ଛାଡ଼ ॥
ଶ୍ରୀରାମ ବୋଇଲେ ଏ ନୁହଇଁ ଉଚିତ ।
ଯଦି ନ ଦେଖଇ ମୁଁ କକୟାଇ ସୁତ ॥
କଦାପି ସ୍ନାହାନ ନ କରଇ ମୁହିଁ ।
ଭ୍ରଥକୁ ନ ଭେଟିବା ଯାଏ ମୋହୋର ଭୋଗ
ସୁଖ ନାହିଁ ॥୬୦
ସେ ମୋହୋର ସାବତ ଜନନୀର ସୁତ ।
ରାଜ୍ୟ ସମ୍ପଦ ତାକୁ ସମର୍ପିଦେଲେ ତାତ ॥
ସେ ସୁଖ ନ ଘେନି ଗୋଡ଼ାଇ ଅଇଲା
ମୋତେ ।
ବାହୁଡ଼ାଇ ନେମାକୁ ଲୋଡ଼ିଲା ହାଦେ
କେତେ ॥
ଆକାଶର ବାଣୀ ଶୁଣିଣ ବାହୁଡ଼ିଲା ।
ଯିବାର ବେଳେ ନିଅମ କରାଇ ମୋତେ
ଗଲା ॥
ବୋଇଲା ଚଉଦ ବରଷ ଯେବେ ପୂରଇ ।
ଶ୍ରୀରାମକୁ ନ ଦେଖିଲେ ଭ୍ରଥବୀର ମରଇ ॥
ଏତେବୋଲି ଜଟା ବାନ୍ଧିଲାକ ଶିରେ ।
ବିଭୂତି ବିଲୋପନ ହୋଇଲା ଅଙ୍ଗରେ ॥୭୦
ଅଯୋଧ୍ୟାକଟକରେ ନୋହିଲା
ପରବେଶେ ।
ନନ୍ଦୀଗ୍ରାମରେ ସେ କରିଅଛି ବାସ ॥
ମୋହୋର କଠାଉ ସିଂହାସନେ ଥୋଇ ।
ଆପଣେ ଅଛଇ ଉଦାସୀ ମତ ହୋଇ ॥
ତାହାକୁ ନ ଦେଖିଲେ ନୋହେ ଥିର ।
ଶୁଣିଣ ପ୍ରଶଂସା କରଇ ସୁଗ୍ରୀବର ବୀର ॥
ବିଭୀଷେଣ ସହିତେ ସେନା ଯୂଥପତି ।
ଶ୍ରୀରାମକୁ ଅପାର ପ୍ରକାରେ କଲେ ସ୍ତୁତି ॥
ବୋଇଲେ ଶ୍ରୀରାମ ତୁ ମହତ ପୁରୁଷ ।
କୈକେୟୀ ରାଣୀ ତୋତେ ନକଲା କଉଁ
ଦୋଷ ॥୮୦
ତାହା ନ ଘେନି ତୁ ଭାଇ ଗୁଣ ଘେନି ।
ବାବୁ ରଘୁନାଥ ହୋ ମହିମା ତୋହୋର
ଧନି ॥
ଦେବେ ପ୍ରଶଂସି ଯେ ଗଲେ ସ୍ୱର୍ଗସ୍ଥାନ ।
ଏଥୁ ଅନନ୍ତରେ ଶ୍ରୀରାମ ରାଜନ ॥
ରକ୍ଷକପିବଳକୁ ଚାହିଁଣ ବୋଲନ୍ତି ।
ସମସ୍ତଙ୍କୁ ଚାହିଁ ପୁରସରି କହନ୍ତି ॥
ତୁମ୍ଭ ପରସାଦେ ପାଇଲି ମୁହିଁ ଯଶ ।
ତୁମ୍ଭ ବାହାବଳେ ମୁଁ ଶତ୍ରୁକୁ କଲି ନାଶ ॥
ଏବେ ତୁମ୍ଭେ ବେଗେ ଯେ ଯାହାର ପୁରେ
ଯାଅ ।
ନିଜ ମନ୍ଦିରେଣ ନିଶ୍ଚିନ୍ତେଣ ଥାଅ ॥୯୦
ଦେଖ ପୁତ୍ର ଭାରିଯା ଭ୍ରଥା ବନ୍ଧୁ ଭାଇ ।
ଇଷ୍ଟ ବନ୍ଧୁ ଜନନୀ ପୀରତି ଲୋକଙ୍କଇଁ ॥
ଦୁଃସହ ସାଂଗ୍ରାମୁଁ ଯେବେ ଜୀଇଂଲ
ବେଳେକ ।
ଯାଅ ନିଜ ପୁର ଦେଖନ୍ତୁ ରାଜ୍ୟଲୋକ ॥
ଶ୍ରୀରାମର ମୁଖରୁ ଏସନେକ ବାଣୀ ଶୁଣି ।
ସୁଗ୍ରୀବର ରାଏ ଯୋଡ଼ଇ ବେନିପାଣି ॥
ଅଙ୍ଗଦ ହନୁମନ୍ତ କେଶରୀ ଚନ୍ଦନ ।
ଗବଏ ଗବାକ୍ଷ ପନଶିଳ ପବନ ॥
ଶତବାଳି ରମ୍ଭଣ ଜମ୍ବେବ ନଳନୀଳ ।
ଏମାନେ କର ଯୋଡ଼ିଅଛନ୍ତି
ସକଳ ॥୧୦୦
ଶଉରୀ ସେନାପତି କଞ୍ଚଣ କାଳିଞ୍ଜନ ।
ସୁଷେଣ ବାଳିମୁଖ କାଳିମୁଖ ସୁସୋଦନ ॥
ମହୀନ୍ଦ୍ର ବିବିଧ ଶତବାଳି ତୁ ପୁଣ ।
ଡାଳିମ୍ବ ତାରାକ୍ଷ ମୂଳେଣ ସେହ୍ନାମାନ ॥
ମଲ୍ଲ ମହାମଲ୍ଲ ବୀର ମହାବୀର ।
ରକ୍ଷକପି ସଇନି ଅଛନ୍ତି ଅପାର ॥
କିଳିକିଳୀ ନାଦ ଦେଇଣ ଉଠିଲେ ।
ରୋମ ଟାଙ୍କୁରାଇ ରାମଙ୍କୁ କହିଲେ ॥
କିମ୍ପା ବାହୁଡ଼ି ଆମ୍ଭେ କିଷ୍କିନ୍ଧାକୁ ଯିବୁ ।
ପ୍ରାଣ ଥିବାଯାକେ ତୋହୋର ସଙ୍ଗେ
ଥିବୁ ॥୧୦
ଅଯୋଧ୍ୟାକୁ ଯିବୁ ହେ ଦେଖିବୁ ଭ୍ରଥବୀର ।
ଦେଖିବୁ ଶତ୍ରୁଘନ ସୁମଇତ୍ରା କୁମର ॥
ଦେଖିବୁ କଉଶଲ୍ୟା ଅଯୋଧ୍ୟା କଟକ ।
ଦେଖିବୁ ସ୍ୱାମୀ ତୋର ଗୋତ୍ର ବନ୍ଧୁ ଲୋକ ॥
ଶୁଣିଣ ଶ୍ରୀରାମ ହରଷେ ହସନ୍ତି ।
ସୁଗ୍ରୀବର ମୁଖ ଚାହିଁଣ ବୋଲନ୍ତି ॥
ଭୋ ମିତ୍ର ମୋହୋର ଛାଡ଼ିତ ମନ ନାହିଁ ।
ଏ ତୁମ୍ଭର କଥା ଶୁଣି ନିସ୍ତରିଲି ମୁହିଁ ॥
ଆସ ଆସ ସମସ୍ତେ ଅଯୋଧ୍ୟାକୁ ଯିବା ।
ଏ ମୋହୋର ପିତାର କଟେକ
ଦେଖିବା ॥୨୦
ପାତ୍ର ମନ୍ତ୍ରୀ ପୁରୋହିତ ଦେଖିବ ବନ୍ଧୁଜନ ।
ଜନନୀ ପ୍ରିୟ ମୋର କୁଟୁମ୍ବ ଲୋକମାନ ॥
ସେ ତୁମ୍ଭଙ୍କୁ ଚିହ୍ନନ୍ତୁ ତୁମ୍ଭେ ତାଙ୍କୁ ଜାଣ ।
କୀର୍ତ୍ତି ଅକୀର୍ତ୍ତି ମୋହୋର ଜନମୁଖୁଁ ଶୁଣ ॥
ଏସନେକ ବୋଲି ବିଭୀଷେଣଙ୍କୁ ଚାହିଁ ।
ବୋଇଲେ ଆମ୍ଭ ସଙ୍ଗେ ଯିବୁଟିନା ହୋ
ତୁହି ॥
ମନ୍ଦୋଦରୀ ରାଣୀ ଯାଉ ଅନ୍ତଃପୁର ।
ଶୁକ ସାରଣେ ସମ୍ଭାଳି ଥାନ୍ତୁ ଲଙ୍କପୁର ॥
ମହାଦେଇମାନନ୍ତ ପଠିଆଅ ଡିଆରି ।
ଯାନ୍ତୁ ବାହୁଡ଼ି ଲଙ୍କାପୁର ଅସୁର ଅସୁରୀ ॥୩୦
ରଥ ଗଜ ଅଶ୍ୱ ପାଦାତିମାନେ ଯାନ୍ତୁ ।
ସୁବର୍ଣ୍ଣମୟେ ଲଙ୍କା ରକ୍ଷା କରିଥାନ୍ତୁ ॥
ସମ୍ଭାଡ଼ି ବିବିଧ ଦଶକାଳ ବୃକ୍ଷ ଘେନି ।

ଆମ୍ଭର ସଙ୍ଗେ ତୁ ଆସହୋ ରାଜନି ॥
କେତେଦିନେ ଯାଇ ଅଯୋଧ୍ୟାରେ
ପାଇବା ।
ଭରଥ ମୁଖ ଗୋଟି କେମନ୍ତେ ଚାହିଁବା ॥
ଚଉଦବରଷେ ଅଇଲି ଯେବଣ ବାଟେ ।
ଏବେ ଚାଲିଗଲେ ପାଇବା ବଡ଼କଷ୍ଟେ ॥
ବନଭୂମି ପର୍ବତ ଅରଣ୍ୟ ସାଗର ।
କେତେଦିନେ ଯିବା ପଥ ବହୁତ ଧୂର ॥୪୦
ଏଥକୁ ଉପାୟେକି ଅଛି ହୋ ବିଭୀଷେଣ ।
ଭରଥକୁ ବେଗେ ଦେଖିବା କେବଣ
ପ୍ରକାରେଣ ॥
ଶୁଣି ଲଙ୍କପତି ଯୋଡ଼ଇ ବେନିକର ।
ବୋଲଇ ଶୁଣ ଦେବ ତୈଲୋକ୍ୟଇଶ୍ୱର ॥
ପୁଷ୍ପେକ ବିମାନ ଯେ ଅଟଇ ଦେବରଥ ।
କୁବେରକୁ ଜିଣି ଆଣିଲା ଦଶମାଥ ॥
ସମୋଦ୍ର ମନ୍ଥନୁ ସେ ବିମାନ ଉପୁଜିଲା ।
ମନୁରଥ ନାମ ବିଧାତା ତାକୁ ଦେଲା ॥
ତହିଁ ବସିଥିଲେ କ୍ଷୁଧା ତୃଷା ନାହିଁ ।
ଯହିଁକି ମନକରଇ ତହିଁରେ ମିଳଇ ॥୫୦
ଲକ୍ଷେକ ଯୋଜନ ଯେ କ୍ଷଣକେ
ଯାଇପାରଇ ।
ଏହାକୁ ବେଗ ଯେ ପବନ ନ ପଡ଼ଇ ॥
ଏକଥା ଜାଣିଣ ସେ ଦଶାନନ ବୀର ।
କୁବେର ଠହୁଁ ବଳେ ଆଣିଲା ରଘୁବର ॥
ଏଥି ବସିଣ ସେ ସକଳ ପୁର ଗଲା ।
କେମନ୍ତେ ଆନ ଚଉଦ ଭୁବନ ଜିଣିଲା ॥
ତୁ ଏବେ ପୁଷ୍ପେକ ବିମାନେ ହାଦେ ବସ ।
ଏହିକ୍ଷଣି ଅଯୋଧ୍ୟାରେ ହୋଇବା
ପରବେଶ ॥
ଶ୍ରୀରାମ ବୋଇଲେ ହୋ ସନ୍ୟ ମୋର
ଥାଇ ।
ଏହାନ୍ତ ଛାଡ଼ିକି ମୋହୋର ହୁଅଇ
ଯାଇ ॥୬୦
ଏକା ଜଣେ ଯାଇକି ପାଇବଙ୍ଗ ସୁଖ ।
ଏତେ ଥାଟ ଯେବେ ପାଇବେ ମୋର
ଦୁଃଖ ॥

ବିଭୀଷେଣ ବୋଇଲା ହୋ ଶୁଣିମା
ଗୋସାଇଁ ।
ଏ ଦେବଯାନକୁ ହୋ ସନ୍ୟ ତୋର କାହିଁ ॥
ଶତେପୁର ବିସ୍ତାର ଏ କାମରୂପୀ ରଥ ।
ଆବର କଥାଏକ ଶୁଣନ୍ତୁ ରଘୁନାଥ ॥
ବିମାନେ ବସି ମନେ ଧରିବାକ ଯାହା ।
ତତକ୍ଷଣେ ସ୍ୱାମୀ ପାଇବାକ ତାହା ॥
ବସ ଏ ବିମାନେ ଏ ଷଡ଼ରତୁ ମିଶା ।
ଏଥି ବସିଥିଲେ ନାହିଁ କ୍ଷୁଧାତୃଷା ॥୭୦
ଶୁଣି ଶ୍ରୀରାମ ଯେ ହୋଇଲେ ହରଷ ।
ବିଭୀଷେଣକୁ ବୋଇଲେ ହୋ ବିମାନ
ଘେନିଆସ ॥
ତକ୍ଷଣେ ଲଙ୍କପତି ଅଣାଇଲା ବିବାନ ।
ଚନ୍ଦ୍ର ସୂର୍ଯ୍ୟ ବହ୍ନି ମିଶିଲା ଏକ ସ୍ଥାନ ॥
ରତ୍ନର କଳସ ନେତର ଚିରାଳ ।
ଚଉକତି ଲୁଳଇ ମୁକୁତାର ମାଳ ॥
ବ୍ରହ୍ମଜାତି ହୀରା କଳସ ଉପରେ ।
ନେତର ଚିରାଳ ଉଡ଼ଇ ଫରହରେ ॥
ପୁରେ ପୁରେ ମଣ୍ଡୋପ କାଞ୍ଚୁ ବନ୍ଧାଫେରି ।
ବିଚିତ୍ର ପୁର ମଣ୍ଡିଅଛଇ କସ୍ତୁରୀ ॥୮୦
ଗଜଦନ୍ତ ପିତୁଳୀ ସୁବର୍ଣ୍ଣ ରସାଣି ।
ଖଞ୍ଜା ଖଞ୍ଜା ପିତୁଳୀ ପଦ୍ମରାଗ ମଣି ॥
ନୀଳାର ପିତୁଳୀ କାହିଁ ପୋୟେଳାର ଖମ୍ବ ।
ଅତି ଆରମ୍ଭେ ଦିଶଇ ମହଦମ୍ଭ ॥
ନେତ ପାଟପତନୀ ଦେବାଙ୍ଗ ବସ୍ତ୍ରମାନ ।
ବିବିଧ କୁସୁମେ ମଣ୍ଡିଅଛି ବିବାନ ॥
ସୁବର୍ଣ୍ଣର ଘାଗୁଡ଼ି ରୁଣଝୁଣ ବାଜି ।
ଆଣିଲା ବିଭୀଷେଣ ପୁଷ୍ପେକ ରଥ ସାଜି ॥
ଉଦୟ କାଳର ସୂର୍ଯ୍ୟ ଜାଣି ତାର ତେଜ ।
ଦେଖିଣ ପ୍ରଶଂସା କରନ୍ତି ରଘୁରାଜ ॥୯୦
ମନେ ବିଚାରନ୍ତି ଏ ଅଟଇ ଦେବଯାନ ।
କୟେକୟାର ପ୍ରସାଦେ ଏଥକୁ ହୋଇଲି
ଭାର୍ଜନ ॥
ଏତେ ବୋଲି ରାମ ବିବାନ ପୂଜା କଲେ ।
ଜାନେକୀର ଭୁଜ ଧରିଣ ଉଠିଲେ ॥
ଅନ୍ତରୀକ୍ଷ ମାର୍ଗେ ଶ୍ରୀରାମ ବିଜେକରି ।

ନନ୍ଦିଘୋଷ ରଥେ ଯେହ୍ନେ ବିଜୟେ
ନୀଳଗିରି ହରି ॥
ସଙ୍ଗେଣ ସୀତା କି ଯେ ସୁଭଦ୍ରା ପ୍ରତକ୍ଷ ।
ଲକ୍ଷ୍ମଣ ଦିଶୁଛନ୍ତି ବଳଭଦ୍ର ସାଦୃଶ ॥
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ବିବାନ ଉପରକୁ ବିଜେକରି ଯାଏ ॥୧୦୦
ବୀର ମଣ୍ଡୋପେ ଶେଯାଇଅଛି ଶେଜ ।
ସୀତାଙ୍କୁ କୋଳେ ଘେନି ବିଜଏ ରଘୁରାଜ ॥
ଅପୂର୍ବ ବିବାନ ସବୁ ରତ୍ନମାଏ ।
ଚାରିକତି ଜଳାକବାଟି ଲାଗିଥାଏ ॥
ବାହର ଲୋକକୁ ନ ଦିଶଇ କିଛି ।
ଶ୍ରୀରାମ ସୀତାଙ୍କୁ ଜଗତ ଦିଶୁଅଛି ॥
ପ୍ରଥମ ପୁରେ ଯହୁଁ ବସିଲେ ରାମରାଣ ।
ଦୁତୀୟ ପୁରେ ସୁଗ୍ରୀ ଲକ୍ଷ୍ମଣ ବିଭୀଷେଣ ॥
ତୃତୀୟ ପୁରେ ହନୁ ଅଙ୍ଗଦ ଜମ୍ବେବ ।
ସୁଷେଣ ଋଷଭ ମହୀନ୍ଦ୍ର ଦୁବିନ୍ଦ ॥
ଚତୁର୍ଥ ପୁରେ କେଶରୀ ଗନ୍ଧମାରଦନ ।
ନଳନୀଳ ଗବୟେ ଗବାକ୍ଷ ସୁସୋଦନ ॥
କୁନ୍ଦ କୁମୁଦ ପନସ ପବନ ।
ପଞ୍ଚମ ପୁରେ ଡାଳିମ୍ବ ଚନ୍ଦନ ॥
ଡାଳିମ୍ବ ସମ୍ପାତି ଦଶକାଳବୃଦ୍ଧ ।
ଦଧିମୁଖ ତାରାକ୍ଷ ରମଣ ବିବୁଧ ॥
ଷଷ୍ଟେ ସପ୍ତମେ ବସିଲେ ଜଗଜେଠୀ ।
ବିଷମ ସାଂଗ୍ରାମେ ଯେ ନ ଦିଅନ୍ତି ପିଠି ॥
ଅଷ୍ଟମେ ନବମେ ବୀର ମହାବୀର ।
ମଲ୍ଲ ମହାମଲ୍ଲ ବସିଲେ ଦଶମ ପୁର ॥୨୦
ଉତ୍ତମ ଭଳି ଲୋକେ ଏକାଦଶ ପୁରେ
ରହି ।
ଯହିଁ ଯେତେ ବସନ୍ତି ତହିଁ ତେତେ ଠାବ
ହୋଇ ॥
ଏହି ଅନରୂପେ ଋକ୍ଷକପି ବସିଲେ
ଶତେପୁରେ ।
ବିବିଧ ଅସ୍ତ୍ରବାଦ୍ୟ ଧରିଛନ୍ତି କରେ ॥
ଗହ ଗହ ଶବଦ ଶୁଭଇ ମୁଖରୋଳ ।
ପନ୍ତି ପନ୍ତି ହୋଇ ବସିଲେ ଦୈତ୍ୟବଳ ॥
ଋକ୍ଷକପି ରାକ୍ଷାସ ସମସ୍ତେ ଏକଗୋଷ୍ଠୀ ।

ସୁରଗଣ ଘେନି ଦେଖଇ ପରମେଷ୍ଠୀ ॥
ଉଠିଲା ବିମାନ ଗର୍ଜନ ନାଦ କରି ।
ଶ୍ରୀରାମ ବସିଛନ୍ତି ସୀତାଙ୍କୁ କୋଳେ
ଧରି ॥୩୦
ରାମତାଳି ତାଳ କଂସାଳ ମହୁରୀ ।
ବାଜିଲା ଟମକ ନିଶାଣ ଶଙ୍ଖଭେରୀ ॥
ମନ୍ଦୋଦରୀ ସହିତେ ଲଙ୍କାର ଯୁବତୀ ।
ଅତି ଆନନ୍ଦେ ହୁଳାହୁଳି ଦ୍ୟନ୍ତି ॥
ରାକ୍ଷସେ ଜୟେ ଜୟେ ଘୋଷନ୍ତି ଶବଦ ।
ବଜାଇଲେ ଅସୁରେ ମଙ୍ଗଳ ମହୁରୀ ବାଦ୍ୟ ॥
ସ୍ୱର୍ଗରେ ଦୁନ୍ଦୁଭି ବାଜଇ ସ୍ୱଚ୍ଛନ୍ଦେ ।
ହୁଳାହୁଳି ଦିଅନ୍ତି ଅପଛରୀ ବୃନ୍ଦେ ॥
ପଞ୍ଚବର୍ଣ୍ଣ ପୁଷ୍ପ ବରଷନ୍ତି ସୁରଗଣ ।
ଏଥୁଅନନ୍ତରେ ଅପୂର୍ବ କଥା ଶୁଣ ॥୪୦
ଆକାଶ ମାର୍ଗେ ଯହୁଂ ଚଳିଲା ଦେବରଥ ।
ବିମାନେ ବସିଣ ଦେଖନ୍ତି ଜଗତ ॥
ଦେଖିଲେ ରଘୁନାଥ ଲଙ୍କାର ଆୟେତନ ।
ମେଢ଼ ମଣ୍ଡୋପ ଦେଉଳ ଘରମାନ ॥
ଜଗତୀ ଅଟାଳି ଦିଶଇ ପୁର ଗୋଟା ।
ବୃକ୍ଷ ଗଣ୍ଡୁକି ନଦୀ ମଧୁବନ ତୋଟା ॥
ଦେଖିଣ ଶ୍ରୀରାମ ପ୍ରଶଂସା କରନ୍ତି ।
ଧନ୍ୟ ଧନ୍ୟ ଏ କଟେକ ବୋଲିଣ
ବୋଲନ୍ତି ॥
ଏଡ଼େ ସମ୍ପଦଛାଡ଼ି ରାବଣେଶ୍ୱର ମଲା ।
ରକ୍ଷକପିଙ୍କରେ ଯେଡ଼େ ପାଟଣା ନାଶ
ଗଲା ॥୫୦
ନାରଖାର ଦିଶୁଅଛି ସୁବର୍ଣ୍ଣମୟପୁରୀ ।
ମୋହୋର ଆଗ୍ୟାଂରେ କଟେକ କଲେ
ଚୂରି ॥
ପ୍ରସନ ବଦନେ ହରଷ ରାମରାହୁ ।
ସୀତ୍ୟା ମୁଖ ଚାହିଁ ବୋଲନ୍ତି ହାଦେ ପ୍ରଭୁ ॥
ଯେ ଓଶେକ ବନ ଯେଥେ ତୋତେ
ଥୋଇଥିଲା ।
ହୋଇ ପ୍ରଭୁ ବୋଲି ଜାନେକୀ ବୋଇଲା ॥
ଯେଥୁଅନନ୍ତରେ ପୁଷ୍ପେକ ବିବାନ ।
ପବନ ଗତି ଜାଣି ଚଳଇ ଘନଘନ ॥

ଆଷାଢ଼ ଶୁକଳ ଦୁତୀୟା ଦିବସ ।
ବୁଧବାର ବୃହଷ୍ୟତି ପୁଷ୍ୟା ନକ୍ଷତ୍ର
ପ୍ରବେଶ ॥୬୦
ପୁଷ୍ପେକ ବିବାନେ ବିଜୟେ ରାମରାଉ ।
ଗୁଣ୍ଡିଚା ଘରକୁ କି ବିଜୟେ ଜଗନ୍ନାଥ ପ୍ରଭୁ ॥
ଶତେ ଯୋଜନ ଉପରକୁ ଉଠିଲା
ଦେବରଥ ।
ଉତ୍ତରା ଅଭିମୁଖେ ଚଳିଲେ ରଘୁନାଥ ॥
ସାଂଗ୍ରାମ ଭୂମିକି ରାମ ଦେଲେ ଦୃଷ୍ଟି ।
ସୀତୟାକୁ ବୋଲନ୍ତି ଶୁଣଗୋ ବିମ୍ବୋଷ୍ଟି ॥
ଏ ଲଙ୍କାଗଡ଼ଟି ଗଢ଼ିଲା ବିଶ୍ୱକର୍ମା ।
ରାବଣକୁ ପ୍ରସନ୍ନେ ଦେଇଥିଲେ ବ୍ରହ୍ମା ॥
ଏବେ ଏ ପୁର ମୁଂ ବିଭୀଷେଣକୁ ଦେଲି ।
ତୋହୋର ନିମନ୍ତେ ସଖି ଏଡ଼େ କର୍ମ
କଲି ॥୭୦
ଦେବେ ଲଙ୍ଘି ନ ପାରନ୍ତି ଯେବଣ
କଟେକ ।
ଚତୁର୍ଦ୍ଦଶ ଭୁବନେ ଆଣ୍ଟ ଅଟନ୍ତି
ଲଙ୍କାଲୋକ ॥
ସେ ଯେବେ ରକ୍ଷକପିଙ୍କର ହାଥେ ମଲେ ।
ବୁଦ୍ଧିବଳ ଛାଡ଼ି ସାଂଗ୍ରାମେ ପଡ଼ିଲେ ॥
ଦେଖ ଦେଖ ସଖିରେ ଦୁଷ୍ଟ ଦୈତ୍ୟମାନ ।
ପଡ଼ିଅଛନ୍ତି ଦେଖଗୋ ରଣରଙ୍ଗ ସ୍ଥାନ ॥
ଏଠାରେଟି ରାବଣ ହୋଇଲା ପ୍ରାଣନାଶ ।
ଅନେକ ଅରଷ୍ଟି ପଡ଼ିଲା ତାର ପାଶ ॥
ଏଠାରେଟି ଲକ୍ଷ୍ମଣ ହୋଇଲା ଶକ୍ତିଭେଦ ।
ଯେଥିଟି ବ୍ରହ୍ମଅସ୍ତ୍ର ମାଇଲା ମେଘନାଦ ॥୮୦
ଏଠାରେ କୁମ୍ଭକର୍ଣ୍ଣ ପଡ଼ିଲାରେ ସହି ।
ପର୍ବତସମାନେ ଦେଖ ପଡ଼ିଅଛି ଦେହୀ ॥
ଏଠାରେ ଇନ୍ଦ୍ରଜିତ ମାୟାଯୁଦ୍ଧ କଲା ।
ତୋହୋର ସ୍ୱରୂପ କରି ସ୍ତିରୀଯେକ
ମାଇଲା ॥
ଏଠାରେଟି ନାଗଫାଶେ ବାନ୍ଧିଲା ଆମ୍ଭନ୍ତ ।
ଯେବଣ ଦିନେ ସଖି ଗୋ ପେଷିଲା ହନୁମନ୍ତ ॥
ଏ ସୁବଳୟା ଗିରି ଗୋ ଏଠରେ ରହିଥିଲୁ ।
ଏହାକୁ ଆଶ୍ରେକରି ସାଂଗ୍ରାମେ ଜିଣିଲୁ ॥

ଏ ମୋତେ ସାଖୀ ଗୋ ହୋଇଲା
ଦୁଃଖକାଳେ ।
ଏହାର ପ୍ରାସାଦେ ତୁ ଗୋ ବସିଲୁ ମୋର
କୋଳେ ॥୯୦
ଏ ଯେବେ ମୋତେ ନ ସମ୍ଭାଳନ୍ତା
ଗିରିବର ।
କାହୁଁ ବସନ୍ତି ମୁଂ ପୁଷ୍ପେକ ରହୁବର ॥
ଇନ୍ଦ୍ର ଉପବନ ରଖିଲାକ ମୋତେ ।
ତେଣୁ ସେ ସଖି ଗୋ ପାଇଲଇଂ ତୋତେ ॥
ଏ ଯେ ପଡ଼ିଅଛି ଗୋ ଜଗତୀର ଚାଳ ।
ଲଙ୍କାରୁ ଆଣିଲାଟି ଗୋ ବାଳୀର ଦୁଲାଳ ॥
ଏଠାରେ ନଳର ଗୋ ଆଗିଆଣି ଠଣା ।
ଏଠାରେ ଅସୁରେ ଗୋ ହେଲେ ରାତି ହଣା ॥
ଦେଖ ଦେଖ ସାହେର ଭିତରେ ସେତୁବନ୍ଧ ।
ଏହାର ଦୟାରେ ଗୋ ଜିଣିଲି
ଦଶକନ୍ଧ ॥୧୦୦
ଭୋ ମହାସ୍ୟତୀ ଗୋ ଏସେ ସିନ୍ଧୁକୂଳ ।
ଏଠାରେ ଶରଣ ପଶିଲା ବିଶର୍ବାର ବାଳ ॥
ଏଠାରେଟି ବିଭୀଷେଣକୁ ଅଭିଷେକ କଲୁ ।
ଏଠାରେଟି ଲଙ୍କାଗଡ଼ ଗୋ ଦେବୁ ବୋଲି
ବୋଇଲୁ ॥
ଏଠାରେ ବରୁଣକୁ ଗୋ ମାଗିଲଇଂ ବାଟ ।
ବୁଦ୍ଧି ନ ଦିଶିଲା ଗୋ ଘୋଟିଲା ସଙ୍କଟ ॥
ଏଠାରେଟି କୁଶପାଡ଼ି ଗୋ ଶୋଇଲୁ
ତିନିଦିନ ।
ଏଠାରେଟି ଅଗ୍ନିଶର ଗୋ କଲଇଂ ସନ୍ଧାନ ॥
ଏଠାରେଟି ବରୁଣ ଗଙ୍ଗା ଯମୁନା ଘେନି ।
ପ୍ରବୋଧନା କଲେ ମୋତେ କୋଡ଼ିଏ ରତ୍ନ
ଘେନି ॥୧୦
ଏଠାରେ ମାଲ୍ୟବନ୍ତ ଶୁଣ ଚାନ୍ଦମୁହୀ ।
ଚାରିମାସ ବରଷା ଗୋ ବଞ୍ଚିଲୁ ଏଥିଥାଇଂ ॥
କାନ୍ଦିଣ ଦିନ ଗୋ ପୁହାଇଲୁ ଏଥ ।
ଦୁଃଖେ ବଞ୍ଚିଲୁ ସହି ଗୋ ଏହି ପରବତ ॥
ଏଥେ ଥାଇ ସଖୀ ଗୋ ପେଷିଲି ତୋରେ
ଦୂତ ।
ଏଠାକୁ ଥାଟ ଘେନି ଗୋ ଅଇଲେ ମୋର
ମିତ ॥

ଏଠାରେ ଅଗସ୍ତି ଗୋ ଆଶିଷ ଦେଲେ ମୋତେ ।
ଯେଥିଟି ସପନେ ଗୋ ଦେଖିଲି ସଖି ତୋତେ ॥
ଏଥିଟି ସଖି କୁକୁଟ ବାରତା କହିଲା ।
ଯେଥିଟି ସଖୀ ବକ ସମ୍ବାଦ ମୋତେ ଦେଲା ॥୨୦
ଯେ ଯେ ଦିଶୁଅଛି ଗୋ ଋଷ୍ୟମୂକ ପର୍ବତ ।
ଏଠାରେ ସୁଗ୍ରୀସଙ୍ଗେ ଗୋ ହୋଇଲୁ ମଇତ୍ର ॥
ଏଥିଟି ପାଇଲି ଗୋ ଅମଳାଣ ଶାଢୀ ।
ସୁଗ୍ରୀବର ଦେଲା ଗୋ ତୋର ରତ୍ନଚୂଡ଼ି ॥
ଏଥିଟି ଦୁନ୍ଦୁଭି ହାଡ ଫିଙ୍ଗି ଦେଲୁ ।
ଏଥିଟି ସପତ ଶାଳ ବାଣେ ଛେଦନ କଲୁ ॥
ଯେ ସେ ଜାନେକୀ ଗୋ କିଷ୍କିନ୍ଧା ନଗର ।
ଏଥିରେ ରାଜା ଗୋ ଅଟଇ ସୁଗ୍ରୀବର ॥
ଏଠାରେଟି ବାଳୀକି ମାଇଲୁ ଆମ୍ଭେ ପ୍ରାଣେ ।
ତେତେ ମହାବୀର ପଡିଲା ଏକାବାଣେ ॥୩୦
ଦେଖ ଗୋ ସଖୀ ବାଡ କେତେକ ବେଢିଅଛି ।
ଅନେକ ଯତନେ ଏହା ଯେ ବାଳୀବୀର ସଞ୍ଚି ॥
ନଦୀ ଦୁର୍ଗମ ଜଙ୍ଗ ବନ ଯେ ତିନି ।
ଗଡ ବାନ୍ଧିଅଛି ଯେଥିକୁ ଆବୋରି ଘେନି ॥
ନଦୀ ବନ ପର୍ବତ ଯେଥି ଅଗମ୍ୟ ଦିଶଇ ।
କିଷ୍କିନ୍ଧାନବରକୁ ରାମ ବହୁତ ପ୍ରଶଂସଇ ॥
ଏତେ ବୋଲି ସୀତାଙ୍କୁ ଦେଖାନ୍ତି ପୁଣ ପୁଣ ।
ଦୁଧ ଖାଇଲୁ ଏଥି ଗୋ ବନ୍ଧା ଦେଇ ମଣି ॥
ରତ୍ନ ଘେନିଣ ଯାଚି କ୍ଷୀର ଦେଲା ।
ପ୍ରଥମେ ମାଗିବାରେ ବେଳେକ ନାସ୍ତି କଲା ॥୪୦
ଏହି ନଦୀତଟରେ ହନୁମନ୍ତ ମୋତେ ଭେଟି ।
ମୋତେ ଘେନିଯାଇ ସୁଗ୍ରୀପାଖକୁ ତତତି ॥
ପିମ୍ପୀ ସରୋବର ଦେଖ ହାଦେ ସଖୀ ।
ଏଥିଟି ଦେଖିଲୁ ଗୋ ଚକ୍ରବାକ ପକ୍ଷୀ ॥
ଏଠାରେ ଶବରଣୀ ମୋକ୍ଷ ହୋଇଗଲା ।
ଭୋକିଲା ବେଳେ ମୋତେ ପାଚେଲା ଆମ୍ବ ଦେଲା ॥
ଏଠାରେ କୋବନ୍ଧ ଧଇଲା ଗୋ ବଳେ ।
ଲକ୍ଷ୍ମଣ ହାଣିଲା ତାହା ପ୍ରଚଣ୍ଡ କରବାଳେ ॥
ଏଠାରେଟି ଅଗ୍ନିରେ ଦାହ ତାକୁ କଲୁ ।
ଭୋସଖି ଏଠାରେ ପକ୍ଷୀଚଟାକୁ ଦେଖିଲୁ ॥୫୦
ଏଠାରେଟି ହୁତାଶନେ କଲୁ ତାକୁ ଦାହା ।
ମାୟାମୃଗ ବିନ୍ଧିଲୁ ଏଠାରେ ସଖି ଚାହାଂ ॥
ଏଠାରେ ଖରଦୂଷଣ ତ୍ରିଶିରା ନାଶକଲୁ ।
ଚଉଦସସ୍ର ବଳ ଏଠାରେ ମାଇଲୁ ॥
ଏଠାରେ ସୂପଲେଖୀର କାଟିଲୁ ନାକକାନ ।
ଏସେ ମହାସ୍ୟତୀ ଗୋ ଦଣ୍ଡକାଅରଣ୍ୟ ॥
ଏସେ ପଞ୍ଚୁବଟୀ ଗୋ ଗୋଦାବରୀ କୂଳ ।
ଏଥିଟି ବଞ୍ଚିଲୁସି ତିନି ବରଷ କାଳ ॥
ତୁହି ସେ ଏହି ବନେ କ୍ରୀଡା କରିଥିଲୁ ।
ତୁହି ଯେହି ବୃକ୍ଷତଳେ ଜଟାଇଶକୁ ଆହାର ଦେଲୁ ॥୬୦
ଏହି ପର୍ଣ୍ଣକୁଟିରେ ଗୋ ହରାଇଲି ତୋତେ ।
ଏଥିଟି ଗୋ ନିରେଖ କରିଗଲୁ ମୋତେ ॥
ଫଳ ଫଳିଛନ୍ତି ଦେଖାଗୋ ସଖି ବନେ ।
ଲୀଳା କରିଥିଲାଇଂ ବିବିଧ ବିନୋଦମାନେ ॥
ଭୟେ ତୁ ଲୁଚିଲୁ ଗୋ ମନ୍ଦାର ବୃକ୍ଷମୂଳେ ।
ଏଥୁ ଘେନିଗଲା ଗୋ ବିଶ୍ରବାର ବାଳେ ॥
ଏଠାରେଟି ଶରଭଙ୍ଗ ଋଷି ରହିଥିଲେ ।
ଆମ୍ଭ ଅଇଲା ଦିନୁ ମୋକ୍ଷ ହୋଇଗଲେ ॥
ଏହି ବନେ ସୀତାଗୋ ମୃଗ ପୁଅନ୍ତ ଘେନି ।
ଖେଳି ହସୁଥାଉ ଗୋ ତୁ ଜାତିରେ ପଦ୍ମିନୀ ॥୭୦
ଅଗସ୍ତି ମୁନିବର ଥିଲେଟି ହାଦେ ଏଥ ।
ପଞ୍ଚୁବଟୀ ବନକୁ ଦେଖାଇଦେଲେ ହସ୍ତ ॥
ଅକ୍ଷୟେ ତ୍ରୋଣ ଅଜଗବ ଧନୁ ହରଷ ମନେ ଦେଲେ ।
ପୁରାତନ କଥାଗୋ ଅନେକ ତିଆରିଲେ ॥
ଏଥିଟି ଅନୁଛାୟା ଅମଳାଣ ବସ୍ତ୍ର ଦେଲେ ।
ତୋହୋର ଜନ୍ମକାଳ କଥାନ୍ତ ପଚାରିଲେ ॥
ଦେଖ ଯେ ବିପୁନେ ଋଷିଙ୍କର ଘରମାନ ।
ଏଥି ରହିଥିଲେଟି ଅନେକ ତପୀଜନ ॥
ଏଥିଟି ମୃଗ ଚଉଂରୀ ତୋତେ ଦେଲି ।
ଏଠାରେଟି ବୀରାୟୁଧ ଦୈତ୍ୟଙ୍କୁ ନାଶକଲି ॥
ଏଠାରେଟି ଶ୍ରୀହରି କୂର୍ମ ରୂପ ହୋଇ ।୮୦
ଯିଅର ପର୍ବତ ଏଥି ନରସିଂହ ଥାଇ ॥
ଯେହି ଋଷିକୋଇଲା ତଟେ ଗୋ ପୂଜିଲୁ ଆମ୍ଭେ ହର ।
ମୁଦ୍ରିକା ଚିହ୍ନ ଗୋ ରହିଲାଟି ମୋହୋର ॥
ଏ କୁଠାରଚଣ୍ଡୀକି ଲକ୍ଷ୍ମଣ ପୂଜା କଲା ।
ଲକ୍ଷ୍ମଣ ଚଣ୍ଡୀ ବୋଲି ଏହାର ନାମ ଦେଲା ॥
ଏଯେ ନୀଳଗିରି ହୋ ଶ୍ରୀପୁରୁଷୋତ୍ତମ ।
ଏଥିଟି ବିଜଏ ଜଗନ୍ନାଥ ଦେବଙ୍କର ଉତ୍ତମ ॥
ଭାସ୍କର ତୀର୍ଥ ଏ ପୂର୍ବଅଗ୍ନି କୋଣ ।
ମିତ୍ର ବୋଲି ଏ ପୂର୍ବର ଭିଆଣ ॥୯୦
ମିତ୍ର ବୋଲି ଭାସ୍କର ଏଥେ ସର୍ବଦା ଥାଇ ।
ଏହାର ପଶ୍ଚିମ ଦିଗରେ ମହାମାଈ ॥
ଏ କୃତ୍ତିବାସଟି ଏକାମ୍ରର ବନ ।
ଭୁବନେଶ୍ୱର ରୂପେ ଏ ଜଗତମୋହନ ॥
ଦେଖ ଦେଖ ସଖି ଏ ଦକ୍ଷିଣ ବାରାଣସୀ ।
ବାଲୁକେଶ୍ୱର ନାମେ ପୂଜିଲୁ ଏଥି କାଶୀ ॥
ଏ ସେ ହରଗଙ୍ଗା ଅଟଇ ପୁଣ୍ୟକୁଣ୍ଡ ।
ଏଥେ ସ୍ନାହାନ କରି ଦେଲାଇଂ ଆମ୍ଭେ ପିଣ୍ଡ ॥
ଏସେ ନର୍ମଦା ଗୋ ପଶ୍ଚିମ ବାହିନୀ ।
ଏଥେ ଦେଖିଲୁଟି ସୁତୀକ୍ଷଣ ମୁନି ॥୧୦୦
ଏସେ ଜାନେକୀ ଗୋ ଫୁଲକି ନଦୀ ଚାହାଂ ।
ଗଦାଧର ଦେବତା ଏଥି ବିଜୟେ ଚଉବାହା ॥
ଏଥିଟି ବାଲିପିଣ୍ଡ ଦେଲୁ ଚାନ୍ଦମୁହାଂ ।
ପିତୃଲୋକେ ମୋହୋର ସ୍ୱର୍ଗେ ବସିଲେ ତୋଷ ହୋଇ ॥
ବ୍ରାହ୍ମଣେ କ୍ଷୁର କରି ଘେନିଲେ ତୋର ଆମ୍ଭେ ।

ଗୋଡ଼ାଇଗଲେ ଗୋ ବହୁଦୂର ଯାଏ ॥
ଦେଖ ଦେଖ ସଖି ଏ ବାରାଣସୀ କ୍ଷେତ୍ର ।
ଏଥିରେ ସର୍ବଦା ବିଜୟେ ତିନିନେତ୍ର ॥
ଏଟି ଗଙ୍ଗା ଗୋ ଏଥି ସ୍ନାହାନି କରି ।
ଆଗେ ଦେଖ ସଖି ଗୋ ଚିତ୍ରକୂଟ ଗିରି ॥୧୦
ଏଥିଟି କାକ ମୃଗ ମାଂସ ନେଲା ।
ଘଉଡ଼ି ଦିଅନ୍ତେ ତୋର ହୃଦୟ ବିଦାରିଲା ॥
ଏ ଧାତୁଶିଳା ଉପରେ ବସିଲୁ ସୀତା ।
ଏଥି ତୋତେ ଘୋରି ଦେଲୁ ଗେରୁ ଚିତା ॥
ଏ ମନ୍ଦାଅଗ୍ନି ଜଳେ କ୍ରୀଡ଼ା ଆମ୍ଭେ କଲୁ ।
ଏ ପୁଷ୍ପ ବନିକାରେଟି ବିନୋଦ ଆଚରିଲୁ ॥
ଏ ନୀଳବଟେଟି ଅଛି ଶ୍ୟାମବଟ ।
ଏଥକୁ ପ୍ରୟାଗ ଗୋ ସଖି ଅଟଇ ନିକଟ ॥
ଏସନେକ ଭାଳନ୍ତି ସୀତୟାର ସଙ୍ଗେ ।
ପୁଷ୍ପେକ ବିବାନ ଗୋ ଚଳଇ ଗଗନ
ମାର୍ଗେ ॥୨୦
ଚନ୍ଦ୍ରଦେବତା ଯେହ୍ନେ କିରଣ ବିରାଜି ।
ବିବିଧ ଛନ୍ଦେଣ ବାଦ୍ୟମାନେଣ ବାଜି ॥
ପ୍ରୟାଗ ସଲଖେ ହୋଇଲା ଯାଇ ରଥ ।
ରହୁ ବୋଲି ମନେ ବୋଇଲେ ରଘୁନାଥ ॥
ଆଜ୍ଞା ପ୍ରମାଣେ ରହିଲା ରହୁବର ।
ଗଗନ ଶିଖରୁ ରଥ ଖସଇ ଧୀରେ ଧୀର ॥
ଶରତ ଚନ୍ଦ୍ରମା କି ପଡୁଅଛଇ ମେଦିନୀ ।
ସୁଧର୍ମା ସଭା ଅଇଲାକି ସୁରଗଣ ଘେନି ॥
ଆଦିତ୍ୟ ଦେବତା କି ପୃଥ୍ୱୀକି ସଧକଲା ।
ତେସନ ପଟାନ୍ତର ବିବାନ ଦିଶିଲା ॥ ୩୦
ରବିତଳେ ଆସି ହୋଇଲାକ ଯାନ ।
ଋକ୍ଷକପି ରାକ୍ଷାସେ ବାଇଲେ ତୂରମାନ ॥
ପ୍ରୟାଗ ଭିତରେ ଅଛଇ ଅନ୍ତର୍ବେଦୀ ।
ବେଢ଼ିଛନ୍ତି ଯମୁନା ଗଙ୍ଗା ଦୁଇ ନଦୀ ॥
ତହିଂ ଭରଦ୍ୱାଜ ମୁନିଙ୍କ ଆଶ୍ରମ ।
ସନ୍ଧ୍ୟା ସମଏ ମୁନି ଅଗ୍ନିଗେ ବ୍ୟନ୍ତି ହୋମ ॥
ଏସନେକ ସମଏ ଦ୍ୱାରେଣ ଯାନ ରହି ।
ଦେଖି ଶିଷ୍ୟମାନେ ଗୁରୁଙ୍କୁ ଯାଇଂ କହି ॥
ଭୋ ମୁନି ଦ୍ୱାରେଣର ଯାନେକ ଉପଗତ ।
ଋକ୍ଷକପି ରାକ୍ଷାସ ଅଛନ୍ତି ବହୁତ ॥୪୦
ଅପୂର୍ବ ବିବାନ ସେ ନବରତ୍ନମଏ ।
ଶୁଣି ମହାମୁନି ଉଲୁସିଲା କାଏ ॥
ଅଗ୍ନିସେବା ବିଧି ସାରିଲେ ତତ୍‌କ୍ଷଣି ।
ଦୋହରାଘରୁ ବାହାର ହୋଇଲେ ମହାଯତି ॥
ପର୍ଣ୍ଣକୁଟୀ ଦ୍ୱାରେ ମିଳିଲୋକ ଆସି ।
ଶ୍ରୀରାମ ଥିଲେ ପୁଷ୍ପେକ ରଥେ ବସି ॥
ମୁନିଙ୍କି ଦେଖିଣ ତଳକୁ ଓହ୍ଲାଇଲେ ।
ସୁଗ୍ରୀ ବିଭୀଷେଣ ପଛରେ ଗୋଡ଼ାଇଲେ ॥
ହନୁ ଅଙ୍ଗଦ ଜମ୍ୱେବ ନଳନୀଳ ।
ଗନ୍ଧମାରଦନ ଶଉରୀ ଶତବଳ ॥ ୫୦
ମହାନ୍ଦ୍ର ଦୃବିନ୍ଦ ପବନ କେଶରୀ ।
ଏକ ଆରେକ ଯେ ହାଥ ଧରାଧରି ॥
ଡାଳିମ୍ବ କୁମୋଦ କଞ୍ଚଣ କାଳିଞ୍ଜନ ।
ବିବିଧ ଶତର୍ବାଳି ସାରାସ ସୁସୋଦନ ॥
ରମଣ ଗବଏ ଗବାକ୍ଷ ପନଶିଳ ।
ସେନା ଯୂଥପତି ସଇନ ସକଳ ॥
ଋକ୍ଷକପି ରାକ୍ଷାସ ତଦନ୍ତ ନ ଜାଣି ।
ଶ୍ରୀରାମର ସଇନି କେପାରିବ ଗଣି ॥
ଅକଳିତ ବଳ ପୂରିଲେ ଚଉକତି ।
ଶ୍ରୀରାମ ଲକ୍ଷ୍ମଣ ଯେ ଜନେକ
ଦୋହିତୀ ॥୬୦
ଅଗୁସାର ହୋଇ ଅଛନ୍ତି ତିନିଜଣ ।
ଶ୍ରୀରାମ କନ୍ଧରେ ଅକ୍ଷଏ ବେନିତ୍ରୋଣ ॥
ବାମେଣ କୋଦଣ୍ଡ ଯୁବା କାମମୂର୍ତ୍ତି ।
ନବଦୁର୍ବାଦଳ ଶ୍ୟାମଳ ଶ୍ୟରୀର
ଦିବ୍ୟଜ୍ୟୋତି ॥
ସର୍ବାଙ୍ଗେ ଭୂଷଣ ଶ୍ରୀକ୍ରପୂର ଗୁଣ୍ଡି ।
ଜାତି କୁସୁମେଣ ଜଟା ଛନ୍ତି ମଣ୍ଡି ॥
ଫରହର ନିଶ କସ୍ତୁରୀ ରେଖ ରୋମ ।
ପାଦକଇ ସମ ନୁହଇ କୋଟି କାମ ॥
ସୁବର୍ଣ୍ଣ କାନ୍ତି ଜାଣି ବିରାଜଇ ପଇତା ।
କପୋଳେ କସ୍ତୁରୀ ଶୋହଇ
ଠିଆଟିତା ॥୭୦
ଫରହର ଉଡ଼ଇ ନେତର ଅଞ୍ଚଳ ।
ବାମେ ଯମଦାଢ଼ କଟିରେ ମେଖଳ ॥
ସୀତାର ମଣିଗୋଟା ହୃଦୟରେ ଲୁଳି ।
କଉସ୍ତୁଭ ମଣିକି ନାଇଲେ ବନମାଳୀ ॥
ବିସ୍ତାର ରୂପ ହିଆ ବିକ୍ରମ ସିଂହ ଜାଣି ।
ସକଳ ରୂପ ବିଧାତା ଠୁଳ କଲା ଆଣି ॥
ଦେଖି ମୁନିମାନେ ମୋହିତ ହୁଅନ୍ତି ।
ନ ଦେଖିଲେ ମନେ ଶ୍ରୀରାମ ନାମ
ସୁମରନ୍ତି ॥
ସେ ପ୍ରଭୁ ଅବତାର ମନୁଷ୍ୟ ଦେହ ବହି ।
ଦେଖିଣ ସନ୍ତୋଷ ଭରଦ୍ୱାଜ ମୁନି
ହୋଇ ॥୮୦
ସୀତା ରୂପବତୀ ସ୍ୱୟେଂ କମଳିଣୀ ।
ଶ୍ରୀରାମ ଦଖିଣ ପାରୁଶେ ସେହି ପୁଣି ॥
ବାମେଣ କୋଦଣ୍ଡ ଦକ୍ଷିଣେ ତୀକ୍ଷଶର ।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ଦିଶଇ କଳେବର ॥
ଲହୁଳି ବୟସ ସୁକୁମାର କାୟେ ।
ତରୁଣ ସିଂହ ଜାଣି ଗମନ କରିଥାଏ ॥
ଦେଖିଣ ପ୍ରଶଂସା କରନ୍ତି ମୁନିବର ।
ସାଧୁ ସାଧୁ ବାସୁଦେବ ମହିମା ତୋହୋର ॥
ଦଶରଥ କୋଳେ କଉଶଲା ଗର୍ଭଜାତ ।
ଏହାର ବାଣେ ଦୈତ୍ୟେ ହୋଇଲେ ସର୍ବେ
ହତ ॥୯୦
ପରମ ଆତ୍ମା ଜୀବ ପ୍ରକୃତି ତିନିମୂର୍ତ୍ତି ।
ଶ୍ରୀରାମ ଲକ୍ଷ୍ମଣ ଜନେକ ଦୋହିତୀ ॥
ସତ ରଜ ତମ ଏହୁ ସେ ତିନିଗୁଣ ।
ଏସେ ବେଦପତି ଶଙ୍କର ନାରାୟେଣ ॥
କୃତାର୍ଥ ହୋଇଲି ଦେଖିଲି ସ୍ୱାମୀ ଆଜ ।
ଜାଣିଲି ଦୟା ମୋତେ କରନ୍ତି ରଘୁରାଜ ॥
ଏସନେକ ବିଚାରୁ ଶ୍ରୀରାମଚନ୍ଦ୍ର ରାଏ ।
ମୁନିଙ୍କର ଚରଣେ ନମସ୍କାର କୟେ ॥
ସୀତା ଲକ୍ଷ୍ମଣର ସହିତେ ପାଦେ ପଡ଼ି ।
ଉଠି ଉଭା ହୋଇ ଶିରରେ
କରଯୋଡ଼ି ॥୧୦୦
ସୁଗ୍ରୀ ବିଭୀଷେଣ ଜମ୍ୱେବ ମହାମନ୍ତ୍ରୀ ।
ହନୁମନ୍ତ ସହିତେ ପାଏ ପଡ଼ି ଶୁତି ॥
ଗବଏ ଗବାକ୍ଷ କାଳିମୁଖ ସୁସୋଦନ ।
ସୁଷେଣ ତାରାକ୍ଷ ନଳନୀଳ କାଳିଞ୍ଜନ ॥
ଦୃବିନ୍ଦ ଗନ୍ଧ ଯେ ମାର୍ଦନ ସହିତେ ।

ସେହ୍ନା ରକ୍ଷକପି ଯୂଥପତି ଯେତେ ॥
ରକ୍ଷକପି ରାକ୍ଷାସେ ଶୁତିଲେ ଗଡ଼ଘାଲି ।
ଉଠ ଉଠ ବୋଲି ମାହାମୁନି ବୋଲି ॥
ଶ୍ରୀରାମର ଭୁଜ ଧରିଣ ଘେନିଗଲା ।
ଜଗତ ପିତାମହ କି ବାସୁଦେବକୁ ଧରିଣ ତୋଳିଲା ॥୧୦
ଆସନେ ବସାଇ କଲାକ ଗଉରବ ।
ପୂଜା ବିଧି କରି ଦେଲେ ପାଦଅର୍ଘ୍ୟ ॥
କୁଶଳ ପୁଛାପୁଛି ବେନିଜନେ ହୋନ୍ତି ।
ଋଷିଙ୍କ ମୁଖ ଚାହିଁ ଶ୍ରୀରାମ ବୋଲିନ୍ତି ॥
ଭୋ ମୁନି କଥାଏ ପଚାରିବି କହ ।
ଭ୍ରଥକୁ ନଦେଖି ବିକଳ ମୋର ଦେହ ॥
ଜାଣୁଟିକି ମୁନି ହେ ତାହାର ବାରତା ।
ଶୁଣିଣ ବଚନ ବୋଇଲେ ବ୍ରହ୍ମବେତ୍ତା ॥
ସକଳ କୁଶଳ ଅଯୋଧ୍ୟା କଟକ ।
କ୍ଷେମେଣ ବଞ୍ଚିଛନ୍ତି ଯେ ତୋହୋର ଗୋତ୍ର ଲୋକ ॥୨୦
ମାତୃଗଣ ସହିତେ ଶତ୍ରୁଘନ ଭ୍ରଥ ।
ସାମନ୍ତ ପାତ୍ର ଅମାନାତ୍ୟେ ଆବର ପୁରୋହିତ ॥
ନଗ୍ର ନରନାରୀ କୁଶଳେ ଅଛନ୍ତି ।
ଚାତକ ଚଢ଼ାଇ ପ୍ରାୟେ ତୋତେ ଚାହିଁଛନ୍ତି ॥
ଭ୍ରଥ ଅଯୋଧ୍ୟାରେ ନୃପତି ନୋହିଲା ।
ତେହୋର ପ୍ରାୟେ ହୋଇ ତପସେହୁ କଲା ॥
ଚାରି ଭାଇ ତୁମ୍ଭେ ହୋ ଅଟ ଏକ ଦେହ ।
କେମନ୍ତେ ଛାଡ଼ିବାକ ଯେ ଯାହାର ସ୍ନେହ ॥
ଏବେ ତୁ ରଘୁନାଥ ଯେତେକ କୃତ୍ୟ କଲୁ ।
ତୈଲୋକ୍ୟର ଶତ୍ରୁକୁ ହେଳେ ନିବାରିଲୁ ॥୩୦
ଅଯୋଧ୍ୟାରେ ଏବେ ହୁଅ ଅଭିଷେକ ।
ତୋତେ ଆଶ୍ରା କରିଅଛନ୍ତି ତହିଁର ଲୋକ ॥
ତୋହୋର ପ୍ରାଏ ପ୍ରଭୁ ଅନେକ ପୁଣ୍ୟେ ପାଇ ।
ତୋହୋର ମହିମା ଦେବ କହଣା ନ ଯାଇ ॥
ଯେବଣ କର୍ମ ଯେବେ ଲଙ୍କାରେଣ କଲୁ ।
ଚଉଦ ଭୁବନେ କଥା ରୁହାଇଲୁ ॥

ତୋହୋର ବଳେ ଦେବ ଦତ୍ୟ ହୁଅଇ ମାରି ।
ପର୍ବତ ଘେନିଣ ବାନ୍ଧିଲୁ ସିନ୍ଧୁବାରି ॥
ଏକଥା ଅଶ୍ରୁତ ଅଟଇ ରଘୁବୀର ।
ଜଗତ ଥିର କଲୁ ମାରିଣ ଅସୁର ॥ ୪୦
ଭରଦ୍ୱାଜଙ୍କର ଏମନ୍ତ ବଚନ ।
ଶୁଣି ହନୁମନ୍ତ ହସଇ ମନେମନ ॥
ମୋହୋର ଭରସାରେ ରାମ ମାଇଲେ ଦଶଶିରି ।
ମୋହୋରେ ଆଣିଲେ ଜନେକକୁମାରୀ ॥
ମୁହିଁ ସେ ସମୋଦ୍ର ଡେଇଁ ଲଙ୍କାକଇ ଗଲି ।
ମୁହିଁ ସେ ପର୍ବତେ ସେତୁବନ୍ଧ କଲି ॥
ଲକ୍ଷ୍ମଣ ଶକ୍ତିଭେଦ ଇନ୍ଦ୍ରଜିତ ଶରବିନ୍ଧ ।
ଦୁର୍ଲଭ ସ୍ଥାନରେ କଲଇଁ ମୁହିଁ ଯୁଦ୍ଧ ॥
ଏକାଏ ଅସୁର ଅନେକ ବଧ କଲି ।
ଅକ୍ଷୟ କୁମାର ମାରି ଲଙ୍କା ପୋଡ଼ିଦେଲି ॥୫୦
ମୁହିଁ ସେ ରାବଣକୁ ନିର୍ଭୟେ କହଇ ।
ଅସୁରଙ୍କୁ ଦେଖିଲେ କୋପ ଅଗ୍ନିରେ ଦହଇ ॥
ମୋହୋରେ ଶ୍ରୀରାମ ଏଡ଼େ ଯଶ କଲେ ।
ମୋତେ ନ ଭେଟିବା ଯାଏ ଏ ବନରେ ବୁଲୁଥିଲେ ॥
ମୁହିଁ ସେ ସୁଗ୍ରୀ ସଂଗେ କରାଇଲି ଦେଖାଦେଖି ।
ତ୍ରେତୟା ମଲ୍ଲ କ୍ଷତ୍ରୀ ବୋଲି ମୋତେ ଲେଖି ॥
ଏସନ ବୋଲି ଭାଳନ୍ତେ ହନୁମନ୍ତ ।
ସେ କଥା ଜାଣିଲେ ସ୍ୱାମୀ ରଘୁକୁଳ ନାଥ ॥
ସର୍ବଜ୍ଞ ପୁରୁଷ ସେ ସର୍ବ ଅନ୍ତର୍ଯ୍ୟାମୀ ।୬୦
ହନୁମନ୍ତ ହୃଦୟ ଜାଣିଲେ ଦେବସ୍ୱାମୀ ॥
ମନେ ବିଚାରିଲେ ମାରୁତି ଗର୍ବକଲା ।
ଏହି ସେ ଯୁଦ୍ଧ ମୁଂ ଜିଣିଲି ବୋଇଲା ॥
ଅଜ୍ଞାନ ବାପୁଡ଼ା ଏ ନଜାଣଇ କିଛି ।
ରାମାୟଣ ଯୁଦ୍ଧ ବଡ଼ିମା କହୁଅଛି ॥
ଆଜ ଏହାର ବଳଯେ କଳିବଇଁ ମୁହିଁ ।
ଜାଣିମାକ ବଳ ଏ କେତେ ଅଛି ବହି ॥

ଏସନେକ ସମଏ ହୋଇଲା ସନ୍ଧ୍ୟାକାଳ ।
ଫଳମୂଳ ଆଣି ଦେଲେ ତପଶୀଳ ॥
ଯେ ଯାହାର ଅନରୂପେ ଫଳମୂଳ ଦେଲେ ।
ଜଣେ ଜଣେ କରି ସବୁନ୍ତି ବିନୋଇ କହିଲେ ॥୭୦
କେବଳ ମାତ୍ର ଆମ୍ଭେ ବିପୁନ୍ୟେଣ ଥାଉ ।
କନ୍ଦମୂଳ ଖାଇ ନିର୍ଝର ପାଣିପିଉ ॥
ଯହୁଁ ସେ ଶ୍ରୀରାମ ମୋତେ ଦୟା କରଇଂ ।
ଯାଉ ଆସୁ ମୋତେ ରହିଣ ପଚାରଇଂ ॥
ଏବେ ଅସକତ ବେଳେଣ ଅଇଲେ ।
ନିଶାକାଳରେ ବାବୁ କିଛି ନ ପାଇଲେ ॥
କାଲି ଶ୍ରୀରାମକୁ ଯତନେ ରୁହାଇବି ।
ଯେତେମାନ ପାରଇ ଭୂରି ଭୋଜନ ଦେବି ॥
ଏସନେକ ବୋଲି ବୋଇଲେ ତପଶୀଳ ।
ଶୁଣି ତୋଷ ହୋଇଲେ ରକ୍ଷ କପିବଳ ॥୮୦
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ରରାଏ ।
ହନୁମନ୍ତ ଚାହିଁ ଏକାନ୍ତେଣ କହେ ॥
ତୁହୋ ମାରୁତି ହୋ ମୋହୋର ବୋଲ ଶୁଣ ।
ଅସୁରଙ୍କର ସଙ୍ଗେ ତୁ କଲୁ ବହୁତ ରଣ ॥
କ୍ଷୁଧାରେ ଶରୀର ଅଛି ପୀଡ଼ା ପାଇ ।
ଆତ୍ମା ତୋଷ କର ଫଳମୂଳ ଖାଇ ॥
ଏ ଯେ ଦିଶୁଅଛି ପଶ୍ଚିମ ବିପୁନ୍ୟ ।
ଆଜ ଏଥି ନିଶି ବଞ୍ଚ ହୋ ହନୁମାନ ॥
ପ୍ରଭାତେ ଆସିଣ ଆମ୍ଭ ପାଦେ ଖଟ ।
ଶୁଣି ପରମ ତୋଷ ପବନର ଚାଟ ॥୯୦
ଶ୍ରୀହରି ଦଇବୀ ମାୟାରେ ମୋହଗଲା ।
ଯେବଣ ମାୟାରେ ଶଙ୍କର ଭୁଲିଲା ॥
ଦିନେକ ବୈକୁଣ୍ଠକୁ ଗଲେ ଶୂଳହସ୍ତ ।
ହରିହର ବେନି ବସିଲେ ଏକାନ୍ତ ॥
ନାନାକଥାମାନ ହୋଇଲେ କୁହାକୋହି ।
ବେନିଜନ ମନେ ପରମ ତୋଷ ହୋଇ ॥
ଆନନ୍ଦ ହୋଇଣ ବୋଇଲେ ତ୍ରିପୁରାରି ।
କଥାଏ ପଚାରିବି ତୁ କହିବୁ ମୁରାରି ॥
ଯେବଣ ମାୟାରେ ମଧୁକୈଟଭ ନାଶକଲୁ ।

ସଚରାଚର ପୃଥ୍ୱୀ ଯେଣେ
ଭିଆଇଲୁ ॥୧୦୦
ସେ ଦଇବୀ ମାୟା ଦେବ ଦେଖାଉ କିନା
ମୋତେ ।
ଅନେକ ପ୍ରକାରେ ମୁଂ କହୁଅଛି ତୋତେ ॥
ଜାଣିମା ପ୍ରକୃତି ତୋର କେତେ ବଳମାନ ।
ମୋତେ ଯେବେ ଭଣ୍ଡିପାରିବୁ ଭଗବାନ ॥
ଶୁଣି ନାରାୟେଣ ହସିଣ ବୋଲନ୍ତି ।
ଦେବାସୁର ନରେ ଯେତେକ ଅଛନ୍ତି ॥
ସ୍ଥାବର ଜଙ୍ଗମ କୀଟପତଙ୍ଗମାନ ।
ସମସ୍ତେ ମୋର ମାୟାରେ ହୁଅନ୍ତି
ଅଚେତନ ॥
ତହିଂ ସହିତେ ବିଧାତା ବୁଦ୍ଧି ହାରି ।
ବୈଷ୍ଣବୀ ମାୟାରୁ କେହି ନପାରିଲେ
ଉବୁରି ॥୧୦
ଶୁଣି ସଦାଶିବ ବହୁତ କୋପ କଲା ।
ଦେଖି ତୋହୋର ମାୟା ବୁଝିବା ବୋଇଲା ॥
ମୋତେ ଯେବେ ମାୟାରେ ପାରିବୁ
ଆକର୍ଷି ।
ଏତେ ବଡ଼ପଣ ହୋଇବ ମୋର ଧ୍ୱଂସି ॥
ନଜାଣି ଶ୍ରୀହରି ତୁ କହୁ ଗର୍ବ କଥା ।
ଶିର କମ୍ପାଇଂବୋଲଇ ପଞ୍ଚମଥା ॥
ସଂସାର ଭଣ୍ଡି ପାରୁ ବାସୁଦେବ ମାୟା ।
ମୋତେ କିମ୍ପା ତୋର ଲାଗିବ ବିଷ୍ଣୁମାୟା ॥
ହସି ନାରାୟେଣ କହନ୍ତି ସିଧ୍ୟାନ୍ତ ।
ନୁହସି ତାମସ ହୋ ପାର୍ବତୀର ନାଥ ॥୨୦
ମୁଂ ସେ ବାସୁଦେବ ବ୍ରହ୍ମାଙ୍କୁ ଜାତ କଲି ।
ତୋତେ ଈଶ୍ୱର ପଦ ମୁହିଂ ସିନା ଦେଲି ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏକ ଦେହ ସିନା ।
ହୃଦପଦ୍ମ ମଧ୍ୟେ ବିଚାର କରୁ କିନା ॥
ଶୁଣି ସଦାଶିବ ବୋଇଲେକ ଚାହିଂ ।
ତୁ ମୋତେ ଭଣ୍ଡୁଛୁ ହୋ କମଳାର ସାଇଂ ॥
ବୈଷ୍ଣବୀ ମାୟା ତୋର ବେଗ କରି ଦେଖା ।
ନୋହିଲେ ତୁ ମୋହର ନୋହୁ ଦେବ ସଖା ॥
ଶୁଣି ବାସୁଦେବ ହୋଇଲେ ମଉନ ।
ପୁଣି ହସି ବୋଲନ୍ତି ଶୁଣ ହୋ ଈଶାନ ॥୩୦

ତୁ ଯେବେ ଦେଖିବୁ ହୋ ମୋହୋର
ବୈଷ୍ଣବୀ ମାୟା ।
ନୟନ ବୁଜିଣ ତୁ ସ୍ଥିର କର କାୟା ॥
ଶୁଣିଣ ହର ପଛକୁ ମୁଖ କଲା ।
ତତକ୍ଷଣେ ଶ୍ରୀହରିର ମୁଖକୁ ଅନାଇଲା ॥
ଦେଖିଲା ବାସୁଦେବ ଅପୂର୍ବ ମୂରତି ।
ସ୍ୱରୂପ ଛାଡ଼ି ଦେବ ହୋଇଲେ ଯୁବତୀ ॥
ରୂପ ଯଉବନ ସମ୍ପୂର୍ଣ୍ଣ ସୁନ୍ଦରୀ ।
କୋଟିଏ ପାର୍ବତୀ ତାଙ୍କ ରୂପକୁ ନୋହେ
ସରି ॥
ଲାବଣ୍ୟ ରୂପ ଧରି ଉଭା ହୋଇଅଛି ।
ଦେଖି ସଦାଶିବର ନସ୍ଫୁରଇ କିଛି ॥୪୦
ମଦନେ ବଶ ହୋଇ ବଢ଼ାଇଲା ହାଥ ।
ଅଙ୍ଗଢ଼ାଳ ଦେଇ ଗଲେ ଜଗନ୍ନାଥ ॥
ନାସା ଫୁଲାଇଣ ଅଳପ ହସନ୍ତି ।
ଥନ ଦେଖାଇଣ ବକ୍ରେଣ ଚାହାନ୍ତି ॥
ପ୍ରେମରସ ଘେନି ଗୋଡ଼ାଇଲେ ହର ।
ମଦନେ ବଶ ହୋଇ ବଢ଼ାଇଲେ କର ॥
ଧରୁ ଧରୁ ସ୍ୱାମୀ ପଳାନ୍ତି ଉବୁରି ।
ଫରହର ଅଞ୍ଚଳ ଉଡ଼ାନ୍ତି ବାୟେ କରି ॥
କାମଭରେ ଈଶ୍ୱର କମ୍ପଇ ଥରହର ।
କୋଳ କରନ୍ତେ ଆଡ଼େ ହୁଅନ୍ତି
ଚକ୍ରଧର ॥୫୦
ମନ୍ମଥ ବାଣେ ମହାଦେବ ବାଇ ।
ଫୁଟି ସଦାଶିବ ନପାରଇ ଯାଇ ॥
ସ୍ୱଭାବେ ଉଲଗ୍ନ ଲମ୍ବିଅଛି ଅଣ୍ଡ ଦଣ୍ଡ ।
ଧାଆଂନ୍ତେ ଧାତୁ ରସ ଗଳଇ ତ୍ରିପଣ୍ଡ ॥
ଉଛୁଳି ବୀର୍ଯ୍ୟ ପଡୁଅଛି ତଳେ ।
ଲୋଭେ ସଦାଶିବ ଗୋଡ଼ାଇ ଆକୁଳେ ॥
ମନ୍ମଥ ହେତୁ ବୁଡ଼ିଲା ତାହାରି ।
ବଇଷ୍ଣବୀ ମାୟାରେ ମୋହିଲେ ମଧୁହାରୀ ॥
ଧଉର୍ଯ ତେଜିଣ ମଦନେ ବଶ ଗଲା ।
ଈଶ୍ୱର ପୁରୁଷ ହରିଙ୍କି ରମିତ
ଇଚ୍ଛାକଲା ॥୬୦
ମୁଛି ନପାରଇ ସୁରତିକି ଖେଦ ।
ଆକର୍ଷି ଧାମନ୍ତେ ପଡ଼ଇ ଖଦଖଦ ॥

ଜଘେ ଅଣ୍ଡ ବାଜି ଉଛୁଳିଣ ପଡୁଅଛି ବୀର୍ଯ୍ୟ ।
ଭୂମିତଳେ ପଡ଼ି ହରଇ ନିଜ ତେଜ ॥
ସେ ସେ ପାରାରସ ହୋଇଣ ଉପୁଜିଲା ।
ଅକ୍ଷୟେ କରି ତାହା ବିଧାତା ସ୍ରିଜିଲା ॥
ବୀର୍ଯ୍ୟ ଯାନ୍ତେ ହର ହୋଇଣ ନିସତ ।
ତୁଟିଲାକ ପ୍ରାଣ ଚାଲିତ ଅଶକତ ॥
ଆଗତେଣ ଗୋଡ଼ାଇ ଅଛଇ ଲୋଭ କରି ।
ଏହିକ୍ଷଣି ରମିବି ବୋଲିଣ ବିଚାରି ॥୭୦
ଖଳ ଖଳ ଶରୀରୁ ବହଇ ଶ୍ରମଝାଳ ।
ଖରତର ନିଶ୍ୱାସ ବହଇ ଫିଟିଲାକ ବାଳ ॥
ଧରି ନପାରଇ ଯୁବତୀ ଶିରୋମଣି ।
ହାଥ ଲାଗୁ ଲାଗୁ ପଳାନ୍ତି ଚକ୍ରପାଣି ॥
ନିଶ୍ୱାସକେ ବ୍ରହ୍ମାଣ୍ଡ ବୁଲିଲେ ଲକ୍ଷେ ବେଢ଼ା ।
ସଦାଶିବ କାଢ଼ି ନପାରନ୍ତି ପାଦ ଯୋଡ଼ା ॥
ଜାଣିଲେ ଜଗନ୍ନାଥ ରୁଦ୍ରର ମୂର୍ଖପଣ ।
ଯାହାର ମାୟାରେ ଭ୍ରମ ହୋଇଲେ ଏଡ଼େ
ଜଣ ॥
ଏହିକ୍ଷଣି ମରିବ ବୋଲି ବିଚାରିଲେ ।
ଆରତଭଞ୍ଜନ ସ୍ୱାମୀ ଦୟାପୁଣ କଲେ ॥୮୦
ଯୁବତୀ ରୂପ ଲେଛି ଧଇଲା ନିଜ ତନୁ ।
ଶରୀର ବିରାଜଇ ଶରଦର ଭାନୁ ॥
ଶଙ୍ଖଚକ୍ର ଗଦା ସାରଙ୍ଗ ଚତୁକର ।
ଶ୍ରୀବସ୍ତ ଲାଞ୍ଛନ କୌସ୍ତୁଭ ମଣିହାର ॥
କିରୀଟୀ କଙ୍କଣହାର କେୟୂର କଙ୍କଣ ।
ପ୍ରସନ୍ନ ବଦନ ମୁଖ କମଳା ରମଣ ॥
ଦେଖି ସଦାଶିବର ନଫୁରଇ କିଛି ।
ମନେ ବିଚାରିଲା ଭଣ୍ଡିଲା ଶ୍ରୀବସ୍ତି ॥
ହୋଇଲାଇଂ ଲଘୁ ସରିଲା ବଡ଼ପଣ ।
ଜଗତ ସଂସାର ସ୍ରିଜିଲା ନାରାୟେଣ ॥୯୦
ମୁହିଂ ନଜାଣଇ କଷଣ ଯେହା କଲି ।
ଏବେ ବିଚାରିଲେ ମୁହିଂତ ହାରିଲି ॥
ଜଗତ ସୃଷ୍ଟିଏ ମାୟାରେ ରଞ୍ଚଇ ।
ଯତସତ ରଜ ବୀର୍ଯ୍ୟ ଅଣ୍ଡ ସେ ସଞ୍ଚଇ ॥
ନିଦ୍ରା ମଇଥୁନ ଆହାର ଏହୁ କଲା ।
ଏହାର ମାୟାରେ ତ ଜଗତ ବଶ ଗଲା ॥
ଏହାର ନାଭିରୁ ଜନମ ହୋଇଲାକ ବ୍ରହ୍ମା ।

ଯେହି ସେ ପ୍ରାଣୀଙ୍କର ପ୍ରାଣର ପ୍ରତିମା ॥
ଏଡ଼େ ସମ୍ପଦ ମୁଂ ଏହାରେ ପାଇଲି ।
ଭାଇଙ୍କର ସଙ୍ଗ ଛାଡ଼ି କପିଳାସେ ରହିଲି ॥୧୦୦
ଚଉଦ କୋଟି ଗଣପୁତ୍ର କଲେ ମୋତେ ସେବା ।
ମୋତେ ଧୂରୁଂ ଦେଖି ଉଠଇ ମଘବା ॥
ଯେବଣ ବାସୁକି ବହଇ ମହୀଭାର ।
ସେ ମୋହୋର କଣ୍ଠେ ହୋଇଅଛି ହାର ॥
ଉଡ଼ଙ୍ଗ ହୋଇଲେ ସେହି ମୋତେ ଶୋଭା ପାଇଲା ।
ଯେଉଂ ନାରାୟେଣ ଯେତେକ ମୋତେ କଲା ॥
ପ୍ରେତ ପିଶାଚଙ୍କ ସଙ୍ଗତେ ମୁହିଂ ଥାଇ ।
ହାଡ଼ ଚର୍ମ ଭୂଷଣ ପ୍ରତିଷ୍ଠା ବୋଲାଇ ॥
ଗୋରୁ ଧର୍ମଜୀବ ବାହାନ ମୋହୋର ।
ଜଗତ ପିତାମହର ଛେଦିଲଇଂ ଶିର ॥୧୦
ଦକ୍ଷ ଯଜ୍ଞ ଭାଙ୍ଗିଲି କାମକୁ ଭସ୍ମ କଲି ।
ଗୁରୁପତ୍ନୀ ହାଥେ ଅଣ୍ଡ ପୂଜାଇଲି ॥
ତମ୍ଭରୁ ବାଦ୍ୟ ମୋର ମାତୃହରଣ ଦୋଷ ।
ସଂସାରେ ବାଚ୍ୟ ମୋତେ ଭିକ୍ଷାସୀ ଯୋଗୀବେଶ ॥
ସର୍ବ ଦୋଷ ମୋହୋର ଯାହାରେ ପାଗଲା ।
ତାହାକୁ ଏ ପାପଆତ୍ମା କଷଣ ମାଗିଲା ॥
ଏବେ କିସ ବୁଦ୍ଧି କରିବଇଂ ମୁହିଂ ।
ବିଷଖାଇ ମୁହିଂ ଯାହାରେ ଜୀଇଂଲଇଂ ॥
ତ୍ରିପୁର ଦତ୍ୟକୁ ବଧିଲି ଯାହାର ଛଳେ ।
ଯାହାରେ ପାର୍ବତୀ ବସିଲା ମୋର କୋଳେ ॥୨୦
ଯାହାର ପ୍ରସାଦେ ପୁତ୍ର ଅଗ୍ରପୂଜା ପାଇ ।
ପୁତ୍ରେକ ବସଇ ଦେବ ସନ୍ୟେ ସେନାପତି ହୋଇ ॥
ଏଡ଼େ ପଣ ମୋର ମୁଂ ଉଦାସ ମତେ ଥାଇଂ ।
ଚଉଦ ଭୁବନେ ସବୁଠାରେ ପୂଜା ପାଇଂ ॥
ଏଡ଼େ ପଣ ଗୋଟା ଦେଲା ଯେଉଂ ନାଥ ।
ସୁରତି କରିବି ବୋଲି ବଢ଼ାଇଲି ହାଥ ॥
ଅପରାପର ମୁଂ ନପାରିଲି ଜାଣି ।
ବିଶ୍ୱକୂଟବନ୍ଧେ ମୋତେ ଭଣ୍ଡିଲା ଚକ୍ରପାଣି ॥
ଏତେ ବୋଲି ମନେ ଉଦାସ ସଦାଶିବ ।
ଶରୀରୁ ଛାଡ଼ିକି ଗଲା ତାର ଜୀବ ॥୩୦
ଜାଣି ଆନ୍ତର୍ଯ୍ୟାମୀ ଧରିଣ କୋଳ କଲେ ।
ତୁ ମୋର ପ୍ରାଣସଖା ବୋଲିଣ ବୋଇଲେ ॥
ନକର ଅଭିମାନ ନୁହସି ବିମୁଖ ।
ନିଜ କର ଧରି ଚାପନ୍ତି ତାର ମୁଖ ॥
ଲାଜେ ସଦାଶିବ ନକହନ୍ତି କିଛି ବାଣୀ ।
ପ୍ରସନ୍ନ ହୋଇ ବରଦେଲେ ଚକ୍ରପାଣି ॥
ବୋଇଲେ ଆଜ୍କୁ ତୋତେ ହୋ ନଲାଗୁ ମୋର ମାୟା ।
କଳ୍ପ କଳ୍ପାନ୍ତରେ ଅମର ହଉ ତୋର କାୟା ॥
ଏସନେକ ବର ଦେଲେ ଚକ୍ରପାଣି ।
ଅନ୍ତର୍ଦ୍ଧାନ ହୋଇଲେ ବିଜୁଳି ଝଟକ ଜାଣି ॥୪୦
ଯହୁଂ ବାସୁଦେବ ଗଲେ ନିଜପୁରୀ ।
ସଙ୍କୋଚେ ବାହୁଡ଼ି ଆସନ୍ତି ତ୍ରିପୁରାରି ॥
ନିଜ କପିଳାସେ ହୋଇଲେ ପରବେଶ ।
ସେଦିନୁ ଗରବ ଛାଡ଼ିଲେ ବ୍ୟୋମକେଶ ॥
ଯେବଣ ନରାୟେଣ ଶିବଙ୍କୁ ଯେହା କଲା ।
ତେଡ଼େ ମହାଦେବଙ୍କୁ କୂଟଛନ୍ଦେ ଭଣ୍ଡିଲା ॥
ତାହାର ମାୟାରୁ କେ ଉବୁରି ପାରିବ ।
ହେଳେ ହନୁମନ୍ତକୁ ଭଣ୍ଡିଲେ ରାଘେବ ॥
ବୋଇଲେ ବିପୁନ୍ୟେ ତୁ ଫଳମୂଳ ଖାଅ ।
ରାତ୍ର ହୋଉଅଛି ବେଗ ହୋଇଯାଅ ॥୫୦
ସତପ୍ରାୟେ ତାହା ବୁଝିଲା ପାବେନି ।
ହସିଣ ଶିରେ ଯୋଡ଼ଇ ବେନି ପାଣି ॥
ବୋଇଲା ସ୍ୱାମୀଙ୍କର ଯେବେ ହୋଇଲା ଯେଡ଼େ ଦୟା ।
ପକ୍ୱ ଫଳ ଖାଇ ତୋଷିବି ମୋର କାୟା ॥
ଏସନେକ ବୋଲି ବିକ୍ରମିଣ ଗଲା ।
ପଶ୍ଚିମ ବିପୁନ୍ୟେ ପ୍ରବେଶ ହୋଇଲା ॥
ତାହାକଇ ଚାହିଂ ପଳାଇଲେ ଜୀବଜନ୍ତୁ ।
ବୋଇଲେ ପ୍ରାପତ ହୋଇଲା ଆସି ମୃତ୍ୟୁ ॥
ଏସନ ବୋଲିଣ ଛାଡ଼ିଲେ ନିଜ ବାସ ।
ତରଳ ନୟନରେ ଚାହାନ୍ତି ଦଶଦିଶ ॥୬୦
ଦେଖି ହନୁମନ୍ତ ଓଗାଳିଲା ଯାଇ ।
ବୋଇଲା କେବଣ ଅର୍ଥେ ଯାଉଛ ପଳାଇ ॥
କାହାକୁ ସେ ଭ୍ରାନ୍ତି କହ ମୋର ଆଗେ ।
କେବଣ କାରଣେ ପଳାଅ ଉଦବେଗେ ॥
ଶୁଣି ଜୀବଜନ୍ତୁ ବୋଲନ୍ତି ବଚନ ।
ଆମ୍ଭେ ଯାହା କହୁଂ ହୋ ଏକମନେ ଶୁଣ ॥
ତୋତେ ଦେଖି ଆମ୍ଭେ ହୋଇଲୁ ତରସ୍ତ ।
ଏହିକ୍ଷଣି ଶତ୍ରୁ ଆମ୍ଭର ହୋଇବ ଉପଗତ ॥
ସମୟର ପୂରିଲେ ଏକବେଳ ଆସଇ ।
ସେ ମୁଖରେ ପଡ଼ଇ ତାହାକୁ ଗ୍ରାସ କରଇ ॥୭୦
ତେଣୁକରି ଆମ୍ଭର ବଂଶକ୍ଷୟ ଗଲା ।
କେବଣ ବିଧାତା ଆମ୍ଭକୁ ଏଡ଼େ ଯୋଗକଲା ॥
ତୋତେ ଦେଖି ଜାଣିଲୁ ତାହାର ପରାଏ ।
ଆତଙ୍କ ମନେ କରି କଲୁ ପ୍ରାଣ ଭୟେ ॥
ଯୁଗତେଣ ପାଳି ତାର ପଡ଼ିଅଛି ଆଜ ।
ଏହିକ୍ଷଣି ଧାଇଂ ଆସିବ ମହାଭୁଜ ॥
ରାତ୍ର ଅର୍ଦ୍ଧମାନେ ପଡ଼ିବ ମହାଧାଡ଼ି ।
ଆସନ୍ତେଣ ବନପର୍ବତ ହେବ ଚୂରି ॥
ତୁ ହୋ ମହାତ୍ମା ନକର ଜଞ୍ଜାଳ ।
ଛାଡ଼ ଛାଡ଼ ବାଟ ଆମ୍ଭେ ନିରେଖ ସକଳ ॥୮୦
ହନୁମନ୍ତ ବୋଇଲା ଜନ୍ତୁଙ୍କ ବୋଲ ଶୁଣି ।
ନୁହସି ଆରତ ହୋ ତୁମ୍ଭେ ସକଳ ପ୍ରାଣୀ ॥
ଯେ ତୁମ୍ଭର ଶତ୍ରୁ ମାରିବି ତାକୁ ଆଜ ।
ଯେତେବେଳେ ଆସଇ ଦେଖାଅ ମୋତେଭୁଜ ॥
ପୁଣିହିଂ ବୋଇଲା ହୋ ଶୁଣ ଜୀବମାନେ ।
କିମ୍ପା ତୁମ୍ଭେମାନେ ରହିଅଛ ଏ ସ୍ଥାନେ ॥
ଏତେ ଭୟ ଯେବେ ଉପୁଜଇ ଏଥ ।
ଅକାରଣେ କିମ୍ପା ଅରଜ ଅନର୍ଥ ॥
ଏ ଅରଣ୍ୟ ତୁମ୍ଭେ ନ ତେଜ କିସ ପାଇଂ ।

କେହି ତୁମ୍ଭନ୍ତ ସମ୍ଭାଳନ୍ତା ଯେଥେ
ନାହିଂ ॥୯୦
ଜୀବମାନେ ବୋଇଲେ ବରଷକେ
ଯେକବେଳେ ।
ଜାଣି ବଞ୍ଚିଲେ ଜୀଉ ହାଦେ କାଳେ ॥
ନିତି ନିତି ପ୍ରମାଦ ପଡୁଅଛି ଯହିଂ ।
ତହିଂର ଜନମାନେ ରହିଥାନ୍ତି ତହିଂ ॥
ଏସନେକ କହନ୍ତେ ହୋଇଲା ରାତ୍ର ଅର୍ଦ୍ଧ ।
ମଡ଼ ମଡ଼ ଶବଦ ଶୁଭିଲା ଘୋରନାଦ ॥
ବନଗିରି ମାଡ଼ି ଆସୁଅଛି ବୀର ।
ଶୁଣି ଜୀବମାନେ ହୋଇଲେ କାତର ॥
ହନୁମନ୍ତକୁ ବୋଇଲେ ତୋହରେ
ନାଶଗଲୁ ।
ଏତେ ଜୀବ ଆମ୍ଭେ ଅକାରଣେ
ମଲୁ ॥୧୦୦
ତୁ ଯେବେ ନରୁହାନ୍ତୁ ପଳାଇ ଆମ୍ଭେ ଥାନ୍ତୁ ।
ଏତେ ଜୀବ ଆମ୍ଭେ କିମ୍ପାଇଂ ମରନ୍ତୁ ॥
ବିଶ୍ୱାସଘାତେକୀ ହୋଇଲୁ କପିବୀର ।
ପୂର୍ବରେ ବଇରୀ ଆମ୍ଭେ ନୋହୁନା ତୁମ୍ଭର ॥
ଦେଖ କାଳଦଣ୍ଡ ପ୍ରାୟେକ ଦିଶଇ ।
ମହାମେଘ ଜାଣି ଗର୍ଜଣ ଆସଇ ॥
ଜନ୍ତୁଙ୍କର ବିକଳ ଦେଖି ହନୁମନ୍ତ ।
ଧାଇଂ ଯାଇ ଭୁଜକୁ ଧଇଲା ବଳବନ୍ତ ॥
ଆକର୍ଷି ନପାରି ସେ ପଡ଼ିଲା ଆପଣେ ।
ପୁଣି ଉଠିଯାଇ ଧଇଲା କପିରାଣେ ॥୧୦
ଜଡ଼ବନ୍ଧେ ଗଡ଼ାଗଡ଼ି ଲାଗିଲା ଭୁଜ ସଙ୍ଗେ ।
ଶରୀରୁ ଶ୍ରମଝାଳ ବାହାର ରଣରଙ୍ଗେ ॥
ଲଙ୍କାରେ ରାବଣ ସଙ୍ଗେ ଯେହୁ ଯୁଝି ।
ରାବଣ ପ୍ରାୟେ ବୀରକୁ କୀଟପ୍ରାୟେ ବୁଝି ॥
ସେହୁ ପଡ଼ିଲା ଯେ ଅଷ୍ଟଭୁଜର ତୁଲେ ।
ଦୁଇ ଘଡ଼ି ପରିଯନ୍ତେ ସମର ଘୋର କଲେ ॥
କୋପେ ଭୁଜ ଧଇଲା ହନୁମନ୍ତ କେଶ ।
ଉଛୁଡ଼ି ପକାଇଲା ନେଇ ନିଜ ପାଶ ॥
ଗିଳିବ ବୋଲିଣ ଭରୁଅଛି ମୁଖେ ।
ହନୁମନ୍ତ ଶ୍ରୀରାମଙ୍କୁ ସୁମରିଲା ଦୁଃଖେ ॥୨୪
ରକ୍ଷାକର ପ୍ରଭୁ ବୋଲିଣ ଡାକଦେଲା ।
ଶୁଣି ମହାକବନ୍ଧ ପୁଚ୍ଛା ତାକୁ କଲା ॥
କିହୋ ମର୍କଟ ତୁ କାହାର ତନଏ ।
କିସ ନାମ ତୋର କହସି ନିର୍ଭୟେ ॥
ମରିବାର ବେଳେ ହୋଉଛୁ ନିସତ ।
ମିଛେହେଂ ବୋଲୁଅଛୁ ଶ୍ରୀରାମର ଦୂତ ॥
ରଘୁକୁଳନନ୍ଦନ ଅଛନ୍ତି ଏବେ କାହିଂ ।
ସୁସ୍ଥ ହୋଇ କହ ହୋ ଭୟ ତୋତେ ନାହିଁ ॥
ଶୁଣି ହନୁମନ୍ତ ବୋଲଇ ବଚନ ।
ଶ୍ରୀରାମ ନାମେଣ ଦଶରଥ ନନ୍ଦନ ॥୩୦
ଅଯୋଧ୍ୟାରୁ ଯାଇ ଲଙ୍କାରେ ବିଜେକଲେ ।
ସଗୋତ୍ର ସହିତେ ରାବଣକୁ ମାଇଲେ ॥
ବାହୁଡ଼ିଣ ଆସି ଏବେ ପ୍ରାଗେ ରହିଛନ୍ତି ।
ଭରଦ୍ୱାଜ ଋଷିଙ୍କ ଆଶ୍ରମେ ଆଜ ରଜନୀ
ବଞ୍ଚନ୍ତି ॥
ମୋତେ ଅନୁଗ୍ରହେ ଆଜ୍ଞାଦେଲେ ରାଇ ।
ଏ ବନେ ଫଳମୂଳ ଭୁଞ୍ଜିବାର ପାଇଂ ॥
ତେଣୁ ସେ ପ୍ରବେଶ ହୋଇଲି ଆସି ଏଥ ।
ନିଷ୍ଚୟେ ପ୍ରହାଗେ ରହିଛନ୍ତି ରଘୁନାଥ ॥
ମୁହିଂ ରାମଦୂତ ପବନ ତନୟେ ।
ମଉଳା ଅଟେ ମୋରହୋ ସୁଗ୍ରୀବର
ରାୟେ ॥୪୦
ଶୁଣି ଅଷ୍ଟ ଭୁଜ ବିଚାରି ବୋଇଲା ।
ଆଜ ଉପବାସ ମୋହୋର ହୋଇଲା ॥
ଶ୍ରୀରାମର ଦୂତକୁ ମୁଂ ଖାଇବି କେମନ୍ତେ ।
ଉପବାସ ରହିବି ବରଷ ପରିଯନ୍ତେ ॥
ଏସନେକ ବୋଲି ଛାଡ଼ିଲାକ ବାଳ ।
ପ୍ରାଣ ପାଇଲାକ ପବନଦୁଲାଳ ॥
ହନୁମନ୍ତ ପଚାରଇ କବନ୍ଧକୁ ଚାହିଂ ।
ତୁ ମହାତ୍ମା ଯେଥେ ଅଛୁ କାହିଂପାଇଂ ॥
କିସ ତୋର ନାମ ତୁ କାହାର ତନୟେ ।
କେବଣ କାରଣେ ଏଥେ ବସା
କରିଥାଏ ॥୫୦
ଅଷ୍ଟେକ ବୋଇଲେ ହୋ ଶୁଣସି ମାରୁତି ।
ସତ୍ୟ ଯୁଗରେ ରାଜା ବଳି ଯେ ନୃପତି ॥
ଅଷ୍ଟମଲ୍ଲେ ଆମ୍ଭେ ତାହାର ସେବକ ।
ତୁହୋ ହନୁମନ୍ତ ଯେମନ୍ତେ ରାମ ଲୋକ ॥
ସେ ସେ ରଘୁନାଥ ଅଟନ୍ତି ଆଦିମୂଳ ।
ସକଳ ଦେବତାଏ ତାର ପୁଷ୍ପ ଫଳ ॥
ଏ ରାମଟି ବିଷ୍ଣୁ ବାମନ ରୂପ ହୋଇ ।
ବଳିକି ଭୂମିଦାନ ମାଗିଲେ ଗୋସାଇଂ ॥
ତିନିପାଦ ରାଜା ସେ ସତ୍ୟ କରିଦେଲା ।
ମାୟାରେ ବାସୁଦେବ ପାତାଳେ
ଚାପିଲା ॥୬୦
ଦେଖି ଅଷ୍ଟମଲ୍ଲେ ଆମ୍ଭେ ଧଇଲୁ ପାଦ
ଦଣ୍ଡି ।
କୋପେ ଆମ୍ଭନ୍ତ ଦେଲେକ ଛିଞ୍ଚାଡ଼ି ॥
ଶତେ ଯୋଜନରେ ପଡ଼ିଲି ଆସି ମୁହିଂ ।
ହେତୁମତି ବୁଡ଼ିଲା କିଛିହିଂ ଜ୍ଞାନ ନାହିଁ ॥
ସମୟେକ ଅର୍ଦ୍ଧ ଶରୀରେ ଜ୍ଞାନ ପଶି ।
ବିଧାତା ନିର୍ମାଇ ଦେଲା ବର ଆସି ॥
ବରଷକେ ବେଳେ ବଢ଼ାଇବୁ ହାଥ ।
ଜୀବଜନ୍ତୁ ଖାଇ ଆତ୍ମା କର ସୁସ୍ଥ ॥
ଏବେ ଆସି ଯୋଗେ ହୋ ପଡ଼ିଲୁ
ହନୁମନ୍ତ ।
କେମନ୍ତେ ଭକ୍ଷିବି ତୁ ଶ୍ରୀରାମର ଦୂତ ॥୭୦
ଆଜୁଂ ବରଷେ ପରିଯନ୍ତେ ହୋଇଲା
ଉପବାସ ।
ଶ୍ରୀରାମ ଠାକୁର ପରମ ପୁରୁଷ ॥
ପାତାଳପୁରେ ବଳିକି ଥୋଇଲେ ଲୁଚାଇ ।
ଅତିଯତ୍ନ କରି ଶ୍ରୀଚକ୍ର ମୁଦ ଦେଇଂ ॥
ପୁଣି ସତ୍ୟଯୁଗେ କରିବେ ତାକୁ ରାଜା ।
ତିନିଭୁବନରେ ପାଇବ ପାଦପୂଜା ॥
ଏରାମ କଲେଟି ଅସୁରକୁଳ କ୍ଷଏ ।
ତୁ ମୋତେ ଦିଶୁଅଛୁ ବାସୁଦେବ ପ୍ରାୟେ ॥
ତୁ ହୋ ହନୁମନ୍ତ ନଜାଣୁ ଜ୍ଞାନଭାବ ।
ଯେ ଗର୍ବ କରଇ ହୋ ଅବଶ୍ୟ
ନାଶଯିବ ॥୮୦
ଏସନେକ ବୋଲି ଅଷ୍ଟକ ତହୁଂ ଗଲା ।
ହନୁମନ୍ତ ଚିତ୍ତରେ ଚିନ୍ତା ଗରୁ କଲା ॥
ମନେ ବିଚାରିଲା ଶ୍ରୀରାମ ନରହରି ।
ଏହାରେ ସେ ଅସୁର ବଳ ହୋଏ ମାରି ॥
ଦେବତାଙ୍କ ଛଳେ ଏ ହୋଇଲାନା ଜାତ ।

ଆନରବଳେ କିସେ ମରଇ ଦଶମାଥ ॥
ଏ ସୀତା ମହାସତୀ ସ୍ୱୟଂ କମଳିଣୀ ।
ଦଶରଥ ନନ୍ଦନ ଯେ ପ୍ରତ୍ୟକ୍ଷେ ଚକ୍ରପାଣି ॥
କାଲି ଭରଦ୍ୱାଜ ଋଷିଙ୍କି ଆଗରେ ।
ସାଂଗ୍ରାମ ବିଧାନ କହିଲେ ରଘୁବୀରେ ॥୯୦
ମୁନି ପ୍ରଶଂସା ଯେ କହିଲେ ବହୁତ ।
ଧନ୍ୟ ଧନ୍ୟ ମହିମା ତୋର ହୋ ଦଶରଥ
ସୁତ ॥
ଏସନେକ ସମଏ ମୁଂ ବିଚାରିଲି ମନେ ।
ମୋହୋର ନ ଥିଲେ ରାମ ଯୁଝନ୍ତେ
କେସନେ ॥
ମୁହିଂ ସେ ସୁଗ୍ରୀବର ସଙ୍ଗତେ ଭେଟ କଲି ।
ସମୁଦ୍ର ତରିଣ ସୀତାଙ୍କୁ ଠାବ କଲି ॥
ଲଙ୍କା ପୋଡ଼ିଣ ମାଇଲି ଦୈତ୍ୟ ବଳ ।
ମୋହୋରେ ସେ ଯଶ ପାଇଲେ ରଘୁବାଳ ॥
ଏସନେକ ବୋଲି ଭାଳନ୍ତେ ମୋର ହୃଦ ।
ଜାଣି ରଘୁନାଥ କଲେ ମୋତେ
ଛନ୍ଦ ॥୧୦୦
ଏବେ କିସ ବୁଧି କରିବଇ ମୁହିଂ ।
ଶ୍ରୀରାମର ଛାମୁକୁ ଯିବି କେମନ୍ତ ହୋଇ ॥
ଏସନେକ ବିଚାରୁ ରଜନୀ ହୋଏ ଶେଷ ।
ଯମୁନାରେ ସ୍ନାହାନ କଲେ ପବନର ଶିଷ ॥
ପ୍ରୟାଗ ନଗରେ ରାମ ରହୁଛନ୍ତି ଯାଇଂ ।
ହନୁମନ୍ତ ଦର୍ଶନ କଲା ଯାଇ ତହିଂ ॥
ପ୍ରୟାଗ ତୀର୍ଥେ ସ୍ନାନ କଲେକ ଦାଶରଥି ।
ପୂର୍ବମୁଖ ହୋଇ ସନ୍ଧ୍ୟା ସୁମରନ୍ତି ॥
ବିଭୀଷେଣ ସୁଗ୍ରୀବର ଜମ୍ୱେବ ଅଙ୍ଗଦ ।
ପଟୁଆରି ଅଛନ୍ତି ଋକ୍ଷ କପିବୃନ୍ଦ ॥୧୦
ଯେସନେକ ସମୟେ ହନୁମନ୍ତ ଦର୍ଶନ କଲା
ଯାଇ ।
ଦେଖିଣ ଅଳ୍ପ ହସିଲେ ରଘୁସାଇଂ ॥
ନିତ୍ୟକର୍ମ ସାରି ବାହୁଡ଼ା ବିଜେକଲେ ।
ପୁଷ୍ପେକ ବିମାନେ ଯାଇଣ ବସିଲେ ॥
ଏକାନ୍ତେ ହନୁମନ୍ତକୁ ଡ଼ୁଆଇଲେ ପାଶ ।
ଗୁପତ କରି କଥା କହନ୍ତି ବିଶ୍ୱାସ ॥
ବୋଇଲେ କାଲି ଯେ ତୁ ବିପ୍ରୁନ୍ୟକୁ
ଯାଇଥିଲୁ ।

ଆନ ଅବା କିସ ଅପୂର୍ବ ଦେଖିଲୁ ॥
ଶୁଣି ହନୁମନ୍ତ ଯୋଡ଼ଇ ବେନିକର ।
ଭୋ ରଘୁନାଥ ମୋର ଅପ୍ରାଧ ନ ଧର ॥୨୦
ମୁଂ ଛାର ହୀନ ଜୀବ ଅଜ୍ଞାନ ପଶୁଜାତି ।
ରକ୍ଷାକର ମୋତେ ହେ ଜାନେକୀର ପତି ॥
ଆଜ ଯେ ଦେହ ଦେବ ତୋହରେ ପାଇଲି ।
ତୋହୋର ନାମ ସୁମରି ଉବୁରି ଅଇଲି ॥
ବଳିର ମଲ୍ଲୁ ମୋତେ ଧଇଲାଙ୍କ ବଳେ ।
ଆକର୍ଷି ନିଅନ୍ତେ ମୁଂ ରୋବିଲି ବିକଳେ ॥
ତୋହୋର ସେବକ ବୋଲି କହିଲଇଂ
ଯହୁଂ ।
କେଶ ଛାଡ଼ି ମୋତେ ଦୟାକଲା ତହୁଂ ॥
ଯେ ତୁମ୍ଭ ରୂପଗୁଣ ସବୁ ସେ କହିଲା ।
ବରଷକ ଉପବାସେ ବାହୁଡ଼ିଣ ଗଲା ॥୩୦
ଭୋ ରଘୁନନ୍ଦନ କଲି ମୁହିଂ ଦ୍ରୋହ ।
ଏତେ ବୋଲି ରୋଦିଲା ପବନର ପୁଅ ॥
ଉଠିଣ ଶ୍ରୀରାମ ଧରିଣ କୋଳ କଲେ ।
ତୁ ମୋହୋର ପ୍ରାଣସଖା ବୋଲି ବୋଇଲେ ॥
ଅନେକ ପ୍ରବୋଧି ତିଆରିଲେ ତାହା ।
ଯେଥୁଅନନ୍ତେଣ ଜାନେକୀର ନାହା ॥
ଭରଦ୍ୱାଜ ଋଷିଙ୍କ ସନ୍ନିଧ୍ୟକୁ ଗଲେ ।
ଦେଖି ମୁନିବର ଷଡ଼ ଅର୍ଘେ ପୂଜାକଲେ ॥
ପ୍ରଳମ୍ୱ କରିଣ ବସିଲେ ମୁନି କତି ।
ପ୍ରସନ୍ନ ହୋଇ କଲ୍ୟାଣ କଲେ
ମହାଯତି ॥୪୦
ବୋଇଲେ ଶ୍ରୀରାମ ତୁହୋ ମାଗସି ହୋ
ବର ।
ଯେହୁ ମନେ ବାଞ୍ଛା ଅଛଇ ତୋହୋର ॥
ଶୁଣିଣ ଶ୍ରୀରାମ ଯୋଡ଼ିଲେ କର ବେନି ।
ବୋଲନ୍ତି ଯାହା ଆଜ୍ଞାଦେଲ ମହାମୁନି ॥
ଏଯେ ଋକ୍ଷକପି ମୋହୋର ସଙ୍ଗେ
ଥିଲେ ।
ଦୈତ୍ୟଙ୍କର ତୁଲେ ଏ ଅନେକ ରଣ କଲେ ॥
କ୍ଷମାଦାନ ନାହିଂ ନିର୍ବର୍ତ୍ତନ ବଟୁ ।
ଘରଦ୍ୱାର ଛାଡ଼ି ଅଛନ୍ତି ମୋତେ ଖଟୁ ॥
ତୁ ଯେବେ ମୋତେ ପ୍ରସନ୍ନ ହୋଇଲୁ
ଗୋସାଇଂ ।

ବର ମାଗୁଅଛି ମୁଂ ଋକ୍ଷ କପି ପାଇଂ ॥୫୦
ଯେତେବେଳେ ଲୋଡ଼ିବେ ପାଇବେ
ପକ୍ୱଫଳ ।
ଏସନେକ ଆଜ୍ଞା ହୋ ଦିଅ ତପଶୀଳ ॥
ଶୁଣି ମହାମୁନି ବୋଇଲେ ସୁଖୀ ହୁଅନ୍ତୁ ।
ଅଟବ୍ୟେ ଋକ୍ଷ କପି ଫଳମୂଳ ଖାନ୍ତୁ ॥
ଏସନେକ ଆଜ୍ଞା ଯହୁଂ ଦେଲେ
ତପୋବନ୍ତ ।
ଶୁଣି ଋକ୍ଷକପି ଭଲ୍ଲୁକେ ଉଷତ ॥
ଏଥୁଅନନ୍ତରେ ଗୋ ଶାକାମ୍ୱେରୀ ଶୁଣ ।
ଦୁଇ ଦିବସ ତହିଂ ରହିଲେ ରଘୁରାଣ ॥
ମୁନି ଫଳମୂଳ ସନ୍ତୋଷ କରିଦେଲେ ।
ଯେ ଯାହାଇଚ୍ଛା କଲେ ସେ ଫଳ
ପାଇଲେ ॥୬୦
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ଏକାନ୍ତ କରିଣ ହନୁମନ୍ତକୁ କହେଂ ॥
ବୋଇଲେ ଏହିକ୍ଷଣି ତୁ ଅଯୋଧ୍ୟାକୁ ଯିବୁ ।
ଆମ୍ଭେ ଅଇଲା ବୋଲି ଭ୍ରଥକୁ କହିବୁ ॥
ଜାଣିମାନା କେମନ୍ତ ସେ ବିଚାରଇ ମନେ ।
କିସ କିସ ବୋଲିବେ ଅମନାତ୍ୟ
ପାତ୍ରମାନେ ॥
ନଗ୍ର ନରନାରୀ ବିଚାରିବେ କିସ ।
ଚଉଦ ବରଷ ହେଲା ଭ୍ରଥ ପାଳୁଅଛି ଦେଶ ॥
ନୃପତିଗଣ କି ବୋଇଲେ ଛାଡ଼ିପାରି ।
ପିତା ଥାଇ ତାକୁ କଲାକ ଦଣ୍ଡଧାରୀ ॥୭୦
ଏବେ ମୋର ଗଲେ ନପୁଣ ପାଇ ବ୍ୟଥା ।
ଭୋ ହନୁମନ୍ତ ମୋତେ ନ ଯୋଗାଇ ସେ
କଥା ॥
ଭ୍ରଥର ମନ ଯେତେଣ ହୋଇବ ତ୍ରିପୁତି ।
କିମ୍ୱା ମୁଂ ଅଯୋଧ୍ୟାରେ ହୋଇବି ନୃପତି ॥
ଏହି ଅରଣ୍ୟେ ମୁଂ ରଚିବଇଂ ପୁର ।
ଋକ୍ଷକପି ଘେନି ହୋଇବି ନୃପବର ॥
ଏକଥା ହନୁମନ୍ତ ହୋ ଜାଣିଆସ
ବେଗେଯାଇ ।
ଭରଥକୁ କହହୋ ଅଇଲେ ରଘୁସାଇଂ ॥
ଗଙ୍ଗା ଉତ୍ତର କୂଳେ ସିଂହବେଣୀପୁର ।

ତହିଁରେ ରାଜା ଗୁହକ ନାମେ ଶବର ॥୮୦
ସେ ମୋର ମଇତ୍ର ପ୍ରାଣର ସମାନ ।
ଯିବାବେଳେ ତାକୁହେ କହି ଯିବୁଟି
ହନୁମାନ ॥
କେତେ ପଉରୋଷ କରିବ ତାହାତୁ
ଜାଣି ମୁଁ ।
ଏ ମୋହର ପୀରତି ତାହାର ମୁଖୁ ଶୁଣି ମୁଁ ॥
ସେ ମୋତେ ଦେଖିବାକୁ କରିଅଛି ଆଶ ।
ସେହିବାଟେ ଯିବୁ ହୋ ପବନର ଶିଷ ॥
ଏସନେକ ଆଜ୍ଞା ଦେଲେ ରାମରାଏ ।
ଶୁଣି ହନୁମନ୍ତ ପରମ ତୋଷ ହୋଏ ॥
ଯିବି ବୋଲି ହନୁମନ୍ତ ଯୋଡ଼ଇ
ବେନିକର ।
ଓଳଗ ମେଲାଇ ଚଳିଲା କପିବୀର ॥୯୦
ଗଗନମାର୍ଗେ ଗଲା ସେ ଉତର ମୁଖ
ହୋଇ ।
ବିକ୍ରମିଣ ଗଲା ଶ୍ରୀରାମ ଆଜ୍ଞା ପାଇ ॥
ନିମିଷେକେ ପ୍ରବେଶ ହୋଇଲା ଗଙ୍ଗାତୀର ।
ସିଂଘବେଶୀପୁର ଦେଖିଲା ମହାବୀର ॥
ପାରୋଇ ଦେଖି ଯେହ୍ନେ ପାରା ପଡ଼ଇ
ଖସି ।
ନିଶ୍ୱାସକ ଭିତରେ ହନୁ ପ୍ରବେଶିଲା ଆସି ॥
କପିରୂପ ଦେଖି ଶବର ଶବରଣୀ ।
ଧାଇଣ ଆସନ୍ତି ଅପୂର୍ବ ପ୍ରାଏ ମଣି ॥
ଗୁହକ ନାମେ ଶବର ମିଳିଲାକ ଆସି ।
ତାହାକୁ ହନୁମନ୍ତ ବଚନ ପ୍ରକାଶି ॥୧୦୦
ତୁ ସେ ଶବର ହୋ ଶ୍ରୀରାମର ମିତ୍ର ।
ମୁହିଁ ହନୁମନ୍ତ ହୋ ଅଟଇ ତାଙ୍କ ଦୂତ ॥
ସର୍ବଦା ରଘୁନାଥ ଚରଣେ ଖଟଇ ।
ଜନ୍ମେ ଜନ୍ମେ ମୁଂ ଶ୍ରୀରାମ ସେବକ
ଅଟଇ ॥
ତୁମ୍ଭେ ମୋତେ ନଜାଣ ଦେଖିଲା ପୂର୍ବେ
ନାହିଁ ।
ଯତନେ ପେଷିଲେ ମୋତେ
ରଘୁକୁଳ ସାଇଂ ॥
ଚଉଦ ବରଷ ବନସ୍ତେ କଲେ ବାସ ।
ବାହୁଡ଼ି ଆସି ଏବେ ଏଠାରେ ପରବେଶ ॥
ପ୍ରୟାଗେ ରହିଛନ୍ତି ଆସିବେ ଏହିକ୍ଷଣି ।
ମୁହିଂ ଏବେ ଯାଉଅଛି ହୋ ଭରଥକୁ
ଆଣି ॥୧୦
ତେଣୁ ସେ ରଘୁନାଥ ବରଗିଲେ ମୋତେ ।
ଶ୍ରୀରାମର ଆଗ୍ୟାଂ ହୋ କହିଲଙ୍ଗ ତୋତେ ॥
ତୁ ଏବେ ବାଟଚାହିଂ ଥାଅ ଏଥି ରହି ।
ନିଉଛାଳି ଘେନିଥିବୁ ଉପରକୁ ଚାହିଂ ॥
ଗଗନ ମାର୍ଗେ ଯେ ଆସିବଟି ଯାନ ।
ଏତେକହି ବିକ୍ରମି ଗଲେ ହନୁମାନ ॥
ପଞ୍ଚାଶ ଯୋଜନ ଉଠିଲା ଉଗୁଇଂ ।
ଶବର ଶବରୁଣୀ ଆଶ୍ଚର୍ଯ୍ୟ ତାହା ଚାହିଂ ॥
ଶୂନ୍ୟେଣ ଗମନ କରଇ କପିବୀର ।
କି ଜାଣି ବାହାନାଦ ଗର୍ଜନ ସାହେର ॥୨୦
ଏଥୁଅନନ୍ତରେ ପବନ ତନଏ ।
ଅଯୋଧ୍ୟା ନଗ୍ର ସୀମାନ୍ତେ ଯାଇ ହୋଏ ॥
ନନ୍ଦୀ ଗ୍ରାମକୁ ବୋଲି ଗଲା ଖର କରି ।
ଶ୍ରୀରାମ ତିଆରିଲା ବଚନ ମନେଧରି ॥
ଶୂନ୍ୟେ ଥାଇ ଦୃଷ୍ଟି ଦେଲାକ ମାରୁତି ।
ଚତୁରାଙ୍ଗ ବଳ ପୂରିଛି ଚଉକତି ॥
ଲକ୍ଷେକ ନୃପତି ଅଛନ୍ତି ଗୁଣ୍ଡ ହୋଇ ।
ଭରତ ତାହାଙ୍କୁ ଆଣିଛି ହକରାଇ ॥
ଯେବେଣ ଦିନ ଲଙ୍କାରେ ଶ୍ରୀରାମ କଲେ
ଯୁଦ୍ଧ ।
ଲକ୍ଷ୍ମଣକୁମର ହୋଇଲେ ଶକ୍ତିଭେଦ ॥୩୦
ହନୁମନ୍ତ ଗଲା ଗନ୍ଧମାଦନ ଗିରି ।
ମଉଷଧି ଆଣନ୍ତେ ପଥେ ବିଘ୍ନପଡ଼ି ॥
ଜାଣି ହନୁମନ୍ତ ବାଟ ଭାଙ୍ଗିଗଲା ।
ବଣାହୋଇ ଅଯୋଧ୍ୟା ସଳଖେ ହୋଇଲା ॥
ସେ ନଗ୍ରେ ରାତ୍ରେ ବୁଲଇ ଭ୍ରଥ ବୀର ।
ଉପରେ ଉଡ଼ିଯାଇ ପବନକୁମର ॥
ଯିବାର ତାପନେ କମ୍ପଇ ବନଗିରି ।
କଯେକୟା ସୁତ ଉପରକୁ ଚାହିଂଣ ବିଚାରି ॥
କେବଣ ଜନ୍ତୁ ବୋଲି ନ ପାରିଲା ଜାଣି ।
କୋପେଣ ବାଟୁଳି ମାଇଲା ବୀରମଣି ॥୪୦
ହନୁମନ୍ତ କପାଳେ ବାଜିଲା ବଜ୍ରଘାତ ।
ଭୂମିରେ ପଡ଼ିଲା ପବନ ସୁତ ॥
ପୁଣି ଉଠି ବସିଲା ଚଇତନ ପାଇ ।
ଭ୍ରଥ ଚାହିଂଲେ ବିସ୍ମୟେ ମୁଖ ହୋଇ ॥
ହନୁ କହିଲା ଯାବତ ବାରତା ।
ଶୁଣି କଇକେୟ ପାଇଲା ଗରୁଚିନ୍ତା ॥
ଭରତ ବୋଇଲା ତୁ ବେଗ ହୋଇ ଯାସି ।
ଯେମନ୍ତେ ବଞ୍ଚଇ ବାବୁ ସୁମିତ୍ରାର ଶିଷି ॥
ଶୁଣି ପବନ ସୁତ ଗଗନେ ବିକ୍ରମିଲା ।
ବାରତା ପାଇ ଭରଥ ବିସ୍ମୟ
ହୋଇଲା ॥୫୦
ନିଜପୁରେ ଆସି ହୋଇଲା ପରବେଶ ।
କାନ୍ଦି କହିଲାକ କଯେକୟାର ଶିଷ ॥
ପ୍ରଭାତ ହୁଅନ୍ତେ ସନ୍ଧ୍ୟା ବେଗେ ସାରି ।
ଦୋହରା ଘରେ ପଶି ଅଗ୍ନିରେ ହୋମକରି ॥
ଶ୍ରୀରାମ ପାଦୁକାକୁ ଦର୍ଶନ ଯାଇଂ କଲା ।
ସୁସ୍ଥ ହୋଇ ଯାଇ ଆସ୍ତାନେ ବସିଲା ॥
ମନ୍ତ୍ରୀ ପୁରୋହିତେ ମିଳିଲେ ପାତ୍ରମାନ ।
ବଶିଷ୍ଠଙ୍କ ମୁଖ ଚାହିଂ ସେ ବୋଲଇ
ବଚନ ॥
ଶ୍ରୀରାମ ଯେ ଗଲେ ବାହୁଡ଼ି ନଇଲେ ।
ବାରତା ନପାଇଲାଇଂ କେବଣ
କୃତ୍ୟକଲେ ॥୬୦
ବଶିଷ୍ଠ ବୋଇଲେ ଯେବେ ଚଉଦ ବରଷ
ପୂରଇ ।
ତେବେ ସେ ରଘୁନାଥ ଅଯୋଧ୍ୟାକୁ ଆସଇ ॥
ଭରଥ ବୋଇଲେକି ହୋଇଲାକ ଦିନ ।
ଚାରିମାସ କୋଡ଼ିଏ ଦିନ ହୋଇଲା
ବ୍ରହ୍ମମୁନ୍ୟ ॥
ଦିନକେ ଗାରକାଟିଣ ହେତୁଥାଇ ତାହା ।
କିମ୍ପାଇଂ ନଇଲେ ସ୍ୱାମୀ ରଘୁକୁଳ ନାହା ॥
ବଶିଷ୍ଟେ ବୋଇଲେ ତୁମ୍ଭେ ଲେଖିଲ
ମାସବନ୍ଧା ।
ବରଷକେ ଦଶଦିବସ ହୋଏ ବନ୍ଧା ॥
ଏହା ଗଣୁ କିହୋ କଯେକୟା ସୁତ ।
ଶ୍ରୀରାମ କିମ୍ପା କରିବେ ଅଦଭବ କୃତ୍ୟ ॥୭୦
ତିନିବରଷେ ମାସେ ହୋଏ ଉଗୁଳି ।

ଚଉଦ ବରଷେ ହୋଏ ଚାରିମାସ କୋଡ଼ିଏ
ଦିନ ଉଗୁଳି ॥
ସଂକଳ୍ପ ସରିଲେ ବାହୁଡ଼ିବେ ରାମ ।
ତେବେ ସେ ପ୍ରବେଶ ହୋଇବେ ନନ୍ଦି
ଗ୍ରାମ ॥
ଭ୍ରଥ ବୋଇଲା ତୁମ୍ଭେ ଯାହା କହିଲ ସତ୍ୟ ।
ଆଜର ରଜନୀ ମୁଂ ପାଇଲି ବାରତ ॥
ହନୁମନ୍ତ ନାମେ ଏକଇ କପିବୀର ।
ଶିରେ ଧରିଅଛି ମହତ ଗିରିବର ॥
ଗଗନ ମାର୍ଗରେ ସେ ଯାଉଥିଲା ଉଡ଼ି ।
ସମ୍ଭାଳି ନ ପାରି ସେ ଭୂମିରେ
ଆସିପଡ଼ି ॥୮୦
ରଜନୀ ଅର୍ଦ୍ଧେ ମୁଂ ନଗ୍ରବୁଲି ଗଲି ।
ସେ କପି ମହାତ୍ମାକୁ ଲୋଚନେ ଦେଖିଲି ॥
ହନୁ କହିଲା ସେ ସକଳ ବାରତା ।
ଲଙ୍କାର ରାବଣ ଚୋରାଇ ନେଲା ସୀତା ॥
ଶ୍ରୀରାମ ଲକ୍ଷ୍ମଣ ଗଲେ ମୃଗମାରି ।
ବସାରେ ଥିଲେ ଏକା ଜନକ କୁମାରୀ ॥
ଭିକ୍ଷାସୀ ରୂପେ ସିନା ଅଇଲା ଦଶଶିର ।
ସୀତାକୁ ଧରିନେଲା ବସାଇ ରଥର ॥
ନିଅନ୍ତେଣ ଗରୁଡ଼ ତନୟ ଓଗାଳିଲା ।
ରହୁବର ଧ୍ୱଜ ଭାଙ୍ଗି ପକାଇଲା ॥୯୦
ତତକ୍ଷଣେ ଯାଇଂ ସେ ରାବଣକୁ ଗିଳି ।
ଏ ସମଏ ସୀତା ରଥୁ ଗଲେ ଚଳି ॥
ମନ୍ଦାର ବୃକ୍ଷ ତଳେ ଲୁଚିଲେ ବଇଦେହୀ ।
ରାବଣ ପକ୍ଷୀବରର ସମର ଘୋର ହୋଇ ॥
କୋପେ ଦଶଗ୍ରୀବ ତା' ପାଟିରୁ ବାହାରି ।
ଅନେକ ସାଂଗ୍ରାମ ଯେ କଲା ଦଶଶିରି ॥
ଦ୍ରୋଣରୁ ଅଗ୍ନିଶର କାଢ଼ିଲାକ ପୁଣ ।
ମନ୍ତ୍ରିଣ ଶର ଯେ ବିନ୍ଧିଲା ତତକ୍ଷଣ ॥
ପକ୍ଷୀବର ଉପରେ ପଡ଼ନ୍ତେ ଯାଇଂ ବାଣ ।
କଣ୍ଠାଗ୍ରତେ ଆସି ରହିଲା ତାର ପ୍ରାଣ ॥୧୦୦
ରାମ ରାମ ମନେ ଯହୁଂ ସୁମରିଲା ।
ରଘୁନାଥ ଦର୍ଶନ ଆଶାରେ ରହିଲା ॥
ବୃକ୍ଷମୂଳୁଂ ରାବଣ ସୀତାକୁ ଧରିଆଣି ।
ରଥରେ ବସାଇ ଚଳଇ ବିଂଶପାଣି ॥

ପରଉପକାରୀ ପକ୍ଷୀ ଦେହ ଦେଲା ।
ତହୁଂ ଦଇତ ସୀତ୍ୟା ଘେନିଗଲା ॥
ମୃଗ ମାରି ରାମ ଲକ୍ଷ୍ମଣ ବେନିଭାଇ ।
ବାହୁଡ଼ି ପର୍ଣ୍ଣକୁଟୀରେ ନ ଦେଖିଲେ
ବଇଦେହୀ ॥
ଦୁଃଖେ ଆକୁଳ ହୋଇଣ ଲୋଡ଼ିଗଲେ ।
ବୁଲନ୍ତେ ଜଟାଇଶ ପଡ଼ିଛି ଦେଖିଲେ ॥୧୦
ଶ୍ରୀରାମ ପଚାରିଲେ ଶୁଣ ହୋ ପକ୍ଷୀବର ।
କି କାରଣେ ଏ ଦଶା ହୋଇଲା ତୋହୋର ॥
ସେ ବୋଇଲା ଭୋ ପ୍ରଭୁ ଅପ୍ରାଧ
କ୍ଷେମାକର ।
ଲଙ୍କାର ରାବଣ ସୀତାଙ୍କୁ ନେଲା ତୋର ॥
ଅନେକ ଯୁଦ୍ଧ ମୁଂ ଓଗାଳିଣ କଲି ।
ରଥ ଧ୍ୱଜ ଭାଙ୍ଗି ତାକୁ ଗିଳିଦେଲି ॥
ତହୁଂ ବାହାରି ସେ ଅଗ୍ନିଶର କଲା ।
ବେନି ଡେଣା ମୋର କାଟି ପକାଇଲା ॥
ସୀତାଙ୍କୁ ଘେନି ସେ ଗଲାକ ଲଙ୍କପୁର ।
ଏହା କହି ଜୀବନ ଛାଡ଼ିଲା ସତ୍ୱର ॥୨୦
ଶ୍ରୀରାମ ତାହାକୁ ଅଗ୍ନିରେ ଝାସଦେଇ ।
ଅନେକ ବନସ୍ତ ବୁଲନ୍ତି ବେନିଭାଇ ॥
ଋଷ୍ୟମୂକ ପର୍ବତେ ସୁଗ୍ରୀବରକୁ ଦେଖିଲେ ।
ତାହାର ସଙ୍ଗତେ ରାମ ମଇତ୍ର ହୋଇଲେ ॥
ଦୁଃଖେ ଆକୁଳ ବେଳେ ଦେଖିଲେ
ସୁଗ୍ରୀବର ।
ସେ ଆସି ପଡ଼ିଲା ଶ୍ରୀରାମ ପାଦତଳ ॥
ତାହାର ସଙ୍ଗତେ ମଇତ୍ରପକ୍ଷ ହୋଇ ।
କିଷ୍କିନ୍ଧାରେ ବାଳୀକି ମାଇଲେ ସୀତ୍ୟାସାଇଂ ॥
ସେପୁରେ ମଇତ୍ରକୁ କଲେକ ନୃପବର ।
ଲଙ୍କାକୁ ଦୂତ କଲେ ପବନକୁମର ॥୩୦
ଖୋଜି ଶ୍ରୀରାମକୁ ବାରତା ଆଣିଦେଲା ।
ଶୁଣି ରଘୁନାଥ କଟକାଇ କଲା ॥
ରକ୍ଷକପି ବଳ ସୁଗ୍ରୀବରର ସହିତେ ।
ଶ୍ରୀରାମ ସହିତେ ଚଳିଲେ ସମସ୍ତେ ॥
ପର୍ବତ ଘେନିଣ ସମୋଦ୍ରେ ବନ୍ଧ ବାନ୍ଧିଲେ ।
ତେଣେ ରକ୍ଷକପି ପାରିହୋଇଗଲେ ॥
ରାବଣ କନେଷ୍ଟ ନାମେଣ ବିଭୀଷେଣ ।

ସେ ଆସି ଶ୍ରୀରାମରେ ପଶିଲା ଶରଣ ॥
ତାହାର ତହୁଂ ଭେଦ ପାଇଲେ ରଘୁନାଥ ।
ଅସୁରଙ୍କର ତୁଲେ ପାତିଲେ ଅନର୍ଥ ॥୪୦
ଗଡ଼ବେଢ଼ି ତାର ଦେଶ ଚୂର କଲେ ।
ସେହ୍ନା ସେନାପତି ଅନେକ ମାଇଲେ ॥
କୁମ୍ଭକର୍ଣ୍ଣ ନାମେ ପଡ଼ିଲା ତାର ଭାଇ ।
ଇନ୍ଦ୍ରଜିତ କୁମର ଯୁଝିଲା ପରିଘାଇ ॥
ଆହିଶରେ ବାନ୍ଧି ବ୍ରହ୍ମଶର ମାରିଗଲା ।
ଅନେକ ବେଳ ସେ କଠୋର ଯୁଦ୍ଧ କଲା ॥
ତାହାକୁ ସଉମିତ୍ରୀ ପକାଇଲା ହାଣି ।
ପୁତ୍ରଶୋକେ ପରିଘାଇ ଯୁଝିଲାକ
ବିଂଶପାଣି ॥୫୦
ବ୍ରହ୍ମଶକତି ଘେନି ଲକ୍ଷ୍ମଣକୁ ମାଇଲା ।
ହୃଦରେ ଶକତି ପଡ଼ନ୍ତେ ସଉମିତ୍ରୀ
ଘୁମାଇଲା ॥
ଦେଖିଣ ଶ୍ରୀରାମ ହୋଇଲେ ବିକଳ ।
ଯଶ କରି ବାହୁଡ଼ିଗଲା ଲଙ୍କପାଳ ॥
ପ୍ରାଣ ହାରିଅଛି ସୁମିତ୍ରାର ତନୟେ ।
ହନୁମନ୍ତ କପି ମଉଷଧି ଆଣିଯାଏ ॥
ଆଣିବାର ବେଳେ ଭେଟିଲଇଂ ମୁହିଂ ।
ସମସ୍ତ ବାରତା ସେ ଗଲା ମୋତେ କହି ॥
ଶୁଣି ସଭାଲୋକେ ନିଶବଦ ହୋଇଲେ ।
ଏକଥା ହୋଇ କି ହୋ ବୋଲିଣ
ବୋଇଲେ ॥
ଯେସନେକ ବୋଲି ଧ୍ୟାନକରି ବସି ।
ଯୋଗବଳେ ସମସ୍ତ ଜାଣିଲେ
ମହରଷି ॥୬୦
ଭ୍ରଥକୁ ବୋଇଲେ ହୋଇଲା କଥା ସତ୍ୟ ।
ରାମ ରାବଣ ସମର ଅପ୍ରମିତ ॥
ଯଦ୍ୟପି ଭାଇ ତୋହୋର ହୋଇଲା
ଶକ୍ତିଭେଦ ।
ହନୁମନ୍ତ ନେଲା ଯେବଣ ଔଷଧ ॥
ତେଣେ ସେ ଭଲ ହୋଇଲା ସୁମିତ୍ରାର
ତନଏ ।
ଯୋଗବଳେ ଦୃଶ୍ୟ ହୋଇଲାକ ମୋୟେ ॥
ବଶିଷ୍ଠର ବୋଲକୁ ସମ୍ମତେ ଗଲେ ଲୋକ ।

ଖଳବଳ ହୋଇଲା ଅଯୋଧ୍ୟାକଟେକ ॥
ଦଶରଥ ରାଜାର ରାଣୀହଂସ ଯେତେ ।
ବିକଳେ ରୋଦନ କଲେକ ସମସ୍ତେ ॥୭୦
ଧାଇ ମୁଦୁସୁଲୀ ଝଡ଼ା ପରିବାରୀ ।
ନଗ୍ର ନରନାରୀ ହାହାକାର କରି ॥
ଅନେକ ରୋଦନ କରନ୍ତି ପୁରନାରୀ ।
ବଶିଷ୍ଠ ତିଆରନ୍ତି ପ୍ରବୋଧ ହାଦେ କରି ॥
ମୁନିଙ୍କର ବଚନେ ଛାଡ଼ିଲେ ଶୋକଚିତ୍ତ ।
କଥା ଦେଖାଇଣ ତିଆରନ୍ତି ତପୋବନ୍ତ ॥
ଏଥୁଅନନ୍ତରେ କଇକୟାର ସୁତ ।
ଚାରିଦିଗକଇ ପଠାଇଲେ ଦୂତ ॥
ବୋଇଲା ନୃପତିମାନଙ୍କୁ ବେଗେ ଆଣ
ଯାଇଂ ।
ଲଙ୍କାକୁ କଟକାଇ କରିବଇଂ ମୁହିଂ ॥୮୦
ରାବଣକୁ ମାରି ଆଣିବଇଂ ସୀତା ।
ଚାରିଯୁଗକଇ ରୁହାଇବି କଥା ॥
ଏସନେକ ବୋଲି ପେଷିଲେକ ଚାର ।
ଶୁଣି ନୃପତିଗଣେ ଅଇଲେ ଅପାର ॥
ରଥଗଜ ଅଶ୍ୱ ପାଦାନ୍ତି ଲେଖାନାହିଂ ।
ଲକ୍ଷେ ରାଜା ଅଯୋଧ୍ୟାରେ ଗୁଣ୍ଡ ହୋଇଲେ
ଯାଇଂ ॥
ଗୁହ ନାମେ ଶବର ହୋଇଲା ଆଗିଆଣି ।
ସଇନି ପାଦଭରେ କମ୍ପଇ ମେଦିନୀ ॥
ଯିବାକଇ ଅନକୂଳ କରିଅଛି ଭ୍ରଥ ।
ଏସନେକ ସମଏ ମିଳିଲେ ହନୁମନ୍ତ ॥୯୦
ଆକାଶୁଂ ଖସିଲା ତାରାଗଣ ଜାଣି ।
ଆସ୍ଥାନେ ପ୍ରବେଶ ହୋଇଲା କପିମଣି ॥
ଦେଖିଲାକ ଭ୍ରଥ ତପସୀ ରୂପ ଧରି ।
ବସିଅଛି ରାମ ପାଦୁକାକୁ ଆଶ୍ରେକରି ॥
ବ୍ୟାଘ୍ର ଛାଲେ ବସି ପଦ୍ମଆସନେ କରଇ
ଲୟେ ।
ଏସନେକ ସମୟେ ହନୁମନ୍ତ ଆସି ହୋଏ ॥
ଭ୍ରଥକୁ ଦେଖି ବୀର ନମସ୍କାର କଲା ।
ଶ୍ରୀରାମ ଆସୁଛନ୍ତି ବୋଲିଣ ବୋଇଲା ॥
ଏହିକ୍ଷଣି ଆସି ହୋଇବେ ପରବେଶ ।
ପ୍ରୟାଗରେ ରୁହାଇଅଛନ୍ତି
ଭାରଦ୍ୱାଦଶ ॥୧୦୦

ଆଗକରି ମୋତେ ପଠିଆଇ ଦେଲେ ।
ଭ୍ରଥର ଆଗରେ କହସି ବୋଇଲେ ॥
ଶୁଣିକରି ଭ୍ରଥ ଉଠିଲା ଆସନୁ ।
ଦେଖିଣ ଜାଣିଲା ଅଟଇ ସେହି ହନୁ ॥
କୋଳାଗ୍ରତ କରି ପୁଛିଲା ବାରତା ।
ଭୋ ପବନତନୟେ କହ ମୋତେ ତଥ୍ୟ
କଥା ॥
ସତେ କି ଅଇଲେ ରଘୁନାଥ ଅଛନ୍ତି କାହିଂ ।
କେତେଦୂରେ ଛାଡ଼ି ଅଇଲୁ ସୀତାସାଇଂ ॥
କହୁଂ କହୁଂ ଭ୍ରଥ ନୟନୁଂ ଗଳେ ଜଳ ।
ଦେଖି ଚିନ୍ତା ପାଇଲେ ନୃପତି ସକଳ ॥୧୦
ବଶିଷ୍ଠ ଯାବାଳି କଶ୍ୟପ ସମସ୍ତେ ଯେ
ଲୋକ ।
ସୁମନ୍ତ ମନ୍ତ୍ରୀର ଆନନ୍ଦ ଅନେକ ॥
ପାତ୍ର ଅମାନାତ୍ୟେ ତୋଷ ହୋଅନ୍ତି ।
ନଗ୍ର ନରନାରୀ ଧାଇଂଣ ଆସନ୍ତି ॥
ନନ୍ଦିଗ୍ରାମରେ ହୋଇଲାକ ଗୋଳ ।
ସିନ୍ଧୁ ଗର୍ଜିବା ପ୍ରାୟେ ଶୁଭଇ ମୁଖରୋଳ ॥
କେ ବୋଲଇ ବାନର ଗୋଟାଏ ଆସିଅଛି ।
ଭ୍ରଥ ତାହାକୁ ଶ୍ରୀରାମର କଥା ପୁଛି ॥
ଏହିକ୍ଷଣି ଆସିବେ ବୋଲିଣ ବୋଇଲା ।
ଶୁଣି ଭ୍ରଥବୀର ସନ୍ତୋଷ ହୋଇଲା ॥୨୦
ଏସନେକ ଶୁଣି ଧାମନ୍ତି ନରନାରୀ ।
ଆସ୍ଥାନର ତଳେ ହାବୋଡ଼ା ହାବୋଡ଼ି ॥
କଉଶଲ୍ୟା କଇକେୟା ସୁମିତ୍ରା ସହିତେ ।
ଏକକୁ ଆରେକ ପୁଛନ୍ତି ବାରତେ ॥
ଧାଇ ମୁଦୁସୁଲୀ ଯେ କହୁଛନ୍ତି ଯାଇଂ ।
ଏହିକ୍ଷଣି ଆସିବେ ଗୋ ଜାନେକୀର
ସାଇଂ ॥
ହଂନୁମନ୍ତ ନାମେ ଅଟଇ ବାନର ।
ସମସ୍ତ କହୁଅଛି ଭ୍ରଥର ଆଗର ॥
ଶୁଣି ଦଶରଥ ରାଣୀହଂସମାନେ ।
ନବରୁ ବାହାର ହୋଇଆସନ୍ତି ବହନେ ॥୩୦
ହନୁମନ୍ତକୁ ଦେଖିବାକୁ ଧାଇଂଣ ଅଇଲେ ।
ରାମର ବାରତା ବାବୁ କହସି ବୋଇଲେ ॥
କଉଶଲ୍ୟା କୟେକୟା ରୋଦନ ଗୁରୁତର ।

ଜୀଇଂଅଛିଟିକି ବାବୁ ତନୟେ ମୋହୋର ॥
ଜାନେକୀ ସଙ୍ଗେ ଅଛିଟିକି ବାବୁ ।
ତୋହୋର ମୁଖେ କହ ଆମ୍ଭେମାନେ
ଶୁଣିମୁ ॥
ହନୁମନ୍ତ ବୋଇଲା ମାଇଲେ ଦଶଶିରି ।
ବିଭୀଷେଣକୁ ଦେଲେକ ଲଙ୍କାପୁରୀ ॥
ସୀତାଙ୍କୁ ଆଣି ଅଗ୍ନି ପରୀକ୍ଷା କଲେ ।
ପୁଷ୍ପେକ ବିମାନେ ଯେବେ ବସାଇ
ଆଣିଲେ ॥୪୦
ବ୍ରହ୍ମାଦି ଦେବତାଏ ଦଶରଥ ପିତା ।
ଏମାନେ ଆସି ଶ୍ରୀରାମଙ୍କୁ ସମର୍ପିଲେ ସୀତା ॥
ରାକ୍ଷାସ ବାନର ସଇନି ସହିତେ ।
ସୁଗ୍ରୀ ବିଭୀଷେଣ ବସାଇ ଯାନଗତେ ॥
ଲଙ୍କାଗଡ଼ରୁ ଆସି ପ୍ରୟାଗେ ରହିଲେ ।
ଆଗକରି ମୋତେ ପଠିଆଇଦେଲେ ॥
ଶୁଣି ଭ୍ରଥବୀର ଶତ୍ରୁଘନକି ରାଇ ।
ନଗ୍ରପୁର ମଣ୍ଡନ କରାଅ ଆଜ୍ଞାଦେଇ ॥
ରଥଗଜ ଅଶ୍ୱ ପାଦାନ୍ତି କର ସଜ ।
ଏହିକ୍ଷଣି ବିଜୟେ କରିବେ ରଘୁରାଜ ॥୫୦
ଯେବଣ ନବରେ ଆସି ରହିବେ ଏହିକ୍ଷଣି ।
ଲୋକ ପେଷି ତାହା କରହୋ ମଣ୍ଡଣି ॥
ସୁମନ୍ତକୁ ବୋଇଲା ତ ଆଣ ଶଏ ହାଥୀ ।
ଅଲଙ୍କାର ଯୁଗତେ ଶତେକ ଯୁବତୀ ॥
ସହସ୍ରେକ ପରିବାରୀ ସହସ୍ରେକ ଚାମର ।
ହନୁ ଯେ ବାରତା କହିଲା ରାମର ॥
ଏହାକୁ ବଧାଇ ଦେବାର ଉଚିତ ।
ଶତେକ ଶାସନ ଏ ବସାଉ ହନୁମନ୍ତ ॥
ଲକ୍ଷେକ ଶୁଦ୍ଧ ସୁବର୍ଣ୍ଣ ହନୁମନ୍ତକୁ ଦିଅ ।
ଶ୍ରୀରାମ ସମାନ ମୋତେ ପବନର
ପୁଅ ॥୬୦
ଏସନେକ ବୋଲି ଅଣାଇଲେ ଦ୍ରବ୍ୟମାନ ।
ତିନି ଘାନ୍ତି କରାଇଲେ କନକ ସ୍ନାହାନ ॥
ଶାଢ଼ୀ କୁସୁମ ଚନ୍ଦନ ବୋଳାଇଲେ ।
ରତ୍ନମୟେ ହାର ଗଳାରେ ଲମ୍ବାଇଲେ ॥
ହାର କଙ୍କଣ କଟଚି ଦିବ୍ୟ ମାଳ ।
ତାଡ଼ ତୋଡ଼ର ଅନେକ ପ୍ରକାର ॥

ଚତୁଃସମ ବୋଲି ଚନ୍ଦନ ନିଉଡ଼ାଇ ।
ଗଉରୋବ କରି ହସ୍ତୀ କନ୍ଧରେ ବସାଇ ॥
ଷୋଳ ଗୋଟା ଛତ୍ର ଉଦଣ୍ଡ ମୟାଣ ।
ପଛେ ବାଜୁଅଛି ଟମକ ନିଶାଣ ॥୭୦
ବିଳମ୍ବ ଆଲମ୍ବ  ବନ୍ଧୁକ କୋଷ ଛତା ।
ପଟୋଆରି ଅଛନ୍ତି ଅନେକ ମୟେମଭା ॥
ରଥୀ ରାଉତ ପାଦାନ୍ତି ଅପାର ।
ନନ୍ଦିଗ୍ରାମେ ବୁଲାଇ ପବନକୁମର ॥
ଏଥୁ ଅନନ୍ତରେ ଶତୃଘନ ବୀର ।
ନଗ୍ର ମଣ୍ଡାଇଲା ଅନେକ ପ୍ରକାର ॥
ଦ୍ୱାରେ ପୂର୍ଣ୍ଣକୁମ୍ଭ କଦଳୀ ନଟିକାଳ ।
ବିଚିତ୍ର ବସନ ଚାମର ଗହଳ ॥
ନାନା ପୁଷ୍ପର ଶୋଭା ଉଭା ଦିବ୍ୟ
ତୋରଣା ।
ନଟେ ନାଚନ୍ତି ବାଜନ୍ତି ବାଜଣା ॥୮୦
ତାଳମହୁରୀ ଅନେକ ତହିଂ ବୀଣା ।
ଆଉ ଯେତେ ବାଦ୍ୟ କେ କରିବ କଳଣା ॥
ଦାଣ୍ଡ ପହଂରି ଚନ୍ଦନ ଛଡ଼ା ଦ୍ୟନ୍ତି ।
ପଞ୍ଚବର୍ନି ପୁଷ୍ପ ପାଖୁଡ଼ା ବିଞ୍ଚନ୍ତି ॥
ନଗ୍ର ନରନାରୀ ଉଷତ ତାହା ଚାହିଂ ।
ଶ୍ରୀରାମ ଦେଖିବେ ବୋଲି ଆସୁଛନ୍ତି ଧାଇଂ ॥
ଲକ୍ଷେକ ନୃପତି ନନ୍ଦୀଗ୍ରାମରେ ଅଛନ୍ତି ।
ରଘୁନାଥର ଆଗମ ଶୁଣିଣ ତୋଷ ହୁଅନ୍ତି ॥
ଚତୁରାଙ୍ଗ ବଳ ସହିତେ ସଜକରି ।
ଭ୍ରଥର ଛାମୁରେ ଆସି ହୋଇଲେ
ଦଣ୍ଡଧାରୀ ॥୯୦
ବଶିଷ୍ଠ ବାମଦେବ କଶ୍ୟପ ଯାବାଳି ।
ରାଜାର ସିଂହଦ୍ୱାରେ ସମସ୍ତେ ଯାଇ ମିଳି ॥
ପାଛୋଟି ଯିବାକୁ ଉଦବେଗ ଭ୍ରଥ ।
ସୁମନ୍ତ ସାଜି ଆଣି ଦେଲାକ ଦିବ୍ୟରଥ ॥
ଶତୃଘନ ସହିତେ ଅଇଲେ ସମସ୍ତେ ।
ମାତାଗଣ ଅଇଲେ ଶ୍ରୀରାମ ଦେଖିବା
ନିମନ୍ତେ ॥
ହାଦୋଳା ଚଢ଼ିଣ ହୋଇଲେ ବାହାର ।
ଧାଇ ମୃଦୁସୁଲୀ ସଙ୍ଗେଣ ଅପାର ॥
ନଗ୍ର ନରନାରୀ ବାଳବୃଦ୍ଧ ଯୁବା ।
ହୁଅନ୍ତି ହକାହକି ଶ୍ରୀରାମ ଦେଖିବା ॥୧୦୦
ଏକକୁ ଆରେକ ଧାପେ ଯାନ୍ତି ଜିଣି ।
ଖେଦି ଖେଦି ହୋଇ ବାହାର ତରୁଣୀ ॥
ଭ୍ରଥ ମହାବୀର ସାଙ୍ଗେ ଅମନାତ୍ୟବୃନ୍ଦ
ଗଲେ ।
ପଟୋହାରି ଅଛନ୍ତି ଅନେକ ଭୂପାଳେ ॥
ଶ୍ରୀରାମର ପାଦୁକାକୁ ଧରାଇଣ ଛତ୍ର ।
ସମ୍ପର୍ବେ ଚଳଇ କୈକେୟୀର ସୁତ ॥
ବାଜଇ ଟମକ ନିଶାଣ ଶଙ୍ଖ ଭେରୀ ।
ଢୋଲ ଦମା କାହାଳ ମର୍ଦ୍ଦଳ ମହୁରୀ ॥
ନାଚନ୍ତି ଯୁବତୀ ଢାଳନ୍ତି ଚାମର ।
ଉଦଣ୍ଡ ଆଲମ୍ବ ବିଳମ୍ବ ଅପାର ॥୧୦
ଦକ୍ଷିଣ ମୁଖ ହୋଇ ଚଳନ୍ତି ସଇନି ।
ଆଗ ଥାଠେ କଢ଼ାଇ ପାବେନି ॥
ନଗ୍ରରୁ ବାହାର ହୋଇଲେକ ଭ୍ରଥ ।
କିହୋ ହନୁ କିମ୍ପା ନଇଲେ ରଘୁନାଥ ॥
ଏତେବେଳଯାଏ ବିଳମ୍ବ କାହିଂପାଇଂ ।
ହନୁମନ୍ତ ବୋଇଲା ଆକାଶକୁ ଚାହିଂ ॥
ନଶୁଣୁକି ଗଗନେ ଶୁଭୁଅଛ ଗୋଳ ।
ବିବିଧ ଗୁରୁବାଦ୍ୟ ମୁଖର ଚହଳ ॥
ଦେଖ ଦେଖ ହୋ ମେଘଖଣ୍ଡ ପ୍ରାଏ
ଦିଶଇଂ ।
ପୁଷ୍ପୋକ ବିମାନଟି ଗଗନେ ବିକ୍ରମି
ଆସଇଂ ॥୨୦
ହନୁମନ୍ତ ମୁଖରୁ ଏସନେକ ବାଣୀ ଶୁଣି ।
ସନ୍ତୋଷ ହୋଇଲେ ପୁର ଲୋକେ ପୁଣି ॥
ଯେ ଯାହାର ବାହନ ଛାଡ଼ିଲେ ତତ୍‌ତି ।
ଊର୍ଦ୍ଧ୍ୱମୁଖ ହୋଇ ବିମାନ ନିରୋପନ୍ତି ॥
ସିଂହବେଣୀ ପୁରକୁ ଦିଶିଲାକ ରଥ ।
ଦେଖି ଗୁହ ଶବର ମସ୍ତକେ ଦେଲା ହାଥ ॥
ନିଉଛାଳି ପକାଇ ଗଡ଼ଘାଲି ଶୁତିଲା ।
ଅଙ୍ଗଦକୁ ଚାହିଂ ଶ୍ରୀରାମଚନ୍ଦ୍ର ବୋଇଲା ॥
ଏ ଯେ ଦିଶୁଅଛି ଗଙ୍ଗାନଦୀ କୂଳ ।
ପର୍ବତର ପାଶେ ବିପୁନ୍ୟ ଗହଳ ॥୩୦
ସିଂଘବେଣୀପୁରେ ମଇତ୍ର ମୋର ଥାଇ ।
ସଇନି ଘେନି ମୋତେ ଦ୍ରଶନ କରଇଂ ॥
ଗୁହ ନାମେ ଶବର ବିଦିତ ଏହାର ।
ବାଳୁତ କାଳୁ ମଇତ୍ର ଅଟଇ ମୋହୋର ॥
ତୁହୋ ଅଙ୍ଗଦ ଯାସି ବେଗ ହୋଇ ।
ବୋଲି ଆସ ତାହାକୁ ଅଯୋଧ୍ୟା ଯିବାପାଇଂ ॥
ଶୁଣି ବାଳୀସୁତ ମଥାରେ ହାଥ ଦେଲା ।
ଶ୍ରୀରାମ ଆଜ୍ଞାରେ ଗଗନେ ବିକ୍ରମିଲା ॥
ସିଂହବେଣୀପୁରେ ହୋଇଲା ପରବେଶ ।
ଉର୍ଦ୍ଧ୍ୱେ ରହିଣ ଡାକିଲା ବାଳୀଶିଷ ॥୪୦
ଆହୋ ଗୁହ ଶବର ଶୁଣସି ମୋର ବାଣୀ ।
ମୋତେ ପେଷିଲେ ରାମ କୋଦଣ୍ଡ
ଚାପପାଣି ॥
ଏହିକ୍ଷଣି ତୁ ହୋ ଅଯୋଧ୍ୟାକୁ ଯିବୁ ।
ନନ୍ଦିଗ୍ରାମେ ଯାଇ ଦର୍ଶନ କରିବୁ ॥
ମୁହିଂ ଅଇଲି ଯେ ସ୍ୱାମୀର ବଚନେ ।
ଏତେ ବୋଲି ବିକ୍ରମି ଗଲାକ ଗଗନେ ॥
ବିଜୁଳି ଝଟକ ଜାଣି ବିରାଜଇ ତେଜ ।
ପୁଷ୍ପୋକ ବିମାନେ ଯାଇ ଭେଟିଲା ବାଳୀର
ତନୁଜ ॥
ଶ୍ରୀରାମ ଚରଣେ ନମସ୍କାର କଲା ।
ଜଣାଇ ଅଇଲି ବୋଲି ଛାମୁରେ
କହିଲା ॥୫୦
ଯେ ତହିଂର କଥା କହିଲା ସମସ୍ତ ।
ଶୁଣି ପରମ ସନ୍ତୋଷ କଉଶଲ୍ୟାର ସୁତ ॥
ଏଥୁଅନନ୍ତରେ ଚଳଇ ରଘୁବର ।
ପୁଷ୍ପୋକ ବିମାନେ ରହିଲେ ବାଳୀର
କୁମର ॥
ନନ୍ଦିଗ୍ରାମ ସଳଖେ ହୋଇଲା ଯାନ ଯାଇ ।
ଲୋକେ ପରମ ସନ୍ତୋଷ ଉପରକୁ ଚାହିଂ ॥
କଉଶଲ୍ୟା ସହିତେ ଜନନୀ ସକଳ ।
ହାଦୋଳା ଛାଡ଼ି ଉଭା ହୋଇଲେ ମହୀସ୍ଥଳ ॥
ଉପର ମୁଖ ସେହୁ କରିଣ ଚାହାନ୍ତି ।
ଆହାରାମ ଲକ୍ଷଣ ସୀତା ବୋଲିଣ
ବୋଲନ୍ତି ॥୬୦
ନଗ୍ର ନରନାରୀ ଦିଅନ୍ତି ହୁଳହୁଳି ।
ବେଦ ଆଧାନ କରନ୍ତି ବ୍ରାହ୍ମଣ ଜନେ ମିଳି ॥
ଜୟେ ଜୟେ ଶବଦ ଶୁଭଇ ଚଉପାଶ ।

ବାଜଇ ଟମକ ନିଶାଣ ବିକିଘୋଷ ॥
ଘଣ୍ଟି ଘାଗୁଡ଼ି ଶଙ୍ଖ କମ ଭେରୀ ।
ତାଳଯନ୍ତ୍ର କଂସାଳ ମର୍ଦ୍ଦଳ ମହୁରୀ ॥
ଗହ ଗହ ଶବଦ ଶୁଭଇ ମହାଘୋର ।
ଉଦଣ୍ଡ ଚିରାଳ ଆଲମ୍ବ ବିମଳ ॥
ନଟକାରୀ ନୃତ୍ୟ କରନ୍ତି ଗୀତ ଗାଇ ।
ଆକାଶୁ ବିମାନ ଖସଇ ଧୀର ଧୀର ହୋଇ ॥୭୦
ଋକ୍ଷ କପି ରାକ୍ଷସେ ବାଇଲେ ବାଜଣା ।
ସ୍ୱର୍ଗେ ଥାଇ ପୁଷ୍ପ ବୃଷ୍ଟି କରନ୍ତି ସୁରଗଣା ॥
ଅପଛରୀ ମାନେ ହୁଳାହୁଳି ଦିଅନ୍ତି ।
ଗାନ୍ଧାର ରାଗେ କିନ୍ନରୀ ଗୀତ ଗାନ୍ତି ॥
ଦୁନ୍ଦୁଭି ବଜାଇଲେ ଏସନେକ ବେଳେ ।
ବ୍ରହ୍ମାଣ୍ଡ ଉଛୁଳିଲା ତୁଣ୍ଡ ଶବଦ ଗୋଳେ ॥
ଗୁଣ୍ଡିଚା ନବରକୁ ଯେହ୍ନେ ଆସଇ ଜଗନ୍ନାଥ ।
ତେସନେକ ପଟାନ୍ତରି ପୁଷ୍ପକ ନାମେ ରଥ ॥
ହେଲୁ ହେଲୁ ହୋଇ ଗଗନୁ ହାଦେ ଖସି ।
ଶରଦ ଚନ୍ଦ୍ରମାକି ଗଗନରୁ ଆସି ॥୮୦
ରଥରୁ ଓହ୍ଲାଇ ରାମ ତଳକୁ ବିଜେ କଲେ ।
ଦେଖିତ ଯୁବତୀଗଣେ ହୁଳହୁଳି ଦେଲେ ॥
ଭ୍ରଥ ପାଏ ପଡ଼ି ଶୋଇଲାକ ଯାଇଂ ।
ଆପଣେ ହାଥ ଧରି ତୋଳିଲେ ରଘୁସାଇଂ ॥
କୋଳ କରି ରାମ ମୁଖେ ଚୁମ୍ବନ ଦେଲେ ।
ସ୍ନେହ ଭରେ ଆଖି ଥନ ଥନ କଲେ ॥
ବୋଇଲେ ଭ୍ରଥ ଆରେ ଏ ସେ ସୁଗ୍ରୀବର ।
ଏ ମୋହୋର ମଇତ୍ର କିଷ୍କିନ୍ଧା ଠାକୁର ॥
ଏହାର ପ୍ରସାଦେ ପାଇଲି ଏଡ଼େ ଶିରୀ ।
ଏହାକୁ ଘେନିଟି ମାଇଲି ଦଶଶିରି ॥୯୦
ଦେଖ ଭାଇ ଆରେ ଜମ୍ବେବ ଋକ୍ଷପତି ।
ପଣ୍ଡିତ ଗଣିତାୟେ ସମାନ ବୃହସ୍ପତି ॥
ଏହାର ବୁଦ୍ଧିରେ ମୁଂ ଶତ୍ରୁକୁ ସଂହାରିଲି ।
ଏଡ଼େବଡ଼ ଯଶ ମୁଂ ଏହାରେ ପାଇଲି ॥
ଆବର ହିଂ ଦେଖ ହୋ ସୁଷେଣ ମନ୍ତ୍ରୀବର ।
ପ୍ରତ୍ୟକ୍ଷେ ଅବତାର ଏ ଅଶ୍ୱିନୀ କୁମାର ॥

ଏହାର ବୁଦ୍ଧିବଳେ ଲକ୍ଷ୍ମଣ ପ୍ରାଣ ପାଇ ।
ଏ ସେ ଜୀବଦାନ ଦେଲା ମୋର ଭାଇ ॥
ଇନ୍ଦ୍ରଜିତ ଶରଘାତେ ମୋ ସନ୍ୟ ନାଶ ଯାଇ ।
ସୁଷେଣ ମନ୍ତ୍ରୀବର ପ୍ରସାଦେ ପ୍ରାଣ ପାଇ ॥୧୦୦
ଦେଖ ଦେଖ ଭାଇରେ ଏ ହନୁମନ୍ତ ପିତା ।
ସୁଗ୍ରୀବର ଭିଣୋଇ ସାଂଗ୍ରାମରେ ଜିତା ॥
ଏହାର ପୁତ୍ର ମୋତେ ଯେତେ ଗୁଣ କଲା ।
ରାବଣ ପ୍ରାଏ ଶତ୍ରୁକୁ ସାଧି ମୋତେ ଦେଲା ॥
ବାପ ପୋୟେ ହୋଇ କଲେ ଯେବଣ କର୍ମ ।
ଏହାର ପ୍ରସାଦେ ମୁଂ ହୋଇଲି ପୁନର୍ଜ୍ଜନ୍ମ ॥
ଏ କେଶରୀ ମହାତ୍ମା ଅଟନ୍ତି ବୁଦ୍ଧିବନ୍ତ ।
ଏହାର ପୁଣ୍ୟେ ପୁତ୍ର ପାଇଲା ହନୁମନ୍ତ ॥
ଶ୍ରୀରାମ ମୁଖରୁ ଏସନ ବଚନ ।
ଶୁଣି ପରମ ସନ୍ତୋଷ କଏକୟା ନନ୍ଦନ ॥୧୦
ରଘୁନାଥର କୋଡୁ ଗଲାକ ତଡ଼ତି ।
ଯାଇଣ ମିଳିଲା ସୁଗ୍ରୀବର କତି ॥
ଶ୍ରୀରାମର ଆଜ୍ଞାରେ ନମସ୍କାର କଲା ।
କୋଳ କରି କପିରାଜା ମୁଖେ ଚୁମ୍ବଦେଲା ॥
ଜାମ୍ବେବକୁ ଓଳଗିଲା କଏକୟାର ସୁତ ।
ବହୁତ ଆଶ୍ୱାସନା କଲେକ ଋକ୍ଷନାଥ ॥
ଦେହ ଆଉଂସିଣ ସେନେହକାର କଲା ।
ନିସ୍ତରିଲି ବୋଲି ମୁଖେ ଚୁମ୍ବନ ଦେଲା ॥
ଧନ୍ୟ ଧନ୍ୟ ବୀର ବୋଲିଣ ବୋଇଲା ।
ସୁଷେଣକୁ ବୀର ନମସ୍କାର କଲା ॥୨୦
କଲ୍ୟାଣ ବାଞ୍ଛା କଲେକ ମନ୍ତ୍ରୀବର ।
ତୋହୋର ଆୟୁଷ ହଉ ଚିରକାଳ ॥
ମଥା ଆଉଁସି ପିଣ୍ଡକୁ କୋଳ କଲେ ।
ବହୁତ ଚାଟୁକଥା ବିନୋଇ କହିଲେ ॥
କେଶରୀକି ଓଳେଗି କଏକୟାର ସୁତ ।
ନିସ୍ତରିଲି ନିସ୍ତରିଲି ବୋଲି ବୋଇଲା ହନୁମନ୍ତ ତାତ ॥
ଏକ ଆରକେଣ ବେଢ଼ି କୋଳ କଲେ ।

ଭ୍ରଥକୁ ଚାହିଂଣ ଶ୍ରୀରାମଚନ୍ଦ୍ର ବୋଇଲେ ॥
ଦେଖ ଦେଖ ଭାଇରେ ବିଭୀଷେଣ ବୀର ।
ଏହାରେ ସେ ଜାନେକୀ ପାଇଲି ମୋହର ॥୩୦
ରାବଣ ପ୍ରାଏ ଭାଇକି ଛାଡ଼ିଲା ମହାତମା ।
ନିରେଖ ଦେଖି ମୋତେ ସାହା ହୋଇଲା ପୁଣ୍ୟଆତ୍ମା ॥
ଆବର ଦେଖ ହାଦେ ବାଳୀର କୁମର ।
ଅଙ୍ଗଦ ନାମ ଏହାର କିଷ୍କିନ୍ଧା ଈଶ୍ୱର ॥
କିଷ୍କିନ୍ଧା କଟକେ ଏହାକୁ ଯୁଗ ରାଜା କଲୁ ।
ଏହାର ପ୍ରସାଦେ ହୋ ରାବଣ ଜିଣିଲୁ ॥
ଶୁଣି ଭ୍ରଥବୀର ବିଭୀଷେଣକୁ କୋଳ କଲା ।
ଅଙ୍ଗଦ କୁମରକୁ ଆଲିଙ୍ଗନ କଲା ॥
ସୁଗ୍ରୀବରକଇ ପ୍ରଶଂସା କଲାକ ଚାହିଂ ।
ତୋହୋରେ ସେ କପିରାଜ ଏଡ଼େକ କର୍ମ ହୋଇ ॥୪୦
ତୁ ସେ ଶ୍ରୀରାମକୁ ଦୁଃଖ କାଳେ ହେଲୁ ସାହା ।
ଧନ୍ୟ ଜୀବନ ତୁ ବହିଲୁ କପିନାହା ॥
ଯେତେ ବୋଲି ଯାଇ ସୀତାର ପାଦେ ପଡ଼ି ।
ଉଠି ଉଭା ହୋଇ ଶିରେ କରଯୋଡ଼ି ॥
ଏସନେକ ସମୟେ ସୁମିତ୍ରା ତନୟେ ।
ଭ୍ରଥର ଚରଣେ ଆସି କଲାକ ବିନୟେ ॥
କଲ୍ୟାଣ କରି ଭ୍ରଥ ଭାଇକି କୋଳ କଲା ।
ମଥା ଆଉଂସିଣ ମୁଖେ ଚୁମ୍ବନ ଦେଲା ॥
ଶତ୍ରୁଘନ ଯାଇ ଶ୍ରୀରାମର ପାଦ ତଳେ ।
ପ୍ରଣମ୍ଭ କରନ୍ତେ ତାକୁ ଧଇଲେ ରାମ କୋଳେ ॥୫୦
ମୁଖେ ଚୁମ୍ବନ ଦେଇ ଆଉଂସିଲେ କାଏ ।
ଶ୍ରୀରାମ ସନ୍ନିଧିରୁ ଶତ୍ରୁଘନ ଯାଏ ॥
ସୀତାର ଚରଣେ କଲାକ ନମସ୍କାର ।
ଭ୍ରଥ ଲକ୍ଷ୍ମଣ ଆବର ସୁଗ୍ରୀବର ॥
ଜମ୍ବେବ ସୁଷେଣ କେଶରୀ ଯହିଂ ଛନ୍ତି ।
ଶତ୍ରୁଘନ ଓଳଗନ୍ତେ କଲ୍ୟାଣ କରନ୍ତି ॥
ମାତାମାନେ ଯାଇ ହୋଇଲେ ଶ୍ରୀରାମର ପାଶ ।

ଚାତେକ ଚଢ଼ାଇ ଯେହ୍ନେ ସ୍ୱର୍ଗ ପାଣି କରଇ
ଆଶ ॥
ତେସନେକେ ପରାୟେ କରି ବେଢ଼ିଲେ
ମାତୃଗଣ ।
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ରାଣ ॥୬୦
କଉଶୁଲା ପାଦତଳେ ନମସ୍କାର କଲେ ।
ପଛେ କଇକେୟା ସୁମିତ୍ରାକୁ ଓଳଗିଲେ ॥
ସାତଶ ପଚାଶ ଯେ ଦଶରଥଙ୍କ ରାଣୀ ।
ସବୁଙ୍କୁ ମାନ୍ୟଧର୍ମ କଲେ ରଘୁମଣି ॥
ବଶିଷ୍ଠଙ୍କ ଚରଣେ ନମସ୍କାର କଲେ ଯାଇ ।
ଯାବାଳି ବାମଦେବ କଶ୍ୟପକୁ ବିନୋୟି ॥
ଶିରେ କର ଦେଇ ଅନେକ ସ୍ତୁତି କଲେ ।
ସୁମନ୍ତ ମନ୍ତ୍ରୀକି ଅନେକ ଚାଟୁ ବୋଇଲେ ॥
ଇକ୍ଷେକ ନୃପତି କୃତାଞ୍ଜଳି ହୋଇ ।
ନଗ୍ର ନରନାରୀ କି ପୁରସରି କହି ॥୭୦
ଲକ୍ଷ୍ମଣ ଯେ ଯାହାରେ ମାନ୍ୟଧର୍ମ କଲା ।
ଶ୍ରୀରାମ ପାଦେ ଭ୍ରଥ କଠାଉ ନେଇଦେଲା ॥
କରପତ୍ର ଯୋଡ଼ି ବୋଲଇ ଭୋ ସ୍ୱାମୀ ।
ଲକ୍ଷ୍ମଣ ତୋ ସଙ୍ଗେ ହୋଇଲା ବନଗାମୀ ॥
ସେ ସେ ସାଧୁ ଅଟେ ସୁମିତ୍ରାର ସୁତ ।
ତାହାଙ୍କର ଧନ୍ୟ ହୋଇଲା ଜୀବିତ ॥
ମୁହିଂ ମହାପାପୀ ସ୍ୱାମୀରେ ଦୋରେହା ।
ପୂର୍ବେର କର୍ମେ ମୁଂ ଅର୍ଜିଅଛି ଏହା ॥
ଯେସନେକ ବଚନ ଶୁଣି ଶ୍ରୀରାମ
ଗୋସାଇଂ ।
ଭ୍ରଥ କୋଳକରି ଉଠିଲେ ବୋବାଇ ॥୮୦
ଶ୍ରୀରାମ ରୋଦନ୍ତେ ରୋଦଇ ବୀରଭ୍ରଥ ।
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମନ୍ତ ॥
ଚନ୍ଦନ ନଳ ନୀଳ ଶଉରୀ ସେନାପତି ।
ଜାୟେବ ସୁଷେଣ ତାରାକ୍ଷ ପ୍ରଭୃତି ॥
ଶତୃଘନ ଗନ୍ଧମାର୍ଦ୍ଦନ କାଳିଞ୍ଜନ ।
ସୁମନ୍ତ ବଶିଷ୍ଠ ଯାବାଳି ସୁସୋଦନ ॥
ଗବଏ ଗବାକ୍ଷ କଶ୍ୟପ ବାମଦେବ ।
ଇକ୍ଷେକ ନୃପତି ବିକଳିଣ ଭାବ ॥
ଋକ୍ଷ ରାକ୍ଷାସେ ବାନର ମାନୁଷ୍ୟ ।
ଶ୍ରୀରାମ ରୋଦନ୍ତେ ପାଇଲେ ମନେ
ତ୍ରାସ ॥୯୦

ସବୁଙ୍କରି ନୟନରୁ ବହଇ ଅଶ୍ରୁଧାର ।
ମାତୃଗଣେ ରୋଦନ କରନ୍ତି ଅପାର ॥
ସୀତା ସହିତେ ଅଯୋଧ୍ୟା ନରନାରୀ ।
ଶ୍ରୀରାମ ରୋଦନ୍ତେ ରୋଦନ୍ତି ହାହାକାର
କରି ॥
ଚାରିମନ୍ତ୍ରୀ ଘେନି ବଶିଷ୍ଠ ତିଆରି ।
ଶୋକ ସମ୍ଭାଳି ଶାନ୍ତି ହୋଇଲେ ରାବଣାରି ॥
ରତ୍ନ ପାଦୁକାରେ ଶ୍ରୀରାମ ପାଦ ଦେଇ ।
ଭ୍ରଥର କର ଧରି ସେ ବିଜେ କରିଯାଇ ॥
ମାତୃଗଣ ଘେନି ବଶିଷ୍ଠ ଋଷି ଗଲେ ।
ଶ୍ରୀରାମଚନ୍ଦ୍ର ଯାଇଂ ନବରେ ବିଜେ
କଲେ ॥୧୦୦
ଦେଖିଲେ ନବର ଋଷିଘର ଜାଣି ।
ବିଭୂତି କନ୍ଦମୂଳ କୋମଣ୍ଡଳେ ପାଣି ॥
କୃଷ୍ଣାଜିନ ଛାଇମାନେ ପାଶେ ଛନ୍ତି ।
ଦେଖିଣ ଶ୍ରୀରାମ ମନରେ ବିଚାରନ୍ତି ॥
ମୋ ଗଲାଦିନୁ ଭ୍ରଥ ନୃପତି ନୋହିଲା ।
ତପୁସୀ ପ୍ରକାରେ ବେଭାରେ ଦିନ ନେଲା ॥
ଏସନେକ ବୋଲି ରାମ ବିଜେ ତହିଂ
କଲେ ।
ଶୁଣସି ଭବାନୀ ଗୋ ସଦାଶିବ ବୋଇଲେ ॥
ଯହୁଂ ରଘୁନାଥ ନବରେ ବିଜୟେ ।
କକୟା କଉଶୁଲା ସୀତାକୁ ଘେନି
ଆଏ ॥୧୦
ଶାଶୁମାନଙ୍କୁ ଦେଖିଣ ମହାସ୍ୟତୀ ।
ଆସ୍ଥାନ ତେଜି ତଳେ ଉଭା ସେହୁ ହୋନ୍ତି ॥
ହସ୍ତେ ଅଞ୍ଚଳ ଧରି କୌଶୁଲାଙ୍କୁ ନମସ୍କାର ।
କୈକେୟା ସୁମିତ୍ରାଙ୍କୁ କଲେ ବେନିବାର ॥
ଯେତେବେଳେ ଶାଶୁଙ୍କୁ ଓଗାଳିଲା ସତୀ ।
କୋଳକଲେ ନେଇ ଦଶରଥଙ୍କ ଯୁବତୀ ॥
ହାହା ଜାନେକୀ ଗୋ ଜନେକଦୁହିତା ।
ସର୍ବ ସୁଲକ୍ଷଣୀ ଗୋ ନାମ ତୋର ସୀତା ॥
ସ୍ୱାମୀର ତୁଲେ ତୁ ଯେ ଅରଣ୍ୟେ ଦିନ
ନେଲୁ ।
ପତିଭକ୍ତା ଲେଖାୟେ ଗଣିତା ହୋଇଲୁ ॥୨୦
କଉଶୁଲା ରାଣୀ ଧରିଛନ୍ତି କୋଳେ ।

ଆନନ୍ଦେ ଅଶ୍ରୁଜଳ ପୂରିଅଛି ଡୋଳେ ॥
ପୁତ୍ରବଧୂ ଦେଖି ମନରେ ଆନନ୍ଦ ।
ମୁଖ ବିକାଶଇ ପୂର୍ଣ୍ଣିମାର ଚାନ୍ଦ ॥
କୈକେୟା ଆନନ୍ଦ କହିଲେ ନହରି ।
ପୂର୍ବକଥାମାନ ମନରୁ ପାଶୋରି ॥
ଆପଣେ ଶ୍ରୀରାମକୁ ପେଷିଲା ଘୋରବନ ।
ନିଜ ପୁତ୍ରକୁ ନୃପତି କରାଇ ତ ମନ ॥
ଜଗତେ ଅପଛାତି ପାଇଲାକ ରାଣୀ ।
ହାହାକର କଲେ ସକଳ ସପତଣୀ ॥୩୦
ଏବେ ରଘୁନାଥ ଅଇଲେ ଏତେବେଳେ ।
ସର୍ବଲୋକ ବିଷାଦ ସରିଲା ଏତେକାଳେ ॥
କଉଶୁଲା ରାଣୀ କୈକେୟାକୁ ହିଂସା
କରିଥିଲେ ।
ପୁତ୍ରଙ୍କ ମୁଖ ଚାହିଂ ସକଳ ପାଶୋରିଲେ ॥
ଏକକୁ ଆରେକ ଦେଖିଲେ ସେନେଧ
କରି ।
ମନ୍ଥେଡ଼ିର ହରଷ କହିଲେ ନସରି ॥
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ପୁଷ୍ପେକ ବିବାନକୁ କରୁଣା ନେତ୍ରେ
ଚାହେଂ ॥
ବୋଇଲେ ହୋ ଯାନ ସ୍ୱର୍ଗପୁର ଯାସି ।
କୁବେର ନିଧିପତି ଅଳକାପୁରବାସୀ ॥୪୦
ସେ ତୋର ପୂର୍ବରେ ଅଟଇ ନାୟେକ ।
ବଳେ ସେ ରାବଣ ନେଇଥିଲା ଲଙ୍କ ॥
କେବଣ ପାପେ ହେଲୁ ତୁ ଅସୁର ବାହନ ।
ଏବେ ଦୋଷକୃତ ଗଲା ତୋର ଯାନ ॥
ଆମ୍ଭେ ଯେ ଆଣିଲୁ ଆସିବାର ଖବର ।
ଯେବେ ତ ପ୍ରବେଶ ହୋଇଲୁ ଆମ୍ଭେ
ଘର ॥
ଏବେ ତୋହୋର ନିଜ ଆଶ୍ରମକୁ ଯାଅ ।
ବ୍ରହ୍ମାର ଆଜ୍ଞାରେ ତୁ କୁବେର ଭଣ୍ଡାରେ
ଥାଅ ॥
ଶୁଣି ପୁଷ୍ପେକ ବିବାନ ଅନ୍ତରୀକ୍ଷେ ଗଲା ।
ଅଳକାପୁରେ ଯାଇ ପ୍ରବେଶ ହୋଇଲା ॥୫୦
ଦେଖିଣ ଧନପତି ବୋଇଲା ବଚନ ।
ବାହୁଡ଼ି ଅଯୋଧ୍ୟାକୁ ହୋ ଯାଅ ବେଗେ
ଯାନ ॥

ଯେତେକାଳ ଶ୍ରୀରାମ ଥିବେ ମର୍ତ୍ତ୍ୟପୁରେ ।
ତେତେକାଳ ଶ୍ରୀରାମକୁ ବହିଥିବୁ ଶିରେ ॥
ସେ ପରମବ୍ରହ୍ମ ବୋଲି ନଜାଣୁ କି ରଥ ।
ଶ୍ରୀରାମ ବୈକୁଣ୍ଠ ଭୁବନ ବିଷ୍ଣୁନାଥ ॥
ସର୍ବଦେବ ରଖନ୍ତା ଦଇତ କୁଳକାଳ ।
ସୁରଗଣ ନିମନ୍ତେ ହେଲେ ସେ ଦଶରଥବାଳ ॥
ତୁ କେବଣ ତପ କଲୁ ହୋ ପୂର୍ବେ ଯାନ ।
ନାରାୟଣଙ୍କୁ ବହିବାକୁ ହୋଇଲୁ ଭାର୍ଜନ ॥୬୦
ଯାଅ ଏବେ ଅଯୋଧ୍ୟାକୁ ନରହ ଏଥିକ୍ଷଣେ ।
ଶୁଣିଲେ କୋପ ମୋତେ କରିବେ ଦେବଗଣେ ॥
ଶୁଣି ରହୁବର ବାହୁଡ଼ିଲା ଧାତି ।
ତତକ୍ଷଣେ ଅଯୋଧାରେ ଭେଟିଲା ରଘୁପତି ॥
ଦେଖିଣ ଶ୍ରୀରାମ ବଶିଷ୍ଠଙ୍କୁ ପୁଚ୍ଛି ।
କେବଣ କାରଣେ ରଥ ବାହୁଡ଼ି ଆସୁଅଛି ॥
ଯୋଗ ବଳେ ଋଷି ଜାଣିଲେକ ତାହା ।
ବୋଲନ୍ତି ମହାମୁନି ହେ ଶୁଣିମା ରଘୁନାହା ॥
ଦେବତା ଭିଆଣ ଅଛି ପୂର୍ବେ ଜାଣି ।
ଯେତେକାଳ ପର୍ଯ୍ୟନ୍ତ ତୁମ୍ଭେ ଥିବ ରଘୁମଣି ॥୭୦
ଏ ରଥ ଚଢ଼ିଣ ତୁ ଦିଗବିଜେ କରିବୁ ।
ସନ୍ଥ ପ୍ରତିପାଳି ଦୁଷ୍ଟ ନିବାରିବୁ ॥
ଏସନେକ ବୋଲିଣ ଅଛି କୁଶକେତି ।
କୁବେର ଠାରୁ ବଳେ ନେଲାକ ଲଙ୍କପତି ॥
ରାବଣକୁ ମାରି ତୁ ଆଣିଲୁ ରଘୁବୀର ।
କିମ୍ବା ପ୍ରତିଗ୍ରହ ତାକୁ କରିବ କୁବେର ॥
ତୋହୋର ଥାଆନ୍ତେ କି ନେବେ ଦେବଯାନ ।
ଶୁଣି ସନ୍ତୋଷ ହୋଇଲେ କୌଶୁଲାର ନାନ ॥
ସୁମନ୍ତକୁ ବୋଇଲେ ତୁ ବିଚିତ୍ର ଠାବ କରି ।
ଥୋଇ ଆସ ରଥ ଜଗାଇ ପାହାରୀ ॥୮୦
ଶୁଣି ମନ୍ତ୍ରୀବର ରହୁବର ନେଲା ।
ଅତି ଯତ୍ନ ଠାବରେ ରଖାଇ ଅଇଲା ॥

ଏଥିଅନନ୍ତରେ କଇକୟା ସୁତ ।
ଶ୍ରୀରାମକୁ ଚାହିଁ ଯୋଡ଼ଇ ବେନିହସ୍ତ ॥
କାର୍ପଣ୍ୟ ହୋଇଣ ବୋଇଲେ ରକ୍ଷାକର ।
ଏବେ ତୁମ୍ଭର ରାଜ୍ୟ ଉଦ୍ଧରିଣ ଧର ॥
ମୁହିଁ ବହିବାକୁ ନୁହଇ ଭାର୍ଜନ ।
ଶ୍ରୀଚରଣ ଆଜ୍ଞାରେ ପାଳିଲି ଏତେ ଦିନ ॥
ଚଉଦ ବରଷ କଷ୍ଟ କହିଲେ ନସରି ।
ତନୁ କ୍ଷୀଣ ହେଲା ଅନୁକ୍ଷଣେ ଚିନ୍ତା କରି ॥୯୦
ଯେବେ ତୋର ଦେବ ଅଛଇ ସଦଏ ।
ଆଜହିଁ ଅଭିଷେକ ହୋଇବ ଦେବରାଏ ॥
ଭ୍ରଥର କହନ୍ତେ ବଶିଷ୍ଠ ପିଠି ଦ୍ୟନ୍ତି ।
ବାମଦେବ ଯାବାଳି କଶ୍ୟପ କହନ୍ତି ॥
ସୁଗ୍ରୀ ବିଭୀଷେଣ ଲକ୍ଷ୍ମଣ ଜଣାଇଲେ ।
ଅଙ୍ଗଦ ହନୁମନ୍ତ ଜମ୍ବେବ କହିଲେ ॥
ସୁମନ୍ତ ସୁଷେଣ କହନ୍ତି ପ୍ରବୋଧି ।
ଶତୃଘନ କହନ୍ତେ ହସନ୍ତି ଦୟାନିଧି ॥
ହୋଇ ହୋଇ ଅଭିଷେକ ହୋଇବି ନିୟତ ।
ଚଉଦ ବରଷତ ପାଳିଲି ପିତା ସତ୍ୟ ॥୧୦୦
ଅନୁକୂଳ ବିଚାରିଣ ସେ ଅଯୋଧ୍ୟାକୁ ଯିବି ।
ଶୁଭ ଯୋଗବେଳେ ଅଭିଷେକ ହେବି ॥
ଯେସନେକେ ନନ୍ଦିଗ୍ରାମେ ଘୋଷଣ ଦିଆଅ ।
ବୋଲ ସବୁ ଲୋକେ ଅଯୋଧ୍ୟାକୁ ଯାଅ ॥
ଯେ ଯାହା ନବର ହୋ କରନ୍ତୁ ସବୁ ନୂଆ ।
କାନୁବାଡ଼ ଚିତ୍ର ଉପର ଚାନ୍ଦୁଆ ॥
ସୁଗ୍ରୀ ବିଭୀଷେଣକୁ ନବର ତୋଳାଅ ।
ଆମ୍ଭ ନିମିତ୍ତେ ଶିବିର ଗୋଟିଏ ଭିଆଅ ॥
ହାଥୀ ଘୋଡ଼ା ଶାଳ ରକ୍ଷ କପିଙ୍କି ଘର ।
ଆବର ଯେତେକେ ହୋ ଅଛନ୍ତି ଅସୁର ॥୧୦
ଅଯୋଧାରେ ଏମାନ ସମସ୍ତ ସଜ କରି ।
ଦିନାଚାରି ଉତ୍ତାରୁ ଆମ୍ଭେ ବିଜେ କରି ॥
ଶୁଣି ଭ୍ରଥବୀର ସୁମନ୍ତକୁ ବୋଇଲା ।
କର ସଜ୍ଜା ଯାଇ ଶ୍ରୀରାମ ଆଜ୍ଞା ହେଲା ॥
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ଆସ୍ଥାନେ ବିଜୟେ କଲେ ରଘୁପତି ॥

ଜାନେକୀ ଅନ୍ତଃପୁରେ ହୋଇଲେ ପରବେଶ ।
ତିନି ଭଗ୍ନୀ ଆସି ମିଳିଲେ ସୀତା ପାଶ ॥
ମାଳତୀ ଉର୍ମିଳା ସୁକୀର୍ତ୍ତିଲୀକୁ ଦେଖି ।
କୋଳକରି ରୋଦନ କରଇ ଶରଦ ଚନ୍ଦ୍ରମୁଖୀ ॥୨୦
ଝଡ଼ା ମୁଦୁସୁଲୀ ତିଆରିଣ କଲେ ।
ଚାରି ଭଉଣୀ ହେ ଶୋକ ସମ୍ଭାଳିଲେ ॥
ସହୀ ସଙ୍ଗାତୁଣୀ ପୀରତି ଦାସୀମାନ ।
ସୀତାଙ୍କୁ ଦେଖିଣ ଆନନ୍ଦ କଲେ ମନ ॥
କେହୁ କୋଳକରି ମୁଖେ ଚୁମ୍ବନ୍ୟ ଦେଇଂ ।
କେ ବୋଲଇ ଦେଖି ଗୋ ନିସ୍ତରିଲି ମୁହିଁ ॥
ପରିମୁଣ୍ଡା ପୁଣି ହୁଅନ୍ତି କେବଣ ନାରୀ ।
ପାଟ ନିଉଛାନ୍ତି କେ ସେନେଧ ଭାବଧରି ॥
କେରୂପ ବାହୁନି ପକାଉଛନ୍ତି ଲୁଅ ।
କେବଣ ଯୁବତୀକି ମାଡୁଅଛି କୋହ ॥୩୦
କେହୁ ମୁଖ ଚାହିଁଣ ହସିଣ ପ୍ରଶଂସି ।
କେହୁ ସ୍ନେହଭରେ ଶରୀର ଆଉଂସି ॥
ଏସନେକ ଆନନ୍ଦ ଉଛବ ସର୍ବପୁର ।
ପାର୍ବତୀ ଆଗେ ଏହା କହନ୍ତି ଶୂଳଧର ॥
ଶୁଣ ଭଗବନ୍ତୀ ଗୋ ଶ୍ରୀରାମର ମହିମା ।
ଦଶଗ୍ରୀବ ମାରି ତୁହାଇଲେ ସୀମା ॥
ଅଯୋଧ୍ୟା ଦେଶ ନନ୍ଦିଗ୍ରାମରେ ବିଜେ କଲେ ।
ନିଜ ନବରେ ସିଂହାସନରେ ବସିଲେ ॥
ସଜ ଉଲାଗି ହୁଅନ୍ତି ଏ ଧନୁଶସ୍ତ୍ର ଥୋଇ ।
ଏସନେକେ ବେଳ ପାଞ୍ଚଘଡ଼ି ହୋଇ ॥୪୦
ମାଜଣା ସାରିଣ ଫେଇଲେ ଜଟାଛନ୍ଦ ।
ସୁବାସିତ ଜଳ ଘେନି ଫେଇଲେ ଦୁର୍ଗନ୍ଧ ॥
ଭ୍ରଥର ଆଜ୍ଞାରେ ସୁମନ୍ତ ମନ୍ତ୍ରୀବର ।
ତକ୍ଷଣେ ଅଣାଇଲା ମାଜଣା ସମ୍ଭାର ॥
ନାନା ତୀର୍ଥ ଜଳ ସୁଗନ୍ଧ ପରିମଳ ।
ତିଳ ଅଏଂଳା ସୁଗନ୍ଧ ଶୀତଳ ॥
ଯହୁଂ ସ୍ନାହାନକୁ ଅଇଲା ସଜମାନ ।
ସ୍ନାହାନ କରିବେ ବୋଲି କଉଶୁଲାର ନାନ ॥
ମର୍କତ ମନ୍ଦିରେ ନୀଳା ପିଢ଼ା ପଡ଼ିଅଛି ।

ତହିଁ ବିଜେ କଲେ କଉଶୁଲାର ବଛି ।।୫୦
ସୁଗ୍ରୀ ବିଭୀଷେଣ ଅଙ୍ଗଦ ଲକ୍ଷଣ ।
ଭରଥ ଶତ୍ରୁଘନ ଜମ୍ବେବ ସୁଷେଣ ।।
ସେନାଯୂଥପତି ଅମାନାତ୍ୟ ଗଣ ଘେନି ।
ତୀର୍ଥ ଜଳେ ଶ୍ରୀରାମ ଅଙ୍ଗ ଯେ ପଖାଳି ।।
ଉଷ୍ଣମ ପାଣି ଘେନି ଫେଡ଼ିଲେ ଜଟାଭାର ।
ବାଟି ଲଗାଇଲେ ଚତୁସମ ଗନ୍ଧ ଯେ
ଉପର ।।
ତପତ ଜଳ ଘେନି ଛଡ଼ାଇଲେ ମସି ।
ଅଠା ଛଡ଼ାଇଲେ ତିଳ ଘେନି ଘଷି ।।
ଶୀତଳ ଜଳ ଘେନି ପଖାଳିଲେ କେଶ ।
ଚାଚର ଚିକୁର ଆମୋଦଇ ବାସ ।।୬୦
କୃଷ୍ଣ ଚାମର ପ୍ରାୟେ ଦିଶିଲାକ ସଞ୍ଚ ।
କୁଟିଳ କବେରୀ ସୁନୀଳ ମହାଘଞ୍ଚ ।।
ଜଟା ଫେଡ଼ିଣ ଶ୍ରୀରାମ ଅଙ୍ଗ ପଖାଳିଲେ ।
ଚନ୍ଦନ କସ୍ତୁରୀ ଶ୍ରୀଅଙ୍ଗେ ସାମଳିଲେ ।।
ପବିତ୍ର ଜଳ ଘେନି ଧୋଇଲେ
କଳେବର ।
କେହୁ ପିଠି ଭୁଜ ଘଷନ୍ତି ପୟର ।।
ମାଜଣା ସାରିଣ ଝିନବାସ ଘେନି ।
ଶ୍ରୀଅଙ୍ଗ ପୋଛନ୍ତି ସୁଗ୍ରୀବ ବିଭୀଷେଣ
ବେନି ।।
ଅଙ୍ଗଦ ହନୁମନ୍ତ ଶ୍ରୀପୟର ପୋଛି ।
ତ୍ରିମୂର୍ତ୍ତି ସଂଯୋଇଲେ ସୁମିତ୍ରାର ବଛି ।।୭୦
ବିବିଧ ଗନ୍ଧେଣ ସୁଗନ୍ଧ ଗନ୍ଧ ବୋଳି ।
ଶ୍ରୀରାମଙ୍କ କେଶ ବାନ୍ଧିଲେ ଗଭା ତୋଳି ।।
ପୀତବସନ ଯେ ପିନ୍ଧାଇଲେ ନେଇଂ ।
ରଙ୍ଗପଟନୀ ଦୋଷଡ଼ା ରଘୁସାଇଂ ।।
କର୍ଣ୍ଣେଣ କୁଣ୍ଡଳ କଣ୍ଠେଣ ରତ୍ନହାର ।
ବିଦମୁଦି ବାହୁଟି ବିବିଧ ଅଳଙ୍କାର ।।
ଚରଣେ ନୂପୁର ପୟରେ କଠାଉ ।
ଦେବାର୍ଚ୍ଚନ ନବରକୁ ବିଜୟେ ରାମରାହୁ ।।
ବିଭୀଷେଣ ଦେଲା ଯେବଣ କନକଦଣ୍ଡ ।
ନାହିଁ ତାକୁ ପଟାନ୍ତର ଚଉଦ ବ୍ରହ୍ମାଣ୍ଡ ।।୮୦
ବରୁଣ ଛତ୍ର ସେ ଅମୂଲ୍ୟ ରତ୍ନ ମଏ ।
ଯତନେ ବିଶ୍ୱକର୍ମା ନିବାଡ଼ ତାହା କଯେ ।।

ଚନ୍ଦ୍ର ସୂର୍ଯ୍ୟ ଅଗ୍ନିକି ହୋଇଅଛି ମିଶା ।
ତହିଁର ତଳେ ଥିଲେ ନଲାଗଇ କ୍ଷୁଧାତୃଷା ।।
ଅଶେଷ ମହିମା ସେ ଅପୂର୍ବ ଛତ୍ର ଗୋଟି ।
ଟୋକି ଧଇଲେଣ ରତ୍ନ ବରଷଇ ସୃଷ୍ଟି ।।
ମାଣିକ୍ୟ ମାଣିକ୍ୟ ହୀରାରୁ ହୀରା ବିରାଜଇ ।
ମୁକୁତାରୁ ମୁକୁତା ନୀଳାରୁ ନୀଳା ଯେ
ସ୍ରବଇ ।।
ସେ ଛତ୍ର ଗୋଟି ଟୋଳି ଧଇଲାକ ନୀଳ ।
ଲକ୍ଷେକ ରତ୍ନ ଯେ ପଡ଼ିଲା ମହୀତଳ ।।୯୦
ଦେବାର୍ଚ୍ଚନ ନବରେ ବିଜେ ରାମକଲେ ।
ଲକ୍ଷ୍ମୀନାରାୟଣ ପ୍ରତିମା ଦେଖିଲେ ।।
ପ୍ରସାଦ ଘେନିଣ ବାହୁଡ଼ା ବିଜଏ ।
ଆସ୍ଥାନୁ ନବରେ ବିଜୟେ ରାମ କଯେ ।।
ଭରଥ ଶତ୍ରୁଘନ ଲକ୍ଷ୍ମଣକୁ ଚାହିଁ ।
ଆଜ୍ଞାଦେଲେ ପ୍ରଭୁ ଜାନେକୀର ସାଇଂ ।।
ଯାଅତୁମ୍ଭେ ସ୍ନାହାନ ବେଗକରି ଆସ ।
ଫେଡ଼ ଜଟାଭାର ଯାଉ ଦୁର୍ଗନ୍ଧ ଦୋଷ ।।
ଏତେବୋଲି ଭଣ୍ଡାରୁ ଅଳଂକାର
ଅଣାଇଲେ ।
ଭଣ୍ଡାର ଫେଡ଼ି ତିନି ଭାଇଙ୍କି
ବାଣ୍ଟିଦେଲେ ।।୧୦୦
ଭ୍ରଥ ଲଇକ୍ଷଣ ଶତ୍ରୁଘନ ବୀର ।
ସ୍ୱାମୀର ଆଗ୍ୟାଂରେ ଘେନିଲେ ଅଳଙ୍କାର ।।
ଛାମୁରୁ ଅଇଲେ ହରଷ ଚିତ୍ତ ହୋଇଂ ।
ଯେ ବିଧି ବିଧାନ ସାରିଲେ ଜଟା ଫେଇ ।।
ଦିବ୍ୟ ବେଶ ହୋଇ ଦ୍ରଷନ ଆସି କଲେ ।
ଶୁଣ ମାହେଶ୍ୱରୀ ଗୋ ସଦାଶିବ କହିଲେ ।।
ସୀତାହିଁ ଅନ୍ତଃପୁରେ ହୋଇଲେ ମାଜଣା ।
ଶୁଦ୍ଧ ସୁବର୍ଣ୍ଣରୁ ଶ୍ୟରୀର ଅଟେ ଜିଣା ।।
ଉର୍ମିଳା ସୁକୀର୍ତ୍ତି ମାଳତୀ ତିନି ଭୟେଣୀ ।
କିଜାଣି ଦିଶୁଛନ୍ତି ଚନ୍ଦ୍ରସୂର୍ଯ୍ୟ ଅଗ୍ନି ।।୧୦
ସୀତାଙ୍କୁ ପରିବାରୀ ପଣେ ସେ ଖଟିଲେ ।
ସୁବାସିଲା ଜଳେ ଶ୍ରୀଅଙ୍ଗ ଧୋଇଲେ ।।
ଚତୁଃସମ ଘୋରି ସୁଗନ୍ଧ ଲଗାଇ ।
ଏକକୁ ଆରେକ ଘଷନ୍ତି ସୁଖପାଇ ।।
ଦାସୀ ପରିବାରୀ ଅଛନ୍ତି ବହୁତ ।

ସ୍ନାହାନ କଲେ ଦେବୀ ଜନେକ ଦୋହିତ ।।
ଶ୍ରୀଅଙ୍ଗ ପୋଛିଣ ପୋଛିଲେ ଚାରୁ କେଶ ।
ପରିହରଣ କଲେ ନୀଳ ଝିନବାସ ।।
ଚନ୍ଦନ ସିନ୍ଦୂର କଜ୍ୱଳ ଅଳତା ।
ଆଏ ଅଳଙ୍କାର ହୋଇଲେ ଦେବୀ
ସୀତ୍ୟା ।।୨୦
କଉଶୁଲା କୈକେୟୀ ସୁମିତ୍ରା ତିନିଜଣ ।
ଜାନେକୀକି ଅଳଂକାର ମଣ୍ଡନ୍ତି ପୁଣ ପୁଣ ।।
ଏଥୁଅନନ୍ତରେ ସେନାପତିମାନେ ।
ଶ୍ରୀରାମର ଆଜ୍ଞାରେ ଚଳନ୍ତି ସ୍ନାହାନେ ।।
ଦିବ୍ୟ ବେଶ ହୋଇ ଦର୍ଶନ ବେଗେ
କଲେ ।
ଶୁଣ ତ୍ରିପୁର ସୁନ୍ଦେରୀ ଗୋ ଶଙ୍କର
ବୋଇଲେ ।।
ସୀତା ମୁଖ ଚାହିଁ ବୋଲନ୍ତି କଉଶୁଲା ।
ଆଜ ସେ ମୋହୋର ସକଳ ଦୁଃଖଗଲା ।।
ତୁସେ ବଇଦେହୀ ଜନେକଦୁଲଣୀ ।
ସ୍ୱୟଂ ଅବତାର ତୁ ହୋଇଛୁ
କମଳଣୀ ।।୩୦
ତୋହୋର ଥିଲେ ସେ ଶୋହଇ ମୋର
ଘର ।
ତୈଲୋକ୍ୟମୋହିନୀ ଉଦ୍ଧର ମୋର କୁଳ ।।
ତୋତେ ନଦେଖି ମୋର ଦଶଦିଗ ଶୂନ୍ୟ ।
ଆଜ ସେ ପ୍ରକାଶ ହୋଇଲା ମୋର ପୁନ୍ୟ ।।
ଚଉଦବରଷ ଅନ୍ଧାରେ ପଡ଼ିଥିଲୁ ।
ଚନ୍ଦ୍ର ସୂର୍ଯ୍ୟ ଉଦୟେଣ ନ ଦେଖିଲୁ ।।
ଯେବେ ସେ ଆଲୁଅ ଦିଶିଲା ଦଶଦିଶ ।
ପୁତ୍ରବଧୂ ଯହୁଂ ମିଳିଲେ ମୋର ପାଶ ।।
ଶ୍ରୀରାମଚନ୍ଦ୍ର ସୂର୍ଯ୍ୟ ପ୍ରାୟେକ ଦିଶିଲା ।
ଦୁଃଖ ମହାଘୋର ଅନ୍ଧାର ହୋଇଥିଲା ।।୪୦
କଉଶୁଲା କୈକେୟୀ ସୁମିତ୍ରା ଯେତେ ଶାଶୁ ।
ଜାନେକୀକି ଦେଖି ବଚନ ଛନ୍ତି ଭାଷୁ ।।
ଏଥୁ ଅନନ୍ତରେ ଶ୍ରୀରାମର ପାଶ ।
ଭ୍ରଥ ଜଣାଇଲା ବଡ଼ ଅବକାଶ ।।
ଭୋଦେବ ମୋଣୋହି ହୋଇବ କେହ୍ନେ
ବିଧି ।

ଶୁଣି ହସନ୍ତି ପ୍ରଭୁ କରୁଣାବାରିଧି ॥
ଅଯୋଧ୍ୟାରେ ଅଭିଷେକ ହୋଇବୁ
ଯେତେବେଳେ ।
ଅନ୍ନ ଆହାର ହୋ କରିବା ତେତେବେଳେ ॥
ଦେବେ ପିତୃ ବ୍ରାହ୍ମଣେ ଭୁରି ଭୋଜନ
ଦେବି ।
ଅବିଚ୍ଛିନ୍ନେ ଜଗତଜନକଇ ଦାନ
ଦେବି ॥୫୦
ହୋମ ବଳି ତର୍ପଣ ଯାଗ୍ୟଂବିଧି ସ୍ତୁତି ।
ସହସ୍ରେକ ନାମ ଜପଇ ଗାଇତ୍ରୀ ॥
ଯେ ବିଧି ବିଧାନ ଅଛଇ ପୂର୍ବବାଣୀ ।
ସ୍ନାହାନ କରିବଇଂ ନାନାତୀର୍ଥ ପାଣି ॥
ଅନେକ ଦେଶ ବିଦେଶ ବୁଲୁଥିଲୁ ।
ଅକ୍ରିୟା ଆହାର ତର୍ପଣ ନକଲୁ ॥
ତହିଂକି ପ୍ରାଶ୍ଚିର ଦେବଇଂ କିଛି ଦାନ ।
ତେବେ ସେ ଭ୍ରଥ ହୋ ଭୁଞ୍ଜିବୁ ଆମ୍ଭେ
ଅନ୍ନ ॥
ଏବେ ଅଯୋଧ୍ୟା ନଗ୍ର ସଜ ହେଉ ।
ଆପଣେ ଲକ୍ଷ୍ମଣ ଯାଇ ମଣ୍ଡାଇଣ
ଦେଉ ॥୬୦
ଏସନେକ ବୋଲି ଭିତରକୁ ବିଜେକଲେ ।
ମଣିମା ଭୋଦେବ ବୋଲି ଖୁଣ୍ଟିଆ
ଡାକଦେଲେ ॥
ଯିବାର ବେଳେ ଚାହିଂଲେ ସୁଗ୍ରୀବର ।
ବିଭୀଷେଣ ହନୁମନ୍ତ ବାଳୀର କୁମର ॥
ଜମ୍ବେବ ସୁଷେଣ ଗନ୍ଧମାଦନ ।
ନଳନୀଳକଇ ଚାହିଂ ବୋଲନ୍ତି ବଚନ ॥
ଆମ୍ଭଙ୍କୁ ଏହୁ ସୁବଳୟା ଗିରି ମାଲ୍ୟବନ୍ତ ।
ଅଯୋଧ୍ୟାରେ ପ୍ରବେଶ ହୋଇଲେ ସବୁ
ସୁସ୍ଥ ॥
ଏବେ ନବରେ ବେଢ଼ିଣ ତୁମ୍ଭେ ରହ ।
ଭ୍ରଥକୁ ବୋଇଲେ ଏହାଙ୍କୁ ଫଳମୂଳ
ଦିଅ ॥୭୦
ଏତେ ବୋଲିଣ ଦେବ ଭିତରକୁ ଗଲେ ।
କନ୍ଦମୂଳ ଫଳ ମଣୋହିରେ ବିଜେକଲେ ॥
ଏଥୁ ଅନନ୍ତରେ କୈକେୟାର ସୁତ ।
ଋକ୍ଷ କପିଙ୍କି ଫଳମୂଳ ଦେଲାକ ବହୁତ ॥
ଯେ ଯାହାର ବାରି ଘରେ ଯିସ ଥିଲା ।
ଲୋକ ପେଷି ତାହା ବୁହାଇ ଆଣିଲା ॥
ହୋଇଲା ହାଲହୋଳି ନନ୍ଦିଗ୍ରାମ ଯାକ ।
ଗୋଭା ଗୋଭା ହୋଇ ଗୁଣ୍ଡେ ସର୍ବଲୋକ ॥
ଜାଣିମାର ଲୋକେ ବୋଲନ୍ତି ସେ ନ୍ୟନ୍ତୁ ।
ଅପ୍ରସ୍ଥାନି ଲୋକେ ଭୁଞ୍ଜିଣ ତୋଷ
ହୋନ୍ତୁ ॥୮୦
ଏକ ଜଣେକ ତାହା ନପାରିଲାକ ସହି ।
ବୋବାଳି ପାରି ରାଜା ଦ୍ୱାରକୁ ଗଲା କହି ॥
ଦେଖି ଭ୍ରଥବୀର କୋପ ତାକୁ କଲା ।
ଖୁଣ୍ଟିଆ ରାଇ ତାକୁ ଘଉଡ଼ାଇ ଦେଲା ॥
ରାଗେ ସେ ବାପୁଡ଼ା ପଶ୍ଚିମ ଦ୍ୱାରେଣ ମିଳି ।
ଶ୍ରୀରାମଙ୍କୁ ଶୁଣାଇ ବହୁତ ଦେଲା ଗାଳି ॥
ପୋଡୁ ଏ ରାଜ୍ୟ ନଥିବାକ ଆମ୍ଭେ ଏଥ ।
ଦେଶଯାକ ଉଜାଡ଼ କରାଉଅଛି ଭ୍ରଥ ॥
ଭିତରେ ଥାଇ ତାହା ଶୁଣିଲେ ରଘୁପତି ।
ବାହାରେ ଅବକାଶ ହୋଇଲେ ତଡ଼ତି ॥୯୦
କିସ ଗୁହାରି ହୋ ବୋଲିଣ ଆଗ୍ୟାଂ ଦେଇ ।
ଆମ୍ଭର ଛାମୁକୁ ଘେନି ଆସସି ତାହାକଇଂ ॥
ଶୁଣି ପଢ଼ିଆରି ଗଲେ ବେଗ ବେଗ
ହୋଇଂ ।
ଗୁହାରିଆ ଲୋକକୁ ଛାମୁରେ କଲେ
ନେଇଂ ॥
ଦେଖିଣ ପଚାରିଲେ ଜାନେକୀର ନାହା ।
ପଶ୍ଚିମ ଦ୍ୱାରେ ବୋଲୁଥିଲୁ ଯାହା ॥
ସେ କଥା ପୁଣ ହୋ ଶୁଣିମା ଆରବାରେ ।
କିମ୍ପା ବିମୁଖ ତୁ ହୋଇଲୁ ଏତେ କାଳେ ॥
ଶ୍ରୀରାମ ଆଗ୍ୟାଂରେ ଗୁହାରିଆ କହି ।
ଭ୍ରଥର ଥିଲେ ଦେବ ନରହଇ
ମୁହିଂ ॥୧୦୦
ମିଛେହେଂ ଜଟା ବାନ୍ଧି ତପୁସୀ ବୋଲାଇଂ ।
ଦିବସେ ଫଳମୂଳ ରାତ୍ରେ ଅନ୍ନ ଖାଇ ॥
ଏହାର ଜନନୀ ଅଟଇ କକେୟା ।
ସେ ତୋତେ ରଘୁନାଥ ନକଲାଟି କାହା ॥
ତୋତେ ବନକୁ ପେଷି ପୁତ୍ରକୁ ରାଜା
କରାଇ ।
ପରଜାମାନଙ୍କର ବିତ୍ତମାନ ହରଇ ॥
ଶୁଣିଣ ଶ୍ରୀରାମ ଭ୍ରଥକୁ ରୁଆଇଲେ ।
ଲକ୍ଷ୍ମଣ ବିଭୀଷେଣ ଶତ୍ରୁଘନ ଅଇଲେ ॥
ବଶିଷ୍ଠ ଯାବାଳି ବାମଦେବ କଶ୍ୟପ ।
ସୁମନ୍ତ ମନ୍ତ୍ରୀଙ୍କୁ ଚାହିଂଣ ପୁଛନ୍ତି
ରାମନୃପ ॥୧୦
କିହୋ ଭ୍ରଥ ପୁଣ ଅନ୍ୟାୟେ କରଇଂ ।
ପରଜାମାନଙ୍କର ଆୟେ ଦ୍ରବ୍ୟ ହରଇଂ ॥
ବଶିଷ୍ଠେ ବୋଇଲେ ଛୁଇଂଣ ଶ୍ରବଣ ।
କିମ୍ପାଇଂ ତୁମ୍ଭେ ଯେସନେକ କହିଲୁ
ରାମରାଣ ॥
ରଘୁକୁଳନାଥ ଅଙ୍ଗୁଷ୍ଠି ଦେଖାଇ ଦେଲେ ।
ଏସେ ଗୁହାରିଆ କହୁଛି ବୋଇଲେ ॥
ଶୁଣି ଭ୍ରଥବୀର ଯୋଡ଼ଇ ବେନିକର ।
ଶୁଣ ରାମଚନ୍ଦ୍ର ହୋ ଅଯୋଧ୍ୟାଈଶ୍ୱର ॥
ଯେବଣ ଦିନେ ତୁ ବିପୁନ୍ୟେ ବାସ କଲୁ ।
ଶ୍ରୀଚରଣ ପାଦୁକାକୁ ରାଜ୍ୟ ଦେଇଗଲୁ ॥୨୦
ସିଂହାସନେ ରଖାଇ ମୁଂ ଧରାଇ ଦଣ୍ଡଛତ୍ର ।
ସେବା କରିଥାନ୍ତି ମନ୍ତ୍ରୀ ଅମନାତ୍ୟ ॥
ପୂର୍ବେ ଯେସନେକ ଦଶରଥଙ୍କ ଭିଆଣ ।
ତେହ୍ନେ କରି ରାଜ୍ୟ ପାଳଇ ରାମରାଣ ॥
ଅନ୍ୟାୟେ ଉପଦ୍ରପ ନାହିଂ ଦେବ କିଛି ।
ଏ ତୋହୋର ଆଜ୍ଞା ଫରମାଣ ଦେବ ଅଛି ॥
ଆଜମାତ୍ର ଫଳମୂଳ ପାଇଁ ଆଜ୍ଞାଦେଇ ।
ସେନାପତିମାନଙ୍କୁ ଦିଅ ଯେ ବୋଇଲ ॥
ତେଣୁ ଲୋକ ପେଷି ଆଣିଲୁ ଫଳମୂଳ ।
ଏ କଥାକୁ ଗୁହାରି ଯେ କରୁଛି
ରଘୁବାଳ ॥୩୦
ବଶିଷ୍ଠେ ବାମଦେବ କହିଲେ ଏ ବାଣୀ ।
ଯାବାଳି କଶ୍ୟପ ବାମଦେବ ମୁଖୁ ଶୁଣି ॥
ଆପଣେ ବିଚାରିଲେ ହୃଦେ ରଘୁନାଥ ।
ମୋହୋର ସମାନେ ଅଟଇ ହାଦେ ଭ୍ରଥ ॥
ପରଜା ଲଘୁ ଜାତି ଉଶ୍ୱାସ ବକତା ।

କହି ଆସିଲା ମୂଢ଼ା କେତେ କେତେ କଥା ॥
ୟେତେ ବୋଲି ଭିତରକୁ ଗଲେ ରଘୁନାଥ ।
ଘଉଡ଼ି ଦିଅ ବୋଲି ଠାରି ଦେଲେ ହାଥ ॥
ପଡ଼ିଆରିମାନେ ଗଲେ ହାଥ ଦେଇଂ ।
ରହୁ ରହୁ ବୋଲି କୟେକୟା ସୁତ
ବୋଲଇ ।୪୦
ଛାମୁକୁ ଗୁଆଇ ବୋଇଲେ ଆରେ ବାଇ ।
ମୋହର ଅବା ଏଥେ କେଉଣ ନ
ୟୋଗାଇଂ ॥
ମୁହିଂ ପରା ଭାଙ୍ଗିଲି ଅୟୋଧ୍ୟା କଟେକ ।
ଏଡ଼େ ପାପିଷ୍ଟ ତୁମ୍ଭେରେ ଅଟ ମନ୍ଦଲୋକ ॥
ଭଲା ରଘୁନାଥ ବିଚାରି ବୁଝିଲେ ।
ତୋହର ବୋଲ ଶୁଣି ମନ୍ଦ ନ ବୋଇଲେ ॥
ଭାଇରେ ଭାଇରେ ଭେଦ କରାଅ ପରଜା ।
ଏବେ ନଗ୍ରରୁ ମୋର ବାହାର ହୋଇ
ଯାଯା ॥
ଏ ରାମରାଜ୍ୟରେ ସୁଖେ ବର୍ତ୍ତିଥିବୁ ।
କଳିଯୁଗେ ଏଥିର ପରାଭବ ପାଇବୁ ॥୫୦
ଅନେକ କଷ୍ଟରେ ବଞ୍ଚିବାକ ଦିନ ।
ଦୁଃଖେ ନମିଳିବ ତୈଳ ବସ୍ତ୍ର ଅନ୍ନ ॥
ରାଜାର ସୁଦୟା ନୋହିବ କଦାଣ୍ଟିତେ ।
ପରତେ କରି ଧନ ନଦେବେ ସାଧୁତେ ॥
ଆୟେ ଉପୁଜାଇ ବୋଲାଇବେ ଚୋର ।
ରାନ୍ଧିବାର ଅନ୍ନ ଖାଇଯିବ ପର ॥
ଦିନୁ ଦିନୁ ଦୁଃଖ ଯେ ନଥିବାକ କ୍ରିୟା ।
କେଉଂଣି ଦିନେ ଦୟା ନ କରିବେ ଶ୍ରୀୟା ॥
ବ୍ରହ୍ମସି ହୋଇଣ ତୁମ୍ଭେ ପାଇବାରେ
ମୃତ୍ୟୁଗତି ।
ଆହାର ନମିଳିବରେ ବହୁତ ସନ୍ତିପନ୍ତି ॥୬୦
ଦାନ ଧାନ ସ୍ନାହାନ ତୁମ୍ଭେ ନ କରିବ କିଛି ।
ସ୍ୱାମୀର ଦୋଗେହୋକୁରେ ଏତେ କଷ୍ଟ ଅଛି ॥
ଏତେ ବୋଲି ତାହାକୁ ବାହାର
କରିଦେଲେ ।
ବଶିଷ୍ଟ ସୁମନ୍ତଙ୍କୁ ଚାହିଂ ଭ୍ରଥ ବୀର
ବୋଇଲେ ॥

ଶୁଣିଲନା ପରଜା ବୋଇଲେ ଯିସ ରୀତି ।
ମେଳି ବାନ୍ଧି ରାମ ଛାମୁରେ ଗୁହାରି କରନ୍ତି ॥
ନୋହିଲେ ଆଜ ରହନ୍ତାକି ପ୍ରାଣ ।
ଭଲା ବିଚାରି ବୁଝିଲେ ରଘୁକୁଳ ରାଣ ॥
ଏସନେକ ବୁଝି ଯେ ଯାହାର ପୁରେ ଯାନ୍ତି ।
ବୋଲନ୍ତି ସଦାଶିବ ଶୁଣଗୋ
ହେମବନ୍ତୀ ॥୭୦
ଶ୍ରୀରାମ ଲକ୍ଷ୍ମଣକୁ ଆଜ୍ଞାଦେଲେ ରାଇ ।
ଅୟୋଧ୍ୟା ନଗ୍ର ତୁ ତୋଳାଅ ବେଗ ଯାଇ ॥
ଆଜ୍ଞା ପ୍ରମାଣେ ସୁମିତ୍ରାସୁତ ଗଲା ।
ସାଙ୍ଗରେ ରଥଗଜ ବହୁତ ସନ୍ୟ ନେଲା ॥
ଭ୍ରଥ ଶତ୍ରୁଘନ ସୁମନ୍ତ ସହିତେ ।
ବଶିଷ୍ଟ ହିଂ ଗଲେ ଅନୁକୂଳ ନିମନ୍ତେ ॥
ଅୟୋଧ୍ୟା କଟକେ ହୋଇଲେ ପରବେଶ ।
ଦେଖି ନରନାରୀ ଅନେକ ହରଷ ॥
ଏଥୁଅନନ୍ତରେ ରାଜାର ନବରେ ।
ମିଳିଲେ ତିନିଭାଇ ଅନେକ ସମ୍ଭାରେ ॥୮୦
ବଶିଷ୍ଟେ ଅନୁକୂଳ ଦେଲେ ବେଳକାଳ
ଜାଣି ।
ଶୁଭ ପୋତାଇଲେ ନାଗନାଡ଼ି ଗଣି ॥
ଲକ୍ଷ୍ମଣ ଶ୍ରୀପୟରେ ଚାଲିଗଲେ ଯେଣେ ।
ସୂତ୍ରକାର ନବରେ ସୃଜିଲେକ ତେଣେ ॥
ନୁହଇଂ ମନୁଷ୍ୟ ସେ ସ୍ୱୟେଂ ବିଶ୍ୱକର୍ମା ।
ଯତନେ ପଠିଆଇ ଦେଇଅଛି ଦେବବ୍ରହ୍ମା ॥
ନଗ୍ର ନରନାରୀ ରତି କାମ ଜାଣି ।
ଅମରାବତୀ ଜାଣି ଅୟୋଧ୍ୟା ପୁରମଣି ॥
ରାଜାର ନବରେ ହୋଇଲେ ଧାଡିକାରେ ।
ଦେଖନ୍ତି ନବର ପଶିଣ ଭିତରେ ॥୯୦
ଏଥୁ ଅନନ୍ତରେ ଜାନେକୀର ସାଙ୍ଗ ।
ନଗର ଦେଖିବାକୁ ସୁମନ୍ତକୁ ପଠିଆଇଂ ॥
ଆପଣେ ବାରୁଲାଗି ହୋଇଣ ବିଜେକଲେ ।
ଅୟୋଧ୍ୟାକୁ ବୋଲି ଲାଗି ବାରୁ
ଛାଡ଼ିଦେଲେ ॥
ପବନନ୍ଦୁଂ ବେଗେ ଚଳିଲା ହୟବର ।
ଆଖିପିଛାଡ଼ନ୍ତେ ଗଲା ବହୁତ ଦୂର ॥

ତିନି କୋଶ ଅୟୋଧ୍ୟା ନିମିଷକେ ଯାଇ
ହୋଇଂ ।
ଯିବାର ବେଳେ ଚିହ୍ନି ନ ପାରିଲେ କେହି ॥
ସିଂହଦ୍ୱାର ବାଟେ ନବରେ ଯାଇ ପଶି ।
ଘୋଡ଼ାରୁ ଉତୁରିଲେ ଦଶରଥଙ୍କର
ବଛି ॥୧୦୦
ଥିଲାର ଲୋକମାନେ ଧଇଲେ ତୁରଙ୍ଗମ ।
ଭିତରକୁ ବିଜୟେ କଲେକ ଶ୍ରୀରାମ ॥
ଏସନେକ ବେଳେ ଯାଇ ମିଳିଲେ ଲକ୍ଷ୍ମଣ ।
ବଶିଷ୍ଟ ସହିତେ ଅମନାତ୍ୟଗଣମାନ ॥
ଶ୍ରୀରାମ ଆସନ୍ତେ ଗୋଡ଼ାଇ ନପାରିଲେ ।
ୟେମନ୍ତେ ଆସି ଭଲା ଲାଗ ଦେଲେ ॥
ଗୁଘନାଥର ତୁଲେ ପଚୁଆର ହୋଇ ଅଛନ୍ତି ।
କେତେହେଂକ ଦୂରେ ଭ୍ରଥକୁ ଦେଖନ୍ତି ॥
ସୁଗ୍ରୀ ବିଭୀଷେଣ ହନୁମନ୍ତ ବୀର ।
ଶ୍ରୀରାମକୁ ଚାହିଂଣ କରନ୍ତି ବିଚାର ॥୧୦
ଠାକୁରେ ବିଜେ କଲେ ହାଦେ ଦେଖ ।
ସାଙ୍ଗେ ସୁଗ୍ରୀହନୁ ବିଭୀଷେଣ ସାକ୍ଷ ॥
ଏତେ ବୋଲିଣ ଦର୍ଶନ ଯାଇଂକଲେ ।
ଶ୍ରୀରାମକୁ ଚାହିଂଣ ଭ୍ରଥବୀର ବୋଇଲେ ॥
କିମ୍ପା ରଘୁନାଥ ଅବେଭାର କଲୁ ।
ଅପ୍ରତିଷ୍ଠା ନବରକୁ କିପାଇଂ ଅଇଲୁ ॥
ଚଉଦ ବରଷ ହୋଇଲା ଯେଥି ନାହିଂ
ଜନ ।
ଏ ରାଜ୍ୟ ଗୃହ ଗୋଟା ହୋଇଥିଲା ଶୂନ୍ୟ ॥
ପ୍ରେତ ପିଶାଚେ ଏଥି ବାସ କରିଥିଲେ ।
ଅଗମ୍ୟ ଦେଖି ବ୍ରହ୍ମରାକ୍ଷାସ ରହିଲେ ॥୨୦
ସ୍ୱଭାବେ ହୋମ ଯଜ୍ଞ ନୋହିଲାକ କିଛି ।
ଅପାର କାଳୁଂ ଏ ନଗ୍ର ତୁଛା ହୋଇଅଛି ॥
ଦଶରଥ ରାଜାର ପଡ଼ିଥିଲା ଏଥି ଶବ ।
ସେ ଦିନୁ ଲୋକ ଏଥି ନାହିଂନା ରାଘେବ ॥
ଏବେ ସେ ନବତନ କରି ଘର ତୋଳା
ହୋଇଲା ।
ହୋମ କରିବାକୁ ବଶିଷ୍ଟ ବୋଇଲା ॥
ତୁମ୍ଭେ ସେ ରାଜା ରାମ ଏଥିକି ଅଧିକାରୀ ।

ଅପ୍ରତିଷ୍ଠା ନବରକୁ କେମନ୍ତ ଅଇଲା
ରାବଣାରି ॥
ଶୁଣି ରାମଚନ୍ଦ୍ର ବୋଇଲେ ଭାଇ ଶୁଣ ।
ଏ ନବରେ ଯେତେକ ଥିଲା
ଅବିଗୁଣ ॥୩୦
ସେ ଦୋଷମାନ ସକଳ କ୍ଷୟେ ଗଲା ।
ବିଷ୍ଣୁର ଭଗତ ଲୋକ ଯହିଂ ପାଦ ଦେଲା ॥
ସୁଗ୍ରୀ ବିଭୀଷେଣ ହନୁମନ୍ତ ତିନି ।
ଏହାଙ୍କୁ ସମାନ ନୁହନ୍ତି ସୁରମୁନି ॥
ଏ ପୁଣ୍ୟ ପୁରୁଷଏ ପରଉପଗାରୀ ।
ଏହାଙ୍କୁ ପଟାନ୍ତରକି ଆନ ଲୋକ
ହୋଇପାରି ॥
ବାସୁଦେବର ସେବକ ଏ ଅଟନ୍ତି ନିଶ୍ଚୟେ ।
ଏହାରଙ୍କର ସଙ୍ଗେ ଥିଲେ କିଛି ନାହିଂ
ଭୟେ ॥
ଶୁଣି ନାହୁଂ କିହୋ ପୂର୍ବର କାହାଣୀ ।
ବାସୁଦେବ ଚରଣ ଧୋଇଲେ ଯେବଣ
ପାଣି ॥୪୦
ସେ ଜଳ ସୁରେଶ୍ୱରୀ ବୋଲିଣ
ବୋଲାଇଲା ।
ଜାଣି ସଦାଶିବ ଶିରେଣ ଧଇଲା ॥
ଅଦ୍ୟାପି ପୃଥ୍ୱୀରେ ଅଛନ୍ତି ଯେତେ ଜଳ ।
ଗଙ୍ଗା ପ୍ରସାଦେ ସେ ହୋଇଲେ ସୁଫଳ ॥
ବିଷ୍ଣୁ ବିଷ୍ଣୁ ବୋଲି ସିଞ୍ଚିଲେ ପବିତ୍ର ।
ତେଣୁ ସେ ପବିତ୍ର ହୋଇଲାକ ଜଗତ ॥
ବ୍ରାହ୍ମଣ ଚାଣ୍ଡାଳକୁ ଛୁଇଂଲେ ସ୍ନାନ କରି ।
ସ୍ନାନ ନକଲେ ସେହୁ ଚଣ୍ଡାଳରେ ସରି ॥
ଗଙ୍ଗା ବାସୁଦେବ ଚରଣେ ସେବା କଲେ ।
କଞ୍ଜଜନକଇ ଏଡ଼େ ପଦ ଦେଲେ ॥୫୦
ବଡ଼ ଲୋକକୁ ଆଶ୍ରେ କଲେ ବଡ଼ଲୋକ
ହୋଇ ।
ତୁ କିମ୍ପା ଅଜ୍ଞାନ ହୋଇଲୁ କଏକଇ ॥
ପ୍ରହଲ୍ଲାଦ କୁମର ବିଷ୍ଣୁକୁ ଆଶ୍ରେ କଲା ।
ପ୍ରସନ୍ନ ହୋଇ ତାକୁ ନାରାୟେଣ ବର
ଦେଲା ॥

ରାକ୍ଷସର ପୁତ୍ରକୁ କଲେ ସୁର ରାଏ ।
ବିଷ୍ଣୁର ଭଗତି ହୋଇଲେ ନିଷ୍ଫଳ ନଯାଏ ॥
ଯେ ସେ ସୁଗ୍ରୀବ ରାଏ ବିଭୀଷେଣ ନୃପତି ।
ସଂଗୋତ୍ରେ ମରାଇ ମୋତେ ସେବା
କରିଛନ୍ତି ॥
ଏହାଦେ ହନୁମନ୍ତ ପବନତନୟେ ।
କହିଲେ ନସରଇ ଏହାର ବିନୟେ ॥୬୦
ପରଉପଗାରୀ ଏ ଅଟନ୍ତି ତିନିଜଣ ।
ଏମାନଙ୍କ ସମାନ ନୁହନ୍ତି ସୁରଗଣ ॥
ସ୍ୱରୂପ ମୁକତି ଦିଅନ୍ତି ନରହରି ।
ନାମ ବୋଲାଇଲା ଲକ୍ଷ୍ମୀର ଅଧିକାରୀ ॥
ଏହାଙ୍କ ଯୋଗୁଂ ସେ ଅସୁର ବଳ ମଲା ।
ଦେବତାମାନଙ୍କର ଶତ୍ରୁ କ୍ଷୟେ ଗଲା ॥
ବିଷ୍ଣୁ ତେଜ ନଥିଲେ ଦୈତ୍ୟଙ୍କୁ ନୋହେ
ମାରି ।
ଦଇତ ମାରି ନାମ ବହିଲେ ଦଇତାରି ॥
ଯେ ସେ ଦତ୍ୟ ମାରଇ ସେ ବୋଲାଇ
ନାରାୟେଣ ।
ମୁଂ ଏହାନ୍ତ ମଣଇ ଯେ କମଳା
ରମଣ ॥୭୦
ଠାକୁର ସେବକ ବାରଣ ନଯାଇ ।
ବିଷ୍ଣୁଙ୍କୁ ଆଶ୍ରେକଲେ ବିଷ୍ଣୁ ତେଜହୋଇ ॥
ତେଣୁ ସେ ଭ୍ରଥ ହୋ ମୋହୋର ଭୟ
ନାହିଂ ।
ପରଉପଗାରୀ କମଳାଦେବୀ ସାଇଂ ॥
ଏ ତିନି ପୁରୁଷେ ଅଟନ୍ତି ପରମ ହିତା ।
ଏମାନଙ୍କ ପ୍ରସାଦେ ମୁଂ ପାଇଲଇଂ ସୀତା ॥
ଏ ପୁଣ୍ୟ ପ୍ରାଣୀଙ୍କର ପାଦରେଣୁ ଲାଗି ।
ଦୁଷ୍କୃତମାନେ ପଳାଇଲେ ଭାଙ୍ଗି ॥
ଅଶ୍ୱମେଧ ଯାଗ ଯେବଣ ଠାରେ କରି ।
ଏହାଙ୍କ ଚରଣ ପଡ଼ିବା ଠାବକୁ ନୋହେ
ସରି ॥୮୦
ଆଜହୁଂ ଯେ ନବର ହୋଇଲା ପବିତ୍ର ।
ଲୋକ ଆଚାରକୁ ହୋମ କରିବାକ ଯେଥ ॥
ଏସନେକ ଆଜ୍ଞା ବୋଲି ବିଜେ
କରିଗଲେ ।

ବୁଲିଣ ନବର ଆକୃତି ଦେଖିଲେ ॥
ସୁବର୍ଣ୍ଣର କଳସ ଦିଶନ୍ତି ପନ୍ତି ପନ୍ତି ।
ମେଢ଼ ମଣ୍ଡୋପ ଅଟାଳି ଜଗତୀ ॥
କେବଣ ଘର ଗୋଟା ସୁବର୍ଣ୍ଣ ନିର୍ବାଣ ।
କେବଣ ଘର ଗୋଟା ମର୍କତ ରସାଣ ॥
କାହିଂ ପରବାଳ କାହିଂ ରୁପା ଚାଳ ।
କେବଣ ଘର ଗୋଟା ମାଣିକ୍ୟେ
ଖୟମାଳ ॥୯୦
କାହିଂ କୁରୁବିନ୍ଦ ପୁଷ୍ପରାଗ ଶେଣୀ ।
କେବଣ ଘର ଗୋଟା ଅମୂଲ୍ୟ ନାନା ମଣି ॥
କାହିଂ ତେଜପତ୍ର ଘେନିଣ ଛାଇଲା ।
କେବଣ ଘର ଯେ ହୀରାରେ ନିର୍ମାଇଲା ॥
ଚନ୍ଦନ କାଠରେ କେବଣ ଘରଗୋଟି ।
କାହିଂ ମାଣିକ୍ୟରେ ପଦ୍ମରାଗ ଫୁଟି ॥
କାହିଂ ନବରତ୍ନ ପିତୁଳି ନିଘଞ୍ଚର ।
ସ୍ଫଟିକରେ ନିର୍ବାଣ ଅଛଇ କେବଣ ଘର ॥
ତମ୍ୱାର ପାବଛ କାହିଂ କଂସାର ପାଚେରୀ ।
କେବଣହିଂ ଘର କୃଷ୍ଣ ଅଗ୍ରେ ଅଛି
ତୋଳି ॥୧୦୦
ଗଣ୍ଡିଅନାବତା ପାଟ ଝୁମ୍ପା ଲାଗଇଂ ।
ଗିଲିମି ଖଣ୍ଡଶାଳ କାହିଂ ପାଡ଼ି ଅଛଇ ॥
ପୋୟେଳାର ଝଡ଼ା କାହିଂ ପୁଞ୍ଜି ପୁଞ୍ଜି
ମୋତି ।
କାହିଂ ଦଧିମୁଖ ଯେସନ ଚନ୍ଦ୍ରଜ୍ୟୋତି ॥
ସୁନ୍ଦେରୀ ବସନ କାହିଂ ପଡ଼ିଅଛି ଟେରା ।
କାହିଂ ନେତ ଚିରାଳ ଉଡ଼ଇ ଫରହରା ॥
ନବରତ୍ନ କାହିଂ ଚନ୍ଦ୍ରାତପ ଜାଣି ।
କାହିଂ କେରି କେରି ଲମ୍ୱଇ ପୀତମଣି ॥
ପିଉଳ ପାବଛ କାହିଂ ବନ୍ଧାଫେର ମାଳ ।
କେବଣ ଘର ଗୋଟା ଦିଶଇ
ମହାଭଲ ॥୧୦
ଅବକାଶ ନିଅବକାଶ ଅନ୍ତେଶ୍ୱର
ପୁରମାଳ ।
ମାତାଙ୍କର ନବର ବିଚିତ୍ର ବିଧାନ ॥
ଆସ୍ଥାନ ନବର କାହିଂ ହାଥୀ ଘୋଡ଼ା ଶାଳ ।

ଦେଖିଣ ପ୍ରଶଂସା କରନ୍ତି ରଘୁବାଳ ॥
ବିଭୀଷେଣ ସୁଗ୍ରୀବର ପଚାରନ୍ତି ଚାହିଁ ।
ସେମାନେ ବୋଇଲେ ଦେବ ମଞ୍ଚେ ଏମନ୍ତ ନାହିଁ ॥
ଶ୍ରୀରାମ ବୋଇଲେ ହୋ ରାବଣ ଘର ଭଲା ।
ହନୁମନ୍ତ ଦେଖି ଆମ୍ଭ ଛାମୁରେ କହିଲା ॥
ଶୁଣି ପବନସୁତ ଯୋଡ଼ଇ ବେନିକର ।
ଭୋ ଦେବ ଯାହା ଆଜ୍ଞା ଦେଲୁ ରଘୁବୀର ॥୨୦
ରାବଣ ନବର ନୁହ ଏଡ଼େ ସଞ୍ଚ ।
ଠାବ ବିରୋଳ ସେ ନ ଦିଶଇ ଘଞ୍ଚ ।
ବିଭୀଷେଣ ବୋଇଲା ଶୁଣିମା ଗୋସାଇଂ ।
ଏସନେକ ନବର ଦେଖିଲା ମୋର ନାହିଁ ॥
ସୁଗ୍ରୀବର ପ୍ରଶଂସା କରଇ ବହୁତ ।
ଦୃଷ୍ଟିକାରମାନେ ଦୃଷ୍ଟି କରନ୍ତି ବହୁତ ॥
ଶୁଣିଣ ଶ୍ରୀରାମ ଭ୍ରଥକୁ ପ୍ରଶଂସି ।
ନବର ଦେଖି ଶ୍ରୀରାମ ବାହୁଡ଼ିଣ ଆସି ॥
ବାଗୁ ଆରୋହିଣ ଆପଣେ ଧାପ ଦେଲେ ।
ନନ୍ଦିଗ୍ରାମେ ଯାଇ ପ୍ରବେଶ ହୋଇଲେ ॥୩୦
ନଗ୍ରରେ ପ୍ରବେଶ ହୋଇଲେ ତଡ଼ତି ।
ବଶିଷ୍ଠ ମହାମୁନିଙ୍କି ଚାହିଁଣ ବୋଲନ୍ତି ॥
ଭୋମୁନି ଅଯୋଧାରେ ପ୍ରବେଶ ଅନୁକୂଳ ।
ଖୋଜି ଶୁଭ ଲଗ୍ନ ମାହିନ୍ଦ୍ରର ବେଳ ॥
ବଶିଷ୍ଠ ବୋଇଲେ ମୁଂ ଅଛଇ ନା ଜାଣି ।
ଯେବଣ ଦିନେ ପାଟେ ବସିବୁ ରଘୁମଣି ॥
ଆଗହୁଂ ଏହା ମୁଂ କରିଅଛଇ ବିଚାର ।
ଆଷାଢ଼ ଶୁକଳ ଦଶମୀ ବୁଧବାର ॥
ବିଶାଖା ନକ୍ଷତେ ବିଛା ଚନ୍ଦ୍ର ଥିବ ।
ପୁଷ୍ୟ କର୍କଟକୁ ତୋର ପଞ୍ଚମ ହୋଇବ ॥୪୦
କୈଲବ ନାମେ କରଣ ବଜ୍ରନାମେ ଯୋଗ ।
ଏ ତୋର ନକ୍ଷତ୍ରକୁ ପରମ ମିତ୍ର ଭୋଗ ॥
ତିନିଘଡ଼ିମାନେ ଏଥୁ ଆମ୍ଭେ ଯିବା ।

ପହଡ଼େକ ଭିତରେ ଅଯୋଧାରେ ମିଳିବା ॥
ଏକାଦଶୀ ଦିନ ହୋଇବୁ ଅଭିଷେକ ।
ତେବେ ସେ ଆନନ୍ଦ ହୋଇବ ତୈଲୋକ୍ୟ ॥
ଶୁଣିଲେ ରଘୁନାଥ ବଶିଷ୍ଠଙ୍କର ବାଣୀ ।
ହୋଇ ହୋଇ ବୋଇଲେ ଧାନୁକୀ ଚୂଡ଼ାମଣି ॥
ଲେଖନ୍ତେ ମଧରେ ଅଛଇ ଏକଦିନ ।
ଶୁଣି ଭିତରକୁ ଗଲେକ ଶ୍ରୀରାମ ॥୫୦
ଏଥୁଅନନ୍ତରେ ଶୁଣିମା ଦିବ୍ୟରସ ।
ରାମ ହୋଇବେ ଅଯୋଧାରେ ପରବେଶ ॥
ଦିନେ ଥାଉଂଣ ଭ୍ରଥକୁ ଆଜ୍ଞା ଦେଲେ ।
ଚତୁରାଙ୍ଗ ବଳ ସାଜ ହୋ ବୋଇଲେ ॥
କାଲି ଶୁଭବେଳେ ଅଯୋଧାକୁ ଯିବା ।
ପ୍ରହରକ ସମୟେ ପ୍ରବେଶ ହୋଇବା ॥
ସୁମନ୍ତକୁ ଚାହିଁଣ ବୋଇଲେ ରାବଣାରି ।
ରାତ୍ର ପାହିଲେ ଥାଟ ଆଣିମୁ ସଜକରି ॥
ଯେତେ ପୂର୍ବବିଧି ରାଜାଙ୍କ ଭିଆଣ ।
ତେସନେକ କରି କର ହୋ ତିଆରଣ ॥୬୦
ଏସନେକ କହି ରାମ ଭିତରକୁ ଗଲେ ।
ଭ୍ରଥ ସୁମନ୍ତ ଦୁହେଂ ବାହାରେ ରହିଲେ ॥
ସିଂହଦ୍ୱାରେ ଆସି କଲେକ ବେହରଣ ।
ନନ୍ଦିଗ୍ରାମରେ ବହନ ଦିଆଇଲେ ଘୋଷଣ ॥
କାଲିର ରୟଣୀ ପ୍ରଭାତ ବୁଧବାରେ ।
ଶ୍ରୀରାମ ବିଜେ କରିବେ ଅଯୋଧା ନଗରେ ॥
ରଥ ଗଜ ଅଶ୍ୱ ସଜ କରିଥିବ ।
ସର୍ବ୍ବ ହୋଇଣ ଯେ ନୃପତି ସଙ୍ଗେ ଯିବ ॥
ଏସନେକ ବୋଲି ଦାଉଣ୍ଡି ବଜାଇଲା ।
ଶୁଣି ନଗ୍ରଲୋକଙ୍କର ଆନନ୍ଦ ହୋଇଲା ॥୭୦
ଏଥୁଅନନ୍ତରେ ସୁମନ୍ତ ମନ୍ତ୍ରୀବର ।
ଅଯୋଧା ନବରକୁ ପେଷିଲା ହାଦେ ଚାର ॥
ବୋଇଲେ ଡଗରା ତୁ ଏହିକ୍ଷଣି ଯିବୁ ।
ନଗ୍ରଯାକ ସବୁ ମଣ୍ଡାଇଣ ଆସିବୁ ॥
ସବୁଙ୍କରି ଦ୍ୱାରେ ଥିବ ପୂର୍ଣ୍ଣକୁମ୍ଭ ।
କଦଳୀ ନଟୀକାଳ ଚୂତଡ଼ାଳ ଆରମ୍ଭ ॥

ଦଧି ମାଛ ଶ୍ୱେତ ପାରୁଆ ରାଜହଂସ ।
ଚିତ୍ରଲେଖନ ହୋଇଥିବ ସବୁଙ୍କରି ବାସ ॥
ପିଡ଼ାଙ୍କର ଉପରେ ନେତର ଚିରାଳ ।
ଚଉକତି ଲମ୍ବିଥିବ ବିବିଧ ପୁଷ୍ପମାଳ ॥୮୦
ଠାବେ ଠାବେ ଉଭା ଦୋସରା ତ୍ରୋଣା ଥିବ ।
ଶ୍ୱେତ ଛତ୍ର ଦେଖିଲେ ହୁଳାହୁଳି ଦେବ ॥
ଦ୍ୱାରେ ଦ୍ୱାରେ କଦଳୀ ବୃକ୍ଷ ପୋତିଥିବ ।
ରାଜଦାଣ୍ଡେ ବାଛି ବାଲି ପକାଇବ ॥
ସମତୁଲ କରି ପାଡ଼ିବ ପାୟେଡ଼ା ।
ପନୀର ଗୋଳି ଦେବ ଚନ୍ଦନ ଛଡ଼ା ॥
କୋଳହଳ ଶଙ୍ଖ ଶୁଭିବ ଚଉପାଶ ।
ଏସନେକ ଭିଆଣ ଭିଆଇଣ ଉଆସ ॥
ଏତେବୋଲି ଚାର ପେଷିଲା ତଡ଼ତି ।
ପୁଣି ନିଜ ପୁତ୍ରକୁ ରାଇଲାକ କତି ॥୯୦
ବୋଇଲା ଚିତ୍ରସେନରେ ଏହିକ୍ଷଣି ଯିବୁ ।
ଅଯୋଧାରେ ଶ୍ରୀନବର ମଣ୍ଡାଇଣ ଥିବୁ ॥
ଦେବାର୍ଚ୍ଚନା ନବର ଆବର ମୋଣୋହି କୋଠା ।
ଭିତର ଲିପାଇ ଯେ ବାହାର ଚୂନ ଛଟା ॥
ଆଖଡ଼ା ଶାଳ ମଡ଼ଫୁଲି ଘର ।
ପାଟେରୀ କାଙ୍ଗୁଲା ଅଟାଳି ବନ୍ଧାଫେର ॥
କାଙ୍ଗୁଲା ଗୋଟିକେ ପାଟାଙ୍ଗ ଥିବ ଉଡ଼ି ।
କି ଅବା ପୁର ଗୋଟା ଆକାଶୁ ଥିବ ପଡ଼ି ॥
ଏସନେକ ଭିଆଣ କରିବୁ ତୁ ବାବୁ ।
ଯେମନ୍ତ ଶ୍ରୀରାମ ତହିଁ ପ୍ରଶଂସା ପାଇବୁ ॥୧୦୦
ଏତେ ବୋଲି ପୁତ୍ରକୁ ପେଷିଲା ମନ୍ତ୍ରୀବର ।
ପୁଣି ଯେକ ପୁତ୍ର ରାଇଲାକ ତାର ॥
ବୋଇଲା ଏହିକ୍ଷଣି ଚଳସି ତୁ ବେଗେ ।
ଯାଇଣ କହିବୁ ପରଜାଙ୍କ ଆଗେ ॥
ନୃପତି ପୟାଣ କରିବେ ପ୍ରଭାତେ ।
ରାତ୍ରକ ମଧରେ ବାଟ ଚାଛନ୍ତୁ ଯୁଗତେ ॥
ଖାଲ ଖଣା ଭୂଇଂ ଠେଙ୍ଗ ଟିକରମାନ ।
ସୂତା ଧରାଇଣ ସଳଖ ହାଣ ॥

ଗୋଡ଼ି ମାଟି ପିରିକି କଢ଼ାଇ ପକାଅ ବାଲି
ପୁଣ ।
ଯେମନ୍ତେ ପାଦକଇ ନଲାଗଇ ବିକଳ
ପୁଣ ॥୧୦
ଯେ ଯାହାର ଦେଶର ବାଜଣା ବାଦ୍ୟମାନ ।
ଠାବେ ଠାବେ ବଜାଉଥିବ ଅବିଛିନ୍ନ ॥
ଦେଶ ଦେଉଳର ସମ୍ପ୍ରଦାମାନେ ଆସି ।
ନୃତ୍ୟ କରୁଥିବେ ବଜାଇ ତାଳ ମର୍ଦ୍ଦଳ
ବଂଶୀ ॥
ଭାଟେ କଏବାର ବ୍ରାହ୍ମଣେ ବେଦପଢ଼ି ।
ହାଟ ବାଟେ ଲୋକେ ଥିବେ ଯେ ଯାହା
ଉହାଡ଼ି ॥
ଯେ ଯାହା ଦେଶରେ ଆଲମ୍ବ ଚିରାଳ ।
ଭିଆଇ ଆଣିଥିବେ ମାଳ ମାଳ ॥
ରାତ୍ରକ ଭିତରେ ବେଗେ ସଞ୍ଚ ଏହା ।
ପ୍ରଭାତେ ବିଜେ ସେ କରିବେ
ରଘୁନାହା ॥୨୦
ଏସନେକ ବୋଲି ପେଷିଲାକ ପୁତ୍ର ।
ଏଥୁଅନନ୍ତରେ କୟେକୟା ସୁତ ॥
ଲକ୍ଷେକ ରାଜାଙ୍କୁ ପଠିଆଇଲେ କହି ।
କାଲି ଅଯୋଧ୍ୟାକୁ ବିଜେ କରିବେ
ରଘୁସାଇଁ ॥
ଯେ ଯାହାର ରଥ ଅଶ୍ୱ ପଏଦାର ।
ସଜ ହୋଇଣ ଥିବେ ଆସି ସିଂହଦ୍ୱାର ॥
ବିଭୀଷେଣ ସୁଗ୍ରୀବରକୁ ସେହି କଥା
କହି ।
କାଲି ଅଯୋଧ୍ୟାରେ ବିଜେ କରିବେ
ସୀତାସାଇଁ ॥
ଅଷ୍ଟସେହ୍ମା ତୁମ୍ଭେ ହୋ ପଚିଶ ଯୂଥପତି ।
ଅଙ୍ଗଦ ହନୁମନ୍ତ ଜମ୍ୱେବ ପ୍ରଭୃତି ॥୩୦
ଋକ୍ଷ ରାକ୍ଷସ ବାନର ବଳ ଯେତେ ।
ସିଂହାଦ୍ୱାରେ ଉଭାରି ଥିବେଟି ସମସ୍ତେ ॥
ଏସନେକ ବୋଲି ଆସ୍ଥାନୁ ଉଠିଗଲା ।
ସୂର୍ଯ୍ୟଦେବତା ମେରୁ ଉହାଡ଼େ ରହିଲା ॥
ତିମିର ଆଚ୍ଛାଦିଲା ଦଶଦିଗ ଯାକେ ।
ନିଶ୍ଚେଷ୍ଟ ହୋଇଣ ଶୋଇଲେ
ସର୍ବଲୋକେ ॥
ନିଯୋଗୀ ପରିବାରୀ ବିଶୋଇ ପଡ଼ିଆରି ।
ଏମାନଙ୍କୁ ଝଗଡ଼େ ନିଦ୍ରାହିଂ ନମାଡ଼ି ॥
ସୁମନ୍ତ ମନ୍ତ୍ରୀ ଆଖି କଷାହିଂ ନ କଲା ।
ସିଂହଦ୍ୱାରେ ବସିସବୁ ନିର୍ଭାକଲା ॥୪୦
ଯହିଁକି ଯିସ ନିମନ୍ତେ ପେଷଇ ଚାର ।
ବାରତା ପାଇଲା ସକଳ ଠାବର ॥
ଯେତେକ ଆଜ୍ଞା ଥିଲା ସବୁ ନିର୍ଭା କଲେ ।
ଦେବତାଙ୍କର ବୋଲେ ତାହା ବିଶ୍ୱକର୍ମା
କଲେ ॥
ଶୁଣି ମନ୍ତ୍ରୀବର ହୋଇଲା ହରଷ ।
ପୂର୍ବଦିଗେ ଦିଶିଲା ଅରୁଣ ପ୍ରକାଶ ॥
ପାହିବାକୁ ଅଛି ବେନିଘଡ଼ି ରାତି ।
ସୁମନ୍ତ ନିତ୍ୟକର୍ମ ସାରିଲା ତଡ଼ନ୍ତି ॥
ଏସନେକ ସମଏ ଶ୍ରୀରାମଚନ୍ଦ୍ର ରାଏ ।
ଶେଯ୍ୟା ଛାଡ଼ିଣ ରାମ ବେଗେ ବେଗେ
ଆଏ ॥୫୦
ବାହାରେ ଅବକାଶ ସୁମନ୍ତ ଦ୍ରଶନ କଲା ।
ମନ୍ତ୍ରୀକି ଚାହିଂ ଶ୍ରୀରାମ ବୋଇଲା ॥
ଦିଆଅ ଟମକ ଆସନ୍ତୁ ସର୍ବସନ୍ୟ ।
ଶୁଣିଣ ସୁମନ୍ତ ଆସଇ ବହନ ॥
ସିଂହଦ୍ୱାରେ ଯାଇ ଟମକ ଦିଆଇଲେ ।
ଶୁଣି ସର୍ବଲୋକ ଆନନ୍ଦ ହୋଇଲେ ॥
ଆଗହୁଂ ସଜ ହୋଇଥିଲେ ସଇନି ।
ନିଶାଣ ରାବ ଶୁଣି ଅଇଲେ ବହନି ॥
ମନୁଷ୍ୟ ରାକ୍ଷାସ ଋକ୍ଷ କପି ମିଶି ।
ଅସଂଖ୍ୟ ସଇନି ପୂରିଲେ ଦଶଦିଶି ॥୬୦
ବନଗିରି ପର୍ବତ ମାଡ଼ି ଆସନ୍ତି ସର୍ବଦଳ ।
ମହାର୍ଣ୍ଣବ ଜାଣି ଶୁଭଇ ମୁଖର ଚହଳ ॥
ଯାଆନ୍ତା ଯାଉଛି ରହନ୍ତା ଅଛି ରହି ।
ସଇନି ସମ୍ପର୍ବରେ ପୂରିଲାକ ସର୍ବ ଭୂଇଂ ॥
ଏସନେକ ସମଏ ଗୁହ ନାମେ ଶବର ।
ଦର୍ଶନ କଲା ଆସି ଶ୍ରୀରାମ ପୟର ॥
ଲକ୍ଷେ ଶ୍ୱେତ ଚାମର ଅଛଇ ଆଣିଲା ।
ଦେଖିଣ ଶ୍ରୀରାମ ଅନେକ ପ୍ରଶଂସିଲା ॥
ବୋଇଲେ ଭୋ ମଇତ୍ର ଅଇଲୁ ତୁମ୍ଭ
ପୁଣ୍ୟେ ।
ଅନେକ ଦୁଃଖ ହାଦେ ପାଇଲୁ ଘୋର
ବନେ ॥୭୦
ଏବେ ଅଯୋଧ୍ୟା ନଗ୍ରକୁ ଚାଲ ଯିବା ।
ଦୁଃଖ ସୁଖ କଥା ତହିଂ କୁହାକୁହି ହେବା ।
ଯାଅ ଆଗିଆଣି ହୁଅସି ହୋ ମଇତ୍ର ।
ଧରାଇ ଥିବ ମୁଣ୍ଡେ ମୟୂର ଝାଲିଛତ୍ର ॥
ଏ ବଚନ ଶୁଣି ଶବର ବେଗେ ଗଲା ।
ସିଂହଦ୍ୱାରେ ବସି ବାଜଣା ବଜାଇଲା ॥
ବିଜିଘୋଷ କୁଣ୍ଡଳୀ ଟାଙ୍ଗୁ କମଘୋରା ।
ମର୍ଦ୍ଦଳ ଟୋୟେଳା ହୁଡୁକ ଘୁମୁରା ॥
ବଉଂଶ କାହାଳୀ ବାଜଇ ଗିରି ଗିରି ।
ନାଚନ୍ତି କନ୍ଧ ମହ୍ଲାର ପେଲି ପେଲି
କରି ॥୮୦
ଅସୁରଙ୍କର ବାଦ୍ୟ ବାନରଙ୍କର ଦାଉଣ୍ଡି ।
ଶୁଣି ନଗ୍ରଲୋକେ ହୋଇଲେ ହାଉଣ୍ଡି ॥
ଲକ୍ଷେ ରାଜାଙ୍କର ବାଜିଲା ବାଜଣା ।
ସବୁ ଶବଦରୁ ରାମତାଳି ଜିଣା ॥
ଲକ୍ଷେ ଲକ୍ଷେ ଟମକ ବାଜିଲା
ଏକାବେଳେ ।
କିଜାଣି ପୃଥ୍ୱୀକି ପଡ଼ିବ ରସାତଳେ ॥
ନାନାଦେଶର ଛତ୍ର ବିବିଧ ବର୍ଣ୍ଣେ ପଡ଼ି ।
ଆନ ଆନ ପରି ଆଲମ୍ବ ଓହାଡ଼ି ॥
ରଥ ଗଜ ଅଶ୍ୱ ଅଟଇ ଅଗଣିତା ।
ସ୍ୱର୍ଗେ ଥାଇ ଦେଖୁଛନ୍ତି ସକଳ
ଦେବତା ॥୯୦
ବାନରେ ଲଙ୍କାରେ ଅଘୋର ରୂପ
ହୋଇଥିଲେ ।
ସାଂଗ୍ରାମ ସରିଲାରୁ ସେ ସାମାନ୍ୟ ରୂପ
ହେଲେ ॥
ବିଧାତା ହରିଲା ସବୁରି ପୂର୍ବବଳ ।
ପୂର୍ବେ ଯେସନେ ହୋଇ ତେଉଂଥିଲେ
ଚଳୁଚଳ ॥

ଶଏ ଜୁଣ ଲଙ୍କା ଚାଳିଶି କୋଶ ସେତୁ ।
ସମୁଦ୍ର ଉତ୍ତର କୂଳେ ହୋଇଲେ
ଅପ୍ରମେତୁ ॥
ଯେତେକ ରକ୍ଷ କପି ପୁଷ୍ପକେ ଯାନେ
ବସାଇଂ ।
ତେତେ ସନ୍ୟ ଗୋଟା ନନ୍ଦିଗ୍ରାମେ ପଶଇ ॥
ନବରେ ରହ ବୋଲି ଶ୍ରୀରାମ ଆଜ୍ଞା
ଦେଲେ ।
ବିଧାତାର ମାୟା ଯେ ତହିଂକି
ନଅଣ୍ଟିଲେ ॥୧୦୦
ସଭିଏଂ ଅଛନ୍ତି ଗୋଟିଏ ଊଣା ନାହିଂ ।
ତେତେ ବପୁବଳ ଗଲା ଏବେ କାହିଂ ॥
ମନେ ବିଚାରନ୍ତି ଇନ୍ଦ୍ରକୁ ପାରୁ ଜିଣି ।
ଆମ୍ଭର ପ୍ରାକର୍ମ ତ ତିନିପୁରେ ଜାଣି ॥
ସେନା ଯୂଥପତିଙ୍କର ରୂପ ଗଲା ତେଜ୍ୟା ।
ପୂର୍ବର ପ୍ରାକର୍ମ ପ୍ରାଏ ସୁଗ୍ରୀବର ରାଜା ॥
ହନୁ ଅଙ୍ଗଦ ଜମ୍ବେବ ମନ୍ତ୍ରୀବର ।
ନଳ ନୀଳ ଗନ୍ଧମାର୍ଦ୍ଦନ ମାରୁତି ପିଅର ॥
ଉଗ୍ରତେଜ ଛାଡ଼ି ଧଇର୍ଯ୍ୟ ହୁଅନ୍ତି ।
କେପେଣ ଜଗତ ଜିଣି ପାରିବୁ
ବୋଲନ୍ତି ॥୧୦
ଯେ ଯାହାର ଅନରୂପେ ହୋଇଲେ
କାଛେଣୀ ।
ସିଂହଦ୍ୱାରେ ପଟୁଆରି ରହିଲେ
ବେଳଜାଣି ॥
ରଣଜୟ ବୀରଧ୍ୱ ବୋଲି ବାନା ଉଡ଼ି ।
ବାଜଣାର ଘାଏକି ପର୍ବତ ପଡ଼େ ଝଡ଼ି ॥
ରକ୍ଷ ରାକ୍ଷସ କନ୍ଧ ମଲ୍ଲାର ଶଅର ।
ମନିଷ୍ୟ ଗଜ ଅଶ୍ୱ ବାନର ରହୁବର ॥
ଅପ୍ରମିତ ବଳ ହୋଇଲେ ମିଶାମିଶି ।
ସ୍ୱର୍ଗରେ ଥାଇଣ ସୁରଗଣେ ପ୍ରଶଂସି ॥
ଏଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ଅଯୋଧ୍ୟାକୁ ଯିବେ ବୋଲିଣ ସଜ
ହୋଏ ॥୨୦
ଯେ ବିଧି ନିତ୍ୟକର୍ମ ସାରିଲେ ତଡ଼ତି ।
ବେଗ ବେଗ କରି ସନ୍ଧ୍ୟା ସୁମରନ୍ତି ॥

ଦେବାର୍ଚ୍ଚନ ନବରକୁ ବିଜେକରି ଗଲେ ।
ଲକ୍ଷ୍ମୀନାରାୟଣ ଦେବତା ଦେଖିଲେ ॥
ପ୍ରସାଦ ଘେନିଣ ବାହୁଡ଼ିଲେ ପୁଣି ।
ଯିବାକୁ ସଜ ହୋଇଲେ ରଘୁମଣି ॥
ଶୁକ୍ଳ ବସ୍ତ୍ର ପରିହରଣ ଶୁକ୍ଳ ଗନ୍ତା ବାନ୍ଧି ।
ସରୁ ଶୁକଳ ଯେ ଶିରରେ ପାଗ ବାନ୍ଧି ॥
ଶୁକଳ ପୁଷ୍ପରେ ରଚିଲେ ପୁଣ ଗଭା ।
ଝିନବସ୍ତ୍ରମାନ ଦିଶିଲେ ମହାଶୋଭା ॥୩୦
ଛତ୍ର ଚାମର ଗୋଟି ଶ୍ରୀରାମକୁ ଶୋହି ।
ସ୍ୱର୍ଗ ମଞ୍ଚ ପାତାଳ ତିନିପୁର ମୋହି ॥
ଗନ୍ତାଲାଗି ହୋଇ ପଲଙ୍କେ ବିଜେ କଲେ ।
ତଡ଼ାଉ ସଜ ଘେନି ଲକ୍ଷ୍ମଣ ଅଇଲେ ॥
ବରୁଣ ଦେଇଥିଲା ଯେବଣ ଅଳଂକାର ।
ସେ ରତ୍ନ ଆଭରଣ ହୋଇଲେ ରଘୁବୀର ॥
ବ୍ରହ୍ମଜାତି ହୀରା ମୁକୁଟ ଶତ ଶାଖା ।
ଉପରେ ଅଛି ଗଜ ମୁକୁତା ନାଏକା ॥
କତି କତି ଲାଗିଛି ପଦ୍ମରାଗ ମଣି ।
ଶିରେ ଶୋଭିଅଛି ଉଭାହୋଇ ପୁଣି ॥୪୦
ପୁଞ୍ଜି ପୁଞ୍ଜି ମୁକୁତା କେରି କେରି ଝରା ।
ନୀଳେନ୍ଦ୍ରି ମେଘେ କି ଉଦୟ ଲକ୍ଷେ ତାରା ॥
ଶ୍ରୀରାମ ଲଲାଟକୁ ଦିଶିଲାକ ଶୋଭା ।
କିଜାଣି ପଟାନ୍ତର ନବଗ୍ରହ ପ୍ରଭା ॥
କର୍ଣ୍ଣରେ କୁଣ୍ଡଳ ମଗର ମୁହିଂ କମ ।
ନାନାବର୍ଣ୍ଣେ ନାନାରତ୍ନେ ଶୁଦ୍ଧମୟ ହେମ ॥
ହସି କହନ୍ତେଣ ହଲଇ କୁଣ୍ଡଳ ।
ଝର ଝର ବିରାଜଇ ମର୍କତର ଲୋଳ ॥
କଣ୍ଠେ କଣ୍ଠିମାଳ ଶୋହଇ ଗଜମୋତି ।
ଶରଦଚନ୍ଦ୍ର ଜିଣି ବିରାଜଇ ଜ୍ୟୋତି ॥୫୦
ଏକସରି ଦୋସରି ଚଉସରି ତିସରା ।
ପୁଞ୍ଜି ପୁଞ୍ଜି ମୁକୁତା ଶତେ ସରି ହୀରା ॥
ବିବିଧ ରତ୍ନେଣ ପଦେକ ନାନାପ୍ରତି ।
ଶ୍ରୀରାମ ବକ୍ଷସ୍ଥଳେ ଥାଇଣ ବିରାଜନ୍ତି ॥
ନୀଳା ପୋହେଲା ଦୋସରି ହାର ଗୁନ୍ଥା ।
ଶୁଦ୍ଧ ସୁବର୍ଣ୍ଣ ଯେ ତ୍ରିଗୁଣ ପଇତା ॥
ମାଣିକ୍ୟ ମାଳିମାନ ଶୋଭଇ ନାଭିଯାଏ ।
ରତ୍ନରେ ଛାଇଲାକି ଶ୍ରୀରାମର କାଏ ॥

ନୂପୁର ରୁଣୁଝୁଣୁ ଚରଣରେ ବାଜେ ।
ପୟର ଅଙ୍ଗୁଠିରେ ମୁଦ୍ରିକା ବିରାଜେ ॥୬୦
ତଡ଼ାଉ ଲାଗି ହୋଇ ଶ୍ରୀରାମଚନ୍ଦ୍ର ରାଏ ।
ପଲଙ୍କୁ ଓହ୍ଲାଇ ରତ୍ନ ପିଢ଼ାରେ ବିଜଏ ॥
ବଶିଷ୍ଠେ ମଙ୍ଗଳ ଆରତି ଘେନି ଆସି ।
ଜୟ ଜୟ ଶବଦ ସକଳ ଜନେ ଘୋଷି ॥
ସୁବର୍ଣ୍ଣ ପିଢ଼ାରେ ଶ୍ରୀରାମଚନ୍ଦ୍ର ବସି ।
ଗୋରଚନା ଚିତା ଘେନି ବ୍ରହ୍ମରାଶି ॥
ଗୋରଚନା ଦେଇ ସୁନ୍ଦର ଟୀକା ଦେଲେ ।
ମଙ୍ଗଳ ଆରତି ତୋଳି ବନ୍ଦାଇଲେ ॥
ତ୍ରିଶାଖା ଶ୍ୱେତଦୁବ ଶିରରେ ନେଇ ଗୁଞ୍ଜି ।
ଏସନେକ ସମଏ କୋଟିଏ ଶଙ୍ଖ
ବାଜି ॥୭୦
ପନ୍ତି ପନ୍ତି କରି ରଚିଲା ଅଛି ଦାଢ଼ୀ ।
କସ୍ତୁରୀ ରେଖ ନିଶ ଅଛଇ ଉହାଡ଼ି ॥
କୋଟିଏ କନ୍ଦର୍ପ ଜାଣି ଶ୍ରୀରାମର ରୂପ ।
କନ୍ଧରେ ତ୍ରୋଣ ଭିଡ଼ି ଧଇଲେକ ଚାପ ॥
ଯୁବତୀମାନେ ମିଳି ହୁଳହୁଳି ଦେଲେ ।
କେହୁ ନେଇ ଶ୍ୱେତ ପାରୁଆ ଦେଖାଇଲେ ॥
କେହୁ ରାଜହଂସ ତୋଳି ଧରିଛନ୍ତି ।
ମଙ୍ଗଳ ଅଷ୍ଟକ ଜଉତିଷେ ପଢ଼ନ୍ତି ॥
ଦଧି ପୂର୍ଣ୍ଣକୁମ୍ଭ କଦଳୀ ଚାରି ଗଛ ।
ଚୂତପତ୍ର ନଟିକାଳ କନକ
ରୋହିମାଛ ॥୮୦
ମଙ୍ଗଳ ଆରମ୍ଭ ବାଜଇ ବାଦ୍ୟ ବୀଣା ।
ଏକର ସଜ ଯେ ଏକୁ ଏକ ଜିଣା ॥
ବିବିଧ ବେଶେ ଯେ ଅଛନ୍ତି ଗଣିକା ।
କି ଜାଣି ପଟାନ୍ତର ଏ ସ୍ୱର୍ଗର ନାୟିକା ॥
ଶ୍ୱେତ ଚାମର ଯେ ଢାଳନ୍ତି ଅନୁକ୍ଷଣ ।
ମଙ୍ଗଳ ଗୁଜ୍ଜରୀ ରାଗେ ବଜାଇ ବାଦ୍ୟମାନ ॥
ବଶିଷ୍ଠେ ଜଣାଇଲେ ହୋଇଲା ଅନୁକୂଳ ।
ଦୁଇଘଡ଼ି ପ୍ରବେଶ ହୋଇଲା ଆସି ବେଳ ॥
ଶୁଣିଣ ଶ୍ରୀରାମ ଉଠିଲେ ତଡ଼ତି ।
ବିଭୀଷେଣ ତୋଳି ଧଇଲେ
ବୀରଛତ୍ରୀ ॥୯୦
ସୁମନ୍ତ ସାଜି ଆଣିଲା ପୁଷ୍ପକ ରଥ ।

ତହିଁ ଯାଇ ବିଜୟେ କଲେ ରଘୁନାଥ ॥
ଶତ୍ରୁଜୟେ ରଥ ଚଢ଼ି ମୈତ୍ର ସୁଗ୍ରୀବର ।
ଡାହାଣ ପାଶେ ଥାଇ ଢାଳଇ ଚାମର ॥
ରିପୁ ଦମନ ଚଢ଼ି ଲକ୍ଷ୍ମଣ ବାମେ ମିଳି ।
ଶ୍ୱେତଚାମର ଧରିଣ ସେହୁ ଢାଳି ॥
ବୈରୀବିଭାଣ୍ଡେକ ଗଜ ଶତ୍ରୁଘନ
ଆରୋହି ।
କନେକ ଦଣ୍ଡ ଘେନି ଶ୍ରୀରାମ ଆଗେ
ହୋଇ ॥
ଭରଥ ଚଢ଼ିଣ ସୁବର୍ଣ୍ଣମୟେରଥ ।
ପଛ ପଟୁଆରେ ତାକୁ ଛାଡ଼ିଲେ
ରଘୁନାଥ ॥୧୦୦
ହନୁମନ୍ତ ଚଢ଼ିଲା ଅଇରିଶଲ କନ୍ଧ ।
ମହାମେଘର କନ୍ଧେ ଚଢ଼ିଲା ଅଙ୍ଗଦ ॥
ଜମ୍ୱେବ ସୁଷେଣ ଡାଳିମ୍ୱ ଶତବାଳି ।
ବଳିମୁଖ କାଳିମୁଖ ବସନ୍ତ ମହାବଳୀ ॥
ଦଧିମୁଖ ଚନ୍ଦନ ରମଣ ସୁଯୋଦନ ।
ଗବଏ ଗବାକ୍ଷ ଗନ୍ଧମାରଦନ ॥
ମହାନ୍ଦ୍ର ଶଉରୀ ପବନ କେଶରୀ ।
ଶରସେତୁ କାଳିଞ୍ଜନ ଆଦିକରି ॥
ଏମାନେ ସମସ୍ତେ ଚଢ଼ିଲେ ମଉଗଜ ।
ଯହୁଁ ଆଜ୍ଞା ଦେଲେ ଶ୍ରୀରାମଚନ୍ଦ୍ରରାଜ ॥୧୦
କେହୁ ଆଲଟ କେହୁ ଚାମର ଧରନ୍ତି ।
ଦୁଇପାଖେ ସେହୁ ଆବୋରିଣ ଛନ୍ତି ॥
ବୀର ମହାବୀର ମଲ୍ଲମହାମଲ୍ଲ ।
ଘୋଡ଼ା ଚଢ଼ିଣ ଯେ ଧାମନ୍ତି ପଲପଲ ॥
କେବଣ ହସ୍ତୀ କନ୍ଧେ ମର୍କଟ ଦଶବିଂଶ ।
କେବଣ ଗଜ ପରେ ଭାଲୁକ ପଞ୍ଚାଶ ॥
ଆଗକଇ ମୁଖ ପଛକଇ କାହାର ଦୃଷ୍ଟି ।
ଆଗଭାଗକୁ ଥୋକେ କରିଛନ୍ତି ପିଠି ॥
ଯେ ଯାହାର ଆୟେମାନ ଆଭରଣ
କରିଛନ୍ତି ।
ନଖ ଲଗାଇ କେ ହସ୍ତୀଙ୍କି ଧୂଆଂନ୍ତି ॥୨୦
ଲକ୍ଷେକ ଧୂପକାଠି ସୁମନ୍ତ ସଞ୍ଚାକଲା ।
ରକ୍ଷକପିଙ୍କର ହାଥେ ନେଇଦେଲା ॥
ଅଗ୍ନି ଲଗାଇଣ ବେଗେ ଜାଳିଦେଲେ ।

ଗୁଗୁଳ ଗଣ୍ଡିଅନା ମିଶାଇ ଧୂପଦେଲେ ॥
ଏକ ଧରିଥିଲେ ଆରେକ ବିଞ୍ଚଇ ।
କୋଳାହଳ ଧ୍ୱନି ଉଚ୍ଚକରି ଶୁଭଇ ॥
କେବଣ କପି ଖଦି ଘେନିଣ ବିଞ୍ଚନ୍ତି ।
କେବଣ ଭାଲୁକ ଆଲଟ ପକାବନ୍ତି ॥
ଲକ୍ଷେକ ନୃପତି ଲକ୍ଷେକ ରଥ ଚଢ଼ି ।
ଶ୍ରୀରାମଚନ୍ଦ୍ରକୁ ସେ ପଟୁଆର ପଡ଼ି ॥୩୦
ବିଭୀଷେଣ ସଙ୍ଗତେ ଚାରିମନ୍ତ୍ରୀ ଆଏ ।
ତାହାଙ୍କୁ ଆଜ୍ଞା ଦେଲେ ରାମରାଏ ॥
ତୁମ୍ଭେ ଅଶ୍ୱ ଚଢ଼ି ଆଗ ଥାଠେ ଚଳ ।
ଆଗିଆଣି ଥାଠକୁ ଘେନିଣ ଆଗବଢ଼ ॥
ଶୁଣିଣ ଅଶ୍ୱ ଚଢ଼ିଲେ ଦଶକାଳ ବୃଦ୍ଧ ।
ନିଶଙ୍କ ସମ୍ପାତି ଆବର ବିବୁଧ ॥
ମନ ମନାସିଲା କରି ଚଢ଼ିଲେ ତୁରଙ୍ଗମ ।
ଯହୁଁ ଆଜ୍ଞା ଦେଲେ ଠାକୁର ଶ୍ରୀରାମ ॥
ଅସୁର ସଇନି ଥୋକାଏ ହସ୍ତୀ
ଆରୋହିଲେ ।
ଥୋକାୟେକ ହୟବର ଚଢ଼ି
ଧୂଆଂଇଲେ ॥୪୦
ବଶିଷ୍ଠ ବାମଦେବ ଯାବାଳି କଶ୍ୟପ ।
ଯେହାଂକୁ ଚାହିଁ ବୋଲନ୍ତି ରାମନୃପ ॥
ମାତୃଗଣକଇ ଘେନାଇ ତୁମ୍ଭେ ଆସ ।
ଏ ମହା ଗହଳ ଭିତରେ ନ ପଶ ॥
ଜାନେକୀଙ୍କି ଆଣ ଭଗ୍ନୀକି ସଙ୍ଗେ ଘେନି ।
ଶୁଣି ବାହୁଡ଼ିଲେ ବଶିଷ୍ଠ ମହାମୁନି ॥
ପଶ୍ଚିମ ଦ୍ୱାରେ ଯାଇ ହୋଇଲେ ପରବେଶ ।
ହାନ୍ଦୋଳ ଚଢ଼ାଇ ଆଣନ୍ତି ରାଣୀହଂସ ॥
ଅଯୋଧ୍ୟା ଅଙ୍ଗବଳ ତାହାଙ୍କ ସଙ୍ଗେ ଆଏ ।
ଆଡ଼ୋଆଡ଼ୋ ବୋଲି ଦୂରୁଂ ଡାକ
ଦିଏ ॥୫୦
ଏଥୁଅନନ୍ତରେ ଶ୍ରୀରାମ ଗୋସାଇଂ ।
ଗୁହ ନାମେ ଶବରକୁ ଆଜ୍ଞା ଦେଲେ ଯାଇ ॥
ସୁବର୍ଣ୍ଣମୟ ରଥେ ଚଢ଼ିଣ ତୁମ୍ଭେ ଯାଅ ।
ତୋହୋର ବଳ ଘେନି ତୁ ଆଗ ଥାଠେ
ଥାଅ ॥
ଶୁଣି ଶବର ରହୁବରେ ଚଢ଼ିଲା ।

ଦଶଲକ୍ଷ ଯୋଦ୍ଧା ଘେନି ଆଗୁସାର
ହୋଇଲା ॥
ମୟୂରପକ୍ଷୀ କଣ୍ଠ ଛତ୍ରେକ ଧରାଇ ।
ନାନା ସୁଛନ୍ଦେଣ ବାଜଣା ବଜାଇ ॥
ଚାଲ ଚାଲ ବୋଲି ଶୁଭିଲାକ ଡାକ ।
ହେଲ ଘେନୁଅଛି ସଂସାର
ତଇଲୋକ ॥୬୦
ନବସସ୍ର ମତ୍ତା ଚାଳିଶିସସ୍ର ଦନ୍ତା ।
ପଏଦାର ସଇନି ନହୁଏ ଗଣିତା ॥
ଚତୁରାଙ୍ଗ ବଳ କଳନା ନ ଯାଇ ।
ପାଦଭରେ ଟଳ ଟଳ ହୋଇଲାକ ମହୀ ॥
ବାଜଇ ଟମକ ନିଶାଣ ଶଙ୍ଖ ଭେରୀ ।
ଢୋଲ ଦମା ଟମକ କାହାଳୀ ମର୍ଦ୍ଦଳ
ମହୁରୀ ॥
ନାଚନ୍ତି ଗଣିକାୟେ ପଟୁଆରେ ପଶି ।
ମହୁରୀ ବଜାଇ ମଙ୍ଗଳ ଧନାଶ୍ରୀ ॥
ରଥର ଘୋଷଣ ଘୋଡ଼ାଙ୍କର କିଳିକିଳି ।
ଗଜଘଣ୍ଟ ନାଦେ ସାହେର ଉଛୁଳି ॥୭୦
ଛତ୍ର ଚାମର ଦର୍ପଣ ଝଟକନ୍ତି ।
ବିଲମ୍ୱ ପାଟଛତ୍ର ଆଲମ୍ୱ ପନ୍ତି ପନ୍ତି ॥
ଧୀର ଧୀର ହୋଇ ପୁଷ୍ପେକ ରଥ ଚଢ଼ି ।
ଦେଖି ଯୁବତୀଗଣେ ଦିଅନ୍ତି ହୁଳହୁଳି ॥
ଥାଠ ଚଳନ୍ତେଣ ବାଜିଲା ଗହଳ ।
ରଥଘୋଷ ଘାତେ କମ୍ପିଲା ମହୀଆଳ ॥
ଗଗନ ପୂରିଲା ଉଠିଲା ପାଦଧୂଳି ।
ପାଦରେଣୁରେ ଅଦୃଶ ହୋଇଲା
ଅଂଶୁମାଳୀ ॥
ଧୂପର ଧୂଆଂ ତହିଂର ପାଖେ ଗଲେ ।
ସୁଛ ବିଦୁଜନେ ବେଦ ଆଧାନ
କଲେ ॥୮୦
ଜୟେ ଜୟେ ଶବଦ ଶୁଭଇ ଚଉପାଶ ।
ଆନନ୍ଦେ ଦେବତାଏ ବୃଷ୍ଟି କଲେ ପୁଷ୍ପ ॥
ଅପଛରୀମାନେ ହୁଳହୁଳି ଦେଲେ ।
ତରୁଣୀ ବସନ୍ତ ରାଗେ ବାଜଣା ବଜାଇଲେ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ପୂରିଲା ଗହଳ ।
ଯାନ୍ତେଣ ଯନ୍ତାଯନ୍ତି ହୋଇଲାକ ବଳ ॥

ନନ୍ଦିଗ୍ରାମ ତେଜି ଗଲେକ ରାମରାଏ ।
ବାଟେ ଦର୍ଶନ ଆସି କଲେ ପରଜାଏ ॥
ଶରଧାରେ ଲୋକେ ଦେଖିଆସୁଛନ୍ତି ।
ଯୁବତୀ ଗଣେ ମିଳି ହୁଳହୁଳି ଦ୍ୟନ୍ତି ॥୯୦
ସମ୍ଭର ହୋଇଣ ଚଳଇ ମହାଥାଟ ।
ଘଡ଼ିକେ ଗମନ କଲେ ତିନିକୋଶ ବାଟ ॥
ଅଯୋଧ୍ୟା କଟକେ ପ୍ରବେଶ ହୋଇଲେ ।
ବୀରତୂର ଛନ୍ଦେ ଟମକ ବଜାଇଲେ ॥
ନଗ୍ରରେ ପଶନ୍ତେ ଦେଖିଲେ ଲୋକମାନେ ।
କେ ବୋଲଇ କାହିଁ ଅଛନ୍ତି ରଘୁନାନେ ॥
ବନକୁ ଗଲାଦିନୁ ଦେଖିଲା ଆମ୍ଭର ନାହିଁ ।
ସେଦିନ ଅଇଲେ ସ୍ୱାମୀ ବାଗୁଲାଗି ହୋଇ ॥
ନଗର ଦେଖି ମାତ୍ର ବାହୁଡ଼ିଣ ଗଲେ ।
ଦେଖିବାରମାନେ ଚିହ୍ନି ନପାରିଲେ ॥୧୦୦
ଅଇଲେ ଅତି ବେଗେ ଗଲେ ଧାପ
ଦେଇଂ ।
ଆସିବାର ବେଳେ ଜଣେ ତହିଁ ସଙ୍ଗେ
ନାହିଁ ॥
ତେଣୁ ଚିହ୍ନିମା ଲୋକେ ଚିହ୍ନି ନ ପାରିଲେ ।
ଯିବାର ବେଳେ ପୁଣି ଆନ ବାଟେ ଗଲେ ॥
ଭ୍ରଥ ଯାଉଅଛି ପ୍ରାଏକ ଥିଲୁ ବୁଝି ।
ପଛେଣ ବାରତା ପାଇଲୁ ମନେ ହେଜି ॥
ଏବେ ଦେଖିବୁନା ନୟନ ପୂରୋଇ ।
କେଡ଼େ ହୋଇଲେନି ଜାନେକୀର ସାଇଂ ॥
କେ ବୋଇଲେ ଅଠାର ବରଷ
ଯିବାବେଳେ ।
ଦାଢ଼ୀରୋମମାନ ଗଜୁଣ ଥିଲା ଭଲେ ॥୧୦
ବନବାସ କଲେ ଚଉଦ ବରଷ ।
ଆଜକୁ ଶ୍ରୀରାମର ବୟସ ବତିଶ ॥
ଦେଖିବାର ଲୋକେ ବୋଇଲେ କଣ୍ଢିଲାନି
ନିଶ ।
ରୂପେଣ କୋଟିୟେ ମଦନ ସାଦୃଶ ॥
ଏହିକ୍ଷଣି ଦେଖିବା ବୋଲିଣ ବିଚାରନ୍ତି ।
ଯୁବତୀ ପୁରୁଷ ଗହଳେ ଯନ୍ତାଯନ୍ତି ॥
ଚତୁରାଙ୍ଗ ବଳ ଚଳନ୍ତେ ଗହଳ ।
ସିନ୍ଧୁଘୋଷ ଜାଣି ମୁଖରାବ ଗୋଳ ॥

ହସ୍ତୀ କୁଦା କୁଦା ଘୋଡ଼ା ପଲ ପଲ ।
ଆଡ଼ୋ ଆଡ଼ୋ ବୋଲିଣ ବୋଲନ୍ତି ଚାଲ
ଚାଲ ॥୨୦
ଏସନେକ ଶବଦ ଶୁଭଇ ପଥେ ଯାନ୍ତେ ।
ଗୁହ ନାମେ ଶବର ଦିଶିଲାକ ରଥେ ॥
ଦଶସହସ୍ର ଶବର ସଙ୍ଗେଣ ତାହାର ।
ଦିଶନ୍ତି ବିରୂପ ବହୁତ ଭୟଙ୍କର ॥
ଶିରରେ ଗୁଞ୍ଜରା ଖପୁରି ମୁଣ୍ଡ ମାଳି ।
ମଞ୍ଜୁଆତି ନାଳି କାହାର ଦାଢ଼ୀକରି ॥
କେହୁ ଜାଣି କଉଡ଼ିମାନ ମାଳ ମାଳ କରି ।
ଶରଧା ନିମନ୍ତେ ଗଳାରେ ଛନ୍ତି ଭରି ॥
କାଠର ବନ୍ଦିଆ ତଡ଼କୀ କର୍ଣ୍ଣେ ନାନ୍ତି ।
କେ ଆଗ ତାଳୁରେ ଜୁଡ଼ା ଗୁଡ଼ିଆଇ
ଆସନ୍ତି ॥୩୦
କାହାର ଗଳାରେ ଟସର ରଙ୍ଗ ସୂତା ।
ଚିତିସାପ କାତିକି କରିଛି ପଇତା ॥
ପିଉଳ କଣ୍ଠି କାହାର ଗଳାରେ ଶୋଭା
ଦିଶି ।
ମୁଣ୍ଡରେ ନଟିକେ ଗୁଡ଼ିଆଇ ଆସି ॥
କାହାର କାନରେ ଅଛି ରଙ୍ଗ ଫୁଲ ।
କେହୁ ଚାଲିଯାନ୍ତେ ଚାଲନ୍ତି ଗେଲ ଗେଲ ॥
କେହୁ ରଙ୍ଗମାଟି ଅଙ୍ଗରେ ଅଛି ଘଷି ।
କେ ସାଙ୍ଗ ଚନ୍ଦନ କେ ମୁଣ୍ଡେ ଅଛି ପେଷି ॥
କାହାର ମୁଣ୍ଡରେ ପାଚିଲା ଅଛି ବେଢ଼ା ଜଟ ।
ପଳାଶ ଫୁଲେ କାହା ମଣ୍ଡିଅଛି ଚୂଟ ॥୪୦
କାହାର ହାଥରେ ଅଛି ଲୁହାର ଶିକୁଳି ।
ଭାଲୁକଚର୍ମ କାହାର କଟିରେ ମେଖଳି ॥
କାହାର ପୟରେ ପିତଳ ନେପୁର ।
ଗବତେଲ କାହାର ମୁଣ୍ଡେ ଜରଜର ॥
କେହୁ ଖାଂଖର କେଶ କାହାର କୟେଂରା
ନିଶ ।
କାହା ରୋମ ଦାଢ଼ୀ ଦିଶଇ ଭବିଷ୍ୟ ॥
ସର୍ବାଙ୍ଗେ ଚନ୍ଦନ କେ ହୋଇଅଛି ଘଷି ।
କେତକୀ ପୁଷ୍ପରେ କେ ଖୋଷା ଅଛି
ଖୋଷି ॥
କେ ନାକ ଫୁଲାଇ ଚାଲଇ କାହାର ରୋମ
ଆଖି ।
ପାଖ ଲୋକମାନେ ଦେଖି ଡରୁଛନ୍ତି ॥୫୦
କେହୁ ନାଇଅଛି ମୟୂର ପକ୍ଷୀ ସେନ୍ହା ।
କାହାର କାନରେ ଅଛି ଗନ୍ଧସୁନା ॥
ଭଗ୍ନ ତରୁଡ଼ାଳ କେ କରରେ ଅଛି ଧରି ।
କେହୁ ଧାପ ଦେଇଅଛନ୍ତି ଚିରାମାରି ॥
ଅଯୋଧ୍ୟା ଲୋକମାନେ ଦେଖିଣ ହରଷ ।
କେ ବୋଲନ୍ତି ଯେହୁ ହୋ ବଣର ମନିଷ ॥
ଶ୍ରୀରାମ ମୈତ୍ର ଯେ ଗୁହ ନାମେ ଶବର ।
ଯେ ସର୍ବଦା ଅଟଇ ଶ୍ରୀରାମର ପରିଚାର ॥
ଦେଖ ହୋ ସୁବର୍ଣ୍ଣ ରଥେ ଅଛି ବସି ।
ସର୍ବାଙ୍ଗେ ଚତୁସମ ହୋଇଅଛି ଘଷି ॥୬୦
ମଧ୍ୟେ ବିଜେ କରି ଆସଇ ଦେବତା
ସମାନେ କନ୍ଧରାଏ ।
ନବରତ୍ନ ଅଳଂକାର ଶୋହିଅଛି କାଏ ॥
ଏଥୁଅନନ୍ତରେ ଦିଶିଲା ଦତ୍ୟବଳ ।
ଉଦଣ୍ଡ ପାଟଛତ୍ର ବିଲମ୍ବ ଅପାର ॥
ରଥ ଗଜ ଅଶ୍ୱ ମନୁଷ୍ୟ ଦିଶନ୍ତି ।
ହସ୍ତୀଙ୍କର ଉପରେ ବାନର ପନ୍ତି ପନ୍ତି ॥
କେବଣ ମୟେମତ୍ତ ଉପରେ ଦଶବିଂଶ
ଭାଲୁକ ।
ଦେଖି ଆଶ୍ଚିଯ ଅଯୋଧ୍ୟାର ଲୋକ ॥
ଲକ୍ଷେ ନୃପତିର ଦିଶିଲାକ ରଥ ।
ମଧ୍ୟେ ବିଜୟ କରିଆସନ୍ତି ରଘୁନାଥ ॥୭୦
ସୁମନ୍ତ ବାହୁଅଛି ପୁଷ୍ପେକ ବିବାନ ।
ନବରତ୍ନେ ଖଞ୍ଜିଲା ଅଛଇ ଦେବଯାନ ॥
ଚାମର ଦର୍ପଣ କୁସୁମ ମାଳମାନ ।
ବିଚିତ୍ର ବସନ ମଣ୍ଡଣି ଉଦଣ୍ଡ ଆନୁଆନ ॥
ଧୀର ଧୀର ଯେ ଚଳଇ ରଘୁବର ।
ପଞ୍ଚ ଶବଦ ହୋଇ ବାଜଇ ବୀରତୂର ॥
ସୁଗ୍ରୀ ହନୁମନ୍ତ ଜମ୍ବେବ ସୁଷେଣ ।
ଲକ୍ଷ୍ମଣ ଅଙ୍ଗଦ ନଳନୀଳ ବିଭୀଷେଣ ॥
ଅଷ୍ଟସେନାମୂଳେ ପଚିଶ ଯୂଥପତି ।
ଚାମର ଢାଳନ୍ତି ଚଢ଼ିଣ ମଉହସ୍ତୀ ॥୮୦
ସାମନ୍ତ ମହାପାତ୍ର ବୀର ମହାବୀର ।
ମଲ୍ଲ ମହାମଲ୍ଲ ଭାଲୁକ ବାନର ॥

ଅପ୍ରମିତ ବଳ ଦିଶିଲା ମହାଥାଟେ ।
ଚଳିତ ନ ପାରି ରହିଲେ ମଧ୍ୟବାଟେ ॥
ପେଲାପେଲି ହୋଇଣ ଧୀରେ ଚଳିଯାନ୍ତି ।
ଅଯୋଧ୍ୟାର ଲୋକେ ଆନନ୍ଦେ ଦେଖନ୍ତି ॥
ଦେଉଳ ମଣ୍ଡୋପ ଗଛରେ ଉଠିଲେ ।
କେହୁ ପିଢ଼ା ଉପରେ ଚଢ଼ିଣ ଦୃଷ୍ଟି ଦେଲେ ॥
ବାଳବୃଦ୍ଧ ଯୁବା ଯୁବତୀ ପୁରୁଷ ।
ଶ୍ରୀରାମର ମୁଖ ଦେଖିବେ ବୋଲି ସେ ମନରେ ହରଷ ॥୯୦
ନଗ୍ରେ ରଘୁନାଥ ପଶିଲେକ ଯାଇଂ ।
ଜଗନ୍ନାଥ ବାହୁଡ଼ା ବିଜୟେ ପ୍ରାୟେ ହୋଇଂ ॥
ପଛ ପଟୁଆରେ ଅଛନ୍ତି ଭ୍ରଥବୀର ।
ରଥଗଜ ଦ୍ୱୟ ପାଦାନ୍ତି ଅପାର ॥
ଉଦଣ୍ଡ ଆଲମ୍ବ ଚିରାଳ ପନ୍ତି ପନ୍ତି ।
ପଟୁଆର ଭିତରେ ଘୋଡ଼ାନ୍ତ ଧୁଆଂନ୍ତି ॥
ପୃଥ୍ୱି ଟଳମଳ ଚଳିବାର ଘାଏ ।
ଧୂଳି ଉଡ଼ି ଗଗନ ପୂରିଲେ ରେଣୁ ବାଏ ॥
ମ୍ରଳୟସିନ୍ଧୁ ଜାଣି ଗର୍ଜୁଛନ୍ତି ସୈନ୍ୟ ।
ସମ୍ପୂର୍ଣ୍ଣ ଚନ୍ଦ୍ରମାକି ପୁଷ୍ପେକ ବିବାନ ॥୧୦୦
ଇନ୍ଦ୍ରଦେବତା ପ୍ରାଏ ଦିଶନ୍ତି ରାମରାୟେ ।
କରେ କୋଦଣ୍ଡ ଧରି କରିଛନ୍ତି ବିଜୟେ ॥
ସୁକାସନ ଉପରେ ନିର୍ଭରେ ବସିଛନ୍ତି ।
ଅଯୋଧ୍ୟାର ଲୋକଙ୍କୁ ନିରୋପି ଚାହାନ୍ତି ॥
ଯାବାଳି ପୁତ୍ର ଯେ ବିଡ଼ିଆ ଲାଗିକରି ।
ସମୟେ କଥାମାନ ତାହାକୁ ପଚାରି ॥
କଶ୍ୟପର ପୁତ୍ର ଯେ ବାମଦେବଙ୍କର ଶିଷ ।
ଏମାନେ ଚାମର ଧରିଛନ୍ତି ପାଶ ॥
ବଶିଷ୍ଠଙ୍କର ପୁତ୍ରମାନେ ବିଞ୍ଚନ୍ତି ବିଞ୍ଚଣୀ ।
ସମ୍ବର ହୋଇ କଟକେ ପଶିଲେ ରଘୁମଣି ॥୧୦
ଟମକ ନିଶାଣ ଶଙ୍ଖ କମ ଭେରୀ ।
ମଙ୍ଗଳ ଗୁଜ୍ଜରୀ ରାଗେଣ ବାଜଇ ମହୁରୀ ॥
ଲକ୍ଷେକ ଶ୍ୱେତ ଚାମର ଶ୍ରୀରାମ ପାଶେ ପଡ଼ି ।
ଛତ୍ରଙ୍କର ଛାମୁରେ ସୂର୍ଯ୍ୟେ ଯେ ଉହାଡ଼ି ॥
ଅପ୍ରମିତ ବଳ କଳଣା ନ ଯାଇ ।
ଅଯୋଧ୍ୟା ଦାଣ୍ଡେ ଶ୍ରୀରାମ ବିଜେ କଲେ ଯାଇଂ ॥
ଶ୍ୱେତଛତ୍ର ଦେଖି ଆନନ୍ଦ ସର୍ବଜନ ।
ପୁଷ୍ପେ ହୁଳହୁଳି ପାରନ୍ତି ଅବିଛନ୍ନ ॥
ବ୍ରାହ୍ମଣେ ବେଦପଢ଼ି ଆଶିଷ୍ୟ ଦିଅନ୍ତି ।
କେ ତହିଂ ପଞ୍ଚବନି ପୁଷ୍ପ ବରଷନ୍ତି ॥୨୦
କୁଳବଧୂମାନେ ଦେଉଛନ୍ତି ଅର୍ଘ୍ୟ ।
ଝାଳେ କର୍ଦ୍ଦନ ହୋଇଲା ଦେହମାର୍ଗ ॥
କେହୁ ରାମକୁ ଦେଖି ତରକି ନ ପାରିଲା ।
ଦେଖିବ ବୋଲି କେ ସଙ୍ଗେ ଗୋଡ଼ାଇଲା ॥
କାମଦେବ ପ୍ରାୟେ ଶ୍ରୀରାମର ଯିବା ।
ଯେସନେ ଜଗନ୍ନାଥ ଶ୍ରୀ ପୁରୁଷୋତ୍ତମେ ପଶିବା ॥
ବାହୁଡ଼ା ବିଜୟେ କି ବଳଗଣ୍ଡିକି ରଥ ଚଳି ।
ତେସନେ ହେଳୁ ହେଳୁ ବିଜୟେ ବନମାଳୀ ॥
ତେସନେ ସଂଯାତ ଦିଶନ୍ତି ରାମରାଏ ।
ସ୍ୱର୍ଗେଣ ଦୁନ୍ଦୁଭି ବଜାନ୍ତି ଦେବତାଏ ॥୩୦
ସମଦଣ୍ଡ ଘେନି ଲକ୍ଷେକ ନୃପତି ।
ସବୁଙ୍କର ଶିରେ ଉଡ଼ଇ ବୀରଛତ୍ରୀ ॥
ଶ୍ରୀରାମ ଛାମୁରେ ସେ କନେକ ଦଣ୍ଡ ଶୋଭା ।
ଚନ୍ଦ୍ର ସୂର୍ଯ୍ୟେ ସନ୍ନିଧେକି ହୋଇଛନ୍ତି ଉଭା ॥
ଶଙ୍ଖ ଚକ୍ର ଆଲମ୍ବ ଉଡ଼ଇ ଚଉପାଶ ।
ଗରୁଡ଼ ଧ୍ୱଜ ଛତ୍ର ରଙ୍ଗଣୀ ଝିନବାସ ॥
ପୂର୍ଣ୍ଣକୁମ୍ଭ କରିଣ ଧରାଇଲେ ଏକଲକ୍ଷି ।
ଦଇତାରି ବାନା ଉଡ଼ାନ୍ତି ଲୋକେ ତାହା ଦେଖି ॥
ନବର ସିଂହଦ୍ୱାରେ ଲାଗିଲା ଯାଇ ରଥ ।
ଧାଡିକାରେ ବିବାନୁ ଓହ୍ଲାଇଲେ ରଘୁନାଥ ॥୪୦
ଦେଖିଲେ ସିଂହଦ୍ୱାର ମଣ୍ଡିଅଛି ସଞ୍ଜେ ।
ବସ୍ତ୍ର ଚାମର ଦର୍ପଣ ଫୁଲ ଘଞ୍ଚେ ॥
ସୁମନ୍ତକୁ ଚାହିଂଣ ଶ୍ରୀରାମ ପଚାରି ।
ଏତେ ବେଗେ ଏହା ମଣ୍ଡଣି କେହୁ କରି ॥
ସୁମନ୍ତ ବୋଇଲା ମୋର ପୁତ୍ର ଚିତ୍ରସେନ ।
ଶୁଣିଣ ପ୍ରଶଂସା କଲେ ରଘୁନାନ ॥
ଯେତେବେଳେ ରଘୁନାଥ ରଥରୁ ଓହ୍ଲାଇଲେ ।
ତତକ୍ଷଣେ ରାଜାମାନେ ବାହାନ ଉପେକ୍ଷିଲେ ॥
ପଛିଆଣି ଦଣ୍ଡେ ବିଭୀଷେଣ ଭ୍ରତବୀର ଥିଲେ ।
ରଥ ଛାଡ଼ି ଶ୍ରୀରାମକୁ ଦର୍ଶନ ଆସି କଲେ ॥୫୦
କଯେକେୟା ଭୁଜ ଧରିଣ ରଘୁପତି ।
ଶୁଭ ଯୋଗେ ନବର ଭିତରେ ପଶନ୍ତି ॥
ଦେଖିଲେ ମଣ୍ଡିଲାଅଛି ସର୍ବପୁର ।
ପୁଣ ପୁଣ ପ୍ରଶଂସା କରନ୍ତି ରଘୁବୀର ॥
ସଙ୍ଗରେ ଗୋଡ଼ାଇଅଛନ୍ତି ଲକ୍ଷେକ ନୃପତି ।
ଶ୍ରୀରାମ ପାଶେ ଏକା ଉଡ଼ଇ ବୀରଛତ୍ରୀ ॥
ବିଭୀଷେଣ ରଜା ଅଛଇ ତାହା ଧରି ।
କନେକଦଣ୍ଡଛତ୍ର ଶତ୍ରୁଘନ କନ୍ଧରେ ଉଭାରି ॥
ମୁଦି ଥୋଇଲା ତା' ଭଣ୍ଡାର ଘରେ ନେଇ ।
ଏଥୁଅନନ୍ତରେ ରଘୁକୁଳ ସାଇଂ ॥୬୦
ମଇନ୍ଦାଣ ଜଗତୀରେ ବିଜୟେ ଯାଇ କଲେ ।
ସଜଉଲାଗି ହୋଇ ପିଢ଼ାରେ ବସିଲେ ॥
ଭ୍ରଥକୁ ବୋଇଲେ ସୁଗ୍ରୀବରକୁ ନିଅ ।
ଅଶୋକ ବନେ ନେଇ ତାହାକୁ ରୁହାଅ ॥
ମଧୁବନେ ନେଇ ରୁହାଅ ଲଙ୍କପତି ।
ଜମ୍ବେବ ସୁଷେଣ ଅଙ୍ଗଦ ମାରୁତି ॥
ନଳ ନୀଳ ଶଉରୀ ଗନ୍ଧମାରଦନ ।
ତାରାକ୍ଷ ରମଣ ଗବଏ ସୁସୋଦନ ॥
ବଳିମୁଖ କାଳିମୁଖ ପବନ ଶତବାଳି ।
ଦଧିମୁଖ କାଳିଞ୍ଜନ ଶରସେତୁକାଳି ॥୭୦
ଦଶକାଳବୃଦ୍ଧ ବିବିଧ ସଂପାତି ।
ଅଷ୍ଟସେନା ଆବର ପଚିଶ ଯୂଥପତି ॥
ମଲ୍ଲ ମହାମଲ୍ଲ ବୀର ମହାବୀର ।
ଆବର ଯେତେକ ରକ୍ଷ ଯେ ବାନର ॥

ଯେ ଯାହା ଅନରୂପେ ଦିଅନ୍ତି ଦିବ୍ୟବାସ ।
ଫଳମୂଳ ସଞ୍ଚା ଭୁଞ୍ଜନ୍ତି ଅଶେଷ ॥
ଲକ୍ଷେ ନୃପତିଙ୍କର ଲକ୍ଷେକ ନଗର ।
ରଥ ଗଜ ଅଶ୍ୱ ପାଦାନ୍ତି ଅପାର ॥
ଏହାଙ୍କୁ ସୁସ୍ଥ କର ଆହୋ ଭ୍ରଥ ।
ଭଲ ଠାବେ ନେଇ ଥୁଅ ପୁଷ୍ପେକ
ରଥ ॥୮୦
ସୁମନ୍ତ ଘେନି ତୁମ୍ଭେ ଯାଅ ବେଗେ ହୋଇ ।
କର ହୋ ସମ୍ଭାର କହିଲି ଯାହା ମୁହିଂ ॥
ଆଜ୍ଞା ପାଇ ଭ୍ରଥ ସୁମନ୍ତ ଦୁହେଂ ଗଲେ ।
ଯେ ଯାହା ଅନରୂପେ ରହିତ ଠାବଦେଲେ ॥
ଏଥୁଅନନ୍ତରେ ଶୁଣଗୋ ଭଗବତୀ ।
ଶ୍ରୀରାମ ବଶିଷ୍ଠଙ୍କୁ ରାଇଣ ଆଜ୍ଞା ଦ୍ୟନ୍ତି ॥
ଜାନେକୀକି ଘେନି ଆସ ବେଗେ ହୋଇଂ ।
ଅମାଜିଆମାନନ୍ତ ଆଣିମ ବେଗେ ଯାଇଂ ॥
ଆଜ୍ଞା ପ୍ରମାଣେ ବ୍ରହ୍ମାର ତନଏ ।
ଯାବାଳି କଶ୍ୟପ ବାମଦେବ
ଘେନିଯାଏ ॥୯୦
ହାନ୍ଦୋଳା ସଜ କରି ସୀତାଙ୍କୁ ବସାଇଲେ ।
ଲକ୍ଷେ ପରିବାରୀ ଚାମର ଧଇଲେ ॥
ଲକ୍ଷେକ ପାଟଛତ୍ର ଲକ୍ଷେକ ଚାମର ।
ଲକ୍ଷେକ ଉଦଣ୍ଡ ଲକ୍ଷେକ ଚିରାଳ ॥
ହାନ୍ଦୋଳା ବହନ୍ତି ଗୋପାଳ ଚାରିଜଣ ।
ପଞ୍ଚୁରତ୍ନ ପାଟେ ଓହାଡ଼ ବିତପନ ॥
ଉପରେ ସୁବର୍ଣ୍ଣ କଳସ ରତ୍ନମଏ ।
ବେଢ଼ାଇଲେ ତହିଂ ରଙ୍ଗ ପଟନୀୟେ ॥
ଚଉକତି ଲମ୍ବଇ ମୁକୁତା ମାଳି ମାଳି ।
ଧୀରେ ଧୀରେ ନିଅନ୍ତି ଜନେକ
କୁମାରୀ ॥୧୦୦
ଆଡ଼ୋ ଆଡ଼ୋ ଡାକ ପଡ଼ଇ ନିରନ୍ତର ।
ସଙ୍ଗେ ତିନି ଭଗ୍ନୀ ବିଚିତ୍ର ହାନ୍ଦୋଳ ॥
କଉଶଲ୍ୟା କୟେକୟା ସୁମିତ୍ରା ତିନିମାୟେ ।
ସପତଣୀମାନନ୍ତ ଘେନିଣ ସଜ ହୋୟେ ॥
ସବୁଙ୍କରି ଦୋଳାରେ ସୁବର୍ଣ୍ଣ ନେତ ଉହାଡ଼ି ।
ଜାନେକୀର ପଛେ ଆସନ୍ତି ପଟୁଆରି ॥
ଆଡ଼ୋ ଆଡ଼ୋ ଡାକ ଦିଅନ୍ତି ନିରନ୍ତର ।
ମଙ୍ଗଳ ଉଛବ ବାଜା ବାଜଇ ଅପାର ॥
ପଛେ ଚତୁରାଙ୍ଗ ବଳ ସଜକରି ।
ଆସନ୍ତି ବଶିଷ୍ଠେ ସୁକାସନେ
ବିଜେକରି ॥୧୦
ଯାବାଳି ବିମାନ ଧୀରେ ଧୀରେ ଚଳି
ଆସଇ ।
ଜାନେକୀର ହାନ୍ଦୋଳା ଆସି ଅଯୋଧ୍ୟାରେ
ପଶଇ ॥
ଆଗରେ କଶ୍ୟପ ବାମଦେବ ଅଛନ୍ତି ।
ରଘୁବର ଆରୋହି ପଟୁଆରି ଯାନ୍ତି ॥
ବାଜଇ ଶଙ୍ଖ ଟମକ କମଭେରୀ ।
ମର୍ଦ୍ଦଳ କଂସାଳ ଦୋସରି କମମହୁରୀ ॥
ଆଗେ ନୃତ୍ୟ ରଙ୍ଗ କରନ୍ତି ନଟନାରୀ ।
ଫୁଲେ ବିଞ୍ଚନ୍ତିକେ କ୍ରପୂର ମିଶାକରି ॥
ଅଯୋଧ୍ୟାର ଯୁବତୀ ପାଇଲେ ବାରତା ।
ଦେଖିଯିବା ଚାଲ ଗୋ ଆସୁଛନ୍ତି
ସୀତ୍ୟା ॥୨୦
ଏକକୁ ଆରେକ ରାଇଣ ଆଗସରି ।
ରାଜଦାଣ୍ଡେ ଯାଇ ହୋଇଲେ ସର୍ବନାରୀ ॥
ପୁରୁଷେ ଆଡ଼ ହୁଅନ୍ତି ଭୁଡ଼ଙ୍ଗିଆଙ୍କ ଡରେ ।
ଯୁବତୀ ହୁଳହୁଳି ଦିଅନ୍ତି ନିରନ୍ତରେ ॥
ତ୍ରୈଲୋକର ଲକ୍ଷ୍ମୀ ଯେବଣ ବଇଦେହୀ ।
ଶ୍ରୀରାମର ଅଟଇ ସେହୁ ମହାଦେଈ ॥
ଯାନ୍ତେଣ ଅଯୋଧ୍ୟାରେ ପୂରିଲାକ ଦାଣ୍ଡ ।
ଯାହାର ଆସନ୍ତେ ସୁନ୍ଦର ଦିଶନ୍ତି ବ୍ରହ୍ମାଣ୍ଡ ॥
ତାହାକୁ ଦେଖି ଲୋକେ ହୋଅନ୍ତି ଉଷତ ।
ଜୟେ ଜୟେ ହୁଳହୁଳି ପଡ଼ଇ
ବହୁତ ॥୩୦
ଅର୍ଘ୍ୟ ଦେଖାଇ ବନ୍ଦାପନ୍ତି କେବଣ ନାରୀ ।
ନିସ୍ତରିଲୁ ବୋଲିଣ କେ ଆଣ୍ଟେଣ ଫୁକାରି ॥
ଚଉଦ ବରଷ କଷ୍ଟ ଆଜୁ କ୍ଷୟେ ଗଲା ।
ଜନେକ ଦୁହିତା ଯହୁଂ ଅଯୋଧ୍ୟାରେ ପାଦ
ଦେଲା ॥
ଏସନେକ ବୋଲିଣ ବୋଲନ୍ତି ଯୁବତୀ ।
ବୃଦ୍ଧ ସ୍ତିରୀ ଏକ ଅଇଲା ତଡ଼ତି ॥
ହାନ୍ଦୋଳା ନିକଟେ ଯାଇଣ ବୋଇଲା ।
ଆଜ ସେ ଅଯୋଧ୍ୟାର ଗୋ ସୁଫଳ
ହୋଇଲା ॥
ସ୍ୱୟେଂ କମଳିଣୀ ଜନେକ ଦୋହିତା ।
ଯିବାର ବେଳେ ତୋତେ ଗୋ ନ ଦେଖିଲି
ସୀତା ॥୪୦
ପୂର୍ବ ପୁଣ୍ୟଫଳେ ଏବେ ଗୋ ଦେଖିଲି
ହାନ୍ଦୋଳା ।
ସୁଫଳ ହୋଇଲା ଗୋ ମୋହର ବେନି
ଡୋଳା ॥
ଏବେ ଶ୍ରୀରାମକୁ ଘେନି ଭୋଗ୍ୟକର ।
କଞ୍ଚତନୁ ଘେନି ଗୋ ରହ ମର୍ତ୍ତ୍ୟପୁର ॥
ଶୁଣିଲେ ବଇଦେହୀ ଗୋ ହାନ୍ଦୋଳାରେ
ଥାଇ ।
କତି ପରିବାରୀକି ବୋଇଲେ ବଇଦେହୀ ॥
ଯେ ବୃଦ୍ଧ ମହାତ୍ମାଣୀ କି ଲୋ ଲକ୍ଷେ ସୁବର୍ଣ୍ଣ
ଦିଅ ।
ତାହାର ବଳ ନାହିଂ ଲୋ ତୁମ୍ଭେ ବହିନିଅ ॥
ଆବର ଯେତେକ ଅଛନ୍ତି ନାରୀଗଣ ।
ତାହାଙ୍କର ଆଗରେ ହୋ ସୁନିଆ ଟଙ୍କା
ବୁଣ ॥୫୦
ପଞ୍ଚରତ୍ନ ବୃଷ୍ଟି କରିଣ ଯାଅ ବାଟେ ।
ଦେଖି ଅଇଲା ଲୋକକୁ ଗୋ ଦିଅ ପାଟେ
ପାଟେ ॥
ଶୁଣିଣ ପରିବାରୀ ରତ୍ନ ବୃଷ୍ଟି କଲେ ।
ଦୁଃଖୀ ଦରିଦ୍ର ଲୋକଙ୍କୁ ଧନବସ୍ତ୍ର ଦେଲେ ॥
ସମ୍ଭର୍ବ ହୋଇଣ ଚଳଇ ଦେବୀ ସୀତା ।
ସଙ୍ଗେଣ ଗୋଡ଼ାବନ୍ତି ବହୁତ ବନିତା ॥
ନବର ପଶ୍ଚିମଦ୍ୱାରକଇ ଗଲେ ।
ଶୁଭଯୋଗ ବେଳେ ପ୍ରବେଶ ହୋଇଲେ ॥
ବଶିଷ୍ଠେ କହିଲେ ଯାଇ ଶ୍ରୀରାମର ପାଶ ।
ଅନ୍ତଃପୁରେ ପ୍ରବେଶ ହୋଇଲେ
ରାଣୀହଂସ ॥୬୦
ଶୁଣି ରଘୁନାଥ ଅଙ୍ଗଦକଇ ଚାହିଂ ।
ତାଟିବାଡ଼ ରଖୁ ବୋଲିଣ ଆଜ୍ଞା ଦେଇ ॥
ଶୁଣି ବାଳୀସୁତ ହସ୍ତୀ ଚଢ଼ିଗଲା ।
ରକ୍ଷକପି ଘେନି ତାଟିବାଡ଼ ରଖିଲା ॥

ଦଧିମୁଖକଇ ଉଦିଷ୍ଠାଣ କଲେ ପଶ୍ଚିମ
ଦ୍ୱାରେ ।
ବାହୁଡ଼ି ଅଙ୍ଗଦ ଗଲାକ ନିଜପୁରେ ॥
ରୁଦ୍ର କହନ୍ତି ଶୁଣସି ଗୋ ଶାକାମ୍ଭେରୀ ।
ଏଥିଅନନ୍ତରେ ଶ୍ରୀରାମ ଦଣ୍ଡଧାରୀ ॥
ମାଜଣା ମଣୋହି ସାରିଲେ ଯିସ ରୀତି ।
ମନ୍ତ୍ରୀମାନଙ୍କୁ ରାଇଣ ଆଜ୍ଞା ଦ୍ୟନ୍ତି ॥୭୦
କାଲି ଅଭିଷେକ ହୋଇବୁ ପ୍ରଭାତେ ।
ଯିସ ଯିସ ସମ୍ଭାର ଭିଆଅ ତୁରିତେ ॥
ମୁନିମାନଙ୍କୁ ତହିଂକି ପେଷ ବେଗେ ଚାର ।
ସବୁ ଘେନି ଆସୁ ପବନକୁମର ॥
ଆନଂକି ରାତ୍ରକ ଭିତରେ ଆଣିପାରଇ ।
ପବନସୁତ ବେଗେ ଗମନ କରଇ ॥
ଏତେବୋଲି ମାରୁତିକି ରାଇଣ ଆଜ୍ଞା
ଦେଲେ ।
ଋଷିମାନଙ୍କୁ ଘେନି ଆସସି ବୋଇଲେ ॥
ନୀଳ ସେନାପତିଙ୍କି ବୋଇଲେ ରାବଣାରି ।
ତୋହୋର ସଙ୍ଗେ ନିଅ ପାଞ୍ଚଶ
ପ୍ରହରୀ ॥୮୦
ନାନା ନଦୀମାନଙ୍କରୁ ଆଣସି ପାଣିମାନ ।
ଅଭିଷେକ ହୋଇବା ବୋଲି ବୋଇଲେ
ରଘୁନାନ ॥
ଦକ୍ଷିଣ ସମୁଦ୍ରକୁ ଶଉରୀ ସେନାପତି ଯାଉ ।
ତୀର୍ଥରାଙ୍କୁ ପାଣି ଆଣି ସେ ମୋତେ ଦେଉ ॥
ପଶ୍ଚିମ ସମୁଦ୍ରକୁ ଯାଆନ୍ତୁ ଋକ୍ଷରାଏ ।
ଜମ୍ଭେବ ନଗଲେ କାର୍ଯ୍ୟ ମୋର ନୋହେ ॥
ସେ ସେ ମହାତୀର୍ଥୁ ଆଣିମନା ପାଣି ।
ଏତେ ବୋଲି ସୁଗ୍ରୀକି ରାଇଲେ ରଘୁମଣି ॥
ଉତ୍ତର ସମୁଦ୍ରକୁ ଯାଅସି ବୋଇଲେ ।
କଳ୍ମଷ ଖଣ୍ଡସି ବୋଲିଣ ବୋଇଲେ ॥୯୦
ପୂର୍ବ ସମୁଦ୍ରକୁ ପେଷିଲେ ସୁଷେଣ ।
ଚାରି ସମୁଦ୍ରକୁ ଦୂତ ପେଷିଲେ ତତକ୍ଷଣ ॥
ଅଭିଷେକ ବେଭାର ବଶିଷ୍ଠେ କହିଲେ ।
ଆପଣେ ରଘୁନାଥ ପାଞ୍ଜିରେ ଲିହିଲେ ॥

ସୁମନ୍ତ ହସ୍ତକୁ ପକାଇଦେଲେ ପତ୍ର ।
ଯିସ ଯିସ ଲିହିଅଛି ବୋଇଲେ ରଘୁଗୋତ୍ର ॥
ଏମାନ ସଜ କରାଇ ବେଗେ ଆଣ ।
ଶୁଣି ସୁମନ୍ତ ଯେ ଗଲା ତତକ୍ଷଣ ॥
ଦ୍ରବ୍ୟ ଗୁଣ୍ଡକରି ଆଣିଲେ ତଡ଼ତି ।
ଏଥିଅନନ୍ତରେ ଆଚ୍ଛାଦିଲା ରାତି ॥୧୦୦
ନଗ୍ରପୁର ମଣ୍ଡନ ହୋଇଲା ଧାଡିକାରେ ।
ଶୁଣିମା ମହାଦ୍ମାଣୀ ଗୋ ଏଥିଅନନ୍ତରେ ॥
ରଜନୀ ଶେଷେଣ ଶୁଭିଲା ଶଙ୍ଖଧ୍ୱନି ।
ଆସିଣ ପ୍ରବେଶ ହୋଇଲେ ସର୍ବମୁନି ॥
ବାଲମିକ ଗଉତମ ବିଶ୍ୱାମିତ୍ର ଆଏ ।
ଭାରଦ୍ୱାଦଶ ବଶିଷ୍ଠଙ୍କ ତନଏ ॥
ପରାଶର ସହିତେ ଅଇଲେ ପିତାପୁତ୍ର ।
ଅଷ୍ଟବକ୍ର ପର୍ଶୁରାମ ଦୁର୍ବାସା ମାରକଣ୍ଡ
କୁମ୍ଭସୁତ ॥
ଲୋମପାଦ ତ୍ରିକଳପ ବ୍ରହ୍ମଋଷି ।
ଦତ୍ତାତ୍ରୟ ତନଏ ନାରାୟଣ ଋଷି ॥୧୦
ମଧୁବିଦ ସୁତୀକ୍ଷଣ ମୁନି ଆଏ ।
ଜନକ କୁଶଧ୍ୱଜ ପ୍ରବେଶ ଅଯୋଧ୍ୟାଏ ॥
ବଶିଷ୍ଠ କାମଦେବ ଯାବାଳି କଶ୍ୟପ ।
ଋଷିଶିଙ୍ଗ ତୀକ୍ଷରାଜ ବିଭାଣ୍ଡେକ ॥
ମିତ୍ରଦେବଗଣ କଣ୍ଠୁକଦେବ ମୁନି ।
ଆବର ଅନେକ ଅଇଲେ ତପୋଧନି ॥
ରାଜଋଷି ବ୍ରହ୍ମଋଷି ଦେବଋଷିମାନେ ।
ଗହ ଗହ ଶବଦ ଅଯୋଧ୍ୟା ଭୁବନେ ॥
ଶ୍ରୀରାମ ନିତ୍ୟକର୍ମ ସାରିବାର ବେଳେ ।
ହନୁମନ୍ତ ଜଣାଇଲା ଏସନ
ସମୟରେ ॥୨୦
ଭୋ ରାମ ସର୍ବମୁନି ଅଇଲେ ବୋଇଲା ।
ଶୁଣି ରଘୁନାଥ ଆନନ୍ଦ ହୋଇଲା ॥
ଏସନେକ ସମଏ ଶଉରୀ ନାମେ ବୀର ।
ଦକ୍ଷିଣ ସମୁଦ୍ରରୁ ଆଣିଲାକ ନୀର ॥
ରକ୍ତଚନ୍ଦନ ପତ୍ର ଜଳରେ ଘୋଡ଼ାଇ ।
ସୁବର୍ଣ୍ଣ ଗରିଆରେ ଶୁଦ୍ଧ୍ୟ ଜଳ ଲାଗଂ ॥

ଶ୍ରୀରାମ ଛାମୁରେ ଦୃଶାଇଲା ନେଇ ।
ଦେଖି ପରମ ତୋଷ ଜାନେକୀର ସାଇଂ ॥
ପଶ୍ଚିମ ସମୁଦ୍ରୁଂ ଅଇଲେ ଋକ୍ଷପତି ।
ସୁବର୍ଣ୍ଣ ଫରୁଆରେ ଉଦେକ
ପୂରୋଇଛନ୍ତି ॥୩୦
ଉପରେ ଅଗର ଚନ୍ଦନ ପତ୍ର
ଘୋଡ଼ାଇ ଅଛନ୍ତି ।
ରଘୁନାଥ ଛାମୁରେ ନେଇ ଯତନେ ରଖନ୍ତି ॥
ଉତ୍ତର ସମୁଦ୍ରରୁ ଅଇଲା ସୁଗ୍ରୀବର ।
ପବିତ୍ର ଜଳ ଅଛି ସୁବର୍ଣ୍ଣ ଘଟର ॥
ଚୂତପତ୍ର ଘୋଡ଼ାଇ ଶ୍ରୀରାମକୁ ଦେଖାଇଲେ ।
ଯେସନେକ ସମୟେ ସୁଷେଣ ଅଇଲେ ॥
ପୂର୍ବ ସମୋଦ୍ରୁ ସେ ଆଣିଲାକ ଜଳ ।
ଉପରେ ଘୋଡ଼ାଇଅଛି ବେଲଡ଼ାଳ ॥
ରାଘବ ଛାମୁରେ ଦରଶୁଆଇଲା ନେଇ ।
ଦେଖିଣ ସନ୍ତୋଷ ହୋଇଲେ
ସୀତାସାଇଂ ॥୪୦
ନୀଳ ଆଣିଲା ନଦୀମାନଙ୍କର ଜଳମାନ ।
ସୁବର୍ଣ୍ଣ ଘଟରେ ବହି ଆଣନ୍ତି କପିସନ୍ୟ ॥
ଗଙ୍ଗା ଗୋଦାବରୀ ଯମୁନା ଗୋମତୀ ।
କୃଷ୍ଣବେଣୀ ତ୍ରିବେଣୀ ନର୍ମଦା ସରସ୍ୱତୀ ॥
ମନ୍ଦାଗ୍ନି ସରଯୁ ଗଣ୍ଡୁକୀ ପାପନାଶିନୀ ।
ଦେବନଦୀମାନଙ୍କରୁ ନିର୍ମଳ ଜଳଆଣି ॥
କୃଷ୍ଣାନଦୀ ଚନ୍ଦ୍ରଭାଗା ଅର୍କତୀର୍ଥ ଋଷିକୂଲ୍ୟାରୁ
ଆଣିଲା ।
ପ୍ରାଚୀ ବୈତରଣୀରୁ ଜଳହିଂ ଅଣାଇଲା ॥
ଗୌରବ ସୁରନଦୀ ମହାମର୍ତ୍ତେସର ।
ଶ୍ୱେତଗଙ୍ଗା ତୁଙ୍ଗଭଦ୍ରା ବିନ୍ଦୁ ଯେ
ସାଗର ॥୫୦
ହରପାଦ ମଣିକର୍ଣ୍ଣିକା ସୋମତୀର୍ଥ ।
ଗନ୍ଧନଦୀ କଉଶିକ ପ୍ରୟାଗ ସହିତ ॥
ଭାସ୍କର ତୀର୍ଥ ମାନସରୋବର ପାଣି ।
ପୁଲକୀ କୁଶଭଦ୍ରାର ନୀର ଆଣି ॥
ଜମ୍ବୋଦ୍ୱୀପ ମଧ୍ୟେ ଯେତେକ ଯେ ନଈ ।

ତ୍ରିଅଯେକ ନଦୀରୁ ଜଳ ଆଣିଲାକ ଯାଇ ॥
ଅଣଷଠି ତୀର୍ଥରୁ ଆଣିଲେ ତୀର୍ଥଜଳମାନ ।
ସବୁ ତୀର୍ଥୁ ନୀର ଆଣିଲେ କପିସନ୍ୟ ॥
ଦେଖିଣ ସନ୍ତୋଷ ହୋଇଲେ ସୀତ୍ୟାସଇଂ ।
ଏଥୁଅନନ୍ତରେ ନିଶିଗଲା ପାହି ॥୬୦
ଅଭିଷେକ ଯୋଗାଡ଼ ସୁମନ୍ତ ଘେନି ଆଏ ।
ଆସ୍ଥାନ ନବରେ ପ୍ରବେଶ ରାମ ହୋଏ ॥
ଜାନେକୀ ସଜହୋଇ ଅଇଲେ ତଡ଼ତି ।
ପଟୁଆରି ଅଛନ୍ତି ସକଳ ଯୁବତୀ ॥
ମତ୍ତଗଜ ଗବନୀ ଧୀରେ ଧୀରେ ଚାଲେ ।
ଝଡ଼ା ମୁହୁସୁଲୀ ହୁଳହୁଳି ଦେଲେ ॥
ଲାଜହରଷ ଲୁଚେଇଲେ ଚାନ୍ଦମୁହୀ ।
ନିଜପତି ସନ୍ନିଧେ ମିଳିଲେକ ଯାଇ ॥
ରତ୍ନ ସିଂହାସନେ ବସିଲେ ବେନିଜନ ।
ତଳେ ଥୋଇଲେ ନେଇ
ଶାଳଗ୍ରାମମାନ ॥୭୦
ଋଷିଗଣ ଘେନି ବଶିଷ୍ଟେ ଆସି ମିଳି ।
ସନ୍ଧ୍ୟାବାଳୀମାନେ ଦିଅନ୍ତି ହୁଳହୁଳି ॥
ଶ୍ରୀରାମ ପାଶେ ଜନେକ ଦୁଲ୍ଲଣୀ ।
ବିଷ୍ଣୁ ସନ୍ନିଧେ କି ବିଜୟ କମଳଣୀ ॥
କରେ କାଣ୍ଡକୋଦଣ୍ଡ ଅକ୍ଷୟ ତ୍ରୋଣ କନ୍ଧ ।
ଦକ୍ଷିଣ ପବନ ବହଇ ମନ୍ଦ ମନ୍ଦ ॥
ପଟ ଜ୍ୟୋତିଷ କହଇ ଯୋଡ଼ି କର ।
ଭୋଦେବ ଅନୁକୂଳ ହୋଇଲା ରଘୁବୀର ॥
ଶୁଣି ସପ୍ତଋଷି ହୋଇଲେ ଆଗସରି ।
ବଶିଷ୍ଟେ ନବରତନ ମୁକୁଟ କରେ ଧରି ॥୮୦
ଶ୍ରୀରାମର ଶିରେ ପାଟେକ ବେଢ଼ାଇଲେ ।
ରାମ ଅଭିଷେକ ମୁକୁଟ ବାନ୍ଧିଲେ ॥
ସୀତା ମସ୍ତକେ ଲାଇଲେ ରତ୍ନଚୋଳ ।
ଜୟ ଜୟ ବୋଲି ଶୁଭିଲା ଚହଳ ॥
ବ୍ରହ୍ମା ଶଙ୍କର ସହିତେ ବଜ୍ରଧାରୀ ।
ଅଷ୍ଟବସୁ ଗ୍ରହଗଣ ଦିଗପାଳ ଆଦିକରି ॥
ଏକାଦଶ ରୁଦ୍ର ଅଇଲେ ଚାରିମେଘ ।
ଅଣଚାଶ ପବନ ପଞ୍ଚଅଗ୍ନି ଦେବ ॥
ସିଦ୍ଧ ସାଧେକ ସନକ ସନାତନ ।
ଅପସରୀ କିନ୍ନରୀ ବିଦ୍ୟାଧରୀମାନ ॥୯୦
ଏକକୁ ଆରେକ ରାଇଣ ଆଗସରି ।
ଅନେକ କାଳୁ ଯହିଂକି ଅଛୁ ଆଶ୍ରେ କରି ॥
ରାମ ଅଭିଷେକ ଦେଖିବା ଗୋ ଆସ ।
ଯାହାର ଦର୍ଶନେ ପଳାଇ କଳୁଷ ॥
ଲକ୍ଷ୍ମୀନାରାୟଣଙ୍କର ଅଭିଷେକ ।
ଦେଖିବାକୁ ଉଷତ ଅଟନ୍ତି ଦେବଲୋକ ॥
ଗହଳ ଧନ୍ଦୋଳ ହୋଏ ଅମରସ୍ଥଳୀ ।
ବ୍ରହ୍ମାସହିତେ ସକଳ ଦେବେ ମିଳି ॥
ବିଷ୍ଣୁ ଓହ୍ଲାଇଲେ ଯୋଗଲଗ୍ନ ଘେନି ।
ଦେବଗଣ ଘେନି ଆସଇ
ପଦ୍ମଯୋନି ॥୧୦୦
ଶିରେ କରଦେଇ ବଖାଣନ୍ତି ସ୍ତୁତି ।
ଜୟ ଜୟ ନାରାୟେଣ ଅନନ୍ତ ମୂରତି ॥
ଅନେକ ପ୍ରକାରେ ଯହୁଂ ବିଧାତା ସ୍ତୁତି
କଲେ ।
ରୁଦ୍ର ସହିତେ ଶିରରେ କରଦେଲେ ॥
ଇନ୍ଦ୍ରସହିତେ ଦଶଦିଗପାଳ ।
ଉଦ୍ଧରି ଧର ବୋଲି ଡାକନ୍ତି ସକଳ ॥
ଅପଛରୀ ବିଦ୍ୟାଧରୀ ହୁଳହୁଳି ଦେଲେ ।
ଗାନ୍ଧାର ରାଗେ କିନ୍ନରୀ ଗୀତ କଲେ ॥
ଚତୁର୍ବଦନେ ବ୍ରହ୍ମା ଚାରିବେଦ ଭଣି ।
କୁସୁମ କରେ ବୃଷ୍ଟି କରନ୍ତି ପଦ୍ମଯୋନି ॥୧୦
ଗନ୍ଧର୍ବେ ବଜାଇଲେ ଦୁନ୍ଦୁଭି ଶବଦ ।
ଅଷ୍ଟ ଅପଛରୀ ନାଚନ୍ତି ସୁଛନ୍ଦ ॥
ଏସନେକ ସମୟେ ସପତ ମହାଋଷି ।
ସହସ୍ର ନାମ ପଢ଼ି ଷୋଳକାଣ୍ଡ ଘୋଷି ॥
ନାନାତୀର୍ଥ ଜଳଭରି ବିଶୁଧ୍ୟ ଯେ କଲେ ।
ସପ୍ତଋଷିମାନେ ବିଶୁଧ୍ୟ ଘଟ ଧଇଲେ ॥
ପଞ୍ଚାମୃତମାନ ଯୋଗାଡ଼ ଆଣିକରି ।
ତହୁଂ ବଶିଷ୍ଠ ଋଷି ପଞ୍ଚରତ୍ନ ଭରି ॥
କୃଷ୍ଣାଜିନ ଆଚ୍ଛାଦି ପଞ୍ଚଛାଲ ଥୋଇ ।
ଗଣକ ବୋଇଲେ ଦେବ ଅନୁକୂଳ
ଏହି ॥୨୦
ଶୁଣି ମହାଋଷି ଘେନିଲେ ଦ୍ରବ୍ୟମାନ ।
ପୂର୍ବମୁଖେ ବସିଅଛନ୍ତି ରଘୁନାନ ॥
ପାଟଗଜ ପାଟଅଶ୍ୱ ପୁଷ୍ପେକ ରଥ ଅଛି ।
ତାହାକୁ ହିଂ ପୂଜା କଲେ ରଘୁବଛି ॥
କନେକ ଦଣ୍ଡ ତୋଳି ଧଇଲା ଲକ୍ଷ୍ମଣ ।
ସୀତାଙ୍କୁ କୋଳକରିଅଛନ୍ତି ରଘୁରାଣ ॥
ସପତ ମହାଋଷି ପଞ୍ଚାମୃତ ଘେନି ।
ବେଦପଢ଼ି ଢାଳିଲେ ଶ୍ରୀରାମ ମୂର୍ଦ୍ଧନି ॥
ସଙ୍ଗେ ଅପଛରୀ ହୁଳହୁଳି ଦେଲେ ।
ମଞ୍ଚେ ଜୟ ଜୟ ଶବଦ ଘୋଷିଲେ ॥୩୦
ନାନା ତୀର୍ଥଜଳ ନିଉଡ଼ିଲେ ନେଇଂ ।
ଚାମର ଢାଳୁଛନ୍ତି କିଷ୍କିନ୍ଧାର ସାଇଂ ॥
ବିଭୀଷେଣ ଶ୍ୱେତଛତ୍ର ଘେନିଣ ଠିଆ ।
ଦେଖି ହନୁମନ୍ତର ଉଲ୍ଲସଇ କାୟା ॥
ଜମ୍ଭେବ ଶ୍ରୀରାମର ଚାହାନ୍ତି ଶ୍ରୀମୁଖ ।
ଚାହିଂ ତାକୁ ପ୍ରାପତ ହୋଇଲା କେବଣ
ସୁଖ ॥
ଲକ୍ଷେରାଜା ଧରି ଅଛନ୍ତି ଚାମର ।
ମୂର୍ଦ୍ଧନା ଅଭିଷେକ ଦେଖନ୍ତି ଶ୍ରୀରାମର ॥
ପୁଣି ପୁଣି ମୁନିମାନେ କରନ୍ତି ସ୍ନାହାନ ।
ଦଧିଦୁଗ୍ଧ ଘୃତ ଢାଳନ୍ତି ଅବିଚ୍ଛିନ୍ନ ॥୪୦
ସ୍ତମ୍ଭୀଭୂତ ହୋଇଅଛନ୍ତି ରାବଣାରି ।
ନୀଳଗିରି ଜଗନ୍ନାଥ ଯେହ୍ନେ ସ୍ନାହାନଯାତ୍ରା
କରି ॥
ବଜାନ୍ତି ଟମକ କାହାଳି କମଭେରୀ ।
ହଂସକେରୀ ରାଗେକେ ବଜାଇ ମହୁରୀ ॥
ଚଉକଟି ବେଢ଼ି ନୃତ୍ୟ ଠାବେ ଠାବେ ।
ଅଯୋଧ୍ୟା ନବର ଅମରାବତୀ ଭାବେ ॥
ଅଗସ୍ତି ବୋଇଲେ ମାରକଣ୍ଡକୁ ଚାହିଂ ।
ମାଲ୍ୟବନ୍ତ ପର୍ବତେ ତୋତେ ଯାହା
କହିଲଇଂ ॥
ସେ ରାମଟି ଦଶଗ୍ରୀବ ସମ୍ପଦ କ୍ଷୟକଲା ।
ଏଥି ଆସି ଏଡ଼େ ଅଇଶ୍ୱର୍ଯ୍ୟ ପାଇଲା ॥୫୦
ଦେବଋଷିମାନେ ଅଭିଷେକ କରାନ୍ତି ।
ଲକ୍ଷେକ ନୃପତି ଦେଖ ଚାମର ଢାଳନ୍ତି ॥
ଘେନି ସେ ପିତାମହ ସକଳ ଦେବଗଣ ।
ଶିରେ କରଯୋଡ଼ି ସେ ହଉଛନ୍ତି କ୍ରାପୁଣ୍ୟ ॥
ଆପଣେ ବଜ୍ରଧର ପୁଷ୍ପବୃଷ୍ଟି କଲେ ।
ରୁଦ୍ର ନୃତ୍ୟ କରି ଶ୍ରୀରାମ ମନ ତୋଷିଲେ ॥

ଏସେ ବ୍ରହ୍ମରାଶି ଦେବ ଦଇତାରି ।
ଏହାରେ ସେ ହୋଇଲା ଦତ୍ୟବଳ ମାରି ॥
ଦେବଙ୍କର ଦୁଃଖ ଫେଡ଼ିଲେ ଏ ନିମିତ୍ତେ ।
ରହିଣ ଥିଲେ ଏ ମାଲ୍ୟବନ୍ତ ପର୍ବତେ ॥୬୦
ତୁରେ ମାରକଣ୍ଡ ମନେ ଭ୍ରାନ୍ତି କଲୁ ।
ଏ ଯେ ନାରାୟଣ ନୁହଇଂ ବୋଇଲୁ ॥
ଯେବେ ସେ ସଂପ୍ରତେ କଲୁ ମହାଋଷି ।
ଅଗସ୍ତିଙ୍କ ବଚନେ କଳପରଷି ଭାଷି ॥
ଭୋ କୁମ୍ଭମୁନି ଯାହା କହିଲଇଂ ସତ ।
ଏ ଯେ ଶ୍ରୀରାମ ଅବ୍ୟୟ ଅଚିନ୍ତ ॥
ଏହାର ପରସାଦେ ଦୁଃଖ ମୋର ଗଲା ।
ଏ ନେତ୍ର ଶ୍ରୀରାମର ଅଭିଷେକ ଦେଖିଲା ॥
ବ୍ରହ୍ମାସହିତେ ସକଳ ମୁନିମାନ ।
ଇନ୍ଦ୍ରାଦି ଦିଗପାଳ ଆବର ଯୋଗୀଜନ ॥୭୦
ଚଉଦ ଭୁବନରେ ଏଯେ ବଡ଼ଲୋକ ।
ଦେଖନ୍ତି ଶ୍ରୀରାମର ପାଟ ଅଭିଷେକ ॥
ଗଉତମ ଦୁର୍ବାସା ଆବର କୁମ୍ଭମୁନି ।
ବଶିଷ୍ଟେ ନିଉଡ଼ନ୍ତି ପଞ୍ଚାମୃତ ଘେନି ॥
ସ୍ନାହାନ ପାଣି ପଡ଼ଇ ତାଙ୍କ ତହିଂ ।
ନିସ୍ତରିଲୁ ନିସ୍ତରିଲୁ ବୋଲନ୍ତି ତାହା ଚାହିଂ ॥
ଏବେ ଦେଖିଲୁ ଆମ୍ଭେ ହୋଇଣ ଯେ ଶ୍ୟାନ୍ତି ।
ପୁଣିହିଂ ମନକୁ ଉପୁଜୁଅଛି ଭ୍ରାନ୍ତି ॥
ସଂସାର ପ୍ରଳୟ ହେଲା ଯେବଣ କାଳେ ।
ଦେଖିଲି ନାରାୟେଣ ଅଛନ୍ତି ବଟଡ଼ାଳେ ॥୮୦
ପତ୍ର ଗୋଟିକ ପରେ ଉତ୍ତାନ ଶୟନ ।
ବୁଡ଼ନ୍ତେ ଉଧରି ମୋତେ ଧଇଲେ ନାରାୟଣ ॥
ସେ ରୂପ ଅନୁସରି ନ ଦେଖିଲି କାହିଂ ।
ବିକ୍ରମ ନଗରେ ନରସିଂହ ହୋଇ ॥
ବାମନ ପର୍ଶୁରାମ ଏବେ ରଘୁନାଥ ।
କେହି ନୁହନ୍ତି ଏସନ ସଞ୍ଜାତ ॥
ଏସନେକ ଭାଳୁ ଶ୍ରୀରାମଚନ୍ଦ୍ର ଜାଣି ।
ଅଗସ୍ତିଙ୍କି କହନ୍ତି କୋଦଣ୍ଡ ଚାପପାଣି ॥
କିମ୍ପାଇ ହସିଲୁ ତୁ କହ ମୁନିବର ।
ଘଡ଼ିଏ ହେଲା ଭାଳୁଛ ମାରକଣ୍ଡଙ୍କ ସଙ୍ଗତର ॥୯୦
ଅଗସ୍ତି ବୋଇଲେ ରାମ ପୂର୍ବର ସେ କଥା ।
ସୀତା ହରାଇ ତୁମ୍ଭେ ପାଇଲ ଅବସ୍ଥା ॥
ମାଲ୍ୟବନ୍ତ ପର୍ବତେ ଦେଖିଲୁ ଆମ୍ଭେ ଯାଇ ।
ମୋହୋର ପଛେ ଗଲେ ମାରକଣ୍ଡ ତପସାଇଂ ॥
ତୋତେ ଦେଖି ଆମ୍ଭେ ବାହୁଡ଼ି ଅଇଲୁ ।
ପୂର୍ବକଥା ତାହାକୁ ଆମ୍ଭେ ବାଟରେ କହିଲୁ ॥
ଏବେ ଦେଖିଲୁ ଆମ୍ଭେ ବୀର ଶୂରପଣ ।
ଅଭିଷେକ ବ୍ରହ୍ମା କରୁଛି ଆପଣ ॥
ତେଣୁ ମାରକଣ୍ଡକୁ ବୋଇଲେ ହାଦେ ଦେଖ ।
ମାଲ୍ୟବନ୍ତ ପର୍ବତେ ଏ ପାଉଥିଲେ ଦୁଃଖ ॥୧୦୦
ଏବେ ଅଭିଷେକ ହେଲେ ରାବଣକୁ ନାଶି ।
ପଞ୍ଚାମୃତ ନିଉଡ଼ନ୍ତି ସକଳ ମୁନି ମିଶି ॥
ଲକ୍ଷ୍ମୀ ନାରାୟଣଙ୍କର ହରଷର କାଳ ।
ଦ୍ରଶନେ ସ୍ୱର୍ଗରେ ବସିବା ଦେବଆଳ ॥
ଏସନେକ ବୁଝାଇ କୁହନ୍ତେ ବୁଝିଲେ ମୁନି ।
ବୋଇଲେ ଏହାଙ୍କୁ ମୁଂ ନ ପାରଇ ଚିହ୍ନି ॥
ପ୍ରଳୟ କାଳେ ବଟପୁଟେ ଥିଲା ।
ବୁଡୁ ବୁଡୁ ମୋତେ ସେ ଉଦ୍ଧରି ଧଇଲା ॥
ସେ ମୂର୍ତ୍ତି ନଦେଖିଲି ସପ୍ତ ଅବତାରେ ।
ମୁଂ ହସିଲି ଶ୍ରୀରାମ ଏଥର ଉପରେ ॥୧୦
ଶୁଣି ରଘୁନାଥ ହୋଇଲେ ହସହସ ।
ମାରକଣ୍ଡ ଋଷିଙ୍କି ହକାରିଲେ ପାଶ ॥
ବୋଇଲେ ଯାହା ହାଦେ ଦେଖୁଛୁ ହୋମୁନି ।
ମାୟାରେ ଏମନ୍ତ ମୁଂ କରିଛି ପୂର୍ବେ ପୁଣି ॥
ସଂସାର ଭାଙ୍ଗି ମୁଂ ବିଶ୍ୱଗର୍ଭରେ ଥୋଇଲି ।
ମାୟାଧର ପୁରୁଷ ମୁଂ ପୁଣି ଶରୀରୁ ଜାତକଲି ॥
ଏବେ ନିମାୟା ମୁଂ ଅଟଇ ସତ୍ୟବାଦୀ ।
ସେ ରୂପ ଶରୀରେ ମୋର ଅଛିନା ଆଛାଦି ॥
ଏଥୁଅନନ୍ତରେ ବହୁତ ଯୁଗ ଯିବ ।
ଦ୍ୱାପର ଯୁଗ କିଛି କିଛି ଥିବ ॥୨୦
ତେବେ ସେ ସେ ରୂପ ହୋଇବ ଅବତାର ।
ସେ ରୂପେ ନାଶିବି ଅବନୀର ଭାର ॥
ମାୟା କରିଣ ସଂହାରିବି ସୃଷ୍ଟି ।
ତହିଂ ମୋର ସ୍ୱରୂପ ଦେଖ ହୋ ପରମେଷ୍ଠୀ ॥
ଏସନେକ ବୋଲି ମାରକଣ୍ଡକୁ ତିଆରି ।
କେହି ନ ଜାଣିଲେ ଭାଳେଣି ତିନି କରି ॥
ଏଥୁଅନନ୍ତରେ ସରିଲା ଅଭିଷେକ ।
ସାଧୁ ସାଧୁ କରନ୍ତି ଅଯୋଧ୍ୟାର ଲୋକ ॥
କେ ବୋଲେ ବନବାସ ନ କରନ୍ତେ ଯେବେ ।
ଏହି ଅଭିଷେକ କି ହୋଇଥାନ୍ତା ତେବେ ॥୩୦
କେ ବୋଲେ ଯେତେବେଳକୁର ଯେମନ୍ତ ଯୋଗ ।
ବେଳକାଳ ଜାଣି ବିଧାତା ଦିଅଇ ଭୋଗ ॥
ଏଥୁଅନନ୍ତରେ ଗୋ ହେମବନ୍ତୀ ଶୁଣ ।
ଅଭିଷେକ ବିଧାନସାରିଲେ ଦେବ ରଘୁରାଣ ॥
ସେ ସ୍ଥାନରୁ ଉଠି ଭିତରକୁ ଗଲେ ।
ସୁବାସିଲା ଜଳେ ଶ୍ରୀରାମ ସ୍ନାନ କଲେ ॥
ସୀତା ଅନ୍ତଃପୁରେ ହୋଇଲେ ସୁବେଶ ।
ଲକ୍ଷେକ ଚାମର ପଡ଼ଇ ଚଉପାଶ ॥
ନାନାରତ୍ନେ ସେ ଯେ ଲାଇଲେ ଅଳଂକାର ।
ନାନାରତ୍ନରେ ବାହି ସୁବର୍ଣ୍ଣେ ଶୋଭାକର ॥୪୦
ଶିରରେ ମୁକୁଟ ସୂର୍ଯ୍ୟର ତେଜଜାଣି ।
କୁଣ୍ଡିକା ପୁଂଜି ଜାଣି ନାସାର ବସଣୀ ॥
ଖୋଷାର ଉପରେ ମୁକୁତା ଜାଲ ଖଞ୍ଜି ।
ଚରଣେ ନୂପୁର ଅଙ୍ଗୁଷ୍ଠିରେ ମୁଦି ॥
ସର୍ବାଙ୍ଗେ ଚନ୍ଦନ କସ୍ତୁରୀର ଚିତା ।
କପାଳେ ଲଗାଇଲେ ମୁକୁତା ସୀମନ୍ତା ॥
କୁଙ୍କୁମ ଲେସା ପ୍ରାୟେ ଝଲକେ ବଦନ ।
ହୀରାଚକ୍ର କାମ ଶୋହଇ ବିତପନ ବେନିକର୍ଣ୍ଣ ॥
ପାଟେ ପିନ୍ଧି ପାଟେ ଉପରାଣ ଦେଲା ।
ମିଥୁନ ବିଜୁଳି କି ତଳରେ ପଡ଼ିଲା ॥୫୦

ଶ୍ରୀରାମ ମାର୍ଜଣା ସାରି ସିଂହାସନେ
ବିଜେକଲେ ।
ଅକ୍ଷୟ ତ୍ରୋଣ ପୁଣ କାନ୍ଧରେ ଭିଡ଼ିଲେ ॥
ଶିରରେ ମୁକୁଟ ଶର୍ବଣେ କୁଣ୍ଡଳ ।
ହୃଦରେ ପଦେକ ଲୟଇ ରତ୍ନ ମାଳ ॥
ବୀର ଆସନେ ବିଜେ କଲେକ ରଘୁସାଇଂ ।
ମୁଦୁସୁଲୀମାନେ ସତୀଙ୍କି ଘେନିଯାଇ ॥
ଶ୍ରୀରାମର ପାଶରେ ବସିଲେକ ଦେବୀ ।
ବିଷ୍ଣୁ ସହିତେ ଅବା କ୍ଷୀରୋଦ୍ର ସମ୍ଭବୀ ॥
ସୁବର୍ଣ୍ଣମୟେ ଘର ଉପରେ ଚନ୍ଦ୍ରାତପ ।
ତହିଂରେ ବନ୍ଦାପନା ହୁଅନ୍ତି ରାମନୃପ ॥୬୦
ନାନାପୁଷ୍ପେ ଯହିଂ ମଣ୍ଡିଲେ ମଣ୍ଡଣି ।
ମୁକୁତା କେରା କେରା ଲୟଇ ନାନାମଣି ॥
ଦୁଇଘଡ଼ିମାନେ ଶ୍ରୀରାମ ବନ୍ଦାପନା ।
ଲକ୍ଷେ ସୁବର୍ଣ୍ଣ କୁମ୍ଭ ଘେନି ଉଭା ଲକ୍ଷେ
କନ୍ୟା ॥
ଲକ୍ଷେକ ଚାମର ପଡ଼ଇ ଚଉପାଶ ।
ଲକ୍ଷେକ ଶଙ୍ଖ ଶୁଭଇ ଯେ ଘୋଷ ॥
ତିନିଦ୍ୱାର ଫେଡ଼ି ଦେଲା ପଢ଼ିଆରି ।
ବନ୍ଦାପନା କରି ଅଇଲେ ସର୍ବନାରୀ ॥
ସ୍ୱର୍ଗରେ ଦେବତାଏ ଆନନ୍ଦେ ଦେଖନ୍ତି ।
ଅପଛରୀମାନେ ହୁଳହୁଳି ଦ୍ୟନ୍ତି ॥୭୦
ପଞ୍ଚମ ସ୍ୱରେ କିନ୍ନରୀ ଗୀତ ଗାଇ ।
ଶ୍ରୀରାମ ବନ୍ଦାପନା ଦେଖନ୍ତି ଦେବେ ଯାଇ ॥
ନବରତ୍ନେ ଜଡ଼ିଲା ସୁବର୍ଣ୍ଣ ରତ୍ନମାଳ ।
ପବନହାତେ ଦେଇ ପଠିଆଇଲେ
ସୁରଆଳ ॥
କୁବେର ମୁକୁତା ମାଳ ପୁଣ ଦେଲା ।
ଶରଦର ଚନ୍ଦ୍ର ପ୍ରାୟେକ ଦିଶିଲା ॥
ବରୁଣ ଦେଲା ପଦ୍ମରାଗ ମାଣିକ୍ୟର ମାଳ
ଜଣାଇଲା ।
କିରଣ ବିରାଜଇ ନିଧୂମ ଅଗ୍ନି ଜାଳ ॥
ତିନିମାଳ ଘେନି ପବନ ଚଳିଲା ତୁରିତ ।
ଶ୍ରୀରାମ ଛାମୁରେ ମିଳିଲା ସାକ୍ଷାତ ॥୮୦
ଇନ୍ଦ୍ର ଏହା ଦେଲା ବୋଲିଣ ଜଣାଇଲା ।
ଆପଣେ ଶ୍ରୀରାମ ଗଳାରେ ଲମ୍ୱାଇଲା ॥

ମାଣିକ୍ୟ ମାଳେ ଲମ୍ବାଇଲେ ପୁଣି ।
ସୀତ୍ୟାକଣ୍ଠେ ଲମ୍ୱାଇଲେ ମୁକୁତା ରତ୍ନମଣି ॥
ପାରିଜାତେକ ପୁଷ୍ପ ସ୍ୱର୍ଗରୁ ଆଣିଥିଲେ ।
ଶ୍ରୀରାମ ସୀତ୍ୟାର କଣ୍ଠେ ଲମ୍ୱାଇଲେ ॥
କଳାମେଘେ ଯେହ୍ନେ ବିଜୁଳି ବିରାଜି ।
ସୀତ୍ୟାକଣ୍ଠରେ ମୁକୁତାମାଳ ସାଜି ॥
ସୁବର୍ଣ୍ଣ ପ୍ରତିମାକି ମାଣିକ୍ୟ ଆଭରଣ ।
ସୀତ୍ୟାଙ୍କୁ କଲେ କିସେ ତେମନ୍ତ
ଭୂଷଣ ॥୯୦
ପବନ ଦେବତା ଯହୁଂ ଆପଣେ ପୂଜାକଲା ।
ମଥାରେ ହାତଦେଇ ସେ ପଛଘୁଞ୍ଚିଗଲା ॥
ଦେଖି ମୁନିମାନେ ଅର୍ଘ୍ୟ ଆଣିଦେଲେ ।
ଯୁଗେ ଯୁଗେ ରାଜ୍ୟ କରସି ବୋଇଲେ ॥
ଲକ୍ଷ୍ମଣ ଟେକି ଧଇଲେ ବୀରଛତ୍ରୀ ।
ପାଦ୍ୟ ଟେକି ଧରି ଅଛଇ ମାରୁତି ॥
ଭରଥ ଶତ୍ରୁଘନ ଢାଳନ୍ତି ଚାମର ।
ଆଲଟ ଧରିଅଛି ବିଭୀଷଣ ବୀର ॥
ସୁଗ୍ରୀବର ରାଏ ବିଞ୍ଚନ୍ତି ବିଞ୍ଚଣି ।
ଦର୍ପଣ ଧରିଅଛନ୍ତି ରକ୍ଷମଣି ॥୧୦୦
ଅଙ୍ଗଦ ଧୂପକାଠି ନଳ ଖଣ୍ଡାଛୁରୀ ।
ସୁବର୍ଣ୍ଣ ପାଦୁକା କରେ ଅଛି ଧରି ॥
ଦଧିମୁଖ ପରିଘ ନୀଳ କମାୟେଣ ।
ଗନ୍ଧମାର୍ଦ୍ଦନ ଧରିଛି ଦର୍ପଣ ॥
ତାରାକ୍ଷ ବିଞ୍ଚଇ ଘେନିଣ ଝିନବାସ ।
ଶଉରୀ ସେନାପତି ବିଞ୍ଚୁଛନ୍ତି ପୁଷ୍ପ ॥
ଶତବଳ ଶ୍ୱେତ ଚାମର ଅଛି ଧରି ।
ବେଦ ପଢୁଛନ୍ତି ମୁନିମାନେ ମିଳି ॥
ସୁମନ୍ତ ପଟୁଆର କରଇ ସର୍ବଲୋକ ।
ଚିତ୍ରସେନ ରଖିଅଛଇ ପୁଷ୍ପେକ ॥୧୦
ପାଟଗଜ ପାଟଅଶ୍ୱ ଆଗେ ଅଛି ।
ବନ୍ଦାପନା ବିଧି ହୁଅନ୍ତି ରଘୁବଛି ॥
ନଗ୍ରନରନାରୀ ଦେଖନ୍ତି ଆନନ୍ଦେ ।
ସ୍ୱର୍ଗରେ ଦୁନ୍ଦୁଭି ବାଇଲେ ସୁଛନ୍ଦେ ॥
ଲକ୍ଷେ ନୃପତି ଆସିଣ ଅର୍ଘ୍ୟ ଦେଲେ ।
ଶ୍ରୀରାମ ଉଭାରେ ସୀତାଙ୍କୁ ବନ୍ଦାଇଲେ ॥
କଉଶୁଲା, କଏକୟା, ସୁମିତ୍ରା ତିନିମାଏ ।

ସାତଶ ପଞ୍ଚାଶ ସପତଣୀ ଘେନିଆଏ ॥
ସୁବର୍ଣ୍ଣ ଥାଳୀରେ ପଞ୍ଚ ରତ୍ନ ଭରି ।
ଦୁର୍ବା ଅକ୍ଷତ ଦୀପାବଳୀ ସଜକରି ॥୨୦
ଆଗେଣ ମଟୁଡ଼ି ଚାଲଇ ଗେଲ ଗେଲ ।
ଅର୍ଘ୍ୟ ଦେଲେ ଆସି ଅମାଜିଆପଲ ॥
କଉଶୁଲା, କଏକୟା, ସୁମିତ୍ରା ତିନି ମାଏ ।
ଆଗେ ପୁତ୍ରବଧୂ ବନ୍ଦାଇବାକୁ ସଧ କୟେ ॥
ଶ୍ରୀରାମ ଶିରେ ନେଇ ପୁଷ୍ପ ଅକ୍ଷତ
ଦେଲେ ।
ନୀର ନିଉଡ଼ାଇ ଅର୍ଘ୍ୟ ବନ୍ଦାଇଲେ ॥
ଏକକୁ ଆରେକ ଉଭୁରାଉଭୁରି ।
ମୁଦୁସୁଲୀମାନେ ହୁଳହୁଳି ଧ୍ୱନିକରି ॥
ମାତାଙ୍କର ବନ୍ଦାପନା ସରିଲା
ଯେତେବେଳେ ।
ନଗ୍ର ଯୁବତୀ ଅର୍ଘ୍ୟ ଦେଲେ
ତେତେବେଳେ ॥୩୦
ଶ୍ରୀରାମ ଉଭାରେ ସୀତ୍ୟାଙ୍କୁ ଅର୍ଘ୍ୟ ଦିଅନ୍ତି ।
ଦୁର୍ବାକ୍ଷତ ନେଇ ଶିରରେ ନିଉଡ଼ନ୍ତି ॥
ସୁମନ୍ତ ସହିତେ ସକଳ ପାତ୍ରମାନ ।
ଶ୍ରୀରାମଙ୍କୁ ଅର୍ଘ୍ୟ ଦିଅନ୍ତି ଅନୁକ୍ଷଣ ॥
ଲକ୍ଷେକ ନୃପତି ବନ୍ଦାପନା କଲେ ।
ସପତ ମହରଷି ଶିରରେ ଅର୍ଘ୍ୟ ଦେଲେ ॥
ଇନ୍ଦ୍ରକୁ ଘେନିଣ ସକଳ ସୁରମୁନି ।
ଶ୍ରୀରାମଙ୍କୁ ବନ୍ଦାନ୍ତି ବିଷ୍ଣୁରୂପ ଚିହ୍ନି ॥
ଏକକୁ ଆରେକ ଶରଧାରେ ଆଗୁସାର ।
ହୁଳହୁଳି ଶବଦ ଶୁଭଇ ଅପାର ॥୪୦
ଅଗ୍ରଧୂପ ଧୂଆଁ ତଇଳ ଚଉପାଶେ ।
ମଡ଼ାମଡ଼ି ହୋଇଲେ ପଡ଼ିବାର ପୁଷ୍ପେ ॥
ମୁକୁତାମଣି ଝଡ଼ା ଛିଡ଼ିଣ ପଡ଼ଇଂ ।
ଝିନବସ୍ତ୍ରମାନ ଚିରିହୋଇ ଯାଇ ॥
ଶରଧାରେ ଗହଳ ହୋଇଲେ ନରନାରୀ ।
ଯୁବତୀଙ୍କ ସଙ୍ଗେ ମିଶିଲେ ତପଚାରୀ ॥
ତପୀଙ୍କର ଅଙ୍ଗ ବିଭୂତି ଯୁବତୀଙ୍କ ଅଙ୍ଗେ
ଲାଗଇ ।
ଯୁବତୀଙ୍କର ହଳଦୀ ତପୀଙ୍କର ଦେହରେ
ଘଷିହୋଇ ॥

ନୃପତିଙ୍କ ସଙ୍ଗେ ବେଶ୍ୟାଏ ବସିଲେ ।
ଅମନାତ୍ୟଙ୍କ ଗହଳେ ଅମାଜିଆଏ ମିଳିଲେ ॥୫୦
ଏକକୁ ଆରେକ ନପାରନ୍ତି ବାରି ।
ଶ୍ରୀରାମଙ୍କୁ ଦେଖିବାକୁ ଉଭୁରାଉଭୁରି ॥
ଘଡ଼ିଏ ପରିଯନ୍ତେ ହୋଇଲା ମହାଗୋଳ ।
ନାନା ପ୍ରତିବାଦ୍ୟ ବାଜଇ କୁତୂହଳ ॥
ଏସନେକ ସମଏ ବନ୍ଦାପନା ସାରି ।
ଲୋକ ଦୂରକରି ଦେଲେ ପ୍ରତିହାରୀ ॥
ସୁମନ୍ତକୁ ଚାହିଁ ବୋଲନ୍ତି ଶ୍ରୀରାମ ।
ଯେତେକ ବ୍ରାହ୍ମଣ ଅଛନ୍ତି ମୋର ଗ୍ରାମ ॥
ଜନେକ ସ୍ନାହାନ କରାଅ ସବୁଙ୍କରି ଶିରେ ।
ଦରିଦ୍ରକୁ ଦାନ ଦିଅ ଦକ୍ଷିଣା ପରକାରେ ॥୬୦
ଶୁଣିଣ ସୁମନ୍ତ ବ୍ରାହ୍ମଣକୁ ଦାନଦେଲେ ।
ଲକ୍ଷେ ରାଜାକଇ ଖଣ୍ଡୁଆ ବିଳୋହିଲେ ॥
ଜଣେକ ପଟନୀ ଖଣ୍ଡୁଆ ଦୁଇଶାଢ଼ୀ ।
ରଘୁନାଥ ଆଗ୍ୟାଂ ପ୍ରମାଣେ ସୁମନ୍ତ ଦେଲା କାଢ଼ି ॥
ମାଳ ଚନ୍ଦନ ବିବିଧ ଅଳଙ୍କାର ।
ପାଇଣ ଆନନ୍ଦ ହୋଇଲେ ନୃପବର ॥
ସେହି ପ୍ରକାରେ ବିଭୀଷଣେକୁ ଦେଲେ ଶାଢ଼ୀ ।
ଆପଣେ ରଘୁନାଥ ଗଳାରୁ ମୁକୁତା ମାଳ କାଢ଼ି ॥
ଲଙ୍କପତି ଗଳାରେ ନେଇଣ ଲମ୍ବାଇଲେ ।
ସେହି ସମସ୍ୟାଏ ସୁଗ୍ରୀବରକୁ ଦେଲେ ॥୭୦
ଇନ୍ଦ୍ର ଦେଇଥିଲା ଯେଉଂ ପଦ୍ମମାଳ ।
କିଷ୍କିନ୍ଧା ରାଜାକୁ ତାହାହେଲେ ରଘୁବାଳ ॥
ମାଣିକ୍ୟର ମାଳା ବରୁଣ ଦେଇଥିଲା ।
ଗଳାରୁ କାଢ଼ି ତାହା ଅଙ୍ଗଦକୁ ଶ୍ରୀରାମ ଦେଲା ॥
କୋବେର ଦେଲାର ମୁକୁତା ରତ୍ନହାର ।
ଆପଣେ କଣ୍ଠରୁ ତାହା କାଢ଼ିଲେ ରଘୁବୀର ॥
ସୀତ୍ୟାର କଣ୍ଠରେ ଆଭରଣ କଲେ ନେଇଂ ।
ଶରଧାରେ ରତ୍ନ ବିଳୋହିଲେ ଗୋସାଇଂ ॥

ଜାନେକୀ ସେ ମାଳ କଣ୍ଠରୁ କାଢ଼ିଲା ।
ଅନୁଗ୍ରହ ନିମନ୍ତେ ହନୁମନ୍ତକୁ ଦେଲା ॥୮୦
ରତ୍ନମାଳା ଦେଲାବେଳେ ବୋଲନ୍ତି ଦେବୀସୀତ୍ୟା ।
ଏ ବ୍ରହ୍ମାଣ୍ଡେ ହନୁମନ୍ତ ତୁ ହୋଇବୁ ବିଧାତା ॥
ଶୁଣି ମୁନିମାନେ ସାଧୁ ସାଧୁ କଲେ ।
ଲକ୍ଷ୍ମୀର ଦୟା ଏହାକୁ ଅଛଇ ବୋଇଲେ ॥
ହନୁମନ୍ତ ଶିରେ ଦେଲେ ମୁନି ଅର୍ଘ୍ୟ ।
ପ୍ରସନ୍ନ ହୋଇଣ ବୋଇଲେ ବର ମାଗ ॥
ତପୀଙ୍କର ବଚନେ ବୋଲଇ ମାରୁତି ।
ଯେତେକାଳ ଥିବ ଶ୍ରୀରାମଙ୍କ ଯଶ କୀରତି ॥
ତେତେକାଳ ଜୀଇଂଥିବି ସୁସ୍ଥ ହୋଇ ।
ଏହୁସେ ବାଞ୍ଛା ମୋର ଅନ୍ୟରେ କାର୍ଯ୍ୟ ନାହିଁ ॥୯୦
ଶୁଣି ମୁନିମାନେ ବୋଇଲେ ଅସ୍ତୁ ହେଉ ।
ଯାହା ସେ ମାଗିଲୁ ହନୁ ଯୁଗେ ଯୁଗେ ରହୁ ॥
ଯହୁଂ ସେ ମୁନି ବୋଇଲେ ଏହା ।
ପ୍ରସନ୍ନେ ବୋଇଲେ ସ୍ୱାମୀ ରଘୁକୁଳ ନାହା ॥
ହସି ହନୁମନ୍ତକୁ କୋଳ ରାମକଲେ ।
ମୁଖକୁ ଚାହିଁ ତାକୁ କଲ୍ୟାଣ ବାଞ୍ଛିଲେ ॥
ଯିସ ଆହାର ତୁ ଲୋଡ଼ିବୁ ଯେତେବେଳେ ।
ଅଦଭୁତେ ପ୍ରାପତ ତୋତେ ହୋଇବ ତତକାଳେ ॥
ରାମାୟଣ ଯୁଦ୍ଧରେ ଯେତେକ ତୋର ବଳ ।
ସେହି ପ୍ରାକର୍ମ ତୁ ବହିବୁ ତତକାଳ ॥୧୦୦
ଚକ୍ର ଅସ୍ତ୍ର ବ୍ରହ୍ମ ଅସ୍ତ୍ର ପାଶୁପତ ଘାଏ ।
ବଜ୍ରରେ ନାଶ ଯେ ନୋହିବ ତୋର କାଏ ॥
ଯେସନେକ ସମୟେ ବୋଇଲେ ମହାସ୍ୟତୀ ।
ବସିବା ଠାବେ ଅମୃତ ପାଇବୁ ମାରୁତି ॥
ସର୍ବଦା ଆରୋଗ୍ୟ ହୋଇବ ତୋହୋର ତନୁ ।
କଳ୍ପକଳ୍ପାନ୍ତେଣ ତୁ ବସିଥିବୁ ହନୁ ॥
ଯେ ତୋତେ ସେବା ହୋ କରିବ ବାନର ।
ଆୟୁଷ ବର୍ଦ୍ଧିତ ହୋଇବ ତାହାଙ୍କର ॥
ଏସନେକ ବର ଦେଲେ ରାମରାଣୀ ।

କୃତ କୃତ ହୋଇଲେ ସକଳ ଲୋକ ଶୁଣି ॥୧୦
ଏଥୁଅନନ୍ତରେ ସରିଲା ବନ୍ଦାପନା ।
ଅନ୍ତଃପୁରେ ବିଜେ କଲେକ ଅନ୍ନପୂର୍ଣ୍ଣା ॥
କୟେକୟା କଉଶଲ୍ୟା ଆବୋରି ଘେନିଗଲେ ।
ଆବର ଶାଶୁମାନେ ସଙ୍ଗେ ଗୋଡ଼ାଇଲେ ॥
ସୁମିତ୍ରା ସୀତ୍ୟାଙ୍କୁ ଧରିଛନ୍ତି କୋଳକରି ।
ଧୀରେ ଧୀରେ ଚାଲଗୋ ବୋଲନ୍ତି ସର୍ବନାରୀ ॥
ଦେବସ୍ତିରୀଙ୍କ ମଧ୍ୟେ ଚଞ୍ଚଳା ଯେହ୍ନେ ଦିଶଇ ।
ତେସନ ସଂଘାତ ହୋଇ ଅନ୍ତଃପୁରେ ପଶଇ ॥
ଧାଇ ପରିବାରୀ ଝଡ଼ା ମୁଦ୍ରସୁଲୀ ।
ହୁଳହୁଳି ଧ୍ୱନିକି ସାହେର ଉଚ୍ଛୁଳି ॥ ୨୦
ଅନ୍ତଃପୁରେ ଦେବୀ ହୋଇଲେ ପବେଶ ।
ବେଢ଼ିଣ ଅଛନ୍ତି ସକଳ ରାଣୀହଂସ ॥
କଉଶଲ୍ୟା ଚରଣେ ପ୍ରଣମ୍ୟ କରଇ ମହାସ୍ୟତୀ ।
କୋଳକରି ଶାଶୁଏ ମୁଖରେ ଚୁମ୍ବନ ଦିଅନ୍ତି ॥
ବୋଲନ୍ତି ମାଏ ଗୋ ଚିରକାଳ ଜୀଅ ।
ଶ୍ରୀରାମର ପ୍ରିୟବତୀ ରମଣୀମଣି ହୁଅ ॥
ଏଥୁ ଅନନ୍ତରେ ଜନେକଦୋହିତା ।
କୟେକୟାକୁ ନମସ୍କାର କରଇ ଦେବୀ ସୀତ୍ୟା ॥
ଭ୍ରଥର ଜନନୀ ଆପଣେ ତୋଳିଧରି ।
ମୁଖେ ଚୁମ୍ବନ ଦେଇ ଭିଡ଼ିଣ କୋଳକରି ॥୩୦
କଲ୍ୟାଣ କରଇ ଅତି ସେନେହ ଭରେ ।
ବୋଲନ୍ତି ବର୍ଦ୍ଧିତ ହୁଅ ତୁ ଆରୋଗ୍ୟ ଶରୀରେ ॥
ସ୍ୱାମୀରେ ସୁହାଗୀ ହୁଅ ଚନ୍ଦ୍ରମୁଖୀ ।
ସ୍ୟତୀଙ୍କର ସଙ୍ଗେ ତୁ ଆଗେ ହୁଅ ଲେଖି ॥
ବେନି ପୁତ୍ର ପ୍ରସବ କରସି ଗୋ ମାଏ ।
ଯୁଗେ ଯୁଗେ ତୁ ଧରସି ଅମର କାଏ ॥

ଏଥୁ ଅନନ୍ତରେ ସୁମିତ୍ରା ପାଶେ ଗଲା ।
ପଣନ୍ତ ପ୍ରସାରି ଚରଣେ ଓଳଗିଲା ॥
ଲକ୍ଷ୍ମଣର ଜନନୀ ଧଇଲା କୋଳେ ଆଣି ।
ମୁଖେ ଚୁମ୍ବନ ଦେଇ ବୋଇଲା ତୁ ହୁଅ
ସୁଲକ୍ଷଣୀ ॥୪୦
ସ୍ୱାମୀରେ ସୁହାଗୀ ଆବର ପୁତ୍ରବତୀ ।
ଜନ୍ମେ ଜନ୍ମେ ଶ୍ରୀରାମ ହୋଉ ତୋର ପତି ॥
ଏସନେକ ବୋଇଲିଣ କଲ୍ୟାଣ ଦେବୀ
କଲେ ।
ଆବର ଶାଶୁମାନଙ୍କୁ ସୀତ୍ୟା ଓଳଗିଲେ ॥
କୋଳକରି ମୁଖେ ଦିଅନ୍ତି ଚୁମ୍ବନ ।
କେହୁ ଆନନ୍ଦେଣ ଚାହାନ୍ତି ବଦନ ॥
କେ ଦେହ ଆଉଂସି ପରିମୃଣ୍ଡା ଯାନ୍ତି ।
ଆଜ ନିସ୍ତରିଲୁ ବୋଲିଣ ବୋଲନ୍ତି ॥
ସୀତାଙ୍କର ସହୀ ସଙ୍ଗାତୁଣୀମାନେ ।
ଆନନ୍ଦ ପୁଲକିତ ସବୁଙ୍କରି ମନେ ॥୫୦
ମନ୍ଥୁଡ଼ିର ଗେଲ କହିଲେ ନସରି ।
ପୂର୍ବେ ଦ୍ରୋହ କଲା କଥାନ୍ତ ପାଶୋରି ॥
କେହି କାହାକୁଇ ନକରନ୍ତି ହିଂସା ।
ସବିହେଂ ସବୁଙ୍କୁହିଂ କରନ୍ତି ପ୍ରଶଂସା ॥
ବାବୁ ବିଧାତାରେ ଏସନେକ ବିଧି ।
ଯାହାକୁ ଯେମନ୍ତ କଥା ତାହାକୁ ତେମନ୍ତ
ପ୍ରବୋଧି ॥
ସେହି ସେ ଜାଣଇ ସକଳ କଥାମାନ ।
ବ୍ରହ୍ମାଣ୍ଡ ଭିତରେ କେହୁ ନଜାଣନ୍ତି ଆନ ॥
ସେହି ଶ୍ରୀରାମକୁ ରାଜ୍ୟ ଭ୍ରଷ୍ଟ କଲେ ।
କଯେକୟା ଜନନୀ ମନ୍ଦ ଚିନ୍ତଇ
ତେତେବେଳେ ॥୬୦
ଅଦୋଷେ ଦଶରଥ ବିପୁନ୍ୟେ ପେଷିଲା ।
ତେଡ଼େ ଧାର୍ମିକ ପୁତ୍ରକୁ ଝିଙ୍ଗାସିଲା ॥
ରାମ ବନ ଗଲେ ମୃତ୍ୟୁ ପାଇଲେକ ପିତା ।
ଯେସନେକ କୃତ୍ୟ କଲେ କଯେକୟା
ମାତା ॥
ଫୁଳମୂଳ ଆହାର ଖୋଜି ନ ପାଇଲେ ।
ନିରେଖ ନିର୍ବଳ ହୋଇଣ ବନସ୍ତେ
ବୁଲିଲେ ॥

ହନୁମନ୍ତ ଭେଟିଲା ସେ ଅରଣ୍ୟ ବାନର ।
କାଳବେଳ ଜାଣି କଲାକ ଉପଚାର ॥
ସୁଗ୍ରୀ ମିତ୍ର ହୋଇଲା ଭାଇ ସୋଗ ଛାଡ଼ି ।
ଶୁଭ ହେଲା କାଳେ ସମୋଦ୍ରେ ବନ୍ଧ ପଡ଼ି ॥
ଅବୋଧ ମର୍କଟ ଭାଲୁଙ୍କ ପ୍ରବୋଧିଲେ ।
ଦଇତକୁ ମାରି ରଣଗୋଳ କଲେ ॥
ଚଉଦ ଭୁବନେ ଅଜଏ ଦଶଶିରି ।
ସଂଗୋତ୍ର ସହିତେ ରାମ ସଂଫୋଡ଼େ ବଧ୍ୟ
କରି ॥
ଦିଗପାଳ ଭାଇ ଛାଡ଼ିଲା ବିଭୀଷେଣ ।
ଶ୍ରୀରାମ ପାଦେ ଆସି ପଶିଲା ଶରଣ ॥
ମରମ କହିଣ ମରାଇଲା ସଗୋତ୍ର ।
ତିନିପୁରେ ଶ୍ରୀରାମର ଭୁଜବଳ ବିଦିତ ॥
ହଜିଲା ଯୁବତୀ ପାଇଲେ ପୁନରପି ।
ବିଭୀଷେଣକୁ ରାଜା କରି ଲଙ୍କାଗଡ଼େ
ସ୍ଥାପି ॥୮୦
ଦେବରଥ ଚଢ଼ିଣ ଅଯୋଧ୍ୟାକୁ ଅଇଲେ ।
ଲକ୍ଷେକ ନୃପତି ଦର୍ଶନ ଆସି କଲେ ॥
କଯେକୟା ଭ୍ରଥ ମନ୍ଥୁଡ଼ି ତିନିଜଣ ।
ଦୋଷ କଲେ ବୋଲି ନଧଇଲେ ମନ ॥
କଉଶୁଲାରୁ ଅଧିକ ଆନନ୍ଦ ଭ୍ରଥ ମାତା ।
ମନ୍ଥୁଡ଼ିର ପିଣ୍ଡରୁ କି ଉପୁଜିଅଛି ସୀତା ॥
ଯେ ଯାହାକୁ ଯେହ୍ନେ ସେ ତାହାଙ୍କୁ
ତେହ୍ନେ ।
ବାବୁ ବିଧାତାରେ ଭିଆଇ ଅଛି ଏହ୍ନେ ॥
ସେ ବେଳେ ତେସନ ଏବେଳେ ଏହା
କଲୁ ।
ନୋହିଲେ କେମନ୍ତେ ଆନେ ବିଧାତା
ବୋଲାଇଲୁ ॥୯୦
ଦଶରଥର ସାତଶ ପଚାଶ ରାଣୀ ।
ଏକର କୋଡ଼ରୁ ଆରେକ କୋଡ଼କୁ ଆଣି ॥
ଏସନେକ ସମଏ ବେହେରା ମୃଦୁସୁଲୀ ।
ସୀତାର ଆଗରେ ଶ୍ରୀରାମ ଆଜ୍ଞା ବୋଲି ॥
କର ଯୋଡ଼ି ବୋଲନ୍ତି ଶୁଣସି ଗୋ ମାଏ ।
ଯାହା ଆଜ୍ଞା କଲେ ଶ୍ରୀରାମଚନ୍ଦ୍ର ରାଏ ॥
ଚଉଦ ବରଷ ଅରଣ୍ୟେ ଆହାର ନାହିଂ ।

ଆଜହୁଂ ମଣୋହି କରିବେ ତୋର ସାଇଂ ॥
ଲକ୍ଷେ ରାଜା ଆବର ପଚିଶ ଯୂଥପତି ।
ମନ୍ତ୍ରୀ ଅମାନାତ୍ୟ ଘେନିଣ ସବୁନ୍ତି ॥୧୦୦
ଏସନେକ ବୋଲିଣ ଶ୍ରୀରାମ
ଆଜ୍ଞାଦେଲେ ।
ରାନ୍ଧଣା ବେଗେ କର ଗୋ ବୋଲିଣ
ବୋଇଲେ ॥
ଶ୍ରୀରାମ ଆଜ୍ଞାରେ ଛାଡ଼ିଲେ ସକଳ ଚିନ୍ତା ।
ରାନ୍ଧଣା ବିଧାନ ନେଇ ଦେଲେକ ସୁମିତ୍ରା ॥
ଦେଖି ବଇଦେହୀ ହୋଇଲେ ହରଷ ।
ଯେ ବିଧି ରାନ୍ଧଣା କଲେକ ଷଡ଼ରସ ॥
ଯାହା ଆଜ୍ଞା ପମାଣେ ଉପୁଜଇ ସମସ୍ତ ।
ଅନ୍ନ ରାନ୍ଧଣା ତାହାକୁ ଅଟଇ କିଛିତ ॥
ଘଡ଼ିକ ଭିତରେ ସବୁ ନିର୍ବାକଲା ।
ପାର୍ବତୀ ଆଗେ ଏହା ଶଙ୍କର କହିଲା ॥୧୦
ଶୁଣ ଗୋ ଶାକାୟେରୀ ଏଥୁଅନନ୍ତରେ ।
ଶ୍ରୀରାମ ବିଜେ କଲେ ବନ୍ଦାପନା ନଗରେ ॥
ବଶିଷ୍ଠ ସହିତେ ସକଳ ମୁନିବର ।
ଯେହାକଇ ଅକ୍ଷତ ଦେଲେ ଯେସନେକ
ବେଭାର ॥
ଦକ୍ଷିଣା ବିଧିକରି ଅନେକ ସୁବର୍ଣ୍ଣ
ଦେଲେ ।
ଦୁଃଖୀ ଦରିଦ୍ରଙ୍କୁ ଧନ ବିଳୋହିଲେ ॥
ସୁମନ୍ତ ସହିତେ ସକଳ ପାତ୍ରମାନ ।
ଅନୁରୂପେ ସୁନା ଶାଢ଼ୀ ଦେଲେ ରଘୁନାନ ॥
ଗୁହନାମେ ଶବରକୁ ଉଠିଣ କୋଳ କଲେ ।
ପ୍ରିୟ କଥା କହି ଅକ୍ଷତ ଗୁଆ ଦେଲେ ॥୨୦
ବିଭୀଷେଣ ସଙ୍ଗେ ଚାରି ମନ୍ତ୍ରୀ ଆଏ ।
ତାହାଙ୍କୁ ପୁରୁଷାର୍ଥ କଲେକ ରାମରାଏ ॥
ରାକ୍ଷାସ ଜଣ ଜଣକେ ଲେଖି ଶାଢ଼ୀ
ଦେଲେ ।
ଦେହରେ ଲାଇବାକୁ ଅଳଙ୍କାର ଦେଲେ ॥
ଜମ୍ୱେବନ୍ତୁ ଦେଲେ ନୃପତି ପଣେ ଶାଢ଼ୀ ।
ଆପଣା ଶ୍ରୀଅଙ୍ଗରୁ ଦୋସରି ପାଛୋଡ଼ି ॥
ବୋଇଲେ ରାଜା ତୁ ହୁଅସି ପାତାଳେ ।
ମନାସି ଅଛି ରାବଣକୁ ଯୁଝିବାର କାଳେ ॥

ଯେତେବେଳେ ଯୁଦ୍ଧ ମୋର ଦେଖିଲୁ
ନୟନେ ।
ଆମ୍ଭର ସଙ୍ଗେ ଯୁଝିବାକୁ ମନାସି ଅଛୁ
ମନେ ॥୩୦
ତୁମ୍ଭ ହୃଦୟ କଥା ଅଛଇନି ଜାଣି ।
ତୁମ୍ଭ ଆମ୍ଭର ସଂଗ୍ରାମ ହୋଇବାକ ପୁଣି ॥
ଯେ ଯାହା ଇଛଇ ମୋତେ ସେବାକରି ।
ଅବଶ୍ୟ ଦିଅଇ ସେ ସତ୍ୟସତ୍ୟ ମୋହରି ॥
ହନୁ ବୋଇଲା ଲକ୍ଷଣ ଶକ୍ତିଭେଦ କାଳେ ।
ମଉଷଧି ଆଣିବାକୁ ଗଲା ଅନ୍ତରାଳେ ॥
ସେ ଦିନ ମନାସିଲା ହୋଇବି ଯଦି ବ୍ରହ୍ମା ।
ଜାଣି ଅନୁଗ୍ରହ ତାକୁ କଲେ ଜନକର
ଜେମା ॥
ଆମ୍ଭେ ବିଷ୍ଣୁ ରୂପ ହୋଇବୁ ଯେବଣ
କାଳେ ।
ସ୍ୟମନ୍ତକ ମଣି ଖୋଜିବାକୁ ପଶିବୁ
ପାତାଳେ ॥୪୦
ତୁମ୍ଭର ଦୁହିତା ନାମ ଜାମ୍ବବତୀ ।
ରତ୍ନ ଘେନିଣ ଖେଳୁଥିବ ସତୀ ॥
ଉଛୁଡ଼ି ଘେନିବୁ ଆମ୍ଭେ ଶରଧା ନିମନ୍ତେ ।
ସଇନ ଘେନି ତୁମ୍ଭେ ଆସିବ ମଣିର
ନିମନ୍ତେ ॥
ବଳହତ ଦେଖି ତୁମ୍ଭେ ଆପଣେ ଯୁଝିବ ।
ଅନେକ ସାଂଗ୍ରାମ ଆମ୍ଭର ତୁଳେ କରିବ ॥
ସ୍ତୁତି କରନ୍ତେ ଆମ୍ଭେ ପ୍ରସନ୍ନ ହୋଇବୁ ।
ଏହି ରାମ ରୂପ ଆମ୍ଭେ ତୁମ୍ଭଙ୍କୁ ଦେଖାଇବୁ ॥
ତେବେ ସେ ସମ୍ପ୍ରତେ କରିବ ରକ୍ଷରାଏ ।
ଦୋହିତା ଜାମ୍ବବତୀ କି ଦେବ ଯେ
ବିଭାୟେ ॥୫୦
ସେହି ସ୍ୟମନ୍ତକ ମଣି ଯଉତୁକ ଦେବୁ ।
ଅମର ବୈକୁଣ୍ଠରେ ତେବେ ସେ ବସିବୁ ॥
ଶୁଣି ରକ୍ଷ ପତି ମଥାରେ ହାତ ଦେଲା ।
ଏବେ ସେବାରୁ ନବାରିବୁ ବୋଇଲା ॥
ଏଥୁ ରଘୁନାଥ ଋଷିଗଣଙ୍କୁ ଚାହିଁ ।

ବନବାସ କଥା ତାଙ୍କରି ଆଗେ କହି ॥
ବୋଇଲେ ଦଣ୍ଡକାଅରଣ୍ୟେ ତୁମ୍ଭେ ଥିଲ ।
ଅର୍ଘ୍ୟ ଘେନି ଆମ୍ଭନ୍ତ ଦେଖିଣ ଅଇଲ ॥
ରୂପ ଦେଖି ମୋର ହୋଇଲ ମୋହମାନ ।
ବୃକ୍ଷନ୍ତ ଆଉଜି ରହିଲ ତପୀଜନ ॥୬୦
ମନେ ବିଚାରିଲ ଧନ୍ୟ ସାଧେବୀ ସୀତ୍ୟା ।
ଶ୍ରୀରାମ ତାଙ୍କର ଅଟନ୍ତି ନିଜ ଭ୍ରଥା ॥
ଏହାର ପ୍ରାୟେ ପୁରୁଷକୁ ଘେନି ଭୋଗ
କଲୁ ।
କେବଣ ଯୋଗେ ତୁ ମହୀରେ ଉପୁଜିଲୁ ॥
ଆମ୍ଭେମାନେ କିମ୍ପା ନୋହିଲୁ ଯେ ନାରୀ ।
ଏମନ୍ତ ବୋଲି ତୁମ୍ଭେମାନେ ବାଞ୍ଛା କରି ॥
କାମେ ବଶ ହୋଇ ହେତୁମତି ଛାଡ଼ିଲ ।
ଦେଖି ଆସି ମୋତେ ଆଶା ବଢ଼ାଇଲ ॥
ସେ କଥା ତୁମ୍ଭର ମୁଂ ଅଛଇନି ଜାଣି ।
ଏ ଜନ୍ମେ ମୋର ନାହିଁ ପରସ୍ତିରୀ
ରମଣୀ ॥୭୦
ଏକ ନାରୀ ବ୍ରତ ମୁଂ କରିଅଛି ନିୟମ ।
ପର ଯୁବତୀ ମୋତେ କଉଶୁଲା ସମ ॥
ପରନାରୀ ଅଟଇ ମୋହର ସୋଦର ବନ୍ଧୁ ।
ଅନ୍ୟ ସ୍ତିରୀ ମୋତେ ସାମାନ୍ୟ କୁଳବଧୂ ॥
ଏ ଯୁଗେ ତୁମ୍ଭର ଆମ୍ଭ ଭେଟ ନାହିଁ ।
କୃଷ୍ଣ ରୂପେଜାତ ହୋଇବଇଂ ମୁହିଂ ॥
କଂସର ଡରେ ବଢ଼ିବି ଗୋପପୁରେ ।
କ୍ରୀଡ଼ା କରିବି ମୁଂ ଯମୁନା ନଦୀଜଳେ ॥
ଗୋପେ ଗୋପାଳୁଣୀ ହୋଇଣ ତୁମ୍ଭେ
ଥିବ ।
ପରସ୍ତିରୀ ହୋଇଣ ସୁରତି ମୋତେ
ଦେବ ॥୮୦
ତପୀ ହୋଇଣ ଧଇଲ ଦୁଷ୍ଟ ମତି ।
ଖଣ୍ଡ ତପସ୍ୟା ଫଳେ ହୋଇବ ଅସତୀ ॥
ଚୋରୀ ରତି ଦେଇଣ ତୋଷିବ ମୋର
ମନ ।
ବିଟପୀ ପୁରୁଷେ ରମଣ କରିବ
ଗୋପୀଜନ ॥

ମୋର ଅଙ୍ଗ ସଙ୍ଗେ ତୁମ୍ଭର ପାପ ଯିବ ।
ଅନ୍ତେଣ ବ୍ରହ୍ମଲୋକେ ଯାଇଣ ବସିବ ॥
ଏସନେକ ବୋଲିଣ ମୁନିଙ୍କି ଆଜ୍ଞା
ଦେଲେ ।
ନଳନୀଳ ସୁଷେଣ ତାରାକ୍ଷକଇ ରାଇଲେ ॥
ଗନ୍ଧମାଦନ ଦଧିମୁଖ ସାରାସ ।
କାଳିଞ୍ଜନ କାମୋଦ ବସନ୍ତ ପାରାସ ॥୯୦
କେଶରୀ ଶତବଳକୁ ଯେ ରାନ୍ତି ।
ମହୀନ୍ଦ୍ର ଦ୍ୱିବିନ୍ଦ ଏ ଦୁଇ ହକାରନ୍ତି ॥
ରମଣ କାଳିମୁଖ ବଳିମୁଖ ରାଇ ।
ବୀର ମହାବୀରମାନନ୍ତ ହକରାଇ ॥
ଯେ ଯାହା ଅନରୂପେ ଧନବସ୍ତ୍ର ଦେଲେ ।
ରକ୍ଷ କପି ଜଣେ ନପାଇଲା ନୋହିଲେ ॥
ବଶିଷ୍ଠେ ବୋଇଲା ଶୁଣିମା ରାମରାହୁ ।
ଆଜ୍ଞା ଦିଅ ବ୍ରହ୍ମା ନିଜ ପୁର ଯାଉ ॥
ଶୁଣିଣ ଶ୍ରୀରାମ ହୋଇଲେ ହରଷ ।
ବୋଇଲେ ଅକ୍ଷତ ଦେବା ପୁଣ କିସ ॥୧୦୦
ମହାମୁନି କହନ୍ତି ଶ୍ରୀରାମ ଆଗର ।
ଭାବ ସେ ପୀରତି ଅଟଇ ତାହାଙ୍କର ॥
ସେ ସେ ଧନବସ୍ତ୍ର ଆମ୍ଭଙ୍କୁ ଦେଉଛନ୍ତି ।
ବଡ଼ ବଡ଼ ଲୋକ ଯାଡ଼ରେ ତୋଷ ହୁଅନ୍ତି ॥
ଦେବଙ୍କର ଉତ୍ତମ ପୁଷ୍ୟ ଫଳ ପାଣି ।
ହୃଦରେ ଶରଧା କଲେ ରଘୁମଣି ॥
ତୁ ଏବେ ପୁଷ୍ୟ ଆଞ୍ଜୁଳି ଦେଇ ପୂଜ ।
ତୋଷ ହୋଇ ନିଜ ପୁରେ ଯାଆନ୍ତୁ
ବିପ୍ରରାଜ ॥
ଶୁଣି ରଘୁନାଥ ଗନ୍ଧ ପୁଷ୍ପ ହସ୍ତେ ଧରି ।
ବିଷ୍ଣୁ ବିଷ୍ଣୁ ପକାଇଲେ ଉପରକୁ
ମୁଖକରି ॥୧୦
ଶୂନ୍ୟେ ଥାଇ ବ୍ରହ୍ମା ବୋଇଲେ ବଚନ ।
ରାଜ୍ୟେ ଅଭିଷେକ ତୁମ୍ଭେ ହୋଇଲ
ରାଜନ ॥
ରଥ ଚଢ଼ି କଟେକ ବୁଲସି ତୋହରି ।
ଦିଗ ବିଦ୍ଦେ ଦେଖି ଦୁଃଖ ପଳାଉ ଆମ୍ଭରି ॥

ଲୋକେ ଚିହ୍ନନ୍ତୁ ଯେବେ ହୋଇ
ମହାରାଜା ।
ଅପାର କାଳୁ ଦେଖି ନାହାନ୍ତି ପରଜା ॥
ବ୍ରହ୍ମାର ବଚନ ଶୁଣିଲେ ରାବଣାରି ।
ସୁମନ୍ତ ମନ୍ତ୍ରୀକି ବୋଇଲେ ହକାରି ॥
ଆଣ ପୁଷ୍ପେକ ରଥ ଭ୍ରମିବା କଟେକ ।
ସ୍ୱଦେଶ ବିଦେଶର ଦେଖନ୍ତୁ
ସର୍ବଲୋକ ॥୨୦
ପୁଷ୍ପେକ ରଥରେ ଆମ୍ଭେ ବିଜେ ହୋଇବୁ ।
ତୁମ୍ଭେ ସମସ୍ତେହେଁ ଗଜ ଆରୋହିବୁ ॥
ତେବେ ସେ ଲୋକେ ଦେଖିବେ ମୋତେ
ଭଲେ ।
ଋକ୍ଷ କପି ରାକ୍ଷାସେ ମନୁଷ୍ୟ ଥିବେ ତୁଲେ ॥
ନଗ୍ର ବୁଲିଣ ମୁଂ ଆସିବି ଏହିକ୍ଷଣି ।
ଏତେ ବୋଲି ଆସ୍ଥାନୁ ଉଠିଲେ ରଘୁମଣି ॥
ଭ୍ରଥ ଲକ୍ଷ୍ମଣ ସହିତେ ଶତ୍ରୁଘନ ।
ସବୁନ୍ତି ଘେନି ମଣୋହିରେ ବିଜଏ
ରଘୁନାନ ॥
ଶ୍ରୀପୟର ପଖାଳି ଆନ ତଡ଼ପ ପିନ୍ଧିଲେ ।
ଗଭା ପକାଇଣ ଆନ ଗଭା ବାନ୍ଧିଲେ ॥୩୦
ଉପୁରାଣ ଦୋସଡ଼ା ଛନ୍ଦେ ଘଣ୍ଟ ।
ଦିବ୍ୟ ଆସନେ ଶ୍ରୀରାମଚନ୍ଦ୍ର ବସି ॥
ଚଉଦ ବରଷ ଅନ୍ନ ଭୁଞ୍ଜିଣ ନଥିଲେ ।
ତହିଂକି ଅନେକ ପ୍ରାଣ୍ଡିଲ୍ଭ ଦାନ ଦେଲେ ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମନ୍ତ ।
ସୁଷେଣ ତାରାକ୍ଷ କେଶରୀ ଜମ୍ୱୋବନ୍ତ ॥
ମହୀନ୍ଦ୍ର ଦ୍ୱିବିନ୍ଦ ଗନ୍ଧମାରଦନ ।
କଞ୍ଚଣ କାଳିମୁଖ ଗବଏ ସୁସୋଦନ ॥
ଦଧିମୁଖ ବଳିମୁଖ ସାରାସ ପାରାସ ।
ବିଭୀଷେଣର ଚାରିମନ୍ତ୍ରୀ ଅଛନ୍ତି
ତାରପାଶ ॥୪୦
ଲକ୍ଷେ ନୃପତି ବେଢ଼ି ବସିଛନ୍ତି ।
ଭରତ ଲକ୍ଷ୍ମଣ ଶତ୍ରୁଘନ ଅଛନ୍ତି ॥
ଋକ୍ଷକପି ରାକ୍ଷାସ ସଇନି ଥିଲେ ଯେତେ ।
ବାନ୍ଧି ଘେନିଗଲେ ଅଯୋଧ୍ୟା ଅମାନାତ୍ୟେ ॥
ଷଡ଼ରସ ଦେଇ ଭୁରି ଭୋଜନ ଦେଲେ ।
ଯେ ଯାହା ଅନୁରୂପେ ଆଣି ପରଷିଲେ ॥
ଏଥୁଅନନ୍ତରେ ରାମଚନ୍ଦ୍ର ନୃପତି ।
ମଣୋହିରେ ଘେନି ବସିଲେ ସମସ୍ତ
ନୃପତି ॥
ଅଷ୍ଟ ସେହ୍ନା ଆବର ପଚିଶ ଯୂତପତି
ଘେନି ।
ବିଭୀଷେଣ ସହିତେ ଲକ୍ଷ୍ମଣ
ଭାଇବେନି ॥୫୦
ଆଜ୍ଞାଦେଲେ ଶ୍ରୀରାମ ସୀତୟା ପରଷୁ ।
ସବୁଙ୍କରି ମଧରେ କମଳାଦେବୀ ପଶୁ ॥
ସିଦ୍ଧେ ସିଦ୍ଧ ହୁଅନ୍ତି ଯାହାର ଅନ୍ନ ଖାଇ ।
ତାର ହସ୍ତେ ଭୁଞ୍ଜିଲେ ବୈକୁଣ୍ଠକୁ ଯାଇ ॥
ଜାନେକୀର ହସ୍ତେ ଭୁଞ୍ଜିବେ ଯେଉଂ ଜନ ।
ସୁଫଳ ହୋଇବ ତାହାଙ୍କ ଜୀବନ ॥
ଏସନେକ ଆଜ୍ଞାଦେଲେ ରାମରାଏ ।
ମୁଦୁସୁଲୀ ଯାଇ ସୀତା ଛାମୁରେ ଜଣାଏ ॥
ଶୁଣ ବଇଦେହୀ ଗୋ ଶ୍ରୀରାମ ବଚନ ।
ତୁମ୍ଭେ ଆପଣେ ନେଇ ପରଷିବ ଅନ୍ନ ॥୬୦
ଲକ୍ଷେ ରାଜା ଘେନି ବସିଲେ ତୋର ଭ୍ରଥା ।
ଏବେ ମଣୋହି ଗୋ ତୁ ପରଷିବୁ ସୀତା ॥
ଶୁଣି ବଇଦେହୀ ଦିବ୍ୟବେଶ ହୋଇ ।
ବସନ୍ତ ପଟନୀ ପିନ୍ଧିଲେ ଚାନ୍ଦମୁହୀଂ ॥
ଅମଳାଣ ପାଟ ଉପରାଣ ଦେଲେ ।
ଆପଣେ ଅନ୍ନ ଘେନିଣ ଅଇଲେ ॥
ଦକ୍ଷିଣ ଭୁଜରେ ଧରିଛନ୍ତି ଦେବୀ ।
ଶ୍ରୀରାମଙ୍କୁ ଅନ୍ନ ପରଷଇ ସାଧେବୀ ॥
ରହୁଥାଲେ ଯେହ୍ନେ ପାର୍ବତୀ ପରଷେ
ଅନ୍ନ ।
ରାଘବ ପାଶେ ସୀତା ଅନ୍ନ ଦିଅଇ
ତେସନ ॥୭୦
ଶ୍ରୀରାମ ଉଭାରୁ ସୁଗ୍ରୀବରକୁ ଦେଲା ।
ଲକ୍ଷେ ରାଜାଙ୍କୁ ତହିଂ ଅନ୍ନ ଯୋଗାଇଲା ॥
ବିଭୀଷେଣକୁ ଦେଇ ଅଙ୍ଗଦକୁ ପରଷି ।
ଜମ୍ୱେବକୁ ଅନ୍ନ ପରଷେ ଶୁଭ୍ରକେଶୀ ॥
ତାରାକ୍ଷକୁ ଦେଇ କେଶରୀକୁ ଦେଲା ।
ତହିଂରୁ ଉଭାରୁ ହନୁମନ୍ତକୁ ପରଷିଲା ॥
ନଳ ନୀଳ ଗନ୍ଧମାର୍ଦ୍ଦନ ଦ୍ୱିବିନ୍ଦ ।
ଶତବାଳି କୁମୁଦ ରମଣ ମହୀନ୍ଦ୍ର ॥
ଶରସେତୁ ଶଉରୀ ଗନ୍ଧମାରଦନ ।
ଗବଏ ଗବାକ୍ଷ କାଳିମୁଖ କାଳିଞ୍ଜନ ॥୮୦
ସାରାସ ପାରାସ ଚନ୍ଦନ ସୁସୋଦନ ।
ଋକ୍ଷ ରାକ୍ଷାସ ଅନେକ କପି ସନ୍ୟ ॥
ଅଷ୍ଟସେନା ପଚିଶ ଯୂଥପତିଙ୍କି ପରଷି ।
ଅସୁର ଚାରି ମନ୍ତ୍ରୀ ଅଛନ୍ତି ଘେନି ବସି ॥
ତାହାଙ୍କୁ ଅନ୍ନ ଦେଲେ ଦେବୀ ଶ୍ରିୟା ।
ପଛେ ଦିଅରଙ୍କୁ ପରଷେ ରାମପ୍ରିୟା ॥
ନିଜ ରୂପରୁ ଲକ୍ଷେ ରୂପ ଜାତ କଲେ ।
ନୃପତିମାନଙ୍କୁ ଅନ୍ନ ପରଷିଲେ ॥
ସୁଗ୍ରୀ ବିଭୀଷେଣ ପଚିଶ ଯୂଥପତି ।
ଅଷ୍ଟସେନା ଲକ୍ଷ୍ମଣ ଶତ୍ରୁଘନ ପ୍ରଭୃତି ॥ ୯୦
ଶ୍ରୀରାମଙ୍କୁ ବିଶ୍ୱାସ କରନ୍ତି ଯେତେଜନ ।
ସମସ୍ତଙ୍କୁ ପରଷିଲେ ସୀତାଦେବୀ ପୁଣ ॥
କେହି ନ ଜାଣଇ ଜାନେକୀର ମାୟା ।
ସବୁରି ଛାମୁରେ ଅଛଇ ସୀତୟା ॥
ଅନ୍ନପରଷି ସୁବାସ ଘୃତ ଦେଲା ।
ଆମ୍ବ ଅଦା ଲୁଣ ପୁଣହିଂ ପରଷିଲା ॥
ଷଡ଼ରସ ପ୍ରକାରେ ତ୍ରିବିଧ ରାନ୍ଧଣା ।
ଏକର ସୁଆଦ ଆରେକକୁ ଜିଣା ॥
ସାକ୍ଷାତ ଲକ୍ଷ୍ମୀ ଯହୁଂ ସଂପାଦି ଅଛି ପାଗ ।
ବିଷ୍ଣୁନାଥ ନିତ୍ୟେ ଯାହାକୁ କରନ୍ତି
ଭୋଗ ॥୧୦୦
ଚଉରାଶୀ ତିଉଣ ଯହୁଂ ପରଷିଲେ ସତୀ ।
ଆମିଷ ନିରାମିଷ ଝଡ଼ା ବଢ଼ି ପ୍ରୀତି ॥
କେ ଗୁଡ଼େ ଆମ୍ବିଳ କେ କଟୁକେ
ବଢ଼ାଇଲା ।
କେ ଦୁଧରେ ଫୁଟିଲା କେ ଘିଅରେ

ପାଗହେଲା ॥
ତହିଁର ଗୁଣ କେହୁ ପାରିବ କହି ।
ଯାହାର ଆଜ୍ଞାରେ କୃପଜଳ ଅମୃତ ହୋଇ ॥
ସେ ଲକ୍ଷ୍ମୀ ପୁଣ ଯୋଗାଡ଼ ଅଛି ରାନ୍ଧି ।
ନାନା ପରକାରେ ବ୍ୟଞ୍ଜନ ପ୍ରସିଦ୍ଧି ॥
ଭୁଞ୍ଜିଣ ତୋଷ ହୋଇଲେ ରାଜାଗଣ ।
ଏଥୁଅନନ୍ତରେ ପରମ ରସ ଶୁଣ ॥୧୦
ବ୍ୟଞ୍ଜନ ପରଷି ଜନକ ଦୋହିତୀ ।
କ୍ଷୀରୀ କ୍ଷୀରୀସା ଯେ ପିଠା ଅପ୍ରମିତି ॥
ଛେନା ନଡ଼ିଆ ପୁରେ ଘିଅ ପାଚି ।
କର୍ପୂର ଜାଇଫଳ ମରିଚ ଗୁଣ୍ଡି ସିଞ୍ଚି ॥
ଲବଙ୍ଗ ଅଳାଇଚ କାଙ୍କୋଳା ମିଶାଇଲା ।
ନାନାବର୍ଣ୍ଣ ପିଠା ଆଣି ପରଷିଲା ॥
ପଣା ପଇଡ଼ ପଣସ ଆଣିଦେଲେ ।
ଭୁଞ୍ଜିଣ ରାଜାମାନେ ମହାତୋଷ ହୋଇଲେ ॥
କଦଳୀ ତାଳସଜ ଗୋଟିକା କ୍ଷୀରୀସିଣୀ ।
ଭୁଞ୍ଜାଇ ସନ୍ତୋଷ ହେଲେ କମଳିଣୀ ॥୨୦
ଲକ୍ଷେକ ନୃପତି ସେନା ଯୂଥପତି ।
ଭୋଜନ କରିଣ ସମସ୍ତେ ତୋଷ ହନ୍ତି ॥
ମଣୋହି ସମ୍ପୂର୍ଣ୍ଣେ ସୀତା ଭିତରକୁ ଗଲା ।
ସବୁ ରୂପ ଆଣି ଦେବୀ ଶରୀରେ ଗୋପ୍ୟ କଲା ॥
ଏଥୁ ଅନନ୍ତରେ ଶ୍ରୀରାମ ବୋଲନ୍ତି ।
କିହୋ ରାଜାମାନେ ହୋଇଲ ଟିକି ଶ୍ୟାନ୍ତି ॥
କାଲି ଅଇଲୁ ସଞ୍ଜା ଆମ୍ଭର ନାହିଁ ।
ଦୁଃଖ ପାଇଲୁ ବୋଲି ନ ବୋଲିବ କାହିଁ ॥
ଶୁଣି ରାଜାମାନେ ଶିରେ କର ଦେଲେ ।
ଲଜ୍ଜାଭାବ ହୋଇ କଥା ନକହିଲେ ॥୩୦
ଏଥୁଅନନ୍ତରେ ମଣୋହି ସମ୍ପୂର୍ଣ୍ଣ ।
ଆସନ ଛାଡ଼ିଣ ଉଠିଲେ ରଘୁରାଣ ॥
ନୃପଗଣ ସହିତେ ବାହାରକୁ ଗଲେ ।
ଯେ ଯାହାର ସେବକେ ଆଣି ପାଣି ଦେଲେ ॥
ଭରଥ ଲକ୍ଷ୍ମଣ ଶତ୍ରୁଘନ ତିନିଭାଇ ।
ଆଚମନ ସାରିବେ ବୋଲି ସେହି ଯାଇ ॥
ଯେ ଯାହାର ଇଚ୍ଛାଏ ସାରିଲେ ରୀତିମାନ ।
ଶ୍ରୀରାମଚନ୍ଦ୍ର ଯେବେ କରିବେ ଆଚୋବନ ॥
ମହାଭୋଇ ଆଣି ପାଣି ତୋଳି ଦେଲା ।
ଚତୁଃସମ ପିଠିଆ ଖଡ଼ିକା ସମର୍ପିଲା ॥୪୦
ସୁବାସ ଜଳେ ଶ୍ରୀରାମ ଅଙ୍ଗ ପଖାଳିଲେ ।
ସରୁ ଝିନ ବାସେ ଶ୍ରୀମୁଖ ପୋଛିଲେ ॥
ତଡ଼ପ ପାଲଟି ପିନ୍ଧିଲେ ଝିନବାସ ।
ମୁଖବାସ ଗୁଆ ଦେଲା ବାଳୀରାଜା ଶିଷ ॥
କରେ ଘେନି ରାମ ମୁଖେ ତାହା ଭରି ।
କ୍ଷଣେ ଚୋବାଇଣ ପକାନ୍ତି ଥୁ ଥୁ କରି ॥
ସୁଜାଣ ନାମରେ ଯେ କଶ୍ୟପ ତନୟେ ।
ସେ ସେ ଶ୍ରୀରାମଙ୍କୁ ବିଡ଼ିଆ ଲାଗି କଏ ॥
ଉଚ୍ଛିଷ୍ଟ ମାନ ଯହୁଁ ତହୁଁ କାଢ଼ିନେଲେ ।
ନୃପତିମାନେ ଦ୍ରଶନ ଆସି କଲେ ॥୫୦
ଭରଥ ଲକ୍ଷ୍ମଣ ଶତ୍ରୁଘନ ଆଏ ।
ଚାମର ଦର୍ପଣ ବିଞ୍ଚଣୀ ଧରିଥାଏ ॥
ଅଷ୍ଟସେନା ପଚିଶ ଯୂଥପତି ଅଇଲେ ।
ଅନୁଗ୍ରହ କରି ଶ୍ରୀରାମ ତାମ୍ବୁଳ ବିଳୋହିଲେ ॥
ଆଜ୍ଞା ଦେଲେ ଶ୍ରୀରାମ ଯେ ଯାହା ବସାକୁ ଯାଅ ।
ପେଟ ପୂରିଅଛି ଉଭାହୋଇ ନଥାଅ ॥
ଶୁଣି ଯୂଥପତି ମଥାରେ ହାଥ ଦେଲେ ।
ଦୃଷ୍ଟି ଅଦୃଷ୍ଟ ପର୍ଯ୍ୟନ୍ତେ ପଛଘୁଞ୍ଚି ଗଲେ ॥
ସୁଗ୍ରୀ ବିଭୀଷେଣ ହାଥ ଧରାଧରି ।
ଏକକୁ ଆରେକ କଥାନ୍ତ ପଚାରି ॥୬୦
ସିଂହଦ୍ୱାରେ ଯାଇ ବାହାନ ଆରୋହିଲେ ।
ଯେ ଯାହା ବସାକୁ ସୁମୁଖ ହୋଇଗଲେ ॥
ଏଥୁଅନନ୍ତରେ ଯେ ରବିଅସ୍ତ ଗଲେ ।
ଶ୍ରୀରାମଚନ୍ଦ୍ର ସନ୍ଧ୍ୟା ସୁମରିଲେ ॥
ସନ୍ଧ୍ୟା ବାଳୀମାନେ ଆସି ବନ୍ଦାଇଲେ ।
ଅତି ଆନନ୍ଦରେ ହୁଳହୁଳି ଦେଲେ ॥
ପହଡ଼େକ ରଜନୀ ହୋଇଲା ପରବେଶ ।
କୁଙ୍କୁମ ଘଷିହୋନ୍ତି କଉଶୁଳାର ଶିଷ ॥
କୁଙ୍କୁମ ମିଶାଇ କସ୍ତୁରୀ ଲିପିଲେ ଲଲାଟ ।
ଶିରରେ ବାନ୍ଧିଲେ ମଣିମୟ ମୁକୁଟ ॥୭୦
ଚମ୍ପା ବକୁଳ ଜାଇ ସେବତୀ ଗୋଟାମଲ୍ଲୀ ।
ଦିବ୍ୟ ଗଭା ଲାଗି ରାମ ଦିଶନ୍ତି ମହାବଳୀ ॥
ଅଗ୍ର ବାସଗନ୍ଧ ବୋଳିଲେ ଅଙ୍ଗେ ନେଇ ।
ଶିରେଣ ଗଭା ସୁନ୍ଦର ଦିଶଇ ॥
ଚୂଳ ଉପରେ ସାଞ୍ଜୋଇଲେ ଗଭା ।
ଦିବ୍ୟଚୂଳ ପୁଷ୍ପ ଦିଶଇ ମହାଶୋଭା ॥
କାଖେ ମୁଛେ କେଶେ ହୃଦେ ମୃଗନାଭ ।
ବିବିଧ ପରିବନ୍ଧେ ଘେନିଲେ ରାଘବ ॥
ମଦନ ମୂରତି ଅବତାର ଦଶରଥ ବଳା ।
ଶୋଭା ସୁନ୍ଦର ନାଥ ଗୁଣେ ଷୋଳକଳା ॥୮୦
କାନେ କାନଫୁଲ ଖଞ୍ଜେ ଗଜମୁକୁତା ।
ମାଣିକ୍ୟ ଲଗାମ ମୋରିଆ ତଥିର ଉକତା ॥
କଣ୍ଠେ କଣ୍ଠହାର ଲମ୍ବଇ ଗଜମୋତି ।
ଜାଣି ବକସ୍ଥଳ ଦିଶଇ ଚନ୍ଦ୍ରମାର କାନ୍ତି ॥
ବାହେ ଯୋଡ଼ା ତାଡ଼ ବାହୁଟି ସୁନା କଣ୍ଠି ।
ବ୍ରହ୍ମ ଜାତି ହୀରା ମୁଦ୍ରିକା ଅଙ୍ଗୁଷ୍ଠି ॥
କଟିରେ କଟିମେଖଳା ନବରତ୍ନ ପାଟି ।
ଶୁଦ୍ଧ ସୁବର୍ଣ୍ଣ ମାଣିକ୍ୟ ଜଡ଼ିତ କଣ୍ଠି ॥
ପୟରେ ନୂପୁର ଦିନକର ତ୍ରାସ ।
ବିଶ୍ୱାସ ଲୋକଙ୍କୁ ଘେନି ଶ୍ରୀରାମ ଅବକାଶ ॥୯୦
ସହସ୍ରେ ଯୁବତୀ ବିବିଧ ବେଶହୋଇ ।
ସୁବର୍ଣ୍ଣ ଦିହୁଡ଼ି ଜାଳନ୍ତି ସୁଗନ୍ଧ ତଇଳ ଦେଇ ॥
ଭରଥ ଲକ୍ଷ୍ମଣ ଶତ୍ରୁଘନ ଛନ୍ତି ।
ଚିତ୍ରସେନ ସହିତେ ସୁମନ୍ତ ମହାମନ୍ତ୍ରୀ ॥
ଲଙ୍କାଯୁଦ୍ଧ କଥା ରାଜାଙ୍କର ଯିବା ।
ସମ୍ପଦ ହୋଇଣ ଅଭିଷେକ ହୋଇବା ॥
ଏକଥା ବିଚାର କରନ୍ତି ସୁସ୍ଥବେଳେ ।
ଆନଲୋକ କେହି ନାହାନ୍ତି ନିଶାକାଳେ ॥
ଏଥୁଅନନ୍ତରେ ଶୁଣ ଦିବ୍ୟରୀତି ।
ଶ୍ରୀରାମଙ୍କୁ ଅନ୍ନ ପରଷିଲେ ସ୍ୟତୀ ॥୧୦୦

ମଣୋହି ସମ୍ପୂର୍ଣ୍ଣେ ଅନ୍ତଃପୁରେ ଗଲା ।
ଶାଶୁନ୍ତ ବସାଇଣ ଆପଣେ ପରଷିଲା ॥
ତିନି ଭଗ୍ନୀ ଆସି ବଢ଼ାଇ ଦ୍ୟନ୍ତି ଦ୍ରବ୍ୟ ।
ଅନ୍ତଃପୁର ଲୋକେ ଭୋଜନ କଲେ ସର୍ବ ॥
ତ୍ରିପୁତି ହୋଇଣ ଆଚମନ କଲେ ।
ଦାସୀ ପରିବାରୀ ଉଚ୍ଛିଷ୍ଟ କାଢ଼ିନେଲେ ॥
କଉଶଲ୍ୟା ବୋଇଲେ ଭୁଞ୍ଜ ଗୋ
ବଇଦେହୀ ।
ଉର୍ମିଳା ମାଳତୀ ଆଦି ତୁମ୍ଭେ ହୋଇ ॥
ମୁହିଂ ପରଷିବି ଗୋ ଶରଧା ମୋହରି ।
ଶୁଣି ପରମତୋଷ ଜନେକ କୁମାରୀ ॥୧୦
ପାଦପଖାଳି ତିନିଭଗ୍ନୀ କି ସଙ୍ଗେ ଘେନି ।
ଭୁଞ୍ଜି ବସିଲେ ଦେବୀ ଜନେକ ନନ୍ଦିନୀ ॥
କଯେକୟା କଉଶଲ୍ୟା ସୁମିତ୍ରା ପରଷନ୍ତି ।
ଆବର ଶାଶୁମାନେ ବଡାଇ ଦିଅନ୍ତି ॥
ଚଉଦ ବରଷ ହେଲା ଭୁଂଜି ନଥିଲେ ଅନ୍ନ ।
ଶାଶୁଙ୍କ ପରଷନ୍ତେ ପରମ ତୋଷ ମନ ॥
ମଣୋହି ସଂପୂର୍ଣ୍ଣେ ଆଚମନ କଲେ ।
ତକ୍ଷଣେ ପରିବାରୀ ଉଚ୍ଛିଷ୍ଟ ଘେନିଗଲେ ॥
ଏଥୁ ଅନନ୍ତରେ ଜନେକ ଦୁହିତା ।
ବିବିଧ କୁସୁମେଣ କେଶ ସାଙ୍ଗୋଇଲେ
ସୀତା ॥୨୦
ଗନ୍ଧ ଘେନି ଅଳକା କଲେ କେରି କେରି ।
ଚନ୍ଦନ ଘେନି କୁଚ ଯୁଗଳ ଚିତ୍ର କରି ॥
ଶିରରେ ସୀମନ୍ତିନୀ ମୁକୁତା ମୋତିମାଳି ।
କପାଳେ ଠିଆଚିତା ଘଞ୍ଚେଣ ଗନ୍ଧକାଳି ॥
ଉପରେ ସିନ୍ଦୂର ଟୀକା ନେଇ ଦେଲା ।
କୃପୂର ତାମ୍ବୋଳ ମିଶାଇଣ ଭୁଂଜିଲା ॥
ବ୍ରହ୍ମଜାତି ହୀରା ଯାବନ୍ତ ଆଭରଣ ।
କର୍ଣ୍ଣେଣ ତଡ଼କୀ କରରେ କଙ୍କଣ ॥
ବାହେଣ ବାହୁଟି ଭୁଜେ ଶିକୁଳି ତାଡ଼ ବିନ୍ଦ ।
କଟିରେ କଟି ମେଖଳା ନୂପୁର ବେନି
ପାଦ ॥

କଣ୍ଠେଣ କଣ୍ଠମାଳି ପଦ୍ମରାଗ ମଣି ।
ନବରତ୍ନ ପଦେକ ନାସାରେ ବସଣୀ ॥
ଶ୍ରବଣ ଶିଖରେ ବେଷ୍ଟିଲା ଗଜମୋତି ।
ଅଙ୍ଗେ କଜ୍ଜ୍ୱଳ ଘେନିଲା ଦେବୀ ସ୍ୟତୀ ॥
ବିବିଧ ବେଶ ହୋଇ ଶ୍ରୀରାମ ପାଶେଯାଇ ।
ଜାଣି ରଘୁନାଥ ନିଅବକାଶ ହୋଇ ॥
ଭରଥ ଲଇକ୍ଷଣ ଶତ୍ରୁଘନ ଗଲେ ।
ଯେ ଯାହା ମନ୍ଦିରେ ଯାଇ ପହୁଡ଼ିଲେ ॥
ତାହାଙ୍କ ତିନିକନ୍ୟା ଅଇଲେ ବେଶ
ହୋଇ ।
ଯେ ଯାହା ଭ୍ରଥାକୁ ସେବାକଲେ ଯାଇ ॥
ସୁମନ୍ତ ଚିତ୍ରସେନ ଯେ ଯାହା ବସାକୁ
ଗଲେ ।
ତୂରୀ ବଜାଇ ଦୋସାଧୁ ନଗ୍ର ବୁଲେ ॥
ନଗ୍ର ଦୋସାଧୁ ନିରୋଧି ଠଣା ଦେଲା ।
ଶ୍ରୀଅଙ୍ଗ ବେହେରା ବେଢ଼ିଣ ବୁଲିଲା ॥
ନଅର ସେବକ ରଖୁଆଳ ପଢ଼ିହାରି ।
ଖଞ୍ଜା ଜଗିଲେ ସେ ନିବୋଲଣା କରି ॥
ରାଉତ ମାହୁନ୍ତ ପହରା ଜଗନ୍ତି ।
ବୋଲଣା ହୋଇଲେ ସେ ପ୍ରାଣେ ନ
ବର୍ତ୍ତନ୍ତି ॥
ଚାରି ଦ୍ୱାରେ ଅଛନ୍ତି ମଉଗଜ ଚାରି ।
ତାହାଙ୍କ ସଙ୍ଗତେ ଶତେକ ଅଶୁଆରି ॥
ସହସ୍ରେ ପାଇକ ଦ୍ୱାରକଲେ ରକ୍ଷା ।
ଯେହ୍ନେ ରାଜବିଧି ସୁମନ୍ତ ଦେଲା ଦୀକ୍ଷା ॥
ଏଥୁଅନନ୍ତରେ ଶ୍ରୀରାମ ନୃପତି ।
ଦିବ୍ୟ ଭୁବନରେ ଯାଇଣ ପହୁଡ଼ନ୍ତି ॥
ସ୍ଫଟିକର ପିଢ଼ା ମର୍କତ ଖମ୍ବମାନ ।
ଶେଣୀ ବୈଦୁର୍ଯ୍ୟ ଗୁଞ୍ଜ ପ୍ରବାଳ ଖଞ୍ଜନ ॥
ରୁଅ କୁରୁବିନ୍ଦ ପଦ୍ମରାଗ ଭରା ।
ନାଳ ତୁଣ୍ଡା ଉପରେ ଖଞ୍ଜିଲା ତହିଂ ହୀରା ॥
ନୀଳାର ଆଗ ମୁଣ୍ଡିକାରେ ସଗୁତୁଣ୍ଡି ।
ଗଣ୍ଠିଅନା ବତା ପାରିଲେ ଖଣ୍ଡି ଖଣ୍ଡି ॥

ରଙ୍ଗପାଟ ଗଣ୍ଠି ଗିଲିମି ଖଣ୍ଡଚାଳ ।
ସୁବର୍ଣ୍ଣର ଛାଉଣୀ ଦିଶେ ମହାଭଲ ॥
ଉଭାଳେକ ଓସାର ଅଧକୋଶ ପ୍ରତି ।
ନବରତ୍ନମାଏ କଳସ ବିରାଜନ୍ତି ॥
ଉପରେ ଉଡ଼ଇ ନେତର ଚିରାଳ ।
ପାଶେଣ ଲମ୍ବଇ ବିବିଧ ପୁଷ୍ପମାଳ ॥
ମୁକୁତାର ଧାଡ଼ା ବଉଳା ଗଣ୍ଠି ଝଡ଼ା ।
କତିକତି ରୁପା କାଠି ଦେଖିଣ ଝିନ ଟେରା ॥
ଉପରେ ଚନ୍ଦ୍ରାତପ ଇନ୍ଦ୍ର ଗୋବିନ୍ଦ ପାଟ ।
ମଧ୍ୟେ ଖଞ୍ଜିଲା ଅଛି ଗଜଦନ୍ତ ଖଟ ॥
ପଦ୍ମରାଗ ଖଟିଆ ସୁବର୍ଣ୍ଣର ଶିକୁଳି ।
ଚନ୍ଦନକାଠ ଡ୍ରୋଣାରେ ଉକୁଟିଅଛି ଦୋଳି ॥
ଦେବଦାରୁ ଖମ୍ଭେ ହିଙ୍ଗୁଳ ରଙ୍ଗକମ ।
ସୁବାସିଲାଅଛି କସ୍ତୁରୀ ଚତୁଃସମ ॥
ଦର୍ପଣ ଚାମର ମଣ୍ଡଣି ଦିବ୍ୟ ବାସ ।
ଅଗ୍ରବାସ ଧୂଆଁ ଚହଟଇ ଚଉପାଶ ॥
ନବରତ୍ନ ଖୁରା ପଦ୍ମରାଗମଣି ସଞ୍ଚ ।
ନୀଳାର ପଗଡ଼ରେ ହୋଇଛି ଦୋରସ୍ତ ॥
ଗୁରୁଜ ପୋହଳା କୁରୁବିନ୍ଦ ପାଟି ।
ହୀରା ଲିଙ୍ଗ କମ ଅଛଇ ଗୋଟି ଗୋଟି ॥
ଶୁଦ୍ଧ ସୁବର୍ଣ୍ଣର ଉପରେଣ ପଟା ।
ମୁକୁତା ପୋଡ଼ିଣ ଦେଇଛନ୍ତି ଛଟା ॥
ଚଉକତି ଜଳଇ ମାଣିକ୍ୟର ବତୀ ।
ସେ ବାଙ୍କିଆରେ ଯାଇ ବିଜୟ ରଘୁପତି ॥
ଏସନେକ ସମଏ ସତୀ ଦରଶନ ଯାଇ
କଲେ ।
ପୟେପଡ଼ି ଶୋଇ ମଥାରେ ହାଥ ଦେଲେ ॥
ଶରଧାରେ ରଘୁନାଥ କୋଳକରି ନେଲେ ।
ଆପଣା ଜାନୁ ଉପରେ ନେଇଣ
ବସାଇଲେ ॥
ଲକ୍ଷ୍ମୀନାରାୟେଣ ହୋଇଲେ ଅବକାଶ ।
ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥

**ଲଙ୍କାକାଣ୍ଡ ସମ୍ପୂର୍ଣ୍ଣ**

# ଉତ୍ତରାକାଣ୍ଡ

ବନ୍ଦଇଁ ଶ୍ରୀ ଜଗନ୍ନାଥ ମୋହର ଗୋସାଇଁ ।
ତ୍ରୈଲୋକ୍ୟ ଲକ୍ଷ୍ମୀର ଯେହୁ ଅଟଇ ସାଇଁ ॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ପୁରୁଷ ।
ଯାହାର ଆଶ୍ରକେ ପ୍ରଭୁ ଅଛନ୍ତି ତ୍ରିଦଶ୍ୟ ॥
ଚଉଦ ଭୁବନର ଯେହୁ ଅଟଇ ଆଦିପତି ।
ସେ ପ୍ରଭୁ ମୃତ୍ୟୁଲୋକେ ଜମ୍ବୋଦ୍ୱୀପ ସ୍ଥିତି ॥
ଭୁଥ ଖଣ୍ଡେ ଓଡ଼ ରାଷ୍ଟ୍ର ଯେ ସାର ମହୀ ।
ଉତ୍କଳ ଦେଶ ନାମ ପୁରାଣେ ଯାହା କହି ॥
ଦକ୍ଷିଣ ଲବଣ ସିନ୍ଧୁ ଉତ୍ତର କୂଳେ ।
ବିଜୟେ ଜଗନ୍ନାଥ ନୀଳଗିରି କନ୍ଦରେ ॥୧୦
ଅପୂର୍ବ ପ୍ରାସାଦ ଶ୍ରୀବଛ ଖଣ୍ଡଶାଳ ।
ଯତନେ ବିଶ୍ୱକର୍ମା ଗଢ଼ିଲା ଦେଉଳ ॥
ଶମ୍ଭୁଲିଙ୍ଗ ବାହାର କି ହୋଇଲା ଭୂମି ଫୁଟି ।
ଗିରିଶିଙ୍ଗ କି ଅବା ଶୂନ୍ୟକୁ ଯାଇ ଉଠି ॥
ଉପରେ ଚକ୍ର ଚିହ୍ନ ଚିରାଳ ଫରହର ।
ଜାଣି ପଟାନ୍ତର ଶ୍ରୀହରି ଦକ୍ଷିଣ କର ॥
ଜଗତ ଜନକଇ ରାଇଣ ପାତାଙ୍ଗ ।
ଯହୁଁ ସେ ପବନେ ଉଡ଼ଇ ବେଗେବେଗ ॥
ଭଗତ ଜନେ ଥାଇ ବିଚାରନ୍ତି ଏହା ।
ଆମ୍ଭନ୍ତ ରାଉଣ ଅବା ଅଛନ୍ତି ଚଉବାହା ॥୨୦
ଆରତ ଭଞ୍ଜନ ସ୍ୱାମୀଙ୍କର ବାନା ।
ଭୁଜ ଟେକି ଶରଣ ଯାଚନ୍ତି ବନ୍ଧୁସେହ୍ନା ॥
କି ଅବା ଭବ ଜଳେ ଥଳ ସେ ପାଇଲେ ।
ଏତେ ପାଣି ବୋଲି ଭୁଜ ଦେଖାଇଲେ ॥
ବୋଇଲେ ଆହୋ ନରେ ମୋତେ ସେବା କର ।
ସଂସାର ସାଗର ଜଳେ ବୁଡ଼ିଣ ନମର ॥
ଏସନେକ ବୋଲି ବୋଲନ୍ତି ଜଗନ୍ନାଥ ।
ତେଣୁ କରି ଆପଣ ବଢ଼ାଇ ଛନ୍ତି ହାଥ ॥
ରେଖ ରୂପ ପାଦ ପାଣି ଯାର ନାସ୍ତି ।
ଦେଖି ଦେବତାଏ କଲେ ଅନେକ ସ୍ତୁତି ॥୩୦
ଭୋ ବାସୁଦେବ ପ୍ରଭୁ ରକ୍ଷାକର ସ୍ୱାମୀ ।
ବୈକୁଣ୍ଠ ତେଜିଣ ବିଜୟେ ମୃତ୍ୟୁ ଭୂମି ॥
ଇତରଜନଙ୍କ ସଙ୍ଗତେ ଭାବ କଲୁ ।
ଭାବଗ୍ରାହୀ ନାଥ ତହୁଁ ବୋଲାଇଲୁ ॥
ଆମ୍ଭନ୍ତ ଅପୂର୍ବ ହୋଇଲୁଁ ଗୋସାଇଁ ।
ଶ୍ରୀମୁଖ ଦେଖିବା ତୋର ସନିଧିକୁ ଯାଇଁ ॥
ମୃତ୍ୟୁପୁରେ ଜନମି ଦେଖିବୁ ଶ୍ରୀମୁଖ ।
ଏ ଦେହ ବହିବାର ତେଣେ ହେବ ସୁଖ ॥
ଶୁଣିଲେ ନାରାୟେଣ ଦେବଙ୍କର ବାଣୀ ।
ହସିଣ ବୋଲନ୍ତି ଦେବ ଶଙ୍ଖଚକ୍ର ପାଣି ॥୪୦
ତୁମ୍ଭେ ସୁରଗଣେ ନକର ମନେ ଖେଦ ।
ଏ ରୂପେ ମୁହିଁ ସେ ନ ବହଇ ପାଣି ପାଦ ॥
ଦାରୁ ବ୍ରହ୍ମ ମୂରତି ମୁଁ ଅଣାକାର ରୂପୀ ।
କାମ ରୂପୀ ଭଗବାନ ଅପୂର୍ବ ଯେ ମୃତି ॥
ଜଗମୋହନ ରୂପ ଅଲେଖ ଅବର୍ଣ୍ଣ ।
ଶୂନ୍ୟକଇ ଠୂଳ ଠୂଳକଇ ଶୂନ୍ୟ ॥
ଏ ରୂପ ସ୍ୱରୂପ ହୋ ଦେଖିବ ତୁମ୍ଭେ କାହିଁ ।
ଧ୍ୟାଏ ଧାରଣା ଯହିଁ ଜପ ମନ୍ତ୍ର ନାହିଁ ॥
ଏ ଯୁଗେ ଗୁପତ କଲଇଁ ସର୍ବ କର୍ମ ।
ସ୍ୱଂଏ ଅବତାର ହେଲୁ ପରମ ବ୍ରହ୍ମ ॥୫୦
ଜଗତଜନକଇ କରିବି ନିସ୍ତାର ।
ସଜ୍ଜନ ଜନଙ୍କଇ ମୁହିଁ ସେ ଦାତାବର ॥
ଯେ ମୋହର ନୀଳ ମୁଖ କରନ୍ତି ଦର୍ଶନ ।
ସତ୍ୟ ସତ୍ୟ ମୁଁ ତାହାରେ ହୁଅଇ ପ୍ରସନ୍ନ ॥
ଚଉବର୍ଗ ଦାତା ମୁକତି ସୁଖ ଦେଇଁ ।
ଅନ୍ତେଣ ବୈକୁଣ୍ଠ ଭୁବନେ ବସାଇଁ ॥
ଇହ ପରଲୋକ ତାରଇ ଦୁଇ କୂଳ ।
ଯେଣୁ ନାମ ମୋର ଭଗତ ମଛଳ ॥
ତୁମ୍ଭେ ଯେବେ ଶରଧା କଲ ସୁରମାନ ।
ଦେଖ ମୋହର ଭୁଜ ଶଙ୍ଖ ଚକ୍ର ଚିହ୍ନ ॥୬୦
ଯେତେ ବୋଲି ପ୍ରଭୁ କର ବଢ଼ାଇଲେ ତୋଳି ।
ଆନନ୍ଦେ ସୁର ବୃନ୍ଦ ଦେଖନ୍ତି ସର୍ବମିଳି ॥
ବିଷ୍ଣୁର ଭୁଜେ ଦେଖିଲେ ଶଙ୍ଖ ଚକ୍ର ଆକାର ।
ଦେଖିଣ ଆନନ୍ଦ ହୋଇଲେ କୁଶଧର ॥
ମାୟା ପାସାଦ ଯେ ଶ୍ରୀହରି ଭୁଜ ।
ଯତନେ ବିସ୍ତାର କଲେ ଅଧୋକ୍ଷଜ ॥
ବାବୁ ସେ ଦେଉଳ ବିଚିତ୍ର ପିଠୁଳି ।
କଳସୁଂ ପଦ୍ମ ପୀଢ଼ ପର୍ଯ୍ୟନ୍ତ ଅଛି ଝଳି ॥
ଅସାଂ ଶିରା ଠେକ କମ ମାହାତୁଲ ।
ଅପୂର୍ବ ପ୍ରାସାଦ ଘଟଣ ଅମୂଲ୍ୟ ॥ ୭୦
ନାରାୟଣ କୋଳେ ଯେହ୍ନେ ମହାଲକ୍ଷ୍ମୀ ବସଇ ।
ସାନ ଦେଉଳ ଗୋଟି ତେସନେକ ଦିଶଇ ॥
ଉତ୍ତର ଦକ୍ଷିଣ ପଛିମ ତିନି ଦିଶା ।
ବାରେହା ନୃସିଂହ ବାବନର ବସା ॥
ସିଧ ସାଧେକ ଅମର ଯୋଗେଶ୍ୱର ।
ଶ୍ରୀହରି ଦେଉଳ ତେସନ ପଟାନ୍ତର ॥
କି ଅବା ହର ପାର୍ବତୀ ବସିଛନ୍ତି ।
କି ଅବା କାମଦେବ କୋଳେ ବିଜେ ରତି ॥
ସ୍ୱଂଏ ବାରସ୍ୱତୀ ଭୁବନ ଅଟଇ ।
ଅମରାବତୀ ଯହିଁକି ସମାନ ନ ଘଟଇ ॥୮୦
ଶ୍ରୀ ନୀଳଗିରି ପବିତ୍ର ଚାରୁ ଶୋଭା ।
ଯହିଁ ସେ ବିରାଜଇ ନାରାୟଣ ପ୍ରଭା ॥
ଧନ୍ୟ ଧନ୍ୟ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ।
ଯହିଁ ବିଜୟେ ପ୍ରଭୁ ଦେବଙ୍କ ଉତ୍ତମ ॥
ପ୍ରାସାଦ ମଧ୍ୟରେ ସୁବର୍ଣ୍ଣ ମଣ୍ଡପ ।

ମଣିମୟ ସିଂଘାସନେ ବିଜୟେ ତିନିରୂପ ॥
ବଳଭଦ୍ର ସୋଭେଦ୍ରା ଜଗନ୍ନାଥ ସ୍ୱାମୀ ।
ବାମ ପାଶେ ଛନ୍ତି ସାହେର ନନ୍ଦିନୀ ॥
କରେ ଶଙ୍ଖ ଚକ୍ର ମୁକୁଟ କୁଣ୍ଡଳ ।
ଉରେ ହାର ପଦେକ ବିବିଧ ରତ୍ନମାଳ ॥୯୦
ପ୍ରସନ୍ନ ବଦନ ନୀଳ ସୁନ୍ଦର ଶ୍ରୀମୁଖ ।
ଦର୍ଶନେ ପାପ ହତ ହୋଇ ପାଇ ପରମ ସୁଖ ॥
ସୁରଙ୍ଗ ସୁନ୍ଦର ଆନନ୍ଦ ଅଧର ।
ସୁଦୀର୍ଘ ନାସିକା ଅପୂର୍ବ ମନୋହର ॥
ଅମୃତ ଲୋଚନ କି ଫୁଟିଲା ପଦ୍ମ ଜାଣି ।
ଲଲାଟର ଚିତା ଶୋହଇ ନାନାମଣି ॥
ଜଗମୋହନ ରୂପ ଦେଖିଲେ ନିସ୍ତରି ।
ଆପଣେ ମହିମା ମେରୁ ନୀଳଗିରି ହରି ॥
ଦକ୍ଷିଣେଣ କଳପ ବଟ ଆଗେଣ ଖଗେଶ୍ୱର ।
କରୁଣାମୟେ ଚିତ୍ତେ ବିଜେ ଚକ୍ରଧର ॥୧୦୦
ସେହୁ ଶ୍ରୀହରିର ଚରଣ ତଳେ ପଡ଼ି ।
ଶରଣ ଫୁକାରଇ ବେନି କର ଯୋଡ଼ି ॥
ଶ୍ରୀଜଗନ୍ନାଥଙ୍କର ମୋତେ ହୋଇବ ସଦୟା ।
ତୋତେ ଆଶ୍ରେ କରିବି ସର୍ବଦା ବାଞ୍ଛା ମୋର ଏହା ॥
ମୁହିଂ ବଳରାମ ଦାସ ନିତ୍ୟେ ଯେ ଭାବଇଂ ।
ଜଗନ୍ନାଥ ଜଗନ୍ନାଥ ଅନୁବ୍ରତେ ଜପଇଂ ॥
ପୁରୁଷୋତ୍ତମ ସ୍ୱାମୀ କରିବା ମୋତେ ରକ୍ଷା ।
ରାବାୟେଣ ଗ୍ରନ୍ଥ କରିତ ମୋର ଇଚ୍ଛା ॥
ବାଲ୍ମିକ ମୁନି ଯାହା କଲେକ ପ୍ରକାଶ ।
ପାର୍ବତୀ ଆଗେ ଯାହା କହିଲେ ବିଶ୍ୱବାସ ॥୧୦
ମୁହିଂ ତାହା କହିବଇଂ ତୋହର ପ୍ରସନ୍ନେ ।
ଅନୁଗ୍ରହ କର ମୋତେ ଶ୍ରୀବଚ୍ଛ ଲାଞ୍ଛନେ ॥
ତୋହର ପ୍ରସନ୍ନେ କହିବି ରାମ କେଳି ।
ଯାହା ଶୁଣନ୍ତେଣ ମ୍ଳେଚ୍ଛ ହେବେ ଦଳି ॥
ଶ୍ରୀ ଜଗମୋହନ ରାମାୟଣ ଗ୍ରନ୍ଥ ।
ଏଥିର କବି ସେ ନୀଳଗିରି ଜଗନ୍ନାଥ ॥
ସେହି ମୋର ହୃଦେ ବିଜେ କରିଥାନ୍ତି ।
ଆପଣାର ଚରିତ ଆପଣେ ବଖାଣନ୍ତି ॥
ମୂଷାର ବିମ୍ବରୁ ଯେହ୍ନେ ବାହାର ଶ୍ୱେତ ନାଗ ।
ମୋହୋର ମୁଖରୁ ଗ୍ରନ୍ଥ ତେସନେକ ବାଗ ॥୨୦
ଶୁଣିମା ସୁଗ୍ୟଂଜନେ ରାମାଏଣ କାହାଣୀ ।
ସାମବେଦୁଂ ସମ୍ଭୂତ ଯେ ପରମ ବ୍ରହ୍ମ ବାଣୀ ॥
ପାର୍ବତୀ ପଚାରନ୍ତି ଶୁଣିମା ସଦାଶିବ ।
ରାବଣ ବିନାଶି ଯେ ଅଇଲେ ରାଘେବ ॥
ସୀତ୍ୟା ଘେନି ଅଯୋଧ୍ୟାରେ ପ୍ରବେଶ ହୋଇଲେ ।
ତହିଁର ଉତ୍ତାରେ କେବଣ କୃତ୍ୟ କଲେ ॥
ସଟଂପି ସଦାଶିବ କହ ମୋର ଆଗ ।
ଶୁଣିମି ସ୍ୱାମୀ ମୁଂ ବିଚିତ୍ର କଥା ବାଗ ॥
ଦୁସ୍ତରୁ ତରିବି ମୁଂ ରାମାଏଣ ଶୁଣି ।
କହସି ଭୋନାଥ ମୋତେ ରାମାଏଣ ବାଣୀ ॥୩୦
ସପ୍ତମ ଅବତାର ହୋଇଲେ ନାରାଏଣ ।
ଶୁଣିମି ଭୋ ନାଥ ମୁଂ ଶ୍ରୀବିଷ୍ଣୁର ପୁରାଣ ॥
ଏତେ ବୋଲି ଦେବୀ ଉଠିଲେକ ଧାତି ।
ରୁଦ୍ରର ଚରଣେ ନମନ୍ତି ମହାସ୍ୟତୀ ॥
ହସିଣ ସଦାଶିବ ପାର୍ବତୀକି ତୋଳି ।
ଉଠ ଉଠ ଗୋ ସଖି ଶୁଣ ରାମକେଳି ॥
ଏତେ ବୋଲି ଉମାକୁ ବସାଇଲେ କୋଳେ ।
ରୁଦ୍ର ରାମାଏଣ କହନ୍ତି କୋତୋହୋଳେ ॥
ଶୁଣ ଶାକାମ୍ୱେରୀ ଗୋ ଉତ୍ତରା କାଣ୍ଡ ଚରିତ ।
ରାବଣକୁ ମାଇଲେ ଦଶରଥ ସୁତ ॥ ୪୦
ଲଙ୍କାରେ ବିଭୀଷେଣକୁ ନୃପତି ପଣ ଦେଲେ ।
ସୀତ୍ୟା ଘେନି ରାମ ବାହୁଡ଼ା ବିଜେ କଲେ ॥
ଅଯୋଧାରେ ରାମ ହୋଇଲେ ଅବିଷେକ ।
ଦେଖିତ ଆସିଛନ୍ତି ତିନିପୁର ଲୋକ ॥
ଦିନେକ ଶ୍ରୀରାମ ଆସ୍ଥାନେ ବସିଛନ୍ତି ।
ପଟୋଆରି ଛନ୍ତି ଲକ୍ଷେକ ନୃପତି ॥
ସୁଗ୍ରୀ ବିଭୀଷେଣ ଅଙ୍ଗଦ ହନୁମାନ ।
ଜାମ୍ୱେବ ସହିତେ ସମସ୍ତ ରକ୍ଷ କପି ସନ୍ୟ ॥
ବଶିଷ୍ଠ ବାମଦେବ ଜାବାଳି କଶ୍ୟପ ।
ଏହାଙ୍କୁ ସମାସ୍ୟା କରନ୍ତି ରାମ ନୃପ ॥୫୦
ସୁମନ୍ତ ସହିତେ ଅମନାତ୍ୟ ଗଣ ମାନେ ।
ଗହ ଗହ ଶବଦ ଶ୍ରୀରାମ ଆସ୍ଥାନେ ॥
ଦେବରଷି ବ୍ରହ୍ମରଷି ରାଜରଷି ଅଛନ୍ତି ।
ଭଟ ମିଶ୍ର ପଣ୍ଡାୟେ ନ୍ୟାୟେ ବିଚାରନ୍ତି ॥
ସଇନି ପଟୋଆରି ହୋଇଅଛନ୍ତି ସଭାତଳେ ।
ଆସି ନ ପାରନ୍ତି ଘୋଡ଼ାଙ୍କ ଗହଳେ ॥
ଖୁଣ୍ଟିଆ ପଡ଼ିହାରି ଅଛନ୍ତି ଦୁଆରେ ।
ଗାୟେଣୀମାନେ ଗୀତ ଗାବନ୍ତି ସୁସ୍ୱରେ ॥
ରତ୍ନ ସିଂଘାସନେ ବିଜେ ରାମରାହୁ ।
ନୀଳଗିରି ଶିଖରେ ଯେହ୍ନେ ବିଜେ ଜଗନ୍ନାଥ ପ୍ରଭୁ ॥୬୦
କରେ କାଣ୍ଡ କୋଦଣ୍ଡ ବୀର ଆସନେ ବିଜେ ।
ମୁକୁଟ କୁଣ୍ଡଳ ବିବିଧ ହାର ସାଜେ ॥
ନୀଳ ବସ୍ତ୍ର ପରିହରଣ ଦୋସଡ଼ା ପୀତାମ୍ୱର ।
ଶ୍ରୀ ଅଙ୍ଗେ ଲେପିଲା ଅଛି ସୁଗନ୍ଧ ଅଗର ॥
କପାଳେ ଠିଆ ଚିତା ଚନ୍ଦନ ତିଳେକ ।
ଫର ହର ନିଶ କସ୍ତୁରୀର ରେଖ ॥
କୋଟିଏ କାମ ଯାହାର ପାଦକୁ ନୋହେ ସରି ।
ଆନ କି ଅବା ହୋୟେ ପଟାନ୍ତରି ॥
ପ୍ରସନ୍ନ ବଦନ ସ୍ୱାମୀ ବିକ୍ରମ ସିଂଘ ଠାଣି ।
ଲକ୍ଷଣ ବିଞ୍ଚଇ ଘେନିଣ ବିଞ୍ଚଣି ॥୭୦
ଭ୍ରଥ ଶତୃଘନ ଢାଳନ୍ତି ଚାମର ।
ସମ୍ପର୍ବ ହୋଇଅଛି ଥାଠ ଶ୍ରୀରାମର ॥

ଏସନେକ ସମୟେ ଅଗସ୍ତି ମହରଷି ।
ଅଯୋଧ୍ୟା ସିଂହଦ୍ୱାରେ ମିଳିଲେକ ଆସି ॥
ଦେଖିଣ ଦ୍ୱାରପାଳ ଉଠିଲା ତଡ଼ତି ।
କର ଦୁଇ ଯୋଡ଼ି କରଇ ଭଗତି ॥
ମୁନି ବୋଇଲେ ତୁ ଶ୍ରୀରାମଙ୍କୁ ଜଣାଅସି ।
ଦ୍ୱାରେ ଅଛନ୍ତି ଅଗସ୍ତି ମହରଷି ॥
ଶୁଣି ଦ୍ୱାରପାଳ ଗଲାକ ତଡ଼ବେଗେ ।
ଯାଇଂ ଜଣାଇଲା ଶ୍ରୀରାମର ଆଗେ ॥୮୦
ଉଭା ଦେବ ଶ୍ରୀରାମ ବୀର ଚକ୍ରବର୍ତ୍ତୀ ।
ଦ୍ୱାରେ ଉଭା ହୋଇଛନ୍ତି ଅଗସ୍ତି ॥
ଶୁଣି ରଘୁନାଥ ଉଠିଲେ ଆସ୍ଥାନୁ ।
ବିଜୁଳି ମାରିବା ପ୍ରାୟେ ବିରାଜଇ ତନୁ ॥
ଆସ୍ଥାନୁ ଓହ୍ଲାଇ ଆସନ୍ତି ରାମ ରାଣ ।
ପଛେଣ ଗୋଡ଼ାବନ୍ତି ସକଳ ନୃପଗଣ ॥
ମନ୍ତ୍ରୀ ଅମନାତ୍ୟ ଋଷିଗଣମାନ ।
ଆବର ଅଛନ୍ତି ଭ୍ରଥ ଲକ୍ଷଣ ଶତୃଘନ ॥
ସୁଗ୍ରୀ ବିଭୀଷେଣ ଜମ୍ୱେବ ପ୍ରଭୃତି ।
ଅଙ୍ଗଦ ହନୁମନ୍ତ ମୂଳେ ସେନା ଯୂଥ
ପତି ॥୯୦
ସମ୍ଭର ହୋଇଣ ଅଇଲେ ରାମ ରାଏ ।
ଅଗସ୍ତିଙ୍କି ଦେଖି ନମିଲେ ତାଙ୍କ ପାଏ ॥
ଉଠିଣେ ବେନି କର ଯୋଡ଼ିଣ ଉଭା ହୋନ୍ତି ।
ଗଉରୋବ କରି ଭିତରକୁ ନିଅନ୍ତି ॥
ସୁବର୍ଣ୍ଣ ଆସନେ ନେଇଂ ବସାଇଲେ ।
ଯେ ବିଧି ଛଡ଼ ଅର୍ଘ ଦେଇଣ ପୂଜା କଲେ ॥
କର ପତ୍ର ଯୋଡ଼ି ବୋଲନ୍ତି ରାବଣାରି ।
ସକଳ କୁଶଳ ଟିକି ତୁମ୍ଭର ତପଚାରୀ ॥
ଅଗାଦ ଜଳ ତୋର ଅଛି ନା ସନ୍ନିଧାନେ ।
ପୁଷ୍ପ ଫଳମାନ ଦିଅନ୍ତି ନା ତରୁବର
ମାନେ ॥୧୦୦
ଯହିଂ ବସା କରିଛ କୁମ୍ଭ ସୁତ ।
ପୂର୍ବେ ତପ ଥାନ ଅଟଇ ନା ବିହିତ ॥
କୁଶ ସମିଧ ପାଉ ନା ସର୍ବ କାଳେ ।
ଅଗ୍ନିରେ ହୋମ ଦେଉନା ପୁଣ୍ୟ ବେଳେ ॥
ତପ ସିଧ୍ୟ ହେଉଂ ଅଛିନା ତୁମ୍ଭର ।
ଉତପାତ ନାହିଂ ନା ବିପ୍ରୁନ୍ୟ ଭିତର ॥
କନ୍ଦମୂଳ ପ୍ରାପତ ହେଉଛି ଟିକି ତୋତେ ।
ହବି ପାନେ ତୃପତି ହୋନ୍ତି ନା ଦେବ
ପିତ୍ରେ ॥
ସନ୍ଧ୍ୟା କରୁଟିକି ବେଳକାଳ ଜାଣି ।
ଯଥା କାଳେ ଦେଉଟିକି ତର୍ପଣର ପାଣି ॥
ମୁନି ବୋଇଲେ ଦେବ ତୋହର
ପ୍ରସାଦେ ।୧୦
କୁଶଳେ ବିପ୍ରୁନ୍ୟେ ବଞ୍ଚଇ ଅପ୍ରମାଦେ ॥
ତୁ କ୍ଷେମେ ଅଛୁ ନା ରଘୁକୁଳ ପତି ।
ଅସତ୍ୟ କଥା ନ ପଶଇ ନା ତୋର ମତି ॥
ରାଜ ଧର୍ମ ନ ଛାଡୁ ନା ରଘୁକୁଳ ସାଇଂ ।
ଅମନାତ୍ୟେ ବ୍ରତନ୍ତିଟି ତୋହର ହିତ ପାଇଂ ॥
ଶତ୍ରୁକୁ ତୁ ବାବୁ କରୁଟିକି ଭୟେ ।
କାର୍ଯ୍ୟ ଅକାର୍ଯ୍ୟ କେ ମଣୁଟିକି ରାୟେ ॥
ଗୁହାରି ଶୁଣୁନା ତୁ ସାବଧାନ ହୋଇ ।
କୁବିଚାରେ ବଶ୍ୟ ନୋହୁନା ରଘୁକୁଳ
ସାଇଂ ॥୨୦
ଚତୁରାଙ୍ଗ ବଳ ସର୍ବଦା ସମ୍ଭାଳିବୁ ।
ଅତ୍ୟନ୍ତ ସ୍ନେହରେ ଯେହାନ୍ତ ପାଳିବୁ ॥
ମନ୍ତ୍ରଜ୍ଞ ବ୍ରାହ୍ମଣେ କ୍ରିୟାରେ ନିର୍ଜ୍ଜିତା ।
ସେ ସେ ପୂଜିବ ତୋର ଇଷ୍ଟ ଯେ ଦେବତା ॥
ବେଦାନ୍ତି ବ୍ରାହ୍ମଣଙ୍କୁ ନିତ୍ୟେହେଂ ଦାନ
ଦେବୁ ।
ଦରିଦ୍ର ଲୋକକଇ ଦୟା କରିଥିବୁ ॥
ସମସ୍ତ ଜନ ମନ ଜାଣିମୁ ଅନୁମାନି ।
କଥାନ୍ତ ଦେଖାଇଥିବୁ କଥା ଘେନି ॥
ତୋହ ମନ କଥା କେହି ନ ଜାଣିମେ
ଆନ ।
ଯେହେର୍ନେକ ପ୍ରକାରେ ସେ ବଶ୍ୟ ହୋନ୍ତି
ଜନ ॥୩୦
ପଥ ଶ୍ରାନ୍ତି ଲୋକ ଆତ ଜାତ ହୋନ୍ତି ।
ବାଟରେ ଯେମନ୍ତେକେ ଦୁଃଖ ସେ ନ
ପାବନ୍ତି ॥
ବରଷା କାଳେ ନାବ ବନ୍ଧ ଭିଆଇବୁ ।
ଖରାରେ ପାଣି ପଣା ଛତ୍ର ଦାନ ଦେବୁ ॥
ଶୀତରେ ତୋଳାଇବୁ ଦକ୍ଷିଣେ ମେଲା
ଘର ।
ଅଗ୍ନି ଦାନ ତହିଂ ଦେବୁ ରଘୁବୀର ॥
ତେବେ ପଥ ଶ୍ରାନ୍ତି ଶୁଭେ ଚଳି ଯିବେ ।
ଯେ ତୋହର ଶରୀର କୁଶଳ ବିଚାରିବେ ॥
ନିତ୍ୟେ ଅନ୍ତପୁରର ଜାଣିମୁ ପାପ ପୁନ୍ୟ ।
ହିତ ଅଣହିତ ବୁଝିବୁ ରଘୁନାନ ॥ ୪୦
ବୃଦ୍ଧା ହୋଇଥିବ ଯେବଣ ସେ ନାରୀ ।
ରାଣୀ ହଂସପୁରେ ତାଙ୍କୁ କରିବୁ ଅଧିଷ୍ଠାଣି ॥
ତାହା ନ ଚିହ୍ନିଲେ ହୋଇବାକ ହାନି ।
ଆବର କଥା ଏକ ଶୁଣସି ରଘୁମଣି ॥
ଧର୍ମରେ ମାୟା ଦ୍ରୋହ ଯେଉଁ ପାତ୍ର କରଇ ।
ତାହାର ବୋଲେଟି ସନ୍ୟ ବଳ ମରଇ ॥
ତାହାକୁ ନ ରଖିବୁ ରଘୁକୁଳ ବୀର ।
ଆବର କଥା ଏକ ଶୁଣ ନିରାଧାର ॥
ଅମାୟା ପୁରୁଷ ସେ ଗ୍ୟାନେଣ ଗୋଚର ।
ତାହାକୁ ପ୍ରୀତି କରିବୁ କରି ବିଚାର ॥୫୦
ମୂର୍ଖ ଲୋକକଇ ଶିଖାଇବୁ ବୁଧି ।
କାଳ ବେଳ ଜାଣିଣ କରିବୁ କାର୍ଯ୍ୟ ସିଦ୍ଧି ॥
ଯେବଣ ଲୋକର ନ ଥାଇ ଅଭିମାନ ।
ସେ ଲୋକ କାର୍ଯ କରି ପାରଇ ରଘୁନାନ ॥
ପଣ୍ଡିତ ଜନକଇ ଦୟା ଯେବେ କରି ।
ତେବେ ସେ ଗ୍ୟାନ ଉଦେ ହୁଅଇ
ଦଣ୍ଡଧାରୀ ॥
ପରଜାନ୍ତ ପାଳିବୁ ପୁତ୍ରସମ କରି ।
ହୋମ କରାଇବୁ ବ୍ରାହ୍ମଣନ୍ତ ବରି ॥
ଶତ୍ରୁ ଛିଦ୍ର କଥା ଜାଣିବୁ ଚାର ପେଷି ।
ଚଞ୍ଚଳ ପ୍ରକୃତି ହୋଇବୁ ଅହର୍ନିଶି ॥୬୦
ଗ୍ରହ ବିପାକେ ଯେ ଦେବତାନ୍ତ ପାଳି ।
ଧାନ ଉପୁଜିବାକୁ ପୋଖରୀଥିବୁ ଖୋଳି ॥
ମୁଂ କିସ ତିଆରିବି ତୁ ନ ଜାଣୁ ଅବା କାହା ।
ଶୁଣି କର ଯୋଡ଼ନ୍ତି ରଘୁକୁଳ ନାହା ॥
ଏ ତୋହର ଆଗ୍ୟାଂ ପ୍ରମାଣେ ମୁନି ଥିବି ।
ଯିସ ଆଜ୍ଞା ଦେବୁ ସେ କାର୍ଯ କରିବି ॥

ଶୁଣି ପରମ ତୋଷ ହୋଇଲେ କୁମ୍ଭ ସୁତ ।
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ବହୁତ ॥
ତୁ ରାମ ସତ୍ୟବାଦୀ ଅଟୁ ସତ୍ୟଶୀଳ ।
ଧଉର୍ଯ୍ୟେଣ ମେରୁ ଦୟାରେ ମାହାଜଳ ॥୭୦
ପିତାର ଆଗ୍ୟାଂରେ ବନବାସ କଲୁ ।
ଭାଇ ଭାରିଯା ଘେନି କୁଶଳେ ଅଇଲୁ ॥
ଏ ଅତି ଭାଗ୍ୟ ଯେ ଅଟଇ ତୋହୋର ।
ଆବର କଥାଯେ ଶୁଣ ରଘୁବୀର ॥
ପୁତ୍ର ଭ୍ରାଥ ସହିତେ ରାବଣ ମାଇଲୁ ।
ତେଡ଼େ ଅସୁର ବଳ ଦଳି ପକାଇଲୁ ॥
ଯେ ତୋତେ ଅପୂର୍ବ ନୋହୋଇ ଦାଶରଥି ।
ଛତ୍ରୀ ସମ ନାହିଂ ତୋତେ ସପତ ଦୀପା
ପୃଥୀ ॥
ଏ ତୋହର ମହିମା ଦେବେଣ ଅଗୋଚର ।
ବ୍ରହ୍ମାଣ୍ଡ ଭିତରେ ତୁଇ ଏକଇ
ଧନୁର୍ଦ୍ଧର ॥୮୦
ଶହସ୍ର ଧଇଲେ ତୁ ଜଗତ ଜିଣିପାରୁ ।
ତ୍ରୈଲୋକ୍ୟ ରଖନ୍ତା ତୁ ଅଟୁ ମହା ମେରୁ ॥
ରାବଣ ଆଦି ଯେତେ ମାଇଲୁ ଅସୁର ।
ଇନ୍ଦ୍ରଜିତ ହୁଂ ଅଧିକ କେହି ନୋହନ୍ତି
ରଘୁବୀର ॥
କାହାରିହିଂ ବଳେ ବଧ ନୁହଇ ଦ୍ରପିଷ୍ଟ ।
ଦତ୍ୟଙ୍କର ମଧେ ସେ ଅଟଇ ଗରିଷ୍ଟ ॥
ଲକ୍ଷଣ ତାହାକଇ ମାଇଲା କେମନ୍ତେ ।
ଯେ କଥା ଆଶ୍ଚର୍ଯ୍ୟ ହୋଇଲାକ ମୋତେ ॥
ଦେବତାଙ୍କ ଅଂଶେ ଦତ୍ୟେ ଜାତ ହୋନ୍ତି ।
ଚଉଦ ଭୁବନେ ଅନ୍ୟାୟେ ଆଚରେନ୍ତି ॥୯୦
ତୋହୋର ବଳେ ସେ ତାହାନ୍ତ ହୋଏ
ମାରି ।
ଆନର ବଳେ ସେହୁ ନୁହନ୍ତି ସଂହାରି ॥
ଶୁଣିଣ ଶ୍ରୀରାମ ଯୋଡ଼ନ୍ତି ବେନି କର ।
କଥାଏ ପଚାରିବି ଶୁଣିମା ମୁନିବର ॥
ଇନ୍ଦ୍ରଜିତ ଏତେ ବଳ ପାଇଲାକ କାହିଂ ।
କିମ୍ପାଇ ତାହାକଇ ଜିଣନ୍ତା କେହି ନାହିଂ ॥
କେବଣ ପ୍ରକାରେ ସେ ହୋଇଲାକ ଜାତ ।
ଇନ୍ଦ୍ରକୁ କେମନ୍ତେକେ ଜିଣିଲା ଦଇତ ॥
ମୁନି ବୋଇଲେ ରାମ ଶୁଣସି ଏକ ମନେ ।
ରାବଣ ଅବତାର ଯେବଣ
ବିଧାନେ ॥୧୦୦
ଅନେକ ଯୁଗ ଅନ୍ତେ ସତ୍ୟ ଯୁଗ ଥିଲା ।
ବ୍ରହ୍ମାଙ୍କର ତହୁଂ ପୁଲସ୍ତ୍ୟ ଜନ୍ମିଲା ॥
ସୁନ୍ଦର ସୁକୁମାର ପବିତ୍ର ମୟେ ତନୁ ।
ତେଜେଣ କି ପଟାନ୍ତର ପ୍ରଜ୍ୱଳିତ ଭାନୁ ॥
ତ୍ରେତୟା ଯୁଗରେ ଅନେକ ତପ କଲେ ।
ତପୀଙ୍କର ମେଳେ ଉତ୍ତମ ବୋଲାଇଲେ ॥
କେବଣହିଂ ଦିନେ ମେରୁ ସନ୍ନିଧ୍ୟରେ ମିଳି ।
ତହିଂ ଦେଖିଲା ତିରଣ ରାଜା ତପଶାଳୀ ॥
ପରମ ବ୍ରହ୍ମେ ଲୟେ ହୋଇଛି ମହାଋଷି ।
ଦେଖିଣ ବ୍ରହ୍ମାର ତନୟେ ପରଶଂସି ॥୧୦
ମନେ ବିଚାରିଲା ସାଧୁ ଯେ ତପଚାରୀ ।
ଯେ ସେ ଭବ ଜଳୁଂ ହୋଇବ ସୁଖେ
ପାରି ॥
ଯେହାରି ସନ୍ନିଧ୍ୟେ ମୁଂ ଅନୁବ୍ରତେ ଥିବି ।
ଯେ ପବିତ୍ର ଥାନ ଯେଥି ଯାଗ ଆରମ୍ଭିବି ॥
ଯେହେନ୍ତେକ ବିଚାରି ରହିଲାକ ବନେ ।
ଅନେକ ତପ କଲା ଚତୁରାନନ ନାନେ ॥
ସେ ମେରୁ ଶିଖରେ ବହଇ ସୁରେଶ୍ୱରୀ ।
ବିବିଧ ପୁଷ୍ପ ଫଳ ପାଚି ଫୁଟି ପଡ଼ି ॥
ସେ ବନକୁ ଦିବ୍ୟ କନ୍ୟା ଯେକ ଆସି ।
ଆବର ଅପଛରୀ କିନ୍ନରୀ ଶୁଭ୍ରକେଶୀ ॥୨୦
ରାଜକନ୍ୟା ଋଷିକନ୍ୟା ସମସ୍ତେହେଂ ମିଳି ।
ଋଷିଙ୍କ ସନ୍ନିଧେ ସେ କରୁଥାନ୍ତି କେଳି ॥
ମୁଖ ରାବ ଶବଦେ ମନ ଉଚାଟ ହେଲା
ଯହୁଂ ।
କୋପେଣ ପୁଲସ୍ତ୍ୟ ଶାପ୍ୟ ଦେଲେ ତହୁଂ ॥
ବୋଇଲେ ସୁନ୍ଦେରୀରେ ମତ୍ତଗର୍ବେ ମତ୍ତା ।
ତପୀଙ୍କର ତପ ତୁମ୍ଭେ ଭାଙ୍ଗିତ ଶକତା ॥
ଆଜହୁଂ ମୋ ଛାମୁରେ ହୋଇବ ଯେବଣ
ନାରୀ ।
ବିନା ସମ୍ଭୋଗେ ପୁତ୍ର ଉପୁଜିବ ତାହାରି ॥
ହୋଇବ ଗର୍ଭବାସ ଶୃଙ୍ଗାର ନ କଲେ ।
ଦୂଷିତ ହେବଟି ଏଥିରେ ତୁମ୍ଭେ
ଥିଲେ ॥୩୦
ଶୁଣିଣ କନ୍ୟାମାନେ ପଳାଇଲେ ହସି ।
ଆଉ ବେଳେ ଭୟେ କରି ନଇଲେକ
ତ୍ରାସି ॥
ସେ ଦିନ ତିରଣ ରାଜାର ଦୋହିତା ନ
ଥିଲା ।
ଶାପ୍ୟ ଦେଲେ ବୋଲି ଜାଣି ନ ପାରିଲା ॥
ଅଗ୍ୟାନେ ସୁନ୍ଦେରୀ ଅଇଲା ଖେଳ ଖେଳି ।
ଦେଖିଲା ବେଦ ମନ୍ତ୍ର ପଢୁଛି ତପଶାଳୀ ॥
ସୁସ୍ୱର ଧ୍ୱନି ଶୁଣି କାମେନୀ ବଶ୍ୟ ଗଲା ।
ମଦନ ଉନ୍ମତ୍ତେ ଶରୀର ରୋମାଞ୍ଚିଲା ॥
ମୁନିବର ଶାପ୍ୟରେ ହୋଇଲା ଗର୍ଭବାସ ।
ଛନ ଛନ ମନ ତାର ଖର ନିଶ୍ୱାସ ॥୪୦
ଦେହ ପାଣ୍ଡୁର ବର୍ଣ୍ଣ ଦିଶିଲାକ ଯହୁଂ ।
ସୁନ୍ଦେରୀ ଚେରେଷ୍ଟା ଆନ ମଣିଲାକ ତହୁଂ ॥
ମନେ ବିଚାରିଲା ମୁଂ ହୋଇଲଇଂ ଦୋଷୀ ।
ଅଦଭୁତେ ଗର୍ଭବାସ ହୋଇଲାଇଂ ଆସି ॥
କିସ ବୋଲି କହିବି ସଖୀଙ୍କର ଆଗେ ।
ମାତା ପିତା ଶୁଣି ହୋଇବେ ବଇରାଗେ ॥
ଯେହେନ୍ତେକ ଭାଳି ନିଜ ଆଶ୍ରମକୁ ଗଲା ।
ପିତା ମାତାଙ୍କର ଆଗରେ କହିଲା ॥
ଅକାରଣେ କିମ୍ପା ମୁଂ ହୋଇଲି ଗର୍ଭବାସ ।
ପରୀକ୍ଷେ ବୁଝ କିନା ନାହିଂ ମୋର
ଦୋଷ ॥୫୦
ଶୁଣି ତିରଣ ରାଜା ବିସ୍ମୟେ କଲା ଚିତ୍ତ ।
ବୋଇଲା ଯେହେନ୍ତେକ କିମ୍ପା ହୋଇଲା
ବିପରୀତ ।
କୁମାରୀ ବୋଇଲା ମୁଂ କେବେଣ ଅଭାଗୀ ।
ଯେତେ ବୋଲି ବାଳୀ ପିତାର ପାଦେ ଲାଗି ॥
ଆକୁଳେ ବୋଇଲା ଶୁଣସି ପିଅର ।
ଅଦଭୁତେ ଗର୍ଭବାସ ହୋଇଲା ମୋହୋର ॥
ପୁଲସ୍ତ୍ୟ ଆଶ୍ରମକୁ ସଖୀନ୍ତ ଦେଖିଗଲି ।
କେହି ନାହିଂ ତହିଂ କାହାକୁ ନ ଦେଖିଲି ॥

ବେଦ ମନ୍ତ୍ର ପଢୁଛନ୍ତି ସେହି ମହରଷି ।
ତାହା ଦେଖିଣ ମୁଂ ବାହୁଡ଼ିଣ ଆସି ॥୬୦
ଆନ ବିକାର ତାତ ନାହିଂ ମୋର କିଛି ।
କି ପାଇଂ ଦେହ ମୋର ଯେମନ୍ତ
ହୋଉଅଛି ॥
ଶୁଣିଣ ତିରଣ ରାଜା ବସିଲାକ ଧ୍ୟାନେ ।
ଯୋଗବଳେ କଥାନ୍ତ ଜାଣିଲା ଅନୁମାନେ ॥
ପୁଲସ୍ତ୍ୟଙ୍କର ପାଶେ ପ୍ରବେଶ ତିରଣ ରାଜ ।
ଦେଖିଣ ଉଠିଲେ ବ୍ରହ୍ମାଙ୍କ ତନୁଜ ॥
ତିରଣ ରାଜା ବୋଇଲା ଶୁଣ ମହରଷି ।
ଯେ ମୋହର ଦୋହିତା ରୂପେ ଗୁଣ ରାଶି ॥
ବିଭାଏଣ ଦେଲି ଘେନସି ତୁ ଯେହା ।
ଯେ ଘୋର ବନେ ତୋତେ ହୋଇଥିବ
ସାହା ॥୭୦
ତୁ ଯେ ମହରଷି ଘୋର ବନେ ଥାଉ ।
ଯେ ମୋହର ଦୋହିତା ତୋତେ ସେବା
କରି ରହୁ ॥
ତୋହର ଶାପ୍ୟେ ଯେ ଯେ ହେଲା
ଗର୍ଭବାସ ।
ଆନକୁ ଦେଲେ ମୁଂ ପାଇବି ଉପହାସ୍ୟ ॥
ଶାପ୍ୟ ଦେଲୁ ବୋଲି ନ ଜାଣିଲା ବାଳୀ ।
ସଖୀନ୍ତ ଲୋଡ଼ିଣ ସେ ଅଇଲା ଖେଡ଼
ଖେଳି ॥
ତୁ ଯେହାର ଦୋଷ ନ ଧରିବା ମହରଷି ।
ଅତ୍ୟନ୍ତ ସୁନ୍ଦେରୀ ଏ ଅଟଇ ଶୁଭ୍ରକେଶୀ ॥
ଶୁଣିଣ ପୁଲସ୍ତି ଆନନ୍ଦ ହୋଇଲେ ।
ଘେନିଲି କନ୍ୟା ଦାନ ବୋଲିଣ
ବୋଇଲେ ॥୮୦
ତିରଣ ରାଜା ଯେ ଶଙ୍ଖେ ପାଣି ଘେନି ।
ବ୍ରହ୍ମାଙ୍କ ପୁତ୍ରକୁ ସମର୍ପିଲେ କାମେନୀ ॥
କନ୍ୟା ଦାନ ଦେଇ ତିରଣ ରାଜା ଗଲା ।
ପୌଲସ୍ତି ସନ୍ନିଧ୍ୟେ କାମେନୀ ରହିଲା ॥
ପିତାଙ୍କର ଆଗ୍ୟାଂରେ ସେ ରଷିଙ୍କି ସେବା
କରି ।
ପ୍ରକୃତି ଜାଣିଣ ରଷିଙ୍କ ମନ ହରି ॥

ସେବାରେ ମନାଇଲାକୁ ରଷି ବର ଦେଲେ ।
ଅତି ଧାର୍ମିକ ପୁତ୍ରେ ପ୍ରସବିବୁ ବୋଇଲେ ॥
ବଳେ ବଳବନ୍ତା ହୋଇବ କୁମର ।
କନ୍ଦର୍ପ ସମାନ୍ୟେ ସେ ରୂପେ ପଟାନ୍ତର ॥୯୦
ଓହୋ କୁଳ ଉଦ୍ଧରିବ ତପେଣ ଗରୁହଂସି ।
ଯେସନେକ ପୁତ୍ର ତୁ ପ୍ରସବ ଶୁଭ୍ରକେଶୀ ॥
ଯେଥୁଅନନ୍ତରେ କେତେହେଂକ ସମଏ ।
ତିରଣ ରାଜା ଦୋହିତା ପୁତ୍ର ଜାତ କଏ ॥
ପ୍ରତକ୍ଷେ ପୌଲସ୍ତି ଜାଣି ପଟାନ୍ତର ।
ବିଶର୍ବା ନାମ ତାକୁ ଦେଲେ ମୁନିବର ॥
ଦିନୁ ଦିନୁ ପୁତ୍ର ଚନ୍ଦ୍ରମା ଜାଣି ବଢ଼ି ।
ସୁସ୍ୱର ଧ୍ୱନି କରିଣ ଚାରି ବେଦ ପଢ଼ି ॥
ପିତାର ନ୍ୟାୟେ ସେ ନିତିହିଂ ତପ କଲା ।
ଅଳପ ସମୟେ ଅନେକ ଧର୍ମ
ଅରଜିଲା ॥୧୦୦
ଭରଦ୍ୱାଜ ରଷି ଦେଖିଲେ ତାର ରୀତି ।
ବିଭାୟେଣ ଆଣି ଦେଲେ ଆପଣା
ଦୋହିତୀ ॥
ହର ଗଉରୀ ଜାଣି ଦିଶିଲେ ବେନି ଜନ ।
ବୋଲନ୍ତି ଅଗସ୍ତି ଶୁଣ ଦଶରଥ ନନ୍ଦନ ॥
ଭରଦ୍ୱାଦଶ ରଷି ଦୋହିତାର ସଙ୍ଗେ ।
ବିଶର୍ବା ମାହାରଷି ରମିଲେ ନାନା ରଙ୍ଗେ ॥
କାଳେଣ ପୁତ୍ରେକ ହୋଇଲା ତହୁ ଜାତ ।
ରୂପ ଗୁଣେ ପଟାନ୍ତର ବିଶର୍ବା ସଂଜାତ ॥
ପିତା ମାତା ଦେଖି ଆନନ୍ଦ ହୋଇଲେ ।
ବଇଶ୍ରବଣ ବୋଲି ପୁତ୍ର ନାମ
ଦେଲେ ॥୧୦
ସେ ପୁତ୍ର ଶତେକ ବରଷ ତପ କଲା ।
ଜଳ ପବନ ଭକ୍ଷି କଷ୍ଟୋରେ ଦିନ ନେଲା ॥
ଅତି କଷ୍ଟୋର ତପ ଦେଖି ସୁରଗଣ ଘେନି ।
ପ୍ରସନ୍ନ ହୋଇ ବର ଯାଚଇ ପଦ୍ମ ଯୋନି ॥
କୁମର ବୋଇଲା ମୁଂ ଦିଗପାଳ ହେବି ।
ଦେବତା ତନୁ ଘେନି ଯୁଗେ ଯୁଗେ ଥିବି ॥
ଶୁଣି ପିତାମହ ହୋଇଲେ ତ୍ରିପୁତି ।
ପ୍ରସନ୍ନ ହୋଇ ବର ଦେଲେ କୁଶକେତି ॥

ବୋଇଲେ ବଇଶ୍ରବଣ ହୋଅ ଧନପତି ।
ହୋଇଲୁ ଦେବତା ତୁ ତ ପରମ
ସଙ୍ଗତି ॥୨୦
ଶଙ୍କର ମରୁତ ମଧରେ ଠାବ ଅଛି ।
ତହିଂ ବିଶ୍ରାମ କର ହୋ ବିଶର୍ବାର ବଛି ॥
ପୁଷ୍ପେକ ବିମାନ ଯେ ମଧାହ୍ନ ସୂର୍ଯ୍ୟ ତେଜ ।
ଯେଥେ ବିଜେ କର ସପତ ନିଧି ରାଜ ॥
କୁବେର ପଦ ମୁହିଂ ତୋତେ ଦେଲି ।
ତ୍ରୈଲୋକ୍ୟ ଭଣ୍ଡାର ମୁହିଂ ତୋହୋରେ
ସମର୍ପିଲି ॥
ପୁଷ୍ପେକ ବିମାନେ ତୁ ବେଗେ ବିଜେ
କର ।
ମୋହର ଦେଖୁ ଦେଖୁ ଦେବ ତନୁ ଧର ॥
ବ୍ରହ୍ମାର ଆଗ୍ୟାଂରେ ବଇଶ୍ରବଣ ରଷି ।
ପୁଷ୍ପେକ ବିମାନେ ବେଗେ ଯାଇ
ବସି ॥୩୦
ଦୁତୀ ଇନ୍ଦ୍ର ପ୍ରାୟେ ଦିଶିଲାକ ରୂପ ।
ଦେବତା ରୂପ ଧଇଲା ତେଜି ମହାପାପ ॥
ବର ଦେଇ ବ୍ରହ୍ମା ନିଜ ପୁରେ ଗଲେ ।
ଶୁଣ ହୋ ଶ୍ରୀରାମ ଅଗସ୍ତି ବୋଇଲେ ॥
ଯେତେବେଳେ ଦେବେ ଗଲେ ସ୍ୱର୍ଗ
ଥାନ ।
କୁବେର ଆରୋହିଲା ପୁଷ୍ପେକ ବିମାନ ॥
ନିଜ ତାତ ସନ୍ନିଧ୍ୟେ ମିଳିଲାକ ଯାଇଂ ।
ପ୍ରଲମ୍ଭ କଲା ସେ ବିମାନୁ ଓହ୍ଲାଇ ॥
ଦେଖି ମହା ତୋଷ ବିଶର୍ବା ମହାରଷି ।
ପୁତ୍ରକଇ କୋଳେ ଧରିଣ ମୁନି ବସି ॥୪୦
ବଇଶ୍ରବଣ ବୋଇଲେ ମୁଂ ଯେ କୁବେର
ହୋଇଲି ।
ବ୍ରହ୍ମାର ତହିଂ ହାଦେ ଏ ବର ପାଇଲି ॥
ତୁ ଏବେ ଭୋ ପିତା ଶୁଣିମା ମୋର ବୋଲ ।
ରହିତ ଭଲ ଠାବ ଦିଅ ଯେବା ଭଲ ॥
ସୁସଞ୍ଚ ଥାନ ହୋଇବ ଶଭଚ ନିର୍ମଳ ।
ଅବସନ୍ତେ ଲୋଡ଼ିଲେ ପାଇବି ପୁଷ୍ପଫଳ ॥
ନଥିଲା ଲୋକକୁ ନଥିବ କିଛି ପୀଡ଼ା ।

ନିଃଶଙ୍କ ହୋଇ ଲୋକେ କରୁଥିବେ କ୍ରୀଡ଼ା ॥
ସେ ପୁରେ ଥିଲେ ସେ ଯେ ନିଶ୍ଚିନ୍ତ ମୋର
ମନ ।
ଅବଚ୍ଛିନ୍ନେ ଉପୁଜିବ ମଙ୍ଗଳ ବିଧାନ ॥୫୦
ଲକ୍ଷ୍ମୀ ଆଲିଙ୍ଗନ ହୋଇବେ ନରନାରୀ ।
ତେଜମୟେ ପ୍ରଭା ହୋଇବ ସବୁଙ୍କରି ॥
କ୍ଷୁଧା ତୃଷା ବାଧା ନ ଥିବ ତହିଁ ଥିଲେ ।
ବହୁତ ଧର୍ମ ହେବ ଅଳପ ତପ କଲେ ॥
ଏସନେକ ଥାନ ନିର୍ବାଣି ମୋତେ ଦେସି ।
ଶୁଣି ଧ୍ୟାନେ ବସିଲେ ବିଶର୍ବା ମହରଷି ॥
ଯୋଗ ବଳେ ଜାଣି ଛାଡ଼ିଲେ ସମାଧି ।
ପୁତ୍ର ମୁଖକଇ ଚାହିଁଣ ବୋଲନ୍ତି ସଦବୁଦ୍ଧି ॥
ଶୁଣ ବଇଶ୍ରବଣ ପଚାରିଲୁ ଯାହା ।
ଦିବ୍ୟ ପୁରେକ ଅଛି ମୁଁ ଠାବ କରିଲି
ତାହା ॥୬୦
ଲବଣ ସିନ୍ଧୁ ମଧେ ଲଙ୍କା ନାମେ ପୁରୀ ।
ବିଶ୍ୱକର୍ମା ଗଢ଼ିଅଛି ଅତି ଯତ୍ନ କରି ॥
ଅମରାବତୀକି ସମ ଅଟଇ ସେ ପୁର ।
ତହିଁଯାଇଁ ବିଶ୍ରାମ କର ହୋ କୋବେର ॥
ସେ ପୁରେ ଥିଲେ ବାବୁ ସକଳ ସିଧ
ହୋଇ ।
ସପତ ଦ୍ୱୀପରେ ସେ ଅଟଇ ସାର ମହୀ ॥
ଯାଅ ବଇଶ୍ରବଣ କଲ୍ୟାଣ ହୋଉ ତୋତେ ।
ଦେଲି ପୁଣ୍ୟଥାନ ମାଗିଲୁ ଯେବେ ମୋତେ ॥
ପୂର୍ବେଣ ସେ ପୁରେ ଅସୁରେ ରହିଥିଲେ ।
ବିଷ୍ଣୁ ଡରେ ଯାଇ ପାତାଳେ ପଶିଲେ ॥୭୦
ଜନ ଉପଦର୍ପ କିଛି ନାହିଁ ବାବୁ ତହିଁ ।
ଥାଅସି ସେ ପୁରେ କଲ୍ୟାଣ କ୍ଷେମ ହୋଇଁ ॥
ବିଶର୍ବାର ତହୁଁ ଏସନେକ ବାଣୀ ଶୁଣି ।
ସନ୍ତୋଷ ହୋଇଲେ ବଇଶ୍ରବଣ ମୁନି ॥
ପିତାର ଆଜ୍ଞାରେ ସେ ଅନକୂଳ କରି ।
କୋବେର ପ୍ରବେଶ ହୋଇଲା ଲଙ୍କପୁରୀ ॥
ଦେଖିଲା ସେ ପୁର ଅତ୍ୟନ୍ତ ସୁସଞ୍ଚ ।
ମଞ୍ଚକଇ ସ୍ୱର୍ଗ ସ୍ୱର୍ଗକଇ ମଞ୍ଚ ॥
ବଳୟା ପ୍ରକାରେଣ ସମୋଦ୍ର ଅଛି ବେଢ଼ି ।
କି ଜାଣି ସେ ଗଡ଼କୁ ପାଚେରୀ ଅଛଇ
ଗଢ଼ି ॥୮୦
ସୁବର୍ଣ୍ଣର ଲିଙ୍ଗେ କି ପ୍ରକଟର ମେଖଳ ।
ଲଙ୍କାକଇ ତେସନ ଦିଶଇ ମାହାଇଳ ॥
ପୁଷ୍ପେକ ବିମାନ ଆରୋହି ଧନପତି ।
ଊର୍ଦ୍ଧ୍ୱେ ଥାଇଁ ଦେଖିଲା ଲଙ୍କାର ଆକୃତି ॥
ମେଢ଼ ମଣ୍ଡୋପ ଦେଉଳ ଜଗତୀ ।
ସୁବର୍ଣ୍ଣ କଳସ ବସଇ ପନ୍ତି ପନ୍ତି ॥
ନଦୀ ପୁଷ୍କରିଣୀ କୂପ ବାମ୍ପି ତଳା ।
ପୁଷ୍ପ ଫଳ ତୋଟା କେ କରିବ ସଙ୍ଖୋଳା ॥
ଦିବ୍ୟ ଘରମାନେ ନବରତ୍ନ କମ ମୟେ ।
ଦେଖି ଧନପତି ବହୁତ ପ୍ରଶଂସା କୟେ ॥୯୦
ଯହୁଁ ସେ ବୈଶ୍ରବଣ ଲଙ୍କାରେ ପ୍ରବେଶ ।
ଯକ୍ଷଗଣ ଆସି ମିଳିଲେ ତାର ପାଶ ॥
ଗନ୍ଧର୍ବେ ତୁଷ୍ଟିକଲେ ନାଚିଲେ ଅପଛରୀ ।
ସୁସ୍ୱର ସ୍ୱରେ ଗୀତ ଗାବନ୍ତି କିନ୍ନରୀ ॥
ସେ ଲଙ୍କା ଭୁବନ ଦିଶଇ ଅତି ଶୋଭା ।
ବାବୁ ସେ ବୈଶ୍ରବଣର ତପ ବଳପ୍ରଭା ॥
ସେ ପୁରେ କୁବେର ରହିଲା ତୋଷ ମନେ ।
ଆରୋହଣ କରଇ ପୁଷ୍ପେକ ବିମାନେ ॥
ମାତା ପିତାଙ୍କୁ ଲଙ୍କାକଇ ନେଲା ।
ବହୁତ ଭାବରେ ବିନୟେ ସେବା
କଲା ॥୧୦୦
ଅଗସ୍ତିଙ୍କ ମୁଖୁ ଏସନେକ ଶୁଣି ।
କର ଦୁଇ ଯୋଡ଼ି କହନ୍ତି ରଘୁମଣି ॥
ଭୋ ମୁନି ଯାହା ତୁ କହିଲୁ ଏ ବାଣୀ ।
ପୂର୍ବେଣ ଏକଥା ଅଛଇ ମୁଇଁ ଶୁଣି ॥
ପୌଲସ୍ତିଙ୍କ ଅଂଶେ ଜାତ ଧନପତି ।
ରାବଣ କେହ୍ନେ ଆନେ ପୋଲସ୍ତିର ନାତି ॥
ବିଷ୍ଣୁ କିମ୍ପା ଦଇତକୁ ଏଡ଼େ କୋପ କଲା ।
କେବଣ ପ୍ରକାରେ ଦଇତ ବଳ ନିବାରିଲା ॥
ଏକଥା ମୋହ ଆଗେ କହିବା କୁମ୍ଭଯୋନି ।
ଶୁଣ ତୁ ରଘୁନାଥ ବଦନ୍ତି ମାହାମୁନି ॥୧୦
ପୂର୍ବେଣ ବହ୍ମା ବେନି ପୁତ୍ର ଜାତ କଲା ।
ବଳବନ୍ତ ଦେଖି ତାକୁ ବହୁତ ପ୍ରଶଂସିଲା ॥
ଜ୍ୟେଷ୍ଠ ପୁତ୍ର ବୋଇଲା ଶୁଣସି ପିତାମହ ।
କିସ କରିବଇଁ ବେଗେଣ ଆଗ୍ୟାଂ ଦିଅ ॥
ଧାତା ବୋଇଲା ତୁମ୍ଭେ ପ୍ରାଣୀଙ୍କି ରକ୍ଷା କର ।
ଯଶ ଶିରୀ ଆୟୁଷ୍ୟ ବଢ଼ିବ ତୁମ୍ଭର ॥
ଶୁଣିଣ ବୋଇଲା କନେଷ୍ଠ ତନୟେ ।
କିମ୍ପାଇଁ ରଖିବୁ ଆମ୍ଭେ କରିବୁ ସବୁ କ୍ଷୟେ ॥
ଶୁଣି ମନେ ମନେ ବିହି ବିଚାରିଲେ ।
ଯେବଣ ପୁତ୍ର ରକ୍ଷା କରିବ
ବୋଇଲେ ॥୨୦
ତାହାକୁ ବୋଇଲେ ତୁ ହୋଅ ଦକ୍ଷପତି ।
ଧର୍ମରେ ଅନୁବ୍ରତେ ସେ ଥାଉ ତୋର ମତି ॥
ଯେବଣ ପୁତ୍ର ବୋଇଲା କରିବି ସବୁ କ୍ଷଏ ।
ସେ ସେ ଶ୍ରୀରାମଚନ୍ଦ୍ର ରାକ୍ଷସ ରୂପ ହୋଯେ ॥
ରକ୍ଷ ବୋଲି ଯେ ଯେବଣ ହିଁ ବୀର ।
ହେତୁ ମତିରୁ ଜାତ କଲାକ କୁମର ॥
ହେତି ପ୍ରହେତି ବୋଲିଣ ନାମ ଦେଲା ।
ପ୍ରହେତି ମାହାତମା ଦାରା ସଂହରଣ କଲା ॥
ଧର୍ମ ଆଶ୍ରେ କରି ହୋଇଲା ତ୍ରିଜୀବୀ ।
କାଳେ ପ୍ରାପତ ତାକୁ ହୋଇଲା ପୃଥିବୀ ॥୩୦
ହେତି ମହାବୀର ବଳେ ବଳବନ୍ତା ।
ମହାଘୋର ସଂଗ୍ରାମେ ନ କରଇ ଚିନ୍ତା ॥
କାଳର ଭଗ୍ନୀକି ସେ ହୋଇଲାକ ବିଭା ।
ତାହାର ତୁଳେଣ ସେ ଅନେକ ପ୍ରୀତି ଭାବା ॥
ବିବିଧ ବିନୋଦେଣ କରଇ ସୁରତି ।
କାଳେଣ ପୁତ୍ରେକ ତହିଁ ହୋଇଲା
ଉତପତି ॥
ବିଦ୍ୟୁତକେଶା ବୋଲି ହୋଇଲା ତାର
ନାମ ।
ବିଜୁଳି ତେଜ ଜାଣିଲ ଦିଶିଲା ତାର ବର୍ଣ୍ଣ ॥
ଶାଳକଣ୍ଟେକର ଦୋହିତାକୁ ବରି ।
ବଟକୁ କନ୍ୟା ସେ କନ୍ୟାକୁ ବର ସରି ॥୪୦
ସେ ପତି ପତ୍ନୀ ମଦନେ ମହାମତ୍ତା ।
ତେଜିଲେ ଘର ଦ୍ୱାର ତେଜିଲେ ପିତାମାତା ॥
ବନ ପର୍ବତେଣ ବୁଲିଣ କ୍ରୀଡ଼ା କଲେ ।
ନଦୀ କୂଳ ଗିରି କନ୍ଦରେ ପଶିଲେ ॥

କାଳେଣ ଯୁବତୀ ହୋଇଲା ଗର୍ଭବାସ ।
ଦିନ ଗଣନ୍ତେଣ ହୋଇଲା ଦଶମାସ ॥
ଦିନେକ ରାକ୍ଷସୀ ଶୂନ୍ୟେ ଝାମ୍ପ ଦେଲା ।
ମହିନ୍ଦ୍ର ପର୍ବତକୁ ଧାଇଂଣ ପଡ଼ିଲା ॥
ସେ ଗିରି କନ୍ଦରେଣ ପୁତ୍ରେକ ଉପୁଜାଇ ।
ସେ ପୁତ୍ରକୁ ତେଜି ତହୁଂ ବାହୁଡ଼ି
ଆସଇ ॥୫୦
କାମଭର ହୋଇଣ ପତିର ପାଶେ ଗଲା ।
ବିବିଧ ବିନୋଦେ ସୁରତି କରାଇଲା ॥
ଯେବଣ ପୁତ୍ରକୁ ପର୍ବତେ ଗଲା ଛାଡ଼ି ।
କ୍ଷୁଧାରେ କୁମର ସେ ଛାଡ଼ଇ ଘୋର ରଡ଼ି ॥
ମୁଖରେ ହସ୍ତ ଦେଇ କଲାକ ରୋଦନ ।
କି ଜାଣି ପ୍ରଥମ ମେଘ ଗରଜନ ॥
ସକଳ ଭୁବନକୁ ଶୁଭିଲା ଶବଦ ।
ଶୁଣି ଜୀବଜନ୍ତୁ ହୋଇଲେ ତବଦ ॥
ହର ଗଉରୀ ବିଜେ କପିଳାସ ଗିରି ।
ବିବିଧ ବିନୋଦେ କ୍ରୀଡ଼ା ରସ କରି ॥୬୦
ଶବଦ ଶୁଣିଣ ଅଇଲେ ବେନି ଜନ ।
ଦେଖିଲେ ରୋଦନ କରଇ ନନ୍ଦନ ॥
ପ୍ରସନ୍ନ ହୋଇଣ ତାକୁ ବର ଦେଲେ ।
ଧର୍ମ ଶରୀର ତୁ ହୁଅସି ବୋଇଲେ ॥
କ୍ଷେତ୍ରୀ ସମ ତୋତେ ନୋହିବେ ରବି
ତଳେ ।
ସଂଗ୍ରାମେଣ ତୋତେ ହାରିବେ ଦିଗପାଳେ ॥
ସୁନ୍ଦର ଚାଚର ଚିକୁର ଅଟଇ ।
ସୁକେଶା ନାମ ତୋତେ ଅନରୂପେ ଖଟଇ ॥
ପାର୍ବତୀ ବୋଇଲେ ସେ ଅସୁରୀ
ଚାଣ୍ଡାଳୁଣୀ ।
ପ୍ରସବିଲା ପୁତ୍ରକୁ କେହ୍ନେ ମୁଛିଲା
ରାଢ଼େଣୀ ॥୭୦
ଆଜହୁଂ ରାକ୍ଷାସୁଣୀ ତୁ ନୋହସି ଗର୍ଭବାସ ।
ଶରୀରୁଂ ଜାତକରି ନ ଉପୁଜାଅ ବଂଶ ॥
ଏସନେକ ବୋଲି ହରପାର୍ବତୀ
ଚଳିଗଲେ ।
ବର ପାଇ ସୁକେଶା ପୃଥିବୀ ବୁଲିଲେ ॥

ମେରୁ ମନ୍ଦର ଯେ ହେମବନ୍ତ ଦଣ୍ଡୀ ।
ସାହେର ଭିତରେ ଯେ ଅଛଇ କୁଦ ଖଣ୍ଡି ॥
ମେରୁ ଶୃଙ୍ଗ ପବନ ଉଡ଼ାଇଣ ନେଲା ।
ପୂର୍ବର ହେତୁ ପାଇଂ ପକାଇ ଅଇଲା ॥
ସେ ଲଙ୍କା ଭୁବନେ ସୁକେଶା ଯାଇଂ ମିଳି ।
କଟେକ କରି ତହିଂ ରହିଲା ମହୀସ୍ଥଳି ॥୮୦
ସ୍ୱର୍ଗ ସମକରି ତହିଂରେ ରହିଲା ।
ସଦାଶିବ ବର ପାଇ ଧାର୍ମିକ ହୋଇଲା ॥
ବିଶ୍ୱାବସୁ ଗନ୍ଧର୍ବ ଦୋହିତା ବେଦମତୀ ।
ତାହାକଇ ବିଭା ହୋଇଲା ଦତ୍ୟପତି ॥
ତାହାର ତହୁଂ ତିନିପୁତ୍ର ହୋଇଲାକ ଜାତ ।
ମାଳୀ ସୁମାଳୀ, ଆବର ମାଲ୍ୟବନ୍ତ ॥
ତିନି ଅଗ୍ନି ପ୍ରାୟେ ଦିଶନ୍ତି ତିନି ପୋଏ ।
କି ଜାଣି ବ୍ରହ୍ମା ବିଷ୍ଣୁ ମହେଶ୍ୱର ଜାତ
ହୋଏ ॥
ତପୀଙ୍କି ପଚାରି ଅନେକ ତପ କଲେ ।
ଜଳ ପବନ ଭକ୍ଷି କଷ୍ଟେରେ ଦିନ
ନେଲେ ॥୯୦
କାଳେ ପିତାମହ ପ୍ରସନ୍ନ ହୋଇଲା ।
ମାଗ ବର ବୋଲି ଶୂନ୍ୟେଣ ଡାକ ଦେଲା ॥
ଶୁଣିଣ ଆନନ୍ଦ ମାଳୀ ସୁମାଳୀ ମାଲ୍ୟବନ୍ତ ।
କର ଯୋଡ଼ି ବୋଇଲେ ଶୁଣ ଜଗତର
ତାତ ॥
ଯେବେ ତୁ ପ୍ରସନ୍ନ ହୋଇଲୁ ଗୋସାଇଂ ।
ତୋ ତହୁଂ ବଡ଼ ତ ବ୍ରହ୍ମାଣ୍ଡେ କେହି ନାହିଂ ॥
ତ୍ରିଜୀବୀ ହୋଇବାକୁ ଆମ୍ଭର ବଡ଼ ମନ ।
ଦିଅ ଅମର ବର ତୁ ଚତୁର ବଦନ ॥
ସଂଗ୍ରାମେ ଆମ୍ଭନ୍ତ କେହି ଜିଣନ୍ତା ନୋହିବ ।
ଆମ୍ଭେ ତିନି ପୁର ଜିଣିମୁ ଭୋ
ଦେବ ॥୧୦୦
ଶତ୍ରୁ ମାରିବୁ ବୀର ଶୂର ପଣେ ।
ଆମ୍ଭକଇ ଦେଖି ଡରିବେ ସୁରଗଣେ ॥
ଶୁଣିଣ ପିତାମହ ବୋଇଲେ ହୋଉ ଅସ୍ତୁ ।
ଆଗ୍ୟାଂ ଦେଇ ଶୂନ୍ୟେ ଗଲେ କୁଶକେତୁ ॥
ମାଳୀ ସୁମାଳୀ ଆବର ମାଲ୍ୟବନ୍ତ ତିନି ।

ପ୍ରବଳ ହୋଇଲେ ସେ ବ୍ରହ୍ମାର ବର ଘେନି ॥
ତିନିପୁରେ ଗୋଳ କଲେକ ଦୁପିଷ୍ଟ ।
ଋଷିଗଣ ଗଞ୍ଜି ଯାଗ କଲେ ନଷ୍ଟ ॥
ପରଜାନ୍ତ ଦଳିଣ ଦେବତାନ୍ତ ଦ୍ରୋହ
କଲେ ।
ବିଶ୍ୱକର୍ମାକୁ ରାଇ ତକ୍ଷଣେ ଆଗ୍ୟାଂ
ଦେଲେ ॥୧୦
ତିନିପୁର ନିକଟ ହୋଇବ ସୁସ୍ଥ ଥାନ ।
ମେରୁ କନ୍ଦର ହେମବନ୍ତର ସନ୍ନିଧାନ ॥
ତହିଂ ଆମ୍ଭଙ୍କୁ ଦେବୁଂ ପୁର ରଚିଂ ।
ସୁବର୍ଣ୍ଣେ ନିର୍ମିତ ଅଷ୍ଟ ରତ୍ନେ ଖଞ୍ଜି ॥
ତିନି ଭାଇଙ୍କି ଯେ ହୋଇବ ତିନିପୁର ।
ଦେଖିଣ ପ୍ରଶଂସା କରିବେ ସ୍ୱର୍ଗପୁର ॥
ଶୁଣିଣ ବିଶ୍ୱକର୍ମା ତ୍ରିକୂଟେକ ଥାନେ ।
ପୁରେକ ନିର୍ଭା କଲା ସ୍ୱର୍ଗର ସମାନେ ॥
ଶତେକ ଯୋଜନ ଦୀର୍ଘ ବତିଶ ଯୋଜନ
ପ୍ରତି ।
ମେଢ଼ ମଣ୍ଡୋପ ଘର ଅଟ୍ଟାଳି ଜଗତୀ ॥୨୦
ଚାଳିଶି କୋଶ ଉଞ୍ଚ ପାଚେରୀ ନିର୍ଭା କଲା ।
ନଦୀ ପୋଖରୀ କୂପ ବାମ୍ଫି ସମ୍ପାଦିଲା ॥
ନାନା ବୃକ୍ଷମାନ ରୁପିଲା ତହିଂ ନେଇ ।
ନାମ ଲଙ୍କାଗଡ଼ ସୁବର୍ଣ୍ଣମୟେ ଭୂଇଂ ॥
ମେରୁର ଶିଙ୍ଘଖଣ୍ଡ ସହସ୍ରେ ଯୋଜନ ।
ତହିଂର ମଧ୍ୟେ ଶତେକ ଯୋଜନ ଉଞ୍ଚ
ସ୍ଥାନ ॥
ତହିଂ ଲଙ୍କାଗଡ଼ ନାମେ ଶୁଭ ଦେଲା ।
ଆବର ସୀମାନ୍ତ ବାହାର ଦେଶ କଲା ॥
ଭୁବନ ନିର୍ଭା କରି ଦତ୍ୟକୁ ଯାଇଂ କହି ।
ମାଳୀ ସୁମାଳୀ ଆବର ମାଲ୍ୟବନ୍ତ ତୋଷ
ହୋଇ ॥୩୦
ଶୁଭ ଅନକୂଳେ ହୋଇଲେ ପ୍ରବେଶ ।
ସଙ୍ଗତେ ଅଛନ୍ତି ଅନେକ ରାକ୍ଷାସ ॥
ପାଦ ଭରେ ଟଳ ଟଳ ହୋଇଲା ମେଦନୀ ।
ଅତି ଉତୁକଳ ହୋଇଲେ ଭାଇ ତିନି ॥
ନର୍ମଦା ଅପଛରୀର ତିନି ଝିଅ ଥିଲା ।

ତିନି ଭାଇଙ୍କି ସେ ବିଭା କରାଇଲା ॥
ମାଲ୍ୟବନ୍ତ ନାରୀ ଅତି ରୂପବନ୍ତୀ ।
ସାତ ପୁତ୍ର ପ୍ରସବ କଲାକ ଯୁବତୀ ॥
ବଜ୍ରମୁଷ୍ଟି ବିରୂପାକ୍ଷ ଦୁର୍ମୁଖ ସୁପ୍ତଘ୍ନ ।
ଯଜ୍ଞକୋପ ମତ୍ତ ଉନ୍ମତ୍ତ ଯେ ନାନ ॥୪୦
ବିକଟ କାଳିମୁଖ ଧୂମ୍ରାକ୍ଷ ପ୍ରହସ୍ତ ଅକମ୍ପନ ।
ଯେକୁ ଯେକ ବୀରେ ଅତି ଅନୁପାମ ॥
ଦଣ୍ଡକ ପାରୁଶା ପ୍ରକାଶ ଭାସକର୍ଣ୍ଣ ଅସୁର ।
ଯେ ନବ ତନୟେ ଯେ ଅଟନ୍ତି ସୁମାଳୀର ॥
ଦୋହିତା ପୁଷ୍ପୋତ୍କଟା ନଉକେଶୀ ।
ରାକା ଶୁଚିସ୍ମିତା ଆବର କୁମ୍ଭୀନସୀ ॥
ଏ ପାଞ୍ଚ ଦୋହିତା ସୁମାଳୀ ଦୁଲଣୀ ।
ବୋଲନ୍ତି ମୁନିବର ଶୁଣ ରଘୁମଣି ॥
ମାଳୀର ଭାରିଯା ଯେ ବସୁଧା ସୁନ୍ଦେରୀ ।
ତାହାର ଡହୁଁ ଜାତ ହୋଇଲେ ପୁତ୍ର ଚାରି ॥୫୦
ଅନଳ ଅନିଳ ଭୀମ ସମ୍ପାତିକ ।
ପ୍ରତଗ୍ୟାଂ ଗାଢ଼ କରନ୍ତି ଏକୁ ଏକ ॥
ପ୍ରବଳ ହୋଇଲେ ଯେ ରାକ୍ଷାସ ପୁତ୍ରମାନେ ।
ଚମକ ପଡ଼ିଲାକ ଚଉଦ ଭୁବନେ ॥
ଡରେଣ ଦେବତାଏ କହିଲେ ଶୂଳପାଣି ।
ଅସୁର ପାଦ ଘାତ ନସହଇ ଧରଣୀ ॥
ରୁଦ୍ର ବୋଇଲେ ତୁମ୍ଭେ ବିଷ୍ଣୁଙ୍କୁ ଜଣାଅ ।
ଚକ୍ରଧର ହସ୍ତେ ଅସୁର ହଣାଅ ॥
ଆନରେ ଦତ୍ୟ ଯେ ନୋହନ୍ତି ସଂହାରି ।
ବିଷ୍ଣୁର ନାମ ହାଦେ ଅଟଇ ଦଇତାରି ॥୬୦
ଶୁଣି ସୁରଗଣେ ବାହୁଡ଼ିଣ ଗଲେ ।
କ୍ଷୀର ସମୋଦ୍ର ତଟେ ଯାଇଣ ମିଳିଲେ ॥
ପାଏ ପଡ଼ି ଶୋଇ କରନ୍ତି କାରୁଣ୍ୟ ।
ଭୋ ଦେବ ନାରାଏଣ କର ତୁ କାରଣ ॥
ଅସୁରଙ୍କର ଭଏ ନ ପାରୁ ଆମ୍ଭେ ରହି ।
ଭାରା ନ ସହଇ ବାସୁକି ନାମେ ଅହି ॥
ଅନନ୍ତ ଶେଯ୍ୟାରେ ଥାଇଂ ଶ୍ରୀହରି ଜାଣିଲେ ।
ଧର୍ମ ନାଶ ହେଲା ବୋଲି ଦେବେ ଜଣାଇଲେ ॥

ନବ ରତ୍ନ ମନ୍ଦିର ତେଜିଣ ଦାମୋଦର ।
ଦେବତାଙ୍କ ସନ୍ନିଧେ ମିଳିଲେ ଚକ୍ରଧର ॥୭୦
ପ୍ରସନ୍ନ ହୋଇ ବୋଇଲେ କହ କିସ କଥା ।
ଶୁଣି ଦେବତାଏ କରଦେଲେ ମଥା ॥
କାର୍ପୁଣ୍ୟ ହୋଇଣ କହନ୍ତି ବଚନ ।
ଶୁଣ ଦେବ ଶ୍ରୀବଚ୍ଛ ଲାଞ୍ଛନ ଭଗବାନ ॥
ସୁକେଶା ଦଇତର ହୋଇଲା ତିନି ପୁତ୍ର ।
ତାହାଙ୍କର ମୂଳେ ପ୍ରବଳ ଦତ୍ୟଗୋତ୍ର ॥
ଯାଗ ଯଜ୍ଞ ଭାଙ୍ଗି ପରଜାନ୍ତ ଖାନ୍ତି ।
ଅବିଛନ୍ନେ ଉପଦର୍ପ ସ୍ୱର୍ଗରେ କରନ୍ତି ॥
ଅପଛରୀମାନନ୍ତ ବଳେ ଭୋଗ୍ୟ କଲେ ।
ବହୁତ କଷ୍ଟ ଚଉଦ ଭୁବନକୁ ଦେଲେ ॥୮୦
ତୁମ୍ଭେ ଯେବେ ରକ୍ଷା ନକରିବ ହରି ।
ନିଶ୍ଚୟେଂ ରାସାନ୍ତଳେ ପଡ଼ିବ ବସନ୍ଧରୀ ॥
ଶୁଣିଣ ଶ୍ରୀହରି ବଚନ ବୋଇଲେ ।
ମାରିବି ଦତ୍ୟ ବୋଲି ସନମତ କଲେ ॥
ତୁମ୍ଭେ ଦେବତାଏ ଯାଅ ନିଜ ଥାନ ।
ନିଶ୍ଚୟେଂ ଅସୁରଙ୍କୁ କରିବି ବିଶୋଧନ ॥
ଯେତେ ବୋଲି ଦେବ ବାହୁଡ଼ା ବିଜେଡ଼ା କଲେ ।
ସୁରଗଣମାନେ ସ୍ୱର୍ଗକଇ ଗଲେ ॥
ଯେଥୁ ଅନନ୍ତରେ ଶୁଣିମା ରଘୁନାଥ ।
ଯହୁଁ ସେ ପ୍ରତଗ୍ୟାଂ କରି ଚଳିଲେ ଚଉହସ୍ତ ॥୯୦
ସେ କଥା ବାରତା ପାଇଲା ମାଲ୍ୟବନ୍ତ ।
ଅନେକ ତିଆରିଲା ରାଇଣ ଭାଇନ୍ତ ॥
ବୋଇଲା ଆରେ ବାବୁ ଶୁଣ ମୋର ବୋଲ ।
ପୂର୍ବେଣ ଯିସ ଅବା ମହକୃତ୍ୟ କଲ ॥
ଯେବେ ଦେବତାଏ ପାଇଲେ ବଡ଼ ସାହା ।
ଗୁହାରି କଲେ ସେ କମଳା ଦେବୀର ନାହା ॥
ଶୁଣିଣ ବାସୁଦେବ ବହୁତ ପ୍ରତଗ୍ୟାଂ କଲେ ।
ନିଷ୍ଟେ ଦତ୍ୟ ବଳ ମାରିବୁ ବୋଇଲେ ॥
ସବୁକାଳେ ବିଷ୍ଣୁ ଆମ୍ଭର ବଇରୀ ।

ବିଷ୍ଣୁ ନ ସହନ୍ତି ଦତ୍ୟଙ୍କର ଶିରୀ ॥୧୦୦
ପୂର୍ବେ ଦନୁଜ ଦାନେବ ଭାଇ ବେନି ।
ତାହାଙ୍କୁ ସାମାନ୍ୟ ଯେ ନାହିଂ ପୁର ତିନି ॥
ମୁଖ ଦେଖି ସୁରଗଣେ ଡରି ପଳାଇଲେ ।
ନାରାଏଣଙ୍କ ଛାମୁରେ ଯାଇଣ ଜଣାଇଲେ ॥
କୋପେଣ ବାସୁଦେବ ଅଇଲେ ଚକ୍ରଧରି ।
ଦନୁଜ ଦାନେବଙ୍କୁ ପକାଇଲେ ମାରି ॥
ମଧୁ କଇଟଭ ଅଟନ୍ତି ମହାବୀର ।
ତାହାଙ୍କୁ ମାୟାରେ ନାଶିଲେ ଦାମୋଦର ॥
ରକ୍ଷ ଅରକ୍ଷ ବୋଲି ବେନି ବୀର ଥିଲେ ।
ସେହି ଶ୍ରୀହରିରେ ନାରାଙ୍କେ ହତ ଗଲେ ॥୧୦
କ୍ଷୀର ସିନ୍ଧୁ ପୂର୍ବେ ମନ୍ଥିବାର କାଳେ ।
ଅନେକ ଦଇତନ୍ତ ନାଶିଲେ ଭୁଜବଳେ ॥
ଦଇତ ନାଶି ନାମ ବହିଲେ ଦଇତାରି ।
ତାହାର ତୁଲେ ଯୁଝିଲେ ଜିଣିତ ନପାରି ॥
ଯେବେ ତୁମ୍ଭେ ବାବୁ ମୋର ବୋଲ କର ।
ଲଙ୍କାଗଡ଼ ଛାଡ଼ି ନୋହିବ ବାହାର ॥
ବହୁତ ପ୍ରତଗ୍ୟାଂ କରିଛନ୍ତି ହରି ଯାଇ ।
ଅବଶ୍ୟ ଆସିବେଟି ଦେବତାଙ୍କ ପାଇଂ ॥
ମାଲ୍ୟବନ୍ତ ବଚନ ଶୁଣିଣ ଭାଇ ବେନି ।
ପ୍ରତଗ୍ୟାଂ କରନ୍ତି କରେଣ ଶସ୍ତ୍ର ଘେନି ॥୨୦
ବୋଇଲା ତୁମ୍ଭେ କିମ୍ପା ହୋଉଛ ନିସତ ।
ସର୍ବଦା ବଇରୀ ଆମ୍ଭର ଅଟଇ ଅଚ୍ୟୁତ ॥
ତାହାଙ୍କୁ ଆଶ୍ରେ ଯେବେ କଲେ ଦେବଗଣ ।
କିମ୍ପାଇ ଡରିବୁ ଆମ୍ଭେ ଆଜହିଂ ହୋଉ ରଣ ॥
ଆମ୍ଭଙ୍କୁ ବ୍ରହ୍ମା ଯେବେ ଅମର ବର ଦେଲା ।
ଜଗତେ ଅଜୟେ ହୁଅସି ବୋଇଲା ॥
ସ୍ୱଭାବେ ଆମ୍ଭେ କ୍ଷତ୍ରୀର ତନଏ ।
କିପାଇଂ ଶତୃକୁ କରିବା ଆମ୍ଭେ ଭଏ ॥
ଥାଠ ସଜ କର ଯେହିକ୍ଷଣି ଯିବା ।
ବିଷ୍ଣୁ ନଆସୁଂ ଆମ୍ଭେ ଦେବତାନ୍ତ ମାରିବା ॥୩୦
ପଛେ ଏକା କରି ମାରିବା ଦେବ ହରି ।
ଯେ କଥାକୁ ଭୋ ରାଜନ ଅଳସ ନକରି ॥
ଭାଇଙ୍କ ବଚନେ ମାଲ୍ୟବନ୍ତ ରାଏ ।

ସଂଗ୍ରାମକୁ ଯିବାକୁ ଉଠି ସଜ ହୋଏ ॥
ପାତ୍ର ଅମାନାତ୍ୟକୁ ଆଗ୍ୟାଂ ଦେଲା ରାଇ ।
ଚତୁରାଙ୍ଗ ବଳ ଘେନିଣ ଆସ ଯାଇଂ ॥
ତକ୍ଷଣେ ରଥ ଗଜ ଅଶ୍ୱ ସଜ କଲେ ।
ପାଦାନ୍ତି ବଳ ସଜ ହୋଇଣ ଅଇଲେ ॥
ମାଳୀ ସୁମାଳୀ ମାଲ୍ୟବନ୍ତ ତିନି ଭାଇ ।
ଦତ୍ୟବଳ ଘେନି ସ୍ୱର୍ଗକୁ କଟକାଇ ॥୪୦
ବାଜଇ ଟମକ ନିଶାଣ ବୀରତୂର ।
ମୁଖ ରାବ ଶବଦେ କମ୍ପଇ ତିନି ପୁର ॥
ସ୍ୱର୍ଗେ ଉତପାତ ଅନେକ ହୋଇଲା ।
ମୂଷଳ ପ୍ରମାଣେ ରକତ ବରଷିଲା ॥
ପର୍ବତ ଟଳିଲା କମ୍ପିଲା ଘୋର ବନ ।
ଟହ ଟହ ହୋଇ ହସିଲେ ପ୍ରେତମାନ ॥
ଆଦ୍ରାବଳି ଉଦେ କି ହୋଇଲେ ନିଶାକାଳେ ।
ଅଦଭୁତେ ଅଗ୍ନିଜାତ ହୋଇଲେ ଦେବଆଳେ ॥
ଯେସନେକ ଉତପାତ ହୋଇଲା ସ୍ୱର୍ଗସ୍ଥଳେ ।
ବୋଲନ୍ତି ଅଗସ୍ତି ଶୁଣିମା ରଘୁବାଳେ ॥୫୦
ଯେସନେକ ଦତ୍ୟବଳ ପଶିଲେ ଯାଇ ସ୍ୱର୍ଗେ ।
ଯାଉଂ ଯାଉଂ ଅନର୍ଥ କରନ୍ତି ରାଜମାର୍ଗେ ॥
ଘର ଦ୍ୱାର ଭାଙ୍ଗିଣ ଦ୍ରବ୍ୟନ୍ତ ଚୂର କଲେ ।
ଯେ ମୁଖେ ପଡ଼ଇ ତାହାନ୍ତ ମାଇଲେ ॥
ଶୁଣି ସୁରଗଣେ ପାଇଲେ ମନେ ଭୀତି ।
ଯେସନେକ ସମାଏ ମିଳିଲେ ଶ୍ରୀପତି ॥
ଶଙ୍ଖଚକ୍ର ଗଦା ସାରଙ୍ଗ ଚଉକର ।
ଗରୁଡ଼ ପିଠିରେ ବିଜୟେ ଚକ୍ରଧର ॥
ଦେଖିଣ ଦେବତାଏ ଅନେକ ତୁଷ୍ଟି କଲେ ।
ଭୋ ଦେବ ନାରାଏଣ ରଖସି ବୋଇଲେ ॥୬୦
ଶୁଣିକରି ଶ୍ରୀହରି ଆଗଭର ହୋନ୍ତି ।
ଗରୁଡ଼ ପକ୍ଷାଘାତେ ଦଇତେ କମ୍ପନ୍ତି ॥
ଶ୍ରୀହରିଙ୍କି ଦେଖି ରାକ୍ଷାସ ବଳ ଧାଇଂ ।
ଯେ ଯାହାର ଆଉଧ ପହୁଡ଼ିଲେ ନେଇ ॥
ବିଚିତ୍ର ଗତି କରି ଗରୁଡ଼ ଶୂନ୍ୟେ ଉଡ଼ି ।
ଦତ୍ୟଙ୍କର ଶସ୍ତ୍ରମାନ ଭୂମିରେଣ ପଡ଼ି ॥
ବେଲୁଂ ବେଲୁଂ ସମର ହୋଇଲା ମହାଘୋର ।
ଶ୍ରୀହରିଙ୍କି ବେଢ଼ିଲେ ରାକ୍ଷସ ସକଳ ॥
କୋପେଣ ନାରାଏଣ ଶାରଙ୍ଗ ଧନୁ ଧରି ।
ନାରାଚ ବିନ୍ଧନ୍ତି ବିଚିତ୍ର ଗତି କରି ॥
ପ୍ରଚଣ୍ଡ ପବନ ଯେହ୍ନେ କଦଳୀ ବନ ନାଶି ।
ତୁଳା କୁଢ଼ ଯେହ୍ନେ ଅଗ୍ନି କରଇ ଧ୍ୱଂସି ॥
ସିଂହ ଯେହ୍ନେ ହସ୍ତୀ ମାରଇ ରୋଷଭରେ ।
ରାକ୍ଷସେ ତେହ୍ନେ ହତ ବାସୁଦେବ ଶରେ ॥
ରକତ ନଦୀ ବହିଲା ରଣ ଭୂଇଂ ।
ବିଷ୍ଣୁଙ୍କର ଛାମୁରେ ଯୁଝନ୍ତା କେହି ନାହିଂ ॥
ସନ୍ୟ ହତ ଦେଖି ମାଳୀ କୋପ କଲା ।
ରଥ ଚଢ଼ି ଯାଇଂ ବିଷ୍ଣୁଙ୍କୁ ଓଗାଳିଲା ॥
ଅନେକ ନାରାଚ ବିନ୍ଧିଲା କୋପକରି ।
ଶ୍ରୀହରି ନିବାରିଲେ ତାହା କିଞ୍ଚିତ ମତ କରି ॥୮୦
କୋପେଣ ଦନୁଜ ଗଦାକରେ ଘେନି ।
ନେଇଣ ପିଟିଲା ଗରୁଡ଼ ମୂର୍ଦ୍ଧନି ॥
ବାଜିଣ ଶହସ୍ର ଉପୁଡ଼ି ପଡ଼ିଲା ।
ଦେଖିଣ ବାସୁଦେବ ଚକ୍ରେକ ମାଇଲା ॥
ମୁଣ୍ଡ ଛିଡ଼ିଣ ପଡ଼ିଲା ମାଳୀବୀର ।
ମୁକୁଟ ସହିତେ ଛିଡ଼ିଅଛି ଶିର ॥
ଭାଇ ପଡ଼ିବା ଦେଖି ସୋଦର ଭାଇବେନି ।
ପରିଘାଇଂ ଯୁଦ୍ଧ କଲେ ଶସ୍ତ୍ର ଘେନି ॥
ଶ୍ରୀହରି ସଂଗ୍ରାମ ଅପୂର୍ବ ହାଦେ ଦେଖି ।
ସୁମାଳୀ ମାଲ୍ୟବନ୍ତ ସମର ଉପେଖି ॥୯୦
ନରହି ପଳାଇଲେ ପିଠି ଦେଇ ବେନି ।
ଶ୍ରୀହରି ଗୋଡ଼ାଇଛନ୍ତି କରେଣ ଶସ୍ତ୍ର ଘେନି ॥
ପାଲଟି ମାଲ୍ୟବନ୍ତ ବୋଇଲାକ ଚାହିଂ ।
କ୍ଷତ୍ରୀ ଧର୍ମପଣତ ତୋହୋର ତହିଂ ନାହିଂ ॥
ପଳାଇଲା ଶତ୍ରୁକୁ ଗୋଡ଼ାଇ ଅଛୁ ମାରି ।
ଶୁଣିଣ ବୋଲନ୍ତି ପ୍ରଭୁ ଦେବ ନରହରି ॥
ଦୁଷ୍ଟଜନଙ୍କଇଂ କେବେହେଂ ନ ସହି ।
ନିସତ ହୋଇଲରେ ନିଲଜ ଦେହ ବହି ॥
ଯେବେ ଯେବେ ତୁମ୍ଭେ ପାତାଳେ ପଶିବ ।
ଖୋଜି ମାରିବି ବୋଲି ବୋଇଲେ ବାସୁଦେବ ॥୧୦୦
ଦେବତାଙ୍କ ଛଳେ ପ୍ରତଗ୍ୟାଂ ଅଛି କରି ।
ପୃଥିବୀ ରଖିବି ମୁଂ ତୁମ୍ଭନ୍ତ ସଂହାରି ॥
ଶୁଣି ମାଲ୍ୟବନ୍ତ କୋପ ମନ କଲା ।
ଶ୍ରୀହରି ଉପରକୁ ଶକତି ମାଇଲା ॥
ସ୍ୱାମୀଙ୍କର ଉପରେ ପଡ଼ିଲା ବାଣ ଯାଇ ।
ସର୍ପ ଯେହ୍ନେ ଗାତରେ ପଶଇ ଧସାଇ ॥
କଳାମେଘେ ଯେହ୍ନେ ଝଟକେ ବିଜୁଳି ।
ନାରାଏଣ ଶକତି ତେହ୍ନେ ଝଳି ॥
ସେ ଶହସ୍ର ଶ୍ରୀହରି ଦେହରୁ ବେଗେ କାଢ଼ି ।
କୋପେଣ ଦଇତକୁ ମାଇଲେ ଆଗ ବଢ଼ି ॥୧୦
ମାଲ୍ୟବନ୍ତ ବକସ୍ଥଳେ ପଡ଼ିଲାକ ଶର ।
ବୁକୁ ହାଡ଼ ଭାଙ୍ଗି ପଡ଼ିଲା ହୃଦୟର ॥
ଆଗଭର ହୋଇ ଦତ୍ୟ ଯେ ପଡ଼ିଲା ।
ପ୍ରାଣ ଯିବାବେଳେ ରଡ଼ିଏ ଛାଡ଼ିଲା ॥
ରକତ ଉଦଗାରି ପଡ଼ିଲା ମାଲ୍ୟବନ୍ତ ।
ଦେଖିଣ ପଳାଇଲା ସୁମାଳୀ ଦଇତ ॥
ଥାଠ ସମ୍ଭାଳିଣ ପଳାଇଣ ଗଲା ।
ଲଙ୍କାପୁରେ ଯାଇଂ ରହିନପାରିଲା ॥
ସଗୋତ୍ର ଘେନି ତହୁଂ ହୋଇଲା ବାହାର ।
ପ୍ରାଣକୁ ମହାଭଏ ହୋଇଲା ତାହାର ॥୨୦
ପାତାଳ ଭୁବନେ ସେ ପଶିଲାକ ଯାଇଂ ।
ବୋଲନ୍ତି ଅଗସ୍ତି ଶୁଣିମା ରଘୁସାଇଂ ॥
ରାବଣହୁଂ ଗରିଷ୍ଟ ଅଟନ୍ତି ଦତ୍ୟମାନେ ।
ତୁ ତାହା ବିଷ୍ଣୁ ରୂପେ କଲୁସି ଦହନେ ॥
ଆନ କି ଭାର୍ଜନ ଦତ୍ୟ ବଳ ଦଳି ।
ତୋହୋର ବିନା ଆଗ୍ୟାଂରେ ଚିରଣ ନହଲି ॥
ଶୁଣସି ଶ୍ରୀରାମ ହୋ ରାବଣ ସମ୍ଭୂତ ।
ଯେତେବେଳେ ମାଳୀ ମାଲ୍ୟବନ୍ତ ଗଲେ ହତ ॥

ଯଶ କରି ଶ୍ରୀହରି ବାହୁଡ଼ିଣ ଗଲେ ।
ସୁମାଳୀ ପଳାଇ ଯାଇ ପାତାଳେ ପଶିଲେ ॥୩୦
ବିଷ୍ଣୁ ଡରେ ତହୁଁ ପଳାଇଲେ ଦତ୍ୟମାନ ।
ଲଙ୍କାଗଡ଼ ହାଦେ ହୋଇଲାକ ଶୂନ୍ୟ ॥
ସମଏକ ପୁର ହୋଇଲାକ ତୁଚ୍ଛା ।
କୁବେର ରହିବାକୁ ମନେ କଲା ବାଞ୍ଛା ॥
ବିଶର୍ବା ମାହାଋଷି ପ୍ରସନ୍ନେ ତାକୁ ଦେଲେ ।
କେହି ନାହିଁ ବୋଲି ପୁତ୍ରକୁ କହିଲେ ॥
ତେଣୁ ବଇଶ୍ରବଣ କଟକ ତହିଁ କଲା ।
ମାତାପିତାଙ୍କଇ ସନିଧିକୁ ନେଲା ॥
ଅପଛରୀ କିନ୍ନରୀ ବିଦ୍ୟାଧରୀ ଥାନ୍ତି ।
ଦକ୍ଷ ଗନ୍ଧର୍ବ ଯେ ସୁଖେ ବିହରନ୍ତି ॥୪୦
ବଇଶ୍ରବଣ ଋଷି କୁବେର ପଦ ପାଏ ।
ପୁଷ୍ପକ ରଥ ଚଢ଼ି ଆତଯାତ ହୋଏ ॥
ଯେସନେକ କେତେହେଁ କାଳ ଯହୁଁ ଗଲା ।
ସୁମାଳୀ ଦତ୍ୟ ଯେ ପାତାଳେ ପଶିଥିଲା ॥
ଦିନେକ ବିଚାରିଲା ମୃତ୍ୟୁପୁର ଯିବି ।
କେମନ୍ତ ହୋଇଅଛି ଲଙ୍କା ମୁଂ ଦେଖିବି ॥
ଆସନ୍ତେ ଦୋହିତା ଗୋଡ଼ାଇଲା ନଭକେଶା ।
ମୁହିଁ ଯିବି ବୋଲି କଲାକ ମନୀଷା ॥
ସ୍ନେହେ ଦଇତ ଆଣିଲା ସଙ୍ଗେ ଝିଅ ।
ବିମ୍ୱରୁ ବାହାର ହୋଇଲା ସୁକେଶାର ପୁଅ ॥୫୦
ଦେଖିଲାକ ଲଙ୍କା ନଗ୍ରର ସମ୍ପଦ ।
ବାଜନ୍ତି ଟମକ ବୀରତୂର ବାଦ୍ୟ ॥
ଗଡୁଂ ଶତେ ଗୁଣେ ଦିଶିଲାକ ଶିରୀ ।
ମାୟା ରୂପ ଧରି ଲୋକନ୍ତ ପଚାରି ॥
ଯେଥେ କେ ରାଜନ କାହାର ଯେ ଦେଶ ।
ତୁମ୍ଭେ ତ ସ୍ୱର୍ଗରୁ ଅଇଲା ପ୍ରାଏ ଦିଶ ॥
ଲୋକେ ବୋଇଲେ ଯେଥେ କୁବେର ରାଜ୍ୟ କରି ।
ସେହି ସେ ସପତ ନିଧି ଅଧିକାରୀ ॥

ବିଶର୍ବା ଋଷିର ଯେ ଅଟଇ ତନଏ ।
ବ୍ରହ୍ମାର ପ୍ରସନ୍ନେ ଯେ ଦିଗପାଳ ହୋଏ ॥୬୦
ଆମ୍ଭେ ସମସ୍ତେ ହେଁ ଗନ୍ଧର୍ବ ବିଦ୍ୟାଧର ।
ନ ଜାଣିମା ପଣ ହୋଇତ ପଚାର ॥
ସୁମାଳୀ ବୋଇଲେ ମୁଂ ଦୀପାନ୍ତର ଥିଲି ।
ଯୋଗେ ଭ୍ରମନ୍ତେଣ ଯେଥକୁ ଅଇଲି ॥
ଯେତେ ବୋଲି ତହୁଁ ଅନ୍ତର୍ଦ୍ଧାନେ ଗଲା ।
କୁବେର ସନ୍ନିଧେ ଯାଇଣ ମିଳିଲା ॥
ଗୁପତ ରୂପେ ତାର ଦେଖିଲା ସ୍ୱରୂପ ।
ମନେ ବିଚାରଇ ଯେ ଦେବତାଙ୍କର ରୂପ ॥
କେ ଯେହାର ପିଅର ବୁଝିବେଇଂ ମୁହିଂ ।
ଯେହି ଦୋହିତା ମୁଂ ତାହାକୁ ଦେବଇଂ ॥୭୦
ଯେସନେକ ପୁତ୍ର ହୋଇବ ଉତପତ୍ତି ।
ଯେ ପୁର ବିଳସିବା ଅଟଇ ଯୁଗତି ॥
ଆମ୍ଭକଇ ପ୍ରାପତ ନୋହିଲାକ ଦେଶ ।
ଅସୁରନ୍ତ ଦେଖିଲେ ଅହନ୍ତା କରଇ ପୀତବାସ ॥
ମୁହିଁ ତ ଯେହାକୁ ନ ପାରିବି ଜିଣି ।
ସନ୍ଧି କଥା କରି ଦେବଇଂ ଦୁଲଣି ॥
ରାକ୍ଷସ କନ୍ୟା ବୋଲି ପୁଣ ନକରଇ ଗ୍ରାହିତ ।
ଯେତେ ବୋଲି ପାଶେ ରାଇଲା ଦୋହିତ ॥
ବୋଇଲା ନଉକେଶା ମୋହୋର ବୋଲ କର ।
ଯହିଁ ବସିଛନ୍ତି ବିଶର୍ବା ମୁନିମ୍ୱର ॥୮୦
ତାହାର ତହିଁକି ତୁ ଯେହିକ୍ଷଣି ଯିବୁ ।
ଅନେକ ପ୍ରକାରେ ତୁ ଭଗତି ମନାସିବୁ ॥
ଯେବେ ପ୍ରସନ୍ନ ସେ ହେବେ ମୁନିମ୍ୱର ।
କୁବେର ସମାନ୍ୟେ ତୁ ମାଗିବୁ କୁମର ॥
ଲଙ୍କାଏ ନୃପତି ହୋଇବ ମୋର ନାତି ।
ତେବେ ସେ ରହିବଟି ରାକ୍ଷାସ କୁଳ କ୍ଷିତି ॥
ପିତାର ବାକ୍ୟ ଶୁଣି ନଉକେଶା ଗଲା ।
ବିଶ୍ରବା ଋଷିର ସନ୍ନିଧେ ମିଳିଲା ॥

ରୂପ ଯଉବନେ ସମ୍ପୂର୍ଣ୍ଣ ସୁନ୍ଦେରୀ ।
କି ଜାଣି ପଟାନ୍ତର ସ୍ୱର୍ଗର ଅପଛରୀ ॥୯୦
ଚନ୍ଦ୍ରମା ବଦନୀ କୁରଙ୍ଗ ନୟନୀ ।
ସିଂହର ମଝା ମଉଗଜ ଗବନୀ ॥
ଯଉବନେ ଭାରି ସର୍ବଗୁଣେ ସରି ।
ସୁବର୍ଣ୍ଣ ଝଳି ତେଜ ନହୁଲି କୁମାରୀ ॥
ଚାଚର ଚିକୁର ନିର୍ବାଣ ଚାରୁ ଖୋପା ।
କସ୍ତୁରୀ ଚିତା ଉପରେ ସିନ୍ଦୂରର ଟୋପା ॥
କର୍ଣ୍ଣରେ ତଡ଼କୀ ମଥାରେ ମଥାମଣି ।
ସର୍ବାଙ୍ଗେ ଅଳଙ୍କାର ଭୂଷଣ ତରୁଣୀ ॥
ନୀଳଝିନ ବାସ ପରିହରଣ ଶୋଭା ।
ସୁବର୍ଣ୍ଣର ପ୍ରତିମା ପ୍ରକଟର ପ୍ରଭା ॥୧୦୦
ବିଳାସ ଦୃଷ୍ଟି ଚାଲଇ ଧୀର ଧୀର ।
ଧୂରୁହୁଁ ଦେଖି ଆଖି ପଡ଼ିଲା ଋଷିର ॥
ମନେ ବିଚାରଇ ଧନ୍ୟ ଯେ ସୁନ୍ଦେରୀ ।
ଲଙ୍କାଭୁବନେ ଯେମନ୍ତ ନାହିଁ ପଟାନ୍ତରି ॥
ଅପୂର୍ବ ଯୁବତୀ ଯେ ତ ଆସଇ ଯେକସରେ ।
କନ୍ୟା ପ୍ରାୟେକ ଯେ ଦିଶଇ ଆକାରେ ॥
ବିଭା ହୋଇନାହିଁ ପ୍ରାୟେକ ସେ ମଣୁ ।
ଯେକସରେ ବାହାର ହୋଇଲା ଯେହି ବନୁ ॥
ଯେସନ ବିଚାର କରନ୍ତି ମାହଋଷି ।
ଯେସନ ସମଏଣମିଳିଲା ନଉକେଶୀ ॥୧୦
ଅଞ୍ଚଳ ପାଡ଼ିଣ ଓଳଗଇ ବାଳୀ ।
ଉଠି କର ଯୋଡ଼ି ନୟନ ଦୁଇ ଢାଳି ॥
ଦେଖି ମାହାମୁନି ମଦନେ ବଶ୍ୟ ହୋଇ ।
ପଚାରନ୍ତି କାହାର ତୁ ଅଟୁସି ତନଇ ॥
କେ ତୋହୋର ପିଅର କେଉଂ ଦେଶେ ଘର ।
କି କାରଣେ ଗମନ କଲୁ ମୋର ପୁର ॥
ମୁଂ ତୋତେ ଦେଖି ହୋଇଲଇଂ ମୋହି ।
ରତିରସ ଦେଇ ରଖ ମୋର ଦେହୀ ॥
ସୁନ୍ଦେରୀ ବୋଇଲା ମୁଂ ରାକ୍ଷସ କୁମାରୀ ।
ସୁମାଳୀ ଦତ୍ୟ ପିତା ଅଟଇ ମୋହରି ॥୨୦
ପୂର୍ବରେ ଲଙ୍କାରେ ରାଜ୍ୟ କରୁଥିଲା ।

ଦୁଇଭାଇଙ୍କି ତାର ଶ୍ରୀହରି ମାଇଲା ॥
ଭୟେ ପିତା ମୋର ଗଲାକ ପଳାଇ ।
ପାତାଳ ଭୁବନେ ଲୁଚିଲାକ ଯାଇଂ ॥
କେତେହେଂକ କାଳେ ଦେଖିତ ଇଛା କଲା ।
ମୋତେ ଘେନି ମର୍ତ୍ତ୍ୟ ପୁରକୁ ଅଇଲା ॥
କୁବେରକୁ ଦେଖି ହୋଇଲା ସନ୍ତୋଷ ।
ମୋତେ ହକାରିଣ ପେଷିଲା ତୋର ପାଶ ॥
ବୋଇଲା କୁମାରୀ ଗୋ ଋଷିଙ୍କ ପାଶେ ଯିବୁ ।
କୁବେର ସମାନ୍ୟେ ତୁ ପୁତ୍ର ଉପୁଜାଇବୁ ॥୩୦
ତେଣେ ସେ କୁଳ ମୋହୋର ହୋଇବାକ ରକ୍ଷା ।
ଏସନେକ ବୋଲି ତାତ ଦେଲା ମୋତେ ଦୀକ୍ଷା ॥
ପିତାର ଆଜ୍ଞାରେ ଅଇଲି ତୋର ପାଶ ।
ତୁହୋ ମହାମୁନି ନଧର ମୋର ଦୋଷ ॥
ମୁହିଂ ଅବିବାହୀ ଭ୍ରଥା ମୋର ନାହିଂ ।
ପିତା ପେଷିଲା ମୋତେ ତୋତେ ଖଟିଥିବା ପାଇଂ ॥
ଶୁଣିଣ ମହାମୁନି ଆନନ୍ଦ ହୋଇଲା ।
ମୁଂ ଏହା ଜାଣଇ ବୋଲିଣ ବୋଇଲା ॥
ତୋହୋର ପିତା ଯେବେ ସେ ପେଷିଲାକ ତୋତେ ।
ଯୋଗବଳେ ଦୃଶ୍ୟ ହୋଇଲାକ ମୋତେ ॥୪୦
କିସ ନାମ ତୋର କହସି ରେ ସୁନ୍ଦେରୀ ।
ନଉକେଶା ନାମ ମୋର କହିଲା କୁମାରୀ ॥
ବିଶ୍ରବା ବୋଇଲେ ଶୁଣରେ ନଉକେଶୀ ।
ସନ୍ଧ୍ୟାବେଳେ ଆମ୍ଭନ୍ତ ଯେ ଭେଟିଲୁ ମୋତେ ଆସି ॥
ଦିବସ ରଜନୀ ମଧ୍ୟକାଳ ଏହୁ ।
ଦଶଦିଗ ଅନ୍ଧାର ଅସ୍ତ ଗଲେନି ଗ୍ରହ ରାଉ ॥
ଭୟାଙ୍କର ପୁତ୍ରେକ ହୋଇବ ତୋର ଜାତ ।
ତାହାରେଣ ପୀଡ଼ା ପାଇବ ଜଗତ ॥
କନ୍ୟା ବୋଇଲା ଯେ ଯୁଗତ ନୁହଇ ।
ଋଷିର ପୁତ୍ର କାହିଂ ରାକ୍ଷସ ହୁଅଇ ॥୫୦
ତୋତେ ଅପକ୍ଷାତି ଉପୁଜିବ ନା ସୃଷ୍ଟି ।
ତପୀ ହୋଇଣ ସେ ବସିବ ବଡ଼ ଗୋଷ୍ଟୀ ॥
ବ୍ରହ୍ମାର ବୀର୍ଯ୍ୟେଂ ଉର୍ବଶୀର ହୋଏ ପୁତ୍ର ।
ବଶିଷ୍ଠ ମହାମୁନି ତହୁଂ ହୋୟେ ଜାତ ॥
ପିତାର ଗୁଣ ଘେନି ପୁତ୍ରେ ଜାତ ହୋନ୍ତି ।
ସୁନ୍ଦେରୀ ବୋଲଶୁଣି ବିଶର୍ବା ବୋଲନ୍ତି ॥
ଶ୍ରୀହରିରେ ତହୁଂ ମଧୁକଇଟଭ ହୋଏ ଜାତ ।
ବେଳକାଳ ଜାଣି ହୁଅନ୍ତି ଦଇତ ॥
ତୁହି ଯେବେ ଗୋ ମନେ ନଭାଳସି କିଛି ।
ଭବିଷ୍ୟ କଥାଏ ପୂର୍ବର ଯୋଗଅଛି ॥୬୦
ଏକଥା ଅନ୍ୟଥା ନୁହଇ ରେ ସହି ।
ବୀରବର ପୁତ୍ରେକ ହୋଇବ ତୋର ତହିଂ ॥
ଦଶମୁଣ୍ଡ ବିଂଶଭୁଜ ହୋଇବ ତାହାର ।
ନୀଳମେଘ ପ୍ରାଏକ ତନୁ ଭୟାଙ୍କର ॥
ଆରେକ ପୁତ୍ର ହେବ ରଙ୍ଗବର୍ଣ୍ଣ ।
ଘଟ ପ୍ରାଏକ ହୋ ଘଟଣ ବେନି କର୍ଣ୍ଣ ॥
ତିନିପୁରେ ତାହାକୁ ନାହିଂଣ ଜିଣନ୍ତା ।
ଅଧର୍ମ ପୁରୁଷ ସେ ହୋଇଣ ଶକତା ॥
ତୃତୀୟ ପୁତ୍ର ଯେ ହୋଇବାକ ଯେହୁ ।
ଧର୍ମବନ୍ତ ପ୍ରାଣୀ ହୋଇବାକ ସେହୁ ॥୭୦
ମୋହୋର ପରା ହୋଇ କରିବାକ ତପ ।
ପର ଉପକାରୀ ଜାଣିମ ପୁଣ୍ୟ ପାପ ॥
ଶୁଣିଣ ସୁନ୍ଦେରୀ ଯେ ସନମତ କଲା ।
ଦୋହିତା ଗୋଟିଏ ମାଗିବି ବୋଇଲା ॥
କରଯୋଡ଼ି ବୋଇଲା ମୁନିବର ।
ଦୋହିତା ଗୋଟିଏ ଅବଧାନ କର ॥
ଅସ୍ତୁ ହେଉ ବୋଲି ବୋଇଲେ ତପଚାରୀ ।
ନଉକେଶା ତୁଲେ ରମଣ ଭୋଗ କରି ॥
ତକ୍ଷଣେ ପୁତ୍ରେକ ହୋଇଲାକ ଜାତ ।
ଥରହର ହୋଇଂ କମ୍ପିଲା ଜଗତ ॥୮୦
ସ୍ୱର୍ଗେ ଉତପାତ ରୁଧିର ବୃଷ୍ଟିକଲା ।
ଅକାରଣେ ଦେବତାଙ୍କର ଭରସା ଭାଙ୍ଗିଲା ॥
ଅଇରାବତ କାନ୍ଦଇ ଉଚିଶର୍ବା ହୁଡ଼ଇ ।
ନୃତ୍ୟରଙ୍ଗେ ଅପକ୍ଷରୀ ଝୁଣ୍ଟିଣ ପଡ଼ଇ ॥
ପବନ ନବହଇ ସାହେର ତବଦ ।
ଚଉଦ ଭୁବନ ଲୋକ ହୋଇଲେ ବିଷାଦ ॥
ଅଭ୍ରୁତେ ନିର୍ଘାତ ପଡ଼ଇ ଅବିଛନ୍ନ ।
ଚନ୍ଦ୍ର ସୂର୍ଯ୍ୟ କିରଣ ହୋଇଲା ନିୟୁନ ॥
ରାବଣ ଜନ୍ମ ହୋଇଲା ଦଶମୁଣ୍ଡ ଧରି ।
ବିକରାଳ ବଦନ ଦେଖି ମାତା ଡରି ॥୯୦
କୋଡ଼ିୟେ ନୟନ ଅନଳ ଜାଣି ତେଜ ।
ଆବର ବିଶେଷଣ ଅପୂର୍ବ ବିଂଶଭୁଜ ॥
ପେଟୁ ପଡ଼ି ରୋଦନ କରନ୍ତେଣ ସୁତ ।
ପ୍ରଥମ ରାବ ଗୋଟି ପୂରିଲା ଜଗତ ॥
ଜନନୀ ବିଚାରଇ କି ବୁଦ୍ଧି କରିବି ।
କେବଣ ପ୍ରକାରେ ଚିତ୍ତ ୟେହାର ହରିବି ॥
କେବଣ ହିଂ ବଦନେ ଏହାକୁ ଦେବି ଖୀର ।
ଅଖଡ଼େଣ ନାଶ ଯିବ ଏଡ଼େ ଗୋଟା ବୀର ॥
ଶୁଣିଣ ଲଙ୍କପତି ବୋଇଲା ଗୋ ମା ।
ଜଗତେ ବିଦିତ ମୋହର ମହିମା ॥୧୦୦
ତୁ ଏବେ ହେଲେ ମୋତେ ବିନାଶ ନ କର ।
ଯେବଣ ମୁଖେ ପାରୁ ଦେନା ମୋତେ ଖୀର ॥
ତେବେ ଯେ ତୋଷ ହୋଇବ ମୋର ପ୍ରାଣ ।
ଏଥୁ ଅନନ୍ତରେଣ ଅପୂର୍ବ କଥା ଶୁଣ ॥
ପୁଣିହିଂ ପୁତ୍ରେକ ହୋଇଲା ଉତପତି ।
ପେଟୁ ପଡ଼ନ୍ତେ କମ୍ପିଲା ବସୁମତୀ ॥
ଦୀର୍ଘ ରଡ଼ି ଏକ ଛାଡ଼ିଲା ଜନ୍ମ କାଳେ ।
ଦେବତାୟେ ତରସ୍ତ ହୋଇଲେ ସ୍ୱର୍ଗଆଳେ ॥
ଦେଖିଣ ପିତା ତାହାକଇ ଅନେକ ସ୍ନେହକଲା ।
ବିଚାରିଣ ନାମ ତାର କୁମ୍ଭକର୍ଣ୍ଣ ଦେଲା ॥୧୦
ପୁଣି ହିଂ ଦୋହିତାୟେ ହୋଇଲା ଉତପତ୍ତି ।
ଅତି ଭୟଙ୍କର ସେ ବିକରାଳ ମୂର୍ତ୍ତି ॥
ମାହାତୀକ୍ଷ ସମାନ୍ୟେ ହସ୍ତରେ ଲଖ ଦିଶି ।

ସୂର୍ପଲେଖୀ ନାମ ଦେଲେ ମହାଋଷି ॥
ପୁଣି ହିଂ ପୁତ୍ରେକ ପ୍ରସବିଲା ନାରୀ ।
ଦେଖିଣ ପରମତୋଷ ହୋଇଲେ
ତପଚାରୀ ॥
ବିଭୀଷେଣ ନାମ ତାହାଙ୍କର ଦେଲେ ।
ଚାରିମାସେ ଚାରି ସନ୍ତତି ଜନମିଲେ ॥
ମାସକେ ସୁନ୍ଦରୀ ହୋଅଇ ରଜବତୀ ।
ଶୁଦ୍ଧ ସ୍ନାହାନ ଦିନ କରନ୍ତି ମୁନି ରତି ॥୨୦
ପ୍ରଥମେ ଦଶଗ୍ରୀବ ଦୁତୀୟେ କୁମ୍ଭକର୍ଣ୍ଣ ।
ତୃତୀୟେ ସୂର୍ପଲେଖୀ ଚତୁର୍ଥେ ବିଭୀଷେଣ ॥
ଦିନେ ଦିନେ ପୋୟେ ବଢ଼ନ୍ତି ଚନ୍ଦ୍ର ଜାଣି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆବର କାତ୍ୟାନୀ ॥
ତ୍ରିଦେବତା ଜାଣି ଦିଶନ୍ତି ତିନି ପୋଏ ।
ପ୍ରତିପାଳନ୍ତି ତାଙ୍କୁ ନଉକେଶୀ ମାଏ ॥
ଦଶଗୀବଙ୍କଇଂ କୋଳେ ଧରିଣ ଜନନୀ ।
ଦେଖିଣ ଆନନ୍ଦ ଚିତ୍ତ ବିଶର୍ବା ଭାବିନୀ ॥
ଏକଇ ବଦନେ ସମର୍ପଇ ଖୀର ।
ଦଶମୁଖେ ସନ୍ତୋଷ ହୋଅଇ
ମହାବୀର ॥୩୦
ଜ୍ୟେଷ୍ଠ ସପତଣୀ ସେ କୁବେରର ମାତା ।
ଭାରଦ୍ୱାଦଶଙ୍କର ସେ ଅଟଇ ଦୋହିତା ॥
ତାର ତୁଳେ ପ୍ରୀତି ବଢ଼ାଇ ନଉକେଶୀ ।
ଏକକୁ ଆରେକ କେହି ନ କରନ୍ତି ହିଂସା ॥
ପୁତ୍ର ଜାତ କରି ବିଶର୍ବା ମାହାମୁନି ।
ସେ ଦେହ ଛାଡ଼ିଣ ଆନ ଦେହ ଘେନି ॥
ଅସୁରୀ ସଙ୍ଗତେ ଯେ କଲା ରତିରସ ।
ବିଚାରିଲା ଏ କଥା ଅଟଇ ବଡ଼ ଦୋଷ ॥
ନେଚ ନାରୀ ତୁଳେ ମୁଂ କଲଇ ରମଣ ।
ସେ ଜାତି ହୋଇବି ନ ଆରେକ
ଜନମେଣ ॥୪୦
ଆପଣାରୁ ଅନ୍ୟ ଜାତିରେଣ ଭୋଗ୍ୟକଲେ ।
ନର୍କେ ପଡ଼ଇ ସେହୁ ପୁରାଣେ କହିଲେ ॥
ସମସରି ଲୋକ ଯେବେ ପରଦାରା କରି ।
ନିଶ୍ଚୟେ ତାହାକୁ ଛାଡ଼ଇ ବସୁନ୍ଧରୀ ॥
ଧର୍ମଶାସ୍ତ୍ର ପଢ଼ି ମୁଂ ଜାଣିଅଛି ତାହା ।

ଯୋଗେ ଅସୁରୀକି ହୋଇଲଇଂ ବେହା ॥
ଯହୁଂ ସେ ଉପଗତ ହୋଇଲାକ ଆସି ।
ରୂପଗୁଣ ଘେନି ମୋହିଲା ନଉକେଶୀ ॥
ପୂର୍ବର ଭବିଷ୍ୟ ଅଛି ଯେବଣ ସେ କଥା ।
ପୁତ୍ରେକ ଉପୁଜିଲା ହୋଇଲା ଦଶମଥା ॥୫୦
ବିଷ୍ଣୁର ଦ୍ୱାରପାଳ ପୂର୍ବର ଶାପ୍ୟ ଘେନି ।
ଅସୁରୀ ପେଟରୁ ଜାତ ହୋଇବେ
ଭାଇବେନି ॥
ଭଗ୍ନୀ ସୂର୍ପଲେଖୀ ପ୍ରତକ୍ଷେ ବାସେଲୀ ।
ଦେଖି ମନେ ମନେ ଭାଳନ୍ତି ତପଶାଳୀ ॥
ଏ ଦୁଷ୍ଟପୁତ୍ରେ ଅପକୀର୍ତ୍ତି ଅରଜିବେ ।
ଚଉଦ ଭୁବନେ ୟେ ହେଳେଣ ଭାଙ୍ଗିବେ ॥
ଯେହ୍ନେ ସେ କର୍ମେଣ ଅଛଇ ପୂର୍ବେ କରି ।
ବ୍ରହ୍ମା ରୁଦ୍ର ହୋଇଲେ ମେଣ୍ଟିତ ନ ପାରି ॥
ଏତେ ବୋଲି ମୁନି ମନେଣ ବିଚାରି ।
ମୁହିଂ ଯେବେ ହରିଲଇଂ ରାକ୍ଷସେଣୀ
ନାରୀ ॥୬୦
ଏବେ ଅପକୀର୍ତ୍ତି ହୋଇଲା ମୋହରି ।
ଯେବଣ ପ୍ରକାରେ ମୁଂ ଯିବି ବୈଶ୍ୱାନରୀ ॥
ଏସନେକ ବିଚାରି ଆସନ କରି ବସି ।
ଜଠରାଅଗ୍ନି ଘେନି ପାପ ତନୁ ଧ୍ୱଂସି ॥
ପରମ ଯୋଗବଳେ ପୁଣିହିଂ ଦେହ ପାଇ ।
ପୌଲସ୍ତି ମୁନି ବୋଲି ନାମ ସେ ବୋଲାଇ ॥
ଯହୁଂ ସେ ବିଶର୍ବା ଋଷି ଆନ ରୂପ ଧରି ।
ତହୁଂ ବୋଲାଇଲା ପୌଲସ୍ତି ତପଚାରୀ ॥
ସ୍ୱଭାବେ ପୁଲସ୍ତି ତହୁଂ ଜାତ ।
ପୌଲସ୍ତି ନାମ ତାର ଅଟଇ ଯୁଗତ ॥୭୦
ତାହାର ତନୟ ହୋଇଲା ଦଶଶିରି ।
ପୌଲସ୍ତି ନାମ ତାକୁ ଦେଲେ ବ୍ରହ୍ମଚାରୀ ॥
ଅଜା ତ ପୌଲସ୍ତି ଆମ୍ଭେ ହୋଇଲୁ
ପୌଲସ୍ତି ।
ପୌଲସ୍ତ୍ୟ ନାମେ ଯେ ଅଟଇ ଯୁଗତି ॥
ଏସନେକ କେତେହେଂକ କାଳ ତହୁଂ
ଗଲା ।
ପୁତ୍ରକଇ ବିଶର୍ବା ବ୍ରତ କରାଇଲା ॥

ବେଦ ପଢ଼ାଇଣ ମନ୍ତ୍ର ଶିଖାଇଲେ ।
ଯିସ ଯିସ ବିଧାନ ସେ ପୁତ୍ରକୁ ବୋଇଲେ ॥
ଏସନେକେ କେତେହେଂ କାଳ ତପକରି ।
ଘୋରବନେ ବିଶର୍ବା ଋଷି ଦିନହରି ॥୮୦
ଯେବେ ସେ କୁମାରେ ହୋଇଲେ
ବୃଦ୍ଧିମାନ ।
ଅନ୍ୟାଏ ଆଶ୍ରେ କଲେ କୁମ୍ଭକର୍ଣ୍ଣ
ଦଶାନନ ॥
ରାକ୍ଷସ ପ୍ରକୃତି ଘେନିଣ ମୃଗ ମାଂସ ଖାନ୍ତି ।
ପିତା ତିଆରିଲେ ବୋଲ ନ କରନ୍ତି ॥
ତପୀ ଜପୀ ଲୋକଙ୍କୁ ଉପଦର୍ପ କଲେ ।
ପ୍ରବଳ ହୋଇ ଅନେକ ଋଷିନ୍ତ ଖାଇଲେ ॥
କଲେ ବ୍ରହ୍ମହତ୍ୟା ଛାଡ଼ିଲେ ଆଚାର ।
ଅନ୍ୟାୟେ ଆଶ୍ରେ ପୁଣି କରନ୍ତି ବିଚାର ॥
ବିଭୀଷେଣ ମହାତମା ପାପକୁ ଭୟେ କଲା ।
ପିତାର ସଙ୍ଗେ ପୁଣ ତପ ଆଚରିଲା ॥୯୦
ଧର୍ମେଣ ଅନୁରତା ହୋଇଲାକ ସାନ ।
ଦୁଷ୍ଟପଣ କଲେ କୁମ୍ଭକର୍ଣ୍ଣ ଦଶାନନ ॥
ସୁବଳୟା ଗିରିରେ ବିଶର୍ବାର ଘର ।
ଅଗମ୍ୟ ବିପୁନ୍ୟ ସେ ଦିବସେ ଭୟାକାଂର ॥
ପୁନ୍ୟ ଥାନ ଦେଖି ତପୀମାନେ ଥିଲେ ।
ରାବଣ କୁମ୍ଭକର୍ଣ୍ଣ ଭୟେ ପଳାଇଲେ ॥
କତିରେ ଋଷିନ୍ତ ନ ଦେଖି ଭାଇବେନି ।
ମହୁ ମାଂସ ଲୁବୁଧେ ବୁଲନ୍ତି ମେଦିନୀ ॥
ସିନ୍ଧୁପାରି ହୋଇ ଜମ୍ବୁଦୀପେ ଯାନ୍ତି ।
ତପୀ ଜପୀ ସନ୍ନ୍ୟାସୀ ମାରିଣ
ଖାଆନ୍ତି ॥୧୦୦
ଏଥୁ ଅନନ୍ତରେ କେତେହେଂକ କାଳ
ଗଲା ।
ଏକଦିନ ତହିଂ କୁବେର ଅଇଲା ॥
ସୁବଳା ପର୍ବତେ ଭେଟିଲା ଯାଇଂ ତାତ ।
ଆରୋହିଣ ଥିଲା ପୁଣି ପୁଷ୍ପେକ ନାମ ରଥ ॥
ନବରତ୍ନେ ମଣ୍ଡିଲା ଅଛି ଦିବ୍ୟ ଯାନ ।
ସାରଥି ବିହୁନେ ଶୂନ୍ୟେ ଚଳଇ ବିମାନ ॥
ସେ ରଥୁଂ ଓହ୍ଲାଇଲା ନିଧିଙ୍କ ଈଶ୍ୱର ।

ନମସ୍କାର କଲା ପିତାଙ୍କ ପୟର ॥
ନିଜ ଜନନୀକି ଓଳଗିଲା ପୁଣି ।
ମାତା ବୋଇଲେ ବାବୁ ଶୁଣ ଦକ୍ଷମଣି ॥୧୦
ଏ ମୋର ସପତଣୀ ସୁମାଳୀ ଦୋହିତା ।
ଏହାକଇ ବିଭା ହୋଇଲେ ତୋର ପିତା ॥
ଏହାର ତହୁଂ ତାର ତିନିପୁତ୍ର ଏକ ଝିଅ ।
ଏ ତୋହୋର ମାତା ଏହାକୁ ମାନ୍ୟ ହୋଅ ॥
ଶୁଣି ବଇଶ୍ରବଣ ନମସ୍କାର କଲା ।
କଥାମାନ ପୁଛି ଆନନ୍ଦ ହୋଇଲା ॥
ରାବଣକୁ ଚାହିଁ ବୋଲଇ ନଉକେଶୀ ।
ଏ ତୋହୋର ଜ୍ୟେଷ୍ଠଭାଇ ନମସ୍କାର ହୁଅସି ॥
ଶୁଣିଣ ଦଶଗ୍ରୀବ ବୋଇଲା କୋପକରି ।
ଯେ କିମ୍ପା ଜ୍ୟେଷ୍ଠଭାଇ ହୋଇବ ମୋହୋରି ॥୨୦
ସୋଦର ହୋଇଲେଣ କରନ୍ତାନିନା ସୋଗ ।
ମୁହିଁ ବନବାସୀ ଯେହାକୁ ଯେହେର୍ଣ୍ଣେକେ ଯୋଗ ॥
ଏ ରତ୍ନେ ଆଭରଣ ମୁହିଁ ଶୂନ୍ୟକାଏ ।
ଗୋଡ଼େ ଖୁଞ୍ଚକଣ୍ଟା ମାଡ଼ିଣ ଗମନ କରଇ ପାଏ ॥
ଯେହୁ ରଥ ଚଢ଼ିଣ ଗଗନ ମାର୍ଗେ ଆସଇ ।
କିମ୍ପାଇଂ ଏହାର ମୋତେ ଦୟା ନ ବସଇ ॥
ଏବେ ନମସ୍କାର କରିବଇଂ ଯେବେ ।
ଯେ ରଥ ଗୋଟି ଭାଇ ମୋତେ ଯେବେ ଦେବେ ॥
ଶୁଣିଣ କୁବେର ରାବଣକୁ କୋଳ କରି ।
ହସିଣ ବୋଲଇ ବାବୁ ଶୁଣ ଦଶଶିରି ॥୩୦
ଏ ଦେବ ବିମାନ ତୋତେ ନ ଯୋଗାଇ ।
ଦିଗପାଳ ହୋଇଲେ ଯେଥେ ବସି ପାରଇ ॥
ଏତେକ ଚିଆରିଣ ଚଢ଼ିଲା ବିମାନ ।
ଆକାଶ ମାର୍ଗେ ଚଳଇ ଦେବଯାନ ॥
ସୁବର୍ଣ୍ଣ ଘଣ୍ଟି ଘାଗୁଡ଼ି ଧ୍ୱନି ବାଜେ ।
ଅଷ୍ଟ ରତ୍ନରେ କଳସ ଦର୍ପଣ ବିରାଜେ ॥
ଫରହର ଉଡ଼ଇ ନେତର ଟିରାଳ ।
ଚଉକତି ଲମ୍ବଇ ମନ୍ଦାର ମାଳମାଳ ॥
ଦେବାଙ୍ଗ ବପୁ ଯେ ମଣ୍ଡିଲା ଅଶ୍ୱରଥ ।
କୁବେର ଯାନ୍ତେ ଚାହାଂଇ ଦଶମାଥ ॥୪୦
ହିଂସା ଭାବ କରି ଅହନ୍ତା ଭାବ କଲା ।
ପରଶିରୀ ଦେଖି କାତର ହୋଇଲା ॥
ବୁକୁ ଦୁମୁ ଦୁମୁ ତାର ଖର ନିଶୁଆସ ।
ଦେହ ଛାଡ଼ି ଉଡ଼ିଗଲା କି ସାହାସ ॥
ହାଦେ ରାଗ ପାଇ ଥନଥନ କଲା ଆଖି ।
କେଜାଣି ସେହି ସେ ଅଟଇ ନିରିମାଖି ॥
ମୁଖ ଶୁଖାଇଣ ହୋଇଲା ନିସତ ।
ଅଳପ ହସିଣ ପାଇଲା ବଳୀଛିତ ॥
ଚାହୁଂ ଚାହୁଂ ଅଦୃଶ୍ୟ ହୋଇଲା ଦେବଯାନ ।
ମାତାକୋଳେ ବସି ଭାଳଇ ଦଶାନନ ॥୫୦
ଜନନୀ ବୋଇଲା କିପାଇଂ ବାବୁ କାନ୍ଦୁ ।
ଧର୍ମ ସେ ପ୍ରାଣୀଙ୍କର ଅଟଇ ନିଜବନ୍ଧୁ ॥
ଇଷ୍ଟ କୁଟୁମ୍ବ ନୋହନ୍ତି କେହି ସାଖା ।
ମାନ ଉଧାରଇ ଧର୍ମହିଁ ସେ ଯେକା ॥
ତୁହି ଏବେ ବଳାରେ ତପକରୁ କିନା ।
କୋବେର ତୋହୋର ଜ୍ୟେଷ୍ଠଭାଇ ସିନା ॥
ତପକରି ଚଢ଼ିଲା ପୁଷ୍ପକ ରଥ ।
ଯେକା ବାପର ସିନା ଅଟ ତୁମ୍ଭେ ପୁତ୍ର ॥
ଭରଦ୍ୱାଦଶ ଋଷିଝିଅ କେବଣ ତପକଲା ।
ତାହାର ପୁତ୍ରଗୋଟି ଦେବତା ହୋଇଲା ॥୬୦
ମୁହିଁ ଚାଣ୍ଡାଳୁଣୀ ତାହାଙ୍କର ନାରୀ ।
ତିନିପୁତ୍ର ଜାତକରି ହୋଇଲି ବନଚାରୀ ॥
କର୍ମେ ଯାହାଅଛି ଭୁଞ୍ଜ କିନା ତାହା ।
ମାତା ବୋଲ ଶୁଣି ବୋଲଇ ବିଂଶବାହା ॥
ମୁହିଁ ଗୋ ଜନନୀ କରିବଇଂ ତପ ।
ଶୁଣି କୋଳେ ଧଇଲା ନିଜ ବାପ ॥
ମୁଖେ ଚୁମ୍ବଦେଇ ବୋଲଇରେ ବାବୁ ।
କୁବେର ସମ୍ପଦ ତୋହର ସିନା ସବୁ ॥
ଏକଇ ପିଣ୍ଡରୁ ଜାତ ହୋଇଅଛ ବେନି ।
କେବଳ ବେଗଳ ଅଟଇ ଜନନୀ ॥୭୦
ତାହାର ଅର୍ଥରେ ତୁ ଅଛୁ ଅଧିକାରୀ ।
ସେ ଲଙ୍କା କଟକ କି ନୋହଇ ତୋହୋରି ॥
ମାଇକା ଅଜା ତୋହୋର ପୂର୍ବେ ଯେହାକଲା ।
ବାସୁଦେବ ଡରେ ରହିଂ ନ ପାରିଲା ॥
ଲଙ୍କାରେ ତେଣୁ ଝିଆଣିଆ ଅଂଶତ ଭାଗଅଛି ।
କିମ୍ପା ତପ କରିବୁରେ ନଉକେଶୀ ବଛି ॥
ମୋହୋର ଅର୍ଜିଲାର ଅଟଇ ରତ୍ନମହୀ ।
ତୋହୋର ସଧକଲେ ଏଣେ ହେଂ ଭାଗହୋଇ ॥
ରାଜ୍ୟଭାର ବାବୁ ବହିବା ବଡ଼ଦୁଃଖ ।
ଅଲିଅଳ ହୋଇ ବାବୁ ଭୁଞ୍ଜିବ ତୁମେ ସୁଖ ॥୮୦
ସୁକୁମାର କାୟେ ତୋର କଦର୍ଥିବୁ କିସ ପାଇଂ ।
ତୋତେ ଅବା କେବଣ ସମ୍ପଦ ଯେଥେ ନାହିଁ ॥
ମୁହିଁ କେହ୍ନେ, ମୁର୍ଚ୍ଛିବିଟି ବିପୁନ୍ୟେ ତୋତେ ପେଷି ।
ଦଣ୍ଡେ ନ ଦେଖିଲେ ନଜୀଅଇ ନଉକେଶୀ ॥
ଦେହ ସହିଲେ ସେ କରି ତପମାନ ।
ସୁକୁମାର ଶରୀର ଅଟଇ ନନ୍ଦନ ॥
ପିତାର ବଚନେ କୁମାର ହୋୟେ ତୋଷ ।
ଏଥୁଅନନ୍ତରେ ଗଲା ଦିନ ଦଶ ॥
ଘରୁ ବାହାର ହୋଇ କୁମ୍ଭକର୍ଣ୍ଣ ବୀର ।
ଯାଇଂଣ ଉଠିଲା ସେ ସୁବଳୟା ଗିରିର ॥୯୦
ପୃଥୀକି ଚାହିଂଣ ଆକାଶକୁ ଦୃଷ୍ଟିଦେଲା ।
ଏଥି କିସ ଅଛି ଦେଖିବା ବୋଇଲା ॥
ଏତେବୋଲି ବିକ୍ରମିଣ ଗଗନ ମାର୍ଗେ ଯାଇ ।
ବିଜୁଳି ଝଟକେ ଜାଣି ସ୍ୱର୍ଗପୁର ପାଇ ॥
ଦେଖିଲା ଅମରାବତୀ କଟେକ ବିତପନ ।
ବାରିଚ ନ ପାରି ଦିଶଇ ଛନଛନ ॥

ଚନ୍ଦ୍ରସୂର୍ଯ୍ୟ ଅଗ୍ନିକି ହୋଇଛି ଏକରାଶି ।
ମଣିଗଣ କିରଣ ଝଟକେ ପ୍ରକାଶି ॥
ଆଗେଣ ଦିଶଇ ନନ୍ଦନବନ ତୋଟା ।
ଦେଖି ବିଚାରଇ ବିଶର୍ବାର ବେଟା ॥୧୦୦
ସାଧୁରେ ବାସବୟେ ତୋହୋର ପୁଣ୍ୟ ।
ତୁହି ପୁଣି କଶ୍ୟପଙ୍କର ଅଟୁ ନନ୍ଦନ ॥
ଶଏ ଅଶ୍ୱମେଧ ଯାଗ ଯହିଂ କଲୁ ।
ଶତକ୍ରତୁ ନାମେ ଇନ୍ଦ୍ର ବୋଲାଇଲୁ ॥
ଯେଡ଼େକ ଭୋଗ କରୁ ଯେ ସୁରପତି ।
ଆମ୍ଭେ ନୋହୁ କିସେ ପୌଳସ୍ତିର ନାତି ॥
ତପକଲେ ସ୍ୱର୍ଗ ସାଧ କରିପାରି ।
ପିତାର ବୋଲେ ଯେଡ଼େପଣ ଅଛି ହରି ॥
ଏତେ ବୋଲି ନନ୍ଦନ ବନରେ ପଶିଲା ।
କଦଳୀ ବନେ ହସ୍ତୀ ପ୍ରାୟେକ
ଦିଶିଲା ॥୧୦
ଫେର ଦେଇ ସେ ମାରଇ ବାହାନେଡ଼ା ।
କେବଣ ବୃକ୍ଷଧରି ଉପାଡ଼ଇ କଡ଼ା ॥
କାହାକୁ ବାହାଦଣ୍ଡ ମାରି ଆଉଜାଇ ।
ଗୋଇଠା ମାରି କାହାକୁ ଭାଙ୍ଗିଣ ପକାଇ ॥
ପିଠି ଆଉଜାଇଂ ଭାଙ୍ଗିଲଇଂ କାହା ।
କେବଣ ବୃକ୍ଷ ନେଇପୁଣ କଚାଡ଼ଇ ତାହା ॥
କାହାର ଡାଳଘେନି ଓଡ଼ାଇ ପକାଇ ।
ମାଡ଼ିଯାନ୍ତେ କେବଣ ବୃକ୍ଷ ଚୂନା ହୋଇ ॥
ଫଳିଲା ଫୁଟିଲାର ବୃକ୍ଷନ୍ତ ଉପାଡ଼ିଲା ।
ଏକର ଉପରେ ଆରେକ ପାଡ଼ିଲା ॥୨୦
ଅମୃତ ସମାନେ ଫଳ ଲୋଟିଲେ ଧରଣୀ ।
ସୁରଙ୍ଗ ପୁଷ୍ପମାନ ଲୋଟିଲେ ଏଣିତେଣି ॥
ନହୁଲି ବୃକ୍ଷମାନେ ଥିଲେ ପନ୍ତିପନ୍ତି ।
ଫଳିବା ଫୁଟିବାର ବୟସେ ନାଶଯାନ୍ତି ॥
ମାହାମାହା ବୃକ୍ଷମାନେ ହୋଇଲେ ସର୍ବେ
ଚୂର ।
ମଉଷଧିବନକୁ କୁମ୍ଭକର୍ଣ୍ଣ କଲା ନାରଖାର ॥
ରକ୍ଷାଲୋକେ ଶୁଣି ମାଡ଼ି ପଡ଼ିଲେ ସମସ୍ତ ।
ନେଇ ପ୍ରହାରିଲେ ଛେଲ, ଭାଲକୋନ୍ତ ॥
ତାହା ସହି ଦଇତ୍ୟ ଧାଇଂଲାକ ରାଗେ ।
ଗନ୍ଧର୍ବ ବଳକଇ ଓଗାଳିଲେ ଆଗେ ॥୩୦
ବଳେ ଧରି ତାହାନ୍ତ ଗର୍ଭକଇ ଗିଳି ।
ବିକଟାଳ ରଡ଼ି ଛାଡ଼ଇ ମହାବଳୀ ॥
ବାଗବରଷ ତାକୁ ଅଟଇ ବଏସ ।
ଗାନ୍ଧର୍ବ ଗିଳି କଲା ସବୁ ନାଶ ॥
ଯେହୁଂ ଉବୁରିଣ ପଳାଇଣ ଗଲେ ।
ଇନ୍ଦ୍ର ଦେବତାଙ୍କ ଛାମୁରେ କହିଲେ ॥
ଭୋଦେବ ସୁରପତି ଶଚୀର ବିଳାସ ।
ନନ୍ଦନବନ ତୋଟା ସବୁକଲା ନାଶ ॥
ଅସୁର ଶ୍ୱରୀର ସେହୁ ବ୍ରାହ୍ମଣ ସ୍ୱରୂପୀ ।
ତୋଟାରେ ପଶିଣ ପ୍ରଜ୍ୱଳିତ କୋପୀ ॥୪୦
ବନସ୍ତ ଭାଙ୍ଗନ୍ତେ ଆମ୍ଭେ ବିରୋଧିଲୁ ।
ଛେଲ ଚକ୍ର ଗଦା ଶକତି ମାଇଲୁ ॥
ଶହସ୍ର ବଞ୍ଚାଇଣ କୋପେ ରଡ଼ିକଲା ।
ଗନ୍ଧର୍ବ ବଳଧରି ଗର୍ଭକୁ ଗିଳିଲା ॥
ଶୁଣି ସୁରରାୟେ ହସ୍ତୀ ସଜକରି ।
ସଂଗ୍ରାମକୁ ବାହାର ହୋଇଲେ ବଜ୍ରଧରି ॥
ଯେବଣ ଶହସ୍ରେ ବୃତ୍ରାସୁରକୁ ମାଇଲା ।
ଯେବଣ ଶରେ ଶୁଚି ଦତ୍ୟକୁ ନାଶକଲା ॥
ଗରୁଡ଼କୁ ପିଟିଲା ଯେବଣ ଶସ୍ତ୍ର ଧରି ।
ଯେବେ ସେହୁ ଶସ୍ତ୍ର ଧଇଲା
କୋପକରି ॥୫୦
ସଙ୍ଗେଣ ତ୍ରିଦଶଦେବ ଘେନିଣ ସେ ଧାଏଂ ।
ଗନ୍ଧର୍ବ ବଳ ତାଙ୍କର କଳଣା ନଯାଏ ॥
ମାରମାର ବୋଲି ଶୁଭିଲାକ ଧ୍ୱନି ।
ଆନନ୍ଦେ ସମର ଦେଖନ୍ତି ସୁରମୁନି ॥
ନନ୍ଦନବନ ଭାଙ୍ଗିଣ କୁମ୍ଭକର୍ଣ୍ଣ ବୀର ।
ମଉଗର୍ବ ହୋଇଣ ଚାଲଇ ଧୀର ଧୀର ॥
ଧୂରୁ ଦେଖି ଇନ୍ଦ୍ର କୋପେ ଡାକ ଦେଲା ।
କାହିଂକି ଯିବୁ ଆଜ ବୋଲିଣ ବୋଇଲା ॥
ଆରଣ ଲଗାଇ ହସ୍ତୀକି ଦେଲା ଚାଳି ।
ପର୍ବତ ସମାନ ଜାଣ ସେ ବଜ୍ରଅଛି
ତୋଳି ॥୬୦
ପବନହୁଂ ବେଗେଣ ଅଇଲା ମଉଗଜ ।
ଦେଖିଣ ହସିଲା ବିଶ୍ରବା ତନୁଜ ॥
ଏସନ ସମୟେ ଶଚୀର ବିଳାସ ।
ଅଇରାବତକୁ କଲା କୁମ୍ଭକର୍ଣ୍ଣ ପାଶ ॥
ବୋଇଲା ଚଣ୍ଡାଳରେ ପରଜା ଜନ ଖାଉ ।
ଏଡ଼େ ଦୁରାତ୍ମା ତୁରେ କେବଣ ଗୁଣେ ବହୁ ॥
ଏ ନନ୍ଦନବନ ଦେବତାଙ୍କର ଆଶ୍ରମ ।
ସଦାଶିବ ଦେବତାର ସର୍ବଦା ବିଶ୍ରାମ ॥
ଅମର ମଉଷଧି ଅଛଇ ଫଳମୂଳ ।
ଏହା କେବଣ ଅର୍ଥେ ଭାଙ୍ଗିଲୁ
ଚାଣ୍ଡାଳ ॥୭୦
ଆଜ ତୋହୋର ମୁହିଂ ଘେନିବଇଂ ପ୍ରାଣ ।
ଏତେବୋଲି ବଜ୍ର ମାଇଲା ସୁରରାଣ ॥
କୁମ୍ଭକର୍ଣ୍ଣ ବକ୍ଷସ୍ଥଳେ ପଡ଼ିଲାକ ଯାଇଂ ।
ସହିଲା ମହାବୀର ଆଗଭର ହୋଇ ॥
ମୁଣ୍ଡେ ବାଜି ବଜ୍ର ପଡ଼ିଲା ଉପୁଡ଼ି ।
ରାଗେଣ କୁମ୍ଭକର୍ଣ୍ଣ ଛାଡ଼ିଲା ଘୋରରଡ଼ି ॥
ଅଇରାବତ ଦନ୍ତ ଧରିଣ ଉଛୁଡ଼ିଲା ।
କପାଳେ ପାଦଦେଇ ହେଳେଣ ଉପାଡ଼ିଲା ॥
ରକତେ ଜରଜର ଦିଶଇ ବଦନ ।
ବଥାପାଇଂ ଗଜ କରଇ ଗର୍ଜନ ॥୮୦
ସେହି ଦନ୍ତ ଘେନି ଇନ୍ଦ୍ରକୁ ନେଇ ପିଟି ।
ମୋହଯାଇ ଇନ୍ଦ୍ର ହସ୍ତୀ କନ୍ଧରେଣ ଲୋଟି ॥
ଦେଖିଣ ପଳାଇଲେ ଗନ୍ଧର୍ବ ବିଦ୍ୟାଧର ।
କୁମ୍ଭକର୍ଣ୍ଣ ବାହୁଡ଼ିଗଲା ନିଜପୁର ॥
କ୍ଷଣକେ ଚେତନା ପାଇଲା ସୁରପତି ।
ବାହୁଡ଼ି ଗଲା ଇନ୍ଦ୍ର ବିସ୍ମୟେ କରି ମତି ॥
ବାରତା ପାଇଣ ଅଇଲେ ପିତାମହ ।
ଦେଖିଣ ବଜ୍ରଧର ରୋଦଇ କହ କହ ॥
ଭୋ ପିତା କିଞ୍ଚୁତ ଜନ ମୋତେ ଖଞ୍ଜି ।
ଅଇରାବ୍ରତ ଦୁଃଖ ନନ୍ଦନବନ ଭାଙ୍ଗି ॥୯୦
ଶୁଣି ବେଦପତି ବୋଇଲେକ ହସି ।
ଆଜ୍ଞୁଂ ଭାଲୁ କିଂପା କଶ୍ୟପର ଶିଷି ॥
ଯେ ତୋତେ ମାଇଲା ସେ ବିଶର୍ବାର ସୁତ ।
ବିଷ୍ଣୁର ଦ୍ୱାରପାଳ ହୋଇଅଛି ଜାତ ॥
ହିରଣ ହିରଣାକ୍ଷ ଯେ ପୂର୍ବର ମୂରତି ।
ଏବେ ଦଶଗ୍ରୀବ ହୋଇବ ଲଙ୍କପତି ॥

ଅନେକ ଉପଦ୍ରବ କରିବ ତିନିପୁରେ ।
ସୁରଗଣେ ସେବା କରିବେ ତାର ଘରେ ॥
ଅନେକ ଯୁଗ ସେ ଭୁଞ୍ଜିବ ସୁଖ ଶିରୀ ।
ବାସୁଦେବ ନ ମାଇଲେ ଆନରେ ନ ମରି ॥୧୦୦
ଆଜହୁଂ ବିକଳ ନୋହସି ସୁରରାୟେ ।
ଏତେ ବୋଲି ବ୍ରହ୍ମା ସୁର ପୁରକୁ ଯାଏ ॥
ଏଥୁଅନନ୍ତରେ ବୋଲନ୍ତି ଅଗସ୍ତି ।
ଏକମନ ହୋଇ ତୁ ଶୁଣ ରଘୁପତି ॥
ନନ୍ଦନବନ ଭାଙ୍ଗି ଯେ କୁମ୍ଭକର୍ଣ୍ଣ ବୀର ।
ମୃତ୍ୟୁଲୋକରେ ସେ ଚାଲଇ ଧୀର ଧୀର ॥
ସୁବଳୟା ପର୍ବତ ଶିଖରେ ଆସି ମିଳି ।
ଦେବ ନଦୀରେ ପଶି ଶ୍ୟରୀର ପଖାଳି ॥
ଘଡ଼ି ସାତ ମାନେ ମିଳିଲା ଆସି ଘରେ ।
ସର୍ବକଥା କହିଲା ରାବଣ ଆଗରେ ॥୧୦
ଶୁଣି ଦଶଗ୍ରୀବ ଯେ ହୋଇଲା ହରଷ ।
ଏଥୁଅନନ୍ତରେ ରାମ ଶୁଣିମା ଦିବ୍ୟରସ ॥
ଯେବଣ ଦିନ କୁମ୍ଭକର୍ଣ୍ଣ ସ୍ୱର୍ଗକଇ ଗଲା ।
ସେଦିନ ଦଶଗ୍ରୀବ ପାତାଳେ ପଶିଲା ॥
ସୁବଳୟା ଗିରିବାଟେ ଅଛଇ ବିମ୍ବର ।
ଦେଖିବ ବୋଲି ତହିଂ ପଶିଲା ବିଂଶକର ॥
ଯାନ୍ତେଣ ପାତାଳ ପୁରରେ ପ୍ରବେଶ ।
ପୁରେକ ଦେଖିଲା ତହିଂ ନଉକେଶାର ଶିଷ ॥
ରାକ୍ଷସ ବଳ ତହିଂ କଳଣା ନଯାଇଂ ।
ରଥଗଜ ଅଶ୍ୱ ସାଜିଲାକ ତହିଂ ॥୨୦
ଦେଖିଣ ଦଶାନନ ପଚାରଇ ତହିଂ ।
ତୁମ୍ଭକଇ ଶତ୍ରୁ ପୁଣ ଉପଗତ କାହିଂ ॥
କିଂପାଇଂ ଚତୁରଙ୍ଗ ବଳସଜ କର ।
ଦଶମୁଣ୍ଡ ଦେଖିଣ ଚାହାନ୍ତି ନିଶାଚର ॥
ଅପୂର୍ବ ଦେଖିଣ ପୁଛନ୍ତି ବାରତା ।
ଯାହା ପଚାରିଲୁ ଶୁଣ ଦଶମଥା ॥
ବିଷ୍ଣୁ ଭୟ ଆମ୍ଭେ ଶ୍ରବଣ ସେ କରି ।
ଶ୍ରୀହରିର ଡରେ ଆମ୍ଭେ କରେ ଶହସ୍ର ଧରି ॥
ଶୁଣି ଦଶକଣ୍ଠ ପଚାରଇ ରହି ।
ନାରାୟେଣ ଦେବତା ଅଛଇ ପୁଣ କାହିଂ ॥୩୦
ଦଇତେ ବୋଲନ୍ତି ତାହାଙ୍କର ବଇକୁଣ୍ଠେ ଘର ।
କ୍ଷୀର ସମୋଦ୍ରେ ଶୟନ କରଇ ଚକ୍ରଧର ॥
ଦଶାନନ ପଚାରଇ ଯେବେ ଅଛି କାହିଂ ।
ଅସୁରେ ବୋଲନ୍ତି ଶୁଣିଲାତ ନାହିଂ ॥
ହସଇ ନଉକେଶୀ ତନୟେ ଯେହାଶୁଣି ।
କିମ୍ବା ତୁମ୍ଭେମାନେ ନପାରୁଛ ତାହା ଜିଣି ॥
ଶତ୍ରୁ ନଦେଖିଣ ଥାଠ ସଜକର ।
ଶୁଣିଣ ଉଚ୍ଚସ୍ୱରେ ବୋଲନ୍ତି ଅସୁର ॥
ତୁ ଯେ ନଜାଣୁ ହୋ ଶ୍ରୀହରିର ମାୟା ।
କାଷ୍ଠ ଥମ୍ବ ଭିତରୁ ବାହାର କଲା କାୟା ॥୪୦
ହିରଣ୍ୟ ଦଇତକୁ ବିଦାରି ପକାଇଲା ।
ଅଦଭୁତେ ଥମ୍ବରୁ ସେ ବାହାର ହୋଇଲା ॥
ଏ ଆମ୍ଭର ଠାକୁର ଅସୁର ସୁମାଳୀ ।
ଏହାର ସୋଦର ମାଲ୍ୟବନ୍ତ ମାଳୀ ॥
ତିନିପୁରେ ପ୍ରତଗ୍ୟାଂ କଲେ ଭାଇବେନି ।
ସ୍ୱର୍ଗପୁର ଜୂର କରିବେ ଗଲେ ଥାଠ ଘେନି ॥
ଦେବତାଙ୍କର ସାହା ଅଟଇ ନାରାୟେଣ ।
ଗରୁଡ଼ ପିଠିରେ ଆସି କଲେ ଘୋର ରଣ ॥
ମାଳୀର ମଉଳି ଚକ୍ରେ ଛିଣ୍ଡାଇଲେ ।
ଆବର ଶକତି ମାଲ୍ୟବନ୍ତକୁ ମାଇଲେ ॥୫୦
ସୁମାଳୀ ପଳାଇଲା ପଛକୁ ନଚାହିଂ ।
ଦୟାକରି ଛାଡ଼ିଗଲେ କମଳାର ସାଇଂ ॥
ନିଜ ସନ୍ୟ ଘେନି ପଳାଇଲା ସୁମାଳୀ ।
ଲଙ୍କାର ସମ୍ପଦ ପାତାଳକୁ ଚାଳି ॥
ଶ୍ରୀହରିର ଭୟେ ତହିଂ ରହିନପାରିଲେ ।
ଶେଷେ ସେ କଟେକ କୁବେର ଭୋଗ୍ୟକଲେ ॥
ସୁମାଳୀ ନୃପତି ଦିନେ ଦେଖିଲାକ ପୁର ।
ସଙ୍ଗେଣ ଦୋହିତା ଯେ ଗୋଡ଼ାଇଲା ତାର ॥
ତାହାନେଇ ବିଶର୍ବା ଋଷିଙ୍କି ସମର୍ପିଲା ।
ଶାପ୍ୟ ଦିଅଇ ବୋଲି ସେ ଛାମୁରେ ନୋହିଲା ॥୬୦
ବାହୁଡ଼ି ନିଜ ସ୍ଥାନେ ହୋଇଲା ଆସି ପୁଣି ।
ବାରତା ପାଇଲାନି ଚାର ମୁଖୁଂ ଶୁଣି ॥
ତିନିପୁତ୍ର ଦୋହିତାଏ ହୋଇଲା ତାହାର ।
ବନସ୍ତେ ଅଛନ୍ତି ପୋଏ ପିତାଙ୍କ ସଙ୍ଗତର ॥
କୁବେର ଜ୍ୟେଷ୍ଠ ଭାଇ ଅଟଇ ତାହାରି ।
ସୁଖେଣ ଭୋଗ୍ୟ କରଇ ସେ ଲଙ୍କାଗଡ଼ ଶିରୀ ॥
ସାବତ ଭାଇ ବୋଲି ଏହାନ୍ତ ଲେଛିଲା ।
ଆପଣେ ଭଲେ ଥିବ ବୋଲିଣ ବାରିଲା ॥
ସେ ପୋଏ ତପକରିଣ ପାଇବେ ବର ଯେବେ ।
ଲଙ୍କା ନଗରେଣ ରହିବୁ ଆମ୍ଭେ ତେବେ ॥୭୦
ମାତାମହ ଦେଶ ଅଟଇ ତାହାରି ।
ବଳେ ସେ କୁବେର ଅଛଇ ଆବୋରି ॥
ତୁହୋ ବାଳୁତମଣି ପଚାରିଲୁ ଯାହା ।
ମୂଳ ବାଦୀ ଆମ୍ଭର ଅଟଇ ଚଉବାହା ॥
ତାହାଙ୍କର ଡରେ ଆମ୍ଭେ ସଜ ହୋଇଂଥାଉଂ ।
ପାତାଳୁଂ ବାହାର ହୋଇ ମଞ୍ଚକୁ ନଯାଇଂ ॥
ଶୁଣି ଦଶଗ୍ରୀବ ଆନନ୍ଦ ହୋଇଲା ।
ମୁହିଂଟି ନଉକେଶା ତନୟେ ବୋଇଲା ॥
ସୁମାଳୀ ଜଥା ମୋତେ କହିଛି ଜନନୀ ।
କାହିଂ ଅଛି ଅଜା ଯିବି ମୁହିଂ ଚିହ୍ନି ॥୮୦
ଶୁଣିଣ ଅସୁରେ ଧାଇଂଲେ ଅତିବେଗେ ।
ଯାଇଂ ଜଣାଇଲେ ସୁମାଳୀର ଆଗେ ॥
ନଉକେଶାର ତନଏ ବିଶର୍ବାର ସୁତ ।
ଦଶବଦନ ତାର ଅଟଇ ବିଂଶହସ୍ତ ॥
ବୁଲନ୍ତେଣ ବଳା ପଶି ଆମ୍ଭ ପୁରେ ।
ବାରତା ପଚାରିଲାକ ମିଳିଣ ଆଗରେ ॥
ଆମ୍ଭେ କହିଲୁ ତାକୁ ଯାବତ ବିଧାନ ।
ଶୁଣି ସନ୍ତୋଷ ହୋଇଲା ଦଶାନନ ॥
ବୋଇଲା ଅଜାକୁ ମୁଂ ଦେଖିବଇଂ ଯାଇଂ ।
ମାତା କହିବାର ସମ୍ବାଦ ପୁଛିବଇଂ ॥୯୦
ଯେସନେକ ବୋଲି ରହିଛି ଦଶଶିର ।
ଶୁଣି ସିଂଘାସନୁ ଉଠିଲା ଅସୁର ॥

କାହିଂଅଛି ବୋଲି ଆରତେ ଅଇଲା ।
ଯାଇଂ ଦଶକନ୍ଧ ଛାମୁରେ ମିଳିଲା ॥
କୋଳେ ଧରି ମୁଖେ ଚୁମ୍ବନ ଦିଅଇ ।
କାହୁଂ ଅଇଲୁ ବୋଲି ବାରତା ପୁଛଇ ॥
ଦଶାନନ ବୋଇଲା ମୁଂ ବିଶର୍ବାର ସୁତ ।
ନଉକେଶା ରାକ୍ଷସୀ ଅଟଇ ମୋର ମାତ ॥
ଶୁଣିଣ ସୁମାଳୀ ବହନ କୋଳକଲା ।
ତୁ ମୋର ଦୋହିତା ତନୟେ
ବୋଇଲା ॥୧୦୦
ଘରକଇ ନେଲା ଗଉରୋବ କରି ।
ଦେଖିଣ ଅଇଲେ ସକଳ ଅସୁରୀ ॥
ସୁମାଳୀର ଘରଣୀ ନଉକେଶା ମାତା ।
ନାତିକି କୋଳେ ଧରି ରୋଦଇ ବନିତା ॥
ବୋଇଲା ବାବୁ ଲଙ୍କାରେ ଆମ୍ଭେ ଥିଲୁ ।
ବାସୁଦେବର ଭୟେ ଆମ୍ଭେ ତହୁଂ
ପଳାଇଲୁ ॥
ଅନେକ କଷ୍ଟରେ ଆମ୍ଭେ ପାତାଳେ ଅଛୁଂ
ଲୁଚି ।
ଏପୁର ବାବୁ ଆମ୍ଭଙ୍କୁ ନରୁଚି ॥
ତୋହୋର ସାବତ ଭାଇ କୁବେର ଯେ
ହୋଇ ।
ସେ ସେ ରାଜା ହୋଇ ବିଳସଇ
ଲଙ୍କଭୂଇଂ ॥୧୦
ତୁମ୍ଭେ ବନବାସେ ପିତାଙ୍କର ସଙ୍ଗେ ଥାଅ ।
ନିର୍ଝର ପାଣି ପିଇ କନ୍ଦମୂଳ ଖାଅ ॥
ଯେ ଯାହାର କର୍ମ ନୋହେ ଆନ କରି ।
କୋବେରର ପୁଣ୍ୟେ ଅର୍ଜିଲା ଯେତେ଼ ଶିରୀ ॥
ତୁ ଯେବେ ତପ କରି ହୋଇବୁ ଲଙ୍କପତି ।
ତେବେ ସେ ଆମ୍ଭର ଫିଟିବ ଦୁର୍ଗତି ॥
ଯେଥୁଂ ବାହାର ହୋଇ ଲଙ୍କାକଇ ଯିବୁ ।
ତୋତେ ଆବୋରିଣ ରାଜ୍ୟ ହିଂ କରିବୁ ॥
ଶୁଣି ଦଶଗ୍ରୀବ ହସିଣ ବୋଇଲା ।
ତୁମ୍ଭର ଯେତେ଼ ଯେବେ ଶରଧା
ହୋଇଲା ॥୨୦
ମୁହିଂ ତ ତପ କରି ଘେନିମି ଲଙ୍କପୁରୀ ।

ସୁବର୍ଣ୍ଣମୟେପୁର ଭୋଗ୍ୟ କରିବେ ଅସୁରୀ ॥
ଯେତେକ ବୋଲି ସେ ଉଠିଲା ତଡ଼ତି ।
ଯିବି ବୋଲି ଉଦବେଗ କଲା ମତି ॥
ସୁମାଳୀ ବୋଇଲା ଭୋଜନ ଯେଥେ କର ।
ଯେ ତୁମ୍ଭର ବାବୁ ନୁହଇ କି ଘର ॥
ଦଶାନନ ବୋଇଲା ମୋତେ ଲୋଡ଼ିବେନି
ଆଇ ।
ଯିବି ବେଗ ହୋଇ ନପାରଇ ରହି ॥
ପୁଣି ଆସଇ ସିନା ବୋଲିଣ ବୋଇଲା ।
ବସ୍ତ୍ର ଅଳଙ୍କାର ଯାଚିଲେ ନନେଲା ॥୩୦
ବିୟର ଦ୍ୱାରବାଟେ ହୋଇଲା ବାହାର ।
ସୁବଳୟା ଗିରିରେ ମିଳିଲା ଦଶଶିର ॥
ନିଜ ଆଶ୍ରମକଇ ଗଲାକ ତଡ଼ତି ।
ବୋଲନ୍ତି ଅଗସ୍ତି ଶୁଣିମା ରଘୁପତି ॥
ସେଦିନ ବିଭୀଷେଣ ସର୍ଗକଇଂ ଗଲା ।
ଯକ୍ଷ ପୁରୁଷଙ୍କର ସଙ୍ଗତେ କଳି କଲା ॥
ନଚିହ୍ନି କିକଂରେ ଗୋଡ଼ାଇଲେ ମାରି ।
କାହିଂର ଅସୁରରେ ପଶିଲୁ ଦେବପୁରୀ ॥
ଆବର ଅସୁରେ ଅଛକିରେ ଢାଇଂ ।
ମାର ମାର ବୋଲି ଧାଇଂଲେ ବୋବି
ଦେଇଂ ॥୪୦
ବିଭୀଷଣ ବୁଦ୍ଧିବନ୍ତ ଜାଣି ଅପସରି ।
ବାହୁଡ଼ି ଅଇଲା ଅହନ୍ତା ନଧରି ॥
ସୁବଳୟା ପର୍ବତେ ପ୍ରବେଶ ହୋଇଲା ।
ଦଶଗ୍ରୀବ ଆଗେ ସମସ୍ତ କହିଲା ॥
ଯେସନେକ ସମଏ ଅଇଲା କୁମ୍ଭକର୍ଣ୍ଣ ।
ସ୍ୱର୍ଗର କଥାମାନ ଶୁଣିଲା ଦଶାନନ ॥
ତିନିଭାଇ ମିଳି ମାତାକୁ ପଚାରି ।
ସୂପଲେଖୀ ସହିତେ ବସିଣ ବିଚାରି ॥
ତପ ନ କଲେ ନୋହୁ ଆମ୍ଭେ ସୁଖୀ ।
କୋବେର ସମ୍ପଦ ନପାରୁ ଆମ୍ଭେ
ଦେଖି ॥୫୦
ଯେସନେ ଭାଳନ୍ତେ ରଜନୀ ପ୍ରଭାତେ ।
ତିନିଭାଇ ନମସ୍କାର କଲେ ନିଜ ତାତେ ॥
ଦଶଗ୍ରୀବ ବୋଇଲା ତପ କରି ଯିବୁଂ ।

କିମ୍ବା ଦୁଃଖ ଆମ୍ଭେ ବନସ୍ତେ ପାଇବୁ ॥
ବିଶର୍ବା ବିଚାରିଲେ ହୃଦୟ କମଳେ ।
କରିବେ ଅନର୍ଥ ଯେ ପୃଥିବୀ ମଣ୍ଡଳେ ॥
ଜଗତ ଦହିବେ ମାରିବେ ତପଚାରୀ ।
ଯେସନେକ ବୋଲିଣ ବିଶର୍ବା ବିଚାରି ॥
ଯେତେ ବୋଲି ଉଠି ତିନିକି କୋଳକଲା ।
ଧର୍ମ କଥା ଦେଖାଇଂ ଅନେକ
ତିଆରିଲା ॥୬୦
ଯାଅ ବାବୁ ଶୁଭେ ତପ ସିଧ କର ।
ତାମସ ବେଭାର ମନରେ ନଧର ॥
ଯେତେ ବୋଲି ଋଷି ଥନଥନ ଆଖି ।
ଆଉ ମୁହିଂ ଯେଥି ଥିବଇଂ କାହା ଦେଖି ॥
ସ୍ନେହରେ କୋଳକରି ଭିଡ଼ଇ ପୁଣପୁଣି ।
ମୁଧୁନି ଆଗ୍ରାହଣ କଲାକ ମୁନିମଣି ॥
ଯାଅ ବୋଲି ବାବୁ ଅଇଲା ପାଛୋଟି ।
ଆଗେ ଚାଲିଛନ୍ତି ତିନିପୁତ୍ର ଗୋଟି ॥
ଥୋକାଏକ ଦୂର ପୁଆଇଣ ଗଲା ।
ନଉକେଶୀ ଯେ ଅନେକ ତିଆରିଲା ॥୭୦
ସୂପଲେଖୀ କି ସଙ୍ଗେ ଘେନି ଭୁଞ୍ଜିଣ
ବସଇ ।
ପୁତ୍ରଙ୍କ କଥା ଯେବେ ମନରେ ପଡ଼ଇ ॥
ସୁମରିଣ ମନେଣ ବିକଳିତ ମନ ।
ଯେଥୁ ଅନନ୍ତରେ ଶୁଣିମା ରଘୁନାନ ॥
ଦଶଗ୍ରୀବ ସଙ୍ଗତେ ଅଛନ୍ତି ଭାଇ ବେନି ।
ତପ କରିଯାନ୍ତି ଅଭିମାନ ଘେନି ॥
ସମୁଦ୍ର ପାରି ହୋଇ ଜମ୍ବୁଦୀପ ଗଲେ ।
ଭ୍ରଥଖଣ୍ଡ ଉତ୍କଳ ଦେଶରେ ମିଳିଲେ ॥
ବିରଜା ନାମେଣ ଯେ ଅଟଇ ଯେକ
କ୍ଷେତ୍ର ।
ବ୍ରହ୍ମାଙ୍କ ନାଭି ଥାନ ଅତିଅ ପବିତ୍ର ॥୮୦
ଗୋକର୍ଣ୍ଣିକା ବୋଲି ଅଛଇ ଏକ କୁଣ୍ଡ ।
ତହିଂ ସ୍ନାନ କଲେ ନଲାଗଇ ଯମଦଣ୍ଡ ॥
ସେ ତୀର୍ଥେ ମିଳିଲେ ଦଶଗ୍ରୀବ ତିନିଭାଇ ।
ତହିଂ ତପ କଲେ ପୂର୍ବ ହେତୁ ପାଇଂ ॥
ଦିବସେ ଉପବାସୀ ରାତ୍ରେ ଫଳ ଖାନ୍ତି ।

ଜଗତ ପିତାମହକୁ ତଳେ କରିଥାନ୍ତି ॥
କୁମ୍ଭକର୍ଣ୍ଣ ମହାକଷ୍ଟୋର ତପକଲା ।
ଗ୍ରୀଷମକାଳେ ପଞ୍ଚଅଗ୍ନି ସେ ସହିଲା ॥
ବରଷାରେ ତିନ୍ତିଲା ଶୁଦ୍ଧ୍ୟ ମନଧରି ।
ହୃଦପଦ୍ମ ମଧେ ମନ୍ତ୍ର ସୁମରି ॥୯୦
ମାଘମାସେ ଜଳେ ପଶି ଶୀତ ସହିଂ ।
କାୟା କକର୍ଥିଲେ ସେ ଅଭିମାନ ବହିଂ ॥
ବାରମାସ ପୁଣ ହୋଇଲା ଉଜାଗର ।
ଫଳମୂଳ ଛାଡ଼ି ନଭକ୍ଷିଲା ନୀର ॥
ଯେମନ୍ତେ ଦେବ ବରଷ ସହସ୍ରେ ବରଷ ।
କଠୋର ତପକଲା ବିଶର୍ବାର ଶିଷ୍ୟ ॥
ବିଭୀଷେଣ ତପ ଅତି ହିଂ ଅଗୋଚର ।
ମନଚିତ୍ତ ପ୍ରକୃତି ଯେକ କଲା ବୀର ॥
ଯେକ ପାଦେକ ଉଭା ବ୍ରହ୍ମାକୁ ଧାଏ କରି ।
ଅଜପା ଜପଇ ସେ ଧର୍ମକୁ ସୁମରି ॥ ୧୦୦
ଯେମନ୍ତ ଦେବ ବରଷେ ବରଷେକ ।
ପ୍ରାଣ ଥିବା ପାଇଂ ପିଇଲା ଉଦେକ ॥
ପୁଣି ପାଞ୍ଚ ସହସ୍ର ଦେବ ଦିନେ ।
ଊର୍ଦ୍ଧ୍ୱ ବାହୁ ହୋଇ ବିଶର୍ବାର ନାନେ ॥
ସ୍ୱର୍ଗରେ ଦେବତାଏ ପୁଷ୍ପ ବୃଷ୍ଟି କଲେ ।
ସାଧୁ ସାଧୁ ତପୀ ବୋଲିଣ ବୋଇଲେ ॥
ଯେଥୁ ଅନନ୍ତରେ ଦଶଗ୍ରୀବ ବୀର ।
ଧାଏ ଧାରଣେ ହୋଇଂ ଚିନ୍ତଇ ଚଉଶିର ॥
ଜଳ ନଭକ୍ଷିଲା ଦେବ ବରଷେକ ।
କି ଜାଣି ତାହାର ଭଲା ରହିଲା ଶୋଷ
ଭୋକ ॥୧୦
ଏହି ମତେ ଦଶ ସହସ୍ର ବରଷ ।
ପବନ ଆହାର କଲା ବିଶ୍ରବାର ଶିଷ୍ୟ ॥
ହେଠମାଥ ହୋଇଂ ବୃକ୍ଷରେ ପାଦ ବାନ୍ଧି ।
ହୁତାଶନ ଭକ୍ଷଇ ଦଶଦ୍ୱାର ରୁନ୍ଧି ॥
ଯହୁଂ ସେ ବିଧାତା ନୋହିଲା ପ୍ରସନ୍ନ ।
ଆନ ତପ ଆରମ୍ଭ କଲାକ ଦଶାନନ ॥
ପ୍ରାଣ ପାଇବ ବୋଲି ମନରେ ନଭାଳିଲା ।
ନିଜ ମୁଣ୍ଡ କାଟି ଅଗ୍ନିରେ ଜାଳିଦେଲା ॥
ଆରେକ ମୁଣ୍ଡ ମୋଡ଼ି ପକାଇଲା ପୁଣି ।
ତେବେହେଂ ପ୍ରସନ୍ନ ନୋହିଲା
କୁଶପାଣି ॥୨୦
ଯେମନ୍ତେ ନବଶିର ଦେଇଂ ହୋମ କଲା ।
ଆପଣାର ରୁଧିର ଘୃତକରି ଦେଲା ॥
ଅନଳ ଭିତରୁ କାଢ଼ିଲା ଏକ ମୁଣ୍ଡ ।
ବାମକରେ ଛିନାଇଲା ଆରେକ ମୁଣ୍ଡ ଖଣ୍ଡ ॥
ମସ୍ତକ ତାହାର ବାମକରେ ଘେନି ।
କଟଟି ଶିରକାଟି ଖଞ୍ଜିଲା ତର୍ଜନୀ ॥
ଭୁଜେ ଭୁଜ ଛନ୍ଦି ବାଇଲାକ ତାଳମାନ ।
ସାମବେଦ ଉକାଂର କରଇ ଯୋଗ ଧ୍ୟାନ ॥
ଆଗେ ଆଠମୁଣ୍ଡ ଅଗ୍ନିରେ ଅଛି ଜଳୁ ।
ଯନ୍ତ୍ରଗୁଣା ଛନ୍ଦେ ଭୁଜ ଅଛି ଚଳୁ ॥୩୦
ନବକନ୍ଧୁ ରୁଧିର ବହଇ ଝରଝର ।
ଯେକପାଦେ ଉଭା ବିଶ୍ରବା କୁମର ॥
କଷ୍ଟୋର ତପଦେଖି ଅଇଲେ ପିତାମହ ।
ଶୂନ୍ୟେ ଡାକ ଦିଅନ୍ତି କିସ କାର୍ଯ୍ୟ କହ ॥
ମୁହିଂ ବିଧାତା ତୋତେ ହୋଇଲି ପ୍ରସନ୍ନ ।
ବର ମାଗ ତୁମ୍ଭେ ବିଶ୍ରବା ନନ୍ଦନ ॥
ଶୁଣି ଦଶଗ୍ରୀବ ଊର୍ଦ୍ଧ୍ୱକଇ ଚାହିଂ ।
ଦେଖିଲାକ ଶୂନ୍ୟେଣ ଅଛଇ ଦେବ ବିହି ॥
ଇନ୍ଦ୍ରାଦି ସହିତେ ଦଶଦିଗପାଳ ।
ତେତିଶ କୋଟି ଦେବେ ଅଛନ୍ତି
ସକଳ ॥୪୦
ଦେଖିଣ ଆନନ୍ଦେ ଯେ ନଉକେଶୀର ସୁତ ।
ଉଛେଣ ବୋଇଲା ଶୁଣସି ବିଧାତ ॥
ଅମର ହୋଇବି ଦିଅସି ମୋତେ ବର ।
ଯେବେ ପ୍ରସନ୍ନ ମୋତେ ହୋଇଲୁ
କୁଶଧର ॥
ବ୍ରହ୍ମା ବୋଇଲେ ତୁ ଶୁଣ ପଉଳସ୍ତି ।
ଅମର ବର ତୋତେ ନୋହଇ ଯୁଗତି ॥
ଅସୁର ଯୋନି ତୁ ପାଇଲୁ ଦନୁଜା ।
ସୁମାଳୀ ଦତ୍ୟ ଯେ ଅଟେ ତୋର ଅଜା ॥
ତେଣୁ ସେ ରାକ୍ଷସ ତନୁ ପାଇଲୁ ଦଶଶିରି ।
ଅମର ବରଛାଡ଼ି ମାଗ ଭୋଗ ଶିରୀ ॥୫୦
ଶୁଣି ଦଶକନ୍ଧ ବୋଇଲା ବଚନ ।
ଦିଅସି ବର ମୋତେ ଚତୁରବଦନ ॥
ଜଗତ ଜିଣିମଇ ନିଜ ଭୁଜବଳେ ।
ସମରେ ସମ ମୋତେ ନୋହିବେ
ଦିଗପାଳେ ॥
କାହାରିହିଂ ହାଥେ ନୋହିବ ମୋର ମୃତ୍ୟୁ ।
ଯେ ବଚନ ଶୁଣି ବୋଇଲେ କୁଶକେତୁ ॥
ଯାହା ମାଗିଲୁ ହୋଉ ତୋତେ ଅସ୍ତୁ ।
ଆବର କଥାଏ ଶୁଣ ତୁ ପରମ ତତ୍ତ୍ୱ ॥
ବ୍ରହ୍ମାଣ୍ଡ ଠାକୁର ଅଟନ୍ତି ମୁରାରି ।
ତାହା ମନ କଲେ ପାରିବ ତେତେ
ମାରି ॥୬୦
ସେହି ପୁଣ ଦେବତା ରୂପେ ନମାରିବ ।
ମନୁଷ୍ୟ ମୂର୍ତ୍ତି ଯେବେ ଧରିବ ବାସୁଦେବ ॥
ତେବେହେଂ ତୋତେ ନପାରଇ ଜିଣି ।
ଚୋରାଇ ଆଣିବୁ ଯେବେ ତାହାର ଘରଣୀ ॥
ତେବେ ସେ ଶ୍ରୀହରିର ହସ୍ତରେ ନାଶଯିବୁ ।
ଆନ ଆୟୁଧେ ତୁ ନିଧନ ନୋହିବୁ ॥
ବ୍ରହ୍ମ ଶହସ୍ରେ ପ୍ରାଣ ତୁ ହାରିବୁ ଦଶକନ୍ଧ ।
ଆନ ମତେ ତୋତେ ନୋହିବ କିଛି ମନ୍ଦ ॥
ବ୍ରହ୍ମ ଅସ୍ତ୍ରେ ମୁଣ୍ଡ କାଟିଲେ ନମରିବୁ ।
ବୁକରେ ଫୁଟିଲେ ସେ ଜୀବନ
ହାରିବୁ ॥୭୦
ଶିର କମଳ ଦେଇ ସେବାକଲୁ ମୋତେ ।
ପ୍ରସନ୍ନେ ଅଭୟେ ବର ସମର୍ପିଲି ତୋତେ ॥
ଶ୍ରୀରାମର ଭାରିଯା ସୀତ୍ୟା ନ ହରିବୁ ।
ମୋହୋର ବଚନ ତୁ ହେତୁ କରିଥିବୁ ॥
ସୀତ୍ୟାକୁ ଚୋରାଇଲେ ନପାରଇ ରଖି ।
ନପୁଣ ଲୋଭକରୁ ରୂପଗୁଣ ଦେଖି ॥
ପୌଲସ୍ତି ବୋଇଲା ମୁଂ ନହରିବି ସୀତ୍ୟା ।
ଯେ ତୋହୋର ଆଗ୍ୟାଂ ପାଳିବି ଜଗତପିତା ॥
ଶୁଣିଣ ପ୍ରସନ୍ନବଦନ ବେଦପତି ।
ଦଶଗ୍ରୀବ କରେ ତୋଳି ଦେଲେକ
ଶକତି ॥୮୦
ଯେ ଶହସ୍ର ବଳାରେ ହସ୍ତରେ ଧରିଥିବୁ ।
ଆତଙ୍କ କାଳ ନହେଲେ କେବେହେଂ
ନମାରିବୁ ॥

ଯେହାର ବାଚ୍ଛନ୍ତେ ନବ୍ରତନ୍ତି ସୁର ।
ଯେକଘନୀ ନାମ ଅଟଇ ଯେହାର ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ହୋଇଲେ ପ୍ରାଣ ହାରି ।
ଅନେକ ଦୟାରେ ତୋତେ ଦେଲି ଦଶଶିରି ॥
ଏତେ ବୋଲି ମନ୍ତ୍ର କହିଲେକ କର୍ଣ୍ଣେ ।
ବ୍ରହ୍ମ ଶକତି ଚଳଇ ଯେବଣ ବିଧାନେ ॥
ଶୁଣି ଦଶଗ୍ରୀବ ମନ୍ତ୍ର ହେତୁ କଲା ।
ପୁଣିହିଁ ପିତାମହ ପ୍ରସନ୍ନ ହୋଇଲା ॥୯୦
ବୋଇଲା ଦଶମୁଣ୍ଡ କହନ୍ତେ ତୋର ଲାଗୁ ।
ପୂର୍ବର ସମାନ୍ୟେ ସୁଖ ଭୋଗ ମାଗୁ ॥
ପିତାମହ ଆଗ୍ୟାଂରେ ଲାଗିଲା ଦଶମୁଣ୍ଡ ।
ଶକତି ଧରି ବୀର ଦିଶିଲା ପ୍ରଚଣ୍ଡ ॥
ଯେଥୁ ଅନନ୍ତରେ ବିଭୀଷେଣକଇ ଚାହିଁ ।
ବର ମାଗ ବୋଲି ବୋଇଲା ସାବିତ୍ରୀର
ସାଇଂ ॥
ବିଭୀଷେଣ କହଇ ଯୋଡ଼ିଣ ବେନିକର ।
ଯେବେତୁ ପ୍ରସନ୍ନ ହୋଇଲୁ କୁଶଧର ॥
ଧର୍ମ ନଛାଡ଼ିବି ଏ ବର ମୋତେ ଦେବା ।
ନାରାୟଣ ଦେବତା ଘେନିମି ମୋର ସେବା ॥
ଯେହା ସେ ମାଗଇ ଆନେ କାର୍ଯ୍ୟ ନାହିଁ ।
ଶୁଣିଣ ପ୍ରସନ୍ନ ହେଲେ ସାବିତ୍ରୀର
ସାଇଂ ॥୯୦
ହୋଉ ବଳା ତୋର ଯେମନ୍ତ ମନବାଞ୍ଛା ।
ତୋଷେଣ ବିଧାତା ଦେଲାକ ଯେ ଦୀକ୍ଷା ॥
କୁମ୍ଭକର୍ଣ୍ଣକଇ ଚାହିଁ ପଚାରଇ ବିହି ।
ଅନେକ ତପେଣ ଦହିଲୁ ତୋର ଦେହୀ ॥
ସେନଧ ହୋଇଣ ଦେବଇ ତୋତେ ବର ।
ଯେହା ଶୁଣି କର ଯୋଡ଼ିଲେ ସର୍ବସୁର ॥
ଭୋ ବ୍ରହ୍ମା ଅନୀତି ନକର ଗୋସାଇଂ ।
ଯେହାକୁ ବର ଦେଲେ କାହାରି ଜୀଇଂ
ନାହିଁ ॥
ବର ନପାଉ ଯେ ନନ୍ଦନ ବନ ଭାଙ୍ଗଇ ।
ସୁର ନର ଗନ୍ଧର୍ବ ଋଷିନ୍ତ ଧରି ଭୁଞ୍ଜଇ ॥
ଯେହାକଇ ଶାପ୍ୟ ଦେବାକ ଉଚିତ ।
ଅସୁରଙ୍କର ମାୟାରେ ହୋଇଲୁ ମୋହିତ ॥

ଯେହାକୁ ବର ଦେଲେ ଦେବେ ନାଶ
ଯିବୁ ।
ସ୍ୱର୍ଗପୁରେ ଆଉ କେମନ୍ତେ ରହିବୁ ॥
ଦେବଙ୍କର ଆକୁଳ ଶୁଣିଣ ବେଦପତି ।
ତକ୍ଷଣେ ସୁମରଣା କଲେ ସରସ୍ୱତୀ ॥
ଆସି ବୁଧ ମାତା ମିଳିଲେ ଛାମୁର ।
କିସ ଆଗ୍ୟାଂ ବୋଲି ଯୋଡ଼ଇ
ବେନିକର ॥୨୦
ବିଧାତା ବୋଇଲେ କୁମ୍ଭକର୍ଣ୍ଣ କଣ୍ଠେ ବିଜେ
କର ।
ସୁବୁଦ୍ଧି ତାହାର କଣ୍ଠରେ ପରସର ॥
ଦେବତାଙ୍କୁ ସୁସ୍ଥ ହୋଅଇ ଯେମନ୍ତେ ।
ସେ ବୁଦ୍ଧି ପ୍ରସର ହୋଉ କୁମ୍ଭକର୍ଣ୍ଣ ଚିତେ ॥
ଶୁଣି ସରସ୍ୱତୀ ଚଳିଲେ ଅନ୍ତର୍ଦ୍ଧାନେ ।
ପ୍ରବେଶ ହୋଇଲେ ଯାଇ କୁମ୍ଭକର୍ଣ୍ଣ ମନେ ॥
ଯେସନ ସମୟେ ବୋଇଲା ପିତାମହ ।
କି ବର ମାଗୁ ହୋ କୁମ୍ଭକର୍ଣ୍ଣ କହ ॥
ଶୁଣି ବିଶର୍ବା ତନଏ କରପତ୍ର ଯୋଡ଼ି ।
ବୋଲଇ ସଂସାରେ ମୁଂ ନପାରଇ
ଦୁଃଖପଡ଼ି ॥୩୦
ଦେହ ବହିବାର ନିଦ୍ରାହିଁ ସେ ସୁଖ ।
ଆବର କଥାମାନ ଅଟଇ ବଡ଼ଦୁଃଖ ॥
ଯେବେ ପ୍ରସନ୍ନ ତୁ ହୋଇଲୁ ଗୋସାଇଂ ।
ଦିଅସି ବର ତୁ ନିଚିନ୍ତ ଯେଣେ ହୋଇଂ ॥
ନିଦ୍ରା ସେ ପୀରତି ନରୁଚଇ ଆନ ।
ଅସ୍ତୁ ହୋଉ ବୋଇଲା ଚତୁରବଦନ ॥
ବରପାଇଂ କୁମ୍ଭକର୍ଣ୍ଣ ବିଚାରଇ ପୁଣି ।
ଯେତେ ମନ୍ଦକର୍ମ କଲଇଂ ନ ଜାଣି ॥
ଘୋର ତପ କଲି ମୁଂ ସୁଖ ଭୋଗ ପାଇଂ ।
ବଡ଼ ଦୟା କଲା ମୋତେ ସାବିତ୍ରୀର ସାଇଂ ॥
କାଳେ ସେ ବର ମୋତେ ହୋଇଲା
ପରାପତ ।
ଯେସନେକ ପୂର୍ବରୁ ଅଛଇ ପରାକୃତ ॥୧୦
ଯେସନେକ ବିଚାରି ହୋଇଲାକ ଶାନ୍ତି ।
ବ୍ରହ୍ମା ସହିତେଣ ସୁରଗଣେ ଯାନ୍ତି ॥

ଯେ ଯାହାର ପୁରେ ହୋଇଲେ ପ୍ରବେଶ ।
ଶ୍ରୀ ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ବୋଲନ୍ତି ଅଗସ୍ତି ଶୁଣ ରାମ ରାଏ ।
ମନଦେଇ ଶୁଣ ବିଚିତ୍ର କଥାଏ ॥
ଯହୁଂ ଦେବତାଏ ନିଜପୁର ଗଲେ ।
ବିଶର୍ବାର ତନଏ ତପ ସିଧ କଲେ ॥
ଆନନ୍ଦେ ତିନିଭାଇ ଆସନ୍ତି ବରପାଇଂ ।
ତମାଳ ବନରେ ମିଳିଲେକ ଯାଇଂ ॥
ବିଭୀଷେଣକୁ ବୋଇଲେ ତୁ ପାତାଳକୁ
ଯାଯା ।
ସୁମାଳୀ ଦଇତ ଯେ ଅଟଇ ଆମ୍ଭ ଅଜା ॥
ତାହାକୁ ଜଣାଇ ଥାଠ ଘେନିଆସ ।
ତେବେ ସେ ମାଡ଼ି ବସିବା ଲଙ୍କାଦେଶ ॥
ଶୁଣି ବିଭୀଷେଣ ଗଲା ଅତି ବେଗେ ।
ପାତାଳେ ମିଳିଲା ଯାଇଂ ସୁମାଳୀର ଆଗେ ॥
ବୋଇଲା ଦଶଗ୍ରୀବର ଅଟଇ ମୁଂ ସାନ ।
ବିଶର୍ବାର ତନଏ ମୁଂ ନଉକେଶୀର ନାନ ॥
ନାମ ବିଭୀଷେଣ କୁମ୍ଭକର୍ଣ୍ଣର କନେଷ୍ଟ ।
ତପ କରି ତିନିଭାଇ ତୋଷିଲୁ
ସୁରଶ୍ରେଷ୍ଟ ॥
ପ୍ରସନ୍ନ ହୋଇଣ ବିଧାତା ବରଦେଲା ।
ଜଗତେ ଅଛୟେ ହୋଅସି ବୋଇଲା ॥
ବରପାଇ ଆମ୍ଭେ ଅଇଲୁ ତିନି ଭାଇ ।
ଦଶଗ୍ରୀବ ବୋଇଲେ ତୁମ୍ଭଙ୍କୁ ନେମାପାଇଂ ॥
ଜମ୍ବୋଦୀପ ଭ୍ରଥଖଣ୍ଡେ ରହିଛନ୍ତି ।
ତୁମ୍ଭର ଗଲେ ସେ ଲଙ୍କାକଇ ଯାନ୍ତି ॥
ଶୁଣିଣ ସୁମାଳୀ ହୋଇଲାକ ସଜ ।
ବିଭୀଷେଣକୁ କୋଳେ ଧଇଲା
ଅସୁରରାଜ ॥୭୦
ମୁଖେ ଚୁମ୍ବନ ଦେଇ ଗଉରୋବ କଲା ।
ଅନେକ ଆଶ୍ୱାସି କଥାନ୍ତ କହିଲା ॥
ଚତୁରାଙ୍ଗ ବଳ ସଙ୍ଗତେ ଘେନି ଆୟେ ।
ବିଭୀଷେଣ ସହିତେ ସୁମାଳୀ ମାହାରାଏ ॥
ପାତାଳୁ ବାହାର ହୋଇ ଜମ୍ବୋଦୀପକଇ
ଗଲେ ।

ତମାଳ ବନେ ଯାଇ ରାବଣଙ୍କୁ ଦେଖିଲେ ॥
ରଥୁଂ ଓହ୍ଲାଇଂ ସେ ସୁମାଳୀ ଦଇତ ।
ରାବଣଙ୍କୁ ଯାଇ ସେ କଲାକ କୋଳାଗ୍ରତ ॥
ବୋଇଲା ବାବୁରେ ଧର୍ମ ମୋର ପୁଣ୍ୟ ।
ମାନ ଉଦ୍ଧାରିଲୁ ଦୋହିତା ନନ୍ଦନ ॥୮୦
ବ୍ରହ୍ମା ଯେବେ ତୋତେ ଅଭଏ ବରଦେଲା ।
ବଂଶର ଭାଗ୍ୟ ମୋର ଯେବେ ସେ ଦିଶିଲା ॥
ଶ୍ରୀହରିର ହାଥେ ମୋର ଦୁଇଭାଇ ମଲେ ।
ଚତୁରାଙ୍ଗ ବଳ ଅନେକ କ୍ଷଏ ଗଲେ ॥
ବିକଳେ ପଳାଇ ମୁଂ ପାତାଳେ ଅଛି ଲୁଚି ।
ଲଙ୍କାଗଡ଼ ଛାଡ଼ି ମୁଂ ଅଇଲଇଂ ଘୁଞ୍ଚି ॥
ଏବେ ସେ କଟକେ କୋବେର ରାଜ୍ୟ କରି ।
ବଳେ ଆବୋରି ସେ ଘେନିଲା ମୋର ଶିରୀ ॥
ତୁ ଯେବେ ତହିଂରେ ରହି ରାଜ୍ୟକର ।
ମାତାମହ ଭୂମି ସେ ଅଟଇ ତୁମ୍ଭର ॥୯୦
ମୁହିଂ ସନ୍ୟ ଘେନିଣ ସଙ୍ଗେଣ ତୋର ଥିବି ।
ଦେବତାଏ ଦୁଲ୍ଲଭ ମୁଂ ସାଂଗ୍ରାମ କରିବି ॥
ଅଜାର ମୁଖରୁ ଯେସନେକ ଶୁଣି ।
ଦଶଗ୍ରୀବ ବୀର ବୋଇଲାକ ବାଣୀ ॥
ସେ ମୋର ଜ୍ୟେଷ୍ଟ ଭାଇ ଅଟଇ ସୋଦର ।
କେମନ୍ତେ ଘେନିମି ମୁଂ ତାହାର ନବର ॥
ଯେକ ବାପରୁ ଜାତ ହୋଇଲୁ ପୁତ୍ର ଚାରି ।
ମାତା ସେ ବେଗଳ ସିନା ଅଟଇ ଆମ୍ଭରି ॥
ପର ସମ୍ପଦ ଘେନିମୁଂ ଆମ୍ଭେ ବଳେ ।
ସୋଦର ସମ୍ପଦ ଛଡ଼ାଇବୁ କେଉଂ ଛଳେ ॥
ସୁମାଳୀ ବୋଇଲା ତୁ ଜାଣୁ ଦଶକନ୍ଧ ।
ସୋଦର ଠାରେ ସିନା ଉପୁଜଇ ଦ୍ୱନ୍ଦ୍ୱ ॥
କଶ୍ୟପ ଋଷିଙ୍କର ଦିତି ଅଦିତି ନାରୀ ।
ଅଦିତୀ ଗର୍ଭରୁ ଯେ ଦେବତାଏ ଅବତରି ॥
ଦିତୀର ତନଏ ହୋଇଲେ ଅସୁର ।
ସାବତ ଜନନୀ ଯେକଇ ପିଅର ॥

ତେତେଢ଼େ ତେତେଢ଼େ ଲୋକେ କାଳେ ଦ୍ୱନ୍ଦ୍ୱ କଲେ ।
ସ୍ନେହ ଛାଡ଼ି କାଳେ ଶହସ୍ର ଧଇଲେ ॥
ଦେବେ ଅସୁରେ ହୋଇଲେ ମରାମରି ।
ଯୋଗେ ଅସୁର ବଳ ହୋଇଲେ ସଂଘାରି ॥୧୦
ସୋଦର ବୋଲିଣ ସେ ଧର୍ମକୁ ନ ଡରିଲେ ।
ତେତେଢ଼େ ତେତେଢ଼େ ଲୋକେ ଅନ୍ୟାଯେ ଆଶ୍ରେ କଲେ ॥
ଆବର କଥାଏକ ଶୁଣ ଦଶକନ୍ଧ ।
କଦ୍ରୁ ବନିତା ପୋଏ ପୁଣ କଲେ ଦ୍ୱନ୍ଦ୍ୱ ॥
ସେହି କଶ୍ୟପ ଋଷିଙ୍କର ବେନି ନାରୀ ।
କଦ୍ରୁର ତହୁଂ ସର୍ପମାନେ ଅବତରି ॥
ବିନତା ନନ୍ଦନ ଗରୁଡ଼ ପକ୍ଷୀ ବୀର ।
ଯେକା ପିତାର ସେ ଅଟନ୍ତି କୁମର ॥
ଅହଙ୍କା ଗୁଣ ଘେନି ପୁଣ କଳି କଲେ ।
ଗରୁଡ଼ ହାଥେ ସର୍ପମାନେ ମଲେ ॥୨୦
ସୁଖ ଶିରୀ ସମ୍ପଦ ଯୁବତୀ ଧନରତ୍ନ ।
ଯେଥକଇ ଶରଧା କରନ୍ତି ମହତଜନ ॥
ପାପପୁଣ୍ୟ ବୋଲି ଭୟ ନ କରନ୍ତି ।
ଲାଭ ଅର୍ଥେ ଲୋଭ ହୃଦରେ ଧରନ୍ତି ॥
ତୁ କିମ୍ପା ଦଶାନନ ଯେମନ୍ତ ବିଚାରୁ ।
କୋବେରକୁ ଓପ୍ରୋଧ କେବଣ ଗୁଣେ କରୁ ॥
ସେ ତୋର ଜ୍ୟେଷ୍ଟ ଭାଇ ଅଟଇ ଯୁଗତେ ।
ଆତଯାତ ହୁଅଇ ସେ ବସିଣ ଦେବରଥେ ॥
ଦକ୍ଷ ଗନ୍ଧର୍ବ କିନ୍ନର ଅପକ୍ଷରୀ ।
ବିବିଧ ବିନୋଦ ଲଙ୍କାଯେ ଭୋଗ୍ୟକରି ॥୩୦
ତୁମ୍ଭେ ବନବାସୀ କର୍ମର ବିପାକେ ।
ଦିନ ବଞ୍ଚ ତୁମ୍ଭେ କନ୍ଦମୂଳ ଯୋଗେ ॥
ଯେବେ ତପକରି ପାଇଲ ଯେବେ ବର ।
ପ୍ରାପତ ନିଧି କିମ୍ପା ପାଦେ ଦୂରକର ॥
ସର୍ବଦା ଶରୀରେକି ବଳ ବୟେସ ଥାଇ ।

ସବୁକାଳେ ସମ୍ପଦ ଲୋଡ଼ିଲେ ନ ପାଇ ॥
ଆମ୍ଭେ ଯେ ସେହି ଲଙ୍କାରେ ସୁସ୍ଥେ ଥିଲୁ ।
ବିଶ୍ୱକର୍ମା ରାଇ କଟେକ ଗଢ଼ାଇଲୁ ॥
ବିପତ୍ତିର କାଳେ ତହୁଂ ଅଇଲୁ ପଳାଇ ।
ପାତାଳ ଭୁବନେ ଲୁଚିଲୁ ଯେ ଯାଇଂ ॥୪୦
ସଧ କଲେ କାହିଂ ପାଇବୁ ଆଉ ତାହା ।
କିମ୍ପାଇଂ ଯେସନେକ ବିଚାର କରୁ ବିଂଶବାହା ॥
ଅମୃତ ଭୁଞ୍ଜିବାକୁ ଶୁଚିବନ୍ତ କାହିଂ ।
ତୁ ଯାହା ବୋଇଲୁ ସେ କଥାଯେ ଏଥିନାହିଂ ॥
ଚାଲ ଲଙ୍କା ଯିବା ଅନକୂଳ ଘେନ ।
ଅଜାର ବଚନ ଶୁଣି ବୋଲଇ ଦଶାନନ ॥
ସୁମାଳୀ ଦଇତର ତନଏ ପ୍ରଶସ୍ତ ।
ତାହା ତୁଲେ ଏକାନ୍ତେ ଭାଳଇ ବିଂଶହସ୍ତ ॥
କିହୋ ମାତୁଳ ଯାହା ଅଜାଏ କହିଲେ ।
ଲଙ୍କାଗଡ଼ ମାଡ଼ି ବସ ଯା ବୋଇଲେ ॥୫୦
ତୋହୋର ବିଚାରେ ଯେ କେମନ୍ତ ଯୋଗାଇ ।
କୋବେର ଆମ୍ଭର ଅଟଇ ଜ୍ୟେଷ୍ଟ ଭାଇ ॥
ଘେନିଲେହେଂ ଘେନିପାରିବାଟିକି ଦେଶ ।
ନପୁଣ ଆମ୍ଭେ ତିନିପୁରେ ପାଇବା ଅପଯଶ ॥
ଯେଡ଼େ ଅକର୍ମ ଯେବେ କରିବା ସତ ଛାଡ଼ି ।
ଯେକାବେଳେ ଯେବେ ବସି ପାରିବା ଗଡ଼ମାଡ଼ି ॥
ତେବେ ସେ ଆମ୍ଭର ରହିବ ବଡ଼ପଣ ।
କୋବେରର ଅଛନ୍ତି ଅନେକ ଯକ୍ଷଗଣ ॥
ଦଶାନନ ବଚନେ ବୋଲଇ ପ୍ରଶସ୍ତ ।
ତୁ କିମ୍ପା ଯେସନେକ ବିଚାରୁ ବିଂଶହସ୍ତ ॥୬୦
ବ୍ରହ୍ମାବର ଦେଲା ବର ଜିଣିମୁ ଜଗତ ।
ତୋର ଆଗେ ରହବକି ବିଶ୍ରବାର ସୁତ ॥
ତହିଂକି ଆମ୍ଭେ ଥିବୁ ରଥ ଗଜ ଘେନି ।
ଛତିଶ କ୍ଷଉଣୀ ମୋର ଦଇତ ସଇନି ॥

ବିଷ୍ଣୁକୁ ଅଳପ ସେ ଶଙ୍କା ଆମ୍ଭେ କରୁ ।
ଚଉଦ ଭୁବନେ ଆମ୍ଭେ କାହାକୁ ନ ଡରୁ ॥
ଶୁଣି ଦଶଗ୍ରୀବ ଯିବାକୁ କଲା ଇଚ୍ଛା ।
ଥାଠ ସଜ୍ଜ କର ବୋଲି ଦେଲା ଦୀକ୍ଷା ॥
ଯେ ଯାହାର ଆଉଧ ଘେନିଣ ଆସନ୍ତି ।
ଦଶକନ୍ଧ ତିନିଭାଇ ରଥରେ ବସନ୍ତି ॥୭୦
ସୁମାଳୀ ଅକମ୍ପନ ପ୍ରଶସ୍ତ ଧୂମାକ୍ଷ ।
ନଳ ଅନଳ ଯେ କାକାକ୍ଷ ଲୋହିତାକ୍ଷ ॥
ଯେ ଯାହାର ବାହାନ ଆରୋହିଣ ଯାନ୍ତି ।
ସିନ୍ଧୁତୀରେ ଯାଇଂ ଲଙ୍କାରେ ମିଳନ୍ତି ॥
ବିଶ୍ରବା ଋଷିଙ୍କ ଛାମୁକୁ ନଗଲେ ।
ଉପ୍ରୋଧି ବସିବ ନା ବୋଲିଣ ବୋଇଲେ ॥
ଲଙ୍କା ବାହାର ଦେଶେ ରୁହାଇଣ ଥାଠ ।
ବୁଦ୍ଧିଏ ଭାଳିଲାକ ବିଶ୍ରବାର ଚାଟ ॥
ବୋଇଲା ଆଗ କିମ୍ପା କରିବା ସମର ।
ବୁଝିବାନା ତାହାର କେମନ୍ତ ବିଚାର ॥
ପ୍ରୀତି କରିଣ ମାଗିବାକ ଦେଶ ।
ଭଲେ ନଦେଲେ ପଛେ କରିବା ଅମରାକ୍ଷ ॥୮୦
ଯେମନ୍ତ ବୋଲି ପ୍ରଶସ୍ତକୁ ପେଷି ।
ଭୋ ମାତୁଳ ତୁ ଯାଇଂ କୁବେରକୁ କହସି ॥
ସେ ମୋର ଜ୍ୟେଷ୍ଠଭାଇ ମୁଂ ତାର କନେଷ୍ଠ ।
ବନବାସ କରିଣ ଆମ୍ଭେ ପାଇଲୁ ବଡ଼କଷ୍ଟ ॥
ରହିବାକୁ ସ୍ଥାନ ମୋତେ ନାହିଂ କିଛି ।
ଲଙ୍କାଏ ବସିବାକୁ ମୋ ମନ ମୋହୁଅଛି ॥
ସେ ଧନପତି କୁବେର ପଦ ପାଏ ।
ପୂର୍ବର ପୁଣ୍ୟରୁ ସେ ଦିଗପାଳ ହୋଏ ॥୯୦
ତାହାର ମନ କଲେ ଅନେକ ଠାବ ଅଛି ।
ଲଙ୍କାଗଡ଼ ଖଣ୍ଡି ଯାଉ ମୋତେ ମୂର୍ଚ୍ଛି ॥
ମୁଂ ତାର ଭ୍ରାଥ ମୋତେ ସମ୍ଭାଳିବେ ଭାଇ ।
ମୋହୋର କଥାକି ସେ ତାହାଙ୍କୁ ନ ଲାଗଇ ॥
ଯେସନେକ ବୋଲିଣ କହିବ ତାର ଆଗେ ।
ସେ ଯେବେ କଟେକ ନଛାଡ଼ିବ ଯେଡ଼େ ବାଗେ ॥
ପଛେ ତୁ ବୋଲିବୁ ଯେ ମୋର ବାପ ମହୀ ।
ଝିଆଣିଆ ଅଂଶେ ତ ଦଶଗ୍ରୀବ ହୋଇ ॥
ସ୍ୱଭାବେ ବିଶ୍ରବା ଋଷି ଅଛି ଅର୍ଜ୍ଜି ।
ବାପର ରଣ ଅର୍ଥ ବାଣ୍ଟିଣ ପୋଏ ଭୁଞ୍ଜି ॥୧୦୦
ଦଶକନ୍ଧ ବିଭୀଷେଣ କୁମ୍ଭକର୍ଣ୍ଣ ତିନି ।
ତାହାଙ୍କୁ ନଦେଇ ଭୋଗକରୁ ତୁ ମେଦିନୀ ॥
ଯେତେ ସମୟେ ତୁ ଏଥି କଲୁ ଘର ।
ତେତେ ସମଏ ଯେଥେ ରହିବ ଦଶଶିର ॥
ଭଲେ ନଛାଡ଼ିଲେ ହୋଇବ ମାହାଯୁଦ୍ଧ ।
ବିଶ୍ରବାର ପୋୟେ କରିବେ ସୋଦର ବଧ ॥
ଯେସନେକ ବୋଲି ଜଣାଇବୁ ଯାଇଂ ।
ଭଲେ ଯେବେ କଟେକ ନଛାଡ଼ିବ ଲଙ୍କସାଇଂ ॥
ନୋହିଲେ ଧର୍ମକୁ ଜିଣି କରିବି ସମର ।
କହ ହୋ ପ୍ରଶସ୍ତ ତୁ କୋବେର ଆଗର ॥୧୦
ଦଶଗ୍ରୀବ ବଚନେ ପ୍ରଶସ୍ତ ଚଳିଯାଇ ।
ସୁବର୍ଣ୍ଣମୟେ ଲଙ୍କା କଟକେ ଯାଇ ପାଇଂ ॥
ଦେଖିଲା କୁବେର ଆସ୍ଥାନ କରୁଅଛି ।
ପ୍ରଶସ୍ତକୁ ଦେଖି ଦୂରୁହୁଂ ସେ ପୁଛି ॥
କାହୁଂ ଅଇଲୁ ହୋ କେବଣ ଦେଶ ଚାର ।
ରାକ୍ଷସ ତନୁ ତ ଅଟଇ ତୁମ୍ଭର ॥
ପ୍ରଶସ୍ତ ବୋଇଲା ମୁଂ ସୁମାଳୀର ସୁତ ।
ବିଶ୍ରବାର ଘରଣୀ ନଉକେଶୀର ଭ୍ରାଥ ॥
ଦଶଗ୍ରୀବ ମୋର ଭଗ୍ନୀର ତନଏ ।
ଯତନେଣ ତୋହୋର ତହିଂକି ପଠିଆଏ ॥୨୦
ଘୋର ତପ କରିଣ ପାଇଲାକ ବର ।
ପ୍ରସନ୍ନେ ବର ତାକୁ ଦେଲେକ କୁଶଧର ॥
ଜଗତ ଜିଣିମ ସେ ନିଜ ଭୁଜ ବଳେ ।
କେହି ତାଙ୍କୁ ସମାନ୍ୟ ନୋହିବେ ରବି ତଳେ ॥
ଯେସନେକ ଆଗ୍ୟାଂ ଦେଲେ ବେଦପତି ।
ଶୁଣି ଦଶକନ୍ଧ ପରମ ତୋଷ ମତି ॥
କୁମ୍ଭକର୍ଣ୍ଣ ବିଭୀଷେଣ ସେହୁ ବରପାଏ ।
ତୋହୋର ତହିଂକି ଯେବେ ଠାବ ମାଗିଆଏ ॥
ଗଡ଼ ବାହାରେ ଅଛନ୍ତି ଭାଇ ତିନି ।
ସଙ୍ଗତେ ଚତୁରଙ୍ଗ ବଳ ଅସୁର ସଇନି ॥୩୦
ମୋତେ ବୋଇଲେ ତୁ କୋବେରକୁ କହ ।
ମୋତେ ରହିବାକୁ ଆନ ଠାବ ନାହିଂ ରହ ॥
ସେ ମୋର ଭ୍ରାଥ ଲଙ୍କା ଛାଡ଼ି ଯାଉ ।
ସମଏକ ମୋତେ ନଗ୍ର ଭୋଗ୍ୟ ହେଉ ॥
ଦଶଗ୍ରୀବ ଯେତେକ ସମ୍ବାଦ କହିଥିଲା ।
କୁବେର ଆଗେ ତାହା ପ୍ରଶସ୍ତ କହିଲା ॥
ଶୁଣି ଧନପତିର ନ ଫୁରଇ କିଛି ।
ବିସ୍ମଏ ହୋଇଂଣ ସେ ତବଦ ହୋଇଂଅଛି ॥
ଘଡ଼ିକେ ସମ୍ଭାଷଣା ଦେଲାକ ବିଚାରି ।୪୦
ବୋଇଲା ପିତାକୁ ମୋର ଆସଇ ପଚାରି ॥
ତୁହୋ ପ୍ରଶସ୍ତ ଯେଥେ ରହି ଥାଅସି ।
ମୋର ଆସିବାଯାଏ କାହିଂକି ନଯାଅସି ॥
ଯେତେ ବୋଲିଣ ପ୍ରଶସ୍ତକୁ ବସାଇଂ ।
ପୁଷ୍ପକେ ଆରୋହି ଚଳଇ ନିଧିସାଇଂ ॥
ସୁବଳୟା ଗିରିରେ ପ୍ରବେଶ ହୋଇଲା ।
ବିମାନୁଂ ଓହ୍ଲାଇଂ ପିତାର ପାଶେ ଗଲା ॥
ନମସ୍କାର କରିଣ କହିଲା ଯାବତ ।
ଦଶାନନ କୁମ୍ଭକର୍ଣ୍ଣ ବିଭୀଷେଣ ତିନିଭ୍ରାଥ ॥
ତପ କରିଣ ସେ ଯାଇଂଥିଲେ ପୂର୍ବେ ।
ଲଙ୍କାଗଡ଼ ମାଗିତ ସେ ଆସିଛନ୍ତି ଯେବେ ॥୫୦
ପ୍ରଶସ୍ତ ବୋଲିଣ ସେ ସୁମାଳୀର ସୁତ ।
ସେ ମୋତେ ଉଚବାଚ କହିଲା ବହୁତ ॥
ଦଶକନ୍ଧ ପେଷିଲା ଥୋକାଏ ଦୂରେ ଥାଇଂ ।
ଯେହିକ୍ଷଣି ଲଙ୍କାଗଡ଼ ଛାଡ଼ିଯିବା ପାଇଂ ॥
ପ୍ରଶସ୍ତକୁ ରୁହାଇଂ ଅଇଲି ତୋତେ ପୁଛି ।
ଦଶକନ୍ଧ କିମ୍ପା ଅମଡ଼ା ମାଡୁଅଛି ॥
କୁବେର ବଚନେ ବିଶ୍ରବା ଋଷି କହିଂ ।
ତୁ ହୋ ବଇଶ୍ରବଣ ଛାଡ଼ ଲଙ୍କମହୀ ॥

ସ୍ୱଭାବେ ଦଶକନ୍ଧ ଅଟଇ ତୋର ଭାଇ ।
ଆବର ବିଶେଷେଣ ଦୁଷ୍ଟପଣ ହୋଇ ॥୬୦
ଘେନୁ ସେ ଲଙ୍କା ହୋ ଛାଡ଼ିଣ ତୁହି ଆସ ।
ମୁହିଂ ତୋତେ ଦେବି ଅପୂର୍ବ ଦିବ୍ୟବାସ ॥
କପିଳାସ କନ୍ଦର ଗଣ୍ଡୁକୀ ନଦୀ କୂଳେ ।
ସୁସ୍ୱାଦ ଫଳଫୁଲ ବିପୁନ୍ୟ ଗହଳେ ॥
ଦେବତାଙ୍କ ଆଶ୍ରମ ସେ ସକଳ ଗୁଣେ ଶିରୀ ।
ଅମରାବତୀ କେଟେକ ଯହିଂକି ସମସରି ॥
ପିତାର ବୋଲେ କୁବେର ସନମତ କଲା ।
ନିଶ୍ଚେ ଲଙ୍କାଗଡ଼ ଛାଡ଼ିବି ବୋଇଲା ॥
ନିଜ ଜନନୀ ପଦେ ନମସ୍କାର କରି ।
ନଉକେଶାକୁ ଓଳଗଇ ଚରଣ ଦୁଇ ଧରି ॥୭୦
ସୁମାଳୀ ଦୋହିତା ପୁତ୍ରକୁ କୋଳକଲା ।
ମୁଖେ ଚୁମ୍ବନ ଦେଇଂ ଦେହ ଆଉଂସିଲା ॥
ବୋଇଲା ବାବୁରେ ନଧର ତାର ଦୋଷ ।
ସାନ ଭାଇ ତୋର ସିନା ଅଟଇ ଦଶାଇସ ॥
ମୁହିଂପଛେ ତାହାକୁ ତିଆରିବି ଯାଇଂ ।
ଲଙ୍କାରେ ନରଖିବି ଦେବି ବାହୁଡ଼ାଇଂ ॥
କୁବେର ବୋଇଲା ସେ ନକରିବ ତୋର ବୋଲ ।
ତିନିପୁରେ ପ୍ରତାପୀ ହୋଇବ ମହାମଲ ॥
ଯେବଣ ଦିନେ ବ୍ରହ୍ମା ବର ତାକୁ ଦେଲା ।
ମୁହିଂ ତାହା ଶୁଣିଲିନି କୁବେର ବୋଇଲା ॥୮୦
ନଉକେଶା ବୋଇଲା ତୁ ନଧର ଆନ ମନ ।
ମୁଇଂଯାଇ ପ୍ରବୋଧିବି ଦଶଇ ବଦନ ॥
ଯେତେ ବୋଲି ସଙ୍ଗେ ସୂପଲେଖୀକି ଘେନି ।
ଅନ୍ତରୀକ୍ଷେ ଗଲା ବିଶର୍ବା ଭାବିନୀ ॥
ଯେଥୁ ଅନନ୍ତରେ କୁବେର ଧନପତି ।
ନିଜ ପିତା ପାଦେ ହୋଇଲା ଭଗତି ॥
ମୁନି ବୋଇଲେ ତୁ ନ ବିଚାର କିଛି ।
ଯଦ୍ୟପି ନଉକେଶା ପ୍ରବୋଧି ଯାଉଅଛି ॥
ଯେହୋର ବୋଲ ସେ ନକରଇ ଦଶଶିର ।
ସ୍ୱଭାବେ ପ୍ରକୃତି ତାର ଅଟଇ ଅସୁର ॥୯୦
ତୁ ଯେବେ କପିଳାସ କନ୍ଦରକୁ ଚଳ ।
ମୋହୋର ବୋଲକରି କିଛିହିଂ ନଭାଳ ॥
ଅସୁର ଭୋଗ୍ୟ ହେବ ସେ ଲଙ୍କାଦେଶ ।
ପୂର୍ବର କଥା ହାଦେ ଅଛଇଂ ଭବିଷ ॥
ଆମ୍ଭେ ଯେବେ ଯେ ଭୂମି ଛାଡ଼ିକରି ଯିବୁଂ ।
ମେରୁ ଶିଖରେ ଯାଇ ତପ ଅରଜିବୁ ॥
ନଉକେଶା ଗଲା ସେ ନଆସଇ ଆଉ ।
ଦୋହିତାକୁ ଘେନିଣ ପୁତ୍ର ପାଶେ ଥାଉ ॥
ଯାସି କୋବେର ହୋ କପିଳାସ ଗିରି ।
ଯେତେ ବୋଲି ସଜ ହୋଇଲେ ତପଚାରୀ ॥୧୦୦
ହୋମ ଧେନୁଂ ବଛା କୁଶ ମନ୍ତ୍ର ପୋଥି ।
ଶ୍ରୁବ ପ୍ରୋକ୍ଷଣି ଘୃତ ସମିଧ ପ୍ରଭୃତି ॥
କୃଷ୍ଣାଜିନ ଛାଲ ଦୋହୋରା ହୁତାଶନ ।
ଖଣନ୍ତି କମଣ୍ଡଳ ବିବିଧ ଦ୍ରବ୍ୟମାନ ॥
ଭାଉଦ୍ୱାନଣ ଦୋହିତାକୁ ସଙ୍ଗେ ଘେନି ।
ମେରୁ ଶିଖରକୁ ଚଳିଲେ ମହାମୁନି ॥
ପିତାର ଯାନ୍ତେ କୋବେର ମନେ ଭାଳି ।
ପୁଷ୍ପେକ ରଥ ଚଢ଼ି ବାହୁଡ଼ିଣ ଚଳି ॥
ଲଙ୍କାଭୁବନେ ଯାଇ ହୋଇଲା ପ୍ରବେଶ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥୧୦
ଯେଥୁଅନନ୍ତରେ ଶୁଣ ଗୋ ପାର୍ବତୀ ।
ଶ୍ରୀରାମ ଆଗେ ଯାହା କହିଲେ ଅଗସ୍ତି ॥
ମୁହିଂ ତୋର ଆଗେ ପ୍ରକାଶଇ ସହି ।
ଯାହା ଶୁଣନ୍ତେଣ ଦୁରିତା ହୋଯେ ଦହି ॥
ଯେଥୁଅନନ୍ତରେ କୋବେର ଚଳିଗଲା ।
ଲଙ୍କାପୁରେ ଯାଇଂ ପ୍ରବେଶ ହୋଇଲା ॥
ନବରେ ମିଳିଣ ସେ ଆସ୍ଥାନେ ବିଜେ କରି ।
ପ୍ରଶସ୍ତକୁ ଚାହିଂଣ ବଚନ ପଚାରି ॥
ଶୁଣ ହୋ ମାତୁଳ ଯେ ମୋହର ବାଣୀ ।
ଯେବଣ ଅର୍ଥେ ତୋତେ ପେଷିଲା ତ୍ରିଂଶପାଣି ॥୨୦
ସେ କାର୍ଯ୍ୟ ହୋଇଲା ତୁ ଜଣାଅ ଦଶାନନ ।
ସୁଖେ ଭୋଗ କରୁ ସେ ଯେ ଲଙ୍କାଭୁବନ ॥
ମୁହିଂ ଯହିଂ ତହିଂ କରିବଇଂ ଠାବ ।
ସାନ ଭାଇ ମୋର ଅଟଇ ଦଶଗ୍ରୀବ ॥
ମୁଂ ଯେବେ ତହାକୁ ନ କରିବି କତି ।
ଜଗତ ମୁଖେ ମୁଂ ପାଇବି ଅପଛାତି ॥
ବିଶର୍ବା ଋଷିର ସେ ନ ହୋଇକି ସୁତ ।
ଏପୁରେ ରହିବାର ତାର ଅଟଇ ଯୁଗତ ॥
ସ୍ୱଭାବେ ମାଇକା ଅଂଶେ ଭାଗ ଅଛି ।
ଯେବେ ଶରଧା କଲା ନଉକେଷାର ବଛି ॥୩୦
ହୋଉ ନୃପତି ସେ ରହୁ ଲଙ୍କାପୁରେ ।
ମୁହିଂ ରହିବି ଯାଇଂ କପିଳାସ କନ୍ଦରେ ॥
ତୁହୋ ପ୍ରଶସ୍ତ ଜଣାଅ ଦଶଶିରି ।
ଯେତେ ବୋଲି କୋବେର ସମସ୍ତ ସଜକରି ॥
ରଥଗଜ ଅଶ୍ୱ ପାଦାତି ସକଳ ।
ନଗ୍ର ଛାଡ଼ିବା ଶୁଣି ହୋଇଲେ ବିକଳ ॥
ଯେ ଯାହାର ପଦାର୍ଥ ସମସ୍ତ ସଜକଲେ ।
ପୁଷ୍ପେକ ବିମାନେ ନେଇଣ ଥୋଇଲେ ॥
ରାଜାର ଭଣ୍ଡାରମାନ ରାଣୀ ମାହାଦେଈ ।
ଅମନାତ୍ୟଗଣଙ୍କର ଯିସ ଦ୍ରବ୍ୟ ଥାଇ ॥୪୦
ଯେତେକ ଗନ୍ଧର୍ବ କିନ୍ନରୀ ବିଦ୍ୟାଧରୀ ।
ତେତିଶ କୋଟି ଦେବେ ଯେ ସମସ୍ତେ ବିଜେକରି ॥
ଦଣ୍ଡ ସିଂହାସନ ଚାମର ଶ୍ୱେତଛତ୍ର ।
ଦେବାଙ୍ଗ ଆଭରଣ ଅଳଙ୍କାର ବସ୍ତ୍ର ॥
ବିମାନେ ବସାଇଣ ଉର୍ଦ୍ଧେ ଚଳିଗଲେ ।
ପ୍ରଶସ୍ତ ଦେଖୁ ଦେଖୁ ଲଙ୍କା ତେଜ୍ୟାକଲେ ॥
କପିଳାସ କନ୍ଦରେ ମିଳିଲାକ ଯାଇଂ ।
ଅଳକାନାମେ ପୁର ରଚିଲାକ ତହିଂ ॥
ଗଣ୍ଡୁକୀ ନଦୀକୂଳେ ଅତ୍ୟନ୍ତ ରମ୍ୟଥାନ ।
ତହିଂ ରାଜ୍ୟ କଲା ବିଶ୍ରବା ନନ୍ଦନ ॥ ୫୦

କୁବେର ଯେତେବେଳେ ଛାଡ଼ିଲାକ
ଲଙ୍କଦେଶ ।
ସୁରଗଣମାନେ ପାଇଲେକ ବଡ଼ ତ୍ରାସ ॥
ବୋଇଲେ ଅନ୍ୟାଏ କରିବ ଦଶଶିରି ।
ନିଶ୍ଚଏ ଘେନିମ ଯେ ସ୍ୱର୍ଗପୁର ଶିରୀ ॥
ଯେଥୁ ଅନନ୍ତରେ ଶୁଣ ଦାଶରଥି ।
ଯେତେବେଳେ କୁବେର ଛାଡ଼ିଲା ଲଙ୍କପୁଥି ॥
ତୁଳ୍ଲା ହୋଇଲା ସୁବର୍ଣ୍ଣମୟେ ଦେଶ ।
ଦେଖି ବାହୁଡ଼ିଲା ସୁମାଳୀର ଶିଷ ॥
ଦଶଗ୍ରୀବ ଆଗେ କହିଲାକ ଯାଇଂ ।
ଲଙ୍କାଛାଡ଼ି କୁବେର ଗଲାକ ଆଡ଼
ହୋଇ ॥୬୦
ତୋହୋର ବୋଇଲାର କଥାନ୍ତ କହିଲି ।
ହାନି ଅପଚୟେ ଦେଖାଇ ବୋଇଲି ॥
ଶୁଣି ପରମତୋଷ ହୋଇଲା ଧନେଶ୍ୱର ।
ବୋଇଲା କନେଷ୍ଟ ଅଟଇ ଦଶଶିର ॥
ସୁଖେଣ ସେ ରାଜ୍ୟ କରୁ ଲଙ୍କାପୁରେ ।
ମୁହିଂ ରହିବି ଯାଇଂ କପିଳାସ କନ୍ଦରେ ॥
ପିତାଙ୍କୁ ପଚାରିଣ ବାହୁଡ଼ି ଅଇଲା ।
ମୋତେ ରାଇ ବହୁତ ପୀରତି କହିଲା ॥
ବୋଇଲା ଦଶାନନ ଏହିକ୍ଷଣି ଆସୁ ।
ଶୁଭ ଅନକୂଳରେ କଟକ ମାଡ଼ିବସୁ ॥୭୦
ଯେସନେକ ବୋଲିଣ ସକଳ ସଜ କରି ।
ମୋହର ଚାହୁଂ ଚାହୁଂ ସେ ଗଲା ଅପସରି ॥
ଦଶାନନ ପଚାରଇ ସେ କେବଣ ବାଟେ
ଗଲା ।
ପ୍ରଶସ୍ତ ବୋଇଲା ସେ ଆକାଶେ ବିକ୍ରମି
ଗଲା ॥
ଦଶାନନ ବୋଇଲା ଆକାଶେ କେହ୍ନେ
ଯାଇ ।
ପ୍ରଶସ୍ତ ବୋଇଲା ସେ ଅଛଇଂ ବର ପାଇ ॥
ପୁଷ୍ପେକ ବିବାନେ ସେ ବସାଇ ସମ
ରାଜ୍ୟ ।
ଉର୍ଦ୍ଧ୍ୱରେ ଚଳିଗଲା ବିଶ୍ରବା ତନୁଜ ॥
ଜିଭ କାମୋଡ଼ିଲା ଶୁଣିଣ ଦଶାନନ ।

ବୋଇଲା କୁବେର ହୋ ଜୀବନ ତୋର
ଧନ୍ୟ ॥୮୦
କେବଣ ତପ କରି ପାଇଲୁ ଯେଡ଼େ ବର ।
ସମରାଜ୍ୟ ଘେନି ରଥ ଉଡ଼ଇ ତୋହୋର ॥
ଯେସନେକ ବିଚାରୁ ନଉକେଶୀ ଯାଇ
ମିଳି ।
ସଙ୍ଗେ ସୁପଲେଖୀ ନାମେ ଅଛି ବାଳୀ ॥
ଦେଖିଣ ଦଶାନନ ନମସ୍କାର କଲା ।
ସୁପଲେଖୀକି ନେଇ କୋଡ଼ରେ
ବସାଇଲା ॥
କୁମ୍ଭକର୍ଣ୍ଣ ବିଭୀଷେଣ ଉଠିଲେ ଭାଇ ବେନି ।
ଯହୁଂ ସେ ସନ୍ନିଧେଣ ଦେଖିଲେ ଜନନୀ ॥
ଓଳଗ ମେଲାଇ ପୁଚ୍ଛିଲେ ବାରତା ।
କୁଶଳେ ଅଛନ୍ତିନା ଆମ୍ଭର ନିଜ ପିତା ॥୯୦
ନଉକେଶୀ ବୋଇଲା ନକଲ ତୁମେ ଭଲ ।
ଲଙ୍କା ପୁର କିମ୍ପା କୁବେରଙ୍କୁ ମାଗିଲ ॥
ସେହୁ ଜ୍ୟେଷ୍ଟ ଭାଇ ଅଟଇ ତୁମ୍ଭର ।
ତାହାର ସୁଖ ଭୋଗ କି ନୋହଇ ତୁମ୍ଭର ॥
ଦଶାନନ ବୋଇଲା ତୁମ୍ଭେ ନ ଜାଣ ତୋ
ଅମା ।
ପ୍ରସନ୍ନ ହୋଇ ମୋତେ ବରଦେଲା ବ୍ରହ୍ମା ॥
ତିନିପୁର ସାଧିବି ନିଜ ଭୁଜବଳେ ।
ଛତ୍ରୀସମ ମୋତେ ନୋହିବେ ରବିତଳେ ॥
ତ୍ରିଦଶ ଦେବେ ଥାଇ ବର ମୋତେ
ଦେଲେ ।
ଜଗତେ ଅକ୍ଷୟ ତୁ ହୁଅସି
ବୋଇଲେ ॥୧୦୦
ଯେଡ଼େ ସମ୍ପଦତ ମୁଂ ପାଇଲି ତପ କରି ।
କାହିଂ ରହିବି ମୁଂ କହସି ବିଚାରି ॥
ମାତାମହ ଦେଶ ମୋର ଅଟଇ ଲଙ୍କପୁର ।
ବିଶେଷେ ଆବୋରି ଥିଲା ମୋହର ପିଅର ॥
ଦୁଇ ପ୍ରକାରେଣ ମୋହର ହୋଅଇ ।
କିମ୍ପା ଛାଡ଼ିବି ମୁଂ ଅପୂର୍ବ ଚାରୁ ମହୀ ॥
କୋବେର ଦିଗପାଳ ଅପୂର୍ବ ତାଙ୍କୁ କିସ ।
ଯେ ମୋର ରହିବାକୁ ତ ନାହିଂ ଆନଦେଶ ॥

ଯେବେ ଯେତେ କାଳେ ମାଗିଲି ମେଦିନୀ ।
ତେଜିଗଲା ସେ ସେନେହ ଭାବ
ଘେନି ॥୧୦
କପିଳାସ କନ୍ଦରରେ ତାକୁ ପିତା
ଠାବଦେଲା ।
ଅପ୍ରମାଦେ ଲଙ୍କାଗଡ଼ ମୋହର ହୋଇଲା ॥
ଯହୁଂ ସେ ଦଶକନ୍ଧ କହିଲା ଯେମାନ ।
ଜନନୀ ବୋଇଲା ମୁଂ ଯିବଇ ନିଜ ସ୍ଥାନ ॥
ଯେବେ ତୁ ଲଙ୍କାଭୁବନ ଭୋଗ୍ୟ କର ।
ମୁହିଂ ଖଟିଥିବି ଯାଇ ବିଶ୍ରବା ମୁନିବର ॥
ପ୍ରଶସ୍ତ କହିଲା ଭଗ୍ନୀର ମୁଖ ଚାହିଂ ।
ବିଶ୍ରବା ମୁନିତ ସୁବଳୟାରେ ନାହିଂ ॥
କୁବେର ଯେତେବେଳେ କହିଲେ
ବାରତା ।
ବୋଇଲେ ଦଶଶିରକୁ ଆବୋରି ରହୁ
ମାତା ॥୨୦
ଆମେ ତପ କରି ଯିବୁ ମେରୁ ଶିଖର ।
ଯେତେକ ବୋଲି ଅନ୍ତରୀକ୍ଷେ ଚଳିଲେ
ମୁନିବର ॥
ସଂଗତେ ଭରଦ୍ୱାଜ ଋଷିଙ୍କ ଦୋହିତାକୁ
ନେଲେ ।
ମୋହର ଆଗରେ ଯେହା କୁବେର
କହିଲେ ॥
ଭାଇର ମୁଖରୁ ଯେସନ ବାଣୀ ଶୁଣି ।
ଶୁଣିଣ ବିସ୍ମୟେ ହୋଇଲା ତରୁଣୀ ॥
ପିତା ସୁମାଳୀ ପୁଣି ବହୁତ ତିଆରିଲା ।
ଦଶାନନ ବୋଲକୁ ପ୍ରବୋଧ ସେହୁଗଲା ॥
ଯେଥୁ ଅନନ୍ତରେ ଶୁଣ ରାମ ରାହୁ ।
ପ୍ରଶସ୍ତକୁ ଚାହିଂଣ ବୋଲଇ
ବିଂଶବାହୁ ॥୩୦
ଦିଅସି ଆଗ୍ୟାଂ ବଳ ଯାନ୍ତୁ ଆଗ ହୋଇ ।
ଶୁଭ ଅନୁକୂଳେ ବସିବା ଲଙ୍କା ଭୂଇଂ ॥
ଦଶଗ୍ରୀବ ବଚନେ ଚତୁରାଙ୍ଗ ବଳ ।
ଚାଲ ଚାଲ ବୋଲି ଯେ ଶୁଭଇ ଚହଳ ॥
ତିନି ପୋଏ ଜନନୀ ଦୋହିତା ସହିତେ ।

ଭାଳେଣି ଭାଳନ୍ତି ବସିଣ ଯେକା ରଥେ ॥
ଯେଥୁ ଅନନ୍ତରେ ଚଳଇ ସମଦଣ୍ଡ ।
ବାଦ୍ୟ ବାଜନ୍ତେଣ କମ୍ପଇ ଭୂଅଖଣ୍ଡ ॥
ସ୍ୱର୍ଗେ ଦେବତାଏ ବସି ଭାଳନ୍ତି ଭାଳେଣି ।
ନିଶ୍ଚେଏ ଉପଦର୍ପ କରିବ ବିଂଶପାଣି ॥୪୦
ଦଇତ ବଳ ଆସି ହୋଇଲେ ସର୍ବଗୁଣ୍ଡ ।
ପୁଣି ସମଏ ଦୁଃଖ ପାଇବ ବ୍ରହ୍ମାଣ୍ଡ ॥
ଯେସନେକ ବିଚାର କରି ସୁରଗଣ ।
ଯେଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ଶୁଣ ॥
ଲଙ୍କାଗଡ଼େ ପ୍ରବେଶ ହୋଇଲା ଦଶଶିରି ।
ଶଏ କ୍ରୁଣ କଟକେ ଅସୁର ବଳ ପୂରି ॥
ଦେଖିଲେ ଅପୂର୍ବ ପୁର ସୁବର୍ଣ୍ଣମଯେ ଦେଶ ।
କୁବେରକୁ ପ୍ରଶଂସା କରଇ ଦଶାଇସ ॥
ଘରନ୍ତ ଆବୋରି ରହିଲେ ସର୍ବଜନ ।
ରାଜଗୃହେ ପ୍ରବେଶ ହୋଇଲା
ଦଶାନନ ॥୫୦
ସୁମାଳୀ ରହିଲା ଅନୁରୂପ ଥାନେ ।
ଲଙ୍କା ବିହରନ୍ତି ଅସୁର ସନ୍ୟମାନେ ॥
ଶୁଭଯୋଗ ନକ୍ଷତ୍ର ଗଣାଇ ବାରତିଥି ।
ଦଶଗ୍ରୀବ ଅଭିଷେକ ହୋଇଲା ଲଙ୍କପତି ॥
ଯୁଗ ରାଜା ପଣେ ଧରାଇଲେ ଛତ୍ର ।
ଯେକସ୍ଥାନ ଆଦରି ରହିଲେ ଦତ୍ୟଗୋତ୍ର ॥
ଯେଥୁ ଅନନ୍ତରେ କେତେହେଂ ଦିନ ଗଲା ।
ଦତ୍ୟେକ ଆସି ଲଙ୍କାରେ ପ୍ରବେଶ
ହୋଇଲା ॥
ସଙ୍ଗେ ଦୁହିତା ତାର ଅଛଇ ରୂପବନ୍ତୀ ।
ସୁର ନର ମୁନି ଦେଖିଲେ ମୋହ ଯାନ୍ତି ॥୬୦
କରେ ଗଦା ଘେନିଣ ଭ୍ରମଇ ଅସୁର ।
ଯୋଗେଣ ତାହାକୁ ଯେ ଦେଖିଲା ଦଶଶିର ॥
କନ୍ୟାକୁ ଦେଖି ସେ ମଦନେ ବଶ୍ୟ ହୋଇ ।
ଦତ୍ୟ ଆଗେ ସେ ପଚାରିଲା ଯାଇ ॥
ଭୋ ମହାତମା ତୁ କେବଣ ଦେଶୁ ଆଏ ।
କେ ତୋହୋର ଦେଶ, କେ ତୋହୋର
ବାପ ମାୟେ ॥
କିସ ତୋହୋର ନାମ କେବଣ ଅର୍ଥେ
ବୁଲୁ ।
କେବଣ କାର୍ଯ୍ୟେ ତୁ ଲଙ୍କାକୁ ଅଇଲୁ ॥
ଦଶଗ୍ରୀବ ବଚନେ ବୋଲଇ ଅସୁର ।
ମୋହର ମହିମା ହୋ ବିସ୍ତାର
ତିନିପୁର ॥୭୦
ମଏ ଦଇତ ନାମ ଅଟଇ ମୋହର ।
ଦେଖିଣ ପ୍ରଶଂସା ଯେ କରଇ ସୁରେଶ୍ୱର ॥
ଇନ୍ଦ୍ରର ସଙ୍ଗତେ ପୀରତି ମୋର ଥାଇ ।
ଶଚୀର ବିଳାସ ମୋତେ ବହୁ ସୁଖ ପାଇ ॥
ଧାର୍ମିକ ବୋଲି ମୋତେ ଜାଣିଲେକ ଯହୁଁ ।
ହେମା ଅପକ୍ଷରୀକି ସମର୍ପିଲେ ତହୁଁ ॥
ସେ କନ୍ୟାକୁ ଘେନି ମୁଂ ଅନେକ
ଭୋଗକଲି ।
ସହସ୍ରେ ବରଷ ମୁଂ ନିଶ୍ଚିନ୍ତେ ରହିଲି ॥
କାଳେ ଦୋହିତାଏ ହୋଇଲା ତାହାର ।
ମନ୍ଦୋଦରୀ ନାମ ଅଟଇ ଏହାର ॥୮୦
ଯହୁଁ ସେ ମନ୍ଦ ଯେ ଅଟଇ ଉଦର ।
ସଂକୀର୍ଣ୍ଣ ମଝା ବାଳୀ ଅଟଇ ସୁନ୍ଦର ॥
ଯେଣୁ ଯେହାର ନା ଅଟଇ ମନ୍ଦୋଦରୀ ।
ତିନିପୁରେ ଯେହାକୁ ନାହିଂ ସମସରି ॥
ଅନୁରୂପେ ଭ୍ରଥା ନ ପାଇଲି କାହିଂ ।
ସୁନ୍ଦରପଣେ ଏହାକୁ ସାମାନ୍ୟ ବର ନାହିଂ ॥
ଏଣୁ ପୃଥିବୀ ବୋଲଇ ଅନୁସରି ।
ମୃତ୍ୟୁଲୋକ ସ୍ୱର୍ଗ ପାତାଳ ଆଦିକରି ॥
ଶୁଣି ଦଶଗ୍ରୀବ ବୋଲଇ ବଚନ ।
ଯେ ତୋର ଦୋହିତାକୁ ମୋତେ କର
ପ୍ରଦାନ ॥୯୦
ମୁହିଂ ଦଶାନନ ବିଶ୍ରବାର ସୁତ ।
ସୁମାଳୀ ଦୋହିତା ଗର୍ଭରୁ ଜାତ ॥
ବ୍ରହ୍ମାକୁ ତୋଷିଣ ପାଇଲଇଂ ବର ।
ଅବିଷେକ ହୋଇଲି ଯେହୁ ଲଙ୍କପୁର ॥
ଦିଅସି କନ୍ୟା ହୋ ନ ଭାଳସି କିଛି ।
ମୋତେ ପ୍ରାପତ ଯେ ପୂର୍ବର ଯୋଗ ଅଛି ॥
କହିବାର ବାଗେ ଯେ ନ ଦିଶିଲା ମଦପଣ ।
ମଏଦତ୍ୟ ହୃଦେ କଲାକ ବିଚାରଣ ॥
କେତେ କାଳକ ଯେହାକୁ ବୁଲିବଇଂ
ଘେନି ।
ଏବେହେଂ ତ ପୃଥବୀ ବୁଲିଛି
ବେଲ୍‌ତିନି ॥୧୦୦
ହେନ ବିଶ୍ରବା ଋଷିର ତହୁଂ ଜାତ ।
ରୂପ ଗୁଣେ ସୁନ୍ଦର ମର୍ଯ୍ୟାଦା ମହତ ॥
ଦେବି କନ୍ୟା ବୋଲି ସନମତ କଲା ।
ତକ୍ଷଣେ ଦଶାନନ ନଗ୍ର ମଣ୍ଡାଇଲା ॥
ବିଭାର ବିଧାନ ସଞ୍ଚିଲା ସବୁ ଆଏ ।
ବରବେଶ ତହିଂ ହୋଇଲା ଲଙ୍କରାଏ ॥
ମନ୍ଦୋଦରୀ କି ଯେ କନ୍ୟାବେଶ କରି ।
ମଏଦତ୍ୟ ଯାଇଂ ରାବଣକୁ ବରି ॥
ବିଭାକାଳ ଜାଣି ବିଶ୍ରବା ଅଇଲେ ।
ପୁତ୍ର ଦାରା ଦେଖି ଆନନ୍ଦ ହୋଇଲେ ॥୧୦
ମଏଦତ୍ୟର ଯିସ ଭ୍ରାନ୍ତି ଥିଲା ।
ବିଶ୍ରବାକୁ ଦେଖି ସକଳ ଛାଡ଼ିଲା ॥
ସୁମାଳୀ ତାହାର ପୂର୍ବେ ପ୍ରୀୟା ପ୍ରୀତି ।
ସର୍ବଶୁଭେ ହୋଇଲା ଆସିଣ ପ୍ରାପତି ॥
ପିତାକୁ ଦେଖି ପୁତ୍ରେ ନମସ୍କାର କଲେ ।
ନୌକେଶା ସୂପଲେଖୀ ସମସ୍ତେ ଅଇଲେ ॥
ମୁନିଙ୍କ ଚରଣେ ଯେ ଓଳଗନ୍ତି ଯାଇଂ ।
ଯେଥୁ ଅନନ୍ତରେ ଶୁଣିମା ରଘୁସାଇଂ ॥
କୁଶଳ ପୁଛାପୁଛି ହୋଇଲେ ବେନି କୁଳ ।
ଜଉତିଷ ଜଣାଇଲା ବିଭାର ଅନକୂଳ ॥୨୦
ଆପଣେ ବିଶ୍ରବା ଆଚାର୍ଯ୍ୟ ହୋଇଲେ ।
ଦଶାନନ ମନ୍ଦୋଦରୀ କି ବିଭା
କରାଇଲେ ॥
ଶଙ୍ଖେ ପାଣି ତୋଳି ମଏଦତ୍ୟ ଦେଲା ।
ଯଉତୁକ ବୋଲି ଶକତି ସମର୍ପିଲା ॥
ବୋଇଲା ଏ ଶହସ୍ର ଯାହାକଇ ମାରି ।
ଦେବଦାନେବ ହୋଇଲେ ହୋଇବ
ସଂହାରି ॥
ଯେସନକ ବୋଲି ସମର୍ପିଲା ଶର ।
ଯେଥୁ ଅନନ୍ତରେ ବିଶ୍ରବା ମୁନିବର ॥୩୦
ରାବଣ ଦକ୍ଷିଣକର ମନ୍ଦୋଦରୀ କର ।
ମନ୍ତ୍ରପଢ଼ି କୁଶେ ବାନ୍ଧିଲେ ମୁନିବର ॥
ହୁଳହୁଳି ଶବଦ ଅସୁରୀ ନାରୀଦେଲେ ।

ପିତଳ ବାନ୍ଧିଣ ଯେ କୁଶକୁ ଫେଡ଼ିଲେ ॥
ବରକନ୍ୟାଯେ ଯେ ଗଲେ ନିଜ ବାସ ।
ମଏଦଇତ ମନେ ହୋଇଲା ଉଲ୍ଲାସ ॥
କୁଆଇଂକି ସମଧି ବାହୁଡ଼ିଣ ଗଲା ।
ନିଜ କଟକେ ଯାଇଂ ପ୍ରବେଶ ହୋଇଲା ॥
ବିଶ୍ରବା ମହାମୁନି ପୁତ୍ରକୁ ତିଆରି ।
ସୁମାଳୀକଇଂ ତିଆରିଲେ ରାବଣ ହାଥ ଧରି ॥
ନଉକେଶୀକୁ ବୋଇଲେ ତୁ କଲ୍ୟାଣ
ହୋଇଥାସି ।
ଯେତେ ବୋଲି ମେରୁଶିଖରକୁ ଗଲେ
ଋଷି ॥୪୦
ଯେଥୁ ଅନନ୍ତରେ ଶୁଣଗୋ ହେମବନ୍ତୀ ।
ଶ୍ରୀରାମ ଆଗେ ଯାହା କହିଲେ ଅଗସ୍ତି ॥
ଯେତେବେଳେ ମନ୍ଦୋଦରୀଙ୍କି ଦଶଗ୍ରୀବ
ପାଇ ।
ତାହାକୁ କୋଳେ ଧରି ଅଭିଷେକ ହୋଇ ॥
କୁମ୍ଭକର୍ଣ୍ଣକୁ ବିଭା କରାଇବା ମନ ।
ଯେକ ଦଇତର ନାମ ତ୍ରିଲୋଚନ ॥
ବିଡ଼ୋଜା କନ୍ୟା ତାର ପୁତ୍ରର ଦୋହିତା ।
ରୂପେ ପଟାନ୍ତର ସ୍ୱର୍ଗର ବନିତା ॥
ଅଜା ତ୍ରିଲୋଚନ କୁମ୍ଭକର୍ଣ୍ଣକଇଂ ବରି ।
ଅତି ସମ୍ଭ୍ରମେ ବିଭାବିଧି କରି ॥୫୦
କସମଧ ଦେଶର ଏକଇ ଅସୁର ।
ଭୀଷ୍ମପ୍ରଭା ରାଜା ପ୍ରତାପୀ ତିନି ପୁର ॥
ତାହାର ଦୁଲଣୀ ସେ ସର୍ମା ନାମେ ବାଳୀ ।
ବିଭୀଷେଣକୁ ବିଭାକଲା ମନେ ଭାଳି ॥
ରାବଣ ମନ୍ଦୋଦରୀ କୁମ୍ଭକର୍ଣ୍ଣ ବିଡ଼ୋଜା ।
ସର୍ମାନାମେ କନ୍ୟା ବିଭୀଷେଣର ଭାରିଯା ॥
ପ୍ରଥମ ବିଭାଇ ଅଟନ୍ତି ଯେ ତିନି ।
କାଳେ ହୋଇଲେ ପୁଣ ଅନେକ ଭାବିନୀ ॥
ପୃଥିବୀର ଅସୁରେ ଦୋହିତାନ୍ତ ଦେଲେ ।
ଭୁଜବଳ ପ୍ରତାପ ଦେଖି ଭୟେ
କଲେ ॥୬୦
ଦଶାନନର ତିନି କୋଟି ପଞ୍ଚାଶ ଲକ୍ଷ
ନାରୀ ।
ମନ୍ଦୋଦରୀ କନ୍ୟା ଅଟଇ ମନୋହାରୀ ॥
ଯୁବାକାଳେ ରାବଣ ଯେ ରମିଲା
ତାହାଘେନି ।
ରୂପ ଅନୁରୂପେ ପାଇଲା କାମେନୀ ॥
ସେ ସୁନ୍ଦେରୀ ଗର୍ଭରୁ ପୁତ୍ରେକ ଉପୁଜିଲା ।
ଜନ୍ମ ହୋଇଣ ବଳା କୋପେଣ ଗର୍ଜିଲା ॥
ମେଘ ଘଡ଼ଘଡ଼ି ପ୍ରାଏ ଶୁଭିଲା ଶବଦ ।
ତେଣୁକରି ନାମ ତାର ଦେଲା ମେଘନାଦ ॥
ବାପ ବ୍ରହ୍ମରାକ୍ଷସ ମାତା ଦଇତୁଣୀ ।
ତମରାଗୀ ଗୋଟାଏ ତହୁଂ ଉପୁଜିଲା
ପୁଣି ॥୭୦
ଦିନୁଦିନୁ ବଳା ବଢ଼ଇ ଘନ ଘନ ।
ତେଜ ପ୍ରତାପ ଦିଶଇ ଦିଗପାଳ ସମାନ ॥
ବିଭାରେ ଅସ୍ତ୍ର ଯାହା ମଏ ଦତ୍ୟ ଦେଲା ।
ବ୍ରହ୍ମାର ବରେ ତାହା ଦତ୍ୟ ସାଧ୍ୟ କଲା ॥
ଯେଥୁ ଅନନ୍ତରେ କୁମ୍ଭକର୍ଣ୍ଣ ବୀର ।
କରଯୋଡ଼ି ବୋଲଇ ଶୁଣ ଦଶଶିର ॥
ଯାହା ସେ ବ୍ରହ୍ମା ବର ମୋତେ ଅଛଇ
ଦେଇ ।
ନିଶ୍ଚିନ୍ତ ହୋଇଥିବି ମୁହିଂ ଶୋଇ ॥
ଦିଅ ମୋତେ ତୋଳାଇ ବିଚିତ୍ର ନବର ।
ଶୁଭ ଯୋଗେ ଭୋଗ୍ୟକର ଲଙ୍କପୁର ॥୮୦
ଶୁଣିଣ ଦଶାନନ ମହାରଣାକୁ ରାଇ ।
ଆଗ୍ୟାଂଦେଲା ସେ ମନ୍ଦୋଦରୀ ସାଇଂ ॥
କୁମ୍ଭକର୍ଣ୍ଣ ଶୟନକୁ ନବର କର ନିର୍ଭା ।
ଅପୂର୍ବ ନଗର ଦିଶିବ ମହାଶୋଭା ॥
ଆଗ୍ୟାଂପାଇ ମହାରଣା ଘର ନିର୍ଭାକଲା ।
ନବରତ୍ନେ ମଏ ପୁରେକ ବିରଚିଲା ॥
ଛଅଶ ହାଥ ଲମ୍ବ ଦୁଇଶ ହାଥ ପ୍ରତି ।
ସୁବର୍ଣ୍ଣମୟେ ପୁର ଦୁତୀଅ ବାରସ୍ୱତୀ ॥
ମଣ୍ଡିଅଛି ଘର ନେତ ପାଟ ଘେନି ।
ଫୁଲ ଚାମର ଆବର ବିବିଧ ପଟନୀ ॥୯୦
ଟେରା ମଶହେରୀ ଚନ୍ଦ୍ରାତପ ପ୍ରଭା ।
ଯେମନ୍ତେ ହରଇ ଛଡ଼ରତୁ ପ୍ରଭା ॥
ସେ ମନ୍ଦିରେ ଦିବ୍ୟ ପଲଙ୍କେ ଶେଯାଇଲା ।
ସୁବେଶ ହୋଇ ଯାଇ କୁମ୍ଭକର୍ଣ୍ଣ ଶୋଇଲା ॥
ପାଶେ ଖଟିଛନ୍ତି ଦାସୀ ପରିବାରୀ ।
କେହୁ ଶେତ ଚାମର ଦର୍ପଣମାନ ଧରି ॥
ବ୍ରହ୍ମାବରେ ନିଦ୍ରାଗଲାକ କୁମ୍ଭକର୍ଣ୍ଣ ।
ଯେଥୁ ଅନନ୍ତରେ ରାଏ ଦଶାନନ ॥
ଅକଟେଂକ ରାଜ୍ୟ କଲାକ ଲଙ୍କପୁର ।
ସଙ୍ଗେ ଗୋଡ଼ାଇଥାନ୍ତି ଅନେକ
ଅସୁର ॥୧୦୦
ସମୋଦ୍ର ପାରିହୋଇ ଜମ୍ବୋଦୀପକୁ ଯାନ୍ତି ।
ଋଷିଗୋରୁ ବ୍ରାହ୍ମଣ ପରଜାନ୍ତ ଖାନ୍ତି ॥
ପରଧନ ପରଯୁବତୀ ଧରିଆଣି ।
ଅନ୍ୟାଯେ ଆଶ୍ରେ କଲାକ ବିଂଶପାଣି ॥
ଧର୍ମ ପଛ କରି ଆବୋରିଲା ପାପ ।
ଦୟା ଉପେଖିଣ ଦେଖାଇଲା ଧାପ ॥
ଦେବତାଏ ଭୟେ କଲେ ସ୍ୱର୍ଗପୁରେ ଥାଙ୍ଗ ।
ଅତିହିଂ ଉତୁକଳ ହେଲା ଲଙ୍କସାଇଂ ॥
ଯହୁଂ ସେ ବୋବାଳି ପଡ଼ିଲା ଦଶଦିଗେ ।
ଅପଛାଟି ଧୁନି ସେ ଶୁଭିଲା
ଭୂଅଭାଗେଂ ॥୧୦
ଦଶଗ୍ରୀବର ଦୁଷ୍ଟପଣ ଶୁଣିଲା କୋବେର ।
ତିଆରିବା ନିମନ୍ତେ ପେଷିଲା ଯେକ ଚାର ॥
ସେ ଆସି ଲଙ୍କାରେ ହୋଇଲା ପରବେଶ ।
ଦେଖିଣ ପଚାରଇ ନଉକେଶୀର ଶିଷ ॥
ଦୂତ ବୋଇଲା ମୁଂ କୋବେର ତହୁଂ ଆଏ ।
ବାରତା କହି ତୋର ଭାଇ ପଠିଆଏ ॥
ଶୁଣି ଦଶାନନ ଆସ୍ଥାନୁ ଉଠିଲା ।
ଦୂତକଇଂ ପାଛୋଟି ପହଣ୍ଡଦଶଗଲା ॥
କୋଳକରି ତାକୁ ବସାଇଲା କତି ।
କୁଶଳ ବାରତା ପୁଛଇ ଲଙ୍କପତି ॥ ୨୦
ଦୂତ ବୋଲଇ ସକଳ ତାର ଭଲ ।
ତୁମ୍ଭେ ଦୁଇଭାଇଂ ବାବୁ କେବଣ ତପ
କଲ ॥
ସେ ହେଲା କୋବେର ତୁ ହେଲୁ ଲଙ୍କପତି ।
ଦେବତା ସମାନ୍ୟେ ତୁମ୍ଭେ ଅର୍ଜିଲ ବିଭୂତି ॥
ଯେତ୍ଡେ ସମ୍ପଦ ଗୋଟା ଯେମନ୍ତେ
ରହିଂଥାଇ ।

ତେସନ ବେଭାରେ ପାଳିଣଥିବୁ ମହୀ ॥
ତପକରି ସିନା ପାଇଲ ତୁମ୍ଭେ ଶିରୀ ।
ପାପ ଅରଜିଲେ ଅଳପେ ପ୍ରାଣୀ ମରି ॥
ତୁହୋ ଦଶଗ୍ରୀବ ଶୁଣସି ବଚନ ।
ଯେବଣ କାର୍ଯେ ମୁଂ ଅଇଲି ରାଜନ ॥୩୦
ଭାଇ କୋବେର ପଠିଆଇଲା ମୋତେ ।
ଯିସ ସମାଦିଲା କହଇ ମୁହିଂ ତୋତେ ॥
ଯେତେବେଳେ ତୁ ଅଇଲୁ ଲଙ୍କଦେଶ ।
କୋବେର ମାହାତମା ଗଲାକ କପିଳାସ ॥
ଗଣ୍ଡୁକୀ ନଦୀ ତୀରେ ରଞ୍ଚିଲାକପୁର ।
ଅଳକା ଭୁବନ ନାମ ହୋଇଲା ତାହାର ॥
ରଥଗଜ ଅଶ୍ୱ ଅନେକ ପାଦାନ୍ତି ।
ଦକ୍ଷ କିନ୍ନରୀ ବିଦ୍ୟାଧରୀ ନୃତ୍ୟ ସେ କରନ୍ତି ॥
ଦିନେକ କୋବେର ଯେକା ବନେ ଗଲା ।
ନିର୍ଝର ଘୋରଗିରି କନ୍ଦରେ ପଶିଲା ॥୪୦
ପୁଷ୍ପ ଫଳରେ ଶୋଭିତ ଅଟଇ ତରୁବର ।
ବାବୁ ସେ ରମ୍ୟଥାନ କପିଳାସ କନ୍ଦର ॥
ଦେଖି ପ୍ରଶଂସଇ ବିଶ୍ରବାର ସୁତ ।
ଶୁଦ୍ଧ ରୁପାମୟେ ସେ ଅଟଇ ପର୍ବତ ॥
ଯେସନେକ ବୋଲିଣ ଭିତରକୁ ଗଲା ।
ହରପାର୍ବତୀଙ୍କର ଯେକାନ୍ତ ଦେଖିଲା ॥
ଶିବର ଜଙ୍ଘେ ବସିଅଛନ୍ତି ମାହେଶ୍ୱରୀ ।
ବେନିଭୁଜେ ସ୍ୱାମୀଙ୍କୁ କୋଳାଗ୍ରତ କରି ॥
ଯଉବନ ଭାର ଲଗାଇଅଛି ପାଖେ ।
ହର ଚୁମ୍ବଇ ଯେ ଗିରିଜାର ମୁଖେ ॥୫୦
କଟୀଭାଗ ପରିଯନ୍ତେ ଖସିଅଛି ବସ୍ତ୍ର ।
କାମ ପୀଡ଼ନ୍ତେଣ ଭିଡ଼ଇ ତିଅନେତ୍ର ॥
ମର୍କତ ଶିଳାରେ ବିଜଏ ମହେଶ୍ୱର ।
ଯେମନ୍ତ ସମଏ ମିଳିଲା କୋବେର ॥
ପାରିଜାତେକ ପୁଷ୍ପ ଗହଳ ତରୁଛାଇ ।
ଥିର ଥିର ହୋଇଣ ପବନ ବହଇ ॥
ଗ୍ରୀଷମେ ସୁଶୀତଳ ଅଟଇ ସେହୁ ସ୍ଥାନ ।
ପଶିତ ଭାର୍ଜ୍ଜନ ନୋହଇ କେହୁ ଆନ ॥
ନଜାଣି କୋବେର ଅଜ୍ଞାନ ପଶେଗଲା ।
ଧୂରୁ ଦେଖି ଭଯେ ବାହୁଡ଼ି ଅଇଲା ॥୬୦

ପାର୍ବତୀ ଦେଖିଲେ ଈଶ୍ୱର କୋଳେ ଥାଇଂ ।
ଉଠିଣ ଉଭା ହେଲେ ଲଜ୍ଜା ପାଇ ॥
ପତିଙ୍କି ପଚାରିଲେ କାହାର ସେ ଲୋକ ।
କୋବେର ବୋଲିଣ ବୋଇଲେ ତ୍ରିଅମ୍ବେକ ॥
ପାର୍ବତୀ ବୋଇଲେ ସେ ଅଇଲା କିସ ପାଇଂ ।
କି ତାର ଗ୍ୟାନ ଗୋଚର ମେଳାନାହିଂ ॥
ହର ବୋଇଲେ ସେ ଅଗ୍ୟାନେ ଅଇଲା ।
ଦେଖିବା ମାତ୍ରେକେ ସେ କ୍ଷଣେ ନ ରହିଲା ॥
ଉମା ବୋଇଲେ ତାର ଫୁଟୁ ବେନି ଆଖି ।
ଯେକାନ୍ତ ସ୍ଥାନେ ସେ କିମ୍ପା ଆମ୍ଭକୁ ଆସି ଦେଖି ॥୭୦
ଶୁଣିଣ ସଦାଶିବ ମଉନ ହୋଇଲେ ।
କୋବେର ସମ୍ପଦ ସରିଲା ବୋଇଲେ ॥
ଯେଥୁ ଅନନ୍ତରେ ବୈଶ୍ରବଣ ରାଏ ।
ଉଦବେଗ ମନେ ଅଳକା ପୁରେ ହୋଯେ ॥
ନବରେ ପ୍ରବେଶ ହୋଅନ୍ତେ ଚକ୍ଷୁଫୁଟି ।
ତତକ୍ଷଣେ ଗ୍ୟାନଗୋଚର ବୁଦ୍ଧି ତୁଟି ॥
ସପତ ନିଧି ଆସିଣ ପଚାରିଲେ କଥା ।
କୋବେର କହିଲାକ ନୟନ ବାରତା ॥
ଆନ ଅବିଗୁଣ କିଛିହିଂ ମୋର ନାହିଂ ।
ଲୋଚନ ଅଦୃଶ୍ୟ ମୋର ହୋଇଲା କିସ ପାଇଂ ॥୮୦
ଯେକମାତ୍ର କପିଳାସ କନ୍ଦର ଯାଇଥିଲି ।
ହରପାର୍ବତୀଙ୍କର ଯେକାନ୍ତ ଦେଖିଲି ॥
କୋପେଣ ପାର୍ବତୀ ସେ ଚାହିଂଲେ ମୋତେ ଧୂରେ ।
ଭଏ ଭାଜି ପଳାଇଣ ଅଇଲି ନିଜ ଘରେ ॥
ପ୍ରବେଶ ହୁଅନ୍ତେଣ ମୋର ଚକ୍ଷୁଗଲା ।
ଶୁଣି ଶଙ୍ଖନିଧି ତା ମନରେ ହେଜିଲା ॥
ବୋଇଲେ କୋବେର ହୋ କହିଲୁ କଥା ସତ ।
ପାର୍ବତୀ କୋପ ତୋତେ ହୋଇଲା ଯୁଗତ ॥
ଯେବେତୁ କିଛିହିଂ କଥା ନ ବିଚାର ।

ସେବା କରିଣ ତୁହୋ ମନାଅ ଦେବହର ॥୯୦
ତ୍ରିପୁରାରି ପୁରୁଷ ଯେବେ ପ୍ରସନ୍ନ ହୋଇ ।
ତେବେ ସେ ସୁସ୍ଥ ହେବ ତୋର ଦେହୀ ॥
ଶୁଣିଣ ନିଧିପତି ହେମବନ୍ତକଇ ଗଲା ।
ଗଙ୍ଗାକୂଳେ ରହି ବହୁତ ତପକଲା ॥
ମନବଚନ ଥିରହିଂ କଲାକ ପ୍ରକୃତି ।
ରୁଦ୍ରକଇଂ ଧ୍ୟାନ କଲାକ ନିଧିପତି ॥
ନୀର ଆହାର ଯେ ମଉନ ବ୍ରତ ହୋଇ ।
ଅଭିମାନ ଘେନି ଅଛଇ ଦୁଃଖ ସହି ॥
ଯେମନ୍ତେଣ ଅଷ୍ଟବରଷ ତପ କଲା ।
ପ୍ରସନ୍ନ ହୋଇ ହର ବର ତହିଂ ଦେଲା ॥୧୦୦
ବୋଇଲେ କୋବେର ହୋଇଲୁ ତୃପତି ।
କିମର୍ଥେ ତପକରୁ ଧନପତି ॥
ଶୁଣିଣ ବୈଶ୍ରବଣ ଯୋଡ଼ଇ ବେନିକର ।
ଭୋ ଦେବ ସଦାଶିବ ଅନଗ୍ରହ କର ॥
ଯେ ମୋହର ଲୋଚନ ଅଦୃଶ୍ୟ କିମର୍ଥେ ।
କରସି କାରଣ ପ୍ରଭୁ ବିଶ୍ୱନାଥେ ॥
ହର ବୋଇଲେ ତୋତେ ପାର୍ବତୀ କୋପ କଲା ।
ତେଣୁ ତୋ ଲୋଚନ ଫୁଟିଲା ॥
ଯେବଣ ଦିନେ ତୁ କପିଳାସ ଗଲୁ ।
ଯେକାନ୍ତ ସ୍ଥାନରେ ପୁଣ ଆମ୍ଭନ ଦେଖିଲୁ ॥୧୦
ତେଣୁ କରି ଯେ କଷ୍ଟ ପାଇଲୁ ନିଧିପତି ।
ମୋତେ ସେବା କଲୁ ଯେ ହରିବୁ ଦୁଗତି ॥
ପାର୍ବତୀର ବୋଲ ଯେ ନୋହଇ ପୁଣ ଆନ ।
ଅଳପ ତେଜ ଘେନି ଦିଶିବ ନୟେନ ॥
ଯାଅ ତୋତେ ଚକ୍ଷୁକୁ ଦିଶୁ ପୂର୍ବମତେ ।
ବରପାଇ କୋବେର ଚାହାଂଇ ଉଷତେ ॥
ପ୍ରତକ୍ଷେ ଦେଖିଲା ବିଜୟେ ବିଶ୍ୱନାଥ ।
ବୃଷଭ ବାହାନ ଡମ୍ବରୁ ତ୍ରିଶୂଳ ହସ୍ତ ॥
ମହାଦେବଙ୍କୁ ଦେଖି ଆନନ୍ଦ ନିଧିରାଏ ।

ପୁଣ ପୁଣ ଚରଣେ କରଇ ବିନଏ ॥ ୨୦
ଶଙ୍କର ବୋଇଲେ ତୁ ହୁଅସି କଲ୍ୟାଣ ।
କଥାଏ କହିବା ତୋତେ ଯେକ ମନେ
ଘେନ ॥
ଦଶାନନ ତୋହୋର ଅଟଇ ସାନଭାଇ ।
ତାହାର ଭଲେ ଥିବାରକି ତୋତେ ନ
ଯୋଗାଇ ॥
ତୁ ତାହାର ପ୍ରୀତିକି ନୋହୁ ଧନେଶ୍ୱର ।
କିମ୍ପାଇ ନ ତିଆରୁ ଭାଇକୁ ତୋହୋର ॥
ଦେବଗଣେ ତାହାକୁ ଚିନ୍ତୁଥାନ୍ତି ମନ୍ଦ ।
ଯେକଥା ବାରତା କି ନପାଇ ଦଶକନ୍ଧ ॥
ଅନ୍ୟାଏ ଉପଦର୍ପ କରଇ ଯେଣେତେଣେ ।
ନିକଟ ହୋଇଲାନି ନାଶ ଯିବା
ଯେଣେ ॥୩୦
ଯେବେ ତୁ ତାହାକୁ ପଠିଆଅ କହି ।
ଦଶଗ୍ରୀବକୁ ଯେବେ ହିଂସା ତୋର ନାହିଁ ॥
ଯେତେ ବୋଲି ସଦାଶିବ ବିଜେ
କରିଗଲେ ।
ଚକ୍ଷୁ ଦାନ ପାଇ କୁବେର ଅଇଲେ ॥
ଅଳକା ନଗରେ ହୋଇଲା ପରବେଶ ।
ମୋତେ ଯେକାନ୍ତେ ସେ ହକାରିଲା ପାଶ ॥
ବୋଇଲା ଲଙ୍କାକୁ ତୁ ଏହିକ୍ଷଣି ଯିବୁ ।
ଭାଇକି ଯାଇ ମୋର ସମ୍ବାଦି କହିବୁ ॥
ଭଲ ଛାଡ଼ି କିମ୍ପା ମନ୍ଦ ବାଟେ ଚାଲଇ ।
ଋଷିପୁତ୍ର ହୋଇ ଗୋରୁ ବ୍ରାହ୍ମଣ
ଭକ୍ଷଇ ॥୪୦
ଯେତେ ବୋଲି ଦୂତ ସମସ୍ତ କହିଲା ।
କୋବେର ଯେତେକ ସମ୍ବାଦ ଦେଇଥିଲା ॥
ଶୁଣି ଦଶାନନ କମ୍ପିଲାକ ରାଗେ ।
ହିତ କହିଲେଣ ବୁଝିଲା ବଇରାଗେ ॥
ଓଷ୍ଠ ଦନ୍ତଚାପି ତରାଟିଲା ଆଖି ।
ବିଭୀଷେଣ ପ୍ରଶସ୍ତ ଡରିଲେ ତାହା ଦେଖି ॥
ଦୂତକୁ ଚାହିଁଣ ବୋଲଇ ଦଶଶିରି ।
କପଟେଣ ଆସିଅଛି ଭେଦାଭେଦ କରି ॥
ଅନେକ କଥା ମୋତେ ଦେଖାଇ କହିଲୁ ।
ପୁତ୍ର ଭାରିଯାରୁ ତୁ ଅଧିକ ହୋଇଲୁ ॥୫୦
ନାନା ପ୍ରକାରେ ତୁତ ତିଆରିଲୁ ବସି ।
କଥାନ୍ତ ଦେଖାଇ କହିଲୁ ବିଶେଷି ॥
ଯେ ତୋହୋର ଜୀବନ ଘେନିମଇ ଆଜ ।
ଯେବେ ତୋତେ ପେଷିଲା ଅଳକାପୁର
ରାଜ ॥
ତାହା ସହିତେଣ କରିବଇଁ ତୋତେ ନାଶ ।
ମୋହୋ ଛାମୁକୁରେ ପୁରୁଷାର୍ଥ କହିଆସ ॥
ଈଶ୍ୱର ଶାଖା ତୁମ୍ଭର ହୋଇଅଛି ବୋଲି ।
କେତେ ତାହି ତାହି କହୁଅଛ ପେଲି ॥
ଲଙ୍କାଗଡ଼ ଛାଡ଼ି ସେ କପିଳାସେ ରହିଲା ।
ସେହିଦିନୁ ମୋତେ ଅହନ୍ତା ବହିଲା ॥୧୦
ବଡ଼ପଣ ତାହାର ପଠିଆଇଅଛି ତୋତେ
କହି ।
ଯେମନ୍ତ ଡରାଇଲେକି ଡରଇ ଲଙ୍କସାଇଁ ॥
ତୁଚ୍ଛା ନଗ୍ରଛାଡ଼ି ସବୁ ଦ୍ରବ୍ୟ ବହିନେଲା ।
ଯେବେକି ସେମାନ ପ୍ରାୟେକ ମଣିଲା ॥
ବଡ଼ଭାଇ ବୋଲି ସହିଣ ତାକୁ ଥିଲି ।
ଯେବେ ନସହଇ ଅଭାବ ପାଇଲି ॥
ଦଶାନନ ବଚନ ଶୁଣିଣ କୋପଭର ।
କୋବେରର ଦୂତ କହଇ ଉତ୍ତର ॥
ବୋଇଲା ଦଶଗ୍ରୀବ ହୋଇଲୁକି ବାଇ ।
ବଇଶ୍ରବଣ ତୋହୋର ଅଟଇ
ଜ୍ୟେଷ୍ଠଭାଇ ॥୭୦
ତୋହୋର ବୋଲେ ସେ ଲଙ୍କ ଛାଡ଼ିଗଲା ।
ତାହା ଦେହେ ତୋତେ ନାହିଁ ମନ୍ଦକଲା ॥
ତୋହୋର କଥା ପଡ଼ନ୍ତେ ସଭାରେ
ପ୍ରଶଂସି ।
ତୋତେ ବିମୁଖ ତାର ମନେଣ ନପଶି ॥
ଆମ୍ଭରି ଶୁଣିଲା ଅଛି ଅନେକ ବେଳ ।
ତୋତେ ପ୍ରଶଂସା କରଇ ଧନପାଳ ॥
ମୋତେ ପେଷିଲାକ ତୋତେ ତିଆରିବା
ପାଇଁ ।
ହିତ ଖଳ କଥା ନ ବୁଝୁ ଲଙ୍କ ସାଇଁ ॥
ଯେବେ ସେ ଜାଣିଲି ତୋହୋର ଦୁଷ୍ଟପଣ ।
ଶୁଣିଣ ସିଂଘାସନୁ ଉଠିଲା ରାବଣ ॥୮୦
ଛୁରୀ ଖଣ୍ଡା ଯାହା ହାଥରେ ଦେଇଥିଲା ।
କୋପେଣ ତାହା ତହୁଁ ଖଡ଼ଗ ଘେନିଗଲା ॥
ଆପଣେ ରୋଷଭରେ ମାଇଲାକ ଟୋଳି ।
ଦୂତର ବେକବାଟେ ଖଣ୍ଡାଗଲା ଗଳି ॥
ଛିଡ଼ିଣ ମୁଣ୍ଡଗୋଟି ପଡ଼ିଲା ଭୂମିତଳେ ।
ପ୍ରାଣ ପୁରୁଷ ବାହାର ହୋଇଲା ତତକାଳେ ॥
ମୁଣ୍ଡ ତାର ଛିଡ଼ନ୍ତେ ରକତ ବାହାର ।
ପିଠି କଟିକି ମାଡ଼ିପଡ଼ିଲା ଶ୍ୱରୀର ॥
ଦୂତକୁ ମାରି ରାଯେ ସିଂହାସନେ ବସି ।
ଭୃତ୍ୟଙ୍କର ହସ୍ତରେ ସେ ସମର୍ପିଲା ଅସି ॥୯୦
ଅସୁରଙ୍କୁ ଚାହିଁ ବୋଇଲା ଲଙ୍କପାଳ ।
ଆବର ତୁମ୍ଭେମାନେ କିସ କିସ ଭାଳ ॥
ଦକ୍ଷଙ୍କର ମାଂସ ତୁମ୍ଭେ ଭୁଞ୍ଜିବ ସୁଖପାଇ ।
ଏହିକ୍ଷଣି ସର୍ବେ ଆସ ସଜହୋଇଁ ॥
କପିଳାସ କନ୍ଦରକୁ କରିବା ଗମନ ।
କୋବେରକୁ ଜିଣି ଅଣିମା ପୁଷ୍ପକ ବିମାନ ॥
ତେବେ ସେ ପ୍ରତାପୀ ଲଙ୍କେଶ୍ୱର
ବୋଲାଇ ।
ଦେବରଥ ଚଢ଼ି ଯେବେ ତ୍ରିଭୁବନ ଦଳଇ ॥
ଯେତେ ବୋଲି ରାଏ ଭିତରକୁ ଗଲା ।
ମାଜଣା ମୋଣୋହି ତତକ୍ଷଣେ
ସାରିଲା ॥୧୦୦
ସୁବର୍ଣ୍ଣ ରଥ ଚଢ଼ିଣ ହୋଇଲା ବାହାର ।
ଚତୁରାଙ୍ଗ ବଳ ସଙ୍ଗରେ ତାହାର ॥
ଧୂମାକ୍ଷକୁ ଘେନିଣ ପାଞ୍ଚ ଅମନାତ୍ୟ ।
ଶୁକ ସାରଣ ମୋହୋଦର ପ୍ରଶସ୍ତ ॥
ବିଭୀଷେଣକୁ ରୁହାଇଲା କଟେକ
ରକ୍ଷାକରି ।
ସୁମାଳୀକି ଅନମିତେ କହିଲା ତିଆରି ॥
ବନନଦୀ ପର୍ବତ ବହୁତ ଲଙ୍ଘିଗଲା ।
କପିଳାସ କନ୍ଦରେଣ ପ୍ରବେଶ ହୋଇଲା ॥
ନିଶାଣର ଘାଏ କମ୍ପିଲା ତିନିପୁର ।
ଅଳକା ପୁରେ ଥାଇ ଜାଣିଲା
କୋବେର ॥୧୦

ଚାର ଜଣାଇଲା ଶୁଣିମା ଧନପତି ।
ଦଶଗ୍ରୀବ ଭାଇ ତୁମ୍ଭ କଲାକ ଅନୀତି ॥
ଯେବଣ ଚାରକୁ ପେଷିଲୁ ତାର ହିତେ ।
ନବୁଝି ଅସୁର କୋପିଲା ପାପଚିତ୍ତେ ॥
ଖଡ଼ଗ ଘେନିଣ କାଟିଲାକ ତାର ମୁଣ୍ଡ ।
ତାହାକୁ ମାରିଣ ଯେ ତୋତେ କଲା ଦଣ୍ଡ ॥
ରାକ୍ଷସ ବଳ ହାଦେ କଳଣା ନଯାଇ ।
କପିଳାସ କନ୍ଦରେ ଉଠିଲା ତୋର ଭାଇ ॥
ଯେହିକ୍ଷଣି ଅନର୍ଥ କରିବ ପୁରେ ପଶି ।
ଶୁଣି ଧନପତି ବିସ୍ମୟେ ହୋଇ ବସି ॥ ୨୦
ମନେ ବିଚାରଇ ମରିବ ମୋର ଭାଇ ।
ଯେଡ଼େ ଅନ୍ୟାୟେକି ଭଲେ ପାର ଯାଇ ॥
ଯେସନେକ ବୋଲି ରାଇଲା ଦକ୍ଷଗଣ ।
ବୋଇଲା ଅସୁରଙ୍କ ସଙ୍ଗରେ କର ରଣ ॥
ପର୍ବତକୁ ଉଠାଇ ନଦିଅ କଦାଣ୍ଟିତେ ।
କରିବ ସମର ସେ ଭାଜନ୍ତି ଯେମନ୍ତେ ॥
ଧନପତି ଆଗ୍ୟାଂରେ ଦକ୍ଷଗଣ ସଜ ।
ଯେସନ ସମୟେ ଆସି ମିଳିଲା ଦନୁଜ ॥
ଦକ୍ଷମାନେ ବୋଇଲେ ଶୁଣହୋ ଦଶଶିରି ।
ଯେମନ୍ତ ଅନ୍ୟାଏଣ ନଥାଏଟି ଶିରୀ ॥
କୋବେର ତୋହୋର ଅଟଇ ଜ୍ୟେଷ୍ଠ ଭାଇ ।
ତିଆଗିବା ନିମନ୍ତେ ତୋତେ ଦୂତ ପଠିଆଇ ॥
ତୁ ତାହା ନବୁଝି ମାଇଲୁ ଦୁଷ୍ଟପଣେ ।
ଯେଥକୁ ଅଇଲୁତୁ କେବଣ କାରଣେ ॥
ଯେ ଦେବ ଆସନ ସପତନିଧି ଥାନ ।
ଯେଥେ ଉପଦର୍ପ ନକର ଦଶାନନ ॥
ସମର କଲେ ହୋ ତୋତେ ଜୟନାହିଁ ।
ଜ୍ଜେଷ୍ଠ ଭାଇକି ଜିଣିଲେ ପୌଉରୋଷ ଅଛି କାହିଁ ॥
ଯାଅ ତୁ ବାହୁଡ଼ି ଆମ୍ଭର ବୋଲ ଘେନି ।
ଯେଘାନ୍ତିଂ ସମର କଲେ ପାଇବୁଟି ହାନି ॥୪୦
ଶୁଣି ଦଶକନ୍ଧ କୋପେ ଥରହର ।
ଖଡ଼ଗ ଝଳକାଇ ସେ କହଇ ଉତ୍ତର ॥
ବୋଇଲା ଦକ୍ଷଗଣ ଆରେ ପଳାଅ ପ୍ରାଣଘେନି ।
ଯେହିକ୍ଷଣି ସମସ୍ତେ ଯିବ ସଞ୍ଜୀବନୀ ॥
ଲଙ୍କାର ସମ୍ପଦ ବଳେ ଆଣିଅଛ ।
ପର ଆଏ ପାଇଣ ବୋଲଉଛ ଦକ୍ଷ ॥
ଯେତେ ବୋଲି ଅସୁର ଚାହିଁଣ ଆଗ୍ୟାଂ ଦେଲା ।
ନଗ୍ର ଉଜାଡ଼ି ଦକ୍ଷନ୍ତ ମାରସି ବୋଇଲା ॥
ଶୁଣି ଦତ୍ୟବଳ ମାଇଲେ କୋପଭରେ ।
ଆୟୁଧ ପିଟିଲେ ନେଇଂ ଦକ୍ଷଙ୍କ ଉପରେ ॥୫୦
କୋବେର ସଇନି ମାରନ୍ତି ଶସ୍ତ୍ର ଘେନି ।
ପଡ଼ିତାଳ ପାଇ ପୁଣ ଉଠିଲା ବହନି ॥
ରଥେ ରଥେ ଗଜେ ଗଜେ ହୋଇଲେ ମରାମରି ।
ରାଉତେ ରାଉତେ ପାଦାନ୍ତି ପୟେକାରି ॥
ଚତୁରାଙ୍ଗ ବଳ ସମରେ ଗରୁ ଟାଣ ।
ମନ୍ତ୍ରୀଙ୍କର ସଙ୍ଗରେ ମନ୍ତ୍ରୀ କଲେ ରଣ ॥
ବହିଲା ରକତନଦୀ ରଣ ଭୂଇଂ ।
ମଡ଼ା ପଡ଼ିଲେଯେ କୁଡ଼ କୁଡ଼ ହୋଇଂ ॥
ଦଶାନନ ସନ୍ୟ ଭାଜିଲେ ମହାଯୁଦ୍ଧେ ।
ଘୁଞ୍ଚି ପଶିଲେ ଆପଣା ସନ୍ୟ ମଧ୍ୟେ ॥ ୬୦
ଦେଖି ଆଗଭର ହୋଇଲା ବିଂଶକର ।
ଯୁବାବଏସ ତାର ପ୍ରଥମ ସମର ॥
ମୃଗପଲଙ୍କୁ ଯେହ୍ନେ ଆକ୍ରୁଷଇ ବ୍ୟାଧ ।
ତେସନେକ ଦଶଗ୍ରୀବ ଦକ୍ଷଙ୍କର ମଧ ॥
ମାହାଘୋର ସଂଗ୍ରାମ କଲାକ ବିଂଶପାଣି ।
ଅନେକ ଦକ୍ଷସନ୍ୟ ଲୋଟିଲେ ଧରଣୀ ॥
ଲଙ୍କପତି ଅଙ୍ଗ ରକତେ ଜର ଜର ।
କୁବେର ସଇନିକୁ ମାଇଲା ତୀକ୍ଷ ଶର ॥
ରାଗେଣ ବିଂଶବାହୁ ଅନେକ ଯୁଦ୍ଧ କଲା ।
କୁବେର ଆଗରେ ଯାଇ ଡଗର କହିଲା ॥୭୦
କାଳ ଦେବନ୍ତା ଜାଣି ଦଶାନନ ବୀରେ ।
ଭୋ ଦେବ ଧନପତି ବିଷମ ସମର ॥
ଶୁଣି ବଇଶ୍ରବଣ ପୁଣିହିଂ ଥାଠ ପେଷି ।
ଚାରି ସହସ୍ର ବଳ ମିଳିଲେକ ଆସି ॥
ଦେଖିଣ ପଉଲସ୍ତି ଗଦାଏ ମାଇଲା ।
ଚାରି ସହସ୍ର ବଳ ଯେକା ଶସ୍ତ୍ରକେ ପଡ଼ିଲା ॥
ଦେଖି ଦେବତାଏ ବିସ୍ମୟେ ହୋଇଲେ ।
ଧନ୍ୟ ଦଶମାଥ ବୋଲିଣ ବୋଇଲେ ॥
ଯେତେବେଳେ ପଡ଼ିଲେ ଚାରି ସହସ୍ରକ ଦକ୍ଷ ।
ଆବର ସନ୍ୟମାନେ ମିଳିଲେ ପ୍ରତକ୍ଷ ॥୮୦
ବିଷମ ରଣ ଦେଖି ଭାଜିତ ମନକଲେ ।
ଅସୁରେ ପିଠିଆଇ ଗୋଡ଼ାଇ ମାଇଲେ ॥
ମୋହୋଦର ସହସ୍ରେ ଦକ୍ଷ ରଣେ ମାରି ।
ପ୍ରଶସ୍ତହିଂ ସମରେ ସହସ୍ରେ ନିବାରି ॥
ଧୁମାକ୍ଷ ମଣିଭଦ୍ର ହେଲେ ଭେଟାଭେଟି ।
କୋପଭର ହୋଇଣ ଗଦାୟେକ ପିଟି ॥
ଘଡ଼ିଏ ପରିଯନ୍ତେ ରହି ଯୁଦ୍ଧ କଲେ ।
ବାହାକାଣ୍ଡି ନୋହିଲା ନିସତ ହୋଇଲେ ॥
ମଣିଭଦ୍ର ବୀର ମାୟା ଯୁଦ୍ଧ କଲା ।
ମୁଣ୍ଡକୁ ଦେଖାଇଣ ଗୋଡ଼କୁ ପିଟିଲା ॥୯୦
ଗୋଡ଼ରେ ବାଜନ୍ତେଣ ପଡ଼ିଲା ଧୁମାକ୍ଷ ।
ଦେଖି ଉଗାଳିଲା ନଉକେଶୀର ବକ୍ଷ ॥
ମଣିଭଦ୍ର ଆଗରେ ଉଗାଳିଲା ଯାଇଂ ।
ଧୁମାକ୍ଷ ଉଠିଲା ଚଇତନ ପାଇ ॥
ଦଶାନନକୁ ଦେଖିଣ ମଣିଭଦ୍ର ବୀର ।
ତୀକ୍ଷ ଶକତିଏ ଧଇଲାକ କର ॥
ମନ୍ତିଣ ମାଇଲା ଯେ ଆଗକୁ ଉଗ୍ରୁଇଂ ।
ଗଦାରେ ଛେଦିଲା ତାହା ମନ୍ଦୋଦରୀ ସାଇଂ ॥
ଦେଖିଣ ପଳାଇଲା ମଣିଭଦ୍ର ବୀର ।
କୋପେଣ ଗୋଡ଼ାଇ ଅଛଇ ଦଶଶିର ॥୧୦୦
ରାଜାର ନବରେ ପଶିଲାକ ଯାଇଂ ।
ତାହାର ସଙ୍ଗରେ ପଶିଲା ଲଙ୍କସାଇଂ ।
ଚନ୍ଦ୍ରସୂର୍ଯ୍ୟ ଅଛନ୍ତି କୋବେର ଦ୍ୱାରପାଳ ।
ଦଶାନନଙ୍କଇ ଦେଖି ପାଡ଼ିଲେ ଅନର୍ଗଳ ॥

କୋପେଣ ଦଶାନନ ତ୍ରୋଣା ଖମ୍ଭ କାଢ଼ି ।
ଚନ୍ଦ୍ର ସୂର୍ଯ୍ୟକଇ ସେ ମାଇଲା ଭଏ ଛାଡ଼ି ॥
ଦେଖିଣ ଦ୍ୱାରପାଳ ଭଏ ପଳାଇଲେ ।
କୁବେର ଆଗେ ଯାଇଂ ତଗରେ କହିଲେ ॥
ନବରେ ପଶିଲାଟି ଦଶାନନ ରାଏ ।
ଭୋ ଧନପାଳ ସ୍ୱାମୀ କରସି ଉପାଏ ॥୧୦
ଶୁଣିଣ ତରସ୍ତ ହୋଇଲା ଧନପତି ।
ମଣିଭଦ୍ରକୁ ବୋଇଲା ତୁ କିମ୍ପା କରୁ ଭୀତି ॥
ଦକ୍ଷକଙ୍କର ମଧ୍ୟେ ତୁ ଅଟୁ ବଳୀଆର ।
ସଦାଶିବର ବରେ ତୁ କାହାକୁ ନ ଡର ॥
ଯେ ଦଶଗ୍ରୀବ କିସ ତାହାର ବଳ ।
ତୋତେ ଯେ ସମାନ ନୋହନ୍ତି ଦିଗପାଳ ॥
ତୋହୋ ପରା ବୀର ରାବଣକୁ ଡରୁ ।
ଆପଣେ ଆପଣେ କିମ୍ପା ବିଚାର ନ କରୁ ॥
ମଣିଭଦ୍ର ବୋଇଲା ଅଇଲି ଯିସ ଅର୍ଥେ ।
ଯେ ମୋର ବାଣ ହାଦେ ନ ଯାଇ ବିଅର୍ଥେ ॥୨୦
ଯୁଦ୍ଧ କଲେ ଅବଶ୍ୟ ମାରିବି ଦଶାନନ ।
ସୋଦର ଭାଇ ତୋର ଅଟଇ ସେ ସାନ ॥
କାଳେ ପୁଣ କୋପ କରୁ ଧନପତି ।
ଯେହା ପୁଚ୍ଛିଣ ଅଇଲି ତୋର କତି ॥
କୋବେର ବୋଇଲା ତୁ ହୋଇଲୁ କି ବାଇ ।
ସେ ଯେବେ ଅଟଇ ମୋହୋର ସାନଭାଇ ॥
ଲଙ୍କା ଘେନିଲା ଦୂତକୁ ମାଇଲା ।
ଆବର ବିଶେଷେଣ ଯେଥକୁ ଧାଡ଼ିଦେଲା ॥
ଦକ୍ଷବଳ ମୋର ମାଇଲା ଅପାର ।
ଅଳକା ଭୁବନ ମୋର କଲା ନାରଖାର ॥୩୦
ଭାଇ ହୋଇଲେ କି ଯେତେ ଦୂର ବରି ।
ସୋଦର ନୁହଇ ସେ ଅଟଇ ବଇରୀ ॥
ବେଗେ ମାରସି ହୋ ନାହିଂ ମୋର ଛଳ ।
ତୋତେ ଅନକୂଳ ହେଉ ଧର୍ମବଳ ॥
ଦୁଷ୍ଟ ଲୋକକଇ ମାଇଲେ ନାହିଂ ଦୋଷ ।
ସ୍ୱର୍ଗରେ ଉପୁଜଇ ସାଧୁ ସାଧୁ ଘୋଷ ॥
କୋବେର ମୁଖରୁ ଯେସନ ଉତ୍ତର ।
ଶୁଣିଣ କୋପକଲା ମଣିଭଦ୍ର ବୀର ॥
କରେ ଶସ୍ତ୍ର ଧରି ଧାଇଂଲାକ ରାଗେ ।
ଭଏ ତାର କେହି ନରହିଲେ ଆଗେ ॥୪୦
ପଛେ ବହୁତ ଯେ ଗୋଡ଼ାଇଛନ୍ତି ବଳ ।
ସ୍ୱର୍ଗେ ଥାଇଣ ଦେଖନ୍ତି ଦିଗପାଳ ॥
ବିଚାର କରନ୍ତି ସେ ସକଳ ସୁର ।
ମହାଘୋର ସମର ଆଜ କରିବ ମଣିଭଦ୍ର ବୀର ॥
ଦେବେଣ ଅଜଏ ଅଟଇ ଦକ୍ଷପତି ।
ଯେହିକ୍ଷଣି ଦଶଗ୍ରୀବର ସାରିବ ବିଭୂତି ॥
ଯେହାର ମୁଖକୁ କି ଭାର୍ଜନ ଲଙ୍କସାଇଂ ।
ତିନିପୁରେ ଯାହାକୁ କ୍ଷତ୍ରୀସମ ନାହିଂ ॥
ଯେତେ ବୋଲି ଦେବେ ପୁଷ୍ପ ବୃଷ୍ଟି କଲେ ।
ଦଶାନନ ପ୍ରାଣ ହରସି ବୋଇଲେ ॥୫୦
ତେବେ ସେ ସ୍ୱର୍ଗରେ ସୁସ୍ଥେ ଆମ୍ଭେ ଥାଉଂ ।
ତୋହୋର ପ୍ରସାଦେ ଯେଡ଼େ ସୁଖ ପାଉ ॥
ତୁହୋ ମଣିଭଦ୍ର ଦକ୍ଷଙ୍କ ଈଶ୍ୱର ।
ଦେବ କାର୍ଯ୍ୟ ନିମନ୍ତେ ଅସୁରନ୍ତ ମାର ॥
ଯେସନେକ ବୋଲିଣ ବୋଲନ୍ତି ସୁରଗଣ ।
ଯେଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଶୁଣ ॥
ମଣିଭଦ୍ର ଆସନ୍ତେ ଜାଣିଲା ଦଶଶିରି ।
କୋପେଣ ଧାଇଂଲା ଯେ ଶୀଘ୍ରଗତି କରି ॥
ବଜ୍ରସମ ଗଦାଏ ମାଇଲାକ ନେଇଂ ।
ମଣିଭଦ୍ର ମୁଣ୍ଡେ ପଡ଼ିଲାକ ଯାଇଂ ॥୬୦
ଘାଏ ଘୁମାଇଲା ତେଡ଼େ ମହାବୀର ।
ଭୂମିରେ ପଡ଼ିଲାକ ସେ ତେଡ଼େ ବଡ଼ ଶୂର ॥
ରତ୍ନଜଡ଼ିତ ମୁଣ୍ଡ ପଡ଼ିଲା ଧରଣୀ ।
ଦେଖିଣ ଦେବତାଯେ ଭାଳନ୍ତି ଭାଳେଣି ॥
ଦକ୍ଷସନ୍ୟମାନେ ପଳାଇଣ ଗଲେ ।
କୋବେର ଆଗରେ ଯାଇଂଣ ଜଣାଇଲେ ॥
ଭୋଦେବ ମଣିଭଦ୍ର ପଡ଼ିଲାକ ରଣେ ।
ଚତୁରାଙ୍ଗ ବଳ ପଳାଇଲେ କେଣେ କେଣେ ॥
ଶୁଣିଣ କୋବେର ହୋଇଲା ଚକିତ ।
ମନେ ବିଚାରଇ ମୁଂ କରିବି କେମନ୍ତ ॥୭୦
ବ୍ରହ୍ମାର ବରେ ଅଜୟେ ଦଶଶିରି ।
ଯେହିକ୍ଷଣି ଜୀବନ ହରିବ ମୋହୋରି ॥
ଦୁଷ୍ଟ ଲୋକକଇ ଯେବେ ଚାଟୁ କହି ।
ତେବେ ସେ ଦୟା ବସଇ ତାଙ୍କ ଦେହୀ ॥
ଯେତେ ବୋଲି ଶଙ୍ଖନିଧି ପଦ୍ମନିଧି ।
ଦୁହିଂକି ଘେନି ଦଶାନନକୁ ଆସଇ ପ୍ରବୋଧି ॥
ମଣିଭଦ୍ରକୁ ମାରି ଆସଇ ଲଙ୍କରାଏ ।
ଯେସନେକ ସମୟେ କୋବେର ଆସି ହୋଏ ॥
ଆଗେ ଦୁଇନିଧି ପଛେ ଧନପତି ।
ଲାଜେଣ ବଇଶ୍ରବଣ ଆସଇ ମଥାପୋତି ॥୮୦
କୋପଭର ହୋଇ ଆସଇ ଦଶାନନ ।
ନିଧିମାନେ ବୋଇଲେ ଶୁଣସି ବଚନ ॥
ଯେ ତୋହୋର ଜ୍ୟେଷ୍ଠଭାଇ ଅଟଇ ଧନପାଳ ।
ଯେହାକୁ ଲଙ୍କପତି ତୁ ନକର ଘଞ୍ଚାଳ ॥
ଯେକା ରକତରୁ ହୋଇଅଛୁ ଜାତ ।
ବିଶ୍ରବା ଋଷି ତ ଦୁହିଂକର ତାତ ॥
ମାତା ସେ ବେଗଳ ଅଟଇ ତୁମ୍ଭରି ।
ଆପଣା ସୋଦରକୁ କି ମନ୍ଦଚିନ୍ତା କରି ॥
ଦେବେ ଦାନବେ କଶ୍ୟପର ସୁତ ।
ଦିତି ଅଦିତି ସେ ତାହାଙ୍କରି ମାତ ॥୯୦
ଦଇତେ ଦେବତାଙ୍କୁ ଅହନ୍ତା ଭାବ କଲେ ।
ଧର୍ମ ଛାଡ଼ିଲାଟିକୁଟି ଆପଣେହେଂ ମଲେ ॥
ତୁ ଏବେ ଦଶାନନ ନ କରସି ଖେଦ ।
ସୋଦର ସୋଦରେ କିମ୍ପା କରିବ ବିବାଦ ॥
ତାହାର ମନ୍ଦକି ତୋତେ ନୋହେ ହାନି ।
ବାହୁଡ଼ି ଯାଆ ତୁ ଆମ୍ଭର ବୋଲ ଘେନି ॥
ନିଧିଙ୍କର ବୋଲ ଯେ ନକଲା ଅସୁର ।
ବୋଇଲା ନିଶ୍ଚେ ମୁଂ ମାରିବି କୋବେର ॥
ଯେତେ ବୋଲି ଶଙ୍ଖନିଧିକି ପେଲାଇଲା ।
ବଇଶ୍ରବଣକୁ ଆଜ ମାରିବି ବୋଇଲା ॥୧୦୦

ଦେଖିଣ କୋବେର ଯେ ଆୟୁଧ କରେ
ଧରି ।
ଦୁହି ଭାଇଙ୍କର ବାଜିଲା ମରାମରି ॥
ବ୍ରହ୍ମାର ବର ପାଇ ଦୁଇବୀରେ ମତ୍ତା ।
ବିଷମ ସମରକୁ ନ କରନ୍ତି ଚିନ୍ତା ॥
ଦୁହିଂକି ପ୍ରାପତ ଅଛଇ ଦେବଙ୍କ ଆୟୁଧ ।
ଦେବେଣ ଦୁଲଭ ଯେବଣହିଂ ଯୁଧ୍ୟ ॥
ଅନେକ ଅଗ୍ନି ଶସ୍ତ୍ର କଲାକ ଧନପତି ।
ପ୍ରଳୟକାଳେ ଯେହ୍ନେ ଉଦୟେ ବିତୀ
ହୋତୀ ॥
ନଉକେଶୀର ତନୟେ ପ୍ରତି ଅସ୍ତ୍ର କଲା ।
ବାରୁଣା ଅସ୍ତ୍ରେ ସବୁ ନିବାରି ପକାଇଲା ॥୧୦
ବେଳୁ ବେଳୁ ସାଂଗ୍ରାମ ବଢ଼ିଲା
ମହାଗୋଳ ।
ଆକାଶରେ ଥାଇଂ ଦେଖନ୍ତି ଲୋକପାଳ ॥
ଧର୍ମଯୁଧ୍ୟେ ଯହୁଂ ନୋହିଲା ହାରଜିଣ ।
ତହୁଂ ଦୁଇଭାଇ କଲେକ ମାୟାରଣ ॥
କ୍ଷଣକେ ଦୃଶ୍ୟ କ୍ଷଣକେ ଅଦୃଶ୍ୟ ହୋଅନ୍ତି ।
ଯାବତ ଜନ୍ତୁଙ୍କର ସ୍ୱରୂପ ଧରନ୍ତି ॥
ସ୍ୱର୍ଗ ମର୍ତ୍ତ ପାତାଳେ ରହି ଯୁଦ୍ଧ କଲେ ।
ପୁଣି କପିଳାସ କନ୍ଦରେ ମିଳିଲେ ॥
କୋପେ ମୁଦୁଗର ଦଶଗ୍ରୀବ ପିଟି ।
ଘାତ ପାଇ ଧନପତି ଭୂମିରେଣ
ଲୋଟି ॥୨୦
ଗ୍ୟାନ ହାରିଣ ଯହୁଂ ପଡ଼ିଲା କୋବେର ।
ଦେଖି ଦେବତାଏ କମ୍ପିଲେ ଥରହର ॥
କପିଳାସ କନ୍ଦରେ ରୋଧିର ବରଷିଲା ।
ଦକ୍ଷଙ୍କର ମାଂସ ଯେ କର୍ଦ୍ଦନ ହୋଇଲା ॥
କୋବେର ନିଷ୍ଟେଣ ଦେଖିଣ ସପ୍ତନିଧି ।
ଦଶାନନକଇ କହିଲେ ପ୍ରବୋଧି ॥
ଭୋ ଲଙ୍କପତି ତୁ ସୋଦର ବଧକଲୁ ।
ମହାପୁରୁଷ ହୋଇ ତୁ ଅଧର୍ମକୁ ଗଲୁ ॥
ଭାଇକି ମାରି ପାଇଲୁଟିକି ଯଶ ।
ଜଗତେ ତୋତେ ବୋଲିବେଟି କିସ ॥୩୦
ଦଶକନ୍ଧ ବୋଇଲା ମୋତେ ପୁଷ୍ପକଯାନ
ଦିଅ ।
ଯତ୍ନ କରି ଯେବେ କୋବେରକୁ ନିଅ ॥
ଶୁଣି ନିଧିମାନେ ବିମାନ ଆଣିଦେଲେ ।
ନବରତ୍ନେ ଜଡ଼ିଲାର ଅଳଙ୍କାର ସମର୍ପିଲେ ॥
ସନ୍ୟ ଘେନି ତହୁଂ ବାହୁଡ଼ଇ ଲଙ୍କପତି ।
ପୁଷ୍ପକ ବିମାନେ ବସିଲାକ ତୋଷମତି ॥
ବାବୁ ସେ ବିମାନ ସାଧୁ ଦେବରଥ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନିଯେ ତିନିହେଂ ଯେକତ୍ର ॥
ବ୍ରହ୍ମ ଜାତି ହୀରା ପ୍ରତିମା ସମାନ ।
ଶତେକ ପୁର ସେ ଅନୁଆନ ବର୍ଣ୍ଣ ॥ ୪୦
ନବରତ୍ନ କଳସ ପାତାଙ୍ଗ ନିରନ୍ତର ।
ତହିଂ ଯାଇ ବିଜେ କଲା ଦଶଶିର ॥
ସନ୍ୟ ସମେତେଣ ବସାଇଲା ଆଣି ।
ବାହୁଡ଼ି ଲଙ୍କାକଇ ଗଲା ବିଂଶପାଣି ॥
ନିଜପୁରେ ଯାଇଂ ହୋଇଲା ପ୍ରବେଶ ।
ଶ୍ରୀଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ଯହୁଂ ସେ ରାବଣ ଲଙ୍କାକଇ ଗଲା ।
କୋବେର ମହାତମା ମୋହେଣ ପଡ଼ିଥିଲା ॥
ବ୍ରହ୍ମା ସହିତେଣ ଅଇଲେ ସୁରଗଣ ।
ମଉଷୋଧି ଦେଇ ରଖିଲେ ତାର ପ୍ରାଣ ॥୫୦
ସେହି ବିଧାନେ ମଣିଭଦ୍ରକୁ ଜୀଆଂଇଲେ ।
କଥାମାନ ତିଆରି ବାହୁଡ଼ିଣ ଗଲେ ॥
ଯେଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ଶ୍ରୀରାମଙ୍କ ଆଗେ ଯାହା କହିଲେ ଅଗସ୍ତି ॥
ସୁଗ୍ରୀ ବିଭୀଷେଣ ଜାମ୍ୱେବ ଶୁଣନ୍ତି ।
ଅଙ୍ଗଦ ହୁନମତ ସେନ୍ହାଯୂଥପତି ॥
ଲକ୍ଷେକ ନୃପତି ଅମନାତ୍ୟଗଣମାନ ।
ଗହ ଗହ ବେହରଣ ଶ୍ରୀରାମ ଆସନ ॥
ମହାମୁନିମାନେ ଅଛନ୍ତି ତହିଂ ବସି ।
ଶ୍ରୀରାମଚନ୍ଦ୍ର ପୁଣ ପଚାରନ୍ତି ହସି ॥୬୦
ଯେଥୁଅନନ୍ତରେ କିସ କଲା ଦଶମାଥ ।
କହନ୍ତି ଅଗସ୍ତି ଶ୍ରୀରାମ ଅଗ୍ରତ ॥
ଅଗସ୍ତି ବୋଲନ୍ତି ଶୁଣ ରାମ ରାହୁ ।
କୁବେରକୁ ଯହୁଂ ଜିଣିଲା ବିଂଶବାହୁ ॥
ପୁଷ୍ପକ ବିବାନ ସେ ଆରୋହଣ କଲା ।
ମନେ ମନାସିବାର ବିମାନ ପାଇଲା ॥
ଯଦ୍ୟପି କ୍ଷତ୍ରୀ ସେ ଅଟଇ ମହାବଳୀ ।
ବାହାନ ନଥିଲେ ନପାରଇ ଚଳି ॥
ସାନଲୋକ ଯେହ୍ନେ ବଡ଼କାର୍ଯ୍ୟ କରଇ ।
ମନେ ଧଇଲେ ତେହ୍ନେ ଯାନ ବୋଲହିଂ
କରଇ ॥୭୦
ଯେଣେ ସେ ଦେବତାଏ ଯେ ଯାହା ମନ
ରୁଚି ।
ତେସନେକ ବିମାନ ଘେନିଛନ୍ତି ବାଛି ॥
କୋବେରକୁ ବିମାନ ଦେଇଥିଲା ସୋଗେ ।
ଦଶାନନ ବୀର ତା ପାଇଲାକ ଯୋଗେ ॥
ଯେମନ୍ତ କ୍ଷତ୍ରୀ ସେ ତେସନେକ ଯାନ ।
ବସିଣ ଆନନ୍ଦ ଯେ ହୋଇଲା ଦଶାନନ ॥
ଯେମନ୍ତ ଲଙ୍କାରେ ଯେକଦିନ ଥାନ୍ତେ ।
ପୁଷ୍ପକ ଆରୋହିଲା ମନ୍ଦୋଦରୀ କାନ୍ତେ ॥
କପିଳାସ କନ୍ଦର ଦେଖିବି ବୋଲିଗଲା ।
କାର୍ତ୍ତିକେଶ୍ୱର ଜନ୍ମ ଠାବରେ ମିଳିଲା ॥୮୦
ଅପୂର୍ବ ମନୋହର ପବିତ୍ର ଚାରୁବନ ।
ସେଠା ପର୍ବତ ଖଣ୍ଡ ଅଟଇ ସୁବର୍ଣ୍ଣ ॥
ହରର ବୀର୍ଯ୍ୟ ତହିଂ ପଡ଼ିଲା ବସୁମତୀ ।
ଅଷ୍ଟଧାତୁ ତହିଂ ହୋଇଲା ଉତପତ୍ତି ॥
ଅଷ୍କନ୍ଦ ବୋଲିଣ ବନ ନାମ ତାହାର ।
ପାର୍ବତୀକି ଘେନି ତହିଂ ରମନ୍ତି ଈଶ୍ୱର ॥
ଅପୂର୍ବ ବୃକ୍ଷମାନେ ଫଳଭରେ ଭାରି ।
ଭାଷନ୍ତି କୋକିଳ ତାହୁକ ଶୁକ ସାରୀ ॥
ସର୍ବଦା ବସନ୍ତର ଅଟଇ ସେ ବସା ।
ସେ ବନେ ରହିଲେ ନ ଲାଗଇ କ୍ଷୁଧା
ତୃଷା ॥୯୦
ସ୍ୱର୍ଗ ବୋଲିଣ ନାମ ଅଟଇ ତାହାର ।
ତପସ୍ଥଳୀ ସ୍ଥାନ ସେ ସଂସାରୁ ବାହାର ॥
ତହିଂ ଯାଇ ପ୍ରବେଶ ବିଶର୍ବାର ନାନ ।
ଦେଖିଣ ଆନନ୍ଦ ଯେ ହୋଇଲା ପଞ୍ଚମନ ॥
ଯାଅ ବୋଇଲା ଯେ ନଉକେଶୀର ସୁତ ।
ବିବାନ ହୋଇଲା ଯେ ଥାବର ସଂଯାତ ॥
ତଥାପି ରହୁବର ତିଳେହେଂ ନଚଳି ।
ମନେ ବିସ୍ମୟେ ହୋଇ ଦଶାନନ ଭାଳି ॥

କିମ୍ପାଇ ବିମାନ ରହିଲାକ ଯେଥ ।
ମନରେ ଧଇଲେ ଚଳଇ ଯେବଣ
ମନୋରଥ ॥୧୦୦
ଯେସନ ସମୟେ ତାଡ଼କୀର ସୁତ ।
ନାମ ଅଟଇ ତାର ମାରୁତି ଦଇତ ॥
ବନ ବୁଲିଣ ସେ କ୍ରୀଡ଼ାକରି ଯାଇ ।
ତାହାକଇ ଦେଖି ଦଶାନନ ରାଇ ॥
କୁଳଗୋତ୍ର ପୁଛି ଇଷ୍ଟବନ୍ଧୁ ହେଲା ।
ସନ୍ନିଧ୍ୟକୁ ରାଇ ଗୁପତେ ପଚାରିଲା ॥
ବୋଇଲା କଥାଏକ ଶୁଣିମା ମାରୁଚି ।
ପୁଷ୍ପକ ବିମାନ ଯେ ଗଢ଼ିଲା ବିରଞ୍ଚି ॥
ମନକଲେ ଗମନ କରଇ ଯେଉଁରଥ ।
କିମ୍ପାଇ ନଚଳିଲା ରହିଅଛି ଯେଥ ॥୧୦
ଯା ଯା ବୋଇଲେତ ନକରଇ ଗମନ ।
ସ୍ତମ୍ଭୀଭୂତେ କିମ୍ପାଇଂ ରହିଲା ଯେ ଯାନ ॥
ମାରୁଚି ବୋଇଲା ଶୁଣସି ଦଶମାଥ ।
କୁବେର ତହିଂ ପୂର୍ବେ ରହିଥିଲା ରଥ ॥
ଯେବେ ଅଳକାକୁ ଯିବାକୁ ଲାଜ କରଇ ।
ବଇଶ୍ରବଣ ଦେଖି କିସ ବୋଲି ଭାଳଇ ॥
ମହତ ପ୍ରାଣୀଙ୍କର ଯେସନ ବୃତାନ୍ତ ।
ଯେ ପୁଣ୍ୟ ବିବାନ ହୋ ମନ୍ଦୋଦରୀ କାନ୍ତ ॥
ଗତେ ତାହାର ତହିଂ ଥାଉଣ ଅଇଲା ।
ଯେବେ କେମନ୍ତେ ଯିବି ବୋଲିଣ
ବୋଇଲା ॥୨୦
ଯେସନେକ ସମଏ ପୁରୁଷେକ ଆସି ।
ବୋଇଲା ଦଶାନନ ବାହୁଡ଼ିଣ ଯାସି ॥
ଯେସେ କପିଳାସ ଈଶ୍ୱରେ ଅଛନ୍ତି ।
ପାର୍ବତୀକି ଘେନି ଭୋଗ ବିଳସନ୍ତି ॥
ଦେବଙ୍କର ଉପରେ ଅଟନ୍ତି ମହାଦେବ ।
ସେ ବିଶ୍ୱନାଥର ଯେକାନ୍ତ ଯେହୁ ଠାବ ॥
ଚଉଦକୋଟି ରୁଦ୍ର ଶୂଳ ଘେନି ଖେଳି ।
ନିରାଲମ୍ବ ସ୍ଥାନେ କରନ୍ତି ଦେବ କେଳି ॥
ଦେବ ଦାନେବ ଦକ୍ଷ କିନ୍ନର ଉଡ଼ଙ୍ଗ ।
ପଶି ନପାରନ୍ତି ଏହୁ ଭୂମି ଭାଗ ॥୩୦
ଉପରେ ଉଡ଼ି ନ ପାରନ୍ତି ପକ୍ଷୀମାନେ ।
ରୁଦ୍ର ଦେବତାର ଯେ ପରମ ଗୋପ୍ୟଥାନେ ॥
ଯାହାର କୋପକଲେ ଜଗତ ନାଶ ଯାଇ ।
ବ୍ରହ୍ମାବିଷ୍ଣୁ ଯାହାର ଆଗ୍ୟାଂରେଣ ଥାଇ ॥
ଶୁଣି ଦଶାନନ ଅଳପ ହୋଇ ହସି ।
ବୋଇଲା ଯାହା ତୁ ବୋଇଲୁ ତପୁସୀ ॥
ଜାଣଇ ମୁଂ ସେ ଥାଳେକ ଘେନିଥାଇ ।
ଭିକ୍ଷା ମାଗିଣ ସେ ଈଶ୍ୱର ବୋଲାଇ ॥
ତାହାର କଥା କିମ୍ପା ଯେଡ଼େ କରି କହୁ ।
ମିଛେହେଂ ବୋଲ ତାକୁ ସଂସାରର
ପ୍ରଭୁ ॥୪୦
ଯେହିକ୍ଷଣି ଜାଣିମା କେତେ ତାର ବଳ ।
ଯେତେ ବୋଲି ରଥରୁ ଓହ୍ଲାଇ ଲଙ୍କପାଳ ॥
କରେଣ ଖଡ଼୍‌ଗ ଧରି ପର୍ବତକୁ ଉଠି ।
ନନ୍ଦିକେଶ୍ୱର ଉଭା ହୋଇଛି କୋପ ଦୃଷ୍ଟି ॥
ମର୍କଟ ବଦନ ତାର କରେ ଅଛି ଶୂଳ ।
ଦେଖିଣ ଉପହାସ୍ୟ କଲା ଲଙ୍କପାଳ ॥
ଯେ କିସ ବାନର ଭବିଷ ରୂପ ଦିଶି ।
ଯେଡ଼େ ନିଲଜ କିମ୍ପା ଦଶାନନ ହସି ॥
ଶୁଣିଣ ନନ୍ଦିକେଶ୍ୱର କୋପେ ଶାପ୍ୟଦେଲା ।
ନର ବାନର ହାଥେ ମରସି ବୋଇଲା ॥୫୦
ଯେଡ଼େ ଉପଦର୍ପ ସେ ହରନ୍ତୁ ବନଜନ୍ତୁ ।
ମନୁଷ୍ୟର ହସ୍ତେ ପାଅସି ତୁ ମୃତ୍ୟୁ ॥
ଶାପ୍ୟ ଦିଅନ୍ତେ ଦଶକନ୍ଧ ନକଲାକ ଭଏ ।
ନନ୍ଦିକି ଚାହିଂଣ ଯେ ବୋଲଇ ଲଙ୍କରାଏ ॥
ତୁହୋ ବିବାନ କୁ ନ ଦେଲୁସି ଯାଇଂ ।
ବୋଇଲୁ ଜଗତ ଈଶ୍ୱର ଯେଥି ଥାଇଂ ॥
ଯେବେ ଯେ ପର୍ବତ ମୁଂ କରିବଇଂ ନାଶ ।
ବଜ୍ରେ ଛେଚି ଧୂଳି କରିବି କପିଳାସ ॥
ଅଥବା ସମୁଦ୍ରେ ପକାଇବି ନେଇଂ ।
ପାଉଂଶ କରିବଇଂ ଅଗ୍ନି ଜାଳି ଦେଇ ॥୬୦
ନୋହିଲେ ଲଙ୍କାରେ ଥୋଇବି ଗିରିବର ।
ରମଣୀୟ ସ୍ଥାନ ହୋଇବ ମୋହୋର ॥
ଯେତେ ବୋଲି ପର୍ବତ ଧଇଲା
ବିଂଶଭୁଜେ ।
ହିଆ ଭରାଦେଇ ଉପାଡ଼ଇ ଲଙ୍କରାଜେ ॥
ମନ ପବନ ଯେକତ୍ର କରି ତୋଳି ।
ଥରହର ହୋଇ କମ୍ପଇ ମହୀଆଳି ॥
ଘଡ଼ ଘଡ଼ି ପ୍ରାୟେ ଶୁଭଇ ଶବଦ ।
ସୁରଗଣେ ଶୁଣି ହୋଇଲେ ତବଦ ॥
ଚଡ଼ ଚଡ଼ ହୋଇ ଉପୁଡ଼ିଲା ଗିରି ।
ଚ୍ୟୁତ ହୋଇଲାକି ସଂସାରର ଶିରୀ ॥୭୦
ରୁଦ୍ର ସହିତେ ହେମବନ୍ତ ଦୋହିତୀ ।
ନନ୍ଦି ଭୃକୁଟି କାର୍ତ୍ତିକେଶ୍ୱର ଗଣପତି ॥
ତପୀ ପଶୁପତି ସିଦ୍ଧ ଯୋଗୀମାନ ।
ଚଉଦ କୋଟି ଶିବ ଅଛନ୍ତି ମୃକ୍ଷପାନ ॥
ଅନନ୍ତ ଯୋଗେଶ୍ୱର ଚଉଷଠି ସିଦ୍ଧ ।
ସାଧକ ଯୋଗୀ ଯେ ଯେ ଅଟନ୍ତି ପ୍ରସିଦ୍ଧ ॥
ଅନନ୍ତ ରୁଦ୍ର କୃପ ଅନନ୍ତ ଯୋଗଭୋଗୀ ।
ଗ୍ୟାନଯୋଗୀ ବ୍ରହ୍ମଗ୍ୟାନୀ ଅକାମ ଭୋଗୀ ॥
ଗଙ୍ଗା ସହିତେଣ ବାସୁକି ନାମେ ଅହି ।
ତିଳମନ୍ଦା ପ୍ରମାଣେ ସଚରାଚର ମହୀ ॥୮୦
ବନଜନ୍ତୁ ସହିତେ ଆବର କପିଳାସ ।
ଉପାଡ଼ି ଘେନିଲା ଯେ ବିଶ୍ରବାର ଶିଷ୍ୟ ॥
ମାତାର ସ୍ତନ କି ସେ କାଟି ପକାଇଲା ।
ଦୁପିଷ୍ଟ ଲଙ୍କେଶ୍ୱର ଯେଡ଼େ କର୍ମ କଲା ॥
ଯେତେକ ଅସୁର ଯେ ପୃଥିରେ
ଜନ୍ମିଥିଲେ ।
ଯେଡ଼େ ଉପଦର୍ପ କେହି ତ ନ କଲେ ॥
କୋବେରକୁ ଜିଣି ପୁଷ୍ପକ ଯାନ ଚଢ଼ି ।
ଆବର ବିଶେଷେଣ କପିଳାସ ତାଡ଼ି ॥
ଦେଖିଣ ତ୍ରାସିଲେ ସକଳ ସୁରଗଣ ।
ଆଶ୍ଚର୍ଯ୍ୟ ହୋଇଲେ ଦେଖି ରୁଦ୍ରଗଣ ॥୯୦
ଯେତେବେଳେ ଦଶାନନ ତୋଳିଲାକ
ଗିରି ।
ତତକ୍ଷଣେ ଶିରାଗ୍ରତ ହୋଇଲାକ ଶିରୀ ॥
ଅନ୍ନପୂର୍ଣ୍ଣା ଦେବୀ ସେହୁ ଅଟନ୍ତି ପାର୍ବତୀ ।
ଭକତ ମୁକତି ଦାତା ପୁରୁଷ ଅଟନ୍ତି
ଶୂଳପତି ॥
ପର୍ବତ ଉପାଡ଼ି ଯହୁଂ ତୋଳିଲା ଦଶାନନ ।
ସର୍ବଗ୍ୟଂ ପୁରଷ ତ ଜାଣିଲେ ତ୍ରିଲୋଚନ ॥

ନନ୍ଦି ଜଣାଇଲା ଲଙ୍କାର ଦଇତ ।
ପୌଲସ୍ତି ନାମେ ବିଶ୍ରବାର ସୁତ ॥
କୁବେରକୁ ଜିଣି ପୁଷ୍ପକ ଯାନ ନେଲା ।
ଯେବେ କପିଳାସ ପର୍ବତ
ଉପାଡ଼ିଲା ॥୧୦୦
ଶୁଣି ମହାଦେବ ପ୍ରଜ୍ୱଳିତ କୋପୀ ।
ମନ ଆକ୍ରୋଷିଣ ମୂଳ କମଳ ଚାପି ॥
ବାମଚରଣ ବୁଢ଼ା ଆଙ୍ଗୁଷ୍ଠି ଚାପିଲେ ।
ମାହାଯୋଗ ଆସନେ ମାଡ଼ିଣ ବସିଲେ ॥
ବିଶ୍ୱ ସଂସାର ଯେ ଗର୍ଭେ ଅଛି ଧରି ।
ସେସେ କୋପ କଲାକ ଅତି ଯତ୍ନ କରି ॥
ଯହୁଂ ସେ ପର୍ବତ ମାଡ଼ି ବସିଲେ ସଦାଶିବ ।
ଗରୁ ପାଇ ଆତଙ୍କ ହେଲା ଦଶଗ୍ରୀବ ॥
ମାହାଭାରାଭାରି ନପାରିଲାକ ସହି ।
ସମ୍ଭାଳି ନ ପାରିଣ ବୀର ପଡ଼ିଲାକ ମହୀ ॥
ଉପରେ ମାଡ଼ିଣ ବସିଲାକ ଗିରିବର ।
ଯେକେ ପର୍ବତ ଦୁଯେ ଚାପିଲେ
ଦେବନ୍ଧର ॥
ବଥା ପାଇଲାକ ସେ ବିଶ୍ରବାର ସୁତ ।
ରଡ଼ିଯେ ଛାଡ଼ିଲା ପୂରିଲା ଜଗତ ॥
ବ୍ରହ୍ମାଣ୍ଡ କମ୍ପିଲା ଯେ ଡରିଲେ ସୁରଗଣ ।
ଯେକକୁ ଆରେକ ନ ଶୁଭଇ ବଚନ ॥
ପୁଣ ପୁଣ ଗର୍ଜନ କରଇ ଦଶମୁଖେ ।
ସମୁଦ୍ର ମାଛମାନେ ପଡ଼ିଲେ ଆସି ମୁଖେ ॥
ଘୋରରାବ ଗୋଟା ସଂସାରେ ଅଛି ପୂରି ।
ଥରହର ହୋଇଣ କମ୍ପଇ ବସନ୍ଧରୀ ॥୨୦
ନାନା ଶବଦମାନ ବିଅର୍ଥେଣ ଗଲେ ।
ଭୟେଣ ଜୀବଜନ୍ତୁ ଶ୍ରବଣ ବୁଜିଲେ ॥
ଜପୀଙ୍କର ଜପ ତପୀଙ୍କ ତପ ।
ସଜ୍ଜନଙ୍କର ଦୟା ଦୁଷ୍ଟକଂର କୋପ ॥
ଯୋଗୀଙ୍କର ଲୟେ ମୁନିଙ୍କର ସମାଧୁ ।
କ୍ଷତ୍ରୀଙ୍କର ପ୍ରକୃତି ଯେ ସନ୍ଥଜନ ତତୁ ॥
ଯେ ଯାହାର ବେଭାର ଛାଡ଼ିଲେ ସର୍ବଜନ ।
ଯହୁଂ ସେ ତିନି ପୁରେଣ ଶୁଭିଲା ଗର୍ଜନ ॥
ହର ପଚାରନ୍ତି ନନ୍ଦିକେଶ୍ୱରକୁ ଚାହିଁ ।
ଯେକକୁ ଆରେକତ କଥା ଶୁଭୁନାହିଁ ॥୩୦
ନନ୍ଦି ଜଣାଇଲେ ଶୁଣିମା ମହେଶ୍ୱର ।
ପର୍ବତ ତଳେ ପଡ଼ି ଅଛଇ ଅସୁର ॥
ପ୍ରାଣ ନଗଲା ତାର ଛାଡୁଅଛି ରଡ଼ି ।
କପିଳାସ କନ୍ଦର ଉପରେ ଅଛି ମାଡ଼ି ॥
ଶୁଣି ସଦାଶିବ ହସନ୍ତି ଟହ ଟହ ।
ବଜ୍ର ହୁଂ ଆଣ୍ଟ କି ଅଟଇ ତାର ଦେହ ॥
ଭଲାରେ ଦଇତ ବୋଲି ପ୍ରଶଂସା ତାକୁ
କଲେ ।
ଆପଣେ କପିଳାସୁଂ ଓହ୍ଲାଇ ଅଇଲେ ॥
ପାର୍ବତୀ ସହିତେଣ ଅସ୍କନ୍ଦ ଗଣପତି ।
ଚଉଦ କୋଟି ଶିବଗଣ ଦେଖିବାକୁ
ଯାନ୍ତି ॥୪୦
ଆପଣେ ସଦାଶିବ ପର୍ବତ ଟୋକି ଧରି ।
ଉଶ୍ୱାସ ପାଇ ବେଗେ ବାହାର ଦଶଶିରି ॥
ଘୋଡ଼ା ଯେହ୍ନେ ଡଂଗୁଆଇ ଧାଡିକାରେ ।
ଧୂଳିଝାଡ଼ଇ ସୁସ୍ତ ହୋଇଲା ଦଶଶିରେ ॥
ପର୍ବତ ଥୋଇ ହର ହସିଣ ଚାହାନ୍ତି ।
ଭଲା ଦଶଗ୍ରୀବ ବୋଲିଣ ପଚାରନ୍ତି ॥
ଯେ ମହା ପର୍ବତ ମାଡ଼ିଲି ମୁଂ ଆଣ୍ଟେ ।
ବଥା ନ ପାଇଣ ଉଠିଲୁ ଏତେ ଝାଣ୍ଟେ ॥
ବଜ୍ରହୁଂ ଆଣ୍ଟକି ଅଟଇ ତୋର ଦେହ ।
ଧନ୍ୟ ଧନ୍ୟ ମହିମାରେ ବିଶ୍ରବାର ପୁଅ ॥୫୦
ହୋଇଲି ପ୍ରସନ୍ନ ଦେବଇଂ ତୋତେ ବର ।
ଯେଣେ ତୋହୋର ଇଚ୍ଛା ମାଗି ଘେନ ବର ।
ତୋତେ ସରି ସମରେ ନୋହିବ ତିନିପୁର ।
ଯହିଂକି ମନ ତହିଂକି ଯିବୁ ଦଶଶିର ॥
ତଇଲୋକ୍ୟ ସାଧିବୁ ତୁ ନିଜ ଭୁଜବଳେ ।
କ୍ଷତ୍ରୀସମ ତୋତେ ନୋହିବ ରବିତଳେ ॥
ରାବ ଛାଡ଼ିଲୁତୁ ମହାଭାରା ପାଇଂ ।
ରାବଣ ନାମ ତୋତେ ଦେବଇଂ ତୋଷ
ହୋଇ ॥
ଶୁଣି ଦଶଗ୍ରୀବ ନମସ୍କାର କଲା ।
ବର ଦେଇଂ ହର କପିଳାସ ଗଲା ॥ ୬୦
ରାବଣ ଆରୋହିଲା ପୁଷ୍ପକ ବିମାନ ।
ବାହୁଡ଼ିଣ ଲଙ୍କାକୁ ଗଲା ଦଶାନନ ॥
ଅମାତ୍ୟ ବନ୍ଧୁଜନଙ୍କ ଆଗେ କହି ।
ଶୁଣି ସକଳ ଲୋକେ କୃତ୍ୟ କୃତ୍ୟ ହୋଇ ॥
ଯେଥୁ ଅନନ୍ତରେ ଶୁଣ ରାମରାଣ ।
ବଳେ ଉତକଟ ହୋଇଲା ରାବଣ ॥
ପୁଷ୍ପକ ରଥ ଚଢ଼ଇ ନାନାଦେଶ ଯାଇ ।
ଚତୁରାଙ୍ଗ ବଳ ସଙ୍ଗତେ ଘେନି ଥାଇ ॥
ସକଳ ନୃପତିଙ୍କର ହରିଲାକ ଦର୍ପ ।
ଗରୁଡ଼ ଦେଖି ଯେହ୍ନେ ଡରଇ
କାଳସର୍ପ ॥୭୦
କୁବେରକୁ ଜିଣି ପୁଷ୍ପକ ଯାନ ନେଲା ।
କପିଳାସ ପର୍ବତ ହେଳେଣ ଉପାଡ଼ିଲା ॥
ଚତୁର୍ଦ୍ଦିଗେ ଯେ କଥା ଶୁଭିଲାକ ଯହୁଂ ।
ନୃପତିଗଣମାନେ ଭଏ କଲେ ତହୁଂ ॥
ଅସୁର ବଳ ଯହୁଂ ହୋଇଲା ବର୍ଦ୍ଧମାନ ।
ଭଏ ନକରି ପୁଣ କରନ୍ତି ଉଛନ୍ନ ॥
ଯେଥୁ ଅନନ୍ତରେ ଦଶଗ୍ରୀବ ରାଏ ।
ପୁଷ୍ପକ ବିମାନ ଆରୋହିଣ ଭ୍ରମିଯାଏ ॥
ଯାନ୍ତେଣ କନ୍ୟାଏକ ଦେଖିଲାକ ବାଟେ ।
ଦକ୍ଷିଣ ଲବଣ ସିନ୍ଧୁ ଉତ୍ତରର ତଟେ ॥୮୦
ତପ କରୁଣ ସେ ଅଛଇ ସୁନ୍ଦେରୀ ।
ତୈଲୋକ୍ୟେ ତାହାକୁ ନାହିଁ ପଟାନ୍ତରି ॥
ଶୁଦ୍ଧ ସୁବର୍ଣ୍ଣର କି କିରଣ ପ୍ରତିମା ।
ମୁଖ ବିକାଶଇ ଶରଦ ଚନ୍ଦ୍ରମା ॥
କୁରଙ୍ଗୀ ନୟନୀ ତିଳଫୁଲ ନାସା ।
ଚାଚର ଚିକୁର କନଡ଼ାପରି ଖୋଷା ॥
ମଝା ସଂକୀର୍ଣ୍ଣ ଯଉବନ ଭାରି ।
ସର୍ବ ସୁଲକ୍ଷଣୀ ଲହୁଲି କୁମାରୀ ॥
ବୃଷାଳ କଟୀ ତାର ସୁବଳିତ ଜଘନ ।
ପାଦତଳ ରଙ୍ଗ ଅଳତାର ବର୍ଣ୍ଣ ॥ ୯୦
ଭୁଜ ଯୁଗଳ କି ସୁବର୍ଣ୍ଣ ପଦ୍ମନାଡ଼ି ।
ଅଙ୍ଗୁଷ୍ଠି ଦିଶଇକି ଜାଣିଣ ଚମ୍ପାକଢ଼ି ॥
ଜାଇ କୁସୁମର ପାଖୁଡ଼ା ଯେହ୍ନେ ନଖ ।
ଅଳପ ହସନ୍ତେ ଯେ ବିକାଶଇ ପଦ୍ମମୁଖ ॥
ଓଶେକ କଦ୍ଧି ଜାଣି ଚରଣ ଆଙ୍ଗୁଳି ।

ନଖର ସାଦୃଶ କି ମୁକୁତା ମାଳି ମାଳି ॥
ନାଭି ଗଭୀର ଯେ ପଦ୍ମପତ୍ର ପେଟ ।
ଆଗକୁ ଉଭା ଯେ ପଛକୁ ମୁରାଟ ॥
ପିନ୍ଧିଣ ଅଛି ଯେ ସୁରଙ୍ଗ ପାଟଶାଢ଼ୀ ।
ଦୁଇ ଭୁଜେ ଶୋହେ ଦୁଇ ରତ୍ନ ଚୂଡ଼ି ॥୧୦୦
ଶବନ୍ଧେ ଚନ୍ଦ୍ରହାର କଣ୍ଠେ ରତ୍ନହାର ।
କଟୀରେ କଟୀମେଖଳା ଚରଣେ ନୂପୁର ॥
ବାହେଣ ତାଡ଼ ଶିକୁଳି କଙ୍କଣ ।
ନାସାରେ ନାସାଫୁଲ ସୂର୍ଯ୍ୟର କିରଣ ॥
ଅଙ୍ଗୁଷିମାନଙ୍କରେ ବିବିଧ ପରି ମୁଦି ।
ମୁକୁତାର ସିଉନ୍ତିକି ପର୍ବତୁ ବହେ ନଦୀ ॥
ଶ୍ରବଣ ଶିଖରେ ବେଣ୍ଡୋଲା ଗଜମୋତି ।
କପାଳେ ସିନ୍ଦୂର ଚିତା ଅରୁଣ ଜ୍ୟୋତି ॥
ଅଳକା ବଢ଼ିଣ ଯେ ଅଛଇ ମୁଖରାଶି ।
ରାହୁ ଉଗାଳଇ ଯେହ୍ନେ ପୌର୍ଣ୍ଣମୀର ଶଶୀ ॥୧୦
ବନ୍ଧୁକ ପୁଷ୍ପ ଜିଣି ଦିଶଇ ଅଧର ।
ଧନ୍ୟ ଧନ୍ୟ ବାମା ସେ ତ୍ରୈଲୋକ୍ୟ ସୁନ୍ଦର ॥
ବଙ୍କକରି ଯାହାକୁ ଚାହିଁବ ଚାହାଣୀ ।
ଗ୍ୟାନ ହାରିଣ ଯେ ମୋହିବ ଯୁବାତନୁ ପ୍ରାଣୀ ॥
ହସି କହିଲେ ଜୀଇଁବ ମୃତ୍ୟୁଜନ ।
ନିଷ୍କଳଙ୍କ ଚନ୍ଦ୍ରମଣ୍ଡଳ ପ୍ରସନ୍ନ ବଦନ ॥
ଆନ ପଟାନ୍ତର ନାହିଁ ରବିତଳେ ।
ଅତିଅନ୍ତ ଶୋଭା ଯେ ଚନ୍ଦ୍ରମା ମଣ୍ଡଳେ ॥
ଭ୍ରୂଲତା ଯୁଗଳ ଯେ ଶ୍ରବଣ ଯାର ସୀମା ।
ସୁରେଖିତ କଜ୍ଜଳକି ଦିଶଇ ଉପମା ॥ ୨୦
କୃଷ୍ଣଅଗ୍ର ଗୁଣ୍ଡି ଯେ ହୋଇଅଛି ଘଷି ।
ଏକ କାଠି ମେଢ଼େ ପଦ୍ମାସନେ ଅଛି ବସି ॥
ବାସୁଦେବଙ୍କୁ ଧ୍ୟାଏ କରଇ ଯେକ ସରେ ।
ଭଏ ନ କରଇ ତେଡ଼େ ବନ ଘୋରେ ॥
ଅନେକ କାଳରୁ ସେ ବନେ ଅଛି ରହି ।
ପାଦରୁ ଉପର ସତରୁ ତଳ ହୋଇ ॥
ନାରାଏଣ ନାରାଏଣ ସୁମରଇ ବାଳୀ ।
ମନ ବଚନେ ଚିନ୍ତଇ ବନମାଳୀ ॥
ଯେସନେକ ବେଳେ ପୁଷ୍ପେକ ବିମାନେ ଆରୋହି ।
ଗଗନ ମାର୍ଗେ ଚଳଇ ମନ୍ଦୋଦରୀ ସାଇଁ ॥୩୦
ତଳକୁ ଚାହିଁଣ କନ୍ୟାକୁ ଦୃଷ୍ଟିଦେଲା ।
ରୂପ ଚାହିଁ ମନ ମୁରୁଛି ନ ପାରିଲା ॥
ହୃଦେ ବିଚାରଇ ସାଧୁରେ ସୁନ୍ଦେରୀ ।
ତିନି ଭୁବନେ ତୋତେ ନାହିଁ ସମସରି ॥
ଯେତେ ବୋଲି ରଥ ଆଣି କଲା ତଳେ ।
ଓହ୍ଲାଇ କନ୍ୟାର କତିକି ଗଲାବଳେ ॥
ରାବଣ ପଚାରଇ ଶୁଣସିରେ ବାଳୀ ।
କେବଣ କାରଣେତୁ ହୋଇଲୁ ତପଚାରୀ ॥
ରୂପ ଯଉବନେ ଜଗତ ମୋହିପାରୁ ।
ଯେଡ଼େକ ଯେକାନ୍ତର ସ୍ଥାନକୁ ନଡ଼ରୁ ॥୪୦
କେ ତୋହୋର ପିଅର କେ ତୋହୋର ମାତା ।
କେବଣ ପୁରୁଷର ଅଟୁ ତୁ ବନିତା ॥
କିସ ଅର୍ଥେ ତପ କରୁ ଯେଥେ ଥାଇ ।
ପ୍ରାଣ ରଖ ମୋର ହସିଣ କଥା କହିଁ ॥
ଉନ୍ମିଳ ନୟନେ ମୋତେ ଚାହୁଁକିନା ସଖି ।
କାମଦେବ ବାଣେ ମୁଁ ହୋଇଲି ନିର୍ମାଖି ॥
ଯେ ତୋହୋର ଅଧର ଚୁମ୍ବିବି ଯେଥେ ଥାଇଁ ।
ଲଙ୍କାଗଡ଼ରେ ମୋର ପ୍ରିଓଜନ ନାହିଁ ॥
ବାହାରେ ବାହା ବାନ୍ଧି କରିବଇଁ କୋଳ ।
ଗାଢ଼େ ମର୍ଦ୍ଦିବି ତୋର ଯେ କୁଚ ଯୁଗଳ ॥୫୦
ଜାନୁକୁ ଜାନୁ ଛନ୍ଦି କରିବି ସୁରତି ।
ତେବେ ସେ ମନମୋର ହୋଇବ ତୃପତି ॥
ଉଠ ଉଠ ସୁନ୍ଦେରୀ ନକର ବିଳମ୍ବ ।
ତୋତେ ଦେଖି ମୋର ଭାଜିଲା ସବୁ ଦମ୍ଭ ॥
ସର୍ବ ସୁଲକ୍ଷଣୀ ଅଟୁସିରେ ନାରୀ ।
ତୋର ରୂପ ଦେଖିକି ମନ ମୁରୁଛି ପାରି ॥
ଯୁବତୀ ଶିରୋମଣି ତୁ ଅମୂଲ୍ୟ ପ୍ରତିମା ।
ଅତି ଯତନେ ତୋତେ ଗଢ଼ିଲାକ ବ୍ରହ୍ମା ॥
ଅନେକ ପୁଣ୍ୟେଣ ଭେଟିଲି ତୋତେ ସଖି ।
ଦୟା କିମ୍ପା ନକରୁ କାକୁସ୍ତ ମୋର ଦେଖି ॥ ୬୦
ଶୁଣିଲା ସୁନ୍ଦେରୀ ଦଶାନନ ବାଣୀ ।
ଡରେ ଥରହର କମ୍ପଇ ତରୁଣୀ ॥
ହେଠମାଥ ହୋଇଁ କହଇ ବଚନ ।
ଯାହା ତୁ ପଚାରିଲୁ ଶୁଣ ଦଶାନନ ॥
କୁଶଧ୍ୱଜ ଋଷିର ମୁଁ ଅଟଇ ଦୋହିତା ।
ବେଦମତୀ ନାମ ମୋତେ ଦେଲେ ପିତା ॥
ବେଦ ଅଧ୍ୟୟନରୁ ମୁଁ ହୋଇଲଇଁ ଜାତ ।
ତେଣୁ ବେଦମତୀ ନାମ ମୋତେ ଦେଲା ତାତ ॥
ବେଦୁଁ ଜନ୍ମିଲି ମୁଁ ରୂପେଣ ଅଗୁଁଳି ।
କାହାକୁ ଦେବି ବୋଲି ପିତା ମୋର ଭାଳି ॥୭୦
ଦେବ ଦକ୍ଷ କିନ୍ନର ଗନ୍ଧର୍ବ ବିଦ୍ୟାଧର ।
ମୋତେ ଉପଗତ ହୋଇଲେ ବହୁତ ବର ॥
ଚଉଦ ଭୁବନ ଲୋକେ ମୋତେ ନୋହିଲେ କେହି ସରି ।
ମୁଖ ଚାହିଁ ମୋର ପିଅର ବିଚାରି ॥
ଯେ କନ୍ୟାକୁ ସମାନ୍ୟ ବ୍ରହ୍ମାଣ୍ଡେ ବରନାହିଁ ।
ହେମବନ୍ତ ଦୋହିତା କି ପାର୍ବତୀ ଅଟଇ ॥
ଲକ୍ଷ୍ମୀକି ପଟାନ୍ତର ଅଟଇ ସୁନ୍ଦେରୀ ।
ବିଷ୍ଣୁ ସେ ଯେହାକୁ ଭ୍ରଥାପଣେ ସରି ॥
ଅଭାର୍ଜନ ଲୋକଙ୍କୁ କିମ୍ପାଇ ଯେହାକୁ ଦେବି ।
ନାରାଏଣକୁ ଭେଟିବାଯାଏ ଥୋଇଥିବି ॥୮୦
ଯେତେ ବୋଲି ବର ବାହୁଡ଼ାଇଁ ଦେଲା ।
ମୋତେ ଯେକକାଠି ମେଢ଼ରେ ଥୋଇଲା ॥
ଯହୁଁ ସେ ବିଭାମୋତେ ନକଲା କାହାକୁହିଁ ।
ସମସ୍ତେ ପିତାଙ୍କୁ ମୋର ଅହନ୍ତାଭାବ ବହି ॥

ଶମ୍ଭୁନାମେ ଏକ ଅସୁର ଅଇଲା ।
ରାତ୍ରକାଳେ ମୋର ପିତାକୁ ମାଇଲା ॥
ମାତା ମୋର ପ୍ରାଣ ହାରିଲା ପିତା ପାଇଂ ।
ସ୍ୱାମୀର ନିମନ୍ତେ ସେହୁ ଅଗ୍ନି ଖାଇ ॥
ମୁହିଂ ଏକାହୋଇ ରହିଲଇଂ ଯେଥ ।
ମନେ ମନେ ଚିନ୍ତା ଯେ କରଇ
ବିଷ୍ଣୁନାଥ ॥୯୦
ପିତା ମୁଖରୁ ମୁଂ ଯାହା ଅଛଇଂ ଶୁଣି ।
ବର ବରିବି ମୁଂ ଶଙ୍ଖଚକ୍ର ପାଣି ॥
ଆନବରେ ମୋର କିଛି କାର୍ଯ୍ୟ ନାହିଂ ।
ତପ କରୁଛି ମୁଂ ନାରାଏଣ ପାଇଂ ॥
ଅନେକ ଯୁଗ ଯେ ଯେହିମତେ ଗଲା ।
ମତେ ପଚାରନ୍ତା କେହିତ ନୋହିଲା ॥
ଧ୍ୟାନେ ଜାଣିଲି ତୁ ବିଶ୍ରବାର ସୁତ ।
ନଉକେଶୀ ରାକ୍ଷାସୁଣୀ ଗର୍ଭରୁ ସମ୍ଭୂତ ॥
ଯାଅସି କ୍ଷଣେ ଯେଥି ନରହ ଦଶଗ୍ରୀବ ।
ନାରାଏଣ ଧ୍ୟାନ ମୋର ଅନ୍ତର
ହୋଇବ ॥୧୦୦
ଶୁଣିଣ ଦଶଗ୍ରୀବ ବିବାନୁ ଓହ୍ଲାଇଲା ।
ଲୋଭେଣ ବେଦମତୀ ସନ୍ନିଧକୁ ଗଲା ॥
ବୋଇଲା ସୁନ୍ଦେରୀରେ ତୈଲୋକ୍ୟ
ମୋହିନୀ ।
କୋକିଳ ଭାଷେଣୀରେ ମତଗଜ ଗମନୀ ॥
ଉଠି ଗାଢ଼େ ମୋତେ ଆଲିଙ୍ଗନ କର ।
କାମଭରେ ତନୁ କମ୍ପଇ ଥରହର ॥
ବିଷ୍ଣୁ ବିଷ୍ଣୁ ବୋଲି ଯାହାକୁ ବୋଲୁ ନାରୀ ।
ଯେହାଥକୁ ମୋର ନୋହଇ ସେହୁସରି ॥
ମୁହିଂ ଦଶଶିରି ଆବର ବିଂଶବାହୁ ।
ଲଙ୍କାର ଠାକୁର ଅସୁରଙ୍କର ପ୍ରହୁ ॥ ୧୦
ତିନିପୁରେ ମୋତେ କ୍ଷତ୍ରୀନାହିଂ ସରି ।
ତୁ ସଖି ମୋର ହୋଅସି ମନୋହାରୀ ॥
ମୁହିଂ ତୋତେ ଦେଖି ହୋଇଲଇଂ ବଶ୍ୟ ।
ନିଙ୍କଳଙ୍କ ମୁଖଚନ୍ଦ୍ରମା ନ କର ବିରସ ॥
ଦେହ ସାଦୃଶେ ତୋତେ ଅଳଙ୍କାର ଦେବି ।
ଭୃତ୍ୟ ଜାଣି ପ୍ରିୟାରେ ସେବା କରିଥିବି ॥

ଆସ ଆସ ବିଳମ୍ବ ନକରରେ ସହି ।
ମଦନ ଅନଳେ ଯେ ପୋଡ଼ଇ ମୋର
ଦେହୀ ॥
ଶୁଣିଣ ବେଦମତ୍ରୀ କୋପେଣ ବୋଇଲା ।
ଜାଣିଲି ମୃତ୍ୟୁ ତୋର ନିକଟ ହୋଇଲା ॥୨୦
ବିଷ୍ଣୁର ମହିମା ତୁ ନାହୁ କିରେ ଶୁଣି ।
ଅନନ୍ତକୋଟି ବ୍ରହ୍ମାଣ୍ଡ ଠାକୁର ଚକ୍ରପାଣି ॥
ଉତପତି ଥିତି ପ୍ରଳୟ କରନ୍ତା ।
ଯାହାର ନାଭି ପଦ୍ମରୁ ଜନ୍ମିଲା ବିଧାତା ॥
ତମ ଗୁଣରୁ ରୁଦ୍ରକୁ କଲାକ ଉତପତି ।
ପ୍ରକୃତିରୁ ଜାତ ହେଲା ଭଗବତୀ ॥
ଆକାଶେ ଶିର ଯାର ପାତାଳେ ପଏର ।
ଦଶଦିଶେ ପୂରି ଯେ ଅଛଇ କଳେବର ॥
ଚନ୍ଦ୍ର ସୂର୍ଯ୍ୟ ନୟନ ପବନ ନିଶ୍ୱାସ ।
ଗରୁଡ଼ ବାହନ ଶ୍ରୀବକ୍ଷ ଲାଞ୍ଛନ
ପୀତବାସ ॥୩୦
କଉସ୍ତୁଭ ହାର କଟିରେ ମେଖଳା ।
ଯେସେ ନିର୍ଭା ଦଶଦିଗ ପାଳନ୍ତ କଳା ॥
ସେ ପ୍ରଭୁକୁ ବୋଲୁ ଅସ୍ତୁକାରବାଣୀ ।
ଜାଣିଲି ବଡ଼ ଦୁଷ୍ଟ ତୁ ଅଟୁ ବିଂଶପାଣି ॥
ସଚରାଚର ଯାର ଗର୍ଭରେ ପୂରିଅଛି ।
ସବୁହୁଂ ବଡ଼ ସ୍ୱାମୀ ଅଟନ୍ତି ଶ୍ରୀବସି ॥
ଅନନ୍ତ ମୂରତି ଅନ୍ତନାହିଂ ଯାହାର ।
ଦେବଙ୍କୁ ଦୁର୍ଲ୍ଲଭ ମହିମା ଅଗୋଚର ॥
ତୁ ବୋଲୁ ମୋହୋର ହାଥକୁ ନୋହେ
ସରି ।
ଯେମନ୍ତ ବୁଦ୍ଧିରେ ନିଶ୍ଚଏ ହାଦେ ମରି ॥୪୦
ଶୁଣି ଦଶଗ୍ରୀବ ଧାଇଂଲାକ କୋପେ ।
ବେଦମତୀ କନ୍ୟାକୁ କୋଳକଲା ଆପେ ॥
ହିଆରେ ହିଆ ଭିଡ଼ି ମୁଖେ ଚୁମ୍ବଦେଲା ।
ଚନ୍ଦନ ଗଛେ କି କାଳସର୍ପ ବେଢ଼ିଲା ॥
ଅସୁଖ ପାଇଲା ସେ ଶରଦ ଚନ୍ଦ୍ରମୁଖୀ ।
ବ୍ୟାଧକି ବନ୍ଧନ କଲା ଚକୋରୀକି ॥
କୋପେଣ ସୁନ୍ଦେରୀ ବୋଇଲା ମୋତେ
ଛାଡ଼ ।

ଲୋଭ ଆଚରଣେ ଅମଡ଼ା ନ ମାଡ଼ ॥
ଯେ କିସ ମହାତମା ଗୁଣ ଅଟଇ
ତୋହୋରି ।
ତୁ ମହାପୁରୁଷ ଆମ୍ଭେ ଅବୋଧ ନାରୀ ॥୫୦
ଯେତେହେଂ ଦେହ ପାଇଲା ମୋର ପ୍ରାସ ।
ଯେହିକ୍ଷଣି ଉଡ଼ିଯିବଟି ମୋହୋର ସାହସ ॥
ଛାଡ଼ ଛାଡ଼ ମୋତେ ସୁସ୍ଥ ହୋଇଣ କହଇ ।
ଏ ତୋହୋର ଦେହେ ପୁଣ ଦୟା ନବସଇ ॥
ଶୁଣିଣ ଦଶାନନ ଛାଡ଼ିଣ ଉଭାହୋଇଂ ।
ସନମତ କଲା ପ୍ରାଏ ମନକୁ ତାର ଯାଇଂ ॥
ଯେତେବେଳେ ରାବଣ ଛାଡ଼ିଲା ତାର
କେଶ ।
ବେଦମତୀ ସୁନ୍ଦେରୀ ଚାହଂଇ ଦଶଦିଶ ॥
ଧର୍ମକୁ ସାକ୍ଷୀକରି ରାବଣକୁ ବୋଇଲା ।
ତୋହୋର ମରିବାର ନିକଟ ହୋଇଲା ॥୬୦
ଯେ ମୋର ପବିତ୍ର ତନୁ ଛୁଇଂଲୁ ଅସୁର ।
ଆବର କିପାଇଂ ମୁଂ ଧରିବି ଶରୀର ॥
ନ ଧରଇ କାଏ ଅନଳେ ଝାସଦେବି ।
ଯେହିକ୍ଷଣି ମରିବି କ୍ଷଣେହେଂ କିମ୍ପାଥିବି ॥
ବିଷ୍ଣୁର ସେବା ମୋର ଖଣ୍ଡିଲୁ ପାପିଷ୍ଟି ।
ସ୍ୟତୀ କିଂ ଛୁଇଂବାକୁ ଭାର୍ଜନ ହୋଇଲୁ ତୁ
ନଷ୍ଟି ॥
ମୁହି ତୋତେ ଶାପ୍ୟ ଦେଇପାରଇ ଯେବେ ।
ତପକ୍ଷଏ ହୋଇ ବୋଲି ଡରଇ ଦଶଗ୍ରୀବେ ॥
ମୁହିଂ ଯେବେ ସ୍ୟତୀ ବାସୁଦେବର ଦାସୀ ।
ଅଯୋନି ଜାତ ମୁଂ ହେଲି ବ୍ରହ୍ମକୁଳେ
ଆସି ॥୭୦
ଯେ ତୋର ଜୀବନ ହୋ ଘେନିବି ନିଶ୍ଚଏ ।
ମୋହୋର ହେତୁରୁ ତୁ ନାଶଯିବୁ
ଲଙ୍କରାଏ ॥
ଯେତେ ବୋଲି ଦେବୀ ବିଷ୍ଣୁକୁ ସୁମରିଲା ।
ମନଅଗ୍ନି ଘେନି ଶରୀର ଦହିଲା ॥
ଦେଖିଣ ପଳାଇଲା ରାବଣ ଦଶଶିରି ।
ବୋଇଲା ନିଶ୍ଚଏ ହୋ ସରିଲା ଯେଢ଼େ
ଶିରୀ ॥

ଯେଥୁ ଅନନ୍ତରେ ଶୁଣ ରାମରାହୁ ।
ବେଦମତୀ କନ୍ୟା ଅଗ୍ନିରେ ଝାସଦେଲା
ଯହୁଁ ॥
ସୁରଗଣେ ମିଳି ପୁଷ୍ପ ବୃଷ୍ଟି କଲେ ।
ସାଧୁ ସାଧୁ ସାଧେବୀ ବୋଲିଣ
ପ୍ରଶଂସିଲେ ॥୮୦
ମନେ ବିଚାରିଲେ ହୋଇଲା କାର୍ଯ୍ୟ ସିଦ୍ଧ ।
ବେଦମତୀ କନ୍ୟା ଯୋଗୁଂ ରାବଣ ଯିବ
ବଧ ॥
ଯେଥୁ ଅନନ୍ତରେ ଶୁଣିମା ରାମରାଏ ।
ଜନେକ ମହାମୁନି ଯାଗ ଆରମ୍ଭ କଏ ॥
ଯହୁଁ ଦଶଗ୍ରୀବ ଉପଦର୍ପ କଲା ।
ଋଷି ଗୋରୁ ବ୍ରାହ୍ମଣ ପରଜାନ୍ତ ଖାଇଲା ॥
ଋଷିମାନେ ବସି ତହିଁ କରନ୍ତି ବିଚାର ।
କେବଣ ବାଗେ ବଧ ହୋଇବ ଦଶଶିର ॥
ଜନେକ ବୋଇଲେ ମୋର ଅଛଇ
ଉପାଏ ।
ଯେଣେ ନାଶଯିବ ଦଶଗ୍ରୀବ ରାଏ ॥୯୦
ଯାଗ କରି ପୂର୍ଣ୍ଣ ଆହୂତି ସମର୍ପିବି ।
ଲକ୍ଷ୍ମୀ ସମାନେ ମୁଂ ଦୋହିତା ଅର୍ଜିବି ॥
ତାହା ନାରାୟଣଙ୍କୁ କରିବଇଂ ବେହା ।
ବିଷ୍ଣୁ ବାଣେ ସେ ମରିବ ବିଂଶବାହା ॥
ଶୁଣିଣ ଋଷିମାନେ ଆନନ୍ଦ ହୋଇଲେ ।
ଦକ୍ଷିଣ ସିନ୍ଧୁତୀରେ ଯାଗ ଆରମ୍ଭିଲେ ॥
ଲଙ୍ଗଳେ ଭୂମି ଚଷନ୍ତେଣ ମୁନିବର ।
ଯେସନ ସମଏ ଅଇଲା ବିଶ୍ରବା କୁମର ॥
ପୁଷ୍ପେକ ବିମାନର ଦିଶିଲାକ ଧ୍ୱଜା ।
ଜନେକ ବୋଇଲା ଯେ ଅଇଲା
ଲଙ୍କରାଜା ॥୧୦୦
କରିବ ଅନର୍ଥ ଯେ ଚାଲ ଆଡ଼େ
ହୋଇଯିବା ।
ପଛେ ବିଚାରିଣ କାର୍ଯ୍ୟନ୍ତ ନିର୍ଭାଇବା ॥
ଯେତେ ବୋଲି ମୁନିମାନେ ପଳାଇଣ
ଗଲେ ।
ଛତା ଧୋତି ପିଢ଼ା ନନ୍ଦକେ ପାଶୋରିଲେ ॥

ବେଦମତୀ ଦେହ ଅଗ୍ନିରେ ଦଗଧିଲା ।
ଅକ୍ଷଏ ପିଣ୍ଡତାର ଯେ ଦହନ ନୋହିଲା ॥
ସତୀ ବିନାଶ ନୋହି ଅଛଇ କଳେବର ।
ଯାଇଂଣ ଦେଖିଲା ବିଶ୍ରବା କୁମର ॥
ବୋଇଲା ବେଦମତୀ ଦଗଧିଲା କାଏ ।
କେବଣ କାରଣେ ଯେ ଅଗ୍ନିରେ ନାଶ
ନୋହେ ॥୧୦
ଯେତେ ବିଚାରିଣ ସେ ଯାଇଂଣ ଧଇଲା ।
ହୁତାଶନୁ କାଢ଼ି ପିଣ୍ଡ ଘେନିଗଲା ॥
ରଥରେ ପୂରାଇ ସେ ନେଲା ଲଙ୍କାପୁରେ ।
ଯେକାନ୍ତରେ ପ୍ରବେଶ ହୋଇଲା ଅନ୍ତପୁରେ ॥
ମନ୍ଦୋଦରୀ ରାଣୀଙ୍କି ହକାରିଲା କତି ।
ଗୁପତ କରିଣ କହଇ ଲଙ୍କପତି ॥
ଶୁଣ ସଖୀ ଆମ୍ଭେ ଜମ୍ବୋଦୀପକଇ ଗଲୁ ।
ତପ କରନ୍ତେଣ କନ୍ୟାଏ ଦେଖିଲୁ ॥
ପ୍ରୀତି ତାକୁ କରନ୍ତେଣ ନୋହିଲାକ ବଶ୍ୟ ।
ବଳେ ଆକ୍ରୋଷିଣ ଧଇଲି ତାର
କେଶ ॥୨୦
ସମାଧାନ କରିପୁଣ ଛଡ଼ାଇଲା ବାଳ ।
କାଠ କୁଢ଼ାଇଣ ଜାଳିଲା ଅନଳ ॥
ଦୂଷିଲା ଦେହ ବୋଲି ଦହିଲା ଚାନ୍ଦମୁହିଂ ।
ଅନଳେ ସମର୍ପିଲା ତାହାର ନିଜ ଦେହୀ ॥
ଆଶ୍ରିଯ ହୋଇଲି ମୁଂ ମୃତୁ ପିଣ୍ଡ ଚାହିଂ ।
ଦହିଯ ନୋହିଲା ସେ ପିଣ୍ଡ ଅଛି ରହି ॥
ଅନଳୁ କାଢ଼ିଣ ଆଣିଣ ତାକୁ ଅଛି ।
ଛଡ଼ରସେ ମୋଞ୍ଜନ ଏହାକୁ କରସି ମୃଗାକ୍ଷି ॥
ଜାଣିମା କେତେମାନ ସ୍ୱାଦ ତାର ରସ ।
ଶୁଣିଣ ମନ୍ଦୋଦରୀ ମନରେ ହରଷ ॥୩୦
ସୁବର୍ଣ୍ଣ ମଞ୍ଜୁଷେକ ଗଢ଼ାଇଲା ତଡ଼ତି ।
ଉପରେ ଢାଙ୍କୁଣି ଦେଇଣ ଭରନ୍ତି ॥
ପାଟ ଦଉଡ଼ିରେ ବାନ୍ଧି ଜଉମୁଦ ଦେଲା ।
ଯେକାନ୍ତ ଠାବରେ ଯତ୍ନ କରିଣ ଥୋଇଲା ॥
ନିତ୍ୟେହେଂ ମନ୍ଦୋଦରୀ ବେଳେ ବେଳେ
ଦେଖି ।
ଅତିହିଂ ନିର୍ବନ୍ଧ କରିଣ ଅଛି ରଖି ॥

ଯେସନେକ ସମଏ ମିଳିଲେ ନାରଦ
ମହାମୁନି ।
ଦେଖିଣ ଉଠିଲାକ ସେ ମନ୍ଦୋଦରୀ ରାଣୀ ॥
ଋଷିଙ୍କି ଦେଖିଣ ଯୋଡ଼ଇ ବେନିକର ।
କଲ୍ୟାଣ କରି ପୁଣ କହନ୍ତି ମୁନିବର ॥୪୦
ପୁଣ ନମସ୍କାର କଲାକ ମହାଦେଈ ।
କର ଦୁଇ ଯୋଡ଼ି ସେ ବିନୟ ଭାବେ
ଉଭାହୋଇ ॥
ମୁନି ପଚାରନ୍ତି ଏ ତୋହୋର କିସ ।
କାହୁଁ ପାଇଲୁ ଏ ଦରପୋଡ଼ା ମାଂସ ॥
ରାଣୀ ବୋଇଲାକ ଏହା ଆଣିଛି ଲଙ୍କପତି ।
ଛଡ଼ରସ ମୋଞ୍ଜନ ଭୁଞ୍ଜିତ କରଇ ମତି ॥
ନାରଦ ବୋଇଲେ ଏହା ନକର ବିନାଶ ।
ସ୍ୱାମୀକି ତୋହୋର ପଛେ ଭୁଞ୍ଜାଅ ଆନ
ମାଂସ ॥
ଯାଂକୁ ଯତନ କରି ଥୋଇଣ ଥାଅସି ।
ଯେଣେ ଦେବ କାର୍ଯ୍ୟ ଗୋ ହୋଇବ
ଶୁଭ୍ରକେଶୀ ॥୫୦
ମୁନିର ବଚନେ ରାଣୀ ହୋଇଲାକ ତୋଷ ।
ହେମ କୁଣ୍ଡେ ନେଇ ଥୋଇଲାକ ମାଂସ ॥
ଉପରେ ଗଉଛୁଣି ପାଟ ଦଉଡ଼ି ବାନ୍ଧି ।
ଛଡରସ ମେଂଞ୍ଜନ ଆନ ମାଂସ ରାନ୍ଧି ॥
ଆନ ମାଂସ ସ୍ୱାମୀକି ମୋଣୋହି କରାଇଲା ।
ସୁବର୍ଣ୍ଣ ମଞ୍ଜୁଷାରେ ସେ କନ୍ୟାକୁ ଭରିଲା ॥
ସମୋଦ୍ରେ ମେଲିଦେଲା ମୁନିର ବଚନେ ।
କାର୍ଯ୍ୟ ନିଭାଇ ମୁନି ଗଲେ ଅନ୍ତର୍ଦ୍ଧାନେ ॥
ଯେଥୁ ଅନନ୍ତରେ ତୁମ୍ଭେ ଶୁଣ ରଘୁସାଇଂ ।
ସମୁଦ୍ରେ ମଞ୍ଜୁଷା ପକାଇଲା ନେଇ ॥୬୦
ବରୁଣ ଜାଣିଲା ଯେ ସେ କମଳାକ୍ଷି ।
ରାବଣ ମାରିବାକୁ ଜାତ ହୋଇଅଛି ॥
ଥିର ଥିର କରି ଲହଡ଼ିରେ ନେଲା ।
ଜାମ୍ବୋଦ୍ୱୀପରେ ନେଇଣ ଯତନେ
ଥୋଇଲା ॥
ସିନ୍ଧୁର ଦୂଲଣୀ ପୃଥିବୀ ମଧ୍ୟେ ଅଛି ।
ମହାଯୋଗ ନିଦ୍ରା ହୋଇଲା କମଳାକ୍ଷି ॥

କାଳେ ପୁଣ ଜନେକ କରନ୍ତେଣ ଯାଗ୍ୟଂ ।
ପ୍ରାପତ ହୋଇଲା ତାକୁ ତପ ଫଳ ଭାଗ୍ୟ ॥
ଫାଳର ମୁନେ ଯହୁଂ ଲାଗିଲା ମଞ୍ଜୁଷ ।
ଜନେକ ପଚାରିଲେ ଏଥି ଅଛି କିସ ॥ ୭୦
ଫେଡ଼ି ଦେଖିଲା ସୁବର୍ଣ୍ଣ ଗଉଛୁଣି ।
ଭିତରେ ସମ୍ଭୂତ ସେ ସୟେଂ କମଳଣୀ ॥
ଶୁକ୍ଲପକ୍ଷ ଦ୍ବୁତୀଆର ଚନ୍ଦ୍ରମା ଯେହ୍ନେ ଦିଶି ।
ଦଖିଣ ଆନନ୍ଦ ଯେ ହୋଇଲେ ସକଳ
ଋଷି ॥
ଯାଗର ଫଳ ଜନେକ ହସ୍ତରେ ପାଇଲା ।
କନ୍ୟାକୁ ଘେନି ଜନେକ ଅନ୍ତଃପୁରେ ଗଲା ॥
ଫାଳର ମୁନେ ଯହୁଂ ଉକୁଟିଲା ବନିତା ।
ତେଣୁ କରି ନାମ ତାର ହୋଇଲାକ ସୀତା ॥
ସେସେ ରଘୁନାଥ ତୋହର ପାଟରାଣୀ ।
ଜଗତ ଜନନୀ ତ୍ରୈଲୋକ୍ୟ
ନାୟେକାଣୀ ॥୮୦
ଶୁଣିଣ ଶ୍ରୀରାମ ନମସ୍କାର କଲେ ।
ଭୋମୁନି ଏଥୁ କିସ କହସି ବୋଇଲେ ॥
ଯେଥୁ ଅନନ୍ତରେ ପୌଲସ୍ତିର ନାତି ।
ଅଗସ୍ତି କହନ୍ତି ଶୁଣ ରଘୁପତି ॥
ବଳେ ଉତକଟ ବହୁତ ଅନ୍ୟାଏ କଲା ।
ପୁଷ୍ପେକ ରଥ ଆରୋହି ସେ ଜଗତ
ବୁଲିଗଲା ॥
ଦିନେକ ମରେତ ରାଜାକୁ ଯାଇ ଭେଟି ।
ସବୁ ଦେବତାଏ ତହିଂ ହୋଇଥିଲେ
ଏକଗୋଷ୍ଠୀ ॥
ଯାଗ କରଇ ସେ ମରେତ ନୃପବର ।
ଯେସନେକ ସମଏ ମିଳିଲା ଦଶଶିର ॥୯୦
ବୃହସ୍ପତିଙ୍କ ଭାଇ ସୁମନ୍ତକ ନାମେ ଋଷି ।
ଯାଗରେ ଆଚାର୍ଯ୍ୟେ ସେ ହୋଇଅଛନ୍ତି ବସି ॥
ଧୂରୁ ପୁଷ୍ପେକ ରଥ ଦେଖି ଦେବଗଣ ।
ବିଚାରିଲେ ଆସୁ ଅଛଇ ରାବଣ ॥
କରିବ ଅନର୍ଥ ବୋଲି ଆଡ଼େ
ହୋଇଗଲେ ।
ଥୋକେ ଋଷିମାନେ ଯାଇଣ ନ ପାରିଲେ ॥

ଯେସନେକ ସମଏ ମିଳିଲା ଲଙ୍କପତି ।
କରେ ଧରିଅଛି ପ୍ରଚଣ୍ଡ ଶକତି ॥
ମରତକୁ ଚାହିଂଣ ବୋଲଇ ବଚନ ।
ମୋହୋର ସଙ୍ଗେ ଯୁଦ୍ଧ କରସି
ରାଜନ ॥୧୦୦
ରଣରଙ୍କ ହୋଇଣ ମୁଂ ବୁଲୁଅଛି ମହୀ ।
ଯୁଦ୍ଧ ଦେଇ ତ୍ରିପୁତି କର ମୋର ଦେହୀ ॥
ତୁହି ମହାରାଜା ବୋଲି ଶୁଣିଣ ଅଇଲି ।
ମନେ ବିଚାରିଲି ଯେବେ ସମର ପାଇଲି ॥
ତୁ ମୋତେ ନିରାଶ ନ କର ମରତ ।
ଯତନେ ଅଇଲି ମୁଂ ସଂଗ୍ରାମ କରିତ ॥
ଶୁଣି ମରତ ରାଜା ରାବଣକୁ ପଚାରି ।
କେବଣ ଦେଶରୁ ତୁ ଅଇଲୁ ଦଶଶିରି ॥
ତୋହୋର କିସ ନାମ କାହାର ତୁହୋ ସୁତ ।
କେହୁ ଅଟଇ ତୋହୋର ଗର୍ଭଧାରୀ
ମାତ ॥୧୦
ଯେତେକ ବଳ ପାଇଲୁ ଅବା କାହୁଂ ।
ପୃଥ୍ୱୀ ବୁଲି ସାଂଗ୍ରାମ ଲୋଡ଼ୁଅଛୁ ଯହୁଂ ॥
ରାବଣ ବୋଇଲା ମୁଂ ବିଶର୍ବାର ସୁତ ।
ନଉକେଶା ରାକ୍ଷାସୁଣୀ ଅଟଇ ମୋର ମାତ ॥
ଲଙ୍କାର ରାଜା ମୁଂ ନାମ ମୋ ରାବଣ ।
ଚତୁର୍ଦ୍ଦିଗେ ବିଦିତ ମୋ ବଡ଼ପଣ ॥
କୁବେରକୁ ଜିଣି ମୁଂ ପୁଷ୍ପେକ ରଥ ନେଲି ।
କପିଳାସ ପର୍ବତ ମୁଂ ହେଳେଣ ଉପାଡ଼ିଲି ॥
ଯେବେ ତୋତେ ଭେଟିଲି ଯୁଧ୍ୟ ମୋତେ
ଦେସି ।
ଶୁଣିଣ ମରତ ରାଜା ବୋଇଲାକ ହସି ॥୨୦
କୁବେର ତୋହୋର ତ ଅଟଇ ଜ୍ୟେଷ୍ଠ
ଭାଇ ।
ତାହାକୁ ଜିଣିମା ତୋହୋ ଗଉରୋବ
ନୋହଇ ॥
ସ୍ବଭାବେ ସୋଦର ଅଟଇ ଜ୍ୟେଷ୍ଠ ଭ୍ରାଥ ।
ବିଶର୍ବା ସମାନେ ଅଟଇ ତୋର ତାତ ॥
ତାହାକୁ ଜିଣିଣ ତୁ ଯେ ବଡ଼ପଣ କହୁଂ ।
ଯେ ତୋହୋର ନ ଜାଣିମା ପଣ ବିଂଶବାହୁ ॥

ବିଶର୍ବା ମହାଋଷିର ଅଟୁ ତୁହି ସୁତ ।
ରାକ୍ଷାସୁଣୀ ଗର୍ଭରୁ ହୋଇଲୁ ସମ୍ଭୂତ ॥
ତେଣୁକରି ତୁ ଜଗତ ଜିଣିବାକୁ ଲୋଡୁ ।
କୁବେରକୁ ଜିଣି ସେ ବୋଲାଉ
ହନ୍ତକାରୁ ॥୩୦
ଯେଥେ ଯେବେ ଅଇଲୁ ଯୁଝିତ ମନକରି ।
ଜଗତ ବୁଲିଣ ତୁ ଫୁଟିଲୁ ଦଶଶିରି ॥
ଶ୍ରମ ଶ୍ୟାନ୍ତି ହେଉ କ୍ଷଣେ ଏଥି ବସ ।
ଝାଳ ଗଳୁଅଛି ଖର ନିଶୁଆସ ॥
ସୁସ୍ତ ହୋଇଣ ତୁ ପଛେ ଯୁଧ୍ୟ କର ।
ନିଷ୍ଟଏ ମୁଂ ତୋତେ ଦେବଇଂ ସମର ॥
ମରତ ମନ୍ତ୍ରୀ ଅଟଇ ଅଶମ୍ଭୂତେ ।
ସେ ପାଇଂ ରାଜାକୁ କହନ୍ତି ଏକାନ୍ତେ ॥
କିମ୍ପାଇ ସନମତ କରୁଛୁ ନୃପବର ।
ସାଂଗ୍ରାମ କାଳ ଏ ନୋହଇ
ତୋହୋର ॥୪୦
ଯେ ବଡ଼ ବଳିଷ୍ଟ ଅଟଇ ଦଶଶିରି ।
ଦେଖିଲୁଟିକି ହୋ ଦେବତାଯେ ପଳାଇଲେ
ଡରି ॥
ପ୍ରୀତି କରି ଏବେ ପଠିଆଅ ଏହାକୁ ।
ଦଶଦିଗପାଳେ ଡରନ୍ତି ଯାହାକୁ ॥
ମନ୍ତ୍ରୀର ବୋଲ ଶୁଣି ମରତ ମହାରାଏ ।
ରାବଣକୁ ବହୁତ ଅର୍ଚ୍ଚନା ବିଧିକଯେ ॥
ପ୍ରୀତି କରିଣ ସେ ଗଉରୋବ କଲା ।
ମୁହିଂ ତୋତେ ସମରେ ନୁଆରିବି
ବୋଇଲା ॥
ତୁ ମହାକ୍ଷେତ୍ରୀ କପିଳାସ ତୋଳୁଂ ।
ପୁଷ୍ପେକ ବିମାନେ ବସି ଜଗତ
ଜିଣିଲୁ ॥୫୦
ପ୍ରସନ୍ନ ହୋଇ ତୋତେ ବିଧାତା ବର
ଦେଲା ।
କୋବେର ପୁଣ ତୋହକୁ ସମରେ ହାରିଲା ॥
ମୁହିଂ ମନିଷ୍ୟ ଯେ ଧର୍ମ ପରାଏଣ ।
ତୋହୋର ସଙ୍ଗେ ମୁଂ କରି ପାରିବଇଂ
କି ରଣ ॥

ତ୍ରିପୁତି ହୋଇଣ ତୁ ବାହୁଡ଼ିଣ ଯାଯା ।
ତୋହୋର ସମାନେ ଲୋଡ଼ ଆନ ରାଜା ॥
ଯେତେ ବୋଲି ଧନ ଅଳଙ୍କାର ଦେଲା ।
ଭଗତି ଘେନି ରାବଣ ବାହୁଡ଼ିଲା ॥
ଯିବାର ବେଳେ ବଢ଼ାଇଲା ହାଥ ।
ଋଷିମାନଙ୍କୁ ଧରି ଖାଇଲା ବହୁତ ॥ ୬୦
ମରୁତ କହନ୍ତେ ନ କଲା ତାହା ବୋଲ ।
ତପୀମାନଙ୍କୁ ଧରି ଖାଇଲା ଲଙ୍କମଲ୍ଲ ॥
ରାଜାମାନଙ୍କୁ ଜିଣି କରଇ ପ୍ରଭୁପଣ ।
ପୁଷ୍ପେକ ଚଢ଼ିଣ ବୁଲଇ ରାବଣ ॥
ସମସ୍ତ ରାଜାଙ୍କର କଟକରେ ପଶି ।
ଦେଶ ଉଜାଡ଼ିଣ ବଳନ୍ତ ବିନାଶି ॥
ଅନ୍ତେଶ୍ୱର ମଧ୍ୟେ ଥାନ୍ତି ନୃପଗଣ ।
ଯେମନ୍ତ ସମଏ ଯାଇଂ ମିଳଇ ରାବଣ ॥
ରଥୁ ଓହ୍ଲାଇ ସେ ମାଗଇ ଦିଅ ଯୁଧ୍ୟ ।
ନୋହିଲେ ଏହିକ୍ଷଣି କରିବି ପ୍ରାଣ ବଧ ॥୭୦
ମୁହିଂ ଦଶାନନ ରାକ୍ଷାସ କୁଳପତି ।
କୋବେରକୁ ଜିଣି ପୁଣ ଘେନିଲି ବିଭୂତି ॥
କପିଳାସ ପର୍ବତକୁ ଉପାଡ଼ିଲି ବଳେ ।
ମରତ ରାଜାକୁ ଜିଣିଲି ଅବହେଳେ ॥
ଅକଣ୍ଟେକ ରାଜ୍ୟ ଲଙ୍କା ମୁଁ ଭୋଗ୍ୟ କରି ।
କ୍ଷତ୍ରୀ ବୋଲାଇଲେ ତାହାର ଦର୍ପ ହରି ॥
ଶୁଣିଣ ନୃପତି ଗଣେ ହୁଅନ୍ତି ତରସ୍ତ ।
ସମଧା ଦେଇ ପୁଣ ହୁଅନ୍ତି ଭଗତ ॥
ଆମ୍ଭେ ତୋର ସେବକ ହେଲୁ ଲଙ୍କସାଇଂ ।
ତୋର ସଂଗେ ଯୁଝିତ ଆମ୍ଭର ବଳ ନାହିଂ ॥୮୦
ଶୁଣି ଦଶଗ୍ରୀବ ବାହୁଡ଼ଇ ତୋଷେ ।
ପୁଷ୍ପେକ ଚଢ଼ି ଭ୍ରମଇଂ ଦେଶେ ଦେଶେ ॥
ଯେମନ୍ତେଣ ସକଳ ରାଜାନ୍ତ ସାଧ୍ୟ କଲା ।
ଭ୍ରମିଣ ଆସନ୍ତେ ଅଯୋଧ୍ୟାରେ ଭେଟିଲା ॥
ତୋହୋର ଉପର ବଂଶେ ବୟାଳିଶ ପୁରୁଷେ ।
ଅରଣ୍ୟେ ନାମେ ରାଜା ବନ୍ଦିତ ଦଶଦିଶେ ॥

ସମରେ ଅଜଏ କ୍ଷତ୍ରୀ ବୀରବର ନାମ ।
ତେଣୁ ସେ ଅରନ୍ୟେକ ନାମ ହୋଇଲା ରାଜନ ॥
ତିନିପୁରେ ତାକୁ କ୍ଷତ୍ରୀ ସମ ନାହିଂ ।
ଧାର୍ମିକ ଦେଖି ପ୍ରଶଂସା କରଇ ବିହି ॥୯୦
ତାହାର ବୀରପଣ ଶୁଣିଣ ରାବଣ ।
ଅଯୋଧ୍ୟାରେ ପଶିଣ ମାଗିଲାକ ରଣ ॥
ଶୁଣି ଅରନ୍ୟେକ ରାଜା ସାଜିଲାକ ବଳ ।
ଦଶଗ୍ରୀବ ସଂଗେ କଲାକ ରଣଗୋଳ ॥
ବ୍ରହ୍ମାର ବର ପାଇଂ ଦଇତ ମହାବୀର ।
ବିଷମ ସମରେ ସେ ଅଟଇ ହନ୍ତକାର ॥
ମାୟା ଯୁଧ୍ୟ କରି ସେହୁ ସଂଘାରିଲା ସନ୍ୟ ।
କୋପେଣ ସମର ଆସି କଲାକ ଅରନ୍ୟ ॥
ରଣଗୋଳ ଧନ୍ଦୋଳ ବାଜିଲା ଦୁହିଂଙ୍କରି ।
କୋପେ ଲଙ୍କପତି ଦିବ୍ୟାଶସ୍ତ୍ର ମାରି ॥୧୦୦
ରାବଣର ନାରାଜେ ପଡ଼ିଲା ଅରନ୍ୟ ।
ପୁଣି ଚେତନା ପାଇଂ ଅଯୋଧ୍ୟା ରାଜନ ॥
ଦଶଗ୍ରୀବକୁ ଚାହିଂ କୋପେ ଶାପ୍ୟ ଦେଲା ।
ମୋହୋର ବଂଶ ହାଥେ ମରସି ବୋଇଲା ॥
ଧର୍ମ ଯୁଧ୍ୟ ନ କରି ତୁ ଦିବ୍ୟାଶସ୍ତ୍ର କଲୁ ।
ଦେବତାଙ୍କ ଶର ମନୁଷ୍ୟଙ୍କୁ ମାଇଲୁ ॥
ଯେ ତୋର ଭଲ ପଣ ନୋହଇ ଲଙ୍କେଶ୍ୱର ।
ଯେତେକ ବୋଲି ପ୍ରାଣ ଛାଡ଼ିଲା ନୃପବର ॥
ପାର୍ଥିବ ଦେହ ତାର ଲୋଟିଲା ଧରଣୀ ।
ରଣଯୋଗ କରି ସ୍ୱର୍ଗ ଗଲା ନୃପମଣି ॥୧୦
ଯଶ କରି ବାହୁଡ଼ିଲା ବିଶର୍ବା ତନୟେ ।
ପୁଷ୍ପେକ ଆରୋହିଣ ଗଗନ ମାର୍ଗେ ଯାଏ ॥
ନିଜ ଲଙ୍କା ଗଡ଼ରେ ହୋଇଲା ପ୍ରବେଶ ।
ଏ ବଚନ ଶୁଣିଣ ବୋଲନ୍ତି ରଘୁଶିଷ ॥
ଭୋ ଅଗସ୍ତି ମୁନି ମୋତେ କଥା ଏକ କହ ।
ଯାହା ପଚାରୁଛି ବିଷମ ସନ୍ଦେହ ॥
ରାବଣ ଜଗତେ ଯେବେ କଲାକ ଉପଦର୍ପ ।
ଯୁଧ୍ୟ ନ କଲେ କିମ୍ପା ରାଜାଗଣ ସର୍ବ ॥

କି ଅବା ତାହାକୁ ବଳେ ନ ପାରିଲେ ଜିଣି ।
ମହା ମହା ରାଜାଏ ତ ଥିଲେ ଯେ ଧରଣୀ ॥୨୦
ଅଗସ୍ତି କହନ୍ତି ତୁମ୍ଭେ ଶୁଣ ରଘୁନାଥ ।
ଯହୁଂଣ ପ୍ରବଳ ହୋଇଲା ଦଶମାଥ ॥
ନୀତିବନ୍ତ ଲୋକେ ଭୟେ ଛାଡ଼ି ନିଜ କର୍ମ ।
ତାହା ଯୋଗୁଂ ସଂସାରରୁ ଛାଡ଼ିଗଲା ଧର୍ମ ॥
ଯାହାକୁ ରଖିଲେ ସେ ରଖନ୍ତା ନୋହିଲା ।
ଜଗତ ସଂସାର ଲୋକ ନିରେଖ ହୋଇଲା ॥
ଦେବତାଏ ଡରେ ପଳାଇ ଲୁଚିଥାନ୍ତି ।
ବ୍ରହ୍ମା ଈଶ୍ୱର ଯାହାକୁଇ ବର ଦେଇଛନ୍ତି ॥
ନାରାୟେଣ ପୁରୁଷକୁ କାଳକ ବାଟ ଚାହିଂ ।
ତେଣୁ ସେ ଅନ୍ୟସ୍ତା ହୋଇଲେ ସପତ ଦୀପାମହୀ ॥୩୦
ରାଜା ଥାଇଣ କରିବେ ଆଉ କିସ ।
ପ୍ରୀତି ହୋଇଣ ରକ୍ଷା କଲେ ନିଜ ଦେଶ ॥
ଶୁଣି କରି ଶ୍ରୀରାମ ହୋଇଲେ ତ୍ରିପୁତି ।
କର ଦୁଇ ଯୋଡ଼ିଣ ବୋଲନ୍ତି ରଘୁପତି ॥
କହସି ମହାମୁନି ହେ ଏଥିର ଉପରେ ।
କେବଣ ଚରିତ ସେ କଲା ଦଶଶିରେ ॥
ଅଗସ୍ତି ବୋଲନ୍ତି ରାମ ଏକମନେ ଶୁଣ ।
ମାହେଶ୍ୱରୀ କଟକେ ଦିନେ ଯାଇ ମିଳିଲା ରାବଣ ॥
ସହସ୍ରାଅର୍ଜ୍ଜୁନ ନାମେ ଏକ ନୃପତି ।
ସପତ ଦ୍ୱୀପରେ ସେ ଅଟଇ ଚକ୍ରବର୍ତ୍ତୀ ॥୪୦
ହୋଇହୋଇ ବଂଶେ ଅବତାର ରାଏ ।
କାର୍ତ୍ତବୀର୍ଯ୍ୟ ରାଜାର ଅଟଇ ତନୟେ ॥
ଯଯାତି ମୁନିଙ୍କ ବର ପରସାଦେ ।
ବିକ୍ଷାତ ହୋଇଲା ରାଜା ତ୍ରିଭୁବନ ମଧ୍ୟେ ॥
ଯହିଙ୍କି ମନ ତହିଂ ମିଳଇ ନୃପତି ।
ଧର୍ମ ବିଚାର କରି ପାଳଇ ସେ ପୃଥ୍ୱି ॥
ସେ ରାଜା ଏକଦିନେ ନର୍ମଦାକୁ ଗଲା ।
ସହସ୍ରେକ କନ୍ୟା ଘେନି ଜଳକ୍ରୀଡ଼ା କଲା ॥
ସହସ୍ରେ ଭୁଜ ଘେନି ଉଗାଳିଲା ନଈ ।

ବାହୁଡ଼ିଣ ସୋହତି ଉପରକୁ ବହିଂ ॥୫୦
ରାବଣ ମାହେଶ୍ୱର କଟକକୁ ଗଲା ।
ନର୍ମଦା ଜଳେ ଆସି ସ୍ନାହାନ ସେ କଲା ॥
କୂଳେ ରତ୍ନ ଲିଙ୍ଗ ଥାପିଣ ଲଙ୍କସାଇଂ ।
ପୂଜା କଲାକ ସେ ନାନା ପୁଷ୍ପ ଦେଇ ॥
ଶୀତଳ ଯୋଗାଡ଼ ବିବିଧ ଦ୍ରବ୍ୟମାନ ।
ଆପଣେ ଉଠି ନୃତ୍ୟ କଲାକ ଦଶାନନ ॥
ମହ୍ଲାର ରାଗେଣ ଗାଇଲାକ ଗୀତ ।
ପୁଷ୍ପ ବନିକା ତହିଂ ଅଛଇ ବହୁତ ॥
ଥାଠ ପେଷିଣ ବିପୁନ୍ୟ କୂର କଲେ ।
ଶୁଣ ରଘୁନାଥ ଅଗସ୍ତି ମୁନି କହିଲେ ॥୬୦
ରାବଣ ଯେ କୂଳେ ଶଙ୍କର ପୂଜୁଥିଲା ।
ନର୍ମଦା ନଦୀ ବଢ଼ି ତହିଂକି ଲାଗିଲା ॥
ନଦୀ ଉତକର୍ମ ଉଚ୍ଛର୍ଗ ଜଳ ହୋଇ ।
ଦେଖି ଆଶ୍ଚର୍ଯ ହୋଇଲା ଲଙ୍କସାଇଂ ॥
ମନ୍ତ୍ରୀକି ଚାହିଂ ପୁଣ ବୋଇଲା ବଚନ ।
କେବଣ ଚରିତ ଏହା ବୁଝସି ବହନ ॥
ନଦୀତ ପୂର୍ବରୁ ପଶ୍ଚିମକୁ ବହୁଥିଲା ।
ଏବେ ସେହୁ କିମ୍ପା ଲେଉଟି ବହିଲା ॥
ବଢ଼ିଲା ନଦୀ ପ୍ରାଏ ଭାଙ୍ଗୁଛି ଅତଡ଼ା ।
ଉତକର୍ମ ହୋଇ ମାରଇ ଲହଡ଼ା ॥୭୦
କେବଣ କାରଣ ଏହା ବୁଝିଆସ ଯାଇଂ ।
ଶୁଣିଣ ଶୁକ ସାରଣ ଶୀଘ୍ର ହୋଇ ଧାଇଂ ॥
ନଦୀ କୂଳେ କୂଳେ ଫୂଲ ତୋଟାରେ
ଗଲେ ।
କୋଶକେ ସହସ୍ରା ଅର୍ଜ୍ଜୁନକୁ ଦେଖିଲେ ॥
ହାଥେ ହାଥେ ଛନ୍ଦି ଅଛଇ ବାଡ଼ ଦେଇ ।
ସହସ୍ରେ ଯୁବତୀ କି ସେ କୋଳରେ
ବସାଇ ॥
ତେଣୁ ସେ ନେଉଟି ବହିଲାକ ପାଣି ।
ଶୁକ ସାରଣ ଅଇଲେ ତଥ୍ୟ କଥା ଜାଣି ॥
ରାବଣର ଆଗେ ଯେ କହିଲେ କଥାମାନ ।
ଶୁଣିଣ କୋପଭର ହୋଇଲା ରାବଣ ॥୮୦
ସହସ୍ରାଅର୍ଜ୍ଜୁନକୁ ଭେଟିଲା ତହିଂ ଯାଇଂ ।
ଆସହୋ ନୃପତି ବୋଲି ଡାକଇ କୂଳେ
ଥାଇଂ ॥

ମୁହିଂ ସେ ଦଶଗ୍ରୀବ ବିଶର୍ବାର ସୁତ ।
ହେଲେଣ ଉପାଡ଼ିଲି କପିଳାସ ପର୍ବତ ॥
ପୃଥ୍ୱି ରାଜାମାନଙ୍କୁ ଜିଣିଲଇଂ ଧରି ।
ମରତ ରାଜା ଯେ ନୋହିଲା ମୋତେ ସରି ॥
ଅଯୋଧ୍ୟାଏ ଅରଣ୍ୟ ନୃପତି ବଧ କଲି ।
କୋବେରକୁ ଜିଣି ମୁଂ ପୁଷ୍ପକ ଯାନ
ଆଣିଲି ॥
ରବିତଳେ ମୋତେ କ୍ଷତ୍ରୀ ନାହିଂ ସମସରି ।
ଯେ ତୋହୋର ତହିଂକି ମୁଂ ଯେ ଅଇଲି
ଯୁଧ୍ୟକରି ॥୯୦
ସକଳ ରାଜାଙ୍କର ଦର୍ପ ମୁଇଂ ହରି ।
ରାବଣର ବଚନେ ଡଗରାଏ ହକାରି ॥
ବୋଇଲା ନୃପତି ତୁ ରହ କିଛିକାଳ ।
ଯେହୁ କି ଅଟଇ ହେ ଯୁଝିବାର ବେଳ ॥
ଜଳକ୍ରୀଡ଼ା କରୁଅଛନ୍ତି ଆମ୍ଭ ରାଏ ।
ବାହୁଡ଼ିଣ ଯାଅ ଏବେ ବିଶର୍ବାର ପୋଏ ॥
ଶୁଣିଣ ଦଶାନନ ନୋହିଲାକ ବୋଧ ।
ମନ୍ତ୍ରୀଙ୍କର ତୁଲରେ ଆରମ୍ଭିଲା ଯୁଧ୍ୟ ॥
ଦୁଇ ବଳରେ ବାଜିଲା ହଣାହଣି ।
ଦିଗପାଳ ସମାନେ କ୍ଷତ୍ରୀ ବିଂଶପାଣି ॥୧୦୦
ସହସ୍ରା ଅର୍ଜ୍ଜୁନ ଥାଠ ପଳାଇଲେ ରଣେ ।
ଜଲୁଂ ନୃପତି ତା ଦେଖିଲାକ ଆପଣେ ॥
ଯୁବତୀମାନଙ୍କୁ ନବରକୁ ପଠିଆଇ ।
ଚାର କହନ୍ତେଣ ଆପଣେ ବେଗେ ଧାଇଂ ॥
ସନ୍ୟମାନେ ଭାଜି ପଳାଉଣ ଥିଲେ ।
ନିଜ ରାଜାକୁ ସେ ଦେଖିଣ ବାହୁଡ଼ିଲେ ॥
ମାର ମାର ଡାକ ଦିଅନ୍ତି ଅବିଛିନ୍ନ ।
ପିଠିଆଇ ଗୋଡ଼ାଇ ଥିଲାକ ଦଶାନନ ॥
ସହସ୍ରାଅର୍ଜ୍ଜୁନ ଯେ ଅଇଂଲା ଶସ୍ତ୍ର ଘେନି ।
ସହି ଯୁଦ୍ଧ କଲା ଦଶଇ ମୁଧୁନି ॥୧୦
ଦୁଇ ରାଜାଙ୍କର ବାଜିଲାକ ରଣ ।
ଆକାଶରେ ଥାଇଂଣ ଦେଖନ୍ତି ସୁରଗଣ ॥
ଦେବେ ବିଚାରନ୍ତି ରାବଣ ଯେବେ ମରୁ ।
ପରଜାମାନଙ୍କର ବିବିଧ କଷ୍ଟ ସରୁ ॥
ସାନ ନୋହଇ ସେ ସହସ୍ରାଅର୍ଜ୍ଜୁନ ।

ଅରଣ୍ୟ ରାଜା ପ୍ରାୟେ ବୁଝିଲା ଦଶାନନ ॥
ଏସନେକ ବୋଲି ବିଚାରନ୍ତି ସୁର ।
ବୋଲନ୍ତି ଅଗସ୍ତି ତୁମ୍ଭେ ଶୁଣ ରଘୁବୀର ॥
ପରିଘାଇଂ ଯୁଧ୍ୟ କରନ୍ତି ବେନି ରାଏ ।
ସହସ୍ରାଅର୍ଜ୍ଜୁନ ଯେ ଦିବ୍ୟଅସ୍ତ୍ର କଯେ ॥୨୦
ରାବଣ ବିଂଶଭୁଜେ ମାରଇ ନାରାଜ ।
ପରିଘାଇ ଯୁଝନ୍ତି ଅଙ୍ଗଛଳ କାର୍ଯ ॥
ଯହୁଂ ଦିବ୍ୟ ଅସ୍ତ୍ର ସହସ୍ରାଅର୍ଜ୍ଜୁନ କଲା ।
ଦେବ ଅସ୍ତ୍ର ଘେନିଣ ରାବଣ ଯୁଝିଲା ॥
ହାକି ବିନ୍ଧାବିନ୍ଧି ଡାକି ମରାମରି ।
ବେଳେବେଳେ ସଂଗ୍ରାମ ଅପୂର୍ବ ଯୁଧ୍ୟକରି ॥
ଦୁଇ ଥାଠ ଲୋକେ ଛାଡ଼ିଲେ ସମର ।
ଦୁହେଂ ରାଜା ହସ୍ତକାରୁ ବ୍ରହ୍ମାଣ୍ଡେ
ବଳୀଆର ॥
ଦୁଇବୀରେ ଯହୁଂ ସେ ନୋହିଲେ
ହାରଜିଣ ।
କୋପେଣ ଗଦା ଘେନି ଧାଇଂଲା
ରାବଣ ॥୩୦
ଦେଖିଣ ସହସ୍ରାଅର୍ଜ୍ଜୁନ ଆଗ ସରି ।
ଲଙ୍କପତି ଗଦାକୁ ପ୍ରତି ତୁଲ କରି ॥
ଦୁଇ ଶସ୍ତ୍ର ବାଜି ଉଠିଲା ଅନଳ ।
ଘଡ଼ିଏ ପରିଯନ୍ତେ ବାଜିଲା ଗଦାଗୋଳ ॥
ରାବଣ ରାଗେଣ ଯେ ପିଟିଲା ଉଂଗୁଇ ।
ସହସ୍ରାଅର୍ଜ୍ଜୁନ ତା ସମ୍ଭାଳିଲା ଗଦାଦେଇ ॥
ଦଶାନନ ଗଦା ଅଟଇ ପୁରୁଣା ।
ସହସ୍ରାଅର୍ଜ୍ଜୁନ ଶରକୁ ନୋହିଲାକ ଜିଣା ॥
ଗଦା ଗଦା ବାଜି ହୋଇଲା ବେନି ଖଣ୍ଡ ।
ଦେଖି ରାବଣ ଅଙ୍ଗୁ ଝାଳ ଗଳଇ
ତ୍ରିପଣ୍ଡ ॥୪୦
ଖୁଦ୍ର ପାଇଣ ସହସ୍ରାଅର୍ଜ୍ଜୁନ କୋପେ ମାରି ।
ହୃଦେ ବାଜନ୍ତେଣ ଢଳିଲା ଦଶଶିରି ॥
ବ୍ୟଥା ପାଇ ଭୂମିରେ ପଡ଼ିଣ ମୋହଗଲା ।
ଧାଇଂଣ ସହସ୍ରାଅର୍ଜ୍ଜୁନ ମାଡ଼ିଣ ବସିଲା ॥
ନିର୍ବାଣି ବାନ୍ଧିଲା ସେ ଅତି ଯତ୍ନ କରି ।
ମାହେଶ୍ୱରୀ କଟକକୁ ଘେନିଗଲା ୨

ରଥେ ପକାଇ ସେ ବାନ୍ଧି ଘେନି ଗଲା ।
ନିଜ ପୁରେ ନେଇ ଭଣ୍ଡାରେ ଥୋଇଲା ॥
ଲୋକନ୍ତ ରଖାଇଲା ଅତି ଯତ୍ନ କରି ।
ଅତି ଉତ୍ସବ କଲେ ମାହେଶ୍ୱର ପୁରୀ ॥୫୦
ଯେତେବେଳେ ରାବଣ ପଡ଼ିଲା ବନ୍ଧନ ।
ସ୍ୱର୍ଗେ ଆନନ୍ଦ ଯେ ହୋଇଲେ ସୁରଗଣ ॥
ଦୁନ୍ଦୁଭି ବଜାଇଣ ପୁଷ୍ପ ବୃଷ୍ଟି କଲେ ।
ଆଜ ସେ ଦୁଃଖ ଆମ୍ଭର ସରିଲା ବୋଇଲେ ॥
ଯେତେ ବୋଲି ବସିଲେ ବେହରଣ ।
ଅଗସ୍ତି ବୋଲନ୍ତି ଶ୍ରୀରାମଚନ୍ଦ୍ର ଶୁଣ ॥
ସହସ୍ରାର୍ଜ୍ଜୁନ ରାବଣକୁ ଧରି ନେଲା ।
ନଜ ପୁରେ ଅନେକ ମାଡ଼ ଯେ ମରାଇଲା ॥
ଶିର ଛେଦିବାକୁ ତାର କଲାକ ଉପାଏ ।
ଦେହେ ଖଣ୍ଡା ବାଜି ଉଛୁଡ଼ିଣ ପଳାଏ ॥ ୬୦
ଶକତି ନ ବହଇ ନ ଫୁଟଇ କାଣ୍ଡ କୁନ୍ତ ।
କୋପେଣ ନୃପତି ଅଣାଇଲା ମଏମତ ॥
ହସ୍ତୀର ହାଥରେ ମରାଇଲା ନେଇ ।
କେବେହେଂ ମୃତ୍ୟୁ ନ ପାଇଲା ଲଙ୍କସାଇଂ ॥
ଅଗ୍ନି ସଜାଡ଼ିଣ ପୁଣି ପୋଡ଼ିଣ ରାଏ ଦେଲା ।
ତଥାପି ରାବଣ ଯେ କିଛିହିଂ ନୋହିଲା ॥
ସମୋଦ୍ରେ ପଳାଇଲାକ ପଥର ବନ୍ଧାଇ ।
ଜଳରେ ନ ବୁଡ଼ିଲା ମନ୍ଦୋଦରୀ ସାଇଂ ॥
ଦେଖିଣ ଆଶ୍ଚର୍ଯ ସହସ୍ରାର୍ଜ୍ଜୁନ ।
ବାହୁଡ଼ାଇ ନଗ୍ରରେ କଲାକ ବନ୍ଧନ ॥୭୦
ବନ୍ଦୀ ପ୍ରକାରେ ଥୋଇଲା ଯତ୍ନ କରି ।
ବ୍ରହ୍ମା ପେଷିଲେ ପୁଲସ୍ତି ମୁନିକି ହକାରି ॥
ଭୋ ପୁତ୍ର ରାବଣ ଅଟଇ ତୋର ନାତି ।
ସହସ୍ରାର୍ଜ୍ଜୁନ ତାକୁ ମାରୁଛଇ ବିକୋଟି ॥
ତୁ ଯାଇଂ ତାହାକୁ ଛଡ଼ାଇଂ ଘେନି ଆସ ।
ସୁକୁମାର ଦେହ ତାର ପାଇଲାକ ପ୍ରାସ ॥
ଶୁଣିଣ ପୁଲସ୍ତି ବ୍ରହ୍ମାର ବଚନ ।
ମୃତୁଲୋକକଇ କଲେକ ଗମନ ॥
ମନ ପବନ ଯୋଗେ ଚଳିଗଲେ ।
ନିମିଷକେ ମାହେଶ୍ୱରୀ କଟକେ
ମିଳିଲେ ॥୮୦

ସହସ୍ରାର୍ଜ୍ଜୁନ ଯେ ଅଛଇ ଆସ୍ଥାନ କରି ।
ତହିଂ ଯାଇଂ ପ୍ରବେଶ ହୋଇଲେ
ତପଚାରୀ ॥
ଦେଖିଣ ନୃପତି ଯେ ଆସ୍ଥାନୁ ଉଠିଲା ।
ନମସ୍କାର କରି ବସିତ ଠାବ ଦେଲା ॥
କୁଶଳ ପୁଛାପୁଛି ହୋଇଲେ ବେନିଜନ ।
କର ଯୋଡ଼ି ପଚାରଇ ସହସ୍ରାର୍ଜ୍ଜୁନ ॥୯୦
ଆଜ ସେ ସୁଫଳ ହୋଇଲା ମୋର ପୁରୀ ।
ଯହୁଂ ସେ ପ୍ରବେଶ ପୁଲସ୍ତି ତପଚାରୀ ॥
କେବଣ ଅର୍ଥେ ମୁନି କଲୁ ଆଗମନ ।
ଋଷି ବୋଇଲେ ତୁ ଶୁଣ ସହସ୍ରାର୍ଜ୍ଜୁନା।
ଲଙ୍କାଗଡ଼ ରାଜା ଅଟଇ ମୋର ନାତି ।
ତାହାକୁ ଧରିଣ ତୁ ଅଛୁ ନୃପତି ॥
ସେ ଦୋଷ ଛାଡ଼ିଣ ରାବଣ ମୋତେ ଦେବୁ ।
ଯାବତ କାଳକଇଂ କଲ୍ୟାଣ ପାଇବୁ ॥
ସେ ଅବା ଦୁଷ୍ଟ ପଣ କଲାକ ନ ଜାଣି ।
ସେ ଅପ୍ରାଧ ଆମ୍ଭେ ତୋତେ ମାଗୁଛୁ
ନୃପମଣି ॥
ଛାଡ଼ ଦଶାନନ ଆମ୍ଭର ବୋଲକର ।
ବ୍ରହ୍ମାର ବରେ ସେ ଅଟଇ ଅମର ॥
ଯେତେକ କଷ୍ଟ ହୋଇଲା ତାର କିସ ।
ଭୋଗ କଲା ତାର ପୂର୍ବର ଭବିଷ୍ୟ ॥୧୦୦
ତୋହୋର ହାଥରେ ମୃତୁ ତାର ନାହିଂ ।
ବ୍ରହ୍ମା ପେଷିଲେ ମୋତେ ରାବଣ ନେମା
ପାଇଂ ॥
ଯେବେ ମୋର ବୋଲେ ନ ଛାଡ଼ିବୁ
ଲଙ୍କନାଥ ।
ନାତିର ଛଳେ ମୁଂ କରିବି ଅନର୍ଥ ॥
ମାହେଶ୍ୱରୀ କଟକ ଦହିବି କୋପାନଳେ ।
ରାଜ୍ୟ ସହିତେ ତୁ ନାଶ ଯିବୁ ମହୀପାଳେ ॥
ପୁଲସ୍ତିଙ୍କର ନିଷ୍ଠୁର ବଚନ ସେ ଶୁଣି ।
କରପତ୍ର ଯୋଡ଼ି କହଇ ନୃପମଣି ॥
ଭୋ ଋଷି ରାବଣ ଅଟଇ ବଡ଼ଦୁଷ୍ଟ ।
ଯାଗଯଜ୍ଞ ଭାଙ୍ଗି ଦିଅଇ ବଡ଼ କଷ୍ଟ ॥୧୦
ଋଷି ଗୋରୁ ବ୍ରାହ୍ମଣ ପରଜାନ୍ତ ଖାଇ ।

ଯେହାର ଅନୀତି ମୁନି କହିଲେ ନ ସରଇ ॥
ନର୍ମଦା ଜଳେ ମୁଂ କ୍ରୀଡ଼ା କରୁଥିଲି ।
ଯେହାର ତହିଂକି ମୁଂ ଯତନେ ନ ଗଲି ॥
ତହିଂ ଆସି ମୋତେ ହାକିଲାକ ବଳେ ।
ଚତୁରାଙ୍ଗ ବଳ ମୋର ଜିଣିଲା
ଅବହେଳେ ॥
ସନ୍ୟ ହତ ଦେଖି ସମର ମୁହିଂ କଲି ।
ଧର୍ମବଳ ଘେନି ଅସୁରକୁ ଜିଣିଲି ॥
ଅନେକ ମତେଣ ମୁଂ ମାରିତ କଲି ଇଚ୍ଛା ।
କେବେହେଂ ନ ମଲା ଏ ନଉକେଶୀର
ବଚ୍ଛା ॥୨୦
ବିଚାରିଲି ପଛେ ଯେ ନଗରେ ପଡ଼ିଥାଉ ।
ନ ମଲା ଯେବେ ଯେହୁ ଫିଟିଣ ନ ଯାଉ ॥
ଯେହାର ବନ୍ଦୀ ଥିଲେ ଜଗତ ସୁସ୍ଥେ ଥାଇ ।
ତୁ ଯେବେ ପୁଲସ୍ତି ନେବୁ ମୁକୁଳାଇ ॥
ଛାଡ଼ିଲି ଦଶାନନ ନିଅ ତୋର ନାତି ।
ତୁମ୍ଭେ ସେ ଦେବତାଏ କର ଯେ ଅନୀତି ॥
ଯେତେ ବୋଲି ଭଣ୍ଡାରୁ ଅଣାଇଂ
ଲଙ୍କସାଇଂ ।
ଗଉରୋବ କରାଇଲା ବନ୍ଧନ ଫେଡ଼ାଇ ॥
ପୁଲସ୍ତି ମୁନିଙ୍କ ଛାମୁରେ ନେଇ ଦେଲା ।
ଭୋ ଋଷି ନାତି ତୋର ଯେ ଅଟଇଟିକି
ବୋଇଲା ॥୩୦
ଯେବେ ହେଂ ତିଆର ନ କରୁ ଦୁଷ୍ଟ ପଣ ।
ଅନ୍ୟାଏ ଆଶ୍ରେ କିମ୍ପା କରଇ ଏଡ଼େ ଜଣ ॥
ତପକରି ପୁଣ ପାଇଲା ଏଡ଼େ ଶିରୀ ।
ଯେବେ କିମ୍ପା ତପୀକି ମାରଇ ଦଶଶିରି ॥
ତୋହୋର ନାତି ଯେ ଯେ ବିଶର୍ବାର ସୁତ ।
ଯାହାର ପଣ ଅଜା ଅଟଇ ଜଗତର ତାତ ॥
ତିନିପୁରେ ବିଖ୍ୟାତ ଅଟଇ ଦଶଶିର ।
ମାତାଗୁଣ ଘେନି ସିନା ହୋଇଲା ଅସୁର ॥
ଶାହାସ୍ରେ ନିର୍ଜ୍ଜିତ କରଇ ତପମାନ ।
ସେ କଥାମାନ ଛାଡ଼ିଣ କରଇ
ଦୁଷ୍ଟପଣ ॥୪୦
ଯେବେ ତୁ ମହାଋଷି ଏହାକୁ ଘେନି ଯାସି ।

ଯେମନ୍ତେ ଭଲ ପଣେ ଲୋକେ ହିଂ
ପ୍ରଶଂସି ॥
ସେ କଥା କରୁ ଯେବେ ବିଶର୍ବାର ସୁତ ।
ଅନ୍ୟାଏ ଆଚରିଲେ ଅଳପେ ଆୟୁଷ ହତ ॥
ଯେତେ ବୋଲି ରାଏ ରାବଣକୁ
କୋଳକରି ।
ଧନ ବସ୍ତ୍ର ଦେଇଣ କହଇ ପୁରସରି ॥
ଯାସି ଲଙ୍କପତି ତୋର ନିଜ ରାଜ୍ୟ ରଖ ।
ତୋହୋର ମୋହୋର ପୀରତି ଦଶମୁଖ ॥
ଯିବାକୁ ଉଛୁକ ହୋଇଲା ଦଶାନନ ।
ମନେ ସୁମରିଲା ପୁଷ୍ପକ ବିବାନ ॥ ୫୦
ତତକ୍ଷଣେ ଯାନ ଆସି ହୋଇଲା ଉପଗତ ।
ବସିଣ ଅଛନ୍ତି ସଇନି ସମସ୍ତ ॥
ଯେତେବେଳେ ରାବଣ ପଡ଼ିଲା ବନ୍ଧନ ।
ଅନାସ୍ତ ହୋଇଲେ ଯେ ଚତୁରାଙ୍ଗ ସନ୍ୟ ॥
ଶୁକ ସାରଣଙ୍କ ବୋଲେ ବସିଲେକ ରଥେ ।
ପବନହୁଂ ବେଗେ ଉଡ଼ିଲେ ଗଗନ ପଥେ ॥
ସହସ୍ରାର୍ଜୁନ ତାକୁ ଧରି ନ ପାରିଲା ।
ରାବଣକୁ ଦେଖି ସେ ଏହାନ୍ତ ଛାଡ଼ିଦେଲା ॥
ବିଚାରିଲା ମୂଳକୁ ଛେଦିଲେ ଡାଳ ମରି ।
ରାକ୍ଷସ ନାଏକ ଯେ ଅଟଇ ଦଶଶିରି ॥୬୦
ରାଜା ବନ୍ଦୀ ହେଲେ ସରିଲାନି ସବୁ ।
କିମ୍ପାଇ ଆଉ ଆମ୍ଭେ ଥାଠକୁ ଗୋଡ଼ାଇବୁ ॥
ଯେତେ ବୋଲି ରାବଣକୁ ଧରି
ଘେନିଗଲା ।
ପୁଷ୍ପକ ବିମାନ ତା'ର ଗଗନେ ବି
କ୍ରମିଲା ॥
ଶୁକ ସାରଣେ ଯେ ଅଟନ୍ତି ବୁଦ୍ଧିବନ୍ତ ।
ସେ ବୋଇଲେ ନ ମରଇ ମନ୍ଦଦୋରୀ
କାନ୍ତ ॥
ଯଦ୍ୟପି ଧରିନେଲା ସହସ୍ରାର୍ଜୁନ ।
ଉପାଏ କରିଣ ଫିଟି ଆସିବ ଦଶାନନ ॥
ବ୍ରହ୍ମା ଯାହାକଇ ଅଟଇ ସାହାପକ୍ଷ ।
ବହୁତ ମାୟା ଜାଣଇ ବିଶର୍ବାର ବଚ୍ଛ ॥୭୦
ପଉଲୋସ୍ତ ବିଶର୍ବା ଯାହାର ବାପ ଅଜା ।
ସାନ ନୋହଂଇଟି ଲଙ୍କାଗଡ଼ ରାଜା ॥
ଉପାଏ କରି ସେ ପୁଣ ଆସିବ ଫିଟିକାଇ ।
ଆମ୍ଭେ ଅବା ଲଙ୍କାରେ କରିବା କିସ ଯାଇ ॥
ଯେତେ ବୋଲି ମାହେଶ୍ୱର କଟେକ
ଭିତରେ ।
ଅନ୍ତରୀକ୍ଷେ ରହି ସେ ଅଛନ୍ତି ଊର୍ଦ୍ଧ୍ୱରେ ॥
ତିନିଦିନ ବନ୍ଦୀ ପଡ଼ିଲା ଲଙ୍କସାଇଂ ।
ପୁଲସ୍ତି ମୁନି ଛଡ଼ାଇ ଦେଲେ ଯାଇ ॥
ପୁଷ୍ପକ ବିମାନ ତହୁଂ ସୁମରିଲା ଲଙ୍କପତି ।
ତତକ୍ଷଣେ ଯାନ ମିଳିଲା ତାର କତି ॥୮୦
ତହିଂ ଦଶକନ୍ଧ ପୁଣ ବିଜେ କଲା ଯାଇଂ ।
ପୁଲସ୍ତି ମୁନିଙ୍କି ପ୍ରଳମ୍ବିତ ହୋଇ ॥
ସହସ୍ରାର୍ଜୁନ ଯେତେ ଧନ ବସ୍ତ୍ର ଦେଲା ।
ସବୁ ଘେନି ଦଶାନନ ପୁଷ୍ପକେ ବିଜେ
କଲା ॥
ପୁଲସ୍ତି ମୁନିବର ସ୍ୱର୍ଗକଇଂ ଗଲେ ।
ମୁକୁଳାଇବା କଥା ବ୍ରହ୍ମାଙ୍କୁ କହିଲେ ॥
ଯେଥୁ ଅନନ୍ତରେ ଲଙ୍କାଗଡ଼ ରାଜା ।
ବିବାନେ ବିଜେକରି ବଜାଇଲା ବାଜା ॥
ଦେଖିଣ ହସନ୍ତି ମାହେଶ୍ୱରୀପୁର ଲୋକେ ।
ସାନ ନୁହଇଂ ବୋଲି ବିଚାରନ୍ତି
ଥୋକେ ॥୯୦
କେ ବୋଲଇ କଇଳାସ ପର୍ବତ ଉପାଡ଼ିଲା ।
କେ ବୋଲଇ କୁବେରଙ୍କୁ ସାଂଗ୍ରାମେ
ଜିଣିଲା ॥
ଦେବତାଏ ଡରନ୍ତି ଯାହାର ମୁଖ ଚାହିଂ ।
ତୈଲୋକ୍ୟ ଅଜଏ ମନ୍ଦୋଦରୀ ସାଇଂ ॥
ଅଗ୍ନିରେ ନ ପୋଡ଼ଇ ଖଡ଼ଗେ ନ ଛିଡ଼ଇ ।
ଜଳେ ନ ବୁଡ଼ଇ ପବନେ ନ ଉଡ଼ଇ ॥
ପ୍ରସନ୍ନ ହୋଇ ଏହାଙ୍କୁ ବ୍ରହ୍ମା ବର ଦେଲା ।
ତେଣୁକରି ସକଳ ରାଜାନ୍ତ ଜିଣିଲା ॥
କ୍ଷତ୍ରୀ ହୋଇଣ ଅଛଇ ହାର ଜିଣ ।
ସାମାନ୍ୟ ନୁହଇ ଲଙ୍କାଗଡ଼ର
ରାବଣ ॥୧୦୦
ଯେସନେକ ବିଚାର କରି ନରନାରୀ ।
ଯେଥୁଅନନ୍ତରେ ତହିଂ ରାଜା ଦଶଶିରି ॥
ପୁଷ୍ପକ ଆରୋହି ନିଜ ପୁର ଗଲା ।
ଶୁଣି ଦେବତାଙ୍କୁ ଭୟେ ବାଧା କଲା ॥
ଲଙ୍କାରେ ପ୍ରବେଶ ବିଶର୍ବାର ସୁତ ।
ନଗ୍ରେ ଉଛବ ତାର କରାଇଲା ବହୁତ ॥
ବିବାନୁ ଓହ୍ଲାଇଣ ନବରଙ୍କୁ ଗଲା ।
ଅଭିମାନ କଥା କାହାକୁ ନ କହିଲା ॥
ଯେତେ ତାର ସଙ୍ଗେ ଥିଲେ ସନ୍ୟ ବଳ ।
ସବୁନ୍ତି ଡିଆରିଣ ଅଛି ଲଙ୍କପାଳ ॥ ୧୦
ହାନି କଥା ବୋଲି ଗୁପତ ତାହା କଲେ ।
ପଛେ ଲଙ୍କା ଲୋକେ ବାରତା ପାଇଲେ ॥
ବିଭୀଷେଣ ଆଗେ ଶୁକ ସାରଣେ ଥିଲେ
କହିଂ ।
ଥାଠ ଲୋକ ବାହାରେ ଆନ ଜାଣନ୍ତା
ନାହିଁ ॥
ଯେଥୁ ଅନନ୍ତରେ ତହିଂ ଗଲା ଦିନା ଦଶ ।
ସଭାକରି ବସି ଅଛଇ ଦଶାଇସ ॥
ମନ୍ତ୍ରୀ ଅମନାତ୍ୟ ଚତୁରାଙ୍ଗ ସନ୍ୟ ।
ସମ୍ପର୍ବ ବେହେରେଣ ରାବଣ ଆସ୍ଥାନ ॥
ଶୁକ ସାରଣଙ୍କୁ ପଚାରଇ ରାଏ ।
ନବ ଖଣ୍ଡ ମେଦିନୀ ମୁଂ ସାଧିଲି
ଯେକାଏ ॥୨୦
ମୋହର ତହୁଂ ବଳୀଆର କେହୁ ଅଛଇକି
ଆନ ।
କେବଣ ହିଂ ରାଜା ମୋତେ ସମରେ
ସମାନ ॥
ଶୁଣିଣ ମନ୍ତ୍ରୀଗଣେ ଯୋଡ଼ନ୍ତି ବେନିକର ।
ଯାହା ପଚାରିଲୁ ଶୁଣିମା ଲଙ୍କେଶ୍ୱର ॥
ତୋ ତହୁଂ ବଳୀଆର ନାହିଁ ଯେଥି ଆନ ।
ଯେକା ଜଣେ ଅଛଇ କିଷ୍କିନ୍ଧା ରାଜନ ॥
ବାଳୀ ନାମେଣ ସେ ବାନରଙ୍କର ଆଧିପତି ।
ଦିନକେ ଭ୍ରମଇ ସେ ସପତ ଦୀପା ପୃଥୀ ॥
ଇନ୍ଦ୍ର ଅଂଶେ ସେ ହୋଇଅଛି ଜାତ ।
ଖଡ଼ଗ ନାମେ ରାଜା ଅଟଇ ତାର ତାତ ॥୩୦
ଗଉତମ ମୁନିଙ୍କର ବର ପରସାଦେ ।

ଜମ୍ବୋଦୀପ ପୃଥ୍ୱି ସାଧିଲା ଅପ୍ରମାଦେ ॥
ଅକଣ୍ଟେକ ରାଜ୍ୟ ତାର ଅଟଇ ଘୋର
ବନେ ।
କୀରତି ବିଖ୍ୟାତ ତାର ଚଉଦ ଭୁବନେ ॥
ସେହୁ ଅବା ସଂଗ୍ରାମ କରି ପାରଇ ତୋତେ
ମିଳି ।
ଆନ ଭାର୍ଜନ ତୋତେ ନାହିଁନା ମହୀଆଳି ॥
ଶୁଣି ରାବଣେଶ୍ୱର ଆସ୍ଥାନୁ ଉଠିଲା ।
ପୁଷ୍ପେକ ବିମାନେ ବିଜେ ସେହୁ କଲା ॥
ଚତୁରାଙ୍ଗ ବଳ ନ ନେଲା କିଛି ସଙ୍ଗେ ।
ଯେଳା ବାହାର ସେ ହୋଇଲା
ରଣରଙ୍ଗେ ॥୪୦
ଆକାଶେ ଚଳଇ ପୁଷ୍ପେକ ବିମାନ ।
କିଷ୍କିନ୍ଧାରେ ପ୍ରବେଶ ହେଲା ଦଶାନନ ॥
ଭୂମିଗତ କରି ଗୁହାଇଲା ରହୁବର ।
ଦେଖିଣ ଆଶ୍ଚିଯ ହୋଇଲେ ରକ୍ଷ ବାନର ॥
ବାଳୀର ମନ୍ତ୍ରୀ ଗଣେ ମିଳିଲେକ ଆସି ।
ତାହାଙ୍କୁ ଦଶଗ୍ରୀବ ବୋଇଲାକ ତ୍ରାସି ॥
ତୁମ୍ଭେ ହୋ ଅମନାତ୍ୟେ ନ ଜାଣ କି
ମୋତେ ।
ମୁହିଁ ସେ ରାବଣେଶ୍ୱର ବିଦିତ ଜଗତେ ॥
କ୍ଷତ୍ରୀ ସମ ମୋତେ ନାହିଁ ରବିତଳେ ।
ପୃଥ୍ୱି ରାଜାନ୍ତ ଜିଣିଲି ଭୁଜବଳେ ॥୫୦
ବାଳୀର ପ୍ରତାପ ଶୁଣିଲଇଂ କର୍ଣ୍ଣେ ।
ସମର କରିବି ବୋଲି ଅଇଲି ବିବାନେ ॥
କାହିଁ ଅଛି ନୃପତି ଦେଖାଅ ମୋତେ
ନେଇ ।
ରଣରଙ୍କା ହୋଇ ବୁଲୁଅଛି ମୁଇଂ ॥
ରାବଣ ବଚନ ଶୁଣି ବୋଇଲନ୍ତି ଅମନାତ୍ୟେ ।
ତୁ ଯାହା ବୋଇଲୁ ହେ ବିଶର୍ବାର ସୁତେ ॥
ବାଳୀର ମହିମାକି ଶୁଣିଲା ତୋର ନାହିଁ ।
ତିନିପୁରେ ପ୍ରତାପୀ ଅଟଇ ତାରା ସାଇଂ ॥
ରଜନୀ ପ୍ରଭାତେ ସେ ଉଠଇ ନବରଙ୍ଗ ।
ସନ୍ଧ୍ୟା ସୁମରିତ ଚଳଇ ନରସାଇଂ ॥ ୬୦
ପୂର୍ବ ସମୋଦ୍ରେ ସେ ପୁଣ କରଇ ତର୍ପଣ ।
ପଶ୍ଚିମ ସମୁଦ୍ରକୁ ଚଳଇ କପିରାଣ ॥
ତହିଂ ସ୍ନାହାନ କରି ଦକ୍ଷିଣକୁ ଯାଇ ।
ଦେବ ପିତୃ ଅର୍ଥେ ଜଳଦାନ ଦେଇ ॥
ଉତ୍ତର ସମୁଦ୍ରକୁ କରଇ ଗମନ ।
ତହିଂ ଯାଇ ସାରଇ ଯେ ନାନା ବିଧିମାନ ॥
ବାହୁଡ଼ି କିଷ୍କିନ୍ଧାରେ ପ୍ରବେଶ
ଯେତେବେଳେ ।
ସୂର୍ଯ୍ୟ ଦେବତା ଉଦେ ହୁଅନ୍ତି
ତେତେବେଳେ ॥
ଅର୍ଧ ଉଦୟରେ ଚାରି ସମୁଦ୍ର ଦେଖଇ ।
ସେ ବାଳୀରାଏ କି ତୋତେ ସମରେ
ଲେଖଇ ॥୭୦
ଅତି ବଡ଼ ପର୍ବତ ଉପାଡ଼ି ଫିଙ୍ଗି ଦେଇ ।
ଗିରି ପଡ଼ନ୍ତେ ରାଜା ମୁଧୁନି ପାତଇ ॥
ମୁଣ୍ଡେ ବାଜି ପର୍ବତ ହୁଅଇ ଶତେଚୂର ।
ବାଳୀର ମହିମା ଦେବେଣ ଅଗୋଚର ॥
ଚାଲନ୍ତେଣ ପୃଥ୍ୱି ଦଲ ଦଲ କମ୍ପଇ ।
ଶୂନ୍ୟେ ଉପରକୁ ଲକ୍ଷେ ଯୋଜନ ଝାମ୍ପଇ ॥
ଯେସନେକ ବଳବନ୍ତା କିଷ୍କିନ୍ଧାର ପତି ।
ତାହାର ସଙ୍ଗେ କେହ୍ନେ ହୋଇବୁ ଅପ୍ରୀତି ॥
ଦକ୍ଷିଣ ସମୁଦ୍ରକୁ ଯାଇଂଅଛି ଯେବେ ।
ତହିଂକି ଯାଅ ମରିବୁ ନିଶ୍ଚେ ଯେବେ ॥୮୦
ଶୁଣି ରାବଣ କୋପେ ଥରହର ।
କାଳସର୍ପ ଜାଣି ସେ ଗର୍ଜଇ ବିଂଶକର ॥
ଗର୍ଜିଣ ବୋଇଲା ନ ଜାଣକି ମୋତେ ।
ବାଳୀର ମହିମା କହିଲଟି ଯେତେ ॥
ତହୁଂ ଶତେ ଗୁଣେ ଅଟଇ ମୋହୋର
ବଳ ।
ଛତ୍ରୀ ସମ ନାହିଁ ମୋତେ କେହି ରବିତଳ ॥
କପିଳାସ ପର୍ବତ ମୁଂ ଉପାଡ଼ିଲି ହେଳେ ।
କୋବେରକୁ ଜିଣି ତହୁଂ ବିମାନ ନେଲି
ବଳେ ॥
ମରୁତ ରାଜା ମତେ କଲା ସମାଧାନ ।
ଅଯୋଧାରେ ମାଇଲି ମୁଂ ଅରଣ୍ୟ
ରାଜନ ॥୯୦
ସକଳ ରାଜାନ୍ତ ମୁଂ ଜିଣିଲଇଂ ଧରି ।
ଯେହି ମହୀମଣ୍ଡଳେ ମୋତେ ନାହିଁ
ସମସରି ॥
ବାଳୀର ମୋହୋର ଯେବେ ହୋଇବାକ
ଭେଟ ।
ତେବେ ସେ ଜାଣିମା କେ ଉତ୍ତମ କନେଷ୍ଟ ॥
ରାବଣ ପ୍ରତିଗ୍ୟାଂ ଶୁଣି ଡରିଲେ ମନ୍ତ୍ରୀଗଣ ।
ପୂଜା କରି ତାହାକୁ କଲେ ତିଆରଣ ॥
ବୋଇଲେ ଦକ୍ଷିଣ ସମୁଦ୍ରକୁ ଯେବେ ଯାଯା ।
ସଂଧ୍ୟା କରୁଅଛି ବାଳୀ ମହାରାଜା ॥
ଶୁଣିଣ ଦଶଗ୍ରୀବ ପୁଷ୍ପେକ ଆରୋହି ।
ଦକ୍ଷିଣ ଦିଗକୁ ଗଲା ପଥବାହି ॥ ୧୦୦
ସମୁଦ୍ର କୂଳେ ଯାଇଂ ଦେଖିଲା କପିରାଜ ।
ସନ୍ଧ୍ୟା କରୁଅଛି ଖଡ଼ଦ ତନୁଜ ॥
ରାବଣ ବିମାନ ତଳେ କଲା ନେଇ ।
ବିଚାରଇ ଧରିବି ତର୍ପଣ ବେଳେ ଯାଇଂ ॥
ଯେତେକ ବିଚାରିଣ ପିଠି କତିକି ଗଲା ।
ଯାଇଂ ବିଂଶଭୁଜେ ଆକ୍ରେଷି ଧଇଲା ॥
ଜାଣିଣ ବାଳୀ ସେ ପଛକୁ ଦେଲା ହାଥ ।
ବାମ ଭୁଜେ କାଖେ ଚାପିଲା ଦଶମାଥ ॥
ପଡ଼ି ଲଙ୍କପତି ନ ପାରିଲା ଚଳି ।
ସନ୍ଧ୍ୟା ସାରି ତହୁଂ ଅଇଲା ବୀର ବାଳୀ ॥୧୦
ପୂର୍ବ ଉତ୍ତର ପଶ୍ଚିମକୁ ଗଲା ।
ପୁଣ ତିନି ସମୁଦ୍ରେ ତର୍ପଣ ସାରିଲା ॥
ବାହୁଡ଼ି କିଷ୍କିନ୍ଧାରେ ହୋଇଲା ପ୍ରବେଶ ।
କାଖରୁ କାଢ଼ିଲା ପୁଣି ବଶର୍ବାର ଶିଷ ।
ରାବଣକୁ ଚାହିଁ ଆଲିଙ୍ଗନ କଲା ।
କିମ୍ପାଇ ଦଶାନନ ଅଇଲୁ ବୋଇଲା ॥
ଲାଜେ ଲଙ୍କପତି ନ ଦିଅଇ ଉତ୍ତର ।
ବାଳୀକି ପ୍ରଶଂସା କରଇ ବିଶର୍ବାର କୁମର ॥
ବୋଇଲା ଧନ୍ୟ ତୁ କ୍ଷତ୍ରୀ ଶିରୋମଣି ।
ମନ କଲେ ଜିଣି ପାରୁତୁ ସକଳ
ସୁରମୁନି ॥୨୦
କପିଳାସ ପର୍ବତ ତୋଳିଲି ଯେହି କରେ ।
ତୁ ମୋତେ ଚାପିଲୁ କାଖର ଭିତରେ ॥

ଆଜହୁଂ ବାନର ଅଟୁ ମୋର ମିତ୍ର ।
ଯେ ତୋତେ ପ୍ରୀତି ସେ ଅଟଇ ମୋର
ହିତ ॥
ଶୁଣି ବାଳୀବୀର ସନ୍ତୋଷ ହୋଇଲା ।
ଅନେକ ଗଉରୋବ ରାବଣକୁ କଲା ॥
ପୀରତି କରିଣ ରୁହାଇଲା ମାସେ ।
ଛଡ଼ାଛଡ଼ି ନୁହନ୍ତି ରାତ୍ର ଯେ ଦିବସେ ॥
ରାବଣ ବୋଇଲା ତୁ ଶୁଣ ବଳୀରାଏ ।
ତିରିଶ ଦିବସ ମୁଂ ଲଙ୍କା ଛାଡ଼ିଆଏ ॥ ୩୦
ଯେ ତୋହୋର ଭାବେଣ ମୁଂ ରହିଲି
ଏତେଦିନ ।
ଯେବେ ତୁ ଆଗ୍ୟାଂ ମୋତେ ଦିଅସି ରାଜନ ॥
ଯିବି ନିଜ ଦେଶ ଅଛି ବହୁତ କାର୍ଯ ।
ଶୁଣିଣ ଆନନ୍ଦ କପିକୁଳରାଜ ॥
ସିଂହାସନୁ ଉଠିଣ ରାବଣକୁ କୋଳ କଲା ।
ବସ୍ତ୍ର ଅଳଙ୍କାର ଅକ୍ଷତ ବିଧି ଦେଲା ॥
ବୋଇଲା ଭୋ ରାଜ ତୁ ଅସୁର କୁଳପତି ।
ମୋହର ଭାଗ୍ୟେ ପାଇଲି ତୋତେ ପ୍ରୀତି ॥
ତୁ ମୋତେ ସେନେହ କରିଥିବୁ ।
କିଷ୍କିନ୍ଧା ଲଙ୍କା ଦୁଇ ଯେକତ କରିବୁ ॥୪୦
ଶୁଣିଣ ରାବଣ ହୋଇଲା ପରମ ତୋଷ ।
ପୁଷ୍ପକ ସୁମରିଲା ବିଶର୍ବାର ଶିଷ୍ୟ ॥
ତକ୍ଷଣେ ବିବାନ ମିଳିଲା ଯାଇ ଆଗେ ।
ତିରିଶ ଦିବସ ଥିଲା ଗଗନ ମାର୍ଗେ ॥
ଯେବଣ ଦିନ ରାବଣକୁ ଧରି ଘେନି ଗଲା ।
ଦକ୍ଷିଣ ସମୁଦ୍ର କୂଳରେ ମିଳିଲା ॥
ରଥୁ ଓହ୍ଲାଇଣ ଗଲା ବାଳୀର ପିଠି କତି ।
ଜାଣି ଦଶଗ୍ରୀବକୁ ଧଇଲା କପିପତି ॥
ଦେଖିଣ ବିବାନ ଗଗନ ମାର୍ଗେ ଗଲା ।
ରାବଣକୁ ଘେନି ବାଳୀ ବାହୁଡ଼ିଲା ॥୫୦
ଯେଣେ ଗମନ୍ତି ବିମାନ ତେଣେ ଯାଇ ।
ପୁଣି ତିନି ସମୁଦ୍ରେ ତର୍ପଣ କରଇ ॥
ପୁଷ୍ପକ ରଥ ଉପରେ ବିକ୍ରମିଣ ଯାଇ ।
ତହୁଂ କପିରାଜ କିଷ୍କିନ୍ଧାରେ ପାଇଂ ॥
ରଥ କିଷ୍କିନ୍ଧା ପୁରେ ଚଳଇ ଶୂନ୍ୟ ମାର୍ଗେ ।
ମାସେକ ରହିଲା ସେ ବାଳୀ ରାଜା ସଙ୍ଗେ ॥
ଯେତେବେଳେ ରାବଣ ମନେ ଚିନ୍ତା
କଲା ।
ତେତେବେଳେ ଦେବରଥ ଯାଇଂଣ
ମିଳିଲା ॥
ବାଳୀକି ସମାର୍ଜି ପୁଣ ଗଲା ଦଶାନନ ।
ତତକ୍ଷଣେ ଆରୋହିଲା ପୁଷ୍ପକ
ବିମାନ ॥୬୦
କିଷ୍କିନ୍ଧା ରାଜା ଯେତେ ଧନ ବସ୍ତ୍ର ଦେଲା ।
ସବୁ ଘେନି ରାବଣ ଲଙ୍କାକଇ ଗଲା ॥
ନିଜ ପୁରେ ଯାଇଂଣ ହୋଇଲା ପରବେଶ ।
ଯେଥିଅନନ୍ତରେ ଗଲା ଦିନ ଦଶ ॥
ଦିନେକ ରାବଣ ସେ ପୁଷ୍ପକ ଆରୋହି ।
କ୍ଷତ୍ରୀ ଲୋଡ଼ୁଅଛି ଯୁଝିବାର ପାଇଂ ॥
ପୃଥି ହେରିଣ ସେ ବୁଲଇ ଚଉକତି ।
ଡରେ ଛାମୁରେ ପୁଣ ଉଭା କେହି ନୋହିଲେ
ନୃପତି ॥
ପୁରେ ପୁରେ ପଶି ବାହୁଡ଼ିଣ ଗଲା ।
ଯାନ୍ତେ ନାରଦ ମୁନିଙ୍କି ଭେଟିଲା ॥ ୭୦
ଅନ୍ତରୀକ୍ଷେ ଉପଗତ ହୋଇଲେକ ମୁନି ।
ଦେଖି ନମସ୍କାର କଲା ଦଶଇ ମୁର୍ଦ୍ଧୁନି ॥
ନାରଦ ବୋଇଲେ ତୁ କିମ୍ପାଇ ବୁଲୁ ପୃଥି ।
ତୋତେ ସରିସମ ନାହିଂ ବ୍ରହ୍ମାଣ୍ଡେ ଆନ
କ୍ଷତ୍ରୀ ॥
ବୀରଙ୍କର ମଧ୍ୟେ ତୁ ଅଟଇ ଶିରୋମଣି ।
ଜଗତ ନାଶ କିମ୍ପା ତୁ କରୁ ବିଂଶପାଣି ॥
ଯେଣେ କିସ କାର୍ଯ କରିବୁ ତୁ ରାଏ ।
ମୁହିଂ ତୋତେ କହଇ ଗୁପତ କଥାଏ ॥
ଜଗତେ ବଳୀଆର ଅଟଇ ଜନ୍ତୁପତି ।
ଯମକୁ ଜିଣିଲେ ସମସ୍ତେ ସାଧ୍ୟ
ହୋନ୍ତି ॥୮୦
ଦେବେ ବଶ୍ୟବ୍ରତୀ ହୋଇବେ ତେଣେ
ତୋତେ ।
କାଳେ ବିଂଶ ଦଶଗ୍ରୀବ ସୁମରିବୁ ମୋତେ ॥
ଯମ ରାଜାକୁ ଜିଣିଲେ ଆନରେ କାର୍ଯ
ନାହିଂ ।
ଶୁଣିଣ ପରମ ତୋଷ ହୋଇଲା ଲଙ୍କ
ସାଇଂ ॥
ମନେ ବିଚାରଇ ନ ଯିବଇଂ ଲଙ୍କା ।
ଯେ ମୋହର ବୀରଧୁ ଅଟଇ ରଣରଙ୍କା ॥
ଯମକୁ ଜିଣିଲେ ଅଟଇ ବୀରପଣ ।
ଯେତେ ବୋଲି ଦକ୍ଷିଣକୁ ଚଳିଲା ରାବଣ ॥
ନାରଦ ମହାମୁନି ଅନ୍ତର୍ଦ୍ଧାନେ ଗଲେ ।
ଶ୍ରୀରାମ ଆଗେ ଯେହ୍ନା ଅଗସ୍ତି
କହିଲେ ॥୯୦
ଶୁଣିମା ପାର୍ବତୀ ଗୋ କହଇ ମୁହିଂ
ତୋତେ ।
ବିଷ୍ଣୁଙ୍କର ପୁରାଣ ଯେ ପଚାରିଲୁ ମୋତେ ॥
ଯେଥୁ ଅନନ୍ତରେ ଯେ ଦଶଗ୍ରୀବ ରାଏ ।
ଦକ୍ଷିଣ ଦିଗକୁ କଟକାଇ କରି ଯାଏ ॥
ବ୍ରହ୍ମା ଜାଣିଲେ ତା ଯୋଗବଳ ଘେନି ।
ମନେ ମନେ ବହୁତ ଭାଳଇ ପଦ୍ମଯୋନି ॥
ବିଚାରଇ ଯମ ହୋଇବ ଯେବେ ନାଶ ।
ମୁହିଂ ଆଉ ସଂସାରେ କରିବଇଂ କିସ ॥
ଉତପତି ସ୍ଥିତି ପ୍ରଳୟ ନୋହିବ ।
ଯେକକୁ ଆରେକ କିମ୍ପା ବଶ୍ୟ
ହେବ ॥୧୦୦
ଯେତେ ବୋଲି ନାରଦ କତିକି ହକାରି ।
ଗୁପତ କରିଣ କହଇ କୁଶଧାରୀ ॥
ବୋଇଲା ଭୋ ପୁତ୍ର ତୁ ଏହିକ୍ଷଣି ଯିବୁ ।
ସଂଜୀବନୀ ପୁରେ ଯମକୁ କହିବୁ ॥
ଲଙ୍କାର ଦଇତ ରାବଣ ମହାବୀର ।
ସେ ଯେ ଯାଉଅଛି ସଂଜୀବନୀ ପୁର ॥
ସମର କରିବାକୁ ସେ ଉଦବେଗ ହୋଇ ।
ପୁଷ୍ପକ ଆରୋହି ଚଳଇ ଲଙ୍କସାଇଂ ॥
ଯମ ତାର ତୁଲେ ସମର ନ କରୁ ।
ପ୍ରୀତି କରି ପୁଣ ବେଳେ ଅପସରୁ ॥୧୦
ଦୁଷ୍ଟର ରାକ୍ଷସ ସେ କେବେ ହେଂ ନ ମରି ।
ତ୍ରିଦଶ ଦେବତାଙ୍କୁ ଜିଣିମାକ ଧରି ॥
ତାହାର ତୁଲେ ଯୁଧ୍ୟ କଲେ ଯଶ ନାହିଂ ।
ମୋହ୍ନୋ କହିଲା ବୋଲିଣ ଯମକୁ କହ
ଯାଇଂ ॥

ବ୍ରହ୍ମାର ଆଗ୍ୟାଂରେ ନାରଦ ଚଳିଗଲେ ।
ସଂଜ୍ଞୀବନୀ ପୁରେ ଯାଇଣ ମିଳିଲେ ॥
ଦେଖି ଜନ୍ତୁପତି ସିଂହାସନ ଛାଡ଼ି ।
ନାରଦ ମହାମୁନି ପାଦତଳେ ପଡ଼ି ॥
ସୁବର୍ଣ୍ଣ ଆସନେ ବସାଇ ପୂଜା କଲା ।
କିସ ଅର୍ଥେ ଗମନ ବୋଲିଣ
ପଚାରିଲା ॥୨୦
ନାରଦ ବୋଇଲେ ମୋତେ ବ୍ରହ୍ମା ଦେଲେ
ପେଷି ।
ରାବଣ ତୋହୋର ତୁଲେ ଯୁଝିବାକୁ
ଆସି ॥
ଯେସନେକ ସମଏ ମିଳିଲା ଦଶଶିରି ।
ନାରଦ ଅନ୍ତର୍ଦ୍ଧାନ ହୋଇଲେ ଭୟେ କରି ॥
ବିଶର୍ବା ତନୟେ ସଞ୍ଜୀବନୀ ପୁରେ ପଶି ।
ନାରକୀମାନଙ୍କୁ ବୋଇଲାକ ହସି ॥
ଆଜ ତୁମ୍ଭନ ଉଧାରିଣ ଦେବି ।
ନିଶ୍ଚୟେ ଯମ ରାଜାକୁ ପ୍ରାଣରେ ମାରିବି ॥
ଯେତେ ବୋଲି ତହୁଂ ଚଳିଲା ଅସୁର ।
ଘନ ଘନ ଚଳଇ ପୁଷ୍ପେକେ ରହୁବର ॥୩୦
ଧୂରୁହୁଂ ଯମକୁ ସେ ବୋଇଲାକ ଚାହିଁ ।
ଆଜ ତୋର ଜୀବନ ଘେନିମି ଜନ୍ତୁସାଇଂ ॥
ଯେତେ ବୋଲି ରାଗେ ଶର ବୃଷ୍ଟି କଲା ।
କୋପେଣ ଜନ୍ତୁପତି ମହିଷୀ ଚଢ଼ିଲା ॥
ଦୁଇ କୁଳରୁ ଯେ ବାଜିଲା ରଣ ଗୋଳ ।
ଯମ ରାଜାକୁ ପିଠି ହୋଇଲେ ତାର ବଳ ॥
ଦେବ ସନ୍ୟ ଘେନି ଯୁଝ କଲା ଯମରାଜା ।
ବାଜନ୍ତି ଟମକ ନିଶାଣ ଭେରୀ ବାଜା ॥
ରାବଣ ମନ୍ତ୍ରୀମାନେ ପୁଷ୍ପେକ ବସିଥିଲେ ।
ବିଷମ ଗୋଳ ଦେଖି ଓହ୍ଲାଇ
ପଳାଇଲେ ॥୪୦
ଯେକାଏ ରାବଣ ରହିଲା ଶସ୍ତ୍ର ଧରି ।
ଦୁହେଂ ଯୁଧ୍ୟ କଲେ ଦିବ୍ୟ ଅସ୍ତ୍ର ଧରି ॥
ପୃଥିବୀ କମ୍ପିଲା ଡରିଲେ ସୁରଗଣ ।
ବେଳୁ ବେଳୁ ଅସକ୍ଷ ହୋଇଲା ମହାରଣ ॥
ଦୁହେଂ ସମକ୍ଷତ୍ରୀ ନୁହନ୍ତି କେହି ଓଛ ।

ଯେକକୁ ଆରେକ ଦିଶନ୍ତି ସମକଛ ॥
କୋପେ ଯମରାଜା ମାଇଲା ଶକତି ।
ହୃଦେ ବାଜି ବଥା ପାଇଲା ଲଙ୍କପତି ॥
ରାବଣ ମୁଦ୍ଗର ମାଇଲାକ ନେଇଂ ।
ଅଙ୍ଗେ ବାଜି ବଥା ପାଇଲା ଜନ୍ତୁ
ସାଇଂ ॥୫୦
ବେଳୁ ବେଳୁ ଯୁଧ୍ୟ ହୋଇଲାକ ଅପ୍ରମିତ ।
ଯମ ରାଜା ସଙ୍ଗେ ଦେବ ସନ୍ୟ ଅଛନ୍ତି
ବହୁତ ॥
କାଳ ବିକାଳ ମୃତ୍ୟୁ ଦେବତା ମୂଳେ ।
ଯୁଧ୍ୟ କରୁଛନ୍ତି ଯେ ଯାହାର ସଖ୍ୟ ବଳେ ॥
ଅବିଶ୍ରାମ ସମର ନ ରହଇ କ୍ଷଣେ ।
ବ୍ରହ୍ମା ସହିତେଣ ଦେଖନ୍ତି ସୁରଗଣେ ॥
ଯେମନ୍ତେ ସାତ ଦିନ ସାତ ରାତି ଯୁଧ୍ୟ ।
କେହି କାହାକୁ ନ କରନ୍ତି ବଧ ॥
ଦଶ ଭୁଜେ ଦଶ ଧନୁ ଧରିଣ ଦଶ ଶିର ।
ଶ୍ରାବଣ ବରଷା ଜାଣି ନାରାଜ ପ୍ରହାରି ॥ ୬୦
ତୀକ୍ଷ ନାରାଜ ଅଟଇତୀକ୍ଷ ମୁନ ।
ବାଛି ଚାରି କାଣ୍ଡ ବିନ୍ଧିଲା ଚାରିକନ ॥
ମୃତ୍ୟୁ ଦେବତାଙ୍କ ଅଙ୍ଗେ ବାଜିଲାକ
ଯାଇଂ ।
ଗ୍ୟାଂନ ହାରିଲାକ ସେ ଆୟୁଧ ପକାଇଂ ॥
ଦେଖି ଦଶଗ୍ରୀବ ପେଷିଲା ସାତ ଶର ।
ଯାଇଣ ପଡ଼ିଲା ସାରଥି ଉପର ॥
ଅଶ୍ୱେ ପଳାଇଲା ଛାଡ଼ି ଭୂମିରେଣ ଲୋଟି ।
ପୁଣି ଲକ୍ଷେକବାଣ ବିନ୍ଧିଲାକ ଯୋଖି ॥
ଯମ ଦେବତାର ଅଙ୍ଗେଣ ବାଜିଲେ ।
ଯିବାର ଶବଦ କି ମେଘ ଗରଜିଲେ ॥୭୦
ଯମ ମୃତ୍ୟୁ ଦେବତା ସାରଥି ତିନିଜଣ ।
ରାବଣର ବାଣେ ହୋଇଲେ ରଣ ଭଣ ॥
ଖଳ ଖଳ ଶ୍ୱରୀରୁ ବହଇ ରକତ ।
ମୃତ୍ୟୁ ବୋଇଲା ଶୁଣ ଆଦିତର ସୁତ ॥
ମୋତେ ପେଷ ମୁଂ ରାବଣକୁ ମାରଇ ।
ତ୍ରିଦଶ ଦେବତାଙ୍କର ପରମ କଷ୍ଟ ସାରଇ ॥
ଯେହାଉଂ ବଡ଼ ବଡ଼ ଦଇତମାନେ ଥିଲେ ।

କେ ଅବା ମୋହୋର ତହିଁ ପ୍ରାଭବ ନ
ପାଇଲେ ॥
ଦେବ ଦକ୍ଷ କିନ୍ନର ନାଗ ସିଦ୍ଧ ଜନ ।
ମୋତେ ବଶ୍ୟ ନୋହିବାକୁ କେ ଅବା
ଭାର୍ଜନ ॥୮୦
ବିଶର୍ବା ତନଏ ଅଟଇ ଲଙ୍କପତି ।
ସ୍ୱର୍ଗପୁରେ ଆସି କରଇ ଅନୀତି ॥
ସମାନ୍ୟ ଭରସା କି ବୋଲିବା ଏହାର ।
କୋବେର ପ୍ରାଏ ମଣିଲା ନିଶାଚର ॥
ମୃତ୍ୟୁ ଦେବତା ବଚନେ ବୋଇଲା
ଜନ୍ତୁରାଣ ।
ସମାନ କ୍ଷେତ୍ରୀଏ ନୁହଂଇ ରାବଣ ॥
ତୁ ରହିଂ ଥାଅ ମୁଂ ଯେହାକୁ ମାରଇ ।
ଚଉଦ ଭୁବନର ଉତପାତ ସାରଇ ॥
ଯେତେ ବୋଲି କାଳଦଣ୍ଡ ଧଇଲା
ଜନ୍ତୁପତି ।
ରାବଣ କରେ ଧଇଲା ବ୍ରହ୍ମ ଶକତି ॥୯୦
ସୁରଗଣେ ଭଏ କମ୍ପନ୍ତି ଥରହର ।
ଦୁହିଂଙ୍କର ମଧ୍ୟରେ ପଶିଲେ କୁଶଧର ॥
ଶହସ୍ରଙ୍କ ଉପରେ ଯେ ଅଟଇ ମହାଗାଢ଼ ।
ଯମକୁ ବୋଇଲେ ତୁ କାଳ ଦଣ୍ଡ ଛାଡ଼ ॥
ମୁହିଂ ଏହା ନିର୍ମାଇ ଅଛି ଯତ୍ନ କରି ।
ଯେହି ଦଣ୍ଡ ମାଇଲେ ସୁରାସୁର ମରି ॥
ରାବଣକୁ ବର ସେ ଦେଇଂଅଛି ମୁହିଂ ।
ଦେବ ଦାନବ ହାଥେ ମୃତ୍ୟୁ ତାକୁ ନାହିଂ ॥
ଯେବେ ତୁ କାଳ ଦଣ୍ଡେ ମାରିବୁ ରାବଣ ।
ବିଅର୍ଥ ହୋଇବ ନା ମୋହୋର
ବଏଣ ॥୧୦୦
ଦଇତ ମଲେ ପୁଣ ମୋତେ ଏତେ ହାନି ।
ଦେବେ ମାୟାବୀ ବୋଲି ବୋଲିବେ ପୁର
ତିନି ॥
ଛାଡ଼ ଛାଡ଼ ଆୟୁଧ ନ କରିହୋ ରୋଷ ।
ଯେ ଲଙ୍କପତି ହାଦେ ସାଧିବ ତ୍ରିଦଶ ॥
ଶୁଣି ଯମ ଦେବତା ସଂଘରିଲା କାଳ ଦଣ୍ଡ ।
ବ୍ରହ୍ମାକଇ ବୋଲଇ ପାଇଣ ବିଖଣ୍ଡ ॥

ତୁ ଯେ ପିତାମହ ନ ଜାଣିମା ପଣ କଲୁ ।
ଯେତ୍ତେ ଦୁଷ୍ଟକୁ କିମ୍ପା ଅଭଏ ବର ଦେଲୁ ॥
ଆବର ହିଂ ବୋଲୁଅଛୁ ନ ମରିବ କେଣେ ।
ପୁଣି ବୋଲୁଅଛୁ ନ ମରିବ
ବ୍ରହ୍ମବାଣେ ॥୧୦
କାହାରିହିଂ ହସ୍ତରେ ସେ ନୋହିବାକ ହତ ।
ତୋହର ନାରାଜ ତାର ହରିବ ଜୀବିତ ॥
ଶୁଣିଣ ପିତାମହ ମନେ ମନେ ହସି ।
ରାବଣକୁ ବୋଇଲା ତୁ ବାହୁଡ଼ିଣ ଯାସି ॥
ଯେହୁ ବ୍ରହ୍ମ ଶକତି ରଣେ କିମ୍ପା ଧରୁ ।
ହାନିଲାଭ କଥା ବିଚାର ନ କରୁ ॥
ମୁହିଂ ତୋତେ କହିଅଛି ଶକତି ମହିମା ।
ଆନ ଶହସ୍ର ଏହାକୁ ନୁହଇ ଉପମା ॥
ଅମୋହ ଆୟୁଧ ଯେ ବିଅର୍ଥେ ନଯାଇ ।
କିଞ୍ଚିତ ଲୋକକୁ ଯେହା ମାରିତ ନ
ଯୋଗାଇ ॥୨୦
ଶକତି ସଂହାରିଣ ଯେବେ ତୁ ବାହୁଡ଼ିଣ
ଯାଯା ।
ତୋତେ ସେ ସମରେ ହୋ ହାରିଲା
ଯମରାଜା ॥
ବ୍ରହ୍ମାର ବଚନେ ସେ ରାବଣେଶ୍ୱର ତୋଷ ।
ଆୟୁଧ ସଂହରିଲା ବିଶର୍ବାର ଶିଷ୍ୟ ॥
ରଣ ଜିଣି ଶଙ୍ଖ ବାଜିଲା ଆପଣେ ।
ତେଣେ ସେ କତିକି ଅଇଲେ ମନ୍ତ୍ରୀଗଣେ ॥
ବ୍ରହ୍ମାକୁ ନମସ୍କାର କରିଣ ଦଶଶିର ।
ଯମକୁ ଜିଣି ବାହୁଡ଼ିଗଲା ନିଜ ପୁର ॥
ମନ୍ତ୍ରୀ ଅମନାତ୍ୟେ ପୁଷ୍ପକେ ରଥେ ଛନ୍ତି ।
ନିଜ ଭୁବନେ ଦତ୍ୟ ପ୍ରବେଶ ଯାଇ
ହୋନ୍ତି ॥୩୦
ଯମକୁ ଜିଣିଲୁ ବୋଲି ନଗ୍ରେ ଉତ୍ସବ
କଲେ ।
ଶୁଣିଣ ଅସୁର ମୃତ୍ୟୁକୁ ନ ଡରିଲେ ॥
ଯେଥୁ ଅନନ୍ତରେ ଶୁଣ ରଘୁନାଥ ।
ଦିନେକ ପୁଷ୍ପକେ ଆରୋହି ଦଶମାଥ ॥
ମନ୍ତ୍ରୀ କି ବୋଇଲା ଚାଲ ପାତାଳକୁ ଯିବା ।
ତହିଂ କ୍ଷତ୍ରୀ ପାଇଲେ ସମର କରିବା ॥
ଯେତେ ବୋଲି ବିବାନେ ଚଢ଼ି ଚଳିଗଲା ।
ବାସୁକି ରାଜା କଟକେ ପଶିଲା ॥
ଦେଖିଲାକ ପୁର ଅତି ରମ୍ୟସ୍ଥାନ ।
କି ଜାଣି ପଟାନ୍ତର ମଘବା ଆସ୍ଥାନ ॥୪୦
ବାସୁକି ନୃପତିର ସନିଧ୍ୟେ ଯାଇ ମିଳି ।
ତିଳମନ୍ଦା ପ୍ରମାଣେ ବହିଛି ମହୀଆଳି ॥
ସହସ୍ରେ ବଦନ ଦୁଇ ସହସ୍ର ଜିଭ ।
ତାହାକୁ ଚାହିଣ ବୋଲଇ ଦଶଗ୍ରୀବ ॥
ଆହୋ ନାଗରାଜା ଶୁଣ ମୋର ବାଣୀ ।
ମୁହିଂ ସେ ରାବଣ ଲଙ୍କାର ନୃପମଣି ॥
ସଂଗ୍ରାମ କରିତ ମୁଂ ଅଇଲି ତୋର ସଙ୍ଗେ ।
ତୁ ମୋତେ ଦୃପତି କର ରଣ ରଙ୍ଗେ ॥
ଶୁଣିଣ ବାସୁକି ମନରେ ବିଚାରି ।
କପିଳାସ ଉପାଡ଼ିଲା ଏହୁ ଦଶଶିରି ॥୫୦
କୁବେରକୁ ଜିଣି ପୁଷ୍ପକ ରଥ ନେଲା ।
ଯେବେ ଯାଇଂ ସ୍ୱର୍ଗରେ ଯମକୁ ଜିଣିଲା ॥
ବ୍ରହ୍ମାଙ୍କର ବରେ ହୋଇଅଛି ମତ୍ତା ।
ତିନିପୁରେ ବଳୀଆର ସମରେ ଶକତା ॥
ମୁହିଂ ଏହାକୁ ସମରେ ନୋହେ ସରି ।
ତ୍ରିଦଶ ଦେବତାଙ୍କୁ ଏ ଜିଣିମାକ ଧରି ॥
ପ୍ରତାପ କାଳ ଏହାର ହୋଇଅଛି ଏବେ ।
ରାଗେଣ ସମର କରିବଇଂ ଯେବେ ॥
ନିଷ୍ଠୟେ ହାରିବି ନାହିଂ ଯେଥି ଯଶ ।
ପ୍ରବୋଧି ପଠିଆଇବି ମୁଂ ବିଶର୍ବାର
ଶିଷ୍ୟ ॥୬୦
ଯେତେକ ବିଚାରିଣ ରାବଣ ପାଶେ ଯାଇଂ ।
ପ୍ରୀତି ପଣ କରି ସେ ଚାଟୁ କଥା କହି ॥
ଭୋ ଲଙ୍କପତି ତୁ ଅଇଲୁ ନ ଜାଣି ।
ବେଳକ ମୋତେ ଯେ ଜିଣିଛୁ ବିଂଶ ପାଣି ॥
କପିଳାସ ପର୍ବତ ଉପାଡ଼ିବା କାଳେ ।
ହାର ହୋଇଥିଲି ମୁଂ ହର ବକ୍ଷସ୍ଥଳେ ॥
ତହିଂରେ ତୋଳି ଯେ ଧଇଲୁ ରାଏ
ମୋତେ ।
ଯେବେ ମୁଂ ସମର କରିବି କେହ୍ନେ
ତୋତେ ॥
ତୁହିଂ ମୋର ବଳ ନ ଜାଣୁ କି ରାଏ ।
ଶୁଖିଲା ତରୁ ଯେହ୍ନେ ଉଡ଼ଇ ଅଳପ
ବାୟେ ॥୭୦
ହର ସହିତେଣ ଆମ୍ଭେ ତେମନ୍ତ ହୋଇଲୁ ।
ପୂର୍ବର ଭାଗ୍ୟେ ଆମ୍ଭେ ଜୀବନ ପାଇଲୁ ॥
ଯେବେହେଂ ଜିଣିଲୁ ହାରିଲି ମୁହିଂ
ତୋତେ ।
ଆଜ୍ଞୁ ଅନୁଗ୍ରହ କରିଥିବୁ ମୋତେ ॥
ଯେତେ ବୋଲି ଆଣି ଧନ ବସ୍ତ୍ର ଦେଲା ।
ଅପୂର୍ବ ଅଳଙ୍କାରମାନ ଅକ୍ଷତ କଲା ॥
ପ୍ରବୋଧ ବଚନ ଘେନି ବାହୁଡ଼ଇ ଦଶଶିର ।
ବୋଲନ୍ତି ଅଗସ୍ତି ତୁ ଶୁଣ ରଘୁବୀର ॥
ବାସୁକି ରାଜାକୁ ଜିଣିଲା ଲଙ୍କରାଏ ।
ସଂଗ୍ରାମ କରିବାକୁ କ୍ଷତ୍ରୀ ଲୋଡ଼ିଯାଏ ॥୮୦
ଗମନ୍ତେଣ ମଣିବନ୍ତୀ ପୁରେଣ ପାଇଲା ।
ନିର୍ବାତକପଟ ଛାମୁରେ ମିଳିଲା ॥
ଦତ୍ୟେ ଦତ୍ୟେ ଭେଟ ପଡ଼ିଲାକ ଯାଇ ।
ଚତୁରାଙ୍ଗ ବଳ ତାର କଳନା ନ ଯାଇ ॥
ରାବଣ ବୋଇଲା ନିର୍ବାତକପଟ ଶୁଣ ।
ମୋହୋର ସଙ୍ଗତେ ତୁ କରସି ହୋ ରଣ ॥
ପୃଥିବୀ ବୁଲିଣ ମୁଂ ଆସୁଅଛି ଖୋଜି ।
ସବୁକ୍ଷତ୍ରୀମାନେ ପଳାଇଲେ ଭାଜି ॥
ତୁ ମୋତେ ସଂଗ୍ରାମ ଦେଇଣ ମନ ତୋଷ ।
ମୁହିଂ ରାବଣ ହୋ ବିଶର୍ବାର ଶିଷ୍ୟ ॥୯୦
ଶୁଣିଣ ନିର୍ବାତକପଟ କୋପ କଲା ।
ଦଶଗ୍ରୀବ ସଙ୍ଗେ ସମର ଆରମ୍ଭିଲା ॥
ଦୁହେଂ କାମରୂପୀ ଅଟନ୍ତି ଅସୁର ।
ବେଳୁ ବେଳ ବହୁତ ବାଜିଲା ସମର ॥
ଦିବ୍ୟା ଅସ୍ତ୍ର ଘେନି ଯେ ସମର ଦୁହେଂ
କଲେ ।
କେହି କାହାକୁ ଜିଣି ନ ପାରିଲେ ॥
ମଧ୍ୟସ୍ଥ ପ୍ରାଏ ହୋଇ ଚାହାନ୍ତି ସଇନ୍ୟ ।
ଦୁଇ ରାକ୍ଷସଙ୍କର ବାଜିଲା ଅନ୍ୟାଅନ୍ୟ ॥
ଆହେ ଅପୂର୍ବ ଅନେକ ମାୟା ଯୁଧ୍ୟ
କଲେ ।

ମୂଷଳ ପ୍ରମାଣେ ନାରାଚ
ବରଷିଲେ ॥୧୦୦
କ୍ଷଣେ ନ ରହନ୍ତି ଅବିଶ୍ରାମ ଯୁଧ୍ୟ ।
ସ୍ୱର୍ଗେ ଥାଇ ତାହା ଦେଖନ୍ତି ବିବୁଧ ॥
ଦୁହିଁଙ୍କରି ଖ୍ୟାରାଚ କାଣ୍ଡେ କାଣ୍ଡେ ଘାଉଆ ।
ରୁଧିରେ ଶରୀରମାନ ଦିଶଇ ଢାଉଆ ॥
ଖର ନିଶ୍ୱାସ ରାଗେଣ ଥର ହର ।
ଆଖି ନ ପିଞ୍ଚାତୁ ପଡ଼ଇ ଆସି ଶର ॥
ରାତ୍ର ଦିବସେଣ ପୁଣ ଅବିଶ୍ରାମ ।
ଦେବଙ୍କୁ ଦୁଲ୍ଲଭ ଯେ ଅପୂର୍ବ ସାଂଗ୍ରାମ ॥
ଯେମନ୍ତେ ବରଷେ ବାଜିଲା ରଣ ଗୋଳ ।
ଘନଘନ ସମର କରନ୍ତି ବେଳୁ ବେଳ ॥୧୦
ରାବଣ ବିଚାରଇ ନାହିଁ ଏଥି ଜୟେ ।
ଯେତେ ବୋଲି ରଥ ବାହୁଡ଼ାଇ ଲଙ୍କରାଏ ॥
ନିର୍ବାତକପଚ ରହିଲାକ ଫୁଟି ।
ରାବଣ ବିବାନ ଚଳଇ ଶୂନ୍ୟ ଘୋଟି ॥
ଯାନ୍ତେଣ ଦେଖିଲା ଯେ ଗୋଧନ ଅପାର ।
କି ଅବା ପୃଥ୍ୱ ଦେବୀର ଏହୁ ଅଳଙ୍କାର ॥
କେହୁ କଳା ଶ୍ୟାମଳା ଶଙ୍ଖ ବର୍ଣ୍ଣ ଦିଶି ।
କେହୁ କପିଳା କେହୁ ସୁରଙ୍ଗ ବର୍ଣ୍ଣ ଆଭାସି ॥
ନାନା ବର୍ଣ୍ଣେ ଗୋରୁ ଚରନ୍ତି ଘୋର ବନେ ।
ଦେଖି ପରମ ତୋଷ ବିଶର୍ବାର
ନାନେ ॥୨୦
ରକ୍ଷା ଲୋକନ୍ତ ଯେ ପଚାରଇ ଦେଖି ।
କାହାର ଗୋଧନ ଚରାଅ ତୁମ୍ଭେ ରଖି ॥
ଲୋକ ବୋଇଲେ ଯେ ବରୁଣର ଗୋରୁ ।
ଯେହି ଅରନ୍ୟରେ ସର୍ବଦା ଥାନ୍ତି ଚରୁ ॥
ଶୁଣିଣ ଦଶଗ୍ରୀବ ସୁରଭିକି ଚାହିଁ ।
ଓଳେଗ ମେଲାଇ ଚଳଇ ଲଙ୍କସାଇଁ ॥
ମନ୍ତ୍ରୀକି ବୋଇଲା ଚାଲ ବରୁଣକୁ ଜିଣିମା ।
ଅନେକ ଧନରତ୍ନ ତହୁଁ ସେ ଆଣିମା ॥
ଯେତେ ବୋଲି ଯାଇ ପଶିଲେ ସିନ୍ଧୁ
ମଧ୍ୟେ ।
ଦେଖି ଚମତକାର ପାଇଲେ ସୁର
ସିଧ୍ୟେ ॥୩୦
ମନେ ଧରନ୍ତେ ରଥ ଚଳଇଂ ଘନଘନ ।
ଯାଇଣ ମିଳିଲା ସେ ବରୁଣ ଭୁବନ ॥
ଆସ୍ତାନ କରି ବସିଅଛି ଜଳେଶ୍ୱର ।
ଯେସନ ସମୟେ ଯାଇ ମିଳିଲା ଦଶଶିର ॥
ବରୁଣଙ୍କୁ ଚାହିଁ ବୋଇଲା ଦଇତ ।
ମୁହିଁ ସେ ରାବଣ ବିଶର୍ବାର ସୁତ ॥
ସମର କରିତ ଅଇଲି ତୋର ତୁଲେ ।
କ୍ଷେତ୍ରୀ ନ ପାଇଂ ବୁଲଇ ଭୂଅ ତଳେ ॥
ଯମ କୁବେର ବାସୁକି ନାଗରାଜା ।
ମୋତେ ସମରେ ହାରିଣ କଲେ ପୂଜା ॥୪୦
କ୍ଷତ୍ରୀ ସମ ମୋତେ ନୋହିଲେକ କେହି ।
ରଣେ ରଙ୍କ ହୋଇ ଆରତ ମୋର ଦେହୀ ॥
ଅନେକ ଆଶା କରି ପଶିଲି ମାହାଜଳେ ।
ମୋହର ମନ ରଞ୍ଜସି ମହାରୋଳେ ॥
ଶୁଣି ସିନ୍ଧୁ ରାଜା କୋପେଣ ପ୍ରଜ୍ୱଳି ।
ଆଗ୍ୟାଂ ପ୍ରମାଣେ ଚତୁରାଙ୍ଗ ବଳ ମିଳି ॥
ବୋଇଲା ବେଢ଼ି ଅସୁରକୁ ମାର ।
ସହସ୍ର ଉଲୋଳ ରଥ ମୋହର ସଜ କର ॥
ତକ୍ଷଣେ ସାରଥି ଆଣିଲାକ ବିବାନ ।
ରଥରେ ଯୋଚିଲା ଅଛି ସହସ୍ରେକ
ଯାନ ॥୫୦
ସୁବର୍ଣ୍ଣ ମୟେ ରଥ ନବରତ୍ନ କମ ।
କି ଜାଣି ଜ୍ୟୋତି ତାର ଚନ୍ଦ୍ରସୂର୍ଯ୍ୟ ଅଗ୍ନିସମ ।
ସେ ରଥେ ବିଜଏ କଲାକ ଜଳସାଇଂ ।
କରେ ସହସ୍ର ଧରି ରାବଣକୁ ଚାହିଁ ॥
ବୋଇଲା ଦଇତରେ ଏଡ଼େକ ଅଗ୍ୟାଂନ ।
ମୋହୋର ତୁଲେ କେହ୍ନେ ଯୁଝିବୁ
ଦଶାନନ ॥
ମୁହିଁ ସେ ମାହାଜଳ ସପତ ସିନ୍ଧୁରାଏ ।
ମୋହୋର ମନ କଲେ ସୃଷ୍ଟି ପ୍ରଳୟ ହୋଏ ॥
ତ୍ରୈଲୋକର ସମ୍ପଦ ଅଛି ମୋର ତହିଂ ।
ମୋତେ ଆଶ୍ରେ କରିଥାନ୍ତି ଲକ୍ଷ୍ମୀ ଦେବୀ
ସାଇଂ ॥୬୦
କମଳାର ପିତା ମୁଂ ହରିର ଶଶୁର ।
ମୋହୋର ପ୍ରତିଗ୍ୟାଂ କି ନ ଜାଣୁ
ଅସୁର ॥
ଗଙ୍ଗା ଯମୁନା ଯେ ମୋହୋର ପାଟରାଣୀ ।
ଯମ ମୋହୋର ଶଳା ଶଶୁର ଦିନମଣି ॥
ଅରକ୍ଷିତ ଲୋକଙ୍କୁ ମୁଂ ରକ୍ଷା କରଇ ।
କୋପ କଲେ ଦୁଷ୍ଟ ଦର୍ପିଷ୍ଟଙ୍କୁ ମାରଇଂ ॥
ଚନ୍ଦ୍ର ସୂର୍ଯ୍ୟ ଜାତ ହୋଇଲେ ମୋର ତହୁଂ ।
ପୁଷ୍ପେକ ବିମାନ ପାଇଲୁ ତୁ କାହୁଂ ॥
କଉସ୍ତୁଭ ମଣି ଅମଳାଣ ବାସ ।
ପାରିଜାତେକ ପୁଷ୍ପ ଉଚ୍ଚୈଶ୍ରବା ଅଶ୍ୱ ॥୭୦
ଅଏରାବ୍ରତ ଗଜ ସେ ଲକ୍ଷ୍ମୀ ଧନ୍ୱନ୍ତିରି ।
ବିଷ ଅମୃତ ମଦିରା ଅଷ୍ଟ ଅପଛରୀ ॥
ନାନା ବିଦ୍ୟା ନାନା ଶାସ୍ତ୍ରମାନ ।
ବିବିଧ ମଉଷଧି ଯାବତ ବିଧାନ ॥
ମୋହୋର ତହୁଂ ସେ ହୋଇଲେ ସର୍ବେ
ଜାତ ।
ମୁହିଁ ସେ ମୋହଫାଶେ ବାନ୍ଧଇ ଜଗତ ॥
ଛପନ କୋଟି ଜୀବେ ମୋହରେ ସେ
ବଶ୍ୟ ।
ମୁହିଁ ସେ ଜନ୍ତୁଙ୍କର ପରାଣ ପୁରୁଷ ॥
ଜଳ ନ ଭକ୍ଷିଲେ ନ ବ୍ରତନ୍ତି ପ୍ରାଣୀ ।
ମୁହିଁ ସେ ମାହାରସ ବହଇ ଉଜାଣି ॥୮୦
ମୁହିଁ ସେ ଅମୃତ ସବୁରି ତୁଣ୍ଡେ ଥାଇ ।
ମୁହିଁ ସେ ନାନା ପଦାର୍ଥଙ୍କୁ ରସ ଦେଇଂ ॥
ମୋ ତହୁଂ ବଳୀଆର କେହୁ ଅଛି ଆନ ।
ତୁ ମୋର ସଙ୍ଗେ କି ଯୁଝିବୁ ଦଶାନନ ॥
ଆଜ ତୋର ଜୀବନ ଘେନିମଇ ମୁହିଁ ।
ଯେ ପୁଷ୍ପେକ ରଥ କୁବେରକୁ ଦେବି
ନେଇଂ ॥
ଯେସନ ବୋଲିଣ ବିନ୍ଧିଲାକ ତୀକ୍ଷ ଶର ।
ହସିଣ ଛେଦିଲା ତା ଦଶାନନ ବୀର ॥
ବୋଇଲା ବରୁଣ ତୁ ଅଟୁ ମହାକ୍ଷେତ୍ରୀ ।
ତୋହର ପ୍ରସାଦେ ନାଶ ହୋଇବ
ଧରିତ୍ରୀ ॥୯୦
ତୁ ଯେବେ ନ ଥାନ୍ତୁ ପ୍ରଳୟ କିମ୍ପା ହୋନ୍ତା ।
ସଂସାର କଉତୁକ କିମ୍ପାଇ ଭାଙ୍ଗନ୍ତା ॥
ତୋହର ନଥିଲେ କିମ୍ପା ଥାନ୍ତେ ସିନ୍ଧୁଜଳ ।

ଦେବେ ଦଇତେ କିମ୍ବା କରନ୍ତେ କନ୍ଦଳ ॥
ତୁ ଯେବେ ନାରାୟଣଙ୍କୁ ନ ଦିଅନ୍ତୁ ଠାବ ।
ଯେତେ ଅନ୍ୟାଏ କିମ୍ବା କରନ୍ତା ପଦ୍ମନାଭ ॥
ତୋହର ପ୍ରସାଦେ ପୃଥ୍ୱୀ ହୋଇଲା ଖଣ୍ଡ
ଖଣ୍ଡ ।
ତୋହରେ ସମଏ ଭାଜଇ ବ୍ରହ୍ମାଣ୍ଡ ॥
ତୋହରେ ସିନା ଦୁଃଖ ପାଇଲା ପରମେଷ୍ଠି ।
ତୋତେ ସଂହାରିଣ ରଖିବି ମୁଁ ସୃଷ୍ଟି ॥୧୦୦
କଥା କହୁ କହୁ କରନ୍ତି ସମର ।
ବେଳୁ ବେଳୁ ସମର ହୋଇଲା ଅପାର ॥
ଦୁହେଂ ଦିବ୍ୟ ଅସ୍ତ୍ର ଘେନିଣ ଯୁଧ୍ୟ କଲେ ।
ଯେକୁ ଆରେକ କେହି ଜିଣି ନ ପାରିଲେ ॥
ଅନେକ ମାୟା ଯୁଦ୍ଧ କଲାକ ରାବଣ ।
ଶ୍ରାବଣ ବରଷା ଜାଣି ବିନ୍ଧିଲାକ ବାଣ ॥
କ୍ଷଣକେ ଅଦୃଶ୍ୟ କ୍ଷଣକେ ହୋଏ ଦୃଶ୍ୟ ।
ବ୍ରହ୍ମାର ବରେ ଗରିଷ୍ଠ ବିଶର୍ବାର ଶିଷ୍ୟ ॥
ଓହୋବଳ ସନ୍ୟ ସମର ମହା ଘୋର ।
ବ୍ରହ୍ମାଣ୍ଡ ପୂରିଅଛି ମୁଖ ରାବ ଗୋଳ ॥୧୦
ଦତ୍ୟେ ପ୍ରବଳ ରିଝାଇଂ ଯୁଧ୍ୟ କଲେ ।
ବରୁଣର ସନ୍ୟ ସମରେ ପିଠି ଦେଲେ ॥
ଗୋଡ଼ାଇଣ ରାକ୍ଷସ ମାଇଲେ ବିକୋଡି ।
କନ୍ଧୁ ଛିଡ଼ି ଶିର ପଡ଼ଇ ଚଉକତି ॥
ଝର ଝର ହୋଇ ବହଇ ରକତ ନଈ ।
ସନ୍ୟ ହତ ଦେଖି ବରୁଣ ଭାଳଇ ॥
ଯେଡ଼େ ବଡ଼ ପଣ ଗଲା ମୋହର ନାଶ ।
ତ୍ରିଦଶ୍ୟ ଦେବତାଏ ବୋଲିବେ ମୋତେ
କିସ ॥
ରାବଣ ନିଲକ୍ଷଣ ଜିଣିଲାକ ମୋତେ ।
କ୍ଷତ୍ରୀଙ୍କର ମୁଖ ମୁଁ ଚାହିଁବି କେମନ୍ତେ ॥୨୦
ଯେତେ ବୋଲି ଶର ବୃଷ୍ଟି କଲା ।
ପୁଷ୍ପକ ବିମାନ ସେ ନାରାଜେ ଲୁଚାଇଲା ॥
ନିର୍ଘାତ ଶବଦ ଜାଣି ପଡୁଅଛି କାଣ୍ଡ ।
ଦୁହିଙ୍କରି ଶ୍ୟରୀର ହୋଇଲା ଖଣ୍ଡ ଖଣ୍ଡ ॥
ପୁଷ୍ପକ ରଥ ସେ ସହସ୍ର ଉଲୋଳ ଯାନ ।
ଯହିଂକି ମନ ତହିଂ ମିଳଇ ବିବାନ ॥

ସମଭେଟ ଯୁଦ୍ଧ ବାଜିଲା ଦୁହିଂଙ୍କରି ।
ହାନି ବିନ୍ଧାବିନ୍ଧି ଡାକି ମରାମରି ॥
ଶଏ ସହସ୍ରେକ ଯେ ପେଷନ୍ତି
ଏକାବେଳେ ।
କେହି କାହାକଇ ନ ଘୁଞ୍ଚନ୍ତି ରୋଳେ ॥୩୦
କେ ଅଗ୍ନି ପେଷନ୍ତେ କେ ପାଣିରେ ଲିଭାଇ ।
କେ ମେଘା ଅସ୍ତ୍ରକୁ କେ ପବନେ ଉଡ଼ାଇଂ ॥
ପନଗାକୁ କେ ଗରୁଡ଼ା ଶସ୍ତ୍ର ପେଷି ।
ପର୍ବତ ଅଶ୍ତ୍ରକୁ ବଜ୍ରା ଅସ୍ତ୍ରେ ନାଶି ॥
କେ ତିମିର ଆଛାଦନ୍ତେ କେ ଚନ୍ଦ୍ର
ଉଦେକରି ।
ଅନ୍ୟା ଅନ୍ୟି ସମର ବାଜିଲା ଦୁହିଂଙ୍କରି ॥
ରାବଣର ତେଜ ବେଳୁ ବେଳ ଆନ ।
ପକ୍ଷୀ ପ୍ରାଏ ଉଡୁଛି ପୁଷ୍ପକ ବିବାନ ॥
ବରୁଣ ଦେବତା ଯେ ମନେ ମନେ ଭାଳି ।
ବିଚାରଇ ଦଶଗ୍ରୀବ ଅଟଇ
ମାହାବଳୀ ॥୪୦
ବାପ ବ୍ରହ୍ମଋଷି ମାତା ଦଇତୁଣୀ ।
ବିଷ୍ଣୁର ଦ୍ୱାରପାଳ ବୋଲି ଅଛି ଶୁଣି ॥
ବ୍ରହ୍ମାର ବରେ ବଳ ଏହାର ଅପ୍ରମିତ ।
କୋବେରକୁ ପ୍ରଥମେ ଜିଣିଲା ଦଇତ ॥
କପିଳାସ ପର୍ବତ ଉପାଡ଼ିଲା ହେଳେ ।
ଯମ ଦେବତାକୁ ଜିଣିଲା ବାହୁ ବଳେ ॥
ସମସ୍ତ ରାଜା ଏହାକୁ ସମରେ ହାରିଲେ ।
ଧନବସ୍ତ୍ର ଯୁବତୀ ସମର୍ଧନା ଦେଲେ ॥
ଯେହାଉଂ ବଡ଼ ବଡ଼ ଅନର୍ଥ କରିବ ।
ସକଳ ସୁରଗଣ ଜିଣି ଦଶଗ୍ରୀବ ॥୫୦
ମୁହିଂ ଯେବେ ରଣେ ଏହାକୁ ନୋହଇ
ସରି ।
ଅନେକ ସନ୍ୟ ମୋର ପକାଇଲା ମାରି ॥
ପ୍ରୀତି କରିଣ ମୁଁ ବାହୁଡ଼ାଇ ଦେବି ।
କିମ୍ବାଇ ଅକାରଣେ ମୁଁ ପ୍ରାଭବ ପାଇବି ॥
ଯେତେ ବୋଲି ସମର ଛାଡ଼ି ଜଳେଶ୍ୱର ।
ରାବଣକୁ ଚାହିଂ ବୋଲଇ ମଧୁର ॥
ଶୁଣ ତୁହୋ ଦଶଗ୍ରୀବ ଏ ମୋହର ବାଣୀ ।

କ୍ଷତ୍ରୀଙ୍କ ଶାର୍ଦ୍ଦୋଳ ତୁ ଅଟୁ ବିଂଶପାଣି ॥
ମୁହିଂ ସମରେଣ ହାରିଲଇଂ ତୋତେ ।
ପ୍ରୀତି କରିଣ ତୁ ଛାଡ଼ିଯାସି ମୋତେ ॥୬୦
ଶୁଣି ଲଙ୍କେଶ୍ୱର ଜଳେଶ୍ୱର ବାଣୀ ।
ସାଂଗ୍ରାମ ଛାଡ଼ିଣ ହସିଲା ବିଂଶପାଣି ॥
ବୋଇଲା ଜଳେଶ୍ୱର ହୋଇଲି ହୋ
ତୋଷ ।
ପ୍ରାଣେ ବଧ ତୋତେ ମୁଂ କରନ୍ତି ଅବଶ୍ୟ ॥
ବୋଇଲା ଚାଟୁ କହି ପ୍ରବୋଧିଲୁ ମୋତେ ।
ଆଉ କେଉଁଣେ ସାଂଗ୍ରାମ କରିବଇଂ ତୋତେ ॥
ଯିବଇଂ ବାହୁଡ଼ି କଥାଏ ମୋର ଶୁଣ ।
କନେକ ଦଣ୍ଡ ତୋର ଛାମୁକୁ ମୋର ଆଣ ॥
ମୁହିଂ ତାହା ଲଙ୍କାପୁରକୁ ଘେନି ଯିବି ।
ରାଜ୍ୟେ ଅଭିଷେକ କାଳେ ଧରାଇବି ॥୭୦
କୋବେର ଦେଲା ମୋତେ ପୁଷ୍ପକ
ବିମାନ ।
କନେକ ଦଣ୍ଡ ଦିଅ ବରୁଣ ରାଜନ ॥
ତୋହୋର ମୋର ପ୍ରୀତି ସର୍ବଦାଏ ଆଉ ।
ମୁହିଂ ତୋତେ କିଛି ନ ମାଗଇ ଆଉ ॥
ଶୁଣି ଜଳପତି ବିଚାରଇ ମନେ ।
ତାହାର ପରା ଦଣ୍ଡ ଦେବଇଂ କେସନେ ॥
ନ ଦେଲେ ପୁଣ ଯେହୁ କରିବ ଅନର୍ଥ ।
ଗଞ୍ଜି ହୋଇବି କେଉଣ ପୁରୁଷାର୍ଥ ॥
ଦେବତାଙ୍କ ଆଏ ତ କେବେହେଂ ନୋହେ
ନାଶ ।
ଅବଶ୍ୟ ରାବଣ ତ ହୋଇବ ପାଣ
ନାଶ ॥୮୦
ଯେବେ ଦେଇଥାଇ ଆଣଇ ସିନା ପଛେ ।
ଯେହିକ୍ଷଣି ଅରଷ୍ଟି ମୁଂ ମେଣ୍ଟିବି ପ୍ରତକ୍ଷେ ॥
ଯେତେ ବୋଲି ଭଣ୍ଡାରୁ ଅଣାଇଲା ଦଣ୍ଡ ।
କି ଜାଣି ଦିଶଇ ମଧ୍ୟାହ୍ନ ମାରତଣ୍ଡ ॥
ଘେନି ଜଳେଶ୍ୱର ରାବଣ ହସ୍ତେ ଦେଲା ।
ଯେହୁ ଅପୂର୍ବ ପଦାର୍ଥ ବୋଲିଣ ବୋଇଲା ॥
ଚୋଳି ଧଇଲେଣ ଏଥୁଂ ବରଷଇ ରତ୍ନ ।
ଭୋ ଲଙ୍କପତି ତୁ କରିଥାସି ଯତ୍ନ ॥

ହୀରାରୁ ହୀରା ମାଣିକ୍ୟରୁ ମାଣିକ୍ୟ ବରଷଇ ।
ନୀଳାରୁ ନୀଳା ମୁକୁତାରୁ ମୁକୁତା ସ୍ରବଇ ॥୯୦
ନବରତ୍ନରୁ ନବରତ୍ନ ଝଡ଼ି ପଡୁଥାଇ ।
ଅଭିଷେକ କାଳେ ଯେ ଶିରରେ ଛତ୍ର ଧରାଇ ॥
ନିଅସି ଦଶଗ୍ରୀବ ଅପୂର୍ବ ପଦାର୍ଥ ।
ଯେତେକ ବୋଲି ଦଣ୍ଡ ଦେଲା ତାର ହାଥ ॥
ଘେନି ରାବଣେଶ୍ୱର ଘେନାଇଲା ତାର ଶିରେ ।
ବନ୍ଧାଇ ଦେଲା ନେଇ ପ୍ରଶସ୍ତ ହାଥରେ ॥
ଜଏ ଶଙ୍ଖ ବଜାଇ ବାହୁଡ଼ାଇ ରଥ ।
ସମୋଦ୍ର ଭିତରୁ ବାହାର ଦଶମାଥ ॥
ଲଙ୍କା ପୁରେ ପ୍ରବେଶ ପ୍ରସନ୍ନ ବଦନ ।
ସଭା କରାଇ ପୁଣ କହିଲା ଦଶାନନ ॥୧୦୦
ମନ୍ତ୍ରୀ ଅମାତ୍ୟେ ତୁମ୍ଭେ ବନ୍ଧୁଜନେ ଅଛ ।
ମୁହିଂ ରାବଣେଶ୍ୱର ନଉକେଶୀର ବଛ ॥
ବରୁଣ ଜିଣି କନକ ଦଣ୍ଡ ଆଣିଲଇଂ ।
ଯେବଣ ପଦାର୍ଥକୁ ଭାର୍ଜନ ଶଚୀସାଇଂ ॥
ଶୁଣି ସମସ୍ତେ ସାଧୁ ସାଧୁ କଲେ ।
କନେକ ଦଣ୍ଡ ନେଇ ଭଣ୍ଡାରେ ଥୋଇଲେ ॥
ଅଗସ୍ତି ବୋଲନ୍ତି ତୁ ରାମଚନ୍ଦ୍ର ଶୁଣ ।
ତନିପୁରେ ବିଖ୍ୟାତ ହୋଇଲା ରାବଣ ॥
ଅବିଛନେ ସମର ଲୋଡ଼ଇ ଯହିଂ ତହିଂ ।
ଦିନେକ ଗଲା ସେ ପୁଷ୍ପେକ ଆରୋହି ॥୧୦
ସଙ୍ଗତେ ମଉଳା ତାର ଅଛଇ ପ୍ରଶସ୍ତ ।
ପାତାଳ ପୁରକୁ ବୋଲି ଚଳିଲା ବିଂଶହସ୍ତ ॥
ପୁରେକ ଦେଖିଲା ଉତ୍ତମ ରମ୍ୟ ଥାନ ।
ଦ୍ରପଣ କାନ୍ତି ଜାଣି ବିରାଜଇ ଛନ ଛନ ॥
କେ ଘର ବାହାର ବାରିତ ନ ପାରି ।
ରତ୍ନରେ ନିର୍ମାଣିଲା ଅଟଇ ସେ ପୁରୀ ॥
ମେଢ଼ ମଣ୍ଡୋପ ଦେଉଳ ପନ୍ତି ପନ୍ତି ।
ବିବିଧ ଚାରୁ ବସ୍ତ୍ର ପାତାଙ୍ଗ ଉଡ଼ନ୍ତି ॥
ପ୍ରଶସ୍ତକୁ ଚାହିଂ ରାବଣ ପଚାରି ।
ବାବୁ ସୁନ୍ଦର ଏ ଅପୂର୍ବ ଚାରୁ ପୁରୀ ॥୨୦
କେ ଯେଥକୁ ଠାକୁର ପଚାରି ଆସ ଯାଇଂ ।
ଶୁଣିଣ ପ୍ରଶସ୍ତ ଗଲାକ ରଥରୁ ଓହ୍ଲାଇ ॥
ନଗରେ ପଶିଣ ବୁଲିଲା ଚଉକତି ।
କାହାକୁ ହିଂ ନ ଦେଖି ବିସ୍ମୟେ ତାର ମତି ॥
ରାବଣର ମନ୍ଦ ପଣ ଜାଣଇ ପ୍ରଶସ୍ତ ।
କେମନ୍ତେ ବାହୁଡ଼ିବି ନ ପାଇଣ ତଥ୍ୟ ॥
ବିଶେଷେ ରାଜା ଆଗ୍ୟାଂ ମେଣ୍ଟିତ ନ ଯାଇ ।
ସବୁଠାକୁ ଅସୁରେ ପାରନ୍ତି ସେ ଯାଇ ॥
ସୁମାଳୀ ତନଏ ବୁଲଇ ପୁରେ ଧୁରି ।
ଆଗେଣ ଦେଖିଲା ଅଛଇ ଏକ ଦ୍ୱାର ॥୩୦
ସେ ବାଟେ ପଶିଲା ଜାଣିମାର ପାଇଁ ।
ତହିଂରେ ଦେଖିଲା ଜନପଦ ନାହିଂ ॥
ପୁଣି ହିଂ ଦ୍ୱାରେକ ଦେଖି ପଶିଗଲା ।
ଯେମନ୍ତେ ସାତଦ୍ୱାର ପରିଯନ୍ତେ ଗଲା ॥
ନବରତ୍ନ ମନ୍ଦିର ଦ୍ୱିତୀୟ ବାରସ୍ୱତୀ ।
ମଧ୍ୟରେ ଅଛଇ ସେ ମାଣିକ୍ୟର ଜଗତୀ ॥
ତହୁଂ ପଶିବାକୁ ଅବକାଶ ନାହିଂ ।
ଦ୍ୱାରେ ପୁରୁଷେକ ଅଛଇ ଉଭାହୋଇ ॥
ତେଜମଏ ତନୁ ଦେଖିଲା ତାହାର ।
ଭଏ କରି ପ୍ରଶସ୍ତ ହୋଇଲା ବାହାର ॥୪୦
ବାହୁଡ଼ି ରାବଣ ଆଗରେ କହିଲା ।
ଶୁଣି ଦଶଗ୍ରୀବ ରଥରୁ ଓହ୍ଲାଇଲା ॥
ସପତ ମୁଦ୍ର ପ୍ରାଚିରନ୍ତ୍ରି ଦିଲା ପେଲି ପଶି ।
ଜନପଦ ତହିଂ କିଛି ହିଂ ନ ଦିଶି ॥
ପ୍ରଶସ୍ତ ଯେବଣ ପୁରୁଷ ଦେଖି ଆଏ ।
ତାହା ଦେଖିଲା ଯାଇଂ ଦଶାନନ ରାଏ ॥
ଜ୍ୟୋତିମଏ ମହାତ୍ମା ପରିଘ ଘେନି ଉଭା ।
ବ୍ରହ୍ମାଣ୍ଡ ପୂରିଅଛି ତାହାର ତେଜ ପ୍ରଭା ॥
ରାବଣକୁ ଚାହିଂ ବୋଇଲା ସେ ଜାଣ ।
ଆସ ଆସ ମୋହୋର ସଙ୍ଗେ କର ରଣ ॥୫୦
ଦଶଶିର ବୋଇଲା ତୁ ନୋହୁ ମୋତେ ସରି ।
ତୁ କେମନ୍ତେ ମୋର ତୁଲେ ଯୁଦ୍ଧ୍ୟ କରୁ ଲୋଡ଼ି ॥
ସାମାନ୍ୟ ପ୍ରାଏ କି ବୁଝିଲୁ ତୁ ମୋତେ ।
ମୁହିଂ ସେ ରାବଣେଶ୍ୱର ବିଦିତ ଜଗତେ ॥
ଦେବ ଦକ୍ଷ କିନ୍ନର ନୁହନ୍ତି ମୋତେ ସରି ।
ତୁ କେମନ୍ତେ ମୋର ସଙ୍ଗେ ଲୋଡୁ ଯୁଦ୍ଧ୍ୟ କରି ॥
ଶୁଣିଣ ସେ ପୁରୁଷ ଅଳପ ହୋଇଂ ହସି ।
ରାବଣକୁ ବୋଇଲା ତୁ ଭିତରକୁ ଯାସି ॥
ଏତେ ବୋଲି ହାଥ ଧରି ଭିତରକୁ ନେଲା ।
ଆପଣେ ନ ଗଲା ସେ ଦ୍ୱାରେଣ ରହିଲା ॥୬୦
ବିଶର୍ବାର ତନଏ ପଶିଲା ସେ ପୁରେ ।
ଯାଇଂଣ ଉଠିଲା ସେ ମାଣିକ୍ୟ ଜଗତୀରେ ॥
ଅପୂର୍ବ ଘଟଣ ଦେଖିଣ ପ୍ରଶଂସି ।
ଦିବ୍ୟ ସିଂହାସନେ ବଳି ଅଛିବସି ॥
ନେତ ପାଟ ଚାମର ମୁକୁତାର ଝରା ।
ବସିଲା ଆସନ ବ୍ରହ୍ମ ଜାତି ହୀରା ॥
ସମ୍ଭର୍ବ ହୋଇ ବସିଅଛି ଚକ୍ରବର୍ତ୍ତୀ ।
ରାବଣକୁ ଦେଖି ରାଇଲାକ କତି ॥
ଆସ ଆସ ବୋଲି ବସାଇଲା କୋଳେ ।
ବଦନେ ଚୁମ୍ବ ଦେଇ ପଚାରଇ ମହୀପାଳେ ॥୭୦
ମୁହିଂ ତୋତେ ଜାଣଇଂ ତୁ ବିଶର୍ବାର ସୁତ ।
ସୁମାଳୀ ଦୋହିତା ନଉକେଶୀ ଗର୍ଭୁ ଜାତ ॥
ଯେବେ ବଳା ଏଥକୁ ଅଇଲୁ କିସ ପାଇଂ ।
ହସିଣ ବୋଇଲା ସେ ମନ୍ଦୋଦରୀ ସାଇଂ ॥
ପୁଷ୍ପେକ ରଥ ଚଢ଼ି ଭ୍ରମିବାକୁ ଅଇଲି ।
ତୋହର ପୁର ଦେଖି ଧନ୍ୟ ହୋଇଲି ॥
ତୋତେ ନାରାଏଣ ପାତାଳକୁ ଚାପିଲା ।
ସେ କଥା ଶୁଣି ମୋର ଶ୍ୟରୀର କମ୍ପିଲା ॥
ତେଣୁ ସେ ଅନୁସରି ଅଇଲି ମହାରାଜ ।
ବନ୍ଧନୁ ମୁକତ ତୋତେ କରିବଇଂ ଆଜ ॥୮୦
ବଳି ବୋଇଲା ତୋର ଯେଣେ କାର୍ଯ୍ୟ କିସ ।
ଦ୍ୱାରେ ଦେଖିଲୁ ଯାହା ବିଶର୍ବାର ଶିଷ ॥

ସେ ସେ ନାରାଏଣ ସଂସାର କରତା ।
ତାହାଙ୍କ ଆନ କେହି ନାହିଁନା ଶକତା ॥
ରାବଣ ବୋଇଲା ସେ ଅଟଇ ବଡବୀର ।
ମୋତେ ବୋଇଲା ହୋ ଯୁଝିବା ଦଶ ଶିର ॥
ମୁଂ ତାହାକୁ ବୋଇଲି ତୁ ନୋହୁ ମୋତେ
ସରି ।
ହସି ଦ୍ୱାର ଛାଡ଼ି ଗଲା ଅପସରି ॥
ହାଥ ଧରି ମୋତେ ଭିତରକୁ ପେଲି
ଦେଲା ।
ଆପେ ନ ଆସି ସେ ଦ୍ୱାରେଣ ରହିଲା ॥୯୦
ବଳି ବୋଇଲା ସେ ଅଟଇ ନାରାଏଣ ।
ଶଙ୍ଖ ଚକ୍ରଧାରୀ କମଳା ରମଣ ॥
ଅପାର ମହିମା ତାର ଅନନ୍ତ ମୂରତି ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ଶ୍ରୀପତି ॥
ମଛ କୂର୍ମ ବରେହା ସେ ନରସିଂହ ହୋଇ ।
ପୃଥିର ନିମନ୍ତେ ଦଶ ଅବତାର ବହି ॥
ଯହୁଂ ମୁଂ ଅନ୍ୟାଏ କଲଇଂ ବହୁତ ।
ବାବନ ମୂରତି ତହୁଂ ଧଇଲେ ଅଚ୍ୟୁତ ॥
ପ୍ରାଣରେ ନ ମାରି ମୋତେ ଚାପିଲେ
ପାତାଳେ ।
ମୋତେ ଏଥିରେ ଥୋଇଂ ହୋଇଲେ
ଦ୍ୱାରପାଳେ ॥୧୦୦
ତୁ କାହିଂ ରାବଣ ହୋ ମୁକୁଳାଇ ଦେବୁ
ମୋତେ ।
ମୁହିଂ ସେ ମନେ ମନେ ଭାଳୁଅଛି
ତୋତେ ॥
ଯେଥୁ ଭଲେ ଭଲେ ଯାଅସି ଦଶଶିର ।
ବିଷ୍ଣୁର ମହିମା ଅତି ଅଗୋଚର ॥
ଶୁଣି ଦଶାନନ ଯାନରେ ବସିଲା ।
ତହୁଂ ମନୋରଥ ଗବନ କରିଗଲା ॥
ବଳି ଆଗ୍ୟାଂ ପାଇ ବାହାର ହୋଇ ଯାଇ ।
ଦ୍ୱାର ଠାରେ ଯାଇ ପ୍ରବେଶ ହୁଅଇ ॥
ଯିବାର ବେଳେ ଦେଖିଲା ଯେବଣ ପୁରୁଷ ।
ଆସିବା ବେଳକୁ ସେ ହୋଇଲା
ଅଦୃଶ ॥୧୦

ସାତପୁର ଜିଣିଗଲାକ ଦଶାନନ ।
ଯାଇଂ ଆରୋହିଲା ପୁଷ୍ପେକ ବିବାନ ॥
ପ୍ରଶସ୍ତ ମନ୍ତ୍ରୀ ଆଗେ ସମସ୍ତ କହିଲା ।
ତହୁଂ ମନୋରଥ ଗବନ କରିଗଲା ॥
ପାତାଳ ଭୁବନେ ବୁଲଇ ପୁରେ ପୁର ।
ଯାନ୍ତେଣ ଦେଖିଲା ଯେକଇ ଗିରିବର ॥
ଦିବ୍ୟପୁରୁଷେକ ଅପଛରାୟେ ଘେନି ।
ଭୋଗ୍ୟ କରୁଅଛି କାମକଳା ଜାଣି ॥
ରାବଣ ବୋଇଲା ତୁ କେବଣ ମହାତ୍ମା ।
ସଂସାରୁ ବାହାର କି ତୋହୋର
ଗାରିମା ॥୨୦
ଲାଜ ନ ପାଉ କି ଲୋକାଚାରେ ପଶି ।
ରମଣ କରୁଅଛୁ ବାଟରେ କିମ୍ପା ବସି ॥
ନିଗମ ଠାବରେ ଲୋକନ୍ତ ନଥାଇ ।
ତେବେ ସେ ମନକୁ ତ୍ରିପୁତି ଉପୁଜଇ ॥
ନିର୍ଭୟେ ହୋଇଣ ଯେବଣ ଠାବେ ରଚି ।
ତହିଂ ଲୋକ ଥିଲେ ଉପୁଜଇ ବାଚି ॥
ଯେ ରୂପ ଠାବକୁ ନିଶୋଧ କଲା ଲୋକ ।
ଗୁପତ କଥା ଯେ ଅଟଇ ଯେକୁ ଯେକ ॥
ତହିଂକି ସଭାବେ ଶୃଙ୍ଗାର ତୁହି କରୁ ।୩୦
ଲାଭ ହାନି କଥା ବିଚାର ନ କରୁ ॥
ଯେମନ୍ତ ଥାନେ କି ରତି ସୁଖ ପାଇ ।
ଲୋକ ନଥିଲେ ସିନା ଭାବ ଉପୁଜଇ ॥
ରାବଣ ବଚନ ସେ ଶୁଣିଣ ପୁରୁଷ ।
ଶୃଙ୍ଗାର ଛାଡ଼ିଣ ସେ ହୋଇଲା ହସ ହସ ॥
ମନେ ବିଚାରିଲା ଯେ ସେ ଲଙ୍କପତି ।
ଦୁଷ୍ଟ ପ୍ରକୃତି ଯେହାର ଅଟଇ ଯୁଗତି ॥
ପ୍ରୀତି କରିଣ ମୁଂ କହିବି କଥାଏ ।
ପ୍ରବୋଧ ହୋଇଂ ଯାଉ ଅସୁର କୁଳ ରାଏ ॥
ଦୁଷ୍ଟ ଲୋକକୁଂ ପ୍ରୀତି ଯେବେ କହି ।
ତେବେ ସେ ଆପଣାର ବଡ଼ପଣ ଥାଇ ॥୪୦
ଯେତେ ବୋଲି ତାକୁ ସମାସ୍ୟା ପୁଣ ଦେଲା ।
ଶୁଣ ହୋ ଦଶାନନ ବୋଲିଣ ବୋଇଲା ॥
ସ୍ତିରୀ ବଶ୍ୟ କେ ନୋହିବ ସଂସାରେ ।
ସ୍ତିରୀ ସେ ସୁଖଦାନୀ ଅଟନ୍ତି ବେଭାରେ ॥

ସ୍ତିରୀ ସେ କୁଟୁମ୍ବ ସ୍ତିରୀ ସେ ସାଧେବୀ ।
ସ୍ତିରୀ ସେ ପୁରୁଷଙ୍କର ଅଟନ୍ତି ବଲ୍ଲଭୀ ॥
ସ୍ତିରୀ ନ ଥିଲେ ସେ ପୁରୁଷେ ନ ଶୋଭାନ୍ତି ।
ସ୍ତିରୀ ସେ ସଂସାରେ କରନ୍ତି ଉତପତି ॥
ସ୍ତିରୀହିଂ ସେ ଧର୍ମ ସ୍ତିରୀହିଂ ସେ କର୍ମ ।
ସ୍ତିରୀହିଂ ସଂସାରେ ଆଦି ବୀଜ ବ୍ରହ୍ମ ॥୫୦
ସ୍ତିରୀ ନ ଥିଲେଣ ନୋହଇଟି ସୃଷ୍ଟି ।
ସ୍ତିରୀକି ଆଗ ଜନ୍ମ କଲେକ ପରମେଷ୍ଠୀ ॥
ସ୍ତିରୀ ବଶ ଯେ ସକଳ ସୁରଗଣ ।
ସ୍ତିରୀ ସେ ଅଟନ୍ତି ପୁରୁଷଙ୍କର ବଡ଼ପଣ ॥
ସାବେତ୍ରୀକି ହୃଦେ ବହିଛି ପିତାମହ ।
ତେଣେ ସେ ତାହାର ପବିତ୍ର ଅଟେ ଦେହ ॥
ବିଷ୍ଣୁହିଂ ଲକ୍ଷ୍ମୀକି ଗଳାରେ ଲମ୍ବାଇ ।
ଲକ୍ଷ୍ମୀ ନାରାୟେଣ ବୋଲାନ୍ତି ଜଗତର
ସାଇଂ ॥
ଈଶ୍ୱର ଅର୍ଦ୍ଧଅଙ୍ଗ ଅଟନ୍ତି ପାର୍ବତୀ ।
ଅର୍ଦ୍ଧନାରୀଶ୍ୱର ବୋଲାଇ ପଶୁପତି ॥୬୦
ବ୍ରହ୍ମା ଉର୍ବାଶୀକି ଦେଖିଣ ମୋହ ଗଲା ।
ବଶିଷ୍ଟ ନାମେ ତାର ପୁତ୍ରେକ ଉପୁଜିଲା ॥
ଗଙ୍ଗା ଯେ ବରୁଣର ଅଟନ୍ତି ପାଟରାଣୀ ।
ସେନେଧେ ଶିରେ ନେଇ ବସାଇଲେ
ଶୂଳପାଣି ॥
ହର ପାର୍ବତୀଙ୍କର ବିଭା ଯେବଣ କାଳେ ।
ବ୍ରହ୍ମା ଆଚାର୍ଯ୍ୟ ହୋଇଲେ ତେତେବେଳେ ॥
ହାଥ ଯୋଡ଼ିବା ବେଳେ ପାର୍ବତୀକି ଚାହିଂ ।
ରେତ ଛାଡ଼ିଲା ବ୍ରହ୍ମା ମଦନେ ବଶ୍ୟ
ହୋଇଂ ॥
ଲାଜେ ସେ ବୀର୍ଯ୍ୟ ବାଲିରେ ଦେଲେ
ଗୋଳି ।
ତହୁଂ ଜାତ ହୋଇଲେ ଅନେକ
ତପଶାଳୀ ॥୭୦
ସେ ସେ ଅଟନ୍ତି ଋଷି ବାଳ ଖିଲ୍ୟା ।
ସ୍ତିରୀଙ୍କି ଅବା କେବଣ ପୁରୁଷ ନ
ରସିଲା ॥
ବିଶ୍ୱାମିତ୍ର ମୁନିଙ୍କର ତପ ଗରୁତର ।

ମେନକାକୁ ଦେଖି ହୋଇଲେ କାତର ॥
ସପତ ଋଷିଙ୍କର ଭାରିଯାକୁଂ ଦେଖି ।
ଅଗ୍ନି ବଶ୍ୟ ହୋଇଲେ ଧଇର୍ଯ୍ୟ ଉପେଖି ॥
ସ୍ତିରୀର ଲୋଭେଟି ମହିମା ନାଶ ଗଲା ।
ଶୁମ୍ଭ ନିଶୁମ୍ଭ ରକତ ବୀର୍ଯ୍ୟ କ୍ଷୟେ ପୁଣ ଗଲା ॥
ଗଉତମଙ୍କ ଭାରିଯା ଅହିଲା ସୁନ୍ଦେରୀ ।
କପଟେ ଭୋଗ୍ୟ ତାକୁ କଲେ ବଜ୍ରଧାରୀ ॥୮୦
ବୃହସ୍ପତି ଦେବଗୁରୁ ତାରାକୁ ନ ମୁଛି ।
ତିରୀ ହରଣେ ପ୍ରମାଦ ତୋତେ ଅଛି ॥
ସ୍ତିରୀଙ୍କର ଅଧରେ ଅମୃତ ଅଛି ପୂରି ।
ସ୍ତିରୀଙ୍କର ମୁଖ ଚନ୍ଦ୍ରକୁ ସମସରି ॥
ସ୍ତିରୀଙ୍କର ନୟନେ ଅଛି ପଞ୍ଚବାଣ ।
ଦେଖିଲେ ପୁରୁଷଙ୍କର ହରଇ ବଡ଼ପଣ ॥
ସ୍ତିରୀଙ୍କର ଯଉବନ ସୁସ୍ୱାଦ ଦିବ୍ୟ ଫଳ ।
ସ୍ତିରୀଙ୍କର କୋଳେ ଥିଲେ ଜୀବନ ସୁଫଳ ॥
ସ୍ତିରୀ ସେଁ ପୁତ୍ର କରନ୍ତି ଉତପତି ।
ସ୍ତିରୀଙ୍କର ପ୍ରସାଦେ ହୋଅଇ ସନ୍ତତି ॥୯୦
ସକଳଠାରୁ ବ୍ରହ୍ମା ଆଣିଲେ ସାର ମାନ ।
ସ୍ତିରୀ ବୋଲି ପଦାର୍ଥ କଲେକ ଭିଆଣ ॥
ହସି କହିଲେଣ ଦେବେ ବଶ୍ୟ ହୋନ୍ତି ।
ଛପନ କୋଟି ଜୀବ ସ୍ତିରୀଙ୍କି ବଶ୍ୟ ଯାନ୍ତି ॥
ବଳ ନ ଥାଇ ଯେ ଅବଳା ନାମ ବହିଂ ।
ସ୍ତିରୀଙ୍କି ତତକାଳ ସପକ୍ଷ ହୋଇ ବିହି ॥
ସ୍ତିରୀ ସେ ଅବୋଧ ଅଟନ୍ତି ସଂସାରେ ।
ସ୍ତିରୀହୁଂ ବଡ଼ ଆଉ ନାହିଂ ଲୋକାଚାରେ ॥
ମୁହିଂ ସେ ହାଦେ ଧରିଅଛି ପୃଥ୍ୱି ।
ମୋ ତହୁଂ ଧଉର୍ଯ୍ୟ କେ ଅଛଇ ପୁଣି ଯେଥି ॥୧୦୦
ମୁହିଂ ପୁଣି ସ୍ତିରୀଙ୍କି ଯେତେକମାନ ବଶ୍ୟ ।
ନୋହ କି ଆନେ ବୋଲଇ ଦଶାଇସ ॥
ହସିଣ ରାବଣ ତହୁଂ ବିବାନ ଘେନି ଗଲା ।
ବାଟେ ଯାଉଂ ଯାଉଂ ପୁଷ୍ପୋକ ଦେଖିଲା ॥
ନାନା ଦେଶକୁ ସେ ରଥ ଚଢ଼ି ଯାଇ ।
ତରୁଣ ବସନ୍ତେ ସେ ବାଜଣା ବଜାଇ ॥

ଅପୂର୍ବ ଅଳଙ୍କାର ଆଲମ୍ବ ପାଟଛତ୍ର ।
ଦେଖି ବିସରିଲା ବିଶର୍ବାର ସୁତ ॥
କେବଣ ପୁରୁଷ ଯେ ଜାଣିମା କେମନ୍ତେ ।
ଯେତେ ବୋଲି ପୁଷ୍ପକ ବାହିଲା ତୁରିତେ ॥୧୦
ଯାନ୍ତେଣ ଦେଖିଲା ଯେ ବ୍ରହ୍ମଋଷିମାନ ।
ତାହାଙ୍କୁ ବାରତା ପଚାରଇ ଦଶାନନ ॥
ରଥ ଚଢ଼ିଣ ସେ ସମ୍ପଦ ହୋଇଯାଏ ।
କହ ମୁନିବର ଯେ କେବଣ ଦେଶୁଂ ଆୟେ ॥
ରାବଣ ବଚନେ ପର୍ବତ ମହାମୁନି ।
ବୋଲଇ ଶୁଣ ହୋ ଦଶଇ ମୁର୍ଦ୍ଧନି ॥
ପୁଣ୍ୟ କଲା ଲୋକେ ଯେମନ୍ତ ହୋଇ ଥାନ୍ତି ।
ତପ ଅନୁରୂପେ କର୍ମରେ ସୁଖଭୋଗ ପାନ୍ତି ॥
ରାବଣ ବୋଇଲା ମୁଂ ନିତ୍ୟେ ପଚାରଇ ସାଧ୍ୟେ ।
ମୋହୋର ସଙ୍ଗେ କେହୁ କରିବାକ ଯୁଧ୍ୟ ॥୨୦
ଋଷି ବୋଇଲେ କିମ୍ପା ଯୁଝିବ ତୋର ସଙ୍ଗେ ।
ମାହାତ୍ମା ପୁରୁଷର ପାପ ନାହିଂ ଅଙ୍ଗେ ॥
ହିଂସା ଥିଲେ ସିନା କରିବେ ଆସି ଦ୍ୱନ୍ଦ୍ୱ ।
ମାନ୍ଧାତା ସଙ୍ଗେ ତୁ ଯୁଝ ହୋ ଦଶକନ୍ଧ ॥
ରାବଣ ବୋଇଲା ସେ ପର୍ବତ ଋଷିଙ୍କି ଚାହିଂ ।
ଭୋ ମୁନି ମାନଧାତା ଅଛି ଯେବେ କାହିଂ ॥
ଋଷି ବୋଇଲେ ସେ ସପତଦ୍ୱୀପେ ରାଜା ।
ଚକ୍ରବର୍ତ୍ତୀ ପଣେ ସେ ପାଉଅଛି ପୂଜା ॥
ଅଯୋଧ୍ୟା ନିଜ ଦେଶ ତହିଂ ଯେବେ ଅଛି ।
ଯୁବନାଶ୍ୱ ରାଜାର ଅଟଇ ସେହୁ ବଛି ॥୩୦
ଅଷ୍ଟବକ୍ର ମୁନି ମନ୍ତ୍ରିଣ ଦେଲେ ଯାହା ।
ଆପଣେ ଯୁବନାଶ୍ୱ ଭକ୍ଷିଲାକ ତାହା ॥
ଅକାଳେ ଗର୍ଭବାସ ହୋଇଲାକ ରାୟେ ।
ପୁତ୍ର ପ୍ରସବିଲା ବହୁତ ସମୟେ ॥
ପେଟ ଚିରିଣ ସେ ତନୟେ ଜାତ କଲା ।

ଆପଣେ ଦେହ ଛାଡ଼ି ସୁରପୁରେ ଗଲା ॥
ପୁତ୍ରର ରୋଦନ ଜାଣିଲା ଶଚୀପତି ।
ଅଇରାବତ ଆରୋହି ମିଳିଲା ତାର କତି ॥
ଗଜ ପିଠିରୁ ଓହ୍ଲାଇ ଧଇଲାକ କୋଳେ ।
ପ୍ରସନ ହୋଇ ବର ଦେଲାକ କୋତୋହୋଳେ ॥୪୦
ବୋଇଲା ସପତ ଦ୍ୱୀପରେ ହୋଅ ରାଏ ।
ମୁହିଂ ଯେ ହୋଇଲି ତୋହୋର ଧର୍ମ ମାୟେ ॥
ତୁ ମୋହୋର ପୁତ୍ର ମୁ ତୋହୋର ମାତା ।
ଆଜୁଂ ତୋର ନାମ ଅଟଇ ମାନଧାତା ॥
ବର ଦେଇ ଇନ୍ଦ୍ର ଗଲା ସ୍ୱର୍ଗପୁରୀ ।
ତିନିବେଳ ଆସି ଦେଖଇ ବଜ୍ରଧାରୀ ॥
ଯେମନ୍ତେ କୁମାର ବଢ଼ଇ ଦିନେ ଦିନ ।
ଶୁକଳ ପକ୍ଷରେ ବଢ଼ଇ ଯେହ୍ନେ ଜହ୍ନ ॥
କାଳେ ମାନଧାତା ହୋଇଲା ଚକ୍ରବର୍ତ୍ତୀ ।
ଇନ୍ଦ୍ରର ପ୍ରସାଦେ ସାଧିଲାକ ପୃଥୀ ॥ ୫୦
ପାର ଯେବେ ଯାଇ ଯୁଝ ତାହାର ସଙ୍ଗେ ।
ତୋତେ ତ୍ରିପୁତି କରିବ ରଣରଙ୍ଗେ ॥
ଶୁଣି ଲଙ୍କପତି ଅଯୋଧ୍ୟାକୁ ଗଲା ।
କଟକେ ପଶିଣ ସଇନି ନାଶ କଲା ॥
କାମରୂପୀ ବିବାନ ଚଳଇ କାମରୂପୀ ।
କରେ ଧନୁ ଧରି ବିନ୍ଧଇଂ ଅସୁର ପତି ॥
ଅଳ୍ପାଗେ ଚତୁରାଙ୍ଗ ବଳ ନାଶ କଲା ।
ଶୁଣି ମାନଧାତା ଆପଣେ ଯୁଝିଲା ॥
ମନ୍ତ୍ରୀଗଣେ ବୋଇଲେ ନୋହଇ ଉଚିତ ।
ରାବଣ ରାଜା ଯେ ବିଶର୍ବାର ସୁତ ॥୬୦
ପୂର୍ବେଣ ଯେଥେ ଆସି ଅନେକ ଯୁଧ୍ୟ କଲା ।
ଅରଣ୍ୟ ରାଜାକୁ କପଟେ ମାଇଲା ॥
ଯେବେ ପୁଣ ଆସିଅଛି ତାହା ଜାଣି ।
ଜଗତେ ଅକ୍ଷୟେ ଅଟଇ ବିଂଶପାଣି ॥
ଭୋ ମାନଧାତା ତୁ ନ ଯୁଝ ଯେହାର ତୁଲେ ।
ଯମ କୋବେର ବରୁଣ ଯେହାକୁ ହାରିଗଲେ ॥

ଶୁଣି ନୃପବର ମନ୍ତ୍ରୀକି ଡିଆରି ।
ଯେବଣ କଥା ତୁ କହିଲୁ ବିଚାରି ॥
ମୁହିଂ ଯତନେ ନ କଲି ନା ଦ୍ୱନ୍ଦ୍ୱ ।
ଆପଣେ ଅନର୍ଥ ଭିଆଇଂ ଦଶକନ୍ଧ ॥୭୦
ଚତୁରାଙ୍ଗ ବଳ ମୋର ପକାଇଲା ମାରି ।
ଆବର ଡାକୁଅଛି କରେଣ ଶହସ୍ର ଧରି ॥
ଯେଥକୁ ଘୁଞ୍ଚିଲେ କି ବୋଲିବେ ଲୋକେ ।
କିସ ରାଜ୍ୟ କରିବି ମୁ ଅଯୋଧ୍ୟା କଟକେ ॥
ଛତ୍ରୀଙ୍କର ମୁଖେ ପାଇବଇଂ ହାସ୍ୟ ।
ଜୀଇଂବାକୁ ମରିବା ତ ଅଟଇ ଉଶ୍ୱାସ ॥
ଯେତେ ବୋଲି ରଥ ଚଢ଼ିଣ ରାୟେ ଗଲା ।
ରାବଣ ଛାମୁରେ ଯାଇଂଣ ଯୁଧ୍ୟ କଲା ॥
ବିଷମ ସମର ବାଜିଲା ଦୁହିଂଙ୍କରି ।
ବେଳୁଂ ବେଳେ ଦୁହେଂ ଅପୂର୍ବ ଯୁଧ୍ୟ କରି ॥୮୦
ଦୁହେଂ ମାହାଛତ୍ରୀ ନ ଘୁଞ୍ଚନ୍ତି ପୟେ ।
କୋପେଣ ନାରାଚ ବିନ୍ଧଇ ଲଙ୍କରାୟେ ॥
ତାହା ଛେଦି ମାନଧାତା ମାଇଲା ତୀକ୍ଷବାଣ ।
ହୃଦେ ବାଜି ମୋହେ ପଡ଼ିଲା ରାବଣ ॥
ପୁଣି ଚେତି ଉଠି ପିଟିଲା ମୁଦ୍‌ଗର ।
ଭାଜି ପକାଇଲା ମାନଧାତା ରଘୁବର ॥
ଅଯୋଧ୍ୟା ରାଜା ଯେ ଶକତି ମାଇଲା ।
ଶୂଳ ପେଷି ରାବଣ ତାହା ଛିନାଇଲା ॥
ଶକତି ଛେଦିଣ ପେଷିଲା ତୀକ୍ଷକାଣ୍ଡ ।
ଜାଣି ପଟାନ୍ତର ମଧ୍ୟାହ୍ନ ମାରତଣ୍ଡ ॥୯୦
ମାନଧାତା ବକସ୍ଥଳେ ବାଜିଲାକ ଯାଇଂ ।
ମୋହେ ଶୋଇଲା ସେ ଅଯୋଧ୍ୟାର ସାଇଂ ॥
ଚେତନା ପାଇଣ ସେ ଉଠିଲା ନରନାଥ ।
ଦଶଗ୍ରୀବ ତୁଲେ କଲାକ ଅନର୍ଥ ॥
ନିରନ୍ତରେ ନାରାଚ ପଡ଼ଇ ଯେଣେତେଣେ ।
ପୃଥିବୀ କମ୍ପିଲା ଶହସ୍ର ବରଷଣେ ॥
ଦୁହିଂଙ୍କରି ଶ୍ୟରୀରୁ ବହଇ ରୁଧିର ।
କାଣ୍ଡେ ଅଦୃଶ୍ୟ ହୋଇଲା ଶ୍ୟରୀର ॥
ମାହାଘୋର ସାଂଗ୍ରାମ ବଢ଼ିଲା ବେଳୁ ବେଳେ ।
କି ଅବା ପୃଥିବୀ ସଙ୍ଘାର ରଣ କାଳେ ॥୧୦୦
ଯକ୍ଷ କିନ୍ନର ଗନ୍ଧର୍ବ ଚଉଦ ଭୁବନ ।
ଡରେ ସୁରପତିର ମନ ଛନ ଛନ ॥
ପୌଲସ୍ତ୍ୟ ମୁନିଙ୍କି ପେଷିଲେ ସମଝାଇ ।
ମାନଧାତା ପ୍ରାଣ ଦାନ ଦେଇ ଆସ ଯାଇଂ ॥
ଅଯୋଧ୍ୟାର ରାଜା ସେ ମୋହୋର ତନୟେ ।
ଯେହିକ୍ଷଣି ତାକୁ ମାରିବ ଲଙ୍କରାଏ ॥
ଶୁଣି ପୌଲସ୍ତି ଅଯୋଧ୍ୟାକୁ ଗଲା ।
ଦୁଇ ବୀରଙ୍କର ମଧ୍ୟରେ ପଶିଲା ॥
ମନା କରିଣ ଗୁହାରିଲା କଳି ।
ରାବଣକୁ ବୋଇଲା ତୁ ଅଟୁ ମହାବଳୀ ॥୧୦
ମାନଧାତା ରାଜା ହାରିଲାକ ତୋତେ ।
ଇନ୍ଦ୍ର ପଠିଆଇ ଦେଲା ସ୍ୱର୍ଗୁ ମୋତେ ॥
ଶୁଣିଣ ରାବଣ ହୋଇଲା ତୋଷମନ ।
ମାନଧାତା ତୁଲେ ପୀରତି ଦଶାନନ ॥
କୋଳ କରି ତହୁଂ ବାହୁଡ଼ିଣ ଗଲା ।
ଜୟେ ଶଙ୍ଖ ବଜାଇ ଲଙ୍କାରେ ମିଳିଲା ॥
ଯେତେବେଳେ ରାବଣ ମିଳିଲା ଲଙ୍କପୁର ।
ବାହୁଡ଼ି ଗଲେ ସେ ପୌଲସ୍ତି ମୁନିବର ॥
ମାନଧାତାକୁ ବୋଇଲେ ତୁ କିମ୍ପାଇ ନ ବିଚାର ।
ବ୍ରହ୍ମାର ବରେ ସେ ଅଟଇ ମାହାବୀର ॥୨୦
କଇଳାସ ପର୍ବତ ଉପାଡ଼ିଲା ହେଳେ ।
କୋବେର ବରୁଣକୁ ଜିଣିଲା ବାହୁବଳେ ॥
ପାତାଳ ଆକାଶେ ବୁଲି ଯୁଧ୍ୟ କଲା ।
ବାସୁକି ରାଜା ତାହାକୁ ସନ୍ଧାନ ଆଣିଦେଲା ॥
ତୋହୋର ଉପର ବଂଶେ ଅରଣ୍ୟ ବୋଲି ରାୟେ ।
ତାହାକଇ ରାବଣ କପଟେ ନାଶ କୟେ ॥
ମରୁତ ରାଜା ଯାଗ୍ୟଂରେ ଋଷିମାନ ଖାଇ ।
ସହସ୍ରାର୍ଜ୍ଜୁନ ତହୁଂ ବୁଦ୍ଧିକରି ଯାଇ ॥
ବ୍ରହ୍ମା ବର ତାକୁ ଦେଇଛନ୍ତି ପୂର୍ବେ ।
ତେଣୁ ସେ ଦଇତ ଚଳଇ ମଉଗର୍ବେ ॥୩୦
ତୁ ରାୟେ ତାର ତୁଲେ ନ ଜାଣିଣ ଯୁଝୁ ।
ସାମାନ୍ୟ ଦନୁଜ ପ୍ରାୟେ ରାବଣକୁ ବୁଝୁ ॥
ଶୁଣି ମାନଧାତା ଶିର ଲମ୍ବାଇଲା ।
ଋଷିଙ୍କି ପୂଜା କରି ନିଜ ପୁରେ ଗଲା ॥
ଯେଥୁ ଅନନ୍ତରେ ଦଶାନନ ରାୟେ ।
ନିଜ ଲଙ୍କାରେ ପ୍ରବେଶ ଯାଇଂ ହୋଏ ॥
ଅଗସ୍ତି ବୋଲନ୍ତି ତୁମ୍ଭେ ରାମଚନ୍ଦ୍ର ଶୁଣ ।
ଦିନେକ ପୁଷ୍ପେକ ଆରୋହି ରାବଣ ॥
ସଙ୍ଗରେ ମନ୍ତ୍ରୀ ତାର ମଉଳା ପ୍ରଶସ୍ତ ।
ଲଙ୍କାରୁ ବାହାର ହୋଇଲା ବିଂଶହସ୍ତ ॥୪୦
ବନ ଗିରି ଦେଶ ବହୁତ ଜିଣିଗଲା ।
ସପତ ପୁର ଅନ୍ତରେ ପୁରେକ ଦେଖିଲା ॥
ଦଶ ସହସ୍ର ଯୋଜନ ଅଟଇ ଆୟେତନ ।
ଅପୂର୍ବ ସୁନ୍ଦର ତହିଂ ନର ନାରୀମାନ ॥
ଚନ୍ଦ୍ରର ପ୍ରାୟେକ ଆହ୍ଲାଦନ ପୁରୀ ।
ତହିଂ ଯାଇ ପ୍ରବେଶ ହୋଇଲା ଦଶଶିରି ॥
କୁହୁକମୟେ ପୁଣ ଦିଶିଲା କିଛି ଦୂରେ ।
ତେଜ କି ବିରାଜଇ ତହିଂର ଉପରେ ॥
ଶିଶିର ଝର ଝର ବରଷଇ ତହିଂ ।
ଦେବ ଦାନେବ ଯେ ପଶନ୍ତା କେହି ନାହିଂ ॥୫୦
ପ୍ରଶସ୍ତ ବୋଇଲା ତୁ ଶୁଣ ଲଙ୍କରାୟେ ।
ମୋହୋର ମନକୁ ତ ଲାଗିଲା ମାହାଭୟେ ॥
ଦେବ ଭୁବନ ଯେ ମାୟାପୁର ଅଟଇ ।
ଶୁଦ୍ଧ ସୁବର୍ଣ୍ଣ ଯେ ସ୍ଫଟିକ ପ୍ରକଟଇ ॥
ଯେଥୁ ଉବୁରି ଆମ୍ଭେ ନ ଯିବାଟି ରାୟେ ।
ଶୀତେ ଥରହର କମ୍ପଇ ମୋର କାୟେ ॥
ରାବଣ ବୋଇଲା ତୁ ଶୁଣସି ମାତୁଳ ।
କେବଣ କାରଣେ ଅବା ହୋଉଛୁ ବାତୁଳ ॥
ଚନ୍ଦ୍ରର ଭୁବନ ଜାଣିମାନା ଯେହି ।
ଯତନେ ସାଂଗ୍ରାମ କରିତ ଅଇଲଇଂ ॥୬୦
ପ୍ରଶସ୍ତ ବୋଇଲା ମୁ ନୁଆରଇ ସହି ।
ବେଳୁଂବେଳେ ହେମ ଜାତ ମୋର ଦେହୀ ॥

ଶୁଣି ରାବଣେଶ୍ୱର ରୁହାଇଲା ରଥ ।
କରେ ଧନୁଶସ୍ତ୍ର ଧରିଛି ଦଶମାଥ ॥
ଚନ୍ଦ୍ର ଦେବତାକୁ ମାରିତ ବିଚାରି ।
ଘନ ଘନ ବାଣ ବିନ୍ଧଇ ଦଶଶିରି ॥
ଜାଜ୍ୱଲ୍ୟମାନ ହୋଇ ଚଳିଯାନ୍ତି ଶସ୍ତ୍ର ।
ଚନ୍ଦ୍ରର ଭୁବନେ ପଡ଼ଇ ମାହାଅସ୍ତ୍ର ॥
ନିର୍ଘାତ କରି ଯେ ଶବଦ କରନ୍ତି ।
ନଗ୍ରପୁର ପାଟଣା ସମସ୍ତ ଉଜାଡ଼ନ୍ତି ॥୭୦
ପୃଥିବୀ କମ୍ପିଲା କମ୍ପିଲା ଦଶଦିଶ ।
ଚନ୍ଦ୍ର ଦେବତା ଯେ ପାଇଲା ମନେ ତ୍ରାସ ॥
ଜାଣି ପିତାମହ ଅଇଲାକ ବେଗେ ।
ଆସିଣ ମିଳିଲା ରାବଣର ଆଗେ ॥
ଦେଖି ନମସ୍କାର କଲାକ ଲଙ୍କପତି ।
କଲ୍ୟାଣ କଲେ ବ୍ରହ୍ମା ପ୍ରସନ୍ନ ହୋଇ ମତି ॥
ରାବଣକୁ ବୋଇଲେ ତୁ ଚନ୍ଦ୍ରକୁ ନ ମାର ।
ମହତ ଲୋକ ଗୋଟାକୁ ନାଶ ତୁ ନ କର ॥
ଜଗତକୁ ହିତ ଅମୃତମୟେ ପୁରୁଷ ।
ଯେହାକୁ ଦଶଗ୍ରୀବ ନ କର ତୁହିଂ
ନାଶ ॥୮୦
ମୁହିଂ ତୋତେ ମନ୍ତ୍ରେକ କହଇ ଆସି ଶୁଣ ।
ଯେବଣ ଠାରେ ତୋତେ ପଡ଼ଇ କଷଣ ॥
ଯେବଣ କାଳକୁ ମନ୍ତ୍ର ଜପିବୁ ଅସୁର ରାଏ ।
ସକଳ ଭୁବନ କରିବୁ ସୁଖେ କ୍ଷୟେ ॥
ଯଶ ଶ୍ରୀ ଆଷ୍ୟ ହୋଇବ ତୋହୋର ।
ଯେ ମନ୍ତ୍ର ପ୍ରସାଦେ ଜିଣିବୁ ତିନିପୁର ॥
କ୍ଷତ୍ରୀ ହୋଇ ତୋତେ ନୋହିବେ ରଣେ
ସରି ।
ସପତ ଦ୍ୱୀପେଶ୍ୱର ହୋଇବୁ ଦଶଶିରି ॥
ଯେମନ୍ତ ବୋଲି ମନ୍ତ୍ର କହିଲା ତାର କାନେ ।
ଯହିଂ ଜପିବାକ ଯେବଣ ବିଧାନେ ॥୯୦
ଈଶ୍ୱର ଅଷ୍ଟଉତ୍ତର ଶତେ ନାମ ।
ମନ୍ତ୍ରଙ୍କର ମଧ୍ୟେ ଅଟଇ ଉତ୍ତମ ॥
ସାମବେଦୁଂ ସାର ଅଛି ପୁଣ କାଢ଼ି ।
ରାବଣ ଆଗରେ ବ୍ରହ୍ମା ତାହା ପୁଣ ପଢ଼ି ॥
ସାରସ୍ୱତ ମନ୍ତ୍ର ଦଶାନନକୁ କହି ।
ଅତି ପ୍ରସନ୍ନ ହୋଇଯେ ସମର୍ପିଲା ବିହି ॥
ଶୁଣିମା ମାତ୍ରକେ ରାବଣ ହେତୁ କଲା ।
ବାହୁଡ଼ି ମନ୍ତ୍ର ବ୍ରହ୍ମା ଆଗରେ ପଢ଼ିଲା ॥
ଶୁଣି ପ୍ରସନ୍ନ ଯେ ହୋଇଲେ କୁଶଧର ।
ଜିଣସିରେ ପୁତ୍ର ସକଳ ସୁରନର ॥୧୦୦
ବର ଦେଇ ଧାତା ଅନ୍ତର୍ଧାନେ ଗଲା ।
ଚନ୍ଦ୍ରକୁ କୋପ ଛାଡ଼ି ରାବଣ ବାହୁଡ଼ିଲା ॥
ପୁଷ୍ପେକ ବିବାନ ଚଳଇ ଘନ ଘନ ।
ପଶ୍ଚିମ ସମୋଦ୍ରକୁ ବୋଲି ଗଲା ଦଶାନନ ॥
ସିନ୍ଧୁର କୂଳେ ସେ ମିଳିଲାକ ଯାଇ ।
ଦିବ୍ୟ ଭୁବନେକ ଦେଖିଲାକ ତହିଂ ॥
ନବରତ୍ନେ ନିର୍ବାଣ ଅଛଇ ଯେକ ପୁର ।
ମାହାତ୍ମା ପୁରୁଷ ସେ ବସିଛି ପଲଙ୍କର ॥
ତାହାକଇ ରାବଣ ବୋଇଲାକ ଯାଇ ।
ମୋହୋର ସଙ୍ଗରେ ତୁ ଯୁଝ ସଜ
ହୋଇ ॥୧୦
ମୁଂ ତୋତେ ସାଂଗ୍ରାମେ ଜିଣିବଇଂ ଆଜ ।
ରାବଣ ନାମେ ମୁହିଂ ଅସୁରବଳ ରାଜ ॥
ଲଙ୍କାର ଠାକୁର ବିଶର୍ବାର ସୁତ ।
ନଉକେଶୀ ରାକ୍ଷାସୁଣୀ ଅଟଇ ମୋର ମାତ ॥
ବ୍ରହ୍ମାର ବରେ ମୁଂ ସାଧିଲି ତିନିପୁର ।
ଯମ ବରୁଣ ଚନ୍ଦ୍ର ବାସୁକି କୋବେର ॥
କେହି ମୋତେ ସମରେ ନୋହିଲେଟି ସରି ।
ହେଳେ ଓପାଡ଼ିଲି କଇଳାସ ଗିରି ॥
ସାଗ୍ରାଂମରେ ଶାନ୍ତି ନୋହଇ ମୋର ମନ ।
ବୁଲି ଆସୁଅଛି ଚଉଦ ଭୁବନ ॥୨୦
ଯୋଗେ ଭେଟ ଆସି ପାଇଲଇଂ ତୋତେ ।
ଉଠି ସଜ ହୋଇ ସାଂଗ୍ରାମ ଦିଅ ମୋତେ ॥
ଶୁଣି ସେ ମାହାତ୍ମା କୋପମନ କଲା ।
ଦଶଗ୍ରୀବ ରାଜାକୁ ଚକ୍ରେକ ମାଇଲା ॥
ରାବଣ ଦେହେ ବାଜିଲା ଯାଇଂ ଶର ।
ବଥା ପାଇଲାକ ବିଶର୍ବାକୁମର ॥
ବୁକୁରେ ଚକ୍ର ଯେ ଥୋକାୟେ ବହିଲା ।
ଭେଦି ନ ପାରି ବାହୁଡ଼ିଣ ଗଲା ॥
ସେ ପୁରୁଷ ତହୁଂ ଖର ହୋଇଣ ଯାଇ ।
ବୋଲନ୍ତି ଅଗସ୍ତି ତୁମ୍ଭେ ଶୁଣ ସୀତା
ସାଇଂ ॥୩୦
ଯହୁଂ ସେ ରାବଣ ହୃଦେଣ ଚକ୍ର ବାଜି ।
ପ୍ରାସ ପାଇ ଦତ୍ୟ ପଡ଼ିଲା ଗଳଗାଜି ॥
ନିଚେଷ୍ଟ ହୋଇଣ ପଡ଼ିଲା ଭୂମିତଳେ ।
ମାହାତ୍ମା ପୁରୁଷ ଯାଇ ପଶିଲା ପାତାଳେ ॥
କ୍ଷଣକେ ଚେତନା ପାଇଣ ଦତ୍ୟ ଉଠି ।
ମନ୍ତ୍ରୀକି ପଚାରଇ କରିଣ କୋପଦୃଷ୍ଟି ॥
ବୋଲଇ ସେ ପୁରୁଷ କେଣିକି ଯେବେ
ଗଲା ।
ରହି କିମ୍ପା ମୋହୋର ଛାମୁରେ ନ ଯୁଝିଲା ॥
ପ୍ରଶସ୍ତ ବୋଇଲା ସେ ପଶିଲା ପାତାଳେ ।
ଶୁଣି କୋପ କଲା ବିଶର୍ବା ଦୁଲାଳେ ॥୪୦
ଯେବଣ ବାଟେ ବଳି ଭୁବନକୁ ଗଲା ।
ସେହି ବାଟେ ସେ ପାତାଳକୁ ପଶିଲା ॥
ଦେଖିଲାକ ଦ୍ରିବ୍ୟ ଭୁବନ ବିତପନ ।
କିରଣମୟେ ପୁର ଶୁଦ୍ଧ ଯେ ସୁବର୍ଣ୍ଣ ॥
ମଧ୍ୟାହ୍ନ ସୂର୍ଯ୍ୟ ପ୍ରାୟେକ ତେଜ ଦିଶଇ ।
ମଧ୍ୟେ ରତ୍ନ ଅମୂଲ୍ୟ ପୁରେକ ପ୍ରକାଶଇ ॥
ମଣିମୟେ ସିଂଘାସନେ ବିଜୟେ ଦେବ
ହରି ।
ଶଙ୍ଖ ଚକ୍ର ଗଦା ଶାରଙ୍ଗ ଧନୁ ଧରି ॥
ପୀତବସନ ଯେ ଶ୍ରୀବସ୍ତ ଲାଞ୍ଛନ ।
ମକୁଟ କୁଣ୍ଡଳ କୌସ୍ତୁଭ ଶୋଭାବନ ॥୫୦
ପ୍ରସନ୍ନ ବଦନ ରାଜୀବଲୋଚନ ।
ସର୍ବାଙ୍ଗେ ଚନ୍ଦନ କୁଙ୍କୁମ କସ୍ତୁରୀ ଲେପନ ॥
ବିଦ ମୁଦି ତାଡ଼ ଶିକଳି କଙ୍କଣ ।
ହାର ନୂପୁର ବିବିଧ ଆଭରଣ ॥
ପଦ୍ମରାଗ ମାଣିକ ମୋଣ୍ଡୋପ ଝଟକଇ ।
ବିଜେ କରିଛନ୍ତି ଦ୍ରିବ୍ୟ ରୂପ ହୋଇଂ ॥
ତିନି କୋଟି ଶ୍ୱେତ ଚାମର ପାଶେ ପଡ଼ି ।
ଦାସ ଦାସୀମାନେ ଅଛନ୍ତି ପଟୋଆରି ॥
ଦ୍ରିବ୍ୟ ପଲଙ୍କେ ଅଛନ୍ତି ସ୍ୱାମୀ ଶୋଇଂ ।
ଚିନ୍ତା ବୋଲି ତାଙ୍କର କେହୁଣି କଥା
ନାହିଂ ॥୬୦

ଲକ୍ଷ୍ମୀ ଯେ ଶ୍ରୀହରିର ଚାପନ୍ତି ଚରଣ ।
ଦେଖିଣ କାମଭର ହୋଇଲା ରାବଣ ॥
ମନେ ବିଚାରଇ ନେବଇଂ ଯେହୁ ନାରୀ ।
ଯେ ସେ ପ୍ରିୟବତୀ ହୋଇବ ମୋହୋରି ॥
ସର୍ବାଙ୍ଗ ସୁନ୍ଦର ସେ ଅମୂଲ୍ୟ ପ୍ରତିମା ।
କେତେକାଳ ବସି ଗଢ଼ିଲାକ ବ୍ରହ୍ମା ॥
ଯୋଗେଣ ଅଇଲି ପ୍ରାପତ ମୋତେ ଅଛି ।
ଯେତେବୋଲି ନିକଟକୁ ଗଲା ବିଶର୍ବାର ବଛି ॥
ନେମ ବୋଲି ଯହୁଂ ଗଲାକ ଦଶଶିର ।
ନିଦ୍ରା ଭାଜି ଉଠି ଚାହିଂଲେ ଚକ୍ରଧର ॥୭୦
ଚାହିଂମା ମାତ୍ରକେ ରାବଣ ପଡ଼ିଲା ।
ବାସୁଦେବର ତେଜ ଦ୍ରୋଛନା ଲାଗିଲା ॥
ଶ୍ୟରୀରେ ଗ୍ୟାଂନ ଯେ କିଛିହିଂ ତାର ନାହିଂ ।
ଉଠି ଆସି ତୋଳି ଧଇଲେ ଲକ୍ଷ୍ମୀସାଇଂ ॥
ଗ୍ୟାନ ପାଇଂ ଦଶଗ୍ରୀବ ଉଠିଲାକ ଯହୁଂ ।
ଶ୍ରୀହରି ସମାସ୍ୟା କରନ୍ତି ତାକୁ ତହୁଂ ॥
ବୋଇଲେ ତୋତେ ହାଦେ ଯେଥି ନାହିଂ ମୃତ୍ୟୁ ।
ଅଭୟେ ବର ଦେଇଅଛି ପୁଷ୍ୟକେତୁ ॥
ଶୁଣିଣ ରାବଣ ଉଠିଲା ତ୍ରସ୍ତା ହୋଇ ।
ବାସୁଦେବକୁ ଚାହିଂ ଡରିଣ କଥା କହି ॥୮୦
ଭୋ ମାହାତମା ତୁ କେବଣ ପୁରୁଷ ।
ତୋତେ ପଟାନ୍ତର ନୋହଇ ତ୍ରିଦଶ ॥
ତୋହୋର ପ୍ରାୟେ ପୁରୁଷ ଦେଖିଲା ମୋର ନାହିଂ ।
ହସି ନାରାୟେଣ ବୋଲନ୍ତି ପୁଣ ଚାହିଂ ॥
ମୋତେ ଜାଣିମାରେ ତୋହୋର କିସ କାର୍ଯ୍ୟ ।
ଯା ଯା ଦୂରେ ଯେଥି ନ ଥାଅ ଲଙ୍କରାଜ ॥
ରାବଣ ବୋଇଲା ମୁଂ ବ୍ରହ୍ମାର ବର ପାଇ ।
ତ୍ରୈଲୋକେ ଅକ୍ଷୟ ମରଣ ମୋତେ ନାହିଂ ॥
ଯଦ୍ୟପି ବିଧାତା ମୋତେ ଦେଇଅଛି ବର ।
ତୋର ପ୍ରାୟେ ପୁଣ୍ୟବନ୍ତ ନାହିଂ ତିନିପୁର ॥୯୦
ଶୁଣନ୍ତୁ ଶ୍ରୀରାମ କହନ୍ତି ଅଗସ୍ତି ।
ସପତ ସମୋଦ୍ର ସପତ ଦ୍ୱୀପା ପୃଥୀ ॥
ଚଉଦ ଭୁବନ ଯେ ନାନା ବନ ଗିରି ।
ଦକ୍ଷ କିନ୍ନର ଗନ୍ଧର୍ବ ନାଗ ଆଦି କରି ॥
ଯେବଣ ପୁରୁଷ ସେ ଗର୍ଭେ ଅଛି ଥୋଇ ।
କରତା ପୁରୁଷ ଉଦାସ ମତ ହୋଇ ॥
ରାବଣ ତାହାକୁ ଦେଖିଣ ପରଶଂସି ।
ଅଗସ୍ତିଙ୍କର ବଚନେ ଶ୍ରୀରାମଚନ୍ଦ୍ର ହସି ॥
କର ଦୁଇ ଯୋଡ଼ି କହନ୍ତି ରଘୁରାଣ ।
ଭୋ ମାହାତ୍ମା ସେ ଅଟନ୍ତି କେବଣ ଜନ ॥୧୦୦
ଅଗସ୍ତି ବୋଇଲେ ଯାହା ପ୍ରଥମେ ଦେଖିଲା ।
ଦ୍ରିବ୍ୟପୁରେ ଯେବଣ ଜନ ଶୋଇଥିଲା ॥
ସେ ସେ ଅନନ୍ତ ରୂପ ଅଟନ୍ତି ଦେବହରି ।
ଦେବତାମାନେ ଯାହାକୁ ଥାଆନ୍ତି ସେବା କରି ॥
ତାହାର କତିରେ ଅଛି ଆରେକ ପୁରୁଷ ।
ଅପୂର୍ବ ମାହାତ୍ମାର ସେ ଅଟଇ ଆଦି ଅଂଶ ॥
ଶୁଣି ରଘୁନାଥ ତ୍ରିପୁତି ହୋଇଲେ ।
ଯେଥୁ ଉତ୍ତାରେ କଥା କହସି ବୋଇଲେ ॥
ରାବଣ ଯେ ପାତାଳପୁରେ ପଶିଥିଲା ।
ତହିଂ ସେ କେବଣ ଚରିତ ଆଉ କଲା ॥୧୦
ମୁନି ବୋଇଲେ ତୁ ଶୁଣ ରଘୁରାଣ ।
ବାସୁଦେବ ଛାମୁରୁ ଯେ ଅଇଲା ରାବଣ ॥
ଭୟେ ମନ କରି ବେଗେଣ ବାହୁଡ଼ିଲା ।
ପାତାଳୁ ବାହାର ହୋଇ ମଂତରେ ମିଳିଲା ॥
ମନ୍ତ୍ରୀଙ୍କର ଆଗେ କହିଲା ସେମାନ ।
ଆରୋହଣ କଲା ପୁଷ୍ପେକ ବିବାନ ॥
ତହୁଂ ସକଳ ରାଜାଙ୍କ ପୁରେ ଗଲା ।
ନବରେ ପଶି ରାଜାମାନନ୍ତ କିଣିଲା ॥
ଅନେକ ନୃପତିର ଯୁବତୀ ବହୁତ ।
ପୁଷ୍ପେକ ରଥେ ଆଣି ବସାଇଲା ଦଇତ ॥୨୦
ଗଗନ ମାର୍ଗେ ସେ ଆସଇ ରଥ ଚଢ଼ି ।
ରାଜାମାନେ ବିକଳେ ବୋବାଳି ପୁଣ ପାଡ଼ି ॥
ବୋଲନ୍ତି ରାକ୍ଷସ ପୁଣ ଯୁବତୀନ୍ତ ଖାଇ ।
କାହାକୁ କହିବା ଯେ ଦେବ ମୁକୁଳାଇ ॥
ରାଜାଙ୍କର ବିକଳ ଦେଖିଣ ସ୍ତିରୀମାନ ।
ଆହା ସ୍ୱାମୀ ବୋଲି କରନ୍ତି ରୋଦନ ॥
ଆକୁଳ ହୋଇଣ କୋପେଣ ଶାପ୍ୟ ଦେଲେ ।
ପର ସ୍ତିରୀ ହରଣେ ତୁ ମରସି ବୋଇଲେ ॥
ଯେସନେକ ସମୟେ ଯେ ଭେଟିଲା ସୂପଲେଖୀ ।
ଗଗନ ମାଗେ ରଥ ଚଳାନ୍ତେ ତାହା ଦେଖି ॥୩୦
ରାବଣ ବୋଇଲା ତୁ ଅଇଲୁ କିସ ପାଇଁ ।
ସୂପଲେଖୀ ବୋଇଲା ନଶିଲା ମୋର ସାଇଂ ॥
କାଳଦଇତର ସଙ୍ଗତେ ସେହୁ ଥିଲା ।
ଦଶ ସହସ୍ର ବଳ ଘେନିଣ ସେହୁ ମଲା ॥
ଗନ୍ଧର୍ବେ ଆସିଣ ତାକୁ ରାତ୍ରେଣ ମାରିଗଲେ ।
ଭଲ ଭଲ ରାକ୍ଷସ ତାହାର ତୁଲେ ମଲେ ॥
ମୋହୋର ଭ୍ରଥା ତହିଂ ହୋଇଲା ନିଧନ ।
ତୋତେ କହିବି ବୋଲି ଅଇଲି ଦଶାନନ ॥
ତୁ କିମ୍ପା ପରସ୍ତିରୀ ହରୁ ଲଙ୍କସାଇଂ ।
ଯେ କଥା ନ ଯୋଗାଇ ଯେଥିରେ ଭଲ ନାହିଂ ॥୪୦
ଧର୍ମକଇ ପ୍ରୀତି ହୋଇଲା ପିତାମହ ।
ଧର୍ମ ଥିବାଯାଏ ଯେ ରହିଥାଇ ଦେହ ॥
ଧର୍ମ ଯେ ପ୍ରାଣୀକି ସର୍ବଦା ଅଟେ ସାହା ।
ପାପୀ ଲୋକ ସୁଖ ନ ପାଇ ବିଂଶବାହା ॥
ଧର୍ମେ ଚନ୍ଦ୍ର ସୂର୍ଯ୍ୟ ଅନ୍ଧାର ଦିବସ କରି ।
ଧର୍ମେ ସେ ବାସୁକୀ ବହଇ ବସନ୍ଧରୀ ॥
ତୁହି ମାହାରାଜା ଧର୍ମ କିମ୍ପା ଛାଡୁ ।
ଗ୍ୟାଂନବନ୍ତ ପୁରୁଷ ଅମଡ଼ା କିମ୍ପା ମାଡୁ ॥
ଛାଡ଼ ଛାଡ଼ ଯୁବତୀମାନେ ଯାଆନ୍ତୁ ନିଜ ବାସ ।
ଭଗ୍ନୀର ବୋଲେ ସ୍ତିରୀଙ୍କି ଛାଡ଼ିଲା ଦଶାନନ ॥୫୦

ଭୋ ଦଶଗ୍ରୀବ ତୁ ମୋହୋର ବୋଲ କର ।
ଯେମନ୍ତ ଆଚାର ତୁ ମନରେ ନ ଧର ॥
ସର୍ବଦା ସୁସ୍ଥାନେ ନୋହନ୍ତି ପାପୀ ଲୋକ ।
ଆଗତ ସୁଖ ପଛେ ପାବନ୍ତି ବଡ଼ ଦୁଃଖ ॥
ଧର୍ମ ସେ ପ୍ରାଣୀଙ୍କର ଅଟଇ ଜୀବନ ।
ଧର୍ମ ଆଚାର କି ନରଖଇ ବଳମାନ ॥
ଧର୍ମରେ ପିତାମହ ସୃଷ୍ଟିକି କରତା ।
ଧର୍ମେ ନାରାଏଣ ତ୍ରଇଲୋକ ଜଗଜିତା ॥
ପୌଲସ୍ତିର ନାତି ତୁ ବିଶ୍ରବାର ସୁତ ।
ବେଦ ବେଦାନ୍ତ ଆଚାର ନ୍ୟାୟେ ଥାଉ ନିତ୍ୟ ॥୬୦
ମାତା ଗୁଣ ଘେନି ରାକ୍ଷସ ହୋଇଲୁ ।
ଚଉଦ ଭୁବନେ ତୁ ଅପଛାତି କଲୁ ॥
ଦେବେ ଅବିଛନ୍ନେ ଚିନ୍ତନ୍ତି ତୋତେ ମନ୍ଦ ।
ସ୍ୱଭାବେ ବଇରୀ ତୁମ୍ଭର ଅଟଇ ଗୋବିନ୍ଦ ॥
ତହିଁକି ଭୟେ ତୁ କରିଥିବୁଟି ନୃପତି ।
ଯେସନ ପ୍ରକାରେ ସର୍ବଦା ଥିବୁ ବର୍ତ୍ତି ॥
ପାପ ଆଚରିଲେ ଅଳପେ ଆୟୁ ହତ ।
ପାପେ ପ୍ରାଣୀଙ୍କର ହଜଇ ଯତ ସତ ॥
ଯେବଣ ଜନକର ପଡ଼ଇ ଦୁଗତି ।
ସେ ଯେ ଆଶ୍ରେ କରଇ ସତ୍ୟ ମତି ॥୭୦
ତୁ ଦତ୍ୟରାୟେ ଯେ ଜଗତେ ବଇରୀ ।
ଲୋଭ କରି କିମ୍ପାଇଁ ହରୁ ପରସ୍ତିରୀ ॥
ମୋହୋର ବୋଲ କରି ଛାଡ଼ ତ ଯେହ୍ନାନ୍ତ ।
ଶୁଣି ପ୍ରବୋଧ ହେଲା ମନ୍ଦୋଦରୀ କାନ୍ତ ॥
ଭଗ୍ନୀର ବଚନେ ଯୁବତୀନ୍ତ ଉପେଖି ।
ବାହୁଡ଼ି ଲଙ୍କାକଇ ଗଲାକ ସୂପଲେଖୀ ॥
ଶୁଣ ପାର୍ବତୀ ଗୋ ବଦନ୍ତି ସଦାଶିବ ।
ଯେଥୁ ଅନନ୍ତରେ ରାଜା ଦଶଗ୍ରୀବ ॥
ଯେତେ ନୃପତିଙ୍କର ଘରଣୀ ଆଣିଥିଲା ।
ସୂପଲେଖୀ ବଚନେ ସମସ୍ତ ଛାଡ଼ି ହେଲା ॥୮୦
ପୁଷ୍ପୋକ ବିବାନ ବାହିଲା ଅନ୍ତରାଳେ ।
ଯାଇଣ ମିଳିଲା ପଛିମ ସିନ୍ଧୁକୂଳେ ॥

ମଧୁବନ ଦେଶେ ହୋଇଲା ପରବେଶ ।
ଦେଖିଣ ନଗ୍ରଜନେ ହୋଇଲେକ ତ୍ରାସ ॥
ଦଶଗ୍ରୀବ ବୋଲିଣ ଜାଣି ଭୟେ କଲେ ।
ରାଜାର ଛାମୁରେ ଯାଇଣ ଜଣାଇଲେ ॥
ଦେଖି ନୃପବର ଅନ୍ତେଶ୍ୱରକୁ ଗଲା ।
ନିଜ ଭାରିଯାର ଆଗରେ କହିଲା ॥
ଶୁଣ ଶଶୀମୁଖୀ ଅପୂର୍ବ ଗୋ କଥା ।
ଲଙ୍କାର ନୃପତି ତୋହୋର ଭାଇ ଦଶମଥା ॥୯୦
ପୁଷ୍ପୋକ ବିବାନ ସେ ଆରୋହିଣ ଯାୟେ ।
ଦେଖି ପରଜାମାନେ କଲେ ମହାଭୟେ ॥
ତୁ ଯାଇ ପ୍ରବୋଧ ସେ ବାହୁଡ଼ିଣ ଯାଉ ।
ମୋତେ ସୁଦୟା କରିଣ ସେ ଥାଉ ॥
ଶୁଣି କୁମ୍ଭନସୀ ଖେପିଲା ଆକାଶେ ।
ଯାଇଣ ମିଳିଲା ଦଶାନନର ପାଶେ ॥
ନମସ୍କାର କରିଣ କହିଲା ବଚନ ।
ଶୁଣ ତୁ ଲଙ୍କାର ଈଶ୍ୱର ଦଶାନନ ॥
ମୁଂ ତୋର ଜନନୀର ଭଗ୍ନୀର ତନଇ ।
ପୁଷ୍ପୋଉତ୍କଟା ଅଟଇ ମୋର ଆଇ ॥୧୦୦
ମଧୁ ରାଜାକୁ ବିଭା ମୋତେ କଲେ ।
ମଧୁ ଦୈତ୍ୟକୁ ମୋତେ କନ୍ୟାଦାନ ଦେଲେ ॥
ତହୁଂ ମୋହୋର ପୁତ୍ରେକ ହୋଇଲା ଲବଣ ।
ସୋମୋନ୍ଦ୍ରକୁ ସେବା କରି ପାଇଲି କାରଣ ॥
ତେଣୁ ତାହାକୁ ଲବଣ ନାମ ଦେଲି ।
ମଥୁରା ନାମେ କଟେକ ମଧୁବନ କଲି ॥
ତୁ ଯେବେ ବଡ଼ ଯେ ହୋଇଲୁ ଲଙ୍କେଶ୍ୱର ।
ବନ୍ଧୁ ପୋଷିବାର ଯେ ମିଳଇ ବିଚାର ॥
ଯେ ଅବା ଅହିଶୂର୍ଯ ପାଆନ୍ତି ପୁନ୍ୟପ୍ରାଣୀ ।
କୁଟୁମ୍ୱ ନ ପୋଷିଲେ ଧର୍ମ ହୋୟେ ହାନି ॥୧୦
କୁଟୁମ୍ୱ ଲେଛିଣ ଅଧର୍ମ ଆଚରିଲେ ।
ଅନ୍ତେ ନର୍କ ପାଇ ଯେ ପୁରାଣ କହିଲେ ॥
ସବୁ ପୁନ୍ୟମାନଙ୍କର କୁଟୁମ୍ୱଇ ସେ ମୂଳ ।

କୁଟୁମ୍ୱ ନ ପୋଷିଲେ ନାଶ ଯାଇ କୁଳ ॥
ତୁ ମୋର ଭ୍ରଥାକୁ କୋପ ନ କର ଲଙ୍କ ସାଇଂ ।
ଯେହାକୁ ମାରିବାରେ ପ୍ରିୟୋଜନ ନାହିଂ ॥
ଭୋ ଲଙ୍କପତି ସ୍ୱାମୀକି ମୋ ବେଳେକ ଛାଡ଼ସି ।
ମୋହୋର ପ୍ରବୋଧ ଘେନି ତୋଷ ହୋଇ ଯାସି ॥
ଶୁଣି ଦଶଗ୍ରୀବ ବାହୁଡ଼ାଇ ରଥ ।
ଉତ୍ତରା ଅଭିମୁଖେ ଚଳଇ ଦଶମାଥ ॥୨୦
ନିରନ୍ତରେ ସନ୍ୟ ବିବାନେ ବସିଛନ୍ତି ।
ବିବିଧ ଛନ୍ଦେଣ ବାଜଣା ବଜାନ୍ତି ॥
ଥୋକାୟେକ ବେଳେ ରବି ଅସ୍ତ ଗଲା ।
ଜଗତ ସଂସାର ତିମିରି ଆଛାଦିଲା ॥
ଦିଗ ବୁଲି ବୁଲି ଫୁଟିଲେନି ଲୋକେ ।
ଭୟ ଛାଡ଼ି ଦଶଗ୍ରୀବକୁ ଜଣାଇଲେ ଥୋକେ ॥
ଭୋ ଦେବ ଲଙ୍କାରୁ ଅଇଲୁ ଯେତେ ଦିନ ।
ତେତେ ଦିନ ହୋଇଲା ହୋ ବସିଲୁ ବିବାନ ॥
ପାତାଳ ଭୁବନ ଯେ ବୁଲିଲୁ ସାତପୁର ।
ପୃଥୀ ମାଡ଼ିବାକୁ ଶରଧା ଆମ୍ଭର ॥ ୩୦
ସଭାବେ ରଜନୀ ଆଛାଦିଲା ନିଶି ।
ଦଶଦିଶ ଅନ୍ଧାର ମାର୍ଗହିଂ ନ ଦିଶି ॥
ବିଚାର ଯୋଗାଇଲେ ବିଶ୍ରାମିବା ଯେଥ ।
କପିଳାସ କନ୍ଦର ଅଟଇ ଦଶମାଥ ॥
ସ୍ୱର୍ଗ ସମାନ ଯେ ସଦାଶିବର ଥାନ ।
ଯେଠାରେ ରହିଆନ୍ତି ଦିଗପାଳମାନ ॥
ଶୁଣି ଲଙ୍କପାଳ ହୋଇଲା ତ୍ରିପୁତି ।
କପିଳାସ କନ୍ଦରେ ରଥ ରଖିଲା ତଡ଼ତି ॥
ଭୂମିଗତ ଯାଇ ହୋଇଲାକ ଯାନ ।
ପଞ୍ଚକୋଶ ମାଡ଼ି ରହିଲେ ବଳମାନ ॥୪୦
ଶ୍ରମେଣ ନିଦ୍ରା ଯେ ଘାରିଲାକ ଆଖି ।
ଶୁତିଲେ ଅସୁରବଳ ଭୟ ଯେ ଉପେଖି ॥

ରାବଣେଶ୍ୱର ଯେବା ରଥରେ ଅଛି ବସି ।
ମାହାଯୋଗ ପୁରୁଷ ସେ କାଳକୁ ଆକ୍ରୋଶି ॥
ସଭାବେ ଜଗତେ ଅପକୀର୍ତ୍ତି ଅଛି ଅର୍ଜି ।
ଚଞ୍ଚଳ ପୁରୁଷ ଅଳସ ନ ଭଙ୍ଗି ॥
ପରସ୍ଥାନେ ରହିଲା ତେଣେ ଶଙ୍କା ମନ ।
ସ୍ୱଭାବେ ସେ ଭୂମି କୋବେର ଆୟେତନ ॥
ଯଦ୍ୟପି ରହିଲା ଜାଣିଲା ମାହାନିଶି ।
ପରସ୍ଥାନେ ଉଜାଗର ପ୍ରମାଦ ନ ପଶି ॥୫୦
ସେ କଥା ଜାଣିଣ ମନ୍ଦୋଦରୀ ସାଇଂ ।
ରତ୍ନ ପଲଙ୍କରେ ଅପହୁଡ଼ ହୋଇ ॥
ଦଶ ଦିଗକଇ ଚାହାଇଂ ଘନ ଘନ ।
ଚଞ୍ଚଳ ପ୍ରକୃତି ତାର କରଇ ଛନଛନ ॥
ଦକ୍ଷିଣ ପବନ ଯେ ବହଇ ଧୀର ଧୀର ।
ପରମ ସନ୍ତୋଷ ଯେ ଦଶାନନ ବୀର ॥
ଜ୍ୟେଷ୍ଠ ମାସ ସ୍ୱଭାବେ ଗ୍ରୀଷମ ଅଟଇ ଋତୁ ।
ଗୁଲୁଗୁଲି ପବନ ନ ନାଗଇ ମାହା ଘାତୁ ॥
ଅନ୍ଧାର ରଜନୀ ନୋହଇ ଶୁକଳ ପଛ ।
ରଥରେ ବସିଅଛି ବିଶର୍ବାର ବଛ ॥୬୦
ଅମାବଇ ତିଥି ନଷ୍ଟ ଚନ୍ଦ୍ର ଦିନ ।
ନିବିଡ଼ ଯାମେନୀ ଆକ୍ରୋଷ ଘନ ଘନ ॥
ଯେସନେକ ସମୟେ ସାତ ଘଡ଼ି ରାତି ।
ଗଗନେ ବିରାଜଇ କି ଶରଦ ଚନ୍ଦ୍ର ଜୋତି ॥
ଦିଶିଲା ଦଶଦିଗ ଚନ୍ଦ୍ରର କିରଣେ ।
ଝଟ ଝଟ ଦିଗ ବିରାଜଇ କ୍ଷଣେ କ୍ଷଣେ ॥
ଦେଖି ଦଶାନନ ହୃଦରେ ବିଚାରି ।
ଚନ୍ଦ୍ର ଉଇଂଲାକି ପାହିଲା ତିମିରି ॥
ଯେସନେକ ବୋଲି ପଲଙ୍କୁ ଉଠିଲା ।
ଗଗନ ମାର୍ଗରୁ ଉର୍ଦ୍ଧେଣ ଦୃଷ୍ଟି ଦେଲା ॥୭୦
ଦେଖିଲାକ ବିବାନେ ଆସୁଅଛି ଉଡ଼ି ।
ଦିବ୍ୟ ବିଳାସିଣୀ ଅଛନ୍ତି ପାଶେ ବେଢ଼ି ॥
ଢାଳନ୍ତି ଚାମର ବିଞ୍ଚନ୍ତି ବିଞ୍ଚଣୀ ।
ସୁସ୍ୱର ସ୍ୱରେ ଗୀତ ଗାବନ୍ତି ଗାଏଣୀ ॥
ନିରନ୍ତରେ ପୁଷ୍ପ କରୁଛନ୍ତି ବୃଷ୍ଟି ।
ଯେବା ବିବାନେ କେ ମଣ୍ଡିଲା ନବସୃଷ୍ଟି ॥
ଛତ୍ର ଆଲମ୍ବ ଯେ ଚିରାଳ ଫରହର ।
ସୁବର୍ନ୍ୟର କଳସ ପାଟଛତ୍ର ନିରନ୍ତର ॥
ସେ ବିବାନେ ବସିଅଛଇ ଯେକ ବାଳୀ ।
ରସାଣିଲା ସୁବର୍ନ୍ୟ ପ୍ରାୟେକ ଦେହ
ଝଳି ॥୮୦
ସମ୍ପୂର୍ଣ୍ଣ ଚନ୍ଦ୍ର ପ୍ରାୟେ ତାହାର ବଦନ ।
ନୀଳ ଉତପଳ ଯୁଗଳ ନୟନ ॥
ସୁସଞ୍ଚ ଭ୍ରୂଲତା ଆବର ରେଖ ବକ୍ର ।
ଯାହାକୁ ଦେଖିଲେ ପ୍ରଶଂସା କରଇ ଶକ୍ର ॥
ହସି କହିଲେଣ ବ୍ରତିବ ମୃଦୁ ପ୍ରାଣୀ ।
କନ୍ଦର୍ପ ଚଳଇ ଯାର କିଞ୍ଚିତ ଚାହାଣୀ ॥
ଆକର୍ଣ୍ଣ ପରିଯନ୍ତେ ଚଳଇ ବେନି ଡୋଳା ।
ସୁରଙ୍ଗ କଜ୍ଜଳ ଯେ ସୁନ୍ଦର ଦିଶେ କଳା ॥
ଉପରେ ବେଢ଼ାଇଛି ମୁକୁତାର ଜାଲି ।
ନୀଳ ବନ ଲିଙ୍ଗେ କି ଫୁଟିଲା ଗୋଟା
ମଲ୍ଲି ॥୯୦
କପାଳେ କସ୍ତୁରୀ ଚିତା ଆଡ଼ କେରା ।
କଢ଼ି କଢ଼ି ଲମ୍ବଇ ମୁକୁତା ମଣି ଝରା ॥
କାର୍ତ୍ତିକ ପୁଞ୍ଜା ଜାଣି ନାକର ବସଣୀ ।
ଶ୍ରବଣ ତଡ଼କୀ ଜାଣି ଦିନମଣି ॥
ସୁରଙ୍ଗ ଅଧର ଡାଳିମ୍ବ ଫୁଲ ଜୋତି ।
ଦନ୍ତ କି ସିନ୍ଦୂରେ ଥୋଇଲା ଗଜମୋତି ॥
କଣ୍ଠରେ ହାର ଯେ ବିବିଧ ଅଳଙ୍କାର ।
ସର୍ବାଙ୍ଗେ ଘଷି ଯେ ହୋଇଛି ଅଗର ॥
ସୁରଙ୍ଗ ପଟନୀ ତାରା ମଣ୍ଡଳ ଶାଢ଼ୀ ।
ଅମଳାଣ ଶାଢ଼ୀ ବାଳୀ ପରିହରଣ
କରି ॥୧୦୦
ସୁବର୍ଣ୍ଣ କୁମ୍ଭେ କି ନୀଳାର ଢାଙ୍କେଣି ।
ଜାଣି ପଟାନ୍ତର ଅମୃତ ଆରେଣି ॥
ଉପରେ ଲମ୍ବାଇ ନାନା ରତ୍ନହାର ।
ଶୁଦ୍ଧ ସୁବର୍ଣ୍ଣର ବିବିଧ ଅଳଙ୍କାର ॥
ଭୁଜେଣ ତାଡ଼ ଯେ ବାହୁଟି ବିଦମାଳି ।
ଶ୍ୟାମ ମେଘେ ଯେହ୍ନେ ମାରଇ ବିଜୁଳି ॥
ଚୁଡ଼ି କଙ୍କଣ ବଳୟ ବିଦମାନ ।
ଧନ୍ୟ ଧନ୍ୟ ସୁନ୍ଦେରୀ ଅବଛରା ମୋକ୍ଷପାନ ॥
ସୁବଳିତ ଦେହ ସୁଘଟଣ କାୟେ ।
ସରୁ ମଝା ଖଣ୍ଡି ହଲଇ କିନା ବାୟେ ॥୧୦
ବିସ୍ତାର କଟିରେ ବିସ୍ତାର କାଟମାଳି ।
ସୁବର୍ନ୍ୟ ଘଣ୍ଟି ଘାଗୁଡ଼ି ରାବ କରି ॥
ଜଘନ ପରିଯନ୍ତେ ଲମ୍ବଇ ମଣିଝରା ।
ପବନେ ଅଞ୍ଚଳ ଉଡ଼ଇ ଫରହରା ॥
ଚରଣ ନୂପୁର ଚଳନ୍ତେ ଧ୍ୱନି କରେ ।
ସାଧୁ ସାଧୁ ସୁନ୍ଦେରୀ ସେ ଥିଲାକ
ସ୍ୱର୍ଗପୁରେ ॥
ମଦନେ ଅନୁମତ ଗରବେ ବଢ଼ାଇ ।
ଆକାଶ ମାର୍ଗେ ସେ ଗମନ କରିଯାଇ ॥
ରୂପ ଯଉବନ ସମ୍ପୂର୍ଣ୍ଣ ସୁନ୍ଦେରୀ ।
ନାହିଁ ନାହିଁ ତିନି ଭୁବନେ ପଟାନ୍ତରି ॥୨୦
ଉଦବେଗ ମନ ଚଳଇ ଊର୍ଦ୍ଧ ଗତି ।
କାମ ଉତକର୍ମେ ସେ ଉଚାଟ ଯୁବତୀ ॥
ଅଭିସାରିକା ନାଏକା ତାକୁ ହାଦେ ବୋଲି ।
ନିଜ ପତି ରତି ଲୋଡ଼ିଇ ମହୀ ବୁଲି ॥
ତାମ୍ବୋଳ ଭୁଞ୍ଜଇ ଆନନ୍ଦ ସୁଖ ଭୋଳେ ।
ଅନ୍ତରୀକ୍ଷେ ଗବନ କରଇ ଅବନିଳେ ॥
ଶ୍ୟରୀର ତେଜ ତାର ବିକାଶିଲାକ ଯହୁଂ ।
ଦଶଦିଶ ଉଜ୍ଜ୍ୱଳ ଦିଶିଲାକ ତହୁଂ ॥
ପୁଷ୍ପେକ ରଥେ ଥାଇଂ ଦେଖଇ ରାବଣ ।
ମନେ ବିଚାରଇ ଯେ ଅଟଇ
କେବଣ ॥୩୦
ନିରେଖି ଜାଣିଲା ସେ ଅଟଇ ଯୁବତୀ ।
ଦେଖିଣ ପ୍ରଶଂସା କଲାକ ଲଙ୍କପତି ॥
ବାବୁ ତୁ ସୁନ୍ଦେରୀ ମହିମା ତୋର ଧନି ।
ଶରୀର ତେଜେ ଉଜ୍ଜ୍ୱଳ ହୋଇଲା ରଜନୀ ॥
ଯେତେକ ଯୁବତୀ ଅଛନ୍ତି ତିନିପୁରେ ।
କେହି ତୋତେ ସମ ନାହିଁ ପଟାନ୍ତରେ ॥
ଅପୂର୍ବ ଯୁବତୀକି ନୟନେ ଦେଖିଲି ।
ନୟନ ବହିବାର ଧନ୍ୟ ସେ ହୋଇଲି ॥
ଯେ ସ୍ତିରୀ ସଙ୍ଗରେ କରିବ ଯେହ୍ନୁ ରତି ।
ତାହାର ସେ ଜୀବନ ବହିବ ସିଦ୍ଧ
ଯତି ॥୪୦
ଯାହାକୁ ଭିଡ଼ି ଯେ ଦେବ ଆଲିଙ୍ଗନ ।

ଯେ ମହୀ ମଣ୍ଡଳେ ସେ ଅଟଇ ବଡ଼
ଜଣ ॥
ଅଧର ଚୁମ୍ବିଣ ମର୍ଦ୍ଦିବ କୁଚଭାର ।
ଯେତେକ ପୁଣ୍ୟ ଅବା ଅଛଇ କାହାର ॥
ସର୍ବ ସୁଲକ୍ଷଣୀ ଅମୂଲ୍ୟ ପ୍ରତିମା ।
କେତେକାଳ ଯେହ୍ନା ଗଢ଼ିଲାକ ବ୍ରହ୍ମା ॥
ଦେଖିଲେଣ ମୂର୍ଚ୍ଛି ପାରିବ କେବଣ ଜନ ।
ମୁହିଁ ତ କାମଭରେ ହୋଇଲି ଅଚେତନ ॥
ବଳେ ଧରି ସୁବତୀକି ରମିବି ମୁଁ ଆଜ ।
ଯେତେ ବୋଲି ଗଗନେ ଖେପିଲା
ଲଙ୍କରାଜ ॥୫୦
ପୂର୍ଣ୍ଣମୀ ଚନ୍ଦ୍ରକୁ ଯେହ୍ନେ ଗରାସଇ ରାହୁ ।
ରମ୍ଭାର ବିବାନେ ପ୍ରବେଶ ବିଂଶବାହୁ ॥
ବଡ଼ପଣ ଛାଡ଼ି କାକୁସ୍ଥ ହୋଇଲା ।
ସୁନ୍ଦେରୀର ଭୁଜ ଯାଇଣ ଧଇଲା ॥
ନିବେଶି ହୋଇଣ କହଇ ବିକଳାଇ ।
ମୁହିଁ ସେ ଦଶଗ୍ରୀବ ଲଙ୍କାଗଡ଼ର ସାଇଁ ॥
କପିଳାସ କନ୍ଦରେ ଥୁଇଲିଂ ରଥ ଘେନି ।
ତୋହୋର ତେଜ ସଖି ପୂରିଲା ମେଦନୀ ॥
ସହସ୍ରେକ ଚନ୍ଦ୍ରକି ଉଇଂଲା ଯେକାବେଳେ ।
ଯେସନେକ ଜ୍ୟୋତି ଦିଶଇ
ରବିତଳେ ॥୬୦
ଦେଖିଣ ଅଶ୍ରିଯ ମୁଁ ହୋଇଲି ସଂଘାତୁଣୀ ।
ମୁହିଁ ଲଙ୍କପତି ଅସୁରକୁଳ ମଣି ॥
ତୁ ସଖି ଦୁତୀଅ ଲକ୍ଷ୍ମୀର ପ୍ରାୟେ ଦିଶୁ ।
ଚନ୍ଦ୍ର ପଟାନ୍ତର ବିବାନରେ ବସୁ ॥
ଯେ ତୋହୋର ସଙ୍ଗେ ବସିବ ଯେକ ରାତି ।
ସେହୁ ପୁରୁଷଙ୍କର ଧନ୍ୟ ସେ ଜୀବତୀ ॥
ତୋହୋର ଅଧର ଚୁମ୍ବିତ ମୋର ମନ ।
ଲକ୍ଷେ ବିଦାରିବି ଯେ ଦୁଇ ଯଉବନ ॥
ଭୁଜେ ଭୁଜ ଭିଡ଼ି କରିବଇଁ କୋଳ ।
ତୋର ମୋର ବାଳୁ ରମଣୀଟି ଗୋଳ ॥୭୦
ରାବଣ ବଚନ ଶୁଣିଣ ସୁନ୍ଦେରୀ ।
କର ଦୁଇ ଯୋଡ଼ି କହଇ ଧୀର କରି ॥
ଭୋ ପିତା ମୁଁ ଯେ ତୋର ପୁତ୍ରର
ମନୋହାରୀ ।
ରମ୍ଭା ନାମେଣ ମୁଁ ଅଟଇ ସୁନ୍ଦେରୀ ॥
କୋବେର କୁମର ନଳକୋବେର ନାମ ।
ତାହାର ତୁଲେ ଯେ ସର୍ବଦା ମୋର କାମ ॥
ସେ ମୋହୋର ପତି ମୁହିଁ ତାହାର ନାରୀ ।
ପ୍ରସନ୍ନେ ସମର୍ପିଅଛି ବଜ୍ରଧାରୀ ॥
ତୁ ମୋତେ କେମନ୍ତେ କରିବୁ ରମଣୀ ॥୮୦
ମୁହିଁ ଅଟଇ ତୋର କୁଳ ଭୁଆଷୁଣୀ ॥
ଛୁଇଂବା ମାତ୍ରକେ ହୋଇଲା ନା ଦୋଷ ।
ଛାଡ଼ ଛାଡ଼ ହସ୍ତ ମୁଁ ଯିବଇଁ ସ୍ୱାମୀ ପାଶ ॥
ବେଶ ହୋଇ ବସିଣ ସେ ଚାହୁଁଥିବ
ବାଟ ।
କେବଣ ବିଯୋଗେ ପଡ଼ିଲି ଆସି ଭେଟ ॥
ଉଛୁର ହୋଇଲେ କରିବ ମୋତେ କୋପ ।
ଆନ ଝଙ୍ଘାଂଳ ମୋତେ ନ କର ଲଙ୍କନୃପ ॥
କାମେ ଆରତ ସେ ହୋଇଥିବ ବସି ।
ସାତଘଡ଼ି ଆସି ହୋଇଲାକ ନିଶି ॥
ଯେତେ ବୋଲି ଭୁଜ ଛଡ଼ାଇଲା ବାଳୀ ।
କୋପରେ ରାବଣ ଉଠିଲା ପ୍ରଜ୍ଜଳି ॥୯୦
ପୁଣି ଅପଛରୀର ଧଇଲା ବେନି କର ।
ବୋଇଲା ବଡ଼ପଣ ଜାଣିଲି ତୋହୋର ॥
ତୁ ଲୋ ସୁରନଟୀ କାହାରିଟି ନୋହୁଁ ।
ଯେ ଧନ ଦିଅଇ ତାହାର ମାତ୍ର ହୋଉ ॥
କେତେ ଲୋକ ତୋତେ ରମଣୀ
କରିନାହିଁ ।
ନଳକୋବେର ବିଭା ହୋଇଲା ତୋତେ
କାହିଁ ॥
ଜାଣୁଟିକି ବେଳେ ଯେମନ୍ତ ହୋଇଲୁ ।
ବିଶ୍ୱମିତ୍ର ମୁନି ମୋହି ନ ପାରିଲୁ ॥
ସେ ତୋତେ ଶାପ୍ୟ ଦେଇ ପାଷାଣ ରୂପ
କଲା ।
ବ୍ରହ୍ମାର ବରେ ପୁଣି ନିଜ ତନୁ
ଦେଲା ॥୧୦୦
ସେହି ରମ୍ଭା ତୁରେ ନୋହୁଟିକି ନାରୀ ।
ଯେବେ ଯେଡ଼େ ବଡ଼ପଣ ହୋଇଲା
ତୋହୋରି ॥
ମୁହିଁ ଲଙ୍କପତି ଅସୁରଙ୍କର ଈଶ୍ୱର ।
ମଦନ ଆରତେ ଧଇଲି ତୋର କର ॥
ମଉଗର୍ବ ହୋଇ ନାହିଁ ନାହିଁ କରୁ ।
ଯେତେମାନ ଲୋକ ସେକଥା ବିଚାରୁ ॥
ରମ୍ଭା ବୋଇଲା ମୁଁ ନୋହଇ ବାରୁଣୀ ।
ଉତ୍ତମ କୁଳେ ଜନ୍ମି ହୋଇଲି ଦୋଚାରୁଣୀ ॥
ଆଗ ଲିହିଲାର ପାଛକୁ କି ଯାଇ ।
ଯେବେ ଭାଳିଲେ କି ଭଲ କଥା
ପାଇ ॥୧୦
ଯଦ୍ୟପି ସୁରନଟୀ ଅଟୁ ଆମ୍ଭେ ବେଶ୍ୟା ।
ଆମ୍ଭର ସୁଖେ କାହାକୁ ନ କରୁଟି ଆଶା ॥
ଦେବ ଇନ୍ଦ୍ର ଯାହାକୁ ସମର୍ପିଣ ଥାଇ ।
ସେହି ସେ ଆମ୍ଭର ଅଟଇ ନିଜ ସାଇଁ ॥
ଯେବେ ନଳକୋବେର ଅଟଇ ମୋର
ସାଇଁ ।
ତାର ବିନୁ ମୋର ଆନେ କାର୍ଯ ନାହିଁ ॥
ଇନ୍ଦ୍ରର ଆଗ୍ୟାଂରେ ମୁଁ ତାହାର ବଶ୍ୟାବୃତ୍ତି ।
ନଳକୋବେର ସେ ମୋହୋର ପ୍ରାଣପତି ॥
ସେ ମୋହୋର ପତି ଜୀବନ ଅଧିକାରୀ ।
ତା'ର ବିନୁ ଚିତ୍ତ ଆନରେ ନ ବଳେ
ମୋହୋରି ॥୨୦
ବିଶେଷେ କୋବେର ତୋହୋର ଜେଷ୍ଟ
ଭାଇ ।
ତାହାର ତନୟେ ତୋର ପୁତୁରା ଅଟଇ ।
ସେ ମୋହୋର ନାହା ମୁଁ ତାହାର ବହୁ ।
କିମ୍ପାଇଁ ମାହାତ୍ମା ହୋ ଅବେଭାର କହୁ ॥
ଛାଡ଼ ଛାଡ଼ ଯିବି କଟାଳ ନ କର ।
ଯେତେ ବୋଲିଣ ଛଡ଼ାଇଲା ବେନିକର ॥
ରାଗ ପାଇଣ ରାବଣ କୋପ ଗରୁ କଲା ।
ବିଂଶ ଭୁଜେ ରମ୍ଭାକୁ ଆକର୍ଷି ଧଇଲା ॥
ବସ୍ତ୍ର ଫେଡ଼ି ପୁଣ ପାଡ଼ିଲାକ ରଥ ତଳେ ।
କପିଳାସ ପର୍ବତ ଯେ ଉପାଡ଼ିଲା
ହେଳେ ॥୩୦
ସ୍ତିରୀ ମାତ୍ର ସିନା କିସ ତାର ପ୍ରାଣ ।
ଭୁଜେ ଭୁଜ ଭିଡ଼ି ଛନ୍ଦିଲା ରାବଣ ॥

ସ୍ତନ ମଞ୍ଚାଳିଣ ମୁଖେ ଚୁମ୍ବ ଦେଲା ।
ବଳେଣ ରମ୍ଭାକଇ ରମଣୀ ଭୋଗ୍ୟଂ କଲା ॥
ସୁନ୍ଦରୀ ଅଜ୍ଞାନେ ନ ଜାଣଇ କିଛି ।
କେବଳ ମାତ୍ର ଶ୍ୟରୀରେ ନିଶ୍ୱାସ ବହୁଅଛି ॥
ଦାସୀ ଗଣେ ଭୟେ ନ କହନ୍ତି କଥା ।
ବିବିଧ ପ୍ରକାରେଣ ରମଇ ଦଶମଥା ॥
ଦନ୍ତକ୍ଷତ କଲା ଗଣ୍ଡସ୍ଥଳ ବେନି ।
ଯଉବନ ବିଦାରିଲା ତୀକ୍ଷ ନଖ ଘେନି ॥୪୦
ଗାଢ଼େଣ ଆଲିଙ୍ଗନ କରଇ ଘନ ଘନ ।
ଶ୍ୟରୀରୁ ଶ୍ରମ ଝାଳ ବହଇ ଅବିକ୍ଷନ ॥
ଅହନ୍ତା କରିଣ ମାଇଲା ମାଡ଼ ରାଗେ ।
କେହି ରହନ୍ତା ଯେ ନୋହିଲେ ତାର
ଆଗେ ॥
ଅମୃତ କୁମ୍ଭ ଯେହ୍ନେ କୁର କରଇ ରାହୁ ।
ଅପକ୍ଷରୀର ଆଣ୍ଟ ସେ ଭାଙ୍ଗିଲା ବିଂଶବାହୁ ॥
ଲବଣୀ ମେଞ୍ଚା ଯେହ୍ନେ ମଞ୍ଜାରୀ କରଇ
ପାନ ।
ରମ୍ଭାକଇ ତେସନ ସାଦ୍ରିଶ ଦଶାନନ ॥
ମହୁଫେଣା ଭାଲୁକ କି କଲା ନାରଖାର ।
ନିରୁତା ଦୁଧ ଯେସ୍ନେ ବେଙ୍ଗ କରଇ
ଆହାର ॥୫୦
ରାଜ ଆମ୍ବ ଯେସ୍ନେ କୁଆ ଥଣ୍ଟେ ହାଣଇ ।
ପୂର୍ଣ୍ଣମୀ ଚାନ୍ଦ ଯେହ୍ନେ କଳା ମେଘ ଜିଣଇ ॥
ପାଚଲା ତାଳ ଯେହ୍ନେ ରକଟଇ ବାଦୁଡ଼ି ।
ଭୋକିଲା ବାଘ୍ର ଯେହ୍ନେ ବିଦାରଇ କାଲୁରୀ ॥
ଫୁଟିଲା ପଦ୍ମ ଯେହ୍ନେ ଚିଲ ମାଡ଼ି ବସଇ ।
ଶାଳୀ ଅନ୍ନକୁ ଯେହ୍ନେ ଛଣୁଂଆ ଆକ୍ରଷଇ ॥
ଶ୍ୱାନ ଯେସନେକେ ଭୁଞ୍ଜଇ କ୍ଷୀରି ସରା ।
ଅସୁର ହାଥେ ତେହ୍ନେ ଗଞ୍ଜି ହୋଇଲା
ଅପକ୍ଷରା ॥
ଝାଳ ରକତ କର୍ଦ୍ଦନ ଧାତୁରସ ।
ବହଇ ଝର ଝର ଖର ନିଶୁଆସ ॥ ୬୦
ସେ ସାର ସୁନ୍ଦେରୀ ଅଟଇ ପଦ୍ମିନୀ ଜାତି ।
ଉତ୍ତମ ପୁରୁଷ ସେ ତାକୁ ମେଳ ହୋନ୍ତି ॥
ବଳେ ହରି ଅସୁର ଅନେକ ଦୁଃଖ ଦେଲା ।
ସୁରତି ଶରଧା ତାର ଶରୀରୁ ଛାଡ଼ିଲା ॥
ବସ୍ତ୍ର ସମ୍ଭାଳିଣ ବାହୁଡ଼ିଣ ଆଏ ।
କପିଳାସ ପର୍ବତେ ପୁଷ୍ପକ ରଥ ପାଏ ॥
ଯେଥୁ ଅନନ୍ତରେ ରମ୍ଭା ଅପକ୍ଷରୀ ।
ଅଜ୍ଞାନ ହୋଇଣ ଅଛଇ ସୁନ୍ଦରୀ ॥
ରାବଣକୁ ସନ୍ନିଧେ ନ ଦେଖି ଦାସୀଗଣ ।
ଆସି ସୁନ୍ଦରୀକି ବେଢ଼ିଲେ ତତକ୍ଷଣ ॥ ୭୦
ଟୋକି ଧରିଣ ଯେ ପିନ୍ଧାଇଲେ ବାସ ।
ମୁଖେ ଜଳ ସିଞ୍ଚି କରନ୍ତି ଆଶ୍ୱାସ ॥
ଅପସରେ ଆଉଜାଇ ବିଞ୍ଚନ୍ତି ବିଞ୍ଚଣୀ ।
ଶ୍ୱେତ ଚାମର ଢାଳନ୍ତି କେବଣ ତରୁଣୀ ॥
ଦେହ ପୋଛିଣ ଚନ୍ଦନ ଘଷାଇଲେ ।
ଅନାସ୍ତ ହେଲୁ ବୋଲିଣ ଶୋକକଲେ ॥
କ୍ଷଣକେ ସୁନ୍ଦେରୀର ପଶିଲା ସାହାସ ।
ଉନ୍ମିଳ ନୟନେ ଚାହାଂଇ ଦଶ ଦିଶ ॥
ସାଷ୍ଟାମ ହୋଇଣ ବସିଣ ବୋଇଲା ।
ଯାହା ସେ କର୍ମେ ମୋର ଅଛଇଂ
ଲିହିଲା ॥୮୦
ଆନକୁ ବୋଇଲେଣ ଆଉ ହୋଇବ ଯେ
କିସ ।
ଚାଲ ଯେବେ ଯିବା କୋବେରର ପାଶ ॥
ଯେତେ ବୋଲି ବିବାନ ବାହିଲା
ଅନ୍ତରାଳେ ।
ଧୀରେ ଧୀରେ ଖସାଇ ରଥ କଲା ରବି
ତଳେ ।
କପିଳାସ କନ୍ଦର ଗଣ୍ଡକୀ ନଦୀ ତୀରେ ।
ଅଳକା ନାମ ଅଛଇ ଯେକ ପୁରେ ॥
ସପତ ନିଧିପତି କୁବେର ତହିଂ ଥାଇ ।
ରାତ୍ର ଅର୍ଦ୍ଧମାନେ ଅପକ୍ଷରୀ ତହିଂ ପାଇଂ ॥
ନଳ କୋବେରଙ୍କ ମନ୍ଦିରେ ଯାଇ ମିଳି ।
ଦେଖିଣ ଉଚ୍ଚସ୍ୱରେ ପାଡ଼ିଲା ବୋବାଳି ॥୯୦
ଭୋ ସ୍ୱାମୀ ଅନାସ୍ତ ହୋଇଲଇଂ ମୁହିଂ ।
ଯେତେ ବୋଲି ଜ୍ଞାନ ହାରି ପଡ଼ିଲାକ
ମହୀ ॥
ବେଶ ହୋଇ ପୁଣ ଯେ ଦକ୍ଷପତି
ବସିଥିଲା ।
ରମ୍ଭାକୁ ଧାଇଂଣ ଯେ ଆପଣେ କୋଳ
କଲା ॥
ସଖୀ ସଖୀ ବୋଲିଣ ଧଇଲାକ ଓଷ୍ଟ ।
କିମ୍ପାଇ ପ୍ରିୟା ମୋତେ ଦେଉଅଛୁ କଷ୍ଟ ॥
କି ତୋତେ କେବଣ ହୋଇଲା ଅବା
କାହିଂ ।
ଅପକ୍ଷରୀ ବୋଇଲା ଭ୍ରଥା ମୁଖ ଚାହିଂ ॥
ବିବାନ ଚଢ଼ିଣ ମୁଂ ଆସନ୍ତେ ତୋର ପାଶ ।
ବାଟେ ଭେଟିଲା ମୋତେ ନଉକେଶାର
ଶିଷ ॥୧୦୦
ତୋହୋର ରମଣୀ ବୋଲି ଜାଣିଲାକ
ଯହୁଂ ।
ବଳେ ଧରି ମୋତେ ଆକ୍ରେଷିଲା ତହୁଂ ॥
ପ୍ରବୋଧି କହିଲେଣ ନ କଲା ମୋର
ବୋଲ ।
ଧର୍ମଛାଡ଼ି ମୋତେ ହରିଲା ଲଙ୍କ ମଲ ॥
ଦେଖ ସ୍ତନ ମୋର ନହେ ବିଦାରିଲା ।
ଗଣ୍ଡସ୍ତଳ ଯୁଗଳ ଦନ୍ତେ କ୍ଷତ କଲା ॥
ଚାଚର କେଶକୁ ମୋର ଝିଙ୍କିଲାକ ରାଗେ ।
ପ୍ରହାର କଲା ମୋତେ ମନର ବଡ଼ରାଗେ ॥
ଭୁଜେ ଭୁଜ ଭିଡ଼ି ମୋର ଭାଙ୍ଗିଲାକ ଦର୍ପ ।
ଚନ୍ଦନ ବୃକ୍ଷକୁ ଯେହ୍ନେ ବେଢ଼ିଲା
କାଳସର୍ପ ॥୧୦
ଆପଣେ ବସ୍ତ୍ର ମୋର ପକାଇଲା ଫେଇ ।
ଗ୍ୟାନ ହାରି ପଡ଼ିଲି ଅଗ୍ୟାନ ମତ ହୋଇ ॥
ଅସୁର ସମ୍ଭର୍ବ ମୁଂ ଜାଣିବି କେସନେ ।
ଭୟେ ଥରହର ମୁଂ କମ୍ପଇ ପଞ୍ଚମନେ ॥
ସୁରତି ସଧ ଛାଡ଼ି ନିଜପୁରେ ଗଲା ।
ତୋହୋର ଜୀଇଂ ଥାଇଂ ଯେହା ମୋତେ
କଲା ॥
ତୁହି ମୋହୋର ମାନ ଉଧରି ପାରୁ
ଯେବେ ।
ମୁହଂ ତୋର ରମଣୀ ହୋଇବଇଂ ତେବେ ॥
ନୋହିଲେ ହୁତାଶନ ଜାଳିଣ ପଶିବି ।
ନ ରଖଇ ଦେହ ମୁଂ ଯେହିକ୍ଷଣି
ନାଶିବି ॥୨୦

ଶୁଣି ନଳ କୋବେର କୋପେ ଥରହର ।
କୁଶ ହସ୍ତ ହୋଇ ଜଳ ଘେନିଲାକ କର ॥
ବୋଇଲା ରାବଣରେ ଶାପ ମୋର ଘେନ ।
ଆଜ୍ହୁଂ ପରସ୍ତିରୀ ନ ହରିବୁ ଦଶାନନ ॥
ଯଦ୍ୟପି ବଳେ ଅବା ହରିବୁ ବୋଲ
ମେଣ୍ଟି ।
ଶତେ ଖଣ୍ଡ ହୋଇ ତୋର ମୃଧୁନୀ ଯିବ
ଫାଟି ॥
ପରିସ୍ତିରୀ ହରିଲେ ପ୍ରାଣେ ନାଶ ଯିବୁ ।
ଜୀବନ ଧରିଣ ଆଉ କ୍ଷଣହେଂ ନ ରହିବୁ ॥
ଯେତେ ବୋଲି ପୁଣ ଜଳ ଭୂମିରେ
ଛାଡ଼ିଲା ।
ଉଗ୍ର ଦତ୍ୟ ଗୋଟାର ଗରବ ତୁଟିଲା ॥୩୦
ରମ୍ଭା ଆନନ୍ଦେ ଯେ ଛାଡ଼ିଲା ଦୁଃଖମାନ ।
ସ୍ୱର୍ଗେ କୁସୁମ ବରଷିଲେ ଅବିଛନ୍ନ ॥
ଦୁନ୍ଦୁଭି ବଜାଇ ପୁଣ ହୁଳାହୁଳି ଦେଲେ ।
ଯେବେ ସେ ଶତ୍ରୁ ଛିଦ୍ର ପାଇଲୁ ବୋଇଲେ ॥
ବ୍ରହ୍ମା ମନେ ମନେ ଆନନ୍ଦ ହୋଇଲା ।
ସୀତ୍ୟାକୁ ହରଇ ସେ ବୋଲିଣ ଡରୁଥିଲା ॥
ଯେବେ ବିଚାରିଲାର ହୋଇଲାକ ଭଲ ।
ଆଜହୁଂ ପରସ୍ତିରୀ ନ ହରିବ ଲଙ୍କ ମଲ ॥
ଲକ୍ଷ୍ମୀର ଅରଷ୍ଟି ରମ୍ଭା ଉପରେ ଗଲା ।
ଭଲା ନଳ କୋବେର ବିଚାରି ଶାପ୍ୟ
ଦେଲା ॥୪୦
ଯେତେ ବୋଲି ଧାତା ହୋଇଲା ହରଷ ।
ଯେଥୁ ଅନନ୍ତରେ ବିଶର୍ବାର ଶିଷ୍ୟ ॥
କୋବେର ପୁତ୍ର ଶାପ୍ୟ ଦେଲା ବୋଲି ଶୁଣି ।
ପଞ୍ଚୁ ପାଣରେ ସେ ଡରିଲା ବିଂଶପାଣି ॥
ମନେ ବିଚାରଇଂ ଗଲଇଂ ତ ନାଶ ।
ପରସ୍ତିରୀ ହରଣ ହୋଇଲା ମୋତେ ବିଷ ॥
ଆଜହୁଂ ନହରିବି ପର ସ୍ତିରୀ ।
ତେବେ ସେ ରକ୍ଷା ହୋଇବ ଯେଡ଼େ ଶିରୀ ॥
ଅଗସ୍ତି ବୋଲନ୍ତି ହୁ ଶ୍ରୀରାମ ଚନ୍ଦ୍ର ଶୁଣ ।
ପର ସ୍ତିରୀ ହରିବାକୁ ଡରିଲା ରାବଣ ॥୫୦
ସେଦିନ ରଜନୀ ବିଶ୍ରାମ ତହିଂ କଲା ।
ପ୍ରଭାତେ ଥାଠ ଘେନି ଉର୍ଦ୍ଧେ ଚଳିଗଲା ॥
ନିଜ ଲଙ୍କାଦେଶେ ହୋଇଲା ପରବେଶ ।
ଶ୍ରୀ ଜଗନ୍ନାଥ ଶରଣ ମୁଁ ବଳରାମ ଦାସ ॥
ମହାଦେବ ସ୍ୱାମୀ ପାର୍ବତୀଙ୍କ ଆଗେ କହି ।
ଯାହା ଶୁଣନ୍ତେଣ କଲୁଷ ହେବ ଦହି ॥
ଯେଥୁ ଅନନ୍ତରେ ପୁଣ ଗଲା ଦିନା କେତେ ।
ଅସ୍ଥାନ କରି ବସି ଅଛଇ ଲଙ୍କନାଥେ ॥
ମନ୍ତ୍ରୀ ଅମନାତ୍ୟଙ୍କୁ ବୋଇଲାକ ଚାହିଂ ।
ପାତାଳ ଭୁବନ ହେଲେ ସାଧିଲଇଂ
ମୁହିଂ ॥୬୦
ମୃତ୍ୟୁ ଲୋକେ ମୋତେ ନାହିଂ ସମସରି ।
ତେତିଶ କୋଟି ଦେବତାଙ୍କୁ ଜିଣିଲଇଂ
ଧରି ॥
ଯେକମାତ୍ର ଅସାଧ ହୋଇଅଛି ଇନ୍ଦ୍ର ।
ତାହାଙ୍କୁ ଜିଣିଲେ ସେ ବୋଲାଇ ଦତ୍ୟ
ଚନ୍ଦ୍ର ॥
ବିବୁଧାଦି ଗଣଙ୍କୁ ସାଧିବଇଂ ଯେବେ ।
ନିଷ୍ଟିନ୍ତ ହୋଇଂ ଲଙ୍କାରେ ବସିବଇଂ
ତେବେ ॥
ଯେତେ ବୋଲି ସନ୍ନିଧ୍ୟେ ରାଇଲା
ବିଭୀଷେଣ ।
ଆଗ୍ୟାଂ ଦେଲା ଥାଠ ସଜ କରି ଆଣ ॥
ମେଘନାଦ କୁମର ସଜ ହୋଇ ଆସୁ ।
ରତ୍ନମାଏ ରହୁବରେଣ ସମ୍ପର୍ବ ହୋଇ
ବସୁ ॥୭୦
ଜମ୍ଭୋମାଳି ପ୍ରଶସ୍ତ ଅକମ୍ପନ ବୀର ।
କାକାକ୍ଷ ଜୁଲୁପାକ୍ଷ ଯେହୁ ବେନି ବୀର ॥
ସଲୋପି ଅଲୋପି କଙ୍କ ଧଙ୍କ ମୂଳେ ।
କାଳଘଣ୍ଟ ଯମଘଣ୍ଟ ଦେବଦତ୍ତ ସକଳେ ॥
ଶୁକ ସାରଣ ସହିତେ ମନ୍ତ୍ରୀ ବେନି ।
ରଥଗଜ ଅଶ୍ୱ ପାଦାନ୍ତି ସଇନି ॥
ତୁହ୍ମେ ବିଭୀଷେଣ ସଜ ହୋଇଂ ଆସ ।
ରଣ ଗୋଳ ଧନ୍ଦୋଳେ ଜିଣିମାକ ତ୍ରିଦଶ୍ୟ ॥
ସ୍ୱର୍ଗ ସମ୍ପଦ ମୁଂ କରିବଇଂ ଜୂର ।
ଲଙ୍କାକଇ ଆଣିମି ସର୍ବ ଦେବାସୁର ॥୮୦
ଯେସନେକ ସମଏ ସନ୍ୟ ସଜ ହୋଇଂ ।
ପୁଷ୍ପେକ ବିମାନେଣ ବସିଲା ଲଙ୍କସାଇଂ ॥
କାମରୂପୀ ଦତ୍ୟେ ଉଠିଲେ ଅନ୍ତରାଳେ ।
ପ୍ରବେଶ ହେଲେ ଯାଇଂ ଆକାଶ ମଣ୍ଡଳେ ॥
କରେଣ ଶସ୍ତ୍ର ଧରି ବଜାଇଲେ ତୂର ।
ମୁଖରାବ ଶବଦେ କମ୍ପିଲା ତିନିପୁର ॥
ଯେକକୁ ଆରେକ ରାଇଣ ପୁଛାପୁଛି ।
କେ ବୋଲଇ ରାବଣ ସ୍ୱର୍ଗକୁ ବାହିଂଅଛି ॥
ମୃତ୍ୟୁଲୋକ ପାତାଳ ଜିଣିଲା ଦୁଇପୁର ।
ଦେବତାଙ୍କ ସଙ୍ଗେ ଯେବେ ଯୁଝିବ
ଅସୁର ॥୯୦
କେ ବୋଲଇ କାଳ ହୋଇଲା ତାର ଆସି ।
ନୋହିଲେ କେମନ୍ତେ ଜଳନ୍ତା ଅଗ୍ନିରେ
ପଶି ॥
ସବୁନ୍ତି ଜିଣିଲା ପ୍ରାଏକ ମଣିଲା ।
ମୃତ୍ୟୁପୁର ରାଜାଙ୍କୁ ଧରିଣ ଜିଣିଲା ॥
ତେହ୍ନେର୍ଣ୍ଣେକ ପ୍ରାଏ ବୁଝି ଆସିଅଛି
ଯେବେ ।
ଯେ ଘାନ୍ତି ପ୍ରାଣ ଘେନି ନଯାଇ ସେ
ଯେବେ ॥
ଯେମନ୍ତେ ଅସୁର ବଳ ନଯାନ୍ତି ଉବୁରି ।
ତେର୍ଣ୍ଣେ ପ୍ରାଏ କରି ମାଗୁକିନା ଧରି ॥
ଯେସନେକ ବୋଲାବୋଲି ହୁଅନ୍ତି
ଲୋକମାନେ ।
କେ ବୋଲଇ ରାବଣକୁ ଜିଣନ୍ତା ନାହିଁ
ଆନେ ॥
ଯମ ବରୁଣ କୁବେରକୁ ସାଧ୍ୟ କଲା ।
ସବୁଙ୍କରି ମୁଖେ କାଳି ଲଗାଇଲା ॥
କପିଳାସ ପର୍ବତ ଉପାଡ଼ିଲା ହେଲେ ।
ସମାନ୍ୟ ଭରସାକି ପଶିଲା ସୁର ଆଳେ ॥
ଶୁଣୁନାହଂ କିହ୍ନୋ ବୀର ତୂର ବାଦ୍ୟ ।
ନିଷ୍ଟେ ଦଇତେ କରିବେ ଆଜ ଦ୍ୱନ୍ଦ୍ୱ ॥
ଯେଥୁ ଅନନ୍ତରେ କହନ୍ତି ଅଗସ୍ତି ।
ଭୋରାମ ବାରତା ସେ ପାଇଲା ସୁରପତି ॥
ଟମକ ଘାଏଣ କମ୍ପିଲାକ ସ୍ୱର୍ଗ ।

ଲୋକ ଆତଯାତ ପୂରିଲା ରାଜମାର୍ଗ ॥୧୦
ଚାର ଜଣାଇଲା ଶୁଣିମା ଶଚୀସାଇଂ ।
ଦଶଗ୍ରୀବ ରାଏ ଆସୁଅଛି ବାହି ॥
ଶୁଣିଣ ବଜ୍ରଧର ଦେଲାକ ଆଦେଶ ।
ଗନ୍ଧର୍ବ ବଳ ମୋର ସଜ ହୋଇ ଆସ ॥
ସବୁ ଦେବତାଏ ଯେ ଯାହାର ବଳ ଘେନି ।
ସିଂହଦ୍ୱାରେ ଆସି ତାରେ ମିଳିଲେ ସଇନି ॥
ଯେତେ ବୋଲି ପୋଏ ଆପଣେ ହୋଇ ସଜ ।
ସାଜି ଆଣିଲେକ ଅଇରାବତ ଗଜ ॥
କରେ ବଜ୍ର ଧରି ହସ୍ତୀ କନ୍ଧରେ ବସିଲା ।
ଦୁତୀ କାଳ ଦେବତା ପ୍ରାଏକ ଦିଶିଲା ॥୨୦
ସଙ୍ଗେଣ ପୁତ୍ର ଅଛି ଜୟନ୍ତସେନ ।
ଅଙ୍ଗାରପନଙ୍ଗ ଚିତ୍ରସେନ ବିଦ୍ୟମାନ ॥
ଗନ୍ଧର୍ବ ଦଳ ତାର କଳଣା ନ ଯାଇ ।
ଅତି ଉତ୍କଟେ ଦୁନ୍ଦୁଭି ବଜାଇ ॥
ସବୁ ଦେବତାଏ ନିଜ ସନ୍ୟ ଘେନି ।
ଦ୍ରଶନ କଲେ ଯାଇଂ ରାଜା ସହସ୍ର ଯୋନି ॥
ଦକ୍ଷ କିନ୍ନର ବିଦ୍ୟାଧର ମୂଳେ ।
ବ୍ରହ୍ମାଣ୍ଡ ପୂରୁଅଛି ମୁଖରାବ ଗୋଳେ ॥
ସମସ୍ତେ ଦେବ ଆୟୁଧରେ ନିର୍ଜିତା ।
କ୍ଷତ୍ରୀସମ ନୋହେ ଯୁଝିଲେ ବଳେ ବଳବନ୍ତା ॥୩୦
ସଂଗ୍ରାମକୁ ଭଏ ନାହିଂ ତାହାଙ୍କର ।
କରେଣ ଶସ୍ତ୍ର ଧରି ଝମକନ୍ତି ବୀର ॥
ସନ୍ୟ ସମ୍ଭାର ଦେଖି ବିଚାରଇ ଇନ୍ଦ୍ର ।
ବିଷ୍ଣୁକୁ ନକହି କିମ୍ପା କରିବାକ ଦ୍ୱନ୍ଦ୍ୱ ॥
ସେ ଯେ ଜଗତର ଅଟନ୍ତି ଅଧିକାରୀ ।
ତାହାଙ୍କୁ ସାଖୀ କଲେ ଦଇତନ୍ତ ମାରି ॥
ତାଙ୍କୁ ନକହି ଆମ୍ଭର କିଛି ନାହିଂ କାର୍ଯ ।
ସେ ସେ ଦଇତାରି ଅଟନ୍ତି ଚତୁର୍ଭୁଜ ॥
ଯେତେ ବୋଲି ସନ୍ୟ ସଙ୍ଗତହୁଂ ଗଲା ।
ବୈକୁଣ୍ଠ ଭୁବନେ ଯାଇଣ ମିଳିଲା ॥୪୦
ହସ୍ତୀରୁ ଓହ୍ଲାଇ ନବରେ ଯାଇଂ ପଶି ।
ଦେଖି ନାରାୟେଣ ପାଛୋଟି ନେଲେ ଆସି ॥

କୋଳ ସମ୍ଭାଷଣ ହୋଇଲେ ବେନି ଜନ ।
ସୁବର୍ଣ୍ଣ ସିଂହାସନେ ବସିଲେ ଭଗବାନ ॥
ଇନ୍ଦ୍ର ବସିପୁଣ ଯୋଡ଼ଇ ବେନିକର ।
ଶୁଣ ଦେବ ଲକ୍ଷ୍ମୀର ରମଣ ଚକ୍ରଧର ॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ଆଧିପତି ।
ତୋହର ଆଶ୍ରକେ ଅଛଇ ସପତଦ୍ୱୀପା ପୃଥୀ ॥
ଆକାଶେ ଶିର ତୋର ପାତାଳେ ପୟର ।
ସଚରାଚର ମହୀ ଅଛି ତୋହୋର ହୃଦୟର ॥୫୦
ଚନ୍ଦ୍ର ସୂର୍ଯ ନୟନ ପବନ ନିଶ୍ୱାସ ।
ଶରୀର ରୋମ ତୋର ଅଟଇ ତ୍ରିଦଶ୍ୟ ॥
ଯାବତ ଜନଙ୍କର ହୃଦୟରେ ଥାଉ ।
ଯାବତ ପଦାର୍ଥକୁ ଧାତୁରସ ଦେଉ ॥
ନାନା ଜନ୍ତୁଙ୍କର ଅଟୁ ତୁ ଠାକୁର ।
ନାଦ ବିନ୍ଦୁ ବ୍ରହ୍ମ ତତ୍ତ୍ୱ ଅକାର ଓଂକାର ॥
ପ୍ରାଣର ଧାରଣା ତୁ ମାତୃକା କରସ୍ୱଚ ।
ଆଦିଦେବୀ ଗାଇତ୍ରିରୀ ତୁ ଅମ୍ବିକା ଆଦିପାଠ ॥
ଅଜପା ଯୋଗ ତୁ ଜ୍ଞାନୀଙ୍କର ଗୁଣଗ୍ରାହୀ ।
ମରିଚୀକାର ସତ ତୁ ସକଳ ଜନକଇ ସାହି ॥୬୦
ଚୈତନ୍ୟର ହେତୁ ତୁ ବୁଦ୍ଧିର ଉଦେଶ ।
ପ୍ରାକର୍ମର ଉଦିଯୋଗ ବଳର ସାହସ ॥
ପ୍ରକୃତିର ଈଶ୍ୱର ତୁ ଜୀବ ଆତ୍ମାର ତତ୍ତୁ ।
ପ୍ରମ ବ୍ରହ୍ମ ଜ୍ଞାନୀ ତୁ ପରମାର୍ଥର ହେତୁ ॥
ଈଶ୍ୱର ପୁରୁଷ ତୁ ଅଟୁ ଆଦିମୂଳ ।
ନାନାବେଦ ପୁରାଣ ତୋହୋର ଫୁଲଫଳ ॥
ଶରଧାର ହରଷ ତୁ ତାମସର ଅବିଗୁଣ ।
ଯେ ମାହା ସଂସାର ତୋହୋର ଘଟଣ ॥
ତୁ ଦେବ ଭଗବାନ ଭାବେଣ ପୃଥି ରଖୁ ।
ନାନାମୂର୍ତ୍ତି ଜୀବଜନ୍ତୁ ଜଳ ସ୍ଥଳ ସଖୁ ॥୭୦
ପ୍ରାଣୀଙ୍କର ହିତେ ଅନନ୍ତ ରୂପ ଧରୁ ।
ଦଶ ଅବତାରେ ଅସୁର ସଂହାରୁ ॥
ହିରଣ ହିରଣାକ୍ଷ ମଧୁ କଇଟଭ ।
ଦନୁଜ ଦାନବ ଶଙ୍ଖାସୁର ନୃପ ॥

ଯେହାନ୍ତ ମାରିଣ ଯେ ପୃଥୀ ଥିର କଲୁ ।
ଯେବେ କିମ୍ପା ଜଗତକୁ କାରଣ ନକଲୁ ॥
ରାବଣ ନାମେଣ ଲଙ୍କାର ଈଶ୍ୱର ।
ବଳେ ଉତକର୍ମ ହୋଇଲା ନିଶାଚର ॥
ଜଗତ ଜିଣି ଯେବେ ସ୍ୱର୍ଗକୁ କଟକାଇ ।
ଦେଖିବା ଛାଡ଼ି ଯେହା ଶୁଣିଲାହିଂ ନାହିଂ ॥୮୦
ଅସୁର ବଳ ଆସି ଅମରାବତୀରେ ପଶଇ ।
ତୁମ୍ଭର ବିଚାରକୁ ଯେକଥା କେମନ୍ତ ଆସଇ ॥
ଯେହିକ୍ଷଣି ଦତ୍ୟେ ସ୍ୱର୍ଗ କରିବେଟି କୂର ।
ନାରଖାର ହୋଇ ଟି ଅମରାବତୀ ପୁର ॥
ପାରିଲେଣ ଗରୁଡ଼ ଚଢ଼ିଣ ସଜ ହୁଅ ।
ବୃନ୍ଦାଅର୍କଗଣଙ୍କୁ ଜୀବନ ଦାନ ଦିଅ ॥
ଦତ୍ୟବଳ ମାରି ପୃଥୀ ଥିର କର ।
ଯେ ମହା କଷଣୁ ଉଧରି ଦେବ ଧର ॥
ଇନ୍ଦ୍ର ଦେବତା ମୁଖରୁ ଯେସନେକ ଶୁଣି ।
ମନେ ମନ ବିଚାରିଣ ବୋଇଲେ ଚକ୍ରପାଣି ॥୯୦
ଭୋ ବଜ୍ରଧର ନ କରତୁ ଭଏ ।
ବ୍ରହ୍ମାର ବର ପାଇ ଦଇତ ଅଜଏ ॥
ପ୍ରବଳ ହୋଇ ପୁଣ ସାଧଇ ତିନିପୁର ।
ରାକ୍ଷସ ଇନ୍ଦ୍ରପଦ ଦେଲାକ କୁଶଧର ॥
ତାହାର ସଙ୍ଗେ ଯୁଦ୍ଧ କଲେଣ ଜଏ ନାହିଂ ।
ଦ୍ରପିଷ୍ଟ ଦାନେବ ସେ ଅଟଇ ବର ପାଇ ॥
ମୁହିଂ ଯେହାର ସଙ୍ଗେ ନ କରଇ ସମର ।
ନଜିଣି ନ ବାହୁଡ଼ଇ ଏ ବୀରଧୁ ମୋହର ॥
ବ୍ରହ୍ମାର ବଚନ ପୁଣ ହୋଇବନି ମିଛ ।
ଚକ୍ରରେ ନ ମରଇ ବିଶର୍ବାର ବଚ୍ଛ ॥୧୦୦
ମୋତେ ତୁ ବାସେବ ତହିଂକି ଘେନି ନଯା ।
ସେ ମହା ଦୁର୍ଜନ ଅଟଇ ଦତ୍ୟରାଜା ॥
ସଭିହେଂ ଯେକାବେଳେ ହାରିବାଟି ଯେବେ ।
ତିନିପୁର ରାକ୍ଷସ ବିଜସିବ ତେବେ ॥
ତୁମ୍ଭେ ଯେବେ ଦେବତାଗଣେ ସମସ୍ତେ ଯୁଝ ।

ହାନି ଅପଚୟ କେମନ୍ତେ ହୋଇ ବୁଝ ॥
ତୁମ୍ଭର ହାରିଲେ ମୁଂ ଗରୁଡ଼ ଚଢ଼ିଯିବି ।
ରାବଣ ସହିତେ ମୁଂ ଦଇତ୍ୟନ୍ତ ମାରିବି ॥
ଯେବେ ମୁଂ ନ ଯୁଝଇ ନୁହଇ ଯେହୁ
କାଳ ।
ଯାଅ ଯା ସାଂଗ୍ରାମ ତୁ କର ସ୍ୱର୍ଗପାଳ ॥୧୦
ବିଷ୍ଣୁର ଯେ ବୋଲ ଶୁଣିଣ ଇନ୍ଦ୍ର ଡରି ।
ଥମ୍ଭୀଭୂତ ହୋଇଣ ଆଶ୍ଚର୍ଯ୍ୟ ବୃତଅରି ॥
ମୁଖ ମଳିଣ କରିଣ ବାହୁଡ଼ିଣ ଗଲା ।
ଐରାବତ ପିଠିରେ ଯାଇଣ ବିଜେ କଲା ॥
କରେ ବଜ୍ର ଧରି ଝମକିଲା ରାଗେ ।
ଦୁନ୍ଦୁଭି ବୀର ତୂର ବାଜୁଅଛି ଆଗେ ॥
ଅପ୍ରମାଣ ବଳ ସକଳ ଦେବେ ଛନ୍ତି ।
ରାବଣ ସଂଗେ ସମର କରିବା ବୋଇଲନ୍ତି ॥
ଅମରାବତୀରେ ଆସି ହୋଇଲେ ପ୍ରବେଶ ।
ଦେଖିଲେ ଅସୁରେ ଉଜାଡ଼ୁଛନ୍ତି ଦେଶ ॥୨୦
ବିବିଧ ପଦାର୍ଥନ୍ତ ଚୂର କରୁଛନ୍ତି ।
ମେଢ଼ ମଣ୍ଡୋପ ଦେଉଳ ଭାଙ୍ଗନ୍ତି ॥
ଅନର୍ଗଳ ହୋଇଣ ଛାଡ଼ନ୍ତି ସିଂହରଡ଼ି ।
ଆଷାଢ଼ ମାସ ମେଘ ଯେସନେ ପଡ଼ଇ
ଘଡ଼ଘଡ଼ି ॥
କରେ ଶସ୍ତ୍ର ଧରି ସମସ୍ତେ ଉଗ୍ରମୂର୍ତ୍ତି ।
ଦେବେ ଦାନବେ ନାହିଂ ତାଙ୍କର ଭୀତି ॥
ଯେସନେକ ସମଏ ମିଳିଲା ଆସି ଇନ୍ଦ୍ର ।
ଦେବ ଦାନେବଙ୍କର ବାଜିଲା ମହାଦ୍ୱନ୍ଦ୍ୱ ॥
ମାର ମାର ବୋଲି ଧାଇଂଲା ଇନ୍ଦ୍ର ରାଗେ ।
ଅସୁର ବଳ କେହି ନ ରହିଲେ ଆଗେ ॥୩୦
କୋଶେ ପରିଯନ୍ତେ ପାଇଲେ ଭାଗେଣି ।
ରଥ ଧୁଆଇଂ ଉଠିଲା ବିଂଶପାଣି ॥୧୫୦
ସୁରଗଣଙ୍କର ମୁଖରେ ଧାଡ଼ି ଦେଲେ ।
ଦେଖି ବିବୁଧ ଗଣ ଧାଇଂଣ ପଡ଼ିଲେ ॥
ରହି ଯୁଦ୍ଧ କଲେ ଦଇତଗଣମାନ ।
ଛେଲ ଚକ୍ର ନାରାଚ ମାରନ୍ତି ଘନ ଘନ ॥
ରଣଗୋଳ ଧଦୋଳ ବାଜିଲା ଦୁଇବଳ ।
ପଏ ନ କାଢ଼ନ୍ତି ସମର ମହାଗୋଳ ॥

ହାଣ ହାଣ ମାର ମାର ଶୁଭଇ ଶବଦ ।
ବିକଟାଳ ହୋଇ ବାଜଇ ଦୁଇ ବାଦ୍ୟ ॥୪୦
ଦେବେ ଦାନବେ ଯେ ହୋଇଲେ
ମିଶାମିଶି ।
ଧାଇଂ ମରାମରି ଘେନି ପଶା ପଶି ॥
ଶହସ୍ରେ ଶହସ୍ରେଣ ପଡ଼ଇ ପଡ଼ିତାଳ ।
ସବୁଙ୍କରି ଶ୍ୟରୀରୁ ବହଇ ଶ୍ରମଝାଳ ॥
ଯେକକୁ ଆରେକ ଯେ ନ ଘୁଞ୍ଚନ୍ତି ପଏ ।
ଯେମନ୍ତେ ଗୋଳ ଯୁଦ୍ଧ ତିନିଘଡ଼ି ଯାଏ ॥
ରକତ ସମୋଦ୍ର ବହଇ ସ୍ୱର୍ଗ ପୁରେ ।
ମଡ଼ା କୁଢ଼ କୁଢ଼ ପଡ଼ିଲେ ନିରନ୍ତରେ ॥
ବେନି ବଳର ଅନେକ ଲୋକ ମଲେ ।
ରଥ ଗଜ ଅଶ୍ୱ ଅନେକ କ୍ଷୟେ ଗଲେ ॥୫୦
ରାବଣ ମଉଳା ପଡ଼ିଲାର ଜୟୋମାଳି ।
ଦୁଇ ଜଂଘ ଫୁଟିଣ ଶକତି ଗଲା ଗଳି ॥
ପ୍ରଶସ୍ତ ସେନାପତି ଆବୋରି ତାହାନେଲା ।
ଲୋକ ଦେଇ ଲଙ୍କା ପୁରକୁ ଚଳାଇଲା ॥
ଅନେକ ଯତନେ ସେ ପାଇଲାକ ପ୍ରାଣ ।
ଯେଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ଶୁଣ ॥
ଚିତ୍ରରଥ ଶକତିରେ ଯହୁଂ ଜୟୋମାଳି
ମୋହଗଲା ।
ଅସୁର ବଳ ଭଏ ଭାଙ୍ଗି ପଳାଇଲା ॥
ଗୋଡ଼ାଇ ଗନ୍ଧର୍ବେ ମାଇଲେ ପିଠି ପଡ଼ି ।
ଇନ୍ଦ୍ରହିଂ ମାଇଲାକ ଐରାବତ ଚଢ଼ି ॥୬୦
ପଳାଇଲେ ରାକ୍ଷସ ବଳ ଯେଣେ ତେଣେ ।
ଦେଖି ମେଘନାଦ ଧାଇଂଲା ଆପଣେ ॥
ରତ୍ନମଏ ରଥ ସୂର୍ଯର କିରଣ ।
ତହିଂ ବସି ମେଘନାଦ କରଇ କ୍ଷତ୍ରୀପଣ ॥
ସନ୍ୟକୁ ବୋଇଲାରେ ମୋହର ପଛେ
ଥାଅ ।
ନିସତ ହୋଇଣ ସାଂଗ୍ରାମୁ ନ ପଳାଅ ॥
ଲଙ୍କାଗଡ଼ ତୁମ୍ଭର ଅଟଇ କେତେଦୂର ।
ଗଲେହିଂ କି ଯାଇଂ ପାରିବେ ଅସୁର ॥
ଆସ ଆସ ବୋଲି ଯେ ଧୁଆଇଂଲା ରଥ ।
ଦେଖିଣ ପଳାଇଲେ ଗନ୍ଧର୍ବ ସମସ୍ତ ॥୭୦

ଅପୂର୍ବ ସାଂଗ୍ରାମ ଯହୁଂ କଲାକ ରାବଣି ।
ଦେବତାଙ୍କର ସନ୍ୟ ପକାଇଲା ହାଣି ॥
ଅସମ୍ଭାଳ ହୋଇଣ ପଳାନ୍ତି ଦେବ ସନ୍ୟ ।
ଦେଖି ଆବୋରିଲା ସହସ୍ରଲୋଚନ ॥
ସନ୍ୟକୁ ବୋଇଲାରେ ପଳାଅ କିସ ସଧେ ।
ଦଇତ୍ୟ ଛାର ଆସି ଯୁଝନ୍ତି ସ୍ୱର୍ଗ ମଧ୍ୟେ ॥
ଅମରଗଣ ହୋଇ ମରଣେ କିମ୍ପା ଡର ।
ଲାଜ ସଂକୋଚ ହୋ ନାହିଂକି ତୁମ୍ଭର ॥
ଯେବେ ନ ପଳାଅ ମୋହୋର ସଙ୍ଗେ
ଆସ ।
ଯେହିକ୍ଷଣି ଦଇତ୍ୟ କରିବି ପ୍ରାଣେ ନାଶ ॥୮୦
ଇନ୍ଦ୍ର ବଚନେ ସନ୍ୟ ଉଗ୍ର ମୂର୍ତ୍ତି ।
ଆଗଭର ହୋଇ ଯୁଝନ୍ତି ଚିତ୍ରଗତି ॥
ଅଇରାବତ ଗଜ ଚଢ଼ିଣ ବଜ୍ରଧର ।
ସଙ୍ଗତେ ଅଛି ତାର ଜଇନ୍ତ କୁମର ॥
ବିବୁଧଗଣ ଘେନି ଉଠିଲାକ ରାଗେ ।
ଭେଟ ପାଇଲା ଯାଇ ମେଘନାଦର ଆଗେ ॥
ଆରେ ଆରେ ବୋଲି ବାସେବର ସୁତ ।
ରାବଣ ତନୟ ଆଗେ କଲା ନେଇ ରଥ ॥
ଦୋହେଂ ମହାକ୍ଷେତ୍ରୀ ସେ ରହିଲେ ଭୂମି
ଘେନି ।
ବେଳେ ବେଳେ ସମର ହୋଇଲା
ଅନ୍ୟାଅନ୍ୟି ॥୯୦
ମେଘନାଦ ଶର ବଜ୍ର ସମ ପଡ଼ଇ ।
ଜଇନ୍ତ ସେନ ଶରେ ମେରୁଗିରି ଝଡ଼ଇ ॥
ଦୁହେଂ ମହାକ୍ଷେତ୍ରୀ ବିଦ୍ୟାଏ ଗରିଷ୍ଟ ।
ମହା ଦାରୁଣ ସମର କରନ୍ତି ହୋଇ ରୁଷ୍ଟ ॥
ଯେକ ପେଷନ୍ତେ ଆରେକ ତାହା ଛେଦଇ ।
ହାଥରୁ ବେଗେ ବାଣ ଶରୀରକୁ ନ
ଭେଦଇ ॥
ହାକି ବିନ୍ଧାବିନ୍ଧି ଡାକି ମରାମରି ।
ମୂଷଳ ଶକତି ଚାହିଂତ ନ ପାରି ॥
ବେଳେ ବେଳେ ସାଂଗ୍ରାମ ବଢ଼ିଲା
ଅଗୋଚର ।
ଦୁହିଂଙ୍କରି ଦେହ ରକତେ ଜର
ଜର ॥୧୦୦

ମାୟା ଯୁଦ୍ଧ ତହିଂ କରନ୍ତି ବୀର ବେନି ।
କ୍ଷଣକେ ଦୃଶ୍ୟ କ୍ଷଣକେ ଅନ୍ଧାର ରଜନୀ ॥
କ୍ଷଣକେ ଅନ୍ତରୀକ୍ଷ କ୍ଷଣକେ ଭୂମିଗତ ।
କ୍ଷଣକେ ଅଗ୍ନିଜାଳି ପୋଡ଼ନ୍ତି ଜଗତ ॥
କ୍ଷଣକେ ଶର ବୃଷ୍ଟି ବରଷା ପ୍ରମାଣ ।
କ୍ଷଣକେ ଅନ୍ଧାର ସେ ନ ଦିଶଇ ବୟଣ ॥
କୋପେଣ ଜଇନ୍ତସେନ ଗର୍ଜ୍ଜନା ଅସ୍ତ୍ର କଲା ।
ଚାରି ମେଘ ପେଷିଣ ଶିଳା ବରଷିଲା ॥
ଦେଖି ମେଘନାଦ ପବନା ଅସ୍ତ୍ର କରି ।
ମେଘନ୍ତ ଉଡ଼ାଇଲା ଫିଟିଲା ତିମିରି ॥୧୦
ପୁଣି ଗଦାଏକ ମାଇଲାକ ନେଇଂ ।
ଦେଖି ଇନ୍ଦ୍ରସୁତ ଗଲାକ ପଳାଇ ॥
ବିଫଳ ହୋଇଲା ତେଡ଼େ ମହା ଅସ୍ତ୍ର ।
ଶକତିଏ ମାଇଲା ନେଇ ବାସେବର ଶିଷ ॥
ସେ ଶକତି ଦେଖି ମେଘନାଦ ଆଡ଼େ ହୋଇଗଲା ।
ବେଲୁଂବେଳ ଅସଂଖ୍ୟ ସମର ହୋଇଲା ॥
ଦେବେଣ ଦୁଲ୍ଲଭ ମାନବେ ଅଗୋଚର ।
ଧନ୍ୟ ଧନ୍ୟ କ୍ଷତ୍ରୀ ତୁ ରାବଣ କୁମର ॥
ଶହସ୍ରଙ୍କ ଗହଳେ ନ ଦିଶଇ ରଥ ।
ବୃଷ୍ଟିକାଳେ ବୃକ୍ଷ କି ହୋଇଲେ ଗୁପତ ॥୨୦
ଜଇନ୍ତର ରଥ ଯେ ମାତେଳି ବାହୁଂଥିଲା ।
ମେଘନାଦ ସାରଥିକି ଅନେକ ମାଇଲା ॥
ବୁକୁରେ ବାଜି ପିଠିକି ବାହାରିଲା ଶର ।
ପ୍ରାଣ ଛାଡ଼ିଲା ସାରଥି ତା ପଡ଼ିଲା ଭୂମିର ॥
ବିରଥୀ ହୋଇ ଲାଜେ ରାବଣର ସୁତ ।
ଆପଣେ ବାହି ସେ ଘେନିଗଲା ନେଇଂ ରଥ ॥
ଯେସନେକ ସମଏ ଇନ୍ଦ୍ରର ଶଶୁର ।
ପୁଲୋମା ଦଇତ ସେ ଶଚୀର ପିଅର ॥
ସେ ଆସି ରାବଣ ସଙ୍ଗରେ ଯୁଦ୍ଧ କଲା ।
ଅସୁରେ ଅସୁରେ ମାହା ସାଂଗ୍ରାମ ବାଜିଲା ॥୩୦
ଦୁହେଂ ମାୟାଭି ଜାଣନ୍ତି କୂଟଛନ୍ଦ ।
ରଣେ ଅପଜଏ ପାଇଲା ଦଶକନ୍ଧ ॥
ଶରୀରେ କାଣ୍ଡ ଯେ ଅଛଇଂ ତାରଲାଗି ।
ରୁଧିର ବହିବା ଦେଖି ହୋଇଲା ରାଗି ॥
ସାରଥିକି ବୋଇଲା ତୁ ମୋହର ବୋଲ ଶୁଣ ।
ଯେ ଅସୁର ସଙ୍ଗେ ମୁଂ ନ କରଇ ରଣ ॥
ସୁରଗଣଙ୍କର ପ୍ରାଣ ମୁଂ ହରିବି ।
ଇନ୍ଦ୍ର ଦେବତାକୁ ମୁଂ ସମରେ ମାରିବି ॥
ତୁ ଯେବେ ରଥ ମୋର ସେ ବାହା ବେଗକରି ।
ଶୁକ ସାରଣ ମନ୍ତ୍ରୀ ବାହୁ ମେଘନାଦ ରହୁବରି ॥୪୦
ଶୁଣି ଶୁକ ସାରଣେ ବାହିଲେ ଦୁଇ ଯାନ ।
ପବନହୁଂ ବେଗେ ରଥ ଚଳଇ ଘନ ଘନ ॥
ସଙ୍ଗେଣ ରାକ୍ଷସ ବଳ ଅପ୍ରମିତା ।
ଗୋଡ଼ାଇ ବିନ୍ଧୁଅଛି ସେ ପୁଲୋମା ଦଇତା ॥
କୋପେଣ ରାବଣ ଧଇଲା ଧନୁ ସଜେ ।
କୋଟିକାଣ୍ଡ ଯେ ଧଇଲା ବିଂଶଭୁଜେ ॥
ଯତନେ ହେ ଯୁଦ୍ଧ ସେ କରିବ ବୋଲି ଧାଇଁ ।
ନୟନ ବୁଲାଇ ଭ୍ରୂଲତା ଡିଆଇଂ ॥
ପୁଣ ପୁଣ ପ୍ରତିଗ୍ୟାଂ କରଇ ରାବଣ ।
ସବୁ ଦିଗପାଳଙ୍କର ଘେନିମି ଆଜ ପ୍ରାଣ ॥୫୦
ଦଶାନନର ରଡ଼ି ଶୁଣିଣ ସାରଥି ।
ରଥ କଲା ନେଇ ଦେବଙ୍କର କତି ॥
ଦେଖି ସୁରଗଣେ ଇନ୍ଦ୍ରଙ୍କୁ ପଚାରି ।
ଯେ ଯେ ମହାଦୁଷ୍ଟ ଅଟଇ ଦଶଶିରି ॥
ବ୍ରହ୍ମାର ବରେ ଯେ ନୋହେ ପ୍ରାଣ ନାଶ ।
ସ୍ୱର୍ଗେ ଯୁଝୁଅଛି ସାମାନ୍ୟ କି ସାହସ ॥
ଆମ୍ଭର ବୋଲ ତୁମ୍ଭେ ଶୁଣସି ସୁରପତି ।
ବେଢ଼ିଣ ଧରିବା ଆସ ପଉଳସ୍ତିର ନାତି ॥
ଦେବଭଣ୍ଡାରେ ବାନ୍ଧି ଥୋଇଂ ଥିବା ।
କାଳ ହୋଇଲେ ପଛେ ପ୍ରାଣେ ମାରିବା ॥୬୦
ଯେବେ ସଜ ହୋଇ ଆସନ୍ତୁ ସର୍ବସୁର ।
ଶୁଣି ସନମତ କଲାକ ବଜ୍ରଧର ॥
ଦେବଙ୍କର ସନ୍ୟ ରୁଣ୍ଡ ଯେକ ମୁଖ ହୋଇ ।
ସବୁରି ବିଚାର ଧରିବେ ଲଙ୍କସାଇଂ ॥
ତିନିଶ କୋଟି ଦେବେ ଇନ୍ଦ୍ର ଆଗେ ହୋନ୍ତି ।
ଯେକାଦଶ ରୁଦ୍ରେ ଶୂଳ ଧରି ଧାମନ୍ତି ॥
ବାରହ ଆଦିତ୍ୟଙ୍କର କରେ କରବାଳ ।
ଦ୍ୱାଦଶ ବିଶ୍ୱଦେବା ଧରିଛନ୍ତି ଶୂଳ ॥
ସନକାଦି ସହିତେ ସାଂଗ୍ରାମେଣ ଦୀକ୍ଷା ।
ରାବଣକୁ ମାଇଲେ ରହଇ ଆମ୍ଭର କକ୍ଷା ॥୭୦
ଷୋଳହ ଚନ୍ଦ୍ରମା ଯେ ଧଇଲେ ଶକତି ।
ଅଣଚାଶ ପବନ ଗଦା ଧରିଛନ୍ତି ॥
ସପତ ବରୁଣ ସେ ଧଇଲେ ମୋହ ଫାଶ ।
ପଞ୍ଚଅଗ୍ନି ମୁଦ୍ଗର ଧରି ମହାରୋଷ ॥
ଯମ ନଇରୋତ କୁବେର ଈଶାନ୍ୟ ।
ଦକ୍ଷ ଗନ୍ଧର୍ବ କିନ୍ନର ଗୁହ୍ୟକଗଣମାନ ॥
ଯେ ଯାହାର ପ୍ରତିଗ୍ୟାଂ ଦେଖାଇ ରଣେ ପଶି ।
ରାବଣକୁ ଭେଟ ପଡ଼ିଗଲେ ଆସି ॥
ସୁର ଅସୁର ଯୁଦ୍ଧ ବାଜିଲା ମହାଗୋଳ ।
ପଞ୍ଚାଶ କୋଟି ବଂସନ୍ଧରୀ ହୋଇଲା ଟଳମଳ ॥୮୦
ଚିହ୍ନି ମରାମରି ଓପ୍ରୋଧ ନାହିଂ କିଛି ।
ବରଷଣ ପ୍ରାଏ ନାରାଚ ପଡୁଅଛି ॥
ମହା ନିରନ୍ତରେ ପଡ଼ିଲେ ଚଉପାଶ ।
ପାଦଘାତେକ କର୍ଦ୍ଦନ ହେଉଛି ରକ୍ତମାଂସ ॥
ଇନ୍ଦ୍ର ଯେ ଦିବ୍ୟ ରଥ ଚଢ଼ିଥିଲା ।
ଦେଖି ମେଘନାଦ ଧାଇଂଣ ପଡ଼ିଲା ॥
ମାତେଳି ଯେ ତାର ସାରଥିକି ଅଛିମାରି ।
ସେ ରାଗେ ରାବଣି ବିନ୍ଧିଲା ଯତ୍ନକରି ॥
ଖଣ୍ଡ ଖଣ୍ଡ କରିଣ କାଟିଲା ତାର କାଏ ।
ଇନ୍ଦ୍ର ଦେବତା ସହିତେ ଭଏ ପାଏ ॥୯୦

ବାସେବ ବୋଇଲେ ତୁ ଯେଥୁ ବେଗେ ପଳା ।
ମାୟା ଯୁଦ୍ଧ କଲା ରାବଣର ବଳା ॥
ଯେହିକ୍ଷଣି ତୋତେ କରିବ ପ୍ରାଣନାଶ ।
ତୋହର କଷ୍ଟ ଦେଖି ମୋତେ ମହାତ୍ରାସ ॥
ମୁହିଂ ପଛେ ଐରାବତ ଚଢ଼ି ଯୁଦ୍ଧ କରଇ ।
ତୁ ବେଗେ ଯାସି ମୁଂ ତୋର ମରିବାକୁ ଡରଇ ॥
ଶୁଣି ମାତେଳି ରଥ ଘେନିଗଲା ।
ଇନ୍ଦ୍ର ଦେବତା ଯାଇଂ ଗଜ ପିଠିରେ ବସିଲା ॥
କରେ ଦନ୍ତ ଧରି ଝମକିଲା ରାଗେ ।
ଦେଖିଣ ମେଘନାଦ ଉଗାଳିଲା ଆଗେ ॥୧୦୦
ବୋଇଲା ଇନ୍ଦ୍ର ଆରେ ଯିବୁଂ ଆଜ କାହିଁ ।
ଅମରାବତୀ ଆଶ ଛାଡ଼ ଶଚୀସାଇଂ ॥
ଆବର ଅପକ୍ଷରୀ କରିବୁ କି ବଙ୍ଗଭୋଗ ।
ସରିଲା ବିଭୂତି ତୋର ଆକ୍ରଷିଲା ରୋଗ ॥
ଶୁଚି ଦଇତକୁ ମାରିବା ପ୍ରାଏ ମଣୁ ।
ବୃତ୍ର ଅସୁରର ସଙ୍ଗେ ମୋତେ ଗଣୁ ॥
ଯେତେ ବୋଲି ନାରାଚ ମାଇଲା ଘନ ଘନ ।
ଦେବରାଜ ନାରାଚ ବିନ୍ଧଇ ଅବିଛନ ॥
ଶ୍ୱେତ ପର୍ବତ ଜାଣି ଦିଶଇ ଐରାବ୍ରତ ।
ଆଦିତ୍ୟ ମଣ୍ଡଳ ପ୍ରାଏ ମେଘନାଦ ରଥ ॥୧୦
ମନେ ଧରନ୍ତେ ଚଳଇ ଦୁଇଯାନ ।
ବିଷମ ରଣଗୋଳ ବାଜଇ ଘନଘନ ॥
ରାବଣ ଯୁଝୁ ଅଛି ରୁଦ୍ରଗଣ ଦୁଲେ ।
କୁବେର ପ୍ରଶସ୍ତ ସମର ବେନି କଲେ ॥
ପବନ ସଙ୍ଗେ ଯୁଝଇ ବିଭୀଷେଣ ।
ଚାରିମେଘ ଯୁଝନ୍ତି ସୁମାଳୀ ସଙ୍ଗେଣ ॥
କାଳଘଣ୍ଟ ସଙ୍ଗେ ଯୁଝଇ ପନଙ୍ଗ ।
ସାତ ଅସୁରେ ନବଗ୍ରହ ରଣ ରଙ୍ଗ ॥
ଅକମ୍ପନ ବିନ୍ଧଇ ଚନ୍ଦ୍ରମାକୁ ଶର ।
ସୂର୍ଯ୍ୟର ସଙ୍ଗରେ କୁଳୁପାକ୍ଷ ସମର ଘୋର ॥୨୦
କଙ୍କଧଙ୍କ ଅଲୋପି ସଲୋପି ଯେ ଚାରି ।
ନଇରୁତ ଦେବତାଙ୍କୁ ଛନ୍ତି ବେଢ଼ ପାଡ଼ି ॥
ବାର ବିଶ୍ୱଦେବା ମୋହୋଦର ଦତ୍ୟ ସଙ୍ଗେ ।
କାଳଘଣ୍ଟ ଯୁଝଇ ଅଙ୍ଗାର ପନଙ୍ଗେ ॥
ନବଗ୍ରହ ସମର କରନ୍ତି ମହାଟାଣ ।
ଧୂମାକ୍ଷର ସଙ୍ଗେ ବଢ଼ିଲା ମହାରଣ ॥
ଯେଗୋର କରଣ ସଙ୍ଗରେ ଯୁଝଇ ଥୁଳୁଯଂଘା ।
ରଶ୍ମିକେତୁ ସତାଇଶ ଯୋଗରଣ ରଙ୍ଗା ॥
ନିକୁମ୍ଭ ଯୁଝୁଅଛି ସାତବୀରଙ୍କ ଦୁଲେ ।
ପନ୍ଦର ତିଥି କୁମ୍ଭ ସଙ୍ଗତେଣ ଯୁଦ୍ଧ କଲେ ॥୩୦
ଖର ଦତ୍ୟକୁ ଯେ ଉଗାଳିଲା ବରୁଣ ।
ଚିତ୍ରସେନ ସଙ୍ଗେ ଯୁଝଇ ଧୂଷଣ ॥
ମିତ୍ରଘନ ସଙ୍ଗେ ଜୟନ୍ତସେନ ଯୁଝି ।
ରଣଗୋଳ ଧନ୍ଦୋଳ ରଣଝଣ ବାଜି ॥
ଦକ୍ଷ ଗନ୍ଧର୍ବ କିନ୍ନର ବିଦ୍ୟାଧର ।
ଯମଗଣ କାଳଗଣ ରୁଦ୍ରଗଣ ଅପାର ॥
ମୃତୁଦେବତା ସହିତେ ଯୁଦ୍ଧ କରି ।
ରାବଣ ପୋଏ ତାଙ୍କୁ ବେଢ଼ିଣ ଶସ୍ତ୍ରମାରି ॥
ସୂର୍ଯ୍ୟଗଣ ଚନ୍ଦ୍ରଗଣ ନଇରୁଣଗଣ ।
ଗ୍ରହଗଣ ପିଚାଶଗଣ ଉଡ଼ଙ୍ଗ ଅପ୍ରମାଣ ॥୪୦
ଅସୁରଙ୍କର ସଙ୍ଗରେ କରନ୍ତି ସମର ।
ରାକ୍ଷାସଙ୍କର ପ୍ରତିଜ୍ଞା ଅତି ଅଗୋଚର ॥
ଦନୁଜ ଦଇତ ଦାନେବ ବଳବନ୍ତା ।
ଛତିଶ ଜାତି ଅସୁର ସକଳ ତହିଂଥାନ୍ତା ॥
ଅନେକ କପଟେ ସେ ଜାଣନ୍ତି ଯୁଦ୍ଧକରି ।
ନୋହିଲେ କେମନ୍ତେ ଗଲେ ବ୍ରହ୍ମାଣ୍ଡ ଆବୋରି ॥
କରନ୍ତି ଯୁଦ୍ଧ ଯେ ନ କରନ୍ତି ଭଏ ।
ବେଳୁବେଳ ସମର ଅପ୍ରମାଣ ହୋଏ ॥
ଖଣ୍ଡା ସାବେଳି ନାକିଆ ତୀଖ୍ୟ ଭାଲ ।
ଉପରେଣ କାଣ୍ଡ ପଡ଼ନ୍ତି ପଲ ପଲ ॥୫୦
ଦୁଇ ଚତୁରାଙ୍ଗ ବଳ ସମ ସରି ।
ପରିଘାଇ ସମର କରନ୍ତି ବଜ୍ରଧାରୀ ॥
ମେଘନାଦ କୁମର ଇନ୍ଦ୍ରକୁ ନ ଡରଇ ।
ଯେସନେକେ କୁଅରେ ହାରିଲେ ବହୁତ କରି ଆଡ଼ଇଂ ॥
ତେସନେ ବାଣ ବେଳୁବେଳ ବଢ଼ା ।
ବାଜନ୍ତି ଘୁମୁରା ଦୁନ୍ଦୁଭି ଚାଙ୍ଗୁ କଡ଼ା ॥
ଇନ୍ଦ୍ର ଅଏରାବ୍ରତ ମେଘନାଦର ରଥ ।
ଦୁହେଂ ଧନୁଶସ୍ତ୍ର ଧରିଛନ୍ତି ହାଥ ॥
କରନ୍ତି ସମର ସେ ବଢ଼ିମାପଣ ରଖି ।୬୦
ପରିଘ ଶକତି ମାରନ୍ତି ଦେହ ରଖି ॥
ମର୍ମ ସ୍ଥାନକଇ ବସାଇଲା କାଣ୍ଡ ।
ମନ୍ତ୍ରିଣ ବିନ୍ଧନ୍ତି ହାକିଂଣ ପ୍ରଚଣ୍ଡ ॥
କାଣ୍ଡ ରଡ଼ି ଗୁଣ ଟଙ୍କାର ଧ୍ୱନିଟାଣ ।
ନିର୍ଘାତ ପ୍ରାଏ ପଡ଼ଇଂ ଯେକୁଯେକୁ ବାଣ ॥
ଆକାଶ ପୂରିଲା ନାରାଚ ଗହଳେ ।
ମେଘନାଦ ସମର କରଇ ବାହୁବଳେ ॥
ଦେଖି ଇନ୍ଦ୍ରଦେବ ବଜ୍ରେକ ମାଇଲା ।
ଶକତି ପେଷି ତାହା ରାବଣି ଛିନାଇଲା ॥
ପୁଣି ଶତେକ ନାରାଚ କୋପେ ଇନ୍ଦ୍ର ମାରି ।
ମନ୍ଦୋଦରୀ ପୁତ୍ର ଘାଏଣ ପ୍ରାଣ ହାରି ॥୭୦
ପୁଣି ଚେତିଣ ଯେ ମାଇଲା ତୀକ୍ଷବାଣ ।
ଇନ୍ଦ୍ର ଛେଦିଲା ତାହା ବାବଲ ପେଷିଣ ॥
ଲଜ୍ୟା ପାଇଲାକ ଦଶଗ୍ରୀବ ପୁଅ ।
ମାୟା ସାଂଗ୍ରାମ ଅଦୃଶ୍ୟ କଲା ଭୂଅ ॥
ନିବିଡ଼ ଅନ୍ଧାର ନ ଦିଶଇ କିଛି ।
ଦିନମଣି ଶସ୍ତ୍ର ବିନ୍ଧଇ ଇନ୍ଦ୍ର ବାଛି ॥
ରଜନୀ ପାହିଲା ଦିଶିଲା ସମର ।
ଉଡ଼ନ୍ତି କାଣ୍ଡମାନେ ପବନହୁଂ ଖର ॥
ଯେଣୁ ତେଣୁ ଆତଯାତ ହୋନ୍ତି ଘନଘନ ।
ତେଢ଼େ ସ୍ୱର୍ଗ ଗୋଟା ହୋଇଲା ଉଚ୍ଛନ ॥୮୦
ଅସୁରେ ପରିଘାଇ ମାରନ୍ତି ନିଠିଆଇଂ ।
ସବୁ ଦେବତାଏ ପଛକୁ ପଳାଇ ॥

ବିଭୀଷେଣ ସମରକୁ ଶଙ୍କର ଭଏ କଲା ।
ରାବଣ ନାରାଜକୁ ଯମହିଂ ଡରିଲା ॥
ଅସୁରେ ମରିବାକୁ ନ କରନ୍ତି ଭଏ ।
ସହି ଯୁଝୁଛନ୍ତି ନ ଘୁଞ୍ଚନ୍ତି ପଏ ॥
ଇନ୍ଦ୍ର ମେଘନାଦର ବିଷମ ମାହା ଦ୍ୱନ୍ଦ୍ୱ ।
ଆମୋହ ବଜ୍ର ଧରି ମାଇଲାକ ଇନ୍ଦ୍ର ॥
ମନ୍ଦୋଦରୀ ପୁତ୍ର ବାଜିଣ ମୋହଗଲା ।
ପୁଣି ଚେତି ଉଠି ଶକତି ମାଇଲା ॥ ୯୦
ବାସେବ ଛେଦିଲା ତା' କିଂଚିତ ଶରକରି ।
ପୁଣି ଅନେକ ଶର ଧଇଲା ଇନ୍ଦ୍ରର ଅଇରି ॥
ବୁଲାଇ ମାଇଲା ତାହା ହସ୍ତୀର କୁମ୍ଭସ୍ଥଳେ ।
ଗର୍ଜ୍ଜଣ ଉଠିଲା ଗଜ ପ୍ରାଣର ବିକଳେ ॥
ମେଘନାଦ ସହିତେ ଡରିଲେ ତାହାଶୁଣି ।
ଆରଣ ଲଗାଇଂ ଲକ୍ଷିଲେ ବଜ୍ରପାଣି ॥
ବେଗେ ଧାଇଂଲାକ ହସ୍ତୀ ଯୋଧାର ବଚନେ ।
ମାରନ୍ତେ ମେଘନାଦ ଉଡ଼ିଲା ଗଗନେ ॥
ରଥୀ ସହିତେଣ ସାରଥି ଘେନିଗଲା ।
ଲାଙ୍ଗେଣ ଅଇରାବ୍ରତ ବାହୁଡ଼ି ଅଇଲା ॥
ଉପରେ ରହି ଦତ୍ୟ ମାଇଲା ମୁଦୁଗର ।
ମୁଣ୍ଡେ ବାଜି ବ୍ୟଥା ପାଇଲା ବଜ୍ରଧର ॥
ଆକାଶେ ଥାଇ ବୀର ଶର ବୃଷ୍ଟି କଲା ।
ଅଇରାବ୍ରତ ରୋମେକେ ନାରାଜ ମାଇଲା ॥
ଗଜକୋନ୍ତ ଘେନିଣ ହାଣଇ ବକ୍ଷସ୍ଥଳ ।
ଫୁଟିଣ ରକତ ବାହାର ଖଳ ଖଳ ॥
ଶ୍ୱେତ ପର୍ବତ କି ଗେରୁରେ ଘୋଟିଦେଲା ।
ରୁଧିରେ ମାହାଗଜ ତେସନ ଦିଶିଲା ॥
ଘାଏ ମଉଗଜ ଫୁ ଫୁ କାର କରି ।
ଆକାଶକୁ ବିକ୍ରମି ମାଇଲା ଦନ୍ତଚାରି ॥ ୧୦
ଜାଣିଣ ରାବଣି ତଳକଇ ଖସି ।
ସୁରଗଣନ୍ତ ନାଶଇ ସାଂଗ୍ରାମେଣ ପଶି ॥
ହସ୍ତୀ ଉଡ଼ନ୍ତେଣ ଶକତି ମାଇଲା ।
ଦେଖି ଅଏରାବ୍ରତ ଥୋର ହସ୍ତେ ଧଇଲା ॥
ଇନ୍ଦ୍ରର ହାଥକୁ ବଢ଼ାଇ ଦେଲା ତାହା ।
ସେ ଶସ୍ତ୍ର ମେଘନାଦକୁ ମାଇଲା ଶଚୀନାହା ॥

ଭୂମିରେଣ ଦତ୍ୟ ଲୁଚାଇଲା ରଥ ।
ତେଡ଼େ ଶକତି ଗୋଟା ହୋଇଲା ବିଅର୍ଥ ॥
ଭୂମିରୁ ବାହାର ହୋଇ ଶୂନ୍ୟେ ଲୁଚାଦେଲା ।
ସହସ୍ରେ ତୀକ୍ଷଣର ଅନ୍ତରୀକ୍ଷେ ମାଇଲା ॥ ୨୦
ସେହ୍ନା ଫୁଟି ଇନ୍ଦ୍ର ଦେହେ ବାଣ ପଶି ।
କଣ୍ଟା ବୃକ୍ଷ ଗୋଟା ଯେସନେକ ଦିଶି ॥
ରାଗେ ବଜ୍ରଧର ପିଟିଲା ଗୁରୁଜ ।
ଅନ୍ତରୀକ୍ଷେ ପଳାଇଲା ରାବଣ ତନୁଜ ॥
ପୁଣିହିଂ ଛାମୁରେ ମିଳିଲାକ ଯାଇଂ ।
ତୀକ୍ଷ ଭାଲେକ ପୁଣି ମାଇଲା ନିଠିଆଇଂ ॥
ଶଚୀପତି ତାହା ନ ପାରିଲା ଜାଣି ।
ଅଏରାବ୍ରତ ଥୋର ଫୁଟିଲା ଯେଣି ତେଣି ॥
ଇନ୍ଦ୍ରର ମାରନ୍ତେଣ ଲୁଚିଲା ଯାଇଂ ପଛେ ।
ଧାଡ଼ିକାର ତୀକ୍ଷଶର ମାଇଲାକ ଲକ୍ଷେ ॥ ୩୦
ବାସେବର ଶରୀର ହୋଇଲା ବିଦାରି ।
ଅଏରାବ୍ରତ ଗଜକୁ ମୂଷଳେକ ମାରି ॥
ଚିତାରେଣ ବାଜି ହସ୍ତୀ ମୋହ ଗଲା ।
ଦେଖି ମେଘନାଦ ସିଂହ ରଡ଼ି କଲା ॥
ଇନ୍ଦ୍ରକଇ ନେଇଣ ମାଇଲା ଶକତି ।
ପୁଣି ମୁଦୁଗର ମାଇଲାକ ଧାତି ॥
ଦୁଇ ଆୟୁଧ ଇନ୍ଦ୍ର ଦେହେ ପାଇଂ ।
ହସ୍ତୀର କନ୍ଧରେ ବାସବ ମୋହ ଯାଇ ॥
ଦେଖି ରାବଣ ସୁତ ରଥରୁ ଓହ୍ଲାଇଲା ।
ଅଇରାବ୍ରତ କନ୍ଧୁ ଇନ୍ଦ୍ରକୁ ଧରିନେଲା ॥ ୪୦
ନିବିଡ଼ ବାନ୍ଧେଣି ବାନ୍ଧିଲାକ ରାଗେ ।
ବିବୁଧ ଗଣ କେହି ନ ରହିଲେ ଆଗେ ॥
ଇନ୍ଦ୍ରକୁ ଜିଣିଣ ବୀର ଜଏ ଶଙ୍ଖ ବାଇଂ ।
ପିତାକୁ ବୋଇଲା ତୁ ଶୁଣ ଲଙ୍କସାଇଂ ॥
ଯେବେତ ଇନ୍ଦ୍ର ରାଜା ହୋଇଲାକ ବନ୍ଦୀ ।
ଯେକାମାତ୍ର ଉବୁରି ଅଛଇ ଗୋବିନ୍ଦି ॥
ଯେବେ ତୁ ଭୋ ପିତା ତୈଲୋକ୍ୟ ଭୋଗକର ।
ଚଉଦ ଭୁବନେ କଥା ରହିଲା ତୋହୋର ॥
ଶୁଣି ଦଶଗ୍ରୀବ ପରମ ତୋଷ ମନ ।
ସାବଧାନ ହୋଇ ମାରଇ ଦେବସନ୍ୟ ॥ ୫୦

ଯେତେବେଳେ ଇନ୍ଦ୍ର ପଡ଼ିଲାକ ରଣେ ।
ଭୟେ ବୃନ୍ଦାଅର୍କମାନେ ପଳାଇଲେ ଯେଣେ ତେଣେ ॥
ରାବଣ ଛାମୁରେ ମିଳନ୍ତା ନାହିଂ କେହି ।
ବରୁଣ କୁବେର ଗଲେକ ପଳାଇ ॥
ଯମ ନଇରତ ଆବର ଦେବଗଣମାନ ।
ସନକାଦି ବିଶ୍ୱେଦେବା ପଞ୍ଚ ହୁତାଶନ ॥
ଅଷ୍ଟବସୁ ଚନ୍ଦ୍ର ସୂର୍ଯ୍ୟ ପଳାଇଲେ ।
ତେଡ଼େ ସନ୍ୟ ଗୋଟା କ୍ଷଣକେ ମିଳାଇଲେ ॥
ବ୍ରହ୍ମା ତହିଂ ଯାଇଂ ପଶିଲେ ଶରଣ ।
ରଖ ରଖ ପିତାମହ ଜଗତଉଧାରଣ ॥ ୬୦
ରାବଣର ଭଏ ଲାଗିଲା ଗୋସାଇଂ ।
ଇନ୍ଦ୍ରକୁ ବାନ୍ଧିଣ ନେଲା ରଥରେ ପକାଇଂ ॥
ମେଘନାଦ ନାମେ ରାବଣର ସୁତ ।
ମାୟା ସାଂଗ୍ରାମ ସେ କଲାକ ବହୁତ ॥
ବିଷମ ରୋଳ କରି ଇନ୍ଦ୍ରକୁ ମାଇଲା ।
ହସ୍ତୀର କାନ୍ଧେ ସୁରପତି ମୋହ ଗଲା ॥
ବଳେ ବାନ୍ଧି ଘେନି ଯାଉଅଛି ଯେବେ ।
ଆମ୍ଭେ ପଳାଇଲୁ ଇନ୍ଦ୍ରର ଅଭାବେ ॥
ଶୁଣି ପିତାମହ ବୋଇଲେ ତୁମ୍ଭେ ରହ ।
କ୍ଷଣେ ବିଶ୍ରାମିବା ଭାକୁ ତାର କୋହ ॥ ୭୦
ଲଙ୍କାକୁ ଯାଉ ସେ ଆଣିମା ମୁକୁଳାଇ ।
ବ୍ରହ୍ମା ବଚନେ ଦେବେ ରହିଲେ ତୁଷ୍ଟ ହୋଇ ॥
ଯେଥୁ ଅନନ୍ତରେ ଦଶଗ୍ରୀବ ରାଏ ।
ପୁତ୍ରକୁ ଚାହିଂ ପ୍ରଶଂସା ବହୁତ କଏ ॥
ଭୋ ପୁତ୍ର ମେଘନାଦ ମହିମା ତୋର ଧନି ।
କିଞ୍ଚିତ ଯୁଦ୍ଧ୍ୟେ ଜିଣିଲୁ ସହସ୍ରଯୋନି ॥
ତିନିପୁରେ ତୋତେ ନାହିଂ ବଳୀଆର ।
ଚଉଦ ଭୁବନେ ତୁ ଯେକାଏ ଧନୁର୍ଦ୍ଧର ॥
ଜଗତେ ବିଦ୍ୟମାନ ହୋଇଲୁରେ ବାବୁ ।
ଇନ୍ଦ୍ରକୁ ଜିଣିଲାରୁ ହୋଇଲା କାର୍ଯ୍ୟ ସବୁ ॥ ୮୦
ଚାଲ ଯେବେ ଆମ୍ଭେ ନିଜ ପୁରକୁ ଯିବା ।
ସ୍ୱର୍ଗ ସମ୍ପଦ ଯେ ଲଙ୍କାକୁ ବୁହାଇବା ॥

ଯେତେ ବୋଲି ଅମରାବତୀ ପୁର ଚୂର
କଲେ ।
ଦତ୍ୟଙ୍କ ବିଚାରେ ଯିସ ଯୋଗାଇଲା
ତାହାନେଲେ ॥
ଅପକ୍ଷରୀ କିନ୍ନରୀ ବିଦ୍ୟାଧରୀମାନ ।
ପାରିଜାତେକ ପୁଷ୍ପ ମଳୟ ଚନ୍ଦନ ॥
ଅମଳାନ ବସ୍ତ୍ର ଷାଠିଏ ବାନି ସୁନା ।
ଦେବ ଭଣ୍ଡାର କେ କରିବ ଗଣନା ॥
ସୁରଭି ସହିତେଣ ସର୍ବ ଘେନିଗଲେ ।
ଇନ୍ଦ୍ର ଦେବାର୍ଚ୍ଚନ ଦେବ ତାହିଂ
ନେଲେ ॥୯୦
ମେଢ଼ ମଣ୍ଡୋପ ଭାଙ୍ଗିଲେ ଜଗତୀ ।
ବୀରତୂର ବଜାଇ ବାହୁଡ଼ିଣ ଯାନ୍ତି ॥
କୂର ପଦାର୍ଥକୁ ବିଭୀଷେଣ କରେ ରକ୍ଷା ।
ସ୍ୱଭାବେ ତ ଲଙ୍କାରେ ଭଣ୍ଡାର ପରିଛା ॥
ବୋଝ ଭାର କରି ବୁହାଇଣ ନେଲେ ।
ସ୍ୱର୍ଗର ସମ୍ପଦ ଲଙ୍କାରେ ଠୁଳ କଲେ ॥
ଇନ୍ଦ୍ର ଦେବତାଙ୍କୁ ଘେନିଗଲେ ଧରି ।
ଆବର ହିଂ ଅଇରାବ୍ରତ ଆଦି କରି ॥
ବୀର ତୂର ବଜାଇ ଲଙ୍କାରେ ଯାଇ
ହେଲେ ।
ଥିଲା ଲୋକେ ପୁରେ ଉଚ୍ଛବ
କରାଇଲେ ॥୧୦୦
ରାବଣ ନବରେ ହୋଇଲେ ପ୍ରବେଶ ।
ଭଣ୍ଡାରେ ଥୁଆଇଲେ ବିବିଧ ରତ୍ନବାସ ॥
ଇନ୍ଦ୍ରକୁ ରାଇଲେ ଅତି ଯତ୍ନ କରି ।
ପୁତ୍ରକୁ ଗଉରୋବ କଲା ଦଶଶିରି ॥
ଆପଣେ ଚନ୍ଦନ ଲେପି ପୁଣ ରତ୍ନ ଲାଇଂ ।
ସମ୍ପଦ କରି ତାକୁ ଘରକୁ ପଠିଆଇଂ ॥
ଯେସନେକ ସମଏ ଆଇଲେ ପଦ୍ମଯୋନି ।
ସଙ୍ଗେଣ ସକଳ ବିବୁଧଗଣ ଘେନି ॥
ଲଙ୍କାରେ ପରବେଶ ଦେଖିଲେ ଦଶମଥା ।
ବିଭୀଷେଣ ଅଇଲା ପାଇଣ ବାରତା ॥୧୦
ମେଘନାଦ ସହିତେଣ ମିଳିଲେକ ଆସି ।
ବ୍ରହ୍ମାର ଚରଣେ ରାବଣ ମୂର୍ଦ୍ଧୁନି ନିବେଶି ॥

ଧାତା ବୋଇଲେ ତୁ କଲ୍ୟାଣ ହୋଇଥାଅ ।
ଚଉଦ ଭୁବନେଣ ବିପୁଳ ଭୋଗ ପାଅ ॥
ଧନ୍ୟ ଧନ୍ୟ ଦଶଗ୍ରୀବ ଧନ୍ୟ ତୋର ପୁଣ୍ୟ ।
ତୋ ତହୁଂ ବଳୀଆର ହୋଇଲା ତୋର
ନାନ ॥
ତ୍ରୈଲୋକ୍ୟ ଯାକ ଦେଖିଲେ ଯେହାର
ବଳ ।
ଯେକାଏ ଜିଣିଲାଏ ଦଶଦିଗ ପାଳ ॥
ଆଜ ସେ ପ୍ରତିଗ୍ୟାଂ ହୋଇଲା ତୋର ସାଚା ।
ମହତ ପ୍ରାଣୀଙ୍କର ଅଟଇ ଯେ ବାଚା ॥୨୦
ପୂର୍ବେ ଯେ ବୋଇଲୁ ମୁଂ ଜିଣିମି ତିନିପୁର ।
ଲଙ୍କାକଇ ଜିଣି ଆଣିମି ସୁରେଶ୍ୱର ॥
ସେ କଥା ଆଜ ହୋଇଲାରେ ବାବୁ ।
ଅପୂର୍ବ ସାଂଗ୍ରାମ କଲ ଆଜି ସବୁ ॥
ମନେ ମନେ ଆନନ୍ଦ ହୋଇଲୁ ସୁଖ ପାଇଂ ।
ବିଚାରିଲୁ ରାବଣକୁ କ୍ଷତ୍ରୀ ସମ ନାହିଂ ॥
ସନ୍ତୋଷ ହୋଇଣ ଦେଇଂ ଅଛି ବର ।
ଚଉଦ ଭୁବନେ ତେଜ ଲାଗିବ ତୋହୋର ॥
ଯେଯେ ସୁକୁମାର ତନଏ ମେଘନାଦ ।
ଯେହାକୁ ଦେଲି ମୁଇଂ ଇନ୍ଦ୍ରଜିତ ପଦ ॥୩୦
ଆଜୁ ଇନ୍ଦ୍ରଜିତ ବୋଲି ବୋଲିବେ ସକଳ
ପୁରେ ।
କଥା ଏକ ମାଗିବି ମୁଂ ଦେବୁସି
ମୋହୋରେ ॥
ଇନ୍ଦ୍ରକୁ ଜିଣି ଯେ ଆଣିଲ ବଳେ ଧରି ।
ତୁମ୍ଭର ମନକଲେ ପକାଇବ ମାରି ॥
ମଲାର ପ୍ରାଣୀ ସେ ହୋଇଲାକ ଯେବେ ।
ତୁମ୍ଭର ତହିଂ ବନ୍ଦୀ ପଡ଼ିଲାନି ଯେବେ ॥
ମୁହିଂ ମାଗୁଅଛି ଛାଡ଼ିଦିଅ ତାହା ।
ଆଜୁଂ ଭଗତି ତୋତେ ହୋଇବ ଶଚୀନାହା ॥
ଯେବେ ତୁମ୍ଭ ଆଗ୍ୟାଂ ପ୍ରମାଣେଣ ଥିବ ।
ତୁମ୍ଭେ ଯାହା ବୋଲିବ ସେ ତାହା
କରିବ ॥୪୦
ବ୍ରହ୍ମା ବୋଲ ଶୁଣି ବୋଇଲା ରାବଣୀ ।
ତୁ ଯେ ପ୍ରସନ୍ନ ମୋତେ ହୋଇଲୁ କୁଶପାଣି ॥

ଦେସି ଅମର ବର ମୋତେ କଥା ତୋର
ରହୁ ।
ଯେତେକ ବର ମାଗଇ ଭୋ ପ୍ରହୁ ॥
ବ୍ରହ୍ମା ବୋଇଲେ ତୁ ନ ଜାଣୁ ମେଘନାଦ ।
ମୁହିଂ ଯେ ଦେଲି ତୋତେ ଇନ୍ଦ୍ରଜିତ ପଦ ॥
ବେଦ ପୁରାଣେ କାଳେ କାଳେ ଥିବ ।
ଯେ ତୋହୋର କୀରତି ଯୁଗେ ଯୁଗେ
ରହିବ ॥
ବୋଇଲୁ ଯେ ଅମର ବର ଦେବା ପାଇଂ ।
ମଞ୍ଚେ ଜନ୍ମିଲେ କେହି ଅମର ହୋଇ
ନାହିଂ ॥୫୦
ବିଷ୍ଣୁ ହିଂ ଦଶରୂପ ହୁଅନ୍ତି ଦେହ ଛାଡ଼ି ।
ମୃତ୍ୟୁପୁର ଲୋକଙ୍କୁ ଲାଗଇ ଯମ ଧାଡ଼ି ॥
ଦଶଦିଗ ପାଳେ ଜନ୍ମିଲେ ମରନ୍ତି ।
ଭାଗ୍ୟ ଅନୁରୂପେ କୀରତି ରୁହାନ୍ତି ॥
ତୁହୋ ଇନ୍ଦ୍ରଜିତ ନ ଜାଣୁହୋ କିଛି ।
କାଳେକ ଜୀଇଂଥିଲେ କେବଳ ସୁଖ ଅଛି ॥
ସମଏକ ବାଳେକ ସମଏକ ଯୁବା ହୋଇ ।
ଅନେକ କାଳ ବୃଦ୍ଧା ହେଲେ ଦୁଃଖ ପାଇ ॥
କ୍ଷତ୍ରୀ ହୋଇ କିମ୍ପା ମରଣକୁ ଭଏ ।
ଉଭଏ କୁଳ ସୁଖୀ କ୍ଷତ୍ରୀର ତନଏ ॥୬୦
ଆପଣେ ମାରିବ ମରିବ ପର ହାଥେ ।
ତାହାର ତେଜକଇ ଡରନ୍ତି ବିଶ୍ୱନାଥେ ॥
ତୁହୋ ମେଘନାଦ କ୍ଷତ୍ରୀଅ ଅଚାର୍ଗଳ ।
ଅମର ଗଣ ଜିଣିଲୁ ବାଳୁତ ମତି ବାଳ ॥
ତୋତେ ଅମର ବର ଅପୂର୍ବ ନୁହଇଂ ।
ଅମରପତିକି ତୋହୋରେ ଜିଣି ହୋଇ ॥
ଶୁଣିଣ ଇନ୍ଦ୍ରଜିତ ପ୍ରବୋଧ ହୋଇଲା ।
କର ଦୁଇ ଯୋଡ଼ି ବ୍ରହ୍ମାକୁ ବୋଇଲା ॥
ଭୋ ପିତାମହ ମାଗଇ ଯେକ ବର ।
ଯାଗ କରିଣ ତୋଷିବି ବୈଶ୍ୱାନର ॥
ପୂର୍ଣ୍ଣ ଆହୁତି ଦେଇ କାଢ଼ିବଇଂ ରଥ ।
ତହିଂ ବସି ଯୁଝିଲେ ଜିଣିମି ଜଗତ ॥
ଅସ୍ତୁ ହେଉ ବୋଲି ବିଧାତା ବୋଇଲା ।
ଶୁଣି ଇନ୍ଦ୍ରଜିତ ଆନନ୍ଦ ହୋଇଲା ॥

ବନ୍ଧନ ଫେଡ଼ିଣ ଇନ୍ଦ୍ରକୁ ଅଣାଇଲା ।
ଶ୍ରୀରାମ ଆଗେ ଯେହା ଅଗସ୍ତି କହିଲା ॥
ବ୍ରହ୍ମାର ଗୋଚରେ ସମର୍ପିଲା ନେଇ ।
ରାବଣ ବୋଇଲା ବିଧାତାକୁ ଚାହିଁ ॥
ଭୋ ପିତାମହ ଶୁଣ ମୋର ବୋଲ ।
ସବିହେଂ ଆସି ଯେବେ ଇନ୍ଦ୍ରକୁ
ଛଡ଼ାଇଲ ॥୮୦
ନିଶ୍ଚଏ ଯେହାକୁ ମୁଂ ମାରିବାକୁ କରିଥିଲି ।
ତୁ ମୋର ପିତା ତୋ ଆଗ୍ୟାଂରେ ଛାଡ଼ିଲି ॥
ଯଦ୍ୟପି ଛାଡ଼ିଲି କଥାଏ ମୋର କର ।
ଯେ ମୋର ବସ୍ତ୍ର ଧୋଇବ ବୈଶ୍ୱାନର ॥
ଚନ୍ଦ୍ର ମୋର ନିତ୍ୟେ ରାନ୍ଧିବ ମଣୋହି ।
ପାହାନ୍ତି ପଢ଼ିବୁ ବେଦ ଆସି ତୁହି ॥
ଇନ୍ଦ୍ର ବସିବ ମୋର ଦ୍ୱାରପାଳ କତି ।
ଜଉତିଷ ପାଞ୍ଜି କହିବ ବୃହସ୍ପତି ॥
ପବନ ଦେବତା ମୋତେ ଢାଳିବ ଚାମର ।
ନାରଦ ଯନ୍ତ୍ର ଧରି ବଜାଇବ ଛାମୁର ॥୯୦
ତିମ୍ବୁର ଆଳାପ କରିବ ମୋର ଆଗେ ।
ଅଶ୍ୱିନୀ କୁମାରେ ଥିବେ ମୋର ସଙ୍ଗେ ॥
ରମ୍ଭା ତାଳ ଧରି ଗାଇବାକ ଗୀତ ।
ଅପକ୍ଷରୀମାନେ କରିବେକ ଆସି ନୃତ୍ୟ ॥
ଦେବ ଦକ୍ଷ ଗନ୍ଧର୍ବ କିନ୍ନର ବିଦ୍ୟାଧର ।
ସମସ୍ତେ ସେବା କରିଥିବେ ଲଙ୍କପୁର ॥
ଯେତେବେଳେ ଯିହଂକି ହୋଇବ ମୋର
ମନ ।
ତେତେବେଳେ ସେ ପଦାର୍ଥ ହୋଇବ
ଉତପନ ॥
ତୈଲୋକ୍ୟେ ଅଜଏ ହୋଇବଇଂ ମୁହିଂ ।
ମୋତେ ପ୍ରତିକକ୍ଷ ନୋହିବାକ
କେହି ॥୧୦୦
ଯେ ବର ଦେବୁ ମୋତେ ଯେବେ ତୋର
ଦୟା ।
ମୁହିଂ ତୋର ପୁତ୍ର ନକର ମୋତେ ମାୟା ॥
ଶୁଣି ବିଧାତା ବୋଇଲେ ଅସ୍ତୁ ହୋଉ ।
ବ୍ରହ୍ମାଣ୍ଡ ଭିତରେ ଜିଣନ୍ତା ତୋତେ ନୋହୁ ॥

ଇନ୍ଦ୍ର ସହିତେ ଯେବେ ଐରାବତ ଛାଡ଼ ।
ଅପକ୍ଷରୀମାନେ ପୀଡ଼ା ପାଇଲେ ମାହାଗାଢ଼ ॥
ଗନ୍ଧର୍ବ ବିଦ୍ୟାଧର ଯେମାନେ ହେଂ ଯାନ୍ତୁ ।
ଦେହ ସୁସ୍ଥ କରି ପଛେଣ ଆସନ୍ତୁ ॥
ଦେବ ଭଣ୍ଡାରୁ ଆଣିଲୁ ବହୁତ ଧନ ।
ତାହା ତୁ ଯେ ସୁଖେ ବିଳସ ଦଶାନନ ॥୧୦
ଶୁଣି ଲଙ୍କେଶ୍ୱର ସନ୍ତୋଷ ହୋଇଲା ।
ବ୍ରହ୍ମାର ଗୋଚରେ ସମସ୍ତ ଆଣିଦେଲା ॥
ଇନ୍ଦ୍ରକୁ ମୁକୁଳାଇ ଆସିଲା ବିଧାତା ।
ବିଭୀଷେଣକୁ ରାଇ କହନ୍ତି ଗୁପ୍ତକଥା ॥
ଶୁଣ ଦଶାନନ କନେଷ୍ଟ ସହୋଦର ।
ଇନ୍ଦ୍ରର ଦୋହୋରା କଲ ତୁମ୍ଭେ କ୍ରୁର ॥
ତହିଁ ଅଛନ୍ତି ଅନନ୍ତ ପୁରୁଷୋତ୍ତମ ପ୍ରତିମା ।
ତାହାକୁ ସେବାକରି ହୋଇଲି ମୁଂ ବ୍ରହ୍ମା ॥
ପ୍ରସନ୍ନ ହୋଇଣ ଇନ୍ଦ୍ରକୁ ତାହା ଦେଲି ।
କଶ୍ୟପର ପୁତ୍ରକୁ ଦେବରାଜା କଲି ॥୨୦
ପଦ୍ମନାଭ ପ୍ରତିମା ସେ ବିଷ୍ଣୁ ପତି ।
ସୁଖେ ବିଳସିଲା ଅମର ବାରସ୍ତୀ ॥
ସେ ଦେବ ପ୍ରତିମା ଯେ ଲଙ୍କାକୁ ଆଣିଲ ।
ଯହୁଂ ସୁରଗଣଙ୍କୁ ଧରିଣ ଜିଣିଲ ॥
ତୁ ସେ ଦେବତାଙ୍କୁ ପୂଜା କର ନେଇ ।
ଅମର ହୋଇବୁ ତୁ ମୃତ୍ୟୁ ତୋତେ ନାହିଁ ॥
କାଳେ ଲଙ୍କାରେ ହୋଇବୁ ତୁ ରାଜା ।
ସକଳ ଅସୁରେ କରିବେ ତୋତେ ପୂଜା ।
ଅନନ୍ତ ପୁରୁଷୋତ୍ତମ ସେବା କରିଥିବୁ ।
ଯେହି ଦେହେ ନିଦା ବିଷ୍ଣୁଙ୍କୁ ଦେଖିବୁ ॥୩୦
ସେ ଦେବତା ତୋର ତହିଁ ଥୋକାଏ କାଳ
ଥିବେ ।
ଶ୍ରୀହରି ରାମ ରୂପେ ଅବତାର ହୋଇବେ ॥
ଲଙ୍କାକୁ ଆସିବେ ମାଗିବେ ତୋତେ ପ୍ରୀତି ।
ତୁ ତାହା ସମର୍ପିବୁ ନାରାଏଣ କତି ॥
ସେ ପ୍ରତିମା ନେଇ ଜମ୍ୱୋଦ୍ୱୀପେ
ଥୋଇବେ ।
ଶ୍ରୀପୁରୁଷୋତ୍ତମେ ନେଇ ପୂଜା କରାଇବେ ॥
କଳପ ବଟ ତଳେ ଶୁଆଇବେ ନେଇ ।

କାଳେ ସଂହରିବେ ନିଜ ଦେହ ନେଇ ॥
ତୁ ଯେବେ ବିଭୀଷେଣ ପୂଜା କର ତାହା ।
ବିଷ୍ଣୁର ଦୟାରେ ତୁ ହୋଇବୁ
ଲଙ୍କନାହା ॥୪୦
ରାବଣ ନ ଜାଣିମ ନେମୁ ସେ ଗୁପତେ ।
ଦେବାର୍ଚ୍ଚନ ନବରେ ଥିବାକ ସଙ୍ଗତେ ॥
ଶୁଣି ବିଭୀଷେଣ ମସ୍ତକେ ହସ୍ତ ଦେଲା ।
ହୋଉ ଦେବ ଆଜ୍ଞା ପାଳିବି ବୋଇଲା ॥
ଯେଥୁ ଅନନ୍ତରେ ପିତାମହ ଯାଇଂ ।
ଇନ୍ଦ୍ରକୁ ଘେନି ଯାଇଂ ସ୍ୱର୍ଗପୁରେ ପାଇଂ ॥
ଅମର ପୁରେ ଯାଇଣ ହୋଇଲା ପ୍ରବେଶ ।
ବ୍ରହ୍ମା ସହିତେ ବସିଲେ ତ୍ରିଦଶ ॥
ଲାଜେଣ ବାସବ ଯେ ଶିର ପୋତିଅଛି ।
ବୁଦ୍ଧି ବଳ ତାହାକୁ ନ ପୂରଇ କିଛି ॥୫୦
ବଜ୍ରଧର ମନ ପିତାମହ ଜାଣି ।
ଗୁପତେଣ ଶ୍ରବଣେ କହିଲେ ଏକ ବାଣୀ ॥
ତୁ କିମ୍ପା ଅଭିମାନ ପାଉ ସୁରପତି ।
ଅହଲ୍ୟାକୁ ହରିଲୁ ଅଟଇ ମହାସ୍ୟତୀ ॥
ତେଣୁ ଶିରୀ ତୋହୋର କ୍ଷଏ ଗଲା ।
ଧର୍ମ କରିଅଛୁ ଜୀବନ ରହିଲା ॥
ଯେବେ ତୁ ଯାଗ କରସି ସୁରରାଏ ।
ଭୁରି ଭୋଜନ ହବି ଭୁଞ୍ଜିବୁ ଦେବତାଏ ॥
ରାବଣ ହିଂ ଯେହି ନିକଟେ ନାଶ ଯିବ ।
ମାନେବ ରୂପେ ତାକୁ ଶ୍ରୀହରି ମାରିବ ॥୬୦
ଯେବେ ଦେବତାଏ ଯେ ଯାହା ସୁଖେ
ଥାଅ ।
ନିଜ ପୁରମାନଙ୍କୁ ଗମନ କରି ଯାଅ ॥
ଯେତେ ବୋଲି ବିଜେ କରିଗଲା
ପରମେଷ୍ଠୀ ।
ଇନ୍ଦ୍ରହିଂ ଉଠିଗଲା ଭାଜିଲା ସୁରଗୋଷ୍ଠୀ ॥
ଯେଥୁ ଅନନ୍ତରେ ଲଙ୍କାରେ ରାବଣ ।
ଦେବତାମାନଙ୍କ ସଙ୍ଗେ କଲାକ ରଣ ॥
ଇନ୍ଦ୍ରର ବଜ୍ର ଅଇରାବ୍ରତ ଦାନ୍ତ ।
ଅଗ୍ନିର ମୁଦୁଗର ନଇରତର କୋନ୍ତ ॥
କୋବେର ଗଦା ଯେ ଶଙ୍କରର ଶୂଳ ।

ବରୁଣ ପରିଘ ଯେ ଆଦିତ୍ୟ କରବାଳ ॥୭୦
ଯେମାନ ବାଜି ଯେ ଅଛି ତାର ଅଙ୍ଗେ ।
ବଥାବୋଲି ମନେ ନ ଥିଲା ରଣ ରଙ୍ଗେ ॥
ସାଂଗ୍ରାମ ଛାଡ଼ିଲେଣ ଘାଆ ପୀଡ଼ା କଲା ।
ଅଶ୍ୱିନୀକୁମାର ଆସି ମଉଷଧି ଦେଲା ॥
ଇନ୍ଦ୍ରଜିତ ବିଭୀଷେଣ ଦେହ ଭଲ କରି ।
ଅଶ୍ୱିନୀକୁମାରେ ଗଲେ ସ୍ୱର୍ଗପୁରୀ ॥
ବୋଲନ୍ତି ଅଗସ୍ତି ଶ୍ରୀରାମଚନ୍ଦ୍ର ଶୁଣ ।
ତ୍ରୈଲୋକ୍ୟେ ବିଖ୍ୟାତ ହୋଇଲା ରାବଣ ॥
ଅସଂଖ୍ୟ ସମ୍ପଦ ତାର କହିଲେ ନ ସରି ।
ରାକ୍ଷସ ଇନ୍ଦ୍ରପଦ ପାଇଲା ଦଶଶିରି ॥୮୦
ଲକ୍ଷେକ ରାଜା ଜିଣି ଆଣିଲା ଲକ୍ଷେ କ୍ଷତ୍ରୀ ।
ତେଣୁ ଲକ୍ଷେ ଛତ୍ର ଧରାଇଂ ଏ ଲଙ୍କପତି ॥
ତିନିପୁରେ ଯେତେ ଗରିଷ୍ଠ ଦତ୍ୟ ଥିଲେ ।
ପ୍ରତାପ ଦେଖିଣ ତାର ବନ୍ଧୁ ପଣ କଲେ ॥
କାହାର ଭଗ୍ନୀ କାହାର ଦୋହିତା ସମର୍ପିଲେ ।
ଯେମନ୍ତେ ଆହୁଟ କୋଟି ମହାଦେଇ
ହେଲେ ॥
ନିର୍ବାତକପଟର ଦୋହିତା ନାମ ତା ପ୍ରସନ୍ନା ।
ଇନ୍ଦ୍ରଜିତକୁ ବିଭା କରାଇଲା ସେହି କନ୍ୟା ॥
ଯେମନ୍ତେ ରାବଣର ସମ୍ପଦ ଅପାର ।
ଚଉଦ ଭୁବନେ ଅଟଇ ବଳୀଆର ॥୯୦
ଦେବ ରତ୍ନମାନ କରଇ ଆଭରଣ ।
ଅଗ୍ନି ପଖାଳଇ ବସ୍ତ୍ର ପରିହରଣ ॥
ଦିବ୍ୟ ବେଶ ଦିବ୍ୟ ଗନ୍ଧ ଭୋଗ କରି ।
ଲଙ୍କା କଟେକ ସେ ସକଳ ଗୁଣେ ସରି ॥
ଗନ୍ଧର୍ବ କିନ୍ନର ଅପକ୍ଷରୀମାନ ଥାନ୍ତି ।
ବ୍ରହ୍ମା ଆସି ବେଦ ପଢ଼ନ୍ତି ପାହାନ୍ତି ॥
ନାରଦ ଆସି ଯନ୍ତ୍ର ବଜାଇ ରାତ୍ର ଥାଉ ।
ତିମ୍ବୁରା ଗାନ୍ଧାର ରାଗେଣ ଗୀତ ଗାଇ ସେହୁ ॥
ଦେବଗୁରୁ ବୃହସ୍ପତି କହନ୍ତି ତିଥିବାର ।
ଦ୍ୱାରପାଳ କତିରେ ବସଇ
ବଜ୍ରଧର ॥୧୦୦
ଚନ୍ଦ୍ର ଦେବତା ଆସି ରାନ୍ଧଇ ମଣୋହି ।
ନିତି ସାତ ଘଡ଼ିମାନେ ନୂଆ ଧାନ ହୋଇ ॥

ସକାଳେଣ ଚଷି ବୁଣନ୍ତି ବିହନ ।
ଦେଢ଼ ପହର ମଧ୍ୟେ ପାଚି ଫଳଇ ସେହୁ
ଧାନ ॥
ତାହା ଚାଉଳ କରି ଓଂରିଆରେ ମେଲି ।
ଅଗ୍ନି ପ୍ରତିପାଳି ପାଳେକଶ୍ୱର ବୋଲି ॥
ଆଗ୍ୟାଂ ପ୍ରତାପ ତାକୁ ଲଙ୍କେଶ୍ୱର ବୋଲି ।
ତିନିଭୁବନେ ସେ ବଳେ ରଥ ଚଢ଼ି ବୁଲି ॥
ଦାନେଣ ସାଚା ସେ ଖାଣ୍ଡେଣ ବଳୀଆର ।
ସକଳ କଳାଏ ନିର୍ଗୁଣ ଦଶଶିର ॥ ୧୦
ଚାରିବେଦ ତହୁଂ ଛାଡ଼ିଲେକ ଗୋଳ ।
ଶାଖା କରି ତହୁଂ ଭିଆଇଲା ଲଙ୍କପାଳ ॥
ମନ୍ତ୍ରମାନଙ୍କୁ ବାରିଲା ଭିନ୍ନ ଭିନ୍ନ କରି ।
ତେଣୁ ସେ ସାଧ୍ୟ ଯେ ହୋଇଲା
ବେଦଚାରି ॥
ରାବଣ ନ କଲେ ବେଦ ଗୋଳ ହୋଅନ୍ତା ।
କେହି କିମ୍ପା ତାହା ବିଚାରି ପାରନ୍ତା ॥
ବୁଦ୍ଧିବନ୍ତ ପଣେ ନାହିଂ ସରି ସମ ।
ଦେବତାଏ ପୂଜା ଅଗ୍ନିରେ ଦିଅଇ ହୋମ ॥
ସହସ୍ରେକ ଯାଗ କଲାକ ପୁଣ୍ୟ ଥାନେ ।
ଅଶ୍ୱମେଧ ନରମେଧ ଗୋମେଧ
ବିଧାନେ ॥୨୦
ଗଜମେଧ ଇଷ୍ଟଯାଗ ବହୁତ ସେ କଲା ।
ସୁବ୍ରାହ୍ମଣମାନଙ୍କୁ ଭୂମିଦାନ ଦେଲା ॥
ବିଭୀଷେଣ ମାଗିନେଲା ପଦ୍ମନାଭ ପ୍ରତିମା ।
ପୂର୍ବେ ତାହାକୁ କହିଥିଲେ ବ୍ରହ୍ମା ॥
ସେ କଥା ଜାଣି ସେ ଦେବତା ମାଗିନେଲା ।
ବିବିଧ ପ୍ରକାରେ ଭୋଗ ଭିଆଇଲା ॥
ଯେକ ମନ ହୋଇଣ ସେବାକଲା ତାହା ।
ଯେଥୁ ଅନନ୍ତରେ ଶୁଣ ସୀତୟାର ନାହା ॥
ଇନ୍ଦ୍ର ଯେ ବନ୍ଧନୁ ମୁକତ ହୋଇଗଲା ।
ପ୍ରାଶ୍ଚିତ ଦାନ ଦେଇ ଅନେକ ଯାଗ
କଲା ॥୩୦
ରାବଣ ସଙ୍ଗେ ବଢ଼ାଇଲା ପୀରତି ।
ଲଙ୍କା ଭୁବନେ ଆସୁଥାଇ ନିତି ॥
ଦେବ ଦାନେବ ସର୍ବଦା ଯେକ ଗୋଷ୍ଠୀ ।

ଯହୁଂ ଅଭଏ ବର ଦେଲା ପରମେଷ୍ଠୀ ॥
ରାବଣର ସମ୍ପଦ କହିଲେ ନ ସରି ।
ଚଉଦ ଭୁବନେ ସେ ହୋଇଲା ଅଧିକାରୀ ॥
ଯେତେବେ ଅସୁରେ ଯେ ବ୍ରହ୍ମାଣ୍ଡେ
ଜନ୍ମିଥିଲେ ।
ଯେତେ ସମ୍ପଦ ଭୋଗ କେହିତ ନ କଲେ ॥
ଅଠର ଗଣ୍ଡା କୁମର ତେର ଶହ ନାତି ।
ରଥ ଗଜ ହୟ ଅନେକ ପାଦାନ୍ତି ॥ ୪୦
ଦୁତୀ ସ୍ୱର୍ଗ ଜାଣି ଦିଶଇ ଲଙ୍କପୁର ।
ଅବିଛନେ ଉଛବ ଆନନ୍ଦ ତାହାର ॥
ଦେବତା ଥାନେଣ ଭୋଗରାଗ ପୂଜା ।
ଅକଣ୍ଟେକ ରାଜ୍ୟ କରଇ ଲଙ୍କରାଜା ॥
ନିକୁମ୍ଭିଲା ବଟ ସ୍ୱର୍ଗରୁ ଆଣିଲା ।
ବାଞ୍ଛା ସିଧ୍ୟ ହେଉ ବୋଲିଣ ମଣିଲା ॥
ତାହା ରୁପିଲା ପବିତ୍ର ଥାନ ଦେଖି ।
ସହସ୍ରେ ବ୍ରାହ୍ମଣ ତା ପୂଜା କରୁଥାନ୍ତି ନିତି ॥
ଲଙ୍କେଶ୍ୱରୀ ନାମେ ଅଛଇ ଦେବତୀ ।
ସେ ଭୋଗକରଇ ଉତ୍ତର ଦ୍ୱାର କତି ॥୫୦
ସମୁଦ୍ର ପାରିହୋଇ ଜମ୍ବୋଦ୍ୱୀପେ ଠଣା ।
ବେଳୁବେଳ ହୋଇଲା ଦଇତ ଜଗଜିଣା ॥
ଅଗସ୍ତି ବୋଲନ୍ତି ଶ୍ରୀରାମଚନ୍ଦ୍ର ଶୁଣ ।
ରାକ୍ଷସ ଇନ୍ଦ୍ରପଦ ପାଇଲା ରାବଣ ॥
ଶୁଣି ରଘୁନାଥ ଆନନ୍ଦ ହୋଇଲେ ।
ସାଧୁ ସାଧୁ ବୋଲିଣ ରାବଣ ବୋଇଲେ ॥
ଲକ୍ଷେକ ନୃପତି ଶୁଣି ଛୁଇଂଲେ ବେନିକର୍ଣ୍ଣ ।
ଧନ୍ୟ ମହିମା ତୋର ଧନ୍ୟ ଦଶାନନ ॥
ଯେସନେକ ସମଏ ବିଭୀଷେଣ ଉଠି ।
କର ଦୁଇ ଯୋଡ଼ିଣ ବୋଲଇ ଶୁଣିମା
ତପନିଷ୍ଠି ॥୬୦
ଯେତେ ମହିମା ଯେ ରାବଣର କହିଲ ।
ତ୍ରୈଲୋକେ ସରିସମ ନାହିଂନା ବୋଇଲ ॥
ହନୁମନ୍ତ ଯେକାଏ ଦହିଲା ତାର ଦର୍ପ ।
ଗରୁଡ଼ ଦେଖି ଯେହ୍ନେ ଡରଇ କାଳସର୍ପ ॥
ଦତ୍ୟବଳ ସବୁ ପକାଇଲା ମାରି ।
ଅକ୍ଷଏ କୁମାରକୁ ହେଲେଣ ନିବାରି ॥

ଜମ୍ବୋମାଳିକି ସେ କଲାକ ନିଧନ ।
ଆବର ଅନେକ ମାଇଲା ଅସୁରର ସନ୍ୟ ॥
ସମୁଦ୍ର ଡେଇଁଣ ପୋଡ଼ିଲା ଲଙ୍କପୁରୀ ।
ଓଶୋକ ବନେ ଭେଟିଲା ଜନେକ
କୁମାରୀ ॥୭୦
ସନ୍ତେକ ମୁଦି ଦେଇଁ ମଣି ଘେନି ଗଲା ।
ରାମାଏଣ ଯୁଧ୍ୟେ ପୁଣ ଯେକାଏ ସେ କଲା ॥
ଯେହାର ମହିମା ତୁମ୍ଭେ କହିବା
କୁମ୍ଭଯୋନି ।
କେବଣ ଦେବତା ଏ କପିରୂପ ଘେନି ॥
ଯହୁଁ ମାରୁତି କଥା ପୁଛିଲା ବିଭୀଷେଣ ।
ଅଗସ୍ତି ବୋଇଲେ ତୁ ଲଙ୍କପତି ଶୁଣ ॥
ମେରୁ ପର୍ବତ ଯେ ଅଛଇ କନ୍ଦର ।
ପବିତ୍ର ଥାନ ସେ ଅତିଅ ସୁନ୍ଦର ॥
ତହିଁ ଘର କରି କେଶରୀ କପି ଥାଇ ।
ଅଞ୍ଜନା ନାମେଣ ତା'ର ପହିଲି
ବେହାଇ ॥୮୦
ରୂପେ ରୂପବନ୍ତୀ ଯଉବନେ ଯୁବା ।
ଚନ୍ଦ୍ରମଣ୍ଡଳ ଜାଣି ଦିଶଇ ମୁଖ ଶୋଭା ॥
କିଷ୍କିନ୍ଧାନଗ୍ର ରାଜା ଖଡ଼ଦ ନୃପମଣି ।
ତାହାର ଦୋହିତା ଯେ କେଶରୀ ରମଣୀ ॥
ସୁନ୍ଦର ପଣେ ତାକୁ ନାହିଁ ସରିସମ ।
ଯେ ତାକୁ ଦେଖଇ ଘାରଇ ତାକୁ କାମ ॥
ସୁର ମୁନି ସହିତେ ଦେଖିଲେ ବଶ୍ୟ
ହୋନ୍ତି ।
ବାବୁ ସୁନ୍ଦେରୀ ସେ ପଦ୍ମିନୀ ଅଟଇ ଜାତି ॥
ଦିନେକ ରଜବତୀ ହୋଇ ସେ ଥିଲା
ପ୍ରମଦା ।
ସ୍ନାହାନ କରିବ ବୋଲି ଗଲାକ
ନର୍ମଦା ॥୯୦
ମ୍ଲେଚ୍ଛ ଲେଛିଣ ସେ ଶୁଦ୍ଧ ତନୁ ଧରି ।
ହଳଦୀ ଘେନିଣ ଦୁର୍ଗନ୍ଧ ଅପହରି ॥
ଗନ୍ଧ ଚଉସମ ଶରୀରେ ଲଗାଇ ।
ସୁଗନ୍ଧ ବୋଲି ପୁଣ ଚାଚର କେଶ ଧୋଇ ॥
ନିର୍ମଳ ଜଳେଣ ସ୍ନାହାନ ବାଳା କରି ।

ନଦୀରୁ ବାହାର ହୋଇ ଆସଇ ସୁନ୍ଦେରୀ ॥
ସରୁ ଝିନ ବାସେ ପୋଛଇ ଶ୍ୟରୀର ।
ଉଛିଂଣ ପିନ୍ଧଇ ପବିତ୍ର ଚାରୁ ଚୀର ॥
କେଶ ଶୁଖାଇଣ କବରୀ ଖୋଷା ଖୋସି ।
ଗଣ୍ଡିଅନା ଚନ୍ଦନ ମିଶାଇ ଅଙ୍ଗେ
ଘଷି ॥୧୦୦
ନୟନେ କଜ୍ଜ୍ୱଳ ପୟରେ ଅଳତା ।
ତାମ୍ବୋଳ ଭୁଞ୍ଜିଣ ବାଳୀ ଅଧର କଲା ରତା ॥
ବିବିଧ ଅଳଙ୍କାରେ ସେ ହୋଇଲା ଭୂଷଣ ।
ଦଶଦିଗ ଚାହିଁ ଓଲଗଇ ବିଦୁଜନ ॥
ଯେସନକ ସମଏ ପବନ ତାହା ଦେଖି ।
ବୋଇଲା ସାଧୁରେ ଅଟୁ ଚନ୍ଦ୍ରମୁଖୀ ॥
ନାହିଁ ନାହିଁ ତୋତେ ତ୍ରିଭୁବନେ ସରି ।
ଅପକ୍ଷରୀ କିନ୍ନରୀ ଯକ୍ଷ ବିଦ୍ୟାଧରୀ ॥
ବାନରୀ ହୋଇଣ ଯେମନ୍ତ ତୋର ରୂପ ।
ଧନି ଧନି ସାଧବୀ ତୁ ଚଞ୍ଚଳା ସ୍ୱରୂପ ॥୧୦
ଯେତେ ବୋଲି ଆସି ଭୂମିରେ ଅବତରି ।
ଅଞ୍ଜନାର ଅଞ୍ଚଳ ପବନ ଯାଇ ଧରି ॥
ମୁଖକୁ ଚାହିଂଣ ବୋଲଇ ସଖୀ ରଖ ।
ଯେ ମୋହୋର ତନୁ ବିକଳିତ ଦେଖ ॥
ମଦନ ଶରେଣ ହୋଇଲି ମୁଁ ବାଇ ।
ତୋର ରୂପ ଦେଖି ଚିତ୍ତ ଧରଣ ନ ଯାଇ ॥
ମୁହିଁ ସେ ପବନ ନ ଜାଣୁ କି ବାଳୀ ।
ମୋହୋରେଣ ସେ ଜୀବଜନ୍ତୁ ହୋଅନ୍ତେ
ମହାବଳୀ ॥
ମୁହିଁ ସେ ତୋତେ ରମଣୀ କରିବିରେ
ସୁନ୍ଦେରୀ ।
ପୁତ୍ରେକ ଉପୁଜିବ ମମ ପ୍ରାଣ ସରି ॥୨୦
ନ କରି ନିରାଶ ସମର୍ପସି ମୋତେ ଅଙ୍ଗ ।
ଗାଢ଼େଣ ପୀଡ଼ା ମୋତେ କରଇ ଅନଙ୍ଗ ॥
ଗଗନ ମାର୍ଗେ ମୁଁ ବିବାନେ ଯାଉଂଥିଲି ।
ତୋହୋର ରୂପ ଦେଖି ଯେଥିକୁ ଅଇଲି ॥
ତୁ ମୋତେ ନିରାଶ ନ କର ସୁନ୍ଦେରୀ ।
ଯେତେ ବୋଲି ମରତ କନ୍ୟାର ଭୁଜ ଧରି ॥
ମଳୟ ବହିଣ ଯେ ଆମୋଦନ କଲା ।

ଦିବ୍ୟରୂପ ଦେଖାଇ ନାରୀକି ମୋହିଲା ॥
ଖଡ଼ଦ ନନ୍ଦିନୀ କଲାକ ସନମତ ।
କନ୍ଦର୍ପ ମୋହିଲାକ ତାହାର ପଞ୍ଚଭୂତ ॥୩୦
ତୁଷ୍ଟ ଅନୁମତ ହୋଇଲାକ ଯହୁଁ ।
ସୁଖେଣ ପବନ ରମଣ କଲା ତହୁଁ ॥
ବିବିଧ ବିନୋଦେ ପ୍ରେମରସ ଘେନି ।
ପଞ୍ଚମ ଶରେଣ ପୀଡ଼ିଲେ ଯହୁଁ ବେନି ॥
ପବନ ଦେବତାର ଖସିଲାକ ରେତୁ ।
ପ୍ରମଞ୍ଜନୀ ଗର୍ଭରେ ରହିଲା ପରମ ତତୁ ॥
ନାଭି କମଳେ ପୁଣ ପଡ଼ିଲା ଯାଇ ବୀର୍ଯ ।
ବିନ୍ଦୁ ଆକ୍ରେର୍ଷିଣ ଧଇଲା ସରୋଜ ॥
ମହେନ୍ଦ୍ର ବେଳେ ପୁଣ ହୋଇଲା ଗର୍ଭବାସ ।
ଛାଡ଼ିଲାକ ସମୀର ସୁରତିର ମୁହାଂସ ॥୪୦
ଅନ୍ତର୍ଦ୍ଧାନ ହୋଇଣ ଗଗନମାର୍ଗେ ଗଲା ।
କାଳେଣ ପ୍ରମଞ୍ଜନୀ ପୁତ୍ରେକ ଜାତ କଲା ॥
ମାତା ଗୁଣ ଘେନି କପି ତନୁ ବହିଁ ।
ମେଷ ସଂକରାନ୍ତି ଦିନ ହନୁ ଜନ୍ମ ହୋଇଁ ॥
ପ୍ରଭାତ ସମଏ କୁମରର ଉତପତି ।
ଦେଖିଣ ପ୍ରମଞ୍ଜନୀ ମନେ କଲା ଭୀତି ॥
କାଳ ଦେବତା କି ହୋଇଲା ଅବତାର ।
ଜନମ ହୋଇଣ ଉଠି ବସିଲା ମହାବୀର ॥
ପୁତ୍ର ବୋଇଲା ତୁ ଶୁଣସି ଗୋ ମାତ ।
ଯେ ମୋହୋର ଶ୍ୟରୀର କ୍ଷୁଧାରେ
ଆରତ ॥୫୦
ଦିଅସି ଆହାର ମୁଁ କରିବଇଁ ଗ୍ରାସ ।
ଶୁଣିଣ ପ୍ରମଞ୍ଜନୀ ପାଇଲା ମନେ ତ୍ରାସ ॥
ପଞ୍ଚଭୂତ ଆତ୍ମାରେ ସେ ଭାଳିଣ ବିଚାରି ।
ବୋଇଲା ପବନ ରେତୁରୁ ଅବତରି ॥
ତେଣୁ ସେ ବଳମାନ ତନଏ ହୋଇଲା ।
ପେଟୁ ଜାତ ହୋଇଁ ଆହାର ମାଗିଲା ॥
ଯେବେ ଯେହାକୁ ଘରକୁ ଘେନିଯିବି ।
ବନସ୍ତରୁ ଫଳମୂଳ ଆଣି ଭୁଞ୍ଜାଇବି ॥
ଯେସନେକ ବୋଲିଣ ପୁତ୍ରକୁ କୋଳେ
ଧରି ।
ନିଜ ମନ୍ଦିରେ ନେଇ କଲାକ
ସୁନ୍ଦେରୀ ॥୬୦

ଆଶ୍ରମେ ବସାଇଂ ବନସ୍ତକୁ ଗଲା ।
ଯେହିକ୍ଷଣି ଫଳମୂଳ ଆଣିମି ବୋଇଲା ॥
ଯେସନେକ ତିଆରି ଗଲାକ ଜନନୀ ।
କ୍ଷୁଧାରେ ଆରତ ହୋଇଲା ପାବେନି ॥
ଅନ୍ତରାଳ ହୋଇ ଚାହାଂଇ ଯେଣେ ତେଣେ ।
ସୂର୍ଯ୍ୟ ଉଦେ ହୋଇ ଆସଇ ଗଗନେ ॥
ରଙ୍ଗ ବର୍ଣ୍ଣ ପ୍ରାୟ ଶ୍ୟରୀର ତାହାର ।
ପାଚିଲା ପକ୍ୱ ଫଳ ଜାଣିଣ ଆକାର ॥
ଆହାର ପ୍ରାଏ ମଣି ଧାଇଂଲା ବାଳୁତ ।
ଆକାଶେ ଭ୍ରମି ଯାଇଂ ଦେଖିଲା ଆଦିତ୍ୟ ॥୭୦
ନିକଟେ ହୁଅନ୍ତେ ବିଚାରିଲେ ସୁରଗଣ ।
ଦେଖ ହୋ ଅଞ୍ଜନା ତନଏର ଦୁଷ୍ଟ ପଣ ॥
ଆଜ ଜନମି ପୁଅର ଯେଡ଼େ ତେଜ ବଳ ।
ଯୁବା ହୋଇଲେ ଯେ କି ଥୋଇବ ଦିଗପାଳ ॥
ଶୁଣିଣ ପବନ ଦେବତା ହୋଇଲାକ ଆଗ ।
ଦେବଙ୍କୁ ବୋଇଲା ତୁମ୍ଭେ ନ କର ତାକୁ ରାଗ ॥
ସେ ମୋହୋର ପୁତ୍ର ଅଞ୍ଜନା ଗର୍ଭୁ ଜାତ ।
ଗଗନେ ବିକ୍ରମିଲା କ୍ଷୁଧାରେ ଆରତ ॥
ନ ପୁଣ ଆଦିତ୍ୟ ତେଜ ନାଗି ଶ୍ରମ ପାଇ ।
ଯେତେ ବୋଲି ପବନ ଶୀତଳ ହୋଇ ବହିଂ ॥୮୦
ଯେଥୁ ଅନନ୍ତରେ ଶୁଣ ରଘୁନାଥ ।
ଧାଇଂ ହନୁମନ୍ତ ଗିଳିଲା ରବିରଥ ॥
ସେଦିନ ଉଂଆସ ରାହୁର ଅଟଇ ପାଳି ।
ସେହି ଯାଇଂଅଛି ସୂର୍ଯ୍ୟକୁ ଓଗାଳି ॥
ହନମତକୁ ଦେଖି ରାହୁ ଭଏ କଲା ।
ପ୍ରାଣେ ଭଏ କରି ବାହୁଡ଼ି ପଳାଇଲା ॥
ଇନ୍ଦ୍ରର ଆଗେ ଯାଇଂ ପଚାରଇ ରାହୁ ।
ମୁହିଂ ଯେ କ୍ଷୁଧାର୍ତ୍ତି ହୋଇ ଭୋ ପ୍ରଭୁ ॥
ଚନ୍ଦ୍ର ସୂର୍ଯ୍ୟକୁ ଯେ ଆହାର ମୋତେ ଦେଲୁ ।
ଯେବେ ପୁଣ ତାହା କାହାକୁ ବିଢୋହିଲୁ ॥୯୦

ବାନର ଗୋଟିଏତ ଆଦିତକୁ ଗିଳିଲା ।
ଶୁଣିଣ ଇନ୍ଦ୍ରଦେବତା ମନେଣ ଭାଳିଲା ॥
ଅଇରାବ୍ରତ ଚଢ଼ିଣ ଅଇଲାକ ରାଗେ ।
ରାହୁ ଗ୍ରହ ବାଟ କଢ଼ାଇ ଅଛି ଆଗେ ॥
ବଜ୍ର ଘେନିଣ ବାସେବ କୋପମନ ।
ଯାଇଣ ଭେଟିଲା ପବନ ନନ୍ଦନ ॥
ଫଳ ବୋଲି ଯହୁଂ ଗିଳିଲା ରବିରଥ ।
ନୁହଇଂ ବୋଲି ଉଦ୍ଗାରିଲା ତୁରିତ ॥
ଯେସନେକ ସମଏ ମିଳିଲାକ ରାହୁ ।
ପଛେ ହସ୍ତୀ ଚଢ଼ି ଆସଇ ବଜ୍ରବାହୁ ॥୧୦୦
ସୂର୍ଯ୍ୟକୁ ଛାଡ଼ଇ ହନୁ ବିକଳିତ ମନ ।
ରାହୁକୁ ଦେଖିଣ ଧାଇଂ ପଡ଼ିଲା ବହନ ॥
ସର୍ପକୁ ଦେଖି ଯେହ୍ନେ ଧାମଇଂ ନେଉଳ ।
ତେସନେକ ଦିଶିଲା ପବନର ବାଳ ॥
ଡରେ ରାହୁ ଗ୍ରହ ପଳାଇଣ ଗଲା ।
ଇନ୍ଦ୍ର ଦେବତାରେ ଯାଇଂ ଶରଣ ପଶିଲା ॥
ବୋଇଲା ବଜ୍ରଧର ରକ୍ଷାକର ମୋତେ ।
ଯେହିକ୍ଷଣି ଗିଳିବଟି ଅଇରାବ୍ରତ ସହିତେ ॥
ଶୁଣି ଇନ୍ଦ୍ରଦେବ ହସ୍ତୀକି ନଖି ଦେଲା ।
ହନୁମନ୍ତ ଆଗରେ ଯାଇଂଣ ମିଳିଲା ॥୧୦
ବଜ୍ର ଧରିଣ ସେ ମାଇଲା ରୋଷଭରେ ।
ପଡ଼ିଲା କୁଳିଶ ହନୁମନ୍ତର ମୁଖରେ ॥
ଗାଲ ଠେକରେ ବାଜିଲା ଯହୁଂ ଶସ୍ତ୍ର ।
ମୋହେଣ ପଡ଼ିଲା ସେ ପବନର ଶିଷ ॥
ଗ୍ୟାଂନ ହରାଇ ପୁଣ ପଡ଼ିଲା ଗଗନୁ ।
ପର୍ବତ ଉପରେ ପଡ଼ିଲା ଆସି ହନୁ ॥
ଦେଖି ପବନ ହୋଇଲା ବିକଳ ।
ଉଚ୍ଚେ କାନ୍ଦଇ ଗଳଇ ଅଶ୍ରୁଜଳ ॥
ଇନ୍ଦ୍ରକୁ ବୋଇଲା ଯେଡ଼େ ଯଶ କଲୁ ।
ଆଜ ଜନ୍ମିଲା ପୁତ୍ରକୁ ବଜ୍ରେଣ ମାଇଲୁ ॥୨୦
ଧିକ ହୋଉ ତୋହୋର ଦେବରାଜ ପଣ ।
ଅସୁରଙ୍କ ସଙ୍ଗେ କରିବୁ କେହ୍ନେ ରଣ ॥
ଯେହି ନ ଜାଣିମା ପଣେ ଲଘୁ ହୋଉ ।
କେଉଂଣ ପୁଣ୍ୟେ ହୋଇଲୁ ଦେବତାଙ୍କର ପ୍ରଭୁ ॥

ବଳ୍ପ ଦ୍ରୋହ କେମନ୍ତେ କଲୁରେ ପାପିଷ୍ଟ ।
ଅକାରଣେ ମୋତେ ଦେଲୁ ପୁତ୍ର କଷ୍ଟ ॥
ଯେତେ ବୋଲି ରାଗେ ଥମ୍ଭୀଭୂତ ହୋଇ ।
ସବୁ ଦେବତାଙ୍କ ଥାନମାନ ଗୁହାଇ ॥
ପବନ ନିରୋଧିଲା ନ ହଲଇ ତିରଣ ।
ତକ୍ଷଣେ ଆକୁଳ ହୋଇଲେ ସୁରଗଣ ॥୩୦
ଜଗତ ଜୀବଜନ୍ତୁ ହୋଇଲେ ଥରହର ।
ବ୍ରହ୍ମାର ଆଗେ ଯାଇଂ କହିଲେ ସର୍ବସୁର ॥
ଶୁଣ ପିତାମହ ଅପୂର୍ବ କାହାଣୀ ।
ପବନ ପୁତ୍ରକୁ ବଜ୍ର ମାଇଲା ବଜ୍ରପାଣି ॥
କୋପେଣ ମରତ ଜଗତ ନିରୋଧିଲା ।
ପୁତ୍ରକୁ କୋଳେଧରି ଅନେକ ରୋଦନ କଲା ॥
ଜଗତ ସଂସାର ନାଶିବ ଯେହିକ୍ଷଣି ।
ପବନ ନ ବହିଲେ ନ ବର୍ତ୍ତିବେ ପ୍ରାଣୀ ॥
ଶୁଣି ପିତାମହ ସର୍ବଦେବତାନ୍ତ ଘେନି ।
ସ୍ୱର୍ଗରୁ ଓହ୍ଲାଇ ମିଳିଲା ଅବନୀ ॥୪୦
ବିଧାତାକୁ ଦେଖି ପୁତ୍ର କୋଳୁ ଥୋଇଂ ।
ନମସ୍କାର କଲା ଶୋକଭର ହୋଇଂ ॥
ପୁତ୍ରର ସନ୍ନିଧେ ଯାଇ ବସିଲା ବିରଞ୍ଚି ।
କୋମଣ୍ଡଳୁ ଜଳ ଘେନି ପୁତ୍ରମୁଖେ ସିଞ୍ଚି ॥
ଗତ ପ୍ରାଣ ପାଇଂ ଉଠିଲା କୁମର ।
ତେବେ ସେ ନିଶ୍ୱାସ ବହିଲା ଦେବଙ୍କର ॥
ବ୍ରହ୍ମା ବୋଇଲେ ତୁମ୍ଭେ ସୁରଗଣେ ଶୁଣ ।
ଯେ ପୁତ୍ର ଆମ୍ଭଙ୍କୁ କରିବ ବହୁତ ଗୁଣ ॥
ଯେହାରେ ଅନେକ ହୋଇବ ଦେବ କାର୍ଯ୍ୟ ।
ସବୁ ଦେବତାଏ ଯେହାକୁ ବର ଦିଅ ଆଜ ॥୫୦
ଶୁଣି ସୁରପତି ସୁବନ୍ୟ ପଦ୍ମ ମାଳା ।
ନେଇଂ ଲମ୍ବାଇଲା ପବନ ପୁତ୍ର ଗଳା ॥
ବୋଇଲା ବଜ୍ର ପଡ଼ି ଭାଙ୍ଗିଲା ତୋର ଗାଲ ।
ହନୁମତ ନାମ ଯେହାର ଯେ ହୋଇବ ମହାମଲ ॥
ଯେହାର ଶ୍ୱରୀର ଶହସ୍ରେ ନୋହିବ ନାଶ ।

ଆଜୁ ବଜ୍ର ଅଙ୍ଗ ବହୁ ପବନର ଶିଷ ॥
ଅଗ୍ନି ବୋଇଲେ ମୋର ଦ୍ୱାଦଶ ଅଂଶ ଅଛି ।
ଅଂଶେ ବହିଥାଉ ଏ ପବନର ବଛି ॥
ବରୁଣ ବୋଇଲେ ଯେହାକୁ ମୃତ୍ୟୁ ନୋହୁ ।
ଯୁଗେ ଯୁଗେ ଅମର ତନୁ ଯେହୁ ବହୁ ॥୬୦
ଯମ ବୋଇଲେ ଯେ ନ ମରୁ କାଳ ଦଣ୍ଡେ ।
ଆରୋଗ୍ୟଂ ହୋଇ ବୃତି ଥାଉ ଯେ ବ୍ରହ୍ମାଣ୍ଡେ ॥
କୁବେର ବୋଇଲେ ଜିଣୁ ଯେ ଜଗତ୍ର ।
ଯେ ମୋହର ଗଦା ଥିବ ଯେହାର ନିଜ ହସ୍ତ ॥
ଈଶ୍ୱର ବୋଇଲେ ଏ ବ୍ରହ୍ମଅସ୍ତ୍ରେ ନ ମରିବ ।
ବ୍ରହ୍ମା ବୋଇଲେ ଏ ଅକ୍ଷୟର ହୋଇଥିବ ॥
ଅଙ୍ଗେ ବଜ୍ର ତୋର ନ କରିବ ଭେଦ ।
ଆଜୁ ଦେଲି ତୋତେ କପିଇନ୍ଦ୍ର ପଦ ॥
ବିଶ୍ୱକର୍ମା ବୋଇଲେ ନାନା ଶସ୍ତ୍ର ଅସ୍ତ୍ରେ ।
ନାଶ ହୋଇବୁ ଏ ପବନର ଶିଷେ ॥୭୦
ସବୁ ଦେବତାଏ ଯହୁଁ ଦେଲେ ବର ।
ମରତକୁ ଚାହିଁ ବୋଲନ୍ତି କୁଶଧର ॥
ଶୁଣ ପବନ ତୁ ପୁତ୍ରର ମହିମା ।
ସବୁନ୍ତି ଜିଣି ଯେ ରୁହାଇବ ସୀମା ॥
ତୋହୋର ସମାନେ ପ୍ରାକର୍ମ ବହିବ ।
ଯେହାରେ ସେ ଦେବକାର୍ଯ୍ୟ ଅନେକ ହୋଇବ ॥
ନାରାଏଣ ଅବତାର ହୋଇବେ ରାମ ରୂପେ ।
ରାବଣକୁ ମାରିବେ ସୀତ୍ୟା ନେମା କୋପେ ॥
ସେ କାଳେ ପୁତ୍ର ତୋର କରିବ ଦେବ କାର୍ଯ୍ୟ ।
ଯେତେ ବୋଲି ବିଜେ କରିଗଲେ କୁଶଧ୍ୱଜ ॥୮୦
ସର୍ବ ଦେବତା ଘେନି ବିଧାତା ଯହୁଁ ଗଲା ।
ସ୍ନେହେ ପବନ ପୁତ୍ରକୁ କୋଳ କଲା ॥

ଅଞ୍ଜନା ସନ୍ନିଧକୁ ଗଲା ପୁତ୍ର ଘେନି ।
ରାଇଂଣ ବୋଇଲା ଶୁଣରେ କାମେନୀ ॥
ପୁତ୍ର ତୋର ସୂର୍ଯ୍ୟକୁ ଗିଳିଲା ଅବହେଳେ ।
ଇନ୍ଦ୍ର ଆସି ବଜ୍ର ମାଇଲା କୋପାନଳେ ॥
ମୁଖେଣ ବଜ୍ର ବାଜିଣ ପୁତ୍ର ମୋହ ଗଲା ।
ମୋହୋର ବୋଲେଣ ବ୍ରହ୍ମା ଦୟାକଲା ॥
ସବୁ ଦେବତାଏ ମିଳି ବର ଦେଲେ ।
ଆଜୁଂ ନାମ ଯେହାର ହନୁମନ୍ତ ବୋଇଲେ ॥୯୦
ଯେବେ ପୁତ୍ରକୁ ତୋର ସମ୍ଭାଳ ନାରୀବର ।
ଯେତେ ବୋଲି ଅନ୍ତର୍ଦ୍ଧାନେ ଗଲେକ ସମିର ॥
ପୁତ୍ରକୁ କୋଳେ ଧରି ବସିଲା ଜନନୀ ।
ମୁଖେ ଚୁମ୍ବନ୍ୟ ଦେଲା ସ୍ନେହ ଭାବ ଘେନି ॥
ଯେମନ୍ତେ କେତେହେଂ ଦିନ ଯହୁଂ ଗଲା ।
ହନୁମନ୍ତର ବଳ ଅସଂଖ୍ୟ ହୋଇଲା ॥
ବନସ୍ତରେ ପଶି ମାରଇ ମତ୍ତହସ୍ତୀ ।
ସିଂହ ପାଦ ଧରି ବୁଲାଇ ଊର୍ଦ୍ଧ୍ୱ ଗତି ॥
ମୃଗ ଶୂକର ମାରଇ ଜୀବଜନ୍ତୁ ।
ବନବାସୀମାନଙ୍କୁ ଦେଖିଲେ ଦିଅଇ ଅପମୃତ୍ୟୁ ॥୧୦୦
ଋଷିମାନଙ୍କର ମଢ଼ିଆନ୍ତ ଭାଙ୍ଗି ।
ଉଛୁଡ଼ି ଘେନିଣ ସେ ଚିରଇ ଧୋତି ପାଟିଂ ॥
ବେଳେ ବେଳେ ଅନ୍ୟାଏ କଲାକ ବହୁତ ।
ସେ କଥା ଜାଣି ଆସି ମିଳିଲା ମରତ ॥
ପୁତ୍ରକୁ କୋଳ କରି ଧରିଣ ତିଆରି ।
କିମ୍ପା ବାବୁ ଅନ୍ୟାଏ କରୁ ନ ବିଚାରି ॥
ଧର୍ମେ ସେ ପ୍ରାପତ ହୋଅଇଂ ଶୁଭ କର୍ମ ।
ଅନ୍ୟାଏ ଆଚରିଲେ ନ ସହିବ ଧର୍ମ ॥
ତପର ବଳେ ସେ ଦେବତାଏ ଅମର ।
ତପ ନ କରିଣ ମରନ୍ତି ଅସୁର ॥ ୧୦
ତପ ନ କଲେଣ ନୋହି ବାବୁ ସୁଖି ।
ତପ ଛାଡ଼ିଲେ ପୁଣ ସର୍ବଦା ହୋଏ ଦୁଃଖୀ ॥
ତୁ ଯେବେ ବାବୁରେ ଅନ୍ୟାଏ ନ କରିବୁ ।
ତପୀମାନଙ୍କୁ ତୁ ସେବା କରିଥିବୁ ॥

ଯେତେ ବୋଲି ପବନ ଅନ୍ତରୀକ୍ଷେ ଗଲା ।
ତିଆରିବାର ବୋଲ ହନୁମନ୍ତ ନ କଲା ॥
ବଳେ ପ୍ରବଳ ହୋଇ ବୁଲଇ ବନସ୍ତ ।
ମଢ଼ିଆନ୍ତ ଭାଙ୍ଗି ଦୁଃଖ ଦିଅଇ ତପୋବନ୍ତ ॥
କୁଶ ମନ୍ତ ପୋଥି ଅଧାରି ଗୋଟି ନେଇ ।
ବିବିଧ ପ୍ରକାରେ ତପୀଙ୍କି ଦୁଃଖ ଦେଇ ॥୨୦
କୋପେ ଋଷିମାନେ ବୋଇଲେ ବଚନ ।
ବାପ ତିଆରିଲା କଥା ନ କଲୁ ହନୁମାନ ॥
ଥୋକାଏକ କାଳ ତୋର ବଳ ହତ ହୋଉ ।
ଅକାରଣ ସମଏ ବଳ ପ୍ରାପତ ତୋତେ ନୋହୁ ॥
ଦେବକାର୍ଯ୍ୟ ପଡ଼ିଲେ ହୋଅ ସାମରଥ ।
ଯେବେ ବଳ ତୋର ହୋଉ ସର୍ବ ହତ ॥
ତତକ୍ଷଣେ ହନୁମନ୍ତ ନିପ୍ରାଣ ହୋଇଲା ।
ତପୀଙ୍କର ଶାପ୍ୟେ ବଳ କେଣେ ଗଲା ॥
ତେଜହୀନ ହୋଇ ତରିଲା ହନୁମନ୍ତ ।
ଶାନ୍ତି ହୋଇ ରହିଲା ପବନର ସୁତ ॥୩୦
କିଷ୍କିନ୍ଧା ଦେଶରେ ଖଡ଼ଦ ନାମେ ରାଜା ।
ବାଳୀ ସୁଗ୍ରୀ ତାର ଦୁହେଁ ସେ ତନୁଜା ॥
କାଳେଣ ନୃପତି ହୋଇଲା ନିଧନ ।
ବାଳୀ ନାମେଣ ଜ୍ୟେଷ୍ଠ ଯେ ନନ୍ଦନ ॥
ମନ୍ତ୍ରୀଗଣେର ମିଳି ତାକୁ ରାଜା କଲେ ।
ସୁଗ୍ରୀବର ସହିତେ ତାର ଆଗ୍ୟାଂଏ ରହିଲେ ॥
କାଳେଣ ଦଇବର ଅବଳେ ଭାଇ ବେନି ।
ଅଗ୍ୟାଂନ ପଣେଣ ହୋଇଲେ ଅନ୍ୟାଅନ୍ୟି ॥
ସୁଗ୍ରୀବର ସାନଭାଇ ପଳାଇଣ ଗଲା ।
ଋଷିମୁଖ ପର୍ବତେ ଯାଇଣ ଲୁଚିଲା ॥୪୦
ତହିଂ ହନୁମନ୍ତ ହୋଇଲା ତାକୁ ସାହା ।
ବୋଲନ୍ତି ଅଗସ୍ତି ଶୁଣ ରଘୁନାହା ॥
ପୂର୍ବର କଥାମାନ କହିଲି ତୋର ଆଗେ ।
ରାବଣ ହନୁମନ୍ତ ଜନ୍ମ ଯେବଣ ବାଗେ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ଉଠି ଅଗସ୍ତିଙ୍କି ନମସ୍କାର କଲେ ॥

ଆବର ଯେତେକ ଥିଲେ ଋଷିମାନେ ।
ତାହାଙ୍କୁ ବିନଏ ହୋଇଲେ ରଘୁନାନେ ॥
ଧନ ବସ୍ତ୍ର ଦେଇ ଅନେକ ପୂଜା କଲେ ।
ଆଜ ସେ ଧନ୍ୟ ମୁଂ ହୋଇଲି
ବୋଇଲେ ॥୫୦
ବ୍ରହ୍ମା ସମାନେ ତପୀ ମିଳଇ ମୋର ପୁର ।
କେବଣ ଭାଗ୍ୟ କଲେ ରଘୁବଂଶ ନୃପବର ॥
ତାହାଙ୍କ ପୁଣ୍ୟେଣ ଅଇଲେ ଋଷିମାନେ ।
ପାଦରେଣୁ ପକାଇଲେ ଅଯୋଧ୍ୟା ଭୁବନେ ॥
ଶୁଣିଣ ଋଷିମାନେ ରାମକୁ ପ୍ରଶଂସି ।
ସାଧୁ ସାଧୁ ମହିମା ତୋର ଦଶରଥ ଶିଷି ॥
ଯୁବାକାଳେ ତୋର ଯେତେକ ବିବେକ ।
ତୋତେ ପଟାନ୍ତର ନାହିଁ ତିନି ଲୋକ ॥
ବାବୁ ମହିମା ତୋର କଉଶୁଲାର ବଳା ।
ସମୁଦ୍ରେ ବାନ୍ଧିଲୁ ନେଇ ପର୍ବତର
ଭେଳା ॥୬୦
ବନ ଜନ୍ତୁ ରକ୍ଷ ବାନରଙ୍କୁ ବଶ୍ୟ କଲୁ ।
ଦେବତା ଅଜଏ ଦତ୍ୟକୁ ମାଇଲୁ ॥
ସୁରଗଣଙ୍କର ଦେଲୁ ସ୍ୱର୍ଗ ଭୋଗ ।
ତୋହୋରେ ଦେବତାଏ ପାଇଲେ
ହବିର୍ଭାଗ ॥
ତୁ ରାମ ତ୍ରୈଲୋକ୍ୟଈଶ୍ୱର ଶିରୋମଣି ।
ବ୍ରହ୍ମାଣ୍ଡ ଠାକୁର ତୁ କୋଦଣ୍ଡ କାଣ୍ଡ ପାଣି ॥
ଭୋ ରାମ ତୁ ଆମ୍ଭଙ୍କୁ ଦୟା କରିଥିବୁ ।
ଆମ୍ଭେ ତ୍ରିସନ୍ଧ୍ୟାରେ କଲ୍ୟାଣ କରିବୁ ॥
ଯେତେ ବୋଲି ମୁନିଏ ବେଦ ଧ୍ୱନି
କଲେ ।
ରଘୁନାଥଙ୍କ ଶିରେ ଆଶିଷ୍ୟ ନେଇ
ଦେଲେ ॥୭୦
ଯୁଗେ ଯୁଗେ ରାଜ୍ୟ କରସି ବୋଲି ଭାଷି ।
ଯିବୁ ବୋଲି ଉଠିଲେ ସକଳ ମହାଋଷି ॥
ନଗରୁ ବାହାର ହୋଇଗଲେ ତପୋବନ୍ତ ।
ପଛେଣ ଗୋଡ଼ାଇଛନ୍ତି ଜାନେକୀର କାନ୍ତ ॥
ଥୋକାଏକ ଦୂରେ ରହିଲେ ତପୀମାନେ ।
ଶ୍ରୀରାମଙ୍କୁ ବୋଇଲେ ବାହୁଡ଼ ରଘୁନାନେ ॥

ଇନ୍ଦ୍ରର ସମାନେ ତୁ ଅଟୁ ନୃପବର ।
ଚନ୍ଦ୍ର ସମାନେ ଆହାଲାଦ ତୋର ॥
ତୁ କିମ୍ପା ଆମ୍ଭଙ୍କୁ ଗୋଡ଼ାଉ ଯେତେ ବାଟ ।
ଯେ କଥା ଆମ୍ଭଙ୍କୁ ଅଟଇ ବଡ଼ ଘାଟ ॥୮୦
ବାହୁଡ଼ି ଯାଅ ବୋଲି କଲ୍ୟାଣ ମୁନି କଲେ ।
ରାଘେବ ନେଉଟିଲେ ମୁନିମାନେ ଗଲେ ॥
ଶ୍ରୀରାମ ବୋଇଲେ ସୁମନ୍ତଙ୍କୁ ଚାହିଁ ।
ସରଯୁ ନଦୀରେ ଆହାର୍ଣ୍ଣେକ ସାରଇ ॥
ଯେସନେକ ବୋଲି ହୋଇଲେ ଶୁଚିବନ୍ତ ।
ସନ୍ଧ୍ୟା ସୁମରିଲେ ଜାନେକୀର କାନ୍ତ ॥
ମରଗଜ ଚଢ଼ି ବାହୁଡ଼ା ବିଜେ କଲେ ।
କେ ନେଇ ଶ୍ୱେତ ଚାମର ଢାଳିଲେ ॥
ନିରନ୍ତରେ ସନ୍ୟ ବୋଲନ୍ତି ଚାଲ ଚାଲ ।
ବାଦ୍ୟମାନ ବାଜିବାରେ ନ ଶୁଭଇ
ବୋଲ ॥୯୦
ସ୍ୱର୍ଗେ ପୁଷ୍ପ ବୃଷ୍ଟି କରନ୍ତି ଦେବ ନାରୀ ।
ଆନନ୍ଦେ ପୁରୁଷମାନେ ଜଏ ଜଏ କରି ॥
ବାବୁ ରାମ ରାଜା ବୋଲି ଶିରେ ଦେଲେ
କର ।
ହରଷେ ଗୋଡ଼ାଇ ଅଛନ୍ତି ସଂଗତର ॥
ଯୁବତୀଗଣ ମିଳିଣ ହୁଳହୁଳି ଦ୍ୟନ୍ତି ।
ଆଜ ଭଲ କରି ଦେଖିଲୁ ବୋଲନ୍ତି ॥
ଅଭିଷେକ ମଣ୍ଡଣିମାନ ନିହାଇଂ କାଢ଼ାନ୍ତି ।
ତେଣୁ କରି ଘାମାନ ଶୋଭା ପାଉଛନ୍ତି ॥
ଅନ୍ନ ବସ୍ତ୍ର ପାଣି ପଣା ଛତ୍ରମାନ ।
ମାଗିଲା ଲୋକଙ୍କୁ ଦିଅନ୍ତି ଅବିଚ୍ଛନ୍ନ ॥୧୦୦
ସବୁଙ୍କରି ସ୍ୱରୀରେ ଅଛି ଦେବାଦୟା ।
କେହି କାହାକୁହିଂ ନ କରନ୍ତି ମାୟା ॥
ଅଭିଷେକ ଦିନ ବନ୍ଦାଇଲେକ ନାରୀ ।
ସେହି ବେଶମାନ ଅଛି ସବୁଙ୍କରି ॥
ରୂପେଣ ଅତି ସୁନ୍ଦର ଯୁବାଏ ବଏସ ।
ସ୍ୱର୍ଗର ଅପଛରା ଜାଣିଣ ସାଦୃଶ୍ୟ ॥
ସଭିଏ ନାଗେରୀ ଜାଣନ୍ତି ରତିକଳା ।
ପୁରୁଷହୁ ସ୍ତିରୀମାନେ ଶୃଙ୍ଗାରେ ଅନର୍ଗଳା ॥
ଆଖିକି ଆଖି ମାରି କରନ୍ତି ଚାହାଣୀ ।

କହିବାର ଛଟକେ ମୋହନ୍ତି ବିଳାସୁଣୀ ॥୧୦
ହାଥେ ହାଥେ ଲଗାଇଂ ମୁଖକୁ ମୁଖ ଦ୍ୟନ୍ତି ।
ଗୋଡ଼ର ଅଙ୍ଗୁଷ୍ଠି ଘେନିଣ ସମାଦି କରନ୍ତି ॥
ଧନେ ଗରୁହଂସୀ ସମ୍ଭେଦେ ଗରୁଆଇଂ ।
ବଏସେ ଉତକର୍ମ ଯଉବନେ ବାଇ ॥
ଶ୍ରୀରାମର ରାଜ୍ୟେ ତ କିଛି ନାହିଂ ଭଏ ।
ତେଣୁ କରି ପ୍ରମଦା ହୋଇଛନ୍ତି ମଏ ॥
ହାଥୀ ଦନ୍ତ ଭିତରେ ପଶିଗଲେକ
ଝସାଇଂ ।
ଦେଖିଣ କର କର ହସନ୍ତି ରଘୁସାଇଂ ॥
ଯେଥୁ ଅନନ୍ତରେ ଶୁଣିମା ଶାକାୟେରୀ ।
ଶ୍ରୀରାମଚନ୍ଦ୍ର ଯାଇଂ ନବରେ ବିଜେ
କରି ॥୨୦
ହସ୍ତୀରୁ ଓହ୍ଲାଇଂ ଭିତରକୁ ଗଲେ ।
ମର୍ଦ୍ଦନ ମାଜଣା ସାରି ମଣୋହିକି ଗଲେ ॥
ବେଳ ଅସ୍ତ ହୁଅନ୍ତେ ସନ୍ଧ୍ୟା ସୁମରି ।
ଆଦିତ୍ୟଙ୍କୁ ଅର୍ଘ ଦେଲେ ରାବଣାରି ॥
ରଜନୀ ପ୍ରବେଶେ ହୋଏ ନିଅବକାଶ ।
ଶୁଭଇ ଶଙ୍ଖ କାହାଳୀ ହୁଳହୁଳି ଘୋଷ ॥
ଦିବ୍ୟ ବେଶ ହୋଇ ଭିତରକୁ ଗଲେ ।
ଶେଯ୍ୟା ମନ୍ଦିରେ ସୀତୟାକୁ ଦେଖିଲେ ॥
ଦିବ୍ୟ ବେଶ ହୋଇ ଅଛନ୍ତି ଜନେକୀ ।
ଉଠି ନମସ୍କାର କଲାକ ସ୍ୱାମୀକି ॥୩୦
ପ୍ରିୟା ଭୁଜ ଧରି ପଲଙ୍କେ ବିଜେ ରାମ ।
ଜାଣିଣ ପଟାନ୍ତର ଦିଶନ୍ତି ରତି କାମ ॥
ବିବିଧ ବିନୋଦେ ପୁହାଇଲେ ରାତି ।
ପୂର୍ବ ଦିଗେ ପାଣ୍ଡୁର ଦିଶିଲା ପାହାନ୍ତି ॥
ପୁରେକ ଅନ୍ତରେ ଗାଇଲେ ନଟେ ଗୀତ ।
ବଙ୍ଗଳା ଧନାଶ୍ରୀ ରାଗେଣ ମୋହିଲେ
ରାମଚିତ୍ତ ॥
ବାଳୀକି ମାରିବା ସମୁଦ୍ର ହିଂ ତରିବା ।
ରାବଣଙ୍କୁ ମାରି ବିଭୀଷଣଙ୍କୁ ରାଜ୍ୟ ଦେବା ॥
ଅଯୋଧ୍ୟାଏ ଅବିଷେକ ଦେବତାଏ
ଆସିବା ।
ଜାନେକୀକି ଘେନିଣ ସୁଖେ ବିଳସିବା ॥୪୦

ଯେମାନ ଗୀତ ଯୋଡ଼ି ଗାଇଲେ
ନଟମାନେ ।
ଆନନ୍ଦ ହୋଇଲେ ଶୁଣି ସୀତାରଘୁନାନେ ॥
ଯେଥୁ ଅନନ୍ତରେ ଶୁଭିଲା ଶଙ୍ଖ ଧ୍ୱନି ।
ଜାଣିଲେ ପାହିବାକୁ ନିକଟ ରଜନୀ ॥
ଅଳସ ଛାଡ଼ିଣ ଉଠିଲେ ରାମ ସୀତ୍ୟା ।
ହସିଣ ବୋଇଲେ ଜନେକ ଦୋହିତା ॥
ଭୋ ରଘୁନନ୍ଦନ ତୁମ୍ଭେ ରୂପେଣ ଉତ୍ତମ ।
ବ୍ରହ୍ମାଏ କହିଲେ ତୁମ୍ଭେ ଶ୍ରୀପୁରୁଷୋତ୍ତମ ॥
ସ୍ୱାମୀ ଧାର୍ମିକ ପଣେ ତୋତେ ନାହିଁ
ସମସରି ।
ଧନୁ ଧଇଲେ ସମ ନୋହଇ
ତ୍ରିପୁରାରି ॥୫୦
ଅପାପୀ ପୁରୁଷ ତୁମ୍ଭେ ଅବୟ ଅଚ୍ୟୁତ ।
ବ୍ରହ୍ମାଣ୍ଡ ଈଶ୍ୱର ତୁ କଉଶୁଲ୍ୟାର ସୁତ ॥
ସ୍ୱାମୀ ପର୍ଶୁରାମ ଥିଲା ଆନ କ୍ଷତ୍ରୀ ।
ଯେକୋଇଶି ବାର ସେ ସାଧିଲାକ ପୃଥ୍ୱୀ ॥
ସେ ତୋର ମୁଖ ଦେଖିଣ ପଳାଇଲା ।
ରାବଣ ସଗୋତ୍ର ଗୋଟା କୋପେ
ମିଳାଇଲା ॥
ସ୍ୱାମୀ ବ୍ରହ୍ମଋଷିମାନେ ତୋତେ ଅଭିଷେକ
କଲେ ।
ବ୍ରହ୍ମାଦି ଦେବତାଏ ତୋତେ ଦେଖିଚ
ଆସିଥିଲେ ॥
ଚଉଦ ଭୁବନେ ତୋର କୀରତି ବିସ୍ତାର ।
ତୋ ତହୁଂ ତିନିପୁରେ ନାହିଂ
ବଳୀଆର ॥୬୦
ଲକ୍ଷେ ରାଜା ତୋତେ ସେବା କରିଛନ୍ତି ।
ବନ ଜନ୍ତୁମାନେ ତୋ ଆଗ୍ୟାଂରେ ଚଳନ୍ତି ॥
ତୋହୋ ପାଦ ଲାଗନ୍ତେ ଅହିଲା ମୋକ୍ଷ
ହୋଇ ।
ତୋହୋ ନାମ ସୁମରନ୍ତେ ମୃତ୍ୟୁହିଂ ନୁହଇ ॥
ସ୍ୱାମୀ ଅନେକ ପୁଣ୍ୟେ ହୋଇଲି ତୋର
ଦାସୀ ।
ମୋତେ ଦୟା କରିଥିବ ବ୍ରହ୍ମରାଶି ॥

ଯେତେ ବୋଲି ଶ୍ରୀରାମ ଚରଣ ଦୁଇ ଧରି ।
ଅନୁଗ୍ରହ ମାଗଇ ଜନେକ କୁମାରୀ ॥
ହସିଣ ରଘୁନାଥ ସୀତ୍ୟାକୁ କୋଳ କଲେ ।
ତୁ ମୋର ପ୍ରାଣର କାରେଣୀ
ବୋଇଲେ ॥୭୦
ଯେଥୁ ଅନନ୍ତରେ ପାହିଲାକ ରାତି ।
ଶେଯ୍ୟା ଛାଡ଼ିଣ ଉଠିଲେ ରଘୁକୁଳପତି ॥
ଯେ ବିଧି ନିତ୍ୟ କର୍ମ ସାରିଲେ ତତକ୍ଷଣ ।
ଦ୍ରଶନ କଲେ ଆସି ଶତ୍ରୁଘନ ଲକ୍ଷଣ ॥
ବଶିଷ୍ଠ ସୁମନ୍ତ ମନ୍ତ୍ରୀ ପିତାପୁତ୍ର ଆଏ ।
ସ୍ନାହାନ ସନ୍ଧ୍ୟା ସାରିଲେ ରାମଚନ୍ଦ୍ର ରାଏ ॥
ଦେବ ପିତୃ ତର୍ପଣ ସାରିଣ ବିଜେ କଲେ ।
ଆପଣେ ରଘୁନାଥ ଅଗ୍ନିରେ ହୋମ
ଦେଲେ ॥
ଦଶ ଦିଗପାଳ ନବଗ୍ରହ ତୋଷି ।
ଦେବାର୍ଚ୍ଚନ ନବରେ ବିଜେ କଲେ
ଆସି ॥୮୦
ଇଷ୍ଟ ଦେବତାଙ୍କର ଲକ୍ଷ୍ମୀ ନାରାୟଣ ।
ଆବର ଭୁବନେଶ୍ୱରୀ ବିଶ୍ୱନାଥ ବାଣ ॥
ଷୋଡ଼ଶ ପ୍ରକାରେ ପୂଜା ତାକୁ କରି ।
ପ୍ରସାଦ ଘେନିଣ ତହୁ ବିଜଏ ରାବଣାରି ॥
ଦିବ୍ୟ ବେଶ ହୋଇ ନାନା ଅଳଙ୍କାର
ଶୋଭା ।
ଶରୀର ବିରାଜଇ ମର୍କତ ମଣି ପ୍ରଭା ॥
ଶିରେ ଶ୍ୱେତଛତ୍ର ଭ୍ରଥ ଅଛି ଧରି ।
ଆସନ୍ତେ ହୁଳହୁଳି ଦିଅନ୍ତି ନରନାରୀ ॥
ଶତ୍ରୁଘନ ଲକ୍ଷଣ ଢାଳନ୍ତି ଚାମର ।
ସୁମନ୍ତ କରେ ରାମ ଦେଇଛନ୍ତି କର ॥୯୦
ପଟୋଆର ପଡ଼ିଅଛି ଚଉକତି ।
ଖୁଣ୍ଟିଆ ପହଣ୍ଡ ମଣାଇ ଘେନିଯାନ୍ତି ॥
ଆସ୍ଥାନ ନବରେ ରାମ ବିଜେ ଯାଇଂ
କଲେ ।
ମଣ୍ଡିଲାର ଅଛି ନେତ ବୂଳୀରେ ବସିଲେ ॥
ଲକ୍ଷେକ ନୃପତି ଦ୍ରଶନ କଲେ ଆସି ।
ବଶିଷ୍ଠ ସହିତେ ଅଛନ୍ତି ସକଳ ଋଷି ॥

ତାହାଙ୍କୁ ରଘୁନାଥ ନମସ୍କାର କରି ।
ବୀର ଆସନେ ବସିଲେ କମାଏଣ ଧରି ॥
ଚତୁରାଙ୍ଗ ବଳ କଳଣା ନ ଯାଇ ।
ହସ୍ତୀ ଘୋଡ଼ା ପାଇକ ପଟୋଆରି
ହୋଇଂ ॥୧୦୦
ମଧ୍ୟେ ନାଚ ଗୀତ କରନ୍ତି ଚାରୁ ନଟୀ ।
ତରୁଣ ବସନ୍ତ ରାଗେ ପାଡ଼ନ୍ତି ଦିବ୍ୟ କାଠି ॥
ସମ୍ପର୍ବ ଆସ୍ଥାନେ ଦଶରଥ ସୁତ ।
ସ୍ୱର୍ଗେ ବିହରଣ କରେ ଯେହ୍ନେ ପୁରୁହୂତ ॥
ରାଜାମାନେ ସମସ୍ତ ଅକ୍ଷତ ନେଇଥିଲେ ।
ଭ୍ରଥର ବୋଲେ ଲଙ୍କାକୁ ଯିବାକୁ ଅଇଲେ ॥
ଯେସନେକ ସମଏ ଯହୁଂ ଅଇଲେ
ଶ୍ରୀରାମ ।
ରାଜାମାନ ଲୋକ ପେଷିଲେ ନିଜ ଗ୍ରାମ ॥
ବିବିଧ ପଦାର୍ଥ ଅଣାଇଲେ ବେଗେ ।
ଅକ୍ଷତ ବୋଲି ଆଣି ଦେଲେ ଶ୍ରୀରାମର
ଆଗେ ॥୧୦
ଗଜ ଅଶ୍ୱ ଧନ ଚାମର ଦିବ୍ୟ ନାରୀ ।
ଦେବାଙ୍ଗ ବସନ ଗନ୍ଧ ଚନ୍ଦନ କସ୍ତୁରୀ ॥
ଦେଖିଣ ରଘୁନାଥ ହୋଇଲେ ହରଷ ।
ରାଜାମାନଙ୍କୁ ବହୁତ କଲେକ ପଉରୋଷ ॥
ସୁଗ୍ରୀବର ସହିତେ ଅଛନ୍ତି ବିଭୀଷେଣ ।
ଚାରି ମନ୍ତ୍ରୀ ଦଇତ ବଳ ଅପ୍ରମାଣ ॥
ଅଙ୍ଗଦ ହନୁମନ୍ତ ଜମ୍ବେବ ଋକ୍ଷପତି ।
ଗନ୍ଧମାର୍ଦ୍ଦନ ଅଛନ୍ତି ଶ୍ରୀରାମର କତି ॥
କେଶରୀ ଶତବାଳି ଆବର ଶଉରୀ ।
ରଘୁନାଥ ସନ୍ନିଧ୍ୟେ ଚାମର ଛନ୍ତି ଢାଳି ॥୨୦
ବସନ୍ତ ଚନ୍ଦନ ସେ ନଳନୀଳ ଅଛନ୍ତି ।
ଗବଏ ଗବାକ୍ଷ ବିଞ୍ଚଣୀ ଘେନି ବିଞ୍ଚନ୍ତି ॥
ଚନ୍ଦନ ଡାଳିମ୍ଭ ରମଣ ସେନାପତି ।
ଦଶକାଳ ବୃଦ୍ଧ ବିବିଧ ସମ୍ପାତି ॥
ମହୀନ୍ଦ୍ର ଦୃବିନ୍ଦ ପବନ ପାରିଜାତ ।
କୁମୁଦ କାମୋଦ କାଞ୍ଚଣ ସୁରସେନ ॥
ଋଷଭ ଦଧିମୁଖ କାଳିମୁଖ ବୀର ।
ତାରାକ୍ଷ ରମଣ ଭାଙ୍ଗନ୍ତି ପନୀଅର ॥

ଗହ ଗହ ଗହଳ ଶ୍ରୀରାମ ଆସ୍ଥାନ ।
ବଶିଷ୍ଠ ମୁନି କହନ୍ତି ପୂର୍ବର
କଥାମାନ ॥୩୦
ପ୍ରଶୁରାମ ବୋଲି ନୃପତିଏ ଥିଲା ।
ଆପଣେ ଭିଖ ମାଗି କୁଟୁମ୍ବ ପୋଷିଲା ॥
ପରଜାନ୍ତ ତହୁଂ କର ନ ଘେନଇଂ କିଛି ।
ପୁତ୍ର ତହିଂ ଅଧିକ କରି ପରଜା ପାଳୁଅଛି ॥
ଶତ୍ରୁ ହୋଇଲେ ଆସି ଯୁଝଇ ଆପଣେ ।
ଲକ୍ଷ ଲକ୍ଷ କରି ହାଣଇ ଯେକ ବାଣେ ॥
ଡରେ ଅଇରି ନ ମାଡ଼ନ୍ତି ଦେଶ ।
ସର୍ବଦା ପର୍ଶୁରାମ ଧର୍ମେଣ ବିଶ୍ୱାସ ॥
ଭିକ୍ଷା ମାଗିଣ ତଣ୍ଡୁଳ ଯେତେ ପାଇ ।
ତାହା ସେ ନୃପତି ରନ୍ଧନ କରି ଖାଇ ॥୪୦
ପାଟ ମହାଦେଈ ଆପଣେଣ ରାଏ ।
ଦୁହିଙ୍କରି ମନ ଧର୍ମେଣ ସେ ଥାଏ ॥
ଦିନେକ ରାଜା ନଗ୍ରେ ଭିକ୍ଷା ମାଗିଗଲା ।
ସାଧୁତର ଦୁଆରେ ପ୍ରାର୍ଥନା ସେହୁ କଲା ॥
ଗୃହସ୍ଥାଣୀ ତାହା କର୍ଣ୍ଣେ ନ ଶୁଣିଲା ।
ଅସ୍ତି ନାସ୍ତି ନ ଶୁଣି ରାଜାହିଂ ରହିଥିଲା ॥
ତୁଲୋ କେଡ଼େ ଲୋକ ନ ଶୁଣୁ ଯେ ତୁହି ।
ଘଡ଼ିଏ ହେଲା ରାଜା ଦ୍ୱାରେ ଉଭା ହୋଇ ॥
ଯାହାର ପ୍ରସାଦେ ବିପୁଳ ଭୋଗ ଭୁଞ୍ଜି ।
ସେହୁ ଭିକ୍ଷା ମାଗଇ ଆମ୍ଭର ମନରଞ୍ଜି ॥୫୦
ତହିଂକି ପୁଣି ତୁମ୍ଭେ ଯେଡ଼େକ ଅଗିଆନ ।
ଅସ୍ତି ନାସ୍ତି କଥା ନ କହ ବଚନ ॥
ଗୃହସ୍ଥାଣୀ ବୋଇଲା ଲୋକଙ୍କ ବୋଲ
ଶୁଣି ।
ଘଣ୍ଟା ବଜାଇଣ କି ଅଇଲା ନୃପମଣି ॥
ତେବେ ସେ ଜାଣିମା ନା ଭିତରେଣ ଥାଇଂ ।
କୀରତି ଝଗଡ଼େ ତ ନାଗିଅଛି ମୁହିଂ ॥
ତାହାଙ୍କର କଥାମାନ ଶୁଣିଲା ନୃପବର ।
ବୋଇଲା ଯେହୁ କଥାତ ଅଟଇ ବେଭାର ॥
ଯେ ଯାହା ବ୍ୟାପାରେ ଲୋକେ ଲାଗିଥାନ୍ତି ।
ମୁହିଂ ଆସି ଦ୍ୱାରେ ମାଗି କେହି ନ
ଜାଣନ୍ତି ॥୬୦
ଯେ କଥା ତ ମୋହୋର ଚିତ୍ତକୁ
ଯୋଗାଇଲା ।
କାଲିଠାରୁ ଘଣ୍ଟା ବାନ୍ଧି ଆସିବି ବୋଇଲା ॥
କୋପ ନ କଲା ସେ ମହାରାଜା ହୋଇ ।
ଜାନୁରେ ଘଣ୍ଟା ବାନ୍ଧି ବୁଲଇ ନରସାଇଂ ॥
ଜାଣି ନଗ୍ର ଲୋକେ ଭିକ୍ଷା ଆଣି ଦେଲେ ।
ଧନ୍ୟ ଧନ୍ୟ ରଜା ବୋଲିଣ ବୋଇଲେ ॥
ସ୍ୱର୍ଗେ ସୁରଗଣ ସାଧୁ ସାଧୁ କରନ୍ତି ।
ଜାନୁଘଣ୍ଟ ପର୍ଶୁରାମ ବୋଲିଣ ବୋଲନ୍ତି ॥
ଯୁଗେ ଯୁଗେ କୀରତି ରହିଲା ଶାସ୍ତ୍ର
ଯୋଗେ ।
ତାହାକୁ ସେ ନୃପତି ବୋଲନ୍ତି ଭୂମି
ଭାଗେ ॥୭୦
ବେଣୁ ବୋଲିଣ ରାଜା ଯେକ ଥିଲା ।
କୁଲା କୁଣ୍ଢୋଇ ବିକିଣ ଦିନ ନେଲା ॥
ପରଜା ପାଳଇ ସେ ଅତିଯତ୍ନ କରି ।
ସେହୁ ଚକ୍ରବର୍ତ୍ତୀ ହୋଇଲା ବସୁନ୍ଧରୀ ॥
ସହସ୍ର ଯୋଜନେ ଯେବେ ଦୁଷ୍ଟ ଲୋକ
ଥାନ୍ତି ।
ମନ୍ତ୍ରିଣ ନୃପତି ହାଣଇ ବାଆଂଶ ପାତି ॥
ସେହିଠାରେ ମୁଣ୍ଡ ଛିଡ଼ି ପଡ଼ଇ ଧରଣୀ ।
କୁଲା କୁଣ୍ଢୋଇ ବିକଇ ପୁଣି ତାହାର ରାଣୀ ॥
ତାହା ସେ ମଣୋହି ପୁଣ କରନ୍ତି
ବେନିଜନେ ।
ଯେହି ପୃଥ୍ୱୀରେ ଥିଲେ ଯେମନ୍ତ
ରାଜନେ ॥୮୦
ପୋଖରୀ ଭିତରୁ ପାଣି ଆଣଇ ଯାଇ ରାଣୀ ।
ପାଦ ନ ତିନ୍ତଇ ସ୍ୱରୂପ ଏ ବାଣୀ ॥
ଜଳେ ପଶନ୍ତେ ପାଦ ନ ତିନ୍ତିଲା ।
ଯହୁ ସେ ରାଜା ସତ୍ୟ ପାଳିଥିଲା ॥
ଯେସନେକ କରି ପାଳଇ ଜନ ପ୍ରଜା ।
ପ୍ରଭାତେଣ ନାମ ସୁମରନ୍ତି ବେଣୁ ରାଜା ॥
ଶ୍ରୀବନ୍ତ ନାମେ ନୃପତିର ମହିମା
ଅଗୋଚର ।
ଆପଣା ଦେହରୁ ଦେଲା ଶେଣାକୁ ଆହାର ॥
ଜୀମୁତବାହାନ ରାଜା ଅସଂଖ୍ୟ କର୍ମ କଲା ।
ଶରଣ ରଖି ଗରୁଡ଼େ ଅଧେକ ଦେହ
ଦେଲା ॥୯୦
ଭୋ ରାମ ତୁମର ଉପର ବଂଶେ ହରିଚନ୍ଦନ
ମହାରଥା ।
କହିଲେ ନ ସରଇ ତାହାରର ପୁଣ୍ୟ କଥା ॥
ଧର୍ମର ଛଳେ ରାଜା ଭାରିଯା ବିକ୍ରେ କଲା ।
ଆଜହିଂ ସେ କଥା ପୁରାଣେ ରହିଲା ॥
ବଳି ନୃପତି ଧର୍ମେ ଜିଣିଲା ତିନିପୁର ।
ତାହାକୁ ଅହନ୍ତ କଲେ ସର୍ବସୁର ॥
କପଟେ ବାସୁଦେବ ମାଗିଲେ ଆସି ଦାନ ।
ଜାଣିଣ ସତ୍ୟ କଲା ବଳି ରାଜନ ॥
ସତ୍ୟ ରଖିବା ନିମନ୍ତେ ରାସାତଳେ ଗଲା ।
ଯେ ମହୀ ମଣ୍ଡଳେ କଥା ରୁହାଇଲା ॥
ଆବର ଅନେକ ଯେଥି ଥିଲେ ନୃପମଣି ।
ଧର୍ମ ପରାଏଣ ସେ ପାପ ପୁଣ୍ୟ ଗ୍ୟାନୀ ॥
ଧର୍ମ କୀରତି ଯୁଗେ ଯୁଗେ ଥାଇ ।
ତୁ ରାଜା ଧର୍ମେଣ ପାଳ ଯେହୁ ମହୀ ॥
ଶୁଣିଣ ରଘୁନାଥ ହସିଣ ବୋଲନ୍ତି ।
ଭୋ ବଶିଷ୍ଠ ତୁ ଯେଉଂଣ ଦେଶ ମନ୍ତ୍ରୀ ॥
ସେ ଦେଶ ସ୍ୱଭାବେତ ସୁଲଭ ହୋଇବ ।
ପୃଥ୍ୱୀ ଦେବୀ ଆନନ୍ଦେ ବିବିଧ ରତ୍ନ ଦେବ ॥
ମୋତେ କିମ୍ପା ଶ୍ଳେଷନା କହୁନ୍ତୁ ଭୋ ଯତି ।
ଶୁଣିଣ ହୋଇ ହୋଇ ବୋଇଲେ ସକଳ
ନୃପତି ॥୧୦
ଯେଥୁ ଅନନ୍ତରେ ଶୁଣଗୋ ମାହେଶ୍ୱରୀ ।
ମିଥିଳା ଦେଶରେ ଯେ ଜନେକ ଦଣ୍ଡଧାରୀ ॥
ଶ୍ରୀରାମଙ୍କୁ ତାହିଂ ବୋଲନ୍ତି ବଚନ ।
ବଶିଷ୍ଠେ କହିଲେ ଏ ଯେତେକ କୀର୍ତ୍ତିମାନ ॥
ସେମାନେ ହେ ରାମ ନୁହନ୍ତି ତୋତେ ସରି ।
ତୁହି ସେ ଆଦିମୂଳ ଅଟୁ ରାବଣାରି ॥
ଅନନ୍ତ ପୁରୁଷୋତ୍ତମ ଅନନ୍ତଶୟନ ।
ଦେବାଧିରାଜ ଶିରୋମଣି ତୁ ଗରୁଡ଼ ଆସନ ॥
ଶଙ୍ଖ ଚକ୍ରଧାରୀ ତୁ ଅଟୁ ଚତୁର୍ଭୁଜ ।
ପୀତ ବସନ ଶ୍ରୀବତ୍ସ ଲାଞ୍ଛନ
ଅଧୋକ୍ଷଜ ॥୨୦

ଯତନେ ଜନମିଲୁ ଅସୁର ବଳମାରି ।
ଆନରେ ରାବଣ ଯହୁଂ ନୋହିଲା ସଂହାରି ॥
ମୋହୋରେ ପୁଣ୍ୟେ ତୋତେ ଦୋହିତା
ଦେଲି ।
ଅନେକ ଜନ୍ମର ପାପ ଛଡ଼ାଇଲି ॥
ଯେବେ ଶ୍ରୀରାମ ତୁ ମୋହାର ବୋଲକର ।
ଯେତେକ ଅଛି ମୋହର ଧନରତ୍ନ ଭଣ୍ଡାର ॥
ରାଜ୍ୟ ସହିତେଣ ତୋତେ ମୁହିଂ ଦେଲି ।
ରତ୍ନ ପଦାର୍ଥ ଗୋ ସୀତ୍ୟାକୁ ସମର୍ପିଲି ॥
ଚତୁରାଙ୍ଗ ବଳ ମୋର ତୋହୋର ସଙ୍ଗେ
ଥାଉ ।
କିମ୍ବା ମୁଂ ରାଜ୍ୟ ଭାର ବହିବଇଂ
ଆଉ ॥୩୦
ତୋହୋର ପ୍ରାଏକ ଜୁଆଇଂ ଅଛଇ
ଯାହାର ।
ଇହଲୋକ ପରଲୋକ ଭୟଥିବ କିମ୍ପାଇ
ତାହାର ॥
ତୁ ରାମ ସତ୍ୟବନ୍ତ ପୁରୁଷ ଗ୍ୟାନବନ୍ତ ।
ସୀତାର ଦୋଷ ମୁଂ ମାଗଇ ତୁମ୍ଭନ୍ତ ॥
ସେ ତୋହୋର ଦାସୀ ତୁ ତାହାର ସ୍ୱାମୀ ।
ତୁହି ସେ ନାରାଏଣ ସେ ଅଟେ ହାଦେ
ଲକ୍ଷ୍ମୀ ॥
ପ୍ରକୃତି ପୁରୁଷ ତୁମ୍ଭେ ଅଟ ବେନି ଜନ ।
ତୁହି ସେ ତାହାକୁ ବର ପଣେ ଭାର୍ଜନ ॥
ମୋହୋର ବୋଲିବାର ନୁହଇ ଉଚିତ ।
ତୁହି ସେ ପୁରୁଷୋତ୍ତମ ଅନାଦି
ଜଗତ୍‌ଭୂତ ॥୪୦
ଯେତେ ବୋଲି ଜନେକ ଉଠି ରାମକୁ
କୋଳ କଲେ ।
ସୀତୟାକୁ ତିଆରିଣ ମିଥିଳାକୁ ଗଲେ ॥
ଜନେକର ଯାନ୍ତେଣ ଶ୍ରୀରାମ ଗୋଡ଼ାଇଲେ ।
ନବରୁ ବାହାର ହୋଇ ସରଯୁ ଯାଏ ଗଲେ ॥
ଥୋକାଏ ଦୂରୁ ଆଇଲେ ବାହୁଡ଼ି ।
ମନୋରଥ ନାମେ ହୟବର ଚଢ଼ି ॥
ଶିରେ ଶ୍ୱେତଛତ୍ର ଉଡ଼ଇ ଫରହର ।
ରଥଗଜ ଅଶ୍ୱ ପାଦାନ୍ତି ଅପାର ॥
ନବରେଣ ବିଜଏ କଲେକ ଦାଶରଥି ।
ବୋଲନ୍ତି ସଦାଶିବ ଶୁଣ ଗୋ ପାର୍ବତୀ ॥୫୦
ଘୋଡ଼ାରୁ ଓହ୍ଲାଇଣ ରାମ ଭିତରକୁ ଗଲେ ।
ନିଜ ମଉଳାକୁ ରାମ ଯାଇଣ ବୋଇଲେ ॥
ଭୋ ମାତୁଳ ତୁମ୍ଭେ ଯାଅସି ନିଜପୁର ।
ପିତା ତୋହୋର ନିର୍ବଳ ହୋଇଲା ଶରୀର ॥
ତାହାକୁ ସମ୍ଭାଳିଣ ଥାଅତୁ ଯତ୍ନ କରି ।
ଚତୁର୍ଥ କାଳ ଆସି ହୋଇଲା ତାହାଙ୍କରି ॥
ରାଜ୍ୟର ଚରଚା ତୁ ନ ଛାଡ଼ିବୁ କ୍ଷଣେ ।
ଯେମନ୍ତେ ବିମନ ନ ଧରନ୍ତି ମନ୍ତ୍ରୀଗଣେ ॥
ମୋତେ ତୁ ସର୍ବଦା ସ୍ନେହ କରିଥିବୁ ।
ଚାର ପେଷି ପୁଣ ବାରତା ମୋତେ
ଦେବୁ ॥୬୦
ଯେତେ ତିଆରି ରାମ ଦେଲେ ବହୁତ ଧନ ।
ଅମୂଲ୍ୟ ରତ୍ନମଏ ଦେବାଙ୍ଗ ବସନ ॥
ଲକ୍ଷଣକୁ ବୋଇଲେ ତୁ ଥୋକାଏ ଦୂର
ଯାଅ ।
ସରଯୁ ପାରି କରିଣ ମାମୁଙ୍କୁ ପୁଆଅ ॥
ଶ୍ରୀରାମ ଆଗ୍ୟାଂରେ କଉଶୁଲ୍ୟା ଭାଇ ଗଲା ।
ଥୋକାଏ ଦୂରେ ଲକ୍ଷଣ ପୁଆଇ ଅଇଲା ॥
କାଶୀଶ୍ୱର ରାଜାକୁ ରାଇଲେ ରାମ ପାଶ ।
ଦେହ ଆଉଂସିଣ କହିଲେ ବିଶ୍ୱଆସ ॥
ବୋଇଲେ ଭୋ ରାଜ ଉପକାର ମୋତେ
କଲୁ ।
ଅସମଏ କାଳେ ଭ୍ରଥର ସଙ୍ଗେ ଥିଲୁ ॥୭୦
ତୁ ମୋହୋର ସୋଦର ଅର୍ଥେ ଅଧିକାରୀ ।
ମୋତେ ଉପକାର କଲୁ ସାଧୁ ମହିମା
ତୋହରି ॥
ଯେବେ ତୋହୋର ରାଜ୍ୟକୁ ଯାଅ ଯା
ନୃପତି ।
ସର୍ବଦା ସେନେହ ମୋତେ ଧରିଥିବୁ ତତ୍ତ୍ୱି ॥
ଯେତେ ବୋଲି ବହୁତ ଅଳଙ୍କାର ଦେଲେ ।
ଆପଣେ ରଘୁନାଥ ଉଠିଣ କୋଳ କଲେ ॥
ଗଉରୋବ କରିଣ ପଠିଆଇଲେ ତାହା ।
ଯେଥୁ ଅନନ୍ତରେ ଜାନେକୀ ଦେବୀ ନାହା ॥
ଲକ୍ଷେକ ରାଜାକୁ ହିଁ ସିନିଧ୍ୟକୁ ହକାରି ।
ହସିଣ କଥା କହନ୍ତି ରାବଣାରି ॥ ୮୦
ବୋଇଲେ ତୁମ୍ଭେମାନେ ଅଟ ଯେ ମହତ ।
ତୁମ୍ଭର ପ୍ରସାଦେ ମୁଂ ରାବଣ କଲି ହତ ॥
ତୁମ୍ଭର ପ୍ରସାଦେ ମୁଂ ସୀତାକୁ ପାଇଲି ।
ତୁମ୍ଭର ପ୍ରସାଦେଟି ଯେତେ଼ ଯଶ ଅରଜିଲି ॥
ଦିଗପାଳ ସମାନ୍ୟେଣ ଅଟ ତୁମ୍ଭେ ରାଏ ।
ଜାଣିଲି ତୁମ୍ଭର ମୋତେ ଅଛଇ ସଦଏ ॥
ଭାଇ ମୋର ଭ୍ରଥ ବୋଇଲା ମାତ୍ରେକ
ଅଇଲ ।
ଲଙ୍କାକୁ ଯିବୁ ବୋଲିଣ ସନମତ କଲ ॥
ସୋଦର ପ୍ରାଏ ହୋଇ ଘେନିଲ ମୋର
କଥା ।
ହିଂସା ନ କରି ତୁମ୍ଭେ ଅଇଲ
ମାହାରଥା ॥୯୦
ମୋହୋର ତୁମ୍ଭକୁ ଉପକାର କଲା ନାହିଂ ।
ବାବୁ ମର୍ଯାଦାବନ୍ତ ତୁମ୍ଭେ ଅଟ ନରସାଇଂ ॥
ଯେହି ପ୍ରୀତି ମୋତେ ସର୍ବଦାଏ କରିଥିବ ।
କାର୍ଯ କାଳେ ପୁଣ ଲୋକ ପେଷିଲେ
ଆସିବ ॥
ଶୁଣି ରାଜାମାନେ ଶିରେ ହସ୍ତ ଦେଲେ ।
ଆମ୍ଭେ ତୋହୋର ଭୃତ୍ୟ ଅଟୁସି
ବୋଇଲେ ॥
ତୁ ଦେବ ରାଜାଙ୍କରର ଉପରେ ଅଟୁ ଇନ୍ଦ୍ର ।
ରାଜେନ୍ଦ୍ର ପଦ ତୋତେ ଦେଲୁ ରାମଚନ୍ଦ୍ର ॥
ତୁ ଦେବ ଆମ୍ଭକୁ ସୁଦୟା କରିଥିବୁ ।
ଭ୍ରଥ ଲକ୍ଷଣ ଶତ୍ରୁଘନ ପ୍ରାଏ
ଦେଖିବୁ ॥୧୦୦
ଯେତେବେଳେ ଯିସ ଆଗ୍ୟାଂ ଦେବୁ
ରଘୁସାଇଂ ।
ତାହା ଆମ୍ଭେ ନିଶ୍ଚଏ କରିବୁ ଗୋସାଇଂ ॥
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷ ହୋଇଲେ ।
ବିବିଧ ଅଳଙ୍କାର ଧନ ବସ୍ତ୍ର ହିଁ ଦେଲେ ॥
ଯେ ଯାହାର ଅନରୂପେ କଲେ ଗଉରୋବ ।

ନିଜ ରାଜ୍ୟକୁ ଯାଅ ବୋଲି ବୋଇଲେ
ରାଘେବ ॥
ଶୁଣି ନୃପତିମାନେ ନମସ୍କାର କରି ।
ଯେ ଯାହାର ରାଜ୍ୟକୁ ଗଲେ ଦଣ୍ଡଧାରୀ ॥
ପର୍ବତ କନ୍ଦରୁ ଯେହ୍ନେ ନଦୀ ବହିଯାନ୍ତି ।
ରାଜାଙ୍କର ସୈନ୍ୟ ତେସନ ଦିଶନ୍ତି ॥୧୦
ବାଟେ ଯାନ୍ତେଣ ରାଜାମାନେ ବିଚାରିଲେ ।
କେବଣ ପାପ ଆମ୍ଭେ କଲଉଂ ବୋଇଲେ ॥
ଶ୍ରୀରାମଙ୍କୁ ନ ପାରିଲୁ ସେବାକରି ।
ସାମାନ୍ୟ ପାପ କି ବୋଲିବା ଆମ୍ଭରି ॥
ଅପୂର୍ବ ରାମାଏଣ ଯୁଧ୍ୟ ନ ଦେଖିଲୁ ।
ଦେବତାମାନେ ଦେଖିଲେ ବୋଲିଣ
ଶୁଣିଲୁ ॥
ଲଙ୍କାର ଦଇତ ପଡ଼ିଲେ ରାମବାଣେ ।
ଯୁଗେ ଯୁଗେ କଥା ରହିଲା ପୁରାଣେ ॥
ଶ୍ରୀରାମ ଅଟଇ ଆମ୍ଭର ବେନି ଆଖି ।
ଅନେକ ତପ କଲେ ଶ୍ରୀରାମଙ୍କୁ
ଦେଖି ॥୨୦
ଦତ୍ୟଙ୍କ ପାଇଂ ସେ ମଞ୍ଚେ ହେଲେ ଜାତ ।
ଶ୍ରୀରାମ ପ୍ରତ୍ୟକ୍ଷେ ଅଟନ୍ତି ବିଶ୍ୱଂନାଥ ॥
ଯେତେ ବୋଲି ଶ୍ରୀରାମଙ୍କ ପ୍ରଶଂସା କରନ୍ତି ।
ଯେ ଯାହା ଦେଶକୁ ବେଗେଣ ଚଳିଯାନ୍ତି ॥
ନିଜପୁରେ ପ୍ରବେଶ ହୋଇଲେ ନରସାଇଂ ।
ଅଯୋଧ୍ୟାକୁ ବାରତା ପଠିଆନ୍ତି କହି ॥
ଦୂତଙ୍କ ଗୋଚରେ ଉପହାର ଦେଲେ ।
ଭଲ ରଥ ଗଜଘୋଡ଼ା ସମର୍ପିଲେ ॥
ଭଲ ରତ୍ନ ଧନ ଭଲ ଅଳଙ୍କାର ।
ଦାସଦାସୀ ଚନ୍ଦନ କର୍ପୂର ତାମ୍ବୋଳ ॥୩୦
କସ୍ତୁରୀ ପନୀର ବିଚିତ୍ର ବର୍ଣ୍ଣେ ବସ୍ତ୍ର ।
ଅଗର ଚନ୍ଦନ ଅପୂର୍ବ ପାଟଛତ୍ର ॥
ଯେହ୍ନା ଦେଇଂ ରାମଙ୍କୁ ବିନୋଇ କହିଲେ ।
ଆମ୍ଭେ ତୁମ୍ଭର ଶରଣ ବୋଲିଣ ବୋଇଲେ ॥
ଯେତେକ ରତ୍ନ ଯେ ଦେଲେ ପଠିଆଇଂ ।
ଦୂତମାନେ ଶ୍ରୀରାମ ଛାମୁରେ ଦେଲେ
ନେଇଂ ॥

ଦେଖି ରଘୁନାଥ ହରଷ ହୋଇଲେ ।
ସୁଗ୍ରୀ ବିଭୀଷେଣକୁ ବାଣ୍ଟିଣ ତାହା ଦେଲେ ॥
ଦୂତଙ୍କୁ ଗଉରୋବ କରି ପଠିଆଇଂ ।
ଯେଥୁ ଅନନ୍ତରେ ଦିନାକେତେ ଯାଇଂ ॥୪୦
ସଭା କରିଣ ବସିଅଛନ୍ତି ରାମ ରାହୁ ।
ବଶିଷ୍ଠଙ୍କୁ ଚାହିଁଣ ବୋଲନ୍ତି କୋଦଣ୍ଡ କାଣ୍ଡ
ବାହୁ ॥
ଭୋ ମୁନିବର ଯେହୁ ସୁଗ୍ରୀବର ରାଏ ।
ଆବର ବିଭୀଷେଣ ବିଶର୍ବାର ତନଏ ॥
ଯେ ଦୁହେଂ ମୋହୋର ଅଟନ୍ତି ପ୍ରାଣସରି ।
ଅଙ୍ଗଦ ହନୁମତ ଏ ଜୀବନ ମୋହୋରି ॥
ଯେତେ ବୋଲି ଦୁହିଂଙ୍କୁ ସନିଧ୍ୟକୁ
ହକରାଇ ।
ଆପଣା ଶ୍ରୀଅଙ୍ଗୁ ଅଳଙ୍କାର କାଢ଼ି ଦେଇ ॥
ରକ୍ଷ ବାନରମାନଙ୍କୁ ହକାରିଲେ କତି ।
ଜଣେ ଜଣେକେ ପ୍ରଶଂସା କରନ୍ତି
ରଘୁପତି ॥୫୦
ବୋଇଲେ ତୁମ୍ଭେମାନେ ସଭିଏଂ ମୋର
ଭାଇ ।
ଆନ ଲୋକ କି ଯେଡ଼େ ସାହାପକ୍ଷ ହୋଇ ॥
ଯୁଝିବା ମରିବାକୁ ନ କଲ ତୁମ୍ଭେ ଡର ।
ସାମାନ୍ୟ ଶକତିକି ବୋଲିବା ତୁମ୍ଭର ॥
ତୁମ୍ଭରେ ସୂର୍ଯ୍ୟବଂଶ ମୋ ପବିତ୍ର ହୋଇଲା ।
କୁଳର କଳଙ୍କ ମୋର ତୁମ୍ଭରେ ଛାଡ଼ିଲା ॥
ସୀତୟାକୁ ଦେଇଣ ରଖିଲ ମୋର ପ୍ରାଣ ।
ଯେ ସୀତ୍ୟାର ପାଇଂ ତୁମ୍ଭେ କଲ ମାହାରଣ ॥
ସୀତୟା ପାଇବା ଯାଏ ନ ରୁଚଇ କିଛି ।
ତୁମ୍ଭକୁ ପଟାନ୍ତର କି ଆନଲୋକ ଅଛି ॥୬୦
ଶୁଣିଣ ରକ୍ଷ କପି ମଥାରେ ହାତଦେଲେ ।
ପ୍ରଶଂସା କରି ଧନ୍ୟ ଧନ୍ୟ ରାମ ବୋଲିଣ
ବୋଇଲେ ॥
ଧନ୍ୟ ତୋର ଜୀବନ ଧନ୍ୟ ତୋର ପିତା ।
ଧନ୍ୟ ଅଟଇ ତୋର ଗର୍ଭଧାରୀ ମାତା ॥
ତୋତେ ଆମ୍ଭେ ସେବା ନ କଲେ
ରଘୁସାଇଂ ।

ଯେ ବଳ ପ୍ରାକର୍ମ ପାଆନ୍ତୁ ଆମ୍ଭେ କାହିଂ ॥
ଆମ୍ଭେ ତୋର କିସ କହିବୁ ମହିମା ।
ଦୁଇ କର୍ଣ୍ଣେ ଶୁଣିଲୁ ଯାହା କହିଲା ବ୍ରହ୍ମା ॥
ଯେ ତୋହୋର ଶିରେ ପୁଷ୍ପବୃଷ୍ଟି କଲା ।
ସୁର ଗଣ ଘେନିଣ ଗଡ଼ଘାଲି ଶୁତିଲା ॥୭୦
ଅନେକ ଜନ୍ମର ପାତେକ ଉପେକ୍ଷିଲୁ ।
ସ୍ୱଏଂ ବିଷ୍ଣୁ ବୋଲିଣ ପ୍ରତକ୍ଷେ ଡେବେ
ଗଲୁ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
ରକ୍ଷକପିଙ୍କି ବହୁତ ଅଳଙ୍କାର ଦେଲେ ॥
ଯେ ଯେଡ଼େ ଭାର୍ଜନ ଯାହାକୁ ଯିସ
ଶୋଭା ।
କେବଣ ହିଂ ପଦାର୍ଥ ସୂର୍ଯ୍ୟର କିରଣ ଆଭା ॥
କେବଣ ଅଳଙ୍କାର ଚନ୍ଦ୍ରମା ଜ୍ୟୋତି ଜିଣି ।
ଅଗ୍ନିର ଦ୍ରୋହନା ଦିଶି କେବଣ ମଣି ॥
ଜଣେ ଜଣେ ନାମ ଧରିଣ ରାଆନ୍ତି ।
ଆପଣା ଶ୍ରୀହସ୍ତେ ବସ୍ତ୍ର ଅଳଙ୍କାର
ଦ୍ୟନ୍ତି ॥୮୦
ଯେ ଯାହା ଅନରୂପେ ଅଳଙ୍କାର ଦେଲେ ।
ଶୁଣସି ଗୋ ଭବାନୀ ସଦାଶିବ କହିଲେ ॥
ଯେଥୁ ଅନନ୍ତରେ ବେନି ମାସ ଗଲା ।
ଦିନେକ ଶ୍ରୀରାମ ସୁଗ୍ରୀକି ହକାରିଲା ॥
କତିରେ ବସାଇ ଅନେକ ପ୍ରଶଂସିଲେ ।
ରଥ ଗଜ ଅଶ୍ୱ ଅଳଙ୍କାର ଦେଲେ ॥
ବୋଇଲେ ଭୋ ମଇତ୍ର ତୁ କିଷ୍କିନ୍ଧାକୁ ଯାଅ ।
ନିଜ ରାଜ୍ୟକୁ ଯାଇ ସୁଖେଣ ଭୋଗ ପାଅ ॥
ବରଷେ ହୋଇଲା ତୁମ୍ଭେ ଛାଡ଼ିଲ କଟେକ ।
ନ ଦେଖି ଆରତ ହୋଇବେ
ସର୍ବଲୋକ ॥୯୦
ସୁଗ୍ରୀବର ବୋଇଲା ଶିରେ କର ଦେଇ ।
କିଷ୍କିନ୍ଧା ରାଜ୍ୟେ ମୋହୋର କାର୍ଯ୍ୟ ନାହିଂ ॥
ଯେ ତୋହୋର ଚରଣେ ମୁଂ ସେବା
କରିଥିବି ।
କେବଣ ମୁଖେ ମୁଂ ତୋତେ ଛାଡ଼ିଯିବି ॥
ଶ୍ରୀରାମ ବୋଇଲେ ହୋ ନ ବୋଲ ମିତ୍ର
କିଛି ।

ସଂସାର ରଚନା ଯେହ୍ନା ବିଧାତା କରିଅଛି ॥
ପୁତ୍ର ଦାରା ଧନ ଜନ ଭୂମି ବନ୍ଧୁ ।
ଦେହ ବହିଲେକେ ଯେହ୍ନା କିମ୍ପା ନିନ୍ଦୁ ॥
ଯେବେ ତୁ ଭୋ ରାଜା ଯାଅ ନିଜ ଦେଶ ।
ଚାର ପମନ୍ତିଲେ ବେଗ ହୋଇ
ଆସ ॥୧୦୦
ଶୁଣିଣ ସୁଗ୍ରୀବର ନମସ୍କାର କଲା ।
ଋକ୍ଷ କପି ବଳ ଘେନିଣ ଚଳିଗଲା ॥
ଅଙ୍ଗଦ ଜମ୍ବେବ ନଳ ନୀଳ ସୁଷେଣ ।
ଗବଏ ଗବାକ୍ଷ ଦଧିମୁଖ କଂଚଣ ॥
ପବନ ପନଶିଳ କେଶରୀ ସେନାପତି ।
ମହୀନ୍ଦ୍ର ଦ୍ବିବିନ୍ଦ ସହିତେଣ ଯାନ୍ତି ॥
କୋମୋଦ କାଳିମୁଖ ସୁନାସ ସାରାସ ।
ତାରାକ୍ଷ ଗନ୍ଧମାର୍ଦ୍ଦନ ବିବିଧ ପାରାସ ॥
ଚନ୍ଦନ ରମଣ ବସନ୍ତ ଡାଳିମ୍ବ ।
ସମ୍ପାତି ଶତବଳ ଦଶକାଳ ବୃଦ୍ଧ ॥୧୦
ସେନା ଯୂଥପତି ସମସ୍ତେହେଂ ଗଲେ ।
ପଛେ ଯାଉ ବୋଲି ହନୁମନ୍ତ ବୋଇଲେ ॥
ସୁଗ୍ରୀବର ରାଜା ଗଲା ନିଜ ଦେଶ ।
କିଷ୍କିନ୍ଧା ରାଜ୍ୟେ ଯାଇ ହୋଇଲେ ପ୍ରବେଶ ॥
ନଗ୍ରେ ଉତ୍ସବ କଲେ ନରନାରୀ ।
ଶୁଭଯୋଗେ ନଗ୍ରେ ବିଜେ ଦଣ୍ଡଧାରୀ ॥
ତାରା ମହାଦେଈ ଅର୍ଘ୍ୟ ଆଣିଦେଲା ।
ଅନ୍ତେଶ୍ୱରେ ରାଜା ବିଜେଏ ଯାଇ କଲା ॥
ଯେ ଯାହା ମନ୍ଦିରେ ରହିଲେ ସର୍ବ ସନ୍ୟ ।
ମର୍ଦ୍ଦନ ମାର୍ଜଣା ସାରିଲା ସୁଗ୍ରୀବର
ରାଜନ ॥୨୦
ମୋଣୋହି ସାରିଣ ହୋଇଲେ ନିଅବକାଶ ।
ତାରା ମାହାଦେଈ ଖଟିଲା ଆସି ପାଶ ॥
ଶ୍ରୀରାମ କଥାମାନ କୁହାକୁହି ହୋନ୍ତି ।
ବୋଲନ୍ତି ସଦାଶିବ ଶୁଣ ଗୋ ହେମବନ୍ତୀ ॥
ଯେତେକ ଋକ୍ଷ କପି ଯହୁଂ ଆସିଥିଲେ ।
ରାଜାକୁ ଜଣାଇ ନିଜ ଦେଶ ଗଲେ ॥
ଦୂତ ପଠିଆଇଲେ ଆସିବୁ ବୋଲି କହି ।
ଯେ ଯାହା ପୁରକୁ ଗଲେ ବେଗ ହୋଇ ॥

ସୁଗ୍ରୀବର ରାଜା କିଷ୍କିନ୍ଧାରେ ବିଳସି ।
ଶୁଣ ତୁମ୍ଭେ ଭବାନୀ ତ୍ରିଶୂଳଧର ଭାଷି ॥୩୦
ଯେଥୁ ଅନନ୍ତରେ ଜାନେକୀର ସାଇଂ ।
ବିଭୀଷେଣ ରାଜାକୁ ସନ୍ନିଧ୍ୟକୁ ରାଇ ॥
ଅନେକ ପୁରୁଷାର୍ଥ କଲେ ଶ୍ରୀପୁଷୋତ୍ତମ ।
ବୋଇଲେ ରାକ୍ଷସ ଇନ୍ଦ୍ର ଅଟୁ ତୁ ଉତ୍ତମ ॥
ତୋହୋର ପ୍ରସାଦେ ମୁଂ ରାବଣ ବଧ କଲି ।
ତୋହୋର ପ୍ରସାଦେ ମୁଂ ଘରଣୀ ପାଇଲି ॥
ଯେଡ଼େ ଯଶ ମୋତେ ତୋହୋରେ
ପରାପତ ।
ସାକ୍ଷାତ ବିଷ୍ଣୁଭକ୍ତ ନଉକେଶାର ସୁତ ॥
ଯେବେ ତୁ ତୋ ରାଜ୍ୟକୁ ଯାଅସି
ଦତ୍ୟବୀର ।
ମନ୍ଦୋଦରୀକି ଘେନି ବିଳସ ଲଙ୍କପୁର ॥୪୦
ପୂର୍ବ ଧାପ ଛାଡ଼ି ପରଜାମାନ ପାଳ ।
ଗୋଦୁହନ କରାଇବୁ ଈଶ୍ୱରଙ୍କ ଆଜ୍ଞ ॥
ବିଷ୍ଣୁ ଦେବତାକୁ ଭୋଗ ଭିଆଇବୁ ।
ଶୁକଳ ନବମୀରେ ଦେବୀଙ୍କି ଭୋଗଦେବୁ ॥
କୃଷ୍ଣ ଚତୁର୍ଦ୍ଦଶୀରେ ସଦାଶିବଙ୍କୁ ପୂଜା ।
ଯେକାଦଶୀ ଉପବାସ କରିବୁ ତୁ ରାଜା ॥
ନିତ୍ୟେହେଂ ସୂର୍ଯ୍ୟ ଦେବତାଙ୍କୁ ଅର୍ଘ ଦେବୁ ।
ସପତମୀ ଦିନ ଆହାର ନ କରିବୁ ॥
ସନ୍ଧ୍ୟାରେ ମଇଥୁନ ତୁ ନ କରିବୁ ରାଏ ।
ତେବେ ସେ ସର୍ବଦା ଭୋଗ୍ୟ ହୋଇବଟି
କାଏ ॥୫୦
ବାର ସଂକରାନ୍ତିରେ ନ ଭୁଞ୍ଜିବୁ ଅନ୍ନ ।
ଭରି କରିଦେବୁ ବ୍ରାହ୍ମଣ ଭୋଜନ ॥
ଶନିବାରେ କଳା ବସ୍ତ୍ର ପିନ୍ଧିବୁ ନୃପତି ।
ଗୁରୁବାରେ ଦଧିଅନ୍ନ ଦେବୁ ବୃହସ୍ପତି ॥
ସୋମବାର ଖଞ୍ଜଦାନ ରାଏ ଦେବୁ ।
ନବରତ୍ନ ମୁଦି ଅଙ୍ଗୁଷ୍ଠିରେ ନାଇବୁ ॥
ଅମନାତ୍ୟଗଣଙ୍କଇ ସମର୍ପିବୁ ରାଜ୍ୟ ।
ମନ୍ତ୍ରୀକି ନ ପୁଛିଣ ନ କରିବୁ କାର୍ଯ୍ୟ ॥
ନଗ୍ରଲୋକ କେହି ମେଳଛ ନୋହିବେ ।
ଶୁଚିବନ୍ତ ହୋଇ ସମସ୍ତେ ହେଂ ଥିବେ ॥୬୦

ପୁଣ୍ୟକାଳମାନରେ କରିବେ ଦାନ ଧର୍ମ ।
ଯେ ଯାହାର ଜାତିରେ ଥିବାକ ନିଜ କର୍ମ ॥
ହାଥୀ ଘୋଡ଼ା ନିତି ଦେଖିବ ପରିଛା ।
ରୋଗ ଚିହ୍ନି ବଦ୍ୟ କରିବ ତିକିଛା ॥
କ୍ଷତ୍ରୀମାନେ ସାଧନ ନ ଛାଡ଼ିବେ କ୍ଷଣେ ।
ପରଦେଶ ବାରତା କହିବେ ଚାରଗଣେ ॥
ପୁଣ୍ୟ ଥାନମାନଙ୍କରେ ହୋମ କରାଇବୁ ।
ଦେବତା ବ୍ରାହ୍ମଣେ ବିନତି ହୋଇଥିବୁ ॥
ବଣିଜାର ଲୋକଙ୍କୁ କରିଥିବୁ ଦୟା ।
ବିଶ୍ୱାସୀ ଲୋକଙ୍କୁହିଂ ତୁ ନ କରିବୁ
ମାୟା ॥୭୦
କାର୍ତ୍ତିକ ମାସେ ସାଧୁତେ ଛାଡ଼ିବେଟି ଧାନ ।
ଅଗ୍ନିମୁଖେ ତୋଷିବୁ ସୁରଗଣମାନ ॥
ତୁ ମାହା ଧାର୍ମିକ ଅଟୁ ସତ୍ୟବାଦୀ ।
ମୁହିଂ ତୋତେ କିସ ଦେବି ସଦବୁଦ୍ଧି ॥
ଶ୍ୱେତଛତ୍ର ଧରାଇଣ ଯେଥୁ ବେଗେ ଯାଅ ।
ଯେତେ ବୋଲି ଉଠିଲେ ଦଶରଥ ପୁଅ ॥
ଆପଣା ଗଳାରୁ ସୁବର୍ଣ୍ଣ ପଦ୍ମମାଳ ।
ବିଭୀଷେଣ ଗଳାରେ ପିନ୍ଧାଇଲେ କୌଶଲ୍ୟା
ଦୁଲାଳ ॥
କୋଳକରି ବୋଇଲେ ତୁ ଚିରଜୀବୀ
ହୋଇଥାଅ ।
ମୋହୋର ଆଗ୍ୟାଂରେ ତୁ ଯୁଗେ ଯୁଗେ
ରହ ॥୮୦
ଯେତେକୋଳ ବନ ପର୍ବତ ମାନେ ଥାନ୍ତି ।
ନଦୀମାନେ ଯେତେ ସମଏଣ ବହନ୍ତି ॥
ଯେତେକୋଳ ପରିଯନ୍ତେ ଥିବାକ ସମୁଦ୍ର ।
ଯେତେକୋଳ ଥିବେ ବ୍ରହ୍ମା ରୁଦ୍ର ଇନ୍ଦ୍ର ॥
ଯେତେକୋଳ ଚନ୍ଦ୍ର ସୂର୍ଯ୍ୟ ଉଦେ ହୋଇଥାନ୍ତି ।
ଯେତେକୋଳ ଅବା ଛଡ଼ଋତୁଏ ବହିଥାନ୍ତି ॥
ପୃଥ୍ୱୀଦେବୀ ଥିବ ଯେତେକ ସମଏ ।
ତାବତ୍ କାଳ ଥିବୁ ଲଙ୍କ ରାଏ ॥
ମୋହୋର କୀରତି ଘେନିଣ ଜୀଇଂଥିବୁ ।
ଯାବତ କାଳରେ ଅମର ତନୁ ବହିଥିବୁ ॥୯୦
ଯେ ତେତେ ସେବା କରିବେ ଅବା ନର ।

ଆଷ୍ୟ ବର୍ଦ୍ଧିତ ହୋଇବ ତାହାଙ୍କର ॥
ଯାଅସି ବିଭୀଷେଣ ତୋହୋର ନିଜ
ଦେଶ ।
କାର୍ଯ ପଡ଼ିଲେ ଦୂତ ପମଚିଲେ ଆସ ॥
ଶୁଣି ଲଙ୍କପତି ସେ ନମସ୍କାର କଲା ।
ଅସୁର ସନ୍ୟ ଘେନି ଗଗନେ ଚଳିଗଲା ॥
ଲଙ୍କାପୁରେ ଯାଇଂ ହୋଇଲା ପରବେଶ ।
ଜଗନ୍ନାଥ ଶରଣ ମୁଂ ବଳରାମ ଦାସ ॥
ଯେଥୁ ଅନନ୍ତରେ ସେ ଶ୍ରୀରାମଚନ୍ଦ୍ର ରାଏ ।
ଯେକାଳେ ହନୁମନ୍ତ ସନିଧ୍ୟକୁ
ହକରାଏ ॥୧୦୦
ଆଶ୍ୱାସନା କରିଣ କହିଲେ ରାବଣାରି ।
ତୁହୋ ହନୁମନ୍ତ ଯାଅ କିଷ୍କିନ୍ଧାନାମେ ପୁରୀ ॥
ସୁଖ ଭୋଗ ଭୁଞ୍ଜିଣ ନିଶ୍ଚିନ୍ତେଣ ଥାସି ।
କାର୍ଯ୍ୟ ପଡ଼ିଲେ ଲୋକ ପମନ୍ତିଲେ ଆସସି ॥
ଶୁଣିଣ ହନୁମନ୍ତ ଯୋଡ଼ଇ ବେନିକର ।
ମୋତେ କିମ୍ପା ସେନେହ ଛାଡ଼ିଲୁ ରଘୁବୀର ॥
ମୁହିଂ ତୋହୋ ଚରଣେ ସେବା କରିଥିବି ।
ଯେ ତୋର ପଦ୍ମମୁଖ ନିତ୍ୟେ ଯେ ଦେଖିବି ॥
ଭୋ ଶ୍ରୀରାମ ମୋତେ ତୋର ବଡ଼ ଶ୍ରଧା ।
କାହିଁକି ନ ଯିବି ମୁଂ ଥିବଇଂ
ଅଯୋଧ୍ୟା ॥୧୦
ତୋତେ ଛାଡ଼ି ଯାଇ ନ ବଳଇ ମୋର
ମନ ।
ଯେସନେକେ ଭ୍ରଥ ଲକ୍ଷ୍ମଣ ଶତ୍ରୁଘନ ॥
ଯେହାଙ୍କ ମତେ ମୁଂ ସେବା କରିଥିବି ।
ତୋତେ ଛାଡ଼ି ପ୍ରଭୁ ମୁଂ କେଣିକି ନ ଯିବି ॥
ଯେତେ ବୋଲି ହନୁମନ୍ତ ମସ୍ତକେ ଦେଲା
ହାଥ ।
ହସି ଭୁଜ ତାର ଧଇଲେ ରଘୁନାଥ ॥
ବୋଲନ୍ତି ଶ୍ରୀରାମ ତୁ ପବନ ସୁତ ଶୁଣ ।
ତୋହୋର ବାହୁବଳେ ସୁଗ୍ରୀବର ରାଜାପଣ ॥
ତୁ ସେ ମନ୍ତ୍ରୀ ଚୂଡ଼ାମଣି ଅଟୁ ମହା ଯୋଧୀ ।
କାହାକୁ ମୈତ୍ର ମୋର ମାଗିବ
ସଦବୁଧି ॥୨୦

ଯାସି ହନୁମନ୍ତ ସୁଗ୍ରୀବର ପାଶ ।
କାର୍ଯ୍ୟ ପଡ଼ିଲେ ଦୂତ ପମନ୍ତିଲେ ଆସ ॥
ଶୁଣିଣ ହନୁମନ୍ତ ଯୋଡ଼ଇ ବେନି କର ।
କଥାଏ ମାଗିବି ମୋତେ ଦେବା ରଘୁବୀର ॥
ତୋହୋର କୀର୍ତ୍ତି ପୃଥ୍ୱୀରେ ଯେତେକାଳ
ଥିବ ।
ତେତେ କାଳ ଶରୀର ଆରୋଗ୍ୟ ହୋଇବ ॥
ତୋତେ ଭଗତି ମୁଂ କରିଥିବି ମନେ ।
ତୋହୋର ପଦ୍ମମୁଖ ଚିନ୍ତୁଥିବି ଧ୍ୟାନେ ॥
ଶ୍ରୀରାମ ବୋଇଲେ ତୋର ବାଞ୍ଛା ହେଉ
ସିଧ୍ୟ ।
ଯେବେ ତୁ ଚଳିଯାଅ କିଷ୍କିନ୍ଧାପୁର
ମଧ୍ୟଂ ॥୩୦
ଶୁଣିଣ ହନୁମନ୍ତ ନମସ୍କାର କଲା ।
ସୀତ୍ୟାଙ୍କୁ କହିବି ବୋଲି ଭିତରକୁ ଗଲା ॥
ମୃଦୁସୁଲୀ ଆଗେ ପଠିଆଇଲେ କହି ।
ତକ୍ଷଣେ ଜାନେକୀ ଅଇଲେ ବାହାର
ହୋଇ ॥
ଦେଖି କରି ହନୁମନ୍ତ ନମସ୍କାର କଲା ।
ଭୋ ମାତ କିଷ୍କିନ୍ଧାକୁ ଯିବଇଂ ବୋଇଲା ॥
ମୋହୋର ମନ ନାହିଂ ଶ୍ରୀରାମ ପ୍ରମନ୍ତି ।
ଶୁଣିଣ କଲ୍ୟାଣ କଲେ ଜନେକ ଦୋହିତୀ ॥
ଯାଅସି ହନୁମନ୍ତ ଦେଖ ଘର ଦ୍ୱାର ।
ବରଷେକ ହୋଇଲାନି ଆସିବା
ତୋହୋର ॥୪୦
ସୁଗ୍ରୀବର ସନ୍ନିଧ୍ୟେ କିଷ୍କିନ୍ଧାରେ ଥାଅ ।
ଅମୃତ ସମାନେଣ ଫଳମୂଳ ପାଅ ॥
ବଜ୍ର ସରି ଆୟୁଧ ଇଚ୍ଛିଲେ ପାଇବୁ ।
ସର୍ବଦା କାଳେ ତୁ ବର୍ଦ୍ଧିତ ହୋଇଥିବୁ ॥
ଶୁଣିଣ ହନୁମନ୍ତ ପ୍ରଦକ୍ଷିଣ କଲା ।
ନମସ୍କାର କରିଣ ବାହୁଡ଼ି ଅଇଲା ॥
ରାମକୁ ପ୍ରଦକ୍ଷିଣ କଲାକ ମାରତି ।
ଯାଅ ବୋଲି ଆଗ୍ୟା ଦେଲେକ ରଘୁପତି ॥
ଭ୍ରଥ ଲକ୍ଷଣ ଶତ୍ରୁଘନ ତିନି ।
ଯେହାଙ୍କୁ ନମସ୍କାର କଲାକ ପାବେନି ॥୫୦

ଶୁଭ ଅନୁକୂଳେ ନବରୁ ବୀର ଗଲା ।
ସିଂହ ଦ୍ୱାରେ ଯାଇଣ ବିବାନ ଚଢ଼ିଲା ॥
ରଥଗଜ ଅଶ୍ୱ ପାଦାନ୍ତି ଅପାର ।
ଆଲମ୍ବ ବିଲମ୍ବ ପାଟଛତ୍ର ନିରନ୍ତର ॥
ବୀରତୂର ବଜାଇଂ ପବନ ସୁତ ଗଲା ।
କିଷ୍କିନ୍ଧ୍ୟା ରାଜ୍ୟେ ଯାଇ ପ୍ରବେଶ ହୋଇଲା ॥
ଶୁଭେଣ ସୁଗ୍ରୀ ପାଶେ ହୋଇଲା
ପରବେଶ ।
ନୀଳଗିରି ଶରଣ ମୁଂ ବଳରାମ ଦାସ ॥
ବନ୍ଦଇ ଜଗନ୍ନାଥ ପୁଂଗୁଣା ହେବା ମତେ ।
ମୁହିଂ ଚାଟୁ କଥା କହୁଅଛି ତୋତେ ॥୬୦
ଶ୍ରୀରାମ ରୂପେ ତୋହୋର ମହିମା ଅପାର ।
ଯେହାଶୁଣି ମୁଂ ହୋଇବଇଂ ପାର ॥
ତେଣୁ କରିଣ ତୋହୋର ବଖାଣଇ ଗ୍ରନ୍ଥ ।
ତୁ ମୋତେ ଅନୁଗ୍ରହ କର ରଘୁନାଥ ॥
ରାବଣ ମାରି ତୁ ଅଯୋଧ୍ୟାକୁ ଅଇଲୁ ।
ଜାନେକୀ କୋଳେ ଧରି ଅବିଷେକ
ହୋଇଲୁ ॥
ସୁଗ୍ରୀ ବିଭୀଷେଣକୁ ପଠିଆଇଲୁ ନିଜ
ଦେଶ ।
ଯେଥୁ ଅନନ୍ତରେ ତୁ କଲୁ ଯିସ ଯିସ ॥
ଯେଗାର ସହସ୍ର ତୁ ବରଷ ଭୋଗ କଲୁ ।
ତିନିପୁର ଲୋକଙ୍କୁ ଅଭଏ ବର
ଦେଲୁ ॥୭୦
କାଳେ କ୍ଷୀରୋଦ୍ରେ ଅନନ୍ତ ଶେଯ୍ୟ କରି ।
ଯୋଗନିଦ୍ରା ଗଲୁ ତୁ ନିଜ ଗୁଣ ସୁମରି ॥
ଲକ୍ଷ୍ମୀ ସରସ୍ୱତୀଙ୍କି ଜଗାଇ ପାହାରି ।
ନିଦେ ଅଚେତନ ହୋଇଲୁ ମଧୁହାରି ॥
ସମଏକ ପୁଣ କୃଷ୍ଣ ଅବତାର ।
ବ୍ରହ୍ମାଣ୍ଡ ଠାକୁର ତୋ ମହିମା ଅପାର ॥
ଯେ କଥାମାନ ତୋହୋର ଚିତୋଉଣ
ଥିବି ।
ତେଣୁ ବିଚାରଇଂ ମୁଂ ରାମାଏଣ କହିବି ॥
ବାଲ୍ମିକ ମୁନି ସେ ଜାଣନ୍ତି ତଥ୍ୟ ବାଣୀ ।
ପାର୍ବତୀ ଜାଣିଲେ ଶିବ ମୁଖୁ ଶୁଣି ॥୮୦

କହନ୍ତି ସଦାଶିବ ଉତ୍ତରା କାଣ୍ଡ ଚରିତ ।
ଯେଥୁ ଅନନ୍ତରେ ଦଶରଥ ପୁତ୍ର ॥
ହନୁମନ୍ତ ସହିତେ ସମସ୍ତେ ଯହୁଁ ଗଲେ ।
ଅଯୋଧ୍ୟା କଟକେ ରାମ ଅନେକ
ଭୋଗକଲେ ॥
ମୃଗୟା ବିନୋଦେ ଗଜ ବେଣ୍ଟ ଯାନ୍ତି ।
ଶ୍ରୀରାମ କାନନେ ପୁଣ ଜଳକ୍ରୀଡ଼ା କରୁଥାନ୍ତି ॥
ବସନ୍ତେଣ ମଧୁବନେ ସୀତୟା ସହିତେ ।
ବରଷାଏଣ ଗୁପତ ଘରଣୀ ଆଏତେ ॥
ଶରଦରେ ଜଗତୀ ଉପରେ ଉଠିଥାନ୍ତି ।
ଶିଶିରେ ଦକ୍ଷିଣ ମେଲାଏ ପହୁଡ଼ନ୍ତି ॥ ୯୦
ଅଗର କାଠ ଅଗ୍ନି ଜଳଇ କିଛୁ ଦୂରେ ।
ଗିଲିମ ଟେରା ବାଡ଼ ଚାନ୍ଦୁଆ ଉପରେ ॥
ପାଟର ମଶହେରୀ ଧୂପକାଠି ଧୂଆଁ ।
ଚାରିକତି ମଉଡ଼ ସଭାବେ ଉଟମୁହାଂ ॥
ମେଘରେ ସୀତ୍ୟା ଘେନି ଶ୍ରୀରାମ ଅବକାଶ ।
ବିବିଧ ଭୋଗ କରି ଜାନେକୀ ବିଳାସ ॥
ହେମ ଋତୁରେ ପାହାନ୍ତି ବେଣ୍ଟ ଯାନ୍ତି ।
କୁହୁଡ଼ି ବେଳେ ଗୋଡ଼ାଇ ହାତୀକିଂ ଧରନ୍ତି ॥
ଘୋଡ଼ା ଚଢ଼ି ଦୁଆଡ଼ ହାଥୀ ଚଢ଼ି ବୁଲି ।
ଗୋଡ଼ାଇ ହାଣନ୍ତି ଅରଣା ପୋଲୁହ
ମେଲି ॥୧୦୦
ନଦୀର ବାଲିରେ ସାଂଗ୍ରାମ ପାଞ୍ଚୁଥାନ୍ତି ।
ପରବ କାଳେ ଦେବତାମାନଙ୍କୁ ଦେଖିଯାନ୍ତି ॥
ଅକଣ୍ଟେକ ରାଜ୍ୟ ଚତୁରାଙ୍ଗ ବଳ ।
ଯହିଂ ସେ ନ ପେଷନ୍ତି କାଳ ଯେ ବିକାଳ ॥
ଯେବଣ କୃଷିକି ଯେତେବେଳେ ଯିସ ।
ଛଡ଼ ଋତୁଏ ନିର୍ବାଣ କରନ୍ତି ସେ ଶସ୍ୟ ॥
ଧନେଣ ଗରିଷ୍ଠ ସକଳ ଜନ ପ୍ରଜା ।
ସତ୍ୟେଣ ଆତଯାତ ଶ୍ରୀରାମ ଯହିଂ ରାଜା ॥
ରୋଗ ନ ପଶିଲେ ଅଯୋଧ୍ୟା ଦେଶ ସୀମା ।
ମୃତ୍ୟୁ ନ ପଶଇ ଶ୍ରୀରାମର ମହିମା ॥୧୦
ପାପୀ ଜନ ହୋଇ ନରହିଲେ କେହି ।
ପୁରୁଷେ କାମଦେବ ପ୍ରାଏକ ଦେହ ବହି ॥
ସ୍ତିରୀମାନେ ସମସ୍ତେ ରତିକି ପଟାନ୍ତର ।
ଚିତ୍ରସେନ ଗନ୍ଧର୍ବ ଜାଣି ଦିଶନ୍ତି କୁମାର ॥
ଦୋହିତାଏ ଗଉରୀ ପ୍ରାଏକ ଖେଳୁଥାନ୍ତି ।
ଚାରିପାଦେ ଲକ୍ଷ୍ମୀ ସତ୍ୟ ନ ଛାଡ଼ନ୍ତି ॥
ଦେବାଦୟା ସେ ନ ଛାଡ଼ନ୍ତି ଜଣେ ।
କେଉଣ ଅସମ୍ଭବ ଅଯୋଧ୍ୟା ଭୁବନେ ॥
ସବୁରିଙ୍କରି ଘରେ ବାଜଇ ଶଙ୍ଖ ଧ୍ୱନି ।
ନିତି ନିତି ତୁଳାଇ ଥାଇ ସିନ୍ଧୁର
ନନ୍ଦିନୀ ॥୨୦
ତୁ ଅଟୁ ରାମ ସେ ଅଚଳାଚଳ ଲକ୍ଷ୍ମୀ ।
ସୀତ୍ୟା ଘେନି ଯହିଂ ଶ୍ରୀରାମ ଚନ୍ଦ୍ର ଅଛି ॥
ସେ ପୁରେ ଅପୂର୍ବ କେବଣ ପଦାର୍ଥ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ରଘୁନାଥ ॥
ଦିନେକ ରଘୁନାଥ ତିନି ଭାଇନ୍ତ ରାଇ ।
ଅନେକ ଅଳଙ୍କାର ଦେଲେ ତୋଷ ହୋଇ ॥
ରଥ ଗଜ ଅଶ୍ୱ ପାଦାନ୍ତି ବହୁତ ଦେଲେ ।
ତୁମ୍ଭ ସଙ୍ଗେ ଥିବେଟି ବୋଲିଣ ବୋଇଲେ ॥
ଧନ ବସ୍ତ୍ର ଦେଶ ଶାସନ ଦେଲେକ ପାଇଂ ।
ପୁରୁଷାର୍ଥ ତ୍ରିପୁତି ହୋଇଲେ ତିନିଭାଇ ॥୩୦
ଚତୁରାଙ୍ଗ ବଳ ଭ୍ରଥକୁ ସମର୍ପିଲେ ।
ଶତ୍ରୁଘନ ମୂଳେ ଭଣ୍ଡାର ଦିଆଇ ଦେଲେ ॥
ଲକ୍ଷ୍ମଣଙ୍କୁ ଲାଗଇ ଅନ୍ତେପୁର କଥା ।
ଯେସନେକ ରୂପେ ବାଣ୍ଟିଲେ ରଘୁନାଥା ॥
ସୀତ୍ୟାର ସଙ୍ଗେ ଭଗ୍ନୀମାନେ ହରନ୍ତି ଦିନ ।
ତିନି ଭାଇଙ୍କର ନବର ଭିନ୍ନ ଭିନ୍ନ ॥
ରାତ୍ରେଣ ଯେ ଯାହା ସ୍ୱାମୀ ପାଶେ ଯାନ୍ତି ।
ଦିବସେ ଜାନେକୀଙ୍କି ସେବା କରିଥାନ୍ତି ॥
ଯେତେ ଦାସୀ ତାଙ୍କର ବାପ ଘରେ ଥିଲେ ।
ମନମାୟା ସହିତେଣ ସମସ୍ତେ
ଅଇଲେ ॥୪୦
ବୃଦ୍ଧା ସ୍ତିରୀମାନେ ଯେତେଥିଲେ ପୂର୍ବେ
ସଙ୍ଗେ ।
ସୀତୟା ମନ ହରନ୍ତି ନାନା ରଙ୍ଗେ ॥
ବିଭା ହୋଇ ଆସିବାର ବେଳେ ସେ
ନଇଲେ ।
ବନବାସୁଂ ଅଇଲାରୁଂ ସମସ୍ତେ ଅଇଲେ ॥
ଶରଧାଏ ଅଇଲେ ସୀତ୍ୟା ନଛାଡ଼ିଲେ ।
ଜଣେ ଜଣେ ଗୁହାଇ ତାହାନ୍ତ ବୋଇଲେ ॥
ଶ୍ରୀରାମ ଗଉରୋବ କହିଲେ ନସରି ।
ସେମାନେ ଜାଣନ୍ତି ସେ ସୀତ୍ୟାକୁ ସେବା
କରି ॥
ବରୁଣ ଦେଲା ରତ୍ନ ଶ୍ରୀରାମ ଆଣିଥିଲେ ।
ଜାନେକୀ ସାଦ୍ରିଶେ ଆଏ ଗଢ଼ାଇଲେ ॥୫୦
ଶ୍ରବଣକୁ ତଡ଼କୀ ଉପରକୁ ବେଣ୍ଟୁଲା ।
ପାଶକଇ ପଦ୍ମ କଢ଼ି ଚଉପାଶେ ଘଟିଲା ॥
ଶିରରେ ମୋତି ଜାଲି ମଥାରେ ମଥାମଣି ।
କାର୍ତ୍ତିକ ପୁଞ୍ଜି ଜାଣି ନାସାରେ ବସଣୀ ॥
କଣ୍ଠକଇ ହାର ମୁକୁତା ଶତେ ସରି ।
ନୀଳମଣି ମାଣିକ୍ୟ ଯେ ଗୁନ୍ଥିଲା ଅନୁସରି ॥
ପ୍ରବାଳ ମାଳ ମାଳ ହୀରା ପୀଢ଼ ମିଶା ।
ଶୁଦ୍ଧ ସୁବର୍ଣ୍ଣର ଅପୂର୍ବ ଧାନ ଶିଂସା ॥
ମାଳି ମାଳି କରି ପୁଣି ବ୍ରହ୍ମଜାତି ହୀରା ।
ଯେକସରି ଦୋସରି ତିସରି ଚଉସରା ॥୬୦
ବାଳ ଅର୍କ ପ୍ରାଏକ ମାଣିକ୍ୟ ପଦେକ ।
ମୁକତା କଢ଼ିରେ ଲିହିଲା ସୁନା ରେଖ ॥
ପଦ୍ମରାଗ ମଣି ଶତେ ଶତେ ସରି ।
ଆବରଣ କଲେ ସତୀ ଅତି ଶ୍ରଧା କରି ॥
ଅନନ୍ତ କୋଟି ବ୍ରହ୍ମାଣ୍ଡର ଯେଉଁ ଠାକୁରାଣୀ ।
ତାହାଙ୍କ ଅଳଙ୍କାର କେ ପାରିବାକ ଗଣି ॥
ନାଭି ପରିଯନ୍ତେ ଲମ୍ବଇ ହାରମାନ ।
ଘଟଣ ଭିନ୍ନ ଭିନ୍ନ ପ୍ରତି ଆନ ଆନ ॥
ବାହାକୁ ବାହୁଟି ଯାଉଂଳି ତାଡ଼ ବିଦ ।
ପାଟଗଣ୍ଠି ସୁନ୍ଦର ଝୁମ୍ପା ପରିଛନ୍ଦ ॥ ୭୦
ହସ୍ତକଇ ବାହି ସୁବର୍ଣ୍ଣ ଚନ୍ଦ୍ର ଚୁଡ଼ି ।
ଆଗପଛେ ବାଜେଣି ସରଳ ବେନିଯୋଡ଼ି ॥
କରେଣ କଙ୍କଣ ମଙ୍ଗଳ ସୂତ୍ର ମୁଦି ।
କର ପଲବ ଜାଲି କଟଟିରେ ଛନ୍ଦି ॥
ହୃଦକଇ କାଞ୍ଚୋଲି ସେ ଗଜମୋତି ମଏ ।
ଥନ ଯୁଗଳ କି କମଳ କଢ଼ି ପ୍ରାଏ ॥
କନ୍ଧରେଣ ଥାଇ ପୁଣ ରଙ୍ଗ ପାଟ ଫୁଲି ।
ପଛକୁ ଛଟକ ବୋଲିଣ ଯାହା ବୋଲି ॥

କଟିରେ କଟି ମେଖଳା ଗଜ ମୋତି ହୀରା ।
ନୀଳା ପଗଡ଼ ନାଏକ ରୁଦ୍ର ହୀରା ॥୮୦
ଯାଉଳି ମୁକୁତା ଦୋସରି ପନ୍ତି ପନ୍ତି ।
ବିସ୍ତାର ବକ୍ଷସ୍ଥଳେ ଶୋଭା ପାଉଛନ୍ତି ॥
ରସାଣିଲା ସୁବର୍ଣ୍ଣ ଶିକୁଳି କମ କରି ।
ବାନ୍ଧିଲା ମାଣିକ୍ୟ ତହିଁ ଗୋଟି ଗୋଟି ଭରି ॥
ଖଞ୍ଜା ମୂଳେ କାପ କଳସ ମଗର ମୁଖ ।
କୋଟି ଶୁଦ୍ଧ ହୀରା ଅଛି ରେଖ ରେଖ ॥
କାଞ୍ଚନ ଖଣ୍ଡି ଖଣ୍ଡି ଖଞ୍ଜା କମ ସଙ୍ଗେ ।
ସୁନା ଘଣ୍ଟି ଘାଗୁଡ଼ି ବାଜଇ ନାନା ରଙ୍ଗେ ॥
ଚରଣେକେ ତୋଡ଼ର ଚରଣକେ ନୂପୁର ।
ଗୋଲ କମ ଗୋଟି ବାଜଇ ମଧୁର ॥୯୦
ଗୋଡ଼ ବଙ୍କାବନ୍ତେ ରୁଣଝୁଣ ବାଜେ ।
ଦୁଇ ପାଦକୁ ଛଟକ ହୋଇ ସାଜେ ॥
ଅଙ୍ଗୁଷ୍ଠିରେ ଝୁଣ୍ଟିଆ ନବରତ୍ନ ମଏ ।
ଯତନେ ରଘୁନାଥ ଗଢ଼ାଇ ଦେଲେ ଆଏ ॥
ଦିନକେ ତିନିବେଳ ଆନଆନ ଅଳଙ୍କାର ।
ସାତରତ୍ନେ ସୀତ୍ୟା ଆଭରଣ ସାତବାର ॥
ଲକ୍ଷେକ ପରିବାରୀ ଦେଇଛନ୍ତି ଭ୍ରଥା ।
ଆପଣେ ଅନନ୍ତ କୋଟି ବ୍ରହ୍ମାଣ୍ଡ କରତା ॥
ବିବିଧ ସୁଖ ଭୋଗ ଦିଅନ୍ତି ଯେଉଂଦେବୀ ।
ଆପଣେ ଦେହଘେନି ବୋଲଇ ବିଳସିବି ॥୧୦୦
ତାହାଙ୍କର ସଧ କଲେ କେଉଣ ଅବା ନାହିଁ ।
ପଦ୍ମେକ ସୁବର୍ଣ୍ଣ ନିତ୍ୟେ ଦିଅନ୍ତି ତହାର ସାଇଁ ॥
ତାହା ସେ ଜାନେକୀ ଦିଅନ୍ତି ପ୍ରଭାତେ ଦାନ ।
ମାଗନ୍ତା ମାଗିଲେ ହସ୍ତରୁ ଦିଅନ୍ତି ଧନ ॥
ଜନେକ ଭଣ୍ଡାରୁ ଆସଇ ଲକ୍ଷେ ଲକ୍ଷେ ସୁବର୍ଣ୍ଣ ।
ନିତିଧନ ଦିଅଇ ସେ ହୋଇଣ ତୋଷମନ ॥
ନୋହିଲେ କୁବେର ପଦ ନଥାଇ ଯେ କ୍ଷଣେ ।
ବ୍ରହ୍ମା ସହିତେ କହି ଅଛନ୍ତି ସୁରଗଣେ ॥
ଯାହାର ଚରଣେ ଶରଣ ଅଷ୍ଟ ନିଧି ।
ତାହାକୁ କି ଅପୂର୍ବ ଅଟଇ ରଧିସିଧି ॥୧୦
ଯାହା ଅନ୍ନ ଖାଇଣ ସଦାଶିବ କହି ।
ମଙ୍ଗଳାଙ୍କର ମୋହେ ଯେ ହୋଇଥିଲେ ପାପୀ ॥
ସିଧ୍ୟ ନେଇ ଦେଲେ ଅନ୍ନପୂର୍ଣ୍ଣା ଅନ୍ନ ।
ତେଣେ ସେ ଅନାଦି ନାଥ ପାଇଲେ ଜୀବନ ॥
ସବୁକାଳେ ସିଦ୍ଧ ଅଟଇ ବସନ୍ଧରୀ ।
ତହୁଁ ଜାତ ହୋଇଲେ ଜନେକ କୁମାରୀ ॥
ସଂଏ ନାରାଏଣ ଅଟଇ ଯାହାର ବର ।
ରୂପେକ ଥିଲା ଯାଇଂ ରାବଣ ଘରର ॥
ନାରଦଙ୍କ ବଚନେ ବ୍ରହ୍ମାର ସନମତେ ।
ସ୍ୱାମୀକୁ ଲୁଚା ଦେଲା ଅଗ୍ନିରେ ଗୁପତେ ॥୨୦
ଛାୟାରୁ ମାୟା ରୂପେକ ଜାତ କଲା ।
ରାବଣକୁ ଖାଇବ ବୋଲି ଦେଖାଇଣ ଦେଲା ॥
ମାୟାରେ ମୋହିଲୁ ତାର ସଙ୍ଗେ ଲଙ୍କା ଗଲୁ ।
ସଗୋତ୍ର ନାଶି ତାର ବାହୁଡ଼ି ଅଇଲୁ ॥
ପୁଣି ଅଗ୍ନି ଭିତରୁ ହୋଇଲୁ ବାହାର ।
ମହାମାୟା ନାମ ଅଟଇ ଯାହାର ॥
ତୁ ଦେବୀ କମଳା ଗୋ ରାମ ପାଟରାଣୀ ।
ମୋତେ ଅନୁଗ୍ରହ କରିବା ଗୋସାମଣି ॥
ବଳରାମ ଦାସ ମୁଁ ଜଗନ୍ନାଥର ଦାସ ।
ହରି ରମଣୀ ବୋଲି କଲି ତୋତେ ଆଶ ॥୩୦
ତୁ ଦେବୀ ସଦୟା କରସି ମୋତେ ଯେବେ ।
ଜଗନ୍ନାଥ ଅନୁଗ୍ରହ ହୋଇଲାନି ଯେବେ ॥
ତେଣୁ ସେ ଅନୁଗ୍ରହ ଉଚିତ ତୁମ୍ଭର ।
ଶ୍ରୀହରିଙ୍କୁ ଦେଖି ସଦୟା ମୋତେ କର ॥
ଜଏ ଜଏ ଜନେକ ଦୁହିତା କମଳାକ୍ଷୀ ।
ଶ୍ରୀରାମକୁ ବର ତୁ ବରିଲୁ ଦେଖି ଗଛି ॥
ଅକଣ୍ଟେକ ରାଜ୍ୟ ଅଯୋଧ୍ୟାରେ ଭୋଗକଲୁ ।
ଅନାସ୍ତ ଜନକଇ ଶରଣ ସମ୍ଭାଳିଲୁ ॥
ଶାଶୁଙ୍କୁ ଭଗତି ନିଜ ପତିଙ୍କି ସେବା ।
ଆପଣେ ଭୋଗ୍ୟ କରି ପରକଇ ଦେବା ॥୪୦
ଯେ କଥା ବିର୍ଣ୍ଣକେ ନାହିଁ ତୋର ଆନ ।
ଦେଖି ପରମ ତୋଷ କଉଶଲାର ନାନ ॥
ଇନ୍ଦ୍ର ଦେବତା ଦେଲା ଅମଳାଣ ଶାଢ଼ୀ ।
ତ୍ରିବିଧ କରିଣ ଦେଲେ ମାସ ପଡ଼ି ॥
ପୁଷ୍ପ ଗନ୍ଧ ଚନ୍ଦନ ବହୁତ ସେ ଦେଲେ ।
ମୃଗ ନାଭି କସ୍ତୁରୀ କର୍ପୂର ସମର୍ପିଲେ ॥
ତିନି ବହେଣୀଯେ ସୀତ୍ୟାଙ୍କର ସାନ ।
ଭାଇଙ୍କର ଭାରିଯାକୁ ଦେଲେ ଆଏମାନ ॥
ସୀତ୍ୟାଙ୍କୁ ଯେସନେକେ ବେଭାର ଯେଉଂ କଥା ।
ଅନରୂପେ ତାହାକୁ ଦେଲେ ରଘୁନାଥ ॥୫୦
ସୁମନ୍ତ ମନ୍ତ୍ରୀକି ସମର୍ପିଲେ ରାଜ୍ୟ ।
ସୁଖ ଭୋଗ ଆଶ୍ରେ କଲେ କଉଶୁଲାର ତନୁଜ ॥
ଗ୍ରୀଷମେ ସୁବାସିଲା ଜଳରେ ପଶିଥାନ୍ତି ।
ସ୍ୱର୍ଗରୁ ଅମୃତ ଆଣିଣ ନିତି ଖାନ୍ତି ॥
ପାରିଜାତେକ ପୁଷ୍ପ ଥାନ୍ତି ଗଭା ଲାଗିଂ ।
ମଳୟ ଜର ଜର ଚନ୍ଦନ ଲେପ ହୋଇଂ ॥
ଯେବଣ ହିଂ ପୁଷ୍ପ ଗନ୍ଧ ଚିପୁଡ଼ିଲେ ପଡ଼େ ।
ସେ କୁସୁମ ରାମ ଯତନେ ହେଂ ଲୋଡ଼େ ॥
ହାତେ ଘେନିଲେ ଯେହୁଂ ସୁନାକମ କରି ।
ସେ ଆଏ ଶ୍ରୀରାମ ଶ୍ରୀଅଙ୍ଗରେ ଭରି ॥୬୦
ରାଜ ଇନ୍ଦ୍ରପଦ ହୋଇଲେ ଅବିଷେକ ।
ରାଜ୍ୟେ ରାଜ୍ୟେଶ୍ୱର ବୋଲନ୍ତି ସର୍ବ ଲୋକ ॥
ନାନା ବିନୋଦେ ପୁଣ ଆନନ୍ଦ ଗୋସାଇଂ ।
ସମସ୍ତ କଳାଏ ନିପୁଣ ରଘୁସାଇଂ ॥
ବଶିଷ୍ଠଙ୍କର ବୋଲେ ପାଳନ୍ତି ମେଦନୀ ।
ବୃଦ୍ଧି ଦ୍ୟନ୍ତି କଶ୍ୟପ ଯାବାଳି ମାହାମୁନି ॥

ବାମଦେବଙ୍କୁ ଥୋଇ ସକଳ କାର୍ଯ କରି ।
ମାତୃଗଣଙ୍କୁ ବହୁ ବିନୋଇ ଦଣ୍ଡଧାରୀ ॥
ଦୂତୀ ଇନ୍ଦ୍ର ପାଏ ବିଶନ୍ତି ରଘୁନାନ ।
ଦିନେକ ବସିଅଛନ୍ତି ସମ୍ୱର୍ବ ଆସନ ॥୭୦
ପୁଷ୍ପକ ବିମାନ ସନ୍ନିଧେଣ ଅଛି ।
ତାହାକଇଂ ଚାହିଂଣ ବୋଲନ୍ତି ରଘୁବଛି ॥
ଭୋ ଯାନ ହୋ ତୁ କୋବେର ତହିଂକି ଯାଅ ।
ଯେ ମୋହୋର ଅଯୋଧ୍ୟା ପୁରେଣ ନ ଥାଅ ॥
ମୁହିଂ ତୋତେ ଆରୋହିତ ନୁହଇ ଭାର୍ଜନ ।
ଦେବତା ଅଟଇ ସେହୁ ଲଙ୍କାର ରାଜନ ॥
ସେ ସେ ଆରୋହଣ କରିଥିଲା ତୋତେ ।
ବେଗେଣ ଆସିବାକୁ ବିଭୀଷେଣ ଦେଲା ମୋତେ ॥
ତୁ ଯେବେ ରହୁବର ହୋ ଯାଅସି ନିଜ ଦେଶ ।
ତୁ ଦେବ ବିମାନ ମୁଂ ଅଟଇ ମନୁଷ୍ୟ ॥୮୦
କେମନ୍ତେ ତୋହୋର ପିଠିରେ ପାଦ ଦେବି ।
ଯେଡ଼େକ ଭରସା କେଉଂ ଦର୍ପେଣ କରିବି ॥
ଯାଅସି ବିମାନ କୁବେରର ପାଶ ।
ତାହାର ପ୍ରୀତିକି ମୋହୋର ବଡ଼ ଆଶ ॥
ଶୁଣି ରହୁବର ଅନ୍ତରୀକ୍ଷେ ଗଲା ।
ଅଳକାପୁରେ ଯାଇ ପ୍ରବେଶ ହୋଇଲା ॥
ଦେଖିଣ କୋବେର ବୋଇଲା ବିମାନକୁ ।
କିମ୍ପାଇ ଅଇଲୁତୁ ମୋହୋର ପୁରକୁ ॥
ଯେବେ ଯେଥୁ ଯେହିକ୍ଷଣି ବାହୁଡ଼ିଣ ଯାଅ ।
ଅଯୋଧ୍ୟା ଭୁବନେଣ ବେଗେ ତୁ ଯାଇ ଥାଅ ॥୯୦
ସେ ରାମ ଅନାଦି ଈଶ୍ୱରଙ୍କ ଆଦିମୂଳ ।
ସ୍ୱଂଏ ବ୍ରହ୍ମରାଶି ସେହୁ କରୁଣା ସାଗର ॥
ଯେତେକ ଦିନ ରାମ ରାଜ୍ୟ କରୁଥିବେ ।
ତୋହୋର ଉପରେ ସେ ବିଜେଏ କରିବେ ॥
ଦିଗ ବିଜେ କରିବେ ଶ୍ରୀରାମ ତୋତେ ଚଢ଼ି ।
ମୁକତି ହୋଇବୁ ତୁ ପାତେକମାନ ଛାଡ଼ି ॥
ଶୁଣିଣ ପୁଷ୍ପକ ତହୁଂ ବାହୁଡ଼ିଣ ଗଲା ।
ଶ୍ରୀରାମ ଛାମୁରେ ସେହୁ ଯାଇଣ ହୋଇଲା ॥
ଦେଖିଣ ଶ୍ରୀରାମ ତହିଂ ବଶିଷ୍ଟଙ୍କୁ ଚାହିଂ ।
ବାହୁଡ଼ି ଦେବଯାନ ଅଇଲା କିସ ପାଇଂ ॥୧୦୦
ମୁନିଏ ବୋଇଲେ ରାମ ରଥ ଯେଥୁ ଗଲା ।
କୁବେର ଆଗେ ଯାଇ ପୁଣ ପ୍ରବେଶ ହୋଇଲା ॥
କୋବେର ଦେଖି କରି ବୋଇଲା ରଥକୁ ।
ଶ୍ରୀରାମ ଛାଡ଼ି କିମ୍ପା ଅଇଲୁ ଯେଥକୁ ॥
ସେ ସେ ପ୍ରଭୁ ଅନାଦି ଈଶ୍ୱର ବାସୁଦେବ ।
ତୋହୋ ଉପରେ ଚଢ଼ି ଦିଗ ବିଜେ କରିବ ॥
କୋବେର ବୋଲେ ସିନା ଯେଥକୁ ଅଇଲା ।
ଉଠିଣ ଭ୍ରଥ କର ଯୋଡ଼ିଣ ବୋଇଲା ॥
ଭୋ ରାମ ମୁଂ ଅପୂର୍ବ ଦେଖଇ ନଏନେ ।
ଦେବତାଏ ଆରୋହଣ କରନ୍ତି ଏ ଯାନେ ॥୧୦
ଯେ ମନୋରଥ ସୁରଗଣନ୍ତ ସେ ବହି ।
କୋବେର ବିମାନ ଦେବ ଅଟଇ ଯେହି ॥
ଆମ୍ଭର ତହିଂକି ଯେ ଆସଇ କିସ ଅର୍ଥେ ।
ଆମ୍ଭେ ମନୁଷ୍ୟ ବୋଲି କି ନ ଜାଣଇ ରଥେ ॥
ତୁହି ସେ ବ୍ରହ୍ମରାଶି ଅଟୁ ରାବଣାରି ।
ସବୁ ଦେବତା ପରଜା ଅଟନ୍ତି ତୋହୋରି ॥
ତୋହୋରେ କିସେ କୋବେର ରଥ ନେମ ।
କୀଟୁ ବ୍ରହ୍ମ ଯାଏ ଭାବନ୍ତି ତୋର ନାମ ॥
ସକଳ ପଦାର୍ଥମାନ ତୋହୋର ସେ କଳା ।
ନାନା ଜୀବ ଜନ୍ତୁମାନ ତୋହୋର ସଞ୍ଚଳା ॥୨୦
ତୁହି ଯେବେ ଯେଥି ଯେ ବିଜେ କରିଥିବୁ ।
ରାଜନୀତି ଆଚରଣ ପାଳଣା କରିବୁ ॥
ସ୍ୱର୍ଗେ ଯେ ଥିବ ଅନ୍ତରୀକ୍ଷେ ଯିବ ।
ମୃତ୍ୟୁ ଲୋକେ ଆସିଣ କି ସୁଖ ପାଇବ ॥
ପଠିଆଇଲେ ନ ଯାଇ ଆସଇ ପୁଣ ପୁଣି ।
ଧନ୍ୟ ଜୀବନ ଆମ୍ଭର ଅଟଇ ରଘୁମଣି ॥
କେହୁଣିସି ପୁରୁଷେ ଯେଡ଼େ ଯଶ ନ ଥିଲା ।
ଦେବ ରଥ କାହାକୁହିଂ ଆସି ନ ବହିଲା ॥
ଯେ କାକୁସ୍ଥ ବଂଶର ଅଟଇ ବଡ଼ ପୁନ୍ୟ ।
ଅଯୋଧ୍ୟାକୁ ଅଇଲା ପୁଷ୍ପକ ବିମାନ ॥୩୦
ଭୋ ରାମ ଯେବେଣ ଦିନ ହୋଇଲୁ ଅଭିଷେକ ।
ସୁଖୀ ହୋଇଲେଣି ଅଯୋଧ୍ୟାପୁର ଲୋକ ॥
ଦୁଃଖୀ ଦରିଦ୍ର ରୋଗୀ କେହି ନାହିଂ ।
ତୋହୋର ପରା ରାଜା ହୋଇବ ଆଉ କାହିଂ ॥
ଯେ ଅଯୋଧ୍ୟାପୁର ଅମରାବତୀ ସମ ।
ଯେବେଣ ଦେଶ ସୀମାରେ ନ ପଶଇ ଯମ ॥
ସର୍ବଦା ବସନ୍ତ ଋତୁ ଯେଥେ ଥାଇ ।
କାଳ ଅନରୂପେ ପୃଥ୍ୱୀ ଫଳ ଦେଇ ॥
ଗାଈ କ୍ଷୀରବନ୍ତୀ ନାରୀ ପୁତ୍ରବନ୍ତୀ ।
ସମସ୍ତେ ହେଂ ଗ୍ୟାନବନ୍ତ ସତ୍ୟ ଆଚରନ୍ତି ॥୪୦
ଦେବା ଦୟା ଯେ ଅଛଇ ସବୁଙ୍କରି ।
ଗୁରୁ ଗଉରୋବ ମାନନା ସବୁଙ୍କରି ॥
ସଂଗ୍ରାମରେ ସୁରବନ୍ତ ଅଟନ୍ତି ଛତ୍ରୀଗଣ ।
ବେଦମନ୍ତ୍ରେ ନିର୍ଜିତ ତୋ ଦେଶ ବ୍ରାହ୍ମଣ ॥
ବଣିଜାରେ ବଶ୍ୟ ବେପାରେ ନିର୍ଜିତା ।
କୃଷିର ପାଗ ଚିହ୍ନନ୍ତି କୃଷିବନ୍ତା ॥
ଅନ୍ୟାଏ ଉପଦର୍ପ ନାହିଂନା ତୋର ପୁରୀ ।
ଧନ୍ୟ ମହିମା ତୋର ରଘୁବଂଶ ଦଣ୍ଡଧାରୀ ॥
ଶୁଣ କାହାଣୀ ଗୋ ଯେଥୁଅନ୍ତେ ଭଲେ ।
ଶୁଣ ଗୋ ଭବାନୀ ଶଙ୍କର ବୋଇଲେ ॥୫୦
ଶ୍ରୀରାମ ରାଜ୍ୟ କରନ୍ତି ଅଯୋଧ୍ୟା ନାମେ ପୁରେ ।
ଦେବେ ତୋଷ ହୋନ୍ତି ଦେଖି ସ୍ୱର୍ଗପୁରେ ॥
ଶୁଣିଣ ରାମଚନ୍ଦ୍ର ସନ୍ତୋଷ ହୋଇଲେ ।

ସୁମନ୍ତଙ୍କୁ ଚାହିଁଣ ଶ୍ରୀରାମ ଆଗ୍ୟା ଦେଲେ ॥
ଉତ୍ତମ ପୁର ରଞ୍ଜ ରଥକୁ ନେଇ ଥୁଅ ।
ଦୁର୍ଲ୍ଲଭ ଥାନରେ ନେଇ ବିଜଏ କରାଅ ॥
ଶୁଣିଣ ସୁମନ୍ତ ମନ୍ତ୍ରୀ ରଥ ଘେନି ଗଲା ।
ଦିବ୍ୟ ଚାରୁ ଭୁବନେଶ ବିମାନ ଥୋଇଲା ॥
ଦେବତାଏ ଆନନ୍ଦେ କରନ୍ତି ସ୍ୱର୍ଗେ ଭୋଗ ।
ମୁନିମାନେ ନିଶ୍ଚିନ୍ତେ ସାଧିଲେ ବ୍ରହ୍ମଯୋଗ ॥୬୦
ପରଜାଏ ସୁସ୍ଥ କିଛି ହିଂ ଭଏ ନାହିଂ ।
ଅକଣ୍ଟେକ ରାଜ୍ୟ କରନ୍ତି ରଘୁସାଇଂ ॥
ଭାଇନ୍ତ ଅଇଶ୍ବର୍ଯ ଦିଗପାଳ ସମ ।
ଦଶ ସହସ୍ର ବରଷ ରାଜ୍ୟେ ରାଜ୍ୟ କଲେ ରାମ ॥
ଅବିଛନେ ଜାନେକୀକି ଘେନିଣ ଅବକାଶ ।
ଅପୂର୍ବ ତୋଟାଯେକ ରଞ୍ଚିଲେ ରଘୁଶିଷ ॥
ତହିଂ ରୂପିଲେକ ଆମ୍ବ ପଣସ ଗଛ ।
ନଟୀକାଳ ଆତ କଦଳୀ ଦାରାକ୍ଷ ॥
ଟଭା ନାରଙ୍ଗ ନେମ୍ବାଭ କରମଙ୍ଗା ।
ଜମ୍ବିର ବରକୋଳି କଇଥ ମୁନଙ୍ଗା ॥୭୦
ପାଣି ଅୟେଳା ଡାଳିମ୍ବ ଖିରକୋଳି ।
ଉଆଉ ପାଳଧୁଆ ଯେ ଗଙ୍ଗଶିଉଳି ॥
ଖଜୁରୀ ମହୁଲ ସେ କରବା ସାନଆମ୍ବ ।
ତେନ୍ତୁଳି ଭାଲିଆ ଜମ୍ବାଳ ଜାମୁ ନିମ୍ବ ॥
ଅପୂର୍ବ ଫଳମାନ ସ୍ୱର୍ଗରୁ ଅଣାଇଲେ ।
ବିବିଧ ବନ ପୁଷ୍ପ ତହିଂରେ ଲଗାଇଲେ ॥
ଚମ୍ପା ନାଗେଶ୍ୱର କରୁଣା କେତକୀ ।
ଦଏଣା ମରୁଆ କୁନ୍ଦ କୁମୁଦ ଧାତୁକୀ ॥
ବଗହୁଳ ମଲ୍ଲୀ ମାଳତୀ ଜାଇ ଜୁଇ ।
କଞ୍ଚଣ କଣେଅର ତରାଟ ସେ ଲଗାଇ ॥୮୦
କୁରିଅନା ଗୁଳିଚା ପୁନାଙ୍ଗ ଉତ୍ପଳ ।
ମନ୍ଦାର ବନ୍ଧୁକ କୁରୁବେଲି କୁରୁଆଳ ॥
ବୀରଭଦ୍ର ତୁଳସୀ ଅନୁପାମ ଗଛ ।
ଯତନେ ଦେଇଂ ପଠିଆଇଲେ ସହସ୍ରାକ୍ଷ ॥

ସେ ବୃକ୍ଷଙ୍କର ମୂଳେ ସୁବର୍ନ୍ୟର ବେଦୀ ।
ପନୀର ପାଣି କୃପୁର ଖତ ମେଦି ॥
ଖରତର ହୋଇ ନ ବହଇ ପବନ ।
କୋକିଳ ଚଢ଼ାଇ ରଡ଼ନ୍ତି ଘନ ଘନ ॥
ଝିଙ୍କାରୀ ଶବଦ ଶୁଣିଣ ଉନ୍ମୁମତ ।
ମୟୂର ଚଢ଼ଇ ଚରନ୍ତି ଯୂଥ ଯୂଥ ॥୯୦
ଡାହୁକ ପକ୍ଷୀର ଅପୂର୍ବ ରସବାଣୀ ।
କୁମ୍ଭାଟୁଆ ଭାଷଇ ବେଳକାଳ ଜାଣି ॥
ପଞ୍ଚୁରତ୍ନେ ଚାନ୍ଦୁଆ ଉପରେ ଅଛି ଟାଣି ।
ତିମିରି ଭିତରେ କି ଚନ୍ଦ୍ରମା ଉଦେ ଜାଣି ॥
ସିନ୍ଦୁରୀ ପାଟର ପଡ଼ଇ ଦିବ୍ୟ ଟେରା ।
କତି କତି ଲମ୍ବଇ ଗଜମୋତି ଝରା ॥
କର୍ପୂରର ଗୁଣ୍ଡି ଧୂଳି କରି ପାଡ଼ି ।
ପୁଷ୍ପେକ ମଣ୍ଡିଲା ଅଛି ଚଉକେକ ଛାଡ଼ି ॥
ନିରନ୍ତରେ ଚାମର ଉପରେ ତଳେ ଲୋଟେ ।
ନିଘଞ୍ଚରେ ଗହଳ ଦେବାଙ୍ଗ ଚାରୁ ପାଟେ ॥୧୦୦
ଦ୍ରପଣ ଝଟ ଝଟ ବିରାଜଇ ତ୍ରୋଣା ।
ଯେକକଇଂ ଚାହିଁଲେ ଆରେକ ଦିଶଇ ଜିଣା ॥
ଅଗ୍ରଧୂପ ଧୂଆଂ ମହକଇ ଚଉପାଶ ।
ଲକ୍ଷ୍ମୀ ନାରାଏଣ ଯହିଂ ହୋଇବେ ନିଅବକାଶ ॥
କାହିଂ ଖଟ ଦୋଳି କାହିଂ ଅଛି ମୋଡ଼ା ।
କାହିଂ ଭୂମିଶେଜ କାହିଂ ରତ୍ନପିଢ଼ା ॥
କାହିଂ ଚଉଦୋଳ କାହିଂ ଖଟ ପଲଙ୍କ ସେ ଅଛି ।
କାହିଂ ସିଂହାସନ ନବରତ୍ନ ସଞ୍ଚି ॥
ଯହିଂ ଇଚା ତହିଂ କରିବେନା ବିଜେ ।
ଯେବଣ ମନ୍ଦିର ବିଶ୍ୱକର୍ମା ସାଜେ ॥୧୦
ଚାରିକତି ଜଳ ଅଛଇ ଘର ବେଢ଼ି ।
ମନକଲେ ଯାଇଂ ରୂପାର ସଂକୋଅ ଚଢ଼ି ॥
ନୀଳ ଉତ୍ପଳ ଫୁଲ ମହକଇ ବାସ ।
ଶତଦଳ ପଦ୍ମ ଅଛଇ ବିଶେଷ ॥

ରଜତ କୁମୁଦ ଆବର ଶେତକଇଂ ।
ରଙ୍ଗ ପଦ୍ମ ଫୁଟଇ ଆଦିତ୍ୟ ଉଇଂ ଆସଇ ॥
କଣ୍ଡା ତିତିର ଭାଷନ୍ତି ନାନା ରୀତି ।
ହଂସ ହଂସରାଳି ପହରନ୍ତି ପନ୍ତି ପନ୍ତି ॥
ତହିଂ ରଘୁନାଥ ଜାନେକୀକି ଘେନି ।
ବିନୋଦ କରୁଥାନ୍ତି ଦିବସ ରଜନୀ ॥୨୦
ବନେଣ ବୁଲନ୍ତି ସେ ମଦନେ ଉନ୍ମୁମତା ।
ବାମ ଅଙ୍ଗେ ଆଉଜାଇଂ ଧରିଥାନ୍ତି ସୀତ୍ୟା ॥
ଯେବଣ ବୃକ୍ଷ ତଳେ ବସନ୍ତି ବେନିଜନ ।
ସୀତ୍ୟାର ଶ୍ରୀଅଙ୍ଗେ ରାମ ଲେପନ୍ତି ଚନ୍ଦନ ॥
କାହିଂ ଜାନେକୀ ରାମ ଜଂଘରେ ବସି ।
କୁଙ୍କୁମ ଚିତା କପୋଳେ ଦିଅନ୍ତି ରଘୁଶିଷି ॥
ଶୁକ ସାରୀ ପିକ ମଦନେ ମହାରସ ।
ଉଡ଼ନ୍ତି ମଧୁପ ଚୁମ୍ବନ୍ତି ନାନା ପୁଷ୍ପ ॥
ଫଳଭରେ ତରୁ... ଭୂମିରେ ଡାଳ ଲାଗି ।
ବସନ୍ତ ରହି ତହିଂ ସ୍ଥାନ ପରିତ୍ୟାଗୀ ॥୩୦
ଚନ୍ଦ୍ର ଦେବତା ସେ ତୋଟାକୁ ଦଣ୍ଡୁଆସୀ ।
ସର୍ବଦା ଛଡ଼ ରତୁ ଛନ୍ତି ତହିଂ ବସି ॥
ଯେ ଯାହା ବସନ୍ତେ ଯେବଣ ଫୁଲ ଫଳ ।
ନିତିକି ନିତି ସେ ତୋଟା ଦେଖନ୍ତି ରଘୁମଲ ॥
ଯେତେବେଳେ ଯିସ ଲୋଡ଼ିଲେ ତହିଂ ପାଇ ।
ସେ ତୋଟା ଭିତରେ ପୋଖରୀଏ ଖୋଳାଇଂ ॥
ଗଙ୍ଗା ନଦୀଠାରୁ ପଡ଼ିଲା ଆସି ଝର ।
ପବିତ୍ର ସ୍ୱାଦଜଳ ଛଛନ୍ଦ ଗଭୀର ॥
ତୋଳି ପକାବନ୍ତେ ଚରା ଚର ବାଜି ।
ବୁଡ଼ି ଅନାଇଲେ ଦିଶଇ ରୋମ ରାଜି ॥୪୦
ପ୍ରକଟ ଝୁମ୍ପା ବାନ୍ଧିଲା ଚଉପାଶ ।
ଚାରିଦିଗେ ଅଛି ଅପୂର୍ବ ଚାରୁବାସ ॥
ସ୍ଫଟିକର ଘର ଉପରେ ଚାଳ ସୁନା ।
ନବରତ୍ନରେ ମଣ୍ଡଣି ସୂର୍ଯର ଦ୍ରୋଛନା ॥
ପୋଖରୀ ଭିତରେ ମଣ୍ଡୋପେକ ଅଛି ।
ଯିବାକଇ ରୂପାର ସଙ୍କୋଅ ଅଛି ସଞ୍ଚି ॥
ବାବୁ ସେ ମନ୍ଦିର ମାଣିକ୍ୟର ପାବଛ ।

ବ୍ରହ୍ମକାନ୍ତି ହୀରା ପୀଢ଼ ଯେ ପ୍ରତ୍ୟକ୍ଷ ॥
ନୀଳ ଖମ୍ବମାନ ସୁବର୍ଣ୍ଣର କାନ୍ଥ ।
କସ୍ତୁରୀ ଲେଖନ କମ ବିବିଧ ପଦାର୍ଥ ॥୫୦
ଚନ୍ଦନକାଠର ମେଲି ଅଛି ଶେଣୀ ।
ଗୁଅ ପାଡ଼ିଅଛି କୃଷ୍ଣ ଅଗ୍ର ଆଣି ॥
ଗଣ୍ଠିଅନାବତା ରଙ୍ଗପାଟ ଲଇଂ ।
ଗିଲିମି ଖଣ୍ଡଶାଳ ତେଜପତ୍ର ଛାଇଂ ॥
ଉପରେ ପୁଣ କାଚ କଳସ ପଞ୍ଚବର୍ଣ୍ଣ ।
ଚିରାଳ ଉଡ଼ଇ ତାରା ମଣ୍ଡଳ ଜାଣି ॥
ନନ୍ଦାବ୍ରତେକ ଉରା ଲାଗିଛି ପୁଞ୍ଜି ପୁଞ୍ଜି ।
ଯତନେ ହେ ବିଶ୍ୱକର୍ମା ଗଢ଼ିଲା ଅଛି ସାଜି ॥
ଦେଖିଣ ପ୍ରଶଂସା କଲେ ରଘୁମଣି ।
ଗୁଲୁଚି ଲତା ତଳେ ବସନ୍ତି ଯାଇଂ ପୁଣି ॥୬୦
ମୃଗମଦ କରାଟ ଫେଡ଼ିଲେ ରଘୁସାଇଂ ।
ଜାନେକୀ ଯଉବନେ ଚିତ୍ର କଲେ ନେଇ ॥
ଶ୍ରୀକରେ ଶ୍ରୀରାମ ଧରନ୍ତି ନିର୍ଭରେ ।
ଶରଧାରେ ଶ୍ରୀରାମ ଧରନ୍ତି କୋଡ଼ରେ ॥
ଆମ୍ବଗଛ ତଳେ ପଲଙ୍କ ଅଛି ପଡ଼ି ।
ସୀତ୍ୟା ଘେନି ରାମ ତହିଂରେ ପହୁଡ଼ି ॥
ହିଆରେ ହିଆ ଦେଇ ଭିଡ଼ନ୍ତି ଭୁଜେ ଭୁଜ ।
ଜାନେକୀ ପରେ ଗୋଡ଼ ଲଦନ୍ତି ରଘୁରାଜ ॥
ବିବିଧ ରସ କଥା କୁହାକୋହି ହୋନ୍ତି ।
ତହୁଂ ଉଠିଣ ପୁଣ ଫୁଲ ତୋଳି ଯାନ୍ତି ॥୭୦
ପଶ୍ଚିମ ଦିଗେଣ ଅଛି ଯେଉଂ ଘର ।
ଫୁଲ ତୋଳି ତହୁଂ ବିଜଏ ରଘୁବୀର ॥
ଜାନେକୀ ବସାଇ ଖୋଷନ୍ତି ତାର ଖୋଷା ।
ମୁଖ ଚାହିଂ ଦୁହେଂ ଦ୍ୟନ୍ତି ମୁରୁକି ହସା ॥
ତହୁଂ ଯାଇଂ ବେନି ତୋଟାରେ ପଶନ୍ତି ।
ସୀତ୍ୟାର ନୟନେ ରାମ କଜ୍ଜ୍ୱଳ ରଞ୍ଜନ୍ତି ॥
କେବଣ ସ୍ଥାନରେ ବସି ଅଳଙ୍କାର ଲାଇ ।
ଦେବାଙ୍ଗ ବସ୍ତ୍ର କାହିଂ କାଛେଣି ପିନ୍ଧାଇ ॥
ପୂର୍ବକତି ଘରେଣ ମିଳିଲେକ ବେନିଜନ ।
ପ୍ରକତ ସିଂହାସନ ତହିଂ ଅଛି
ବିତପନ ॥୮୦
ହରଷ ମୁଖ ହୋଇ ବସିଲେ ବେନି ଯାଇଂ ।
ସୀତ୍ୟା ପାଦ ଯୁଗଳ ଧଇଲେ ରଘୁସାଇଂ ॥
ଚରଣ ଅଙ୍ଗୁଷ୍ଟି ନଖମାନନ୍ତ ମାଜିଲେ ।
ସୁନ୍ଦର ଦିଶିବା ନିମନ୍ତେ ଅଳତା ପୁଣି
ଦେଲେ ॥
ଦଶନହ ଉଜ୍ଜ୍ୱଳ ଦିଶିଲା ମାହା ସାଞ୍ଜ ।
ପୁଣ ପୁଣ ଶ୍ରୀରାମ ହୃଦପଦ୍ମେ ଆଞ୍ଜ ॥
ଉପିଲା ହୀରାଜାଣି ଦିଶିଲା ତାର ଲଖ ।
ତହିଂ ଶ୍ରୀରାମର ଦିଶିଲା ଶ୍ରୀମୁଖ ॥
ଦୁଇ ପାଦ ଯୋଡ଼ି ପୁଣ ବସିଥିଲେ ସୀତ୍ୟା ।
ଅନାଇଣ ଭ୍ରାନ୍ତି ପାଇଲେ ଜଗଜିତା ॥୯୦
ଲକ୍ଷ୍ମଣ ବୋଲିଣ ରାଇଲେ ଉଚ୍ଚ କରି ।
ଧନୁ ଆଣ ବୋଲି ଶୁଣି ସୀତ୍ୟା ଡରି ॥
ପାଦ କାଢ଼ିଣ ବୋଇଲେ କିମ୍ପା ତାକୁ ରାଅ ।
କେବଣ ଚରିତ ନାଥ ମୋର ଆଗେ କହ ॥
ଶ୍ରୀରାମ ବୋଇଲେ ସଖୀ ହୋଇଲି ମୁଂ
ବାଇ ।
ଚରଣ ନଖେ ତୋର ଦିଶିଲା ମୋର ଚାଇ ॥
ଦଶ ନଖେ ଦଶ ମୁଖ ଆବର ବିଂଶ ଭୁଜ ।
ମୁହିଂ ବିଚାରିଲି ଅଇଲା ଲଙ୍କରାଜ ॥
ତେଣୁ ସେ ଲକ୍ଷ୍ମଣକୁ ରାଇଲିରେ କତି ।
ଶୁଣିଣ ହସିଲେ ଜନେକ ଦୋହିତୀ ॥୧୦୦
ଜାନେକୀ ମୁଖେ ରାମ ଉଠି ଚୁମ୍ବ ଦେଲେ ।
ତହୁଂ ହାଥ ଧରାଧରି ହୋଇ ଦୋହେ
ଗଲେ ॥
ପୋଖରୀ ଭିତରେ ଅଛି ଯେବଣ ଘର ।
ତହିଂର ପଲଙ୍କେ ପହୁଡ଼ିଲେ ରଘୁବୀର ॥
ସୀତୟାକୁ ବୋଇଲେ ହୃଦେ ମୋର ବସ ।
ଶୁଣିଣ ବଇଦେହୀ ହୋଇଲେ ହସ ହସ ॥
ରଘୁନାଥଙ୍କ ପାଦ ମଞ୍ଚାକଇ ସ୍ୟତୀ ।
ଚାଟୁ ବଚନ ତାକୁ କହନ୍ତି ରଘୁପତି ॥
ବୋଇଲେ ସଖୀ ତୁଗୋ ହୋଇଲୁକି ବାଇ ।
ଯେ ମୋହୋର ଶରୀର ତୁ ମୋର
ଛାଇ ॥୧୦
ତୋହୋର ମୋହୋର କି ବେଗଳ ହୋଏ
ପ୍ରାଣ ।
ତୁ ସଖୀ ଲକ୍ଷ୍ମୀ ମୁହିଂ ଅଟଇ ନାରାଏଣ ॥
ତୁ ମୋହୋର ହୃଦେ ସର୍ବଦା କାଳେ ଥାଉ ।
ଯେବେ କିମ୍ପା ବସ ବୋଇଲେ ଲାଜ ପାଉ ॥
ଯେତେ ବୋଲି ରାମ ସୀତ୍ୟା ଭୁଜ ଧରି ।
ଶେଜରେ ଶୁଆଇଲେ କୋଳାଗ୍ରତ କରି ॥
ବିବିଧ ବିନୋଦ କରନ୍ତି ବେନି ଜନ ।
ହସିଣ ରଘୁନାଥ ବୋଲନ୍ତି ବଚନ ॥
ଭୋ ସଖୀ ଜାନେକୀ ହେଲୁକି ଗର୍ଭବାସ ।
ସ୍ତନ ଯୁଗଳ ତୋରତ ଲାଗିଲା ଉଶ୍ୱାସ ॥୨୦
ରସାଣିଲା ଶୁଦ୍ଧ ସୁବର୍ଣ୍ଣ ପ୍ରାଏକ ଦେହ କାନ୍ତି ।
ଯେବେ ଶ୍ୱେତ ଭାବ ଦିଶିଲା ରୂପବନ୍ତୀ ॥
ପୂର୍ବେଣ ପାତଳ ତୁ ଯେବେ ମୋଟ ଲାଗୁ ।
ଯେଡ଼େ ଆନନ୍ଦେ କିମ୍ପା କିଛି ହିଂ ନ ମାଗୁ ॥
ଲାଜେଣ ଜାନେକୀ ଲମ୍ବାଇଲେ ଶିର ।
ମୁଖ ତୋଳି ତାହାକୁ ଚାହିଂଲେ ରଘୁବୀର ॥
କେତେଦିନ ସଖୀ ହୋଇଲା ଆଜକୁ ।
ଯେଡ଼େ ଶୁଧାର କଥା ନ କହୁ ଆମ୍ଭକୁ ॥
ଯେଥରୁ ହରଷ କଥା ଅଛି କି ଆଉ ସହି ।
ଦୁଲଭ କଥା ଯେହାତ ଯତନେଣ
କହି ॥୩୦
ଜାନେକୀ ବୋଇଲେ ଆଜକୁ ଦୁଇମାସ ।
ତୁମ୍ଭର ବୀର୍ଯେ ମୁଂ ଦେବ ହୋଇଲି
ଗର୍ଭବାସ ॥
କୌଶଲ୍ୟା ଜାଣନ୍ତି ନ ଜାଣନ୍ତି ଆନ ।
ଯେବେ ତୁମ୍ଭେ ଆପଣେ ଜାଣିଲ ରଘୁନାନ ॥
ଶ୍ରୀରାମ ବୋଇଲେ ସଖୀ ଗୋ ଉଧରିଲ
ବଂଶ ।
ବୀରପୁତ୍ର ପ୍ରସବ ହୋଉନ୍ତୁ ଗରୁ ହଂସ ॥
ଇକ୍ଷାକୁରୁବଂଶ ତୋହୋରେ ରକ୍ଷାଗଲା ।
ସୂର୍ଯ୍ୟବଂଶଗୋଟା ସଖୀ ଉଦିତ ହୋଇଲା ॥
ରଘୁବଂଶ ସମୁଦ୍ରକୁ ତୁସେ ଅଟୁ ଶଶୀ ।
ସତ ମନେ ଦେଲେ ଜନେକ
ମହାରଷି ॥୪୦
ତେଣୁ ସେ ବୃଷାଳ ହୋଇଲା କାକୁସ୍ଥ
କୁଳ ।

ଧନ୍ୟ ଧନ୍ୟ ଜାନକୀ ଜୀବନ ସୁଫଳ ॥
ସ୍ୱାମୀର ସଉଭାଗୀ ଆବର ପୁତ୍ରବନ୍ତୀ ।
ଯେସନେକ ସ୍ତିରୀ ଉତ୍ତମେ ଗଣିତା ହୋନ୍ତି ॥
ତୁ ଯେବେ ଜାନକୀ ଗୋ ହୋଇଲୁ ଗର୍ଭବାସ ।
କେବଣ ପଦାର୍ଥକୁ ତୋହର ମୁହାଂସ ॥
ଅପୂର୍ବ ପଦାର୍ଥ ସଖୀ ମାଗୁକିନା ମୋତେ ।
ତିନି ଭୁବନୁ ଗୋ ଆଣିଦେବି ତୋତେ ॥
ସ୍ୱଭାବେ ମୋର ଜୀବନ ତୋହୋରି ସିନା ।
ପୁଣିହିଂ ସଖି ତୁଗୋ କଥାଏ ମାଗୁକିନା ॥୫୦
ହସିଣ ଜାନକୀ ବୋଇଲେ ଶୁଣ ସ୍ୱାମୀ ।
ବନ ପର୍ବତେ ବୁଲି ହୋଇଲାଇଂ ବନଗାମୀ ॥
ଅନେକ ଦୁଃଖରେ ନେଲୁ ତହିଂ ଦିନ ।
ଯେବେ ସମ୍ପଦ ହୋଇ ଯିବାକୁ ମୋର ମନ ॥
ଗଙ୍ଗାକୂଳେ ଯେ ଋଷିମାନେ ଥାନ୍ତି ।
କନ୍ଦମୂଳ ଖାଇଂ ଦୁଃଖେ ଦିନ ନ୍ୟନ୍ତି ॥
ତାହାଙ୍କୁ ଦେଖିବାକୁ ଶରଧା ମୋହୋର ।
ଯେବେ ଆଗ୍ୟା ଭୋ ଦେବ ହୋଇବ ତୋହୋର ॥
ସେ ଋଷିମାନଙ୍କୁ ଫଳମୂଳ ଦେବି ।
ପାୟେ ପଡ଼ି ଶୋଇ ସଦୟେ ମାଗିବି ॥୬୦
ବିଶେଷେ ଗଙ୍ଗା ଜଳେ କରିବି ସ୍ନାହାନ ।
ପଞ୍ଚବିଧି ପ୍ରକାରେ ଦେବଇଂ ତହିଂ ଦାନ ॥
ଯେକା ଦିନ ମଧରେ ଯାଇଣ ଆସିବି ।
ତୋତେ ଭୋ ନାଥ ମୁଂ ଶୁଭ ମନାସିବି ॥
ପ୍ରସନ୍ନ ହୋଇଲୁ ଯେବେ ଯେତେକ ମୋତେ କର ।
ଶୁଣିଣ ଟହ ଟହ ହସନ୍ତି ରଘୁବୀର ॥
ହୋଇ ହୋଇ ସୀତା ଗୋ ଦିନା କେତେ ଯାଉ ।
ଲକ୍ଷ୍ମଣ ତୋତେ ନେଇ ସେମାନ ଦେଖାଉ ॥
ଯେତେ ବୋଲି ତହୁଂ ଭିତରକୁ ଗଲେ ।
ତୋଟାରେ ପଶି ଫୁଲ ଫଳନ୍ତ ତୋଳିଲେ ॥୭୦
ଜାନକୀ ପିନ୍ଧିବାର ବସ୍ତ୍ରର ଅଞ୍ଚଳ ।
ତହିଂ ରଘୁନାଥ ବାନ୍ଧିଲେ ପୁଷ୍ପ ଫଳ ॥
ବୋଇଲେ ସୀତୟା ତୁମ୍ଭେ ଭିତରକୁ ନିଅ ।
ଯାହାକୁ ଇଛା ତୋର ତାହାକଇ ଦିଅ ॥
ଆମ୍ଭେ ଅବକାଶ ହୋଇବୁ ବାହାରେ ।
ତୁ ଚନ୍ଦ୍ରବଦନୀ ଗୋର ଚଳ ଅନ୍ତପୁରେ ॥
ଶୁଣି ବଇଦେଈ ଭିରକୁ ଗଲା ।
ଭଗ୍ନୀମାନଙ୍କୁ ନେଇ ଫଳମୂଳ ଦେଲା ॥
ବେଶ ମଳିଣ ଯେ ଆଲୋଳ କେଶ ଚାହିଂ ।
ସଖୀମାନେ ହସନ୍ତି କୁହାକୁହି ହୋଇଂ ॥୮୦
ଶୁଣିଣ ବଇଦେହୀ ପାଇଲେକ ଲାଜ ।
ଚନ୍ଦ୍ର ଦେଖି ଯେହ୍ନେ ମଳିଣ ସରୋଜ ॥
ଶଙ୍କର ବୋଲନ୍ତି ଗୋ ପାର୍ବତୀଦେବୀ ଶୁଣ ।
ବାହାରେ ଅବକାଶ ହୋଇଲେ ରଘୁରାଣ ॥
ମର୍ଦ୍ଦନ ମାଜଣା ସାରି ମୋଣୋହିରେ ବିଜେ କଲେ ।
ଆଚୋଂବନ ସାରି ତାମ୍ବୋଳ ଭୁଞ୍ଜିଲେ ॥
ରବି ଅସ୍ତ ହୋଅନ୍ତେଣ ସନ୍ଧ୍ୟାଦେବ ସାରି ।
ଅବକାଶ ମନ୍ଦିରେ ବିଜଏ ରାବଣାରି ॥
ବେଶ ହୋଇ ଜାନକୀ ଖଟିଲେ ଆସି ପାଶ ।
ଚଉକତି ଚହଟଇ ଅଗୁରୁଧୂପ ବାସ ॥ ୯୦
ସୁବର୍ଣ୍ଣ ଖୋରାଏ ଚତୁଃସମ ଗୋଳି ।
ଶ୍ରୀରାମ ଅଙ୍ଗେ ନେଇ ଜନେକ ଝିଅ ବୋଲି ॥
ଭୁଜ ଚରଣ ଯେ ପିଠି ପେଟ ହିଆ ।
ଶରଧାରେ ମୁଖେ ମାଖନ୍ତି ଦେବୀ ଶ୍ରୀୟା ॥
ସରୁ ବସ୍ତ୍ର ଘେନି ପୋଛି ପକାଇଲା ।
କ୍ରପୁର କସ୍ତୁରୀ ମିଶାଇ ଘଷିଲା ॥
ବସନ୍ତ ପଟନୀ ପିନ୍ଧାଇଲେ ନେଇଂ ।
ଗଭା ବାନ୍ଧିଲେକ ଦୁଲ୍ଲଭା ପୁଷ୍ପ ଦେଇ ॥
ବିବିଧ ଅଳଙ୍କାର ଲାଇଲେକ ଅଙ୍ଗେ ।
ପରିହାସ କୁହାକୁହି ହୋଅନ୍ତି ନାନାରଙ୍ଗେ ॥୧୦୦
କପୋଳେ ମୃଗମଦ ଘେନିଣର ଚିତ୍ର କଲେ ।
ରୂପ ଚାହିଂ ମୁଖେ ଚୁମ୍ବନ ନେଇ ଦେଲେ ॥
ହସି ରଘୁନାଥ ସୀତ୍ୟାକୁ କୋଳକଲେ ।
ମଦନ ସାତ୍ୟକେ ସେ ରଜନୀ ବଞ୍ଚିଲେ ॥
ରଜନୀ ପ୍ରଭାତେ ସୀତ୍ୟା ଭିତରକୁ ଗଲା ।
ଶ୍ରୀରାମ ଲାଇବାର ତଡ଼ାଉମାନ ଦେଲା ॥
ଯେଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ଆସ୍ଥାନେ ବିଜଏ କଲେ ରଘୁପତି ॥
ଲକ୍ଷେକ ମୁକୁତା ଲକ୍ଷେକ ମାଣିକ୍ୟ ।
ସୀତ୍ୟା ପେଟେ ରାମ କରାଇଲେ ଅଭିଷେକ ॥୧୦
ବୋଇଲେ କୁଶଳେ ଅଷ୍ଟୀର ପୁତ୍ର ହୋଉ ।
କୁଶ ନାମରେ ରାଜା ବୋଲିଣ ବୋଲାଉ ॥
ଯେତେକ ବୋଲି ହସି ଚାହିଂଲାକ ସୀତ୍ୟା ।
ଲାଜେ ଅନାଇ ସେ ନୁଆନ୍ତି ଆଖିପତା ॥
କୋଳ କରିଣ ରାମ ମୁଖେ ଚୁମ୍ବ ଦେଲେ ।
ଶତେକ ଶାସନ ସଖୀ ବସାଅ ବୋଇଲେ ॥
ଅନ୍ନ ବସ୍ତ୍ର ତଇଳ ପାଣି ପଣା ଦାନ ।
ଦେଶେ ଦେଶେ ସଖୀ ଦିଅ ଅବିକ୍ଷଣ ॥
ଦେବତା ପୂଜା ବ୍ରାହ୍ମଣେ ଦିଅ ଭୋଜି ।
ହୋମ କରାଇଲେ ଦେବ ହବି ଭୁଞ୍ଜି ॥୨୦
ଯେ ତୋର ପୀରତି ଅଛନ୍ତି ପରିଜନ ।
ତାହାଙ୍କର ଦିଅ ଅନ୍ନ ବସ୍ତ୍ର ଦାନ ॥
ଯେତେକ ବୋଲି ରାମ ଅନେକ ଧନ ଦେଲେ ।
ସବୁ ସୀତ୍ୟା ଅନ୍ତଃପୁରକୁ ବୁହାଇଲେ ॥
ଯିସ ଯିସ ପୁଣ୍ୟ କର ବୋଇଲେ ତାଙ୍କ ସାଇଂ ।
ତହୁଂ ଶତେ ଗୁଣ ଧନ ଭଣ୍ଡାର ଦେଲେ ଫେଇଂ ॥
ରାଜଦ୍ୱାରେ ସୁବର୍ଣ୍ଣ ବୃଷ୍ଟି କରାଇଲେ ।
ଦେବତା ବ୍ରାହ୍ମଣକୁ ଅନେକ ଭୋଗ ଦେଲେ ॥
ସକଳ ଦେଶରେ ବସିଲା ଅନ୍ନ ଛତ୍ର ।
ଲେଖିଣ ଦେଇଛନ୍ତି କଉଶଲ୍ୟାର ସୁତ ॥୩୦
ଜନକ ଋଷି ରାଜ୍ୟେ ଯେତେକ ଧନ ଥିଲା ।

ସମସ୍ତ ମହାସ୍ୟତୀ ଦରିଦ୍ରେ ବିଳୋହିଲା ॥
ସାତଘଡ଼ି ପରିଯନ୍ତେ ସୁବର୍ଣ୍ଣ ଦାନଦେଇ ।
ତହୁଂ ଅନ୍ନ ବସ୍ତ୍ର ତଇଳ ବିଳୋହି ॥
ତହୁଂ ଖଟ ଶେଜ ସେ ହାଥୀ ଘୋଡ଼ାଦାନ ।
କେହୁ ରଥ କେହୁ ଚଢ଼ଇ ବିବାନ ॥
ଚନ୍ଦନ କସ୍ତୁରୀ କ୍ରୁପୁର ଫୁଲମାନ ।
ବିଚିତ୍ର ବସ୍ତ୍ର ସୁସ୍ୱାଦୁ ଫଳମାନ ॥
ଅବିକ୍ଷଣେ ଯେହା ମାଗିଲେଣ ପାଇ ।
ଯତନେ ରାମଚନ୍ଦ୍ର ଅଛନ୍ତି ନିର୍ଭାଇ ॥ ୪୦
ଯେଥୁ ଅନନ୍ତରେ କଉଶୁଲା ସୁତ ।
ଯେ ନିତ୍ୟ କର୍ମ ବିଧାନ ସାରିଲେ ତୁରିତ ॥
ଦେବତାଏ ପୂଜା ଅଗ୍ନିରେ ହୋମ ଦେଲେ ।
ବୀରବେଶ ହୋଇଣ ଆସ୍ଥାନେ
ବିଜେକଲେ ॥
ଶିରେ ଶ୍ୱେତଛତ୍ର ସୁମନ୍ତ ଅଛି ଧରି ।
ବଶିଷ୍ଠଙ୍କର କରେ କର ଦେଇ ରାବଣାରି ॥
ବିଷ୍ଣୁକି ଈଶ୍ୱର କରେ ଦେଲେ ହସ୍ତ ।
ବୀରଛତ୍ର ତୋଳିକି ଧରଇଲେ ଚଉମାଥ ॥
ତେସନଙ୍କ ପଟାନ୍ତର ଦିଶନ୍ତି ରାମରାହୁ ।
ସ୍ୱର୍ଗେଣ ସୁର ଅପକ୍ଷରୀ ଛନ୍ତି ଚାହୁଂ ॥୫୦
ଦୁନ୍ଦୁଭି ବଜାଇଣ ହୁଳହୁଳି ଦେଲେ ।
ପାରିଜାତେକ ପୁଷ୍ପ ପାଖୁଡ଼ା ବୃଷ୍ଟି କଲେ ॥
ଅପକ୍ଷରାମାନେ ବୋଇଲେ ଶ୍ରୀରାମକୁ
ଚାହିଁ ।
ଯେହାର ପରା ପ୍ରଭୁତ ସ୍ୱର୍ଗପୁରେ ନାହିଁ ॥
କିସ ବିଚାରି ଦେବେ ଅଯୋଧାରେ
ଥୋଇଲେ ।
ଯେଡ଼େ ଯେଡ଼େ ଲୋକ ଅଗ୍ୟାଂନ
ହୋଇଲେ ॥
ଜଗତ ଠାକୁର ମନୁଷ୍ୟ ରୂପେ ଥୋଇଂ ।
ଯେ ପୁଣ ଯେ ସ୍ୱର୍ଗରେ କେବଣ ସୁଖ ପାଇ ॥
ଯେହାକୁ ମଥ କରି ବସିବେ କେହରଣ ।
ତେବେ ସେ ସ୍ୱର୍ଗପୁର ହୋଇବାକ
ଭୂଷଣ ॥୬୦
ଅପକ୍ଷରୀଙ୍କ ବଚନ ପବନ ଶୁଣିଲା ।
ଜଗତ ପିତାମହ ଯୋଗେଣ ଜାଣିଲା ॥
ସୁରପତି ଆଗେ ବୋଇଲାକ ଫୁଟି
ପରମେଷ୍ଠୀ ।
ଜଗତ ଈଶ୍ୱର ମାନେବ ସଂଗେ ଗୋଷ୍ଠୀ ॥
ରାବଣକୁ ମାଇଲେ ତ ହେଲା ଶୁଭ କାର୍ଯ୍ୟ ।
ଯେବେ ଥିବାର ତ ଭଲ ନୁହଂଇ
ଦେବରାଜ ॥
ସ୍ୱର୍ଗ ନ ଶୋହଇ ସ୍ୱାମୀର ନ ଥିଲେ ।
ଯେତେ କାଳ କିମ୍ପା ରହଣି ତହିଂ କଲେ ॥
ବୋଲାବୋଲି ହୁଅନ୍ତେ ଜାଣିଲେ ସମସ୍ତେ ।
ଦେବତାଙ୍କୁ ଚାହିଂଣ ବୋଇଲେ
କୁଶହସ୍ତେ ॥୭୦
ନାରାଏଣ ସ୍ୱାମୀ ମାନେବ ରୂପ ଧରି ।
ତୈଲୋକ୍ୟର ଶତ୍ରୁ ରାବଣକୁ ମାରି ॥
ଯେବେ ଅଯୋଧ୍ୟାରେ ରାଜାପଣ କଲା ।
ଆଜକୁ ଦଶସହସ୍ର ବରଷ ହୋଇଲା ॥
ସ୍ୱର୍ଗ ନ ଶୋହିଲା ଆସିବେ ନାହିଂକି ।
ରାଜପଣ କରି ଗଲେ କି ତହିଂକି ॥
ଜନେକ ଝିଅ ତ ହୋଇଲା ଗର୍ଭବାସ ।
ତାହାର ତହିଂ ଶ୍ରୀରାମର ହେବ ଦୁଇ ଶିଷ ॥
ସନ୍ତତି ଥୋଇଣ ଆସନ୍ତୁ ସ୍ୱର୍ଗ ଆଳ ।
ଯେଡ଼େବଡ଼ ପ୍ରଭୁ କିମ୍ପା ହୋଇବେ
ଭୂପାଳ ॥୮୦
କିସ ହୋ ଦେବତାଏ ତୁମ୍ଭେ କିସ ବୋଲ ।
ଯେ ଆମ୍ଭର କଥା ନୁହଇଂ ନା ଭଲ ॥
ଈଶ୍ୱର ପୁରୁଷକୁ ମାନବେ ଜାତ କଲୁ ।
ବନବାସ କରାଇ ଘରଣୀ ଲୁଚାଇଲୁ ॥
ଯେବେ ପୁଣ ଅଯୋଧ୍ୟାର ଭାରା ଅଛୁ ଇଦି ।
ଯେ କଥା ଆମ୍ଭର ଟି ନୁହଇଂ ସଦବୁଦ୍ଧି ॥
ତେତିଶ କୋଟି ଦେବେ ବୋଇଲେ ଶୁଣ
ବେଦପତି ।
ଆମ୍ଭେ କିସ ବୋଲିବୁ ସେ ଅନନ୍ତ ମୂରତି ॥
ତୁହି ସେହୁ ଦେବ ଆଣିମା କଥା ଜାଣୁ ।
ବାସୁଦେବ ଛାମୁକୁ ଆମ୍ଭକୁ କିମ୍ପା ଗଣୁ ॥୯୦
ତୁ ତାହାର ପୁତ୍ର ସେ ତୋହୋର ପିତା ।
ଆମ୍ଭେମାନେ ଭୃତ୍ୟ ସିନା ସକଳ ଦେବତା ॥
ଶୁଣି ପିତାମହ ବୋଇଲାକ ହସି ।
ନିକଟେ ରଘୁନାଥ ମିଳିବେ ଯେଥେଂ
ଆସି ॥
ନାରାଏଣ ମନ୍ତ୍ର ସୁମରଣା କରିବି ।
ପୃଥିବୀ ଠାକୁରକୁ ଯେଥିକି ଆଣିବି ॥
ଯେସନେକ ବିଚାରି ଭାଜିଲା ସୁରସଭା ।
ପିତାମହଙ୍କୁ ଚହିଂଣ ବୋଇଲେକ ରମ୍ଭା ॥
ଭୋଦେବ ବିଧାତା ଶ୍ରୀରାମକୁ ବେଗେ
ଆଣ ।
ବ୍ରହ୍ମା ହିଁ ଗଲେ ତାହାଙ୍କୁ କରିଣ
କଲ୍ୟାଣ ॥୧୦୦
ଯେଥୁ ଅନନ୍ତରେ ଅଯୋଧ୍ୟା କଟକେ ।
ଶ୍ରୀରାମର ଚରିତ ଦେଖନ୍ତି ସର୍ବଲୋକେ ॥
ଆଗେ ଲକ୍ଷେ ଶଙ୍ଖ ପୂରଇ କୋଳାହଳ ।
ଦୁଇ ପାଶେ ଚାମର ଢାଳନ୍ତି ଗହଳ ॥
ସଂଜ କାଳେ ବାମା ହୁଳହୁଳି ଦ୍ୟନ୍ତି ।
ପାତ୍ର ମନ୍ତ୍ରୀମାନେ ପଟୋଆରି ଛନ୍ତି ॥
ବାମକରେ କୋଦଣ୍ଡ ଡାହାଣେ ଖଡ୍ଗ ଧରି ।
ଆସ୍ଥାନେ ବିଜେ ରାମ କୃମ ମୂର୍ତ୍ତି ଧରି ॥
ନେତ ସୁପାତି ଯେ ଶେଜାଇ ଅଛି ଶେଜ ।
ତହିଂ ଯାଇ ବିଜଏ କଲେକ
ରଘୁରାଜ ॥୧୦
ଧନୁ ଖଣ୍ଡା ଥୋଇ ବଶିଷ୍ଠଙ୍କୁ ଚାହିଂ ।
କଶ୍ୟପ ବାମଦେବ ନ ବସ କିସ ପାଇଂ ॥
ଯାବାଳି ମୂକେ ସଭାପଣ୍ଡା ଭଟ୍ଟମିଶ୍ର ।
ବାଜପେଇ ଯାଗ କଲାର ଲୋକେ ବସ ॥
ଶ୍ରୀରାମର ଆଗ୍ୟାଂରେ ବସିଲେ ବଶିଷ୍ଠ ।
ଆଉର ଯେତେକ ଥିଲେ ତପନିଷ୍ଠ ॥
ପାତ୍ର ମନ୍ତ୍ରୀମାନେ ଉଭା ହୋଇଛନ୍ତି ।
ନାନାରସ କଥାମାନ କୁହାକୁହି ହୋନ୍ତି ॥
ଶ୍ରୀରାମ ବୋଇଲେ ତୁମ୍ଭେ ସମସ୍ତେହେଂ
ଶୁଣ ।
ଆମ୍ଭେ ରାଜ୍ୟ କରିବାର କେତେକ ଦିନ
ଗଣ ॥୨୦

ବଶିଷ୍ଟେ ବୋଇଲେ ଦଶସହସ୍ର ବରଷ ।
ଆବର ଭଗୁଳି ହୋଇବ ଯେକ ସହସ୍ର ॥
ଅକଣ୍ଟେକ ରାଜ୍ୟ ଅଯୋଧ୍ୟା ଭୋଗ କଲୁ ।
ତିନିପୁର ଲୋକଙ୍କୁ ଅଭଏ ବର ଦେଲୁ ॥
ସୁଖେ ବ୍ରତନ୍ତି ଅଯୋଧ୍ୟା ନରନାରୀ ।
ତୋତେ ସେବା କରନ୍ତି ଲକ୍ଷେକ ଦଣ୍ଡଧାରୀ ॥
ରଘୁବଂଶ ମଧ୍ୟେଣ ତୁ ଅଟୁ ରଘୁନାଥ ।
କେବଣ ପୁଣ୍ୟ ପୂର୍ବେ କଲା ଦଶରଥ ॥
ତୋହୋର ପରାଏ ପୁତ୍ର ପାଇଲା
କଉଶଲ୍ୟା ।
ଅଯୋଧ୍ୟା ଲୋକଙ୍କର ଭାଗ୍ୟ ହିଂ
ବିକାଶିଲା ॥୩୦
ସମସ୍ତେ ଯେହିମତି କହନ୍ତି ଯେକୁ ଯେକ ।
ରହ ରହ ବୋଇଲେ ଅଯୋଧ୍ୟା ନାଏକ ॥
ଯେତେକ କାଳ ମୁଂ ଯେ ରାଜାପଣ କଲି ।
କାହାର ତହିଂ ଅପକିର୍ତ୍ତୀ ନ ପାଇଲି ॥
ଶୁଣିଥିଲେ କହ ଅପ୍ରାଧ ନାହିଂ କିଛି ।
ସମସ୍ତେ ବୋଇଲେ ତୋତେ ଅପଛାତି
କାହିଂ ଅଛି ॥
ତୁହି ପୁଣ୍ୟ ପୁରୁଷ ପାପ ପୁଣ୍ୟ ଜାଣୁ ।
କେହୁ ତୋତେ ମନ୍ଦ ବୋଲିବା କେଉଂ
ଗୁଣୁ ॥
ଶ୍ରୀରାମ ପଚାରନ୍ତି ହୋ ତହିଂର ମଧ୍ୟେ ।
କେହୁ କିସ ବିଚାରନ୍ତି କରୁ ଅସାଧ୍ୟେ ॥୪୦
ନାହିଂ ଦେବ ବୋଲି ବୋଇଲେ
ସଭାଜନ ।
ସମସ୍ତେ ବୋଇଲେ ତୁ ସାଧୁ ରଘୁନାନ ॥
ଯେବଣ ଯେବଣ କୀରତି ପୃଥିବୀରେଣ
କଲୁ ।
ଉପର ତଳକୁ ଯେ କଥା ରୁହାଇଲୁ ॥
ଶ୍ରୀରାମ ବୋଇଲେ ଯାହା କହିଲ ଯେ ସତ ।
ଗୁଣ ଛାଡ଼ି ଅବିଗୁଣ ଘେନନ୍ତି ଲୋକିତ ॥
ଚନ୍ଦ୍ରମା ପରା ଦେବତା କଳଙ୍କ ପାଇଲା ।
ତୀର୍ଥରାଜ ଜଳ ଅଭକ୍ଷ ହୋଇଲା ॥
ପବନ ପ୍ରାଏ ଦେବତା ଅଟଇ ଅସୁର ।
ଶୁଝିଲା ପଲବାଇ ପର୍ବତ କଲାଇ ଚୂର ॥୫୦
ଯେ ପୁଣ୍ୟ ମେଦିନୀ ମେଳକ୍ଷ ଜନକୁ
ବହେ ।
କେହୁଣସି ପ୍ରାଣୀ ଯେକତୁଲ ନୋହେ ॥
ଅବଶ୍ୟ ଅବଗୁଣେକ ଥାଇଂ ଯେ ତାହାର ।
ମୁହିଂନିକି ହୋଇଲି ଯେ ସଂସାରୁ ବାହାର ॥
ଅବଶ୍ୟ ଦୋଷେକ ଥିବ ନା ଗୁଣ ଥିଲେ ।
ମନ୍ଦ ନ ବୁଝଇ ମୁଂ ସ୍ୱରୂପ କହିଲେ ॥
ଯହୁଂ ଯେ କଥା କହିଲେ ରାବଣାରି ।
ଭ୍ରୁକ୍ଷନା ନାମେ ଚରର ହୋଇଲା ଆଗସରି ॥
କର ଦୁଇ ଯୋଡ଼ି ବୋଲଇ ଗୋ ସାଇଂ ।
ଯେ ପୃଥ୍ୱୀ ଭିତରେ ତୋତେ ଅପଛାତି
ନାହିଂ ॥୬୦
କଥାଏକ ଅଛି କହିଲେ ବଡ଼ ଦୋଷ ।
ଅଗ୍ୟାଂନ ଲୋକେ ସେ କରନ୍ତି ପ୍ରକାଶ ॥
ଭଲ ଲୋକ ମୁଖେ ଶୁଣିଲାତ ନାହିଂ ।
ମନ୍ଦ ଲୋକେ କଥା କହନ୍ତି ଯହିଂ ତହିଂ ॥
ଶୁଣି ଶ୍ରୀରାମର କମ୍ପିଲାକ ବୁକୁ ।
ସାଷ୍ଟାମ ପଣେ ପୁଣ ପୁଛନ୍ତି ଚାରକୁ ॥
ନ କର ଗୁପତ କହସି ଭଏ ଛାଡ଼ି ।
ଶୁଣିଣ ଭ୍ରୁକ୍ଷନା ଚାର କହଇ କର ଯୋଡ଼ି ॥
ଭୋ ରଘୁନାଥ ଯାହା ପଚାରିଲୁ ଶୁଣ ।
ସମୋଦ୍ର ବାନ୍ଧିଲୁ ଯେ ତୋର
ବଡ଼ପଣ ॥୭୦
ହାଟ ବାଟ ଲୋକେ ତୋତେ ପ୍ରଶଂସା
କରନ୍ତି ।
ସାଧୁ ସାଧୁ ଶ୍ରୀରାମ ବୋଲିଣ ବୋଲନ୍ତି ॥
ରାବଣ ସଗୋତ୍ର ମାରି ପକାଇଲୁ ।
ତ୍ରିଦଶ ଦେବତାଙ୍କୁ ଅଭଏ ବର ଦେଲୁ ॥
ଯେ କଥାମାନ ତୋର ସୁମରନ୍ତି ଲୋକେ ।
ସୀତ୍ୟାକୁ ଆଣିଲାକୁ ମନ୍ଦ ବୋଲନ୍ତି ଥୋକେ ॥
ଶୁଣିଣ ଶ୍ରୀରାମର କମ୍ପିଲାକ ଦେହ ।
ଆରମ୍ଭେ ବୋଲନ୍ତି ତୁ ନିର୍ଭଏ ହୋଇଂ
କହ ॥
ଚାର କୁହଇ ଦେବ ଶୁଣିମା ରଘୁପତି ।
ଲୋକେ ବୋଲନ୍ତି ସୀତ୍ୟା ଦୂଷିଲା
ଯୁବତୀ ॥୮୦
ରାବଣ ଘରେ ବରଷେ ରହିଥିଲା ।
ଅସୁର ଘରେ ଯେକାଏ ଦିନ ନେଲା ॥
ସେ କି ବିକୃତିକି ନୋହିଲାକ ତହିଂ ।
କିମ୍ପାଂ ନ ବିଚାରି ଆଣିଲା ରଘୁସାଇଂ ॥
ତାହାଙ୍କ ମନ କଲେ ନାହିଂ କି ଭାରିଯା ।
ଯାଚି ଆଣି ଝିଅ ଦିଅନ୍ତେ ସର୍ବରାଜା ॥
କେବଣ ଗୁଣେ ରାମ ତାହାକୁ ବଶ୍ୟ
ହେଲା ।
ରଘୁବଂଶ କୁଳକୁ କଳଙ୍କ ରୁହାଇଲା ॥
ଯେସନେକ ବୋଲିଣ ବୋଲନ୍ତି
ଲୋକମାନେ ।
ଶୁଣି ଅଳପ ହୋଇ ହସିଲେ
ରଘୁନାନେ ॥୯୦
ବୋଇଲେ ଯେହା ମୁଂ ଅଛଇ ନା ଜାଣି ।
ଦିନେକ କଟେକ ବୁଲିଗଲୁ ରଏଣୀ ॥
ସାତ ପାଞ୍ଚ ଲୋକ କୁହାକୁହି ହୋନ୍ତି ।
ତୁ ଯାହା ଜଣାଇଲୁ ତାହା ସେ ବୋଲନ୍ତି ॥
ଯେ କଥାରେ ତୋହୋର କିଛି ଦୋଷ
ନାହିଂ ।
ଯେତେ ବୋଲି ଆସ୍ଥାନୁ ଉଠିଲେ ରଘୁସାଇଂ ॥
ଭିତରେ ପୁରେ ବିଜଏ କଲେକ ରାବଣାରି ।
ଖଟଣି ଲୋକଙ୍କୁ ରାଇଣ ପଚାରି ॥
ତୁମ୍ଭେ ମୋହୋର ଦେହ ଅଟ ଯେ
ବିଶ୍ୱଆସ ।
ତୁମ୍ଭେମାନେ କାହିଂ ଶୁଣିଅଛ କିସ ॥୧୦୦
ଗୁପତ ନ କରି ସତ ମୋତେ କହ ।
ଯେବେ ତୁମ୍ଭର ମୋତେ ଅଛଇ ସେନେହ ॥
ଶୁଣି ପ୍ରୀତି ଲୋକ ହାଥ ଯୋଡ଼ି କହି ।
ଚାର ଜଣାଇଲା ଯାହା ନାଥ ସ୍ୱରୂପ କଥା
ସେହି ॥
ଶୁଣିଣ ଶ୍ରୀରାମ ବିସ୍ମଏ ମନ କଲେ ।
ଯେ ଯାହା ପୁରକୁ ତୁମ୍ଭେ ଯାଅଯା
ବୋଇଲେ ॥

ସବୁଙ୍କରି ଯାନ୍ତେ ରାମ ବିମୁଖ ହୋଇ ।
ରତ୍ନ ଖଟ ଦୋଳିରେ ବିଜଏ ରଘୁସାଇଂ ॥
ବେହେରା ଖୁଣ୍ଟିଆକୁ ହକାରିଲେ ପାଶ ।
ବୋଇଲେ ଭ୍ରଥ ଶତୃଘନ ଲକ୍ଷଣକୁ
ଘେନିଆସ ॥୧୦
ଶୁଣିଣ ଦ୍ୱାରପାଳ ତୁରିତେଣ ଗଲେ ।
ରାମ ଆଗ୍ୟାଂରେ ଭାଇନ୍ତ ଘେନିଣ ଅଇଲେ ॥
ଦ୍ରଶନ କରି ଉଭା ହୋଇଲେ ତିନିଜଣ ।
ଦେଖିଲେ ରୋଦନ କରନ୍ତି ରଘୁନାନ ॥
ଢଳ ଢଳ ନୟନରୁ ଅଶ୍ରୁଜଳ ଗଳି ।
ଦେଖିଣ ତିନିଭାଇ ହୋଇଲେ ବିକଳି ॥
କର ଦୁଇ ଯୋଡ଼ି ବୋଇଲାକ ଭ୍ରଥ ।
କେବଣ କାରଣେ ଶୋକ କରୁଛୁ
ରଘୁନାଥ ॥୨୦
କିସ ଉତପାତ ହୋଇବାକ ଆଜ ।
ତୋହୋର ନଏନୁଁ ଲୁହ ପଡ଼ଇ ରଘୁରାଜ ॥
ଶ୍ରୀରାମ କହନ୍ତି କାନ୍ଦିବାର ଛାଡ଼ି ।
ସାଷ୍ଟାମ ହୋଇଣ କହନ୍ତି ଆଗ ବଢ଼ି ॥
ବୋଇଲେ ଭ୍ରଥ ଆହେ ଶୁଣ ମୋର
ବୋଲ ।
ତିନିଭାଇ ତୁମ୍ଭେ ଯେକ ଯେକ ମଲ୍ଲ ॥
ବଳବନ୍ତ ପଣେ ତ ତୁମ୍ଭଙ୍କୁ ନାଇଂ ସରି ।
ଯେ ତିନି ଭୁବନେଣ ତୁମ୍ଭେ ବାହାବଳୀ ॥
ଜଗତ ମୁଖେ ଅପଛାଡି ନ ପାଇଛ ।
କ୍ଷତ୍ରୀପଣେ ତୁମ୍ଭଙ୍କୁ ନାହିଂ ସମକଛ ॥
ଅଇଶ୍ୱର୍ଯ ଭୋଗ କର ଭାଇ ତିନି ।
ମୁହିଂ ରାଜାପଣେ ପାଳଇ ମେଦିନୀ ॥୩୦
ତୁମ୍ଭର ପାଇଂ ମୁଂ ବହଇ ରାଜ୍ୟଭାର ।
ନୋହିଲେଣ କିସ କାର୍ଯ ଅଛଇ ମୋହୋର ॥
ବାବୁ ବନ ପରବତ ରାଜ୍ୟଭୋଗ ଶିରୀ ।
ମୁହିଂ ଯେହା ମଣଇ ସର୍ବ ଯେକ କରି ॥
ତୁମ୍ଭକୁ ପାଳିବା ନିମନ୍ତେ ରାଜ୍ୟ କରଇ ।
ସର୍ବଦା କାଳେ ମୁଂ ଅପକ୍ରୀତିକି ଡରଇଂ ॥
ଯେବେ ଅଦୋଷେ ପାଇଲଇଂ ଦୋଷ ।
ତୁମ୍ଭେ ଦୁଇଭାଇତ ନ ଥିଲ ମୋର ପାଶ ॥

ବାବୁ ଯେ ଲକ୍ଷଣ ଜାଣଇ ପାପପୁଣ୍ୟ ।
ଚଉଦ ବରଷ ଯେ ଥିଲା ଘୋର ବନ ॥୪୦
ହସି ଜାନେକୀ ନ କହଇ କଥା ।
ମୋତେ ଦେଖି ସେ ନ ଚାହାଇଂ ଟୋକି
ମଥା ॥
ରାବଣ କପଟେ ଚୋରାଇ ଘେନିଗଲା ।
ଓଶୋକ ବନେ ନେଇ ନୂଚାଇଂ ଆଇଲା ॥
ବିଭୀଷେଣ ଝିଅ ତ୍ରିଜଟା ଥିଲା ରଖି ।
ମୁଦି ଘେନି ହନୁମନ୍ତ ଯୋଗେଣ ଯାଇଂ
ଦେଖି ॥
ଉତ୍ତର ମୁଖ କରି ଚାହୁଁ ଯେ ଥାଇ ସୀତ୍ୟା ।
ଅବିକ୍ଷଣେ କାନ୍ଦୁଥାଇ ଜନେକ ଦୋହିତା ॥
ସହସ୍ରେ ରାକ୍ଷସେଣୀ କହନ୍ତି ମଣାଇଂ ।
ଯେସନେକ ସମଏ ଅଇଲା
ଲଙ୍କସାଇଂ ॥୫୦
ସେହି ଅନେକ ଯେ ଅର୍ଭ୍ୟର୍ଥି ବୋଇଲା ।
ତାହାକୁ ବଇଦେହୀ କଥା ନ କହିଲା ॥
କୋପେଣ ରାବଣ ଖଡ଼ଗ ଉଠାଇ ।
ବିଭୀଷେଣର ଝିଅ ଧଇଲାକ ଯାଇଂ ॥
ବାବୁ ଦୁଇ ମାସକୁ ରାବଣ ଗଲା କଣ୍ଟ କରି ।
ବୋଇଲା ନିଶ୍ଚେଏ ଖାଇବଇଂ ଜନେକ
କୁମାରୀ ॥
ଘରଣୀ ହୋଇବକି ଗୁରସ୍ତ ଦେଖାଇବ ।
ଦୁଇରୁ ଯେକ ନ କଲେ ପ୍ରାଣ ନ ପାଇବ ॥
ଯେତେକ ବୋଲି ରାବଣ ନିଜ ଘରେ
ଗଲା ।
ଯେକଥା ଗୁପତେ ହନୁମନ୍ତ ଶୁଣିଲା ॥୬୦
ମୁଦି ତହିଂ ଦେଇଂ ଆଣିଲାକ ମଣି ।
ପାପ ପୁଣ୍ୟ ହନୁମନ୍ତ ଅଛି ଜାଣି ॥
ଯେବଣ ଦିନ ରାବଣ କଣ୍ଟ କରିଗଲା ।
କଣ୍ଟ ନ ପୂରୁଣୁ ସେ ଆପଣେ ପ୍ରାଣ ଦେଲା ॥
ବାବୁ ଦଶମୁଣ୍ଡ ଛେଦି ଆଣିଲଇଂ ସୀତ୍ୟା ।
ରଣଭୂଇଂ ମଧ୍ୟେ ବୋଇଲି ମନ୍ଦକଥା ॥
ଦୂଷିଲା ଯୁବତୀକି କେମନ୍ତେ ମୁଂ ନେବି ।
ଯାହାକୁ ଇଚ୍ଛା ମୋର ତାହାକୁ ବିକୋହିବି ॥

ଯେହା ଶୁଣି ତ୍ରିଜଟା ଆପଣେ ନିଅମ କଲା ।
ସୀତ୍ୟାର ଦୋଷ ନାଇଂ ବୋଲିଣ
ବୋଇଲା ॥୭୦
ସହସ୍ରେ ରାକ୍ଷସଣୀ ଜଗିଣ ଯେ ଥିଲେ ।
ଆପଣା ଶିର ଛୁଇଂ ନିଅମ ସେ କଲେ ॥
ବିଭୀଷେଣ ମନ୍ଦୋଦରୀ ଲଙ୍କାର ଦଇତୁଣୀ ।
ବୋଇଲେ ଅପାପୀଏ ଜନେକ ଦୁଲଣୀ ॥
ତାହାଙ୍କର ବୋଲ ମୁଂ ନ ମଣିଲି ହିତା ।
କୋପେ ଲକ୍ଷଣକୁ ବୋଇଲା ଦେବୀ
ସୀତ୍ୟା ॥
ଭୋ ସଉମିତ୍ରୀ ତୁ ଅଗ୍ନି ଜାଳି ଦିଅ ।
ଯେମନ୍ତେ ପ୍ରତେ ଆସିବ ଦଶରଥ ପୁଅ ॥
ପ୍ରଚଣ୍ଡ ହୁତାଶନ ମଧ୍ୟେଣ ପଶିବି ।
ଦୋଷ ନ ଥିଲେ ତହୁଂ ଅକିଳେଂଶେ
ଆସିବି ॥୮୦
ଶୁଣି ସଉମିତ୍ରୀ ଅଗ୍ନି ଜାଳି ଦେଲା ।
ଧାଇଂ ଜାନେକୀ ତହିଂ ଭିତରେ ପଶିଲା ॥
ବାବୁ ଋକ୍ଷ ବାନରେ ରାକ୍ଷସେ ଦେଖୁଥାନ୍ତି ।
ଜଳିଗଲା ବୋଲିଣ ଉଚ୍ଚେଣ ରାଓ୍ୟାନ୍ତି ॥
ମୁହିଂ ତରସ୍ତ ହୋଇଲି ତାହା ଚାହିଂ ।
ସୀତ୍ୟା ସୀତ୍ୟା ବୋଲିଣ ଉଚ୍ଚେଣ
ରାବଦେଇ ॥
ଶୁଣି ଜାନେକୀ ହୋଇଲା ବାହାର ।
ଶୁଦ୍ଧ ସୁବର୍ଣ୍ଣ ପ୍ରାଏକ ଶ୍ୟରୀର ତାହାର ॥
ବ୍ରହ୍ମା ସହିତେଣ ଅଇଲେ ଦେବଗଣ ।
ଯିସ ଯିସ ବୋଇଲେ ତାହା ଶୁଣିଲା
ଲକ୍ଷଣ ॥୯୦
ଦଶରଥ ରାଜା ଅଟଇ ଆମ୍ଭ ପିତା ।
ସେହି ଆସି ବୋଲେ ପରମ ସାଧେବୀ
ସୀତ୍ୟା ॥
ବରୁଣ ପବନ କୋବେର ନଇରତ ।
ଇନ୍ଦ୍ର ଆଦି କରି ସେ ସକଳ ଦଇବତ ॥
ବାବୁ ଯିସ ଯିସ ପ୍ରଶଂସା ଜାନେକୀକି
କଲେ ।
ଲକ୍ଷ୍ମଣ ସବୁ ଶୁଣିଅଛି ତାହା ଭଲେ ॥

ସେ କଥା ନ ଜାଣନ୍ତି ଅଯୋଧ୍ୟା ନରନାରୀ ।
ଜାନେକୀକି ମନ୍ଦ ସେ ବୋଲନ୍ତି ନ ବିଚାରି ॥
ଯେ ମୋହୋ ଜନ୍ମର ଯଶ ନାଶ ଗଲା ।
ଭ୍ରତ ମୁଖ ଚାହିଂଣ ଶ୍ରୀରାମ ବୋଇଲା ॥୧୦୦
ପୁଣ ଲକ୍ଷ୍ମଣକୁ ବୋଲନ୍ତି ରଘୁମଣି ।
ଦଣ୍ଡକା ଅରଣ୍ୟ କଥା ଅଛଟିକି ଜାଣି ॥
ସେ କଥାମାନ ଆସି ଯେମନ୍ତ ହୋଇଲା ।
ଅଯୋଧ୍ୟାର ଲୋକ ଯେହ୍ନା ସେ ମୋତେ କଲା ॥
ନିଶ୍ଚଏ ସୀତ୍ୟାକୁ କରିବଇଂ ତେଜ୍ୟା ।
ପରଲୋକେ ଭଏ ଇହଲୋକେ ଲଜ୍ୟା ॥
ଅପକ୍ରୀତି ପାଇଂ ମୁଂ ପ୍ରାଣ ତେଜି ପାରଇ ।
ଯେମନ୍ତ କଥା ମୁଂ ସହି ନ ପାରଇ ॥
ଭୋ ଲକ୍ଷଣ ତୁ କାଲି ରଥରେ ବସାଇଂ ।
ଗଙ୍ଗା ପାରି କରି ସୀତ୍ୟାକୁ ଛାଡ଼ ନେଇ ॥୧୦
ବାଲ୍ମିକ ମୁନି ଆଶ୍ରମର କତି ।
ପୁଣ୍ୟ କୁଟୀ କରିଣ ରୁହାଇଂ ଆସ ସ୍ୟତୀ ॥
ତୁ ଅବା ବୋଲିବୁ ଜାନେକୀ କିମ୍ପା ଯିବ ।
ପୂର୍ବକଥା ଶୁଣିଣ ବୋଇଲେ ରାଘେବ ॥
ଜାନେକୀର ଗର୍ଭେ ବେନି ମାସ ହୋଇଂ ।
ଆମ୍ଭେ ବୋଇଲୁ କାହିଂକି ମନ ବଇଦେହୀ ॥
ସୀତ୍ୟା ବୋଇଲେ ମୁଂ ଗଙ୍ଗାକଇ ଯିବି ।
ତପୀଗଣମାନଙ୍କୁ ମୁଂ ଦେଖିଣ ଆସିବି ॥
ଆମ୍ଭେ ବୋଇଲୁ ସଖୀ ଦିନାକେତେ ଯାଇ ।
ଲକ୍ଷଣ ନେଇ ତୋତେ ସେ ମାନ ଦେଖାଉ ॥୨୦
ଯେବେ କଥା ବାବୁ ହୋଇଲାକ ଆସି ।
ତୁ କାଲି ଜାନେକୀକି ଆସସି ନିବାସି ॥
ଶୁଣିଣ ସଉମିତ୍ରୀ ରୋଦଇ ଉଚ୍ଚ ସ୍ୱରେ ।
ବିହି ବିହି ସୁମରିଣ ହାଥ ମାରଇ କପାଳେ ॥
ଭ୍ରଥର ବିଳାପ କହିଲେ ନ ସରି ।
ଶତ୍ରୁଘନ ସହିତେ କାନ୍ଦନ୍ତି ଭାଇ ଚାରି ॥
ଥୋକାଏ ବେଳେ ସମ୍ଭାଳିଲେ ଶୋକ ।
ବୋଇଲେ ଯେକଥା ନ ଜାଣନ୍ତୁ ଆନ ଲୋକ ॥
ଯେତେ ବୋଲି ରାମ ବିଜେକରି ଗଲେ ।
ଆବର ତିନିଭାଇ ବାହାରକୁ ଅଇଲେ ॥୩୦
ଶ୍ରୀରାମ ନିଅବକାଶ ଜାଣିଲେକ ସ୍ୟତୀ ।
ଅନ୍ତେଶ୍ୱର ଭିତରୁ ଅଇଲେ ତଡ଼ତି ॥
ଦୂରୁ ଦେଖି ସ୍ୱାମୀକି ନମସ୍କାର କଲେ ।
ନିକଟେ ଆସି ଚରଣେ ପଡ଼ିଣ ସ୍ତୁତିଲେ ॥
ଆପଣେ ଶ୍ରୀରାମ ତୋଳିଲେ ହସ୍ତ ଧରି ।
ପ୍ରିୟ କଥାମାନ କହନ୍ତି କୋଳକରି ॥
ଜାନେକୀ ବୋଇଲେ ତୁମ୍ଭେ ଶୁଣ ରାମରାହୁ ।
ଆଜତ ମୁଖ ଶୁଖି ଅଛି ପ୍ରଭୁ ॥
ଶ୍ରୀରାମ ବୋଇଲେ ତୁଗୋ କାଲି ଯିବୁ ବନ ।
ଗଙ୍ଗାକୂଳ ତପୀଙ୍କି ଦେଖିତ ତୋର ମନ ॥୪୦
ତେଣୁ ସେ ଆକୁଳେ ଭାଳଇ ମୋର ଚିତ୍ତ ।
କାଲି ଦିବସ ମୋତେ ହୋଇବ ଯୁଗ ଶତ ॥
ତୋତେ ନଦେଖି କେଷେଁ ଦେହ ମୁଂ ଧରିଥିବି ।
ତୋହୋର ଅଇଲେ ସେ ମୋଣୋହି କରିବି ॥
ଜାନେକୀ ବୋଇଲେ ନ ଜାଣଇ ଆନେ ।
ତୁମ୍ଭେ ଯେବେ ଅନ୍ତର ଧଇଲ ନାଥ ମନେ ॥
ସେ ତପୀମାନଙ୍କୁ ନ ଦେଖଇଂ କିନା ।
ସବୁ ଧର୍ମ ତୋହୋର ପାଦପଦ୍ମେ ସିନା ॥
ରାଘେବ ବୋଇଲେ ମୁଂ ସତ୍ୟ ଅଛି କରି ।
ଅବଶ୍ୟ ପେଷିବି ତୋତେ ଜନେକ କୁମାରୀ ॥୫୦
ତପୀଗଣମାନଙ୍କୁ ଦେଖସି ତୁ ଯାଇଂ ।
ଯେ ଶଧ ଗୋଟା ତୋର ସାରଇ କିନା ମୁହିଂ ॥
ଶୁଣିଣ ମଇଥିଳୀ ଆନନ୍ଦ ହୋଇଲା ।
ଭୋଦେବ ମର୍ଦ୍ଦନ ହୁଅସି ବୋଇଲା ॥
ମୋଣୋହି କରିବାକୁ ହେଉଛି ଉଚ୍ଛୁର ।
ତୀକ୍ଷଣ ଦେହ ତୋର ଅତିହିଂ ସୁକୁମାର ॥
ଶୁଣିଣ ରଘୁନାଥ ବାହାରକୁ ଅଇଲେ ।
ଯେ ବିଧି ମର୍ଦ୍ଦନ ମାଜଣା ହୋଇଲେ ॥
ମୋଣୋହିକି ଯହିଂରେ ଅଛନ୍ତି ଠାବକରି ।
ତହିଂ ଯାଇ ବିଜେ କଲେ ରାବଣାରି ॥୬୦
ଜନେକ ଝିଅ ଆଣି ପରଷିଲା ଅନ୍ନ ।
ଛତ୍ରିଶ ପ୍ରକାରେ ଦେଲେକ ବ୍ୟଞ୍ଜନ ॥
ଦୁଧ ଆମ୍ବ କସିତାଳ ପଇଡ଼ ପଣା ।
ଭୁଞ୍ଜିଣ ସନ୍ତୋଷ ହୋଇଲେ ରଘୁରଣା ॥
ମୋଣୋହି ସମ୍ପୂର୍ଣ୍ଣେ ଆଚୋବନ କଲେ ।
ପ୍ରକୃତି ସେବକେ ବେଳ ଜାଣିଣ ଅଇଲେ ॥
ଜନେକର ଝିଅ ଅନ୍ତପୁରକଇ ଗଲେ ।
ଆଚୋବନ ସାରି ରାମ ତାମ୍ବୋଳ ଭୁଞ୍ଜିଲେ ॥
ସୁକାସନ ଆରୋହି ଗଲେ ନଗ୍ର ଫେରି ।
ବାଜଇ ଟମକ ନିଶାଣ ଶଙ୍ଖ ଭେରୀ ॥୭୦
ପଛେ ପଛିଆଣି ଭ୍ରଥ ଶତ୍ରୁଘନ ।
ସୁମନ୍ତ ପଟୋଆର କଲାକ ବିଡପନ ॥
ଆଗେଣ ବଶିଷ୍ଟ ଚଉଦୋଳ ଚଢ଼ି ।
ଧୀରେ ଧୀରେ ଯାନ୍ତି ଆଗେ ପଟୁଆର ପାଡ଼ି ॥
ସୁମନ୍ତ ମନ୍ତ୍ରୀ ଚିତ୍ରସେନ ବୀର ।
ଅଗର ଧୂପକାଠି ଧରିଅଛି କର ॥
ଲକ୍ଷଣ ଶ୍ୱେତ ଛତ୍ର ତୋଳିଣ ଧରି ଚାଲେ ।
ଖୁଣ୍ଟିଆ ପଢ଼ିଆରି ହେଲୁ ହେଲୁ ବୋଲେ ॥
ଆବର ଅମନାତ୍ୟେ ଚାମର ଧରିଛନ୍ତି ।
ଯାବାଳିର ପୋଏ ବିଡ଼ିଆ ଲାଗି କରାନ୍ତି ॥୮୦
ଧୀର ଧୀର ହୋଇ ସେ ବିଜଏ ରାମରାଏ ।
ନଗ୍ର ନରନାରୀ ଦେଖିବାରେ ଆଏ ॥
ରଥଗଜ ଘୋଡ଼ା ଗହଳ ପାଦାନ୍ତି ।
ଆଲମ୍ବ ପାଟଛତ୍ର ବିମଳ ପନ୍ତି ପନ୍ତି ॥
ଯାନ୍ତେଣ କୁସୁମ ପାଖୁଡ଼ା ବାଟେ ସିଞ୍ଚି ।
ପନୀର ପାଣିଗୋଳି ଚନ୍ଦନ ଛଡ଼ା ଦ୍ୟନ୍ତି ॥
ଦେଖିଣ ସାଧୁ ସାଧୁ କରନ୍ତି ପୁରଜନ ।

ଯୁବତୀ ହୁଳହୁଳି ଦିଅନ୍ତି ଅବିଚ୍ଛିନ୍ନ ॥
କଟକେ ଫେରି ରାମ ନଗ୍ରରେ ପରବେଶ ।
ସନ୍ଧ୍ୟା ସୁମରିଲେ ଦଶରଥ ଶିଷ ॥୯୦
ରଜନୀ ସମଏ ଲାଗିଲାକ ହୁଳା ।
ସନ୍ନିଧକୁ ରାଇଲେ ରାମ ସୁମଇତ୍ରାର ବଳା ॥
ତୁ ରେ ଲକ୍ଷଣ କାଲି ପ୍ରଭାତରୁ ଆସିବୁ ।
ରଥରେ ବସାଇଣ ଜାନେକୀକି ଘେନିଯିବୁ ॥
ଗଙ୍ଗା ପାରି କରି ତାକୁ ଆସିବୁ ପୁଆଇ ।
ଯେ କଥାରେ ତୋହୋର କିଛି ହିଂ ଦୋଷ ନାହିଂ ॥
ଶୁଣିଣ ଶିରେ କର ଦେଲାକ ସଉମିତ୍ରୀ ।
ଯେ ତୁମ୍ଭର ଆଗ୍ୟାଂ ମୁଂ ପାଳିବି ମହାକ୍ଷତ୍ରୀ ॥
ଯେତେ ବୋଲି ରାମ ଭିତରକୁ ଗଲେ ।
ଖଟଣି ସାମନ୍ତେ ବେଳ ଜାଣି ବାହୁଡ଼ିଲେ ॥୧୦୦
ନିଅବକାଶେ ଶ୍ରୀରାମ ବିଜେକଲେ ଯାଇଂ ।
ଜାନେକୀ ଦର୍ଶନ କଲେ ବେଶ ହୋଇ ॥
ନିଜ ପତି ପାଦ ମଞ୍ଜାଳଇ ସୀତ୍ୟା ।
ହସି କୋଳ କଲେ ଜଗତର ଜିତା ॥
ଭିତରେ ବଇକୁଣ୍ଠ ବାହାରେ ଆରମ୍ଭ ।
ଶ୍ରୀରାମ ହୁଂ ଆନେ କେହୁ ଅଛି ଦମ୍ଭ ॥
ବିବିଧ ଚାଟୁ କହି ତୋଷିଲେ ସୀତ୍ୟା ମନ ।
ବୋଇଲେ ସଖି କାଲି ଯିବୁଟିକି ବନ ॥
ଜାନେକୀ ବୋଇଲେ ତୁମ୍ଭ ଆଗ୍ୟାଂଏଣ ଯିବି ।
ତପୀଗଣମାନଙ୍କୁ ମୁଂ ଦେଖିଣ ଆସିବି ॥୧୦
ଯେସନେକ ଭାଳନ୍ତେ ରଜନୀ ପରଭାତ ।
ଶେଯ୍ୟା ତେଜିଣ ଉଠିଲେ ରଘୁକୁଳନାଥ ॥
ଜାନେକୀ ଅନ୍ତେସ୍ୱରେ ନିଜ କର୍ମ ସାରି ।
ଯିବାକୁ ଉଦ୍‌ବେଗ ଜନେକକୁମାରୀ ॥
ବନ୍ଦଇ ଜଗନ୍ନାଥ ନୀଳଗିରି ବାସ ।
ମୁହିଂ ତୋହରେ ଶରଣ ବଳରାମ ଦାସ ॥
ଶ୍ରୀରାମ ଅବତାରେ ଯିସ କ୍ରୀଡ଼ା କଲେ ।
ତାହା ସେ ବାଲମ୍ମିକ ମୁଖରେ କୁହାଇଲେ ॥
ସେ ମହାରଷି ଯେହା ଜଗତେ ଖ୍ୟାତ କଲା ।
ତେଣୁ ସେ ତିନିଲୋକ ମୁକତ ହୋଇଲା ॥୨୦
ମୁହିଂ ତାହା ସୁମରଇ ଶରଧା ନିମନ୍ତେ ।
ତୁହି ଆଗ୍ୟାଂ ଦେଲୁ ଯହୁଂ ଅନୁଗ୍ରହ ଚିତ୍ତେ ॥
ତେଣୁ ସେ ଗ୍ରନ୍ଥ ମୁଂ ସୁମରିଲି ମନେ ।
ଯେବେ ଭ୍ରାନ୍ତି ମୋତେ ଲାଗିଲା ଭଗବାନେ ॥
ଜନେକର ଝିଅ ବାଲମ୍ମିକ ଘରକୁ ଯିବ ।
ଯେହା କହିବା ଭଏ କରଇ ଭୋଦେବ ॥
ନୋହିଲେଣ ଗ୍ରନ୍ଥ ନୋହିବ ସମ୍ପୂର୍ଣ୍ଣ ।
ଦୋଷ ନ ଘେନ ମୋର ଜଗତ ମୋହନ ॥
ବନ୍ଦଇ ସେ କମଳା ଗୋ ବିଷ୍ଣୁର ପାଟରାଣୀ ।
ଦତ୍ୟ କୁଳ ବିନାଶି ଜଗତ ଠାକୁରାଣୀ ॥୩୦
ସଂସାର ଶତୃକୁ ମାରିବାର ପାଇଂ ।
ପତିକି ଗୁଆଇଲୁ ଲଙ୍କାପୁରେ ଥାଇଂ ॥
ରାବଣ ସଗୋତ୍ର ମାରିଣ ଅଇଲୁ ।
ଅଯୋଧ୍ୟା କଟକେ ସମଏ ଭୋଗକଲୁ ॥
ପୁଣ ଶରଧା ତୋ ବଳିଲା ବନବାସ ଯାଇଂ ।
ନୋହିଲେ କେମନ୍ତେ ମାଗୋ ଚଞ୍ଚଳା ବୋଲାଇଂ ॥
ଚଉଦ ଭୁବନେଣ ଇଚ୍ଛା ସୁଖେ ଥାଉ ।
ଯହିଂକି ମନ କରୁ ତହିଂକି ତୁ ଯାଉ ॥
ଯେବେ ଗଙ୍ଗାକୂଳେ କରିବୁ ଭ୍ରମଣୀ ।
ପୂର୍ବର କଥାଏ ପୁରାଣେ ମୁହିଂ ଶୁଣି ॥୪୦
ଯେବେ କହିବାକୁ କରଇ ମୁହିଂ ଭଏ ।
ତୁ ମୋହୋର ଦୋଷ ଗୋ ନ ଧର ମହାମାଏ ॥
ନ କହିଲେ ଗ୍ରନ୍ଥ ନୋହିବ ସମ୍ପୂର୍ଣ୍ଣ ।
ତେଣୁ ସେ ଆକୁଳେ ଭାଳଇ ମନେ ମନ ॥
ପୁଣି ଅନୁଗ୍ରହ କଲେ ଜଗନ୍ନାଥ ।
ମୋହୋର ପାଇଂ ଧଇଲେ ମହାଲକ୍ଷ୍ମୀଙ୍କର ହାଥ ॥
ସିନ୍ଧୁର ଦୁଲଣୀ ମୋତେ ପ୍ରସନ୍ନ ହୋଇଲା ।
ରାମାଏଣ ଗ୍ରନ୍ଥ କର ତୁ ବୋଇଲା ॥
ଲକ୍ଷ୍ମୀ ନାରାଏଣଙ୍କ ଅନୁଗ୍ରହ ଆଗ୍ୟାଂ ପାଇ ।
ମହାନାଟେକ କାବ୍ୟ ବଖାଣଇ ମୁହିଂ ॥୫୦
ଶୁଣିମା ସୁଜ୍ଞଜନେ ଶ୍ରୀରାମ ଚରିତ ।
ପାର୍ବତୀ ଆଗେ ଯାହା କହିଲେ ତିନିନେତ୍ର ॥
ଲକ୍ଷ୍ମଣକୁ ବୋଲି ଅଛନ୍ତି ଦାଶରଥି ।
ନିତ୍ୟକର୍ମ ସାରିଣ ସେ ରାଇଲା ସାରଥି ॥
ବୋଇଲା ରଥ ବେଗେ ସଜ କରି ଆଣ ।
ଗଙ୍ଗାତୀରକୁ ସୀତ୍ୟା ଯିବାକ ଯେହିକ୍ଷଣ ॥
ଶୁଣିଣ ସାରଥି ସାଜିଲାକ ରଥବର ।
ଲକ୍ଷଣ ତକ୍ଷଣେ ପଶିଲା ଅନ୍ତେପୁର ॥
ଶ୍ରୀରାମ ଆଗରେ ଦ୍ରଶନ ଯାଇ କଲା ।
ଘେନିଯାଅ ବୋଲିଣ ଶ୍ରୀରାମ ଆଗ୍ୟାଂ ଦେଲା ॥୬୦
ତକ୍ଷଣେ ଲକ୍ଷଣ ଯାଇ ଭିତରେଣ ପଶି ।
ଜାନେକୀକି ଦେଖିଣ ଅଳପ ହୋଇ ହସି ॥
ନିକଟକୁ ଯାଇ ତାର ନମସ୍କାର କଲା ।
ଯିବଟିକି ଗଙ୍ଗା ବୋଲିଣ ବୋଇଲା ॥
ଶୁଣିଣ ମହାସ୍ୟତୀ ପରମ ତୋଷ ମନ ।
ଆଏ ଅଳଙ୍କାର ହୋଇଲା ବେସନ ॥
ପାଟେକ ପିନ୍ଧି ପାଟେକ ଉପାରଣ ଦେଲା ।
ଉଦ୍‌ବେଗ ମନେ ଶାଶୁଙ୍କୁ ଓଳଗିଲା ॥
କଉଶଲ୍ୟା, କଏକୟା, ସୁମଇତ୍ରା ଯେ ତିନି ।
ସାତଶ ପଞ୍ଚାଶ ଯେ ଶ୍ରୀରାମ ଜନନୀ ॥୭୦
ଜଣେ ଜଣେ ଆଶ୍ରିଯ ପଚାରନ୍ତି ହୋଇ ।
ଯେତ ସଜ ହୋଇଅଛଇ କିସ ପାଇଂ ॥
କାହିଂକି ଯିବ ଯେହାର ଉଦବେଗ ମନ ।
ନ ମଣଇ ଶାଶୁ ନ ମଣଇ ଗୁରୁଜନ ॥
କେ ବୋଲଇ କାଳକ ବନସ୍ତେ ବୁଲିଲା ।
ପୁରୁଷଙ୍କ ମେଳେ ଥାଇଣ ଲାଜ ସେ ଛାଡ଼ିଲା ॥
ବିଶେଷେ ସପତଣୀ ନାହିଂ ଯେହାର ଆନ ।
ବହୁତ ଅନୁଗ୍ରହ କରଇ ରଘୁନାନ ॥
ଚତୁରୀ ଯୁବତୀ ଏ ଆଗହୁଂ ନାଗରୀ ।

ରାଜସଭା ମଧ୍ୟେ ରାମକୁ ବର ବରି ॥୮୦
ଯେବେ ଗର୍ଭବାସ ଦିଗୁଣ ଗରବ ।
କ୍ଷଣେହେଂ ତ ପାଶ ନ ଛାଡ଼ନ୍ତି ରାଘବ ॥
କେ ବୋଲଇ ସେ କଥା ଅଶୋଭା ନୁହଇ ।
ରାଜାରାଣୀ ତାକୁ ସକଳ ଶୋହଇ ॥
ଆବର ଚେଷ୍ଟା ତ ଦିଶଇ ବିପରୀତ ।
ଉଦବେଗ ତରଳିତ ଅଟଇ ଯେହାର ଚିତ୍ତ ॥
ରାତ୍ର ନ ପାହୁଣୁ ଶୁଚିବନ୍ତ ହୋଇଲା ।
ତହିଂକି ଆସି ଯେବେ ଲକ୍ଷ୍ମଣ ରାଇଲା ॥
ଯେସନେକ ବୋଲି କୁହାକୁହି ହୋନ୍ତି ।
କିସ କିସ କଥାମାନ ଶୁଣିମା ବୋଲନ୍ତି ॥୯୦
ଯେସନେକ ସମଏ ଜନେକ ଦୋହିତା ।
କଉଶୁଲାକୁ ନମସ୍କାର କଲା ଦେବୀ ସୀତ୍ୟା ॥
ସବୁ ଶାଶୁମାନଙ୍କୁ ଓଳଗି ଉଭା ହୋଇ ।
ସୀତ୍ୟା ମୁଖ ଚାହିଂ କଉଶୁଲ୍ୟା ବୋଲଇ ॥
ତୁମେ ତ ସଜ ହୋଇ ଅଇଲୁ ଗୋ ମାଏ ।
ଉଦବେଗ ମନ ଥର ଥର କାଏ ॥
ସୀତ୍ୟା ବୋଇଲେ ମୁଂ ଗଙ୍ଗା ନାହି ଯିବି ।
ତପୀମାନଙ୍କୁ ସେ ଫଳମୂଳ ଦେବି ॥
ଆଜର ମଧ୍ୟେ ମୁଂ ଆସିବି ବାହୁଡ଼ି ।
ଲକ୍ଷଣ ସଙ୍ଗତରେ ଯିବି ରଥ ଚଢ଼ି ॥୧୦୦
ଶୁଣି କଉଶୁଲାର ଉଡ଼ିଲା ସାହାସ ।
ବୁକୁ ଦମ ଦମ ଖର ନିଶୁଆସ ॥
କଉଶୁଲ୍ୟା ବୋଇଲେ ତୁ ଶୁଣସି ଗୋ ମାଏ ।
ଯେ କଥାମାନ ଗୋ କେବେହେଂ ନ ଯୋଗାଏ ॥
ଶ୍ରୀରାମ ପରା ସ୍ୱାମୀ ତୋହୋର ଥାଉଂ ।
ତୁ ଆଉ ଧର୍ମ ଲୋଡ଼ାକରୁ କାହୁଂ ॥
ପତିର ପାଦେ ତୋର ଅଛଇ ସବୁ ଧର୍ମ ।
ପତିର ସେବା କଲେ ପତ୍ନୀର ନିଜ କର୍ମ ॥
ପତିଙ୍କି ଭଗତି ହୋଅନ୍ତି ଯେବଣ ନାରୀ ।
ତିନିପୁରେ କଥା ରହଇ ତାହାଙ୍କରି ॥୧୦
ସାବିତ୍ରୀ ନାମେ ଯେ ଅଶ୍ୱକେତୁ ଝିଅ ।
ବିଭା ହୋଇଲା ତାକୁ ଧର୍ମସେନର ପୁଅ ॥
କାଳେ ସତ୍ୟବନ୍ତର ଜୀବନ ଯମ ନେଲା ।
ଶବ କୋଳେ ଘେନି ଘରଣୀ ବସିଲା ॥
ଯେନେହ୍ନ ଦହନ ନ କରଇ ମଡ଼ା ।
ନିସତ ହୋଇଣ ନ ଭାଜଇ ବାହି ଯୋଡ଼ା ॥
ଜାଣିଣ ଅନୁଗ୍ରହ କଲାକ ଜନ୍ତୁପତି ।
ବୋଇଲା ସାବିତ୍ରୀ ଏ ଅଟଇ ମହାସ୍ୟତୀ ॥
ବିଧବା ଲକ୍ଷଣ ଯେହାର ତହିଂ ନାହିଂ ।
ଅଳପ ଅୟୁଷେ ମଲା ଯେହାର ସାଇଂ ॥୨୦
ଯେତେକ ବୋଲି ଚିତ୍ରଗୁପ୍ତକୁ ହକାରି ।
ସାବେତ୍ରୀ ଜୀବନ ଦେବି ଦୁଇଭାଗ କରି ॥
ସତ୍ୟବନ୍ତକଇ ଅଧକ ତହୁଂ ଦେଲା ।
ଦୁହେଂ ଯେକାବେଳେ ମରନ୍ତୁ ବୋଇଲା ॥
ମାଗୋ ଘରଣୀର ପ୍ରସାଦେ ଜୀଇଂଲା ସତ୍ୟବନ୍ତ ।
ଆଜହିଂ ସେ କଥାମାନ ପୁରାଣେ ଉକତ ॥
ମଦନିକା ସୁନ୍ଦେରୀ କପଟ ବୋଲ ପାଇ ।
ଦଇତ ଭଣ୍ଡିଲାକ ମଲା ତୋହୋର ସାଇଂ ॥
ଶୁଣିଣ ମହାସ୍ୟତୀ ଅଗ୍ନିରେ ଝାସ ଦେଲା ।
ଯୁଧ୍ୟେ ଜଏ କରି ଋତୁଧ୍ୱଜ ଅଇଲା ॥୩୦
ନଗ୍ରେ ଶୁଣିଲା ମଲା ତାର ରାଣୀ ।
ଶୁଣିଣ ନୃପତି ଛାଡ଼ିଲା ଅନ୍ନପାଣି ॥
ମାଗୋ ପାତାଳୁ ନାଗେ ଆସି ଜୀଆଇଂ ତାର ରାଣୀ ।
ଯେ ଅଯୋଧ୍ୟାରେ ସେ ଅଟଇ କାରେଣୀ ॥
ମାଗୋ କାମଦେବ ଶଙ୍କର କୋପାନଳେ ମଲା ।୪୦
ଅଗ୍ନି ନୟନେ ଚାହାନ୍ତେ ମଦନ ଜଳିଗଲା ॥
ତାହା ଭାରିଯା ଅଟଇ ଦେବୀ ରତି ।
ସେ ପୁଣି ଉପାଏ ଜୀଆଇଂଲା ତାର ପତି ॥
ପାର୍ବତୀ ମହାସ୍ୟତୀ ପିତା ଯାଗ୍ୟଂ କଲା ।
ସ୍ୱାମୀକି ନ ବରିଲାକୁ ଲାଜ ପାଇ ମଲା ॥
ପୁଣି ଜନମିଲା ସେ ହେମବନ୍ତ ଘରେ ।
ଖୋଜି ବିଭା ତାକୁ ହୋଇଲେ ମହେଶ୍ୱରେ ॥
ତାହାଙ୍କୁ ବୋଲି ଗୋ ପତିଭକ୍ତା ନାରୀ ।
ମାଗୋ ସତ୍ୟ ଯୁଗେ ଥିଲା ନଳ ନାମେ ଦଣ୍ଡଧାରୀ ॥
ପୁଷ୍କର ସଙ୍ଗେ ବାଦ କଲା ରାଜା ପଶା ଯେ ଖେଳିଲା ।
ସମ ରାଜ୍ୟ ହାରି ସେ ବନକୁ ପଳାଇଲା ॥
ମାଗୋ ଭୀମରାଜା ଝିଅ ଅଟଇ ତାହାର ଘରଣୀ ।
ତାହାକୁ ରାଜା ସଙ୍ଗତେ ଅଛି ଆଣି ॥
ନିଜ ବେଳେ ଘରଣୀକି ବନସ୍ତେ ଛାଡ଼ିଲା ।
ଯେହି ଅଯୋଧ୍ୟାରେ ଆସି ସେ ସେବା କଲା ॥୫୦
ବନସ୍ତେଣ ତେଜି ଅଇଲା ଯେବଣ ନାରୀ ।
ଦମଏନ୍ତୀ ନାମ ହାଦେ ଅଟଇ ତାହାରି ॥
ନିଦ ତେଜିଣ ସେ ବହୁତ ରୋଦନ କଲା ।
ପିତାର କଟେକକୁ ବୋଲିଣ ଚଳିଗଲା ॥
ମାଗୋ ବରଷେକ ତହିଂରେ ଥିଲା ଦୁଃଖ ସହି ।
ମାତା ଆଗେ ପିତାକୁ ପଠିଆଇଲା କହି ॥
ଦୁତୀଏ ସ୍ୱଏମ୍ୱର ଆରମ୍ଭ କରାଇଲା ।
ଅଯୋଧ୍ୟା ରାଜା ସଙ୍ଗେ ପତି ତାର ଗଲା ॥
ଚିହ୍ନି ପୁଣ ମାଳା ନଳ କଣ୍ଠେ ଦେଇଂ ।
ପୁଣ ବିଳସିଲେ ସୁଖେ ନିଜ ମହୀ ॥୬୦
ତାହାକୁ ସେ ସ୍ୟତୀ ବୋଲି ବୋଲନ୍ତି ସଂସାରେ ।
ପରମାର୍ଥ ଛାଡ଼ି ତୁ ନ ପଶ ଲୋକାଚାରେ ॥
ମୁଂ ତୋତେ ଜାନେକୀ ଗୋ କହୁଅଛି ସତ ।
ଆଜ ଯିବାର ତୋହୋର ନୁହଇଂ ଉଚିତ ॥
ତହିଂକି ତୁ ଗର୍ଭିଣୀ ହୋଇଅଛୁ ଆଈ ।
ଘରୁ ବାହାର ହୋଇଂ ତୋର ନ ଯୋଗାଇ ॥
ଜାନେକୀ ହସିଣ ଶିରେ କର ଦେଲେ ।
ତୁମ୍ଭେ ମୋତେ ନ ବାର ମୁଂ ଯିବଇଂ ବୋଇଲେ ॥
ଯେତେ ବୋଲି ନ ରହିଣ ଗଲେ ତହୁଂ ଚଳି ।

ମୁଖ ଚୁହାଂ ଚୁହିଂ ଅନ୍ତେଶ୍ୱର ଲୋକେ
ମିଳି ॥୭୦
ଦାସୀ ପରିବାରୀ ଜଣେହେଂ ନ ନେଲା ।
ଲକ୍ଷଣକୁ ରାଇଂ ସେ ବାହାର ହୋଇଗଲା ॥
ସୁମନ୍ତ ମନ୍ତ୍ରୀ ରଥ ସାଜିଲାକ ଆଣି ।
ତହିଂ ବିଜେ କଲା ଜନେକ ଦୁଲଣୀ ॥
ସୁଭଦ୍ରାଦେବୀ ଯେହ୍ନେ ବାଲି ଖଣ୍ଡି ଯାଇଂ ।
ତେସନେକ ସଂଯାତ ଦିଶଇ ବଇଦେହୀ ॥
ଲକ୍ଷଣ ବସିଲା ରଥେ ଧନୁଶର ଦେଇ
କର ।
ବାହୁଡ଼ାଇ ରଥ ଯେ ବାହିଲା ମନ୍ତ୍ରୀବର ॥
ସିଂହଦ୍ୱାର ବାଟେ ବାହାର ହୋଇଗଲେ ।
ରାଜ୍ୟ ଲୋକମାନେ ସମସ୍ତେ
ଦେଖିଲେ ॥୮୦
କେ ବୋଲଇ ଯେକଥା କେବଣ ଚରିତ ।
ସୀତ୍ୟାକୁ ଘେନି ଯାଉଚି ସୁମୈତ୍ରାର ସୁତ ॥
ମନ୍ତ୍ରୀ ସୁମନ୍ତରୁ ତ ଆନ ନାହିଂ କେହି ।
ଅପ୍ରସନ ମୁଖତ ଦିଶଇ ବଇଦେହୀ ॥
କେ ବୋଲଇ ଗଙ୍ଗାଏ କରିବ ସ୍ନାହାନ ।
କେ ବୋଲଇ ଦେଖିବେ ଋଷିଗଣମାନ ॥
କେ ବୋଲଇ ତହିଂକି ଯେମନ୍ତ ହୋଇଂ
ଯାଇଂ ।
ଅମନାତ୍ୟମାନଙ୍କ ମନକୁ ନ ଯୋଗାଇଂ ॥
ନଗ୍ର ନର ନାରୀ ଦେଖନ୍ତି ରଥ ବେଢ଼ି ।
କାଳେ ଆକାଶେ ମାରଇ ଘଡ଼ଘଡ଼ି ॥୯୦
ନିର୍ଘାତ ପଡ଼ିଲାକ ପଥର ବରଷିଲା ।
କୁହୁଡ଼ି ଆଚ୍ଛାଦିଲା କିଛିହିଂ ନ ଦିଶିଲା ॥
ଦେଖି ଜନେକ ଝିଅ ବିଚାରଇ ମନେ ।
ମୁହିଂ ଚାଣ୍ଡାଳୁଣୀ ପୁଣ ଅଇଲି କେସନେ ॥
ଯେତେକ ବୋଲି ଦେବୀ ଲକ୍ଷ୍ମଣକୁ ଚାହିଂ ।
ନ ପୁଣ ବଇରାଗ ପାଆନ୍ତି ତୋର ଭାଇ ॥
ଯେବେ ଅରଷ୍ଟି ବାବୁ ଦେଖିଲୁଟିକି ହାଦେ ।
କେମନ୍ତେ ଯିବା ଆମ୍ଭେ ଯେତେ଼
ପରମାଦେ ॥
ଶ୍ରୀରାମକୁ ବିଘ୍ନ ପଡ଼ଇ ନିକି ବାବୁ ।

ତାହାର ଭଲେ ଥିଲେ ଆମ୍ଭେ ଭଲେ
ଥିବୁ ॥୧୦୦
ଯେବେଣ ଦିନେ ମୁଂ ଲଙ୍କାଗଡ଼େ ଥିଲି ।
ବରଷେ ପରିଯନ୍ତେ ଦୁଃଖେ ଦିନ ନେଲି ॥
ରାବଣ ମାରି ସ୍ୱାମୀ ଆଣିଲେ ମୋତେ
ଯତ୍ନୁଂ ।
ସମଏକ ଅଯୋଧାରେ ଭୋଗକଲି ତହୁଂ ॥
ଯେହା ବିଧାତା ଦେଖି ନ ପାରିଲା ।
କିମ୍ପାଇଂ ମୋତେ ତ ଯେ ବୁଧି ଦିଶିଲା ॥
ସ୍ୱାମୀକି ଛାଡ଼ି ମୁଂ ବନସ୍ତକୁ ଯାଇଂ
ଲୋଡ଼ଇ ।
ପେଟ ଥାଉଂ କିମ୍ପା ପିଠିକି କୋଡ଼ କରଇ ॥
ଅକାରଣେ ମନ୍ଦ ବୁଦ୍ଧି କଲି ମୁହିଂ ଦୁଃଖୀ ।
ଯେସନେକ ବୋଲି ଭାଳଇ
ଶଶୀମୁଖୀ ॥୧୦
ସୁମନ୍ତ ମନ୍ତ୍ରୀ ରଥ ବାହାଇ ଘନ ଘନ ।
ନଗ୍ର ବାହାର ହୋଇଗଲେ ତିନିଜଣ ॥
ଥୋକାଏକ ଦୂରେ ହୋଇଲାକ ନିଶି ।
ରାତ୍ର ପୁହାଇଲେ ତିନି ଜଣେ ବସି ॥
ସୀତା ଶ୍ରୀରାମ ସୁମରଇ ପୁଣ ପୁଣି ।
ଅଯୋଧ୍ୟାରେ ଆରତ ହୋଇଲେ ରଘୁମଣି ॥
ଯେଥୁ ଅନନ୍ତରେ ଗଲେ ପଥ ବାହିଂ ।
ତିନିଦିନେ ଗଙ୍ଗାକୂଳେ ହେଲେ ଯାଇଂ ॥
ସେହୁ ମହାନଦୀ ତ୍ରୈଲୋକ୍ୟେ ପ୍ରସିଦ୍ଧି ।
ବାସୁଦେବ ପାଦେ ଯାହା ନିଉଡ଼ିଲେ
ବେଦନିଧି ॥୨୦
ସେ ସୁର ନଦୀ ସୁରଙ୍କ ଇଶ୍ୱରୀ ।
ତେଣୁ କରି ନାମ ତା ବହଇ ସୁରେଶ୍ୱରୀ ॥
ସେ ନଦୀରେ ପଶିଣ ଦେବୀ ସ୍ନାହାନ
କଲା ।
ଦେବ ପିତୃ ଲୋକଙ୍କୁ ଜଳଦାନ ଦେଲା ॥
ଆଏ ଅଳଙ୍କାର ହୋଇଲା ସୁବେଶ ।
ଦେଖିଣ କାନ୍ଦିଲା ସୁମିତ୍ରାର ଶିଷ୍ୟ ॥
ଜାନେକୀ ବୋଇଲେ କିମ୍ପାଇଂ ବୀର କାନ୍ଦୁ ।
ପୁଣ୍ୟର ବେଳେ କିମ୍ପା ଯତ ସତ ନିନ୍ଦୁ ॥

ଅମୃତ ସମାନେ ଅଟଇ ଯେବଣ
ଫଳ ।୩୦
ସଞ୍ଚିଲୁ ଭୁଞ୍ଜିଲୁ ପୂର୍ବର ପୁଣ୍ୟ ଫଳ ॥
ଜୀବନର ସାର ଆଜ ସେ ହୋଇଲା ।
ଧର୍ମକାଳେ କିମ୍ପା କାନ୍ଦୁସି ବୋଇଲା ॥
କି ଅବା ଗୁପତେ ଶ୍ରୀରାମ କହିଲେ ।
ଜାନେକୀକି ଛାଡ଼ି ଆସସି ବୋଇଲେ ॥
ଶୁଣିଣ ଲକ୍ଷ୍ମଣ ସନ୍ତୋଷ ହୋଇଲା ।
ଜାନେକୀ ମୁଖ ସେ ଚାହିଂଣ ବୋଇଲା ॥
ଯେବେ ସୀତ୍ୟା ଗୋ ଚାଲ ସେ କୂଳକୁ
ଯିବା ।
ସିଦ୍ଧ ମୁନିମାନଙ୍କୁ ତହିଂସେ ଦେଖିବା ॥
ଯେସନେକ ବୋଲି ନାଉରୀକି ଦେଲେ
ରାଇ ।
ତକ୍ଷଣେ କଇବ୍ରତ ଡଙ୍ଗା ଯେ ଆଣଇ ॥୪୦
ସୁମନ୍ତ ମନ୍ତ୍ରୀ ଯେ ରହିଲେ ଯେଣି କୂଳେ ।
ବିବିଧ ସ୍ୱାଦ ଘେନି ଅଛି ଫୁଲ ଫଳେ ॥
ଲକ୍ଷ୍ମଣ ବୋଇଲେ ଯେ ସୁମନ୍ତକୁ ଚାହିଂ ।
ଯେହାଙ୍କୁ ଛାଡ଼ିଣ ଆସଇଂ ବେଗେ ଯାଇଂ ॥
ସୀତ୍ୟା ଲକ୍ଷଣ ବେନି ନାବରେ ବସିଲେ ।
ଗଙ୍ଗାଜଳ ଦେଖି ପ୍ରଶଂସା ବହୁତ କଲେ ॥
ଲକ୍ଷ୍ମଣ ବୋଇଲା ହୋ ନାବଦିଅ ବାହି ।
ଋଷିନ୍ତ ଦେଖିବୁ ସନ୍ତୋଷ ମନ ହୋଇ ॥
ଶୁଣିଣ ତରାଇ ବାହିଲାକ ନାବ ।
ତକ୍ଷଣେ ତେଣି କୂଳେ ନେଇ
ଲଗାଇବ ॥୫୦
ନାବରୁ ଓହ୍ଲାଇଲେ ଜାନେକୀ ଲକ୍ଷ୍ମଣ ।
ନାଉରିଆକୁ ବୋଇଲେ ଆସିବୁ ଯେହିକ୍ଷଣ ॥
ନାବଘେନି ତୁ ଯେହିଠାବେ ଥାଅ ।
ଯେତେ ବୋଲି ଗଲା ସୁମଇତ୍ରାର ପୁଅ ॥
ଅଗମ୍ୟ ବିପୁନ୍ୟ ଅତିହିଂ ଅନ୍ଧକାର ।
କରଯୋଡ଼ି କହଇ ସୁମିତ୍ରା କୁମର ॥
ଜ୍ୱର ନାହିଂ ଦେହ ଥରହର କମ୍ପି ।
ଲୋତକେ ଢଳ ଢଳ ପିଛଡ଼ା ନ ଢାଙ୍କି ॥
ଭଏ ଭାବ ହୋଇ ବୋଇଲ ଗୋ ମାଏ ।

ଶୁଣ ଯେକମନେ କହଇ କଥାଏ ॥ ୬୦
ଚଉଦ ବରଷ ବିପିନେ ବଞ୍ଚିଲୁ ।
ନିଜ ପତି ସଙ୍ଗେ ଦୁଃଖେ ଦିନ ନେଲୁ ॥
ପୁଣି କର୍ମ ଆଣି ଥୋକାଏ ସୁଖ ଦେଲା ।
ଯେହା ହାଦେ ବିଧାତା ଦେଖି ନ ପାରିଲା ॥
କୋପ ନ କରିବୁ ଗୋ କହିବି କଥାଏ ।
ଆଗ୍ୟା ଦେଲେ ମୋତେ ଶ୍ରୀରାମଚନ୍ଦ୍ର ରାଏ ॥
ଯେତେ ବୋଲି ସୀତ୍ୟାର ଚରଣତଳେ
ପଡ଼ି ।
ତରେ ନ ଉଠଇ ଭୂମିରେ ଅଛି ପଡ଼ି ॥
ସୀତ୍ୟା ବୋଇଲେ ବାବୁ କି କଥା ମୋତେ
କହ ।
ଜୀବନ ଯିବା ପ୍ରାଏ ହୋଇଲା ମୋର
ଦେହ ॥୭୦
ଉଠିଣ ଲକ୍ଷଣ ଓଗଳଇ ପୁଣ ପୁଣି ।
କାନ୍ଦନ୍ତେଣ କହି ସେ ନ ପାରଇ ବାଣୀ ॥
ବୋଲଇ ଶୁଣ ଗୋ ଜନେକ ଦୋହିତା ।
ସତୀ ଶିରୋମଣି ନାମ ଗୋଟି ସୀତ୍ୟା ॥
ଅଯୋଧ୍ୟାର ଲୋକେ ନ ଜାଣିମାପଣ
କଲେ ।
ତୋତେ ଆଣିଲାକୁ ମନ୍ଦ ସେ ବୋଇଲେ ॥
ବୋଇଲେ ରଘୁନାଥ ହୋଇଲାକି ବାଇ ।
ଦୂଷିଲା ଯୁବତୀକି କରଇ ମହାଦେଇ ॥
ଯେସନେକ ବୋଲି ବୋଇଲେ ଅଯୋଧ୍ୟାର
ପ୍ରାଣୀ ।
ଲଙ୍କାର କଥାମାନ ନାହାନ୍ତି ସେ ଜାଣି ॥୮୦
ଅଗ୍ନି ପରୀକ୍ଷା ଦେଲୁଂ ବ୍ରହ୍ମା ସମର୍ପିଲା ।
ପିତା ଦଶରଥ ଆସିଣ ପ୍ରବୋଧିଲା ॥
ଦେବ ଦାନବ ରକ୍ଷ ବାନର ଦେଖିଲେ ।
ସାଧୁ ସାଧୁ ସାଧେବୀ ବୋଲି ପ୍ରଶଂସା
କଲେ ॥
ଯେବେ ଅପକ୍ଷାତି ନିଜ ରାଜ୍ୟେ ଉପୁଜିଲା ।
ସେ କଥା ଶୁଣି ତୋତେ ଶ୍ରୀରାମ ତେଜ୍ୟା
କଲା ॥
ବନ ଯିବି ବୋଲି ମାଗିଲୁ ଯେ ବର ।
ସେ କାଳ ବୁଦ୍ଧି ତୋର ପଶିଲା ମନର ॥
ସେ ହେତୁ ବନବାସୀ ହୋଇଲୁ
ବଇଦେହୀ ।
ଛାଡ଼ିଣ ଯିବି ତୋତେ ନଥିବେ ସଙ୍ଗେ
କେହି ॥୯୦
ବାଲମ୍ମିକ ଆଶ୍ରମ ଯେଠାକୁ ନିକଟ ।
ପବିତ୍ର ଥାନ ଯେହୁ ଅଟଇ ଗଙ୍ଗାତଟ ॥
ଯେଥେ ରହିଣ ତୁ ଋଷିଙ୍କି ସେବାକର ।
ଭୋ ମହାସ୍ୱତୀ ତୁ ଆନ ନ ବିଚାର ॥
ପତିଭକ୍ତା ତୁ ଯୁବତୀ ଶିରୋମଣି ।
ରୂପେ ରୂପବନ୍ତୀ ଅଟୁ ସଲକ୍ଷଣୀ ॥
ମହତ ଲୋକକୁ ମାଗୋ ଦୁଃଖ ହାଦେ
ଥାଇ ।
ମହତଙ୍କର କଷ୍ଟ କହଣା ନ ଯାଇ ॥
ଧର୍ମେଣ କଷଣ କରଇ ବିଧାତା ।
ଧର୍ମେ ଆଶ୍ରେ କରି ଯେଥେ ରହିଥାଅ
ସୀତ୍ୟା ॥୧୦୦
ସ୍ୱାମୀର ପଦ୍ମମୁଖ ଚିନ୍ତା କରୁଥିବୁ ।
ରାମନାମ ପଦ ତୁ ଅନୁବ୍ରତେ ସୁମରିବୁ ॥
ତେଣେ ସେ ଧର୍ମ ହେବ ତୋର ମାଏ ।
କାଲି ଆସି ତୋତେ ନେମେଟି ରାମରାଏ ॥
ଶୁଣିଣ ଜାନେକୀର ଶରୀର କମ୍ପିଲା ।
ଦେହ ଛାଡ଼ିଣ କି ଜୀବନ ଉଡ଼ିଗଲା ॥
ହସ୍ତର କଙ୍କଣ ମୁଦ୍ରିକାମାନ ଥିଲେ ।
ଅକାରଣେ ଶ୍ୟରୀରୁ ହୁଗୁଳି ପଡ଼ିଲେ ॥
ଶୁଦ୍ଧ ସୁବର୍ଣ୍ଣ ଦେହ ଦିଶିଲାକ କଳା ।
ଅଧାରଣ ହୋଇଣ ଦିଶିଲା ଅବଳା ॥୧୦
ଯମ ଘରକୁ କି ଗଲା ତାର ପ୍ରାଣ ।
ପୁଣି ଚେତି ଉଠି ବସିଲା ତତକ୍ଷଣ ॥
ଶିରେ କର ଦେଇ ଅନେକ ଶୋକ କଲା ।
ଭୋ ରାମ କେମନ୍ତେ ମୋତେ ଛାଡ଼ିଲୁ
ବୋଇଲା ॥
ଖଳ ଲୋକଙ୍କର ଶୁଣିଲୁ ଯେ ବୋଲ ।
ମନ୍ଦ ପ୍ରାଣୀମାନେ ନ କହନ୍ତି କଥା ଭଲ ॥
ସର୍ବଗ୍ୟଂ ପୁରୁଷ ନ ଜାଣସି କାହା ।
କିମ୍ପା ମୋତେ ତାଳେ ତେଜିଲୁ ରଘୁନାହା ॥
ପର ବୋଲେ ମୋତେ ତେଜିଲୁ ରଘୁବଛି ।
ମୁହିଂ ତୋହଠାରେ ଦୋଷ ନ କରିଛି
କିଛି ॥୨୦
ଯେଥକୁ ସେ ପ୍ରୀତି ମୋତେ ବଢ଼ାଇଲୁ ତହିଂ
ପାଇଂ ।
ମୁହିଂ ଦୁଃଖୀ କିମ୍ପା ଲୋଡ଼ି ବନ ଯାଇଂ ॥
କପଟ କଥା ବୋଲି ମୁଂ ନ ଜାଣଇ
ତେବେ ।
ଅନାଥ ଯୁବତୀ ପ୍ରାଏ ହୋଇଲଇଂ ଯେବେ ॥
ତୁହି ହୋ ଲକ୍ଷ୍ମଣ ଜାଣୁ ସର୍ବ କଥା ।
ସ୍ୱର୍ଗରୁ ଓହ୍ଲାଇ ଅଇଲେ ଚଉମଥା ॥
ଇନ୍ଦ୍ରାଦି ସହିତେଣ ଦଶ ଦିଗପାଳ ।
ବିବୁଧଗଣମାନେ ଆସି ମିଳିଲେ ସକଳ ॥
ପିତା ତୁମ୍ଭ ଦଶରଥ ସହିତେ ଅଇଲେ ।
ସେ ମୋର ସାଧୁପଣ କହିପୁଣ ଗଲେ ॥୩୦
ତେତିଶ କୋଟି ଥାଇଂ ଅଗ୍ନି ପରୀକ୍ଷା
କଲେ ।
ଶ୍ରୀରାମ ଛାମୁରେ ମୋତେ ସମର୍ପିଣ ଦେଲେ ॥
ତେତେବେଳେ ତୁମକୁ ମୁଂ ଯୋଗାଇଲି
ଦୁଃଖୀ ।
ଯେବେ ମୋତେ ଆଣି ତୁମ୍ଭେ କଲ
ନିରିମାଖି ॥
କେବଣ ପାପେ ମୁଂ ହୋଇଲଇଂ ଜାତ ।
ଦୁଃଖୀ କରି ମୋତେ କଲୁ ଯେ ବିଧାତ ॥
କଷ୍ଟୀଙ୍କର ମଧ୍ୟେ ମୁଂ ହୋଇଲି ଗଣିତା ।
ଉଚ୍ଚେ ରୋଦନ କରଇ ଦେବୀ ସୀତ୍ୟା ॥
ଧିକ ହେଉ ତପୀଙ୍କର ତପ କଲା ।
ଦେବତାଏ ଧିକ ହୋଅନ୍ତୁ ବୋଇଲା ॥୪୦
ପୃଥୀ ଧିକ ହୋଉ ଧିକ ହୋଉ ସିନ୍ଧୁ ।
ଯେ ମୋର ଯଶ ଅକାରଣେ ଛନ୍ତି ନିନ୍ଦୁ ॥
କାହାକୁ ଘେନି ରାମ ବିନୋଦ କରିବେ ।
କାହାର ଅଙ୍ଗେଣ ରାମ ଅଳଙ୍କାର ଭରିବେ ॥
କାହାର ମୁଖେ ରାମ ଦେବେଟି ଚୁମ୍ବନ ।
ହରଷ କଥା କହି ହରିବେ କାହାମନ ॥

କାହାର କୁଚ ଯୁଗଳେ ଲିହିବେ ପତ୍ରାବଳୀ ।
କାହାକୁ ଘେନି ରାମ କରିବେଟି କେଳି ॥
କାହାର କେଶେ ରାମ ଖୋଷିବେ ଖୋଷା ।
କାହାର ମୁଖ ଚାହିଁ ତ ଦେବେ ମୁର୍କି
ହସା ॥୫୦
କାହାର ଚରଣେ ରାମ ଅଳତା ରଞ୍ଜିବେ ।
କାହାର ନୟନେ କଜ୍ଜ୍ୱଳ ରେଖ ଦେବେ ॥
କାହାକୁ ଅଳଙ୍କାର ମଣ୍ଡିବେ ସୁଖ ପାଇ ।
କାହାକୁ ତାମ୍ବୋଳ ଭୁଞ୍ଜାଇବେ ମୋର
ସାଙ୍ଗ ॥
ଆଉକି ସ୍ୱାମୀକି ମୋ ଦେଖିବି ଯେ ଜନ୍ମେ ।
ସେବା କରି ନ ପାରିଲି ମୋର ପାପକର୍ମେ ॥
ଯେତେବୋଲି ଭୂମିରେ ପଡ଼ିଲା ମହୀସ୍ଥଳୀ ।
ଉଚ୍ଚେଣ ରୋଦନ କରଇ ଜନେକ ଦୁଲାଳୀ ॥
ଲକ୍ଷଣକୁ ବୋଇଲେ ଛାଡ଼ି ମୋତେ ଯିବୁ ।
ଶାଶୁମାନଙ୍କୁ ମୋର ଓଳେଗ କହିବୁ ॥୬୦
ସେ ମୋର ଜନନୀ ଅଟନ୍ତି ଧର୍ମମାତା ।
କତିରେ ଥୋଇ ମୋତେ ନ ଦେଲା
ବିଧାତା ॥
ତାହାଙ୍କ ବୋଲ ମୂର୍ଚ୍ଛିକରି ଅଇଲି ।
ତହିଁର ଫଳେ ଯେବେ ଅନାଥ ହୋଇଲି ॥
ସେ ମୋତେ ସୁଦୟା କରି ପୁଣ ଥାନ୍ତୁ ।
ଯେତେକ ଦୋଷକଲି ତାହା ମନେ ନ
ଧରନ୍ତୁ ॥
ସଖୀଜନମାନଙ୍କୁ ମୋର କହିବୁଟି ଯାଇଁ ।
ଚିନ୍ତା କଲେ ହେଂ ତ ମୋତେ ପାଇନାହିଁ ॥
ଶୋକ ନ କରିଣ ନିଚିନ୍ତେ ହୋଇଥାନ୍ତୁ ।
ସ୍ୱାମୀକି ମୋର ମନ୍ଦ ନ ବୋଲନ୍ତୁ ॥୭୦
ଯେତେକ କହି ସୀତ୍ୟା ବୋଇଲେକ ପୁଣି ।
ମୋତେ ଅଦୋଷେ ଛାଡ଼ିଲେ ରଘୁମଣି ॥
ସେ ଦୋଷ ତାହାଙ୍କର ନ ଧରଇ ମୁହିଂ ।
କ୍ଷେମେଣ ରାଜ୍ୟ କରୁଥାଆନ୍ତୁ ମୋର ସାଙ୍ଗ ॥
ଭୋ ଲକ୍ଷଣ ତୁ ଶ୍ରୀରାମକୁ କହିବୁ ହାଦେ ।
ମୁହିଂ ବନେଥିବି ତାହାଙ୍କର ପରସାଦେ ॥
ସେ ପରଜା ପାଳନ୍ତୁ ପୁତ୍ର ସମ କରି ।
ଦେବତା ତୋଷନ୍ତୁ ବ୍ରାହ୍ମଣଙ୍କୁ ବରି ॥
ଅଗ୍ନିର ମୁଖେଣ ପ୍ରଭୁ କରୁଥିବେଟି ହୋମ ।
ମନ୍ତ୍ରୀ ଅମନାତ୍ୟଙ୍କୁ ସେ ନ କରିବେ
ତମ ॥୮୦
ଜନନୀମାନଙ୍କୁ ସେବା କରୁଥିବେ ।
କଉଶଲ୍ୟା ହୁଂ ଅଧିକ ଆଉ ମାତାଙ୍କୁ
ଦେଖିବେ ॥
ଚତୁରାଙ୍ଗ ବଳ ଦେଖୁଥିବେଟି ନିତି ।
ଶତ୍ରୁଗଣଙ୍କୁ କରୁଣ ଥିବେଟି ଭୀତି ॥
ମୋହର ଅଛନ୍ତି ଦାସୀ ପରିଜନ ।
ସେ ଯେମନ୍ତେ ମନେ ନ ଧରନ୍ତି ଆନ ॥
ତୁମ୍ଭେ ତିନିଭାଇ ସେବା କରୁଥିବ ।
ଶ୍ରୀରାମର ଆଗ୍ୟାରୁ ରେଖେ ନ ଡେଇଁବ ॥
ମୋତେ ଶ୍ରୀରାମଚନ୍ଦ୍ର ତେଜିଲେନି
ଯେବେ ।
ସେ ଯେସନେକେ ସୁସ୍ତେଣ ଥିବେ
ତେବେ ॥୯୦
ସେ କଥା ଆଉ କାହିଁ ପାଇବେ ରଘୁମଣି ।
ଦେହ ହରାଇବେ ମୋହୋର ଗୁଣ ଗୁଣି ॥
କେ ତାଙ୍କ ମନ ଜାଣି ସେବା କରୁଥିବ ।
ଯିସ ରୁଚଇ ତାହା ରାନ୍ଧି ପରଷିବ ॥
ଅନୁବ୍ରତେ କେ ଖଟିଥିବ ରାମ ପାଶ ।
କେ ତାହାଙ୍କୁ ନେଇ ପିନ୍ଧାଇବ ବାସ ॥
କେ ତାହାଙ୍କ ଅଙ୍ଗେ ଚନ୍ଦନ ଶାମଳିବ ।
କେ ତାହାଙ୍କ କପାଳେ କସ୍ତୁରୀ ବୋଳିବ ॥
କେ ତାର କେଶ ବାନ୍ଧିବ ଫୁଲାଇଂ ।
କେ ପାନ ଭୁଞ୍ଜାଇବ ଯାନୁରେ
ବସାଇ ॥୧୦୦
କେ ତାହାର ଚରଣ ଚାପିବ ଅନୁବ୍ରତେ ।
କେ ତାହାର ଅନୁବ୍ରତେ ହରିବାକ ଚିତ୍ତେ ॥
କେ ତାଙ୍କୁ ହସିଣ କରିବଟି କୋଳ ।
କାହାକୁ ଦେଖିଣ ସ୍ୱାମୀ ହୋଇବାକ
କାମଭୋଳ ॥
କେ ତାହାଙ୍କର ଚରଣେ କଠାଉ ଦୁଇ
ଦେବ ।
କେ ତାଙ୍କ ଶ୍ରୀ ଅଙ୍ଗରେ ଅଳଙ୍କାର ଲାଇବ ॥
କାହାକୁ ଚାହିଁଣ ସ୍ୱାମୀ କରିବେଟି ଗେଲ ।
କାହା ଆଗେ ବୋଲିବେ ପରିହାସ ବୋଲ ॥
ଯେତେ ବୋଲି ସୀତ୍ୟା ଲକ୍ଷଣ ହାଥ ଧରି ।
ଶୀଘ୍ରେ କର ଧରି ବୋଲନ୍ତି ଦୃଢ଼ କରି ॥୧୦
ଭୋ ସଉମିତ୍ରୀ ମୁଂ ଦଇନି କରଇ ତୋତେ ।
ଯେକା ମାଗୁଣିଏ ଦିଅସି ତୁ ମୋତେ ॥
ବେଳ ଜାଣି ରାମକୁ କରାଇବୁ କର୍ମ ।
ତେବେ ସେ ପ୍ରାପତ ତୋତେ ହୋଇବ
ନିଜ ଧର୍ମ ॥
ସକାଳ ମୋଣେହି କରାଇବୁ ନିତି ।
ଅନୁବ୍ରତେ ଖଟିଥିବୁ ଶ୍ରୀରାମର କତି ॥
ବାବୁ ତୋ ତହୁଂ କେ ଅଛି ବିଶ୍ୱଆସ ।
ମୋତେ ଯେବେ ବିହି ବିହିଲା ବନବାସ ॥
ଶ୍ରୀରାମ ଯେସନେ ପ୍ରାଣ ପାଇଂ ଥାଇ ।
ମୁଂ କିସ ବୋଲିବି ତୁ ଅଟୁ ତାଙ୍କର
ଭାଇ ॥୨୦
ଯାଅତୁ ବାବୁ କ୍ଷଣେ ନଥା ଯେଥ ।
ଦୁଃଖୀ ହୋଇ ବସିଥିବେ ରଘୁକୁଳ ନାଥ ॥
ଆବର କଥାଏକ ଜଣାଇବୁ ଯାଇଂ ।
ଅମନାତ୍ୟ ଶାଶୁମାନନ୍ତ ବସାଇଂ ॥
ଯେ ମୋର ଗର୍ଭରେ ଅଟଇ ବେନିମାସ ।
ଲୋକନ୍ତ ଶୁଣାଇ କହିବୁ ସୁମଇତ୍ରାର ଶିଷ ॥
ଆବରେ କଥାଏ ପୁଣ ଶୁଣ ବୀରମଣି ।
ଭ୍ରଥ ଶତ୍ରୁଘନଙ୍କୁ ତୁ କହିବୁ ଯେ ବାଣୀ ॥
ଭଏଣୀ ତିନିଗୋଟି ଅଛନ୍ତି ତୁମ୍ଭର ନାରୀ ।
ମୋହର ଦୁଃଖେଣ ସେ ହୋଇବେଟି
ଘାରି ॥୩୦
ତାହାନ୍ତ ପାଳିଣ ତୁମ୍ଭେ ଥିବ ଭାଇ ତିନି ।
ମୋତେ ନ ଦେଖିଣ ସେ ଅନାସ୍ତ
କାମେନୀ ॥
ତାହାଙ୍କର ମାସ ଜାଣିଅଛି ମୁହିଂ ।
ଦାସୀ ପରିବାରୀ କହନ୍ତେ ଶୁଣିଲଇଂ ॥
ଯେତେ ବୋଲି ସୀତ୍ୟା ରୋଦିଲାକ ପୁଣି ।
ନିରେଖ ହୋଇଲେ ମୋର ତିନି ଯେ
ଭଏଣୀ ॥

ମନମାୟା ସଖି ମୋର ମରିବ ନିଶ୍ଚଏ ।
ଆବର ଦାସୀମାନେ ହୋଇବେ ଅଥଏ ॥
ଲକ୍ଷଣଙ୍କୁ ବୋଇଲେ ତୁ ବେଗ
ହୋଇଯାଅ ।
ଶ୍ରୀରାମ ସନ୍ନିଧେ ସେବା କରିଥାଅ ॥୪୦
ଶୁଣିଣ ସଉମିତ୍ରୀ ନମସ୍କାର କଲା ।
କାନ୍ଦୁ କାନ୍ଦୁ ବୀର ପଛଘୁଞ୍ଚା ଦେଲା ॥
ଲତାର ଓହାଡ଼େ ଗଲା ପିଠି ଦେଇ ।
ସୀତ୍ୟା ରୋଦିଲା ସେ ଦଶଦିଗ ଚାହିଁ ॥
ଶ୍ରବଣ ବୁଝି ଲକ୍ଷଣ ତହୁଁ ଗଲା ।
ଗଙ୍ଗା କୂଳେ ଯାଇଂ ନାବରେ ବସିଲା ॥
ଧାଡିକାରେ ବୀର ହେଲା ନଦୀ ପାର ।
ନାବରୁ ଓହ୍ଲାଇ ବସିଲା ରଥର ॥
ସୁମନ୍ତଙ୍କୁ ଚାହିଁ ରୋଦନ ବୀର କରି ।
ବାହୁଡ଼ାଇ ରଥ ବାହିଲା ନିଜ ପୁରୀ ॥୫୦
ସେ କୂଳେ ସୀତ୍ୟା ଅନାଇଣ ଥିଲା ।
ରଥ ବାହୁଡ଼ିବା ଦେଖି ରୋଦନ ସେ କଲା ॥
ସ୍ୱାମୀ ସ୍ୱାମୀ ବୋଲି କାନ୍ଦିଲା ଉଚ୍ଚସ୍ୱରେ ।
ଯେକା ନାରୀ ଶୋକ କଲା ବନ ଘୋରେ ॥
ବନଜନ୍ତୁମାନେ ହୋଇଲେ ଆକୁଳ ।
ବୃକ୍ଷରୁ ଝଡ଼ିଣ ପଡ଼ିଲେ ଫୁଲଫଳ ॥
ଅଣ୍ଡିର କୋକିଳ ଜାଣି ଶୁଭୁଅଛି ବାଣୀ ।
ମଢ଼ିଆରେ ଥାଇଂ ବାଲ୍ମିକ ମୁନି ଶୁଣି ॥
ମନେ ବିଚାରନ୍ତି ଏ କିସ ଶବଦ ।
ଶ୍ରବଣେ ଶୁଭିଲା ଯୁବତୀ ଶୋକନାଦ ॥୬୦
ମାନେବ ସ୍ତିରୀର ଏ ନୋହଇ ନା ଧ୍ୱନି ।
ଯେତେ ବୋଲି ଶୁଚିବନ୍ତ ହୋଇଲେ
ମହାମୁନି ॥
ଧ୍ୟାନେଣ ଜାଣିଲେ ଏ ଜନେକ ଦୋହିତା ।
ଶ୍ରୀରାମର ରାଣୀ ନାମ ଏହାର ସୀତ୍ୟା ॥
ଲୋକ ଅପବାଦକୁ ଛାଡ଼ିଲେ ରଘୁପତି ।
ଲକ୍ଷଣ ଆଣି ଏଥେ ନିବାସି ଗଲା ସ୍ୟତୀ ॥
ଯେ ମୋହୋର ଆଶ୍ରମ ନିକଟ ବୋଲି
ଜାଣି ।
ଯତନେ ଏଠାକୁ ପଠିଆଇଲେ ରଘୁମଣି ॥

ଯେତେ ବୋଲିଣ ମୁନି ଉଠିଲାକ ବେଗେ ।
ଅନେକ ଶିଷ୍ୟମାନେ ଗୋଡ଼ାଇଛନ୍ତି
ସଙ୍ଗେ ॥୭୦
ଗଙ୍ଗା କୂଳେ କୂଳେ ପୂର୍ବ ମୁଖେ ଗଲେ ।
ଗହନ ବିପୁନ୍ୟେ ଯାଇ ସୀତ୍ୟାଙ୍କୁ
ଦେଖିଲେ ॥
ପଚାରିଲେ ଆଇ ତୁ କେବଣ ଦେଶୁ ଆଏ ।
କେ ତୋର ବାପ କେ ତୋର ମାଏ ॥
କେ ତୋର ପତି ଅଇଲୁ କିମ୍ପା ବନ ।
ଆମ୍ଭ ଆଗେ କହ ସ୍ୱରପ ବଚନ ॥
ଆମ୍ଭେ ବାଲ୍ମିକ ନାମେ ତପୋବନ୍ତ ।
ରୋଦନ ଶୁଣି ଅଇଲୁ ଦେଖି ଯେ ତୁମ୍ଭନ୍ତ ॥
ଶୁଣିଣ ମଇଥିଳୀ ସନ୍ତୋଷ ହୋଇଲେ ।
ଉଠି କେଶ ବାସ ସମ୍ଭାଳଣ କଲେ ॥୮୦
ଲକ୍ଷ୍ମଣ ବୋଇଲେ ଏଥେ ବାଲ୍ମିକ ଥାନ୍ତି ।
ତାଙ୍କୁ ସେବା କରିଥିବୁ ରୂପବନ୍ତୀ ॥
ସେକଥା ଜାନେକୀ ଥିଲେ ହେତୁ କରି ।
ଋଷିଙ୍କ ପାଦେ ଯାଇଂ ନମସ୍କାର କରି ॥
ଋଷି ବୋଇଲେ ତୁ ସୁଲକ୍ଷଣୀ ହୋଅ ।
କାହୁଁ ଅଇଲୁ ମା ଗୋ ମୋର ଆଗେ କହ ॥
ସୀତ୍ୟା ବୋଇଲେ ମୁଂ ଶ୍ରୀରାମର ରାଣୀ ।
ନାମ ବଇଦେହୀ ଜନେକ ଦୁଲଣୀ ॥
ସଦାଶିବ ଧନୁ ଭାଙ୍ଗିଲେ ରାମ ହେଳେ ।
ମୋତେ ବିଭା ହୋଇଲେ ମିଥିଳା
ମଣ୍ଡଳେ ॥୯୦
ଅଯୋଧ୍ୟାରେ ଆସି ଥୋକାଏ ଦିନ ଥିଲୁ ।
ଦଶରଥ ବୋଲେ ଆମ୍ଭେ ବନସ୍ତକୁ ଗଲୁ ॥
ଗୋଦାବରୀ କୂଳେ କଲୁ ଯାଇଂ ବାସ ।
ତହୁଁ ମୋତେ ଘେନିଗଲା ବିଶ୍ରବାର ଶିଷ ॥
ମଧୁବନେ ନେଇ ଥୋଇଲା ଯତ୍ନ କରି ।
ରକ୍ଷା କରିଥିଲେ ସହସ୍ରେ ଅସୁରୀ ॥
ନିଦ୍ରା ଆହାର ବର୍ଜିଲଇଂ ତହିଂ ଥାଇଂ ।
ପ୍ରତକ୍ଷେ ହନୁମନ୍ତ ଦେଖିଲାକ ଯାଇଂ ॥
ବାରତା ପାଇ ଶ୍ରୀରାମଚନ୍ଦ୍ର ଗଲେ ।
ବାଳୀକି ମାରି ଅନେକ ଋକ୍ଷ କପି
ନେଲେ ॥୧୦୦

ସୁଗ୍ରୀବର ନାମେ ବାନର ଆଦିପତି ।
ତାହାକୁ ଘେନି ରାମ ପର୍ବତେ ସିନ୍ଧୁପୋତି ॥
ଲଙ୍କାରେ ରାବଣର ସଗୋତ୍ର ନାଶ କଲେ ।
ଅପ୍ରତେ କରି ମୋତେ ଅଗ୍ନି ପରୀକ୍ଷ
ଦେଲେ ॥
ବ୍ରହ୍ମା ଅଇଲେ ସକଳ ସୁରଗଣ ଘେନି ।
ଦଶରଥ ରାଜା ସହିତେ ଆପଣେ
ସସ୍ତଯୋନି ॥
ମୋତେ ଶ୍ରୀରାମକୁ ସମର୍ପିଣ ଗଲେ ।
ସତୀ ଶିରୋମଣି ବୋଲିଣ ବୋଇଲେ ॥
ତାହାଙ୍କ ବୋଲେ ଶ୍ରୀରାମ ପରିଗ୍ରହ ମୋତେ
କଲା ।
ଅଯୋଧ୍ୟାରେ ଆସି ଅଭିଷେକ
ହେଲା ॥୧୦
ଯେବେ ନଗ୍ର ନରନାରୀ ବୋଇଲେକ
ମନ୍ଦ ।
ସେକଥା ଶୁଣି ମୋତେ ତେଜିଲେ
ରାମଚନ୍ଦ୍ର ॥
ଲକ୍ଷ୍ମଣ ଏଥେ ଆଣି ନିବାସିଣ ଗଲା ।
ଗର୍ଭ ହୋଇଛି ମୁଂ ଓପ୍ରୋଧ ନକଲା ॥
ତେଣୁ ସେ ରୋଦନ କରଇ ମୁହିଂ ଏଥ ।
କେଉଂ କତିକି ଯିବି ନ ଜାଣଇ ପଥ ॥
ଶୁଣିଣ ବାଲ୍ମିକ ଭବିଷ୍ୟ ଶାସ୍ତ୍ର ଗୁଣି ।
ବୋଇଲେ ନିଶ୍ଚେଂ ଯେ ଅଟଇ ରାମରାଣୀ ॥
ମୁହିଂ ଏବେ ଏହାକୁ ସମ୍ଭାଳିବି ନେଇ ।
ପୂର୍ବେଣ ଯେ ନାରଦ ଅଛନ୍ତି ମୋତେ
କହି ॥୨୦
ଯେତେ ବୋଲି ମୁନି ବୋଲନ୍ତି ଗୋ ମାଏ ।
ଚାଲଯିବା ଆମ୍ଭର ପୁଣ୍ୟକୁଟୀ ଯାଏ ॥
ଆମ୍ଭେ ଜନେକ ଦୁହେଂ ବେଗଳ
ନୋହୁପୁଣି ।
ତୁ ଅଟୁ ଆମ୍ଭର ଗୋ ଧର୍ମର ନନ୍ଦିନୀ ॥
ମୋହର କତିରେ ଥିଲେ ନାହିଂ ତୋତେ
ମନ୍ଦ ।
ଶ୍ରୀରାମ ଶୁଣିଲେ ହୋଇବେ ଆନନ୍ଦ ॥

ସୀତ୍ୟା ବୋଇଲେ ମୁଁ ଥିବି ତୁମ ପାଶ ।
ଶ୍ରୀରାମର ବୀର୍ଯେ ମୁଁ ହୋଇଛି ଗର୍ଭବାସ ॥
ନଗ୍ର ନରନାରୀ ସମସ୍ତେ ଜାଣନ୍ତି ।
ଶ୍ରୀରାମର ତିନିଭାଇ ଶାଶୁ ପାତ୍ର ମନ୍ତ୍ରୀ ॥୩୦
ଏକଥା ତୁମ୍ଭେ ଶୁଣି ଥାଅସି ମାହାମୁନି ।
ମୁହିଂ ସେ ଅଟଇ ବଡ଼ ଅଭାଗିନୀ ॥
ବାଲମିକ ବୋଇଲେ ଯାହା କହିଲୁ ମହାସତୀ ।
ତୁମ୍ଭର କଥା ବେଦ ପୁରାଣେ ଉକତି ॥
ସାକ୍ଷାତେ କମଳାତୁ କମଳଆସନୀ ।
ବିଷ୍ଣୁର ପାଟରାଣୀ ତୁ ଦାରିଦ୍ର୍ୟ ବିଧଂସନୀ ॥
ବ୍ରହ୍ମା ମୋର ଆଗେ ଅଛନ୍ତି ଯେ କହି ।
ତୋତେ ସମ୍ଭାଳିଣ ପବିତ୍ର ହେବି ମୁହିଂ ॥
ଅନେକ ଜନ୍ମର ମୋ ଯେତେକ ପାପ ଥିଲା ।
ତୋହର ମୁଖ ଦେଖି ସକଳ କ୍ଷଏ ଗଲା ॥୪୦
ଆସ ଆସ ମାଏ ଗୋ ଯିବା ଆମ୍ଭ ଘର ।
ଯେତେ ବୋଲି ଆଗହେଲେ ମୁନିବର ॥
ପଛେଣ ଜାନେକୀ ଧୀରେ ଧୀରେ ଯାଇଂ ।
ବ୍ରହ୍ମାପଛେ ଯେହ୍ନେ ସୁରଭି ଗୋଡ଼ାଇଂ ॥
ଋଷିଙ୍କର ମଢ଼ିଆ ବାହାରେ ଯାଇଂ ମିଳି ।
ସୀତୟାଙ୍କୁ ଦେଖି ଅଇଲେ ଋଷିବାଳୀ ॥
ଅନେକ ଋଷିମାନେ ଛନ୍ତି ତହିଂ ରହିଂ ।
ବାଲମିକ ଆଶ୍ରମ ଗଙ୍ଗା ପିଠିଆଇ ॥
ଯେମାନେ ଦେଖିତ ଅଇଲେ ବଇଦେହୀ ।
ବାଲମିକ ବୋଇଲେ ଏ ଜନେକ ତନଈ ॥୫୦
ଅଯୋଧ୍ୟା ରାଜା ଶ୍ରୀରାମର ରାଣୀ ।
କଳି କରିଣ ଅଇଲା ଏ ଅଟଇ ଅସହଣୀ ॥
ଗର୍ଭେ ଦୁଇମାସ ହୋଇଛି ଏହାର ।
କିଞ୍ଚିତ ଦୋଷକୁ ରାମ କଲେକ ବାହାର ॥
ରୋଦିବା ଶୁଣି ଏହାର ଆଣିଲୁ ଆମ୍ଭେ ଯାଇଂ ।
ବ୍ରହ୍ମା କହିଅଛି ସମ୍ଭାଳିବା ପାଇଂ ॥
ଆମ୍ଭ କତିରେତ ଅବିଗୁଣ ନାହିଁ କିଛି ।
କୋପଶାନ୍ତ ହୋଇଲେ ନିଅନ୍ତୁ ରଘୁବଛି ॥
ଶୁଣି ଋଷିମାନେ ଆନନ୍ଦ ହୋଇଲେ ।
ଯେତ ଭଲ କଥା ବୋଲିଣ ବୋଇଲେ ॥୬୦
ବାଲମିକ ମଢ଼ିଆଏ ପ୍ରବେଶ ଜାନେକୀ ।
ଋଷିପୁତ୍ରମାନେ ଅଇଲେ ତହିଂକି ॥
ବାଲମିକ ବୋଇଲେ ଶୁଣସି ଗୋ ଆଈ ।
ସୀତୟା ଅଟଇ ଯେ ରାଜାର ମହାଦେଈ ॥
ଜନେକ ଋଷିର ଯେ ଅଲିଅଳ ଜେମା ।
ଅକାରଣେ ଝିଂଘାସି ହୋଇଲା ଏ ବାମା ॥
ତୁମ୍ଭେମାନେ ଏହାକୁ ସେବା କରିଥିବ ।
ଯେତେବେଳେ ଯାହା ମାଗଇ ତାହା ଦେବ ॥
ମୋହର ଘରେତ ଅପୂର୍ବ ନାହିଂ କିଛି ।
ତପର ବଳେ ମୋର ସର୍ବ କଥା ଅଛି ॥୭୦
ଏ ମହାସ୍ୟତୀ ଗୋ ଅଟଇ ପବିତ୍ରା ।
ବ୍ରହ୍ମାଣ୍ଡ ନାଏକ ଅଟଇ ଏହାର ଭ୍ରଥା ॥
କୋପ ସଂହରିଲେ ନିଅନ୍ତି ସିନା ଆସି ।
ତୁମ୍ଭେ ସେବା କରିଥିବ ଅର୍ହନିଶି ॥
ବେଶବେଷନ କରାଇବ ପାଶେ ଥାଇଂ ।୮୦
ଯେମନ୍ତେ ଭଲ ବୋଲାଇବ ଏହାର ତହିଂ ॥
ଏହାକୁ ସେବା କଲେ ଜୀବନ କାରଣ ।
ଦୋହିତାମାନଙ୍କୁ ମୁନି କଲେ ତିଆରଣ ॥
ମୁନିଙ୍କର ବୋଲେ ସେ ଶରଧା ତାଙ୍କର ପାଙ୍କ ।
ପାଶ ନ ଛାଡ଼ି ସୀତୟା ଯହିଂ ଥାଇଂ ॥
ଫୁଟିଲା ପଦ୍ମକୁ ଯେହ୍ନେ ଭ୍ରମରେ ବେଢ଼ିଥାନ୍ତି ।
ସୀତ୍ୟା ସନ୍ନିଧେ ବାଳୀ ତେସନ ଦିଶନ୍ତି ॥
ଭୋଜନ ଶୟନେ ବାଳୀ ନ ଛାଡ଼ନ୍ତି କ୍ଷଣେ ।
ଅନୁକ୍ଷଣେ ଚରଚା କରନ୍ତି ମୁନିଗଣେ ॥
ବାଲମିକ ଭାରିଯା ଅଟଇ ଧର୍ମବତୀ ।
ଦୋହିତା ପ୍ରାଏ କରି ସୀତ୍ୟାଙ୍କୁ ପାଳନ୍ତି ॥
ଭଲ ବସ୍ତ୍ର ଭଲ ଅଳଙ୍କାର ଦେଇଂ ।
ସୁସ୍ୱାଦୁ ଫଳମାନନ୍ତ ଯାଚିଣ ଖୁଆଇଂ ॥
ଋଷି ପୁତ୍ରମାନେ ସେବା କରିଥାନ୍ତି ।
ନାନା ରସ କଥା କୁହାକୁହି ହୁଅନ୍ତି ॥ ୯୦
କେ ସୀତ୍ୟାର ସଖୀ କେ ହୋଇଲେ ସଂଘାତୁଣୀ ।
କେ ବନ୍ଧୁ ବହେଣୀ କେ ସୋଦର ମିତଣୀ ॥
ଯେମନ୍ତେ ଜାନେକୀ ରହିଲେ ସୁଖ ପାଇଂ ।
ଅଯୋଧ୍ୟା ବୋଲି ତାଙ୍କର ମନେ ଚିନ୍ତା ନାହିଂ ॥
ଶୁଣ ଗା ପାର୍ବତୀ ଏଥୁ ଅନନ୍ତରେ ।
ଲକ୍ଷଣ ସୀତ୍ୟାଙ୍କୁ ଯେ ଛାଡ଼ିଲେ ଗଙ୍ଗାତୀରେ ॥
ତଡ଼ବେଗେ ନାବେ ବସିଲାକ ଯାଇଂ ।
ବାହୁଡ଼ି ଅଇଲା ଯେ ପଛକୁ ନ ଚାହିଂ ॥
ଉତ୍ତର କୂଳେ ସୁମନ୍ତ ରଥ ଘେନିଗଲା ।
ତାହାର ସନ୍ନିଧେ ଆସି ନାଉକା ନାଗିଲା ॥୧୦୦
ତତକ୍ଷଣେ ସଉମିତ୍ରୀ ଗଲାକ ଓହ୍ଲାଇଂ ।
ରହୁବର ଉପରେ ବିଜେ କଲା ଯାଇଂ ॥
ମନ୍ତ୍ରୀ ଶିରୋମଣି ସେ ବାହିଲା ରହୁବର ।
କେହି କାହାକୁ ହିଂ ନ ଦିଅନ୍ତି ଉତ୍ତର ॥
ଈଶାନ୍ୟ ଭାଗେ ଅଯୋଧ୍ୟା ନଗରୀ ।
ପୂର୍ବମୁଖେ ମାହାତ୍ମା ଯେ ଆସନ୍ତି ଗମନ କରି ॥
ସୁମେତ୍ରା ନନ୍ଦନ ଉଚେ ରୋଦନ କଲା ।
କପୋଳେ ହାଥ ମାରି ବିଧାତା ସୁମରିଲା ॥
ସୁମନ୍ତକୁ ବୋଇଲା ରଥ ବେଗେ ବାହା ।
ଦୁଃଖୀ ହୋଇଥିବେ ଅଯୋଧ୍ୟା ନର ନାହା ॥୧୦
ଜାନେକୀ ତାଙ୍କର ଯେବଣହିଂ ପ୍ରିୟବତୀ ।
କ୍ଷଣେହେଂ ଶ୍ରୀରାମ ନଛାଡ଼ନ୍ତି କତି ॥
ରାଜାର ଝିଅ ସେ ଅତି ଅଲିଅଳ ।
କହି ନୁଆରିଲା ଶିଖାଇଲା ବୋଲ ॥
ସେ ପୁଣ ବନସ୍ତକୁ ଗୋଡ଼ାଇଣ ଗଲା ।

ଚଉଦ ବରଷ ଦୁଃଖେଣ ଦିନ ନେଲା ॥
ତହୁଂ ରାବଣ କପଟେ ନେଲା ହରି ।
କିସ କରିବ ସେ ଅବୋଧନୀ ନାରୀ ॥
ଅସୁର ଘରେ ସେହୁ ବରଷେକ ଥିଲା ।
ଯେବେ ଅଯୋଧ୍ୟାଏ କି ସୁଖ
ପାଇଲା ॥୨୦
ଏକାନ୍ତେ ଶ୍ରୀରାମଙ୍କୁ ସେବା କରିଥାଇ ।
ଦିନରେ ନିର୍ଭରେ ପୟରେ ଖଟଇ ॥
ମନଜାଣି ମଣୋହି ରାନ୍ଧିଣ ପରଷି ।
ପାଦ ମଚାଳଇ ଅନିଦ୍ରା ହୋଇ ବସି ॥
ଖଟଣି ସାମନ୍ତଙ୍କର ଯିସ ଅବା ବେଦନା ।
ଭିତରେ ବୁଲାଇ ତା ଜନେକର ଜେମା ॥
ଟା ତହୁଂ ହିତବନ୍ତୀ ଅଛି କାହିଂ ଆନ ।
ରୂପେଣ ପଟାନ୍ତର ଲକ୍ଷ୍ମୀର ସମାନ ॥
ସ୍ୱଭାବେ ଅଯୋନି ସମ୍ଭୂତ ବଇଦେଇ ।
ଋଷିମାନେ ବୋଲନ୍ତି କମଳଣୀ ଅଟଇ
ଏହି ॥୩୦
ଯେମନ୍ତ ଯୁବତୀକି ରାମ କେମନ୍ତ
ଛାଡ଼ିଲେ ।
ଯେତେ ଚତୁର ପ୍ରଭୁ ତରକେ ପଡ଼ିଲେ ॥
ନେଚ ଲୋକ କିସ ବୋଲିଲେ ଅବା
କାହିଂ ।
ସେ କଥାକୁ ଶୋଚନା କଲେ ରଘୁସାଇଂ ॥
ବ୍ରହ୍ମା ସମର୍ପଣ ଅଗ୍ନି ପରୀକ୍ଷା ଦେଲା ।
ଜଗତ୍ର ଦେଖିଛନ୍ତି ସେ କଥା ନୋହିଲା ॥
ଅତି ବୁଦ୍ଧିବନ୍ତ ହୋଇଲେ ନାଶଯାଇଂ ।
ଅତି ଶୁଚିବନ୍ତ ଅତ୍ୟାଚାରୀ ହୋଇ ॥
ଅତିହିଂ ସତ୍ୟେଣ ହଜଇ ଯତସତୁ ।
ଅତିହିଂ ଶ୍ରୀବନ୍ତକୁ ନିକଟେ ହୋଯେ ମୃତୁ ॥
ଅତିହିଂ ବଳବନ୍ତ ନ ପାରଇ ଚଳି ।
ଅତିହିଂ ଧର୍ମକଲେ ନ ସହଇ ମହୀଆଳି ॥
ଅତିହିଂ ପଢ଼ିଲେ ନରେ ହୋନ୍ତି ବାଇ ।
ଅତିହିଂ ଧନବନ୍ତ ନ ପାରଇ ଖାଇ ॥
ଅତି ଗ୍ୟାନବନ୍ତ ଆଗ କରଇ ପାପ ।
ଅତି ଭୟାତୁର ବହୁତ ଥାଇ ଧାପ ॥

ଅତିହିଂ ଜଷେଣ ନାହିଂ ନୋହେ ତୁଲ ।
ଅତିହିଂ ସନ୍ତୁ ହୋଇଲେ ବ୍ରହ୍ମହତ୍ୟା ତୁଲ ॥
ଅତିହିଂ ସନ୍ତୁପଣ କଲେ ରଘୁପତି ।
ଭଣନ୍ତର ବୋଲେ ଚେଜିଲେ
ଯୁବତୀ ॥୫୦
ବାବୁ ଶ୍ରୀରାମ ସେ ଏଡ଼େ ଅଗତି କିମ୍ପା
କଲୁ ।
ଯେଡ଼େ ଠାକୁର ଗୋଟା ଏହାସେ ଅରଜିଲୁ ॥
ଯେତେ ବୋଲି ବାଚ୍ୟ କରଇ ଲକ୍ଷଣ ।
ଶ୍ରୀରାମ ଅବିଗୁଣ ବାଛଇ ପୁଣ ପୁଣ ॥
ସୁମନ୍ତକୁ ବୋଇଲା ହୋ ଶୁଣ ମନ୍ତ୍ରୀବର ।
ରାବଣ ସଂଗେ ଆମ୍ଭେ କଲୁଯେ ସମର ॥
ଚଉଦ ଦିନଯାଏ ବିଶ୍ରାମ ନାହିଂ ଦଣ୍ଡେ ।
ଯୁଦ୍ଧ ବାଜିଥାଇ ରାକ୍ଷସ କପି ଦଣ୍ଡେ ॥
ବ୍ରହ୍ମ ଅସ୍ତ୍ର ସାମାନ୍ୟେ ଏକୁଂ ଏକଂ ଶର ।
ଏକାବାଣେ ପଡ଼ନ୍ତି ମର୍ଦ୍ଧୁତେକ
ବାନର ॥୬୦
ଇନ୍ଦ୍ରକୁ ଜିଣି ତା ନାମ ଇନ୍ଦ୍ରଜିତ ।
ଦୁଇ ବେଳ ଅଇଲା ରାବଣର ପୁତ୍ର ॥
ବେଳେକ ବାନ୍ଧିଲା ନାଗଫାଶ ଘେନି ।
ଗରୁଡ଼ ଆସି ଜୀଆଂଇ ଗଲା ସଇନି ॥
ଦୁତୀଅ ପ୍ରତାପେ ସେ ବ୍ରହ୍ମଶର ମାରି ।
ହନୁମନ୍ତ ଆଣିଲା ହେମବନ୍ତ ଗିରି ॥
ସୁଷେଣ ମନ୍ତ୍ରୀ ତହୁଂ ବାଛିଲା ମଉଷୋଧି ।
ସେଘାନ୍ତି ଜୀଇଂଲୁ ସେ ମହାତ୍ମାର ବୁଦ୍ଧି ॥
ଇନ୍ଦ୍ରଜିତ ପଡ଼ିବାରେ ଧାଇଂଲା ରାବଣ ।
ବେଳବୁଡ଼ ପରିଯନ୍ତେ କଲା ମହାରଣ ॥୭୦
ବ୍ରହ୍ମଶକ୍ତି ମୋତେ ମନ୍ତ୍ରିଣ ମାଇଲା ।
ସେ ଘାନ୍ତି ମରଣୁ ହନୁମନ୍ତ ଜୀଆଇଂଲା ॥
ଯେଡ଼େ ଘୋର ସଂଗ୍ରାମ କଲୁ ଯହିଂ ପାଇଂ ।
ବ୍ରହ୍ମା ସମର୍ପିଲେ ମୃତିବନ୍ତ ହୋଇଂ ॥
ତହୁଂ ଘେନିଆସି ଏଥି ଏହାକଲୁ ।
ମୋହରି ଗୋଚରେ ତାଙ୍କୁ ନିବାସିବାକୁ
ବୁଦ୍ଧିଦେଲୁ ॥
ଯେକାକରି ବନସ୍ତେ ଯାଉଂଅଛି ଛାଡ଼ି ।

ଯେହାକୁ ଯେବେ ପ୍ରମାଦ ଯେଥି ହାଦେ
ପଡ଼ି ॥
ଯେ ଦୋଷ କାହାର ହୋଇବ ସୁମନ୍ତ ।
ପଞ୍ଚମନ ଏକ କରି କହତ ଆମ୍ଭନ୍ତ ॥୮୦
ସୁମନ୍ତ ବୋଇଲା ହୋ ସଉମିତ୍ରୀ ଶୁଣ ।
ପୂର୍ବର କଥା ହାଦେ ପୁରାଣେ ବଖାଣ ॥
ଦୁର୍ବାସ୍ୟା ଋଷି ତହୁଂ ଅଛି ମୁଜଂ ଶୁଣି ।
ସେ କଥା କହଇ ତୋତେ ରଘୁକୁଳମଣି ॥
ବଶିଷ୍ଠ ଋଷିଙ୍କ ଆଶ୍ରମେ ଦୁର୍ଭାସ୍ୟା ।
କେବଣହିଂ ସମୟେ କଲେ ଚତୁର୍ମାସ୍ୟାଂ ॥
ତାହାକୁ ଦେଖିବ ବୋଲି ପିତା ତୋର ଗଲା ।
ଏକାରଥେ ଚଢ଼ି ସଙ୍ଗତେ ମୋତେ ନେଲା ॥
ବଶିଷ୍ଠଙ୍କ ଆଶ୍ରମ ନିକଟେ ଓହ୍ଲାଇ ।
ଦୁହେଂ ମହାଋଷି ନମସ୍କାର କଲୁ ଯାଇ ॥୯୦
ରାଜାଙ୍କୁ କଲ୍ୟାଣ କଲେ ଦୁଇତପଚାରୀ ।
ଏକ ଆରକେଣ ବାରତା ପଚାରି ॥
ଏମନ୍ତେ ଥୋକାଏକ ବେଳ ଯହୁଂ ଗଲା ।
କରପତ୍ର ଯୋଡ଼ି ପିତା ପଚାରିଲା ॥
ଶୁଣିମା ମାହାଋଷି ମୋହର ସିଧ୍ୟାନ୍ତ ।
ବ୍ରହ୍ମା ସମାନ୍ୟେ ତୁମ୍ଭେ ଦୁଇ ତପୋବନ୍ତ ॥
ମୋହର ଭାଗ୍ୟେ ତୁମ୍ଭେନ୍ତ ଦେଖିଲାଇଂ
ଆସି ।
କଥାଏ ପୁଛିବି ମୋତେ କହ ମାହାଋଷି ॥
କେତେକ ଆୟୁଷ ମୋର ଅଛଇ ଲେଖନ ।
ଶ୍ରୀରାମ ଲକ୍ଷଣ ଆବର ଭ୍ରଥ
ଶତ୍ରୁଘନ ॥୧୦୦
ଯେମାନଙ୍କର ଆୟୁଷ ଅଛଇ ଅବା
କେତେ ।
ବିଚାରି କହିବା ମୋତେ ଦୁଇ ତପୋବନ୍ତେ ॥
ଶ୍ରୀରାମର ପୁତ୍ର କିବା ହେବ ଉତପତି ।
ତାହାଙ୍କର ଆୟୁଷ କହ ମହାଯତି ॥
ଶୁଣି ଦୁଇଋଷି କହିଲେ ବିଚାରି ।
ଶ୍ରୀରାମ ନଦେଖିତୁ ମରିବୁ ଦଣ୍ଡଧାରୀ ॥
ଅନେକ କାଳ ହୋଇବେ ରାମ ରାଜା ।
ତିନିପୁର ଲୋକେ କରିବେ ତାଙ୍କୁ ପୂଜା ॥

ଭ୍ରାତ ଲକ୍ଷଣ ଆବର ଶତ୍ରୁଘନ ।
ଯେ ତିନି ପୋୟେ ତୋର ଅଟନ୍ତି
ସୁଜ୍ଞାନ ॥୧୦
ଶ୍ରୀରାମ ଚରଣେ ସେବା କରୁଥିବେ ।
ପରଦେଶ ମାରି ରାଜାହିଂ ହୋଇବେ ॥
ଥୋକାଏ କାଳେ ରାମ ସୀତ୍ୟାକୁ ଛାଡ଼ିବେ ।
ଯହୁଂ ଜନମୁଖେ ଅପକ୍ଷାତି ପାଇବେ ॥
ଅଶ୍ୱମେଧ ନାମେ କରିବେ ରାମ ଯାଗ ।
ଅଗ୍ନିମୁଖେ ଦେବତାଙ୍କୁ ଦେବେ ହବିର୍ଭାଗ ॥
ଏଗାର ସହସ୍ର ବରଷ ହେବେ ରାମ ରାଜା ।
ଅନେକ ସୁଖେଣ ବ୍ରତିବେ ଜନପ୍ରଜା ॥
ଜାନେକୀ ଗର୍ଭୁ ଉପୁଜିବେ ବେନିପୁତ୍ର ।
ତେବେ ସେ ରକ୍ଷା ହେବ ରଘୁକୁଳ
ଗୋତ୍ର ॥୨୦
ପୁଣି ବଇଦେହୀ ପଶିବେ ପାତାଳେ ।
ନିର୍ମୋହ ହୋଇ ପୁଣି ଯିବାକ ନିଜଆଳେ ॥
କନେକର ସୀତ୍ୟା ଶ୍ରୀରାମ ଗଢ଼ାଇବ ।
ତାହାକୁ ଘେନି ଅନେକ ଧର୍ମ ଅରଜିବ ॥
କାଳେଣ ବଇକୁଣ୍ଠେ ବସିବ ଯାଇଂ ।
ନବ ସହସ୍ର ବରଷ ତୁ ବଞ୍ଚିବୁ ନରସାଇଂ ॥
କାଳେଣ ଇନ୍ଦ୍ର ସଙ୍ଗେଣ ସ୍ୱର୍ଗେ ତୁ ବସିବୁ ।
ଦେବତାଙ୍କୁ ଘେନି ଯୁଗେ ଯୁଗେ ଥିବୁ ॥
ଶ୍ରୀରାମର ପୋଏ ଅନେକ କାଳ ଥିବେ ।
ନିଜ ଭୁଜବଳେ ପୃଥିବୀ ଲଘିବେ ॥୩୦
ପୁଣି ସମଏକେ ପାଇବେ ପିତୃଲୋକ ।
ପୁଛିଲୁ ଯାହା ଶୁଣ ହୋ ଅଯୋଧା ନାଏକ ॥
ଶୁଣି ଦଶରଥ ତ୍ରିପୁତି ହୋଇଲା ।
ଓଳେଗ ମେଳାଇଂଣ ବାହୁଡ଼ି ଅଇଲା ॥
ମୁହିଂ ହାଦେ ଲକ୍ଷଣ ହୋ ରାଜା ସଙ୍ଗେ
ଥିଲି ।
ଯେକଥାମାନ ତହିଂ ସମସ୍ତ ଶୁଣିଲି ॥
ତୁ କିମ୍ପା ଶ୍ରୀରାମକୁ ବୋଲୁଅଛୁ ମନ୍ଦ ।
ବିଧାତା ଭିଆଇଅଛି ଏନ୍ଥେକ ଦ୍ୱନ୍ଦ ॥
ଶୁଣିଣ ଲକ୍ଷଣ ଶୋକେ ଗଦଗଦ ।
କ୍ରୋଧଭରେ କହି ନ ପାରଇ ପଦ ॥ ୪୦

ପୁଣିହିଂ ସୁମନ୍ତ ଯେ ବୋଇଲା ତାକୁ ଚାହିଂ ।
ତୋତେ ସମଯେକେ ଛାଡ଼ିବେ ରଘୁସାଇଂ ॥
ଋଷିଙ୍କର ବୋଲ ନୁହଇ ପୁଣ ଆନ ।
ଶୁଣି ଶୋକକଲା ସୁମିତ୍ରା ନନ୍ଦନ ॥
ବିଧାତାକୁ ସୁମରି ବୋଲଇ ଏହା କଲୁ ।
ଯେତେ଼ ଲୀଳା ଗୋଟା କିଞ୍ଚିତେ ଭାଙ୍ଗିଲୁ ॥
ଯେସନେକ ଭାଳି ଯାଆନ୍ତି ରଥ ବାହି ।
ଯେକା ଦିନକରେ ଅଯୋଧ୍ୟାରେ ହେଲେ
ଯାଇଂ ॥
ରାତ୍ର ଦିବସେଣ ବାଟ ବହିଗଲେ ।
ଶଙ୍ଖପୁରା ନାମେକ କଟକେ
ହୋଇଲେ ॥୫୦
ସିଂହଦ୍ୱାରେ ରଥ ଗୁହାଇଲେ ଲକ୍ଷଣ ।
ଭାଳଇ କି ବୋଲିଣ ବୋଲିବି ଏହିଂକ୍ଷଣ ॥
କେବଣ ପ୍ରକାରେ ଦ୍ରଶନ କରିବି ।
କିସ କଥା କହି ତାଙ୍କ ମନ ହରିବି ॥
ଯେତେକ ବିଚାରି ଭିତରକୁ ଗଲା ।
ଶେଯ୍ୟା ମନ୍ଦିରେ ଯାଇଂ ଦ୍ରଶନ ସେହୁ
କଲା ॥
ଅପହୁତ ହୋଇ ଅଛନ୍ତି ରାମରାଣ ।
ମନେ ବିଚାରନ୍ତି ଯେ ନଇଲା ଲକ୍ଷଣ ॥
ଯେସନ ସମୟେ ମିଳିଲା ସଉମିତ୍ରୀ ।
ଦେଖି ତୋଷ ହୋଇଲେ ରଘୁପତି ॥୬୦
ନମସ୍କାର କରିଣ ଲକ୍ଷ୍ମଣ ଯାଇ ମିଳି ।
ନିକଟ ହୋଇଂ ଶ୍ରୀରାମ ଚରଣ ମଞ୍ଜାଳି ॥
ଶ୍ରୀରାମ ମୁଖ ଚାହିଂ ବୋଲଇ ବାରତା ।
ଭୋଦେବ ନିବାସି ଅଇଲି ମୁହିଂ ସୀତ୍ୟା ॥
ତୋହୋର ଆଗ୍ୟାଂ ପ୍ରମାଣେଣ ଗଲି ।
ଗଙ୍ଗାପାରି କରି ଛାଡ଼ିଣ ଅଇଲି ॥
ବାଲମ୍ଳିକ ଆଶ୍ରମ ଦିଶଇ ତହିଂକି ।
ତିଆରିଣ ଗୁହାଇ ଅଇଲି ଜାନେକୀକି ॥
ତୁ ଏବେ ଚିନ୍ତା ନ କର ରଘୁସାଇଂ ।
ଅକାରଣେ ଭାଳିବାର ପ୍ରୟୋଜନ
ନାହିଂ ॥୭୦
ସତ ରଖିଣ ଯେବେ ଛାଡ଼ିଲୁ ଦେବ ତାହା ।

ଜଗତେ ଯଶ ବୋଲି ପାଇଲୁ ରଘୁନାହା ॥
ଚନ୍ଦ୍ରହୁଂ ଅଧିକ ରହିଲା ତୋର କୀର୍ତ୍ତି ।
ଯୁଗେ ଯୁଗେ କଥା ରହିଲାକ ପୃଥୀ ॥
ତୋହୋର ବଳେଣ ସେ ହୋଅଇ ଏହା
କରି ।
ତୁ ଧର୍ମ ପୁରୁଷ ଅଟୁ ରାବଣାରି ॥
ଯିସ ଅବା ତୋତେ ଦୂଷିବାକୁ ଥିଲା ।
ସେ କଳଙ୍କ ଗୋଟା ଆଜହୁଂ ତୋର କ୍ଷଏ
ଗଲା ॥
ଭଲା ଛାଡ଼ିଲୁ ତୁ ନ କଲୁସି ମୋହ ।
ବଜ୍ରହୁଂ କଠିଣ ଅଟଇ ତୋର ଦେହ ॥୮୦
ଏହା ନକଲେଣ ପାଆନ୍ତୁନା ନିନ୍ଦା ।
ଅପାପୀ ପୁରୁଷ ତୁ ସଂସାରକୁ ଆନନ୍ଦା ॥
ଯେବଣ କଥାରେଣ ଯିସ ଅବିଗୁଣ ।
ତହିସେ ତାହା ଜାଣୁନା ରଘୁକୁଳ ରାଣ ॥
ଭାରିଯା ପୁତ୍ର ଅବା ହେଉ ଆଇଭାଇ ।
ଯେ ଅବା କୁଳକୁ କଳଙ୍କ ଉପୁଜାଇ ॥
ତାହା ଲେଛିଲେ ସେ ରହଇ ବଡ଼ପଣ ।
ଯାହାରେ ପ୍ରାଣନାଶ ହୋଅଇ ଆପଣ ॥
ବଳେ ଅବା ଯେହୁର ହରିବ ପର ବାସ୍ତୁ ।
କି ଅବା ଯୁବତୀଙ୍କର ଘେନିବାକ ସତୁ ॥୯୦
କିଅବା ବିଶ୍ୱାସ ଯେ କହିବ ଯାର ଆଗେ ।
ସେ ଯେବେ ଭାଳିବଟି ଅଇରିର ସଙ୍ଗେ ॥
ନୋହିଲେ ମଧ୍ୟସ୍ଥ କରିବ ଯେ ଯାହା ।
ଯତନେ ସମଧ ଅବା ନ କରିବ ତାହା ॥
ଯେମନ୍ତେ ଦୁଇକୁଳେ ହୋଅନ୍ତେ
ମରାମରି ।
ସେକଥାମାନ ଯେବେସେ ଥିବାକ ବିଚାରି ॥
ଯେମନ୍ତ ଲୋକମାନଙ୍କୁ ଧର୍ମ ନସହଇ
କ୍ଷଣେ ।
ଅବେଭାର କଥା ଏହାକୁ କହନ୍ତି ପୁରାଣେ ॥
ତହିଂକି ଜାନେକୀତ ପାଇଲା ଅପକ୍ଷାତି ।
ଯେବେ ଏହା ନ କରନ୍ତୁ ହୁଅନ୍ତା
ଅପଗତି ॥୧୦୦
ତୁ ଧର୍ମ ପୁରୁଷ ବିଚାରି ଭଲ କଲୁ ।

ସମୟେକେ ଭୋଗ କରିଣ ତ୍ୟାଗିଲୁ ॥
ଜଗତର ଲୋକେ ବୋଇଲେ ତୋତେ
ସାଧୁ ।
ମର୍ଯ୍ୟାଦା ରଖି ରାମ ତେଜିଲେ କୁଳବଧୂ ॥
ଯେବୋଲ ଅର୍ଜ୍ଜିଲୁ ତୋର ହୋ ଅତି ପୁନ୍ୟ ।
ମାୟା ସଂସାର ଯେ ଅନିତ୍ୟ ଜୀବନ ॥
କେ କାହାର ବାପ କେ କାହାର ପୁଅ ।
ମିଛେହେଁ ଅକାରଣେ ଲଗାଇଅଛି ମୋହ ॥
ଭାରିଯା ବୋଲି ଯାହା ବୋଲିଟି ଗୋସାଇଁ ।
ନିଜ ଭ୍ରଥାକୁ ସେହୁ ଆଦର ନ କରଇ ॥୧୦
ବିଚାରିଲେ ଆପଣେ ତୋ ତହୁଁ ମନ୍ଦ ନାହିଁ ।
ଯେବଣ ଜନନୀ ପେଟୁ ପୁତ୍ରଜାତ କରଇ ॥
ଘରଣୀ ପାଇଲେ ପୁତ୍ର ତାହାଙ୍କୁ ନୁଆରଇ ।
ସେହୁ ଯୁବତୀ ଯେଣେ ପୁତ୍ରହିଁ ପୁଣ ପାଇ ॥
ଯେହି ପ୍ରକାରେଣ ପୁଣ ଯାଉଅଚି କାଳ ।
ଭାରିଯାଟି ପ୍ରାଣକୁ ବଇରୀ ରଘୁବାଳ ॥
ପରମ ଯୋଗୀମାନଙ୍କର ଭାରିଯାକି ଅଛି ।
ଭାରିଯା ନଥିଲେଣ ଭୟେ ନାହିଁ କିଛି ॥
ସୀତୟା ଯେବେ ଆମ୍ଭ ସଙ୍ଗତେ ନଥାନ୍ତା ।
ଲଙ୍କାର ରାବଣ କାହାକୁହିଁ ହରି
ନ୍ୟନ୍ତା ॥୨୦
ଆମ୍ଭେ କିମ୍ପା ଯେତେ ଝଗଡ଼ା ପାଆନ୍ତୁ ।
ବନ ଜୀବ ରକ୍ଷ କପିଙ୍କି ଚାଟୁଥାନ୍ତୁ ॥
ଅଦୋଷେ ସମୁଦ୍ରରେ ବାନ୍ଧନ୍ତୁ କିମ୍ପା ବନ୍ଧ ।
ଦତ୍ୟଙ୍କର ସଙ୍ଗତେ କରନ୍ତୁ କିମ୍ପା ଦ୍ୱନ୍ଦ ॥
ଇନ୍ଦ୍ରଜିତ କିମ୍ପାଇ ବାନ୍ଧନ୍ତା ନାଗଫାଶେ ।
ରାବଣ ଶକ୍ତିଶର ମାରନ୍ତା କିମ୍ପା ରୋଷେ ॥
ଧର୍ମେଣ ପ୍ରାଣହାଦେ ପାଇଲୁସି ତୁହି ।
ସୀତ୍ୟା ନ ଆଣିଲେ ଆସନ୍ତୁ କେମନ୍ତ
ହୋଇ ॥
ଅଯୋଧ୍ୟାର ଲୋକେ ବୋଲନ୍ତେଟି ଏହା ।
ସ୍ତିରୀଙ୍କର ଅବିଗୁଣ ଅପାର ରଘୁନାହା ॥୩୦
ପୋଢୁ ପୋଢୁ ସେ କଥା ନ ଧରସି ମନେ ।
ସ୍ତିରୀ ଅନ୍ୟାୟେ କରନ୍ତି ଚଉଦ ଭୁବନେ ॥
ସ୍ତିରୀ ପାଇଂ ସେଟି ବାଳୀ ରାଜା ମଲା ।

ସ୍ତରୀର ଦୋଷେଣ ରାବଣ କ୍ଷୟେ ଗଲା ॥
ସ୍ତିରୀ ହୋଇ ଦୁର୍ଗା ମୟେଂଷା କଲା ନାଶ ।
ସ୍ତିରୀକି ବିଶ୍ୱାସ ଯିବାର ବଡ଼ଦୋଷ ॥
ନୋହିଲେ ନଳ କିମ୍ପା ବସ୍ତ୍ର କାଟିଗଲା ।
ହରିଚନ୍ଦନ ରାଜା ମାଇପ ପୁଅ ବିକ୍ରେକଲା ॥
ଆଦିତ୍ୟ ଦେବତା ସ୍ତିରୀରେ କ୍ଷୟେ ହୋଇ ।
ସ୍ତିରୀର ଦୋଷରେ ଚନ୍ଦ୍ର ସମ୍ପୋର୍ଣ୍ଣ
ନୋହଇଂ ॥୪୦
ସ୍ତିରୀରୁ ସସ୍ରଯୋନି ହୋଇଲା ବାସେବ ।
ସ୍ତିରୀହୁଂ ମନ୍ଦପ୍ରାଣୀ ନାହିଂଟି ରାଘବ ॥
ତୁ ସତ୍ୟ ପୁରୁଷ ଜାଣିଣ ତ୍ୟାଗ କଲୁ ।
ଇହଲୋକ ପରଲୋକ ଦୁହିଂକି ଜିଣିଲୁ ॥
ଯେବେ ସେ କଥାକୁ ନକର ଶୋଚନା ।
ମାୟା ସଂସାରଏ ଦଇବ ରଚ୍ଚନା ॥
ବଢ଼ାଇଲେ ବଢ଼ଇ ଛିଡ଼ାଇଲେ ଛିଡ଼ଇ
କୋହ ।
ତୁ କାହା ନଜାଣୁ ଅବା ଦଶରଥ ପୁଅ ॥
ଯୁବାକାଳେକ ତୁ ସୁଖ ଭୋଗକଲୁ ।
ଚତୁର୍ଥ କାଳେ ସିନା ଉଦାସ ହୋଇଲୁ ॥୫୦
ଯେ ଧର୍ମକଥା ପୁରାଣେ ଏହା ଗାଇ ।
ଯେମନ୍ତ ହୋଇଲେଣ ବ୍ରହ୍ମଲୋକ ଯାଇ ॥
ଯେବେତ ପୁଣ୍ୟ ରାମ କରସି ଅନେକ ।
ଯେବଣ ପ୍ରକାରେ ଯାଇ ବ୍ରହ୍ମଲୋକ ॥
ଅନ୍ତକାଳେ ଯୋଗ ସାଧିବ ବୋଲିଅଛି ।
ଶରୀରାର୍ଥ କଥାରେ ତୁମ୍ଭେ ପଶ ରଘୁବଛି ॥
ଯେମନ୍ତେ ଏହି ଦେହେ ସୁରପୁର ଯାଇଂ ।
ଯେଥର ଗ୍ୟାନ ଯେବେ ତହିଂ ଯାଇ ପାଇ ॥
ପରଚେ ପିଣ୍ଡ ପଣ୍ଡିତ ବୋଲି ତାହାକୁ
ବୋଲନ୍ତି ।
ପଞ୍ଚଶ ପ୍ରକୃତି ଯେହୁ କରିଅଛି ଶ୍ୟାନ୍ତି ॥୬୦
ଦଇବ ମାୟାରୁ ଯେ ହୋଇଲା ଉଦାସ ।
ଜୀବନକୁ ଖଟାଇବ ପରମହଂସ ପାଶ ॥
ଶୁଣି ନ ଶୁଣିମ ଦେଖି ନ ଦେଖିବ ।
ଅନୁକ୍ଷଣେ ପରମହଂସକୁ ଗୁଣୁଥିବ ॥
ଶୂନ୍ୟର ଭିତରେ ଯେ ଅଛି ଶୂନ୍ୟକାଏ ।

ଶୁଦ୍ଧ ସ୍ଫଟିକର ତରଳ ନୀଳବର୍ଣ୍ଣ ପ୍ରାଏ ॥
ଦ୍ରପଣର କାନ୍ତି ଅଗ୍ନିର ଦ୍ରୋଛନା ।
ସେ ସେ ଶୂନ୍ୟ ଠୂଳ ବନାଯେ ଅବନା ॥
ଜଳେ ନ ତିନ୍ତଇ ଅଗ୍ନିରେ ନ ପୋଡ଼ଇ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ମିଳିଲେ ଯେହ୍ନେ
ଦିଶଇ ॥୭୦
ବ୍ରହ୍ମପୁରୁଷ ସେ ଶରୀରେ ପ୍ରକାଶଇ ।
ପ୍ରତକ୍ଷେ ଦେଖାଦିଅଇ ଗ୍ୟାଂନୀ ଯେବେ
ହୋଇ ॥
ସେ ସେ ପୁଣ୍ୟ ଆପଣ ଶରୀରେଣ ଅଛି ।
ଆପଣେ ଆପଣାକୁ ଦେଖ ରଘୁବଛି ॥
ଆତ୍ମା ପରଚେ ହୋଇଲେ ନ ଛାଡ଼ଇ ପିଣ୍ଡ ।
ଆପଣାକୁ ଚିହ୍ନିଲେ ସେ ଆପଣେ ବ୍ରହ୍ମାଣ୍ଡ ॥
ମାତାପିତା ସଂଯୋଗେ ଯେବଣ ବୀର୍ଯ
ରହିଂ ।
ଯେ ଯାହା ସ୍ୱରୂପେ ଅନରୂପେ ହୋଇଂ ॥
ସେ ସେ ମହାରସ ଆବୋରିଅଛି ପିଣ୍ଡ ।
ସେ ସେ ପ୍ରାଣପୁରୁଷ ଅଟଇ ବିନ୍ଦୁଖଣ୍ଡ ॥୮୦
ଯେ ଯେବେ ତଳକୁ ଖସି ବାହାର ହୋଇଂ ।
ତତକ୍ଷଣେ ପ୍ରାଣୀମାନେ ମୃତ୍ୟୁପାଇ ଶୋଇଂ ॥
ଯେଣେ ଜାତହୋଇ ତେଣେ ସେ ମରଣ ।
ରସ ଗଳିଗଲେଟି ତୁ ଅକାରଣ ॥
ତାହାଥିଲାଠାକୁ ସେ ପ୍ରାଣଲିଙ୍ଗ ବୋଲି ।
ଚାରିକତି ଅସ୍ତି ଅଛି ବେଢ଼ ବୁଲି ॥
ନିର୍ମଳ ପଦାର୍ଥ ସେ ସକଳବର୍ଣ୍ଣ ତେଜ ।
ତାହାସେ ଚନ୍ଦ୍ର ବୋଲିଣ ଶୁଣ ରଘୁରାଜ ॥
ଯେ ଅବା ଯୋଗାତେଣ ଯୁଗତ ହୋନ୍ତି
ପ୍ରାଣୀ ।
ସେହୁ ସେ ମହାରସ ତୋଳନ୍ତି ଉଜାଣି ॥୯୦
ହେଠକଇ ନ ଛାଡ଼ଇ ଉଠିଲେ ଯହୁଁ ମରି ।
ତେଣୁ ସେ ମହାତ୍ମାଯେଂ ରମଣୀ ଯତ୍ନ
କରି ॥
ପବନ ଆକେଟିତ ହେଲୁ ହେଲୁ ତୋଳେ ।
ରସ ଶୁଖାବନ୍ତି ହୁଂକାର ହାଦୋଳେ ॥
ସଂସାର ମୁଛନ୍ତି ଆକାଶକୁ ବଳାବନ୍ତି ।

ମନ ବନ୍ଦୀ କରି ପବନ ଚଳାନ୍ତି ॥
ଜଠର ହୁତାଶନ ଘେନିଣ ବାତ ବହିଁ ।
ଗଙ୍ଗାଜଳ ସମାନେ ମାତୃକା କଠିଣ
ହୋଇଂ ॥
ବେଲୁଂ ବେଲୁଂ ମରୁତ ନାଗିଣ ରସ ଶୁଖି ।
ଅମୃତ ପାନେ ହିଂସା କରୁଥାଇ
ଭୋଖୀ ॥୧୦୦
ମହାତମାର ମନ ଖଟାଇ ଥାଇ ତହିଂ ।
ଦେଖିବା ଶୁଣିମା କିଛିହିଂ ଆନ ନାହିଂ ॥
ମନ ନ ଚଳଇ ପବନ ନ ବହଇ ତହୁଂ ।
ଅନୁଛନେ ପବନ ଅଛଇ ବିନ୍ଦୁ ବହୁ ॥
ଧାତୁ ଶୁଖିଲେ ପବନେ ଉଡ଼ଇ ।
ତେଣୁ ଜ୍ଞାନୀଙ୍କର ଭ୍ରାନ୍ତି ସେ ଛାଡ଼ଇ ॥
ପିଣ୍ଡର ସଙ୍ଗେ ଯେ ପ୍ରାଣ ସଂଘାରିଲା ।
ଲୁହାର ସଞ୍ଚାର ଯେହ୍ନେ ଗୁଖକୁ ଜଡ଼ିଲା ॥
ତେସନଙ୍କ ତନୁକୁ କିଛି ନାହିଂ ଭଏ ।
କାହାକୁ ହିଂ ଆଉ ହରି ନେମ ଜନ୍ତୁରାଏ ॥୧୦
ଭୁଞ୍ଜିଲାର ଭାତକୁକି ନେଇ ପାରଇ ଚୋର ।
ମନପବନ ପିଣ୍ଡ ଯେ ଏକତ ପ୍ରକାର ॥
ଇଚ୍ଛା ସହିତେଣ ସକଳ ପୁରେ ଯାଇ ।
ବ୍ରହ୍ମ ସାଧୁ ସୁଖେ ଚମକ ମରାଇଂ ॥
ବିନ୍ଦୁ ସେ ବ୍ରହ୍ମାଣ୍ଡ ତାହାକୁ ଯେବେ ଜିଣି ।
ହେଠକଇ ନ ମେଲିଣ ତୋଳିବ ଉଜାଣି ॥
ସେ ପ୍ରାଣୀଙ୍କି ହାଦେ କେବେହେଂ ନୋହେ
ମୃତ୍ୟୁ ।
ଅଷ୍ଟାଙ୍ଗ ଯୋଗର ଏହିସେ ପରମଶତ୍ରୁ ॥
ଆଉମାନେ ଯାହା କରନ୍ତି ସାଧନ ।
କୋଇଲି ସୂତାରେ କି ମତ୍ତଗଜ
ବନ୍ଧନ ॥୨୦
ତେଣୁ ସେ ରୋଗ ତନୁରେ ଆୟୁଷ ହତ
ହୋଇଂ ।
ପରମବ୍ରହ୍ମ ପୁରୁଷକୁ ପରତେ ନୋହଇ ॥
ପ୍ରକୃତିକି ଅନ୍ତର କଲା ଯେବଣ ପ୍ରାଣୀ ।
ଯାହାରେ ମହାରସ ନ ବହଇ ଉଜାଣି ॥
ମଞ୍ଚର ଗଙ୍ଗା ଘେନି ଆକାଶ ନ ଧୋଇଲା ।
ଇଡ଼ିମୁଖେ ଧାତୁ ବାହାର ଯେବେ କଲା ॥
ଅଜପା ନଜପିଲା ନ ଚିହ୍ନିଲାକ ଆତ୍ମା ।
ତାହାକୁ କେମନ୍ତେ ବୋଲିବା ମହାତମା ॥
ଜୀବ ପରମ ଯେବେ କରଇ ମିଶାମିଶି ।
ତାହାକୁ ସେ ପରମ ଯୋଗୀ ବୋଲି
ପରଶଂସି ॥୩୦
ଯେବେ ତୁ ରଘୁନାଥ ନ ଜାଣୁଟି କାହା ।
ତ୍ରୈଲୋକ୍ୟ ଈଶ୍ୱର ତୁ ବ୍ରହ୍ମାଣ୍ଡର ନାହା ॥
ମୁହିଂ କିସ ନାଥ ଚିଆରିବି ତୋତେ ।
ତୁ ସେ ବେଳେ ବେଳେ ବୁଦ୍ଧି ଦେଉ
ମୋତେ ॥
ଏକଥା ମୁଂ ତୋତେ ପ୍ରସଙ୍ଗେଣ କହିଲି ।
ଯେ ତୋର ଆଗ୍ୟାଂ ଘେନି ସୀତ୍ୟା ନିବାସି
ଅଇଲି ॥
ଫିଟିଲା ଭ୍ରାନ୍ତି ତୋର କୁଳରୁ ଯିସ ଲାଜ ।
ମନେ ମନେ ବିଚାର କରନ୍ତି ରାମରାଜ ॥
ଲକ୍ଷ୍ମଣରରୁ ମୁଖୁଂ ରାମ ଏସନେକ ବାଣୀ
ଶୁଣି ।
ଶୁଣି ସନ୍ତୋଷ କୋଦଣ୍ଡ କାଣ୍ଡ ପାଣି ॥୪୦
ହସି ବୋଇଲେ ତୁ ଭଲା ସଉମିତ୍ରା ।
ତୋହାର ପରାଏ ମୁଂ ନ ଦେଖିଲି ଆନ
ମନ୍ତ୍ରୀ ॥
ସୀତ୍ୟାକୁ ନଦେଖି ମୁଂ ଦହି ହେଉଥିଲି ।
ତୋର କଥା ଶୁଣି ଶୀତଳ ହୋଇଲି ॥
ତୋହୋରେ ସେ ଭେଟାଇ ହୁଅଇ ଏମାନ ।
ଭଲା ମୋତେ ଶ୍ୟାନ୍ତି କରାଇଲୁ ସୁମୈତ୍ରୀ
ନନ୍ଦନ ॥
ଚାରିଦିନ ହେଲା ମୁଂ ନ ଦେଖିଲି ତୋତେ ।
ଭାଳୁଥିଲି ଭୋଖିଲା ଭ୍ରମର ଯେମନ୍ତେ ॥
ଯେବେ ଦେଖିଲାରୁ ସବୁ ଦୁଃଖ ଗଲା ।
ଯେତେ ବୋଲି ଶ୍ରୀରାମ ଶେଯ୍ୟାରୁ
ଉଠିଲା ॥୫୦
ନିତ୍ୟକର୍ମ ସାରି ଆସ୍ଥାନେ ବିଜେ କଲେ ।
ଅମନାତ୍ୟଗଣକଇ ବସାଇ କହିଲେ ॥
ବଶିଷ୍ଟଙ୍କୁ ବୋଇଲେ ଶୁଣିମା ତୁମ୍ଭେ ଋଷି ।
ଅଯୋଧ୍ୟା ଲୋକେ କହିଲେ ସୀତ୍ୟାକୁ ମୋର
ଦୋଷୀ ॥
ଯେବେ ଜାନେକୀକି ଛାଡ଼ିଲାଇଂ ମୁହିଂ ।
ରହିଲା ଜନେକ ଝିଅ ଗଙ୍ଗା ପାରି ହୋଇ ॥
ଲକ୍ଷଣ ସୁମନ୍ତ ଦୋହେଂ ଯାଇଥିଲେ ।
ନିଗମ ବନେ ନେଇଂ ନିବାସି ଅଇଲେ ॥
ଶୁଣି ସଭାଜନେ ହୋଇଲେ ତରସ୍ତ ।
ଏହା କିମ୍ପା କଲୁ ବୋଇଲେ ବ୍ରହ୍ମସୁତ ॥୬୦
ଶ୍ରୀରାମ ବୋଇଲେ ମୁଂ ନ ପାରଇ ସହି ।
କିଛୁତ ଲୋକ ମତେ ପଛେ କଥା କହି ॥
ଗଲା ସୀତ୍ୟା ନାହିଂ ଆଉ ମୋର ଚିନ୍ତା ।
ଯେବେ କଥା ମୋର ଶୁଣ ତପୋବନ୍ତା ॥
ଶୁଦ୍ଧ ସୁବର୍ଣ୍ଣର ଅମୂଲ୍ୟ ପ୍ରତିମା ।
ଯେସନେକ ଦିଶଇ ଜନେକର ଜେମା ॥
ନଖ ମୁଖ ନାସିକା ନୟନ ବକ୍ଷସ୍ଥଳ ।
ଭୁଜ ଯଉବନ ଚରଣ ଯୁଗଳ ॥
ସେହି ସଂଯାତେଣ ସୁନାରୀ ଚରାଇ ।
ଆଜର ମଧ୍ୟେରେ ଗଢ଼ାଇବ ତୁମ୍ଭେ
ଥାଇଂ ॥୭୦
ତେବେ ସେ ମନ ମୋର ହୋଇବାକ
ଥିର ।
ରକ୍ଷା କରିବେ ସେ ଦୋହୋରା ବଂଶ୍ୟାନର ॥
ଅଭିଷେକ ହୋଇବି ମୁଂ ତାହାକୁ କୋଳେ
ଧରି ।
ହତପାଟ ହୋଇଂ କିମ୍ପା ଥିବି ରାଜ୍ୟ କରି ॥
ଯେତେ ବୋଲି ଭଣ୍ଡାରୁ ଲକ୍ଷେ ସୁବର୍ଣ୍ଣ
ଦେଲେ ।
ବଶିଷ୍ଟ ଉଦିଷ୍ଟାଣି ହୋଇଣ ଗଢ଼ାଇଲେ ॥
ଶ୍ରୀରାମ ଛାମୁରେ କଲେ ତାହା ନେଇଂ ।
ଦେଖି ଶୋକଭର ହେଲେ ରଘୁସାଇଂ ॥
କ୍ରୋଧ ସଂଘରିଣ ପୁଣ ସୁମନ୍ତକୁ ଆଗ୍ୟାଂ
ଦେଲେ ।
ସୀତ୍ୟାର ଯେତେ ଆୟେ ଅଛଇ
ବୋଇଲେ ॥୮୦
ଯିସ ଯିସ ବସ୍ତ୍ର ଯିସ ପରିଚ୍ଛଦ ।

ଦାସୀଗଣ ଅଛନ୍ତି ଯେ ଅନ୍ତେଶ୍ୱର ମଧ୍ୟ ॥
ଆବର ଯେତେ ସୀତ୍ୟାର ସଖୀମାନ ।
ଯେହାକୁ ସେବା କରିଥିବେ ଅଭିଛନ୍ନ ॥
ଆମ୍ଭର ଆଗ୍ୟାଂରେ ସେ ନ କରିବେ ଚିନ୍ତା ।
ଜାନେକୀ ସତ୍ୟ କରାଇଂ ଅଛଇଂ ଆମ୍ଭନ୍ତା ॥
ସ୍ୱଭାବେ ଆମ୍ଭେତ ନ ଛୁଉଂ ପରନାରୀ ।
ଯେକ ସ୍ତିରୀବ୍ରତ ଅଛଇଂ ଆମ୍ଭରି ॥
ତେଣୁକରି ବିଭା ନୋହିଲୁ ଆନ କନ୍ୟା ।
ଅଭିଷେକ ନିମନ୍ତେ ଗଢ଼ାଇଲୁ ସୀତ୍ୟା
ସିନା ॥୯୦
ଯେହାକୁ ଖଟିଣ ଥିବେ ପରିଜନେ ।
ଯେ ସୀତ୍ୟା ନୁହଇ ବୋଲି ନ ଧରି ମନେ ॥
ଯେତେ ବୋଲି ଦିବ୍ୟ ବସ୍ତ୍ର ପିନ୍ଧାଇଲେ ।
ଜାନେକୀର ପୂର୍ବ ଆଏମାନ ଖଞ୍ଜାଇଲେ ॥
ଓଢ଼ଣା ଦେଇଂ କଲେ ନେଇଂ ଠିଆ ।
ଦେଖି ସଲିଲାକ ଶ୍ରୀରାମର ହିଆ ॥
ରାଇଲେ ଯେସନେକେ ଉଭା ହୋଇଥାଇ
ସୀତ୍ୟା ।
ପ୍ରତ୍ୟକ୍ଷେ ଅଟେ ସେକି ଜନେକ ଦୋହିତା ॥
ଶ୍ରୀରାମ ବୋଇଲେ ଏବେ ଭିତରକୁ ନିଅ ।
ପଞ୍ଚାମୃତ ଦେଇଂ ମାଜଣା କରାଅ ॥୧୦୦
ଶୁଣି ମୁଦୁସୁଲୀମାନେ ଘେନି ତାକୁ ଗଲେ ।
କଉଶୁଲ୍ୟା ଛାମୁରେ ନେଇଂ ସୁବର୍ଣ୍ଣ ସୀତ୍ୟା
କଲେ ॥
ଦେଖିଣ ରାମମାତାର ନ ସ୍ଫୁରଇ କିଛି ।
ମୁଦୁସୁଲୀମାନଙ୍କୁ କତିକି ରାଇଂ ପୁଚ୍ଛି ॥
କେବଣ ଚରିତ୍ର ଏ ବେଗେ ମୋତେ କହ ।
ଏହା ଦେଖି ଆଗ୍ୟାଂନ ହୋଇଲା ମୋର
ଦେହ ॥
ମୁଦୁସୁଲୀମାନେ କହନ୍ତି କରଯୋଡ଼ି ।
ବହୂ ତୁମ୍ଭର ବର ମାଗିଲାକ ଲୋଡ଼ି ॥
ଗଙ୍ଗାକୁ ସ୍ନାହାନ କରିବ ବୋଲି ଗଲା ।
ଯେବେ ଲକ୍ଷଣର ତାକୁ ନିବାସି
ଅଇଲା ॥୧୦
ଅଯୋଧ୍ୟାର ଲୋକେ ଅପକ୍ଷାତି ଦେଲେ ।
ସୀତ୍ୟାକୁ ଲଙ୍କପତି ହରିଲା ବୋଇଲେ ॥
ସେ କଥା ଶ୍ରୀରାମର ଆଗେ ଜଣାଇଲା
ଚାର ।
ତାହା ଶୁଣି ରଘୁନାଥ ଭାଳିଲେ ଅପାର ॥
ମନେ ମନେ ବିଚାରି ତୁନି ହୋଇଥିଲେ ।
ଛଇଳ ପ୍ରକାରେ ସେ ସୀତ୍ୟାକୁ ଭଣ୍ଡାଇଲେ ॥
ବୋଇଲେ ଜାନେକୀ ତୁ ହୋଇଲୁ
ଗର୍ଭବାସ ।
କେବଣ ପଦାର୍ଥକୁ କରିଛୁ ମୁହାଂସ ॥
ସୀତୟା ବୋଇଲେ ମୁଂ ଅରଣ୍ୟକୁ ଯିବି ।
ଗଙ୍ଗା ଜଳେ ପଶି ସ୍ନାହାନ କରିବି ॥୨୦
ତପୀଜନଙ୍କୁ ମୁଂ ଫଳମୂଳ ଦେବି ।
ସେହିଦିନ ମଧ୍ୟେ ବାହୁଡ଼ି ଆସିବି ॥
ଯେସନେକ କଥାକୁ ବଳଇ ମୋର ଚିତ୍ତ ।
ଶୁଣି ରଘୁନାଥ ହୋଇଲେ ଉଷତ ॥
ଲକ୍ଷ୍ମଣର ଆଗେ ଡିଆରିଲେ ଯାଇ ।
ଜାନେକୀକି ବନସ୍ତେ ଛାଡ଼ି ଆସ ଯାଇଂ ॥
ସେ କଥା ମଣି ତ ନଗଲା ତୁମ୍ଭ ବହୂ ।
ବିଚାରିଲା ମୋତେ ଦୟାକଲେ ପ୍ରଭୁ ॥
ଯାହା ବୋଇଲଇଂ ତାହା ମୋତେ କଲା ।
ଯେତେ ବୋଲି ଏକାରଥେ ଚଢ଼ିଗଲା ॥୩୦
ଲକ୍ଷ୍ମଣ ସୁମନ୍ତ ଦୋହେଂ ଘେନି ତାକୁ
ଗଲେ ।
ଗଙ୍ଗା ପାରିକରି ନିବାସି ଅଇଲେ ॥
ସୀତ୍ୟାଗଲେ ରାମ ହୋଇଲେକ ବାଇ ।
ମୁରୁଛି ନ ପାରିଣ ଏହାକୁ ଗଢ଼ାଇ ॥
ସୁବର୍ଣ୍ଣର ସୀତ୍ୟାଏ ଅମୂଲ୍ୟ ପ୍ରତିମା ।
ଆପଣେ ନିର୍ମାଇ ଗଲାକ ବିଶ୍ୱକର୍ମା ॥
ଶ୍ରୀରାମ ବୋଇଲେ ଏହା ଭିତରକୁ ନିଅ ।
ଜନନୀମାନଙ୍କର ସନ୍ନିଧ୍ୟେ ନେଇଂ ଦିଅ ॥
ପଞ୍ଚାମୃତେଣ କରାଅ ସ୍ନାହାନ ।
ସୀତ୍ୟାର ଅଛଇ ଯେତେକ ଆଏ
ଅଳଙ୍କାରମାନ ॥୪୦
ଦାସୀ ପରିବାରୀ ସହୀ ସଂଘାତୁଣୀ ।
ଯେହାକୁ ଆଚ୍ଛାଦି ଥିବେଟି ତରୁଣୀ ॥
ନିତ୍ୟେହେଂ ମଣୋହି ବେଳେ ଦ୍ରଶନ
କରାଇବ ।
ଦୋହୋରା ଅଗ୍ନିର ନିକଟେ ଥୋଇଥିବ ॥
ତୁମ୍ଭେମାନେ ଏହା ରଖିବ ଯତ୍ନ କରି ।
ପୂର୍ବେ ଯେଣ୍ଣେ ପାଳ ଜନେକ କୁମାରୀ ॥
ବେଶ ବେସନ ମାଜଣା ଯିସ ରୀତି ।
ପୂର୍ବେ ଯେସନେକ ଥିଲା ମହାସ୍ୟତୀ ॥
ସେହି ପ୍ରକାରେଣ ଏହି କନ୍ୟା ଥିବ ।
ଯେହାକୁ ଘେନି ରାମ ଅବିଷେକ
ହୋଇବ ॥୫୦
ଆବର କଥାଏ ବୋଇଲେ ଗୋସାଇଂ ।
ଜନନୀମାନଙ୍କୁ ତୁମ୍ଭେ କହିଆସ ଯାଇଂ ॥
ପ୍ରାଣର ପୀରତି ଭାରିଯା ମୋର ଗଲା ।
ଆଉ ଲୋକଙ୍କର କି ଅବା ହୋଇଲା ॥
ମୁଇଂ ତାହା ମୁଚ୍ଛିଲି ଧଉର୍ଯ୍ୟ ପଣ ଘେନି ।
ଅନ୍ତେଶ୍ୱରେ ଯେତେ ଅଛନ୍ତି କାମେନୀ ॥
ସୀତ୍ୟାର ତିନିଭଗ୍ନୀ ଦାସୀ ପରିବାରୀ ।
ମାତାଗଣ ସହିତେ ଆବର ଯେତେ ନାରୀ ॥
ଯେମାନ ମନେ କିଛି ଚିନ୍ତା ନ କରିବେ ।
ଯେହାକୁ ସୀତୟା ପ୍ରାଏ ମଣିଥିବେ ॥୬୦
ଯେ ଅବା ରୋଦନ କରିବେ ଆଗ୍ୟାଂ
ମେଣ୍ଟି ।
ସେ ମୋର ଦୋରେହା ନିଶ୍ଚୟେଂ ଜାଣିଟି ॥
ଯେସନେକ ଆଗ୍ୟାଂ ଦେଲେ ନୃପବର ।
ଶୁଣିଣ ବିସ୍ମୟ ହେଲେ ଅନ୍ତେପୁର ॥
କଉଶୁଲା ବୋଇଲା ବିଧାତା ଯେହା କଲା ।
ପୁତ୍ରବଧୂ ମୁଖ ଚାହିଂତ ନ ଦେଲା ॥
କଏକୟା ବୋଇଲା ଗୋ ନ ଜାଣ କି
ତୁମ୍ଭେ ।
ମାସ ଜିଣିଲାଉଂ ତାର ବୁଝିଲୁନି ଆମ୍ଭେ ॥
ସେଦିନୁ ପ୍ରକୃତି ଛାଡ଼ିଣ ସେ ଉଗ୍ରୁରି
ହୋଇଲା ।
କଏକୟାକୁ ରୁହାଇ ସୁମିତ୍ରା
ବୋଇଲା ॥୭୦
ଯିବାକାଳେ ତାକୁ ନ ଦେଖିଲ ନିକି ।

ଆମ୍ଭେମାନେ ତା'ର ଗୁରୁଜନଟିକି ॥
କଥା କହୁଂ କହୁଂ ବାହାର ହୋଇଗଲା ।
ଯେ ବୋଲ ଶୁଣିଣ ମନମାୟା ବୋଇଲା ॥
ଆଜହୁଂ ପକ୍ଷେକେ ଯେ ଭାଳଇଂ ମୋର
ସଙ୍ଗେ ।
ବୋଲଇ ଥିବି ମୁଂ ତପୀଗଣ ସଙ୍ଗେ ॥
ଯେ ରତ୍ନ ମନ୍ଦିରେ କାର୍ଯ୍ୟ ମୋର ନାହିଂ ।
ସମଏକ ଭୋଗ କଲଇ ନିଜ ସାଇଂ ॥
ଏହାଶୁଣି ବୋଇଲେ ଦାସୀଗଣମାନେ ।
ବରଷେ ହୋଇଲା ପ୍ରକୃତି ତାର
ଆନେ ॥୮୦
ବନେଣ ବୁଲିବା ଋଷିଙ୍କ ସଙ୍ଗେ ଥିବା ।
ପର୍ବତ ଉପରକୁ ଫୁଲ ତୋଳି ଯିବା ॥
ଯେହା ସେ କଥା ପ୍ରସଙ୍ଗେଣ କହି ।
ଯେହ୍ନେକେ ବୋଲ ଲୋକେ କୁହାକୁହି
ହୋଇ ॥
ସୀତ୍ୟାର ତିନିଭଗ୍ନୀ ରୋଦିଲେ ଅପାର ।
ବୋଇଲେ ଜଗତ ହୋଇଲା ଅନ୍ଧକାର ॥
କେବଣ ବନସ୍ତେ ଅଛୁସି ଗୋ ମାଏ ।
ଅତି ସୁକୁମାର ଅଟଇ ତୋର କାଏ ॥
କିସ ଖାଇଣ ତୁ ଦିନ ବଞ୍ଚିବୁ ଗୋ ଏକା ।
ଚନ୍ଦ୍ରଶାଳାପୁରେ ଯେ କରୁଥାଉ ଶଙ୍କା ॥୯୦
ରାଜାର ଝିଅ ହୋଇ ନିରେଖ ହୋଇଲୁ ।
ଆମ୍ଭମାନଙ୍କୁ ଗୋ କାହାକୁ ଦେଇଂଗଲୁ ॥
ଯିବାବେଳେ କିମ୍ପା ଗୋ ନ ନେଲୁଟି
ସଙ୍ଗେ ।
କଥା ନ କହି ଗଲୁ କେଉଁ ବାଗେ ॥
ଯେସନେକ ବୋଲିଣ ରୋଦନ ଯହୁଂ
କଲେ ।
ସମସ୍ତେ ନୟନରୁ ଲୋତେକ ପକାଇଲେ ॥
ମୁଦୁସୁଲୀମାନେ କରାଇଲେ ଶାନ୍ତି ।
ବୋଇଲେ ନୃପତି ଆଗ୍ୟାଂ ଦେଇଛନ୍ତି ॥
ନକର ଶୋକ ତୁମ୍ଭେ ତୁନି ହୁଅ ।
ଯେହାକୁ ସୀତ୍ୟା ବୋଲିଣ ଆଦରିଣ
ଥାଅ ॥୧୦୦

ଆବର ଜାନେକୀକି ଦେଖିବ ତୁମ୍ଭେ
କାହିଂ ।
କେଉଂ କତି ଗଲା ସେ ସପନ ପ୍ରାଏ
ହୋଇ ॥
ଶୁଣିଣ ସମସ୍ତେ ଶୋକ ସମ୍ଭାଳିଲେ ।
ମୂଛି ନ ପାରିଣ ହୃଦରେ ଭାଳିଲେ ॥
ସୀତ୍ୟାର ସଖୀଜନେ ପରିବାରୀ ସହିତେ ।
ସୁବର୍ଣ୍ଣ ପ୍ରତିମା ପାଶେ ମିଳିଲେ ତୁରିତେ ॥
ପଞ୍ଚାମୃତ ଯୋଗାଡ଼ ସୁମନ୍ତ ଦେଲା ଆଣି ।
ତାହା ନିଉଡ଼ାଇଂ ସ୍ନାହାନ କରାଇ ପାଣି ॥
ସୁଗନ୍ଧ ଶାମଳିଣ ପଖାଳିଲେ ଅଙ୍ଗ ।
ଦେହ ପୋଛି ପାଟ ପିନ୍ଧାଇଲେ ରଙ୍ଗ ॥୧୦
ସୀତ୍ୟାର ଅଳଙ୍କାରମାନନ୍ତ ଲାଇଲେ ।
ଓଢ଼ଣା ଦେଇଂ ଶାଶୁମାନଙ୍କୁ ଓଳଗାଇଲେ ॥
ଦେଖିଣ ସମସ୍ତେ ତାକୁ ହୋଇଲେ ହରଷ ।
ବୋଇଲେ ଭଲା ବାବୁ ଦଶରଥ ଶିଷ ॥
ତାହା ଛାଡ଼ିଣ ଏବେ ଏହା ଭିଆଇଲୁ ।
ଆମ୍ଭମାନଙ୍କର ମନ ମୂଛାଇଲୁ ॥
ଯେକ ଆରକେଣ ହୁଅନ୍ତି ପୁଛାପୁଛି ।
ପ୍ରତକ୍ଷେଣ ଜାନେକୀ ପ୍ରାୟେକ ଦିଶୁଅଛି ॥
ସେହିମିତି ଚାହିଂବା ସେହିମତି କହିବା ।
ତାହାରି ମତ ହୋଇ ଭଗତି ହୋଇବା ॥୨୦
ଯେତେ ବୋଲି ଲୋକେ ଯେ ଯାହାରେ
ଗଲେ ।
ଦାସୀଗଣେ ସୀତ୍ୟା ପୁରକୁ ତାକୁ ନେଲେ ॥
ଯେଣ୍ଣେ ବିଧି ବେଭାରେ ଥିଲେ
ବଇଦେହୀ ।
ଯେବେ ବିଚାରିଲେ ଏହିଟି ଅଟଇଂ ॥
ନିତିହିଂ ମାଜଣା ଯେ ପ୍ରଭାତେ କରାନ୍ତି ।
ବିବିଧ ବସ୍ତ୍ର ପିନ୍ଧାଇ ଅଳଙ୍କାର ଲାନ୍ତି ॥
ଦୋହୋରା ଅଗ୍ନିରେ କରାନ୍ତି ଦ୍ରଶନ ।
ପୁଣି ବାହୁଡ଼ାଇ ଆଣନ୍ତି ପରିଜନ ॥
ଯେତେବେଳେ ରାମ ମଣୋହିରେ ବିଜେ
କରି ।
ବେଶ କରିଣ ସୀତ୍ୟାକୁ ଆଣନ୍ତି
ପରିବାରୀ ॥୩୦

ଦ୍ରଶନ କରାଇଂଣ ଛାଡ଼ିଯାଇଥାନ୍ତି ।
କଉଶଲ୍ୟା କକୟା ମଣୋହି ପରଷନ୍ତି ॥
ସୁବର୍ଣ୍ଣର ସୀତ୍ୟାକୁ ଦେଖିଣ ରଘୁସାଇଂ ।
ମନ ମୂଛିଥାନ୍ତି ସେ ଇହଲୋକ ପାଇଂ ॥
ମଣୋହି ସାରିଣ ଆଚୋବନେ ବିଜେକରି ।
ଦାସୀମାନେ ନିଅନ୍ତି ଜନେକ କୁମାରୀ ॥
ମାଜଣା କରାଇଣ ଭୁଞ୍ଜାଇଂ ବସାବନ୍ତି ।
ଭଗ୍ନୀମାନେ ଆଣି ପୁଣି ମଣୋହି ଦ୍ୟନ୍ତି ॥
ଅର୍ଣ୍ଣ ବ୍ୟଞ୍ଜନ ପିଠକ ଦୁଧସର ।
ଯେସନେକ ମଣୋହି ଦଶରଥ କୁମର ॥୪୦
ସେହି ପ୍ରକାରେଣ ବାଢ଼ନ୍ତି ଦ୍ରବ୍ୟ ଆଣି ।
ମଣୋହି ସମ୍ପୂର୍ଣ୍ଣେ ଯେଡ଼ି ଦ୍ୟନ୍ତି ପାଣି ॥
ମହାଲକ୍ଷ୍ମୀଙ୍କି ପୁରୁଷୋତ୍ତମେ ଆରାଧନ୍ତି ।
ତେସନେକ ପ୍ରକାରେଣ ସେବା କରିଥାନ୍ତି ॥
ବଶିଷ୍ଟେ ଜୀବନ୍ୟାସ କରିଛନ୍ତି ତାହା ।
ବାମଦେବ ଆସି ପୂଜଇ ନିତି ଯାହା ॥
ନିର୍ମାଲ୍ୟ ଭଗ୍ନୀମାନେ ଘେନିଯାନ୍ତି ।
ପୁଣ ଦାସୀମାନେ ବାଣ୍ଟିଣ ଭୁଞ୍ଜନ୍ତି ॥
ଦେବାର୍ଚ୍ଚନ ନବର ପ୍ରାୟେକ ସୀତ୍ୟା ଘର ।
ଧୂପଦୀପ ଦେଇଂଣ ପୂଜନ୍ତି ଦିଜବର ॥୫୦
ଷୋଡ଼ଶ ପ୍ରକାରେଣ ବେଦର ଉକତେ ।
ବନ୍ଧ ଭେଦ ମୁଦ୍ରା ମନ୍ତ୍ର ଯେ ଯୁଗତେ ॥
ନିତି ହିଂ ପ୍ରଭାତେଣ ପୂଜିଣ ଦିଜ ଯାନ୍ତି ।
ବୋଲନ୍ତି ସଦାଶିବ ଶୁଣଗୋ ହେମବନ୍ତୀ ॥
ଯେଥୁଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ନିଷ୍କିନ୍ତେଣ ଅଯୋଧ୍ୟା କଟକେ ରାଜ୍ୟକଏ ॥
ଜାନେକୀର ତହିଂ ପଡ଼ଇ ଯେବେ ମନ ।
ପଚାରନ୍ତି ଡଗରକୁ କି ବୋଲନ୍ତି ଜନ ॥
ଚାର ବୋଲଇ ଦେବ ଆନ ନାହିଂ କିଛି ।
ଅଯୋଧ୍ୟା ନଗ୍ରେ ପଡ଼ିଲା ତଇଳେ କି
ମାଛି ॥୬୦
ସୀତ୍ୟା ନିବାସିଲା ବୋଲିଣ ଲୋକେ ଶୁଣି ।
ସାତପାଞ୍ଚ ହୋଇ ଲୋକେ କରନ୍ତି ଭାଳେଣି ॥
ବୋଇଲେ ଶ୍ରୀରାମ ଅତି ଅଣଓପ୍ରୋଧି ।
କେସନେକେ ମୂଛିଲେ ଯୁବତୀ ରତ୍ନନିଧି ॥

ଖଳ ଲୋକଙ୍କର ବଚନ ଶୁଣିଲା ।
ଯେକା ଯୁବତୀକି କେମନ୍ତେ ତେଜିଲା ॥
ଯେସନେକ ବୋଲି ଭାଳନ୍ତି ପୁରଜନ ।
ଶୁଣିଣ ଅଳପ ହସିଲେ ରଘୁନାନ ॥
ଯେଥୁଅନନ୍ତରେ ଦିନା ଦଶ ଗଲା ।
ଲକ୍ଷଣଙ୍କୁ ଘେନି ରାମ ଏକାନ୍ତେ
ବସିଲା ॥୭୦
ବନବାସ କଥା କୁହାକୁହି ହୋଅନ୍ତି ।
ମାୟାମୃଗ ମାରି ଯିବାର କହନ୍ତି ॥
ସମୁଦ୍ର ବାନ୍ଧିବା ରାବଣ ପ୍ରାଣନାଶ ।
ଅନେକ ଦୁଃଖେଣ କଲେ ବନବାସ ॥
ମଣିଦେଇ ଦୁଧ ମାଗିବା ପ୍ରସ୍ତାପ ।
ଶବରଣୀ ଆଚମ୍ଭ ରାମ ପାଇଲେ ଯେବଣ
ଭାବ ॥
ବାଳୀଙ୍କି ମାରି ସୁଗ୍ରୀବର ସଙ୍ଗେ ପ୍ରୀତି ।
ହନୁମନ୍ତ ମହାତ୍ମା କଲା ଯେବଣ ରୀତି ॥
ଯେମନ୍ତ କହି ରାମ ବୋଇଲେ ହୋ ଶୁଣ ।
ପୂର୍ବର କଥା ଯେ ପୁରାଣେ ବଖାଣ ॥୮୦
କେବଣ ମାହାତ୍ମା ଦୋଷକୁ ଶାପ୍ୟ ଦେଲା ।
ତାହାର ବୋଲ ଆମ୍ଭକୁ ମେଣ୍ଟଣ ନୋହିଲା ॥
ବାଳୀର ଭାରିଯା ଯେ ତାରା ମହାସ୍ୟତୀ ।
ସେ ବୋଇଲା ବିନାଦୋଷେ ମାଇଲୁ ମୋର
ପତି ॥
ସୀତ୍ୟା ନିମନ୍ତେ ତୁ କଲୁ ମନ୍ଦକୃତ୍ୟ ।
ସେ ତୋତେ ଅଭୋଗ୍ୟ ହେଉ ରଘୁସୁତ ॥
ତାହାର ବୋଲା ନଗଲା ମେଣ୍ଟଣ ।
ଯେବେ ସେ କଥା ମୋତେ ହୋଇଲାକ
ଗ୍ୟାନ ॥
ତେଣୁ ଯେ ଜାନେକୀ ମୋର ସିନ୍ନିଧ୍ୟରୁ
ଗଲା ।
ତାରା ମହାସ୍ୟତୀର ବଚନ ହୋଇଲା ॥୯୦
ମହନ୍ତଜନ ଯାହା ବୋଲନ୍ତିଟି ରାଗେ ।
ସେ କଥା ମେଣ୍ଟଣ ନୁହଇ କେହୁଣସି
ବାଗେ ॥
ବାବୁ ତ୍ରିଗତ ବୋଲିଣ ଥିଲା ଏକ ରାଏ ।

ବ୍ରାହ୍ମଣମାନଙ୍କୁ ସେହୁ ଗୋରୁଦାନ ଦିଏ ॥
ନ ଜାଣିମାରେ ଗୋରୁ ଏକ ଗୋଷ୍ଠରେ
ମିଶିଥିଲା ।
ନ ଜାଣି ରାଜା ତାହା ବ୍ରାହ୍ମଣେ ଦାନ ଦେଲା ॥
ଓଛୁବୃତ ନାମେଣ ବ୍ରାହ୍ମଣର ଗୋରୁ ।
ଗୋଷ୍ଠେ ପଶିଲା ନିକଟେ ଚରୁ ଚରୁ ॥
ଖିନଖଳ ଦେଶର ବ୍ରାହ୍ମଣ ଦାନ ପାଇଁ ।
ଗିରସ୍ତ ଲୋଡ଼ିଣ ଠାବ କଲା ତହିଁ ॥୧୦୦
ସେ ଦ୍ୱିଜ ବୋଇଲା ମୋତେ ରାଜା ଦାନ
ଦେଲା ।
କଟେକଙ୍କୁ ବୋଲି ସେହୁ କଢ଼ାଇଂ ଆଣିଲା ॥
ଅର୍ଥୀ ପ୍ରତ୍ୟର୍ଥୀ ସିଂଘଦ୍ୱାରେ ମିଳି ।
ରଜା ଲୁଚିଲା ଶାପ୍ୟକୁ ମନେ ଡରି ॥
ନୃପତିକି ନ ଦେଖି ଦୁହେଂ କୋପ କଲେ ।
କୃକଲାସ ଜନ୍ମ ତୁମ୍ଭେ ହୁଅସି ବୋଇଲେ ॥
କୃଷ୍ଣ ଅବତାର ଯେ ହୋଇବ ମୁରାରି ।
ତାହାଙ୍କୁ ଦେଖିଲେ ତୁ ତରିବୁ ଦଣ୍ଡଧାରୀ ॥
ଯେତେ ବୋଲି ଦୁଇ ବ୍ରାହ୍ମଣେ ତହୁଂ
ଗଲେ ।
ଈଶ୍ୱର ଦେବତାଙ୍କୁ ସେ ଗୋରୁ
ସମର୍ପିଲେ ॥୧୦
ମହତ ବଚନ ବାବୁ କେବେହେଂ ନୋହେ
ଆନ ।
ଶୁଣିଣ କର ଯୋଡ଼ିଲା ସୁମିଇତ୍ରା ନନ୍ଦନ ॥
ଭୋଦେବ ତ୍ରିଗତ ରାଜ କଲାକ ପୁଣ କିସ ।
ବ୍ରାହ୍ମଣେ ବଚନେ ହୋଇଲା କୃକଲାସ ॥
ଶ୍ରୀରାମ ବୋଇଲେ ତାର ବିଶେଷର
ନାମେପୁତ୍ର ।
ତାହାକୁ ନୃପତି ଧରାଇଲେ ଦଣ୍ଡଛତ୍ର ॥
ରାଜନୀତି କରାଇ ସେ ବନସ୍ତକୁ ଗଲା ।
ବ୍ରାହ୍ମଣଙ୍କ ଶାପ୍ୟେ କୃକଲାସ ହୋଇଲା ॥
କୃଷ୍ଣଙ୍କୁ ଦେଖିବାକୁ ଚିନ୍ତା କରେ ନୃପତି ।
ଜାତି ସ୍ୱର ହୋଇଣ ସେ ରହିଲା
କୂପକତି ॥୨୦
ଶୁଣହୋ ଲକ୍ଷଣ ଶାପ୍ୟର ବିଧାନ ।

ନିମି ବୋଲି ପୂର୍ବେ ଏକଇ ରାଜନ ॥
ଯାଗ କରିବ ବୋଲି ବଶିଷ୍ଟଙ୍କୁ ବରିଲା ।
ଶୁଣିଣ ରାଜାକୁ ଯେ ବଶିଷ୍ଟ ବୋଇଲା ॥
ଦେବ ଇନ୍ଦ୍ର ମୋତେ ବରିଲାକ ଆଗେ ।
ଯେବେ ମୁଂ ଆଚାର୍ଯ୍ୟ ହୋଇବି ତାର
ଯାଗେ ॥
ତହୁଂ ଆସିଲେ ତୋତେ ହୋମ କରାଇବୁ ।
ଯେବେ ନ ପାରୁ ତହିଂକି ଆଗ ଯିବୁ ॥
ଶୁଣିଣ ନିମିରାଜା ବାହୁଡ଼ିଣ ଗଲା ।
ଗଉତମ ଋଷିଙ୍କି ସେ ଯାଇଣ ବରିଲା ॥୩୦
ହେମ ପର୍ବତ ଶିଖରେ ଯାଗ ସେହୁ କଲେ ।
ପାଞ୍ଚଶତ ବରଷକୁ ସେହୁ ଆରମ୍ଭିଲେ ॥
ଯଗ୍ୟେଂଣ ଆଚାର୍ଯ୍ୟ ହୋଇଲେ ଗଉତମ
ଋଷି ।
ଶୁଚିବନ୍ତ ହୋଇ ନିମିରାଜା ଅଛି ବସି ॥
ଅଗ୍ନିରେ ହୋମ ସମର୍ପନ୍ତି ବେଦପଢ଼ି ।
କୁଶ ସମିଧ ଯେ ପକାନ୍ତି ଯୋଡ଼ି ଯୋଡ଼ି ॥
ବଶିଷ୍ଟେ ଇନ୍ଦ୍ରକୁ କରାଇଲେ ଯାଗ୍ୟ ।
ସକଳ ଦେବତାଯେ ପାଇଲେ ହବିର୍ଭାଗ ॥
ପାଞ୍ଚ ବରଷେ ଯାଗ ସମାପତ କଲେ ।
ମାହିନ୍ଦ୍ର ଅନକୂଳେ ପୂର୍ଣ୍ଣ ଆହୂତି
ଦେଲେ ॥୪୦
ବହୁତ ସୁବର୍ଣ୍ଣ ଯେ ସୁରପତି ଦେଲା ।
ବଶିଷ୍ଟ ମାହାଋଷିକି ଦକ୍ଷିଣା ଅନେକ
ଦେଲା ॥
ଇନ୍ଦ୍ରକୁ ସେ ଯାଗ୍ୟ ସମାପତ କରାଇ ।
ବେଗେ ବେଗେ ଆସନ୍ତି ସେ ଅରୁନ୍ଧତୀ
ସାଇଂ ॥
ନିମିରାଜା କଟକରେ ପ୍ରବେଶ ହୋଇଲେ ।
ଯାଗ କଥା ଶୁଣି କୋପ ବହୁତ କଲେ ॥
ହେମଗିରି ନିକଟେ ଅଟଇ ଯଗ୍ୟ ସ୍ଥାନ ।
ତହିଂରେ ପ୍ରବେଶ ବ୍ରହ୍ମାଙ୍କ ନନ୍ଦନ ॥
ନିମିରାଜାକଇ ସେ ବୋଇଲେ ମୁନି
ଚାହିଂ ।
ମୋତେ କହିଲୁ ହୋ ଆଚାର୍ଯ୍ୟ
ହେବାପାଇଂ ॥୫୦

ଯେବେ ଗଉତମକୁ ଘେନିଣ ଯାଗ କଲୁ ।
ତପୀଙ୍କର ମଧ୍ୟେ ମୋତେ ଲଜ୍ଜା କରାଇଲୁ ॥
ଶୁଣି ନିମି ରାଜନ ଦେଲାକ ଉତ୍ତର ।
ଅଗ୍ନିରେ ହୋମ କରଇ ନୃପବର ॥
ଘଡ଼ିଏ ପରିଯନ୍ତେ ଉଭା ହୋଇଲେ ବଶିଷ୍ଠ ।
ଗଉରୋବ ନ ପାଇଂ କଲେ ତପନିଷ୍ଠ ॥
ବୋଇଲେ ଗର୍ବ ଯେ ବହିଲୁ ନରପତି ।
ଯେ ତୋର ଶରୀର ହୋଉସି ବିକୋତି ॥
ଯାଗରେ ବରିଲୁ ଯେ ନ ବରିଲୁ ଆଣି ।
ଯେବେହେଂ ଗୌରବ ନ କଲୁ
ମନଜାଣି ॥୬୦
ଯାଅତୁ ଶ୍ୟରୀର ତୋର ହୋଉ ଖଣ୍ଡ ଖଣ୍ଡ ।
ଛୟ ରୋଗେ ନାରଖାର ହୋଉ ତୋର
ପିଣ୍ଡ ॥
ଶୁଣିଣ ନିମି ରାଜା କଲା ମହାଭୟେ ।
ଡରେ ଥରହର କମ୍ପଇଂ ତାର କାୟେ ॥
ବଶିଷ୍ଠଙ୍କୁ ବୋଇଲା ତୁ ଅବେଭାର କଲୁ ।
ଅଦୋଷେ ଅକାରଣେ ମୋତେ ଶ୍ୟାପ
ଦେଲୁ ॥
ତୁହି ମୂର୍ଖ ହୁଅ ନ ଆସୁ ତୋତେ ବେଦ ।
ଶୁଣି ବଶିଷ୍ଠଙ୍କୁ ଲାଗିଲାକ ଖେଦ ॥
ବ୍ରହ୍ମାଙ୍କୁ ମହାମୁନି ଜଣାଇଲା ଯାଇଂ ।
ନିମି ରାଜା ଶାପ୍ୟ ଦେଲା ଯହିଂପାଇଂ ॥୭୦
ଶୁଣି ପିତାମହ ବଶିଷ୍ଠଙ୍କୁ କହିଲେ ।
ମିତ୍ର ବରୁଣ ଦେହେଂତୁ ପଶସି ବୋଇଲେ ॥
ଯେହି ଦେହ ଘେନି ହେବୁ ଉତପତି ।
ଶିଖିବୁ ଚାରିବେଦ ଜାଣିବୁ ନ୍ୟାୟନୀତି ॥
ଶୁଣି ବଶିଷ୍ଠ ମୁନି ତହୁଂ ଚଳିଗଲେ ।
ମିତ୍ର ବରୁଣ ଦେହେଂ ଯାଇଂଣ ପଶିଲେ ॥
ଯେସନେକ ସମଏ ଉର୍ବଶୀ ଅପକ୍ଷରୀ ।
ସଖୀନ୍ତ ଘେନିଗଲା ଜଳକ୍ରୀଡ଼ା କରି ॥
ଅଷ୍ଟ ଅପକ୍ଷରୀ ମଧ୍ୟେ ଅଟଇ ସେ ଶ୍ରେଷ୍ଠ ।
ରୂପ ଯଉବନେ ସେ ସୁନ୍ଦରୀ ଗରିଷ୍ଠ ॥୮୦
ଦେବେ ବଶ୍ୟ ହୋଅନ୍ତି ଯାହାର ମୁଖ
ଚାହିଂ ।
ତିନିପୁରେ ତାକୁ ପଟାନ୍ତର ନାହିଂ ॥
ମିତ୍ର ବରୁଣ ତାକୁ ଦେଖି ବଶ୍ୟ ହୋନ୍ତି ।
କାମ ଉତକର୍ମେ ବୀର୍ଯ୍ୟ ସେ ଛାଡ଼ନ୍ତି ॥
ବରୁଣର ତହୁଂ ଅଗସ୍ତି ହୋୟେ ଜାତ ।
ଅସମ୍ଭାଳେ ପାଣି କୁମ୍ଭେ ପଡ଼ିଲା ସେ ରେତ ॥
ତହୁଂ ପୁତ୍ରେକ ଯେ ହୋଇଲା ଉତପତି ।
ସେ ସେ ଲକ୍ଷଣ ହୋ ଅଟନ୍ତି ଅଗସ୍ତି ॥
ମିତ୍ରର ତହୁଂ ପୁଣ ବଶିଷ୍ଠ ଜାତ ହୋଏ ।
ଯେକା ଜଣେକେ ଯେ ହୋଇଲା
ବେନିକାୟେ ॥୯୦
ବେଦ ଆଉଡ଼ିଲେକ ଅଇଲା ମନ୍ତ୍ର ମୃତି ।
ଧ୍ୟାଏ ଧାରଣା ଜାଣିଲେ ନ୍ୟାଏ ନୀତି ॥
ତେଡ଼େ ତେଡ଼େ ଲୋକେ ଶ୍ୟାପକୁ ଭୟେ
କଲେ ।
ସେ ଦେହ ତେଜି ପୁଣ ଆନ ଦେହ
ପାଇଲେ ॥
ଲକ୍ଷ୍ମଣ ବୋଇଲା ସ୍ୱାମୀ ନିମି ରାଜା କିସ
କଲା ।
ବଶିଷ୍ଠ ତାହାକୁ ଦୁଭାର ଶାପ୍ୟ ଦେଲା ॥
ଶ୍ରୀରାମ ବୋଇଲେ ସେ ହାରିଲା କି ପ୍ରାଣ ।
ଯାଗନିକେ ମିଳି ତାକୁ ତାକୁ ବିହିଲେ
କାରଣ ॥
କୁଶମନ୍ତି ତାକୁ ଆନ ଦେହ ଦେଲେ ।
ତେଡ଼େ ଭଳି ଲୋକ ଶାପ୍ୟକୁ
ଡରିଲେ ॥୧୦୦
ଶୁଣ ହୋ ଲକ୍ଷଣ ସେ ଶାପ୍ୟର ବିଧାନ ।
ଯଯାତି ବୋଲି ପୂର୍ବେ ଏକଇ ରାଜନ ॥
ବୃଦ୍ଧ ଅବସ୍ଥା ସେ ପୁତ୍ରକଇ ଦେଲା ।
ପୁତ୍ର ତହୁଂ ଯୁବା ଅବସ୍ଥା ଘେନିଲା ॥
ଆବର ପୋଏ ନ କଲେ ତାର ବୋଲ ।
ଉପହାସ୍ୟ କରି ବୋଇଲେ ସକଳ ॥
ଭେଣ୍ଡା ଦେହ କିମ୍ପାଇଂ ତୁମ୍ଭଙ୍କୁ ଆମ୍ଭେ
ଦେବୁ ।
ଯୁବା ଶ୍ୟରୀରେ ଆମ୍ଭେ ସୁଖ ଭୋଗ କରିବୁ ॥
କୋପେଣ ପିତା ସେ ପୁତ୍ରକୁ ଶାପ୍ୟ ଦେଲା ।
ରାଜା ପଣକୁ ଭାର୍ଜନ ନୁହସି
ବୋଇଲା ॥୧୦
ଯଦୁ ନାମେ ଏକ ପୁତ୍ର ପିତାରେ ଭଗତି ।
ଯୁବା ପାଳଟାଇଂ ଘେନିଲା ବୃଦ୍ଧାଗତି ॥
ତାହାକୁ ନୃପତି ପଣେ ଅବିଷେକ କଲା ।
ଏହି ବଂଶେ ରାଜା ହୋଅସି ବୋଇଲା ॥
ଆପଣେ ଭୋଗ କଲା ଯୁବା ହୋଇଂ ।
ପୁତ୍ରମାନେ ରାଜା ନୋହିଲେ ଶାପ୍ୟ ପାଇଂ ॥
ଯହୁଂ ସେ ନୋହିଲାକ ପୃଥିରେ ନୃପତି ।
ଆଜହିଂ ସେ କଥା ପୁରାଣେ ପ୍ରବର୍ତ୍ତି ॥
ଶୁଣ ହୋ ଲକ୍ଷଣ ଯେ ଶାପ୍ୟର ବେବସ୍ଥା ।
ତାରାର ଶାପ୍ୟେ ମୋତେ ଅଭୋଗ ହେଲା
ସୀତ୍ୟା ॥୨୦
ଆବର ଲୋଡ଼ିଲେ ପାଇବଙ୍ଗ ଅବା କାହିଂ ।
ଯେତେ ବୋଲି ବିସ୍ମଏ ହୋଇଲେ
ରଘୁସାଇଂ ॥
କ୍ଷଣକେ ପୁଣ ବୋଇଲେ ଶୁଣହୋ ଲକ୍ଷଣ ।
ସିଂହଦ୍ୱାରକୁ ତୁ ଯାଅସି ଏହିକ୍ଷଣ ॥
କାହିଂର ଗୁହାରିଆ ଆସିଅଛି ଯେବେ ।
ପଚାରି ଆସ ବୋଲି ବୋଇଲେ ରାମ
ଦେବେ ॥
ଶୁଣି ସଉମିତ୍ରୀ ସିଂହଦ୍ୱାରକୁ ଗଲା ।
କେହି ନାହିଂ ବୋଲି ବାହୁଡ଼ି ଅଇଲା ॥
ଶ୍ରୀରାମ ଛାମୁରେ ଜଣାଇଲା ଯାଇଂ ।
ସିଂହଦ୍ୱାରେ କେହିନାହିଂତ ଗୋସାଇଂ ॥୩୦
ଶ୍ରୀରାମ ବୋଇଲେ ତୁ ବାହୁଡ଼ିଣ ଯାସି ।
ଅପାର ବେଳୁ ସେ ଗୁହାରିଆ ଅଛି ବସି ॥
ଶୁଣିଣ ଲକ୍ଷଣ ବୀର ବାହୁଡ଼ିଣ ଗଲା ।
ସିଂହଦ୍ୱାରେ ଯାଇଣ ଡାକ ଦେଲା ॥
ଦ୍ୱାରପାଳକଇ ବୋଇଲାକ ଚାହିଂ ।
ଗୁହାରିଆ ଥିଲେ ଘେନିଆସ ଯାଇଂ ॥
ଶୁଣିଣ ପଢ଼ିଆରି ଦ୍ୱାରେଣ ଡାକ ଦେଲା ।
ଗୁହାରିଆ କେ କେ ଆସିଛ ବୋଇଲା ॥
ଦ୍ୱାରପାଳ ବୋଇଲେ ନ କହିଲେ କେହି ।
ବାହୁଡ଼ିଣ ପଢ଼ିଆରି ଲକ୍ଷ୍ମଣଙ୍କୁ ଜଣାଇଂ ॥୪୦

ଭୋଦେବ କେହିତ ନାହିଁ ଆନଜନ ।
ଶୁଣିଣ ଚକିତ ହୋଇଲେ ସୁମେତ୍ରା ନନ୍ଦନ ॥
ନିରୋପି ଚାହିଁଲା ସେ ଶ୍ରୀରାମ ଆଗ୍ୟାଂ
ଘେନି ।
କୁକୁର କାନ୍ଦୁଅଛି ଦେଖିଣ ତାହା ଚିହ୍ନି ॥
ମନେ ବିଚାରଇ ଏହି ସେ ହୋଇବ ।
ସର୍ବଜ୍ଞ ପୁରୁଷ ସେ ଜାଣିଲେ ରାଘେବ ॥
ଯେତେ ବୋଲି ଶ୍ୱାନକୁ ପଚାରିଲେ
ଯାଇଂ ।
ଦୁଃଖୀ ହୋଇଣ କିମ୍ପା ଅଛୁ ଠିଆ ହୋଇ ॥
କେଵଣ କାର୍ଯ୍ୟ ତୁ କହସି କୁକୁର ।
ତୋହୋର ଅଇଲାର ଜାଣିଲେ
ରଘୁବୀର ॥୫୦
ମୋତେ ପେଷିଲେ ତୋତେ ଘେନିଯିବା
ପାଇଂ ।
ଶୁଣିଣ କୁକୁର ବୋଇଲା ଅନାଇଂ ॥
ଭୋ ଲକ୍ଷ୍ମଣଯେ କଥାତ ଅଟଇ
ଅବେଭାର ।
ଯାହାସେ ଆଜ୍ଞା ଦେଇଛନ୍ତି କୁଶଧର ॥
ସିଂହଦ୍ୱାରେ ଥାଉ ଘର ଭିତରକୁ ନଯାଉ ।
ଯଜ୍ଞଶାଳ ଭିତରେ ପ୍ରବେଶ ଆମେ ନୋହୁ ॥
କେସନେକେ ଯିବି ମୁଂ ରାଜା ଗୃହ
ମଧ୍ୟେ ।
ଯେକଥାମାନ କେବେ ନୋହଇଟି
ସାଧ୍ୟେ ॥
ଯେବେ ତୁ ଶ୍ରୀରାମକୁ ଜଣାଅସି ଯାଇଂ ।
ମୋହୋର ସତ୍ୟ ମୁଂ ଭିତରକୁ
ନଯାଇଂ ॥୬୦
ଶୁଣି ଲକ୍ଷଣ ଯେ ବେଗେଣ ବାହୁଡ଼ିଲା ।
ଶ୍ରୀରାମକୁ ଦେଖିଣ କର ଦୁଇ ଯୋଡ଼ିଲା ॥
ଭୋ ଦେବ ଶ୍ୱାନ ଯେ କରଇ ରୋଦନ ।
ଭଲା ଏଥିପାଇଂ ତୁମ୍ଭେ ଜାଣିଲ ରଘୁନାନ ॥
ମୋହୋର ରାଇଲେ ଭିତରକୁ ନଇଲା ।
ମୋତେ ଏହୁ ଅବେଭାର ବୋଲିଣ
ବୋଇଲା ॥

ଶ୍ରୀରାମ ବୋଇଲେ ତୁ ଆମ୍ଭର ଆଗ୍ୟାଂ
କହିଂ ।
ସେ ଶ୍ୱାନ ମାହାତ୍ମାଙ୍କୁ ଘେନି ଆସ ଯାଇଂ ॥
ଶୁଣିଣ ସୁମଇତ୍ରା ତନୟେ ପୁଣ ଗଲା ।
ଶ୍ରୀରାମ ଆଜ୍ଞା କହି କୁକୁରକୁ ନେଲା ॥୭୦
ଛାମୁରେ ଦ୍ରଶନ କରାଇଲା ନେଇଂ ।
କରଯୋଡ଼ି ଶ୍ୱାନ ଅଛଇ ଉଭାହୋଇଂ ॥
ଶ୍ରୀରାମକୁ ଚାହିଂଣ ବୋଲଇ କୁକୁର ।
ଯେ ମୋହୋର ଗୁହାରି ଶୁଣ ରଘୁବୀର ॥
ଅଯୋଧ୍ୟା ରାଜ୍ୟ ତୁ ସେ ପ୍ରତିପାଳୁ ଧର୍ମେ ।
ଅଷ୍ଟାଦଶ ଜାତି ଅଛନ୍ତି ନିତ୍ୟକର୍ମେ ॥
ଦିଗପାଳ ଅନୀତି ନ କରନ୍ତି ଏ ପୁରେ ।
ଯମଦଣ୍ଡ ଏଥି ନ ପଶଇ ତୋର ଡରେ ॥
ବେଳକାଳ ଜାଣି ବରଷଇ ଇନ୍ଦ୍ର ।
ମୋତେ ଯେଥି ଅବିଧି ହୋଇଲା
ରାମଚନ୍ଦ୍ର ॥୮୦
ପରମ ସିଦ୍ଧ୍ୟ ନାମେ ବ୍ରାହ୍ମଣ ଭିକ୍ଷାରୀ ।
ମୋତେ ସେ ଭୋ ଦେବ ଅକାରଣେ ମାରି ॥
ମୋହୋର ବସାରେ ଥିଲି ଦେବ ଶୋଇଂ ।
ଶ୍ରୀରାମ ରାଜ୍ୟରେ ଅନ୍ୟାୟେ ହୋଇଲା
ଗୋସାଇଂ ॥
ଶ୍ରୀରାମ ବୋଇଲେ ଖୁଣ୍ଟିଆକୁ ଚାହିଂ ।
ବ୍ରାହ୍ମଣକୁ ଘେନିଆସ ବୋଲି ଆଗ୍ୟାଂ
ଦେଇଂ ॥
ଶ୍ରୀରାମ ଆଜ୍ଞାରେ ବ୍ରାହ୍ମଣକୁ ନେଲେ ।
ଆସ୍ଥାନର ତଳେ ଉଭା କରାଇଲେ ॥
ଶ୍ରୀରାମ ପଚାରନ୍ତି ବ୍ରାହ୍ମଣକୁ ଚାହିଂ ।
ଶ୍ୱାନ ଶୋଇଂଥିଲା ମାଇଲୁ କିସ ପାଇଂ ॥୯୦
ବ୍ରାହ୍ମଣ ବୋଇଲା ତୁମ୍ଭେ ଶୁଣ ରାମରାଏ ।
କ୍ଷୁଧାୟେ ପ୍ରଜ୍ୱଳିତ ହେଲା ମୋର କାଏ ॥
ଆହାନ୍ନିକ ସାରି ଘରକୁ ମୁଂ ଯାଇଂ ।
ଚିହ୍ନିଲା ଲୋକ ଦେଖି ପଛକତି ଚାହିଂ ॥
ବାଟେ ଶୋଇଥିଲା ମୁଂ ଏହାକୁ ଛୁଇଂଲି ।
ରାଗବେଳେ ଏହାକୁ ମୁଂ ବାଡ଼ିଯେ ମାଇଲି ॥
ବ୍ରାହ୍ମଣ ମୁଖରୁ ଏସନ ବାକ୍ୟ ଶୁଣି ।

ବଶିଷ୍ଠଙ୍କ ମୁଖ ଚାହିଂଲେ ରଘୁମଣି ॥
ଆବର ଅଛନ୍ତି ଯେତେ ମନ୍ତ୍ରୀଗଣମାନେ ।
ଶ୍ରୀରାମ ବୋଇଲେ ଯେ କେବଣ
ବିଧାନେ ॥୧୦୦
ମନ୍ତ୍ରୀ ବୋଇଲେ ହୋ ବ୍ରାହ୍ମଣର ଦୋଷ ।
ଅକାରଣେ ଶ୍ୱାନକୁ ହାଦେ କଲା ରୋଷ ॥
ବ୍ରାହ୍ମଣ ବୋଇଲା ମୋର ନ ଜାଣିମା ପଣ ।
ବିଚାରିଣ ଶାସ୍ତି ମୋତେ ଦେବା ରଘୁରାଣ ॥
ଶୁଣି ରଘୁନାଥ ଶ୍ୱାନକୁ ପଚାରି ।
ସ୍ୱଭାବେ ଏହାର ହୋଇଲାକ ହାରି ॥
ଆପଣେ ଆପଣେ ତ ହାରିଲା ବ୍ରାହ୍ମଣ ।
ଦୋଷକଇ ଦଣ୍ଡିବାର ଉଚିତ କାରଣ ॥
କି ଶାସ୍ତି ଦେବା ତ କହସି କୁକୁର ।
ଶ୍ୱାନ ବୋଇଲା ତୁମ୍ଭେ ଶୁଣସି
ରଘୁବୀର ॥୧୦
କାଳିଞ୍ଜନ ପର୍ବତେ ଅଛନ୍ତି ସଦାଶିବ ।
ତହିଂ ଏହାକୁ ପରିଛା ପଣ କରିବ ॥
ଶୁଣିଣ ଶ୍ରୀରାମ ହରଷ ହୋଇଲେ ।
କାଳିଞ୍ଜନ ପର୍ବତେ ଆଦିଷ୍ଟାଣପଣ ଦେଲେ ॥
ଶାଢ଼ୀ ଚନ୍ଦନ ତାକୁ ଦେଲେ ରତ୍ନହାର ।
ପାଲିଙ୍କି ପାଟଛତ୍ର ବାଦ୍ୟମାନ ଅପାର ॥
ସମ୍ପଦ ହୋଇଣ ବ୍ରାହ୍ମଣ ତହିଂ ଯାଇଂ ।
ପଛେ ପଛେ ତାର କୁକୁର ଗୋଡ଼ାଇଂ ॥
ନଗ୍ର ଲୋକ ଦେଖିଣ ନାକେ ହାତ
ଦେଲେ ।
ଭଲା ଦଣ୍ଡ ପାଇଲା ଏ ବୋଲିଣ
ବୋଇଲେ ॥୨୦
ଦରିଦ୍ର ପଣେ ଭିଖ ମାଗୁଥିଲା ।
ଅନ୍ୟାଏ କରି ଏବେ ସମ୍ପଦ ପାଇଲା ॥
ବାବୁ ଶ୍ରୀରାମ ତୋର ରାଜ୍ୟର ବିଚାର ।
ଏହା ଶୁଣି ଆଗସରି ବୋଇଲା କୁକୁର ॥
ଲୋକନ୍ତ ବୋଇଲା ହୋ ନ ଜାଣ ତୁମ୍ଭେ
କିଛି ।
ପଛନ୍ତରେ ଏକଥାରେ ଅପାର ଦୋଷ ଅଛି ॥
ମୁହିଂ ତହିଂ ପରିଛା ହୋଇଂ ଥିଲି ।

ସେ ଦୋଷେ ଏବେ ମୁଁ କୁକୁର ହୋଇଲି ॥
ରୁଦ୍ର ଦେବତାର ନିର୍ମାଲ୍ୟ ଯେ ଖାଇ ।
ନାନା ବିଷୟେ ତାର ଆଦିଷ୍ଟଣ
ହୋଇଂ ॥୩୦
ମୁହିଂ ସେ ଶ୍ରୀରାମଙ୍କୁ କହିଲି ଏ ବୁଦ୍ଧି ।
ତେଣୁ ସେ ବ୍ରାହ୍ମଣର ଏଡ଼େକ ସମ୍ବୃଦ୍ଧି ॥
ଶୁଣିଣ ନଗ୍ରଲୋକେ ଚକିତ ହୋଇଲେ ।
ସାଧୁ ସାଧୁ କୁକୁର ବୋଲିଣ ବୋଇଲେ ॥
ଯେଥୁ ଅନନ୍ତରେ ଶାକେମ୍ବରୀ ଶୁଣ ।
କାଳିଞ୍ଜନ ପର୍ବତେ ପରିଛା ହୋଇଲା
ବ୍ରାହ୍ମଣ ॥
ଶ୍ୱାନ ଚଳିଗଲା ବାରଣାସି ପୁରୀ ।
ମଣିକର୍ଣ୍ଣିକା ତୀର୍ଥରେ ପ୍ରାଣହାରି ॥
ଶ୍ରୀରାମଙ୍କୁ ଦେଖି ମୁକତ ହୋଇଗଲା ।
ଶିବଦ୍ରୋହ କଲାର ଦୋଷ ପାରଗଲା ॥୪୦
ଯେଥୁ ଅନନ୍ତରେ ଶୁଣିମା ଦିବ୍ୟରସ ।
ସୁଚିଭେଣ ରାଜ୍ୟ କରନ୍ତି ରଘୁଶିଷ ॥
ସେଦିନ ମୃଗୟାକୁ ହୋଇଲାକ ରାମମନ ।
ରାଇଲେ ଭ୍ରଥ ଲକ୍ଷଣ ଶତୃଘନ ॥
ସୁମନ୍ତକୁ ବୋଇଲେ ଥାଠ ସଜକର ।
ବନସ୍ତେ ମାରିବା ଆଜ ମୃଗ ଯେ ଶୂକର ॥
ଲୋଧା ଶବର ପାରଧିଆମାନ ।
ବେଣ୍ଟକାରମାନେ ଘେନି ଆସନ୍ତୁ ଯେ ଶ୍ୱାନ ॥
ଶାର୍ଦ୍ଦୋଳମାନଙ୍କୁ କରି ଆଗୁସାର ।
ବୋଲ ଆଗ ହୋଇଂଣ ବାନ୍ଧନ୍ତୁ ଜାଲ
ବାଡ଼ ॥୫୦
ଫାଶ ଦଉଡ଼ି ପିଟଣା କାଠକିଳା ।
ବନସ୍ତ ପୋଡ଼ିବାକୁ ସଂଚିଥାଅ ହୁଳା ॥
ଶୁଣି ମନ୍ତ୍ରୀବର ସକଳ ନିର୍ଣ୍ଣିକଲା ।
ଅଗମ୍ୟ ବିପୁନ୍ୟକୁ ତ ବୋଲିଣ ପେଷିଲା ॥
ଶ୍ରୀରାମ ସଜ ହୁଅନ୍ତି ତରକସ ଭିଡ଼ି ।
ବାଉଂ ବେଗେ ସେ ଯେକ ତୁରଙ୍ଗମ ଚଢ଼ି ॥
କରେଣ କମାଏଣ ଯେ ଶାବେଲୀ
ଖଣ୍ଡାକୋନ୍ତ ।
ପାଟ ଚଉତୁନା କଶିଲେ ସୀତ୍ୟାକାନ୍ତ ॥

କପୋଳେ କସ୍ତୁରୀର ଚିତା ଆଡ଼ କେରା ।
କର୍ଣ୍ଣେ କର୍ଣ୍ଣଫୁଲ ବ୍ରହ୍ମଜାତି ହୀରା ॥୬୦
କଣ୍ଠେଣ ମୁକୁତା ଯେ ଲମ୍ବଇ ଶତେସରି ।
ଝୋଲା ଗଣ୍ଡା ଲାଗି ଯେ ହୋଇଲେ
ରାବଣାରି ॥
ନବରତ୍ନେ ଜଡ଼ିତ ପିନ୍ଧିଲେ ପାଗଯୋଡ଼ି ।
ହୟ ପିଠିରେ ଚଢ଼ିଣ ଶ୍ରୀରାମ ବାଗମୋଡ଼ି ॥
ସୁମନ୍ତର ତନୟେ ଧଇଲା ଶେତଛତ୍ର ।
ସଜ ହୋଇଲେ ଦଶରଥର ତିନିପୁତ୍ର ॥
ଭ୍ରଥ ଲକ୍ଷଣ ଯେ ଆବର ଶତୃଘନ ।
ଚଢ଼ି ଅଛନ୍ତି ଏ ବାଉବେଗ ଯାନ ॥
ସୁମନ୍ତ ସହିତେଣ ସକଳ ପାତ୍ରମନ୍ତ୍ରୀ ।
ରଙ୍ଗରସ ଦେଖିବେ ବୋଲି ବଶିଷ୍ଠ ହିଂ
ଯାନ୍ତି ॥୭୦
ହୟ ଗଜ ପଦାତି ବିବିଧ ବଳସଜ ।
ବୀରତୂର ବଜାଇ ବାହାର ରଘୁରାଜ ॥
ନଗ୍ର ନରନାରୀ ଆନନ୍ଦେ ଦେଖନ୍ତି ।
ଗୋଡ଼ାଇଂଣ ଯୁବତୀ ହୁଳହୁଳି ଦ୍ୟନ୍ତି ॥
ଆଗଭରେ ବାଜଇ ଟମକ ନିଶାଣ ।
ସରଯୁ ପାରି ହୋଇଲେ ରଘୁକୁଳ ରାଜନ ॥
ଅଗମ୍ୟ ବିପୁନ୍ୟ ସେ ପଶିଲେ ଧସାଇ ।
ଯହିଂ ସୂର୍ଯ୍ୟ ଦେବତାର ତେଜ ନ ଲାଗଇ ॥
ପ୍ରଖର ହୋଇଂ ତହିଂ ନ ବହଇ ପବନ ।
ଝଟା ଲତା ବୁଦାବୁଦା ଲୋଚା ଲୋଚା
ମାନ ॥୮୦
ଗଛଙ୍କର ସନ୍ଧିରେ ଯାଇତ ବାଟ ନାହିଂ ।
ଡାଳମାନେ ପଲବି ଲାଗୁଛନ୍ତି ଭୂଇଂ ॥
ଆକୁଳା ରଙ୍ଗଣୀ ଅଣଚା ମୋଟା ମୋଟା ।
ଜଳାଙ୍ଗି ପାଳଧୂଆ ସେ କାନକୋଳି କଣ୍ଟା ॥
ମେରିସିଙ୍ଗା ଅଗି ବଥୁ ତେନ୍ତୁଳି ବନ ବନା ।
ଗିଲ ହାଥୀ ଆକୋଶରେ ପଶି ନୋହେ
ନିନା ॥
ଶାଳଗଛ ଗଛ ଶିଳ ଖଣ୍ଡ ଖଣ୍ଡ ।
କେବଣ ଠାରେ ତୋଟା କେଉଁଠାରେ ଗଣ୍ଡ ॥
ସାହାଡ଼ା ବଇଁଚ ବେତ ବନ ପାଇଂ ।

ତହିଂ ସେ ମୃଗ ଶୂକର ବହୁତ ଯେ
ଥାଇ ॥୯୦
ଜାଣିଣ ବେଣ୍ଟକାରେ ସେ ବେଢ଼ିଛନ୍ତି
ତାହା ।
ଯେସନେକ ସମଏ ବିଜଏ ରଘୁନାହା ॥
ରାଉତମାନଙ୍କୁ ସେ ଆଡ଼େ ବାଣ୍ଟିଦେଲେ ।
ଗଜ ଯୋଧାମାନଙ୍କୁ ଆଡ଼େକ ରୁହାଇଲେ ॥
ଲୋଧା ଶବରକୁ ଆଡ଼େ କଲେ ନେଇ ।
ସେମାନେ ରହିଲେ ଜାଲ ବାଡ଼ ଦେଇ ॥
କିଳାନ୍ତ ପୋତିଣ ପାତିଛନ୍ତି ଫାନ୍ଦ ।
ଭାଲୁଙ୍କ ଶାର୍ଦ୍ଦୋଳମାନଙ୍କୁ କିମ୍ପା ବିନ୍ଧ ॥
ସାଜ କରିଥାଅ କୁକୁର ସହିତେ ।
ଅଗ୍ନି ଜାଳିଦିଅ ଯେହି ପରବତେ ॥୧୦୦
ତେଣିକି ନ ଯାନ୍ତୁ ଆସନ୍ତୁ ଏ ବାହୁଡ଼ି ।
ଗଛକୁ ଗଛରେ ବାନ୍ଧ ହୋ ଦଉଡ଼ି ॥
ବନଜୀବମାନେ ଯେସନ ହୋଇଣ
ବୋବାନ୍ତି ।
ତେସନେକ ହୋଇ ଲୋଧାଏ ରାବ ଦ୍ୟନ୍ତି ॥
ଚାରି କତି ଖେଦି ଆସୁଛନ୍ତି ଜାଳି ।
ଆକୋଇ ରହିଣ ଯେ କୁକୁର ଦ୍ୟନ୍ତି ଚାଳି ॥
ପଦାରେ ପଡ଼ି ଶାର୍ଦ୍ଦୋଳ ମେଲନ୍ତି ।
ଆପଟେ ପଡ଼ିଲେ ଯେ କାଣ୍ଡ ଛାଡ଼ି ଦ୍ୟନ୍ତି ॥
ଜାଲ ଶାକୋଟାଇଂଣ ଆଣନ୍ତି ଫେରି
ଫେରି ।
ବେଣ୍ଟକାରମାନେ ତହିଂ ବିନ୍ଧିଲେକ
ବେଢ଼ି ॥୧୦
ସାପ ସହିତେଣ ଆଣନ୍ତି ଶଶା ମୂଷା ।
ମତ୍ତଗଜ ସହିତେଣ ସିଂହ ଯୂଥ ମିଶା ॥
ବ୍ୟାଘ୍ର ଶୂକର ମିରିଗ ପେଲାପେଲି ।
ଗଣ୍ଡା ଗଏଳ ମଇଂଷି ଠେଲା ଠେଲି ॥
ସଏମ୍ବର କସ୍ତୁରୀ ଯୁଆଦ ବଣ ଭୁଆ ।
ଖୁରାଣ୍ଟି କୁରଙ୍ଗ ଆବର ଶାଳେହା ॥
ନେଉଳ ମରକଟ ଭାଲୁକ ଯୂଥଯୂଥ ।
ହସ୍ତୀ ପୋଏ ଆସନ୍ତି ହଲାଇଂ ଥୋର ହସ୍ତ ॥
ବଣଗୋରୁ ବଣଘୋଡ଼ା ସର୍ବ ଜନ୍ତୁ ଆଏ ।

ଦେଖିଣ ଆନନ୍ଦ ସେ ହୋଇଲେ ରାମ
ରାଏ ॥୨୦
ବାହୁଟିଆ ଯୂଥରେ ପଶିଲେ ସିଂହମାନେ ।
ଶଶା ଭାଲୁକମାନେ ଟେକିଛନ୍ତି କାନେ ॥
ଦେହକୁ ଦେହ ଲାଗି ଆସନ୍ତି ସର୍ବ ଜନ୍ତୁ ।
ଶ୍ରୀରାମ ଆଗ୍ୟାଂ ଦେଲେ ଶାର୍ଦ୍ଦୋଳ ମେଲନ୍ତୁ ॥
ଶୁଣିଣ ତତକ୍ଷଣେ ମେଲିଲେ ଶାର୍ଦ୍ଦୋଳ ।
ମୃଗ ପଲ ଭିତରେ କଲେ ଯାଇଂ ଗୋଳ ॥
କୁକୁରନ୍ତ ମେଲିଲେ ଅଙ୍ଗୁଳି ଦୋଖାଇଂ ।
ବାରେହା ଯୂଥରେ ସେ ପଶିଲେକ ଯାଇଂ ॥
ରାଉତଙ୍କୁ ବୋଲେ ବିନ୍ଧ ତୁମ୍ଭେ ତୀର ।
ମାହୁନ୍ତନ ବୋଇଲେ ମାର ଗଜ କୋନ୍ତ
ଶର ॥୩୦
ପାଇକଙ୍କୁ ବୋଇଲେ ହାଣ ହୋ ତୁମ୍ଭେ
ପଶି ।
ଜୋଧାନ୍ତ ବୋଇଲେ ହୋ ପକାଅ ତୁମ୍ଭେ
ଭୁସି ॥
ଯେତେକ ବୋଲି ରାମ ଆପଣେ ବାଣ
ସନ୍ଧି ।
ମତ୍ତ ଗଜ ଆସନ୍ତେ କପାଳକୁ ବିନ୍ଧି ॥
ଚିତାରେ ବାଜିଣ ବାଣ ଗଳିଗଲା ପଛେ ।
ଆରେକ ହସ୍ତୀଏ ଫୁଟି ଗଳିଲା ଶାଳ
ଗଛେ ॥
ଦେଖି ଆଶ୍ରିଯ ହୋଇଲେ କ୍ଷତ୍ରୀମାନେ ।
ନିଛଂଛାଳି କଲେ ଭ୍ରଥ ଶତୃଘନେ ॥
ଲକ୍ଷଣ ସହିତେ ସୁମନ୍ତ ପାତ୍ରମନ୍ତ୍ରୀ ।
ସମସ୍ତ ଯୋଧାଏ ଶିରେ ହସ୍ତ ଦ୍ୟନ୍ତି ॥୪୦
ଯେଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ।
ସିଂହ ଯୂଥକଇ ତୀକ୍ଷ ବାଣକଏ ॥
ଦୁଇ ତିନି ଫୁଟିଣ ଗର୍ଜ୍ଜଣ ପ୍ରାଣ ହାରି ।
ସବୁଙ୍କରି ବିନ୍ଧନ୍ତେ ଶୁଭିଲା କାଣ୍ଡ ରଡ଼ି ॥
କେ ଖଣ୍ଡାରେ ହାଣଇ କେ ମାରଇ
ଶାବେଳି ।
କେ କୋନ୍ତ ମାରନ୍ତେଣ ଏଣି ତେଣି ଯାଇଂ
ଗଳି ॥
ଗୁରୁଜେ ଭୁସନ୍ତି କେ ପିଟନ୍ତି ନେଇ
ଭାଲେ ।
ଶାର୍ଦ୍ଦୋଳ ଯାଇଂ ପଶିଲେ ମୃଗ ପଲେ ॥
କୁକୁର ଘାଉଆ କଲେ ଅନେକ ବରେହା ।
ବାଉରୀଏ ଧରିନେଲେ ଅନେକ
ଶାଳେହା ॥୫୦
ଯେଣେ ପାରନ୍ତି କରନ୍ତି ସର୍ବ କ୍ରୁର ।
ଖଣ୍ଡ ଖଣ୍ଡ ହୋଇଂ ଛିଡ଼ିଗଲା ଜାଲ ବାଡ଼ ॥
ବଳିଆ ସଙ୍ଗେ କେ କୁକୁର ନାଶିଲା ।
ବ୍ୟାଘ୍ର ବୋଲି କେହୁ ଶାର୍ଦ୍ଦୋଳ ଭୁସିଲା ॥
ହସ୍ତୀ ଦନ୍ତ ଧରି କେ ଆଣନ୍ତି କନ୍ଧେ ବସି ।
ବାଜେଣିଆ ଟମକିଆମାନେ ସେ
ବହିନେଲେ ମଇଂଷି ॥
ବଣିଆଏ ଘେନିଗଲେ ଯୁଆଦ କସ୍ତୁରୀ ।
ରାଉତ ମାହୁନ୍ତେ ତହିଂ ବରେହାନ୍ତ ଧରି ॥
ହୁରିଆଏ ଶଶା ଖୁରୁଣ୍ଟି ଧରିନେଲେ ।
ସିଂହ ଭାଲୁଙ୍କ ଯେ ମାଙ୍କଡ଼ ଛାଡ଼ିଦେଲେ ॥
ଶ୍ୱାନମାନେ ମଡ଼ାମଡ଼ିରେ ଗଲେ ନାଶ ।
ଚାଣ୍ଡାଳେ ଧରିନେଲେ ଅନେକ କଟାସ ॥
ବନଜନ୍ତୁଙ୍କ କ୍ରୁର ଦେଖନ୍ତି ରଘୁସାଇଂ ।
ଦୁଇ ଚାରି ପାଞ୍ଚ ଲୋକେ ନେଉଛନ୍ତି ବହିଂ ॥
ସୁମନ୍ତ ଧରାଇଲା ମତ୍ତଗଜମାନ ।
ମୃଗ ଶୂକର ଆବର କୃଷ୍ଣାଜିନ ॥
କଟେକଙ୍କୁ ଚଳାଇଲେ ରକ୍ଷାଲୋକ
ଦେଇଂ ।
ଯେସନେକ ସମଏ ବାହୁଡ଼ିଲେ ରଘୁସାଇଂ ॥
ଲକ୍ଷେକ ଅଶ୍ୱଆର ମଧରେ ଦାଶରଥି ।
ଆଗପଛେ ଅଛି ଦଶସହସ୍ର ହସ୍ତୀ ॥୭୦
ଦୁଇ ପାରୁଶରେ ପାଦାନ୍ତି କୋଟି ଦଶ ।
ବାଜଇ ବାଜଣା ଦାଉଣ୍ଡି ବିଜିଘୋଷ ॥
ଯେସନେକ ସମଏ ରାମଚନ୍ଦ୍ର ରାଏ ।
ମୃଗୟା ବିନୋଦ ସାରି ବାହୁଡ଼ା ବିଜଏ ॥
ଯେସନ ସମଏ ଜାଣିଲା ଗ୍ରିଧ ଖଗ ।
ଶ୍ରୀରାମ ବୋଲି ଆଇଲା ବେଗ ବେଗ ॥
ଭୂମିରେ ଶିର ଦେଇଂ ବୋଇଲା ଗୋସାଇଂ ।
ଅନ୍ୟାଏ ଉପଦର୍ପ ତୋର ରାଜ୍ୟେ ନାହିଂ ॥
ଆୟୁଷ ପୂରିଲା ଲୋକଙ୍କୁ ଭଏ କରଇ
ଯମ ।
ଯେହେର୍ଣ୍ଣେ ବଡ଼ପଣ ଅରଜି ଅଛୁ
ରାମ ॥୮୦
ତୋହୋର ରାଜ୍ୟେ ଥାଇଂ ହୋଇଲି ମୁଂ
ଦୁଃଖୀ ।
ଘର ମୋର ବଳେ ଘେନିଲା ପେଚାପକ୍ଷୀ ॥
ସ୍ୱାମୀ ତୁ ନ ଶୁଣିଲେ ଆଜ ମରିବଇଂ
ମୁଇଂ ।
ଆବର କାହା ମୁଖ ଚାହିଂବି ଜୀଇଂଥାଇଂ ॥
ଯେହା ଶୁଣି ରଘୁନାଥ ଘୋଡ଼ା ରୁହାଇଲେ ।
ଯେ କଥା ନ ବିଚାରି ଯିବାକି ବୋଇଲେ ॥
ଯେସନେକ ସମଏ ଦ୍ରଶନ କଲା ଆସି
ପେଚା ।
କିଣି ଅଛି ବୋଲି ସେ ନ ଦେଲାକ ଲୁଚା ॥
ଶ୍ରୀରାମ ପଚାରିଲେ ସେ ପେଚାକଇଂ
ଚାହିଂ ।
ତୋହୋର ପାଇଂ ଗୁହାରି କରୁଅଛି
ଯେହି ॥୯୦
କିମ୍ପାଇଂ ଯେହାର ଘର ଘେନିଲୁ ତୁ ବଳେ ।
ଅନ୍ୟାଏ ଉପଦର୍ପ ଅଛିକି ମୋର କାଳେ ॥
ପେଚା ବୋଇଲା ଭୋ ଦେବ ସାବଧ୍ୟାନେ
ଶୁଣ ।
ସତ୍ୟ କରି ଯେହାକୁ ପଚାର ରଘୁରାଣ ॥
କେବଣ ଦିନହୁଂ ଯେ ଏଥି ବସା କଲା ।
ଯେ ବଚନ ଶୁଣି ଶାଗୁଣା ବୋଇଲା ॥
ସ୍ୱାମୀ ପୃଥିରେ ଯେତେଦିନୁ ହୋଇଲେ
ମନୁଷ୍ୟ ।
ସେଦିନୁ ତହିଂରେ ଅଟଇ ମୋର ବାସ ॥
ପେଚା ବୋଇଲା ତୁ ହୋ କହିଲୁ ଯାହା
ଭଲା ।
ଗଛ ହେଲା ଦିନୁ ବସା ତହିଂ ମୋର
କଲା ॥୧୦୦
ଶୁଣିଣ ବଶିଷ୍ଠକୁ ଚାହିଂଲେ ରଘୁସାଇଂ ।

ଯାବାଳି ବାମଦେବ କଶ୍ୟପଙ୍କୁ ହକରାଇ ॥
ସବୁଂକୁହିଂ ଚାହିଂଣ ବୋଲନ୍ତି ରାବଣାରି ।
କାହାର ହାର ଜିଣ ହୋଇବ କହସି
ବିଚାରି ॥
ସଭାରେ ବସିଣ ତୁମ୍ଭେ ନ କହିବ
ପକ୍ଷାପକ୍ଷି ।
ଧର୍ମଶାସ୍ତ୍ର ପ୍ରମାଣେ ଯାହା ଶୁଣିଲା ଅଛି ॥
ମଧ୍ୟସ୍ଥ ହୋଇ ଯେବେ କହିବାକ ମିଛ ।
ଧର୍ମଦେବ ତାକୁଟି ଛାଡ଼ଇ ପ୍ରତକ୍ଷ ॥
ସହସ୍ରେ ବରଷ ସେ ନର୍କେଣ ପଡ଼ିଥାଇ ।
ମଳ ମୂତ୍ର ପୂଜ ରକତ ମାଂସ ଖାଇ ॥୧୦
କଳପେ ପରିଯନ୍ତେ ନ ପାଇ ମନୁଷ୍ୟ
ଦେହ ।
ତୁମ୍ଭେ ମନ୍ତ୍ରୀମାନେ ବିଚାରି ସତ କହ ॥
ଶୁଣି ମନ୍ତ୍ରୀମାନେ ବିଚାରି ବୋଇଲେ ।
ପେଚା ଜିଣିଲା ବୋଲି ସମସ୍ତେ କହିଲେ ॥
ଶାଗୁଂଣା କହିଲା ମନୁଷ୍ୟ ଯେତେ କାଳୁ ।
ମୁହିଂ କାହିଂ ନ ଯାଇଂ ସେ କାଳୁ ଏ ତାଳୁ ॥
ଉଲୁକ ବୋଇଲା ବୃକ୍ଷ ଯେତେ କାଳୁ
ହୋଏ ।
ସେହିଦିନୁ ମୁଂ ଯେଥି ବସା କରିଥାଏ ॥
ତେଣୁ କରି ପେଚା ଜିଣିଲା ନିଅତ ।
ବଶିଷ୍ଠ ବୋଇଲେ ଶୁଣ ଦଶରଥ ସୁତ ॥୨୦
ପୃଥୀ ଜନମ ହୋଇଲା ଯେବଣ କାଳେ ।
ବାସୁଦେବ ଅନନ୍ତ ଶେଯ୍ୟା କଲେ
ମାହାଜଳେ ॥
ସୃଷ୍ଟି କରିବେ ବୋଲି ପୁଣ ଇଚ୍ଛା କଲେ ।
ନାଭିପଦ୍ମରୁ ବୃକ୍ଷେକ ଭିଆଇଲେ ॥
ଆଦିହୁଂ ସଂସାରେ ବୃକ୍ଷ ଉତପତି ।
ସେହୁଂ ପଦ୍ମଫୁଲ ଗୋଟା ଅଟଇ ଏ ପୃଥି ॥
ସେ ପଦ୍ମ ମଧ୍ୟରୁ ବ୍ରହ୍ମା ଜାତ ହୋଏ ।
ଦେଖିଲାକ ଜଗତ ଅଟଇ ଜଳମଏ ॥
ସେ ପଦ୍ମ ପୁଷ୍ପକୁ ନିରୋପି ଚାହିଂଲା ।
ଚାରିବେଦ ତହିଂ ଅଛଇ ଲିହିଲା ॥୩୦
ତାହା ଶିଖିଣ ସେ ସଂସାର ସିରିଜିଲା ।

ପଦ୍ମଗୋଟାରୁ ବ୍ରହ୍ମାଣ୍ଡ ପାତିଲା ॥
ପୁଷ୍କର ମଧ୍ୟରୁ ହେଲା ମେରୁଗିରି ।
ସପତ ଆଭରଣ ପାଖୁଡ଼ାମାନ କରି ॥
ତେତିଶି କୋଟି ଦେବତାଏ ହୋଇଲେ
କେଶରୁ ।
ପରିମଳ ଗନ୍ଧ ସେ ସଞ୍ଚିଲା ଆକାଶରୁ ॥
ତେଣୁକରି ଜୀବଜନ୍ତୁ ମନୁଷ୍ୟ ତହୁଂ କଲେ ।
ମଧ୍ୟରେ ସପତ ସମୁଦ୍ର ଭିଆଇଲେ ॥
ପଞ୍ଚାଶ କୋଟି ଯୋଜନ ଅଟଇ ପୃଷ୍ୟ
ଗୋଟି ।
ଚଉଦ ପୁର କରି ସଞ୍ଚିଲେ ପରମେଷ୍ଠୀ ॥୪୦
ସ୍ୱର୍ଗ ମଞ୍ଚ ପାତାଳ ତିନିପୁର କଲା ।
ଉପରେ ଦେବଗଣଙ୍କୁ ସେ ଗୁହାଇଲା ॥
ତଳେ ନାଗଲୋକ ମଧ୍ୟରେ ମନୁଷ୍ୟ ।
ସଂସାର ସ୍ରିଜିଣ ଧାତା ହୋଇଲା ଉଦାସ ॥
ସେ ପଦ୍ମ ବୃକ୍ଷ ଆଗେ ହୋଇଲା ରଘୁସାଇଂ ।
ସେ ଦିନରୁ ପେଚା ସେ ରହିଲା ତହିଂ ଯାଇ ॥
ପଛେ ସେ ମନୁଷ୍ୟ ହୋଇଲେ ଉତପତି ।
କେର୍ଣ୍ଣେ ଗ୍ରିଧ ବୋଲଇ ଏ ମୋହର ଥିତି ॥
ଶାଗୁଣା ହାରିଲା ଜିଣିଲା ଦେବ ପେଚା ।
ପକ୍ଷାପକ୍ଷ ନାହିଂ ଦେବ ନିରାଧାର
ବାଚା ॥୫୦
ଶୁଣିଣ ଶ୍ରୀରାମ ସେ ବୋଇଲେ ହୋଇଂ
ହୋଇଂ ।
ଶାଗୁଣାରତ ଏ କଥା ଉଚିତ ନୋହଇ ॥
ଅର୍ଥୀ ବିଶୋଇ ହୋଇଣ ଯେବେ ସେ
ହାରିଲା ।
ଗୁହାରି କରିଅଛି ଧର୍ମକୁ ନ ଡରିଲା ॥
ଯେହାକୁ ଦଣ୍ଡିବାର ଅଟଇ ଉଚିତ ।
ଯେତକ ବୋଲି ଶାପ୍ୟ ଦିଅନ୍ତି ରଘୁସୁତ ॥
ଶୁଣିଣ ଦେବତାଏ ବୋଇଲେ ସ୍ୱର୍ଗେ
ଥାଇଂ ।
ଭୋ ଦେବ ଶାପ୍ୟ ନ ଦିଅ ରଘୁସାଇଂ ॥
ବ୍ରହ୍ମତେଜ ନାମେ ଏ ରାଜା ହୋଇଥିଲା ।
ଅତିଥିକୁ ଆମିଷ ଭୋଜନ କରାଇଲା ॥୬୦

ସେ ମହାତପୀ ଯେ ଆଚାରେ ନ୍ୟାଏ ନୀତି ।
ଆମିଷ ଭୋଜନେଣ ନାହିଂ ତାର ମତି ॥
ଯେକାଦଶୀ ଦିନ ଉପବାସ କରିଥିଲା ।
ବନସ୍ତରେ ଉଜାଗର କରିଣ ବଞ୍ଚିଲା ॥
ରାତ୍ର ପ୍ରଭାତେ ଦ୍ୱାଦଶୀ ପାରଣା ଜାଣି ।
ରାଜାକୁ ପ୍ରାର୍ଥନା କଲା ତପୀମଣି ॥
ଶୁଣିକରି ନୃପବର ପ୍ରସନ୍ନ ହୋଇଲା ।
ସୂପକାରକୁ ରାଇ ରାଜା ଆଗ୍ୟାଂ ଦେଲା ॥
ବ୍ରାହ୍ମଣଙ୍କୁ ନେଇ ଭୁରି ଭୋଜନ ଦିଅ ।
ସୁପକୁଂ ଆହାରେ ଯେହାଂକୁ ତୃପତି
କରାଅ ॥୭୦
ଶୁଣିଣ ସୂପକାର ତପୀକି ଘେନିଗଲା ।
ଷଡ଼ରସ ପ୍ରକାରେ ମିଷ୍ଟ ଅନ୍ନ ଦେଲା ॥
ମୃଗ ଶୂକର ଆମିଷ ପ୍ରତିବିଧି ।
ନ ଜାଣି ଭୋଜନ ଭୁଂଜାଇଲା ତପନିଧି ॥
ଆମିଷ ବୋଲିଣ ପାଇଲା ଯହୁଂ ଗ୍ୟାଂନ ।
ଭୋଜନ ଛାଡ଼ି ତପୀ କଲାକ ଆଚୋଂବନ ॥
ରାଜାର ଛାମୁରେ ଜଣାଇଂ ଶାପ୍ୟ ଦେଲା ।
ତପ ଭଗ୍ନ ମୋର କଲୁସି ବୋଇଲା ॥
ଦ୍ୱାଦଶୀ ପାରଣାରେ ଭୁଞ୍ଜାଇଲୁ ଆମିଷ ।
କହିଲେ ନ ସରିଇ ତହିଂରେ ଯେତେ
ଦୋଷ ॥୮୦
ଯେତେ ଧର୍ମ ଗୋଟା ମୋର ବିଅର୍ଥେଣ
ଗଲା ।
ଯେତେ ବୋଲି ତପୀ କୋପେ ଶାପ୍ୟ
ଦେଲା ॥
ମୋତେ ଆମିଷ ତୁ ଭୁଞ୍ଜାଇଲୁ ରାଏ ।
ମୋହୋର ଦେଖୁ ଦେଖୁ ଧରସି ଗ୍ରିଧ କାଏ ॥
ଶାଗୁଣା ହୋଇଣ ତୁ ଅନେକ କାଳ ଥାଅ ।
ନାନା ମାଂସ ଭୁଞ୍ଜିଣ ସୁଖ ଭୋଗ ପାଅ ॥
ଶୁଣିଣ ନୃପତି ସେ କମ୍ପଇ ଥରହର ।
ଭୋ ତପୀବର ମୋର ଦୋଷ ତୁ ନ ଧର ॥
ମୋହର ଦୋଷ ନାହିଂ ସୁଆର ସେ ଦେଲା ।
ରାଜାର ବୋଲ ଶୁଣି ସନ୍ନ୍ୟାସୀ
ବୋଇଲା ॥୯୦

ସେହି ଉଲୁକ ଦେହ ପାଇଂବାକ ପୁଣି ।
ଆର କଥା ଏକ ଶୁଣ ନୃପମଣି ॥
ଭୃତ୍ୟ ଦୋଷ କଲେ ସ୍ୱାମୀକି ତା ଲାଗଇ ।
ପିତାର ଋଣ ସାଧୁତ ପୁତ୍ରକୁ ମାଗଇ ॥
ତୁ କିମ୍ପା ବିଚାର ନକରୁ ନୃପମଣି ।
ବ୍ରହ୍ମତେଜ ରାଜା କମ୍ପିଲା ତାହା ଶୁଣି ॥
କର ଯୋଡ଼ିଣ ବୋଲଇ ପ୍ରତିକାର କହ ।
ମୁହିଂ ଯେବେ ତୋତେ କଲଇଂ ଏତେ ଦ୍ରୋହ ॥
ତପୀ ବୋଇଲେ ଯେବେ ଶାଗୁଣା ହୋଇଥିବୁ ।
ଶ୍ରୀରାମଙ୍କୁ ଦେଖିଲେ ତୁ ମୁକତ ହୋଇଂବୁ ॥୧୦୦
ସୁଆର ତୋହୋର ଉଲୁକ ହୋଇଥିବ ।
ସେହି ରଘୁନାଥଙ୍କୁ ଦେଖିଲେ ତରିବ ॥
ଯେସନେକ ଶାପ୍ୟ ଯହୁଂ ତପୀ ଦେଇଗଲା ।
ବ୍ରହ୍ମତେଜ ରାଜା ଶାଗୁଣା ହୋଇଲା ॥
ସୁଆରଇ ଉଲୁ ହୋଇ ଗଲା ଉଡ଼ି ।
ଯେତେ କାଳ ହୋଇଲା ଅଛନ୍ତି ଦୁଃଖ ପଡ଼ି ॥
ଯେବେ ତୋତେ ଦେଖି ମୁକତ ହୋଇଗଲେ ।
ସ୍ୱର୍ଗେ ଥାଇଂ ଦେବତାଏ ଏସନ ବୋଇଲେ ॥
ତୁହୋ ରାମ ଏହାଙ୍କୁ ଶାପ ହାଦେ ନ ଦେ ।
ବ୍ରହ୍ମତେଜ ରାଜା ଅଟଇ ଏ ହାଦେ ॥୧୦
ଆକାଶର ବାଣୀ ଶୁଣି ରଘୁକୁଳ ନାଥ ।
ଗୃଧ୍ରକୁ ରାଇ ପୁଣ ମସ୍ତକେ ଦେଲେ ହସ୍ତ ॥
ପେଚାର ମୂର୍ଦ୍ଧନି ଛୁଇଂଲେ ବାମ କରେ ।
ସାଧୁ ସାଧୁ ଶବଦ ଶୁଭିଲା ସ୍ୱର୍ଗପୁରେ ॥
ତକ୍ଷଣେ ନିଜ ଦେହ ପାଇଲେ ବେନିଜନ ।
ରାମଙ୍କୁ ତୁଷ୍ଟି କଲେ ବ୍ରହ୍ମତେଜ ରାଜନ ॥
ବାବୁ ତୋର ମହିମା ରଘୁକୁଳ ସାଇଂ ।
ଯେତେକାଳ ଥିଲି ମୁଂ ଦୁଃସହ ଶାପ୍ୟ ପାଇ ॥
ତୋହୋର ଦ୍ରଶନେ ନିଜ ଦେହ ପାଇଲି ।
ଆବର ବିଶେଷେଣ ମୁକତି ହୋଇଗଲି ॥୨୦
ଯେସନେକ ବୋଲନ୍ତେ ମିଳିଲା ସୁରଯାନ ।
ଯାଇଣ ଦୁଇଜଣ ବସିଲେ ବିବାନ ॥
ଅନ୍ତରୀକ୍ଷ ମାର୍ଗେ ପୁଣ ସ୍ୱର୍ଗକଇ ଗଲେ ।
ସାଧୁଜନମାନଙ୍କର ସଙ୍ଗତେ ବସିଲେ ॥
ଯେଥୁ ଅନନ୍ତରେ ସେ ଶ୍ରୀରାମଚନ୍ଦ୍ର ରାଏ ।
ମୃଗୟା ବିନୋଦ ସାରି ଘରକଇ ଯାଏ ॥
ବାଜଇ ଟମକ ନିଶାଣ ବୀରତୂର ।
ଶିରରେ ଶ୍ୱେତ ଛତ୍ର ଉଡ଼ଇ ଫରହର ॥
ଉଦଣ୍ଡ ଆଲମ୍ବ ବିଲମ୍ବ ପନ୍ତି ପନ୍ତି ।
ପଟୋଆରି ହୋଇ ରାଉତେ ଝଲକନ୍ତି ॥୩୦
ଶ୍ରୀରାମ ବୀର ଚଳନ୍ତି ଧୀରେ ଧୀରେ ।
ଯାଇଣ ମିଳିଲେ ସେ ସରଯୁ ନଦୀତୀରେ ॥
ଦେଖିଲେ ମୃଗ ଶୂକର ବହି ନିଅନ୍ତି ।
କାନ୍ଧେ ବୋଝେ କେ ଅଣ୍ଡାରେ ବାନ୍ଧିଛନ୍ତି ॥
ଯେକରୁ ଆରେକ କେ ଯାନ୍ତି ଖର କରି ।
କେ କରେ ନିଅନ୍ତି ଝିଙ୍କ ଚଢ଼େଇମାନ ଧରି ॥
ଅଯୋଧ୍ୟାରେ ଆନନ୍ଦେ ଦେଖନ୍ତି ସର୍ବଜନ ।
କେ ବୋଲଇ ଆଜ କରିବା ଭୋଜନ ॥
କଉଣସି କାଳେତ ଯେମନ୍ତ ବେଣ୍ଟ ନାହିଂ ।
ଭଲା ପୀରଧିଯା ରଘୁକୁଳ ସାଇଂ ॥୪୦
ଯେସନେକ ବିଚାରନ୍ତେ ଦିଶିଲା ଶ୍ୱେତଛତ୍ର ।
ଅଶ୍ୱ ଚଢ଼ି ଅଛନ୍ତି ଦଶରଥର ଚାରି ପୁତ୍ର ॥
ସଂଭର ହୋଇ ପୁଣ ପଶିଗଲେ ନିଜ ପୁରେ ।
ଯାଇଂ ପଶିଲେକ ନବର ଭିତରେ ॥
ବାରୁ ଉତୁରି ରାମ ଭିତରକୁ ଗଲେ ।
ମର୍ଦ୍ଦନ ମାଜଣା ମୋଣୋହିଂ ବିଜେ କଲେ ॥
ଆଚୋବନ ସାରିଣ ତାମ୍ବୋଳ ନାଗି ହୋନ୍ତି ।
ବେଳ ଅସ୍ତ ସମଏଣ ସନ୍ଧ୍ୟା ସୁମରନ୍ତି ॥
ରାତ୍ରେ ନିଅବକାଶେ ଶେଯ୍ୟାରେ ବିଜେ କଲେ ।
ସାତ୍ୟା ରୂପ ଚିନ୍ତି ରଜନୀ ବଞ୍ଚିଲେ ॥୫୦
ପ୍ରଭାତେ ନିତ୍ୟକର୍ମ ସାରି ଦାଶରଥି ।
ଦେବତା ପିତୃତର୍ପଣ କରନ୍ତି ॥
ବାହାରେ ଅବକାଶ ଆସ୍ଥାନେ ବିଜଏ ।
ନିଜ ରାଜ୍ୟକଇ କୁଶଳ ଚିନ୍ତାକଏ ॥
ଯେମନ୍ତେ କେତେହେଂକ କାଳ ଯହୁଂ ଗଲା ।
ଶୁଣିମା ଭବାନୀ ଏ ଶଙ୍କର କହିଲା ॥
ଯେଥୁ ଅନନ୍ତରେ ଗଲା କିଛିଦିନ ।
ଆସ୍ଥାନେ ବିଜେ କରିଅଛନ୍ତି ରଘୁନାନ ॥
ଯେସନେକ ସମଏ ଅଇଲେ ଋଷିଗଣ ।
ଶ୍ରୀରାମଙ୍କୁ ଦେଖିଣ କରନ୍ତି କଲ୍ୟାଣ ॥୬୦
ଉଠି ନମସ୍କାର କଲେ ରଘୁକୁଳ ସୁତ ।
ଆସନ ଦେଇଣ ବସାଇଲେ ତପୋବନ୍ତ ॥
ଛଡ଼ ଅର୍ଘ୍ୟ ପୂଜା କରିଣ ଦାଶରଥି ।
କରପତ୍ର ଯୋଡ଼ି କୁଶଳ ପଚାରନ୍ତି ॥
ମୁନି ବୋଇଲେ ରାମ ତୁମ୍ଭର ପରସାଦେ ।
ଅରନ୍ୟେ ଦିନ ଆମ୍ଭେ ବଞ୍ଚୁ ଅପ୍ରମାଦେ ॥
ଯେବେ ଦତ୍ୟଙ୍କର ଭଏ ହୋଇଲା ଆମ୍ଭନ୍ତ ।
ଶୁଣି କୋପ କଲେ ଜାନେକୀର କାନ୍ତ ॥
ଭୋ ମୁନି ସତ୍ୟେ କହ ମୋର ଆଗେ ।
ଆବର ଅସୁରେ ଅଛନ୍ତି କି ଭୂଅ ଭାଗେ ॥୭୦
ମୁନି ବୋଇଲେ ରାମ ପଶ୍ଚିମ ସିନ୍ଧୁ ତଟେ ।
ମଧୁବନ ନାମେ ଦେଶ ଯମୁନା ନିକଟେ ॥
ହିରଣ୍ୟକଶ୍ୟପର ତନଏ ମଧୁବନ ରାଏ ।
ପ୍ରହଲାଦ ସାବତ ଜନନୀର ତନଏ ॥
ଈଶ୍ୱରଙ୍କୁ ସେବାକରି ପାଇଲାକ ଶୂଳ ।
ପ୍ରସନ୍ନ ହୋଇଂ ବର ଦେଲାକ ତିନିଡ଼ୋଳ ॥
ବୋଇଲା ଏ ଅସ୍ତ୍ର ପ୍ରାପତ ହେଉ ତୋତେ ।
ତୁ ଯେ ଅନେକ କଷ୍ଟରେ ସେବାକଲୁ ମୋତେ ॥
ଯେ ଶୂଳ ଘେନିଣ ତୁ ଜିଣିମୁଂ ତିନିପୁର ।
ଯେ ଶୂଳ ଥିଲେ ସମରେ ତୋତେ ହାରିବେ ସୁର ॥୮୦
ଦୁଇ ପୁରୁଷ ଯାଏ ଥିବ ତୋର ତହିଂ ।

ପୁତ୍ର ହିଂ ପ୍ରତାପ ହେବ ଶୂଳ ବହିଂ ॥
ଶୂଳ କରେ ନଥିଲେ ତୁ ନ କରିବୁ ଯୁଧ୍ୟ ।
ଶୂଳ ଧରିଥିଲେ ତ ନୋହିବୁ ପ୍ରାଣେ ବଧ ॥
ଯେତେ ବୋଲି ସଦାଶିବ ଅନ୍ତର୍ଦ୍ଧାନେ
ଗଲେ ।
ଶୂଳ ଘେନି ମଧୁ ଦୈତ୍ୟ ମଥୁରାକୁ ଅଇଲେ ॥
ଦେବାର୍ଚ୍ଚନ ମନ୍ଦିରେଣ ଥୋଇଲା ତାହା
ନେଇ ।
ପୂଜା ଭିଆଇଲା ଭୋଗ ରାଗ ଦେଇଂ ॥
ଶୂଳର ପ୍ରସାଦେ ସେ ଜିଣିଲା ସର୍ବରାଜା ।
ଦେଖି ଅଇରି ବଳ କଲେ ପାଦପୂଜା ॥୯୦
ରାବଣ ମାଉସୀ ଝିଅ ଅଟେ କୁମ୍ଭଲଖି ।
ମଧୁକୁ ତା ବିଭା କଲେ ବଳବନ୍ତ ଦେଖି ॥
କାଳେଣ ତାହାର ସେ ହୋଇଲା ପୁତ୍ର
ଜାତ ।
ଲବଣ ବୋଲି ନାମ ଅଟଇ ବିଦିତ ॥
ଯହୁଂ ସେ ବଳବନ୍ତ ହୋଇଲାକ ପୁତ୍ର ।
ପ୍ରସନ୍ନେ ବର ଦେଇଅଛନ୍ତି ତିନି ନେତ୍ର ॥
ଈଶ୍ୱରଙ୍କ ଆଗ୍ୟାଂଏଣ ସେହୁ ବହଇ ଶୂଳ ।
ଶସ୍ତ୍ର ଧରି ଭ୍ରମଇ ସେ ସପତ ପାତାଳ ॥
ତପୀଜନମାନଙ୍କୁ ଧରି ଘେନି ଯାଇ ।
ଘୃତ ଯୋଗେ ତାହା ମେଞ୍ଜନ କରି
ଖାଇ ॥୧୦୦
ପିତା ତିଆରିଲା ବୋଲ ସେ ନକଲା ।
ପରଜା ଜନକଇ ଅନେକ କଷ୍ଟ ଦେଲା ॥
ଦିନୁ ଦିନ ତାହାର ବଢ଼ିଲା ଦୁଷ୍ଟପଣ ।
ପିତାକୁ ନ ଦେଇ ଶୂଳ ବହିଲା ଆପଣ ॥
ପୃଥ୍ୱୀ ରାଜାମାନଙ୍କୁ ଜିଣିଲା ସେ ଧରି ।
ଆବର ବିଶେଷେଣ ମଉଳା ଦଶଶିରି ॥
ତେଣୁ କରି ପ୍ରତାପ ବଢ଼ିଲା ତାହାର ।
ତହିଂକି ଶୂଳ ଅଛି ପାର୍ବତୀ ନାହାର ॥
ପୁତ୍ର ଦୁଷ୍ଟ ଦେଖିଣ ବିଚାରଇ ବାପ ।
ଯେ ତନଏ ହୋଇଲା ମୋର କେବଣ ହିଂ
ପାପ ॥୧୦
ବିଚାର କଲା ଯେଥି ନ ଥିବଇଂ ମୁହିଂ ।

ଅବିଷେକ କରିବି ଶୂଳ ଯେହାକୁ ଦେଇ ॥
ଯେତେ ବୋଲି ପୁତ୍ରକୁ ରାଜ୍ୟ ସମର୍ପିଲା ।
ଆପଣେ ଯାଇ ସମୁଦ୍ର ଭିତରେ ପଶିଲା ॥
ପାର୍ଥିବ ଦେହ ଛାଡ଼ି ବରୁଣ ପୁରେ ଯାଇଂ ।
ଯେଥିଅନନ୍ତରେ ଲବଣ ରାଜା ହୋଇ ॥
ଶୂଳ କରେ ଧରି ସାଧିଲା ଜଗତ ।
ମାନଧାତା ରାଜାକୁ ସେ କଲା ପ୍ରାଣ ହତ ॥
ଶୁଣିଣ ଶ୍ରୀରାମ କୋପେଣ ପ୍ରଜଳି ।
ଚାହିଂଲେ ଶତୃଘନ ଚାମର ଅଛି ଢାଳି ॥୨୦
ବୋଇଲେ ତାହା ଛାଡ଼ି କତିକି ମୋର ଆଶ ।
ଶୁଣିଣ ଶତୃଘନ ମିଳିଲା ରାମ ପାଶ ॥
ସୁମନ୍ତକୁ ବୋଇଲେ ଅବିଷେକ ବିଧି ଆଣ ।
ରାଜାଙ୍କ ଅବିଷେକ ଯେବଣ ବିଧାନ ॥
ଶୁଣିଣ ମନ୍ତ୍ରୀବର ଆଣିଲା ସକଳ ବିଧି ।
ଶ୍ରୀରାମଙ୍କ ଆଗ୍ୟାଂରେ ବଶିଷ୍ଟ ତପନିଧି ॥
ଋଷିମାନେ ସମସ୍ତେ ଦେଖି ବେଦ ଧ୍ୱନି
କଲେ ।
ଶତୃଘନ ଶିରେ ପୁଣ ଅବିଷେକ ଦେଲେ ॥
ଶ୍ରୀରାମ ବୋଇଲେ ମଧୁବନେ ହୁଅ ରାଜା ।
ଲବଣର ପ୍ରାଣ ହାର ତୁ ବେଗେ
ଯାଯା ॥୩୦
ଶିରେ ପାଟ ବାନ୍ଧିଣ କରେ ଖଣ୍ଡା ଦେଲେ ।
ସ୍ୱର୍ଗପୁରେ ଦେବତାଏ ପୁଷ୍ପ ବୃଷ୍ଟି କଲେ ॥
ମୁନିଗଣମାନଙ୍କୁ ବୋଇଲେ ରାମ ଚାହିଂ ।
ଯେବେ ତୁମ୍ଭେ ବନସ୍ତେ ହୋ ତପକର
ଯାଇଂ ॥
ଶୁଣିଣ ମୁନିଗଣମାନେ ଆନନ୍ଦ ହୋଇଲେ ।
ଆଜହୁଂ ସେ ପ୍ରାଣ ସୁସ୍ଥ ହୋଇଲା
ବୋଇଲେ ॥
ଯେତେବୋଲି ମୁନିମାନେ ଗଲେ ଯେ
ଯାହାର ବାସ ।
ଶତୃଘନକୁ ସେ ରାଇଲେ ରାମଚନ୍ଦ୍ର ପାଶ ॥
ଭ୍ରଥ ଲକ୍ଷଣ ବଶିଷ୍ଟ ମୁନିମାନେ ଛନ୍ତି ।
ସୁମନ୍ତ ମନ୍ତ୍ରୀ ସହିତେ ତିଆରି କହନ୍ତି ॥୪୦
ଶ୍ରୀରାମ ବୋଇଲେ ତୁହୋ ଶତୃଘନ ଶୁଣ ।

ତ୍ରୈଲୋକେ ପ୍ରତାପୀ ସେ ଅଟଇ ଲବଣ ॥
ରୁଦ୍ର ଶୂଳ ପ୍ରସାଦେ ସେ ଜଗତ ଜିଣିଲା ।
ଜଗତ ତିରଣ ପ୍ରାୟେକ ମଣିଲା ॥
ଆବର ଉପର ବଂଶେ ଯୁବନାଶ୍ୱ ମହୀପତି ।
ତାହାର ତନଏ ମାନଧାତା ନୃପତି ॥
ସପତ ଦୀପରେ ସେ ଯେକଇ ନୃପବର ।
ତାହାଙ୍କର ସାଂଗ୍ରାମେ ହାରିଲା ଦଶଶିର ॥
ସେ ରାଜାର ତୁଲେଣ ଲବଣ ଯୁଧ୍ୟ କଲା ।
ମାୟା ଯୁଧ୍ୟ କରି ପୁଣ ଶୂଳେକ
ମାଇଲା ॥୫୦
ତେତେ଼ ନୃପତିକି କଲା ପ୍ରାଣ ନାଶ ।
ସାନ ନୋହଇଂ ସେଟି ମଧୁଦୈତ୍ୟର ଶିଷ ॥
ମାନଧାତା ଆମ୍ଭ କୁଳର ଅଧିକାରୀ ।
ତାହାଙ୍କର ଛଳେ ତୁହି ଶତୃ ଆସ ମାରି ॥
ଶୂଳ ନଥିବାର ବେଳ ଜାଣିଣ ତୁ ଥିବୁ ।
ଶୂଳ ଥିଲେ ତାର ତୁଲେ ଯୁଦ୍ଧ ନ କରିବୁ ॥
ଯାଅ ତୋତେ କଲ୍ୟାଣରେ ହୋଉ
ସଉମିତ୍ରୀ ।
ଶତ୍ରୁ ମାରି କରି ଯେବେ ହୋଅ ମହାକ୍ଷେତ୍ରୀ ॥
ଦୁଇ ସହସ୍ର ଗଜ ଯେ ସହସ୍ରେକ ରଥ ।
ଚାରି ସହସ୍ର ଅଶ୍ୱ ସେହୁ ଘେନିଲାକ
ସାଥ ॥୬୦
ଚାଳିଶ ସହସ୍ର ଦନ୍ତୀ ସାଙ୍ଗେ ଯାନ୍ତୁ ।
ଯେତେ ଇଚ୍ଛା ତେତେ ଧନ ସନ୍ୟ
ନେଇଥାନ୍ତୁ ॥
ଶୁଣି ଶତୃଘନ ନମସ୍କାର କଲେ ।
ଶୁଭ ଅନୁକୂଳେ ସେହୁ ବାହାର ହୋଇଲେ ॥
ଆଗ ହୋଇ ଥାଠ ସରଯୁ ପାରି ହୋଇ ।
ପଛେ ଶତୃଘନ ରଥ ଚଢ଼ି ଯାଇ ॥
ଭ୍ରଥ ଲକ୍ଷଣ ବେନି ଭାଇ ଆସନ୍ତି ।
ସରଯୁ ପାରି କରିଣ ଛାଡ଼ି ଯାନ୍ତି ॥
ସନ୍ୟ ସହିତେ ପୁଣ ଶତୃଘନ ଗଲା ।
ଦୁଇ ଦିବସରେ ଗଙ୍ଗା କୂଳେଣ
ମିଳିଲା ॥୭୦
ପ୍ରଭାତେ ନଦୀ ପାରି ହୋଇଣ ସେ ଯାନ୍ତି ।

ବାଲମ୍ଭିକ ମୁନିଙ୍କର ଆଶ୍ରମେ ହୋଅନ୍ତି ॥
ରଥରୁ ଓହ୍ଲାଇ ମୁନିଙ୍କି ନମସ୍କାର କଲେ ।
ଯହିଁକି ଯାଉଅଛି ସେ କଥା କହିଲେ ॥
ଶୁଣି ମହାଋଷି ତାକୁ ଗଉରୋବ କଲେ ।
ନବରତ୍ନ ଘରେ ରହିବାକୁ ଦେଲେ ॥
ଥାଠକୁ ଯୋଗାଡ଼ ଶତୃଘନଙ୍କୁ ମଣୋହିଁ ।
ତକ୍ଷଣେ ସମସ୍ତ ଭିଆଇଲେ ପୁନ୍ୟଦେହୀ ॥
ଭୁରି ଭୋଜନ ମୁନି ସନ୍ୟଙ୍କୁ ଯହୁଁ ଦେଲେ ।
ଭୋଜନ ସାରି ଲୋକେ ସନ୍ତୋଷ ହୋଇଲେ ॥୮୦
ଶତୃଘନ ମୋଣୋହି କଲେ ଋଷି ଘରେ ।
ଆଚୋବନ ସାରି ଗଲେ ନିଜ ପୁରେ ॥
ତାମ୍ବୋଳ ଭୁଞ୍ଜିଣ ସେ ପହୁଡ଼ିଲା କ୍ଷଣେ ।
ଯେସନେକ ସମଏ ଅଇଲେ ଋଷିଗଣେ ॥
ଲୋକର କହନ୍ତେ ଜାଣିଲା ଶତୃଘନ ।
ଶୁଚିବନ୍ତ ହୋଇଣ ଅଇଲା ବହନ ॥
ତପୀଗଣଙ୍କଇ ନମସ୍କାର କଲା ।
କଲ୍ୟାଣ ପାଇଣ କିଛୁ ଧୂରେଣ ବସିଲା ॥
ବାଲମ୍ଭିକେ ପଚାରିଲେ କୁଶଳ ବାରତା ।
ଭଲେଣ ଅଛନ୍ତି ଟିକି ଶ୍ରୀରାମ ଲକ୍ଷଣ ସୀତା ॥୯୦
ଭରଥ କଉଶଲ୍ୟା କକୟା ଆଈ ।
ଦଶରଥ ରାଜାର ଯେତେକ ମହାଦେଈ ॥
ସମସ୍ତ ଯେକ ହୋଇଅଛନ୍ତି ଟିକି ଭଲେ ।
କଳି ନ କରନ୍ତି ନା ସପତ୍ନୁଣୀଙ୍କ ତୁଳେ ।
ଆବର ଜନେକ ତିନିଝିଅ ଦେଲା ।
ସେ ଭଲେ ଅଛନ୍ତି ନା ବାଲମ୍ଭିକ ବୋଇଲା ॥
ସୁମନ୍ତ ସହିତେ ଆବର ମନ୍ତ୍ରୀ ଗଣ ।
ଯେମାନେ ବ୍ରତୀ ଅଛନ୍ତି ନା କୁଶଳେଣ ॥
ବଶିଷ୍ଠ ଯାବାଳି ବାମଦେବ କଶ୍ୟପ ।
ରଥ ଗଜ ପାଦାତି ରାଜାର ଯେତେ ଲୋକ ॥୧୦୦
ରାଜ୍ୟ ଧର୍ମ ଭଣ୍ଡାର ତୁମ୍ଭର ଯେତେ ସବୁ ।
ଯେମାନେ ଭଲ ହୋଇଅଛନ୍ତି ଟିକି ବାବୁ ॥

ଶତୃଘନ ବୋଇଲା ମୁନି ତୁମ୍ଭର ପରସାଦେ ।
ରାମଚନ୍ଦ୍ର ରାଜ୍ୟ କରନ୍ତି ଅପ୍ରମାଦେ ॥
ସୀତ୍ୟାକୁ ଛାଡ଼ିଲେ ସେ ଅଯୋଧାରେ ନାହିଁ ।
ଅକ୍ରୀତି କଥା ଶୁଣି ଛାଡ଼ିଲେ ରଘୁ ସାଇଁ ॥
ରାଜ୍ୟେ ନ ଥୋଇଣ ବନକୁ ପେଷିଲେ ।
ଲକ୍ଷଣ ସୁମନ୍ତ ଦୁହେଁ ବନେ ନିବାସିଲେ ॥
ଗଙ୍ଗା ପାରିକରି ଛାଡ଼ିଗଲେ ସ୍ୟତୀ ।
ଗର୍ଭବାସ ହୋଇଥିଲା ଜନେକ ଦୋହିତୀ ॥୧୦
ବାରତା ନ ପାଇଲୁ କେବଣ କତି ଗଲା ।
ସୁବର୍ଣ୍ଣ ସୀତ୍ୟା ଗଢ଼ାଇ ରାମ ସକଳ କାର୍ଯ କଲା ॥
ବାଲମ୍ଭିକ ବୋଇଲେ ତୁ ସଉମିତ୍ରୀ ଶୁଣ ।
ଯେଉଂଦିନୁ ସୀତ୍ୟାକୁ ଆଣିଲା ଲକ୍ଷଣ ॥
ଗଙ୍ଗା ପାରି କରି ଯେଣେ ଛାଡ଼ିଗଲା ।
ଅନାସ୍ତ ହୋଇଣ ସୁନ୍ଦେରୀ ଉଚ୍ଚେ ରୋଦନ କଲା ॥
ଯୋଗେ ଜାଣି ଆମ୍ଭେ ଆଣିଲୁ ତାହା ଯାଇଂ ।
ଯେବେ ଅଛୁ ଆମ୍ଭ ଘରରେ ଗୁହାଇ ॥
ଆଦି ଗର୍ଭ ଯେ ହୋଇଅଛି ସ୍ୟତୀ ।
କିମ୍ପା ନ ବିଚାରିଣ ଛାଡ଼ିଲେ ରଘୁପତି ॥୨୦
ଶତୃଘନ ବୋଇଲା ଋଷିଙ୍କ ବଚନେ ।
ମନ୍ଦ ବୋଲି ବୋଇଲେ ଅଯୋଧାର ଜନେ ॥
ଚାର ଜଣାଇଲା ତାହା ଶୁଣି ରାମ ଆଗେ ।
ସୀତ୍ୟା ଛାଡ଼ିଲେ ରାମ ମନର ବଇରାଗେ ॥
ଯଦ୍ୟପି ସୀତ୍ୟା ଛାଡ଼ିଲେ ନ ପାରିଲେ ମୁଛି ।
ସୁବର୍ଣ୍ଣର ସୀତ୍ୟା ଯେବେ ଗଢ଼ାଇ ଦେଖୁଅଛି ॥
ଦେହ ଭାଜିଲାନି ଜାନେକୀ ଅଇଲାର ।
କଥାହିଁ ଅରସ ହୋଇଲାନି ଅପାର ॥
ଲୋକିତ କଥାକୁ ସେ କରଇ ରାଜା ପଣ ।
ଅନୁକ୍ଷଣେ ଭାଳୁଥାନ୍ତି ଶ୍ରୀରାମ ଲକ୍ଷଣ ॥୩୦
ଆମ୍ଭେ ତୁନି ହୋଇଂ ହେଜୁ ଥାଉ କଥା ।

ରଘୁନାଥର ମନେଥାଇ ବହୁତ ବ୍ୟଥା ॥
ଯହୁଁ ମହାପ୍ରଭୁ ସେ ଆହାବି ନ ପାରି ।
ସୁଖ ଭୋଗ ଆଶ ନାହିଁନା ତାହାରି ॥
ତୁମ୍ଭେ ବାଲମ୍ଭିକ ଭଲ କଥା କଲ ।
ଜନେକର ଝିଅକୁ ଆଣି ସମ୍ଭାଳିଲ ॥
ଯେଥେ ଶ୍ରୀରାମର ତୁମ୍ଭେ ରଖିଲ ପ୍ରାଣ ।
ଯେଣେ ତେଣେ ନଯାଇ ନୋହିଲା ରଣଭଣ ॥
ଦଶରଥରୁ ଅଧିକ ପିତା ହୋଇଲ ଆମ୍ଭଙ୍କୁ ।
କିସ ଦେଇ ଅବା ଶୁଝିବୁ ତୁମ୍ଭଙ୍କୁ ॥୪୦
ଆବର ରଖିଲ ଯେ ଜନେକର ମହିମା ।
ବାଲମ୍ଭିକ ଘରେ ଅଛଇ ତାହାର ଜେମା ॥
ଯେ କଥା ସବୁହୁଁ ହୋଇଲା ମହାସୁଖ ।
କାହା ନ ଜାଣ ତୁମ୍ଭେ ଅଟ ଜ୍ଞାନ ମୁଖ୍ୟ ॥
ଦୁଇ କୁଳକୁ ତୁମ୍ଭେ ଅର୍ଜିଲ ଯେଣୁ କରି ।
ସବୁନ୍ତି ଉପୁଗାର କଲ ତପଚାରୀ ॥
ଯେସନେକ ବୋଲି ବୋଇଲା ଶତୃଘନ ।
ଯେକଥା ଅଟଇ ବୋଇଲେ ସକଳ ତପୋଧନ ॥
ବାଲମ୍ଭିକ ହସ ହସ ଗ୍ରନ୍ଥ ସତ ବୋଲି ।
ଭବିଷ୍ୟ ପୁରାଣ ବ୍ରହ୍ମାର ବୋଲେ କଳି ॥୫୦
କାଳେ ସବୁ କଥା ସ୍ୱରୂପ ହୋଇଲା ।
ଯେମନ୍ତ ବୋଲି ମୁନି ମନେଣ ବୋଇଲା ॥
ଯେଥୁ ଅନନ୍ତରେ ନାନା କଥା ପଢ଼ି ।
ବେଳ ବୁଡ଼ିଣ ଯେ ହୋଇଲାକ ସନ୍ଧ୍ୟା ଘଡ଼ି ॥
ଆଦିତ୍ୟ ପୂଜିବା ବୋଲି ସମସ୍ତେ ଉଠିଗଲେ ।
ଯେ ଯାହା ମନ୍ତ ପଢ଼ି ଜଳ ଦାନ ଦେଲେ ॥
ବାଲମ୍ଭିକ ନିଜ ପୁରେ ହୋଇଲେ ପ୍ରବେଶ ।
ସୀତୟା ମୁଖ ଚାହିଂଣ ହୋଇଲେ ହସ ହସ ॥
ବୋଇଲେ ମାଏ ଗୋ ଶତୃଘନ ଅଇଲା ।
ମଥୁରା ଯିବ ବୋଲି ମୋ ଆଗେ କହିଲା ॥୬୦

ପଚାରିଲୁ ଶ୍ରୀରାମ ଅଛନ୍ତି ନା କୁଶଳେ ।
ଶାଶୁ ଦିଅର ଅମାତ୍ୟ ସକଳେ ॥
ତୋହୋର ଥିବାର ଯେଥି ନ ଜାଣନ୍ତି
କେହି ।
ଯେହିକ୍ଷଣି ଆମ୍ଭେ କହିଲୁ ବଇଦେହୀ ॥
ଶୁଣି ବଇଦେହୀ ଲୁଚାଇଲା ମଥା ।
ଲଜ୍ୟା ପାଇଲାକ ନ କହିଲା କଥା ॥
ଜାଣି ମହାରଷି ଆଡ଼େ ହୋଇଂଗଲେ ।
ବେଳ କାଳ ଜାଣି ଅଗ୍ନିରେ ହୋମ ଦେଲେ ॥
ଯେଥୁଅନନ୍ତରେ ଶୁଣ ଦିବ୍ୟ ରୀତି ।
ଶୁତିଲେ ଶେଯ୍ୟାରେ ଶତ୍ରୁଘନ ପ୍ରଭୃତି ॥୭୦
ରଷି ରଷିଆଣୀମାନେ ନିଦ୍ରା ଗଲେ ।
ବାଲ୍ମିକ ଆଗେଣ ଝିଅମାନେ କହିଲେ ॥
ଶୁଣସି ବାଭିଏ ଜାନେକୀର କଥା ।
ଯେହିକ୍ଷଣି ତାର ହୋଇଲା ପେଟ ବ୍ୟଥା ॥
ରାମ ରାମ ବାଳୀ ସୁମରୁଅଛି ମୁଖେ ।
ଆମ୍ଭମାନଙ୍କୁ ଗାଳି ଦେଲାକ ବିମୁଖେ ॥
କି ବୁଦ୍ଧି କରିବା ସେ ନୁଆଇଂ ସହି ।
ଘୋଡ଼ା ଲୋଟି ଦେଇଂ ଲୋଟୁଅଛି ମହୀ ॥
ପୁତ୍ରୀଙ୍କର ବଚନ ଶୁଣି ମହାରଷି ।
ପଚାରିଲେ ମାସ ହୋଇଲାନିକି ଆସି ॥୮୦
କୁମାରୀ କହିଲେ ସଂପୂର୍ଣ୍ଣ ଦିନ ଆଜ ।
ଜାନେକୀ ବୋଲୁଅଛି ଜାଣନ୍ତି ରାମରାଜ ॥
ବୋଇଲେ ମହାରଷି ବେଗ ହୋଇ ଯାଅ ।
ଜନେକ ଦୋହିତାକୁ ଜଗି ବସି ଥାଅ ॥
ଯେସନେକ ସମଏ ଆସି ସ୍ତିରୀଏ କହିଲା ।
ଅଣ୍ଡିରା ପୁତ୍ରେକ ସୀତ୍ୟା ପ୍ରସବିଲା ॥
ପୁଣିହିଂ ତାହାର ବଥାଉ ଅଛି ପେଟ ।
ଶୁଣିଣ ହରଷ ହୋଇଲେ ତପୀଶ୍ରେଷ୍ଠ ॥
ଶୁଚିବନ୍ତ ହୋଇଣ ବସିଲେ ଲଏ କରି ।
ଜାଣିଲେ ଆରେକ ପୁତ୍ର ଅଛଇଂ ଗର୍ଭେ
ଧରି ॥୯୦
ଯେସନେକ ବିଚାରୁ କହିଲେକ ଯାଇଂ ।
ପୁଣିହିଂ ପୁତ୍ରେକ ଜନମ ହୋଇଲା
ଗୋସାଇଂ ॥

ଶୁଣି ମହାରଷି ହୋଇଲେ ହରଷ ।
ରାତ୍ର ଚାହିଲେକ ଅଟଇ ଘଡ଼ି ଦଶ ॥
ଶତ୍ରୁଘନ ତହିଂକି ବେଗ ହୋଇଂ ଗଲେ ।
ଶ୍ରୀରାମର ବେନିପୁତ୍ର ହୋଇଲା ବୋଇଲେ ॥
ଜାନେକୀର ଗର୍ଭରୁ ଦୁଇ ପୁତ୍ର ହୋଏ
ଜାତ ।
ଲୋକେ କହୁଛନ୍ତି ଶ୍ରୀରାମ ସଂଯାତ ॥
ଶତ୍ରୁଘନ ବୋଇଲେ ତୁମ୍ଭରି ପରସାଦେ ।
ସବୁଠାରୁ ଆମ୍ଭେ ତରିବୁ ଅପ୍ରମାଦେ ॥୧୦୦
ଶୁଣିଣ ମହାରଷି ଆନନ୍ଦ ହୋଇଲେ ।
ପୁତ୍ରଙ୍କର ଗ୍ରହରାଶି ନକ୍ଷତ୍ର ଗଣିଲେ ॥
ଦୁହିଂଙ୍କରି ରୋହିଣୀ ନକ୍ଷତ୍ର ବୃଷ ରାଶି ।
ମେଷ ଲଗ୍ନ ଉଦେ ହୋଇଲାକ ଆସି ॥
ଲଗ୍ନେ ବୃହସ୍ପତି ଲଗ୍ନେ ଅଛି ବୁଧ ।
ଶୁକ୍ର ଏକାଦଶୀ ଯୋଗ ଅଟଇ ସିଦ୍ଧ ॥
କଇଲବ ନାମେ କରଣ ତିଥି ଗୋଟା ।
ବୃହସ୍ପତି ବାରେ ଜନମିଲେ ରାମ ବେଟା ॥
ଶତ୍ରୁଘନଙ୍କୁ କହି ବାହୁଡ଼ିଲେ ମୁନି ।
ନିଜ ମନ୍ଦିରେ ଆସି ରାଇଲେ
କାମେନୀ ॥୧୦
ଜାନେକୀର କଥା ପଚାରିଲେ ଶରଧେ ।
ତାହାଙ୍କର ଘର ଉଚାଟ ରାତ୍ର ଅର୍ଦ୍ଧେ ॥
ରଷିଆଣୀ ବୋଇଲେ ସବୁ କଥା ଭଲ ।
ଜନମ ହୋଇଲେ ସୂର୍ଯବଂଶର ଦୁଇମଲ ॥
ଫୁଲ ଆକୋଂଡ଼ି ପଡ଼ିଲା ଯେକାବେଳେ ।
ଏହେର୍ଣ୍ଣେକ ପ୍ରସବ ଦେଖିନାହିଂ ରବିତଳେ ॥
ମୁନି ବୋଇଲେ ପୁଣି କିସ କିସ ଭାଳ ।
ଯେମନ୍ତେ ତିନି ପ୍ରାଣୀ ହୋଇଥାନ୍ତି ଭଲ ॥
ତେହେନେକ କରିଥାଅ ଆମ୍ଭେ ତ ନ
ଜାଣୁ ।୨୦
ରଷିଆଣୀ ବୋଇଲେ ଆମ୍ଭେ ଝିଅ ପ୍ରାଏ
ମଣୁ ॥
ନାହି କାଟି ପୁତ୍ରକୁ ସ୍ନାହାନ କରାଇଲୁ ।
ଯେନ୍ତୁଡ଼ି ଉଛାଇଂଣ ଅଗ୍ନିରେ ସେକାଇଲୁ ॥
ପୋଖତୀକି ବେଢ଼ି ନିଆଂ ଦେଉଛନ୍ତି
ଥୋକେ ।

ପୁଅନ୍ତ ଇଚ୍ଛାଗୁଛନ୍ତି ତହିଂ ଲୋକେ ॥
ଧାଇ ଧରାଇଲୁ ଦୁଧ ଦେବା ପାଇଂ ।
କେହୁ ଧରିଥିବେ ପାଳି ଓଡ଼ା ହୋଇଂ ॥
ତଇଳ ହଳଦୀ ସୁରଭି କ୍ଷୀର ଅଛି ।
ଯେ କଥାକୁ ଆଉ ଭ୍ରାନ୍ତି ନାହିଂ କିଛି ॥
ପୋଖତୀ କି କାଲି ଦେବା ଉପବାସ ।
ପରଦିନ ସକାଳେ ଭୁଞ୍ଜାଇବା ରସ ॥୩୦
ଦେହ ଗୁଣ ଜାଣି ପଥି ପୁଣ ଦେବା ।
ପାନର ସଙ୍ଗତରେ ବୋଳ ଖୁଆଇବା ॥
ଦିନକୁ ଦିନ ସିନା ହୋଇବ ଦେହ ଭଲ ।
ତୁମ୍ଭେତ ନୂଆ ପରାଏକ କହିଲ ॥
ଭବିଷ୍ୟ ପୁରାଣ ଯୋଡ଼ିଅଛ ତୁମ୍ଭେ ।
ତହୁଂ କଥାମାନ ଶୁଣିଅଛୁ ଆମ୍ଭେ ॥
ଯେ ସୀତ୍ୟା ଅଟଇ ଜଗତ ଠାକୁରାଣୀ ।
ତେିଲୋକ୍ୟର କରତା ଏ ଅଟଇ
ନାଏକାଣୀ ॥
ଜଗତ ଜନଙ୍କର ଆହାରର କର୍ତ୍ତା ।
ଯେବେ ସେ ବୋଲାଇଲା ଜନେକ ଝିଅ
ସୀତ୍ୟା ॥୪୦
ଯେକଥାମାନ ଆମ୍ଭେ ଭଲେ ଅଛୁ ଜାଣି ।
ଯେହାକୁ ସେବାକଲେ ତରିବେ ଭବୁଂ ପ୍ରାଣୀ ॥
ତେଣୁକରି ମୋର ଅନୁବ୍ରତେ ବ୍ୟଥା ।
ତୁମ୍ଭଙ୍କୁ ମୁନି ନ ଲାଗଇ ସେ କଥା ॥
ଶୁଣିଣ ବାଲ୍ମିକ ଶୋଯନ ଥାନେ ଯାଇଂ ।
ବାହୁଡ଼ି ଧର୍ମବତୀ ସୀତ୍ୟା କତି ପାଇଂ ॥
ଯେ ବିଧି ବିଧାନ ସାରିଲେ ପୂର୍ବରୀତି ।
ଯେଥୁଅନନ୍ତରେ ହୋଇଲା ପାହାନ୍ତି ॥
ନିଦ୍ରୁଂ ଉଠି ଶତ୍ରୁଘନ ଟମକ ଦିଆଇଲା ।
ଚତୁରାଙ୍ଗ ବଳ ତାର ସଜ ହୋଇ
ଅଇଲା ॥୫୦
ବାଲ୍ମିକ ମୁନିଙ୍କି ଆଣିଲେ ହକରାଇ ।
କରଯୋଡ଼ି ଶତ୍ରୁଘନ ବିନୋଇ କହଇ ॥
ଭୋ ମୁନିବର ମୋତେ କଲ୍ୟାଣ କରିବା ।
ଲବଣକୁ ଜିଣିମାକୁ ମୋତେ ବର ଦେବା ॥
ମୁନି ବୋଇଲେ ତୋର ବାଞ୍ଛା ହୋଉ ସିଦ୍ଧ ।

ମଧୁଦତ୍ୟ ପୁତ୍ରକୁ କର ପ୍ରାଣେ ବଧ ॥
ବାହୁଡ଼ା ବେଳେଟୁ ଯେହି ବାଟେ ଯାଅ ।
ଛୁଟିକିଆ ହୋଇଲ ଯେକଥା ଜାଣିଥାଅ ॥
ଯେତେ କହି ମୁନି ବାହୁଡ଼ିଣ ଗଲେ ।
ଚତୁରାଙ୍ଗ ବଳ ଘେନି ଶତ୍ରୁଘନ
ଚଳିଗଲେ ॥୬୦
ବନ ପର୍ବତ ଅନେକ ଲଙ୍ଘିଯାନ୍ତି ।
ବାଟେ ଯାନ୍ତେ ରାଜାଙ୍କର କଟକେ ପଶନ୍ତି ॥
ଜାଣି ରାଜାମାନେ ଗୁହାନ୍ତି ଯୋଗାଣ
ଦେଇଂ ।
ଶ୍ରୀରାମ କନେଷ୍ଟ ବୋଲି ଅବା ଯେ
ଜାଣଇଂ ॥
ନାନାଭାଷାମାନନ୍ତ ଶୁଣନ୍ତି ଯାଉଂ ବାଟେ ।
ଅପୂର୍ବ ପଦାର୍ଥମାନ ବିକା ହୋଇଥାଉଂ
ହାଟେ ॥
ଗିରି ଘୋର କନ୍ଦରେ ପଥବହି ଗଲେ ।
ଅନେକ ଉଚ୍ଚ ଘାଟି ଉଠିଣ ଓହ୍ଲାଇଲେ ॥
ସାତଦିନେ ଯାଇଂ ଯମୁନା କୂଳେ ପାଇଂ ।
ଋଷିମାନେ ବାଟ କଢ଼ାଇ ଘେନି
ଯାଇଂ ॥୭୦
କାଳନ୍ଦୀ ତଟରେ ଋଷିଙ୍କ ଆଶ୍ରମ ।
ପର୍ବତ ଥାନ ଅପୂବ ମହା ଅରନ୍ୟ ॥
ବେଳ ପ୍ରହରକ ମଧ୍ୟେ ତହିଂ ଯାଇ ।
ଆନନ୍ଦେ ଥାଠ ଗୋଟି ଭଲ ପାଣି ପିଇଂ ॥
ବନ ପର୍ବତ ସେ ଦୁଃଖ ପଡ଼ିଗଲେ ।
ତହିଂ ପ୍ରବେଶ ମାତ୍ରକେ ଚିନ୍ତା ପାଶୋରିଲେ ॥
ମୁନିମାନେ ଦେଲେ ଥାଠକୁ ଯୋଗାଣ ।
ମଣୋହି କଲେ ତହିଂ ଶତ୍ରୁଘନ ରାଣ ॥
ସେଦିନରହି ତହିଂ ବରଗିଲେ ଚାର ।
ଋଷି ଜଣ ଦୁଇ ଚାରି ତାଙ୍କ ସଙ୍ଗରେ
ବାହାର ॥୮୦
ତତକ୍ଷଣେ ଋଷି ଦୋହେଂ ହୋଇଲେ
ବାହାର ।
ଗମନ୍ତି ବନସ୍ତରେ ସେ ଅତ୍ୟନ୍ତ ପ୍ରଖର ॥
ରାତ୍ରେ ପ୍ରବେଶ ହୋଇଲେ ମଧୁଦେଶେ ।
କେହି ନ ଜାଣନ୍ତି ସେ ଯୋଗୀ ବେଶେ ॥
ସିଂହଦ୍ୱାରେ ମିଛେ ଶୋଇଥଲେ ନିଦ ।
ଯେସନେକ ସମଏ ହୋଇଲା ରାତ୍ର ଅର୍ଦ୍ଧ ॥
ଟମକ ଦିଆଇଲା ଲବଣ ନୃପତି ।
ସଜ୍ଜ ହୋଇଲେ ତାର ପାଇକ ଘୋଡ଼ା
ହାଥୀ ॥
ବିହୁଡ଼ି ଲଗାଇଂ ରାଜା ମୃଗୟାକୁ ଗଲା ।
ଶୂଳ ରଖିଥାଅ ବୋଲି ମନ୍ତ୍ରୀକି
ବୋଇଲା ॥୯୦
ସେ କଥା ତଥ୍ୟ କରି ଜାଣିଲେ ଚାରମାନେ ।
ଶୂଳ ଥିବା କଥା କହନ୍ତି ପୁରଜନେ ॥
ହାଟ ବାଟ ଲୋକେ ବୋଲାବୋଲି ହୋନ୍ତି ।
ଲବଣ ଶୂଳ କିମ୍ପା ନ ନେଲା ଏ ଘାନ୍ତି ॥
କେ ବୋଲଇ କେଉଂ ଶତ୍ରୁ ଅଛି ଆସି ।
ମୃଗନ୍ତ ମାରିବ କିଏ ଶୂଳ ଘେନି ଭୁଷି ॥
କେ ବୋଲଇ ଆନ ବେଳେ କ୍ଷଣେ ନ
ଛାଡ଼ଇ ।
ଈଶ୍ୱରେ ବୋଲିଛନ୍ତି ନ ଛାଡ଼ିବା ପାଇଂ ॥
ଯେ ଶୂଳ ଛାଡ଼ିଲେ ଯଶ ତୋତେ ନାହିଂ ।
ସଦାଶିବ ଆଗ୍ୟାଂରେ ଅନୁବ୍ରତେ
ଧରଇ ॥୧୦୦
ଅନ୍ତେଶ୍ୱରକୁ ଯିବାବେଳେହେଂ ଲୋଡ଼ଇ ।
ଏ ଶୂଳ ପ୍ରସାଦେ ରିପୁବଳ ମାରଇ ॥
ଯେବେ କିମ୍ପା ଛାଡ଼ିଲା କେବଣ ଗୁଣ
ପାଇଂ ।
କେ ବୋଲଇ କିସ ଏ କରିବ ଶୂଳ
ନେଇଂ ॥
ଯେହିକ୍ଷଣି ମୃଗୟା ସାରିଣ ବାହୁଡ଼ିବ ।
ଦେବାର୍ଚ୍ଚନ ବେଭାର ଯେଥି ଏ ସାରିବ ॥
ଯେସନେକ ଲୋକେ ବୋଲାବୋଲି
ହୋଅନ୍ତି ଯହୁଂ ।
ଶତ୍ରୁଘନର ଲୋକେ ଶୁଣିଗଲେ ତହୁଂ ॥
ଶୂଳ ନଥିବା ଜାଣି ବାହୁଡ଼ି ଅଇଲେ ।
ଶତ୍ରୁଘନ ଆଗେ ବାରତା ଆଣି
ଦେଲେ ॥୧୦
ଋଷି ଦୁଇଜଣ କହିଲେ ଯହୁଂ ସାର ।
ଯେହିକ୍ଷଣି ସଜ୍ଜ ହୁଅ ରଘୁକୁଳ ବୀର ॥
ଶୂଳ ଛାଡ଼ି ଲବଣ ମୃଗୟାକୁ ଗଲା ।
ନିଶ୍ଚଏ କାଳ ତାର ନିକଟ ହୋଇଲା ॥
ବେଗେ ସଜ୍ଜ ହୁଅ ଯିବା ମଧୁବନ ।
ଶୂଳ ଥିବା ଘର ଯାଇ ବେଢ଼ ଶତ୍ରୁଘନ ॥
ଯେମନ୍ତ ବେଳ ହାଦେ କେବେହେଂ ନ
ପାଇଂ ।
ଶୁଣି ବେଗେ ସଜ୍ଜ ଶ୍ରୀରାମର ଭାଇ ॥
ରଥ ଗଜ ଘୋଡ଼ା ପାଇକ ନିରନ୍ତର ।
ସାଂଗ୍ରାମ କାଛେଣି ହୋଇଲେ
ରଘୁବୀର ॥୨୦
ଟମକ ବଜାଇଣ ରାତ୍ର ଥାଉଂ ଗଲେ ।
ଋଷିମାନେ ବାଟ କଢ଼ାଇଣ ନେଲେ ॥
ମଥୁରା କଟକେ ପଶିଲେ ରାତ୍ର ଥାଉଂ ।
କେ ବୋଲଇ ଏ ରାଜା ଅଇଲା ରାତ୍ର ନ
ପାହୁଂ ॥
ଯେକମୁହାଂ ହୋଇ ରାଜଦାଣ୍ଡେ ଗଲେ ।
ନୃପତି ସିଂହଦ୍ୱାରେ ଯାଇଣ ମିଳିଲେ ॥
ଋଷି ଜଣ ଚାରି କଢ଼ାଇଛନ୍ତି ବାଟ ।
କେ ବୋଲି ଆହୋ ଏ ନୁହଇ ଆମ୍ଭ ଥାଟ ॥
ଯେସନେକ ସମଏ ଶତ୍ରୁଘନ ବୀର ।
ସନ୍ୟକୁ ଘେନି ପଶିଲା ନବର ଭିତର ॥୩୦
ଋଷିମାନେ ନେଇଂ ଶୂଳ ଦେଖାଇଣ
ଦେଲେ ।
ଯେହି ଘରେ ଶୂଳ ଅଛଇଂ ବୋଇଲେ ॥
ଶୁଣିଣ ସୁମିତ୍ରା ତନଏ ତୋଷ ମନ ।
ଶୂଳ ଥିବା ଘର ଆବୋରିଲେ ବହନ ॥
ସହସ୍ରେକ ପୁର କରି ବେଢ଼ିଲେ ନବର ।
ତୋଷେଣ ବଜାଇଲା ସେ ବୀର ତୂର ॥
ନଗ୍ର ନରନାରୀ ରାଜାର ରାଣୀହଂସ ।
ଶତ୍ରୁ ଅଇଲେ ବୋଲି ପାଇଲେ ମନେ
ତ୍ରାସ ॥
ଯେଥୁ ଅନନ୍ତରେ ପାହିଲାକ ରାତି ।
ନିଶ୍ଚଏ ପର ଥାଠ ବୋଲିଣ ବୋଲନ୍ତି ॥୪୦

ଚାର ଜଣାଇଲା ଲବଣକୁ ଯାଇଂ ।
ଶୁଣି ମାହାରାଜା ଅଇଲାକ ଧାଇଂ ॥
ମୃଗ ଶୂକର ଯେ ମାଇଲା ବିନୋଦେ ।
ଭାର ବୋଝ ବୁହାଇଂ ପଶିଲା ନଗ୍ର ମଧ୍ୟେ ॥
ହସ୍ତୀ ଘୋଡ଼ା ରଥୀ ପାଦାନ୍ତି ବହୁତ ।
ସମ୍ଭର୍ବ ହୋଇ ନଗ୍ରେ ପଶିଲା ମଧୁସୁତ ॥
ଚାର ଜଣାଇଲା ଶୁଣିମାକ ନୃପବର ।
ଶତୃଘନ ନାମେଣ ଦଶରଥ କୁମର ॥
ଶ୍ରୀରାମଚନ୍ଦ୍ର ଭାଇ ଅଯୋଧ୍ୟାର ପତି ।
ଥାଠ ଘେନି ତୋହୋର ନବରେ ପଶିଛନ୍ତି ॥୫୦
ଶୂଳ ଥିବା ଘର ତୋର ବେଢ଼ିଲେ ଗୋସାଇଂ ।
ରାଜଗୃହ ମଧ୍ୟେ ପଶିଲେ ଝସାଇଂ ॥
ବୀର ତୂର ବଜାଇଣ କରୁଛନ୍ତି ରୋଳ ।
ଶୁଣି କୋପକଲା ମଧୁବନ ଭୂପାଳ ॥
ରଥରୁ ଓହ୍ଲାଇ ଧାଇଂଲା ଉଗ୍ରମୂର୍ତ୍ତି ।
କଦମ୍ବ ବୃକ୍ଷେକ ଉପାଡ଼ିଲା ଧାତି ॥
ସନ୍ୟ ସାହା ଛାଡ଼ି ତାର ଧାଇଂଲାକ ରାଗେ ।
ଯାଇଣ ମିଳିଗଲା ଶତୃଘନ ଆଗେ ॥
ପିଠିରେ ଲାଗିଛନ୍ତି ଚତୁରାଙ୍ଗ ବଳ ।
ଦୁଇ ଥାଠ ଭେଟି ବାଜିଲା ରଣଗୋଳ ॥୬୦
ଦଇତ ବୋଇଲାକ ଶତୃଘନ ମୁଖ ଚାହିଂ ।
ଜୀଇଂବାକୁ ଆଶା ତୋହୋର ହାଦେ ନାହିଂ ॥
ମୋହୋର ମହିମା କି ଶୁଣିଲା ନାହିଂ କର୍ଣ୍ଣେ ।
ଆଜତ ପ୍ରତିଗ୍ୟାଂ ମୋର ଦେଖିବୁ ନୟନେ ॥
ପୃଥିବୀ ରାଜାକଇଂ ମୁଂ ଜିଣିଲଇଂ ଧରି ।
ମାନଧାତା ରାଜାକୁ ପକାଇଲି ମାରି ॥
ସଦାଶିବର ବରେ ମୁଂ ନଗଣଇ କାକୁହିଂ ।
କିମ୍ପାଇଂ ନ କହିଲା ତୋ ଶ୍ରୀରାମ ନାମେ ଭାଇ ॥
ରଣ କଲେ ଦେଖିବୁ ମୋହୋର ବୀରପଣ ।
ଇତର କ୍ଷତ୍ରୀ ମୁଂ ନୁହଇଂ ରାବଣ ॥୭୦
ଯେବେ ଯେହଇକ୍ଷଣି ଯେତେକ ତୋର ବଳ ।
ଯେହି ବୃକ୍ଷରେ ଲୋଟାଇବି ଭୂମିତଳ ॥
କିଞ୍ଚିତ ସମରେ ଘେନିମି ତୋର ପ୍ରାଣ ।
ଯେତେ ବୋଲି କୋପେ ଧାଇଂଲା ଦତ୍ୟରାଣ ॥
ଦେଖିଣ ଶତୃଘନ ତୀକ୍ଷ୍ଣ ଶର କଲା ।
ଲବଣ ଆୟୁଧ ଯେ କାଟି ପକାଇଲା ॥
ବାହୁଡ଼ିଣ ଅସୁର ବସିଲା ଯାଇଂ ରଥେ ।
ସାରଥି ଧନୁ ଏକ ଦେଲା ନେଇ ହାଥେ ॥
କାନ୍ଧେ ତ୍ରୋଣ ଭିଡ଼ି ବିନ୍ଧିଲା ନାରାଚ ।
ଦେଖିଣ କୋପ କଲା ଶ୍ରୀରାମ ଅନୁଜ ॥୮୦
ଦୁଇ କ୍ଷତ୍ରୀଙ୍କର ବାଜିଲାକ ରଣଗୋଳ ।
ଶସ୍ତ୍ର ବଣ୍ଟା ବଣ୍ଟି ବାଜିଲା ଧନ୍ଦୋଳ ॥
ବେଳୁ ବେଳ ଯୁଦ୍ଧ ହୋଇଲା ଅପାର ।
ଦୁହିଂଙ୍କର ଶ୍ୟରୀର ରକତେ ଜରଜର ॥
ଆକାଶ ପୃଥ୍ୱୀ ଲଗାଇଲେ ଯେକ ।
ଅସୁର ମାୟା ଯୁଦ୍ଧ କଲାକ ଅନେକ ॥
ଦେଖିଣ ଶତୃଘନ ବିଶ୍ୱରୂପ ଧରି ।
ଯେକା ପାଦେ ଲୁଚାଇଲା ସପତ ବସୁନ୍ଧରୀ ॥
ସ୍ୱର୍ଗ ଦେବତାଏ ଦେଖିଣ ଭଏ କଲେ ।
ବନ ଜୀବଜନ୍ତୁ ସଭିଏ ଡରିଲେ ॥୯୦
ଶୁକଳ ପର୍ବତ ପ୍ରାଏକ ବୀର ଦିଶଇଂ ।
ନିଶ୍ୱାସକେ ଲକ୍ଷେ ବାଣ ବେଳକେ ପେଷଇ ॥
ଆଶ୍ରିଯ ହୋଇଣ ସୁରଗଣନ୍ତ ଚାହିଂ ।
ବ୍ରହ୍ମାକୁ ବୋଇଲେ ଯେତ ଆଶ୍ଚର୍ଯ୍ୟ ଗୋସାଇଂ ॥
ରାମ ଲକ୍ଷଣ ଲଙ୍କାରେ ଯୁଦ୍ଧ କଲେ ।
ଯେଡ଼େକ ମାହାକାୟା କେହିତ ନ ଧଇଲେ ॥
ବିଧାତା ବୋଇଲେ ସେ ସ୍ୱଂଏ ନାରାଏଣ ।
ପାଶୁପତ ସମାନେ ଯେହାର କିଞ୍ଚିତ ବାଣ ॥
ଶ୍ରୀରାମ ଲକ୍ଷଣ ଭ୍ରଥ ଶତୃଘନ ଚାରିଭାଇ ।
ଯେହାକୁ ବେଗଳ ଯେ କରିତ ନୁହଇ ॥୧୦୦
ବିଷ୍ଣୁର ଅର୍ଦ୍ଧପ୍ରାଣ ବୈକୁଣ୍ଠେ ଥୋଇଲା ।
ଅର୍ଦ୍ଧେକ ଦଶରଥ ଚାରିପୁତ୍ର କଲା ॥
ଯେ ସେ ଶତୃଘନ ନାରାଏଣଙ୍କ ଶାଖା ।
ଦତ୍ୟବଳ ଦଳଣ ଅଟଇ ରଣରଙ୍କା ॥
ଯେହାକୁ ପଟାନ୍ତର କେ ହୋଇବାକ ଆନ ।
ଶତୃ ସଂହାରି ଯେହାର ନାମ ଶତୃଘନ ॥
ବ୍ରହ୍ମାର ମୁଖରୁ ଯେସନେକ ବାଣୀ ଶୁଣି ।
ସୁରଗଣେ ସନ୍ତୋଷ ହୋଇଲେକ ପୁଣି ॥
ବୋଇଲେ ଚାଲ ହୋ ସଂଗ୍ରାମ ଦେଖିଯିବା ।
ଶ୍ରୀରାମଙ୍କ ଭାଇ କେମନ୍ତ ଦିଶଇ ଅବା ॥୧୦
ଯେତବୋଲି ଯେ ଯାହାର ଯାନ ଆରୋହିଲେ ।
ବ୍ରହ୍ମା ସହିତେ ରଣ ଦେଖିତ ଅଇଲେ ॥
ଶୂନ୍ୟରେ ରହି ପୃଥୀକି ଦେଲେ ଦୃଷ୍ଟି ।
ଦେଖିଲେ ଦୁଇବଳ ହୋଇଲେ ଭେଟାଭେଟି ॥
ଛେଲ ଚକ୍ର ନାରାଚ ପେଷନ୍ତି ଘନ ଘନ ।
ମାର ମାର ଶବଦ ଶୁଭଇ ଅବିଚ୍ଛିନ୍ନ ॥
ଯେକକୁ ଆରେକ ଯହୁଂ ନ ଛାଡ଼ନ୍ତି ପଏ ।
କେ କାହାକୁ ଦେଖି ନ କରୁଛନ୍ତି ଭଏ ॥
ରଥେ ରଥ ହାବୋଡ଼ ଯେ ଗଜେ ଗଜ ଭେଟ ।
ଘୋଡ଼ାକୁ ଘୋଡ଼ାରେ ସେ ବାଜିଲା ତୋଟାମୋଟ ॥୨୦
ପାଇକେ ପାଇକେ ବିନ୍ଧାବିନ୍ଧି ହଣା ହଣି ।
ଓପ୍ରୋଧ ନ କରନ୍ତି ପ୍ରଚଣ୍ଡ ଆରେଣି ॥
ଚତୁରାଣ ବଳ ସମର ଅଙ୍ଗଛନ୍ଦେ ।
ବାଜନ୍ତି ଟମକ ନିଶାଣ ଅନର୍ଗଳେ ॥
ଘେନିଣ ଉଠାଉଠି ରହିଣ ମରାମରି ।
ଅସକ୍ଷ ସମର ଯେଣୁ ଚାହିଂତ ନ ପାରି ॥
ଦେବ ପ୍ରଶଂସା କରନ୍ତି ସ୍ୱର୍ଗପୁରେ ଥାଇଂ ।
ବାବୁ ସେ ସାଂଗ୍ରାମ ତୁଳାଇତ ନାହିଂ ॥
ଶରେ ଜ୍ୱଳାବଳି ସବୁଙ୍କରି ଦେହ ।
ମଡ଼ା ମଲେ ରକତ ବହିଲା ସୁହ ॥ ୩୦
ଗର୍ଜିଣ କାଣ୍ଡମାନେ ଯେଣେ ତେଣେ ଜଡ଼େ ।

ନିର୍ଘାତ ଶବଦ ଜାଣି କାଣ୍ଡମାନେ ପଡ଼େ ॥
ଲବଣ ଶତୃଘନ ସମର ଅନେକ ।
ନାହିଁ ପଟାନ୍ତର ଭୁବନ ତିନିଲୋକ ॥
ମାୟା ଯୁଧ୍ୟ ଯେ ଦତ୍ୟବୀର କରୁଥିଲା ।
ଶତୃଘନ ବିଶ୍ୱରୂପ ଦେଖି ଭଏ କଲା ॥
ସ୍ୱଭାବେ ଶୂଳ ସେ ଚାର ନାହିଁ ଯେ
ହସ୍ତେଣ ।
କେତେ ଯୁଧ୍ୟ ଅବା କରିବ ବାଣେ ବାଣ ॥
ଶକ୍ତି କରେ ଧରି ମଦ୍ଧିଣ ମାଇଲା ।
ଦେଖିଣ ଶତୃଘନ ନାରାଜେ
ଛିନାଇଲା ॥୪୦
ପୁଣି ମୁଦ୍ଗରେ ମାଇଲା ଦତ୍ୟରାଣ ।
ବାଣେ ନିବାରିଲା ତା ସୁମିତ୍ରା ନନ୍ଦନ ॥
ଦେଖି ଅସୁର ରାଏ ସେ ପାଇଲାକ ଲାଜ ।
କୋପଭରେ ପେଷିଲାକ ସହସ୍ରେ ନାରାଜ ॥
ପୁଣ ତିନି ବାଣ ବିନ୍ଧିଲା ନିଠାଇ ।
ଶତୃଘନ ଉପରେ ପଡ଼ିଲା ବାଣ ଯାଇ ॥
ମାଂଏସ ଫୁଟିଣ ନିକିଳି ଗଲା ହାଡ଼େ ।
ତକ୍ଷଣେ ପୂରିଲା ରକତ ଦେହେଂ ଗାଢ଼େ ॥
ରାଗେଣ ଶତୃଘନ ବାବନ୍ଲ ବାଣ ମାରି ।
ଧନୁ ଗୁଣେ ବସାଇ ବିନ୍ଧିଲା ଯତ୍ନ କରି ॥୫୦
ଚଳିଲାକ ନାରାଜ ଗର୍ଜନ ମାହାଘୋର ।
ଯାଇଣ ପଡ଼ିଲାକ ଲବଣ ହୃଦୟର ॥
ବୁକୁ ଫୁଟି ପିଠିକି ବାହାର ହୋଇଗଲା ।
ଭୂମିରେ ଗଳି ଯାଇଣ ପାତାଳେ ପଶିଲା ॥
ପ୍ରାଣ ଛାଡ଼ିଣ ପଡ଼ିଲା ଦତ୍ୟରାଣ ।
ପାତାଳୁ ବାହାର ହୋଇ ପଶିଲାକ ତ୍ରୋଣ ॥
ଶହସ୍ର ଶାଳେ ଯେବଣ ଶୂଳ ଥିଲା ।
ଦତ୍ୟ ପଡ଼ନ୍ତେ ସେ କପିଳାସ ଗଲା ॥
ଲବଣ ପଡ଼ନ୍ତେଣ ଭାଜିଲେ ଦତ୍ୟବଳ ।
ରହ ରହ ବୋଲନ୍ତି ସେ ସୁମୈତ୍ରା
ଦୁଲାଳ ॥୬୦
ଦେଖି ଦେବତାଏ ପୁଷ୍ୟ ବୃଷ୍ଟି କଲେ ।
ପ୍ରସନ୍ନ ହୋଇଣ ଶତୃଘନଙ୍କୁ ବର ଦେଲେ ॥
ଲକ୍ଷଣ କନେଷ୍ଠ ବୋଇଲେ ତୁମ୍ଭେ ଶୁଣ ।

ଯେବେ ମୋତେ ଦୟା କଲ ଦେବଗଣ ॥
ଯେ ପୁରେ ପରଜା ରହିବେ ସୁଖ ପାଇଂ ।
ଯେ ବର ମାଗୁଅଛି ଆନେ କାର୍ଯ ନାହିଂ ॥
ଶୁଣିଣ ଦେବତାଏ ବୋଇଲେ ଅସ୍ତୁ ହେଉ ।
ମଥୁରା ନାମେ ଆଜୁଏ କଟେକ ବୋଲାଉ ॥
ଯେତେ ବୋଲି ବ୍ରହ୍ମା ସହିତେଣ ଗଲେ ।
ଋଷିଗଣମାନେ ସୁଖେ ହୋମ କଲେ ॥୭୦
ମଧୁବନ ଦେଶର ପାତ୍ର ଅମନାତ୍ୟ ଗଣ ।
ଯେକାନ୍ତେଣ ବସି କଲେ ବିଚାରଣ ॥
ମନୁଷ୍ୟଙ୍କ ରାଜ୍ୟ ଅସୁର ଘେନିଥିଲା ।
ପୁଣି ବାସୁଦେବ ଯେବେ ଅନୁଗ୍ରହ
କଲା ॥
ଅଯୋଧ୍ୟାର ରାଜା ସାକ୍ଷାତେ ସୂର୍ଯ୍ୟବଂଶ ।
ତହିଂକି ଶ୍ରୀରାମ ଅଟନ୍ତି ବିଷ୍ଣୁ ଅଂଶ ॥
ତାହାର କନେଷ୍ଠ ଏ ଲକ୍ଷଣର ଭାଇ ।
ଶତୃଘନ ନାମ ସୁମେତ୍ରା ଯେହାର ଆଇ ॥
ଯେହାଙ୍କୁ ରାମଚନ୍ଦ୍ର ରାଜ୍ୟ ସମର୍ପିଲେ ।
ଯୋଗେ ଆସି ଲବଣ ଦତ୍ୟକୁ ବଧ
କଲେ ॥୮୦
ଆମ୍ଭର ବୋଇଲେ ଯେବେ ନୋହିବକି
ରାଜା ।
ଦେଖିଲଟିକି ଦେବଗଣ କଲେ ପୂଜା ॥
ସେ ପୁଣି ବର ମାଗିଲା ଯେହେର୍ଣ୍ଣେକ କରି ।
ଯେ ରାଜ୍ୟେରେ ପରଜା ଥିବେ ବହୁତ ପୂରି ॥
ଯେବେ ଆସ ଆମ୍ଭେ ଯାଇଂ କରିବା
ଦ୍ରଶନ ।
ଉଚ୍ଛୁର ହେଲେ କୋପ କରିବ ଶତୃଘନ ॥
ସବୁରିହିଂ ବିଚାରକୁ ଯେ କଥା ଯୋଗାଇ ।
ନିଉଛାଳି କରି ଦ୍ରଶନ କରିବାକ ଯାଇଂ ॥
ଲବଣକୁ ମାରି ଶ୍ରୀରାମର ସାନ ।
ସିଂହଦ୍ୱାରେ ଆସି କଲେକ ବିବାନ ॥୯୦
ଯେସନେକ ସମଏ ମନ୍ତ୍ରୀ ଦ୍ରଶନ ଆସି
କଲେ ।
ଯେଥେ ଆମ୍ଭେ ପାତ୍ର ମନ୍ତ୍ରୀ ବୋଲିଣ
ବୋଇଲେ ॥

ଶୁଣି ଶତୃଘନ ତାଙ୍କୁ ଗଉରୋବ କଲା ।
ଭଣ୍ଡାରୁ ଅଣାଇ ସବୁନ୍ତି ଶାଢ଼ୀ ଦେଲା ॥
ବୋଇଲେ ସମସ୍ତେ ଅଟ ତୁମ୍ଭେ ଭଲ ।
ପୂର୍ବେ ଅବା କେବଣ କିଛୃତ ପାପ କଲ ॥
ତେଣୁ କରି ପାଇଲ ଅସୁର ନୃପତି ।
ଦୁଇ ପୁରୁଷ ଯାଏ ସେ ଭୋଗକଲା ପୃଥୀ ॥
ଯେବେ ଈଶ୍ୱର ଅନୁଗୃହ
ହୋଇଲା ।୧୦୦
ବାହୁଡ଼ି ମନୁଷ୍ୟ ନୃପତି ସେ ହୋଇଲା ॥
ଯେବେ ଲବଣକୁ କରାଅ ଦହନ ।
ସତ ଥିଲେ ଅଗ୍ନି ଖାଆନ୍ତୁ ରାଣୀମାନ ॥
ଶୁଣି ମନ୍ତ୍ରୀମାନେ କଢ଼ାଇଲେ ଶବ ।
ଅଗ୍ନି ଦିଅନ୍ତେ ପୁଣ ସେ ମଢ଼ା ଭସ୍ମ ଯିବ ॥
ମହାଦେଈମାନେ ପଶିଲେ ଅନଳେ ।
ଥୋକାଏ ପଳାଇଲେ ପ୍ରାଣର ବିକଳେ ॥
ଯେଥୁ ଅନନ୍ତରେ ତହିଂ ଶତୃଘନ ରାଏ ।
ମଧୁବନ କଟକେ ଦାଉଣ୍ଡି ଦିଆଏ ॥
ପୂର୍ବେ ଯେସନେକେ ହୋଇଥିଲେ
ପରଜା ।
ତହୁଂ ଶତେ ଗୁଣେ ପାଳିବେ ଶତୃଘନ
ରାଜା ॥୧୦
ବିମନ ହୋଇ ତୁମ୍ଭେ କେହି ନ ଭାଳିବ ।
ଯେହୁ ନଗ୍ରରେ ତୁମ୍ଭେ ନିଶ୍ଚିନ୍ତ ହୋଇଥିବ ॥
ଯେସନେକ ବୋଲିଣ ଡେଙ୍ଗୁରା
ଦିଆଇଲେ ।
ରାଜ୍ୟ ଲୋକ ଶୁଣିଣ ଆନନ୍ଦ ହୋଇଲେ ॥
ଯେଥୁ ଅନନ୍ତରେ ହୋଇଲା ରଜନୀ
ପରବେଶ ।
ନଗରେ ରହିଲା ଯାଇ ସୁମେତ୍ରାର ଶିଷ ॥
ଫଳମୂଳ ଭକ୍ଷିଣ ରହିଲେ ସେହୁ ଦିନ ।
ସିଂହଦ୍ୱାରେ ଆବୋରି ରହିଲେକ ସନ୍ୟ ॥
ରଜନୀ ପ୍ରଭାତେ ନିତ୍ୟକମ ସାରି ।
ଅମନାତ୍ୟକୁ ଆଗ୍ୟାଂ ଦେଲେ ଲବଣ
ଅରି ॥୨୦
ରାଜାର ନବର ସଜ କରାଅ ବହନ ।

ହୋମ ଯାଗ କରାଅ ମଣ୍ଡାଅ ଭୁବନ ॥
ଶୁଭ ଯୋଗେଣ ଆମ୍ଭେ ରହିବୁ ତହିଂ
ଯାଇଂ ।
ଶୁଣି ମନ୍ତ୍ରୀଗଣେ ଗଲେ ବେଗ ହୋଇଂ ॥
ନାନାପ୍ରକାରେ ତହିଂ ନବର ସଜ କଲେ ।
ବାହୁଡ଼ିଣ ଶତ୍ରୁଘନ ଆଗରେ କହିଲେ ॥
ଶୁଣିଣ ସଉମିତ୍ରୀ ସନ୍ତୋଷ ହୋଇଲେ ।
ଭଲ ବେଳ ଜାଣି ନବରେ ବିଜେକଲେ ॥
ମର୍ଦ୍ଦନ ମାଜଣା ଦେବାର୍ଚ୍ଚନ ପୂଜା ସାରି ।
ମଣୋହିରେ ବିଜେକଲେ ଶତ୍ରୁଘନ
ଦଣ୍ଡଧାରୀ ॥୩୦
ବ୍ରାହ୍ମଣ ସୂପକାରେ ପରଷିଲେ ଅନ୍ନ ।
ନାନା ମେଞ୍ଜନ ପରଷନ୍ତି ପିଠା ମିଷ୍ଟା ଅନ୍ନ ॥
ମଣୋହି ସମ୍ପୂର୍ଣ୍ଣେ ଆଚୋବନେ
ବିଜେକଲେ ।
ତାମ୍ବୋଳ ଲାଗି ହୋଇଂ ନଗ୍ର ବୁଲିଗଲେ ॥
କଟେକ ମୁରାଟ ମଣ୍ଡଣି ମହାସଂଚ ।
ଦିବ୍ୟ ଘରମାନ ଯେ ବୃଷାଳ ଘଞ୍ଚ ଘଞ୍ଚ ॥
କାହିଂ ତୋଟା ପୁର କାହିଂ ଅଛି ଜଗତୀ ।
ମେଢ଼ ମଣ୍ଡପ ଦେଉଳମାନ ପନ୍ତି ପନ୍ତି ॥
ଯେମନ୍ତେଣ ଶତ୍ରୁଘନ ନଗ୍ର ବୁଲି ଯାନ୍ତି ।
ଦେଖିଲା ଲୋକମାନେ ପରେ ପ୍ରଶଂସା
କରନ୍ତି ॥୪୦
ଯାଦେବ ଯୁବତୀ ରୂପେ ରୂପବନ୍ତୀ ।
ରାଜାକଇ ଦେଖିଣ ହୁଳହୁଳି ଦ୍ୟନ୍ତି ॥
ପାଦେଣ ଶତ୍ରୁଘନ ରାଜ୍ୟ ବୁଲିଯାଇ ।
ଚତୁରାଙ୍ଗ ବଳ ତାର ପଛରେ ଗୋଡ଼ାଇ ॥
ମଧୁବନ ରାଜ୍ୟର ମନ୍ତ୍ରୀମାନେ ବେଢ଼ି ।
ଚଉକତି ଅଛନ୍ତି ପଟୁଆର ପାଡ଼ି ॥
ନଗ୍ରପୁର ନରନାରୀ ଦେଖିତ ଆସନ୍ତି ।
ଦେଖଣାହାରୀଏ ପ୍ରଶଂସା କରନ୍ତି ॥
କେ ବୋଲଇ ଆମ୍ଭେ କେବଣ ପୁନ୍ୟ କଲୁ ।
ଇନ୍ଦ୍ରର ସମାନେ ରାଜାଏ ପାଇଲୁ ॥୫୦
କେ ବୋଲଇ ଦେହ ତା ଚମ୍ପାଫୁଲ ବର୍ଣ୍ଣ ।
କେ ବୋଲଇ ମଳିନ ଦିଶିବ ସୁବର୍ଣ୍ଣ ॥

କେ ବୋଲଇ ଠେକ ଗଭା ଯେହାକୁ
ଶୋହଇ ।
ଧୀରେ ଧୀରେ ଚାହାନ୍ତେ ଜଗତ ମୋହଇ ॥
କେ ବୋଲଇ କସ୍ତୁରୀ ଲିହିଲାକ କମ ।
ତେସନେକ ଦିଶଇ ଦାଢ଼ୀ ରେଖମାନ ॥
କେ ବୋଲଇ କର୍ଣ୍ଣରେ କୁଣ୍ଡଳ ଭଲା
ଲୁଳେ ।
କେ ବୋଲଇ ହୃଦରେ ଲୁଳଇ ମୋତି
ମାଳେ ॥
କେ ବୋଲଇ କରେଣ କଙ୍କଣ ବିଦମୁଦି ।
ନୀଳବସ୍ତ୍ର ଦୋସଡ଼ା ଅଛଇ ଯେ ପୁଣ
ବାନ୍ଧି ॥୬୦
କୋଦଣ୍ଡ କାଣ୍ଡ ଧରିଅଛି ହାଥେ ।
କି ଜାଣି ପଟାନ୍ତର ଦୁତୀୟ ମନ୍ମଥେ ॥
କପାଳେ ଚନ୍ଦନ କସ୍ତୁରୀ ଠିଆଁ ଚିତା ।
ସୁବର୍ଣ୍ଣ ଗୁଣ ପ୍ରାଏକ ଦିଶଇ ପଇତା ॥
ନୀଳ ଉତ୍ପଳ ପ୍ରାଏ ଦିଶଇ ନୟନ ।
ସୁରଙ୍ଗ ଅଧର ସୂର୍ଯ୍ୟ ବିତପନ ॥
ଚରଣେ ନେପୁର ପୁଣ ରୁଣଝୁଣ ବାଜେ ।
ମଧୁବନ ରାଜ୍ୟକୁ ରାଜାପଣେ ସାଜେ ॥
ଯେସନେକ ବୋଲିଣ ବୋଲନ୍ତି
ନରନାରୀ ।
ବାଜଇ କୋମଳେ ଶଙ୍ଖ ମର୍ଦ୍ଦଳ
ମହୁରୀ ॥୭୦
ଅକଣ୍ଟେକ ରାଜ୍ୟ ସମ୍ପର୍ବ ହୋଇଅଛି ।
ଦେଖି ପ୍ରଶଂସା କରନ୍ତି ରଘୁବଛି ॥
କଟେକ ବୁଲି ଯାଇଣ ନବରେ ପ୍ରବେଶ ।
ସନ୍ଧ୍ୟା ସୁମରିଲେ ତହିଂ ସୁମେତ୍ରାର ଶିଷ ॥
ରଜନୀ ସମଏଣ ଶଯ୍ୟାରେ ବିଜେକଲେ ।
ପ୍ରଭାତେଣ ନିତ୍ୟକର୍ମ ବିଧାନ ସାରିଲେ ॥
ଦେବତା ପୂଜା ସାରି ଆସ୍ଥାନେ ଯାଇଂ ବସି ।
ମନ୍ତ୍ରୀ ଅମନାତ୍ୟେ ଦ୍ରଶନ କଲେ ଆସି ॥
ରାଜ୍ୟ କଥାମାନ ତାଙ୍କୁ ପଚାରିଲେ ରାଏ ।
ଭଣ୍ଡାରରୁ ଧନମାନ ଗଣିତା କରାଏ ॥୮୦
ରଥ ଗଜ ଅଶ୍ୱ ପାଦାନ୍ତି ଦେଖିଲା ।

ବିଶୋଇର ମୂଳେ ବିଷୟ ସମର୍ପିଲା ॥
ଅଯୋଧ୍ୟା ରାଜ୍ୟ ମତେ ପାଳିଲା ସେ ପୁରୀ ।
ଦଶଦିଗ ପାଳେ ଦେଖିଲେ ଭଏ କରି ॥
ଯେସନେକେ ବାରହ ବରଷ ତହିଂ ରହି ।
ରାଜାର ଆଗେ ଚାର ବାରତା ନିତି କହି ॥
ରାଜ୍ୟ ଥିର କରି ମନ୍ତ୍ରୀକିଂ ହକାରି ।
କଡିରେ ବସାଇଣ କହଇ ଥିର କରି ॥
ବୋଇଲେ ରାଜ୍ୟ ତୁମ୍ଭେ କରିଣ ଥାଅ
ରକ୍ଷା ।
ରାମକୁ ଦେଖିବାକୁ ବଳିଲା ମୋର
ଇଚ୍ଛା ॥୯୦
ଯେତେକ ବୋଲି ଥାଠ ସଜ କରି ଗଲା ।
ବାଲମ୍ମିକ ମୁନିଙ୍କର ଆଶ୍ରମେ ମିଳିଲା ॥
ରଥୁଂ ଓହ୍ଲାଇ ଯାଇ କଲେ ନମସ୍କାର ।
ଦେଖି ପୁଣ କଲ୍ୟାଣ କରନ୍ତି ମୁନିବର ॥
ମନେ ବିଚାରିଲେ ଦିବ୍ୟ ପୁରେକ ହୋଉ ।
ରାମର କନେଷ୍ଟ ତହିଂ ଯାଇଂ ରହୁ ॥
ରଥ ଗଜ ଅଶ୍ୱ ପାଦାନ୍ତି ଅନରୂପେ ।
ଘର ଉଠିଗଲାକ ତେସନେକ ସ୍ୱରୂପେ ॥
ସମସ୍ତଙ୍କୁ ତହିଂ ଆହାର ପାଣି ଅଛି ।
ଦେଖିଣ ଥାଠ ଲୋକଙ୍କୁ ନ ପୂରଇ
କିଛି ॥୧୦୦
ଶତ୍ରୁଘନ ଯାଇଣ ନବରେ ବିଜେକଲା ।
ମର୍ଦ୍ଦନ ମାଜଣା ମଣୋହି ସାରିଲା ॥
ତାମ୍ବୋଳ ଭୁଞ୍ଜନ୍ତେଣ ମିଳିଲେ ବାଲମ୍ମିକେ ।
ସଙ୍ଗେଣ ଅଛନ୍ତି ଅନେକ ତପୀ ଲୋକେ ॥
ଦେଖିଣ ଶତ୍ରୁଘନ ଆସନୁ ଉଠିଗଲା ।
ନମସ୍କାର କରିଣ ଋଷିଙ୍କି ଘେନିଗଲା ॥
ସମସ୍ତେ ବସିଲେ ଯେକରୁଣ୍ଡ ହୋଇ ।
ବାଲମ୍ମିକେ ବୋଇଲେ ଶତ୍ରୁଘନ ଚାହିଂ ॥
ଭୋ ସଉମିତ୍ରୀ ତୁ ଯେ ଲବଣକୁ ଜିଣିଲୁ ।
ମଧୁବନ ଲୋକଙ୍କୁ ଜୀବଦାନ ଦେଲୁ ॥୧୦
ତୋହୋରେ ଋଷିମାନେ କରିବେ ଯେବେ
ହୋମ ।
ଯେ କଥା କରିବାକୁ କେ ଆନ ନୋହେ
କ୍ଷମ ॥

ବାରବରଷ ହୋ ଆଜକୁ ତୋର ଗଲା ।
ଲବଣ ରାଜ୍ୟ ପୂର୍ବେ କେବଣ କରିଥିଲା ॥
ତୁ ଯେବେ କେମନ୍ତ କରି ଅଇଲୁ
ସଉମିତ୍ରୀ ।
ବୀରଭୋଗ୍ୟା ବୋଲି ସିନା ଅଟଇ ଧରିତ୍ରୀ ॥
ଧନ ଯୁବତୀ ବିଦ୍ୟା ପୃଥିବୀ ଯେହୁ ଚାରି ।
ଆକ୍ରେଷି ପାରିଲେ ସେ ଭୋଗ୍ୟ କରିପାରି ॥
ଶୁଣି ସଉମିତ୍ରୀ ଯୋଡ଼ଇ ବେନିକର ।
ତୋହୋର ପ୍ରସାଦେ ସବୁ ହୋଇଲା
ମୁନିବର ॥୨୦
ପୂର୍ବେଣ ଲବଣ ଭଲେ ରାଜ୍ୟ କରିଥିଲା ।
ଯେବେ ତହୁଂ ଅଧିକ ଲୋକ ନିଶ୍ଚିନ୍ତ
ହୋଇଲା ॥
ବାଲମ୍ମିକେ ବୋଇଲେ ଯେ ବିଧାତା
ଭିଆଣ ।
ଆମ୍ଭେ ଯେ କରିଅଛୁ ଭବିଷ୍ୟ ପୁରାଣ ॥
ତହିଂ ଯେମାନ ଆମ୍ଭେ ସବୁ ଅଛୁ କହି ।
ଶତୃଘନ ବୋଇଲେ ଶୁଣଇ କିନା ମୁହିଂ ॥
ଅପୂର୍ବ ଗ୍ରନ୍ଥ ସେ କେମନ୍ତେ ହୋଇଅଛି ।
ଆମ୍ଭେ ହୋ ଅଗ୍ୟାଂନ ନ ଜାଣୁନା କିଛି ॥
କେବଣ ଶ୍ରବଣେ ପଶିଲେ ପାପ ଯିବ ।
ଭୋ ମୁନି ମୋତେ ଆଜ ପୁରାଣ
କହିବ ॥୩୦
ଶୁଣିଣ ବାଲମ୍ମିକ ଅଣାଇଲେ ପୋଥି ।
ଶୁଚିବନ୍ତ ହୋଇଣ ବସିଲେ ମହାଯତି ॥
ଶତୃଘନ ସହିତେ ଅଛନ୍ତି ଋଷିମାନେ ।
ବାଲମ୍ମିକ ଋଷି ଗ୍ରନ୍ଥ କରନ୍ତି ଗାୟନେ ॥
ଦଶରଥ ଋଷିଶୃଙ୍ଗ ଅପୁତ୍ରିକ ଚରୁ ଦେବା ।
ତିନିରାଣୀ ଠାରୁ ଚାରିପୁତ୍ର ଉପୁଜିବା ॥
ବିଶ୍ୱାମଇତ୍ର ରାମ ଲକ୍ଷଣକୁ ନେଲେ ।
ତାଡ଼କୀ ମରାଇଣ ଯାଗ୍ୟ ଆରମ୍ଭିଲେ ॥
ଶ୍ରୀରାମର ବଳେ ଯାଗ୍ୟ ସମାପତ ।
ବାଟେ ଯାନ୍ତେ କଲେ ଅହିଲ୍ୟା ମୁକତ ॥୪୦
ମିଥିଳାଏ ଧନୁ ଭାଙ୍ଗି ସୀତ୍ୟା ବିଭା ।
ପର୍ଶୁରାମ ଜିଣି ବନବାସ ଯିବା ॥

ସୀତ୍ୟା ହରଣ ବାଳୀର ମରଣ ।
ସୁଗ୍ରୀବର ଘେନି ସମୁଦ୍ର ତରଣ ॥
ରାବଣ ମରଣ ବିଭୀଷେଣ ରାଜ୍ୟ ଦେବା ।
ଅଯୋଧ୍ୟାରେ ଆସି ଅବିଷେକ ହୋଇବା ॥
ସୀତ୍ୟା ତେଜିବାର ଲବଣ ମାରଣ ।
ପୁଣି ସମଏକେ ତେଜିବେ ଲକ୍ଷଣ ॥
କେତେ ଦିନେ ପୁଣ ସୀତ୍ୟା ପାତାଳକୁ
ଯିବା ।
ଦୃର୍ଭାସା ମହାଋଷି ଆସିତ ଦେଖିବା ॥୫୦
ପୁତ୍ରକୁ ରାଜ୍ୟ ଦେଇ ଆପଣେ ସ୍ୱର୍ଗ ଯିବା ।
କ୍ଷୀର ସମୁଦ୍ରେ ଅନନ୍ତ ଶଯ୍ୟାରେ ଶୋଇବା ॥
ଚଉବିଂଶ ସହସ୍ର ଶ୍ଳୋକ ରାମାଏଣ ଗ୍ରନ୍ଥ ।
ଶତୃଘନ ଆଗେ କହିଲେ ତପୋବନ୍ତ ॥
ଶୁଣି ସଉମିତ୍ରୀ ଆନନ୍ଦ ହୋଇଲା ।
ଯେହେର୍ଣ୍ଣେ ଯୋଗ ଅଛି ସେ କର୍ମେଣ
ସନ୍ତାପିଲା ॥
ଯେଥୁଅନନ୍ତରେ ହୋଇଲା ରାତ୍ର ଅର୍ଦ୍ଧ ।
ସବୁଙ୍କରି ନୟନେ ଆକ୍ରଷିଲା ନିଦ ॥
ବାଲମ୍ମିକ ବୋଇଲେ ତୁ ସଉମିତ୍ରୀ ଶୁଅ ।
ପଥେ କାଲି ଯିବ ଅନିଦ୍ରା ଆଉ ନୁହ ॥୬୦
ଯେତେ ବୋଲି ମୁନିମାନେ ଯେ ଯାହାପୁର
ଗଲେ ।
ଶୁଣ ଭବାନୀ ଗୋ ଶଙ୍କର କହିଲେ ॥
ଶତୃଘନ ଶୟନ କଲେ ପଲ୍ୟଙ୍କରେ ।
ଶୁଣିମା କାହାଣୀ ଯେଥୁଅନନ୍ତରେ ॥
ରଜନୀ ଶେଷେଣ ଆଦିତ୍ୟ ଉଇଂ ଆଏ ।
ଥାଟ ସଜ କଲେ ଶତୃଘନ ରାଏ ॥
ଋଷିଙ୍କି ନମସ୍କାର କରିଣ ଚଳିଗଲା ।
ଗଙ୍ଗା ପାରି ହୋଇ ସେ କୂଳେ ମିଳିଲା ॥
ତହିଂ ରଜନୀ ବଞ୍ଚି ଥାଟ ଗଲେ ଚଳି ।
ଦୁଇଦିନେ ଯାଇଣ ଅଯୋଧ୍ୟା ପୁରେ
ମିଳି ॥୭୦
ସରଯୁ କୂଳେ ତହିଂ ହୋଇଲେକ ସଜ ।
ଚାର ଜଣାଇଲା ଶୁଣିମା ରାମ ରାଜ ॥
ଶତୃଘନ ଆସୁଛନ୍ତି ଦ୍ରଶନ ଯେ କରି ।

ଶୁଣିଣ ସନ୍ତୋଷ ହୋଇଲେ ରାବଣାରି ॥
ସୁମନ୍ତକୁ ବୋଇଲେ ପାଛୋଟି ଯାଇଂ ଆଣ ।
ଶୁଣି ମନ୍ତ୍ରୀବର ଗଲା ତତକ୍ଷଣ ॥
ଚତୁରାଙ୍ଗ ବଳ ସମସ୍ତ ଘେନିଗଲା ।
ଯାନ୍ତେ ଶତୃଘନକୁ ବାଟରେ ଭେଟିଲା ॥
କୋଳ ସମ୍ଭାଷଣ ହେଲେକ ବେନିଜନ ।
କୁଶଳ ପୁଛାପୁଛି ମଧୁର ବଚନ ॥୮୦
ଶତୃଘନ ବୋଇଲେ ଶ୍ରୀରାମଚନ୍ଦ୍ର କାହିଂ ।
ସୁମନ୍ତ ବୋଇଲା ହୋ ଆସ୍ଥାନେ ରଘୁସାଇଂ ॥
ଶୁଣିଣ ହରଷ ହୋଇଲେ ମାହାବୀର ।
ଅଯୋଧ୍ୟାରେ ପ୍ରବେଶ ବହୁତ ସମ୍ଭାର ॥
ରଥ ଗଜ ଘୋଡ଼ା ସନ୍ୟ କଳଣା ନ ଯାଇ ।
ମଧୁବନ ଅଯୋଧ୍ୟା ଥାଠ ମିଶାମିଶି ହୋଇଂ ॥
ଆଲମ୍ବ ବିଲମ୍ବ ପାଟ ଛତ୍ର ନିରନ୍ତର ।
ବାଜଇ ଟମକ ନିଶାଣ ବୀର ତୂର ॥
ନଗ୍ର ନରନାରୀ ଦେଖିତ ଆସନ୍ତି ।
ସାଧୁ ଶତୃଘନ ବୋଲିଣ ପ୍ରଶଂସନ୍ତି ॥୯୦
ସିଂହଦ୍ୱାରେ ଯାଇଂ ରଥୁଂ ଓହ୍ଲାଇଲେ ।
ସୁମନ୍ତ ହାଥ ଧରି ଭିତରକୁ ଗଲେ ॥
ଉପହାର ଧନ ବସ୍ତ୍ର ଆଗେଣ ଥୁଆଇ ।
ଧାତିକାରେ ଉଠିଲା ପାଏ ପଡ଼ି ଶୋଇ ॥
ଶ୍ରୀରାମକୁ ଦେଖିବାକୁ ଆରତ ହୋଇଅଛି ।
ବେଗେ ବେଗେ ଆସଇ ସୁମେତ୍ରାର ବଛି ॥
ପୁଣ ଉଡ଼ା ଯାଇ ଶୋଇଲା ଗଡ଼ଘାଲି ।
ଦେଖି ରଘୁନାଥ ଉଠ ଉଠ ବୋଲି ॥
ଉଠିଣ ଶତୃଘନ ଶିରେ ଦେଲା କର ।
ଯାଇଣ ମିଳିଲା ସେ ଆସ୍ଥାନ ଉପର ॥୧୦୦
ବଶିଷ୍ଟଙ୍କୁ ଦେଖି ନମସ୍କାର କଲା ।
କଶ୍ୟପ ଯାବାଳି ବାମଦେବଙ୍କୁ ଓଳଗିଲା ॥
ଭ୍ରଥ ଲକ୍ଷଣକୁ କଲା ନମସ୍କାର ।
ରାମ ପଚାରନ୍ତି ଲବଣ ମରିବାର ॥
ରାଜ୍ୟ ପାଳି ଅଛୁନା ଅଯୋଧ୍ୟା ପ୍ରାଏ କରି ।
ଦେବ ଉପଦ୍ରର୍ପ ନ କରନ୍ତି ନା ସେ ପୁରୀ ॥
ବେଳ କାଳ ଜାଣି ବରଷଇ ଟିକି ଇନ୍ଦ୍ର ।
ଶତୃଘନ ବୋଇଲା ଶୁଣିମା ରାମଚନ୍ଦ୍ର ॥

ଯେ ତୋହୋର ଆଗ୍ୟାଂରେ ମୁଂ ଯେଥୁ
ଚଳିଗଲି ।
ପ୍ରବେଶ ହେଲାଦିନ ମୁଂ ଲବଣ
ମାଇଲି ॥୧୦
ଅଯୋଧ୍ୟାରୁ ସୁଲଭ ସେ ମଧୁବନ ଦେଶ ।
ପ୍ରଜାଙ୍କ ସାଧୁପଣ କହିବାକ କିସ ॥
ସ୍ୱର୍ଗର ଲୋକ ପ୍ରାଏ ଦିଶନ୍ତି ନରନାରୀ ।
ଅକ୍ରିୟା ଅଦାତା ପଣ ନାହିଂନା କାହାରି ॥
ଯଦୁ ଭୋଜ ବଂଶ ଅକଳଙ୍କ କ୍ରିୟା ।
ସର୍ବଦା ସେ ପୁରେ ବିଜଏ ଦେବୀ ଶ୍ରୀୟା ॥
ଯମୁନାର ନଦୀ ବହଇ ପବିତ୍ର ଜଳ ।
ଗୋବର୍ଦ୍ଧନ ପର୍ବତ ଅଛଇ ତହିଂ କୂଳ ॥
ବୃନ୍ଦାବନ ବୋଲି ଯମୁନା ନିକଟେ ।
ଗୋମତ ଗିରିବର ଅଛଇ ତହିଂ
ତଟେ ॥୨୦
ଭୋ ଦେବ ଲବଣକୁ ମାଇଲି
ଯେତେବେଳେ ।
ପ୍ରସନ୍ନ ହୋଇ ବର ଦେଲେ ଦିଗପାଳେ ॥
କଟେକର ନାମ ମଥୁରା ବୋଲି ଦେଲେ ।
ପରଜା ପାଳଂ ହୋଉ ବୋଲିଣ ବୋଇଲେ ॥
ଦେବତାଙ୍କର ଆଗ୍ୟାଂରେ ତୋହୋର
ପରସାଦେ ।
ମଧୁବନ ରାଜ୍ୟ ଲୋକେ ଅଛନ୍ତି
ଅପ୍ରମାଦେ ॥
ମୋହୋର ଗଲାର ଆଜକୁ ବାର ବରଷ ।
ମୁରୁଛି ନ ପାରି ଦେବ ଅଇଲି ତୁମ୍ଭ ପାଶ ॥
ଶୁଣି ରାମଚନ୍ଦ୍ର ଆନନ୍ଦ ହୋଇଲେ ।
ଶତ୍ରୁଘନକୁ ବହୁତ ଅଳଙ୍କାର ଦେଲେ ॥୩୦
ଆଣିବାର ଧନ ବସ୍ତ୍ର ଭଣ୍ଡାରେ ଥୋଇଲେ ।
ଶତ୍ରୁଘନକୁ ରାମ ବହୁତ ପ୍ରଶଂସିଲେ ॥
ପୁଣି ହିଂ ବୋଇଲେ ଭାଇର ମୁଖ ଚାହିଂ ।
ଆମ୍ଭକୁ ଦେଖିଲୁ ତ ମଧୁବନ ସାଇଂ ॥
ଆଜକ ରହି ଯେଥି କାଲି ବେଗେ ଯାସି ।
ପ୍ରଜାକୁ ପ୍ରତିପାଳିଣ ନିଶ୍ଚିନ୍ତେଣ ଥାସି ॥
ପର ରାଜ୍ୟ ବାବୁ କେତେ ପୁଣ୍ୟେ ପାଇ ।

ଯେଥକୁ ହୋ ତୋର ଆସିବା ନ
ଯୋଗାଇ ॥
ପୃଥିବୀରୁ ଶ୍ରେଷ୍ଠ ପୁଣି ସେ ମଧୁବନ ପୁରୀ ।
କୃଷ୍ଣ ଅବତାର ହୋଇବେ ତହିଂ ହରି ॥୪୦
ପବିତ୍ର ଥାନ ସେ ଯମୁନା ନଦୀ କୂଳ ।
ଦୃଭାସା ମୁନିଙ୍କର ସର୍ବଦା ସେ ଆଳ ॥
ତୁ ଯେବେ ଶତ୍ରୁଘନ ଆଜକ ଯେଥେ ରହି ।
ପ୍ରଭାତ ସମଏଣ ଯାସି ବେଗ ହୋଇ ॥
ଶୁଣିଣ ଶତ୍ରୁଘନ ଶିରେ କର ଦେଲା ।
ଯେ ତୋହୋର ଆଗ୍ୟାଂ କରିବି ବୋଇଲା ॥
ଯେମନ୍ତ ସମଏ ଭାଜିଲା ଆସ୍ଥାନ ।
ଭିତରକୁ ଗଲେ କୌଶଲ୍ୟା ନନ୍ଦନ ॥
ମର୍ଦ୍ଦନ ମାଜଣା ମଣୋହି ବିଧି ସାରି ।
ତାମ୍ବୋଳ ଲାଗି ଯେ ହୋଇଲେ
ରାବଣାରି ॥୫୦
ଭ୍ରଥ ଲକ୍ଷଣ ଶତ୍ରୁଘନ ଯେ ତିନି ଭାଇ ।
ଯେ ଯାହାର ପୁରକୁ ଗମନ କରି ଯାଇ ॥
ବଶିଷ୍ଠ ସହିତେଣ ଋଷିମାନେ ଗଲେ ।
ସାମନ୍ତ ମନ୍ତ୍ରୀଗଣ ନିଜ ପୁରେ ମିଳିଲେ ॥
ସ୍ନାହାନ ଭୋଜନ ବିଧି ସାରିଲେ ଯେ
ଯାହାର ।
ମଧୁବନ ଥାଠ ଆସି ଅଛନ୍ତି ଅପାର ॥
ତାହାଙ୍କ ଥାଠକୁ ଭ୍ରଥ ଭୁରି ଭୋଜନ
ଦେଲା ।
ଯେଥୁ ଅନନ୍ତରେ ରଜନୀ ହୋଇଲା ॥
ସନ୍ଧ୍ୟା ସୁମରିଲେ ଦଶରଥ ପୋଏ ।
ଭାଲୁ ଭାଲୁ ନିଶି ସାତ ଘଡ଼ି ହୋଏ ॥୬୦
ଶତ୍ରୁଘନକୁ ରାମ କହିଲେ ରାଜନୀତି ।
ଆଗ୍ୟାଂ ଶିରେ ଘେନିଣ ନିତ୍ୟକର୍ମ ବିହରି ॥
ଯେଥୁଅନନ୍ତରେ ଯେ ଯାହାର ପୁରେ ଯାଉ ।
ରତ୍ନ ପଲ୍ୟଙ୍କରେ ପହୁଡ଼ିଲେ ରଘୁସାଇଂ ॥
କେତେହେଂକ ବେଳେ ନିଶି ଗଲା ପାହି ।
ସମସ୍ତେ ଉଠି ନିତ୍ୟକର୍ମ ସାରିଲେକ ଯାଇଂ ॥
ନିତ୍ୟକର୍ମ ସାରି ଅଇଲେ ଶତ୍ରୁଘନ ।
ଶ୍ରୀରାମଙ୍କ ଚରଣେ କଲେକ ଦ୍ରଶନ ॥

ମଧୁବନ ଯିବି ବୋଲି ରାମଙ୍କୁ କହିଲା ।
ଶୁଣି ଦାଶରଥି ଶାଢ଼ୀ ଖଣ୍ଡା ଦେଲା ॥୭୦
ଶିରେ ଧରି ତାହା ବାହୁଡ଼ିଲା ବୀର ।
ଭ୍ରଥ ଲକ୍ଷଣକୁ କଲାକ ନମସ୍କାର ॥
ଅନ୍ତେଶ୍ୱର ପୁରେ ଯାଇ ମାତାଙ୍କୁ କହିଲା ।
ଓଳଗ ମେଲାଇଣ ବାହୁଡ଼ି ଅଇଲା ॥
ରହୁବର ଆରୋହି ଗଲାକ ସଜ ହୋଇ ।
ବସନ୍ତ ଖେଟଡ଼ ରାଗେ ବାଜଣା ବଜାଇ ॥
ଅଯୋଧ୍ୟାର ଲୋକେ ଦେଖନ୍ତି ଶରଧେ ।
ଚନ୍ଦ୍ରମା ଉଦେ ପ୍ରାଏ ଦିଶେ ଥାଠ ମଧ୍ୟେ ॥
ନଗ୍ର ଜିଣି ଯାଇଣ ସରଯୁ ପାରି ହୋଇ ।
ଅଗମ୍ୟ ବନସ୍ତରେ ପଥ ବହି ଯାଇ ॥୮୦
ଦଶଦିନେ ପ୍ରବେଶ ହୋଇଲେ ମଧୁବନେ ।
ଉଛବ କରାଇଲେ ମନ୍ତ୍ରୀଗଣମାନେ ॥
ବାଟରୁ ପାଛୋଟି ନେଲେ ଅମନାତ୍ୟେ ।
ବାଜନ୍ତି ବାଜଣା ଉଡ଼ନ୍ତି ପାଟଛତ୍ରେ ॥
ନଗ୍ରେ ପଶନ୍ତେ ଶୁଭଇ ଶଙ୍ଖ ଧ୍ୱନି ।
ହୁଳହୁଳି ଦିଅନ୍ତି ଦେବତା କାମେନୀ ॥
ସବୁଙ୍କରି ଦ୍ୱାରେଣ ଅଛଇ ପୂର୍ଣ୍ଣଘଟ ।
ସିଂହଦ୍ୱାରେଣ ଯାଇ ମିଳିଲେ ସବୁ ଥାଠ ॥
ରଥରୁ ଓହ୍ଲାଇ ରାଜା ଭିତରକୁ ଗଲା ।
ମର୍ଦ୍ଦନ ମାଜଣା ମୋଣୋହି ସାରିଲା ॥୯୦
ତାମ୍ବୋଳ ଲାଗି ହୁଅନ୍ତେ ରବି ଅସ୍ତ ହୋଏ ।
ସନ୍ଧ୍ୟା ସୁମରନ୍ତି ଦଶରଥ ପୋଏ ॥
ରାତ୍ର ପହଢ଼େ ଯାଏ ଆସ୍ଥାନ ବସିଥିଲା ।
ସଭାରୁ ଉଠିଯାଇ ପଲ୍ୟଙ୍କେ ପହୁଡ଼ିଲା ॥
ରଜନୀ ପ୍ରଭାତେ ପୁଣି ନିତ୍ୟକର୍ମ ସାରି ।
ରାଜ୍ୟ ଚରଚା କରନ୍ତି ଲବଣ ଅରି ॥
ସୁସ୍ତେଣ ପରଜାଏ ଅନ୍ନ ବସ୍ତ୍ର ଖାନ୍ତି ।
ଶତ୍ରୁଘନ ପ୍ରସାଦେଣ ନିଶ୍ଚିନ୍ତେଣ ଥାନ୍ତି ॥
ଯେଥୁଅନନ୍ତରେ ଅଯୋଧ୍ୟାପୁର କଥା ।
ଶୁଣ ଭବାନୀ ଗୋ କହନ୍ତି ପଞ୍ଚମଥା ॥୧୦୦
ଦିନେକ ରଘୁନାଥ ଆସ୍ଥାନେ ବିଜେ ।
ସିଂହଦ୍ୱାରେ ବ୍ରାହ୍ମଣ ଗୁହାରି ଆସି କଏ ॥
ପାଞ୍ଚ ସାତ ବରଷ ଖେଳନ୍ତା ପୁଅ ମଲା ।

ମଡ଼ା ଘେନି ଦ୍ୱିଜବର ସିଂହଦ୍ୱାରେ ଗଲା ॥
ଇଷ୍ଟ ବନ୍ଧୁ ତାହାର ଥିଲେ ଯେତେକ
ଲୋକ ।
ବାରତା ପାଇ ଅଇଲେ ସର୍ବ ଲୋକ ॥
ଗହ ଗହ ଲୋକେ ଉଚ୍ଚ ଡାକ ଦ୍ୟନ୍ତି ।
ରାମରାଜ୍ୟେ ଡକା ହୋଇଲା ବୋଲନ୍ତି ॥
କେମନ୍ତେ ଅଯୋଧ୍ୟାରେ ପାଳନ୍ତି
ଦେବତା ।
ଅକାଳ ମୃତ୍ୟୁ ଯେଥେ ନାହିଁ ରୋଗ
ଚିନ୍ତା ॥୧୦
ଯେବେ କିମ୍ପାଇ ବାପ ଥାଉ ପୁଅ ମରଇ ।
ମନ୍ଦକୃତ୍ୟ ଦେଖି ଯମ ଅନ୍ୟାଏ କରଇ ॥
ଦଶରଥ ରାଜାଙ୍କର ରୋହିଣୀ ନକ୍ଷତ୍ର ।
ତହିଂରେ ଆକ୍ରେଷି ଥିଲା ଆଦିତ୍ୟର ସୁତ ॥
ବଶିଷ୍ଠ କହନ୍ତେ ନୃପତି କୋପ କଲା ।
ସ୍ୱର୍ଗ ପୁରେ ଯାଇଣ ରଣ ଆରମ୍ଭିଲା ॥
କ୍ଷତ୍ରୀ ବୀରବର ବାନା ସେ ଉଡ଼ଇ
ଫରହର ।
ଦଶରଥ ରାଜା ସମର କରଇ ଅପାର ॥
ଦଶରଥ ଶନିଶ୍ଚର ସମର ଗରୁତର ।
ଦେଖି କଳି ଗୁହାଇଲେ ବ୍ରହ୍ମାସୁର ॥୨୦
ପୁଣି ଶନିଶ୍ଚର ସନ୍ତୁଷ୍ଟ ହୋଇଲା ।
ରୋହିଣୀ ଭେଦ ମୁଂ ନୋହିବି ବୋଇଲା ॥
ଯେସନେକ ଯଶ ଅର୍ଜିଲା ନରସାଇଂ ।
ରଘୁ ନୃପତିର ମହିମା କଳଣା ନ ଯାଇ ॥
ବାପ ଅନ୍ତେ ପୁତ୍ର ହୁଅଇ ରଘୁରାଜା ।
ପୁତ୍ର ସମ କରିଣ ପାଳଇ ଜନ ପ୍ରଜା ॥
କେତେହେଂକ ସମଏ ସେହୁ ନୃପବର ।
ଅଶ୍ୱମେଧ ଯାଗ୍ୟ କରିତ ବିଚାର ॥
ଘୋଡ଼ା ମେଲାଇଲା ସଙ୍ଗତେ ଥାଠ ନେଇଂ ।
ପୃଥ୍ୱୀ ବୁଲି ଅଇଲା ଜିଣନ୍ତା କେହି
ନାହିଂ ॥୩୦
ଅଯୋଧ୍ୟାରେ ପଶନ୍ତେ ଜାଣିଲେ ରଘୁରାଏ ।
ଅଜ କୁମରକୁ ଯୁଧ୍ୟ କରି ପଠିଆଏ ॥
ରଣେ ଜିଣି ବଳା ଘୋଡ଼ା ଘେନିଗଲା ।

ପିତାର ଛାମୁରେ ଘୋଡ଼ା ନେଇଂ
ଦେଲା ॥
ଦେଖିଣ ନୃପବର ବନ୍ଧାଇଲା ଶାଳେ ।
ପୁଣିହିଂ ଘୋଡ଼ା ଏକ ମେଲିଲା ମହୀପାଳେ ॥
ତାହା ଜିଣିଣ ଅଜ କୁମର ଘେନିଗଲା ।
ଅନେଶ୍ୱତ ଅଶ୍ୱ ରାଏ ପୁଣି ହିଂ ମେଲିଲା ॥
ରଣେ ଜିଣିଣ ଅଶ୍ୱକୁ ନେଲାକ ରଘୁସୁତ ।
ଯେମନ୍ତେଣ ଅଶ୍ୱ ରାଏ ମେଲିଲା
ବହୁତ ॥୪୦
ସବୁ ରାଜା ଜିଣିଣ ଅଯୋଧ୍ୟାରେ ଅଇଲା ।
ଅଜକୁ ଜିଣନ୍ତା କେହିତ ନୋହିଲା ॥
ଯେମନ୍ତେଣ ଏକ ଊଣା ଶତ ଘୋଡ଼ା
ନେଲା ।
ରଘୁନାମେ ଚକ୍ରବର୍ତ୍ତୀ ଭାଳିଣ ବୋଇଲା ॥
ଯେକ ଊଣା ଶତେକ ଅଶ୍ୱମେଧର ଯାଗ୍ୟ ।
ଫଳ ପାଇଲଇଂ ଯେ ମୋହୋର ବଡ଼
ଭାଗ୍ୟ ॥
ଯେବେ ଦେଖି ମେଲିବା ଆମ୍ଭର ଯେତେ
ଘୋଡ଼ା ।
ତହିଂ ସଙ୍ଗେ ପୃଥ୍ୱୀ ବୁଲିବା ଯେକ ବେଢ଼ା ॥
ଆମ୍ଭକୁ ସଂଗ୍ରାମେ ସମ ନାହିଂ ଆନ ରାଏ ।
ଅଶ୍ୱମେଧ ଯାଗ୍ୟ ପୂର୍ଣ୍ଣ ହୋଇଲା
ନିଷ୍ଚଏ ॥୫୦
ଯେତେ ବୋଲି ଯାଗ୍ୟ ଶାଳ ରାଏ ଶୋଧ
କଲା ।
ଉଛବ ଆନନ୍ଦେଣ ସକଳ ନିର୍ଭାଇଲା ॥
ଅନେଶ୍ୱତ ଅଶ୍ୱ ମେଲିଲା ସିନ୍ଧୁ ଜାତି ।
ପଛେ ଥାଠ ଘେନି ଆସଇ ଅଜ ନୃପତି ॥
ନାନା ରାଜ୍ୟରେ ରାଜ୍ୟ ସୁଖେଣ
ବୁଲିଗଲେ ।
କେହୁଣି ରାଜାଏ ସେ ଓଗାଳି ନ ପାରିଲେ ॥
ଇନ୍ଦ୍ର ବିଚାରିଲେ ସ୍ୱର୍ଗପୁରେ ଥାଇଂ ।
ଶତେ ଯାଗ୍ୟ କରି ମୁଂ ହୋଇଲି
ଶଚୀସାଇଂ ॥
ଯେବେ ରଘୁରାଜା ସକଳ ରାଜାକୁ ଜିଣି ।

ଯେକାବେଳେ ଶଏ ଅଶ୍ୱମେଧକୁ
କାରେଣୀ ॥୬୦
ଶତକ୍ରତୁ ପଦତ ଫିଟିଯିବ ମୋହୋର ।
ଦେବ ଇନ୍ଦ୍ର ହୋଇବ ଅଯୋଧ୍ୟାର ଈଶ୍ୱର ॥
ଯେତେବେଳେ ଘୋଡ଼ାଏ ମେଦିନୀ
ବୁଲିଯିବେ ।
ରଘୁ ବାପ ପୋଏ ଯାଗ ଆରମ୍ଭିବେ ॥
ଶତେକ ଅଶ୍ୱମେଧର ଯେ ପାଇବ ଫଳ ।
ମୋହୋର ଇନ୍ଦ୍ର ପଦ ତ ହୋଇବ ବିଫଳ ॥
ମୁହିଂ ଯେବେ ଘୋଡ଼ା ଓଗାଳିବି ଯାଇଂ ।
ଅନେଶ୍ୱତ ଯାଗ ଫଳ ଘେନିମି ଛଡ଼ାଇ ॥
ଯେତେ ବୋଲି ବଜ୍ରେ ସେହୁ ଧଇଲାକ
କରେ ।
ଯାଇଣ ବସିଲା ଅଇରାବ୍ରତର ଉପରେ ॥୭୦
ଗାନ୍ଧର୍ବ ବଳ ଘେନିଣ ମଞ୍ଚକୁ ଅଇଲା ।
ଘୋଡ଼ା ବୁଲି ଆସନ୍ତେଣ ଯାଇ ଓଗାଳିଲା ॥
ଦେଖି ଅଜ ରାଏ ଓଗାଳିଲା ଆସି ।
ଦୁହେଂ ଭେଟାଭେଟି ନାରାଚ ବରଷି ॥
ଅନେକ ସମର ହୋଇଲା ଦୁହିଂଙ୍କରି ।
କର୍ମର ବିପାକେ ଦେବ ଇନ୍ଦ୍ର ହାରି ॥
ନିଶସ୍ତ୍ର ହୋଇ ସ୍ତୁତି ବହୁତ କଲା ।
ଶୁଣି ଅଜରାଏ ପ୍ରସନ୍ନ ହୋଇଲା ॥
ବୋଇଲା ଶଚୀପତି ମାଗସି ତୁହୋ ବର ।
ଅଧକ ଧର୍ମ ଦେବୁ ବୋଇଲେ
ବଜ୍ରଧର ॥୮୦
ଦୋହେଂ ଦିନେ ଦିନେ ହୋଇବା ସୁରପତି ।
ଯେହା ଶୁଣି ବୋଇଲା ସେ ଦିଲୀପର ନାତି ॥
ପଞ୍ଚାଶ ଅଶ୍ୱମେଧ ଫଳ ତୋତେ ଦେଲି ।
ତୁ ଯେଣୁ ସ୍ତୁତି କଲୁ ମୁଂ ତୋତେ
ଦୟାକଲି ॥
ଅଧ ଧର୍ମ ଦେଇ ଯାଇ ପିତାଙ୍କୁ କହିଲା ।
ଶୁଣି ରଘୁରାଜା ଆନନ୍ଦ ହୋଇଲା ॥
ବୋଇଲା ଶଏ ଅଶ୍ୱମେଧର ଫଳ ନେଲା ।
ଆମ୍ଭର ପୁଣ୍ୟେ ସେ ଦେବ ଇନ୍ଦ୍ର ହୋଇଲା ॥
ଯେତେକ ବୋଲି କରେ କୁଶଜଳ ଘେନି ।

ଦେଲି ଦେଲି ବୋଲି ପାଣି ପକାଇଂ ମେଦିନୀ ॥୯୦
ଶତେକ ଅଶ୍ୱମେଧ ଫଳ ବାସେବ ପାଇଲା ।
ନିଜ ସ୍ୱର୍ଗେ ବସି ସେହୁ ଆନନ୍ଦ ହୋଇଲା ॥
ଯେମନ୍ତ ରାଜାମାନେ ଯେହି ବଂଶେ ଥିଲେ ।
ନିଜ ଭୁଜବଳେ ସୀମାନ୍ତ ରଖିଲେ ॥
ଯେବେ ଶ୍ରୀରାମଙ୍କୁ ଦେଖିଲେ ନିର୍ବଳ ।
ଅନ୍ୟାଏ ଉପଦର୍ପ କଲେ ଦିଗପାଳ ॥
ଯେହେର୍ଣ୍ଣେକ କହି ଦ୍ୱିଜେ ପାଡ଼ନ୍ତି ବୋବାଳି ।
ଅଯୋଧ୍ୟା ଦେଶରେ ହୋଇଲା ହାଲହୋଳି ॥
ଅପୂର୍ବ କଥା ଲୋକେ ଦେଖିତ ଆସନ୍ତି ।
ସିଂହଦ୍ୱାରେ ଦ୍ୱିଜେ ଜୁଇ ସଜାଡ଼ନ୍ତି ॥୧୦୦
ବୋଇଲେ ମଡ଼ାକୁ କରିବୁ ଯେଥେ ଦାହା ।
ନୋହିଲେ ପୁତ୍ର ମୋର ଜୀଆଉଂ ରଘୁନାହା ॥
ଯଦ୍ୟପି ନ ବ୍ରତିବ ହୋଇବ କଥା ମନ୍ଦ ।
ଅନେକ ବ୍ରହ୍ମହତ୍ୟା ଘେନିମ ରାମଚନ୍ଦ୍ର ॥
ଆମ୍ଭେ କି ବ୍ରତିବୁ ତନଏ ନ ବ୍ରତିଲେ ।
ଜନନୀ ପିଅର ତାର ଯେମନ୍ତ ବୋଇଲେ ॥
ଶ୍ରୀରାମର ପାପେ ସିନା ଆମ୍ଭର ପୁତ୍ର ମଲା ।
ଦଶରଥ ତନଏ ଅନ୍ୟାଏ ଯହୁଂ କଲା ॥
ଦଶସହସ୍ର ବରଷ ଅଟଇ ଯେହାର ଆୟୁଷ ।
ପାଞ୍ଚ ସାତ ବରଷର ତନଏ ଗଲା ନାଶ ॥୧୦
ଯେକା ପୁତ୍ର ମୋହୋର ତାହାହୁଂ ନାହିଂ ଆନ ।
ଦେବତାଙ୍କୁ ତ୍ରିପୁତି କିମ୍ପା ନ କଲେ ରଘୁନାନ ॥
ସବୁ ଭଲ ପଣ ଯେହାର ଯେହିଠାରୁ ଗଲା ।
ଯମରାଜା ଯେବେ ଯେଥକୁ ଦୃଷ୍ଟି ଦେଲା ॥
ଯେମନ୍ତେ ଅଯୋଧ୍ୟାରେ କେମନ୍ତେ ଲୋକ ଥିବେ ।
ଶ୍ରୀରାମ ରାଜ୍ୟରୁ ଲୋକେ ଭାଜି ପଳାଇବେ ॥
ଯେସନେକ ବୋଲିଣ ବୋଲନ୍ତି ବିପ୍ରମାନେ ।
ଚାର ଜଣାଇଲା ଯାଇଂ ରାମ ସନ୍ନିଧାନେ ॥
ଆସ୍ଥାନେ ବିଜଏ କରିଅଛନ୍ତି ରାମ ରାଣ ।
ଡଗରା ବୋଇଲା ଦେବ ସାବଧାନେ ଶୁଣ ॥୨୦
ଯେକ ବ୍ରାହ୍ମଣଙ୍କର ଖେଳନ୍ତା ପୁତ୍ର ମଲା ।
ତାହା ଆଣି ବିପ୍ର ସିଂହ ଦ୍ୱାରେଣ ପକାଇଲା ॥
ବୋଇଲା ଅକାରଣେ ମଲା କିମ୍ପା ପୁଅ ।
ଯେତେ ବୋଲି ନଏନୁ ପକାଉଂଅଛି ଲୁହ ॥
ବହୁତ ରୋଦୁଛନ୍ତି ପିଅର ଜନନୀ ।
ବୋଇଲେ ଅଗ୍ନିରେ ପଶିବୁ ପୁତ୍ର ଘେନି ॥
ତିନିଜଣଙ୍କର ହତ୍ୟା ଘେନୁ ରାମ ।
ଆଜୁହୁଂ ଭାଜିଲାନି ଅଯୋଧା ନିଜ ଗ୍ରାମ ॥
ନୋହିଲେ ପୁତ୍ରକୁ ଜୀଆଉଂ ଦାଶରଥି ।
ଯେତେ ଉପଦର୍ପ ନ ଥିଲା ପୂର୍ବେ ଯେଥି ॥୩୦
ଯେସନକ ବୋଲି ପାଡ଼ନ୍ତି ବୋବାଳି ।
ଅନେକ ଲୋକ ସିଂହ ଦ୍ୱାରେଣ ଛନ୍ତି ମିଳି ॥
ଡଗରା ମୁଖରୁ ଶୁଣି ଯେସନ ବଚନ ।
ଶୁଣି ବିସ୍ମଏ ବୋଇଲେ ରଘୁନାନ ।
ବଶିଷ୍ଟଙ୍କୁ ଚାହିଂ ବୋଇଲେ କହ ବୁଦ୍ଧି ।
ଯେଥିକି କାରଣ ମୋତେ କହ ତପୋନିଧି ॥
ଋଷି ବୋଇଲେ ଯାହା ପଚାରୁ ରାଜା ଶୁଣ ।
ଦେବତାମାନଙ୍କର ଯେ ଅଟଇ ଭିଆଣ ॥
ଶୂଦ୍ର ତପସୀ ଯେକ ସେ ତପ କରୁଅଛି ।
ଇନ୍ଦ୍ର ହୋଇବାକୁ ମନେ ମନେ ଇଚ୍ଛି ॥୪୦
ତେଣୁ ସେ ବିପରୀତ ହୋଇଲା ତୋର ପୁର ।
ସେ ତପୀକି ମାଇଲେ ଜୀଇଂବ ବ୍ରାହ୍ମଣ କୁମର ॥
ଯେହା ଶୁଣିଣ ଶ୍ରୀରାମ ଉଠିଲେ ଆସ୍ଥାନୁ ।
ଦକ୍ଷିଣେ ଖଡ଼ଗ ବାମ କରେ ଅଛି ଧନୁ ॥
ଅକ୍ଷଏ ଦୁଇ ତ୍ରୋଣ କାନ୍ଧ ତଟେ କଷି ।
ସିଂହ ଦ୍ୱାରେ ରାମ ବିଜେ କଲେ ଆସି ॥
ଶ୍ରୀରାମଙ୍କୁ ଦେଖି ବ୍ରାହ୍ମଣେ ପାଡ଼ିଲେ ବୋବାଳି ।
ରହ ରହ ବୋଲିଲେ ବଶିଷ୍ଟ ତପଶାଳୀ ॥
ଖୁଣ୍ଟିଆ ପଢ଼ିଆରିଏ ପଟୁଆରି କଲେ ।
ମଡ଼ାଘେନି ଯାଇଣ ବିପ୍ରମାନେ କହିଲେ ॥୫୦
ଭୋ ରଘୁନନ୍ଦନ ତୁ ବିବେକ ଚୂଡ଼ାମଣି ।
ମର୍ଯ୍ୟାଦାଏ ମଉଷୋଧି ସଙ୍ଗେ ତୋତେ ଗଣି ॥
ବଡ଼ିମାଏ ମେରୁ ତୁ ସହତେଣ ମେଦିନୀ ।
ଚନ୍ଦ୍ରପାଏକ ଯଶ ପୂରିଲା ପୁର ତିନି ॥
ତେଜେ ହୁତାଶନ ଦୟାରେ ସାଗର ।
ଧାର୍ମିକ ପଣେ ତୋତେ ନାହିଂ ପଟାନ୍ତର ॥
ରାବଣକୁ ମାରିଣ ଜଗତ୍ର ଥିର କଲୁ ।
ଆପଣା ରାଜ୍ୟ ସ୍ୱାମୀ ରଖି ନ ପାରିଲୁ ॥
ଯେ ମୋହୋର ତନଏ ବଏସ ପାଞ୍ଚସାତ ।
ରୋଗ ବ୍ୟାଧି ନାହିଂ ଅକାରଣେ ହତ ॥୬୦
ଦେହେ ତୋହୋ ପାପ କି ମୋହୋର ମନ୍ଦକର୍ମ ।
କି ଅବା ଅଯୋଧା ଛାଡ଼ିଲାକ ଧର୍ମ ॥
ପିତାମାତା ଥାଉ କିମ୍ପା ପୁତ୍ର ଯେବେ ମଲା ।
ଯେଡ଼େକ ଅନୀତି ସେ କିମ୍ପାଇ ଯମ କଲା ॥
ଦଶସହସ୍ର ବରଷ ଜୀଅନ୍ତି ଯେଥି ଲୋକ ।
ଅକାରଣେ ବାଧା ନ କରଇ ରୋଗ ଶୋକ ॥
ଯେତେ କାଳ ଯେଥେଂ ସୁସ୍ଥେଣ ରହିଥିଲୁ ।
ଯେବେ କିମ୍ପା ବାଳୁତ ତନଏ ହରାଇଲୁ ॥
ଯେହୁ ପୁତ୍ର ନ ବ୍ରତିଲେ ମରିବୁ ଆମ୍ଭେ ବେନି ।
ଯେହି ଅଗ୍ନି ଭିତରେ ପଶିବୁ ମଡ଼ା ଘେନି ॥୭୦
ଯେତେ ବୋଲି ବ୍ରାହ୍ମଣ ବହୁତ ଶୋକ କଲା ।
ପୁତ୍ରକୁ ବାହୁନି ଜନନୀ ବୋଇଲା ॥
ଶ୍ରୀରାମ ବୋଇଲେ ତୁମ୍ଭେ ରହିଥାଅ କ୍ଷଣେ ।

ପୁତ୍ର ନ ବର୍ତ୍ତିଲେ ମୁଂ ନଥିବି ରାଜା ପଣେ ॥
ତୁମ୍ଭର ଦେଖନ୍ତେ ମୁଂ ଦେଶାନ୍ତର ଯିବି ।
ଯେଡ଼େ ଅନ୍ୟାଏ ପୁରେ କିମ୍ପା ମୁହିଂ ଥିବି ॥
ଯେତେ ବୋଲି ଲକ୍ଷଣଙ୍କୁ ରାଇଲେ
ଦାଶରଥି ।
ବ୍ରାହ୍ମଣ ସଙ୍ଗତେ ତୁ ରହିଥାଅ ଯେଥି ॥
ମୁହିଂ ବନ ଯିବି ବିପ୍ର ପୁତ୍ର ପାଇଂ ।
ତହୁଂ ଆସି ମଡ଼ା ଦେବଙ୍ଗ ଜିଆଇଂ ॥୮୦
ଯେତେକ ବୋଲିଣ ଯାଇଂ ରଥେ
ବିଜେ କଲେ ।
ଚନ୍ଦ୍ରରାଙ୍ଗ ବଳ ଘେନି ବନ ବୁଲିଗଲେ ॥
ସରଯୁ ପାରି ହୋଇ ଅରଣ୍ୟେ ଯାଇ ପଶି ।
ପଶ୍ଚିମ ବନ ଭିତରେ ଲୋଡ଼ି ଲୋଡ଼ି ଆସି ॥
ଉତ୍ତର ଦିଗରେ ଗହନ କାନନ ।
ତହିଂ ନିରୋପି ଲୋଡ଼ନ୍ତି ରଘୁକୁଳ ନାନ ॥
ପୂର୍ବକତି ଦେଖିଣ ଦକ୍ଷିଣକୁ ଗଲେ ।
ଯାନ୍ତେ ବାଟେ ନିର୍ମଳ ସରୋବର
ଦେଖିଲେ ॥
ବାବୁ ସେ ପୋଖରୀ ଅମୂଲ୍ୟ ରମ୍ୟ ପାଣି ।
ଥାଠ ପଶନ୍ତେ ସେ ହୋଇଲା
ଆଣ୍ଠୁଆଣି ॥୯୦
କୁଳେଣ ଉପବନ ଦେଖିଲେ ମହା ସଞ୍ଚ ।
ଅତି ରମ୍ୟ ଥାନ ଫଳ ଫୁଲେ ଘଞ୍ଚ ॥
ସେ ତୋଟା ଭିତରେ ପଶିଲେ ରାମ ଯାଇଂ ।
ବୃଦ୍ଧ ତପୁସୀ ଯେକ ଦେଖିଲେ ରଘୁସାଇଂ ॥
ଉର୍ଦ୍ଧ୍ୱମୁଖ ହୋଇ କରୁଅଛି ତପ ।
ମନେ ବିଚାରଇ ହୋଇବି ସୁର ନୃପ ॥
ତଳେଣ ଅଗ୍ନି କୁଣ୍ଡେକ ପ୍ରଜ୍ୱଳି ।
ସେ ଧୂମ ଭକ୍ଷଇ ବାବୁ ସେହୁ ତପଶାଳୀ ॥
ଦୁଇ ଖମ୍ବ ପୋତିଣ ଧାରଣ କାଠ ଇଦି ।
ତହିଂ ଦୁଇ ପାଦ ଦଉଡ଼ି ଘେନି ବାନ୍ଧି ॥୧୦୦
ଓଲମ୍ବ ପଡ଼ି ସେ ଭକ୍ଷଇ ଅନଳ ।
ମୁଖ ବାଟେ ରୋଧିର ଗଳଇ ଖଳ ଖଳ ॥
ଦୁଇ ନାକ ଦୁଇ ଚକ୍ଷୁରୁ ପୁଣ ଦୁଇ କର୍ଣ୍ଣ ।
ମୁଖ ସହିତେଣ ବାହାର ସାତ ଥାନ ॥

ସପତ ଧାରା ରୁଧିର ଝର ଝର ପଡ଼େ ।
ନଲିଭି ଅଗ୍ନି ଜଳଇ ମହାଗାଢ଼େ ॥
ସେ ଧୂମ ଭକ୍ଷଇ ସେ ହସ୍ତରେ ଅଣ୍ଡାଳି ।
ଦୂତୀ ଇନ୍ଦ୍ରପାଏ ଦିଶଇ ତପଶାଳୀ ॥
ଦେଖି ରଘୁନାଥ ମନେ ବିଚାରିଲେ ।
ଯେହି ସେ ହୋଇବ ବୋଲି ତାକୁ
ପଚାରିଲେ ॥୧୦
ଭୋ ମହାତମା କିମ୍ପା କଷ୍ଟୋର ତପ କରୁ ।
ଯେଡ଼େ ଅରଣ୍ୟେଣ କିମ୍ପାଇ ଦିନ ହରୁ ॥
ବ୍ରହ୍ମ କ୍ଷତ୍ରୀୟ ବଶ୍ୟ ତୁ କେବଣ ହିଂ ଜାତି ।
ଯେ ମୋହୋର ଆଗେ ସ୍ୱରୂପ କହସି ॥
ମୁହିଂ ଅଯୋଧ୍ୟାରେ ରାମଚନ୍ଦ୍ର ରାଜା ।
ଦଶରଥ ନୃପତିର ଅଟଇ ତନୁଜା ॥
ମୃଗୟା ବିନୋଦେଣ ଅଇଲି ମୁଂ ବନ ।
ତୋତେ ଦେଖିଲି ମୁଂ ସୁଫଳ ଆଜ ଦିନ ॥
ଶୁଣି ତପୁସୀ ବୋଇଲାକ ଚାହିଂ ।
ବ୍ରହ୍ମ କ୍ଷତ୍ରୀୟ ବଶ୍ୟ ନୁହଇଂ ରାମ ମୁହିଂ ॥୨୦
ଜନ୍ମେଣ ଉତ୍ତମ ମୁଂ ଅଟଇ ଶୂଦ୍ର ଜାତି ।
ପୁରାଣେ ଶୁଣିଲି ଯେଣେ ହୋଇବି ସୁରପତି ॥
ସେ କଥା ହେତୁକରି ତପ ଆସି କଲି ।
ସହସ୍ର ବରଷ ମୁଂ ଯେ ବନେ ରହିଲି ॥
ଇନ୍ଦ୍ରି ନିଗ୍ରହଣ କରି ଶିଝାଇଲି କାଏ ।
ଯେହି ନିକଟେ ହୋଇବି ସୁରରାଏ ॥
ଶୁଣିଣ ଶ୍ରୀରାମ ଖଡ଼ଗ ଭଞ୍ଜାଇଂ ।
ଶୂଦ୍ର ତପୁସୀ ମୁଣ୍ଡ କାଟିଲେ ରଘୁସାଇଂ ॥
ସେହି ଅଗ୍ନିରେ ଯହୁଂ ପଡ଼ିଲାର ଶିର ।
ତତକ୍ଷଣେ ଭସ୍ମ କଲା ବୈଶ୍ୱାନର ॥୩୦
ଦେବତାଏ ଶ୍ରୀରାମଙ୍କୁ ସାଧୁ ସାଧୁ କଲେ ।
ବ୍ରାହ୍ମଣର ପୁତ୍ର ଜୀଇଂ ବୋଲିଣ ବୋଇଲେ ॥
ପୁଷ୍ପ ବୃଷ୍ଟି କରି ଦୁନ୍ଦୁଭି ବଜାବନ୍ତି ।
ଅପକ୍ଷରୀମାନେ ହୁଳହୁଳି ଦିଅନ୍ତି ॥
ଯେଥୁଅନନ୍ତରେ ଶୂଦ୍ର ତପୀ ଦେହୁଂ ।
ଦିବ୍ୟପୁରୁଷେକ ବାହାର ହୋଇଲା କହୁ
କହୁଂ ॥
ଶ୍ରୀରାମଙ୍କୁ ବୋଇଲା ଯୋଡ଼ିଣ ବେନିକର ।

ଇନ୍ଦ୍ରହୁଂ ଅଧିକ ବର ପାଇଲି ରଘୁବୀର ॥
ଯେ ତୋହୋର ଶ୍ରୀକରେ ଛେଦିଲୁ ମୋର
ମୁଣ୍ଡ ।
ସମସ୍ତ ପାତକ ଗଲା ଜିଣିଲି ବ୍ରହ୍ମାଣ୍ଡ ॥୪୦
ତୋହୋର ହସ୍ତେ ମରି ମୁଂ ମୁକତ
ହୋଇଲି ।
ଆଜହୁଂ ବିଷ୍ଣୁଗଣ ବୋଲିଣ ବୋଲାଇଲି ॥
ଇନ୍ଦ୍ର ହୋଇଲେ ତ ଫିଟନ୍ତା ମୋର ସଧ ।
ଯେବେ ହୋଇଲି ମୁଂ ତ୍ରିଲୋକରେ ସିଧ ॥
ବିଷ୍ଣୁ ଦେବତା ତୁମ୍ଭେ ମାନବ ଦେହ ବହି ।
ସୁରଗଣଙ୍କ ଛଳେ ଅବତାର ଏ ମହୀ ॥
ଅନେକ ପୁଣ୍ୟେଣ ସ୍ୱାମୀ ଦେଖିଲଇଂ
ତୋତେ ।
ଯିବଇଂ ବୈକୁଣ୍ଠେ ଆଜ୍ଞ୍ୟାଂ ଦେସି ମୋତେ ॥
ଶୁଣି ରଘୁନାଥ ପ୍ରସନ୍ନ ହୋଇଲେ ।
ଆନନ୍ଦ ଚିତ୍ତେ ପୁଣ ତପୀକି
ବରଦେଲେ ॥୫୦
ବୋଇଲେ ଯତି ତୁ ହୋଇଲୁ ଯେ ପାର ।
ଏ ତୋହୋର କଥା ହାଦେ ରହିବ
ସଂସାର ॥
ଆଜ ସେ ଭାଦ୍ରବ ଶୁକଳ ପଞ୍ଚମୀ ।
ତୋତେ ପ୍ରାଣନାଶ କଲଇଂ ଯହୁଂ ଆସି ॥
ଆଜଦିନେ ତୋତେ ପୂଜିବେ ଯେବଣ
ନାରୀ ।
ସ୍ୱାମୀରେ ସୌଭାଗୀ ହୋଇବେ ସେ ସ୍ତିରୀ ॥
ମୋତେ ସେବା କଲାର କାରଣ ପାଇବେ ।
ଦୋଚାରୀ ହୋଇଲେହେଂ ବୈକୁଣ୍ଠେ
ବସିବେ ॥
ମୃଗୁଳ ପ୍ରତିମା ତପୁସୀର ସଂଜାତେ ।
ଦୂର୍ବାକ୍ଷତ ଦେଇଂ ପୂଜିବେ ଯେ
ତୋତେ ॥୬୦
ମୁଷ୍ଟିକ ପ୍ରମାଣେ ସେ ଅନ୍ନ ବେଞ୍ଜନ
ଦେବେ ।
ମୋହୋର ବୋଲ ପ୍ରମାଣେ ଭଗତି
କରିବେ ॥

ସେ ନାରୀ ନିଶ୍ଚିନ୍ତେଣ ଲଭିବେ ସ୍ୱର୍ଗପୁରୀ ।
ଯେବେ ମୁକତ ତୁ ହୋଇଲୁ ତପଚାରୀ ॥
ଆନନ୍ଦେ ଶୂଦ୍ର ତପୀ ପାର୍ଥିବ ଦେହ ତେଜି ।
ବିଜୁଳି ପ୍ରାଏ ହୋଇ ଶୂନ୍ୟେ ଗଲାକ ବିରାଜି ॥
ଦେବେ ଶ୍ରୀରାମଙ୍କୁ ସାଧୁ ସାଧୁ କଲେ ।
ନିକଟ ହୋଇଣ ଆସି କଥାଏ କହିଲେ ॥
ଶୁଣ ରାମଚନ୍ଦ୍ର ଆମ୍ଭର ସିଦ୍ଧାନ୍ତ ।
ଜଳେ ପଶିଥିଲେ ଅଗସ୍ତି ତପୋବନ୍ତ ॥୭୦
ବାରବରଷେ ତହୁଁ ବାହାର ହୋଇଲେ ।
ଯେବେ ହାଦେ ନିଜ ଆଶ୍ରମକୁ ଗଲେ ॥
ଅକ୍ଷତ ଘେନି ଆମ୍ଭେ ଦେଖିଯିବୁ ତାହା ।
ତୁମ୍ଭେ ତହିଁକି ବେଗେ ଯାସି ରଘୁନାହା ॥
ମହାତ୍ମାମାନଙ୍କୁ ଦେଖିଲେ ବଡ଼ ଫଳ ।
ଯେହୁ ଦେଖଇ ତା ଜୀବନ ସୁଫଳ ॥
ଯେତେ ବୋଲି ଦେବେ ଦକ୍ଷିଣକୁ ଗଲେ ।
ଅଗସ୍ତିଙ୍କ ଆଶ୍ରମେ ପ୍ରବେଶ ହୋଇଲେ ॥
ଦେଖିଣ ମହାମୁନି ଅନେକ ପୂଜା କଲେ ।
ଅନୁରୂପେ ଆସନ ବସିବାକୁ ଦେଲେ ॥୮୦
ବ୍ରହ୍ମା ରୁଦ୍ର ଇନ୍ଦ୍ର ଦଶ ଦିଗପାଳ ।
ତେତିଶ କୋଟି ଦେବେ ଅଛନ୍ତି ସକଳ ॥
ଯେଥିଅନନ୍ତରେ ରାମଚନ୍ଦ୍ର ରାଏ ।
ଶୂଦ୍ର ତପୀ ମାରି ଅଯୋଧ୍ୟାକୁ ଆଏ ॥
ହନୁମନ୍ତ କିଷ୍କିନ୍ଧାରୁ ଅଇଲା ସେଦିନ ।
ସରଯୁ କୂଳେ ଆସି କଲାକ ଦରଶନ ॥
ଆହାର୍ଣିକ ସାରିଣ ରହିଲେ ରାମ ତହିଁ ।
ଭ୍ରଥ ଲକ୍ଷଣ ଦ୍ରଶନ କଲେ ଯାଇଂ ॥
ବଶିଷ୍ଠ ଋଷି ସୁମନ୍ତ ସହିତେ ଅଇଲେ ।
ବ୍ରାହ୍ମଣର ତନଏ ଜୀଇଂଲାକ ବୋଇଲେ ॥୯୦
ଆନନ୍ଦ ହୋଇଣ ତାର ଗଲେ ପିତାମାତା ।
ତୋହରେଣ ଯେକଥା ହୁଅଇ ଜଗଜିତା ॥
ରାଜ୍ୟ ଲୋକଙ୍କର ଭୟମାନ ଗଲା ।
ଆମ୍ଭର ରାଜା ବୋଲେ ମଲାଲୋକ ଜୀଇଂଲା ॥

ଯେହୁ ଖ୍ୟାତି ରଘୁନାଥ ପାଇଲୁ ରବିତଳେ ।
ତୋତେ ପଟାନ୍ତର କେବଣ ହିଁ ଭୂଅପାଳେ ॥
ଯେସନେକ ବାରତା ଶୁଣିଣ ରାମ ରାହୁ ।
ହନୁମନ୍ତକୁ ଚାହିଁ ହସିଲେ ମହାବାହୁ ॥
ଦେଖିଣ ହନୁମନ୍ତ ମସ୍ତକେ ହସ୍ତ ଦେଲା ।
ଯେ ତୋତେ କିଞ୍ଚିତ ଦେବ ବୋଲିଣ ବୋଇଲା ॥୧୦୦
ନ ଦେଖିଲା ଲୋକଙ୍କୁ କହିବୁ ସିନା ଯେହା ।
ମୁହିଂତ ପ୍ରତକ୍ଷେଣ ଦେଖିଛି ରଘୁନାହା ॥
ଲଙ୍କାଗଡ଼ ଯୁଦ୍ଧେ ରକ୍ଷ ବାନର ରାକ୍ଷସ ।
ଭିନ୍ନ ଭିନ୍ନ ହୋଇ ପଡ଼ିଥିଲା ଅସ୍ଥିମାଂସ ॥
କେହୁ ପୋଡ଼ା ହୋଇଲା କେ ମିଳାଇଣ ଗଲା ।
ଶୃଗାଳ ଶାର୍ଗୁଣା କାହାକୁହିଁ ଖାଇଲା ॥
କାହାର ମୁଣ୍ଡ କାହାର ଛିଡ଼ିଲାକ ଅଣ୍ଟା ।
କାହାର ଉପରେ ସେ ମାଡ଼ି ପଡ଼ିଲା ପଥର ଗୋଟା ॥
ଚଉଦ ଦିନର ମଡ଼ା ଅନେକ ଥିଲେ ଲୋଟି ।
ଯେ ତୋହୋର ଆଗ୍ୟାଂରେ ସମସ୍ତେ ଜୀଇଂ ଉଠି ।୧୦
ତାହା ମୁଂ ଦେଖିଣ ଅଛି ବେନି ଡୋଳେ ।
ତୁ ଦେବ ଆଉ କଥା ପାଶୋରିଲୁ ତ ଢାଳେ ॥
ନୋହିଲେ କି ଲୋକଙ୍କ ବୋଲେ ସୀତା ଛାଡୁ ।
ବ୍ରାହ୍ମଣ ପୁତ୍ର ପାଇଂ ବନସ୍ତେ ଦୁଃଖେ ପଡୁ ॥
ଯାହାର ଆଗ୍ୟାଂ ଦେଲେ ହୁଅଇ ନବସୃଷ୍ଟି ।
ଲାଭିପଦ୍ମରୁ ଜାତ ତୁ କଲୁ ପରମେଷ୍ଟୀ ॥
ସେ କଥା ଛାଡ଼ି ଯେକଥାକୁ ହରଷ ହୋଉ ।
ମଲା ଜୀଇଂବାର ତୋତେ କିଞ୍ଚିତ ହୋଇ ପ୍ରଭୁ ॥
ଶୁଣିଣ ଶ୍ରୀରାମ ପରମ ତୋଷ ଚିତ୍ତ ।
ବୋଇଲେ ଭଲେ ଅଛିଟିକି ମୋର ମିତ ॥୨୦

ଅଙ୍ଗଦ କୁମର ତାରା ମହାଦେଈ ।
ରୋମା କନ୍ୟାକୁ ଟିକିରେ ପ୍ରିୟକଥା କହି ॥
ସେନା ଯୂଥପତି ଜନ ପ୍ରଜା ଭଲ ।
ହନୁମନ୍ତ ବୋଇଲା ସମସ୍ତ କୁଶଳ ରଘୁବାଳ ॥
ଯେଥିଅନନ୍ତରେ ଆହାର୍ଣିକ ସାରି ।
ଭ୍ରଥ ମୁଖ ଚାହିଁ ବୋଲନ୍ତି ରାବଣାରି ॥
ହନୁମନ୍ତ ସୁମନ୍ତ ବଶିଷ୍ଠେହେଂ ଯାଅ ।
ଅଯୋଧ୍ୟା ପୁରେ ନିଶ୍ଚିନ୍ତେଣ ଥାଅ ॥
ପାଦାନ୍ତିକ ବଳ ଯେକା ଥାନ୍ତୁ ଆମ୍ଭ ସଙ୍ଗେ ।
ବେଗେଣ ଆସିବୁ ଯିବୁ କଥା ରଙ୍ଗେ ॥୩୦
ଯେହିକ୍ଷଣି ବାହୁଡ଼ି ଆସିବୁ କିଛି ଦୂରୁ ।
ମଣୋହି ସଞ୍ଚାମାନ ଥିବଟି ହାଦେ କରୁ ॥
ଯେତେ ବୋଲି ବସିଲେ ପୁଷ୍ପକେ ବିମାନେ ।
ରଥଗଜ ଛାଡ଼ି ପାଦାନ୍ତି ସଇନେ ॥
ଗଗନ ମାର୍ଗେଣ ରଥ ଚଳିଗଲା ।
ଅଗସ୍ତିଙ୍କ ଆଶ୍ରମେ ଯାଇଣ ମିଳିଲା ॥
ରଥୁଂ ଓହ୍ଲାଇଣ ରାମ ମଢ଼ିଆକୁ ଗଲେ ।
ସୁରଗଣେ ଅଛନ୍ତି ଯାଇଣ ଦେଖିଲେ ॥
ଅଗସ୍ତିଙ୍କି ନମସ୍କାର କରି ରଘୁସାଇଂ ।
ଦେବତାଙ୍କ କତିରେ ବସିଲେକ ଯାଇଂ ॥୪୦
ସୁରସଭା ଗୋଟା ସେ ଶୋଭା ପାଉଥିଲା ।
ଶ୍ରୀରାମ ବସନ୍ତେ ଚନ୍ଦ୍ରମା ପ୍ରାଏକ ଦିଶିଲା ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର ହରଷ ହୋଇଲେ ।
ଶ୍ରୀରାମଙ୍କୁ ଚାହିଁ ପୁଣ ଅଗସ୍ତି ବୋଇଲେ ॥
କୁଶଳ ହୋଇଣ ଅଛୁଟିକି ଦାଶରଥି ।
ଯାବତ ରସମାନ ଦିଅଇ ଟିକି ପୃଥ୍ୱୀ ॥
ଅଯୋଧ୍ୟା ପରଜାଙ୍କର ନାହିଁନା କିଛି ଚିନ୍ତା ।
ଆହ୍ଲାଦି ଅଛନା କନେଷ୍ଠ ମାନନ୍ତା ॥
ଶୁଣିଣ ଶ୍ରୀରାମ ଯୋଡ଼ନ୍ତି ବେନିକର ।
ବୋଲନ୍ତି ଯେ ତୋହୋର ପ୍ରସାଦେ ମୁନିବର ॥୫୦
ସମସ୍ତ ସୁଲଭ ହୋଇଅଛି ଯେବେ ।

ଭଲ ନୋହିବି କି ତୋତେ ସେବା କଲି
ଯେବେ ॥
ଶୁଣି କୁମ୍ଭସୁତ ହୋଇଲେକ ତୋଷ ।
ଦେବେ ଦେଖନ୍ତେ ରାମକୁ କଲେକ
ପଉରୋଷ ॥
ଶୁଦ୍ଧ ସୁବର୍ଣ୍ଣେ ଜଡ଼ିଲା ଅଛି ନବରତ୍ନ ।
ରଷି ଥୋଇଥିଲେ ତା କରି ଅତି ଯତ୍ନ ॥
ଯେବେ ଶ୍ରୀରାମଙ୍କୁ ସମର୍ପିଲେ ଆଣି ।
ଅଳଙ୍କାର ଦେଖିଣ ବୋଇଲେ ରଘୁମଣି ॥
ଭୋ ମୁନି କେମନ୍ତେ ଘେନିମି ମୁଂ ବ୍ରାହ୍ମଣ
ବିତ୍ତ ।
ଯେ ମୋହୋର ମନକୁ ଲାଗିଲା ବଡ଼
ଭୀତ ॥୬୦
ଶୁଣିଣ ମହାରଷି ପୂର୍ବର କଥା କହି ।
ମୋତେ ସେ ଦେଲା ଯେହା ଯେକଇ
ନରବଇ ॥
ଯେହା ମୁହିଂ ପରିଗ୍ରହ କରିବି କେମନ୍ତେ ।
ତୋତେ ରଘୁନାଥ ଦେଲଇଂ ଯେମନ୍ତେ ॥
ଯେବଣ ରାଜା ମୋତେ ଯେହା ସେ ଦାନ
ଦେଲା ।
ପୂର୍ବେ ତାହାର ଅନେକ ପାପ ଥିଲା ॥
ଦୋଷ ତେଜିଲାକ ଧନ ମୋତେ ଦେଇ ।
ତାହାର ପାପ ଯେତେ କାଳ ମୁଂ ଥିଲି ବହିଂ ॥
ତୋତେ ଅଳଙ୍କାର ନ ଦେବଇଂ ଯେବେ ।
ସେ ଦୋଷକୁ ମୁକତ ହେବଇଂ କେବଣ
ବାଗେ ॥୭୦
ତୁ ସେ ଅଗ୍ନି ରାଶି କଳୁଷ ତିରଣ ।
ତାରେକ ବ୍ରହ୍ମ ତୋର ନାମ ଉଚ୍ଚାରଣ ॥
ତୋତେ ଦେଖି ମୋର ସକଳ ଦୋଷ
ଗଲା ।
ବାର ବରଷ ଜଳନାହି ସୁଫଳ ହୋଇଲା ॥
ତୁ ସେ ରଘୁନାଥ ଧନ ଛାଡ଼ି ଲୋଡ଼ୁ ।
ଜଗତ ଜନ ହିତେ ଅନେକ ଦୁଃଖ ପଡୁ ॥
ତୋତେ କି ଅସୁରେ କରିପାରନ୍ତି ଘଞ୍ଚାଳ ।
ସଂସାର ହିତେ ହେଲୁ ଦଶରଥ ବାଳ ॥

ଆମ୍ଭେ ତୋର ଭରସାରେ ଘେନୁ
ମହାଦାନ ।
ପରପାପ ବହିବାକୁ ନୋହୁ ଯେ
ଭାର୍ଜନ ॥୮୦
ଜଗତ ଜନଙ୍କୁ ମୁକତ କରାଉ ।
ଆମ୍ଭେ ତରିବାକୁ ତୋର ନାମ ଗାଉ ॥
ଯେବେ ପ୍ରତକ୍ଷେ ଦେଖିଲୁ ବ୍ରହ୍ମରୂପ ।
କିସ କରିବି ଆଉ ମନ୍ତ୍ର ହୋମ ଜପ ॥
ଅଳଙ୍କାର ଦେଇଣ ତୋତେ କଲି ପୂଜା ।
ଅନୁଗ୍ରହ କରତୁ ଦେବାଧି ଦେବରାଜା ॥
ଯହୁଂ ଅଗସ୍ତି ମୁନି ଯେମନ୍ତ ବୋଇଲେ ।
ସୁରଗଣମାନେ ସାଧୁ ସାଧୁ କଲେ ॥
କଥା କୁତୂହଳେ ପୁଣ ବଞ୍ଚିଲେ ରଜନୀ ।
ସ୍ୱର୍ଗପୁରକଇ ଗଲେ ସୁରମୁନି ॥ ୯୦
ଶ୍ରୀରାମ ଆରୋହିଲେ ପୁଷ୍ପକ ବିମାନ ।
ସଙ୍ଗେ ଅଛନ୍ତି ପଏକାର ସନ୍ୟ ॥
ଉତ୍ତରା ମୁଖ ହୋଇଂ ଗଗନେ ଚଳିଗଲେ ।
ଅଯୋଧ୍ୟା କଟକେ ପ୍ରବେଶ ହୋଇଲେ ॥
ସରଯୁ ନଦୀତୀରେ ସାରିଲେ ନିତ୍ୟକର୍ମ ।
ସମ୍ପର୍ବ ହୋଇଣ ଅଯୋଧ୍ୟାରେ ପଶିଲେ
ଶ୍ରୀରାମ ॥
ବାଟେ ପାତ୍ରମନ୍ତ୍ରୀ ଦ୍ରଶନ ଆସି କଲେ ।
ଚଉଦୋଳା ଚଢ଼ି ଶ୍ରୀରାମ ବିଜେ
କରିଗଲେ ॥
ଲକ୍ଷେକ ପାଟଛତ୍ର ଲକ୍ଷେକ ଚାମର ।
ଲକ୍ଷେକ ବିଳମ୍ବ ଆଲମ୍ବ ଉଡ଼େ
ଫରହର ॥୧୦୦
ଲକ୍ଷେକ ଶଙ୍ଖ ପୂରଇ ଘନ ଘନ ।
ବୀର ଛତ୍ର ତଳେ ଦିଶନ୍ତି ରଘୁନାନ ॥
ଭ୍ରଥ ଆଗିଆଣି ହନୁମନ୍ତ ପଛ ।
ବାମେ ସୁମନ୍ତ ଡାହାଣେ ସୁମିତ୍ରାର ବଛ ॥
ରଥଗଜ ଘୋଡ଼ା ପାଦାନ୍ତି ଗହଳ ।
ତିଳ ପକାଇଲେ ନ ପଡ଼ଇ ତଳ ॥
ମଧ୍ୟରେ ପଟୋଆର ପଡ଼ିଅଛି ଖଣ୍ଡେ ।
ଯାନ୍ତେଣ କୁସୁମ ବରଷନ୍ତି ରାଜଦାଣ୍ଡେ ॥

ମଧ୍ୟେରେଣ ନୃତ୍ୟ କରନ୍ତି ଚାରୁ ନଟୀ ।
ବୀରତୂର ନାଦ ଅନ୍ତରୀକ୍ଷ ଫୁଟି ॥୧୦
ନଗ୍ର ନରନାରୀ ଆନନ୍ଦେଣ ଦେଖନ୍ତି ।
ଯେ ସେ ରଘୁନାଥ ବୋଲିଣ ପ୍ରଶଂସନ୍ତି ॥
ମଲାର ଲୋକ ଯେହାରେ ଜୀଆଇଂ ।
ଯେହାର ବୋଲେ ବିହି ସୃଷ୍ଟି ବିହରଇ ॥
ବାବୁ ଯେ ମହିମା ଶୁଣିଣ ନ ଥିଲୁ ।
ଯେବେ ରାମ ରାଜ୍ୟ ନଏନେ ଦେଖିଲୁ ॥
ଅନେକ ନୃପତି ଯେ ମଞ୍ଚେ ଜନ୍ମିଥିଲେ ।
ଯେଡ଼େକ ଗାରିମା ପଣ କେହିତ ନ କଲେ ॥
ଯମ ନେବାର କେ ଆଣିମ ଲେଉଟାଇ ।
ଶ୍ରୀରାମ ପରାଏ ସ୍ୱାମୀ ତିନିପୁରେ
ନାହିଂ ॥୨୦
ଯେସନେକ ବୋଲିଣ ବୋଲନ୍ତି
ନରନାରୀ ।
ଯେଥିଅନନ୍ତରେ ଦେବ ରାବଣାରି ॥
ନିଜ ନବରେ ପ୍ରବେଶ ହୋଇଲେ ।
ଚଉଦୋଳୁ ଓହ୍ଲାଇ ଭିତରକୁ ଗଲେ ॥
ଅଗସ୍ତି ଦେଇଥିଲେଂ ଯେତେକ ଅଳଙ୍କାର ।
ହନୁମନ୍ତକୁ ତାହା ଦେଲେ ଉପହାର ॥
ଆପଣେ ତିନିଭାଇ ଖଞ୍ଜିଲେ ତାର ଅଙ୍ଗେ ।
ଚାହିଂ ଚାହିଂ ଶ୍ରୀରାମ ଖଞ୍ଜନ୍ତି ନାନାରଙ୍ଗେ ॥
ଯେଥିଅନନ୍ତରେ ଜାନେକୀର ସାଇଂ ।
ମର୍ଦ୍ଦନ ମାଜଣା ସାରିଲେ ଗୋସାଇଂ ॥୩୦
ମଣୋହିରେ ବିଜଏ ଭୁଞ୍ଜନ୍ତି ଛଡ଼ରସ ।
ଆଚୋବନ ସାରି ହୋଇଲେ ଅବକାଶ ॥
ତାମ୍ବୋଳ ଲାଗି ହୁଅନ୍ତେ ରବି ଅସ୍ତ ଗଲା ।
ବେଗ ବେଗ ହୋଇ ରାମ ସନ୍ଧ୍ୟା ସୁମରିଲା ॥
ବଶିଷ୍ଠ ବାମଦେବ କଶ୍ୟପ ଯେ ଥିଲେ ।
ଅଗସ୍ତିଙ୍କ କଥାମାନ ସକଳ କହିଲେ ॥
ରାତ୍ରି ଅର୍ଦ୍ଧ ହୁଅନ୍ତେ ଯେ ଯାହାର ଯାଇଂ ।
ରତ୍ନପଲ୍ୟଙ୍କେ ପହୁଡ଼ିଲେ ସୀତ୍ୟାସାଇଂ ॥
ରଜନୀ ଶେଷେ ଶୁଭଇ ଶଙ୍ଖଧ୍ୱନି କମ ।
ଶେଜ୍ୟା ଛାଡ଼ିଣ ଉଠିଲେ ଶ୍ରୀରାମ ॥୪୦
ନିତ୍ୟକର୍ମ ସାରିଣ ପିତୃକୁ ଜଳଦେଲେ ।

ଅଗ୍ନି ସେବା ସାରି ଦେବତା ପୂଜାକଲେ ॥
ଆସ୍ଥାନେ ବିଜଏ ଅମନାତ୍ୟେ ଦ୍ରଶନ କରି ।
ରାଜ୍ୟର ଚରଚାନ୍ତି ସାରିଲେ ରାବଣାରି ॥
ଅକଣ୍ଟେକ ରାଜ୍ୟ ସ୍ୱର୍ଗ ସମ୍ପଦ ଅଛି ।
ନାହିଂ ବୋଲି ତହିଂ ବୋଲନ୍ତା ନାହିଂ କିଛି ॥
ଦେବେ ଡରନ୍ତି ସେ ନଗ୍ର ତେଜ ଚାହିଂ ।
ମରଣ ବୋଲି ତହିଂ ଶୁଣିଲାତ ନାହିଂ ॥
ଭ୍ରଥ ଲକ୍ଷଣ ଶତୃଘନ ତିନି ଭାଇ ।
ଯେହାଙ୍କ ହୋଇଲାକ ପୁତ୍ର ଦୁଇ ଦୁଇ ॥୫୦
ଛଡ଼ ତନଏ ଘେନି ରାମ କ୍ରୀଡ଼ା କଲେ ।
ମୋହୋର ନାହିଂ ବୋଲି ଅନ୍ତର ନ ଧଇଲେ ॥
ଯେଥୁଅନନ୍ତରେ ଗଲା ଦିନ ଦଶ ।
ହର ବୋଲନ୍ତି ଉମା ଶୁଣ ମହାରସ ॥
ଦିନେକ ଶ୍ରୀରାମ ଆସ୍ଥାନେ ବସିଛନ୍ତି ।
ନାନା କଥା ମାନ କୁହାକୁହି ହୋନ୍ତି ॥
ଭ୍ରଥ ମୁଖ ଚାହିଂ ବୋଲନ୍ତି ରାବଣାରି ।
ଯେବେ ସେ ତୃପତି ମନ ହୋଇତ ମୋହୋରି ॥
ବ୍ରାହ୍ମଣର ପୁତ୍ର ଯହୁଂ ପାଇଲାକ ପ୍ରାଣ ।
ସାର୍ଥକ ହୋଇଲା ସେ ମୋହୋର ରାଜାପଣ ॥୬୦
ଭୋ ଭ୍ରଥ ଯାଗ୍ୟ ମୁହିଂ କରିବଇଂ ହାଦେ ।
ଯେତେକ କାଳ ରାଜ୍ୟ କଲଇଂ ଅପ୍ରମାଦେ ॥
ଯଗ୍ୟଂ ନ କଲେ ମୋତେ କାରଣ ନୋହେ କିଛି ।
ରାଜା ପଣ କଲେ ତ ଅନେକ ପାପ ଅଛି ॥
ପରଜା ପାପ କଲେ ଭାଗେ ଘେନଇ ରାଜା ।
କିଞ୍ଚିତେ ଧର୍ମ ସେ ନ କରଇ ପରଜା ॥
ସେ ଧର୍ମ ଭାଗ ରାଜାର ତେଣେ କାର୍ଯ କିସ ।
ପାପ ପୁଣ୍ୟ ରାଜା ଘେନଇଂ ଛଡ଼ ଅଂଶ ॥
ଯେଣୁ ମୁହିଂ ମନକୁ ନିତି ଭଏ କରଇ ।
ନ ପୁଣ ଯାଗ କରି ନ ପାରଇ ବୋଲି ଡରଇ ॥୭୦

ଯେବେ ବ୍ରାହ୍ମଣ ପୁତ୍ର ଜୀବନ ଯେବେ ପାଏ ।
ବଚାରିଲି ଯାଗ୍ୟ ପ୍ରାପତ ମୋତେ ହୋଏ ॥
ଶୁଣି ଭ୍ରଥବୀର କର ଯୋଡ଼ିଣ ବୋଇଲା ।
କରସି ଯାଗ ଦେବ ଯେବେ ଶରଧା ହୋଇଲା ॥
ତୁ ଯଗ୍ୟଂ ପୁରୁଷ ଦେବ ହବିର୍ଭାଗ ଭୁଞ୍ଜୁ ।
ତୁହି ଯଗ୍ୟଂ କରିଣ ଜଗତ ମନ ରଞ୍ଜୁ ॥
ଯେ ତୋହୋର ଆଗ୍ୟାଂ କରିବ ସର୍ବସିଦ୍ଧି ।
ତୋହୋର ଭଣ୍ଡାରେ ତ ଅଛି ଯଗ୍ୟଂ ବିଧି ॥
କେବଣ ଯାଗ କରିବୁ କହସି ଗୋସାଇଂ ।
ରାକ୍ଷସି ଯାଗେ କିଛିତ ପ୍ରୟୋଜନ ନାହିଂ ॥୮୦
ଜଗତ ଅପକ୍ଷାତିକି ମୁହିଂ ସେ ଡରଇ ।
ତମ ଧର୍ମ ହିଂସା ତେଣେ ସେ ବଢ଼ଇ ॥
ସେ ଯାଗ କରିବାକୁ ନ ରୁଚଇ ମନ ।
ଅଶ୍ୱମେଧ କରତୁ କଉଶୁଲ୍ୟା ନନ୍ଦନ ॥
ଯେବଣ ଯଗ୍ୟଂ କଲେ ଦେବେ ପ୍ରଶଂସନ୍ତି ।
ସବୁ ଯଜ୍ଞର ଉତ୍ତମ ବୋଲିଣ ବୋଲନ୍ତି ॥
ଶୁଣି ରଘୁନାଥ ବଶିଷ୍ଠଙ୍କୁ ପୁଛି ।
କେବଣହିଂ ଯାଗ ମୁଂ କରିବି ବ୍ରହ୍ମବଚ୍ଛି ॥
ମୁନିବର ବୋଇଲେ ଅଶ୍ୱମେଧ ମହାଫଳ ।
ସବୁ ଯଜ୍ଞଙ୍କର ଅଟଇ ସେ ମୂଳ ॥୯୦
ସାତ୍ତ୍ୱିକ ଧର୍ମ ସେ ଯେଣେ କେବେହେଂ କ୍ଷଏ ନାହିଂ ।
ଯେହି ଯାଗ ଯେବେହୁ କରସି ରଘୁସାଇଂ ॥
ଶ୍ରୀରାମ ବୋଇଲେ ଯେବେ ଯାଗର ବିଧି କହ ।
ସୁମନ୍ତ ମନ୍ତ୍ରୀ ଯେହା ପାଞ୍ଜିରେ ପୁଣ ଲିହ ॥
ବଶିଷ୍ଠଙ୍କୁ କହନ୍ତେ ସୁମନ୍ତ ଲିହିଲା ।
ଯେ ଯାହା ଭିଆଇ ଲୋକ ବରଗିଲା ॥
ଲକ୍ଷଣକୁ ଚାହିଂ ବୋଇଲେ ରଘୁବୀର ।
ରାଜାମାନଙ୍କୁ ଯେବେ ନିମନ୍ତ୍ରଣ କର ॥
ଋଷିଗଣମାନନ୍ତ ପଠିଆଅ କହି ।
ଯେଉଂଦିନ ଯାଗ ହେବ ପତ୍ରେ ଥିବ ଲିହି ॥୧୦୦

ସୁଗ୍ରୀବର ତହିଂକି ଆଗେଣ ଲୋକ ଯାଉ ।
ସେନାପତିମାନନ୍ତ ଘେନିଆସୁ କପିରାହୁ ॥
ଲଙ୍କାକୁ ଲୋକ ଯାଉ ବିଭୀଷେଣକୁ ଆଣୁ ।
ସେ ମୋର ପ୍ରାଣସଖା ଯେକଥା ଭଲେ ଜାଣୁ ॥
ଅସୁର ସନ୍ୟ ଘେନି ଆସୁ ବେଗ ହୋଇ ।
ରାଜ୍ୟରେ ଚରଚା କରୁ ମନ୍ଦୋଦରୀ ସାଇଁ ॥
ସିଂଘବେଣୀପୁରକୁ ବେଗେଣ ପେଷ ଦୂତ ।
ଗୁହ ନାମେ ଶବର ଅଟଇ ମୋର ମିତ ॥
ସେହୁ ବେଗେ ଆସୁ ସମ୍ପଦ ମୋର ଦେଖୁ ।
କନ୍ଧମାନଙ୍କୁ ଘେନି ଯାଗ ବେଗେ ରଖୁଂ ॥୧୦
ଆବର ପୃଥିବୀରେ ଅଛନ୍ତି ଯେତେ ରାଏ ।
କଉଶଲ୍ୟା କକୟା ସୁମିତ୍ରା ଯେତେ ମାଏ ॥
ଯେହାଙ୍କର ବାପଙ୍କୁ ଭାଇଙ୍କି ଚାର ପେଷ ।
ଆସନ୍ତୁ ରାଜାଗଣ ଅଯୋଧ୍ୟା ନିଜ ଦେଶ ॥
ଋଷିଗଣମାନନ୍ତ କର ନିମନ୍ତ୍ରଣ ।
ସନ୍ନ୍ୟାସ ଦୀକ୍ଷା ଘେନି ଅଛନ୍ତି ଯେତେ ପୁଣ ॥
ସେ ଲୋକମାନେ ଆସନ୍ତୁ ଚାର ବୋଲ ଶୁଣି ।
ଅନେକ କାଳ ମୁଂ ଅଛଇ ମନେ ଗୁଣି ॥
ସମ୍ପଦ କରିଣ କରିବି ମୁହିଂ ଯାଗ୍ୟଂ ।
ତେବେ ସେ ମୋହୋର ଅଟଇ ବଡ଼ ଭାଗ୍ୟ ॥୨୦
ଯାଗ୍ୟଂ ଶାଳ ଆରମ୍ଭ ଗୋମତୀ ନଦୀକୂଳ ।
ପବିତ୍ର ଥାନ ବୋଲିଣ ବୋଲନ୍ତି ସକଳ ॥
ସମସ୍ତଙ୍କୁ ଚାହିଂ ଆଗ୍ୟାଂ ଦେଲେ ଦେବସ୍ୱାମୀ ।
ଲଙ୍ଗଳେଣ ଶୋଧାଅ ଯାଗ୍ୟଂସ୍ଥଳ ଭୂମି ॥
ରତ୍ନମଏ କରି ନିର୍ଭା ତୁମ୍ଭେ କର ।
ଯିସ ଯିସ ପଦାର୍ଥ ଯାଗର ସମ୍ଭାର ॥
ତିଳ ତଣ୍ଡୁଳ ମୁଗ ବ୍ରିହୀ ଫଳ ଯବ ।
ମଧୁ ଘୃତ ତୈଳ ସର୍ବ ସମ୍ପାଦିବ ॥
ପାଟ ପଟନୀ ନେତ ଦର୍ପଣ ଚାମର ।
ବିବିଧ ପଦାର୍ଥ ଧନ ଅଳଙ୍କାର ॥ ୩୦

ସୁବର୍ଣ୍ଣ ସୀତୟା ତହିଁକି ଯେବେ ଯାଉ ।
ଭରଥ ଲକ୍ଷଣ ଭାରିଯାନ୍ତ ସଙ୍ଗେ ଥାଉ ॥
ନଗ୍ର ନରନାରୀ ସମସ୍ତେହେଁ ଯାନ୍ତୁ ।
ପାତ୍ର ଅମନାତ୍ୟଗଣଙ୍କ ଘରଣୀମାନେ
ଥାନ୍ତୁ ॥
ଦୁଃଖୀ ଦରିଦ୍ର ଭିକ୍ଷାସୀ ଯେତେ ଜନ ।
ଗୋମତୀ ନଦୀ କୂଳେ ରହନ୍ତୁ ଯେମାନ ॥
ରାଜାଙ୍କୁ ନବର ପାତ୍ରମାନଙ୍କୁ ଉଆସ ।
ଆବର ଲୋକମାନଙ୍କୁ ଅନରୂପେ ବାସ ॥
ତୀର୍ଥ ଜଳ କନ୍ଦ୍ୟ ସମିଧ ଯବ ଧାନ ।
ଫଳମୂଳ ଭିକ୍ଷା ଅଣାଅ ଯେମାନ ॥ ୪୦
ଭରଥ ଆପଣେ ଥାଇଂ ଯେମାନ ଚରଚୁ ।
ନଇମିଷା ଅରନ୍ୟେଣ ଯାଗଶାଳ ସଞ୍ଚୁ ॥
ଲକ୍ଷଣ ଘୋଡ଼ା ଘେନି ପୃଥ୍ୱୀବୀ ବୁଲିଯାଉ ।
ଶତ୍ରୁଘନଙ୍କୁ ରାଅ କତିରେ ମୋର ଥାଉ ॥
ଜନକ ଋଷିକି ପଠିଆଅ ବେଗେ ଦୂତ ।
ଆବର ଆସନ୍ତୁ ବାଲମ୍ନିକ ତପୋବନ୍ତ ॥
ବାର ବରଷକୁ ଘେନିମଇଂ ଯାଗ ଦୀକ୍ଷା ।
ହବିର୍ଭାଗ ଦେବେ ଭୁଞ୍ଜନ୍ତୁ ଯେତେକ ଇଚ୍ଛା ॥
ଯେତେ ବୋଲି ଶ୍ରୀରାମ ଆସନୁ
ଉଠିଗଲେ ।
ମଣିମା ଭୋଦେବ ବୋଲି ଖୁଣ୍ଟିଆ ଡାକ
ଦେଲେ ॥୫୦
ସୁମନ୍ତର ଭୁଜ ଧରିଣ ରଘୁପତି ।
ଲକ୍ଷଣ କରେ ଟେକି ଧଇଲେ ବୀର ଛତ୍ରୀ ॥
ଭରଥ ହନୁମନ୍ତ ଢାଳନ୍ତି ଚାମର ।
ଧୂପ କାଠି ଧରିଅଛି ସୁମନ୍ତ କୁମର ॥
ଆଗରେ ଜଏ ଶଙ୍ଖ ବାଜଇ ଘନ ଘନ ।
ଧୀରେ ଧୀରେ ବିଜଏ କଉଶଲ୍ୟା ନନ୍ଦନ ॥
ଭିତରେ ପ୍ରବେଶ ହୋଇଲେ ଦାଶରଥି ।
ମର୍ଦ୍ଦନ ମାର୍ଜଣା ମୁଣୋହି ସାରନ୍ତି ॥
ବଶିଷ୍ଟ ସୁମନ୍ତ ଭରଥ ଲକ୍ଷଣ ଯେ ଚାରି ।
ଯେମାନେ ବାହାରେ ବସି କଥାନ୍ତ
ବିଚାରି ॥୬୦
ସୁଗ୍ରୀବରକୁ ଦୂତ ବିଭୀଷେଣକୁ ଚାର ।
ଦୂତ ଯାଇଂ ଆଣୁ ଗୁହ ନାମେ ଶବର ॥
ସକଳ ରାଜାଙ୍କୁ ହିଁ ଡଗରା ଜଣେ ଜଣେ ।
ବିଚାରିଣ ଚାର ପେଷିଲେ ମନ୍ତ୍ରୀଗଣେ ॥
ଜନେକ ଆସିବାକୁ ପେଷିଲେକ ଦୂତ ।
ଆବର ଆସିବେ ସେ ସକଳ ତପୋବନ୍ତ ॥
ବାଲମ୍ନିକ ମୁନିକି ପେଷିଲେ ବେଗେ ଚାର ।
ଗୋମତୀ ନଦୀ ତୀରେ ନିର୍ଭା କଲେକ
ହୋମଘର ॥
ରାଜାମାନଙ୍କୁ ନବର ମନ୍ତ୍ରୀଙ୍କି ଉଆସ ।
ଆବର ଲୋକମାନଙ୍କୁ ଅନୁରୂପେ
ବାସ ॥୭୦
ଋଷିଙ୍କି ମଢ଼ିଆ କ୍ଷତ୍ରୀଙ୍କି ଘରମାନ ।
ଲକ୍ଷେ ରାଜା ସଙ୍ଗେ ଯେତେକ ସଇନ ॥
ଯେ ଯାହା ଅନୁରୂପେ ରଞ୍ଚିଲେ ସମସ୍ତ ।
ନିର୍ଭାକଲେ ଆସି ସକଳ ପଦାର୍ଥ ॥
ଯେ ଯାହା ଲୋଡ଼ିବ ସେ ପାଇବ ସର୍ବ
ପୁରେ ।
ବାର ବରଷକୁ ଅସଭାବମାନ କଲେ ॥
ରଥଗଜ ଘୋଡ଼ା ଗୋରୁ ଓଟ ଶାଳ ।
ରାଜାଙ୍କର ନବର ବେଢ଼ି ଉଠିଲା ମାଳ ମାଳ ॥
ଝିଙ୍କରେ ଛାଏଣୀ କେ ତିରଣେ ଛୁଆଇଂ ।
କେବଣ ଘର ଅଛି ପୁଆଳ ଘୋଡ଼ାଇ ॥୮୦
କାହିଁରେ ଛାମୁଣ୍ଡିଆ କାହିଁରେ ତାଟିବାଡ଼ ।
ନାନା ପ୍ରକାରେ ତହିଁରେ କରନ୍ତି ଓହାଡ଼ ॥
ରାଜାଙ୍କର ଘରମାନ ବିଚିତ୍ର ଛାଏଣୀ ।
ସବୁ ଚୂନ ମାନ ସ୍ଥାନ ମାନ ଜାଣି ॥
ଶ୍ରୀରାମ ନବର ଦୁତୀଅ ବାରସ୍ୱତୀ ।
ମେଢ଼ ମଣ୍ଡୋପ ଅଟାଳି ଜଗତୀ ॥
ନାନା ବର୍ଣ୍ଣେ କଳସ ନାନା ତ୍ରୋଣା ଉଭା ।
ଫଳହର ଉଡ଼ଇ ଦିଶନ୍ତି ମହାଶୋଭା ॥
ଭରଥ ଲକ୍ଷଣ ଶତ୍ରୁଘନ ନବର ଭିନ୍ନ ।
ବଶିଷ୍ଟ ଯାବାଳି କଶ୍ୟପ ଆଏତନ ॥୯୦
ଅତି ରମ୍ୟ ମଏ ଦିଶଇ ଯେମାନଙ୍କ ଘର ।
ବଶିଷ୍ଟଙ୍କ ପାଶେ ବାମଦେବଙ୍କର ପୁର ॥
ସୁମନ୍ତ ସହିତେ ସକଳ ମନ୍ତ୍ରୀଗଣ ।
ଯେବଣ ପୁରକୁ ଯେ ଅଟନ୍ତି ଭାର୍ଜନ ॥
ସୁଗ୍ରୀବର ବିଭୀଷେଣ ଅଙ୍ଗଦ ନବର ।
ହନୁମନ୍ତ ଜମ୍ୱେବ ସୁଷେଣର ପୁର ॥
ଅଷ୍ଟ ସେନା ଆବର ପଚିଶ ଯୂଥପତି ।
ଯେହାଙ୍କର ଘରମାନ ଦିଶନ୍ତି ପନ୍ତି ପନ୍ତି ॥
ଗୁହ ନାମେ ଶବରକୁ ରଞ୍ଚିଲେକ ପୁର ।
ଅଯୋଧ୍ୟାର ଲୋକେ କଲେ ତହିଁ
ଘର ॥୧୦୦
ହାଟ ବସିଲା ଫିଟିଲାକ ବାଟ ।
ଚାରି ଦିଗରୁ ଆସି ପଶିଲେକ ଥାଟ ॥
ବାଦ୍ୟହିଁ ନିରନ୍ତରେ ବାଜିଲା ଚଉକତି ।
ନାନାଦେଶୁ ଲୋକେ ଦେଖିତ ଆସନ୍ତି ॥
ଶୁଭ ଅନୁକୂଳେ ଶ୍ରୀରାମ ବିଜେ କଲେ ।
କଉଶଲ୍ୟାଙ୍କ ସହିତେ ମାତୃଗଣ ଅଇଲେ ॥
କନେକ ସୀତ୍ୟାକୁ ହାନ୍ଦୋଳାରେ ଚଢ଼ାଇଂ ।
ଭୋଡ଼ଙ୍ଗିଂଆ ପାଇକେ ପଟୋଆରି ପକାଇ ॥
ପୂର୍ବେଣ ଜାନେକୀର ଯିବାର ଯେବଣ
ଗତି ।
ସୁବର୍ଣ୍ଣ ସୀତ୍ୟାକୁ ତେସନ କରି ନିଅନ୍ତି ॥୧୦
ବେଢ଼ିଣ ଅଛନ୍ତି ଅନେକ ପରିବାରୀ ।
ତହିଁକି ଚଳନ୍ତି ବଶିଷ୍ଟ ତପଚାରୀ ॥
ଭରଥ ଲକ୍ଷଣ ଶତ୍ରୁଘନଙ୍କ ଭାରିଯା ।
ସେହି ଗଲେ ଯହୁଁ ଆଗ୍ୟାଂ ଦେଲେ ରାଜା ॥
ମନ୍ତ୍ରୀଗଣମାନଙ୍କର ଘରଣୀମାନେ ଗଲେ ।
ଗୋମତୀ କୂଳେ ଯାଇଣ ଆଶ୍ରମେ ରହିଲେ ॥
ରଥଗଜ ଘୋଡ଼ା ପାଦାନ୍ତି ସମ୍ଭାର ।
ତୁଚ୍ଛା ହୋଇଲାକ ଅଯୋଧ୍ୟା ନବର ॥
ଘରେକେ ଜଣେକେ ରକ୍ଷାଅର୍ଥେ ଥୋଇଂ ।
ସଭିଏଂ ଯାଗ ଦେଖିଗଲେ ହରଷ
ହୋଇଂ ॥୨୦
ଦୁତୀ ଅଯୋଧ୍ୟା ହେଲା ଗୋମତୀ
ନଦୀକୂଳ ।
ଋକ୍ଷ କପି ଧଇଲେ ସୁଗ୍ରୀବର ମେଳ ॥
ଅଙ୍ଗଦ ସୁଷେଣ ଆଦି ଗବଏ ଗବାକ୍ଷ ।
ମହୀନ୍ଦ୍ର ଦ୍ୱିବିନ୍ଦ ସେ ଶରସେତୁ ତାରାକ୍ଷ ॥

ରମଣ ଶତବାଲି ଶରଭରୀ ସେନାପତି ।
ନଳ ନୀଳ ଗନ୍ଧମାର୍ଦ୍ଦନ ଆସନ୍ତି ॥
ପବନ ଡାଲିମ୍ବ ବସନ୍ତ ଚନ୍ଦନ ।
ଦୃବିନ୍ଦ ଦଧିମୁଖ କଞ୍ଚନ କାଳିଞ୍ଜନ ॥
ଅଷ୍ଟସେନା ଅଇଲେ ପଞ୍ଚଶ ଯୂଥପତି ।
ଋକ୍ଷ କପି ସନ୍ୟ ପୂରିଲେ ଆସି ପୃଥି ॥୩୦
ବିଭୀଷେଣ ଅଇଲା ରାକ୍ଷସ ବଳ ସଙ୍ଗେ ।
କଡ଼ା ଘୁମୁରା ବାଜଇ ନାନାରଙ୍ଗେ ॥
ସୁଗ୍ରୀ ବିଭୀଷେଣ ଦ୍ରଶନ ଯାଇଂକଲେ ।
ଦେଖି ରଘୁନାଥ କୁଶଳ ପୁଛିଲେ ॥
ସୁମନ୍ତ ଘେନିଯାଇ ବିଚିତ୍ର ପୁର ଦେଲା ।
ଚମ୍ପାବତୀ ନଗ୍ରଂ ଲମ୍ପୋପାଦହିଂ ଅଇଲା ॥
ଜନେକ ମହାରଷି ଅଇଲେ ଥାଠ ଘେନି ।
ବାଦ୍ୟ ବାଜନ୍ତେ ପୂରିଲା ମେଦନୀ ॥
ଶୁଣିଣ ଶ୍ରୀରାମ ପାଛୋଟି ଆସିନେଲେ ।
ଦିବ୍ୟ ନବରେକ ରହିବାକୁ ଦେଲେ ॥୪୦
ଯାଗ୍ୟଂକୁ ଅଇଲାକ କଏକୟା ଭାଇ ।
କଉଶୁଲ୍ୟାର ଭାଇ ଅଇଲେ ବେଗ
ହୋଇଂ ॥
ସୁମଇତ୍ରା ରାଣୀ ବାପ ତନଏ ଅଇଲା ।
ଗୁହ ନାମେ ଶବର ପ୍ରବେଶ ହୋଇଲା ॥
ଶତ୍ରୁଘନ ଅଇଲା ମଧୁବନ ରାଏ ।
କାଶୀଶ୍ୱର ରାଜା ସେ ଦ୍ରଶନ ଆସିକଏ ॥
ଲକ୍ଷେକ ନୃପତି ମିଳିଲେର ସର୍ବେ ଆସି ।
ଚତୁରାଙ୍ଗ ବଳ ପୃଥିବୀ ନ ଦିଶି ॥
ବାଦ୍ୟ ବାଜନ୍ତେଣ କମ୍ପଇ ବସୁନ୍ଧେରୀ ।
ଆଲମ୍ୱ ପାଟଛତ୍ର ସୂର୍ଯ୍ୟଙ୍କ ତେଜ
ଉହାଡ଼ି ॥୫୦
ଶ୍ରୀରାମକୁ ଦ୍ରଶନ ସେ କଲେ ରାଜାଗଣ ।
କାର୍ପୁଣ୍ୟ ହୋଇଣ ବୋଲନ୍ତି ରଘୁରାଣ ॥
ତୁମ୍ଭେ ପ୍ରସନ୍ନ ମୋତେ ହୋଅ ଦଣ୍ଡଧାରୀ ।
ଅଶ୍ୱମେଧ ଯାଗ୍ୟଂ ମୁଂ ଲୋଡୁଅଛି କରି ॥
ଶୁଣିଣ ନୃପତିମାନେ ଶିରେ ହସ୍ତ ଦେଲେ ।
ତୋତେ କିସ ଅସମ୍ଭବ ବୋଲିଣ
ବୋଇଲେ ॥

ତୁ ଯଜ୍ଞ ପୁରୁଷ ଆପଣେ ଯାଗ କରୁ ।
ଆମ୍ଭକୁ ରାଇଣ ଆଉ କି କଥା ପଚାରୁ ॥
ସ୍ୱର୍ଗ ମଞ୍ଚ ପତାଳେ ତୁ ଅଟୁ ଆଧିପତି ।
ତୋହୋର ଯଜ୍ଞ କରିବାର ଅଟଇ
ଯୁଗୁତି ॥୬୦
ଶୁଣିଣ ଶ୍ରୀରାମ ହୋଇଲେ ସନ୍ତୋଷ ।
ରାଜାମାନନ୍ତ ନେଇ ସୁମନ୍ତ ଦେଲା ବାସ ॥
ଚତୁରାଙ୍ଗ ବଳକୁହିଂ ଅଛି ସବୁ ସଞ୍ଚା ।
ଯେ ଯାହା ଲୋଡ଼ଇ ଓଦା ସିଝା କଞ୍ଚା ॥
ବ୍ରହ୍ମରଷି ରାଜରଷି ଦେବରଷିମାନେ ।
ଶିଷ୍ୟଗଣ ସହିତେ ଅଇଲେ ଯତିମାନେ ॥
ତପୀ ଜଟାଧାରୀ ଭିକାରୀ ସନ୍ନ୍ୟାସୀ ରଷି ।
ଅନ୍ଧ ଦରିଦ୍ର ଅନେକ ମାଗନ୍ତାହିଂ ଆସି ॥
ଠାବେ ଠାବେ ଅନ୍ନଛତ୍ର ପାଣିପଣା ଦାନ ।
ଆବର ତଇଳ ଛତ୍ର ଦେଲେକ
ଅବିକ୍ଷଣ ॥୭୦
ଘରେ ଘରେ ଉସବ ଆନନ୍ଦ ନରନାରୀ ।
ସବୁଙ୍କରି ଘରେ ମଙ୍ଗଳ ଆରମ୍ଭ କରି ॥
କଦଳୀ ଚାରିଗଛ ସୁବର୍ଣ୍ଣ ବେଦି କୋଣେ ।
ପୂର୍ଣ୍ଣ କୁମ୍ଭ ଚୂତପତ୍ର ଶ୍ରୀଫଳ ଆରୋପଣେ ॥
ଗୁଆଘୃତ ନେତ ବଳିତା ଜାଗର ।
ଦଧିଭାଣ୍ଡ ଜିଆଂ ମାଛ ଅଛଇ ପାଖର ॥
ଓସଣାରେ ଖଞ୍ଜିଲେ ମଙ୍ଗଳ ଡାଳମାନ ।
ପିଢ଼ାରେ କଳସ ଧ୍ୱଜାଳ ନେତ ଚିହ୍ନ ॥
ଫୁଲେ ଫୁଲେ ମଣ୍ଡି ବସ୍ତ୍ରେଣ ଘୋଡ଼ାଇ ।
ରତ୍ନ ଅଳଙ୍କାର ବାହାରେ ବେଢ଼ାଇ ॥ ୮୦
ନଗ୍ରେ ଉଛବ କରନ୍ତି ଘରେ ଘରେ ।
ପର ରାଜ୍ୟ ଲୋକେ ପ୍ରଶଂସନ୍ତି ଅପାରେ ॥
ହାଟମାନଙ୍କରେ ବିବିଧ ଦ୍ରବ୍ୟ ପାଇ ।
ସୁନା ହୀରା ରୁପା ମାଣିକ ମୋତି ଥାଇ ॥
ବିକିବାର ନିମନ୍ତେ କୁଢ଼ାଇଛନ୍ତି ଆଗେ ।
ବିକା ନ ଗଲେ ତାହା ସେ ବିଛିଯାନ୍ତି ରାଗେ ॥
ସବୁ ରାଜାମାନଙ୍କର ଭିନ୍ନ ଭିନ୍ନ ବାଦ୍ୟ ।
ବ୍ରହ୍ମାଣ୍ଡ ପୂରୁଅଛି ଲୋକଙ୍କ ମୁଖନାଦ ॥
ଠାବେ ଠାବେ ନୃତ୍ୟ କରନ୍ତି ନଟନାରୀ ।

ନାନା କଉତୁକ ନାନା ହଟ ମାନ କରି ॥୯୦
କେ ଗୀତ ଗାବନ୍ତି କେ ନାଚନ୍ତି ଯାଉଂ
ଯାଉଂ ।
କେହୁ ହୁଳହୁଳି ପାଡ଼ନ୍ତି କହୁଂ କହୁଂ ॥
ନାଗର ପୁରୁଷ ଦୁଇ ଚାରି ଗୁଣ୍ଡ ।
ସୁବେଶ ହୋଇ ବୁଲନ୍ତି ରାଜଦାଣ୍ଡ ॥
ଚତୁର ଯୁବତୀଯେ ତେଜିଲେ ଲାଜମାନ ।
ନଗ୍ର ବୁଲନ୍ତି ଦେଖନ୍ତି ସ୍ଥାନ ମାନ ॥
ନାଗର ଯୁବତୀଏ ପୁରୁଷକୁ ଚାହାନ୍ତି ।
ଆଖିର କୋଣରେ ଚାହିଂ ଅଳପ ହସନ୍ତି ॥
ଢଗ ଢମାଳି କରି କହନ୍ତି ବଚନ ।
ତାହା ଦେଖି ପୁରୁଷଙ୍କୁ ପୀଡ଼ଇ
ମଦନ ॥୧୦୦
ଯେତେ ଲୋକ ଦେଖନ୍ତି ସବିହେଂ ବଣିଆ ।
କେହି ଯହୁଂ ହାଥରୁ ନ ଖାନ୍ତି କିଣିଆ ॥
ଫଳ ଫୁଲ ଚନ୍ଦନ ସୁଗନ୍ଧ ସବୁରି ଗାତ୍ର ।
ଧନ ଅଳଙ୍କାର ସେ ତୈଳ ବସ୍ତ୍ର ପୂରିତ ॥
ବରଷ ବରଷକୁ ପୂରିଅଛି ଆଏ ।
ଯେତେବେଳେ ଯାହା ମାଗଇ ତାହା ସେ
ପାଏ ॥
ଅତିହିଂ ଗହଳ ସେ ଗୋମତୀ ନନ୍ଦୀ ତୀର ।
ଯେତେକ ଲୋକ ଥିଲେ ସୃଷ୍ଟିର ଭିତର ॥
ସବିହେଂ ଠୁଳ ହେଲେ ଥୋକାଏ ସେ
ନାହିଂ ।
ବାବୁ ଯଜ୍ଞ ଆରମ୍ଭିଲେ ରଘୁସାଇଂ ॥ ୧୦
ବଶିଷ୍ଟଙ୍କୁ ପୁଛି ଅନକୂଳ ଘେନି ।
ସିନ୍ଧୁ ଜାତି ଅଶ୍ୱଶାଳ ପଶି ଚିହ୍ନି ॥
ବରଣ କରିଣ ଅଇଲେ ତାହା ଘେନି ।
ଶିରେ ବାନ୍ଧିଛନ୍ତି ବସନ୍ତ ପତନୀ ॥
ପଞ୍ଚ ବର୍ଣ୍ଣ ଫୁଲ ମାଳ ମୁଣ୍ଡରେଣ ଖଞ୍ଜାଣି ।
ଦୁଇ ପାରୁଶେ ଲୋକେ ଚାମର ଢାଳନ୍ତି
ଘେନି ॥
ଲକ୍ଷେକ ଶଙ୍ଖ ପୂରଇ ଘୋଡ଼ା ଯାଉଂ ।
ଲକ୍ଷେକ ରାଜା ଅଛନ୍ତି ଘୋଡ଼ା ପଛେ
ଥାଉଂ ॥

ଆପଣେ ରଘୁନାଥ ଅଶ୍ୱ ପୂଜା କଲେ ।
ଶୁଭ ଅନୁକୂଳ ବେଳେଣ ଘୋଡ଼ାକୁ
ମେଲିଦେଲେ ॥୨୦
ଲକ୍ଷଣକୁ ବୋଇଲେ ତୁ ତୁରଙ୍ଗମ ପଛେ
ଥିବୁ ।
ଯେ ଆଗେ ଓଗାଳିବ ତା ସଙ୍ଗେ ଯୁଝିବୁ ॥
ରଣେ ଜିଣି ଘୋଡ଼ା ଆଣସି ବୁଲାଇଂ ।
ବାର ବରଷେ ପ୍ରବେଶ ହେବୁ ମୋର ତହିଂ ॥
ରଥ ଗଜ ଘୋଡ଼ା ପାଦାନ୍ତି ବଳ ଯାଉ ।
ଅଯୋଧ୍ୟା ପୁରେ ଥାଠ ଗୋଟିଏ ନ ଥାଉ ॥
ଭ୍ରଥ ଶତୃଘନମାନଙ୍କର ଅଙ୍ଗବଳମାନ ।
ତୋଟା ବାରି ରଖୁଯେ ମଧୁବନ ରାଜନ ॥
ଋକ୍ଷକପି ବଳତ ଏଥି ଅଛଇ ମୋହର ।
ଆବର ଅଛନ୍ତି ଲଙ୍କାପୁରର ଅସୁର ॥୩୦
ଜନେକ ଋଷି ଥାଠ ମଉଳାଙ୍କ ଲୋକ ।
ଅଛନ୍ତି ଲକ୍ଷଣ ଆହୁରି ଅନେକ ॥
ତୁ ବାବୁ ଘୋଡ଼ା ଆଣ ମହୀ ବୁଲି ।
ତୋହୋର ଭରସାରେ ସିନା ଯାଗ
ଆରମ୍ଭିଲି ॥
ଶୁଣି ଲକ୍ଷଣ ଶିରେ କର ଦେଲା ।
ଦିବ୍ୟ ବେଶ ହୋଇ ରଥରେ ବସିଲା ॥
ଅସମ୍ଭବ ବଳ କଳନା ନ ଯାଇ ।
ପୃଥ୍ୱୀ ଲୁଚିଲାକ ପାଟ ଛତ୍ର ଛାଇ ॥
ନିଶାଣର ଘାଏ ସେ କମ୍ପଇ ତିନିପୁର ।
ଚତୁର୍ଦ୍ଦିଗେ ବିଜଏ କଲାକ ମହାବୀର ॥୪୦
କିମ୍ପତ ଯୁଦ୍ଧରେ ମାଇଲାକ ଇନ୍ଦ୍ରଜିତ ।
ପୃଥ୍ୱୀରେ ରାଜାଙ୍କୁ କିସ ତାର ଭୀତ ॥
ରଥ ଗଜ ଘୋଡ଼ା ପାଇକ କଳନା ନ
ଯାଇ ।
ସବୁ ରାଜାଙ୍କ ଉପରକୁ କଟକାଇ ॥
ସୁମନ୍ତର ପୁତ୍ର ଗଲା ତାହାର ସାଙ୍ଗେ ।
ରଥ ଗଜ ପାଦାନ୍ତି ବାହାର ହେଲେ ବେଗେ ॥
ଶ୍ରୀରାମକୁ ବୋଇଲେ ତୁ ଯାଗ୍ୟ କରି ଥାସି ।
ଅଶ୍ୱ ଆଣଇ ମୁହିଂ ସକଳ ପୁରେ ପଶି ॥
ଯେତେ ବୋଲି ଘୋଡ଼ା ପଛେଣ
ଗୋଡ଼ାଇଂ ।
ରାତ୍ର ଦିବସେ ଗମନ କରି ଯାଇଂ ॥୫୦
ବନ ପର୍ବତ ଟିକର ନଦୀ ଖାଲ ଖୋଲ ।
ଭ୍ରଥ ଖଣ୍ଡ ପ୍ରତିକ୍ଷଣ କରଇ ରଘୁମଲ୍ଲ ॥
ରାଜାମାନେତ ସମସ୍ତେ ଅଛନ୍ତି ଯେଥି ଖଟି ।
ସବୁ ଦେଶେ ଲକ୍ଷଣ ବଇରୀ ଲୋଡ଼େ
ହେଠି ॥
କାଞ୍ଚି ସିନ୍ଧୁ ତଟେ ପର୍ବତ ଶିଖେ ବାଟ ।
ଅଗମ୍ୟ ବନରେ କାହିଂ ବୁଲିଯାଇ ଥାଠ ॥
ଯେମନ୍ତେ ବାର ବରଷ ପୃଥିବୀ
ବୁଲିଗଲେ ।
ପାର୍ବତୀଙ୍କ ଆଗେ ଯେହା ଶଙ୍କର କହିଲେ ॥
ଶୁଣ ନାରାଏଣୀ ନାରାଏଣର ଚରିତ ।
ଦୀକ୍ଷା ଘେନି ଯଗ୍ୟଂରେ ବିଜଏ
ରଘୁସୁତ ॥୬୦
ମାହିନ୍ଦ୍ର ବେଳେଣ ଲକ୍ଷେ ରାଜା ସଙ୍ଗେ
ଘେନି ।
ଯଗ୍ୟଂଶାଳ ଦେଖି ପ୍ରଶଂସା କରନ୍ତି ସର୍ବମୁନି ॥
ବଶିଷ୍ଟଙ୍କୁ ଲାଗଇ ତପୀମାନଙ୍କର କଥା ।
ଆଗହୁଂ ପାଞ୍ଚିଣଛନ୍ତି ରଘୁନାଥା ॥
ସୁମନ୍ତ ସମ୍ଭାଳଇ ନୃପତିଗଣମାନ ।
ସୁଗ୍ରୀବର ରଖଇ ଭଣ୍ଡାରର ଧନ ॥
ବିଭୀଷେଣ ହାରି ଗୁହାରି ବିଚରି ।
ସମିଧ ଯବ ଘୃତ ଭ୍ରଥ ନିର୍ଭା କରି ॥
ଯେ ଯହିଂକି ଅନରୂପେ ହୋଇଂଅଛି ସବୁ ।
ଅଙ୍ଗଦକୁ ବୋଇଲେ ଯେ ଯାହା ମାଗଇ
ଦେବୁ ॥୭୦
ଠାବେ ଠାବେ ଖଟଣି ଯାଗ ଶାଳ ବେଢ଼ି ।
ବାବୁ ସେହୁ ଘର ଗୋଟା ରତ୍ନେ ଅଛି ଜଡ଼ି ॥
ରୁପାର ପିଢ଼ା ସୁବର୍ଣ୍ଣର ଖମ୍ବମାନ ।
ମ୍ରକତର ଶେଣୀ ଗୁଅ ପ୍ରବାଳ ସମାନ ॥
ବିଢ଼ାଳାକ୍ଷର ଉରା ସେ କୁବିନ୍ଦର ଗୁଜ ।
ଉରାଙ୍କର ମୁଣ୍ଡିମାନ ଅଟେ ବଇଦୁର୍ଯ ॥
ସ୍ପଟିକର ପାଣି ପାଟିଆ କାଚର ନିକଷା ।
ନୀଳମଣି ବତା ମାରାଗ କିଛୁ ମିଶା ॥
ହୀରାର ଧୂଳି କଣ୍ଟା ମାଣିକ୍ୟର ଛାଏଣୀ ।
ମୁକୁତାର କଳସ ଚନ୍ଦ୍ର ଉଦେ ଜାଣି ॥୮୦
ପୁଷ୍ପରାଗ କାଠିରେ ନେତଙ୍କ ଚିରାଳ ।
ଦେବତାଙ୍କୁ ଦୁର୍ଲ୍ଲଭ କର୍ମ କରନ୍ତି ରଘୁବାଳ ॥
ହୋମ ଘର ବେଢ଼ି ଛାମୁଣ୍ଡିଆ କଲେ ।
ଚନ୍ଦନ କାଠ ଖମ୍ବ କରିଣ ପୋତିଲେ ॥
କୃଷ୍ଣ ଅଗ୍ରଶେଣୀ ଦେବଦାରୁ ଗୁଅ ।
ଆଗ୍ୟାଂ ଦେଇଣ ଅଛନ୍ତି କଉଶଲ୍ୟାର ପୁଅ ॥
ଲବଙ୍ଗ ଲତା ବତା ଶୁକଳ ପାଟ ଗଣ୍ଠି ।
ଚଉକତି ଝରା ଲମ୍ବଇ ସୁନାଗଣ୍ଠି ॥
ଗିଲିମ ଖଣ୍ଡଶାଳ ତେଜପତ୍ର ଛାଏଣି
ହୋଇ ।
ଦେବାଙ୍ଗ ପାଟ ଟେରା ପଡ଼ିଣ ଅଛଇ ॥୯୦
ମଧ୍ୟେଣ ହୋମ କୁଣ୍ଡ ତାଳେକ ଗଭୀର ।
ଶୁଭ ଲଗ୍ନ ଘେନିଣ ବିଜଏ ରଘୁବୀର ॥
ବଶିଷ୍ଠ ଆଚାର୍ଯ୍ୟ ଗଉତମ ବ୍ରହ୍ମା ।
ଜନେକ ମହାଋଷି ବରିଲେ ରଘୁରାମା ॥
ହୋତା ଦୁର୍ଭାସ୍ୟା ବରଣ ବିଧି କଲେ ।
ଲକ୍ଷେକ ମହାଋଷି ବରଣେ ବସିଲେ ॥
ବ୍ରହ୍ମଋଷି ରାଜଋଷି ଦେବଋଷିମାନ ।
ଧନ ବସ୍ତ୍ର ଦେଇ ପୂଜା କଲେ ରଘୁନାନ ॥
ଲକ୍ଷେକ ରାଜାକଇ ରାମ ଦେଲେକ
ଅକ୍ଷତ ।
ସର୍ବ ସନ୍ୟ ଲୋକନ୍ତ ଦେଲେ ଅନ୍ନ
ବିତ୍ତ ॥୧୦
ମାଗନ୍ତା ଜନକଇ ଅବିଛନେ ଦାନ ।
ଅଗ୍ନିମୁଖେ ଦେବେ ସେ କରନ୍ତି ସୋମପାନ ॥
ଶ୍ରୀରାମ ବିଜଏ କୁଶ ହସ୍ତ ହୋଇଂ ।
ମୁକୁଟ କୁଣ୍ଡଳ ସେ ରତ୍ନ ହାରମାନ ଲାଇଂ ॥
ପୂର୍ବେ ଦେବ ଇନ୍ଦ୍ର ଯେବଣ ଯାଗ କଲେ ।
ତହୁଂଣ ବଳଇ ବୋଲି ଅଗସ୍ତି କହିଲେ ॥
ଅବିଛନେ ଆହୁତି ସମର୍ପନ୍ତି ମୁନି ।
ଘୃତ ଯବ ତିଳ ଭକ୍ଷଇ ବହ୍ନି ॥
ଘୃତ ସମିଧମାନ ଯହିଂକି ଯିସ ଯିସ ।
ମନ୍ତ୍ର ପଢ଼ି ହୋମ କରନ୍ତି ବ୍ରହ୍ମଶିଷ୍ୟ ॥୧୦
ବାହାରେ ବାଜଇ ଲକ୍ଷେକ ବୀରତୂର ।

ମୁଖରାବ ଶବଦେ କମ୍ପଇ ତିନିପୁର ॥
ପୂର୍ବ ଦ୍ୱାରେଣ ଭ୍ରାଥ ପଶ୍ଚିମେ ବିଭୀଷେଣ ।
ଉତ୍ତରେ ସୁଗ୍ରୀବର ଜମ୍ୱେବ ଦକ୍ଷିଣ ॥
ଯାଗ ଶାଳ ଜଗଇ ପବନ ତନଏ ।
ସବୁଙ୍କରି ସଇନି ଅଙ୍ଗଦ ରକ୍ଷାକଏ ॥
ଶତ୍ରୁଘନ ନବର କଥାମାନ ଜାଣଇଂ ।
ଯିସ ବୋଲିବେ ତାହା ସୁମନ୍ତ ଆଣଇ ॥
ଯେମନ୍ତେଣ ଅତି ସମ୍ଭର୍ବରେ ଯାଗ କଲେ ।
ବାରବରଷ ଅଗ୍ନିରେ ହୋମ ଦେଲେ ॥୨୦
ପୃଥ୍ୱୀ ବୁଲି ଲକ୍ଷଣ ଆଣିଲାକ ଘୋଡ଼ା ।
କେହି ଛାମୁରେ ତାର ନୋହିଲାକ ଯୋଡ଼ା ॥
ଦେଖି ରଘୁନାଥ ଆନନ୍ଦ ହୋଇଲେ ।
ଲକ୍ଷଣକୁ ବହୁତ ସନମାନ ଦେଲେ ॥
ଯେଥିଅନନ୍ତରେ ଅଶ୍ୱମେଧ ଯାଗ୍ୟଂ ।
ଦେବତାମାନେ ସୁଖେ ପାଇଲେ ହବିର୍ଭାଗ ॥
ବ୍ରହ୍ମାରୁଦ୍ର ସହିତେଣ ମୂର୍ତ୍ତିବନ୍ତ ହୋଇ ।
ସୋମପାନ ଦେବେ କରନ୍ତି ସୁଖପାଇ ॥
ସ୍ୱଂଏ ନାରାଏଣ ଯହିଂ କରୁଛନ୍ତି ହୋମ ।
ମେଘେ ବଳୀଆର ପିଇଣ ତହିଂ ଧୂମ ॥୩୦
ଅଗ୍ନିଦେବତାର ଯିସ ଯିସ ପାପ ଥିଲା ।
ଶ୍ରୀରାମ ପୂଜନ୍ତେ ସେ ମୁକତ ହୋଇଲା ॥
ଯେସେନେକ ଯାଗ କରନ୍ତି ରାମ ରାଏ ।
ଶୁଣ ମହାରସ ଯେହୁ ଅପୂର୍ବ କଥାଏ ॥
ବାଲମ୍ପିକ ମୁନିଙ୍କି ବରିଲେ ରଘୁପତି ।
ଲୋକ ଗଲେ ଆସିବାକୁ ମନକଲେ ଯତି ॥
ସବୁ ସଜ କରି ସୀତୟାକୁ ଯାଇ କହି ।
ଭଲ କଥାଏ ତୁଗୋ ଶୁଣସି ବଇଦେହୀ ॥
ଭ୍ରାଥା ତୋର ଅଶ୍ୱମେଧ ଯାଗ କରି ।
ଆମ୍ଭକଇ ଲୋକ ପଠିଆଇଲେ
ହକାରି ॥୪୦
ଗୋମତୀ ନଦୀ ତୀରେ ନଇମିଷ୍ୟା ଅରନ୍ୟ ।
ଅଳପ ଧର୍ମ କଲେ ପାଇ ବହୁତ ପୁନ୍ୟ ॥
ବଶିଷ୍ଟ କହନ୍ତେଣ ରାମ ଜାଣି ତାହା ।
ତହିଂ ହାଦେ ଯାଗ କରଇ ତୋର ନାହା ॥
ଲକ୍ଷେକ ନ୍ୟପବର ରୁଣ୍ଡ ହୋଇଛନ୍ତି ।
ପାଦଭରେ କମ୍ପୁଅଛି ବସୁମତୀ ॥
ବ୍ରହ୍ମରଷି ରାଜରଷି ଦେବରଷିମାନେ ।
ଅନେକ ରଷି ମିଳି ଅଛନ୍ତି ଯାଗ ସ୍ଥାନେ ॥
ଲକ୍ଷଣ ଘୋଡ଼ା ଘେନିଣ ପୃଥ୍ୱୀ ବୁଲିଗଲା ।
କେହିତ ତାହାକୁ ଜଣେ ଓଗାଳନ୍ତା
ନୋହିଲା ॥୫୦
ଅସମ୍ଭବ କଥା କରଇ ତୋହୋ ଭ୍ରାଥା ।
କଥାଏକ ଆମ୍ଭେ ତୋତେ କହି ଲୋଡୁ
ସୀତ୍ୟା ॥
ସ୍ୱଭାବେ ପୁଣ୍ୟ ସ୍ଥାନ ଆବର ମହା ଯାଗ୍ୟଂ ।
ଯେହୁଣ ଦେଖନ୍ତି ତାହାର ବଡ଼ ଭାଗ୍ୟ ॥
ତହିଂକିତ ନିଜ ପିଅର ଧର୍ମହିଂ କରଇ ।
ପୁତ୍ରନ୍ତ ଘେନିଯିବାର ବିଚାରଇ ମୁହିଂ ॥
ଦଇବ ସେ ବିଚ୍ଛେଦ କରାଇଅଛି ଆଣି ।
ସତେହେଂ କି ରକତେ ମିଶିବଇ ମାଏ
ପାଣି ॥
ପରର ଆନନ୍ଦ ମାଗୋ ପରଦେଖି ଯାନ୍ତି ।
ସ୍ୱର୍ଗ ପାତାଳ ଲୋକେ ଦେଖି
ଆସୁଛନ୍ତି ॥୬୦
ସ୍ୱଭାବେ ଯେବଣ ସ୍ଥାନେ ରୁଣ୍ଡ ବହୁତ
ଜନ ।
ତାହା ଦେଖିଲେ ପୁଣ ହରଇ ପାପମାନ ॥
ତାହା ଦେଖିଲେ ଗୋ ପୋଏ ମୁକତ
ହୋଇବେ ।
ମୋହୋର ସଙ୍ଗେ ଥାଇ ଏ ପିତାଙ୍କୁ
ଦେଖିବେ ॥
ସହଜେ ଅଶ୍ୱମେଧ କରଇ ତାଙ୍କ ପିତା ।
ପୋଏ ଦେଖି ଆସନ୍ତୁ ଗୋ ପଠିଆ ସୀତ୍ୟା ॥
ଶୁଣିଣ ଜାନେକୀ ବୋଇଲେକ ଧୀର
ବାଣୀ ।
ନିଅତୁ ବାପ ପୋଏ ହୋଅନ୍ତୁ ଜଣାଜଣି ॥
ମୁହିଂ ସିନା ଅପ୍ରାଧି ପୁଅଙ୍କର କିସ ଦୋଷ ।
ଯେ ଦୁଇ ବଳାନ୍ତ ସମର୍ପିଣ ଆସ ॥୭୦
ରାଜାର ପୁତ୍ର ବନସ୍ତେ କିମ୍ପା ଥିବେ ।
କର୍ମ ବଳେ ଯେହୁ କାଲି ନୃପତି
ହୋଇବେ ॥
ଯେତେ ବୋଲି ସୀତ୍ୟା ଦୁଇ ପୁତ୍ରନ୍ତ ରାଇ ।
ରଷିଙ୍କର ସଙ୍ଗତେ ବାବୁ ଯାଅରେ
ବୋଲଇ ॥
ଅଯୋଧ୍ୟା ରାଜା କରଇ ଅଶ୍ୱମେଧ ଯାଗ ।
ସେ ଧର୍ମଗୋଟା ଦେଖିଲେ ବଡ଼ ଭାଗ୍ୟ ॥
ଅଜା ଗୁରୁ ସହିତେ ତହିଂକି ଯାଉଛନ୍ତି ।
ସବୁ ରଷିମାନ ଶିଷ୍ୟନ୍ତ ଘେନି ଯାନ୍ତି ॥
ଶୁଣିଣ ଯିବୁ ବୋଇଲେ ବେନି ପୋଏ ।
ସଜକରି ଆମ୍ଭନ୍ତ ପଠିଆଅଗୋ ମାଏ ॥୮୦
ଜାନେକୀ ଆନନ୍ଦ ପୁତ୍ରଙ୍କ ବୋଲ ଶୁଣି ।
ସଜକରି ରଷିଙ୍କ ଛାମୁରେ ଦେଲେ ଆଣି ॥
ଯେଥିଅନନ୍ତରେ ପାର୍ବତୀ ପଚାରି ।
କଥାଏ ପଚାରିବି କହିବା ଶୂଳଧାରୀ ॥
ସୀତ୍ୟାର ଯେବଣ ଦିନ ହେଲା ପୁତ୍ର ଜାତ ।
ଜାଣିଣ ଗଲା ଲକ୍ଷଣ ସାନ ଭ୍ରାଥ ॥
ଶ୍ରୀରାମର ଆଗେ ନ କହିଲାକ ଯାଇଂ ।
କହିଲେ ତା ଦୟାକି ନ କଲା ରଘୁସାଇଂ ॥
ଶଙ୍କର ବୋଲନ୍ତି ଶୁଣ ଗୋ ଗିରିଜା ।
ଶ୍ରୀରାମଚନ୍ଦ୍ର ଅଟନ୍ତି ଅଯୋଧ୍ୟା
ମହାରାଜା ॥୯୦
ରାଜାଙ୍କର ଦୋରେହା ଅଟନ୍ତି ବଇଦେହୀ ।
ସେ ନ ପଚାରିଲେ ଶତ୍ରୁଘନ ପାରଇ କି
କହି ॥
ଶ୍ରୀରାମତ ମନେ ମନେ ଅଛନ୍ତି ନା ଜାଣି ।
ବାଲମ୍ପିକ ଘରେ ଅଛନ୍ତି ଜନେକ ଦୁଲଣୀ ॥
ଦୁଇ ପୁତ୍ର ଜାତ ହେଲା ବୋଲିଣ ଜାଣନ୍ତି ।
ଡଗରାର ମୁଖେ ରାମ ବାରତା ପାଉଛନ୍ତି ॥
ପୁତ୍ରନ୍ତ ବାଲମ୍ପିକେ ପାଳିଲେ ଯେବଣ
ମତେ ।
ଜନମ ହୋଇବାର ଆରଦିନ ପ୍ରଭାତେ ॥
ଯେ ବିଧି ବେଭାର ସକଳ ତହିଂ କଲେ ।
ଯେକବିଂଶ ରାତ୍ରେ ବୋଲି ଶୁଆଇ
ନାମଦେଲେ ॥୧୦୦
ସୀତ୍ୟାକୁ ପୁଛିଲେ କେବଣ ନାମ ଦେବା ।
ଯେ ତୋହୋର ବିଚାରକୁ ଯୋଗାଇ
କହିବା ॥

ଜାନେକୀ ବୋଇଲେ ଜ୍ୟେଷ୍ଠ ପୁତ୍ର ଗୋଟି
ନାମ ।
ଗର୍ଭେ ଥାଉଂ ଥାଉଂ ନାମ ଦେଲେକ
ଶ୍ରୀରାମ ॥
ବୋଇଲେ କୁଶଳେ ଯେବେ ହୋଇବ
ଉତପତ୍ତି ।
କୁଶ ନାମ ଏହାକୁ ଦେବାଗୋ ମହା ସ୍ୟତୀ ॥
ଯେସନେକ ବୋଲିଣ ଅଛନ୍ତି ରଘୁସାଇଂ ।
ଆବର ହୋଇବ ବୋଲି ତାହାଙ୍କର ପ୍ରତେ
ନାହିଂ ॥
ତୁମ୍ଭେ ତାତ ମୋତେ ପୁଚ୍ଛିଲ ପୁତ୍ରର ନାମ ।
କୁଶ ନାମ ହୋଉ ମୋର ଏ ଜ୍ୟେଷ୍ଠ
ନନ୍ଦନ ॥୧୦
କନେଷ୍ଠର ନାମ ଗୋଟି ତୁମ୍ଭେ ତାତ ଦିଅ ।
ବିଚାରକୁ ଯେ ଯୋଗାଇ ତାହା ବେଗେ
କହ ॥
ଶୁଣିଣ ମହାଋଷି ହୋଇଲେକ ତ୍ରିପୁତି ।
ବୋଇଲେ ଶୁଣିମା ଗୋ ଜନେକ
ଦୋହିତୀ ॥
ପିତା ଯେବେ ଜ୍ୟେଷ୍ଠପୁତ୍ର ଗୋଟି ନାମ
ଦେଲା ।
ସେ କଥା ତ ଆମ୍ଭ ବିଚାରକୁ ଯୋଗାଇଲା ॥
ଯେତେବେଳେ ତୋହୋର ପ୍ରଥମ ପୁତ୍ର
ଜାତ ।
ଶୁଣି ଆନନ୍ଦ ହୋଇଲେ ସକଳ ତପୋବନ୍ତ ॥
ପୁଣି ହିଂ ବାରତା ସେ ପାଇଲେ ପେଟ
ବ୍ୟଥା ।
ଭଏ କରି ବସି ମାଗୋ ଜାଣିଲେ ଏ କଥା ॥
ଆରେକ ପୁତ୍ର ଗୋଟି ହୋଇଲେ ଯହୁଂ
ଜାତ ।
ତକ୍ଷଣେ ଜାତ ହୋଇଲା କନେଷ୍ଠ ସୁତ ॥
ଆମ୍ଭେ ଜାଣିଲୁ ତାହା ଲଏଣ କରି ବସି ।
ଲବ ନାମ ଯେହାର ହୋଉଗୋ ଶୁଭ୍ରକେଶୀ ॥
ଶୁଣି ମହୀସୁତୀ ବଡ଼ ଆନନ୍ଦ ହୋଇଲେ ।
ଦୋଳି ଶୁଆଣିରେ ପୁତ୍ରଙ୍କର ନାମ ଦେଲେ ॥

ସକଳ ଋଷି ମିଳିଣ ହୋମଯାଗ୍ୟଂ କଲେ ।
ବଳବନ୍ତ ହୁଅ ବାବୁ ବୋଲିଣ ବୋଇଲେ ॥
ପ୍ରତିପାଳନ୍ତେଣ ପୋଏ ଦିନୁଦିନ ଆନ ।
ଜାଣିଣ ପଟାନ୍ତର ସେ କଉଶୁଲା
ନନ୍ଦନ ॥୩୦
ବାଲମ୍ଭିକ ମହାଋଷି ଯାହାକଇ ପାଳି ।
ମାତା କମଳଣୀ ଯାର ପିତା ବନମାଳୀ ॥
ସେ ପୁତ୍ରର ଭଲ ପୁଣ ନୋହିବ କେସନେ ।
ଦେଖି ସାଧୁ ବୋଲିଣ ବୋଲନ୍ତି ସର୍ବଜନେ ॥
ଯେବେଣ ବୟସରେ ଯେବଣ ବିଧିମତ ।
ବ୍ରତ କରାଇଲେ ବାଲମ୍ଭିକ ତପୋବନ୍ତ ॥
ବେଦ ପଢ଼ାଇ ପୁଣି ଶାହାସ୍ତ୍ର ଶିଖାଇଲେ ।
ଅସ୍ତ୍ର ଶସ୍ତ୍ର ବିଦ୍ୟାନ୍ତ ସକଳ ବିଦ୍ୟା ଦେଲେ ॥
ବାପ ଗୁଣ ଘେନି ପୁତ୍ର ବଳୀଆରମାନ ।
ରାଜାର କୁମର ସେ ବଢ଼ନ୍ତି ଦିନେ
ଦିନ ॥୪୦
ଭବିଷ ପୁରାଣ ବାଲମିକ କରିଥିଲେ ।
ଚଉବିଂଶ ସହସ୍ର ଶ୍ଳୋକନ୍ତ ଶିଖାଇଲେ ॥
ମହାନାଟକ କାବ୍ୟଏ ରାମାଏଣ ଗ୍ରନ୍ଥ ।
କଣ୍ଠ ପାଠ କରି ଶିଖାଇଲେ ତପୋବନ୍ତ ॥
ଯେବେ ପିତାଙ୍କ ଆଗରେ ଶୁଣାଇବେ
ନେଇ ।
ସଙ୍ଗେ ଘେନି ଯାଉଛନ୍ତି ଜାନେକୀଙ୍କି କହି ॥
ସୀତ୍ୟା ବିଚାରନ୍ତି ଯେବେ ପୋଏ ମୋର
ଯାନ୍ତୁ ।
ପିତା ସଙ୍ଗରେ ନିଜ ରାଜ୍ୟରେ ଥାନ୍ତୁ ॥
ସାଧୁମାନେ ଦେଖନ୍ତୁ ଦେଖନ୍ତୁ ନଗ୍ରଜନ ।
ଚିହ୍ନନ୍ତୁ ଭ୍ରଥବୀର ଲକ୍ଷ୍ମଣ ଶତ୍ରୁଘନ ॥୫୦
ଯେତେବୋଲି ଦେବୀ ପୁତ୍ର ସମର୍ପିଲେ
ଆଣି ।
ଦୁଇପୁତ୍ର ହୋଇଛନ୍ତି ଅପୂର୍ବ କାଛେଣି ॥
କର୍ଣ୍ଣେ ତମ୍ଭ କୁଣ୍ଡଳ ଅଙ୍ଗେଣ ବିଭୂତି ।
ତାଳୁରେଣ ଚୂଳ ମଦନ ମୂରତି ॥
କକ୍ଷା ବସ୍ତ୍ର ପରିହରଣ କପୋଳେ
ଠିଆଚିତା ।

କଣ୍ଠେଣ ରୁଦ୍ରାକ୍ଷ କାନ୍ଧେଣ ପଇତା ॥
ନବ ହାଥେ ପୋଥି କୁଶ ହାଥ ତୁଛା ।
ଋଷିଙ୍କ ଆଗେ ଆଣି ସମର୍ପିଲେ ବେନିବଛା ॥
ମୂର୍ଦ୍ଧନା ଆଘ୍ରାଣ କରି ମୁଖେ ଚୁମ୍ବ ଦେଲେ ।
ପୁଣି କୋଳ କରି ଭିଡ଼ିଣ ବୋଇଲେ ॥୬୦
ଶୁଭେ ଯାଇଂ ବାବୁ ଯାଗ୍ୟଂ ଦେଖିଆସ ।
କ୍ଷଣହେଂ ନ ଛାଡ଼ିବଟି ଗୁରୁଙ୍କର ପାଶ ॥
ସେ ମହାଯାଗ ବାବୁ ଅକଳଣା ଥାଠ ।
ନ ପୁଣ ବଣା ହୁଅ ଯାଉଁ ଯାଉଁ ବାଟ ॥
ଯେତେ ବୋଲି ନେଇ ଋଷିଙ୍କି ସମର୍ପିଲେ ।
ସେନେହ ଭରେ ଆଖି ଥନ ଥନ କଲେ ॥
ପୁଅଙ୍କୁ ସମର୍ପି ସୀତ୍ୟା ତହୁଂ ଚଳିଯାନ୍ତି ।
ଲେଉଟିଣ ଚାହାଂ ବାବୁ ଜନନୀ ବୋଲନ୍ତି ॥
ଯେହାଶୁଣି ଲବକୁଶ ଲେଉଟି ଚାହିଁଲେ ।
ଶୁଭେ ଯେବେ ଯାଅ ବାବୁ ଜନନୀ
ବୋଇଲେ ॥୭୦
ହର ବୋଲନ୍ତି ଗୋ ତୁମ୍ଭେ ଶୁଣିମା ପାର୍ବତୀ ।
ସୀତୟା ବେନିପୁତ୍ର ଘେନିଣ ମହାଯତି ॥
ଆବରହିଂ ଅନେକ ଅଛନ୍ତି ତପଚାରୀ ।
ଘେନିଗଲେ ଶିଷ୍ୟଗଣନ୍ତ ଆଦି କରି ॥
ବାଟେ ଯାଉ ବାଲମ୍ଭିକ ଲବକୁଶଙ୍କୁ
ବୋଲନ୍ତି ।
ଧୀର ଧୀର କରି ଯେକାନ୍ତେ ତିଆରନ୍ତି ॥
ବୋଇଲେ ରାମାଏଣ କରିଣ ଅଛୁ ଆମ୍ଭେ ।
ରାଜା ସିଂହଦ୍ୱାରେ ତାହା ଗାଇବଟି ତୁମ୍ଭେ ॥
ଯେତେକ ବେଳେ ଯେଉଁ ରାଗେଣ
ଆଳତି ।
ସୁସ୍ୱର ସୁରେଣ ଗାଇବ ଧୀର ମତି ॥୮୦
ଆମ୍ଭର ଯୋଡ଼ିଲା ବୋଲି ପୁଚ୍ଛିଲେଣ
କହିବ ।
କ୍ଷୁଧାତୃଷା ଲାଗିଲେ ବସାକଇ ଯିବ ॥
ଶୁଣି ଯେହା ବେନିପୋଏ ସନମତ
ହୋଇଲେ ।
ନୈମିଷ୍ୟା ଅରଣ୍ୟ ନିକଟେ ଯାଇ ମିଳିଲେ ॥
ଧୂରହୁଂ ଗହ ଗହ ଶୁଭଇ ମହାଗୋଳ ।

ଫରହର ଉଡ଼ନ୍ତି ନେତର ଚିରାଳ ॥
ଅପ୍ରମାଣ ତହିଁ ଥାଠ ଅଛି ପୂରି ।
ରଥଗଜ ହୟ କେହି ଅନ୍ତକରି ନ ପାରି ॥
ବାଟେ ଯାଉ ଯାଉଣ ଦେଖନ୍ତି ମହାରସ ।
ମିଶାମିଶି ଋକ୍ଷ ବାନର ରାକ୍ଷସ ମନୁଷ୍ୟ ॥୯୦
ବାଲମ୍ବିକ ଋଷିଙ୍କି ବଶିଷ୍ଟେ ଦେଖିଲେ ।
ଯେଉଂଣ ଘର କଲା ଅଛି ତହିଁ
ରୁହାଇଲେ ॥
ବସାଜାଣି ଲବକୁଶ ଅଇଲେ ବାହୁଡ଼ି ।
ଯାଗ ଶାଳ ଦ୍ୱାରେ ବସିଲେ ପାଠ ପଢ଼ି ॥
ବାଲମ୍ବିକ ପ୍ରବେଶ ହୋଇଲେ
ହୋମଘରେ ।
ଯାଇଣ ମିଳିଲେ ଶ୍ରୀରାମଙ୍କ ଛାମୁରେ ॥
ଦେଖିଣ ରଘୁନାଥ ନମସ୍କାର କଲେ ।
କୁଶଳ ପଚାରିଣ ବସିତ ଠାବଦେଲେ ॥
ଯେଥୁଅନନ୍ତରେ ଲବକୁଶ ବେନି ।
ସିଂହଦ୍ୱାରେ ବସିଲେକ ପୋଥିଗୋଟି
ଘେନି ॥୧୦୦
ଗୁଜରୀ ରାଗେଣ ଉଚ୍ଚାରିଲେ ଗୀତ ।
ତକ୍ଷଣେ ମୋହିଲେ ଶୁଣିଲା ଲୋକଚିତ୍ତ ॥
ଯେକକୁ ଆରେକ ମିଳାଇଂଥାନ୍ତିସ୍ୱର ।
କୁମାର ବଏସ ଶୁଭଇ ମଧୁର ॥
ଯାହାର ସେ ସ୍ୱରସ୍ୱତୀ ଅଟନ୍ତି ଜନନୀ ।
ସେହି ନ ଜାଣିମେ କେଉଂ ରହସ କଳା
ଚିହ୍ନି ॥
କୋମଳ କରିଣ ଗାବନ୍ତି ଗୀତ ରସ ।
ବେଢ଼ିଲା ଲୋକମାନେ ଶୁଣନ୍ତି ହରଷ ॥
ଶ୍ରୀରାମ ମହିମା ଜାନେକୀର ବିଭା ।
ପର୍ଶୁରାମ ଜିଣିମା ବନବାସ ଯିବା ॥୧୦
ଜାନେକୀ ହରଣ ବାଳୀ ପ୍ରାଣ ବଧ ।
ସୋମୋଦ୍ର ବନ୍ଧ ବାନ୍ଧି ଛେଦିଲେ ଦଶକନ୍ଧ ॥
ବାଲମ୍ବିକ କୃତ ଯେ ବୋଲିଣ ଗାବନ୍ତି ।
ପଦେ ପଦେ ରାମ ଚରିତ ବଖାଣନ୍ତି ॥
ଶୁଣିଣ ଲୋକମାନେ ହୋଇଲେ ଉଷତ ।
ବୋଇଲେ ଅପୂର୍ବ ଯେ ଅଟଇ ନୂଆଗୀତ ॥

ଜନମ ହୋଇ ରାମ ଯିସ ଯିସ କଲେ ।
ଭବିଷ୍ୟ ଗ୍ରନ୍ଥ ଯେହୋ ବାଲମ୍ବିକ ବଖାଣିଲେ ॥
ଯେକର କହନ୍ତେଣ ଆରେକ ତାହା ଜାଣି ।
ଯତନେ ଲୋକମାନେ ଆସନ୍ତି ଗୀତ
ଶୁଣି ॥୨୦
ଯେ ଯାହାର ବେପାର ଛାଡ଼ିଲେ ସର୍ବଜନ ।
ସେ ଗୀତ ଶୁଣିମାକୁ ଅବିକ୍ଷଣେ ମନ ॥
ସନ୍ଧ୍ୟାବେଳେ ପୋଏ ଘରକଇ ଯାନ୍ତି ।
ପୁଣି ପ୍ରଭାତେ ସିଂଘଦ୍ୱାରେ ଗୀତ ଗାନ୍ତି ॥
ଯେମନ୍ତେ କେତେହେଂକ ଦିନ ବହିଗଲା ।
ନୂଆଗୀତ ବୋଲି ଶବଦ ଶୁଭିଲା ॥
ଲକ୍ଷେକ ନୃପତିଙ୍କର ଲୋକେ ଶୁଣି ଯାନ୍ତି ।
ବାଟେହେଂ ଯାଉଂ ଯାଉଂ ଋଷିମାନେହେଂ
ଶୁଣନ୍ତି ॥
ରାଜାମାନେହେଂ ରହନ୍ତି ତହିଁକ୍ଷଣେ ।
ଶ୍ରୀରାମର ଆଗେ କହନ୍ତି ଚାର ଗଣେ ॥୩୦
ଭୋ ରଘୁନନ୍ଦନ ବୀରବର ଚକ୍ରବର୍ତ୍ତୀ ।
ଗ୍ରନ୍ଥେକ କହିଛନ୍ତି ବାଲମ୍ବିକ ମହାଯତି ॥
ଋଷି କୁମାର ଦୁଇଗୋଟି ଆସିଛନ୍ତି ।
ସିଂହ ଦ୍ୱାରରେ ବସି ଗୀତ ଗାଉଛନ୍ତି ॥
ଅନେକ ଦିନରୁ ଅଇଲାନି ତାହାଙ୍କରି ।
ସବୁ ଚରିତ ଦେବ ଅଟଇ ତୁମ୍ଭରି ॥
ଋଷିଶିଙ୍ଗ ମୁନି ଯଗ୍ୟଂ ତାଡ଼େକୀ ବିନାଶ ।
ଜାନେକୀର ବିଭା ଆବର ବନବାସ ॥
ରାବଣ ବଧିବାର ସହିତେ ଦେବ ଅଛି ।
ଅମୃତ ରସ ପ୍ରାଏକ ଶ୍ରବଣ ପୂରୁଛି ॥୪୦
ଚାର ଜଣାବନ୍ତେ ରାମ କଲେ ଅବଧାନ ।
ହୋଇ ଦେବ ଏ କଥା ବୋଇଲେ
ରାଜାମାନ ॥
ଯେ ତୋହୋର ଚରିତ ବାଲମ୍ବିକ କଲେ ।
ରାମାଏଣ ବୋଲିଣ ଗ୍ରନ୍ଥ ନାମ ଦେଲେ ॥
ବାଳପୁଅ ଦୁଇଗୋଟି ଗୀତ ଗାଉଛନ୍ତି ।
କି ଜାଣି ଅମୃତ ରସ ବଖାଣନ୍ତି ॥
ମୁନିମାନେ ହାଦେ କହିଲେ ଏହୁ ବାଣୀ ।
ଶୁଣି ହସ ହସ ହୋଇଲେ ରଘୁମଣି ॥

ଡଗରାକୁ ବୋଇଲେ ତୁ ରାଇଣ ଆଣ
ଯାଇଂ ।
ଆଗ୍ୟା ପରମାଣେ ଚାର ଗଲାକ ବେଗେ
ଧାଇଂ ॥୫୦
ସିଂଘଦ୍ୱାରେ ଯାଇଣ ପୁଅନ୍ତ ରାଇଲା ।
ଠାକୁରଙ୍କର ହକରା ବୋଲିଣ ବୋଇଲା ॥
ଶୁଣିଣ ଲୋକମାନେ ବୋଇଲେ ବାବୁ
ଯାଅ ।
ରାଜାଙ୍କର ମନତୋଷି ଧନବସ୍ତ୍ର ପାଅ ॥
ଚାର କହନ୍ତେଣ ଉଠିଲେ ଲବକୁଶ ।
ନବରେ ପଶିଲେ ଯାଇ ମନରେ ହରଷ ॥
ଶ୍ରୀରାମ ସନ୍ନିଧେଣ ମିଳିଗଲେ ଯାଇଂ ।
ନମସ୍କାର କରିଣ ଅଛନ୍ତି ଉଭାହୋଇ ॥
ଦେଖିଣ ରଘୁନାଥ ଆନନ୍ଦ ହୋଇଲେ ।
ଯେ କିସ ପୋଥି ବୋଲିଣ ବୋଇଲେ ॥୬୦
କୁଶ ବୋଇଲାଏ ରାମାଏଣ ଗ୍ରନ୍ଥ ।
ଭବିଷ୍ୟ ପୁରାଣ ଗ୍ରନ୍ଥ କରିଛନ୍ତି ବାଲମ୍ବିକ
ତପୋବନ୍ତ ॥
ଚଉବିଂଶ ସହସ୍ର ଶ୍ଳୋକ ଶୁଣିଲେ ପାପ
ଯାଇ ।
ବ୍ରହ୍ମାର ବଚନେ ବେଦୁଂ କାଢ଼ିଲେ
ହୁଗୁଳାଇଂ ॥
ରଘୁନାଥ ବୋଇଲେ ସେହି ଠାବରେ ବସ ।
ଶୁଣିମା ଗ୍ରନ୍ଥ ତୁମ୍ଭର କରହ ପ୍ରକାଶ ॥
ଆଗ୍ୟା ପାଇଂଣ ପୋଏ ବସିଲେ
ଆଣ୍ଠୁଆଇଂ ।
କେଦାର ରାଗେ ଆଳାପ କଲେ ତୋଷ
ହୋଇ ॥
ପ୍ରଥମେ ଗାଇଲେ ବାଲମ୍ବିକଙ୍କ ବନ୍ଦନା ।
ନାରଦ ଆସିବାର ଋଷିଙ୍କ ପ୍ରାର୍ଥନା ॥ ୭୦
ବ୍ରହ୍ମାଙ୍କ ତିଆରଣ ସରସ୍ୱତୀ ପ୍ରସନ୍ନ ।
ଶୁଣି ରଘୁନାଥର ପରମ ତୋଷ ମନ ॥
ଗାଅ ଗାଅ ବୋଲିଣ ବୋଲନ୍ତି ସ୍ୱାମୀ ହସି ।
ସଭାଲୋକମାନେ ବହୁତ ପରଶଂସି ॥
କରଞ୍ଚ ପକ୍ଷୀ ମାରିବାର କଥା କହିଲେ ।

ତହୁଁ ଶ୍ରୀରାମର ଚରିତ ବଖାଣିଲେ ॥
ଦଶରଥ ରାଜା ଆଖାନ ଭାଳେଣି ।
ସୁମନ୍ତ କହିଲା ଯାହା ସନତ ମୁଖୁଶୁଣି ॥
ଲୋମପାଦ ଦେଶରେ ଅନାବୃଷ୍ଟି କାରଣେ ।
ନୀବେ ଜରତାକୋଷା ଯିବା
ବିଚାରଣେ ॥୮୦
ଋଷିଶିଙ୍ଘ ଆଣିମା ଶାଆନ୍ତା କନ୍ୟା ବିଭା ।
ଲୋମପାଦ ଦେଶେ ମେଘ ବରଷିବା ॥
ଅଯୋଧ୍ୟାରେ ହୋମ ଯେ କଲେ
ଋଷିସିଂଘ ।
ବ୍ରହ୍ମା ଅଇଲେକ ସୁରଗଣ ସଙ୍ଗ ॥
ପୁଣ୍ୟ ଆହୁତି ବେଳେ ନାରାଏଣ
ବିଜେକଲେ ।
ମାହିନ୍ଦ୍ର ବେଳେ ଦଶରଥ ଚରୁ ନେଲେ ॥
କଉଶୁଲ୍ୟା କଏକୟା ସୁମଇତ୍ରା ତିନିରାଣୀ ।
ତାହାକୁହିଂ ଚରୁ ରାଜା ସମର୍ପିଲେ ଆଣି ॥
ତିନି ରାଣୀ ଭୁଞ୍ଜନ୍ତେ ହୋଇଲେ ଗର୍ଭବାସ ।
ଚତୁର୍ଦ୍ଧା ଅବତାର ବିଷ୍ଣୁ ପରକାଶ ॥ ୯୦
ଜାଣି ନୃପବର ଆନନ୍ଦ ହୋଇଲେ ।
ଅଷ୍ଟ ମାସ ପଶନ୍ତେ ନହଣା ବିଧିକଲେ ॥
ଯଥାକାଳେ ପୁତ୍ରେକ ହୋଇଲେ ଉତପନ ।
ତିନିରାଣୀଙ୍କର ଜାତ ହୋଇଲେ ଚାରିନାନ ॥
କଉଶୁଲ୍ୟାରୁ ରାମ କକୟାରୁ ଭ୍ରଥ ।
ଲକ୍ଷ୍ମଣ ଶତୃଘନ ସୁମୈତ୍ରା ତହୁଁ ଜାତ ॥
ଦିନୁଦିନୁ ପୋଏ ବଢ଼ନ୍ତି ଚନ୍ଦ୍ରମା ଜାଣି ।
ଯେକା ପେଟୁଂ ଜାତ ପାଳନ୍ତି ସବୁରାଣୀ ॥
ଯେଥୁ ଅନନ୍ତରେ ଗଲା କିଛି କାଳ ।
ପୁତ୍ରନ୍ତ ବ୍ରତ କଲା ଦଶରଥ
ମହୀପାଳ ॥୧୦୦
ଶାହାସ୍ତ୍ରନ୍ତ ପଢ଼ାଇଣ ଶହସ୍ତ୍ରନ୍ତ ଶିଖାଇଲେ ।
ଜାଣି ବିଶ୍ୱାମିତ୍ର ଋଷି ମାଗିନେଲେ ॥
ରାମ ଲକ୍ଷଣ ବେନି ତାହାଙ୍କ ସଙ୍ଗେ ଗଲେ ।
ବାଟେ ଯାଉଂ ଯାଉଂ ସେ ତାଡ଼େକୀ ବଧ
କଲେ ॥
ତୋଷେ ଗାଧି ସୁତ ଦିବ୍ୟ ଶସ୍ତ୍ର ଦେଲା ।
ସିଦ୍ଧ ବନେ ନେଇଂ ଯାଗ ଆରମ୍ଭିଲା ॥
ହୋମ ରଖି ତହୁଂ ମିଥିଳାକୁ ଗଲେ ।
ବିପୁଳ ବନେ ଅହିଲା ମୁକତି କଲେ ॥
ବଇଦେହୀ ଦେଶେ ଯାଇ ଶିବ ଚାପ
ତୋଳି ।
ବିଭା ହୋଇଲେ ତହିଂ ଜନେକ
ଦୁଲାଳୀ ॥୧୦
ଆସନ୍ତେଣ ପ୍ରଶୁରାମ ଓଗାଳିଲା ଯାଇଂ ।
ତାହାଙ୍କଇ ହେଳେଣ ଜିଣିଲେ ରଘୁସାଇଂ ॥
ବୈଷ୍ଣବୀ ଧନୁ ଅକ୍ଷଏ ତ୍ରୋଣ ଥିଲା ।
ଶ୍ରୀରାମକୁ ଭୃଗୁପତି ତାହା ଦେଇଗଲା ॥
ଅଯୋଧ୍ୟାରେ ପ୍ରବେଶ କେତେ ହେଂ
ଦିନଯାନ୍ତେ ।
ଭ୍ରଥ ଶତୃଘନ ଅଜା ଘରେ ଥାନ୍ତେ ॥
ଦଶରଥ ଭାଳି ରାମକୁ ରାଜ୍ୟ ଦେବି ।
କାଲି ପ୍ରଭାତେଣ ଅବିଷେକ କରାଇବି ॥
ଭ୍ରଥର ମାତା ଦାସୀ ମନ୍ଥୁଡ଼ି ତାହା ଶୁଣି ।
ଯାଇଂ ଜଣାଇଲା କଏକୟା ରାଣୀ ॥୨୦
ଖଳ ବୋଲେ ସେ ମହାରାଣୀ ପ୍ରତେ ଗଲା ।
ଦଶରଥ ରାଜାଙ୍କୁ ସତ୍ୟ କରାଇଲା ॥
ରାମ ବନ ଯିବେ ଭ୍ରଥ ହେବେ ନୃପବର ।
ଶୁଣିଣ ଦଶରଥର କମ୍ପିଲା ଶ୍ୱରୀର ॥
ପିତାର ବୋଲେ ରାମ ବନସ୍ତକୁ ଗଲେ ।
ସଙ୍ଗେଣ ଜାନେକୀ ଲକ୍ଷଣକୁ ନେଲେ ॥
ସୁମନ୍ତ ଛାଡ଼ିଣ ଅଇଲେ ଗଙ୍ଗାକୂଳେ ।
ଶ୍ରୀରାମ ରହିଲେ ଯାଇଂ ଚିତ୍ରକୂଟ ଶୟଳେ ॥
ପୁତ୍ର ନ ଦେଖି ଏଣେ ଦଶରଥ ମଲା ।
ବଶିଷ୍ଟ ଋଷି ତାହା ତଇଲେ ରୁହାଇଲା ॥୩୦
ବାରତା ପାଇ ଭ୍ରଥ ଶତୃଘନ ଅଇଲେ ।
ତଇଲୁ କାଢ଼ିଣ ଶବ ଦହନ କରାଇଲେ ॥
ପ୍ରେତକର୍ମ ସାରିଣ ହୋଇଲେ ଦେହ ଶୁଦ୍ଧି ।
ଭ୍ରଥ ପଚାରିଲା ବଶିଷ୍ଟ ତପୋନିଧି ॥
ମୁହିଂ କିମ୍ପା ଏଥେ ହୋଇବି ନୃପବର ।
ବାହୁଡ଼ାଇଂ ଆଣିମା କୌଶଲ୍ୟା କୁମର ॥
ଯେତେବୋଲି ଚତୁରାଙ୍ଗ ବଳ ସଜ କରି ।
ଶ୍ରୀରାମ ଦେଖିବାକୁ ସକଳ ନରନାରୀ ॥
ଯାନ୍ତେଣ ଗଙ୍ଗାନଦୀ ହୋଇଲେ ସର୍ବେ
ପାରି ।
ପ୍ରାଗେ ଦେଖିଲେ ଭାରଦ୍ୱାଜ
ତପଚାରୀ ॥୪୦
ସେ ମୁନି ଗୁହାଇ ଗଉରୋବ କଲା ।
ଯେ ଯାହା ଅନରୂପେ ଯୋଗାଣ
ସଞ୍ଚାଦେଲା ॥
ରାତ୍ରେକ ରହି ତହୁଁ ପ୍ରଭାତେ ଚଳିଗଲେ ।
ଚିତ୍ରକୂଟ ପର୍ବତରେ ରାମଙ୍କୁ ଦେଖିଲେ ॥
ଅନେକ ପ୍ରବୋଧିଣ ଆଣିତ କଲେ ମନ ।
କେବେହେଂ ନ ବାହୁଡ଼ିଲେ
କଶୁଲ୍ୟାନନ୍ଦନ ॥
କଏକୟା ନନ୍ଦନ ଅନେକ କାଷ୍ଟାକଲା ।
ଅନ୍ନ ଛାଡ଼ିଣ ଭ୍ରଥ କୁଶ ପାଡ଼ିଣ ଶୋଇଲା ॥
ଦେବେ ଜାଣି ଅନ୍ତରୀକ୍ଷେ ଡାକ ଦେଲେ ।
ରାମ ଗଲେ ଅଯୋଧା ଭାଜିବୁ
ବୋଇଲେ ॥୫୦
ତୁହି ଶାପ୍ୟ ପାଇବୁ କଏକୟା ସୁତ ।
ଶୁଣି ଭଏ କରି ବାହୁଡ଼ିଲା ଭ୍ରଥ ॥
ଶ୍ରୀରାମ ପାଦୁକା ଘେନିଣ ବାହୁଡ଼ିଲା ।
କଟେକକୁ ନ ଯାଇ ନନ୍ଦି ଗ୍ରାମରେ ରହିଲା ॥
ଚିତ୍ରକୂଟ ପର୍ବତେ ବରଷେ ରାମ ଥିଲେ ।
ଜାନେକୀକି ଘେନିଣ ଅନେକ କ୍ରୀଡ଼ା
କଲେ ॥
ଧାତୁଶିଳା ଗେରୁ ଚିତା ଦୁଷ୍ଟ କାକ କଥା ।
ଶୁଣିଣ ଲୋକମାନେ ହଲାଉଛନ୍ତି ମଥା ॥
କେ ବୋଲଇ ଏଡ଼େ ସୁନ୍ଦର ପୁଅ ହୋଇ ।
କଷା ବସ୍ତ୍ର ପରିହରଣ କରିଛନ୍ତି କିସ
ପାଇଂ ॥୬୦
ସର୍ବାଙ୍ଗେ ବିଭୂତି କର୍ଣ୍ଣେ ତମ୍ୟାର କୁଣ୍ଡଳ ।
ଗଳାରେ ଲମ୍ଭାଇଛନ୍ତି ରୁଦ୍ରାକ୍ଷର ମାଳ ॥
ଯେସନେକ ବୋଲିଣ ବୋଲନ୍ତି
ଲୋକମାନେ ।
ଶୁଣିଣ ଆନନ୍ଦ ହୁଅନ୍ତି କଉଶୁଲା ନନ୍ଦନେ ॥

ଯହିଂ ଯହିଂ ଯେଉଂ ଚରିତ ରାମ କଲେ ।
ସେ କଥା ଶୁଣିଣ ଲୋକେ ଆନନ୍ଦ
ହୋଇଲେ ॥
ପ୍ରସନ୍ନ ହୋଇଣ ଦେଲେ ସହସ୍ରେ ସୁବର୍ଣ୍ଣ ।
ଆବର ନବରତ୍ନେଣ ଅଳଙ୍କାରମାନ ॥
ଚନ୍ଦନ ବୋଳାଇଣ ଦେବାଙ୍ଗ ବସ୍ତ
ଦେଲେ ।
କାଲି ଆଉ ଗାଇବ ବୋଲିଣ
ବୋଇଲେ ॥୭୦
ଶୁଣି ଲବକୁଶେ ବୋଲନ୍ତି ବଚନ ।
କିସ କରିବୁ ଆମ୍ଭେ ଏ ଅଳଙ୍କାରମାନ ॥
ଯେ ବସ୍ତ୍ର ଧନ ନେଇଂ ଥୋଇବୁ ଆମ୍ଭେ
କାହିଂ ।
ଯେଣେ ଆମ୍ଭର କିଛି ପ୍ରୟୋଜନ ନାହିଂ ॥
କନ୍ଦମୂଳ ଖାଉଂ ବକଳ ପରିହରଣ ।
ରୁଦ୍ରାକ୍ଷ କାଠମାଳା ଗଳାରେ ଆଭରଣ ॥
ବିଭୂତି ବିଲୋପନ କକ୍ଷା ବସ୍ତ୍ର ପିନ୍ଧୁ ।
ମସ୍ତକେ ଚୂଳ ଆମ୍ଭେ ଜଟାଛନ୍ଦେ ବାନ୍ଧୁ ॥
ଅରଣ୍ୟ ଭିତରେ ତପୀଙ୍କ ସଙ୍ଗେ ଥାଉ ।
ବନସ୍ତେ ବୁଲି ଆମ୍ଭେ ନିର୍ଝର ନୀର
ଖାଉ ॥୮୦
ଶୁଣି ରଘୁନାଥ ଆନନ୍ଦ ହୋଇଲେ ।
ବାଲୁତ ପୁତ୍ର ହୋଇ ଅଲୋଭୀ ହୋଇଲେ ॥
ସୁଗ୍ରୀ ପଚାରିଲେ ଯେ କାହାର କଲା ଗ୍ରନ୍ଥ ।
କୁଶ ବୋଇଲେ କଲେ ବାଲମ୍ଭିକ
ତପୋବନ୍ତ ॥
ଗାରିମାଏ ମେରୁ ସମାନ୍ୟେ ଯେବଣ ଋଷି ।
ତାହାର ମୁଖବିମ୍ବରୁ ଗଙ୍ଗାଗ୍ରନ୍ଥ ବାହାର
ହୋଇଂଆସି ॥
ଯେ ପୁଣ୍ୟ ଗ୍ରନ୍ଥ ଶୁଣି ସକଳ ପାପ କ୍ଷୟ
କର ।
ମହାପାତେକ ବିନାଶନ ଏକଇ ଅକ୍ଷର ॥
ଦେବଗୁ ସମ୍ଭୂତ ପଞ୍ଚଶ ସହସ୍ର ଶ୍ଳୋକନ୍ତ ।
ବାଲମ୍ଭିକ ବଖାଣିଲେ ବ୍ରହ୍ମା ସନମତ ॥୯୦
ପୁଣି ହିଂ ଜନ୍ମ ନୋହି ଶୁଣି ଏହୁକାବ୍ୟ ।
ପୁଅଙ୍କ କହନ୍ତେ ପୁଣ ହସନ୍ତି ରାଘବ ॥
ଯେଥୁ ଅନନ୍ତରେ ସେ ଆଦିତ୍ୟ ଅସ୍ତଗଲା ।
ଶ୍ରୀରାମଚନ୍ଦ୍ର ସନ୍ଧ୍ୟା ସୁମରଣା କଲା ॥
ନବକୁଶ ବାଲମ୍ଭିକ ଆଶ୍ରମକଇ ଗଲେ ।
କନ୍ଦମୂଳ ଫଳ ଭୋଜନ ତହିଂ କଲେ ॥
ରାତ୍ରେ ଶଏନ କରି ପ୍ରଭାତେଣ ଆଏ ।
ଯାଗ ଶାଳେ ରଘୁନାଥଙ୍କୁ ଦରଶନ କଏ ॥
ଚାହିଂଣ ଦାଶରଥି ବୋଇଲେ ପୋଏ ବସ ।
କାଲିଠାରୁ ରହିଅଛି ମହାରସ ॥ ୧୦୦
କହ କହ ଶୁଣିମା ଅପୂର୍ବ ଗ୍ରନ୍ଥ ସାର ।
ଆଗ୍ୟାଂ ପାଇ ବସିଲେ ସେ ବେନି କୁମର ॥
ମଙ୍ଗଳ ଧନାଶ୍ରୀ ରାଗେଣ ଗୀତ ଉଙ୍କାରିଲେ ।
ସୁସ୍ୱର ସୁରେ ଦୁହେଂ ଯୋଡ଼ିଣ ଗାଇଲେ ॥
ଚିତ୍ରକୂଟ ଗିରି ତେଜିଣ ରଘୁନାଥ ।
ଯାନ୍ତେଣ ବୀରାଉଧ ନିରୋଧ କଲା ପଥ ॥
ତାହାକୁ ବିନାଶି ରାମ ତହୁଂ ଚଳିଗଲେ ।
ବାରଣାସୀ ପ୍ରୟାଗ ତୀର୍ଥମାନ କଲେ ॥
ଦଶବରଷ ଯାଏ ବୁଲିଲେ ନାନା ବନ ।
ଅଗସ୍ତି କହିଲେ ଯାଅ ଦଣ୍ଡକା ଅରଣ୍ୟ ॥୧୦
ତାହାଙ୍କ ବୋଲେ ଗୋଦାବରୀ କୂଳ
ଗଲେ ।
ବାଟେ ଯାନ୍ତେ ଶରଭଙ୍ଗ ଋଷି ମୋକ୍ଷ
କଲେ ॥
ଅତ୍ରିୟ ଋଷିଙ୍କ ଭାରିଯା ଅଟନ୍ତି ଅନୁଛାୟା ।
ତାହାଙ୍କୁ ନମସ୍କାର କଲେକ ସୀତୟା ॥
ଅନେକ ତିଆରି ଅମଳାଣ ଶାଢ଼ୀ ଦେଲେ ।
ତହୁଂ ଯାଇଂ ପଞ୍ଚୁବଟୀ ବନରେ ରହିଲେ ॥
ତିନି ବରଷ ତହିଂ ରହିଲେ ରାମ ସୁଖେ ।
ବନସ୍ତ ବୁଲିଯାନ୍ତେ ସୂର୍ପଲେଖୀ ଦେଖେ ॥
ମାୟା ରୂପ ଧରିଣ ରାମଙ୍କୁ ମାଗଇ ରତି ।
ଭୟାଙ୍କାର ହୋଇ ଖାଇତ ଲୋଡ଼ଇ
ସ୍ୱତୀ ॥୨୦
କୋପେ ଲକ୍ଷଣ ତାର କାଟିଲେ ନାକ
କାନ ।
ପଳାଇଂ କହିଲା ଭାଇଙ୍କ ସନ୍ନିଧାନ ॥
ଶୁଣିଣ ଖର ଦୂଷଣ ତ୍ରିଶିରା ଅଇଲେ ।
ଶ୍ରୀରାମ ନାରାଚ୍ଚେ ସମସ୍ତେ ନାଶ ଗଲେ ॥
ତହୁଂ ସୂର୍ପଲେଖୀ ଡରେ ପଳାଇଣ ଗଲା ।
ଲଙ୍କା ରାବଣ ଆଗେ ବାରତା କହିଲା ॥
ଶୁଣି ଦଶାନନ ରାଏ କୋପ କରିଣ ଆଏ ।
ମାରୁଚୀ ଦତ୍ୟକୁ ବାଟେ ଭେଟ ପାଏ ॥
କନେକ ମୃଗେକ ଭେଟାଇଲା ଆଣି ।
ତହିଂକି ଶରଧା କଲେ ଶ୍ରୀରାମର
ରାଣୀ ॥୩୦
ଶ୍ରୀରାମ ଧନୁଧରି ତାହାକୁ ମାରିବାକୁ ଗଲେ ।
ଦେଖିଣ କୁରଙ୍ଗୀ ବେଳେକ ପଳାଇଲେ ॥
ନାରାଚ୍ଚେ ଶ୍ରୀରାମ ଘେନିଲେ ତାର ପ୍ରାଣ ।
ମରନ୍ତେ ମୃଗୁଣୀ ସୁମରିଲା ଲକ୍ଷ୍ମଣ ॥
ସୀତୟାଙ୍କର ଶ୍ରବଣକୁ ଶୁଭିଲା ସେ ବାଣୀ ।
ସୁମିତ୍ରା ନନ୍ଦନ ଲକ୍ଷ୍ମଣ ତାହା ଶୁଣି ॥
ସତୀର ବୋଲ ଶୁଣି ସଉମିତ୍ରୀ ଗଲା ।
ବେଳକାଳ ଜାଣି ରାବଣ ଆଇଲା ॥
ମାୟା ତପସୀ ହୋଇଣ ମାଗିଲାକ ଭିକ୍ଷା ।
ଲଇଂଣ ଅନାଇଲା ପୂର୍ଣ୍ଣ କୁଟୀ ତୁଛା ॥୪୦
ବଳେ ଧରି ସୀତ୍ୟାକୁ ରଥେ ବସାଇଲା ।
କୋଳେ ଧରି ଗଗନ ମାର୍ଗେ ଚଳିଗଲା ॥
ବିକଳେ ଜାନେକୀ ସୁମରଇ ନିଜ ସାଇଂ ।
ଅଳଙ୍କାରମାନ କାଢ଼ି ପକାଇଲା ଭୂଇଂ ॥
ଉପରାଣ ଶାଢ଼ୀରେ ବାନ୍ଧିଲା ଦୁଇ ଚୁଡ଼ି ।
ତଳକୁ ପକଇଲା ଅଧୋମୁଖ କରି ॥
ଋଷ୍ୟମୁକ ପର୍ବତେ ପଡ଼ିଲେ ଆସି ଆଏ ।
ଚାରିମନ୍ତ୍ରୀ ଘେନି ତହିଂ ସୁଗ୍ରୀବର ଥାଏ ॥
ସେ ତାହା ସାଇତିଣ ଥୋଇଲା ଯତ୍ନ କରି ।
ଯେଥୁ ଅନନ୍ତରେ ଶୁଣିମା ରାବଣାରି ॥୫୦
ସୀତୟାକୁ ଘେନି ଦଶାନନ ବୀର ଗଲା ।
ନିଜ ଲଙ୍କା ଦେଶେ ପ୍ରବେଶ ହୋଇଲା ॥
ମଧୁବନେ ସୀତ୍ୟାକୁ ଯତ୍ନରେ ରଖାଇ ।
ରହିଲେ ଦେବୀ ଇନ୍ଦ୍ରଦେଲା ଅମିୟରସ
ଖାଇ ॥
ଯେଥୁ ଅନନ୍ତରେ ଗୋଦାବରୀ କୂଳେ ।

ଶ୍ରୀରାମ ମାୟାମୃଗ ମାଇଲେ
ଯେତେବେଳେ ॥
ଲକ୍ଷଣ ଯେ ଗଲା ରାଇଲା ପ୍ରାଏ ଶୁଣି ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ରଘୁକୁଳ ମଣି ॥
ସଉମିତ୍ରୀ କହିଲା ଯେବଣ ରୀତି ।
ମଢ଼ିଆ ଭିତରେ ପଶି ଦେଖେ
ରଘୁପତି ॥୬୦
ସୀତୟାକୁ ନ ଦେଖି ହୋଇଲେ ଆରତ ।
ବନସ୍ତ ଭିତରେ ଲୋଡ଼ନ୍ତି ବେନି ଭ୍ରାଥ ॥
ପକ୍ଷୀଟଟା ଦେଖି ବାରତା କହିଲା ।
ଲଙ୍କାର ରାବଣ ସୀତ୍ୟାକୁ ଘେନିଗଲା ॥
ଯେତକ କହି ଛାଡ଼ିଲା ପକ୍ଷୀ ପ୍ରାଣ ।
ଦହନ କଲେ ତାକୁ ଶ୍ରୀରାମ ଲକ୍ଷ୍ମଣ ॥
ତହୁଂ ଚଳିଯାନ୍ତେ କୋବନ୍ଧ ଓଗାଳି ।
ତାହାକୁ ଲକ୍ଷଣ ମାଇଲାକ ଖଣ୍ଡାଟୋଳି ॥
ସେହି କହିଲା ରାବଣ ନେଲା ସୀତ୍ୟା ।
ଶବର ଶବରଣୀ କହିଲେ ବାରତା ॥୭୦
ଲଙ୍କାର ରାବଣ ନେଲା ତୋର ସୀତ୍ୟା ।
ଯେକତ୍ର ହୋଇଲା ତିନିଙ୍କର ବାରତା ॥
ତାହାକୁ ମୋକ୍ଷକରି ଗଲେ ରଘୁପତି ।
ପମ୍ପା ସରୋବରେ ଚକୋଆ ଚକୋଇକି
ଦେଖନ୍ତି ॥
ତାହାକୁ ପୁଛିଲେ ସେହି ନ କହିଲେ କଥା ।
କୋପେଣ ଶାପ୍ୟ ତାକୁ ଦେଲେ ରଘୁନାଥା ॥
କ୍ଷୁଧାରେ ଗଉଡ଼କୁ ମାଗିଲେ ଯାଇ ଦୁଧ ।
ତହୁଂ ପଶିଲେ ଯାଇଂ କଦମ୍ବବନ ମଧ ॥
ଋଷିଙ୍କର ପୁରୁଣା ମଢ଼ିଆମାନ ଲୋଡ଼ି ।
କାହିଂ ତହିଂ ରହି ନୁଆରନ୍ତି ଭୋଡ଼ି ॥ ୮୦
ଋଷିମୁଖ ପର୍ବତେ ଦେଖିଲେ ସୁଗ୍ରୀବର ।
ପଳାଇଂ ପଶିଲା ଯାଇଂ ପର୍ବତ କନ୍ଦର ॥
ହନୁମନ୍ତ ଆସିଣ ବୁଝିଲା କଥାମାନ ।
ତାହାର ଆଗେ ସବୁ କହିଲେ ରଘୁନାନ ॥
ସୁଗ୍ରୀବର ସଂଗେଣ ହୋଇଲେକ ଦେଖା ।
ଚୁଡ଼ି ବସ୍ତ୍ର ପାଇ କଲେ ତାକୁ ସଖା ॥
ପରୀକ୍ଷ ନିମନ୍ତେଣ ଦୁନ୍ଦୁଭି ହାଡ଼ ଟୋଳି ।
ସପତ ଶାଳାଛେଦି ବଧିଲେ ବୀରବାଳୀ ॥
ମିତ୍ରକୁ ରାଜାପଣ କିଷ୍କିନ୍ଧାରେ ଦେଲେ ।
ବାହୁଡ଼ି ଚତୁର୍ମାସ୍ୟା ମାଲ୍ୟବନ୍ତେ
କଲେ ॥୯୦
ଦିନ ପାହିଲେଣ ସୁଗ୍ରୀ ଥାଟ ଘେନିଗଲା ।
ଚାରି ଦିଗକଇ ଚାର ବରଗିଲା ॥
ଦକ୍ଷିଣେ ଅଙ୍ଗଦ ସିନ୍ଧୁ କୂଳେ ଥିଲା ରହି ।
ହନୁମନ୍ତ ଯେକାଏ ସମୋଦ୍ର ଗଲେ
ଡେଇଂ ॥
ଲଙ୍କାଗଡ଼ ଭିତରେ ସେ ପ୍ରବେଶ ହୋଇଲା ।
ଓଶେକ ବନେ ଯାଇଂ ସୀତ୍ୟାକୁ ଠାବକଲା ॥
ଶ୍ରୀହସ୍ତ ମୁଦି ଦେଇଣ ଆଣିଲାକ ମଣି ।
ଯେକେଣ ଅନେକହିଂ ଅସୁରନ୍ତ ଜିଣି ॥
ମଧୁବନ ଭାଙ୍ଗିଣ ଅକ୍ଷଏ କ୍ଷଏ କଲା ।
ଜାମ୍ବୋମାଳି ମୂଳେ ସାତ ସେନାପତି
ମାଇଲା ॥୧୦୦
ଲଙ୍କାପୋଡ଼ି ବୀର ବାହୁଡ଼ିଣ ଆଏ ।
ଆବର ସାତ ସେନାଏ ଉତ୍ତରକୂଳେ ଥାଏ ॥
ତାହାଙ୍କର ଆଗରେଣ କହିଲା ବାରତା ।
ଲଙ୍କାଗଡ଼େ ଅଛଇ ବୋଲି ସୀତ୍ୟା ॥
ଶୁଣିଣ ଅଙ୍ଗଦ ପରମ ତୋଷ ମନ ।
ପ୍ରସାଦ ଦେଲେ ତାକୁ କିଷ୍କିନ୍ଧା ମଧୁବନ ॥
ତହିଂ ଫଳମୂଳ ଖାଇଣ ଚଳିଗଲେ ।
ଶ୍ରୀରାମର ଆଗେ ବାରତା କହିଲେ ॥
ଶୁଣିଣ ରଘୁନାଥ ହରଷ ବିସ୍ମଏ ।
ମଣିଗୋଟି ଦେଖିଣ ବହୁତ ଶୋକ
କଏ ॥୧୦
ସୁଗ୍ରୀବର ଜମେବ ବହୁତ ତିଆରି ।
କ୍ରୋଧ ଛାଡ଼ି ରଘୁନାଥ ଅନକୂଳ କରି ॥
ସମୋଦ୍ର କୂଳେ ସେ ମିଳିଲେକ ଯାଇଂ ।
ଚାର ଜଣାଇଲା ମନ୍ଦୋଦରୀ ସାଇଂ ॥
ବିଭୀଷେଣ ବହୁତ କଲାକ ତିଆରଣ ।
ତାହାକଇ କୋପ କଲାକ ରାବଣ ॥
ଅପମାନ ପାଇ ଲଙ୍କାପୁରୁ ଗଲା ।
ଶ୍ରୀରାମ ଶ୍ରୀଚରଣେ ଶରଣ ପଶିଲା ॥
ତାହାକୁ ରଘୁନାଥ ଅନେକ ଦୟାକଲେ ।
ପ୍ରସନ୍ନ ହୋଇ ଲଙ୍କପତି ପଦ ଦେଲେ ॥୨୦
ରାବଣର ମରମ ପାଇଲେ ତାର ତହିଂ ।
ସମୋଦ୍ର ତରିବାକୁ କାହାର ବୁଦ୍ଧିନାହିଂ ॥
ବରୁଣକୁ ଶ୍ରୀରାମ ବହୁତ ସ୍ତୁତି କଲେ ।
କାଷ୍ଠା କରି ତିରଣ ପାଡ଼ିଣ ଶୁତିଲେ ॥
ସେ କଥା ବାରତା ପାଇଲାକ ଦଶଶିରି ।
ମନ୍ତ୍ରୀ ଦୁହିଂଙ୍କି ପଠିଆଇଲା ଭେଦ କରି ॥
ସୁଗ୍ରୀକି ବାହୁଡ଼ାଇ ବିଭୀଷେଣକୁ ଆଣ ।
ସେ କଥା ନ ଶୁଣିଲାକ କିଷ୍କିନ୍ଧାର ରାଣ ॥
ବିଭୀଷେଣ ଜାଣି ଧରିବାକୁ ବୁଦ୍ଧିକଲା ।
ଅଙ୍ଗଦ ବିଧାଘାଏ ସେହୁ ପଳାଇଲା ॥୩୦
ପଳାଇଂ ମନ୍ତ୍ରୀମାନେ କହିଲେ ନୃପବର ।
ସେ କଥାକୁ ଭ୍ରାନ୍ତି କଲାକ ଦଶଶିର ॥
ଶ୍ରୀରାମ କୁଶ ଶେଯ୍ୟା ପାଡ଼ିଣ ଶୋଇଂଥିଲେ ।
ତିନିଦିନ ଉପବାସେ ଉଠିଣ ବସିଲେ ॥
ଧନୁରେ ଗୁଣ ଦେଇଣ ଅଗ୍ନିଶର ଯୋଚି ।
ତ୍ରିଦଶ ଗଣ ଘେନିଣ ଭାଳଇ ବିରଞ୍ଚି ॥
ଜାଣିଣ ବରୁଣ ଅନେକ ରତ୍ନ ଘେନି ।
ସଙ୍ଗେଣ ଗଙ୍ଗା ଯମୁନା ବେନି ଭାବାନୀ ॥
ଜଳର ଭିତରୁ ସେ ବାହାର ହୋଇ ଆଏ ।
ଯତନେ ପଠିଆଇଂ ଦେଲେ
ଦେବତାଏ ॥୪୦
ଶ୍ରୀରାମର ଆଗେଣ ବରୁଣ ଯାଇଂ ମିଳି ।
ନମସ୍କାର କରିଣ ଶୁତିଲା ମହାଆଳି ॥
ଗୁପତ ପ୍ରଘଟ କହିଲା ବହୁତ କଥା ।
ପୁଣ ପୁଣ ଶ୍ରୀରାମ ଚରଣେ ଦେଇ ମଥା ॥
ବୋଇଲା ବିଶ୍ୱକର୍ମା ତନଏ ନଳ
ସେନାପତି ।
ଯେହି ସେ ଜାଣିଅଛି ବନ୍ଧର ଯିସ ରୀତି ॥
ସେତୁବନ୍ଧ ବାନ୍ଧି ସୁଖେ ପାରିହୁଅ ।
ଲଙ୍କାରେ ଅସୁର ଗୋଟିଏ ନ ଥୁଅ ॥
ଯେ ଯେ ଅଗ୍ନିଶର ବସାଇ ଅଛୁ ଗୁଣେ ।
ମୋତେ ଉପକାର ଅଛଇ ଦେବ
ଏଣେ ॥୫୦

ସମୋଦ୍ର ଭିତରେ ଦେବ ଦତ୍ୟମାନେ ଛନ୍ତି ।
ଯେ ବାଣେ ତାହାନ୍ତ ପକାଅ ନିପାତି ॥
ଶୁଣିଣ ଶ୍ରୀରାମ ଛାଡ଼ିଲେକ ଶର ।
ସାତ ସମୋଦ୍ରେ ଥିଲେ ଯେତେକ ଅସୁର ॥
ସବୁଙ୍କରି ଜୀବନ ହରିଣ ବାହୁଡ଼ିଲା ।
ରାଘବର ତ୍ରୋଣେ ଯାଇଂଣ ସମ୍ଭାଇଲା ॥
ବରୁଣ ବାହୁଡ଼ି ଗଲା ଯୋଗବଳ ଜାଣି ।
ନଳକୁ ଚାହିଂଣ ବୋଲନ୍ତି ରଘୁମଣି ॥
ତୁ ମୋତେ ଅନୁଗ୍ରହ କରସି କପିବୀର ।
ପର୍ବତ ଘେନି ବନ୍ଧ ବାନ୍ଧସି ହୋ ସାହେର ॥୬୦
ତେବେ ସେ ଥାଠ ଯିବେ ପାରି ହୋଇଂ ।
ନଳ ବୋଇଲା ଆଗ୍ୟାଂ ପ୍ରମାଣେ ଗୋସାଇଂ ॥
ତକ୍ଷଣେ ରଷି ବାନର ପର୍ବତ ବହିନେଲେ ।
ନଳ ସେନାପତି ସନ୍ନିଧେ ନେଇ ଦେଲେ ॥
ଶତେ ଯୋଜନ ଦୀର୍ଘ ଦଶ ଯୋଜନ ପ୍ରତି ।
ତିନି ଦିବସେ ଲାଗିଲାକ ତେଣି କତି ॥
ଯେକ ମୂଷାଏକ ପଶଇ ଯାଇଂଣ ଜଳେ ।
ପୁଣ ଲୋଟଗାଳଇ ଆସି କୂଳେ ॥
ସେ ବାଲିନେଇ ବନ୍ଧ ଉପରେ ଝାଡ଼ଇ ।
ରୋମ ଟାକୋରାଇ ଧୂଳି ମାନନ୍ତ ପକାଇ ॥୭୦
ଦେଖି ରଘୁନାଥ ତାକୁ ଆଶ୍ୱାସନା କଲେ ।
ମୋତେ ଦ୍ରୋହ କରଇ ତୋତେ ଯେହୁ ମାଇଲେ ॥
ଯେଥୁଅନନ୍ତରେ ପଡ଼ିଲାକ ବନ୍ଧ ।
ଠଣା ନ ଦେଲେ ପୁଣ ଝାମ୍ପଇ ଦଶକନ୍ଧ ॥
ରଜନୀ ପ୍ରଭାତେ ଅନକୂଳ କଲେ ।
ହନୁମନ୍ତ ଆରୋହି ବିଜେ କରିଗଲେ ॥
ଅଙ୍ଗଦର କାନ୍ଧରେ ବସିଲେ ସଉମିତ୍ରୀ ।
ସୁବଳୟା ଗିରିରେ ମିଳିଲେ ରାମକ୍ଷତ୍ରୀ ॥
ଅକଳଣା ଥାଠ କଳଣା ନଯାଇ ।
ଲଙ୍କାଗଡ଼ ଉପରେ ଶ୍ରୀରାମ କଟକାଇ ॥୮୦
ଶୁଣିଣ ଦଶକନ୍ଧ ପାଡ଼ିଲା ଚାରିଦ୍ୱାର ।
ସଇନି ଚାରିଭାଗ କଲାକ ଦଶଶିର ॥
ଶୁକ ସାରଣକୁ ପେଷିଲାକ ରାଇଂ ।
ଶ୍ରୀରାମର ବଳ କଳି ଆସ ଯାଇଂ ॥
ଆଗ୍ୟାଂ ପାଇଂ ବେନି ମନ୍ତ୍ରୀ ଚଳିଗଲେ ।
ବାନର ରୂପ ଧରି ସୁବଳୟାରେ ମିଳିଲେ ॥
ଥାଠ ଖୋଜନ୍ତେଣ ବିଭୀଷେଣ ଧରିନେଲା ।
ଶ୍ରୀରାମ ଦୟାଳୁ ସେ ତାହାଙ୍କୁ ଛାଡ଼ିଦେଲା ॥
ରାବଣ ଆଗେ ଯାଇଂ କହିଲେ ମନ୍ତ୍ରୀ ବେନି ।
ଶୁଣି କୋପ ତାକୁ ଦଶଇ ମୂର୍ଦ୍ଧନି ॥୯୦
ଶାର୍ଦ୍ଦୋଳ ନାମେଣ ପେଷିଲାକ ଚାର ।
ସେ ଯାଇଂ ଉଠିଲା ପାଚେରୀ ଉପର ॥
ମନ୍ତ୍ରବଳେ ସନ୍ୟ କଳି ବାହୁଡ଼ି ଅଇଲା ।
ଦଶାନନ ଆଗେ ସମସ୍ତ କହିଲା ॥
ଆପଣେ ଗଗନେ ତୋଳିଲା ନେଇ ରଥ ।
ଶିରେ ଧରାଇଅଛି ଲକ୍ଷେକ ବୀର ଛତ୍ର ॥
ଉର୍ଦ୍ଧରେ ଥାଇଣ ସେ ପୃଥୀକି ଦୃଷ୍ଟିଦେଲା ।
ଶ୍ରୀରାମର ସନ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଲା ॥
ବିବାନ ଦେଖିଣ ରାମ ମହାକୋପ କଲେ ।
ଲକ୍ଷେକ ଛତ୍ର ତାହାର କାଟି ପକାଇଲେ ॥୧୦୦
ଲକ୍ଷେକ ଛତ୍ର ଶ୍ରୀରାମର ଯହୁଂ ଛେଦି ।
ବାହୁଡ଼ିଣ ରାବଣ ଫେରିଲା ମନ୍ଦବୁଦ୍ଧି ॥
ଗଗନୁଂ ଓହ୍ଲାଇଲା ହୋଇଣ ତରସ୍ତ ।
ଓଷେକ ବିପ୍ରନକୁ ଚଳିଲା ବିଂଶହସ୍ତ ॥
ଶ୍ରୀରାମ ଲକ୍ଷଣ ସଂଜାତେ ବେନିଶିର ।
ପ୍ରତକ୍ଷେ ଗଳି ପଡୁଛି ରୋଧିର ॥
ସୀତ୍ୟାକୁ ଦେଖାଇଲା ଦୁଇମୁଣ୍ଡ ନେଇ ।
ଦେଖି ମହାସ୍ୟତୀ ଉଠିଲେ ବୋବାଇଂ ॥
ରାବଣ ବୋଇଲା ତୁ ଗୋ ନକର ସନ୍ତାପ ।
କେ ଆନ କରିବ ତାର ଅର୍ଜ୍ଜିଲାର ପାପ ॥୧୦
ଅସୁରଙ୍କର ମାୟା ଜାଣି ନ ପାରିଲେ ।
ଅକାରଣେ ଆସି ବେନି ଭାଇ ମଲେ ॥
ଯେସନେକ ସମଏ ଡଗରା ଡାକ ଦେଲା ।
ରକ୍ଷ କପି ଲଙ୍କାଗଡ଼େ ପଶିଲେ ବୋଇଲା ॥
ଶୁଣିଣ ଦଶାନନ ବାହୁଡ଼ିଗଲା ଧାଡି ।
ମାୟାମୁଣ୍ଡ ବେନି ଗଲେ କେଉଂ କତି ॥
ଜାନେକୀର ଆଗେ ତ୍ରିଜଟା କହିଲା ।
ଯେ କଥା ସବୁ ମାୟାଟି ବୋଇଲା ॥
ଯେଥୁ ଅନନ୍ତରେ ଶ୍ରୀରାମ ଗୋସାଇଂ ।
ସହସ୍ରେ ପୁର କରି ବେଢ଼ିଲେ ଲଙ୍କଭୂଇଂ ॥୨୦
ଅଙ୍ଗଦ କୁମରକୁ ପେଷିଲେ ପ୍ରୀତି କହିଂ ।
ବେଢ଼ି ମାରୁଥିଲେ ସେହୁ ଅଇଲେ ପଳାଇଂ ॥
ଆସିବାର ବେଳେ ସେ ଜଗତୀ ଚାଙ୍କ ଆଣି ।
ଦେଖିଣ ଆନନ୍ଦ ହୋଇଲେ ଚାପପାଣି ॥
କପିଙ୍କି ଆଗ୍ୟାଂ ଦେଲେ ପାଚେରୀ ଡେଇଂ ପଶି ।
ଉପରେ ଉପରେ ହନୁମନ୍ତ ନେଲା ଆକ୍ରୋଷି ॥
ତରସ୍ତ ହୋଇ ବାହୁଡ଼ିଲା ରାବଣ ।
ରକ୍ଷ କପିମାନେ କଲେକ ମହାରଣ ॥
ସେଦିନ ଅସୁରେ ପଡ଼ିଲେ ଅନେକ ।
ନାରଖାର ଦିଶିଲା ତେଡ଼େକ କଟକ ॥୩୦
ବେଳ ଅସ୍ତ ହୁଅନ୍ତେ ବାହୁଡ଼ିଲେ ସନ୍ୟ ।
ସୁବଳୟା ପର୍ବତେ ବିଜଏ ରଘୁନାନ ॥
ସେଦିନ ରାବଣ ବହୁତ ସନ୍ତାପ କଲା ।
ରାତ୍ର ପ୍ରଭାତରୁ ଥାଠ ଆପଣେ ବାହିଲା ॥
ସ୍ୱର୍ଗକୁ ଯିବାବେଳୁଂ ଉଗୁଳିଲା ତାର ତେଜ ।
ରକ୍ଷ କପି ଘେନି ଧାଇଂଲେ ରାମ ରାଜ ॥
ସେଦିନ ଗୋଳ ଯୁଦ୍ଧ ହୋଇଲା ଅପାର ।
ଶକତିଏ ମାଇଲା ରାବଣ କୁମର ॥
ଲକ୍ଷଣ ହୃଦରେ ପଡ଼ିଲାକ ଯାଇଂ ।
ଯଶ କରି ବାହୁଡ଼ି ଗଲା ଲଙ୍କସାଇଂ ॥୪୦
ସୁଷେଣ ଫୁଙ୍କନ୍ତେ ସଉମିତ୍ରୀ ଦେହ ଭଲ ।
ଆରଦିନ ଥାଠ ପେଷିଲା ଲଙ୍କମଲ୍ଲ ॥
ସେନା ସେନାପତିମାନେ ଯେତେକ ଅଇଲେ ।

ଥୋକେ ମଲେ ଥୋକେ ପଳାଇଣ ଗଲେ ॥
ରାଗେଣ ଇନ୍ଦ୍ରଜିତ ପଶିଲାକ ରଣେ ।
ରାମ ଲକ୍ଷଣଙ୍କୁ ବାନ୍ଧିଲା ନାଗଫାଶ ବାଣେ ॥
ଋକ୍ଷ କପିବଳ ସମସ୍ତ ମାରିଗଲା ।
ଆଗହୁଁ ଜାଣିଣ ବିଭୀଷେଣ ପଳାଇଣ ଗଲା ॥
ଶ୍ରୀରାମ ସୁମରନ୍ତେ ଗରୁଡ଼ ଆସି ମିଳି ।
ନାଗେ ପଳାଇଲେ ସୁଧାରସ ଢାଳି ॥୫୦
ଅମୃତ ସିଞ୍ଚନ୍ତେ ଜୀଇଂଲେ ସମସ୍ତ ।
ବାହୁଡ଼ି ନିଜ ଆଶ୍ରମକୁ ଗଲେ ବିଷ୍ଣୁରଥ ॥
ଜୀଇଂଲେ ବୋଲି ଯହୁଁ ଜାଣିଲେ ଅସୁର ।
ରାତ୍ର ଅର୍ଦ୍ଧେ ଆସି ପାତିଲେ ସମର ॥
ଦିହୁଡ଼ି ନ ଦିଶିଲା ସଭିଏଂ ହେଲେ ବଣା ।
ମହାଗୋଳ ଯୁଦ୍ଧ ବାଜିଲା ରାତ୍ରି ହଣା ॥
ପ୍ରଭାତେ ଚିହ୍ନିଣ ଅସୁରେ ଭାଜିଲେ ।
ଋକ୍ଷ କପିବଳ ଗୋଡ଼ାଇଂଣ ଲାଗ ଦେଲେ ॥
ହନୁମତ ଚଢ଼ି ଶ୍ରୀରାମହିଂ ଛନ୍ତି ।
ଅସୁରଙ୍କର ସଙ୍ଗତେ ଗଡ଼େଣ ପଶନ୍ତି ॥୬୦
ଲକ୍ଷଣ ଅଙ୍ଗଦ କାନ୍ଧରେ ବସି ଯାଏ ।
ଦ୍ୱାରେ ରୁହାଇ ତାକୁ ଗଲେ ରାମରାଏ ॥
ସିଂଘଦ୍ୱାର ପରିଯନ୍ତେ ସମର ବାଜିଲା ।
ଭଲା ରାକ୍ଷସ ଦଳ ନ ରହିଂ ଭାଜିଲା ॥
ତହୁଁ ବାହୁଡ଼ିଣ ଆଏ ଦାଶରଥି ।
ସୁବଳୟା ଗିରିକି ବୋଲିଣ ଚଳିଯାନ୍ତି ॥
ରାବଣ ବିସ୍ମୟେ ଭାଇକି ଲୋଡ଼ଇ ତୋଳି ।
ପରିଘାଇ ବାହାର ହୋଇଲେ ଚାରିବଳୀ ॥
ରାମ ନ ଦେଖୁ ସେ ଥାଠ ହାତେ ମଲେ ।
ଡଗରା ଯାଇଣ ରାବଣକୁ ଜଣାଇଲେ ॥୭୦
ଶୁଣି ଦଶଗ୍ରୀବ ପେଷିଲାକ ସନ୍ୟ ।
ନିଦ୍ରୁଂ ତୋଳି ଛାମୁରେ କଲେ କୁମ୍ଭକର୍ଣ୍ଣ ॥
ଦୁଇଭାଇ ଭାଳେଣି ଯେକାନ୍ତରେ କଲେ ।
ରାମ ଲକ୍ଷଣଙ୍କୁ ମାର ଦଶଗ୍ରୀବ ବୋଇଲେ ॥
କୋପେ କୁମ୍ଭକର୍ଣ୍ଣ ସାଂଗ୍ରାମେ ପଶିଲା ।
ଋକ୍ଷ କପିବଳ ଅନେକ ନାଶିଲା ॥
ଯୁଧ୍ୟେରେ ଜିଣି ସୁଗ୍ରୀବଙ୍କୁ ଘେନିଗଲା ।
ଅର୍ଦ୍ଧବାଟେ କପିରାଜ ଚେତନା ପାଇଲା ॥

ନାସିକା କାମୋଡ଼ି ତାର ଛିନାଇଲା କର୍ଣ୍ଣ ।
ଲେଉଟିଣ ଶ୍ରୀରାମଙ୍କୁ କଲାକ ଦର୍ଶନ ॥୮୦
ଲାଜେ କୁମ୍ଭକର୍ଣ୍ଣ ଲଙ୍କାକଇ ନ ଗଲା ।
ଅଭିମାନ ପାଇ ସେ ଯୁଦ୍ଧରେ ପଶିଲା ॥
ଦେଖିଣ ଶ୍ରୀରାମ ଛେଦିଲେ ତାର ଶିର ।
ପୁଣି ଆସି ଯୁଝିଲା ଇନ୍ଦ୍ରଜିତ ବୀର ॥
ତିନିବେଳ ଦଇତ ବ୍ରହ୍ମଅସ୍ତ୍ର କଲା ।
ରାମ ଲକ୍ଷଣ ସନ୍ୟ ଶତକୋଟି ମଲା ॥
ଆବର ସନ୍ୟହିଂ ସବୁ ପକାଇଲା ହାଣି ।
ମାୟାକଥା ଜାଣି ବିଭୀଷେଣ ଗଲା ପୁଣି ॥
ହନୁମନ୍ତ ଯେକା ଚେତନା ପାଇଥିଲା ।
ସୁଷେଣ ବୋଲେ ହେମବନ୍ତକଇ
ଗଲା ॥୯୦
ମଉଷୋଧି ପର୍ବତ ଆଣିଲା ମୁଣ୍ଡିଆଇଂ ।
ରାମ ଲକ୍ଷଣ ଉଠିଲେ ଗ୍ୟାଂନ ପାଇଂ ॥
କଳପ ପତ୍ର ବେଗେ ଶୁଙ୍ଘାଇଲେ ନାକେ ।
ଗତ ପ୍ରାକର୍ମ ପାଇ ଉଠିଲେ ସର୍ବଲୋକେ ॥
ରାଗେଣ ରଘୁନାଥ ଲଙ୍କାରେ ଯାଇ ପଶି ।
ଅଗ୍ନି ଜାଳି ଦେଇଂ ତେଡ଼େ ନଗ୍ର ଧ୍ୱଂସି ॥
ରାତ୍ର ଅର୍ଦ୍ଧେ ଗୋଳ ପାଇଲେ ତହିଂ ପ୍ରାଣୀ ।
ଚାରି ଗଡ଼ ଦ୍ୱାରେ ବାଜିଲା ହଣା ହଣି ॥
ସାତ ସେନାପତି ଆସିଣ ଯୁଧ୍ୟ କଲେ ।
ବିଷମ ରୋଳେ ପଡ଼ିଣ ପ୍ରାଣ
ଦେଲେ ॥୧୦୦
ବିଭୀଷେଣର ବୋଲେ ବାହୁଡ଼ିଲେ ରାମ ।
ସୁବଳୟା ଗିରିରେ କଲେକ ବିଶ୍ରାମ ॥
ପୁଣ ଆରଦିନ ଥାଠ ଦିବସେ ଅଇଲା ।
ଶ୍ରୀରାମ ନ ଜାଣନ୍ତି ତାର ସନ୍ୟ ମଲା ॥
ଇନ୍ଦ୍ରଜିତ ଆସିଣ ମାଇଲା ମାୟାସୀତା ।
ଦେଖିଣ ରଘୁନାଥ ପାଇଲେ ମହାଚିନ୍ତା ॥
ବିଭୀଷେଣ ବୋଲେ ଛାଡ଼ିଲେ ମାୟାସୀତା ।
କ୍ରୋଧ ଛାଡ଼ି ସାଷ୍ଟାମ ହୋଇଲେ ଜଗୁଜିତା ॥
ସୁମିତ୍ରା ନନ୍ଦନ କଲେ ଗରୁ କୋହ ।
ଆଜ ସମରେ ମାରିବି ମନ୍ଦୋଦରୀ
ପୁଅ ॥୧୦

ଥାଠ ସଜକରି ରାତ୍ରହୁଂ ଧାଇଂଲା ।
ଯାଗ କରୁ କରୁ ତାକୁ ବେଢ଼ି ପକାଇଲା ॥
ରଣ ଯଗ୍ୟଂରେ ପୂର୍ଣ୍ଣ ଆହୁତି ଇନ୍ଦ୍ରଜିତ ।
ମେଘନାଦକୁ ବଧିଲା ସୁମିତ୍ରାର ସୁତ ॥
ବାଣପଡ଼ି ବେକ ଠାରୁ ଗଲା ଛିଡ଼ି ।
ମୁକୁଟ କୁଣ୍ଡଳ ଛିଡ଼ି ଭୂମିରେଣ ପଡ଼ି ॥
କୋପେଣ ରାବଣେଶ୍ୱର ଅଇଲା ଆରଦିନ ।
ବେଳବୁଡ଼ ଯାଏ ତହିଂ ଯୁଝିଲା ଆପଣ ॥
ଶ୍ରୀରାମ ଲକ୍ଷଣ ବିଭୀଷେଣ ତିନି ।
ଯେହାଙ୍କୁ ଦେଖି ଭାଜିଲେ ଅସୁର
ସଇନି ॥୨୦
ବୀଭୀଷେଣ ପରିଘ ବାଜି ଘୋଡ଼ାମାନେ
ମଲେ ।
ରାଗେ ରାବଣେଶ୍ୱର ବ୍ରହ୍ମ ଅସ୍ତ୍ର କଲେ ॥
ଲକ୍ଷଣ ଆଗୁସାର ଧନୁରେ ଶସ୍ତ୍ର ଯୋଚି ।
ଡରେଣ ବିଭୀଷେଣ ପଳାଇଲାକ ଘୁଞ୍ଚି ॥
ଲଙ୍କପତି ମାରନ୍ତେ ଅଇଲା ବ୍ରହ୍ମଶର ।
ହୃଦେ ବାଜନ୍ତେ ପଡ଼ିଲା ସୁମେତ୍ରା କୁମର ॥
ଶ୍ରୀରାମର ଶୋକ କହିଲେ ନ ସରି ।
ସୁଷେଣ ମନ୍ତ୍ରୀବର କହିଲାକ ବିଚାରି ॥
ଗନ୍ଧମାର୍ଦ୍ଦନ ପର୍ବତେ ମଉଷଧି ଅଛି ।
ତାହା ଆଣିଲେ ବଞ୍ଚିବ ସୁମେତ୍ରାର
ବଛି ॥୩୦
ଶୁଣିଣ ଶ୍ରୀରାମ ପେଷିଲେ ହନୁମନ୍ତ ।
ସେକଥା ବାରତା ପାଇଲା
ମନ୍ଦୋଦରୀ କାନ୍ତ ॥
କାଳନଉମି ଦଇତକୁ ପେଷିଲାକ ରାଇ ।
ହନୁମତକୁ ବାଟେ ମରାଇବା ପାଇଂ ॥
ତାହାର କପଟୁ ତରି ଗଲାକ ମାରୁତି ।
ଗନ୍ଧମାର୍ଦ୍ଦନ ପର୍ବତେ ମିଳିଲାକ ଧାତି ॥
ମଉଷୋଧି ନ ଚିହ୍ନି ଆଣିଲା ଗିରିବର ।
ବିଚାରିଲା ନ ପୁଣ ବାଟେ ଉଗାଳନ୍ତି ଅସୁର ॥
ଯେତେ ବିଚାରିଣ ଛାଡ଼ିଲା ସଳଖ ବାଟ ।
ବନସ୍ତେ ଗମନ କଲା ପବନର ଟାଟ ॥୪୦
ଆସନ୍ତେ ଅଯୋଧ୍ୟା ସଳଖେ ଆସି

ରାତ୍ରେ ଭ୍ରଥ ବୀର ନଗ୍ର ବୁଲି ଯାଇଂ ॥
ଉପରେ ହନୁମନ୍ତ ପର୍ବତ ଘେନି ଯାନ୍ତେ ।
ଶବଦ ଶୁଣିଲାକ କକୟା ସୁତେ ॥
ପକ୍ଷୀ ପ୍ରାଏ ବୁଝି ବାଟୋଳି ମାଇଲା ।
ଯାଇ ହନୁମନ୍ତ ମଥାରେ ପଡ଼ିଲା ॥
ଗ୍ୟାଂନ ହାରିଣ ପଡ଼ିଲା ପାବେନି ।
ଦେଖିଣ ଭ୍ରଥ ବୀର କତିରେ ଯାଇ ଚିହ୍ନି ॥
ସାଷ୍ଟାମ ହୋଇଣ ହନୁମନ୍ତ ଉଠିବସି ।
ପଚାରଇ କେତେ ପୁଣ ଅଛଇ ହୋ
ନିଶି ॥୫୦
ଭ୍ରଥ ଆଶ୍ଚିର୍ଯ ହୋଇ ପୁଛିଲାକ ପୁଣି ।
ହନୁମନ୍ତ କହିଲା ଯାବତ କାହାଣୀ ॥
ଶ୍ରୀରାମ ବନଯିବା ଜାନେକୀ ହରଣ ।
ଲଙ୍କାରେ ସମର ଶକତି ମାରଣ ॥
ତାହାର ମଉଷଧି ନେବାର ବିଧାନ ।
ଶୁଣି ବଥା ପାଇଲାକ କକୟା ନନ୍ଦନ ॥
ହନୁମନ୍ତକୁ ବୋଇଲା ତୁ ହୋ ସତ୍ୟ କର ।
ମୁହିଂ ଶ୍ରୀରାମଙ୍କର ଅନୁଜ ସୋଦର ॥
ବୀରପଣେ ମୋତେ ନାହିଂ ସମସରି ।
କିଞ୍ଚିତ ଶରେ ମୁଂ ଇନ୍ଦ୍ରକୁ ପାରେ
ମାରି ॥୬୦
ଯେ ବଜ୍ରବାଟୁଳି ବାଜିଲାକ ତୋର ତହିଂ ।
ପ୍ରାଣ ନ ଛାଡ଼ିଲୁ ତୁହୋ କପି ଗୋଟା ହୋଇ ॥
କ୍ଷତ୍ରୀମାନେ ଶୁଣିଲେ ହୋଇବ ମୋତେ
ଲାଜ ।
ତୁ କାହିଂ ନ କହିବୁ ହୋ ପବନ ଆତ୍ମଜ ॥
ହନୁମନ୍ତ ବୋଇଲା ତୁହୋ ସତ୍ୟକର ।
ବଜ୍ରହୁଂ ଆଣ୍ଟ ହାଦେ ଯେ ମୋହୋ
ଶ୍ୟରୀର ॥
ବଡ଼ ବଡ଼ ପର୍ବତ ପଡ଼ିଲେ ଚୂରି ହୋନ୍ତି ।
ବ୍ରହ୍ମ ଶସ୍ତ୍ରମାନେ ହୋ ଉପୁଡ଼ି ପଡ଼ନ୍ତି ॥
ଯେବେ ତୋ କିଞ୍ଚିତ ବାଟୁଳିରେ ମୋହ
ଗଲି ।
କ୍ଷତ୍ରୀଙ୍କର ମୁଖରେ ଉପହାସ୍ୟ ପାଇଲି ॥୭୦
ତୁହୋ ଭ୍ରଥବୀର ନ କହିବୁ କାହିଂ ।

ଲୋକେ ଜାଣିଲେ ମୁଂ ମରିବି ବିଷ ଖାଇ ॥
ଯେ କଥା ଶୁଣି ଭ୍ରଥ ହନୁମନ୍ତକୁ ଚାହିଂ ।
ଦୋହେଂ ହସାହସି କେହି ନ ଜାଣଇ ॥
ଶ୍ରୀରାମ ବୋଇଲେ ଭ୍ରଥ ହନୁକୁଇଂ ଚାହିଂ ।
ହନୁମନ୍ତ ତୁମେ ଦୋହେଂ ହସିଲ କିସ
ପାଇଂ ॥
ଭ୍ରଥ ବୋଇଲା ଦେବ ଯେ କଥା ଅଟେ
ସତ ।
ଭଲା ଗ୍ରନ୍ଥ କରି ଅଛନ୍ତି ତପୋବନ୍ତ ॥
ଯେଥୁ ଅନନ୍ତରେ ଗୀତ କଥାରେ ମନ ପଶି ।
ପୁଅନ୍ତ ଗାଆନ୍ତେ ଶ୍ରୀରାମଚନ୍ଦ୍ର ହସି ॥୮୦
ହନୁମନ୍ତ ପର୍ବତ ଘେନିଣ ଉଠିଗଲା ।
ସିନ୍ଧୁ ଜିଣି ଯାଇଂ ରଣ ଭୂମିରେ ମିଳିଲା ॥
ଦେଖିଣ ସମସ୍ତେ ଆନନ୍ଦ ହୋଇଲେ ।
ହନୁମତ ଶିରରୁ ପର୍ବତ ଓହ୍ଲାଇଲେ ॥
ସୁଷେଣ ମଉଷୋଧି ବାଛିଣ ଘେନିଗଲା ।
ଲକ୍ଷ୍ମଣ ନାକେ ନାଶ ବେଗେ ଦେଲା ॥
ତତକ୍ଷଣେ ପ୍ରାଣ ପାଇ ଉଠିଲା ସଉମିତ୍ରୀ ।
ଉଷତ ହୋଇଲେ ଶ୍ରୀରାମ ମହାକ୍ଷତ୍ରୀ ॥
ହନୁମତ ମଉଷୋଧି ପର୍ବତ ଘେନିଗଲା ।
ଗନ୍ଧମାର୍ଦନ ପର୍ବତେଣ ନେଇଣ
ଥୋଇଲା ॥୯୦
ଶୁଣିଣ ଦଶାନନ ବିସ୍ମଏ କଲା ଚିତ୍ତ ।
ଥୁଳଜଙ୍ଘ ନାମେ ତାର ହକାରିଲା ସୁତ ॥
ସେ ଆସି ସୁବଳୟା ପର୍ବତେ ଯୁଧ୍ୟ କଲା ।
ଶ୍ରୀରାମର ଅଗ୍ନିଶରେ ପୋଡ଼ିମଲା ॥
ରାବଣେ ଅଇଲାକ ଆପଣେ ସନ୍ୟ ଘେନି ।
ସାତଦିନ ପର୍ଯ୍ୟନ୍ତେ ବାଜିଲା ଅନ୍ୟୋଅନ୍ୟି ॥
ଦେବତାଏ ମାତେଳିକି ରାଇଣ ବୋଇଲେ ।
ଦିବ୍ୟ ଅସ୍ତ୍ର ସହିତେଣ ଦେବରଥ ଦେଲେ ॥
ସେ ଆଣି ଶ୍ରୀରାମଙ୍କୁ ସମର୍ପିଲା ତାହା ।
ନନ୍ଦିଘୋଷ ରଥ ଚଢ଼ି ରଘୁନାହା ॥୧୦୦
ଦୁଇ ସନ୍ୟ ମଧ୍ୟସ୍ତ ହୋଇଣ ରହିଲେ ।
ରାମ ରାବଣ ଅନେକ ଯୁଧ୍ୟ ତହିଂ କଲେ ॥
ଯେକ ଉଭର ଶତେବାର ଛେଦିଲେ ତାର
ଶିର ।

ମାତେଳିର ମୁଖ ଚାହିଂଲେ ରଘୁବୀର ॥
ସେ ବୋଇଲା ରାକ୍ଷସ ଇନ୍ଦ୍ର ଲଙ୍କରାଏ ।
ଆଜ ଯେ ଜିଣିମ ସେ ସ୍ୱର୍ଗେ ପୂଜା ପାଏ ॥
ବ୍ରହ୍ମ ଅସ୍ତ୍ର ଘେନିଣ ତାର ହୃଦୟକୁ ମାର ।
ଶ୍ରୀରାମ ବାଛିଲେ ଅଗସ୍ତି ଦେଲା ଶର ॥
ମନ୍ତ୍ରୀ ପଢ଼ିଣ ଶସ୍ତ୍ର ବେଗେ ଛାଡ଼ିଦେଲେ ।
ସ୍ୱର୍ଗେ ଦେବତାଏ ସାଧୁ ସାଧୁ କଲେ ॥୧୦
ବୁକୁ ଫୁଟି ପିଠିରେ ବାହାର ହେଲା ଶର ।
ପ୍ରାଣ ଛାଡ଼ିଣ ଭୂମିରେ ପଡ଼ିଲା ଦଶଶିର ॥
ବିଭୀଷେଣ ରୋଦନ କଲା ଭାଇକି ଚାହିଂ ।
ତାହାଙ୍କୁ ପ୍ରବୋଧନା କଲେ ରଘୁସାଇଂ ॥
ଲଙ୍କା କଟକରେ ଅବିଷେକ କଲେ ।
ମନ୍ଦୋଦରୀ ରାଣୀ କି ପାଟେ ବସାଇଲେ ॥
ସୀତ୍ୟାକୁ ଅଣାଇଂ ଜଳନ୍ତା ଅଗ୍ନିରେ ଲାଇଂ ।
ପରୀକ୍ଷୁ ଉବୁରିଲା ଅପାପୀ ବଇଦେଇ ॥
ବ୍ରହ୍ମା ସହିତେଣ ଅଇଲେ ଦେବଗଣ ।
ଶ୍ରୀରାମଙ୍କୁହିଂ ପ୍ରଶଂସା କରନ୍ତି
ଜଣେଜଣ ॥୨୦
ଦଶରଥ ଅଇଲେକ ମୂର୍ତ୍ତିବନ୍ତ ହୋଇ ।
ରାମ ଆଗେ ସୀତ୍ୟା ସମର୍ପିଲେ ନେଇ ॥
ଋକ୍ଷ କପି ରାକ୍ଷସେ ସାଂଗ୍ରାମେ ପଡ଼ିଥିଲେ ।
ଶ୍ରୀରାମର ଆଗ୍ୟାଂରେ ସମସ୍ତେ ଜୀଇଂଲେ ॥
ପୁଷ୍ପେକ ବିମାନେ ବିଜଏ ରଘୁପତି ।
କୋଳେଣ ବସିଛନ୍ତି ଜନେକ ଦୋହିତୀ ॥
ଲକ୍ଷଣ ବିଭୀଷେଣ ସୁଗ୍ରୀବର ସହିତେ ।
ଅପ୍ରମାଣ ଥାଠ ବସିଲେ ଦେବରଥେ ॥
ଦେବତାମାନେ ସକଳେ ଗଲେ ନିଜ
ସ୍ଥାନେ ।
ଅଯୋଧ୍ୟାକୁ ବାହୁଡ଼ା ବିଜଏ
ରଘୁନାନେ ॥୩୦
ଉତ୍ତରା ଅଭିମୁଖେ ଗଗନେ ରଥ ଚଳି ।
ଭରଦ୍ୱାଜଙ୍କ ମଠେ ପ୍ରୟାଗେ ଆସି ମିଳି ॥
ହନୁମନ୍ତକୁ ରାତ୍ରେ କୋବନ୍ଧ ଗିଳୁଥିଲା ।
ରାମନାମ ଧରନ୍ତେ ତହୁଂ ସେ ତରିଲା ॥
ସେ ସ୍ଥାନେଣ ନିଶି ବଞ୍ଚିଲେ ରଘୁପତି ।

ଆଗକରି ଅଯୋଧ୍ୟାକୁ ପେଷିଲେ ମାରୁତି ॥
ଭ୍ରଥ ଲକ୍ଷେ ରାଜାଙ୍କୁ କରିଅଛି ଗୁଣ୍ଡ ।
ଲଙ୍କାଗଡ଼କର କରିବେ ସେ ଦଣ୍ଡ ॥
ଯେସନ ସମଏ ବାରତା ହନୁ ଦେଲା ।
ଶୁଣିଣ ଭ୍ରଥବୀର ପାଛୋଟି ଅଇଲା ॥ ୪୦
ଶ୍ରୀରାମ ଦିଶିଲେ ଅନ୍ତରୀକ୍ଷେ ରଥଚକ୍ରି ।
ନନ୍ଦିଗ୍ରାମେ ରାମ ଦୁରିତେଣ ଆସି ମିଳି ॥
ଦିନା ଦୁଇଦିନ ରହି ଅଯୋଧ୍ୟାକୁ ଗଲେ ।
ଶୁଭ ଅନୁକୂଳ ବେଳେ ଅବିଷେକ ହେଲେ ॥
ବ୍ରହ୍ମଋଷିମାନେ କରାଇଲେ ମନ୍ତ୍ରସ୍ନାନ ।
ବ୍ରହ୍ମା ସହିତେ ଅଇଲେ ସୁରଗଣମାନ ॥
ଯେଥିଅନନ୍ତରେ ଅଗସ୍ତି ମୁନି ଯେ
ଅଇଲେ ।
ରାବଣର ଜନ୍ମକଥା ବିସ୍ତାରି କହିଲେ ॥
ଲକ୍ଷେକ ରାଜାଏ ଗଲେ ଯାହାର ସ୍ଥାନ ।
ଅନରୂପେ ରାଘେବ କଲେକ
ସନମାନ ॥୫୦
ସୁଗ୍ରୀବର ବିଭୀଷେଣ ହନୁମନ୍ତ ଗଲେ ।
ଅଯୋଧ୍ୟାରେ ଶ୍ରୀରାମ ଅନେକ ଭୋଗ୍ୟ
କଲେ ॥
ଭଦ୍ର ନାମେ ଚାର ସେ କହିଲା ମନ୍ଦବାଣୀ ।
ତେଣୁକରି ସୀତ୍ୟାଙ୍କୁ ତେଜିଲେ ରଘୁମଣି ॥
ଗର୍ଭବାସ ହୋଇଥିଲା ଜନେକର ଝିଅ ।
ଭଣ୍ଡି ବନସ୍ତକୁ ପେଷିଲେ କୌଶଲ୍ୟାର
ପୁଅ ॥
ରଥେ ବସାଇଂ ତାକୁ ଲକ୍ଷଣ ଘେନିଗଲା ।
ଗଙ୍ଗା ପାରି କରିନେଇ ନିବାସି ଅଇଲା ॥
ଜାଣି ବାଲମ୍ମିକ ଋଷି ତାକୁ ନେଲେ ।
ଅନେକ ଯତ୍ନ କରି ମଢ଼ିଆରେ
ଥୋଇଲେ ॥୬୦
ଲକ୍ଷଣ ଅଇଲା ସୀତୟାକୁ ନିବାସି ।
ଗଙ୍ଗାଏଣୀ କୂଳେ ରଥେ ବସି ଆସି ॥
ସୁମନ୍ତ କହିଲା ପୂର୍ବର କଥାମାନ ।
ଶୁଣି ବିସ୍ମଏ ସୁମିତ୍ରା ନନ୍ଦନ ॥
ଅଯୋଧ୍ୟାରେ ଶ୍ରୀରାମଙ୍କୁ ଦ୍ରଶନ ଆସି କଲା ।

ମୂର୍ଚ୍ଛାଇବା ନିମନ୍ତେ ବହୁତ ଡିଆରିଲା ॥
ସୁବର୍ଣ୍ଣର ସୀତ୍ୟା ଶ୍ରୀରାମ ଗଢ଼ାଇଲେ ।
ତାହାକୁ ଥାପି ଅନେକ କାର୍ଯ୍ୟ କଲେ ॥
ଯେକାନ୍ତେ ଲକ୍ଷଣକୁ ଘେନିଣ ଭାଳୁଥାନ୍ତି ।
ନୃଗରାଜା ଶାପ୍ୟ କଥାମାନନ୍ତ କହନ୍ତି ॥୭୦
ବଶିଷ୍ଟେ ନିମିରାଜା କଳି ଏ ଯହୁଂ କଲେ ।
ଯଯାତିର କଥାମାନ ବିସ୍ତାରି କହିଲେ ॥
କୁକୁରର ଗୁହାରି ବ୍ରାହ୍ମଣ ହାରିବା ।
ଶିବ ଦେଉଳେ ତାକୁ ଆଦିଷ୍ଠାଣ କରିବା ॥
ଲବଣ ଦୁଷ୍ଟପଣ କହିଲେ ଋଷିମାନେ ।
ତହିଂକି ଥାଠ ଘେନି ଗଲେ ଶତୃଘନେ ॥
ସେ ଯାଇଂ ବାଲମ୍ମିକ ଆଶ୍ରମେ ରହିଲେ ।
ସେହି ରାତ୍ରେ ସୀତ୍ୟାଙ୍କର ବେନିପୁତ୍ର
ହେଲେ ॥
କୁଶଳବ ବୋଲିଣ ମୁନିଏ ନାମ ଚାଙ୍କୁ
ଦେଲେ ।
ଯେ ବୋଲ ଶୁଣିଣ ଲୋକେ ଉଷତ
ହୋଇଲେ ॥୮୦
ରାଗ ଛଡ଼ାଇଂଣ ପୁଣ କ୍ରମରେ ଗୀତ ଗାନ୍ତି ।
ବଙ୍ଗାଳ ବରାଡ଼ି ସଧିରେ ଓଙ୍କାରନ୍ତି ॥
ରହିଲା ଠାବରୁ ରାଇଲେ ଦୋହେଂ ଯୋଡ଼ି ।
ଶୁଣିଣ ଲୋକଙ୍କର ନୟନୁ ଲୁହ ପଡ଼ି ॥
ଯେଥିଅନନ୍ତରେ ଶତୃଘନ ବୀର ଗଲା ।
ମଧୁବନ କଟକେ ପ୍ରବେଶ ହୋଇଲା ॥
ସେ ରାଜା ଯାଇଣ ଥିଲା ମୃଗୟା
ବିନୋଦେ ।
ଶୂଳ ଥିବା ଘର ଆବୋରିଲେ ଭେଦେ ॥
ମୃଗବେଣ୍ଟ ମାରିଣ ନୃପତି ଅଇଲା ।
ଶତୃଘନ ସଙ୍ଗେ ଅନେକ ଯୁଧ୍ୟ କଲା ॥୯୦
କୋପେଣ ସଉମିତ୍ରୀ ପେଷିଲେ ତୀକ୍ଷ ଶର ।
ଶିର ଛିଡ଼ି ପଡ଼ିଲା ଲବଣ ମହାବୀର ॥
ସ୍ୱର୍ଗେ ଦେବତାଏ ପୁଷ୍ପ୍ୟବୃଷ୍ଟି କଲେ ।
ସେ କଟକ ମଧୁବନ ବୋଲି ନାମ
ଦେଲେ ॥
ସେ କଟକରେ ରାଜା ହୋଇଲେ ଶତୃଘନ ।

ବାରତା ପାଇ ତୋଷ ହୋଇଲେ ରଘୁନାନ ॥
ବାର ବରଷ ପୂରିଲା ଅଯୋଧ୍ୟା ଅଇଲେ ।
ରାମଙ୍କୁ ଦ୍ରଶନ କରି ବାହୁଡ଼ିଣ ଗଲେ ॥
ଯେଥୁ ରଘୁନାଥ ମୃଗୟା ବେଣ୍ଟହିଂ କଲେ ।
ଗୃଧ ଉଲ୍ଲୁକ ସେ ବାଟେ ଗୁହାରି
କଲେ ॥୧୦୦
ତାଙ୍କୁ ମୁକତି କରି ନିଜ ରାଜ୍ୟ ଆସନ୍ତି ।
ଅଯୋଧ୍ୟାରେ ଯାଇଂ ପ୍ରବେଶ ହୁଅନ୍ତି ॥
ଯେକ ବ୍ରାହ୍ମଣର ପୁତ୍ର ଅକାରଣେ ମଲା ।
ମଡ଼ା ଘେନି ଦ୍ୱିଜ ସିଂହଦ୍ୱାରେ ଗୁହାରି କଲା ॥
ଶୁଣିଣ ବିସ୍ମଏ ହୋଇଲେ ରାବଣାରି ।
ଦେବତାଏ ପେଷିଲେ ନାରଦଙ୍କୁ ହକାରି ॥
ସେ ଆସି ଶ୍ରୀରାମଙ୍କୁ ସନ୍ଦେଶ କହିଗଲା ।
ଶୂଦ୍ର ତପୀକି ମାଇଲେ ଏ ଜୀଇଂବ
ବୋଇଲା ॥
ଯେତେକ ବୋଲି ତହୁଂ ଗଲା ସୁର ଆଳ ।
ଯେଥୁ ଅନନ୍ତରେ କଉଶଲ୍ୟାର ଦୁଲାଳ ॥୧୦
ଲକ୍ଷଣଙ୍କୁ ବ୍ରାହ୍ମଣ କତିରେ ଥୋଇଗଲେ ।
ପୁଷ୍ପେକ ରଥ ଚଢ଼ିଣ ବିପୁନ୍ୟକୁ ଗଲେ ॥
ଶୂଦ୍ର ମୁନିକି ଦେଖି କାଟିଲେ ତାର ଶିର ।
ପ୍ରାଣ ପାଇ ଉଠିଲା ବ୍ରାହ୍ମଣ କୁମର ॥
ଦେବେ ରଘୁନାଥଙ୍କୁ ସାଧୁ ସାଧୁ କଲେ ।
ଅଗସ୍ତି ତହିଂକି ଯିବଟି ବୋଇଲେ ॥
ଆମ୍ଭେ ସୁରଗଣେ ଯିବୁ ତାର ପାଶ ।
ଜଳେ ପଶିଥିଲେ ଚଉରାଶି ଶଏ ମାସ ॥
ଶୁଣିଣ ଶ୍ରୀରାମ ଦକ୍ଷିଣକୁ ଗଲେ ।
ଅଗସ୍ତିଙ୍କ ଆଶ୍ରମେ ଯାଇଣ ମିଳିଲେ ॥୨୦
ନମସ୍କାର କରିଣ ଦେବଙ୍କ ସଙ୍ଗେ ବସି ।
କୁଶଳ ପଚାରନ୍ତି ଅଗସ୍ତି ମହାଋଷି ॥
ଅନେକ ଅଳଙ୍କାର ରାମଙ୍କୁ ଦେଲେ ଆଣି ।
ସଂଶଏ ପଚାରିଣ ଘେନିଲେ ରଘୁମଣି ॥
ରାତ୍ରକ ରହି ତହୁଂ ବାହୁଡ଼ି ଅଇଲେ ।
ବ୍ରହ୍ମାଦି ଦେବଗଣେ ସେ ସ୍ୱର୍ଗକଇ ଗଲେ ॥
ଶ୍ରୀରାମ ଅଯୋଧ୍ୟାରେ ହୋଇଲେ ପ୍ରବେଶ ।
ବ୍ରାହ୍ମଣ ପୁତ୍ର ଜୀଇଂବା ଶୁଣିଣ ହରଷ ॥

ଭ୍ରଥକୁ ବୋଇଲେ ମୁହିଂ କରିବଇଂ ଯାଗ ।
ଯେବେ ସେ ଉଦଏ ହୋଇବ ମୋର
ଭାଗ୍ୟ ॥୩୦
ରାଜସୁ ଯାଗ ଲେଛି ବାଛିଲେ ଅଶ୍ଵମେଧ ।
ଯାଗ ଆରମ୍ଭିଲେ ନଇମିଷ୍ୟା ଅରନ୍ୟ ମଧ୍ୟ ॥
ଗୋମତୀ ନଦୀକୂଳେ ଉଠିଲାକ ଘର ।
ନିମନ୍ତ୍ରଣ କଲେ ସକଳ ନୃପବର ॥
ସୁଗ୍ରୀବର ବିଭୀଷେଣ ମିଳିଲେକ ଆସି ।
ଶ୍ରୀରାମ ଆଗ୍ୟାରେ ମିଳିଲେ ସର୍ବରଷି ॥
ବାର ବରଷକୁ ତହିଂ ଯାଗ ଆରମ୍ଭିଲେ ।
ଘୋଡ଼ା ଘେନି କରି ଲକ୍ଷଣ ପୃଥୀ
ବୁଲିଗଲେ ॥
ଅପ୍ରମାଦେ ଆସିଣ ହୋଇଲେ ପରବେଶ ।
ବାଲମ୍ମିକ ସଙ୍ଗରେ ଅଇଲେ ନବକୁଶ ॥୪୦
ସିଂହ ଦ୍ଵାରେ ଶ୍ରୀରାମ ଚରିତ ଗାଇଲେ ।
ଶୁଣିଣ ଲୋକମାନେ ରାଜାଙ୍କୁ କହିଲେ ॥
ରାମ ଆଗ୍ୟା ଦେଲେ ଘେନି ଆସ ଯାଇଂ ।
ଗୀତ ଗୁଆଇଲେ କତିରେ ବସାଇ ॥
ପ୍ରଥମ ଦିବସେ ଶୁଣିଲେ ଯେତେ ଗ୍ରନ୍ଥ ।
ଧନବସ୍ତ୍ର ଅଳଙ୍କାର ଦେଲେ ରଘୁନାଥ ॥
ତହିଂକି କୁମାରେ ଯିସ ଉତ୍ତର କଲେ ।
ଶୁଣି ରଘୁନନ୍ଦନ କିସ ଆଗ୍ୟାଂ ଦେଲେ ॥
ସୁଗ୍ରୀବର ପଚାରିଲା ଯିସ ଯିସ କଥା ।
କହନ୍ତି କୁମାରେ ପଢ଼ି ପାଠ ପୋଥା ॥୫୦
ଶୁଣିଣ ଶ୍ରୀରାମ ଭ୍ରଥ ମୁଖ ଚାହିଂ ।
ଯେକକୁ ଆରେକ ଚାହାନ୍ତି ଚାରି ଭାଇ ॥
ସୁଗ୍ରୀବର ହନୁମନ୍ତ ଅଙ୍ଗଦ ବିଭୀଷେଣ ।
ଜମ୍ୱେବ ନଳନୀଳ ଗବାକ୍ଷ ସୁଷେଣ ॥
ପଞ୍ଚଶ ଯୂଥପତି ଚୁହାଁଚୁହିଁ ହୋନ୍ତି ।
ଯେ ଅବା ସୀତାଙ୍କର ପୁତ୍ର ବୋଲିଣ
ବୋଲନ୍ତି ॥
ମହାରଷିମାନେ ଯେକ ଆରେକକୁ ଚାହିଂ ।
ଲକ୍ଷେକ ନୃପତି ତବଦ ମୂର୍ଛି ହୋଇ ॥
ବାଲମ୍ମିକ ମୁଖ ଚାହିଂ ପଚାରନ୍ତି ରାମ ।
ଭୋ ମୁନି ଯେହୁ କଥା ଅଟଇ
ଅନୁଆନ ॥୬୦

ପୂର୍ବ ଗ୍ରନ୍ଥ ଯେହା ଶୁଣିଲାନ ଥିଲା ।
ତୋହୋରେ କୀର୍ତ୍ତି ମୋର ପୃଥୀରେ ରହିଲା ॥
ଯେ ପୁତ୍ର ଦୁଇଗୋଟି ଅଟନ୍ତି କାହାର ।
ଶୁଣିଣ ବୋଇଲେ ବାଲମ୍ମିକ ମୁନିବର ॥
ଭୋ ରଘୁନନ୍ଦନ ତୁ ବିବେକ ଚୂଡ଼ାମଣି ।
ତୁ ଯେ ତେଜ୍ୟା କଲୁ ଜନେକ ଦୁଲଣୀ ॥
ଲକ୍ଷଣ ଛାଡ଼ିଣ ଅଇଲା ଘୋର ବନେ ।
ଜାନେକୀର ରୋଦନ ପଶିଲା ମୋର
କର୍ଣ୍ଣେ ॥
ଯୋଗେ ଜାଣିଣ ମୁଂ ସେଠାକୁ ଅଇଲି ।
ମଢ଼ିଆକୁ ଜନେକ ଦୋହିତାକୁ
ନେଲି ॥୭୦
ଗର୍ଭ ଦୁଇମାସ ଅଟଇ ତାହାର ।
ଲୋକିତ ବୋଲ ଶୁଣି କଲୁ ଯେ ବାହାର ॥
ତେଜିଲାର ନାରୀ ପିତା ଘରକୁ ଯାଇଂ ।
ମୁହିଂ ପାଳିଲଇଂ ଜନେକ ତନଇ ॥
କାଳେଣ ଛୁତନ ହୋଇଲା ଯେବଣ ଦିନ ।
ଲବଣକୁ ମାରିଣ ଗଲାକ ଶତ୍ରୁଘନ ॥
ସେହୁ ଜାଣିଅଛି ବେନି ପୁତ୍ର ଜାତ ।
ଶୁଣିଣ ଶ୍ରୀରାମ ଚାହିଂଲେ ନିଜ ଭ୍ରାଥ ॥
ଶୁଣି ଶତ୍ରୁଘନ ଯୋଡ଼େ ବେନି କର ।
ହୋଇ ଦେବ ଯାହା କହିଲେ
ମୁନିବର ॥୮୦
ଲବଣକୁ ମାରିଯାନ୍ତେ ରହିଲଇଂ ତହିଂ ।
ବାଲମ୍ମିକ ମୁନିଙ୍କ ଗଉରୋବ ପାଇଂ ॥
ସେ ରାତ୍ରେ ସୀତ୍ୟାର ହୋଇଲେ ପୁତ୍ର
ବେନି ।
ରାତ୍ରି ଅର୍ଦ୍ଧେ ଆସି କହିଲେ ମହାମୁନି ॥
ଦେଖିତ ନ ଗଲି ମୁଂ ତୋତେ ମୋର ଭଏ ।
ନିଷ୍ଟଏ ଏ ଦୁହେଂ ସୀତ୍ୟାର ତନଏ ॥
ଶତ୍ରୁଘନ ବାଲମ୍ମିକ କଥା ରାମ ଶୁଣି ।
ଲୋତେକ ଢଳ ଢଳ ନଏନୁ ରଘୁମଣି ॥
ଭ୍ରଥ ଯାଇଂ କୁଶ କୁମରକୁ ତୋଳି ।
କାଖେ ବସାଇଂ ନଏନୁ ଅଶ୍ରୁଜଳ
ଗଳି ॥୯୦

ଲକ୍ଷଣ ହିଂ ଯାଇ ନବକଇ କୋଳକଲା ।
ବୁକୁରେ ଲଗାଇ ପୁଣ ମୁଖେ ଚୁମ୍ବ ଦେଲା ॥
ସୁଗ୍ରୀବର ପୁଣ ଭ୍ରଥ କୋଳରୁ ନେଲେ
କୁଶ ।
ନବକଇ କାଖ କଲା ପବନର ଶିଷ୍ୟ ।
ବିଭୀଷେଣ ନେଲା ହନୁମନ୍ତର ତହୁଂ ।
ପୁଅକୁ ଘେନିଗଲା ଶତ୍ରୁଘନ କହୁଂ କହୁଂ ॥
ସୁଗ୍ରୀ କାଖରୁ କୁଶକୁ ଅଙ୍ଗଦ ଘେନିଗଲା ।
ତାହାର ତହୁଂ ନଳ ସେନେହ ଭରେ
ନେଲା ॥
ଜମ୍ୱେବ ସୁଷେଣ ତହୁଂ ଘେନି ଗଲେ ।
ପଞ୍ଚଶ ଯୂଥପତିଏ ସମସ୍ତେ
ଧଇଲେ ॥୧୦୦
ମୁନିମାନେ ଦେଖି କଲ୍ୟାଣ କରନ୍ତି ।
ଜନେକ ମହାରଷି କୋଳରେ ଧରନ୍ତି ॥
ଲକ୍ଷେକ ନୃପତି ବେଢ଼ିଣ ତାହା ଚାହିଂ ।
ଆନନ୍ଦ ଭରେ ଉଲ୍ଲସୁ ଅଛି ମହୀ ॥
ଯେକର କହନ୍ତେ ଆରକ ତହୁଂ ଜାଣି ।
ସୀତ୍ୟାର ବେନିପୁତ୍ର ବାଲମ୍ମିକ ଛନ୍ତି ଆଣି ॥
ଦେଖିତ ଶରଧାରେ ଆସନ୍ତି ନରନାରୀ ।
ଗହ ଗହ ଶବଦ ଯାଗଶାଳ ପୂରି ॥
ପୁତ୍ରକୁ ଦେଖି ବୋଇନ୍ତି ନରନାରୀମାନେ ।
ଧର୍ମ ଉଦେ ହେଲା ଅଯୋଧ୍ୟା
ଭୁବନେ ॥୧୦
ସୀତୟାର ବେନିପୁତ୍ରେ ଯେହୁଂ ସେ
ଅଇଲେ ।
ବାଲମ୍ମିକ ମୁନି ଯେମନ୍ତ ଗୁଣ କଲେ ॥
ପ୍ରତକ୍ଷେଣ ବାପର ପ୍ରାଏକ ଦିଶୁଛନ୍ତି ।
ଦୁହିଂଙ୍କର ଶ୍ୟରୀର ଦିଶେ ଯେକ କାନ୍ତି ॥
ନଖ ମୁଖ ନାସିକା ନଏନ ଗୋଡ଼ ହାଥ ।
କି ଜାଣି ପ୍ରତକ୍ଷେ ଅଟନ୍ତି ରଘୁନାଥ ॥
ଦୋହେଂ ଶ୍ୟାମବର୍ଣ୍ଣ ତୁଳାଇତ ନାହିଂ ।
ଯେତେକ କାଳ ପୋଏ ପଶିଥିଲେ କାହିଂ ॥
ବାପାଙ୍କୁ କହିଣ ଯେବେ ମାଆଙ୍କୁ ଅଣାଅ ।
ଅଦୋଷେ ତେଜ୍ୟା କରିଅଛନ୍ତି ଦଶରଥ
ପୁଅ ॥୨୦

ଦେଖିଣ ଉଠିଲେ ଦେବୀ ଜନକେକ ଦୁଲାଳୀ ॥
ନମସ୍କାର କରିଣ ହୋଇଲାକ ଉଭା ।
ସର୍ବ ସୁଲକ୍ଷଣା ସେ ଦିଶିଲେ ମହାଶୋଭା ॥
ମୁନି ବୋଇଲେ ତୁମ୍ଭେ ଶୁଣସି ଗୋ ମାଏ ।
କୋପ ନ କରିବୁ ତୋତେ କହିବି କଥାଏ ॥
ନବ କୁଶକୁ ଆମ୍ଭେ ଘେନିଗଲୁ ।
ଶ୍ରୀରାମ ଯାଗ ଦ୍ୱାରେ ନେଇ କଲୁ ॥
ବୋଲିଲୁ ରାମାଏଣ ଗ୍ରନ୍ଥ ତୁମ୍ଭେ ଗାଅ ।
ଯେହିଠାରେ ସିଂହଦ୍ୱାରେ ବସିଥାଅ ॥୨୦
ଯେତେକ କହି ଶ୍ରୀରାମ ସନ୍ନିଧ୍ୟକୁ ଗଲୁ ।
ପୂଜା ପାଇ ଆମ୍ଭେ ରାମ ସନ୍ନିଧ୍ୟେ ବସିଲୁ ॥
ପୁଅଙ୍କ ପଢ଼ନ୍ତେ ଶୁଣିଲେ ସର୍ବଜନ ।
ଯାଇ ଜଣାଇଲେ ଶ୍ରୀରାମ ସନ୍ନିଧ୍ୟାନ ॥
ଶୁଣିଣ ରଘୁନାଥ ଡକାଇଣ ନେଲେ ।
ଗଉରୋବ କରି ଗୀତ ଗୁଆଇଲେ ॥
ଆଦ୍ୟରୁ ଗୀତ ଗୋ ଶୁଣିଲେ ଯେଥ ଯାଏ ।
ନିଜ ପୁତ୍ର ବୋଲିଣ ଜାଣିଲେ ରାମରାଏ ॥
କୋଳରେ ଧରି ମୁଖେ ଚୁମ୍ବନ ଦେଲେ ।
ମୋତେ ନେଇଣ ଅନେକ ପୁରୁଷାର୍ଥ କରାଇଲେ ॥୩୦
ତୋତେ ସମ୍ଭାଳିଲାକୁ ଗଉରୋବ ଯେତେ କରାଇଲା ।
କାହାର ବେଳେ ତାହା ହୋଇବ ବୋଇଲା ॥
ଭ୍ରଥ ଲକ୍ଷଣକୁ ପେଷିଲାକ ରାଇ ।
ବୋଇଲେ ଜାନେକୀକି ଘେନିଣ ଆସ ଯାଇଂ ॥
ଶତ୍ରୁଘନ ସହିତେ ବିଭୀଷେଣ ସୁଗ୍ରୀବର ।
ଅକଳିତ ବଳ ଗୋ ଋକ୍ଷ ରାକ୍ଷସ ବାନର ॥
ମୋତେ ହକରାଇଣ ପେଷିଲେ ତୋର ପତି ।
ବୋଇଲେ ଘେନି ଆସ ଜନେକ ଦୋହିତୀ ॥
ସେ ତୋହୋର ପ୍ରାଣର ପୀରତି ମନୋହାରୀ ।
ନୋହିଲେ ଦେଲେ ସିନା ଛାଡ଼ିଲି ନ ବିଚାରି ॥୪୦
ଯେତେ ଆଣିମଇ ନାହିଂ ମୋର ଛଳ ।
ପ୍ରିୟାର ବିହୁନେ ମୋର ଜୀବନ ବିଫଳ ॥
ଯାଅ ମହାଋଷି ଜାନେକୀକି ଆଣ ।
ଜନେକର ଝିଅ ଦେଇ ରଖ ମୋର ପ୍ରାଣ ॥
ତୁ ଯେବେ ମାଗୋ ନ ବିଚାର ଆନ ।
ଆସ ଯିବା ତୋହୋର ପତିର ସନ୍ନିଧ୍ୟାନ ॥
ପତି ଭଗତା ତୁ ଅଟୁ ଗୋ ମହାସ୍ୟତୀ ।
ଭ୍ରଥାକୁ କୋପ ତୁ ନ କର ମହାସ୍ୟତୀ ॥
ସବୁ କଥାମାନ ଛାଡ଼ିଲେ ରଘୁନାନ ।
ତୋହୋର ଯିବାକୁ ହୋଇଛି ଅବଧାନ ॥୫୦
ମାହାଋଷି ନୃପତିମାନେହେଂ ଅଛନ୍ତି ।
ଦେଖଣାହାରୀମାନେ ଦେଖିବେ ବୋଲନ୍ତି ॥
ଆନନ୍ଦ କାଳ ତାଙ୍କର ହୋଇଛି ଗୋ ମାଏ ।
ନ କର ହେଳା ତୁ ଯିବା ତହିଂ ଯାଏ ॥
ଯେସନେକ ସମଏ ମିଳିଲା ଯାଇ ଭ୍ରଥ ।
ଲକ୍ଷଣ ଶତ୍ରୁଘନ ମୂଳେ ତିନିଭ୍ରାଥ ॥
ଜାନେକୀକି ଦେଖି ପଡ଼ିଲେ ଗଡ଼ଘାଲି ।
ହସି ବୋଇଲେ ଦେବୀ ଉଠ ଉଠ ବୋଲି ॥
ଯେତେକାଳେ ମୋତେ କଲ କିହୋ ଦୟା ।
କେହୁ ବୁଝି ପାରିବଟି ଯେ ତୁମ୍ଭର ମାୟା ॥୬୦
ଲକ୍ଷଣ ଭଏ କରିଅଛି ଅପସରି ।
ଭ୍ରଥ ବିନୋଇ କହଇ ପୁରସରି ॥
ଭୋ ମାତ ଜାନେକୀ ଗୋ ଶ୍ରୀରାମ ପାଟରାଣୀ ।
ଅଯୋଧ୍ୟା ପୁର ମଣ୍ଡଣୀ ଜଗତ ଠାକୁରାଣୀ ॥
ଦାରିଦ୍ର ବିଧ୍ୱଂସିନୀ ଗୋ କମଳିଣୀ ଦେବୀ ।
ବ୍ରହ୍ମା ଋଦ୍ର ଇନ୍ଦ୍ର ତୋହୋର ପାଦେ ସେବି ॥
ଜନେକ ନନ୍ଦନୀ ଗୋ ନାମ ତୋର ସୀତୟା ।
ମଂଷାସୁର ମାରେଣୀ ତୁ ଅଟୁ ମହାମାୟା ॥
ଦୁର୍ଗତି ତାରେଣୀ ଗୋ ଦୟା କର ମୋତେ ।
ଜଗତ ଜନନୀ ଦଇନି କରଇ ତୋତେ ॥୭୦
ମାହାପାତ୍ର ମହାମନ୍ତ୍ରୀ ସୋମନାଥ ।
ବଳରାମ ଦାସ ମୁଂ ଅଟଇ ତାର ସୁତ ॥
ତୋହୋର ପ୍ରସନ୍ନେ ମୁଂ ରାମାଏଣ କହିଲି ।
ସାତ କାଣ୍ଡ ମହାନାଟେକ ବଖାଣିଲି ॥
ଯେବେ ନିଜ ପତି ସନ୍ନିଧ୍ୟକୁ ଆସ ।
ରଘୁବଂଶ ନାଥ ତୋତେ ବଡ଼ାଇ ମୁହାଂସ ॥
ପୁତ୍ର ଭ୍ରଥା ଘେନି ଅଯୋଧ୍ୟାରେ ଭୋଗକର ।
ଯେହେର୍ଣେକ ବୋଲି ଭ୍ରଥ କହଇ ଉତ୍ତର ॥
ଯେହା ଶୁଣି ଜାନେକୀ ଦେବୀ ହୋଇଲେ ପ୍ରସନ୍ନ ।
ଯାଇତ ଉଦବେଗ ବିବିଧ ବେଶମାନ ॥୮୦
ପାଟେକ ପିନ୍ଧି ପାଟେକ ଉପାରଣ ଦେଲେ ।
ବାଲମ୍ୟିକ ମନ୍ଦିରୁ ବାହାର ହୋଇଗଲେ ॥
ଆଗେ ମହାଋଷି ପଛରେ ମହାସ୍ୟତୀ ।
ବ୍ରହ୍ମାର ପଛେ ଯେହ୍ନେ ସିନ୍ଧୁର ଦୋହିତୀ ॥
ଘରୁ ବାହାର ହୋଅନ୍ତେ ପଡ଼େ ହୁଳହୁଳି ।
ଅଇଲେ ବୋଲି ଥାଠ ହୋଇଲେ ହାଲହୋଳି ॥
ସୁଗ୍ରୀ ବିଭୀଷେଣ ଦ୍ରଶନ ଆସି କଲେ ।
ହନୁମନ୍ତ ଅଙ୍ଗଦ ଗଡ଼ଘାଲି ଶୁତିଲେ ॥
ଦେଖି ବୀରତୂର ବାଇଲେ ବାଜେଣିଆ ।
କୋଳାହଳ ହୋଇଣ କୁହୁଳେ ଅଗ୍ରଧୂଆଂ ॥୯୦
ଯେତେକ ଲୋକ ଥିଲେ ମଥାରେ ହାଥ ଦେଲେ ।
ଧନ୍ୟ ଧନ୍ୟ ଜାନେକୀ ତୁ ବୋଲିଣ ବୋଇଲେ ॥
ଆଲମ୍ବ ପାଟଛତ୍ର ବିଲମ୍ବ ପନ୍ତି ପନ୍ତି ।
ଦେଖିବାର ଛଟକେ ଥାଠ ହୋଇଲେ ଯନ୍ତାଯନ୍ତି ॥
ଭ୍ରଥ ଜଣାଇଲା ଶୁଣିମା ରାମ ରାଣୀ ।
ପୁଷ୍ପେକ ବିମାନ ଗୋ ଆମ୍ଭେ ଅଛୁ ଆଣି ॥
ଶ୍ରୀରାମ ଆଗ୍ୟାଂରେ ଗୋ ରହୁବରେ ବସ ।
ପାଦେଣ ଗମନ୍ତେ ଗୋ ନୋହେ ପଉରୋଷ ॥

ସୀତୟା ବୋଇଲେ ମୁଂ ହୋ ନ ବସଇ ଯାନ ।
ନ ଦେଖିବି ଯେତେବେଳେ ମୁଂ ରଘୁକୁଳନାନ ॥୧୦୦
ଅଯୋଧ୍ୟା ଲୋକଙ୍କୁ ମୁଂ ପ୍ରତେ କରାଇବି ।
ଆବର ହିଂ ବେଳେ ମୁଂ ପରୀକ୍ଷ ଘେନିମି ॥
କକ୍ଷଣୁ ଉତୁରିଲେ ଚଢ଼ିବି ବିମାନ ।
ଆଶ୍ଚର୍ଯ୍ୟ ହୋଇଣ ସେ ଦେଖିବେ ସର୍ବଜନ ॥
ଯେବେ ଦେବରଥ ନ ବସଇ ମୁଇଂ ।
ଯେହୁ କିସ ବାଟ ଅଳପ ଅଟଇ ଭୂଇଂ ॥
ଚଉଦ ବରଷ ମୁଂ ବୁଲିଲି ଘୋରବନେ ।
ତହିଂକି ଦୁଃଖ ବୋଲି ନ ଭାଳିଲି ମନେ ॥
ଯେବେ କିମ୍ବା ଏଥି ଆରୋହିବି ରଥ ।
ଯେ କଥା ଆରବେଳେ ନ ବୋଲସି ଭରଥ ॥୧୦
ବାଲ୍ମିକ ମୁନି ମୋର ଅଟନ୍ତି ଧର୍ମପିତା ।
ଆବର ହିଂ ଅନେକ ଅଛନ୍ତି ବ୍ରହ୍ମବେତ୍ତା ॥
ଯେ ପାଦେ ଗମିବେ କେହି ନ ଚଢ଼ିବେ ଯାନ ।
କିମ୍ବା ନ ବିଚାର ତୁ କକୟା ନନ୍ଦନ ॥
ଶୁଣିଣ ସମସ୍ୟା ନ ଦେଲେ ଶ୍ରୀରାମର ଭାଇ ।
ଜାନେକୀ ଚାଲନ୍ତେ ଭରଥ ପଛେଣ ଗୋଡ଼ାଇ ॥
ଋଷିଗଣେ ସୀତ୍ୟାଙ୍କୁ ପଟୋଆରେ ନିଅନ୍ତି ।
ଆଗରେ ବାଲ୍ମିକ ପଥ ବାହିଯାନ୍ତି ॥
ଭରଥ ଲକ୍ଷଣ ସୁମନ୍ତ ଶତୃଘନ ।
ଅଙ୍ଗଦ ହନୁମନ୍ତ ସୁଗ୍ରୀବ ବିଭୀଷେଣ ॥୨୦
ଜମ୍ବେବ ନଳନୀଳ ସେ ଗନ୍ଧମାରଦନ ।
ସୁଷେଣ ପନଶିଳ ସୁନାସ ସୁସୋଦନ ॥
କେଶରୀ ଡାଳିମ୍ବ କୁନ୍ଦ ପବନ ସହିତେ ।
ଶତବାଳି କାଳିଞ୍ଜନ ସେହୁ ପାରିଜାତେ ॥
ଶଉରୀ ଶତବଳ ସେ ବିବିଧ ରମଣ ।
ତାରାକ୍ଷ କୁମୁଦ ମୂଳେ ଋକ୍ଷ କପିଗଣ ॥
ସୀତ୍ୟା ଚାଲିଯାନ୍ତେ ପଛେଣ ଗୋଡ଼ାନ୍ତି ।
ରଥୀ ଯୋଧ୍ୟା ରାଉତେ ସମସ୍ତେ ମିଳନ୍ତି ॥
ଦେଖଣାହାରୀମାନେ ଚାଲନ୍ତି ନାନାରଙ୍ଗ ।
ବଢ଼ିଲା ନଦୀ ଯେହ୍ନେ ସମୋଦ୍ରେ ହୋଏ ସଙ୍ଗ ॥୩୦
ଆକାଶେ ଥାଇଣ ଦେଖନ୍ତି ସୁରଗଣ ।
ମିଳିଣ ଦେବତାଏ କରନ୍ତି ବିଚାରଣ ॥
ଦେଖ ଠାକୁରାଣୀ ଭ୍ରମୁଛନ୍ତି ମଞ୍ଚ ।
ତାହାଙ୍କ ପଛେ ଲୋକେ ଦିଶନ୍ତି ମାହାସଞ୍ଚ ॥
ବ୍ରହ୍ମାଏ ବୋଇଲେ ତୁମ୍ଭେ ଯେହିକ୍ଷଣି ଦେଖ ।
ସେଇ ମଞ୍ଚରେ ଚାହିଂଲେ ହୋଇବ ବିମୁଖ ॥
ପାତାଳକୁ ବିଜଏ କରିବେ ଠାକୁରାଣୀ ।
କ୍ଷୀର ସମୁଦ୍ର ବାଟ ଅଛନ୍ତି ସେ ଜାଣି ॥
ପୃଥି ଦେବୀ ଆସିଣ ଘେନି ଯିବ ରାଇ ।
କମଳଧ୍ୱଜ ବିମାନ ଉପରେ ବସାଇଂ ॥୪୦
ଶୁଣିଣ ସୁରଗଣେ ହରଷ ହୋଇଲେ ।
ପୁଣି ଅଯୋଧ୍ୟାକୁ ଯେକ ଦୃଷ୍ଟିରେ ଚାହିଂଲେ ॥
ଯେଥୁ ଅନନ୍ତରେ ଜନେକ ଦୋହିତା ।
ନାବେ ବସି ଗଙ୍ଗା ପାରି ହୋଇଲେକ ସୀତ୍ୟା ॥
ସଇନି ସହିତେ ପୁଣ ଚତୁରାଙ୍ଗ ବଳ ।
ଘଡ଼ିକ ଭିତରେ ପାରି ହୋଇଲେ ସକଳ ॥
ଗୁହ ନାମେ ଶବରର ଲୋକେ ତହିଂ ଥାନ୍ତି ।
ଶ୍ରୀରାମ ସନ୍ୟ ଯିବାର ଜାଣିଣ ଛନ୍ତି ॥
ଯତନେ ସବୁ ନାବ ଠୁଳ କରିଥିଲେ ।
ତାହାଙ୍କଇ ରାଜା ପେଷିଣ ଅଇଲେ ॥୫୦
ସନ୍ୟ ପାରିକରି ଆସୁଛନ୍ତି ସଙ୍ଗେ ।
ବଣ ମଣିଷମାନେ ଧାମନ୍ତି ଅତିବେଗେ ॥
ସମୋଦ୍ର ପ୍ରାଏକ ଆସୁଛନ୍ତି ବଳ ।
ମୁଖରାବ ଶବଦ ଶୁଭଇ ଗହଳ ॥
ପୌର୍ଣ୍ଣମୀର ଚାନ୍ଦ ଜାଣି ସୀତ୍ୟା ବଦନ ଦିଶି ।
ମଉଗଜ ଗମନୀ ବିଜେ କରି ଆସି ॥
କି ଅବା ସମୁଦ୍ରୁ ଜନ୍ମିଲେ ମହାଲକ୍ଷ୍ମୀ ।
କର ଦୁଇ ଯୋଡ଼ିଣ ଚାଲଇ କମଳାକ୍ଷୀ ॥
ଗୋମତୀ ନଦୀତୀରେ ପ୍ରବେଶ ହୋଇଲେ ।
ତଥି କତି ଲୋକେ ବାଟକୁ ଦେଖିଗଲେ ॥୬୦
କେ ବୋଲଇ ଯେହି ସେ ଶ୍ରୀରାମର ରାଣୀ ।
ସାଧୁ ସାଧୁ ସୁନ୍ଦେରୀ ଜନେକ ଦୁଲଣୀ ॥
କେସନେଟି ରଘୁନାଥ ମୁର୍ଚ୍ଛିଲେଟି ଯେହା ।
କେମନ୍ତେ ରଘୁନାଥ ଧରିଥିଲେ ହିୟା ॥
ଯେସେ ମହାସ୍ୟତୀ ଶୁଣିଥିଲୁ କର୍ଣ୍ଣେ ।
ପୂର୍ବର ପୁଣ୍ୟେ ଆମ୍ଭେ ଦେଖିଲୁ ନଏନେ ॥
ବାବୁ ବଇଦେହୀ ଧନ୍ୟ ତୋର ରୂପ ।
ଜାଣି ପଟାନ୍ତର ଚଞ୍ଚଳା ସ୍ୱରୂପ ॥
ଯେସନେକ ବୋଲାବୋଲି ହୋଅନ୍ତି ଲୋକମାନେ ।
ସୀତ୍ୟା ସେ ଉଜ୍ଜ୍ୱଳ ଦିଶଇ ତେଡ଼େ ସନ୍ୟେ ॥୭୦
ନାନା ଅଳଙ୍କାରେ ଆଭରଣ ସେ ଦେବୀ ।
ଭୂମିର ମଧ୍ୟେ ଚାଲି ଆସୁଛନ୍ତି ରବି ॥
ଶ୍ରୀରାମଙ୍କୁ ପ୍ରଶଂସା କରନ୍ତି ସର୍ବଜନେ ।
ଧନ୍ୟ ଧନ୍ୟ ତୁମ୍ଭେ ସେ କଉଶଲା ନାନେ ॥
ଯେ ସ୍ତିରୀ ଭୋଗ୍ୟ ଯେ କରନ୍ତା ତୁହି ରହ ।
ଜଳନ୍ତା ଅଗ୍ନି ଜାଣି ଯେ ଜାନେକୀର ଦେହ ॥
ଆନ କେ ଯେ ଦ୍ରବ୍ୟେ ଚାହିଂବ ଆଖି ଘେନି ।
ଶ୍ରୀରାମ ସେ ପୁରୁଷ ସୀତ୍ୟା ସେ କାମେନୀ ॥
ସ୍ୱର୍ଗ ମଞ୍ଚ ପାତାଳ ତିନିପୁରେ ନାହିଂ ।
ଅଦୋଷେଣ ଉପେକ୍ଷିଲେ ଯେହାକୁ ରଘୁସାଇଂ ॥୮୦
ଯେବେ ପୁଅନ୍ତ ଦେଖିଣ ଅନୁଗ୍ରହ କଲେ ।
ଋଷିଙ୍କି ପଠିଆଇ ଘରଣୀ ଆଣିଲେ ॥
କିସ କିସ ହେବ ଆସ ହୋ ଶୁଣିଯିବା ।
ଶ୍ରୀରାମ ସୀତ୍ୟାଙ୍କର ଭେଟ ହିଁ ଦେଖିବା ॥
ଯେସେନେକ ବୋଲି ଗୋଡ଼ାଇଛନ୍ତି ଲୋକେ ।
ଲୋତକେ ଢଳଢ଼ଳ କରୁଛନ୍ତି ଥୋକେ ॥
ସର୍ବକାଳେ ଯେହ୍ନେ ଗର୍ଜଇ ସିନ୍ଧୁଜଳ ।
ତେସନେକ ଶୁଭଇ ମୁଖର ଚହଳ ॥

କରପତ୍ର ଯୋଡ଼ି ଆସଇ ମହାସ୍ୟତୀ ।
ଅଭିମାନ ଭରେ ଅଛଇ ମଥା ପୋତି ॥୯୦
ଯାଗଶାଳ ସିଂହଦ୍ୱାରେ ଯାଇ ମିଳି ।
ଜୟ ଜୟ ଶବଦ ଶୁଭଇ ହୁଳହୁଳି ॥
ଶ୍ରୀରାମ ଆସ୍ଥାନ କରିଣ ବସିଛନ୍ତି ।
ଲକ୍ଷେକ ନୃପତି ଆଗେ ଉଭା ହୋଇଛନ୍ତି ॥
ମହାମୁନିମାନେ ଅଛନ୍ତି ସମସ୍ତ ।
ଅଙ୍ଗିରା ମରିଚୀ ପୁଲହ ପୌଲସ୍ତ ॥
ବଶିଷ୍ଠ ବିଶ୍ୱାମିତ୍ର ଅଗସ୍ତି ମହାଋଷି ।
ଅତ୍ରୀ ତପଚାରୀ କଶ୍ୟପ ଛନ୍ତି ବସି ॥
ସନକ ନାରଦ ଦେବବଳ ମୁନି ।
କଣ୍ୱ କପିଳ ଆଦି ଜନେକ ମହାଜ୍ଞାନୀ ॥୧୦୦
ଗଉତମ ଭରଦ୍ୱାଜ ଯବଖିଲା ।
ବାଲମ୍ମିକ ଦୁର୍ବାସ୍ୟା ବିଶର୍ବାହିଂ ଅଇଲା ॥
ପବିତ୍ର ସନକ ସେ ଶରଭଙ୍ଗ ଋଷି ।
ଉଦ୍ଦଙ୍ଗ ମଇତ୍ରଏ ଚ୍ୟବନ ବୃହଷ୍ୟତି ॥
କୁଶଧ୍ୱଜ ମୁନି ଜନେକର ସାନଭାଇ ।
ବାମଦେବ ଯାବାଳି ସେ କଶ୍ୟପ ପୁତ୍ରଦୁଇ ॥
ମାରକଣ୍ଡ ଋଷି ଭୃଗୁ ନାରାଏଣ ଋଷି ।
ଆବର ଅନେକ ଯତି ଅଘୋରୀ ସନ୍ନ୍ୟାସୀ ॥
ମହା ମହାତ୍ମାମାନେ ବସିଅଛନ୍ତି ଆସ୍ଥାନେ ।
ବେଢ଼ି ପଟୋଆରୀ ଅଛନ୍ତି ସମସ୍ତ ରାଜାମାନେ ॥୧୦
କାଶୀଶ୍ୱର ରାଜାଗୁହ ନାମେ ଶବର ।
ଯେ ଦୋହେଂ ରଖିଛନ୍ତି ନବର ସିଂହଦ୍ୱାର ॥
ଅସମ୍ଭବ ଥାଠ କଲଣା ନ ଯାଇ ।
ବାରବରଷ ରହଣି କଟକାଇ ॥
ତିନିପୁର ଲୋକେ ଗୁଣ୍ଡ ହୋଇଛନ୍ତି ।
ଶ୍ରୀରାମର ଯାଗ ଦେଖି ମୁକତି ଲଭନ୍ତି ॥
ବ୍ରହ୍ମାଦି ଦେବତାଏ ଦେଖନ୍ତି ସ୍ୱର୍ଗେ ଥାଇ ।
ପାତାଳର ଲୋକେ ଆସିବେ କାର୍ଯ୍ୟ ପାଇଂ ॥
ସ୍ୱଭାବେ ଦେଖୁଛନ୍ତି ମର୍ତ୍ତ୍ୟ ଲୋକ ମିଳି ।
ସବିହେଂ ଦେଖୁଛନ୍ତି ଜନେକ ଦୁଲାଳୀ ॥୨୦
ସୁଗ୍ରୀବ ବିଭୀଷେଣ ଶତ୍ରୁଘନ ଭ୍ରଥ ।
ଲକ୍ଷଣ ଜମ୍ୱେବ ଅଙ୍ଗଦ ହନୁମନ୍ତ ॥
ରାମକୁ ଦ୍ରଶନ କଲେ ସୀତୟାକୁ ଘେନି ।
ଆଗ ହୋଇଛନ୍ତି ବାଲମ୍ମିକ ମହାମୁନି ॥
ଧୂରୁ ଦେଖିଣ ରାମ ଚିହ୍ନିଲେ ଜାନେକୀ ।
ବୋଇଲେ ଜନେକ ଦୋହିତା ସୀତୟାଏକି ॥
ସଭାକୁ ଚାହିଂଲେ ହରଷ କୋପ ଭରେ ।
ଅଯୋଧ୍ୟାର ଲୋକେ ମୋତେ ଦୂଷିଲେ ଅବିଚାରେ ॥
ଅପାପୀ ସୀତ୍ୟାଙ୍କୁ ଅକାରଣେ ଦୋଷ ଦେଲେ ।
ନିର୍ମଳ ପଦାର୍ଥେଣ ମଳି ଲଗାଇଲେ ॥୩୦
ଯେସନେକ ବିଚାରୁ ମିଳିଲେ ଦେବୀ ସତୀ ।
ଅକଳିତ ବଳ ଅଛନ୍ତି ଚଉକତି ॥
ପାଏ ପଡ଼ି ଶୋଇଣ ଉଠିଲେ ବଇଦେହୀ ।
କର ଦୁଇ ଯୋଡ଼ିଣ ଶ୍ରୀରାମକୁ ଚାହିଂ ॥
ଶ୍ରୀରାମ ବଦନ ଆନନ୍ଦ ଶୋକଭରେ ।
କ୍ଷେଣକେ ପୀଡ଼ା ତାଙ୍କୁ କଲାକ ପଞ୍ଚଶରେ ॥
ଲୁହ ଢଳଢ଼ଳ ସେ ଜାନେକୀର ଆଖି ।
ରାମହିଂ ଅଶ୍ରୁଜଳ ପକାଇଲେ ତାହା ଦେଖି ॥
ଲବକୁଶ ଦୋହେଂ ଆଗେ ଉଭା ହୋଇଛନ୍ତି ।
ଯେକଥାମାନ ସେହୁ କିଛି ନ ଜାଣନ୍ତି ॥୪୦
ସୀତ୍ୟାହିଂ ପିତା ସେ ମାତା ଆବର ଲୋକେ ପର ।
ଆବର ଜାଣନ୍ତି ବାଲମ୍ମିକ ମୁନିବର ॥
ସେ ମହାତ୍ମା ଯେ ପାଳିଲା ଯେହାନ୍ତ ଯତ୍ନକରି ।
ଯେବେ ଏ ଶ୍ରୀରାମକୁ କହଇ ପୁରସରି ॥
ସର୍ବଲୋକେ ଶୁଣନ୍ତି ବୋଲନ୍ତି ମୁନି ଯାହା ।
ଭୋ ରଘୁନନ୍ଦନ ତୁ ରଘୁକୁଳ ନାହା ॥
ଯେ ତୋର ପାଟବଂଶୀ ମନୋହାରୀ ।
ତୈଲୋକ୍ୟେ ଅନୁପାମ ଯେ ଜନେକ କୁମାରୀ ॥
ଲୋକିତ ବୋଲ ଶୁଣି ତେଜିଲୁ ଯେବେ ଯେହା ।
ବନେ ନିବାସିଲୁ କେହି ନାହିଂ ସାହା ॥୫୦
ମୋହୋର ଆଶ୍ରମ ନିକଟରେ ନେଇ ।
ଛାଡ଼ି ଅଇଲା ଲକ୍ଷଣ ଗଙ୍ଗା ପାରିଆଇଂ ॥
ଯେସେ ପରମ ସାଧେବୀ ଅଟଇ ଭୂମିକା ।
ଯେହାର ତହୁଂ ଜାତ ଯେ ବେନି ତନୁଜା ॥
ଯାମଳା ପୁତ୍ର ବେନି ଯେ ତୋହୋର ସଂଜାତ ।
ଜନ୍ମଦିନ ଥିଲା ତୋର ଶତ୍ରୁଘନ ଭ୍ରାଥ ॥
ଲବଣକୁ ମାରି ରହିଲାକ ତହିଂ ।
ଶତ୍ରୁଘନ ବୋଇଲା ଯେ ଅଟଇ ଗୋସାଇଂ ॥
ବାଲମ୍ମିକ ମାହାମୁନି ପୁଣିହିଂ ଆଗସରି ।
ଦେଖିଣ ଉଠିଲେ ସେ ଶ୍ରୀରାମ ଦଣ୍ଡଧାରୀ ॥୬୦
ନମସ୍କାର କରିଣ ପଚାରନ୍ତି କଥା ।
କେଉଂଣ ଆଗ୍ୟାଂ ମୋତେ ଦିଅସି ବ୍ରହ୍ମବେତ୍ତା ॥
ଋଷି ବୋଇଲେ ତୁମ୍ଭେ ମୋହୋର ବୋଲ ଶୁଣ ।
ମୁହିଂ ଜାଣିଅଛି ଯେ ଜାନେକୀର ଗୁଣ ॥
ଯେ ମୋହୋର ସତ୍ୟ ସତ୍ୟ ସତ୍ୟ ଶତେବୋର ।
ସୀତୟା ମହାସ୍ୟତୀଏ ସଂସାରୁ ବାହାର ॥
ନିୟମ କରିଣ ମୁଂ କହୁଅଛି ତୋତେ ।
ଯେ କଥା ମିଛ ହେଲେ ଅନେକ ପାପ ମୋତେ ॥
ଯେତେକ ସୁକୃତ ମୋର ଯିବ ନାଶ ।
ଜାନେକୀର ଯେବେ ଅଛଇଂ ଅଳପହିଂ ଦୋଷ ॥୭୦
ତୁ ମୋହର ବଚନ ନ ବୁଝସି ମାୟା ।
ଯେ ସ୍ୟତୀ ଶିରୋମଣି ଅଟଇ ସୀତୟା ॥
ଯେହାର ଚରିତ ତୁ ହୋ ନ ଜାଣୁକି ରାମ ।
ଜଗତ ଲକ୍ଷ୍ମୀ ସେ ଅମୂଲ୍ୟ ପ୍ରତିମ ॥
ଲୋକ ଅପବାଦକୁ ଛାଡ଼ିଲୁ ସିନା ତୁହି ।
ଅପୂର୍ବ ଯୁବତୀ ଯେ ଅଟଇ ବଇଦେହୀ ॥
ଗ୍ୟାଂନ ବଳେ ଯେହାକୁ ଅଛଇ ମୁଂ ଜାଣି ।

ଅଯୋନି ସମ୍ଭୂତ ଯେ ବୈକୁଣ୍ଠ ଠାକୁରାଣୀ ॥
ଯେହାକୁ ଆନ କି ପଟାନ୍ତର କରିପାରି ।
ମୋହୋର ବୋଲେ ସଂହର କର
ରାବଣାରି ॥୮୦
ତିନି ଭୁବନେ ଯେହାକୁ ସରିସମ ନାହିଁ ।
ନିଅ ଭୁଜ ଧରି ତୁ ରଘୁକୁଳ ସାଇଁ ॥
ବାଲମ୍ମିକ ବଚନ ଶୁଣି ରଘୁନାଥ ।
ବିନୋଇ ହୋଇଣ ଯୋଡ଼ନ୍ତି ବେନିହାଥ ॥
ବୋଲନ୍ତି ମାହାମୁନି ଯାହାକୁ ଆଗ୍ୟାଂ ଦେଲୁ ।
ଅପାପୀ ବୋଲିଣ ସୀତୟାକୁ ବୋଇଲୁ ॥
ଯେ କଥା ସତ୍ୟ ଯେହା ମୁଂ ଜାଣଇ ।
ନିଷ୍କଳଙ୍କ ଶ୍ୟରୀର ଯେ ଜନେକ ଦୁଲଣୀ
ଅଟଇ ॥
ଯେଉଂକାଳେ ଲଙ୍କାରେ ଅଗ୍ନି ପରୀକ୍ଷା
ଦେଲା ।
ସେ ଦିନୁ ମୋହୋର ଅଛଇନି
ଜାଣିଲା ॥୯୦
ବ୍ରହ୍ମା ସମର୍ପିଲେ ତୋହୋର ପ୍ରାଏ କରି ।
ତହୁଂ ସେ ସଂଘରିଲି ଜନେକ କୁମାରୀ ॥
ପରୀକ୍ଷ ତନୁ ଯେ ଅପୂର୍ବ ପୁଣ୍ୟରାଶି ।
ପ୍ରତେ ଗଲେ ଲଙ୍କାପୁର ରାକ୍ଷସ ରାକ୍ଷସୀ ॥
ଅଯୋଧ୍ୟାରେ ଲୋକେ ନ ଦେଖିଲେ
ତାହା ।
କାଳେ ଆସି ମୋତେ ସମ୍ପାଦିଲେ ଯେହା ॥
ତାହାଙ୍କର ବୋଲେ ସେ ଭାରିଯା ତେଜ୍ୟା
କଲି ।
ଗର୍ଭବାସୀ ସ୍ତିରୀକି ବନସ୍ତେ ନିବାସିଲି ॥
ଯେହୁ ପୁତ୍ର ଦୁଇଗୋଟି ଅଟନ୍ତି ମୋହୋର ।
ମୁହିଂ ଯେହା ଭଲେଣ ଜାଣଇଂ
ମୁନିବର ॥୧୦୦
ଲୋକେ ନ ଜାଣନ୍ତି ତହିଂକି ମୁଂ ଭାଳି ।
ତୁହି ମନେ ମନେ ବିଚାର କରସି
ତପଶାଳୀ ॥
ଅଯୋଧ୍ୟାର ଲୋକେ ପ୍ରତେ ଯେଣେ
ଯାନ୍ତି ।

ତେବେ ସେ ମୋତେ ରୁଚଇ ମହାସ୍ୟତୀ ॥
ଦେଉ ପରୀକ୍ଷ ଯେବେ ଦେଖନ୍ତୁ ସର୍ବଜନ ।
ତେବେ ସେ ଆନନ୍ଦ ହୋଇବ ମୋହୋର
ମନ ॥
ଦଶଦିଗେ କୀରତି ଶୁଭିବ ଯେହାରି ।
ପରମ ସାଧେବୀ ସେ ଜନେକ କୁମାରୀ ॥
ଯେମନ୍ତ ବୋଲି ଖ୍ୟାତି ଶୁଭିବ ତିନିପୁର ।
ଦେଉ ପରୀକ୍ଷ ଯେବେ ନଇମିଷା
ସିଂହଦ୍ୱାର ॥୧୦
ଲୋକ ଅପବାଦକୁ ମୁଂ ଭଏ କରୁଅଛି ।
ତେଣୁ ଭୋ ମୁନି ଯେହାକୁ ପକାଇଲି
ଲେଛି ॥
ଯଦପି ଛାଡ଼ିଲି ମୋର ମନ ସୁସ୍ଥ ନାହିଂ ।
ଅବିକ୍ଷଣେ ଚିତ୍ତ ମୋର ଥାଇ ଯେହାତହିଂ ॥
ଯେ ମୋହୋର ଦେହର ଅଟଇ ଅଧିକାରୀ ।
ଯେହାର ସଙ୍ଗେ ଥିଲେ ଦିନ ହରିପାରି ॥
ବେଦ ଅଧ୍ୟାନରୁ ଯେ ହୋଇଅଛି ଜାତ ।
ସେ ମୋହୋର ଶ୍ୟରୀର ଅଟଇ ତପୋବନ୍ତ ॥
ଦେଉ ଯେବେ ପରୀକ୍ଷ ଜାଣନ୍ତୁ ପୁରତିନି ।
ଦେଖନ୍ତୁ ରାଜାମାନେ ସେ ସକଳ
ସଇନି ॥୨୦
ଯେ ନଗର ନରନାରୀ ସମସ୍ତେହେଂ ଥାନ୍ତୁ ।
ତିନିପୁର ଲୋକ ଯେଥେ ପରୀକ୍ଷ ଦେଖନ୍ତୁ ॥
ଶୁଣି ପୁଣ ସମସ୍ତେହେଂ ବିଚାରନ୍ତି ମନେ ।
ନିଶ୍ଚଏ ପରୀକ୍ଷ ଦେବେ ନଇମିଷା ବନେ ॥
ଯେତେକ କଟାଳ ଯହୁଂ କଲେ ରାବଣାରି ।
ଘେନିମ ପରୀକ୍ଷ ଯେହୁ ଜନେକ କୁମାରୀ ॥
ଅପୂର୍ବ କଥା ଯାହା ଶୁଣିଲା ନାହିଂ କାହିଂ ।
ତାହା ଦେଖିବା ଯେବେ ନୟନ ପୂରାଇଂ ॥
ସୁମନ୍ତ ଦିଆଇଲା କଟେକରେ ଘୋଷଣ ।
ଶ୍ରୀରାମଙ୍କ ରାଣୀ ଆଜି ଘେନିମ
କଷଣ ॥୩୦
ଦେଖ ହୋ ସମସ୍ତେ ସିଂହଦ୍ୱାରେ ଯାଇଂ ।
ଶୁଣି ନରନାରୀ ଆସୁଛନ୍ତି ଧାଇଂ ॥
ଅଗୋଚର ଲୋକେ ମିଳିଲେ ସିଂହଦ୍ୱାରେ ।

କଉଶଲ୍ୟା କକୟା ଶୁଣିଲେ ଅନ୍ତଃପୁରେ ॥
ସୁମିତ୍ରା ସହିତେ ସକଳ ନାରୀମାନେ ।
ମୁଦୁସୁଲୀ ଝଡ଼ା ସକଳ ପରିଜନେ ॥
ସୀତୟାର ତିନି ଭଗ୍ନୀ ଆଦି କରି ।
ପୁତ୍ରଙ୍କର ହସ୍ତ ଅଛନ୍ତି ସେ ଧରି ॥
ରାଜାର ଆସ୍ଥାନେ ମିଳିଲେ ସ୍ତିରୀଗଣ ।
ଋଷିମାନେ ଉଠିଲେ ଭାଜିଲା
ବେହରଣ ॥୪୦
ନିଶବଦ ହୋଇଣ ଶୁଣୁଛନ୍ତି ସବୁ ।
ଶ୍ରୀରାମ ସୀତ୍ୟାକୁ ବୋଲନ୍ତି ପରୀକ୍ଷ ଦେବୁ ॥
ଶୁଣିଣ ଜାନେକୀ ଯୋଡ଼ଇ ବେନିକର ।
ଶୁଣ ରଘୁନାଥ ଜଗତ ଈଶ୍ୱର ॥
ଶ୍ରୀରାମହୁଂ ଯେବେ ଆନେ ମନ ଥାଇ ।
ବେନି ଖଣ୍ଡ ହୋଇ ଫାଟୁ ବେଗେ ମହୀ ॥
ଭୋ ବସନ୍ଧରୀ ତୁ ଜାଣିଅଛୁ ନିନା ।
ମୁହିଂ ମହାସ୍ୟତୀ ଶିରୋମଣି ସିନା ॥
ସହି ମୁଂ ନ ପାରଇ ସଂସାରର ଦୁଃଖ ।
କାନ୍ଦଇ ବଇଦେହୀ ନ ଚାହିଂଣ ଶ୍ରୀରାମର
ମୁଖ ॥୫୦
ତିନିପୁର ଲୋକଙ୍କୁ ସାକ୍ଷୀ ଦେବୀ କଲେ ।
ପରୀକ୍ଷ ଦେଉଂ ଅଛି ଦେଖସି ବୋଇଲେ ॥
ହୁଅସି ଦୁଇଭାଗ ଏହିକ୍ଷଣି ପୃଥୀ ।
ଆଗ୍ୟାଂ ପ୍ରମାଣେ ତାର ଫାଟିଲା ବସୁମତୀ ॥
ଦିବ୍ୟ ସିଂହାସନ ଗୋଟିଏକ ଦିଶିଲା ।
ଭୂମି ଭିତରୁକି ଚନ୍ଦ୍ର ପ୍ରକାଶିଲା ॥
କୋଟିଏକ ବୀରଛତ୍ର କୋଟିଏକ ଚାମର ।
କୋଟିଏକ ଶଙ୍ଖଧ୍ୱନି ଶବଦ ସୁମଧୁର ॥
କୋଟିଏକ କରତାଳ କୋଟିଏ ମର୍ଦ୍ଦଳ ।
ବୀଣା ବେଣୁ ନାଦ ପୁଣି ଅନେକ
ଗହଳ ॥୬୦
ଅନେକ ଯୁବତୀ ଅଛନ୍ତି ତାଳ ଧରି ।
କୋଟିଏକ ବିଞ୍ଚଣୀ ବିଞ୍ଚନ୍ତି ସୁନ୍ଦେରୀ ॥
କୋଟିଏକ ଅଗ୍ରଧୂଆଂ କୋଟିଏକ
ବୀରଛତ୍ର ।
କୋଟିଏକ ଯୁବତୀ ବିଞ୍ଚନ୍ତି ଦିବ୍ୟ ବସ୍ତ୍ର ॥

କୋଟିଏକ ନାଏକା ଜାଗାରେ ଘେନିଛନ୍ତି ।
କୋଟିଏକ ବନିତା କୁସୁମ ବିଞ୍ଚୁଛନ୍ତି ॥
କୋଟିଏକ ନାରୀ ସେ ପାରନ୍ତି ହୁଳହୁଳି ।
ପୁରୁଷ କେହି ନାହାନ୍ତି ଯୁବତୀଙ୍କର ମେଳି ॥
ଆପଣେ ବସୁମତୀ ନିଜ ରୂପ ଧରି ।
ପୃଥୀର ଭିତରୁ ସେ ଅଇଲା ଅବତରି ॥୭୦
ସୀତୟାର ଆଗେ ଯାଇ କହିଲାକ ଚାଟୁ ।
ମହାସ୍ୟତୀମାନଙ୍କରେ ତୁ ଅଗ୍ରଲେଖା ଅଟୁ ॥
ଜଗତ ଜନନୀ ତୁ ବିଷ୍ଣୁର ପାଟରାଣୀ ।
ସଂସାର ଉଦ୍ଧାରଣୀ ତୁ ବ୍ରହ୍ମାଣ୍ଡ ଠାକୁରାଣୀ ॥
କମଳ ବଦନୀ ତୁ ଗୋ କମଳ ନୟନୀ ।
କମଳ ଧାରେଣୀ ତୁ ଗୋ କମଳ
ବାସେନୀ ॥
କର ଅନୁଗ୍ରହ ତୁ ଜଗତ ଜନଙ୍କର ମାଏ ।
ଏତେ ବୋଲି ପୃଥ୍ୱୀ ଦେବୀ ଆଗରେ ଉଭା
ହୋଏ ॥
କର ପ୍ରସାରିଣ ଯହୁଂ ଦେଲେକ ବସୁମତୀ ।
ତାହାଙ୍କର କରେ କର ଦେଲେ
ମହାସ୍ୟତୀ ॥୮୦
ଦେଖିଣ ଦେବତାଏ ପୁଣ ପୁଷ୍ପ ବୃଷ୍ଟି
କଲେ ।
ଅପକ୍ଷରା ମାନେ ହୁଳହୁଳି ଦେଲେ ॥
ଗାଇଲେ ଗନ୍ଧର୍ବେ ନାଚିଲେ ଅପଛରୀ ।
ଜଏ ଜଏ ବୋଲନ୍ତି ଦକ୍ଷ ବିଦ୍ୟାଧରୀ ॥
ବାଜଇ ଦୁନ୍ଦୁଭି ଶୁଭଇ ମହାଗୋଳ ।
ଉଲୁସି ପଡୁଅଛି ମୁଖରାବ ଚହଳ ॥
ପାତାଳ ଲୋକନ୍ତ ଦେଖନ୍ତି ମଞ୍ଚପୁରୀ ।
ସାଧୁ ସାଧୁ ସୀତୟା ବୋଲନ୍ତି ନରନାରୀ ॥
ଋଷିଗଣମାନେ ଧନ୍ୟ ଧନ୍ୟ ବୋଲୁଛନ୍ତି ।
ସମରାଷ୍ଟ୍ର ଲୋକେ ସମସ୍ତେ ଦେଖନ୍ତି ॥୯୦
ପୃଥ୍ୱି ଦେବୀ କରେଣ କର ଦେଇ ସୀତା ।
ଧୀରେ ଧୀରେ ଚାଲଇ ଜନେକ ଦୋହିତା ॥
ରତ୍ନପଲ୍ୟଙ୍କରେ ସିଂଘାସନ ଅଛି ।
ତହିଂ ଯାଇଂ ବିଜଏ କଲେ କମଳାକ୍ଷୀ ॥
ଦେଖୁ ଦେଖୁ ସିଂହାସନ ପାତାଳକୁ ଗଲା ।
ସଂସାରର ଶିରୀକିଂ ପୃଥୀ ଦେବୀ ନେଲା ॥
ଫାଟିଲାର ଭୂମି ହୋଇଲା ସମତୁଲ ।
ବାହାରକୁ ଶୁଭୁଅଛି କହିବାର ବୋଲ ॥
ଦେଖିଣ ଶ୍ରୀରାମର ଉଡ଼ିଲା ସାହାସ ।
ଭୂମିକି ନିରୋପିଣ ଚାହାନ୍ତି
ରଘୁଶିଷ୍ୟ ॥୧୦୦
ଯେତେବେଳେ ଜାନେକୀ ଅଦୃଶ୍ୟ
ହୋଇଲା ।
କଉଶଲ୍ୟା ନନ୍ଦନ ପଡ଼ି ମୂର୍ଚ୍ଛା ଗଲା ॥
ସୁଗ୍ରୀବ ବିଭୀଷେଣ ଧଇଲେ ଯାଇଂ ତୋଳି ।
ସବୁଙ୍କରି ନୟନୁ ଅଶ୍ରୁଜଳ ଗଳି ॥
ଶ୍ରୀରାମ କାନ୍ଦନ୍ତି ମୁଖରେ ବସ୍ତ୍ର ଦେଇଂ ।
ଆହା ଜାନେକୀ ଗୋ ଗଲୁ ଏବେ କାହିଂ ॥
ସ୍ୟତୀ ଶିରୋମଣି ତୁ ଅମୂଲ୍ୟ ପ୍ରତିମା ।
ଲଙ୍କାପୁରେ ମୋତେ କହିଲେକ ବ୍ରହ୍ମା ॥
ଜଳନ୍ତା ଅଗ୍ନିରେ ପଶିଣ ପରୀକ୍ଷ ଦେଲୁ ।
ଅଯୋଧ୍ୟାର ଲୋକଙ୍କୁ ଜିଣି ନ
ପାରିଲୁ ॥୧୦
ଖଳ ଲୋକଙ୍କ ବୋଲକୁ ମୁହିଂତ ପ୍ରତେ
ଗଲି ।
ଦେଖିଲାର କଥା ସଂପ୍ରତେ ନ କଲି ॥
ପୁଣି ମୁଂ କଷଣ କଲଇ କିମ୍ପାଇଂ ଏବେ ।
ମୁରୁଛି ନ ପାରିଣ ଅଣାଇଲି ଯେବେ ॥
ଅତି ମନ୍ଥାଣରେ କାଳକୂଟ ବିଷ ଜାତ ।
ଏ କଥା ହୋଇଲା ମୋତେ ତେସନ
ସଂଜାତ ॥
ଅଯୋଧ୍ୟାର ଲୋକଙ୍କୁ ବୋଲିବଇଂ କିସ ।
କର୍ମରେ ଅଛି ମୋର ଏସନ ଭବିଷ ॥
ଏକା ଭାରିଯାକୁ ନ ପାରିଲି ଭୋଗ୍ୟ କରି ।
ଗୋଦାବରୀ କୂଳୁ ରାବଣ ନେଲା ହରି ॥୨୦
ତହୁଂ ଆଣିଲଇଂ ବହୁତ ଦୁଃଖ ପଡ଼ି ।
ଅଯୋଧା ଲୋକଙ୍କ ବୋଲେ ତେଜିଲି ମୁହିଂ
ହୁଡ଼ି ॥
ଏବେ ପୃଥୀ ଦେବୀ ଘରଣୀ ମୋର
ନେଲା ।
ଦେଖୁ ଦେଖୁ ମୋତେ ଉପ୍ରୋଧ ନ କଲା ॥
ମୋହୋର ଭାରିଯାକୁ ମୁଂ କୋପ କରୁଥିଲି ।
ଏବେ ଅନୁଗ୍ରହ କରିଣ ଆଣିଲି ॥
ପୃଥ୍ୱି ଦେବୀ କିମ୍ପା ତାହାକୁ ହରି
ଘେନିଗଲା ।
ଏଡ଼େ ଅଜ୍ଞାନ ପଣ କେଉଂ ଦର୍ପେ କଲା ॥
ଏତେକ ବୋଲି ଶ୍ରୀରାମ ପଡ଼ିଲେ ଧରଣୀ ।
କାନ୍ଦୁ କାନ୍ଦୁ ଶ୍ରୀରାମ କହନ୍ତି ଉଚ୍ଚ ବାଣୀ ॥୩୦
ଭୋ ପୃଥୀ ଦେବୀ ଗୋ ସୀତୟାକୁ ଆଣି
ଦେସି ।
ନୋହିଲେ ତୋତେ ମୁହିଂ ପକାଇବି ଧ୍ୱଂସି ॥
ମୋହୋର କୋପ କଲେ ପାରିବୁଟିକି ସହି ।
କେହ୍ନେ ଯେ ତୋତେ ଲୋକେ ବୋଲନ୍ତି
ଧର୍ମମହୀ ॥
କର୍ଣ୍ଣେ ଶୁଣି ନାହୁଂ କି ତୁ ମୋହୋର
ମହିମା ।
ଦଶମୁଣ୍ଡ କାଟି ଆଣିଲି ମୋର ବାମା ॥
ଏହାର ପାଇଂ ମୁଂ ଅକର୍ମ ହିଂ କଲି ।
ଅଦୋଷେ ସମୁଦ୍ରକୁ ବାନ୍ଧି ପକାଇଲି ॥
ତୁହି ତ ଏହା ଜାଣି ଅଛୁନା ବାସୁମତୀ ।
ତୁହି କିମ୍ପା ଘେନିଗଲୁ ମୋହୋର
ଯୁବତୀ ॥୪୦
ସଂସାର ନିମିତ୍ୟେ ତୁ ବହିଲୁ ଏଡ଼େ ଭାର ।
ମୋତେ କିମ୍ପା ଦୟା ଛାଡ଼ିଲୁ ବସୁନ୍ଧରା ॥
ଚନ୍ଦ୍ର ଯେହ୍ନେ ଯାବତ ଜନକୁ ଶୀତଳ ।
ବିରହେଣୀ ଜନକୁ ସେ ଅଟଇ ବିଫଳ ॥
ତେହ୍ନେ ପଟାନ୍ତର ହୋଇଂଲୁ ତୁ ମୋତେ ।
ମୋହୋର ଦୋଷ ହାଦେ କଲା ନାହିଂଟି
ତୋତେ ॥
ଏ ଦେହ ଥୋଇଂଣ କିମ୍ପା ପ୍ରାଣ
ଘେନିଗଲୁ ।
ପତ୍ନୀ ଭ୍ରଷ୍ଟ କଷ୍ଟ କିମ୍ପାଇଂ ତୁ ମୋତେ
ଦେଲୁ ॥
ଜନେକ ଯାଗ ଭୂମିରୁ ଜାତ ହେଲା ସୀତା ।
ତେଣୁକରି ତାହାର ଅଟୁ ଧର୍ମମାତା ॥ ୫୦

ଶାଶୁ ବୋଲି ତୋତେ ମୁଁ ଗଉରୋବ
କରଇ ।
ଏତେବେଳେ ସହିଲି ଉପ୍ରୋଧେ ନ
ମାରଇ ॥
ସୀତୟା ନ ଦେଲେ ତୋତେ ବିଦାରିବି
ବାଣେ ।
ନିଶ୍ଚୟେ ବସନ୍ଧରୀ ନାଶଯିବୁ ଏଣେ ॥
ଏତେ ବୋଲି ଶ୍ରୀରାମ ଉଠିଲେ ଧନୁ ଧରି ।
କୋପ ମୁଖ ଦେଖି ସ୍ୱର୍ଗେ ସୁରଗଣ ଡରି ॥
ଜାଣିଣ ପିତାମହ ଅଇଲେକ ବେଗେ ।
ଉଭାହୋଇଲେ ଆସିଣ ଶ୍ରୀରାମର ଆଗେ ॥
ରୁଦ୍ର ଇନ୍ଦ୍ର କୁବେର ବରୁଣ ନଇରତ ।
ଯମ ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଅଣଚାସୀ ହୁତ ॥୬୦
ତେତିଶ କୋଟି ଦେବତା ଅପକ୍ଷଣା ଗଣ ।
ବିଦ୍ୟାଧରୀ କିନ୍ନରୀ ଗନ୍ଧର୍ବ ଯେତେ ଜଣ ॥
ଯକ୍ଷ ପିଶାଚ ଗଣ ଉଡ଼ଗ ପ୍ରେତ ଭୂତ ।
ଶ୍ରୀରାମଙ୍କ ଛାମୁରେ ହୋଇଲେ ଉପଗତ ॥
ଭୂମିକି ଚାହିଁଣ ଉଭା ହୋଇଛନ୍ତି ।
କରପତ୍ର ଯୋଡ଼ିଣ ଶ୍ରୀରାମଙ୍କୁ କହନ୍ତି ॥
ବ୍ରହ୍ମା ବୋଇଲେ ତୁମ୍ଭେ ଶୁଣ ରଘୁସାଇଁ ।
ପୃଥିବୀକି କୋପକଲେ କାରଣ କିଛି ନାହିଁ ॥
ବହୁତ ଲୋକ ଏଥି ରୁଣ୍ଡ ହୋଇଛନ୍ତି ।
କେମନ୍ତେ ତୋର ମହିମା କହିବଇଁ
ଏଥି ॥୭୦
ବାଇମ୍ଭିକ କଲା ଗ୍ରନ୍ଥ ପ୍ରାନ୍ତ କରି ଶୁଣ ।
ତୁହି ଯାହା ଅଟୁ ତାହା ତଥ୍ୟ କରି ଜାଣ ॥
ଏସନେକ ବୋଲିଣ ବିଧାତା ସ୍ୱର୍ଗ ଯାଇଁ ।
ଏମନ୍ତ ସମୟେ ପାତାଳୁ ଶବଦେକ ଶୁଭଇ ॥
ଭୋ ଶ୍ରୀରାମ କୋପ ତୁ ନ କର
ଅକାରଣେ ।
କିମ୍ପାଇଁ ମେଦିନୀ ତୁ ବିଦାରିବୁ ବାଣେ ॥
ଏ ସୀତୟା ଅଟନ୍ତି ତୈଲୋକ୍ୟ ଈଶ୍ୱରୀ ।
ସିଧ୍ୟ ମହାଲକ୍ଷ୍ମୀ ଜନେକ କୁମାରୀ ॥
ସଂସାର ଭିତରେ ଏ ବିନୋଦ କରୁଥିଲା ।
କ୍ରୀଡ଼ା ସାରି ନିଜ ଆଶ୍ରମକଇ ଗଲା ॥୮୦

ଏକଥାକୁ ଶୋଚନା ନ କର ଗୋସାଇଁ ।
ଏବେ ଭାଳିଲେଣ ପାଇବୁ ଆଉ କାହିଁ ॥
ଗ୍ୟାଂନବନ୍ତ ହୋଇଂ ମୂର୍ଖ କଥା କହୁ ।
କିମ୍ପା ଏଡ଼େ ଅଧର୍ଯ୍ୟ ହେଉଛ ମହାପ୍ରଭୁ ॥
ଏସନେକ ଶବଦ ଶୁଭଇ ଅଦଭୁତେ ।
ପାତାଳର କଥା ଗୋଟା ଶୁଣିଲେ ସମସ୍ତେ ॥
ହାହାକାର ଧ୍ୱନି ତହିଁ କରନ୍ତି ସକଳ ।
ସୀତ୍ୟାକୁ ସୁମରି ଲୋକେ ହୁଅନ୍ତି ବିକଳ ॥
ଲବ କୁଶ ବେନିଙ୍କର କାନ୍ଦିବା ନ ସରି ।
ଅଙ୍ଗଦ ହନୁମନ୍ତ ଅଛନ୍ତି କୋଳ କରି ॥୯୦
ଭ୍ରଥ ଲକ୍ଷ୍ମଣ ଶତୃଘନ କାନ୍ଦୁଛନ୍ତି ।
ସମସ୍ତ ନୃପତିମାନେହେଁ କାନ୍ଦନ୍ତି ॥
ସୀତ୍ୟାଙ୍କର ତିନି ଭଗ୍ନୀ ହୁଅନ୍ତି ବିକଳ ।
କଉଶଲ୍ୟା ଆଦି କରି ଜନନୀ ସକଳ ॥
ଋଷିଗଣଙ୍କର ନୟନୁ ଲୁହ ପଡ଼ି ।
ରୋଦନ୍ତି ଋକ୍ଷକପି ରାକ୍ଷସ ନରନାରୀ ॥
ସରସ ବଦନ ନ ଦିଶନ୍ତି କେହି ।
ଲକ୍ଷ୍ମୀ ଛାଡ଼ିଲାକି ସବୁଙ୍କରି ଦେହୀ ॥
ଶ୍ରୀରାମଚନ୍ଦ୍ର ରୋଦନ କଲେକ ଅନେକ ।
ଋଷିମାନେ ତାହାଙ୍କର ନିବାରିଲେ
ଶୋକ ॥୧୦୦
ବ୍ରହ୍ମା ତିଆରି ତାଙ୍କୁ ଗଲାକ ଅନେକ
ମତେ ।
ପାତାଳୁ ଶବଦ ଶୁଭିଲା ଅଦଭୁତେ ॥
ସେ କଥା ଶୁଣି ଶ୍ରୀରାମ ହୋଇଲେକ ଶାନ୍ତି ।
ବାଲମ୍ଭିକ ଋଷିଙ୍କି ରାଇଣ ପଚାରନ୍ତି ॥
ଭୋ ମୁନି ପୁରାଣ ଭବିଷ୍ୟ ତୋହୋର ଯେ
କହ ।
ତାହା ଶୁଣିଲେ ସିନା ରହଇ ମୋହୋର
ଦେହ ॥
ଏତେ ବୋଲି ସବୁନ୍ତି କରାଇଲେ ତୁନି ।
ରାମାୟଣ କହନ୍ତି ବାଲମ୍ଭିକ ମାହାମୁନି ॥
ଯେବଣ ଠାବରୁ ଗ୍ରନ୍ଥ ରୁହାଇଥିଲେ
ପୋଏ ।
ଜଗତ ଜନ ଶୁଣନ୍ତି ମହାମୁନି ଗାଏ ॥୧୦

ସୀତ୍ୟା ଅଣାଇବା ପାତାଳକୁ ଯିବା ।
ଥୋକାଏକ ସମୟେ ଲକ୍ଷଣକୁ ଛାଡ଼ିବା ॥
ପୁତ୍ରଙ୍କୁ ରାଜ୍ୟ ଦେଇଂ ଆପଣେ ସ୍ୱର୍ଗ ଯାଇଂ ।
ଭବିଷ୍ୟ ପୁରାଣ ଏହା ବାଲମ୍ଭିକ କହି ॥
ଶୁଣି ରଘୁନାଥର ନ ସ୍ପୁରଇ କିଛି ।
ବୋଇଲେ ଏହେହ୍ନେକ ଭବିଷ୍ୟ ଯୋଗ
ଅଛି ॥
ଏବେ ଚିନ୍ତା କଲେଣ ହୋଇବାକ କିସ ।
ଏତେକ ବୋଲି କୋଳେ ଧଇଲେ
ଲବକୁଶ ॥
ମୁଖେ ଚୁମ୍ୱନ୍ୟ ଦେଇଣ ତିଆରିଲେ ଯାଇଂ ।
ବୋଇଲେ ଆଉ କାହିଁ ପାଇବା
ବଇଦେହୀ ॥୨୦
ସେହୁ ଚାଣ୍ଡାଳୁଣୀରେ ଆମ୍ଭନ୍ତ ଛାଡ଼ିଗଲା ।
ତିନିଜଣଙ୍କୁ ବାବୁରେ ଅନାସ୍ତ କରିଗଲା ॥
ଏବେ ତୁମ୍ଭେ ତାହାକୁ ନ ଲୋଡ଼ିବ ବାବୁ ।
ମୋର ଜୀଇଂଥିଲେ ଅଛିରେ ତୁମ୍ଭଙ୍କୁ ସବୁ ॥
ଅଯୋଧ୍ୟା କଟକରେ ତୁମ୍ଭଙ୍କୁ କରିବଇଂ
ରାଜା ।
ସକଳ ଭୁବନେ ପାଇବ ତୁମ୍ଭେ ପୂଜା ॥
ତୁମ୍ଭ ଜନନୀର ଅଛନ୍ତି ତିନିଭଗ୍ନୀ ।
କଉଶଲ୍ୟା ମୂଳେ ମୋର ଯେତେକ
ଜନନୀ ॥
ତୁମ୍ଭନ୍ତ ପାଳିବେ ସେ ସୀତୟାହୁଁ ଅଧିକ ।
ଏତେ ବୋଲି ରାମ ପୁଣି କଲେ
ଶୋକ ॥୩୦
ପୋଏ ଶୋକ କଲେ ପିତାଙ୍କ ଅଧଉର୍ଯ ।
ପୁଣି ଶୋକ ଘୋଟି ପୂରିଲା ମହାରାଜ୍ୟ ॥
କେ ବୋଲଇ ସୀତୟାତ ଏହିକ୍ଷଣି ଥିଲା ।
ଏବେ ଅଦଭୁତ ହୋଇ କେଣେ ଚଳିଗଲା ॥
ବାବୁ ମହାସ୍ୟତୀ ମହିମା ତୋହର ଧନି ।
ଆଗ୍ୟାଂ ପ୍ରମାଣେ ତୋହୋର ଫାଟିଲା
ମେଦନୀ ॥
ଯେତେକ ଯୁବତୀ ସେ ଅଛନ୍ତି ତିନିପୁରେ ।
ଏକର୍ମ କରିତ ନୁହଇ କାହାରେ ॥

ପୂର୍ବେ ନଥିଲା ଯେତ କେବେହେଁ
ନୋହିବ ।
କେବଣ ବାପୁଡ଼ା ଏମନ୍ତ କରିବ ॥୪୦
ସ୍ୟତୀ ଶିରୋମଣି ଅଟଇ ମହାସ୍ୟତୀ ।
ଅପୂର୍ବ ଯୁବତୀ ତୁ ଜନେକ ଦୋହିତୀ ॥
ଅଭିସାରିକା କନ୍ୟା ମର୍ତ୍ତ୍ୟପୁରେ ଥିଲା ।
ରୂପେକ ଦେଖାଇଂ କେଉଂ କତି ଗଲା ॥
ନାହିଂ ନାହିଂ ଏହାକୁ ତିନି ଭୁବନେ ସରି ।
ଅପାପୀ ପ୍ରତିମା ଅପୂର୍ବ ସୁନ୍ଦେରୀ ॥
କେମନ୍ତେ ଶ୍ରୀରାମଙ୍କର ରହିବଟି ଦେହୀ ।
କିମ୍ପାଇଂ ମୁହାଂସ ବାଳୀ ନ କଲା ପୁତ୍ରକଇ ॥
ଗର୍ଭୁ ଉପୁଜାଇ କେହ୍ନେ ଛାଡ଼ିଗଲା ।
ଏହାର ପରା ପୁତ୍ର କେମନ୍ତେ ମୁଛିଲା ॥୫୦
କେ ବୋଲଇ ଆହେ କେମନ୍ତେ ନ ଯିବ ।
ଅତିହିଂ କଟାଳ ଯହୁଂ କଳାକ ରାଘେବ ॥
ଲଙ୍କାରେ ଜଳନ୍ତା ଜୋଇରେ ଲାଇଂ କାଢ଼ି ।
ଏବେ ଅଯୋଧାରେ ଖଳ ଲୋକଙ୍କ
ବୋଲେ ଛାଡ଼ି ॥
ପୁଣ ଯେବେ ଆଣିଲୁ କଷଣ କିଂପା ମାଗୁ ।
ପୃଥୀନେଲା ଏବେ ଆପଣାର ଆଗୁଂ ॥
ଆଉ ଲୋଡ଼ିଲେ ଆମ୍ଭେ ପାଇବାଟି କାହିଂ ।
ଏହିକ୍ଷଣି ଥିଲା ଦେଖୁ ଦେଖୁ ନାହିଂ ॥
ମନୁଷ୍ୟ ଗଲାକୁ ଏ ଭାଳି ହେଉଂଅଛି ।
ସାଧୁ ଲୋକ ବୋଲି ନ ପାରି ତେଣୁ
ମୁଛି ॥୬୦
ତାହାର ସାଧୁ ପଣ ଯାହା ଏବେ କଲା ।
ଚଉଦ ଭୁବନେ କଥା ରୁହାଇଲା ॥
ଭୂମିରୁ ଜନ୍ମି ଭୂମିରେ ଗୋପ୍ୟ ହୋଇ ।
ସମୟେକ ବୋଲାଇଲା ରାମ ମହାଦେଈ ॥
ବେନି ପୁତ୍ର ପତି ପାଶେ ସମର୍ପିଣ ଗଲା ।
ପତିର କଟୁ ବାକ୍ୟ ସେ ସହି ନ ପାରିଲା ॥
ଆମ୍ଭେତ ଦେଖିଲୁ ପୂର୍ବେ ପୁଣ୍ୟ କଲୁ ।
ଶ୍ରବଣରେ ଯେଉଂ କଥା ଶୁଣିଣ ନ ଥିଲୁ ॥
ସ୍ତିରୀ ସଂସାରକୁ କଥା ରୁହାଇଲା ।
ସ୍ୟତୀଙ୍କର ଉପରେ ମହାସ୍ୟତୀ
ବୋଲାଇଲା ॥୭୦

ଧନ୍ୟ ଧନ୍ୟ ଯୁବତୀଏ ଜନେକ ଦୋହିତା ।
ସର୍ବ ସୁଲକ୍ଷଣୀ ନାମ ଗୋଟି ସୀତା ॥
ଏସନ କୁହାକୁହି ହୁଅନ୍ତି ନରନାରୀ ।
ଲୋକଙ୍କର ବୋଲ ଶୁଣନ୍ତି ରାବଣାରି ॥
ଶ୍ରୀରାମ ଶୋକକରି ଚାହାଂନ୍ତି ଚଉପାଶ ।
ହା ହା ସୀତ୍ୟା ମୋର ଛେଦିଲୁ ମୁହାଂସ ॥
ଏତେକଥା ଥାପି ତୁ କେଣେ ଛାଡ଼ିଗଲୁ ।
ଏ କୁଶନବକୁ ଗୋ କାହାକୁଟି ଦେଲୁ ॥
ମୁହିଂଅବା ସଖି ଦୋଷ କଲଇଂ ତୋତେ ।
ପୁତ୍ରକୁ ତ୍ୟାଗ ତୁ କଲୁ କେବଣ
ନିମନ୍ତେ ॥୮୦
ଲୋକେ ହସିବେ ମୋତେ ତୋହୋର
ବିହୁନେ ।
ଆଜହୁଂ ଦିନ ମୁଂ ଗୋ ବଞ୍ଚିବି କେସନେ ॥
ନିରାଶ କରି ମୋତେ ଗଲୁ ସଙ୍ଘାତୁଣୀ ।
ସଂସାର ଦୁଃଖ ପୁଣ ମୋତେ ଦେଲୁ ଆଣି ॥
କିମ୍ପା ମୁଂ ଅଣାଇଲି ବାଲମ୍ୟିକ ଘରୁ ।
ଜୀଇଂ ଅଛି ବୋଲି କାଳ ଥିଲୁ ହରୁ ॥
ଆଉ ତୋତେ ମୁଂ ଗୋ ଯେବେ ପାଇବଇଂ
କାହିଂ ।
ଏଡ଼େକ ଉପ୍ରୋଧ ଗୋ ଛାଡ଼ିଲୁ କିମ୍ପାଇଂ ॥
ନ ଜାଣି ଛାଡ଼ିଲି ଲୋକଙ୍କ ବୋଲେ ।
ଅଯୋଧ୍ୟା ନରନାରୀ ଏହା ସେ ମୋତେ
କଲେ ॥୯୦
ତେତେବେଳେ ବୋଇଲେ ଅସତୀ ଅଟେ
ସୀତ୍ୟା ।
ରାବଣ ହରି ନେଲା ଜନେକ ଦୋହିତା ॥
ଏକଥା ଶୁଣିଣ ମୁଂ ଗୋ ତେଜ୍ୟା କଲି
ତୋତେ ।
ତାହା ନବିଚାରି ଗୋ ଛାଡ଼ିଗଲୁ ମୋତେ ॥
ଏବେ ଏହି ରାଜ୍ୟ ଲୋକେ ଏହା କହି ।
ବୋଲନ୍ତି ମହାସ୍ୟତୀ ଅଟଇ ବଇଦେହୀ ॥
ଥିଲାକାଳେ ତୋହୋର ଧଇଲେ ଅବିଗୁଣ ।
ଗଲାକୁ ପ୍ରଶଂସିଲେ ଆପଣେ ଆପଣ ॥
ଯେତେବେଳେ ମୁଂ ନିରାଶ ହୋଇଲି ।

ଜଗତ ଜନମୁଖେ ଅପକ୍ରୀତି ମୁଂ
ପାଇଲି ॥୧୦୦
ପୋଡୁ ପୋଡୁ ଏ ସଂସାର ନଥିବା ଏଥି
କ୍ଷଣେ ।
କିମ୍ପା ମୋର ପ୍ରାଣ ନ ନିଅନ୍ତି ଯମଗଣେ ॥
ଭଲ ମନ୍ଦ ବୋଲି ଏଥି ବିଚାରନ୍ତା ନାହିଂ ।
ମାୟା ସୃଷ୍ଟିଏ ଭଲ କଥା ଅଛି କାହିଂ ॥
ସେବେଳେ କିମ୍ପା ଆନେ ବୋଇଲେଟି
ମନ୍ଦ ।
ଏହି ଲୋକଙ୍କରେ ସିନାହୋଇଲାଟି ଦ୍ୱନ୍ଦ ॥
ପୁଣି କିମ୍ପା ଭଲ ବୋଲୁଅଛନ୍ତି ଆଉ ।
ଏମାନ ନ ଶୁଣିମା ପ୍ରାଣ ହିଂ ପଛେ ଯାଉ ॥
ନିକଳଙ୍କ ପ୍ରତିମା ଅଟଇ ମୋର ସ୍ୟତୀ ।
ଖଳ ବୋଲେ ଛାଡ଼ି ମୁଂ ହୋଇଲି
ନିର୍ମାଖି ॥୧୦
ଲଙ୍କାରେ ପରୀକ୍ଷ ଦେଲା ପ୍ରାଏ ମଣିଥିଲି ।
ଏମନ୍ତ ହୋଇବ ବୋଲି ଆଗହୁଂ ନ
ଜାଣିଲି ॥
ଯେବେ ଗୋ ସଙ୍ଗାତୁଣୀ ଛାଡ଼ିଗଲୁ
ମୋତେ ।
ମୁହିଂ ଅନେକ କଟାଳ କଲି ତୋତେ ॥
ତୁ ମୋହୋର ହିତ ଜୀବନର ମିତ ।
ଦୋଷ କ୍ଷମା ମୋର ନ କଲୁ ସଂଘାତ ॥
ବନକୁ ଯିବାବେଳେ ଗୋଡ଼ାଇଣ ଗଲୁ ।
ଅନେକ ଦୁଃଖ ସହି ମୋତେ ସେବାକଲୁ ॥
ସେବେଳର ଭାବ ଛାଡ଼ିଲୁ ବଇଦେହୀ ।
ଏବେ ଅନାସ୍ତ ହୋଇଲି ଛାଡ଼ିଗଲୁ
କାହିଂ ॥୨୦
ଶ୍ରୀରାମ ରୋଦନ୍ତେ ରୋଦନ୍ତି ପୁତ୍ର ଦୁଇ ।
ରୋଦନ୍ତି ଭ୍ରଥ ଶତ୍ରୁଘନ ଲକ୍ଷଣ ତିନିଭାଇ ॥
ସୁଗ୍ରୀବର ବିଭୀଷେଣ ଜମ୍ୱେବ ରୋଦନ୍ତି ।
ଅଙ୍ଗଦ ହନୁମନ୍ତ ପଚିଶ ଯୂଥପତି ॥
ଗୁହ ନାମେ ଶବର ରକ୍ଷ କପିବଳ ।
ଲକ୍ଷେକ ନୃପତିଙ୍କ ନୟନୁ ପଡ଼େ ଅଶ୍ରୁଜଳ ॥
ଦେଖଣାହାରୀ ଲୋକ ନ ପାରନ୍ତି ମୁଛି ।

ସବୁଙ୍କରି ଶ୍ୟରୀର ଲୋତକେ ତିନ୍ତିଅଛି ॥
ମାହାରଷିମାନେ ତବଦ ହୋଇଛନ୍ତି ।
ଏକକୁ ଆରେକ ସମସ୍ୟା ନ କରନ୍ତି ॥୩୦
ବଶିଷ୍ଟ ବିଶ୍ୱାମିତ୍ର ରାମଙ୍କୁ ତିଆରନ୍ତି ।
ସୁମନ୍ତ କର ଦୁଇ ଯୋଡ଼ି ବୁଝାବନ୍ତି ॥
ବାଲମ୍ପିକ ମୁନି ପଢ଼ନ୍ତି ଶୋଳୋକ ।
ଭବିଷ୍ୟ ପୁରାଣ ଏ ପୋଥି ଅଛି ଦେଖ ॥
ଆଗହୁଂ ଧାତା ଏହା ଅଛଇ ନିର୍ବାଣି ।
କିମ୍ପା ଶ୍ୟାନ୍ତି ନୋହୁ ତୁ କୋଦଣ୍ଡ କାଣ୍ଡପାଣି ॥
ମୂର୍ଖଙ୍କର ବେବସ୍ଥା ଅଟଇ ଏମାନ ।
ଗଲା କଥାକୁ ଭାଳୁ କିମ୍ପା ରଘୁନାନ ॥
ସର୍ବଦା ତୁଲଯେଥି ନୁହନ୍ତିଟି କେହି ।
ବାଲୁତ କାଳେକ ଥିଲା ବୈଦେହୀ ॥୪୦
ସମଏକ ଭୋଗକଲୁ ପୂର୍ବର କର୍ମ ଘେନି ।
ତହିଂର ଲବ୍‌ଧତୁ ପାଇଲୁ ପୁତ୍ର ବେନି ॥
ସୀତ୍ୟା ଯେ ଗଲା ସେ ଆସଇ କି ଆଉ ।
କେତେହେଂକ କାଳେ ଭେଟ ପାଇବୁ
ରାମରାହୁ ॥
କ୍ଷୀର ସମୁଦ୍ରକୁ ସେହୁ ଗଲା ଆଗ ହୋଇଂ ।
ପୃଥୀରେ ବୁଲୁଥିଲା ରାବଣ ବଧ ପାଇଂ ॥
ସଂସାର ରକ୍ଷା କରି ନିଜ ବାସ ଗଲା ।
ତୋହୋର ଗୁଣ ଘେନି ସନ୍ତତି ଥୋଇଲା ॥
ଏବେ ତୁ ଲବକୁଶଙ୍କୁ ପ୍ରତିପାଳ ।
ଜାନେକୀ ଗଲା ବୋଲି ମନରେ ନ
ଭାଳ ॥୫୦
ଏସନେକ ବୋଲି ଯହୁଂ ବାଲମ୍ପିକ
ତିଆରି ।
ଯାଇଂଣ ମିଳିଲେ ଜନେକ ତପଚାରୀ ॥
ଲୁହେ ଢଳ ଢଳ ନୟନ ଯୁଗଳ ।
ଶୋକଭର ହୋଇ ବୋଲନ୍ତି ତପଶୀଳ ॥
ଭୋରାମ ତୁ କିମ୍ପା ସନ୍ତାପ କରୁ ଥାଉଂ ।
ତେବେ ନ ଜାଣିଲୁ ଏବେ ଏହା ଗାଉ ॥
ନବୁଝିବା ପଣେ ଏତେ ଦୂର ଗଲା ।
କାହାର ବେଳେ ସେ ହେବ ଆନ କଲା ॥
ପୃଥୀରୁ ଉପୁଜି ପୃଥୀରେ ଗୁପତ ।
ଏତେ ଆଉ ଚିନ୍ତା ନ କର ରଘୁସୁତ ॥୬୦
ଏବେ ପୁତ୍ର ଦୁଇ ଗୋଟି ପାଳ ଯତ୍ନ କରି ।
ମାତୃ ଶୂନ୍ୟ ପୁତ୍ରେ ସେ ପାଆନ୍ତି ନ ପୁଣ
ମରି ॥
ଏସନେକ ବୋଲିଣ ବୋଇଲେକ
ଜନେକ ।
ମହରଷିମାନେ ତିଆରନ୍ତି ଅନେକ ॥
ଶୁଣିଣ ଶ୍ରୀରାମଚନ୍ଦ୍ର ଶୋକ କଲେ ଶାନ୍ତି ।
ଦୁଇ ପୁତ୍ରଙ୍କ ଘେନି ଅନ୍ତେପୁରକୁ ଯାନ୍ତି ॥
ଜନନୀ ଆଗରେ ସମର୍ପିଲେ ନେଇ ।
ଦେଖି କଉଶୁଲ୍ୟା ଉଠିଲେ ବୋବାଇଂ ॥
କୟେକୟା ସେ ଆବର ମାତା ମାନ ।
ଆବର ଜାନେକୀର ତିନି ଭଗ୍ନୀ ସାନ ॥୭୦
ସୀତ୍ୟାର ପୀରତି ପରିବାରୀ ସହୀ ।
ଗୁରୁ ଗଉରୋବ ନ ମାନିଲେ କେହି ॥
ସୀତ୍ୟାନାମ ଧରି ଅନେକ ରୋଦନ
କଲେ ।
ଶ୍ରୀରାମ ତିଆରନ୍ତେ ଶୋକ ସମ୍ଭାଳିଲେ ॥
ପୁତ୍ରଙ୍କର ଭୁଜ ଧରିଣ ରଘୁପତି ।
ଜନନୀମାନଙ୍କ ସାନିଧ୍ୟେ ସମର୍ପନ୍ତି ॥
ବୋଇଲେ ମାଏଗୋ ପାଶୋର ଏବେ
ସୀତ୍ୟା ।
ଏ ପୁତ୍ର ଦୁହିଂଙ୍କି ଏବେ କର ଚିନ୍ତା ॥
ଆବର ଜାନେକୀକି ଦେଖିବ ତୁମ୍ଭେ
କାହିଂ ।
ଖଳ କଥା ଶୁଣି ମାଗୋ ଦୁଃଖ
ପାଇଲଇଂ ॥୮୦
ଏତେକ ବୋଲିଣ ସ୍ୱାମୀ ବାହାରକୁ ଆଏ ।
ସୁମନ୍ତକୁ ଚାହିଂଣ ବୋଲନ୍ତି ରାମ ରାଏ ॥
ଯିବା ଅଯୋଧାକୁ ଥାଟ ସଜ କର ।
ମୁନିମାନେ ଯାନ୍ତୁ ଯେ ବାହାର ପୁର ॥
ଏତେକ ବୋଲି ଧନ ବସ୍ତ୍ର ଅଣାଇଲେ ।
ତପୀଗଣମାନଙ୍କୁ ଅକ୍ଷତ ବିଧି ଦେଲେ ॥
ଲକ୍ଷେକ ରାଜାଙ୍କୁ କଲେକ ସନମାନ ।
ଦେଲେକ ଅପାର ବସ୍ତ୍ର ଅଳଂକାରମାନ ॥
ଆପଣେ ପୁଷ୍ପେକ ବିମାନେ ବିଜେକଲେ ।
ବାହୁଡ଼ି ରଘୁନାଥ ଅଯୋଧ୍ୟାକୁ ଗଲେ ॥୯୦
ଋଷିମାନେ ଗଲେ ଯେ ଯାହା ଆଶ୍ରମ ।
ରାଜାଗଣକଇ ସଙ୍ଗେ ଘେନିଣ ଶ୍ରୀରାମ ॥
ଟମକ ବଜାଇ ବୀର ଛତ୍ର ମୁଦା ।
ସବୁଙ୍କରି ଶ୍ୟରୀରେ ଅଛଇ ଶୋକ ବାଧା ॥
ହସ୍ତୀଙ୍କର ଘଣ୍ଟି ଘୋଡ଼ାଙ୍କର ଘାଗୁଡ଼ି ।
ଏମାନ ନ ବାନ୍ଧିଲେ ବିରସ ମନ ଧରି ॥
ଚାରି ଭାଇଙ୍କର ଦୁଇ ଦୁଇ ପୁତ୍ର ।
ଏହାଙ୍କ ଶିରେ ଏକା ଉଡ଼ଇ ବୀର ଛତ୍ର ॥
ପଛ ପଟୋଆରେ ସୁମନ୍ତ ସଙ୍ଗେ ଯାନ୍ତି ।
ଏକୁ ଆରେକ କେହି ସମସ୍ୟା ନ
ଦିଅନ୍ତି ॥୧୦୦
ଚଳିଲାକ ଥାଟ ନିଶବଦ ହୋଇ ।
ସରଯୁ ପାରି ହୋଇ ଅଯୋଧ୍ୟାପୁରେ ଯାଇ ॥
ବିମାନୁ ଓହ୍ଲାଇଣ ନବରେ ବିଜେକଲେ ।
ଅମାଜିଆମାନନ୍ତ ବଶିଷ୍ଟେ ଘେନିଗଲେ ॥
ସୁବର୍ଣ୍ଣ ସୀତ୍ୟାଙ୍କୁ ଘେନିଣ ତିନି ଭଗ୍ନୀ ।
ସଖି ପରିବାରୀ ଅନେକ କାମେନୀ ॥
ପଶ୍ଚିମ ଦ୍ୱାରବାଟେ ନବରେ ପଶନ୍ତି ।
ଲକ୍ଷ୍ମୀ ଛାଡ଼ିଲାକ ପ୍ରାଏ ସଭିଏଂ ଦିଶନ୍ତି ॥
ସେଦିନ ରଘୁନାଥ ମଣୋହି ନ କଲେ ।
ଚିତ୍ତ ବଇରାଗେ ଦୁଃଖରେ ଶୋଇଲେ ॥୧୦
ପ୍ରଭାତେ ନିତ୍ୟକର୍ମ ସାରିଣ ସଭାଏଣ ବସି ।
ଲକ୍ଷେକ ନୃପତି ଦ୍ରଶନ କଲେ ଆସି ॥
ସୁଗ୍ରୀ ବିଭୀଷେଣ ଗୁହ ନାମେ ଶବର ।
ହନୁମତ ଅଙ୍ଗଦ ଜମ୍ୱେବ ମନ୍ତ୍ରୀବର ॥
ନଳ ନୀଳ ଆବର ସେନାପତି ସକଳ ।
ମଲ୍ଲ ମହାମଲ୍ଲ ବୀର ମହାବୀର ॥
ଭ୍ରଥ ଶତୃଘନ ଲକ୍ଷଣ ଅଛନ୍ତି ।
ବଶିଷ୍ଟ ବାମଦେବ ସୁମନ୍ତ ମହାମନ୍ତ୍ରୀ ॥
ଯାବାଳି କଶ୍ୟପ ବାମଦେବ ମନ୍ତ୍ରୀବର ।
ଅଛନ୍ତି ଆବର ଅନେକ ନୃପବର ॥୨୦
ଜନେକ ମହାମୁନି ବିଶ୍ୱାମିତ୍ର ଛନ୍ତି ।
ଅପ୍ରମିତ ବଳ ଗହଳେ ଯତାୟନ୍ତି ॥

ପଟୋଆର ପାଡ଼ି ଅଛନ୍ତି ସଭା ତଳେ ।
ପୁତ୍ରମାନେ ଅଇଲେ ସେ ଏସନେକ ବେଳେ ॥
କୁଶ ନବ ଦକ୍ଷ ପୁଷ୍କର ଚନ୍ଦ୍ରକେତୁ ।
ଅଙ୍ଗଦ ନଳ ନୀଳ କୁମର ପୁଷ୍ୟକେତୁ ॥
ଶ୍ରୀରାମ ଚରଣେ ନମସ୍କାର କଲେ ।
ନେଇଣ ରଘୁନାଥ କତିରେ ବସାଇଲେ ॥
ଭାଇଙ୍କର ତନୁଜ ଆପଣା ପୁତ୍ର ଦେଖି ।
ଲୋତକେ ଢଳ ଢଳ ଶ୍ରୀରାମଚନ୍ଦ୍ର ଆଖି ॥୩୦
ସୀତୟାର ରୂପଗୁଣମାନନ୍ତ ଚିନ୍ତନ୍ତି ।
ଆପଣେ ଆପଣେ ଶୋକ ସମ୍ଭାଳନ୍ତି ॥
ସୁମନ୍ତକୁ ବୋଇଲେ ଅଣାଅ ଅଳଙ୍କାର ।
ଯେ ଯାହା ଦେଶକୁ ଯାନ୍ତୁ ନୃପବର ॥
ବିଭୀଷେଣ ସୁଗ୍ରୀବର ଜମ୍ୱେବହିଂ ଯାନ୍ତୁ ।
କାର୍ଯ୍ୟ ପଡ଼ିଲେ ଲୋକ ପେଷିଲେଣ ଆସନ୍ତୁ ॥
ଶୁଣିଣ ସୁମନ୍ତ ଅଣାଇଲା ଧନ ବସ୍ତ୍ର ।
ନୃପତିମାନଙ୍କୁ ତାହା ଦେଲେ ରଘୁସୁତ ॥
ରଥଗଜ ଅଶ୍ୱ ଅନେକ ପାଦାନ୍ତି ।
ଆପଣେ ରଘୁନାଥ ଉଠିଣ ପ୍ରବୋଧନ୍ତି ॥୪୦
ଶୁଣି ନୃପତିମାନେ ନମସ୍କାର କଲେ ।
ସନମାନ ପାଇଣ ଯେ ଯାହା ଦେଶକୁ ଗଲେ ॥
ସୁଗ୍ରୀ ବିଭୀଷେଣ ଗୁହ ନାମେ ଶବର ।
ଏହାକଇ ଦେଲେ ଅନେକ ଅଳଂକାର ॥
ଲାଗି ତଡ଼ପ ଅଣାଇ ଶାଢ଼ୀ ଦେଲେ ।
ଆପଣାର ତଡ଼ାଉମାନନ୍ତ ବିଳୋହିଲେ ॥
ରଥ ଗଜ ଅଶ୍ୱ ଯେ ଯାହା ଚଢ଼ନ୍ତି ଗୋସାଇଂ ।
ସେ ବୀରମାନନ୍ତ ଦେଲେ ତାହା ନେଇଂ ॥
ଅଙ୍ଗଦ ହନୁମନ୍ତ ଜମ୍ୱେବ ସୁଷେଣ ।
ନଳ ନୀଳ ଗନ୍ଧମାର୍ଦ୍ଦନ କଞ୍ଚଣ ॥୫୦
ସବୁ ସେନାପତିଙ୍କୁ ଅନୁରୂପ କରି ।
ଧନ ବସ୍ତ୍ର ଅଳଂକାର ଦେଲେ ରାବଣାରି ॥
ଋକ୍ଷ ରାକ୍ଷସ କନ୍ଧ ଯେତେ ଥିଲେ ।
ଶ୍ରୀରାମର ତହିଂ ସେ ପୌରୁଷ ପାଇଲେ ॥
ଜଣେ ଜଣେ ଗନ୍ଧ ଚନ୍ଦନ ପାନ ଫୁଲ ।
ଧନ ବସ୍ତ୍ର ଅଳଙ୍କାର ଅପୂର୍ବ ଅମୂଲ୍ୟ ॥
ପାଇଣ ତ୍ରିପୁତି ହୋଇଲେ ସବୁ ସନ୍ୟ ।
ସମସ୍ତଙ୍କୁ ଚାହିଂଣ ବୋଲନ୍ତି ରଘୁନାନ ॥
ଭୋ ସୁଗ୍ରୀବର ବିଭୀଷେଣ ରାଏ ।
ଯାହାର ପାଇଂ ମୋହୋର ଏତେ ଦୁଃଖ ପାଏ ॥୬୦
ସେ ସଖୀ ଏବେ ଗଲା ସ୍ନେହ ମୋତେ ଛାଡ଼ି ।
ତାହାର ବିହୁନେ ମୁହିଂ ଶୋକ ଜଳେ ବୁଡ଼ି ॥
ଆବର କି ଶ୍ୟରୀରେ ଅଛି ମୋର ସୁସ୍ତ ।
ପୁତ୍ରଙ୍କର ବଡ଼ ହୋଇବା ଯାଏ ଜୀଇଂଥିବି ମିତ ॥
ଏହାନ୍ତ ଥାପି ମୁଂ କରିବି ବନବାସ ।
ଏ ରାଜ୍ୟ ସଂପଦରେ ମୋର ନାହିଂ ଆଶ ॥
ଶୁଣିଣ ସୁଗ୍ରୀବର ବିଭୀଷେଣଙ୍କୁ କହିଂ ।
ଆଉ କି ଲୋଡ଼ିଲେ ପାଇବା ବଇଦେହୀ ॥
ଯାହା କହିଲୁ ପୁତ୍ରଙ୍କର କଥା ସତ ।
ଏହାକଇଂ ଭାଳିବାର ଅଟଇ ବିହିତ ॥୭୦
ମାତୃଶୂନ୍ୟ ହୋଇଲେ ପୁତ୍ର ଦୁଇ ଗୋଟି ।
କାଳେକ ବନସ୍ତେ ଏ ହୋଇଥିଲେ କଷ୍ଟି ॥
ଏବେ ସବୁନ୍ତିଏ ବୁଝନ୍ତି ପରପ୍ରାଏ ।
ଏହାଙ୍କ ଅର୍ଥେ ଦୁଃଖୀ ହୋଇବୁ ରାମରାଏ ॥
ଏହୁଂ ଯେବେ ରାଜ୍ୟେ କରନ୍ତି ରାଜାପଣ ।
ତେବେ ସେ କୁଶଳକଇ ଅଟଇ କାରଣ ॥
ଏହାଙ୍କର ସୁସ୍ଥ ହୋଇବାର ଯାଏ ।
ଭୋ ରଘୁନନ୍ଦନ ତୁ ରଖିଥାଅ କାଏ ॥
ଏତେ ବୋଲି ସୁଗ୍ରୀବର ଲକ୍ଷଣକୁ ଚାହିଂ ।
ମୁହିଂ ଜାଣଇନି ତୁ ରାମର ଯେହ୍ନେ ଭାଇ ॥୮୦
ତେଡ଼େ ବନ ଘୋରେ ତୁ ସାଖା ହୋଇଥିଲୁ ।
ତୁହି ସିନା ଏହାନ୍ତ ଜୀଆଇଣ ଆଣିଲୁ ॥
ଏବେ ପ୍ରିୟବନ୍ତୀ ସଖୀ ଭାରିଯା ତାର ଗଲା ।
ଖଳ ବିହି ଯେବେ ଏହା ସମ୍ପାଦିଲା ॥
ଏବେ ସମୟେକ ରଖ ଏହାର ପ୍ରାଣ ।
ଏ ଗର୍ବେଶ୍ୱର ଦେହ ହୁଅଇ ଅକାରଣ ॥
ବିଭୀଷେଣ ଭ୍ରୁଥକୁ ବୋଇଲା ଏକାନ୍ତେ ।
ଅବିକ୍ଷଣ ସେବାତୁ କରିଥିବୁ ସୀତାକାନ୍ତେ ॥
ତୋହୋର ପ୍ରାୟେକ ଭାଇ ନାହିଂ କଏକଇ ।
ପିତା ତୋ ସମର୍ପିଲା ରାଜ୍ୟପଣ ଦେଇ ॥୯୦
ଶ୍ରୀରାମର ସ୍ନେହେ ତୁ ନୋହିଲୁ ନୃପବର ।
ଜଟା କଷା ବିଭୂତି ଫଳ ମୂଳ ଆହାର ॥
କଟକେ ନ ରହିଲୁ ଭାବ ତୋର ଏଡ଼େ ।
ଏଥଇଂ ଭାଇ ଗୁଣ ହୋଇବ ଆଉ କେଡ଼େ ॥
ଏବେ ସେ ସେନେଧ ଧରିଥିବୁ ବାବୁ ।
ଶ୍ରୀରାମ ଜୀଇଥିଲେ ଅଛଇ ତୋର ସବୁ ॥
ସୀତ୍ୟା ଗଲାରୁ ତାର ଜୀବନକୁ ଆଶ ନାହିଁ ।
ନ ଶୁଣିବା ପ୍ରାୟେ ବାବୁ ହୋଏ ରଘୁସାଇଂ ॥
ଗୁହ ନାମେ ଶବର ଶତ୍ରୁଘନଙ୍କୁ ତିଆରି ।
ଜାଣୁନା କେମନ୍ତ ଭାଇ ଅଟେ ରାବଣାରି ॥୧୦୦
ଯେ ଯାହାଙ୍କର ପୀରତି ଲୋକମାନେ ଛନ୍ତି ।
ମୋହ ପୀରତି ଲୋକ ଗଲା କେଉଂ କତି ॥
ମୁହିଂ ଆଉ ପ୍ରାଣ ରଖିବି କିମ୍ପାଇଂ ।
ଏତେ ବୋଲି ରଘୁନାଥ ଉଠିଲେ ବୋବାଇଂ ॥
ପୁଣିହିଂ ଧଉର୍ଯ୍ୟ ହୁଅନ୍ତି ଆପଣେ ଆପଣ ।
ଆହା ବିହି ମୋତେ କଲୁ ଅକାରଣ ॥
ଅଶ୍ରୁଜଳ ପୋଛି ବିଚାର କରନ୍ତି ।
ପୋଏ ତ ମୋହୋର ସାନ ବୋଲିଣ ବୋଲନ୍ତି ॥
ଏହାଙ୍କର ବୁଝିବା ଯାଏ ଜୀଇଂଥିବି ।
ଏହି ଅଯୋଧ୍ୟାରେ ତାଙ୍କୁ ରାଜାପଦ ଦେବି ॥୧୦
ଏବେ ଯେବେ ମରିବି ହସିବେ ଲୋକେ ଶୁଣି ।
ବୋଲିବେ ଏହାଙ୍କର ହେଲା କୁଳଶ୍ରେଣୀ ॥

ପୁତ୍ରଙ୍କୁ ନ ଦେଖି ଦଶରଥ ମଲା ।
ଭାରିଯା-ବିହୁନେ ଏବେ ଶ୍ରୀରାମ ପ୍ରାଣ
ଦେଲା ॥
ଏସନେକ ବୋଲିଣ ଶୁଭିବ ଅପଖ୍ୟାତି ।
ଜନ ଅପବାଦକୁ କରଇ ମୁହିଂ ଭୀତି ॥
ଏବେ ମୁଂ ସମୟେକ ଥିବି ଦେହ ଧରି ।
ବନବାସ ଯିବି ପୁତ୍ରଙ୍କୁ ରାଜାକରି ॥
ଏସନେକ ବୋଲିଣ ଭାଳନ୍ତି ସୀତ୍ୟା ସାଇଂ ।
ଭୋଜନ ଶୟନକୁ ତେଡ଼େ ଇଚ୍ଛା
ନାହିଂ ॥୨୦
ଦିନକୁ ଦିନ ଦେହ ହୋଇଲେ ଖୀନ ।
ଅବିକ୍ଷଣେ ସୀତ୍ୟା ଭାବନ୍ତି ଦଶରଥ ନନ୍ଦନ ॥
ଥାନମାନ ଛାଡ଼ିଲା ଦେହର କାନ୍ତି ଗଲା ।
ତେଡ଼େ ମହାପ୍ରଭୁ ଅଶୋଭା ଦିଶିଲା ॥
ପଦ୍ମ ଦଳ ଲୋଚନ ହୋଇଲା ମଳିଣ ।
ଲୋତକେ ଶ୍ରୀମୁଖ ଦିଶିଲା ଅବର୍ଣ୍ଣ ॥
ଆହାର ବିହୁନେଣ ଶୁଖିଲା ମାଏଂସ ।
ଚିନ୍ତାଭରେ ଦୁଃଖୀ ହୋଇଲେ ରଘୁଶିଷ ॥
ରୂପିଲା ମର୍କତ ପ୍ରାୟେକ ଦେହ ଦିଶୁଥିଲା ।
ସେ କାନ୍ତି ଯାଇ ଲୁହା ପ୍ରାୟେକ
ଦିଶିଲା ॥୩୦
କେଶ ନ ସମ୍ଭାଳନ୍ତି ନ ପଖାଳନ୍ତି ମୁଖ ।
ଅନୁକ୍ଷଣେ ଅପ୍ରସନ୍ନ ଦିଶଇ ପଦ୍ମମୁଖ ॥
ଦୁଃଖେ ଦୁଃଖୀ ହୋଇ ଦିନ ନିଅନ୍ତି ଲୋକ
ଲାଜେ ।
ବହୁତ ଜୀଇବା ତାର ପୁତ୍ରଙ୍କର କାର୍ଯେ ॥
ସୁବର୍ଣ୍ଣ ସୀତ୍ୟାକୁ ଦିନେକେ ବେଳେ
ଦେଖନ୍ତି ।
କ୍ଷଣେ ମାତ୍ର ତାହାକୁ ନିରୋପି ଚାହାଂନ୍ତି ॥
ତେତେବେଳେ ଯାଏ ଏକମତ ହୋଇ ।
ତାହା ନେଲେ ପୁଣ ବସିଣ ଝୁରୁଥାଇ ॥
ଏମନ୍ତେଣ ଶ୍ରୀରାମର ସହସ୍ରେ ବରଷ ।
ସୁବର୍ଣ୍ଣ ସୀତ୍ୟା ଘେନି ବଞ୍ଚିଲେ
ରଘୁଶିଷ ॥୪୦
ଶତେକ ଅଶ୍ୱମେଧ ଯାଗ ରାମ କଲେ ।
ଶୁଣ ରୁଦ୍ରାଏଣୀ ଗୋ ଶଙ୍କର କହିଲେ ॥
ଏଥୁଅନନ୍ତରେ ପୁଣ କେତେହେଂକ
ଦିନେ ।
ଅନ୍ତେଶ୍ୱରେ ଭାଳିଲେ ଅମାଜିଆମାନେ ॥
କଉଶଲ୍ୟା ମୁଖ୍ୟ କରି କକୟା ସୁମିତ୍ରା ।
ଗୁଣ୍ଡ ହୋଇ ବିଚାରନ୍ତି ଶ୍ରୀରାମର ମାତା ॥
ବୋଇଲେ ଆମ୍ଭେ କିମ୍ପାଇଂ ଯେଥି ଥିବାକ
ପ୍ରାଣ ଘେନି ।
କତି ଲୋକମାନଙ୍କୁ ନ ପାରିଲୁ ଚିହ୍ନି ॥
ଦେହ ଅଶକତ ନ ଶୁଭଇ କଥା ।
ଗୋଡ଼ ଥରହର କମ୍ପୁଥାଇଂ ମଥା ॥୫୦
ଭୁଞ୍ଜିଲେ ଅନ୍ନ ଦେହରେ ପକ୍ୱ ନୋହି ।
ରୋଗ ଆଶ୍ରେ ଆସି କଲା ସବୁକୁହିଂ ॥
ଦନ୍ତ ପଡ଼ିଣ ଭାଙ୍ଗିଗଲା ଥାନମାନ ।
କେଶ ପାଚିଗଲାନି ହୋଇଲୁଣି ବିବର୍ଣ୍ଣ ॥
ପୁତ୍ର ଅରଜିଲୁ ଭୁଞ୍ଜିଲୁ ସୁଖ ଶିରୀ ।
ନିଜ ଆୟୁଷ ପାଇଂଲୁ ପୂର୍ବର ପୁଣ୍ୟ କରି ॥
ଯେବେ ବେଳୁ ବେଳ ହୋଇଲାକ ଆନ ।
ନିଜ ସ୍ୱାମୀ ଆମ୍ଭର ଦଶରଥ ରାଜନ ॥
ସେତ ସ୍ୱର୍ଗକୁ ଗଲେ ପୁତ୍ରକୁ ରାଜ୍ୟ ଦେଇ ।
ଆମ୍ଭେ ଥିବାର ଏଥେ ପ୍ରୟୋଜନ
ନାହିଂ ॥୬୦
ସ୍ୱାମୀ କାର୍ଯ୍ୟ କରିବା କିମ୍ପା ଥିବା ଆଉ ।
ଆମ୍ଭର ଆଗେ ଗଲା ତାହାର ପରା ପ୍ରଭୁ ॥
ଲୋକ ଅପଖ୍ୟାତି ତ ନ ଗଲୁ ସ୍ୱାମୀ ସଂଗ ।
ଦେଖିଲୁ ଆମ୍ଭେ ଏବେ ସଂସାରର ରଂଗ ॥
ଏମନ୍ତ ଭାଳିଣ ଅଇଲେ ମାତୃଗଣ ।
ଶ୍ରୀରାମର ଛାମୁରେ କରନ୍ତି ତିଆରଣ ॥
ଶୁଣ ବାବୁ ଶ୍ରୀରାମ ଆମ୍ଭର ସିଦ୍ଧାନ୍ତ ।
ପରଲୋକ ହୋଇଲେ ଆମ୍ଭ ନିଜ କାନ୍ତ ॥
ତୁ ଯେ ବନ ଗଲୁ ଲକ୍ଷ୍ମଣକୁ ଘେନି ।
ଆବର ହିଂ ନେଲୁ ଜନେକ ନନ୍ଦିନୀ ॥୭୦
ଭରଥ ଶତ୍ରୁଘନ ନୋହିଲେ ଏଥିରେ ରାଜା ।
ନିରେଖି ହୋଇଥିଲେ ଅଯୋଧ୍ୟା ଜନ ପ୍ରଜା ॥
ତେଣୁ କରି ଅଗ୍ନିରେ ନ ପଶିଲୁ ଆମ୍ଭେ ।
ଏବେ ତ ରାଜ୍ୟ ଭାର ବହିଅଛି ତୁମ୍ଭେ ॥
ପୁତ୍ରଙ୍କର ପୁତ୍ର ଆମ୍ଭେ ଦେଖିଲୁ ନୟନେ ।
ଏବେ ସ୍ୱାମୀ କାର୍ଯ୍ୟ ନ କରିବୁ କେସନେ ॥
ଜାନେକୀର ପ୍ରାୟେ ଜ୍ୟେଷ୍ଠ ବୋହୂ ଗଲା ।
ଏକଥାହିଂ ଆମ୍ଭଙ୍କୁ ଭଲ ହିଂ ନୋହିଲା ॥
ପଶିବୁ ହୁତାଶନେ ନ ପାରୁ ଆଉ ରହି ।
ଏଣିକି ବ୍ରତିବାର ଆମ୍ଭଙ୍କୁ ଭଲ ନୋହି ॥୮୦
ତୁ ଏବେ କ୍ଷେମେ ବାବୁ ରାଜ୍ୟ କରୁଥାଅ ।
ପ୍ରତିପାଳୁଥାଅ ସୀତୟାର ବେନିପୁଅ ॥
ଭାଇମାନନ୍ତ ବାବୁ ସ୍ନେହ କରିଥିବୁ ।
ମନ୍ତ୍ରୀ ଅମନାତ୍ୟଙ୍କୁ ମନ୍ଦ ସେ ନ ବୋଲିବୁ ॥
ବଶିଷ୍ଠଙ୍କ ବୋଲ ଧରିଥିବୁ ଶିରେ ।
ରାଜ୍ୟଭାର ଦେବୁ ସୁମନ୍ତ ଉପରେ ॥
ପରଜା ପାଳିବୁ ତୁ ପୁତ୍ର ସମ କରି ।
ହୋମ କରାଇବୁ ବ୍ରାହ୍ମଣନ୍ତ ବରି ॥
ଦେବତାଙ୍କୁ ପୂଜା ଦରିଦ୍ରଙ୍କୁ ଦାନ ।
ଶତ୍ରୁର କଥାକୁ ତୁ ହେବୁ ସାବଧାନ ॥୯୦
ତୋତେ କିସ ତିଆରିବୁ ନ ଜାଣନ୍ତୁ କାହା ।
ତୋହୋର ଅନ୍ତେଣ ପୁତ୍ରକୁ କରିବୁ
ନଗନାହା ॥
ପୁତୁରାମାନଙ୍କୁ ବାଣ୍ଟିଣ ରାଜ୍ୟ ଦେବୁ ।
ସୁସେବକମାନଙ୍କୁ ଦୟା କରିଥିବୁ ॥
ଏସନେକ ଭାଳୁ ସେ ବଶିଷ୍ଠ ମହାଋଷି ।
ସୁମନ୍ତ ସହିତେ ମିଳିଗଲେ ଆସି ॥
ଭରଥ ଲକ୍ଷ୍ମଣ ଶ୍ରୀରାମଙ୍କୁ ଦ୍ରଶନ କଲେ ।
ଶତ୍ରୁଘନ ଅଇଲେ ବୋଲି ଡଗର କହିଲେ ॥
ଏସନ ସମୟେ ଲବଣ ଅଇରି ।
ରଘୁନାଥ ଛାମୁରେ ପ୍ରଣମ୍ୟ
ଯାଇକରି ॥୧୦୦
ଏକଠାବ ହୋଇଣ ଭାଳନ୍ତି ସର୍ବେ ମିଳି ।
ସମସ୍ତଙ୍କୁ ବୁଝାନ୍ତି ବଶିଷ୍ଠ ତପଶାଳୀ ॥
ବୋଇଲେ ଏକଥା ଗୋଟି ଅଟଇ ଉଚିତ ।
କର ଅଗ୍ନି ଆରୋପଣ ପଶନ୍ତୁ ସର୍ବମାତ ॥
ଶ୍ରୀରାମ ଆଗ୍ୟାଂ ଦେଲେ ସୁମନ୍ତ ମନ୍ତ୍ରୀବର ।
ସରଯୁ ନଦୀତୀରେ ଚିତା ଆରୋପଣ କର ॥

ଅଗର ଚନ୍ଦନ କାଠ ଜୋଇ ଜାଳ ।
ଫୁଲ ବସ୍ତ୍ର ଚାମର ଉପରେ ନେଇଂ ଢାଳ ॥
ଶୁଣିଣ ସୁମନ୍ତ ଯେ କଲାକ ସର୍ବସିଧି ।
ଅଗ୍ନି ଆରୋପଣ ଯେସନେକ ବିଧି ॥୧୦
ସ୍ନାନସାରି ସଜ ହୋଇଲେ ସର୍ବମାଏ ।
ଅନେକ ଧନ ବସ୍ତ୍ର ଦେଲେକ ରାମରାଏ ॥
ଆତ୍ମାଘାତେକ ନିମନ୍ତେ ବହୁତ ଦେଲେ
ଦାନ ।
କର୍ମକୁ ଆଦରଣ କଲେ ରଘୁନାନ ॥
ଶୁକଳ ବସ୍ତ୍ର ପିନ୍ଧିଣ ଉପରାଣ କରି ।
ଶ୍ରୀଫଳ ପୁଷ୍ପ ତଣ୍ଡୁଳ କରେଣ ଛନ୍ତି ଧରି ॥
ବଧୂଙ୍କୁ ପ୍ରବୋଧି ସଖୀଙ୍କି ତିଆରି ।
କାନ୍ଦିବା ଲୋକଙ୍କୁ ସନମାନ କରି ॥
ନବର ଭିତରୁ ହୋଇଲେ ବାହାର ।
ଅଯୋଧ୍ୟାର ଲୋକେ କରନ୍ତି
ହାହାକାର ॥୨୦
ଶ୍ରୀରାମ ଲକ୍ଷ୍ମଣ ଭରଥ ଶତ୍ରୁଘନ ।
ବଶିଷ୍ଠ ଜାବାଳି କଶ୍ୟପ ତପୀଜନ ॥
ସୁମନ୍ତ ସହିତେ ଗୋଡ଼ାଇଣ ଛନ୍ତି ।
ବାଟେଣ ଯାଉଂ ଯାଉଂ କୁସୁମ ବିଞ୍ଚନ୍ତି ॥
ନବରତ୍ନ ବୃଷ୍ଟି କରନ୍ତି ରାଜଦାଣ୍ଡେ ।
ଶ୍ରୀରାମ ଜନନୀ ଚଳନ୍ତି ଏକ ଗୁଣ୍ଡେ ॥
ଆଗରେ ବୀରତୂର ବାଜଇ ଶଙ୍ଖଧ୍ୱନି ।
ସରଯୁ ନଦୀ ତୀରେ ମିଳିଲେ କାମେନୀ ॥
ରଥ ଗଜ ଘୋଡ଼ା ଅସମ୍ଭବ ଥାଠ ।
ଗୋଡ଼ାଇ ଯାଉଛନ୍ତି ଅଯୋଧ୍ୟା
ସମରାଷ୍ଟ୍ର ॥୩୦
ଦେଖିଲେ ଜଳଇ ପ୍ରଚଣ୍ଡ ହୁତାଶନ ।
ଯେ ଯାହାର ଜୋଇ ସେ ଆବୋରିଲେ
ରାଣୀମାନ ॥
ବଶିଷ୍ଠ ମହାମୁନି ବାକ୍ୟ କରାଇଲେ ।
ଅଷ୍ଟାଦଶ ଜାତିକି ଧନ ବିଳୋହିଲେ ॥
ଶ୍ରୀରାମ ମୁଖ ଚାହିଂଣ ବୋଇଲେ
କଉଶଲ୍ୟା ।
ଦଶଦିଗପାଳଙ୍କୁ ଓଳେଗ ମେଳାଇଲା ॥

ବୋଇଲା ଚନ୍ଦ୍ର ସୂର୍ଯ୍ୟ ମୋହୋର ବୋଲ
ଶୁଣ ।
ନିଜ ସ୍ୱାମୀ ମୋହୋର ଦଶରଥ ରାଜନ ॥
ପୁତ୍ରଙ୍କୁ ନ ଦେଖିଣ ହାରିଲେ ଜୀବିତୀ ।
ମୁହିଂ ତାହାଙ୍କର ଜ୍ୟେଷ୍ଠ ଅଟଇ
ପ୍ରିଏବନ୍ତୀ ॥୪୦
ସ୍ୱାମୀର ସଂଗତେ ସେ କାଳେ ନ ଗଲି ।
ପୁତ୍ରନ୍ତ ଦେଖିବି ବୋଲି ଜୀବନ ଧରିଥିଲି ॥
ଏବେ ତନଏ ମିଳିଲା ମୋହୋର ଆସି ।
ଦେଖିଣ ଦୋଷକୃତ ପକାଇଲା ନାଶି ॥
ଏ ମୋହୋର ଜୀବନ ମଣିଲଇ ମହାସୁଖ ।
ପୁତ୍ରଙ୍କର ପୁତ୍ର ଚାହିଂଲଇଂ ମୁଖ ॥
ଏବେ ସ୍ୱାମୀ କାର୍ଯ୍ୟ କରୁଅଛି ମୁହିଂ ।
ପ୍ରଭୁଙ୍କ ପାଦୁକା ଯତ୍ନେ ଥୋଇଣ ଥିଲଇଂ ॥
ତାହାଘେନି ତ ମୁଂ ପଶିବି ହୁତାଶନେ ।
ସାକ୍ଷ୍ୟ ହୋଇଥାଅ ଦିଗପାଳମାନେ ॥୫୦
ଏତେ ବୋଲି ତିନିବେଳ ପ୍ରଦକ୍ଷିଣ କଲା ।
ଶ୍ରୀରାମର ମୁଖ ଚାହିଂ ଅଗ୍ନିରେ ପଶିଲା ॥
କଯେକୟା ଚାହିଁଣତ ହୋଇଲେ ଆରତ ।
ଦଶଦିଗକଇ ଚାହିଂ ଓଳଗଇ ଭରଥମାତ ॥
ରାଜାର ତଡ଼ପ ଘେନି ଅଗ୍ନିରେ ଝାସ
ଦେଲା ।
ବନମାଳା ଘେନିଣ ସୁମିତ୍ରା ପଶିଲା ॥
କେହୁ ବିଞ୍ଚଣୀ କେହୁ ଚାମର ଘେନି ପଶି ।
କେହୁ ରତ୍ନମାଳା ଘେନି ଅଗ୍ନିରେଣ ଝାସି ॥
ସାତଶ ପଞ୍ଚାଶ ଯେ ମହାଦେଈମାନ ।
ସବିହେଂ ସାଇତିଥିଲେ ନୃପତିର ଚିହ୍ନ ॥୬୦
ବେଳ କାଳ ଜାଣିଣ ଅଗ୍ନିରେ ଝାସ
ଦେଲେ ।
ସ୍ୟତୀ ସଙ୍ଗତେ ସେ ଗଣିତା ହୋଇଲେ ॥
କଶ୍ୟପ ଋଷିଙ୍କର ଭାରିଯା ଅଦିତି ।
ସେ ସେ ଧରିଥିଲେ ସାତଶ ପଚାଶ ମୂରତି ॥
ଅଗ୍ନିରେ ଦେହ ଦହି ହୋଇଲେ ଏକ କାଏ ।
ନିଜ ରୂପ ଧରି ସେହୁ ସୁରପୁର ଯାଏ ॥
କଶ୍ୟପ ମହଋଷି ଦଶରଥ ହୋଇଲା ।

ପୁତ୍ର ଉପୁଜାଙ୍କ ନିଜ ପୁରେ ଗଲା ॥
ଆପଣାର ରୂପ ହୋଇଲାକ ତହିଂ ।
ଅଦିତି ଛାମୁରେ ମିଳିଲାକ ଯାଇଂ ॥୭୦
ଦେଖିଣ କଶ୍ୟପ ଋଷି ସନ୍ତୋଷ ହୋଇଲେ ।
ସମାଜନା କରି ତାକୁ ପାଖରେ ବସାଇଲେ ॥
ଏଥିଅନନ୍ତରେ ଶୁଣଗୋ ପାର୍ବତୀ ।
ଅଗ୍ନିରେ ପଶିଲେ ଦଶରଥ ଯୁବତୀ ॥
ଦେଖିଣ ପୁତ୍ରମାନେ ବହୁତ ଶୋକକଲେ ।
ବଶିଷ୍ଠ ତିଆରନ୍ତେ ଶୋକ ସମ୍ଭାଳିଲେ ॥
କଉଶଲ୍ୟାଙ୍କୁ ମୁଖାଗ୍ନି ଦେଲେକ ରାମରାଣ ।
କକେୟାଙ୍କୁ ଭରଥ ସୁମଇତ୍ରାଙ୍କୁ ଲକ୍ଷ୍ମଣ ॥
ଆବର ଜନନୀମାନଙ୍କୁ ଶତ୍ରୁଘନ ଦେଲା ।
ଏକ କ୍ରିୟା କରି ତା ବଶିଷ୍ଠ ଘେନିଲା ॥୮୦
ଶବଦାହ ସ୍ନାହାନ କରି ବାହୁଡ଼ନ୍ତି ।
ମୃତ୍ତିକା ଘର ବେଭାର ଆଚରନ୍ତି ॥
ଅନ୍ନ ବସ୍ତ୍ର ତଇଳ ବହୁତ ବିପ୍ରେ
ବଳୋହିଲେ ।
ବ୍ରାହ୍ମଣଙ୍କ ଗୋଚରେ ଶୀତଳ ମଣୋହି
କରାଇଲେ ॥
ଦଶଦିନେ କ୍ଷୌର ନବୀନ ବସ୍ତ୍ର ପିନ୍ଧି ।
ଘୃତ ଭୁଞ୍ଜନ୍ତି ସେହୁଂ ଅଛଇ ପୂର୍ବ ବିଧି ॥
ଦ୍ୱାଦଶ ଦିନରେ ହୋଇଲେ ଶୁଦ୍ଧ କାୟେ ।
ଏଥିଅନନ୍ତରେ ଶ୍ରୀରାମଚନ୍ଦ୍ର ରାଏ ॥
ରାଜ୍ୟ କରୁଥାନ୍ତି ମନେ ସୁସ୍ଥ ନାହିଂ ।
ପିତା ଗଲା ଏବେ ମାତାଙ୍କୁ ହରାଇଂ ॥୯୦
ଏମନ୍ତେ ସମ୍ୱତ୍ସର ହୋଇଲା ପ୍ରବେଶ ।
ବରଷକୀ କ୍ରିୟା ବିଧି କଲେ ଯିସ ଯିସ ॥
ରଦ୍ର କହନ୍ତି ତୁମ୍ଭେ ପାର୍ବତୀ ଦେବୀ ଶୁଣ ।
କେତେହେଂକ ଦିନେ ଅଇଲା ଏକ ଜଣ ॥
ରଘୁବର ଆରୋହି ସଙ୍ଗତେ ବହୁତ ସନ୍ୟ ।
ଅଯୋଧ୍ୟାରେ ପ୍ରବେଶି ଭେଟିଲେ
ରଘୁନାନ ॥
ରଥରୁ ଓହ୍ଲାଇ ପୁଣ ଆସ୍ଥାନକୁ ଗଲା ।
ଶ୍ରୀରାମ ଛାମୁରେ ମିଳି କଲ୍ୟାଣ ବାଞ୍ଛିଲା ॥
ବୋଇଲା ଭୋ ନାଥ ମୋହୋର ବୋଲ
ଶୁଣ ।

ଇକ୍ଷାକୃରୁ ରାଜାର ମୁଂ ପ୍ରୋହିତ
ବ୍ରାହ୍ମଣ ॥୧୦୦
ରାଜା ପେଶିଲା ମୋତେ ତୋହୋରର
ତହିଂକି ।
ଶୁଣିମା ସାବଧାନେ ମୁଂ ଅଇଲି ଯହିଂକି ॥
ସିନ୍ଧୁଦେଶ ଦକ୍ଷିଣ ସିନ୍ଧୁ ନାମେ ପୁରୀ ।
ବ୍ରହ୍ମଦୈତ୍ୟ ତହିଂରେ ନୃପତି ପଣ କରି ॥
ସେହି ସିନ୍ଧୁ ଦେଶ ଉତ୍ତର ତୀର କତି ।
ନଗ୍ରେକ ଅଛଇ ତାର ନାମ ପୁଷ୍ପବତୀ ॥
ଗନ୍ଧର୍ବ ରାଜା ତହିଂ ତିନିକୋଟି ବଳ ।
ସେ ଦୁଇ ଦେଶ ସ୍ୱାମୀ ଘେନିମା ରଘୁବାଳ ॥
ସୁଲଭ ଥାନ ତହିଂ ସୁଲଭ ଦବ୍ୟ ପାଇ ।
ପୃଥୀର ମଧ୍ୟରେ ଅଟଇ ସାର ମହୀ ॥୧୦
ଶୁଣିଣ ରଘୁନାଥ ତହିଂ ଭ୍ରଥକୁ ରାଇଲେ ।
ମଉଳା ତୋର ଦୂତ ପେଷିଛି ବୋଇଲେ ॥
ଦକ୍ଷିଣଶିଳା ପୁଷ୍ପବତୀ ବୋଲି ଦୁଇ ପୁରୀ ।
ବ୍ରହ୍ମଦୈତ୍ୟ ତହିଂ ବଳେ ରାଜ୍ୟ କରି ॥
ଆରେକ ରାଜ୍ୟରେ ସେ ଗନ୍ଧର୍ବ ନୃପବର ।
ସେ ଦୁଇଦେଶ ଏବେ ଘେନିମା ଆମ୍ଭର ॥
ତୋହୋର ଦୁଇପୁତ୍ରକୁ କର ତହିଂ ରାଜା ।
ଥାଟ ଘେନି ବେଗେଣ ତୁ ଏହିକ୍ଷଣି ଯା
ଯା ॥
ଶୁଣିଣ ଭ୍ରଥବୀର ଆନନ୍ଦ ହୋଇଲା ।
ମଉଳା ପ୍ରୋହିତକୁ ଗଉରୋବ କଲା ॥୨୦
କଥାନ୍ତ ପଚାରି ଥାଠ ସଜ କରି ।
ରାମଙ୍କୁ ଦ୍ରଶନ କଲା ପୁତ୍ରଙ୍କ କର ଧରି ॥
ରଘୁନାଥ ବୋଇଲେ ତୁ ଯାସି ଏହିକ୍ଷଣ ।
ପୁତ୍ରଙ୍କୁ ରାଜ୍ୟ ଦେଇ ଆସ ତୁ ପଛେଣ ॥
ଏତେକ ବୋଲି ରାଘେବ ଶାଢ଼ୀ ଖଣ୍ଡା
ଦେଲେ ।
ଓଳଗ ମେଲାଇ ପୁଣ ତିନିଜଣ ଗଲେ ॥
ସିଂହଦ୍ୱାରେ ଯାଇଂଣ ଆରୋହିଲେ ଯାନ ।
ସମ୍ଭର୍ବ ହୋଇଣ ଚଳଇ ମାହାସନ୍ୟ ॥
ସାତଦିନେ ଯାଇଂଣ କକଇ ଦେଶ ପାଇ ।
ଶୁଣିଣ କକଇ ଭ୍ରଥକୁ ପାଛୋଟିଣ
ଆସଇ ॥୩୦
ରଜନୀ ପ୍ରଭାତେ ଥାଟ ସଜ କରି ଗଲା ।
ପୁରରେ ଗୁହାଇ ତାକୁ ଗଉରୋବ କଲା ॥
ଦୁଇରାଜାଙ୍କର ସନ୍ୟ ମିଶା ମିଶି ।
ତକ୍ଷ ପୁଷ୍ପର ସହିତେ ସାଂଗ୍ରାମକୁ ଆସି ॥
ଶିଳା ନାମେ ପୁରେ ପଶିଲେ ଝସାଇ ।
ବ୍ରହ୍ମ ଦତ୍ୟକୁ ସେ ଓଗାଳିଲେ ଯାଇଂ ॥
ବ୍ରହ୍ମରାକ୍ଷସ ମନେ ପୁଣ ବିଚାରଇ ।
ମନୁଷ୍ୟ ସଇନି ତାର ଭଏଣ ପଳାଇ ॥
ଯୁଧ୍ୟରେ ମଲେ ଆମ୍ଭଙ୍କୁ ଯୋଗାଇ
ବୋଇଲେ ।
ଭ୍ରଥର ସନ୍ୟକୁ ମାରିତ ଗୋଡ଼ାଇଲେ ॥୪୦
ଦେଖିଣ ଭ୍ରଥ ବୀର ଆଗେ ଓଗାଳିଲେ ।
ମହାଘୋର କରିଣ ସାଂଗ୍ରାମ ଆରମ୍ଭିଲେ ॥
ଆଗିଆଣି ହୋଇଣ ସେ ଦୁଇପୁତ୍ର ଥିଲେ ।
ବ୍ରହ୍ମଦତ୍ୟକୁ ଓଗାଳି ନାରାଜ ବିନ୍ଧିଲେ ॥
ଶହସ୍ର ପେଷି ତାହାର ଛିନାଇଲେ ମୁଣ୍ଡ ।
ଅନାଥ ହୋଇଂ ତାହାର ପଡ଼ିଲାକ ପିଣ୍ଡ
ଖଣ୍ଡ ॥
ରାଜାର ପଡ଼ନ୍ତେଣ ମନ୍ତ୍ରୀଗଣମାନେ ।
ଭ୍ରଥକୁ ଆସି ପୂଜା କଲେକ ସର୍ବଜନେ ॥
ସେବକ ସହିତେ ତାର ପିଠିରେ ଲଗାଇ ।
ପୁଷ୍ୟବତୀ ନଗ୍ରେ ଭେଟିଲାକ ଭ୍ରଥ
ଯାଇ ॥୫୦
ଜାଣିଣ ଗନ୍ଧର୍ବେ ବହୁତ ଯୁଦ୍ଧ କଲେ ।
ଛେଲ ଚକ୍ର ନାରାଜ କୋନ୍ତ ମାଇଲେ ॥
ଭ୍ରଥ ଆଗସରି କଲାକ ସମର ।
ଆଗେ ସାହା ଅଛନ୍ତି ବେନି ଯେ କୁମର ॥
ମଉଳା ଯୋଧାଙ୍କୁରକୁ ଘେନିଣ ରଣେ
ପଶି ।
ଶ୍ରାବଣ ବରଷା ଜାଣି ନାରାଜ ବରଷି ॥
ଏମନ୍ତେଣ ସାତରାତ୍ର ସାତଦିନ ଯୁଦ୍ଧ ।
ରକତ ନଦୀ ଯେ ବହିଲା ରଣ ମଧ୍ୟ ॥
ଗନ୍ଧର୍ବେ ବଳୀଆର ସେ ନ ଘୁଞ୍ଚନ୍ତି ପଏ ।
ବେଳୁଂ ବେଳ ତହିଂ ଅନେକ ଯୁଦ୍ଧ
ହୋଏ ॥୬୦
କୋପେଣ କକୟାର ତନୟେ ପ୍ରଚଣ୍ଡ ।
ଧନୁରେ ଯୋଚିଲେକ ଅପୂର୍ବ ଏକ କାଣ୍ଡ ॥
ଯେଉଂଣ ଶରେ ପଦ୍ମନ ଶମ୍ଭରକଇ ମାରି ।
ସେ ଅସ୍ତ୍ର ଭ୍ରଥକୁ ଦେଇଥିଲେ ତ୍ରିପୁରାରି ॥
ପଛେଣ ପଦ୍ମନକୁ ସେ ସଦାଶିବ ଦେଲେ ।
ଭ୍ରଥ ଅତି ଯତ୍ନ କରି ଭଣ୍ଡାରେ ଥୁଆଇଲେ ॥
ସେ ଅସ୍ତ୍ର ଭ୍ରଥ ବୀର ମନ୍ତ୍ରିଣ ଛାଡ଼ିଦେଲା ।
ତିନିକୋଟି ଗନ୍ଧର୍ବ ଏକାବେଳେକେ ମଲା ॥
ରାଜ୍ୟର ପରଜାଏ ଭ୍ରଥକୁ ସେବାକଲେ ।
ଏ ରାଜ୍ୟେ ନୃପତି ତୁ ହୁଅସି
ବୋଇଲେ ॥୭୦
ଶୁଣି କଏକଇ ଉଷତ ହୋଇଲା ।
ପୁଷ୍ପବତୀ ନଗ୍ରରେ ପୁଷ୍କକୁ ରାଜା କଲା ॥
ଦକ୍ଷିଣ ଶିଳା କଟକେ ଦକ୍ଷ କୁମାର ରାଜନ
ହୋଇ ।
ବାଣ୍ଟିଣ ସନ୍ୟକୁହିଂ ଭଣ୍ଡାରୁ ଧନ ଦେଇଂ ॥
ଆପଣେ ସାତ ପାଞ୍ଚ ବରଷ ସେ ପୁରରେ
ରହିଲା ।
ଶତ୍ରୁମାରି ଅକଣ୍ଟେକ ରାଜ୍ୟ ଭିଆଇଲା ॥
ଶ୍ରୀରାମଙ୍କୁ ପୁଣ ଦ୍ରଶନ କଲାକ ଆସି ।
ବୋଲନ୍ତି ସଦାଶିବୁ ଶୁଣଗୋ ବିନ୍ଧ୍ୟଂଗିରି
ବାସୀ ॥
ଶୁଣି ରଘୁନାଥ ମନରେ ବିଚାରି ।
ଲକ୍ଷଣ ବୀରକୁ ସେ ସନ୍ନିଧ୍ୟେ ହକାରି ॥୮୦
ବୋଇଲେ ସଉମିତ୍ରୀ ଶୁଣ ମୋର ବାଣୀ ।
ଭ୍ରଥର ପୁତ୍ରଙ୍କୁ କଲଇଂ ନୃପମଣି ॥
ମଧୁବନ ରାଜ୍ୟତ ଘେନିଲା ଶତ୍ରୁଘନ ।
ତହିଂ ରାଜା କଲା ତାହାର ଦୁଇ ନାନ ॥
ତୋହୋର ପୁତ୍ରକଇ ଦଶକାଳ ଦେଶ
ଦେଲୁ ।
ଆବର ଚନ୍ଦ୍ର କେଳି ନଗ୍ର ସମର୍ପିଲୁ ॥
ଯେ ତହିଂର ରାଜା ପଳାଇଲା ଛାଡ଼ି ।
ରାବଣର ଲୋକେ ତାହା ବସିଥିଲେ ମାଡ଼ି ॥
ଦଶଗ୍ରୀବ ମଲା ଅସୁରେ ଗଲେ ଘୁଞ୍ଚ ।
ମୋହୋର ଭଏ ଅସୁରେ ରହିଲେ
ଲୁଚି ॥୯୦

ବିଭୀଷେଣ ଯହୁଁ ଲଙ୍କାରେ ରାଜା ହୋଇ ।
ଅସୁର ବଳ ତାଙ୍କୁ ଆଶ୍ରେ କଲେ ଯାଇଂ ॥
ସେଦିନୁ କଟେକ ହୋଇଅଛି ଶୂନ୍ୟ ।
ଆମ୍ଭକୁ ଲୋଡ଼ା କଲେ ତହିଂର ପ୍ରଜାମାନ ॥
ପୂର୍ବେ ରାଜା ତାଙ୍କର ପଳାଇଣ ଗଲା ।
ଅପୁତ୍ରିକ ହୋଇ ରାଜା ବନସ୍ତରେ ମଲା ॥
ତୁଚ୍ଛା ହୋଇଣ ଅଛଇ ସେହୁପୁର ।
ତହିଂ ରାଜା କର ତୋହୋର କୁମର ॥
ଚତୁରାଙ୍ଗ ବଳ ଘେନିଣ ଏବେ ଯାସି ।
ପୁତ୍ରମାନଙ୍କୁ ତହିଂରେ ବସାଇଂ
ଆସି ॥୧୦୦
ଏମନ୍ତ ବୋଲି କୁମାରମାନନ୍ତ ଅଣାଇଲେ ।
କୋଳେ ବସାଇଣ ମୁଖେ ଚୁମ୍ବନ ଦେଲେ ॥
ଅନେକ ତିଆରିଣ ଦେଲେ ଖଣ୍ଡା ଶାଢ଼ୀ ।
ବୋଇଲେ ବାବୁରେ ହୁଅସି ଦଣ୍ଡଧାରୀ ॥
ଦଶକାଳ ଦେଶ ଚନ୍ଦ୍ରକେଳି ଦୋହେଂ
ଦେଶ ।
ତହିଂରେ ରାଜା ହୋଇଂଣ ଭୋଗ ବିଳସ ॥
ଏତେ ବୋଲି ବସ୍ତ୍ର ଅଳଂକାର ଦେଲେ ।
ଆପଣାର ଲାଗି ଦୁଇ ବାଗୁ ଅଣାଇଲେ ॥
ଆବର ଦୁଇ ହସ୍ତୀ ଅଣାଇଲେ ବାଛି ।
ପୁତ୍ରମାନନ୍ତ ତାହା ଦେଲେ ରଘୁବଛି ॥୧୦
ଶିରେ ପାଗ ବାନ୍ଧି ହାତେ ଖଣ୍ଡା ଦେଲେ ।
ପୁଅନ୍ତ ଘେନିଯାଅ ଲକ୍ଷଣଙ୍କୁ ବୋଇଲେ ॥
ଶୁଣିଣ ସଉମିତ୍ରୀ କଲାକ ନମସ୍କାର ।
ଆବର ଓଳଗିଲେ ବେନି କୁମର ॥
ଶ୍ରୀରାମ ଆଗ୍ୟାଂଏ ଅନକୂଳ ଘେନିଗଲେ ।
ସିଂହଦ୍ୱାରେ ଯାଇଂ ଯାନ ଆରୋହିଲେ ॥
ଚତୁରାଙ୍ଗ ବଳ କଳଣା ନ ଯାଇ ।
ଲକ୍ଷଣ ଦିଗ ବିଜେ କଲେକ କଟକାଇ ॥
ପାଞ୍ଚଦିନେ ସେ ଯାଇଂ ଦଶ କାଳଦେଶେ
ହୋଇଂ ।
ପରଜାଏ ଆନନ୍ଦ ଦେଖିବାକୁ ଯାଇଂ ॥୨୦
ମନ୍ତ୍ରୀ ଅମନାତ୍ୟ ଦ୍ରଶନ ଆସି କଲେ ।
ରାଜ୍ୟର ପାତ୍ର ଆମ୍ଭେତ ବୋଲିଣ
ବୋଇଲେ ॥

ଶୁଣିଣ ଲକ୍ଷଣ ତାଙ୍କୁ ଗଉରୋବ କଲେ ।
ରାଜ୍ୟର ବେଭାର ସମସ୍ତ ପଚାରିଲେ ॥
ତହିଂ ଦଶଦିନ କଲେକ ରହଣି ।
ଅଙ୍ଗଦ କୁମାରକୁ ତହିଂ କଲେ ନୃପମଣି ॥
ରଥ ଗଜ ଅଶ୍ୱ ପାଦାନ୍ତି ଅନେକ ।
ଆପଣେ ସଞ୍ଚପି ବସାଇଲେ କଟେକ ॥
ସଙ୍ଗେ ପୁରାତନ ଅମନାତ୍ୟ ମନ୍ତ୍ରୀଗଣ ।
ତହୁଁ କଟକାଇକରି ଗଲାକ ଲକ୍ଷଣ ॥୩୦
ଚନ୍ଦ୍ରକେଳି ଦେଶେ ପ୍ରବେଶ ହୋଇଲେ ।
ତହିଂରେ ପୁତ୍ରମାନଙ୍କୁ ଗଉରୋବ କଲେ ॥
ରାଜ୍ୟ କଥା ପୁଚ୍ଛି ରହିଲେ ତିନିଦିନ ।
ଚନ୍ଦ୍ରକେତୁ କୁମରକୁ ତହିଂ କଲେକ
ରାଜନ ॥
ସଙ୍ଗେ ବଳ ଦେଇଂ ଅନେକ ତିଆରିଲେ ।
ଦୁଇ ରାଜ୍ୟେ ସେ ବରଷେ ରହିଲେ ॥
ଦଶକାଳ ଦେଶକୁ ଅଇଲେ
ଯେତେବେଳେ ।
ଦ୍ରଶନ କଲେ ଆସି ଅମନାତ୍ୟ ସକଳେ ॥
ନବରେ ପ୍ରବେଶ ହୋଇଂ ରାଜ୍ୟ ଚିନ୍ତା
କଲା ।
ଚାରିମାସ ରହିଂ ତହୁଁ ବାହୁଡ଼ି ଅଇଲା ॥୪୦
ଚନ୍ଦ୍ରକେଳି ଦେଶେ ହୋଇଲା ପ୍ରବେଶ ।
ତହିଂରେ ରହଣି ପୁଣି କଲେ ଚାରିମାସ ॥
ସେ ଦେଶ ଚରଚିଣ ପୁତ୍ରକୁ ତିଆରି ।
ବାହୁଡ଼ି ପ୍ରବେଶ ଦଶକାଳ ପୁରୀ ॥
ବାଇଶି ଦିନ ତହିଂରେ କଲେକ ରହଣି ।
ଅଯୋଧ୍ୟାକୁ ବାହୁଡ଼ି ଅଇଲେ ବୀରମଣି ॥
ଶ୍ରୀରାମର ପାଦେ ଦରଶନ ଆସି କଲେ ।
ରାଜ୍ୟର ବେଭାରମାନ ସମସ୍ତ କହିଲେ ॥
ଶୁଣି ରଘୁନାଥ ହୋଇଲେ ସନ୍ତୋଷ ।
ନୀଳଗିରି ଶରଣ ମୁଂ ବଳରାମ ଦାସ ॥୫୦
ଏଥୁଅନନ୍ତରେ ଏବେ ମାହାରସ ଶୁଣ ।
ସାମବେଦ ସମ୍ଭୂତ ଏ ରାମାଏଣ ପୁରାଣ ॥
ଯେ ଏହାକୁ ଏକମନେ ପଢ଼ନ୍ତି ଶୁଣନ୍ତି ।
ମନେ ଯିସ ବାଞ୍ଛା ସେ ଫଳ ପାଆନ୍ତି ॥

ବିଷ୍ଣୁର ଚରିତ ଏ ବାଲମ୍ଭିକ ମୁନି କଲେ ।
ପାର୍ବତୀଙ୍କ ଆଗେ ଏହା ଶଙ୍କର କହିଲେ ॥
ଶୁଣ ଗିରିଜା ଗୋ ଏଥୁ ଅନନ୍ତରେ ।
ଜାନେକୀ ପଶିଲା ଯାଇଂ ପାତାଳ ଭିତରେ ॥
ପୃଥୀଦେବୀ ଆସି ତାଙ୍କୁ ଘେନିଗଲା ।
କମଳଧ୍ୱଜ ବିବାନେ ବସାଇଣ
ନେଲା ॥୬୦
ପଦ୍ମେକ ପଦ୍ମନୀ କନ୍ୟା ସୁନ୍ଦର ଯୁବତୀ ।
ଉପହାର ଘେନିଣ ସନ୍ନିଧ୍ୟେ ଖଟିଛନ୍ତି ॥
ଆପଣେ ବସୁମତୀ ବିବାନ ଆରୋହି ।
ପଟୋଆର ପଡ଼ି ଆସଇ ପଛ ହୋଇ ॥
ଉପରେଣ ବାସୁକିର ଫେଣା ଛତ୍ରଛାୟା ।
ମଧ୍ୟେ ରତ୍ନ ଯାନେ ଚଳଇ ସୀତୟା ॥
ଆଗେଣ ଡାହାଣାବ୍ରତେକ ଶଙ୍ଖ ଧ୍ୱନି ।
ହୁଳହୁଳି ଦିଅନ୍ତି ସୁଲଭ କାମେନୀ ॥
ପାତାଳ ଲୋକେ ବେଢ଼ି ଦେଖୁଛନ୍ତି ।
ଏ ସେ ମହାଲକ୍ଷ୍ମୀ ବୋଲିଣ ବୋଲନ୍ତି ॥୭୦
ଧନ୍ୟ ଧନ୍ୟ ସୁନ୍ଦେରୀ ଗୋ ବିଷ୍ଣୁର
ପାଟରାଣୀ ।
ତୈଲୋକ୍ୟ ମୋହେନୀ ବ୍ରହ୍ମଣ୍ଡ ଠାକୁରାଣୀ ॥
ଅସୁର ଦଳିବୁ ବୋଲି ତୁ ମୃତୁପୁରେ ଥିଲୁ ।
ଆମ୍ଭେ ଦେଖିଲୁନି ଯେଉଂଦିନୁ ଗଲୁ ॥
ଏବେ ଅଇଲୁ ଗୋ ସଂସାର ଖେଳ ସାରି ।
ସଗୋତ୍ର ସହିତେ ରାବଣକୁ ମାରି ॥
ପୁତ୍ର ଉପୁଜାଇଂଲୁ ସନ୍ତତି ନିମନ୍ତେ ।
ସତୀ ବ୍ରତ ରଖିଲୁ ଅଇଲୁ ଅନମିତେ ॥
ଏତେ ବୋଲି ପୁଷ୍ପ ଅଞ୍ଜଳି ଦିଅନ୍ତି ।
ଦେଖିବାର ସଧେ ଗୋଡ଼ାଇ ଆସନ୍ତି ॥୮୦
ଜାନେକୀର ତେଜ କାନ୍ତି ଶତେ ଚନ୍ଦ୍ର ଜାଣି ।
ପାତାଳ ବାଟେ ବିଜେ କଲେକ
ଗୋସାମଣି ॥
କ୍ଷୀର ସିନ୍ଧୁ ମଧ୍ୟେ ହୋଇଲେ ପରବେଶ ।
ଗରୁଡ଼ ନମସ୍କାର କଲାକ ଆସି ପାଶ ॥
ରାବଣ କୁମ୍ଭକର୍ଣ୍ଣ ଅଛନ୍ତି ବେନି ଭାଇ ।
ଜଏ ବିଜଏ ରୂପ ଦେବତା ଦେହ ବହି ॥

ଜାନେକୀକି ଦେଖିଣ ପ୍ରକମ୍ପ କରି ଶୋଇ ।
ଉଠ ଉଠ ବୋଲି ତାଙ୍କୁ କମଳା ବୋଲଇ ॥
ନବରେ ପଶନ୍ତେ ପଡ଼ଇ ହୁଳ ହୁଳି ।
ଅର୍ଘ୍ୟ ଘେନି ଅଇଲେ ବ୍ରହ୍ମାର
ଦୁଲାଳୀ ॥୯୦
ସୁବର୍ଣ୍ଣ ଥାଳିରେ ଲକ୍ଷେକ ସୁବର୍ଣ୍ଣ ଭରି ।
ଧୂପଦୀପ ଅକ୍ଷତ ଦୁବ ସଜ କରି ॥
ବଇଦେହୀ ଶିରେ ସୁବର୍ଣ୍ଣ ନିଉଡ଼ିଲେ ।
ଷୋଡ଼ଶ ପ୍ରକାରେ ତାଙ୍କୁ ପୂଜା ବିଧି କଲେ ॥
ପୃଥୀଦେବୀ ଥିଲେ ଯେ ବିମାନ ଆରୋହି ।
ସୀତ୍ୟା ସନ୍ନିଧ୍ୟକୁ ଅଇଲେ ଓହ୍ଲାଇ ॥
ଯାନ୍ତେ ଜାନେକୀକି କୋଳକରି ନେଲା ।
ଦେଖି ସରସ୍ୱତୀ ନମସ୍କାର କଲା ॥
ବହୁତ ଦୁଃଖ ସଖିଗୋ ପାଇଲୁ ବୋଇଲେ ।
ଆଶ୍ୱାସନା କରି ପୁଣ ବିନୋଇ
କହିଲେ ॥୧୦୦
ସରସ୍ୱତୀ କି ବୋଇଲେ ଶୁଣସି ତୁଗୋ
ମାଏ ।
ନୋହିଲେ ସଂସାର ରକ୍ଷା କେହ୍ନେ ହୋଏ ॥
ଏତେ ବୋଲି ଭିତର ପୁରକଇ ଗଲେ ।
ଯେ ଯାହାର ସେବାରେ ସେ ଯାଇଣ
ଲାଗିଲେ ॥
ମାଜଣା ହୋଇଲେ ସେ ଜନେକ
ଦୋହିତା ।
ଦିବ୍ୟ ବେଶ ହୋଇ ବିଜଏ କଲେ ସୀତା ॥
ଶାରଦା ବୋଇଲେ ରାମ ଆସିବେ
କେତେବେଳେ ।
କି ସୁଖ ପାଇଣ ସେ ରହିଲେ ରବି ତଳେ ॥
ଜାନେକୀ ବୋଇଲେ ଏବେ ପେଷିବା ତାଙ୍କୁ
ଦୂତ ।
ଏକଥା ଦେବତାଙ୍କର ନୁହଇ ଉଚିତ ॥୧୦
ମୁହିଂତ ଅଇଲି ସ୍ୱାମୀ ତହିଂ କିମ୍ପା ଅଛି ।
ଆବର କାର୍ଯ୍ୟ ପୁଣ ନାହିଂ ତହିଂରେ କିଛି ॥
ଏତେ ବୋଲି ଗରୁଡ଼କୁ ପ୍ରମନ୍ତିଲେ ରାଇ ।
ଦେବତାମାନଙ୍କୁ ତୁ ବସାଇ କହ ଯାଇ ॥

ଯେ ତାହାଙ୍କରତ କାର୍ଯ୍ୟ ହୋଇଲା
ସର୍ବସିଧ୍ୟ ।
ଆଉ କିମ୍ପା ଠାକୁରେ ଥିବେ ପୃଥି ମଧ୍ୟ ॥
ବେଗେଣ ଆସନ୍ତୁ ଏବେ ନକରନ୍ତୁ ହେଳ ।
ନୋହିଲେଣ ଶାପ୍ୟ ପାଇବେ ଦିଗପାଳ ॥
ଆଗ୍ୟାଂ ପାଇଣ ଚଳିଗଲା ଖଗପତି ।
ମେରୁ ସଭାଏଣ ଦେବତାଏ ବସିଛନ୍ତି ॥୨୦
ନମସ୍କାର ହୋଇ ଜଣାଇଂଲା ଯାଇ ।
ଶୁଣ ତ୍ରିଦଶ ଦେବେ ମୁଂ ଅଇଲି ଯହିଂ
ପାଇଂ ॥
ତୈଲୋକ୍ୟର ଠାକୁରାଣୀ ବିଷ୍ଣୁର ପ୍ରିୟବତୀ ।
ସେ ମୋତେ ତୁମ୍ଭ ତହିଂକି ପେଷିଛନ୍ତି ॥
ନାରାୟଣ ସ୍ୱାମୀଙ୍କୁ ମଞ୍ଚେଣ ଜାତ କଲ ।
କାର୍ଯ୍ୟ ସରିଲା କିଂପା ଏଥିକୁ ନ ଆଣିଲ ॥
ତୁମ୍ଭର ଉଚିତ ଏ ନୋହେ ଦେବଗଣ ।
ଠାକୁର ଆସିବାକୁ କର ବିଚାରଣ ॥
ନୋହିଲେଣ ସମ୍ପଦ ନଥିବ କାହାରି ।
ମହାଲକ୍ଷ୍ମୀ କୋପେ ସରିବ ତୁମ୍ଭ ଶିରୀ ॥୩୦
ବ୍ରହ୍ମା ବୋଇଲେ ଗରୁଡ଼କୁ ପୁଣ ରାଇ ।
ଆଣିମା ଠାକୁରଙ୍କୁ ବହୁତ ଦିନ ନାହିଂ ॥
ତୁ ଯାଇ ଖଗେଶ୍ୱର ଗୋସାମଣୀ କି କହ ।
ତାହାର କୋପକୁ ଆମ୍ଭେ ନୋହୁ ରହ ॥
ସଂସାରର ହିତେ ମର୍ତ୍ତପୁରେ ଥିଲେ ।
ଭାରାଭର ଉଶ୍ୱାସି ନିଜ ପୁରକୁ ଗଲେ ॥
ତହିଂରେ ରହିଅଛନ୍ତି ରାଜ୍ୟ ସତ୍ତା କରି ।
ଏହି ନିକଟେଣ ଆସିବେ ମଧୁହାରୀ ॥
ଏତେ ବୋଲି ବ୍ରହ୍ମା ପଦ୍ମମାଳା ଦେଲେ ।
ଠାକୁରାଣୀ କଣ୍ଠେ ଏହା ଲମ୍ବାଅ
ବୋଇଲେ ॥୪୦
ଘେନିଣ ଖଗପତି ଆନନ୍ଦ ହୋଇ ଚଳି ।
କ୍ଷୀର ସମୁଦ୍ରେ ଯାଇ ସେ ତତକାଳେ ମିଳି ॥
ଜାନେକୀକି ଦେଖିକରି ନମସ୍କାର କଲା ।
ଯାବନ୍ତ କଥାମାନ ମଣାଇ କହିଲା ॥
ବ୍ରହ୍ମା ଦେଲେ ବୋଲି ପଦ୍ମମାଳା ଏକ
ଦେଇ ।

ଘେନି କମଳଣୀ ଆପଣା କଣ୍ଠରେ ଲମ୍ବାଇ ॥
ପଦ୍ମାଳୟା ନାମ ଗୋଟି ଅଟଇ ତାହାର ।
ଅକ୍ଷତ ବୋଲିଣ ତହିଂ ଦେଲେ ଉପହାର ॥
ଏସନେକ ବେଳେ ଚେତିଲେ ସରସ୍ୱତୀ ।
ଉଠିଣ ଭିତରକୁ ଗଲେକ ତଡ଼ତି ॥୫୦
ଲକ୍ଷ୍ମୀ ଯିବାବେଳେ ପଦ୍ମ ଦେଇ ଗଲେ ।
ସୀତ୍ୟା ରୂପେ ପଦ୍ମମାଳ ନ ଘେନିମି
ବୋଇଲେ ॥
କମଳ ଥିଲେଣ ଜାଣିମେ ନରନାରୀ ।
ତେଣୁ ପଦ୍ମ ଛାଡ଼ିଗଲେ ସିନ୍ଧୁର କୁମାରୀ ॥
ସରସ୍ୱତୀ ତାହା ସାଇତିଣ ଥିଲେ ।
ଏବେ କମଳାର କରେ ଆଣି ଦେଲେ ॥
ଦେଖିଣ ମହାଲକ୍ଷ୍ମୀ ବାମକରେ ଧରି ।
ସକଳ ନାରୀଗଣ ଜଏ ଜଏ କରି ॥
ଏଥୁ ଅନନ୍ତରେ ଶୁଣ ଶାକେମ୍ବରୀ ।
ସୁରଗଣ ଘେନି ଭାଳନ୍ତି କୁଶଧାରୀ ॥୬୦
କେମନ୍ତେ ଶ୍ରୀରାମ ଆସିବେ ବେଗ
ହୋଇଂ ।
କମଳା କୋପକୁତ ଭାର୍ଜନ କେହି ନାହିଂ ॥
ଏତେ ବୋଲି କାଳ ପୁରୁଷକୁ ହକାରି ।
ସନ୍ନିଧ୍ୟେ ବସାଇଣ କହନ୍ତି ତିଆରି ॥
ବୋଇଲେ ଏହିକ୍ଷଣି ମର୍ତ୍ତପୁର ଯିବୁ ।
ଅଯୋଧାରେ ଶ୍ରୀରାମକୁ ଏକାନ୍ତ ମାଗିବୁ ॥
ନିୟମ କରାଇ ଥିବୁ ଦୃଢ଼ କରି ।
ଭାଳିବା ଠାବକୁ ଯେ ଆସିବ ତାଂକୁ ମାରି ॥
ଗୁପତେ ରଘୁନାଥଙ୍କୁ କହିବ ଏମାନ ।
ବୋଲିବୁ ତୁମ୍ଭେ ସେ ଅଟ ଭଗବାନ ॥୭୦
ଜଗତର ହିତେ ରାବଣ ବଧ କଲୁ ।
ନିଜ ଆଶ୍ରମକୁ କିଂପାଇଂ ନ ଗଲୁ ॥
ଏତେକ ବୋଲି ତାଂକୁ ତିଆରିଣ ଆସ ।
ଶୁଣି କାଳପୁରୁଷ ହୋଇଲା ହରଷ ॥
ପ୍ରତିଗ୍ୟାଂ କରିଣ ସେହୁ ଅଇଲା ତହୁଂ ଚଳି ।
ବୋଇଲା ଏହିକ୍ଷଣି ଆଣିମି ବନମାଳୀ ॥
ଯୋଗବଳେ ଆସିଣ ଅଯୋଧା ପରବେଶ ।
ସିଂହଦ୍ୱାରେ ମିଳିଲା ବିକଟାଳ ବେଶ ॥

ନୟନ ରଙ୍ଗ ବର୍ଣ୍ଣ ସର୍ବାଙ୍ଗରେ କଳା ।
ପିଙ୍ଗଳ ଜଟାଭାର ଜିଣିଣ ବିଜୁମାଳା ॥୮୦
ଦୀର୍ଘ ଦାଢ଼ୀ ଗୋଟି ଶୁକଳ ବର୍ଣ୍ଣ ଦିଶି ।
ବିକଟାଳ ଦଶନ ଦୁତୀଆର ଶଶୀ ॥
ପେଟ ଖଙ୍କାଳ ଦିଶଇ ଶିରାମାନ ।
ଖର ନିଃଶ୍ୱାସ କି ପ୍ରଚଣ୍ଡ ପବନ ॥
କଷା ବସ୍ତ୍ର ପରିହରଣ ରଦ୍ରାକ୍ଷ କାଠମାଳ ।
ଦିବ୍ୟ କଳେବର କରେଣ କମଣ୍ଡଳ ॥
ଦେଖିଣ ଦ୍ୱାରପାଳ ଉଠିଲାକ ଭଏ ।
କାଳପୁରୁଷ ବୋଇଲେ ପ୍ରଚଣ୍ଡ କୋପ କୋହେ ॥
ଆରେ ପଡ଼ିଆରୀ ତୋ ରାଜାକୁ କହ ଯାଇଂ ।
କାଳିଞ୍ଜନ ମୁନି ଆମ୍ଭେ ଅଇଲୁ କାର୍ଯ୍ୟ ପାଇଂ ॥୯୦
ଶୁଣିଣ ଦ୍ୱାରପାଳ ଭିତରକୁ ଗଲା ।
ଲକ୍ଷଣର ଛାମୁରେ ଯାଇଣ ଜଣାଇଲା ॥
ଅପୂର୍ବ ମୁନିଏ ନାମ କାଳିଞ୍ଜନ ।
ବୋଇଲା ବେଗକରି ଜଣାଅ ରାଜନ ॥
ତାହାକୁ ଡରିଣ ମୁଂ ଅଇଲି ଗୋସାଇଂ ।
ଶୁଣିଣ ସଉମିତ୍ରୀ ରାମକୁ କହଇ ଯାଇ ॥
ଭୋଦେବ କାଳିଞ୍ଜନ ମୁନି ଆସିଛନ୍ତି ।
ଶୁଣି ରଘୁନାଥ ଅଣାଅ ବୋଲନ୍ତି ॥
ଆଗ୍ୟାଂ ପରମାଣେ ବୀର ଲକ୍ଷଣ ଅଇଲା ।
ସିଂହଦ୍ୱାରୁ ଆସି ଋଷିଙ୍କି ଘେନିଗଲା ॥୧୦୦
ଦେଖି ରଘୁନାଥ ଆସନୁ ଉଠିଲେ ।
ଆସନ ଦେଇଣ ମୁନିଙ୍କି ପୂଜା କଲେ ॥
କୁଶଳ ପୁଛା ପୁଛି ହୋଇ ବେନି ଜନ ।
ଶ୍ରୀରାମ ବୋଲନ୍ତି ତୁମ୍ଭେ ଶୁଣ କାଳିଞ୍ଜନ ॥
କେବଣ ହିଂ କାରଣେ ଅଇଲୁ ମୁନି ଏଥ ।
ତପୀ ବୋଇଲେ ତୁମ୍ଭେ ଶୁଣିମା ରଘୁନାଥ ॥
ଏକାନ୍ତେ ବସିବା ତୋହୋର ମୋହୋର ଦୁଇ ।
ସକଳ ଲୋକଙ୍କୁ ତୁ କଢ଼ାଅ ରଘୁସାଇଂ ॥
ଲକ୍ଷଣକୁ ଦ୍ୱାରେ ବସାଇଣ ଥିବୁ ।

ଯେ ଅବା ଆସିବ ତାକୁ ପ୍ରାଣରେ ମାରିବୁ ॥୧୦
ହୋଉ ହୋଉ ବୋଲି ରାମ ସନମତ କଲେ ।
ମନ୍ତ୍ରୀ ଅମନାତ୍ୟ ସକଳ କଢ଼ାଇଲେ ॥
ବଶିଷ୍ଠ ବାମଦେବ ସୁମନ୍ତ ଭାଇ ଭ୍ରଥ ।
ସମସ୍ତେ ଯାଅ ବୋଲି ବୋଇଲେ ରଘୁନାଥ ॥
ଲବ କୁଶ ସହିତେଣ ବାହାର ହୋଇଗଲେ ।
ଲକ୍ଷଣକୁ ଚାହିଂଣ ଶ୍ରୀରାମ ଆଜ୍ଞା ଦେଲେ ॥
ଦ୍ୱାରେ ରହିଥିବୁ ନ ପଶିବେ କେହି ।
ମୋହୋର ରାଇଲେ ପୁଣ ଆସିବୁଟି ତୁହି ॥
ନିୟମ କରି ଅଛି ଶୁଣିଲୁଟିକି ଯାହା ।
ଏକାନ୍ତକୁ ଅଇଲେ ମାରିବଇଂ ତାହା ॥୨୦
ଶୁଣି ସଉମିତ୍ରୀ ଗଲା ଆଡ଼େ ହୋଇଂ ।
ଶହସ୍ର ଧରି ଦ୍ୱାରେ ନିରୋଧିଲା ଯାଇଂ ॥
କାଳିଞ୍ଜନ ସଙ୍ଗେ ଶ୍ରୀରାମ ଏକାନ୍ତ ।
ବାଲ୍ମିକ କଲା ଗ୍ରନ୍ଥ ପାଶୋରି ସୀତ୍ୟାକାନ୍ତ ॥
ଦଇବ ହରିଲା ତାର ଜ୍ଞାନ ବୁଦ୍ଧି ବଳ ।
ଦେହେ କି ପ୍ରତକ୍ଷେ ଭେଦିଲା ଆସି କାଳ ॥
ଦେହ ବହି ବିଧାତାକୁ କେ ଅବା ଜାଣିମ ।
ମାୟା କଥା ସତ ପ୍ରାଏ ମଣିଲେ ଶ୍ରୀରାମ ॥
ମୁନିଙ୍କର ସଙ୍ଗତରେ ଏମନ୍ତ ଭାଳେଣି ।
ଋଷି ବୋଇଲେ ତୁମ୍ଭେ ଶୁଣିମା ରଘୁମଣି ॥୩୦
ପରମ ଗୁପତ ଏ ଦେବତାଙ୍କର କଥା ।
ଯେ ଏଠାକୁ ଆସିବ ଛେଦିବୁ ତାର ମଥା ॥
ଯାହାର ଶବଦ ଅବା ଶୁଭିବଟି ରାମ ।
ତାହାକୁ ନିଷ୍ଟଏ ତୁ ପେଷିବୁ ଯମ ଗ୍ରାମ ॥
ଏତେ ବୋଲି ଏକାନ୍ତେ ବସିଲେ ମହାମୁନି ।
ଶୁଣହୁ ରଘୁନାଥ ଅପୂର୍ବ ଯିସ ଧ୍ୱନି ॥
ତୋହୋର ଭାରିଯା ସେ ଅଟଇ ଲକ୍ଷ୍ମୀଦେବୀ ।
ସୁର ନର ମୁନି ଯାହାର ପାଦେ ସେବି ॥

ତାହାର ଗର୍ଭରୁ ମୁଂ ହୋଇଲଇଂ ଜାତ ।
ସେ ମୋହୋର ଜନନୀ ତୁ ମୋହୋର ଅଟୁ ତାତ ॥୪୦
ମୋହୋର ନାମ ଅଟଇ ଦେବ କାଳ ।
ମୁଂ ଯାହାକୁ ଦେଖଇଂ ସେ ଯାଇଂ ଯମ ଆଳ ॥
ଏବେ ସେ ସୁରଗଣେ ପେଷିଲେ ମୋତେ ରାଇ ।
ଭୋରାମ ହାଦେ ତୋହୋର ଯିବା ପାଇଂ ॥
ଦେବତାଙ୍କର ଛଳେ ତୁ ହୋଇଲୁ ଅବତାର ।
ଦତ୍ୟକୁ ମାରି ଉଶ୍ୱାସିଲୁ ମହୀଭାର ॥
ସମଏକେ ରବିତଳେ ତୁ ହୋଇଲୁ ଭାବ ।
ଏବେ କିମ୍ପା ସ୍ୱର୍ଗକୁ ନ ଯାଉ ପଦ୍ମନାଭ ॥
ତୁ ଯେବଣ ପୁରୁଷ ନ ଜାଣୁକି ତାହା ।
ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଟୁ ତୁ ଯେ ନାହା ॥୫୦
ତୋହୋର ନାଭି କମଳୁ ବ୍ରହ୍ମା ଜାତ ହୋଇ ।
ଜଗତ ପିତା ହୋଇ ସୃଷ୍ଟି ସେ ସ୍ରିଜଇ ॥
ଆକାଶ ଶିର ଚନ୍ଦ୍ର ସୂର୍ଯ୍ୟ ନେତ୍ର ।
ଅପାପୀ ପୁରୁଷ ତୁ ପରମ ପବିତ୍ର ॥
ଯହୁଂ ଉପଦର୍ପ ରାବଣେଶ୍ୱର କଲା ।
ପାପ ପଥ ଆବୋରି ପୁଣ୍ୟ ନ ଥାପିଲା ॥
ତୁ ଯେ ରାମ ନାମେ ମନିଷ୍ୟ ହୋଇଲୁ ।
ଦତ୍ୟ ବଳ ନାଶି ସଂସାର ରକ୍ଷା କଲୁ ॥
ତୁ ଯେ ଜଗତ ନାଥ ଅଟୁ ଚକ୍ରଧର ।
ଆଦି ମୂଳ ପୁରୁଷ ତୁ ବିଶ୍ୱ ଶ୍ୟରୀର ॥୬୦
ଏ ମର୍ତ୍ତ୍ୟ ଲୋକେ କିମ୍ପାଇଂ ସ୍ୱାମୀ ଥିବୁ ।
ନିଜ ଭୁବନେ ତୁ ବେଗେ ଚଳିଯିବୁ ॥
ଦେବତାମାନେ ତୋତେ ସେବା କରିଥିବେ ।
ତେବେ ସେ ଜୀବନ ସୁଫଳ କରିବେ ॥
ବ୍ରହ୍ମାଦି ମୁନିମାନେ ରୁଦ୍ରାଦି ଯୋଗୀ ଜନେ ।
ଏମାନେ ନିବେଶନ୍ତି ଯାହାର ସନ୍ନିଧାନେ ॥

ଇନ୍ଦ୍ର ଆଦି କରି ଦେବେ ବାଟ ଚାହିଁଛନ୍ତି ।
ନ ଦେଖିଲେ ଜୀବନ ଛାଡ଼ିବୁ ବୋଲନ୍ତି ॥
ତୁମ୍ଭେ ଏବେ ରାଜ୍ୟ ସୁଖେଣ ନ ଲାଗ ।
ନିଜ ଆଶ୍ରମକୁ ଯାଅ ଦେବ ବେଗ ॥୭୦
ଶୁଣିଣ ଶ୍ରୀରାମ ଆନନ୍ଦ ହୋଇଲେ ।
ଅବଶ୍ୟ ଆମ୍ଭେ ଯିବୁଟି ବୋଲିଣ
ବୋଇଲେ ॥
ଦେବତାଙ୍କର ବୋଲ ଅଲଘିତ ମୋତେ ।
ମୋ ରହିବାର ଉଚିତ ନୁହଇ ଯୁଗତେ ॥
ସୀତ୍ୟା ଗଲାଦିନୁଁ ମନ ଥିର ନାହିଁ ।
ଯିବାଇଁ ସ୍ୱର୍ଗକୁ ଅଳ୍ପଦିନ ରହି ॥
ଏମନ୍ତେ ଶ୍ରୀରାମ କାଳିଞ୍ଜନ କଥା ହୁଅନ୍ତେ ।
ସିଂହଦ୍ୱାରେ ମିଳିଲା ଏକଇ ତପୋବନ୍ତେ ॥
ଦୃଭାସା ନାମେଣ ଅଟନ୍ତି ମହାମୁନି ।
ଯତନେ ରାଇଁ ପେଷିଲେ ପଦ୍ମଯୋନି ॥୮୦
ବୋଇଲେ ଭୋମୁନି ମର୍ତ୍ତ୍ୟପୁରେ ଯାଅ ।
ଅଯୋଧା ପୁରେଣ ସିଂହଦ୍ୱାରେ ଯାଇଁ ହୁଅ ॥
ଶ୍ରୀରାମଙ୍କୁ କାଳିଞ୍ଜନ କହାଇଁ ଅଛି ଯାଇଁ ।
ତାହାକୁ ଘେନି ଏକାନ୍ତ ସୀତ୍ୟା ସାଇଁ ॥
ନିୟମ କରାଇଂଣ ଅଛି କାଳିଞ୍ଜନ ।
ଏକାନ୍ତ ବେଳେ ମିଳିବ ଯେବଣ ହିଁ ଜନ ॥
କିଅବା ମୁଖରାବ ଶୁଭିବ ଶବଦ ।
ତାହାକୁ ଅଣାଇଁ କରିବ ପ୍ରାଣେ ବଧ ॥
ଶ୍ରୀରାମ ସନମତ କଲେ ତାହା ବୋଲେ ।
ଏକାନ୍ତେ ଭାଳେଣି ସେହୁ କାଳିଞ୍ଜନ
ତୁଳେ ॥୯୦
ଲକ୍ଷଣଙ୍କୁ ଦୁଆରେ ଅଛନ୍ତି ଜଗାଇ ।
ଏସନେକ ବେଳେ ହୋଇବୁ ତୁ ଯାଇଁ ॥
ଯେମନ୍ତେ ସଉମିତ୍ରୀ ଭାଙ୍ଗଇ ଏକାନ୍ତ ।
କୋପ କରଇ ଯେମନ୍ତେ ଜାନେକୀର
କାନ୍ତ ॥
ଉପ୍ରୋଧ ଛାଡ଼ିଣ ଯେବେ ଭାଇ କି
ଲେଛଇ ।
ତେବେସେ ବୈକୁଣ୍ଠକୁ ଆସିବେ ସୀତ୍ୟା
ସାଇଁ ॥

ତୁ ମହାମୁନି ନ କରସି ହେଳ ।
ଦେବଙ୍କ କାର୍ଯ୍ୟ ନିମନ୍ତେ ବେଗ ହୋଇଂ
ଚଳ ॥
ବ୍ରହ୍ମାଙ୍କ ବଚନେ ଦୃଭାସା ମହାରଷି ।
ଅଯୋଧା ସିଂହଦ୍ୱାରେ ମିଳିଗଲେ
ଆସି ॥୧୦୦
କୋପରେ ଥର ହର କ୍ଷୁଧାରେ ଆରତ ।
ଲକ୍ଷଣକୁ ଚାହିଂଣ ବୋଲନ୍ତି ତପୋବନ୍ତ ॥
ଆରେ ସଉମିତ୍ରୀ ରାମକୁ ବେଗେ କହ ।
କ୍ଷୁଧାରେ ଆରତ ହେଉଅଛି ମୋର ଦେହ ॥
ଅଯୋଧ୍ୟାର ଲୋକ ଦହିବି ଏହିକ୍ଷଣି ।
ଯଦି ନ ଦେଖାଇବୁ ରଘୁକୁଳମଣି ॥
ଏତେକ ବୋଲି ରଷି କାୟା ବଢ଼ାଇଲେ ।
ଚକ୍ରପ୍ରାୟେ କରି ଦୁଇ ଆଖି ବୁଲାଇଲେ ॥
ନିଶ୍ୱାସର ଘାଏ ହଲଇ ସିଂହଦ୍ୱାର ।
ଭୂମିରେ ଲାଗୁଅଛି ପିଙ୍ଗଳ ଜଟାଭାର ॥୧୦
ରୋମ ପୁଲକାଇଁ ଅଧର କାମୁଡ଼ି ।
ରକଟଇ ଦାନ୍ତ ଜାଣିଣ ଘଡ଼ଘଡ଼ି ॥
ହାଟ ବାଟ ଲୋକେ ପଳାଇଗଲେ ଶୁଣି ।
ଥରହର ହୋଇ କମ୍ପଇ ଧରଣୀ ॥
ଲକ୍ଷଣ ବୋଲନ୍ତି ଯୋଡ଼ିଣ ବେନି କର ।
ଅକାରଣେ କୋପ ତୁ ନକର ମୁନିବର ॥
ଶ୍ରୀରାମଙ୍କୁ ଜଣାଇଁ ନେମି ତୋତେ ଆସି ।
କ୍ଷଣେକ କୋପ ତୁ ନକର ମହାରଷି ॥
ଏତେ ବୋଲି ସଉମିତ୍ରୀ ଭିତରକୁ ଗଲା ।
ଦଇବର ମାୟା ବୋଲି ମନେ
ବିଚାରିଲା ॥୨୦
ସତ୍ୟ କରିଣ ଅଛି ଜାନେକୀର ସାଇଁ ।
ଏକାନ୍ତକୁ ଗଲେତ ମୋହୋର ଜୀଇଁ
ନାହିଁ ॥
ନଗଲେ ରଷି କରିବ ପୁର ନାଶ ।
ରାଜାପୁର ଗୋରୁ ବ୍ରାହ୍ମଣେ ଯିବେ ନାଶ ॥
ମୋହୋର ମଲେଣ ଯେବେ ବ୍ରତିବେ
ସକଳ ।
ଏକଥା ନକଲେ ମୋର ଜୀବନ ବିଫଳ ॥

ପର ଉପକାରୀ ହୁଅନ୍ତି ଯେବଣ ପ୍ରାଣୀ ।
ଯାଆନ୍ତି ସୁରପୁରୀ ପୁରାଣେ ଏ ବାଣୀ ॥
ରାଜ୍ୟ କାର୍ଯ୍ୟ ଅର୍ଥେ ତେଜିବଇଂ ପ୍ରାଣ ।
ଏତେକ ବୋଲି ଚଳି ଗଲାକ ଲକ୍ଷଣ ॥୩୦
ଶ୍ରୀରାମ କଳି ମୁନି କଥା ହୁଅନ୍ତିଟି ବସି ।
ଯାଇଂଣ ମିଳିଲେ ସେ ସୁମିତ୍ରାର ଶିଷି ॥
ଦେଖିଣ ରଘୁନାଥର ଭାଙ୍ଗିଲା ଏକାନ୍ତ ।
ଆସ୍ତାନୁ ଉଠିଲେ କାଳିଞ୍ଜନ ତପୋବନ୍ତ ॥
ଶ୍ରୀରାମକୁ ବୋଇଲେ ଅଇଲାଟି ଲକ୍ଷଣ ।
ଯାହା ତୁମ୍ଭେ ସତ୍ୟ କଲୁ ଏହିକ୍ଷଣ ॥
ସେ କଥା ଜାଣ ତୁ ବୋଲିଣ ଚଳିଗଲା ।
ଜାଣିଲି ବୋଲି ଶ୍ରୀରାମ ବୋଇଲା ॥
କାଳିଞ୍ଜନ ପୁରୁଷ ହେଲେ ଅନ୍ତର୍ଦ୍ଧାନ ।
ରଘୁନାଥ ଆଗେ ଉଭା ସୁମିତ୍ରା ନନ୍ଦନ ॥୪୦
କର ଯୋଡ଼ିଣ ବୋଲଇ ଶୁଣ ନୃପବର ।
ଦୃଭାସା ମହାରଷି କୋପେଣ କୋପଭର ॥
ସିଂହାଦ୍ୱାରେ ଉଭାରିଛି କୋପଭର ହୋଇ ।
ବୋଇଲା ବେଗେ ମୋତେ ଭେଟାଅ
ରାଘବଣାରି ॥
ନୋହିଲେ ଏ ପୁର ଦହିବି କୋପାନଳେ ।
ସେ କଥା ଶୁଣି ମୁଂ ଅଇଲି ବିକଳେ ॥
ଶ୍ରୀରାମ ବୋଇଲେ ସେ ମୁନିକି
ଘେନିଆସ ।
ଶୁଣିଣ ବାହୁଡ଼ିଲା ସୁମିତ୍ରାର ଶିଷ୍ୟ ॥
ସିଂହାଦ୍ୱାରୁ ଆସିଣ ରଷିକି ରାଇ ନେଲା ।
କୋପ ଛାଡ଼ି ରଷି ଭିତରକୁ ଗଲା ॥୫୦
ମନେ ବିଚାରଇ ଧନ୍ୟ ମୋର ପୁଣ୍ୟ ।
ଆଜ୍ଜୁ ସେ ସୁଫଳ ଅଟଇ ଜୀବନ ॥
ନିରାକୃତ ବ୍ରହ୍ମ ଦେଖିବି ନୟନେ ।
ବ୍ରହ୍ମା ଯାହାକଇ ରଟୁ ଥାଇ ଧ୍ୟାନେ ॥
ଏହାର ଅନ୍ନ ଖାଇ କରିବି ପାପ କ୍ଷଏ ।
ଏମନ୍ତ ଭାଳିଣ ମୁନି ବେଗେ ବେଗେ
ଯାଏ ॥
ବାଟରେ ରଘୁନାଥଙ୍କୁ ଭେଟିଲେକ ଆସି ।
ନମସ୍କାର କଲେ କଉଶୁଲ୍ୟାର ଶିଷି ॥

ଗଉରୋବ କରିଣ ଋଷିଙ୍କି ଘେନିଗଲେ ।
ଦିବ୍ୟ ମନ୍ଦିରେଣ ଯାଇଂଣ ବସିଲେ ॥୬୦
ସୁବର୍ଣ୍ଣ ଆସନ ଦେଇଂଣ କଲେ ପୂଜା ।
କାର୍ପୁଣ୍ୟ ହୋଇଣ ପୁଛନ୍ତି ରାମ ରାଜା ॥
ଭୋମୁନି କେବଣ କାରଣେ ଆଗମନ ।
ମୋହୋର ଆଗେ କହ ସ୍ୱରୂପ ବଚନ ॥
ଦୃଭାସା ବୋଇଲେ ମୁଂ କ୍ଷୁଧାରେ ଆରତ ।
ଷଡ଼ରସ ପ୍ରକାରେ ମୋତେ ଦେସି ଭାତ ॥
ତୋହୋର ଅନ୍ନ ଖାଇଲେ ଶ୍ୟରୀର ହେବ ସ୍ୱାର୍ଥ ।
ବେଗେଣ ଚରଚା ମୋତେ କର ରଘୁନାଥ ॥
ଶୁଣିଣ ଶ୍ରୀରାମ ଲକ୍ଷଣକୁ ଚାହିଂ ।
ବଶିଷ୍ଟ ଘରୁ ଅନ୍ନ ଅଣାଅ ଆଗ୍ୟାଂଦେଇ ॥୭୦
ତତକ୍ଷଣେ ସଉମିତ୍ରୀ ଗଲା ଆଗ୍ୟାଂ ଘେନି ।
ଯହିଂ ବସିଅଛନ୍ତି ବଶିଷ୍ଟ ମହାମୁନି ॥
ଲକ୍ଷଣ ବୋଇଲେ ଦୃଭାସା ଆସିଛନ୍ତି ।
ଶ୍ରୀରାମଙ୍କୁ ଆସି ଅନ୍ନ ସେ ମାଗନ୍ତି ॥
କ୍ଷୁଧାରେ କୋପଭର ମୁଖ ହୋଇଛନ୍ତି ଋଷି ।
ତୁମ୍ଭର ତହିଂକି ମୋତେ ରଘୁନାଥ ପେଶି ॥
ବୋଇଲେ ଅନ୍ନ ବ୍ୟଞ୍ଜନ ତୁମ୍ଭେ ଘେନି ଆସ ।
ଭୁଞ୍ଜିବେ ମହାମୁନି ହୋଇବେ ସନ୍ତୋଷ ॥
ଶୁଣି ବ୍ରହ୍ମାମୁନି ସମ୍ପାଦିଲେ ଅନ୍ନ ।
ଶିଷ୍ୟଙ୍କର ହସ୍ତରେ ବୁହାଇଲେ ଦ୍ରବ୍ୟମାନ ॥୮୦
ଲକ୍ଷଣ ସେମାନ ଆବୋରି ଘେନିଗଲା ।
ଶ୍ରୀରାମ ଛାମୁରେ ତତକ୍ଷଣ କଲା ॥
ଦେଖିଣ ଦୃଭାସା ମୁନି ହରଷ ହୋଇଲେ ।
ସ୍ନାନ କରିବେ ବୋଲି ସରଯୁକୁ ଗଲେ ॥
ନିତ୍ୟକର୍ମ ସାରି ଅଇଲେ ଅତି ଖରେ ।
ଆସିଣ ମିଳିଲେ ସେହୁ ମନ୍ଦିର ଭିତରେ ॥
ଠାବ କରି ତହିଂ ବସିଲେ ପାଦ ଧୋଇଂ ।
ବଶିଷ୍ଟେ ଆପଣେ ଅନ୍ନ ପରଷିଲେ ନେଇ ॥
ଛଡ଼ରସ ପ୍ରକାରେ ରାନ୍ଧଣା ଯୁଗତି ।
ଦୁଧ ଛେନା ସର ପିଷ୍ଟକ ପ୍ରଭୃତି ॥୯୦
ସୁସ୍ୱାଦୁ ଦ୍ରବ୍ୟ ଭୁଞ୍ଜିଣ ସନ୍ତୋଷ ।
ଆଚୋବନ ସାରିଣ ବସିଲେ ରାମ ପାଶ ॥
କର୍ପୂର ତାମ୍ବୋଳ ନେଇଂ ଲକ୍ଷଣ ଭୁଞ୍ଜାଇଲା ।
ତୋଷେ ମହାମୁନି ଶ୍ରୀରାମଙ୍କୁ କଲ୍ୟାଣ ସେ କଲା ॥
ଯିବି ବୋଲି ମୁନି ଗଲେକ ଅନ୍ତର୍ଦ୍ଧାନେ ।
ଏଥୁ ଅନନ୍ତରେ କଥା ହେଲା ଆନେ ଆନେ ॥
ଦୃଭାସା ଋଷି ଗଲାରୁ ଶ୍ରୀରାମ ନିଶ୍ଚିନ୍ତ ।
ମନେ ବିଚାରିଲେ ମୁଂ କରିବି କେମନ୍ତ ॥
ପିତାର ସତ୍ୟ ନିମନ୍ତେ ବନବାସ ଗଲି ।
ଲୋକ ଅପବାଦେ ଜାନେକୀ ଛାଡ଼ିଲି ॥୧୦୦
ଏବେ ଆପଣେ କରିଛି ନିୟମ ।
ସଂକଟ ଲାଗିଲା ମୋତେ ରକ୍ଷାକର ଧର୍ମ ॥
ଲକ୍ଷଣକୁ ଅବା ମୁହିଂ ମାରିବି କେମନ୍ତେ ।
ନୋହିଲେ ସତ୍ୟ ରକ୍ଷା ହୋଇବ କେମନ୍ତେ ॥
ଶ୍ରୀରାମର ଭାଳନ୍ତେ ଲକ୍ଷଣ ତାହା ଜାଣି ।
କରପତ୍ର ଯୋଡ଼ି ବୋଲନ୍ତି ରଘୁମଣି ॥୧୦
କାଳିଞ୍ଜନ ମୁନି ଆଗେ ସତ୍ୟ କଲୁ ଯାହା ।
ଏବେ କିମ୍ପାଇଂ ସ୍ୱାମୀ ପାଶୋରିଲୁ ତାହା ॥
ଦଇବର କଥା କେ କରିବ ଆନ ।
ମୋତେ ତୁ ପ୍ରାଣରେ ମାରସି ରଘୁନାନ ॥
ଶୁଣିଣ ଶ୍ରୀରାମ ଛୁଇଂଲେ ବେନି କର୍ଣ୍ଣ ।
ଏକଥା କିମ୍ପାଇଂ ତୁରେ କହିଲୁ ଲକ୍ଷଣ ॥
ତୋତେ ମାରିଣ ମୁଂ ଯେଉଂ ଧର୍ମ ପାଇବି ।
ଏଥକୁ ପାଲଟ ମୁଂ ବିଷହିଂ ଖାଇବି ॥
କେଉଂ ଧର୍ମ ମୋର ପୋଡ଼ିଯାଉ କିନା ।
ସବୁ ବଡ଼ ପଣ ତୋହୋର ଥିଲେ ସିନା ॥
ପ୍ରାଣ ତେଜ୍ୟା ମୁହିଂ କରି ପାରଇରେ ଭାଇ ।
ତୋତେ ମାରିତେ ମୋହୋର ବେଳରେ ନୋହଇଂ ॥
ଏତେକ ବୋଲିଣ ରାମ ପଡ଼ି ମୁର୍ଚ୍ଛା ଗଲେ ।
ଭୂମିରେ ଲୋଟଗାଳି ବହୁତ ରୋବିଲେ ॥୨୦
ହା ହା ସେ ଭାଇ ମୋର ପ୍ରାଣର ପୀରତି ।
ତୋତେ ଛାଡ଼ିଲେ ମୋ ବିଅର୍ଥ ଜୀବତି ॥
ସର୍ବଗୁଣେ ସୁଲକ୍ଷଣ ଅଟୁ ସଉମିତ୍ରୀ ।
ତ୍ରୈଲୋକ୍ୟ ମଧ୍ୟରେ ତୁ ଅଟୁ ମହା କ୍ଷେତ୍ରୀ ॥
ମେଘନାଦ ମାଇଲୁ ସେ ଇନ୍ଦ୍ରକୁ ଜିଣିଥିଲା ।
ମୋହୋର ସନ୍ୟଙ୍କୁ ଦୁଇବେଳ ମାରିଗଲା ॥
ତୁ ତାହାର ଶିର ପକାଇଲୁ କାଟି ।
ସୁରଗଣେ ମିଳି କଲେ ପୁଷ୍ପ ବୃଷ୍ଟି ॥
ରାମାଏଣ ଯୁଦ୍ଧେ ଏକାଏଣ ଜଏ କଲୁ ।
ମୋତେ ଅଯୋଧ୍ୟାରେ ନୃପତି କରାଇଲୁ ॥୩୦
ତୋହୋର ବାହୁବଳେ ରାଜ୍ୟ ସେ ମୋହୋର ।
ଶତୃକୁ ଜିଣଇଂ ମୁହିଂ ବୁଦ୍ଧିରେ ତୋହୋର ॥
ରାଜ୍ୟର ଲୋକେ ତୋତେ ପ୍ରଶଂସା କରନ୍ତି ।
ନାମ ସୁମରିଲେ ଅରି ଡରନ୍ତି ॥
ଗୁଣେ ଗୁଣ ନିଧି ଅଟୁ ମୋହୋର ଭାଇ ।
ଅରଣ୍ୟକୁ ଗଲୁ ମୋହୋର ସଙ୍ଗତେ ଗୋଡ଼ାଇ ॥
ଯେତେ ଦୁଃଖେ ତହିଂ ସେବା କରିଥିଲୁ ।
ଅନାହାର ନାହିଂ ନିଦ୍ରାହିଂ ବଞ୍ଚିଲୁ ॥
ସୀତାକୁ ମୁଛିଲି ତୋତେ ସେ ଦେଖନ୍ତେ ।
ଏବେ ଅବା ତୋତେରେ ମାରିବି କେମନ୍ତେ ॥୪୦
ଲଙ୍ଘିବଇଂ ସତ୍ୟ ମୁଂ ଧର୍ମକୁ ଭୟ ନାହିଂ ।
ସହୋଦର ଭାଇକି ମାରିବି କିସ ପାଇଂ ॥
ଏତେ ବୋଲି ରାମ ହୋଇଲେ ମଉନ ।
ସତ୍ୟ ଛାଡ଼ିବି ବୋଲିଣ ଭାଳନ୍ତି ମନେ ମନ ॥
ଏସନ ସମୟେ ମନ୍ତ୍ରୀଗଣେ ମିଳି ।
ବଶିଷ୍ଟ, ବାମଦେବ, କଶ୍ୟପ, ଜାବାଳି ॥
ସୁମନ୍ତ ସହିତେ ମଳିଲେ ଭ୍ରଥ ବୀର ।

ଲକ୍ଷଣ ଉଭା ହୋଇ ଯୋଡ଼ିଲ ବେନି କର ॥
ବଶିଷ୍ଠେ ବୋଇଲେ ତୁ ଶୁଣ ରଘୁପତି ।
ଏମନ୍ତ ହୋଇଣ ରୋବିବାର ନୁହଇ
ଯୁଗତି ॥୫୦
କେବଣ କଥା ମୋର ଆଗେ କହୁ କିନା ।
ତୋତେ ଅପୂର୍ବ ବ୍ରହ୍ମାଣ୍ଡେ କେଉଂ କଥା
ସିନା ॥
ଶ୍ରୀରାମ ବୋଇଲେ ମୋତେ ଲାଗିଲା
ଦଗବ ।
ସେ କଥା କହିଲେ ଆଉ କିସ ସେ
ହୋଇବ ॥
କାଲ ତପଗର ମୋତେ ଦେବଙ୍କ ଆସିଥିଲା ।
ସେ ମୋତେ ମହାମୁନି ସତ୍ୟ କରାଇଲା ॥
ବୋଇଲା ଯେ ଅବା ଆସି ମିଳିବାକ ଏଥ ।
ତୁ ରାମ ତାହାର ଛେଦିବୁଟି ମାଥ ॥
ତାହାର ମାୟାତ ମୁଂ ଜାଣି ନ ପାରିଲି ।
ହଉ ଏକଥା କରିବି ବୋଇଲି ॥ ୬୦
ଏସନେକ ସମୟେ ଅଇଲେ ଦୁର୍ଭାସା ।
ଲକ୍ଷଣଙ୍କୁ ଦେଖିଣ ସେ କହିଲେ କଟୁଭାଷା ॥
ତାହାଙ୍କର ଡରେ ସଉମିତ୍ରୀ ତହୁଂ ଭିତରକୁ
ଗଲା ।
ଏକାନ୍ତ ଭାଳେଣି ଠାବରେ ହୋଇଲା ॥
ତେଣୁ ସତ୍ୟ ଭଗ୍ନ ହୋଇଲାଇଂ ମୁହିଂ ।
ଲକ୍ଷଣକୁ ଅବା ମୁଂ କେମନ୍ତେ ମାରିବଇଂ ॥
ଭୋମୁନି ବଶିଷ୍ଠ ମୋତେ ପ୍ରତିକାର କର ।
କେମନ୍ତେ ସତ୍ୟ ରହି ନମରେ ସୋଦର ॥
ବ୍ରହ୍ମାଙ୍କର କୁମର ବସିଣ ତିଆରି ।
ବୋଲନ୍ତି ବଚନ ଶୁଣ ରାବଣାରି ॥ ୭୦
ସତ୍ୟ ରଖି ବଳି ପାତାଳକୁ ଗଲା ।
ସତ୍ୟେ ଶିବି ରାଜା ଦେହ କାଟି ଦେଲା ॥
ସତ୍ୟେ ହରିଚନ୍ଦନ ବିକ୍କିଲେ ପୁତ୍ର ନାରୀ ।
ସତ୍ୟେଣ ଜୀମୁତବାହନ ପ୍ରାଣ ହାରି ॥
ସତ୍ୟେଣ ସମୁଦ୍ର ନ ଲଘଇ କୂଳ ।
ସତ୍ୟ ରଖି ବସୁମତୀ ନ ପଡ଼ଇ ତଳ ॥
ସତ୍ୟେଣ ଚନ୍ଦ୍ର ସୂର୍ଯ୍ୟ ଉଦେ ହେଉଛନ୍ତି ।
ସତ୍ୟେ ଦକ୍ଷିଣକୁ ଗଲେକ ଅଗସ୍ତି ॥
ସତ୍ୟେଣ ପାର୍ବତୀ ପୁରୁଷ ହତ୍ୟା କଲା ।
ସତ୍ୟେଣ ମନ୍ଦର ପର୍ବତ ନ ବଢ଼ିଲା ॥୮୦
ସତ୍ୟେଣ ସଦାଶିବ ଭକ୍ଷିଲେଟି ବିଷ ।
ସତ୍ୟେଣ ଶ୍ରୀହରି ଦତ୍ୟକୁ କରଇ ବିନାଶ ॥
ସତ୍ୟେଣ ବ୍ୟାଧି ଔଷଧେ ଭଲ ହୋଇ ।
ସତ୍ୟେଣ ହୁତାଶନ ସକଳ ଭକ୍ଷଇ ॥
ଯଗର ସତ୍ୟ ତୁ ରଖୁ ରଘୁନାଥ ।
ତୋହୋର ସତ୍ୟ କିମ୍ପା ହୋଇବ ବିଅର୍ଥ ॥
ମୋହୋର ତହିଂ ହାଦେ ଅଛଇ ଏକ
ବୁଦ୍ଧି ।
ତାହାତୁ ପାଳସି କ୍ଷତ୍ରିୟ ଗୁଣନିଧି ॥
ଲକ୍ଷଣ ନ ମରୁ ସତ୍ୟ ତୋର ରହୁ ।
ଶ୍ରୀରାମ ବୋଇଲେ ମୁନି ଏହି କଥା
ହୋଉ ॥୯୦
କି ବୁଦ୍ଧି କରିବି କହସି ବିଚାରି ।
ଏତେକ ବୋଲି ଉଠି ବସିଲେ ରାବଣାରି ॥
ବ୍ରହ୍ମାର ତନୟେ କହନ୍ତି କଥାମାନ ।
ଶୁଣ ସର୍ବଲୋକେ ହୋଇଣ ସାବଧାନ ॥
ମଲା ଗଲା ହଜିଲା ଏକଇ ସମାନ ।
ଅରଣ୍ୟକୁ ଗମନ କରୁ ଏବେ ଲକ୍ଷଣ ॥
ଆଉ ବେଳେ ଅଯୋଧା ଲୋକଙ୍କୁ ଭେଟ
ନୋହୁ ।
ଶ୍ରୀରାମଚନ୍ଦ୍ରଙ୍କର ସତ୍ୟ ଗୋଟା ରହୁ ॥
ଆମ୍ଭର ବିଚାରକୁ ଯୋଗାଇ ଏମାନ ।
କେମନ୍ତ ମଣିଲ ଏହା
ମନ୍ତ୍ରୀଗଣମାନ ॥୧୦୦
ଶୁଣି ସମସ୍ତେ ଯେ କଲେ ଧନ୍ୟ ଧନ୍ୟ ।
ବାବୁ ବୁଦ୍ଧି ଏକ ପାଞ୍ଚିଲ ମହାମୁନ୍ୟ ॥
ସତ୍ୟ ରୁହାଇଲୁ ପ୍ରାଣୀକି ଜୀଆଇଂଲୁ ।
ଏକଥା କେବଣ ପ୍ରକାରେ ଭିଆଇଲୁ ॥
ଶ୍ରୀରାମ ଲକ୍ଷଣ ମନକୁହିଂ ଗଲା ।
ଭରଥ ସହିତେଣ ସବୁଙ୍କୁ ହିଂ ଯୋଗାଇଲା ॥
ବଶିଷ୍ଠ ବଚନେ ରାମ ହୋଇଲେକ ଶାନ୍ତି ।
ଲକ୍ଷଣଙ୍କୁ ଚାହିଂଣ କୋପେଣ ବୋଲନ୍ତି ॥
ଯାଅସି ସଉମିତ୍ରୀ ନଥାଅ ମୋର ପାଶ ।
ଯଦି ଜୀବନକୁ ଅଛି ତୋର ଆଶ ॥୧୦
ଜାଣୁ ଜାଣୁ ନିୟମ ଲଙ୍ଘିଲୁରେ ଭାଇ ।
ଆନ ଲୋକେ ହୋଇଲେଟି ଜୀବନହିଂ ନ
ପାଇ ॥
ଯାଅ ତୁହି ମୋହୋର ରାଜ୍ୟ ସୀମାରେ ପୁଣ
ନ ଥା ।
ରହିଲେ ଏଥିକି ଆଉ ନାହିଂ ଭଲ କଥା ॥
ଶ୍ରୀରାମର କଇଲା ବଚନେ ସଉମିତ୍ରୀ ।
ଗଡ଼ଘାଲି ଶୁତିଲା ପଡ଼ିଲା ଧରିତ୍ରୀ ॥
ଉଠି ଉଭାହୋଇ ଶିରେ କର ଦେଲା ।
ଯାଉଅଛି ବୋଲି ଆଗ୍ୟାଂ ସେ ମାଗିଲା ॥
ଲକ୍ଷଣ ପିଠିଦ୍ୟନ୍ତେ ଶ୍ରୀରାମ ରୋଦନ କରି ।
ମନ୍ତ୍ରୀ ଅମନାତ୍ୟଙ୍କର ଲୋଚନୁ ବହେ
ବାରି ॥୨୦
ଭରଥ କାନ୍ଦୁଅଛି ତଳକୁ କରି ମୁଖ ।
ନଗ୍ର ଲୋକମାନଙ୍କର ବଦନ ବହୁତଇ
ଦୁଃଖ ।
କେବଣ ଆକରା ବୋଲନ୍ତି ନରନାରୀ ।
ଆଜହୁଂ ସରିଲାଟି ଅଯୋଧାର ଶିରୀ ॥
ସୀତ୍ୟା ଗଲାଦିନରୁ ହୋଇଲା କଥା ମନ୍ଦ ।
ଖଳ ବିହି ଏଥି ସବୁ କରୁଅଛି ଦ୍ୱନ୍ଦ୍ୱ ॥
ଶ୍ରୀରାମ ଆଗ୍ୟାଂ ଦେଲେ ସେ ସୁମନ୍ତକୁ
ଚାହିଂ ।
ଲକ୍ଷଣକୁ ଛାଡ଼ି ଆସି ରଥରେ ବସାଇ ॥
ଶୁଣି ମନ୍ତ୍ରୀବର ତୁରିତେଣ ଗଲା ।
ରହୁବର ସାଜି ଲକ୍ଷଣ ଆଗେ କଲା ॥୩୦
ତହିଂ ଆରୋହିଲା ସୁମିତ୍ରାଙ୍କର ସୁତ ।
ସୁମନ୍ତ ମନ୍ତ୍ରୀ ବାହିଣ ନେଲା ରଥ ॥
ସିଂହଦ୍ୱାରୁ ବାହାର ହୁଅନ୍ତେ ଲୋକେ
ଦେଖି ।
ଲୁହେ ଢଳ ଢଳ ସବୁଙ୍କରି ଆଖି ॥
ବନବାସର ଯିବା କାଳକ କଷ୍ଟ ପାଇ ।
ସେ ସେ ବେଳେ ସଙ୍ଗେ ଥିଲେ ଦୁଇ ଭାଇ ॥
ଏବେ ଏକାୟେ ଅରଣ୍ୟେ କରିବୁଟି କିସ ।

ବାବୁ ବିଧାତାରେ ଚିନ୍ତିଲୁ ଭବିଷ୍ୟ ॥
ଏହାର ପରା ଲୋକକୁ ଏ କଷ୍ଟ ବିହିଲୁ ।
କେବଣ ମନ୍ଦପଣ ଦେଖି ଏହା କଲୁ ॥୪୦
ଶ୍ରୀରାମ ଦୁଃଖ ହୋଇଲା ଅପାର ।
ବିଧାତା କଲା ଆଣି ଏସନେକ ବିଚାର ॥
ସୀତ୍ୟା ଗଲାହୁଂ ଏବେ ଲକ୍ଷଣ ହିଂ ଯାଏ ।
ଆଉକି ଶ୍ରୀରାମ ଜୀବନ ଧରିଥାଏ ॥
ବିଶ୍ୱାସ ହୋଇଣ ତାର ଦୁଇଜଣ ଥିଲେ ।
ତାହା ଦଇବ ସେ କଢ଼ାଇ ଘେନିଗଲେ ॥
କାହୁଂ କାଳି ମୁନି ଅଇଲାକ ଏଥ ।
ଅକାରଣେ ଆସି ପାତିଲା ଅନର୍ଥ ॥
ଜାଣୁ ଜାଣୁ ଲକ୍ଷଣ କିମ୍ପା ଏହୁ ବୁଦ୍ଧି କଲା ।
ଦଇବର ମାୟା ବୋଲି ଜାଣି ନ ପାରିଲା ॥୫୦
କେ ବୋଲଇ ଗୋ ସେ ଦଇବର କୃତ୍ୟ ।
ତେଣୁକରି ଉପେଖିଲେ ଏହାର ପରା ଭ୍ରାତ ॥
ଏସନେକ ବୋଲାବୋଲି ହୁଅନ୍ତେ ନରନାରୀ ।
କହନ୍ତି ସଦାଶିବ ଶୁଣଗୋ ଶାକମ୍ଭେରୀ ॥
ଏଥୁ ଅନନ୍ତରେ ଲକ୍ଷଣ ରଥେ ବସି ।
ନବଗୁଂ ବାହାର ହୋଇ ଅରଣ୍ୟରେ ପଶି ॥
ସରଯୁ କୂଳେ ଯାଇଂ ରଥୁଂ ଓହ୍ଲାଇଲା ।
ବାହୁଡ଼ି ଯାଅ ବୋଲି ସୁମନ୍ତକୁ ବୋଇଲା ॥
ସୁମନ୍ତ ତିଆରିଣ ରଥ ଘେନି ଆସଇ ।
ସୁମୈତ୍ରାନନ୍ଦନ ଗହନ ବନସ୍ତେ ପଶଇ ॥୬୦
ଦେଖିଲା ତପୀମାନେ ତପ କରୁଛନ୍ତି ।
କଷ୍ଟ ପୂରିଲେ ସୁର ପୁର ସେ ଯାଆନ୍ତି ॥
ତାହାନ୍ତ ପୁଛି ଲକ୍ଷଣ ଅନେକ ତପ କଲା ।
ଦିନୁ ଦିନ କାୟା ଶୁଦ୍ଧ ଯେ ହୋଇଲା ॥
ସ୍ୱୟଂ ପରମବ୍ରହ୍ମ ଅଟଇ ସଉମିତ୍ରୀ ।
ଯାହାର କର୍ଣ୍ଣ କୁଣ୍ଡଳ ମଣି ଅଟଇ ଧରିତ୍ରୀ ॥
ଲୋକାଚାରକୁ ସେ ତପ ଆରମ୍ଭ କଲା ।
ପଦ୍ମାସନେ ବସି ଶ୍ରୀରାମ ସୁମରିଲା ॥
ରାମ ରୂପ ଚିନ୍ତି ରାମ ରୂପ ଧ୍ୟାନ ।
ରାମ ନାମ ସେ ଅଟଇ ବ୍ରହ୍ମ ଜ୍ଞାନ ॥୭୦
ଏମନ୍ତେଣ ତପ କରନ୍ତେଣ ବସି ।
ଇନ୍ଦ୍ର ଦେବତା ମିଳିଲାକ ଆସି ॥
ସଙ୍ଗେଣ ଅଛନ୍ତି ସକଳ ସୁରଗଣ ।
ଅପଛରୀ କିନ୍ନରୀ ଗନ୍ଧର୍ବ ମିଳିଣ ॥
ଦେଖିଲେ ଘୋର ତପ କରନ୍ତି ରାମ ଭାଇ ।
ଏକ ଆସନେ ବସି ଆହାର ନ ଖାଇ ॥
ପବନ ଭକ୍ଷିଣ ଦୁଃଖେ ଦିନ ନେଲା ।
ଏସନକ ଦେଖି ଇନ୍ଦ୍ର ଆଗେଣ ମିଳିଲା ॥
ଅନେକ ସ୍ତୁତି କଲା ସହସ୍ର ଲୋଚନ ।
ଧ୍ୟାନ ଛାଡ଼ି ଚାହିଁଲେ ସୁମିତ୍ରାନନ୍ଦନ ॥୮୦
ଦେଖିଲେ ତ୍ରିଦଶ ଦେବତାଏ ଛନ୍ତି ମିଳି ।
ଅପଛରୀ କିନ୍ନରୀ ବିଦ୍ୟାଧରୀ ବାଳୀ ॥
ସ୍ୱର୍ଗର ସମ୍ପଦ ସହିତେଛନ୍ତି ମିଳି ।
ଦୁନ୍ଦୁଭି ବଜାଇଂ କୁସୁମ ବିଞ୍ଚୁଛନ୍ତି ବାଳୀ ॥
ଦିବ୍ୟ ବିବାନେକ ମଣ୍ଡିଲା ଅଛି ଯତ୍ନେ ।
ତହିଂ ବିରାଜନ୍ତି ବିବିଧ ମଣି ରତ୍ନେ ॥
ଦର୍ପଣ ଚାମର କୁସୁମ ଦିବ୍ୟ ବାସ ।
ରଥଘେନି ମାତେଳି ମିଳିଲା ଆସି ପାଶ ॥
ଦେଖିଣ ଲକ୍ଷଣ ବୀର ଉଭା ହୋଇଂ ।
କର ଦୁଇ ଯୋଡ଼ି ବାସେବ ବୋଲଇ ॥୯୦
ଶୁଣିମା ଦେବ ଲକ୍ଷଣ ଅନନ୍ତ ମୂରତି ।
ଅନନ୍ତ କୋଟି ବ୍ରହ୍ମାଣ୍ଡର ଈଶ୍ୱର ରଘୁପତି ॥
ବିଷ୍ଣୁର ପରମ ଆତ୍ମା ତୁ ମାହାଯୋଗେ ଯୋଗୀ ।
କରୁଣାମଏ ପୁରୁଷ ତୁ ଅପାପୀ ଅଭୋଗୀ ॥
ସର୍ବଦା ଯୁବାତନୁ ଅଟଇ ତୋହର ।
ମହାରୁଦ୍ର ମୂରତି ତୁ ହଳ ମୂଷଳ ଧର ॥
ଅହିଂସକ ବିବେକୀ ତୁ ଅବ୍ୟୟ ଅଟୁ ସ୍ୱାମୀ ।
ଦତ୍ୟ ମାରଣେ ଜାତ ହୋଇଲୁ ମର୍ତ୍ତ୍ୟଭୂମି ॥
ପୃଥ୍ୱି ଭାରାଭର ଉଶ୍ୱାସିଲୁ ଏବେ ।
ତୋତେ ନେଇ ଆସି ଅଛନ୍ତି ସର୍ବଦେବେ ॥୧୦୦
ଆସ ଆସ ଭୋଦେବ ବିମାନେଣ ବସ ।
ଯାଅସି କ୍ଷୀର ସିନ୍ଧୁ ତୋହର ନିଜ ବାସ ॥
ଲକ୍ଷ୍ମୀ ଯେ ଜାନେକୀ ରୂପେଣ ଏଥି ଥିଲା ।
ପାତାଳ ବାଟେ ସେ ନିଜ ପୁରେ ଗଲା ॥
ତୋହୋର ଯିବାକୁ ଅଛଇ ବାଟ ଚାହିଁ ।
ପୁଣି ଅଳପଦିନେ ଆସିବେ ରଘୁସାଇଂ ॥
ମୁହିଂ ଇନ୍ଦ୍ରଦେବତା ତୋହର ନିଜ ଦାସ ।
ସ୍ୱର୍ଗକୁ ଯିବା ସ୍ୱାମୀ ରଥେ ଆସି ବସ ॥
ଶୁଣିଣ ଲକ୍ଷଣ ଦେବ ହରଷ ହୋଇଲେ ।
ଅନନ୍ତ ପୁରୁଷୋତ୍ତମ ମୂରତି ଧଇଲେ ॥୧୦
ଶିରେ ସପତ ଫେଣା ଧବଳ ମୂରତି ।
କରିଣ ବିରାଜଇ ଶତେ ଚନ୍ଦ୍ର ଜ୍ୟୋତି ॥
ଶିରେଣ ମୁକୁଟ କୁଣ୍ଡଳ ବେନି କର୍ଣ୍ଣ ।
କଣ୍ଠେ ରତ୍ନ ହାର କଟିରେ ନୀଳବସନ ॥
ଦେଖିଣ ଦେବତାଏ ସାଧୁ ସାଧୁ କଲେ ।
ଅପକ୍ଷରୀମାନେ ତହିଂ ହୁଳହୁଳି ଦେଲେ ॥
କେ ପାଟ ଛତ୍ର ଧରନ୍ତି ଶିରେ ତୋଳି ।
କେ ତହିଂ ଶ୍ୱେତ ଚାମର ନେଇଂ ଢାଳି ॥
କେ ରତ୍ନ ବିଞ୍ଚଣିକେ ଧରଇ ଧୂପକାଠି ।
ପବନ ଦେବତା କରଇ ପୁଷ୍ପ ବୃଷ୍ଟି ॥୨୦
ପୁଷ୍କର ନାମେ ମେଘ ଉପରେଣ ଛାୟା କଲା ।
କୁବେର ଦେବତା ତହିଂ ରତ୍ନ ବୃଷ୍ଟି କଲା ॥
କିନ୍ନରୀ ଗାଇଲେ ନାଚିଲେ ଅପକ୍ଷରୀ ।
ଡାହାଣାବ୍ରତେକ ସେ କୋଟିଏ ଶଙ୍ଖ ପୁରି ॥
ମର୍ଦ୍ଦଳ ଟମକ ଦାମଣ୍ଡି ଅଏଂଳାବେଣୀ ।
ବାଦ୍ୟ ବାଜନ୍ତେ ପୁଣ କମ୍ପଇ ମେଦନୀ ॥
ଇନ୍ଦ୍ର ହାଥେ ହାଥ ଦେଇଣ ଲକ୍ଷଣ ।
ନନ୍ଦିଘୋଷେ ରଥ କଲେକ ଆରୋହଣ ॥
ମାତେଳି ନମସ୍କାର କରିଣ ରଥ ବାହି ।
ସ୍ୱର୍ଗପୁରେ ଯାଇଂ ପ୍ରବେଶ ହୋଇଂ ॥୩୦
ସୁଧର୍ମା ସଭା ମଣ୍ଡି ଅଛଇ ଦେବ ବ୍ରହ୍ମା ।
ଅର୍ଘ୍ୟ ଘେନି ଦ୍ୱାରେ ଅଛନ୍ତି ସର୍ବବାମା ॥
ଲକ୍ଷଣ ଆସୁଛନ୍ତି ଦେଖିତ ଲୋକେ ଯାନ୍ତି ।
ଦେହକୁ ଦେହ ହୁଅନ୍ତି ଯନ୍ତାଯନ୍ତି ॥
ସବୁଦେବଙ୍କର ସଇନିମାନ ଜୁଣ୍ଡ ।

ପାଦଭରେ ଦଲ ଦଲ କମ୍ପଇ ବ୍ରହ୍ମାଣ୍ଡ ॥
ଚଉଦ ଭୁବନ ଲୋକେ ଦେଖିତ ଆସିଛନ୍ତି ।
ନ ଚିହ୍ନିଲା ଲୋକଙ୍କୁ ଚିହ୍ନାଇ ଦିଅନ୍ତି ॥
ଅପ୍ରମିତ ଥାଟ ଚଳଇ ଦେବ ସନ୍ୟ ।
ବାଜଇ ଦୁନ୍ଦୁଭି ଶୁଭଇ ବିତପନ ॥୪୦
ତେତିଶ କୋଟି ଦେବ ଯେ ଯାହା ଯାନ
ଚଢ଼ି ।
ଘେନି ଯାନ୍ତି ଲକ୍ଷଣଙ୍କୁ ପଟୋଆର ପାଢ଼ି ॥
ନନ୍ଦିଘୋଷ ରଥେ ପନ୍ନଗାବିଷ୍ଣୁ ବିଜେ ।
କୋଟି ରବି କିରଣ ଶରୀର ବିରାଜେ ॥
ସ୍ୱର୍ଗ ନରନାରୀ ଆନନ୍ଦେଣ ଦେଖନ୍ତି ।
ଅର୍ଘ୍ୟ ବଳାଇଣ ହୁଳହୁଳି ଦ୍ୟନ୍ତି ॥
ଯେ ସେ ଅନନ୍ତ ପୁରୁଷୋତ୍ତମ ଦେବ
ସ୍ୱାମୀ ।
ଲକ୍ଷଣ ରୂପେ ମୃତ୍ୟୁପୁରେ ଥିଲେ ଜନ୍ମି ॥
ପୃଥିବୀ ଭାରାଭର ଉଶ୍ୱାସି ଅଇଲେ ।
ଅମର ଗଣମାନଙ୍କୁ ଅର୍ହିଶୁର୍ଯ୍ୟ ଦେଲେ ॥୫୦
ଏସନେକ ବୋଲାବୋଲି ହେଉଛନ୍ତି
ଲୋକେ ।
ଦେଖିବାର ସଧରେ ଗୋଡ଼ାଇଛନ୍ତି ଥୋକେ ॥
ଯହିଁ ସେ ମଣ୍ଡିଲା ଅଛଇ ଆସ୍ଥାନ ।
ତହିଁ ଯାଇ ମିଳିଲା ସୁମଇତ୍ରା ନନ୍ଦନ ॥
ରଥୁ ଓହ୍ଲାଇ ସଭାରେ ବିଜେ କଲେ ।
ଦେଖିଣ ପିତାମହ ଛଡ଼-ଅର୍ଘ୍ୟ ଦେଲେ ॥
ସବୁ ଦେବତାଏ ବସିଲେ ବେହରଣ ।
ତଳେ ପଟୁଆରେ ଗାଆନ୍ତି ଗାଏଣ ॥
ଅପଛରାମାନେ ନୃତ୍ୟ କରୁଛନ୍ତି ।
ଲକ୍ଷଣର ମୁଖ ଚାହିଁ ହରଷ ହୁଅନ୍ତି ॥୬୦
କୁବେର ଆଣିଣ ବିବିଧ ରତ୍ନମାନ ।
ଆଭରଣ କଲେ ସହସ୍ର ଲୋଚନ ॥
ଷୋଡ଼ଶ ପ୍ରକାରେ ବ୍ରହ୍ମ ପୂଜା କଲେ ।
ଚନ୍ଦ୍ରଦେବତା ଆସିଣ ଅମୃତ ସମର୍ପିଲେ ॥
ଦେବତାଙ୍କ ବୋଲେ ତାହା କଲେକ
ଭୋଜନ ।
ବିବିଧ ଅକ୍ଷତ ଦେଲେ ତ୍ରିଦଶ ଦେବଗଣ ॥

ମଳୟ ଚନ୍ଦନ ଅମଳାଣ ବାସ ।
ଶୁଭ୍ର ସୁବର୍ଣ୍ଣ ହାର ପାରିଜାତେକ ପୁଷ୍ପ ॥
ଚନ୍ଦ୍ରକାନ୍ତି ମୁକୁତା ସୂର୍ଯ୍ୟ କାନ୍ତି ହୀରା ।
ଅଗ୍ନି କାନ୍ତି ମାଣିକ୍ୟ ଶତେ ସରା ॥ ୭୦
ନବରତ୍ନେ ନବଗ୍ରହଙ୍କର ଜ୍ୟୋତି ।
ଆନନ୍ଦେ ଦେବତାଏ ଲକ୍ଷଣଙ୍କୁ ସମର୍ପନ୍ତି ॥
ସଂଏ ନାରାଏଣ ବୋଲି ଦେବେ ତୁଷ୍ଟି
କଲେ ।
ଆଜ ସେ ନିସ୍ତରିଲୁ ବୋଲିଣ ବୋଇଲେ ॥
ଭଗବାନ ରୂପ ଦେଖିଲେ ତାହାଙ୍କରି ।
କର ଦୁଇ ଯୋଡ଼ିଣ କହନ୍ତି କୁଶଧାରୀ ॥
ଭୋଦେବ ଅନନ୍ତ ପୁରୁଷୋତ୍ତମ ଗୋସାଇଁ ।
ଦତ୍ୟ ବଳ ଦଳନେ ମଞ୍ଚେ ଜନ୍ମିଲୁ ଯାଇଁ ॥
ଭାରା ଉଶ୍ୱାସିଣ ଥାପିଲୁ ତିନିପୁର ।
ଏବେ ଯାଅ ତୁମ୍ଭେ କ୍ଷୀର ସିନ୍ଧୁର
ଭିତର ॥୮୦
ସୀତ୍ୟା କମଳାକ୍ଷୀ ପାତାଳ ବାଟେ ଗଲା ।
ନିଜ ମନ୍ଦିରେ ଯାଇଁ ଅଛଇଁ ଏକଲା ॥
ଶ୍ରୀରାମ ହିଁ ଆସିବେ ଅଳପ ଦିନ ଅଛି ।
ତୁମେ ବୁଝାଅ ଯାଇଁ ସୀତ୍ୟା କମଳାକ୍ଷୀ ॥
ତୁମ୍ଭର ସୃଷ୍ଟିକି ତଳଏ କରିଥାଅ ।
ତୁ ଏବେ ଭୋଦେବ ନିଜ ଭୁବନକୁ ଯାଅ ॥
ଶୁଣିଣ ଲକ୍ଷଣ ତହୁଁ ଉଠିଲେ ତଡ଼ତି ।
ବ୍ରହ୍ମା ସହିତେଣ ସକଳ ଦେବେ ଉଠନ୍ତି ॥
ନନ୍ଦିଘୋଷ ରଥ ମାତେଳି ଆଣି କଲା ।
ତହିଁ ବସି ଲକ୍ଷଣ ନିଜ ଆଶ୍ରମକୁ
ଗଲା ॥୯୦
ଦେବତାଙ୍କୁ ବାହୁଡ଼ାଇଁ ଆପଣେ ଗଲେ
ଚଳି ।
ଧୀରେ ଧୀରେ ରଥ ତହୁଁ ବାହାଇ
ମାତେଳି ॥
କ୍ଷୀର ସିନ୍ଧୁ ଭିତରେ ପଶିଗଲେ ଯାଇଁ ।
ବାରସ୍ୱତୀ ଭୁବନ ପଟାନ୍ତର ନାହିଁ ॥
ଦ୍ୱାରେ ଦ୍ୱାରପାଳ ବିନନ୍ତା ତନଏ ।
ଲକ୍ଷଣଙ୍କୁ ଦେଖି ନମସ୍କାର କଏ ॥

କୁଶଳ ପୁଚ୍ଛା ପୁଛି ହୋଇଲେ ବେନିଜନ ।
ରଥୁଂ ଓହ୍ଲାଇଲେ ସୁମୈତ୍ରା ନନ୍ଦନ ॥
ରାବଣ କୁମ୍ଭକର୍ଣ୍ଣ ଦ୍ରଶନ ଆସି କଲେ ।
ସ୍ୱାମୀ ଅଇଲେଟି କି ବୋଲିଣ
ବୋଇଲେ ॥୧୦୦
ଲକ୍ଷଣ ବୋଇଲେ ସେହୁ ଆସିବେ ଏବେ ।
ମୁହିଁ ଆଗ ହୋଇ ଅଇଲିଣି ଯେବେ ॥
ଅଳପ ସମଏକେ ଆସିବେ ରଘୁନାଥ ।
ମାତେଳିକି ବୋଇଲେ ତୁ ଘେନି ଯାଅସି
ରଥ ॥
ଆଜ୍ଞା ପ୍ରମାଣେ ଦେବଦୂତ ଗଲା ।
ସୀତୟା ସନ୍ନିଧେ ଯାଇଂଣ ମିଳିଲା ॥
ଦେଖି ବେଗେ ପାୟେ ପଡ଼ି ଶୋଇଲା
ତଡ଼ତି ।
ହସିଣ ଉଠ ଉଠ ବୋଇଲେ ମହାସ୍ୟତୀ ॥
ଶତେକ ପ୍ରଳମ୍ଭ କଲା ସୁମୈତ୍ରାର ସୁତ ।
କରପତ୍ର ଯୋଡ଼ି କହଇ ବାରତ ॥୧୦
ଭୋ ମହାସତୀ ଗୋ ମୁଂ ଅଇଲି ଆଗ
ହୋଇଂ ।
ଏହି ନିକଟେ ଆସିବେ ତୋର ସାଇଂ ॥
କାଳକେ ତୋ ଆଜ୍ଞା ଲାଗିଲା ଦେବଙ୍କର ।
ଆଗ କରି ମୋତେ ପେଷିଦେଲେ
ରଘୁବୀର ॥
ତୁମ୍ଭେ ଏବେ ଚିନ୍ତା ନକରସି ମାଏ ।
ଅଳପ ସମୟେକେ ଆସିବେ ରାମରାଏ ॥
ଶୁଣିଣ ମହାଲକ୍ଷ୍ମୀ ହୋଇଲେ ସନ୍ତୋଷ ।
ଲକ୍ଷ୍ମଣଙ୍କୁ ବୋଇଲେ ତୁ ଉପରକୁ ଆସ ॥
ଏସନେକ ସମୟେ ମିଳିଲେ ସରସ୍ୱତୀ ।
ତାଙ୍କ ଚରଣେ ଲକ୍ଷଣ କଲାକ ଭଗତି ॥୨୦
ହସି ବିଦ୍ୟାଦେବୀ ପଚାରଇ କଥା ।
ମଞ୍ଚେ ଅବତରି ପାଇଲ ବଡ଼ ବ୍ୟଥା ॥
କେତେଦିନେ ଆସିବେ ଯେ ଶ୍ରୀରାମ ।
ସ୍ୱର୍ଗହୁଂ ଅଧିକ କି ଅଯୋଧ୍ୟା ପୁର ଗ୍ରାମ ॥
ଠାକୁରାଣୀ ଅଇଲେକ ପାଞ୍ଚ ସାତ ବରଷ ।
କାହାକୁ ଦେଖି ତହିଁ ହୋଇଛନ୍ତି ହରଷ ॥

ତୁମ୍ଭେ ତ ଅଇଲ ସେ ନ ଆସନ୍ତି କିସ
ପାଇଁ ।
ଏଡ଼େ ମହାପ୍ରଭୁ କେତେ କାଳକ ଥିବେ
ତହିଁ ରହିଁ ॥
କାର୍ଯ୍ୟ ସରିଲାତ ସେ ରହିଲେ କିସ
ଲାଭେ ।
ରହି ଅଛନ୍ତି ସେ କିମ୍ପା ମାୟା ଦେବୀଙ୍କର
ଭାବେ ॥୩୦
ସେ ପୁଣି ସୁବର୍ଣ୍ଣ ସୀତ୍ୟା ରୂପେ ଭୋଗ
କରଇ ।
ସେ ସୁଖ ଭୋଗ ପାଇଁ ତହିଁରେ ବିଳସଇ ॥
ମନେ ମନେ କିମ୍ପା ବିଚାର ନକଲା ।
ସ୍ୱାମୀଙ୍କି ଆଣିମ ବୋଲି ସେହୁ ଗଲା ॥
ସଭିଏଁତ ଅଇଲେ ତାହାର ଚିନ୍ତା ନାହିଁ ।
ଏକାକରି ଅବା କରିବ ତାହାର ସାଙ୍ଗ ॥
ସୀତ୍ୟା ବୋଇଲେ ତୁମ୍ଭେ ସରସ୍ୱତୀ ଶୁଣ ।
କିମ୍ପାଇ ମାୟାକୁ ତୁମ୍ଭେ କହ ଅବିଗୁଣ ॥
ସପତଣୀ ବୋଲି ତାକୁ ହିଂସା ଭାବ ବହୁ ।
ତାହାର ବୋଲେ କି ଆସଇ ମହାବାହୁ ॥୪୦
ସେହୁ ଉପାୟେ ତହିଁ ଅଛଇ ନି କରି ।
ଆମ୍ଭେ ମନ୍ଦ ବୋଲିବାକୁ ଅଛଇ ସେହୁ
ଡରି ॥
ମହାମାୟା ରୂପେଣ ମୋହିବ
ଯେତେବେଳେ ।
ରାମରାଜ୍ୟ ଛାଡ଼ି ଆସିବେ ତେତେବେଳେ ॥
ଏବେ ପୃଥିବୀ ଦେବୀ ସେ ଆଣିଲାକ
ମୋତେ ।
ସ୍ୱାମୀକି ବିଛେଦ କରାଇଲା ଅନମିତେ ॥
ମୋତେ ଛଡ଼ାଇଣ ହୋଇଲା ତାଙ୍କର
ନାରୀ ।
ତାହାର ବୋଲେ ସିନା ରହିଲେ ରାବଣାରି ॥
ମହୀପତି ହୋଇଣ ଉଷତ ହୋଉଅଛି ।
ତେଣୁ ସେ ରଘୁନାଥ ନପାରେ ତାକୁ
ମୁଛି ॥୫୦
ଏହା ନ ସହିଲେ ଆସନ୍ତେ ଆମ୍ଭର ନାହା ।
ଘର ଚିନ୍ତା କରି ଗୁହାଇଲେ ତାହା ॥
ଏବେ ନଇଲେ ସେ ଜାଣିମା ଉପରକୁ ।
ଦାସୀ ହୋଇ ଘେନିମକି ଆମ୍ଭର ପ୍ରଭୁଙ୍କୁ ॥
ଜାନେକୀର ବଚନେ ଲକ୍ଷଣ ଯୋଡ଼ଇ
ବେନିକର ।
ଭୋଦେବୀ ପୃଥିବୀକୁ କୋପତୁ ନକର ॥
ଯେବଣ ଦିନୁ ତୋତେ ଆଣିଲା ବସନ୍ଧରୀ ।
ସେହିଦିନୁ ଅଯୋଧ୍ୟାର ସରିଲାଣି ଶିରୀ ॥
କୃଷି ନ ଉପୁଜନ୍ତି ନ ଫଳନ୍ତି ବୃକ୍ଷ ।
ଦୁଃଖେ ଦେହ ଧରି ଅଛନ୍ତି ରଘୁ ବଛ ॥୬୦
ଦଶରଥ ରାଜା ଯେ ଆୟୁଷ ଥାଉଁ ମଲା ।
ତାହାର ଉଗୁଂଳି ଶ୍ରୀରାମ ଭୋଗ କଲା ॥
ଆପଣାର ଦଶ ସହସ୍ର ବରଷ ଆଷ୍ୟ ହୋଇ ।
ପିତାର ସହସ୍ରେ ବରଷ ଅଛଇ ॥
ଏଗାର ସହସ୍ରେ ବରଷ ପୂରିଲେଣ
ଆସିବେ ।
ସତ୍ୟବନ୍ତ ପୁରୁଷ ସେ ଅଟନ୍ତି ରାଘବେ ॥
ତହିଁର କଣ୍ଟ ଆସି ହୋଇଲା ସମ୍ପୂର୍ଣ୍ଣ ।
ଅଳପ ଦିନେ ତୁମ୍ଭେ ଭେଟିବ ରଘୁନାନ ॥
ଲକ୍ଷ୍ମୀ ସରସ୍ୱତୀ ଲକ୍ଷଣ ବୋଲ ଶୁଣି ।
କେତେ ବେଳ ମାନେ ସେ ଆସିବେ
ରଘୁମଣି ॥୭୦
ଯେଥୁଅନନ୍ତରେ ତହୁଁ ଦୁଇ ସପତଣୀ ।
ଛଡ଼ ଅର୍ଘ୍ୟ ପୂଜା ଆସନ ଦେଲେ ଆଣି ॥
ଅମୃତ ପାନକର ବୋଲି ଅମିୟ ରସ
ଦେଲେ ।
ନାରାୟେଣ ସମାନେତ ଗଉରୋବ କଲେ ॥
ନିଜ ପୁରେ ଅନନ୍ତ ରହିଲେ ସୁଖ ପାଇ ।
ଶ୍ରୀରାମ ଯିବାକୁ ଅଛନ୍ତି ବାଟ ଚାହିଁ ॥
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ ।
ଅଯୋଧ୍ୟା କଟକେ ଅଛନ୍ତି ରଘୁପତି ॥
ଲକ୍ଷଣକୁ ଛାଡ଼ିଲେ ସତ୍ୟ ରକ୍ଷା ପାଇଁ ।
ସୁମନ୍ତ୍ର ବାହୁଡ଼ିଣ ଜଣାଇଲା ଯାଇଁ ॥୮୦
ଭୋ ରଘୁ ନନ୍ଦନ ଶୁଣ ମହାକ୍ଷତ୍ରୀ ।
ରଥେ ବସାଇଁ ମୁଁ ପୁଣି ନେଲି ସଉମିତ୍ରୀ ॥
ତୋହର ଆଗ୍ୟାଂଏ ମୁଁ ବନେ ଛାଡ଼ିଣ
ଅଇଲି ।
ତପ କରୁଥାଅ ବୋଲିଣ ବୋଇଲି ॥
ଶୁଣିଣ ଶ୍ରୀରାମ ହୋଇଲେ ବିକଳ ।
ଅବିକ୍ଷଣେ ନୟନୁ ପଡ଼ଇ ଅଶ୍ରୁଜଳ ॥
ବଶିଷ୍ଠ ବାମଦେବଂଏ ବସିଣ ତିଆରି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକାମ୍ଭେରୀ ॥
ଏଗାର ସହସ୍ରେ ବରଷ ହୋଇଲା ସମ୍ପୂର୍ଣ୍ଣ ।
ଦିନୁ ଦିନ ଶ୍ରୀରାମର ହୋଇଲା ଦେହ
କ୍ଷୀଣ ॥୯୦
ଏକାନ୍ତ ହୋଇଣ ସେହୁ ବସି କାନ୍ଦୁ ଥାଇ ।
ସୀତ୍ୟା ଲକ୍ଷଣ ବୋଲିଣ ଶୂନ୍ୟକଇ ଚାହିଁ ॥
କ୍ଷଣେ ଲୋଟଗାଳି ଶୁଅନ୍ତି ଧରଣୀ ।
କ୍ଷଣକେ ସାଷ୍ଟାମ ହୁଅନ୍ତି ରଘୁମଣି ॥
ଭ୍ରଥ ଅନୁକ୍ଷଣେଣ କତିରେଣ ଥାଇ ।
ଅନେକ ପ୍ରକାରେ ମଣାଇ କହଇ ॥
ସେ କଥା ଶ୍ରୀରାମର ନ ପଶଇ କର୍ଣ୍ଣେ ।
ଅବିକ୍ଷଣେ ଲୁଅ ପଡ଼ଇ ନୟନେ ॥
ଭିତରକୁ ଗଲେ ସୀତ୍ୟା ବୋଲିଣ କାନ୍ଦଇ ।
ବାହାରକୁ ଅଇଲେ ଲକ୍ଷଣ ବୋଲିଣ
ରୋଦଇ ॥୧୦୦
ବସିଥିଲାଠାରେ ଝୁରୁ ଥାଇ ଏକା ।
ଭୋ-ବିହି ସୀତ୍ୟା ଲକ୍ଷଣ ମୋତେ ଦେଖା ॥
ଭାଇ ଭାରିଯା ମୋର କେଉଁ କତିଗଲେ ।
ଅନାସ୍ତ କରିଣ ମୋତେ ଛାଡ଼ି ପଳାଇଲେ ॥
ମୁହିଁ ଏଥେ କିସ କରିବଇଁ ଥାଇଁ ।
ଏ ରାଜ୍ୟ ସମ୍ପଦେ ମୋର କାର୍ଯ୍ୟ ନାହିଁ ॥
ଯିବଇଁ ଦେଶାନ୍ତର ପିନ୍ଧିବି କଷା ବାସ ।
ଆଉ ସୁଖ ଭୋଗେ ନାହିଁ ମୋର ଆଶ ॥
ଲକ୍ଷଣର ପ୍ରାୟେ ଭାଇ ମୋର କେଣେ
ଗଲା ।
ଏକା ଘରଣୀ ମୋତେ ପ୍ରାପତ
ନୋହିଲା ॥୧୦
ଏ ଦେହ ଧରିଣେ ମୁହିଁ ଥିବଇଁ କିସ ପାଇଁ ।
ଏତେ ବୋଲି ରଘୁନାଥ ଉଠିଲେ
ବୋବାଇ ॥

ମାୟାଦେବୀ ହୋଇଣ ଯେ ଅଛଇ ସୁବର୍ଣ୍ଣ
ସୀତ୍ୟା ।
ତାହାକୁ ଅଣାଇ ଦେଖନ୍ତି ଜଗୁଜ୍ଜିତା ॥
ଲକ୍ଷଣ ଗଲାଦିନୁ ନ ଛାଡ଼ନ୍ତି କ୍ଷଣେ ।
ଦ୍ରଶନ ନ ପାବନ୍ତି ଅମନାତ୍ୟ ମନ୍ତ୍ରୀଗଣେ ॥
ସୁବର୍ଣ୍ଣ ସୀତ୍ୟାକୁ ରାମ ବାଉନୁଥାନ୍ତି ବସି ।
ବୋଲନ୍ତି ସଙ୍ଗାତୁଣୀ କହୁକିନା ହସି ॥
ପ୍ରେମ ଲୋଚନେ ମୋତେ ଚାହାସି
ଚାହାଣୀ ।
ଗାଢ଼େ ଆଲିଙ୍ଗନ ମୋତେ କରସି
ସଂଘାତୁଣି ॥୨୦
ବନସ୍ତ କଥାମାନ ପାଶୋରିଲୁ ସହି ।
ମଉନ ହୋଇ ବସିଲୁ କଥାତ ନକହି ॥
ଏତେ ବୋଲି ରାମ ଆପେ କୋଳ କରଇ ।
ମୁଖେ ଚୁମ୍ବନ ଦେଇ ଯଉବନ ଧରଇ ॥
ଆଖିକି ଆଖି ଠାରି କରନ୍ତି ପରିହାସ ।
ସୁବର୍ଣ୍ଣ ପ୍ରତିମାରେ ଲଗାଇଲେ ମୁହାଂସ ॥
ଦଇବୀ ମାୟାରେ ଦେବୀ ଶ୍ରୀରାମକୁ
ମୋହିଲା ।
ସୁବର୍ଣ୍ଣ ପିତୁଳି ରୂପେଣ ଭଣ୍ଡାଇଲା ॥
ଶ୍ରୀରାମ ଡାକନ୍ତେ ହାଦେ ନୁହଇ ଏ ସୀତା ।
କେତେବେଳେ ଦେଖିବି ମୁଂ ଜନେକ
ଦୋହିତା ॥୩୦
ଭୂମି ଗରୁ ଏବେ ମୋତେ ଲାଗିଲାକ ଆସି ।
ପୃଥ୍ୱି ଫଳ ନଦିଅଇ ନ ଉପୁଜଇ କୃଷି ॥
ଉପସର୍ଗ ମାନ ଦିଶିଲା ଅପାର ।
ମୋର ଯେଥି ଥିବାର ଅଟଇ ଅବେଭାର ॥
ଯିବି ବନବାସ ଭ୍ରଥକୁ ରାଜ୍ୟ ଦେଇଂ ।
ଏତେ ବୋଲି ବଶିଷ୍ଟଙ୍କୁ ଆଗେ ହକରାଇ ॥
ଯାବାଳି ବାମଦେବ କଶ୍ୟପ ତପୋବନ୍ତ ।
ଭ୍ରଥ ସହିତେଣ ହକାରିଲେ ସମସ୍ତ ॥
ଆବର ମନ୍ତ୍ରୀ ଅମନାତ୍ୟଗଣମାନ ।
ସବୁନ୍ତି ବସାଇ କହନ୍ତି କଉଶୁଲ୍ୟା
ନନ୍ଦନ ॥୪୦
ବଶିଷ୍ଟ ମୁଖ ଚାହିଂ କହନ୍ତି ସିଦ୍ଧାନ୍ତ ।
ଆଖି ଥନ ଥନ କରନ୍ତି ସୀତ୍ୟା କାନ୍ତ ॥
ଭୋ ମୁନି କଥା ଏକ ଶୁଣସି ମୋହର ।
ଚାରିପୁତ୍ର ଉପୁଜିଲେ ଦଶରଥ ରାଜାଙ୍କର ॥
ଜ୍ୟେଷ୍ଟ ମୁହିଂ ଆବର କନେଷ୍ଟ ତିନିଭାଇ ।
ଏଗାର ସହସ୍ର ବରଷ ପାଳିଲଇଂ ମୁହିଂ ॥
ଶତ୍ରୁନ୍ତ ସାଧିଲି ଘେନିଲି ପର ଦେଶ ।
ଜଗତେ ବିଖ୍ୟାତ ହୋଇଲା ମୋହର ଯଶ ॥
ପୁତ୍ରନ୍ତ ଉପୁଜାଇଲି ମୋହର ସମାନ ।
ଭଣ୍ଡାରେ ପୂରୋଇଲି ବିବିଧ ରତ୍ନମାନ ॥୫୦
ଅକଳଣା ଥାଠ ଭିଆଇଲି ମୁହିଂ ।
ଅନେକ ସୁଖ ଭୋଗ କଲଇଂ ରାଜା
ହୋଇ ॥
କାଳେଣ ଭାରିଯା ମୋର ପାତାଳକୁ ଗଲା ।
ସେହି ଦିନୁ ଦେହ ମୋର ଅଥିର
ହୋଇଲା ॥
ଭାଇନ୍ତ ଦେଖି ମୁହିଂ ମନ ମୁଛିଥିଲି ।
ଦଇବ ଅବଜେ ଏବେ ଲକ୍ଷଣକୁ ହରାଇଲି ॥
ଯେବେ ରାଜ୍ୟେ ଥିବାର ମୋର ନାହିଁ
ଇଚ୍ଛା ।
ବନବାସ କରିବଇଂ ମାଗିବଇଂ ଭିକ୍ଷା ॥
ଭ୍ରଥକୁ ରାଜ୍ୟ ଦେଇଂ ନିଶ୍ଚିନ୍ତେଣ ଯିବି ।
ଅରଣ୍ୟେ ଭିତରେ ମୁଂ ତପସ୍ୟା କରୁଥିବି ॥୬୦
ନଗରେ ଥାଇତ ମୋର ନ ବଳଇ ଚିତ୍ତ ।
ଅଭିଷେକ ଯୋଗାଡ଼ ଅଣାଅ ତୁରିତ ॥
ଏହିକ୍ଷଣି ଯିବି ମୁଂ ନ ରହଇ କ୍ଷଣେ ।
ଶୁଣିଣ ଆରତ ହୋଇଲେ ମନ୍ତ୍ରୀଗଣେ ॥
ନଗ୍ର ନରନାରୀ ପାଇଲେ ବାରତା ।
ଏକ ଆରକେ ହେଉଛନ୍ତି କଥା ॥
କେ ବୋଲଇ ଶ୍ରୀରାମ ପୁଣି ବନ ଯିବ ।
ଅଯୋଧ୍ୟାରେ ନୃପତି ଭରତ ହୋଇବ ॥
କେ ବୋଲଇ ଜାନେକୀ ଗଲା ଯେବଣ
ଦିନୁ ।
ଅଯୋଧ୍ୟାର କଥା ବାହାର ରାମ ମନୁ ॥୭୦
ଲକ୍ଷଣକୁ ଦେଖିଣ ସେ ମନ ମୁଛି ଥିଲା ।
ଭାଇଗଲା ଦିନୁ ଏବେ ଦୁଗୁଣ ଭାଜିଲା ॥
ଅନୁକ୍ଷଣେ ଅନ୍ତଃପୁରେ ପଶିଥାଇ ।
ଏଡ଼େ ମହାରାଜା ଗୋଟା ହୋଇଲା ଗୋ
ବାଇ ॥
ଏତେ କାଳ ଏଥି ଆମ୍ଭେ ସୁସ୍ଥ ହୋଇଥିଲୁ ।
ଶ୍ରୀରାମ ବନଗଲେ ନିଶ୍ଚଏ ଆମ୍ଭେ ମଲୁ ॥
କିମ୍ପାଇଥିବୁ ଆମ୍ଭେ ଯିବୁ ଶ୍ରୀରାମର ସଙ୍ଗେ ।
ଜୀବର ସୁଫଳ ଗୋ ହୋଇବ ନାନା
ରଙ୍ଗେ ॥
ତାହାର ପ୍ରାୟେ ସ୍ୱାମୀଙ୍କୁ ମୁଛିବୁ କେମନ୍ତେ ।
ଯାହାର ପ୍ରସାଦେଣ ଥିଲୁ ଯେ
ନିଶ୍ଚିନ୍ତେ ॥୮୦
ଯମ ଭଏ ନାହିଂ ଏଥି ନ ପଶଇ ରୋଗ ।
ଇନ୍ଦ୍ର ବରଷଇ ପାଇଣ ପାଗ ଯୋଗ ॥
ଘରେ ଘରେ ଲୋଡ଼ିଲେଣ ଅଷ୍ଟ ନିଧି
ପାଇଂ ।
ଭଏ ଭୀତି ନାହିଂ ନିଶ୍ଚିନ୍ତେଣ ଥାଇଂ ॥
ରାମ ରାଜ୍ୟେ ପରଜା ଥିଲୁ ମହାପୁଣ୍ୟେ ।
ଆନ ରାଜ୍ୟେ ଆମ୍ଭେ ସେ ଯିବୁ କେସନେ ॥
ଏ ବାଡ଼ି ବୃତ୍ତିରେ ଆମ୍ଭର କାର୍ଯ୍ୟ ନାହିଂ ।
ଧନ ବସ୍ତ୍ର ସମସ୍ତ ଯିବୁ ଦାନ ଦେଇଂ ॥
ଏସନେକ ବୋଲନ୍ତି ଅଯୋଧ୍ୟା ନରନାରୀ ।
ସଦାଶିବ ବୋଲନ୍ତି ଶୁଣଗୋ
ଶକାମ୍ୟେରୀ ॥୯୦
ନଗ୍ରପୁର ଲୋକେ ଯହୁଂ ବିକଳ
ହୋଇଲେ ।
ଶ୍ରୀରାମ ଛାମୁରେ ଯାଇ ଡଗରା କହିଲେ ॥
ଶୁଣ ଦେବ ରାଘେବ ନୃପ ଚୂଡ଼ାମଣି ।
ଅଯୋଧ୍ୟାର କଥା ସେ ଅଇଲୁ ଆମ୍ଭେ ଶୁଣି ॥
ତୋହୋର ବନ ଯିବା ଶୁଣିଲେ ନରନାରୀ ।
ଦେହରୁ ପ୍ରାଣ ଛାଡ଼ିଗଲା ସବୁଙ୍କରି ॥
ତୁମ୍ଭେ ଯେଣେ ଯିବ ସର୍ବେହେଂ ତେଣେ
ଯିବେ ।
ଅଯୋଧ୍ୟା କଟକେ ଗୋଟିଏ ନଥିବେ ॥
ଘରବାଡ଼ି ବୃତ୍ତି ଧନକୁ ଆଶା ନାହିଂ ।
ତୋହର ସଙ୍ଗେ ନିଶ୍ଚଏ ଯିବେ ସେ
ଗୋଡ଼ାଇଂ ॥୧୦୦

ଶ୍ରୀରାମ ବୋଇଲେ କିମ୍ପା ରାଜ୍ୟ
ଭାଙ୍ଗିଯିବେ ।
ଭ୍ରଥ ରାଜା ହେବ ତାହାଙ୍କୁ ଖଟିଥିବେ ॥
ଶୁଣିଣ କକୟା ସୁତ ଆଗ ସରି ।
କର ଯୋଡ଼ିଣ କହଇ ଶୁଣହେ ରାବଣାରି ॥
ମୁହିଂ କିମ୍ପା ଅଯୋଧ୍ୟାରେ ନୃପତି ହୋଇବି ।
ତୁମ୍ଭେ ଯେଣେ ଯିବ ମୁହିଂ ତେଣେ ଯିବି ॥
ଏକା ଚଗୁରୁ ଆମ୍ଭେ ଚାରି ଜଣ ଜାତ ।
କାହାକୁ ଛାଡ଼ିଣ କେ ରହିବାକ ଯେଥ ॥
ସବୁକାଳେ ସ୍ନେହ ନ କରୁ ମୋତେ ସ୍ୱାମୀ ।
ଲକ୍ଷଣକୁ ଘେନିଣ ହୋଇଲୁ
ବନଗାମୀ ॥୧୦
ହସି କଥା କହ ତୁମ୍ଭେ ଲକ୍ଷଣକୁ ଚାହିଂ ।
ମୋତେ ତୋହୋର ସ୍ୱାମୀ ମନରେ ଦୟା
ନାହିଂ ॥
ତୁ ବନ ଯିବୁ ମୁଂ ହୋଇବିଂଯେଥେ ରାଜା ।
ମୋତେ ହୋଇବ ପୁଣ ଗଉରୋବ ପୂଜା ॥
ପାପିଷ୍ଠ ଜନନୀ ମୋର ତୋତେ ଦ୍ରୋହ
କଲା ।
ତହିଂର ଫଳେ ସିନା ଏମାନ ଉପୁଜିଲା ॥
କୁଶ ଲବ ତୋହୋର ଅଛନ୍ତି ପୁତ୍ରବେନି ।
ତାହାଙ୍କୁ ଦେବାର ଉଚିତ ମେଦନୀ ॥
ମୋତେ ଦୟା କଲେ ସଙ୍ଗେ ଘେନି ଯିବୁ ।
ଅମାୟା ହେଲେ ସ୍ୱାମୀ ଯେହା ସେ
କରିବୁ ॥୨୦
ଶୁଣିଣ ଶ୍ରୀ ରାମଚନ୍ଦ୍ର ମଉନ ହୋଇଲେ ।
ଶତୃଘନକଇ ଲୋକ ପେଷସି ବୋଇଲେ ॥
କିଷ୍କିନ୍ଧା ରାଜାକୁ ପେଷ ବେଗେ ଚାର ।
ଆସନ୍ତୁ ସୁଗ୍ରୀବର ସେ ମଇତ୍ର ମୋହର ॥
ଲଙ୍କାରୁ ବିଭୀଷେଣ ଆଣସି ଗୁହାଇଂ ।
ଗୁହ ନାମେ ଶବରକୁ ଆଣୁ ଦୂତ ଯାଇ ॥
ତିନି ମାତାଙ୍କର ଆସନ୍ତୁ ଭାଇମାନେ ।
ଲକ୍ଷେକ ନୃପତି କି ଅଣାଅ ବହନେ ॥
ଏସନେକ ସମଏ କହିଲେ ବଶିଷ୍ଟ ।
ବିକଳ ହୋଉଛନ୍ତି ଅଯୋଧ୍ୟା ସମରାଷ୍ଟ୍ର ॥୩୦
ଦୟା ମାଗୁଛନ୍ତି ସିଂହଦ୍ୱାରେ ଥାଇଂ ।
ତାହାଙ୍କୁ ଅନୁଗ୍ରହ କରସି ରଘୁସାଇଂ ॥
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ତପ-ଚାରୀ ।
କିସ ବୋଲନ୍ତି ସେ ଅଯୋଧ୍ୟା ନରନାରୀ ॥
ବଶିଷ୍ଟେ ବୋଇଲେ ଛାମୁକୁ ଅଣାଇବା ।
କିସ କହନ୍ତି ତାଙ୍କ ମୁଖରୁ ଶୁଣିବା ॥
ଶ୍ରୀରାମ ଆଜ୍ଞାଦେଲେ ଆସନ୍ତୁ ସକଳ ।
ତତକ୍ଷଣେ ଲୋକନ୍ତ ଅଣାଇଲେ ଦ୍ୱାରପାଳ ॥
ଆସ୍ଥାନର ତଳେଣ ଗହଳ ନରନାରୀ ।
ଶିରେ କରଯୋଡ଼ି ଅଛନ୍ତି ସବୁରି ॥୪୦
ଉଚ୍ଚେଣ ଡାକ ଦ୍ୟନ୍ତି ଶୀରାମଚନ୍ଦ୍ର ଶୁଣ ।
ତୁମ୍ଭେ ଯେବେ ବନସ୍ତକୁ ଯିବ ରଘୁରାଣ ॥
ପୁତ୍ର ଦୋହିତା ଘେନି ତୋହୋର ସଙ୍ଗେ
ଯିବୁ ।
ତୋହୋର ବିହୁନେ କିମ୍ପା ଆମ୍ଭେ କ୍ଷଣେ
ଥିବୁ ॥
ତୁ ସତ୍ୟବାଦୀ ପୁରୁଷ ପାପ ପୁଣ୍ୟ ଜାଣୁ ।
ଆମ୍ଭେମାନେ ତୋତେ ବଶ୍ୟ ଗଲୁ ତେଣୁ ॥
ଆମ୍ଭନ୍ତ ଛାଡ଼ି ତୁମ୍ଭେ ନ ଯାଅ ଦାଶରଥି ।
ତୋହୋର ନ ଥିଲେ ସେ ନ ଥାଉଂ ଆମ୍ଭେ
ଏଥି ॥
ଶୁଣିଣ ରାମଚନ୍ଦ୍ର ହରଷ ହୋଇଲେ ।
ମୁହିଂ ନେବଇଂ ତୁମ୍ଭଙ୍କୁ ବୋଲିଣ
ବୋଇଲେ ॥୫୦
ବାଞ୍ଛା ଯେବେ କର ତୁମ୍ଭର ହେଉ ତେବେ
ସିଧ୍ୟ ।
ଯଦି ମୋହୋର ତୁଲେ ସମସ୍ତେ ସ୍ୱର୍ଗ ମଧ ॥
ଏବେ ଯେ ଯାହା ମନ୍ଦିରକୁ ଯାଅ ।
ଆମ୍ଭ ଯିବା ବେଳକୁ ସଜ ହୋଇଥାଅ ॥
ଏହା ଶୁଣି ନରନାରୀ ଆନନ୍ଦ ହୋଇଲେ ।
ଯିବାକୁ ଉଦ୍‌ବେଗ ମନ କଲେ ॥
ଏଥୁଅନନ୍ତରେ ଶ୍ରୀରାମ ରାଏ ।
ବେନି ପୁତ୍ରଙ୍କୁ ସେ ସନିଧ୍ୟକୁ ରାଏ ॥
ଅବିଷେକ ଯୋଗାଡ଼ ସୁମନ୍ତ ଦେଲା ଆଣି ।
ବଶିଷ୍ଟକୁ ଚାହିଂଣ ବୋଲନ୍ତି ନୃପମଣି ॥୬୦
ଭ୍ରଥ ଯେବେ ଯେଥେ ନୃପତି ନୋହିବ ।
ବାଣ୍ଟିଣ ଭୁଞ୍ଜନ୍ତୁ ଏ କୁଶ ଲବ ॥
ତୁମ୍ଭେ ମହାମୁନି ଅବିଷେକ କରାଅ ।
ହୁଅନ୍ତୁ ନୃପତି ଏ ମୋହୋର ବେନି ପୁଅ ॥
ଶୁଣିଣ ମହାରଷି ଆସନୁ ଉଠି ଗଲେ ।
ଦୁଇ ପୁତ୍ରକଇ ଅଭିଷେକ କଲେ ॥
ଦକ୍ଷିଣ କୋଶଳେ ଲବ ହୋଇଲାକ ରାଜା ।
ବିବିଧ ଛନ୍ଦେ ବଜାଇଲେ ବାଜା ॥
ଉତ୍ତର କୋଶଳେ କୁଶକୁ ରାଜା କଲେ ।
ଆପଣେ ରାବଣାରି ପାଟ ବାନ୍ଧିଲେ ॥୭୦
ବେନି ପୁତ୍ରଙ୍କୁ ବେନି ଜାନୁରେ ବସାଇଂ ।
ଦୁହିଂକର ମସ୍ତକେ ଦୁଇହାତ ଦେଇ ॥
ଦଣ୍ଡ ସିଂହାସନେ ସେହି ସେ ହୋଇଲା ।
ଦୁଇପୁତ୍ରଙ୍କୁ ରାମ ରାଜ୍ୟନ୍ତ ବାଣ୍ଟିଦେଲା ॥
ଆଠ ସହସ୍ର ରଥ ଷାଠିଏ ସହସ୍ର ଗଜ ।
ଲକ୍ଷେକ ହଏବର ଅଗଣିତ ମନୁଜ ॥
ଜଣକେ ଏତେ ଲେଖାଏଂ ସନ୍ୟ ଦେଲେ ।
ଅମୂଲ୍ୟ ଭଣ୍ଡାର ଗୋଟା ବେନି ଭାଗ
କଲେ ॥
ବସ୍ତ୍ର ଅଳଙ୍କାର ମାନ ଯିସ ଯିସ ଆଏ ।
ସମ ଭାଗ କରି ବାଣ୍ଟି ଦେଲେ
ରାମରାଏ ॥୮୦
ରାଜାମାନଙ୍କ ଚହୁଂ ଦୋହିତା ଅଣାଇଲେ ।
ଅଷ୍ଟ ପୁତ୍ରଙ୍କୁ ବିଭା କରାଇଲେ ॥
ଅଯୋଧ୍ୟା କଟକେ ରହସି ବୋଲିଣ କହି ।
ଏଥିରେ ଯେତେକ ଲୋକ ନ ରହିବେ
କେହି ॥
ସବିହେଂ ଗୋଡ଼ାଇଂ ମୋହୋର ସଙ୍ଗେ
ଯିବେ ।
ମୋହୋର ଶାଖାମାନେ କିଂପା ଏଥେ
ଥିବେ ॥
ଏତେକ ବୋଲି ଶ୍ରୀରାମ ପୁତ୍ରନ୍ତ ଡିଆରି ।
ରାଜ୍ୟକର ବାବୁ ଶତ୍ରୁକୁ ଜୟେ କରି ॥
ଦେବତା ବ୍ରାହ୍ମଣକୁ ହୋଇବୁ ଭଗତି ।
ପରଜା ପାଳିବୁ ଅଗ୍ନିରେ ଆହୁତି ॥ ୯୦

ଦେବା ଦୟା ବାବୁରେ ଧରିଥିବ ଚିତେ ।
ନାରାୟଣଙ୍କୁ ସେବା କରିବ ଅନୁବ୍ରତେ ॥
ଜାଣଟିକି ମୁଁ ଯେମନ୍ତେ ରାଜ୍ୟ କଲି ।
ରାବଣ ପରା ଏକ ଅସୁରକୁ ମାରିଲି ॥
ସମୁଦ୍ରେ ବନ୍ଧ ବନ୍ଧିଲି ମୋହିଲି ବନ ଜନ୍ତୁ ।
ଦେଶ ପାଳିଲଇଁ ଯେ ଯାହାର ହେତୁ ॥
ବ୍ରହ୍ମଋଷିମାନେ ମୋତେ ଅଭିଷେକ କଲେ ।
ଦେବତାଯେ ଭାଳିଣ ପୁଷ୍ପକ ରଥ ଦେଲେ ॥
ମଲା ଜୀଆଇଂଲି ଘେନିଲି ପର ସୀମା ।
ମୋତେ ପ୍ରବୋଧିବାକୁ ଆସଇ ସୁର ବ୍ରହ୍ମା ॥୧୦୦
ସୁବିଧାନେ ରାଜ୍ୟକରି ସ୍ୱର୍ଗକୁ ମୁଁ ଯିବି ।
ପୁତ୍ରନ୍ତ ଅର୍ଜ୍ଜିଲି କିଂପାଇଂ ମୁଁ ଥିବି ॥
ତୁମ୍ଭେ ବାବୁରେ ନ କରିବଟି ଚିନ୍ତା ।
ରାଜ୍ୟ ବାଣ୍ଟି ଦେଲଇଁ ତୁମ୍ଭନ୍ତା ॥
ଆମ୍ଭ ଚାରି ଭାଇଙ୍କର ତୁମ୍ଭେ ଆଠପୁଅ ।
ସୋଦର ଭାଇ ତୁମ୍ଭେ କେହି ଭିନ୍ନ ନୁହଁ ॥
ଏକକୁ ଆରେକ ସପକ୍ଷ ହୋଇଥିବ ।
ଆଠଖଣ୍ଡ କୋଶଳ ସୁଖେ ବିଳସିବ ॥
କାହେଁକ ପିତାମାତା ନଥାନ୍ତି ରେ ବାବୁ ।
ସଂସାର ରଞ୍ଜନା ଏ ମାୟା ସିନା ସବୁ ॥୧୦
ମୋହୋର ମାତା ପିତା ଅଛନ୍ତି ଏବେ କାହିଁ ।
ରାଜାର ବାପ ଭାଇ ଇଷ୍ଟ ବନ୍ଧୁ ନାହିଁ ॥
କ୍ଷତ୍ରୀ ପୁତ୍ରଙ୍କର ଦୁଇ ବାହା ସବୁ ।
କିସ ଚିଆରିବି ସୁଖେ ରାଜ୍ୟକର ବାବୁ ॥
ଯେତେକ ବୋଲି ଶ୍ରୀରାମ ପୁତ୍ରନ୍ତ ଚିଆରି ।
ଲବ କୁଶଙ୍କର ନୟନୁ ବହେ ବାରି ॥
ଶ୍ରୀରାମ ଆଗ୍ୟାଂ ଦେଲେ ହୋ ଯାଅ ଏହିକ୍ଷଣି ।
ବେନି ଦେଶ ଆବୋରିଣ ରହ ଭାଇ ବେନି ॥
ଶୁଣି ବେନି ପୁତ୍ରେ ଓଳଗ ମେଲାଇଲେ ।
ସିଂହଦ୍ୱାରେ ଯାଇଂ ରହୁବରେ ବସିଲେ ॥୨୦
ବୀରଛତ୍ର ଧରି ଚତୁରାଙ୍ଗ ବଳ ଘେନି ।
ଯେ ଯାହାର ସୀମାକୁ ଚଳିଲେ ଭାଇ ବେନି ॥
ଯେଥିଅନନ୍ତରେ ଶୁଣଗୋ ଭଗବନ୍ତୀ ।
ଶତ୍ରୁଘନ ରାଜ୍ୟକୁ ଯେବଣ ଦୂତେ ଯାନ୍ତି ॥
ତିନିଦିନେ ପ୍ରବେଶ ହୋଇଲେ ମଧୁବନେ ।
ଦେଖିଲେକ ରାଜା ବସିଅଛନ୍ତି ଆସ୍ଥାନେ ॥
ନମସ୍କାର କରି ଦୂତେ ଉଭାହୋଇ ।
ଚାହିଁ ଶତ୍ରୁଘନ ବାରତା ପୁଛଇ ॥
କେମନ୍ତେହେଂ ଚାର ଅଇଲୁ କେତେବେଳେ ।
ଭଲେ ଅଛନ୍ତି ନା କଉଶଲ୍ୟା ଦୁଲାଳେ ॥୩୦
ଅମନାତ୍ୟ ଗଣ ଭ୍ରାଥ ଲକ୍ଷଣ ।
ରାଜା ପରଜା ଲବ କୁଶ ବେନି ଜନ ॥
ଦେଶ ଭଣ୍ଡାର ଅଛନ୍ତି ନା ଭଲେ ।
ଦୂତେ ଆଗସରି ବୋଲନ୍ତି ଶତ୍ରୁଘନ ବୋଲେ ॥
ଶୁଣ ସଉମିତ୍ରୀ ଅଯୋଧ୍ୟା ବାରତା ।
କାଳିଞ୍ଜନ ନାମେଣ ଅଇଲା ବ୍ରହ୍ମବେତ୍ତା ॥
ଶ୍ରୀରାମଙ୍କୁ ଆସି ସତ୍ୟ କରାଇଲା ।
ଲୋକନ୍ତ କଢ଼ାଇ ଆପଣେ ଭାଳିଲା ॥
ବୋଇଲା ଯେ ଆସି ହୋଇବାକ ଏଥ ।
ଭୋ ରଘୁନାଥ ନିଷ୍ଠେ ଛେଦିବୁ ତାର ମାଥ ॥୪୦
ଏସନେକ ସମୟେ ଦୁର୍ବାସା ମହରଷି ।
ଦେଖିଲେ ସିଂହଦ୍ୱାରେ ଲକ୍ଷଣ ଅଛି ବସି ॥
ଭୟାଙ୍କର ରୂପ ଦେଖାଇ ଡରାଇଲେ ।
ଶ୍ରୀରାମଙ୍କୁ ବେଗେ କହସି ବୋଇଲେ ॥
ଭୟେ ଲକ୍ଷଣ ଦ୍ୱାର ଛାଡ଼ି ଗଲା ।
ଶ୍ରୀରାମ ଛାମୁରେ ଯାଇଣ ଜଣାଇଲା ॥
ଯେହାଙ୍କର ଯାଆନ୍ତେ ସେ ଭାବିଲା ଏକାନ୍ତ ।
ଦେଖି କୋପ କଲେ ତାକୁ ଜାନେକୀର କାନ୍ତ ॥
ସତ୍ୟ କଥା କହି କାଳିଞ୍ଜନ ଗଲେ ଚଳି ।
ଲକ୍ଷଣକୁ ଦେଖି ରାମ ଦେଲେ ଗାଳି ॥୫୦
ତୋହୋର ଯୋଗୁ ମୋର ଭାଜିଲା ଏକାନ୍ତ ।
ଏ ରାଜ୍ୟରେ ଥିଲେ ତୋତେ ମାରିବି ଏ ସତ୍ୟ ॥
ନଗ୍ର ବାହାର ତାକୁ କଲେ ତତକ୍ଷଣ ।
ଦେଶ ତେଜି ଲକ୍ଷଣ ପଶିଲେ ଘୋର ବନ ॥
ଯହୁଁ ସେ ଭାଇ ତୋର ରାମର ପାଶୁ ଗଲା ।
ସେଦିନୁଂ ରଘୁନାଥ ଅନେକ ଚିନ୍ତା କଲା ॥
ଭ୍ରଥକଇ ରାଜ୍ୟ ଦେଇତ କଲେ ମନ ।
ସେ କଥା ନାସ୍ତି କଲେ କକୟାନନ୍ଦନ ॥
ତେଣୁ ସେ ସୀମା ଦୁଇଭାଗ କଲେ ।
ଲବକୁଶଙ୍କୁ ତାହା ବାଣ୍ଟିଦେଲେ ॥୬୦
ଧନ ବସ୍ତ୍ର ଦଣ୍ଡ ଚାମର ସକଳ ସନ୍ୟ ।
ଦୁହିଂଙ୍କି ସମଭାଗ କରିଦେଲେ ରଘୁନାନ ॥
ଅଭିଷେକ କରି ବୀର ଛତ୍ର ଧରାଇଲେ ।
ଲବ କୁଶକୁ ଯାଅ ବୋଲି ରାମ ଆଗ୍ୟାଂ ଦେଲେ ॥
ବିଭୀଷେଣ ସୁଗ୍ରୀଙ୍କି ଆଣିଗଲେ ଦୂତ ।
ତୋତେ ନେବାକଇସେ ପେଷିଲେ ଆମ୍ଭନ୍ତ ॥
ଗୁହ ନାମେ ଶବର ସହିତେଣ ଆସିବେ ।
ଲକ୍ଷେକ ନୃପତି ତାର ଅଯୋଧ୍ୟା ପୁରେ ମିଳିବେ ॥
ତୁ ଏବେ ହୋ ଶତ୍ରୁଘନ ଏହିକ୍ଷଣି ଆସ ।
ନିଶ୍ଚୟ ଶ୍ରୀରାମ କରିବେ ବନବାସ ॥୭୦ .
ଶ୍ରୀରାମର ଶ୍ରୀହସ୍ତ ପତ୍ରିକା ନେଇ ଦେଲା ।
ଶ୍ରୀରାମର ଆଗ୍ୟାଂ ଘେନ ବୋଲିଣ ବୋଇଲା ॥
ଉଠିଣ ସଉମିତ୍ର ଘେନିଲାକ ତାହା ।
ମୁଦ ଭାଙ୍ଗି ପଢ଼ଇ ମଧୁବନ ନାହା ॥
ଶ୍ରୀରାମଙ୍କର ଶତ୍ରୁଘନଙ୍କୁ କଲ୍ୟାଣ ।
ପତ୍ର ପ୍ରବେଶ ମାତ୍ରକେ ଆସିବ ତତକ୍ଷଣ ॥
ପୁତ୍ର ଦୁହିଂକି ତୋର ମଥୁରା ବାଣ୍ଟିଦେସି ।
ଦୂତ ପ୍ରବେଶ ମାତ୍ରେ ବେଗେତୁ ଆସସି ॥
ଶୁଣି ଶତ୍ରୁଘନ ଉଦବେଗ ମନ ।

ସନ୍ନିଧକୁ ରାଇଲେ ବେନି ଯେ
ନନ୍ଦନ ॥୮୦
ପାତ୍ର ମନ୍ତ୍ରୀକି ଡିଆରି ରାଜ୍ୟ ବାଣ୍ଟିଦେଲେ ।
ପୁତ୍ର ଦୁହିଂକି ଅଭିଷେକ କରାଇଲେ ॥
ନଳକୁ ଉତ୍ତର ଶତୃଜିତକୁ ଦକ୍ଷିଣ ।
ମଥୁରା ଛାଡ଼ି ରାଏ ବାହାର ତତକ୍ଷଣ ॥
ରହୁବର ଆରୋହି ତତକ୍ଷଣେ ଚଳିଗଲା ।
ସାତଦିନର ବାଟ ଦୁଇଦିନେ ଗଲା ॥
ଅଯୋଧ୍ୟାରେ ପ୍ରବେଶ ନବରେ ଯାଇଂ
ପଶି ।
ଶ୍ରୀରାମଙ୍କୁ ଦେଖିଲେ ତ ଆସ୍ଥାନେ ଛନ୍ତି
ବସି ॥
ପାଏ ପଡ଼ି ଶୋଇ ମଥାରେ ହସ୍ତ ଦେଲେ ।
ଶ୍ରୀରାମର ଆଜ୍ଞାପାଇ ଉପରକୁ ଗଲେ ॥୯୦
ଶ୍ରୀରାମର ପାଶରେ ବସି ଦ୍ରଶନ କରି ।
କୁଶଳ ପଚାରିଲେ ରାବଣ ଅରି ॥
ସଦାଶିବ କହନ୍ତି ଶୁଣଗୋ ଶାକାମ୍ବରୀ ।
ଦୂତ ଗଲା ଯହୁଂ ବିଭୀଷଣ ହକାରି ॥
ସେତୁବନ୍ଧ ବାଟେ ସମୁଦ୍ର ତରିଗଲା ।
ଲଙ୍କାର କଟକେ ଯାଇ ପ୍ରବେଶ ହୋଇଲା ॥
ବିଭୀଷେଣକୁ ଦେଖି ଶ୍ରୀରାମର ଆଗ୍ୟାଂ
କହି ।
ତତ୍‌କ୍ଷଣେ ଲଙ୍କପତି ଆସିବାକୁ ସଜ ହୋଇ ॥
ଚାରକଇ ବହୁତ ଧନ ବସ୍ତ୍ର ଦେଲା ।
ରଥେ ବସି ସେ ଗଗନେ ଅଇଲା ॥୧୦୦
ମନ୍ତ୍ରୀଗଣ ସହିତେ ସଇନ ବହୁତ ।
ଅଯୋଧ୍ୟାରେ ପ୍ରବେଶ ବିଶର୍ବାର ସୁତ ॥
ନବରତ୍ନ ନିର୍ମିତ ଅଳଙ୍କାର ମାନ ।
ଶ୍ରୀରାମ ଛାମୁରେ ଦେଇ କଲାକ ଦର୍ଶନ ॥
ସୁଗ୍ରୀବରକଇ ଡଗରା ଡାକି ଗଲା ।
ଅଯୋଧାର କଥା ସମସ୍ତ କହିଲା ॥
କାମେଶ୍ୱର ବୋଲି ଯେ ରୋମାର କୁମର ।
କିଷ୍କିନ୍ଧାରେ ତାକୁ କଲେ ନୃପବର ॥
ସେନାପତିମାନଙ୍କୁ ପଠିଆଇଲା ଦୂତ ।
ବାରତା ପାଇ ସେ ଅଇଲେ ସମସ୍ତ ॥୧୦

ତାରା ସହିତେଣ ରୋମା ସୁନ୍ଦେରୀ ।
ଏହାନ୍ତ ଘେନି ଆସି କିଷ୍କିନ୍ଧା ଦଣ୍ଡଧାରୀ ॥
ଅଙ୍ଗଦ ହନୁମନ୍ତ ଜମ୍ବେବ ନଳ ନୀଳ ।
ସୁଷେଣ ସମ୍ପାତି ବିବିଧ ପନଶିଳ ॥
ତାରାକ୍ଷ ଗମଣ ଶଉରୀ ସେନାପତି ।
ଗନ୍ଧମାର୍ଦ୍ଦନ ଚନ୍ଦନ ପ୍ରଭୃତି ॥
ବଳିମୁଖ ଋଷଭ ଦଧିମୁଖ ବୀର ।
କଞ୍ଚଣ କୁନ୍ଦ କାମୋଦ ତାରାର ପିଅର ॥
ମହୀନ୍ଦ୍ର ଦୃବିନ୍ଦ ଯେ ବସନ୍ତ ପବନ ।
ସାରାସ ପାରାସ କାଳିମୁଖ ସୁସୋଦନ ॥୨୦
ଏ ରୂପେ ଯେ ଯାହାର ସୈନ୍ୟବଳ ଘେନିଣ
ଆସନ୍ତି ।
ନିଜ ରାଜ୍ୟମାନ ପୁତ୍ରନ୍ତ ସମର୍ପନ୍ତି ॥
ଲଙ୍କା କଟକାଇରେ ଯେତେ ଲୋକ
ଗଲେ ।
ଏବେ ବାରତା ପାଇ ସେମାନେ ଅଇଲେ ॥
ଅଯୋଧା ପୁରେ ପ୍ରବେଶ ଅକଳିତ ବଳ ।
ରାମଙ୍କୁ ଦ୍ରଶନ କଲେ ଇସ୍କିନ୍ଧା ଭୂପାଳ ॥
ସେନା ଯୂଥପତି ମଲ୍ଲ ମହାମଲ୍ଲ ।
ମଥାରେ ହାଥ ଦେଇଣ ଉଭା କପିବଳ ॥
ଗୁହ ନାମେ ଶବର ପାଇଲା ବାରତା ।
ତତ୍‌କ୍ଷଣେ ରାଜ୍ୟ କଲା ସବୁ ସଂସ୍ଥା ॥୩୦
ଗହନ ନାମେ ପୁତ୍ରକୁ ନୃପତି ପଣ ଦେଲା ।
ଘରଣୀ ସହିତେ ଥାଟ ଘେନିଣ ଅଇଲା ॥
ଶ୍ରୀରାମଙ୍କ ଛାମୁରେ କଲାକ ଦରଶନ ।
ଶିରେ କର ଦେଇ ଉଭା କନ୍ଧରାଣ ॥
ଲକ୍ଷେକ ନୃପତି ଯେ ଯାହା ସନ୍ୟ ଘେନି ।
ଅଯୋଧାରେ ପୂରିଲେ ଅନେକ ସଇନି ॥
ଶ୍ରୀରାମଙ୍କୁ ଦ୍ରଶନ କଲେକ ରାଜାମାନେ ।
ଶୁଣଗୋ ରଦ୍ରାଏଣୀ ବୋଲନ୍ତି ଈଶାନ୍ୟେ ॥
ଶ୍ରୀରାମଙ୍କର କାର୍ଯ୍ୟେ ରାବଣ ହତ ପାଇ ।
ଦେବତାମାନେ ଜନମିଲେ ମଞ୍ଚେ
ଯାଇ ॥୪୦
ସେ ଆସି ପୂରିଲେ ଅଯୋଧା କଟକେ ।
ଆବରହିଂ ଅଇଲେ ଅନେକ
ତପୀଲୋକେ ॥

ଚତୁର୍ଦ୍ଦିଗେ ଶୁଭିଲା ଶ୍ରୀରାମ ସ୍ୱର୍ଗ ଯିବା ।
ଲୋକେ ବିଚାରିଲେ ଆମ୍ଭେ କିମ୍ପାଇଂ ଥିବା ॥
ଅନେକ ପାପ ଆମ୍ଭେ ପୂର୍ବରେ ଅଛି କଲା ।
ଏଜନ୍ମ ଗୋଟିତ ବିଅର୍ଥେଣ ଗଲା ॥
ଏବେ ଭଲ ବେଳ ହୋଇଲାତ ଆସି ।
ରାଜ୍ୟ ଛାଡ଼ି ଯାଉଛନ୍ତି ରଘୁକୁଳ ଶିଷି ॥
ସ୍ୱର୍ଗର କବାଟ ଫିଟିବ ରାମ ଗଲେ ।
କେହି ନ ଗୁହାଇବ ସଙ୍ଗେ ପଶିଲେ ॥୫୦
ଏତେ ଭାଳି ନିଜ ପୁତ୍ରନ୍ତ ଡିଆରି ।
ଘର ଛାଡ଼ି ବାହାର ହୋଇଲେ ନରନାରୀ ॥
ଅଯୋଧା ନବରେ ପଶିତ ଠାବ ନାହିଂ ।
ଆକାଶ ଦିଶୁଅଛି ନ ଦିଶଇ ଭୂଇଂ ॥
ଅନେକ ଋଷି ଆସି ପ୍ରବେଶ ହୋଇଲେ ।
ଶ୍ରୀରାମ ଯିବାର ବାରତା ପାଇଲେ ॥
ଅବିଷେକ କରି ଯାଇଥିଲେ ଯେଉଂମାନେ ।
ରୋଗୀ ଭିକ୍ଷୁକ ଚଉର୍ଯ୍ୟ ଥେଣ୍ଟ ଜନେ ॥
ଇନ୍ଦ୍ରି ନିଗ୍ରହଣ ଅଲୋଭୀ ଅପୁଂସକ ।
କାମ କ୍ରୋଧ ଲୋଭେ ବଞ୍ଚିଲେ ଯେବଣ
ଲୋକ ॥୬୦
ଯତି ସନ୍ୟାସୀ ଭୋଗୀ ଅଗ୍ନିହୋତ୍ର ।
ବୈଷ୍ଣବ ଦିଗାମ୍ବର ହରିହର ଭଗତ ॥
ପତ୍ରଫଳ ଆହାରି ଯେ ବଣରେ ଭୋଗୀ ।
ସ୍ୱରୂପ ଅର୍ଥ ସିଦ୍ଧ ସାଧକ ମହାଯୋଗୀ ॥
ସତ୍ୟ ବକତା ଧନପ୍ରାଣୀମାନେ ।
ପର ଉପକାରୀ ଅବାଦୀ ଲୋକମାନେ ॥
ଦାନ ଧର୍ମ କରନ୍ତା ସ୍ୱକର୍ମେ ବ୍ରତନ୍ତା ।
ନିରେଖ ନିର୍ବଳ ଯାହାର ନିରନ୍ତେରେ
ଚିନ୍ତା ॥
ପରଧନ ହରନ୍ତି ହରନ୍ତି ପର ନାରୀ ।
ପର ସୀମା ଯେହୁଂ ଘେନନ୍ତି ଲୋଭ
କରି ॥୭୦
ଅନ୍ୟାୟେ ଉପଦର୍ପ କରନ୍ତି ଯେଉଂଜନ ।
ବାତୁଳ ନିରାପକ୍ଷ ଅଶକତି ନିଧନ ॥
ପାତେକୀ ଅପାତେକୀ ଅତି ପାତେକୀ
ଲୋକେ ।

ନିର୍ମାୟା ପାତେକୀ ମିଳିଲେ ଆସି ଥୋକେ ॥
ମିଥ୍ୟା ଭାଷୀ ଅଶ୍ରୁ ଉଚ୍ଛକିତ ମନ ।
ଅଜ୍ଞାଣ ଆବର ଅଭକ୍ଷ କରନ୍ତି ପାନ ॥
ବାଟପଢ଼ା ତପୀ ଲୋକଙ୍କୁ ମନ୍ଦ କହି ।
ପ୍ରାଣୀକି ଦଣ୍ଡନ୍ତେ ନିର୍ଦ୍ଦୟା ଯାର ଦେହୀ ॥
ଅନ୍ଧ ବଧିର ଛୋଟା ଜଡ଼ା ଅପାରଗ ।
ସବିହେଁ ମିଳିଲେ ଆସି ଶ୍ରୀରାମ କଟେକ ॥୮୦
ନବର ସିଂଘ ଦ୍ୱାର ମେଳା ହୋଇଂ ଅଛି ।
ସବିହେଁ ଦେଖୁଛନ୍ତି ଦଶରଥ ବଛି ॥
ରତ୍ନ ମଣ୍ଡପେ ବିଜୟେ ରାମ ରାହୁ ।
ବୀର ଆସନେ ବସିଛନ୍ତି କୋଦଣ୍ଡ କାଣ୍ଡ ବାହୁ ॥
ମୁକୁଟ କୁଣ୍ଡଳ ଅଙ୍ଗେ ନବରତ୍ନେ ହାର ।
ବିଦ ମୁଦ୍ରିକା ବାହୁଟି ମେଖଳା ତୋଡ଼ର ॥
ପୀତ ବସନ ପରିହରଣ ଉପରାଣ ରଙ୍ଗପାଟ ।
ଚାରିକତି ବେଢ଼ିଣ ପଟୋଆରି ଥାଠ ॥
ସଭିହେଁ ବିନୋହି ହୋନ୍ତି ଶିରେ କର ଦେଇଂ ।
ତୋହୋର ଯେଉଂ ଗତି ଆମ୍ଭର ରଘୁସାଇଂ ॥୯୦
ତୁ ଯେଣେ ଯିବୁ ଆମ୍ଭେ ତେଣେ ଯିବୁ ।
ତୋହୋର ସଙ୍ଗତେ ସ୍ୱାମୀ ଗୋଡ଼ାଇଣ ଥିବୁ ॥
ଏ ଆମ୍ଭର ସତ୍ୟ ଦେବ ନୁହଇଂ ଆନ ।
ଏସନକ ବୋଲାବୋଲି ହୁଅନ୍ତି ଲୋକମାନ ॥
ଶୁଣିଣ ଶ୍ରୀରାମ ବୋଲନ୍ତି ହୋଇ ହୋଇ ।
ନିଶ୍ଚୟେ ସମସ୍ତଙ୍କୁ ମୁଂ ନେବଇ ସ୍ୱର୍ଗକଇ ॥
ଏତେ ବୋଲି ଦେବ ବିଭୀଷଣଙ୍କୁ ଚାହିଁ ।
ଅନୁଗ୍ରହେ ଆଗ୍ୟାଂ କଲେ ରଘୁସାଇଂ ॥
ବୋଇଲେ ନୃପତି ସୁଖେ ରାଜ୍ୟ କର ।
ଅକଣ୍ଟେକ ରାଜ୍ୟ ଭୋଗ କର ଲଙ୍କପୁର ॥୧୦୦

ବିଭୀଷେଣ ବୋଇଲା ନୁହଇ ଉଚିତ ।
ମୁହିଂ ତୋହୋର ସଙ୍ଗେ ଯିବଇଂ ନିଅତ ॥
ତୋତେ ନ ଦେଖିଲେ ମୁଂ କେମନ୍ତେ ବ୍ରତିବି ।
ତୋତେ ଛାଡ଼ି ମୁଂ କିସ ସମ୍ପଦ ଅର୍ଜିବି ॥
ତୁ ମୋହୋର ଠାକୁର ମୁଂ ତୋହୋର ସେବକ ।
ତୋତେ ଛାଡ଼ି ରହିଲେ ମୋତେ କି ବୋଲିବେ ଲୋକ ॥
ରାବଣଙ୍କୁ ମାରି ମୋତେ ଏଡ଼େକ ଭାଗ୍ୟ ଦେଲୁ ।
ଏବେ କିଂପା ସ୍ୱାମୀ ନିଷେଧ ମୋତେ କଲୁ ॥
ଶ୍ରୀରାମ ବୋଇଲେ ତୁ ଭାଇକି ତୋର ଛାଡ଼ି ।
ଶରଣ ପଶିଲୁ ମୋ ଚରଣ ତଳେ ପଡ଼ି ॥୧୦
ସେଦିନ ପ୍ରସନ୍ନ ହୋଇ ଦେଲଇଂ ତୋତେ ବର ।
ସେକଥା ମାୟାକି ହୋଇବ ମୋହୋର ॥
ପୃଥ୍ୱୀ ଥିବାଯାଏ ଦେହ ଧରିଥିବୁ ।
ସୁବର୍ଣ୍ଣମୟେ କଟକେ ସୁଖେ ବିଳସିବୁ ॥
ଚନ୍ଦ୍ର ସୂର୍ଯ୍ୟ ବେନି ଯେତେକ କାଳ ଥିବେ ।
ଯେତେକାଳ ରାମ ନାମ ସୁମରିବେ ॥
ତେତେ କାଳ ଯାଏ ଦେହ ଧରିଥିବୁ ।
ସେହି ଲଙ୍କାପୁରେ ତୁ ଭୋଗ ବିଳସିବୁ ॥
ଅନ୍ତେଣ ମୋହୋର ଶ୍ୟରୀରେ ଲୀନ ହୁଅ ।
ଏବେ ତ୍ରିଜୀବୀ ଲେଖାଏଂ ରହିଥାଅ ॥୨୦
ଶୁଣି ବିଭୀଷେଣ ସନ୍ତୋଷ ହୋଇଲା ।
ମଥାରେ ହାଥ ଦେଇ ପଛଘୁଞ୍ଚା ଦେଲା ॥
ଏସନେକ ସମଏ ରାମ ହନୁମନ୍ତକଇ ଚାହିଁ ।
ବୋଇଲେ ପବନ ସୁତ ରହିଥାଅ ତୁହି ॥
ଯାବତ କାଳ ବନ ପର୍ବତ ପୃଥ୍ୱୀ ଥିବ ।
ଅମର ତନୁ ତୋର ଆରୋଗ୍ୟ ହୋଇବ ॥
ହନୁମନ୍ତ ବୋଇଲା ଏ ନ ଯୋଗାଇଂ କିଛି ।

ତୋତେ ଛାଡ଼ିଲେ କି ମୋତେ ଯଶ ଅଛି ॥
ତୁମ୍ଭେ ମୋହୋର ସ୍ୱାମୀ ମୁଂ ତୋହୋର ଦାସ ।
ଅନୁଗ୍ରହ କର ମୋତେ ଜାନେକୀ ବିଳାସ ॥୩୦
ଏଥେ ରହିଲେ ମୁଂ ମରିବି ନିଶ୍ଚଏ ।
ଭୃତ୍ୟର ହତ୍ୟାକୁ ଘେନିମୁଂ ରାମରାଏ ॥
ହସିଣ ଶ୍ରୀରାମ ବୋଇଲେ ହନୁମନ୍ତ ଶୁଣ ।
ସେବାକରିବାର ତୋତେ ନକଲି କିଛି ଗୁଣ ॥୯୦
ତୁ ଯାହା ମନାସିଲୁ ଗନ୍ଧମାର୍ଦ୍ଦନ ପର୍ବତରେ ଥାଇଂ ।
ଲକ୍ଷଣଙ୍କୁ ଶକ୍ତି ମାରିଥିଲା ଲଙ୍କସାଇଂ ॥
ମଉଷୋଧି ଆଣିଯାଇଂ ମନାସିଲୁ ଯାହା ।
ଏବେ ରହି ଭୋଗ୍ୟ କରସି ତୁ ତାହା ॥
ଉପବ୍ରହ୍ମା ହୋଇ ଗନ୍ଧମାର୍ଦ୍ଦନରେ ଥିବୁ ।
ମୋହୋର ଆଜ୍ଞାଏ ପୁଣି ସୃଷ୍ଟି ଭିଆଇବୁ ॥୪୦
ହନୁମନ୍ତ ବୋଇଲା ମୋହୋର ଏଥେ ନାହିଁ କାର୍ଯ୍ୟ ।
ଏ ବ୍ରହ୍ମା ପଦ କିସ ମୁଂ କରିବି ରଘୁରାଜ ॥
ଏ ତୋହୋର ରୂପ ଅନୁବ୍ରତେ ଦେଖୁଥିବି ।
ଏହି ପଦ୍ମପାଦ ଧରି ମଞ୍ଚାଳିବି ॥
ଏ ମୁଖ ଦେଖନ୍ତେ ମୋର ନ ରୁଚଇ ଆନ ।
ବ୍ରହ୍ମାପଦ ଏଥକୁ ତ ନୁହଇଂ ସମାନ ॥
ହସି ରଘୁକୁଳ ନାଥ ବୋଇଲେ ହୋଇଲା ।
ବ୍ରହ୍ମାପଦକୁ ଯେବେ ତୋ ଶରଧା ନୋହିଲା ॥
ଆମ୍ଭଙ୍କୁ ଦେଖିବାକୁ ହୋଇଲା ତୋର ମନ ।
ଏକଥା ସତଟିକି ହୋ ପବନ ନନ୍ଦନ ॥୫୦
ହୋଇ ହୋଇ ଦେବ ବୋଲି ବୋଇଲା ମାରୁତି ।
ତୋହୋବିନୁ ଆନେ ମୋର ନବଳିଲା ମତି ॥
ଶ୍ରୀରାମ ବୋଇଲେ ମୁଂ ଏ ରୂପ ଛାଡ଼ିବି ।
ଆନ ଶ୍ୟରୀର ଧରି ସ୍ୱର୍ଗକଇଂ ଯିବି ॥
ସତ୍ୟ ଯେବେ କଲୁ ଏ ମୃତିକି ସେବାକରି ।

କେମନ୍ତେ କରିବୁଟି ଅକ୍ଷଏ ବଇରୀ ॥
ଶୁଣି ହନୁମନ୍ତ ତବଦ ହୋଇଲା ।
ଯହୁଁ ରଘୁନାଥ ମାୟାରେ ମୋହିଲା ॥
ପାଏ ପଡ଼ି ଶୋଇ ବୋଲଇ ମାରୁତି ।
ମୁହିଂ ତୋତେ କଥାଏ କହଇ ରଘୁପତି ॥୬୦
ତୋର ଆଗ୍ୟାଂ ଦେଲେ ଗନ୍ଧାମାର୍ଦ୍ଦନକଇ ଯିବି ।
ଏହି ରାମ ରୂପ ନୟନେ ଦେଖିବି ॥
ନାମଗୋଟି ସୁମରିବି ନିରୋପିବି ଧ୍ୟାନେ ।
ରାମନାମ ଧରୁଥିବି ଜ୍ଞାନେ ଅଜ୍ଞାନେ ॥
ଦୃବାଦଳ ଶ୍ୟାମଳ ଚନ୍ଦ୍ରମଣ୍ଡଳ ମୁଖ ।
ରାଜୀବ ଲୋଚନ ମୁଖ ମଦନ ବିଶିଖ ॥
ପୀତାମ୍ବର ପରିହରଣ ମୁକୁଟ କୁଣ୍ଡଳ ।
ହାର କେଉର ମଣି କିରଣ ଗ୍ରହମାଳ ॥
ବାମ କରେଣ କୋଦଣ୍ଡ କନ୍ଧେଣ ତ୍ରୋଣଭାର ।
ମଧୁର ମୂରତି ପ୍ରସନ୍ନ ରଘୁବୀର ॥୭୦
ଦକ୍ଷିଣେ ଜାନେକୀ ବାମେଣ ଲକ୍ଷଣ ।
ଅଭିଷେକ କାଳେ ଯାହା ଦେଖିଲି ରାମ ରାଣ ॥
ସେହି ରୂପ ଚିନ୍ତାକୁ ଅନୁକ୍ଷଣେ କରୁଥିବି ।
ଯେଣେ ଚାହିଂବି ତେଣେ ମୁଂ ସେ ରୂପ ଦେଖିବି ॥
ତୋର ନାମ ଗୋଟି ସୁମରୁଥିବି ଅନୁକ୍ଷଣେ ।
ଏବର ଦେବା ମୋତେ ରଘୁକୁଳ ରାଣେ ॥
ଶ୍ରୀରାମ ବୋଇଲେ ଏହୁ ତୋତେ ଅସ୍ତୁ ହେଉ ।
ଏ ତୋହୋର ମନ ସେ ମୋହୋର ତହିଂ ଥାଉ ॥
ଶୁଣିଣ ହନୁମନ୍ତ ଉଠି ଉଭା ହୋଇ ।
ଜମ୍ୱେବକୁ ଚାହିଂଣ ଶ୍ରୀରାମ ବୋଲଇ ॥୮୦
ଭୋ ରକ୍ଷପତି ମୁଂ ବନବାସ ଯିବି ।
ଦେବକାର୍ଯ୍ୟ କଲି କିମ୍ପା ଏଥେ ଥିବି ॥
ସୀତୟା ପରାଏକ ଘରଣୀ ମୋର ଗଲା ।
ପ୍ରାଣର ସାଖା ଭାଇ ଲକ୍ଷଣ ଛାଡ଼ିଗଲା ॥
ଏଥି ଥିବାର ମୋହୋର ନୁହଇଂ ଉଚିତ ।
ରାଜ୍ୟ ବାଣ୍ଟି ଦେଲଇଂ ବେନି ସେ ପୁତ୍ରନ୍ତ ॥
ଯିବଇଂ ନଗ୍ର ଛାଡ଼ି ରହିତ ମନ ନାହିଂ ।
ସବୁନ୍ତି ଅଣାଇଲି ଦେଖାଦେଖି ପାଇଂ ॥
ଏବେ ଏଥି ସୁଖେ ତୁମ୍ଭେ ରାଜ୍ୟ କରୁଥାଅ ।
ଅକଣ୍ଟେକ ରାଜ୍ୟ ଭୋଗ ପାଅ ॥୯୦
ଜମ୍ୱେବ ବୋଇଲେ ତୁମ୍ଭେ ଶୁଣ ରଘୁପତି ।
ଆମ୍ଭର ଏଥି ଥିବାର ନୁହଇ ଯୁଗତି ॥
ଏ କଳପ ପ୍ରଥମ ସମଏ ମୁହିଂ ଜାତ ।
ସିନ୍ଧୁ ମନ୍ଥି ଯେବେ ଦେବତା ଦଇତ ॥
ସେଦିନକୁ ମୋର ପ୍ରଥମ ଯୁବା କାଏ ।
ତହିଂରେ ଶ୍ରୀରାମକୁ ବାମନ ରୂପ ହୋଏ ॥
ବଳିର ତହୁଁ ଯହୁଁ ଘେନିଲ ପୃଥିଦାନ ।
ସତ୍ୟ ମନେଦେଲା ତହୁଁ ସେ ବଳି ରାଜନ ॥
ଏକା ପାଦକେ ହରି ସପତ ଦ୍ୱୀପ ଘୋଟି ।
ଆରକ ଚରଣ ସ୍ୱର୍ଗେ ପୂଜିଲେ ପରମେଷ୍ଠୀ ॥୧୦୦
ଆର ପାଦେକ ବଳି ପାତାଳକୁ ଗଲା ।
ତ୍ରିବିକ୍ରମ ରୂପ ସେଦିନ ହୋଇଥିଲା ॥
ପଞ୍ଚାଶ କୋଟି ଯୋଜନ ଅଟଇ ବସୁନ୍ଧରୀ ।
ବାସୁଦେବର ଚରଣେ ସୃଷ୍ଟି ପୂରି ॥
ସେଦିନକୁ ତରୁଣ ମୁଂ ବଳେ ବଳୀଆର ।
ପ୍ରତିକ୍ଷଣ କଲି ମୁଂ ନାରାୟଣ ପୟର ॥
ଏବେ ବୃଦ୍ଧ ହୋଇଣ ସେବା ମୁଂ ତୋତେ କଲି ।
ତୋହୋର ପ୍ରସାଦେ ମୁଂ ଲଙ୍କାରେ ଯୁଝିଲି ॥
ଏଥେ ଥାଇଂ ଆଉ କରିବଇଂ କିସ ।
ଲେଉଟି ଆସିବ କି ସେ ବଳବୟସ ॥୧୦
ତୋହୋର ପ୍ରାୟେ ପ୍ରଭୁକୁ ଛାଡ଼ିବି କିସ ପାଇଂ ।
ତୁ କିଂପା ନିଷେଧ କରସି ଗୋସାଇଂ ॥
ରାମ ବୋଇଲେ ଯାହା କହିଲ ରକ୍ଷପତି ।
ଏକଥା କହିବାର ମିଳଇ ଯୁଗତି ॥
ରାବଣ ସଙ୍ଗତେ ମୁଂ କରନ୍ତେ ସମର ।
ଯାହା ତୁମ୍ଭେ ମନେ ଧଇଲ ମନ୍ତ୍ରୀବର ॥
ବୋଇଲ ଯେ ବାବୁ ଧନ୍ୟ ଅଯୋଧ୍ୟା ଠାକୁର ରଘୁନାଥ ।
ନାରାଜ ବିନ୍ଧନ୍ତେ ନ ଦିଶଇ ହସ୍ତ ॥
ଏହାର ପ୍ରାଏ ସଙ୍ଗତେ ଯେବେ ଯୁଝି ।
ତେବେ ସେ ସାଂଗ୍ରାମ କଲା ପ୍ରାଏ ବୁଝି ॥୨୦
ଏହା ଯେ ବୋଇଲ ଅଟଇନା ସତ ।
ସେକଥା ପାଶୋରି ପୁଣ ହରାଅ ଆମ୍ଭନ୍ତ ॥
ଭଗତ ବଛଳ ଅଟଇ ମୋର ବାନା ।
ଭୃତ୍ୟଙ୍କର ବାଞ୍ଛା ମୁଂ ନ କରଇ ଆନା ॥
ଏବେ ତୁମ୍ଭେ ଏହି ବୟସେ ରହିଥାଅ ।
ପାତାଳ ଭୁବନରେ ବିବିଧ ସୁଖ ପାଅ ॥
କୃଷ୍ଣ ଅବତାର ମୁଂ ହୋଇବି ଯେତେବେଳେ ।
ତୁମ୍ଭ ସାଙ୍ଗେ ଯୁଦ୍ଧ ମୁଂ କରିବି ତେତେବେଳେ ॥
ତେବେ ସେ ବଇକୁଣ୍ଠ ଭୁବନକୁ ଘେନିଯିବି ।
ଏ ମୋହୋର ଶ୍ୟରୀରେ ନିର୍ଣ୍ଣୟେ କରାଇବି ॥୩୦
ଏତେ ବୋଲି ଦେବ ଶାଢ଼ୀ ଅଣାଇଲେ ।
ବିଭୀଷେଣ ହନୁମନ୍ତ ଜମ୍ୱେବକୁ ଦେଲେ ॥
ଶତୃଘନକୁ ଚାହିଂ ବୋଇଲେ ରାବଣାରି ।
କେମନ୍ତ କରି ଅଇଲୁତ ମଧୁବନ ପୁରୀ ॥
ଶତୃଘନ ବୋଇଲା ସ୍ୱାମୀ ଏ ତୋର ଉତ୍ତରେ ।
ଦୁଇ ପୁତ୍ରନ୍ତ ରାଜ୍ୟନ୍ତ କଲେ ମଥୁରା ରାଜ୍ୟରେ ॥
ସମଭାଗ କରି ବାଣ୍ଟିଦେଲି ମହୀ ।
ଶୁଣି ରଘୁନାଥ ପରମ ତୋଷ ହୋଇ ॥
ସୁଗ୍ରୀବକୁ ବୋଇଲେ ତୁ କରିବୁ କେମନ୍ତ ।
ଆମ୍ଭର ସଙ୍ଗତରେ ଏବେ ଯିବୁଟିକି ମିତ ॥୪୦

କପିରାଜ ବୋଇଲା ମଥାରେ ହାଥ ଦେଇଂ ।
ତୋହୋ ଅନୁଗ୍ରହ ଯେବେ ହୋଇଲା
ରଘୁସାଇଂ ॥
ତୋତେ ସେବା କରୁଥିବଇଂ ସନିଧ୍ୟେ ।
କି କାର୍ଯ୍ୟ ଅଛଇ ମୋର ମୃତ୍ୟୁପୁର ମଧ୍ୟେ ॥
ଅଙ୍ଗଦକୁ ବୋଇଲେ ତୁ ଯିବୁ କିକି ବୀର ।
ଶୁଣି ବାଳୀସୁତ ମଥାରେ ଦେଲା କର ॥
ଭୋଦେବ ମୁଂ ତୋର ଜନ୍ମେ ଜନ୍ମେ ଦାସ ।
କିମ୍ବା ଛାଡ଼ିବି ମୁଂ ତୋର ଚରଣରୁ ଆଶ ॥
ନଳ ନୀଳ ଗନ୍ଧମାର୍ଦ୍ଦନ ସୁଷେଣ ।
ବଳୀମୁଖ ଦଧି ମୁଖ କାଳିମୁଖ ଚନ୍ଦନ ॥୫୦
ପବନ ବସନ୍ତ ଶରରୀ ସେନାପତି ।
ମହୀନ୍ଦ୍ର ଦ୍ୱିବିନ୍ଦ ବିବିଧ ସମ୍ପାତି ॥
କଞ୍ଚଣ କୁମୋଦ କୁନ୍ଦ ବୀର କାଳିଞ୍ଜନ ।
ଗବଏ ଗବାକ୍ଷ ଶତବାଳି ସୁସୋଦନ ॥
ସାରାସ ପାରାସ ସରସେତୁ ଗବାକ୍ଷ ।
ଋକ୍ଷଛ ଋମଣ ଡାଳିମ୍ବ ତାରାକ୍ଷ ॥
ଜଣେ ଜଣେ ସ୍ୱାମୀ ପଚାରନ୍ତି ରାଇ ।
ଯିବଟିକି ବୋଲି ମୁଖମାନ ଚାହିଁ ॥
ଯିବୁ ଯିବୁ ବୋଲି ଉଚ୍ଚସ୍ୱରେ ଡାକ ଦିଅନ୍ତି ।
ପୁଣ ରାମ ଗୁହ ଶବରକୁ ପଚାରନ୍ତି ॥୬୦
ଭୋ ମଇତ୍ର କେମନ୍ତ କରିବ ତାହା କହ ।
କରପତ୍ର ଯୋଡ଼ି କହଇ ଶବର ଗୁହ ॥
ଭୋଦେବ ରଘୁନାଥ ତୁ କିଂପା ଏହା କହୁ ।
ଜନ୍ମେ ଜନ୍ମେ ତୁ ଅଟୁ ମୋର ମହାପ୍ରଭୁ ॥
ତୋହୋର ପଦ୍ମପାଦରୁ ନାହିଁ ଆନ ଆଶ ।
ତୁମ୍ଭେ ମୋହୋର ଠାକୁର ମୁଂ ତୋହୋର
ଦାସ ॥
ଯିବି ତୁମ୍ଭ ସାଙ୍ଗରେ କିଂପା ଏଥି ଥିବି ।
ଆଗ୍ୟାଂ ହୋଇଲେ ମୋତେ ମୁଂ ଆଗହୋଇ
ଯିବି ॥
ଶୁଣି ରଘୁନାଥ ଆନନ୍ଦ ହୋଇଲେ ।
ସୁମନ୍ତକୁ ଚାହିଁ ରାମ ବଚନ
ବୋଇଲେ ॥୭୦
ତୁ କିସ କରିବୁ ହୋ କହ ମନ୍ତ୍ରୀବର ।
ସୁମନ୍ତ ବୋଇଲା ଦେବ ଅଛିକି ବିଚାର ॥
ଅନେକ କାଳହୁଂ ଅଛି ଆଶ କରି ।
ତୋହୋର ସଙ୍ଗେ ସଙ୍ଗେ ଯିବି ସ୍ୱର୍ଗପୁରୀ ॥
ଶୁଣି ଶ୍ରୀରାମ ନୃପତି ଗଣକଇ ଚାହିଁ ।
ତୁମ୍ଭେ କେମନ୍ତେ କରିବ ବୋଲି
ଆଜ୍ଞାଦେଇଂ ॥
ଶୁଣି ନୃପତି ଗଣେ ଶିରେ ହସ୍ତ ଦେଲେ ।
ନ ଯିବୁ କିମ୍ପା ଆମ୍ଭେ ବୋଲିଣ ବୋଇଲେ ॥
ତୋ ତହୁଂ ଆମ୍ଭର ଅଟଇ ଅଧିକ ସତ ।
ତୁ କିମ୍ପାଇଂ ଏମନ୍ତ ବିଚାରୁ ରଘୁସୁତ ॥୮୦
ଶୁଣି ଶ୍ରୀରାମ ଆନନ୍ଦ ହୋଇଲେ ।
ବଶିଷ୍ଠଙ୍କର ମୁଖ ଚାହିଂଣ ବୋଇଲେ ॥
ଭୋ ମୁନି ଏବେ କିସ କରିବୁ ବୁଦ୍ଧି ।
ଶ୍ରୀରାମ ବଚନେ କହନ୍ତି ବଶିଷ୍ଠ ତପୋନିଧି ॥
ବ୍ରହ୍ମଲୋକ ଯାଏ ମୁଂ ତୋହୋର ସଙ୍ଗେ
ଯିବି ।
ବଇକୁଣ୍ଠ ଗଲେ ମୁଂ ସେଠାରୁ ବାହୁଡ଼ିବି ॥
ସୂର୍ଯ୍ୟବଂଶର ପୁରୋହିତ ମୁଂ ଏଥିର
ନିମନ୍ତେ ।
ଏତେକାଳ ଦ୍ରଶନ ମୁଂ ପାଇଲଇଂ ତୋତେ ।
ଏଗାର ସହସ୍ର ବରଷ ବସିଲି ତୋର
ସଙ୍ଗେ ।
ସପ୍ତମ ଅବତାର ଦେଖିଲି ମହାରଙ୍ଗେ ॥୯୦
ଶୁଣିଣ ଶ୍ରୀରାମ ଅଳପ ହୋଇଂ ହସି ।
ଯିବାକଇ ଅନୁକୂଳ କହିଲା ପାଟଯୋଶୀ ॥
ଜ୍ୟେଷ୍ଠ ଶୁକଳ ଅଷ୍ଟମୀ ଅଟଇ ଗୁରୁବାର ।
ପୂର୍ବ ଭଦ୍ରା ନକ୍ଷତ୍ର ଅଟଇ ସାଧ୍ୟ ତାର ॥
ନବମେଣ ଚନ୍ଦ୍ରମା ବୃଷ ଲଗ୍ନ ବେଳେ ।
କଲେ ଅନକୂଳ କଉଶଲ୍ୟା ଦୁଲାଳେ ॥
ବଶିଷ୍ଠଙ୍କୁ ବୋଇଲେ ତୁମ୍ଭେ ଦୋହରା ଅଗ୍ନି
ଘେନି ।
ଆଗ ହୋଇ ଚଳ ସକଳ ତପୋଧନୀ ॥
ସୁବର୍ଣ୍ଣର ସୀତ୍ୟାକୁ ଅଣାଅ ମୋର ପାଶ ।
ତାହାକଇଂ ମୋର ଅଛଇ ବହୁତ
ଆଶ ॥୧୦୦
ଶତ୍ରୁଘନକୁ ବୋଇଲେ ଭ୍ରଥ ଲକ୍ଷଣ
କାମେନୀ ।
ଯୁବତୀମାନନ୍ତ ଆସ ତୁମ୍ଭେ ଘେନି ॥
ପାଦେଣ ଗମନ କରି ପଛେଣ ଆସନ୍ତୁ ।
ରାଜାଙ୍କ ଘରଣୀମାନେ ତାଙ୍କ ପଛେ ଥାନ୍ତୁ ॥
ସୁଗ୍ରୀବର ବୋଇଲା ଦେବ ତାରା ଅଛି ଆସି ।
ରୋମା ସହିତେ ସକଳହିଂ ଦାସୀ ॥
ଅଙ୍ଗଦ ଘରଣୀ ଯୂଥପତିଙ୍କ କାମେନୀ ।
ଯୂଥପତି ଅଇଲେ ଯେ ଯାହା ପତ୍ନୀ ଘେନି ॥
ଗୁହ ନାମେ ଶବର ବୋଇଲା ଶୁଣ ରାମ ।
ମୋହୋର ଘରଣୀ ସହିତେ ମିଳିଲା ତୋର
ଗ୍ରାମ ॥୧୦
କନ୍ଧ କନ୍ଧୁଣୀ ଶବର ଶବରଣୀ ନାରୀ ।
ଲୋଧା ଲୋଧୁଣୀମାନେ ଅଇଲେ
ରାବଣାରି ॥
ଶ୍ରୀରାମ ବୋଇଲେ ଅଇଲ ଭଲ କଲ ।
ଆମ୍ଭେ କଲା ଲୋକଙ୍କୁ ସଦମାର୍ଗ ଦେଲ ॥
ବଶିଷ୍ଠ ପ୍ରଭୃତି ସେ ଅଇଲେ ମହାମୁନି ।
ଦୋହରା ଅଗ୍ନି ଘେନି ଅଇଲେ ତପୋଧନୀ ॥
ସୁବର୍ଣ୍ଣର ସୀତ୍ୟାକୁ ଛାମୁରେ ଆଣି କଲେ ।
ସୃଷ୍ଟିର ଲୋକେ ଆଖି ପୂରୋଇ ଦେଖିଲେ ॥
ବଶିଷ୍ଠ ବୋଇଲେ ଭୋ ରାମଚନ୍ଦ୍ର ଶୁଣ ।
କୁଶହସ୍ତ ହୋଇଂ ଏବେ ଧର
ଧନୁର୍ବାଣ ॥୨୦
ମଉନ ହୋଇଂ ପୁଣ ଗମନ ଏବେ କର ।
ଶୁଣିଣ ସଜ ହୋଇଲେ ରଘୁବୀର ॥
ସମସ୍ତ ଲୋକଙ୍କୁ ହିଂ ବୋଇଲେକ ଚାହିଁ ।
ମୋହୋର ସଙ୍ଗେ ଏବେ ଆସସି ଗୋଡ଼ାଇ ॥
ମହାପଥେ ମୁଂ କରିବି ଗମନ ।
ବାହୁଡ଼ି ଜମ୍ୱେବ ବିଭୀଷଣ ହନୁମାନ ॥
ବଶିଷ୍ଠେ ବୋଇଲେ ରାମ ନକରସି ହେଳ ।
ଯୋଗ ଲଗ୍ନ ଶୁଭ ହୋ ଅଟଇ ଏ ବେଳ ॥
ମନୁଷ୍ୟ ସମାନ୍ୟେ ଗମନ ଏବେ କର ।
ଏତେ ବୋଲି ଆଗେ ଚଳିଲେ
ମୁନିବର ॥୩୦

ବଶିଷ୍ଠ ବାସୁଦେବ ଯାଟାଳି କଶ୍ୟପ ।
ଆବର ତପୀମାନେ ଅଛନ୍ତି ଅସଂକ୍ଷେପ ॥
ଯାନ୍ତେଣ ବେଦ ଆଧ୍ୟାନ କରନ୍ତି ।
ଉତ୍ତରା ମୁଖ ହୋଇ ପଥ ବହିଯାନ୍ତି ॥
ଶ୍ରୀରାମ ଶୁଚିବନ୍ତ ହୋଇଣ କୁଶ ଧରି ।
ଧନୁ ତ୍ରୋଣ ଘେନି ହୋଇଲେ ରାବଣାରି ॥
ସୁବର୍ଣ୍ଣ ସୀତାକୁ ଚାହିଁଣ ବିଚାରନ୍ତି ।
ଏହା କିସ କରିବି ବୋଲିଣ ବୋଲନ୍ତି ॥
ଏସନେକ ସମୟେ ଯେ କନେକ ପ୍ରତିମା ।
ମାୟାଦେବୀ ବୋଲି ହୋଇଲାକ ବାମା ॥୪୦
ଶ୍ରୀରାମଙ୍କୁ ବୋଇଲା ବିଳମ୍ବ କିମ୍ପା କରୁ ।
ପୁଣି ଏଥି ରାଜା ହୋଇବାକୁ ବିଚାରୁ ॥
ଦେବକାର୍ଯ୍ୟ ସାରିଲୁ ଯିବୁ ନିଜ ପୁର ।
ଲକ୍ଷ୍ମୀ କୋପ କରିବେ ହୋଇଲେ ଉଚ୍ଛୁର ॥
ଯେବଣ ଦିନରୁ ସୀତ୍ୟା ଅଯୋଧ୍ୟାରୁ ଗଲା ।
ଘେନି ଆସ ଶ୍ରୀରାମକୁ ବୋଲି ବରଗିଲା ॥
ମାୟାକନ୍ୟା ହୋଇ ସେ ରାବଣକୁ ମୋହିଲା ।
ସେ ମାୟା କନ୍ୟା ଏବେ ତୁମ୍ଭକୁ ଦେଇ ଗଲା ॥
ମୁହିଁ ସେ ସୁବର୍ଣ୍ଣ ସୀତ୍ୟା ହୋଇଥିଲି ।
ମୁହିଁ ସେ ଲକ୍ଷଣକୁ ଛଡ଼ାଛଡ଼ି କରାଇଲି ॥୫୦
ମୁହିଁ ସେ ତୋହୋର ମନେ ପଶିଥାଇଂଣ ଭଣଇ ।
ଅଯୋଧା ମୁହାଂସ ମୁହିଁ ଦଇବେ ଖଣ୍ଡଇ ॥
ମୁହିଁ ମହାମାୟା ଅଟଇ ତୋର ଦାସୀ ।
ତୁମ୍ଭେ ସେ ନାରାଏଣ ବୈକୁଣ୍ଠ ବାସୀ ॥
କ୍ଷୀର ସମୁଦ୍ର ଭିତରେ ସ୍ୱାମୀ ତୋର ଘର ।
ତହିଁକି ବିଜୟେ ଯେବେ କର ଚକ୍ରଧର ॥
ଏତେ ବୋଲି ଦେବୀ ନମସ୍କାର କରି ।
ଶ୍ରୀରାମର ଦକ୍ଷିଣ ଚରଣ ଯାଇଂ ଧରି ॥
ଆସ ଆସ ବୋଲି ଉଚ୍ଛୁଡ଼ଇଂ ବଳେ ।
ପୃଥିଦେବୀ ବାହାର ହୋଇଲେ ତତକାଳେ ॥୬୦

ଦିବ୍ୟବେଶ ହୋଇଣ ସେ ବାମପାଦ ଧରି ।
ସ୍ୱୟଂ କମଳିଣୀ ସେ କ୍ଷୀରୋଦ୍ର କୁମାରୀ ॥
ଶ୍ରୀରାମକୁ ବୋଇଲେ ତୁ ବେଗହୋଇଂ ଆସ ।
ନେଇ ଭେଟାଇବି ଜାନେକୀର ପାଶ ॥
ମୋହୋର ନେମାକୁ ଯେବେ ଅସୁଖ ପାଇଲୁ ।
ଲୋକ ବୋଲ ଶୁଣି ସେମାନ ତେଜିଲୁ ॥
ଯେଉଂଣ ଯୁବତୀ ପାଇଂ ଛାଡ଼ିଲୁ ରାଜାପଣ ।
ତାହା ନେଇ ତୋତେ ଭେଟାଇବି ଏହିକ୍ଷଣ ॥
ମୁହିଁ ସେ ପୃଥ୍ୱୀଦେବୀ ତୋହୋର ପରିବାରୀ ।
ତୁ ମୋହୋର ଠାକୁର ପୁରୁଷ ଚକ୍ରଧାରୀ ॥୭୦
ଆସ ଆସ ସ୍ୱାମୀ ନିଜ ପୁରକଇଂ ଯିବା ।
ଜାନେକୀ ଲକ୍ଷଣ ଏ ଦୁହିଂକି ଦେଖିବା ॥
ଏତେ ବୋଲି ବାମ ପାଦ ଧରି ରାଇ ।
ଦୁଇଗୋଡ଼ ଧରି ଉଚ୍ଛୁଡ଼ନ୍ତି ମହାମାଈ ॥
ହସିଣ ରଘୁନାଥ ଚରଣ ବଢ଼ାଇଲେ ।
ସବୁ ଲୋକମାନେ ମିଳି ଜୟ ଜୟ କଲେ ॥
ନବରୁ ବାହାର ହୋଇଂ ଚଳନ୍ତି ରାମରାଣ ।
ବାହୁଡ଼ିଲେ ଜମ୍ବେବ ବିଭୀଷେଣ ହନୁମାନ ॥
ଯାହାକୁ ଯେଉଂ ଆଗ୍ୟାଂ ଦେଲେ ଚାପଧାରୀ ।
ତହିଂରେ ରହିଲେ ସେ ସନ୍ତୋଷ ମନେ ଧରି ॥୮୦
ଏଥୁଅନନ୍ତରେ ତୁମ୍ଭେ ଶୁଣ ଦିବ୍ୟ ରସ ।
ପଣ୍ଡିତ ଲୋକମାନେ ନ ଧରିବା ଦୋଷ ॥
ଅଜ୍ଞାନ ପଣେ ଅବା ବଖାଣ କଲି ଯାହା ।
ଶୁଣିଣ ସୁଗ୍ୟଂଜନେ ଉପେକ୍ଷା କର ତାହା ॥
ଜପ ତପ ଦାନ ନାମ ସୁମରଣ ।
ଏକଥାମାନ ଯହୁଂ ନୁହଇଂ ପୂରଣ ॥
ଚାଣ୍ଡାଳ ଜୀବନ ଏ ଚଞ୍ଚଳ ପ୍ରକୃତି ।
ପାପ ପୁଣ୍ୟ ବୋଲିଣ ନ ବିଚାରଇ ମତି ॥
ଅନ୍ୟାଏ କଥାମାନ ମଣଇ ପରମ ହିତ ।

ବାସୁଦେବ ସୁମରଣା ନ କରଇ କଦାଚିତ ॥୯୦
ତେଣୁକରି ଆତ୍ମା ତାରିବା ନିମନ୍ତେ ।
ଶ୍ରୀରାମ ଚରିତ ମୁଂ କହିଲି ତୋ ଅଗ୍ରତେ ॥
ମହାମନ୍ତ୍ରୀ ସୋମନାଥ ମହାପାତ୍ର ।
ବଳରାମ ଦାସ ମୁଂ ଅଟଇ ତାର ସୁତ ॥
ଜନ୍ମେ ଜନ୍ମେ ମୁଂ ଶ୍ରୀହରିର ସେବକ ।
ଇଚ୍ଛା କଲି ଆସି ଜନ୍ମିଲି ମୃତ୍ୟୁଲୋକ ॥
ମାନମାୟା ନାମେ ଜନନୀର ଗର୍ଭୁଂ ।
ଜନ୍ମ ହୋଇ ମୁଂ ଚିହ୍ନିଲି ମାହାପ୍ରଭୁ ॥
ନୀଳଗିରିରେ ଶ୍ରୀପୁରୁଷୋତ୍ତମେ ବିଜେ ।
ନୀଳ ବଦନ ଶଙ୍ଖଚକ୍ର ନିଜ କାଏ ॥୧୦୦
ବିବିଧ ଭୋଗ ସେ ବିଧ୍ୱଂସନ୍ତି ଶ୍ରୀରଙ୍ଗେ ।
କଉତୁକେ ବିହରନ୍ତି ପ୍ରଭୁ ନାନା ରଙ୍ଗେ ॥
ସଙ୍ଗେଣ ସୁଭଦ୍ରା ଆବର ହଳପାଣି ।
ଆଗେଣ ଗରୁଡ଼ ପାଶେଣ କମଳଣୀ ॥
ବାମେଣ ଭାରତୀ ପଦ୍ମ ପାଦରେଣ ସେବି ।
ହୃଦର ଭିତରେ ଅଛନ୍ତି ଲକ୍ଷ୍ମୀ ଦେବୀ ॥
ଜଗମୋହନ ରୂପ ଅବନ ଅରୂପ ।
ଦାରୁମଏ ବ୍ରହ୍ମ ଏ ପ୍ରତିମା ସ୍ୱରୂପ ॥
ବେଦରୁ ସମ୍ଭୂତ ବେଦବର କହି ।
କାଷ୍ଠ ରୂପେ ଅପୂର୍ବ ଉତ୍ତମ ତନୁ ବହି ॥୧୦
ସାମବେଦୀ ଉପଲେଶ କାଣ୍ଡୀ ଯାହା କହିଁ ।
କୃଷ୍ଣରୂପୀ ଭଗବାନ ଅପୂର୍ବ ରୂପ ବହିଁ ॥
ତାହାଙ୍କ ପ୍ରସନ୍ନେ ଶାରଦା ଦୟା କଲେ ।
ରାମାୟଣ ଗ୍ରନ୍ଥ ମୋର ମୁଖରୁ ଉଚ୍ଚାରିଲେ ॥
ଚଉବିଂଶ ସହସ୍ର ଶ୍ଳୋକ ଗୀତ ରସ ।
ବାଲମ୍ମିକ ମୁନି ଯାହା କଲେକ ପ୍ରକାଶ ॥
ବିଦୁଜନ ମୁଖୁଂ ଶୁଣିଲଇଂ ତାହା ।
ଦୟା କଲେ ମୋତେ କମଳାର ନାହା ॥
ତେଣୁ ସେ ମହାନାଟେକ କାବ୍ୟ କଲି ।
ଲକ୍ଷେ ପଦ ଆଖ୍ୟାନ ଗୀତେ ବସାଇଲି ॥୨୦
ରାମନାମ ସୁମରଣା କରୁଥାଇ ନିତି ।
ନୀଳଗିରି ନାଥ ମୋର ଘେନିଲେ ଭଗତି ॥
ଭାବଗ୍ରାହୀ ପ୍ରଭୁ ମୋତେ ଦୟା କଲେ ।

ହୃଦୟରେ ବସି ମୋତେ ରାମାଏଣ
କହିଲେ ॥
ସେ ପ୍ରଭୁ କବିତ୍ୱ ଅଟଇ ଏଥିର ।
ଲୋଭେ ମୋହୋର ନାମ ଭଣାଇଲି
ଗ୍ରନ୍ଥର ॥
ପଣ୍ଡିତ ଜନ ଶୁଣି ନ ଧର ମୋର ଦୋଷ ।
ସମୁଦ୍ର ପହଁରିବାକୁ କଲଇଁ ସାହାସ ॥
ନାରାଏଣ ପ୍ରସାଦେ ଭବ ସିନ୍ଧୁ ତରି ।
ଏହା ଜାଣିଣ ଶରଧା ହୋଇଲା
ମୋହୋରି ॥୩୦
ଜନ୍ମେଣ ଶୂଦ୍ର ମୁଁ ଅଳପ ବଏସ ।
ଗ୍ରନ୍ଥ କରିବା କାଳେ ବୟସ ବତିଶ ॥
ଦାରା ସୁତ ଧନ ସୁଖ ଭୋଗ ଶିରୀ ।
ଅରୋଗୀ ଦାତାପଣ ଦେଇଛନ୍ତି ହରି ॥
ଏ ମର୍ତ୍ତ୍ୟଲୋକେ ମୁଁ ଜଗନ୍ନାଥଙ୍କୁ
ସେବିବି ।
ଇଚ୍ଛା ହୋଇଲେ ପୁଣ ବୈକୁଣ୍ଠକୁ ଯିବି ॥
ସ୍ୱାମୀର ସେବକ ମୁଁ ସନ୍ନିଧେଣ ଖଟି ।
ଏ ଭବସାଗର ମୋତେ ନୁହଇଁ ନା ଲଟି ॥
ନୀଳଗିରି ନାଥଙ୍କୁ ସର୍ବଦା ମୋର ଆଶ ।
ଶ୍ରୀଜଗନ୍ନାଥେ ଶରଣ ମୁଁ ବଳରାମ
ଦାସ ॥୪୦
ଶୁଣିମା ସୁଗ୍ୟାଁଜନେ ଏଥିଅନନ୍ତରେ ।
ସଦାଶିବ କହନ୍ତି ପାର୍ବତୀ ଆଗରେ ॥
ଶୁଣ ମହାମାୟା ଗୋ ବିଷ୍ଣୁର ପୁରାଣ ।
ଏଥିଅନନ୍ତରେ ଶ୍ରୀରାମଚନ୍ଦ୍ର ରାଣ ॥
ନବରୁ ବାହାର ହୋଇ ଉତ୍ତର ମୁଖେ
ଗଲେ ।
ସମସ୍ତ ଲୋକମାନେ ସଙ୍ଗରେ
ଗୋଡ଼ାଇଲେ ॥
ଲକ୍ଷେକ ନୃପତି ଯେ ଦାରା ସମ୍ପଦ ଘେନି ।
ଟଳନ୍ତେ ଟଳ ଟଳ କମ୍ପଇ ମେଦିନୀ ॥
ଅଯୋଧ୍ୟା ରାଜ୍ୟରୁ ପରଜାମାନେ ଗଲେ ।
ନଗ୍ର ଆବୋରି କେହି ଗୋଟିଏ ନ
ରହିଲେ ॥୫୦

ବାମେ ଶତ୍ରୁଘନ ଡାହାଣେ ବୀର ଭରଥ ।
ମଧ୍ୟେଣ ବିଜୟେ କଲେ ରଘୁନାଥ ॥
ପାଦେ ବସିଛନ୍ତି ମାୟା ବସନ୍ଧରୀ ।
ତେଣେ ସେ ବେଗେ ବେଗେ ଚାଲନ୍ତି
ରାବଣାରି ॥
ସୀତ୍ୟାର ତିନି ଭଗ୍ନୀ ଦାସୀଗଣ ସହିତେ ।
ଶ୍ରୀରାମ ପଛେ ସେ ଆସନ୍ତି ସମସ୍ତେ ॥
ବାଟ କଢ଼ାଉଛନ୍ତି ବଶିଷ୍ଟ ତପଚାରୀ ।
ବିବିଧ୍ୟ ବେଶ ହୋଇ ଚଳନ୍ତି ରାବଣାରି ॥
ତପୀଗଣମାନେ ମନେଣ ଆନନ୍ଦ ।
ଶ୍ରୀରାମ ମଧ୍ୟେ କରି ଚଳନ୍ତି ତପୀବୃନ୍ଦ ॥୬୦
ସୁମନ୍ତ ପାତ୍ର ଆଦି ଯେତେକ ପରିବାରୀ ।
ଅଯୋଧ୍ୟାରୁ ବାହାର ହୋଇଲେ ନରନାରୀ ॥
ଏଡ଼େକ ମାହାନଗ୍ର ହୋଇଲାକ ଶୂନ୍ୟ ।
ଦେଶ ଛାଡ଼ି ଶ୍ରୀରାମ ପଶିଲେ ଘୋର ବନ ॥
ଦେଖି ରିକ୍ଷ କପିମାନେ ଗୋଡ଼ାଇଲେ
ସଙ୍ଗେ ।
ନାନା ଜୀବଜନ୍ତୁ ଆସନ୍ତି ନାନାରଙ୍ଗେ ॥
କୀଟ ପତଙ୍ଗମାନେ ସମସ୍ତେହେଁ ଗଲେ ।
ପକ୍ଷୀ ହୋଇ ମାତ୍ର ଗୋଟିଏ ନ ରହିଲେ ॥
ସୁଗ୍ରୀବର ଅଙ୍ଗଦ ରିକ୍ଷ ବାନର ସଇନି ।
ନିଶାଚର କନ୍ଧ ଲୋଧା ପୂରିଲେ
ମେଦିନୀ ॥୭୦
କ୍ଷୁଧ ତୃଷା ବୋଲି କାହାରି ସେ ନାହିଁ ।
ଅଗମ୍ୟ ବିପିନେ ଯାନ୍ତି ପଥ ବାହି ॥
ମହାଯାତ୍ରା କରି ଯାଉଛନ୍ତି ଲୋକେ ।
ଆଗୁସାର ହୁଅନ୍ତି ଏକକୁ ଆରକେ ॥
ରାତ୍ର ଦିବସରେ ଲୋକେ ପଥ ବାହିଗଲେ ।
ବେନି ମାସେ ହେମଗରି ସନିଧ୍ୟେ
ମିଳିଲେ ॥
ସରଯୁ ନଦୀତୀରେ ମିଳିଲେ ତ ଯାଇଁ ।
ସ୍ୱର୍ଗପୁର ଲୋକେ ଅଇଲେ ଓହ୍ଲାଇଁ ॥
ବ୍ରହ୍ମାଦି ସହିତେଣ ମହାଦେବ ଆଏ ।
ଇନ୍ଦ୍ରଦେବ ଅଇଲେ ଦେବଙ୍କ ରାଏ ॥ ୮୦
ବରୁଣ ଅଇଲେ ସପତ ସିନ୍ଧୁ ଘେନି ।

କୁବେର ଅଇଲେକ ଅଷ୍ଟନିଧି ଘେନି ॥
ଯମ ନଇଋତ ପବନ ହୁତାଶନ ।
ହରଷ ମନେ ପୁଣ ସେ କରନ୍ତି ଗମନ ॥
ବ୍ରହ୍ମଋଷି ସିଧ୍ୟଗଣ ଦେବଋଷି ଆଏ ।
ଗନ୍ଧର୍ବ ପିଚାଶନ୍ତ ଉଡ଼ଙ୍ଗ ଆସି ହୋଏ ॥
ନାନା ଦେବତାଗଣ ସମସ୍ତେ ଆସି ମିଳି ।
ତିନିପୁର ଚମକ ପଡ଼ଇ ହାଲହୋଳି ॥
ଶ୍ରୀରାମ ସ୍ୱର୍ଗ ଯିବେ ଦେଖନ୍ତି ସର୍ବେ ଆସି ।
ଚଉଦ ଭୁବନ ଲୋକେ ହୋଇଲେ
ମିଶାମିଶି ॥୯୦
ପୃଥିରେ ଯେତେକ ଅବା ସାଧୁଜନେ
ଥିଲେ ।
ଏମାନେ ଯେ ଯାହା ମନେ ବିଚାରିଲେ ॥
ବୋଇଲେ ଆମ୍ଭର ପୂର୍ବରେ ନାହିଁ ପାପ
କଲା ।
ଯେସେ ଯେବେ ବିଧାତାଏ ଭଲ ବେଳ
ହେଲା ॥
ସୁସଙ୍ଗ ପାଇଲୁ ଶ୍ରୀରାମ ସଙ୍ଗେ ଯିବୁ ।
ଅମର ବାରସ୍ୱତୀ ଭୁବନେ ବସିବୁ ॥
ଏସନେକ ବିଚାରିଣ ଅଇଲେ ସାଧୁଜନେ ।
ଆବରହିଁ ଅଇଲେ ପାପୀ ଲୋକମାନେ ॥
ଭାଳି ବୋଇଲେ ପୁଣ୍ୟ ନକଲୁ ଆମ୍ଭେ
କିଛି ।
ଶ୍ରୀରାମଚନ୍ଦ୍ର ଯେବେ ସ୍ୱର୍ଗକୁ
ଯାଉଅଛି ॥୧୦୦
ଏସନେକ ସମୟେ ବସିବା ସ୍ୱର୍ଗପୁରୀ ।
ଏବେ ନ ଗଲେ କେବେହେଁ ନ ପାରି ॥
ଅନେକ ପାପ କଲୁ ଆନରେ କାର୍ଯ୍ୟେ ନାହିଁ ।
ଏତେ ବୋଲି ଲୋକେ ଆସୁଛନ୍ତି ଧାଇଁ ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦିମାନେ ।
ଯହୁଁ ଶ୍ରୀରାମ ଚାହିଁଲେ ଅମୃତ ଲୋଚନେ ॥
ଅପଦେ ପଦ ପାଇଲେ ଅଗ୍ୟାଁନେ ଗ୍ୟାନୀ
ହୋନ୍ତି ।
ରଘୁନାଥ ସଙ୍ଗତେ ଗୋଡ଼ାଇ ଆସନ୍ତି ॥
ତୁଚ୍ଛା ହୋଇଗଲା ଅଯୋଦ୍ଧା କଟେକ ।

ସରଯୁ କୂଳେ ମିଳିଲେ ସର୍ବଲୋକ ॥୧୦
ଶ୍ରୀରାମ ବିଜୟେ କଲେକ ନଦୀ ତଟେ ।
ଆପଣେ ଉଭା ହୋଇଅଛନ୍ତି ବଶିଷ୍ଟେ ॥
ସୁରଗଣ ଘେନି ଅଇଲା ପଦ୍ମଯୋନି ।
ଆପଣେ ବୃଷ୍ଟି କରନ୍ତି ଶ୍ୱେତ ପୁଷ୍ପ ଘେନି ॥
ନବରତ୍ନ ଝର ଝର ବରଷେ କୁବେର ।
ଅମୃତ ଶିରେ ସିଞ୍ଚୁଅଛି ବଜ୍ରଧର ॥
ସୁଗନ୍ଧ ଘେନି ଦକ୍ଷିଣା ପବନ ବହିଲା ।
କର ଯୋଡ଼ିଣ ବ୍ରହ୍ମା ଶ୍ରୀରାମଙ୍କୁ କହିଲା ॥
ଭୋ ଜଗତର ଠାକୁର ତୁ ବ୍ରହ୍ମାଣ୍ଡ ନାଏକ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବା ପ୍ରଦାଏକ ॥୨୦
ଅପାର ମହିମା ଅନନ୍ତ ଯାର ମୃତି ।
ବେଦାନ୍ତ ବେଦବ୍ରହ୍ମା ଅଦୃଷ୍ଟି ଅଶ୍ରୁତି ॥
ଅବର୍ଣ୍ଣ ଅବ୍ୟୟ ତୋ ଅରୂପ ଅଗୋଚର ।
ଅମାୟା ଅପାପୀ ତୁ ଅସଂକ୍ଷ ଅନ୍ୟାକାର ॥
ନାମୋ ନାରାଏଣ ନମୋ ପୀତବାସ ।
ଜୟ ଜୟ ବାସୁଦେବ ପୁରାଣ ପୁରୁଷ ॥
ବନ୍ଦଇ ଜଗନ୍ନାଥ ସମ୍ପୂର୍ଣ୍ଣ ଶଶୀ ବର୍ଣ୍ଣ ।
ପବିତ୍ର ମଣ୍ଡଳ ସାରିକ୍ଷ କୁଣ୍ଡଳ ବେନି କର୍ଣ୍ଣ ॥
ଶୁକ୍ଳ ବସ୍ତ୍ର ପରିହରଣ ଚତୁର୍ଭୁଜ ଧାରୀ ।
ପ୍ରସନ୍ନ ବଦନ ଯାର ବେଦ ବାକ୍ୟ କରି ॥୩୦
କିରଟୀ ମୁକୁଟ ନିର୍ଦ୍ଧୂମ ଅଗ୍ନି ଜାଣି ।
ଅରଣ ଆଚ୍ଛାଦନେ କଣ୍ଠେ କଉସ୍ତୁଭ ମଣି ॥
ଚନ୍ଦ୍ରକଳା ପ୍ରାୟେକ ଶ୍ରୀବଚ୍ଛ ଲାଞ୍ଛନ ।
ହାର କେଉର ବିଦମୁଦି ବଳୟ ବିଦ୍ୟମାନ ॥
କଙ୍କଣ କଣୟ ନାନା ରତ୍ନ ବିରାଜି ।
ପଦ୍ମପାଦେ ତୋଡ଼ର ମର୍କତ ବେନି ସାଜି ॥
ଗରୁଡ଼ ଗମନ ଅନନ୍ତ ନାଗ ଛତ୍ର ।
ଶଙ୍ଖ ଚକ୍ର ଗଦା ଶାରଙ୍ଗ ଚତୁହସ୍ତ ॥
କୋଳେ କମଳଣୀ ଜଗତ୍ର ମୋହିନୀ ରୂପ ।
ଦେବାଧି ଦେବରାଜ ପରମବ୍ରହ୍ମ ସ୍ୱରୂପ ॥୪୦
ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଟୁ ଅଧିପତି ।
ଈଶ୍ୱର ଇଚ୍ଛାଏ ତୋର ସର୍ଜଇ ବସୁମତୀ ॥
ଉତ୍ପତ୍ତି ଥିତି ପ୍ରଳୟ କରନ୍ତା ।
ନମସ୍ତେ ନମସ୍ତେ ନମୋ ଜଗଜ୍ଜିତା ॥
ଅନନ୍ତ ମୂରତି ସହସ୍ର ରୂପ ଧରୁ ।
ଦଶ ଅବତାରେ ଦଇତ ସଂଘାରୁ ॥
ମୀନ ଶ୍ୟରୀରେ ଧରିଣ ଉଧାରିଲୁ ବେଦ ।
କୂର୍ମ ରୂପେଣ ପୃଥି ଧଇଲୁ ପିଠି ମଧ ॥
ବରେହା ଅବତାରେ ହିରଣାକ୍ଷ୍ୟ ମାରି ।
ଦନ୍ତ ମୂନେ ସପତ ଦୀପା ପୃଥି ଧରି ॥୫୦
ନରସିଂହ ମୂରତି ପ୍ରହଲ୍ଲାଦ ଛଳେ ।
ହିରଣ୍ୟ ଦଇତକୁ ବିଦାରିଲୁ ହେଳେ ॥
ବାମନ ରୂପେ ବଳିକି ଚାପିଲୁ ।
ପ୍ରଶୁରାମ ରୂପେ ପୃଥି ନକ୍ଷତ୍ର ହିଂ କଲୁ ॥
ଏବେ ନିଜ ଶ୍ୟରୀର ଦଶରଥ ଘରେ ।
ରାବଣର ନିମିତ୍ୟେ ଜନ୍ମିଲୁ ରଘୁବୀରେ ॥
ଏବେ ନିଜ ପୁରକୁ ଆସସି ଗୋସାଇଂ ।
ଦେବତାମାନେ ଅଇଲେ ତୋତେ ନେମା ପାଇଂ ॥
ମୁହିଂ ତୋର ସ୍ୱଭାବେ ଅଟଇ କିଙ୍କର ।
ତୁ ମୋର ସ୍ୱାମୀ ଅଟୁ ପୁରୁଷ ଚକ୍ରଧର ॥୬୦
ତୋହ ଆଗ୍ୟାଂ ବିନା ତିରଣ ନହଲି ।
ଅଛିଦ୍ର ପୂର୍ଣ୍ଣାନନ୍ଦ ତୋତେ ବୋଲି ॥
ତୁ ଯେ ଜନ୍ତୁଙ୍କର ପ୍ରାଣର ପ୍ରତିମା ।
ନାଭିରୁ କୀଟ ପୋକ କଲୁ ମୋତେ ବ୍ରହ୍ମା ॥
ତୋହୋର କୃପାରେ ମୁହିଂ ଚରଚୁ ଅଛି ମହୀ ।
ମୋତେ ଅବଳ ହୋଇଲେ ତୋତେ ଯାଇଂ କହି ॥
ତୁ ଦାସବତ୍ସଳ ଭୃତ୍ୟଙ୍କର ବୋଲ କରୁ ।
ପୃଥ୍ୱୀ ଭାରାଭର ଉଶ୍ୱାସନେ ରୂପ ଧରୁ ॥
ଅପାର ମହିମା ତୋର କହଣା ନ ଯାଇ ।
କରୁଣା ସାଗର ତୁ ଭାବକୁ ଭାବଗ୍ରାହୀ ॥୭୦
ଭାବେ ଯେବଣ ରୂପକୁ ଶ୍ରଧା କର ।
ଏବେ ଏହି ଦେହ ହେବ ତେସନ ପ୍ରକାର ॥
ନନ୍ଦିଘୋଷ ରଥ ଆଣିଲା ଅଗ୍ନି ସାଜି ।
ଷୋଡ଼ଶ ପ୍ରକାରେ ଧୂପଦୀପ ପୂଜି ॥
ଏ ତୋହୋର ଆସନ ସର୍ବଦା ଅଟଇ ।
ପୂର୍ବେ ପୁଣ୍ୟ କଲା ଯେବେ ତୋତେ ଖଟଇଂ ॥
ଭୋ ପରମ ପୁରୁଷ ଦୟାଳୁ ବ୍ରହ୍ମରାଶି ।
ଏମଣିମଏ ବିମାନେ ବିଜେ କର ଆସି ॥
ସ୍ୱର୍ଗ ନ ଶୋହୋଇ ତୋହୋର ନଥିଲେ ।
ଶୁଣିଣ ଶ୍ରୀରାମଚନ୍ଦ୍ର ସନ୍ତୋଷ ହୋଇଲେ ॥୮୦
ସରଯୁ ନଦୀରେ ସେ ସ୍ନାହାନ ଆସି କରି ।
ଜଳଦାନ ଦେଇ ପିତୃ ତୋଷ କରି ॥
ଉତ୍ତର ତୀରେଣ ମିଳିଲେ ରାବଣାରି ।
ସେହି ରୂପ ଗୋଟି ଆନରୂପ ଧରି ॥
ଦୁର୍ବାଦଳ ପ୍ରାୟେକ ଦେହ ଦିଶୁଥିଲା ।
ନୂତନ ମେଘ ପ୍ରାଏକ ଦିଶିଲା ॥
ପଦ୍ମ ଦଳ ଲୋଚନ ମୁକୁଟ କୁଣ୍ଡଳ ।
କଣ୍ଠେ କଉସ୍ତୁଭ ହୃଦରେ ବନମାଳ ॥
ପୀତ ବସନ ବିଜୁଳି ଝଳି ତେଜ ।
ଭୁଜ ମୂଳୁଂ ବାହାର ନବୀନ ବେନିଭୁଜ ॥୯୦
ଦକ୍ଷିଣ ପାଖରେ ଯେ ଭ୍ରଥ ବୀର ଥିଲା ।
ଚକ୍ର ହୋଇଂ ଆସି କରରେ ଲାଗିଲା ॥
କୋଟିଏ ସୂର୍ଯ୍ୟର କିରଣ ଜାଣି ତେଜ ।
ଶତ୍ରୁଘନ କରେ ଦେଇଥିଲେ ବାମଭୁଜ ॥
ସେ ଆସି ଶଙ୍ଖ ହୋଇ ବାମଭୁଜେ ଶୋହି ।
ଲକ୍ଷେକ ଚନ୍ଦ୍ରମାର ତେଜ ପ୍ରକାଶଇ ॥
ଆରେକ ଭୁଜରେ କୋଦଣ୍ଡ ଛନ୍ତି ଧରି ।
ଶାରଙ୍ଗ ଧନୁ ସେ ଅସୁରଙ୍କର ଅରି ॥
ଦକ୍ଷିଣେ କଉମୋଦୀ ଗଦା ଶୋଭାବନ ।
ଦେଖିଣ ଆନନ୍ଦ ହେଲେ ସକଳ ସୁରଗଣ ॥୧୦୦
ସାଧୁ ସାଧୁ ବୋଲିଣ ଆଣ୍ଟେଣ ଡାକ ଦେଲେ ।
ବ୍ରହ୍ମଋଷିମାନେ ବେଦ ଆଧ୍ୟାନ କଲେ ॥
ବିଦ୍ୟାଧରୀମାନେ ହୁଳହୁଳି ଦ୍ୟନ୍ତି ।

ଗାନ୍ଧାର ରାଗେଣ କିନ୍ନରୀ ଗୀତ ଗାନ୍ତି ॥
ଅପଛରାଏ ନାଚନ୍ତି ବାଜଇ ଦୁନ୍ଦୁଭି ।
ତୁଷ୍ଟ ହୋଇଛନ୍ତି ପରମ ପଦ ଲଭି ॥
ଜୟ ଜୟ ଶବଦ କରନ୍ତି ସୁରମୁନି ।
କୋଳାହଳ ରାବ ଶୁଭଇ ଶଙ୍ଖଧ୍ୱନି ॥
ତେତିଶ କୋଟି ଦେବେ ପାଏ ପଡ଼ି
ଶୋଇ ।
କୋଟିଏ ପ୍ରଣପତ୍ୟ ପିତାମହ ହୋଇ ॥୧୦
ରୁଦ୍ର ସହିତେଣ ପଡ଼ନ୍ତି ଗଡ଼ଘାଲି ।
ହସିଣ ନାରାଏଣ ଉଠ ଉଠ ବୋଲି ॥
ଇନ୍ଦ୍ର ବରୁଣ ଯମ କୁବେର ନଇରତ ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ସହିତେ ସମସ୍ତ ॥
ମାରୁଚି କଶ୍ୟପ ସେ ଆବର ବୃହଷ୍ୟତି ।
ରାମନାମ ସୁମରି ପ୍ରଣପତ୍ୟ କରନ୍ତି ॥
ସନକାଦି ଯୋଗୀଜନେ ନାରଦ ପ୍ରଭୃତି ।
ବ୍ରହ୍ମାକଇ ଚାହିଁ ଶ୍ରୀରାମ ବୋଲନ୍ତି ॥
**ଶୁଣସି** ହୋ ବିଧାତା ଆମ୍ଭର ଏକ ବାଣୀ ।
ଆମ୍ଭନ୍ତ ଗୋଡ଼ାଇଛନ୍ତି ଯେତେ ପ୍ରାଣୀ ॥୨୦
ଥାବର ଜଙ୍ଗମ କୀଟ ପତଙ୍ଗ ଯେତେ
ମାନ ।
ଏମାନେ ଅଟନ୍ତି ମୋର ପ୍ରାଣର ସମାନ ॥
ଏହାନ୍ତ ସର୍ଗପୁରେ ବସାଅ ତୁମ୍ଭେ ନେଇ ।
ଯତନେ ମଣ୍ଡିଲା ପୁରରେ ଠାବ ଦେଇ ॥
ଶୁଣିଣ ପିତାମହ ବିଶ୍ୱକର୍ମାଙ୍କୁ ଆଗ୍ୟାଂ
ଦେଲେ ।
ଯେ ଯହା ଅନୁରୂପେ ପୁର ରଞ୍ଚ ବୋଇଲେ ॥
ତତକ୍ଷଣେ ବିଶ୍ୱକର୍ମା ନିର୍ଭା କଲା ସ୍ୱର୍ଗପୁରେ
ଘର ।
ଦେବତାଙ୍କୁ ଦୁର୍ଲ୍ଲଭ ରତ୍ନମଏ ପୁର ॥
ସବୁ ଲୋକମାନଙ୍କୁ ବୋଇଲା ଧାତା
ଚାହିଁ ।
ଯେତେ ଜୀବଜନ୍ତୁ ଆସିଅଛ ସ୍ୱାମୀକି
ଗୋଡ଼ାଇ ॥୩୦
ରାମନାମ ସୁମରି ସରଯୁ ଜଳେ ପଶ ।
ଦିବ୍ୟରୂପ ଧରି ଯାଅ ସ୍ୱର୍ଗବାସ ॥

ଏତେ ବୋଲି ବ୍ରହ୍ମ ମନେ ଚିନ୍ତାକଲା ।
ଅନେକ ବିମାନ ଆସି ଛାମୁରେ ମିଳିଲା ॥
ଝଡ଼ିପୋକ ପ୍ରାଏକ ପୂରିଲେ ନିରନ୍ତର ।
ସବୁ ମଣ୍ଡିଲା ଅଛି ଦର୍ପଣ ଚାମର ॥
ବସ୍ତ୍ର ପୁଷ୍ପ ଚାମର ଗନ୍ଧ ଚନ୍ଦନ ସୁବାସ ।
ଅସଂଖ୍ୟ ବିବାନ ପୂରିଲା ଚଉପାଶ ॥
ପୁଷ୍ପେକ ବିବାନ ଯେ ଅଯୋଧାରେ ଥିଲା ।
ଶ୍ରୀରାମ ସଙ୍ଗତେ ସେ ଗୋଡ଼ାଇ
ଅଇଲା ॥୪୦
ଏବେ ଦେବ ବ୍ରହ୍ମାଙ୍କ ଛାମୁରେ ଯାଇଂ
ମିଳି ।
କୁବେରକୁ ସମର୍ପିଲେ ଚତୁର ମଉଳି ॥
କନେକ ଦଣ୍ଡ ଗୋଟି ଯେ କଟକରେ
ଥିଲା ।
ବ୍ରହ୍ମାର ବୋଲେ ତାହା ବରୁଣ ଘେନିଗଲା ॥
ଦେବତାମାନେ ଯେବଣ ପଦାର୍ଥ
ଦେଇଥିଲେ ।
ବେଳକାଳ ଜାଣି ସମସ୍ତେ ଘେନିଗଲେ ॥
ଅଯୋଧ୍ୟା କଟେକ ହୋଇଲା ସବୁ ଶୂନ୍ୟ ।
ତହିଁ ନୃପତି ହେଲେ କୁଶ ନାମେ ରାଜନ ॥
କାଳ ବଶେଣ ସେ ମୋହେଣ ମୋହିଲେ ।
ଶ୍ରୀରାମର ସଙ୍ଗେ ସେ ଗୋଡ଼ାଇ
ନଗଲେ ॥୫୦
ଉତ୍ତମ ଥାନ ଦେଖି ସେ ହୋଇଲେକ
ରାଏ ।
ଏଥୁଅନନ୍ତରେ ଏବେ ଶୁଣସି କଥାଏ ॥
ବ୍ରହ୍ମା ବୋଇଲେ ସକଳ ଲୋକକଇ
ଚାହିଁ ।
କୀଟ ପଶୁ ପକ୍ଷୀ ବୃକ୍ଷ ଆଦି ହୋଇ ॥
ରାମନାମ ସୁମରି ରାମନାମ ଚିନ୍ତ ।
ସରଯୁ ଜଳେ ପଶି ହୁଅ ଶୁଚିବନ୍ତ ॥
ପାର୍ଥିବ ଦେହ ଛାଡ଼ି ଦିବ୍ୟ ତନୁ ଧରି ।
ବିମାନ ଆରୋହିଣ ଯାଅ ସ୍ୱର୍ଗପୁରୀ ॥
ରତ୍ନମଯେ ପୁରେ ସେ ବସିଣ ସୁଖ ପାଇ ।
ଜୀବେ ସୁଫଳ କଲେ ଅମୃତ ରସ
ଖାଇ ॥୬୦

ଅମଳାଣ ବସ୍ତ୍ର ପିନ୍ଧି ପାରିଜାତେକ ପୁଷ୍ପ
ଘେନିଣ ।
ଆଭରଣ କର ଶୁଦ୍ଧ କାଞ୍ଚନ ॥
ଯୋଗ ମୂତି ଧରିଣ ଯୁଗେ ଯୁଗେ ଥାଅ ।
ଶ୍ରୀରାମର ପ୍ରସାଦେ ଅମର ବର ପାଅ ॥
ବିଧାତାର ମୁଖୁଂ ଏସନେକ ବାଣୀ ଶୁଣି ।
ଆନନ୍ଦ ହେଲେ ଶୁଣି ଚାରିଖାନି ॥
ରାମନାମ ସୁମରି ସରଯୁ ଜଳେ ପଶି ।
ଏକକୁ ଆରେକ ଆଗେସରି ଝାସି ॥
ସୁଗ୍ରୀବର ରାଜା ଯେ ଅଙ୍ଗଦ ନଳନୀଳ ।
ଗବଏ ଗବାକ୍ଷ ସେ ଶଉରୀ ଶତବଳ ॥୭୦
କୁମୁଦ କାଳିଞ୍ଜନ ଚନ୍ଦନ ସାରାସ ।
ବଳିମୁଖ କାଳିମୁଖ ଦଧିମୁଖ ତାରାକ୍ଷ ॥
ରମଣ ବିବିଧ ସୁନାସ ସୁସୋଦନ ।
ଡାଳିମ୍ବ କଞ୍ଚଣ ଗନ୍ଧମାରଦନ ॥
ପବନ ଶତବାଳି ଆବର ସମ୍ପାତି ।
ଅଛନ୍ତି ଅନେକ ସେନା ଯୂଥପତି ॥
ବାନର ବଳ ଯେ କଳଣା ନ ଯାଇ ।
ତାରା କନ୍ୟା ଆବର ରୋମା ମହାଦେଈ ॥
ଅଙ୍ଗଦ ଘରଣୀ ସେନା ଯୁବତୀ ।
ସବୁ କପିଙ୍କରି ଭାରିଯା ସଙ୍ଗରେ
ଆଣିଛନ୍ତି ॥୮୦
ଗୁହ ନାମେ ଶବର ସଙ୍ଗତେ ଭାବିନୀ ।
କନ୍ଧମାନଙ୍କଇ ଯେ ଯାହା କାମେନୀ ॥
ଲକ୍ଷେ ନୃପତିଙ୍କ ସଙ୍ଗତେ ରାଣୀମାନେ ।
ସମସ୍ତେହେଁ ନିରୋପନ୍ତି ରଘୁକୁଳ ନାନେ ॥
ପୁତ୍ର ଦାରା ଦୋହିତା ସମସ୍ତେ ଆସିଛନ୍ତି ।
ଅଯୋଧ୍ୟାର ଲୋକମାନେ ଦେଖିତ ଆସନ୍ତି ॥
ଭ୍ରଥ ଶତ୍ରୁଘନ ଲକ୍ଷଣଙ୍କ ତିନି ନାରୀ ।
ଆବର ଅଛନ୍ତି ଅନେକ ପରିବାରୀ ॥
ସୀତ୍ୟାର ସଖୀ ସଙ୍ଗାତୁଣୀ ଯେତେ ଥିଲେ ।
ମନମାୟା ସହିତେ ଯେତେକ
ଅଇଲେ ॥୯୦
ବନଜନ୍ତୁ ଗଜ ସିଂହ ବ୍ୟାଘ୍ରମାନ ।
ବୃକ୍ଷ, କୀଟ, ପତଙ୍ଗ ପକ୍ଷୀ ଜନ୍ତୁ ଅଗ୍ୟାନ ॥

ତପୀ ଜପୀ ପାପୀ ଯେତେକ ଜନ୍ତୁ ଥିଲେ ।
ସୁମନ୍ତ ସହିତେ ମନ୍ତ୍ରୀମାନେ ଅଇଲେ ॥
ସବିହେଁ ଶୁଣିଲେ ବ୍ରହ୍ମ ଯାହା କହି ।
ଅତି ଆନନ୍ଦେ ଉଲ୍ଲସିତ କାୟେ ହୋଇଂ ॥
ରାମଙ୍କୁ ଧ୍ୟାନ କରି ପାର୍ଥିବ ଦେହ ଛାଡ଼ି ।
ରାମନାମ ସୁମରି ସରଯୁ ଜଳେ ବୁଡ଼ି ॥
ଶଙ୍ଖ ଚକ୍ର ଚତୁର୍ଭୁଜ ନୀଳକଳେବର ।
ପୀତ ବସ୍ତ୍ର ପରିହରଣ ଆବର
ରତ୍ନହାର ॥୧୦୦
ସ୍ୱରୂପ ମୁକତି ପାଇଲେ ସର୍ବ ଜନ ।
ଉତ୍ତର ତୀରେ ଉଠି ଚଢ଼ିଣ ବିବାନ ॥
ତତକ୍ଷଣେ ଦେବଦୂତେ ଦିଅନ୍ତି ରଥବାହି ।
ସ୍ୱର୍ଗଦ୍ୱାର କବାଟ ଅଛନ୍ତି ଫିଟାଇ ॥
ମଞ୍ଚର ଲୋକମାନେ ସ୍ୱର୍ଗରେ ଯାଇଂ ବସି ।
ସୁରପୁର ଲୋକେ ଶରଧେ ଦେଖି ଆସି ॥
ଅସଂଖ୍ୟ ବିବାନ ପଶଇ ସ୍ୱର୍ଗ ମଧ ।
ଯେବଣ ଥାନ ଦେଇ ଅଛନ୍ତି ବିବୁଧ ॥
ରଥୁଂ ଓହ୍ଲାଇଯାଇ ସେଥାନେ ବସନ୍ତି ।
ଦିବ୍ୟ ବସ୍ତ୍ର ପିନ୍ଧି ଅମୃତ ଭକ୍ଷନ୍ତି ॥୧୦
ଦେବଦୂତମାନେ ବାହୁଡ଼ନ୍ତି ପୁଣି ।
ବୋଲାବୋଲି ହୁଅନ୍ତି କାହାକୁ ଯିବା ଆଣି ॥
ଏମନ୍ତ ବୋଲି ପୁଣ ସରଯୁ କୂଳେ ଯାଇଂ ।
ଯତନେ କବିମାନେ ବସାଉଂଛନ୍ତି ନେଇଂ ॥
ଆସିଲା ଆସନ୍ତି ନ ଅଇଲା ଲୋକଙ୍କୁ
ରାଆନ୍ତି ।
ସ୍ୱର୍ଗେ ପଇଠ କରି ବାହୁଡ଼ି ଆସନ୍ତି ॥
ଚାଲ ଚାଲ ଆଢ଼ୋ ଆଢ଼ୋ ଶବଦ
ନିରନ୍ତରେ ।
ସରଯୁ ପାରି ହୋଇ ଉଠନ୍ତି ହେମବନ୍ତରେ ॥
ସେ ପର୍ବତ ବାଟେ ସ୍ୱର୍ଗକୁ ଯାଉଛନ୍ତି ଉଠି ।
ଗହ ଗହ ଶବଦ ଅନ୍ତରୀକ୍ଷେ ଫୁଟି ॥୨୦
ବାଟେ ଠେଲାଠେଲି ଏକକୁ ଆରେକ ।
ଭବଜଳୁ ପାର ହେଉଛନ୍ତି ଲୋକ ॥
କେ ଆଗ କେ ପଛ ତଦନ୍ତ ନ ଜାଣି ।
ସ୍ୱର୍ଗ ବାଟ ଗୋଟା ଯାଉଛନ୍ତି ପ୍ରାଣୀ ॥

ଦେବଦୂତମାନଙ୍କୁ ବିଶ୍ରାମ ନାହିଁ କ୍ଷଣେ ।
ଜାଣିମାର ଲୋକେ ତହିଁ ନ ରହନ୍ତି ଜଣେ ॥
ଏସନକ ସମଏ ବୋଇଲେ ପିତାମହ ।
ଭୋଦେବ ଏବେ ତୁମ୍ଭେ ବିମାନ ଆରୋହ ॥
ଥାବର ଜଙ୍ଗମ କୀଟ ପକ୍ଷୀ ଯେତେ
ଥିଲେ ।
ଏ ତୋହୋର ଆଗ୍ୟାଂରେ ସମସ୍ତେ ସ୍ୱର୍ଗ
ଗଲେ ॥୩୦
ରାବଣର ପାଇଂ ଯେତେ ଥିଲେ ଅବତରି ।
ସେତ ନ ପାଇଲେ ତୋର ପୁଣ୍ୟ କରି ॥
ଦେବତାମାନେ ଯେ ଯାହା ସୈନ୍ୟ ଘେନି ।
ତୋତେ ସେବା କରି ଜନ୍ମିଲେ ମେଦିନୀ ॥
ଅନେକ କାଳରୁ ଯେତେ ବୃକ୍ଷମାନେ
ଥିଲେ ।
ପଶୁଜନ୍ତୁମାନେ ସମସ୍ତେ ତରିଲେ ॥
ଏବେ ତୁ ନନ୍ଦିଘୋଷ ରଥେ ବିଜେକର ।
ଯିବ ବାଇକୁଣ୍ଠ ତୋହୋର ନିଜପୁର ॥
ଜଏ ବିଜଏ ଯେ ଶାପ୍ୟ ପାଇଥିଲେ ।
ତୋହୋର ଦୟାରେ ସେ ମୁକତ
ହୋଇଲେ ॥୪୦
ଯେବେ କ୍ଷୀର ସମୁଦ୍ରେ ଯାଇ ତୋ ଦ୍ୱାର
ରଖିଛନ୍ତି ।
ସୀତା ଲକ୍ଷଣ ସହିତେ ସମସ୍ତେ ଅଛନ୍ତି ॥
ଆସ ଆସ ଭୋଦେବ ବିଳମ୍ବ ନକର ।
ଏତେ ବୋଲି ପାୟେ ପଡ଼ି ଶୋଇଲେ
ସର୍ବେସୁର ॥
ପୁଣି ଉଭା ହୋଇଲେ କର ଦୁଇ ଯୋଡ଼ି ।
ହସିଣ ନାରାଏଣ ପୁଣ ଆନନ୍ଦରେ ଗଡ଼ି ॥
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚଉକର ।
ନନ୍ଦୀଘୋଷ ରଥେ ବିଜୟେ ଦେବବର ॥
ଦୁଇ କତିରେ ଛନ୍ତି ବସୁମତୀ ମାୟା ।
ଶ୍ରୀହରି ସଙ୍ଗତେ ଧଇଲେ ନିଜ କାୟା ॥୫୦
ଶ୍ୱେତ ଚାମର ଧରିଣ ବିଞ୍ଚନ୍ତି ।
ଅପଛାରୀମାନେ ମିଳି ହୁଳହୁଳି ଦ୍ୟନ୍ତି ॥
ବିକଟାଳ ହୋଇ ବାଜଇ ବୀର ତୂର ।

ମାତେଲି ରଘୁବର ବାହଇ ଧୀର ଧୀର ॥
ବ୍ରହ୍ମା ଇନ୍ଦ୍ର ରଦ୍ର ସକଳ ସୁର ଘେନି ।
ଆନନ୍ଦେ ଗମନ କରନ୍ତି ସୁର ମୁନି ॥
ନିରନ୍ତରେ ପାଟଛତ୍ର ଚିରାଳ ଉଡ଼ନ୍ତି ।
ଉଦଣ୍ଡ ଆଲମ୍ୱ ବିଲମ୍ୱ ପନ୍ତି ପନ୍ତି ॥
ଅପଛରୀମାନେ ପାୟେ ପଡ଼ି ଶୁଅନ୍ତି ।
ଆଗ ପଟୋଆରେ ସେ ଖଟଣି
କରିଛନ୍ତି ॥୬୦
ସ୍ୱର୍ଗ ପୁରେ ଦୁନ୍ଦୁଭି ବାଜଇ ଅତି ସଞ୍ଚ ।
ରଥ ଚଳିଯାନ୍ତେ ହୋଇଲା ମାହାଘଞ୍ଚ ॥
ଚଉଦ ଭୁବନ ଲୋକେ ଆସିଛନ୍ତି ।
ହରି ହରି ବୋଲିଣ ଉଚ୍ଚେ ଡାକ ଦ୍ୟନ୍ତି ॥
ହେମବନ୍ତ ଉପରେ ଉଠିଲା ଯାଇ ରଥ ।
ସ୍ୱର୍ଗଦ୍ୱାର ବାଟେ ପଶନ୍ତି ରଘୁନାଥ ॥
ଇନ୍ଦ୍ର ଆଗିଆଣି ଐରାବତ ଚଢ଼ି ।
ହଂସ ଚଢ଼ି ବ୍ରହ୍ମା ପଛ ପାଟୋଆରେ ପଡ଼ି ॥
ଡାହେଣ କୋବେର ବାମେଣ ବରୁଣ ।
ରଥ ପେଲୁଛନ୍ତି ଆବର ସୁରଗଣ ॥୭୦
ହେମବନ୍ତ ବାଟରେ ସ୍ୱର୍ଗପୁରେ ପଶି ।
ସୁର ପୁର ଲୋକେ ଦେଖିବାରେ ଆସି ॥
ପୁରୁଷୋତ୍ତମେ ଯେହ୍ନେ ଗୁଣ୍ଡିଚା ବିଜୟେ ।
ତେସନ ପଟାନ୍ତର ଦିଶନ୍ତି ରାମରାଏ ॥
ଗହ ଗହ ଧାନ୍ଦୋଳ ଗନ୍ଧର୍ବ ଅପଛରୀ ।
କର୍ପୂର କସ୍ତୁରୀ ମିଶାଇ ବାଟରେ ସିଂଚାଡ଼ି ॥
ଆରମ୍ଭେଣ ମଣ୍ଡିଲାଅଛି ପୁର ସ୍ୱର୍ଗ ।
ତହିଂ ଅବା ଅପୂର୍ବ ଅଛି କେବଣହିଂ ଦ୍ରବ୍ୟ ॥
ଯେବଣ ସ୍ୱର୍ଗ ଥାନ ନବରତ୍ନେ କମ ।
ସୁବାସିଲା ଅଛଇ କସ୍ତୁରୀ ଚନ୍ଦ୍ରସମ ॥୮୦
ପଦ୍ମରାଗ ମାଣିକ୍ୟ ଗଜମୋତି ଝରା ।
ନାନା ବର୍ଣ୍ଣ କଳସ ଚିରାଳ ଫରହରା ॥
ଦ୍ୱାରେ ପୂର୍ଣ୍ଣକୁମ୍ଭ ଦଧି ମାଛ ଥୋଇ ।
ଅର୍ଘ୍ୟଘେନି ଯୁବତୀଏ ଅଛନ୍ତି ଉଭାହୋଇଂ ॥
ଶ୍ରୀରାମଙ୍କୁ ଦେଖି ଦିଅନ୍ତି ହୁଳହୁଳି ।
ଶରଧା ନିମନ୍ତେ ଗୋଡ଼ାଇଛନ୍ତି ବାଳୀ ॥
ସ୍ୱର୍ଗର ମଧ୍ୟେ ରଥ ଗମନ କରି ଯାଇ ।

କୋଳାହଳ ଶବଦେଣ ବାଜଣା ବଜାଇଂ ॥
ସୁର ନର କିନ୍ନର ମଥାରେ ହାଥ ଦ୍ୟନ୍ତି ।
ଜଏ ଜଏ ପୁରୁଷୋତ୍ତମ ବୋଲିଣ
ବୋଲନ୍ତି ॥୯୦
ମେରୁ ପିଠିରେ ଯାଇ ଉଠିଲାକ ରଥ ।
କରପତ୍ର ଯୋଡ଼ି ବୋଲଇ ଚଉମାଥ ॥
ଭୋଦେବ ନାରାୟଣ ଏ ସୁଧର୍ମାର ସଭା ।
ଏଥିରେ ରହିବାକି ବଇକୁଣ୍ଠ ଯିବା ॥
ଶୁଣି ଭଗବାନ ବୋଇଲେ ଚାଲ ଚାଲ ।
ଆଗ୍ୟାଂ ପ୍ରମାଣେ ଆନନ୍ଦ ସୁର ଆଳ ॥
ପଞ୍ଚରତ୍ନ ବୃଷ୍ଟି ଯେ କରନ୍ତି ସୁରପତି ।
ଅପଛରୀ ବିଦ୍ୟାଧରୀ ହୁଳହୁଳି ଦ୍ୟନ୍ତି ॥
ସ୍ୱର୍ଗ ଜିଣି ରଥ କ୍ଷୀରସିନ୍ଧୁ ପାଙ୍ଗ ।
ପଛେଣ ସୁରଗଣ ଅଛନ୍ତି ଗୋଡ଼ାଙ୍ଗ ॥୧୦୦
ବାରତା ଯାଇଣ ମଣ୍ଡିଲେ ବଇକୁଣ୍ଠ ।
ଦର୍ପଣ ଚାମର ପୁଷ୍ପ ବସନ ମୁରାଟ ॥
ଘରେ ଘରେ ଉଛବ ବାରସ୍ୱତୀ ଭୁବନ ।
ଦ୍ୱାଦଶ ଯୋଜନ ସେ କଟେକ ଆଏତନ ॥
ସବୁଙ୍କରି ଦ୍ୱାରେ ମଙ୍ଗଳ ଗୀତ ଆରମ୍ଭ ।
ବେନିପାଶେ ପୋତିଲେ ମ୍ରକତ ବେନି
ଖମ୍ଭ ॥
କାଚର ପତ୍ରମାନେ ପୋଏଳାର ଫଳ ।
ନୀଳାର ପୂର୍ଣ୍ଣକୁମ୍ଭ ପନୀରର ଜଳ ॥
ଗଜ ମୋତି ତଣ୍ଡୁଳ ଉପରେ ଘଟ ଥୋଇ ।
ମାରାଗ ଚୂତପତ୍ର ମାଣିକ୍ୟ ଫଳ
ଦେଇଂ ॥୧୦
ଅମୃତ ଦଧିଭାଣ୍ଡ ହୀରାର ମାଛ ରୋହି ।
ଶ୍ରୀକର୍ପୂର ଗୁଣ୍ଡି ସିଞ୍ଚିଲେ ଦ୍ୱାରେ ନେଇ ॥
ପଦ୍ମିନୀ କନ୍ୟାମାନେ ଦିବ୍ୟବେଶ ହୋଇଂ ।
ଦ୍ୱାରେ ଉଭା ହୋଇଅଛନ୍ତି ଅର୍ଘ୍ୟ
ଦେବାପାଇଂ ॥
ଅଗରର ଧୂପ କର୍ପୂରର ବଳିତା ।
ଅର୍ଘ୍ୟ ଦେଖାଇ ହୁଳହୁଳି ଦିଅନ୍ତି ବନିତା ॥
ବିଷ୍ଣୁଗଣମାନେ ଅଇଲେ ସଜ ହୋଇଂ ।
ବାଟେ ନାରାଏଣକୁ ଦ୍ରଶନ କଲେ ଯାଇଂ ॥

ବ୍ରହ୍ମା ଇନ୍ଦ୍ର ରୁଦ୍ର ସକଳ ସୁରଗଣ ।
ଗହ ଗହ ଗହଳ ଅଟଇ ଅପ୍ରମାଣ ॥୨୦
ନବର ସିଂଘଦ୍ୱାରେଣ ମିଳିଲେ ଦେବ
ଯାଇଂ ।
ଗରୁଡ଼ ଦର୍ଶନ କଲା ପାଏ ପଡ଼ି ଶୋଇ ॥
ଉଠି ଉଭା ହୋଇଣ ଯୋଡ଼ଇ ବେନି କର ।
ଚାହିଂଣ ଅଳପ ଅଳପ ହସନ୍ତି ଚକ୍ରଧର ॥
ସିଂହଦ୍ୱାର ଜିଣିଣ ପଶିଲେ ଭିତରେ ।
ଅନନ୍ତ ଦ୍ରଶନ କଲେ ତହିଂର ଉତ୍ତାରେ ॥
ପ୍ରସନ୍ନ ହୋଇଣ ଦେବ ହସିଣ ବୋଇଲେ ।
ଅନନ୍ତ ହସ୍ତ ଧରି ଭିତରକୁ ଗଲେ ॥
ଲକ୍ଷ୍ମୀ ସରସ୍ୱତୀ ଅଇଲେ ବନ୍ଦାଇଂ ।
ସୁବର୍ଣ୍ଣ ଥାଳିରେ କୋଟିଏ ରତ୍ନ
ନେଇଂ ॥୩୦
ଲକ୍ଷ୍ମୀ ନାରାଏଣ ହୋଇଲେ ଯହୁଂ ଭେଟ ।
ଦେଖିଣ ପାଏ ପଡ଼ି ଶୋଇଲେ ସୁରଶ୍ରେଷ୍ଠ ॥
ଇନ୍ଦ୍ର, ରୁଦ୍ର, ବରୁଣ, କୋବେର
ଦିଗପାଳେ ।
ସଭିଏଂ ଗଡ଼ଘାଲି ଶୁତିଲେ ରଥତଳେ ॥
କମଳା ଦେବୀ ଆସି ବିଷ୍ଣୁଙ୍କୁ ଅର୍ଘ୍ୟଦେଲେ ।
ଉଠି ପିତାମହ ବେଦ ଆଧ୍ୟାନ କଲେ ॥
ସୁଗନ୍ଧ ଗନ୍ଧ ଘେନିଣ ପବନ ବହିଲା ।
ଅର୍ଘ୍ୟ ଘେନି ସରସ୍ୱତୀ ହୁଳହୁଳି ଦେଲା ॥
ଇନ୍ଦ୍ରଦେବ ଅମୃତ ବୃଷ୍ଟି କରଇ ଉପରେ ।
ସମସ୍ତ ଦେବତାମାନେ ଗୋଡ଼ାନ୍ତି
ସମ୍ଭରେ ॥୪୦
ଶ୍ରୀରାମ ପାରୁଶେ ଯେ ମାୟା ଦେବୀ ଥିଲା ।
ସେ ଆସି ଲକ୍ଷ୍ମୀକି ନମସ୍କାର କଲା ॥
ବିନଇ ହୋଇଣ ପୁଣ ସମସ୍ୟା କହିଲା ।
ଆଣିଲି ତୋହ ପ୍ରଭୁ ବୋଲିଣ ବୋଇଲା ॥
କର ଭୋଗ ତୋର ନିଜ ପତି ଘେନି ।
ଏତେକ ବୋଲିଣ ଅଦୃଶ୍ୟ ହୋଇଲା
କାମେନୀ ॥
କମଳାର ଶ୍ୟରୀରେ ପଶିଲାକ ଯାଇଂ ।
ଯେକ ହୋଇଲା ରେଖ ରୂପ ନାହିଂ ॥

ପୃଥ୍ୱୀ ଯେ ଶ୍ରୀହରିର ସନ୍ନିଧ୍ୟରେ ଥିଲା ।
କରପତ୍ର ଯୋଡ଼ିଣ ସୀତ୍ୟାକୁ
ବୋଇଲା ॥୫୦
ଭୋ ବିଷ୍ଣୁ ଘରଣୀ ଯେ ତୋହୋର ନିଜ
ସାଇଂ ।
ଅଯୋଧ୍ୟା କଟେକରୁ ଆଣିଲି କଢ଼ାଇଂ ॥
ଏବେ ପ୍ରାଣ ବଲଭଂକୁ ଘେନିଣ ଭୋଗ
କର ।
ଲକ୍ଷ୍ମୀର ମୁଖ ଚାହିଂ ହସନ୍ତି ଚକ୍ରଧର ॥
ରଥୁ ଓହ୍ଲାଇଣ ତଳେ ବିଜେ କଲେ ।
ପାଟ ପାଏଡ଼ା ଉପରେ ଚାଲି ଗଲେ ॥
ସହସ୍ରେ ମାଣିକ୍ୟର ଯେବଣ ମଣ୍ଡୋପ ।
ମଣିମଏ ସିଂହାସନ ଉପରେ ଚନ୍ଦ୍ରାତପ ॥
ଦେବାଙ୍ଗ ବସ୍ତ୍ର ଚାମର ପୁଷ୍ପ ମାଳମାନ ।
ନବରତ୍ନ ମଣ୍ଡଣି ଅପୂର୍ବ ବିଧାନ ॥୬୦
ସିଂହାସନେ ବିଜେ କଲେ ସ୍ୱାମୀ ଯାଇଂ ।
ତେତିଶ କୋଟି ଦେବେ ଅଛନ୍ତି ଗୋଡ଼ାଇଂ ॥
ଲକ୍ଷ୍ମୀ ସରସ୍ୱତୀ ଦ୍ରଶନ ଆସି କଲେ ।
ଦୁଇପାଦ ଧରି ଓଳଗି ଶୁତିଲେ ॥
ଉଠିଣ ଶ୍ରୀଚରଣ ଗଙ୍ଗାଜଳେ ଧୋଇ ।
ପାଦ ଉଦକ ପାଇଂ ହେଲେ ପାପ ଦହି ॥
ସ୍ୱାମୀଙ୍କ ଚରଣେ ସେ ଖଟିଲେ
ଦୁଇଦେବୀ ।
ପାଦପଦ୍ମକୁ ଧ୍ୟାଇଣ ଖଟିଲେ ପଞ୍ଚ ମନେ
ସେବି ॥
ଏଥୁଅନନ୍ତରେ ପୁଣ ଅର୍ଘ୍ୟ ଦେଲେ ।
ଶ୍ୱେତ ଚାମର ଘେନି ଟେକିଣ
ଡାଳିଲେ ॥୭୦
ଦେବତାଏ ଅଛନ୍ତି ପୃଥୀକି ଆଗ କରି ।
ବ୍ରହ୍ମାକୁ ଚାହିଂଣ ବୋଲନ୍ତି ଚକ୍ରଧାରୀ ॥
ଯାସି ବିଧାତା ହୋ ତୋହୋର ସୁରଗଣ
ଘେନି ।
ଯେ ଯାହାର ଆଶ୍ରମକୁ ଯାଆନ୍ତୁ କାମେନୀ ॥
ପୁଣ କାର୍ଯ୍ୟ ପଡ଼ିଲେ କହସି ଆସି ମୋତେ ।
ଏବେ ସମଏକ ରହିଥାଅ ତୁମ୍ଭେ ସୁସ୍ଥେ ॥

ଏତେକ ବୋଲିଣ ଦେବ ଶାଢ଼ୀ ଅଣାଇଲେ ।
ବ୍ରହ୍ମାଙ୍କୁ ଚାହିଂଣ ଆପଣେ ଶାଢ଼ୀ ଦେଲେ ॥
ଶାଢ଼ୀ ଘେନି କୁଶକେତୁ ଗଲା ନିଜ ପୁର ।
ଯଶୋବନ୍ତୀ ପୁରେ ପୁଣ ବିଜୟେ ଅଷ୍ଟକର ॥୮୦
ଦେଖି ରୁଦ୍ରପତି ବେନି ଚରଣ ବନ୍ଦିଲା ।
ଶିରେ ହାଥ ଦିଅନ୍ତେଣ ଦୟା ସେ ବସିଲା ॥
ପାଏ ପଡ଼ି ଶୋଇ ଉଠିଲା ପୁଣି ।
ରୁଦ୍ରଙ୍କୁ ଚାହିଂ ଶାଢ଼ୀ ଦେଲେ ଚକ୍ରପାଣି ॥
ଇନ୍ଦ୍ର ଆଦି କରି ପବନ ମରୁତ ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ କୁବେର ନୈରୁତ ॥
ବରୁଣ ବୃହସ୍ପତି ସଭିଏଂ ଶାଢ଼ୀ ପାଇଂ ।
ଦେବ ଦକ୍ଷ କିନ୍ନର ଗନ୍ଧର୍ବେ ଉଷତ ହୋଇ ॥
ଅପଛରୀମାନେ ପାଇଲେ ଅଳଙ୍କାର ।
ବିଚିତ୍ର ବସ୍ତ୍ର ଚନ୍ଦନ ଅଗର କର୍ପୂର ॥୯୦
ପୃଥିଦେବୀ ଶାଢ଼ୀ ପାଇଂ ଆନନ୍ଦ ବଦନ ।
ଶାଢ଼ୀ ପାଇଲେ ଆବର ବ୍ରହ୍ମ ଋଷିମାନ ॥
ଗ୍ରହଗଣ ଅଷ୍ଟାବସୁ ବିଶ୍ୱ ଦେବା ମୂଳେ ।
ମାହାସ୍ୱର୍ଗ ସୁରଭି କଳ୍ପତରୁ ସକଳେ ॥
ଯେ ଯାହା ଅନୁରୂପେ ପାଇଲେ ପ୍ରସାଦ ।
ବିଷ୍ଣୁଙ୍କୁ ଆଶ୍ରେକରି ଛେଦିଲେ ଅପ୍ରମାଦ ॥
ନମସ୍କାର କରିଣ ବାହୁଡ଼ି ଅଇଲେ ।
ଯେ ଯାହାର ପୁରେ ପ୍ରବେଶ ହୋଇଲେ ॥
ନାରାଏଣ ବିଜେକଲେ ବଇକୁଣ୍ଠ ପୁରେ ।
ଜଏ ବିଜଏ ବେନି ଥିଲେ ପଶ୍ଚିମ ଦ୍ୱାରେ ॥୧୦୦
ସେ ଆସି ଦ୍ରଶନ କଲେକ ବୀର ବେନି ।
ପାଏ ପଡ଼ି ଶୋଇଲେ ପାଦ ପଦ୍ମ ଚିହ୍ନି ॥
ସ୍ୱାମୀ ବୋଇଲେ ହୋ ଦୁଃଖ ତୁମ୍ଭର ଗଲା ।
ଦୁର୍ଭାସା ମହାଋଷି ଯେବଣ ଶାପ୍ୟ ଦେଲା ॥
ହିରଣ ହିରଣାକ୍ଷ ହୋଇଲ ପ୍ରଥମେ ।
ରାବଣ କୁମ୍ଭକର୍ଣ୍ଣ ହୋଇଲ ଯେ ଜନ୍ମେ ॥
ଅସୁର ଅବତାର ଏଣିକି ଆଉ ନାହିଂ ।
ପୁଣି ଜନ୍ମିବ ମନୁଷ୍ୟ ରୂପ ହୋଇ ॥
ଶାଲୁ ଶିଶୁପାଳ ନାମ ବୋଲାଇବ ।
ମୋହୋର ସଙ୍ଗତରେ ଅପ୍ରୀତି ହୋଇବ ॥୧୦
ଚକ୍ରରେ ମାରି ମୁହିଂ ଦେହେ କରିବି ଲୀନ ।
କୃଷ୍ଣ ଅବତାର ଅଛଇ ଅଳ୍ପଦିନ ॥
ଏବେ ଯେ ଯାହାର ସେବା ଖଟିଥାଅ ।
ଆମ୍ଭର ଆଗ୍ୟାଂ ହେଲେ ମୃତ୍ୟୁଲୋକକୁ ଯାଅ ॥
ଶୁଣିଣ ଜଏ ବିଜୟେ ଆନନ୍ଦ ହୋଇଲେ ।
ଭୋ ପ୍ରଭୁ ରକ୍ଷା କରସି ବୋଲିଣ ବୋଇଲେ ॥
ଦୁର୍ଭାସା ମହଋଷି ନ ଜାଣି ଶାପ୍ୟ ଦେଲେ ।
ତୋହୋର ସଙ୍ଗେ ନେଇ ବିବାଦୀ କରାଇଲେ ॥
ଏ କଥାଉଂ ଆଜ ଅଛିକି ଆଉ ଆନ ।
ତୁ ସ୍ୱାମୀ ଭଗତ ବଛଳ ଭଗବାନ ॥୨୦
ଶୁଣିଣ ନାରାଏଣ ବୋଇଲେ ତାଙ୍କୁ ଚାହିଂ ।
ତୁମ୍ଭେ ନ ଜାଣ ହୋ ତପୀଙ୍କ ଦୋଷ ନାହିଂ ॥
ମୁହିଂ ସେ କରଇ ଯାବତ ସମତୁଲ ।
ପୂର୍ବେରେ ଯହୁଂ ତୁମ୍ଭେ ହୋ ଉପଦର୍ପ କଲ ॥
ଏଣୁ ସେ ଅସୁର ଯୋନି ପାଇଲ ହେ ବେନି ।
ପୁଣ ଦୟା କରି ଅଇଲି ତୁମ୍ଭଙ୍କୁ ଘେନି ॥
ତୁମ୍ଭେ ଯେବେ ସୃଷ୍ଟିରେ ନ କରନ୍ତ ଗୋଳ ।
ମୋତେ ପାଶୋରନ୍ତେ ସିନା ଦଶଦିଗ ପାଳ ॥
ତେଣୁ ସେ ତୁମ୍ଭନ୍ତ ପୁଣ କରଇ ମୁହିଂ ଜାତ ।
ପୁଣ ଅବତାର କ୍ରୀଡ଼ାର ନିମିତ୍ତ ॥ ୩୦
ସଂସାର ଯାତନା ମୋହୋର ଖେଳ ଘର ।
ସେ କଥାକୁ ତୁମ୍ଭେ ଶୋଚନା ନ କର ॥
ଶୁଣିଣ ଜଏ ବିଜଏ ନମସ୍କାର କଲେ ।
ଯହିଂର ସେବକ ତହିଂକି ବୋଲି ସେ ଗଲେ ॥
ଏଥିଅନନ୍ତରେ ଶୁଣ ଗୋ ପାର୍ବତୀ ।
ଗରୁଡ଼ଙ୍କୁ ଚାହିଂଣ ବୋଇଲେ ଶ୍ରୀପତି ॥
କୁଶଳେ ଅଛୁଟିକି ହୋ ବିନତାର ସୁତ ।
ହୋଇ ଦେବ ବୋଲି ଯୋଡ଼ଇ ବେନିହସ୍ତ ॥
ଯେତେକ ଅବତାର ମୁଂ ନ ପାରିଲି ଦେଖି ।
ସୁଫଳ ହୁଅନ୍ତିନା ମୋହୋର ବେନି ଆଖି ॥୪୦
ଶ୍ରୀହରି ବୋଇଲେ ହୋ ଦେଖିଲୁ ସେ ଯାଇଂ ।
ଆମ୍ଭେ ବିଜଏ କରିଣ ଥିଲୁ ଲଙ୍କଭୂଇଂ ॥
ପ୍ରକାର ଅନ୍ତରେ ତୋତେ ରୁଆଇଲୁ ।
ଶ୍ରୀରାମ ରୂପ ତୋତେ ବେଳେକ ଦେଖାଇଲୁ ॥
ଆନ ଅବତାରେ ତୋତେ ନେଇ ସିନା ସଙ୍ଗେ ।
ପୃଥୀ ଭାରାଭାର ନିବାରିବୁ ରଣ ରଙ୍ଗେ ॥
ଏହାଶୁଣି ଖଗପତି ହୋଇ ଦେବ ବୋଲି ।
ଲଙ୍କାରେ ରାମରୂପେ ଦେଖି ମୁହିଂ ଅଇଲି ॥
ଏସନେକ ବେଳେ ସ୍ୱାମୀ ଅନନ୍ତଙ୍କୁ ଚାହିଂ ।
ବୋଇଲେ ଆମ୍ଭନ୍ତ ଛାଡ଼ି ଅଇଲ ହୋ ଭାଇ ॥୫୦
ଲକ୍ଷଣ ବୋଇଲେ ଦେବ ତୁମ୍ଭ ଆଗ୍ୟାଂ ଘେନି ।
ଅଇଲି ନିଜ ପୁର ପରମ ଆତ୍ମା ଚିହ୍ନି ॥
ଶୁଣିଣ ପରମାନନ୍ଦ ପରମ ତୋଷ ମତି ।
ବୋଇଲେ ଭଲ ହୋଇଅଛ ସରସ୍ୱତୀ ॥
ଶାରଦା ବୋଇଲେ ଦେବ ତୋହୋରି ପରସାଦେ ।
ସୁଖେଣ ବସି ଅଛଇ ପରମ ସାନନ୍ଦେ ॥
ଲକ୍ଷ୍ମୀକି ଚାହିଂ ସେ ବୋଲନ୍ତି ନାରାୟଣ ।
ଏମନ୍ତ କରି କିମ୍ପା କରି ରଣ ଭଣ ॥
ପରୀକ୍ଷା ଦେବୁ ବୋଲିଣ ପାତାଳକୁ ଗଲୁ ।
ଏଡ଼େ ଅବିଶ୍ୱାସ ଗୋ କେମନ୍ତେ ହୋଇଲୁ ॥୬୦
କମଳା ବୋଇଲେ ତୁମ୍ଭେ ନ କଳଟି କାହା ।
ଯହୁଂ ବଡ଼ ଲୋକ ତୁମ୍ଭେ ଜଗତର ନାହା ॥
ଗଙ୍ଗାକୂଳେ ପଠିଆଇଂ ନିବାସିଲ ବନେ ।

ତହିଁ ରହି ଆଉ ମୁହିଁ ଥିବଙ୍କ କେସନେ ॥
ଶୁଣିଣ ନାରାଏଣ ଅଳପ ହସନ୍ତି ।
ଈଶ୍ୱର ବୋଲନ୍ତି ଶୁଣଗୋ ହେମବନ୍ତୀ ॥
ଏଥୁ ଅନନ୍ତରେ ଦେବ ନାରାୟଣ ।
ଗୋଡ଼ାଇଣ ଅଇଲେ ସୀତ୍ୟାର ଦାସୀଗଣ ॥
ସରଯୁରେ ବୁଡ଼ି ଦିବ୍ୟ ଶରୀର ପାଇଲେ ।
ଦିବ୍ୟ ରୂପ ଧରି ସ୍ୱର୍ଗକୁ ସେ ଗଲେ ॥୭୦
ମନମାୟା ସହିତେଣ ସୀତ୍ୟାର ଭଗ୍ନୀ ତିନି ।
ବୈକୁଣ୍ଠେଣ ପ୍ରବେଶ ଯେ ଯାହାର ରୂପ ଘେନି ॥
ଶଙ୍ଖ ଚକ୍ର ଗଦା ସାରଙ୍ଗ ଚତୁ ହସ୍ତ ।
ନିଜ ଦେହ ପାଇ ସେ ଦିଶିଲେ ପବିତ୍ର ॥
ଶିରେଣ ଜଟା ବକଳ ପରିହରଣ ।
ଯେ ଯାହା ମନ୍ଦିରକୁ ଗଲେ ମୁନିଜନ ॥
ଅଯୋଧ୍ୟା ପୁରେ ଯେତେକ ଯୁବତୀମାନେ ଗଲେ ।
ଯେ ଯାହା ସ୍ୱାମୀଙ୍କି ଦେଖିଣ ସେବା କଲେ ॥
ଏଥୁଅନନ୍ତରେ ମାଜଣା ହୋଇଲେ ହରି ।
ବସ୍ତ୍ର ଅଳଙ୍କାର ଆଭରଣ କରି ॥୮୦
ମଣୋହିରେ ବିଜେ କରି ଭୁଞ୍ଜନ୍ତି ଅମୃତ ।
ଆଚୋବନ ସାରି ପରମ ସାନନ୍ଦ ଚିତ୍ତ ॥
ଲକ୍ଷ୍ମୀ ତାମ୍ବୋଳ ଭୁଞ୍ଜାନ୍ତି ପାଶେ ବସି ।
ଅନନ୍ତ ଅମୃତ ଭୁଞ୍ଜନ୍ତି ତହିଁ ଆସି ॥
ଶ୍ରୀହରି ବୋଇଲେ ଗୋ ଶେଯାଅ ସୁପାତି ।
ନିଦ୍ରାରେ ଅଳସ ହେଲା ଆମ୍ଭ ମତି ॥
ନିଶ୍ଚିନ୍ତ ହୋଇ ଆମ୍ଭେ ତହିଁରେ ନିଦ୍ରାଯିବୁ ।
ପୁଣ ଆମ୍ଭର ଇଚ୍ଛା ହୋଇଲେ ଉଠିବୁ ॥
ଶୁଣି ଅନନ୍ତ ତହୁଁ ଭିତରକୁ ଗଲେ ।
ବ୍ରହ୍ମ କାଚି ହୀରା ପୁରରେ ମିଳିଲେ ॥୯୦
ରବିର ଯେ ଜ୍ୟୋସ୍ନା ନ ଲାଗଇ ସେ ମନ୍ଦିରେ ।
ଆପଣେ ଶେଯ୍ୟା ପୁଣ ହୋଇଲେ ଅହିବରେ ॥
ଜାଣିଣ ନାରାଏଣ ବିଜେ କରି ଗଲେ ।
ଅନନ୍ତ ଶେଯ୍ୟା କରିଣ ଉପରେ ଶୋଇଲେ ॥
ବାମକର ଗୋଟି ନିଜ ସୀମସ୍ଥାନେ ଦେଇ ।
ଦକ୍ଷିଣ ଭୁଜ ଗୋଟିକି ତଳକୁ ଲମ୍ୱାଇ ॥
ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ ରାତି ।
ଯୋଗ ନିଦ୍ରା ଗଲେ ତହିଁ ଦେବ ଶିରୀପତି ॥
ପାଦ ପଦ୍ମ ମଚାଳନ୍ତି ମହାଲକ୍ଷ୍ମୀ ବସି ।
ଶିର କତିରେ ସରସ୍ୱତୀ ବସି ବିଦ୍ୟା ଘୋଷି ॥୧୦୦
ଗାନ୍ଧାର ରାଗେ ଗାଇ ଯନ୍ତ୍ର ବାଇ ।
ବିନନ୍ତା ନନ୍ଦନ ନିଜ ଭୁବନକୁ ଯାଇ ॥
ପୁଣ କେତେହେଁ ଯୁଗ ଅନ୍ତରେ ।
କୃଷ୍ଣ ଅବତାର ହେଲେ ବସୁଦେବ ଘରେ ॥
ତୁମ୍ଭେ ଶୁଣ ଗୋ ପାର୍ବତୀ ରାମର ମହିମା ।
ଏହା ମୁହିଁ ଜାଣଇ କହିଲେ ମୋତେ ବ୍ରହ୍ମା ॥
ତୁହିତ ଶୁଣିଲ ଗୋ ପାତେକ ତୋର ଗଲା ।
ଶୁଣିଣ ଉମାଦେବୀ ଆନନ୍ଦ ହୋଇଲା ॥
ଶୁଣ ସୁଜ୍ଞ ଜନ ତୁମ୍ଭେ ଯିସ ବାଞ୍ଛାକର ।
ନୀଳଗିରି ଜଗନ୍ନାଥେ ପ୍ରସନ୍ନେ ଦେଲେ ବର ॥୧୦
ମୁହିଁ ବଳରାମ ଦାସ ଅଟଇ ଅଜ୍ଞାନ ।
ମୋର ଦୋଷ ନଧର ପଣ୍ଡିତ ଜନମାନ ॥
ସାତକାଣ୍ଡ ରାମାଏଣ ଅଟଇ ଲକ୍ଷେ ପଦ ।
ଜଗମୋହନ ଗଦ ଅଟଇ ମହାସ୍ୱାଦ ॥୩୦
ଧର୍ମ ଅର୍ଥ କାମ ମୋକ୍ଷ ଅଟଇ ଏ ଚାରି ।
ଶୁଣିଲେ ବଇକୁଣ୍ଠ ପ୍ରାପତ ନରହରି ॥
ମହାପାତ୍ର ସୋମନାଥର ମୁଁ ଅଟଇ ତନଏ ।
ମୁହିଁ ବଳରାମଦାସ ଅପୂର୍ବ ଗୀତ ଗାଏ ॥
ଜୟ ତୁ ଜଗନ୍ନାଥ ନୀଳଗିରି ବାସ ।
ତାହାଙ୍କ ଶରଣ ମୁଁ ବଳରାମ ଦାସ ॥୨୦

**ଇତିଶ୍ରୀ ଜଗମୋହନ ରାମାୟଣ**
**ଉତ୍ତରା କାଣ୍ଡ ସମ୍ପୂର୍ଣ୍ଣ**

ବ୍ରହ୍ମାଣ୍ଡ ଭୂଗୋଳ

ବିରାଟ ଗୀତା

ଗୁପ୍ତ ଗୀତା

ଶ୍ରୀମଦ୍ ଭଗବଦ ଗୀତା (ଅନୁବାଦ)

(ମାଣବସା) ଲକ୍ଷ୍ମୀପୁରାଣ

କବିତା

# ବ୍ରହ୍ମାଣ୍ଡ ଭୂଗୋଳ

## ପ୍ରଥମ ଅଧ୍ୟାୟ

ଅର୍ଜ୍ଜୁନ ବିନୟ ବଚନେ ।
ପୁଚ୍ଛନ୍ତି ନାଥର ଚରଣେ ।
ଭୋ ନାଥ କରୁଣା ସାଗର ।
ଅଶେଷ ବ୍ରହ୍ମାଣ୍ଡ ଈଶ୍ୱର ।
ହେ ଦୀନବନ୍ଧୁ ଦଇତାରି ।
ମୁକୁନ୍ଦ ମାଧବ ମୁରାରି ।
ପଦ୍ମ ନୟନ ଗଦାଧର ।
ପରମ ପୁରୁଷ ଈଶ୍ୱର ।
ହେ କଳ୍ପ ଦ୍ରୁମ ଦଇତାରି ।
ପୁଣ୍ଡରୀକାକ୍ଷ ନରହରି ।
ହେ ଗିରିଧାରୀ ଗୋପୀନାଥ ।
ପରମ ପବିତ୍ର ବ୍ରହ୍ମତ୍ୱ ।
ଅଖିଳ ଶ୍ରେଷ୍ଠ ଚରାଚର ।
କରୁଣା ସିନ୍ଧୁ ଚକ୍ରଧର ।
ଅର୍ଜ୍ଜୁନ ସ୍ତୁତି ବଚନରେ ।
ମନ ଯେ କୃଷ୍ଣ ପାଦତଳେ ।
ତୁମ୍ଭର ନାମ ଅଗୋଚର ।
ଅନ୍ତ ନ ପାଇଲା ଶଙ୍କର ।
ପ୍ରଥମେ ଦେହ ବିଧି ତତ୍ୱ ।
କି ରୂପେ କାହୁଂ ହେଲା ଜାତ ।
କି ରୂପେ ଅଙ୍କୁରିଲା ବୃକ୍ଷ ।
ଗୋବିନ୍ଦ କହନ୍ତା ପ୍ରତକ୍ଷ ।
ଯେମନ୍ତେ ଅର୍ଜ୍ଜୁନ ବଚନ ।
ଶୁଣି ବୋଲନ୍ତି ଭଗବାନ ।

### ଶ୍ରୀଭଗବାନ ଉବାଚ

ବୋଲନ୍ତି କରୁଣା ସାଗର ।
ଶୁଣ ଅର୍ଜ୍ଜୁନ ମହାବୀର ।
ଯାହା ପୁଚ୍ଛିଲ ଦିବ୍ୟଗ୍ୟାଂନ ।
ଉଲଟ ବୃକ୍ଷର ବିଧାନ ।
ପ୍ରଥମେ ମାତା ପଦ୍ମ ଫୁଟି ।
ପିତା ବୀର୍ଯ୍ୟ ମଧେଣ ଭେଟି ।
ଏ ବେନି ସଂଯୋଗ କାଳରେ ।
ଶୂନ୍ୟ ବୀଜ ମଣ୍ଡଳ ଠାରେ ।
ମଣ୍ଡଳ ମଧ୍ୟେ ହେ ଅର୍ଜ୍ଜୁନ ।
ଅଲେଖ ଅଣାକାର ଶୂନ୍ୟ ।
ସେ ଶୂନ୍ୟ ମଧ୍ୟେ ସୂକ୍ଷ୍ମ ସାର ।
ତୁ ନାଶୁ ଯେସନ ପ୍ରକାର ।
ତୁ ନାଶୁ ମଧ୍ୟେ ଯେଉଂ ନାଦ ।
ପାରିଲେ ତହିଂ କାଳ ଭେଦ ।
ଯେତେବେଳରେ ପଦେ ଶ୍ରାମ ।
ଶୂନ୍ୟେ ଡାକିଲ ରାମ ନାମ ।
ସେ ଛଡ଼ ଚିନା ବେନି ରତି ।
ଅଷ୍ଟ ଅବନା ମଧ୍ୟେ ସ୍ଥିତି ।
ଗର୍ଭରେ ରଜ ଗୋପ୍ୟ ହେଲା ।
ସେ ସର୍ବେ ବୀଜ ଯେ ଲୁଚିଲା ।
ବେନି ଅକ୍ଷର ବ୍ୟାସ ମଧ୍ୟେ ।
ବୃକ୍ଷ ଅଙ୍କୁରିଲା ଆନନ୍ଦେ ।
ବେନି ପାଦ ମଧ୍ୟେ ଯୁଗଳ ।
ବେନି ପାଦ ତହିଂ ସଞ୍ଚର ।
ସେ ବେନି ମଧ୍ୟେ ବେନି ଦୁଇ ।
ଯେମନ୍ତେ ଚାରି ପ୍ରସ୍ତ ତୁହି ।
ଯେମନ୍ତେ ରଜ ତମ ଗୁଣ ।
ଏ ତ୍ରିଅଧାରଣା ବୃକ୍ଷେଣ ।
ଯେତେବେଳେ ବୃକ୍ଷ ରୂପିଲା ।
ତ୍ରିଧାର ଜଳ ବୁହାଇଲା ।
ଗଙ୍ଗା ଯମୁନା ସ୍ୱରସ୍ୱତୀ ।
ଆକାଶୁ ଝଡ଼ି ମୂଳେ ସ୍ଥିତି ।
ଋକ ଶ୍ୟାମ ଯଦୁ ଅଥର୍ବ ।
ଚାରି ପତ୍ର ତହିଂର ପ୍ରସ୍ତାବ ।
ତହିଂରେ ପଞ୍ଚଡ଼ାଳ ହୋଇ ।
ପୃଥିବୀ ଆପ ତେଜ ବାଇ ।
ଆକାଶ ମିଶି ପଞ୍ଚଭୂତ ।
ଯେମନ୍ତେ ପଞ୍ଚଡାଳ ସ୍ଥିତ ।
ଶାଖା ଯେ ଖୁଦ୍ର ଡାଳେ ବହି ।
ଡାଳକେ ପଞ୍ଚ ପଞ୍ଚ ହୋଇ ।
ପଞ୍ଚଶ ଖୁଦ୍ର ଡାଳ ପାଥ ।
ଦୁଖ ସୁଖ ବେନି ଫରିତ ।
ବୃକ୍ଷ ଶିଖରେ ପଛି ବେନି ।
ଅତ୍ୟାନ୍ତ ପ୍ରୀତି ସେହୁ ବେନି ।
ସକଳ କର୍ମମାନ ଜାଣ ।
ଏକଇ ପଛି ତା ବୃକ୍ଷେଣ ।
ଆରକ ପକ୍ଷୀ ବିଲଗରେ ।
ସେ ଥାଇ ଅମନ ମନ୍ଦିରେ ।
କାଉଂରି ମଣ୍ଡଳରେ ସ୍ଥାନ ।
ସୁହଂସ ନାମ ନିରଞ୍ଜନ ।
ଅବ୍ୟକ୍ତ ମହାବ୍ରହ୍ମଂ ସେହି ।
ଯେ ଚିନ୍ତେ ତାର ଭୟ ନାହିଂ ।
ରୂପ ନାହିଂ ଶୂନ୍ୟ ସେ ସ୍ୱରେ ।
ରହିଛି ଉଲଟ ଆକାରେ ।
ସେ ସ୍ଥାନେ ଧ୍ୟାନ କର ପାଥ ।
ଧାରଣା ସ୍ମରଣ ପ୍ରାପତ ।
ବୋଲଇ ବଳରାମ ଦାସ ।
ଶେଷ ଅଂଶେ ସେ ଦଶ ଦାସ ।

ଇତି ଶ୍ରୀ ଭୋଗୋଳ ଚରିତ୍ର ଆଖ୍ୟାନେ ଉଲଟ ବୃକ୍ଷ ଅର୍ଥ କଥନେ ବ୍ରହ୍ମାଣ୍ଡ ପୁରାଣେ ଉକତ ନାମ ପ୍ରଥମ ଅଧ୍ୟାୟ ।

# ଦ୍ୱିତୀୟ ଅଧ୍ୟାୟ

## ଅର୍ଜୁନ ଉବାଚ

ପୁଣି ପୁଚ୍ଛଇ ପଣ୍ଡୁସୁତ ।
କହହେ ପ୍ରଭୁ ଜଗନ୍ନାଥ ।
ବ୍ରହ୍ମାଣ୍ଡ ଭୋଗଳର ବାଣୀ ।
ଅର୍ଥ ପୁଚ୍ଛଇ ଚକ୍ରପାଣି ।
ଶ୍ରୀ ଭାଗବତ ଗ୍ୟାଂନ ସାର ।
ପୁଚ୍ଛଇ ବାରେ ଦାମୋଦର ।
କାହୁଂ ଯେ ଭାଗବତ ଜାତ ।
ମହୀରେ କେହୁ କଲା ଖ୍ୟାତ ।
ପ୍ରଥମେ କହି ଭାଗବତ ।
ସ୍ତମ୍ଭିତ ହେଲା ଗୋପୀନାଥ ।

## ଶ୍ରୀଭଗବାନ ଉବାଚ

ଅର୍ଜୁନ ବଚନେ ଗୋବିନ୍ଦ ।
କହନ୍ତି ପରମ ସାନନ୍ଦ ।
ଶୁଣ ଅର୍ଜୁନ ମନ ଦେଇ ।
ବ୍ରହ୍ମାଣ୍ଡ ପୁରାଣ କହଇ ।
ପ୍ରଥମେ ନିଗମ ଆଚାରେ ।
ବୃକ୍ଷେକ ଜାତ କକ୍ଷଣାରେ ।
ତା' ନାମ କକ୍ଷଣାରୁ ହୋଇ ।
ଅପୋତ୍ରା ଭୂମିରେ ଜନ୍ମଇ ।
ସେ ବୃକ୍ଷ କେତେ ଦିନ ପାଥ ।
ଫଳ ଫଳିଲା କି ଅମୃତ ।
କେତେ କାଳେ ଫଳ ପାଚିଲା ।
ମଳୟ ପବନେ ଝଡ଼ିଲା ।
ସେ ବୃକ୍ଷ ମୂଳେ ଆଳବାଳ ।
ମନ୍ଦା ମୂଳରେ ମହାଜଳ ।
ସେ ମନ୍ଦା ମଧ୍ୟେ ଫଳ ପଡ଼ି ।
ସ୍ରିଜିଲା ଜଳ ମଧ୍ୟେ ପଡ଼ି ।
ତିନି ଶତ ଷାଠି ପ୍ରମାଣ ।
ଶାଖା ହିଂ ଅଛି ହୋ ଅର୍ଜୁନ ।
ନବମ ପତ୍ର ବୃକ୍ଷ ଜାଣ ।
ନିଗମୁ ବେଦ ବୃକ୍ଷ ଜନ୍ମଂ ।
ମନ୍ଦାରେ ସୁଧା ଉଛୁଳିଲା ।
ନଦୀ ବ୍ରହ୍ମାଣ୍ଡେ ବହିଗଲା ।
ସେ ସୁଧାନିଧି ହୋ ଅର୍ଜୁନ ।
ଅଗ୍ୟାନେ ତାପ ତୃଷା କ୍ଷୀନ ।
ଯେମନ୍ତେ ସର୍ବ ମୁନିମାନେ ।
ଗମିଲେ ନମିଷ୍ୟା ଅରଣ୍ୟେ ।
ସୁବାଟେ ଦେଖି ସୁଧା ନଦୀ ।
ସନକ ସନାତନ ଆଦି ।
ସକଳ ନଦୀ ନିକଟରେ ।
ପ୍ରବେଶ ମନ ଆନନ୍ଦରେ ।
କେ ସୁଧା ଫୁଟାଏ ଭକ୍ଷଇ ।
କେ କୁଶ ଅଗ୍ରେ ଆଗଦେଇ ।
କେ କମଣ୍ଡଳ ମଧ୍ୟରେ ।
ପୂରୋଇ ଭକ୍ଷେ ଆନନ୍ଦରେ ।
କେ କୁମ୍ଭେ ପୂରାଇ ଆସ୍ୱାଦ ।
କେ ଅଣ୍ଡ ମଧ୍ୟେ କଲା ଭେଦ ।
ଯେମନ୍ତେ ଆସ୍ୱାଦ କରିଣ ।
ଗଲେ ସକଳ ମୁନିଗଣ ।
କେ କାବ୍ୟ ପୁରାଣ କରଇ ।
କେ ବା ବ୍ରହ୍ମାଣ୍ଡେ ପୁରାଣଇ ।
କେ ବା ନୃସିଂହ ଶାସ୍ତ୍ର କଲା ।
କେ କାବ୍ୟ ଶାସ୍ତ୍ର ବଖାଣିଲା ।
କନ୍ୟା ଯେ ଶିଷ ହେବ ଜାଣି ।
କେ ଅଷ୍ଟାଦଶ / ଅଗ୍ରବାଣୀ ।
କେ ଷଡ ଚକ୍ରକୁ ଆଛନ ।
କେ କହେ ପୁରାଣ ଯେ ମାନ ।
କେ ନବ ବ୍ୟାକରଣ ଘୋଷି ।
ଅଂସ୍କନ୍ଦ ଶୁକ ମୁଖୁ ଭାଷି ।
ଯେଣୁ ଯେ ଶୁକ ମୁଖୁ ଜାତ ।
ଶ୍ରୀ ଭାଗବତଟି ସୟୁତ ।
କହଇ ବଳରାମ ଦାସ ।
ଭାଗବତ ଶୁକ ମୁଖୁ ଅଭ୍ୟାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର
ରଚନେ ବ୍ରହ୍ମ ବିଦ୍ୟାୟାଂ
ଶୁପ ନିଚ୍ଛେଦେ ଶ୍ରୀ ଭାଗବତ
ଜନ୍ମାକଥନେ ନାମ ଦ୍ୱିତୀୟ ଅଧ୍ୟାୟ

# ତୃତୀୟ ଅଧ୍ୟାୟ

## ଅର୍ଜୁନ ଉବାଚ

ପୁଣି ପୁଚ୍ଛଇ କୁନ୍ତୀ ସୁତ ।
କହହେ ପ୍ରଭୁ ପଦ୍ମ ନେତ୍ର ।
ଭଗତ ବନ୍ଧୁ ମଧୁହାରି ।
ପଦ୍ମନୟନ ଦଣ୍ଡଚାରି ।
କୃଷ୍ଣ ସେବକ କୃପାସିନ୍ଧୁ ।
କହିଲେ ଭକ୍ତଜନ ବନ୍ଧୁ ।
ଶ୍ୟାମ ସୁନ୍ଦର ନରହରି ।
ହେ ଦାମୋଦର ଚକ୍ରଧାରୀ ।
ପୁଚ୍ଛଇ ଗହନ ଭଣ୍ଡାର ।
ଷୋଳ ନାମ କାହୁଂ ବାହାର ।
କେବଣ ସ୍ଥାନେ ମନ୍ତ୍ର ଥିଲା ।
କେ ତାହା ମଣ୍ଡକୁ ଆଣିଲା ।
କହ ହେ ପ୍ରଭୁ ବିଶ୍ୱେଶ୍ୱର ।
ଯେ ମୋର ଭ୍ରମ ଯାଉ ଦୂର ।
ଶ୍ରୀ ହରି ଅର୍ଜୁନ ବଚନେ ।
କହନ୍ତି ମନ୍ତ୍ର ତୋଷ ମନେ ।

## ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଗ୍ୟାଂନର ମହିମା ।
ଯେଣେ ଲଭିବୁ ସର୍ଗ ସୀମା ।
ପ୍ରଥମେ ମହାପୁଣ୍ୟ ସ୍ଥାନ ।
ତହୁଂ ବି ପୁଣ୍ୟ ହେଲା ଜନ୍ମ ।
ସେ ଶୂନ୍ୟ ଅର୍ଧମାତ୍ରା ହୋଇ ।
ବେନି ସଂଯୋଗୁ କ୍ଲୀ ଜନ୍ମଇ ।
କ୍ଲୀ ବୀଜ ଲଅରୁ ଅ ଜନ୍ମ ।
ଶ୍ଲୀ ବୀଜ ହୋଇଲା ସେ ଜନ୍ମ ।
ଶ୍ଲୀ ବୀଜ ଇକାରୁ ଜନ୍ମଇ ।
ହ୍ଲୀ ବୀଜ ଯେଥୁ ଉପ୍ଲଜଇ ।
କ୍ଲୀ ବୀଜ ବୋଲି ଯାହା କହି ।
କ ଘରୁ କୃଷ୍ଣ ଜନ୍ମ ହୋଇ ।
ଶ୍ଲୀ ବୀଜ ଲ ଅରୁ ଟି ରାମ ।
ତ୍ରି ବୀଜଂ ହରେକୃଷ୍ଣ ଜନ୍ମ ।
ଯେମନ୍ତ ତ୍ରିୟ ନାମ ହୋଇ ।
ତ୍ରିୟ ମାତ୍ରାରୁ ତ୍ରିୟ ନାମଇ ।

## ହରେ ରାମ କୃଷ୍ଣ

ଯେଥୁ ଷୋଳ ନାମ ଜନ୍ମ ।
ହରାଦି ଆଠ ହୋ ଅର୍ଜୁନ ।
ରାମାଦି ଚାରି କୃଷ୍ଣ ଚାରି ।
ଯେମନ୍ତେ ଷୋଳ ନାମ ପୂରି ।
କାମ ବୀଜରୁ ସର୍ବଜାତ ।
ସେ କାମ ରାଧାକୃଷ୍ଣ ତତ୍ତ୍ୱ ।
ତଥି ଉପରେ ବ୍ରହ୍ମ ଶୂନ୍ୟ ।
ଅଲେଖ ଅଣାକାର ବର୍ଣ୍ଣ ।
ବୋଲଇ ବଳରାମ ଦାସ ।
ଷୋଳ ନାମ ଶୂନ୍ୟ ପ୍ରକାଶ ।
ବ୍ରହ୍ମାଣ୍ଡ ଭୋଗୋଳଟି ଯେହି ।
ଯେଥି ଉପରେ ତତ୍ତ୍ୱ ନାହିଁ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର ଆଖ୍ୟାନେ ବ୍ରହ୍ମ ବିଦ୍ୟାୟାଂ ସୁପନିର୍ଷେବ ଶ୍ରୀ ମହାମନ୍ତ୍ର ଜନ୍ମ କଥନେ ନାମ ଦୃତୀୟ ଅଧ୍ୟାୟ ।

## ଚତୁର୍ଥ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣ ଅର୍ଜୁନ କୃତ କୃତ ।
ବୋଲଇ ଶୁଣ ଗୋପୀନାଥ ।
ବ୍ରହ୍ମାଣ୍ଡ ଭୂଗୋଳର ବାଣୀ ।
ପୁଛଇ ବାରେ ଚକ୍ରପାଣି ।
ଗାୟତ୍ରୀ କାହୁଁ ଜନ୍ମ ହୋଇ ।
କେତେ ଅକ୍ଷର ସେ ଅଟଇ ।
କେଉଁ ଅକ୍ଷର କେଉଁ ବେଦ ।
କେତେ ବେଦ ଅକ୍ଷରେ ଭେଦ ।
ଯେଥ ସଂଶୟ ନାହିଁ ହରି ।
ନମସ୍ତେ ମୁକୁନ୍ଦ ମୁରାରି ।

### ଶ୍ରୀଭଗବାନ ଉବାଚ

ପାଥର ଯେମନ୍ତ ବଚନ ।
କହନ୍ତି ଶ୍ରୀମଧୁସୋଦନ ।
ଶୁଣ ହୋ ଧନଞ୍ଜୟ ତୁହି ।
ଗାୟେତ୍ରୀ ଅର୍ଥ ଦେବାକହି ।
ଚବିଶ ଅକ୍ଷର ଟି ଯେହି ।
ପ୍ରଥମେ ଅଷ୍ଟାକ୍ଷର ଯେହି ।
ଯେଥିରୁ ଋକ୍‌ବେଦ ଜନ୍ମ ।
ଦୃତୀଅ ଅଷ୍ଟାକ୍ଷର ଶୁଣ ।
ଯେଥି ଶ୍ୟାମବେଦ ଜନ୍ମଇ ।
ଦିବେଦ ଷୋଳକ୍ଷର ଯାଇ ।
ତୃତୀୟେ ଅଷ୍ଟାକ୍ଷର ସାର ।
ଚହୁଁ ଯର୍ଜୁବେଦ ବାହାର ।
ଯେମନ୍ତେ ଚବିଶ ଅକ୍ଷର ।
ତ୍ରି ବେଦ ଜନ୍ମିଲା ହୋ ବୀର ।
ଓଂକାର ଉକାର ଆକାର ।
ଯେ ତିନିବେଦ ତିନିକ୍ଷର ।
ଗାୟେତ୍ରୀ ସ୍ତିରି ଛନ୍ଦୟେ ବୋଲାଇ ।
ବ୍ରହ୍ମାଣ୍ଡ ଭୋଗୋଳ ଯେ କହି ।
ଯେ ଶୁକ ସନେକ ସମ୍ବାଦ ।
ବ୍ରହ୍ମାଣ୍ଡ ପୁରାଣରେ ଭେଦ ।
ଅର୍ଜୁନ ଶୁଣି ହେଲା ତୋଷ ।
କହଇ ବଳରାମ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର
ଆଖ୍ୟାନେ
ବ୍ରହ୍ମବିଦ୍ୟାୟାଂ ସୁ ଘନିର୍ଷେବ ଯୋଗଶାସ୍ତ୍ର
ଶ୍ରୀକୃଷ୍ଣ ଅର୍ଜୁନ
ସମ୍ବାଦେ ଗାୟେତ୍ରୀ ବେଦ କଥନେ ନାମ
ଚତୁର୍ଥ ଅଧ୍ୟାୟ ।

## ପଞ୍ଚମ ଅଧ୍ୟାୟ

### ଅର୍ଜୁନ ଉବାଚ

କାର୍ପନ୍ୟ ଭାବେ ବେଦ ପୁଚ୍ଛି ।
ବୋଲଇ ଶୁଣ ଶିରୀ ବଚ୍ଛି ।
ତୁମ୍ଭେତ ବ୍ରହ୍ମାଣ୍ଡ ଠାକୁର ।
କିସ ପୁଚ୍ଛିବି ତୋ ପୟର ।
ତୁ ଅନ୍ତର୍ଯ୍ୟାମୀ ଜନାର୍ଦ୍ଦନ ।
ସମସ୍ତ ଜାଣୁ ଭଗବାନ ।
ହେ କଳ୍ପଦ୍ରୁମ ପଦ୍ମନାଭ ।
କୃଷ୍ଣ କେଶବ ବାସୁଦେବ ।
ହେ ବିଶ୍ୱେଶ୍ୱର ଦଇତାରି ।
ସଂଶୟ ମୋ ହୃଦେ ବିସ୍ତାରି ।
ଭାଗବତ ପଦ-
ରସଙ୍କ ମଧ୍ୟେ ଭୂମିରସ ।
ସର୍ବ ଶସ୍ତ୍ର ଗ୍ରହ ମୁଂ ଆକାଶ ।
ଯେ ପଦ ଅର୍ଥ କହ ହରି ।
ନମସ୍ତେ ଶଙ୍ଖ ଚକ୍ରଧାରୀ ।

### ଶ୍ରୀଭଗବାନ ଉବାଚ

ଅର୍ଜୁନ ବଚନେ ଗୋବିନ୍ଦ ।
କହନ୍ତି ପରମ ସାନନ୍ଦ ।
ଶୁଣ ହୋ ପାର୍ଥ ମନ ଦେଇ ।
ଯେ ପଦ ଅର୍ଥ ଦେବା କହି ।
ଅଷ୍ଟ ମାସ ସୂର୍ଯ୍ୟ ଆକାଶ ।
କିରଣେ ଜଳ କଳା ଶେଷ ।
ଭୂମିରୁ ଜଳ ସେ ନିଅଇ ।
ଆକାଶ ମଧ୍ୟେ ସଞ୍ଚରଇ ।
ଯେଣୁ ଯେ ଜଳ ଭୂମିରସ ।
ଶୁଣ ସୁମନେ ପଣ୍ଡୁ ଶିଷ ।

### ଅର୍ଜୁନ ଉବାଚ

ପୁଣି ଅର୍ଜୁନ ପଚାରଇ ।
ସଂଶୟ ଫେଡ଼ ଭାବଗ୍ରାହୀ ।
ନିର୍ଗୁଣ ନାମ ଅର୍ଥ ସାର ।
କହ ନିଚୟ ଚକ୍ରଧର ।

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ।
ରଙ୍ଗା ଅଧରେ ମନ୍ଦହାସି ।
ଶୁଣ ହେ ପଣ୍ଡୁର ନନ୍ଦନ ।
ପ୍ରଳୟ ସଂସାର ବିଧାନ ।
ଅଶେଷ ବ୍ରହ୍ମାଣ୍ଡ ମଧ୍ୟରେ ।
ଜୀବ ଆତ୍ମାର ସଂଶନ ରେ ।
ପ୍ରଳୟ କାଳେ ଭାଜି ଯାଇ ।

ସର୍ବ ଆକାଶେ ଗୋପ୍ୟ ହୋଇ ।
ମୋହୋର ଶରୀର ଆକାଶ ।
ଗୋପ୍ୟ ଭୁବନ ଚତୁର୍ଦ୍ଦଶ ।
ଆବର ଅର୍ଥ ଶୁଣ ବୀର ।
ଭୂମି ଟି ଅଟଇ ଶରୀର ।
ଯେଥି ମଧରେ ରସ ମୁହିଂ ।
ମୋହୋର ରୂପ ରେଖ ନାହିଂ ।
ଯେଣୁ ମୁଂ ବୋଲାଇ ଆକାଶ ।
ମୋ ଦେହୁ ସକଳ ପ୍ରକାଶ ।
କହଇ ବଳରାମ ଦାସ ।
ଭୂମି ରସ ଟି ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ
ବ୍ରହ୍ମାଣ୍ଡ ପୁରାଣ ଉକତେ
ଭୂମି ରସ କଥନେ ନାମ ପଞ୍ଚମୋଧାୟ ।

## ଷଷ୍ଠ ଅଧାୟ

### ଅର୍ଜ୍ଜୁନ ଉବାଚ

ପୁଣି ପୁଚ୍ଛଇ ପଣ୍ଡୁ ସୁତ ।
କାର୍ପନ୍ୟ ବିନୟ ବହୁତ ।
କହ ହେ ପତିତପାବନ ।
ଯେହା ସଂଶୟେ ମୋର ମନ ।
ଶ୍ରୀ ଭାଗବତ ଅର୍ଥ ସାର ।
କହ ହେ ଦେବ ଦାମୋଦର ।

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଶ୍ରୀ ମଧୁସୋଦନ ।
ଶୁଣ ହୋ ପଣ୍ଡୁର ନନ୍ଦନ ।
ଜଳ ଯେ ମାତା ରଜ କହି ।
ପିତାର ବୀର୍ଯ୍ୟ ପାଷାଣଇ ।
ରଜରେ ବୀଜ ବନ୍ଦୀ ହେଲା ।
ଗଜ ପଦଟି ଯେଣୁ ହେଲା ।
ସେ ଯେହ୍ନେ ବାନ୍ଧିତ ହୁଅଇ ।
ଅବଧୂତ ରାଜା ଆଗେ କହି ।
ମୁଂ ତେହ୍ନେ ବନ୍ଦୀ ହେବି ବୋଲି ।
ତ୍ରି ସଙ୍ଗ ଯେଣୁ ମୁଂ ତେଜିଲି ।
ଏମନ୍ତେ ଅବଧୂତ କହି ।
ଅର୍ଜ୍ଜୁନ ଶ୍ରୀହରି ବୁଝାଇ ।
ନିର୍ଗୁଣ ଅର୍ଥ ଯେ ବିଚାର ।
ଭଣେ ସମନାଥ କୁମର ।
ମୁଂ ବଡ଼ ଅଟଇ ପାମର ।
ସୁଜନେ ଦୋଷ ମୋ ନ ଧର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ ଅର୍ଥ
ସାଧ
କଥନେ ନାମ ଷଷ୍ଠମୋଧାୟ ।

## ସପ୍ତମ ଅଧାୟ

### ଅର୍ଜ୍ଜୁନ ଉବାଚ

ଶୁଣ ଯୁଜେଷ୍ଠି ସାନ ଭାଇ ।
କୃଷ୍ଣ ଚରଣେ ସମ୍ଭାଦଇ ।
ନମସ୍ତେ କମଳାର ଈଶ ।
ନମସ୍ତେ ପ୍ରଭୁ ହୃଷୀକେଶ ।
ଆବର ପଦେ ମୁଂ ପୁଚ୍ଛଇ ।
ସଂଶୟ ଫେଡ଼ ଭାବଗ୍ରାହୀ ।
ଶ୍ରୀ ଯେକାଦଶ ସାର ବାଣୀ ।
ପୁଚ୍ଛଇ ତୋତେ ଚକ୍ରପାଣି ।
ଉଧବେ ଯାହା ବୁଝାଇଲ ।
ଉତ୍ତମ ଗ୍ୟାନ ଦେଖାଇଲ ।
ରତ୍ନ ପାଦୁକାର ଚରିତ୍ର ।
ସଂଶୟ ଅର୍ଥେ ଯେଉଂ ତତ୍ତ୍ୱ ।
ଉଦ୍ଧବ କେଉଂ ପାଦ ନେଲା ।
ବଦ୍ରିକା ଆଶ୍ରମେ ରହିଲା ।
ଯେ କଥା ବିସ୍ତାରି କହିବା ।
ତୋ ମନୁ ସଂଶୟ ଫେଡ଼ିବା ।

### ଶ୍ରୀ ଭଗବାନ ଉବାଚ

ଶୁଣସି ପଣ୍ଡୁର ନନ୍ଦନ ।
ଯାହା ପୁଚ୍ଛିଲୁ ଦିବ୍ୟଗ୍ୟାଂନ ।
ପୂର୍ବେ ସୁମନ ଦିଗ୍ବର ।
ଗମଇ ଭାରଥ ମଣ୍ଡଳ ।
ସୁପଥ ମାର୍ଗେଣ ଗମଇ ।
ଗମନ୍ତେ ଲୁହା ଖଣ୍ଡେ ପାଇ ।
ଲୋହା ଘେନିଣ କେତେ ଦୂରେ ।
ବାମେ ସୁମନ ବିପ୍ରବରେ ।
ଗମନ୍ତେ ସୁବର୍ଣ୍ଣକୁ ପାଇ ।
ତକ୍ଷଣେ ଲୋହାକୁ ତେଜଇ ।
ସୁବର୍ଣ୍ଣ ଘେନି ବିପ୍ରବର ।
ଗମିବ ଅମନ ମନ୍ଦିର ।
ଗମି ଅମନ ଭୁବନରେ ।
ହୀରାକୁ ଭେଟିଲା ଯୋଗରେ ।
ହୀରାକୁ ଯହୁଂ ଭେଟାଇଲା ।
ତକ୍ଷଣେ ସୁବର୍ଣ୍ଣ ତେଜିଲା ।
ହୀରା ଘେନିଣ ବେଗେ ଯାଇ ।
ଅବାଇ ମଣ୍ଡଳେ ମିଳଇ ।
ମଣ୍ଡଳ ମଧରେ ଖୋଜିଲା ।
ପରଶୁ ରତ୍ନ ଭେଟାଇଲା ।
ପରଶୁ ପରମର ପାଦ ।
ଶୂନ୍ୟ ଶବଦେ ଯେ ଅଭେଦ ।
ସେ ପାଦ ଅଣାକାର ସ୍ଥାନ ।
ଅବ୍ୟକ୍ତ ଶୂନ୍ୟ ମହାବ୍ରହ୍ମ ।
ତ୍ରିକୂଟ ମଧେ ଠାବ କଲା ।
କ୍ଲୀ ବୀଜ ମଧେ ହେତୁ ଦେଲା ।
ଉଧବେ ହେତୁ ପଥେ ଧରି ।
ଧାରଣା ଯୋଗ ପରିକଳି ।
ଅର୍ଜ୍ଜୁନ ଶ୍ରୀକୃଷ୍ଣ ବୁଝାଇ ।
ପରମ ମୋର ସୂକ୍ଷ୍ମ ଯେହି ।
ଯାହାକୁ ରତ୍ନ ପାଦ କହି ।
ରତ୍ନଟି ସୁବର୍ଣ୍ଣ ଅଟଇ ।
ସୁବର୍ଣ୍ଣ ନୋହି ଶୂନ୍ୟ ସେହୁ ।
ହସି ବୋଇଲନ୍ତି ମହାବାହୁ ।
କହଇ ବଳରାମ ଦାସ ।
ରତ୍ନପାଦ ରାମ ମୁହାଂସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ରଚିତ
ଆଖ୍ୟାନେ ରତ୍ନପାଦ
ଚରିତ୍ର କଥନେ ନାମ ସପ୍ତମୋଧାୟ ।

## ଅଷ୍ଟମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃତ କୃତ ହୋଇ ।
ଗୋବିନ୍ଦ ଚରଣେ ପୁଚ୍ଛଇ ।
ହେ ନାଥ ବ୍ରହ୍ମାଣ୍ଡ ଠାକୁର ।
କହ କଲୁଷ ଯାଉ ଦୂର ।
ମୁଂ ତୁମ୍ଭ ଚରଣେ କିଙ୍କର ।
ମୋତେ ଉଦ୍ଧାର ନାରାୟେଣ ।
ଶ୍ରୀ ଭାଗବତ ତତ୍ତ୍ୱଗ୍ୟାଂନ ।
ପୁଚ୍ଛଇ ତୁମ୍ଭର ଚରଣ ।
ଛଡ଼ ଚକ୍ର ମଧେ ଭେଦିଣ ।
ଛଡ଼ ଦ୍ୱାଦଶ ପ୍ରକାରେଣ ।
ଦ୍ୱାଦଶ ଶବଦର ନାମ ।
ମୋତେ କହିବା ନାରାୟେଣ ।

ଭଗବତ ପଦ-

ଯେ ଛଡ଼ ଚକ୍ର ଭେଦି ସ୍ୱରେ ।
ଶବଦ ଦ୍ୱାଦଶ ପ୍ରକାରେ ।

### ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଇଲନ୍ତି ଅର୍ଜ୍ଜୁନ ।
ଯାହା ପୁଚ୍ଛଇ ବ୍ରହ୍ମଗ୍ୟାନ ।
ଶୁଣ ହୋ ଦୃଷ୍ଟାନ୍ତର ଅର୍ଥ ।
ଗୋଧିକା ଘାଟ ପରେ ତତ୍ତ୍ୱ ।
ସେ ଭୂମି ଅଖଣ୍ଡ ମଣ୍ଡଳ ।
ପୁଷ୍କରଣୀ ତହିଂ ଅମୂଲ୍ୟ ।
ଇହିଂ ସପତ ତାଳ ଜଳ ।
ପଦ୍ମ କି ଫୁଟଇ ନିର୍ମଳ ।
ସହସ୍ରେ ପାଖୁଡ଼ା ପଦ୍ମର ।
ଭ୍ରସଳ କୂଳ ଅଗୋଚର ।
ପାଖୁଡ଼ା ଗୋଟିକେ ଭମର ।
ସହସ୍ରେ ଲେଖାଂ ଯେ ହୋ ବୀର ।
ମଧୁ ଲୁବୁଧେ ବସିଛନ୍ତି ।
କେଶର କେବେ ନ ତେଜନ୍ତି ।
ସେ ପଦ୍ମ ମୂଳ ଅଗୋଚର ।
ନ ଜାଣେ ବ୍ରହ୍ମାଦି ଶଙ୍କର ।
ପୁଷ୍କରିଣୀ ମଧରେ ସାର ।
ସ୍ତମ୍ଭେକ ଅଛଇ ହୋ ବୀର ।
ସମୀର ସ୍ତମ୍ଭ ସେ ଅଟଇ ।
ଚଦଗ୍ରେ ହଂସ ବସିଥାଇ ।
ସେ ହଂସ ଜପଇ ମୁଖରେ ।
ରାମ ଶବଦ ନିରନ୍ତରେ ।
ସେ ଷଡ ପଦ୍ମରେ ଭେଦଇ ।
ଦ୍ୱାଦଶ ପ୍ରକାରେ ଶୁଭଇ ।
ସକଳ ବ୍ରହ୍ମରଷିମାନେ ।
ସାଧନ୍ତି ଯେକାଗ୍ର ଧିଆନେ ।
ତାଙ୍କ କର୍ଣ୍ଣକୁ ହୋ ଅର୍ଜ୍ଜୁନ ।
କିବା ଘଟେ ନାଦ ପ୍ରମାଣ ।
କି ଅବା ରବା ବାଜୁଥାଇ ।
କିବା ମର୍ଦ୍ଦଳ ଶବ୍ଦ ବାଇ ।
କି ଅବା ବଂଶୀ ଯେ ପ୍ରମାଣ ।
କି ଅବା ମନ୍ଦ୍ର ନାଦ ଶୂନ୍ୟ ।
କଂସାଳ ପ୍ରାୟେକ ଶୁଭଇ ।
ତମ୍ବୁର ନାଦ ଭେଦି ରହି ।
ଶଙ୍ଖ କାହାଳୀ କି ବାଜଣ ।
ମୁରଲୀ ମଞ୍ଜୁଳ ପ୍ରମାଣ ।
ଯେମନ୍ତେ ଦ୍ୱାଦଶ ଶବଦ ।
ଛଡ଼ ଚକ୍ରରେ ଶୁଭ ନାଦ ।
ଯେକୋଇଶ ସହସ୍ର ଜାଣ ।
ଶତ ଶତ ତାର ଭଜନ ।
ଆଠ ସହସ୍ର ଯେ ଆଠଶ ।
ଅଠାଶୀ ବେଳ ବାୟୁଭ୍ୟାସ ।
ଯେତେକ ଜୀବର ଭଜନ ।
ଯେ ରାମ ଶବଦ ଅର୍ଜ୍ଜୁନ ।
ଯେ ଘଟେ ସାଧନ କରିବୁ ।
ନିଚୟେ ଶବଦ ଶୁଣିମୁ ।
ଯେ ପଦ ଅର୍ଥ ଯେ ବିଚାର ।
ଶୁଣ ସୁମନ ମାହାବୀର ।
କହଇ ବଳରାମ ଦାସ ।
ଶବଦେ ନିତ୍ୟେ ମୋର ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳେ<br>ଦ୍ୱାଦଶ ଶବଦ ଭେଦ<br>କଥନେ ନାମ ଅଷ୍ଟମୋଧ୍ୟାୟ

## ନବମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

କିରୀଟୀ ସନ୍ତୋଷ ହୋଇଲା ।
ଶ୍ରୀକୃଷ୍ଣ ବଚନ ଶୁଣିଲା ।
ବୋଲଇ ଶୁଣ ବିଶ୍ୱେଶ୍ୱର ।
କହିଲ ଶବଦ ବିଚାର ।
ଆବର ଭଗବତ ପଦ ।
ପୁଚ୍ଛଇ ଅର୍ଥ ଯଥା ଭେଦ ।

ଭାଗବତ ପଦ-

କଶ୍ୟପ ଋଷି କେହୁ ହୋଇ ।
ବାଳଖେଳା କେହୁ ବୋଲାଇ ।
କାହୁଂ ସେ ବାଳକ ଜନ୍ମିଲା ।
ବଛ ପାଦରେ ସେ ବୁଡ଼ିଲା ।
ଯେ ବାକ୍ୟେ ସଂଶୟ ମୋହୋର ।
ଛେଦ ହେ କମଳାର ବର ।
ଦିନେକ ଘେନି ଯେକ ଡାଳେ ।
ପଡ଼ିଲେ ବକ୍ଷ ପାଦ ତଳେ ।

### ଶ୍ରୀଭଗବାନ ଉବାଚ

ଶୁଣ ଅର୍ଜ୍ଜୁନ ମନ ଦେଇ ।
ଯେଥିର ଅର୍ଥ ଦେବା କହି ।
ପୂର୍ବେ କଶ୍ୟପ ଋଷି ଥିଲେ ।
ଗଙ୍ଗା କୂଳରେ ତପ କଲେ ।
ଉଭାଶୀ ସ୍ନାନ କରିଯାଇ ।
ଋଷି ଦେଖିଣ ମୋହ ହୋଇ ।
ତକ୍ଷଣେ ବିନ୍ଦୁ ଉଛୁଳିଲା ।
ଗଙ୍ଗା ବାଲିରେ ସେ ପଡ଼ିଲା ।
ବାଳକ ଯବ ପ୍ରମାଣରେ ।
ଜନ୍ମିଲେ ସେ ବିନ୍ଦୁ ରେଣୁରେ ।
ଷାଠିଯେ ସହସ୍ର ବାଳୁତ ।
ସମସ୍ତ ହୋଇ ଉର୍ଧରେତ ।
ଋଷି ତାହାକୁ ମନ୍ତ୍ର ଦେଲେ ।
ଯଜ୍ଞକୁ ଜାଳ ଆଣ ବାଳେ ।
ଋଷିଙ୍କ ଆଗ୍ୟାଂରେ ବାଳୁତ ।
ଗମନ୍ତି ଉର୍ଦ୍ଧ୍ୱ ବନ ପଥ ।

ଯେମନ୍ତେ ତନୟେ ଗମନ୍ତି ।
ବନସ୍ତୁ କାଠ ସେ ବହନ୍ତି ।
ଯେକଇ ଦିନେ ବହୁ ବଳା ।
ଆଣନ୍ତେ ବଡ଼ କାଠ ଭେଳା ।
ଶ୍ରୀ ବଛ ନାମ ଯେ ବୋଲାଇ ।
ଗଙ୍ଗା ତାଙ୍କ ପାଦୁଂ ଝରଇ ।
ସେ ବଛ ଜଳରେ ବୁଡ଼ିଲେ ।
ଆରତେ କୃଷ୍ଣ ସୁମରିଲେ ।
ତକ୍ଷଣେ ଦିବ୍ୟ ମୂର୍ତ୍ତି ଧରି ।
ବାଳୁତ ସଙ୍କଟୁ ଉଦ୍ଧାରି ।
ତାହାଙ୍କୁ ବର ଯାଚି ଦେଲେ ।
ଗୋପରେ ଗୋପୀ ହୁଅ ଭଲେ ।
ଆବର ପ୍ରକାରେ କହିବା ।
କୂର୍ମ ପୁରାଣେ ବତାଇବା ।
ଯେକେ ବଇଶାଖ ମାସରେ ।
ଯଜ୍ଞ କରନ୍ତି ଗଙ୍ଗାକୂଳେ ।
ଗଙ୍ଗା ରେଣୁ ତପତି ବେଳ ।
ଚାଲନ୍ତି ସେ ରେଣୁରେ ବାଳ ।
ସେ ବଛ ବାଳୁତ ସମସ୍ତ ।
ପାଦକୁ ଲାଗିଲା ତପତ ।
ସମସ୍ତେ ଯେକ ମୁଖ ହେଲେ ।
ଆରତେ ମତେ ସୁମରିଲେ ।
ମୋ ପାଦପଦ୍ମ ଛତ୍ରାକାର ।
ଛାୟା କରଇ ଆକାଶର ।
ତେବେ ସମସ୍ତେ ଶୀତଳରେ ।
ଗମିଲେ ସେ ଗଙ୍ଗା ବାଲିରେ ।
ଆରକ ଅର୍ଥ ଶୁଣ ବୀର ।
କହିବା ବ୍ରହ୍ମାଣ୍ଡ ଭୋଗୋଳ ।
କାୟା ଯେ କାଶ୍ୟପ ବୋଲାଇ ।
ବାଳଖିଳା ଦଶଦ୍ୱାର ରହି ।
ଯେ ଦେହ କାଠ ଯେ ବୋଲାଇ ।
ଦ୍ୱାର ମାନକେ ଶବ୍ଦ ବହି ।
ଯେ ଦିନ ଅନ୍ତ କାଳ ହୋଇ ।
ସେ ଦିନ ଯଜ୍ଞ ସେ ରହଇ ।
ସକଳ ଦ୍ୱାରକୁ ଛାଡ଼ିଲେ ।
ଯେକଇ ବାଟେ ବହିଗଲେ ।
ବିଶାଶୟେ ଆଙ୍ଗୁଳ ବହି ।
ସେ କାଠ ଯେତେ ଲମ୍ବ ହୋଇ ।
ସେ ଦିନ ଉର୍ଦ୍ଧ୍ୱେଗ୍ୟାନ କଲେ ।
ଶୂନ୍ୟ ବଛ ପାଦେ ଗମିଲେ ।
ତୁ ବୋଲୁ ଷାଠୀୟେ ସହସ୍ର ।
କେମନ୍ତେ ବାଳେକ ବିଶେଷ ।
ଦକ୍ଷିଣ ନାସା ଦ୍ୱାରେ ପାଥ ।
କୋଡ଼ିୟେ ସସ୍ର ଦ୍ୱାର ତତ୍ତ୍ୱ ।
ବାମ ନାସାରେ ହେ ଅର୍ଜ୍ଜୁନ ।
ଚାଳିଶ ସସ୍ର ଦ୍ୱାର ଘେନ ।
ଯେମନ୍ତେ ଷାଠୀୟେ ସହସ୍ର ।
ଗମିଲେ ସର୍ବେ ଉର୍ଧଦେଶ ।
ସେ ଉଧେ ଦେଖ ବସ ପାଦ ।
ତହିଂରେ ସର୍ବେ ହେଲେ ଭେଦ ।
କହଇ ବଳରାମ ଦାସ ।
ସୁଜନେ ନ ଧର ମୋ ଦୋଷ ।
ଯେ କୂର୍ମ ପୁରାଣ ଚରିତ୍ର ।
ଅର୍ଜ୍ଜୁନ କହେ ପଦ୍ମନେତ୍ର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ
କଥନେ
କୂର୍ମ ପୁରାଣ ଉକ୍ତେ ନାମ
ନବମୋଧ୍ୟାୟ ।

## ଦଶମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ପୁଣି ଅର୍ଜ୍ଜୁନ ବିକଳରେ ।
ପୁଛେ ଶ୍ରୀହରି ପାଦତଳେ ।
କହ ହେ କମଳା ବିଳାସ ।
ଯେ ମୋର ତାପ ଯାଉ ନାଶ ।
ଆବର ସଂଶୟ ପୁଛଇ ।
କହିବା ମୋତେ ଭାବଗ୍ରାହୀ ।
ଯେମନ୍ତେ ବିଦେହ ରାଜନ ।
ମନେ ବିଚାରି ତତ୍ତ୍ୱଗ୍ୟାନ ।

### ଶ୍ରୀ ଭଗବାନ ଉବାଚ

ଶ୍ରୀକୃଷ୍ଣ ବୋଲନ୍ତି ହେ ପାଥ ।
କହିବା ସାର ପଦ ଅର୍ଥ ।
ଶୁଣ ଅର୍ଜ୍ଜୁନ ମନ ଦେଇ ।
ବିଦେହ ଜୀବ ଆତ୍ମା କହି ।
ସର୍ବଦା ଯେ ଦେହ ନ ରହି ।
ତେଣୁଟି ବିଦେହ ବୋଲାଇ ।
ମନଟି ବିଦେହ ପ୍ରମାଣ ।
ରାଜା ପୁଛଇ ଚଇତନ୍ୟ ।
ମନରେ ତତ୍ତ୍ୱ ଗ୍ୟାଂନ ସାର ।
ପୁଛଇ ତ୍ରିବିଧି ପ୍ରକାର ।
ଯେ ରୂପେ ଯେ ପଦ ବିଚାର ।
ଅର୍ଜ୍ଜୁନ କହେ ଚକ୍ରଧର ।
କହଇ ସମନାଥ ସୁତ ।
ବ୍ରହ୍ମାଣ୍ଡ ଭୋଗୋଳର ଅର୍ଥ ।
ଯେ କୂର୍ମ ପୁରାଣର ବାଣୀ ।
ଅର୍ଜ୍ଜୁନ କହେ ଚକ୍ରପାଣି ।

ଇତିଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ
କଥନେ କୂର୍ମ ପୁରାଣ
ଉକ୍ତେ ନାମ ଦଶମ ଅଧ୍ୟାୟ ।

## ଏକାଦଶ ଅଧ୍ୟାୟ

### ଶ୍ରୀଭଗବାନ ଉବାଚ

କହନ୍ତି ଦେବ ଦଇତାରି ।
ଶୁଣ ଅର୍ଜ୍ଜୁନ ହେତୁ କରି ।
ବିଦେହ ଚରିତ କହିବା ।
ତୋ ଚିତ୍ତୁ ସଂଶୟ ଫେଡ଼ିବା ।
ପୂର୍ବେ ବିଦେହ ନୃପବର ।
ପଶିଲା ଅଗମ୍ୟ କନ୍ଦର ।
ବହୁତ ତପ ଆଚରିଲା ।
ଭକ୍ତିରେ କୃଷ୍ଣ ନାମ ରସିଲା ।
ଯେମନ୍ତେ ମନୁ ଯୁଗ ଅନ୍ତେ ।
ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତେ ।

ନିଦ୍ରା ସମୟେ ନରହରି ।
କହିଲେ କର୍ଣ୍ଣେ ଗୋପ୍ତ କରି ।
ବୋଇଲେ ଶୁଣ ନୃପବର ।
ଦେହ ଛାଡ଼ି ଦ୍ରଶନ କର ।
ତେବେ ତୁ ଦେଖିବୁ ଆମ୍ଭଙ୍କୁ ।
ଯୋଗେଣ ଜିଣିବୁ ଦେହକୁ ।
ମୋର ବଚନେ ନୃପବର ।
ଜ୍ୟୋତିରେ ପଶି ଆସ ଖର ।
ଭ୍ରମର ଗୁମ୍ଫା ସଳଖରେ ।
ତେଣୁ ଡମ୍ବରୁ ଶିକ୍ଷା ଘରେ ।
ଗ୍ୟାନ ପ୍ରଦୀପ ଲଗାଇଲା ।
ତହିଁରେ ଶ୍ୱରୀର ଧ୍ୱଂସିଲା ।
ଛାୟାମତ ହୋଇଣ ପାଥ ।
ଉଭା ହୋଇଲି ମୁଂ ଅଗ୍ରତ ।
ମୋତେ ଦ୍ରଶନ ଦୃଢ଼େ କଲା ।
ସକଳ ସଂଶୟ ଛେଦିଲା ।
ମୁଂ ତାକୁ ପ୍ରସନ ହୋଇଲି ।
ବିଦେହ ନାମ ତାକୁ ଦେଲି ।
ବୋଇଲା ଯେ ଦେହ ପ୍ରପଞ୍ଚ ।
ଯେହି ତ ସାକ୍ଷାତେ ଶ୍ରୀବଚ୍ଛ ।
ଯେ ଦେହ ଛାଡ଼ି ମୁ ଦ୍ରଶନ ।
କରିବି ପ୍ରଭୁ ଭଗବାନ ।
ଯେଣୁ ଯେ ଦେହକୁ ତେଜିଲା ।
ମୋ ପାଦେ ଦ୍ରଶନ ସେ କଲା ।
ଯେଣୁ ବିଦେହ ନାମ ବହି ।
ପାଥକୁ କହେ ଭାବଗ୍ରାହୀ ।
ଭଣଇ ବଳରାମ ଦାସ ।
କୃଷ୍ଣ ଚରିତେ ମୋର ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ
କଥନେ
ବ୍ରହ୍ମାଣ୍ଡ ପୁରାଣେ ନାମ ଯେକାଦଶ
ଅଧ୍ୟାୟ ।

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଶ୍ରୀମଧୁସୋଦନ ।
ଶୁଣ ହୋ ପାର୍ଥ ଦେଇ ମନ ।
ଗ୍ୟାଂନର ତତ୍ତ୍ୱ କହିଦେବା ।
ତୋ ମନୁ ସଂଶୟ ଫେଡ଼ିବା ।
ଯେ ଅଣାକାର ଶୂନ୍ୟ ଭୂଇଂ ।
ତହିଂରେ ଚନ୍ଦ୍ର ସୂର୍ଯ୍ୟ ନାହିଂ ।
ଯେ ଯେତେ ଯାଗ ଯଜ୍ଞ ମାନ ।
ସେ ଥାନେ ନାହିଂ ହୋ ଅର୍ଜୁନ ।
ସେ ବ୍ରହ୍ମ ରୂପ ନିର୍ବିକଳ୍ପ ।
ଅନାଦି ପରମ ଅଗୋପ୍ୟ ।
ଉଦୁଶୀ ପୁଷ୍ପ ପ୍ରାୟେ ବର୍ଣ୍ଣ ।
ତା ମଧ୍ୟେ ପ୍ରଭୁ ନିରଞ୍ଜନ ।
ତା ମଧ୍ୟେ ଜ୍ୟୋତି ବ୍ରହ୍ମ ରହି ।
ତା ମଧ୍ୟେ ବାଳୁତ ଦିଶଇ ।
ବାଳୁତ ମଧ୍ୟେ ମହାବ୍ରହ୍ମ ।
ସେ ବ୍ରହ୍ମ ସକଳ ଘଟଣ ।
ଯେହି ସେହି ହୋଯେ ଲେଖାଇ ।
ଲେଖା ଲେଖନ ଯହିଂ ନାହିଂ ।
ସେ ସ୍ଥାନେ ମନ୍ତ୍ର ଯନ୍ତ୍ର ନାହିଂ ।
କଥନ ବେଦ ଶାସ୍ତ୍ର କହି ।
ଯେ ଯେତେ ଛତିଶ ସୁମୃତି ।
ଅଷ୍ଟାଦଶ ପୁରାଣ ସ୍ଥିତି ।
ବୋଲଇ ବଳରାମ ଦାସ ।
ବ୍ରହ୍ମାଣ୍ଡ ଭୋଗୋଳ ସାରାଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର
କଥନେ
ବ୍ରହ୍ମାଣ୍ଡ ପୁରାଣେ  ନାମ
ଦ୍ୱାଦଶୋଧ୍ୟାୟଃ

## ତ୍ରୟୋଦଶ ଅଧ୍ୟାୟ

### ଅର୍ଜୁନ ଉବାଚ

ଅର୍ଜୁନ ପଚାରଇ ମୁହିଂ ।
ସଂଶୟ ଲାଗିଲା ଗୋସାଇଂ ।
ଆରକ ପଦର ବିଚାର ।
ପୁଚ୍ଛଇ ତୋତେ ଦାମୋଦର ।
ଶ୍ରୀ ଭାଗବତ ପଦ ଭେଦି ।
ନିଗମ ବାକ୍ୟ ଯେ ପ୍ରସିଦ୍ଧି ।
ଭାଗବତ ପଦ -
ସୁଚନ୍ଦ୍ର କିରୀଟୀ ଅଗ୍ରତେ ।
ତୋ ପାଦ ରେଣୁରେ ଭୂମିତେ ।
ଯେହା ପୁଚ୍ଛଇ ତୋର ପାଦେ ।
କହିବା ମୋତେ ଅପ୍ରମାଦେ ।
ପାର୍ଥ ବଚନେ କମ୍ବୁପାଣି ।
କହନ୍ତି ତତ୍ତ୍ୱକୁ ବଖାଣି ।

### ଶ୍ରୀ ଭଗବାନ ଉବାଚ

ଶୁଣ ଅର୍ଜୁନ ତତ୍ତ୍ୱ ଅର୍ଥ ।
ସୁର ଯେ ଦେବତା ସମସ୍ତ ।
ଇନ୍ଦ୍ରାଦି ଦେବଗଣ ଯେତେ ।
ତୋ ପାଦେ ସ୍ତୁତି କଲେ ଚିତ୍ତେ ।
କିରୀଟୀ ମକୁଟ ଆବର ।
ନମସ୍ତେ ତୋହର ପୟର ।
ତୋ ପାଦ ତୋର ରେଣୁମାନ ।
ମକୁଟ ଦିଶେ ରେଣୁ ସମ ।
ଯେମନ୍ତେ ତୋର ପାଦ ଗତି ।
ଦେବେ ବୋଲିଣ କଲେ ତୁଷ୍ଟି ।
ଯେବେ ହୋ ଶୁଣ ପଣ୍ଡୁସୁତ ।
ମୋହର ପାଦଟି ଯେମନ୍ତ ।
ଯେ ପଦ ଯେ ଅର୍ଥ ବିଚାର ।
ଅର୍ଜୁନ କହେ ଦାମୋଦର ।
କହଇ ବଳରାମ ଦାସ ।
ଜନ୍ମେ  ଜନ୍ମେ ମୁଂ କୃଷ୍ଣ ଦାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତ
କଥନେ
ନାମ ତ୍ରୟୋଦଶ ଅଧ୍ୟାୟ ।

## ଚତୁର୍ଦ୍ଦଶ ଅଧ୍ୟାୟ
### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଲଇ ଗୋସାଇଂ ।
ଭାଷାଯେ ପଚାରିବି ମୁହିଂ ।
ତୁମ୍ଭେ କହିଲ ଯେତେ ଅର୍ଥ ।
ବ୍ରହ୍ମାଣ୍ଡ ଭୋଗୋଳ ଚରିତ୍ର ।
ନ୍ୟାଯେ ସାହାସ୍ର ଅର୍ଥ ସାର ।
ବୁଝାଇ ମୋତେ ଦାମୋଦର ।
ଆବର ପଦ ଅର୍ଥ ତତ୍ତ୍ୱ ।
ପୁଛଇ ବାରେ ନନ୍ଦ ସୁତ ।
ବ୍ରହ୍ମାଣ୍ଡ ଫାଟି ବେଦ ବଳେ ।
ଗଙ୍ଗା ପଡ଼ିଲା ରାସାତଳେ ।
ଶୁକ ପରୀକ୍ଷିତେ ବୁଝାଇ ।
ଉଧବେ କହିଛ ଗୋସାଇଂ ।
ଠିକ ଠିକ ପଦ ବିଚାର ।
ପୁଛଇ କହ ଚକ୍ରଧର ।
କିରୀଟୀ ବଚନେ ଶ୍ରୀହରି ।
କହନ୍ତି ଭୋଗୋଳ ବିସ୍ତାରି ।

### ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଅର୍ଧ ଅଙ୍ଗ ମୋର ।
ସେ କାଳେ ବାବନ ଶ୍ୱରୀର ।
ବଳି କି ପାତାଳେ ଚାପଇ ।
ପାଦୁଂ ଝଳକି ଗଙ୍ଗା ବହି ।
ଯେ ପାଦ ଲାଭି ପଦ୍ମ ମୋର ।
ଗଲାକ ଆକାଶ ମଣ୍ଡଳ ।
ବ୍ରହ୍ମା ଯେ ଗଙ୍ଗା ଗୋପ୍ତରେ ।
ରଖିଣ ଥିଲା କମଣ୍ଡଳେ ।
ଉଦକ ପାଇବ ବୋଲିଣ ।
ଢାଳିଲା ଚତୁର ଆନନ ।
ସେ ପାଦ ବଳୀ ମସ୍ତକରେ ।
ଦେଲି ମୁଂ ଅଚି ମାୟା ବଳେ ।
ସେ ପାଦୁଂ ଗଙ୍ଗା ଝଳକିଲା ।
ପାତାଳ ଭୁବନ ବହିଲା ।
ଯେଣୁ ମୋ ପାଦେ ଗଙ୍ଗା ଥିଲା ।
ଝଳକି ପାତାଳେ ରହିଲା ।
ଯେ ରୂପେ ଯେ ପଦର ଅର୍ଥ ।
ଅର୍ଜ୍ଜୁନ କହେ ପଦ୍ମନେତ୍ର ।
ବୋଲଇ ବଳରାମ ଦାସ ।
କୃଷ୍ଣର ଭୃତ୍ୟ ପାଦେ ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ କଥନେ
ନାମ ଚତୁର୍ଦ୍ଦଶ ଅଧ୍ୟାୟ ।

## ପଞ୍ଚଦଶ ଅଧ୍ୟାୟ
### ଅର୍ଜ୍ଜୁନ ଉବାଚ

ପ୍ରଣାମ କରି କୃଷ୍ଣ ପାଦ ।
ଅର୍ଜ୍ଜୁନ ଶୋକ ଗଦ ଗଦ ।
ବୋଲଇ ଶୁଣ ଚକ୍ରଧର ।
ଘୋର ସଂକଟ ଯେ ସଂସାର ।
ଯେ ଭବ ଜଳଧିର ମଧ ।
ତୋ ନାମ ଭଗତଙ୍କ ନାବ ।
ତୋ ବିନୁ ଅନ୍ୟ ଗତି ନାହିଂ ।
ନମୋ ଗୋବିନ୍ଦ ତ୍ରାହି ତ୍ରାହି ।
ଯେକଇ ପଦ ମୋ ହୃଦରେ ।
ପ୍ରବେଶ ତୋ ପାଦ କମଳେ ।

ଭାଗବତ ପଦ–

ଅଜାତ ପଛି ଘୋର ବନେ ।
ମାତା ଲୋଡ଼ଇ ଅନୁକ୍ଷଣେ ।
ଶ୍ରୀ ଭାଗବତ ପାଦ ଯେହି ।
ବୁଝାଇ କହ ଭାବଗ୍ରାହୀ ।
ଅର୍ଜ୍ଜୁନ ବିନୟ ବଚନେ ।
ଶୁଣି କହନ୍ତି ଭଗବାନେ ।

### ଶ୍ରୀ ଭଗବାନ ଉବାଚ

ଶୁଣ ହୋ ଯୁଦ୍ଧେଷ୍ଟିର ଭାଇ ।
ଯେ ପଦ ଅର୍ଥ ଦେବା କହି ।
ଅଜାତ ଶୂନ୍ୟଂ ଜନ୍ମ ହୋଇ ।
ଶୂନ୍ୟରେ ଡିମ୍ୱେକ ପାଡ଼ଇ ।
ଡିମ୍ୱ ପାଡିଣ ମାତା ଗଲା ।
ଅବନୀ କୋଳେ ଗୋପ୍ୟ ହେଲା ।
ଶାଖା ତାହାର କେହି ନାହିଂ ।
ଶାଖା ତା ପଞ୍ଚଭୂତ ହୋଇ ।
ରାଆ ତାହାର ମାତୃ ହୋଇ ।
ମଅ ଶବଦ ପିତା କହି ।
ଯେ ବେନି କ୍ଷର ମଧେ ସାର ।
ଅଜାତ ଅଣାକାର ବୀର ।
ତାହାର ଜାତ ମୃତ୍ୟୁ ନାହିଂ ।
ଘଟେ ଛାଡ଼ି ଘଟେ ରହଇ ।
ଚର ଅଚର ଯେତେ ଜୀବ ।
ସେହୁ ଦେହରେ ମୋର ଠାବ ।
ଘୋର ବନସ୍ତ ଦେହ କହି ।
ଯେଥିରେ ମାତାକୁ ଲୋଡ଼ଇ ।
ରାମ ଯେ ବେନି ମାତା ପିତା ।
ଡାକୁଛି ଶୂନ୍ୟେ ଉର୍ଧରେତା ।
ଯେମନ୍ତେ ଶୁଣି ପଣ୍ଡୁସୁତ ।
ବୋଲଇ ଶୁଣ ଜଗନ୍ନାଥ ।
ଦେହର ବିଚାର କହିଲ ।
ପରମାର୍ଥକୁ ଗୋପ୍ୟ କଲ ।
ଯେ ପରମାର୍ଥର ବିଚାର ।
ମୋତେ କହିବା ବିଶ୍ୱେଶ୍ୱର ।

### ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଲନ୍ତି ହୋ ପାର୍ଥ ।
ଯୋଗାଯୋଗରୁ ପୁତ୍ର ଜାତ ।
ଛୁଆ ସେ ଡିମ୍ୱରେ ଅଛଇ ।
କେତେ କାଳେ ଡିମ୍ୱ ଫୁଟଇ ।
ସେ ପୁତ୍ର ଗୃହରେ ଥୋଇଣ ।
ତା' ପିତା ବନେ ଗବନ ।
ଆଧାର ପାଇ ବନେ ଯାଇ ।
ଆଧାର ଖୋଜନ୍ତି ସେ ଦୁଇ ।
ଆସନ୍ତେ ଉଛୁର ହୋଇଲା ।
ତେଣୁ ପୁତ୍ରକୁ କ୍ଷୁଧା କଲା ।
ପଛି ତାଙ୍କର ଜନ୍ମି ନାହିଂ ।
ଗୃହରୁ ଉଡି ବେଗେ କାହିଂ ।
ତେଣୁ ତାଙ୍କର ଜନ୍ମି ନାହିଂ ।
ଯେଣୁ ଅଜାତ ନାମ ହୋଇ ।
ଯେଣୁ ମାତାକୁ ସେ ଲୋଡନ୍ତି ।

କ୍ଷୁଧାରେ ଆକୁଳ ହୁଅନ୍ତି ।
ଅଜାତ ଖଗ ପକ୍ଷୀ ଯେହ୍ନେ ।
ମାତା ଲୋଡ଼ଇ ଅନୁକ୍ଷଣେ ।
କ୍ଷୁଧାର୍ଥୀ ହୋଇଣ ବାହୁରୀ ।
ମାତା ଥନକୁ ଆଶ୍ରେ କରି ।
ସ୍ୱାମୀକି ପତିବ୍ରତା ଯେହ୍ନେ ।
ମୋ ମନ ତୋ ପାଦେ ତେସନେ ।
ଯେ ରୂପେ ଯେ ପଦ ବିଚାର ।
ଅର୍ଜ୍ଜୁନ କହେ ଚକ୍ରଧର ।
କହଇ ସମନାଥ ସୁତ ।
ଉଧର ମୋତେ ପଦ୍ମ ନେତ୍ର ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଅଜାତ ପକ୍ଷୀ ଚରିତ
କଥନେ ନାମ ପଞ୍ଚଦଶ ଅଧ୍ୟାୟ ।

## ଷୋଡଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃଷ୍ଣ ପାଦ ଧରି ।
ବୋଇଲ ଆହେ ଦଇତାରି ।
ବିବିଧ ସଂଶୟ ବିଚାର ।
ପୁଚ୍ଛଇ ତୁମ୍ଭର ପୟର ।
ମୁଂ ବଡ଼ ଅଗ୍ୟାଂନ ଅଟଇ ।
ଗ୍ୟାଂନ ଗୋଚର ମୋର ନାହିଂ ।
କୂର୍ମ ପୁରାଣର ଭକତ ।
ପୁଚ୍ଛଇ ବାରେ ଯଦୁନାଥ ।
ଯେମନ୍ତେ ଅବନୀ ନଗରୀ ।
ସେ କନ୍ୟା ସୁବର୍ଣ୍ଣ କେଶ୍ୱରୀ ।
ସେ କନ୍ୟା ବିଧବା ହୋଇଲା ।
ତା ପତି ବସି ଶୋକ କଲା ।
କନ୍ୟାର ପତି ନାଶ ଯାଇ ।
କନ୍ୟା ତା ବିଧବା ହୁଅଇ ।
ପତି ତା ଦ୍ୱାରକାହିଂ କାନ୍ଦି ।
କହିବା ଯେଥର ଯେ ସନ୍ଧି ।

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି କମଳା ବିଳାସ ।
ଶୁଣ ସୁମନେ କୋନ୍ତୀ ସୁତ ।
କେତକୀ ପୁଷ୍ପ କନ୍ୟା କହି ।
ତାହାର ପତି ଭ୍ରମ ରହିଂ ।
ସେ ତାକୁ ଚୁମ୍ବି ନ ପାରିଲା ।
ତେଣୁ ସେ ଆକୁଳେ କାନ୍ଦିଲା ।
କେଶ୍ୱରେ ରେଣୁ ତା ଚକ୍ଷୁରେ ।
ପଡ଼ନ୍ତେ କାନ୍ଦଇ ଆକୁଳେ ।
ତେଣୁ ବିଧବା ଭାବେ କହି ।
ଅର୍ଜ୍ଜୁନ ଶ୍ରୀହରି ବୁଝାଇ ।
ଯେ କୂର୍ମ ପୁରାଣ ଚରିତ୍ର ।
ଶୁଣ ସୁମନେ କୋନ୍ତୀ ସୁତ ।
କହଇ ବଳରାମ ଦାସ ।
ଯେ ନିନ୍ଦେ ସେହି ପାପୀ ଅଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ କଥନେ ବିଧବା
କନ୍ୟା ଚରିତ୍ର କଥନେ ନାମ
ଷୋଡଶୋଧ୍ୟାୟ ।

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ଚକ୍ରପାଣି ।
ଶୁଣ ଅର୍ଜ୍ଜୁନ ଗ୍ୟାଂନ ବାଣୀ ।
ଯେ ଗ୍ୟାଂନ ତହିଂ ଉପଦେଶ ।
ଜାଣିଲେ ତାପ ହୋଏ ନାଶ ।
ଗୃହ ଯେସନ ଅନ୍ଧକାର ।
ପ୍ରଦୀପ ଜାଳନ୍ତେ ନିର୍ମଳ ।
ତେମନ୍ତ ମୋହର ବଚନେ ।
ପ୍ରଦୀପ ଅଟଇ ଅର୍ଜ୍ଜୁନ ।
ସଂସାରେ ମୂଢ଼ ପ୍ରାଣୀମାନେ ।
ଗ୍ୟାଂନ ନ ଜାଣି ଟାଣ ପଣେ ।
ମିଛେହେଂ ଟାଣି ହଉଥାନ୍ତି ।
ଆମ୍ଭେ ଗ୍ୟାଂନ ଜାଣୁ ବୋଲନ୍ତି ।
ସାକ୍ଷୀ ଶବଦ ଶିଖିଥାନ୍ତି ।
ପ୍ରାଣୀକି ଦେଖିଲେ ପଢ଼ନ୍ତି ।
ଦୁହାରେ କେ ତାହା ଶିଖିଣ ।
ମିଛେହେଂ କହୁଥାନ୍ତି ଟାଣ ।
କେ ଅବା ଶ୍ଳୋକ ସ୍ମୃତି କରେ ।
ଭଣାଉଥାନ୍ତି ନାନାକାରେ ।
ଗୀତା କବିତା ଯନ୍ତ୍ର ଜାଣି ।
ନାନା ପ୍ରକାରେ ବିଦ୍ୟା ବାଣୀ ।
କେ ଅବା ସଂସାର ସାଗରେ ।
ବୈଷ୍ଣବ ବେଶ ନିରନ୍ତରେ ।
ମାଳା ତିଳଖ ଧରିଥାନ୍ତି ।
ବ୍ୟଥର୍ଥେ ସଂସାରେ ଭ୍ରମନ୍ତି ।
ଜଟା ବିଭୂତି କେ ଭୂଷଣ ।
କେ ଫଳ ଆହାର କରିଣ ।
କେ ବ୍ରତ ବାର ନିଅମରେ ।
କେ ତୀର୍ଥ ସାଗରକୁ ଗଲେ ।
କେ ନାନା ତୀର୍ଥରେ ଭ୍ରମଇ ।
କେ ବା ନିଶୋହା ହୋଇ ରହି ।
କପିଳ ବାସ କେ କପ ସ ।
କେ ଉର୍ଧରେତା ବନବାସ ।
ଯେ ସର୍ବ ମିଥ୍ୟା ହୋ ଅର୍ଜ୍ଜୁନ ।
ମୁଇ ସତ୍ୟ ଗ୍ୟାନୀ ନିର୍ଗୁଣ ।
ଅନିତ୍ୟ ଶ୍ୱରୀର ନିର୍ଗୁଣ ।
ତ୍ରିକୂଟ ପରେ ଦେଖ ବୀର ।
ଭସ୍ମ ଭିତରେ ଅଗ୍ନି ଯେହ୍ନେ ।
ମୋ ରୂପ ତ୍ରିକୂଟରେ ତେହ୍ନେ ।
ପାଣି ଭିତରେ ଦେହ ଯେହ୍ନେ ।
ବ୍ରହ୍ମ ଦ୍ରୋହନା ଦେହ ତେହ୍ନେ ।
ଦର୍ପଣେ ମୁଖ ଯେହ୍ନେ ଦିଶି ।
ଧ୍ୟାନେ ଚାହାନ୍ତେ ତେହ୍ନେ ଦିଶି ।
କହଇ ବଳରାମ ଦାସ ।
ସେ ଆତ୍ମା ଘଟରେ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ
ପୁରାଣେ ଚରିତ ଆଖ୍ୟାନେ ବେଦ
ତତ୍ତ୍ୱ ଚରିତେ ନାମ ସପ୍ତଦଶ
ଅଧ୍ୟାୟ ।

## ଅଷ୍ଟାଦଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

କୃଷ୍ଣ ବଚନେ ପାର୍ଥ ତୋଷ ।
ବୋଲନ୍ତି ଶୁଣ ହୃଷୀକେଶ ।
ଶ୍ରୀଭାଗବତ ବାକ୍ୟସାର ।
ପୁଚ୍ଛଇ ଜଗତ ଈଶ୍ୱର ।
ଯେକାଦଶ୍ ସ୍କନ୍ଦ ସାର ବାଣୀ ।
ତ୍ରିନବ ଯେକାଦଶ ଭଣି ।
ନ ଶୁଣିମା ବଚନ ଯେହି ।
ଯହିଂ ତୁମ୍ଭ ଶ୍ରୀଚରଣେ ପୁଚ୍ଛଇ ।
କହ ହେ ପ୍ରଭୁ ଦାମୋଦର ।
ଯେ ମୋର ଭ୍ରମ ଯାଉ ଦୂର ।
ତ୍ରିନବ ଯେକାଦଶ ଦିନେ ।
ନ ଶୁଣି ତୁମ୍ଭର ବଚନେ ।

### ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ପଦ୍ମ ପାଣି ।
ଶୁଣ ଅର୍ଜ୍ଜୁନ ତତ୍ତ୍ୱବାଣୀ ।
ଚର ଅଚର ଆଦି ଯେତେ ।
ଶରଣ ସଂଶୟ ନିଅତେ ।
ତେତେବେଳେ ଶୁଣ ଅର୍ଜ୍ଜୁନ ।
ତ୍ରିଗୁଣ ଛତିଶ ନିର୍ଗୁଣ ।
ନବ ଦ୍ୱାରଗୁ ଛାଡ଼ି ଯାଇ ।
ଯେ ଦ୍ୱାଦଶ ଇନ୍ଦ୍ରି ଛାଡ଼ଇ ।
ଯେ ଦିନ ମରଣ ପ୍ରମାଣ ।
ସେ ଦିନ ନ ଶୁଣିମା ଗ୍ୟାଂନ ।

### ଉଦ୍ଧବ ଉବାଚ

ଉଧବ ବୋଲଇ ଉତ୍ତର ।
ଶୁଣ ହେ ପ୍ରଭୁ ଦାମୋଦର ।
ଯେତେକ ଗ୍ୟାଂନ ଶୁଣୁଥାଇ ।
ଅନେଣ ତାହା ନ ଜାଣଇ ।
ଯହୁଂ ସେ ହେତୁ ଜଳେ ଗଲା ।
ଅହେତୁ ଜଳରେ ବୁଡ଼ିଲା ।
କୂପ ତଡ଼ାଗ ପୁଷ୍କରିଣୀ ।
ଯେଥିରେ ଥାଇ ଅନୁକ୍ଷଣି ।
ମନ ଶରୀରକୁ ଧରିଥାଇ ।
ଅନେଣ ତାହାକୁ ଛାଡ଼ଇ ।
ଯେତେ ପ୍ରକାରେ ଶାସ୍ତ୍ରମାନ ।
ଯେମାନ ନୋହେ ହୋ ଅର୍ଜ୍ଜୁନ ।
ଅଷ୍ଟାଦଶ ଷଷ୍ଠ ପଞ୍ଚ ଦଶମ ।
ଚତୁର୍ଥ ଦ୍ୱାଦଶ ପ୍ରମାଣ ।
ଯେତେ ପ୍ରକାରେ ମୁନିଗଣେ ।
କହନ୍ତି ଶାସ୍ତ୍ର ଅନୁମାନେ ।
ସେ ଯେତେ ପ୍ରକାରେ କହନ୍ତି ।
ତୁମ୍ଭେ ତା କହିଲ ଶ୍ରୀପତି ।
ତ୍ରିୟ ନବ ଯେ ଯେକାଦଶ ।
ଯେହା ନ କହ ପୀତବାସ ।
ଯେମନ୍ତେ ଉଧବ କହଇ ।
ମୋହର ପାଦେ ସମ୍ବାଦଇ ।

### ଶ୍ରୀ ଭଗବାନ ଉବାଚ

ଯେବେ କହିଲୁ ଶୁଣ ପାର୍ଥ ।
ଯେ ବିଧି ତତ୍ତ୍ୱ ଯଥାର୍ଥ ।
ଯେତେବେଳେ ଅନ୍ତ କାଳଇ ।
ଏ ତିନି ମାର୍ଗ ନ ଶୁଣଇ ।
କହଇ ବଳରାମ ଦାସ ।
ଯାହା କହିଲେ ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳେ ତ୍ରିନବ ଯେକାଦଶ ରହସ୍ୟ
କଥନେ ନାମ ଅଷ୍ଟାଦଶ ଅଧ୍ୟାୟ

## ଉନବିଂଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ଜଗତ ଜୀବନ ।
ଶୁଣ ଅର୍ଜ୍ଜୁନ ଦେଇ ମନ ।
ଯେଠାରେ ଦୃଷ୍ଟାନ୍ତର ଅର୍ଥ ।
କହିବା ଦେହ ବିଧି ମତ ।
ପଞ୍ଚଦଶ ବର୍ଣ୍ଣ ଅକ୍ଷର ।
ବଚନ ପବନ ମୁଖେଣ ।
ଯାହା ବଦନେ କହୁଥାଇ ।
ବଚନ ନିଜ ସ୍ଥାନେ ଯାଇ ।
ନାସା ପବନ ବହୁଥିଲା ।
ବାମ ପାଗୁଶେ ସେ ଫେରିଲା ।
ଶୃତିରେ ସର୍ବ ଶୁଣୁଥାଇ ।
ସେ ଶବ୍ଦ ନିଜ ଥାନେ ଯାଇ ।
ଚକ୍ଷୁରେ ରୂପ ଦେଖୁଥିଲା ।
ଚକ୍ଷୁ ବୁଲାଇ ଆନେ ଗଲା ।
ଯେତେବେଳେ ପୁଣ ଚଳଇ ।
ତା ପଛେ ଯାୟେ ସେ ଗୋଡ଼ାଇ ।
ଦେଖ ନଦାନଦୀ ଅର୍ଜ୍ଜୁନ ।
କହିଲେ ଏକା ପ୍ରଭାବେଣ ।
କ୍ଷିପ୍ର ନଦୀମାନେ ଗମିଲେ ।
ସାହେର ଜଳରେ ସେ ମିଳେ ।
ନଦାନଦୀ କି ତୁ ପାଶୋରି ।
ନାମ ବୋଲାଇଲେକ ବାରି ।
ଯେଣୁ ପ୍ରାଣ ଆତ୍ମା ଭଗବାନ ।
କାରୁନ୍ୟ ସିନ୍ଧୁ ମୁଂ ପ୍ରମାଣ ।
ଯେ ରୂପେ ଦୃଷ୍ଟାନ୍ତର ପଦ ।
ଅର୍ଥ ଗ୍ୟାଂନଟି ଯେ ସମ୍ବାଦ ।
କହଇ ବଳରାମ ଦାସ ।
ବ୍ରହ୍ମାଣ୍ଡ ଭୋଗୋଳ ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଦେହ ବିଧି
କଥନେ ନାମ ଉନବିଂଶ ଅଧ୍ୟାୟ

## ବିଂଶ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ କୃତ କୃତ ହୋଇ ।
ନାଥର ଚରଣେ ପଡ଼ଇ ।
ହେ ପଦ୍ମନାଭ ବିଶ୍ୱେଶ୍ୱର ।
ଜୟ ଶ୍ରୀ ପୁରୁଷ ଉତ୍ତମ ।
ଜୟ ଭଗତ ବନ୍ଧୁ ହରି ।
କରୁଣା ସାଗର ମୁରାରି ।

ଯୋଗ ସାଧନ କେଉଁ ମତେ ।
ବିଚାରି କହ ତୁ ସାକ୍ଷାତେ ।
କେମନ୍ତ ଜୋତି ଦରଶନ ।
ସାକ୍ଷାତେ କହ ନାରାୟେଣ ।

## ଶ୍ରୀ ନାରାୟଣ ଉବାଚ

କୃଷ୍ଣ ବୋଇଲନ୍ତି ଶୁଣ ପାର୍ଥ ।
କହିବା ସାଧନାର ତତ୍ତ୍ୱ ।
ଯେତେବେଳେ ଶୋୟନ ବେଳେ ।
ବସିଣ ଥିବ ଉଚ୍ଚାଗରେ ।
ଯେବେ ନିଦ୍ରାକୁ ଇଚ୍ଛା ହେବ ।
ବାମ କର ମାଡ଼ି ଶୁତିବ ।
ଚନ୍ଦ୍ର ଘରରେ ବହୁଥିବ ।
ବାମେ ନିଦ୍ରା ଦକ୍ଷିଣେ ଯିବ ।
ଯେବେ ସୂର୍ଯ୍ୟ ଘରେ ରହିବ ।
ସୂର୍ଯ୍ୟକର ମାଡ଼ି ଶୁତିବ ।
ଯେମନ୍ତ ଉଲଟ ପାଲଟ ।
ନିତ୍ୟେ ସାଧନେ ରହେ ଘଟ ।
ପବନେ ଅନ୍ୟାଅନ୍ୟି ତୋଳି ।
ଚନ୍ଦ୍ରକୁ ସୂର୍ଯ୍ୟ ଘରେ ଭରି ।
ନୟନ ନାସିକା ଅଗ୍ରତେ ।
ସ୍ଥାପିଣ ରଖିବ ନିତଳେ ।
ଯେମନ୍ତେ ମାସକେ ସମ୍ପୂର୍ଣ୍ଣେ ।
ଜ୍ୟୋତିକି ଦେଖିବ ନୟନେ ।
ଯେମନ୍ତେ ନିରତେ ସାଧିବ ।
ଦିନକୁ ଦିନ ବଢାଇବ ।
ଯେମନ୍ତେ ସାଧ ହୋ ଅର୍ଜ୍ଜୁନ ।
ନିତଳେ ରହିବ ପବନ ।
ପ୍ରଳୟେ ଯେସନେକ ହେତୁ ।
ବିଚାର ବ୍ରହ୍ମଗ୍ୟାଂନ ତତୁ ।
ଅନନ୍ତ ବ୍ରହ୍ମ ନିର୍ବିକାର ।
ବନ୍ଧ ବାନ୍ଧିଲେ ହେଁ ସ୍ଥିର ।
ସର୍ବଦା ଜଳ ରହିଥିବ ।
ମୀନ କେବେହେଁ ନାଶ ନ ଯିବ ।
ଦଶଦ୍ୱାର ଗଳିଆ ହୋଇ ।
ଯେଥିରେ ଜଳ ମୁହି ହୋଇ ।
ଯେତେ ଗଳିଆ ବେଗେ ବାନ୍ଧ ।
ଅଶେଷ ଜଳ ମହାରନ୍ଧ୍ର ।
ପଞ୍ଚାଶ ପ୍ରକୃତି କାଟିବୁ ।
ପଞ୍ଚ ପବନ ହୃଦୁ ନେବୁ ।
ଯେ ରୂପେ ଯୋଗର ବିଚାର ।
ଅର୍ଜ୍ଜୁନ କହେ ଚକ୍ରଧର ।
କହଇ ବଳରାମ ଦାସ ।
ନନ୍ଦ ନନ୍ଦନ ନିତ୍ୟେ ଆଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ
ନାମ ବିଂଶ ଅଧ୍ୟାୟ ।

# ଏକବିଂଶ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ପୁଣ ପୁଚ୍ଛଇ ପଣ୍ଡୁ ସୁତ ।
କହ ହେ ପ୍ରଭୁ ଗୋପୀନାଥ ।
ଶ୍ରୀ ଭାଗବତ ତତ୍ତ୍ୱସାର ।
ମୋତେ ବୁଝାଅ ଦାମୋଦର ।
ମନିଷ୍ୟ ମୁଣ୍ଡେ ମୃତ୍ୟୁ ବସେ ।
ଆତ୍ମାକୁ ଅନୁକ୍ଷଣେ ତ୍ରାସେ ।
ଯାବତ ମୃତ୍ୟୁ ଅଛି ଦୂରେ ।
ସୁନ୍ଦର ଯୁବା କଳେବରେ ।
ମୁଂ ତୁମ୍ଭ ଚରଣେ କିଙ୍କର ।
କଳୁଷ ଛେଦ ଚକ୍ରଧର ।

## ଶ୍ରୀ ଭଗବାନ ଉବାଚ

ବୋଇଲନ୍ତି ଜଗତ ଈଶ୍ୱର ।
ଶୁଣ ଅର୍ଜ୍ଜୁନ ମହାବୀର ।
ଯେ ବିଧି ଦୃଷ୍ଟାନ୍ତର ତତ୍ତ୍ୱ ।
ଶୁଣ ସୁମନେ ପଣ୍ଡୁସୁତ ।
ମନୁଷ୍ୟ ମୁଣ୍ଡେ ମୃତ୍ୟୁ କାଳ ।
ବସିଛି କିବା ଅନ୍ଧକାର ।
ତୋ ଆଗେ ଦୃଷ୍ଟାନ୍ତର ଦେବା ।
ତୋ ମନୁ ସଂଶୟ ଫେଡ଼ିବା ।
ଯେସନେ ପ୍ରଦୀପ ଜଳଇ ।
ଗୃହ ଅନ୍ଧକାର ଭାଜଇ ।
ପ୍ରଦୀପ ଛାୟା ଅନ୍ଧକାର ।
ବସିଛି ଜ୍ୟୋତି ଅଗ୍ନିଶିର ।
ପୁଣ ପ୍ରଦୀପ ଜଳୁଥାଇ ।
ତା ପାଶେ ଅନ୍ଧକାର ଥାଇ ।
ତେସନ ମାନୁଷ୍ୟ ମୁଣ୍ଡରେ ।
ମୃତ୍ୟୁ ଛାୟାଟି ସେ ଉପରେ ।
ଯେହ୍ନେ ପ୍ରଦୀପ ଲିଭିଗଲେ ।
ଅନ୍ଧକାର ଘୋଟଇ ଭଲେ ।
ତେମନ୍ତ ମୃତ୍ୟୁ ପ୍ରାଣୀ ଶିରେ ।
ବସିଛି କିବା ଅନ୍ଧକାରେ ।
ଯେ ପଦ ଯେମନ୍ତ ବିଚାର ।
ଅର୍ଜ୍ଜୁନେ କହେ ଦାମୋଦର ।
କହଇ ବଳରାମ ଦାସ ।
କାୟା ମୃତ୍ୟୁଟି ମାୟା ଅଂଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ
ବଚନେ ନାମ ଏକବିଂଶ ଅଧ୍ୟାୟ ।

# ଦ୍ୱାବିଂଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

ବୋଲନ୍ତି କମଳା ରମଣ ।
ଶୁଣ ଅର୍ଜ୍ଜୁନ ଦିବ୍ୟଗ୍ୟାଂନ ।
ଶ୍ରୀ ଭାଗବତ ଅର୍ଥସାର ।
କହିବା ଗ୍ୟାଂନର ବିଚାର ।
ମାନୁଷ୍ୟ ମୁଣ୍ଡେ କର୍ମ ହୋଇ ।
କାଳ ମୃତ୍ୟୁ ସେ ବସିଥାଇ ।
ଗାବ ବାନ୍ଧିଣ ଯେହ୍ନେ ନର ।
ନିଅଇ ଆପଣା ଗୃହର ।
ଯେମନ୍ତ ପ୍ରାୟେ ମୃତ୍ୟୁ ନେଇ ।
ପ୍ରାଣୀକି ନିର୍ଭରେ ଭେଟାଇ ।
କି ଅବା ବ୍ୟାଘ୍ର ମୁଖେ ପଡ଼ି ।
ଅଗ୍ୟାଂନ କର୍ମ ମୃତ୍ୟୁ ଧାଡ଼ି ।
ଶିରରେ ମୃତ୍ୟୁ ବସିଥାଇ ।
ବାହ୍ୟ ମୃତ୍ୟୁକୁ ସେ ଭେଟାଇ ।
କର୍ମରେ ପଥେ ଯାଉଥାଇ ।
ନଦୀ ମଧ୍ୟରେ ପଶିଯାଇ ।

କୁମ୍ଭୀର ନଦୀ ମଧ୍ୟେ ଖାଇ ।
ଯୁବା ସୁନ୍ଦର ଦେହ ବହି ।
ସୁନ୍ଦର ଯୁବା ଦେହ ଗୋଟି ।
ମୃତୁ କର୍ମ ଥୋଇ ଥାଇ ଯେଟି ।
ଯେଣୁ ଅନିତ୍ୟ ଯେ ସଂସାର ।
ତ୍ରିଗୁଣ ମୃତ୍ୟୁ ଯେ ଶରୀର ।
କହଇ ବଳରାମ ଦାସ ।
ଦୂର ମୃତ୍ୟୁଟି ଅଛି ପାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ବଚନେ ନାମ ଦ୍ୱାବିଂଶ ଅଧ୍ୟାୟ

## ତ୍ରୟୋବିଂଶ ଅଧ୍ୟାୟ

### ଅର୍ଜୁନ ଉବାଚ

ଅର୍ଜୁନ ଶୁଣି ବଚନରେ ।
ପୁଚ୍ଛଇ ଶ୍ରୀହରି ପାଦରେ ।
ହେ ଜଗନ୍ନାଥ ଯୋଗେଶ୍ୱର ।
ଉତ୍ତମ ବଚନ ତୁମ୍ଭର ।
କହିଲେ ସର୍ବ ତତ୍ତ୍ୱ ବାଣୀ ।
ବେଦ ବଚନ ଗ୍ୟାଂନ ବାଣୀ ।
ଜଳ ମଧ୍ୟରେ ପଦ୍ମବନେ ।
ତା ପତ୍ରେ ଜଳ ରହେ ଯେହ୍ନେ ।
ସେ ଯେହ୍ନେ ଜଳହଳ ହୋଇ ।
ନିଚଳ ହୋଇ ନ ରହଇ ।
ତେମନ୍ତ ପ୍ରାୟେ ମୋର ମନ ।
ନିଚଳ ନୋହେ ଭଗବାନ ।
ଯେକଇ ପଦ ମୋ ମନରେ ।
ପ୍ରକାଶ ହୋଇଲା ନିଚଳେ ।
ଶ୍ରୀ ଭାଗବତ ଗ୍ୟାଂନ ତତ୍ତ୍ୱ ।
ବେଦାନ୍ତ ସାର ରସ ଗୀତ ।
ଯେକାଦଶ୍‌କନ୍ଦ ଭେଦ ସାର ।
ପ୍ରଥମ ପାଦର ବିଚାର ।
ଭାଗବତ ପଦ -
ନମଇ ନୃସିଂହ ଚରଣ ।
ଅନାଦି ପରମ କାରଣ ।
ଯେହା କହିବା ନରହରି ।
ନମସ୍ତେ ମୁକୁନ୍ଦ ମୁରାରି ।

### ଶ୍ରୀ ଭଗବାନ ଉବାଚ

ଅର୍ଜୁନ ବଚନେ ଗୋବିନ୍ଦ ।
କହନ୍ତି ପରମ ସାନନ୍ଦ ।
ଶୁଣ ଅର୍ଜୁନ ମନ ଦେଇ ।
ଯେ ପଦ ଅର୍ଥ ଦେବା କହି ।
ନମଇ ନମସ୍କାର କହି ।
ଉତ୍ପତ୍ତି ପ୍ରଳେ ସିନା ସେହି ।
ଭଗତ ନମସ୍କାର ହୋଇ ।
ନମଇ ଅର୍ଥ ଦେଲି ଫେଡ଼ି ।
ମୁହିଂ ସେ ନୃସିଂହ ଶ୍ୱରୀର ।
ଅନାଦି ଶକ୍ତି ଲକ୍ଷ୍ମୀ ମୋର ।
ଯେ ବେନି ରୂପକୁ ଭଗତି ।
ନମଇ ତାଙ୍କ ପାଦ ଗତି ।
ଅନାଦି ମାୟା ଶକ୍ତି ଯେହି ।
ଉତ୍ପତ୍ତି ପ୍ରଳେ ସିନା ସେହି ।
ତା ଗର୍ଭୁ ଅଶେଷ ସଂସାର ।
ଜନ୍ମ ହୋଇଛି ମହାବୀର ।
ଯେଣୁ ପରମ କାରଣଇ ।
ପଥ ଛାଡ଼ିଲେ ଭକ୍ତି ଯାଇ ।
ସେ ଯେବେ ପଥ ନ ଛାଡ଼ିବ ।
ଭଗତ କି ରୂପେ ଗମିବ ।
ଅନାଦି ଆଦି ଯାର ନାହିଂ ।
ଯେଣୁ ପରମ ଆତ୍ମା ସେହି ।
କହଇ ବଳରାମ ଦାସ ।
ଉଧର ମୋତେ ପୀତବାସ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ବଚନେ ନାମ ତ୍ରୟୋବିଂଶ ଅଧ୍ୟାୟ ।

## ଚର୍ତୁବିଂଶ ଅଧ୍ୟାୟ

### ଅର୍ଜୁନ ଉବାଚ

ପୁଣ ଅର୍ଜୁନ ପଚାରଇଂ ।
କହ ହେ କମଳାର ସାଇଂ ।
ଶ୍ରୀ ଭାଗବତ ଗ୍ୟାଂନ ସାର ।
ଯେ ଅବା ଗ୍ୟାଂନର ଭଣ୍ଡାର ।
ଶୁଣ ହେ ଜଗତ ଈଶ୍ୱର ।
ଯେ ମୋର ଭ୍ରମ ଯାଉ ଦୂର ।
ଅଣିମା ଆଦି ଅଷ୍ଟନିଧି ।
ମୁକ୍ତି ଲକ୍ଷଣ ଯେ ପ୍ରସିଦ୍ଧି ।

### ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଲନ୍ତି ଅର୍ଜୁନ ।
ଯାହା ପୁଚ୍ଛିଲୁ ତତ୍ତ୍ୱଗ୍ୟାଂନ ।
ଜନ୍ମ କାଳଗୁ ଅଷ୍ଟନିଧି ।
ଆସିଛି ଯେ ଅବା ପ୍ରସିଦ୍ଧି ।
ଦେହ ବିଧିରେ ଦେବା କହି ।
ଶୁଣ ସୁମନେ ଧନର୍ଜଇ ।
ଜିହ୍ୱା ଯେ ନାମକୁ ଜପଇ ।
ଯେକ ନିଧିରେ ଯେ ବୋଲାଇ ।
ପୁଣ ଯେ ଜିହ୍ୱାର ଅଗ୍ରରେ ।
ଲାଳସ ଭୋଗ ଇଚ୍ଛା କରେ ।
ଯେଣୁ ଯେ ବେନି ନିଧି ହୋଇ ।
ଆବର ନିଧି ଦେବା କହି ।
ନାସା ବାସନା ଘେନୁଥାଇ ।
ପୁଣି ସର୍ବ ଗନ୍ଧ ଘେନଇଂ ।
ଯେମନ୍ତେ ଚାରି ନିଧି ସାର ।
ଶୁଣ ସୁମନେ ସାଧୁ ବୀର ।
ଚକ୍ଷୁରେ ବେନି ନିଧି ହୋ ଅର୍ଜୁନ ।
ଆରକ ବେନି ନିଧି ଶୁଣ ।
କର୍ଣ୍ଣରେ ମୋ ନାମ ଶୁଣଇ ।
ଶୁଣନ୍ତେ ନେତ୍ରରେ ସୁଖ ଥାଇଂ ।
ଯେ ବେନି ନିଧିର ବିଚାର ।
ଯେ ଅଷ୍ଟାନିଧି ମହାବୀର ।
ଆଦ୍ୟରୁ ଆଣିଛି ଯେ ନିଧି ।
ଗ୍ୟାଂନ ଅଗ୍ୟାଂନ ଯେ ପ୍ରସିଦ୍ଧି ।
ବୋଲଇ ବଳରାମ ଦାସ ।
ଯେହି ଅଷ୍ଟନିଧି ପ୍ରକାଶ ।

ଇତି ଶ୍ରୀ ବ୍ରହ୍ମାଣ୍ଡ ଭୋଗୋଳ ଚରିତେ ବ୍ରହ୍ମାଣ୍ଡ ପୁରାଣ ଭକତେ ଅଷ୍ଟନିଧି ଚରିତେ ନାମ ଚର୍ତୁବିଂଶୋ ଅଧ୍ୟାୟ ।

# ବିରାଟ ଗୀତା

## ପ୍ରଥମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ନମସ୍ତେ ଗୁରୁଦେବ ସ୍ୱାମୀ ।
ନମସ୍ତେ ଗରୁ ଅନ୍ତର୍ଯ୍ୟାମୀ ।
ନମସ୍ତେ ଗୁରୁ ପରଂବ୍ରହ୍ମ ।
ମହାଶୂନ୍ୟରେ ତୋ ବିଶ୍ରାମ ।
ଅର୍ଜ୍ଜୁନ ବୋଲଇ ଗୋସାଇଁ ।
ନାମ ନିର୍ଣ୍ଣୟ କହ ଫେଇ ॥
ଅର୍ଜ୍ଜୁନ ବିନୟ ଭାବରେ ।
ପଡଇ ଶ୍ରୀକୃଷ୍ଣ ପୟରେ ।
ମୋତେ ତ ସଂଶୟ ଲାଗିଲା ।
କାହୁଁ ସେ ନାମ ଜାତ ହେଲା ।
ଯାହାର ରୂପରେଖ ନାହିଁ ।
ଶୂନ୍ୟ ପୁରୁଷ ଶୂନ୍ୟ ଦେହୀ ।
ଯାହାର ଅଟେ ଶୂନ୍ୟ ଦେହୀ ।
ଆବର ନାମ ଥିବ କାହିଁ ।
ମାତାର ଗର୍ଭେ ଯେବେ ଥିଲୁ ।
ସେଠାରେ ନାମ ନ କହିଲୁ ।
ଆଦ୍ୟରେ ନାମ ନାହିଁ ଆଉ ।
ପ୍ରାନ୍ତ୍ୟରେ ନାମ ଥିବ କାହୁଁ ।
ମଧ୍ୟରେ କେତେ ନାମ ତୋର ।
ଫେଡି କହିବା ମୋ ଆଗର ।
ଗୋବିନ୍ଦ ନାମ କାହୁଁ ହେଲା ।
କୃଷ୍ଣ କେମନ୍ତ ବୋଲାଇଲା ।
ମାଧବ ମୁରାରୀ ଅଚ୍ୟୁତ ।
ରାମ ବୋଲିଣ ତହୁଁ ଜାତ ।
ହରି କେଶବ ଜନାର୍ଦ୍ଦନ ।
କିମ୍ପା ଯେ ନାମ ଭଗବାନ ।
ନାରାୟଣଟି କାହୁଁ ହୋଇ ।
କିମ୍ପାଇଁ ନରହରି କହି ।
ଜଗନ୍ନାଥ ଯେ ନାମ ତୋର ।
କିମ୍ପାଇଁ ହେଲା ଚକ୍ରଧର ।
ଆରତ ଭଞ୍ଜନ କିମ୍ପାଇଂ ।
ହେଲା ତୋ ନାମ ଭାବଗ୍ରାହୀ ।
କରୁଣା ସିନ୍ଧୁ ବୋଲାଇଲୁ ।
ଦୟାସାଗର ନାମ ଦେଲୁ ।
ପତିତପାବନ ବୋଲାଉ ।
ଜଗତ ନାଥ କିମ୍ପା ହେଉ ॥
କିମ୍ପା ବୋଲାଉ ଆଦିମୂଳ ।
କୃପାଜଳଧି ଶ୍ରୀ ଗୋପାଳ ।
କିମ୍ପା ତୋ ରାମଚନ୍ଦ୍ର ନାମ ।
କିମ୍ପା ବୋଲାଉ ଦାରୁବ୍ରହ୍ମ ।
କେମନ୍ତ ନାମ ଦଇତାରି ।
କିମ୍ପା ତୋ ନାମ ନୀଳଗିରି ।
ଭକତବନ୍ଧୁ କିମ୍ପା ନାମ ।
କିମ୍ପା ବୋଲାଉ ପରଂବ୍ରହ୍ମ ।
ପୁରୁଷୋତ୍ତମ ତୁ ବୋଲାଉ ।
ବନମାଳୀ ନାମକୁ ବହୁ ।
କିମ୍ପା ତୋ ନାମ ଦୟାନିଧି ।
ଶ୍ରୀବତ୍ସ ନାମ ଯେ ପ୍ରସିଦ୍ଧି ।
ଅରୂପବ୍ରହ୍ମ ତୁ ବୋଲାଉ ।
କି ରୂପେ ଏତେ ନାମ ବହୁ ।
ତୁ ପୁର୍ଣ୍ଣାରୂପ ଶୂନ୍ୟ ଦେହ ।
କି ଅର୍ଥେ ଏତେ ନାମ ବହ ।
ରୂପ ଯେତେକ ନାମ ହୋଇ ।
ଅରୂପ ନାମ ଆଉ ନାହିଁ ।
ଅର୍ଜ୍ଜୁନ ଶିରେ ଦେଇ କର ।
ବୋଲଇ କହ ତତ୍ତ୍ୱସାର ।

#### ଶ୍ରୀ ଭଗବାନ ଉବାଚ

ଅର୍ଜ୍ଜୁନ ଭକ୍ତି ଶୁଣି କର୍ଣ୍ଣେ ।
କହନ୍ତି କୋମଳ ବଚନେ ।
ଶୁଣ ଅର୍ଜ୍ଜୁନ ମନ ଦେଇ ।
କହିବା ନାମ ତତ୍ତ୍ୱ ଫେଇ ।
ମହାଶୂନ୍ୟରେଟି ବିଶ୍ରାମ ।
ସେଠାରେ କାହିଁ ଅଛି ନାମ ।
କହନ୍ତି ପ୍ରଭୁ ଭାବଗ୍ରାହୀ ।
ଶୁଣ ଅର୍ଜ୍ଜୁନ ମନ ଦେଇ ॥
ଯେଣୁ ତୁ ଭକତ ମୋହର ।
ତେଣୁ କହିବା ତତ୍ତ୍ୱସାର ।
ବେଦ୍ଭାରେ ମୋର ନାମ ନାହିଂ ।
ଅରୂପବ୍ରହ୍ମ ମୁଂ ଅଟଇ ।
ଯେ କାଳେ ଜଳ ସ୍ଥଳ ନାହିଂ ।
ଏକା ମୁଂ ମହାଶୂନ୍ୟେ ଥାଇ ।
ବିରାଟ ରୂପେ ଥିଲି ମୁହିଂ ।
ମୋ ବିନୁ ଆଉ କେହି ନାହିଁ ।
ମୋ ମନେ ହେତୁ ପ୍ରସରିଲା ।
ନିମିଷେ ଏ ସୃଷ୍ଟି ନାଶଗଲା ॥
ଏମନ୍ତ ମନେ ବିଚାରଲି ।
ଶୂନ୍ୟରୁ ବିନ୍ଦୁ ଛାଡିଦେଲି ।
ସେ ବିନ୍ଦୁ ଗଗନେ ଖସିଲା ।
ତା ରୂପ ଧୂମ୍ରବର୍ଣ୍ଣ ହେଲା ॥
ଧୂମ୍ର ବର୍ଣ୍ଣରୁ ହେଲା ଶକ୍ତି ।
ଶକ୍ତିରୁ ଓଂକାର ଜନ୍ମନ୍ତି ।
ଓଂକାରୁ ତ୍ରିଜୀବ ଜନ୍ମିଲା ।
ତ୍ରିଜୀବ ନାମ ଜାତ ହେଲା ।
ନାମରୁ ବ୍ରହ୍ମା ବିଷ୍ଣୁ ଜାତ ।
ନାମରୁ ଜଗତ ସମ୍ଭୂତ ।
ଛପନ କୋଟି ଜୀବ ଯେତେ ।
ନାମରେ ଅଟନ୍ତି ସମସ୍ତେ ।
ରାମ ଅକ୍ଷରୁ ଗୁରୁ ହୋଇ ।
ହରି ଅକ୍ଷରୁ ଶିଷ୍ୟ ତହିଂ ।
କୃଷ୍ଣ ଅକ୍ଷରୁ ଜଗନ୍ନାଥ ।

ଏମନ୍ତ ଗୁରୁ ଶିଷ୍ୟ ମତ ।
ନାମ ସେ ଜଙ୍ଗମ ସ୍ଥଳ ଚର ।
ପାଷାଣ ମୃତ୍ତିକା ସ୍ଥାବର ।
ନାମ ନ ଥିବ ଠାବ ନାହିଁ ।
ନାମ ଯେ ସର୍ବଠାରେ ଗ୍ରାହୀ ।
ଗାଉଛି ସର୍ବ ଘଟେ ନାମ ।
ନାମ ଛାଡ଼ିଲେ ଦେହ ଶୂନ୍ୟ ।
ନାମ ଛାଡ଼ିଲେ ପ୍ରାଣ ଗଲା ।
ଏ ଦେହ ସ୍ଖଳିତ ହୋଇଲା ।
ଶୁଣ ଅର୍ଜ୍ଜୁନ ମନ ଦେଇ ।
କହିଲି ନାମ ତତ୍ତ୍ୱ ଫେଇ ।
ଏହାକୁ ମନେ ହେତୁ କର ।
ତା ମନୁ ନେଇ ବେଗେ ତର ।
ସୁଜନେ ନାମ ବ୍ରହ୍ମ ଜପ ।
ଜପିଲେ ଯିବ ମହାପାପ ।
କହଇ ବଳରାମ ଦାସ ।
ବିରାଟ ଗୀତା ମହାରସ ।

ଇତି ଶ୍ରୀ ବିରାଟ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ
ବ୍ୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ
ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଇଲେ ଗୋସାଇଁ ।
ନାମର ତତ୍ତ୍ୱ କହ ଫେଇ ।
ଅରୂପବ୍ରହ୍ମ ତୁ ବୋଲାଉ ।
ଏତେକ ନାମ କିମ୍ପା ବହୁ ।
ଏମନ୍ତ ଆଜ୍ଞା ମୋତେ ହେବ ।
କେମନ୍ତେ ଏତେ ନାମ ଦେବ ।
ଏ ଆଜ୍ଞା କହ ଫେଡ଼ି କରି ।
ନମସ୍ତେ ପ୍ରଭୁ ଦଇତାରି ।

### ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବାକ୍ୟେ ଭଗବାନ ।
କହନ୍ତି ନାମ ତତ୍ତ୍ୱଜ୍ଞାନ ।
ଅର୍ଜ୍ଜୁନ ନାମ ମୋର ଯେତେ ।
ଭକତ ଦେଲେ ତୋଷ ଚିତ୍ତେ ।
ଭକତ ମୋର ପିତା ହୋଇ ।
ସକଳ ନାମ ଛନ୍ତି ଦେଇ ।
ପିତା ମାତାଙ୍କ ଯୁଗ୍ମ କାଳେ ।
ଭାବ ବହନ୍ତି ସୁଖ ଭୋଳେ ।
ଭାବରୁ ଜାତ ହେଲି ମୁହିଁ ।
ଏଣୁ ମୋ ନାମ ଭାବଗ୍ରାହୀ ।
ମାତା ପଦ୍ମକୁ ସିନ୍ଧୁ କହି ।
ସେ ସିନ୍ଧୁ ମୋର ବାସ ହୋଇ ।
ସେ କୃପାସିନ୍ଧୁ ମୋର ସ୍ଥାନ ।
ଏଣୁ କୃପାସିନ୍ଧୁ ମୋ ନାମ ।
ଯେଣୁ ମୁଁ ନରକଳେବର ।
ନାରାୟଣ ନାମ ମୋହର ।
ମାତାର ପଦ୍ମେ ମୋର ବାସ ।
ରଜରୁ ହୋଇଲି ପ୍ରକାଶ ।
ରଜ ଯେ ମାତା ପଦ୍ମେ ଥାଇ ।
ସେ ରଜେ ବୀର୍ଯ୍ୟ ଯେ ପଶଇ ।
ସେ ରଜ ବନ୍ଧୁ ପ୍ରାୟ ହୋଇ ।
ଅତି ଯତନେ ସମ୍ଭାଳଇ ॥
ଭକତ ବନ୍ଧୁ ମୋର ନାମ ।
ତେଣୁ ହୋଇଲି ହେ ଅର୍ଜ୍ଜୁନ ।
ମାତାର ପଦ୍ମ ଫୁଟି ଯାଇ ।
ତହିଁ ପିତା ବୀର୍ଯ୍ୟ ପଡ଼ଇ ।
ରଜ ବୀର୍ଯ୍ୟର ମଧ୍ୟେ ମୁହିଁ ।
ପବନ ଅଗ୍ନି ରୂପେ ଥାଇ ॥
ଏମନ୍ତ ପ୍ରକାଶଇ କାୟେ ।
ଶରୀର ସର୍ବସିଦ୍ଧି ହୋଏ ।
ବିରାଟ ହୋଇ ପଡ଼ି ଥାଇ ।
ଆଧାର ତାଳୁ କରେ ଥାଇ ।
ମାତା ପିତାଙ୍କ ଯୁକ୍ତକାଳେ ।
ବୀର୍ଯ୍ୟ ପଡ଼ଇ ତାଳୁ କାରେ ॥
ସେ ମକରନ୍ଦ ପାନ କଲି ।
ମୁକୁନ୍ଦ ନାମକୁ ବହିଲି ।
ବିନ୍ଦୁରେ ଯହୁଁ ଆତଯାତ ।
ଗୋବିନ୍ଦ ନାମ ମୋ ସମ୍ଭୂତ ।
ଜଳ ବୋଲିଣ ଦେହ ପ୍ରାଣ ।
ପବନ ବୋଲି ହେ ଅର୍ଜ୍ଜୁନ ॥
ପବନ ନାମ ଗୁହ୍ୟହୋଇ ।
ବୀର୍ଯ୍ୟ ରୂପରେ ଜନ୍ମ ହୋଇ ।
କ୍ଲୀଂ ଅକ୍ଷରୁ ଜାତ ହେଲି ।
ଏଣୁ ମୁଂ କୃଷ୍ଣ ବୋଲାଇଲି ।
ରଜ ରୂପରେ ଜାତ ହୋଇ ।
ବୀର୍ଯ୍ୟଟି ଜନ୍ମ ମୋର ହୋଇ ।
ରଜରେ ବୀର୍ଯ୍ୟ ଜାତ ହେଲା ।
ରାମ ନାମଟି ବୋଲାଇଲା ।
ମାତାର ପଦ୍ମେ ରଜ ଥାଇ ।
ବୀର୍ଯ୍ୟଟି ଧାରାରୂପେ ଯାଇ ।
ନିତ୍ୟ ଅଂଶଟି ମୋର ସେହି ।
ରାଧିକା ନାମ ମୁଂ ବୋଲାଇ ।
ମାତାର ଗର୍ଭେ ଗୋପ୍ୟ ହେଲା ।
ବାଳୁତ ରୂପେ ମୁଂ ଅଇଲି ।
ଏଣୁ ଗୋପାଳ ମୋର ନାମ ।
ଏହି ଗୁପତ କଥା ଜାଣ ।
ଜ୍ୟୋତି ରୂପରେ ମୋର ଦେହୀ ।
ଏଣୁ ଅନନ୍ତ ନାମ ବହି ॥
ଜଗତ ବୋଲିଟି ଶରୀର ।
ଶରୀରୁ ଜଗତ ସଂସାର ।
ଯୋନିରୁ ତହୁଂ ଜାତ ହେଲି ।
ବାଳୁତ ରୂପ ମୁଂ ବହିଲି ।
ଜଗତ ଶରୀର ଅଟଇ ।
ପବନ ପାତି ତହିଁ ଥାଇ ।
ଏଣୁ ଜଗତପତି ନାମ ।
ତୋ ଆଗେ କହିଲି ଅର୍ଜ୍ଜୁନ ।
ପତିତ ରଜ ଭୋଗ ହେଲା ।
ପବନ ତହିଁରେ ମିଶିଲା ।
ପତିତ ପାବନ ସେ ନାମ ।
ତେଣୁଟି ହୋଇଲା ଅର୍ଜ୍ଜୁନ ।
ତ୍ରିକୂଟ କାଳିନ୍ଦୀର ହ୍ରଦ ।
ମଧ୍ୟରେ ବହେ ଶିଶୁ ପଦ ।
ଶ୍ରୀବତ୍ସ ନାମଟି ମୋହର ।

ଏଣୁ ହୋଇଲା ସେ ବିହାର ॥
ଏ ରୂପେ ମୋର ନାମ ଯେତେ ।
ଭକତ ହେଲେ ତୋଷ ଚିତ୍ତେ ॥
କଳା ଡୋଳାଟି ଏ ରାଜାର ।
ନୀଳ ଡୋଳାଟି ଏହି ଚାର ॥
ଗୁରୁ ମଧ୍ୟରେ ବିନ୍ଦୁ ଯେହି ।
ସପ୍ତ ଅକ୍ଷର ଅଟେ ସେହି ॥
ନାମର ଯନ୍ତ୍ର ଏହି ସ୍ଥାନ ।
ଅର୍ଜ୍ଜୁନ ଭଲ କରି ଚିହ୍ନ ॥
ଭକତ ମୋର ପିତା ହୋଇ ।
ସେ ମୋତେ ନାମ ଦେଇଛଇ ॥
ନାମ ଥିଲାକୁ ଦେହ ଅଛି ।
ନାମଟି ଜଗତେ ପୂରିଛି ॥
ନାମ ଛାଡିଲେ ପିଣ୍ଡ ଗଲା ।
ନାମଟି ବିରାଟେ ମିଶିଲା ॥
ନାଂ'ଟି ସଂସାରରେ ସାର ।
ନାମ ବ୍ୟତୀତ ନାହିଂ ପାର ॥
ନାମକୁ ହୃଦେ କର ଦୃଢ଼ ।
ଯୋନି ସାଗରେ ଯେ ନ ବୁଡ ॥
ଯୋନିକି ଭବଜଳ କହି ।
ତହିଂ ବୁଡ଼ିଲେ ସ୍ଥଳ ନାହିଂ ॥
କହଇ ବଳରାମ ଦାସ ।
ବିରାଟ ଗୀତା ମହାରସ ॥
ସୁଜନେ ଏହି ତତ୍ତ୍ୱ ଘେନ ।
ତତ୍ତ୍ୱ ଚିହ୍ନିଲେ ମହାପୁଣ୍ୟ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବ୍ରହ୍ମବିଦ୍ୟାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ପୁଣି ଅର୍ଜ୍ଜୁନ ପଚାରଇ ।
ସଂଶୟ ମନରେ ତ ପାଇ ॥
ହେ କୃଷ୍ଣ ଭକତ ଦୟାଳୁ ।
ଏମନ୍ତ ଆଜ୍ଞା କିମ୍ପା କଲୁ ॥
ବୋଇଲୁ ଯୋନି ମାର୍ଗେଗଲେ ।
ଅଳ୍ପ ଆୟୁଷ ହୁନ୍ତି ଭଲେ ॥
ଯେବେ ନ ଯିବ ଯୋନି ମାର୍ଗେ ।
ଜଗତ କେମନ୍ତେ ସୃଜିବେ ॥
ଚିତ୍ତେ ସଂଶୟ ମୋର କରି ।
ଏକଥା କହ ବନମାଳୀ ॥

### ଶ୍ରୀଭଗବାନ ଉବାଚ

ଶୁଣ ଅର୍ଜ୍ଜୁନ ମନ ଦେଇ ।
ଗୁପତ ଜ୍ଞାନ ଏ ବୋଲାଇ ॥
ଯେଣୁ ତୁ ମୋହର ବିଶ୍ୱାସ ।
ତୋ ଆଗେ କରିବି ପ୍ରକାଶ ॥
ଆନକୁ ନ କହିବୁ ତୁହି ।
ମୋ ପାଦପଦ୍ମ ଥାଅ ଛୁଇଂ ॥
ଘଟରେ ଜଳ ପୂରିଥାଇ ।
କିଞ୍ଚିତେ ଛିଦ୍ର ମାତ୍ର ହୋଇ ॥
ଶରୀର ତୁମ୍ବ ବୋଲି ଜାଣ ।
ବୀଜଟି ଜଳ ପରିମାଣ ॥
ଶରୀର ତୁମ୍ବ ବୋଲି ଜାଣ ।
ବୀଜଟି ଜଳ ପରିମାଣ ॥
ଶରୀରୁ ଜଳ ଗଳିଯାଇ ।
ଶରୀର ନିର୍ବଳ ହୁଅଇ ॥
ଜଳ ବିହୀନେ ସେହି କ୍ଷୟେ ।
ଏଣୁଟି ଅଳ୍ପ ବୁଦ୍ଧି କହେ ॥
ପୁଣି ଅର୍ଜ୍ଜୁନ ପଚାରଇ ।
ମୋ ଚିତ୍ତେ ସନ୍ଦେହ ରୁହଇ ॥
ସ୍ତିରୀ ପୁରୁଷ ବେନି ହୋଇ ।
ସେ ପୁଣି ଜଗତ ସୃଜଇ ॥
ଏକଥା ଯେବେ ନାସ୍ତି ହେବ ।
ସଂସାର କେମନ୍ତେ ହୋଇବ ॥
ଏକଥା କହ ଦଇତାରି ।
ନମସ୍ତେ ମୁକୁନ୍ଦ ମୁରାରି ॥
ଶୁଣ ଅର୍ଜ୍ଜୁନ ତୋଷ ମନେ ।
ତୋତେ କହିବା ଗୁପ୍ତଜ୍ଞାନେ ॥
ଛପନ କୋଟି ଜୀବ ଯେତେ ।
ସର୍ଜ୍ଜନା ହୁଅନ୍ତି ଜଗତେ ॥
ପ୍ରତିଦିନରେ ମୁକ୍ତ ହେଲେ ।
ଏ ଜୀବ ନାଶ ଯାଇଂ ଭଲେ ॥
ଏଥିକି ପୁଣି ପ୍ରତିକାର ।
କହିବା ଶୁଣ ମହାବୀର ॥
ପଦ୍ମୀର ପଦ୍ମ ଫୁଟିଥିବ ।
ସେଦିନ ବୀର୍ଯ୍ୟ ଦାନ ଦେବ ॥
ସେ ବୀର୍ଯ୍ୟ ପଡ଼ିଲେ ପଦ୍ମରେ ।
ମୁଦ୍ରିତ ହୁଅଇ ସତ୍ୱରେ ॥
ତହିଂରୁ ପୁରୁଷ ହୁଅଇ ।
ଏମନ୍ତ ଜଗତ ସୃଜଇ ॥
ଏଥିରେ ଅଛି ପୁଣି ଭେଦ ।
କହିବା ଶୁଣ ତତ୍ତ୍ୱବୋଧ ॥
ପଦ୍ମ ମଧ୍ୟେ ଯେ ବିନ୍ଦୁ ପଡ଼େ ।
ପୁରୁଷ ରୂପକୁ ସେ ଧରେ ॥
ଯେବେ ପଡଇ ପାଖୁଡ଼ାରେ ।
ସ୍ତିରୀ ହୁଅଇ ତତକାଳେ ॥
ପାଖୁଡ଼ା ପଦ୍ମ ଦୁଇଠାରେ ।
ବୀର୍ଯ୍ୟ ପଡ଼ିଲେ ସେ କାଳରେ ॥
ତହିଂରୁ ବେନି ଜାତ ହୋଇ ।
ସ୍ତିରୀ ପୁରୁଷ ସେ ବୋଲାଇ ॥
ଯେବେ ପଡଇ ପଦ୍ମେ ଏକ ।
ସେ ହୁଏ ବେନି ଯେ ଫାଟକ ॥
ବେନି ପୁରୁଷ ବୋଲି ଜାଣ ।
ନିଶ୍ଚୟ କହିଲି ଅର୍ଜ୍ଜୁନ ॥
ଯେତେକ ପୂରିବା ହୁଅଇ ।
ପବନ ଯେବେ ଭାଗ ହୋଇ ॥
ଏତେକ ମୂର୍ତ୍ତି ସେହି ଧରେ ।
ଦୁହିତା ହୁଏ ପାଖୁଡ଼ାରେ ॥
ଡାହାଣ ପୁଡ଼ା ବହା ଥିଲେ ।
ଏମନ୍ତ ବେଳେ ରତି କଲେ ॥
ସେ ବୀର୍ଯ୍ୟ ଅଳ୍ପ ଜଳିଯାଇ ।
ପଦ୍ମରେ ଆଉ ନ ରହଇ ॥
ବାମ ନାସିକାରେ ବହୁଥିଲେ ।
ଏମନ୍ତ ବେଳେ ରତି କଲେ ॥

ସେ ବୀର୍ଯ୍ୟ ହୁଅଇ ପୁରୁଷ ।
ଅନ୍ୟ ବେଳରେ ଯାଏ ନାଶ ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ ।
ସଂଶୟ ମଣିଲଇଁ ମୁହିଁ ॥
ବାମ ଡାହାଣ ନାସ ବାଇ ।
ଏଥିର ଭେଦ କହ ଫେଇ ॥
ଡାହାଣେ କିମ୍ବା ଜନ୍ମିଗଲା ।
ବାମରେ ସମ୍ଭୂତ ହୋଇଲା ॥
ଏ ଅର୍ଥ କହ ଭଗବାନ ।
ନମଇଁ ତୁମ୍ଭର ଚରଣ ॥

ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବାକ୍ୟେ ଭଗବାନ ।
କହନ୍ତି ଫେଡି ଗୁପ୍ତଜ୍ଞାନ ॥
ଛପନ କୋଟି ବୀଜ ଯେତେ ।
କାମରେ ଜଡିତ ସମସ୍ତେ ॥
ଦିବସ ଷୋଳ ଘଡ଼ି ହୋଇ ।
ବତିଶ ରାତ୍ର ମିଶି ହୋଇ ॥
ପୁରୁଷ ଆବର ଯୁବତୀ ।
ସମସ୍ତେ ହୋନ୍ତି ରଜୋବତୀ ॥
ଘଡ଼ିକେ ନାମ ଯେ ଗୋଟିଏ ।
ଉଦୟ ଠାରୁ ଅସ୍ତ ଯାଏ ॥
ଷୋଳ ଘଡ଼ିରେ ଷୋଳକ୍ଷର ।
ବତିଶ ମିଶି ରାତ୍ର ସାର ॥
ବତ୍ରିଶ ନାମ ଷୋଳକ୍ଷର ।
ରାତ୍ର ଦିବସ ନାମ ସାର ॥
ଏକ ଘଡ଼ିକେ ଏକ ନାମ ।
ମହା ମନ୍ତ୍ରଟି ଏହି ଜାଣ ॥
ରାଆ ଅକ୍ଷର ସ୍ତରୀ କହି ।
ମତଟି ପୁରୁଷ ଅଟଇ ॥
କୃ ଅକ୍ଷରଟି ପୁଂସ ହେଲା ।
ସୁଅ ଯେ ସ୍ତିରୀ ବୋଲାଇଲା ॥
ପୁରୁଷ ଆବର ଯୁବତୀ ।
ସମସ୍ତେ ହୋନ୍ତି ରଜୋବତି ॥
ଚତୁର୍ଥ ବେଳ ଦିବସର ।
ଚତୁର୍ଥ ବେଳ ଯେ ରାତ୍ରର ॥
ଏମନ୍ତ ଅଷ୍ଟ ବେଳ ଯାଏ ।
ଏ ଜୀବ ରଜୋବତି ହୁଏ ॥
ସ୍ଥାବର କୀଟ ଯେ ପତଙ୍ଗ ।
ଏମନ୍ତ ଦୋଷ ଯୋଗ ମାର୍ଗ ॥
ବାମ ନାସିକା କେତେ ବହି ।
ରଜୋବତି ସେ ବୋଲି କହି ॥
ଏଥି କାରଣ ବୁଝ ଯେବେ ।
ରତି କରନ୍ତି ସମଭାଗେ ॥
ଯେ ଦିନ ପଦ୍ମ ଫୁଟିଥିବ ।
ତାହା ବୁଝିବେ ଯୁଗ୍ମ ହେବ ॥
ଏ ଭାବେ ରତି କର ଯେବେ ।
ବୃକ୍ଷ ଅଙ୍କୁରି ଉଠେ ତେବେ ॥
ଅନ୍ୟ ଦିଗରେ ନାଶ ଯାଇ ।
ଏଣୁ ଅଳ୍ପ ଆୟୁଷ ହୋଇ ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ ।
ମନୁ ମୋ ଭ୍ରାନ୍ତି ଫିଟୁ ନାହିଁ ॥
ଏମନ୍ତ ଭାବେ ଯେବେ କଲେ ।
ଆୟୁଷ ବୃଦ୍ଧି ହୁଏ ଭଲେ ॥
ଭୋଜନ ପାନେ କାର୍ଯ୍ୟ କାହିଁ ।
ସ୍ନାନ ଭୋଜନ ଭେଦ ନାହିଁ ॥
ସ୍ନାନ ମାର୍ଗରେ ଭେଦାଭେଦ ।
ଏ କଥା କହ ହେ ଗୋବିନ୍ଦ ॥

ଶ୍ରୀ ଭଗବାନ ଉବାଚ

ଅର୍ଜ୍ଜୁନ ବାକ୍ୟ ଶୁଣି କର୍ଣ୍ଣେ ।
କହନ୍ତି କୋମଳ ବଚନେ ॥
ସାତ ବାରିଣୀ କହି ଦେବା ।
ତୋ ମନୁ ସଂଶୟ ଫେଡିବା ॥
ରବିବାରରେ ସ୍ନାନ କର ।
ସୋମବାରେ ସ୍ନାନ ନ କର ॥
ମଙ୍ଗଳବାରେ ସ୍ନାନ କର ।
ବୁଧରେ ସ୍ନାନ ପରିହର ॥
ବୃହସ୍ପତିରେ କର ସ୍ନାନ ।
ଶୁକ୍ରରେ ତା କର ବର୍ଜ୍ଜନ ॥
ଶନିରେ କର ନାସ୍ତି ଜଳ ।
ଶରୀରେ ନ ପଶିବ କାଳ ॥
ବାମ ନାସିକା ବହୁଥିବ ।
ସ୍ନାନ ଭୋଜନ ନ କରିବ ॥
ଡାହାଣ ପୁଡ଼ା ବହୁଥିଲେ ।
ସ୍ନାନ ଭୋଜନ ସେତେବେଳେ ॥
ଶୟନ ମାର୍ଗ କହିଦେବା ।
ତୋ ମନୁ ସଂଶୟ ଫେଡ଼ିବା ॥
ଆଦ୍ୟ ନିଶାରେ ନ ଶୋଇବ ।
ମଧ୍ୟ ପ୍ରାନ୍ତରେ ଜାଗିଥିବ ॥
ଏମନ୍ତ ଶୟନ ଭୋଜନ ।
ଏ ଭାବେ ରତି କରି ପୁଣ ॥
ଗୃହୀ ସ୍ୱଭାବ ଧର୍ମ ଏହି ।
ଏ ମାର୍ଗେ ଚଳ ବୀର ତୁହି ॥
ଏ ଭାବେ ଥିଲେ ହେ ଅର୍ଜ୍ଜୁନ ।
କାଳକୁ ଭୟ ନାହିଁ ପୁଣ ॥
ଭଣିଲେ ବଳରାମ ଦାସ ।
ସୁଜନେ ଏହି ଭାବେ ରସ ॥

ଇତିଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟା ଶ୍ରୀହରି ଅର୍ଜ୍ଜୁନ ଗୁପ୍ତଜ୍ଞାନ କଥନେ ନାମ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବିନୟ ଭାବରେ ।
ପଡଇ ଗୋବିନ୍ଦ ପୟରେ ॥
ହେ ବିଶ୍ୱେଶ୍ୱର ନାରାୟଣ ।
ଅନାଦି ପରମ କାରଣ ॥
କଥାଏ ପଡିଲା ମୋ ମନେ ।
କହିବା ହେଉ ଦିବ୍ୟ ଜ୍ଞାନେ ॥
ବଡ଼ ଦେଉଳ କେ ଅଟଇ ।
କାହାକୁ ନୀଳଚକ୍ର କହି ॥
ତିନି ମୂର୍ତ୍ତି ଯେ ତହିଁଛନ୍ତି ।
କେଉଁଠାରେ ହେ ଯଦୁପତି ॥
ଅଠର ନଳା କାକୁ କହି ।
ବଡ଼ଦାଣ୍ଡଟି କେ ବୋଲାଇ ॥
ଜଗମୋହନ ଘର କେହୁ ।

କହିବା ହେଉ ମହାବାହୁ ।।
ମଣୋଇ ସ୍ଥାନ କେ ଅଟଇ ।
ରୋଷାଇ ଶାଳ କେ ବୋଲାଇ ।।
କାହାକୁ କହି ସିଂହାସନ ।
ଚନ୍ଦନ ଅର୍ଗଳି କେ ପୁଣ ।।
କାହାକୁ ସିଂହଦ୍ୱାର କହି ।
ଶ୍ରୀ ନନ୍ଦିଘୋଷ କେ ବୋଲଇ ।।
ଷୋଳ ଚକଟି କେହୁ ପୁଣ ।
ସେ କଥା କହ ନାରାୟଣ ।।
ତୁଳସୀ ଚଉରାରେ ପୁଣ ।
ଚାରି ଦେବଙ୍କ କେଉଁ ସ୍ଥାନ ।।
କାହାକୁ କହି ଚାରିବଟ ।
କେବଣ ଠାରେ ଚାରିମଠ ।।
ପାତାଳ ବୋଲାଏ କେ ପୁଣ ।
କାହାକୁ ମର୍ତ୍ତ୍ୟ ବୋଲି ଜାଣ ।।
ସ୍ୱର୍ଗ ବୋଲିଣ କାକୁ କହି ।
ଏକଥା କହ ଭାବଗ୍ରାହୀ ।।
କାହାକୁ ବୋଲି ଯାଜପୁର ।
ବ୍ରହ୍ମାକୁ କେବଣ ନଗର ।।
କପିଳାସଟି କେ ବୋଲାଇ ।
ବୈକୁଣ୍ଠପୁର କାକୁ କହି ।।
କାହାକୁ ବୋଲି ଗୋଲାହାଟ ।
କେଉଁଠାବରେ କଳ୍ପବଟ ।।
କାଉଂରୀ ପାଟଣାଟି କେହୁ ।
ଏ କଥା କହ ମହାବାହୁ ।।
ସାତ ବାରଙ୍କ ସ୍ଥାନ କାହିଁ ।
ଚନ୍ଦ୍ର ସୂର୍ଯ୍ୟଟି କେ ବୋଲାଇ ।।
ପୂର୍ବ ଦିଗଟି କେହୁ ପୁଣ ।
ପଶ୍ଚିମ କେହୁ ଯେ ପ୍ରମାଣ ।।
ଦକ୍ଷିଣ ଦିଗ କେ ହୋଇଲା ।
ଉତ୍ତର କେହୁ ବୋଲାଇଲା ।।
ଏବେ ହେ ଚାରିମେଘ କାହିଁ ।
ଆଜ୍ଞାକର ହେ ଭାବଗ୍ରାହୀ ।।
ଦିବସ କାହାକୁଟି କହି ।
ରାତ୍ର ବୋଲିଣ କେ ଅଟଇ ।।
ଗଙ୍ଗା ଯମୁନା ନଦୀ କାହିଁ ।
ତ୍ରିବେଣୀ କେହୁ ଯେ ବୋଲାଇ ।।
ନିର୍ଣ୍ଣୟ କରି କହ ଫେଇ ।
ଶୁଣିଲେ ନିସ୍ତରିବି ମୁହିଁ ।।

ଶ୍ରୀଭଗବାନ ଉବାଚ

ଅର୍ଜୁନ ବାକ୍ୟେ ଚକ୍ରଧର ।
ବୋଲନ୍ତି ଶୁଣ ଭକ୍ତସାର ।।
ବଡ଼ ଦେଉଳ ବୋଲି ଯାହା ।
ନିଶ୍ଚୟ ଏ ତୋହର କାୟା ।।
ନନ୍ଦିଘୋଷଟି ଯାହା କହି ।
ଅର୍ଜୁନ ଏ ତୋହର ଦେହୀ ।।
ନାଭି ହୃଦୟ କଣ୍ଠ ଘେନି ।
ଏ ତିନି ଅଟଇ ଯେ ପୁଣି ।।
ହସ୍ତ ଅଙ୍ଗୁଷ୍ଠି ଖୁଆ ଯାଏ ।
ସେ ପୁଣି ଅଷ୍ଟଚକ ହୁଏ ।।
ଆବର ଚକଟି କପାଳ ।
ଏମନ୍ତ ହୋଇଲା ଏ ଷୋଳ ।।
ଷୋଳ ଚକଟି ଏ ପ୍ରମାଣ ।
ତୋ ଆଗେ କହିଲି ଅର୍ଜୁନ ।।
ବଡ଼ଦାଣ୍ଡଟି ଯାହା କହି ।
ଅର୍ଜୁନ ତୋର ମୁଖ ସେହି ।।
ବାଇଶ ପାହାଚଟି ପୁଣ ।
କଣ୍ଠ ତଳଟି ହେ ଅର୍ଜୁନ ।।
ଅଠର ନଳା ଯାକୁ କହି ।
ତୋହର ଗଳା ସେ ଅଟଇ ।।
ତୁଳସୀ ଚଉରା ଯେ ପୁଣ ।
କଣ୍ଠ ତଳକୁ ହେ ଅର୍ଜୁନ ।।
ଗୁହ୍ୟ ଯାଜପୁରକୁ କହି ।
ନାଭିଟି ବ୍ରହ୍ମପୁର ହୋଇ ।।
ହୃଦୟ ଅଟେ ବିଷ୍ଣୁପୁର ।
କଣ୍ଠ କପିଳାସ କନ୍ଦର ।।
ବୈକୁଣ୍ଠପୁର ମୁଖ ହୋଇ ।
ତାଳୁକୁ ସ୍ୱର୍ଗ ଦ୍ୱାର କହି ।।
ତାଳୁକୁ କହି ନେତ୍ର ବାନା ।
କପୋଳ କାଉଂରୀ ପାଟଣା ।।
କପୋଳ ଉପରେଟି ଯେହୁ ।
ଗୋଲାହାଟଟି ବୁଝ ସେହୁ ।।
ନାସିକା ବେନି ପୁଡ଼ା ଯେହି ।
ବେନି ଆଲଟ ବୋଲି କହି ।।
ତିନି ଅକ୍ଷର ତିନି ମୂର୍ତ୍ତି ।
ତୋହର ଚକ୍ଷୁରେ ଅଛନ୍ତି ।।
ଗରୁଡ଼ ସ୍ତମ୍ଭ ମନ ହୋଇ ।
ମଣୋହି କୋଠା ନାଶା କହି ।।
ତାଳୁଟି ପୂର୍ବ ଦିଗ କହି ।
ନାସାଟି ପଶ୍ଚିମ ଅଟଇ ।।
ବାମକର୍ଣ୍ଣ ଉତ୍ତର ଜାଣ ।
ଡାହାଣ କର୍ଣ୍ଣ ଯେ ଦକ୍ଷିଣ ।।
ଚାରି ମଠର ନାମ ଶୁଣ ।
ଚତୁର୍ଥ ମଠ ମୁଖ ପୁଣ ।।
ଏମନ୍ତ ହେଲା ମଠ ଚାରି ।
ତୋ ଆଗେ କହିଲି ବିସ୍ତାରି ।।
ଚାରି ମେଘଙ୍କ ସ୍ଥାନମାନ ।
ତୋ ଆଗେ କହିବି ଅର୍ଜୁନ ।।
ଆବର୍ତ୍ତ ମେଘ ତାକୁ କହି ।
ଚକ୍ଷୁଟି ସମ୍ବର୍ତ୍ତ ବୋଲାଇ ।।
ପୁଷ୍କର ନାସା ତୋ ପ୍ରମାଣ ।
ମୁଖ ତୋ ଅଟେ ଦ୍ରୋଣ ଜାଣ ।।
ଏହାକୁ ଚାରିମେଘ କହି ।
ଶୁଣ ଅର୍ଜୁନ ମନ ଦେଇ ।।
କହିବା ଏବେ ଚାରି ବଟ ।
ଶୁଣ ତୁ ଯୁଧିଷ୍ଠି କନିଷ୍ଠ ।।
ତାଳୁକୁ କହି କଳ୍ପବଟ ।
ବାଞ୍ଛାବଟଟି ଚକ୍ଷୁ ଶ୍ରେଷ୍ଠ ।।
ବେଦ ନାଶକ ବଟ ନାସା ।
ବଂଶୀବଟତ ମୁଖନାସା ।।
ଏମନ୍ତେ ଚାରିବଟ ହେଲା ।
ଶୁଣ ତୁ କୁନ୍ତୀଦେବୀ ବଳା ।।
ସାତ ବାରଙ୍କ ସ୍ଥାନ ନାମ ।
ଫେଡି କହିବା ହୋ ଅର୍ଜୁନ ।।
ଡାହାଣ ନାସା ରବିବାର ।

ବାମ ନାସିକା ସୋମବାର ॥
ମଙ୍ଗଳ ଡାହାଣଟି ଚକ୍ଷୁ ।
ବୁଧବାର ଯେ ବାମ ଚକ୍ଷୁ ॥
ବାମ କର୍ଣ୍ଣଟି ଶୁକ୍ରବାର ।
ଡାହାଣ କର୍ଣ୍ଣ ଶନିବାର ॥
ଗୁରୁବାରଟି ଜିହ୍ୱା କହି ।
ଏମନ୍ତ ସାତବାର ଏହି ॥
ଗଙ୍ଗା ଯମୁନା ନଦୀ ଦୁଇ ।
ତ୍ରିବେଣୀ ଆଦି କେବା କହି ॥
ଯମୁନା ବାମ ନାସା ଦାୟୀ ।
ଦକ୍ଷିଣ ପୁଡ଼ା ଗଙ୍ଗା ହୋଇ ॥
ଏଥି ମଧ୍ୟରେ ସରସ୍ୱତୀ ।
ଏମନ୍ତ ତ୍ରୟନଦୀ ସ୍ଥିତି ॥
ଚାରି ବେଦ ହିଁ କହିଦେବା ।
ତୋ ମନୁ ସଂଶୟ ଫେଡ଼ିବା ॥
ମୁଖ ଯେ ଋକ୍‌ବେଦ ସ୍ଥାନ ।
ନାସାଟି ଶାମବେଦ ଜାଣ ॥
ଚକ୍ଷୁରେ ଯଦୁର୍ବେଦ ବସେ ।
ଅର୍ଥବ ବେଦ କର୍ଣ୍ଣ ଦେଶେ ॥
ଶିଶୁ ବେଦଟି ଶୂନ୍ୟ ଥାଇ ।
ଏମନ୍ତ ପାଞ୍ଚବେଦ କହି ॥
ବ୍ରହ୍ମାଣ୍ଡେ ଯେତେ ବିଧିମତ ।
ପିଣ୍ଡରେ ଅଛନ୍ତି ସମସ୍ତ ॥
ପିଣ୍ଡ ବ୍ରହ୍ମାଣ୍ଡ ଏକମତ ।
ତୋ ଆଗେ କହିଦେଲି ତତ୍ତ୍ୱ ॥
ବ୍ରହ୍ମାଣ୍ଡେ ବୁଡ଼ିଣ ନ ମର ।
ଏ ପିଣ୍ଡ ସର୍ବ ହେତୁ କର ॥
ବିରାଟ ଗୀତାମାନ କହି ।
ଗୁପତ ବ୍ରହ୍ମ ଜ୍ଞାନ ଏହି ॥
କହଇ ବଳରାମ ଦାସ ।
ସୁଜନ ପାଦେ ମୋର ଆଶ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବ୍ୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ପିଣ୍ଡବ୍ରହ୍ମାଣ୍ଡ ଜ୍ଞାନ କଥନେ ନାମ ଚତୁର୍ଥୋଽଧ୍ୟାୟଃ

# ପଞ୍ଚମ ଅଧ୍ୟାୟ

## ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଇଲେ ଗୋସାଇଁ ।
ଅକ୍ଷର ଭେଦ ଦିଅ କହି ॥
ଅକ୍ଷରମାନଙ୍କର ଭେଦ ।
ଫେଡି କହିବ ହୋ ଗୋବିନ୍ଦ ॥
ପ୍ରଥମେ ହେଲା କେତେକ୍ଷର ।
ତତ୍ତ୍ୱ ହୋଇଲା କେତେକ୍ଷର ॥
ତହିଂ ଉଭାରୁ ଯେ ହୋଇଛି ।
ଫେଡି କହିବା ଯା ଶ୍ରୀବତ୍ସି ॥
ଅକ୍ଷର ଭେଦ କହିଦେବ ।
ମୋ ମନୁ ସଂଶୟ ଫେଡିବ ॥

## ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବାକ୍ୟେ ଭଗବାନ ।
ବୋଲନ୍ତି ଶୁଣ ହେ ଅର୍ଜ୍ଜୁନ ॥
ଶିରରୁ କ୍ଷରୁଛି ଜଗତ ।
ଚୌବନ ଅକ୍ଷର ସେ ଯୁକ୍ତ ॥
କହିବା ଚୌବନ ଶବଦ ।
ମନରେ ନ କର ବିଷାଦ ॥
ସିଇ ଶବଦଟି ଶୂନ୍ୟ ହିଂ ।
ଧିଇ ଶବଦ ଧୀରେ କହି ॥
ଋଅ ଶବଦ ନିତ୍ୟୋଅଛି ।
ସ୍ଥୁଅ ବେଦ ହେଉଅଛି ॥
ଅଣ ଶବଦ ନିତ୍ୟେ ଅଛି ।
ଅଆ ଶବଦ ଆସୁଅଛି ॥
ଇ ଶବଦଟି ଘରେ ସାର ।
ଈଟି ଯେ ଅଟଇ ଈଶ୍ୱର ॥
ଉଙ୍ଗ ଶରଦ ଉଙ୍ଗଂ ଅଛି ।
ଉଳଟି ଶବଦ ବହୁଛି ॥
ଋଙ୍ଗ ଶବଦ ଏକ ବ୍ରହ୍ମ ।
ଋ ଶବଦ ମହାଶୂନ୍ୟ ।
ଋ ଶବଦୁଂ ଏ ସମ୍ଭୂତ ।
ଋଉ ଶବଦୁଂ ସର୍ବଜାତ ॥
ଏ ଶବଦଟି କରୁଅଛି ।
ଐ ଶବଦୁଂ ଟି ଖଟିଅଛି ।
ଓ ଶବଦୁଂ ଏ ଓଂକାର ହିଂ ।
ଔ ଶବଦୁଂ କ୍ଷୟ ହୋଇ ॥
ଅଂ ଶବଦ ଯେ ଚଳୁଅଛି ।
ଅଂ ଶବଦୁଂଟି ଘୋଟିଅଛି ॥
କଅ ଶବଦ କରୁଅଛି ।
ଖଅ ଶବଦ ଖାଉଅଛି ॥
ଗଅ ଶବଦୁଂ ଏ ଓଂକାର ।
ଘ ଶବଦୁଂ ଘୋରୁ ପାର ॥
ଙଂଅ ଶବଦୁଂ ଉଇଂ ଅଛି ।
ଚଅ ଶବଦୁଂ ଚଳୁଅଛି ॥
ଛଅରୁ କ୍ଷରୁଛି ଜଗତ ।
ଜଅ ଶବଦୁଂ ଏ ସମ୍ଭୂତ ॥
ଝର ଶବଦୁଂ ଝରୁଅଛି ।
ନଅ ଶବଦୁଁ ଏ ସମ୍ଭୂତ ॥
ଟଅ ଶବଦ ଟଳୁଅଛି ।
ଠଅ ଶବଦ ଠୁଳେ ଅଛି ॥
ଡଅ ଶବଦ ଡାକୁଅଛି ।
ଢ ଶବଦ ଢାଳୁଅଛି ॥
ଣଅ ଶବଦ ମହାଶୂନ୍ୟ ।
ତଅ ଶବଦୁଂ ତତ୍ତ୍ୱଜ୍ଞାନ ॥
ଥଅ ଶବଦୁଂ ସ୍ଥିତି ଅଛି ।
ଦଅ ଶବଦୁଂ ବହୁଅଛି ॥
ଧ ଶବଦ ଧୀରେ କହି ।
ନଅ ଶବଦ ଲୀନ ହୋଇ ॥
ପଅ ଶବଦ ପୂରୁଅଛି ।
ଫ ଶବଦ ଫେରୁଅଛି ॥
ବ ଶବଦ ଶୂନ୍ୟ ଗଢେ ।
ଭଅ ଶବଦ ଶୂନ୍ୟ ନିଢେ ॥
ମଅ ଶବଦ ମରୁଅଛି ।
ଯଅ ଶବଦ ଜାଣୁଅଛି ॥
ର ଶବଦ ରହି ଥିବ ।
ଲ ଶବଦ ଲଗାଇବ ॥
ବଅ ଶବଦ ବମେଛନ୍ତି ।
ଶଅ ଶବଦ ଶୂନ୍ୟ ସ୍ଥିତି ॥

ଷଅ ଶବଦ ଏ ଶରୀର ।
ସ ଶବଦ୍ଦୁଂ ଚରାଚର ॥
ହଅ ଶବଦ ହରୁଅଛି ।
କ୍ଷ ଶବଦ କ୍ଷରୁଅଛି ॥
ଏମନ୍ତଚୌବନ ଶବଦ ।
ଶୁଣ ଅର୍ଜୁନ ତତ୍ତ୍ୱଭେଦ ॥
ଏ ଜ୍ଞାନ ଗୁପତ ଅଟଇ ।
କାହାକୁ ନ କହିବୁ ଫେଇ ॥
ଶୁଣି ଅର୍ଜୁନ ତୋଷମନ ।
ଶ୍ରୀକୃଷ୍ଣ ପାଦେ କଲେ ଧ୍ୟାନ ॥

ଅର୍ଜୁନ ଉବାଚ

ଆନନ୍ଦେ ପାଦତଳେ ପଡି ।
ପୁଣି ପଚାରେ କରଯୋଡି ॥
ଆଦ୍ୟରେକେଉଂ କ୍ଷର ଥିଲା ।
ଏତେ ଅକ୍ଷର କାହୁଁ ହେଲା ॥
ଏକଥା କହ ନାରାୟଣ ।
ନମଇ ତୁମ୍ଭର ଚରଣ ॥

ଶ୍ରୀଭଗବାନ ଉବାଚ

ଅର୍ଜୁନ ବାକ୍ୟେ ଭଗବାନ ।
କହନ୍ତି ଶୁଣ ତତ୍ତ୍ୱ ଜ୍ଞାନ ॥
ଯେ କାଳେ ନ ଥିଲା ମଣ୍ଡଳ ।
ନ ଥିଲା ଚନ୍ଦ୍ର ହିଂ ଭାସ୍କର ॥
ସେ କାଳେ ମହାଶୂନ୍ୟ ରହି ।
ବିରାଟ ରୂପେ ଥିଲି ମୁହିଂ ॥
କେହି ନ ଥିଲେ ହେ ଅର୍ଜୁନ ।
ବ୍ରହ୍ମାଣ୍ଡ ଦିଶେ ମହାଶୂନ୍ୟ ॥
ଶୁଣ ଅର୍ଜୁନ ତତ୍ତ୍ୱ ଜ୍ଞାନ ।
ତୁ ମୋର ଅଟୁ ପଞ୍ଚ ପ୍ରାଣ ॥
ମହାଶୂନ୍ୟରୁ ଶୂନ୍ୟ ହେଲା ।
ସେ ଶୂନ୍ୟ ଅର୍ଦ୍ଧମାତ୍ରା ହେଲା ॥
ଅର୍ଦ୍ଧମାତ୍ରାରୁ ସେ ଓଁକାର ।
ଓଁକାରୁ ତ୍ରିବୀଜ ବାହାର ॥
ଏ ଷଡ଼ାକ୍ଷରରୁ ହସ ସାର ।
ତ୍ରିକ୍ଷରୁ ନାମ ଷଡ଼ାକ୍ଷର ॥
ଏ ଷଡ଼ାକ୍ଷରରୁ ଚାରି ବେଦ ।
ସିଦ୍ଧିରସ୍ତୁ ଯେ ଚାରିଭେଦ ॥
ଧ୍ୱଇରୁ ଷୋଳକ୍ଷର ହେଲା ।
ଅଆଦି ନାମ ବୋଲାଇଲା ॥
ଅଆଦି ଅକ୍ଷରରୁ ଜାତ ।
କଖଗଘ ଯେ ଏ ସମ୍ଭୂତ ॥
ଏବାରକ୍ଷରୁ ଦଶ ହେଲା ।
ଡଢ଼ଣ କଥା ବୋଲାଇଲା ॥
ଏ ଦଶାକ୍ଷର ଷଡ଼ଜାତ ।
ବଭମ ଏ ଷଡ଼ ସମ୍ଭୂତ ॥
ଷଡ଼ରୁ ଚାରିକ୍ଷର ହେଲା ।
ଅଶ୍ରୀଅ ନାମ ବୋଲାଇଲା ॥
ଏମନ୍ତ ଚୌବନ ଅକ୍ଷର ।
ଜାତ ହୋଇଲା ଏହାଙ୍କର ॥
ତୋଠାରେ ମୋର ଦୟାନାହିଂ ।
ତୁ ଜୀବ ମୁଂ ପରମ ହୋଇ ॥
ସାକ୍ଷାତେ ପରଂବ୍ରହ୍ମ ହୋଇ ।
ଏ ମୋର ବିନୁ ଅନ୍ୟ ନାହିଂ ॥
ମୋଠାରେ ତିନିମୂର୍ତ୍ତି ଜାତ ।
ତିନି ମୂର୍ତ୍ତିରୁ ବେଦ ତତ୍ତ୍ୱଂ ॥
ବେଦରୁ ହୋଇଲା ଅକ୍ଷର ।
ଶୁଣ ଅର୍ଜୁନ ଗୀତା ସାର ॥
ଅକ୍ଷର ଛନ୍ଦିଛି ସଂସାର ।
ଦେବଟି ଅକ୍ଷରୁ ବାହାର ॥
ଶୁଣି ଅର୍ଜୁନ ହେଲା ତୋଷ ।
ପାଇଲା ଜ୍ଞାନ ତତ୍ତ୍ୱ ରସ ॥
ଭଣିଲେ ବଳରାମ ଦାସ ।
ମୋରେ ରଖିବେ ପୀତବାସ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ
ପାରମହଂସ୍ୟାଂ ସଂହିତାୟା ଶ୍ରୀହରି ଅର୍ଜୁନ
ସମ୍ବାଦେ ବ୍ରହ୍ମଦେବାଦିକଥନେ ନାମ
ପଞ୍ଚମୋଽଧ୍ୟାୟଃ

## ଷଷ୍ଠ ଅଧ୍ୟାୟ

ଅର୍ଜୁନ ଉବାଚ

ଅର୍ଜୁନ ହୃଦୟ ବିକଳେ ।
ପଡଇ କୃଷ୍ଣ ପାଦତଳେ ॥
ଆହେ ଗୋବିନ୍ଦ ଭଗବାନ ।
ସଂଶୟ କର ବିମୋଚନ ॥
ପଞ୍ଚତତ୍ତ୍ୱର ଭେଦାଭେଦ ।
ମୋତେ କହିଲେ ଶ୍ରୀ ଗୋବିନ୍ଦ ॥
ପଞ୍ଚତତ୍ତ୍ୱ ଯେ କେ ବୋଲାଇ ।
ମୋତେ ତା କହ ଭାବଗ୍ରାହୀ ॥
ଭୋ ସ୍ୱାମୀ କହ ମୋ ଆଗର ।
ନମଇ ଚରଣେ ତୁମ୍ଭର ॥
ଅର୍ଜୁନ ପାଦତଳେ ପଡି ।
ବିନୟ ଭାବେ କରଯୋଡି ॥
ଏ ଦେହେ କହ ହସ୍ତ ମାରି ।
ନମସ୍ତେ ପ୍ରଭୁ ଦଇତାରି ॥
ଏ ସର୍ବ କାହିଂରେ ଅଛନ୍ତି ।
ଶୁଣିଲେ ଫିଟୁ ମନୋଭ୍ରାନ୍ତି ॥
ଯନ୍ତ୍ର କାଟିଣ ବସାଇବ ।
ଏ ପ୍ରତି ଅଙ୍ଗେ ବସାଇବ ॥

ଶ୍ରୀଭଗବାନ ଉବାଚ

ଅର୍ଜୁନ ବାକ୍ୟେ ଚକ୍ରଧର ।
କହନ୍ତି ଯନ୍ତ୍ର ଭେଦ ସାର ॥
ଅର୍ଜୁନ ଶୁଣ ଏହୁ କଥା ।
ମୁନିଏ ନ ଜାଣନ୍ତି ଯଥା ॥
ତୋତେ ମୁଂ କହୁଅଛି ଫେଇ ।
କେବଳ ନ କହିବୁ କାହିଂ ॥
ଅନନ୍ତ ଯନ୍ତ୍ର ଏହା ନାମ ।
ଏ ନିତ୍ୟେ ଫୁକା ବନ୍ଧୁଧାମ ॥
ମୋତେ ପଚାରିଲୁ ଅର୍ଜୁନ ।
ଏ ନିତ୍ୟେ ସର୍ବେ ଛନ୍ତିପୁଣ ॥
ତେଜ ଯା ପଚାରିଲୁ ତୁହି ।
ସକଳ ଦେବା ତୋତେ କହି ॥
ଦେହକୁ ପୃଥ୍ୱୀ ବୋଲି କହି ।
ଆପେ ବୋଲନ୍ତି ଜଳ ସେହି ॥
ଅଗ୍ନିକି ତେଜ ହୋଲି କହି ।
ପବନ ନାସାରେ ବସଇ ॥
ଆକାଶ ତାଳୁର କୁଆର ।
ଶୁଣ ଅର୍ଜୁନ ମହାବୀର ॥

ପୃଥ୍ୱୀର ସ୍ଥାନ ଇନ୍ଦ୍ରି ଦ୍ୱାର ।
ଆବର ସ୍ଥାନ ନୟନର ॥
ତେଜର ସ୍ଥାନ ଚକ୍ଷୁ ଦ୍ୱାର ।
ନାଭିରେ ପବନର ଘର ॥
ଡାହାଣ ନାସା ସୂର୍ଯ୍ୟଜ୍ୟୋତି ।
ବାମ ନାସିକା ଚନ୍ଦ୍ରକାନ୍ତି ॥
ବେନି ଚକ୍ଷୁକୁ ତାର କହି ।
ଧ୍ରୁବ ଚକ୍ରଟି ଯେ ବୋଲାଇ ॥
ସୁଧର୍ମା ସଭାଟି କର୍ଣ୍ଣରେ ।
ତପୀ ସଭାଟି ଲଲାଟରେ ॥
ଶରୀରେ ବାସ୍ତରୀ ଯେ ନାଡ଼ୀ ।
ଅଷ୍ଟାଙ୍ଗ ଶରୀରକୁ ଭିଡ଼ି ॥
ବେନି ଚକ୍ଷୁଙ୍କ ମଧ୍ୟସ୍ଥାନ ।
ତ୍ରିକୂଟ ବୋଲି ତାର ନାମ ॥
ଦନ୍ତ ସନ୍ଧିରେ ସୁଷୁମ୍ନା ।
ଗୁପତ ଧାରା ସେହୁ ସିନା ॥
ମୃଣାଳ ନାସା ବାୟୁ କହି ।
କପାଳେ ବଙ୍କନାଳ ହୋଇ ॥
କାଳଟି ଚକ୍ଷୁରେ ବସାଇ ।
ସ୍ୱପନ କଣ୍ଠରେ ଦେଖଇ ॥
ମନର ଶୂନ୍ୟରେଟି ଘର ।
ଜ୍ଞାନ ବସଇ ଚକ୍ଷୁଦ୍ୱାର ॥
ଧ୍ୟାନଟି ନାସା ଅଗ୍ରେ ଥାଇ ।
ତତ୍ତ୍ୱ ଯେ ତାଳୁରେ ବସଇ ॥
ଚେତନା ଇନ୍ଦ୍ରିରେ ବସଇ ।
ଚୈତନ୍ୟ କଣ୍ଠ ତଳେ ଥାଇ ॥
ତ୍ରିକୂଟ ହେତୁର ଯେ ସ୍ଥାନ ।
ତ୍ରିକୂଟ ପରେ ସତ୍ତ୍ୱ ଜାଣ ॥
ନାଦ ଯେ ନାଭିରେ ବସଇ ।
ବିନ୍ଦୁଟି ନାସା ଅଗ୍ରେ ଥାଇ ॥
ନାମର ଧ୍ୱନି ଚକ୍ଷୁସ୍ଥାନ ।
ଚକ୍ଷୁ ଉପରେ ଜ୍ୟୋତି ଜାଣ ॥
ଜ୍ୟୋତି ସମ୍ଭାଇ ତାଳୁ ଦ୍ୱାରେ ।
ନିଶବଦଟି ସେହିଠାରେ ॥
ସ୍ୱପନ କଣ୍ଠରେ ବସାଇ ।
ବିନ୍ଦୁର ଘର ତାଳୁ କହି ॥
ବ୍ରହ୍ମାଙ୍କ ସଭା ନାଭି ସ୍ଥାନ ।
ଇନ୍ଦ୍ରଙ୍କ ସଭା ଇନ୍ଦ୍ରି ଜାଣ ॥
ବିଷ୍ଣୁଗଣଙ୍କ ସଭା ଚକ୍ଷୁ ।
ଶୁଣ ଅର୍ଜୁନ କେତେ ପୁଚ୍ଛୁ ॥
ଏ ଦଶ ଦ୍ୱାର ଦଶଦିଗ ।
ଶୁଣ ଅର୍ଜୁନ ବ୍ରହ୍ମଭାଗ ॥
ଚଉଦ ବ୍ରହ୍ମାଣ୍ଡ କହିବା ।
ତୋ ମନୁ ସଂଶୟ ଫେଡିବା ॥
ବ୍ରହ୍ମାଣ୍ଡ ହାଣ୍ଡି ତଳୁ କାହିଁ ।
ବେନି ବ୍ରହ୍ମାଣ୍ଡ କର୍ଣ୍ଣ କହି ॥
ବେନି ଚକ୍ଷୁ ବେନି ବ୍ରହ୍ମାଣ୍ଡ ।
ବେନି ନାସା ବେନି ବ୍ରହ୍ମାଣ୍ଡ ॥
ହୃଦୟ ନାଭି ବେନି ହୋଇ ।
ଇନ୍ଦ୍ରି ଯେ ଗୁହ୍ୟ ବୋଲିହୋଇ ॥
ଏମନ୍ତେ ଚଉଦ ବ୍ରହ୍ମାଣ୍ଡ ।
କହିବା ପୃଥ୍ୱୀ ନବଖଣ୍ଡ ॥
ପ୍ରଥମ ଖଣ୍ଡ ପୃଥ୍ୱୀ ଯେହି ।
ତାଳୁକା ପୁର ସେ ଅଟଇ ॥
ଦ୍ୱିତୀୟ ଖଣ୍ଡ କର୍ଣ୍ଣ କହି ।
ତୃତୀୟ ଖଣ୍ଡ ଚକ୍ଷୁ ହୋଇ ॥
ଚତୁର୍ଥ ଖଣ୍ଡ ନାସା ଜାଣ ।
ପଞ୍ଚମ ଖଣ୍ଡ ମୁଖ ପୁଣ ॥
ଷଷ୍ଠ ଖଣ୍ଡ ଯେ ତୋର ମୁଣ୍ଡ ।
ସପ୍ତମ ଖଣ୍ଡ ହୃଦତଟ ॥
ଅଷ୍ଟମ ଖଣ୍ଡ ନାଭି କହେ ।
ନବମ ଖଣ୍ଡ ଇନ୍ଦ୍ରି ହୋଏ ॥
ଏମନ୍ତ ହେଲା ନବଖଣ୍ଡ ।
ତୋତେ କହିଲି ଜ୍ଞାନ ଖଣ୍ଡ ॥
ଶପତ ଦ୍ୱୀପ ଦେବା କହି ।
ତା ମଧ୍ୟେ କ୍ଷୀରସିନ୍ଧୁ ରହି ॥
ତାଳୁକୁ କୁଶ ଦ୍ୱୀପ କହି ।
ତା ମଧ୍ୟେ କ୍ଷୀର ସମୁଦ୍ର ହିଂ ॥
କ୍ଷୀର ସମୁଦ୍ରେ ନିରାକାର ।
କରିଛି ଅନନ୍ତ ବିହାର ॥
ନାଭିକି ଜମ୍ବୁଦ୍ୱୀପ କହି ।
ତା ମଧ୍ୟେ ଶୁଣ ସମୁଦ୍ର ହିଂ ॥
ପଲାଶ ଦ୍ୱୀପ ହୃଦ କହି ।
ତା ମଧ୍ୟେ ଇକ୍ଷୁ ସମୁଦ୍ର ହିଂ ॥
ରମ୍ୟକ ଦ୍ୱୀପ କଣ୍ଠ ଦ୍ୱାର ।
ସୁରା ସମୁଦ୍ର ତା ମଧ୍ୟର ॥
କାଞ୍ଚନ ଦ୍ୱୀପ ମୁଖ କହି ।
ଇକ୍ଷୁ ସମୁଦ୍ର ମଧ୍ୟେ ରହି ॥
ଏମନ୍ତ ସପ୍ତମ ସମୁଦ୍ର ।
ସପତ ଦ୍ୱୀପ ଏହି ମଧ୍ୟ ॥
କାଳଟି ନୟନେ ବସଇ ।
ପ୍ରାଣୀଙ୍କି ଅଜ୍ଞାନେ ନାଶଇ ॥
ଭ୍ରୂଲତା ମଧ୍ୟେ ଅର୍ଦ୍ଧମାତ୍ରା ।
ତାଳୁ ସନ୍ଧିରେ ଜୀବଦାତା ॥
ତ୍ରିକୂଟ ଉପରେ ଓଂକାର ।
ତାଳୁ ସନ୍ଧିରେ ହେତୁକର ॥
ଦେହ ଛାଡିଲେ ପ୍ରାଣ ଯାଇ ।
ଏ ଆତ୍ମା ମହାଶୂନ୍ୟେ ରହି ॥
ତାଳୁକୁ କହି ମହାଶୂନ୍ୟ ।
ଚକ୍ଷୁଟି ଅଟେ ତତ୍ତ୍ୱ ଶୂନ୍ୟ ॥
ନାସାଟି ପ୍ରେମଶୂନ୍ୟ କହି ।
ଧ୍ୟାନ ଶୂନ୍ୟ କର୍ଣ୍ଣ ଅଟଇ ॥
ମୁଖକୁ କହି ଜ୍ଞାନ ଶୂନ୍ୟ ।
ଏମନ୍ତ ଜାଣ ପାଞ୍ଚଶୂନ୍ୟ ॥
ମହାଶୂନ୍ୟରେ କନ୍ୟା ଯେତେ ।
ଶୁଣ ଅର୍ଜୁନ କହୁ ତୋତେ ॥
ବ୍ରାହ୍ମଣ କନ୍ୟା ଦଶସସ୍ର ।
ଏମନ୍ତ ଚଉଷଠି ସସ୍ର ॥
ଦଶସହସ୍ର ଶୂଦ୍ର କନ୍ୟା ।
ଦଶସହସ୍ର ବୈଶ୍ୟ କନ୍ୟା ॥
କ୍ଷତ୍ରିୟ କନ୍ୟା ଦଶସସ୍ର ।
ଏମନ୍ତ ଚଉଷଠି ସସ୍ର ॥
ଉପରି ଦ୍ୱାର ଇନ୍ଦ୍ରି କହି ।
ପ୍ରଳୟ ଦ୍ୱାର ସେ ଅଟଇ ॥
ଉକାର ତହୁଁ ଗାତ୍ର ହୋଇ ।

ଓଂକାର ଦିବସ ଜନ୍ମଇ ।
ପ୍ରାଣ ଯେ ପବନ ଅଟଇ ।
ଅପାର ଗଙ୍ଗ ଭାଗ ମହୀ ।
ଉଦାନ ମାଆ ପଦ୍ମ କହି ।
ସକାମ ସମଜ୍ୱାଳା ହୋଇ ।
କାମରୂପଟି ମନ କହି ।
ମୂତ୍ର ମାର୍ଗରେ ଯୁକ୍ତ ହୋଇ ।
ଧାରଣା କରି ଛାଡ଼ି ଦେଲା ।
ସେ ବିନ୍ଦୁ ମାର୍ଗରେ ପଡ଼ିଲା ।
ଏମନ୍ତେ ହୋଇଲା ଶରୀର ।
ଶୁଣ ଅର୍ଜ୍ଜୁନ ଗୀତାସାର ।
ଭଣିଲେ ବଳରାମ ଦାସ ।
ବିରାଟ ଗୀତା ଜ୍ଞାନ ରସ ।

ଇତିଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ତତ୍ତ୍ୱଜ୍ଞାନ କଥନେ ନାମ ଷଷ୍ଠୋଽଧ୍ୟାୟଃ

## ସପ୍ତମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଇଲେ ଗୋସାଇଁ ।
ସଂଶୟ ଚିତ୍ତେ ପଚାରଇ ।
ସପ୍ତବ୍ରହ୍ମାଣ୍ଡ କେତେ ନିତ୍ୟ ।
ସେଟି କହିବ ହେ ଅଚ୍ୟୁତ ।
ଶୁଣ ଅର୍ଜ୍ଜୁନ ମନ ଦେଇ ।
କହିବା ପଞ୍ଚ ତତ୍ତ୍ୱଫେଇ ।
ସୂର୍ଯ୍ୟମଣ୍ଡଳ ଏହି ଏକ ।
ଚନ୍ଦ୍ର ମଣ୍ଡଳ ଦ୍ୱିତୀୟେକ ।
ଶରୀର ଏକ ନିତ୍ୟ ଜାଣ ।
ଏକ ନିତ୍ୟ ଯେ ମହାଶୂନ୍ୟ ।
ମହାଶୂନ୍ୟରେ ଏକ ନିତ୍ୟ ।
ଏହା ନ ଜାଣେ ଜ୍ଞାନବନ୍ତ ।
ସୂର୍ଯ୍ୟମଣ୍ଡଳ ଯନ୍ତ୍ର ହୋଇ ।
ଏହା ଚିହ୍ନିଲେ ବ୍ରହ୍ମ ପାଇ ।
ଏହି ମଣ୍ଡଳ ଅର୍ଥ ଯେତେ ।
ଶୁଣ କହିବା ବୀର ତୋତେ ।
ଧ୍ରୁବ ମଣ୍ଡଳର ମହିମା ।
ଏହା ନ ଜାଣେ ଶିବବ୍ରହ୍ମା ।
ଯେ କାଳେ ନ ଥିଲା ସଂସାର ।
ନ ଥିଲେ ଦେବାସୁର ନର ।
ସେ କାଳେ ଥିଲେ ସୂର୍ଯ୍ୟ ରହି ।
ବିରଞ୍ଚି ନାରାୟଣ ସେହି ।
ମହା ନାରାୟଣ ବୋଲାଇ ।
ଧ୍ରୁବ ମଣ୍ଡଳେ ଏ ରହଇ ।
ସପ୍ତ ବ୍ରହ୍ମାଣ୍ଡେ ଏ କରତା ।
ଏହାଙ୍କୁ ବୋଲିଟି ବିଧାତା ।
ଗମନ ମାର୍ଗେ ଏ ପ୍ରହରୀ ।
ସକଳ ଜୀବ ସର୍ବ୍ବଧାରୀ ।
ଯେ କାଳେ ଜଳ ପ୍ରଳେହେଲା ।
ଜଳେ ବ୍ରହ୍ମାଣ୍ଡ ନାଶଗଲା ।
ଏକା ରହିଲା ଶୂନ୍ୟବ୍ରହ୍ମ ।
ଆଶ୍ରମ କଲେ ମହାଶୂନ୍ୟ ।
ଏମନ୍ତେ କିଛି ଦିନ ଅନ୍ତେ ।
ସୃଷ୍ଟି ରଚିଲେ ଜନହିତେ ।
ମଧୁକୈଟଭ ଜାତ କରି ।
ପୁଣି ସେ ତାହାଙ୍କୁ ସଂହାରି ।
ତାହାର ମାଂସ ଜଳ ସଙ୍ଗେ ।
ମେଦିନୀ କଲେ ନିଜ ଅଙ୍ଗେ ।
ତେବେ ସେ ମେଦିନୀ ନ ହେଲା ।
ଜଳରେ ମାଂସ ବୁଡ଼ିଗଲା ।
ମନେ ଜାଣିଲେ ଭାବଗ୍ରାହୀ ।
ସୃଷ୍ଟିର ଏମନ୍ତ ନୁହଇଁ ।
ବିରଞ୍ଚି ନାରାୟଣ ହୋଇ ।
ଆପଣେ ପ୍ରକାଶ ଗୋସାଇଁ ।
ଦ୍ୱାଦଶ ସୂର୍ଯ୍ୟ ରୂପ ଧରି ।
ତେଜ ବିକାଶିଲେ ମୁରାରି ।
ଦ୍ୱାଦଶ ସୂର୍ଯ୍ୟତେଜ ଘାତେ ।
ସେ ଜଳ ଶୁଖିଲା ତୁରିତେ ।
ଜଳ ଶୁଖନ୍ତେ ହେଲା ସ୍ଥିର ।
ଏମନ୍ତେ ହୋଇଲା ସଂସାର ।
ଦ୍ୱାଦଶ ସୂର୍ଯ୍ୟ ସଂହାରିଲେ ।
ଦ୍ୱାଦଶ କାଳ ଏକ କଲେ ।
ଆପଣେ ସୂର୍ଯ୍ୟରୂପ ହୋଇ ।
ନିର୍ମଳ ବ୍ରହ୍ମ ପ୍ରକାଶଇ ।
ଚକ୍ର ମଧ୍ୟରେ ବ୍ରହ୍ମ ଥାଇ ।
ଅନାଦି ଶକ୍ତିଅଛି ବହି ।
ଦ୍ୱାଦଶ ସସ୍ତ୍ର ସଖୀ ପୁଣି ।
ସୂର୍ଯ୍ୟ ନିତ୍ୟରେ ସେବା ଘେନି ।
ସୃଷ୍ଟିକୁ ସିଂହାସନ କରି ।
ବିଜୟ ବ୍ରହ୍ମରୂପ ଧରି ।
ଦ୍ୱାଦଶ ସସ୍ତ୍ର ସଖୀ ରସେ ।
ଖଟି ଅଛନ୍ତି ସୂର୍ଯ୍ୟପାଶେ ।
ଏହି ମୂଳକୁ ନିଜ ସ୍ଥାନ ।
ଏଥି ପବିତ୍ର ସର୍ବଜନ ।
ଦ୍ୱାଦଶ କୋଣେ ବାର ସଖୀ ।
ଚକ୍ର ମଧ୍ୟରେ ପଦ୍ମ ଆଖି ।
ତାହାଙ୍କ ପାଶ୍ୱରେ ଜାଣ ।
ଦ୍ୱାଦଶ କିରଣ ହିଁ ପୁଣ ।
ଦ୍ୱାଦଶ କିରଣ ଯେ ପୁଣ ।
ଉଦୟ ଦିଶେ ଭିନ୍ନ ଭିନ୍ନ ।
ରଥର ନାମ ଅଂଶ କେତୁ ।
ଚକ୍ର ଗୋଟିଏ ବିଶେଷତୁ ।
ଏଣୁଟି ଏକଚକ୍ର ହୋଇ ।
ଆକାଶ ମାର୍ଗରେ ଭ୍ରମଇ ।
ପଚିଶ ସସ୍ତ୍ର ଅଖ ଜାଣ ।
ଦଶ ଯେ ସସ୍ତ୍ର ଅଶୀ ପୁଣ ।
ଶତ ସହସ୍ର ଅଶ୍ୱ ତହିଁ ।
ଅରୁଣ ସାରଥି ଯେ ହୋଇ ।
ଉଲଟ ଚକ୍ର ମେରୁଦଣ୍ଡ ।
ଆଦିତ୍ୟ ତେଜରେ ବ୍ରହ୍ମାଣ୍ଡ ॥
ଚକ ଉଲଟେ ବିଜେ କରି ।
ସୂର୍ଯ୍ୟ ଯେ ଶୂନ୍ୟରେ ବିହରି ।
ଚକ ଉହାଡେ ହୁଏ ନିଶି ।
ସେ ସୂର୍ଯ୍ୟ ମେରୁ ପୃଷ୍ଠେ ପଶି ।
ରାତ୍ର ଦିବସ ଏହିମତେ ।

ସଖୀଙ୍କ ସେବା ଅନୁବ୍ରତେ ।
ଛାୟା ମାୟା ଏ ସଖୀ ବେନି ।
ସୂର୍ଯ୍ୟଙ୍କ ପ୍ରିୟବତୀ ପୁଣି ।
ଏହି ନିତ୍ୟକୁ କର ଧ୍ୟାନ ।
ଏହିଟି ସଦା ନାରାୟଣ ।
ଏହି ନିତ୍ୟରେ ଦିଅ ମନ ।
ଲଭିବ ସ୍ୱୟଂ ପୂର୍ଣ୍ଣ ବ୍ରହ୍ମ ।
ଉତ୍ପତ୍ତିକାଳେ ଏ କରତା ।
ପ୍ରଳୟକାଳେକ ରଖନ୍ତା ।
ଧ୍ରୁବ ଚକ୍ରରେ ଦିଅ ଦୃଷ୍ଟି ।
ପଳାଅ ଯମଦଣ୍ଡ କାଟି ॥
ଭଣିଲେ ବଳରାମ ଦାସ ।
ସୂର୍ଯ୍ୟ ମଣ୍ଡଳେ ମୋର ଆଶ ।

ଇତି ଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ୱାଦେ ସୂର୍ଯ୍ୟମଣ୍ଡଳ ଧ୍ରୁବଚକ୍ର ନାମ କଥନେ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଇଲେ ଗୋସାଇଂ ।
କଥାଏ ପଚାରିବି ମୁହିଂ ।
ମୁଂ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ।
କହିବା ମୋତେ ଚନ୍ଦ୍ର ନିତ୍ୟ ।
କେତେ ଯେ ସଖୀଛନ୍ତି ରହି ।
କି ରୂପେ ସେ ନିତ୍ୟ ବସଇ ।
କେତେକ ଚକ୍ର ଘେନି ଉଭା ।
କେତେ କିରଣ ତହିଂ ପ୍ରଭା ।
କେମନ୍ତେ ଚନ୍ଦ୍ରଙ୍କର ବର୍ଣ୍ଣ ।
କି ଅବା ଚନ୍ଦ୍ର କେତେ ନାମ ।
ତା ମଧ୍ୟେ ବ୍ରହ୍ମରୂପ କେହୁ ।
ଏ କଥା କହ ମହାବାହୁ ॥
କେମନ୍ତ ଭାବେ ସେ ଉଦୟେ ।
କାହିଂ କେମନ୍ତେ ରୂପ ହୁଏ ।
ସାରଥି କେ ଅବା ହେଉଛି ।
କେମନ୍ତେ ରଥ ବାହୁଅଛି ।
ରଥକୁ ବାହୁଅଛି କେହୁ ।
ତା ନାମ କହ ମହାବାହୁ ।
କହିଲି ପ୍ରଭୁ ଚକ୍ରପାଣି ।
ତରିବି ତବ ମୁଖୁ ଶୁଣି ।
କେମନ୍ତ ଯନ୍ତ୍ର ସେ ବସଇ ।
କହହେ ପ୍ରଭୁ ଭାବଗ୍ରାହୀ ।
ଚନ୍ଦ୍ର ମଣ୍ଡଳ କଥା କହ ।
ମନରୁ ଫେଡ ମୋ ସନ୍ଦେହ ।

### ଶ୍ରୀଭଗବାନ ଉବାଚ

ଅର୍ଜ୍ଜୁନ ବାକ୍ୟ ଶୁଣି କର୍ଣ୍ଣେ ।
କହନ୍ତି ପ୍ରଭୁ ଜନାର୍ଦ୍ଦନେ ।
ଶୁଣ ଅର୍ଜ୍ଜୁନ ମହାବୀର ।
କହିବା ଚନ୍ଦ୍ରଙ୍କ ବିଚାର ।
ଅତି ଗୁପତ କଥା ଏହି ।
ତୋତେ ମୁଂ କହୁଅଛି ଫେଇ ।
ଆଦି ଚକ୍ରଟିଏ ବୋଲାଇ ।
ଏଥିରେ ସଂଶୟ ଯେ ନାହିଂ ।
ନିରଞ୍ଜନ ଚକ୍ରଟି ସାର ।
ଯନ୍ତ୍ର ଯେ ଜ୍ଞାନୀଙ୍କର ପର ।
ଏବେ ମୁଂ ତୋତେ ଦେବି କହି ।
ଶୁଣ ଅର୍ଜ୍ଜୁନ ମନ ଦେଇ ।
ପ୍ରଥମେ ମହାଶୂନ୍ୟ ଅଛି ।
ତା ତଳେ ଧର୍ମ ମାତ୍ର ଅଛି ।
ତା ତଳେ ଓଂକାର ପ୍ରମାଣ ।
ଓଂକାର ତ୍ରିବୀଜ ଜନମ ।
ତ୍ରିବୀଜ ମହାମନ୍ତ୍ର ହେଲା ।
ସେ ମନ୍ତ୍ର ଶୂନ୍ୟରେ ରହିଲା ।
ଯେ କାଳେ ଅଗ୍ନି ତେଜ ବଳେ ।
ବ୍ରହ୍ମାଣ୍ଡ ଜଳିଗଲା ହେଳେ ।
ଚନ୍ଦ୍ର ଶୀତଳ ତେଜ ହୋଇ ।
ଶୀତଳ ଜଗତ କରଇ ।
କହିବା ଶୁଣ ହେ ଅର୍ଜ୍ଜୁନ ।
ଯନ୍ତ୍ରର ଯେତେକ ବିଧାନ ॥
ପଚିଶ ସସ୍ର ସଖୀ ତହିଂ ।
ସେବା ନିତ୍ୟରେ ଛନ୍ତି ରହି ।
ଷଡ ସହସ୍ର ଅଶ୍ୱ ସାଜି ।
ଯୋଚା ହୋଇଛି ତହିଂ ବାଜି ।
ସାରଥି ହୋଇଛି ପବନ ।
ତେଜେ ଦିଶଇ ଶୁକ୍ଳ ବର୍ଣ୍ଣ ।
ଷୋଳ ସହସ୍ର ସଖୀଛନ୍ତି ।
ସ୍ଫଟିକ ବର୍ଣ୍ଣ ସେ ଦିଶନ୍ତି ।
ନିତ୍ୟକୁ ଶିରେ ଛନ୍ତି ବହି ।
ସେ ସଖୀମାନେ ଛନ୍ତି ରହି ।
ଶଶାଙ୍କ ମଣ୍ଡଳେ ଆସନ ।
ମହାଶୂନ୍ୟକୁ କରି ଧ୍ୟାନ ।
କୋଟିଏ ବ୍ରହ୍ମା ଶିବ ଗଲେ ।
ସଖୀଙ୍କ ଧ୍ୟାନ ହିଂ ନ ଟଳେ ।
ଚନ୍ଦ୍ର ଲୋକଙ୍କ ଏକ ଦିନେ ।
ଗୋଟିଏ ବ୍ରହ୍ମ ବିଷ୍ଣୁ ଜନ୍ମେ ।
ବତିଶ ସସ୍ର କୋଟି ହୋଇ ।
ଚନ୍ଦ୍ର ମଣ୍ଡଳେ ନିତ୍ୟେ ଯହିଂ ।
ରାତ୍ର ଯେ ଷୋଳ ଘଡି ହୋଇ ।
ଷୋଳ ସଖୀଙ୍କ ପ୍ରଭା ସେହି ।
ରାଧିକା ମଣ୍ଡଳ ତା ନାମ ।
ଚନ୍ଦ୍ର ମଣ୍ଡଳ ତା'ର ଧାମ ।
ପ୍ରତିପାଦିତ ଚନ୍ଦ୍ର ନାହିଂ ।
କୃଷ୍ଣ କୋଳରେ ଗୋପ୍ୟ ହୋଇ ।
ଦ୍ୱିତୀୟ ଦିନ ଲଲାଟରେ ।
ତୃତୀୟ ଦିନ ଚକ୍ଷୁ ଦ୍ୱାରେ ।
ଚତୁର୍ଥ ଦିନ ଚନ୍ଦ୍ର ପୁଣ ।
ନାସାରେ କରଇ ଆସନ ।
ପଞ୍ଚମ ଦିନ ଓଷ୍ଠେ ଥାଇ ।
ଷଷ୍ଠରେ କର୍ଣ୍ଣରେ ବସଇ ।
ସପ୍ତମୀ ଦିନ ହୃଦ ମଧ୍ୟେ ।
ଅଷ୍ଟମୀ ଦିନ ନାଭି ପଦ୍ମେ ।
ନବମୀ ଦିନ ଗୁହେ ଥାଇ ।
ଦଶମୀ ଦିନ ଇନ୍ଦ୍ରିରେ ବସଇ ।
ଏକାଦଶୀରେ ଜାନୁ ମଧ୍ୟେ ।
ଦ୍ୱାଦଶୀ ଦିନ ଆଣ୍ଠୁ ଭାଗେ ।
ତ୍ରୟୋଦଶୀରେ ଗଳେ ଥାଇ ।

ଚତୁର୍ଦ୍ଦଶୀରେ ଗଣ୍ଡେ ରହି ।
ଅମାସ୍ୟ ଦିନ ପାଦେ ଥାଇ ।
ବିଷ୍ଣୁ କୋଳରେ ଗୋପ୍ୟହୋଇ ।
ସଖୀଙ୍କ ପଞ୍ଚଦଶ କଳା ।
ସେ ବ୍ରହ୍ମରୂପେ ଏକ କଳା ।
ଏମନ୍ତ ଷୋଳକଳା ହୋଇ ।
ନିତ୍ୟକୁ ଶିରେ ଛନ୍ତି ବହି ।
ଏଣୁ ସ୍ତିରୀଙ୍କ ଷୋଳ କଳା ।
ଚାଳିବ ଜାଣି ଚନ୍ଦ୍ରକଳା ।
ଯେ ଦିନ ଯେଉଂ ତିଥି ହୋଇ ।
ରତି କାଳରେ ତହିଂ ନେଇ ।
ଅଙ୍ଗୁଷ୍ଠି ନଖରେ ଚାଳିବ ।
ଅର୍ଜ୍ଜୁନେ କହିଲେ ମାଧବ ।
ଚନ୍ଦ୍ରଙ୍କ ଷୋଳକଳା ଯେହି ।
ବ୍ରହ୍ମାଣ୍ଡେ ତେଜ ପ୍ରକାଶଇ ।
ଚନ୍ଦ୍ରକଳାକୁ ଜାଣିଥିବ ।
ନ ହେଲେ କାଳ ମାରିନେବ ।
ଚନ୍ଦ୍ରମା ବୋଲି ଯେ ଅଟଇ ।
ଆଦି ଶକ୍ତିଟି ସେ ବୋଲାଇ ।
କାଳ ରୂପଟା ସେ ହୋଇଛି ।
ପ୍ରାଣକୁ ପିଣ୍ଡରେ ଗ୍ରାସିଛି ।
ପିଣ୍ଡରେ ଜଳେ ପ୍ରଳେ ହୋଇ ।
ସେ ଦେବୀ ମୁଖୁ ଜାତ ହୋଇ ।
ତା ମୁଖୁ ଜଳ ହୁଏ ଜାତ ।
ପିଣ୍ଡକୁ କରଇ ସେ ହତ ।
ଦିବସେ ବିଷ୍ଣୁକଳା ହୋଇ ।
ପ୍ରାଣୀ ସଂସାରେ କ୍ରୀଡୁ ଥାଇ ।
ଯହୁଁ ହୁଅଇ ରାତ୍ରକାଳ ।
ସେ ଚନ୍ଦ୍ର ହୁଅଇ ଉଜ୍ଜ୍ୱଳ ।
ତାହାର ବଳେ ଯେହୁ ହୋଇ ।
ପ୍ରାଣୀକୁ ମୋହିତ କରଇ ।
ଏଣୁ ମୁନୀନ୍ଦ୍ର ଯୋଗୀଜନ ।
କାଳ ରାତ୍ରକୁ କରି ଧ୍ୟାନ ।
ଚନ୍ଦ୍ର ମଣ୍ଡଳେ ଧ୍ୟାନ ରଖ ।
ବ୍ରହ୍ମାଣ୍ଡେ ନ ପାଇବ ଦୁଃଖ ।
ଚନ୍ଦ୍ର ମଣ୍ଡଳେ ଲୀଳ ସାର ।
ଶୁଣ ଅର୍ଜ୍ଜୁନ ମହାବୀର ।
ଅର୍ଜ୍ଜୁନ ଶୁଣି କୃତ କୃତ ।
କୃଷ୍ଣ ଚରଣେ ଦେଇ ଚିତ୍ତ ।
ଭଣିଲେ ବଳରାମ ଦାସ ।
ବିରାଟ ଗୀତା ମହାରସ ।

ଇତି ଶ୍ରୀ ବିରାଟଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ୱାଦେ ଚନ୍ଦ୍ର ମଣ୍ଡଳନିତ୍ୟ କଥନେ ଅଷ୍ଟମୋଽଧ୍ୟାୟଃ ।

## ନବମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଲଇ ଗୋସାଇଂ ।
କଥାଏ ପଚାରିବି ମୁହିଂ ।
ବିରାଟ ବୋଲି ସେ କେମନ୍ତ ।
ଏ ସ୍ଥାନ କହ ଗୋପୀନାଥ ।
ବିରାଟ ସ୍ଥାନ ସ୍ଥିତି କହ ।
ମନରୁ ଫେଡ ମୋ ସନ୍ଦେହ ।
ମହାଶୂନ୍ୟରେ ତୋର ସ୍ଥାନ ।
କି ରୂପେ କରିଛୁ ବିଶ୍ରାମ ।
କେତେକ କୋଠ ନିତ୍ୟ ହୋଇ ।
କେମନ୍ତ ରୂପେ ସେ କରଇ ।
ବ୍ରାହ୍ମଣ କନ୍ୟା ଯେତେ ଛନ୍ତି ।
ଗୋପ କନ୍ୟା କେତେ ବସନ୍ତି ।
ମୁନି କନ୍ୟାହିଂ କେତେ ଛନ୍ତି ।
କେତେ ହେଂ ଶୂଦ୍ର କନ୍ୟାଛନ୍ତି ।
ଏମନ୍ତ କେତେ ସଖୀଗଣ ।
କାହାକୁ କରନ୍ତି ସେ ଧ୍ୟାନ ।
କେମନ୍ତ ପ୍ରକାରସେ ନିତ୍ୟ ।
ଫେଡି କହ ହେ ଜଗନ୍ନାଥ ।
ତ୍ରିକୋଣ ଷଷ୍ଠ କୋଣ କେହ୍ନୁ ।
ଅଷ୍ଟ କୋଣ କେ ମହାବାହୁ ।
ମହାଶୂନ୍ୟରେ ସ୍ଥାନମାନ ।
କେମନ୍ତ ପ୍ରକାରେ ଭିଆଣ ।
ଶେଷ ଦେବଟି କାହିଂଛନ୍ତି ।
ସପ୍ତ ଫଣା ରହି ଅଛନ୍ତି ।
ବିରାଟ ଯେ ଭାବ ବୋଲାଇ ।
ସେ ଭାବ କହ ମୋତେ ତୁହି ।
ଓଂ କାର ମକାର ହିଂ ଥିବ ।
ଏ ମହାମନ୍ତ୍ର ଜନ୍ମ ହେବ ।
ଏହି ପ୍ରକାରେ କହ ମୋତେ ।
ସୁଦୟା ଯେବେ ଅଛି ଚିତ୍ତେ ।
ଷଡ ଚକ୍ର ହିଂ ବସିଥିବ ।
ଓଂକାର ଶୂନ୍ୟରେ ମିଶିବ ।
ବିରାଟ କେମନ୍ତ ମୂରତି ।
କି ରୂପେ ମହାଶୂନ୍ୟେ ଥାନ୍ତି ।
ମହାଶୂନ୍ୟର ଭେଦ କେତେ ।
ନିର୍ଣ୍ଣୟ କରି କହ ମୋତେ ।

### ଶ୍ରୀଭଗବାନ ଉବାଚ

କହନ୍ତି ପ୍ରଭୁ ମହାବାହୁ ।
ଶୁଣ ଅର୍ଜ୍ଜୁନ ତୋତେ କହୁ ।
ଶୁଣ ଅର୍ଜ୍ଜୁନ ସାଧୁଚେତା ।
କହିବା ମହାଶୂନ୍ୟ କଥା ।
ସ୍ଫଟିକ ବର୍ଣ୍ଣ ସେ ଦିଶଇ ।
ମହାଶୂନ୍ୟରୁ ରୂପ ଏହି ।
ତାରାଗଣଙ୍କ ରୂପ ଯେହି ।
ସଖୀଗଣଙ୍କ ତେଜ ସେହି ।
ମହାଶୂନ୍ୟରେ ରୂପସ୍ଥାନ ।
ଯେସନେ ବ୍ରଜରାଜ ପୁଣ ।
ବିରାଟ ଯନ୍ତ୍ର ବସାଇବା ।
ତୋ ମନୁ ସଂଶୟ ଫେଡିବା ।
ବିରାଟ ପୁରୁଷଟି ସେହି ।
ନିର୍ଣ୍ଣୟ କରି କହିବଇଂ ।
ଏବେ କହିବା ବୀର ଶୁଣ ।
ତହିଂର ଯେ ବିଧି ବିଧାନ ॥
ମଣ୍ଡଳ ଆକୃତି ଯେ ହୋଇ ।
ମୃତ୍ୟୁକୁ ଶିରେ ଛନ୍ତି ବହି ।
ଷଷ୍ଠ ସହସ୍ର ବ୍ରହ୍ମ ସୁତେ ।
ନୃତ୍ୟକୁ ବାନ୍ଧିଛନ୍ତି ହସ୍ତେ ॥
ଷୋଳ ସହସ୍ର କନ୍ୟାଗଣ ।

ପ୍ରଭୁ ସେବାରେ ଅନୁକ୍ଷଣ ।
ଚାରି ସହସ୍ର ବ୍ରହ୍ମକନ୍ୟା ।
ଚାରି ସହସ୍ର ଗୋପ କନ୍ୟା ।
ସମସ୍ତେ ଷୋଳସସ୍ର ହୋଇ ।
ତାହାଙ୍କୁ ଶିରେ ଛନ୍ତି ବହି ।
ତ୍ରୟ କୋଣରେ ତ୍ରୟ ଦେବା ।
ଏଠାରେ ତ୍ରୟ ସଖୀ ସେବା ।
ତହିଂର ପାଶେ ଅଷ୍ଟକୋଣ ।
ଷଷ୍ଠ ସଖୀହିଂ ଛନ୍ତି ପୁଣ ।
ଷଷ୍ଠ କୋଣର ପାଶେ ପୁଣ ।
ଅଷ୍ଟ କୋଣ ହିଂ ଅଛି ଜାଣ ।
ବ୍ରହ୍ମା ସୁତଙ୍କ ଚଉପାଶ ।
ବାଳକ ପୁଣ ହୋଇ ତୋଷ ।
ନିତ୍ୟ ଉପରେ ମହାଶୂନ୍ୟ ।
ଶୂନ୍ୟ ଉପରେ ବ୍ରହ୍ମ ଜାଣ ।
ବ୍ରହ୍ମ ଉପରେ ଆଦିଶକ୍ତି ।
ତା ତଳେ ଷୋଳ ଶୂନ୍ୟ ଅଛି ।
ପାଦରେ ଶୂନ୍ୟ ଯେ ବସଇ ।
ତା ବର୍ଣ୍ଣ ଶୁକ୍ଳ ଜ୍ୟୋତି ହୋଇ ।
ଗୁହ୍ୟରେ ଶୂନ୍ୟେକ ବସଇ ।
ତା ବର୍ଣ୍ଣ ଅରୁଣ ଦିଶଇ ।
ଇନ୍ଦ୍ରିରେ ଶୂନ୍ୟେକ ବସଇ ।
ତା ବର୍ଣ୍ଣ ଅରୁଣ ଦିଶଇ ॥
କର୍ଣ୍ଣରେ ଶୂନ୍ୟ ଅଛି ଜାଣ ।
କଳା ସଦୃଶ ତାର ବର୍ଣ୍ଣ ।
ନାଭିରେ ଶୂନ୍ୟେକ ବସଇ ।
ପୀତ ବର୍ଣ୍ଣଟି ସେ ଦିଶଇ ॥
ହୃଦରେ ଶୂନ୍ୟେକ ବସଇ ।
ସେ ଶୂନ୍ୟେ ଶ୍ୱେତବର୍ଣ୍ଣ ହୋଇ ।
ତହିଂ ଉପରେ ସୁଷୁମ୍ନା ।
ସେଠାରେ ଶୂନ୍ୟକ ରଚନା ।
ତାହାର ବର୍ଣ୍ଣ ଶୁକ୍ଳ ଜ୍ୟୋତି ।
ନାସାରେ ଦୁଇ ଶୂନ୍ୟ ଛନ୍ତି ।
ଗଉର ରୂପ ସେ ଦିଶଇ ।
ଭ୍ରୂଲତା ସ୍ଥାନରେ ବସଇ ।
ବେନି ବୋଲଇ ବେନି ଶୂନ୍ୟ ।
ତାଳୁକା ମଧ୍ୟେ ଏକ ଶୂନ୍ୟ ।
ଏମନ୍ତ ଷୋଳଶୂନ୍ୟ ଜାଣ ।
କନାଶ୍ରୀ ପୁଷ୍ପ ପ୍ରାୟେ ବର୍ଣ୍ଣ ।
ବେନି କର୍ଣ୍ଣରେ ବେନି ଶୂନ୍ୟ ।
ତାହାଙ୍କ ଜ୍ୟୋତି ଧୂମ୍ର ବର୍ଣ୍ଣ ।
ତ୍ରିକୂଟ ମଧ୍ୟେ ଏକ ଶୂନ୍ୟ ।
ତାଳୁକା ମଧ୍ୟେ ଏକ ଶୂନ୍ୟ ।
ଏମନ୍ତ ଷୋଳ ଶୂନ୍ୟ ହୋଇ ।
ଷୋଳ ଓଂକାର ସେ ଅଟଇ ।
ଏକ ଓଂକାର ମହାଶୂନ୍ୟ ।
ଷୋଳ ଓଂକାର ଏ ପ୍ରମାଣ ।
ଏଥି ଉପରେ ବ୍ରହ୍ମ ଥାଇ ।
ତା ରୂପ ଜ୍ଞାନୀ ସେ ଜାଣଇ ।
ଅଷ୍ଟ କୋଣରେ ସପ୍ତଫେଣୀ ।
ତା ତଳେ ସେବା ଦେବପାଣି ।
ଶେଷ ଦେବଙ୍କ ଷଡଚକ୍ର ।
ଏମନ୍ତେ ବିରାଟର ଯନ୍ତ୍ର ।
ଏମନ୍ତେ ଚଉଦ ବ୍ରହ୍ମାଣ୍ଡ ।
ବିରାଜି ଦୁହେଂ ହୋନ୍ତି ଗୁଣ୍ଡ ।
ତୁଣ୍ଡେ ଯେ ବିରାଟ ବୋଲିବ ।
କଳାପ ତହିଂ ଫିଟିଯିବ ।
ମହାମନ୍ତ୍ର ହିଂ ବସିଅଛି ।
ବିରାଟ ଜଗତ କରୁଛି ।
ପରେ ନ କହିବୁଟି ଫେଇ ।
ମୋ ପାଦପଦ୍ମ ଥାଅ ଛୁଇଂ ।
ବିରାଟ ଚରିତ ବୋଲାଇ ।
ଅନନ୍ତ ମହିମା ଅଟଇ ।
ଅର୍ଜ୍ଜୁନ ଶୁଣି ହେଲା ତୋଷ ।
ମହାଶୂନ୍ୟକୁ କଲା ଆଶ ।
ଭଣଇ ବଳରାମ ଦାସ ।
ବିରାଟ ଗୀତା ମହରସ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ୱାଦେ ବ୍ରହ୍ମବିଦ୍ୟା ଚରିତ କଥନେ ନାମ ନବମୋଽଧ୍ୟାୟଃ ।

## ଦଶମ ଅଧ୍ୟାୟ

### ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ବୋଇଲେ ଗୋସାଇଁ ।
କଥାଏ ପଚାରଇ ମୁହିଂ ।
ମହାଶୂନ୍ୟରେ ସେ ରହିଲା ।
ଶରୀର କେମନ୍ତ ଗଢ଼ିଲା ।
କେମନ୍ତେ ହୋଇଲା ଶରୀର ।
ଫେଡ଼ି କହିବ ମୋ ଆଗର ।
ଶୂନ୍ୟରୁ ଖସିଲା ଯେ ବ୍ରହ୍ମ ।
କାହିଂରେ କଲା ସେ ବିଶ୍ରାମ ।
କି ଖାଇ କାହିଂ କଲା ବାସ ।
କେମନ୍ତ ଗଢ଼ିଲା ପୁରୁଷ ।
ସେ ଜୀବ କେତେ ବର୍ଷ ହେଲା ।
କେତେକ ରୂପ ସେ ଧଇଲା ।
କେତେ ଦିନରେ କଲା କାୟା ।
ସଂକ୍ଷେପି କରି କହ ତାହା ।
ଶିରଟି କେତେ ଦିନେ ହେଲା ।
କେତେ ଦିନରେ କର୍ଣ୍ଣ ହେଲା ।
ଚକ୍ଷୁ ଯେ କେତେ ଦିନେ ହେଲା ।
ନାସାଯେ କେତେ ଦିନ ହେଲା ।
କେତେ ଦିନରେ ମୁଖ ହେଲା ।
କେତେ ଦିନ କଣ୍ଠ ଖଞ୍ଜିଲା ।
ହୃଦୟ କେତେ ଦିନେ ହୋଇ ।
ନାଭି କେତେ ଦିନେ ସର୍ଜ୍ଜଇ ।
କେତେ ଦିନରେ ଇନ୍ଦ୍ରି କଲା ।
ଗୁହ୍ୟଯେ କେତେ ଦିନେ ହେଲା ।
କେତେ ଦିନରେ ହେଲା ପାଦ ।
ଫେଡି କହିବା ହେ ଗୋବିନ୍ଦ ।

### ଶ୍ରୀଭଗବାନ୍ ଉବାଚ

ଶୁଣ ଅର୍ଜ୍ଜୁନ ବୀର ମଣି ।
କହିବା ପିଣ୍ଡ ବର୍ଣ୍ଣ ବାଣୀ ।
ମହାଶୂନ୍ୟରୁ ଶୂନ୍ୟ କଲା ।
ସେ ଶୂନ୍ୟ ପ୍ରଣବ ଜନ୍ମିଲା ।
ଏମନ୍ତ ହୋଇଲା ବେଦାନ୍ତ ।
ଶୁଣି ସର୍ଜ୍ଜିଲା ଏ ଜଗତ ।

ଶୁଣ ଅର୍ଜ୍ଜୁନ ଦେଇ ମନ ।
କହିବା ସୃଷ୍ଟିର ବଚନ ॥
ମହାଶୂନ୍ୟରୁ ବୀର୍ଯ୍ୟ ଖସି ।
ମାତା ପଦ୍ମରେ ଯାଇ ପଶି ॥
ସେଠାରୁ ପଞ୍ଚଭୂତ ହେଲା ।
ମାତାର ପାଦେ ବିଶ୍ରାମିଲା ॥
ପ୍ରଥମେ ଜଳ ପ୍ରାୟ ଦିଶି ।
ସ୍ଫୋଟିକ ପ୍ରାୟ ଯେ ପ୍ରକାଶି ॥
ସ୍ଫୋଟର ଭିତରେ ପବନ ।
ଏମନ୍ତ ଗଢ଼ିଲା ଭୁବନ ॥
ପ୍ରଥମେ ଶଙ୍ଖବର୍ଣ୍ଣ ହୋଇ ।
ମତ୍ସ୍ୟରୂପ ସେ ପ୍ରକାଶଇ ॥
ତହୁଂ ଦିଶଇ ନୀଳବର୍ଣ୍ଣ ।
କଚ୍ଛପ ରୂପରେ ନିର୍ମାଣ ॥
କୃଷ୍ଣବର୍ଣ୍ଣ ଯେ ତାର ଜ୍ୟୋତି ।
ସେଠାରୁ ବରାହ ମୂରତି ॥
ତହୁଂ ଦିଶଇ ଶ୍ୱେତ ବର୍ଣ୍ଣ ।
ସେଠାରେ ରୂପ ପର୍ଶୁରାମ ॥
କନ୍ୟାଶ୍ରୀ ପୁଷ୍ପ ପ୍ରାୟ ଜ୍ୟୋତି ।
ସେଠାରେ ରାମଚନ୍ଦ୍ର ମୂର୍ତ୍ତି ॥
ସେଠାରେ ପୀତବର୍ଣ୍ଣ ହେଲା ।
ବାମନ ମୂରତି ଧଇଲା ॥
ସେ ବୀଜ ପୁଣି ଶୁକ୍ଳ ବର୍ଣ୍ଣ ।
ସେଠାରେ ବଳଭଦ୍ର ନାମ ॥
ସେଠାରେ ସ୍ଫଟିକର ବର୍ଣ୍ଣ ।
ଉଦ୍ଧବ ରୂପଟି ପ୍ରମାଣ ॥
ଲୋହିତ ବର୍ଣ୍ଣ ବୀଜ ହୋଇ ।
କଳ୍କୀ ରୂପ ସେ ବୋଲାଇ ॥
ତହୁଂ ଦିଶିଲା କଳାବର୍ଣ୍ଣ ।
ନୃସିଂହ ମୂର୍ତ୍ତି ଉତପତ ॥
ସେ ବୀଜ ଦଶ ଅବତାର ।
ପୁଣି କହିବା ତା ବିଚାର ॥
ପ୍ରଥମେ ତାକୁ ନିର୍ଭାକଲା ।
ନବମ ଦିନେ ସେ ହୋଇଲା ॥
ମହାଶୂନ୍ୟଟି ତାକୁ କହି ।
ସେଠାରେ ଜ୍ୟୋତିଅଛି ରହି ॥
ଅଠର ଦିନରେ ଲଲାଟ ।
ସତାଇଶ ଦିନେ କବାଟ ॥
ପଞ୍ଚ ଚାଳିଶେ ନାସା ହେଲା ।
ଚକ୍ଷୁ ଛତିଶ ଦିନେ କଲା ॥
ଚୌବନ ଦିନେ ମୁଖ ହୋଇ ।
ତେଷଠି ଦିନେ କର୍ଣ୍ଣ ହୋଇ ॥
ବାସ୍ତରୀ ଦିନେ ହୃଦ ହୋଇ ।
ଏକାଶୀ ଦିନେ ନାଭି ହୋଇ ॥
ନବେ ଦିନେ ଇନ୍ଦ୍ରିକଲା ।
ଶଏ ଦିନରେ ଗୁହ୍ୟ ହେଲା ॥
ବିଶାଶତରେ ହସ୍ତ ହୋଇ ।
ଦୁଇ ଶତ ମେରୁ ସର୍ଜ୍ଜଇ ॥

ଶ୍ରୀ ଭଗବାନ ଉବାଚ

ପୁଣି ଅର୍ଜ୍ଜୁନ ପଚାରଇ ।
ଅକ୍ଷର ଭେଦ କହ ଫେଇ ॥
ଲଲାଟଙ୍କର କେତେ ଦିନ ।
କହ ହେ କମଳ ଲୋଚନ ॥
କଣ୍ଠରେ କେତେ ଯେ ଅକ୍ଷର ।
କହିବା ହେଉ ଚକ୍ରଧର ॥
ହୃଦରେ କେତେକ୍ଷର ରହି ।
କହ ହେ ପ୍ରଭୁ ଭାବଗ୍ରାହୀ ॥
ନାଭି ଅକ୍ଷର କେତେ ରହି ।
କେତେ ଦିନରେ ସେ ବସଇ ॥
ଇନ୍ଦ୍ରିରେ କେତେକ୍ଷର ପୁଣ ।
କହ ହେ ପ୍ରଭୁ ଭଗବାନ ॥
ଗୁହ୍ୟରେ କେତେକ୍ଷର ବସେ ।
କହ କେଶବ ମନ ତୋଷେ ॥
ସଂଶୟ ଫେଡ଼ି ମୋତେ କହ ।
ଯେବେ ଘେନିଲ ମୋ ବିନୟ ॥

ଶ୍ରୀଭଗବାନ ଉବାଚ

କହନ୍ତି କମଳା ରମଣ ।
ଶୁଣ ଅର୍ଜ୍ଜୁନ ତତ୍ତ୍ୱଜ୍ଞାନ ॥
ଲଲାଟ ବେନିକ୍ଷର ରହି ।
ଅଷ୍ଟ ଦିଗରେ ସେ ବସଇ ॥
ଷୋଳ ଅକ୍ଷର କଣ୍ଠେ ପୁଣ ।
ବାସ୍ତରୀ ଦିନେ ହୋ ଅର୍ଜ୍ଜୁନ ॥
ହୃଦରେ ବାରକ୍ଷର ରହି ।
ବିଶାଶଏରେ ନିର୍ଭା ହୋଇ ॥
ନାଭିରେ ଦଶକ୍ଷର ଜାଣ ।
ଶଏ ଷାଠିରେ ସେ ନିର୍ମାଣ ॥
ମାତାର ପଦ୍ମେ କରି ବାସ ।
ଏମନ୍ତ ବିରାଟ ପୁରୁଷ ॥
ମାତା ଶୂନ୍ୟଟି ଯାହା କହି ।
ବିରାଟ ପୁରୁଷଟି ସେହି ॥
ମୁରାଟ ଶରୀରେ ବସଇ ।
ମାରାଟ ମାତା ପଦ୍ମ କହି ॥
ମାତାର ପଦ ଯେତେ ଦିନ ।
ଆଧାର କରେ ରାମ ନାମ ॥
ଶୂନ୍ୟରେ କରିଣ ଆଶ୍ରମ ।
ମାତାଶୂନ୍ୟକୁ କରି ସ୍ଥାନ ॥
ଶୂନ୍ୟ ଶବଦେ ମନ ଦେଇ ।
ମାତାର ଗର୍ଭେ ବିହରଇ ॥
ଯେ ରୂପେ ପଦ୍ମ ମଧ୍ୟେ ଥାଇ ।
ଆପକୁ ଆପେ ଚିହ୍ନୁ ଥାଇ ॥
ଯେ ଦିନେ ହୁଅଇ ବାହାର ।
ସଂସାରେ ପଡ଼ି ଭ୍ରମ ତାର ॥
ପାଶୋରେ ମାତା ଗର୍ଭଜ୍ଞାନ ।
ଅକର୍ମେ କରଇ ଗମନ ॥
ଏଣୁଟି ଅଛେ ନାଶ ଯାଇ ।
ଶୁଣ ଅର୍ଜ୍ଜୁନ ଦେଲି କହି ॥
ଅତି କଠୋର ଏହି ଜ୍ଞାନ ।
ବିଖ୍ୟାତ ନ କରିବୁ ପୁଣ ॥
ଶୁଣି ଅର୍ଜ୍ଜୁନ ହେଲେ ତୋଷ ।
କୃଷ୍ଣ ଚରଣେ କରି ଆଶ ॥
ଭଣିଲେ ବଳରାମ ଦାସ ।
ବିରାଟ ଗୀତା ମହାରସ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ମାତୃଜ୍ଞାନ ବ୍ରହ୍ମଜ୍ଞାନ କଥନେ ନାମ ଦଶମୋଽଧ୍ୟାୟଃ ।

# ଏକାଦଶ ଅଧ୍ୟାୟ

ଅର୍ଜ୍ଜୁନ ଉବାଚ

ଅର୍ଜ୍ଜୁନ ମନରେ ବିଚାରି ।
ଗୋବିନ୍ଦ ପାଦ କରେ ଧରି ॥
ବୋଲଇ ଯୋଡି ବେନିକର ।
ମୋତେ ଉଦ୍ଧାର ଦାମୋଦର ॥
ବିରାଟ ସୁରାଟ ମୁରାଟ ।
ଶୁଣିଲେ ଫିଟିବ ସଂକଟ ॥
ବୃକ୍ଷ ଉତ୍ପତ୍ତି ଯେ କହିଲ ।
ପ୍ରଳୟ କିମ୍ପା ଗୋପ୍ୟ କଲ ॥
ପ୍ରଳୟ ହୋଇଲା କେମନ୍ତ ।
ଏକଥା କହ ଗୋପୀନାଥ ॥
ଚୌବନୀ ମଧେ ଚାରିବେଦ ।
ସ୍ତିରୀ ପୁରୁଷ ତତ୍ତ୍ୱବୋଧ ॥
ଏମନ୍ତ ଅକ୍ଷର ପ୍ରବେଶେ ।
କେ ଅବା ସ୍ତିରୀ ପୁରୁଷ କେ ॥
ଏ ତତ୍ତ୍ୱଭେଦ ଫେଡି କହ ।
ତେବେସେ ଫିଟିବ ସଂଶୟ ॥

ଶ୍ରୀଭଗବାନ ଉବାଚ

କହନ୍ତି ଶରଣ ସୋଦର ।
ଶୁଣ ଅର୍ଜ୍ଜୁନ ତତ୍ତ୍ୱସାର ॥
ମହାଶୂନ୍ୟରୁ ଶୂନ୍ୟ ହେଲା ।
ସେ ଶୂନ୍ୟୁ ପ୍ରଣବ ଜନ୍ମିଲା ॥
ପ୍ରଣବୁ ଅକ୍ଷର ସମ୍ଭୂତ ।
ଜୀବ ପରମ ଦୁଇ ମତ ॥
ଅଆଟି ଜୀବ ହୋଏ ହତ ।
ପଛ ଯେ ପରମ ସମ୍ଭୂତ ॥
ସିଇଟି ପରମ ଅଟଇ ।
ଧ୍ଇଟି ସ୍ତିରୀ ବୋଲି କହି ॥
ରଉ ଅଟଇ ପୁଣ ସ୍ତିରୀ ।
ଲୁଲୁଟି ପୁରୁଷରେ ସରି ॥
ଏ ଟି ଅଟଇ ଜାଣ ସ୍ତିରୀ ।
ଐଟି ଯେ ପୁରୁଷର ସରି ॥
ଓ ଯେ ସ୍ତିରୀ ବୋଲି କହି ।
ଔରେ ପୁରୁଷ ବିହରଇ ॥
କଅଟି ବୋଲାଏ ପୁରୁଷ ।
ଖଅ ଯେ ସ୍ତରୀ ହିଁ ବିଶେଷ ॥
ଗଅଟି ପୁରୁଷ ଯେ କହି ।
ଘଅଟି ସ୍ତିରୀ ଯେ ବୋଲାଇ ॥
ଙଂଅଟି ଓଁକାର ପ୍ରମାଣ ।
ସ୍ତିରୀ ପୁରୁଷ ଦୁଇଜଣ ॥
ଚଅକୁ ସ୍ତିରୀ ବୋଲି କହି ।
ଛଅ ପୁରୁଷ ଯେ ଅଟଇ ॥
ଜଅକୁ ସ୍ତିରୀ ବୋଲି ଜାଣ ।
ଝଅଟି ପୁରୁଷ ପ୍ରମାଣ ॥
ଞଅଟି ଅଟଇ ପୁରୁଷ ।
ଟଅ ଯେ ସ୍ତିରୀଙ୍କ ସଦୃଶ ॥
ଠଅଟି ସ୍ତିରୀ ବୋଲି କହି ।
ଡଅ ଯେ ପୁରୁଷ ବୋଲାଇ ॥
ଢରୁ କ୍ଷଅ ପରିଯନ୍ତେ ।
ସ୍ତିରୀ ପୁରୁଷ ଏ ଜଗତେ ॥
ପୁଣି ଅର୍ଜ୍ଜୁନ ପଚାରଇ ।
ମୁଁ ତୁମ୍ଭ ସେବକ ଅଟଇ ॥
ସାତ ସମୁଦ୍ର ସାତ ଦ୍ୱୀପ ।
ଏହାର କହ ଠାରି ମାପ ॥
ଦ୍ୱୀପରେ ସମୁଦ୍ର ବେଢ଼ିଛି ।
ତହୁଁ କେତେକ ଛଡ଼ା ଅଛି ।
ଶ୍ରୀମୁଖେ ମୋତେ ଆଜ୍ଞା କର ।
ଫିଟିବ ସଂଶୟ ମୋହର ॥

ଶ୍ରୀଭଗବାନ ଉବାଚ

କହନ୍ତି ପ୍ରଭୁ ଭାବଗ୍ରାହୀ ।
ଶୁଣ ଅର୍ଜ୍ଜୁନ ମନ ଦେଇ ॥
ନାଭିକ ଜମ୍ବୁ ଦ୍ୱୀପ କହି ।
ଲକ୍ଷେ ଯୋଜନ ସେ ଅଟଇ ॥
ଲବଣ ସମୁଦ୍ର ବେଢ଼ିଛି ।
ଦ୍ୱୀପ ସହସ୍ର ଲମ୍ବିଅଛି ॥
ହୃଦୟ ପଲାଶ ଯେ ଦ୍ୱୀପ ।
ଚାଳିଶ ସସ୍ର ତାର ମାପ ॥
ବେଢ଼ିଛି ଇକ୍ଷୁଯେ ସମୁଦ୍ର ।
ଅତି ଗହନ ଘୋର ନାଦ ॥
ଅଠର ସହସ୍ର ଯୋଜନ ।
ମୁଖେ କେ କହିବା ଭାଜନ ॥
ରମ୍ୟକ ଦ୍ୱୀପ କଣ୍ଠ କହି ।
ପନ୍ଦର ସସ୍ର ଯୋଜନହିଁ ॥
ସୁରା ସମୁଦ୍ର ବେଢ଼ିଅଛି ।
ଗର୍ଜ୍ଜନେ ପୃଥ୍ୱୀ କମ୍ପୁଅଛି ॥
ଏଗାର ସହସ୍ର ଯୋଜନ ।
ସେଠାକୁ ଲଗାଏ ଯେ ଧ୍ୟାନ ॥
କାଞ୍ଚନ ଦ୍ୱୀପ ମୁଖ କହି ।
ପଚାର୍ଶ ସସ୍ର ଯୋଜନହିଁ ॥
ଦଧି ସମୁଦ୍ର ବେଢ଼ିଅଛି ।
ଲହରୀ ଘାତେ କମ୍ପାଉଛି ॥
ଚକ୍ଷୁକୁ କୁଶଦ୍ୱୀପ କହି ।
ଯୋଜନ ତେର ସହସ୍ର ହିଁ ॥
ତାକୁ କ୍ଷୀର ସମୁଦ୍ର କହି ।
ମଣ୍ଡଳ ଆକାରେ ରହଇ ॥
କୋଟିଏ ସହସ୍ର ଯୋଜନ ।
ସେଠାରେ ଅନନ୍ତ ଶୟନ ॥
ନିରାକାରଙ୍କ ସେ ଭୁବନ ।
ଅତି ଉଜ୍ଜ୍ୱଳ ସେହି ସ୍ଥାନ ॥
ଚକ୍ଷୁ ଲହରରେ ସେ ଦେଖ ।
ମହା ଯୋଗରେ ସେହି ଲେଖ ॥
ଏଇ ଦୁଇ ଲହରୀ ରଖନ୍ତା ।
ସଂସାରେ ନାହିଁ ତାର ଚିନ୍ତା ॥
ଶୁଣି ଅର୍ଜ୍ଜୁନ ହେଲା ତୋଷ ।
ଭଣିଲେ ବଳରାମ ଦାସ ॥

ଇତି ଶ୍ରୀ ବିରାଟଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ବ୍ରହ୍ମଜ୍ଞାନ କଥନେ ନାମ ଏକାଦଶୋଽଧ୍ୟାୟଃ ।

# ଦ୍ୱାଦଶ ଅଧ୍ୟାୟ

ଅର୍ଜ୍ଜୁନ ବେନିକର ଯୋଡି ।
କୃଷ୍ଣ ଚରଣ ତଳେ ପଡି ॥
ବୋଲଇ ଶୋକ ଗଦଗଦେ ।
ପ୍ରଣାମ କରି କୃଷ୍ଣ ପାଦେ ॥
ଭୋ ନାଥ ଆରତ ଭଞ୍ଜନ ।
ଭକ୍ତଜନଙ୍କ ପ୍ରାଣଧନ ॥
କଥାଏ ପଚାରିବି ମୁହିଁ ।
ନିର୍ମାୟା କରି କହ ଫେଇ ॥
ସୃଷ୍ଟି ଉତ୍ପତ୍ତି ଯେ କହିଲ ।
ପ୍ରଳୟ କିମ୍ପା ଗୋପ୍ୟ କଲ ॥

ସୃଷ୍ଟି ପ୍ରଳୟ ମୋତେ କହ ।
ମନରୁ ଫେଡ ମୋ ସନ୍ଦେହ ॥
ମୋହର ସଂଶୟ ଫେଡ଼ିବ ।
ଏମନ୍ତ ବୋଲି କଲା ଭାବ ॥
ପ୍ରତିଦିନରେ କର୍ମ କରେ ।
ଅଜ୍ଞାନ ଭାବରେ ବିହରେ ॥
ଏତେକ ସୁଖ ଯେହୁ ପାଇ ।
ଅଳପେ କିମ୍ବା ନାଶ ଯାଇ ॥
କେତେକ ତପେ ହେଲା ଜାତ ।
କିମ୍ବା ଅଳପେ ହେଲା ହତ ॥
କିବା ଅଳ୍ପ ଆୟୁଷ ତାର ।
ଫେଡି କହିବା ମୋ ଆଗର ॥

ଶ୍ରୀଭଗବାନ ଉବାଚ

ଶୁଣ ଅର୍ଜ୍ଜୁନ ମନଦେଇ ।
ଅତି କଠୋର ଜ୍ଞାନ ଏହି ॥
ବିଖ୍ୟାତ ନ କରିବୁ ନାହିଁ ।
ମୋ ପାଦପଦ୍ମ ଥାଅ ଛୁଇଁ ॥
ମାତା ପଦ୍ମରେ ଯେବେ ଥିଲା ।
ଶୂନ୍ୟ ବ୍ରହ୍ମରେ ଚିତ୍ତ ଦେଲା ॥
ରାମ ଶବଦ କରି ଆଶ ।
ମାତା ପଦ୍ମରେ କରି ବାସ ॥
ସୁକର୍ମ ମାର୍ଗ ହେଲା ଛାଡି ।
ସ୍ତିରୀ ସଙ୍ଗମେ ନିତ୍ୟ ବଢ଼ି ॥
ବୋଲଇ ଅତି ସୁଖୀ ହୋଇ ।
ପୁତ୍ର ଦୁହିତା ଜାତ ପାଇଁ ॥
ମୋହରି ବଂଶକୁ ରଖିବ ।
ଏମନ୍ତ ବୋଲି କରେ ଭାବ ॥
ପ୍ରତିଦିନରେ କର୍ମ କରେ ।
ଅଜ୍ଞାନ ମତିରେ ବିହରେ ॥
ଏମନ୍ତ ହରାଏ ଯେ ଦେହ ।
ଅଜ୍ଞାନ ଭାବେ ହୋଇ ମୋହ ॥
ଅକର୍ମେ ହୋଇଥାଏ ରତ ।
ଏମନ୍ତେ ପ୍ରାଣୀ ଯାଇ ହତ ॥
ସର୍ବଦା ଅକର୍ମେ ଗମନ ।
ଏହା ନ ଜାଣେ ମୂଢ଼ ଜନ ॥
ଅକ୍ଷର ଏ ଜୀବ ଅଟଇ ।
କର୍ମକରଣ କ୍ଷୟ ଯାଇ ॥
ଏମନ୍ତ କାଳ ଆସି ଗ୍ରାସେ ।
ଆତ୍ମାକୁ ଅନୁକ୍ଷଣେ ତ୍ରାସେ ॥
ମନୁଷ୍ୟ ମୁଣ୍ଡେ କାଳ ଥାଇ ।
ଗଅ ଅକ୍ଷର ସେ ମିଶଇ ॥
କ୍ଷଅଟି ସେଠାରୁ ଚଳନ୍ତି ।
ଶୀଅଟି ସିଇଂରେ ମିଶଇ ॥
ବଶ୍ରୀୟ ସେଠାରୁ ଚଳନ୍ତି ।
ଇନ୍ଦ୍ରି କ୍ରୀଡ଼ାରେ ସେ ମିଶନ୍ତି ॥
ବଅଟି ରଥରେ ମିଶଇ ।
ଶ୍ରୀଅଟି ନଅରେ ମିଶଇ ॥
ଯଅଟି ଜୀବର ଆଦେଶ ।
ଇନ୍ଦ୍ରି କୀଡ଼ାରେ ପରବେଶ ॥
ଯଅଟି ରଅରେ ମିଶଇ ।
ମଅ ଯେ ବଅରେ ପଶଇ ॥
ବଭ ଯେ ତହିଁରୁ ଚଳନ୍ତି ।
ନାଭି ଚକ୍ରରେ ସେ ମିଶନ୍ତି ॥
ଭଅଟି ପଅରେ ପଶଇ ।
ବଅଟି ଫଅରେ ମିଶଇ ॥
ଜଳ ପ୍ରଳୟ ଯେବେହୋଇ ।
ପାଦରୁ ଗୁହ୍ୟକୁ ଆସଇ ॥
ଗୁହ୍ୟ ଗଣେଶ ସରସ୍ୱତୀ ।
କାମେଶ୍ୱର ଯେ ତହିଁ ଥାନ୍ତି ॥
ମିଳନ୍ତି ଇନ୍ଦ୍ରି ଚକ୍ରେ ଯାଇ ।
ବାମେଶ୍ୱର ଯେ ତହିଁ ଥାଇ ॥
ପ୍ରଳୟ ନ ପାରନ୍ତି ସହି ।
ତାହୁକ ଆସନେ ଚଳଇ ॥
ସମସ୍ତେ ବ୍ରହ୍ମା ପୁର ଯାନ୍ତି ।
ସେଠାରେ ନିଶ୍ଚିନ୍ତେ ରହନ୍ତି ॥
ବ୍ରହ୍ମପ୍ରଳୟ ଯେତେବେଳେ ।
ମିଳଇ ହୃଦୟ କମଳେ ॥
ହଂସ ଆରୋହୀ ପ୍ରଜାପତି ।
ନମସ୍ତେ ବିଷ୍ଣୁଙ୍କୁ ଭେଟନ୍ତି ॥
ମହାପ୍ରଳୟ ଜଳ ଦେଖି ।
ସେଠାରୁ ଚଳନ୍ତି ଉପେକ୍ଷି ॥
ବିଷ୍ଣୁ ଯେ ଗରୁଡ଼ ଆରୋହୀ ।
ସହସ୍ରେ ଏକ ମୁଖ ହୋଇ ॥
ମିଳନ୍ତି କଣ୍ଠଚକ୍ରେ ଯାଇ ।
ସେଠାରେ କାଳ ନ ପଶଇ ॥
ସେଠାରେ ଈଶ୍ୱରଙ୍କ ପୁର ।
କାଳର ନାହିଁ ଅଧିକାର ॥
ବ୍ରହ୍ମ ହେତୁକ ଏଥି ଥିଲେ ।
ଜୀବ ପରମେ ଲୀନ ହେଲେ ॥
ଜୀବଟି ଶ୍ରୀଅକ୍ଷର ହୋଇ ।
ହଅ ଯେ ଅକ୍ଷରେ ମିଶଇ ॥
ବ୍ରହ୍ମାଣ୍ଡେ ଯେତେକ ଭିଆଣ ।
ଧର୍ମ ଯାତ୍ରାରେ ସର୍ବେ ଲୀନ ॥
ସେ ପୁଣ ବ୍ରହ୍ମ ରୂପ ହୋଇ ।
ସେ ମାତା ପଦ୍ମରେ ପଶଇ ॥
ଏମନ୍ତେ ପୃଥ୍ୱୀ ଆତଯାତ ।
କର୍ମରେ ହୋଇଥାନ୍ତି ପ୍ରସ୍ତ ॥
ଅତି ଗୁପତ ଜ୍ଞାନ ଏହି ।
ତୋତେ କହିଲି ବୀର ଫେଇ ॥
ଏ ବାକ୍ୟ ଧ୍ରୁବ ବୋଲି ଜାଣ ।
କାହାକୁ ନ କହିବୁ ପୁଣ ॥
ମକାର ଚଉବନ ହୋଇ ।
ଚୌବନ କାମରେ ମିଶଇ ॥
ଏତେକ ପିଣ୍ଡ ଆତଯାତ ।
ତୋ ଆଗେ କହିଦେଲି ପାର୍ଥ ॥
ବ୍ରହ୍ମାଣ୍ଡେ ବୁଲି ତୁ ନ ମର ।
ବେଳୁହୁଁ ମୋତେ ଆଶ୍ରା କର ॥
ଜ୍ଞାନରେ ମନ ଯେବେ ଥାଇ ।
କାଳ ଛାରକୁ ଭୟ ନାହିଁ ॥
ଅର୍ଜ୍ଜୁନ ଶୁଣି ହେଲା ତୋଷ ।
କୃଷ୍ଣ ଚରଣେ କରି ଆଶ ॥
ଭଣିଲେ ବଳରାମ ଦାସ ।
ସୁଜନେ ଏହି ରସେ ରସ ॥

ଇତି ଶ୍ରୀ ବିରାଟ ଗୀତାୟାଂ ବୟାସିକ୍ୟାଂ ପାରମହଂସ୍ୟାଂ ସଂହିତାୟାଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ବ୍ରହ୍ମବିଦ୍ୟା ପ୍ରଳୟ କଥନେ ନାମ ଦ୍ୱାଦଶୋଽଧ୍ୟାୟଃ ।

# ଗୁପ୍ତ ଗୀତା

### ଶ୍ରୀ ଗଣେଶାୟ ନମଃ

ନିର୍ବିକାରଂ ନିରାକାରଂ ନିରାନନ୍ଦ ନିରାମୟଂ ।
ନିରାହାରଂ ନିରାଧାରଂ ନିରାଲମ୍ବଂ ନମୋଽନମଃ ।
ସ୍ୱୟଂ ବହ୍ମ ପରଂବ୍ରହ୍ମ ନିତ୍ୟଂ ବ୍ରହ୍ମମୟଂ ଜଗତ୍ ।
ଜ୍ୟୋତିବ୍ରହ୍ମ ମହାବ୍ରହ୍ମ ତସ୍ମୈ ଶ୍ରୀ ବ୍ରହ୍ମଣେ ନମଃ ।
ବ୍ରହ୍ମବିଦ୍ୟା ମହାବିଦ୍ୟା ବିଦ୍ୟା ପରମା ଦୁର୍ଲ୍ଲଭା ।
ଗୋପନୀୟଂ ଗୋପନୀୟଂ ଗୋପନୀୟଂ ପ୍ରଯତ୍ନତଃ ।

## ପ୍ରଥମ ଅଧ୍ୟାୟ

ନମଇ ହରି ନୀଳଗିରି । ଯେ ପ୍ରଭୁ ଶଙ୍ଖ ଚକ୍ରଧାରୀ ॥
ନମଇ ପ୍ରଭୁ ଜଗନ୍ନାଥ । ଚରଣେ ଲୋଟୁ ମୋର ମାଥ ॥
ନମଇଁ ପ୍ରଭୁ ଭଗବାନ । ଭକତ ରକ୍ଷଣ ପାଳନ ॥
ନମଇଁ ପ୍ରଭୁ ଦାମୋଦର । ଦରିଦ୍ର ଜନ ଦୁଃଖ ହର ॥
ନମଇଁ ପ୍ରଭୁ ଚକ୍ରପାଣି । ତୋ ନାମ ହୃଦୟେ ବଖାଣି ॥
ବନ୍ଦଇ ପାଦ ପଦ୍ମଦୁଇ । ସର୍ବଦା ଶରଣ ପଶଇ ॥
ନମସ୍ତେ ପ୍ରଭୁ ଚକ୍ରଧର । ଜ୍ୟୋତି ସ୍ୱରୂପେ ଉଦେ ଯାର ॥
ନମସ୍ତେ ପ୍ରଭୁ ବିଶ୍ୱରୂପ । ସକଳ ସ୍ଥାନେ ତୋ ସ୍ୱରୂପ ॥
ନମସ୍ତେ ପ୍ରଭୁ ଭାବଗ୍ରାହୀ । ଯାହାର ଆଦି ଅନ୍ତ ନାହିଁ ॥
ନମସ୍ତେ କମଳାରମଣ । ଶେଷ ବ୍ରହ୍ମାଣ୍ଡ କାରଣ ॥
ଅନାଦି ପ୍ରଭୁ ହେ ନମସ୍ତେ । ସୁଜନ ଜନ ପାଳୁ ନିତ୍ୟେ ॥
ଭକତ ଜନଙ୍କ କାରଣ । ଦେଲ ଅନ୍ଧକୁ ଚକ୍ଷୁଦାନ ॥
ତୁମ୍ଭର କଟାକ୍ଷ ମାତ୍ରେଣ । ଅଶେଷ ଦୁରିତ ଦହନ ॥
ଏମନ୍ତ କରି ବହୁ ସ୍ତୁତି । ପୁଚ୍ଛଇ ପଣ୍ଡୁର ସନ୍ତତି ॥
ପୁଣି ଚରଣ ତଳେ ପଡି । ଉଭା ହୋଇଲା କରଯୋଡି ॥
ପ୍ରଣାମ କରି ପଚାରଇ । କହହେ ପ୍ରଭୁ ଭାବଗ୍ରାହୀ ॥
ବିସ୍ତାର କରି ଜ୍ଞାନସାର । ଶୁଣିଲେ ହୋଇବି ନିସ୍ତାର ॥
କହ କେବଣ ଜ୍ଞାନପାଇ । ଅଛନ୍ତି ମୁନିମାନେ ଧ୍ୟାୟି ॥
କହ କେବଣ ପ୍ରୟୋଜନ । ଶୁଣିବି ଆହେ ଭଗବାନ ॥

### ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନ ଦେଇ ॥
ପୂର୍ବରେ ଏ ଜ୍ଞାନ ଗୁପତ । ମୁନିମାନଙ୍କର ଏ ମତ ॥
ପୂର୍ବେ ଯେ ନ ଜାଣନ୍ତି କେହି । ଜାଣି ଗୁପତେ ଥାନ୍ତି ରହି ॥
ଏ ଜ୍ଞାନ ଅଟଇ ଗୁପତ । କେ ଜାଣିପାରେ ଗୀତା ତତ୍ତ୍ୱ ॥
ଏ ଜ୍ଞାନ ଅଟେ ଶୁଦ୍ଧ ବାଣୀ । ଗୁରୁ ନ କହିଲେ ନ ଜାଣି ॥
ଅର୍ଜ୍ଜୁନ ବୋଇଲେ ଗୋସାଇଁ । ମୋ ଗୁରୁତୁମ୍ଭେ କହ ଫେଇ ॥
କହନ୍ତି ପ୍ରଭୁ ଚକ୍ରଧର । ଶୁଣ ଅର୍ଜ୍ଜୁନ ବୀରବର ॥
ପରମ ଜ୍ଞାନଟି ଗୁପତ । ତୋତେ କହୁଛି ଜ୍ଞାନ ତତ୍ତ୍ୱ ॥
ଜ୍ଞାନ ଯୋଗକୁ ନିଷ୍ଠା କର । ଅନ୍ତେ ପାଇବୁ ମୋ ଶରୀର ॥
ପୁଣି ଅର୍ଜ୍ଜୁନ ପଚାରଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
ଜ୍ଞାନର ନିଷ୍ଠା ମୋତେ କହ । ଯେମନ୍ତେ ଫିଟିବ ସନ୍ଦେହ ॥
କିଏ ତ୍ରିବେଣୀ କୂଟ ସ୍ଥାନ । ଜୀବର ପରମ ଆସ୍ଥାନ ॥
ଷଟଚକ୍ର ଯେ ଅଣଚାଷ । ତାହାର କେଉଁଠାରେ ବାସ ॥
କେଉଁ ଚକ୍ରେ କେତେ ଅକ୍ଷର । କହ ହେ ପ୍ରଭୁ ଜ୍ଞାନସାର ॥
ଏ ଦେହ ବିଧି ମତେ କହ । ଫିଟୁ ମୋ ମନରୁ ସନ୍ଦେହ ॥
ଅନାହ କାଉରୀମଣ୍ଡଳ । କହ ହେ ପ୍ରଭୁ ଆଦିମୂଳ ॥
ଭ୍ରୂସ୍ଥାନ ତଳେକ କପାଟ । କେଉଁ ଠାବରେ ଗୋଲାହାଟ ॥
କହ ହେ ପ୍ରଭୁ ଭାବଗ୍ରାହୀ । ବଙ୍କନାଳ ଯେ କାହିଁ ରହି ॥
କେଉଁ ଠାବରେ କାହା ସ୍ଥାନ । ଆଜ୍ଞା କରିବା ଭଗବାନ ॥
ଶିଶୁ ମୁନାର କାହିଁ ଘର । କାହିଁ ଅଛନ୍ତି ନିରାକାର ॥
ନିରାକାରର ସ୍ଥାନ କେହୁ । ମୋତେ କହିବା ମହାବାହୁ ॥
ନିର୍ବିକଳ୍ପଯେ ନିରଞ୍ଜନ । କାହାକୁ ବୋଲି ମହାଶୂନ୍ୟ ॥
ମହାଶୂନ୍ୟରେ କେଉଁ ରୂପ । ବ୍ରହ୍ମର କେମନ୍ତେ ସ୍ୱରୂପ ॥
ପୁଣି ପଚାରୁ ଅଛି ଦାସ । ଭୋ ପ୍ରଭୁ କହ ପୀତବାସ ॥
କାହାକୁ ଦଶଦ୍ୱାର କହି । କଳପବଟ କାହିଁ ରହି ॥
କହ ହେ ପ୍ରଭୁ ଚକ୍ରଧର । ଏ ଜ୍ଞାନତତ୍ତ୍ୱ ଟୀକାସାର ॥
ଯନ୍ତ୍ର ମନ୍ତ୍ରାଦି ମାନ ଯେତେ । ସମସ୍ତ କହ ପ୍ରଭୁ ମୋତେ ॥
ଆକାର ଉକାର ମକାର । କହ ଗୁପତ ଟୀକାସାର ॥
ମକାର ଆକାର ଓଁ କାର । ଏ ଦେହେ ଅଛି ଦାମୋଦର ॥
ଅର୍ଜ୍ଜୁନ ପୁଣି ପଚାରଇ । କି ରୂପେ ଯନ୍ତ୍ର ଯେ ବସଇ ॥
କାହାକୁ କହି ଯନ୍ତ୍ର ମନ୍ତ୍ର । ଭୋ ନାଥ କହ ଗୀତାତତ୍ତ୍ୱ ॥
କି ରୂପେ ଯନ୍ତ୍ର ଯେ ବସଇ । କି ରୂପେ ଯନ୍ତ୍ର ଭେଦହୋଇ ॥
ଯନ୍ତ୍ରମନ୍ତ୍ର ହିଁ ଦିଅକହି । ଓଁ କାରକାହିଁରେ ବସଇ ॥
ଓଁ କାରକାଟି ବସାଇବ । ଯେହ୍ନେ ସଂଶୟ ମୋ ତୁଟିବ ॥

ଚାରିବେଦକୁ ଯେ ରୂପିଣ । କହିବ ପ୍ରଭୁ ନାରାୟଣ ॥
ସିଦ୍ଧି ରସ୍ତୁଯେ ବସିଥିବ । ଆକାର ଉକାର ହିଁ ଥିବ ॥
ଷଡଚକ୍ରକୁ ବସାଇବ । କାହିଁ କାହାର ଅଛି ଠାବ ॥
ଅକ୍ଷର ଅର୍ଥ ଫେଇ ଦେବ । କେମନ୍ତେ ଯନ୍ତ୍ର ଯେ ବସିବ ॥
ଯନ୍ତ୍ର ମନ୍ତ୍ରଙ୍କ ରୂପକେହୁ । କହିବା ହେଉ ମହାବାହୁ ॥
ପୁଣି ଅର୍ଜ୍ଜୁନ ପଚାରଇ । ଶୁଣ ହେ ପ୍ରଭୁ ଭାବଗ୍ରାହୀ ॥
ଆଜ୍ଞା ହୋଇବ ଚକ୍ରଧର । ଓଁ କାର କେତେକ ଅକ୍ଷର ॥
ଓଁ କାର କେମନ୍ତେ ପ୍ରକାର । କହହେ ସ୍ୱୟଂ ନିରାକାର ॥
ନିର୍ଗୁଣ ବ୍ରହ୍ମ କାହିଁ ରହି । କେମନ୍ତେ ପ୍ରଳୟ ହୁଅଇ ॥
ଅର୍ଦ୍ଧମାତ୍ରାର ନାମ କିସ । କହିବା ହେଉ ପୀତବାସ ॥
କେତେ ପ୍ରକାରେ ଅର୍ଦ୍ଧମାତ୍ରା । କାହିଁ ଲାଗିଛି ଶୂନ୍ୟ ଚିତା ॥
ନିର୍ଗୁଣ ବ୍ରହ୍ମବିନ୍ଦୁ ନାହିଁ । କେମନ୍ତେ ପ୍ରକାରେ ସେ ତହିଁ ॥
କହ ହେ ପ୍ରଭୁ ଚକ୍ରଧର । ଏ ଗ୍ରନ୍ଥ ରସ ଟୀକାସାର ॥
କହନ୍ତି ପ୍ରଭୁ ଚକ୍ରଧର । ଶୁଣ ଅର୍ଜ୍ଜୁନ ଗୀତାସାର ॥
ଯାହା ପଚାରିଲୁ ଅର୍ଜ୍ଜୁନ । କେହି ନ ଜାଣେ ଏହି ଜ୍ଞାନ ॥
ଭକତ ବୋଲି ତୋତେ ମୁହିଁ । କହୁଛି ନ କହିବୁ କାହିଁ ॥
ଏ ଜ୍ଞାନ ମନ୍ତ୍ର ତନ୍ତ୍ର ବାଣୀ । କହିବି କିଞ୍ଚିତରେ ପୁଣି ॥
ଅତି ସମୁଦ୍ର ଏ ଗହନ । ପଶନ୍ତି ଏକା ଜ୍ଞାନୀଜନ ॥
ଗୁରୁଶିଷ୍ୟଙ୍କ ଭାବ ଏହି । କହୁଛି ଶୁଣ ମନ ଦେଇ ॥
ଗୁରୁ ସେ ଶିଷ୍ୟକୁ କହନ୍ତି । ଅନ୍ୟ କେ ଗମି ନ ପାରନ୍ତି ॥
ଗୁରୁ କହନ୍ତି ଏହା ଫେଇ । ଗୁପତେ ରଖିବୁଟି ତୁହି ॥
କହଇ ବଳରାମ ଦାସ । ଶୁଣ ଅର୍ଜ୍ଜୁନ ଗୀତାସାର ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟଂ ପାରମହଂସ୍ୟାଂ ସଂହିତାୟା ଶ୍ରୀକୃଷ୍ଣ - ଅର୍ଜ୍ଜୁନ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।

## ଦ୍ୱିତୀୟ ଅଧ୍ୟାୟ

ପୁଣି ଅର୍ଜ୍ଜୁନ ପଚାରଇ । କହ ଏ ଜ୍ଞାନ ଅର୍ଥ ଫେଇ ॥
କାହାକୁ ବୋଲନ୍ତି ଯେ ଜ୍ଞାନ । କହ ହେ ପ୍ରଭୁ ଭଗବାନ ॥
କହନ୍ତି ପ୍ରଭୁ ଚକ୍ରଧର । ଶୁଣ ଅର୍ଜ୍ଜୁନ ଟୀକାସାର ॥
ଜ୍ଞାନ ଯେ ପରମ ଅଟଇ । ପୂର୍ବେ ଯେ କେହି ନ ଜାଣଇ ॥
ଏ ଜ୍ଞାନ ହୋଇଛି ଗୁପତ । ଓଁକାର ଭିତରେ ଏ ତତ୍ତ୍ୱ ॥
ପୁଣି ଅର୍ଜ୍ଜୁନ ପଚାରଇ । କହ ଓଁକାର ଭେଦ କାହିଁ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ମୁଖରେ ଓଁକାର ରହଇ ॥
ପୁଣି ଅର୍ଜ୍ଜୁନ ପଚାରଇ । ଶୂନ୍ୟ ସେ କାହାକୁ ଯେ କହି ॥
କହନ୍ତି ପ୍ରଭୁ ଭଗବାନ । ମହାଶୂନ୍ୟ ଯେ ନିରଞ୍ଜନ ॥
ଅର୍ଜ୍ଜୁନ ପୁଣି ପଚାରଇ । ମୋତେ ତ ସନ୍ଦେହ ଲାଗଇ ॥
ଓଁ କାର କାହୁଁ ଜନ୍ମ ହୋଇ । କହ ହେ ପ୍ରଭୁ ଭାବଗ୍ରାହୀ ॥
କହନ୍ତି ପ୍ରଭୁ ଚକ୍ରଧର । ଶୁଣ ଅର୍ଜ୍ଜୁନ ମହାବୀର ॥
ଓଁ କାର କାମବୀଜୁଁ ଜନ୍ମ । ଜାଣନ୍ତି ସୁଜ୍ଞାନୀ ଉତ୍ତମ ॥
ଅନ୍ୟ ଯେ ଗମି ନ ପାରନ୍ତି । ଜ୍ଞାନଯେ ତହିଁରେ ଗମନ୍ତି ॥
ଶୁଣି ଅର୍ଜ୍ଜୁନ ପଚାରଇ । ମନେ ପଡ଼ିଲା ଭାବଗ୍ରାହୀ ॥
କହିବି ଯନ୍ତ୍ରମନ୍ତ୍ର ତଥ୍ୟ । ତେଣୁ ପଚାରିଲି ଭୋ ନାଥ ॥
ଯନ୍ତ୍ର ମନ୍ତ୍ରର ରୂପ କହ । ଫିଟିବ ମୋ ମନୁ ସନ୍ଦେହ ॥
କହନ୍ତି ପ୍ରଭୁ ଗୀତାସାର । ଶୁଣ ଅର୍ଜ୍ଜୁନ ମହାବୀର ॥
ଗୀତାର ସାରତତ୍ତ୍ୱଜ୍ଞାନ । କହିବା ତୋତେ ବୀର ଶୁଣ ॥
ଓଁ କାରମନ୍ତ୍ର କହିଦେବା । ଯନ୍ତ୍ର କାଟିଣ ବୁଝାଇବା ॥
ପ୍ରଥମେ ଓଁକାର ବସାଇ । ରଖିବ ଅର୍ଦ୍ଧ ମାତ୍ରା ତହିଁ ॥
ଅର୍ଦ୍ଧମାତ୍ରାକୁ ବସାଇବ । ବର୍ତ୍ତୁଳ ଚିକ୍‌କଣ କରିବ ॥
ଉପରେ ବିନ୍ଦୁକୁ ରଖାଇ । କହିବା ବୀର ତୋତେ ଫେଇ ॥
ପୁଣି ଅର୍ଜ୍ଜୁନ ପଚାରଇ । ସେ ବିନ୍ଦୁ କାହୁଁ ଜନ୍ମ ହୋଇ ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଅର୍ଜ୍ଜୁନ ଦେଇ ମନ ॥
ନଥାଇ ଯହିଁରେ ପବନ । ନାହାନ୍ତି ପଞ୍ଚଭୂତ ପୁଣ ॥
ଚନ୍ଦ୍ର ସୂର୍ଯ୍ୟଙ୍କ ଗତି ନାହିଁ । ଗୁରୁ କହିଲେ ତାହା ପାଇଁ ॥
ସେଠାରୁ ଶୁଣି ଯେ ନିଗମ । ଜନ୍ମ ହୋଇଲେ ପରଂ ବ୍ରହ୍ମ ॥
ବିନ୍ଦୁରେ ଅର୍ଦ୍ଧ ମାତ୍ରା ରହି । ତହିଁରୁ ଜନ୍ମ ପ୍ରାଣ ବହି ॥
ପ୍ରଣବ ଓଁକାରକୁ କହ । ଏକାକ୍ଷର ଯେ ତହିଁ ରହି ॥
ଅର୍ଜ୍ଜୁନ ପୁଣି ପଚାରଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
ପ୍ରଣବ କାହୁଁ ଜନ୍ମ ହେଲା । ଏହା କହିବା ଚକାଡ଼ୋଳା ॥
କହନ୍ତି ପ୍ରଭୁ ଭଗବାନ । ଶୁଣ ଅର୍ଜ୍ଜୁନ ଦେଇ ମନ ॥
ବେଦମାନଙ୍କୁ ବସାଇବା । ମନରୁ ସଂଶୟ ଫେଡ଼ିବା ॥
ପ୍ରବଣ ଚଉଦିଗ ପୁଣ । ଦେବମାନଙ୍କର ଆସ୍ଥାନ ॥
ସାମ ଯଜୁ ଋକ ଅଥର୍ବ । ଚାରି ବେଦରୁ ଯେ ଜାଣିବ ॥
ଉର୍ମିଧୂର୍ମିହିଁ ଜ୍ୟୋତି ଜ୍ୱାଳା । ଏ ଚାରି ଦ୍ୱାରେ ଚାରି କଳା ॥
ପୁଣି ଅର୍ଜ୍ଜୁନ ପଚାରଇ । କହିବା ଯନ୍ତ୍ର ଅର୍ଥ ଫେଇ ॥
ସିଦ୍ଧଂ ରସ୍ତୁ ଚାରି ଅକ୍ଷର । କେ କାହିଁଛନ୍ତି ଚକ୍ରଧର ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଅର୍ଜ୍ଜୁନ ଦେଇ ମନ ॥
ସିଦ୍ଧରସ୍ତୁ ଯେ ଚାରିକ୍ଷର । ଏ ଚାରିଦ୍ୱାରରେ ଉଜାଗର ॥
ଏ ଚାରି ଏକତ୍ର କରିଣ । ଓଁ କାର ଭିତରୁ ଜନମ ॥
ଓଁକାର ଭିତରୁ ବାହାର । ଜାଣନ୍ତି ତତ୍ତ୍ୱ ଜ୍ଞାନସାର ॥

ପୁଣି ଅର୍ଜ୍ଜୁନ ପଚରାଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
କହିଲେ ଓଁ କାରରୁ ଜନ୍ମ । କେମନ୍ତେ ପୁରୁଷ ଉତ୍ତମ ॥
କହନ୍ତି ପ୍ରଭୁ ଜ୍ଞାନ ତତ୍ତ୍ୱ । କହିବା ଶୁଣ ବୀର ପାର୍ଥ ॥
କୁଣ୍ଡଳୀ ରୂପେ ରୂପ ଜନ୍ମ । ତୋତେ କହିଲୁ ଏ ଉତ୍ତମ ॥
ଅର୍ଦ୍ଧ ମାତ୍ରାର ନାମ କହି । ଅମ୍ବିକା ନାମ ଯେ ବୋଲାଇ ॥
ଏଥିରୁ ଚାରିବେଦ ଜନ୍ମ । ତୋତେ କହିଲି ଏଥି ମର୍ମ ॥
ଏହାକୁ ଏକାକ୍ଷର କହି । ତୋତେ କହିଲି ଅର୍ଥଫେଇ ॥
ଏ ଜନ୍ମଜ୍ଞାନ ଯେ ଗୁପତ । ତୋତେ କହିଲି ଟୀକା ଅର୍ଥ ॥
ମନ୍ତ୍ର ଯନ୍ତ୍ର ହିଁ ତତ୍ତ୍ୱସାର । ଏବେ କହିବି ମହାବୀର ॥
ଷର୍ଟ ଚକ୍ରାଦି ବସାଇବ । ଯେ ମନ୍ତ୍ର ଫେଡ଼ିଣ କହିବ ॥
ଷଟ ଚକ୍ରକୁ ବସାଇବ । ଯହିଁ ଯେ ମନ୍ତ୍ର ଭେଦ ଥିବ ॥
ଏମନ୍ତ ଗୁପତ ବୋଲାଇ । ଗୁରୁଶିଷ୍ୟଙ୍କ ଭାବ ଏହି ॥
ଗୁରୁ ଯେ ଶିଷ୍ୟକୁ କହନ୍ତି । ଅନ୍ୟଟି ଗମି ନ ପାରନ୍ତି ॥
ଏ ଯନ୍ତ୍ର ଗୁପତରେ ତତ୍ତ୍ୱ । କେହି ନ ଜାଣେ ଗୀତା ଅର୍ଥ ॥
କୋଟିକେ ଗୋଟିଏ ଅଛନ୍ତି । ମହିମା ସେହୁ ବଖାଣନ୍ତି ॥
ଏହୁ ଗୁପତ ଗୀତାରସ । କହଇ ବଳରାମ ଦାସ ॥

ଇତିଶ୍ରୀ ବ୍ରହ୍ମବିଦ୍ୟାୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟ

## ତୃତୀୟ ଅଧ୍ୟାୟ

ଅର୍ଜ୍ଜୁନ ବୋଲଇ ଗୋସାଇଁ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
କହିବା ହେଉ ଦାମୋଦର । ଗୁପ୍ତଗୀତାର ଅର୍ଥ ସାର ॥
ଯନ୍ତ୍ର ସ୍ଥାପିଣ ଜନାର୍ଦ୍ଦନ । ଯେ ସବୁ କହିଲ ଆପଣ ॥
ଏ ସର୍ବ ଶରୀର ମୋହର । ଫିଟାଇ କହ ଦାମୋଦର ॥
କହନ୍ତି ପ୍ରଭୁ ଭାବଗ୍ରାହୀ । କିସ ପଚାରୁ ଭକ୍ତ ତୁହି ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ । କହିବ ଯନ୍ତ୍ର ଅର୍ଥ ଫେଇ ॥
ଶରୀରେ ହସ୍ତ ମାରି ଦେବ । ମୋ ମନ ପ୍ରତ୍ୟୟ ହୋଇବ ॥
ଷଟଚକ୍ରହିଁ ବସାଇବ । ପ୍ରତି ପ୍ରତିକେ କହି ଦେବ ॥
କେ କେଉଁ ଚକ୍ରରେ ବସଇ । ବ୍ରହ୍ମ ଯେ ଲିଙ୍ଗ ନାଭି କାହିଁ ॥
ହୃଦୟ କଣ୍ଠ ଲଲାଟରେ । କେତେ ଅକ୍ଷର କେଉଁଠାରେ ॥
କେତେ ପବନ ଏ ଶରୀରେ । ବହୁଛି କେମନ୍ତ ପ୍ରକାରେ ॥
ଶରୀରେ ଭେଦାଇ କହିବ । ତେବେ ସେ ମନେ ପ୍ରତେ ଯିବ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନଦେଇ ॥
ଅତି କଠୋର ଗୁପ୍ତ ଜ୍ଞାନ । କହିବା ତୋତେ ହୋ ଅର୍ଜ୍ଜୁନ ॥
ଶୁଣ ଅର୍ଜ୍ଜୁନ ମନଦେଇ । ଗୁହ୍ୟ ଲିଙ୍ଗ ଯେ ନାଭି କାହିଁ ॥
ହୃଦୟ କଣ୍ଠ ଯେ ଲଲାଟ । ସେ ସର୍ବ ଗୋଲାହାଟେ ଭେଟ ॥
ତାହା କହିବା ତୋତେ ଫେଇ । ତୋ ତାହୁଁ ମୋର ଭକ୍ତ ନାହିଁ ॥
ଗୁହ୍ୟରେ ଚାରି ଯେ ଅକ୍ଷର । ଶୁଣ ଅର୍ଜ୍ଜୁନ ମହାବୀର ॥
ବ ଶ ଷ ସ ଯେ ଚାରି କହି । ଗୁହ୍ୟ କମଳ ଏ ବୋଲାଇ ॥
ଏବେ କହିବା ହୋ ଅର୍ଜ୍ଜୁନ । ଲିଙ୍ଗ କମଳର ବିଧାନ ॥
ଷଟ ଅକ୍ଷର ତହିଁ ରହି । ତୋତେ କହିବା ତାହା ଫେଇ ॥
ବ ଭ ମ ଯ ରାଳ ବୋଲାଇ । ଜ୍ଞାନ କମଳରେ ଅଛଇ ॥
ଏବେ ହେ ଶୁଣ ତୁ ଅର୍ଜ୍ଜୁନ । ନାଭି କମଳର ବିଧାନ ॥
ଦଶ ଅକ୍ଷର ଯେ ବସଇ । ତାହା କହିବା ଶୁଣ ତୁହି ॥
ଡ ଢ଼ ଣ ତ ଥ ଦ ଧ କହି । ନ ପ ଫ ଯେ ଦଶ ବୋଲାଇ ॥
ଏହାକୁ ନାଭିଚକ୍ର କହି । ଗୁପତ ସ୍ଥାନ ଏ ଅଟଇ ॥
ଶୁଣି ଅର୍ଜ୍ଜୁନ ପଚାରଇ । ହୃଦ କମଳ ଚକ୍ର କହି ॥
କେତେ ଅକ୍ଷର ତହିଁ ସାର । କହ ହେ ପ୍ରଭୁ ଚକ୍ରଧର ॥
କହନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଅର୍ଜ୍ଜୁନ ବୀରମଣି ॥
ହୃଦକମଳେ ଯେ ଅକ୍ଷର । ଦ୍ୱାଦଶ ନାମ ଶୁଣ ତାର ॥
କ ଖ ଗ ଘ ଙ ଯେ ପ୍ରମାଣ । ଚ ଛ ଜ ଝ ଞ କୁ ଘେନିଣ ॥
ଟ ଠ ଯେ ବାରଟି ଅଟଇ । ହୃଦକମଳେ ଛନ୍ତି ରହି ॥
ଏମନ୍ତେ ଯେ ହୃଦକମଳ । ତାହାକୁ କହି ବିଷ୍ଣୁ ଆଜ ॥
ପୁଣି ଅର୍ଜ୍ଜୁନ ପଚାରଇ । ଭୋ ନାଥ ଶୁଣ ଭାବଗ୍ରାହୀ ॥
କଣ୍ଠ କମଳର ବିଚାର । କହିବା ହେଉ ଚକ୍ରଧର ॥
କହନ୍ତି ପ୍ରଭୁ ଚକ୍ରଧର । ଶୁଣ ଅର୍ଜ୍ଜୁନ ମହାବୀର ॥
କଣ୍ଠ କମଳର ବିଚାର । ତୋତେ କହିବା ଅର୍ଥ ସାର ॥
ଅଆଇ ଈଉ ଊଋ ଯେ କହି । ଋଌ ଲୃଲୃଟି ବୋଲାଇ ॥
ଏଐ ଓଔ ଅଂ ଅଃ ଏ ପ୍ରମାଣ । ତୋତେ କରିଲୁ ହେ ଅର୍ଜ୍ଜୁନ ॥
ପୁଣି ଅର୍ଜ୍ଜୁନ ପଚାରଇ । ଭୋ ନାଥ ଶୁଣ ଭାବଗ୍ରାହୀ ॥
ମନେ ପଡ଼ିଲା ଏବେ ମୋର । ପୁଚ୍ଛଇ କହ ଚକ୍ରଧର ॥
ଲଲାଟଚକ୍ର କେତେ କ୍ଷର । କହିବା ହେଉ ଦାମୋଦର ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନ ଦେଇ ॥
ଦୁଇ ଅକ୍ଷର ସେ ବସଇ । କହିବା ତୋତେ ଅର୍ଥ ଫେଇ ॥
ହ କ୍ଷ ନାମ ସେ ଯେ ବୋଲାଇ । ତହିଁର ଅର୍ଥ ଦେବା କହି ॥
ହ କ୍ଷ ଦୁଇର ନାମ ଶୁଣ । ତୋତେ କହିବା ହୋ ଅର୍ଜ୍ଜୁନ ॥
ହ କ୍ଷର ପରମ ଅଟଇ । କ୍ଷକୁଟି ଜୀବ ବୋଲି ବହି ॥
ହ କ୍ଷ ଦୁହିଁଙ୍କ ମଧ୍ୟେ ବାଟ । ପଡ଼ିଛି ସେ ସେ କାଳ କବାଟ ॥
ପୁଣି ଅର୍ଜ୍ଜୁନ ପଚାରଇ । ହେ ପ୍ରଭୁ ଶୁଣ ଭାବଗ୍ରାହୀ ॥
କହିବା ହେଉ ଜ୍ଞାନ ବାଟ । ଯେମନ୍ତେ ଫିଟିବ କବାଟ ॥

କପଟ କେଉଁଠାରେ ପୁଣ । ଲାଗି ରହିଛି ଭଗବାନ ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଭକତ ଦେଇ ମନ ॥
ଚକ୍ଷୁ ଭ୍ରୂ ମଧରେ ଆସନ । ନିରତେ ଖେଳଇ ପବନ ॥
ସେଠାରେ ଚିତ୍ତ ଦିଅ ପୁଣି । କପାଟ ଲାଗଇ ଫାଲ୍‌ଗୁନି ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ । ଜ୍ଞାନ ହେତୁ କାହିଁପାଇଁ ॥
ଯେତେ କହିଲେ ଦୟା କରି । ପାଇବି କାହା ସେବା କରି ॥
ଏହା କହିବା ମୋ ଆଗରେ । ପଡ଼ିଛି ଅନ୍ଧ ଯେ କୂପରେ ॥
ଏ ଅନ୍ଧକୂପେ ପଡ଼ି ନାଶ । ହେଉଛି ପ୍ରଭୁ ପୀତବାସ ॥
ଏଥୁ ତିରିବି କି ଉପାୟ । କହ ହେ ପ୍ରଭୁ ଦେବରାୟ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଧନ୍ୟ ଅର୍ଜ୍ଜୁନ ଅଟୁ ତୁହି ॥
ଯାହା ପଚାରିଲୁ ଅର୍ଜ୍ଜୁନ । ଗୁରୁଙ୍କୁ ସେବା କଲେ ପ୍ରାଣ ॥
ଗୁରୁ ସେବାରେ ଜ୍ଞାନ ପାଇ । ଅନ୍ଧକୂପରୁ ଉଦ୍ଧରଇ ॥
ଗୁରୁ ନ ସେବିଲେ ଅର୍ଜ୍ଜୁନ । କାହୁଁ ପାଇବ ସଦ୍‌ଜ୍ଞାନ ॥
ଗୁରୁଟି ବ୍ରହ୍ମା ହରି ହର । ଗୁରୁଟି ସ୍ୱୟଂ ନିରାକାର ॥
ଏ ଘେନି ଗୁରୁ ଭଗବାନ । ସେ ନୁହେଁ ମନୁଷ୍ୟ ସମାନ ॥
ଏମନ୍ତେ ଗୁରୁଙ୍କର ସେବା । ଯେ ପ୍ରାଣୀ କରେ ସେ ଦୁର୍ଲ୍ଲଭା ॥
ଏମନ୍ତ ଗୁରୁସେବା କର । ହେତୁକୁ ଜ୍ଞାନରେ ତୁ ଧର ॥
ହେତୁରେ ପାଲଟିବ ପିଣ୍ଡ । ଦିଶିବ ସପତ ବ୍ରହ୍ମାଣ୍ଡ ॥
ବ୍ରହ୍ମସଂହିତା ଏହୁ ଗୀତା । ସାଧୁମାନଙ୍କୁ ଏହି ହିତା ॥
ଶୁଣି ଅର୍ଜ୍ଜୁନ ପୁଲକିତ । ନୟନ ଅଶ୍ରୁଜଳଲେ ପୁତ ॥
ଗଦଗଦ ଭାବେ ପଚାରଇ । ଚରଣ ଯୁଗଳରେ ଧାୟି ॥
ଧରିଣ କରଇ ରୋଦନ । ମୁହିଁ ଅଧମ ଦୀନ ଜନ ॥
ମାୟା ନ କରି ଚକ୍ରଧର । କହିବ ଟୀକା ଅର୍ଥ ସାର ॥
ଏ ଦେହ ଜୀବର ଆସନ । ପରମ କେମନ୍ତ ଭାବେଣ ॥
ଯାଙ୍କ ମୂରତି ସେ କେମନ୍ତ । କହିବା ହେଉ ପଦ୍ମନେତ୍ର ॥
ସ୍ଥାବର ଜଙ୍ଗମ ହିଁ ଥିବ । କୀଟ ପତଙ୍ଗ ଫେଇ ଦେବ ॥
ସକଳ ଶରୀରେ ତ ପୁଣ । ଭେଦାଇ କହ ନାରାୟଣ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । କହିବା ଏ ଦେହ ଦେଖାଇ ॥
ଦେହରେ ହସ୍ତ ମାରି ଦେବା । ପ୍ରତି ପ୍ରତିକେ ଚିହ୍ନାଇବା ॥
ଏ ଜ୍ଞାନ ଅଟଇ ଗୁପତ । କାହିଁ ନ କରିବୁ ତୁ ଖ୍ୟାତ ॥
ତୁ ଯେଣୁ ବିଶ୍ୱାସ ମୋହର । ତୋତେ କହିବା ତତ୍ତ୍ୱ ସାର ॥
ହେତୁ ନ କରିବାକୁ ପୁଣ । ଯାହା ପଚାରିଲୁ ଅର୍ଜ୍ଜୁନ ॥
କହଇ ବଳରାମ ଦାସ । ଗୁପତ ଗୀତା ମହାରସ ॥

ଇତି ଶ୍ରୀ ବ୍ରହ୍ମବିଦ୍ୟାୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ

# ଚତୁର୍ଥ ଅଧ୍ୟାୟଃ

ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ॥
ଲଲାଟ ଚକ୍ରୁଠାରୁ କହ । ତେବେ ଫିଟିବ ମୋ ସନ୍ଦେହ ॥
ଲଲାଟ ଚକ୍ରପଦରେ ଯାଇ । ତହିଁକି ଅଛି ଭାବଗ୍ରାହୀ ॥
ହ କ୍ଷ ଯେ ଦୁହିଁଙ୍କ ଉପରେ । କହ କି ଅର୍ଥ ଏ ଗୀତରେ ॥
ସ୍ୱର୍ଗ ଯେ ମର୍ତ୍ତ୍ୟାଦି ପାତାଳ । କେଉଁ ଠାବରେ ଏକାମେଳ ॥
କହିବା ହେଉ ଦାମୋଦର । ସଂଶୟ ଫିଟିବ ମୋହର ॥
ଗୋଲାହାଟ ଯେ କାହିଁ କହି । କାହାକୁ ଅନାହତ କହି ॥
ଜୀବ ପରମର ଯେ ଭେଟ । ଶୁଣିଲେ ଫିଟିବ କବାଟ ॥
କହନ୍ତି ପ୍ରଭୁ ଜନାର୍ଦ୍ଦନ । ଶୁଣ ଅର୍ଜ୍ଜୁନ ଦେଇ ମନ ॥
ଲଲାଟ ଚକ୍ରୁଠାରୁ ତୁହି । ଜାଣ ହେ ଆକାଶ ବୋଲାଇ ॥
ହୃଦୟ ମର୍ତ୍ତ୍ୟଯେ ବୋଲାଇ । ପାତାଳ ପାଦତଳକହି ॥
ଶୁଣ ଅର୍ଜ୍ଜୁନ ହେତୁ ଦେଇ । ଲଲାଟ ଚକ୍ରପରେ ଯାଇ ॥
ତାହାର ପରେ ଗୋଲାହାଟ । ସେ ହାଟେ ଅର୍ଜ୍ଜୁନ ତୁ ଭେଟ ॥
ଅନାହତ ଯେ ତହିଁ ରହି । ଗୁରୁଜ୍ଞାନହିଁ ସେ ଅଟଇ ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ॥
ଏ ଦେହ ଓଁକାରେ ବସାଇ । କହ ହେ ପ୍ରଭୁ ଭାବଗ୍ରାହୀ ॥
କହନ୍ତି ପ୍ରଭୁଭଗବାନ । ଓଁ କାର ନାସିକା ଅର୍ଜ୍ଜୁନ ॥
ନିର୍ଗୁଣ କାହିଁରେ ବସଇ । ତୋତେ କହୁଛି ଅର୍ଥଫେଇ ॥
ଓଁ କାର ତ୍ରିଗୁଣ ପ୍ରମାଣ । ଯେ ସତ୍ତ୍ୱ ରଜତମ ଜାଣ ॥
ଅ ଆର ମଧରେ ଯେ ଯାଇଁ । ଅର୍ଦ୍ଧ ମାତ୍ରା ଯେ ତହିଁ ॥
ରହି ତହିଁ ଭିତରେ ବିନ୍ଦୁମୟେ । ସେ ବିନ୍ଦୁ ଶ୍ୱାସରୁ ଉଦୟେ ॥
ଅର୍ଜ୍ଜୁନ ପୁଣି ପଚାରଇ । ମନେ ପଡ଼ିଲା ଭାବଗ୍ରାହୀ ॥
ସିଦ୍ଧିରସ୍ତୁ ଯେ ଚାରିକ୍ଷର । ଏବେ ହେଁ କାହିଁ ଦାମୋଦର ॥
କହନ୍ତି ପ୍ରଭୁ ଜନାର୍ଦ୍ଦନ । ହେତୁ କରିବା ତାହାଘେନ ॥
ନାସିକା ସି ଅକ୍ଷର ତୋର । ନୟନେ ବସେ ଦ୍ଧି ଅକ୍ଷର ॥
ମୁଖରେ ର ଅକ୍ଷର ଜାଣ । ବେହୋଶ ହୋଇଛି ନିର୍ଗୁଣ ॥
ସ୍ତୁକ୍ଷର ଶ୍ରବଣେ ବସଇ । ଏ ଚାରି ଏମନ୍ତ ବୋଲାଇ ॥
ଏ ଚାରି ଦ୍ୱାରେ ଚାରିବାଟ । ଚଳୁଛି ମଉଗଜ ଥାଟ ॥
ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ କହୁଅଛି ମୁହିଁ ॥
କହିଲି ସିଦ୍ଧ ରସ୍ତୁ ଜନ୍ମ । କେମନ୍ତେ ଜାଣିବି ମରମ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନ ଦେଇ ॥
ସିଦ୍ଧି ରସ୍ତୁର ଜନ୍ମ ଶୁଣ । କହିବା ତୋତେ ଯେ ଫେଡ଼ିଣ ॥

ନାଦ ବିନ୍ଦୁରୁ ସେ ଯେ ହେଲା । ମହାଶୂନ୍ୟରେ ସେ ରହିଲା ॥
ତୁ କାରୁ ବି ଜନମ ହୋଇ । ଶୁଣ ଅର୍ଜୁନ ମନ ଦେଇ ॥
ର ହେଲା କୁଣ୍ଡଳିରୁ ଜନ୍ମ । କହିଲୁ ଏ ଜନ୍ମ ଉତ୍ତମ ॥
ଶୂନ୍ୟରୁ ସୁ ଯାଇ ରହିଲା । କେହି ଯେ ଚିହ୍ନିତ ନୋହିଲା ॥
ତୋତେ କହିଲି ହେ ଅର୍ଜୁନ । କାହାକୁ ନ କହ ଫେଇଣ ॥
ଗୁପତ ଟୀକା ଅର୍ଥ ଏହି । ତୋତେ କହିଲି ଏହା ଫେଇ ॥
ପୁଣି ଅର୍ଜୁନ ପଚାରଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
ନନ୍ଦ ସ୍ୱରୂପ ଯେ ଚୈତନ୍ୟ । ପ୍ରକାଶ ଚାରିମଠ ପୁଣ ॥
ଏ ଚାରି ମଠରୁ ଆସନ । ଏ ଦେହେଁ କାହିଁ ଭଗବାନ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଅର୍ଜୁନ ଶୁଣ ଜ୍ଞାନ ଏହି ॥
ନନ୍ଦ ଯେ ମୁଖ ତୋ ପ୍ରମାଣ । ତୋତେ କହୁଛି ମୁଁ ଫେଡ଼ିଣ ॥
ଏହାକୁ ନନ୍ଦ ମଠ କହି । ଶୁଣ ଅର୍ଜୁନ ତତ୍ତ୍ୱ ଏହି । ।
ସ୍ୱରୂପ ମଠ ନାସାକହି । ତୋତେ କହୁଛି ମୁଁ ଯେ ଫେଇ ॥
ଚୈତନ୍ୟ ମଠ ଯେ ଶ୍ରବଣ । ପ୍ରକାଶ ମଠ ତୋ ନୟନ ॥
ଏହାକୁ ଚାରି ମଠ କହି । ବେଦର ତତ୍ତ୍ୱ ଏ ଅଟଇ ॥
ଶୁଣି ଅର୍ଜୁନ ଯେ ଆନନ୍ଦ । ମୁଖ ତା ପୂର୍ଣ୍ଣମୀର ଚାନ୍ଦ ॥
କୃଷ୍ଣ ଚରଣେ ମନ ଦେଇ । ପୁଣି ଅର୍ଜୁନ ପଚାରଇ ॥
ଭୋ ପ୍ରଭୁ ଶିଶୁ ଭଗବାନ । ଶିଶୁ ବେଦର କାହିଁ ସ୍ଥାନ ॥
ଆସନ ମୋତେ କହି ଦେବ । ମୋ ମନ ସଂଶୟ ଫେଡ଼ିବ ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଅର୍ଜୁନ ଦେଇମନ ॥
କହିବା ତୋତେ ପାର୍ଥ ଫେଇ । ପରମ ଶୁଣି ବେଦ କହି ॥
ଅର୍ଜୁନ ପୁଣି ପଚାରଇ । ସଂଶୟ ମୋତେ ଯେ ଲାଗଇ ॥
ଏ ଶିଶୁ ବେଦର ଆସନ । କହିଲ ନାହିଁ ନାରାୟଣ ॥
କହନ୍ତି ପ୍ରଭୁ ଭଗବାନ । ଶୁଣହେ ପାର୍ଥ ବ୍ରହ୍ମଜ୍ଞାନ ॥
ନାସିକା ମଧ୍ୟରେ ଆନନ । ଶିଶୁବେଦର ନିଜ ସ୍ଥାନ ॥
କହିଲେ ପ୍ରଭୁ ପୀତବାସ । ଅର୍ଜୁନ ହୋଇଲେ ସନ୍ତୋଷ ॥
ତହିଁ ପବନ ପରମ ହିଁ । ଏ ବେନି ନିର୍ଗୁଣ ଅଟଇ ॥
ଅର୍ଜୁନ ପୁଣି ପଚାରଇ । କହ ହେ ପ୍ରଭୁ ଭାବଗ୍ରାହୀ ॥
ନାହିଁ ଯାହାର ରୂପବର୍ଣ୍ଣ । ଅଦୃଶ୍ୟ ଅବର୍ଣ୍ଣ ଅଚିହ୍ନ ॥
ଯାହାକୁ ବ୍ରହ୍ମ ବୋଲି କହି । ଅର୍ଜୁନ ପୂର୍ଣ୍ଣ ବ୍ରହ୍ମ ସେହି ॥
ପୁଣି ଅର୍ଜୁନ ପଚାରଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
ପୂର୍ଣ୍ଣ ବ୍ରହ୍ମର କାହିଁ ସ୍ଥିତି । ଆଜ୍ଞା କରିବ ଯଦୁପତି ॥
ଶ୍ରୀହରି କହୁଛନ୍ତି ଶୁଣ । କହିବା ତୋତେ ବ୍ରହ୍ମଜ୍ଞାନ ॥
ଭୋ ପ୍ରଭୁ କହ ଚକାଡ଼ୋଳା । ଅକ୍ଷର ଭେଦ ଯନ୍ତ୍ରଲୀଳା ॥
କହନ୍ତି ପ୍ରଭୁ ଆଦିମୂଳ । ଶୁଣ ଅର୍ଜୁନ ମହାବୀର ॥

ଆକାର ଉକାର ମକାର । ସକାର କାହିଁ ମାତ୍ରା ସାର ॥
ସକାର ଅର୍ଥ ଫେଇ ଦେବ । ଅକ୍ଷର କାହିଁ ସେ ବହିବ ॥
ଉକାର କାହିଁରେ ଆସନ । ମକାର କହିବ ଫେଡ଼ିଣ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜୁନ ତତ୍ତ୍ୱ ଏହି ॥
ଆକର ଲଲାଟେ ଅଛଇ । ସକାର ନୟନେ ବସଇ ॥
ଓଁକାର ମୁଖ ମଧ୍ୟେ ଜାଣ । ସକାର ନାସିକା ପବନ ॥
ପୁଣି ଅର୍ଜୁନ ପଚାରଇ । ଭୋ ନାଥ ଶୁଣ ଭାବଗ୍ରାହୀ ॥
ପବନ ନାମ କି ବୋଲାଇ । କହିବ ପ୍ରଭୁ ଅର୍ଥ ଫେଇ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜୁନ ମନ ଦେଇ ॥
ତାଲୁକା ସନ୍ଧିରେ ସେ ଯାଇ । ପଦ୍ମ କେଶର ଯେ ଅଛଇ ॥
ସେ ପଦ୍ମକେଶର ଭିତରେ । ପରମ ଆତ୍ମା ଯେ ବିହରେ ॥
କେଶର ମଧ୍ୟେ କର୍ଣ୍ଣିକାର । ତହୁଁ ମଧ୍ୟରେ ଶୃଙ୍ଗ ସାର ॥
କର୍ଣ୍ଣିକା ଶୃଙ୍ଗର ମଧ୍ୟରେ । ବ୍ରହ୍ମ ଅକ୍ଷର ବାସକରେ ॥
ଅର୍ଜୁନ ବୋଲଇ ଗୋସାଇଁ । ବ୍ରହ୍ମର କି ବର୍ଣ୍ଣ ଅଟଇ ॥
ଶ୍ରୀଗୁରୁ କହୁଛନ୍ତି ଶୁଣ । ସହସ୍ର ସୂର୍ଯ୍ୟର କିରଣ ॥
ଏମନ୍ତ ବର୍ଣ୍ଣ ଯେ ଅଟଇ । ନୀଳ ଉତ୍ପଳ ପ୍ରାୟ ସେହି ॥
ପୁଣି ଅର୍ଜୁନ କହେ ବାଣୀ । ଶୁଣିବା ହେଉ ଚକ୍ରପାଣି ॥
ସେ ପଦ୍ମକେଶର ମଧ୍ୟରେ । ବିଂଶ ଅକ୍ଷର ତହିଁ ପରେ ॥
କହନ୍ତି କମଳ ଲୋଚନ । ଶୁଣ ଅର୍ଜୁନ ଦେଇ ମନ ॥
ତହିଁ ମଧ୍ୟରେ ସେ କପାଟ । ଅର୍ଜୁନ ବୈକୁଣ୍ଠକୁ ବାଟ ॥
ଯେବେ ସେ ବାଟ ତ ଫିଟିବ । ପରମ ଆତ୍ମା ସଙ୍ଗେ ଯିବ ॥
ପରମ ଆତ୍ମାକୁ ଘେନିଣ । ଶୂନ୍ୟକୁ ଯିବ ହେ ଅର୍ଜୁନ ॥
ତୋତେ କହିଲି ଜ୍ଞାନ କଥା । ସାଧୁ ଜନଙ୍କ ଏ ବ୍ୟବସ୍ଥା ॥
ତୁ ଯେଣୁଂ ମୋହର ଭକତ । ତୋତେ କହିଲି ଏ ଗୁପତ ॥
କହଇ ବଳରାମ ଦାସ । ଗୁପତ ଟୀକା ମହାରସ ॥

ଇତିଶ୍ରୀ ବ୍ରହ୍ମବିଦ୍ୟାୟା ପାରମହଂସ୍ୟାଂ ସହିତାୟାଂ
ଶ୍ରୀକୃଷ୍ଣ-ଅର୍ଜୁନ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ

## ପଞ୍ଚମ ଅଧ୍ୟାୟ

ପୁଣି ଅର୍ଜୁନ ପଚାରିଇ । ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥
କଥାଏ ପଡ଼ିଲା ମନର । କହିବା ହେଉ ଚକ୍ରଧର ॥
ଭୋ ନାଥ ଦେବ ଏବେ ଶୁଣ । ଏ ଦେହ ଦଶଦ୍ୱାର ପୁଣ ॥
କହନ୍ତି ପ୍ରଭୁ ଭଗବାନ । ଅର୍ଜୁନ ହେତୁ କରି ଶୁଣ ॥
କହିବା ଦଶଦ୍ୱାର ଫେଇ । ଚାରି ବେଦରେ ଯେ ଅଛଇ ॥

| | | | |
|---|---|---|---|
| ପୁଣି ଅର୍ଜ୍ଜୁନ ପଚାରଇ | କହିବା ଅର୍ଥମାନ ଫେଇ ॥ | ଦନ୍ତ ସନ୍ଧିରେ ଶୁଷୁମ୍ନା | ସେଠାରେ ଉଡୁଅଛି ବାନା ॥ |
| କହନ୍ତି ପ୍ରଭୁ ଦାମୋଦର | ଶୁଣ ଅର୍ଜ୍ଜୁନ ଟୀକା ସାର ॥ | ବଙ୍କନାଳ ପରେ ଈଶ୍ୱର | ପରମନାମ ନିରାକାର ॥ |
| କର୍ଣ୍ଣ ସେ ଚକ୍ଷୁ ନାସା ଦୁଇ | ମୁଖରେ ଚିନି ବେଦ କହି ॥ | ପରମ ପୁରୁଷଟି ସେହି | ତ୍ରିଭଙ୍ଗୀ ହୋଇଛନ୍ତି ରହି ॥ |
| ଦୁଇ ନୟନ ଦୁଇ ଦ୍ୱାର | କହିବା ପଞ୍ଚଦ୍ୱାର ସାର ॥ | ମୁରଲୀ ଅଛଇ ଅଧର | ପଡ଼ିଛି ଘଣ୍ଟିକା ଉପର ॥ |
| ଦୁଇ ସେ ନାସା ପୁଟ କହି | ଶ୍ରବଣ ଦୁଇ ହେ ବୋଲାଇ ॥ | ଘଣ୍ଟିକା ପରେ ତିନିଦ୍ୱାର | ଅର୍ଜ୍ଜୁନ ଏବେ ହେତୁକର ॥ |
| ଏମନ୍ତ ନବଦ୍ୱାର ଶୁଣ | ତୋତେ କହିଲି ହୋ ଅର୍ଜ୍ଜୁନ ॥ | ବାଟେକ ଆକାଶ ଫିଟିଛି | ବାଟେକ ଗୁପ୍ତ ହୋଇଛି ॥ |
| ପୁଣି ଅର୍ଜ୍ଜୁନ ପଚାରଇ | ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥ | ବାଟେକ ପଡ଼ିଛି ମଞ୍ଚାକୁ | ମଞ୍ଚାରୁ ଫିଟିଛି ସ୍ୱର୍ଗକୁ ॥ |
| ଏମନ୍ତେ ନବଦ୍ୱାର ହେଲା | ଆହୁରି ଦ୍ୱାରେକ ଲୁଚିଲା ॥ | ଏ ବାଟେ ତୁ ପଶିପାରିଲେ | ବ୍ରହ୍ମ ଭେଟିବୁ ଅକ୍ଲେଶରେ ॥ |
| ସେ ଦ୍ୱାର କାହିଁ ଯେ ରହିଲା | ଏହା କହିବ ଚକାଡ଼ୋଳା ॥ | ଶୁଣିଣ ଅର୍ଜ୍ଜୁନ ଆନନ୍ଦ | ମୁଖ ତା ପୂର୍ଣ୍ଣମୀର ଚାନ୍ଦ ॥ |
| କହନ୍ତି ପ୍ରଭୁ ଭଗବାନ | ଶୁଣ ହୋ ପାର୍ଥ ଗୁପ୍ତଜ୍ଞାନ ॥ | ଦେଖିଣ ହରିମୟ ଘଟ | ସ୍ୱର୍ଗକୁ ଫିଟିଲା କବାଟ ॥ |
| ଭ୍ରୂସ୍ଥାନ ମଧ୍ୟରେ ତ ବାଟ | ଲାଗିଛି ଚିଳେକ କପାଟ ॥ | ଦେଖିଲା ସର୍ବଘଟେ ହରି | ସକଳ ଭୂତେ ଛନ୍ତି ପୂରି ॥ |
| ଅର୍ଜ୍ଜୁନ ଶୁଣ ମନ ଦେଇ | ପିମ୍ପୁଡ଼ି ଗଳି ନ ପାରଇ ॥ | ଆନନ୍ଦେ ନେତ୍ରୁ ବହେ ବାରି | କୃଷ୍ଣ ମହିମା ହୃଦେ ଭରି ॥ |
| ଗମ୍ଭୁଛି ଯେ ଥୋରିବଜନ୍ଦ | ଶୁଣି ଅର୍ଜ୍ଜୁନ ନ ଯେ ଆନନ୍ଦ ॥ | ପୁଛଇ ହୋଇଣ ଆନନ୍ଦ | ଏ ଦେହ କହ ଚାରିବେଦ ॥ |
| ଶୁଣ ତୁହେତୁ ରେ ଅର୍ଜ୍ଜୁନ | ଏହା ମୁନିଙ୍କ ଗୁପ୍ତଜ୍ଞାନ ॥ | କହନ୍ତି ପ୍ରଭୁ ଭାବଗ୍ରାହୀ | ଚାରି ଦ୍ୱାରରେ ଛନ୍ତି ରହି ॥ |
| ଏମନ୍ତ ଶୁଣିଣ ଅର୍ଜ୍ଜୁନ | ପୁଣି ପୁଚ୍ଛିଲା ଗୁପ୍ତଜ୍ଞାନ ॥ | ପୁଣି ଅର୍ଜ୍ଜୁନ ପଚାରଇ | ଭୋ ପ୍ରଭୁ କହ ଭାବଗ୍ରାହୀ ॥ |
| ଏ ଦେହେ ଯେ କଳାରାୟଟ | କେଉଁଠାବରେ କଳ୍ପବଟ ॥ | ପୃଥିବୀ ଆପ ତେଜ ବାୟୁ | ଆକାଶ ପଞ୍ଚଭୂତ ଏହୁ ॥ |
| ପୁଣି ଅର୍ଜ୍ଜୁନ ପଚାରଇ | ପାଶୋରି ଥିଲି ଭାବଗ୍ରାହୀ ॥ | ଭେଦାଇ କହିବ ଶରୀରେ | କେମନ୍ତ ଏ ପଞ୍ଚ ତତ୍ତ୍ୱରେ ॥ |
| ମନେପଡ଼ିଲା ନାରାୟଣ | ବାଇଶି ପାବଛ କେ ପୁଣ ॥ | କହନ୍ତି ପ୍ରଭୁ ନାରାୟଣ | ହେ ପାର୍ଥ ମନ ଦେଇ ଶୁଣ ॥ |
| ଶ୍ରୀହରି ବୋଲୁଛନ୍ତି ପୁଣ | ମନରେ ହେତୁକରି ଘେନ ॥ | ବାୟୁ ଯେ ନାସାରେ ବସଇ | ଏ ପଞ୍ଚଭୂତ ଯେ ଅଟଇ ॥ |
| ବାଇଶି ପାବଛ ବିଚାର | ଦନ୍ତ ପାଟି ଯେ ଅଟେ ତୋର ॥ | ପୁଣି ଅର୍ଜ୍ଜୁନ ପଚାରଇ | ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥ |
| ଗରୁଡ଼ ସ୍ତମ୍ଭ ଯାହା କହି | ମନ ପବନ ସେ ଅଟଇ ॥ | ମନବୁଦ୍ଧି ଯେ ଅହଙ୍କାର | ଏ ତିନି କେଉଁଠାରେ ଘର ॥ |
| ଜଗନ୍ମୋହନ ଘର ପୁଣ | ତାଳୁକା ସନ୍ଧିରେ ଅର୍ଜ୍ଜୁନ ॥ | କହନ୍ତି ପ୍ରଭୁ ନାରାୟଣ | ଶୁଣ ଅର୍ଜ୍ଜୁନ ଦେଇ ମନ ॥ |
| ଏମନ୍ତ ହୋଇ ଗୀତା ନାମ | ଗୁପ୍ତରୁ ହୋଇଛି ଗହନ ॥ | ମନ ତୋ ନୟନ ଅଟଇ | ସେ ଯଜୁର୍ବେଦ ବୋଲାଇ ॥ |
| ତୁ ଯେଣୁ ମୋହର ଭକତ | ତେଣୁ କହିଲି ଟୀକା ଅର୍ଥ ॥ | ବୁଦ୍ଧି ଯେ ବଦନ ତୋହର | ଋକ୍‌ବେଦଟି ଏହି ସାର ॥ |
| ପୁଣି ଅର୍ଜ୍ଜୁନ ପଚାରଇ | ଚାରିଖାନି ଯେ କାହିଁ ରହି ॥ | ଅହଙ୍କାର ଶ୍ରବଣ ହୋଇ | ଅଥର୍ବ ବେଦ ସେ ବୋଲାଇ ॥ |
| ଏ ଦେହେ କାହିଁ ସେ ଆସନ | କହିବ ହସ୍ତ ଯେ ମାରିଣ ॥ | ସାମବେଦଟି ନାସାତୋର | ତୋତେ କହିଲି ବେଦସାର ॥ |
| କହନ୍ତି ପ୍ରଭୁ ଟୀକା ସାର | ଶୁଣ ଅର୍ଜ୍ଜୁନ ବୀରବର ॥ | ପୁଣି ଅର୍ଜ୍ଜୁନ ପଚାରଇ | ଭୋ ନାଥ ଶୁଣ ଭାବଗ୍ରାହୀ ॥ |
| ଚାରିଖାନିରେ ଜନ୍ମ କିସ | କେଉଁଠାରେ ସେ ପୀତବାସ ॥ | ତିଥି ଲଗ୍ନ ଯେ କହିଦେବ | ତେବେ ସେ ମତେ ପ୍ରତେ ଯିବ ॥ |
| କୀଟପତଙ୍ଗ ଚାରି କହି | ତୋତେ କହିବା ଅର୍ଥଫେଇ ॥ | ପ୍ରତିପଦା ଯେ କାହିଁ ରହି | ଦ୍ୱିତୀୟା କାହିଁରେ ବସଇ ॥ |
| ଜଙ୍ଗମ ମୁଖର ପ୍ରମାଣ | ସ୍ଥାବର ଶ୍ରବଣଟି ଘେନ ॥ | ତୃତୀୟ ଆସନଟି କେହୁ | କହସଂଶୟ ଦୂର ହେଉ ॥ |
| ପତଙ୍ଗ ନୟନେ ବସଇ | କୀଟ ଯେ ନାସାରେ ଅଛଇ ॥ | ଚତୁର୍ଥୀ ପଞ୍ଚମୀର କଥା | କହ ହେ ପ୍ରଭୁ ବ୍ରହ୍ମ ବେତ୍ତା ॥ |
| ଏମନ୍ତ ଚାରିଖାନି ଜାଣ | ତୋତେ କହିଲୁ ହୋ ଅର୍ଜ୍ଜୁନ ॥ | ଷଷ୍ଠୀ ସପ୍ତମୀ ଯେ ବୋଲାଇ | ଅଷ୍ଟମ ଆଦି କହ କାହିଁ ॥ |
| ପୁଣି ଅର୍ଜ୍ଜୁନ ପଚାରଇ | ଭୋ ପ୍ରଭୁ ଶୁଣ ଭାବଗ୍ରାହୀ ॥ | ନବମୀ ଦଶମୀ ଯେ ପୁଣ | ଶରୀରେ କହ ନାରାୟଣ ॥ |
| ବଙ୍କନଳ କାହିଁ ବସଇ | ଶୁଷୁମ୍ନାର ଦ୍ୱାରଦାହି ॥ | ଏକାଦଶୀରେ ନିଜସ୍ଥାନ | ଦ୍ୱାଦଶୀ କାହିଁ ଅଛି ପୁଣ ॥ |
| କହନ୍ତି ପ୍ରଭୁ ଭାବଗ୍ରାହୀ | ଶୁଣ ଅର୍ଜ୍ଜୁନ ମନଦେଇ ॥ | ତ୍ରିଦଶୀ ଚତୁର୍ଦ୍ଦଶୀ ଜାଣ | ପୂର୍ଣ୍ଣମୀ କାହିଁରେ ଆସନ ॥ |

ତିଥି ଲଗ୍ନ ଯେ କହିଦେବ । ତେବେ ସେ ମନୁ ଭ୍ରାନ୍ତି ଯିବ ।

କହନ୍ତି ପ୍ରଭୁ ଭଗବାନ । ଶୁଣ ଭକତ ଦେଇ ମନ ।

ପୂର୍ଣ୍ଣିମୀ ନଖ ରେଖା ପୁଣ । ଶୁକ୍ଳରାଜ ତାହାର ନାମ ।

ପ୍ରତିପଦ ଯେ ପାଦ ଜାଣ । ଦ୍ୱିତୀୟା ଅଙ୍ଗୁଳିରେ ଘେନ ।

ତୃତୀୟା ଜାନୁରେ ବସଇ । ଚତୁର୍ଥୀ କଟି ଭାଗେ ଥାଇ ।

ଗୁହ୍ୟରେ ପଞ୍ଚମୀ ଆସନ । ଷଷ୍ଠୀ ଯେ ଇନ୍ଦ୍ରି ବୋଲି ଜାଣ ।

ସପ୍ତମୀ ନାଭିରେ ବସଇ । ଅଷ୍ଟମୀ ହୃଦରେ ଅଛଇ ।

ନବମୀ ଓଷ୍ଠର ଉପରେ । ଦଶମୀ ବସେ ନୟନରେ ।

ଏକାଦଶୀ ଯେ କଣ୍ଠେ ରହି । ଦ୍ୱାଦଶୀ କର୍ଣ୍ଣରେ ବସଇ ।

ତ୍ରୟୋଦଶୀ ନାସାରେ ତୋର । ଚତୁର୍ଦ୍ଦଶୀ ଯେ ଲଲାଟର ।

ଅମାବାସ୍ୟା ଯେ ତାଳୁପରେ । ତିଥି ଅଛନ୍ତି ଏ ପ୍ରକାରେ ।

ପୁଣି ଅର୍ଜ୍ଜୁନ ପଚାରଇ । ଭୋ ନାଥ ଶୁଣ ଭାବଗ୍ରାହୀ ।

ଜୀବ ପରମଙ୍କ ଯେ ଭେଦ । ତାହା କହିବ ପଦ୍ମନାଭ ।

ଶ୍ରୀହରି କହୁଛନ୍ତି ଶୁଣ । କହିବା ଜୀବାଆତ୍ମା ଜ୍ଞାନ ।

ବାମ ନାସା ପୁଡ଼ାରେ ରହି । ପରମ ଆତଯାତ ହୋଇ ।

ଦକ୍ଷିଣ ପୁଡ଼ାରେ ଜୀବନ । ତୋତେ କହିଲୁ ଏ ବିଧାନ ।

ଜୀବଦାନ ସେ ଯୋଗମୟି । ପରମ ଦ୍ୱାଦଶୀ ବୋଲଇ ।

ଜୀବ ପରମ ପରେ ଠଣା । ଜାଣିଲା ଯୋଗୀ ହୋନ୍ତି ବଣା ।

ପୁଣି ଅର୍ଜ୍ଜୁନ ପଚାରଇ । ଭୋ ନାଥ ଶୁଣ ଭାବଗ୍ରାହୀ ।

ଜୀବ ପରମଙ୍କର ବର୍ଣ୍ଣ । କହିବା ହେଉ ଜନାର୍ଦ୍ଦନ ।

କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନଦେଇ ।

ପରମ ଶୁକ୍ଳ ବର୍ଣ୍ଣ ହୋଇ । ଜୀବ ଯେ ଲୀଳା ପ୍ରକାଶଇ ।

ପୁଣି ଅର୍ଜ୍ଜୁନ ପଚାରଇ । କହ ଭୋ ପ୍ରଭୁ ଭାବଗ୍ରାହୀ ।

ଜୀବ ପରମର ଭଜନ । କହିବା ଦେବ ଜନାର୍ଦ୍ଦନ ।

କହନ୍ତି ପ୍ରଭୁ ନାରାୟଣ । ଶୁଣ ଅର୍ଜ୍ଜୁନ ବ୍ରହ୍ମଜ୍ଞାନ ।

ହରେକୃଷ୍ଣ ଯେ ରାମ ତହିଁ । ଜୀବର ଭଜନ ଅଟଇ ।

ସଦଗଙ୍କ ଭଜନ ପ୍ରମାଣ । ଗୁପତର ଯେ ଏହି ମର୍ମ ।

ଶୁଣି ଅର୍ଜ୍ଜୁନ ପଚାରଇ । ଭଜନ କିପରି ହୁଅଇ ।

କହନ୍ତି ପ୍ରଭୁ ଭାବଗ୍ରାହୀ । ଭଜନ କହିଦେବା ଫେଇ ।

ବେନି ନାସିକାର ଉପରେ । ଭଜନ ଲାଗିଛି ସେଠାରେ ।

ଶୁଣି ଅର୍ଜ୍ଜୁନ ପଚାରଇ । ମନେପଡ଼ିଲା ଭାବଗ୍ରାହୀ ।

କହିବା ହେଉ ଦାମୋଦର । ତ୍ରିଗୁଣ ବିଧିର ବିଚାର ।

କହନ୍ତି ପ୍ରଭୁ ନାରାୟଣ । ଶୁଣ ତ୍ରିଗୁଣର ଆସନ ।

ମୁଖ ଯେ ନାସା ଚକ୍ଷୁ ଦୁଇ । ଏ ରୂପେ ତ୍ରିଗୁଣ ବୋଲାଇ ।

ଏହି ତ୍ରିଗୁଣରେ ମିଶିବୁ । ଅନ୍ତେ ମୋ ଚରଣ ଲଭିବୁ ।

ଅର୍ଜ୍ଜୁନ ପୁଣି ପଚାରଇ । ଯେତେ କହିଲ ଜ୍ଞାନ ଫେଇ ।

ଏ ଜ୍ଞାନ କେଉଁ ମତେ ପ୍ରାପ୍ତ । ତାହା କହିବା ଜଗନ୍ନାଥ ।

କେଉଁ ଭାବରେ ଏହା ପାଇ । କାହାକୁ ଏ ଶାସ୍ତ୍ର ମିଳଇ ।

ଏ ଶାସ୍ତ୍ର ନାମ ଗୁପ୍ତଗୀତା । ସାଧୁଜନଙ୍କର ଏ ହିତା ।

ସାଧୁ ଯେ ହୋଇଲେ ପ୍ରସନ୍ନ । ଅର୍ଜ୍ଜୁନ ଦିଶେ ଦିବ୍ୟଜ୍ଞାନ ।

ସାଧୁଙ୍କ ଆଜ୍ଞାରେ କହଇ । ମୁହିଁ ଅଧମ ନ ଜାଣଇ ।

ଶୁଣିଣ ଅର୍ଜ୍ଜୁନ ସନ୍ତୋଷ । ଏ ପଞ୍ଚ ଅଧ୍ୟା ହେଲା ଶେଷ ।

କହଇ ବଳରାମ ଦାସ । ଗୁପତ ଟୀକା ମହାରସ ।

ଇତିଶ୍ରୀ ବ୍ରହ୍ମବିଦ୍ୟାୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ

## ଷଷ୍ଠ ଅଧ୍ୟାୟ

ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରିବି ମୁହିଁ ।

ଏ ଦେହେଁ କି କି ଅଛି ରହି । ତାହା କହିବା ମୋତେ ଫେଇ ॥

ଚାରି ବେଦଙ୍କର ଆସନ । କହିବା ହେଉ ଭଗବାନ ।

ସ୍ଥାବର ଜଙ୍ଗମ ଯେ କାହିଁ । କୀଟ ପତଙ୍ଗ ଛନ୍ତି ରହି ।

ଏ ଦେହେ ଏମାନେ କିପରି । ଅଛନ୍ତି କହ ବଂଶୀଧାରୀ ।

କହନ୍ତି ପ୍ରଭୁ ଭାବଗ୍ରାହୀ । ଶୁଣ ଅର୍ଜ୍ଜୁନ ମନଦେଇ ।

ଶୁଣ ହେ ପାର୍ଥ ମହାବୀର । ଏ ଦେହ ବିଧିର ବିଚାର ।

ଏ ଦେହେଁ ଷଟଚକ୍ର କାହିଁ । ଗୁହ୍ୟ ଇନ୍ଦ୍ରିୟ ନାଭି କହି ।

ହୃଦୟ କଣ୍ଠ ଲଲାଟହିଁ । ଏମନ୍ତେ ଷଟଚକ୍ର କହି ।

ଏ ସ୍ୱର୍ଗ ମଞ୍ଚ ଯେ ପାତାଳ । ଏ ତିନି ଏକଠାବେ ମେଳ ।

ନାଭିରୁ ପାଦଯାଏ ପୁଣ । ପାତାଳ ବୋଲି ହେ ଅର୍ଜ୍ଜୁନ ।

କଟିରୁ ହୃଦଯାଏ ଜାଣ । ମଞ୍ଚ ବୋଲିଣ ଏ ପ୍ରମାଣ ।

କଣ୍ଠରୁ ଲଲାଟର ଯାଏ । ଆକାଶ ବୋଲି ବେଦ କହେ ॥

ଅର୍ଜ୍ଜୁନ ବୋଲଇ ଗୋସାଇଁ । ଆକାଶେ କି କି ଛନ୍ତି ରହି ।

କହିବା ହେଉ ଚକ୍ରଧର । ଆକାଶ ମଧ୍ୟରେ ବିଚାର ।

ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ଶୁଣ ହେ ପାର୍ଥ ଦିବ୍ୟଜ୍ଞାନ ।

ଆକାଶେ ଦେବେ ଛନ୍ତି ରହି । ତାହା କହିବା ତୋତେ ଫେଇ ॥

ସାମ ଋକ୍ ଯଜୁ ଅଥର୍ବ । ହେତୁକରିଣ ପାର୍ଥ ବୁଝ ।

ସାମବେଦଟି ନାସା କହି । ଯଜୁର୍ବେଦଟି ନୟନହିଁ ।

ଋକ୍ ବେଦଟି ମୁଖ ଜାଣ । ଅଥର୍ବ ଶ୍ରବଣ ପ୍ରମାଣ ।

ଏ ଚାରିବେଦ ଚାରିକ୍ଷର । ଏ ଚାରି ଦ୍ୱାରେ ଉଜାଗର ।

ଗଦଗଦ ହୋଇଣ ଅର୍ଜ୍ଜୁନ । ପୁଚ୍ଛଇ ବର୍ଣ୍ଣର ଲକ୍ଷଣ ।

କ୍ଷତ୍ରିୟ ବୈଶ୍ୟ ଯେ ବ୍ରାହ୍ମଣ । ଶୂଦ୍ରକୁ ଘେନି ଚାରିବର୍ଣ୍ଣ ।

କହନ୍ତି ପ୍ରଭୁ ଭାବଗ୍ରାହୀ । ବୈଶ୍ୟ ତୋ ନୟନ ଅଟଇ ।

କ୍ଷତ୍ରୀୟ ଶ୍ରବଣକୁ କହି । ଶୁଣ ଅର୍ଜ୍ଜୁନ ମନଦେଇ ।

ବ୍ରାହ୍ମଣ ନାସାର ପବନ । ଶୂଦ୍ର ଯେ ମୁଖର ପ୍ରମାଣ ।

ଏମନ୍ତ ଚାରି ଜାତି କହି । ଜ୍ୟୋତି ମଧ୍ୟରୁ ଜନ୍ମ ହୋଇ ।

ପୁଣି ଅର୍ଜ୍ଜୁନ ପଚାରଇ । ଜ୍ୟୋତି ନିର୍ଣ୍ଣୟ ଦେବ କହି ॥
କହନ୍ତି ପ୍ରଭୁ ଭଗବାନ । ନାସିକା ଚକ୍ଷୁ ଯେ ପ୍ରମାଣ ॥
ମୁଖ ଶ୍ରବଣ ଦୁଇ ଗୁଣ । ଏ ଚାରି ମଧ୍ୟେ ବୈଶ୍ୟ ଜାଣ ॥
ଏ ଯେ ଗୁପତ ଟୀକାବାଣୀ । ତୋତେ କହିଲି ଫାଲଗୁନି ॥
ଗୁରୁଶିଷ୍ୟଙ୍କ ଭାବ ଏହି । କାହାକୁ ନ କହିବୁ ଫେଇ ॥
କହନ୍ତି ବଳରାମ ଦାସ । ଗୁପତ ଟୀକା ମହାରସ ॥
ଶ୍ରୀହରି ଅର୍ଜ୍ଜୁନଙ୍କୁ ପାଦେ । ଶରଣ ପଶିଲି ଆନନ୍ଦେ ॥

ଇତିଶ୍ରୀ ବ୍ରହ୍ମବିଦ୍ୟାୟଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ୱାଦେ ନାମ ଷଷ୍ଠୋଽଧ୍ୟାୟଃ ।

## ସପ୍ତମ ଅଧ୍ୟାୟ

ରାମ ଯେ ରାମ ରାମ ରାମ । ଶୂନ୍ୟରେ ରହିଛି ପରମ ॥
ଅର୍ଜ୍ଜୁନ ଶ୍ରୀହରିକି ଚାହିଁ । ବୋଲଇ ଶୁଣ ଭାବଗ୍ରାହୀ ॥
ଏ ଦେହ ଭିତରେଣ ହରି । କେ କେଉଁଠାରେ ଛନ୍ତି ପୂରି ॥
କହନ୍ତୁ ଆତ୍ମା ଭେଦ ଜ୍ଞାନ । ଶୁଣି ସନ୍ତୋଷ ହେଉ ମନ ॥
ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ତୋତେ କହିବା ଏହି ଜ୍ଞାନ ॥
ବୋଲୁ ଯେ କିଏ କେଉଁଠାରେ । ଅର୍ଜ୍ଜୁନ କହିଦେବା ବାରେ ॥
ପ୍ରଥମେ ଠୁଳ ଶୂନ୍ୟ ହେଲା । ଶୂନ୍ୟରୁ ରୂପେକ ଜନ୍ମିଲା ॥
ଏକ ପୁରୁଷ ବିନ୍ଦୁଥାଇ । ତାହା ଭିତରୁ ଯେ ଜନ୍ମଇ ॥
ଆକାରୁ ଅର୍ଥ ଅଣାକାର । ଆକାର ତହିଁର ଭିତର ॥
ଉକାର ବସନ୍ତି ତଳକୁ । ମକାର ଅଧିକ ଗାରକୁ ॥
ଅର୍ଜ୍ଜୁନ ବୋଲଇ ଶ୍ରୀହରି । ମଥୁରା କେ କହ ବିସ୍ତାରି ॥
ଶ୍ରୀହରି ବୋଇଲନ୍ତି କିରୀଟୀ । ବଡ଼ ଗହନ କଥା ଏଟି ॥
ମଥୁରା ମଥାଟିକୁ କହି । ଏମନ୍ତ ବ୍ରହ୍ମାଣ୍ଡ ଅଟଇ ॥
ବ୍ରହ୍ମା ଯେ ଚାରି ବେଦ କଲା । ଚାରିବେଦରୁ ସୃଷ୍ଟି ହେଲା ॥
ଅର୍ଜ୍ଜୁନ ବୋଲଇ ବଚନ । କେମନ୍ତେ ଚାରିବେଦ ପୁଣ ॥
ସିଦ୍ଧ ରସ୍ତୁ ଚାରି ଅକ୍ଷର । ଚାରିବେଦ ଯେ କେଉଁଠାର ॥
ଚାରିଅକ୍ଷର ବେଦ ହୋଇ । ଏମନ୍ତେ ଚତୁର୍ଦ୍ଧା ବୋଲାଇ ॥
ସିଦ୍ଧି ଯେ ଶିଶୁବେଦ କହି । ଦ୍ଧ ର ପୁଣି ନେତ୍ର ଅଟଇ ॥
ରଅ ଯେ ବୋଲାଇ ଅଧର । ସ୍ତୁ ଯେ ଅଥର୍ବ ନାସିକାର ॥
ବଳଭଦ୍ର ଯେ ସାମ ହୋଇ । ଋକ୍ ଯେ ସୁଭଦ୍ରା ଅଟଇ ॥
ଯଜୁର୍ବେଦ ଶ୍ରୀଜଗନ୍ନାଥ । ଅଥର୍ବ ସୁଦର୍ଶନ ପାର୍ଥ ॥
ନାସିକା ସୁଦର୍ଶନ କହି । ଅଧର ସୁଭଦ୍ରା ଅଟଇ ॥
ନୟନ ଜଗନ୍ନାଥ ଜାଣ । ସୁଦର୍ଶନଟି ସେ ଦେହେଣ ॥
ଏମନ୍ତେ ଚତୁର୍ଦ୍ଧା ମୂରତି । ତତ୍ତ୍ୱ କହିଲୁ ଶୁଣ କୌନ୍ତି ॥
ସିଇ ଯେ ସାମ ଶୁକ୍ଳବର୍ଣ୍ଣା । ଯଜୁ ପୀତବର୍ଣ୍ଣ ଚିହ୍ନ ॥
ରଥ ଋକ୍‌ବେଦ ହରିତ । ସ୍ତୁ ଯେ ଅଥର୍ବ ଲୋହିତ ॥
ଶିଶୁବେଦ ନୀଳ ମୂରତି । ଏମନ୍ତେ ଆତ୍ମାସ୍ଥିତ ହୋନ୍ତି ॥
ପ୍ରାଣପ୍ୟାନ ବ୍ୟାନ ଉଦାନ । ସମାନ ଆତ୍ମାଟି ପ୍ରମାଣ ॥
ଅର୍ଜ୍ଜୁନ ପୁଣି ପଚାରଇ । କହିବା ହେଉ ଭାବଗ୍ରାହୀ ॥
ପୃଥିବୀ ଆପ ତେଜ ବାୟୁ । ଆକାଶ ପଞ୍ଚଭୂତ କେହୁ ॥
ମନ ଯେ ବୁଦ୍ଧି ଅହଙ୍କାର । ଏ ଅଷ୍ଟସୂତ୍ର ପରକାର ॥
କହନ୍ତି ପ୍ରଭୁ ନାରାୟଣ । ଶୁଣ ଅର୍ଜ୍ଜୁନ ଦିବ୍ୟଜ୍ଞାନ ॥
ପାଦରେ ପୃଥିବୀ ରହଇ । ଜାନୁରେ ଆପ ଯେ ବସଇ ॥
ନାଭିରେ ଅଗ୍ନି ଯେ ବସଇ । ବାୟୁ ଯେ ହୃଦରେ ଚଳଇ ॥
ଆକାଶ ଶିର ଯେ ଅଟଇ । ତୋତେ ଅର୍ଜ୍ଜୁନ ଦେଲି କହି ॥
ମନଯେ ନୟନେ ବସଇ । ବୁଦ୍ଧି ଯେ ମୁଖକୁ କହି ॥
ଅହଙ୍କାର ଅଟେ ଶ୍ରବଣ । ଅଷ୍ଟ ମୂରତି ବୀରଶୁଣ ॥
ଏମନ୍ତେ ଦେହ ପରକାଶ । କହନ୍ତି ପ୍ରଭୁ ପୀତବାସ ॥
ନନ୍ଦମୁଖ ସାମକୁ କହି । ସାମ ଯେ ବେଦକୁ ବୋଲାଇ ॥
ସୁଦାମା ସଖା ଯେ ଅଚ୍ୟୁତ । ଏମନ୍ତ ହୋଇ ଶୁଣ ପାର୍ଥ ॥
ସ୍ୱରୂପ ମଠ ନାସା କହି । ଯଶୋବନ୍ତ ଶାଖା ବୋଲାଇ ॥
ପ୍ରକାଶ ମଠ ସେ ନୟନ । ଅନନ୍ତ ଶାଖା ଅଟେ ବାମ ॥
ଚୈତନ୍ୟ ମଠ ସେ ଶ୍ରବଣ । ସୁବାହୁ ବଳ ବଳରାମ ॥
ଶୂଦ୍ରଟି ଶିଶୁବେଦ କହି । ତହୁଁଟି ପବନ ବହଇ ॥
ଗଳ ଯେ ମୁଖରେ ଆବୋରି । ଏମନ୍ତ ବୋଲାଉଛି ଶିରୀ ॥
ଅଥର୍ବ ଅଟଇ ଶ୍ରବଣ । ଧ୍ୱନିକି ଅନାହତ ଜାଣ ॥
ଏ ଧ୍ୱନି ଅଖଣ୍ଡ ବୋଲାଇ । ବ୍ରହ୍ମକୁଣ୍ଡଳୀ ଯାକୁ କହି ॥
ଆକାର ଉକାର ମକାର । ଏହିଟି ତ୍ରୟ ତତ୍ତ୍ୱସାର ॥
ନାଦ ବିନ୍ଦୁରୁଟି ବାହାର । ଅବନା ବର୍ଣ୍ଣଟି ମକାର ॥
ପରେ ଯେ ର ଜ ଶ ଶବଦ । ଚାରି ଯୁଣ ବେଢ଼ ରହିବ ॥
ତେଣୁ ତୁରିତ ମାତ୍ରାସାର । ଆକାର ମକାର ସକାର ॥
ଷୋଳ ନାମ ବତିଶାକ୍ଷର । ରାଜ୍ୟେ ସେ ପଶୁଛି ମୁଖର ॥
ମୁଖରେ ଶବଦ ଯେ ରହି । ତେଣୁ ତା ନାମ ଜୀବ କହି ॥
ଜୀବଟି ଏହୁ ଜିହ୍ୱା କହି । ଯା ସଙ୍ଗେ ପରମ ଖେଳଇ ॥
ତାଳୁ ତଳରେ ଅଟେ ବାଟ । ତହିଁରେ ବସେ ଗୋଲା ହାଟ ॥
କର ଧରିଣ ମୋହ ପାଶି । ସେ ହାଟେ ପଞ୍ଚମନ ବସି ॥
ଶତ ଦଳ ପଦ୍ମରେ ଥାଇ । ଅମର ଭ୍ରମର ଖେଳଇ ॥
ରଙ୍ଗାଚରଣ ଯାହା କହି । ଲମ୍ବିଣ ଅମୃତ ଝରଇ ॥
ବ୍ରହ୍ମରନ୍ଧ୍ରୁ ରସ ଗଳଇ । ଲମ୍ବକ ଘଣ୍ଟିକାକୁ କହି ॥
ଘଣ୍ଟିକା ଆଦି ଯେ ପୁରୁଷ । କହନ୍ତି ପ୍ରଭୁ ପୀତବାସ ॥
ଉପରେ ଦନ୍ତ ଓଷ୍ଠ ସନ୍ଧି । ଶିଶୁମୁନା କହେ ଅବଧି ॥
ତାଳୁକା ଭେଦି ଦନ୍ତମୂଳେ । ବାଟଫିଟିଛି ନିରିମଳେ ॥
ଜିହ୍ୱା ତଳରେ ଏକ ବାଟ । ଈଶ୍ୱର ପାତିଛନ୍ତି ଜଟ ॥

ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ତୋତେ କହିବା ସାବଧାନ ।
ଦୋମୁହାଁ ସର୍ପ ପେଟରେଣ । ଲାଞ୍ଜ ମୁଖ ଏକ ଠାବେଣ ।
ପିଠିତ୍ରିକୂଟ ପରେଫେଇ । ନିରାକାରକୁ ବେଢ଼ି ରହି ।
ଇଅଁଳା ପିଅଁଳା ତ୍ରିକୂଟ । ଜୀବ ପରମଙ୍କର ଭେଟ ।
ସାଧବ କାଳିନ୍ଦୀ ଯେ କହି । ତ୍ରିକ୍ଷର ତ୍ରିପଦୀ ବୋଲାଇ ।
ହାଡ଼ ମାଂସ ପୃଥିବୀ ହୋଇ । ରକ୍ତ ଷଡ଼ରସ ବୋଲାଇ ।
ଯା ଖାଇ ଅଗ୍ନି ଭସ୍ମ କରେ । ପବନ ବହେ ଆକାଶରେ ।
ପୁଣି ଅର୍ଜ୍ଜୁନ ପଚାରଇ । ମନ କେ କହ ଭାବଗ୍ରାହୀ ।
ମନଟି ମଉହସ୍ତୀ ଜାଣ । ତୋତେ କହିଲି ହୋ ଅର୍ଜ୍ଜୁନ ।
ପ୍ରଥମେ ହେଲା ଏକାକ୍ଷର । ତହିଁରୁ ଜାତ ତ୍ରିଅକ୍ଷର ।
ମୁନିଙ୍କ ନିଶ୍ଚଳ ସେଠାକୁ । ଗୁପତି କହିଲୁଁ ତାହାକୁ ।
ଦିବ୍ୟ ମୂରତି ଅବତାର । ସ୍ୱର୍ଗ ମଣ୍ଡଳ ଚିନ୍ତା କର ।
ଚିନ୍ତା ଯୋଗ ସମାସ ହୋଇ । ଶିବଶକ୍ତି ହୋଇ ବସଇ ।
ଶ୍ରୀହରି ଅର୍ଜ୍ଜୁନେ ବୁଝାଇ । ଅଜ୍ଞାନ ସାଧି ଦେବ ଫେଇ ।
ଅର୍ଜ୍ଜୁନ ପ୍ରଣମିତ ହୋଇ । ଭୋ ନାଥ ଦେଲ ଯେ ବୁଝାଇ ॥
ଅଟେ ଏ ଜ୍ଞାନୀଗଣେ ଦୂର । ଭେଦାଇଦେଲା ମୋ ହୃଦର ।
ଚିନ୍ତା ଯୋଗ ସମାଧି କରି । ଭୋ ନାଥ କହିଲୁ ବିସ୍ତାରି ।
ଜପ ତପ ଯଜ୍ଞ ସାଧନ । ନୁହେଁ ଯେ ଏହାର ସମାନ ।
ହରି ଅର୍ଜ୍ଜୁନ ଗୁପ୍ତଜ୍ଞାନ । ଯେ ଶୁଣେ ଖଣ୍ଡେ ପାପମାନ ।
ଶ୍ରୀହରି ଅର୍ଜ୍ଜୁନ ଚରଣେ । ଶରଣ ଗଲି ଭୃତ୍ୟପଣେ ।
ଭୃତ୍ୟପଣକୁ ସରି ନୋହି । ନିରତେ ଶରଣ ପଶଇ ।
ଗୁପତଜ୍ଞାନ ତତ୍ତ୍ୱରସ । ଭଣିଲେ ବଳରାମ ଦାସ ।

ଇତିଶ୍ରୀ ବ୍ରହ୍ମବିଦ୍ୟାୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।

## ଅଷ୍ଟମ ଅଧ୍ୟାୟ

ଅର୍ଜ୍ଜୁନ ବୋଲଇ ଗୋସାଇଁ । କଥାଏ ପଚାରଇ ମୁହିଁ ।
ଏ ଦେହେଁ କ୍ଷେତ୍ର କେଉଁ ମାନ । ତାହା କହନ୍ତୁ ଭଗବାନ ।
ଶ୍ରୀହରି ବୋଲନ୍ତି ଅର୍ଜ୍ଜୁନ । ଶୁଣ ହୋ ଏଥିର କାରଣ ।
ପାଦଟି ଜନ୍ମ ଯାଯପୁର । ବରାହନାଥଙ୍କ ବିହାର ।
ଦେବ ବିରଜାଇ ଭୁବନ । ଉତ୍ତମେ ଯମର ଆସ୍ଥାନ ।
ବାଣେଳୀ ଦେବୀଙ୍କର ପୁର । କଟୀ ଉପରେ ତା ବିହର ।
କଟୀ କଟକ ବୋଲି କହି । ପୂର୍ବ ବାଳକ ଟିକି କହି ।
ତୋ ପେଟ ଖଣ୍ଡଗିରି ଜାଣ । ସିଦ୍ଧମାନଙ୍କ ଗୁପ୍ତସ୍ଥାନ ।
ନାଭି ତୋ ଯେ ଭୁବନେଶ୍ୱର । ତୁଳସୀ ଚଉରା ଉଦର ।
ପେଜନଳା ନାମ ବୋଲିଣ । ଶୁଣ ହେ ଭକତ ଉତ୍ତମ ।
ଡାହାଣ ଭୁଜ ବଟେଶ୍ୱର । ପାର୍ବତୀ ଦେବୀଙ୍କ କୁମର ।
ଚନ୍ଦ୍ରଭାଗାଟି ବାମଭୁଜ । କଣ୍ଠ ଅଠରନଳା ହେଜ ।
ମୁଖଟି ସିଂହଦ୍ୱାର ବୋଲି । ଜୟ ବିଜୟ ବେନିଦ୍ୱାରୀ ।
ବାମ ନାସାଟି କୁମ୍ଭକର୍ଣ୍ଣ । ଡାହାଣ ନାସାଟି ରାବଣ ।
ତୋ ମୁଖ ତିନି ପାଟ ଯେହୁ । ବାଇଶି ପାବଚ୍ଛଟି ସେହୁ ।
ମୁଖ ଭିତରେ ଯେଉଁଦନ୍ତ । ସେଟି ଷୋଡ଼ଶ ମହାମନ୍ତ୍ର ।
ତଳେ ଷୋଳଶାଖା ମାଳ । ଉପରେ ଷୋଳ ଶାଖା ପୁର ।
ତଥି ଉପରେ ତ୍ରିକୂଟର । ଅଷ୍ଟସଖୀଙ୍କର ବିହାର ।
ନାସାର ଅର୍ଦ୍ଧ ଠାରୁ ଜାଣ । କାଉଁରୀ ମଣ୍ଡଳ ତା ନାମ ।
ଦୁଇ ପତାଟି ଦୁଇ ଭାଳ । ଅର୍ଦ୍ଧ ମାତ୍ରାରେ ତହିଁ ଦ୍ୱାର ।
ତଥି ଉପରଟି ଗଗନ । ମୁଖ ନାସିକା ବେନିକର୍ଣ୍ଣ ।
ତଥି ଉପରେ ଗୋଲାହାଟ । ଅନାହାର ଶବଦ ବାଟ ।
ଘଣ୍ଟିକା ଏହୁ କଣ୍ଟବଟ । ପ୍ରଳୟକାଳେ ତହିଁ ଭେଟ ।
ନାସା ଗରୁଡ଼ଖମ୍ବ ବୋଲି ଯାହା । ପୁଚ୍ଛିଲ କହିଦେଲି ତାହା ।
ବାମ ପୁଡ଼ାରେ ଚନ୍ଦ୍ରସ୍ଥିତି । ଡାହାଣ ପାଶେ ସୂର୍ଯ୍ୟ ଜ୍ୟୋତି ॥
ଦକ୍ଷିଣ ପୁଡ଼ା ଯିବ ବହି । ବାମରେ ପରମ ଅଟଇ ।
ଡ଼ୋଳା ଭିତରେ ଧଳା ଯେହୁ । ଶ୍ରୀ ବଳଭଦ୍ର ଅଟେ ସେହୁ ।
ତଥି ଉପରେ ବଳି ଯେହୁ । ସୁଭଦ୍ରା ଦେବୀ ଅଟେ ସେହୁ ।
ତହିଁରେ ପିତୁଳା ଯେ ଜାଣ । ଶ୍ରୀଜଗନ୍ନାଥ ତାହୁ ଚିହ୍ନ ।
ତହିଁରେ ଯେଉଁ ଅଟେ ବର୍ଣ୍ଣ । ନିରଞ୍ଜନଟି ସେହୁ ଜାଣ ।
ଏ ଦିବ୍ୟ ପୁରେ ଅଛି ଯେହୁ । ଅଯୋନି ସମ୍ଭୂତଟି ସେହୁ ।
ଏମନ୍ତେ ପଞ୍ଚଦେବ ଜାଣ । ଏଥୁଁ ଦେବତା ନାହିଁ ଅନ୍ୟ ।
ଏଥୁଁ ଅଧିକ ନାହିଁ ଆଉ । ଯାହା କହିଲେ ମହାବାହୁ ।
କହଇ ବଳରାମ ଦାସ । ଗୁପତ ଟୀକା ମହାରସ ।
ଏ ପଞ୍ଚଭୂତ ଗୀତାରସ । ଗୁପତ କରି ମନେ ଘୋଷ ।
ଏହା ଯେ ପଢ଼ିବେ ଶୁଣିବେ । ସକଳ ଦୁସ୍ତରୁ ତରିବେ ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ।
ଅର୍ଜ୍ଜୁନ ଶ୍ରୀହରି ଚରଣେ । ଶରଣ ଗଲି ଭୃତ୍ୟ ପଣେ ।
ଶ୍ରୀହରି ଚରଣକୁ ଆଶ । କହିଲା ବଳରାମ ଦାସ ।

ଇତିଶ୍ରୀ ବ୍ରହ୍ମବିଦ୍ୟାଂ ପାରମହଂସ୍ୟାଂ ସଂହିତାୟାଂ
ଶ୍ରୀକୃଷ୍ଣ-ଅର୍ଜ୍ଜୁନ ସମ୍ବାଦେ ଗୁପ୍ତଗୀତାୟାଂ ନାମ ଅଷ୍ଟମୋଽଧ୍ୟାୟଃ
ସମାପ୍ତ

# ଶ୍ରୀମଦ୍‌ଭଗବଦ୍ ଗୀତା

ଓଁ ତତ୍ ସତ୍, ଶ୍ରୀ ଗୁରୁ ପରଂବ୍ରହ୍ମ

## ପ୍ରଥମ ଅଧ୍ୟାୟ

ଶ୍ରୀ ଗୁରୁଦେବେଭ୍ୟୋ ଜୟତି

### ।। ପ୍ରଥମ ପୀଢ଼ବନ୍ଧ ।।

ଶ୍ରୀକୃଷ୍ଣ କହନ୍ତି ଅର୍ଜୁନ ଶୁଣ ତୁ ଗୀତାଗ୍ରନ୍ଥ ସାରସ୍ୱତ
ସେ ଯୋଗ ବଳରାମ ଦାସ ଭଣଇ ଆଜ୍ଞା ଦେଲେ ଜଗନ୍ନାଥ ।୧।

### ।। ଦ୍ୱିତୀୟ ପୀଢ଼ବନ୍ଧ ।।

ଶ୍ରୀହରିଙ୍କି ଘେନି ପାଣ୍ଡେବ ବଳ ବିଜୟେ ରଣରଙ୍ଗ ସ୍ଥାନ
ଭୀଷ୍ମ ସହିତେଣ ସଂଗ୍ରାମ ଭୂମିରେ ମିଳନ୍ତି କଉରବମାନ ।୨।

### ।। ତୃତୀୟ ପୀଢ଼ବନ୍ଧ ।।

ଏସନେକ ସମୟେ ବ୍ୟାସ ମୁନି ଆସି ମିଳେ ଧୃତରାଷ୍ଟ୍ର ପାଶ
କଲ୍ୟାଣ କରି ବୋଲନ୍ତି ମୁନି ଯୁଦ୍ଧ ଦେଖିବୁଟିକି ଆସ ।୩।

### ।। ଚତୁର୍ଥ ପୀଢ଼ବନ୍ଧ ।।

ଯହୁଂ ସେ ବ୍ୟାସ ସଦୟାଏ କରି କଷ୍ଟ ଦେଖାଇବା ପାଇଂ
ପୁତ୍ର-ମିତ୍ର-କଷ୍ଟ ଦେଖାଇବା ପାଇଂ ତେଣୁ ନୃପତିକି ରାଇ ।୪।

### ।। ଗୀତ ବନ୍ଧ ।।

('ଭାରତ ବୋଲି' ବାଣୀରେ ଗାଇବ)

#### ବ୍ୟାସ ଉବାଚ

ନୟନ ନାହିଂ ଦେଖିବି କାହିଂ ଏମନ୍ତ ବିଚାରୁ ଅବା
ଶରଧା ଥିଲେ କହସି ନୃପ ଦିବ୍ୟ ଚକ୍ଷୁ ତୋତେ ଦେବା ।୧।
ଯେମନ୍ତେ ରୋଳ ହୋଇବ ଗୋଳ କେହୁ କାହା ସଙ୍ଗେ ଯୁଝି
ନାହିଂ ନାହିଂ ସାହା କେହି  କାହା କହିଂ ସକଳ କଥାନ୍ତ ବୁଝି ।୨।
ଓଛ କଛ ବଛ ନିସତ ନିର୍ବଳ ମଧସ୍ଥ ଗଣେକେ ରାଗୀ
ଥିର ଚତୁର କେ ହିଂସା ଅହିଂସା କାହାକୁ ଦେଖି କେ ଭାଗୀ ।୩।
ଏ ସର୍ବ କଥା ଯିସ ବେବସ୍ଥା କେହୁ କାହା ହାଥେ ମରି
ଦିବ୍ୟଚକ୍ଷୁରେ ତୁ ଯେମନ୍ତ ଦେଖିବୁ ତପ ମହିଂମା ମୋହୋରି ।୪।

#### ଧୃତରାଷ୍ଟ୍ର ଉବାଚ

ବ୍ୟାସ ବଚନ ଶୁଣି ରାଜନ ବୋଲଇ ଉଚିତ ନୋହି
ଦୁଇ ବଳ ଲୋକେ ମୋହରି କୁଟୁମ୍ବ ମରିବା କି ଦେଖି ହୋଇ ।୫।
ସୋଦର ବଧ୍ୟ ଏ ପାପଯୁଧ୍ୟ ଦେଖିଲେ ଶୋକ ପାଇବି
ଗୁରୁ ବ୍ରାହ୍ମଣ ବାପ ପୁଅ ମଧସ୍ଥ ସୋଦର ମୃତ୍ୟୁ ଚାହିଂବି ।୬।
ଏ କଥା ଛାର ନୋହେ ବିଚାର ଆନ ବୁଧି ଏକ କହ
ସ୍ୱକୁଟୁମ୍ବ ହଣାହଣି ଦେଖିଲେ କେମନ୍ତେ ଧରିବି ଦେହ ।୭।
ଶୁଣି ପାରିବି ଏହା କରିବି ଆନ ଜଣେ ମୋତେ କହୁ
ଧୃତରାଷ୍ଟ୍ର ବୋଲ ଶୁଣି ବ୍ୟାସମୁନି ବୋଲନ୍ତି ଏକଥା ହୋଉ ।୮।
ସଞ୍ଜୟ ହସ୍ତ ଧରି ତପୋବନ୍ତ ଧୃତରାଷ୍ଟ୍ର ଆଗେ କହି
ଏହାକୁ ଆମ୍ଭେ ଦିବ୍ୟ ଚକ୍ଷୁ ଦେଉଛୁ ସମସ୍ତ କହିବ ଏହି ।୯।
ସଂଗ୍ରାମ ବିଧି ବାରଣ ସିଦ୍ଧି ଗୁପତ ପ୍ରଘଟମାନ
ହାନି ଲାଭ ମାୟା ଅମାୟା ଯାହାର ମନେଣ ଯିସ ବିଧାନ ।୧୦।
ଯିସ ହୋଇବ ଏସବୁ କହିବ ଦିବ୍ୟ ଚକ୍ଷୁ ପରସାଦେ
ସବିହେଂ ଯେବେ ରଣ ମଧେ ପଡ଼ିବେ ଏ ତରିବ ଅପ୍ରମାଦେ ।୧୧।
ସାଂଗ୍ରାମ ଘୋର ହେବ ଅପାର ଭଲ ଭଲ ଯିବେ ନାଶ
ନିର୍ମଳ ଧର୍ମ ଯେଉଂ କତି ଉଦୟେ ସେ ଏଥେ ପାଇବ ଯଶ ।୧୨।
ଏତେକ କହି ଦିବ୍ୟ ଚକ୍ଷୁ ଦେଇ ବ୍ୟାସେ ଅନ୍ତର୍ଧାନେ ଗଲେ
ଧୃତରାଷ୍ଟ୍ର ରାଏ ସଂଜଏ ହକାରି ଯୁଦ୍ଧର କଥା ପୁଛିଲେ ।୧୩।
ଅଠାର କ୍ଷଉଣୀ ବଳ ଯେ ମିଳିଲେ କେଉଂ ରାଜା କାହୁଂ ଆଏ
ବ୍ୟାସ ଦିବ୍ୟ ଚକ୍ଷୁ ତୋତେ ପରାପତ ଧନ୍ୟ ତୁ ଧନ୍ୟ ସଞ୍ଜଏ ।୧୪।
କହସି ବାବୁ ଚରିତ ସବୁ ଶୁଣଇ ତୋହୋ ପ୍ରସାଦେ
କେହୁ ଜଣିମେ କେ ଅଯଶ ଲଭିବେ ଏଡ଼େ ଅସମ୍ଭବ ବାଦେ ।୧୫।
କୁରୁକ୍ଷେତେ ଧର୍ମକ୍ଷେତ୍ର ସେ କୁରୁକ୍ଷେତ୍ର ଅତି ପବିତ୍ର ପୃଥ୍ୱୀର ଉତ୍ତମ ସ୍ଥାନ
ମୋହର ପୋଏ ପଣ୍ଡୁ ତନଏ କଲେ କେବଣ ବିଧାନ ।୧୬।
ଯୁଦ୍ଧେ ଉଛୁକ ଗୁଣ୍ଠ ହୋଇ ଲୋକ ଆରମ୍ଭି ଅଛନ୍ତି ଦ୍ୱନ୍ଦ
ତୋହୋର ମୁଖୁ ଶୁଣି ପ୍ରତେ ଯିବି କେହୁ ଭଲ କେହୁ ମନ୍ଦ ।୧୭।
ସଂଜଏ ଭଣି ଶୁଣ ନୃପମଣି ପ୍ରଥମେ ଭୀଷ୍ମ ପରବ
କୁରୁ ମଣ୍ଡଳେ ଯେ ମିଳି ଦୁଇବଳ ହୋଇଛନ୍ତି ମଉଗର୍ବ ।୧୮।

ପାଣ୍ଡବେ ଥାଟ ଅତି ମୁରାଟ ସାତ କ୍ଷଉଣୀ ଗଣିତା ।
ତୋହ୍ନେ ପୁଅଙ୍କର ଏଗାର କ୍ଷଉଣୀ ନୋହେ କେହୁ ସଂଘରିତା ।୧୯।
ପ୍ରଳୟ ପାଣି ସାମାନ୍ୟ ଜାଣି ଦିଶନ୍ତି ବେନି ସଇନି
ଅଶ୍ୱ ଗଜ ରଥ ପଦାତି ସମ୍ଭର ଶୁଭେ କୋଳାହଳ ଧ୍ୱନି ।୨୦।
ବୀର ତ ଅନେକ କହିବି କେତେକ ନାନା ଦେଶର ନୃପତି
ଚତୁରଙ୍ଗ ବଳ ମିଳିବା ଦେଖିଣ ଅରଷ୍ଟି ଉଦଏ ହୋନ୍ତି ।୨୧।
ମରିବେ ଭଲ ପୃଥ୍ୱୀର ସଲ ତେଣୁ ଉପସର୍ଗ ଦିଶି
ପର ଆପଣା ଦୁହେଁ ହତ ହୋଇବେ ସାଧୁ ଲୋକଙ୍କୁ ବିକାଶି ।୨୨।
ସବିହେଁ ହୋଇ ସସ୍ତ୍ରକୁ ଛୁଇଁ ନିୟମ କରି ବୋଇଲେ
ଆନ ବେଳରେ ପ୍ରୀତି ହୋଇଥବା ମାରିବା ରଣେ ପଶିଲେ ।୨୩।
ପ୍ରମାଣ କରି ବଳ ନ ମାରି ବିରଥୀ ହତ-ଆଉଧେ
ଫିଟିବ ବାଳ ବସ୍ତ୍ର ଅସମ୍ଭାଳ ଏହା ନ ମାରିବା ଯୁଧେ ।୨୪।
ରଣ ସରିଲେ ଘରକୁ ଗଲେ ଯେ ଯାହା ବନ୍ଧୁ ତାହାରି
ହସିବା ବସିବା ରସିବା ଭାଷିବା ମାୟା ନଥିବ କାହାରି ।୨୫।
ଏମନ୍ତ କଣ୍ଟ କରିଣ ଆଣ୍ଟ ସମରେ ସଜ ହୋଇଲେ
ମାର୍ଗଶିର ମାସ ଶୁକ୍ଳ ତ୍ରୈଦଶୀ ଦୁଜା ନକ୍ଷତ୍ର ପାଇଲେ ।୨୬।
ମଙ୍ଗଳବାରେ ସଭିଙ୍କ ବିଚାରେ ଯୋଗାଇଲା ସେହୁ ଦିନ
କୁରୁକ୍ଷେତ୍ର ମଧ୍ୟେ ମିଳି ଦୁଇବଳ ଯେ ଯାହାରେ ଭିନ୍ନ ଭିନ୍ନ ।୨୭।
ପଶ୍ଚିମେ ଥାଇ ପୂର୍ବକୁ ଚାହିଁ ରହିଲେ ପାଣ୍ଡବ ବଳ
ପଶ୍ଚିମ ମୁଖେ ରହିଲେ କୁରୁବଳ ତିଳ ନ ପଡ଼ଇ ତଳ ।୨୮।
ପ୍ରଭାତ କାଳେ ରବି ଉଦେବେଳେ ଭୀଷ୍ମ ଦ୍ରୋଣ ସନ୍ଧ୍ୟା କଲେ
ପଣ୍ଡୁର ପୋଏ ରଣେ ଜଏ ପାନ୍ତୁ ବୋଲିଣ ଆଶିଷ ଦେଲେ ।୨୯।
ସଞ୍ଜୟ କହେ ଶୁଣ ତୁ ରାଏ ଗୁପତ ଏ କଥା ହାଦେ
ଦିବ୍ୟଚକ୍ଷୁରେ ମୁଁ ପ୍ରତ୍ୟକ୍ଷେ ଦେଖିଲି ବ୍ୟାସରିଷି ପରସାଦେ ।୩୦।
ଏଥୁ ଉତ୍ତାରେ ରଣଭୂମିରେ ଭୀଷ୍ମ ପରବେଶ ହୋଇ
ସନ୍ୟ ସମୁଦ୍ରେ କି ସମ୍ପୂର୍ଣ୍ଣ ଚନ୍ଦ୍ରମା ପୂର୍ଣ୍ଣମୀ ରାତ୍ରେଣ ଉଇଁ ।୩୧।
ବେଢ଼ିଅଛନ୍ତି ଅଶ୍ୱହାଥୀ ରଥୀ ରାଉତ ପାଦାନ୍ତି ବଳ
ଭୀଷ୍ମଙ୍କ ରଥେ ମଣ୍ଡଣୀ ଅନୁପାମ ବସ୍ତ୍ର ଚାମର ଗହଳ ।୩୨।
ବିବିଧ ଫୁଲମାଳ ଅମୂଲ୍ୟ ଦର୍ପଣ ମାନ ବିରାଜି
ଧ୍ୱଜ ପାତାଙ୍ଗ ଗଗନମାର୍ଗେ ଉଡ଼େ ଯୋଚିଲା ଅଛଇ ବାଜି ।୩୩।
ବାହେ ସାରଥି ଭୀଷ୍ମ ମାହାରଥୀ କରେ ଧନୁସସ୍ତ୍ର ଧରି
ସଂଗ୍ରାମ ଭୂମି ଦେଖିଣ ଉଲୁସଇ ଗୁଣ ଟଙ୍କାର ସେ କରି ।୩୪।
ଦ୍ରୋଣ ସହିତେ ଏ ଦିବ୍ୟରଥେ ଅଶତ୍ତମା କୃପ ଘେନି
ତୋହର ପୋଏ ସଜ ହୋଇ ଆସନ୍ତେ କମ୍ପୁଣ ଅଛି ମେଦିନୀ ।୩୫।
ଭୀଷ୍ମଙ୍କୁ ବେଢ଼ି ପଟୋଆର ପଡ଼ିଅଛନ୍ତି ସକଳ ସନ୍ୟ
ଭିନ୍ନେ ଅଙ୍ଗବଳ ଘେନିଣ ଆଡ଼କେ ଆବୋରି ଅଛନ୍ତି କର୍ଣ୍ଣ ।୩୬।
ଆପଣେ ଦ୍ରୋଣ ଭୁଅ ରଞ୍ଚଣ ସମ୍ମରେ ରହିଲା ଥାଠ
ଭୀଷ୍ମ ଦୁଇ ବଳ ଆଗରେ ଅଛନ୍ତି ଜାଣି କି ବଜ୍ରକବାଟ ।୩୭।
ଯୁଧେଷ୍ଠି ରାୟେ ଦେଖି କଲେ ଭୟେ ହକାରି ଅର୍ଜୁନେ ପୁଛି
ଅସଂଖ୍ୟ ବଳ ପ୍ରଳୟ ସିନ୍ଧୁ ଜାଣି କୁରୁବଳ ଦିଶୁଅଛି ।୩୮।
ଆମ୍ଭର ପାହି ନୋହିଲା ଫାଇ ଯାବନ୍ତ ସାତକ୍ଷଉଣୀ
ଆଣ୍ଟ କଲା ଥାଟ ପାଞ୍ଚୁ ଧନୁର୍ଜୟେ ଯେମନ୍ତେ କେହି ନ ଜିଣି ।୩୯।
ପାଷାଣ ଜାଣି ଏଗାର କ୍ଷଉଣୀ ଭୁଅ ପାଞ୍ଚୁ ରହିଛନ୍ତି
ବଜ୍ରସୂଚୀ ଭୁଅ ପାଞ୍ଚ ଆମ୍ଭ ଥାଠ ଯେମନ୍ତ ଭେଦ ନୋହନ୍ତି ।୪୦।
ଶୁଣି ଅର୍ଜୁନ ଭାଳି ମନେ ମନ ବଜ୍ରସୂଚୀ ଭୁଅ ରଞ୍ଚୁ (ରଚି)
ରଥୀକି ହାଥୀ ଅଶୁଆରେ ପାଦାନ୍ତି ଏକକୁ ଆରେକ ପାଞ୍ଚୁ ।୪୧।
ବଜ୍ରହୁଁ ଆଣ୍ଟ କରିଣ ଥାଠ ନିର୍ଭୟେ ହୋଇ ରହିଲା
ପାଣ୍ଡବେ ବଳ ଏକୁଂ ଏକ ଆଗଲ କାହାର ବୋଲେ କହିଲା ।୪୨।
ଯେ ଯାହା ସନ୍ୟ ଘେନି ରାଜାମାନ ବିଚିତ୍ର ରଥନ୍ତ ଚଢ଼ି
ବସ୍ତ୍ର ଚାମର ମଣ୍ଡଣି ଅନୁପାମ ପାତାଙ୍କେ ସୂର୍ଯ ଓହାଡ଼ି ।୪୩।
ଅର୍ଜୁନ ଯାନ ତିଥି ବିଦ୍ୟମାନ ଅପୂର୍ବ ମଣ୍ଡଣି ଶୋଭା
ମକର ମାସେ ଉଦୟେ ଦିଶେ ଯେହ୍ନେ ଆଦିତର ପ୍ରଭା ।୪୪।
ଧ୍ୱଜରେ ଅଛି ପବନ-ବଂଶି କପି-ଇନ୍ଦ୍ର ହନୁମାନ
ବାଏ ନ ଉଡ଼େ ଆଗକୁ ପଡ଼େ କପିକେତନ ତା ନାନ ।୪୫।
ଶୁଭଇ ରଡ଼ି ମେଘ ଘଡ଼ଘଡ଼ି ଶୁଣି କୁରୁବଳ ତ୍ରାସି
ଶ୍ରୀହରି ଆଜ୍ଞାଏ ତ୍ରେତୟା ମଲ୍ଲ ଅର୍ଜୁନ ରଥରେ ବସି ।୪୬।
ପ୍ରଳୟ ପାଣି ନଉକା ଜାଣି ଦିଶଇ କୀରଟୀ ରଥ
କୁରୁବଳ ଦେଖି ଯୁଧେଷ୍ଠି ନୃପତି ପୁଣ ପଚାରନ୍ତି ପାର୍ଥ ।୪୭।
ଭୀଷ୍ମକୁ ଚାହାଂ କୋଦଣ୍ଡ ନାହା ସୂର୍ଯ୍ୟର ତେଜ ପରାଏ
ଏହାର ମୁଖେ ରହି ଯେହୁ ଯୁଝିବ ଧନ୍ୟ ବୋଲିବି ତାଏ ।୪୮।
ଏହାନ୍ତ ଜିଣି ଯେବେ ଧରଣୀ ଭୋଗ୍ୟ କରି ଆମ୍ଭେ ପାରି
ତେର ବରଷ ଦ୍ରୌପଦୀ କେଶ କଷ୍ଟ ତେବେ ସେ ପାଶୋରି ।୪୯।
ଅର୍ଜୁନ କହେ ଶୁଣ ଧର୍ମରାଏ କିମ୍ପା ତୁ ବିଷାଦ ପାଉ
ତୁ ପୁଣ୍ୟ ଲୋକ କ୍ଷତ୍ରୀ ବିବେକ ଅସଦ ମାର୍ଗେ ନ ଯାଉ ।୫୦।
ତୋହର କର୍ମେ ଏ ସତ୍ୟ ଧର୍ମେ ରଣେ ନ ପାଇ ହାରି
ଶ୍ରୀହରି ଆମ୍ଭଙ୍କୁ ସାହା ହୋଇଛନ୍ତି କେ ପୁଣି ଆମ୍ଭଙ୍କୁ ସରି ।୫୧।
ବିଷ୍ଣୁ ପ୍ରସାଦେ ଏ ମହାବାଦେ ଆମ୍ଭେ ସେ କରିବା ଜଏ
ସହସ୍ରେ ଭୀଷ୍ମ ସାଂଗ୍ରାମେ ପଶିଥିଲେ ମୁହିଁ ନ କରଇ ଭଏ ।୫୨।
ହରି ସଦଏ ଆମ୍ଭ ହୃଦଏ କାହାକୁହିଁ ଭଏ ନାହିଁ
ଲକ୍ଷେ ଲକ୍ଷେ ଭୀଷ୍ମ କୋଟୀଦ୍ରୋଣ ଥିଲେ ଆମ୍ଭେ ଜିଣିବା
ଗୋସାଇଁ ।୫୩।
ଅର୍ଜୁନ ବାଣି ଯୁଧେଷ୍ଠି ଶୁଣି ହୋଇଲେ ପରମ ଶାନ୍ତି

ଏଥୁ ଅନନ୍ତରେ ପାଣ୍ଡବେ ସଇନି କୁରୁ ନିକଟକୁ ଯାନ୍ତି ।୫୪।
ଅର୍ଜୁନ ରଥୀ ହରି ସାରଥି ଧ୍ୱଜରେ ଅଛି ହନୁ
ଧ୍ୱଜହୁଁ ଦେଖି କଉରବ ବଳ ଡରେଣ କମ୍ପଇ ତନୁ ।୫୫।
ଦୁର୍ଗା ସୁମରି ଗାଣ୍ଡିମ ଧରି ଉଭାରି ରହିଲା ପାର୍ଥ
ଭାଦ୍ରବ ମାସ ଆଦିତ୍ୟ ପରାୟେ ଶୋଭା ପାଉଅଛି ରଥ ।୫୬।
ସୋମୋଦ୍ର ବେନି ଦୁଇ ଭୂମି ଘେନି ରହିଲା ଯେ ଥାଠ ଦିଶି
ଏସନ ଶୁଣି ଅନ୍ଧ ନୃପମଣି ସଞ୍ଜୟେ ଆଗେଣି ଭାଷି ।୫୭।

## ଧୃତରାଷ୍ଟ୍ର ଉବାଚ

ଏ ବେନି ଥାଠ ଅତି ମୁରାଟ ହୋଇଣ ଅଛନ୍ତି ରହି
ପ୍ରଥମେ କିସ କଥା ଉପୁଜିଲା ଆଗହୁଁ ସାଂଗ୍ରାମ ନୋହି ।୫୮।
କେ କିସ ବୋଲି କେ ମାଇଲା ପେଲି ଶୁଣିମା ବା ଉଚ୍ଚବାଚ
ତୁଣ୍ଡ କଳିରୁ ସେ ହାଥ ଲୁଆଂ ଲୁଇଂ କେ ଆଗ କହିଲା ଖଚ ।୫୯।
ଏହା ଶୁଣିବା କଥା ଜାଣିବା ବୁଝିବାନା ହାନି ଲାଭ
ବିଚାର କରିଣ କହତୁ ସଞ୍ଜଏ କେ ଆଗେ ଛାଡ଼ିଲା ଭାବ ।୬୦।
ସଞ୍ଜଏ ଭଣି ଶୁଣ ନୃପମଣି ପଚାରିଲୁ ମୋତେ ଯାହା
ପୁଅ ପୁତୁରାଙ୍କ କଳି ଯେ ପୁଚ୍ଛିଲୁ କହଇ ଶୁଣସି ତାହା ।୬୧।
ଯୁଧେଷ୍ଟି ରାଏ ରଥୁ ଓହ୍ଲାଏ କରୁଂ ଧନୁଶସ୍ତ୍ର ଛାଡ଼ି
କୁରୁସଇନି ଭିତରେଣ ପଶିଲା କରପତ୍ର ବେନି ଯୋଡ଼ି ।୬୨।
ସେ ଚାରି ଭାଇ ପଛେ ଗୋଡ଼ାଇ ଶ୍ରୀ ବାସୁଦେବ ସହିତେ
ଦୁଇଥାଠ ଲୋକେ ଯୁଧେଷ୍ଟିଙ୍କି ଦେଖି ଧିକାର କଲେ ବହୁତେ ।୬୩।
ବୋଇଲେ କୁନ୍ତୀ ନୋହେଂ ପୁଣ୍ୟବନ୍ତୀ ନିସତ ପୋଏ ପାଇଲା
ଏଡ଼େ ସଂଗ୍ରାମ ସମ୍ପାଦିଣ ହାଦେ ଶରଣ ପଶି ତ ଗଲା ।୬୪।
ଉଦ୍ଦେଶ୍ୟ କହି ତବଦ ହୋଇ ଏକଦୃଷ୍ଟି କରି ଚାହିଂ
ଏସନ ସମୟେ ଯୁଧେଷ୍ଟି ନୃପତି ଭୀଷ୍ମ ନିକଟକୁ ଯାଇ ।୬୫।
ପ୍ରଦକ୍ଷିଣ କରି ଶିରେ କର ଯୋଡ଼ି ପ୍ରଣମ୍ୟ କରିଣ ଚାହିଂ
ଭୋ ପିତାମହ ସାଂଗ୍ରାମକୁ ଆଜ୍ଞାଦେଅ ଯେମନ୍ତେ ସମର ହୋଇ ।୬୬।
ଭୀଷ୍ମ କଲ୍ୟାଣ କରି ବୋଲେ ଜିଣ ଭୁଞ୍ଜସି ରାଜ୍ୟ ବିଭୂତି
ଯୁଧେଷ୍ଟି ବୋଇଲେ କେ ତୋତେ ଜିଣିବ କହିଲୁତ ଅଯୁଗତି ।୬୭।
ଗାଙ୍ଗେୟ ଭଣି ଶୁଣ ନୃପମଣି ଅର୍ଥରେ ବଶ ହୋଇଲି
ଅନ୍ନ ବସ୍ତ୍ର ଦେଇ ଯେ ଲୋକ ପୋଷିଲା ତା ପାଇଂ ଶସ୍ତ୍ର ଧଇଲି ।୬୮।
ଶସ୍ତ୍ର ମୋ କରୁ ଛଡ଼ାଇ ଯେବେ ପାରୁ ତେବେ ତୁ ଜଏ ପାଇବୁ
ଶ୍ରୀହରି ତୋତେ ସାହା ହୋଇଛନ୍ତି ଏ ବୁଦ୍ଧି ତୁ ଭିଆଇବୁ ।୬୯।
ଏ ବୋଇ ଶୁଣି ପାଣ୍ଡବମଣି ଦ୍ରୋଣ ନିକଟକୁ ଯାଇ
ପ୍ରଦକ୍ଷିଣ କରି ପାୟେ ପଡ଼ି ଶୋଇ ଉଠି ଗୁରୁମୁଖ ଚାହିଂ ।୭୦।
ମାଗଇ ଆଜ୍ଞା ଛାଡ଼ି ପ୍ରତିଜ୍ଞା ସାଂଗ୍ରାମେ ଦେଅ ଆଦେଶ
ଦଇବ ଯେବେ କଲା ହେନ ସମୟେ ତୋର ମୋରେ
ଅମରିଷ ।୭୧।
ଶୁଣିଣ ଦ୍ରୋଣ ତୋଷ ହୋଇଣ ବୋଇଲେ ତୁ ଜୟ ପାଅ
କୃଷ୍ଣକୁ ବିଚାରି ଯେମନ୍ତେଣ ପାରୁ ମୋ କରୁ ଶସ୍ତ୍ର ଛଡ଼ାଅ ।୭୨।
ଶୁଣିଣ ଯୁଧେଷ୍ଟି ମନେ ହୋଏ ତୁଷ୍ଟି କୃପ ନିକଟକୁ ଗଲା
ଅଶ୍ୱତ୍‌ଥମା ଆଦି ଗୁରୁ ଗଉରୋବ ଲୋକମାନଙ୍କ ବୋଧିଲା ।୭୩।
ସନ୍ତୋଷ ହୋଇ ବାହୁଡ଼ି ଯାଇ ନିଜ ସଇନିରେ ପଶି
ନିନ୍ଦିବା ଲୋକେ ଧଇର୍ଯ୍ୟଗୁଣ ଦେଖି ପୁଣପୁଣ ପରଶଂସି ।୭୪।
ବୋଲନ୍ତି ଧନୀ ତୋର ଜନନୀ ଏହ୍ନେ ପୋୟେ ଉପୁଜାଇ
ଏତେବେଳେହେଂ ସାଂଗ୍ରାମ ନୋହୁବୋଲି ଶତ୍ରୁକୁ ପ୍ରବୋଧି
ଯାଇ ।୭୫।
ସାଧୁ ବଚନ ବୋଲି ସର୍ବଜନ ହରି ଘେନି ପାଞ୍ଚ ଭାଇ
ଯେ ଯାହା ରଥେ ବସିଲେ ଶସ୍ତ୍ର ଧରି ଆମ୍ପର ହୋଇଣ ରହି ।୭୬।
ପାଣ୍ଡବ ସନ୍ୟ ଦେଖି ଦୁର୍ଯ୍ୟୋଧନ ହସି ଦ୍ରୋଣକୁ ପଚାରି
ଭୋ ଗୁରୁ ଦେଖ ଯୁଧେଷ୍ଟିର ସନ୍ୟ ଆମ୍ଭଙ୍କୁ ନୁହନ୍ତି ସରି ।୭୭।
ଧୃଷ୍ଟଦ୍ୟୁମନ ଆବୋରିଛି ସନ୍ୟ ତୋହର ଶିଷ୍ୟର ଶିଷ୍ୟ
ଗୋଟି ଗୋଟି କରି ଜିଣି ଆମ୍ଭେ ପାରି ଆମ୍ଭନ୍ତ କରିବେ କିସ ।୭୮।
ସେ ଥାଠେ ସୁର ଅର୍ଜୁନ ବୀର ଭୀମହିଂ ନୁହଇ ସାନ
ଏ ଦୁଇ ଭାଇଙ୍କି ପଟାନ୍ତର ହୋଇ ଅଛନ୍ତି ନା ଯୋଦ୍ଧାମାନ ।୭୯।
ସାତ୍ୱକି କ୍ଷତ୍ରି ଅଟଇ ଧୃତୀ ବିରାଟ ଦ୍ରୁପଦରାଏ
ଧୃଷ୍ଟଦ୍ୟୁମନ କାଶୀ ରାଜନ ପୁରଜିତ ସାନ ନୋହେଂ ।୮୦।
କୋନ୍ତ ଭୋଜରାଜ ଶଲ୍ୟ ମହାରାଜ ଉତ୍ତମ ରାଜାହିଂ ଅଛି
ଯୁଧ୍ୟମୁନ୍ୟ ଅଭିମନ୍ୟୁ ସଙ୍ଗତରେ ଦୌପଦୀର ପାଞ୍ଚବଛି ।୮୧।
ଏତେକ ସାର ସନ୍ୟ ତାହାର ମହାରଥୀରେ ଗଣିତା
ଆମ୍ଭ ସନ୍ୟରେ ଯେଉଂ ଯେଉଂ ଯୋଦ୍ଧା ସବିହେଂ ସମରେ
ଜିତା ।୮୨
ତୁମ୍ଭେତ ଆପଣ ଦିବ୍ୟ ଶସ୍ତ୍ର ଦ୍ରୋଣ ଭୀଷ୍ମଙ୍କୁତ ନାହିଂ ସରି
କର୍ଣ୍ଣ କୃପ ଅଶ୍ୱତ୍‌ଥମା ବିକର୍ଣ୍ଣ ଭୁରିଶ୍ରବା ଦଣ୍ଡଧାରୀ ।୮୩।
ଆହୁରି ଭଲ ଅଛନ୍ତି ମହାମଲ୍ଲ ନାନା ଆଉଧନ୍ତ ଧରି
ବିଚିତ୍ର ଯୁଦ୍ଧ ମୋହ ପାଇଁ କରିବେ ପ୍ରାଣକୁ ପ୍ରୀତି ନ କରି ।୮୪।
ଆମ୍ଭର ଥାଠ ଭୀଷ୍ମରେ ମୁରାଟ ଅଣ୍ଟୁ ନାହିଂ ଏତେକେହେଂ
ତାହାଙ୍କ ସନ୍ୟ ରଖେ ଭୀମସେନ ଦେହ ନ ଲାଗଇ ଦେହେ ।୮୫।
ଭୋ ଗୁରୁ ଦ୍ରୋଣ ମୋହ ବୋଲ ଶୁଣ ଭୁଅ ଦ୍ୱାରେ ରହିଥିବୁ
ଭୀଷ୍ମଙ୍କୁ ଆବେରି ଧନୁଶସ୍ତ୍ର ଧରି ହେଳେ ବଇରି ମାରିବୁ ।୮୬।
ନୃପତି ବାଣୀ ଭୀଷ୍ମହିଂ ଶୁଣି ହୋଇଲେ ପରମ ତୋଷ
ରୋମ ଟାଙ୍କୋରାଇ ସିଂହରଡ଼ି ଦେଇ ପୂରିଲା ଏ ଦଶଦିଶ ।୮୭।

ବାଇଲା ଶଙ୍ଖ ଭୀଷ୍ମ ରଣରଙ୍ଗ ଶୁଣି ସଇନି ଆନନ୍ଦ
ସେନାପତିଙ୍କ ହରଷେ ଉଷତ ହୋଇଲେ ଏ କୁରୁବୃନ୍ଦ ।୮୮।
ସକଳ ରାଜା ଯେ ଯାହାରେ ବାଜା ବଜାଇଣ ଗୋଳ କଲେ
ପାଣ୍ଡବ ଥାଟେ ଥାଇଣ ଜଗନ୍ନାଥେ ପାର୍ଥ ମୁଖକୁ ଚାହିଁଲେ ।୮୯।
ଶ୍ୱେତ ଘୋଡ଼ାଏ ବେନି ଯୋଡ଼ାଏ ଯେଉଁ ରଥେ ଯୋଚିଛନ୍ତି
ସେ ରଥେ ବସି ଅର୍ଜୁନ ହୃଷୀକେଶି ଦୁହେଁ ଦିବ୍ୟ ଶଙ୍ଖ ବାନ୍ତି ।୯୦।
ଶ୍ରୀକୃଷ୍ଣ ଶଙ୍ଖ ଶତ୍ରୁଙ୍କୁ ଡଙ୍କ ଲାଗିଲା ପରାଏ ବୁଝି
ନାମ ପାଞ୍ଚଜନ୍ୟ ବାଏ ଭିନ୍ନ ଭିନ୍ନ ଶତ୍ରୁ ପଳାଏ ନ ଯୁଝି ।୯୧।
ଶଙ୍ଖ ଦେବଦତ୍ତ ବାଇଲା ପାର୍ଥ ଶୁଣି କୁରୁବଳ ଡରି
ପଣ୍ଡ୍ରୁର ଶଙ୍ଖ ବାଇଲା ଭୀମସେନ ଶବଦ ସବୁହିଁ ପୂରି ।୯୨।
ଯୁଧେଷ୍ଠି ରାଏ ଅନନ୍ତ ବିଜୟେ ଶଙ୍ଖଧରି ବଜାଇଲେ
ଯେସନ ସମୟେ ନକୁଳ କୁମାରେ ସୁଘୋଷ ଶଙ୍ଖ ବାଇଲେ ।୯୩।
ମଣିପୁଷ୍ପେକ ନାମେଣ ଶଙ୍ଖ ସହଦେବ ଧରି ବାଇ
ଦ୍ରୁପଦ ବିରାଟ ଧୃଷ୍ଟଦ୍ୟୁମ୍ନ ଏମାନେ ଶଙ୍ଖ ବଜାଇ ।୯୪।
ଦ୍ରୌପଦୀ ପୋଏ ସୁଭଦ୍ରା ତନୟେ କାଶୀରାଜା ଶିଖଣ୍ଡୀ
ସାତ୍ୟକୀ ସହିତେ ଯେ ଯାହାର ଶଙ୍ଖ ବଜାଇଣ କଲେ ରଡ଼ି ।୯୫।
ପାଣ୍ଡବ ବଳେ ଯେତେ ମହୀପାଳେ ଯେ ଯାହା ବାଦ୍ୟ ବଜାନ୍ତି
ପ୍ରଳୟ ସମୋଦ୍ର ଜାଣିକି ଗର୍ଜନ ଶୁଣି ସଇନି ଶଙ୍କନ୍ତି ।୯୬।
ଗାଣ୍ଡିମଗୁଣ ଟଙ୍କାରେ ଟାଣ ନାନା ଆଉଧନ୍ତ ସାଜି
ଅର୍ଜୁନ ବୋଲଇ ଭୋ ଜଗନ୍ନାଥ ବେଗେ ତୁ ଚଳାଅ ବାଜି ।୯୭।
ଦୁଇ ସଇନ ମଧ ଠାବେଣ କରସି ମୋ ରଥ ନେଇ
କେବଣ ଲୋକେ ଯୁଝି ଆସିଅଛନ୍ତି ଦେଖଇଁ କିନା ଗୋସାଇଁ ।୯୮।
ସଞ୍ଜୟ କହେ ଶୁଣତୁ ରାଏ ଅର୍ଜୁନ ଏ ବୋଲ ଶୁଣି
ଦୁଇଥାଠର ମଧ୍ୟେ ରହୁବର ଶ୍ରୀହରି କଲେକ ଆଣି ।୯୯।
ପାର୍ଥକୁ ଚାହିଁ କମଳାସାଇଁ ବୋଲନ୍ତି କ୍ଷତ୍ରିଙ୍କି ଦେଖ
ତୁମ୍ଭଙ୍କୁ ମାରିବେ ବୋଲି ଆସିଛନ୍ତି ଭଲ ଭଲ ଲୋକେ
ହାକ ।୧୦୦।
ଶୁଣି କିରୀଟି ଥିର କରି ଦୃଷ୍ଟି ସାଂଗ୍ରାମ ଭୂମିକୁ ଚାହିଁ
ସବିହେଁ ଦେଖିଲା ବନ୍ଧୁ ସହୋଦର ପର ନୁହନ୍ତି ନା କେହି ।୧୦୧।
ସେ ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନରାଣ କୃପ ଅଶ୍ୱତ୍ଥମା କର୍ଣ୍ଣ
ଶକୁନି ଭଗଦତ ଜୟଦ୍ରଥ ଶଲ୍ୟ ଭୁରିଶ୍ରବା ଦୁଃଶାସନ ।୧୦୨।
ଯେହାଙ୍କୁ ଦେଖି କୋପ ଉପେକ୍ଷି ସେନେହ ଭାବ ପ୍ରବେଶ
ମନେ ବିଚାରିଲା ଏ ମୋର ବାନ୍ଧେବ କେମନ୍ତେ କରିବି
ନାଶ ।୧୦୩।
କେ ମୋର ଭାଇ କେ ମଉଳା ହୋଇ ଅଜା ଗୁରୁ କେହୁ ଦାଦି
କେ ମିତ ସଂଘାତ ସୁହୃଦ ସମସ୍ତ କେହି ନୋହନ୍ତି ନା ବାଦି ।୧୦୪।

ଆପଣ ବଂଶ କରି ବିଧ୍ୱଂସ କିସ ଅରଜିବା ଧର୍ମ
ପିତାମହ ଗୁରୁ ବ୍ରାହ୍ମଣ ମାରିବି କରିବି ଏ ପାପ କର୍ମ ।୧୦୫।
ଅଦୋଷୀ ଲୋକ ଛନ୍ତି ଅନେକ ମଧ୍ୟସ୍ଥ ପଣେ କେ ଆସି
କେତେ କାଳେ କେଉଁ ସମ୍ପଦ ଭୁଞ୍ଜିବି ଏହାନ୍ତ ରଣେ
ବିନାଶି ।୧୦୬
ବିସ୍ମୟ ହୋଇ କୃଷ୍ଣଙ୍କୁ ଚାହିଁ ବୋଲଇ ଭୋ ସ୍ୱାମୀ ଶୁଣ
ଯୁଝି ଅଇଲାର ଲୋକଙ୍କୁ ଦେଖି ବସିଲା ମମତା ଗୁଣ ।୧୦୭।
ଦେହ କମ୍ପିଲା ମୁଖ ଶୁଖିଲା ହାଥ ଗୋଡ଼ ନ ଚଳନ୍ତି
ଭୟେଣ ରୋମମାନେ ଟାଙ୍କୋରନ୍ତି ହସ୍ତୁ ମୋ ଶସ୍ତ୍ର ପଡ଼ନ୍ତି ।୧୦୮।
ଦେହ ଆକୁଳ ମନ ଅନ୍ତରାଳ ନ ପାଇ ସ୍ଥିର ହୋଇ
ବିପରୀତ ଶଂକୁନ୍ୟମାନେ ଦିଶୁଛନ୍ତି ରାଜ୍ୟରେ ମୋ କାର୍ଯ୍ୟ
ନାହିଁ।୧୦୯
ବନ୍ଧୁମାନନ୍ତ କରିଣ ହତ ସୁଖେଭୋଗେ ଜୀଇଥିବା
ପୋଡ଼ଇ କିନା ଯେ କଥା ନ ରୁଚଇ ଏଥି କି ଯଶ ପାଇବା ।୧୧୦।
ଯାହାର ପାଇଁ ଅର୍ଜିବା ମହୀ ସେ ଯେବେ ରଣେ ପଡ଼ିବ
ଧନସମ୍ପଦ ରାଜ୍ୟ ବଡ଼ପଣ କେ ଆନେ ଭୋଗ କରିବ ।୧୧୧।
ଗୁରୁ ଦେଢୁତା ମଉଳା ଖୁଡୁତା ଶ୍ୱଶୁର ଶଳା ସମୁଦି
ଅଜା ନାତି ମାରି ମାରି ଆସିଛନ୍ତି ମୁଁଇ ନ କରଇ ଯେ ବୁଧି ।୧୧୨।
ମୋତେ ଯଦ୍ୟପି ମାରିବେ କୋପି ମୁହିଁ ନ ପାରେ ଏହାନ୍ତ
ଏହାନ୍ତ ମାରି ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ନୋହଇ କିନା ନରନାଥ ।୧୧୩।
ପୃଥ୍ୱୀରେ କାର୍ଯ୍ୟ ନାହିଁ ଦେବରାଜ କିମ୍ବା ମୁଁ ପାପ ପାଇବି
ଯଦ୍ୟପି ଦୁର୍ଯ୍ୟୋଧନ ଆସିବ କୋପି ଭଲ ମନ୍ଦେ ମିଶାଇବି ।୧୧୪।
ଧୃତରାଷ୍ଟ୍ର ପୋଏ ପଣ୍ଡିତ ନୋହେ ପାପ ପୁନ୍ୟ ନ ଜାଣନ୍ତି
ମୁହିଁ କେମନ୍ତେ ତାହାଙ୍କରି ପରାୟେ ହୋଇବି ଭୋ ଶିରୀପତି ।୧୧୫
କୁଳ ବିନାଶ କଲେ ଯେଉଁ ଦୋଷ ତାହା କି ତୁହି ନ ଜାଣୁ
କୁଳକ୍ଷୟ କଲେ କଳାକର୍ମ ମାନେ ନାଶ ଯାନ୍ତି ହାଦେ
ତେଣୁ ।୧୧୬।
ଧର୍ମ ବିନାଶି ଅଧର୍ମ ଆସି ଆକ୍ରଷଇ କୁଳ ଗୋଟା
ଅଧର୍ମ ଜାଣି ଆକ୍ରଷିବା ମାତ୍ରକେ କୁଳସ୍ତିରୀ ହୋନ୍ତି ଦୁଷ୍ଟା ।୧୧୭।
ଯୁବତୀ ଦୁଷ୍ଟା ହୋଇଲେ ନଷ୍ଟା ବର୍ଣ୍ଣସଙ୍କରକୁ ଯାଇ
ସେ ପିତୃ ଲୋକେ ପଡ଼ନ୍ତି ନରକେ ପିଣ୍ଡ ଉଦେକ ନ ପାଇ ।୧୧୮।
କ୍ରିୟା ହୀନ ଅଧର୍ମେ ହୋୟେ ଲୀନ କୁଳଧର୍ମ ଯାଏ କ୍ଷୟେ
ଜାତି କୁଳଧର୍ମ ଯେଉଁ ଲୋକ ଛାଡ଼ଇ ସେ ପ୍ରାଣୀ ନରକ
ହୋୟେ ।୧୧୯।
ଭୋ କୃଷ୍ଣ ଶୁଣ ଆମ୍ଭେ ଦୃଜନ ରାଜ୍ୟ ଭୋଗ କରିବାକୁ
ବଡ଼ ପାପକୁ ଉଦଯୋଗୀ ହୋଇଛୁ ନ ଗଲୁ ନା ତରିବାକୁ ।୧୨୦।

ଏ ଯୁଦ୍ଧେ ମୁହିଂ ଶସ୍ତ୍ର ନ ଧରଇ ଦୁର୍ଯ୍ୟୋଧନ ମୋତେ ମାରୁ
ଏହା ସେ ଭଲ ପରାଏକ ମଣଇ ବନ୍ଧୁ ମୋ ହାଥେ ନ ମରୁ ।୧୨୧।
ସଞ୍ଜାଏ ଭଣି ଶୁଣ ନୃପମଣି ଏମନ୍ତ ବୋଲିଣ ପାଥ
ବିସ୍ମୟେ ହୋଇ ରହୁବରେ ବସିଲା ଶସ୍ତ୍ର ନ ଧରିଲା ହାଥ ।୧୨୨।
ନୟନେ ଲୁଅ ଭରି କୋନ୍ତୀପୁଅ ମନେଣ ଧର୍ମ ସୁମରି
ହୃଦରେ ଖେଦ ପାଇ ବଡ଼ ବିଷାଦ ଚକ୍ରକୁ ବନ୍ଦନ କରି ।୧୨୩।
କେବେହେଂ ଯୁଦ୍ଧ ନ କଲା ସଧ ବାହୁଡ଼ି ଯିବାକୁ ବାଞ୍ଛା
ଶ୍ରୀହରି ଡରେ କଥା କହି ନ ପାରେ ନୋହଇ ଆପଣା ଇଚ୍ଛା ।୧୨୪।
ପ୍ରଥମେ ଅଧ୍ୟା ଗୀତା ପ୍ରସିଧ୍ୟା ବଳରାମ ଦାସ ଭଣି
ନୀଳଗିରି ଜଗନ୍ନାଥଙ୍କ ପ୍ରସନ୍ନେ ପରମରସ ବଖାଣି ।୧୨୫।

ଇତି ଶ୍ରୀଭାଗବତଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗଶାସ୍ତ୍ରେ ସଞ୍ଜୟ ଧୃତରାଷ୍ଟ୍ର ସମ୍ବାଦେ ନାମୋ
ପ୍ରଥମୋଽଧ୍ୟାୟ

## ଦ୍ୱିତୀୟୋଽଧ୍ୟାୟ

### ସାଂଖ୍ୟଯୋଗ

**॥ ପୀଢ଼ିବନ୍ଧ ॥**

(ଭାଷ୍ଟେକ ବାଣୀରେ ପଢ଼ିବା)

ଅର୍ଜ୍ଜୁନ ଧନୁଶସ୍ତ୍ର ରଥେଣ ଥୋଇ ବିସ୍ମୟ ହୋଇ ଯହୁଂ ବସି
ପରମ ପୁରୁଷ ପରମବ୍ରହ୍ମ ହରି ଚାହିଂ ପଚାରନ୍ତି ହସି ।

### ଶ୍ରୀ ଭଗବାନୁବାଚ

ଅର୍ଜ୍ଜୁନ ବଦନ ଚାହିଂ ବୋଲନ୍ତି କମଳା ସାଇଂ
କିମ୍ପା ତୁ ବିସ୍ମଏ ହୋଇ ବସିଛୁ ପାଥ
ବିସମ ସନ୍ଧିର କାଳ ଅଧିକ ହୋଉ ବିକଳ
କେଉଂ ସଧେ ଧନୁଶସ୍ତ୍ର ନ ଧରୁ ହାଥ ।୧।
ଏ କଥା ସ୍ୱର୍ଗେ ବିରୋଧ ଅପକୀର୍ତ୍ତି ପୃଥ୍ୱୀ ମଧ
ଭଲ ଲୋକଙ୍କର ଯେହୁ ନୋହଇ ଗତି
ତୋହର ପରାଏ ଲୋକ ନ ଜାଣି ପାଉଛୁ ଶୋକ
ପ୍ରତିଜ୍ଞା ପାଶୋରି କିମ୍ପା ହୋଉ ଦୁମତି ।୨।
କାପୁରୁଷଙ୍କ ବେଭାର ଦୂରୁଶାଇଲୁ ଏଠାର
ଛାଡ଼ସି ବିକଳ ମନ ଗାଣ୍ଡିମ ଧର
ତୁଚ୍ଛ ବୁଦ୍ଧିରେ ବିଚାରୁ ହୃଦୟ ବିକଳ କରୁ
ଉଠି ବେଗେ ଧନୁଧରି କର ସମର ।୩।
ଅର୍ଜ୍ଜୁନ ବୋଲଇ ହରି ଭୀଷ୍ମ ଦ୍ରୋଣେ ପୂଜା କରି
ତାହାଙ୍କୁ କେମନ୍ତେ ବାଣ ମାରିବି ମୁହିଂ
ଗୁରୁ ପିତାମହ ନାଶି ଯେବଣ ଭୋଗ ବିଳାସି
ମତେ ପଛେ ପରାପତ ନୋହୁ ଏ ମହୀ ।୪।
ଏହାହୁଂ ମରଣ ସୁଖ ଜୀଇଣ ମାଗିବା ଭିକ
ସେ ମୋତେ ପରମ ସୁଖ ନ କରେ ଏହା
ମନ୍ଦ କରି ଯେଉଂ ଭୋଗ ସେ ଲୋକ ନରକେ ଯୋଗ
ପାଇଲା ପ୍ରାୟେକ ବୁଝହେ ଚକ୍ରବାହା ।୫।
ବୋଲ ଯେ ଯୁଦ୍ଧ କରିବା ଆମ୍ଭେ ହେ ସେଟି ମାରିବା
କି ଅବା ସେହି ମାରିବେ ନିୟତ ଜାଣି
ଆମ୍ଭେହେଂ ମାରିଲେ ମାରି ମେଦିନୀହିଂ ଭୋଗ୍ୟ କରି
କାଳକ ନଥିବାନିନା ସାଧ ଏ ବାଣୀ ।୬।
ଦଇନି କରଇ ହରି କଥାଏ କହ ବିଚାରି
ଯୁଝିବା ନ ଯୁଝିବାର ଭଲ କେ କହ
ଧର୍ମ ନିମିତ୍ତକୁ ମୋହ ପାଉଅଛି ମୋର ଦେହ
ତୁମ୍ଭେ ଯେ ମୋହର ଗୁରୁ ଫେଡ଼ ସଂଦେହ ।୭।
ଏ ମୋହୋର ଶୋକ ବ୍ୟାଧି ଇନ୍ଦ୍ରିୟ ମାନ ବିରୋଧି
ଇନ୍ଦ୍ର ପଦ ପାଇଲେଣ ଶାନ୍ତି ନୋହିବ
ଏତେ ବୋଲି ତୁନି ହୋଇ ବସିଲା ଶିର ନୁଆଇଂ
ଧୃତରାଷ୍ଟ୍ର ଆଗରେ ସଞ୍ଜୟ କହିବ ।୮।
ଦେଖି ବାସୁଦେବ ପୁଛି ଶୁଣ ହୋ ପାଣ୍ଡୁର ବଛି
ଯେବଣ ଲୋକଙ୍କୁ ଦେଖି ପୁଛିଲୁ ଏହା
ପଣ୍ଡିତ ହିଂ ଅଟୁ ପୁଣି ବେଦଶାସ୍ତ୍ର ଅଛୁ ଶୁଣି
ମିଛକୁ ଶୋଚନା କରି ବିଚାରୁ କାହା ।୯।
ପଣ୍ଡିତେ ଥିଲାକୁ ସୋଗ ମଲାଲୋକେ ବଇରାଗ
ନ ଘେନନ୍ତି ଦୁଇଭାବ ଦୁହିନ୍ତି ସମ
ମୁହିଂଯେ ଅଛଇ ବର୍ତ୍ତି କାଳକ କି ଥିବା ପୃଥ୍ୱୀ
ମଲେହେଂ କି ପୁଣି ଆସି ନୋହିବି ଜନ୍ମ ।୧୦।
ତୁହିକି କାଳକ ମହୀ ଥିବୁ ଏହୁ ଦେହ ବହି
ଏ ରାଜାମାନେହେଂ ଏଥି ଥିବା ପରାଏ
ଗଲେହେଂ ଆସିବେ ପୁଣି ସ୍ୱରୂପ ଅଟଇ ବାଣୀ
ଏହିମତି ସଂସାର ଏ ଆସଇ ଯାଏ ।୧୧।
ଯେ ଗୁଣେ ପଣ୍ଡିତ ମାନେ ଶୋଚନା ନ କରେ ମନେ
ଏ ଦେହ ବାଳ କୁମାର ବୃଦ୍ଧା ଯେସନ
ବାଳ ଭାବ ଛାଡ଼ି ଯୁବା କାଳେ କି ନାହିଂ ବୋଲିବା
କିମ୍ପା ବାଳଭାବ ଛାଡ଼ି ହେଲା ଏସନ ।୧୨।
ଯୁବା ଦେହ ଛାଡ଼ି ବୃଦ୍ଧା ହୋଇଲେକି ଅଶରଧା

ଆବର ଲୋଡ଼ିଲେ ତାହା ପାଇବା କାହିଁ
ଯେସନେକ ପ୍ରାୟେଦେହୀ ଛାଡ଼ି ଆନ ଦେହ ପାଇ
ଯେଣୁ ସେ ପଣ୍ଡିତଙ୍କର ଶୋଚନା ନାହିଁ ।୧୩।
ଏ ହାଦେ ଶୀତ ତପତ ଦୁଃଖ ସୁଖ ଦୁଇ ମତ
ବିଷୟ ଇନ୍ଦ୍ରିୟମାନେ ଦେଅନ୍ତି ଏହା
ଯେଥିଣ ଅନିତ୍ୟ ହୁଏ ଯହୁଁ ସେ ଆସଇ ଯାଏ
ଏହାତୁ ବିଚାରି ଜାଣ ଗାଣ୍ଡିମ-ବାହା ।୧୪
ଏମାନେ ଯାହାକୁ ଦଣ୍ଡି ନ ପାରନ୍ତି ମୋହେ ଭଣ୍ଡି
ଦୁଃଖେ-ସୁଖେ ସମ ସେହୁ ମହାପୁରୁଷ
ମୋକ୍ଷକୁ ଭାର୍ଜନ ହୋଇ ଇନ୍ଦ୍ରିଏ ବଶ ନୋହୋଇ
ଜାଣଇ ସେ ଦୁଃଖ ସୁଖ ଅଲିପ ରସ ।୧୫।
ଆତ୍ମା-ଧର୍ମ ନୋହେ ଯହୁଁ ନିୟତ ଅଟଇ ତହୁଁ
ସର୍ବଦା କାଳେ ନିର୍ମଳ ଆତ୍ମା ଅକ୍ଷୟେ
ଏ ଦୁଇ କଥାନ୍ତ ମଣି ତତ୍ତ୍ୱବେତ୍ତାମାନେ ଜାଣି
ବିଷୟ ଇନ୍ଦ୍ରିୟ ଦୁଃଖ ସୁଖ ଲେଖିଏ ।୧୬।
ତେଣୁ ତୁ ଏହା ସହିବୁ ଦେହ ଧର୍ମ ନ ବହିବୁ
ଆବର କଥାଏ ତୋତେ କହଇ ସାର
ଯେବଣ ଆତ୍ମା ଜଗତ ବ୍ୟାପିଣ ଅଛି ସମସ୍ତ
ତାହାକୁ ନାଶ କରିନ୍ତ ଶକ୍ଷ୍ୟ କାହାର ।୧୭।
ସେ ସେ ନିତ୍ୟ ଅବିନାଶୀ ଦେହତା ଅନିତ୍ୟ ଭାଷି
କାଳେଣ ହୋୟେ ବିନାଶି ବିଚାର ଏହା
ଧନୁ ଧରି ଯୁଦ୍ଧ କର ଅଇରି ବଳ ସଂହାର
ଦୃଢ଼ କରି ହୃଦେ ଧର କହିଲୁ ଯାହା ।୧୮।
ମୁଁ ମାଇଲିବୋଲଇ ଯେ ମୋତେ ମାଇଲାକ ସେ ଯେ
ଜାଣିବାର ନୁହନ୍ତିଟି ସେ ଲୋକମାନ
ଆତ୍ମାର ଜନମ ନାହିଁ ମରଣ ଲଭିବ କାହିଁ
ଶରୀରକୁ ହାଣିଲେକି ସେହୁ ନିଧନ ।୧୯।
ଯେ ଆତ୍ମାନ୍ତ ଅବିନାଶୀ ନିତ୍ୟ ବୋଲି ଯେହୁ ଭାଷି
ସେ କାହାକୁ ମାରଇ ତାହାକୁ କେ ମାରି
ଲେଙ୍କଡ଼ା କନା ପକାଇ ନୂଆପିନ୍ଧି ସୁଖ ପାଇ
କନାଖଣ୍ଡି ଗଲାକୁ କି ଶୋଚନା କରି ।୨୦।
ସେହି ମତି ଜୀର୍ଣ୍ଣଦେହ ଛାଡ଼ିଲେ ନ କରେ ସ୍ନେହ
ଯେବଣ ଆତ୍ମାକୁ ଶସ୍ତ୍ର ନ ପାରେ ଛେଦି
ଅଗ୍ନିହିଁ ଦହି ନ ପାରି ପାଣିକି ବୁଡ଼ାଇ ପାରି
ପବନ ଶୁଖାଇ ତାକୁ ନ ପାରେ ଭେଦି ।୨୧।
ଛିଡ଼ିବା ପୋଡ଼ିବା ପୁଣଂ ଶୁଖିବା ଯେହୁ ନୋହୋଇ
ଅବ୍ୟଗତ ନିର୍ବିକାର ଅଚିନ୍ତ୍ୟମୟେ
ଦେହକୁ ଘେନିଣ ଜାତ ମରଣ ହୋଏ ନିଅତ
ଏହାତୁ ଦୃଢ଼ କରିଣ ନ କର ଭୟେ ।୨୨।
ଜନମ ହୋଇଲେ ମରି ମଲେ ଜନମ ସବୁରି
ଏ କଥା ଅଟଇ ଧ୍ରୁବ କେ କରୁ ଆନ
ଦେଖି ଶୁଣି ଜାଣିଲେହେଁ ପରତେ ନାହିଁ କେବେହେଁ
ଆଶ୍ରିଯ ପରାୟେ ମଣି ହରାନ୍ତି ଜ୍ଞାନ ।୨୩।
ଯେ ଆତ୍ମା ଅଟେ ଅବଧ କେ କରି ପାରିବ ବଧ
ପ୍ରାଣୀଙ୍କର ମରିବାକୁ କିମ୍ପାଇ ଭାଳୁ
ବେଭାରେ କ୍ଷେତ୍ରିକି ଯୁଦ୍ଧ ସ୍ୱଧର୍ମ ଅଟଇ ସାଧ
ଦେହ କମ୍ପାଇଣ କିମ୍ପା ଲୋଚେକ ଗାଳୁ ।୨୪।
ଯୁଦ୍ଧ ସେ କ୍ଷତ୍ରିଙ୍କ ଧର୍ମ ଆନ ମାରଣ ଅକର୍ମ
ଏମନ୍ତ ସାଂଗ୍ରାମ ଭାଗ୍ୟ ଥିଲେଣ ପାଇ
ମିଳିଛନ୍ତି ଦୁଇଥାଟ ସ୍ୱର୍ଗକୁ ଫିଟିଛି ବାଟ
ଏଥି ରଣ ନ କଲେଣ ମହତ ଯାଇ ।୨୫।
ଧର୍ମ କି ଆନେ କରିବୁ କିରତି ନ ରୁହାଇବୁ
ଲୋକ ଅପଯଶ ପାପେ ହୋଇବୁ ଦହି
ମରିବାହିଁ ବଡ଼ ସୁଖ ଜନ ନିନ୍ଦା ବଡ଼ ଦୁଃଖ
ନେଟଙ୍କର ଗାଳି ପୁଣ ନ ପାରୁ ସହି ।୨୬।
ଯେଉଂ ମହାରଥୀମାନେ ତୋତେ ଡରୁଥିଲେ ମନେ
ଭୟେ ପଳାଇଲା ବୋଲି ଲଘୁ କରିବେ
ଯେଉଂ ବୋଲ ନ ବୋଲିଟି ତାହା ପାଇବୁ କୀରଟି
ଶତ୍ରୁ ଲୋକେ ଉଶ୍ୱାସିବେ କିମ୍ପା ଡରିବେ ।୨୭।
ନିନ୍ଦିବେ ସମର୍ଥ ପଣ ଏହାହୁଁ ଦୁଃଖ କେଉଣ
ହାରିବା ଜିଣିବାକୁ ଯେ ବିଚାର କରୁ
ଯୁଦ୍ଧରେ ତ ଦୁଇ ଲାଭ ମଲେଣ ବୈକୁଣ୍ଠ ଠାବ
ଜିଣିଲେଣ ପୃଥ୍ୱି ଭୋଗ କାହିଁକି ଡରୁ ।୨୮।
ଉଠିଣ ଗାଣ୍ଡିମ ଧର ବେଗେଣ ସମର କର
ଦୁଃଖ ସୁଖ ଲାଭ ଅଲାଭରେ ନମିଶି
ଜୟ-ପରାଜୟ-ସମ ହୋଇଣ କର ସଂଗ୍ରାମ
ସାଂଖ୍ୟଯୋଗ କହିଲିଂ ପାପେ ନମିଶି ।୨୯।
ଏ ବୁଧିରେ ଥିଲେ ହାଦେ କର୍ମ ବନ୍ଧ ମୁଖେ ଛେଦେ
ଆନ ଉଦିଯୋଗ ମାନେ ଫଳେ ନ ଫଳେ
ଏ ହାଦେ ଫଳଇ ସତ ନୋହେଂ ଆନ କର୍ମଗତ
ବଇଗୁଣ ନ ଉପୁଜେ କେହୁଣି କାଳେ ।୩୦।
ଆନ କର୍ମମାନ କଲେ ବଇଗୁଣ ଉପୁଜିଲେ

ପୃଥ୍ୱି ଅପଙ୍କଏ ତାକୁ ପଡ଼େ ଅବଶ୍ୟ
ଏ କର୍ମ ଯୋଗକୁ ନାହିଁ ଉଦିଯୋଗ କଲେ ପାଇ
ସଂସାରର ମହାଭୟ ହୋଅଇ ନାଶ ।୩୧।
ହରି ଆଶ୍ରେ-କେଣ କର୍ମ ଏହା ବୁଦ୍ଧି ନୋହେଂ ଭ୍ରମ
କାମନା ଉପରେ କର୍ମବୁଦ୍ଧି ଅନେକ
ମୂରୁଖେ ଆପତ ସୁଖ ନ ଘେନନ୍ତି ପଛ ଦୁଃଖ
କର୍ମଫଳ ଭୁଞ୍ଜିବାକୁ ହୋନ୍ତି ଉଳୁକ ।୩୨।
ବେଦବାକ୍ୟ ମାନେ ଛନ୍ତି କାମ୍ୟ କର୍ମହିଁ ଦିଅନ୍ତି
ଯେ ଅବା ଯହିଂକି ଧାୟି ସେ ଫଳ ପାଇ
କାମେ ତତପର ହୋଇ କର୍ମ କଲେ ଫଳ ପାଇ
ବିଷ୍ଣୁ ଭକ୍ତିକି ଚିତ୍ତ ଯାଇ ନ ଦେଇ ।୩୩।
ଅନେକ ପ୍ରକାରେ ବୁଦ୍ଧି ଆପତ ସୁଖେ ପ୍ରବୋଧି
ସ୍ୱର୍ଗଫଳ ଭୁଞ୍ଜି ଜନ୍ମ ମରଣ ଘେନି
ବାସୁଦେବେଣ ପୀରତି ବୋଲି କର୍ମ ନ କରନ୍ତି
ଆବର କଥାଏ ଶୁଣ ତୁ ଫାଲଗୁନି ।୩୪।
ତୁ ଅବା ବୋଲୁ ଏମନ୍ତ ବେଦହିଂ ତୋ ସନମତ
ସେ କଥାହିଂ ଅଟେ ସତ କେ କରୁ ଆନ
ଯେଥର ମଧରେ ସାର ଅଛଇ ତତ୍ତ୍ୱ ବିଚାର
ତ୍ରିଗୁଣେ ବନ୍ଧା ହୋଇଲା ଯେବଣ ଜନ ।୩୫।
ସେମାନେ ଏହା କରନ୍ତି କ୍ଷଏ କର୍ମ ଆଦରନ୍ତି
ଯେହି ବେଦେ ସତ ରଜ ତମ ହିଂ ଅଛି
ଯାହାକୁ ଯେ ପରାପତ ଆଦରନ୍ତି ବିଧିମତ
ଏହି ବେଦବାକ୍ୟ ବୋଲି ଘେନଇ ବାଛି ।୩୬।
ତୁ ଯେ ତ୍ରିଗୁଣୁ ବାହାର ବନ୍ଧ କି ହୋଇବୁ ଆର
ଦୁଃଖ ସୁଖ ଯେକ କରି ଧଇର୍ଯ୍ୟ ହୋଅ
ଅପ୍ରାପତ ଯୋଗ ଇଛ ପାଇଲା ବସ୍ତୁ ନ ଗଛ
ଆତ୍ମାକୁ ଘେନିଣ ସୁଖ ରମୁଣ ଥାଅ ।୩୭।
ଆହୁରି କହଇ ତୋତେ ତଳଏ କରସି ମୋତେ
ଦୃଷ୍ଟାନ୍ତର ସିଦ୍ଧାନ୍ତେକ ଅଛଇ ଶୁଣ
ପୋଖରୀରେ ଯେତେ ପାଣି ଯେତେ କାର୍ଯ୍ୟ କରିଆଣି
ସମ୍ପୂର୍ଣ୍ଣେଣ ପୂରିଥିଲେ ଅଧିକ ଗୁଣ ।୩୮।
ଜାଣିଲା ବ୍ରାହ୍ମଣ ହାଦେ ସବୁ କର୍ମ ଅଛି ବେଦେ
ଭ୍ରାନ୍ତି ନ କରିଣ ଭେଦି ଘେନଇ ସାର
ତୁ ଅବା ବିଚାରୁ ଏହା ସବୁ ଯେବେ ଚଉବାହା
ଆଉ କିମ୍ପା କର୍ମ କରି ହେବା ଅସାର ।୩୯।
ଫଳ ତାକୁ ସମର୍ପିବା ତାଏ ଆଶ୍ରେ କରିଥିବା
ଏ କଥାତ ଭଲ ଆଉ ନୋହିବା ବଣା
ଏକଥା ଅଟଇ ସିଦ୍ଧି କର୍ମହିଁ ବେଭାର ବିଧି
ଫଳ ନ ଘେନିଲା ଲୋକ ଜଗତେ ଜିଣା ।୪୦।
ସିଦ୍ଧ ଅସିଦ୍ଧରେ ସମ ଫଳଛାଡ଼ି କରେ କର୍ମ
ବାସୁଦେବ ଭକ୍ତିହିଂ ସେ ସବୁହୁଂ ସାର
କାମନା ଉପରେ କର୍ମ କରିବା ବେଭାରେ ଭ୍ରମ
ଅଳପ ଜ୍ଞାନଟି ସେ ଯେ ନୁହଇ ସାର ।୪୧।
ବୁଦ୍ଧି ଯୋଗେ ଆଶ୍ରେ କରି ବାଞ୍ଛା ଫଳକୁ ନ ଧରି
କୃପଣ ଲୋକଙ୍କ ସେବା ଅଟେ ଯେସନ
ବୁଦ୍ଧି ଯୋଗେ ଆଶ୍ରେ କରି ସୁକୃତୁଂ ଦୁଷ୍କୃତୁଂ ତରି
ଏ କଥା ତୁ ଆଶ୍ରେ କର ପଣ୍ଡୁ ନନ୍ଦନ ।୪୨।
ପଣ୍ଡିତେ ବୁଦ୍ଧ ଯୋଗରେ ଥାନ୍ତି ଅତି ତତପରେ
କର୍ମଫଳ ଛାଡ଼ି ଜନ୍ମ ବନ୍ଧ ମୁକତ
ଅନାମୟ ବ୍ରହ୍ମ ପାନ୍ତି ମୋହ ଛାଡ଼ି ହୋଏ ଶାନ୍ତି
ସୁବୁଦ୍ଧି ଦିଶିଲେ ସୁମରିବୁ ଆମ୍ଭନ୍ତ ।୪୩।
ଛାଡ଼ିବୁ ଚଞ୍ଚଳ ଭାବ ବୁଦ୍ଧି ହିଂ ଥିର ହୋଇବ
ତେତେବେଳେ ଯୋଗ ଆସି ହୋଏ ପ୍ରାପତ
ଅର୍ଜୁନ ବୋଲଇ ଶୁଣି ଭୋ ସ୍ୱାମୀ ସାରଙ୍ଗ ପାଣି
ଥିର ବୁଦ୍ଧି ହେଲା ଲୋକ ଅଟେ କେମନ୍ତ ।୪୪।
କେମନ୍ତ ଆସନେ ଭାଷି କେମନ୍ତ ପ୍ରକାରେ ଭାଷି
କେମନ୍ତେ ଚାଲିବା ତାହା କହ ଗୋସାଇଂ
ଶ୍ରୀହରି ବୋଲନ୍ତି ଶୁଣ ଥିର ବୁଦ୍ଧି ଲୋକ ଗୁଣ
ବାଏଞ୍ଛା ନ କରି ଆତ୍ମା ରମୁଣ ଥାଇ ।୪୫।
ଦୁଃଖେ ନୋହେ ଉଦ୍‌ବେଗ ସୁଖେ ସଧ ପରିତ୍ୟାଗ
ଲୋଭ ମୋହ କ୍ରୋଧ ଛାଡ଼ି ହୋଅଇ ଶାନ୍ତି
ପାଇଲା ନ ପାଇଲାକୁ ଆନନ୍ଦ ବ୍ୟଥା ଯାହାକୁ
ନ ଲାଗଇ ସେ ସେ ଥିର ବୁଦ୍ଧି ହୋଅନ୍ତି ।୪୬।
କୁରୁମ ଯେସନ ମତ ହରେ ଶିର ପାଦ ହସ୍ତ
ତେମ୍ଭନ୍ତ ଇନ୍ଦ୍ରି ମାନନ୍ତ ଦେହରୁ କାଢ଼ି
ପଞ୍ଚ ଇନ୍ଦ୍ରିଙ୍କ ଆହାର ନ ପାଇ ବିଷୟ ସାର
ଦୁଃଖେଣ ଆରତ ହୋଇ ଆସେ ବାହୁଡ଼ି ।୪୭।
ତାହାଙ୍କ ଶରଧା ରସ ନ ପୂରିଥାଇ ଆକ୍ରସ
ଏମନ୍ତ ବେଳେଣ ଲେଉଟାଇ ଯେ ପାରି
ସେ ଭାବ ଆତ୍ମାରେ ଲାଇ ଇନ୍ଦି କି ଯାଇ ନ ଯାଇ
ବେଭାରେଣ ବାହୁଡ଼ନ୍ତି ବିମନ ଧରି ।୪୮।
ଏହା ଯେ ପାରଇ ସାଧି ତାକୁ ବୋଲି ଥିର ବୁଦ୍ଧି

ଅର୍ଜ୍ଜୁନ ଶୁଣ ସୁବୁଦ୍ଧି କହିଲି ସାର
ଏ କଥାକୁ ଶ୍ରଦ୍ଧାବନ୍ତ ଅଟଇ ଯେଉଂ ପଣ୍ଡିତ
ତାହାଙ୍କୁ ଇନ୍ଦ୍ରିୟ କରୁଥାନ୍ତି ବିକାର ।୪୯।
ବଳେ ମନକୁ ଓଟାରି କୁ ମାର୍ଗକୁ ଭେଟ କରି
ପଣ୍ଡିତହିଂ ବଳେ ଧରି ଆଣେ ଆକ୍ରୋସି
ଇନ୍ଦ୍ରିୟ ମାନଙ୍କୁ ଧ୍ୱଂସି ମୋହୋରେ ଶରଣ ପଶି
ଏକଚିତ୍ତ ହୋଇଲେଣ ସୁବାଟ ଦିଶି ।୫୦।
ଇନ୍ଦ୍ରିୟେ ଯାହାକୁ ବଶ ସ୍ଥିର ବୁଦ୍ଧି ସେ ପୁରୁଷ
ଭିତରେ ବିଷୟ-ସଙ୍ଗ ନୋହିବ ଆଉ
ସଙ୍ଗରୁ ବାଞ୍ଛା ଜାତ ବାଞ୍ଛାଉଂ କ୍ରୋଧ ସମ୍ଭୂତ
କ୍ରୋଧୁ ମୋହ ମୋହୁ ଭ୍ରମ କେ ତରିଯାଉ ।୫୧।
ଭ୍ରମ ଯେବେ ହୋଏ ମତି ବୁଦ୍ଧି ମାନେ ନାଶ ଯାନ୍ତି
ରାଗ ଦେହୁ ଛାଡ଼ିଲାର ଲୋକ ସେ ସାର
ବଶ୍ୟ କରି ଇନ୍ଦ୍ରିମାନ ଭୁଞ୍ଜଇ ନାନା ବିଧାନ
ସର୍ବଦା ପ୍ରସନ୍ନ ମନ ହୋଏ ତାହାର ।୫୨।
ପ୍ରସନ୍ନ ମନ ଯାହାର ଦୁଃଖ ସରଇ ତାହାର
ବୁଦ୍ଧି ଥିର ହୋଇ ତୋତେ କହିଲୁ ସତ
ଇନ୍ଦ୍ରିୟ ବଶ ଯାହାକୁ ସୁବୁଦ୍ଧି କାହିଂ ତାହାକୁ
ଆତ୍ମାସଙ୍ଗେ ଭାବ କାହିଂ କରିବ ଯାତ ।୫୩।
ଆତ୍ମା ଭାବ ନ ପାଇବ ଶାନ୍ତି କେମନ୍ତେ ହୋଇବ
ଶାନ୍ତି ନୋହିଲା ଲୋକକୁ ସୁଖହିଂ ନାହିଂ
ଇନ୍ଦ୍ରିୟେ ବଶ ନୁହନ୍ତି ଇଚ୍ଛାଏଣ ପ୍ରବର୍ତ୍ତନ୍ତି
ମନ ହିଂ ତାହାଙ୍କ ସଙ୍ଗେ ବିହରେ ଯାଇ ।୫୪।
ପ୍ରତିଜ୍ଞାହିଂ ତହିଂ ନାଶି ବାଏ ଯେହ୍ନେ ନାବ ଭାସି
ସେ ପ୍ରାଣ ସ୍ୱଭାବେ ନାଶି କହିଲୁ ସାଧ
ଇନ୍ଦ୍ରିୟ ଯାହାକୁ ବଶ ବିଷଉଂ ହୋଏ ଉଦାସ
ପ୍ରତିଜ୍ଞା ପରିନିଷ୍ଠିତ ବୋଲି ଭୂ ମଧ ।୫୫।
ବ୍ରହ୍ମବିଦ୍ୟା ବୋଲି ଯାହା ସାବଧାନେ ଶୁଣ ତାହା
ମୂଢ଼ଲୋକ ମାନଙ୍କୁ ସେ ରାତ୍ର ପରାୟ
ଜ୍ଞାନୀକି ଦିବସ ଯେହ୍ନେ ଆତ୍ମା ପ୍ରକାଶଇ ତେହ୍ନେ
ସୁଖେଣ ଗମନ୍ତି ତହିଂ ନ କରି ଭଏ ।୫୬।
ମୂଢ଼କୁ ସଂସାର ମାୟା ପ୍ରକାଶ ଆଦିତ୍ୟ ଛାୟା
ଜ୍ଞାନୀକି ଅନ୍ଧାର ତେଣେ ଗମି ନ ପାରି
ସମୋଦ୍ର ଯେ ପୂରିଥାଇ ନଦୀମାନେ ପଶେ ଯାଇଂ
ପୂରିଲେ ହେଂ ନ ଉଚ୍ଛୁଳେ ଅଟଳ ବାରି ।୫୭।
ନ ପଶିଲେ ହେଂ ନ ଶୁଖି ଅଇଲେ ଯା ବୋଲଇକି
ନଗଲେ ନ ଏତାକୁ ତେହ୍ନେ ପରାଏ
ସବୁ କାମମାନ ଲେଛି ନିସ୍ପୋହା ଯେ ହୋଇଅଛି
ଅହଙ୍କାର ଛାଡ଼ିଣ ସେ ଶାନ୍ତିକି ଯାଏ ।୫୮।
କାମମାନେ ଯାହା ତହିଂ ପ୍ରବେଶ ହୋଅନ୍ତି ଯାଇଂ
ସେ ପ୍ରାଣୀ ଶାନ୍ତି ନ ପାଇ ହୋଏ ଅସାର
ଯାହାର କାମକୁ ଇଚ୍ଛା ଅନୁକ୍ଷଣେ କରେ ବାଞ୍ଛା
ସେ ଲୋକ ଶାନ୍ତି ନ ପାଇ କର ବିଚାର ।୫୯।
ହରି ବୋଲନ୍ତି ଅର୍ଜ୍ଜୁନ କହିଲି ଏ ବ୍ରହ୍ମଜ୍ଞାନ
ଏ ନିଷ୍ଠା ଜାଣିଲେ ହାଦେ ମୋହ ନ ପାଇ
ମରଣ କାଳେଣ ଶାଖା ବ୍ରହ୍ମଜ୍ଞାନ ନିଷ୍ଠା ଏକା
ଜାଣିଲେ ସେ ଲୋକ ହାଦେ ମୁକତି ପାଇ ।୬୦।
ଦ୍ୱିତୀୟା ଅଧ୍ୟା ସମ୍ପୂର୍ଣ୍ଣ ପଢ଼ିଲେ ଶୁଣିଲେ ପୁଣ୍ୟ
ଶ୍ରୀ ଜଗନ୍ନାଥ କହନ୍ତି ଅର୍ଜ୍ଜୁନେ ଶୁଣି
ଅପୂର୍ବ ରସ ପ୍ରକାଶ ଭଣେ ବଳରାମ ଦାସ
ଧୃତରାଷ୍ଟ୍ର ଆଗରେ ସଞ୍ଜଏ ବଖାଣି ।୬୧।

ଇତି ଶ୍ରୀମଦ୍‌ଭଗବଦ୍‌ଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମ-ବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ ସାଂଖ୍ୟଯୋଗ କଥନେ ନାମୋ ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟୋଽଧ୍ୟାୟ

### ଆଧ୍ୟାତ୍ମଯୋଗ

**॥ ପୀଢ଼ବନ୍ଧ ॥**

ଶ୍ରୀକୃଷ୍ଣ ମୁଖୁଂ ଯେସନକ ବାଣୀ ଶୁଣି ପୁଣି ପଚାରଇ ପାଥ
ବ୍ରହ୍ମଜ୍ଞାନ ନିଷ୍ଠା ଯେବେ ସ୍ୱାମୀ କହ ମୋରେ ବଚନ ଯଥାର୍ଥ ।

**॥ ଗୀତବନ୍ଧ ॥**

**(ଜଳକ୍ରୀଡ଼ା ବୋଲି ବାଣୀରେ ଗାଇବ)**

ତୁମ୍ଭେ ଯେ ବୋଲ କର୍ମ ବୁଦ୍ଧି ଭଲ, ମୋତେ କିମ୍ପାଇ ହିଂସାକୁ ପେଷିଲ ।୧।
କହୁଛ ନିନା ବ୍ରହ୍ମକର୍ମ ବିଧି, ବିଚାରନ୍ତେ ଦୁହେଂ ଅଟନ୍ତି ସିଦ୍ଧି ।୨।
ଏ ପୁଣି ମିଶାଇଲା କଥା ସିନା, ଭଲ କେଉଣ ତାହା କହ କିନା ।୩।
ସ୍ୱାମୀ ବୋଲନ୍ତି ଶୁଣ ଧନଞ୍ଜୟେ, ଜ୍ଞାନୀ ଲୋକଙ୍କୁ ଜ୍ଞାନ ଯୋଗ କହେ ।୪।
ସଂସାରୀ ଲୋକଙ୍କୁ ଯୋଗ କରମ, ଆରେକ କଥାଏ ଅଛି ମରମ ।୫।
ଜ୍ଞାନରେ ତେଡ଼େ ପରବେଶ ନୋହି, କର୍ମ ଛାଡ଼ି ମିଛେ ଟାଣି ହୋଅଇ ।୬।

ଏମନ୍ତ ଲୋକ ନ ପାଇ ସୁଗତି, ଯେଉଂ ଲୋକର ଜ୍ଞାନ ବକ୍ର ହୁନ୍ତି ।୭।
ଜ୍ଞାନ ଉଦେହେଲେ କରମ ସରି, କରମ ସରିଲେ ବେଭାରେ ତରି ।୮
ଜନ୍ମ ମାତ୍ରକେ ପ୍ରକୃତିରେ ବଶ, ପ୍ରକୃତି ବଶେଣ କର୍ମେ ପ୍ରବେଶ ।୯।
ମାୟାଚାରୀମାନେ ଲୋକଙ୍କ ଡରେ, ଇନ୍ଦ୍ରି ନିଗ୍ରାହିଣ ଥାନ୍ତି ବାହାରେ।୧୦।
ଭିତର ମନେ ପ୍ରକୃତିରେ ଥାଇ, ଲୋକ ଭଣ୍ଡିବାକୁ ଆରମ୍ଭ ପାଇଂ ।୧୧।
ଉତ୍ତମ ଜ୍ଞାନୀର ଚରିତ୍ର ଶୁଣ, ଭିତରେ ଥାଇ ଇନ୍ଦ୍ରି ନିଗ୍ରାହିଣ ।୧୨।
ବାହାରେ ସଂସାରେ ପ୍ରବର୍ତ୍ତିଥାଇ, ଯେ ଯାହା ଜାତି ଧର୍ମ ନ ଛାଡ଼ଇ ୧୩।
ଦେହ ବହିଣ ଯେ କର୍ମ ନ କରି, ତାହାର ଦିନ ସୁଖେଣ ନ ସରି ।୧୪
ଏଣୁ ସେ କର୍ମ କରିବା ଉଚିତ, କର୍ମ ଛାଡ଼ିବା ନୋହଇ ଯୁଗତ ।୧୫
ବିଷ୍ଣୁ ପ୍ରୀତି ଅର୍ଥେ କର୍ମ କରିବ, ସେ ସେ ଅବଧ କିମ୍ପାଇ ତରିବ ।୧୬
ମୁଂ କର୍ମକଲି ବୋଇଲେ ଲାଗଇ, ଉଦାସ ଲୋକଙ୍କୁ କିଛି ନ ଲାଗଇ ।୧୭
ଗୋରୁ ବ୍ରାହ୍ମଣ ଯଜ୍ଞେ ବଧ କରି, ପୁଣ୍ୟ ବୋଲି ତାହା ଅଛି ଆବୋରି ।୧୮
ପୂର୍ବେଣ ଯେ ବ୍ରହ୍ମା ସୃଷ୍ଟି ସୃଜିଲା, ପରଜାମାନଙ୍କୁ ତହିଂ ନିଯୋଜିଲା ।୧୯
ବୋଇଲା ଇଷ୍ଟ କର୍ମ କରୁଥାଅ, ଦେବତାମାନଙ୍କୁ ତୋଷ କରାଅ ।୨୦
ସେହି ତୁମ୍ଭଙ୍କୁ କରନ୍ତୁ ସଦଏ, ସେବାତୋର ତାଙ୍କୁ ନୋହ ହୃଦୟେ ।୨୧
ଦେବତାଙ୍କୁ ଦେଇ ଭୁଞ୍ଜିବ ଶେଷ, ସେ ପ୍ରାଣୀ ଜୀବନ ଅଟେ ବିଶେଷ ।୨୨
ଦେବତାଙ୍କୁ ଯେହୁ ନ ଦେଇ ଖାଇ, ସେ ମହାପାପୀ ନରକକୁ ଯାଇ ।୨୩
ପ୍ରାଣୀମାନେ ସବୁ ଅନ୍ନରୁ ଜାତ, ଅନ୍ନ ପ୍ରାଣରୁ ହୋଇଛି ସମ୍ଭୃତ ।୨୪
ସେ ପାଣି ପୁଣି ଯଜ୍ଞୁ ଜାତ ହୋଇ, ଯଜ୍ଞହିଂ ହାଦେ କର୍ମୁ ଉପୁଜଇ ।୨୫
କର୍ମ ବେଦରୁ ହୋଇଲା ଜନମ, ବେଦକୁ ଜନମ କଲାକ ବ୍ରହ୍ମ ।୨୬
ସେ ବ୍ରହ୍ମ ଯଜ୍ଞେ ଲାଗିଅଛି ଯାଇ, ଚକ୍ର ପ୍ରବର୍ତ୍ତିଛି ଏମନ୍ତ ହୋଇ ।୨୭
ଯେ ପୁଣ ଏହା ସମ୍ମତେ ନ କରେ, ସେହୁ ପରାଣୀ ଜୀଉଂ ଜୀଉଂମରେ ।୨୮
କେବଳ ଜନ୍ମ ହୋଇଲା ସଂସାରେ, ଇନ୍ଦ୍ରିମାନଙ୍କୁ ତୋଷ କରିବାରେ ।୨୯
ଯେବଣ ପ୍ରାଣୀ ଆତ୍ମାକୁ ରମନ୍ତି, ତୃପ୍ତିତି ମନେ ଶାନ୍ତି ହୋଇଥାନ୍ତି ।୩୦
କେହୁଣି କର୍ମ ନ ଲାଗଇ ତାରେ, ଭଲ ମନ୍ଦରୁ ସେ ଥାଇ ବାହାରେ ।୩୧
କାହାରି ତହିଂ ତାର କାର୍ଯ୍ୟ ନାହିଂ, ଅକାର୍ଯ୍ୟମାନ ସେ କରିବ କାହିଂ ।୩୨
କରଇ କର୍ମଫଳେ ନାହିଂ ଆଶ, ପରମ ଲୋକେ ତାକୁ ହୋଇ ବାସ ।୩୩
ଜନେକ ଆଦିକରି ମୁନିମାନେ, କର୍ମ କରି ଗଲେ ପରମ ସ୍ଥାନେ ।୩୪
ତୁ ଯେବେ ଆପଣେ ପରମ ଜ୍ଞାନୀ, ଆତ୍ମା ପରଚେ ଅଟୁ ଫାଲଗୁନୀ ।୩୫
ଲୋକାଚାର ପାଇ କରମ କର, କରମ ଛାଡ଼ିଲେ ଧର୍ମକୁ ଡର ।୩୬
ତୁ ଯେବେ କରମ ଛାଡ଼ିବୁ ହାଦେ, ସବିହେଂ ଛାଡ଼ିବେ ତୋହ ପ୍ରସାଦେ ।୩୭
କରମ ଛାଡ଼ି ନ କରିବେ ଧର୍ମ, କାଳେଣ ବିଫଳ ହୋଇବ ବ୍ରହ୍ମ ।୩୮
ତୋହୋର କାର୍ଯ୍ୟ ନ ଥିଲେ ହେଂ କର୍ମେ, କର୍ମ କରିବୁ ତୁ ସଂସାର ଧର୍ମେ ।୩୯
ଯେବେ ବଡ଼ଲୋକ ଅମାର୍ଗେ ଯାଇଂ; ତାହାକୁ ଦେଖି ସାନହିଂ ଗୋଡ଼ାଇ ।୪୦
ବଡ଼ ଲୋକଙ୍କୁ ସବୁ ପାର ଯାଇ, ସାନ କଲା ଯାଇ ମରଣ ପାଇ ।୪୧
ବଡ଼ଲୋକଙ୍କୁ ନ ଲାଗଇ ପାପ, ତାହାକୁ ଦେଖି ସାନ କଲା ଧାପ ।୪୨
ତେଣୁ ସେ ବଡ଼େଅମାର୍ଗେ ନ ଯିବ, ଯଦ୍ୟପି ତାକୁ କିଛି ନ ଲାଗିବ ।୪୩
ବଡ଼େ ଯିବା ଦେଖି ସାନେ ବୋଇଲେ, ଭଲ ନୋହିଲେ ଏ କେମନ୍ତେ ଗଲେ ।୪୪
ଆମ୍ଭେହେଂ ଯିବୁ ବୋଲି ଆଗ ସରି, ବଡ଼ ସୁଖେ ଯାନ୍ତି ସାନେ ନ ତରି ।୪୫
ତେଣୁ ସେମାନଙ୍କ ନଯିବା ପାଇଂ, ବଡ଼େ ଗମନ୍ତି ତରତ୍ତର ହୋଇ ।୪୬

ସାନେ ବିଚାରନ୍ତି ଆମ୍ଭେ ନଯିବା, ଯେ ଯାହା ଜାତି କର୍ମ ଧର୍ମେ
ଥିବା ।୪୭
ବଡ଼ମାନେହେଁ କର୍ମ ଆଦରନ୍ତି, ଅକର୍ମକୁ ଗଲେ ସେହୁ ଡରନ୍ତି ।୪୮
ଆମ୍ଭେ ତ ଭାର୍ଜନ ନୋହୁ ତହିଁକି, ବିଧାତା ଭିଆଇ ଅଛି
ଯହିଁକି ।୪୯
ବଡ଼ମାନେ ହେଁତ କରନ୍ତି କର୍ମ, ଜାଣିଲୁ ଆମ୍ଭକୁ ସେହିତ
ଧର୍ମ ।୫୦
ଏହା ବିଚାରି ତୁହି କର୍ମ କର, ଭୋ ପାର୍ଥ ମନେଣ ଆନ ନ
ଧର ।୫୧
ମୋତେ ଅପୂର୍ବ ତିନିପୁରେ ନାହିଁ, ମୁଁ କିସ ବାଏଥା କରିବି କାହିଁ ।
ଲୋକାଚାର ପାଇଁ କର୍ମ କରଇ, କର୍ମ ଛାଡ଼ିବାକୁ ଆପେ
ଡରଇ ।୫୩
ମୁ ଯେବେ କର୍ମ ନ କରିବି ଏଥ, ଲୋକେ ଘେନିବେ ନା ମୋହର
ପଥ ।୫୪
ବୋଲିବେ ଏ ତ ପରମ ଈଶ୍ୱର, ଏତ କର୍ମ ନ କରଇ ଆଦର ।୫୫
ଆମ୍ଭେ କିମ୍ପା ଆଉ କର୍ମ କରିବା, କର୍ମ ନ କଲେ ବେଭାରେ
ତରିବା ।୫୬
ଏମନ୍ତ ବୋଲି ନ କରିବେ କର୍ମ, କାଳେଣ ବିଫଳ ହୋଇବ
ଜନ୍ମ ।୫୭
ତୁ ଅବା ବୋଲୁ ସେ କର୍ମ ନକଲେ, ତୋର କିସ ହୋଇ ତାହାଙ୍କ
ମଲେ ।୫୮
କର୍ମ ନକରି ଯିବେ ଯେବେ ନାଶ, ମନ୍ଦ କରାଇଲା ମୋହର
ଦୋଷ ।୫୯
ମୂଢ଼େ ଯେମନ୍ତ ତତପର ହୋଇ, କର୍ମକରେ ଫଳ
ପାଇବାପାଇଁ ।୬୦
ଜ୍ଞାନୀହିଂ କର୍ମ କରି ସେହି ଭାବେ, ପୁଣ ନଥିବାକ ଫଳର
ଲାଭେ ।୬୧
ତୁ ଅବା ବୋଲୁ କର୍ମ ନକରାଇ, ଜ୍ଞାନ ଉପଦେଶ କହ
ଗୋସାଇଁ ।୬୨
ମୂଢ଼େ ଯେ ଜ୍ଞାନ ଧରି ନ ପାରନ୍ତି, କର୍ମ ନ କରି ତନ୍ଦରା
ହୋଅନ୍ତି ।୬୩
ଦୁଇ ଆଡ଼କୁ ନ ପାରନ୍ତି ଯାଇ, ତେଣୁକରି ପାର୍ଥ ତୋତେ ବୁଝାଇ ।୬୪
ଯେହୁ ତରିବେ ଯେବଣ ପ୍ରକାରେ, ତାହାକୁ ତାହା ମଣାଇ
ବେଭାରେ ।୬୫
ତୁ ଅବା ବୋଲୁ ମୂଢ଼ ଲୋକ ଜ୍ଞାନୀ, କରମ କରୁଥାନ୍ତି ଯେହୁ
ବେନି ।୬୬

ଏଥର ବିଶେଷ ଅଟଇ କେ, ଭୋ ଜଗନ୍ନାଥ ବିଚାରି ଆଗ୍ୟାଂ
ଦେ ।୬୭
ତାହି କହିବା ଶୁଣ ପଣ୍ଡୁସୁତ, ମୂଢ଼ ଲୋକ ଅହଙ୍କାରେ ଯୁଗତ ।୬୮
ପ୍ରକୃତି ଗୁଣେ ମୁଁ କଲି ବୋଲନ୍ତି, ଜ୍ଞାନୀ ବୋଲନ୍ତି ଇନ୍ଦ୍ରିମାନେ
ଯାନ୍ତି ।୬୯
ମୋହର ତହିଂ କିଛି ବିଶେ ନାହିଁ, ଯେ ଯାହା ବିଷୟ ପ୍ରବର୍ତ୍ତେ
ଯାଇ ।୭୦
ଏମନ୍ତ ବୋଲି ଆଶାଇ ନୋହଇ, ଏ ଦୁଇ ବିଶେଷ ଜ୍ଞାନୀ ସେ
ଜାଣଇ ।୭୧
ଏବେ ତୁ ମୋହୋ ବୋଲେ କର୍ମ କର, ଉଠିଣ ବେଗେ ଧନୁଶସ୍ତ୍ର
ଧର ।୭୨
ରଣେ ଜିଣି ମହୀ ଭୋଗ କରିବୁ, ଯେ ଫଳ ତୋହୋ ମନେ ନ
ଧରିବୁ ।୭୩
ମୋହର ଆଜ୍ଞା ମନେଣ ସୁମରି, ଶରଧାବନ୍ତ ହୋଇ ଧନୁଧରି ।୭୪
ଆଶା ଛାଡ଼ିଣ କରସି ଏ କର୍ମ, ମୁକତ ହୋଇବୁ ପାଇବୁ ବ୍ରହ୍ମ ।୭୫
ଯେଉଁମାନେ ମୋର ଆଜ୍ଞା ମେଣ୍ଟନ୍ତି, ଜ୍ଞାନ ଭ୍ରଷ୍ଟ ହୋଇ କର୍ମ
କରନ୍ତି ।୭୬
ନଷ୍ଟ ବୋଲିଣ ସେମାନଙ୍କୁ ଜାଣ, ତୁ ଅବା ବୋଲୁ ସ୍ୱାମୀ
ନାରାୟଣ ।୭୭
ଅକାମ କର୍ମେ ଲୋକ ଯେବେ ତରି, ସର୍ବିହେଁ କିମ୍ପା ସେ କର୍ମ ନ
କରି ।୭୮
ପ୍ରକୃତି ଜ୍ଞାନୀକିହିଁ ବନ୍ଧିଥାଇ, ପଞ୍ଚଭୂତଙ୍କୁ ସଙ୍ଗେ ଘେନି ଯାଇ ।୭୯
ସେଠାରେ ଇନ୍ଦ୍ରି ନିଗ୍ରହ ନ କଲେ, କିସ ହୋଇବ ସେ ତରିବ
ଭଲେ ।୮୦
ରାଗ ଉଦ୍ୱେଷକୁ ନ ଦେବା ଯାଇ, ବେଭାରିକ କରି ଥିବ
ଚଳାଇ ।୮୧
ହିଂସା ଅହିଂସା ବୋଲୁ ଅବା କର୍ମ, ବଳେ ନକରି ପରଜାତି
ଧର୍ମ ।୮୨
ବ୍ରାହ୍ମଣ କର୍ମ କି ଶୂଦ୍ର କରିବ, ଭଲ ନୋହୋଇ ଅକାଳେ
ମରିବ ।୮୩
ନିଜ ଜାତିରେ କର୍ମ କରୁ କରୁ, ମନ୍ଦ ହୋଇଲେ ହେ ଲୋକେ ନ
ଡରୁ ।୮୪
ଅର୍ଜୁନ ବୋଲଇ ଶୁଣ ଶ୍ରୀହରି, ମନେ ନ ଥାଇ ଯୋଗେ ପାପ
କରି ।୮୫
କେ ଏହା କରଇ ଶୁଣ ଗୋସାଇଁ, ସ୍ୱାମୀ ବୋଲନ୍ତି ପାର୍ଥ ମୁଖ
ଚାହିଁ ।୮୬

ରଜ ଗୁଣରୁ କାମ କ୍ରୋଧ ଜାତ, ଏ ସେ ପ୍ରବର୍ତ୍ତନ୍ତି ବଇରୀ ମତ ।୮୭
ଅଗ୍ନି ଯେସନେ ଧୂଅଁରେ ନ ଦିଶି, ଦର୍ପଣ ଯେମନ୍ତ କଳଙ୍କ ନସି ।୮୮
ବନ୍ଧାରେ ପେଟପୁଅ ଅଦୃଶ, କାମରେ ଜ୍ଞାନ ନୋହେ ପରକାଶ ।୮୯
ମନ ବୁଦ୍ଧି ଇନ୍ଦ୍ରି କର୍ମର ସ୍ଥାନ, ସବିହେ ହୋଇ ଉହାଡ଼ନ୍ତି ଜ୍ଞାନ ।୯୦
ଆତ୍ମାକୁ ମୋହ କରାଇଣ ଥାନ୍ତି, ଅର୍ଜ୍ଜୁନକୁ ଚାହିଁ ସ୍ୱାମୀ ବୋଲନ୍ତି ।୯୧
ତୁ ଏବେ ଆଗେ ଇନ୍ଦ୍ରିକି ନିରୋଧ, ଇନ୍ଦ୍ରି ନିଗ୍ରାହିଣ କାମକୁ ସାଧ ।୯୨
କାମ ନାଶ ଗଲେ ଆତ୍ମା ମୁକତ, ଚକ୍ର ବିଚାରି କହୁଅଛି ସତ ।୯୩
ସବୁହୁଂ ଶ୍ରେଷ୍ଠ ଇନ୍ଦ୍ରିମାନେ ହୁନ୍ତି, ଇନ୍ଦ୍ରିହୁଂ ଶ୍ରେଷ୍ଠ ମନକୁ ବୋଲନ୍ତି ।୯୪
ମନହୁଂ ଶ୍ରେଷ୍ଠ ଅଟେ ହାଦେ ବୁଦ୍ଧି, ବୁଦ୍ଧିହୁଂ ଶ୍ରେଷ୍ଠ ଆତ୍ମାଗୋଟି ନିଧି ।୯୫
ଏ କଥା ଜାଣି କାମ ଶତ୍ରୁ ମାର, ଭୋ ଅର୍ଜ୍ଜୁନ ଏହି ସେ ବିଚାର ।୯୬
ତୃତୀୟ ଅଧ୍ୟା ହୋଇଲା ସମ୍ପୂର୍ଣ୍ଣ, ପଢ଼ିଲା ଶୁଣିଲା ଲୋକର ପୁଣ୍ୟ ।୯୭
ଶ୍ରୀକୃଷ୍ଣ କହେ ଗୀତା ଗ୍ରନ୍ଥ ସାର, ସଞ୍ଜୟେ ଧୃତରାଷ୍ଟ୍ରର ବିଚାର ।୯୮
ମହାପାତ୍ର ସମନାଥ ତନୟେ, ବଳରାମ ଦାସ ସୁବୁଦ୍ଧି କହେ ।୯୯
ନୀଳଗିରି ଜଗନ୍ନାଥଙ୍କ ଦାସ, ତେଣୁ ଏ ଗୀତା କଲଇ ପ୍ରକାଶ ।୧୦୦

ଇତି ଶ୍ରୀଭଗବଦ୍‌ଗୀତା ସଂହିତାୟାଂ ସୁପନିଷସ୍ତୁ
ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀ କୃଷ୍ଣାର୍ଜ୍ଜୁନ ସମ୍ବାଦେ
ଆଧ୍ୟାତ୍ମ ଯୋଗ କଥନେ ନାମଃ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

### ସନ୍ନ୍ୟାସ ଯୋଗ

॥ ପୀଢ଼ବନ୍ଧ ॥

ଧୃତରାଷ୍ଟ୍ର ବୋଲଇ ଶୁଣ ସଞ୍ଜୟେ ଏଥୁ ଉତ୍ତାରେ ଯିସ ଆନ,
କହ ମୁଂ ଏକ ଚିତ୍ତେଣ ଶୁଣଇ କିସ ବୋଇଲେ ଭଗବାନ ॥

॥ ଗୀତବନ୍ଧ ॥

(ତଣ୍ଡେକ ରାଗେ ଗାଇବା)

ସଞ୍ଜୟେ କହେ ଶୁଣ ଧୃତରାଷ୍ଟ୍ର, ଅର୍ଜ୍ଜୁନ ଆଗେ ବୁଝାବନ୍ତି କୃଷ୍ଣ ।୧
ଭୋ ପାର୍ଥ ଏ ଯୋଗ ପୂର୍ବେଣ ମୁହିଂ, ଆଦିତ୍ୟ ଦେବତାକୁ କହିଲଇଂ ।୨
ସେହୁ ତା ପୁଅ ମନୁକୁ କହିଲା, ମନୁର ତହୁଂ ଇକ୍ଷ୍ୱାକୁ ହୋଇଲା ।୩
ଇକ୍ଷ୍ୱାର ତହୁଂ ଯେ ଶୁଣିଲେ ପିତା, ଯେମନ୍ତେ ପ୍ରକାଶ ହୋଇଲା ଗୀତା ।୪
ଏକରେ କହୁଂ ଆରେକ ଶୁଣିଲେ, ତେଣୁ ରାଜଋଷିମାନେ ଜାଣିଲେ ।୫
ବିଧିମତେଣ ପାଳନ୍ତା ନୋହିଲା, ସମ ଏକେଯୋଗ ଲୀନ ହୋଇଲା ।୬
ସେ ଯୋଗ ଏବେ ମୁଂ କହୁଛି ତୋତେ, ତୁ ଯହୁଂ ଭଗତି ହୋଇଲୁ ମୋତେ ।୭
ଶାଖା ସହୋଦ୍ର ତୋଠୁଂ ନାହିଂ ଆନ, ତେଣୁ କହିଲୁ ରହସ ଜ୍ଞାନ ।୮
ଅର୍ଜ୍ଜୁନ ବୋଲଇ ଶୁଣ ଗୋସାଇଂ, ଏ କଥା କେହ୍ନେ ପ୍ରତେ ଯିବି ମୁହିଂ ।୯
ତୁମ୍ଭେ ବୋଲୁଛ ଆଦିତ୍ୟଙ୍କୁ ପୂର୍ବେ, ଏ ଯୋଗମାର୍ଗ କହିଲଇଂ ଭାବେ ।୧୦
ସେ ଆଦିତ୍ୟର ତ ଜନ୍ମ ବେଗଳ, ତୁମ୍ଭେ ଜନମି ଅଛ ଭୂଅତଳ ।୧୧
ଦୁହିଂନ୍ତ ଭିନ୍ନେ ଦୃଷ୍ଟାନ୍ତରେ ଜାଣି, ଅର୍ଜ୍ଜୁନ ଆଗେ କହେ ଚକ୍ରପାଣି ।୧୨
ତୁ ଯେ ଧନୁର୍ଜଏ ପୁଛିଲୁ ମୋତେ, ଗୁପତ କଥାଏ କହଇ ତୋତେ ।୧୩
ମୋହର ଅନେକ ଜନ୍ମର କଥା, ଜାଣଇନି ଯିସ ତିସ ବେବସ୍ଥା ।୧୪
ତୋହର ଅନେକ ଜନ୍ମ କାହାଣୀ, ସକଳ ବୃତ୍ତାନ୍ତ ଅଛି ମୁଂ ଜାଣି ।୧୫
ତୋହର ଜନ୍ମ ତୁ ନଜାଣୁ ବୀର, ମୋହର ଜନ୍ମ ତୋତେ ଅଗୋଚର ।୧୬
ତୁ ଅବା ବୋଲୁ ପାପ ପୁଣ୍ୟେ ତୋତେ, ନାହିଂ ଯେବେ ଜନ୍ମ ହେଉ କେମନ୍ତେ ।୧୭
ମୁଇଂ ପାପ ପୁଣ୍ୟ ନୁହଂଇ ଜାତ, ଆପଣା ଇଚ୍ଛାଏ ସଦୟଂ ସମ୍ଭୂତ ।୧୮
ତୁ ଅବା ବୋଲୁ ସର୍ବଦାକି ଇଚ୍ଛା, ଯେତେବେଳେ ଧର୍ମ ବୋଲନ୍ତି ମିଛା ।୧୯
ଅଧର୍ମ ଯହୁଂ ବଳୀୟାର ହୋଏ, ଧର୍ମପଥ ଗୋଟା ଉଦିତ ନୋହେ ।୨୦
ସାଧୁ ଲୋକଙ୍କୁ ରକ୍ଷା କରିବାକୁ, ଜନ୍ମ ଲଭଇ ଦୁଷ୍ଟ ମାରିବାକୁ ।୨୧
ଧର୍ମ ଥାପିତ ଯୁଗେ ଯୁଗେ ଜାତ, ମୂଢ଼ ଲୋକଙ୍କ କଥା ଆନମତ ।୨୨
ସେମାନେ ବୋଲନ୍ତି ମୂଳ କରମ, ବିସ୍ମୃତ ପୁଣି ଘେନୁଅଛି ଜନ୍ମ ।୨୩
ଯେହୁ ମୋର କ୍ରୀଡ଼ା ବୋଲି ଜାଣଇ, ସେ ଲୋକ ଆଉ ଜନ୍ମ ନ ଲଭଇ ।୨୪
ସ୍ନେହ କ୍ରୋଧ ଭୟ ଛାଡ଼ିଣ ନର, ମୋତେ ଭଜନ୍ତି ହୋଇ ତତ୍ପର ।୨୫

ସେ ଲୋକ ମୋହ ତହିଁ ହୋଏ ଲୀନ, ତୁ ଅବା ବୋଲୁ କଲ ଭିନ୍ନ ଭିନ୍ନ ।୨୬
ଯେ ସେବା କରଇ ତାହାଙ୍କୁ ଦୟା, ସକାମୀ ଲୋକଙ୍କୁ କଲ ହ ମାୟା ।୨୭
ତୁମ୍ଭରି ଅଇରି ମଇତ୍ର ହୋଇଲାତ, ତୁଅବା ମନେ ବିଚାରୁ ଏମନ୍ତ ।୨୮
ମୋହୋର ତହିଁ ନାହିଁ ପକ୍ଷାପକ୍ଷି, ଯେଉଂ ଲୋକ ଯାହା ମନେଣ ବାଞ୍ଛି ।୨୯
ଜ୍ଞାନୀକି ବ୍ରହ୍ମ ମୂଢ଼ଲୋକେ କର୍ମ, ଏ କଥା କେବେହେଁ ନୋହଇ ଧର୍ମ ।୩୦
ତୁ ଅବା ବୋଲୁ ଆନ ଦେବତାଏ,. ସେବା କଲେଣ କି ବଫଳ ହୋଏ ।୩୧
ସେ ଦେବତାହିଁ ମୁହିଁ ସେଟି ଜାଣ, ସେ ରୂପେ ଅଳପ ଫଳ ଭିଆଣ ।୩୨
ବେଗେଣ ପାନ୍ତି ବେଗେ ହୋନ୍ତି କ୍ଷୟେ, ସେ ମୃତି ଅଦ୍ରମେ କରଇ ବୟେ ।୩୩
ମୋକ୍ଷ ଯେ ଦୁର୍ଲଭ ନୋହଇ ନାଶ, ତତ୍ତ୍ୱଜ୍ଞାନୀଙ୍କର ତହିଁକି ଆଶ ।୩୪
ଏ ରୂପେ ତାହାଙ୍କର ତପଦାନ, ଅକ୍ଷୟେ ପଦାର୍ଥ ପରମ ଜ୍ଞାନ ।୩୫
ତୁ ଅବା ବୋଲୁ ଯେ ତୁମ୍ଭର ପକ୍ଷ, ଆବର କଥାଏ ଶୁଣିଣ ବିବକ୍ଷ ।୩୬
ଚାରିଜାତିଙ୍କି ମୁହିଁ ସିରିଜିଲି, ଯାହାଙ୍କୁ ଯେଉଂ କର୍ମେ ନିଯୋଜିଲି ।୩୭
ସେ ମାର୍ଗେ ଥିଲେ ସେ ଫଳ ପାଇବ, କର୍ତ୍ତା ଅକର୍ତ୍ତା କରମେ ହୋଇବ ।୩୮
ମୂଢ଼କୁ ମାୟାରୂପେ ଫଳ ଦେଇ, ଜ୍ଞାନୀଙ୍କୁ ସିଧ ମୁକତିକି ନେଇ ।୩୯
ସଂସାର ରଖି ମୁଂ ଦୁଷ୍ଟ ନିବାରି, ସବୁ ପାଳଇ ଅତି ଯତ୍ନ କରି ।୪୦
ଯେଥିତ ମୋତେ ପାପପୁଣ୍ୟ ନାହିଁ, ଏମନ୍ତ ଜାଣିଲେ କରମ କାହିଁ ।୪୧
ଯେଣୁ ସେ ମୋହୋ ତହିଁ ନାହିଁ ପକ୍ଷ, ପୂର୍ବେ ଯେଉଂମାନେ ମାଗିଲେ ମୋକ୍ଷ ।୪୨
ଅକାମୀ ହୋଇ ସେ କରମ କଲେ, ତୁହି ଯେମନ୍ତ ହୋଅ ମୋହୋ ବୋଲେ ।୪୩
କର୍ମ ବୋଲି ଭଲ ମନ୍ଦ ଦୁହିନ୍ତି, କାହା କରିବା ପଣ୍ଡିତେ ବୋଲନ୍ତି ।୪୪
ଏଥର ଭଲ ମୁଂ କହଇ ତୋତେ, ସଂସାରୁ ମୁକତ ହେବୁ ଯେମନ୍ତେ ।୪୫
ତୁ ଯେ ନ ଜାଣୁ ଭଲ କରି ଶୁଣ, ଅପାରୁ ଅପାର ଏଥିର ଗୁଣ ।୪୬
ବିଷ୍ଣୁପ୍ରୀତି ଅର୍ଥେ କରମ କରି, ଏ ମୋତେ ଅକର୍ମ ବୋଲି ବିଚାରି ।୪୭
ନିଜ କରମେ ଭୟେ ନ କରଇ, ହୋଇବି କି ବୋଲି ଡରଇ ।୪୮
ସେ ପ୍ରାଣୀକି ପାପ ହୋଏ ଅବଶ୍ୟ, ଜାତି ଧର୍ମମାନ ନ କଲେ ଦୋଷ ।୪୯
ଏ ଦୁଇ କଥା ଯେ ଜାଣଇ ସିଦ୍ଧି, ତାହାକୁ ସେ ହାଦେ ବୋଲି ସୁବୁଦ୍ଧି ।୫୦
ସବୁ କର୍ମ କରି ଅକାମୀ ହୋଇ, ମହାଯୋଗୀ ପଦ ତାହାକୁ ଶୋହି ।୫୧
ଯାହାର କର୍ମ କାମରୁ ବାହାର, ଜ୍ଞାନ ଅଗ୍ନି ପାପ ଦହେ ତାହାର ।୫୨
କର୍ମଫଳକୁ ବାଏଂଛା ନ କରି, ସଦା ଆନନ୍ଦ ହୋଇ ଦିନ ହରି ।୫୩
କର୍ମରେ ପ୍ରବର୍ତ୍ତିଲେ ହେଂ ସେ ଜନ, କର୍ମ କଲା ବୋଲି ନ ଧରେ ମନ ।୫୪
ସେ କର୍ମେ ତାହାକୁ ନ ଲାଗେ ପାପ, ନୋହିଲାକୁ ଯାର ନାହିଁ ସନ୍ତାପ ।୫୬
ଏ ଦୁଇ କଥା ଯାରେ ସମ ହୋନ୍ତି, ହୋଇଲାକୁ ଯେ ନୋହଇ ଦୃପତି ।୫୭
ସେ କର୍ମ କଲେଣ ନୋହୋଇ ବନ୍ଧ, ସଂସାର ବିହଡ଼ିବା ତାର ସଧ ।୫୮
ଅସଙ୍ଗ ହୋଇ ବାସୁଦେବେ ପ୍ରୀତି, କରମ କଲେ ଜ୍ଞାନ କ୍ଷଏ ହୋନ୍ତି ।୫୯
କେ ଯଜ୍ଞ କରନ୍ତି ଦେବତା ପାଇଂ, ଥୋକେ ଯଜ୍ଞ ବ୍ରହ୍ମା ଅଛି ଭିଆଇ ।୬୦
ଥୋକାଏ ଲୋକ ଶ୍ରୁତି ଶାସ୍ତ୍ରେ କରି, ଇନ୍ଦ୍ରି ନିଗ୍ରହନ୍ତି ଯଜ୍ଞ ଆଚରି ।୬୧
ଶବ୍ଦ ସ୍ପରଶ ରୂପ ଗନ୍ଧ ରସ, ଇନ୍ଦ୍ରି ନିଗ୍ରହି କେ ଯଜ୍ଞେ ପ୍ରବେଶ ।୬୨
ପ୍ରବଣ ଆଦି କରି କର୍ମମାନ, ଆତ୍ମ ସଞ୍ଜମ ବୋଲେ ଦୀପିତ ଜ୍ଞାନ ।୬୩
ହୋମ କରନ୍ତି କେ ଯୋଗ ଅଗ୍ନିରେ, ଥୋକାଏ ଯଜ୍ଞ କରନ୍ତି ଦ୍ରବ୍ୟରେ ।୬୪
ଥୋକାଏ ତପେ ଯଜ୍ଞ ଆଚରନ୍ତି, ଥୋକେ ଲୋକ ଯୋଗ ଯଜ୍ଞ କରନ୍ତି ।୬୫
ଥୋକାୟେ ବେଦ ଅଧାନେ ଯଜ୍ଞ କରି, ଥୋକେ ଯଜ୍ଞକରେ ଜ୍ଞାନ ଆଦରି ।୬୬
ପ୍ରାଣ ପବନ ଯେ ହୃଦରେ ଥାଇ, ଅଧୋମୁଖେ ଥାଇ ଅପ୍ୟାନ ବାଇ ।୬୭

ପ୍ରଣବ କରିବା ବେଳେଣ ପ୍ରାଣୀ, ଦୁଇ ପବନ ସଙ୍ଗ କରି ଆଣି ।୬୮
ଏମନ୍ତ ଯଜ୍ଞେ ପାପ କ୍ଷୟେ କରି, ଯାଞ୍ଚ ସେ ସ ସିଦ୍ଧ ଭୋଗ ତାହାରି ।୬୯
ସେ ଲୋକ ନିଶ୍ଚେ ବ୍ରହ୍ମ ସୁଖ ପାନ୍ତି, ଅର୍ଜୁନ ଆଗେ ଶ୍ରୀହରି କହନ୍ତି ।୭୦
ଯେ ଯାହା ଜାତି ଧର୍ମହିଂ ନକରି, ଇହ ନିନ୍ଦା ପରଲୋକେ ନ ତରି ।୭୧
ବେଦ ଯାହାକୁ ବୋଲିଅଛି ଯାହା, ମୋକ୍ଷ ହୋଇବ ସେ କରିଣ ତାହା ।୭୨
ସବୁ ଯଜ୍ଞୁ ଜ୍ଞାନଯଜ୍ଞ ଉତ୍ତମ, ଜ୍ଞାନରେ ପରାପତ ସବୁ କର୍ମ ।୭୩
ତୁ ବୋଲୁ କି ଜ୍ଞାନ କେମନ୍ତେ ପାଇ, ଜ୍ଞାନୀକି ସେବାକଲେ ଜ୍ଞାନ କହି ।୭୪
ଯେଉଂ ଜ୍ଞାନରେ ନ ପାଇବୁ ମୋହ, ଜଗତ ମୁଂ ବୋଲି କରିବୁ ସ୍ନେହ ।୭୫
ତୁ ଅବା ବୋଲୁ ମୁହିଂ ପାପୀଜନ, ଭେଳାରେ ସିନ୍ଧୁ ତରିବି କେସନ ।୭୬
ଯେହ୍ନେ କାଠ କୁଢ଼ ଦହେ ଅନଳ, ଜ୍ଞାନେ ଦହି ହୋଏ ପାପ ସକଳ ।୭୭
ଜ୍ଞାନ ବାସନା ଯୋଗସିଧ ପ୍ରାଣୀ, ଗୁରୁ ନକହିଲେ ଆପେ ନ ଜାଣି ।୭୮
ଶ୍ରଦ୍ଧାବନ୍ତ ହୋଇ ଇନ୍ଦ୍ରି ଦହିଲେ, ଜ୍ଞାନପାଇ ଶାନ୍ତି ହୁଅଇ ଭଲେ ।୭୯
ଗୁରୁ କହିଲେ ଯେ ପ୍ରତେ ନ ଯାନ୍ତି, ଇହ ପରଲୋକେ ପାର ନୋହନ୍ତି ।୮୦
ଯୋଗୁଂ କରି କର୍ମ ଫଳ ଛାଡ଼ିବ, ଜ୍ଞାନରେ କରି ସଂଶୟ ଛେଦିବ ।୮୧
ଏମନ୍ତ ଲୋକ କର୍ମେବନ୍ଧ ନାହିଂ, ତେଣୁକରି ପାର୍ଥ ତୋତେ ବୁଝାଇ ।୮୨
ଅଜ୍ଞାନୁ ଜାତ ଯେବଣ ସଂଶଏ, ଜ୍ଞାନ-ଖଡ଼୍ଗେ କାଟ ଧନୁର୍ଜୟେ ।୮୩
କାଟିଣ କର୍ମ ଯୋଗରେ ପ୍ରବର୍ତ୍ତି, ବେଭାରେ କର୍ମୁଂ ନୋହିବୁ ନିବୃତ୍ତି ।୮୪
ଚତୁର୍ଥ ଅଧ୍ୟାୟେ ଗୀତା କାହାଣୀ, ଅର୍ଜୁନ ଆଗେ କହେ ଚକ୍ରପାଣି ।୮୫
ସଞ୍ଜୟେ ବୋଲେ ଧୃତରାଷ୍ଟ୍ର ଶୁଣ, କହିଲେ ନ ସରଇ ଏଥିର ଗୁଣ ।୮୬
ପରମ ଯୋଗ ବିଷ୍ଣୁମୁଖୁ ଜାତ, ବ୍ୟାସ ପ୍ରସନ୍ନେ ଜାଣିଲେ ସମସ୍ତ ।୮୭
ଯେ ଯେହା ପଢ଼ନ୍ତି ଶୁଣନ୍ତି ନର, ଭବ ସାଗରେ କିସ ତାଙ୍କ ଡର ।୮୮
ମାହାପାତ୍ର ସୋମନାଥ ତନୟେ, ବଳରାମ ଦାସ ଏ ଗୀତା କହେ ।୮୯
ପୁରୁଷୋତ୍ତମ ଜଗନ୍ନାଥ ଗୋସାଇଂ, ତେଣୁ ସେ ଗୀତା ବଖାଣିଲି ମୁହିଂ ।୯୦

ଇତି ଶ୍ରୀଭଗବତ୍‌ଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟା ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ସନ୍ୟାସ ଯୋଗ କଥନେ ନାମଃ ଚତୁର୍ଥୋଽଧ୍ୟାୟ ।

## ପଞ୍ଚମ ଅଧ୍ୟାୟ

### ଯୋଗଗର୍ଭ

॥ ପୀଢ଼ବନ୍ଧ ॥

(ପାହାଡ଼ିଆ)

ଶ୍ରୀହରି ବଚନ ଶୁଣିଣ ଅର୍ଜୁନ ଶିରେ ଯୋଡ଼ି ବେନିକର
କଥାଏ ପୁଚ୍ଛିବି ଶୁଣିମା ସ୍ୱାମୀ କହିବା ସାଧ ନିକର

॥ ଗୀତବନ୍ଧ ॥

(ରୋଢ଼ା ବାଣୀରେ ଗାଇବ)

ସନ୍ୟାସ ଯୋଗେ କହିଅଛ ଗୋସାଇଂକରମ ଯୋଗହିଂ କହ
ଏ ଦୁଇ ମଧରେ ସାର କେ ଅଟଇ ତାହା ମୋତେ ଆଜ୍ଞାଦିଅ ।୧

### ଶ୍ରୀ ଭଗବାନ ଉବାଚ

ଶ୍ରୀହରି ବୋଲନ୍ତି କରମତ୍ୟାଗୀ କରମଯୋଗ ଏ ବେନି
ଦୋହେ ଅଧିକାରୀ ମୋକ୍ଷକୁ ଅଟନ୍ତି ଏଥିରେ ଭେଦ ଘେନି ।୨
କର୍ମ ତ୍ୟାଗୀ କର୍ମତ୍ୟାଗୀହୁଂ ଦୁଲଭ ଯେ ଗ୍ୟାନୀ ଅଟେ ବିବଛ
ଶୀତ ଉଷ୍ଣ ସୁଖ ଦୁଃଖେ ଯେହୁ ସମ ସେହୁ ଅଟଇ ମୋକ୍ଷ ।୩
ଉଦ୍ଵେଷ ବାଏଞ୍ଚା ନ ଜାଣଇ ଯେହୁ କରମ କଲେହେଂ ତାର
କର୍ମ କରିବ ଯେ ନ କଲା ପରାୟେ ବନ୍ଧୁ ମୁକତ ସେ ନର ।୪
ମୂଢ଼ ଲୋକମାନେ ଦୁହିନ୍ତି ଏକତ କରିଣ ସେ ହାଦେ ମଣି
ଏ ଦୁଇ ଏକ କରି ଯେହୁ ଘେନନ୍ତି ସେହୁ ସେ ପଣ୍ଡିତ ପ୍ରାଣୀ ।୫
କର୍ମେଣ ମୋକ୍ଷ ଯୋଗେଣ ପ୍ରତକ୍ଷ ଏକ ଗତି କି ସେ ପାଇ
ଏ ଦୁଇ ଏକ କରି ଚିତ୍ତେ ଘେନିଲେ ମୋକ୍ଷ ଫଳ ହାଦେ ପାଇ ।୬
ଏହା ଯେ ଜାଣଇ ସେହି ସେ ଜ୍ଞାନୀ କରମ ତ୍ୟାଗିବା ଦୁଃଖ
କରମ ଯୋଗରେ ଥିବା ବେଭାରେ ଯେମନ୍ତ ତରିବା ସୁଖ ।୭
କରମ ଯୋଗେଣ ଯୁଗତ ହୋଇଣ ବିଶୁଦ୍ଧ ଚିତ୍ତେଣ ଥାଇ

ସବୁ ପ୍ରାଣୀ ଆପଣା ପ୍ରାୟେ ମଣି ଇନ୍ଦ୍ରିଅନ୍ତି ସେ ଜିଣଇ ।୮
ତେସନେକ ଲୋକ କରମ କଲେ କରମେ ନୋହେ ଲିପିତ
ଇନ୍ଦ୍ରିୟମାନଙ୍କ ଗୁଣ ସିନା ବୋଲି କରଇ ସେ ସନମତ ।୯
ବ୍ରହ୍ମରେ ତତପର ହୋଇଣ କରମ-ମାନନ୍ତ କଲେ
ପଦ୍ମ ପତ୍ରେ ଯେହ୍ନେ ପାଣି ନଲାଗଇ ଗ୍ୟାନେ ତେମନ୍ତ
ହୋଇଲେ ।୧୦
ଯୋଗୀଜନ ମନ କର୍ତ୍ତବ୍ୟେ ଇନ୍ଦ୍ରିୟ ଯାହାକୁ ବଶ ନ ଯାନ୍ତି
ସୁଜ୍ଞ ହୋଇବାକୁ ବିଷ୍ଣୁ ପ୍ରୀତି ଅର୍ଥେ କରମ କରିଣ ଥାନ୍ତି ।୧୧
ତୁ ଅବା ବୋଲୁ ମୂଢ଼ ଜ୍ଞାନୀ ଦୁହେଁ ଏକା କର୍ମ କରି
ଜ୍ଞାନୀମାନେ କିମ୍ପା ମୋକ୍ଷ ହୁଅନ୍ତି ମୂଢ଼ ମାନେ ହେଁ ନ ତରି ।୧୨
ତାହା କହିବା ଶୁଣ ହୋ ପାର୍ଥ ଜ୍ଞାନୀ ଲୋକ ହାଦେ ଯେହୁ
କର୍ମ ନ କଲେହେଁ ସଂସାରୁ ମୁକତ କେମନ୍ତେ ହୋଇବେ
ସେହୁ ।୧୩
ବାଏଞ୍ଛା କରିଣ କରମ କଲେଣ ବନ୍ଧ ହୁଅନ୍ତି ସେ ପ୍ରାଣୀ
ଯେଣୁ ସେ ଜ୍ଞାନୀ କର୍ମଫଳ ମାନନ୍ତି ତ୍ୟାଗ କରଇ ସେ ଜାଣି ।୧୪
ଇନ୍ଦ୍ରିଅ ମାନନ୍ତ ଆଏତ କରିଣ ଦେହରେଣ ନବଦ୍ୱାର
କରିବା କରାଇବା ଦୁଇ ନୋହିଲେ ମୋକ୍ଷ ହୋଇଲା ତାହାର ।୧୫
ତୁ ଅବା ବୋଲୁ କରିବା କରାଇବା ଦେହର ସମସ୍ତ ଗୁଣ
ଆତ୍ମା ନ କଲେଣ କେ ପୁଣ କରତା ତାହି କହୁ ହାଦେ ଶୁଣ ।୧୬
ଯାହାର ଯେ ଗୁଣ ସେ ତୋହେ ହୋଇଲା ଆତ୍ମାରେ ତା କିସ
ବିଷେ
ଦୁଃଖ ସୁଖେଣ ସନମତ କଲେ ତେବେ ଦୋଷୀ ହୋଇ ନାଶେ ।୧୭
ମୂଢ଼େ ଯେ ବୋଲନ୍ତି ପରମେଶ୍ୱରର ଭଲ ମନ୍ଦକୁ ସେ ନେଇ
ଜ୍ଞାନକୁ ଅଜ୍ଞାନ ଆକ୍ରୋସିବା ଲୋକେ ଏମନ୍ତ ବୋଲିଣ କହି ।୧୮
ଜ୍ଞାନେ ଯାହାର ଅଜ୍ଞାନ ହେତୁ ହୋଇ ଅନ୍ଧାରେଣ ସୂର୍ଯ୍ୟ ଜାଣି
ବ୍ରହ୍ମମୟେ ହେତୁ ପ୍ରକାଶ ହୁଅନ୍ତେ ତାହା ଚିହ୍ନଇ ସେ ପ୍ରାଣୀ ।୧୯
ସେ ଲୋକ ଜ୍ଞାନରେ ଅପାପୀ ହୋଇଣ ପୁନଜନ୍ମ ଆଉ ନାହିଁ
ପଣ୍ଡିତ ମାନେ ସବୁ ଯେକ କରନ୍ତି ଯେକ ଦୃଷ୍ଟି କରି ଚାହିଁ ।୨୦
ବିଦ୍ୟାବନ୍ତ ବ୍ରାହ୍ମଣ, ଗୋରୁ, ହାଥୀ, ଚଣ୍ଡାଳ ଇତ୍ୟାଦି ଖର କୁକୁର
ମୂର୍ତ୍ତିଭିନ୍ନ ଆତ୍ମା ଏକତ୍ୱ ବୋଲିଣ ଜ୍ଞାନୀ କରନ୍ତି ବିଚାର ।୨୧
ଏମନ୍ତ ଜାଣି ଯେନିଣ ଲୋକମାନେ ଏଥେ ଥିଲେ ସ୍ୱର୍ଗ ଜିଣି
ହରଷ ବିସ୍ମୟେ କେବେହେଁ ନୁହଇ ପ୍ରିଅ ଅପ୍ରିୟ ନ ମଣି ।୨୨
ସେ ସ୍ଥିର ବୁଦ୍ଧି ପୁରୁଷକୁ ବୋଲିବା ସାଧୁଜନଙ୍କ ସଙ୍ଗତ
ଆତ୍ମା ରସ ଦୁଃଖେ ସୁଖେ ନୋହୋଇ କାହାରେ ସେ ଆସକତ ।୨୩
ଦୁଃଖ ସୁଖ ଯେହୁଂ ଆସଇ ଯାଇ ତାହା ଜାଣଇ ସେ ଜ୍ଞାନୀ
ବିଷୟ ସୁଖକୁ ନ ରସଇ ସେହୁ ଅକ୍ଷୟେ ସୁଖ ସେ ଘେନି ।୨୪
ମଲା ପୁରୁଷକୁ ଯୁବତୀ ଯେହ୍ନେ କେଳି କରେ କୋଳେ ଧରି
ନୋହିଲେ ହାଣି ତୀକ୍ଷ୍ଣ ଖଡ଼୍‌ଗେଣ ବେନି ଖଣ୍ଡ ତାକୁ କରି ।୨୫
ସେ ଯେହ୍ନେ କାମ କ୍ରୋଧ ନ କରି ଜ୍ଞାନୀ ହିଂ ତେହ୍ନେର୍ଣେ ମତ
ଜୀଇଁ ଥାଉଂ ଥାଉଂ ସେହି ପରକାରେ ନୋହେ ବିମୁଖ ଭସତ ।୨୬
ଇନ୍ଦ୍ରିୟ ବାହିଜ ସୁଖ ନ ଘେନି ଆତ୍ମା ରମୁଣ ଥାଇ
ବ୍ରହ୍ମ ଆନନ୍ଦ ପରମ ଜ୍ୟୋତି ପୁରୁଷ ଅଚିନ୍ତ ସୁଖ ସେ ପାଇ ।୨୭
ଶୁଭା ଶୁଭ କର୍ମଫଳ ସେ ଛାଡ଼ିଣ ସର୍ବତ୍ର ବ୍ରହ୍ମ ଦେଖନ୍ତି
କାମ କ୍ରୋଧ ମୋହ ଛାଡ଼ିବା ଲୋକକୁ ମୋକ୍ଷ ଗୋଡ଼ାଇଣ ଥାନ୍ତି ।୨୮
ଯାହାର ସେ ମନ ବୁଦ୍ଧି ଇନ୍ଦ୍ରିୟାଦି ଇଚ୍ଛା ଭୟ କ୍ରୋଧ ନାହିଁ
ସେ ପୁରୁଷ ସବୁକାଳେ ହେଁ ମୁକତ ପ୍ରକୃତିରେ ବଶ ନୋହି ।୨୯
ଯଜ୍ଞ ଆଦି କରି ସବୁ କର୍ମଫଳ ଭୋଗ୍ୟ କରଇ ସେ ହରି
କାହାକୁହିଁ ସେ ଅରି ମିତ୍ର ନାହିଁ ସର୍ବଭୂତେ ସମସରି ।୩୦
କର୍ମେ ଯାହାମିଳେ ଦେହାଦି ସେ ଗୁଣେ ସନମତ ହୋଇ ଥାଇଂ
କର୍ମ ବାଞ୍ଛା ବୋଲି ଘେନିଣ ନିଚୟେ ଜ୍ଞାନ ହେତୁରେ ଜାଣଇ ।୩୧
ଚକ୍ଷୁ ଦୁଇ ମଧ ଭ୍ରୁବ ସ୍ଥାନ ମଧ୍ୟେ ମନ ପବନ ସେ ମିଶେ
ନିଚୟେ ଶିରଦୃଷ୍ଟି ନାସା ଅଗ୍ରେଣ ଉର୍ଦ୍ଧ୍ୱେ ଦେଖେ ସେ ସେ ।୩୨
ସେହି ପୁରୁଷ ଜିତେ ଇନ୍ଦ୍ରିୟ ମୂଳ ସେ ସେ ମୋକ୍ଷ-ପରାୟଣ
ଭାବ ଅଭାବ ସେ ଅଭୟେ ଅକ୍ରୋଧ ମୁକ୍ତି ସେହୁ ବ୍ରହ୍ମ ଜାଣ ।୩୩
ଏମନ୍ତ ବୋଲି ଯେ ଜାଣନ୍ତି ପାର୍ଥ ସେହି ସେ ହୁଅନ୍ତି ମୋକ୍ଷ
ପଞ୍ଚମ ଅଧ୍ୟାଏ ସମ୍ପୂର୍ଣ୍ଣ ହୋଇଲା ଶୁଣ ତୁ ହାଦେ ବିଚକ୍ଷ ।୩୪
ଧୃତରାଷ୍ଟ୍ର ଆଗେ ସଞ୍ଜୟ କହଇ ଗୀତା ରସାମୃତ ବାଣୀ
ନୀଳଗିରି ଜଗନ୍ନାଥଙ୍କ ପ୍ରସନ୍ନେ ବଳରାମ ଦାସ ଭଣି ।୩୫
ଇତି ଶ୍ରୀ ଭଗବଦ୍ ଗୀତା ସଂହିତାୟାଂ ସୁପନିଷସ୍ତୁ ବ୍ରହ୍ମ ବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀ କୃଷ୍ଣାର୍ଜୁନ ସମ୍ବାଦେ ଯୋଗଗର୍ଭେ ନାମଃ ପଞ୍ଚମ ଅଧ୍ୟାୟ ।

## ଷଷ୍ଠ ଅଧ୍ୟାୟ

### ଆତ୍ମା ସଂଯମ

॥ ପୀଢ଼ବନ୍ଧ ॥

ଧନଞ୍ଜୟ ଆଗେ କହନ୍ତି ଗୋସାଇଂ ବ୍ରହ୍ମଜ୍ଞାନ ପରକାଶ ।
ପରମ ଗୁପତ କଥାଏ ଶୁଣ ହୋ ତୁ ଯହୁଂ ମୋହର ବିଶ୍ୱାସ

॥ ଗୀତବନ୍ଧ ॥

(କଳସା ବାଣୀରେ ପଢ଼ିବ)

ଗୃହ ଧର୍ମେ ଥାଇଣ ବିହିତ କର୍ମ କରି
କର୍ମଫଳ ବାଏଞ୍ଛା ଯେ ମନେଣ ନ ଧରି ।୧।

ସନ୍ୟାସଟି ସେ ଲୋକ ତା ଯୋଗୀ ବୋଲି ଜାଣ
ବାଏଞ୍ଛା ନ ଛାଡ଼ି ଯୋଗୀ ଗ୍ୟାନେ ରଣଭଣ ।୨।
ଯେଉଂ ଲୋକ ଜ୍ଞାନଯୋଗେ ଶରଧା ବଢ଼ାଇ
କର୍ମଯୋଗ ହେତୁହୁଂ ସଂସିଦ୍ଧ ଜ୍ଞାନ ପାଇ ।୩।
ସଂକଳ୍ପ ଶରଧା ଛାଡ଼ି ଇନ୍ଦ୍ରିୟେ ଅବଶ
ଯୋଗାରୂଢ଼ ବୋଲି ଜାଣ ତେମନ୍ତ ପୁରୁଷ ।୪।
ବିବେକୀ ହୋଇଲେ ଯେ ଆପଣା ଆତ୍ମା ବନ୍ଧୁ
ଅବିବେକୀ ହୋଇଲେ ଅରି ପଣେ ଛନ୍ଦୁ ।୫।
ଆତ୍ମାକୁ ଜାଣିଲା ଲୋକ ଛଡ଼ରତୁ ସମ
ତେତେବେଳେ ଏକାନ୍ତେଣ କରିବ ବିଶ୍ରାମ ।୬।
ଜ୍ଞାନ ଅନୁଭବେ ଆତ୍ମା ସନ୍ତୋଷ କରିବ
ଇନ୍ଦ୍ରି ଜିଣି ହୃଦ ମଧେ ଚିତ୍ତକୁ ରଖିବ ।୭।
ସୁବର୍ଣ୍ଣ ପଥର ଟେଳା ସମ ମିତ୍ର ଐରୀ
ଉଦାସୀନ ଦ୍ୱେଶ ସାଧୁ ପାପୀ ସମସରି ।୮।
ଏମନ୍ତେଣ ଥିଲା ଲୋକ ଯୋଗୀଙ୍କ ଉତ୍ତମ
ସର୍ବଘଟେ ଏକକରି ଦେଖଇ ସେ ସମ ।୯।
ଚିତ୍ତ ଆତ୍ମା ସଂଯମିଣ ଆତ୍ମାରେ ନ ଲାଗି
ସମଦଣ୍ଡ କମଣ୍ଡଳୁ ଆଦି ପରିତ୍ୟାଗି ।୧୦।
ଶୁଦ୍ଧସ୍ଥାନୁ ନ ଚଳିବ ଆସନେ ରହିବ
ଅତି ଉଚ୍ଚ ଅତି ନେଚ ସେ ପୁଣ ନୋହିବ ।୧୧।
ଏମନ୍ତ ଆସନେ ବସ୍ତ୍ର ପାଡ଼ି କୁଶ ମାଡ଼ି
ବ୍ୟାଘ୍ରାମ୍ବର କୃଷ୍ଣାଜିନ ଛାଲେ ତହିଂ ପାଡ଼ି ।୧୨।
ତହିଂ ବସି ଶିର କଣ୍ଠ ଦେହ ସଳଖିବ
ଆପଣା ନାସିକା ଅଗ୍ର ଠାବକୁ ଚାହିଂବ ।୧୩।
ଦିଗ ନ ଚାହିଂବ ଥିବ ଶାନ୍ତି ଚିତ୍ତ ହୋଇ
ଚଞ୍ଚଳ ମନ ନିର୍ଭାଇ ଇନ୍ଦ୍ରିନ୍ତ ନିଗ୍ରହି ।୧୪।
ଏମନ୍ତ ବାସନାରେ ଥିଲେ ମୋକ୍ଷ ଜ୍ଞାନ ପାଇ
ଅତିହିଂ ଆହାରୀ ଅତି ନିରାହାରୀ ନୋହି ।୧୫।
ଅତି ନିଦ୍ରା ଅତି ଉଜାଗର ଯେଉଂ ପ୍ରାଣୀ
ଯୋଗ ତାକୁ ଅପ୍ରାପତ କିଛି ହିଂ ନ ଜାଣି ।୧୬।
ଏମନ୍ତ ବୋଲିଣ ସେ କିଛିହିଂ ନ କରିବ
ସବୁ ଯୁଗୁତିରେଣ ପ୍ରବେଶ ହୋଇ ଥିବ ।୧୭।
ଏମନ୍ତ ଲୋକଙ୍କୁ ଯୋଗ ପରାପତ ହୋଇ
ଯେତେବେଳେ ଚିତ୍ତ ଗୋଟା ଚଞ୍ଚଳ ନୋହଇ ।୧୮।
ବୋହିତର କାକପ୍ରାୟେ ଚିତ୍ତ ହୋଇଥିବ ଥିର
ନିର୍ବାତ ଦୀପର ପ୍ରାୟେ ମନର ବେଭାର ।୧୯।

ଆତ୍ମାକୁ ଘେନି ଆନନ୍ଦ ବିଷଉଂ ଉଦାସ
ତେତେବେଳେ ଯୋଗ ଆସି ହୋୟେ ପରକାଶ ।୨୦।
ଯହିଂ ଲାଭପାଇଂ ଆନ ଠାବକୁ ନ ଯାଇ
ବୁଦ୍ଧିମନ ତେହ୍ନେ କରି ଥିର କରିଥାଇ ।୨୧।
କୁଟୁମ୍ବର ଦୁଃଖ ଯେହୁ ସୁଖ କରି ଘେନି
ତାହାକୁ ସେ ଯୋଗୀ ବୋଲି ଶୁଣ ଫାଲଗୁନୀ ।୨୨।
ସଂକଳ୍ପରୁ ଜାତ ହୋଇ କାମକୁ ଛାଡ଼ିବ
ମନଇନ୍ଦ୍ରି ନିଗ୍ରିହୀ ଅଭ୍ୟାସ କରୁଥିବ ।୨୩।
ତୁ ଅବା ବୋଲୁ ଚଞ୍ଚଳ ଏମନ୍ତେହେଂ ମନ
ଅଳପ ଅଳପ କରି କରିବ ସାଧନ ।୨୪।
ନୋହିଲା ବୋଲି ନ ଛାଡ଼ି କାଳେ ପରାପତ
ଚଞ୍ଚଳ ମନ ଆକ୍ରେସି ହୁଅ ସି ନିଚିନ୍ତ (ନିବୃତ୍ତ)।୨୫।
ଶାନ୍ତି ଚିତ୍ତେ ରଜ ତମ ଛିଣ୍ଡାଇ ପକାଇ
ଅନ୍ୟାସେ ପରମ ସୁଖ ପରାପତି ହୋଇ ।୨୬।
ସେ ଲୋକ ଆପଣା ଆତ୍ମାୟେ ଜଗତକୁ ଦେଖି
ଜଗତରେ ଆପଣ ଅଛଇ ବୋଲି ଲେଖି ।୨୭।
ଜଗତହିଂ ଶ୍ରୀହରି ଶ୍ରୀହରିହିଂ ଜଗତ
ଯେ ସେ ସମଦରଶୀ ସେ ମୋହୋର ଭଗତ ।୨୮।
ସର୍ବଭୂତେ ଥିଲା ମୋର ଯେହୁ ଭେଦ ମଣି
ଯହିଂ ଥିଲେ ମୋହ ତହିଂ ଲୀନ ଟି ସେ ପ୍ରାଣୀ ।୨୯।
ତାହାକୁ ମୁଂ ରଖଇ ପରମ ଯୋଗୀ ସେହୁ
ପରଦୁଃଖେ ଦୁଃଖୀ ସୁଖୀ ପ୍ରାଣୀ ହ୍ୱନ୍ତି ଯେହୁ ।୩୦।
ଅର୍ଜୁନ ବୋଇଲା ପ୍ରଭୁ ଯୋଗ ଯେ କହିଲ
ପବନକୁ ମୁଠା କରି ଧର ଯେ ବୋଇଲ ।୩୧।
ମନ ଯେ ଚଞ୍ଚଳ ଏହା କେ କରିବ ଥିର
ଶ୍ରୀହରି ବୋଇଲେ ଯାହା ପଚାରିଲୁ ବୀର ।୩୨।
ନିଶ୍ରୋହା ବୈରାଗୀ ହୋଇ ମନକୁ ଆକ୍ରସି
ମନ ଅଣଆୟତେ କି ଯୋଗେ ହୋଏ ପଶି ।୩୩।
ମନର ଆୟତେ ଯୋଗ ସୁଲଭ ଅଭ୍ୟାସ
ଅର୍ଜୁନ ବୋଇଲା ପ୍ରଭୁ ଶୁଣ ପୀତବାସ ।୩୪।
ଯୋଗ ସାଧିବାକୁ ଯେ ଶରଧା କରୁଥାଇ
ମନର ଚଞ୍ଚଳୁ କରି ସେ ବାଟ ନ ପାଇ ।୩୫।
ବିଷ୍ଣୁ ପ୍ରୀତି କଲା କର୍ମଫଳହିଂ ନୋହିଲା
ସଙ୍ଗ ଛାଡ଼ିଲାର ମେଘ ପରାୟେ ହୋଇଲା ।୩୬।
ଭୂମିରେତ ତାହାର ବସିତ ଠାବ ନୋହି
ସଙ୍ଗ ନ ପାଇଣ ମେଘଖଣ୍ଡି ଲୀନ ହୋଇ ।୩୭।

ଯେସନେକ ହୋଇକିରେ ପ୍ରାଣୀ ନାଶ ଯିବ
ଏ ସଂନ୍ଦେହ ତୁମ୍ଭବିନୁଂ ଆନ କେ ଫେଡ଼ିବ ।୩୮।
ଶ୍ରୀହରି ବୋଲନ୍ତି ସେ ଲୋକର ନାଶ ନାହିଂ
ଭଲ କଥାକୁ ଗମିଲେ ମନ୍ଦ ହୋଇ କାହିଂ ।୩୯।
ଯେସନେକ ଲୋକ କାଳେ ପୁଣ୍ୟ ଥାନ ପାଏ
ପଛେଣ ଶ୍ରୀବନ୍ତ ଲୋକଘରେ ଜନ୍ମ ହୋଏ ।୪୦।
ନୋହିଲେଣ ଯେ ମହାଯୋଗୀ ଘରେ ହୋ ଜାତ
ସଂସାରକୁ ଦୁର୍ଲଭ ଅଟଇ ଦୁଇମତ ।୪୧।
ଏସନେକ ପୁଣ୍ୟସ୍ଥାନେ ଜନମ ହୁଅଇ
ପୂର୍ବର ବାସନା ଘେନି ଯୋଗ ଅଭ୍ୟାସଇ ।୪୨।
ତାହାର ନଗଲେ ବଳେ ନିଅଇ ବାସନା
ଯେ ଯାହା ଲୋଡ଼ଇ ସେ ପ୍ରାପ୍ତ ହୁଅଇ ନିନା ।୪୩।
ଯୋଗ ସାଧିବାକୁ ଯାର ଏ ଜନମେ ମତି
ଅନେକ ଜନ୍ମ ସଂସିଦ୍ଧ ସେ ପରମ ଗତି ।୪୪।
ନାନା ତପ କଲା ଲେଶକୁ ସେ ଯୋଗୀ ଉତ୍ତମ
ଗ୍ୟାନୀହୁଂ କରମ ଯୋଗୀ ଶ୍ରେଷ୍ଠ ମହାତ୍ତମ ।୪୫।
ତେଣୁକରି ତୁହି ହାଦେ କର୍ମ ଯୋଗେ ଥିବୁ
ଅନ୍ତର ଆତ୍ମାରେ ମୋହୋ ତହିଂ ନିମଜ୍ଜିବୁ ।୪୬।
ଏମନ୍ତେଣ ଥିଲା ଲୋକ ମୋହର ପୀରତି
ଷଷ୍ଠମ ଅଧ୍ୟା ସମ୍ପୂର୍ଣ୍ଣ ଶ୍ରୀହରି କହନ୍ତି ।୪୭।
ଧୃତରାଷ୍ଟ୍ର ଆଗେଣ ସଂଞ୍ଜଏ ପରକାଶ
ଜଗନ୍ନାଥ ସେବି ଭଣେ ବଳରାମ ଦାସ ।୪୮।

ଇତି ଶ୍ରୀ ଭଗବଦ୍‌ଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟା ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ, ଆତ୍ମସଂଯମ ନାମ ଷଷ୍ଠ ଅଧ୍ୟାୟ ।

## ସପ୍ତମ ଅଧ୍ୟାୟ

### ଜ୍ଞାନ ଯୋଗ

॥ ପୀଢ଼ବନ୍ଧ ॥

ଶ୍ରୀ ଜଗମୋହନ ବୋଲନ୍ତି ଶୁଣ ହୋ ପାର୍ଥ
ଏ ମୋହର ପରମ ଗୁପତ
ଯେ ଏହା ପଢ଼ନ୍ତି ଶୁଣନ୍ତି ନରେ
ଭବ ସାଗରୁ ତରନ୍ତି ସତ ।

॥ ଗୀତବନ୍ଧ ॥

(ଭାରଥ ବାଣୀରେ ପଢ଼ିବ)

ଶ୍ରୀ ଭଗବାନୁବାଚ

ତୁ ଅବା ବୋଲୁ ଯାହା କହିଲୁ କେ ତୋର ଭଗତ ଲୋକ
ଯେମନ୍ତେ ପ୍ରତେ ଯାଉ ତାହା କହଇଂ ଜାଣ ମୋ ଯେହୁ ସେବକ ।୧।
ଯାହା ଶୁଣିଲେ ଆନ ନ ଶୁଣିବୁ ସେ କଥା କହଇ ତୋତେ
ସହସ୍ରେ ଲୋକରେ ଜଣେ ଭଦିଯୋଗୀ ଜାଣି ସେ ପାରଇ
ମୋତେ ।୨।
ଭକ୍ତିଯୋଗ ସହସ୍ରେକେ ଯତୀ ଗୋଟିଏ ସହସ୍ରେକ ଏକ ସିଦ୍ଧ
ଜାଣି
ସହସ୍ରେ ସିଦ୍ଧରେ ତତ୍ତ୍ୱ ଜ୍ଞାନୀ ଏକ ପରମ ସେ ପରିମାଣି ।୩।
ସହସ୍ରେ ଭବିଯୋଗୀ ଯାରେ ତ୍ୟାଗୀ ଗୋଟିଏ ସେ ମୋତେ ଜାଣି
ଆଠ ପରକାରେ ମୋହର ମୂରତି ଭିନ୍ନେ ଭିନ୍ନେ ପରିମାଣି ।୪।
ପୃଥ୍ୱି ଆପ ତେଜ ବାୟୁ ଆକାଶ ମନବୁଦ୍ଧି ଅହଂକାର
ଆଠ ମୂରତିରୁ ଭିନ୍ନ ହୋଇ ମୋର ଅଛଇ ଏକ ପ୍ରକାର ।୫।
ଜୀବ ପରମ ବୋଲି ଯେଉଂ ପୁରୁଷ ତହୁଂ ଜନମନ୍ତି ପ୍ରାଣୀ
ଥାବର ଜଙ୍ଗମ କୀଟ ପତଙ୍ଗହିଂ ଅଟନ୍ତି ଯେ ଚାରିଖାନି ।୬।
ଏମନ୍ତେ ଜାତ କରଇ ଜଗତ ଥିତି ଉତ୍ପତ୍ତି ପ୍ରଳୟ ତିନି
ଏହା କରିବାକୁ ମୁହିଂ ସେ ହେତୁ କେ ମୋତେ ପାରିବ ଚିହ୍ନି ।୭।
ଜୀବନହିଂ ମୁହିଂ ପଞ୍ଚଭୂତ ମୁହିଂ ମୁହିଂ ଗୁଣ ପଉରୁଷ
ପୃଥ୍ୱୀର ଗନ୍ଧ ଅଗ୍ନିର ତେଜ ତପୀଙ୍କର ତପ ଅଂଶ ।୮।
ମୁହିଂ ଯେ ବୀଜ ପୃଥୀର ତେଜ ଅକାମୀ ଅରାଗୀ ବଳ
ଧର୍ମକୁ ବିରୋଧ ନୁହେଂ ଯେଉଂ କାମ ସେ ମୁହିଂ ପଣ୍ଡୁ ଦୁଲାଳ ।୯।
ସତରୁ ଜାତ ଏ ଶାନ୍ତିମତ ଇନ୍ଦ୍ରିୟ ଦମିବା ଗୁଣ
ରଜରୁ ଜାତ ହୋଇଲା ରାଜସ ତାମସ ଗୁଣହିଂ ଶୁଣ ।୧୦।
ତମୁଂ ଯେତକ ଜାତ ମୋହ ଶୋକ ଆଦି କରି
ମୋହର ତହୁଂ ସଭିଏଂ ଜାତ ହୋନ୍ତି ମୁଂ ତହୁଂ ହୋଇବି ବାରି ।୧୧।
ଜଗତ ଯାକେ ତ୍ରିଗୁଣ ଲୋକ ମୋହ ପାଉ ସବୁଛନ୍ତି
ମୁହିଂ ଯେ ତ୍ରିଗୁଣୁ ବାହାର ବୋଲି କେହି ମୋତେ ନ ଜାଣନ୍ତି ।୧୨।
ଯେ ଜାଣେ ଅବା ତାହି କହିବା ତୁହି ତାହା ପଚାରିବୁ
ମୋହର ଦଇବୀମାୟା ଯେ ଅଛଇ ଶୁଣିଲେଣ ବିଚାରିବୁ ।୧୩।
ସୁଖେଣ ତହୁଂ ତରିବେ କାହୁଂ ସେ ମାୟାରେ ବଶ ହୁଅନ୍ତି
ଯେ ମୋତେ ସର୍ବଦା କାଳେ ଭଜୁଥାନ୍ତି ଯେ ମାୟାରୁ ସେ
ତରନ୍ତି ।୧୪

ଜାଣିଲେ ତରି ନ ଜାଣିଲେ ନ ତରି ତୁ ଅବା ବୋଲୁ କି ଏହା
ସବିହେଂ ତୋ ତହୁଂ ଜାତହୋଇ ତୋତେ ନ ଜାଣନ୍ତି
ଚଉବାହା ।୧୫।

ମୂଢ଼ ଲୋକ ମାନେ ଯେ ମନ୍ଦ ପଣେ ମାୟା କର୍ମେ ମୋହି ହୋନ୍ତି
ଅସୁରଭାବ ଘେନିଣ ଦୋରେହା ଏ ମୋତେ ହାଦେ ନ
ଜାଣନ୍ତି ।୧୬।

କହଇ ସାର ଚାରି ପ୍ରକାର ଲୋକ ହାଦେ ମୋତେ ଭଜି
ଆରତ ଲୋକ ଜାଣିମା ଥୋକେ ଶରଧା କରି ନିମଜି ।୧୭।
ସର୍ଗ ମଞ୍ଚେ ଭୋଗ ବାଞ୍ଛେ ସେହୁ ଯୋଗ ଉତ୍ତମ ଜ୍ଞାନୀ ଆରେକ
ଚାରି ପ୍ରକାରେ ମୋତେ ଲୋକେ ଭଜନ୍ତି ଉତ୍ତମ ଏ ଚାରିଲୋକ ।୧୮
ଏ ଚାରିଙ୍କର ଜ୍ଞାନ ବଡ଼ କରି ଯେ ମୋତେ କରଇ ସେବା
ସେହି ମୋର ପ୍ରୀତି ମୁହିଂ ତାଙ୍କୁ ଧୃତି ଏମନ୍ତ ବିଚାରୁ ଅବା ।୧୯।
ସେ ତୋର ହୋଏ ଆଉ ତିନିହେଂ କିମ୍ପାଇ ଏଡ଼େ ନୋହିଲେ
ସେ ତିନି ଲୋକ କାର୍ଯ୍ୟ ପାଇଂ ଭଜନ୍ତି ମୋକ୍ଷ ନାହାନ୍ତି ନା
ଭଲେ।୨୦।

ଜ୍ଞାନୀ ମହାତ୍ମା ମୋହର ଆତ୍ମା ଜନ୍ମେ ଜନ୍ମେ ମୋତେ ଭଜି
ଜଗତ ବାସୁଦେବ ବୋଲି ଜାଣନ୍ତି କାଳେ ମୋ ଦେହେ
ନିମଜି ।୨୧।

ଏମନ୍ତ ଲୋକ ଦୁର୍ଲଭ ହାକ କାମେ ହତ ଜ୍ଞାନ ଥୋକେ
ବିଧିମତ କରି ଫଳ ପାଇବାକୁ ଦେବତା ପୂଜାନ୍ତି ଲୋକେ ।୨୨।
ଯେମନ୍ତ ଫଳ ହୋଯେ କରସ୍ଥଳ ତେମନ୍ତ କରିଣ ଥାନ୍ତି
ସେମାନଙ୍କୁ ମୁହିଂ ସେହି ମୁର୍ତ୍ତି ଧରି ଫେଡ଼ଇ ତାହାଙ୍କ ଭ୍ରାନ୍ତି ।୨୩।
ତାହାଙ୍କ ସଧ କର ବିରୋଧ ଯେ ଯାହା ମାଗଇ ଦେଇ
ସେହି ମୁର୍ତ୍ତିକି ସେ ଆରାଧନା କରନ୍ତି ସ୍ୱଧାଯେ ସୁଗତି ହୋଇ ।୨୪।
ସେହି ମୋର ମୁର୍ତ୍ତି ମୁହିଂ ତାଙ୍କ ପ୍ରୀତି ଇଷ୍ଟ କାମ ଫଳ ପାଯେ
ତୁ ଅବା ବୋଲୁ ତୁମ୍ଭର ତତ୍ତ୍ୱ ଜାଣି ଜ୍ଞାନୀ ମୋକ୍ଷ ହୋଇ
ଯାଯେ ।୨୫।

ଆଉ ତିନିହେଂ ତୁମ୍ଭ ଆନ ଦେହେ ଭଜି ଆନ ଫଳ ପାନ୍ତି
ସେ କଥା ବିଷମ ଭାବ ହୋଇଲା ଯେହା କହନି ବୋଲନ୍ତି ।୨୬।
ଯେ ମୋତେ ତତ୍ତ୍ୱ କରଇ ଭଗତ ଦେଅଇ ଅକ୍ଷଏ ଫଳ
ମୋହର ଆନ ମୁର୍ତ୍ତିକି ଯେ ଭଜଇ ତହିଂର ଫଳ ବିଫଳ ।୨୭।
ଆନ ମୁର୍ତ୍ତି ଛାଡ଼ି ମୋହୋ ଭଗତି କିମ୍ପା ନୋହନ୍ତି ବୋଲୁକି
ମୂଢ଼ ଲୋକେ ମୋର ଭାବ ନ ଜାଣନ୍ତି ଆନ ଦିଅ ସଙ୍ଗେ
ଲେଖି ।୨୮।

ବୋଲନ୍ତି ହରି ଆନ ଦିଅଂ ସରି ସେ ଦିଅଂ ଫଳ ଦିଅନ୍ତି
ଏମନ୍ତ ବୋଲି ଦୃବୁଧିରେ ପାମରେ ମୋତେ ଯେହେର୍ଣ୍ଣେ
ମଣନ୍ତି ।୨୯

ସେ ରୂପେ ମଜି ମୋତେ ନ ଭଜି ସେ ଯୋଗେ ମୁଂ ଅପ୍ରକାଶ
ଅଜନ୍ମ ଅବ୍ୟକ୍ତ ବୋଲି ନ ଜାଣନ୍ତି ମୋତେ ନୋହନ୍ତି ବିଶ୍ୱାସ ।୩୦।
ଭୂତ ଭବିଷ ବ୍ରତମାନ ଯିସ ପ୍ରାଣୀଙ୍କ ମନ ଜାଣଇ
ମୋତେ ହାଦେ ପାଥ କେହି ନଜାଣଇ ତୋ ଆଗେ ସାଧ
ବଖାଣଇ ।୩୧।

ଯେଉଂ ପୁରୁଷ ରାଗ ଉଦ୍ୱେଷ ଶୀତ ଉଷ୍ଣମାଦି ଦନ୍ଦ
ମୋହେ ମୋହି ହୋଇ ମୋତେ ନ ଜାଣଇ ତାହାକୁ ବୋଲିଟି
ମନ୍ଦ ।୩୨।

ପୁଣ୍ୟ ପରାଣୀ ମୋତେ ସେ ଜାଣି ପାପକ୍ଷୟେ କରୁଥାନ୍ତି
ଜନ୍ମ ମରଣ ଛାଡ଼ିଣ ଉଦିଯୋଗ ପ୍ରମବ୍ରହ୍ମ ସେ ଜାଣନ୍ତି ।୩୩।
ସାଧନା ମତ ହୋଇଲାର ବୃଦ୍ଧ ବ୍ରହ୍ମବିଦ୍ୟା ହିଂ ସେ ଜାଣି
ମରଣ କାଳେ ମୋତେ ସୁମରିଲେ ମୋକ୍ଷ ହୋଇଯାନ୍ତି ପ୍ରାଣୀ ।୩୪।
ସପ୍ତମ ଅଧ୍ୟା ଗୀତା ପ୍ରସିଧା ହରିଅର୍ଜୁନ ଭାଳେଣି
ଧୃତରାଷ୍ଟ୍ର ଆଗେ ସଞ୍ଜୟ କହିଲା ବଳରାମ ଦାସ ଭଣି ।୩୫।

ଇତି ଶ୍ରୀଭଗବଦ୍ ଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମ ବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ଜ୍ଞାନ ଯୋଗ କଥନେ ନାମ ସପ୍ତମ ଅଧ୍ୟାୟ ।

## ଅଷ୍ଟମ ଅଧ୍ୟାୟ

### ତାରକ ବ୍ରହ୍ମଯୋଗ

॥ ପୀଢ଼ବନ୍ଧ ॥

ଶ୍ରୀକୃଷ୍ଣ ମୁଖୁଂ ଏସନେକ ବାଣୀ ଶୁଣି
ହରଷ ଚିତ୍ତେଣ ଅର୍ଜୁନ ପଚାରି
ସଂଶୟେ ମୋତେ ଲାଗିଲାକ ସ୍ୱାମୀ
ଫେଡ଼ି କହ ଚକ୍ରଧାରୀ ।

॥ ଗୀତବନ୍ଧ ॥

(ଭୀଷ୍ମେକ ବାଣୀରେ ପଢ଼ିବା)

ଅର୍ଜୁନ ବୋଲଇ ପ୍ରଭୁ ବ୍ରହ୍ମ ବୋଲି ଯାହା କହୁ
ଅଧିଆତ୍ମା ବୋଲି ସେ କରମ କେବଣ
ଅଧିଭୂତ କେହୁ ହୋଇ ଅଧିଦଇବତ କେହି
ଅଧିଯଜ୍ଞ ବୋଲିଣ ବୋଲନ୍ତି କେ ପୁଣ ।୧।
ମରଣ ନିୟତ ଚିତ୍ତେ ହୋଇ କେ ଜାଣିମ ମୋତେ
ଏ କଥା ଅଟଇ କେମନ୍ତ କହ ଗୋସାଇଂ

ଶ୍ରୀ ଜଗନ୍ନାଥେ ବୋଲନ୍ତି ଯେ ଦ୍ରବ ନାଶ ନ ଯାନ୍ତି
ତାହାକୁ ସେ ବ୍ରହ୍ମ ବୋଲି ସଂଶୟେ ନାହିଁ ।୨।
ଜୀବଭାବ ସେହି ଧର୍ମ ବୋଲି ଅଧିଆତ୍ମା କର୍ମ
ପ୍ରାଣୀଙ୍କ ସୃଷ୍ଟି କରିବା କରମ ବୋଲି ।
ଦେହାଦି କ୍ଷଏ ପଦାର୍ଥ ଏହା ବୋଲି ଅଧିଭୂତ
ଅଧି ଦଇବତ ଅଧିଷ୍ଠାଣ କହିଲି ।୩।
ଦେହଧାରୀମାନଙ୍କର ଅଧିଯଜ୍ଞର ଭିତରେ
ମରଣେ ସୁମରି ମୋତେ ଯେ ଦେହ ଛାଡ଼ି
ସେ ମୋର ଭାବ ଘେନଇ ଏଥକୁ ସଂଶୟ ନାହିଁ
ଆରେକ କଥାଏ ତୋତେ କହଇ ବଢ଼ି ।୪।
ମରଣେ ଭାବଇ ଯାହା କାଳେ ପୁଣି ପାଇ ତାହା
ତେଣୁ କରି ସର୍ବଦା ତୁ ମୋତେ ସୁମର ।
ମନ ବୁଦ୍ଧି ମୋହୋ ତହିଁ ଥିର କରିଣ ଲଗାଇ
ତରିବୁ ସଂଶଏ ନାହିଁ ସାଂଗ୍ରାମ କର ।୫।
ତୁ ବୋଲୁ ଚଞ୍ଚଳ ଚିତ୍ତ କେମନ୍ତେ ଦେବି ତ୍ରମ୍ଭନ୍ତ
ଅଭ୍ୟାସ କଲେ ପରମ ପୁରୁଷ ପାଇ
ସେ ପୁରୁଷ କେମନ୍ତେଟି ସର୍ବଜ୍ଞ ଆଦି ସିଦ୍ଧିଟି
ନିର୍ମଳ ସୂକ୍ଷ୍ମଉଂ ସୂକ୍ଷ୍ମ ପ୍ରାଣ ଗୋସାଇଂ ।୬।
ସୂର୍ଯ୍ୟର ତେଜ ଯାହାର ଅବିଦ୍ୟା ବନ୍ଧୁ ବାହାର
ମରଣ କାଳେ ଏମନ୍ତ ପୁରୁଷ ଚାହଂ ।
ଥିର ମନେ ସେବା କରି ତା ମଧେ ପ୍ରାଣ ସଂହରି
ସେ ଦିବ୍ୟ ପୁରୁଷ ତହିଁ ଲୀନହିଁ ଯାଅ ।୭।
ବେଦ ବିଦ୍ୟାମାନେ ଯାହା ଅକ୍ଷୟ ବୋଲନ୍ତି ତାହା
ନିସ୍ପ୍ରୋହା ହୋଇଣ ଯଦି ତା' ତହିଁ ଲୀନ ।
ବ୍ରହ୍ମଚାରୀଙ୍କର ଇଚ୍ଛା ଜାଣିନ୍ତ କରେ ବାଏଛା ।
ସେ ପଦ ସଞ୍ଚେପି କହୁଂ ପଣ୍ଡୁ ନନ୍ଦନ ।୮।
ସର୍ବ ଦ୍ୱାର ସଂଯମିଣ ମନ ନିରୋଧ କରିଣ
ମୂଧ୍ନିରେ ଲାଇ ପ୍ରାଣ ମୋତେ ସୁମରି ।
ଏକାକ୍ଷର ଯେଉଂ ବ୍ରହ୍ମ ଉଚ୍ଚାରଣେ ସେହି କର୍ମ
ପରମ ଗତି ପ୍ରାପତ ସେହୁ ନ ଡରି ।୯।
ଭୋ ଅର୍ଜୁନ ଯେହୁ ମୋତେ ନିତ୍ୟେ ସୁମରେ ସୁଚିତ୍ତେ
ତାହାକୁ ସୁଲଭ ମୁଇଂ କରଇ ଜନ୍ମ ।
ସେ ଲୋକ ସଂସିଦ୍ଧ ହୋଇ ନାନା କେଳେଶ ଏଡ଼ାଇ
ଅଭ୍ୟାସେଣ ଲଭେ ସେହି ଗତି ପରମ ।୧୦।
ତପବଳେ ବ୍ରହ୍ମଲୋକ ଯାଇ ସେ ପାରନ୍ତି ଥୋକ
ସେହି ପୁଣି ମୃତ୍ୟୁ ପୁରେ ଜନମ ହୋଇ ।
ମୋହୋ ତହିଁ ଯେହୁଲୀନ ପୁନରପି ନୁହେଂ ଜନ୍ମ
ସଂସାର ଚକ୍ରେଣ ଭ୍ରମ ହୋଇ ନ ଯାଇ ।୧୧।
ସହସ୍ରେ ଯୁଗ ଧାତାକୁ ଦିବସେକ ଗଣି ତାକୁ
ରାତହିଁ ସହସ୍ରେ ଯୁଗ ଏହି ପ୍ରମାଣ ।
ଦିବସେ ସଂସାର ହୋଇ ରାତ୍ରେଣ ପ୍ରଳେ କରଇ
ଏହି ପରକାରେ ଗତାଗତ ଭିଆଣ ।୧୨।
ହୋଉଥାନ୍ତି ନାଶ ଯାନ୍ତି ଏହେତୁ ଯେହୁ ଜାଣନ୍ତି
ସେ ସେ ଅବ୍ୟକତର ନାଶ କେବେହେଂ ନାହିଁ,
ତା ବୋଲି ପରମ ଗତି ସେ ଯାହା ନ ବାହୁଡ଼ନ୍ତି
ସେ ମୋହୋର ସ୍ଥାନ ହାଦେ କହିଲି ମୁହିଁ ।୧୩।
ଯେତେକ ଜଗତେ ଲୋକ କୃଷ୍ଣ ଶୁକ୍ଳପକ୍ଷେ ଜାତ
ମୋ ତହିଁ ହୁଅନ୍ତି ଧାନ ଧାରଣ ବଳେ ।
ବାସନା ଫଳେ ଅର୍ଜୁନ ପ୍ରାଣୀ ହୁନ୍ତି ନାନା ସ୍ଥାନ
ଏଇମତି ଜନ୍ମମୃତ୍ୟୁ ପାଆନ୍ତି ବଳେ ।୧୪।
ଆହୁରି କଥାଏ ପାର୍ଥ କହିବା ସିଧ ସିଦ୍ଧାନ୍ତ
ସେ ପରମ ପୁରୁଷକୁ ସେବି ସୁଚିତେ
ଭଗତି କଲେଣ ପାଇ ବାହୁଡ଼ିଣ ନୁଆସଇ
ବାହୁଡ଼ି ଆସଇ ଯେହୁ କହିବା କହିବା ତୋତେ ।୧୫।
ଉତ୍ତ୍ରାୟେଣ ଛଡ଼ମାସ ଦିବସେ ଶୁକଳ ପକ୍ଷ
ଅଗ୍ନି ଜୋତି ଏଥେ ବ୍ରହ୍ମବେତାଏ ମରି
ସେ ସୁଖେଣ ବ୍ରହ୍ମ ପାନ୍ତି ବାହୁଡ଼ିଣ ନୁ ଆସନ୍ତି
ନିଚିନ୍ତେଣ ଥାନ୍ତି ଭବ ଭୟେ ନ ଡରି ।୧୬।
ଦକ୍ଷିଣାୟେ ଛଡ଼ ମାସ କୃଷ୍ଣ ପକ୍ଷ ଧୂର୍ମ ତ୍ରାସ
ତ୍ରାସେଣ କରମ ଯେଗୀ ମାନେ ମରନ୍ତି ।
ଦେହ ଛାଡ଼ି ସର୍ଗ ପାଇ ଭୋଗ ଭୁଞ୍ଜି ବାହୁଡ଼ଇ
ସଂସାର ଚକ୍ରେଣ ଆସି ପୁଣି ପଡ଼ନ୍ତି ।୧୭।
ଯଜ୍ଞ କଲେ ଯେତେ ପୁଣ୍ୟ ଯେତେ ପୁଣ୍ୟ ଦେଲେ ଦାନ
ବେଦ ଅଧାନେ ସବୁ ତପ ଯେ ହୋଇ
ଯେ ଗୀତା ଶୁଣିଲେ ତୋତେ ପୁନ୍ୟ ପ୍ରାପତ ସୁଚିତ୍ତେ
କରଣୀ କଲେଣ ସୁଖେ ମୁକତି ହୋଇ ।୧୮।
ଅଷ୍ଟମ ଅଧ୍ୟା ସମ୍ପୂର୍ଣ୍ଣ ପଢ଼ିଲେ ଶୁଣିଲେ ପୁନ୍ୟ
ଭାରତ ଦଧିର ଏହୁ ଲବଣୀ ଲୋଟି ।
ଅର୍ଜୁନେଣ ହରି କହେ ଧୃତରାଷ୍ଟ୍ରେଣ ସଞ୍ଜୟେ
ବଳରାମ ଦାସ ଗୀତା ଗୀତେଣ ରଞ୍ଜି ।
ଇତିଶ୍ରୀ ଭଗବଦ୍‌ଗୀତା ସଂହିତାୟା ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ
ଯୋଗଶସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ନାମ ଅଷ୍ଟମ ଅଧାୟ ।

# ନବମ ଅଧ୍ୟାୟ

## (ଜ୍ଞାନ ଯୋଗ)

### ।। ପୀଢ଼ବନ୍ଧ ।।

ଶ୍ରୀକୃଷ୍ଣ ପ୍ରସନ୍ନ ବଦନେ ଭଣନ୍ତି କହିବିଇଂ ଆବର ସାର ।
ଯେବଣ କଥା ଥିର ଚିତ୍ତେ ଶୁଣିଲେ ଜନମ ମୃତ୍ୟୁ ନ ଲଭଇ ନର

### ।। ଗୀତବନ୍ଧ ।।

### (ଜଳକୀଡ଼ା ବାଣୀରେ ପଢ଼ିବ)

କେଶବ କହନ୍ତି ଅର୍ଜୁନ ଚାହିଂ, ଅତି ରହସ କଥା କହିବଇଂ ।୧
ଯେଉଂ କଥା ଶୁଣି ସଂସାରୁ ତରି, ତୋତେ କହୁଅଛି ବିଶ୍ୱାସ କରି ।୨
ବିଦ୍ୟାମାନଙ୍କର ଉପରେ ରାଜା, ରହସମାନଙ୍କର ହାଦେ ଅଜା ।୩
ଶୁଣିଲେଣ ଅତି ପବିତ୍ର ହୋଇ, ପ୍ରତକ୍ଷେ ସୁଫଳ ଫଳ ଫଳାଇ ।୪
ଧର୍ମ କଥା ତା ତହୁଂ ଆନ ନାହିଂ, କରିତ ସୁଲଭ ଝଗଡ଼ା କାହିଂ ।୫
ମୋହୋ କହନ୍ତେ ନାହିଂ ଯାର ସଦ, ସେ ମୋତେ ନ ପାନ୍ତି ସଂସାରେ ବନ୍ଧ ।୬
ମୃତ୍ୟୁ ସଂସାରେ ଆତ ଯାତ ହୋନ୍ତି, ଅଜ୍ଞାନୀ ହୋଇ କିଛି ନଜାଣନ୍ତି ।୭
ଜଗତ ସଂସାର ମୁଂ ଯେ ରଚିଂଲି, ପ୍ରାଣୀମାନଙ୍କୁ ମୁଇଂ ସିରିଜିଲି ।୮
ମୋହୋ ତହିଂ ପ୍ରାଣୀ ଲାଗିଣ ଛନ୍ତି, ମୁଂ ତହିଂ ଲାଗି ନାହିଂଟି ବୋଲନ୍ତି ।୯
ତୁ ଅବା ବୋଲୁ ସେ ଲାଗିଲେ ଯେବେ, ତୁମ୍ଭେ କି ଅଲଗା ହୋଇଲ ତେବେ ।୧୦
ସେ ହାଦେ ମୋ ତହିଂ ଲାଗିଣ ଛନ୍ତି, ମୁଇଂ ନ ଲାଗଇ ନ କର ଭ୍ରାନ୍ତି ।୧୧
ଏ କଥା ମୋହୋର ଯୋଗ ମହିମା, ଆରେକ କଥା ଏ ଦେବା ଉପମା ।୧୨
ଆକାଶୁଂ ପବନ ଯେମନ୍ତ ହୋଇ, ବ୍ୟାପିଣ ଥାଇ, ନ ଲାଗଇ କାହିଁ ।୧୩
ପ୍ରାଣୀମାନେହିଂ ମୋହୋ ତହିଂ ଥାନ୍ତି, କଳପଛଯେ ପ୍ରକୃତି ପଶନ୍ତି ।
ପୁଣିହିଂ କଳ୍ପଇ ସ୍ରିଜିବା କାଳେ, ବାହାର କରଇ ତେମନ୍ତ ବେଳେ ।୧୫
ପ୍ରକୃତି ବଶ ହୋଇଲାର ପ୍ରାଣ, ପ୍ରଳୟେ ମୋହୋ ତହିଂ ଥୁଅଇ ଆଣି ।୧୬
ସୃଷ୍ଟି କାଳେଣ ସୃଷ୍ଟିରେ ସିରିଜି, ଆତଯାତ ହୋଇ ମରି ଉପୁଜି ।୧୭
ତୁ ଅବା ବୋଲୁ ଏମନ୍ତ ଯେ କର, କଲା କରମ ହୋଇଲା ତୁମ୍ଭର ।୧୮
ମୁଂ ହାଦେ କରଇ ଉଦାସ ହୋଇ, ଉଦାସ ଗୁଣେ କାହିଂ ଲାଗି ନାହିଂ ।୧୯
କେବଳ ହୋଇଥାଇ ଅଧିଷ୍ଠାଣ, ପ୍ରକୃତିରୁ ମୋର ସୃଷ୍ଟି ଭିଆଣ ।୨୦
ସେ ମୋର ମାୟା ତାହାର ଜଗତ, ଉତପତି ଥିତି ପ୍ରଳୟ ମତ ।୨୧
ଯେହେନ୍ତେ ଅରଟୀ କୂପଘଟ ପ୍ରାଏ, ଆତଯାତ ହୋଇ ବୁଡ଼ୁଣ ଥାଏ ।୨୨
ଏଥର ମଧେ ମୂଢ଼ଲୋକେ ଥାନ୍ତି, ମୋତେ ମନିଷ ବୋଲି କରେ ଭ୍ରାନ୍ତି ।୨୩
ମୋହୋର ପରମ ଭାବ ନ ଜାଣି, ଅବଜ୍ଞା କରି ହୋଉଥାନ୍ତି ଟାଣି ।୨୪
ମୋତେ ଛାଡ଼ି ଆନ ଦିଅଂ ପୂଜନ୍ତି, ବେଗେଣ ଫଳ ପାଇବୁ ବୋଲନ୍ତି ।୨୫
ଏମନ୍ତ ବୋଲି ଆଶାମାନ କରି, ବିଅର୍ଥ ଜନ୍ମ ଅଟଇ ତାହାଙ୍କରି ।୨୬
ବିଅର୍ଥ ତାହାଙ୍କର କର୍ମ ମାନ, ମାୟା ଭ୍ରମେଣ ନ ଜାଣନ୍ତି ଗ୍ୟାନ ।୨୭
ମୋହେଣ ଅସୁର ପ୍ରକୃତି ଘେନି, ମୋତେ ଅବଜ୍ଞା କରନ୍ତି ନ ଚିହ୍ନି ।୨୮
ମହାତ୍ମାମାନେ ଦେବତା ପ୍ରକୃତି, ଏକ ଚିତ୍ତେଣ ମୋତେ ଭଜୁଥାନ୍ତି ।୨୯
ଭୂତମାନଙ୍କର ଆଦି ଅବୟ, ଏମନ୍ତ ଜାଣି କରନ୍ତି ତଲୟ ।୩୦
ସର୍ବଦା ମୋର ନାମ ସୁମରନ୍ତି, ମୋତେହେଂ ସେ ନମସ୍କାର କରନ୍ତି ।୩୧
ମୋତେ ଭଗତି ଲାଗିବ ଯେମନ୍ତ, ଦୃଢ଼ ଉପାସନା କର ତେମନ୍ତ ।୩୨
ଥୋକାଏ ଲୋକ ଜ୍ଞାନେ ବିଚାରନ୍ତି, ଜଗତ ବିଷ୍ଣୁ ସ୍ୱରୂପ ବୋଲନ୍ତି ।୩୩
ଏମନ୍ତ ଭାଳି ଭଜୁଥାନ୍ତି ମୋତେ, ଥୋକାଏ ଲୋକ ଏକଭାବେ ପ୍ରତେ ।୩୪
ମୁହିଂ ବିଷ୍ଣୁ ବୋଲି ବିଚାରି ଭଜି, ଥୋକାଏ ସେବକ ପଣେ ନିମଜି ।୩୫
ହରି ମୋ ସ୍ୱାମୀ ମୁହିଂ ତାଙ୍କ ଦାସ, ଏମନ୍ତ ଭଳି ହୋଯେ ବିଶୁଆସ ।୩୬
ଯଜ୍ଞ ପଞ୍ଚ ମହାଯଜ୍ଞହିଂ ମୁହିଂ, ପିତୃଙ୍କୁ ଆହାର ମୋ' ଆନେ ନାହିଁ ।୩୭
ଅନ୍ନ ମନ୍ତ୍ର ହୋମ କଲା ପଦାର୍ଥ, ଅଗ୍ନିରୂପେ ତାହା ଭୁଞ୍ଜଇ ପାର୍ଥ ।୩୮
ହୋମହିଂ ମୁହିଂ କରତାହିଂ ମୁହିଂ, ମୋ ବିନୁ ଜଗତେ ବାପ ମା କାହିଂ ।୩୯
ପୋଷନ୍ତାହିଂ ମୁହିଂ ବେଦ ଆଦି, ଅତି ପବିତ୍ର ବେଦମାନେ ସିଦ୍ଧି ।୪୦

ପ୍ରଭୁ ଭାରିଯା ମୁହିଂ ସଖା ପତି, ବିନାଶଇ ମୁହିଁ ଅଟଇ ଯୁଗତି ।୪୧
ରକ୍ଷେକ ସୁହୃଦେ ସୃଷ୍ଟି କରିବା, ଥିତି ପ୍ରଳୟ ମୋହୋ ବିଚାରିବା ।୪୨
ଆଧାର ନାଶ କରିବା ବୀଜହିଂ, ଗ୍ରୀଷମେ ଆଦିତ ରୂପେତାପାଇଂ ।୪୩
ବରଷିବା ଲୋକ ବରଷା କାଳେ, ମୁହିଂ ସେ ବିଷ ଅମୃତ ସୟଳେ ।
ଦୃଶ ଅଦୃଶ ମୁଂ ଅଟଇ ସବୁ, ଆରେକ କଥାୟେ ଅଛି କହିବୁ ।୪୫
ତ୍ରିଦେବ ଯଜ୍ଞେ ସୋମ ପାନ କରି, ଇନ୍ଦ୍ର କତିରେ ବସି ଦିନ ହରି ।୪୬
ଦିବ୍ୟ ଭୋଗମାନ ଭୁଞ୍ଜୁଣ ଥାନ୍ତି, ପୁନ୍ୟ ସରିଲେ ପୃଥିରେ ଜନ୍ମନ୍ତି ।୪୭
ପୁଣିହିଂ ଯଜ୍ଞ କରି ସର୍ଗ ପାଇ, କାମେ ଆତଯାତ ହୋଉଣ ଥାଇ ।୪୮
ଆନକୁ ନ ପୂଜି ମୋତେ ପୂଜନ୍ତି, ଇହପରଲୋକେ ଭୋଗ ଭୁଞ୍ଜନ୍ତି । ।୪୯
ଯେ ଦୁଇ ଠାରେ ମୁଂ ବହିଣ ଦେଇ, ଯେ କଥାରେ ମୋର ଅଳସ ନାହିଂ ।୫୦
ତୁ ଅବା ବୋଲୁ ଯଜ୍ଞ କଲା ଲୋକ, ବେଭାରେ ତୋହୋର ଅଟଇ ସେବକ ।୫୧
ଭଜିଲା ଲୋକ ବେଭାରେ ତୋହର, ଏହାକୁ କିମ୍ପାଇ ବୋଲୁ ମୋହର ।୫୨
ଯଜ୍ଞ କଲା ଲୋକ ଆସଇ ଯାଇ, ତୁମ୍ଭ ଭଗତି ଲୋକ ମୋକ୍ଷ ପାଇ । ୫୩
ତାହି କହିବା ଏକମନେ ଶୁଣ, ଯଜ୍ଞ କରନ୍ତି ସେ ମୋର କାରଣ ।୫୪
ସେମାନେ ହାଦେ ବିଧିମତ ନୋହି, ଅନ୍ତର ମୃତିକି ଭାବନ୍ତି ସେହି ।୫୫
ମୁଂ ସର୍ବ ଯଜ୍ଞମାନଙ୍କୁ ଭୁଗୁତା, ଏମନ୍ତ ବୋଲି ସେ ନୋହନ୍ତି ଜ୍ଞାତା ।
ମୁହିଂ ସେ ପ୍ରଭୁ ବୋଲି ନଜାଣନ୍ତି, ତେଣୁ ଆତଯାତ ହୋଉଣ ଥାନ୍ତି ।୫୭
ଯେଉଂ ଦେବତାଙ୍କୁ ଭଗତି ଯେହୁ, ସେହୁ ଦେବତା ଲୋକ ହୋନ୍ତି ସେହୁ ।୫୮
ଭୂତ ଭଗତି ଭୂତ ଲୋକ ହୋନ୍ତି, ପିତୃ ଭଗତି ପିତୃ ଲୋକ ପାନ୍ତି ।୫୯
ମୋହୋର ଭଗତି ମୋହୋ ଲୋକ ପାଇ, ଜଳ ପତ୍ର, ପୁଷ୍ପ ଫଳ ସମୋଇ ।୬୦
ଭଗତି ଲୋକ ଦେଲେଣ ମୁଂ ପାଇ, ତେଣୁ ଅର୍ଜୁନ ମୁଂ ତୋତେ ବୁଝାଇ ।୬୧

ତୁ ଯାହା ଭୁଞ୍ଜିବୁ କରିବୁ ଯାହା, ମୋତେ ସମର୍ପଣ କରିବୁ ତାହା ।୬୨
ଶୁଭାଶୁଭ କର୍ମଫଳ ଉଦାସ, ମୋ ତହିଂ ଲୀନ ହୋଇବୁ ଅବଶ୍ୟ ।୬୩
ମୁଂ ହାଦେ ସମ ଅଟେ ସର୍ବଭୂତେ, ଅଇରି ମଇତ୍ର ନାହିଂଟି ମୋତେ ।୬୪
ମୋତେ ଯେ ଭଜଇ ମୁଂ ଥାଇ ତହିଂ, ସେଇ ନିଚୟେ ଥାଇ ମୋହୋ ତହିଂ ।୬୫
ପରିଚାର ହୋ ବାହାରେ ଥାଇ, ଅନ୍ତର୍ଗତ ଚିତ୍ତେ ମୋତେ ଭଜଇ ।୬୬
ତାହାକୁ ସାଧୁ ଲୋକ ବୋଲି ଜାଣି, ବେଭାରେ ଶାନ୍ତି ହୁଅନ୍ତି ସେ ପ୍ରାଣୀ ।୬୭
ଭୋ ଅର୍ଜୁନ ତୁ ଜାଣିଥା ହାଦେ, ମୋହୋ ଭକ୍ତଙ୍କୁ ଡରନ୍ତି ପ୍ରମାଦେ ।୬୮
ମୋହୋ ଭକ୍ତ ସବୁକାଳେ ଅକ୍ଷଏ, ଏ କଥାରେ କିଛି ନାହିଂ ସଂଶୟେ ।୬୯
ପାପ ଯୋନିରେ ଜାତ ହୋଇ ଥାଉ, କ୍ଷତ୍ରି ବଶ୍ୟ ଶୂଦ୍ର ଯେ ହୋଇବ ହୋଉ ।୭୦
ସହସ୍ରେ ଭୁଜରେ ଆଉଧ ଧରି, ମୋହୋ ଭକ୍ତକୁ ମୁଂ ଥାଇ ଉହାଡ଼ି ।୭୧
ଭକ୍ତ ଯେଣେ ଯିବ ମୁଂ ତେଣେ ଯାଇ, ଆଗ ପଛ ବୋଲି ମଣାଉଥାଇ ।୭୨
ମୋତେ ଭଜିଲେ ପରମ ଗତି ପାନ୍ତି, ବ୍ରାହ୍ମଣମାନେ ରାଜଋଷି ଥାନ୍ତି ।୭୩
ମୋହରେ ଭଗତି ଯେହୁ ନୋହିବେ, ସେମାନେ ମୁକତି କିମ୍ପା ହୋଇବେ ।୭୪
ଏହୁ ସଂସାର ଅସୁଖ ଅନିତ୍ୟ, ଏଥେ ଥାଇ ମୋତେ ହୋଅ ଭଗତ ।୭୫
ମୋହୋ ତହିଂ ମନ ଦେଇ ଭଜିବୁ, ମୋତେ ଭଗତି କରିଣ ମଣ୍ଡିବୁ । ୭୬
ମୋତେହେଂ ସେ ନମସ୍କାର କରିବୁ, ଯେହ୍ନେ ତତ୍ତ୍ୱପରେ ଭବୁ ତରିବୁ ।୭୭
ନବମ ଅଧ୍ୟା ସମ୍ପୂର୍ଣ୍ଣ ହୋଅଇ, ଅର୍ଜୁନ ଆଗେଣ ଶ୍ରୀହରି କହି ।୭୮
ସଞ୍ଜୟେ କହେ ଧୃତରାଷ୍ଟ୍ର ଶୁଣି, ପଞ୍ଚମ ବେଦ ଏ ଗୀତା କାହାଣୀ ।୭୯
ପୁରୁଷୋତ୍ତମ ପାଦ ଶିରେ ଧରି, ରାଜପୂଜ୍ୟ ଯୋଗ ଯେ ବୋଲି କରି ।୮୦

ନୀଳଗିରି ଜଗନ୍ନାଥ ଗୋସାଇଁ, ତାହାଙ୍କ ସେବକ ସର୍ବଦା ମୁହିଁ ।୮୧

ସେ ହୃଦେ ଯାହା ଆଜ୍ଞା ଦେଲେ ମୋତେ, ଲେଖନ ଧରି ମୁଁ ଲେଖିଲି ପତ୍ରେ ।୮୨

ବ୍ରହ୍ମା ସୁର ଶିବ ସେବା ନ ଜାଣି, ବଳରାମ ଦାସ ଗୀତା ବଖାଣି ।୮୩

ଇତି ଶ୍ରୀଭଗବଦ୍‌ଗୀତା ସଂହିତାୟାଂ ସୁପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ ଜ୍ଞାନ ଯୋଗ କଥନେ । ନାମ ନବମ ଅଧ୍ୟାୟ ।

## ଦଶମ ଅଧ୍ୟାୟ
### ବିଭୂତି ଯୋଗ

॥ ପୀଢ଼ବନ୍ଧ ॥

ପୁରୁଷୋତ୍ତମ ହସିଣ ଭଣଇ ଶୁଣ ହୋ ପଣ୍ଡୁର ନାନ ।
ପରମ ଗୁପତ କଥାଏ କହିବଇଂ ଏଥି ଉତ୍ତାରେଣ ଆନ ॥

॥ ଗୀତବନ୍ଧ ॥

**(ଭୋପାଳ ତଣ୍ଡେକ ରାଗେଣ ଗାଇବା)**

ଶ୍ରୀହରି କହନ୍ତି ସଦୟ ଚିତ୍ତେ, ଆଉ କଥାଏ କହୁ ତୋହ ହିତେ ।୧
ଦେବତା ଗଣ ଋଷିମାନେ ଛନ୍ତି, ସେ ମୋର ଉତପତ୍ତି ନ ଜାଣନ୍ତି ।୨
ଯହୁଁ ମୁଁ ତାହାଙ୍କ ଆଗହୁଁ ଅଛି, ତେଣୁ ସେ ମୋର ନ ଜାଣନ୍ତି କିଛି ।୩
ଅଜନ୍ମ ଅନାଦି ଲୋକ ଇଶ୍ୱର, ମୋତେ ଯେହେନ୍ତେ ଜାଣେ ଯେଉଂ ନର। ।୪
ଜ୍ଞାନୀ ବୋଲି ତା ଜାଣ ପଣ୍ଡୁସୁତ, ସବୁ ପାପରୁ ସେ ହୋଏ ମୁକତ ।୫
ଆହୁରି କଥାଏ କହିବା ଶୁଣ, ବୁଦ୍ଧି ବିବେକ ଯେ ସହିବା ଗୁଣ ।୬
ସତ ଶାନ୍ତି ଯେ ଦୁଃଖ ସୁଖ ମାନ, ଉତପତି ପ୍ରଳେ ଇନ୍ଦ୍ରି ଦମନ ।୭
ଭୟ ଅଭୟ ଅହିଂସା ସନ୍ତୋଷ, ସମତାଦୃଷ୍ଟି ତପ ଦାନ ଯଶ ।୮
ଅପଯଶ ଘେନି ଏ ଗୁଣ ମାନ, ପ୍ରାଣୀ ତହିଁ ଥାନ୍ତି ତେଣୁ ଅଜ୍ଞାନ ।୯
ସପତ ଋଷି ଆର ମନୁ ଚାରି, ଯେହା ମୋହର ମନୁଂ ଜାତ କରି ।୧୦
ମୋହର ବିଭୂତି ଯୋଗ ଯେ ଜାଣି, ନିଚଳ ଯୋଗ ପାନ୍ତି ସେହୁ ପ୍ରାଣୀ ।୧୧
ଏ କଥାରେ ହାଦେ ସଂଶୟେ ନାହିଂ, ମୁଂ ଉତପତ୍ତି କଲି ସବୁ କୁହିଂ ।
ମୋ ତହୁଂ ସବୁ ଜାତ ବୋଲି ଜାଣି, ମୋତେ ଭଜୁଥାନ୍ତି ପଣ୍ଡିତ ପ୍ରାଣୀ ।୧୩
ପ୍ରାଣ ମୋହ ତହିଂ ଦେଇଣ ଥାନ୍ତି, ମୋ କଥା ଏକ ଆରକେ ପୁଛନ୍ତି ।୧୪
ପ୍ରବୋଧ ହୁଅନ୍ତି ଯେ କଥା ଶୁଣି, ସନ୍ତୋଷ ହୋଉଥାନ୍ତି ଗୁଣ ଗୁଣି ।୧୫
ଏମନ୍ତ ଲୋକଙ୍କୁ ପ୍ରସନ୍ନ ହୋଇ, ମୋତେ ପାଇବାକୁ ସୁବୁଦ୍ଧି ଦେଇ ।୧୬
ତାହାଙ୍କ ଅଜ୍ଞାନୁ ଜାତ ଯେ ନିଶି, ଜ୍ଞାନଦୀପେ ମୁହିଂ ତାହା ବିନାଶି ।୧୭
ଯେହା ଶୁଣିଣ ବୋଇଲା ଅର୍ଜ୍ଜୁନ, କଥାଏ ପୁଛିବି ଭୋ ଜନାର୍ଦ୍ଦନ ।୧୮
ଯେଉଁ କଥାରେ ଆଦି ଅନ୍ତ ନାହିଂ, ସବୁ ବିସ୍ତାର କହ ପ୍ରଭୁ ତୁହି ।୧୯
ନାରଦ ଆସି ତ ଦେବଳ ବ୍ୟାସ, ଦେବ ଋଷି ହିଂ କରନ୍ତି ପ୍ରକାଶ ।୨୦
ପରମ ପୁରୁଷ ନିତ୍ୟ ବୋଲନ୍ତି, ଅଜନ୍ମ ଅବୟ ପରମ ଜ୍ୟୋତି ।୨୧
ପରମ ଧାମ ବୋଲନ୍ତି ସେହି ସେ, ତୁମ୍ଭେ ପ୍ରତକ୍ଷେ ବୋଲୁଛ ମୁହିଂ ସେ ।୨୨
ତେଣୁ କରି ସତ ମଣୁଅଛଇ, ଯେଣୁ ସୁସାଧ ତୁମ୍ଭଙ୍କୁ ପୁଛଇ ।୨୩
ଦେବେ ଦାନବେ ତୋ ମାୟା ନଜାଣି, ତୁମ୍ଭଙ୍କୁ ତୁମ୍ଭେ ହୋଅ ଜଣା ଜଣି ।୨୪
ଯେଉଂ ବିଭୂତି ତ୍ରୈଲୋକେ ବ୍ୟାପିଛି, ତାହା ବିସ୍ତାରି କହିବା ଶ୍ରୀବତ୍ସି ।୨୫
ଭୋ ଯୋଗେଶ୍ୱର ମୁଂ କେମନ୍ତ କରି, ତୁମ୍ଭଙ୍କୁ ଚିନ୍ତା କରିବି ଶ୍ରୀହରି ।୨୬
ତାହା ବିସ୍ତାରି କହ ମୁଂ ଜାଣଇ, ବିଶେଷି ତୁମ୍ଭ ଶ୍ରୀମୁଖୁଂ ଶୁଣଇ ।୨୭
ଏ ତୋର ଅମୃତ ରସ କାହାଣୀ, ତ୍ରିପୁତି ହୋଇ କିନା ତାହା ଶୁଣି ।୨୮
ଅର୍ଜ୍ଜୁନ ବୋଲେ କହନ୍ତି ମୁରାରି, ବୋଲନ୍ତି ଶୁଣ ହୋ ଗାଣ୍ଡିବ ଧାରୀ ।୨୯
ଦିବ୍ୟ ବିଭୂତିର ଉତ୍ତମ ସ୍ଥାନ, କଥାଯେ କହୁ ହୁଅ ସାବଧାନ ।୩୦
ଯଉଂ କଥାରେ ଆଦି ଅନ୍ତ ନାହିଂ, ସବୁ ବିସ୍ତାରି ମୁଂ କହିବି କାହିଂ ।୩୧
ଭୋ ଗୁଡ଼ାକେଶ ସବୁ ପ୍ରାଣୀଙ୍କର, ଅନ୍ତର୍ଯାମୀ ନାଥ ମୁଂ ଅଟଇ ନିକର ।୩୨
ମୁହିଂ ସେ ହାଦେ ଆଦି ଅନ୍ତ ମଧ, ତୋହର ଆଗେ କହୁଅଛି ସଧ ।୩୩
ଆଦିତ୍ୟଙ୍କର ବିଷ୍ଣୁ ବୋଲି ଯେହୁ, ଆଦିତ୍ୟ ମଧ୍ୟେ ମୁଂ ଅଟଇ ସେହୁ ।୩୪
ଜ୍ୟୋତିଷମାନଙ୍କରେ ସୂର୍ଯ୍ୟ ହିଂ ମୁହିଂ, ପବନମଧ୍ୟେ ମରୁତ ବୋଲାଇ ।୩୫

ନକ୍ଷତ୍ର ମାନଙ୍କରେ ମୁହିଁ ସୋମ, ବେଦମାନଙ୍କର ମଧ୍ୟେ ମୁଁ ସାମ ।୩୬
ଦେବତାମାନଙ୍କରେ ମଘବାନ, ଇନ୍ଦ୍ରିୟମାନଙ୍କରେ ମୁହିଁ ମନ ।୩୭
ପ୍ରାଣୀ ମାନଙ୍କରେ ଚେତନା ଅଟଇ, ରୁଦ୍ର ମାନଙ୍କରେ ଶଙ୍କର ମୁହିଁ ।
ଯକ୍ଷମାନଙ୍କରେ ମୁହିଁ କୁବେର, ପାବକ ମୁହିଁ ବସୁମାନଙ୍କର ।୩୯
ପର୍ବତମାନଙ୍କରେ ମୁହିଁ ମେରୁ, ପ୍ରୋହିତ ମାନଙ୍କରେ ଦେବଗୁରୁ।୪୦
ସେନାପତିମଧ୍ୟେ କାର୍ତ୍ତିକେଶ୍ୱର, ସରୋବରମାନଙ୍କରେ ସାଗର ।୪୧
ମହାଋଷିଙ୍କ ମଧ୍ୟେ ଭୃଗୁଋଷି, ବାକ୍ୟେଣ ଏକାକ୍ଷର ଯାହାଘୋଷି।୪୨
ଯଜ୍ଞମାନଙ୍କରେ ଅଟଇ ଜପ, ଥାବର ମଧ୍ୟେ ହେମାଞ୍ଚଳ ରୂପ ।୪୩
ବୃକ୍ଷମାନଙ୍କରେ ମୁହିଁ ଓଶସ୍ତ, ଦେବଋଷିରେ ନାରଦ ମୁହିଁନ୍ତ ।୪୪
ଗନ୍ଧର୍ବ ମଧ୍ୟେ ଚିତ୍ରରଥ ମୁହିଁ, ସିଧଙ୍କ ମଧ୍ୟେ କପିଳ ବୋଲାଇ।୪୫
ଘୋଡ଼ାଙ୍କ ମଧ୍ୟେ ଉଚିଶ୍ରବା ଅଶ୍ୱ, ହସ୍ତୀ ମଧ୍ୟେ ଅଇରାବ୍ରତ ବିଶେଷ ।୪୬
ମନିଷମାନଙ୍କ ମଧ୍ୟେ ମୁଁ ରାଜା, ଶସ୍ତ୍ରଙ୍କ ମଧ୍ୟେ ବଜ୍ରରୂପେ ପୂଜା।୪୭
ଗାଈଙ୍କ ମଧ୍ୟେ କାମଧେନୁ ରୂପ, ପରଜାପତିମାନଙ୍କ କନ୍ଦର୍ପ ।୪୮
ସର୍ପମାନଙ୍କରେ ମୁହିଁ ବାସୁକୀ, ନାଗ ମଧ୍ୟେ ମୋତେ ଅନନ୍ତ ଲେଖି।୪୯
ଜଳଚର ମଧ୍ୟେ ମୁହିଁ ବରୁଣ, ପିତୃମାନଙ୍କରେ ଅର୍ଜ୍ଜମା ଗୁଣ ।୫୦
ଦଣ୍ଡିବା ଲୋକର ମଧରେ ଯମ, ଦତ୍ୟଙ୍କ ମଧ୍ୟେ ପ୍ରହ୍ଲାଦ ନାମ।୫୧
କ୍ଷୟେ କରିବାର କାଳହିଁ ମୁହିଁ, ମୃଗମାନଙ୍କରେ ସିଂହ ବୋଲାଇ।୫୨
ପକ୍ଷୀମାନଙ୍କରେ ଗରୁଡ଼ ମୁହିଁ, ପବିତ୍ର କରନ୍ତା ପାବନ ହୋଇ ।୫୩
ଶସ୍ତ୍ରଧାରୀ ମଧ୍ୟେ ମୁହିଁ ଶ୍ରୀରାମ, ମୀନ ମଧ୍ୟେ ମୋର ମଗର ନାମ।୫୪
ନଦୀଙ୍କ ମଧ୍ୟେ ମୁ ଗଙ୍ଗା ବୋଲାଇ, ସୃଷ୍ଟିର ଆଦି ଅନ୍ତ ମଧ ମୁହିଁ ।୫୫
ବିଦ୍ୟାମାନଙ୍କରେ ଅଧ୍ୟାତ୍ମ ଗୁଣ, ବାଦ କରିବାର ବିବାଦ ଶୁଣ।୫୬
ଅକ୍ଷର ମଧ୍ୟେ ଓଁ କାର ପ୍ରକାଶ, ସମାସମାନଙ୍କେ ଦ୍ୱନ୍ଦ ସମାସ।୫୭
ସବୁ ଉତ୍ପତ୍ତି ବିହନ୍ତା କାଳ, ରକ୍ଷା ପ୍ରଳୟ କରଇ ପଣ୍ଡୁବାଳ ।୫୮
ଶ୍ରୁତି ସ୍ମୃତି ସୁବାକ୍ୟହିଁ ମୁହିଁ, ଦୟା ଧଇର୍ଯ୍ୟ ମୁଁକ୍ଷେମା ବୋଲାଇ।
ସାହାସ୍ର ମଧ୍ୟେ ଅଟଇ ବୃହସାମ, ଛନ୍ଦେଣ ଗାଇତ୍ରିରି ଛନ୍ଦ ନାମ।୬୦
ମାସ ମାନଙ୍କ ମଧ୍ୟେ ମାର୍ଗଶିର, ବସନ୍ତ ଋତୁ ଅଟଇ ଋତୁଙ୍କର।୬୧
ଜୁଏ ଜିଣିମାର ଜୁଆର ମୁହିଁ, ତେଜବନ୍ତ ଲୋକର ତେଜହିଁ ହୋଇ।୬୨
ଜିଣିମା ଲୋକର ମୁହିଁ ସେ ଜିଏ, ଉଦିଯୋଗର ଉଦିଯୋଗୀ ହୋଏ।୬୩
ବଳବନ୍ତମାନଙ୍କର ମୁଇଁ ସେ ବଳ, ଯାଦେବ ମଧ୍ୟେ ବସୁଦେବ କାଳ।୬୪
ପାଣ୍ଡେବ ମଧ୍ୟେ ମୁଇଁ ଫାଲଗୁନୀ, ମୁନିଙ୍କ ମଧ୍ୟେ ବ୍ୟାସ ମାହାମୁନି।୬୫
କବିମାନଙ୍କର ଶୁକ୍ର ଅଟଇ, ଦଣ୍ଡିବା ଲୋକର ଦଣ୍ଡହିଁ ମୁହିଁ ।୬୬
ନୀତିବନ୍ତ ଲୋକର ମୁହିଁ ସେ ନୀତି, ହରଷ ମଉନ ମୋତେ ବୋଲନ୍ତି ।୬୭
ଜ୍ଞାନବନ୍ତ ମାନଙ୍କର ମୁହିଁ ସେ ଜ୍ଞାନ, ସକଳ ଜନ୍ତୁମାନଙ୍କ ଜୀବନ ।୬୮
ଥାବର ଜଙ୍ଗମ ସବୁଠାରେ ମୁଇଁ, ମୋହ ନ ଥିଲା ହୋଇ ଠାବ ନାହିଁ।୬୯
ଦିବ୍ୟ ବିଭୂତିର ନାହିଁ ମୋ ଅନ୍ତ, ସମସ୍ତ ସଂକ୍ଷେପି କହିଲୁ ତତ ।୭୦
ଶ୍ରୀବନ୍ତ ତେଜ ଦେଖିଲେ ଜାଣିମୁ, ଯେ ମୋର ବିଭୂତି ବୋଲି ମୁସେବୁ ।୭୧
ବହୁତ କଥା କହିବଇଁ କେତେ, ମୋ ଅଂଶ ବ୍ୟାପିଅଛଇ ଜଗତେ।
ଏମନ୍ତ ବୋଲି ଜାଣ ଅରଜୁନ, ଦଶମ ବିଭୂତି ଯୋଗ ସମ୍ପୂର୍ଣ୍ଣ ।୭୩
ଶ୍ରୀହରି କହେ ଧନର୍ଜୟେ ଶୁଣି, ଧୃତରାଷ୍ଟ୍ର ଆଗେ ସଞ୍ଜୟେ ଭଣି।୭୪
ଏ ଗୀତା ବିଷ୍ଣୁ ମୁଖୁ ପରକାଶ, ଆନନ୍ଦେ ଭଣେ ବଳରାମ ଦାସ।୭୫

ଇତି ଶ୍ରୀଭଗବତ୍ ଗୀତା ସଂହିତାୟାଂ ସୁପନିଷସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ବିଭୂତି ଯୋଗ କଥନେ ନାମ ଦଶମ ଅଧ୍ୟାୟ ।

## ଏକାଦଶ ଅଧ୍ୟାୟ
### ବିଶ୍ୱଗର୍ଭ ଯୋଗ

॥ ପୀଢ଼ବନ୍ଧ ॥

ଶ୍ରୀହରି ମୁଖୁଁ ଏସନେକ ବାଣୀ ଶୁଣି ପରମ ସନ୍ତୋଷ ପାଥ
ଅଳପ ଅଳପ ହସିଣ ପୁଛଇ ଶିରେ ଯୋଡ଼ି ବେନି ହାଥ ।

॥ ଗୀତବନ୍ଧ ॥

(ରୋଢ଼ା ବାଣୀରେ ପଢ଼ିବ)

ଅର୍ଜୁନ ବୋଲଇ ଶୁଣ ହୋ ସ୍ୱାମୀ ଅନୁଗ୍ରହ ଯେବେ କଲ ।
ଅତି ରହସ ଅଧିଆତ୍ମା ଯୋଗେ ମୋତେ ଦୟାଯେଂ କହିଲ ।୧।
ତେଣୁକରି ମୋହ ବାଧା ସଂଶୟ ମାୟା ସବୁ କ୍ଷୟେ ଗଲା ।
ପ୍ରାଣୀମାନଙ୍କର ଉତପତ୍ତି ପ୍ରଳୟେ ପ୍ରଳୟେ ଯେହା ଜାଣିମି ବୋଇଲା।୨

ଭୋ ପରମେଶ୍ୱର ପଦ୍ମାକ୍ଷ ଶୁଣିଲି ତୁମ୍ଭ ମାହାତ୍ମ୍ୟ ।
କଥାଏ ଜଣାଇମାକୁ ଭୟ କରୁଅଛି ହେ ପୁରୁଷୋତ୍ତମ ।୩
ଯେବଣ ମାହାତ୍ମ୍ୟ କହିଲ ତୁମ୍ଭର ଦିବ୍ୟ ବିଭୂତିର ରୂପ ।
ଦେଖିବାକୁ ମୁଇଂ ଶରଧା କରୁଛି ପଳାଉ ମୋହୋର ପାପ ।୪
ଦେଖିବାକୁ ଯେବେ ମୁହିଂ ଭାର୍ଜନ ମୋତେ ଦେଖାଅ ଗୋସାଇଂ ।
ଶୁଣିଣ ଶ୍ରୀହରି ବୋଲନ୍ତି ସାଧୁ ଅର୍ଜ୍ଜୁନ ମୁଖକୁ ଚାହିଂ ।୫
ଦେଖିବାକୁ ଯେବେ ଶରଧା ତୋହୋର ଦେଖ ବିଶ୍ୱରୂପ ମାନ ।
ପରମ ଜ୍ୟୋତି ସହସ୍ରେକ ଉଦୟେ ନାନାକାଂର ନାନା ବର୍ଣ୍ଣ ।୬
ଏ ବିଶ୍ୱରୂପରେ ଆଦିତ୍ୟ ମାନେ ବସୁମାନନ୍ତ ହିଂ ଦେଖ ।
ରୁଦ୍ର ଅଶ୍ୱିନୀ ଦେବତା ପବନ ଯେ ସର୍ବମାନ ନିରେଖ ।୭
ଆହୁରି ପୂର୍ବେ ଯେଉଂମାନନ୍ତ ତୋହୋର ଦେଖିଲା ନାହିଂ ।
ସେ ଆଶ୍ଚର୍ଯମାନ ଦେଖ ହୋ ପାର୍ଥ ତୋହୋ ନୟନ ପୂରାଇ ।୮
ଜଗତ ସଂସାର ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ମୋହୋର ଦିବ୍ୟରୂପ ଭିତରରେ ଛନ୍ତି ଏକ ସଙ୍ଗତେ ।୯
ଆହୁରି ଯହିଂକି ଶରଧା ତୋହୋର ତାହି ତୁହି ଭଲେ ଦେଖ ।
ଏ ଚର୍ମ ଚକ୍ଷୁରେ ଦେଖି ନ ପାରିବୁ ଶର୍ମ ପାଇବୁଟି ହାକ ।୧୦
ଦିବ୍ୟଚକ୍ଷୁ ଘେନ ବୋଲି ନାରାୟେଣ ପ୍ରସନ୍ନେଣ ଆଜ୍ଞା ଦେଲେ ।
ସଞ୍ଜୟେ କହେ ଧୃତରାଷ୍ଟ୍ର ଆଗେ ସ୍ୱାମୀ ଏମନ୍ତ ବୋଇଲେ ।୧୧
ସେ ପରମ ଯୋଗେଶ୍ୱର ବାସୁଦେବ ଅର୍ଜ୍ଜୁନକୁ ଅତି ସ୍ନେହେ ।
ଆପଣାର ନିଜ ରୂପ ବିଶ୍ୱରୂପ ଦେଖାଇଲେ ପ୍ରସନ୍ନେ ହେଂ ।୧୨
ସେ ରୂପ ମହିମା କେମନ୍ତ ଅଟଇ ଭୋ ମହା ଜନ ଶୁଣ ।
ଅନେକ ମୁଖ ଅନେକ ନାସା ଚକ୍ଷୁ ପାଇ ଆଶ୍ଚର୍ଯ ଯେ ଯେ ପୁଣ ।୧୩
ଅନେକ ଦିର୍ବ ଆଭରଣ ମାନନ୍ତ ଭୂଷଣ ହୋଇଣ ଛନ୍ତି ।
ଅନେକ ଅନେକ ଦିର୍ବ ଆଉଧନ୍ତ ଅନେକ ଭୁଜେଣ ଛନ୍ତି ।୧୪
ଦିର୍ବ ବସନ ଦିର୍ବ ମାଳମାନ ଅନେକ ଧରିଣ ଅଛି ।
ଦିର୍ବ ଗନ୍ଧ ଦିର୍ବ ଚନ୍ଦନ ଲେପନ ଅଛନ୍ତି ଅନେକ ବାଛି ।୧୫
ଯହୁଂ ସେ ଅନନ୍ତ ଅନେକ ମୂରତି ବହୁମୁଖ ଶର୍ବଣର ।
ଆକାଶେ ସହସ୍ର ଆଦିତ୍ୟ ଉଦୟ ତେବେ ତେସନ ପ୍ରକାର ।୧୬
ସେ ପରମେଶ୍ୱର ଦିର୍ବ ଦେହେ ରୂପ ଜଗତ ଯାକରେ ଅଛି ।
ସବୁ ଭିନେ ଭିନେ କରି ନିବାଡ଼ି ଦେଖିଲା ପଣ୍ଡୁର ବଛି ।୧୭
ଆନନ୍ଦ ହୋଇ ଆଶ୍ଚର୍ଯ ପାଇ ପୁଲକାଇ ତାର ରୋମ ।
କୃତ ଆଞ୍ଜୋଳି ହୋଇ ପୁଣି ପୁଣି କରଇ ବହୁ ପ୍ରଣାମ ।୧୮
ସଞ୍ଜଏ ଧୃତରାଷ୍ଟ୍ର ଆଗେ କହି ଅର୍ଜ୍ଜୁନ ଯହୁଂ ପଚାରି ।
ଭୋ ସ୍ୱାମୀ ତୁମ୍ଭର ଦେହ ଭିତରେ ତ ଜଗତ ଅଛଇ ପୂରି ।୧୯
ପଦ୍ମ ଆସନେ ଅଛି ଚତୁର୍ମୁଖ ଋଷିମାନନ୍ତ ହିଂ ଘେନି ।
ଦେବଗଣ ପିତୃଗଣ ପ୍ରାଣୀମାନେ ନ ପାରୁଅଛି ମୁଂ ଚିହ୍ନି ।୨୦
ଭଲୁକମାନେ ସେ ଦିଶୁଅଛନ୍ତି ସମୂହେଂ ଏ ବିଶ୍ୱେଶ୍ୱର ।
ଭୋ ବିଶ୍ୱରୂପ ବହୁତ ବକତବ୍ୟ ବହୁତ ବହୁ ଉଦର ।୨୧
ବହୁତ ବାହୁ ବହୁତ ନେତ୍ର ଅନନ୍ତ ଏ ରୂପମାନ ।
ଦେଖି ଜାଣୁ ନାହିଂ ଆଦିଅନ୍ତ ମଧ୍ୟ କହୁଣିହି ଥାନମାନ ।୨୨
କିରୀଟୀ ଗଦା ଚକ୍ର ବିଦିତ ପ୍ରଜ୍ୱଳିତ ଅଗ୍ନି ଜାଣି ।
ଅନେକ ଆଦିତ ଉଦୟେ ପରାୟେ ଦିଶୁଅଛନ୍ତି ଯେ ପୁଣି ।୨୩
ବ୍ରହ୍ମବୋଲି ଯାହା ବିଚାରୁଣ ଥାଇଂ ତୁମ୍ଭେ ହେ ସୟେଂ ଗୋସାଇଂ ।
ଏହି ଜଗତକୁ ହେତୁ ତୁମ୍ଭେ ତହୁଂ ଆନ ଏଥି କେହି ନାହିଂ ।୨୪
ଧର୍ମରକ୍ଷା କରିବାକୁ ଅବୟେ ତୁମ୍ଭେହେ ତୁମ୍ଭେହେ ନିତ୍ୟ ପୁରୁଷ ।
ଏମନ୍ତ ବୋଲିଣ ମୋହୋ ମନକୁ ସଂପ୍ରତେ ହୋଏ ବିଶ୍ୱାସ ।୨୫
ସର୍ବ ବ୍ୟାପେକ ଆଦିଅନ୍ତ ମଧ୍ୟ ତୁମ୍ଭେହେଂ ଅଟ ଗୋସାଇଂ ।
ତୁମ୍ଭ ନୟନ ହୋଇଣ ଉଦୟେ ଚନ୍ଦ୍ର ସୂର୍ଯ ବେନି ରହି ।୨୬
ପ୍ରଦୀପ୍ତ ଅଗ୍ନି ପ୍ରାୟେ ମୁଖର ତେଜ ଜଗତ୍ରେଣ ପରକାଶି ।
ଆକାଶ ପୃଥିରେ ଦଶଦିଶରେ ତୁମ୍ଭେ ହେଂ ପୂରିଣ ଦିଶି ।୨୭
ଭୋ ଅନନ୍ତ ବୀର୍ଯ ଅନନ୍ତ ବାହୁ ଆଶ୍ଚର୍ଯ ଏ ଉଗ୍ରରୂପ ।
ଦେଖିଣ ତିନି ଭୁବନ ଲୋକେ ପାଉଣ ଅଛନ୍ତି ତାପ ।୨୮
ଦେବତା ମାନେ କୃତ କୃତ ହୋଇଣ ତେଜ ଦେଖି ତାପ ପାଇ ।
ତୁମ୍ଭଙ୍କୁ ତୁଷ୍ଟି କରୁଣ ଅଛନ୍ତି କୃତଆଞ୍ଜୋଳି ଯେ ହୋଇ ।୨୯
ମହାଋଷିମାନେ ଜୟେ ଜୟେ ଶବଦ ଘୋଷୁଣ ଅଛନ୍ତି ।
ରୁଦ୍ରମାନେ ଆଦିତ୍ୟ ମାନେହେଂ ବହୁ ଆଶ୍ଚର୍ଯ ହୁଅନ୍ତି ।୩୦
ବସୁମାନେ ସିଧମାନେ ବିଶ୍ୱଦେବା ଅଶ୍ୱିନୀ ଦେବତାଏ ।
ମରୁତ ଗଣ ପିତୃଗଣ ଗନ୍ଧର୍ବ ଯକ୍ଷ ମାନେହେଂ ଯେ ଥାଏ ।୩୧
ଅସୁର ମାନେ ସିଦ୍ଧ ସମୂହେ ଏ ରୂପ ଦେଖିଣ ଛନ୍ତି ।
ଏ ତୁମ୍ଭ ବହୁତ ବଦନ ନେତ୍ର ଦେଖି ବଡ଼ ଭୟେ ପାନ୍ତି ।୩୨
ହସ୍ତ ପାଦ ପେଟ ଦନ୍ତ ମାନନ୍ତ ବହୁ ଭୟାଙ୍କାର ଦିଶି ।
ଏ ରୂପ ଦେଖିଣ ସର୍ବ ଲୋକମାନେ ମହାଭୟେ ପାଇଂ ତ୍ରାସି ।୩୩
ମୁହିଂ ଯେ ମହାବଥା ପାଉଅଛି ଭୋ ସ୍ୱାମୀ ପରମେଶ୍ୱର ।
ଆକାଶେ ଲାଗିଲା ଦୀପିତ ତେଜ ବିଶ୍ୱରୂପ ହୋଇଲାର ।୩୪
ଅନେକ ବକ୍ତ୍ର ବିସ୍ତାର ମୁଖ ଅତି ବୃଷାଳ ନୟନ ।
ଏସନେକ ରୂପ ଦେଖିଣ ବଥା ପାଉଅଛି ମୋର ମନ ।୩୫
ଧଇର୍ଯ ହୋଇ ନ ପାରୁଅଛି ରହି ହୋଉନାହିଂ ହାଦେ ଶାନ୍ତି ।
ଦାନ୍ତେ କରି ଭୟାଙ୍କାର ତୁଣ୍ଡମାନେ ମୋତେ ଗୋସାଇଂ
ଡରାନ୍ତି ।୩୬
ପ୍ରଳୟ କାଳର ଅଗ୍ନିତେଜ ପ୍ରାୟେ ଦିଶୁଣ ଅଛିତ ମୋତେ ।
ଦିଗମାନେ ବାରି ନ ପାରୁଅଛି ଏ ମହାଭୟେ ଯୁଗତେ ।୩୭
ମନରେ ସନ୍ତୋଷ ନ ପାଉଣ ଅଛି ହେ ପ୍ରଭୁ ଜଗନ୍ନିବାସ ।

ପ୍ରସନ୍ନ ହୋଇଣ ମୋତେ ଅନୁଗ୍ରହ ଦୟାକର ପୀତବାସ ।୩୮
ଦୁର୍ଯ୍ୟୋଧନ ଆଦି କରିଣ ଧୃତରାଷ୍ଟ୍ର ରାଜାର ପୁତ୍ରମାନେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ମୋକ୍ଷ କରିଣ ସମୂହେ ହୋଇ ରାଜନେ ।୩୯
ଆମ୍ଭର ଥାଠରୁ ମୋକ୍ଷ ଯୋଦ୍ଧାମାନେ ସମସ୍ତେହେଁ ଗୁଣ୍ଡ ହୋଇ ।
ଏ ତୁମ୍ଭର ଭୟାଙ୍କାର ତୁଣ୍ଡରେ ପଶୁଣ ଅଛନ୍ତି ଧାଇଂ ।୪୦
ଥୋକାଏ ଲୋକର ମୁଣ୍ଡମାନେ ତୁମ୍ଭର ଦନ୍ତ ସନ୍ଧିରେ ।
ରଗଡ଼ିବା ଘାୟେଂ ଚୂନା ହୋଇକରି ରହି ଅଛନ୍ତି କନ୍ଦିରେ ।୪୧
ବଢ଼ିଲା ନଦୀମାନେ ଯେସନେକେ ସମୋଦ୍ରକୁ ଧାଇ ଥାନ୍ତି ।
ତେଡ଼େ ବେଗେ ରାଜାମାନେ ତୁମ୍ଭ ତୁଣ୍ଡରେ ପଶନ୍ତି ।୪୨
ରାତ୍ର କାଳରେ ଜଳିଲା ନିଆଂକୁ ଯେହ୍ନେ ପତଙ୍ଗ ଧାମନ୍ତି ।
ତେମନ୍ତ ହୋଇ ନାଶ ଯିବାକୁ ତୁମ୍ଭ ଶ୍ରୀ ମୁଖେ ପଶନ୍ତି ।୪୩
ଏ ଲୋକମାନଙ୍କୁ ଚୋବାଇଣ ତୁମ୍ଭେ ଆସ୍ୱାଦ କରୁଣ ଅଛ ।
ଏ ତୁମ୍ଭର ଉଗ୍ର ତେଜ ଦେଖିଣ ଭୟେ ପୁଚ୍ଛଇ ଶ୍ରୀବତ୍ସ ।୪୪
ଭୋ ଦେବ, ଦେବଙ୍କ ବରବିଶ୍ୱନାଥ ଜଗତହିଂ ତାପ ପାଏ ।
କେ ତୁମ୍ଭେ ଏରୂପ ଧଇଲ ଗୋସାଇଂ ହୋଇଲ ଯେ ମହା
କାୟେ ।୪୫
ଆଶ୍ରିଯ ବଥା ପାଉଅଛି ମୁହିଂ ଯେ ଜାଣିତେ କରଇ ଇଚ୍ଛା ।
ନମସ୍କାର କରିଣ ବୋଲୁଅଛି ଯେବେ ତୁ ମୋତେ କରସି ରକ୍ଷା ।୪୬
ପ୍ରସନ୍ନ ହୋଇଣ କହ ମୋତେ ପ୍ରଭୁ କେ ତୁମ୍ଭେ ଅଟ ଗୋସାଇଂ ।
ପରମ ଈଶ୍ୱର ବୋଲୁଣ ଅଛନ୍ତି ଅର୍ଜୁନ ମୁଖକୁ ଚାହିଂ ।୪୭
ଏ ଲୋକମାନଙ୍କୁ କ୍ଷୟେ କରିବାକୁ ମୁହିଂ ବଢ଼ାଇଲି କାୟେ ।
ସଂହାର ନିମନ୍ତେ ପ୍ରବର୍ତ୍ତି ଅଛୁ ତୁ ଅର୍ଜୁନ ନ କର ଭୟେ ।୪୮
ଯଦ୍ୟପି ଏହା ତୁ ରଣେ ନ ମାରିବୁ ସାଂଗ୍ରାମେ ଯେତେ ଅଛନ୍ତି ।
ଏମାନେ ଥିବା ପରାଏ ମଣିଣ କି ମନେ କରୁଅଛ ଭ୍ରାନ୍ତି ।୪୯
ଯେମନ୍ତ ଦେଖିଲୁ ସେହିମତି ହୋଇ ସମସ୍ତେ ହେଂ ନାଶ ଯିବେ ।
ତୋହ ନ ମାଇଲେଣ ବେଭାରେ ସମସ୍ତେ ହେଂ ମରିବେ ।୫୦
ଭୋ ପାର୍ଥ, ଉଠିଣ ସମର କର ଯଶ ହୋଉ ପରାପତ ।
ଶତ୍ରୁ ମାରି ରାଜ୍ୟ ସମ୍ପଦ ଭୁଞ୍ଜ ମୋ ବୋଲେ ହୁଅ ଉସତ ।୫୧
ଏମାନଙ୍କୁ କାଳ ରୂପେଣ ମୁହିଂ ଆଗହୁଂ ଅଛଇ ମାରି ।
କେବଳ ହେତୁ ମାତ୍ରତୁ ହୋଇବୁ ସାକ୍ଷ୍ୟ ତୁ ସମର କରି ।୫୨
ଭୀଷ୍ମ ଦ୍ରୋଣ କର୍ଣ୍ଣ ମୋକ୍ଷ କରିଣ ଏ ବୀର ପୁରୁଷ ଯେତେ ।
ଆଗହୁଂ ସବୁନ୍ତି ମାଇଲାନି ମୁହିଂ ଏବେ ଯଶ ଦେବି ତୋତେ ।୫୩
ବଥା ନ ପାଇତୁ ଏହାନ୍ତ ମାର ଯୁଦ୍ଧେ ଜିଣିମୁ ଅବଶ୍ୟ ।
ସଞ୍ଜୟେ ବୋଲେ ଧୃତରାଷ୍ଟ୍ର ଶୁଣ ହରି ମୁଖୁଂ ଯେ ପ୍ରକାଶ ।୫୪
ଅର୍ଜୁନ ଶୁଣିଣ ନମସ୍କାର କରିଣ ଗାତ୍ର କମ୍ପମାନ ହୋଇ ।
ଅତି ଭୟେ ପାଇ ଶ୍ରୀହରି ପାଦେ ଗଡ଼ଘାଲି ପୁଣ ଶୋଇ ।୫୫
ଗଦ ଗଦ ହୋଇ ତନୁ ପୁଲକାଇ ବୋଲଇ ଭୋ ପରମେଶ୍ୱର ।
ଜଗତ ଆନନ୍ଦ ହେଉଣ ଅଛି ନାମ କୀର୍ତ୍ତନେ ତୁମ୍ଭର ।୫୬
ରାକ୍ଷସ ମାନେ ମହା ଭୟେ ପାଇଣ ନାନା ଦିଗକୁ ପଳାନ୍ତି ।
ସିଧ ମୁନି ମାନେ ସମୂହେ ହୋଇଣ ଭକ୍ଷତେ ଓଳଗି ହୋନ୍ତି ।୫୭
ବ୍ରହ୍ମାଣ୍ଡର ଆଦି କରତା ତୁମ୍ଭେ ସେ ଅକ୍ଷର ପରମବ୍ରହ୍ମ ।
କେମନ୍ତେ ସେ ନମସ୍କାର ନ କରିବେ ତୁମ୍ଭେ ସେ ମୂଳ ଧରମ ।୫୮
ତୁମ୍ଭେ ସେ ପୁରାଣ ପୁରୁଷ ପ୍ରଭୁ ତୁମ୍ଭେ ସେ ଆଦି ଦେବ ।
ଜଗତକୁ ହେତୁ ଜାଣିଲା ଲୋକ ତୁମ୍ଭେ ସ୍ୱାମୀ ହୋଇବ ।୫୯
ତୁମ୍ଭେ ସେ ଆଦି ଅନାଦି ସିଦ୍ଧି ତୁମ୍ଭେ ପରମ ଯେ ପୁରୁଷହିଂ ।
ପବନ ଯମ ବରୁଣ ଅଗ୍ନି ତୁମ୍ଭ ତହୁଂ ଆନ ନାହିଂ ।୬୦
ତୁମ୍ଭେ ହେଂ କୋବେର ତୁମ୍ଭେ ଯେ ସୂର୍ଯ୍ୟ ତୁମ୍ଭେ ହେ ବ୍ରହ୍ମା ଶଙ୍କର ।
ଭୋ ସ୍ୱାମୀ, ତୁମ୍ଭଙ୍କୁ ସହସ୍ରେ ପ୍ରଜନ୍ମ ହେ ପରମ ଈଶ୍ୱର ।୬୧
ତୁମ୍ଭ ଆଗ କତିକି ଓଳଗଇଂ ପିଠି କତିକି ଓଳଗି ।
ଶତେ ସହସ୍ର ନମସ୍କାର ତୁମ୍ଭଙ୍କୁ ମୋହୋର ପରମ ଭାଗୀ ।୬୨
ସବୁଠାରେ ତୁମ୍ଭଙ୍କୁ ନମସ୍କାର ଭୋ ସ୍ୱାମୀ, ପରମେଶ୍ୱର ।
ଜାଣି ନ ଜାଣି ଯେତେ ଦୋଷ କଲି ତାହା ମୋରେ କ୍ଷମାକର ।୬୩
ଶୋଗେ ଅନୁରାଗେ ଶାଖା ସିନା ବୋଲି ହୁଡ଼ି ବୋଇଲି ନ ଜାଣି ।
ଆହେ ଯାଦେବ ଆହେ କୃଷ୍ଣ ବୋଲି ରାବ ଦିଅଇ ପୁଣ ପୁଣି ।୬୪
ହାସ୍ୟ ରହସ୍ୟ ପଡ଼ିହାସେ ଯେ ରତି ? ଭୋଜନ ଶୟନେ ।
ଅମାନଣା କରି ଯାହା ମୁଂ ବୋଇଲି କ୍ଷେମାକର ଭଗବାନେ ।୬୫
ଯେ ଜଗତ ଥାବର ଜଙ୍ଗମରେ ତୁମ୍ଭେହେଂ ସେ ବାପ ସିନା ।
ଯେ ତିନି ଭୁବନେ ତୁମ୍ଭଙ୍କୁ କେ ସରି ଗୁରୁହିଂ ଅଟ ନିନା ।୬୬
ତୁମ୍ଭ ତହୁଂ ଯହୁଂ ଅଧିକ ନାହିଂ ତେଣୁ ଓଳଗଇ ସ୍ୱାମୀ ।
ବାପ ଯେହ୍ନେ ପୁଅ ଦୋଷ ନ ଘେନଇ ପ୍ରସନ୍ନେ କହିବା ବାଣୀ ।୬୭
ଶାଖା ଯେହ୍ନେ ଶାଖା ଅପରାଧ କରଇ ହାଦେ କ୍ଷେମା ।
ତେମନ୍ତ ପ୍ରାୟେ କରିଣ ସ୍ୱାମୀ ମୋହୋ ଦୋଷ ନ ଘେନିମା ।୬୮
ଭୋ ସ୍ୱାମୀ ପୂର୍ବେଣ ଦେଖିଲା ନାହିଂ ନା ସ୍ୱାମୀ ଯେ ତୁମ୍ଭର ଦିର୍ବ
ରୂପ ।
ହରଷ ବଥା ଦୁଇ ମୁଂ ପାଇଲି ଦେଖିଣ ବିଶ୍ୱରୂପ ।୬୯
ଅଙ୍ଗୁଳି ମୋଟ ଲକ୍ଷେକ ପେଟ ନୁଆରିଲି ପରିକଳି ।
ନାସା ଗଭୀର ଦୁଇ ଲକ୍ଷ ଯୋଜନ କେ କହୁ ପାଦର ସ୍ଥଳି ।୭୦
ଗୋସାଇଂ ଯେବେ ଯେ ରୂପ ସଂହରି ପୂରୁବ ମୂରତି ଧର ।
ଚତୁର୍ଭୁଜ କିରଟୀ ଗଦା ଶଙ୍ଖ ଚକ୍ର ଦେଖି ବାଏଞ୍ଚା ମୋହର ।୭୧
ତୁମ୍ଭେ ସସ୍ର ବାହୁ ବିଶ୍ୱ ମୂରତି ଛାଡ଼ିଣ ହୁଅ ଶାନ୍ତି ।
ଅର୍ଜୁନର ଏସନ ବଚନ ଶୁଣିଣ ହସି ଶ୍ରୀହରି କହନ୍ତି ।୭୨
ଅନନ୍ତ ମୂରତି ଅନନ୍ତ ଜୋତି ପ୍ରସ୍ନେ ଦେଖାଇଲୁ ତୋତେ ।

ପୂର୍ବେ ଏ ମୂରତି କେହି ଦେଖି ନାହିଁ ନାହିଁ ନ ଥିଲା ଜଗତେ ।୭୩
ଯେବେ ବେଦ ଅଧ୍ୟାନେ ଯଜ୍ଞ ଆଦି କରି ବହୁ ଦାନହିଁ ଦେଇ ।
ଉଗ୍ର ତପ କରି ତିନି ଭୁବନେ ଯେ ରୂପ ନ ଦେଖନ୍ତି କେହି ।୭୪
ପ୍ରସନ୍ନ ହୋଇ ଦେଖାଇଲୁ ବଥା ନ ପାଅ ତୁ ମନେ ।
ଯେ ଘୋର ରୂପ ଦେଖିଣ ଅଜ୍ଞାନ ନୋହ ପଣ୍ଡୁ ନାନେ ।୭୫
ନିର୍ଭ୍ରାନ୍ତି ହୋଇ ସନ୍ତୋଷ ହୋଅ ଯେ ପୂରୁବ ମୂରତି ଚିହ୍ନ ।
ସଞ୍ଜୟେ ବୋଲେ ଧୃତରାଷ୍ଟ୍ର ଶୁଣ ଯେଥୁ ଉଭାରେଣ ଆନ ।୭୬
ଅର୍ଜ୍ଜୁନକୁ ଏସନ ବୋଲିଣ ସ୍ୱାମୀ ଘୋର ବିଶ୍ୱରୂପ ଲେଛି ।
ପୂର୍ବ ଶାମ ରୂପ ଧରିଣ ସ୍ୱାମୀ ଉଭା ହୋଇଣ ଯେ ଅଛି ।୭୭
ପାର୍ଥ ବୋଲଇ ଭୋ ପରମେଶ୍ୱର ନିସ୍ତରିଲି ମୁହିଁ ଏବେ ।
ଏ ତୁମ୍ଭର ଶାନ୍ତି ମନୁଷ୍ୟ ରୂପ ତୋଳେ ମୁଂ ଦେଖିଲି ଯେବେ ।୭୮
ମନ ପ୍ରକୃତି ମୋର ଥିର ହୋଇଲା ସବୁ ଛାଡ଼ିଲଇଂ ଭୟେ ।
ପାର୍ଥର ଏମନ୍ତ ବଚନ ଶୁଣି ପୁଣ ନାରାୟଣ କହେ ।୭୯
ଯେଉଂ ସ୍ୱରୂପ ଦେଖିଲୁ ତୁହି ଯେ ଅତି ଦୁର୍ଲଭ ରସ ।
ଏ ରୂପ ଦେଖିବାକୁ ବାଞ୍ଛା କରୁଣ ଥାନ୍ତି ତ୍ରିଦଶ୍ୟ ।୮୦
ବେଦ ତପ ଦାନ ଯଜ୍ଞ ପୁନ୍ୟ ନାନା କର୍ମମାନ କଲେ ।
ଏ ମୋହୋର ପରମ ବିଶ୍ୱରୂପ କେହି ଦେଖି ନ ପାରନ୍ତି
ଭଲେ ।୮୧
ମୋହୋ ଠହିଂ ଯାର ଦୃଢ଼ ଭଗତି ସେହି ସେ ମୋତେ ଜାଣନ୍ତି ।
ମୋତେ ଦେଖିଣ ମୋହୋ ଠହିଂ ଲୀନ ସେ ପ୍ରାଣୀ ମୁକ୍ତି ହୁଅନ୍ତି ।୮୨
ତୁ ଏବେ ମୋର ପୀରତି ଅର୍ଥେ କରମ ମାନନ୍ତ କର ।
ଦୁଷ୍ଟ ସଙ୍ଗ ଛାଡ଼ି ମୋହୋ ଭଗତିରେ ହୋଇଥାଅ ତତପର ।୮୩
ପ୍ରାଣୀରେ ବଇରୀ ନୋହନ୍ତି ଯେହୁ ସେହି ସେ ମୋର ହୁଅନ୍ତି ।
ବିଶ୍ୱରୂପ ଏକା ଦଶମ ଅଧ୍ୟାୟେ ଅର୍ଜ୍ଜୁନେ ହରି କହନ୍ତି ।୮୪
ସଞ୍ଜୟେ ଧୃତରାଷ୍ଟ୍ର ଆଗେ କହେ ଗୀତା ଯୋଗର ସାର ।
ବଳରାମ ଦାସ ଗୀତାରେ ଗାବନ୍ତି ସୋମନାଥର କୁମର ।୮୫

ଇତିଶ୍ରୀଭଗବଦ୍ ଗୀତା ସଂହିତାୟାଂ ସୁପନିଷସ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ ବିଶ୍ୱଗର୍ଭଯୋଗ ଧର୍ମ କଥନେ ନାମ ଏକାଦଶ ଅଧ୍ୟାୟ ।

## ଦ୍ୱାଦଶ ଅଧ୍ୟାୟ

### ଭକ୍ତି ଯୋଗ

॥ ପୀଢ଼ ବନ୍ଧ ॥

କର ପଦ୍ମ ଯୋଡ଼ି ପଚାରଇ ପାର୍ଥ ଦେଖିଲି ସ୍ୱାମୀ ମୂରତି
କର୍ମ ଭକ୍ତି ଜ୍ଞାନ ସାର ଅଟେ କେହୁ ଆଜ୍ଞା ଦିଅ ଶିରୀପତି ।

॥ ଗୀତ ବନ୍ଧ ॥

(କଳସା ବାଣୀରେ ପଢ଼ିବା)

ଅର୍ଜ୍ଜୁନ ବୋଲଇ ଦେବ ପୁଚ୍ଛିବି କଥାଏ
ଯେଉଂ ଲୋକ ତୁମ୍ଭକୁ ସର୍ବଦା ସେବା କଏ ।୧
ଅକ୍ଷୟ ଅବ୍ୟକ୍ତ ବ୍ରହ୍ମକୁ ଯାର ଆଶ
ଦୁହିଂଙ୍କରି ଶ୍ରେଷ୍ଠ କେହୁ କହ ପୀତବାସ ।୨
ଶ୍ରୀହରି ବୋଲନ୍ତି ଯେହୁ ନିତ୍ୟେ ଯୁକ୍ତ ହୋଇ
ଆପଣାର ମନ ଥିରେ ଦ୍ୟନ୍ତି ମୋର ଠହିଂ ।୩
ଶରଧା କରନ୍ତି ମୋତେ ସେମାନେ ଉତ୍ତମ
ଆରେକ କଥାଏ କହୁଂ ବୋଲେ ପୁରୁଷୋତ୍ତମ ।୪
ଅକ୍ଷୟେ ଅବୟେ ଅସଂ ସର୍ବେ ଅବ୍ୟକତ
ଅନୁଦେଶ୍ୟ ଅଚିନ୍ତ୍ୟ ଅଚଳ ନିତ୍ୟେତବ ।୫
ଏସନ ବ୍ରହ୍ମକୁ ଇନ୍ଦ୍ରି ଦମି ଧ୍ୟାନ କରି
ସମବୁଦ୍ଧି ହୋଇ ପ୍ରାଣୀ ହିଂସାହିଂ ନ କରି ।୬
ସେମାନେହେଂ ମୋତେ ହାଦେ ବଡ଼ ଦୁଃଖେ ପାନ୍ତି
ଦେହ ଧରି ଅବ୍ୟକତ ବ୍ରହ୍ମକୁ ଚିହ୍ନନ୍ତି ।୭
ଏ କଥା ବଡ଼ ଦୁର୍ଲଭ ଏଣେ ପ୍ରାସ ପାଏ
ଏଥହୁଂ ଉଶ୍ୱାସ ତୋତେ କହିବା କଥାଏ ।୮
ଯେଉଂ ଲୋକ ସବୁ କର୍ମ ସମର୍ପଇ ମୋତେ
ତାହାକୁ ମୁଂ ଉଧରଇ କହୁଅଛି ତୋତେ ।୯
ବିଳମ୍ବ ନ କରି ସେହିକ୍ଷଣି ଉଧରଇ
ତେଣୁକରି ତାହାକୁ ମୁଂ ଉତ୍ତମ କରଇ ।୧୦
ତୁହି ତୋହୋ ମନ ବୁଦ୍ଧି ମୋହୋ ଠହିଂ ଦେଇ
ମୋହୋ ଠହିଂ ପଶିବୁ ସଂଶୟେ ଏଥି ନାହିଂ ।୧୧
ଯେବେ ଚିତ୍ତ ଥିର କରି ଦେଇ ନ ପାରିବୁ
ନିତି ନିତି ଦଣ୍ଡେ ଦଣ୍ଡେ ଅଭ୍ୟାସ କରିବୁ ।୧୨
ତୁ ଅବା ବୋଲିବୁ ମୁହିଂ ଦେହଧାରୀ ହୋଇ
ଅଭ୍ୟାସ କରିନ୍ତ କେହ୍ନେ ପାରିବି ଗୋସାଇଂ ।୧୩
ମୋହୋର ପୀରତି ଅର୍ଥେ କର୍ମମାନ କର
ମୋକ୍ଷହିଂ ପାଇବୁ ଯେଣେ କହିଲୁ ନିକର ।୧୪
ଏହାଇଂ ମୁଂ କରି ନ ପାରିବି ବୋଲୁ ଅବା
ଉଶ୍ୱାସ କଥାଏ ଅଛି ତା ତୋତେ କହିବା ।୧୫
କର୍ମଫଳ ବାଞ୍ଛା ମାନ ନ ଧରିବ ଚିତ୍ତେ
ଏକହୃଦେ ଶରଣ ପଶସି ବୀର ମୋତେ ।୧୬
ଅଭ୍ୟାସହୁଂ ଜ୍ଞାନ ଶ୍ରେଷ୍ଠ ଜ୍ଞାନୁ ଶ୍ରେଷ୍ଠ ଧ୍ୟାନ
ଧ୍ୟାନୁ ଶ୍ରେଷ୍ଠ ତ୍ୟାଗ ଆଉ କର୍ମ ଫଳମାନ ।୧୭

କର୍ମଫଳ ତ୍ୟାଗିଲେ ସଂସାରେ ସୁଖ ପାଇ
ଏମନ୍ତ ପ୍ରାଣୀରେ ମୁହିଂ ମିତ୍ର ହୋଇଥାଇ ।୧୮
ମମତା ଉଦ୍ଦେଶ ଅହଙ୍କାରହିଂ ନ ଧରି
ଦୁଃଖ ସୁଖେ ସମଦୟା କ୍ଷେମାହିଂ ଆଚରି ।୧୯
ଲାଭେ ଅଲାଭେ ସନ୍ତୋଷ ନିଅତ ତା' ଚିତ୍ତ
ମୋତେହେଂ ସେ ଦୃଢ଼ କରି କରଇ ଭଗତ ।୨୦
ମନ ବୁଦ୍ଧି ଥିର କରି ମୋହୋ ତହିଂ ଦେଇ
ବ୍ରହ୍ମ ଦରଶନେ ଯେ ଲୋକଙ୍କୁ ଭୟେ ନାହିଂ ।୨୧
ଭୟେ ଉଦବେଗ ଯେ ହରଷ ଅମରିଷ
ଏ ଚାରିକଥା ନ ଥିଲେ ମୋହୋର ସେ ଦାସ ।୨୨
ପଦାର୍ଥକୁ ବାଞ୍ଛା ନ କରଇ କଦାଚିତେ
ଶୁଚିବନ୍ତ ହୋଇଥାଇ ଉଦାସ ନ ମତେ ।୨୩
କର୍ମଫଳ ତ୍ୟାଗିଣ ଯେ ବଥା ହିଂ ନ ଘେନି
ସେ ମୋହର ଅତିଅନ୍ତ ପ୍ରୀୟ ଫାଲ୍‌ଗୁନି ।୨୪
ଶୁଭା ଶୁଭ ନ ଘେନିଲେ ମୋହୋର ଭଗତ
ଶତ୍ରୁମିତ୍ର ମାନ ଅପମାନେଣ ଏକତ୍ୱ ।୨୫
ନିନ୍ଦା ତୃସ୍ତି ଶୀତ ଉଷ୍ମମାଦି ଯାରେ ତୁଲ
ଦୁର୍ଲଭ ମତି ତାହାର ମନ ଥିର ବୋଲ ।୨୬
ଯାହା ପାଇଂ ତେଣେ ତୋଷ ଯହିଂ ଥାଇ ଘର
ଧୀର ବୁଦ୍ଧି ସେ ଲୋକଟି ଭଗତ ମୋହୋର ।୨୭
ଏ ଅମୃତ ଧର୍ମ କଥା ଶୁଣିଛିଟି ଯେହୁ,
ପୂର୍ବେଣ ନ ଥିଲେ ହାଦେ ଏବେ ପାଇ ସେହୁ ।୨୮
ମୋହୋର କହିଲାକୁ ଯେ ଶରଧା କରନ୍ତି,
ସେମାନେ ନିଚୟେ ମୋର ଅତିଅନ୍ତ ପ୍ରୀତି ।୨୯
ଦ୍ୱାଦଶ ଅଧ୍ୟା ସମ୍ପୂର୍ଣ୍ଣ ଗୀତା ଗ୍ରନ୍ଥ ସାର
ଶ୍ରୀ ବାସୁଦେବଙ୍କ ସଙ୍ଗେ ଅର୍ଜୁନ ବିଚାର ।୩୦
ଧୃତରାଷ୍ଟ୍ର ଆଗେଣ ସଞ୍ଜୟେ ଏହା କହି
ଶ୍ରୀ ହରି କହିଲେ ଅର୍ଜୁନଙ୍କୁ ଦୟା ବହି ।୩୧
ନୀଳଗିରିନାଥ ସେବି ବଳରାମ ଦାସ
ସର୍ବଜନ ରଞ୍ଜନେ କଲଇ ପରକାଶ ।୩୨

ଇତି ଶ୍ରୀଭଗବଦ୍ ଗୀତା ସଂହିତୟାଂ ସୁପନିଷସ୍ତୁ,
ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ
ଭକ୍ତିସାର କଥନେ ନାମ ଦ୍ୱାଦଶ ଅଧ୍ୟାୟ ।

## ତ୍ରୟୋଦଶ ଅଧ୍ୟାୟ

### କ୍ଷେତ୍ର କ୍ଷେତ୍ରଜ୍ଞ ଯୋଗ

॥ ଗାହା ପୀଢ଼ବନ୍ଧ ॥

ସୁହୃଦ ଚିତ୍ତେଣ ଶ୍ରୀ ବାସୁଦେବ କହନ୍ତି ପରମ ଗୁପତ
ସଂଶୟେ ଛେଦନ ହୋଇଲା ବୋଲି ଅର୍ଜୁନ ପୁଣ ହୋଏ
ଉସତ ।

॥ ଗୀତବନ୍ଧ ॥

(ଭାରଥ ବୋଲି ବାଣୀରେ ପଢ଼ିବା)

ସ୍ୱାମୀ ବୋଲନ୍ତି ଦୃଢ଼ କରି ମତି ଧନଞ୍ଜୟ ହାଦେ ଶୁଣ ।
କ୍ଷେତ୍ର ବୋଲି ହାଦେ ବୋଲିଯେ ଦେହକୁ ଆହୁରି ଅଛଇ ଗୁଣ ।୧
ଏ କ୍ଷେତ୍ର ମୁଂ ବୋଲି ପରତେ ଯେ ଯାଇ ମୋହର ବୋଲି ବୋଲନ୍ତି
କ୍ଷେତ୍ରଜ୍ଞ ବୋଲିଣ ତାହାକୁ ସେ ବୋଲି ଏକଥାରେ ନାହିଂ ଭ୍ରାନ୍ତି ।୨
ଆତ୍ମା ଶରୀର ଭିନେ ଚିହ୍ନେ ନର ତାହାକୁ ସେ ବୋଲି ଜ୍ଞାନୀ
କ୍ଷେତ୍ର କ୍ଷେତ୍ରଜ୍ଞ ଦୁହିଂଙ୍କରି ପ୍ରଭାବ ସଞ୍ଚେପି କହୁ ଅର୍ଜୁନି ।୩।
ଅନେକ ଋଷି ବେଦ ବାକ୍ୟ ଘୋଷି ନିଚୟେ କରି କହିଲେ ।
ତାହା ତୋତେ ମୁହିଂ ସଞ୍ଚେପି କହୁଛି ଶ୍ରୀ ବାସୁଦେବ ବୋଇଲେ ।୪
ପଞ୍ଚମ ମହାଭୂତ ଇନ୍ଦ୍ରିୟ ସମସ୍ତ ଅହଙ୍କାର ବୁଦ୍ଧି ମନ
ପ୍ରକୃତି ପୁରୁଷ ଆଦି ଇନ୍ଦ୍ରିୟ ରମିବାର ପଞ୍ଚସ୍ଥାନ ।୫
ଉଦ୍ଦେଶ ସୁଖ ଚଇତନ ଦୁଃଖ ଇଚ୍ଛା ଧଇର୍ଯ ଶରୀର
ଏତେ ଗୁଣେ ହାଦେ ଦେହ ହୋଇଅଛି ଶୁଣ ତୁ ପାଣ୍ଡେବ ବୀର ।୬
ଆତ୍ମା-ପ୍ରଶଂସା ନ କରିବା ହିଂସା ଦାମ୍ଭିକ ପଣ ନୋହିବା
ପରକୁ ପୀଡ଼ା ନ କରି ଭଲ ବାଟେ ଚାଲିବା ପୁଣ ସହିବା ।୭
ଗୁରୁଙ୍କୁ ସେବା ଶୁଚିବନ୍ତ ହୋଇବା ଚିତ୍ତ ନିରୋଧିବା ଥିର
ଇନ୍ଦ୍ରିୟମାନଙ୍କ ଅର୍ଥରେ ନିସ୍ତୋହା ନ ବହିବ ଅହଙ୍କାର ।୮
ଜନମହିଂ ହୋଇ ମରଣହିଂ ପାଇ ବୃଦ୍ଧ ବ୍ୟାଧି ଦୁଃଖ ଦୋଷ
ଏମାନ ହୋଇଲେ ସେ ଯାଇ ବୋଲି ଯେଉଂଲୋକ
ହୋୟେତୋଷ।୯
ଘରଣୀ ନାନ ଘର ଦ୍ରବ୍ୟମାନ ଏଣେ ଆଶକତ ନୋହି
ଇଷ୍ଟ ଅନିଷ୍ଟ ପ୍ରାପତରେ ସମ ଯେମନ୍ତ ଚିତ୍ତେ ବହଇ ।୧୦
ପ୍ରାଣୀଙ୍କ ତହିଂ ଅନ୍ତର୍ଯାମୀ ହୋଇ ମୁଂ ଅଛଇ ବୋଲି ଜାଣିମୁ
ଶୁଦ୍ଧ ଏକାନ୍ତ ଠାବରେଣ ଥାଇ ନିଚଳ ଭକ୍ତି ମଣିମୁ ।୧୧
ମନ୍ଦ ମାନଙ୍କ ପାଶେ ନ ଯିବାକ ଜାଣିମାକ ଆତ୍ମାଜ୍ଞାନ
ଏତେ ଗୁଣ ହାଦେ ଯାହା ତହିଂ ଅଛି ତା ନାମ ଜ୍ଞାନୀ ଅର୍ଜୁନ ।୧୨

ଯେହାହୁଁ ଆନ ସେ ସେ ଅଜ୍ଞାନ ଆରେକ ବଚନ ଶୁଣ
ଯେବଣ ତତ୍ତ୍ୱ ଜାଣିଲେ ମୋକ୍ଷ ପାଇ କହଇ ତହିଁର ଗୁଣ ।୧୩
ଯେବଣ ତତ୍ତ୍ୱ ଗୁଣ କିନା ତୁ ସବୁହୁଁ ଉତ୍ତମ ସେହି
ଯାହାର ହାଦେ ରେଖ ରୂପ ନାହିଁ ସେ ସକଳ ବ୍ୟାପି ଅଛଇ ।୧୪
କେବଳ ଅଛି ବୋଲିଣ ବାକ୍ଷି ଦେହ ତେହେର୍ନ୍ତେକ ପ୍ରାୟେ
ସେ ପୁରୁଷ ଗୋଡ଼ ହାତ ସବୁ ଲକ୍ଷଣେ ଭୂଷଣ ହୋଏ ।୧୫
ଶୁକଳାମ୍ବର ପ୍ରସନ୍ନ ବଦନ ଜ୍ଞାନ ଦୃଷ୍ଟିକି ପ୍ରକାଶ
ଦାସ ତାରିବାକୁ ଭୁଜ ଟେକିଛନ୍ତି ନିରନ୍ତରେ ମନ୍ଦହାସ ।୧୬
ନିରାମୟେ ଦେହୀ ଶୂନ୍ୟ ସ୍ୱରୂପୀ ପରମ ଜ୍ୟୋତିଟି ସେହି
ବାହାର ଭିତରେ ଦଶଦିଶ ଯାକେ ପୂରିଣ ଅଛଇ ରହି ।୧୭
ସେହି ସେ ପଦାର୍ଥ ସର୍ବଗୁଣେ ତତ୍ତ୍ୱ ପ୍ରବର୍ତ୍ତନ୍ତି ଭୂତ ଗୁଣେ
ସେ ପୁଣି ଇନ୍ଦ୍ର ମାନଙ୍କର ବର୍ଜିତ ହୋଇଣ ଥାଇ ଆପଣେ ।୧୮
ସେ ପୁଣି କାହିଁ ଆଶକତ ନୋହି ସବିହେଁ ତା' ତହିଁ ଛନ୍ତି
ନିର୍ଗୁଣ ବୋଲିଣ ତାହାକୁ ସେ ବୋଲି ଗୁଣେ ତା ଆଶ୍ରେ କରନ୍ତି ।୧୯
ପ୍ରାଣୀ ମାନଙ୍କରେ ବାହିଜ୍ୟ ଅଭ୍ୟାନ୍ତରେ ପୂରିଣ ଅଛଇ ସେହି
ନ ଜାଣିଲା ଲୋକ ଧୂରେ ଥିଲା ପ୍ରାଏ ସଞ୍ଚେପି ସେ ନ ଜାଣଇ ।୨୦
ବ୍ରହ୍ମଦରଶୀ ଲୋକଙ୍କୁ ନିକଟେ ଥୋଇ ଚିନ୍ତିଲେ ଦେଖଇ ମନେ
ଜୀବ ପରମ ଏ ବେଗଳ ଅଟନ୍ତି ଅଲଗ୍ନ ଲଗ୍ନ ବିଧାନେ ।୨୧
ପ୍ରାଣୀଙ୍କି ଜାତ ପୋଷନ୍ତା ହିତ ଜୋତି ପ୍ରକାଶ କରନ୍ତା
ତାମସୁ ବାହାର ରଜରୁ ଭିନ୍ନ ସତେ ସବୁରି ହୃଦେ ପୂରନ୍ତା ।୨୨
ସତୁଁ ଅତୀତ ସେ ତୁରି ଅତୀତ, ପରମ ଆକାଶେ ଦିଶେ
ପରମ ଶୂନ୍ୟ ରୂପେ ସେ ଦେହେ ଦେହୀ ଜ୍ଞାନ ଦୃଷ୍ଟିକି
ପ୍ରକାଶେ ।୨୩
ଯେ କ୍ଷେତ୍ର ଜ୍ଞାନ ସଞ୍ଚେପି ବିଧାନ ତୋତେ କହିଲଉଁ ଯାହା
ମୋହର ଭାବ ଘେନିଣ ମୋ ଭଗତ ଲୋକ ସେ ଜାଣନ୍ତି
ଯେହା।୨୪
ପୁରୁଷ ପ୍ରକୃତି ଅନାଦିରୁ ହୋନ୍ତି ଇନ୍ଦ୍ରିୟ ବିକାର ମାନ
ସବୁ ଯେ ପ୍ରକୃତିରୁ ଜାତ ବୋଲି ଜାଣ ତୁ ପଣ୍ଡୁ ନନ୍ଦନ ।୨୫
ଏ ଶରୀରକୁ ଦୁଃଖ ସୁଖକୁ ହେତୁ ଅଟଇ ପ୍ରକୃତି
ଦୁଃଖ ସୁଖ ଭୋଗ ପୁରୁଷ କରଇ ପ୍ରକୃତିରେ ହୋଇ ପ୍ରୀତି ।୨୬
ସେହୁ ପୁରୁଷ ଜାତ ଅବଶ୍ୟ ଭଲ ମନ୍ଦେ ଦେହ ବହି
ସତ ରଜ ତମ ତିନିଗୁଣେ ବଶ୍ୟ କର୍ମଫଳ ଘେନୁଥାଇ ।୨୭
ଭଲ କରମ ଘେନିଲେ ଜନମ ଦେବତା ଶରୀର ହୋଇ
ମନ୍ଦ କରମ ଘେନିଲେ କୃମି କୀଟ ଶୁଭାଶୁଭ ଆନ ନୋହି ।୨୮
ଏହି ଦେହେ ଥାଇ ଅଧିଷ୍ଠାଣ ହୋଇ ପରମ ପୁରୁଷ ଦେଖି
ସନମତ କରି ସୃଷ୍ଟି ହିଁ କରଇ ଗୁଣମାନ ଉପଲେଖି ।୨୯
ବ୍ରହ୍ମା ଶଙ୍କର ପରମ ଆତ୍ମାର ଅନ୍ତର୍ଯ୍ୟାମୀ ହୋଇଥାଇ
ପ୍ରକୃତିପୁରୁଷ ଆପେ ମୁଁ ବୋଲି ଦେହ ଧଇଲେହେଁ
ଜନ୍ମନୋହି।୩୦
ଥୋକାଯେ ମାନେ ଆପଣାର ମନେ ଧ୍ୟାନେ ଆତ୍ମାକୁ ଦେଖନ୍ତି
ଥୋକାଏ ଲୋକ ପ୍ରକୃତି ପୁରୁଷ ଭିନ୍ନେ ବୋଲି ବିଚାରନ୍ତି ।୩୧
କର୍ମଯୋଗୀ ଲୋକ ଆତ୍ମା କରଣୀ ବଳେ ଦେଖନ୍ତି ଆତ୍ମା ଭିତରେ
ଥୋକାଯେ ଲୋକ ଏମନ୍ତ ନ ଜାଣି ପୁଛେ ଜାଣିମା ଲୋକରେ ।୩୨
ଶୁଣିଣ ଆଶା ବଢ଼ାନ୍ତି ଭରସା ସେହି ସଂସାରୁ ତରନ୍ତି
କ୍ଷେତ୍ର କ୍ଷେତ୍ରଜ୍ଞ ଦୁହିଙ୍କରି ହେତୁରୁ ଥାବର ଜଙ୍ଗମ ହୋନ୍ତି ।୩୩
ସବୁରି ଦେହେ ଆତ୍ମା ଅକ୍ଷଏ ଦେହ ସେ କ୍ଷୟେ ହୋଅନ୍ତି
ତାହା ସେ ଜାଣିମାର ଲୋକ ବୋଲି ଯେହୁ ଏମନ୍ତ ମଣନ୍ତି ।୩୪
ବ୍ରହ୍ମାଶଙ୍କର କୀଟୁଂ ଆଦିକରି ଯେ ହରିହିଁ ସେ ଆତ୍ମମଏ
ଏମନ୍ତ ଜାଣିଣ ଯେହୁ ସମ ଦେଖଇ ସେ ପ୍ରାଣୀ ତରିଣ ଯାଏ ।୩୫
ପ୍ରକୃତିର ଗୁଣ ବୋଲି ବିଚାରଇ କଯେ ସେ ନିଜ କର୍ମ
ଆତ୍ମାର ଏଥି କିସ ବିଷେ ଅଛି ଆତ୍ମା ସେ ଅକର୍ତ୍ତା ବ୍ରହ୍ମ ।୩୬
ଯେଉଁ ଦେହ ସେ ପ୍ରକୃତି ବଶେ ତେଣୁ ପ୍ରକୃତିରେ ଚଳି
ଆତ୍ମାର ସ୍ୱଭାବ ପ୍ରକୃତିର ପର ବୋଲିଣ ସେ ଜ୍ଞାନୀ ଭାଳି ।୩୭
ପ୍ରଳୟ କାଳେ ବାସୁଦେବ ଦେହେ ପଶିଥାନ୍ତି ସବୁ ଯାଇ
ସୃଷ୍ଟିକାଳେ ପୁଣି ଯେ ଯାହା ମୂରତି ଧରିଣ ଶରୀର ବହି ।୩୮
ନିର୍ଗୁଣ ମୟେ ଅନାଦି ଅବୟେ ତେଣୁ ସେ ଆତ୍ମା ଶୁଧ
ଶରୀର ବହି ଶରୀର ଗୁଣେହେଁ ନୋହନ୍ତିଟି ହାଦେ ବଧ ।୩୯
ଶୂନ୍ୟ ଯେମନ୍ତ ବ୍ୟାପିଣ ଜଗତ ଲାଗିଣ ନ ଥାଇ କାହିଁ
ତେହେର୍ଣ୍ଣେକ ଆତ୍ମା ଦେହ ଗୁଣ ଘେନି ଆଦିତ୍ୟ ପରାୟେ
ଉଅଂଇ।୪୦
ତେହେର୍ଣ୍ଣେକ ଆତ୍ମା ପ୍ରାଣୀଙ୍କ ତହିଁ ଥାଇ କରଇ ପ୍ରକାଶ
ଦେହରୁ ଆତ୍ମା ଭିନେ ବୋଲି ଜ୍ଞାନ ଦୃଷ୍ଟିକି ହୋଯେ ଦୃଶ୍ୟ ।୪୧
ଏ ଭୂତଙ୍କର ଦେହ ବେଭାର ଏମନ୍ତ ବୋଲି ଯେ ଜାଣି
ତାହାକୁ ପରମ ଗତି ପରାପତ କୃଷ୍ଣ କହେ ପାର୍ଥ ଶୁଣି ।୪୨
ତ୍ରୟୋଦଶ ଅଧ୍ୟା କ୍ଷେତ୍ର କ୍ଷେତ୍ରଜ୍ଞ ପ୍ରସିଦ୍ଧା ବଳରାମ ଗାଏ
ସଞ୍ଜୟେ ମୁଖୁ ପରମ ଯୋଗ ଶୁଣି ଧୃତରାଷ୍ଟ୍ର ତୋଷ ହୋଏ ।୪୩

ଇତି ଶ୍ରୀଭଗବଦ ଗୀତା ସଂହିତାୟାଂ ସୁପନିଷତ୍ସୁ
ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ଜୀବ ପ୍ରକୃତି
କଥନେ ନାମ । ତ୍ରୟୋଦଶ ଅଧ୍ୟାୟ ।

## ଚତୁର୍ଦ୍ଦଶ ଅଧ୍ୟାୟ
### ତ୍ରିଗୁଣ ଭେଦ

॥ ଗାହା ପୀଢ଼ବନ୍ଧ ॥

କ୍ଷେତ୍ର କ୍ଷେତ୍ରଜ୍ଞ ବିଧାନ ମାନ ପ୍ରାର୍ଥେଣ କହନ୍ତି ମୁରାରି
ଆହୁରି ଉତ୍ତମ ଜ୍ଞାନ ଅଛି ଶୁଣ ତୁ ଗାଣ୍ଡିମ ଚାପଧାରୀ

॥ ଗୀତବନ୍ଧ ॥
(ଭୀଷ୍ମେକ ବାଣୀରେ ପଢ଼ିବା)

ଅର୍ଜ୍ଜୁନ ବଦନ ଚାହିଁ — ବୋଲନ୍ତି ବିଷ୍ଣୁ ଗୋସାଇଁ
ଆହୁର ଉତ୍ତମ ଜ୍ଞାନ କହିବା ତୋତେ
ଯାହା ଜାଣି ମୁନିମାନେ — ପାଇଲେ ପରମ ସ୍ଥାନେ
ଏହି ଜ୍ଞାନ ଆଶ୍ରେ କରି ଚିନ୍ତିଲେ ମୋତେ ।୧
ପ୍ରଳୟ କାଳେଣ ବଥା — ନ ପାନ୍ତି ସେ ମହାଜ୍ଞାତା
ସୃଷ୍ଟି କାଳେହେଁଣ ଜାତ ନୋହନ୍ତି ସେହି
ବ୍ରହ୍ମ ବୋଲି ବୋଲୁ ଯାହା — ମୁଁ ଗର୍ଭେ ଧରଇ ତାହା
ତେଣୁହୁଂ ସେ ସୃଷ୍ଟି ହାଦେ ପାତନା ହୋଇ ।୨
କଳ୍ପନାରୁ ସୃଷ୍ଟି ଜାତ — ଯେ ଯୋନି ଯହୁଂ ସମ୍ଭୂତ
ସେ ଯୋନି ଆଦି ପ୍ରକୃତି ମୁଁ ବୀଜ ଦାତା
ପ୍ରକୃତିରୁ ହୋଯେ ଜାତ — ରଜ ତମ ଗୁଣ ସତ
ଏ ତିନିହେଁ ଅଟନ୍ତି ଆତ୍ମାଙ୍କ ଭେଦନ୍ତା ।୩
ସତ ନିର୍ମଳ ପ୍ରକାଶ — ନ ପାଯେ ଉପଦର୍ବ ଗ୍ରାସ
ସାଧୁସଙ୍ଗ ଜ୍ଞାନ ଦୁଇ ଠାବେ ତା ମନ
ରଜରୁ ଲୋଭ ଶରୀର — ପିସୁନ ସେ ହୋଇଲାର
ଅତ୍ୟାଗୀ ସାଧୁ ନ ଗଛି ଦୁଇରୁ ଭିନ୍ନ ।୪।
ଏ କର୍ମେ କରି ବଧ ହିଂ — ଅଜ୍ଞାନୁ କରମୀ ହୋଇ
ମୋହୋ ପ୍ରମାଦ ଅଳସ ନିଦ୍ରାଯେ ବାନ୍ଧି
ପରେ ପିତା ପାପ ଗ୍ରାସ — ଅଜ୍ଞ ବୁଦ୍ଧି ଅବିଶ୍ୱାସ
ଭଲ ମନ୍ଦ ନ ବାଡ଼ି ହୋଯେ ଅସୁର ବୁଦ୍ଧି ।୫
ସତ ଗୁଣ ବୋଲି ଯେହୁ — ଦୁର୍ଲ୍ଲଭ ଅଟଇ ସେହୁ
ଭକ୍ତି ଯୋଗେ ଶ୍ରଦ୍ଧା କରି ହୋଏ ଆନନ୍ଦ
ରଜ ଗୁଣର ବିଚାର — କରମେ ଶରଧା ତାର
ତମ ଗୁଣ ପ୍ରମାଦରୁ କରଇ ଦ୍ୱନ୍ଦ ।୬
ଲୋଭ ଶ୍ରଦ୍ଧା ମନେ ଧରି — ଜ୍ଞାନକୁ ଓହାଡ଼ କରି
ଥୋକାଏକ ଲୋକ ସତେ କରଇ ବାଞ୍ଛା
ଥୋକାଯେକ ରଜଗୁଣେ — ଶରଧା କରେ ଆପଣେ
ଥୋକାଏକ ଲୋକ ତମ ଗୁଣେଣ ଇଛା ।୭

ଯାହା ଦେହେ ନବ ଦ୍ୱାରେ — ଜ୍ଞାନ ପ୍ରକାଶେ ନିର୍ଭରେ
ସତ ବଳିଆର ବୋଲି ଗଣିନ୍ତା କରି
ଲୋଭେଣ ଅଶାନ୍ତି ହୋଇ — କର୍ମେ ଶରଧା କରଇ
ତାହା ଚହିଁ ରଜଗୁଣ ଅଧିକ କରି ।୮
ଜ୍ଞାନ ଧଂସ ହୋଉଂଥାଇ — ମୋରେ ଉଦିଯୋଗୀ ନୋହି
ଭଲମନ୍ଦେ ମୋହେ ବଶ ତମେ ଅଗୁଳି
ଆତ୍ମା ସୁଖ ନ ମଣଇ — ମାୟାଫଳ ଚିନ୍ତୁଥାଇ
ବିଷ୍ଣୁ ଭକ୍ତି ନ ଜାଣି କର୍ମେ ହୋଯେ ଆଗଳି ।୯
ତମ ଗୁଣୁଂ ଅହଙ୍କାର — ଆହାର ନିଦ୍ରା ଅଳସର
ନିରନ୍ତରେ ପରକୁ ହିଂସା କରୁଣ ଥାଇ
ସତ ଗୁଣ ଆଶ୍ରେକେଣ — ଯେଉଂଲୋକ ଛାଡ଼େ ପ୍ରାଣ
ଉତ୍ତମ ଲୋକଙ୍କ ଗତି ସେ ହାଦେ ପାଇ ।୧୦
ରଜଗୁଣ ଲୋକ ଦେହୀ — ଛାଡ଼ିଲେ କରମୀ ହୋଇ
ମନୁଷ୍ୟ ଲୋକରେ ଜାତ ହେଉଣ ଥାଇଁ
ତମଗୁଣେ ଛାଡ଼େ କାଯେ — ପଶୁ ଯୋନି ଜନ୍ମ ପାଯେ
ମୂଢ଼ ପଣେ ଇନ୍ଦ୍ରି ବଶେ ଅମାନୁଷ୍ୟ ହୋଇ ।୧୧
ସତ ଗୁଣୁଂ ଜ୍ଞାନ ଜାତ — ରଜରୁ ଲୋଭ ଉଦିତ
ତମରୁ ପ୍ରମାଦ ମୋହ ଅଜ୍ଞାନୀ ହୋଇ
ସତ ଧୂର୍ବ ଲୋକ ପାନ୍ତି — ରଜସ ମଧେ ବସନ୍ତି
ତାମସ ପ୍ରାଣୀ ଅଧୋଗତିକି ଯାଇ ।୧୨
ଏ ତିନି ଗୁଣରୁ ଆତ୍ମା — ଅତୀତ ସେ ମହାତମା
ଏହା ଯେ ଜାଣଇ ମୋର ଘେନଇ ଭାବ
ଜନ୍ମ ମୃତ୍ୟୁ ଜରା ଦୁଃଖ — ଉଦାସ ହୋଇଣ ସୁଖ
ଅଗୁଣେ ପାଇଲା ମୋକ୍ଷ ଅମୃତ ଲାଭ ।୧୩
ଅର୍ଜ୍ଜୁନ ବୋଲେ ଗୋସାଇଁ — ଯହିଁ ତିନିଗୁଣ ନାହିଁ
କେମନ୍ତ ଚିହ୍ନରେ ତାହା ଚିହ୍ନିବା ଅବା
ଅଜ୍ଞାନ ପିଣ୍ଡ ମୋହର — ସଦଯେ ଯେବେ ତୋହୋର
ଯେମନ୍ତେ ଜାଣଇ ମୁହିଁ ତାହି କହିବା ।୧୪
ଶ୍ରୀହରି ବୋଲନ୍ତି ଶୁଣ — ନିବୃତ୍ତି ପ୍ରକାଶ ଗୁଣ
ମୋହ ଘେନି ଯେ ତିନିରୁ ହୋଯେ ଅତୀତ
ପାଇଲେ ନ ଘେନଇ ସୁଖ — ନ ପାଇ ହୋଯେ ବିମୁଖ
ଏ ପୁଣ ନୋହେ ନିଷ୍ଫଳ ହୋଏ ନିବୃତ୍ତ ।୧୫
ବିଚାରଇ ଗୁଣଙ୍କର — ନିବୃତ୍ତିବା ସେ ବେଭାର
ମାଟି ସୁବର୍ଣ୍ଣେଣ ସୁଖ ଦୁଃଖେଣ ସମ
ପ୍ରିୟା ପ୍ରିୟ ନିନ୍ଦା ସ୍ତୁତି — ମାନ ଅପମାନେ ପ୍ରୀତି
ଶତ୍ରୁ ମିତ୍ର ଦେଖି ପ୍ରୀତି ତା ମାହାତମ ।୧୬

ଯେହାହୁଁ ଆନ ସେ ସେ ଅଜ୍ଞାନ ଆରେକ ବଚନ ଶୁଣ
ଯେବଣ ତତ୍ତ୍ୱ ଜାଣିଲେ ମୋକ୍ଷ ପାଇ କହଇ ତହିଁର ଗୁଣ ।୧୩
ଯେବଣ ତତ୍ତ୍ୱ ଗୁଣ କିନା ତୁ ସବୁହୁଁ ଉତ୍ତମ ସେହି
ଯାହାର ହାଦେ ରେଖ ରୂପ ନାହିଁ ସେ ସକଳ ବ୍ୟାପି ଅଛଇ ।୧୪
କେବଳ ଅଛି ବୋଲିଣ ବାକ୍ଷି ଦେହ ତେହେର୍ନ୍ତେକ ପ୍ରାୟେ
ସେ ପୁରୁଷ ଗୋଡ଼ ହାତ ସବୁ ଲକ୍ଷଣେ ଭୂଷଣ ହୋଏ ।୧୫
ଶୁକଳାମ୍ବର ପ୍ରସନ୍ନ ବଦନ ଜ୍ଞାନ ଦୃଷ୍ଟିକି ପ୍ରକାଶ
ଦାସ ତାରିବାକୁ ଭୁଜ ଟେକିଛନ୍ତି ନିରନ୍ତରେ ମନ୍ଦହାସ ।୧୬
ନିରାମୟେ ଦେହୀ ଶୂନ୍ୟ ସ୍ୱରୂପୀ ପରମ ଜ୍ୟୋତିଟି ସେହି
ବାହାର ଭିତରେ ଦଶଦିଶ ଯାକେ ପୂରିଣ ଅଛଇ ରହି ।୧୭
ସେହି ସେ ପଦାର୍ଥ ସର୍ବଗୁଣେ ତତ୍ତ୍ୱ ପ୍ରବର୍ତ୍ତନ୍ତି ଭୂତ ଗୁଣେ
ସେ ପୁଣି ଇନ୍ଦ୍ର ମାନଙ୍କର ବର୍ଜିତ ହୋଇଣ ଥାଇ ଆପଣେ ।୧୮
ସେ ପୁଣି କାହିଁ ଆଶକତ ନୋହି ସବିହେଁ ତା' ତହିଁ ଛନ୍ତି
ନିର୍ଗୁଣ ବୋଲିଣ ତାହାକୁ ସେ ବୋଲି ଗୁଣେ ତା ଆଶ୍ରେ କରନ୍ତି ।୧୯
ପ୍ରାଣୀ ମାନଙ୍କରେ ବାହିଜ୍ୟ ଅଭ୍ୟାନ୍ତରେ ପୂରିଣ ଅଛଇ ସେହି
ନ ଜାଣିଲା ଲୋକ ଧୂରେ ଥିଲା ପ୍ରାଏ ସଙ୍କେପି ସେ ନ ଜାଣଇ ।୨୦
ବ୍ରହ୍ମଦରଶୀ ଲୋକଙ୍କୁ ନିକଟେ ଥୋଇ ଚିହ୍ନିଲେ ଦେଖଇ ମନେ
ଜୀବ ପରମ ଏ ବେଗଳ ଅଟନ୍ତି ଅଲଗ୍ନ ଲଗ୍ନ ବିଧାନେ ।୨୧
ପ୍ରାଣୀଙ୍କି ଜାତ ପୋଷନ୍ତା ହିତ ଜୋତି ପ୍ରକାଶ କରନ୍ତା
ତାମସୁ ବାହାର ରଜରୁ ଭିନ୍ନ ସତେ ସବୁରି ହୃଦେ ପୂରନ୍ତା ।୨୨
ସତୁଁ ଅତୀତ ସେ ତୁରି ଅତୀତ, ପରମ ଆକାଶେ ଦିଶେ
ପରମ ଶୂନ୍ୟ ରୂପେ ସେ ଦେହେ ଦେହୀ ଜ୍ଞାନ ଦୃଷ୍ଟିକି
ପ୍ରକାଶେ ।୨୩
ଯେ କ୍ଷେତ୍ର ଜ୍ଞାନ ସଙ୍କେପି ବିଧାନ ତୋତେ କହିଲଉଁ ଯାହା
ମୋହର ଭାବ ଘେନିଣ ମୋ ଭଗତ ଲୋକ ସେ ଜାଣନ୍ତି
ଯେହା।୨୪
ପୁରୁଷ ପ୍ରକୃତି ଅନାଦିରୁ ହୋନ୍ତି ଇନ୍ଦ୍ରିୟ ବିକାର ମାନ
ସବୁ ଯେ ପ୍ରକୃତିରୁ ଜାତ ବୋଲି ଜାଣ ତୁ ପଣ୍ଡୁ ନନ୍ଦନ ।୨୫
ଏ ଶରୀରକୁ ଦୁଃଖ ସୁଖକୁ ହେତୁ ଅଟଇ ପ୍ରକୃତି
ଦୁଃଖ ସୁଖ ଭୋଗ ପୁରୁଷ କରଇ ପ୍ରକୃତିରେ ହୋଇ ପ୍ରୀତି ।୨୬
ସେହୁ ପୁରୁଷ ଜାତ ଅବଶ୍ୟ ଭଲ ମନ୍ଦେ ଦେହ ବହି
ସତ ରଜ ତମ ତିନିଗୁଣେ ବଶ୍ୟ କର୍ମଫଳ ଘେନୁଥାଇ ।୨୭
ଭଲ କରମ ଘେନିଲେ ଜନମ ଦେବତା ଶରୀର ହୋଇ
ମନ୍ଦ କରମ ଘେନିଲେ କୃମି କୀଟ ଶୁଭାଶୁଭ ଆନ ନୋହି ।୨୮
ଏହି ଦେହେ ଥାଇ ଅଧିଷ୍ଠାଣ ହୋଇ ପରମ ପୁରୁଷ ଦେଖି
ସନମତ କରି ସୃଷ୍ଟି ହିଁ କରଇ ଗୁଣମାନ ଉପଲେଖି ।୨୯
ବ୍ରହ୍ମା ଶଙ୍କର ପରମ ଆତ୍ମାର ଅନ୍ତର୍ଯ୍ୟାମୀ ହୋଇଥାଇ
ପ୍ରକୃତିପୁରୁଷ ଆପେ ମୁଁ ବୋଲି ଦେହ ଧଇଲେହେଁ
ଜନ୍ମନୋହି।୩୦
ଥୋକାଯେ ମାନେ ଆପଣାର ମନେ ଧ୍ୟାନେ ଆତ୍ମାକୁ ଦେଖନ୍ତି
ଥୋକାଏ ଲୋକ ପ୍ରକୃତି ପୁରୁଷ ଭିନ୍ନେ ବୋଲି ବିଚାରନ୍ତି ।୩୧
କର୍ମଯୋଗୀ ଲୋକ ଆତ୍ମା କରଣୀ ବଳେ ଦେଖନ୍ତି ଆତ୍ମା ଭିତରେ
ଥୋକାଯେ ଲୋକ ଏମନ୍ତ ନ ଜାଣି ପୁଚ୍ଛେ ଜାଣିମା ଲୋକରେ ।୩୨
ଶୁଣିଣ ଆଶା ବନ୍ଧାନ୍ତି ଭରସା ସେହି ସଂସାରୁ ତରନ୍ତି
କ୍ଷେତ୍ର କ୍ଷେତ୍ରଜ୍ଞ ଦୁହିଙ୍କରି ହେତୁରୁ ଥାବର ଜଙ୍ଗମ ହୋନ୍ତି ।୩୩
ସବୁରି ଦେହେ ଆତ୍ମା ଅକ୍ଷଏ ଦେହ ସେ କ୍ଷୟେ ହୋଅନ୍ତି
ତାହା ସେ ଜାଣିମାର ଲୋକ ବୋଲି ଯେହୁ ଏମନ୍ତ ମଣନ୍ତି ।୩୪
ବ୍ରହ୍ମାଶଙ୍କର କୀଟୁଁ ଆଦିକରି ଯେ ହରିହିଁ ସେ ଆତ୍ମମଏ
ଏମନ୍ତ ଜାଣିଣ ଯେହୁ ସମ ଦେଖଇ ସେ ପ୍ରାଣୀ ତରିଣ ଯାଏ ।୩୫
ପ୍ରକୃତିର ଗୁଣ ବୋଲି ବିଚାରଇ କଯେ ସେ ନିଜ କର୍ମ
ଆତ୍ମାର ଏଥି କିସ ବିଷେ ଅଛି ଆତ୍ମା ସେ ଅକର୍ତ୍ତା ବ୍ରହ୍ମ ।୩୬
ଯେଉଂ ଦେହ ସେ ପ୍ରକୃତି ବଶେ ତେଣୁ ପ୍ରକୃତିରେ ଚଳି
ଆତ୍ମାର ସ୍ୱଭାବ ପ୍ରକୃତିର ପର ବୋଲିଣ ସେ ଜ୍ଞାନୀ ଭାଳି ।୩୭
ପ୍ରଳୟ କାଳେ ବାସୁଦେବ ଦେହେ ପଶିଥାନ୍ତି ସବୁ ଯାଇ
ସୃଷ୍ଟିକାଳେ ପୁଣି ଯେ ଯାହା ମୂରତି ଧରିଣ ଶରୀର ବହି ।୩୮
ନିର୍ଗୁଣ ମୟେ ଅନାଦି ଅବୟେ ତେଣୁ ସେ ଆତ୍ମା ଶୁଦ୍ଧ
ଶରୀର ବହି ଶରୀର ଗୁଣେହେଁ ନୋହନ୍ତିଟି ହାଦେ ବଧ ।୩୯
ଶୂନ୍ୟ ଯେମନ୍ତ ବ୍ୟାପିଣ ଜଗତ ଲାଗିଣ ନ ଥାଇ କାହିଁ
ତେହେର୍ଣ୍ଣେକ ଆତ୍ମା ଦେହ ଗୁଣ ଘେନି ଆଦିତ୍ୟ ପରାୟେ
ଉଅଂଇ।୪୦
ତେହେର୍ଣ୍ଣେକ ଆତ୍ମା ପ୍ରାଣୀଙ୍କ ତହିଁ ଥାଇ କରଇ ପ୍ରକାଶ
ଦେହରୁ ଆତ୍ମା ଭିନେ ବୋଲି ଜ୍ଞାନ ଦୃଷ୍ଟିକି ହୋୟେ ଦୃଶ୍ୟ ।୪୧
ଏ ଭୂତଙ୍କର ଦେହ ବେଭାର ଏମନ୍ତ ବୋଲି ଯେ ଜାଣି
ତାହାକୁ ପରମ ଗତି ପରାପତ କୃଷ୍ଣ କହେ ପାର୍ଥ ଶୁଣି ।୪୨
ତ୍ରୟୋଦଶ ଅଧ୍ୟା କ୍ଷେତ୍ର କ୍ଷେତ୍ରଜ୍ଞ ପ୍ରସିଦ୍ଧା ବଳରାମ ଗାଏ
ସଞ୍ଜୟେ ମୁଖୁ ପରମ ଯୋଗ ଶୁଣି ଧୃତରାଷ୍ଟ୍ର ତୋଷ ହୋଏ ।୪୩

ଇତି ଶ୍ରୀଭଗବଦ ଗୀତା ସଂହିତାୟାଂ ସୁପନିଷସ୍ତୁ
ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ଜୀବ ପ୍ରକୃତି
କଥନେ ନାମ । ତ୍ରୟୋଦଶ ଅଧ୍ୟାୟ ।

# ଚତୁର୍ଦ୍ଦଶ ଅଧ୍ୟାୟ

## ତ୍ରିଗୁଣ ଭେଦ

### ।। ଗାହା ପୀଢ଼ବନ୍ଧ ।।

କ୍ଷେତ୍ର କ୍ଷେତ୍ରଜ୍ଞ ବିଧାନ ମାନ ପ୍ରାର୍ଥେଣ କହନ୍ତି ମୁରାରି
ଆହୁରି ଉତ୍ତମ ଜ୍ଞାନ ଅଛି ଶୁଣ ତୁ ଗାଣ୍ଡିମ ଚାପଧାରୀ

### ।। ଗୀତବନ୍ଧ ।।

### (ଭୀଷ୍ମେକ ବାଣୀରେ ପଢ଼ିବା)

ଅର୍ଜ୍ଜୁନ ବଦନ ଚାହିଁ ବୋଲନ୍ତି ବିଷ୍ଣୁ ଗୋସାଇଁ
ଆହୁର ଉତ୍ତମ ଜ୍ଞାନ କହିବା ତୋତେ
ଯାହା ଜାଣି ମୁନିମାନେ ପାଇଲେ ପରମ ସ୍ଥାନେ
ଏହି ଜ୍ଞାନ ଆଶ୍ରେ କରି ଚିନ୍ତିଲେ ମୋତେ ।୧
ପ୍ରଳୟ କାଳେଣ ବଥା ନ ପାନ୍ତି ସେ ମହାଜ୍ଞାତା
ସୃଷ୍ଟି କାଳେହେଁଣ ଜାତ ନୋହନ୍ତି ସେହି
ବ୍ରହ୍ମ ବୋଲି ବୋଲୁ ଯାହା ମୁଁ ଗର୍ଭେ ଧରଇ ତାହା
ତେଣୁହୁଁ ସେ ସୃଷ୍ଟି ହାଦେ ପାତନା ହୋଇ ।୨
କଳ୍ପନାରୁ ସୃଷ୍ଟି ଜାତ ଯେ ଯୋନି ଯହୁଁ ସମ୍ଭୂତ
ସେ ଯୋନି ଆଦି ପ୍ରକୃତି ମୁଁ ବୀଜ ଦାତା
ପ୍ରକୃତିରୁ ହୋଯେ ଜାତ ରଜ ତମ ଗୁଣ ସତ
ଏ ତିନିହେଁ ଅଟନ୍ତି ଆତ୍ମାଙ୍କ ଭେଦନ୍ତା ।୩
ସତ ନିର୍ମଳ ପ୍ରକାଶ ନ ପାଯେ ଉପଦର୍ବ ଗ୍ରାସ
ସାଧୁସଙ୍ଗ ଜ୍ଞାନ ଦୁଇ ଠାବେ ତା ମନ
ରଜରୁ ଲୋଭ ଶରୀର ପିସୁନ ସେ ହୋଇଲାର
ଅତ୍ୟାଗୀ ସାଧୁ ନ ଗଛି ଦୁଇରୁ ଭିନ୍ନ ।୪।
ଏ କର୍ମେ କରି ବଧ ହିଁ ଅଜ୍ଞାନୁ କରମୀ ହୋଇ
ମୋହୋ ପ୍ରମାଦ ଅଳସ ନିଦ୍ରାଯେ ବାନ୍ଧି
ପରେ ପିତା ପାପ ଗ୍ରାସ ଅଜ୍ଞ ବୁଦ୍ଧି ଅବିଶ୍ୱାସ
ଭଲ ମନ୍ଦ ନ ବାଢ଼ି ହୋଯେ ଅସୁର ବୁଦ୍ଧି ।୫
ସତ ଗୁଣ ବୋଲି ଯେହୁ ଦୁର୍ଲଭ ଅଟଇ ସେହୁ
ଭକ୍ତି ଯୋଗେ ଶ୍ରଦ୍ଧା କରି ହୋଏ ଆନନ୍ଦ
ରଜ ଗୁଣର ବିଚାର କରମେ ଶରଧା ତାର
ତମ ଗୁଣ ପ୍ରମାଦରୁ କରଇ ଦ୍ୱନ୍ଦ ।୬
ଲୋଭ ଶ୍ରଦ୍ଧା ମନେ ଧରି ଜ୍ଞାନକୁ ଓହାଡ଼ କରି
ଥୋକାଏକ ଲୋକ ସତେ କରଇ ବାଞ୍ଛା
ଥୋକାଯେକ ରଜଗୁଣେ ଶରଧା କରେ ଆପଣେ
ଥୋକାଏକ ଲୋକ ତମ ଗୁଣେଣ ଇଚ୍ଛା ।୭
ଯାହା ଦେହେ ନବ ଦ୍ୱାରେ ଜ୍ଞାନ ପ୍ରକାଶେ ନିର୍ଭରେ
ସତ ବଳିଆର ବୋଲି ଗଣିନ୍ତା କରି
ଲୋଭେଣ ଅଶାନ୍ତି ହୋଇ କର୍ମେ ଶରଧା କରଇ
ତାହା ତହିଁ ରଜଗୁଣ ଅଧିକ କରି ।୮
ଜ୍ଞାନ ଧଂସ ହୋଉଂଥାଇ ମୋରେ ଉଦିଯୋଗୀ ନୋହି
ଭଲମନ୍ଦେ ମୋହେ ବଶ ତମେ ଅଗୁଳି
ଆତ୍ମା ସୁଖ ନ ମଣଇ ମାୟାଫଳ ଚିନ୍ତୁଥାଇ
ବିଷ୍ଣୁ ଭକ୍ତି ନ ଜାଣି କର୍ମେ ହୋଯେ ଆଗଳି ।୯
ତମ ଗୁଣୁଂ ଅହଙ୍କାର ଆହାର ନିଦ୍ରା ଅଳସର
ନିରନ୍ତରେ ପରକୁ ହିଂସା କରୁଣ ଥାଇ
ସତ ଗୁଣ ଆଶ୍ରେକେଣ ଯେଉଂଲୋକ ଛାଡ଼େ ପ୍ରାଣ
ଉତ୍ତମ ଲୋକଙ୍କ ଗତି ସେ ହାଦେ ପାଇ ।୧୦
ରଜଗୁଣ ଲୋକ ଦେହୀ ଛାଡ଼ିଲେ କରମୀ ହୋଇ
ମନୁଷ୍ୟ ଲୋକରେ ଜାତ ହେଉଣ ଥାଇଂ
ତମଗୁଣେ ଛାଡ଼େ କାଯେ ପଶୁ ଯୋନି ଜନ୍ମ ପାଯେ
ମୂଢ଼ ପଣେ ଇନ୍ଦ୍ରି ବଶେ ଅମାନୁଷ୍ୟ ହୋଇ ।୧୧
ସତ ଗୁଣୁଂ ଜ୍ଞାନ ଜାତ ରଜରୁ ଲୋଭ ଉଦିତ
ତମରୁ ପ୍ରମାଦ ମୋହ ଅଜ୍ଞାନୀ ହୋଇ
ସତ ଧୂର୍ବ ଲୋକ ପାନ୍ତି ରଜସ ମଧ୍ୟେ ବସନ୍ତି
ତାମସ ପ୍ରାଣୀ ଅଧୋଗତିକି ଯାଇ ।୧୨
ଏ ତିନି ଗୁଣରୁ ଆତ୍ମା ଅତୀତ ସେ ମହାତମା
ଏହା ଯେ ଜାଣଇ ମୋର ଘେନଇ ଭାବ
ଜନ୍ମ ମୃତ୍ୟୁ ଜରା ଦୁଃଖ ଉଦାସ ହୋଇଣ ସୁଖ
ଅଗୁଣେ ପାଇଲା ମୋକ୍ଷ ଅମୃତ ଲାଭ ।୧୩
ଅର୍ଜ୍ଜୁନ ବୋଲେ ଗୋସାଇଁ ଯହିଁ ତିନିଗୁଣ ନାହିଁ
କେମନ୍ତ ଚିହ୍ନରେ ତାହା ଚିହ୍ନିବା ଅବା
ଅଜ୍ଞାନ ପିଣ୍ଡ ମୋହର ସଦଯେ ଯେବେ ତୋହୋର
ଯେମନ୍ତେ ଜାଣଇ ମୁହିଁ ଚାହି କହିବା ।୧୪
ଶ୍ରୀହରି ବୋଲନ୍ତି ଶୁଣ ନିବୃତ୍ତି ପ୍ରକାଶ ଗୁଣ
ମୋହ ଘେନି ଯେ ତିନିରୁ ହୋଯେ ଅତୀତ
ପାଇଲେ ନ ଘେନଇ ସୁଖ ନ ପାଇ ହୋଯେ ବିମୁଖ
ଏ ପୁଣ ନୋହେ ନିଶ୍ଚଳ ହୋଏ ନିବୃତ୍ତ ।୧୫
ବିଚାରଇ ଗୁଣଙ୍କର ନିବୃତ୍ତିବା ସେ ବେଭାର
ମାଟି ସୁବର୍ଣ୍ଣେଣ ସୁଖ ଦୁଃଖେଣ ସମ
ପ୍ରିୟା ପ୍ରିୟ ନିନ୍ଦା ସ୍ତୁତି ମାନ ଅପମାନେ ପ୍ରୀତି
ଶତ୍ରୁ ମିତ୍ର ଦେଖି ପ୍ରୀତି ତା ମାହାତ୍ତମ ।୧୬

ତ୍ୟାଗଇ ଆରମ୍ଭ ସବୁ ତା ଗୁଣାତୀତ ବୋଲିବୁ
ଏକାଙ୍ଗ ଭକ୍ତି ସେବା କରଇ ମୋତେ
ସେ ଲୋକଟି ଗୁଣାତୀତ ପ୍ରମ ବ୍ରହ୍ମରେ ଯୁଗତ
ବ୍ରହ୍ମକୁ ସାଧନା ବାଟ କହିଲୁ ତୋତେ ।୧୭
ଅବୟେ ଅମୃତ ସ୍ଥାନ ମୋକ୍ଷ ଧର୍ମକୁହିଂ ଜ୍ଞାନ
ଆନନ୍ଦ ସ୍ୱରୂପ ମୋକ୍ଷ ସ୍ଥାନହିଂ ମୁହିଂ
ଯେଣୁ ମୋ ଭଗତ ଜନ ଗୁଣାତୀତେ ବ୍ରହ୍ମେ ଲୀନ
ପ୍ରମ ବ୍ରହ୍ମ ସାଧନାୟେ କହିଲୁ ମୁହିଂ ।୧୮
ଚତୁର୍ଦ୍ଦଶ ଅଧ୍ୟା ଏହୁ ପାର୍ଥକୁ କହିଲେ ପ୍ରଭୁ
ଧୃତରାଷ୍ଟ୍ର ଆଗେ ଏହା ସଞ୍ଜୟେ ଭଣି
ଗୀତା ଏ ଶାସ୍ତ୍ରଙ୍କ ସାର ଶୁଣିଲେ ସଂସାରୁ ପାର
ବଳରାମ ଦାସ ଭବ ଭୟ ନାଶି ବଖାଣି ।୧୯

ଇତି ଶ୍ରୀଭଗବଦ୍ ଗୀତା ସଂହିତାୟାଂ ସୁପନିଷସ୍ସୁ
ବ୍ରହ୍ମବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦେ ତ୍ରିଗୁଣ ଜ୍ଞାନ
ଧର୍ମ କଥନେ ନାମ ଚତୁର୍ଦ୍ଦଶ ଅଧ୍ୟାୟ ।

## ପଞ୍ଚଦଶ ଅଧ୍ୟାୟ

### ପୁରୁଷୋତ୍ତମ ଯୋଗ

### ବିଶ୍ୱବୃକ୍ଷ ସଂସାର

॥ ପୀଢ଼ବନ୍ଧ ॥

ଶ୍ରୀହରି ବୋଲନ୍ତି ଶୁଣ ହୋ ପାର୍ଥ କହିବଇଂ ଆବର ସାର
ମାୟା ସଂସାର ଏ ଗହନ ବନ ଏଥର ସାଧ୍ୟ ବିଚାର

॥ ଗୀତବନ୍ଧ ॥

(ଜଳକ୍ରୀଡ଼ା ବୋଲି ବାଣୀରେ ପଢ଼ିବା)

ସ୍ୱାମୀ ବୋଲନ୍ତି ଏ ଭବ ସଂସାର
ଓଶସ୍ତ ବୃକ୍ଷ ଗୋଟାର ଆକାର ।୧
ଆନ ବୃକ୍ଷଙ୍କର ତଳକୁ ମୂଳ
ଉପର ଆଡ଼କୁ ମେଲଇ ଡାଳ ।୨
ଏ ବୃକ୍ଷ ମୂଳ ଉପରେଣ ଥାଇ
ଡାଳ ପତ୍ର ତାହ ତଳକୁ ଲମ୍ବଇ ।୩
ମୂଳ ହୋଇଣ ଥାଇ ଉପରେଣ
ସବା ଉପୁରି ଅଟଇ ନାରାୟେଣ ।୪
ବ୍ରହ୍ମାଦି ଦେବ ଡାଳେ ହୋଇଛନ୍ତି
ବେଦମାନେ ତହିଂ ପତ୍ର ହୁଅନ୍ତି ।୫
ଏମନ୍ତ ବୋଲି ଯେହୁ ପୁଣ ଜାଣି
ବେଦ ବେତ୍ତା ବୋଲି ତାହାକୁ ଗଣି ।୬
ଯେ ହାଦେ ଓଶସ୍ତ ବୃକ୍ଷର ଡାଳ
କେହୁ ଉପର କେହୁ ହୋଏ ତଳ ।୭
ସୁକୃତ ଦୃଷ୍କୃତେଣ ବଶ ହୋନ୍ତି
ସତ ରଜ ତମ ପ୍ରାଣ ବହନ୍ତି ।୮
ବିଷୟମାନ ତା'ର ପଲ୍ଲବିବା
ଆବର ଚେର ଓହୋର ମେଲିବା ।୯
ଭୋଗ ବାଏଞ୍ଛା କର୍ମ ବୁଧି ମାନ
ସେ ହାଦେ ହୋନ୍ତି ଏସନ ବିଧାନ ।୧୦
ଯହୁଂ ଏ ଗଛ ନୋହୋଇ ହାଦେ ସୁସ୍ଥ
ଓଶସ୍ତ ନାମ ହୋଇଲା ପ୍ରଶସ୍ତ ।୧୧
ମୂଳ ମାନରେ ବଡୁ ବଡ଼ ହୋଇ
ଗଛ ଆଦି ଅନ୍ତ ଜାଣନ୍ତା ନାହିଂ ।୧୨
ବିଷୟରେ ବୃକ୍ଷ ଅଟିହିଂ ଆଣ୍ଟ,
ଅସଙ୍ଗ ଅସ୍ତ୍ରଘେନି ବୃକ୍ଷ କାଟ ।୧୩
ତେବେ ସେ ବୃକ୍ଷର ଓହାଡ଼ ଯାଇ
ଓହାଡ଼ ଗଲେ ଦିର୍ବ ସ୍ଥାନ ପାଇ ।୧୪
ବାହୁଡ଼ି ନୁଆସି ଯାହା ପାଇଲେ
ଆଦି ପୁରୁଷକୁ ଆଶ୍ରେ ହୋଇଲେ ।୧୫
ସେ ଆଦି ପୁରୁଷ ପୁରାତନ ହୋଇ
ପ୍ରବର୍ତ୍ତି ଅଛି ତାହା ଗୁଣେ ସେହି ।୧୬
ସେ ପୁରୁଷରେ ଶରଣ ପଶିବ
ମାନ ମୋହ ସଙ୍ଗେ କାମ ନାଶିବ ।୧୭
ଦୁଖ ସୁଖ ଛାଡ଼ିଲେହେଂ ତା ପାଇ
ଯେଉଂ ସ୍ଥାନକୁ କେହି ନ ଲାଗଇ ।୧୮
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ତେଜହିଂ ନାହିଂ
ତହିଂକି ଗଲେ ବାହୁଡ଼ିବ କାହିଂ ।୧୯
ଜୀବ ଆତ୍ମାହିଂ ମୋହରି ଅଂଶ ଯେ
ପ୍ରାଣୀମାନଙ୍କ ଦେହେ ଥାଇ ଯେ ।୨୦
ମନ ଲାଇଣ ସଂସାରେ ପ୍ରବର୍ତ୍ତି
ସର୍ବ ଇନ୍ଦ୍ରିୟେ ତାର ବୋଲେ ଥାନ୍ତି ।୨୧
ସଂସାର ଭୋଗ କରିବା ନିମନ୍ତେ
ଦେହ ଧରି ଥିଲେ ଥାଇ ଏମନ୍ତେ ।୨୨

ସର୍ବଇନ୍ଦ୍ରି ଘେନି ପ୍ରବର୍ତ୍ତି ଥାଇ
ଦେହ ଛାଡ଼ିବା ବେଳେ ଘେନି ଯାଇ ।୨୩
ଗନ୍ଧ ବାସ ଯେହ୍ନେ ନିଅଇ ପବନ
ଯେହି ଘେନି ଯାଇ ହୋଇ ତେସନ ।୨୪
ଅଇରି ଷଡ଼ ବର୍ଗ ଘେନି ଆପଣା
ବିଷୟ ଭୋଗ କରନ୍ତି ମହାତ୍ମା ।୨୫
ଏ କଥା ମୂଢ଼ମାନେ ନ ଜାଣନ୍ତି
ଜ୍ଞାନୀମାନେ ସେ ବେଭାରେ ମଣନ୍ତି ।୨୬
ବୋଲନ୍ତି ଆତ୍ମା ରୂପୀ ନାରାୟେଣ
ଭୋଗ କରଇ ସେ ହୋଇଣ ପୁଣ ।୨୭
ମୋକ୍ଷକୁ ଉଦିଯୋଗୀ ନୁହନ୍ତି
ଦେହୁଂ ଆତ୍ମା ଭିନେ ବୋଲ ମଣନ୍ତି ।୨୮
ମୋକ୍ଷକୁ ସଧ ନ କରଇ ଅଜ୍ଞାନ
ବୋଲନ୍ତି ଆତ୍ମା ଦେହୁଂ ନୋହେ ଭିନ ।୨୯
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ତେଜହିଂ ବହି
ମୋହର ତେଜ ବୋଲି ଜାଣ ତୁହି ।୩୦
ପ୍ରାଣୀମାନଙ୍କୁ ଯେ ଧରିଛି, ପୃଥୀ
ମୋହର ଗୁଣ ଅଛି ହାଦେ ତଥି ।୩୧
ଚନ୍ଦ୍ରମା ଯେ ସରସ ରୂପ ହୋନ୍ତି
ମଉଷଧି କି ପୁଷ୍ଟ କରୁଥାନ୍ତି ।୩୨
ସେହି ମୋହର ଗୁଣ ହାଦେ ଜାଣ
ଆରେକ କଥାଏ କହିବା ଶୁଣ ।୩୩
ପ୍ରାଣୀଙ୍କ ତହିଂ ଅଗ୍ନି ରୂପେ ଥାଇ
ପ୍ରାଣ ଅପ୍ୟାନ ବାଇରେ ସମ୍ଭାଇ ।୩୪
ଅଗ୍ନି ଯେ ହୁଅଇ ଚାରି ପ୍ରକାର
ପାକ କରଇ ତା ଜଠର ଠାର ।୩୫
ପ୍ରାଣୀଙ୍କ ତହିଂ ଜୀବ ରୂପେ ଥାଇ
ମୋରେ ସୁମରଣା ହୁଅଇ ମୁଇଂ ।୩୬
ଜ୍ଞାନୀ ହୋଇହିଂ ପାଶୋରୁହୁଂ ଥାଇ
ପ୍ରାଣୀ ମୋହ ସୁଖେ ଅଜ୍ଞାନୀ ହୋଇ ।୩୭
ସବୁ ବେଦରେ ମୋତେହେଂ ସେ ଜାଣି
ବେଦମାନଙ୍କୁ ମୁହିଂ କଲି ପୁଣି ।୩୮
ବେଦମାନଙ୍କୁ ଜାଣଇ ମୁହିଂ ସେ
ଦୁଇ ପ୍ରକାରେ ଅଟନ୍ତି ପୁରୁଷେ ।୩୯
କ୍ଷୟେ ଅକ୍ଷୟେ ଅଟଇ ଦୁଇମତ
ଆତ୍ମା ଅକ୍ଷୟେ ପ୍ରାଣୀମାନେ ହତ ।୪୦
ଜୀବହୁଂ ପରମ ଭିନେଣ ଅଛି
ବେଦାନ୍ତେ ବ୍ରହ୍ମ ବୋଲି ଯାହା ବାଛି ।୪୧
ଯେଉଂ ପରମ ଆତ୍ମା ତିନି ପୁରେ
ପୂରିଅଛି ଘୋଷୁଅଛି ନିକରେ ।୪୨
କ୍ଷୟେ ଅକ୍ଷୟେ ବୋଲି ଦୁଇ କର୍ମ
ବେଦ ବୋଲେ ପୁଣ୍ୟ ପୁରୁଷୋତ୍ତମ ।୪୩
ପୁରୁଷୋତ୍ତମ ବୋଲି ମୋତେ ଜାଣି
ଯେ ଭାବେ ମୋ ତହିଂ ଲୀନ ସେ ପାଣୀ ।୪୪
ଅର୍ଜ୍ଜୁନ ଚାହିଂ ବୋଲେ ପଦ୍ମନେତ୍ର
ତୋତେ କହିଲୁ ଯେ ରହସ୍ୟ ଶାସ୍ତ୍ର ।୪୫
ଏହା ଯେ ଶୁଣେ ପଢ଼େ ଜ୍ଞାନବନ୍ତ
ଯଥାର୍ଥ ହୋଇ ଜାଣଇ କଥାନ୍ତ ।୪୬
ପଞ୍ଚଦଶ ଅଧ୍ୟା ଶ୍ରୀକୃଷ୍ଣ କହେ
ଶୁଣି ଅର୍ଜ୍ଜୁନ ମନ ତୋଷ ହୁଏ ।୪୭
ସଞ୍ଜୟେ ଧୃତରାଷ୍ଟ୍ରଙ୍କୁ ମଣାଇ
ଦିବ୍ୟ ନୟନ ପ୍ରସାଦେ ଜଣାଇଂ ।୪୮
ଏ ଗୀତା ଚାରିବେଦେ ସନମତ
ପଢ଼ିଲେ ଶୁଣିଲେ ତରେ ଜଗତ ।୪୯
ନୀଳଗିରି ଜଗନ୍ନାଥ ପ୍ରସନ୍ନେ
ବଳରାମ ଦାସ ସୁମରେ ମନେ ।୫୦

ଇତି ଶ୍ରୀଭଗବଦ ଗୀତା ସଂହିତାୟାଂ ସୁପନିଷସ୍ତୁ ବ୍ରହ୍ମବିଦ୍ୟାୟା ଯୋଗଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ୱାଦେ ବିଶ୍ୱ ବୃକ୍ଷ କଥନେ ନାମ ପଞ୍ଚଦଶ ଅଧ୍ୟାୟ ।

## ଷଷ୍ଠଦଶ ଅଧ୍ୟାୟ
### ଦେବ-ଅସୁର ସମ୍ବାଦ

॥ ପୀଢ଼ବନ୍ଧ ॥

ଅତି ଅନୁଗ୍ରହେ ଜଗତ ଈଶ୍ୱର ବଖାଣନ୍ତି ଗୀତା ସାର ।
ଅର୍ଜ୍ଜୁନ ମୁଖକୁ ଚାହିଂଣ ବୋଲନ୍ତି ଶୁଣ ହୋ ଦେବା ଅସୁର ବିଚାର ।

॥ ଗୀତବନ୍ଧ ॥

(ତଣ୍ଡେକ ରାଗେ ଗାଇବ)

ସ୍ୱାମୀ ବୋଲନ୍ତି ଶୁଣ ଧନର୍ଜୟେ, କହିବା ଆର ଅପୂର୍ବ କଥାଏ ।୧
ସିଦ୍ଧଜ୍ଞାନ ଯୋଗ ଅବୟେ ଚିତ୍ତ, ମନ ଧାୟି ଇନ୍ଦ୍ରି ଦମିବା ମତ ।୨
ତପ ଅମାୟା ଅହିଂସା ଅକ୍ରୋଧ, ସତ ଶାନ୍ତି ଦୟା ପ୍ରାଣୀରେ ସାଧ ।୩

ପିଶୂନ ନ ହୋଇବା ତ୍ୟାଗିବା ଲୋଭ
କୋମଳ କହି ଲାଜଥିବା ଭାବ ।୪
ଚପଳ ନୋହିବା ଥିବାକ ତେଜ
ଶୁଚିବନ୍ତ ସହିବା ଧଇର୍ଯ୍ୟ ।୫
ଅତିହିଂ ମାନି ନୋହିବାକ ପୁଣ
ଦେବ ସମ୍ପଦ ଯେ ଲୋକର ଗୁଣ ।୬
ଅସୁର ସମ୍ପଦ ଯେଉଂ ଲୋକର
ସେ ଗୁଣମାନ କହୁଂ ହେତୁ କର ।୭
ଦମ୍ଭଗୁଣ ଦର୍ପ ଅତିହିଂ ମାନ
ଅଜ୍ଞାନ କ୍ରୋଧ ପରୁଷ ବଚନ ।୮
ଅସୁର ସମ୍ପଦ ଏମାନେ ଥାନ୍ତି
ଦେବ ସମ୍ପଦ ଲୋକ ମୋକ୍ଷ ପାନ୍ତି ।୯
ଅସୁର ସମ୍ପଦ ସଂସାରେ ବନ୍ଧ
ଭୋ ଅର୍ଜ୍ଜୁନ ତୁ ନ କର ଖେଦ ।୧୦
ଦଇବୀ ସମ୍ପଦ ତୋତେ ପ୍ରାପତ
ଦେବ ଅସୁର ସୃଷ୍ଟି ଦୁଇମତ ।୧୧
ଦଇବୀ ସୃଷ୍ଟି କହିଲୁ ବିଚାରି
ଅସୁର ସୃଷ୍ଟି ଶୁଣ ହେତୁ କରି ।୧୨
ଅସୁର ସମ୍ପଦେ ଯେଉଂ ଲୋକେ ଥାନ୍ତି
ସେମାନେ ହାଦେ ଧର୍ମ ନ ଜାଣନ୍ତି ।୧୩
ଅଧର୍ମ କରିବାକୁ ବଡ଼ମନ
ଶୁଚିବନ୍ତ ହିଂ ନୋହନ୍ତି ସେ ଜନ ।୧୪
ସତ୍ୟ ଆଚାର ନାହିଂ ତାହାଙ୍କରି
ଅନିତ୍ୟେ ପ୍ରଶଂସା ବହୁତ କରି ।୧୫
ଜଗତେ ଇଶ୍ୱର ନାହିଂ ବୋଲନ୍ତି
ସ୍ତିରୀ ପୁରୁଷେ ସୃଷ୍ଟି ଉତପତ୍ତି ।୧୬
କାହିଂ ଇଶ୍ୱର କାହିଂ କିସ କରି
କାମ ବିଷୟ ମନରେ ବିଚାରି ।୧୭
ଏମନ୍ତ ବୁଦ୍ଧି ଘେନି ନଷ୍ଟ ଆତ୍ମା
ଅଳପ ବୁଦ୍ଧିରେ ହୋଏ ଦୁରାତ୍ମା ।୧୮
ଉଗ୍ରକର୍ମେ ତତପର ହୋଅନ୍ତି
ଜଗତ ନାଶ କରିବାରେ ମତି ।୧୯
ସିଧ ନୋହିବାରେ ଯେଉଂ ବାଏଛା
ଶ୍ରଦ୍ଧା ଚିତ୍ତେ ତା କରଇ ଇଚ୍ଛା ।୨୦
ଦମ୍ଭରେ ଆରମ୍ଭ କରୁଣ ଥାନ୍ତି
ମାନ ମଦରେଣ ଯୁଗତ ହୋନ୍ତି ।୨୧
ଆନ ଦେବତା ମାନ ପୂଜା କରି
ଅଶୁଦ୍ଧ ବ୍ରତ ମାନନ୍ତ ଆଚରି ।୨୨
ସେ ଉଦିଯୋଗେ କାର୍ଯ୍ୟ ନୋହେ ସିଦ୍ଧି
ବହୁତ ଆଶା ବନ୍ଧେ ନିରବଧି ।୨୩
ବୋଲନ୍ତି ଯାହା ଭୋଗ କରୁଥାଇ
ଏହିଟି ସେ ଆଉ ମଲେ ନ ପାଇ ।୨୪
କାମ କ୍ରୋଧରେ ହୋନ୍ତି ତତପର
ବହୁତ ଆଶା ବନ୍ଧେ ତାହାଙ୍କର ।୨୫
ଅନ୍ୟାୟେ ଧନ ଅର୍ଜ୍ଜି ଭୋଗ କରି
ଆଜ ଯେତେକ ପାଇଲି ବିଚାରି ।୨୬
କାଲିହିଂ ପୁଣି ଆହୁରି ପାଇବି
ମାସେକ ଆଉ ପାଇଂ ଭିଆଇବି ।୨୭
ବରଷକେ ଲାଭ ପାଇବି କେତେ
ଏହା ବିଚାରୁ ଥାଇ ଅନୁବ୍ରତେ ।୨୮
ଆଜ ଏ ଶତ୍ରୁକୁ ମାଇଲି ପୁଣି
କାଲି ତାହାକୁ ପକାଇବି ହାଣି ।୨୯
ମୁହିଂ ଇଶ୍ୱର ସୃଷ୍ଟିହିଂ ମୋହର
ମୋହ ପରା ଭୋଗ ଅଛି କାହାର ।୩୦
ମୁଂ ବଡ଼ ଲୋକ କୁଳୀନ ହିଂ ମୁହିଂ
ସୁଖୀ ପଣେ ମୋତେ ସାମାନ୍ୟ ନାହିଂ ।୩୧
ମୁଂ ସିଧ ଲୋକ ମୁହିଂ ବଳୀଆର
ମୋତେ କେ ସରି ଅଛି ପୁଣ ଆର ।୩୨
ଭୁଞ୍ଜିବାକୁ ଜୀବ ମାରି ସନ୍ତୋଷ ।
ଏମନ୍ତ ଭାଳି ଅଜ୍ଞାନେ ପ୍ରବେଶ ।୩୩
ମୋହ ଜାଲେ ପଡ଼ି ମୋହିତ ହୋଇ ।
କାମ ଭୋଗେ ଆଶା ନିବାର ନୋହି ।୩୪
ଅମେଧ ନର୍କେ ପଡ଼େ ସେହୁ ପ୍ରାଣୀ
ଆପଣେ ଆପଣେ ହୋଅନ୍ତି ଟାଣି ।୩୫
ମାନ ସମ୍ପଦ ମଦ ଯୁଗତେ
ବଡ଼ ହୋଇଥାନ୍ତି ଆପଣା ମତେ ।୩୬
ଯଜ୍ଞ କଲେହେଂ ଦମ୍ଭ ପଣେ ମରି
ଅବିଧି ମତେ ବେଭାର ଆଚରି ।୩୭
କ୍ରୋଧ ଅହଙ୍କାର ବଳ ଦରପ
କାମେ ପ୍ରବର୍ତ୍ତିଣ କରଇ ପାପ ।୩୮
ପର ଦେହେ ମୁଂ ବିଜେ କରିଥାଇଂ
ତହିଂକି ଉଦ୍ଦେଶ୍ୟ କହେ କୁହାଇ ।୩୯

ଏମନ୍ତ ଲୋକ ମୋହର ବଇରୀ
ନିଚୟେ ଜାଣ ତୁ ଗାଣ୍ଡିମଧାରୀ ।୪୦
ତାହାକୁ ଏହି ସଂସାରେଣ ମୁହିଂ
ଅସୁର ଯୋନିରେ ଜାତ କରାଇ ।୪୧
ହୀନ କର୍ମ ମାନ କରୁଣ ଥାନ୍ତି
ଅସୁର ଯୋନି ଜନ୍ମେ ଜନ୍ମେ ପାନ୍ତି ।୪୨
ଅଧର୍ମ ଗୁଣେ ମୋତେ ହୋନ୍ତି ଦୂର
କାମ କ୍ରୋଧ ଲୋଭେ ହୋନ୍ତି ଅସୁର ।୪୩
ନରକ ଗତି ଯେ ନିଚୟେ ପାନ୍ତି
ଏହା ଆସ୍ତେ କରି ମୂଢ଼େ ନାଶନ୍ତି ।୪୪
ଏ ତିନି ଗୁଣ ଯେ ଛାଡ଼ଇ ପାର୍ଥ
ଆପଣାକୁ ହିତ ଅଟେ ଯଥାର୍ଥ ।୪୫
ଏହୁ କଥାରେ ନ ପ୍ରବର୍ତ୍ତନ୍ତି ଯେହୁ
କାଳେ ପରମ ଗତି ପାନ୍ତି ସେହୁ ।୪୬
ଶାସ୍ତ୍ର ବିଧି ଛାଡ଼ି କାମେ ପ୍ରବର୍ତ୍ତି
କେହୁଣି କାଳେ ନ ପାଇ ସୁଗତି ।୪୭
ଇହ ପରଲୋକେ ସୁଖି ନୋହନ୍ତି
ତାଙ୍କୁ କାହିଂ ଅଛି ମୋକ୍ଷ ପ୍ରାପତି ।୪୮
ଯାହା କରିବ ଯାହା ନ କରିବ
ଶାସ୍ତ୍ର ବୋଇଲା କର୍ମ ଆଦରିବ ।୪୯
ତୋତେ ବୁଝାଉ ଅଛି ପଣ୍ଡୁ ନାନ
ମୁକତ ହୋଇବୁ ପାଳ ଏମାନ ।୫୦
ଏ କଥାରେ ହାଦେ ନାହିଂ ସଂଶୟେ
ଛଡ଼ଦଶ ଅଧ୍ୟା ସମ୍ପୂର୍ଣ୍ଣ ହୋଏ ।୫୧
ଅର୍ଜ୍ଜୁନ ଆଗେ କହେ ଦାମୋଦର
ସଞ୍ଜୟେ ଧୃତରାଷ୍ଟ୍ରର ବିଚାର ।୫୨
ଏ ଗୀତା ଜ୍ଞାନ ଯୋଗ ତତ୍ତ୍ୱ ବିଧି
ସାଧୁ ପ୍ରାଣୀଙ୍କି ହୋଏ ମଉଷୋଧି ।୫୩
ନୀଳଗିରି ନାଥ ସେବି ସୁଚିରେ
ବଳରାମ ଦାସ ବଖାଣଇ ଗୀତେ ।୫୪

ଇତି ଶ୍ରୀଭଗବଦ୍ ଗୀତା ସଂହିତାୟାଂ ସୁପନିଷସୁ
ବ୍ରହ୍ମବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣାର୍ଜ୍ଜୁନ ସମ୍ବାଦେ ଦେବାସୁର
ଜନ୍ମ କଥନେ ନାମ ଷଡ଼ଦଶ ଅଧ୍ୟାୟ ।

## ସପ୍ତଦଶ ଅଧ୍ୟାୟ
### ଶ୍ରଦ୍ଧାତ୍ରୟ ବିଭାଗ ଯୋଗ
### ତ୍ରିଗୁଣ ଲକ୍ଷଣ

॥ ପୀଢ଼ବନ୍ଧ ॥

ଶ୍ରୀହରି କହନ୍ତେ ଶୁଣଇ ପାର୍ଥ ପୁନରପି ପୁଚ୍ଛଇ ଆନ
ଗୁଣ ଭେଦ ଭ୍ରାନ୍ତି ପାଇଲଇଂ ସଂଶୟ ଫେଡ଼ ଭଗବାନ

॥ ଗୀତବନ୍ଧ ॥

(ରୋଢ଼ା ବାଣୀରେ ଗାଇବା)

କର ଦୁଇ ଯୋଡ଼ି ଧନର୍ଜୟେ ପୁଚ୍ଛଇ ହରିର ପାଶ
ଶାସ୍ତ୍ର ବିଧି ଛାଡ଼ି ଥୋକାଏ ଲୋକ ଲୋକାଚାରେ ପରବେଶ ।୧
ପରାପର କଥା ଆଦରିଣ ଥୋକେ ଶରଧାବନ୍ତ ଯେ ହୋଇ
ସାତ୍ୱିକ୍ୟ ରାଜସ ତାମସ ଗୁଣ ଜନ୍ମେହେଂ ଭେଦେ କାର୍ଯ୍ୟ ପାଇ ।୨
ତାହାଙ୍କର ଯେସନ ଚରିତ ମାନ ସ୍ୱାମୀ ବୋଲନ୍ତି ହୋ ଶୁଣ
ଦେହକୁ ଶରଧା ତିନି ପରକାର ଯେହି ଭେଦ ତିନି ଗୁଣ ।୩
ସାତ୍ୱିକ୍ୟ ଗୁଣ ବହୁତ ହୋଇଲେ ସାତ୍ୱିକ୍ୟେ ଶରଧା ହୋଇ
ରଜ ଗୁଣ ବହୁତ ହୋଇଲେ ରାଜସ ପଣ ବଢ଼ଇ ।୪
ତାମସ ଅଧିକ ହୋଇଲେହେଂ ପୁଣ ତାମସେ କରଇ ଶ୍ରଧା
ସାତ୍ୱିକ୍ୟେ ଦେବତା ପୂଜନ୍ତି ସେ ପୁଣ ଛାଡ଼ିଣ ଯେ ମୋହ ବାଧା ।୫
ରାଜସେ ପୂଜା କରନ୍ତି ହାଦେ ଯକ୍ଷ ରାକ୍ଷସମାନଙ୍କୁ
ତାମସ ଶ୍ରଦ୍ଧାୟେ ପୂଜନ୍ତି ହାଦେ ପ୍ରେତ ପିଚାଶମାନଙ୍କୁ ।୬
ଯେଉଂ ଲୋକ ଦମ୍ଭ ଆରମ୍ଭେଣ କାମ ରାଗଙ୍କର ବଳେ
ଶାସ୍ତ୍ର ବିନୁ ହୋଇଲା କର୍ମ ନ କରନ୍ତି ସବୁକାଳେ ।୭
ତାହାଙ୍କ ଦେହେ ସେ ପଞ୍ଚଭୂତହେଂ ଆନ୍ତର୍ଯାମୀ ହୋଇ ଥାଇ
ସେହୁ ମୋତେ କେଳଶ ହୋଇଣ ଥାଇ ବହୁତ ଦୁଖ ମୁଂ ପାଇ ।୮
ସେମାନେ ନିଚୟେ ଅସୁର ପାର୍ଥ ଦୃଢ଼ କରି ତୁମ୍ଭେ ଜାଣ
ତିନି ଗୁଣଙ୍କୁ ଯେ ଆହାରଣ ହାଦେ ତିନି ପ୍ରକାରେ ଭିଆଣ ।୯
ଯଜ୍ଞ ତପ ଦାନ ତିନି କର୍ମ ଯେ ତିନି ପ୍ରକାରେ ଏ ହୋଇ
ତହିଂର ଭେଦ ଯେ ବଡ଼ ଗୁପତ ତୋତେ କହିବାହିଂ ତାହି ।୧୦
ଆଉଷ ଉଛାହା ବଳ କୋମଳ ଆରୋଗ୍ୟ ସୁଖରେ ପ୍ରୀତି
ରସବନ୍ତ ଯେଉଂ ଆହାରମାନ ତାହା ସାତ୍ୱିକ୍ୟେ କରନ୍ତି ।୧୧
କଟୁକ ଚିକିତ ଆମ୍ବିଳ ଯେ ହୋଇ ନିରସ ଚପତ ଲୁଣି
ତୀକ୍ଷଣ ଦୂଷଣ ଭୋଗ କରଇ ରାଜସେ ଭୁଞ୍ଜଇ ପ୍ରାଣୀ ।୧୨
ପୁଣଂ ବାସି ସ୍ୱାଦଗଲା ପଦାର୍ଥ ଅପବିତ୍ର ଯେ ଉଚିଷ୍ଟ
ଯେମନ୍ତ ଆହାର କରେ ଯେଉଂ ନର ତାମସ ବୋଲିଣ ନଷ୍ଟ ।୧୩
ଶାସ୍ତ୍ର ପ୍ରମାଣେଣ ଯେମନ୍ତ ଯେ ବିଧି ବିଷ୍ଣୁ ପ୍ରୀତି ଅର୍ଥେ ଦେଇ
କର୍ମଫଳକୁ ବାଏଥା ନ କରଇ ତାହା ସାତ୍ୱିକ୍ୟେ ବିଚାରି ।୧୪

ଅଳପ ପୂଜା କଲେ ଯେଉଂ ନର ଦାମ୍ଭିକ ତପ ଏ ଲେଖି
ଆଶାର ପଣେ ଫଳ ଶରଧା କରେ ତାହା ରାଜସରେ ଲେଖି ।୧୫
ମୂଢ଼ ପଣେ ତପ କରି ଯେହୁ ଦମ୍ଭ ଅହଙ୍କାରୀ ହୋଇ
ଆତ୍ମା ପୀଡ଼ା କରେ ଭୋଗ ଇଚ୍ଛା ନାହିଁ ତାମସ ତପ ଏ ହୋଇ ।୧୬
ଅବିଧି ପୂର୍ବେକ ହୋଇଣ ଯେହୁ ଯଜ୍ଞେ ଅନ୍ନଦାନ ଦେଇ
ମନ୍ତ୍ର ହୀନ ଦକ୍ଷିଣା ଯେ ଶ୍ରଧାବନ୍ତ ଯେଉଂ ଜନ ହାଦେ ନୋହି ।୧୭
ଏମନ୍ତ ଯଜ୍ଞ ଯେ କରଇ ପାର୍ଥ ତାମସ ବୋଲି ଯେ ତାହା
ଯଜ୍ଞରୁ ବିଧି ଏ ତିନି ପରକାରେ ଶୁଣ ତୁ ଗାଣ୍ଡିମବାହା ।୧୮
ମନ ବଚନ କର୍ମବ୍ୟେଣ ଯେହୁ ଶରଧାବନ୍ତ ଯେ ହୋଇ
ଦେବତା ବ୍ରାହ୍ମଣ ଗୁରୁ ଲୋକନ୍ତ ଏହାନ୍ତ ପୂଜୁଣୁ ଥାଇ ।୧୯
ଶୁଚିବନ୍ତ ହୋଇ ବ୍ରହ୍ମଚର୍ଯ୍ୟ ପ୍ରାଣରେ ହିଂସା ନୋହିବା
ଶୁଣ ଧନର୍ଜୟେ ଏ ସାତ୍ୱିକ୍ୟ ତପ ଏହା ବୋଲି ବିଚାରିବା ।୨୦
ପରକୁ ଉଦ୍ବେଷ ନ କରଇ ଯେହୁ ପ୍ରିୟ ଉପୁଗାରେ ଥାଇ
ସତ୍ୟ ପ୍ରିୟ ହିତ ସାଧ ପାଠ ବଚନ ତପ ଯେ ହୋଇ ।୨୧
ମଉନ ମତ ଯେ ପ୍ରସନ୍ନ ଚିତ୍ତ ସର୍ବ ଇନ୍ଦ୍ରି ନିଗ୍ରିହିବା
ଭାବ ଶୁଦ୍ଧ ମାନସିକ ତପ ଯେମନ୍ତ ବୋଲି କହିବା ।୨୨
ଏ ତିନି ପ୍ରକାରେ ଶରଧା ହୋଇଣ ଫଳ ବାଏଛା ନ କରି
ଯେଉଂ ପ୍ରାଣୀଏ ତପ କରନ୍ତି ସାତୁକ୍ୟେଣ ସମସରି ।୨୩
ଦମ୍ଭ ବଡ଼ ପଣେ ପୂଜାମାନ କରି ଯେହୁ ପୁଣ ତପ କୟେ
ତାହା ସେ ରାଜସ ତପ ବୋଲି ହାଦେ ଶୁଣ ତୁ ପଣ୍ଡୁ ତନୟେ ।୨୪
ଅବିବେକ ପଣେ ପରକୁ ପୀଡ଼ା ଅନିମିତ୍ତେ କରେ ତପ
ତାମସିକ ତପ ବୋଲି ଜାଣିଲା ଏଥେଣ ବହୁତ ପାପ ।୨୫
ଅଣ ଉପଗାରି ଲୋକ ଭଲ ଦେଶ କାଳ ପାତ୍ର ବିଚାରିବା
ତାହାର ଦାନ ସେ ସାତ୍ୱିକ୍ୟ ବୋଲି ଶୁଦ୍ଧ ଚିତ୍ତେଣ ତା ଦେବା ।୨୬
ଉପୁରି ପାଇବାକୁ ଦାନ ଦେଇ ଫଳ ପାଇବାକୁ ଆଶ
ନ ଦେଲେ ନୁହଇ ବୋଲି ଭାଳି ଦେଇ ଯେମନ୍ତ ଦାନ ରାଜସ ।୨୭
ଦେଶ କାଳ ପାତ୍ର ନ ବିଚାରିଣ ଅଜ୍ଞାନୀ ପଣେଣ ଦେଇ
ତାହାକୁ ତାମସିକ ଦାନ ବୋଲି ନିଷ୍ଚୟ ଜାଣ ଯେ ତୁହି ।୨୮
ଅଶରଧାଏ ଯେଉଂ ତପ ଦାନ ଯଜ୍ଞ କଲେହେଂ ବିଅର୍ଥ
ଇହ ପରଲୋକ ଫଳହିଂ ନାହିଂ ଏ ହାଦେ ସତ ହୋ ପାର୍ଥ ।୨୯
ସପ୍ତଦଶ ଅଧ୍ୟା ବିଶେଷେଣ ଗୀତା ପରମ ଯୋଗ ସମ୍ବାଦ
ସଞ୍ଜୟେ ଧୃତରାଷ୍ଟ୍ରକୁ ଜଣାଇ ଅର୍ଜୁନେଣ ହରି ବୋଧ ।୩୦
କ୍ଷେତ୍ରବର ପୁରୁଷୋତ୍ତିମ ଗ୍ରାମରେ ଶ୍ରୀଜଗନ୍ନାଥେ ମୋ ଥାନ୍ତି
ତାହାଙ୍କର ସେବକ ବଳରାମ ଦାସ ଏ ଗୀତା ଗୀତେଣ ଗାନ୍ତି ।୩୧

ଇତି ଶ୍ରୀଭଗବଦ୍ ଗୀତା ସଂହିତାୟାଂ ସୁପନିଷସୁ ବ୍ରହ୍ମବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣ ଅର୍ଜୁନ ସମ୍ବାଦେ ତ୍ରିଗୁଣ ଲକ୍ଷଣ କଥନେ ନାମ ସପ୍ତଦଶ ଅଧ୍ୟାୟ ।

# ଅଷ୍ଟାଦଶ ଅଧ୍ୟାୟ

## ॥ ପୀଢ଼ବନ୍ଧ ॥

ଶ୍ରୀହରି ମୁଖୁଂ ଏସନେକ ବାଣୀ ଶୁଣି ପୁଣି ଅର୍ଜୁନ ସୋଧ ବୋଧ ପୁଚ୍ଛି ।
ସଂଶୟେ ଛିନାଇ କହ ମୋତେ ବିବେକ ବିଚାର ଆଦିଅନ୍ତ ମଧ୍ୟ କିଛି ।

## ॥ ଗୀତବନ୍ଧ ॥

### ଦିଶ "କଳସା (କୁସା) ବାଣୀର ଗାଇବ"

ଅର୍ଜୁନ ବୋଲଇ ଦେବ ପୁଚ୍ଛିବି କଥାଏ
ସନ୍ୟାସୀ ତ୍ୟାଗର ଗୁଣ ଉତ୍ତମ କେ ହୋଏ ।୧
ଦୁଇ କଥା ଭିନେ ଭିନେ ଶୁଣିନ୍ତ ମୋ ମନ
ବୋଲନ୍ତି ମାଧେବ ଶୁଣ ପଣ୍ଡୁର ନନ୍ଦନ ।୨
କାମ୍ୟ କର୍ମ ଛାଡ଼ିବାକୁ ସନ୍ୟାସ ବୋଲନ୍ତି
ତ୍ୟାଗୀ ମାନେ ସବୁ କର୍ମ ଫଳହିଂ ଛାଡ଼ନ୍ତି ।୩
ଥୋକାଏ ପଣ୍ଡିତ ମାନେ ବୋଲନ୍ତି ବିଚାରି
ସବୁ କର୍ମମାନ ଛାଡ଼ି ଉଦାସ ହେତୁ କରି ।୪
ଥୋକାଏ ପଣ୍ଡିତ ମାନେ ବୋଲନ୍ତି ସେ ଆନ
କରିବାହିଂ ଯଜ୍ଞ ତପ ଦାନ କର୍ମ ମାନ ।୫
ଏଥିର ଫଳ ବାଏଛା ନ ଧରିବ ଚିତ୍ତେ
ଏ ପୁଣ ନିଚୟେ କଥା କହୁଅଛୁ ତୋତେ ।୬
ତ୍ୟାଗହିଂ ଅଟଇ ହାଦେ ତିନି ପରକାର
ସତ ରଜ ତମ ତିନି ଗୁଣର ବିଚାର ।୭
ଯଜ୍ଞ ତପ ଦାନ ଏହା ଅବଶ୍ୟ କରିବ
ଏମାନେହେଂ ପବିତ୍ର କରନ୍ତି ବିଚାରିବ ।୮
ସଂକଳ୍ପ ବାଏଛା ଛାଡ଼ିଣ କର୍ମକରି
ଏ ମୋହର ସନମତ ବୋଲନ୍ତି ଶ୍ରୀହରି ।୯
ଯେ ଯାହାର କର୍ମ ମୂଢ଼ପଣେ ଯେ ଛାଡ଼ଇ
ଏଥି କିମ୍ବା ବନ୍ଧ ହେବି ବୋଲି ନ ବଢ଼ଇ ।୧୦
ନ କଲେ କି ହୋଇଲା କରମ ସିନା ଯେହୁ
ତାମସ ତ୍ୟାଗୀ ସଙ୍ଗେ ଗଣିତା ହୋନ୍ତି ସେହୁ ।୧୧
କାୟେ କେଳଶ ଦୁଃଖ ବୋଲିଣ କର୍ମ ଲେଛି
ତାହାକୁହି ରାଜସିକ ତ୍ୟାଗୀ ବୋଲି ବାଛି ।୧୨
ସ୍ୱଭାବ କର୍ମ କରିବ ନ ଇଛିବ ଫଳ
ସାତ୍ୱିକ୍ୟ ତ୍ୟାଗୀ ତାହାକୁ ବୋଲନ୍ତି ସକଳ ।୧୩
ଅକୁଶଳ କର୍ମକୁ ଯାହାର ବାଞ୍ଛା ନାହିଂ
ସୁକର୍ମକୁ ଉସତ ହୋଇବି ଆର କାହିଂ ।୧୪

ସଂଶୟେ ନ ଥୋଇ କର୍ମ କର ସୁଧ ଚିତ୍ତେ
ଦେହଧରି କର୍ମ ଛାଡ଼ି ହୋଇବ କେମନ୍ତେ ।୧୫
କରମ କରଇ ଫଳ କେବେହେଂ ନ ବାଞ୍ଛି
ତାହାକୁ ସେ ତ୍ୟାଗ ବୋଲି ଶାସ୍ତ୍ର କହିଅଛି ।୧୬
କର୍ମଫଳ ତ୍ୟାଗ ହି ନ କଲା ଯେଉଂ ନର
ଦୁଃଖ ସୁଖ ମିଶି ଫଳ ତିନି ପରକାର ।୧୭
କର୍ମଫଳ ତ୍ୟାଗିଲାକୁ ନ ଲାଗେ ଏ ତିନି
ଏ ପାଞ୍ଚେହେଂ ସିଧ ବୋଲି ଶୁଣ ଫାଲଗୁନି ।୧୮
ଶରୀରେ ଯେ ଅହଙ୍କାର ପଞ୍ଚଇନ୍ଦ୍ରି ମାନ
ପ୍ରାଣ ଅପ୍ୟାନ ବ୍ୟାନ ସମାନ ଉଦାନ ।୧୯
ବ୍ୟାପାର ଅଟଇ ଏହୁ ପଞ୍ଚ ବାଇଙ୍କର
ଅନ୍ତର୍ଯ୍ୟାମୀ ଆତ୍ମାହିତେ ପଞ୍ଚ ପରକାର ।୨୦
ନ୍ୟାୟ ଅନ୍ୟାୟେଣ ମନ ବଚନ କର୍ତ୍ତବ୍ୟ
ଏ ତିନି ଗୁଣେ ପୁରୁଷ କରମ କରିବ ।୨୧
ତହିଂକିହିଂ ପାଞ୍ଚେହେଂ ଅଟନ୍ତି ହାଦେ ହେତୁ
ଆହୁରି କଥାଏ ଅଛି କହୁଂ ତୋତେ ତତୁ ।୨୨
ଆତ୍ମା ଏକା କର୍ତ୍ତା ବୋଲି ଜାଣେ ଅବା ଯେହୁ
ଯେତେ ଜାଣିମାର ଲୋକ ନୋହନ୍ତି ନା କେହୁ ।୨୩
ଯେବଣ ଲୋକର ଅହଙ୍କାର ଗୁଣ ନାହିଂ
ତାହା ମତି ଭଲ ମନ୍ଦେ ନ ମିଶଇ କାହିଂ ।୨୪
ଲୋକାଚାରେ ଥାଇଣ ଲୋକ ତ ଯଦି ମାରି
ମାଇଲା ଲୋକ ସଙ୍ଗତେ ଗଣିତା ନ କରି ।୨୫
ବନ୍ଧହି ନୋହଇ ଜ୍ଞାନବନ୍ତ ଜ୍ଞାତା ତିନି
କର୍ତ୍ତା କର୍ମ ଅକର୍ମ କରଣ ମାନ ଚିହ୍ନି ।୨୬
ଜ୍ଞାନ କର୍ମ କର୍ତ୍ତା ଗୁଣ ଭେଦରୁ ତିନିହେଂ
ତେଣୁକରି ତିନି ତିନି ପରକାର ହୁଏ ।୨୭
ଏକ ଭାବ କରି ସବୁ ଜୀବ ସମ ଦେଖି
ସାତ୍ତ୍ୱିକ୍ୟ ଜ୍ଞାନୀ ବୋଲିଣ ତାହା ନାମ ଲେଖି ।୨୮
ରାଜସ ଜ୍ଞାନୀ ଦେଖଇ ଭିନେ ଭିନେ କରି
ତାମସ ଜ୍ଞାନୀ ବୋଲିଣ ଯାହା ନାମ ଧରି ।୨୯
ତତ୍ତ୍ୱ ଅର୍ଥ ନୋହଇ ଅଳପ ଯେଉଂ ଜ୍ଞାନ
ଭଲ କର୍ମ ନୋହିବା କଥାକୁ ସାବଧାନ ।୩୦
ଯେଉଂ କର୍ମ କଲେଣ ଉଦ୍ବେଷ ରାଗ ନାହିଂ
ଫଳ ବାଞ୍ଛା ଛାଡ଼ି ଦୁଃଖେ ଆସ୍କତ ନୋହଇ ।୩୧
ନିୟତ କର୍ମ ବୋଲିଣ ବୋଲିବା ସେ ପ୍ରାଣୀ
ତାହାର ନାମ ସାତ୍ତ୍ୱିକ୍ୟ କର୍ମ ବୋଲି ଜାଣି ।୩୨
ଯେଉଂ କର୍ମ କାମ କର୍ମ ଅହଙ୍କାର କୟେ
ବହୁତ ଆଶା କରେ ରାଜସ ବୋଲି ତାୟେ ।୩୩
ତାମସ କର୍ମର କଥା ଶୁଣ ଗୁଡ଼ାକେଶ
ନି ବିଚାରେ ଆପଣାଙ୍କୁ ଯଶ କି ଅଯଶ ।୩୪
ଭଲ ମନ୍ଦ ହୋଇବକି ଯେହାହିଂ ନ ଜାଣି
ଧନ କ୍ଷଏ ପରପୀଡ଼ା ହିତ ବୋଲି ମଣି ।୩୫
ତାମସ ଧର୍ମର କଥା ଏହା ମନେ ଧର
ସଙ୍ଗହିଂ ନ ଛାଡ଼ି ଯେ ନ ଛାଡ଼େ ଅହଙ୍କାର ।୩୬
ଧଇର୍ଯ୍ୟ ହୋଇଣ ଯେବେ ଉତ୍ସାହା ନୋହିବ
ସିଧା ସିଧ ଅଧିକରେ କର୍ତ୍ତା ହୋଇଥିବ ।୩୭
ତାହାକୁ ସାତ୍ତ୍ୱିକ କର୍ତ୍ତା ବୋଲିଣ ବୋଲନ୍ତି
ରାଜସ କର୍ତ୍ତାର କଥା ଶୁଣ ଆନ ରୀତି ।୩୮
ରାଗବନ୍ତ ହୋଇ କର୍ମଫଳକୁ ବାଞ୍ଛା
ଲୋଭ ହିଂସା ଅଶୁଚି ହରଷ ଶୋକେ ଇଚ୍ଛା ।୩୯
ତାମସ କର୍ତ୍ତାର ଯେ ବିଧାନ ଆନ ଭାବ
ଅଣ ଅବଧାନି ଅବିବେକୀହିଂ ହୋଇବ ।୪୦
ଅଯୁଗତି ଦୃଷ୍ଟିହିଂ ପରକୁ ଅରିନ୍ଦମ
ଆଳସ ଦୁଖେଣ ଯେହୁ କରଇ କରମ ।୪୧
ତାମସ କର୍ତ୍ତାର ଏହୁ ଅଟଇ ବିଚାର
ବୁଦ୍ଧିହିଂ ଏହି ମତେଣ ତିନି ପରକାର ।୪୨
ଧଇର୍ଯ୍ୟହିଂ ତିନି ପରକାରେ ଏହି ମତେ
ସାତ୍ତ୍ୱିକ୍ୟ ବୁଦ୍ଧିର କଥା କହୁଅଛୁ ତୋତେ ।୪୩
ବନ୍ଧ ମୋକ୍ଷ କାର୍ଯ୍ୟ ଅକାର୍ଯ୍ୟ ଦୁହିନ୍ତିହିଂ ମଣି
ପ୍ରବର୍ତ୍ତିବା ନିବର୍ତ୍ତିବା ଦୁଇକଥା ଜାଣି ।୪୪
ଭୟେ ଅଭୟେ ଯେ ବିଚାରେ ସଦବୁଦ୍ଧି
ରାଜସ ତ୍ୟାଗୀର କଥା କହୁ ତୋତେ ସିଧି ।୪୫
ଧର୍ମକୁ ଅଧର୍ମ ପ୍ରାୟେ ସଂଶୟେ ବିଚାରି
କାର୍ଯ୍ୟକୁ ଅକାର୍ଯ୍ୟ ସିନା ବୋଲିଣ ବିଚାରି ।୪୬
ତାମସ ବୁଦ୍ଧିର କଥା ଶୁଣ ଫାଲଗୁନି
ଯଉଂ ବୁଦ୍ଧି ଅଧର୍ମକୁ ଧର୍ମ ବୋଲି ଘେନି ।୪୭
ଧର୍ମକୁ ଅଧର୍ମ ପ୍ରାୟେ ମନ୍ଦକୁହିଂ ଭଲ
ତାମସ ବୁଦ୍ଧି ବିଚାର ପୃଥିବୀକି ସଲ ।୪୮
ମନ ପ୍ରାଣ ବିକାର ଇନ୍ଦ୍ରିୟ ନିଗ୍ରହିବା
ତାହାକୁ ସାତ୍ତ୍ୱିକ ଧୃତି ବୋଲିଣ କହିବା ।୪୯
କାମ ମନେ ନ ଧରଇ ରାଜସ ଧୃତି ସେହୁ
ସ୍ୱପ୍ନ ଭୟ ଦୁଃଖ ମନୁ ନ ଛାଡ଼ଇ ଯେହୁ ।୫୦
ତାହାକୁ ତାମସ ଧୃତି ବୋଲିଣ ଗଣନ୍ତି
ସୁଖହିଂ ତିନି ପ୍ରକାରେ ପଣ୍ଡିତେ ମଣନ୍ତି ।୫୧
ଯେଉଂ ସୁଖ ଅତି ଯତ୍ନେ ଅଭ୍ୟାସେ ଆନନ୍ଦ
ଦୁଃଖ ନାଶ ଯାଇ ଆଗେ ବିଷ ପ୍ରାୟେ ମନ୍ଦ ।୫୨

ପଛେଣ ଅମୃତ ପ୍ରାୟେ ହୋଇଥାଇ ହିତ
ସାତ୍ତ୍ୱିକ ସୁଖ ତାହାଙ୍କୁ ବୋଲନ୍ତି ପଣ୍ଡିତ ।୫୩
ବିଷୟ ଇନ୍ଦ୍ରିୟ ସଙ୍ଗେ ସୁଖ ଆଗେ ଚାଖି
ପଛେ ବିଷ ପ୍ରାୟେ ତା ରାଜସେ ଦେଖ ବାଛି ।୫୪
ଯେଉଂ ସୁଖ ଆଗେ ପଛେ ମୋହ କରୁଥାଇ
ଅଜ୍ଞାନ ଅଳସ ନିଦ୍ରା ପ୍ରମାଦରୁ ହୋଇ ।୫୫
ତାହା ସେ ତାମସ ସୁଖ ବୋଲି ଫାଲଗୁନି
ସ୍ୱର୍ଗ ମର୍ତ୍ତ୍ୟ ଲୋକଙ୍କୁ ଆକ୍ରସେ ଗୁଣ ତିନି ।୫୬
ବ୍ରହ୍ମ କ୍ଷତ୍ରି ବଶ୍ୟ ଶୂଦ୍ର ଜାତି ମାନଙ୍କୁ ହିଂ
ପ୍ରକୃତି ଗୁଣ ସଭାବ କର୍ମ ଅଛି ବହି ।୫୭
ଯାହା କଲା ଅଛି ତାହା ଶୁଣ ଫାଲଗୁନି
ବ୍ରାହ୍ମଣଙ୍କ ସଭାବ କରମ ଯେହୁ ଘେନି ।୫୮
ଇନ୍ଦ୍ରି ଦମି ଶାନ୍ତି ଚିରେ ତପ ଶୁଚିବନ୍ତ
ସହିବାକୁ କୁଟିଳ ନୋହି ସୁଜ୍ଞାନ କଥାନ୍ତ ।୫୯
ଆସ୍ତିକ ପଣ ହୋଇବ ବ୍ରାହ୍ମଣ ଗୁଣ
କ୍ଷତ୍ରିଙ୍କ ସଭାବ କର୍ମ ହାଦେ କହୁଂ ଶୁଣ ।୬୦
ଯେଉଂ ଧୃତି କରି ସ୍ୱପ୍ନ ଭୟ ଯେ ଶୋକନ୍ତ
ବିଷାଦ ମତେ ବିଷୟା ଧରଇ ଯେହାନ୍ତ ।୬୧
କୁବୁଧି ଭାବରେ ଯେହୁ ଯେହାକୁ ଛାଡ଼ନ୍ତି
ତାହାକୁ ତାମସ ଧୃତି ବୋଲିଣ ଗଣନ୍ତି ।୬୨
ସୁଖିହିଂ କହିବା ହାଦେ ଆଗେ ଚେତା ହୋଇ
ସାତୁଜ୍ୟ ଗୁଣ ଯେ ବେନି ପରକାରେ କହି ।୬୩
ଯେଉଂ ସୁଖ ଆଭ୍ୟାସିଲେ ପରମ ଆନନ୍ଦ
ହିଂସା ଅହିଂସାକୁ ହାଦେ ମଣଇ ସେ ମନ୍ଦ ।୬୪
ଯୁଦ୍ଧେଣ ନ ପଳାଇବ ହୋଇବ ଧଉର୍ଯ
ପ୍ରଭୁ ପଣ ଦେବା ଗୁଣ ତେଜ ଏ ଶଉର୍ଯ ।୬୫
ଶୂର ତେଜ ହୋଇବ ଯେ କ୍ଷତ୍ରିଙ୍କ ସଭାବ
କୃଷି ଗୋରୁ ବଣିଜ ଯେ ବଶ୍ୟର ସ୍ୱଭାବ ।୬୬
ଏ ତିନି ଜାତିକି ଶୂଦ୍ର ସେବା କରିଥିବ
ଯେ ଯାହାର ନିଜ କର୍ମେ ଥିଲେଣ ତରିବ ।୬୭
ଆପଣା ସ୍ୱ କର୍ମେ ଥିଲେ ତେଣେ ସିଧି ପାଇ
କହିବା ନ କର ଭ୍ରାନ୍ତି ଶୁଣ ମନଦେଇ ।୬୮
ପ୍ରବର୍ତ୍ତି ଅଛନ୍ତି ଯାହା ତହୁଂ ପ୍ରାଣୀମାନେ
ଜଗତ ବ୍ୟାପେକ ହୋଇ ଯାହାର ବିଧାନେ ।୬୯
ସ୍ୱକର୍ମେ ଥାଇଣ ତାକୁଂ ଆରଧେନା କଲେ
ସିଧ ହୋଇ ନାରାୟେଣ ଶରଣ ପଶିଲେ ।୭୦
ଆପଣାର ଜାତି କର୍ମ ଉତ୍ତମ ଯେ କର୍ମ
ଭଲ ବୋଲି କଲେହେଂ ସେ ନୋହଇ ଧରମ ।୭୧
ମନ୍ଦ ହୋଇଲେ ଆପଣା ଜାତି କର୍ମ କରି
ସ୍ୱଭାବ କର୍ମେଣ ଦୋଷ ନୋହେ ଯେ ତାହାରି ।୭୨
ସଭାବ କର୍ମେଣ ଯେବେ ଦୋଷ ଯୁକ୍ତ ଥିବ
ଜାତି ଧର୍ମ ନ ଛାଡ଼ିଲେ ପରତେ ପାଇବ ।୭୩
ସ୍ୱଭାବ କର୍ମେଣ ଦୋଷ ଅଛଇନି ପୂରି
ଅଗ୍ନିକି ଧୂମ ପରାଏ ଯେସନେ ଆବୋରି ।୭୪
ଅଣ ଆଶକତ ହୋଇ କର୍ମ କରୁଥିବ
ନିଷ୍କାମୀ ଲୋକ ହେତୁ ସେ ପୁଣ ପାଇବ ।୭୫
ଯେମନ୍ତେ ପାଇବ ବ୍ରହ୍ମ ତୁମ୍ଭଙ୍କୁ କହିବୁ
ଯେମନ୍ତ ଲୋକଙ୍କୁ ଆମ୍ଭେ ନିଚୟେ ତାରିବୁ ।୭୬
ଶୁଧ ବୁଦ୍ଧି ହୋଇଣ ଧଉର୍ଯ କରେ ମନ
ରାଗ ଉଦ୍‌ବେଷ ବାଦ ଛାଡ଼େ ବିଷୟ ମାନ ।୭୭
ଶୁଧ୍ୟ ସ୍ଥାନେ ଥାଇ ଲଘୁ ଆହାର କରିବ
ଯେତେ ମାତ୍ର ତେତେ କଥା ଭାଗୀ ହୋଉଥିବ ।୭୮
ଧାରଣା ଧ୍ୟାନ ଯୋଗରେ ହୋଇ ତତପର
ସଂସାରକୁ ବଇରାଗ ଥିବ ହୃଦୟର ।୭୯
ଅହଙ୍କାର ବଳ ଦର୍ପ ଛାଡ଼େ କ୍ରୋଧ କାମ
ନିର୍ମଳ ଚିତ୍ତ ହୋଇଲେ ଆପେ ପ୍ରମ ବ୍ରହ୍ମ ।୮୦
ଶୋଚନା ବାଏଂଛା ନ କରଇ ଯେଉଂ ପ୍ରାଣୀ
ଦୁଃଖ ସୁଖେ ସମନ୍ତା ହୋଇଲା ବୋଲି ଜାଣି ।୮୧
ପ୍ରସନ୍ନ ଚିତ୍ତ ହୋଇଲେ ମୋହୋରେ ଭଗତି
ସେ ଲୋକ ନିଚୟେ ହାଦେ ବ୍ରହ୍ମଲୋକ ପାନ୍ତି ।୮୨
ମୋହୋରେ ଭଗତି କରି ମୁକତି ସେ ହୋଇ
ମୁହିଂ ଯେତେ ତେତେ କରି ତାହାକୁ ଦେଖଇ ।୮୩
ତତ୍ତ୍ୱ ଜାଣି କରି ମୋହୋ ତହିଂ ହୋଏ ଲୀନ
ମୁହିଂ ତାକୁ ମୋହୋ ଚିତ୍ତେ ନ ଦେଖଇ ଭିନ ।୮୪
ସବୁ କର୍ମ କରି ମୋତେ ସମର୍ପଇ ଫଳ
ଅବୟେ ପରମ ପଦ ତାକୁ କରସ୍ଥଳ ।୮୫
ସବୁ କର୍ମମାନ ମନୁ ପରିତ୍ୟାଗ କରି
ବୁଦ୍ଧି ଯୋଗେ ଆଶ୍ରେ କର ତୁ ଗାଣ୍ଡିମଧାରୀ ।୮୬
ବାହାରେଣ ସ୍ୱ କର୍ମମାନନ୍ତ କରୁଥିବୁ
ମୋହୋ ତହିଂ ତତପର ହୋଇ ମନ ଦେବୁ ।୮୭
ମୋହୋର ପ୍ରସାଦେଣ ସରିବ ସବୁ ଦୁଃଖ
ଅହଙ୍କାରେ ନ ଶୁଣିଲେ ପାଇବୁ ବିମୁଖ ।୮୮
ଅହଙ୍କାର ଆଶ୍ରେ କରି ନ ଯୁଝି ବିଚାରି
ପ୍ରକୃତି ବଳେ ତୋହୋ ହାଥେ ଯିବେ ମରି ।୮୯
ଏତେ ଉଦିଯୋଗ ତୋର ହୋଇବାକ ମିଛ
ଆତ୍ମ ବୁଦ୍ଧି କରି କାର୍ଯ୍ୟ କରିହ ବିବହ ।୯୦
ଈଶ୍ୱର ମୁଂ ସବୁ ପ୍ରାଣୀ ହୃଦୟରେ ଥାଇ
ଯନ୍ତାରୂଢ଼ ମାୟା ପଞ୍ଚଭୂତଙ୍କୁ ଭୁଲାଇ ।୯୧
ଏମନ୍ତ ପରମେଶ୍ୱର ଚରଣେ ଶରଣ
ପଶିଲେ ତାଙ୍କ ପ୍ରସାଦେ ଶାନ୍ତି ହୋଏ ମନ ।୯୨

ଉତ୍ତମ ଯେ ନିତ୍ୟସ୍ଥାନେ ତାହାକୁ ପାଇବୁ
ଏ ଅତି ରହସ୍ୟ କଥା ମନେ ଧରି ଥିବୁ ।୯୩
ଭଲ କରି ମଣି ଯେ ତୋ ଇଚ୍ଛା ତାହାଙ୍କର
ଯହୁଁ ପ୍ରିୟ ସଖାହାଦେ ଅଟୁ ତୁ ମୋହୋର ।୯୪
ସୁବୁଦ୍ଧି କଥା ଗୋଟିଏ କହୁ ତୋହ ହିତେ
ମୋତେହେଂ ସେ ଏକାକରି ଧରିଥିବୁ ଚିତ୍ତେ ।୯୫
ମୋହୋର ଭଗତି ଲୋକ ହୁଅ ପଣ୍ଡୁ ନାନ
ମୋତେ ହେଂ ପୂଜା କରିବୁ ନ କରିବୁ ଆନ ।୯୬
ମୋତେ ନମସ୍କାର କରି ଆନେ ନ ଓଳଗ
ଏମନ୍ତ ବିଧାନେ ଆସି ମୋହୋ ତହିଁ ଲାଗ ।୯୭
ଏ କଥା ସତ୍ୟ ନିଚୟେ ସଂଶୟେ ନ କର
ପ୍ରିୟ ବୋଲି ତୋହୋ ଆଗେ ପ୍ରତିଜ୍ଞା ମୋହୋର ।୯୮
ଊର୍ଦ୍ଧ ବାହୁ ହୋଇ ବୋଲୁଅଛି ମୋର ସତ୍ୟ
ସର୍ବ ଧର୍ମ ଛାଡ଼ିଣ ଶରଣ ପଶ ମୋତ ।୯୯
ମୁହିଂ ତୋତେ ସର୍ବ ପାପୁଂ ମୁକତ କରିବି
ମୋହ ନ ପାଅ ତୋତେ ନିଚୟେ ତାରିବି ।୧୦୦
ଏ ଗୀତା ରହସ୍ୟ ଶାସ୍ତ୍ର କହିଲି ମୁଂ ତୋତେ
ଯେଉଂ ଲୋକ ଉଦ୍ବେଷ ବୁଦ୍ଧି ନ ଦେଖଇ ମୋତେ ।୧୦୧
ତପିଷ୍ଟ ନୋହି ସେହୁ ଅଶ୍ରଦ୍ଧା ଭଗତ
ସେମାନଙ୍କ ଆଗେ ନ କହିବୁ ଏ ଯୁଗତ ।୧୦୨
ମୋର ଭକ୍ତ ଲୋକ ଆଗେ ଯେହୁ ଏହା କହି
ସେ ମୋହୋର ଅତିଅନ୍ତ ପ୍ରୀତି ମୋକ୍ଷକୁ ସେ ପାଇ ।୧୦୩
ମୋହର ସେବକ ଆଗେ ଯେ ଏହା ବଖାଣି
ତା ତହୁଂ ମୋ ଅନ୍ୟ ପ୍ରୀତି ନାହିଂ ଫାଲଗୁନି ।୧୦୪
ମୋତେହେଂ ପ୍ରିୟ କରନ୍ତା ତାହୁଂ ନାହିଂ ଆନ
ତୋହୋର ମୋହୋର ଧର୍ମ ସମ୍ବାଦି ବିଧାନ ।୧୦୫
ଏହା ଯେ ପଢ଼ଇ ତାର ଜ୍ଞାନ ଯଜ୍ଞ ମୁହିଂ
ଆପଣେ ପ୍ରସନ୍ନ ହୋଇ ପୂଜ୍ୟ ଘେନୁଥାଇ ।୧୦୬
ଯେଉଂ ଲୋକ ଶରଧା ହୋଇଣ ଏହା ଶୁଣି
ପୁଣ୍ୟବନ୍ତ ଲୋକଙ୍କ ସଙ୍ଗତେ ତାକୁ ଗଣି ।୧୦୭
ଭୋ ଅର୍ଜ୍ଜୁନ ଶୁଣିଣ ଧଇଲୁଟିକି ଚିତ୍ତେ
ଅଜ୍ଞାନେ ଯେ ମୋହ ନଷ୍ଟ ହୋଇଲାଟିକି ତୋତେ ।୧୦୮
ଅର୍ଜ୍ଜୁନ ବୋଇଲା ସ୍ୱାମୀ ଗଲା ମୋର କଷ୍ଟ
ଚଇତନ ପାଇଲି ହୋଇଲା ମୋହ ନଷ୍ଟ ।୧୦୯
ତୁମ୍ଭର ପ୍ରସାଦେ ସବୁ ସନ୍ଦେହ ମୋ ଗଲା
ତୁମ୍ଭ ଆଗ୍ୟା ଯେବେ ପ୍ରତିପାଳିବି ବୋଇଲା ।୧୧୦
ସଞ୍ଜୟେ ବୋଲନ୍ତି ଧୃତରାଷ୍ଟ୍ର ରାଏ ଶୁଣ
ଶ୍ରୀ ବାସୁଦେବ ଅର୍ଜ୍ଜୁନ କହିଲେ ଯେସନ ।୧୧୧
ରୋମାଞ୍ଚଇ ଶରୀର ଆଶ୍ଚର୍ଯ୍ୟ କଥା ଶୁଣି
ବ୍ୟାସ ଦିବ୍ୟ ଚକ୍ଷୁର ପ୍ରସାଦେ ମୁହିଂ ଜାଣି ।୧୧୨
ପରମେଶ୍ୱର ଶ୍ରୀମୁଖେ କହିଲେ ଶୁଣିଲି
ସୁମରିଣ ପୁନ ପୁନ ଆନନ୍ଦ ହୋଇଲି ।୧୧୩
ଶ୍ରୀହରିର ବିଶ୍ୱରୂପ ସୁମରି ଆନନ୍ଦ
ଆଶ୍ଚର୍ଯ୍ୟ ହିଂ ପାଉଅଛି ଶୁଣ ରାଜଇନ୍ଦ୍ର ।୧୧୪
ଯହିଂଠାରେ ଶ୍ରୀକୃଷ୍ଣ ଅଛନ୍ତି ସାହା ହୋଇ
ଯଶ ରାଜଲକ୍ଷ୍ମୀ ବିଜେ ହୋଇଅଛି ତହିଂ ।୧୧୫
ଦିନକୁ ଦିନ ସମ୍ପଦ ବଢ଼ିବାକୁ ଅଛି
ଏ ଧ୍ରୁବ ନିଚୟେ ମୋର ମନକୁହିଂ ଗଛି ।୧୧୬
ଧୃତରାଷ୍ଟ୍ର ଆଗରେ ସଞ୍ଜୟେ ଏହା କହି
ବାସୁଦେବ ଆଜ୍ଞାୟେ ଅର୍ଜ୍ଜୁନ ତୋଷ ହୋଇ ।୧୧୭
ଶୁଣ ନରେ ଏଥୁଅନନ୍ତରେ ଆନ ରସ
ଜଗନ୍ନାଥ ସେବି ଭଣେ ବଳରାମ ଦାସ ।୧୧୮
ଅର୍ଜ୍ଜୁନ ଉଠିଣ ଧନୁ ଧରି ଯୁଦ୍ଧ କଲା
ଦଶଦିନ ସମ୍ପୂର୍ଣ୍ଣେ ଭୀଷ୍ମଙ୍କୁ ଜୟ କଲା ।୧୧୯
ପାଞ୍ଚ ଦିନେ ଦ୍ରୋଣ ମାରି କର୍ଣ୍ଣକୁ ପାଡ଼ିଲେ
ଦୁର୍ଯ୍ୟୋଧନ ସଂହାରିଣ ସାଂଗ୍ରାମ ଛାଡ଼ିଲେ ।୧୨୦
ଶ୍ରୀହରିଙ୍କ ପ୍ରସାଦେ ଯୁଯେଷ୍ଠି ରାଜ୍ୟ ପାଇ
ସମରାଜ୍ୟ ପାଳି ସୁଖ ଭୋଗ ସେ କରଇ ।୧୨୧
ଅଷ୍ଟାଦଶ ଅଧ୍ୟା ଗୀତା ଶାସ୍ତ୍ର ଯେ ସମ୍ପୂର୍ଣ୍ଣ
ପଢ଼ିଲା ଶୁଣିଲା ଲୋକଙ୍କର ବଡ଼ ପୁଣ୍ୟ ।୧୨୨
ନୀଳଗିରି ବିଜୟେ ମୋ ସ୍ୱାମୀ ଜଗନ୍ନାଥ
ମକୁଟ କୁଣ୍ଡଳ ହାର ଶଙ୍ଖ ଚକ୍ର ହାଥ ।୧୨୩
ଶୂନ୍ୟ ଠୂଳ ଯୋଗାରୁଢ଼ ବ୍ରହ୍ମ ପରକାଶ
ନୀଳ ମୁଖ ଚାହିଂ ଭଣେ ବଳରାମ ଦାସ ।୧୨୪
ମନ୍ତ୍ରୀବର ମହାପାତ୍ର ସୋମନାଥ ନାମ
ତାହାଙ୍କର ତନୟେ ମୁ ଦାସ ବଳରାମ ।୧୨୫
ଜଗନ୍ନାଥ ଠାକୁରେ ସଦୟା ମୋତେ କଲେ
ବିଷ୍ଣୁଭକ୍ତି ବଳରାମ ଲୋକେ ପ୍ରତେ ଗଲେ ।୧୨୬
ଯେକା ଜନ୍ମେ ସଂସିଧ ଯେ ନୋହୋଇ ସର୍ବଥା
ଜନ୍ମ ଜନ୍ମାନ୍ତରେ ଯେହୁ ହରିଭକ୍ତି ଜ୍ଞାତା ।୧୨୭
ଜାଗିଲା ଭଗତ ଇହ ପରଲୋକେ ସୁଖୀ
ଜଗନ୍ନାଥ ସେବି ବଳରାମ ଦାସ ଲେଖି ।୧୨୮

ଇତିଶ୍ରୀ ଭଗବଦ୍ ଗୀତା ସଂହିତାୟାଂ ସୁପନିଷସ୍ସୁ
ବ୍ରହ୍ମବିଦ୍ୟାୟାଂ ଯୋଗ ଶାସ୍ତ୍ରେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ସମ୍ବାଦେ ଜ୍ଞାନ ଧର୍ମ
କଥନେ ନାମ ଅଷ୍ଟାଦଶ ଅଧ୍ୟାୟ ।

# (ମାଣବସା) ଲକ୍ଷ୍ମୀପୁରାଣ

ନମୋସ୍ତୁତେ ମହାମାୟେ ଶ୍ରୀ ପୀଠେ ସୁର ପୂଜିତେ ।
ଶଙ୍ଖ ଚକ୍ର ଗଦା ହସ୍ତେ ମହାଲକ୍ଷ୍ମୀ ନମୋସ୍ତୁତେ ॥୧॥
ନମସ୍ତେ ଗରୁଡାରୂଢ଼େ କୋଳେ ସୁର ଭୟଙ୍କରୀ ।
ସର୍ବ ପାପ ହରେ ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ ॥୨॥
ସର୍ବଜ୍ଞେ ସର୍ବାବରଦେ ସର୍ବ ଦୁଷ୍ଟ ଭୟଙ୍କରୀ ।
ସର୍ବ ଦୁଃଖ ହରେ ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ ॥୩॥
ସିଦ୍ଧି ବୁଦ୍ଧି ପ୍ରଦେ ଦେବୀ ଭକ୍ତି ମୁକ୍ତି ପ୍ରଦାୟିନୀ ।
ମନ୍ତ୍ରମୂର୍ତ୍ତେ ସଦା ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ ॥୪॥
ଆଦ୍ୟନ୍ତ ରହିତେ ଦେବୀ ଆଦ୍ୟାଶକ୍ତି ମାହେଶ୍ୱରୀ ।
ଯୋଗେଜ ଯୋଗସମ୍ଭୂତେ ମହାଲକ୍ଷ୍ମୀ ନମୋସ୍ତୁତେ ॥୫॥
ସ୍ଥୁଳସୂକ୍ଷ୍ମ ମହାରୌଦ୍ରେ ମହାଶକ୍ତି ମହୋଦରେ ।
ମହାପାପ ହରେ ଦେବୀ ମହାଲକ୍ଷ୍ମୀ ନମୋସ୍ତୁତେ ॥୬॥
ପଦ୍ମାସନ ସ୍ଥିତେ ଦେବୀ ପରଂବ୍ରହ୍ମ ସ୍ୱରୂପିଣୀ ।
ପରମେଷ୍ଠି ଜଗନ୍ମାତ ମହାଲକ୍ଷ୍ମୀ ନମୋସ୍ତୁତେ ॥୭॥
ଶ୍ୱେତାମ୍ବର ଧରେ ଦେବୀ ନାନାଳଙ୍କାର ଭୂଷିତେ ।
ଜଗତ୍‌ସ୍ଥିତେ ମହାମାୟା ମହାଲକ୍ଷ୍ମୀ ନମୋସ୍ତୁତେ ॥୮॥
ମହାଲକ୍ଷ୍ମୀ ଷ୍ଟକଂ ଯଃ ପଠେତ ଭକ୍ତିମାନ୍ନରଃ ।
ସର୍ବ ସିଦ୍ଧି ମହାପ୍ନୋତି ରାଜ୍ୟଂ ପ୍ରାପ୍ନୋତି ସର୍ବଦା ॥୯॥
ଏକ କାଳଂ ପଠେନ୍ନିତ୍ୟଂ ମହାପାପ ବିନାଶଂ ।
ତ୍ରିକାଳ ଯଃ ପଠେନ୍ନିତ୍ୟଂ ଧନଧାନ୍ୟ ସମନ୍ୱିତାଃ ॥୧୦॥
ତ୍ରିକାଳଂ ଯଃ ପଠେନ୍ନିତ୍ୟଂ ମହାଶତ୍ରୁ ବିନାଶକ ।
ମହାଲକ୍ଷ୍ମୀ ଭବେନ୍ନିତ୍ୟଂ ପ୍ରସନ୍ନ ବରଦା ଶୁଭ ॥୧୧॥

ଇତିନ୍ଦ୍ର କୃତ୍ୟ ଶ୍ରୀମହାଲକ୍ଷ୍ମୀଙ୍କ ସ୍ତବ ସମ୍ପୂର୍ଣ୍ଣମ୍ ।

ନମସ୍ତେ କମଳା ମାଗୋ ସାଗର ଦୁଲଣୀ ।
ନମସ୍ତେ ନମସ୍ତେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ ॥
ନମସ୍ତେ କମଳାଜୟା ଅତି ଦୟାବନ୍ତୀ ।
ସ୍ଥାବର ଜଙ୍ଗମ କୀଟ ଆଦି ପାଳୁ ନିତି ॥
ତୋର ଦୟାବଳେ ମାଗୋ ଦରିଦ୍ର ଜନର ।
ହୁଅଇ ଅଟଳ ବିତ୍ତ ଜିଣଇ କୁବେର ॥
ତୋର ଦ୍ରୋହୀଜନେ ମାଗୋ ଅନ୍ନ ନ ମିଳଇ ।
ଯେତେ ଅରଜିଲେ କେବେ ପେଟ ନ ପୂରଇ ॥
ତୋହର ଚରିତ ମନ ଦେଇ ଯେ ଶୁଣଇ ।
କି ଅବା ଭକତି ଭାବେ ସର୍ବଦା ଗୁଣଇ ॥
ତାହାର ଦରିଦ୍ରପଣ ଯାଏ ଦୂର ହୋଇ ।
ସର୍ବଦା ତାକୁ ପ୍ରସନ୍ନ ହେଉ ମହାମାୟୀ ॥
ଏଣୁ ତୋ ଚରଣେ ମାଗୋ ଅଶେଷ ପ୍ରଣାମ ।
କରୁଛି ପୂରାଅ ବାରେ ମୋର ମନସ୍କାମ ॥
ତୋ ଚରିତ କିଞ୍ଚିତେ ମୁଁ କରିବି ରଚନ ।
ଜଗତ ଜନନୀ ବାରେ ଦିଅ ଦିବ୍ୟଜ୍ଞାନ ॥
ଦିନେକ ନାରଦ ପରାଶର ମୁନି ଦୁଇ ।
ଭ୍ରମି ଭ୍ରମି ଏକ ଗ୍ରାମେ ପ୍ରବେଶିଲେ ଯାଇ ॥
ସେହିଦିନ ମାର୍ଗଶୀ ମାସ ଗୁରୁବାର ।
ପର୍ବ ପଡିଥିଲା ସର୍ବ ପୁରବାସୀଙ୍କର ॥
ପ୍ରତି ଘରଦ୍ୱାର ଗୋମୟରେ ଲିପା ହୋଇ ।
ଲକ୍ଷ୍ମୀ ପାଦପଦ୍ମ ଚିତା ପଡିଥିଲା ତହିଁ ॥
ନାରୀମାନେ ସ୍ନାନସାରି ପିନ୍ଧି ଝୀନବାସ ।
ଲକ୍ଷ୍ମୀଙ୍କ ପୂଜାରେ ସର୍ବେ ହୋଇଛନ୍ତି ରତ ॥
ବ୍ରାହ୍ମଣଙ୍କଠାରୁ ଯେ ଚଣ୍ଡାଳ ପରିଯନ୍ତେ ।
ଲକ୍ଷ୍ମୀଙ୍କ ପୂଜାରେ ରତ ଅଛନ୍ତି ସମସ୍ତେ ॥
ହୁଳହୁଳି ଶବଦରେ ପୂରିଛି ଗଗନ ।
ଦେଖି ଏ ଉତ୍ସବରୀତି ବିଧାତା ନନ୍ଦନ ॥
ପଚାରନ୍ତି ପରାଶର ମୁନିଙ୍କୁ ତଦନ୍ତ ।
କହ କହ ତପୀବର ଏ କିସ ଚରିତ ॥
ବ୍ରାହ୍ମଣ ଚଣ୍ଡାଳ ଆସି ସମସ୍ତ ଜାତିରେ ।
କରୁଛନ୍ତି କି ଉତ୍ସବ ଆନନ୍ଦ ମତିରେ ॥
କେଉଁ ବ୍ରତ କି ଉପାସ ଅଟେ ଏହା ନାମ ।
କାହାକୁ କରନ୍ତି ପୂଜା ତାର କି ନିୟମ ॥
ଏହା ଶୁଣି ପରାଶର ହୋଇ ହସ ହସ ।
କହନ୍ତି ବଚନ ଧୀରେ ଶୁଣ ବିଧିଶିଷ ॥
ଏ ଧନମାଣିକା ଗୁରୁବାର ଯେ ଅଟଇ ।
ଲକ୍ଷ୍ମୀ ଦେବୀଙ୍କର ପୂଜା ଏ ବ୍ରତେ ଘଟଇ ॥

ସବୁମାସ ମାନଙ୍କରେ ମାର୍ଗଶୀର ସାର ।
ତହିଁରେ ପଡଇ ଯେଉଁ ଯେଉଁ ଗୁରୁବାର ॥
ଲକ୍ଷ୍ମୀଙ୍କର ପ୍ରିୟ ସେହି ଗୁରୁବାର ଜାଣ ।
ସବୁଠାରୁ ଆଦ୍ୟ ଗୁରୁବାର ଯେ ପ୍ରଧାନ ॥
ଏକ ଦିନେ ଶୁକଳଦଶମୀ ଗୁରୁବାର ।
ପଡିଲେ ସୁଦଶାବ୍ରତ ହୁଏ ସେ ଦିନର ॥
ଲକ୍ଷ୍ମୀଙ୍କର ଅତିପ୍ରିୟ ଅଟଇ ଯେ ବ୍ରତ ।
ଏହା କହି ପରାଶର ହେଲେ ମୌନବ୍ରତ ॥
ପୁଣି ତାହାଙ୍କୁ ପୁଛିଲେ ବ୍ରହ୍ମାଙ୍କ କୁମର ।
ଲକ୍ଷ୍ମୀବ୍ରତ କରିଥିଲେ ମର୍ତ୍ତ୍ୟେ କେଉଁ ନର ॥
ତହିଁରେ ସେ କେଉଁ ଶୁଭ ଫଳ ଲଭିଅଛି ।
ଲକ୍ଷ୍ମୀ ଦ୍ରୋହୀ ହୋଇକରି କେ ଦୁଃଖ ପାଇଛି ॥
ଏହା ସବୁ ମୋ ଆଗରେ କହତ ଗୋସାଇଁ ।
ଶୁଣିବାକୁ ତାହା ଚିତ୍ତେ ଶ୍ରଦ୍ଧା ଉପୁଜଇ ॥
ନାରଦ ବଚନ ଶୁଣି ପରାଶର ମୁନି ।
କହନ୍ତି ହରଷ ଚିତ୍ତେ ସୁମଧୁର ବାଣୀ ॥
ଧନ୍ୟ ହେ ନାରଦ ତୁମେ ପବିତ୍ର ଚରିତ୍ର ।
ଲକ୍ଷ୍ମୀବ୍ରତ କଥାରେ ଯେ ହୋଇଅଛ ରତ ॥
କହୁଅଛି ପୁରାତନ କଥା ଅଛି ଯାହା ।
ହୋଇବ ଆନନ୍ଦ ଜାତ ଶୁଣିଲେଟି ତାହା ॥
ଏକ ଦିନେ ଜଗନ୍ନାଥ ପାଶେ ଲକ୍ଷ୍ମୀ ଥିଲେ ।
କରପତ୍ର ଯୋଡିଣ ତାହାଙ୍କୁ ଜଣାଇଲେ ॥
ଆଜି ମୋ ବାରର ବ୍ରତ ପଡ଼ିଲା ଗୋସାଇଁ ।
ତୁମ୍ଭେ ଆଜ୍ଞାଦେଲେ ନଗ୍ର ବୁଲିଯିବି ମୁହିଁ ॥
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ନଗ୍ରହିଁ ବୁଲିବ ।
ଦଶମୀ ପାଳନା ଅନ୍ନ କେବେ ରାନ୍ଧିଦେବ ॥
ପ୍ରଭୁଙ୍କ ମୁଖରୁ ମାତ ଏମନ୍ତ ଶୁଣିଲେ ।
ବସ୍ତ୍ର ଅଳଂକାର ମାନ ଯତନେ ରଖିଲେ ॥
ନାସିକାରେ ନବରତ୍ନ ବସଣି ଖଞ୍ଜିଲେ ।
ଚଉସରୀ ରତ୍ନମାଳା କଣ୍ଠେ ଲମ୍ବାଇଲେ ॥
କରରେ ବାହୁଟି ରମ୍ୟବଳୟ କଙ୍କଣ ।
ସୁନା ସୂତା ମାଣିକ୍ୟ ପଦକ ଆଭରଣ ॥
ବାଙ୍କେଣି ନୂପୁର ମାତା ପାଦରେ ଖଞ୍ଜିଲେ ।
ଏପରି ନାନା ଭୂଷଣେ ସୁବେଶ ହୋଇଲେ ॥
ଯେବଣ ମାତାଙ୍କ ଅଧିକାର ତିନିପୁର ।
ଆଭରଣ କେତେ ମାତ୍ର ଦେବି ପଟ୍ଟାନ୍ତର ॥
ଶୁଣ ହେ ନାରଦ ଏହା ହୋଇ ଏକଚିତ୍ତ ।
ବୃଦ୍ଧା ବ୍ରାହ୍ମଣୀ ରୂପକୁ ଧରି ଜଗନ୍ନାଥ ॥
ପ୍ରବେଶ ହୋଇଲେ ଯାଇଁ ସାଧୁର ଦୁଆରେ ।
ସାଧବାଣୀ ଉଭା ହୋଇଥିଲେ ସେହିଠାରେ ॥
ତାକୁ ଦେଖି ମହାଲକ୍ଷ୍ମୀ କହନ୍ତି ବଚନ ।
ଶୁଣ ଶୁଣ ସାଧବାଣୀ ହୋଇ ସ୍ଥିରମନ ॥
ଆଜିପରା ମହାଲକ୍ଷ୍ମୀ ବ୍ରତ ଗୁରୁବାର ।
ଲିପା ପୋଛା କରିନାହୁଁ କିମ୍ପା ଘରଦ୍ୱାର ॥
ସାଧବାଣୀ ଏହା ଶୁଣି ବୋଲଇ ସେ କ୍ଷଣି ।
କି ରୂପେ ଏ ବ୍ରତ ହୁଏ କାହା ପୂଜାପୁଣି ॥
ବୁଝାଇ ତା ସବୁ କହ ହେ ନାନୀଗୋସାଇଁ ।
ଅଇଲେ ମନକୁ ମୁଁ ଏ ବ୍ରତ କରିବଇଁ ॥
ଏହାଶୁଣି ପଦ୍ମାଳୟା କହନ୍ତି ସଧୀରେ ।
ଶୁଣ ସାଧବାଣୀ ବ୍ରତ ହୁଏ ଏ ବିଧିରେ ॥
ମାର୍ଗଶୀର ମାସେ ଯେଉଁ ଆଦ୍ୟ ଗୁରୁବାର ।
ସେଦିନ ଉଷାରୁ ଶେଯ ଛାଡି ତତପର ॥
ଗୋମୟ ଜଳରେ ଘର ଦୁଆର ଲିପିବ ।
ଲକ୍ଷ୍ମୀଦେବୀ ପାଦପଦ୍ମ ଚିତାକୁ ଲେଖିବ ॥
ନୂଆମାଣ ଗୋଟିଏ ଅଣାଇ ଯତ୍ନେ ବେଗେ ।
ଧୋଇ ଧାଇ କରି ତାକୁ ଶୁଖାଇବ ବେଗେ ॥
ତାହାକୁ କରିବ ନାନା ଚିତ୍ର ଯେ ବିଚିତ୍ର ।
ଚାଉଳକୁ ବାଟି ଚିତା ଲେଖିବ ସମସ୍ତ ॥
ତହିଁ ସ୍ନାନ କରିଆସି ହୋଇ ଶୁଚିମନ୍ତ ।
ଚଉକି ବା ଖଟୁଲିଏ ଆଣିବ ତ୍ୱରିତ ॥
ତାକୁ ଧୋଇ ତାର ପରେ ଦେବ ନୂଆଧାନ ।
ରଙ୍ଗକଳା ନୋହି ହୋଇଥିବ ଶୁକ୍ଳବର୍ଣ୍ଣ ॥
ତହୁଁ କିଛି କୁଢାଇ ଯେ ସେ ନୂଆମାଣରେ ।
ଧାନମାଣ ଯେ ପୂରାଇ ରଖିବ ତା ପରେ ॥

ସେ ଧାନ ମାଣ ଉପରେ ଗୁଆ ତିନିଗୋଟି ।
ହଳଦୀ ପାଣିରେ ତାହା ଧୋଇ ଥୋଇବଟି ॥
ଶୁକଳ ଧାନର ଶିଖା ରଖି ବେଷ୍ଟିକରି ।
ମାଣ ଉପରେ ତାହାକୁ ଥୋଇବ ବିଚାରି ॥
ଚୂଳ ଆଖୁ ମୂଳା କଦଳୀରେ ସଜାଡିବ ।
ପଟ୍ଟାଦି ରଙ୍ଗବସନ ପୁଷ୍ପେ ମଣ୍ଡାଇବ ॥
ତହୁଁ ଆବାହନ ମହାଲକ୍ଷ୍ମୀଙ୍କୁ କରିବ ।
ଗନ୍ଧପୁଷ୍ପ ଧୂପଦୀପ ଆଦି ସମର୍ପିବ ॥
ପ୍ରଥମରେ ବାଳଧୂପ ତାପରେ ଶଙ୍କୁଡ଼ି ।
ଏପରି କରିବ ତିନିଧୂପକୁ ସଜାଡି ॥
ମହାଲକ୍ଷ୍ମୀଙ୍କର ଆଉ ଏକ ବ୍ରତ ଅଛି ।
ସୁଦର୍ଶା ବୋଲି ତା ନାମ ଲୋକେ ପ୍ରକଟିଛି ॥
ଶୁକ୍ଳଦଶମୀ ହେଲେ ଗୁରୁବାର ଦିନ ।
ହୁଅଇ ସୁଦଶାବ୍ରତ ଶୁଣ ଦେଇ ମନ ॥
ସେହିଦିନ ଉଷାରୁ ଯେ ଉଠି ତତପର ।
ଖୋଟି ଆଦି ଚିତା ଦେବ ପୂର୍ବ ପରକାର ॥
ସ୍ନାନ ସାରି ଗୃହେ ପଦ୍ମମଣ୍ଡଳ ଲେଖିବ ।
ତହିଁପରେ ଧୋଇ ଏକ ଖଟୁଲି ରଖିବ ॥
ତହିଁପରେ ଲକ୍ଷ୍ମୀପୂଜା ଗୁଆକୁ ଥୋଇବ ।
ପଞ୍ଚାମୃତ ଶୁଦ୍ଧଜଳେ ସ୍ନାନ କରାଇବ ॥
ଦଶଖିଅ ସୂତାରେ ଯେ ବ୍ରତେକ କରିବ ।
ଲକ୍ଷ୍ମୀଙ୍କ ନାମରେ ଦଶଗୋଟି ଗଣ୍ଠି ଦେବ ॥
ଦଶକେରା ଦୁବରେ ଯେ ବ୍ରତ ଗୁଡ଼ାଇବ ।
ମହାଲକ୍ଷ୍ମୀ ଗୁଆ ପାଖେ ତାହାକୁ ଥୋଇବ ॥
କରୁଥିଲେ ପୂର୍ବରୁ ସେ ବ୍ରତ ପୁରାତନ ।
ବ୍ରତଡୋର ଆଣି ତହିଁ ଥୋଇବ ବହନ ॥
ପ୍ରଥମରେ ବାଳଧୂପ ନଇବେଦ୍ୟ କରି ।
ତାପରେ ଯା ଭୋଗଦେବ ଶୁଣ ହେତୁକରି ॥
ଅରୁଆ ଚାଉଳ ଏକମାଣ ତିନ୍ତାଇବ ।
ତାକୁ କୁଟି ଚୂନା କରି ଯତନେ ରଖିବ ॥
କଦଳୀ ନଡ଼ିଆ ଛେନାଆଦି ଦଶପୁର ।
ଦେଇ ଦଶଗୋଟି ମଣ୍ଡା କରିବ ସତ୍ୱର ॥

ମହାଲକ୍ଷ୍ମୀଙ୍କୁ ତା ପୂଜାକରି ଭକ୍ତି ଚିତ୍ତେ ।
ସେ ପ୍ରସାଦ ଖାଇ ଦିନ ବଞ୍ଚିବ ଯେ ସୁସ୍ଥେ ॥
ମହାଲକ୍ଷ୍ମୀ ପ୍ରସାଦ ଯେ ପରକୁ ନ ଦେବ ।
ବିଭା ହୋଇଥିବା ଝିଅ ସୁଦ୍ଧା ନ ଖାଇବ ॥
ଯେ ଉତ୍ତାରୁ କଥା ଏକ ମନଦେଇ ଶୁଣ ।
ଗୁରୁବାର ଦିନ ଯେଉଁ କଥା ନିବାରଣ ॥
ସେ କଥା କହୁଛି ଏବେ ସାଧବାଣୀ ଶୁଣ ।
କେବେ ନ ଭାଙ୍ଗିବ ଖଇ ଗୁରୁବାର ଦିନ ॥
ଯେଉଁ ନାରୀ ଗୁରୁବାର ଦିନରେ ଆମିଷ ।
ଭୁଞ୍ଜଇ ଲୋଭରେ କିବା ନ ପଖାଳେ କେଶ ॥
ଭୁଞ୍ଜଇ ଉଚ୍ଛିଷ୍ଟ କିବା ଲଗାଇ ଯେ ତେଲ ।
ମହାଲକ୍ଷ୍ମୀ ତାର ନିଷ୍ଠେ ଭାଙ୍ଗିଦ୍ୟନ୍ତି ଗେଲ ॥
ଗୁରୁବାରେ ଯେଉଁ ନାରୀ ତୁଳାକୁ ଭିଣଇ ।
ଲାଉରେ ଆମିଷ ଦେଇ ଯେ ଗ୍ରାସ କରଇ ॥
ଖଟର ଛାୟାରେ ଯେହୁ କରଇ ଶୟନ ।
ରାତ୍ରକାଳେ ଦଧିଅନ୍ନ ଯେ କରେ ଭୋଜନ ॥
କ୍ଷୌର ହୁଏ ଯେହୁ ଯାଇ ନାପିତର ଦ୍ୱାରେ ।
ଭୋଜନ ସମୟେ ଅନ୍ନ ପକାଏ ଭୂମିରେ ॥
ଭୁଞ୍ଜି ନ ପାରିଣ ଅନ୍ନ ଫୋପାଡ଼ିଣ ଦିଏ ।
ଏତେକର୍ମ ଯେ କରେ ସେ ଲକ୍ଷ୍ମୀଙ୍କୁ ନ ପାଏ ॥
ଗୁରୁବାର ଦିନ ସକାଳରୁ ଗୋମୟରେ ।
ଦୁଆର ଯେ ନ ଲିପଇ ଅଳସ ପଣରେ ॥
ଚୁଲିରୁ ନ କାଢେ ପାଂଶ ଭକ୍ଷେ ଯେ ଆମିଷ ।
ଏମାନଙ୍କଠାରେ ଲକ୍ଷ୍ମୀ କରନ୍ତି ଯେ ରୋଷ ॥
ଧନ ଜନ ସବୁ ତାର ହରଣ କରନ୍ତି ।
ମାଗିଗଲେ ଅନ୍ନବସ୍ତ୍ର କେହି ନ ଦିଅନ୍ତି ॥
ଗୁରୁବାରେ ଯେଉଁନାରୀ ପିନ୍ଧେ ଶୁକ୍ଳଲୁଗା ।
ଐଶ୍ୱର୍ଯ୍ୟ ସମ୍ପଦ ପାଏ ହୁଅଇ ସୁଭଗା ॥
ଗୁରୁବାରେ ଯେଉଁ ନାରୀ ପିଲାଙ୍କୁ ମାରଇ ।
କିବା ପାକହାଣ୍ଡି ଧୋଇ କଳା ନ ଛଡାଇ ॥
ସନ୍ଧ୍ୟା ଗଡ଼ିଗଲେ ଯେ ଦିଅଇ ସନ୍ଧ୍ୟାବତୀ ।
ପୁତ୍ରଧନ ହାନି ହୁଏ ସଦା ବହୁ କ୍ଷତି ॥

ଗୁରୁବାରେ ଯେଉଁ ନାରୀ ପୋଡାଦ୍ରବ୍ୟ ଖାଏ ।
ଶୋଇବାର ଶଯ୍ୟା ବଙ୍କା କରିଣ ବିଛାଏ ॥
ଶାଶୁ ଶ୍ୱଶୁରଙ୍କୁ ନ ମାନଇ ଯେ ରମଣୀ ।
ଉଲଗ୍ନ ହୋଇ ଶୟନ କରଇ ଯେଉଁ ପ୍ରାଣୀ ॥
ଅମାବାସ୍ୟା ସଂକ୍ରାନ୍ତିରେ ବୁଲାଏ ଯେ ହଳ ।
ଏହି ଦିନମାନଙ୍କରେ ଘେନଇ ତଇଳ ॥
ସଭାରେ ବସିଣ ଯେ ମାନବ ମିଛ କହି ।
ଆଳସ୍ୟେ ପାଦ ନ ଧୋଇ ଯେ ଭୁଞ୍ଜି ବସଇ ॥
କୁଷ୍ମାଣ୍ଡ ଫଳକୁ ଯେହୁ ରମଣୀ କାଟଇ ।
ଋତୁମତୀ ନାରୀକି ଯେ ରମଣ କରଇ ॥
କନ୍ୟା ତୁଳା ମାସେ ପିତୃଶ୍ରାଦ୍ଧ କରଇ ।
କଥା କହୁ କହୁ ସବୁବେଳେ ଯେ ହସଇ ॥
ଏମନ୍ତ ମନୁଷ୍ୟ ସଦା ବହୁକଷ୍ଟ ପାଇ ।
ଆୟବୃଦ୍ଧି ନାଶଯାଏ ଅନ୍ନ ନ ମିଳଇ ॥
ଗୁରୁବାର ସଙ୍କରାନ୍ତି ଅମାବାସ୍ୟା ଦିନ ।
ରଜନୀରେ ସ୍ତ୍ରୀ ପୁରୁଷ କଲେଜ ଭୋଜନ ॥
କିବା ଏହି ତିନି ଦିନ ଯେଉଁ ନାରୀ ମୋହେ ।
ପୁରୁଷ ସଙ୍ଗରେ ମାତି ଧର୍ମକୁ ନ ଚାହେଁ ॥
ପ୍ରାଣେ ନାଶ ନ କରିଣ ତାକୁ ଦୁଃଖ ଦେଇ ।
ବୁଲାନ୍ତି ଯେ ଅନ୍ନବସ୍ତ୍ର କାହିଁ ନ ମିଳଇ ॥
ଏ ତିନି ଦିନରେ ଯେହୁ ତିକ୍ତଦ୍ରବ୍ୟ ଖାନ୍ତି ।
ଅନ୍ତଃକାଳେ ଯମଦ୍ୱାରେ ବହୁ ଦଣ୍ଡ ପାନ୍ତି ॥
ଏ ତିନିଦିନ ଯେ ନାରୀ କରଇ ହବିଷ୍ୟ ।
ଦୁଃଖୀ ରଙ୍କି ଦେଖି ଦାନ କରଇ ବିଶେଷ ॥
କରେ ଲକ୍ଷ୍ମୀବ୍ରତ ଲକ୍ଷ୍ମୀବାରେ ଉପବାସ ।
ବଢ଼ିବ ତାହାର ଧନ ଜନ ଆୟୁଯଶ ॥
ସକାଳୁ ଶେଯରୁ ଉଠି ଯେ ମୁଖ ନଧୁଏ ।
ତା ମୁଖ ଯେ ଜନ ଦେଖେ ତାର ଶୁଭ ନୁହେଁ ॥
ରାତ୍ରଶେଷେ ବାସିଶେଯେ ଯେ କରେ ଶୟନ ।
ତା ଗୃହକୁ ଲକ୍ଷ୍ମୀତ୍ୟାଗ କରନ୍ତି ବହନ ॥
ଆସନ ବିନା ଯେ ଭୂମିପରେ ବସି ଖାଏ ।
କିବା ଯେ କୁମାରୀ ସଙ୍ଗତରେ କାମ ମୋହେ ॥

ଦକ୍ଷିଣ ପଶ୍ଚିମ ମୁଖେ ଯେ ଭୁଞ୍ଜି ବସଇ ।
ଏମାନଙ୍କ ପାଶୁ ଲକ୍ଷ୍ମୀ ଯାନ୍ତି ଦୂର ହୋଇ ॥
ସନ୍ଧ୍ୟାରେ କୁଣ୍ଡାଇ କେଶ ବାନ୍ଧେ ଯେଉଁ ନାରୀ ।
କେଭେ ନ ଦେଖନ୍ତି ଲକ୍ଷ୍ମୀ ତାହାର ଯେ ଶିରୀ ॥
ଭୋଜନକରି ଯେ ମୁଖ ଶୋଧନ ନ କରେ ।
ଭୋଜନ କରଇ ଯେହୁ ଅନ୍ଧକାର ଘରେ ॥
ସ୍ନାନପରେ ହୁଅଇ ଯେ ତଇଳ ମରଦନ ।
କରେ ଯେହୁ ନଖମୁନେ ଭୂମି ବିଦାରଣ ॥
ପିନ୍ଧିଥିବା ଲୁଗା ଶେଷେ ଯେ ବିଛି ହୁଅଇ ।
ଏମାନଙ୍କ ବଦନକୁ ଲକ୍ଷ୍ମୀ ନ ଚାହିଁଇ ॥
ଯେଉଁ ନାରୀ ନିଜ ପତିଠାରେ ରୋଷବହେ ।
ସ୍ୱାମୀ ଯାହା ବୋଲେ ତାହା ନ କରେ କେବେହେଁ ॥
ପର ପୁରୁଷରେ ଯେହୁ ହୋଇଥାଏ ରତ ।
ପରିଷ୍କୃତ ନୋହି ହୁଏ ଯେ ନାରୀ କୁତ୍ସିତ ॥
ଏମନ୍ତ ନାରୀଙ୍କ ମୁଖ ଲକ୍ଷ୍ମୀ ନ ଦେଖନ୍ତି ।
କାଙ୍ଗାଳିନୀ ପରି ବାରଦ୍ୱାରେ ସେ ବୁଲାନ୍ତି ॥
କଳହୀ ଅଳସୀ ଅତି ଅପ୍ରିୟ ସାହସୀ ।
ଦେବ ବିପ୍ର ଅତିଥିରେ ନୁହଇଁ ବିଶ୍ୱାସୀ ॥
ଏହିପରି ନାରୀ ଥିଲେ ସେ ଗୃହ ଶ୍ମଶାନ ।
ଲକ୍ଷ୍ମୀ ସେ ସ୍ଥାନକୁ ସଦା କରନ୍ତି ବର୍ଜନ ॥
ଯେଉଁନାରୀ ଭକ୍ତିଚିତ୍ତେ ସ୍ୱାମୀକି ନ ସେବେ ।
ଜନ୍ମେ ଜନ୍ମେ ସ୍ୱାମୀ ଦୁଃଖେ ଦୁଃଖୀ ହୁଏ ଭବେ ॥
ଯେଉଁ ନାରୀ ସ୍ୱାମୀ କି ଦେବତା ସମମଣି ।
ସେବାକରି ତୋଷୁଥାଏ ତାର ମତ ଚିହ୍ନି ॥
ନିଜ ଅଙ୍ଗ ପରିଷ୍କାର କରି ଶୁଚି ହୁଏ ।
ସାନ ବଡ଼ ସମସ୍ତଙ୍କୁ ସମଭାବେ ଚାହେଁ ॥
ପରଷିବା ବେଳେ ପକ୍ଷପାତ ଯେ ନ କରେ ।
ସ୍ୱାମୀ ପୁତ୍ର ସମସ୍ତଙ୍କୁ ବାଣ୍ଟେ ସମାନରେ ॥
ପତିର ଆଜ୍ଞାକୁ କେଭେ ନ ପକାଏ ତଳେ ।
ସ୍ୱାମୀ ଦୁଃଖେ ଦୁଃଖୀ ସୁଖେ ସୁଖୀ ହୋଇଚଳେ ॥
ଏମନ୍ତ ନାରୀର ଗୃହ ଲକ୍ଷ୍ମୀ ନ ଛାଡନ୍ତି ।
ତାର ଦୁଃଖ ନୟନରେ କେବେ ନ ଦେଖନ୍ତି ॥

ଏ ମର୍ତ୍ତ୍ୟ ମଣ୍ଡଳେ ସେହି ନାରୀ ସୁଖ ପାଏ ।
ପତିପୁତ୍ରକନ୍ୟା ଅଇଶ୍ୱର୍ଯ୍ୟ ଯୁକ୍ତ ହୁଏ ॥
ଅନ୍ତକାଳେ ବଇକୁଣ୍ଠେ ଲକ୍ଷ୍ମୀଙ୍କ ସଙ୍ଗରେ ।
ଅନୁକ୍ଷଣେ ମଜ୍ଜି ରହେ ପ୍ରମୋଦ ରଙ୍ଗରେ ॥
ସଧବା ନାରୀର ପତିବିନା ନାହିଁ ଗତି ।
ତପ ଜପ ଦେବ ପୂଜା ତାହାର ଅନୀତି ॥
ପତିସେବା ଛାଡି ବୃଥା ବ୍ରତ ଯେ କରଇ ।
ଜନ୍ମ ଜନ୍ମାନ୍ତରେ ବାଳ୍ୟ ବିଧବା ହୁଅଇ ॥
ଯେଉଁ ନାରୀ ଆନନ୍ଦରେ ଅତିଥି ସେବଇ ।
ପୁଣ୍ୟବତୀ ବୋଲି ତାକୁ ପୁରାଣରେ କହି ॥
ଏମନ୍ତ ପ୍ରକାରେ ଯେଉଁ ନାରୀ ବା ପୁରୁଷ ।
ଆପଣାର କୁଳଧର୍ମ ନ ଛାଡନ୍ତି ଲେଶ ॥
ସଦା ବେଳେ କରନ୍ତି ଉତ୍ତମ ଆଚରଣ ।
ଶ୍ରୀଲକ୍ଷ୍ମୀ ତାହାଙ୍କ ପାଦେ ମିଳନ୍ତି ତତ୍‌କ୍ଷଣ ॥
ପତିସେବା ବିନା ନାହିଁ ନାରୀଙ୍କର ଗତି ।
ପତିପ୍ରାଣା ନାରୀ କରେ ଦେବଲୋକ ଗତି ॥
ନାରୀଙ୍କର ଲକ୍ଷ୍ମୀବ୍ରତ ପତିସେବା ବିନା ।
ଅନ୍ୟ ଦେବ ପୂଜାତୀର୍ଥ ଯାତ୍ରା ବିଡ଼ମ୍ବନା ॥
ପତିସେବା ବରଜି ଯେ ମାତି ଗରବରେ ।
ଗୁରୁବାରେ ଲକ୍ଷ୍ମୀବ୍ରତ ସେହୁ ଯଦି କରେ ॥
ତାହାର ନୁହଇ ଭଲ ଜନମେ ଜନମେ ।
ଦୁଃଖ ଶୋକ ରୋଗ ଭୋଗ ସଂସାରେ ସେ ଭ୍ରମେ ॥
ଏମନ୍ତ ତିଆରି ସାଧବାଣୀକି କହିଲେ ।
ଆଜିଠାରୁ ଲକ୍ଷ୍ମୀବ୍ରତ କର ଯା ବୋଇଲେ ॥
ନ କଲେ ସର୍ବ ସମ୍ପଦ ତୋର କ୍ଷୟଯିବ ।
ଅନ୍ନବସ୍ତ୍ର ଅଭାବରେ ଦୁଃଖ ଭୋଗ ହେବ ॥
ଶୁଣହୋ ନାରଦ ଠାକୁରାଣୀ ଏହାକହି ।
ସେ ଠାବରୁ କେତେଦୂର ପଥ ଗଲେ ବାହି ॥
ଘରେ ଘରେ ପୁରେ ପୁରେ ଲକ୍ଷ୍ମୀ ବିଜେକଲେ ।
କାହାରି ଦୁଆରେ ସେହି ଶୁଚି ନ ଦେଖିଲେ ॥
କେବଣ ଯୁବତୀ ନିଦେ ହୋଇ ଅଚେତନ ।
କାହାର ଫିଟିଯାଇଛି ପିନ୍ଧିଲା ବସନ ॥
କାହାର ଶିରରେ କେଶ ମୁକୁଳିତ ହୋଇ ।
ଭୂମିପରେ ପଡ଼ିଅଛି କେରି କେହି ହୋଇ ॥
ଏହିରୂପେ ମହାଲକ୍ଷ୍ମୀ ଦେଖିକରି ଗଲେ ।
ଚଣ୍ଡାଳ ସାହିରେ ଯାଇଁ ପ୍ରବେଶ ହୋଇଲେ ॥
ଶ୍ରୀୟା ଚଣ୍ଡାଳୁଣି ନଗ୍ର ବାହାରେ ତା ଘର ।
ତାହାର ମହିମା ଯେ ଦେବଙ୍କୁ ଅଗୋଚର ॥
ପ୍ରତିଦିନ ଖରକଇ ଗୁଣ୍ଡିଚା ନଗର ।
ବିଷ୍ଣୁ ଭକତିରେ ସେ ଯେ ଅତି ତତପର ॥
ରାତ୍ର ବେନି ଘଡି ଥାଇ ଚଣ୍ଡାଳୁଣୀ ଗଲା ।
ଏକ ବର୍ଣ୍ଣ ଗାଈର ଯେ ଗୋବର ଆଣିଲା ॥
ଉତ୍ତମ କରିଣ ଘରଦ୍ୱାରକୁ ଲିପିଲା ।
ଛଡ଼ାପାଣି ମୁନ୍ଦାଏ ଦୁଆରେ ପକାଇଲା ॥
ଅରୁଆ ଚାଉଳ ବାଟି ଘରେ ଝୋଟି ଦେଲା ।
ଷୋଳକୋଠି କରି ଦିବ୍ୟ ପଦ୍ମେକ କାଟିଲା ॥
ଦଶମୁଖୀ ଦୀପାବଳୀ ମଣ୍ଡଳେ ଥୋଇଲା ।
ଦଶବର୍ଣ୍ଣ ଫଳମୂଳ ମଣ୍ଡଳେ ବାଢିଲା ॥
ସୂତା ଦଶଖିଅ ନେଇ ମଣ୍ଡଳେ ଥୋଇଲା ।
ମନର ଚଞ୍ଚଳେ ପୁଣି ବେଗେ ଚଳିଗଲା ॥
ଅରୁଆ ଚାଉଳ ଆଉ ଦୁବ ଦଶକେରା ।
ତାହା ନେଇ ଚଣ୍ଡାଳୁଣୀ ମଣ୍ଡଳେ ଥୋଇଲା ॥
ଧୂପଦୀପ ନଇବେଦ୍ୟ ଗନ୍ଧପୁଷ୍ପ ଦେଲା ।
ଲକ୍ଷ୍ମୀନାରାୟଣ ବୋଲି ସୁମରଣା କଲା ॥
ନମସ୍ତେ ନମସ୍ତେ ମାଗୋ ହରିଙ୍କ ଘରଣୀ ।
ମୁହିଁ ଛାର ହୀନଜାତି ନ ଜାଣଇ ପୁଣି ॥
ଚଣ୍ଡାଳ ସାହିରେ ଘର ପୁଣି ଚଣ୍ଡାଳୁଣୀ ।
କିଷ୍ଟିତେ ଭକତି ମୋର ଘେନ କମଳିନୀ ॥
ଦାଣ୍ଡେ ଦାଣ୍ଡେ ଯାଉଥିଲେ ବିଷ୍ଣୁ ପାଟରାଣୀ ।
ସହି ନ ପାରିଲେ ଚଣ୍ଡାଳୁଣୀର ଦୟିନୀ ॥
ପଦ୍ମଫୁଲ ଦେଖି ତାଙ୍କ ବଳିଲା ଶରଧା ।
ଦୁଇପାଦ ଦେଇ ମାତା ପଦ୍ମେ ହେଲେ ଉଭା ॥
ଚଣ୍ଡାଳୁଣୀ ଘରଗୋଟି ପାଇଲାକ ଶୋଭା ।
ଲକ୍ଷ୍ମୀ ବିଜେ କରିଛନ୍ତି କି ଉପମା ଦେବା ॥

ବୋଇଲେ ଲୋ ଚଣ୍ଡାଲୁଣୀ ମାଗି ଘେନ ବର ।
ପ୍ରସନ୍ନ ହୋଇଲି ଦୁଃଖ ନାଶିବି ତୋହର ॥

ଚଣ୍ଡାଲୁଣୀ କହୁଅଛି ଶିରେ କର ଦେଇ ।
କି ବର ମାଗିବି ମାଗୋ ମାଗି ନ ଜାଣଇ ॥

ଗୋ-ଗୋଷ୍ଠକୁ ଦେବ ମୋର ଲକ୍ଷ୍ମେପଦ୍ମ ଗାଈ ।
କୁବେର ସମାନ ଧନ ଦେବୁ ମାତ ତୁହି ॥

କୋଳକୁ ନନ୍ଦନ ଯେ ହସ୍ତକୁ ସୁନାବାହି ।
ଚାରିଯୁଗେ ବସିବି ଅମର ବର ପାଇ ॥

ଲକ୍ଷ୍ମୀ ଶୁଣି ବୋଇଲେ ତୁ ହୋଇଛୁ କି ବାଇ ।
ଏ ସମସ୍ତ ବର ତୋତେ ଦେଇତ ପାରଇ ॥

ଅମର ବର ଦେବାକୁ ଶକ୍ତି ମୋର ନାହିଁ ।
ଏହି ବର ମାଗିଲୁ ତୁ କେମନ୍ତ ପ୍ରକାର ॥

ଯେତେ ଦିନ ଜୀଇଁଥିବୁ ଐଶ୍ୱର୍ଯ୍ୟ ଭୁଞ୍ଜିବୁ ।
ଅନ୍ତକାଳେ ଯାଇ ବିଷ୍ଣୁ ପଞ୍ଜରେ ପଶିବୁ ॥

ମୋହର ଏ ବ୍ରତ କରିଥିବୁ ସବୁଦିନ ।
ଲକ୍ଷ୍ମୀ ନାରାୟଣ ପାଦେ ଥିବ ତୋର ମନ ॥

ଶୁଣ ହେ ନାରଦ ଏଣେ ହରି ବଳରାମ ।
ମୃଗୟା ବିନୋଦେ ଯାଇଥିଲେ ଘୋରବନ ॥

ଯୋଗବଳେ ବଳରାମ ଏ କଥା ଜାଣିଲେ ।
ଡାକି ହରି ଶ୍ରୀହରିଙ୍କୁ ଏମନ୍ତ କହିଲେ ॥

ଦେଖ ଦେଖ କହ୍ନାଇ ତୋ ଭାରିଯା ଆଚାର ।
ଉଭା ହୋଇ ଅଛଇ ଯେ ଚଣ୍ଡାଲୁଣୀ ଘର ॥

ହାଡି ଘରେ ଥିବ ଲକ୍ଷ୍ମୀ ପାଣ ଘରେ ଥିବ ।
ସ୍ନାନ ନ କରିଣ ବଡ଼ ଦେଉଳେ ପଶିବ ॥

ଏହି ରୂପେ ସବୁଦିନେ ଦେଉଳେ ପଶୁଛି ।
ଦୁଇଗୋଟି ଭାଇଙ୍କୁ ବିଟାଳ କରାଉଛି ॥

ଦରିଦ୍ର ଭଞ୍ଜନୀ ନାମ ଯେଣୁ ଅଛି ବହି ।
ଦରିଦ୍ରମାନଙ୍କ କଷ୍ଟ ନ ପାରଇ ସହି ॥

ସୁଦଶା ନାମରେ ଏକ ବ୍ରତ ଯେ ତାହାର ।
ଏହି ବ୍ରତେ ଚଣ୍ଡାଲୁଣୀ ପୂଜଇ ପୟର ॥

ଭାରିଯାରେ କାର୍ଯ୍ୟଯେବେ ଅଛିରେ କହ୍ନାଇ ।
ଚଣ୍ଡାଳ ସାହିରେ ନଗ୍ର ତୋଳ ବେଗେ ଯାଇ ॥

ଆମ୍ଭ ବାକ୍ୟ ମାନି ତାକୁ ଦିଅ ଘଉଡାଇ ।
ଏପରି ଘରଣୀ ଥିଲେ ଭଲ ଗତି ନାହିଁ ॥

ଗୋବିନ୍ଦ ବୋଇଲେ ଭାଇ ଘଉଡ଼ାଇ ଦେବା ।
ଲକ୍ଷ୍ମୀପରା ଭାରିଯାକୁ ଆଉ ନ ପାଇବା ॥

ସେ ଯେବେ ଦୋଷ କରିଛି ଏମନ୍ତ କରିବା ।
ସ୍ୱର୍ଗପୁର ଲୋକଙ୍କୁ ଡକାଇ ଅଣାଇବା ॥

ପାଞ୍ଚଲକ୍ଷ ଟଙ୍କାଦେଇ ଜାତି କରାଇବା ।
ଆଉ ବେଳେ ତାର ଯଦି ଅନୀତି ଦେଖିବା ॥

ଦେଉଳ ଭିତରୁ ତାକୁ ଦେବା ଘଉଡାଇ ।
ଏକଥା ପ୍ରମାଣ ତୁମ୍ଭେ ଶୁଣ ଜ୍ୟେଷ୍ଠଭାଇ ॥

ନ ଜାଣି ଯେ ଦୋଷକଲେ ସିନ୍ଧୁ ରାଜଜେମା ।
ବାରେ ମାତ୍ର ଭାଇ ତାଙ୍କ ଦୋଷକର କ୍ଷମା ॥

ବଳରାମ ବୋଲୁଛନ୍ତି ଶୁଣ ଭାବଗ୍ରାହୀ ।
ତୋର ଲକ୍ଷ୍ମୀଥିଲେ ମୁହିଁ ରହିବଇଁ ନାହିଁ ॥

ଭାରିଯା ଅଟଇ ସିନା ପାଦର ପାଣ୍ଡୋଇ ।
ଭାଇଥିଲେ କୋଟିଭାର୍ଯ୍ୟା ମିଳି ଯେ ପାରଇ ॥

ଭାର୍ଯ୍ୟାଠାରେ ଲୋଭ ଯେବେ ଅଛିରେ କହ୍ନାଇ ।
ଚଣ୍ଡାଳ ସାହିରେ ତୁ ନଅର ତୋଳ ଯାଇ ॥

ମୋର ବଡ଼ ଦେଉଳକୁ ଆଉ ନ ଆସିବୁ ।
ମାଇପକୁ ଘେନି ଦାଣ୍ଡ ବାହାରେ ରହିବୁ ॥

ଧିକ୍କାର ବଚନ ପ୍ରଭୁ ସହି ନପାରିଲେ ।
ଛାଡିଲି ବୋଲିଣ ରଙ୍ଗ ଅଧର କହିଲେ ॥

ଦେଉଳର ସିଂହଦ୍ୱାରେ ପ୍ରବେଶ ହୋଇଲେ ।
ଊର୍ଦ୍ଧ୍ୱମୁଖ ହୋଇ ପ୍ରଭୁ ନିଃଶ୍ୱାସ ଛାଡିଲେ ॥

ଶୁଣ ହେ ନାରଦ ତେଣେ ଶ୍ରୀୟା ଚଣ୍ଡାଲୁଣୀ ।
ପୂଜା କରୁଥିଲା ଲକ୍ଷ୍ମୀଙ୍କର ପାଦବେନି ॥

ତାହାର ପୂଜାରେ ଦେବୀ ସନ୍ତୁଷ୍ଟ ହୋଇଲେ ।
ଯାଚିଣ ଅନେକ ବର ପ୍ରଦାନ ଯେ କଲେ ॥

କୁଟିର ଖଣ୍ଡିକ ଥିଲା ବଳୁରିର ବାସ ।
ଲକ୍ଷ୍ମୀ ଦୟାକଲେ ତାକୁ ଚନ୍ଦନ ଉଆସ ॥

ଯେଉଁ ଚଣ୍ଡାଲୁଣୀ ଘରେ ନ ଥିଲାକ ଅନ୍ନ ।
ଚାରିକୋଣେ ଦେଲେ ତାକୁ ଶୁଦ୍ଧ ଯେ ସୁବର୍ଣ୍ଣ ॥

ଯେଉଁ ଚଣ୍ଡାଳୁଣୀ ଘରେ ନ ଥିଲାକ ପୁତ୍ର ।
ଲକ୍ଷ୍ମୀଦୟା କଲେ ତାର ହେଲା ପାଞ୍ଚସୁତ ॥
ଧନ ପୁତ୍ରବତୀ ହୁଅ ବୋଲିଣ ବୋଇଲେ ।
ବରଦେଇ ସେଠାବଲୁ ବିଜେ କରିଗଲେ ॥
ଲକ୍ଷ୍ମୀହେତୁ ଚଣ୍ଡାଳୁଣୀ ହେଲା ଭାଗ୍ୟବତୀ ।
ଏବେ ଶୁଣ ହେ ନାରଦ ଅପୂର୍ବ ଭାରତୀ ॥
ସିଂହଦ୍ୱାରେ ବିଜୟ ଲକ୍ଷ୍ମୀ ଯେ ମହାମାୟୀ ।
ଦେଖିଲେ ଦୁଆରେ ବସିଛନ୍ତି ବେନିଭାଇ ॥
ବୋଇଲେ ଯେ ବାଟ ଛାଡ଼ ଭିତରକୁ ଯିବି ।
ଦଶମୀ ଯୋଗାଡ଼ ମୁହିଁ ମଣୋହୀ ରାନ୍ଧିବି ॥
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ହୋଇଲ କି ବାଇ ।
ଚଣ୍ଡାଳ ସାହିକି ଯାଇଥିଲୁ କାହିଁ ପାଇଁ ॥
ଆମ୍ଭେ ନ ଦେଖୁଣୁ ଯେ ଦେଖିଲେ ବଡ଼ଭାଇ ।
ଆମ୍ଭେ ଦେଖୁଥିଲେ ସିନା ଦିଅନ୍ତୁ ଘୋଡ଼ାଇ ॥
ଯାଅ ଲକ୍ଷ୍ମୀ ତୁମ୍ଭଠାରେ ଆଉ କାର୍ଯ୍ୟ ନାହିଁ ।
ଧିକ୍କାର ବହୁତ ମୋତେ କଲେ ବଡ଼ଭାଇ ॥
ହାଡିଘରେ ଥିବ ଲକ୍ଷ୍ମୀ ଥିବ ପାଣଘରେ ।
ସ୍ନାନ ନ କରି ପଶୁଛି ଦେଉଳ ଭିତରେ ॥
ତା'ଠାରୁ ପାପିନୀ ଆଉ ସଂସାରରେ ନାହିଁ ।
ମୋହର ବଚନ ଏବେ ଶୁଣ ପ୍ରାଣ ସହୀ ॥
ଜଗତେ ବୋଲନ୍ତି ତୋତେ ବାଇ ଠାକୁରାଣୀ ।
ବାଇପ୍ରାୟ ବୁଲୁଥାଉ ହୋଇ ମୋ ଘରଣୀ ॥
ଏକ ଘର କରାଉ ସହସ୍ର ଘର ଭାଙ୍ଗି ।
ସହସ୍ର ଘର କରାଉ ଏକଘର ଭାଙ୍ଗି ॥
ଏମନ୍ତ ପ୍ରକାର ଲକ୍ଷ୍ମୀ ମହିମା ତୋହର ।
ଯାଅ ଲକ୍ଷ୍ମୀ ବାହାରି ଗୋ ନ ରହ ମୋ ପୁର ॥
ତୋହଠାରେ କୋପ କରିଛନ୍ତି ଜ୍ୟେଷ୍ଠଭାଇ ।
ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ ଚାହିଁ ॥
ଛାଡପତ୍ର ଦେଇ ମୋତେ ଦିଅ ଘଉଡ଼ାଇ ।
ଜଗନ୍ନାଥ କହୁଛନ୍ତି ଲକ୍ଷ୍ମୀମୁଖ ଚାହିଁ ॥
ଆମ୍ଭ ଜାତିରେ ତ ଛାଡପତ୍ର ଚଳେ ନାହିଁ ।
ଛାଡିବା ଭାରିଜା ମୁଖ ଚାହିଁ ନ ଯୋଗାଇ ॥
ଲକ୍ଷ୍ମୀଦେବୀ କହୁଛନ୍ତି ଠାକୁରଙ୍କୁ ଚାହିଁ ।
ଯେତେବେଳେ ସାଗର ମନ୍ଥିଲେ ଦେବେଯାଇ ॥
ବେଦମନ୍ତ୍ରାଦି ସହିତେ ମୋତେ ପାଇଥିଲ ।
ସେତେବେଳ କଥା ତୁମ୍ଭେ ପାଶୋରି ଯେ ଦେଲ ॥
ମୋରପିତା ବରୁଣ ଯେ ତୁମ୍ଭଙ୍କୁ ବରିଲେ ।
କନକବେଦୀରେ ନେଇ ବିଭା କରାଇଲେ ॥
ଝିଅ ଦେଇ ଶରଣ ପଶିଲେ ତୁମ୍ଭଠାଇଁ ।
ଦଶଦୋଷ ମୋର କ୍ଷମା କରିବାର ପାଇଁ ॥
ଦଶଗୋଟି ଦୋଷରୁ ଗୋଟିଏ ନ ସହିଲ ।
ପ୍ରଥମରେ ଚଣ୍ଡାଳୁଣୀ ବୋଲି ଗାଳିଦେଲ ॥
ବିଭା ବାସିଦିନ ଜୁଆ ଖେଳିବାର ବେଳେ ।
ସାତକଡ଼ା କଉଡି ଯେ ପାତିଲଇଁ ତଳେ ॥
ତୁମ୍ଭେ ଢ଼ାଳିଦିଅ ନାଥ ମୋହର ହସ୍ତରେ ।
ସୁବର୍ଣ୍ଣ କଉଡି ମୁହିଁ ଜାକିଲଇଁ କରେ ॥
ଛଡାଇ ନ ପାରି ତୁମେ ବ୍ରହ୍ମାଣ୍ଡ ଠାକୁର ।
ମୋତେ ବୋଇଲ ଯା'ଇଚ୍ଛା ମାଗିଘେନ ବର ॥
ଯାହା ମନ ବାଞ୍ଛା ଗୋ କରିବୁ ବଇଦେହୀ ।
ତାହା ମୁଁ ଅବଶ୍ୟ ଦେବି ଶୁଣ ପ୍ରାଣସହୀ ॥
କରପତ୍ର ଯୋଡିଣ ମୁଁ ବୋଇଲି ଉତ୍ତର ।
ସାବଧାନ ହୋଇ ଶୁଣ ବ୍ରହ୍ମାଣ୍ଡ ଠାକୁର ॥
ଅଷ୍ଟଦିନେ ପଡ଼ିବ ମୋହର ଗୁରୁବାର ।
ପଡ଼ି ଚରଚିବି ମୁହିଁ ସଭିଙ୍କର ଘର ॥
ପଡି ଚରଚିବି କୀଟୁ ବ୍ରହ୍ମ ପରିଯନ୍ତେ ।
ଏହି ଦୋଷ ମୋର ପ୍ରଭୁ ନ ଧରିବ ଚିତ୍ତେ ॥
ହେଉ ବୋଲି ଶ୍ରୀମୁଖରେ ଆଜ୍ଞା ଅଛ ଦେଇ ।
ଏବେ କିମ୍ପା ସତ୍ୟ ଭଗ୍ନ ହେଉଛ ଗୋସାଇଁ ॥
ଜଗନ୍ନାଥ କହୁଛନ୍ତି କୋପଭର ହୋଇ ।
ବାପ ତୋ ଲୁଣିଆ ଯେ ଗରଜି ମରୁଥାଇ ॥
ଝିଅଟେରୀ ତୋ ଦୁର୍ଗୁଣ କହିଲେ ନ ସରେ ।
ବାପର ଗର୍ଜନ ଶବ୍ଦେ କିଏ ରହିପାରେ ॥
ଚାରିପାଖେ ମେଘନାଦ ପାଚେରୀ ତୋଳାଇ ।
ବଡ଼ ଦେଉଳରେ ରହିଅଛୁ ଦୁଇଭାଇ ॥

ମହାଲକ୍ଷ୍ମୀ ବୋଲୁଛନ୍ତି ଠାକୁରଙ୍କୁ ଚାହିଁ ।
ଅଛବର ଘରେ ଦଣ୍ଡେ ଥିଲି ଉଭାହୋଇ ॥
ଅଛବ ବିଟାଳ ବୋଲି ଦିଅ ଘଉଡ଼ାଇ ।
ପୁଣି ଜାତି କୁଳ ଗୋତ୍ର କହିଲ ଗୋସାଇଁ ॥
ପ୍ରଭୁ ହେତୁ ସବୁ ଯାଉଅଛି ଗୋପ୍ୟ ହୋଇ ।
ତୁମ ଜାତି କୁଳର ତ ଠିକଣା ନ ଥାଇ ॥
ତୁମ୍ଭ ଜାତି କୁଳ ଯେ କହିଲେ ନ ସରଇ ।
ଗଉଡ଼ ଘରେ ରହିଲ ଦୁଇଗୋଟି ଭାଇ ॥
ନିମା ନାମେ ସିପୁଟି ଯେ ଜାତିରେ ଗୋଲକ ।
ତାହାଘରେ ଜଗନ୍ନାଥ କଲ ଅନ୍ନଭକ୍ଷ ॥
ଦୂତ ପଣେ ଯାଇଥିଲ ହସ୍ତିନା ଭୁବନ ।
ବିଦୁର ଘରେ ଯେ ପୁଣି କରିଲ ଭୋଜନ ॥
ଜାରାନାମେ ଶବର ଯେ ଅରଣ୍ୟରେ ଘର ।
ସେ ତୁମ୍ଭଙ୍କୁ ପୂଜିଲା ବରଷ ଦଶବାର ॥
ଅରଣ୍ୟର ଫଳମୂଳ ଖୋଜିଣ ଆଣଇ ।
ବସିଣ ପ୍ରଥମେ ଭଲମନ୍ଦ ସେ ଖାଅଇ ॥
ପିତା କଷା ସବୁ ପ୍ରଭୁ ଆଡ କରିଦେଇ ।
ଯେ ଫଳ ସୁଆଦ ତାହା ତୁମ୍ଭଙ୍କୁ ଭୁଞ୍ଜାଇ ॥
ଶବର ବିଟାଳ ତୁମ୍ଭେ ବେନିଗୋଟି ଭାଇ ।
ଏକଥା କି ତୁମ୍ଭ ମନୁ ଗଲା ଭୁଲି ହୋଇ ॥
ଆପଣେ ପାତକୀ କିମ୍ପା ପରନିନ୍ଦା କର ।
ପାପ ପୁଣ୍ୟ ଦୁଇ କଥା ବିଚାର ନ କର ॥
ଭାରିଯା ଯେ ଦୋଷକଲେ ପତି ତା ସହଇ ।
ଏକ ଅପରାଧେ ପ୍ରଭୁ ଭୃତ୍ୟେ କି ତେଜଇ ॥
କିମ୍ପା ନକର ଗୋସାଇଁ ଏମନ୍ତ ବିଚାର ।
ଯାଅ ଯାଅ ବୋଲୁଅଛ ମୋତେ ବାରମ୍ବାର ॥
ଜଗନ୍ନାଥ କହୁଅଛି ଏମନ୍ତ କରିବା ।
ମାଣେ ମାଢ଼େ ପଡ଼ି ତୋତେ ନିତ୍ୟେ ଦେଉଥିବା ॥
ଭାଇଙ୍କୁ ବୁଝାଇ ପଛେ ତୁମ୍ଭଙ୍କୁ ଆଣିବୁ ।
ଭାଇଙ୍କ ଆଜ୍ଞା ଅବଜ୍ଞା କେଭେ ନ କରିବୁ ॥
ଲକ୍ଷ୍ମୀଦେବୀ କହନ୍ତି ପଡିରେ କାର୍ଯ୍ୟେ ନାହିଁ ।
ଅନାଥ ଅରକ୍ଷ ପ୍ରାୟ ଯାଉଅଛି ମୁହିଁ ॥

ରାଣ୍ଡୀ ଅଲକ୍ଷଣୀ ଝିଅ ମୁହିଁ ଯେ ନୁହଇ ।
ପିତର ଘରକୁ ମୁଁ ଯେ ବାହାରି ଯିବଇଁ ॥
ତୁମ୍ଭ ଅଳଂକାର ମାନ ପ୍ରଭୁ କାଢି ନିଅ ।
ପଛରେ ମୋତେ ଯେ ଆଉ ବୋଲଣା ନ ଦିଅ ॥
ଗୋବିନ୍ଦ ବୋଲନ୍ତି ଲକ୍ଷ୍ମୀ ହୋଇଲୁକି ବାଇ ।
ଅଙ୍ଗ ଅଳଙ୍କାର ଆମ୍ଭେ ନେବୁ କାହିଁ ପାଇଁ ॥
ଭାରିଜା ଦେହରେ ଯେଉଁ ଅଳଂକାର ଥାଏ ।
ସ୍ୱାମୀ ହୋଇ ତାହାଠାରୁ କାଢିଣ କି ନିଏ ॥
ଠାକୁରାଣୀ କହୁଛନ୍ତି ଶ୍ରୀମୁଖକୁ ଚାହିଁ ।
ତୁମ୍ଭର ଅଟଇ ମୁଁ ଯେ ପ୍ରଥମ ବିବାହୀ ॥
ପଛରେ କହିବ ଲକ୍ଷ୍ମୀ ଆମ ଘରେ ଥିଲା ।
ସହସ୍ର ଟଙ୍କାର ଅଳଂକାର ଘେନିଗଲା ॥
ଏମନ୍ତ ଅଖ୍ୟାନ ମୋତେ ନ ଦିଅ ଗୋସାଇଁ ।
ତୁମ୍ଭ ଅଳଂକାର ମାନ ନିଅ ବାହୁଡ଼ାଇ ॥
ଶିରରୁ କାଢିଲେ ଲକ୍ଷ୍ମୀ ମୁକୁତାର ଜାଲି ।
ହୃଦରୁ କାଢିଲେ ଇନ୍ଦ୍ର ଗୋବିନ୍ଦ କଞ୍ଚୁଲି ॥
ଅଣ୍ଟାରୁ କାଢିଲେ ମାଏ ରତ୍ନ ଓଢିଆଣୀ ।
ନାସିକାରୁ କାଢିଲେ ଯେ ମୁକୁତା ବସଣୀ ॥
କର୍ଣ୍ଣ ଦ୍ୱୟରୁ କାଢିଲେ ହୀରାର କୁଣ୍ଡଳ ।
ଗଳାରୁ କାଢିଲେ ଯେ ଦୋସରୀ ଚିନାମାଳ ॥
ପାଦରୁ କାଢିଲେ ଦେବୀ ବାଜେଣୀ ନୂପୁର ।
ଅଙ୍ଗୁଷ୍ଠିରୁ କାଢିଲେ ଯେ ଝୁଣ୍ଟିଆ ସତ୍ୱର ॥
ଅନ୍ୟ ଅଳଂକାରମାନ କି କହିବି ଆଉ ।
ଗୁଣ୍ଡ କଲାରୁ ଦିଶିଲା ସବୁ ଦାଉ ଦାଉ ॥
ସବୁ ଅଳଂକାର ମାନ ଏକଠାବ କଲେ ।
ରଖ ଦୀନବନ୍ଧୁ ଏହା ବୋଲି ସମର୍ପିଲେ ॥
ଗୋବିନ୍ଦ କହନ୍ତି ଏହା କି କରିବୁ ନେଇ ।
ଆମର ଏ ଅଳଂକାରେ ପ୍ରୟୋଜନ ନାହିଁ ॥
ଗୃହସ୍ଥ ହୋଇଣ ଯେବେ ଭାର୍ଯ୍ୟାକୁ ତେଜଇ ।
ଛ'ମାସ ଭାତ ଲୁଗା ଲେଖିଣ ଦିଅଇ ॥
ଏହି ଅଳଂକାର ସବୁ ତୁମ୍ଭେ ଘେନିଯାଅ ।
ବିକି ଭାଙ୍ଗିକରି ଭାତ ଲୁଗା କରୁଥାଅ ॥

ଲକ୍ଷ୍ମୀଦେବୀ କହୁଛନ୍ତି ପ୍ରଭୁ ମୁଖ ଚାହିଁ ।
ସାବଧାନ ହୋଇ ଶୁଣ ବ୍ରହ୍ମାଣ୍ଡ ଗୋସାଇଁ ॥
ମୋର ତୁଲେ ଆଉ ଯେଉଁ ଭାରିଯା ଆଣିବ ।
ଏହିସବୁ ଅଳଂକାର ତାହାଙ୍କୁ ଯେ ଦେବ ॥
ମୁହିଁ ଯାଉଅଛି ହୀନ ଅରକ୍ଷିତ ହୋଇ ।
ମୋର ଅଭିଶାପ ଘେନ ପ୍ରଭୁ ଭାବଗ୍ରାହୀ ॥
ସତେ ଯେବେ ଚନ୍ଦ୍ର ସୂର୍ଯ୍ୟ ହୋନ୍ତି ଆତଯାତ ।
ତୁମ୍ଭଙ୍କୁ ଅନ୍ନ ନ ମିଳୁ ଆହେ ଜଗନ୍ନାଥ ॥
ବାରବର୍ଷ ଯାଏ ତୁମ୍ଭେ ଦରିଦ୍ର ହୋଇବ ।
ଅନ୍ନ ବସ୍ତ୍ର ଜଳ ଯେ ତୁମ୍ଭଙ୍କୁ ନ ମିଳିବ ॥
ମୁହିଁ ଚଣ୍ଡାଳୁଣୀ ଯେବେ ଟେକିଦେବି ଅନ୍ନ ।
ଭୋଜନ କରିବେ ତେବେ କାଳୀୟ ଗଞ୍ଜନ ॥
ଏତେ ବୋଲି ଲକ୍ଷ୍ମୀ ଦେବୀ ଶାପ ଦେଇ ଗଲେ ।
ଦେଉଳୁ ବାହାର ହୋଇ କେତେଦୂର ଗଲେ ॥
ଏହାଦେଖି ଦାସୀମାନେ ସଙ୍ଗେ ଗୋଡ଼ାଅନ୍ତି ।
ଦାସୀଙ୍କୁ ଅନାଇ ଲକ୍ଷ୍ମୀଦେବୀ ବୋଲୁଛନ୍ତି ॥
ମୁହିଁ ଯାଉଅଛି ହୀନ ଅଲକ୍ଷଣୀ ହୋଇ ।
ମୋର ପଛେ ତୁମ୍ଭେମାନେ ଆସୁଛ କିମ୍ପାଇଁ ॥
ଏହିପରି ହୋଇ ଯେବେ ପିତାଘର ଯିବି ।
ଚାରିଦିନ ମାତ୍ର ତହିଁ ରହି ନ ପାରିବି ॥
ଜଗନ୍ନାଥ ପ୍ରାୟବନ୍ଧୁ ପିତାଘର ଯିବେ ।
ତାଙ୍କୁ ଦେଖି ପିତା ମୋତେ ସମର୍ପଣ ଦେବେ ॥
ଶାପ ଦେବା ଫଳ ମୋ ହୋଇବ ଅକାରଣ ।
ଦରିଦ୍ର ନୋହିବେ ପ୍ରଭୁ ଦେବ ଭଗବାନ ॥
ଏତେ ବୋଲି ଲକ୍ଷ୍ମୀଦେବୀ ମନେ ଚିନ୍ତାକଲେ ।
ବିଶ୍ୱକର୍ମାଙ୍କୁ ଯେ ମାଏ ମନେ ସୁମରିଲେ ॥
ବୈକୁଣ୍ଠ ପୁରରେ ବିଶ୍ୱକର୍ମା ରହିଥିଲା ।
ସ୍ମରଣ ମାତ୍ରକେ ଲକ୍ଷ୍ମୀ ଛାମୁରେ ମିଳିଲା ॥
କିସ ଆଜ୍ଞା ହେଉ ମୋତେ ଲକ୍ଷ୍ମୀ ମହାମାୟୀ ।
ଶୁଣି ଆଜ୍ଞାଦେଲେ ବିଶ୍ୱକର୍ମାଙ୍କୁ ଯେ ଚାହିଁ ॥
ଚଣ୍ଡାଳୁଣୀ ଅପବାଦେ ପ୍ରଭୁ ଦେଲେ ଘଉଡ଼ାଇ ।
ପାରିବୁକି ଖଣ୍ଡିଏ କୁଡିଆ ତୋଳିଦେଇ ॥

ଆଜ୍ଞାମାତ୍ରେ ବିଶ୍ୱକର୍ମା ବେଗେ ଚଳିଗଲେ ।
ତିନିକୋଶ ପ୍ରମାଣେ ଉଆସ ତୋଳାଇଲେ ॥
ସୁବର୍ଣ୍ଣର କାନ୍ଥମାନ ସବୁଘରେ କଲେ ।
ହୀରାନୀଳା ମାଣିକ୍ୟାଦି ତହିଁ ଖଞ୍ଜାଇଲେ ॥
ଗଣ୍ଠିସ୍ଥଳେ ଅନେକ ମୁକୁତା ଲଗାଇଲେ ।
ପ୍ରବାଳର ସ୍ତମ୍ଭମାନ ତହିଁରେ ରଚିଲେ ॥
ପୁର ଦେଖି କମଳିନୀ ସନ୍ତୁଷ୍ଟ ହୋଇଲେ ।
ବିଶ୍ୱକର୍ମାଙ୍କୁ ବହୁତ ପ୍ରଶଂସା ଯେ କଲେ ॥
ବୈକୁଣ୍ଠ ପୁରକୁ ବିଶ୍ୱକର୍ମା ଚଳିଗଲେ ।
ଅଷ୍ଟବେତାଳକୁ ଡାକି ଦେବୀ ଆଜ୍ଞା ଦେଲେ ॥
ଅଷ୍ଟ ବେତାଳରେ ତୁମ୍ଭେ ଏମନ୍ତ କରିବ ।
ପ୍ରଥମେ ରୋଷାଇ ଶାଳେ ଯାଇଣ ପଶିବ ॥
ଷାଠିଏ ପଉଟି ଭୋଗ ଭୁଞ୍ଜିବ ଯେ ତହିଁ ।
ତେରପୌଟି ବ୍ୟଞ୍ଜନ ଖାଇବ ହର୍ଷହୋଇ ॥
ଶାଗମୁଗ ମଧୁରୁଚି ତିକ୍ତ କାଞ୍ଜିରାଇ ।
ଆମ୍ବିଳ ଖାଇବ ଖଣ୍ଡାଶାକର ମିଶାଇ ॥
ଅମୃତ ମଣୋହୀ ମାନ ଭୋଜନ କରିବ ।
ହାଣ୍ଡିମାନ ନେଇ ଏକଠାବେ କଚାଡିବ ॥
ତହୁଁ ଯାଇଣ ଭଣ୍ଡାରେ ମଧ୍ୟରେ ପଶିବ ।
ବାଉନକୋଟି ଭଣ୍ଡାର ବୋହିଣ ଆଣିବ ॥
କାଣି କଉଡି କଡ଼ାକର ଦ୍ରବ୍ୟ ନ ରଖିବ ।
ସବୁ ବୋହି ଆଣି ମୋର ପାଖେ ସମର୍ପିବ ॥
ବେତାଳ ବୋଇଲେ ମହାଲକ୍ଷ୍ମୀ ମୁଖ ଚାହିଁ ।
କେମନ୍ତ କରିଣ ତହୁଁ ଆଣିବୁ ବୁହାଇ ॥
ଜଗନ୍ନାଥ ମହାପ୍ରଭୁ ତହିଁ ଚେଇଁଥିବେ ।
ଆମ୍ଭଙ୍କୁ ଦେଖିଣ କାଳେ କିଏ ପରାଭବ ଦେବେ ॥
ଶୁଣି କମଳିନୀ ନିଦ୍ରାବତୀକି ରାଇଲେ ।
ବହନ ମୋ ବୋଲକର ବୋଲିଣ ବୋଇଲେ ॥
ରାମକୃଷ୍ଣ ନୟନରେ ନିଦ୍ରା ଯେ ଘାରିବୁ ।
କାଲି ବେଳ ଦୁଇଘଡି ଯାଏ ନ ଛାଡିବୁ ॥
ଆଜ୍ଞାପାଇ ନିଦ୍ରାବତୀ ଶୀଘ୍ର ଚଳିଗଲେ ।
ରାମକୃଷ୍ଣ ନୟନରେ ନିଦ୍ରା ଯେ ଘାରିଲେ ॥

ପାକଶାଳାରେ ବେତାଳ ପ୍ରବେଶ ହୋଇଲେ ।
ତହିଁ ଥିବା ପାକଦ୍ରବ୍ୟ ସମସ୍ତ ଖାଇଲେ ॥
ହାଣ୍ଡିମାନ ସବୁ ଏକଠାବେ କଚାଡିଲେ ।
ଭଣ୍ଡାର ଘରରେ ଅଷ୍ଟବେତାଳ ପଶିଲେ ॥
ଯେତେ ଦ୍ରବ୍ୟ ପୂର୍ଣ୍ଣ ହୋଇ ରହିଥିଲା ତହିଁ ।
ବାଉନକୋଟି ଭଣ୍ଡାର ଆଣିଲେ ବୁହାଇ ॥
ରାତ୍ରଷୋଳ ଘଡ଼ିଯାକ ବେତାଳ ଯେ ତହିଁ ।
କୁଳାରୁ ଛାଞ୍ଚୁଣିଯାକ ସବୁ ନେଲେ ବୋହି ॥
ଦେଖିକରି ମହାଲକ୍ଷ୍ମୀ ସନ୍ତୁଷ୍ଟ ହୋଇଲେ ।
ତୁମ୍ଭେ ଆଜି ପୁତ୍ରପଣ କରିଲ ବୋଇଲେ ॥
ପ୍ରଶଂସା କରିଣ ମାଏ ବଚନ ଯେ କହି ।
ସବୁ ଦ୍ରବ୍ୟ ଆଣିଲତ ରତ୍ନଖଟ ନାହିଁ ॥
ପାଞ୍ଚଲକ୍ଷ ମୂଲ୍ୟ ସେହି ଖଟ ତ ଅଟଇ ।
ଯାଅରେ ବେତାଳ ଏବେ ଖଟ ଆଣ ବୋହି ॥
ଯେତେବେଳେ ଜଗନ୍ନାଥ ଦରିଦ୍ର ହୋଇବେ ।
ରତ୍ନ ଖଟ ବିକି କରି ଦିନ ଚଳାଇବେ ॥
ଯେବେ ଜଗନ୍ନାଥ ପ୍ରଭୁ ମୋତେ ନ ଖୋଜିବେ ।
ନାରୀଙ୍କୁ ପୁରୁଷମାନେ ଆଉ ନ ଲୋଡିବେ ॥
ମୋତେ ଘେନି ପ୍ରଭୁ ଯେବେ ନ କରିବେ ଘର ।
କଳିଯୁଗେ ନାରୀଙ୍କି ଯେ ନ ଖୋଜିବେ ନର ॥
ବେତାଳେ ବୋଲୁଅଛନ୍ତି ରମା ମୁଖ ଚାହିଁ ।
ରତ୍ନଖଟେ ଶୋଇଛନ୍ତି ଦୁଇଗୋଟି ଭାଇ ॥
କୋଟିସିଂହ ପରାକ୍ରମ ପ୍ରଭୁ ବଳରାମ ।
ପୁଣି ତହିଁ ଶୋଇଛନ୍ତି କାଳୀୟ ଗଞ୍ଜନ ॥
ସାତଗୋଟି ପର୍ବତରୁ ଅଟଇ ଯେ ଗରୁ ।
ନାମ ବହିଅଛନ୍ତି ଅଚଳ ମହାମେରୁ ॥
ମହାଲକ୍ଷ୍ମୀ ବୋଇଲେରେ ଏମନ୍ତ କରିବ ।
ଦଉଡ଼ିଆ ଖଟ ଏକ ଗୋଟି ଯେ ଆଣିବ ॥
ରାମକୃଷ୍ଣ ଦୁହିଁଙ୍କୁ ଯେ ଗଡ଼ାଇଣ ଦେବ ।
ଶୋଇବାର ରତ୍ନଖଟ ବୋହିଣ ଆଣିବ ॥
ଏହାଶୁଣି ବେତାଳ ଯେ ଶୀଘ୍ର ଚଳିଗଲେ ।
ରତ୍ନଖଟ ପାଶେ ଦଉଡ଼ିଆ ଖଟ ଦେଲେ ॥

ବଳରାମଙ୍କୁ ପ୍ରଥମେ ଧଇଲେକ ଯାଇ ।
ଦଉଡ଼ିଆ ଖଟକୁ ଯେ ଦେଲେ ଗଡ଼ିଆଇ ॥
ଏ ଉତ୍ତାରୁ ଜଗନ୍ନାଥ ପ୍ରଭୁଙ୍କୁ ଧଇଲେ ।
ଦଉଡ଼ିଆ ଖଟ ଉପରକୁ ଗଡ଼ାଇଲେ ॥
ଶୋଇବାର ରତ୍ନଖଟ ଆଣିଲେକ ବୋହି ।
ମହାଲକ୍ଷ୍ମୀ ଆଗେ ଦେଲେ ଆନନ୍ଦରେ ନେଇ ॥
ବଳରାମ ପିନ୍ଧିବାର ପାଟ ବୋହି ନେଲେ ।
ଜଗନ୍ନାଥ ପିନ୍ଧିବାର ନେତ ଘେନିଗଲେ ॥
ଦେଖିକରି ମହାଲକ୍ଷ୍ମୀ ସନ୍ତୁଷ୍ଟ ହୋଇଲେ ।
ଅଷ୍ଟବେତାଳଙ୍କୁ ବର ଯାଚିଣ ଯେ ଦେଲେ ॥
ଆରେ ଅଷ୍ଟବେତାଳରେ ଏମନ୍ତ କରିବ ।
ବୈକୁଣ୍ଠପୁରରେ ଯାଇ ସୁଖରେ ରହିବ ॥
ଆଜ୍ଞା ପାଇଣ ବେତାଳଗଣ ବେଗେ ଗଲେ ।
ବୈକୁଣ୍ଠ ପୁରରେ ଯାଇ ପ୍ରବେଶ ହୋଇଲେ ॥
ମହାଲକ୍ଷ୍ମୀ ତହୁଁ ଏକ କଥା ବିଚାରିଲେ ।
ସରସ୍ୱତୀ ଦେବୀଙ୍କୁ ଯେ ହୃଦେ ସୁମରିଲେ ॥
ବୋଇଲେ ଗୋ ସରସ୍ୱତୀ ଏମନ୍ତ କରିବ ।
ରାଜ୍ୟ ରାଜ୍ୟ ହୋଇ ଘରେ ଘରେ ବୁଲୁଥିବ ॥
ସର୍ବଦ୍ୱାରେ ଜଗନ୍ନାଥ ବୁଲିବେଟି ଯାଇଁ ।
ସର୍ବ କଣ୍ଠେ ସରସ୍ୱତୀ ବିଜେ କର ତୁହି ॥
ଅନ୍ନ ପାଣି କେହି ତାଙ୍କୁ କିଛି ହିଁ ନ ଦେବେ ।
ଏତେ ଦୁଃଖ ପାଇଲେ ସେ ମୋତେ ସୁମରିବେ ॥
ଆରାମ ଦାୟିନୀ ରାତ୍ର ସୁଖରେ ପାଇଲା ।
ଦିନ ଦୁଇ ଘଡ଼ିକରେ ନିଦ୍ରା ଯେ ଭାଙ୍ଗିଲା ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଗହଳ ଚହଳ ଆଜି କିଛି ଶୁଭୁନାହିଁ ॥
ମୁଦିରଥ ପଣ୍ଡାର ତ ତୁଣ୍ଡ ଶୁଭୁ ନାହିଁ ।
ଦାସୀ ପରିବାରୀ ଯେ ପରିଚା ଗଲେ କାହିଁ ॥
ଶ୍ରୀମୁଖ ପଖାଳିବାକୁ ଜଳ ନ ମିଳଇ ।
କି ବୁଦ୍ଧି କରିବା ଏତେ କହରେ କହ୍ନାଇଁ ॥
ଜଗନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ ।
ଲକ୍ଷ୍ମୀ ଛାଡିଗଲାରୁ ଯେ ଏମନ୍ତ ହୁଅଇ ॥

ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଭାର୍ଯ୍ୟା ଛାର ଏମନ୍ତକୁ କହୁଅଛୁ ତୁହି ॥
କାହାର ଭାରିଯା ଯେବେ ଋଷି ହଜିଯାଏ ।
ଟାର ଗୃହସ୍ଥ କି ଭାତ ରାନ୍ଧିଣ ନଖାଏ ॥
ଭଣ୍ଡାର ଘରକୁ ବିଜେ କଲେ ଦୁଇଭାଇ ।
ଭଣ୍ଡାରେ ଦେଖିଲେ କିଛି ପଦାର୍ଥ ଯେ ନାହିଁ ॥
ବଳରାମ କହୁଛନ୍ତି କାହିଁ କିସ ହେଲା ।
ବାଉନ କୋଟି ଭଣ୍ଡାର କେ ଘେନିଣ ଗଲା ॥
ଲକ୍ଷେ ଜୀବ ଖାଇଲେ ବୋହିଲେ ନ ସରଇ ।
କ୍ଷଣକେ ଭିତରେ କିଏ ଘେନିଗଲା ବୋହି ॥
ସୁବର୍ଣ୍ଣ ମୁଦିଏ ବଳରାମ ଯେ ପାଇଲେ ।
ସାତଗୋଟି ଗଣ୍ଠିଦେଇ କାନିରେ ବାନ୍ଧିଲେ ॥
ଜଗନ୍ନାଥ କହନ୍ତି ଯେ କି ପାଇଲ ଭାଇ ।
ବଳରାମ କହୁଛନ୍ତି ଧନ ପାଇଲଇଁ ॥
ଜଗନ୍ନାଥ କହୁଛନ୍ତି ବଳରାମ ଭାଇ ।
ବେଙ୍ଗପିତ୍ତଳ ଖଣ୍ଡକ ରଖ କାହିଁପାଇଁ ॥
ବଳରାମ କହୁଛନ୍ତି କି କଥା ଘଟିଲା ।
ପାଇଥିବା ସ୍ୱର୍ଣ୍ଣ ବେଙ୍ଗ ପିତ୍ତଳ ହୋଇଲା ॥
ଶୁଦ୍ଧ ସୁବର୍ଣ୍ଣରୁ ଯେଉଁ ଧନ ହୋଇଥିଲା ।
କାଣି କଉଡି କଡ଼ାକୁ ସମାନ ନୋହିଲା ॥
ସେଠାରୁ ବାହାରି ଗଲେ ଦୁଇଗୋଟି ଭାଇ ।
ପାକଶାଳ ଦୁଆରେ ଯେ ପ୍ରବେଶିଲେ ଯାଇ ॥
ବଳରାମ ଠିଆ ହେଲେ ଦୁଆର ମୁହଁକୁ ।
ଜଗନ୍ନାଥ ପଶିଗଲେ ରୋଷାଇ ଘରକୁ ॥
ଦେହରେ ଲାଗିଲା କଳା ମୁହଁରେ ଲାଗିଲା ।
କଳା ଶ୍ରୀମୁଖ ଗୋଟିକ ଝଟକି ଦିଶିଲା ॥
ବଳରାମ କହୁଛନ୍ତି ଶୁଣ ଜଗନ୍ନାଥ ।
ବଡ଼ ଖିଆ ବୋଲି ତତେ କହନ୍ତି ଜଗତ ॥
ମତେ ଅନ୍ନ ନ ଦେଇଣ ସବୁ ଖାଇ ତୁହି ।
ଜଗନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠ ଭାଇ ॥
ଅନ୍ନ କାହିଁ ମିଳିବ ଯେ ଚୁଲି ସୁଦ୍ଧା ନାହିଁ ।
ନ ବୁଝି ଏପରି କିମ୍ପା କହୁଛ ଗୋସାଇଁ ॥

ସେଠାରୁ ଯାଇ ଦେଖିଲେ ଧାନର ମରାଇ ।
ଲକ୍ଷ ଲକ୍ଷ ଭରଣ ଯେ ଧାନ ତହିଁ ଥାଇ ॥
ଦେଖିଲେ ଅଗାଡି ତହିଁ ଗୋଟିଏ ଯେ ନାହିଁ ।
ତହୁଁଗଲେ ଦୁଇଭାଇ ନିରାଶ ଯେ ହୋଇ ॥
ଇନ୍ଦ୍ରଦ୍ୟୁମ୍ନ କୂଳେ ଯାଇ ପ୍ରବେଶ ହୋଇଲେ ।
ଟୋପାଏ ଟୋପାଏ ଯେ ପାଣି ତହିଁ ନ ଦେଖିଲେ ॥
ବଡ଼ ଦେଉଳରେ ଯାଇ ପ୍ରବେଶ ହୋଇଲେ ।
ସେହିଦିନ ଉପବାସ କରିଣ ରହିଲେ ॥
ବେଳ ଦୁଇ ଘଡ଼ିକରେ ନିଦ୍ରା ଯେ ଭାଙ୍ଗିଲା ।
ମୁଖ ପ୍ରକ୍ଷାଳନ ଅର୍ଥେ ପାଣି ନ ମିଳିଲା ॥
କି ବୁଦ୍ଧି କରିବା ଏବେ ବୁଦ୍ଧି ଦିଶୁନାହିଁ ।
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ॥
କାଲି ଉପବାସରେ ରହିଲେ ବେନିଭାଇ ।
ଆଜି ପାଦେ ଯିବାକୁ ତ ବଳ ପାଉନାହିଁ ॥
କେଉଁଠାରୁ ଯେବେ ଆଜି ନ ମିଳିବ ଅନ୍ନ ।
କେମନ୍ତ ପ୍ରକାରେ ଆମ୍ଭେ ଧରିବା ଜୀବନ ॥
ବଳରାମ କହୁଛନ୍ତି ଶୁଣ ଆରେ ବାବା ।
ନଗରରେ ଭିକ୍ଷା ମାଗି ଜୀବନ ପୋଷିବା ॥
କାନ୍ଧରେ ପକାଇ ଛିଣ୍ଡା ଉଭରୀ ପଇତା ।
ହସ୍ତରେ ଧଇଲେ ଦୁଇଭାଇ ଭଙ୍ଗାଛଡ଼ା ॥
ଚିଡା ଘେନିବାକୁ ଜଳ କାହିଁ ନ ପାଆନ୍ତି ।
ଯାହା ଘର ଠାକୁ ପାଣି ମାଗିବାକୁ ଯାନ୍ତି ॥
ଚୋର ଖଣ୍ଡ ବୋଲି ମାରି ଘଉଡ଼ାଇ ଦ୍ୟନ୍ତି ।
ସେଠାବରୁ ଦୁଇଭାଇ ଭୟେ ପଳାବନ୍ତି ॥
ଜଗନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠଭାଇ ।
ବଡ଼ ପଣ୍ଡା ଘରକୁ ହେ ଚାଲ ଏବେ ଯାଇ ॥
ହସ୍ତ ଧରାଧରି ହୋଇ ଦୁଇ ଭାଇ ଗଲେ ।
ବଡ଼ପଣ୍ଡା ଘରଠାରେ ପ୍ରବେଶ ହୋଇଲେ ॥
ବଧୂ ତାର କହଇ ଯେ ଶାଶୁ ଆଗେ ଯାଇ ।
ବ୍ରାହ୍ମଣ ଯେ ଦୁଇଗୋଟି ଆସିଛନ୍ତି ଧାଇଁ ॥
ଶାଶୁ ରାଣ୍ଡି ତାହାଙ୍କୁ ଯେ ଚିହ୍ନି ନ ପାରିଲା ।
ଧାଇଁ ଯାଇ ବେଗେ ଦାଣ୍ଡ କବାଟ କିଳିଲା ॥

ଆସ ଆସ ବୋହୂଏ ଲୋ ଠେଙ୍ଗା ବାଡି ଧରି ।
ଚୋର କି ଖଣ୍ଡ ଏ ଦୁହେଁ ଦେବା ଆଡକରି ॥
ଏହାଶୁଣି ଦୁଇ ଭାଇ ତହୁଁ ପଳାଇଲେ ।
ସାମବେଦ ଯଜୁର୍ବେଦ ଦୂରେ ଉଚ୍ଚାରିଲେ ॥
ଶୁଣି ଶୁଷ୍କ ତରୁଗଣ ପଲ୍ଲବୀ ଉଠିଲେ ।
ଭିକ୍ଷୁକ ବ୍ରାହ୍ମଣ ବୋଲି ବ୍ରାହ୍ମଣୀ ଚିହ୍ନିଲେ ॥
ଦୁଇ ଭାଇଙ୍କୁ ସେ ଡାକି ତହିଁ ବସାଇଲା ।
ଖୁଦ ମଲୁଖ ମିଶାଇ ସତ୍ୱର ରାନ୍ଧିଲା ॥
ଅପିଟା କଦଳୀମଞ୍ଜ ଦୁଇଖଣ୍ଡ ଆଣି ।
ବେନି ଭାଇ ପକାଇଣ ସିଞ୍ଚିଲେକ ପାଣି ॥
କଂସା ଘେନି ବ୍ରାହ୍ମଣୀ ଯେ ଅନ୍ନ ଆଣିଗଲା ।
ଅନ୍ନ କି ବାଢିବ ତାର ହାଣ୍ଡି ଉଭାହେଲା ॥
ଲକ୍ଷ୍ମୀଦ୍ରୋହୀ ପୁରୁଷ ଏ ବୋଲିଣ ଜାଣିଲା ।
ପାକଶାଳରୁ ଲେଉଟି ପାଶରେ ମିଳିଲା ॥
ଦୁଇଗୋଟି ଭାଇଙ୍କର ହସ୍ତକୁ ଧଇଲା ।
କଟୁକଥା କହି ତାଙ୍କୁ ଦାଣ୍ଡରେ ଛାଡିଲା ॥
ତହୁଁ ଦୁଇଜଣ ଯେ ନିରାଶ ହୋଇଗଲେ ।
କବୀର ସାହିରେ ଯାଇ ପ୍ରବେଶ ହୋଇଲେ ॥
କ୍ଷୁଧାର୍ତ୍ତ ବ୍ରାହ୍ମଣ ବୋଲି କବୀର ଜାଣିଲେ ।
ଖଇ ଚାରି ପାଞ୍ଚ ମାଣ ଆଣି ବେଗେ ଦେଲେ ॥
ଅନ୍ତର୍ଗତେ ଜାଣିଲେ ଯେ ଦେବୀ କମଳିନୀ ।
ପବନକୁ ଡାକି ଆଜ୍ଞାଦେଲେ ସେହିକ୍ଷଣି ॥
ଆରେ ପବନ ତୁହି ତ ବେଗେ ଚଳିଯିବୁ ।
ଖଇ ଚାରି ପାଞ୍ଚ ମାଣ ଉଡାଇଣ ନେବୁ ॥
ଆଜ୍ଞା ପାଇ ପବନ ଯେ ବେଗେ ଚଳିଗଲା ।
ପ୍ରଭୁଙ୍କ ଆଗରୁ ଖଇ ଉଡାଇଣ ନେଲା ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ପ୍ରାଣଗଲା ବେଳେ ଜାତିକୁଳ ଲୋଡୁକାହିଁ ॥
ପଦ୍ମ ପୋଖରୀକୁ ଚାଲ ଯିବା ବେନି ଭାଇ ।
ପଦ୍ମମୂଳ ଖାଇ ପ୍ରାଣ ବଞ୍ଚାଇବା ତହିଁ ॥
ଫଳ ପୁଷ୍ପ କରି ତହୁଁ ଗୁଡ଼ାଏ ଆଣିବା ।
ଅଧିକ ମିଳିଲେ କିଛି ସଞ୍ଚିଣ ରଖିବା ॥
ଏମନ୍ତ ବିଚାର କରି ଦୁଇଭାଇ ଗଲେ ।
ପଦ୍ମ ପୁଷ୍କରିଣୀରେ ଯେ ପ୍ରବେଶ ହୋଇଲେ ॥
ପଦ୍ମପୋଖରୀରେ ସାତ ତାଳ ପାଣିଥିଲା ।
ଲକ୍ଷ୍ମୀ ଆଜ୍ଞା ମାତ୍ରେ ସବୁ ପଙ୍କ ହୋଇଗଲା ॥
ଜଗନ୍ନାଥ କହୁଛନ୍ତି କି ବୁଦ୍ଧି କରିବା ।
ଜଳ ନାହିଁ ଫଳ ଏଥି କାହୁଁବା ପାଇବା ॥
ଏହା କହି ଦୁଇଜଣ ତହୁଁ ଚଳିଗଲେ ।
ଯାଉ ଯାଉ ବାଟେ ଏକ ଯୋଗୀକି ଭେଟିଲେ ॥
ଜଗନ୍ନାଥ କହୁଛନ୍ତି ଶୁଣ ଆହେ ନାଥ ।
ତୁମ୍ଭର ଥାଳରୁ ଯେ ଆମ୍ଭଙ୍କୁ ଦିଅ ଭାତ ॥
ସଚ୍ୟାନନ୍ଦ ବୋଲେ ରାମକୃଷ୍ଣ ମୁଖ ଚାହିଁ ।
ଲକ୍ଷ୍ମୀଦ୍ରୋହୀ ହୋଇଅଛ ତୁମ୍ଭେ ଦୁଇ ଭାଇ ॥
ଦୁଧ ଅନ୍ନରେ ଯେ ମୋର ଥାଳ ପୂରିଥିଲା ।
ତୁମ୍ଭେ ମାଗନ୍ତେଣ ଅନ୍ନ ଶୂନ୍ୟ ହୋଇଗଲା ॥
ଅନ୍ନ ଜଳ ନ ମିଳିବ ତୁମ୍ଭଙ୍କୁ ଯେ କାହିଁ ।
ସମୁଦ୍ର କୂଳକୁ ବେଗେ ଯାଅ ଦୁଇଭାଇ ॥
ମୁହିଁ ଯାଇଥିଲି ମୋତେ ଅନ୍ନ ଥିଲେ ଦେଇ ।
ଖାଇଲେ ବୋହିଲେ ସେହି ଅନ୍ନ ନ ସରଇ ॥
ଏହି ରୂପେ ସଚ୍ୟାନନ୍ଦ ବାଟ କହିଦେଲେ ।
ଯିବା ବୋଲି ଦୁଇଭାଇ କମର ବାନ୍ଧିଲେ ॥
ହଟି କମଳିନୀ ତହୁଁ ବାଟ ଭିଆଇଲେ ।
ସୂର୍ଯ୍ୟଙ୍କୁ ରାଇଣ ଦେବୀ ବେଗେ ଆଜ୍ଞା ଦେଲେ ॥
ଅତିଶୀଘ୍ର ଟାଣଖରା କର ତୁମ୍ଭେଯାଇ ।
ବାଲି ମାଟି ତାତୁ ବେଗେ ତହ ତହ ହୋଇ ॥
ତାତିବ ଖରାରେ ଯେହ୍ନେ ଭାଜିବାର ବାଲି ।
ପାଦେ ମାତ୍ର କେହି ତହିଁ ନ ପାରିବେ ଚାଲି ॥
ଜଗନ୍ନାଥ କହୁଛନ୍ତି ଶୁଣ ଜ୍ୟେଷ୍ଠ ଭାଇ ।
ଏତେ ବଡ଼ ଖରାରେ ମୁଁ ଚାଲି ନ ପାରଇ ॥
ବେଗ ବେଗ ହୋଇ ତୁମ୍ଭେ ଯାଉଅଛ ଧାଇଁ ।
ବୁଦ୍ଧି ଦିଶୁନାହିଁ ଏବେ କିସ କରିବଇଁ ॥
ଶୁଣି ନ ଶୁଣିଲା ପରି ବଳଦେବ ଗଲେ ।
କମଳାଙ୍କ ସିଂହଦ୍ୱାରେ ପ୍ରବେଶ ହୋଇଲେ ॥

ସିଂହଦ୍ୱାରେ ପ୍ରବେଶିଣ ଡାକିଲେକ ଯହୁଁ ।
ଡାକ ଶୁଣି ଦାସୀମାନେ ଅଇଲେକ ତହୁଁ ॥
କେଉଁ ଦାସୀ କହୁଅଛି ଶୁଣ ଆଗୋ ସହି ।
ଏପରି କାଙ୍ଗାଳ ମୁଁ ଯେ କାହିଁ ଦେଖି ନାହିଁ ॥
ଏହିପରି ମୋଟା ହୋଇ ଗୋଟାଏକ ଥିଲା ।
ଆମ୍ଭ ଠାକୁରାଣୀଙ୍କୁ ଯେ ଘରୁ ତଡି ଦେଲା ॥
ଏହି ରୂପେ ଦାସୀମାନେ କୁହାକୁହି ହେଲେ ।
ବେକରେ ହାତ ଦେଇଣ ଦାଣ୍ଡରେ ଛାଡିଲେ ॥
ବଳରାମ ପ୍ରଭୁ ତହିଁ ଲେଉଟି ଅଇଲେ ।
ଜଗନ୍ନାଥ ଠାକୁରଙ୍କୁ ବାଟରେ ଦେଖିଲେ ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଦାସୀମାନେ ଆସି ମୋତେ ଦେଲେ ଘଉଡ଼ାଇ ॥
ଜଗନ୍ନାଥ କହୁଛନ୍ତି କି ବୁଦ୍ଧି କରିବା ।
କେମନ୍ତ ପ୍ରକାରେ ଆମ୍ଭେ ଜୀବନ ଧରିବା ॥
ଆଉ ଥରେ ଚାଲ ବେନିଭାଇ ଫେରିଯିବା ।
ବିନୟ କରିଣ ଅନ୍ନ ଦାସୀଙ୍କୁ ମାଗିବା ॥
ବଳରାମ କହୁଛନ୍ତି ପଛେ ଆମ୍ଭେ ଥିବୁ ।
ଆଗରେ ଥାଇଣ ଅନ୍ନ ତୁହି ଯେ ମାଗିବୁ ॥
ଏତେ କହି ସିଂହଦ୍ୱାରେ ପ୍ରଭୁ ବିଜେକଲେ ।
ମନ୍ଦିରର ଶୋଭା ଦେଖି ଆଶ୍ଚର୍ଯ୍ୟ ହୋଇଲେ ॥
ବଳରାମ କହିଲେ ହେ ଶୁଣରେ କହ୍ନାଇ ।
ପଞ୍ଚମ ସ୍ୱରରେ ଆଗ ବେଦ ପଢ ତୁହି ॥
ଜଗନ୍ନାଥ ପ୍ରଭୁ ଯହୁଁ ଏମନ୍ତ ଶୁଣିଲେ ।
ଓଁକାର ଶବଦ କରି ବେଦଧ୍ୱନି କଲେ ॥
ଋକ ସାମ ଯଜୁ ଅଥର୍ବ ଯେ ଚାରିବେଦ ।
ବ୍ରହ୍ମାଣ୍ଡ ପୂରିଉଠିଲା ଗହଗହନାଦ ॥
ପଲଙ୍କ ଉପରେ ଯେ କମଳା ଶୋଇଥିଲେ ।
ନିସ୍ତରିଲି ନିସ୍ତରିଲି ବୋଲିଣ ବୋଇଲେ ॥
କୋଟି କୋଟି ଜନ୍ମର ପାତକ ହେଲା କ୍ଷୟ ।
ମୋର ଘରେ ବିଜେ କଲେ ପ୍ରଭୁ ଦେବରାୟ ॥
ପଚାର ପଚାର ଦାସୀ ପଚାର ଲୋ ଯାଇ ।
କିସ ମାଗୁଛନ୍ତି ସେ ବ୍ରାହ୍ମଣ ବେନିଭାଇ ॥
ଚାଲିଯାଇ ମୁହୁସୁଲି ତାଙ୍କୁ ପଚାରିଲେ ।
କି ମାଗୁଛ ପଣ୍ଡାମାନେ କହ ତୁମ୍ଭେ ଭଲେ ॥
ଜଗନ୍ନାଥ କହୁଛନ୍ତି ଦାସୀ ମୁଖ ଚାହିଁ ।
ଅନ୍ନ ଗଣ୍ଡାଏକ ତୁମ୍ଭେ ପାରିବ କି ଦେଇ ॥
ଏମନ୍ତ ଶୁଣିଣ ଦାସୀମାନେ ଚଳିଗଲେ ।
ଲକ୍ଷ୍ମୀ ଠାକୁରାଣୀ ଆଗେ ବେଗେ ସେ ବୋଇଲେ ॥
ଦାସୀଙ୍କ ମୁଖରୁ ଯେ ଏମନ୍ତ ବାକ୍ୟ ଶୁଣି ।
ମନେ ବିଚାର କରନ୍ତି ଲକ୍ଷ୍ମୀ ଠାକୁରାଣୀ ॥
ଏକଥା ଅରଜି ଅଛି ଚଣ୍ଡାଳୁଣୀ ମୁହିଁ ।
ଏବେ ଦାସୀମାନେ ଲୋ ପଚାର ବେଗେ ଯାଇ ॥
ବ୍ରାହ୍ମଣ ହୋଇ ମୋ ଘରେ କି ଖାଇବେ ।
ଚଣ୍ଡାଳୁଣୀ ଅନ୍ନ ଖାଇ ଅପବାଦ ନେବେ ॥
ଏ ମୋହର ଦ୍ରବ୍ୟ ତାଙ୍କୁ ଛୁଇଁ ନ ଯୋଗାଇ ।
ଜାଣୁ ଜାଣୁ ମୁଁ କେମନ୍ତେ ପ୍ରକାରେ ଦେବଇଁ ॥
ଠାକୁରାଣୀ ସମୀପରୁ ଦାସୀମାନେ ଗଲେ ।
ବ୍ରାହ୍ମଣଙ୍କ ଆଗେ ଯାଇ ଏମନ୍ତ କହିଲେ ॥
ଦାସୀଙ୍କ ମୁଖରୁ ଯେ ଏମନ୍ତ ବାକ୍ୟ ଶୁଣି ।
କ୍ଷୁଧାତୁର ହୋଇଣ କହନ୍ତି ହଳପାଣି ॥
ନୂଆ ହାଣ୍ଡି ନୂଆସଣ୍ଢା ଦେଇ କି ପାରିବୁ ।
ଏମନ୍ତ ହୋଇଲେ ଆମ୍ଭେମାନେ ଯେ ଖାଇବୁ ॥
ଦାସୀମାନେ କହନ୍ତି ଲକ୍ଷ୍ମୀଙ୍କ ଆଗେ ଯାଇ ।
ହାତେ ରାନ୍ଧି ଭୋଜନ କରିବେ ଦୁଇଭାଇ ॥
ଏହାଶୁଣି ମହାଲକ୍ଷ୍ମୀ ସନ୍ତୋଷ ହୋଇଲେ ।
ଦାସୀଙ୍କ ହସ୍ତରେ ହାଣ୍ଡି ଦଶଗୋଟି ଦେଲେ ॥
ଚାଉଳ ପଉଟିଏ ନେଇ ଛାମୁରେ ରଖିଲେ ।
ଲେଉଟିଆ ଶାଗ ନେଇ ପୁଳାଏକ ଦେଲେ ॥
ଆଳୁ ସାରୁ କଳନ୍ଦୀ ଯେ ବଡ଼ି ବାଇଗଣ ।
ଦୁଧ ଦହି ଛେନା ଯେ ଶର୍କରା ଦେଲେ ପୁଣ ॥
ଏବେ ଯେତେ ଇଚ୍ଛା ତେତେ ଭୁଞ୍ଜ ହୋ ବୋଇଲେ ।
ଗୃହେ ମହାଲକ୍ଷ୍ମୀ ଥାଇ ବିଚାର ଯେ କଲେ ॥
ରାନ୍ଧଣା ଭୁଞ୍ଜିବେ ଯଦି ହାତେ ଦୁଇଭାଇ ।
ନାରୀଙ୍କୁ ପୁରୁଷ ଆଉ ଲୋଡିବେ କିମ୍ପାଇଁ ॥

ଲକ୍ଷ୍ମୀଦେବୀ କାଠଖଣ୍ଡେ ହସ୍ତରେ ଧଇଲେ ।
ଅଗ୍ନିର ସ୍ତମ୍ଭନ ମନ୍ତ୍ରଦେବୀ ପାଠ କଲେ ।
କଦାପି ଅଗ୍ନି ଦେବତା ତେଜ ନ ହୋଇବ ।
ହାଣ୍ଡି ନ ତାତିବ ଆଉ ପାଣି ନ ତାତିବ ।
ଯେତେକାଠ ଜଳୁଥିବ ଭସ୍ମ ହୋଇଯିବ ।
କୁହୁଳି କରିଣ ତହୁଁ ଧୂଆଁ ହେଉଥିବ ।
ଏମନ୍ତ ବୋଲିଣ କମଳା ଆଜ୍ଞା ଦେଲେ ।
ସେହି ପ୍ରକାରେଣ ଅଗ୍ନି ଦେବତା ଯେ କଲେ ।
ସବୁ କାଠଯାକ ତହିଁ ଅଙ୍ଗାର ହୋଇଲା ।
ତେବେ ସୁଦ୍ଧା ଯେ କିଞ୍ଚିତେ ପାଣି ନ ତାତିଲା ।
ହଟି କମଳିନୀ ହଟ କିଆଇଲେ ଯେଣୁ ।
ହାଣ୍ଡିତଳେ କଳାଟିକେ ନ ପଡ଼ିଲା ତେଣୁ ।
ସୁଗନ୍ଧ ତଇଳ ଦେବୀ ଦେଲେ ପଠାଇ ।
ଦାସୀମାନେ କହୁଛନ୍ତି ବ୍ରାହ୍ମଣଙ୍କୁ ଚାହିଁ ।
ପାକସିଦ୍ଧ ହେଲା କି ନୋହିଲା ହେ ଗୋସାଇଁ ।
ତଇଳ ଲଗାଇ ସ୍ନାନକର ବେଗେ ଯାଇଁ ।
ଜଗନ୍ନାଥ କହୁଛନ୍ତି ପାଣି ନ ତାତିଲା ।
କି ପାକ କରିବୁ ବେଳ ଉଚ୍ଛୁର ହୋଇଲା ।
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଅନ୍ନ ହୋଇଲାକି ନାହିଁ କହ ବେଗେ ତୁହି ।
ଜଗନ୍ନାଥ କହୁଛନ୍ତି ଶୁଣ ଆହେ ଭାଇ ।
ଅନ୍ନ କି ହୋଇବ ଟିକେ ପାଣି ତାତି ନାହିଁ ।
ବଳରାମ କହୁଛନ୍ତି ରେ ଅଧୁଆ ମୁହାଁ ।
ରାନ୍ଧି ନ ଜାଣି ହୋଇଅଛୁ ରାନ୍ଧୁଣିଆ ।
ତୁହି ଆଜହୁଅ ମୁହିଁ ରାନ୍ଧୁଅଛି ଯାଇଁ ।
ଅନ୍ନ ରାନ୍ଧିବାକୁ ଗଲେ ବ୍ରାହ୍ମଣ ଗୋସାଇଁ ।
ଫୁକି ଫୁକି ବଳରାମ ବିରକ୍ତ ହୋଇଲେ ।
କାଠଖଣ୍ଡେ ଘେନିଣ ଯେ ହାଣ୍ଡି ପିଟିଦେଲେ ।
କ୍ଷୁଧାରେ ଦୁଇଭାଇ ଆକୁଳ ହୋଇଲେ ।
କି ବୁଦ୍ଧି କରିବା ଜଗନ୍ନାଥଙ୍କୁ ବୋଇଲେ ।
ଜଗନ୍ନାଥ ବୋଇଲେ ତ ବୁଦ୍ଧି ଦିଶୁ ନାହିଁ ।
କ୍ଷୁଧାରେ ଆତୁର ହେଉଅଛି ମୋର ଦେହୀ ।
ବଳରାମ କହୁଛନ୍ତି ଶୁଣ ଜଗନ୍ନାଥ ।
ଜାତିପଛେ ଯାଉ ତାର ଘରେ ଖାଇଁ ଭାତ ।
ଯେବେ ଏହାଘରୁ ଭାତ ଆମ୍ଭଙ୍କୁ ନ ଦେବ ।
ଆମ୍ଭ ଦୁଇଭାଇଙ୍କର ମରଣ ହୋଇବ ।
ଲେଉଟିଣ ଦାସୀ ଯାଇ ଲକ୍ଷ୍ମୀଙ୍କୁ କହିଲେ ।
ବ୍ରାହ୍ମଣ ତ ହାଣ୍ଡି ଭାଙ୍ଗି ଫୋପାଡାଇ ଦେଲେ ।
ଏହାଶୁଣି ମହାଲକ୍ଷ୍ମୀ ମନେ ଚିନ୍ତା କଲେ ।
କେତେ ଦୁଃଖ ଦୀନବନ୍ଧୁ ଦୁହେଁ ଯେ ପାଇଲେ ।
ସୁବର୍ଣ୍ଣର ଚଟୁ ଗୋଟି ହସ୍ତରେ ଧଇଲେ ।
ରୋଷେଇ ଶାଳାକୁ ଲକ୍ଷ୍ମୀ ନିଜେ ବିଜେ କଲେ ।
ପ୍ରଥମେ ରାନ୍ଧିଲେ ମାଏ ବଗଡ଼ା ଯେ ଅନ୍ନ ।
ମୁଗ ମଧୁରୁଚି କ୍ଷୀର ନାନାଦି ବ୍ୟଞ୍ଜନ ।
ଆମ୍ବିଳ ଶାକର କଲେ କଦଳୀରେ ଭଜା ।
ଅତି ଯତ୍ନେ କଲେ ମାଏ ତିଅଣ ଯେ ମଜା ।
ଷାଠିଏ ପଉଟି ସେ ରନ୍ଧନ କଲେଯାଇ ।
ବଗଡ଼ା ଭାତ ମହିମା କଳନା ନ ଯାଇ ।
ଦୁଧପୁଳି କଲେ ମାତ ଘୃତପୁଳି କଲେ ।
ଅତି ଯତନରେ ମାଏ ସରପୁଳି କଲେ ।
ଯେତେ ଦ୍ରବ୍ୟ ରାନ୍ଧିଛନ୍ତି ବ୍ରାହ୍ମଣଙ୍କ ରୁଚି ।
ବଢ଼ିର ମହୁର କଲେ ପକାଇଣ ସାଚି ।
ସହସ୍ର ଆଟିକା ରାନ୍ଧି ଦ୍ରବ୍ୟ ସଜାଡ଼ିଲେ ।
ଯେ ଯାହା ସ୍ଥାନରେ ଯତ୍ନେ ରଖାଇଣ ଦେଲେ ।
କର୍ପୂର ଛେନା ଶର୍କରା ମରିଚ ଗୋଳାଇ ।
ଷାଠିଏ ନଉଡି ପଣା ରଖିଲେ ତ ତହିଁ ।
ରଙ୍ଗବାଣ ପଇଡ ସାଙ୍ଗରେ ଛେନାପଣା ।
ଅଦା ମିଶା କରି ଯେ ନବାତ ଖଣ୍ଡଛେନା ।
ଲକ୍ଷ୍ମୀଙ୍କର ପାକ ଗୁଣ କେ କହି ପାରିବ ।
କ୍ଷଣକ ମଧ୍ୟରେ ମାଏ ସଜାଡିଲେ ସର୍ବ ।
ସବୁଥିରୁ ଖଣ୍ଡିଏ ଖଣ୍ଡିଏ ରଖିଥିଲେ ।
ଭୋଜନ ଶେଷକୁ ପୋଡପିଠାଏ ରଖିଲେ ।
ବୋଇଲେ ଦାସୀଙ୍କି କର ଅଙ୍ଗ ମରଦନ ।
ବ୍ରାହ୍ମଣ ବୋଲିଣ ମନେ ନ ପାଞ୍ଚିବ ଭିନ୍ନ ।
ବ୍ରାହ୍ମଣ ମାନଙ୍କ ମୁହିଁ ଅଟେ ନିଜ ଦାସୀ ।
ଶୁଣିଣ ଆନନ୍ଦେ ଚଳିଗଲେ ସବୁ ଦାସୀ ।
ଦାସୀମାନେ କହୁଛନ୍ତି ସୁବେଦୀ ଗୋସାଇଁ ।
ସ୍ନାନକର ବେଗେ ଅଙ୍ଗ ମରଦନ ହୋଇ ।

ତହୁଁ ସୁବାସ ଜଳରେ ଦୁହେଁ ସ୍ନାନକଲେ ।
ଅଙ୍ଗ ପୋଛିବାକୁ ଦାସୀ ଗାମୁଛାଏ ଦେଲେ ॥
ପିନ୍ଧିବାକୁ ପିତାମ୍ବର ପାଟ ଆଣି ଦେଲେ ।
ସୁବେଶ ହୋଇଣ ଦୁଇ ଭାଇ ଯେ ବସିଲେ ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଏମନ୍ତ ପ୍ରକାରେ ମାନ୍ୟ କରେ କିସପାଇଁ ॥
ଏହାଘରେ ପୁରୁଷ ତ ଜଣେ ଦିଶୁନାହିଁ ।
ଶୂଳି ଦେବା ପାୟେ ଏହି ବିଚାର ଦିଶଇ ॥
ଚାଲ ଏବେ ପଳାଇଣ ଏହିଠାରୁ ଯିବା ।
କ୍ଷଣକ ମଧ୍ୟରେ ଆଉ ପ୍ରାଣ ନ ପାଇବା ॥
ଜଗନ୍ନାଥ କହୁଛନ୍ତି ଜ୍ୟେଷ୍ଠଭାଇ ଶୁଣ ।
ଏ ଘରର କର୍ତ୍ତା ଆଜ ହୋଇବେ ଆପଣ ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଏମନ୍ତ କହିବା ତୋର ଉଚିତ ନୁହଇ ॥
ଗୃହ ପରିଷ୍କାର ଦେବୀ ସ୍ୱହସ୍ତରେ କଲେ ।
ଗନ୍ଧ ଚନ୍ଦନ ଯେ ମାଏ ଛଡ଼ା ପକାଇଲେ ॥
ସୁବର୍ଣ୍ଣର ଥାଳି ସୁବର୍ଣ୍ଣର ଗିନାଝରି ।
ହାତଧୁଆ ପାଦଧୁଆ ସୁସଜ୍ଜିତ କରି ॥
ମଣୋହି କରିବା ବିଧି ଯେମନ୍ତେ ଭିଆଣ ।
ସୁବର୍ଣ୍ଣର ପୀଠ ତହିଁ କଲେକ ନିର୍ମାଣ ॥
ମହାଲକ୍ଷ୍ମୀ କହୁଛନ୍ତି ଦାସୀ ମୁଖ ଚାହିଁ ।
ବେଗ କରି ପ୍ରଭୁଙ୍କୁ ଲୋ ଘେନିଆସ ଯାଇ ॥
ଏହାଶୁଣି ଦାସୀମାନେ ବେଗେ ଚଳିଗଲେ ।
ବ୍ରାହ୍ମଣଙ୍କ ପାଶେ ଯାଇଁ ପ୍ରବେଶ ହୋଇଲେ ॥
ବିନୟର କହୁଛନ୍ତି ବ୍ରାହ୍ମଣ ଗୋସାଇଁ ।
ଭୋଜନ କରିବ ଚାଲ ସ୍ଥାନ ଅଛି ହୋଇ ॥
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ନାରୀଏ ଜଣେ ପୁରୁଷ କେହି ଏଥିନାହିଁ ॥
ଭିତରକୁ ଯିବା ଆମ୍ଭ ଉଚିତ ନୁହଇଁ ।
ପତ୍ର ଦୁଇଖଣ୍ଡ ତୁମ୍ଭେ ଆଣ ବେଗେ ଯାଇ ॥
ଜଗନ୍ନାଥ କହୁଛନ୍ତି ଶୁଣ ଭାଇ ତୁମ୍ଭେ ।
ଏ ଘରର କର୍ତ୍ତା ଆଜ ହୋଇବା ଯେ ଆମ୍ଭେ ॥
କିମ୍ବା ତୁମ୍ଭେ ଭୟ କରୁଅଛ ଜ୍ୟେଷ୍ଠ ଭାଇ ।
ଦାତା ଦେଉଅଛି ଆମ୍ଭେ ଛାଡିବା କିମ୍ପାଇଁ ॥

ଭୟେ ବଳରାମ ସେ ଠାବରୁ ନ ଉଠନ୍ତି ।
ହସ୍ତ ଧରି ଘେନିଗଲେ କମଳାଙ୍କ ପତି ॥
ଠାବ ସଞ୍ଚାରେ ଯେ ବଳରାମ ନ ବସନ୍ତି ।
ହସ୍ତଧରି ବସାଇଲେ ଦେବ ଶିରୀପତି ॥
କମଳିନୀ କହୁଛନ୍ତି ତୁଳସୀ ବ୍ରାହ୍ମଣୀ ।
ଦେଢଶୁର ମୋର ଯେ ଅଟନ୍ତି ହଳପାଣି ॥
ତାହାଙ୍କୁ କେମନ୍ତେ ଅନ୍ନ ମୁହିଁ ଦେବି ନେଇ ।
ଭିତରେ ଥାଇଣ ମୁଁ ଯେ ଦେବଇଁ ବଢ଼ାଇ ॥
ସାନ ବୋଲି ଆଗ ପଚାରିବୁ ଯାଇ ।
ବଡ଼ଠାରେ ଆଗ ଅନ୍ନ ପରଶିବୁ ନେଇ ॥
ଅନ୍ନଥାଳି ଘେନି ବେଗେ ବ୍ରାହ୍ମଣୀ ଅଇଲା ।
ବଡ଼ ସାନ କେଉଁ ପଣ୍ଡା ବୋଲି ପଚାରିଲା ॥
ବଳରାମ ବୋଲୁଛନ୍ତି ହୋଇଲୁକି କାଣୀ ।
ବଡ଼ ସାନ କିଏ ତୋତେ ନ ଦିଶଇ ପୁଣି ॥
ଆମ୍ଭେ ବଡ଼ ବୋଲିଣ ଯେ ବଳରାମ କହି ।
ବ୍ରାହ୍ମଣୀ ବୋଇଲେ କୋପ କଲକି ଗୋସାଇଁ ॥
ପ୍ରଥମ ଥାଳିର ଅନ୍ନ ବଳରାମେ ଦେଲା ।
ଭିତରକୁ ଆଉ ଅନ୍ନ ଆଣିବାକୁ ଗଲା ॥
ଆଉ ଏକ ଥାଳି ଅନ୍ନ ଆଣିଲା ବେଳକୁ ।
ଚାରି ଗ୍ରାସରେ ଖାଇଲେ ବଳରାମ ତାକୁ ॥
ଅନ୍ନ ଥାଳି ଘେନି କରି ବ୍ରାହ୍ମଣୀ ଅଇଲା ।
ଏ ପଣ୍ଡାର ଅନ୍ନଯାକ କିଏ ଘେନିଗଲା ॥
ବଳରାମ ବୋଇଲେ କ୍ଷୁଧାର୍ତ୍ତ ହୋଇଥିଲୁ ।
ଆଗକରି ଚାରିଗ୍ରାସ ବେଗେ ଖାଇଦେଲୁ ॥
ହସିଲା ବ୍ରାହ୍ମଣୀ ଦୁଇଭାଇଙ୍କୁ ଅନାଇଁ ।
କୁଟୁମ୍ବ ମାରିବା ପ୍ରାୟ ଦିଶୁଛ ଗୋସାଇଁ ॥
ପୁତ୍ର ଭାରିଯା କି ତୁମ୍ଭ ଦୁହିଁଙ୍କର ନାହିଁ ।
ପେଟ ଲାଗି ବୁଲୁଅଛ ଦେଶ ଦେଶ ହୋଇ ॥
ସହସ୍ର କାନ୍ଦି କଦଳୀ ରଖିଦେଲେ ନେଇ ।
ଷାଠିଏ ନଉତି ପଣା ବେଗେ ଦେଲେ ଥୋଇ ॥
ଯେଉଁପରି ପ୍ରଭୁଙ୍କର ମନକୁ ରୁଚଇ ।
ସେହିପରି କମଳିନୀ ଦିଅନ୍ତି ପଠାଇ ॥
ଭୋଜନ ଶେଷକୁ ଯେ ବୋଲନ୍ତି ବଳରାମ ।
ଲକ୍ଷ୍ମୀଙ୍କ ରାନ୍ଧଣା ପରି ଲାଗୁଛି ଉତ୍ତମ ॥

ଜଗନ୍ନାଥ କହୁଛନ୍ତି ବଳରାମ ଭାଇ ।
ଲକ୍ଷ୍ମୀପରା ଭାର୍ଯ୍ୟାକୁ ପାଇବା ଆଉ କାହିଁ ॥
ଲକ୍ଷ୍ମୀଙ୍କୁ ଭର୍ତ୍ସନା କରି ଦେଲେ ଘଉଡ଼ାଇ ।
ବାହାରି ଗଲେ ସେ ତାଙ୍କ ଇଚ୍ଛା ହେଲା ଯହିଁ ॥
ଏମନ୍ତ ସମୟେ ପୋଡପିଠା ଦେଲେ ନେଇ ।
ଜଗନ୍ନାଥ କହୁଛନ୍ତି ବଳରାମ ଭାଇ ॥
ମୋର ମନ କଥାକୁ ଯେ ଲକ୍ଷ୍ମୀ ଜାଣିଥାଇ ।
ଭୋଜନ ଶେଷକୁ ପୋଡପିଠାଏ ଦିଅଇ ॥
ଭୋଜନ ସାରିଣ ପ୍ରଭୁ ଆଚମନ କଲେ ।
କର୍ପୂର ତାମ୍ବୁଳ ଦୁଇ ଭାଇ ଯେ ଭୁଞ୍ଜିଲେ ॥
ବାହାର ମେଲାରେ ପ୍ରଭୁ ବିଜେ କଲେ ଯାଇଁ ।
ଗବାକ୍ଷ ଦ୍ୱାରରେ ଲକ୍ଷ୍ମୀ ଅଛନ୍ତି ଅନାଇଁ ॥
ପଚାର ପଚାର ଦାସୀ ପଚାରଲୋ ଯାଇ ।
ବିଭା ହୋଇଅଛନ୍ତି କି ପଣ୍ଡା ଦୁଇ ଭାଇ ॥
ଏହାଶୁଣି ଦାସୀମାନେ ବେଗେ ଚଳିଗଲେ ।
ବ୍ରାହ୍ମଣଙ୍କ ନିକଟରେ ପ୍ରବେଶ ହୋଇଲେ ॥
ପୁତ୍ର ଭାରିଯା ଅଛି କି କାହିଁ ତୁମ୍ଭ ଘର ।
କେଉଁ ରାଜ୍ୟେ ବାଡି ବୃତ୍ତି ଶାସନ ତୁମ୍ଭର ॥
ଜଗନ୍ନାଥ କହିଛନ୍ତି ଶୁଣ ଦାସୀ ତୁହି ।
ବିବାହ ହେବାକୁ ଦ୍ରବ୍ୟ ଆମ୍ଭର ଯେ ନାହିଁ ॥
ଗୁଆବାଡି ଶାସନ ପାଇବୁ ଆମ୍ଭେ କାହିଁ ।
ଲକ୍ଷ୍ମୀପରା ଭାର୍ଯ୍ୟାକୁ ଯେ ଦେଲୁ ଘଉଡ଼ାଇ ॥
କପାଳ ମନ୍ଦ ଆମ୍ଭର ଦୁଇଭାଇ ବୁଲୁ ।
ଲକ୍ଷ୍ମୀ ଘଉଡ଼ାଇ ଆମ୍ଭେ ଏ ଦୁଃଖ ପାଇଲୁ ॥
ଦାସୀଏ ବୋଇଲେ ପଣ୍ଡା ହୋଇଲ କି ବାଇ ।
ନାରୀକି ଛାଡି ପୁରୁଷ ଦରିଦ୍ର କି ହୋଇ ॥
ଗୋବିନ୍ଦ ବୋଲନ୍ତି ଆମ୍ଭେ କହୁଅଛୁ ଶୁଣ ।
କେଉଁ ନାରୀ ଥିଲେ ହୁଏ ଐଶ୍ୱର୍ଯ୍ୟ ବର୍ଦ୍ଧନ ॥
କେଉଁନାରୀ ଥିଲେ ବଂଶ ନିପାତ ହୁଅଇ ।
କେଉଁ ନାରୀ ଥିଲେ ବାସି ପେଜ ନ ମିଳଇ ॥
କେଉଁ ନାରୀ ଥିଲେ ସୁନା ବଳା ପାଇ ।
କେଉଁନାରୀ ଅଲକ୍ଷଣୀ ଗୃହକୁ ଭାଙ୍ଗଇ ॥
ତୁମ୍ଭ ସାଆନ୍ତାଣୀକୁ ଗୋ ପଚାର ତ ଯାଇ ।
ଦାସୀ କହେ ବାତୁଳ କି ହୋଇଲ ଗୋସାଇଁ ॥
କ୍ଷୁଧା ଲାଗୁଥିଲା ଏବେ ଭାତ ଯେ ଖାଇଲ ।
ଆମ୍ଭ ସାଆନ୍ତାଣୀଙ୍କୁ ଯେ ପଚାର ବୋଇଲ ॥
ବଳରାମ ବୋଇଲେ ଏ ମୋର ପିଲାଭାଇ ।
ତୁମ୍ଭ ସାଆନ୍ତାଣୀ ଆଗେ ଜଣାଇବ ନାହିଁ ॥
ଜଗନ୍ନାଥ କହୁଛନ୍ତି ଭୟ କାହିଁପାଇଁ ।
କିଛି ନ ବିଚାର ଆହେ ବଳରାମ ଭାଇ ॥
ଲକ୍ଷ୍ମୀଙ୍କର ଗୃହ ସିନା ଅଟଇ ଯେ ଏହି ।
ଏଠାରେ ଆପଣ ଭୟ କର କିସପାଇଁ ॥
ବଳରାମ ବୋଲୁଛନ୍ତି ବାବୁ ଚକ୍ରଧର ।
ତୁମ୍ଭେ ଯାଇଁ ହସ୍ତଧର ମହାଲକ୍ଷ୍ମୀଙ୍କର ॥
ଆମ୍ଭେ ଦୋଷ କଲୁ ବୋଲି କହ ତାଙ୍କୁ ଯାଇ ।
ଯହିଁ ଇଚ୍ଛା ତହିଁ ଥାଅ ଆମ୍ଭ ମନା ନାହିଁ ॥
ଯେତେବେଳେ ବଳରାମ ଏମନ୍ତ କହିଲେ ।
ଭିତର ପୁରକୁ ପ୍ରଭୁ ନିଜେ ବିଜେ କଲେ ॥
ଧୀରେ ଧୀରେ ଭିତରକୁ ଗଲେ ପୀତବାସ ।
ପ୍ରବେଶ ହୋଇଲେ ଯାଇ କମଳାଙ୍କ ପାଶ ॥
ପାଣିଝରି ଘେନିକରି କମଳା ଅଇଲେ ।
ଦରହାସେ ପ୍ରଭୁଙ୍କର ମୁଖକୁ ଚାହିଁଲେ ॥
ଅତି ଯତନରେ ଦେଲେ ପାଦପଦ୍ମ ଧୋଇ ।
ଥୋପାଏ ପାଦ ଉଦକ ମସ୍ତକେ ଲଗାଇ ॥
କିଛି ପାଦୋଦକ ଲକ୍ଷ୍ମୀ ଗର୍ଭକୁ କ୍ଷେପିଲେ ।
ପଞ୍ଚବର୍ଣ୍ଣ ପୁଷ୍ପେ ପାଦପଦ୍ମ ପୂଜାକଲେ ॥
ମହାଲକ୍ଷ୍ମୀ କହୁଛନ୍ତି ପ୍ରଭୁଙ୍କୁ ଅନାଇ ।
ଚଣ୍ଡାଳୁଣୀ ବୋଲି ମୋତେ ଦେଇ ଘଉଡ଼ାଇ ॥
ଚଣ୍ଡାଳୁଣୀ ଘରେ ଏବେ ଭୁଞ୍ଜିଲ ଗୋସାଇଁ ।
ଚଣ୍ଡାଳ ବିଟାଳ ହେଲ ଦୁଇଗୋଟି ଭାଇ ॥
ଧିକ୍ ତୁମ୍ଭ ବଡ଼ପଣ ଧିକ ତୁମ କଥା ।
ପୋଡୁ ତୁମ୍ଭର ପ୍ରତିଜ୍ଞା ଧିକ୍ ତୁମ୍ଭ ଭ୍ରାତା ॥
ମହାଲକ୍ଷ୍ମୀ ଏ ପ୍ରକାରେ ବହୁ ଧିକାରିଲେ ।
କାଳୀୟ ଗଞ୍ଜନ ଶୁଣି କିଛି ନ କହିଲେ ॥
ମହାମାୟୀ ବୋଇଲେ ହେ ଶୁଣ ମୋ ବଚନ ।
ମୋର କିସ କାର୍ଯ୍ୟ ତୁମ୍ଭେ କହ ହେ ବନ୍ଧନ ॥
କିଛିକ୍ଷଣ ଉତ୍ତାରେ ବୋଇଲେ ଜଗନ୍ନାଥ ।
ଏବେ ମନୁ ମାନ ତେଜ ଜଗତର ମାତ ॥

ଅକାରଣେ ଏତେ କଥା କହ ପ୍ରାଣସହୀ ।
ଆମ୍ଭର ପ୍ରାର୍ଥନା ଆମ୍ଭ ସଙ୍ଗେ ଯିବାପାଇଁ ।
ବଡ଼ ହେଲେ କିସ ହେଲା ଗରବ ଗଞ୍ଜିଲ ।
ରବିତଳେ ସବୁ ଯୁଗେ ଯଶ ରଖିଗଲ ।
ତୁମ୍ଭ ଯୋଗେ ଆମ୍ଭେ କଷ୍ଟ ପାଇଲୁ ବହୁତ ।
ଆମ୍ଭେ ଭିକ୍ଷା ମାଗିବାର ଜାଣିଲେ ଜଗତ ।
ତୁମ୍ଭ ଯଶକୀର୍ତ୍ତି ଏବେ ଜଗତେ ରହିଲା ।
ଆମ୍ଭକୁ ଅନ୍ନ ଦେବାର ଜଗତ ଶୁଣିଲା ।
ଗୁରୁବାର ଦିନ ଯେ ଏ ପୁରାଣ ଶୁଣିବ ।
ଜନ୍ମ ଜନ୍ମାନ୍ତର ପାପ ତାର କ୍ଷୟ ହେବ ।
ଲକ୍ଷ୍ମୀପୂଜା ଦିନ ଏହା ଯେ ନାରୀ ଗାଇବ ।
ଇହ ଜନ୍ମେ ପତିବ୍ରତା ବୈକୁଣ୍ଠକୁ ଯିବ ।
ଯଦ୍ୟପି କେହି ନାରୀକୁ ମୁଖେ ବୁଝାଇବ ।
ତାହାର ସୁକୃତ ଆଉକେ କହି ପାରିବ ।
ଏତେ କହି ଗୋବିନ୍ଦ ଧଇଲେ ଲକ୍ଷ୍ମୀହସ୍ତ ।
ଜଗତ ମାତା ବୋଇଲେ କର ତୁମ୍ଭେ ସତ୍ୟ ।
ଚଣ୍ଡାଳକୁ ବ୍ରାହ୍ମଣ ଯାଏ ଖୁଆଖୋଇ ହେବେ ।
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ ।
ହାଡିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ ।
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।
ଅନ୍ନ ଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ ।
ତେବେ ବଡ଼ ଦେଉଳକୁ ଯିବି ଜଗନ୍ନାଥ ।
ହେଉ ହେଉ ବୋଲି ଆଜ୍ଞା ଦେଲେ ମହାବାହୁ ।
ଯୁଗେ ଯୁଗେ ଲକ୍ଷ୍ମୀ ଗୋ ତୁମ୍ଭର ଯଶ ରହୁ ।
ଲକ୍ଷ୍ମୀଙ୍କ ହସ୍ତ ଧରିଣ ଜଗନ୍ନାଥ ନେଲେ ।
ବଡ଼ ଦେଉଳକୁ ପ୍ରଭୁ ବିଜେ କରିଗଲେ ।
ଲକ୍ଷେ ଚହ୍ଲଉଦିଆଯେ ଛାମୁରେ ଜଳଇ ।
ଦେଉଳକୁ ବିଜେକଲେ ବ୍ରହ୍ମାଣ୍ଡ ଗୋସାଇଁ ।
ଇନ୍ଦ୍ର ଡାକୁଛନ୍ତି ଦେବ ମଣିମା ମଣିମା ।
ବ୍ରହ୍ମା ଡାକୁଛନ୍ତି ଦେବ ଗୁହାରୀ ଶୁଣିମା ।
ବରୁଣ କୁବେର ଯେ ହସ୍ତରେ ବେତ ଧରି ।
ନୃତ୍ୟ କରୁଥିଲେ ଯହିଁ ସ୍ୱର ଅପସରି ।
ରମ୍ଭା ଯେ ମେନକା ଆଦି ଆଉ ଚିତ୍ରଲେଖା ।
ତୁଳସୀ ମାଳତୀ ଆଉ ଅନ୍ୟାନ୍ୟ ରସିକା ।
ଚଞ୍ଚଳା ଯେ ମଦାଳସୀ ଆବର ସୁଶୀଳା ।
ନୃତ୍ୟ ଆରମ୍ଭନ୍ତି ତୁଷ୍ଟ ହୋଇ ସେ ଅବଳା ।
ବଳରାମ କହୁଛନ୍ତି ଶୁଣରେ କହ୍ନାଇ ।
ଘରକୁ ଘରଣୀ ସିନା ସୁନ୍ଦର ଦିଶଇ ।
ଯେତେବେଳେ ଦାଣ୍ଡେ ଯାଉଥିଲୁ ଦୁଇଭାଇ ।
ଚୋର ଖଣ୍ଡ ବୋଲି ଦେଉଥିଲେ ଘଉଡ଼ାଇ ।
ଆହୁରି କଥାଏ ଶୁଣ ଜଗନ୍ନାଥ ଭାଇ ।
ଲକ୍ଷ୍ମୀ ଏତେ ବଡ଼ ବୋଲି ଏବେ ଜାଣିଲଇଁ ।
ଲକ୍ଷ୍ମୀ ଦେବୀ ବିଜେକଲେ ତାଙ୍କ ଦେଉଳକୁ ।
ଦୁଇଭାଇ ବିଜେ କଲେ ବଡ଼ ଦେଉଳକୁ ।
ଦାସୀ ପରିବାରୀ ଆଦିକରି ଯେତେ ଥିଲେ ।
ଲକ୍ଷ୍ମୀ ଆସିଲାରୁ ସେ ସମସ୍ତ ଯେ ଅଇଲେ ।
ଲକ୍ଷ୍ମୀଙ୍କୁ ପାଇଣ ଦେବ ଗୋବିନ୍ଦ ଆନନ୍ଦ ।
ସଂସାରରେ ସେହିମତେ କଲେକ ମୁକୁନ୍ଦ ।
ଶୁଣଲେ ନାରଦ ଏହି ପୁରାତନ ଆଖ୍ୟା ।
ଯାହା ପ୍ରସନ୍ନରେ ପ୍ରଭୁ ମାଗିଲେ ଯେ ଭିକ୍ଷା ।
ଛାର ଚଣ୍ଡାଳୁଣୀ ଅଇଶ୍ୱର୍ଯ୍ୟ ଭୋଗକଲା ।
ଲକ୍ଷ୍ମୀଙ୍କର ସୁଦୟାରେ ଏମନ୍ତ ହୋଇଲା ।
ଏ ପୁରାଣ ପଢିଲେ ଯେ ସର୍ବସିଦ୍ଧି ହୁଏ ।
ସୂର୍ଯ୍ୟୋଦୟ ତମ ସମ ପାପ କ୍ଷୟ ଯାଏ ।
ଏ ପୁରାଣ ଯେଉଁମାନେ ପଢନ୍ତି ଶୁଣନ୍ତି ।
ଲକ୍ଷେ କୋଟି ଗୋଦାନରେ ଫଳ ଯେ ଲଭନ୍ତି ।
ଏ ପୁରାଣ ଅଟଇ ଯେ ମୁକତିର ପଥ ।
ଏହାଫଳ କଥନରେ କେ ହେବ ସମର୍ଥ ।
ଲକ୍ଷ୍ମୀଙ୍କ ପୁରାଣ ଏହୁ ସମ୍ପୂର୍ଣ୍ଣ ହୋଇଲା ।
ଭାବେ ବଳରାମ ଦାସ ଗୀତରେ କହିଲା ।

(ଇତି ଶ୍ରୀ ଲକ୍ଷ୍ମୀପୁରାଣ ସମ୍ପୂର୍ଣ୍ଣ)

# କବିତା

## ମୁଖେ ଭଜ ରାମକୃଷ୍ଣ

ମୁଖେ ଭଜ ରାମକୃଷ୍ଣ ହରି ଲୋ ସାରି,
ମାରି ନେବେଟି କ୍ରୋଧ ମଂଚାରି ଲୋ, ସାରି ।
ମନମରା ଗାଈ କଳଣା ନ ଯାଇ ନିତି ପ୍ରତି ଖଦା କଲା,
ତ୍ରିଗୁଣ ଦଉଡି କଷି ବାନ୍ଧିଥିଲି ଛିଣ୍ଡାଇ ପକାଇ ଗଲା ଲୋ, ସାରି ।
ଘର ତୋଳିଥିଲି ଅତି ଯତନରେ ଚାରିକଣେ ଓରା ଦେଇ,
ଘର ଛାଏଁ ଘର ପଡ଼ି ରହିଅଛି ମଝି ଓରା ଭାଙ୍ଗିଲାଇ ଲୋ , ସାରି ।
ଘର ଜଗୁଆଳ ପଚିଶ ପାଇକ କରି ଘର ଚୋର ନେବେ,
ପାଞ୍ଚ ଦଣ୍ଡୁ ଆସି ଏକ କଟୁଆଳ ସେହି କେଣେ ଛାଡିଯିବେ ଲୋ,
ସାରି ।

ଯେଉଁଦିନ ସାରି ଜନମ ହୋଇଲୁ ନ ଚିହ୍ନିଲୁ ବାରେ ମୋତେ,
ନିର୍ଦ୍ଦୟ କିରାତ ମାରି ଘେନି ଯିବ ଡକା ପାରୁଥିବି କେତେ ଲୋ,
ସାରି ।

ଓଠ ତୋ ସୁରଙ୍ଗ ଅଣ୍ଟ ତୋ ସରୁଆ ଦନ୍ତ ତୋ ଡାଳିମ୍ବ ମଞ୍ଜି,
ବଳରାମ ଦାସ ଭାବରେ ଭଣିଲେ ସାରି କି କେ କଲା ବନ୍ଦୀ
ଲୋ ।

## ରାଧେ ଗୋ

ରାଧେ ଗୋ, ହସ୍ତରେ ଦୟେଣ, ମୁଣ୍ଡରେ ଅୟେଣ
କାନ୍ଧରେ ପତନି ଶାଢ଼ି,
ସର୍ବ ସଖି ଘେନି ଚଳେ ଚନ୍ଦ୍ରାବଳୀ
ଯେସନେ ସିନ୍ଧୁ ଦୁଲାଳୀ ଗୋ ।
ରାଧେ ତୁ ଯମୁନା ନ ଯା ଗଧୋଇ
ଯମୁନାର ପାଣି ବାସଂଧ ହୋଇଛି
ଘାଟ ଘେନୁଛି ମାଧୋଇ ଯେ।
ନାକେ ନାକଚଣା ଗୋଡ଼ରେ ପାହୁଡ଼
ହସ୍ତରେ ସୁବର୍ଣ୍ଣ ବାହି
ଡାଳିମ୍ବା ନେତକୁ ଉଠାଣି ବୟେସ
ନେଉଟି ନ ଚାହୁଁ ରାହି ଗୋ ।
ଆଜର ସ୍ନାହାନ କୂପ ଜଳେ ସାର
ଯମୁନା ନ କର ଆଶ,
ଘଟ ଦାନ ଦେଲେ ସୁଖେ ଗାଧୋଇବ
ଭଣେ ବଳରାମ ଦାସ ଗୋ

## ଦୀନ ବାନ୍ଧବ ହେ

ଦୀନ ବାନ୍ଧବ ହେ, ମୋ ଦୁଃଖ ନ ଘଞ୍ଚା ସେ
ତୁମ୍ଭେ ଦୀନବନ୍ଧୁ ମୋତେ ପାଶୋରିଲେ ମୋ ଦୁଃଖ ଶୁଣିବ କିଏ ।
ତୁଳସୀର ମାଳ ତୁଳସୀର ତୁଳ ତୁଳସୀ ମଞ୍ଜୀରେ ଦେଇ
ତୁଳସୀ ଚଉଁରା ମୂଳେ ଅନାଉଲେ ଜଗତକୁ ବିଷୁଆଳ ।
ତୂଳର ଉପରେ ସେବତୀର ଗଭା ବେଢ଼ିଲେ ମାଡ଼ିଲ ଛଳେ ।
ଦୀନବନ୍ଧୁ ଠାରେ ବିପତ୍ତି ନ ଥାଉ ଯେଣେ ସାଉଳେ ଛଳେ ।
ଦୀନବନ୍ଧୁ ବୋଲି ଯାହାକୁ ବୋଲନ୍ତି ସେହି ସେ ପରମ ଯୋଗୀ
ଯୋଗୀମାନଙ୍କର ଆତଙ୍କନାଶନ ଦୁଃଖୀମାନଙ୍କର ଯୋଗୀ ।
ଆଦି ଅନାଦିରେ ବନ୍ଧନ ପଡିଛି ମାୟାମୋହ ଲାଗି ଧନ
ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ଯାଉଛି ପଞ୍ଜରୀ ପଡ଼ିବ ବନ ।
ଏ ଭବସାଗରୁ ତରିବା ନିମନ୍ତେ ପଥର ବାନ୍ଧିଛ ଭେଳା
ତୁମେ ନ ରଖିଲେ ଭାସି ମୁଁ ଯାଉଛି ରଖ ରଖ ଚକାଡ଼ୋଳା ।
ଭଗତ ଭାବରୁ ପ୍ରସନ୍ନ ହେବାରୁ ଭାବ ବିନୋଦିଆ ଯେଣୁ
ବଳରାମ ଦାସ ଅନ୍ନ ନ ମାଗଇ ମାଗଇ ଚରଣ ରେଣୁ ।

## ସଖୀ ଚାହାଁ ଗୋ

ସଖି ଚାହାଁ ଗୋ, ହସ ହସ ହେଉଛନ୍ତି ନାହା ଗୋ,
ବେଦ ଲଗନେ କହିଛି ଯାହା ଗୋ ।
ନିଘୋଡ଼ କରି ଭୁଜ ଧରି ନେଉଛନ୍ତି ,
ଏହାଙ୍କର କେହି ନାହାନ୍ତି କି ସାହା ଗୋ ।
ସଖି ଗୋ, ଜାଣିଲା ମୋ ପ୍ରଭୁ ଜଗତ ଖାତେକ
ତାଙ୍କୁ ଲୋକେ ନେଉଛନ୍ତି ଧରି,
ପାହିବାକୁ ରାତ୍ର ପହଡେକ ଥାଉଁ
ସେ ହରିଲେ କାହାର ନାରୀ ଗୋ ।
ସଖି ଗୋ, ବିଭା ହୋଇଲାର ପ୍ରାୟେକ ଦିଶନ୍ତି
ଅଣ୍ଟାରେ ପାଟର ଡୋର,
ଚକ୍ର ଆକାରରେ ସେବକ ବେଢ଼ିଛନ୍ତି
ଆବୋରି ଡାକି ଛାମୁର ।

ସଖି ଗୋ, ପୂର୍ବେ ରାଜଜେମା ଚୋରାଇ ଆଣିଲେ
ଢାକି ଚର ଭେଟାଇଲେ ଆଣି ।
ବଳରାମ ଦାସ ତା ଦେଖି ଭଷତ
ଧରିନେଲେଟି ତିନି ପରାଣୀ ଗୋ ।

## କାନ୍ତ କୋଇଲି

କୋଇଲି, କାନ୍ତ ମୋର ଗଲେ ମୃଗ ମାରି,
କପଟେ ରାବଣ ମୋତେ ନେଉଅଛି ଧରି ଲୋ, କୋଇଲି ।
କୋଇଲି, ଖଳ ବୋଲି ଜାଣି ନ ପାରିଲି,
ଖଳ ଯେ କନକ ମୃଗ ଦେଖି ଲୋଭ କଲି ଲୋ, କୋଇଲି ।
କୋଇଲି, ଗରୁ ଶ୍ରଦ୍ଧା ବଳିଲା ମୋହର,
ଗେଲେ, ମୁଁ ବୋଇଲି ରାମ ଏ କୁରଙ୍ଗୀ ମାରଲୋ, କୋଇଲି ।
କୋଇଲି, ଘଟଣ ଯା' କରିଛି ବିଧାତା,
ଘୋର ବନେ ମୃଗ ମାରି ଗଲେ ମୋ କରତା ଲୋ, କୋଇଲି ।
କୋଇଲି, ଲକ୍ଷଣଙ୍କୁ ଜଗାଇ ଦୁଆର,
ନାରାଚରେ ମୃଗ ବିନ୍ଧିଗଲେ ରଘୁବୀର ଲୋ, କୋଇଲି ।
କୋଇଲି, ଚାପଧରୀ ଗଲେ ରଘୁନାଥ,
ଚାପେ ଶର ସନ୍ଧି ମୃଗ ପ୍ରାଣ କଲେ ହତ ଲୋ, କୋଇଲି ।
କୋଇଲି, ଛାଡିବାର ବେଳେ ମୃଗ ପ୍ରାଣ,
ଛନ୍ଦରେ ଡାକିଲା ମୋତେ ରଖ ହେ ଲକ୍ଷ୍ମଣ ଲୋ, କୋଇଲି ।
କୋଇଲି, ଜାଣି ନ ପାରିଲି ଛନ୍ଦ ମୁହିଁ
ଯାଅ ବୋଲି ଲକ୍ଷ୍ମଣଙ୍କୁ ଦେଲି ପଠିଆଇ ଲୋ, କୋଇଲି ।
କୋଇଲି, ଝଟତିରେ ଯାଆନ୍ତେ ଲକ୍ଷ୍ମଣ,
ଝାଡର ଭିତରେ ଲୁଚି ଥିଲାଟି ରାବଣ ଲୋ, କୋଇଲି ।
କୋଇଲି, ନିର୍ମଳ ତପସ୍ୱୀ ରୂପ ଧରି,
ନିର୍ଭରେ ବସିଲା ଆସି ଦୁଆର ଆବୋରି ଲୋ, କୋଇଲି ।
କୋଇଲି, ଟେକିଣ କହଇ ମାୟା ଯତି,
ଟେକି ମୋତେ ଫଳ ଭିକ୍ଷା ଦିଅ ମହାସତୀ ଲୋ, କୋଇଲି ।
କୋଇଲି, ଠିକ କଥା ଜାଣି ନ ପାରିଲି,
ଠକ ଯତି କରେ ପୁଣି ଫଳ ଭିକ୍ଷା ଦେଲି ଲୋ, କୋଇଲି ।
କୋଇଲି, ଡିଙ୍ଗର ରାବଣ ବଡ଼ ଦୁଷ୍ଟ,
ଡାହାଣ ଭୁଜକୁ ମୋର ଧରିଲା ପାପିଷ୍ଠ ଲୋ, କୋଇଲି ।
କୋଇଲି, ଢଳିଣ ଚାହିଁଲା ଆକାଶକୁ,
ଢଳେ ରଥ ଶୂନ୍ୟେ ଆସି ମିଳିଲା ତାହାକୁ ଲୋ, କୋଇଲି ।
କୋଇଲି, ଆଣି ମୋତେ ରଥରେ ବସାଇ,
ଆକାଶ ମାର୍ଗରେ ରଥ ନେଲା ତହୁଁ ବାହି ଲୋ, କୋଇଲି ।
କୋଇଲି, ତୁରିତେ ତା' ରାଜ୍ୟରେ ମିଳିଲା ।
ତହୁଁ ଅଶୋକ ବନରେ ମୋତେ ଲୁଚାଇଲା ଲୋ, କୋଇଲି ।
କୋଇଲି, ଥାନ୍ତି ଜଗି ସହସ୍ରେ ଅସୁରୀ,
ସ୍ଥାନ ଟିକିଏ ନଥାଏ ବସିଥାନ୍ତି ଘେରି ଲୋ, କୋଇଲି ।
କୋଇଲି, ଦିବା ରାତି ଦୁଇ ମୋର ଏକା,
ଦିନ ନ ସରଇ ନିରନ୍ତରେ କରି ଦକାଲୋ, କୋଇଲି ।
କୋଇଲି, ଧାତା ମୋତେ ଏତେ କଷ୍ଟ ଦେଲା,
ଧରାଇ ଅସୁର ଘରେ ବନ୍ଦୀକରାଇଲା ଲୋ, କୋଇଲି ।
କୋଇଲି, ନାରାଚ ଘେନିଣ ରଘୁନାଥ,
ନିମିଷରେ ମୃଗ ମାରି ଆସି ବେନି ଭ୍ରାତଲୋ, କୋଇଲି ।
କୋଇଲି, ପର୍ଣ୍ଣକୁଟୀ ଦ୍ୱାରେ ଡାକୁଥିବେ,
ପଯର ପଖାଳୁ ଜଳ ଦିଅ ସୀତା ଏବେଲୋ, କୋଇଲି ।
କୋଇଲି, ଫୁଟି ଡାକୁଥିବେ ବେନିଭାଇ,
ଫୁଟିଛୁଁ ତୃଷାରେ ଜଳ ଦିଅ ବଇଦେହୀଲୋ, କୋଇଲି ।
କୋଇଲି, ବୋଲ ଯେବେ ନ ଶୁଣିବେ ମୋର,
ବୋଲିବେ କେ ଘେନିଗଲା ସୀତାକୁ ଆମ୍ଭର ଲୋ, କୋଇଲି ।
କୋଇଲି, ମଡିଆ ଦୁଆରେ ବେନିଭାଇ,
ମୋତେ ଡାକୁଥିବେ କାନ୍ତ ମୃଗଭାର ଥୋଇ ଲୋ, କୋଇଲି ।
କୋଇଲି, ଜୀବଯିବା ପ୍ରାୟେ ହେଉଥିବେ,
ମାସକ ଯେ ଲକ୍ଷେ ଯୁଗ ପରାୟ ମାଣିବେ ଲୋ, କୋଇଲି ।
କୋଇଲି, ରାବୁଥିବେ ମୋର ନାମ ଧରି,
ରାତ୍ର ଦିବା ନୟନରୁ ବହୁଥିବ ବାରି ଲୋ, କୋଇଲି ।
କୋଇଲି, ଲଙ୍କାର ରାବଣ ଆଣିବାର,
ଲକ୍ଷ୍ମଣ ସହିତେ କାନ୍ତେ ନୋହିଲା ଗୋଚର ଲୋ, କୋଇଲି ।
କୋଇଲି, ବାରତା ପାଇଲେ ପ୍ରାଣନାଥ,
ବାରାନିଧି ବାନ୍ଧିଣ ଆସିବେ ବେନି ଭ୍ରାତ ଲୋ, କୋଇଲି ।
କୋଇଲି, ଶତ୍ରୁ ରାବଣଙ୍କୁ ବିନାଶିବେ,
ଶାଢ଼ୀ ବାନ୍ଧି ବିଭୀଷଣେ ରାଜା କରାଇବେ ଲୋ, କୋଇଲି ।

କୋଇଲି, ଶ୍ରୀରାମ ଲକ୍ଷ୍ମଣ ବେନି ଭାଇ,
ଶିଷ୍ଟ ପାଳି ଦୁଷ୍ଟ ନାଶି ଉଶ୍ୱାସନ୍ତି ମହୀ ଲୋ, କୋଇଲି ।
କୋଇଲି, ଶୁଭେ ହୋଇ ଲଙ୍କାରେ ପ୍ରବେଶ,
ସଙ୍ଗେ ନେଇ ମୋତେ ଚଳିଯିବେ ନିଜ ଦେଶ ଲୋ, କୋଇଲି ।
କୋଇଲି, ହେବେ ମୋତେ ଘେନି ଅଭିଷେକ
ହରଷେ ଖଟିବେ ତାଙ୍କ ପାତ୍ର ମନ୍ତ୍ରୀ ଲୋକ ଲୋ, କୋଇଲି ।
କୋଇଲି, କ୍ଷେମେ ରାମ ଅଯୋଧ୍ୟା ପ୍ରବେଶ,
କ୍ଷନ୍ଦେ ଭଣିଲେ ଗୀତେ ବଳରାମ ଦାସ ଲୋ, କୋଇଲି ।

## କମଳଲୋଚନ ଚଉତିଶା

କମଳ ଲୋଚନ ଶ୍ରୀହରି । କରେଣ ଶଙ୍ଖ ଚକ୍ରଧାରୀ ।
ଖଗ ଆସନେ ଖଗ ପତି । ଖଟନ୍ତି ଲକ୍ଷ୍ମୀ ସରସ୍ୱତୀ ।
ଗରୁଡ଼ ଆସନେ ମୁରାରି । ଗୋପରେ ରଖିଲେ ବାଛୁରୀ ।
ଘନ କଠିନ କଳେବର । ଘଟଣ ଶ୍ରୀମୁଖ ସୁନ୍ଦର ।
ନନ୍ଦନନ୍ଦନ ଗୋପୀନାଥ । ନିସ୍ତରିଯିବ ନରେ ଚିନ୍ତ ।
ଚନ୍ଦ୍ରମା ପ୍ରାୟେକ ବଦନ । ଚାହିଁଲେ ଖଣ୍ଡେ ଦୁଃଖମାନ ।
ଛତ୍ରୀ ଉତ୍ତମ ଶିରୋମଣି । ଛଟକେ ଆଣିଲେ ରୁକ୍ମିଣୀ ।
ଜଗଜ୍ଜୀବନ ଦାଶରଥି । ଜାନକୀ ଦେବୀ ପ୍ରାଣପତି ।
ଝୀନ ପଟନୀ ଅଙ୍ଗେ ଶୋଭା । ଝଟକେ ବିଦ୍ୟୁ ପ୍ରାୟେ ଆଭା ।
ନୀଳେନ୍ଦ୍ରୀ ଜଳେ ପଦ୍ମ ଆଖି । ନିସ୍ତରିଯିବା ନରେ ଦେଖି ।
ଟେକିଲେ ଦୂବ କରେ ଦାରୁ । ଟାଣପଣରେ ଭାଙ୍ଗେ ମେରୁ ।
ଠଣ ସୁନ୍ଦର ଶିରୋମଣି । ଠିକେ କମଳା ଯାର ରାଣୀ ।
ଡମ୍ବରୁଧର ଯାକୁ ସେବା । ଡରେ ଖଟନ୍ତି ସର୍ବ ଦେବା ।
ଢମ ଯେ କଲା ରାୟେ କଂସ । ଢାଳେ ଅସୁର ଗଲାନାଶ ।
ଅନନ୍ତ ନାମେ ଅନ୍ତ ନାହିଁ । ଅଣ ଅକ୍ଷରେ ଯାର ଦେହୀ ।
ତପନ କୁଳେ ଅବତରି । ତାରିଲେ ଗଉତମ ନାରୀ ।
ଥବିରପଣେ ମାୟାଗତି । ଥୟ ନ ଜାଣେ ବେଦପତି ।
ଦରିଦ୍ର ଦାମୋଦର ମିତ୍ର । ଦଣ୍ଡକେ ଦେଲେ କୋଟିଅର୍ଥ ।
ଧରଣୀଧର ଶିରୋମଣି । ଧ୍ରୁବଙ୍କୁ ନିସ୍ତାରିଲେ ପୁଣି ।
ନୃସିଂହମାଧବ ମୁରାରି । ନଖେଣ ହିରଣ୍ୟ ବିଦାରି ।
ପରମାନନ୍ଦ ପଦ୍ମଲାଭ । ପୂରି ରହିଛ ସର୍ବ ଜୀବ ।
ଫୁଲାପଣକୁ ନୋହେସରି । ଫୁଲ ମାଳରେ ବେଢ଼ଇରି ।
ବାଳିକି ବଧକଲ ହେଳେ । ବନ୍ଧ ବାନ୍ଧିଲ ସିନ୍ଧୁଜଳେ ।
ଭାଙ୍ଗିଲ ରତ୍ନମୟ ପୁର । ଭ୍ରାନ୍ତି ଛାଡ଼ିଲା ଦେବଙ୍କର ।
ମାଇଲ ଅକ୍ଷୟ ରାବଣ । ମହିମା କେ କରୁ ବଖାଣ ।
ଯାଦବ ବଂଶେ ଜାତ ହୋଇ । ଜଗତ ଉଦ୍ଧାରିବା ପାଇଁ ।
ରଖିଲ ଜଳରେ ଗଜକୁ । ରାଗେଣ ଛେଦିଣ ଗ୍ରାହକୁ ।
ଲାବଣ୍ୟ ମୂର୍ତ୍ତି ଲକ୍ଷ୍ମୀଧର । ଲୟ କରନ୍ତି ସୁର ନର ।
ଶ୍ରୀପତି ଶ୍ରୀକର ଶ୍ରୀଧର । ଶ୍ରିୟା ଦେବୀଙ୍କ ମନୋହର ।
ସଂସାର ଭିତରେ ଉତ୍ତମ । ସାଧୁଙ୍କ ହିତରେ ଜନମ ।
ଶ୍ୟାମ ସୁନ୍ଦର କଳେବର । ସକଳ ଦେବେ ପରିଚାର ।
ହରି ବୋଇଲେ ହରେ ଦୁଃଖ । ହରି ଆନନ୍ଦ ମହାସୁଖ ।
କ୍ଷମା ସାଗର ପୀତବାସ । ଭଣିଲେ ବଳରାମ ଦାସ ।

## ଦେବୀ ମାଳଶ୍ରୀ

ମାଗୋ ! ରଙ୍ଗ ଶସ୍ତ୍ର ରଙ୍ଗ ବସ୍ତ୍ର
ରଙ୍ଗ ତୋ ଅଧର ନେତ୍ର
ନଖ ମୁଖ ରଙ୍ଗ ତୋର
ଲଲାଟେ ରାଗ ସିନ୍ଦୂର
କରେ ରଙ୍ଗଚୁଡ଼ି ଗୋ ମା
ଅଳତା ରଙ୍ଗ ତୋ ପାୟେ
ମାଗୋ ! ରଙ୍ଗ ପାଟବରତ ତୋ ବାହେ ।
ମାଗୋ ! ରଙ୍ଗ ତୋ ପଦ୍ମ ଆସନ
ରଙ୍ଗ ତୋ ପୀତବସନ
ରଙ୍ଗ ତୋ କାନ୍ଧେ ପଇତା
ରଙ୍ଗ ତୋ ଲଲାଟେ ଚିତା ।
ମାଗୋ ! ରଙ୍ଗ ଅଗ୍ନିରୁ ତ ଜାତ ହୋୟେ
ରଙ୍ଗେ ତୁଷ୍ଟି କଲେ ଦେବତାୟେ
ରଙ୍ଗେ ଶିବର ହୋଇଲୁ ଘରଣୀ
ରଙ୍ଗେ ମୈଷାସୁର ମର୍ଦ୍ଦନୀ ।
କାଳ ଡକରାଳି କାଳୀ କରାଳି ରଣ ବେତାଳି
ରୁଧିର ପିବନ୍ତେ ତୋଷ, ଭଣେ ବଳରାମ ଦାସ ।

# ଆଲୋଚନା

## (୧)

### ମାୟାଧର ମାନସିଂହ

# ପ୍ରଥମ ଓଡ଼ିଆ ରାମାୟଣ

ଓଡ଼ିଆମାନଙ୍କର ଜାତୀୟ ଜୀବନକୁ ଗଢ଼ିଥିବା ତିନୋଟି ପୁସ୍ତକ ଭିତରୁ ବଳରାମ ଦାସଙ୍କ ରାମାୟଣ ଏକତମ । ଅନ୍ୟ ଦୁଇଟି ହେଉଛନ୍ତି, ସାରଳାଂକ ମହାଭାରତ ଓ ଜଗନ୍ନାଥ ଦାଶଂକ ଭାଗବତ୍ । ବଳରାମଙ୍କ ରାମାୟଣର ସ୍ୱକୀୟ ବୈଶିଷ୍ୟ ହେଲା, ଏହାର ଉତ୍କୃଷ୍ଟ ବର୍ଣ୍ଣନା ଓ ଜୀବନ୍ତ କଥୋପକଥନ । ମୂଳ ରାମାୟଣର ଚରିତ୍ରଗୁଡ଼ିକ ଦାସଂକ ଲେଖନୀରେ ବହୁ ପରିମାଣରେ ସ୍ୱାଭାବିକ ନରନାରୀ ହୋଇ ଉଠିଛନ୍ତି । ଅନ୍ତତଃ ତୁଳସୀ ରାମାୟଣର ଚରିତ୍ର ଚିତ୍ରଣ ଅପେକ୍ଷା ବଳରାମଙ୍କ ଚରିତ୍ର ଚିତ୍ରଣ ନିକଟତର ଭାବରେ ମାନବିକ । ଅଧିକଂତୁ, ଦାସଙ୍କ ରାମାୟଣ ହୋଇପଡିଛି ଏକ ଓଡ଼ିଶୀ କାବ୍ୟ । କଲିକତା ବିଶ୍ୱବିଦ୍ୟାଳୟ ପ୍ରକାଶିତ 'ଟିପିକାଲ୍ ସେଲେକ୍‌ସନ୍ ଫ୍ରମ୍ ଓରିୟା ଲିଟରେଚର'ର ସଂପାଦକ ଶ୍ରୀ ବିଜୟ ଚଂଦ୍ର ମଜୁମ୍‌ଦାରଙ୍କ ଭାଷାରେ - "ଏକ ଜାତୀୟକବି ଭାବରେ ବଳରାମ ନିଜ ଲୋକଙ୍କ ପାଇଁ ହିଁ କାବ୍ୟ ଲେଖି ଯାଇଛଂତି । ଉତ୍କଳକୁ ସେ ଏକ ସ୍ୱୟଂସମ୍ପୂର୍ଣ୍ଣ କ୍ଷୁଦ୍ର ଜଗତରେ ପରିଣତ କରାଇ ନିଜ ଲୋକେ ନିଜ ଦେଶପ୍ରତି ସ୍ନେହ-ଶ୍ରଦ୍ଧାନ୍ୱିତ ହେବାର ଆଦର୍ଶ ସେ ଥୋଇ ଯାଇଛନ୍ତି । ବଳରାମଙ୍କ ରାମାୟଣରେ ଉତ୍ତର ହିମାଳୟର କୈଳାସ ସେଠୁ ଆସି ଅବସ୍ଥାପିତ ହୋଇଅଛି ଢେଂକାନାଳର କପିଳାସ ପର୍ବତ ତଥା ଓଡ଼ିଶାର ସମଗ୍ର ଗଡ଼ଜାତ ଅଂଚଳ ବନବାସୀ ଯାଯାବର ରାମ-ସୀତାଂକର ଚରଣ-ଚିହ୍ନାଙ୍କିତ ହୋଇ ଉଠିଛି କେବଳ ନୁହେଁ, ଓଡ଼ିଶାର ବନ୍ୟ ଆଦିବାସୀ ଗୋଷ୍ଠୀ ସବୁ ଶ୍ରୀରାମଙ୍କ ଲଂକାଭିଯାନୀ ବାହିନୀର ଅଂଗ ହୋଇ ଉଠିଛନ୍ତି । କିଷ୍କିନ୍ଧା କାଂଡରେ ବଣାଇ ଓ ବାମଂଡାର ଜାଂଗଳ ଅଧିବାସୀମାନେ ଶ୍ରୀରାମଙ୍କ ସୈନ୍ୟ ରୂପେ ଦେଖା ଦେଇଛନ୍ତି ।"

ବଳରାମଙ୍କ ରାମାୟଣରେ ସୀତା ଏକ ଆଦର୍ଶ ଓଡ଼ିଆଣୀ ବୋହୂ ଛଡ଼ା ଆଉ କିଛି ନୁହନ୍ତି । ସେ ସୁନ୍ଦରୀ ଓ ଚିର ଦୁଃଖିନୀ । ଶାଶୁଂକ ପ୍ରତ୍ୟେକ ଆଦେଶ ମାନି ମଧ ବସିଲେ ଉଠିଲେ ଶାଶୁଂକ ତୀବ୍ର ବକା ତାଂକୁ ସହିବାକୁ ହେଉଛି । ରାଜବଧୂ ହେଲେହେଁ, ସୀତା ତାଙ୍କର ପୁରୁଷୋତ୍ତମ ସ୍ୱାମୀଙ୍କ ପାଇଁ କେବଳ ନୁହେଁ ତାଂକର ପ୍ରତ୍ୟାଦାଗତ ଅତିଥିମାନଙ୍କ ପାଇଁ ମଧ, ନିଜ ହାତରେ ରାଂଧୁଛି ଓ ରାଂଧୁଛି ଖାଂଟି ଓଡ଼ିଶୀ ଅନ୍ନ ବ୍ୟଂଜନ ଓ ପିଠାପଣା । କିନ୍ତୁ ବନବାସୀ ଜୀବନର ପ୍ରଥମ ରାତ୍ରିରେ ଚିତ୍ରକୂଟ ପାହାଡ଼ରେ ଏକ କଠିନ ଶିଳାସ୍ତରଣ ଉପରେ ଘାସ-ଶଯ୍ୟାରେ ଶୋଇପଡିଥିବା ରାଜନଂଦିନୀ ସୀତାଙ୍କୁ ଚାହିଁ ଚାହିଁ, ପୁରୁଷୋତ୍ତମ ଶ୍ରୀରାମଙ୍କର ନୈରାଶ୍ୟପୂର୍ଣ୍ଣ ବାକ୍ୟାବଳି ଦେଇ ସେମାନଙ୍କର ପବିତ୍ର, ନିର୍ମଳ ଦାମ୍ପତ୍ୟ ପ୍ରଣୟ ଦାସଂକ ଗ୍ରଂଥରେ କି ଉଦାର ପ୍ରକାଶ ଲାଭ ନ କରିଛି-

ଉପାୟ କରିଣ ଯେ ତରିଲେ ବେନି ପ୍ରାଣୀ  
ତେତେ ବୁଦ୍ଧି ଲକ୍ଷ୍ମଣରେ ଅଂଭେ ନାହୁଁ ଜାଣି ।  
ଅମନୁଷ୍ୟ କରି ମୋତେ ଧାତା ଜାତ କଲା  
ମୋହର ପାଳଟେ କିଂପା ବୃକ୍ଷେକ ନ କଲା ।  
ଫଳ ହୋଇଥିଲେ ଭୋଗ କରଂତେ ଯେ ପ୍ରାଣୀ

ଏ ଯେ ଜାନକୀରେ ବାବୁ ରାଜାର ଦୁଲାଣୀ ।
ମୋର ହସ୍ତ ଧରି ହୋଇଲାକ ବଡ଼ ଦୁଃଖୀ
ଆଜି ତୃଣ ପାରି ଶୋଇଲାକ ଶଶିମୁଖୀ ।
ଏ କଥା ଦେଖି ଏ ଦେହ କେମଂତେ ଧରିବି
ଏମଂତ ବୋଲି ବୋଲଂତି ରାଘବ ଯେ ଭାବି ।

ବଳରାମଂକ ରଚନାବଳିକୁ ସମଗ୍ର ଭାବରେ ବିଚାର କଲେ ଏହା ସ୍ପଷ୍ଟ ପ୍ରତୀତ ହେଉଛି ଯେ ଏହି ବରେଣ୍ୟ କବି ନିଜ ଅଂତରରେ ଏକ ତୀବ୍ର ସମାଜ ସଂସ୍କାରକ ଥିଲେ । ସେ ପ୍ରକୃତରେ ଏକ ଜାତି-ଶ୍ରେଣୀ-ହୀନ ସମାଜର ସ୍ୱପ୍ନ ଦେଖୁଥିଲେ ଓ ଖୁବ୍ ସଂଭବତଃ ସେହି କାରଣରୁ ହିଁ, ଧର୍ମକୁ ବ୍ୟବସାୟ ରୂପେ ପରିଣତ କରିଥିଲା ବ୍ରାହ୍ମଣ ପୁରୋହିତ ସଂପ୍ରଦାୟ ପ୍ରତି ତାଙ୍କର ବିଦ୍ୱେଷ ସ୍ଥିର ଭାବରେ ତୀବ୍ର ହୋଇ ଉଠିଥିଲା । ପୁରୀବାସୀ ଥିବାରୁ କବି ନିଜ ଆଖିରେ ପଂଡାମାନେ ଯାତ୍ରୀମାନଂକୁ କିପରି ଠକଂତି ଓ ସେମାନଂକ ଉପରେ ଅତ୍ୟାଚାର କରଂତି, ସେ ସବୁ ସେ ନିଜ ଆଖିରେ ଦେଖୁଥିଲେ । କିନ୍ତୁ ସେ ଦିଗରେ କିଛି କରି ନପାରି ଏକ ନିଃସହାୟ କ୍ରୋଧରେ ଜଳୁଥିଲେ । ତେଣୁ କବି, ଯେଉଁଠି ପାରିଛଂତି ଧର୍ମ ବ୍ୟବସାୟୀ ପୁରୋହିତ ସଂପ୍ରଦାୟକୁ ଅତି ମଳିନ ବର୍ଣ୍ଣରେ ଚିତ୍ରିତ କରିବାକୁ ଛାଡ଼ି ନାହାନ୍ତି । କେବଳ ଯେ ବ୍ୟଂଗ ବିଦ୍ରୂପ କରି କବି ସମାଜ-ସଂସ୍କାର କରିବାକୁ ଚେଷ୍ଟା କରିଥିଲେ ତାହା ନୁହେଁ, ମନେ ହେଉଛି, ତାଂକ ବର୍ଣ୍ଣିତ ଚିତ୍ରମାନଂକର ଶିକ୍ଷଣୀୟ ମାନବିକତା ଭିତରେ ଦେଇ ମଧ୍ୟ ସେ ଏକ ଉଦାରତର ସମାଜ ଗଢ଼ିବାର କଳ୍ପନା କରିଥିଲେ ।

(‘ଓଡ଼ିଆ ସାହିତ୍ୟର ଇତିହାସ’, କଟକ, ୧୯୬୭)

# (୨)

## ସୁରେନ୍ଦ୍ର ମହାନ୍ତି

# ବଳରାମ ଦାସ : ମାନବବାଦୀ ଦୃଷ୍ଟିକୋଣ

ଉତ୍କଳରେ ରାମବାଦ ବା ରାମଧର୍ମର ଅଭିବ୍ୟକ୍ତି ସମ୍ପର୍କରେ ନିର୍ଭରଯୋଗ୍ୟ ଉପାଦାନ ଅତ୍ୟନ୍ତ ବିରଳ । ରାମାନୁଜଙ୍କ ପରଠାରୁ ଉତ୍କଳରେ ଭକ୍ତିଧର୍ମର ପ୍ରଥମ ପର୍ଯ୍ୟାୟରେ ରାମ ଧର୍ମ ପ୍ରବର୍ତ୍ତିତ ହୋଇଥିବା ସମ୍ପୂର୍ଣ୍ଣ ସ୍ୱାଭାବିକ । ନାଥଯୋଗୀମାନେ, ସମ୍ଭବତଃ ଯୋଗର ଶୁଷ୍କ କ୍ଳିଷ୍ଟତା ପରିବର୍ତ୍ତେ, ରାମଭକ୍ତିର ସୁଗମ ଓ ସୁଲଭ ପନ୍ଥା, ଆଶ୍ରୟ କରିଥିଲେ । ନାଥ-ଗୁରୁ ଗୋରକ୍ଷନାଥଙ୍କ ଶିଷ୍ୟ କବୀରଙ୍କ ପରି ହଠଯୋଗୀମାନେ ସେଥିପାଇଁ, ରାମ ଧର୍ମର ଆଚାର୍ଯ୍ୟ ଓ ପ୍ରଚାରକ ହୋଇପାରିଥିଲେ । ଓଡ଼ିଶାରେ ମଧ୍ୟ ଯୋଗ ଭିତ୍ତିକ ଜ୍ଞାନମିଶ୍ରାଭକ୍ତିର ସାଧକମାନେ “ହରେକୃଷ୍ଣ” ମହାମନ୍ତ୍ର ପରିବର୍ତ୍ତେ “ହରେ ରାମ” ରାମତାରକ ମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ।

ପ୍ରାକ୍-ଚୈତନ୍ୟ ଉତ୍କଳରେ ରାମଶ୍ରିତ ସାହିତ୍ୟ, ଉଭୟ ସଂସ୍କୃତ ଓ ଓଡ଼ିଆରେ ପରିଲକ୍ଷିତ ହୁଏ । ବଳରାମଙ୍କ ପୂର୍ବବର୍ତ୍ତୀ ମାର୍କଣ୍ଡ ଦାସ ‘ମହାଭାସ’ ନାମରେ ରାମ ଚରିତ-ମୂଳକ ଖଣ୍ଡେ ଗ୍ରନ୍ଥ ରଚନା କରିଥିଲେ । ସାରଳାଙ୍କ ‘ମହାଭାରତ’ରେ ମଧ୍ୟ ‘ରାମାୟଣ’ ସଂକ୍ଷିପ୍ତ ରୂପରେ ସନ୍ନିବିଷ୍ଟ ହୋଇଥିଲା । ରାମଙ୍କ ମହିମା ଓ ତତ୍ତ୍ୱ ପ୍ରଚାର, ବଳରାମଙ୍କ ‘ଜଗମୋହନ ରାମାୟଣ’ର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ବଳରାମ ରାମାୟଣରେ ସର୍ବତ୍ର ସେହି ରାମଙ୍କର ମହିମାହିଁ ପ୍ରତିଷ୍ଠିତ କରିଅଛନ୍ତି ।

'ଆଦିକାଣ୍ଡ'ର 'ଶିବପାର୍ବତୀ' ସମ୍ବାଦରେ ଏହାର ସୂଚନା ଲକ୍ଷ୍ୟ କରାଯାଇପାରେ । ଏହା ସଂସ୍କୃତ ବାଲ୍ମୀକି ରାମାୟଣର ବହିର୍ଭୂତ ଅଟେ । ଏଥିରେ ଶିବ ଦିନୁ ଦିନ 'ବଳହୀନ ଦୁର୍ବଳ' ହୋଇ ପଡୁଥିବାରୁ, ସ୍ୱାସ୍ଥ୍ୟଲାଭର ଉପାୟ ବ୍ରହ୍ମାଙ୍କୁ ଜିଜ୍ଞାସା କରିବାରୁ ସେ 'ରାମତାରକ' ମନ୍ତ୍ର ଜପ କରିବାପାଇଁ ଶିବଙ୍କୁ ଉପଦେଶ ଦେଇଥିଲେ:

'ଏବେ ସଦାଶିବ ତୁ ମୋହର ବୋଲ କର
ତାରକବ୍ରହ୍ମ ନାମ ତୁ ଜପି ପାପ ହର ।

ସାଧନା କର ହେ ଶିବ ରାମନାମ ପଦ
ଦୁର୍ବଳତା ନାଶଯିବ ତୁ ଜପି ପାପ ହର ।

ଏ ଯେ ମନ୍ତ୍ରରାଜ ସର୍ବ ମନ୍ତ୍ର ମଧ୍ୟେ ସାର
ନିତ୍ୟରେ ସ୍ମରଣ କଲେ ଖଣ୍ଡେ ପାପଭାର ।"

(ଆଦିକାଣ୍ଡ)

ଶୈବ-ନାଥ ଧର୍ମର ବିଲୟ କାଳରେ, ତାହା ଯେପରି ରାମ-ଧର୍ମ ମଧ୍ୟରେ ସମନ୍ୱିତ ହୋଇଥିଲା, ଏଥିରେ ତାହାର ସୂଚନା ପ୍ରାଞ୍ଜଳ । ମାର୍କଣ୍ଡ ଦାସଙ୍କ 'ମହାଭାସ'ରେ ମଧ୍ୟ ଏହିପରି ସଙ୍କେତ ପରିଲକ୍ଷିତ ହୁଏ । ବଳରାମ ଦାସ, ଏହି ରାମତାରକ ମନ୍ତ୍ରର ସାଧକ ଥିଲେ; କିନ୍ତୁ ଦିବାକର ଦାସଙ୍କ ବିବରଣୀ ଯଦି ସତ୍ୟ ହୋଇଥାଏ, ତା' ହେଲେ ବଳରାମ ଦାସ ପରବର୍ତ୍ତିକାଳରେ ସଖୀମାର୍ଗର ସାଧନା ଜଗନ୍ନାଥ ଦାସଙ୍କ ଠାରୁ ଶିକ୍ଷା କରିଥିଲେ ହେଁ, ଆଧ୍ୟାତ୍ମିକ ଭାବନା ଓ ସାଧନାରେ ସେ ରାମପନ୍ଥୀ ଶୂନ୍ୟବାଦୀ ଥିଲେ ।

ସମଗ୍ର ମଧ୍ୟଯୁଗୀୟ ସାହିତ୍ୟରେ ବଳରାମଙ୍କ ସାହିତ୍ୟ, ସମାଜ-ବିପ୍ଳବରେ ଏକ ପ୍ରେରଣାମୟ ସଙ୍କେତ । ରସଦୃଷ୍ଟିରୁ, ଅବଶ୍ୟ, ବଳରାମ ଦାସଙ୍କ ଶ୍ରୀମଦ୍ ଭଗବଦଗୀତା ପରି ରଚନାର କୌଣସି ମୂଲ୍ୟ ନାହିଁ; ମାତ୍ର ସେଥିରେ ସମାଜ ବିପ୍ଳବର ଯେଉଁ ପ୍ରଚଣ୍ଡ ପୌରୁଷ ପ୍ରଚ୍ଛନ୍ନ ରହିଅଛି, ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ତାହା ପ୍ରକାଶ ପାଇଅଛି । ବ୍ରାହ୍ମଣ-ସଂସ୍କୃତି ଓ ରକ୍ଷଣଶୀଳତା ପୁଣି ବର୍ଣ୍ଣାଶ୍ରମର ସ୍ପର୍ଦ୍ଧା ମଧ୍ୟରେ ବନ୍ଧା ପଡ଼ିଥିବା 'ବ୍ରହ୍ମବିଦ୍ୟା'କୁ ମୁଷ୍ଟିମେୟ କଥାକଥିତ ପଣ୍ଡିତଙ୍କ ବଜ୍ରମୁଷ୍ଟି ମଧ୍ୟରୁ ଉଦ୍ଧାର କରି, 'ବାଉରୀ' ମାନଙ୍କୁ ସୁଦ୍ଧା ସେଥିରେ ଅଧିକାର ଦେବା ଷୋଡ଼ଶ ଶତାବ୍ଦୀର ସମାଜରେ କି ବୌଦ୍ଧିକ ଦୁଃସାହସ ଥିଲା, ପୁଣି ମାନବଧର୍ମୀ ପ୍ରଗତିର କି ସୁଦୂରପ୍ରସାରୀ ପୁରୋଦୃଷ୍ଟି ସେଥିରେ ନିହିତ ଥିଲା, ଯେତେ ବର୍ଣ୍ଣନା କଲେ ବି, ତାହା ଯଥେଷ୍ଟ ହେବନାହିଁ । ଅନୁମାନରେ କେବଳ ତାହା ସମ୍ୟକ ହୃଦୟଙ୍ଗମ କରାଯାଇପାରେ । ରାଜ-ରୋଷର ସମ୍ମୁଖୀନ ହୋଇସୁଦ୍ଧା, ବ୍ରାହ୍ମଣ-ପଣ୍ଡିତ ମାନଙ୍କର ଅଭିଯୋଗର ଉତ୍ତରରେ, ବଳରାମ ଦାସଙ୍କ ଉଦ୍ଦୀପ୍ତ ଘୋଷଣା ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ, ସମାଜ ବିପ୍ଳବ ଓ ମାନବବାଦର ଏକ ସ୍ପର୍ଦ୍ଧିତ ଇସ୍ତାହାର । 'ରସ' ଦୃଷ୍ଟିରୁ ଏହା ସାହିତ୍ୟ ହୋଇନପାରେ, ମାତ୍ର ସାହିତ୍ୟରେ 'ରସ' ଅପେକ୍ଷା ଏହିପରି ପ୍ରଜ୍ଞା ଓ ପୌରୁଷଦୀପ୍ତ ଭାବନା, ମାନବ ସମାଜରେ ମୁକ୍ତିର ଦିଗ୍‌ବଳୟକୁ କାଳେକାଳେ ପ୍ରସାରିତ କରିଆସିଛି ।

ସାରଳା ଦାସ 'ପ୍ରାକୃତ ବନ୍ଧ'ରେ 'ମହାଭାରତ' ରଚନା କରି, ପରୋକ୍ଷରେ ସମାଜ ବିପ୍ଳବର ଆହ୍ୱାନ ଦେଇଥିଲେ ସତ୍ୟ, ମାତ୍ର 'ବ୍ରହ୍ମବିଦ୍ୟା'କୁ ଗଣ୍ଠିଧନ ପରି ସାଇତି ରଖିଥିବା ମୁଷ୍ଟିମେୟ ବୌଦ୍ଧିକ ନ୍ୟସ୍ତ-ସ୍ୱାର୍ଥଙ୍କ କବଳରୁ ମୁକ୍ତ କରିବାପାଇଁ, ବଳରାମ ଯେଉଁ ଦୁର୍ମୂଲ୍ୟ ଦେଇଥିଲେ, ଭାରତୀୟ ଭାଷା-ସାହିତ୍ୟର ଇତିହାସରେ କ୍ୱଚିତ୍ ତାହାର ଅନ୍ୟ ଉଦାହରଣ ମିଳିଥାଏ ।

ମାତ୍ର ଏଥିପାଇଁ ବଳରାମ ଦାସଙ୍କୁ କମ୍ ନିର୍ଯ୍ୟାତନା ଓ ଲାଞ୍ଛନାର ସମ୍ମୁଖୀନ ହେବାକୁ ପଡି ନଥିଲା । 'ମୁକ୍ତିମଣ୍ଡପ'ରେ ବ୍ରହ୍ମବିଦ୍ୟାର ଆଲୋଚନା ଚାଲିଥିଲାବେଳେ ସେଠାରେ 'ଶୂଦ୍ର' ବଳରାମଙ୍କୁ ଦେଖିପାରି ବ୍ରାହ୍ମଣମାନେ ଅଭିଯୋଗ କଲେ ।

'ଅବଧାନ ମହାରୁଦ୍ର ମଣିମା ଭୋ ଦେବ,
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଚାରିଜାତି ସୁଲଭ ।

ଶୂଦ୍ର ହୋଇ ଯେବେ କରେ ବ୍ରହ୍ମକର୍ମ ସଂଜ୍ଞା
ତାହାକୁ ଉଚିତ ଦଣ୍ଡ ହୁଅଇ ଯେ ଆଜ୍ଞା ।'

ଏହାର ଉତ୍ତରରେ ଅଭିଯୁକ୍ତ ବଳରାମ ଉତ୍ତର ଦେଇଥିଲେ ।

'ଏ ଯେବେ ବ୍ରହ୍ମ ବିଦ୍ୟାକୁ ଛନ୍ତି ଗୋପ୍ୟ କରି
କାଲି ଦେବାର୍ଚ୍ଚନବେଳେ କହିବ ବାଉରୀ ।'

ମାନବୀୟ 'ମୋକ୍ଷ' ତଥା ସାମାଜିକ ମୁକ୍ତି-ସାଧନାର ଇଷ୍ଟଦେବ 'ଜଗନ୍ନାଥ'ଙ୍କ ଅଭୟରୁ ହେଉ ଅଥବା ବଳରାମଙ୍କ କୃତିତ୍ୱରୁ ହେଉ ପରଦିନ ଦେବାର୍ଚ୍ଚନ ବେଳେ ବଳରାମ ଦାସ ଓଡ଼ିଆ ଭାଷାରେ ସମଗ୍ର ଗୀତାର ଆଲୋଚନା କରିଥିଲେ ଓ ତାହା ଶୁଣି ବ୍ରାହ୍ମଣମାନେ ଭୂସ୍ତୁତି ଛୁଇଁଥିଲେ:

'ତତକ୍ଷଣେ ଗୀତା ଫେଡି କହିଲି ବିଚାରି
ବ୍ରାହ୍ମଣେ ସେ ଗୀତା ଶୁଣି ଚରିତାର୍ଥ କରି ।
ସମ୍ପୂର୍ଣ୍ଣ ହୋଇଲା ଗୀତା ଶୁଣିଲେ ନୃପତି
ବ୍ରାହ୍ମଣମାନେ ତ ଶୁଣି ଛୁଇଁଲେ ଭୂସ୍ତୁତି ।'

ମାତ୍ର ସାହିତ୍ୟ ତଥା ସାଧନାରେ, ଏ ପ୍ରକାର ଅସାଧାରଣ ଓ ଉଦାର ମାନବବାଦୀ ଦୃଷ୍ଟିକୋଣ ପାଇଁ ବଳରାମ ଦାସଙ୍କୁ ବହୁ ରାଜ-ନିର୍ଯ୍ୟାତନା ଭୋଗ କରିବା ପାଇଁ ପଡିଥିଲା । 'ଭାବ ସମୁଦ୍ର'ରେ କେତେକ ଆଜୀବନମୂଳକ ସୂଚନାରେ ତାହାର ଇତିହାସ ପ୍ରଚ୍ଛନ୍ନ ରହିଅଛି :

'ହରି ହୋ ! ତୋତେ ଆଶ୍ରା କରି କ୍ଷେତ୍ରେ ରହିଲି
ତୋତେ ଆଶ୍ରା କରି ଫଳ ପାଇଲି
ହରି ତୁ ବିଶ୍ୱାସଘାତକତା କଲୁ ।
ହରି ହୋ ! ନୃପତି ହାତେ ବନ୍ଧାଇଲୁ ମୋତେ
କାଳିଆ ଦାସ ନ ଯାଇ ପରତେ ।
ହରି ହୋ ! ତୋତେ ଆଣ୍ଟ କରି ଧରିଣ ଥିଲି
ଏତେ ଦିନେ ଏବେ ଶାସ୍ତ ପାଇଲି ।
ହରି ତୁ, ଏଡ଼େ କର୍ମ କିମ୍ପା କଲୁ
ଦୋଷ ମୋ ଥିଲେ, ବାରେ ନ ସହିଲୁ ।'

ସମ୍ଭବତଃ ପ୍ରତାପରୁଦ୍ରଦେବଙ୍କ ଆଦେଶରେ ବଳରାମ କାରାଗାରରେ ବନ୍ଦୀ ଥିବାବେଳେ 'ଭାବସମୁଦ୍ର' ରଚିତ ହୋଇଥିଲା ।

('ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ଓ ଉତ୍ତର ମଧ୍ୟପର୍ବ' କଟକ, ୧୯୬୭)

## (୩)

## ବଂଶୀଧର ମହାନ୍ତି

## ବଳରାମ ଦାସ

ବଳରାମଦାସଙ୍କର ରାମାୟଣ ବାଲ୍ମୀକି ରାମାୟଣର ପୂର୍ଣ୍ଣ ଅନୁବାଦ ନୁହେଁ । ପଣ୍ଡିତ ଗୋପୀନାଥ ନନ୍ଦ ପ୍ରଥମେ ଏହାର ଆଲୋଚନା 'ମୁକୁର' ପତ୍ରିକାରେ ପ୍ରକାଶ କରିଥିଲେ କିନ୍ତୁ ତାହା ଅସମ୍ପୂର୍ଣ୍ଣ ଅବସ୍ଥାରେ ରହିଗଲା । ମୂଳ ବାଲ୍ମିକୀ ରାମାୟଣ ବିଷୟବସ୍ତୁର ବ୍ୟତିକ୍ରମ ଦାଣ୍ଡି ରାମାୟଣର ବିଭିନ୍ନ ଛତ୍ରରେ ପରିଲକ୍ଷିତ ହୁଏ । ଅଧିକାଂଶ କାଣ୍ଡରେ ଶ୍ରୀକ୍ଷେତ୍ରର ଜଗନ୍ନାଥଙ୍କର ବର୍ଣ୍ଣନା ଓ ତାଙ୍କର ମହାତ୍ମ୍ୟ କୀର୍ତ୍ତନ ରହିଛି । ଆଦିକାଣ୍ଡରେ ଜରତା ଓ କାମମୋହିନୀ ବେଶ୍ୟା ଋଷ୍ୟଶୃଙ୍ଗଙ୍କୁ ଆଣିବା, ହରିଶ୍ଚନ୍ଦ୍ର ଉପାଖ୍ୟାନ, ଅଯୋଧ୍ୟାକାଣ୍ଡରେ ଶବରମାନଙ୍କର ବର୍ଣ୍ଣନା, ମନ୍ଥରାର ପୂର୍ବ ଜନ୍ମ ବର୍ଣ୍ଣନା, ଗୟାରେ ଶ୍ରୀରାମଙ୍କର ପିଣ୍ଡଦାନ, ଗୟାତୀର୍ଥ ମହାତ୍ମ୍ୟ, ତୀର୍ଥସ୍ଥ ବ୍ରାହ୍ମଣମାନଙ୍କୁ ରାମଚନ୍ଦ୍ରଙ୍କର ଅଭିଶାପ, ଗୋପାଳମାନେ ତୃଷାତୁର ରାମ ଲକ୍ଷ୍ମଣଙ୍କୁ କ୍ଷୀର ପ୍ରଦାନ ନ କରିବା ହେତୁ ସେମାନେ ଅଭିଶାପଗ୍ରସ୍ତ ହେବାପରେ ପ୍ରାର୍ଥନା ଫଳରେ ଅଭିଶାପ ମୋଚନ, ରାବଣ ସୀତାଙ୍କୁ ଅପହରଣ କରି ନେଉଥିବା ବେଳେ ଜଟାୟୁ ସହିତ ଶ୍ରୀରାମଙ୍କର ଯୁଦ୍ଧ ଓ ସେତିକିବେଳେ ସୀତା ରଥରୁ ଓହ୍ଲାଇ ବଣ ମଧ୍ୟକୁ ପଳାଇଯିବା, ପରେ ରାବଣ ପୁଣି ତାଙ୍କୁ ଧରି ଆଣି ରଥରେ ବସାଇବା ପ୍ରଭୃତି ବର୍ଣ୍ଣନା କବିଙ୍କର ନିଜସ୍ୱ ବର୍ଣ୍ଣନା । କିଷ୍କିନ୍ଧା କାଣ୍ଡରେ ମରୁତ ରାଜା ଓ ଲୀଳାବତୀ ହରଣବିଷୟ, କୁକୁଟର ବରଲାଭ, ଶ୍ରୀରାମ ଓ ବକପକ୍ଷୀର କଥୋପକଥନ ପ୍ରଭୃତି ବର୍ଣ୍ଣନାରେ କବି ସ୍ୱୀୟ କବି ଲେଖନୀର ବୈଚିତ୍ର୍ୟ ପ୍ରତିପାଦନ କରି ଅଛନ୍ତି । ସୁନ୍ଦରାକାଣ୍ଡରେ ଗୁଣ୍ଡୁଚି ମୂଷାର ସେତୁବନ୍ଧ ବନ୍ଧନରେ ରାମଚନ୍ଦ୍ରଙ୍କୁ ସାହାଯ୍ୟ ପ୍ରଦାନ, ସେତୁବନ୍ଧ ନିକଟରେ ରାମଚନ୍ଦ୍ରଙ୍କର ରାମେଶ୍ୱର ଶିବଙ୍କୁ ପୂଜା ଓ ଯୁଦ୍ଧକାଣ୍ଡରେ ବା ଲଙ୍କାକାଣ୍ଡରେ ସନ୍ତୁପଣ୍ଡା ଉପାଖ୍ୟାନ ପ୍ରଭୃତି ବିଷୟ ହେଉଛି ମୂଳ ସଂସ୍କୃତ ରାମାୟଣରୁ କେତେକ ବିଚ୍ୟୁତି । ଏହାଛଡ଼ଶ ବାଲ୍ମୀକି ରାମାୟଣ ବିଭିନ୍ନ କାଣ୍ଡର ବିଷୟକ୍ରମ ବଳରାମ ଦାସଙ୍କ ରାମାୟଣରେ ରକ୍ଷିତ ହୋଇନାହିଁ । ଓଡ଼ିଶାର ତତ୍କାଳୀନ ସମର ବିଭବ, ରାଜା, ରାଜ୍ୟ, ଓଡ଼ିଆମାନଙ୍କର ବେଶଭୂଷା, ଚାଲିଚଳଣ, ଖାଦ୍ୟପେୟ, ପର୍ବପର୍ବାଣୀ ପ୍ରଭୃତିର ବର୍ଣ୍ଣନା ବା ପ୍ରକାରାନ୍ତରେ ଖ୍ରୀ:ଷୋଡଶ ଶତାବ୍ଦୀ ଓଡ଼ିଶାର ସାମାଜିକ ଇତିହାସ ରାମାୟଣରେ ଦେଖିବାକୁ ମିଳେ । ସାରଳା ଦାସଙ୍କର ମହାଭାରତରେ ଯେପରି ତତ୍କାଳୀନ ପଞ୍ଚଦଶ ଶତାବ୍ଦୀ ଓଡ଼ିଶାର ଏକ ଗୌରବମୟ ଆଲେଖ୍ୟ ଦେଖିବାକୁ ମିଳେ । ସେହିପ୍ରକାର କ୍ରମ ବଳରାମ ଦାସଙ୍କ ରାମାୟଣରେ ରହିଛି ।

ସାରଳା ଦାସଙ୍କର ମହାଭାରତରେ ସମର ପ୍ରସଙ୍ଗର ଯେପରି ବିଶଦ ବର୍ଣ୍ଣନା ଦିଆଯାଇଛି ସେପ୍ରକାର ବର୍ଣ୍ଣନା ବଳରାମ ଦାସଙ୍କର ରାମାୟଣରେ ଦେଖିବାକୁ ମିଳେ । ଗଡ଼ନିର୍ମାଣ ପଦ୍ଧତି, ବିଭିନ୍ନ ବ୍ୟୂହରଚନା, ଅସ୍ତ୍ରଶସ୍ତ୍ରମାନଙ୍କର ନାମକରଣ, ପାଇକମାନଙ୍କର ବେଶଭୂଷା ବିଶଦ ଭାବରେ ବର୍ଣ୍ଣିତ । ଯେପରି ଶରମାନଙ୍କର ନାମ କରଣରେ ପାଶୁପତ, ନାରାୟଣାସ୍ତ୍ର, ଇନ୍ଦ୍ର ଅଗ୍ନି, ରୁଦ୍ର, ଜୟା, ବିଜୟା, ଫରି, ଲୋହ, ବ୍ରହ୍ମଫାସି, ରୁଦ୍ରଫାସି, ଅମୃତାସ୍ତ୍ର, ମେଘାସ୍ତ୍ର,ଗର୍ଜନା, ବୈଷ୍ଣବାସ୍ତ୍ର, ଶରଯନ୍ତା ଇତ୍ୟାଦି । ସ୍ଥାନ ବିଶେଷରେ ଯେଉଁଠି କବି ବଣ ଜଙ୍ଗଲର ବର୍ଣ୍ଣନା କରିଛନ୍ତି ସେଠାରେ ଗଛମାନଙ୍କର ଏକ ଦୀର୍ଘ ତାଲିକା ଦେଇଛନ୍ତି ଓ ସେହିପରି ପଶୁପକ୍ଷୀମାନଙ୍କର ବର୍ଣ୍ଣନା ମଧ । ଆରଣ୍ୟକ କାଣ୍ଡରେ ଏ ପ୍ରକାର ବର୍ଣ୍ଣନା ପ୍ରଭୂତ ଭାବରେ ଦେଖିବାକୁ ମିଳେ । ଯେପରି-

ଜାମୁ ଜମ୍ବିଳ ଯେ କେନ୍ଦୁଶାଳ ପିଆଶାଳ
ପଳାଶ କରୁଣା ଯେ ଅଛନ୍ତି ମାଳମାଳ ।

ଟଭା ଯେହୁଟ ଯେତେକ ବାତାପି କଦମ୍ବ

ଲେମ୍ବୁ କରମଙ୍ଗା ଯେ ନାରଙ୍ଗ ସାନ ଆମ୍ବ ।
ହରିଡ଼ା କୋଚିଲାବୃକ୍ଷ ଆବର ଅଶ୍ୱତ୍‌ଥ ।
ଅଗର ତେନ୍ତୁଳି ପୁଣି କେନ୍ଦୁ ଯେ କପିତ୍‌ଥ ।                (ଆରଣ୍ୟକ)

ପୃଷ୍ଠା ପୃଷ୍ଠା ଏମିତି କେତେ ବର୍ଣ୍ଣନା । ପଶୁପକ୍ଷୀମାନଙ୍କର ନାମକରଣରେ ସେମିତି କେତେ ନାଁ ଶୁଣିବାକୁ ମିଳେ ଯାହାର ନାମ ଏବେ ମଧ୍ୟ ଲୁପ୍ତ ହୋଇଗଲାଣି । ସେ ସବୁର ତାଲିକା ମଧ୍ୟ ସେହିପରି ଦୀର୍ଘ । ଯେପରି ଓଧ, ହରଡ ଚଢ଼େଇ, ଖୁରାଣ୍ଡ, ଘୋଡଙ୍ଗ, ଶାଳଗଜ, କାଠକଟା ଚଢ଼େଇ, ବାଇଆ, ଗେଣ୍ଡାଳିଆ, ପାରୁଆ, ଭରତିଆ, ସୋରିଷିଆ ଶୁଆ, ତେଣ୍ଡୋଇ, ବାଦୁରି, ସାଗୁଣା, ଫିଫି, କେରଣ୍ଡିଆ ଇତ୍ୟାଦି ।

ଆରଣ୍ୟକ ପର୍ବରେ ଶ୍ରୀରାମ ଲକ୍ଷଣ ଓ ସୀତାଙ୍କର ବିଭିନ୍ନ ତୀର୍ଥ ଦର୍ଶନରେ କବି ଉତ୍କଳର ବହୁ ତୀର୍ଥର ବର୍ଣ୍ଣନା ଦେଇଅଛନ୍ତି । ଯେପରି ଚନ୍ଦ୍ରଭାଗା ଓ କୋଣାର୍କ ତୀର୍ଥ, ରାମଚଣ୍ଡୀ ମନ୍ଦିର, ଏକାମ୍ର ତୀର୍ଥ, ବିନ୍ଦୁ ସରୋବର, ତପ୍ରରେ ଚିତ୍ରୋତ୍ପଳା କୂଳସ୍ଥ ବିଷ୍ଣୁନାଥଙ୍କୁ ଦର୍ଶନ, ଶ୍ରୀକ୍ଷେତ୍ର ପରେ ଋଷିକୁଲ୍ୟା ନଦୀରେ ସ୍ନାନ ତର୍ପଣାଦି କ୍ରିୟାର ବର୍ଣ୍ଣନା ରହିଛି । ବାଲ୍ମୀକି ରାମାୟଣର ପୌରାଣିକ ବର୍ଣ୍ଣନାକୁ ସେ ଏକ ନୂତନ ବାସ୍ତବ ରୂପରେ ଅନୁରଞ୍ଜିତ କରିବାକୁ ଯାଇ ବହୁ ସ୍ଥାନରେ ଲୌକିକ ବର୍ଣ୍ଣନା ମଧ୍ୟ ଦେଇଅଛନ୍ତି । ବନବାସ ସମୟରେ କେଉଁଠି ରାମ ଖଣତି ଘେନି ଚୁଲି ଖୋଳିଛନ୍ତି ରେଷେଇପାଇଁ, ଲକ୍ଷ୍ମଣ ପାଣି ପାଇଁ ଯାଇଛନ୍ତି, ଝକମକ ପଥରରେ ତୁଳା ଦେଇ ନିଆଁ ବାହାର କରି ଚୁଲି ଲଗେଇଛନ୍ତି । ଏହି ଗ୍ରାମ୍ୟ ବର୍ଣ୍ଣନା ସହିତ ତତ୍କାଳୀନ ରାଜକୀୟ ଆଡମ୍ବରର ବର୍ଣ୍ଣନା ମଧ୍ୟ ରହିଛି । କେଉଁଠି ଚନ୍ଦନ କାଠର ପଲଙ୍କ, ଦେବାଙ୍କ ବସନରେ ନିର୍ମିତ ତୂଳା, ସିନ୍ଧୁଆ ପାଟଶୋଡ଼ୀ ତା ଉପରେ ପଡ଼ିଛି, ଶ୍ୱେତଚାମର, ଆଲଟ ବିଞ୍ଚଣା, କେଉଁ ସ୍ତ୍ରୀ ହାତରେ ତଡ଼ପ, କିଏ ଛୁରୀ, ଖଣ୍ଡା, କେବା ପୁଣି ଦର୍ପଣ, କିଏ ପୁଣି ବାଙ୍କିଆ ଧରି ଠିଆ ହୋଇଛନ୍ତି । ମାୟା ମୃଗର ବର୍ଣ୍ଣନାରେ ମାୟା ମୃଗ କେବଳ ସୁନାର ମୃଗ ନୁହେଁ ତାହା କିପରି ଏକ ବର୍ଣ୍ଣନାରେ ଚିତ୍ରିତ ହୋଇଛି ।

ସୁବର୍ଣ୍ଣର ମୃଗ ରୂପ ହୋଇ ଟୋପି ଟୋପି
ମର୍କତ ମାଣିକ୍ୟର ଯେ ଶୃଙ୍ଗ ଦୁଇଗୋଟି
ଦନ୍ତ ତା'ର ମୁକୁତା ମାଣିକ୍ୟ ଜାଣି ଜିଭ
ନୟନ ଯୁଗଳ ଜାଣି ନୀଳରତ୍ନ ଭାବ ।
ହୀରା ସର୍ବ ସ୍ଫଟିକର ଖୁରା ଅଗ୍ରଚାରି
ଲାଞ୍ଜ ଗୋଟି ଅଟଇ ଯେ କନକ ଚାମରୀ ।                (ଆରଣ୍ୟକ)

ରାମାୟଣ ଗ୍ରନ୍ଥ କବି କିପରି ଲେଖିଲେ ତାହାର କଥା ସେ ଲଙ୍କାକାଣ୍ଡରେ ଲେଖିଛନ୍ତି ଯେ ଲକ୍ଷ୍ମୀନାରାୟଣଙ୍କ ବନ୍ଦାପନାବେଳେ ସେ ଐଶ୍ୱରିକ ଶକ୍ତିଲାଭ କଲେ ରାମାୟଣ ଗ୍ରନ୍ଥ ଲେଖିବାକୁ-

ମୁହିଁ ବଳରାମ ଦାସ ତହିଁ ଥିଲି
ଲକ୍ଷ୍ମୀନାରାୟଣ ଯେ ବନ୍ଦାପନା ଦେଖିଲି ।
ତେଣୁ ମୋର ସକଳ ପାପ ପଳାଇଲା
ରାମାୟଣ ଗ୍ରନ୍ଥ ମୋ ମୁଖରୁ ସ୍ଫୁରିଲା ।

ସାମବେଦୁ ସମ୍ଭୂତ ଯେ ରାମାୟଣ ପୁରାଣ
ନାରାୟଣଙ୍କ ମୁଖୁଂ ଏହା ହୋଇଲା ଉଚ୍ଚାରଣ ।
ଆପଣେ ସରସ୍ୱତୀ ହୃଦେରେଣ ଥାଇ
ଗ୍ରନ୍ଥ ପ୍ରସରିଲେ ପ୍ରସନ୍ନ ମୁଖହୋଇ ।
ଚଉଦ ଖଣ୍ଡ ମହାନାଟକ ବାକ୍ୟସାର

ପଞ୍ଚ ସହସ୍ର ଶ୍ଳୋକ ସୁଗୁଣ ସାଗର ।
ଯେ ହାହୁଂ ଆଗତ ପୁରାଣ ନେଥିଲା ।
ଯେ ଉଦୟ ହୁଅନ୍ତେ ଯାବତ ପୁରାଣ ହେଲା ।

କବି ମହାନାଟକ ଶ୍ରବଣ କଲା ଉତ୍ତାରେ ରାମାୟଣ ଲେଖିବାକୁ ମନ ବଳାଇଲେ । ତାହାପରେ ସେ ଜଗନ୍ନାଥଙ୍କ ଦୟାରୁ ରାମାୟଣ ଲେଖିବାକୁ ସମର୍ଥ ହେଲେ । ସେ ପୁଣି ସେହି ଲଙ୍କାକାଣ୍ଡର ପ୍ରାରମ୍ଭରେ ଲେଖିଛନ୍ତି-

ଜଗନ୍ନାଥ ମହାପାତ୍ରକୁଳେ ସେବିତ
ଯହୁଂ ପିତା ହୋଇଲା ପ୍ରଭୁରେ ଭଗତ
ତେଣୁ ଜଗନ୍ନାଥ ଯେ ଦୟା ଆମ୍ଭଙ୍କୁ କଲେ
ରାମାୟଣ ଗ୍ରନ୍ଥ ମୋ ମୁଖରୁ ଉତୁରିଲେ ।
ମୋହର ମୁଖେ ଯହୁଂ ସାରଦା ବିଜେ କରି
ଶ୍ରୀରାମର ଚରିତ ଯେ କହିଲି ବିସ୍ତାରି ।

ଆଗରୁ ଯାହା କୁହାଯାଇଛି ଯେ ଅଧିକାଂଶ ସ୍ଥଳରେ କବି ରାମାୟଣରେ ତତ୍କାଳୀନ ଓଡ଼ିଆ ସମାଜର ଚିତ୍ରଦେଇ ଓଡ଼ିଆ ଚଳଣିର ଧାରା ରଖି ଅତୁଟ ଅଛନ୍ତି ମହାଭାରତ ଲେଖକ ସାରଳା ଦାସଙ୍କ ପରି ଯେପରି

ଅଙ୍ଗଦ କୁମାରର ବୀର ବେଶରେ
ଅଙ୍ଗଦ କୁମାର ଯେ ହୋଇଲେ ବୀରବେଶ
କେଶ ସାଯୋଇଲା ଲଗେଶ୍ୱର ପୁସ୍ୟ ।
ସରୁ ଝୀନବସ୍ତ୍ରେକ ପାଗ ବାନ୍ଧି
ତଥି ଉପରେଣ ରତ୍ନ ଖୋଳ ନନ୍ଦି ।
ପଛେ ପାଟ ଘେନି ବାନ୍ଧିଲୋକ ତାହା
ମଣିମୟେ ମୁକୁଟ ଭୂଷଣ କପିନାହା ।

ସଉରି ସେନାପତି, ମହାବୀର ଡାଳିମ୍ବ ପ୍ରଭୃତିଙ୍କର ବେଶର ବର୍ଣ୍ଣନା ସର୍ବୋପରି ହନୁର ବୀରବେଶ ଅତି ଚମତ୍କାର । ଦଧିମୁଖ ବୀରର ବୀର ବେଶର ବର୍ଣ୍ଣନା-

ଦଧିମୁଖ ବୀର ମିଳିଲାକ ଯାଇ
କଣ୍ଠେଣ ରତ୍ନ ପଦକ ଅଛିଲାଇଂ ।
ନିରନ୍ତରେ ନେତ ବେନି ବାହେ ଉଡ଼େ
ଅନର୍ଗଳ ତୋଡ଼ର ବାନ୍ଧିଛି ବେନିଗୋଡ଼େ ।
କଟୀରେ ମେଖଳା ଯେ ଶିରରେ ଟେକପାଗ
ଗର୍ଜନ କରୁଅଛି କି ଜାଣି ମତ୍ତ ନାଗ ।...
ନରରତନ ପତନୀ ସର୍ବାଙ୍ଗେ ଜଡ଼ିତ
ଛୁରିଅନା ଗଭା କେସଣେ ରଚିତ ।
ବାମଭୁଜେ ଶୋହେ କଙ୍କଣ ଯୋଡ଼ାଚାରି
ଚନ୍ଦନ ଯୁଆଦ ଯେ କପୋଳେ ଚିତାକରି
ଲବଙ୍ଗ ଚୋବାଇଣ ଯେ ଆସଇ ମାହାବୀର
ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ଯୋଡଇ ବେନିକର ।

(ଲଙ୍କାକାଣ୍ଡ)

ଏହାଛଡ଼ା ବିଭା, ଦିଅଁମଙ୍ଗୁଳା, ବିବାହରେ କଉଡି ଖେଳ, ଲବଣ ଚଉଁରୀ, ବରବାହୁଡ଼ା, ମଧୁଶଯ୍ୟା, ଓଡ଼ିଆ ଘରର ବେଶଭୂଷା ଚାଲିଚଳଣ, ଓଡ଼ିଆର ଖାଦ୍ୟପେୟ ସବୁର ଗୋଟି ଗୋଟି ଚିତ୍ର ରାମାୟଣର ବିଭିନ୍ନ ସ୍ଥାନରେ କବି ପ୍ରଦାନ

କରିଅଛନ୍ତି । ବଳରାମ ଦାସଙ୍କର ରାମାୟଣରେ ଓଡ଼ିଆ ରାମ-ଭକ୍ତି ସାହିତ୍ୟର ଆରମ୍ଭ ହୋଇଛି କହିବା ବାହୁଲ୍ୟ ହେବ ।

ବଳରାମ ଦାସଙ୍କ ଦାଣ୍ଡିରାମାୟଣର ଭାଷାରେ ଓଡ଼ିଆ ଭାଷାର ବହୁପ୍ରାଚୀନ ଅପଭ୍ରଷ୍ଟ ସ୍ୱରୂପ ଦେଖିବାକୁ ମିଳିଥାଏ । ସାରଳା ଦାସଙ୍କର ମହାଭାରତ ଓ ବଳରାମ ଦାସଙ୍କର ରାମାୟଣ ଭାଷା ଓଡ଼ିଆ ଭାଷାର ଯଥାର୍ଥ ଭାଷାତତ୍ତ୍ୱ । କିନ୍ତୁ ଦୁଇଟିଯାକ ଗ୍ରନ୍ଥର ଶୁଦ୍ଧସଂସ୍କରଣ ହୋଇ ନଥିବାରୁ ତାହାର ଭାଷା ଆଲୋଚନା ଏପର୍ଯ୍ୟନ୍ତ ହୋଇପାରିନାହିଁ । ଉଦାହରଣ ସ୍ୱରୂପ ତହିଁରୁ କେତେକ ଶବ୍ଦର ଉଦାହରଣ ଦିଆଯାଇ ପାରେ, ଯଥା-

ଦାସଜନକଇ, ଗଡ଼କଇ, ଜାଣିମା,ତ୍ରିପୁତି- ତୃପ୍ତି, ରୁଦ୍ରକଇ, ରୁଦ୍ରକୁ, ଦଶମାଥ, ଅପସରି, ଏହାକଇ ଏହାକୁ ଧଉର୍ଯ୍ୟ, ରଷିଶୃଙ୍ଗ, ପ୍ରାକର୍ମ-ପରାକ୍ରମ, କଥାନ୍ତ, ତପଚାରୀ, ପୋଇ(ପୁତ୍ର), ସ୍ତନବେଷ୍ଟ, ବାରହ- ବାର, ପୁତ୍ରବନ୍ତୀ, ଧନବନ୍ତୀ, ଯଶବନ୍ତୀ, ଜୁରିଆ- ଜୁରକରିବା, ଲୋକ; ବଧାଇ, ଆରମ୍ଭେଣ- "ଅତି ଅରମ୍ଭେଣ ଯଜ୍ଞତୁ କରସି' 'ବିରୋଳି' ଝିଙ୍କପକ୍ଷୀ ଘେନି କେଶ ବିରୋଳିଲେ ଆ, କା, ପୃ-୯୧; ପିଶାଚୁଣୀ; କାହାକଇ- କାହାକୁ; ଭ୍ରତ, ଭ୍ରଥ- ଭରତ; ତିଆରିଲେ; ଉଗୁଳି, ଅହନ୍ତ- ଶତ୍ରୁତା, "ପରକୁ ଅହନ୍ତା କରା ନୁହଇଂ ବେଭାର" ଆରଣ୍ୟକ ପୃ୧୧; ନୁହସି, ଖାଅସି,ଯାଅସି,ଖଡିଆଳି, ଭୁଆସୁଣୀ ଯଥା- ସୂର୍ଯ୍ୟବଂଶ ଭୁଆସୁଣି ରାମ ମୋରବର; ଆରଣ୍ୟକ ପୃ ୪୭; ଇତ୍ୟାଦି ।

ତଥାପି ସମଗ୍ର ଭାବରେ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ଭାଷା ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ, ତାହା ସାରଳା ଦାସଙ୍କ ମହାଭାରତଠାରୁ ଟିକିଏ ସାଧୁ; ଟିକିଏ ସୁସଂସ୍କୃତ । ବଳରାମ ଦାସଙ୍କର ସମସାମୟିକ କବି ହେଉଛନ୍ତି କୃତିବାସ ଯେ ବଙ୍ଗଳାରେ ରାମାୟଣ ରଚନା କରିଥିଲେ । କିନ୍ତୁ ବଳରାମ ଦାସଙ୍କର କିଛି ଆଗରୁ ତୁଳସୀ ଦାସ ତାଙ୍କର ରାମାୟଣ ରାମଚରିତ ମାନସ ରଚନା କରିଥିଲେ ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଲେଖିଛନ୍ତି । ଏପରିକି ସେ କହିଛନ୍ତି ଯେ ବଳରାମ ଦାସ ୫୦/୬୦ ବର୍ଷ ପୂର୍ବରୁ ସେ ରାମାୟଣ ରଚନା କରିଥିଲେ । ବଳରାମ ଦାସଙ୍କର ଜନ୍ମ ଖ୍ରୀ ୧୪୭୩ ବା ୧୪୮୨ ଆଡକୁ ହୋଇଥିବାର କଥା ଯଦି ଠିକ୍ ହୁଏ ଓ ୩୦ ବର୍ଷ ବୟସରେ ସେ ଯଦି ରାମାୟଣ ଲେଖିଥାନ୍ତି ତେବେ ଭକ୍ତ କବି ବଳରାମ ଦାସ ତୁଳସୀ ଦାସଙ୍କର ବହୁ ପୂର୍ବରୁ ଓଡ଼ିଆ ରାମାୟଣ ରଚନା କରିଥିଲେ । କାରଣ ଭକ୍ତ କବି ତୁଳସୀ ଦାସଙ୍କର ଜନ୍ମ ସମୟ ହେଉଛି ଖ୍ରୀ:୧୫୩୨ ଓ ସେ ଖ୍ରୀ:୧୫୭୪ରେ ତାଙ୍କର ରାମଚରିତ ମାନସ ରଚନା କରିଥିବାର ନିର୍ଣ୍ଣିତ ହୋଇଛି ।

('**କୋଣାର୍କ:ପଞ୍ଚସଖା ବିଶେଷାଙ୍କ**', ଭୁବନେଶ୍ୱର, ୧୯୭୧)

## (୪)

### କୃଷ୍ଣଚରଣ ସାହୁ

# ଦାଣ୍ଡି ବୃତ୍ତ

ସାରଳାଦାସଙ୍କ ପରି ବଳରାମ ଦାସ ମଧ୍ୟ ତାଙ୍କ ରାମାୟଣରେ ଦାଣ୍ଡୀବୃତ୍ତ ବ୍ୟବହାର କରିଥିଲେ । କଥା କହିବା ପାଇଁ ଏହାହିଁ ଥିଲା ବୋଧହୁଏ ସେ କାଳର ଉପଯୁକ୍ତ ଛନ୍ଦ । କିନ୍ତୁ ନିରୀକ୍ଷଣ କଲେ ଜଣାଯିବ ଯେ ଉଭୟ କବିଙ୍କ ଦାଣ୍ଡିବୃତ୍ତ ସମାନ ପ୍ରକୃତି ବିଶିଷ୍ଟ ନ ଥିଲା । ସାରଳାଦାସଙ୍କ ଦାଣ୍ଡୀବୃତ୍ତରେ ଯେଉଁ ଆକୁଞ୍ଚନ ଓ ପ୍ରସାରଣ କ୍ଷମତା ଥିଲା, ତାହା ବଳରାମ ଦାସଙ୍କ କବିତାରେ ପରିଦୃଷ୍ଟ ହୁଏ ନାହିଁ । ଏହା ବହୁ ପରିମାଣରେ ଚତୁର୍ଦ୍ଦଶାକ୍ଷରୀ ବୃତ୍ତର ନିକଟବର୍ତ୍ତୀ । ଏହାର ଆକୁଞ୍ଚନ ଓ ପ୍ରସାରଣର ସୀମା ୧୧ ରୁ ୧୫ ଅକ୍ଷର ମଧ୍ୟରେ ସୀମିତ । ଅଧିକାଂଶ ତ୍ରୟୋଦଶ-ଅକ୍ଷର-ବିଶିଷ୍ଟ । କେବଳ ଗୋଟିଏ 'ଯେ' ଯୋଗରେ ଏହା ଚତୁର୍ଦ୍ଦଶାକ୍ଷରୀ ଛନ୍ଦରେ ପରିଣତ ହୋଇଯାଏ । ବଳରାମ ଦାସଙ୍କ ପ୍ରଯୁକ୍ତ ଦାଣ୍ଡିବୃତ୍ତର ଏହି

ଶୈଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ସେ ତାଙ୍କ ଛନ୍ଦକୁ ଅଧିକାଧିକ କମନୀୟ ରୂପରେ ଉପସ୍ଥାପିତ କରିବାକୁ ଚାହିଁଥିଲେ । ଏହାଥିଲା ବୋଧହୁଏ ସେ ଯୁଗର ପ୍ରଭାବ, ପରବର୍ତ୍ତୀ ସଙ୍ଗୀତ ଯୁଗର ପୂର୍ବାଭାସ । ବୈଷ୍ଣବ ଧର୍ମର ଲୋକପ୍ରିୟତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଜୟଦେବ, ବିଦ୍ୟାପତି ଓ ଚଣ୍ଡୀଦାସଙ୍କ କାନ୍ତକୋମଳ ପଦାବଳୀ ସମସ୍ତ ଭାରତୀୟ ସାହିତ୍ୟକୁ ପ୍ରଭାବିତ କଲା । ବଳରାମ ମଧ୍ୟ ବୈଷ୍ଣବ ଥିଲେ । ଜଗନ୍ନାଥଙ୍କୁ ରାମ ଓ କୃଷ୍ଣ ଭାବରେ ସେ ଆରାଧନା କରୁଥିଲେ । ଏହିସବୁ କାରଣ ହେତୁ ଅନୁସରଣ କରି ସେ ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣ କରିଥିଲେ ହେଁ ଶବ୍ଦ ଚୟନରେ ସେ ସାରଳାଦାସଙ୍କ ଠାରୁ ସ୍ୱତନ୍ତ୍ର ଥିଲେ । ବଳରାମ ଦାସଙ୍କ ଶବ୍ଦ ପ୍ରୟୋଗର ବୈଶିଷ୍ଟ୍ୟକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ -

୧. ପରମ୍ପରାନୁଗତ ବୈଶିଷ୍ଟ୍ୟ

୨. ସ୍ୱକୀୟ ବୈଶିଷ୍ଟ୍ୟ

କଥା ଓ ବର୍ଣ୍ଣନାର ସୌଷ୍ଠବ ଶବ୍ଦ ପ୍ରୟୋଗ ଉପରେ ସମ୍ପୂର୍ଣ୍ଣ ଭାବେ ନିର୍ଭର କରେ । ଯେଉଁ କବିର ଶବ୍ଦକୋଷ ଯେତେ ବିଶାଳ, ତାହାର ପ୍ରକାଶ କ୍ଷମତା ସେତିକି ସ୍ପଷ୍ଟ । ଭାବର ସ୍ପଷ୍ଟ ଅଭିବ୍ୟକ୍ତି ପାଇଁ କବି ବା ଲେଖକଙ୍କୁ ବିଭିନ୍ନ ସ୍ରୋତରୁ ଶବ୍ଦ ଚୟନ କରିବାକୁ ହୋଇଥାଏ । ଏହି ଶବ୍ଦ ଚୟନ ପ୍ରବୃତ୍ତିରୁ କବିର ପାଣ୍ଡିତ୍ୟ ଯେପରି ପ୍ରକାଶ ପାଏ, ସେହିପରି ଶବ୍ଦ ପ୍ରୟୋଗ ପଦ୍ଧତିରୁ କବିର କୁଶଳତା ମଧ୍ୟ ଜାଣି ହୁଏ । ବଳରାମଙ୍କ ପୂର୍ବରୁ ଓଡ଼ିଆ ଭାଷାର ବିପୁଳ ବ୍ୟବହାର ହୁଏ ସାରଳାଦାସଙ୍କ ମହାଭାରତରେ । ସାରଳାଦାସ ପ୍ରତିଭାବାନ କବି । ତାଙ୍କ ମହାଭାରତରେ କଥା ଓ ଭାବାଭିବ୍ୟକ୍ତି ପାଇଁ ବିସ୍ତୃତ କ୍ଷେତ୍ର ମଧ୍ୟ ଥିଲା । ଶିଳାଲେଖ-ସର୍ବସ୍ୱ ଭାଷାକୁ ସେ ଦେଲେ ନୂଆ ରୂପ, ନୂଆ ଜୀବନ । ଚର୍ଯ୍ୟାପଦର ଅପଭ୍ରଂଶ ଭାଷା ବଦଳରେ ସେ ସଂସ୍କୃତଗର୍ଭିତ ଭାଷା ବ୍ୟବହାର କଲେ । କିନ୍ତୁ ସଂସ୍କୃତ ଭାଷାର ପ୍ରତ୍ୟେକ ଶବ୍ଦ ନୂଆ ପରିବେଶରେ ପ୍ରକାଶିତ ହୋଇ ନୂଆ ରୂପ ପରିଗ୍ରହ କଲା । ତତ୍ସମ, ତଦ୍ଭବ ଓ ଦେଶୀ ଶବ୍ଦର ସମ୍ମିଶ୍ରଣରେ ଏହାର ପ୍ରକୃତି ପରିବର୍ତ୍ତିତ ହୋଇ ଯେଉଁ ଭାଷାର ମୂଳଭିତ୍ତି ସ୍ଥାପିତ ହେଲା, ତାହାହିଁ ହେଉଛି ଆଧୁନିକ ଓଡ଼ିଆ ଭାଷା । ବଳରାମ ଦାସ ସେହି ପଥର ପଥିକ ହେଲେହେଁ ତାଙ୍କ ବେଳକୁ ଯୁଗୀୟ ରୁଚିରେ ନୂଆ ଦିଗ୍‌ବଳୟ ଉନ୍ମୋଚିତ ହୋଇଥିଲା । ଦେଶରେ ବୈଷ୍ଣବଧର୍ମ ଏକ ଲୋକପ୍ରିୟ ମତ ରୂପେ ପ୍ରତିଷ୍ଠିତ ହେଉଥିଲା । ମୁସଲମାନ ଶାସକଙ୍କ ପ୍ରଭାବରୁ ଦେଶରେ ଏକ ନୂଆ ସଭ୍ୟତାର ଆଲୋକ ପ୍ରବେଶ କରୁଥିଲା । ସାହିତ୍ୟର ଆଦର୍ଶ ରୂପେ କେବଳ ସଂସ୍କୃତ ସାହିତ୍ୟର ପୂର୍ବସୂରୀମାନେ ସ୍ୱୀକୃତ ନ ହୋଇ ସୁଫି ମତ ପ୍ରଭାବିତ ପ୍ରେମାଖ୍ୟାନମୂଳକ କାବ୍ୟସବୁ ଲୋକପ୍ରିୟ ହେଲେ । ଜଗନ୍ନାଥ କ୍ଷେତ୍ରର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା କବିମାନଙ୍କୁ ନୂଆ ଉତ୍ସାହ ଓ ଉଦ୍ଦୀପନା ଦେବାରେ କମ୍ ସାହାଯ୍ୟ କରି ନ ଥିଲା । ଏହିସବୁ କାରଣରୁ ବଳରାମ ଦାସଙ୍କ ରଚନାରେ ବହୁ ନୂଆ କଳ୍ପନା ଓ ଯୋଜନା ପ୍ରବେଶ କଲା, ଯାହାକି ପୂର୍ବ ସାହିତ୍ୟରେ ନ ଥିଲା ।

ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀବେଳକୁ ସମସ୍ତ ଭାରତୀୟ ଭାଷାରେ ତତ୍ସମ ଶବ୍ଦରାଜି ପ୍ରତି ଆଦର ବୃଦ୍ଧି ପାଇଥିଲା । କବିମାନେ ଅପଭ୍ରଂଶ ଭାଷାର ଶବ୍ଦରାଶି ଅପେକ୍ଷା ତତ୍ସମ ଶବ୍ଦ ସବୁର ପ୍ରୟୋଗ ପ୍ରତି ବିଶେଷ ସଚେତନ ଥିଲେ । ତେବେ ଈଶସ୍ତୁତି, ଅପ୍ରସ୍ତୁତ ଯୋଜନା ଓ ଦର୍ଶନର ବ୍ୟାଖ୍ୟାପରି କେତେକ ନିର୍ଦ୍ଦିଷ୍ଟ ଅଂଶରେ ସେମାନେ ତତ୍ସମ ଶବ୍ଦର ବ୍ୟବହାର କରୁଥିଲେ । ବଳରାମ ଦାସ ମଧ୍ୟ 'ଜଗମୋହନ ରାମାୟଣ'ରେ ଏହି ସାହିତ୍ୟିକ ପରମ୍ପରାକୁ ଅନୁସରଣ କରିଛନ୍ତି ।

ବଳରାମ ଦାସ ପ୍ରତ୍ୟେକ କାଣ୍ଡକୁ ଈଶସ୍ତୁତି ବା ବନ୍ଦନାରେ ଆରମ୍ଭ କରିଛନ୍ତି । ଏହିସବୁ ବନ୍ଦନାରେ ତତ୍ସମ ଶବ୍ଦରାଜିର ବହୁଳତା ପରିଦୃଷ୍ଟ ହୁଏ । ଉଦାହରଣ ରୂପେ ଆଦିକାଣ୍ଡର ଜଗନ୍ନାଥ ବନ୍ଦନାକୁ ଗ୍ରହଣ କରାଯାଇପାରେ -

ବନ୍ଦଇ ଜଗନ୍ନାଥ କମଳାଦେବୀ ପତି
ନୀଳଗିରି ଶିଖରେ ଅପୂର୍ବ ମୂରତି ।
ସୁନ୍ଦର ଶ୍ରୀମୁଖ ନୀଳମଣି ଆଭା

କି ଜାଣି ପଟାନ୍ତର କଳାମେଘ ପ୍ରଭା ।
ନୟନ ଯୁଗଳ କି ଶରଦର ଶଶୀ
ଜଗତଜନ ହୃଦେ ଅଛୁ ପ୍ରଭୁ ବସି ।

ସ୍ତୁତି ବା ବନ୍ଦନା ପରି ଅପ୍ରସ୍ତୁତ ଯୋଜନାରେ ବହୁ ତତ୍ସମ ଶବ୍ଦର ବ୍ୟବହାର କରାଯାଇଛି । ରୂପ ଚିତ୍ରଣ କଲାବେଳେ କବି ପରମ୍ପରାରୁ ଯେଉଁସବୁ ଉପମାନ ସଂଗ୍ରହ କରିଛନ୍ତି, ସେ ସବୁର ସମାବେଶରେ ବର୍ଣ୍ଣନା ପ୍ରାୟ ସଂସ୍କୃତମୁଖୀ ହୋଇଯାଇଛି । ଯେପରି-

ନାଭିଗଭୀର କି ନଦୀର ଭଉଁରୀ
କଟିଭାଗ ଶୋଭା ନୂହଇ ପଟାନ୍ତରୀ ।
ମଦନ ଶୋଭା ସିଂହାସନ କି ସେ
ଜାନୁ ଉଲଟ କଦଳୀ ଜାଣି ଦିଶେ ।
ଚରଣ ଅଙ୍ଗୁଷ୍ଠି ଓଶେକ କଢ଼ି ଆଭା
ପାଦପଦ୍ମ ତଳି ଅଳତା ରଙ୍ଗପ୍ରଭା ।

'ଜଗମୋହନ ରାମାୟଣ'ର ନିର୍ଦ୍ଦିଷ୍ଟ କେତେକ ଅଂଶରେ ତତ୍ସମ ଶବ୍ଦର ବହୁଳତା ଥିଲେ ହେଁ, ତଦ୍ଭବ ଶବ୍ଦରାଜି ପ୍ରତି କବିଙ୍କର ମୋହ ଅଧିକ ଥିଲା । ଏହିସବୁ ଶବ୍ଦର ପ୍ରୟୋଗରେ ତାଙ୍କ ଭାଷା ଏକ ନୈସର୍ଗିକ ସୁଷମା ଦ୍ୱାରା ବିମଣ୍ଡିତ ହୋଇଥିଲା । ସେ ସଂସ୍କୃତ ଶବ୍ଦ ସବୁକୁ ଓଡ଼ିଆ ଛାଞ୍ଚରେ ଢାଳିଦେଇ ଓଡ଼ିଆ ଭାଷାର ପରିବେଶରେ ପ୍ରକାଶ କଲେ । ତତ୍ସମ ଶବ୍ଦ ସବୁ ନିଜର ଆଡ଼ମ୍ବର ଲୋପ କରି ସହଜ, ସରଳ, ସୁନ୍ଦର ଓ କର୍ଣ୍ଣପ୍ରିୟ ରୂପରେ ଆତ୍ମପ୍ରକାଶ କରି, ଓଡ଼ିଆ ଚଳଣିର ସମ୍ପୂର୍ଣ୍ଣ ଅନୁକୂଳ ହୋଇଗଲା । ଉଦାହରଣ ପାଇଁ ନିମ୍ନରେ କେତେକ ପଦ ଉଦ୍ଧାର କରାଯାଇଛି -

୧) ଯେଥିର ମଧ୍ୟେ ତିନିହେଁ ମୋକ୍ଷପାନ - ମୁଖ୍ୟ
୨) ଘରେ ଘରେ ବିଜୟେ କି ସାହେର କୁମାର - ସାଗର
୩) କୂପ ବାମ୍ଫି ବହୁତ ଅଛଇ ପୋଖରୀ - ପୁଷ୍କରିଣୀ
୪) ସୁବନ୍ୟ ପ୍ରତିମା ପିତୁଳି କମଗଢ଼ି - ସୁବର୍ଣ୍ଣ
୫) ମେଢ଼ ମଣ୍ଡପ ଅଟାଳି ଜଗତି - ଅଟ୍ଟାଳିକା

ମୋକ୍ଷପାନ, ସାହେର, ପୋଖରୀ, ସୁବନ୍ୟ, ପରିଛାମୁ (ସମ୍ମୁଖ), ଆକ୍ରୋଛିଣ (ଆକର୍ଷି), ନିର୍ଭାଇ (ନିର୍ବାହ), ଆଛାନ (ଆଖ୍ୟାନ), ଖମ୍ବ (ସ୍ତମ୍ଭ), ମୁକୁତା (ମୁକ୍ତା), ହିଆ (ହୃଦୟ), ରାଉତ (ରାଜପୁତ୍ର), ପଢ଼ିହାରୀ (ପ୍ରତିହାରୀ), ଅପଛରୀ (ଅପସରୀ), ଜଉତିଷ (ଜ୍ୟୋତିଷ) ଇତ୍ୟାଦି ତଦ୍ଭବ ଶବ୍ଦ ସମାବେଶରେ 'ଜଗମୋହନ ରାମାୟଣ' ସମୃଦ୍ଧ ।

ତତ୍ସମ ଓ ତଦ୍ଭବ ଶବ୍ଦର ପ୍ରଚୁରତା ମଧ୍ୟରେ ବଳରାମ କେତେକ ଦେଶଜ ଶବ୍ଦର ବ୍ୟବହାର କରିଛନ୍ତି । ସଂଖ୍ୟାରେ କମ୍ ହେଲେ ବି ସେ ସବୁରୁ କବିଙ୍କର ବୈଶିଷ୍ଟ୍ୟ ଜାଣିହୁଏ । ତନ୍ମଧ୍ୟରୁ କେତେକ - ତେଣୁକି, ତେକୁ ତେକୁ, ନାହାଇ ବେଲି, ଆଢ଼ୋ ଆଢ଼ୋ, ତଡ଼କି, ଝଡ଼ା ହୁଳହୁଳି, ଖୋରା, ଖୋରି, ମୁଣ୍ଡା, ନାଳୁଆ, କଟିକତା, ଭୃଡ଼ଙ୍ଗିଆ, ସଉଲୁଣି, ପରିମୁଣ୍ଡା, ଗୁଳୁଗୁଞ୍ଚା, ଅଚାରୁଆ, ଉଭୁରାଉଭୁରି ।

ସାରଳା ଦାସଙ୍କ ସଦୃଶ ବଳରାମଙ୍କ ରଚନାରେ କେତେକ ବିଦେଶୀ ଶବ୍ଦ ପରିଦୃଷ୍ଟ ହୋଇଥାଏ । ସେଥିମଧ୍ୟରୁ କେତେକ ଆରବୀ ଓ କେତେକ ପାର୍ସୀ । ସାଧାରଣତଃ ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗକୁ 'ଜଗମୋହନ ରାମାୟଣ'ର ରଚନାକାଳ ରୂପେ ଗ୍ରହଣ କରାଯାଇଥାଏ । ସେତେବେଳକୁ ଓଡ଼ିଶାରେ ମୁସଲମାନ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇ ନ ଥିଲେ

ହେଁ ମୁସଲମାନ ନବାବଙ୍କ ବିଭବ ଓ ମୁସଲମାନ ସଂସ୍କୃତିର ବିଭିନ୍ନ ଉପାଦାନ ବିଭିନ୍ନ ସୂତ୍ରରେ ଦେଶରେ ପ୍ରବେଶ କରିପାରିଥିଲା । ମୁସଲମାନମାନେ ବହୁଭାବେ ଏ ଦେଶକୁ ଆସିଥିଲେ । କେହି ହୁଏତ ଆସିଥିଲେ ବେପାର ବାଣିଜ୍ୟ କରିବା ପାଇଁ, କେହି ହୁଏତ ଆସିଥିଲେ ଜୀବନ ନିର୍ବାହର ଅନ୍ୟ ପନ୍ଥା ଘେନି । କପିଳେନ୍ଦ୍ରଙ୍କ ସେନାବାହିନୀରେ ଖାଁ ଉପାଧିଧାରୀ କେତେକ ଶବ୍ଦ ଓଡ଼ିଆ ସାମାଜିକ ଚଳଣିକୁ ପ୍ରଭାବିତ କରିଥିଲା । ଦେଶରେ ଆବିର୍ଭୂତ ହୋଇଥିବା ଏହି ନୂଆ ଶକ୍ତି ପ୍ରତି ଜଣେ ସଚେତନ କବି ଭାବେ ବଳରାମ ମଧ୍ୟ ସଜାଗ ଥିଲେ । ସେଥିପାଇଁ ଦଶରଥଙ୍କ ପୁତ୍ରେଷ୍ଟି ଯାଗକୁ ଆସିଥିବା ବହୁ ରାଜାଙ୍କ ମଧ୍ୟରେ ସେ ଗଣନା କଲେ "ମୁଗଲ କୁଚରାୟ ।"

ବାବରଙ୍କ ମୋଗଲ ସାମ୍ରାଜ୍ୟ ୧୫୨୬ରେ ପ୍ରତିଷ୍ଠିତ ହୋଇଥିଲେ ହେଁ ମୋଗଲ ଜାତିର କାହାଣୀ ତାଙ୍କର ବହୁ ପୂର୍ବରୁ ଏ ଦେଶରେ ପ୍ରଚାରିତ ହୋଇ ସାରିଥିଲା । ସେଥିପାଇଁ ଅସ୍ୱାଭାବିକ ହେଲେ ହେଁ ହିନ୍ଦୁ ରାଜାଙ୍କ ମଧ୍ୟରେ ମୁଗଲଙ୍କୁ ଗଣିବାରେ ବଳରାମଙ୍କୁ ଅସୁବିଧା ହୋଇନାହିଁ । କେବଳ 'ମୁଗଲ' ଓ 'କୁଚ' ନୁହେଁ, ଦରହାସ, ଅସଭାବ, ଗିଲିମି (କୋମଳ), ତର୍କସ, କମାଣ ଓ ପଇତି ପ୍ରଭୃତି ଶବ୍ଦ ଦେଖିବାକୁ ମିଳିଥାଏ । ଦରହାସ ଓ ପଇତି ଶବ୍ଦ ବ୍ୟତୀତ ଅନ୍ୟାନ୍ୟ ସବୁ ଯୁଦ୍ଧ ସହିତ ସମ୍ପୃକ୍ତ । 'ପଇତି' ମସଲାଦିଆ ଡାଲି ।

ବଳରାମଙ୍କ ଜୀବନ୍ତ ଭାଷାର ଏକ ବୈଶିଷ୍ଟ୍ୟ ହେଉଛି, ତାଙ୍କ ପ୍ରଯୁକ୍ତ ଅନୁକରଣାତ୍ମକ ଶବ୍ଦମାଳା । ଆଦି କି ଅଯୋଧ୍ୟାରେ ନୁହେଁ, ଲଙ୍କାକାଣ୍ଡରେ ଏସବୁ ଶବ୍ଦର ହଟ୍ଟଗୋଳ ଶୁଣିବାକୁ ମିଳିଥାଏ । ବୀରମାନଙ୍କ ହୁଙ୍କାରରେ ରଣଭୂମି ଯେତେବେଳେ ମୁଖରିତ ହୋଇଉଠେ, ସେତେବେଳେ ବାଦ୍ୟର ସମବେତ ଧ୍ୱନି ଯୁଦ୍ଧର ବିଭିଷିକାକୁ ଆହୁରି ବୃଦ୍ଧି କରେ । କବି ରଣଭୂମିର ସେହି ଦୃଶ୍ୟକୁ ପାଠକ ସମ୍ମୁଖରେ ରଖିବା ପାଇଁ ବ୍ୟବହାର କରନ୍ତି - ଦିମିଦିମି, ସୁମୁସୁମୁ, ଗୁମୁଗୁମୁ, କିଣିକିଣି, କପକପ, ରୁଣୁରୁଣୁ, ଘୁମୁଘୁମୁ, ଝଣଝଣ, ଝମଝମ, ଟହଟହ, ଚଡ଼ଚଡ଼, ଭଡ଼ଭଡ଼, ଘାଉଘାଉ, କଟକଟ ପ୍ରଭୃତି କେତେକ ଶବ୍ଦ ।

ଅନୁକରଣାତ୍ମକ ଶବ୍ଦ ପରି ବୀପ୍‌ସାତ୍ମକ ଶବ୍ଦ ପ୍ରୟୋଗରେ ଭାଷାର ସୌଷ୍ଠବ ବୃଦ୍ଧିପାଏ ତଥା ଭାଷାରେ ଗତିମୟତା ଆସେ । 'ରାମାୟଣ'ର ଆଦି, ଅଯୋଧ୍ୟା, ଆରଣ୍ୟକ ଓ ସୁନ୍ଦରାକାଣ୍ଡରେ ଏସବୁ ଶବ୍ଦ କେବଳ କେତେକ ସ୍ଥାନରେ ବ୍ୟବହୃତ ହୋଇଥିବାବେଳେ ଲଙ୍କାକାଣ୍ଡର ସମର ବର୍ଣ୍ଣନାରେ ଏହାର ବହୁଳତା ପରିଦୃଷ୍ଟ ହୁଏ । ବୋଧହୁଏ ରଣଭୂମିକୁ ଅଧିକ ଗତିଶୀଳ ଓ ବର୍ଣ୍ଣନାକୁ ବୀରରସ ବ୍ୟଞ୍ଜିତ କରିବା ପାଇଁ କବି ବଳରାମ ସଚେତନ ଭାବେ ଏହିସବୁ ଶବ୍ଦ ବ୍ୟବହାର କରିଛନ୍ତି । ଏସବୁ ଶବ୍ଦର ପ୍ରଭାବ ଆଦିକାଣ୍ଡରେ ନମ୍ର ଥିବାବେଳେ ଲଙ୍କାକାଣ୍ଡରେ ଉଗ୍ର ହୋଇଯାଇଛି । ଆସଆସ, ଧାଁଅଧାଁଅ, ଯାଅଯାଅ ପ୍ରଭୃତି ବୀପ୍‌ସାତ୍ମକ ଶବ୍ଦର ବାରମ୍ବାର ଉଚ୍ଚାରଣ ରଣଭୂମିର କୁହାଟ କରି ପାଠକକୁ ବିକ୍ଷୁବ୍ଧ କରିଦିଏ । ଆଦିକାଣ୍ଡରୁ କେତେକ ଉଦାହରଣ ପ୍ରଦତ୍ତ ହେଲା- ଛନଛନ, ଟେକୁଟେକୁ, ଆସିବୁଆସିବୁ, ଦେଖଦେଖ, ମନେମନେ, ଦମଦମ, ଜୟେଜୟେ, ହେଲୁହେଲୁ, ପନ୍ତିପନ୍ତି, ହସହସ, ଧରଧର, ମାରମାର, ଚାଳଚାଳ, ଧୀରଧୀର, ସତ୍ୟସତ୍ୟ, ଆଣଆଣ, ଧନ୍ୟଧନ୍ୟ, ଯେବଣଯେବଣ ।

('ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର-୩', ଭୁବନେଶ୍ୱର, ୨୦୦୦)

# ପରିଶିଷ୍ଟ

## (୧)

## ଜଗମୋହନ ରାମାୟଣ ସମ୍ପାଦନା ସମ୍ପର୍କରେ

'ଜଗମୋହନ ରାମାୟଣ'ର ସମ୍ପାଦନା ଓ ଆଲୋଚନା ମୋ' ଜୀବନ ଇତିହାସ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ୧୯୫୬ ମସିହାରେ ଏହା ଆରମ୍ଭ ହୋଇଥିଲା । କଟକ ଜିଲ୍ଲାର ପଟସରା ଗ୍ରାମର ବଳି ପାଳଙ୍କ ଘରୁ ବହୁ ପୋଥି ସହିତ ରାମାୟଣ ପୋଥି ସଂଗୃହୀତ ହୁଏ । ରାଶି ଯାଏ ବସ୍ତାରେ ବନ୍ଧା ହୋଇ । ସେଠି ଉଭରା କାର୍ଯ୍ୟ ଆରମ୍ଭ ହୁଏ । ସେଥିରେ ମୋତେ ସାହାଯ୍ୟ କରିଥିଲେ, ମୋର ଅନୁଜ ଶ୍ରୀମାନ୍ ଯତୀନ୍ଦ୍ର ମୋହନ୍ ସାହୁ । ଆଜି ବହି ଛପା ହେଲାବେଳକୁ ସେ ଆଉ ଇହଜଗତରେ ଏ ସୁଖର ଭାଗୀ ହେବା ପାଇଁ ନାହିଁ । ସବୁ ଭଗବାନଙ୍କ ଇଛା ।

ଏହାପରେ ବହୁ କାର୍ଯ୍ୟ ମଧ୍ୟରେ ସମ୍ପାଦନା କାମ ଗତି କରେ । ରାମ ସାହିତ୍ୟରେ ଗବେଷଣା କଲାବେଳେ ଏହିସବୁ ପୋଥିକୁ ବ୍ୟବହାର କରେ । ବିଭିନ୍ନ କାର୍ଯ୍ୟ ମଧ୍ୟରେ ଏହା ବେଳେ ବେଳେ ଅଟକି ଯାଇ ପୁଣି ଆରମ୍ଭ ହୁଏ । ଏହିପରି ଅଧାପନ୍ତରିଆ ଭାବେ ସମ୍ପାଦନା କାର୍ଯ୍ୟ ଅଟକି ଯାଇଥିବା ବେଳେ, ମୁଁ ଆସି ଉତ୍କଳ ବିଶ୍ୱବିଦ୍ୟାଳୟରେ ରିଡ଼ର ଭାବେ ଯୋଗଦାନ କରେ । ଓଡ଼ିଶା ଆସିବା ପରେ ପୋଥିର ସଂଖ୍ୟା ବୃଦ୍ଧି ପାଏ । ବେଳେ ବେଳେ ପୋଥି ଦେଉ ନ ଥିବା ଲୋକଙ୍କ ଘରେ ବସି ତାଙ୍କ ପୋଥି ସହିତ ମିଳାଏ । କେତେକ ପୋଥି ଆଣି କାମ ସାରି ଫେରାଇ ଦିଏ । ଗୋଟିଏ ଗୋଟିଏ ଶବ୍ଦର ସମାଧାନ ପାଇଁ ଏକାଧିକ ପୋଥି ଦେଖିବାକୁ ହୁଏ । ସେ ସବୁରେ କେତେ ଯେ ସମୟ ଯାଇଛି, ଆଜି ହିସାବ କରିବା ସହଜ ନୁହେଁ । ଏହିପରି ଭାବେ 'ଜଗମୋହନ ରାମାୟଣ' ଆଦିକାଣ୍ଡ ଓ ଅଯୋଧ୍ୟା କାଣ୍ଡ ବିସ୍ତୃତ ମୁଖବନ୍ଧ ସହ 'ବୁକ୍ସ ଆଣ୍ଡ ବୁକ୍ସ' ପ୍ରତିଷ୍ଠାନ ପକ୍ଷରୁ ଛପାହୁଏ । ଆରଣ୍ୟକ ଓ କିଷ୍କିନ୍ଧ୍ୟା କାଣ୍ଡର ପାଣ୍ଡୁଲିପି ସେଠି ହଜିଯାଇ ଛପା ବନ୍ଦ ହୋଇଯାଏ । ଏହିପରି ବହୁ ଦୁଃଖରେ କେତେ ଲୋକଙ୍କୁ ଅନୁରୋଧ କରିଛି । ଶେଷକୁ ନିଜେ ଛପାଇବାକୁ ସ୍ଥିର କଲି । ତେଣୁ ପ୍ରଥମେ ଏହି ଗ୍ରନ୍ଥ ଯେଉଁଭାବେ ପ୍ରକାଶ ପାଇବାରେ ଯୋଜନା ହୋଇଥିଲା, ତାହା ହେଲା ନାହିଁ । ସେଥିପାଇଁ ମୁଁ କେବଳ ଦୁଃଖିତ ନୁହେଁ, ବ୍ୟଥିତ ମଧ୍ୟ ।

ପୋଥି ସମ୍ପାଦନାରେ ପାଠାନ୍ତର ରହିବା ଅପରିହାର୍ଯ୍ୟ । ଏହା ଭବିଷ୍ୟତ ଗବେଷକଙ୍କୁ ବହୁ ଭାବେ ସାହାଯ୍ୟ କରେ । ପାଠ ପରିବର୍ତ୍ତନର ଇତିହାସ ଏଥିରୁ ଜାଣିହୁଏ । ଦେଶରେ ଧର୍ମ ଆଚାର ଓ ବ୍ୟବହାର ପରିବର୍ତ୍ତନ ହେଲେ, ସେ ସବୁର ଚିହ୍ନ ଏହି ପାଠାନ୍ତରରୁ ମିଳେ । ଆଞ୍ଚଳିକ ଉଚ୍ଚାରଣର ସ୍ପର୍ଶରେ ବାଲେଶ୍ୱର, କଟକ ଓ ପୁରୀର ପାଣ୍ଡୁଲିପିରେ କିପରି ପାର୍ଥକ୍ୟ ସୃଷ୍ଟି ହୁଏ, ତାହା ବି ଜାଣି ହୁଏ । ଏସବୁର କିଛି ସୂଚନା ଆଦିକାଣ୍ଡର ମୁଖବନ୍ଧରେ ଦିଆଯାଇଥିଲା । ବିସ୍ତୃତ ଆଲୋଚନା କେବେ ଭବିଷ୍ୟତରେ ସୁବିଧା ହେଲେ ସ୍ୱତନ୍ତ୍ର ଗ୍ରନ୍ଥରେ ସେସବୁ ଦେବି ବୋଲି ଭାବିଛି । ଭଗବାନ ସହିଲେ ହେଲା । ପାଠାନ୍ତର ନ ହେବାର ମୁଖ୍ୟ କାରଣ ହେଲା, ପ୍ରତ୍ୟେକ ପଦରେ ପାଠାନ୍ତର ଯେତେ ଗୌଣ ହେଲେ ବି ରହିଥିବା ହେତୁ ପାଠାନ୍ତର ଦେଲେ ଗ୍ରନ୍ଥର କଳେବର ବଢ଼ିଯିବାର ଆଶଙ୍କା । ନିର୍ବାଚିତ ପାଠାନ୍ତର ଦେଲେ ଛପାଇବାରେ ଅସୁବିଧା । ଏସବୁ ମୋର ସାମର୍ଥ୍ୟର ବାହାରେ । ତେଣୁ ଏ ସଂସ୍କରଣରେ କେବଳ ପ୍ରାମାଣିକ ପାଠ ପ୍ରଦାନ କରାଯାଇଛି ।

ସମ୍ପାଦନାରେ ପୋଥି ସବୁର ବିବରଣୀ ଏହାର ପ୍ରମାଣିକତାକୁ ପୁଷ୍ଟ କରେ । ଆଦି ଓ ଅଯୋଧ୍ୟ କାଣ୍ଡର ମୁଖବନ୍ଧରେ କିଛି ପୋଥିକଥା କୁହାଯାଇଥିଲା । ପୋଥିର ପୁଷ୍ପିକାରୁ ମିଳେ ପୋଥି ଲେଖାର ତାରିଖ ସହ ଲେଖନକାରର ଇତିହାସ, ଯୋଗ୍ୟତା, ବ୍ୟବସାୟ ଓ ଆଉ କେତେକ ଉପାଦାନ, ପୋଥିର ବିବରଣୀରୁ ଏହାର ପ୍ରାମାଣିକତା, ଶୁଦ୍ଧତା ଓ ପରିବର୍ତ୍ତନର ସଂକେତ ମିଳିଥାଏ । ଏସବୁକୁ ଅନୁଶୀଳନ କରି ପିରାମିଡ୍ କ୍ରମରେ ଧୀରେ ଧୀରେ ଅନୁପଯୋଗୀକୁ ବହିଷ୍କାର କରି କରି ଆଦର୍ଶ ପୋଥି ନିକଟରେ ସମ୍ପାଦକ ଉପସ୍ଥିତ

ହୁଏ । ତନ୍ନ ତନ୍ନ ବିଶ୍ଳେଷଣ ଓ ଅନୁଶୀଳନ ଦ୍ୱାରା ପୋଥି ସବୁର ପରିବାର ସ୍ଥିର କରାଯାଏ । ଜଗମୋହନ ରାମାୟଣରେ ଏସବୁ କିପରି କରାଯାଇଛି, ସେ ସବୁ ପାଠକ ନ ଦେଖି ନିଷ୍ଚିତ ଭାବେ ନିରାଶ ହେବେ ।

ଏହି ସଂସ୍କରଣରେ ପୋଥିପାଠକୁ ଅପରିବର୍ତ୍ତିତ ଭାବେ ରଖାଯାଇଛି । ଆଧୁନିକ ଶବ୍ଦ ଉଚ୍ଚାରଣ ସହିତ ସେ ସବୁର ପାର୍ଥକ୍ୟ ଏତେ ବେଶୀ ଯେ ଅନେକ ସମୟରେ ପାଠକ ଚମତ୍କୃତ ହୋଇଥାଏ । ଭାବି ବସେ ବୋଧହୁଏ ଏସବୁ ଛପା ଭୁଲ । ପ୍ରକୃତରେ ତାହା ନୁହେଁ । ଏସବୁକୁ ସଂଶୋଧନ କରିବାର ଅଧିକାର ସମ୍ପାଦକର ସାଧାରଣତଃ ନଥାଏ । ଏହିପରି ଗୋଟିଏ ବୈଶିଷ୍ଟ୍ୟ ହେଲା ଅନୁସ୍ୱାରର ପ୍ରୟୋଗ । ପ୍ରାଚୀନ ପୋଥିରେ ଚନ୍ଦ୍ରବିନ୍ଦୁ ସ୍ଥାନରେ ସବୁବେଳେ ଅନୁସ୍ୱାର ଦିଆଯାଇଛି । ଏହା କେବଳ ଓଡ଼ିଆ ପୋଥିର କଥା ନୁହେଁ । ବଙ୍ଗଳା ପାଣ୍ଡୁଲିପିରେ ମଧ୍ୟ ଏହି ପ୍ରବୃତ୍ତି ଦେଖିବାକୁ ମିଳିଥାଏ । ସଂସ୍କୃତ, ପାଲି, ପ୍ରାକୃତ ଏପରିକି ଅପଭ୍ରଂଶରେ ଅନୁସ୍ୱାର ହିଁ ବ୍ୟବହୃତ ହୋଇଥାଏ । ପୋଥିରେ ରାମାୟଣକୁ ରାମାୟେଣ-ରାମାୟଣ-ରାବାୟେଣ ଲେଖାଯାଇଛି । ଶବ୍ଦର ମଧ୍ୟସ୍ଥିତ 'ଅ' 'ଏ'ରେ ପରିଣତ ହୁଏ । ଜନକ ହୁଏ ଜନେକ, ଜାନକୀ ହୁଏ ଜାନେକୀ, କନକ ହୁଏ କନେକ, ସୁନ୍ଦରୀ ହୁଏ ସୁନ୍ଦେରୀ, ଦର୍ପଣ ଦ୍ରର୍ପଣରେ ପରିଣତ ହୁଏ । ଏହିପରି ଉଚ୍ଚାରଣ ହେତୁ ଲୋମପାଦ - ଲୟପାଦ, ଆଚମନ-ଆଚୋବ ବା ଆଞ୍ଚୋବନ, ଋଷିଶୃଙ୍ଗ-ଋଷିଶିଙ୍ଗ-ଋଷିସିଂହ, ଋଷିଶିଂଘ, ଅମାତ୍ୟ-ଅମନାତ୍ୟ, ଦିଅନ୍ତି-ଦ୍ୟନ୍ତି, ପୁରୋହିତ-ପ୍ରୋହିତ, ସୈନ୍ୟ-ସନ୍ୟ, ଆଖ୍ୟାନ-ଆଛାନ, ଉତ୍ସବ-ଉଚ୍ଛବ, ଅପସରା-ଅପଛରା ବା ଅପଛରାରେ ପରିଣତ ହୁଏ । 'ଜଗମୋହନ ରାମାୟଣ'ରେ ଥିବା ପ୍ରାଚୀନ ପ୍ରୟୋଗର ଉଦାହରଣ ବିଭକ୍ତି ପ୍ରୟୋଗରେ ଦେଖାଯାଇପାରେ । ନିମ୍ନରେ କେତେକକୁ ଦିଆଯାଇଛି ।

କଇ - ସ୍ୱର୍ଗକଇ, ଜନକଇ,
କ - ଗଲାକ, ହୋଇଲାକ, କେତେହେଂକ, ହିୟାୟେକ
କେ - ଆଶ୍ରେକେ
ଏୟେ - ଦେବତା ଏ, ଅଯୋଧ୍ୟା ୟେ, ଆୟେ
ଏଣ - ଦେବେଣ, ସାହାରେଣ
ଣ - ଲମ୍ଭାଇଣ
ହିଂ - ସବୁହିଂ, ଦୂଲହିଂ
ଇ - ଯେକଇ, ରଚିବଇଂ, ନିର୍ଭାଇ, ଶବଦାଇ
ବି - ମି - ବଖାଣିମି,
ସି - କହିଲସି, ଯାସି,
ନ୍ତ - ଦେବତାନ୍ତ, ଆଗମନ୍ତ, କଥାନ୍ତ - ମାନଙ୍କର
ନ୍ତି - ସାହାସନ୍ତି, - ସାହାସ କରନ୍ତି ।
ଙ୍କ - ଲତାଙ୍କ - ଲତାସବୁର
ଣ୍ଟୁଂ - ଦୂରୁଣ୍ଟୁଂ - ଦୂରରୁ
ତ - ବସି ତ, ହୋଇତ, ପଖାଳି ତ,
ବଇଂ - ବୁଝାବଇଂ
ବନ୍ତି - ବନ୍ଦାବନ୍ତି, ବନ୍ତ-ବୃନ୍ଦାବନ୍ତ, ନିବିଡ଼ବନ୍ତ ।
ତହିଂ - ମୋର ତହିଂ, ପିତାର ତହିଂ-ଠାରେ
ତହୁଂ - ସବୁରି ତହୁଂ,
କିନା - ପାଉକିନା, ଯାଉକିନା
ଟିକି - ଜାଣଇଟିକି
ର - ନାବେ ଗଲାର

ନିନା - ଭାଗତୁନିନା

ହେଂ - କେତେହେଂ

ଶୁଣିଲାଥିଲେ - ଶୁଣିଥିଲେ ଏବଂ ପଂକ୍ତିର ଆରମ୍ଭରେ 'ସେ ସେ' ।

କେବଳ ଉଚ୍ଚାରଣ ଓ ବିଭକ୍ତିରେ ନୁହେଁ ଏହାର ପ୍ରାଚୀନତା ଦେଖିହୁଏ, ବାଦ୍ୟ, ବସ୍ତ୍ର, ରାଗ, ଗୃହସାମଗ୍ରୀ, ପକ୍ଷୀ, ପଶୁ, ରାଜ କର୍ମଚାରୀ, ଅସ୍ତ୍ରଶସ୍ତ୍ର, ଆଖଡ଼ା ସାଧନା, ପ୍ରଭୃତିରେ । ସମାଜରେ ସେସବୁ ଅପ୍ରଚଳିତ ହୋଇଯିବା ହେତୁ, ସେସବୁର ପ୍ରକୃତ ରୂପ ଆଖି ଆଗରେ ଦେଖି ହୁଏନାହିଁ । ଯେପରି ଗଛ ମଧ୍ୟରେ ମଞ୍ଜାରି, ଆକୁଆ, କରଡ଼ା, ସଉପ, କୁତ, ରାହୀ; ବାଦ୍ୟ ମଧ୍ୟରେ ଯାମଳା ଶଙ୍ଖ, ଦାଉଡ଼ି ବା ଦାଉଣ୍ଡି, ଦମାଙ୍କୁ, ରାମତାଳି, କଂସାଳ, ଝଂଝାଳ, ଦୋକାଠିଆ ଦମା, ଯନ୍ତ୍ରବେଣୀ, କୁଣ୍ଡଳୀ, ଗିଡ଼ିଗିଡ଼ି, ଅଏଂଳାବେଣୀ, କମଘଣ୍ଟ, ଟୋଯେଳା, ସିତାଳ, ହେଟା; ଯାନବାହାନ ମଧରେ ସୁକାସନ ବା ସୁକାସ୍ତନ, ରାଜକର୍ମଚାରୀ ମଧ୍ୟରେ ଦୋସାଧ୍ୟ, ରଣ ରାଉତ, ଭୋଡ଼ଙ୍ଗିଆ ପାଇକ, ମୁକୁଟ ବନ୍ଧା ଯୋଦ୍ଧା, ଦାଣ୍ଡୁଆ ଚାର, ଆଗ ଛାମୁଆ ପ୍ରଭୃତି । ଏଥିରୁ କେତେକଙ୍କୁ ଚିହ୍ନି ହେଉଥିଲେ ବି ସେମାନଙ୍କ କାର୍ଯ୍ୟ ସମ୍ପର୍କରେ ସ୍ପଷ୍ଟ ଧାରଣା ପାଇବା ସହଜ ନୁହେଁ ।

ଗ୍ରନ୍ଥ ପ୍ରକାଶନର ଏହି ଶୁଭ ଅବସରରେ ଯେଉଁମାନେ ବିଭିନ୍ନ ଭାବେ ମୋତେ ସାହାଯ୍ୟ କରିଥିଲେ ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ଏମାନଙ୍କ ମଧ୍ୟରୁ ପ୍ରଥମ ପର୍ଯ୍ୟାୟରେ ଆସନ୍ତି, ମୋତେ ବିନା ଆପତ୍ତିରେ ପୋଥି ପ୍ରଦାନ କରିଥିବା ଲୋକମାନେ । ଯେଉଁ ଦେଶରେ ପୋଥିକୁ ହସ୍ତାନ୍ତର ନ କରି ପାଣିରେ ଭସାଇଦେବା ପୁଣ୍ୟ କର୍ମ ଭାବେ ପରିଗଣିତ ସେ ଦେଶରେ ଯେଉଁମାନେ ଉଦାର ହୃଦୟରେ ମୋତେ ପୋଥି ଦେଇଛନ୍ତି ସେମାନେ କେବଳ ମୋର ନମସ୍ୟ ନୁହନ୍ତି, ସମଗ୍ର ଓଡ଼ିଆ ଜାତିର ନମସ୍ୟ । ଦ୍ୱିତୀୟ ପର୍ଯ୍ୟାୟରେ ଆସନ୍ତି ପୋଥି ନକଲକାରମାନେ । ଏମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯେଉଁମାନେ 'ଜଗମୋହନ ରାମାୟଣ'କୁ ବାରମ୍ବାର ନକଲ କରି ଏ ପର୍ଯ୍ୟନ୍ତ ରଖିପାରିଛନ୍ତି ସେମାନଙ୍କ ନିକଟରେ ସବୁ ତ୍ରୁଟି ଓ ଅସାବଧାନତା ସତ୍ତ୍ୱେ ଏ ଜାତି ଚିର ଋଣୀ । ଦ୍ୱିତୀୟ ପର୍ଯ୍ୟାୟରେ ଆସନ୍ତି ସେଇ ନକଲକାରମାନେ, ଯେଉଁମାନେ ମୋ' ସଂଗୃହୀତ ପୋଥିକୁ ନକଲ କରି ସମ୍ପାଦନାର ପଥ ସୁଗମ କରିଦେଇଛନ୍ତି । ପୁଣି ସମ୍ପାଦନା ପରେ ଯେଉଁମାନେ ପାଣ୍ଡୁଲିପି ପ୍ରସ୍ତୁତ କରି ପ୍ରେସ୍ ଉପଯୋଗୀ କରିଛନ୍ତି, ସେମାନଙ୍କ ନିକଟରେ ମଧ୍ୟ ମୁଁ କୃତଜ୍ଞ । ସାତ ଖଣ୍ଡ ରାମାୟଣ ଉତାରିବା ପାଇଁ ଓ ପାଣ୍ଡୁଲିପି ପ୍ରସ୍ତୁତ କରିବା ପାଇଁ ମୁଁ ବେଳେ ବେଳେ ଅନ୍ୟମାନଙ୍କ ଉପରେ ନିର୍ଭର କରିଥିଲେ ବି ଅଧିକାଂଶ କାର୍ଯ୍ୟ ନିଜ ହାତରେ ହିଁ କରିଛି । ତେବେ ଯେଉଁମାନେ ମୋତେ ସାହାଯ୍ୟ କରିଛନ୍ତି ସେମାନଙ୍କୁ ଏଇ ଅବସରରେ ମୋର ଆଶୀର୍ବାଦ ପ୍ରଦାନ କରୁଛି । ଛପା କାର୍ଯ୍ୟରେ ବିଶେଷ କରି ପ୍ରୁଫ ରିଡ଼ିଂ କଲାବେଳେ ମୋତେ ସାହାଯ୍ୟ କରିଛନ୍ତି ଅଧ୍ୟାପିକା ଡଃ ବିଜୟଲକ୍ଷ୍ମୀ ସ୍ୱାଇଁ । ସେ ମହାଶୟାଙ୍କୁ ମଧ୍ୟ ମୁଁ ଆଶୀର୍ବାଦ ଦେଉଛି । ମୋର ବନ୍ଧୁ ଓ ଶୁଭେଚ୍ଛୁମାନେ ଯେଉଁମାନେ ସବୁବେଳେ 'ଜଗମୋହନ ରାମାୟଣ'କୁ ପ୍ରକାଶିତ ରୂପରେ ଦେଖିବାପାଇଁ ଆଗ୍ରହ ପ୍ରକାଶ କରୁଥିଲେ ଏବଂ ପ୍ରତ୍ୟେକ କ୍ଷେତ୍ରରେ ସାହାଯ୍ୟ କରିଥିଲେ, ସେମାନେ ହେଲେ ମୋର ବନ୍ଧୁ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ଓ ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ । ଡଃ ରତ୍ନାକର ଚଇନି ଓ ଡଃ ବୈଷ୍ଣବ ଚରଣ ସାମଲଙ୍କ ପ୍ରଚେଷ୍ଟାରେ ଏ ଗ୍ରନ୍ଥର ଆଦି ଓ ଅଯୋଧ୍ୟା ପ୍ରକାଶିତ ହୋଇଥିଲା । ଏ ସମସ୍ତଙ୍କ ନିକଟରେ ମୁଁ ଋଣୀ । ପରିଶେଷରେ ଏହି ଗ୍ରନ୍ଥ ଉଦ୍‌ଘାଟନ କରିବା ପାଇଁ ସମସ୍ତ ଦାୟିତ୍ୱ ନେଇଛନ୍ତି ଡଃ ବିଚିତ୍ରାନନ୍ଦ ସିଂହ । ତାଙ୍କର ଉଦାରତା ପ୍ରଶଂସନୀୟ । ପରିଶେଷରେ ସୁମନ ଗ୍ରାଫିକ୍ସର ତତ୍ତ୍ୱାବଧାରକ ତଥା କର୍ମଚାରୀଗଣ ଅକୁଣ୍ଠ ଭାବେ ଏହି କାର୍ଯ୍ୟକୁ ସୁଚାରୁ ରୂପେ ସମ୍ପାଦନ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଋଣୀ । ବିଶେଷକରି ଶ୍ରୀ ଅମରେନ୍ଦ୍ର କୁମାର ଦାସ ଓ ଶ୍ରୀ ଅରୁଣ କୁମାର ଜେନା ଏହାର ପ୍ରକାଶନକୁ ତ୍ୱରାନ୍ୱିତ କରିବା ପାଇଁ ଯେଉଁ ଆଗ୍ରହ ପ୍ରକାଶ କରି ବିନା ଦ୍ୱିଧାରେ ଏ କାର୍ଯ୍ୟ ସମାପ୍ତ କରିଛନ୍ତି, ସେଥିପାଇଁ ସେମାନେ ଧନ୍ୟବାଦାର୍ହ ।

ଏ ଗ୍ରନ୍ଥ ପ୍ରକାଶନରେ ସବୁଠାରୁ ଯେଉଁ ତିନିଜଣ ଅଧିକ ଆନନ୍ଦିତ ହୋଇଥାନ୍ତେ, ସେମାନେ ଇହଜଗତରୁ ବିଦାୟ ନେଇସାରିଛନ୍ତି । ଜଣେ ହେଲେ ମୋର ସହଧର୍ମିଣୀ ଶ୍ରୀମତୀ ସରଳା ଦେବୀ, ଦ୍ୱିତୀୟ ଜଣକ ହେଲେ ମୋର ଅନୁଜ ଶ୍ରୀମାନ୍ ଯତୀନ୍ଦ୍ର ମୋହନ ସାହୁ ଓ ତୃତୀୟ ଜଣକ ହେଲେ ମୋର ପୂଜ୍ୟ ଗୁରୁ ଓ ଭାରତରେ ରାମକଥାର ବିଶିଷ୍ଟ ବିଦ୍ୱାନ୍ ଫାଦର କାମିଲ୍ ବୁଲ୍କେ ।

ଏ ଗ୍ରନ୍ଥର ପ୍ରଚ୍ଛଦପଟ ଆଙ୍କିଛନ୍ତି ଓଡ଼ିଶାର ବିଶିଷ୍ଟ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଅସୀମ ବସୁ । ତାଙ୍କ ନିକଟରେ ମଧ୍ୟ ମୁଁ କୃତଜ୍ଞ ।

ଏହି ସମ୍ପାଦନା କାର୍ଯ୍ୟରେ ଘଣ୍ଟା ଘଣ୍ଟା ବସି କାର୍ଯ୍ୟ କଲାବେଳେ ଯେଉଁମାନେ ମୋର ମାନସିକ ତଥା ଶାରୀରିକ ସୁସ୍ଥତା ରକ୍ଷା

କରିବା ପାଇଁ ମୋର ସବୁ ପ୍ରକାର ଯତ୍ନ ନେଇ ମୋତେ କାର୍ଯ୍ୟ କରିବା ପାଇଁ ସୁଯୋଗ ଦେଇଛନ୍ତି, ସେମାନେ ହେଲେ ମୋର ପୁତ୍ର, ପୁତ୍ରବଧୂ ଓ କନ୍ୟାମାନେ ।

ଆଜି ଯେତେବେଳେ ସମ୍ପୂର୍ଣ୍ଣ ସାତକାଣ୍ଡ ରମାୟଣର ଛାପ ରୂପ ମୋ' ଆଗରେ ଦେଖୁଛି, ସେତେବେଳେ ପୋଥି ସଂଗ୍ରହର ଗୋଟିଏ ଦିନକଥା ମନେ ପଡ଼େ । ଦିନେ ଆମ ଘରୁ ପ୍ରାୟ ଚାରି ମାଇଲ ଦୂରରେ ଅବସ୍ଥିତ ଦୀଘୀ ଗ୍ରାମର ନଗେନ୍ ମାଷ୍ଟ୍ରଙ୍କ ଘରକୁ ଗଲୁ ପୋଥି ଆଣିବାକୁ । ସାଙ୍ଗରେ ଥିଲେ ମୋର ପ୍ରିୟ ବନ୍ଧୁ ଶତ୍ରୁଘ୍ନ ମାଷ୍ଟ୍ରେ । (ସେଠିଳୋ ଗ୍ରାମର ଶତ୍ରୁଘ୍ନ ମହାପାତ୍ର) । ଦୁଇ ବସ୍ତା ପୋଥି ଆଣିଲୁ । ଦୁଇଜଣ ଯାକ ମୁଣ୍ଡେଇ ମୁଣ୍ଡେଇ କରି ବାହାରିଲୁ । ଆନନ୍ଦର ଆତିଶଯ୍ୟରେ ସେତେବେଳେ ପୋଥି ଯେ କେତେ ଓଜନ ହେବ ଜାଣିପାରିଲୁ ନାହିଁ । ବାଟରେ କଷ୍ଟ ହେଲା । ତେବେ ନଈରେ ପାଣି ପଡ଼ିଯିବ ବୋଲି ଚଞ୍ଚଳ ଚଞ୍ଚଳ ଚାଲିଲୁ । ନଈକୂଳରେ ପହଞ୍ଚିଲା ବେଳକୁ ନଈରେ ପାଣି ଆସିଯାଇ ଥିଲା । ଭାବିଲୁ ଚାଲିଯିବୁ । ପାଣିରେ ପଶିଲୁ । ଧୀରେ ଧୀରେ ପାଣି ବଢୁଥିଲା । ଆର କୂଳରେ ପହଞ୍ଚିଲା ବେଳକୁ ବେକେ ପାଣି । ସୁଅ ତଡୁଛି । ଦୁଇ ହାତରେ ଟେକି ଧରିଲୁ ପୋଥି ବସ୍ତାକୁ । ମାଷ୍ଟ୍ରେ 'ରାଧେ ଶ୍ୟାମ', ରାଧେ ଶ୍ୟାମ କହୁଥାନ୍ତି । ନିରାପଦରେ ନଈ ପାରିହେଲୁ । ଦି' ଜଣଯାକ ଖୁବ୍ ଗାଳି ଶୁଣିଲୁ ବାପାଙ୍କ ଠାରୁ । ସେସବୁ ମନେପଡ଼ିଲେ ଆଜି ବି ଦିହ ଶୀତେଇ ଯାଏ ।

ମହାପୁରୁଷ ବଳରାମ ଦାସ ରଚିତ 'ଜଗମୋହନ ରାମାୟଣ' ଷୋଡ଼ଶ ଶତାବ୍ଦୀର ଗ୍ରନ୍ଥ । ସେ ଭାଷାର କେତେ ପାଖକୁ ମୁଁ ଯାଇପାରିଛି, ତାହା ସୁଧୀ ପାଠକମାନେ ବିଚାର କରିବେ । ଜଗନ୍ନାଥ ହିଁ ଭରସା ।

('ଜଗମୋହନ ରାମାୟଣ' ୧୯୯୫, ଭୁବନେଶ୍ୱର)

## (୨)

## କେତେକ ପ୍ରାଚୀନ ଶବ୍ଦ

### ଅ

ଅଇଲାଇଂ - ଆସିଲେଣି
ଅଗୁଳି - ଅଧିକା
ଅଗ୍ରହଣ=ଆଗ୍ରାହଣ=ଆଘ୍ରାଣ=ଶୁଙ୍ଘିବା
ଅଚାର୍ଗଳ - ଭୟଙ୍କର
ଅଚାଭୁଆ - ଆଶ୍ଚର୍ଯ୍ୟ
ଅଡ଼ାଅ - ଅଡ଼େଇବା (ଗାଈ, ଛେଳି ଇତ୍ୟାଦି)
ଅର୍ଦ୍ଧୋଳି - ଅଝଟ
ଅନାସ୍ତ - ନିରାଶ୍ରୟ
ଅନ୍ତରାଳି - ଭିତରେ
ଅନ୍ଧତ୍କାର - ଅନ୍ଧକାର
ଅନ୍ୟାଅନ୍ୟ - ଅନ୍ୟୋନ୍ୟ
ଅପସର - ତକିଆ
ଅପହର - ହରଣ କରିବା
ଅପ୍ରତିଷ୍ଠା - ଅପବିତ୍ର
ଅଭୃତ - ଅବଭୃତ-ଯଜ୍ଞଶେଷ ସ୍ନାନ
ଅଶୁଆର - ଅଶ୍ୱାରୋହୀ
ଅସଭାବ - ଜିନିଷପତ୍ର
ଅସାକ୍ଷମ - ଅଚେତ
ଅସୂକାର - ନିନ୍ଦାବଚନ
ଅହନ୍ତା - ଈର୍ଷା
ଅଧାରି ବା ଆଧାରି - ଯୋଗୀମାନଙ୍କ ଶ୍ୱାସ ନିୟନ୍ତ୍ରକ ଦଣ୍ଡ

### ଆ

ଆକ୍ରାନ୍ତି - ଆକ୍ରମଣ
ଆଗୁସାର - ଅଗ୍ରସର
ଆଚୋବନ - ଆଚମନ
ଆହ୍ଲାନ - ଆଖ୍ୟାନ
ଆଠୁଆରି - ସନ୍ତାନ ଜନ୍ମର ଅଷ୍ଟମଦିନ
ଆଢ଼େଣି - କବଚ, ଆବରଣ
ଆଢ଼ୋ ଆଢ଼ୋ - ଆଡ଼ ହୁଅ, ଆଡ଼ ହୁଅ
ଆଣ୍ଠୁଆଣି - ଆଣ୍ଠୁ ପର୍ଯ୍ୟନ୍ତ
ଆନନ୍ଦି - ଆନନ୍ଦିତ ହୋଇ
ଆରଣେ - ଅଙ୍କୁଶ
ଆଶିର୍ଯ୍ୟ - ଆଶ୍ଚର୍ଯ୍ୟ

ଆସ୍ୟ - ମୁଖ

ଆହୂତ - ଆମନ୍ତ୍ରିତ

### ଉ

ଉକୁଟାଇ - ଛଡ଼ାଇ

ଉକୁଟିଲା - ଉଜ୍ଜ୍ୱଳ ଭାବେ ଦେଖାଦେଲା

ଉଚ୍ଚାର - ଉଚ୍ଚାରଣ

ଉଚ୍ଛାହ - ଉତ୍ସାହ

ଉଛିଣ - କୁଞ୍ଚ କରି ପିନ୍ଧିବା

ଉଚ୍ଛୁକ - ଉତ୍ସୁକ

ଉଛୁଡ଼ିଣ - ଛଡ଼ାଇ ନେବା

ଉଠିଆରି - ସୂତିକା ଗୃହର କେତେକ ସ୍ଥଳରେ ପଞ୍ଚମ ଦିନ ଓ କେତେକ ସ୍ଥଳରେ ସପ୍ତମ ଦିନର କର୍ମ ବିଶେଷ

ଉତକର୍ମ - ଉତ୍ପାତ

ଉତଶଲ୍ୟ - ଆନନ୍ଦ

ଉତୁରି - ଓହ୍ଲେଇବା

ଉତ୍ଥାନେ - ଚିତ୍ ହୋଇ

ଉନିଳ - ଉନ୍ମୁକ୍ତ

ଉପଗାରି - ଉପକାରୀ

ଉପଦର୍ପ - ଉପଦ୍ରବ

ଉପସର୍ଗ - ପ୍ରତିକ୍ରିୟା

ଉପୁଟିଆଇ - ପ୍ରତିକୂଳ ଗତିରେ ଭାସିବା

ଉପେକ୍ଷିଲୁ - ପ୍ରତିଯୋଗ କରିବା

ଉବୁରି - ଅଧିକା

ଉଭାରି - ସିଧା କରି ରଖିବା

ଉଭୁରା ଉଭୁରି - ଠେଲାପେଲା

ଉହାଡ଼ି - ଆଢୁଆଳ କରି

### ଏ

ଏକସର - ଏକୁଟିଆ

ଏହେର୍ଣ୍ଣେକ - ଏପରି

### ଓ

ଓଝା - ଶିକ୍ଷକ

ଓପ୍ରୋଧ - ସହାନୁଭୂତି

ଓହାଡ଼ି - ଆବରଣ କରି

ଓହୋ - ଉଭୟ

ଓହୋବଳ - ଉଭୟ ପକ୍ଷର ବଳ

### କ

କଇବ୍ରତ - କେଉଟ

କର୍ପଁରା - କଷରା

କର୍ପଁଳା - କଅଁଳା

କଟକାଇ - ଅବରୋଧ କରିବା

କଟାଳ - ହଇରାଣ କରିବା

କଣ୍ଡିଲା - ଝାଳେଇବା

କର୍ଦ୍ଦନ - ଦୁଃଖ

କଷୋର - କଠୋର

କାଛଟା - କଉପୁନି

କାଣି କଡ଼ାକରେ - ନଗଣ୍ୟ ଭାବରେ

କାର୍ପୂଣ୍ୟ - ବିନୟ

କାରେଣି - କର୍ତ୍ତା

କିଛୁ - କିଛି

କିମର୍ଥେ - କେଉଁଥିପାଇଁ

କୁଢ଼ାବନ୍ତି - ଜମା କରିବା

କୁଣୁଆ - କୁଣିଆ, ଅତିଥି

କେରୁଆଳ - ନାବିକ

କେଲାଇଲେ - ମାଂସ ଖଣ୍ଡ ଖଣ୍ଡ କରି କାଟିବା

### ଖ

ଖଞ୍ଜାଣି - ହାଡ଼ର ଖଞ୍ଜା ଅର୍ଥରେ ବ୍ୟବହୃତ

ଖଞ୍ଜା - ସଜେଇବା

ଖଟାଇ - ବାନ୍ଧିବା

ଖରଡ଼ - ମସିଣା

ଖଳିତ - ଖସିବା, ଝରିବା

ଖିନ୍ନ - କ୍ଷୀଣ, ପତଳା

ଖେଦଇ - ଖୋଜିବା

ଖେଦାଖେଦା - ପଲ ପଲ

### ଗ

ଗଛି - ସମ କରିବା, ସାନ ଗଛ, ସଜେଇବା

ଗଣିତା - ଗଣନ

ଗବନୀ - ଗମନୀ

ଗଳଥି - ତଣ୍ଟିଆ

ଗ୍ରାହିତ - ଗୃହୀତ
ଗ୍ରାହିଯ - ଗ୍ରହଣ କରିବା
ଗିଧ - ଶାଗୁଣା
ଗିଲି - ପାଲିଙ୍କି ଉପରେ ଥିବା ଚିତ୍ରିତ ଆବରଣ
ଗୁଚଞ୍ଚ - ଗୃହସ୍ଥ
ଗୁଳା - ପୂର୍ବ ନିର୍ଦ୍ଦିଷ୍ଟ ପଥ
ଗୁଳୁଘୁଣ୍ଟା - ଗୁରୁଣ୍ଡିବା, ଘୁଷୁଡ଼ିବା, ପେଟେଇ ଚାଲିବା
ଗଂଜାଇ - କଷ୍ଟ ପ୍ରଦାନ କରି

ଘ

ଘଟଇ - ଠିକ୍ ଭାବେ
ଘଟାନ୍ତ ଛଡ଼ାବନ୍ତି - ଦେହରୁ ମଳି ଛଡ଼ାଇବା
ଘନକାଇ - ଜୋରରେ
ଘାଏ - ଆଘାତ
ଘାନ୍ତି - ଥର
ଘେନାଇ - ସ୍ନେହ ପ୍ରକାଶ କରି କୋମଳ ଭାବ ପ୍ରକାଶ କରି

ଚ

ଚଉଦୋଳ - ଏକ ପ୍ରକାର ଯାନ
ଚଳଣ - ଚାଲିବା
ଚହଳ - ଶବ୍ଦ
ଚାପେଣୀ - ନାବ ଅଟକାଇବା ଲଙ୍ଗର
ଚିଆଂଇ - ଜାଗ୍ରତ ଅବସ୍ଥା
ଚିରୋଉ - ଚିନ୍ତା କରି
ଚିରିଣୀ - ପାନିଆ

ଛ

ଛଡ଼ - ଷଡ଼, ଛ
ଛିଣ୍ଡାଳି - ଅସତୀ ନାରୀ
ଛେରା - ଚନ୍ଦନାଦି ସୁବାସିତ ଜଳସିଞ୍ଚନ

ଝ

ଝଗଡ଼ - ଜଞ୍ଜାଳ
ଝଡ଼ା - ପୋଇଲି
ଝଲକ - ଉଜ୍ଜ୍ୱଳତା
ଝାଡ଼ବାଡ଼ - ଜଙ୍ଗଲ ବଣ
ଝିଙ୍ଗାସ - ବିରକ୍ତ ହୋଇ କହିବା, ଗାଳି ଦେବା
ଝୁଣି - ଶୋଷିବା

ଟ

ଟସକର - ଚୋର
ଟେଗା - ବାଡ଼

ଡ

ଡକା - ଲୁଟତରାଜ

ଢ

ଢମାଳି - ଶାଳୀ ଶଳା ଭାଉଜମାନେ କରନ୍ତି ଢମାଳି । (ପରିହାସ, କୌତୁକ ବଚନ)
ଢାଳେହେଂ - ଧିରେ, ଅଳ୍ପକେ
ଢୁଣିକି - ଧନୁକୀ, ଧନୁର୍ଦ୍ଧାରୀ
ଢେଣୁକି - ଧନୁକୀ, ବାଣ ଫୁଟାଇବା ଲୋକ

ତ

ତଡ଼ବେଗେ - ଖୁବ୍‌ଶୀଘ୍ର
ତନ୍ତୁଂ - ତନ୍ତ୍ରୀ
ତନଇ - ସନ୍ତାନ
ତପସୁ - ତପସ୍ୱୀ
ତବଦ୍ଧ - ସ୍ତବ୍ଧ, ସ୍ଥିର
ତରସ୍ତ - ତ୍ରସ୍ତ, ଭୟଭୀତ
ତଲୟେ - ସ୍ଥିର ଦୃଷ୍ଟି
ତାରେ - ତାହାର
ତାହି - ସେହି
ତିଆରି - ସାବଧାନ କରି
ତେଣିର କୂଳଲେ - ନଦୀର ଅପର କୂଳ
ତୁଲାଇତ - ସମାନ କରିବା
ତୁସ୍ତି - ସ୍ତୁତି, ପ୍ରଶଂସାସୂଚକ ବଚନ କହିବା
ତେକୁ ତେକୁ - ଆଶ୍ଚର୍ଯ୍ୟ, ହତଚକିତ

ଥ

ଥୟେ - ସ୍ଥିର

ଦ

ଦଉନି - ବିନୟ
ଦାଉଡ଼ି - ବାଦ୍ୟ ବିଶେଷ
ଦିଉଛାଇ - ଷଷ୍ଠୀ ଦେବୀ
ଦୁଜା - ଦୁଇ

ଦୁଲାଳୀ - ଝିଅ
ଦେଖୁଣି - ବୋହୂ ଦେଖା
ଦୋରେହା - ଦ୍ରୋହୀ, ଶତ୍ରୁ
ଦୋ ସାଧୁ - କଟୁଆଳ
ଦୋସୋଡ଼ା - ଉପଗଣ

ଧ

ଧନି ଧନି - ଧନ୍ୟ ଧନ୍ୟ
ଧରଣା - ଧାରଣା
ଧାତିକା - ଶୀଘ୍ର
ଧୁଆଙ୍ଗଣ - ଦଉଡ଼ିବା
ଧୁଆଂ ଧୁଇଂ - ଦଉଡ଼ା ଦଉଡ଼ି
ଧୁର - ଦୂର
ଧୋଅରା - ଧୋଇବା
ଧଂସିଲେ - ଧ୍ୱଂସକଲେ

ନ

ନଉଶତ - ନଅ ଶହ
ନଗୁତି - ସଂଲଗ୍ନ, ସମ୍ଭାର
ନଡ଼ପ - ତେଲ
ନସ୍କର - ତସ୍କର ଅର୍ଥରେ ପ୍ରଯୁକ୍ତ
ନସିବ - ନାଶି ହେବ
ନାଗବନ୍ଧ - ଏଗୁଣ୍ଡି ବନ୍ଧ
ନାଚୁଣି - ନୃତ୍ୟକାରିଣୀ
ନାଡ଼ିଘଡ଼ିଆ - ସମୟ ଜଣାଉଥିବା କର୍ମଚାରୀ
ନାହା - ନାଥ
ନିଉଛାଳି - ବିନୟ କରି
ନିଉଡ଼ିଲା - ଢାଳିଲା
ନିକିଛି - ବାହାରିବା
ନିଘୋଡ଼ (ସାଜ) - ଗାଢ଼
ନିଚଳ - ନିଶ୍ଚଳ
ନିଠାଇ - ଟିକି ଟିକି କରି
ନିଥର - ସ୍ଥିର, ଅଚଞ୍ଚଳ
ନିବୃତି - ରକ୍ଷା ପାଇଯିବା
ନିବାଡ଼ିଲା - ନିକହ କଲେ
ନିର୍ବା - ନିର୍ବାହ
ନିରିମାଖି - ନିରାଶ୍ରୟା
ନିରେଖ - ଅନାଥ
ନିଶୋଧନ- ୧. ନିସୂଦନ - ଶତ୍ରୁ
୨. ନିସୂଦନ - ସମାପ୍ତ କରିବା
ନିହାଇ - ନୁହେଁ

ପ

ପକୁ - ପାଚିଲା
ପଖାଳଇ - ଧୋଇ
ପଗଡ଼ - ଦାନା
ପଞ୍ଚଇ - ପାଞ୍ଚିବା
ପଛଉର - ପଛପଟ
ପଠାର - ଅପେକ୍ଷା କରିବା
ପ୍ରଣମ୍ୟ - ପ୍ରଣାମ
ପନ୍ଥ - ପଥ
ପୟାଣ - ସୈନ୍ୟଙ୍କ ଅଭିଯାନ
ପରିମାଣି - ବିଚାର କରିବା
ପରିମୁଣ୍ଡା - ବିନୟ ପ୍ରକାଶ
ପଶରାଇତା - ବେପାରୀ
ପହୁଡ଼ି - ଶୋଇବା
ପ୍ରବୋଧନା - ଆଶ୍ୱାସନା
ପମନିଲା - ପଠେଇବା
ପାଟଳ - ଶ୍ରେଷ୍ଠ
ପାତାଂଗ - ପତାକା
ପାଦ ଦାନ - ପାଦ ରଖିବା ଆସନ
ପାଦ ପଖାଳ- ପାଦ ଧୋଇବା
ପାୟେଡ଼ା - ବସ୍ତ୍ର ବିଛାଇବା
ପାଲଟିଆ - ବଦଳାଉଥିବା ବ୍ୟକ୍ତି
ପାଳଣା - ପାଳନ
ପାହାରି - ପ୍ରହରୀ
ପ୍ରାକର୍ମ - ପରାକ୍ରମ, ଶକ୍ତି
ପାଂଶୁ - ପାଉଁଶ
ପିଅର - ପିତା
ପିଛାଡ଼ - ପଛପଲଟ
ପିଠୁଆଳି - ସେଦୁଅ
ପେଣ୍ଠ - ବାଣିଜ୍ୟର କେନ୍ଦ୍ର
ପେଲାଇଲା - ଠେଲାଇବା

ପୋଇ - ପୁତ୍ର

ଫ

ଫଡ଼ିକାଳର - ଖଣ୍ଡା ଖେଳାଳୀ

ଫରମାଣ - ରାଜାଦେଶ

ଫୁକାରଇ - ଉଚ୍ଚସ୍ୱରରେ ଆହ୍ୱାନ

ଫେଇ - ଖୋଲିବା

ଫେରକମ - କୁମ୍ଭର ନିମ୍ନଭାଗ

ବ

ବଇଲେ - ବଳଦ

ବଛ - ବତ୍ସ, ପିଲା

ବଣିଜାର - ବେପାରୀ

ବଧାଇ - ପୁରସ୍କାର

ବଳୀଆର - ବଳବାନ୍, ବଳଶାଳୀ

ବାଖର - ଘୋଡ଼ା ପୃଷ୍ଠରେ ଆଚ୍ଛାଦନ ବସ୍ତ୍ରବିଶେଷ

ବାଗେ - ଭଙ୍ଗୀରେ

ବାପୁଡ଼ା - ବିଚରା

ବାହୁନି - ବାନପଥ-ବାନପ୍ରସ୍ଥ

ବାରହ - ବାର

ବାଟୁଳ - ବର୍ତ୍ତୁଳ

ବିଘସଇ, ବିଘସନ୍ତି - ବିକାଶ କରନ୍ତି

ବିଛୁଳି - ବିକ୍ଷିପ୍ତ

ବିଡ଼ିବା - ପରୀକ୍ଷା କରିବା

ବିଭଳେଣ - ବିହ୍ୱଳ ହୋଇ

ବିମୋହି - ବିମୁଗ୍ଧ ହୋଇ

ବିରୋଳଇ - ସୁନ୍ଦର

ବିଳୋପଇ - ବିଳାପ କରିବା

ବିଳୋହିବା - ଭୋଗ କରିବା

ବିସ୍ତୋରି - ବିସ୍ତୃତ ହୋଇ

ବିହା - ବିଭା

ବେଗଳ - ଅଲଗା

ବେଜ - ବୈଦ୍ୟ

ବେଢ - ପରିଧି

ବେଦ, କରାଣ୍ଡି - ବେଦ କାଣ୍ଡ

ବେଶନ - ବ୍ୟସନ

ବେହାର - ବିହାର

ବୈଗୁଣ - ଖରାପ ଗୁଣ

ଭ

ଭଡ଼ା - ଥର

ଭର୍ତ୍ତା - ସ୍ୱାମୀ

ଭୟେଣୀ - ଭଉଣୀ

ଭ୍ରତ୍ସନା - ଭର୍ତ୍ସନା, ଗାଳିଦେବା

ଭ୍ରଥା - ଭର୍ତ୍ତା, ସ୍ୱାମୀ

ଭାଗର - ଭ୍ରାତା, ଭାଇ

ଭ୍ରାନ୍ତି - ଭୁଲ

ଭିଆଣ - ସୃଷ୍ଟି

ଭୃତ୍ରୁଙ୍ଗୀ - ଡାକଦେବା ସେବକ

ଭେବଳ - ବିହ୍ୱଳ

ମ

ମଙ୍ଗୁଆଳ - ମଙ୍ଗ ଧରୁଥିବା ନାବିକ

ମଛ - ମତ୍ସ୍ୟ, ମାଛ

ମଡ଼ିଆଳ - ଧୋବା

ମଥିବା - ମନ୍ଥନ କରିବା

ମନାଇ - ମନେଇବା

ମନ୍ଦାରି - ଟାଙ୍ଗଣ

ମୟାଣ - ମଦନ

ମୟେମନ୍ତ - ଉନ୍ମତ୍ତ

ମହୀଆଳି - ପୃଥିବୀ

ମାଖିଲେ - ଲେପିଲେ

ମାନ୍ୟନ୍ତ - ଗଣ୍ୟମାନ୍ୟ

ମୂର୍ଦ୍ଧନି - ମସ୍ତକ

ମୁହାଂସ - ସ୍ନେହ

ମେଲାଇଲା - ଖୋଲିବା

ମୋରିଆ - ଆସନ

ମୋକ୍ଷପାନ - ମୁଖ୍ୟ

ଯ

ଯତସତ - ଶୁଦ୍ଧତା

ର

ରଚ୍ଚନା - ସୃଷ୍ଟି

ରଣୀ - ରାଜା

ରଡା - ଲାଲ

ରାଜନୀ - ରାଜା

ରୁଣ୍ଡିଆଇ - ଏକାଠି କରି

ରୁହାଇଲା - ଅଟକାଇବା

ରେଙ୍କୁ - ରଜ୍ଜୁ, ଦଉଡ଼ି

ରୋକିଲା - କାନ୍ଦିଲା

ରୋବୋଇ - କାନ୍ଦି

**ଶ**

ଶଙ୍କୁନ୍ୟ - ଚିହ୍ନ

ଶୟଳ - ସଂସାର

ଶବଦାଇ - ଉଚ୍ଚସ୍ୱରରେ କହି

ଶାସ୍ତ୍ର ଶୋଧନ- ଶାସ୍ତ୍ର ଅନୁସନ୍ଧାନ, ଶାସ୍ତ୍ର ଗବେଷଣା

ଶିର ପାତିବା- ମୁଣ୍ଡ ଦେଖାଇବା

ଶୁତିଲେ - ଶୋଇଲେ

ଶୋଣବନ୍ତ - ରକ୍ତବନ୍ତ

**ସ**

ସଙ୍ଗକାରୀ - (ସଧବା)

ସତ୍ୟ ବିଡ଼ିବା - ସତ୍ୟ ପରୀକ୍ଷା କରିବା

ସଧ - ଶ୍ରଦ୍ଧା

ସମାଦ - ସଂବାଦ

ସମୋଧ - ସମ୍ବନ୍ଧ, ସମ୍ପର୍କ

ସମ୍ପଧି - ସମ୍ପଦ

ସରଜନ - ସର୍ଜନ

ସଲ୍ଲୀ - ଶତ୍ରୁ

ସଂଗ୍ରାନ୍ତ - ସମୂହ

ସଂଯୁତ - ଯୁକ୍ତ ହୋଇ

ସାଞ୍ଚାବନ୍ତ - ସତ୍ୟବାଦୀ

ସାଂଜୋଇ - ସଜେଇବା

ସାର୍ଥିକ - ସାର୍ଥକ

ସାହା - ସହାୟ

ସାହାଣ - ଘୋଡ଼ାଶାଳ

ସାହସ - ଶ୍ୱାସ

ସିଙ୍ଘିଣୀ - ସିଂହୀ

ସିଠୁଆ - ରସନଥିବା

ସୁନିଆ - ସୁନା

ସେନେଧ - ସ୍ନେହ

ସୋଗ - ସୁଆଗ

**ହ**

ହକାରି - ଡାକି

ହାଦେ - ପୁଣି, ନିଶ୍ଚୟ

ହାଦୋଳା - ଏକ ପ୍ରକାର ଯାନ, ଦୋହଲାଇବା

ହାଦୋଳିଣ - ମନ୍ତ୍ରିଣ

ହୁରି - ଜୋର୍‌ରେ ଡାକ ପକାଇବା

ହୁଳ - ଧନୁର ଅଗ୍ରଭାଗ

ହୁଲି - ଫୁଲ

ହେଠ - ଅଧୋମୁଖ

ହେନ - ଏପରି

ହେଲୁ - ମନ୍ଥର

**କ୍ଷ**

କ୍ଷେମ - ସକ୍ଷମ

('ଜଗମୋହନ ରାମାୟଣ' ପୃ.ନ-ଯ, ୧୯୯୫, ଭୁବନେଶ୍ୱର)

ସତ୍ୟେଣ ସିନ୍ଧୁ ଯେ ନ ଲଂଘଇ କୂଳ
ସତ୍ୟେଣ ମାଧବ ଯେ ହୁଅନ୍ତି ଅବତାର ।
ସତ୍ୟେଣ ଗରଳ ଭକ୍ଷିଲେ ଦେବ ହର
ସତ୍ୟପାଳି ପୃଥ୍ୱି ଯେ ନ ପଡ଼ଇ ତଳ ।
ସତ୍ୟେଣ ଇନ୍ଦ୍ର ଯେ କରଇ ଜଳ ବୃଷ୍ଟି
ସତ୍ୟେଣ ଷଡ଼ରତୁ ଆଚ୍ଛାଦଇ ସୃଷ୍ଟି ।
ସତ୍ୟେଣ ମଉଷୋଧ୍ୱି କରଇ ବ୍ୟାଧିନାଶ
ସତ୍ୟେଣ ଦିନକର ଉଦୟେ ଆକାଶ ।
ସତ୍ୟେଣ ମନ୍ଦର ହୋଅଇ ବର୍ଦ୍ଧମାନ
ସତ୍ୟେଣ ମେରୁ ଯେ ପୃଥିବୀ ଧାରଣ ।
ସତ୍ୟେଣ ସଂସାର ହୁଅଇ ଉତପତି
ସତ୍ୟେଣ ପୁରୁଷ ହତ୍ୟା କଲେକ ପାର୍ବତୀ ।
ସତ୍ୟେଣ ପବନ ସବୁରି ଅଙ୍ଗେ ପଶଇ
ସତ୍ୟକୁ ହୁତାଶନ ସବୁହିଁ ଭକ୍ଷଇ ।

'ଅଯୋଧ୍ୟା କାଣ୍ଡ'

